ଏ ଗ୍ରନ୍ଥର ଦ୍ୱିତୀୟ ଖଣ୍ଡ ପ୍ରକାଶ କରିବାପାଇଁ ମୋତେ ଯେଉଁ ଦୁସ୍ତର ଅର୍ଥସଙ୍କଟ ମଧ୍ୟ ଦେଇ ଯିବାକୁ ହୋଇଥିଲା, ତାହା ସେ ଅନୁଭବ କରି ଓ ତୃତୀୟ ଖଣ୍ଡର ମୁଦ୍ରଣ କର୍ମ ବୌଦ୍ଧର ରାଜାସାହେବଙ୍କ ଅର୍ଥସାହାଯ୍ୟଦ୍ୱାରା ସମାହିତ ହେବାର ଜାଣି ଚତୁର୍ଥ ଖଣ୍ଡର ମୁଦ୍ରଣ ମାର୍ଗକୁ ସୁଗମ କରିବାପାଇଁ ସାହେବ ମହୋଦୟ ମୋ ଅଜ୍ଞାତରେ ଓ ମୋର ବିନା ପ୍ରାର୍ଥନାରେ ମଧ୍ୟ ପାଟଣା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ଓ ସିନେଟ୍ ସଭାଦ୍ୱାରା ସଂପ୍ରତି ପାଞ୍ଚ ହଜାର ଟଙ୍କା ମଞ୍ଜୁର କରାଇ-ଅଛନ୍ତି । ଏ ଉଦ୍ୟମ ପାଇଁ ତାଙ୍କୁ ପୂର୍ବରୁ ଥରେ ଧନ୍ୟବାଦ ଦେବାକୁ ସାହେବ ମହୋଦୟ ମୋତେ ଅବସର ସୁଦ୍ଧା ଦେଇ ନ ଥିଲେ । ଏଥିପୂର୍ବେ ତାଙ୍କ ପ୍ରଦତ୍ତ ତାଲିକା ଅନୁସାରେ ଇଉରୋପର ସୁଧୀବର୍ଗଙ୍କଠାକୁ ଭାଷାକୋଷର ଅନୁଷ୍ଠାନ ପତ୍ର ଓ ନମୁନା ପଠାଯାଇଥିବାରୁ ଆଜି ଇଉରୋପର ବିଦ୍ୱଜ୍ଜନ-ମଣ୍ଡଳରେ ଏ ଗ୍ରନ୍ଥ ସୁଜ୍ଞାତ ଓ ସମାଦୃତ ହୋଇଅଛି ।

ଦଶମୀଗତ ମହର୍ଷିକଳ୍ପ ମୋର ଗୁରୁସ୍ଥାନୀୟ ଉତ୍କଳର କୁଳବୃଦ୍ଧ ଶ୍ରୀଯୁକ୍ତ ମଧୁସୂଦନ ଦାସ, ସି. ଆଇ. ଇ. ଙ୍କର ଏ ସଂଗ୍ରହ ଓ ସଂଗ୍ରାହକ ସଙ୍ଗେ ଥିବା ଘନିଷ୍ଠ ସମ୍ପର୍କ ପ୍ରଥମ ଖଣ୍ଡ ଅବତରଣିକାରେ ବିବୃତ ହୋଇଅଛି । ଦୁର୍ବଳ ଶିଶୁର କ୍ରମିକ ଶାରୀରିକ ପୁଷ୍ଟି ଓ ମାନସିକ ବିକାଶ ଦେଖି ପାଳକ ପିତାଙ୍କ ମନରେ ଯେଉଁ ଅନିର୍ବଚନୀୟ ଆନନ୍ଦ ଜାତ ହୁଏ, ଏ ଗ୍ରନ୍ଥର କ୍ରମିକ ଖଣ୍ଡମାନ ପ୍ରକାଶରେ ସେ ସେହି ନୈସର୍ଗିକ ଆନନ୍ଦ ଅନୁଭବ କରୁଥିବାର ମୁଁ ଦେଖିପାରୁଅଛି । ତାଙ୍କଠାରୁ ମିଳିଥିବା ଶିକ୍ଷା ଓ ପ୍ରେରଣା ଏ ଗ୍ରନ୍ଥର ମୂଳରେ ବିଦ୍ୟମାନ; ତଥାପି ଏ ଗ୍ରନ୍ଥରେ ତାଙ୍କ ପ୍ରତିକୃତି ସନ୍ନିବେଶିତ କରିବାପାଇଁ ମୋତେ ଆଦେଶ ମିଳିଲା ନାହିଁ । "ଆଜ୍ଞା ଗୁରୁଣାମବିଚାରଣୀୟା ।" ଗୁରୁଜନଙ୍କ ହୁକୁମ୍ ଉପରେ ଅପିଲ୍ ନାହିଁ ।

ଏହିପରି ନାନା ଭାବରେ, ନାନା ଉପାୟରେ ନାନା କ୍ଷେତ୍ରରେ, ନାନା ଆକାରରେ, ପ୍ରତ୍ୟକ୍ଷରେ ଓ ପରୋକ୍ଷରେ, ମୋ ଜ୍ଞାତସାରରେ ଓ ଅଜ୍ଞାତରେ ଯେଉଁମାନେ ମୋତେ ସହାୟ୍ୟ କରିଅଛନ୍ତି, କରୁଅଛନ୍ତି ଓ କରିବେ, ସେମାନଙ୍କଠାରେ ମୁଁ, ଓଡ଼ିଆଭାଷା ଓ ଓଡ଼ିଆଜାତି କୃତଜ୍ଞତା ପାଶରେ ଆବଦ୍ଧ । ଏହି କୃତଜ୍ଞତାର କଥଞ୍ଚିତ୍ ପ୍ରତିଦାନରୂପେ ଯେଉଁ ଯେଉଁମାନଙ୍କର ଫଟୋ(ଆଲୋକଚିତ୍ର) ମୋର ହସ୍ତଗତ ହୋଇଅଛି, ହେଉଅଛି ଓ ହେଉଥିବ ସେମାନଙ୍କ ଛବି ଏ ଗ୍ରନ୍ଥର ପୂର୍ବବର୍ତ୍ତୀ, ବର୍ତ୍ତମାନ ଓ ପରବର୍ତ୍ତୀ ଖଣ୍ଡମାନଙ୍କରେ ବାହାରିଛି, ବାହାରୁଛି ଓ ବାହାରିବ । ବିଶିଷ୍ଟ ସହାୟକ ଓ ସହକର୍ମୀଙ୍କ ଛବି ଏକାଧିକଥର ପ୍ରକାଶ କରି ତତ୍ତ୍ୱବ୍ୟକ୍ତିଙ୍କ ଋଣରୁ ସାମାନ୍ୟରେ ମୁକ୍ତ ହେବି ବୋଲି ମୁଁ ବାସନା କରିଅଛି ।

**ଏ ଗ୍ରନ୍ଥ ସଂକଳନ ଓ ମୁଦ୍ରଣାଦିର ବ୍ୟୟ**—ଏହି ସଂସ୍କରଣରେ ଛପା ହେବା ପୁସ୍ତକ ସଂଖ୍ୟା ୧୨୫୦ । ହାରାହାରି ୧୨୦୦ ପୃଷ୍ଠାସମ୍ବଳିତ ପ୍ରତ୍ୟେକ ଭାଗ (ଭଲ୍ୟୁମ୍) ପାଇଁ କାଗଜ,ଛପା ଓ ବନ୍ଧାଇ ଖରଚ ମୋଟାମୋଟି ବାର ହଜାର ଟଙ୍କା । ଏହି ବ୍ୟୟ ଛଡ଼ା ପାଣ୍ଡୁଲିପିମାନ ସାଫ କରିବା, ସମ୍ମାର୍ଜନ କରିବା ଓ ଛାପାଖାନା ଲାଗି କପି ପ୍ରସ୍ତୁତ କରିବା କାର୍ଯ୍ୟରେ ନିଯୁକ୍ତ ମୋ ସହକର୍ମୀମାନଙ୍କୁ ଓ ମୋତେ ପୋଷିବାପାଇଁ ପ୍ରତି ମାସରେ ଦୁଇଶହ ଟଙ୍କା ବ୍ୟୟ କରିବାକୁ ୫ ବର୍ଷ ହେଲା ପଡ଼ୁଛି ଓ ଆଉ ୨ ବରଷ ପଡ଼ିବ । ଅତଏବ ଉକ୍ତ ମାସିକ ବ୍ୟୟ ଛଡ଼ା ସମସ୍ତ ୫ ଭାଗ ଯାକ ପ୍ରକାଶ କରିବାପାଇଁ ଅନ୍ୟୁନ ଷାଠିଏହଜାର ଟଙ୍କା ଲୋଡ଼ା ।

**ଅର୍ଥ ସଂକଟ ଓ ଆର୍ଥିକ ସଙ୍ଗତି**—ଆଜିକାଲି ସମସ୍ତ ଜଗତକୁ ଯେଉଁ ଅର୍ଥକୃଚ୍ଛ୍ରତା ଓ ଅର୍ଥସଂକଟରୂପ ବ୍ୟାଧି ଘୋଟିଅଛି, ତାହା, କି ଗଭର୍ଣ୍ଣମେଣ୍ଟ, କି ରାଜାମହାରାଜ, କି ସେଠ ସାହୁକାର, କି ସନ୍ଥ ମହନ୍ତ, କି ଅମୀର ଫକୀର, କି ଲକ୍ଷପତି ଗରିବ, ସମସ୍ତଙ୍କୁ ବାଧିଛି । ଏ ପରିସ୍ଥିତିରେ ଭାଷାକୋଷର ବ୍ୟୟ ନିର୍ବାହାର୍ଥ ଦାତା ଓ ଅଗ୍ରିମ ଗ୍ରାହକମାନଙ୍କଠାରୁ ମିଳିବା ଅର୍ଥସାହାଯ୍ୟର ସ୍ରୋତ କ୍ଷୀଣ ହୋଇଯିବାରୁ ମୋ ବାସଗୃହ ଖଣ୍ଡିକ ବନ୍ଧକ ଦେଇ ମୁଁ ସାତହଜାର ଟଙ୍କା ଋଣ କରିବାରୁ ଦ୍ୱିତୀୟ ଖଣ୍ଡ ପ୍ରକାଶିତ ହୋଇପାରିଲା । ମାନ୍ଦ୍ରାଜ ଗଭର୍ଣ୍ଣମେଣ୍ଟ ୫୦ ସାର ଗ୍ରନ୍ଥ କିଣିବେ ଓ ବଙ୍ଗ ଗଭର୍ଣ୍ଣମେଣ୍ଟ ୧୦ ସାର ଗ୍ରନ୍ଥ କିଣିବେ ବୋଲି ଗ୍ରନ୍ଥପ୍ରକାଶ ପୂର୍ବରୁ ମୋତେ ବଚନ ଦେଇ ଥିଲେ; କିନ୍ତୁ ପ୍ରଥମ ଖଣ୍ଡ ପ୍ରକାଶିତ ହେବାର ସଂବାଦ ସେମାନଙ୍କଠାକୁ ପ୍ରେରିତ ହୁଅନ୍ତେ ଅର୍ଥାଭାବର ଦୋହାଇ ଦେଇ ସେମାନେ ବଚନ ତୁଟିଲେ । ଏ ଗ୍ରନ୍ଥପାଇଁ ଅର୍ଥସାହାଯ୍ୟ କରିବା ଓ କେତେ ସାର ଗ୍ରନ୍ଥ କିଣିବାପାଇଁ କେତେକ ବିଶିଷ୍ଟ ଧନପତି ପୂର୍ବରୁ ବଚନ ଦେଇଥିଲେହେଁ ଅବଧି ସେମାନେ ସ୍ୱ ସ୍ୱ ବଚନ ପାଳନ କରି ନାହାନ୍ତି । ଏପରି ଅବସ୍ଥାରେ ଯେନକେନ ପ୍ରକାରେଣ ଦ୍ୱିତୀୟ ଭାଗ ପ୍ରକାଶ ହୋଇ ସାରିବା ପରେ ତୃତୀୟ ଖଣ୍ଡର ମୁଦ୍ରଣ ଓ ପ୍ରକାଶପାଇଁ ସମ୍ବଳ କାହୁଁ ଆସିବ, ଏହି ଚିନ୍ତା ମୋତେ ବିବ୍ରତ କରି ପକାଇଲା । ମୋର ବାସଗୃହ ଖଣ୍ଡି ତ ବନ୍ଧା ପଡ଼ିଛି, ଆଉ କି ଥାଇ ଅଛି ଯେ ମହାଜନ ମୋତେ ଋଣ ଦେବେ ? ଦାତାଙ୍କଠାରୁ ଧନ ମିଳିବ ନାହିଁ, ଗ୍ରାହକମାନଙ୍କ ଠାରୁ ଅଗ୍ରିମ ଅର୍ଡ଼ର ମିଳିବ ନାହିଁ, ମହାଜନଙ୍କଠାରୁ ଋଣ ମିଳିବ ନାହିଁ; ଭାଷାକୋଷ ପାଇଁ ଅର୍ଥାଗମର ଏ ତିନୋଟିଯାକ ବାଟ କଣ୍ଟା ଛଟା ହେବାର ଦେଖି "ମାଆକୁ କହିବ, ବଳଦ ବିକିବ ନାହିଁ, ମୋ ବଇଷମ ହବା କଥା ନୋହିଲା" ନ୍ୟାୟ ମୋତେ ପୁଣି ଅବଲମ୍ବନ କରିବାକୁ ପଡ଼ିଲା; ଅର୍ଥାତ୍ ଯେଉଁ ଓକାଲତି ୫।୭ ବର୍ଷ ହେଲା ଛାଡ଼ିଥିଲି, ବାଧ୍ୟ ହୋଇ ପୁଣି ସେହିଆଡ଼କୁ ଆଖିବୁଲାଇଲି । ଦୈବ ଯୋଗକୁ ଗୋଟିଏ ନରହତ୍ୟା ମକଦ୍ଦମାରେ ମୁଦାଲାର ପକ୍ଷ ସମର୍ଥନ କରିବାପାଇଁ ଆଠମଲିକର ରାଜା ସାହେବଙ୍କଠାରୁ ମୋତେ ସାଗ୍ରହ ଡାକରା ଆସିଲା । ସେହି ମକଦ୍ଦମା ସମ୍ପର୍କରେ ଆଠମଲିକ ଯାଇ ସେଠାରୁ ବୌଦ୍ଧର ରାଜା ସାହେବଙ୍କଠାକୁ ଯିବାର ସଂକଳ୍ପ କଲି । ରାଜା ସାହେବଙ୍କ ସଙ୍ଗେ ମୋର ପୂର୍ବରୁ ଆଳାପ ପରିଚୟ ନ ଥିଲେହେଁ ରାଜା ସାହେବ ଏଥି ପୂର୍ବରୁ ଆଠ ସାର ଗ୍ରନ୍ଥର ଅଗ୍ରିମ ଗ୍ରାହକ ହୋଇ ପ୍ରଥମ ଖଣ୍ଡ ଗ୍ରନ୍ଥ ମଗାଇନେଇ-ଥିଲେ । ତାଙ୍କ ସମ୍ମୁଖରେ ନେଇ ଦ୍ୱିତୀୟ ଖଣ୍ଡ ଉପସ୍ଥାପିତ କଲି ଓ ମୋର ଉପସ୍ଥିତ ଅର୍ଥସଙ୍କଟ ବିଷୟ ଜଣା କଲି । ରାଜାସାହେବ ଧୈର୍ଯ୍ୟସହକାରେ ମୋ ବିବୃତି ଶୁଣି ଏପରି ଉଦ୍ୟମରେ ସମସ୍ତଙ୍କର ସାହାଯ୍ୟ ଦେବା ଉଚିତ ବୋଲି ପ୍ରକାଶ କଲେ, ଏବଂ ତୃତୀୟ ଖଣ୍ଡର ମୁଦ୍ରଣ ବ୍ୟୟ ନିର୍ବାହାର୍ଥ ପାଞ୍ଚହଜାର ଟଙ୍କା ଅନତିବିଳମ୍ବେ ମଞ୍ଜୁର କଲେ, ଏବଂ ଆଜ୍ଞା କଲେ ଯେ ଏହାଛଡ଼ା ଅଧିକ ସାହାଯ୍ୟ ଦେବା କଥା ତାଙ୍କର ବିବେଚ୍ୟାଧୀନ । ବୌଦ୍ଧର ରାଜାସାହେବଙ୍କ ପ୍ରଦତ୍ତ ଏହି ପାଞ୍ଚହଜାର ଟଙ୍କାକୁ ମୂଳପିଣ୍ଡ କରି ତୃତୀୟ ଖଣ୍ଡର ମୁଦ୍ରଣ କାର୍ଯ୍ୟ ଆରମ୍ଭ ହେଲା ।

## ତୃତୀୟ ଖଣ୍ଡର କର୍ମରେ ଅନ୍ୟମାନଙ୍କଠାରୁ ପ୍ରାପ୍ତ ସାହାଯ୍ୟ--

ତୃତୀୟଖଣ୍ଡର ଛପା କାର୍ଯ୍ୟ ଚାଲୁଥିବା ସମୟରେ ମୟୂରଭଞ୍ଜ ମହାରାଜଙ୍କ ପ୍ରତିଶ୍ରୁତ ସାହାଯ୍ୟରୁ ବାକି ଥିବା ଟ୫୦୦୦୯ ଦୁଇ କିସ୍ତିରେ ହସ୍ତଗତ ହେଲା । ତାଳଚେରର ରାଜାସାହେବଙ୍କ ପ୍ରତିଶ୍ରୁତ ସାହାଯ୍ୟ ବାବଦରୁ ଟ ୨୦୦୯ ଓ କେନ୍ଦୁଝର ରାଜା ସାହେବଙ୍କଠାରୁ ପୂର୍ବଦତ୍ତ ଧନ ଛଡ଼ା ପୁଣି ଟ ୩୦୦୯ ହସ୍ତଗତ ହେବାରୁ ତୃତୀୟ ଖଣ୍ଡର ଛପା କାର୍ଯ୍ୟ ନିର୍ବିଘ୍ନରେ

ସମାହୃତ ହେଲା । ଦ୍ୱିତୀୟ ଭାଗର ଛପାକାର୍ଯ୍ୟ ଚାଲୁଥିବା ସମୟରେ ଯେଉଁ ଅର୍ଥସଙ୍କଟ ପଡ଼ିଥିଲା, ଆଠମଲ୍ଲିକ ରାଜାସାହେବଙ୍କର ଏକ-ହଜାର ଟଙ୍କା ସାହାଯ୍ୟ ସେତେବେଳେ ମୋର ଭାରି କାମରେ ଲାଗିଥିଲା । ମୋର ଏହି କଥା ହେଜ ହେବାରୁ 'ଲୋକେ ପାଇଲେ ଚଢ଼ିଆ ବୁହନ୍ତି' ନୀତିର ଅନୁସରଣ କରି ପୁଣି ଆଠମଲ୍ଲିକ ରାଜା ସାହେବଙ୍କୁ ତୃତୀୟ ଖଣ୍ଡର ବନ୍ଧା ହେବା ସମ୍ବନ୍ଧେ ଉପସ୍ଥିତ ଅର୍ଥସଙ୍କଟ ଜଣାଇଲି । ରାଜା ସାହେବ ଏ ଗ୍ରନ୍ଥ ପ୍ରକାଶରେ ସାହାଯ୍ୟାର୍ଥ ପୁଣି ଟ ୫୦୦୲ ମଞ୍ଜୁର କରି ସଙ୍ଗେ ସଙ୍ଗେ ଟ ୩୦୦୲ ପଠାଇ ଦେଇଅଛନ୍ତି । ବୌଦର ରାଜା ସାହେବଙ୍କୁ ମଧ୍ୟ ପୂର୍ବର ଆଶାଗର୍ଭକ ପ୍ରତିଶ୍ରୁତି ବିଷୟ ସ୍ମରଣ କରାଇବାରୁ ତାଙ୍କ ପ୍ରତିଶ୍ରୁତି ପାଳନ କରି ଅଦ୍ଭୁତ ତିନି ହଜାର ଟଙ୍କା ସାହାଯ୍ୟ କରିଅଛନ୍ତି ।

ବୌଦ୍ଧ ରାଜା ସାହେବଙ୍କ ପ୍ରଦତ୍ତ ଟ ୬୦୦୦୲ ମୂଳପିଣ୍ଡ ଉପରେ ତୃତୀୟ ଖଣ୍ଡର ଛପା କର୍ମ ଆରବ୍ଧ ହେଲା, ଓ ତାଙ୍କର ଅନ୍ତିମ ସାହାଯ୍ୟରେ ତୃତୀୟଖଣ୍ଡ ବନ୍ଧା ହେଲା । ଏଥିପାଇଁ ତାଙ୍କ ନାମରେ ତୃତୀୟ ଖଣ୍ଡ ଉତ୍ସୃଷ୍ଟ ହେଲା ଓ ତାଙ୍କୁ ମଧ୍ୟ ଏ ଖଣ୍ଡର ପୃଷ୍ଠପୋଷକରୂପେ ବରଣ କଲି ।

**ଚତୁର୍ଥ ଭାଗର ପ୍ରକାଶାର୍ଥ ପାଟଣା ବିଶ୍ୱବିଦ୍ୟାଳୟଙ୍କ ଦାନ**—ତୃତୀୟ ଭାଗର ଛପା କାର୍ଯ୍ୟର ସମାପ୍ତି ଯେତିକି ପାଖେଇଥାଏ, ଚତୁର୍ଥ ଖଣ୍ଡର ପ୍ରକାଶ ପାଇଁ ମୋର ଭାବନା ସେତିକି ବଢ଼ୁଥାଏ, ଓ ପ୍ରଭୁ ଚତୁର୍ଥ ଖଣ୍ଡର ଛପା କର୍ମ ଆରମ୍ଭ ହେବା ପାଇଁ କି ବିଧାନ କରିବେ, ମୁଁ ଏହାହିଁ ଭାବୁଥାଏଁ । ଏହି ସମୟରେ ହଠାତ୍ ଅକାଳରେ ଗଛପାଚିଲା ଆମ୍ବ ଗଛରୁ ଝଡ଼ି ପଥିକର କାନରେ ଖସିପଡ଼ିବା ଭଳି ୬।୩।୩୩ ରେ ପାଟଣା ବିଶ୍ୱ-ବିଦ୍ୟାଳୟର ସିନେଟ୍ ସିଣ୍ଡିକେଟଙ୍କ ସୁପାରିସ ଅନୁସାରେ ଟ ୫୦୦୦୲ ମଞ୍ଜୁର କରିବାର ସମ୍ବାଦ ପାଇଲି । ଏ ଉପକାର ଓ ସାହାଯ୍ୟ ପାଇଁ ବିଶ୍ୱ-ବିଦ୍ୟାଳୟର ସଭ୍ୟମାନଙ୍କଠାରେ ମୁଁ କୃତଜ୍ଞ ଓ ସେମାନଙ୍କର ସର୍ବବାଦି-ସମ୍ମତିକ୍ରମେ ଏ ଟଙ୍କା ମଞ୍ଜୁର ହୋଇଥିବା ଅତି ଆନନ୍ଦ ଓ ଆଶାର ବିଷୟ । ଏ ସାହାଯ୍ୟରେ ଆଉ ଗୋଟିଏ ବିଶିଷ୍ଟତା ଏହିକି, ମୁଁ କୌଣସି ସାହାଯ୍ୟ ପାଇଁ ବିଶ୍ୱବିଦ୍ୟାଳୟଙ୍କଠାରେ ପୂର୍ବରୁ ଆବେଦନ କରି ନ ଥିଲି । ଏ ଅଯାଚିତୋପସ୍ଥିତ ସାହାଯ୍ୟ ପାଇଁ ମୁଁ କେଉଁ ମହାନୁଭବ ସୂତ୍ରଧରଙ୍କୁ ଧନ୍ୟବାଦ ଦେବି ତାହା ମଧ୍ୟ ପୂର୍ବରୁ ଜାଣି ପାରି ନ ଥିଲି । ପରେ ଅବଗତ ହେଲି ଯେ, ଏ ଗ୍ରନ୍ଥର ମୌଳିକ ସହାୟକ, ବିହାର ଓଡ଼ିଶାର ଶିକ୍ଷାବିଭାଗର ଡାଇରେକ୍ଟର୍ ଶ୍ରୀଯୁକ୍ତ ଫକସ୍ ସାହେବ ଏ ଦାନ ସମ୍ବନ୍ଧରେ ପୃଷ୍ଠପୁରୋଧା ଅଟନ୍ତି ।

ଖଲ୍ଲିକୋଟ ଓ ଆଠଗଡ଼ର ଦେଶ ହିତୈକବ୍ରତ ସ୍ୱତନ୍ତ୍ର ଓଡ଼ିଆ ପ୍ରଦେଶ ଲାଗି ଆରବ୍ଧ ଆନ୍ଦୋଳନର ମୌଳିକ ସୂତ୍ରଧାର ସ୍ୱର୍ଗୀୟ ରାଜା ହରିହର ମର୍ଦ୍ଦରାଜ ଦେବଙ୍କ ସୁଯୋଗ୍ୟ ପୁତ୍ର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ ଦେବ ଇତିମଧ୍ୟରେ ଭାଷାକୋଷର ଅପ୍ରକାଶିତ ପାଣ୍ଡୁଲିପିମାନ ପରିଦର୍ଶନ କରି ଏ ଗ୍ରନ୍ଥ ପ୍ରକାଶାର୍ଥ ଛଅ ମାସ ପରେ ଏକ ହଜାର ଟଙ୍କା ସାହାଯ୍ୟ ଦେବେ ବୋଲି ପ୍ରତିଶ୍ରୁତ ହୋଇଅଛନ୍ତି । ଆଶା ହେଉଅଛି ଯେ, ବିଶ୍ୱବିଦ୍ୟାଳୟଙ୍କ ପ୍ରଦତ୍ତ ଏହି ୫ ହଜାର ଟଙ୍କା ଓ ଖଲ୍ଲିକୋଟ ରାଜାସାହେବଙ୍କ ପ୍ରତିଶ୍ରୁତ ଏକ ହଜାର ଟଙ୍କା ମୂଳପିଣ୍ଡ ଦ୍ୱାରା ଚତୁର୍ଥ ଖଣ୍ଡର ଛପା କର୍ମ ଆରବ୍ଧ ହୋଇ, କାର୍ଯ୍ୟ ଚାଲୁଥିବା ଅବସ୍ଥାରେ ଚତୁର୍ଥ ଖଣ୍ଡର ଛପା ଓ ବନ୍ଧାଇପାଇଁ ଲୋଡ଼ା ଅବଶିଷ୍ଟ ଧନ ଉତ୍କଳର ବଦାନ୍ୟ ବରପୁତ୍ର ଓ ଗ୍ରାହକମାନଙ୍କଠାରୁ ହସ୍ତଗତ ହେବ ।

**ପଞ୍ଚମ ଭାଗର ପ୍ରକାଶାର୍ଥ ଜୟପୁରର ରାଜା ସାହେବଙ୍କ-ଠାରୁ ସାହାଯ୍ୟର ଆଶା**—ଅଧିକ ମଧ୍ୟ ଆନନ୍ଦର ବିଷୟ ଏହିକି ପଞ୍ଚମ ଖଣ୍ଡର ପ୍ରକାଶାର୍ଥ ବ୍ୟୟ ନିର୍ବାହ ପାଇଁ ଜୟପୁରର ରାଜା ଶ୍ରୀ ବିକ୍ରମ ଦେବ ବର୍ମା 'ସାହିତ୍ୟସମ୍ରାଟ'ଙ୍କ ଠାରୁ ବିଶିଷ୍ଟ ଅର୍ଥ ସାହାଯ୍ୟ ମିଳିବାର ନିଃସନ୍ଦେହ ସୂଚନା ଏଥି ମଧ୍ୟରେ ମିଳିଅଛି । ଏ ଗ୍ରନ୍ଥର ଇତିହାସ ସଙ୍ଗେ ରାଜା ବିକ୍ରମ ଦେବ ବର୍ମାଙ୍କ ନାମ ଓତପ୍ରୋତରୂପେ ଜଡ଼ିତ ଥିବା ବିଷୟ ପୂର୍ବବର୍ତ୍ତୀ ଖଣ୍ଡମାନଙ୍କରେ ବିବୃତ ହୋଇଅଛି । ଜୟପୁରର ରାଜଗାଦି ଅଳଂକୃତ କରିବା ପୂର୍ବରୁ ଉତ୍କଳୀୟ-ମାନଙ୍କ ରାଜନୀତିକ, ବୈଷୟିକ, ସାହିତ୍ୟିକ ଓ ଜାତୀୟ ଉନ୍ନତି ପାଇଁ ଅନନ୍ୟାପେକ୍ଷୀ ହୋଇ ଗତ ୩୦।୪୦ ବର୍ଷ ହେଲା ସେ ଯାହା କରି ଆସିଅଛନ୍ତି, ସମ୍ଭବତଃ ଉତ୍କଳଭାଷୀ ଅଞ୍ଚଳର ଅନ୍ୟ କେହି ଜଣେ ଏତେ ପ୍ରକାରେ, ଏତେ ହାରରେ, ଏତେ ଆକାରରେ ଓ ଏତେ ଉଦ୍ୟମରେ ତାହା କରି ନାହାନ୍ତି । ଗଞ୍ଜାମ ଓ ବିଶାଖାପାଟଣା ଅଞ୍ଚଳରେ ପରାକ୍ରମୀ ପ୍ରତିବେଶୀମାନଙ୍କ ତାଡ଼ନ-ଜର୍ଜ୍ଜରିତ ଓଡ଼ିଆଙ୍କ ସ୍ୱାତନ୍ତ୍ର୍ୟ ଓ ଜାତୀୟତା ତିଷ୍ଠିପାରିବା ଏହାଙ୍କ ପ୍ରଚେଷ୍ଟାଯୋଗୁ ସମ୍ଭବପର ହୋଇଅଛି । ରାଜଗାଦିରେ ବସିବାହାରୁ ତାଙ୍କର ଏ ଭାଷାକୋଷ ପ୍ରତି ପୂର୍ବ ପ୍ରକାଶିତ ମୌଖିକ ଉତ୍ସାହ ଓ ସାହାଯ୍ୟ,ଫଳରେ ଓ ଅର୍ଥରେ ପରିଣତ ହେବାର ସମୟ ଓ ସୁବିଧା ପହଞ୍ଚିଲାଣି ସେ ସେଥିର ସଦ୍‌ବ୍ୟବହାର କରିବେହିଁ କରିବେ । ଭାଷାକୋଷର କୌଣସି ପରବର୍ତ୍ତୀ ଖଣ୍ଡ ତାଙ୍କ ନାମରେ ଉତ୍ସର୍ଗ କରିବାର କ୍ଷମା ତାଙ୍କୁ ପାଟ୍ରନ୍ ( ପୃଷ୍ଠପୋଷକ ) ରୂପେ ବରଣ କରିବାର ସଂକଳ୍ପ ମୁଁ ବହୁଦିନ ହେଲା ପୋଷଣ କରିଅଛି; ପ୍ରଭୁ ମୋ ଆଶା ପୂର୍ଣ୍ଣ କରନ୍ତୁ ।

## ପଞ୍ଚମ ଭାଗ ପରେ ପରିଶିଷ୍ଟ ଖଣ୍ଡ ପ୍ରକାଶର ପରିକଳ୍ପନା

ଅତଏବ ଦେଖାଯିବ ଯେ, ବର୍ତ୍ତମାନ ଆପାତତଃ ଚତୁର୍ଥ ଓ ପଞ୍ଚମ ଖଣ୍ଡମାନଙ୍କର ପ୍ରକାଶ ହେବାର ଆଶା ପୂର୍ବାପେକ୍ଷା ଉଜ୍ଜ୍ୱଳତର ହୋଇଅଛି । ପଞ୍ଚମ ଖଣ୍ଡ ପ୍ରକାଶିତ ହେବା ପରେ ଯେବେ ଦେଖାଯିବ ଯେ ବର୍ଣ୍ଣମାଳାର ଉକ୍ତବର୍ଣ୍ଣମାନଙ୍କର କେତେକ ଶବ୍ଦ ବାଦ ରହିଗଲା, ସେମାନ ଓ ପୂର୍ବବର୍ତ୍ତୀ ଖଣ୍ଡମାନଙ୍କ ଛପା ସରିବା ପରେ ସେହି ସେହି ଖଣ୍ଡମାନଙ୍କରେ ସଂଗୃହୀତ ଅକ୍ଷରାଦ୍ୟ ଯେଉଁ ନୂଆ ଶବ୍ଦମାନ ଇତିମଧ୍ୟରେ ମୋର ହସ୍ତଗତ ହୋଇଅଛି, ହେଉଅଛି ଓ ହେବ, ସେମାନଙ୍କ ପାଇଁ ଭାଷାକୋଷର 'ପରିଶିଷ୍ଟ ଖଣ୍ଡ' ପ୍ରକାଶିତ ହେବ ।

## ପ୍ରାପ୍ତ ଓ ଲୋଡ଼ା ଅର୍ଥର ପରିମାଣ

ଏ ବହୁ ଜନସାଧ୍ୟ, ବହୁ ଧନସାଧ୍ୟ ସମଗ୍ର ଗ୍ରନ୍ଥର ପରିସମାପ୍ତି ପାଇଁ ଲୋଡ଼ା ୬୦।୬୫ ହଜାର ଟଙ୍କା ମଧ୍ୟରୁ ଅଦ୍ୟପର୍ଯ୍ୟନ୍ତ ୪୬ ହଜାର ଟଙ୍କାର ସଂସ୍ଥାନ ପ୍ରଭୁଙ୍କ କୃପାରୁ ହୋଇ ସାରିଲାଣି । ବାକି ୧୫।୨୦ ହଜାର ଟଙ୍କା ଯଥା-ସମୟରେ ହସ୍ତଗତ ହୋଇ ଏ ଜାତୀୟ ଯଜ୍ଞର ଅଚିନ୍ତ୍ୟାବଧାରଣ ନିର୍ବିଘ୍ନରେ ସମାପ୍ତ ହେବ ବୋଲି ମୋର ଆଶା ଦିନକୁଦିନ ଦୃଢ଼ରୁ ଦୃଢ଼ତର ହେଉଅଛି ।

## ଏ ଗ୍ରନ୍ଥର ସମାପ୍ତି ପାଇଁ ପୂର୍ବରୁ ପୋଷିତ ଆଶାର ପୁନରୁଲ୍ଲେଖ

ଦ୍ୱିତୀୟ ଭାଗର ଅବତରଣିକାରେ ମୁଁ ଯେଉଁ ଆଶା ପୋଷଣ କରିଥିଲି, ଏଠାରେ ତାହାଁର ପୁନରୁଲ୍ଲେଖ କରୁଅଛି;—ଯେଉଁ ଜାତୀୟ କୀର୍ତ୍ତିମନ୍ଦିରର ଶୁଭ ବିହାର ଗଭର୍ଣ୍ଣମେଣ୍ଟ ପକାଇ ଅଛନ୍ତି, ଦୁଇଜଣ ଗଭର୍ଣ୍ଣର ଯାହାଁର ଶୁଭ-ବାଚନ କରିଅଛନ୍ତି, ପୁଣ୍ୟଶ୍ଳୋକ ସ୍ୱର୍ଗୀୟ ମହାରାଜ ପୂର୍ଣ୍ଣଚନ୍ଦ୍ରଙ୍କ ନାମରେ ଯାହାର ନାମକରଣ ସାର୍ଥକ ହୋଇଅଛି ଓ ଯେଉଁ କୀର୍ତ୍ତିମନ୍ଦିରର ସୁରକ୍ଷା ଓ

ପୁଷ୍ଟିସାଧନ ପାଇଁ ଉତ୍କଳ ଖଣ୍ଡର ଦିଗ୍ବିଦିଗରେ ମହାପରାକ୍ରମୀ ଦିଗ୍‌ଦନ୍ତୀମାନେ ହସ୍ତ ଉତ୍ତୋଳନ କରି ରହିଅଛନ୍ତି, ଉତ୍କଳଜାତିର, ଉତ୍କଳଖଣ୍ଡର, ଉତ୍କଳଭାଷାର ଓ ଉତ୍କଳସାହିତ୍ୟର ସେହି କୀର୍ତ୍ତିମନ୍ଦିରର ମୁଣ୍ଡି ନିଷ୍ଚୟ ମରିବ, ଅତ୍ର ସନ୍ଦେହୋନାସ୍ତି ।

## ଯେଉଁ ବରପୁତ୍ରମାନଙ୍କ ବଦାନ୍ୟତା ଓ ସାହାଯ୍ୟରେ ଏ ଗ୍ରନ୍ଥର ପରିସମାପ୍ତି କଳ୍ପିତ ହେଉଅଛି

ମୟୂରଭଞ୍ଜର ହୀରକାକର, କଳ୍ପବୃକ୍ଷ ଓ ଦାନସାଗର ବଂଶର ମଉଡ଼ମଣି ମହାରାଜ ପ୍ରତାପଚନ୍ଦ୍ର, ଏ ଗ୍ରନ୍ଥରୂପ ବୃକ୍ଷର ଅଙ୍କୁରାରୋପଣ ବେଳେ ଏହାକୁ ଜଳଦାନ କରି ବଞ୍ଚାଇ ରଖିଥିବା କଳାହାଣ୍ଡିର ମହାରାଜ ବ୍ରଜମୋହନ; ଭାରତବର୍ଷରେ ଉତ୍କଳଭାଷାର ମର୍ଯ୍ୟାଦା ଓ ସ୍ଥାୟିତ୍ୱ ଯେଉଁ ମହାରାଜଦମ୍ପତିଙ୍କ ମୁକ୍ତହସ୍ତତା ଓ ବଦାନ୍ୟତା ଯୋଗୁଁ ସମ୍ଭବ ଅଛି, ସେହି ସାମ୍ରାଜ୍ୟବିଶ୍ରୁତ-କୀର୍ତ୍ତି, ଦାନବୀର, ଧର୍ମବୀର ଓ କର୍ମବୀର ସୋନପୁରର ମହାରାଜ ବୀରମିତ୍ରୋଦୟ; ସାହିତ୍ୟସେବା ଓ ସାହିତ୍ୟାନୁରାଗ ପାଇଁ ଉତ୍କଳପ୍ରସିଦ୍ଧ ରାଜକବିବଂଶର ମୁକୁଟମଣି ସରାଇକଳାର ମହାରାଜ ଆଦିତ୍ୟପ୍ରତାପ; ସାହିତ୍ୟରଥୀ, ଜାତୀୟ ବୀର, ଦେଶପ୍ରାଣ, ରାଜକବି, 'ସାହିତ୍ୟସମ୍ରାଟ', ଉତ୍କଳର ବିକ୍ରମାଦିତ୍ୟ ଜୟପୁରର ରାଜା ବିକ୍ରମ ଦେବ, ଉତ୍କଳର ପ୍ରାଚୀନ ବୀରଶ୍ରୀଗଜପତିବଂଶର ପ୍ରତିଷ୍ଠାକୁ ଅକ୍ଷୁଣ୍ଣ ରଖିବାରେ ସମର୍ଥ, ରାଉଣ୍ଡ୍ ଟେବଲ୍ କନ୍‌ଫରେନ୍ସରେ ଛିନ୍ନବିଚ୍ଛିନ୍ନ ସମଗ୍ର ଉତ୍କଳଖଣ୍ଡର ମୁଖ୍ୟ ପ୍ରତିନିଧିରୂପେ ଉତ୍କଳ ପ୍ରଦେଶ ଯୋଜନାରୂପ ଯଜ୍ଞର ସ୍ୱସ୍ତିବାଚକ ପଣ୍ଡୁପୁରୋଧା ପାରଳାଖେମିଣ୍ଡିର ରାଜା ଶ୍ରୀ କୃଷ୍ଣଚନ୍ଦ୍ର; ଛିନ୍ନାବୟବ ଉତ୍କଳଖଣ୍ଡ ଏକୀକୃତ ସ୍ୱତନ୍ତ୍ର ପ୍ରଦେଶରୂପେ ଗଠିତ ହେବା ପାଇଁ ପ୍ରାଣ ପଣ କରିଥିବା ସ୍ୱର୍ଗୀୟ ରାଜା ହରିହରଙ୍କ ଯୋଗ୍ୟତର କୁମାର ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନସୂଚକ ସରକାରୀ ଘୋଷଣାର ସୂତ୍ରଧାର ଖଲ୍ଲିକୋଟ ଆଠଗଡ଼ର ରାଜା ରାମଚନ୍ଦ୍ର; ଲକ୍ଷ୍ମୀସରସ୍ୱତୀଙ୍କ ଚିରବିବାଦଭଞ୍ଜକ, ପ୍ରାଦେଶିକ ଶାସନସଭାରେ ପ୍ରଥମ ଓଡ଼ିଆ ଅର୍ଥସଦସ୍ୟ କନିକାର ମାନ୍ୟବର ରାଜା ରାଜେନ୍ଦ୍ରନାରାୟଣ; ଢେଙ୍କାନାଳର ଉଦୟମାନ ରାଜା ଶଙ୍କର ପ୍ରତାପ; ଓଡ଼ିଶାର ଲୋପୋନ୍ମୁଖ ପ୍ରାଚୀନ ଦେବକୀର୍ତ୍ତିମାନଙ୍କ ଉଦ୍ଧାର ଓ ସଂରକ୍ଷଣରେ ଅସାଧାରଣରୂପେ ମୁକ୍ତହସ୍ତ, ଓଡ଼ିଶା ଓ ଓଡ଼ିଆ ନାମଧାରୀ ଯେ କୌଣସି ସାଧାରଣ ଅନୁଷ୍ଠାନର ଅଭାବ ମୋଚନାର୍ଥ ସର୍ବଦା ବଦ୍ଧପରିକର, ଉଦାରଚେତା, ସୌମ୍ୟମୂର୍ତ୍ତି, ଦେବର୍ଷିପ୍ରତିମ ପୁରୀ ଇମାରମଠର ମହନ୍ତ ମହାରାଜ ଗଦାଧର; ଓଡ଼ିଆଙ୍କ ଲୁପ୍ତପ୍ରାୟ ପ୍ରାଚୀନ ଅକ୍ଷର-କୀର୍ତ୍ତି, ପ୍ରାଚୀନ ଧର୍ମ, ପ୍ରାଚୀନ ସାହିତ୍ୟ, ପ୍ରାଚୀନ ଶାରୀରିକ ବିଭବ ଓ ବଳବିକ୍ରମକୁ ପୁନରୁଜ୍ଜୀବିତ କରିବାରେ ବ୍ରତୀ, ଜଗଦ୍ବିଖ୍ୟାତ ପ୍ରାଚୀସମିତିର ଯନ୍ତ୍ରମାନ ଭାଷାକୋଷର ସଂଗ୍ରାହକ ଓ ସହକର୍ମୀଙ୍କ ସଙ୍ଗେ ଧର୍ମ ଓ କର୍ମବନ୍ଧନରେ ବହୁକାଳ ହେଲା ଘନିଷ୍ଠରୂପେ ସଂପୃକ୍ତ, ଉତ୍କଳର ବିଭବ ରକ୍ଷା କଲ୍ପେ ସର୍ବଦା ମୁକ୍ତହସ୍ତ ଭଦ୍ରଖର ଜମିଦାର ଭୂୟାଁ ଭାସ୍କର ଚନ୍ଦ୍ର; ଏତାଦୃଶ ବରପୁତ୍ରମାନଙ୍କୁ ଅଙ୍କରେ ଧାରଣ କରି ଆଜି ଉତ୍କଳ ମାତା ଓ ଉତ୍କଳ ଜାତି ଧନ୍ୟ । ଏମାନେ ସ୍ୱୟଂ ଓ ଏମାନଙ୍କ ପୂର୍ବପୁରୁଷମାନେ ଜନନୀ ଓଡ଼ିଶାର, ଓଡ଼ିଆ ଜାତିର, ଓଡ଼ିଆ ସାହିତ୍ୟର ଓ ଓଡ଼ିଆ ଭାଷାର ଶ୍ରୀବୃଦ୍ଧି ପାଇଁ ଯେଉଁ ଯେଉଁ ତ୍ୟାଗ ଓ ଦାନମାନ କରିଅଛନ୍ତି, ସେମାନ ଲିପିବଦ୍ଧ କଲେ ଗୋଟିଏ ଗୋଟିଏ ପୋଥି ହେବ । ଏମାନଙ୍କ ପାଇଁ ଓଡ଼ିଶାର ଭାବୀ ଇତିହାସରେ ଉଚ୍ଚ ସ୍ଥାନ ଗୋଟିଏ ଲେଖାଏଁ ମାର୍କାମରା ହୋଇ ଉତ୍ସୃଷ୍ଟ ହେଲାଣି । ଏମାନଙ୍କ ମଧ୍ୟରୁ କେହି ଜଣେ ମାତ୍ର ବାଣ୍ଟିରଲେ ଭାଷାକୋଷର ପୂର୍ତ୍ତି ପାଇଁ ଲୋଡ଼ା ଅବଶିଷ୍ଟ ପନ୍ଦର କୋଡ଼ିଏ ହଜାର ଟଙ୍କା ରେକ୍‌ଠୋକ୍ ଗଣି ଦେବେ । ମୋର ବିଶ୍ୱାସ ଯେ ଏମାନଙ୍କ ମଧ୍ୟରୁ ଜଣେ କେହି ଓଡ଼ିଶାରେ ବସିଥିବା ପର୍ଯ୍ୟନ୍ତ ଏହି ଭାଷାକୋଷ-ଦେଉଳ 'ଲଣ୍ଡା' ହୋଇ ରହିବ ନାହିଁ; ଏହା ମୁଣ୍ଡି ମରିବ ଓ ଏଥିରେ ନୀଳାଦ୍ରିବିହାରୀଙ୍କ ନୀଳଚକ୍ର ବସିବହିଁ ବସିବ ।

**ଓଡ଼ିଶାରେ, ଓଡ଼ିଶାର ବାହାରେ ଓ ଇଉରୋପରେ ବିକ୍ରି ହୋଇଥିବା ଓ ଉପହାର ଦିଆଯାଇଥିବା ଗ୍ରନ୍ଥର ସଂଖ୍ୟା**—ନରୱେ, ଫ୍ରାନ୍ସ, ଇଂଲଣ୍ଡ, ପ୍ରୁସିଆ ଓ ଜର୍ମାନୀର ବିଦ୍ୱଜ୍ଜନମାନେ ଏ ଗ୍ରନ୍ଥର ନିର୍ଦ୍ଧାରିତ ଅଗ୍ରିମ ମୂଲ୍ୟ ଦେଇ ଗ୍ରାହକ ଶ୍ରେଣୀଭୁକ୍ତ ହୋଇଅଛନ୍ତି । ଲଣ୍ଡନ, ଜର୍ମାନୀ ଓ ଫ୍ରାନ୍ସର ପୃଥିବୀବିଖ୍ୟାତ ପ୍ରାଚ୍ୟପୁସ୍ତକବିକ୍ରେତାମାନେ ଦେଶବିଦେଶରେ ଏ ଗ୍ରନ୍ଥର ବିକ୍ରୟ ଓ ପ୍ରଚାର କରିବାପାଇଁ ଏଜେଣ୍ଟ ହୋଇଅଛନ୍ତି । ଆଜିପର୍ଯ୍ୟନ୍ତ ଗ୍ରାହକମାନଙ୍କୁ ୩୨୫ ସେଟ ଗ୍ରନ୍ଥ ବିକ୍ରୟ ହୋଇଅଛି, ଓ ପୃଷ୍ଠପୋଷକ, ସହାୟକ, କର୍ମୀ ଓ ସାଧାରଣ ଅନୁଷ୍ଠାନମାନଙ୍କୁ ୪୦ ସେଟ ଗ୍ରନ୍ଥ ଉପହାର ଦିଆଯାଇଅଛି ।

**ଦେଶବିଦେଶରେ ଏ ଗ୍ରନ୍ଥର ବିକ୍ରୟ, ପ୍ରଚାର, ଆଦର ଓ ପ୍ରଶଂସା**—ସମଗ୍ର ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭୂଖଣ୍ଡର ୩୦୦୦ ପ୍ରାଚ୍ୟବିଦ୍ୟାବିଶାରଦ ବ୍ୟକ୍ତି ଓ ବିଦ୍ୟାଚର୍ଚ୍ଚାର କେନ୍ଦ୍ରମାନଙ୍କ ନିକଟରେ ପ୍ରଚାରିତ ଜର୍ମାନୀ ଦେଶର ଲିପ୍‌ଜିଗ୍ ନଗରୀର ପ୍ରାଚ୍ୟପୁସ୍ତକବିକ୍ରେତା ଅଟ୍ଟୋ ହାରାସୋୱିଜ୍‌ଙ୍କ ପ୍ରକାଶିତ ଜର୍ମାନୀ ଭାଷାର କାଟାଲୋଗ୍‌ରେ (ପୁସ୍ତକ-ଲିଷ୍ଟରେ) ଏ ଗ୍ରନ୍ଥର ନାମ ଓ ମୂଲ୍ୟାଦି ବିଜ୍ଞାପିତ ହୋଇଅଛି । ଉକ୍ତ ପୁସ୍ତକ-ବିକ୍ରେତା ଇତିମଧ୍ୟରେ ୪୫ ଜଣ ଅଗ୍ରିମ ଗ୍ରାହକଙ୍କୁ ଏ ପୁସ୍ତକ ବିକ୍ରି କରିଅଛନ୍ତି ଓ ପୁଣି ଦୁଇ ସେଟ ଗ୍ରନ୍ଥ ପାଇଁ ଅର୍ଡ଼ର ପଠାଇ ଅଛନ୍ତି । ବିଲାତର ପ୍ରଧାନ ପ୍ରାଚ୍ୟପୁସ୍ତକ ବିକ୍ରେତା ଲୁଜାକ୍ ଆଣ୍ଡ୍ କୋମ୍ପାନୀ ବିଲାତରେ ୫ ଜଣ ଅଗ୍ରିମ ଗ୍ରାହକଙ୍କୁ ଏ ପୁସ୍ତକ ବିକ୍ରି କରିଅଛନ୍ତି ଓ ବିକ୍ରି କରିବା ପାଇଁ ଆଉ କେତେ ସେଟ ଗ୍ରନ୍ଥ ମଗାଇ ନେଇଅଛନ୍ତି । ଜର୍ମାନୀ ଓ ପ୍ରୁସିଆର ସରକାରୀ ଲାଇବ୍ରେରୀ ଏ ପୁସ୍ତକ ଏକ ସେଟ କିଣି ଅଛନ୍ତି । ଫ୍ରାନ୍ସର ପୁସ୍ତକ ବିକ୍ରେତା ଟି. କ୍ଲିଙ୍କ୍‌ସିକ୍ ମହାଶୟ ଫ୍ରାନ୍ସର ପ୍ରଧାନ ଲାଇବ୍ରେରୀକୁ ଏ ଗ୍ରନ୍ଥ ବିକ୍ରୟ କରିଅଛନ୍ତି । ନରୱେର ମାନବଶାସ୍ତ୍ର-ସମାଜ ଦୁଇ ସେଟ ଗ୍ରନ୍ଥ କିଣି ନେଇଅଛନ୍ତି । ବିଶ୍ୱବିଖ୍ୟାତ ରୋମର ବିଶ୍ୱବିଦ୍ୟାଳୟର ପ୍ରାଚ୍ୟ ଭାଷାର ଅଧ୍ୟାପକ ଆଚାର୍ଯ୍ୟ ଗୁଡସେପ୍ ଟକ୍କୀ ଉକ୍ତ ବିଶ୍ୱବିଦ୍ୟାଳୟ ପକ୍ଷରୁ ପରିଚାଳିତ ସମାଲୋଚନ—ପତ୍ରିକାରେ ଏ ଗ୍ରନ୍ଥ ବିଷୟରେ ପ୍ରବନ୍ଧ ପ୍ରକାଶ କରିବା ପାଇଁ ଏ ଗ୍ରନ୍ଥ ମଗାଇ ନେଇଅଛନ୍ତି । ଜର୍ମାନୀ ଗଭର୍ଣ୍ଣମେଣ୍ଟଙ୍କ ସହାୟତାରେ ପ୍ରକାଶିତ ଜର୍ମାନୀ ଭାଷାର ଜଗଦ୍ବିଖ୍ୟାତ ବିଶ୍ୱକୋଷରେ ଓଡ଼ିଆ ଭାଷା ଓ ଏ ଗ୍ରନ୍ଥ ସମ୍ବନ୍ଧରେ ପ୍ରବନ୍ଧ ଲିପିବଦ୍ଧ ହୋଇଅଛି । କଟକର ବାପ୍‌ଟିଷ୍ଟ ମିଶନ୍ ସମ୍ପ୍ରଦାୟର ଭୂତପୂର୍ବ ଧର୍ମଯାଜକ ଶ୍ରୀଯୁକ୍ତ ପାଇକ୍ ସାହେବ ବର୍ତ୍ତମାନ ବିଲାତରେ ଥାଇ ବିଲାତର ବିଦ୍ୟାକେନ୍ଦ୍ରମାନଙ୍କରେ ଏ ଗ୍ରନ୍ଥର ପ୍ରଚାର କରୁଅଛନ୍ତି । ଏ ଗ୍ରନ୍ଥର ସଂକଳନ ଦ୍ୱାରା ଓଡ଼ିଆ ଭାଷା ଆଜି ସମଗ୍ର ସଭ୍ୟଜଗତର ସୁଧୀସମାଜରେ ଆଦର ଓ ସମ୍ମାନ ଲାଭ କରି ଆଧୁନିକ ଭାଷାମାନଙ୍କ ମଧ୍ୟରେ ଅନ୍ତର୍ଜାତୀୟ ପ୍ରତିଷ୍ଠା ଲାଭ କରିବାକୁ ସମର୍ଥ ହୋଇଅଛି ଓ ହେବ; ଏହା ଭାବିଲେ ଓଡ଼ିଆ ରକ୍ତବିନ୍ଦୁର କଣିକାଏ ମାତ୍ର ଯେଉଁ ବ୍ୟକ୍ତିଙ୍କ ଧମନୀରେ ପ୍ରବାହିତ ହେଉଥିବ ସେ ଯୁଗପତ୍ ଗର୍ବ ଓ ଆନନ୍ଦ ଅନୁଭବ କରିବେ । ମୋ ପରି ଜଣେ ନଗଣ୍ୟ, ଶକ୍ତିହୀନ, ଧନହୀନ, ଜନହୀନ, ବଳହୀନ ଓ ବିଦ୍ୟାହୀନ

ବ୍ୟକ୍ତିର ଚେଷ୍ଟା ଓଡ଼ିଆ ଭାଷାର ଏ ଆନ୍ତର୍ଜାତିକ ସମ୍ମାନଲାଭର ମୂଳରେ ଥିବାର ଅନୁଭବ କରି ଓଡ଼ିଆପୁଅ ରୂପେ ଜନ୍ମିବା ମୋ ଜୀବନରେ ସାର୍ଥକ ହୋଇଅଛି । ସମ୍ୟକ୍ ଗୌରବପୂର୍ଣ୍ଣ ପ୍ରାଚୀନ ଓଡ଼ିଆ ଭାଷା ଓ ପ୍ରାଚୀନ ଅକ୍ଷର-କୀର୍ତ୍ତି ଓ ପ୍ରସ୍ତରକୀର୍ତ୍ତିରେ ଭାସ୍ୱର ଓଡ଼ିଆ ଜାତି ଅନ୍ତର୍ଜାତୀୟ ବିଦ୍ୱଜ୍ଜନ-ମଣ୍ଡଳରେ ଆଉ ଏଣିକି ଅବହେଳାର ପାତ୍ର ହେବ ନାହିଁ; ଓଡ଼ିଆ ଜାତିର ଏହି ନ୍ୟାଯ୍ୟ ସମ୍ମାନଲାଭ ଯେଉଁ ବିଦେଶୀୟ ମହାମତି ପଣ୍ଡିତମାନଙ୍କ ସୂଚନା, ପ୍ରଚାର, ପ୍ରଶଂସା ଓ ପ୍ରଚେଷ୍ଟାରେ ସମ୍ଭବପର ହୋଇଅଛି, ଓଡ଼ିଆ ଜାତି ସେହି ମନୀଷୀମାନଙ୍କଠାରେ ଚିରକାଳ ଋଣୀ ରହିବ !

**ରାଜଦ୍ୱାରରେ ଏ ଗ୍ରନ୍ଥର ସଂଗ୍ରାହକର ସମ୍ମାନ ଓ କେଶର୍-ଇ-ହିନ୍ଦ୍-ପଦକ ଲାଭ**—ଓଡ଼ିଆ ଭାଷାର ଉନ୍ନତିକଳ୍ପେ ମୋର ଏହି କ୍ଷୁଦ୍ର ଚେଷ୍ଟା ଆଜି ଭାରତସମ୍ରାଟ ଓ ଭାଇସ୍‌ରଏଙ୍କ ଦୃଷ୍ଟିରେ ପଡ଼ିଅଛି । ଚଳିତ ନବବର୍ଷାରମ୍ଭଦିନ ମୋତେ ମହାମହିମ ଭାରତ ସମ୍ରାଟଙ୍କ କୈସର-ଇ-ହିନ୍ଦ୍ ପଦକ ମିଳିଅଛି । ଏ ଅଯାଚିତ, ଅପ୍ରତ୍ୟାଶିତ ଓ ଅନାହୂତ ରାଜସମ୍ମାନର ମୂଳରେ ବିହାର ଓଡ଼ିଶାର ଗଭର୍ଣ୍ଣର୍ ମାନ୍ୟବର ସର୍ ଜେମସ୍ ଡେଭିଡ୍ ସିଫ୍ଟନ୍‌ଙ୍କର ଓ ଓଡ଼ିଶାର କମିସନର୍, ଉତ୍କଳମିତ୍ର ଶ୍ରୀଯୁକ୍ତ ଫିଲିପ୍ ସାହେବଙ୍କର ସୁପାରିସ୍ ବିଦ୍ୟମାନ ଥିବାରୁ ମୁଁ ସେମାନଙ୍କଠାରେ କୃତଜ୍ଞ । ଏ ରାଜସମ୍ମାନ ମୋର ନୁହେ; ଏହା ସମଗ୍ର ଓଡ଼ିଆ ଜାତିର । ଏ ସମ୍ମାନଲାଭଦ୍ୱାରା ମୋର ଏ ଶବ୍ଦକୋଷ ରୂପ ବ୍ରତସାଧନ ପକ୍ଷରେ ବ୍ୟକ୍ତିଗତ ଲାଭ ଏତିକି ହେଲା ଯେ ଏ ଜାତୀୟ କୀର୍ତ୍ତିସୌଧର ମୂର୍ତ୍ତି ମାରିବାପାଇଁ ମୁଁ ଦେଶର ବଦାନ୍ୟ ବରପୁତ୍ରମାନଙ୍କ ସମ୍ମୁଖରେ ପୂର୍ବାପେକ୍ଷା ଦୃଢ଼ତର ଭାବରେ ଅଳି କରି ପାରିବି; କାରଣ, ଏହି ପଦକଦ୍ୱାରା ଜାତୀୟ ମନ୍ଦିରର ମାର୍କାମରା ସେବାଏତ୍ ଓ ପୂଜାହାରିରୂପେ ମୋଠାରେ ଭାରତ ସମ୍ରାଟଙ୍କ ଶ୍ରୀହସ୍ତାଙ୍କିତ ହାରିକା-ଛପା ମରା ହେଲା । ତେବେ ମୁଁ ଏଠାରେ ଏତିକି ମୋ ଭାଇମାନଙ୍କୁ କହି ରଖୁଛି ଯେ ପ୍ରଭୁଙ୍କ କୃପାରୁ ଏ ଜାତୀୟ ସୌଧର ମୂର୍ତ୍ତି ମରି ସାରିଲେ ଓ ଏଥିର 'କୋଇଲିବୈକୁଣ୍ଠ ମଣ୍ଡପ'ରେ ତୀର୍ଥଯାତ୍ରୀମାନଙ୍କର 'ଆଟିକା' କରିବାର ଅବସର ଉପସ୍ଥିତ ହେଲେ ମୋ ଓଡ଼ିଆ ଭାଇମାନେ ଓ ଓଡ଼ିଆ ଜାତି ସେ ଆଟିକାରେ ସେମାନଙ୍କ ପ୍ରାପ୍ୟ ଅଂଶରୁ ବଞ୍ଚିତ ହେବେ ନାହିଁ ।

**ଏ ଗ୍ରନ୍ଥର ପ୍ରଥମ ନିର୍ଦ୍ଧାରିତ ମୂଲ୍ୟ ଓ ତହିଁର ବୃଦ୍ଧି**—ଏ ଗ୍ରନ୍ଥର ଛପା କର୍ମ ଆରମ୍ଭ ହେବା ପୂର୍ବରୁ ଯେଉଁ ଅନୁଷ୍ଠାନପତ୍ର ବାହାରିଥିଲା, ସମଗ୍ର ଗ୍ରନ୍ଥ ଦୁଇ ଭାଗରେ ଓ ୩୬୦୦ ପୃଷ୍ଠାରେ ସମାପ୍ତ ହେବ ଓ ତହିଁର ଅଗ୍ରିମଦେୟ ମୂଲ୍ୟ ଟ ୩୦୲ ବୋଲି ତହିଁରେ ନିର୍ଣ୍ଣୀତ ହୋଇଥିଲା, କିନ୍ତୁ ପ୍ରଥମ ଓ ଦ୍ୱିତୀୟ ଭାଗ ଛପା ହେଲାବେଳକୁ ଦେଖାଗଲା ଯେ, ସମଗ୍ର ଗ୍ରନ୍ଥ ପାଞ୍ଚ ଭାଗରେ ଓ ୬୦୦୦ ପୃଷ୍ଠାରେ ସମାପ୍ତ ହେବ; ଏଥିପାଇଁ ସମଗ୍ର ଗ୍ରନ୍ଥର ଅଗ୍ରିମ ମୂଲ୍ୟ ପଚିଶ ଟଙ୍କା ଓ ପ୍ରତି ଭାଗର ନଗଦ ମୂଲ୍ୟ ଟ ୧୫୲ ସ୍ଥିରୀକୃତ ହେଲା । ବର୍ତ୍ତମାନ ତୃତୀୟ ଭାଗ ପ୍ରକାଶଦ୍ୱାରା ଦେଖା ଯାଉଅଛି ଯେ, ପୂର୍ବକଳ୍ପିତ ଆକାର ଓ ବ୍ୟୟ ଆହୁରି ବଢ଼ିବ । ଅତଏବ ଏଣିକି ସମଗ୍ର ୫ ଖଣ୍ଡ ଗ୍ରନ୍ଥ ପାଇଁ ବର୍ତ୍ତମାନ ଦେୟ ଅଗ୍ରିମ ମୂଲ୍ୟ ଟ୬୦୲ (ଷାଠିଏ ଟଙ୍କା) ଓ ପ୍ରତି ଭାଗର ନଗଦ ମୂଲ୍ୟ ଟ ୧୬୲ ଆପାତତଃ ସ୍ଥିର କରାଗଲା । ଯେଉଁ ଗ୍ରାହକ ଅଗ୍ରିମ ମୂଲ୍ୟ ଦେବେ, ସେ ବର୍ତ୍ତମାନ ପର୍ଯ୍ୟନ୍ତ ପ୍ରକାଶିତ ଭାଗମାନ ସଙ୍ଗେ ସଙ୍ଗେ ପାଇବେ ଓ ଅବଶିଷ୍ଟ ଦୁଇ ଭାଗ ପ୍ରକାଶିତ ହେବାମାତ୍ରକେ ପାଇବେ । ଯେ ଅବନ୍ଧା ଗ୍ରନ୍ଥ ନେବାକୁ ଇଚ୍ଛା କରିବେ, ତାଙ୍କୁ ସମଗ୍ର ଗ୍ରନ୍ଥ ପାଇଁ ଅଗ୍ରିମ ଦେୟ ମୂଲ୍ୟ ଟ ୫୦୲ ଓ ପ୍ରତ୍ୟେକ ଖଣ୍ଡ ପାଇଁ ନଗଦ ମୂଲ୍ୟ ଟ ୧୪୲ ଦେବାକୁ ହେବ । ଭବିଷ୍ୟତରେ ଅନ୍ୟ ଭାଗମାନ ପ୍ରକାଶିତ ହୋଇ ଗଲେ ବ୍ୟାବସାୟିକ ଲାଭଗଣନାରେ ସମଗ୍ର ଗ୍ରନ୍ଥର ନଗଦ ମୂଲ୍ୟ ଟ ୮୦୲ ହେବ । କିନ୍ତୁ ଯେଉଁ ଗ୍ରାହକମାନେ ପୂର୍ବ ପ୍ରକାଶିତ ଅନୁଷ୍ଠାନପତ୍ର ଓ ବିଜ୍ଞାପନ ଅନୁସାରେ ସମଗ୍ର ଗ୍ରନ୍ଥ ପାଇଁ ଅଗ୍ରିମ ମୂଲ୍ୟ ଯଥାକ୍ରମେ ଟ ୩୦୲ ବା ୨୫୲ ଦେଇ ଗ୍ରାହକ ଶ୍ରେଣୀଭୁକ୍ତ ହୋଇଅଛନ୍ତି, ସେମାନଙ୍କଠାରୁ ଆଉ ଅଧିକା ମୂଲ୍ୟ ଦାବି କରି ନ ଯାଇ ସେମାନଙ୍କୁ ସେହି ପୂର୍ବଦତ୍ତ ମୂଲ୍ୟରେ ସମଗ୍ର ଗ୍ରନ୍ଥ ଦିଆ ଯାଉଅଛି ଓ ଯିବ । ଆଜଯାଏ ୩ ଭାଗ ପ୍ରକାଶିତ ହେଲା ।

**ପରବର୍ତ୍ତୀ ଖଣ୍ଡମାନ ପ୍ରକାଶିତ ହେବାର କଳ୍ପିତକାଳ**—ଚତୁର୍ଥ ଭାଗ ୧୯୩୪ ମାର୍ଚ୍ଚ ମାସ ସୁଦ୍ଧା ଓ ପଞ୍ଚମ ଭାଗ ୧୯୩୪ ନଭେମ୍ବର ମାସ ବା ୧୯୩୫ ଜାନୁଆରୀ ମାସ ସୁଦ୍ଧା ପ୍ରକାଶିତ ହେବ ବୋଲି ଆଶା କରାଯାଏ ।

**ଉତ୍କଳଭାଷୀ ଅଞ୍ଚଳମାନଙ୍କ ଦ୍ୱାରା ସ୍ୱତନ୍ତ୍ର ଓଡ଼ିଶା-ପ୍ରଦେଶ ଗଠିତ ହେବାରୂପ ଜାତୀୟ ଆକାଂକ୍ଷାର ପୂର୍ତ୍ତି ସଙ୍ଗେ ଏ ଗ୍ରନ୍ଥର ପୂର୍ତ୍ତିର ସମ୍ବନ୍ଧ**—ପ୍ରଥମ ଭାଗର ଅବତରଣିକାରେ ମୁଁ ଓଡ଼ିଆ ଜାତିର ଯେଉଁ ଉଜ୍ଜ୍ୱଳ ଭବିଷ୍ୟତ୍ କଳ୍ପନା କରିଥିଲି, ସେହି ଛବି ଆଜି-ପର୍ଯ୍ୟନ୍ତ ମୋ 'ମନ ନୟନ'ରେ ଘର କରି ରହିଅଛି । ଏଠାରେ ଆଉ ଗୋଟିଏ କଥାର ଅବତାରଣା କରୁଅଛି । ପ୍ରଥମ ଭାଗ ପ୍ରକାଶିତ ହେବା ସମୟରେ (୧୯୩୧ ସେପ୍ଟେମ୍ବର) ଓଡ଼ିଆଭାଷୀ ଅଞ୍ଚଳମାନ ଭାରତର ୪ଟି ସ୍ୱତନ୍ତ୍ର ପ୍ରଦେଶରେ ଖେଳେଇ ହୋଇ ପଡ଼ିଥିବାର ମୁଁ ସୂଚନା କରିଥିଲି । ଦ୍ୱିତୀୟ ଭାଗ ପ୍ରକାଶିତ ହେବା ସମୟକୁ (୧୯୩୨ ଅଗଷ୍ଟ) ବିଲାତର ଦ୍ୱିତୀୟ ରାଉଣ୍ଡ୍ ଟେବଲ୍ କନ୍‌ଫରେନ୍‌ସ୍‌ରେ ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ଏକୀ-କରଣର ଆଶା ସୂଚିତ ହୋଇଥିଲା ମାତ୍ର । ବର୍ତ୍ତମାନ ଏହି ତୃତୀୟ ଭାଗ ପ୍ରକାଶିତ ହେଲା ବେଳକୁ (୧୯୩୩ ମେ) ଅଧିକାଂଶ ଉତ୍କଳଭାଷୀ ଅଞ୍ଚଳ ଏକୀଭୂତ ହୋଇ ସ୍ୱତନ୍ତ୍ର ଓଡ଼ିଶାପ୍ରଦେଶ ଗଠିତ ହେବାର ଘୋଷଣା ତୃତୀୟ ରାଉଣ୍ଡ୍ ଟେବଲ୍ କନ୍‌ଫରେନ୍‌ସ୍‌ରେ ଭାରତର ଷ୍ଟେଟ୍ ସେକ୍ରେଟେରୀ କରି ସାରିଅଛନ୍ତି । ଆଶା କରାଯାଏ ଯେ, ଏ ଗ୍ରନ୍ଥର ଶେଷ ଭାଗ ପ୍ରକାଶିତ ହେଲା ବେଳକୁ (୧୯୩୫ ଜାନୁଆରି ସୁଦ୍ଧା) ଏକକୋଟି ଓଡ଼ିଆ ସନ୍ତାନଙ୍କ ପ୍ରାଣର ଗଭୀର କନ୍ଦରକୁ ଘାଣ୍ଟୁଥିବା ନୂତନ ଓଡ଼ିଶା ପ୍ରଦେଶର ସୀମାନିର୍ଣ୍ଣୟବିଷୟକ ଚିତ୍ତୋନ୍ମାଦକାରୀ ସମସ୍ୟା ପାର୍ଲିଆମେଣ୍ଟ ଓ ସମ୍ରାଟଙ୍କ ଦ୍ୱାରା ସନ୍ତୋଷଜନକରୂପେ ମୀମାଂସିତ ହୋଇ ନୂତନ ଓଡ଼ିଶା-ପ୍ରଦେଶ ଗଠିତ ହୋଇଥିବ । ଅତଏବ, ଏଥିରୁ ଦେଖାଯିବ ଯେ, ଏକ-ଶାସନାଧୀନ ହେବାପାଇଁ ଓଡ଼ିଆ ଜାତିର ଗତ ପଚିଶ ବର୍ଷର ଆନ୍ଦୋଳନ, ଆଶା, ଆକାଂକ୍ଷା ଓ ପ୍ରାର୍ଥନାର ପୂର୍ତ୍ତି ସଙ୍ଗେ ଉତ୍କଳୀୟ ଜାତିର ଏ ଜ୍ଞାନସୌଧ ନିର୍ମାଣକର୍ମର ମଧ୍ୟ ପୂର୍ତ୍ତି ହୋଇଯିବ ।

**ଏ ଗ୍ରନ୍ଥର ଅନ୍ତିମ ଭାଗ ସଙ୍ଗେ ମହାମହିମ ଭାରତ ସମ୍ରାଟଙ୍କ ମହନୀୟ ନାମ-ସଂଯୋଜନର କଳ୍ପନା ଓ ଜଳ୍ପନା**—ଗତ ୨୫ ବର୍ଷର ଆଶା ଓ ସ୍ୱପ୍ନ ସଫଳ ହୋଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବାର ସ୍ମାରକ ଏବଂ ଏକ କୋଟି ଓଡ଼ିଆଙ୍କ ଗଭୀର ଓ ଅଟଳ ରାଜଭକ୍ତିର ନିଦର୍ଶନ ଓ ମୋ ଜୀବନବ୍ୟାପୀ ପରିଶ୍ରମ ଓ ତପସ୍ୟା-ଫଳର ଶେଷସ୍ତବକକୁ (ଅର୍ଥାତ୍ ଭାଷାକୋଷର ଅନ୍ତିମ ଭାଗକୁ) ନରରୂପଧାରୀ ମହତ୍ତା ଦେବତା, ମହାମାନ୍ୟ ଭାରତସମ୍ରାଟଙ୍କ ମହନୀୟ ନାମରେ ଉତ୍ସର୍ଗ କରିବାକୁ କିମ୍ବା ତାଙ୍କୁ ତହିଁର ପୃଷ୍ଠପୋଷକରୂପେ ବରଣ କରିବାକୁ ମୁଁ ସମ୍ରାଟଙ୍କ ଶ୍ରୀମୁଖରୁ ଅନୁମତି ପାଇବି ବୋଲି ସୁଖସ୍ୱପ୍ନ ଦେଖୁଅଛି । ମହାପ୍ରଭୁ ଶ୍ରୀ ସମ୍ରାଟଙ୍କ କର୍ଣ୍ଣରେ କହେ କରି ମୋ ସୁଖସ୍ୱପ୍ନର ପୂର୍ତ୍ତି କରନ୍ତୁ ।

**ପୂର୍ବତନ, ବର୍ତ୍ତମାନ ଓ ଭାବୀ ସହକର୍ମୀ, ସହାୟକ ଓ ପୃଷ୍ଠପୋଷକମାନଙ୍କୁ ଧନ୍ୟବାଦ ଅର୍ପଣ**—ପରଶେଷରେ ମୋର ପୂର୍ବତନ, ବର୍ତ୍ତମାନ ଓ ଭାବୀ ସମସ୍ତ ସହକର୍ମୀ, ସହାୟକ, ସହାନୁଭୂତିଦାତା, ଆଶୀର୍ବାଦକ, ପୃଷ୍ଠପୋଷକ ଓ ସମାଲୋଚକମାନଙ୍କୁ ମୁଁ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛି ଏବଂ ଏ କଷ୍ଟସାଧ କର୍ମ ସୁରୁଖୁରୁରେ ସରିବା ପାଇଁ ମୁଁ ସେମାନଙ୍କର ଆଶୀର୍ବାଦ, ସାହାଯ୍ୟ ଓ ଶୁଭକାମନା ଭିକ୍ଷା କରୁଅଛି । ଏ ଗ୍ରନ୍ଥରେ ପରିଲକ୍ଷିତ ସମସ୍ତ ତ୍ରୁଟି, ଅଙ୍ଗହାନି ଓ ଭ୍ରମ-ପ୍ରମାଦାଦି ପାଇଁ ମୁଁ ଦୋଷୀ ଓ ଦାୟୀ ଅଟେ; କିନ୍ତୁ ଏଥିରେ ଯେବେ କିଛି ପ୍ରଶଂସା ଓ ଗୌରବର ବିଷୟ ଥାଏ, ତାହା କେବଳ ମୋ ସହକର୍ମୀ-ମାନଙ୍କ ଆନ୍ତରିକ ସହଯୋଗ ଯୋଗୁଁ ସମ୍ଭବ ହୋଇ ପାରିଅଛି । ଯେଉଁ ବନ୍ଧୁମାନେ ଏ ଗ୍ରନ୍ଥରେ ପରିଲକ୍ଷିତ ତ୍ରୁଟି, ଭ୍ରମ ଓ ପ୍ରମାଦମାନ ମୋତେ ଦେଖାଇ ଦେବେ ମୁଁ ସେମାନ ଶୁଦ୍ଧିପତ୍ରଦ୍ୱାରା ବା ପରିଶିଷ୍ଟ ଖଣ୍ଡରେ ବା ପରବର୍ତ୍ତୀ ସଂସ୍କରଣରେ ସଂଶୋଧନ କରିବି ଓ ଏଥିଲାଗି ମୁଁ ଉକ୍ତ ବନ୍ଧୁ-ମାନଙ୍କଠାରେ କୃତଜ୍ଞ ରହିବି ।

**ପ୍ରଭୁ ପରମପିତାଙ୍କ ଚରଣରେ ଗଭୀର ଭକ୍ତି ଅର୍ପଣ ଓ କରୁଣା ଭିକ୍ଷା**—ଯେଉଁ ପରମପିତା, ମହତୋମହୀୟାନ୍ ବିଶ୍ୱନିୟନ୍ତାଙ୍କ ଅପାର କରୁଣା ମୋତେ ଓ ମୋ ଭାଷାକୋଷକୁ ଜୀବନ୍ମରେ ଆମ ଗନ୍ତବ୍ୟ ମାର୍ଗର ୩ ଗୋଟି ମାଇଲ୍-ଖୁଣ୍ଟି ପର୍ଯ୍ୟନ୍ତ ଆଣି ପହଞ୍ଚାଇଲାଣି, ତାଙ୍କ ଶ୍ରୀଚରଣରେ ମୁଁ ଭକ୍ତି-ଅର୍ଘ୍ୟ ଅର୍ପଣ କରୁଅଛି, ଓ ଏହି ମହାଜ୍ଞାନଯଜ୍ଞ ଯଜ୍ଞର ଅନ୍ତିମାବଧାରଣ କରିବା ପାଇଁ ଓ ମୋ ଗନ୍ତବ୍ୟ ମାର୍ଗର ମଙ୍ଗଳ ମୁଣ୍ଡରେ ପହଞ୍ଚିବା ପାଇଁ ମୋତେ ଉପଯୁକ୍ତ ଶକ୍ତି, ସାହାଯ୍ୟ, ଉତ୍ସାହ ଓ ସ୍ୱାସ୍ଥ୍ୟ ଦିଅନ୍ତୁ ବୋଲି ତାଙ୍କ ଶ୍ରୀଚରଣରେ ତ୍ରିକାଳସନ୍ଧ୍ୟାରେ ଭିକ୍ଷା କରୁଅଛି । ତାଙ୍କର ବିଧାନ ଓ ଆଦେଶ ପରିପାଳିତ ହେଉ । ତଥାସ୍ତୁ ।

ଓଁ ଶାନ୍ତିଃ ଶାନ୍ତିଃ ଶାନ୍ତିଃ । ଇତି ।

ଭାଷାକୋଷ ଆଶ୍ରମ, କଟକ
୧୯୩୩ ମେ ମାସ

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ,
ସଂଗ୍ରାହକ ।

## Prominent supporters of this works



**Mr. G E Fawcus Esq M A., C I E,**
**O.B E., V.D, I E.S.**

**Director of public Instruction Bihar and Orissa**

ବିହାର ଓଡ଼ିଶା ଶିକ୍ଷାବିଭାଗର ଡାଇରେକ୍ଟର
ଶ୍ରୀଯୁକ୍ତ ଜି ଇ. ଫକସ୍ ।



**Mr C. L. Philip M.A., I.C.S, C.I.E.,**

**Commissioner, Orissa Division.**

ଓଡ଼ିଶା ବିଭାଗର କମିଶନର
ଶ୍ରୀଯୁକ୍ତ ସି. ଏଲ୍. ଫିଲପ୍ ।



**Viswanath Kar**

**Editor of the Utkal Sahitya, Cuttack.**

ଉତ୍କଳ ସାହିତ୍ୟର ସମ୍ପାଦକ
ଶ୍ରୀଯୁକ୍ତ ବିଶ୍ୱନାଥ କର ।



**Rai Bahadur Lakshmidhar Mahanty**
**B. L., M. L. C., Advocate,**

**Dy. President of the Legislative Council**
**Bihar and Orissa.**

ବିହାର-ଓଡ଼ିଶା କାଉନ୍ସିଲର ଡେପୁଟି ପ୍ରେସିଡେଣ୍ଟ
ରାୟବାହାଦୁର ଲକ୍ଷ୍ମୀଧର ମହାନ୍ତି ବି. ଏଲ. ।



**Babu Batakrishna Mahanty B.A**

**Dewan, Boudh State, Orissa.**

ଶ୍ରୀ ବଟକୃଷ୍ଣ ମହାନ୍ତି
ଦେୱାନ, ବୌଦ୍ଧ ଷ୍ଟେଟ ।

U. S Press, Cuttack.

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ସଙ୍କଳନରେ ବ୍ୟବହୃତ ଅଭିଧାନଗ୍ରନ୍ଥ, ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ ।

M. W.—ମନିଅର୍ ୱିଲିଅମ୍‌ସ୍‌ଙ୍କ କୃତ ସଂସ୍କୃତ-ଇଂରାଜୀ ଡିକ୍ସନାରୀ ।
Kirtikar—ଡକ୍ଟର୍ କୀର୍ତ୍ତିକାରଙ୍କର ‘Indian Plants’ (ଭାରତୀୟ ଉଦ୍ଭିଦ) ।
Apte—ପ୍ରୋଫେସର୍ ଆପ୍ଟେଙ୍କର Practical Sanskrit—English Dictionary (ସଂସ୍କୃତ-ଇଂରାଜୀ ଅଭିଧାନ) ।
Beams—Comparative Grammar of four Indo-Aryan languages (ବୀମ୍‌ସ ସାହେବଙ୍କ ଗୌରଭାଷାର ବ୍ୟାକରଣ) ।
Haines—ହାଏନ୍ସ୍ ସାହେବଙ୍କ Botany of Bihar and Orissa (ବିହାର-ଓଡ଼ିଶାର ଉଦ୍ଭିଦତତ୍ତ୍ୱ) ।
Howells—ପାଦ୍ରୀ ହଓ୍ୱେଲ୍ସ୍ ସାହେବଙ୍କ ଅପ୍ରକାଶିତ ଓଡ଼ିଆ-ଇଂରାଜୀ ଅଭିଧାନର ପାଣ୍ଡୁଲିପି ।
Fallon—ଡକ୍ଟର ଫାଲନ ସାହେବଙ୍କ ହିନ୍ଦୁସ୍ଥାନୀ-ଇଂରାଜୀ ଡିକ୍ସନାରୀ ।
Sir George Greierson—Linguistic Survey of India (ଗ୍ରୀୟର୍‌ସନ୍ ସାହେବଙ୍କ ଭାରତୀୟ ଭାଷାବିବୃତି) ।
Grundy—ପାଦ୍ରୀ ଗ୍ରଣ୍ଡି ସାହେବଙ୍କ ଓଡ଼ିଆ-ଇଂରାଜୀ ଡିକ୍ସନାରୀ ।
ଗୋପୀନାଥ ନନ୍ଦ; ନନ୍ଦେ—ଗୋପୀନାଥ ନନ୍ଦଙ୍କ ଓଡ଼ିଆ ‘ଶବ୍ଦତତ୍ତ୍ୱବୋଧ ଅଭିଧାନ’ ।
ଜ୍ଞାନେନ୍ଦ୍ର—ଜ୍ଞାନେନ୍ଦ୍ର ମୋହନ ଦାସଙ୍କ ବଙ୍ଗଳା ଭାଷାର ଅଭିଧାନ ।
ବିଶ୍ୱକୋଷ—ନଗେନ୍ଦ୍ରନାଥ ବସୁଙ୍କ ପ୍ରଣୀତ ବଙ୍ଗଳା ‘ବିଶ୍ୱକୋଷ’ ।
ଯୋଗେଶଚନ୍ଦ୍ର—ରାୟ ବାହାଦୁର ଯୋଗେଶଚନ୍ଦ୍ର ରାୟ ବିଦ୍ୟାନିଧିଙ୍କ ସଂକଳିତ ‘ବାଙ୍ଗଲା ଶବ୍ଦକୋଷ’ ।
ପ୍ରକୃତିବାଦ—ଶ୍ରୀଯୁକ୍ତ ରାମକମଲ ବିଦ୍ୟାଲଙ୍କାରଙ୍କ ପ୍ରଣୀତ ସଚିତ୍ର ବଙ୍ଗଳା ‘ପ୍ରକୃତିବାଦ ଅଭିଧାନ’ ।
ହିନ୍ଦୀ ଶବ୍ଦସାଗର—କାଶୀ ନାଗରୀପ୍ରଚାରିଣୀ ସଭାଙ୍କ ପ୍ରକାଶିତ ହିନ୍ଦୀ ଭାଷାର ବୃହତ୍ ଅଭିଧାନ ।
ସୁବଳଚନ୍ଦ୍ର—ସୁବଳଚନ୍ଦ୍ର ମିତ୍ରଙ୍କ ସରଳ ବଙ୍ଗଳା ଅଭିଧାନ ।
ଗାଙ୍ଗୁଲି—The Student's Bengali and English Dictionary (ବି. ଗାଙ୍ଗୁଲିଙ୍କ ବଙ୍ଗଳା-ଇଂରାଜୀ ଅଭିଧାନ) ।
ଦ୍ରବ୍ୟଗୁଣ—ଶ୍ରୀ ନଗେନ୍ଦ୍ରନାଥ ସେନ୍ ଗୁପ୍ତଙ୍କ ବଙ୍ଗଳା ‘ଦ୍ରବ୍ୟଗୁଣ ଶିକ୍ଷା’ ।
ସମର୍ଥକୋଷ—ରାଜା ରାଧାକାନ୍ତ ଦେବଙ୍କ ଦ୍ୱାରା ପ୍ରକାଶିତ ବଙ୍ଗଳା ‘ସମର୍ଥ କୋଷ’ ଅଭିଧାନ ।
ଶବ୍ଦକଳ୍ପଦ୍ରୁମ—ବଙ୍ଗାକ୍ଷରରେ ମୁଦ୍ରିତ ସଂସ୍କୃତ ଅଭିଧାନ ।
A. T. Dev—ଆଶୁତୋଷ ଦେବଙ୍କ ଇଂରାଜୀ-ବଙ୍ଗଳା ଅଭିଧାନ ।
ରାମନାରାୟଣ ଲାଲ—ଇଂରାଜୀ-ହିନ୍ଦୀ ଅଭିଧାନ ।
ଓଡ଼ିଆ ଦ୍ରବ୍ୟଗୁଣ, ହରେକୃଷ୍ଣ—କବିରାଜ ହରେକୃଷ୍ଣ ମିଶ୍ରଙ୍କ ଦ୍ରବ୍ୟଗୁଣ ।
ଓଡ଼ିଆ ଦ୍ରବ୍ୟଗୁଣ କଳ୍ପଦ୍ରୁମ—ବ୍ରଜବନ୍ଧୁ ତ୍ରିପାଠୀଙ୍କ ସଙ୍କଳିତ ଗ୍ରନ୍ଥ ।
Wilson—ୱିଲ୍‌ସନ୍ ସାହେବଙ୍କ କୃତ ସଂସ୍କୃତ ଅଭିଧାନ ।

## ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷରେ ଉଦ୍ଧୃତ ଶିଷ୍ଟପ୍ରୟୋଗର ଗ୍ରନ୍ଥକାରମାନଙ୍କର ନାମ ଓ ସାଙ୍କେତିକ ଚିହ୍ନ ।

(ଦ୍ରଷ୍ଟବ୍ୟ—ଗ୍ରନ୍ଥମାନଙ୍କ ନାମ ଯଥାସ୍ଥାନରେ ଦିଆ ଯାଇଅଛି)

ଅଚ୍ୟୁତ, ଅଚ୍ୟୁତାନନ୍ଦ—କଟକ ଜିଲ୍ଲାର ନେମାଲଗାଦିର ମହନ୍ତ ସ୍ୱର୍ଗୀୟ ଅଚ୍ୟୁତାନନ୍ଦ ଦାସ ।
ଅଜୟ ଚନ୍ଦ୍ର—ସ୍ୱର୍ଗୀୟ ରାୟ ବାହାଦୁର ଅଜୟଚନ୍ଦ୍ର ଦାସ ।
ଅଭିମନ୍ୟୁ—ପ୍ରାଚୀନ କବି ଅଭିମନ୍ୟୁ ସାମନ୍ତସିଂହାର ।
ଉତ୍କଳ-ସାହିତ୍ୟ—ଶ୍ରୀ ବିଶ୍ୱନାଥ କରଙ୍କ ପ୍ରକାଶିତ ମାସିକ ପତ୍ର ।
ଉତ୍କଳ ସେବକ—ସମ୍ବଲପୁରରୁ ପ୍ରକାଶିତ ଓଡ଼ିଆ ସମ୍ବାଦପତ୍ର ।
କବିସୂର୍ଯ୍ୟ—ପ୍ରାଚୀନ କବି କବିସୂର୍ଯ୍ୟ ବଳଦେବ ରଥ ।
କୁନ୍ତଳା; କୁନ୍ତଳାକୁମାରୀ—ଶ୍ରୀମତୀ କୁନ୍ତଳାକୁମାରୀ ଦେବୀ ।
କୁଳମଣି—ପଣ୍ଡିତ ଶ୍ରୀ କୁଳମଣି ଦାଶ ।
କୃପାସିନ୍ଧୁ—ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ।
ଗଙ୍ଗାଧର—ସ୍ୱର୍ଗୀୟ କବି ଗଙ୍ଗାଧର ମେହେର ।
ଗଡ଼ଜାତବାସିନୀ—ତାଳଚେରରୁ ପ୍ରକାଶିତ ସାପ୍ତାହିକ ପତ୍ର ।
ଗୋପାଳକୃଷ୍ଣ—ଗଞ୍ଜାମର ପ୍ରାଚୀନ କବି ।
ଗୋଲକ—ଅପ୍ରକାଶିତ କାବ୍ୟ ଇନ୍ଦୁରେଖାର ଆଧୁନିକ କବି ।
ଚିକିଟି—ଗଞ୍ଜାମ ଜିଲ୍ଲାର ଚିକିଟି ରାଜ୍ୟର ରାଜାସାହେବ ।
ଚନ୍ଦ୍ରମଣି—ଶ୍ରୀଯୁକ୍ତ ଚନ୍ଦ୍ରମଣି ଆଚାର୍ଯ୍ୟ ।
ଚିନ୍ତାମଣି—କବିବର ଚିନ୍ତାମଣି ମହାନ୍ତି ।
ଜଗନ୍ନାଥ—ଭକ୍ତକବି ଜଗନ୍ନାଥ ଦାଶ ।
ଜଗବନ୍ଧୁ—ଶ୍ରୀଯୁକ୍ତ ଜଗବନ୍ଧୁ ସିଂହ ।
ତାରିଣୀ—ସ୍ୱର୍ଗୀୟ ତାରିଣୀଚରଣ ରଥ ।
ତୁଳସୀ-ବିକ୍ରମ—ଜୟପୁରର ରାଜା ବିକ୍ରମଦେବଙ୍କ କୃତ ତୁଳସୀଦାସଙ୍କ ହିନ୍ଦୀ ରାମାୟଣ ଆଦିକାଣ୍ଡର ପଦ୍ୟାନୁବାଦ ।
ଦିନା(ନୋ)ଇ ଦାସ—ଦିନେଇ ଦାସଙ୍କ ରଚିତ ପଦାବଳି ।
ଦାଶରଥି—ପ୍ରାଚୀନ କବି ଦାଶରଥି ଦାସ ।
ଦୀନକୃଷ୍ଣ—ଭକ୍ତକବି ଦୀନକୃଷ୍ଣ ଦାସ ।
ଦୈନିକ ଆଶା—ବ୍ରହ୍ମପୁରରୁ ପ୍ରକାଶିତ ଦୈନିକ ପତ୍ରିକା ।
ନନ୍ଦକିଶୋର—ସ୍ୱର୍ଗୀୟ କବି ନନ୍ଦକିଶୋର ବଳ ।
ନନ୍ଦେ—ସ୍ୱର୍ଗୀୟ ଗୋପୀନାଥ ନନ୍ଦଙ୍କ ଓଡ଼ିଆ ଅଭିଧାନ ।
ନାରାୟଣ—କବି ନାରାୟଣ ଦାସ (ହରିବଂଶ)
ନୀଳକଣ୍ଠ—ଶ୍ରୀ ନୀଳକଣ୍ଠ ଦାଶ ।
ନୀଳମଣି—ଯାଜପୁରର ପଣ୍ଡିତ ନୀଳମଣି ମିଶ୍ର (ଭକ୍ତିଧାରା ପ୍ରେମତରଙ୍ଗିଣୀ)
ପଞ୍ଚାମୃତ—କଟକ ଟ୍ରେଡିଙ୍ଗ୍ କମ୍ପାନୀଙ୍କ ପ୍ରକାଶିତ ପତ୍ରିକା ।
ପୀତାମ୍ବର—କବି ପୀତାମ୍ବର ଦାସ (ନୃସିଂହ ପୁରାଣ) ।

ପୀତାମ୍ବରୀ—ଶ୍ରୀମତୀ ପୀତାମ୍ବରୀ ଦେବୀ ।
ପ୍ରତାପ—ପ୍ରାଚୀ ସମିତି ପ୍ରକାଶିତ ଶଶିଷେଣା ।
ପ୍ରାଚୀ—କଟକ ପ୍ରାଚୀସମିତି ପ୍ରକାଶିତ ଗ୍ରନ୍ଥମାଳା ।
ପ୍ୟାରୀମୋହନ—ସ୍ୱର୍ଗୀୟ ପ୍ୟାରୀମୋହନ ଆଚାର୍ଯ୍ୟ ।
ଫକୀର, ଫକୀରମୋହନ—ସ୍ୱର୍ଗୀୟ ଫକୀରମୋହନ ସେନାପତି ।
ବଳରାମ—ପ୍ରାଚୀନ କବି ବଳରାମ ଦାସ (ରାମାୟଣ) ।
ବି. କେ. ପୁ.—ବିଷ୍ଣୁ କେଶରୀ ପୁରାଣ ।
ବିନାୟକ—ପଣ୍ଡିତ ଶ୍ରୀ ବିନାୟକ ମିଶ୍ର ।
ବିଶ୍ୱନାଥ—ପ୍ରାଚୀନ କବି ବିଶ୍ୱନାଥ ଖୁଣ୍ଟିଆ (ବିଚିତ୍ରରାମାୟଣ) ।
ବିଷ୍ଣୁକେଶରୀ ପୁରାଣ—ପ୍ରାଚୀ-ଗ୍ରନ୍ଥମାଳା ।
ବ୍ରଜନାଥ—ବ୍ରଜନାଥ ବଡ଼ଜେନାଙ୍କ ପ୍ରଣୀତ ସମରତରଙ୍ଗ ।
ଭକ୍ତଦାସ, ଭକ୍ତଚରଣ—ପ୍ରାଚୀନ କବି ଭକ୍ତଚରଣ ଦାସ ।
ଭଞ୍ଜ—କବି-ସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ।
ଭୀମା—ଭୀମା ଧୀବର (କପଟପାଶା) ।
ଭିକାରୀଚରଣ—ରାୟ ସାହେବ ଶ୍ରୀ ଭିକାରୀଚରଣ ପଟ୍ଟନାୟକ ।
ଭୂପତି—ପ୍ରାଚୀ ଗ୍ରନ୍ଥମାଳାର କବି ଭୂପତି ପ୍ରଣୀତ ପ୍ରେମପଞ୍ଚାମୃତ ।
ମଦନମୋହନ—ଶ୍ରୀଯୁକ୍ତ ମଦନମୋହନ ପଟ୍ଟନାୟକ(ତୀର୍ଥଦର୍ଶନ) ।
ମନୁ—ମନୁସଂହିତା ।
ମହାଦେବ—ପ୍ରାଚୀନ କବି ମହାଦେବ ଦାସ (ମାର୍କଣ୍ଡେୟ ପୁରାଣ) ।
ମଧୁସୂଦନ—ଭକ୍ତକବି ସ୍ୱର୍ଗୀୟ ମଧୁସୂଦନ ରାଓ ।
ଯଶୋବନ୍ତ—ପ୍ରାଚୀନ କବି ଯଶୋବନ୍ତ ସିଂହ । (ପ୍ରେମଭକ୍ତି ବ୍ରହ୍ମଗୀତା) ।
ରାଜକିଶୋର—ଡାକ୍ତର ଶ୍ରୀ ରାଜକିଶୋର ନନ୍ଦ ।
ରାଧାନାଥ—କବିବର ସ୍ୱର୍ଗୀୟ ରାଧାନାଥ ରାୟ ।
ରାଧାମୋହନ—ଚିକିଟିର ରାଜା ରାଧାମୋହନ ରାଜେନ୍ଦ୍ର ଦେବ ।
ରାମଦାସ—ପ୍ରାଚୀନ କବି ରାମଦାସ (ଦାର୍ଢ୍ୟତାଭକ୍ତି) ।
ରାମଶଙ୍କର—ସ୍ୱର୍ଗୀୟ ରାୟ ବାହାଦୁର ରାମଶଙ୍କର ରାୟ ।
ଶିଶୁଶଙ୍କର—ପ୍ରାଚୀନ କବି ଶିଶୁଶଙ୍କର (ଉଷା ଅଭିଳାଷ) ।
ସତ୍ୟସମାଚାର—କଟକରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର ।
ସମାଜ—କଟକରୁ ପ୍ରକାଶିତ ସାପ୍ତାହିକ ସମ୍ବାଦପତ୍ର ।
ସହକାର—କଟକରୁ ପ୍ରକାଶିତ ମାସିକ ପତ୍ରିକା ।
ସାରଳା—ପ୍ରାଚୀନ କବି ସାରଳା ଦାସ (ମହାଭାରତ) ।
ସୁବଳ ଦେବ—ବାମଣ୍ଡାର ରାଜା ସ୍ୱର୍ଗୀୟ ରାଜା ସର୍ ବାସୁଦେବ ସୁବଳ ଦେବ ।
ସୋନପୁର—ସୋନପୁର ମହାରାଜ ସର୍ ବୀରମିତ୍ରୋଦୟ ସିଂହ ଦେବ ।

## ଓଡ଼ିଆ ଶବ୍ଦମାନଙ୍କ ଉଚ୍ଚାରଣକୁ ଇଂରାଜୀ ଅକ୍ଷରରେ ଅକ୍ଷରାନ୍ତରୀକରଣରେ ବ୍ୟବହୃତ ବର୍ଣ୍ଣମାନଙ୍କର ପରିଚୟ ।

## LETTERS & SOUNDS USED IN THE ENGLISH TRANSLITERATION OF THE WORDS IN THIS WORK.

| | Capital | Small | | Capital | Small |
|---|---|---|---|---|---|
| ଅ | A | a | କ | K | k |
| ଆ | Ā | ā | କ୍ଷ | Ksh | ksh |
| ଇ | I | i | | Kh | kh |
| ଈ | Ī | ī | ଗ | G | g |
| ଉ | U | u | ଘ | Gh | gh |
| ଊ | Ū | ū | ଙ | Ṅ | ṅ |
| ଋ | Ṛu | ṛu | ଚ | Ch | ch |
| ୠ | Ṛū | ṛū | ଛ | Chh | chh |
| ଌ | Lu | ḷu | ଜ | J | j |
| ଏ | E | e | ଝ | Jh | jh |
| ଐ | Ai | ai | ଞ | N̄ | n̄ |
| ଓ | O | o | ଟ | Ṭ | ṭ |
| ଔ | Au | au | ଠ | Ṭh | ṭh |
| ଂ(ଅନୁସ୍ୱାର) | — | ṁ | ଡ | Ḍ | ḍ |
| ଃ(ବିସର୍ଗ) | — | ḥ | ଡ଼ | — | rd |
| ଁ(ଚନ୍ଦ୍ରବିନ୍ଦୁ) | — | n̄ | ଢ | Ḍh | ḍh |

| | Capital | Small | | Capital | Small |
|---|---|---|---|---|---|
| ଢ଼ | — | rḍh | ମ | M | m |
| ଣ | Ṇ | ṇ | ଯ | J̄ | j̄ |
| ତ | T | t | ୟ | Y | y |
| ଥ | Th | th | ର | R | r |
| ଦ | D | d | ଳ | L̲ | l̲ |
| ଧ | Dh | dh | ଲ | L | l |
| ନ | N | n | ଅବର୍ଗ୍ୟ ବ ବା ୱ | W | w or v |
| ପ | P | p | ଶ | Ś | ś |
| ଫ | Ph | ph | ଷ | Sh | sh |
| ବ | B | b | ସ | S | s |
| ଭ | Bh | bh | ହ | H | h |

## ଏ ଗ୍ରନ୍ଥରେ ବ୍ୟବହୃତ ସାଙ୍କେତିକ ଅକ୍ଷର ଓ ଚିହ୍ନମାନଙ୍କ ପରିଚୟ ।

## ABBREVIATIONS USED IN THIS WORK WITH THEIR MEANINGS.

ଅ = ଅବ୍ୟୟ ପଦ ।

ଅଦାଲତ = ଅଦାଲତରେ ଓ ଦଲିଲ ଆଦିରେ ବ୍ୟବହୃତ ଶବ୍ଦ ବା ଭାଷା ।

+ ଅଧିକରଣ = ଅଧିକରଣ ବାଚ୍ୟରେ ପ୍ରତ୍ୟୟ ।

ଅନ୍ୟରୂପ = ଉପର୍ଯ୍ୟୁକ୍ତ ଶବ୍ଦର ଭିନ୍ନ ଆକାର କିମ୍ବା ଉକ୍ତ ଅର୍ଥବାଚକ ଅନ୍ୟ ଶବ୍ଦ ।

+ ଅପାଦାନ = ଅପାଦାନ ବାଚ୍ୟରେ ପ୍ରତ୍ୟୟ ।

ଅଶୁଦ୍ଧ = କଥାବାର୍ତ୍ତାରେ ବା ଲେଖାରେ ବ୍ୟବହୃତ ଅଶୁଦ୍ଧ ଶବ୍ଦ, ବାକ୍ୟ ବା ଉଚ୍ଚାରଣ ।

ଆ = ଆରବୀ ଭାଷା ।

ଆଇନ୍ = ଆଇନ୍ ବା ସ୍ମୃତିଶାସ୍ତ୍ରରେ ବ୍ୟବହୃତ ଶବ୍ଦ

ଆସାମୀ = ଆସାମ ଦେଶର ଭାଷା ।

ଇଂ = ଇଂରାଜୀ ଭାଷା ।

ଇତର = ଇତରଜନ ବ୍ୟବହୃତ ଶବ୍ଦ, ଭାଷା ବା ଉଚ୍ଚାରଣ ।

ଇଟା(ଲୀ) = ଇଟାଲୀୟ ଭାଷା ।

ଇତ୍ୟାଦି = ପୂର୍ବବର୍ତ୍ତୀ ଶବ୍ଦ ଓ ସେହି ଶବ୍ଦଯୁକ୍ତ ଅନ୍ୟ ଶବ୍ଦମାନ ।

ଉ; ଉର୍ଦ୍ଦୁ = ଉର୍ଦ୍ଦୁ ଭାଷା ।

ଓ = ଓଡ଼ିଆ ଭାଷା ।

କଚଉଆ = କଚେରି ଆଦିରେ ଓ ଅଶିକ୍ଷିତ ଦଲିଲ-ଲେଖାଳଙ୍କ ବ୍ୟବହୃତ ଶବ୍ଦ ବା ଭାଷା ।

କନ୍ଧ, କୁଇ = କନ୍ଧମାନଙ୍କ ବ୍ୟବହୃତ କୁଇ-ଭାଷା ।

+ କରଣ = କରଣ ବାଚ୍ୟରେ ପ୍ରତ୍ୟୟ ।

+ କର୍ତ୍ତୃ = କର୍ତ୍ତୃ ବାଚ୍ୟରେ ପ୍ରତ୍ୟୟ ।

+ କର୍ମ = କର୍ମ ବାଚ୍ୟରେ ପ୍ରତ୍ୟୟ ।

କର୍ମଧା = କର୍ମଧାରୟ ସମାସ ।

କାହାଣୀ = ଦେଶପ୍ରଚଳିତ ଉପକଥା ।

କୋହ୍ଲ = କୋହ୍ଲମାନଙ୍କ ବ୍ୟବହୃତ ଭାଷା ।

କ୍ରି = କ୍ରିୟାପଦ ।

କ୍ରି. ବିଣ = କ୍ରିୟା ବିଶେଷଣ ।

ଖ୍ରୀ = ଖ୍ରୀଷ୍ଟାବ୍ଦ ।

ଖ୍ରୀ. ପୂ = ଖ୍ରୀଷ୍ଟ ଜନ୍ମର ପୂର୍ବାବ୍ଦ ।

ଗଣିତ = ଗଣିତଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।

ଗାଳି = ଇତରଜନଙ୍କ ମଧ୍ୟରେ ଗାଳିରେ ବ୍ୟବହୃତ ଶବ୍ଦ ବା ବାକ୍ୟ ।

ଗୁ = ଗୁଜରାଟୀ ଭାଷା ।

ଗ୍ରା; ଗ୍ରାମ୍ୟ = ଗ୍ରାମ୍ୟ ବ୍ୟବହାର; ମାର୍ଜିତ ସାହିତ୍ୟରେ ପରିହାର୍ଯ୍ୟ ଶବ୍ଦ ।

ଗ୍ରୀ; ଗ୍ରୀକ୍ = ଗ୍ରୀସ୍ ଦେଶର ଭାଷା ।

ଜଣାଣ, ଭଜନ = ପ୍ରାଚୀନ ଓଡ଼ିଆ ଲୌକିକ ଭଜନ ।

ଜର୍ମାନ୍ = ଜର୍ମାନ ଦେଶର ଭାଷା ।

ଜ୍ୟୋତିଷ = ଜ୍ୟୋତିଃଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।

ଢଗ, ବଚନ, ପ୍ରବଚନ = ଲୌକିକ ପ୍ରବଚନ ବା ପ୍ରବାଦ-ବାକ୍ୟ ।

ଣିଜନ୍ତରୂପ = ପୂର୍ବୋକ୍ତ କ୍ରିୟାର ଣିଜନ୍ତ ବା ପ୍ରୟୋଜକ ରୂପ ।

ତତ୍ = ତତ୍ପୁରୁଷ ସମାସ ।

ତା = ତାମିଲ୍ ଭାଷା ।

ତୁର୍କୀ = ତୁରସ୍କଦେଶୀୟ ଭାଷା ।

ତୁଳ = ତୁଳନା କର ।

ତେ = ତେଲୁଗୁ ଭାଷା ।

ଦର୍ଶନ = ଦର୍ଶନ ଶାସ୍ତ୍ରରେ ବ୍ୟବହୃତ ଶବ୍ଦ ।

ଦେ = ଦେଶଜ ଶବ୍ଦ ।

ଦେଖ = ପୂର୍ବବର୍ତ୍ତୀ ଶବ୍ଦକୁ ଏ ଭାଷାକୋଷର ଶବ୍ଦକ୍ରମରେ ଯଥାସ୍ଥାନରେ ଖୋଜ ।

ଦ୍ର = ଦ୍ରଷ୍ଟବ୍ୟ ।

ଦ୍ରା=ଦ୍ରାବିଡ଼ ଭାଷା ।
ଧା; ଧାତୁ=ସଂସ୍କୃତ ଧାତୁ ।
ଧ୍ୱନ୍ୟନୁକରଣ=ଧ୍ୱନିର ଅନୁକରଣରେ ଗଠିତ ବା ଉଚ୍ଚାରିତ ବା ଅର୍ଥ ବୁଝାଯିବା ଶବ୍ଦ ।
ନଞ୍ ତତ୍=ନଞ୍ ତତ୍ପୁରୁଷ ସମାସ ।
ନପୁଂ.=ନପୁଂସକ ଲିଙ୍ଗ ।
ନାଟକ=ନାଟକରେ ବ୍ୟବହୃତ ଭାଷା ବା ଶବ୍ଦ ।
ନାମ=ସ୍ଥାନ ବା ବ୍ୟକ୍ତିବିଶେଷଙ୍କ ନାମ ।
ନୋଟ୍=ପୂର୍ବବର୍ତ୍ତୀ ଶବ୍ଦ ବିଷୟରେ ଟୀକା ।
ନ୍ୟାୟ=୧. ନ୍ୟାୟଶାସ୍ତ୍ର; ୨. ଦେଶପ୍ରଚଳିତ ଲୌକିକ ବଚନ ବା ଲୋକେ କଥାପ୍ରସଙ୍ଗରେ ଉଲ୍ଲେଖ ଦେବା ପ୍ରାମାଣିକ ଉକ୍ତି ।
ପଦ୍ୟ=କେବଳ ପଦ୍ୟରେ ବ୍ୟବହୃତ ଆକାର ।
ପରିଭାଷା—ବିଜ୍ଞାନାଦିରେ ବ୍ୟବହୃତ ପାରିଭାଷିକ ଶବ୍ଦ ।
ପର୍ତ୍ତୁ (ର୍ଟୁ)=ପର୍ଟୁଗାଲ୍ ଦେଶର ଭାଷା ।
ପା=ପାଲି ଭାଷା ।
ପୁଂ=ପୁଂଲିଙ୍ଗ ।
ପ୍ରା=ପ୍ରାକୃତ ଭାଷା ।
ପ୍ରାଚୀନ=ପ୍ରାଚୀନ ଗ୍ରନ୍ଥମାନଙ୍କରେ ବ୍ୟବହୃତ, ଅଧୁନା ବିରଳ ଶବ୍ଦ ।
ପ୍ରାଦେ—ପ୍ରାଦେଶିକ ଅର୍ଥାତ୍ ଦେଶାଂଶ ବିଶେଷରେ ପ୍ରଚଳିତ ଓଡ଼ିଆ ଶବ୍ଦ

[ ଯେଉଁ ଯେଉଁ ଅଞ୍ଚଳରେ ଯେଉଁ ଶବ୍ଦ ବ୍ୟବହୃତ ସେ ଅଞ୍ଚଳମାନଙ୍କ ନାମ ବନ୍ଧନୀ ମଧ୍ୟରେ ସୂଚିତ ହୋଇଅଛି । ଯଥା :— ପ୍ରାଦେ (କଟକ)=କଟକ ଜିଲ୍ଲାରେ ବ୍ୟବହୃତ ପ୍ରାଦେଶିକ ଶବ୍ଦ ]

ଫା=ଫାରସୀ ବା ପାରସ୍ୟ ଦେଶ ପ୍ରଚଳିତ ଭାଷା ।
ଫ୍ରେ=ଫ୍ରେଞ୍ଚ୍ ବା ଫ୍ରାନ୍ସ ଦେଶ ପ୍ରଚଳିତ ଭାଷା ।
ବ=ବଚନ; ( ୧ବ=ଏକବଚନ; ୨ବ=ଦୁଇବଚନ; ବହୁ ବ=ବହୁବଚନ । )
ବଂ=ବଙ୍ଗଳା ଭାଷା ।
ବହୁ. ବ.=ବହୁବଚନ ।
ବି=ବିଶେଷ୍ୟ ପଦ ।
ବିଜ୍ଞାନପରିଭାଷା=ବିଜ୍ଞାନରେ ବ୍ୟବହୃତ ପାରିଭାଷିକ ଶବ୍ଦ ।
ବିଣ=ବିଶେଷଣ ପଦ ।
ବିଣ ର ବିଣ=ବିଶେଷଣର ବିଶେଷଣ ।
ବିପରୀତ=ପୂର୍ବୋକ୍ତ ଶବ୍ଦର ବିପରୀତାର୍ଥବୋଧକ ଶବ୍ଦ ।
ବୈଦେ=ବୈଦେଶିକ ଭାଷା ( ଯଥା—ଇଂରାଜୀ, ଆରବୀ, ଫାରସୀ, ଫ୍ରେଞ୍ଚ୍, ଜର୍ମାନ୍ ଆଦି ) ରୁ ଆଗତ ଶବ୍ଦ ।
ବୈଦ୍ୟକ=ବୈଦ୍ୟକ ଗ୍ରନ୍ଥ ବା ଆୟୁର୍ବେଦରେ ବ୍ୟବହୃତ ଶବ୍ଦ ।
ଭତର; ଭତ୍ରୀ; ଭତଡ଼ି=ବସ୍ତର ରାଜ୍ୟର ଉତ୍ତରପୂର୍ବ କୋଣରେ କୋଡ଼ିଏ ହଜାର କୃଷିଜୀବୀ ଲୋକଙ୍କ କଥିତ ଭାଷା ।
+ଭାବ=୧. ଭାବାର୍ଥ ପ୍ରତ୍ୟୟ;
୨. ଭାବ ବାଚ୍ୟରେ ପ୍ରତ୍ୟୟ ।
ମ=ମରହଟ୍ଟୀ ଭାଷା ।
ମ. ପ ଲୋ=ମଧ୍ୟପଦଲୋପୀ କର୍ମଧାରୟ ।
ଯଥା=ପୂର୍ବୋକ୍ତ ଶବ୍ଦର, ଅର୍ଥର ବା ପ୍ରୟୋଗର ଉଦାହରଣ ।
ଲକ୍ଷଣାର୍ଥ=ଶବ୍ଦର ଆରୋପିତ ଅର୍ଥ ।

ଲରିଆ=ସମ୍ବଲପୁର ଓ ଛତିଶଗଡ଼ ଅଞ୍ଚଳରେ ବ୍ୟବହୃତ ଉପଭାଷା ।
ଶିଶୁବଚନ, ଶିଶୁଗୀତ, ଶିଶୁରଞ୍ଜନ—ଶିଶୁମାନଙ୍କ ମନୋରଞ୍ଜନାର୍ଥ ବୋଲାଯିବା ବା ଶିଶୁମାନଙ୍କ ଉଚ୍ଚାରିତ ବଚନ ।
ସଂ=ସଂସ୍କୃତ ଭାଷା ।
ସଙ୍ଗୀତ, ପ୍ରାଚୀନ ସଙ୍ଗୀତ—ପ୍ରାଚୀନ ଓଡ଼ିଆ ସଙ୍ଗୀତ ।
+ସଂଜ୍ଞାର୍ଥ=ସଂଜ୍ଞାର୍ଥ ପ୍ରତ୍ୟୟ ।
+ସମ୍ବନ୍ଧ=ସମ୍ବନ୍ଧାର୍ଥ ପ୍ରତ୍ୟୟ ।
ସର୍ବ—ସର୍ବନାମ ପଦ ।
ସହଚର=ସହଚର ଶବ୍ଦରୂପେ ଏକତ୍ର ବା ଏକ ପରେ ଅନ୍ୟ ବ୍ୟବହୃତ ଶବ୍ଦଦ୍ୱୟ ।
ସାନ୍ତାଳୀ=ସାନ୍ତାଳମାନଙ୍କ କଥିତ ଭାଷା ।
ସ୍ତ୍ରୀ=ସ୍ତ୍ରୀଲିଙ୍ଗ ।
+ସ୍ୱାର୍ଥେ=ଶବ୍ଦର ମୌଳିକ ଅର୍ଥରେ ଯୁକ୍ତ ପ୍ରତ୍ୟୟ ।
ହି=ହିନ୍ଦୀ ବା ହିନ୍ଦୁସ୍ଥାନୀ ଭାଷା ।
ହେବ୍ରୁ=ହେବ୍ରୁ ଭାଷା ।
୧ମା=ପ୍ରଥମା ବିଭକ୍ତି ।
୨ୟା=ଦ୍ୱିତୀୟା ବିଭକ୍ତି ।
୩ୟା=ତୃତୀୟା ବିଭକ୍ତି ।
୪ର୍ଥୀ=ଚତୁର୍ଥୀ ବିଭକ୍ତି ।
୫ମୀ=ପଞ୍ଚମୀ ବିଭକ୍ତି ।
୬ଷ୍ଠୀ=ଷଷ୍ଠୀ ବିଭକ୍ତି ।
୭ମୀ=ସପ୍ତମୀ ବିଭକ୍ତି ।
୧ବ=ଏକବଚନ ।
୨ବ=ଦ୍ୱିବଚନ ।
+ (ଯୁକ୍ତ ଚିହ୍ନ)=ପରସ୍ପର ଯୁକ୍ତ ହେବା ଦୁଇ ଶବ୍ଦ ବା ଧାତୁ ଓ ପ୍ରତ୍ୟୟ ମଧ୍ୟରେ ଥିବା ଯୁକ୍ତଚିହ୍ନ ।
= (ସମାନତାଜ୍ଞାପକ ଚିହ୍ନ)=ଧାତୁ ଓ ପ୍ରତ୍ୟୟ ମିଶି ବା ଦୁଇ ପଦ ମିଶି ନିଷ୍ପନ୍ନ ହେବା ଶବ୍ଦ ବା ବାକ୍ୟର ଅର୍ଥ କିମ୍ବା ଧାତୁର ଅର୍ଥ ।
? (ପ୍ରଶ୍ନ ସୂଚକ ଚିହ୍ନ)=ସନ୍ଦେହ ସ୍ଥଳରେ ପ୍ରଦତ୍ତ ଚିହ୍ନ ।
— (ଡାସ୍)=ପରସ୍ପର ସଂବଦ୍ଧ ଦୁଇଟି ଶବ୍ଦ ବା ଶବ୍ଦ ଓ ଅର୍ଥ ବା ଦୁଇଟି ଭାବ ମଧ୍ୟରେ ସମ୍ବନ୍ଧଜ୍ଞାପକ ଚିହ୍ନ ।
! (ବିସ୍ମୟସୂଚକ ଚିହ୍ନ)=ପୂର୍ବବର୍ତ୍ତୀ ବାକ୍ୟ, ଶବ୍ଦ ବା ବିଷୟ ସମ୍ପର୍କେ ବିସ୍ମୟ ଜ୍ଞାପନ ଓ ସଂବୋଧନ ସୂଚକ ଚିହ୍ନ ।
Etc; etc.=Please refer to the word preeceding and its connected words in their proper places in alphabetical order in this Dictionary.
See=Please refer to the preeceding word.
Law=Legal term.

Algebra
Arithmetic
Astrology
Astronomy
Botany
Geography
Geometry
Logic
Mathematics
Medicine
Philosophy
} =Technical words used in the said sciences..

## The Compiler and his colleagues



**The Compiler**
ଭାଷାକୋଷର ସଂଗ୍ରାହକ



**Srimati Pitambari Debi,**
ଶ୍ରୀମତୀ ପୀତାମ୍ବରୀ ଦେବୀ, ସହକର୍ମିଣୀ



**Pandit Kulamani Das**
ପଣ୍ଡିତ ଶ୍ରୀ କୁଳମଣି ଦାଶ



**Padma Charan Das**
ଶ୍ରୀ ପଦ୍ମଚରଣ ଦାଶ



**Ramchandra Rath**
ଶ୍ରୀ ରାମଚନ୍ଦ୍ର ରଥ

U. S. Press, Cuttack.

# ପୂର୍ଣ୍ଣଚନ୍ଦ୍ର

# ଓଡ଼ିଆ ଭାଷାକୋଷ ।




ଚ—ବ୍ୟଞ୍ଜନବର୍ଣ୍ଣର ୬ଷ୍ଠ ଓ ଚ ବର୍ଗର ୧ମ ବର୍ଣ୍ଣ; ଅଘୋଷବାନ୍‌ବର୍ଣ୍ଣ;
Cha ଏହାର ଉଚ୍ଚାରଣ ସ୍ଥାନ ତାଳୁ—The sixth consonant. It has the sound of 'ch' in child. It is uttered with the help of the roof of the palate in the cavity of the mouth.

ସଂ. ଅ—୧ । ଏବଂ; ଓ—1. And.

୨ । ପକ୍ଷାନ୍ତରରେ; କିନ୍ତୁ—
2. On the other hand; still.

୩ । ପୁନରପି—6. Also; again; moreover.

୪ । ତଥାପି—4. Yet.

୫ । ସମୁଚ୍ଚୟ—5. Too; together.

୬ । ଇତରେତର ଯୋଗ—
6. Mutual connection.

୭ । ସମାହାର—7. Collective compilation.

୮ । ଯଦି—8. If.

୯ । ଆନୁଷଙ୍ଗିକତା; ମଧ୍ୟ—
9. Together with; simultaneity.

୧୦ । ( ଅବଧାରଣ ) ନିଶ୍ଚେ—
10. ( certainty ) Yes; certainly.

୧୧ । ସଙ୍କଳ୍ପ—11. Determination.

୧୨ । ପାଦପୂରଣ—12 Expletive used to fill up or complete a sentence

[ ଦ୍ର—ଏହା ଦୁଇ ଶବ୍ଦ ମଧ୍ୟରେ କିମ୍ବା ଶବ୍ଦର ଶେଷରେ ବ୍ୟବହୃତ ହୁଏ; ଏହା ଶବ୍ଦର ପୂର୍ବରେ ବା ବାକ୍ୟର ଶେଷରେ କଦାପି ବ୍ୟବହୃତ ହୁଏ ନାହିଁ । ଓଡ଼ିଆଭାଷାରେ 'ଚ' ର ବ୍ୟବହାର ନାହିଁ; କେବଳ ଏବଂଚ, ପୁନଶ୍ଚ, ଅପିଚ, ବରଂଚ, ତଥାଚ, କଦାଚ ଇତ୍ୟାଦିରେ ଏହା ଅନ୍ୟ ଅବ୍ୟୟରେ ଯୁକ୍ତ ହୋଇ ନିଷ୍ପନ୍ନ ହେବା ପଦ ସ୍ୱରୂପ ଓଡ଼ିଆରେ ଏହାର ବ୍ୟବହାର ଅଛି । ]

ସଂ. ବି. ( ଚର୍ ଧାତୁ=ଗମନ କରିବା+କର୍ତ୍ତୃ. ଅ )—

୧ । ଚୌର; ଚୋର—1. Thief.

୨ । ଚନ୍ଦ୍ର—2 The moon.

୩ । କୂର୍ମ—3 Tortoise.

୪ । ଶିବାନୁଚର, ଚଣ୍ଡେଶ୍ୱର—
4 An attendant of Śiba.

୫ । ଶିବ—5 Śiba.

୬ । ଚୋବାଇବା—6. Chewing.

୭ । ଖାଇବା—7. Eating.

ଚଅଁଚଅଁ—ଦେ. ଅ ( ଧ୍ୱନ୍ୟନୁକରଣ )—
Cha-añ cha-añ
চোঁচোঁ
चुमरचुमर

୧ । ବାଛୁରି ଗାଈଚରକୁ ଓ ଶିଶୁ ମାତୃସ୍ତନକୁ ଚୁଚୁମିବା ବେଳେ ହେବା ଶବ୍ଦ—1. Sound made by a calf or child sipping milk from its mother's teat.

୨ । ଦୁଇ ଓଠ ମେଲା ଥାଇ ଉପର ଦାନ୍ତମୂଳ ଓ ଜିଭକୁ ଚିପି ପବନକୁ ଭିତରକୁ ଟାଣିନେବାର ଉଦ୍ୟମଜନିତ ଧ୍ୱନି ( ସ୍ତ୍ରୀଲୋକମାନେ 'ଚୁଁ' କଲାବେଳେ 'ଇ' ଯୁକ୍ତ ହୋଇ ଯେଉଁ ଧ୍ୱନି ଶୁଣାଯାଏ )—2. The sound produced by sucking wind through the tip of the tongue and the root of the upper teeth after joining them and keeping the lips open.

ଚଅଁଫଳା—ଗ୍ରା: ବିଣ. ( ସଂ: ଚପଳ )—
Cha-añphalā
( ଚଅଁଫୁଲି—ସ୍ତ୍ରୀ )

୧ । ଚଞ୍ଚଳମତି—
1. Fickle-minded

୨ । ଅସ୍ଥିର—2. Restless.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

**ଚଅଁର**—ଦେ. ବି. ( ସଂ. ଚମର )—
Cha-añra ୧ । ଚମରୀ ଗୋ ବା କପିଳା ଗାଈର ଲାଙ୍ଗୁଳର ଲମ୍ବ ଲୋମଗୁଚ୍ଛ ଏକତ୍ର ମୂଳରେ ବନ୍ଧାଯାଇ ତିଆରି ହୋଇଥିବା ଚାମର—
ଚଉଁରୀ; ଚାମର
**चँवर; चौंरी**
1. Chowrie; a long brush made of tufts of the tail-hair of an yak (used as a fan or fly-whisk to drive away fleas from the body).

[ ଦ୍ର—ଚଅଁରର ଯେଉଁ ପାଖରେ ଲୋମଗୁଚ୍ଛକ ଗୋଛା ହୋଇ ବନ୍ଧା ହୋଇଥାଏ ସେହି ପାଖରେ ଗୋଟିଏ ଧାତୁର ବା କାଠର ବେଣ୍ଟ ଲାଗିଥାଏ । ଘୋଡ଼ା ଲାଞ୍ଜର ଲମ୍ବ ବାଳରେ ମଧ୍ୟ ଚଅଁର ହୁଏ । ଚଅଁର ରାଜା ଓ ବଡ଼ଲୋକମାନଙ୍କର ଓ ଦେବତାଙ୍କ ସେବାରେ ଲାଗେ । ଚଅଁରର ବେଣ୍ଟରୁ ଧରି ତାକୁ ଇତସ୍ତତଃ ସଞ୍ଚାଳିତ କରାଯାଏ । ଏହାକୁ ଚଅଁର ଢାଳିବା ବା ଚଅଁର ପକାଇବା କହନ୍ତି । ଶୂନ୍ୟରେ ଚଅଁର ଧରି ତାକୁ ଇତସ୍ତତଃ ଘୂରାଇବା ପାଇଁ କେତେକ ହାତୀଙ୍କୁ ମଧ୍ୟ ଶିକ୍ଷିତ କରାଯାଇଥାଏ । ଠିଆ-ପାଲାବାଲାଙ୍କ ଗାୟକ ବା ନେତା ଅଭିନୟ କରିବା ବେଳେ ଚଅଁର ଧରି ଥାଆନ୍ତି । ଘୋଡ଼ାଙ୍କ ଦେହରୁ ମାଛି ଘଉଡ଼ାଇବା ପାଇଁ ମଧ୍ୟ ଛୋଟ ଚଅଁର ବ୍ୟବହୃତ ହୁଏ । ]

୨ । ନଡ଼ିଆ, ଖଜୁରି ଗଛର ଫଳମାନ ଯେଉଁ ଗୁଚ୍ଛରୁ ବାହାରି ଥାଏ—2. A bunch (issuing out of cocoa-nut and date-palm trees) to which the fruits are attached.

ପ୍ରାଦେ. ( ସମ୍ବଲପୁର ) ବି—ନିଶୁଣିର ଅଡ଼କାଠ ( ଯହିଁରେ ଗୋଡ଼ ଦେଇ ନିଶୁଣିରେ ଚଢ଼ିବାକୁ ହୁଏ )—
Foot-pad of a ladder; the cross-bar of a ladder.

**ଚଅଁର କାଢ଼ିବା**—ଦେ. କ୍ରି—(ନଡ଼ିଆ ବା ଖଜୁରି ଗଛ ) ସ୍କନ୍ଧଦେଶରୁ
Cha-añra kārdhibā ଫୁଲଫଳଧାରୀ ଚଅଁର ବାହାରକରିବା—
(a cocoanut or date-palm tree) To bring forth a bunch of flowers.

( ଯଥା—ନୂଆଗଛଟି ଚଅଁର କାଢ଼ିଲାଣି । )

**ଚଅଁର ଛାଞ୍ଚୁଣୀ**—ଦେ. ବି—ଚଅଁର ଝାଡ଼ୁ ( ଦେଖ )
Cha-añra chhānchuṇi Cha-añra jhārdu ( See )

**ଚଅଁରଝାଡ଼ୁ**—ଦେ. ବି. ( ସଂ. ଚମର+ସଂ. ଜଟ କିମ୍ବା ଝାଟ )—
Cha-añrajhārdu ଚଅଁର ପରି ଦେଖାଯିବା ଏକପ୍ରକାର ତୃଣର ପୁଷ୍ପଗୁଚ୍ଛରେ ନିର୍ମିତ ଗୃହମାର୍ଜନୀବିଶେଷ; ଫୁଲଝାଡ଼ୁ—
A kind of broom looking like a chowrie made of hair-like filaments of Broom-grass (Sorghum Vulgare).

**ଚଅଁରଡିହ**—ଦେ. ବି—ଚାମରର ବେଣ୍ଟଦ୍ୱାରା କେଞ୍ଚିବା ଆଘାତ—
Cha-añra diha A poke given by the handle of a chowrie.

**ଚଅଁର ଢାଳିବା**—ଦେ. କ୍ରି. ( ସଂ. ଚମର+ଦୋଳନ )—ଚାମର
Cha-añra dhālibā ଇତସ୍ତତଃ ସଞ୍ଚାଳନ କରିବା; ଚାମରଦ୍ୱାରା
ଚାମର ঢালা ବିଞ୍ଚିବା—To fan with a chowrie.
**चँवर डुलाना**

**ଚଅଁର ପକାଇବା**—ଦେ. କ୍ରି—୧ । ଚଅଁର କାଢ଼ିବା ( ଦେଖ )
Cha-añra pakāibā 1. Cha-añra kārdhibā ( See )
୨ । ଚଅଁର ଢାଳିବା ( ଦେଖ )
2. Cha-añra dhālibā ( See )

**ଚଅଁରବେଣ୍ଟ**—ଦେ. ବି. ( ସଂ. ଚମର+ବୃନ୍ତ ବା ବଣ୍ଟ )—ଚାମରକୁ
Cha-añra benṭa ଢାଳିବା ସମୟରେ ଧରିବା ନିମନ୍ତେ ନିର୍ମିତ
ଚାମরের বাঁট ହାତଲ—The handle of a chawrie.
**चँवरका मुठ**

**ଚଅଁରମୁଠା**—ଦେ. ବି. ( ସଂ. ଚମର+ମୁଷ୍ଟି )—୧ । ପୂଜା କରୁଥିବା
Cha-añra muthā ସମୟରେ ପାଲାବାଲାମାନେ ଯେଉଁ ଚଅଁର ବ୍ୟବହାର କରନ୍ତି—1. Chowrie used by the chanting performers of Pālā.
୨ । ଚାମରର କେଶଗୁଚ୍ଛ ଏକତ୍ର ବନ୍ଧାଯାଇ ଯେଉଁ ସ୍ଥାନରେ ବେଣ୍ଟ ସଙ୍ଗେ ସଂଯୁକ୍ତ କରାଯାଇଥାଏ—
2. The place where the root of the tied bunch of hair of a chowrie is linked to the handle.

**ଚଅଁରା**—ଦେ. ବିଣ—ଚାମର ଭଳି ଲାଞ୍ଜରେ ଗୋଛାଏ ବାଳ ଥିବା (ଗାଈ
Cha-añrā କିମ୍ବା ବଳଦ)—(a cow or bullock) Having a tuft of hair in the tail like a chowrie (more than is ordinarily seen in the tail of cattle.

**ଚଅଁରା ଭଅଁରା**—ଦେ. ବି (ଅର୍ଥହୀନ ପ୍ରୟୋଗ; ଅନାଦର ବ୍ୟଞ୍ଜକ)—
Cha-añrā bha-añrā ଢଗରେ ବ୍ୟବହୃତ ସମଧର୍ମୀ ଓ ସମକର୍ମୀ ଦୁଇ ଭାଇ ବା ସଙ୍ଗୀ—Two boon companions or brothers; companions always moving together (names of 2 brothers in the folktales).

**ଚଅଁରିବା**—ଦେ. କ୍ରି ( ସଂ. ଚମରରୁ ଓଡ଼ିଆ ନାମଧାତୁ )—
Cha-añribā ୧ । ଚଅଁର କାଢ଼ିବା ( ଦେଖ )
1. Cha-añra kārdhibā ( See )
୨ । ( କୌଣସି ଭଙ୍ଗପ୍ରବଣ ପଦାର୍ଥ ) ଫାଟିଯିବାର ପୂର୍ବାଭାସ ପ୍ରକାଶ କରିବା—2. To crack; to indicate signs of becoming cracked ( said of any fragile thing. )

| ୯ | ଇ | ଙ | ଋ,ଋ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ସ୍ୱେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଅ | ଡ଼ | ନ୍ତ |

**ଚଅଁରେଇବା**—ଦେ. କ୍ରି—ଚଅଁର କାଢ଼ିବା ( ଦେଖ )
Cha-a͂reibā Chaa͂ra kārdhibā ( See )

**ଚଇ**—ଦେ. ବି ( ସଂ. ଚବିକା )—
Chai ୧ । ଚଇଁକାଠ ( ଦେଖ )
1. Cha-i͂ kāṭha ( See )
୨ । ଚୈତନ୍ୟ ନାମଧାରୀ ବ୍ୟକ୍ତିଙ୍କୁ ଡାକିବାର ଆଦରବ୍ୟଞ୍ଜକ ନାମ—2. Name by which a person named Chaitanya is called in fondness.
( ଅନାଦରବ୍ୟଞ୍ଜକ ରୂପ—ଚଇଆ; ଚଇଁଆଁ । )

**ଚଇଁ**—ଦେ. ବି. ( ସଂ. ଚବିକା )—ଚଇ ( ଦେଖ )
Chai͂ Chai ( See )

**ଚଇଁକାଠ**—ଦେ. ବି. ( ସଂ. ଚବିକା + କାଷ୍ଠ )—
Chai͂ kāṭha ଔଷଧ ଲତାବିଶେଷ—
ସଂ. ନାମ—ଚବ୍ୟ; ଚବିକା; A medicinal creeper.
ଉଷଣା; ଚବନ, ଚବି; ଚବୀ [ଦ୍ର—ଏହା ତାମ୍ବୂଳାଦି ବର୍ଗର ଲତା ।
ଚଈ ଏହି ଲତା ନଦୀ ଓ ପାଣିକୂଳରେ
ଚହ୍, ଚବଯ ହୁଏ । ଏହାର ପତ୍ରର ଆକାର ପାନ
ତେ. ସେବାମୁ; ଚେକାଣି ପରି; ଫଳ ପିପ୍ପଳୀ ପରି । ଏହା ଗୁହ୍ୟ-
ମ. ପିରେବେଷ୍ଟୀଚେମୁଛି; ଦେଶଜାତ ରୋଗନାଶକ । ଏହି
ଚବକ୍ଷ ଲତାର ଫଳକୁ ଗଜପିପ୍ପଳୀ ବା ବଣ
ଗୁ. ଚବକ ପିପ୍ପଳୀ ବୋଲଯାଏ । ]

**ଚଇକାଠ**—ଦେ. ବି—ଚଇଁକାଠ ( ଦେଖ )
Chai kāṭha Chai͂ kāṭha ( See )

**ଚଇତ**—ଗ୍ରା. ବି. ( ସଂ. ଚୈତ୍ର )—
Chaita ଚୈତ୍ର ମାସ; ବସନ୍ତ ଋତୁର ଦ୍ୱିତୀୟ ବା ଶେଷ ମାସ—
চৈত্র, চইত The month of Chaitra
चैत ( March-April ).

ଚଇତ ମାସରେ ସଖାମାଧବ ସୁମର
ବୃନ୍ଦାବନେ ପଶିଣ ଲୋକଙ୍କ ଅନୁସର । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଚଇତନ୍**—ପ୍ରାଦେ. (ମେଦିନୀପୁର) ବି (ଭୁଲ ଏହି ଅର୍ଥରେ ବ. ଚୈତନ୍)-
Chaitan ଚୁରୁକି; ଚୁଟି—Pigtail on the middle of the head of a Brāhmaṇa.

**ଚଇତନ୍ ଚୁଟ୍‌କି**—ଦେ. ବି—ଚଇତନ୍ ଚୁରୁକି ( ଦେଖ )
Chaitan chuṭki Chaitan churki ( See )

**ଚଇତନ୍ ଚୁରୁକି**—ଦେ. ବି. ( ସଂ. ଚୈତନ୍ୟ + ଚୂଡ଼ିକ )—
Chaitan churki ଚୈତନ୍ୟପ୍ରବର୍ତ୍ତିତ ବୈଷ୍ଣବସମ୍ପ୍ରଦାୟର ବ୍ୟକ୍ତି-
চৈতন চুটকী ମାନଙ୍କ ମସ୍ତକାଗ୍ରର ପଛଆଡ଼େ ଥିବା ଲମ୍ବ କେଶର କ୍ଷୁଦ୍ର ଗୁଚ୍ଛ—A small tuft of long hair left in the middle of the head of the followers of Chaitanya.

**ଚଇତନ**—ଗ୍ରା. (ପଦ୍ୟ) ବି. ( ସଂ. ଚୈତନ୍ୟ )—
Chaitana ୧ । ଚେତା; ଚେତନା—1. Consciousness.
চৈতন ୨ । ଜ୍ଞାନ; ଚୈତନ୍ୟ—
चैतन्य 2. Perception; sensation.

କାଳ ସ୍ୱଭାବ ସଙ୍ଗେ ମନ
ଯେ ନଥିବ ଶ୍ରବ ଚଇତନ । ଜଗନ୍ନାଥ. ଭାଗବତ ।

୩ । ବଙ୍ଗଦେଶର ପ୍ରସିଦ୍ଧ ଧର୍ମପ୍ରଚାରକ; ଶ୍ରୀ ଚୈତନ୍ୟ—
3. The name of the religious reformer of Bengal ( taken to be an incarnation of Bishṇu ); Chaitanya.
୪ । ଚୈତନ୍ୟ ବା ଚୈତନ୍ୟଚରଣନାମକ ବ୍ୟକ୍ତିର ଡାକ ନାମ—4. Name by which a person named Chaitanya or Chaitanya-charaṇa is called.
୫ । (ବ୍ୟଙ୍ଗ) ପ୍ରହାର (ଯାହାଦ୍ୱାରା ଚେତନା ଉଦୟ ହୁଏ)—
5. (ironical) A stripe ( as punishment).
(ଯଥା—ଏ ପିଲାଠେଇଁ ଗୋଟିକେତେ ଚଇତନ ବାଜିଗଲେ ତାର ପଢ଼ାପଢ଼ି ପ୍ରତି ମନ ଯିବ । )

**ଚଇତନିଆଁ**—ଦେ. ବି—୧ । ଚୈତ୍ରକାଳୀନ ଦାବାଗ୍ନି—
Chaitaniā͂ 1. Fire breaking out in forests in the month of Chaitra.
୨ । ଚୈତନ୍ୟଭକ୍ତ; ବୈଷ୍ଣବ—2. Baishṇabas.

ବନ ନାଶ କରେ ଚଇତ ନିଆଁ
ବର୍ଣ୍ଣ ନାଶ କରେ ଚଇତନିଆଁ—ଜନଶ୍ରୁତି ।

୩ । ଚୈତନ୍ୟ ନାମକ ବ୍ୟକ୍ତିର ଅନାଦରବ୍ୟଞ୍ଜକ ଡାକନାମ—
3. Name for calling Chaitanya.

**ଚଇତନିଆଁ ଚିତା**—ଦେ. ବି. ( ସଂ. ଚୈତନ୍ୟ + ଚିତ୍ରକ )—ଚୈତନ୍ୟ-
Chaitaniā͂ chitā ପ୍ରବର୍ତ୍ତିତ ବୈଷ୍ଣବସମ୍ପ୍ରଦାୟ କପାଳରେ ଯେଉଁ ପ୍ରକାର ଚିତା ଦିଅନ୍ତି—A mark of sandal paste drawn on the forehead by the followers of Chaitanya.

**ଚଇତନ୍ୟ**—ଗ୍ରା. ବି. ( ସଂ. ଚୈତନ୍ୟ )—ଚଇତନ ( ଦେଖ )
Chaitanya Chaitana ( See )

**ଚଇତ ପୁନେଇଁ**—ଦେ. ବି. ( ସଂ. ଚୈତ୍ରପୂର୍ଣ୍ଣିମା )—ଚୈତ୍ରପୂର୍ଣ୍ଣିମା—
Chaita punei͂ The full-moon of the month of Chaitra.
[ ଦ୍ର—ଏହା କେଉଟମାନଙ୍କର ପର୍ବ; କେଉଟମାନେ ଏଥିରେ ଘୋଡ଼ାର ରୂପରେ ଗୋଟିଏ ଖୋଳ କରି ଅଣ୍ଟା ପର୍ଯ୍ୟନ୍ତ ତାହା ମଧ୍ୟରେ ପଶି ଘୋଡ଼ା ଉପରେ ଚଢ଼ିବାର ଅନୁକରଣ କରି କରେ ନାଚିବାଦ୍ୱାରା ଘୋଡ଼ାକୁ ନଚାନ୍ତି । ସ୍ଥାନେ ସ୍ଥାନେ ଚଇତ-ଘୋଡ଼ାମାନଙ୍କର ମେଳନ ହୁଏ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଗିଆ' ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ର' ଦେଖିବେ

**ଚଇତବାଡ଼ି**—ଗ୍ରା. ବି—ଚୈତ୍ରମାସରେ ବ୍ୟାପିବା ହଇଜା ରୋଗ—
Chaitabārdi Cholera prevailing in the month of Chaitra.
(ଚଇତବାଡ଼ି—ଅନ୍ୟରୂପ)

**ଚଇତା**—ଦେ. ବି. (ସଂ. ଚୈତନ୍ୟ)—ଚୈତନ୍ୟର ଅନାଦରବ୍ୟଞ୍ଜକ
Chaitā ଡାକନାମ—Name for calling Chaitanya.
चैती ଚଇତା । ଚବଡ଼ ଖାଇବ୍ରୁ କି ପଖାଳ ଖାଇବ୍ରୁ ବେଳ ଥାଉଁ ଥାଉଁ କହୁଥା—ଚଗ
ଦେ. ବି. (ସଂ. ଚୈତ୍ର)—୧ । ଚୈତ୍ରମାସ ସମ୍ବନ୍ଧୀୟ—
1. Appertaining to the month of Chaitra.
(ଯଥା—ଚଇତା ପବନ ।)
୨ । ଚୈତ୍ରମାସରେ ଅମଦାନି କରା ହେବା (ଫସଲ)—
2. (crop) Harvested in the month of Chaitra.
(ଯଥା—ଚଇତା ହରଡ଼ ।)

**ଚଇତାଳି**—ଦେ. ବିଣ. (ସଂ. ଚୈତ୍ର)—ଚଇତା (ଦେଖ)
Chaitāli Chaitā (See)

**ଚଇତିଆଳି**—ଦେ. ବିଣ—ଚଇତା (ଦେଖ)
Chaitiāli Chaitā (See)

**ଚଇତଘୋଡ଼ା**—ଗ୍ରା. ବି. (ସଂ. ଚୈତ୍ର+ଘୋଟକ)—ଚୈତ୍ରପୂର୍ଣ୍ଣିମୀରେ
Chaitighordā କେଉଟମାନେ ବତାର ଥାଟ ଉପରେ ଲୁଗା ଘୋଡ଼ାଇ ଯେଉଁ ଘୋଡ଼ାର ରୂପ ନଚାନ୍ତି—
An image of a horse prepared by the fishermen of Orissa and made to dance on the Chaitra full-moon day.

[ ଦ୍ର—କିମ୍ବଦନ୍ତୀ ଅଛି ଯେ ରାମଚନ୍ଦ୍ର ବନବାସ କରିବାକୁ ଯିବା ସମୟରେ ତାଙ୍କୁ ଯେଉଁ ଧୀବର ବା ଦାସରାଜ ଡଙ୍ଗାରେ ବସାଇ ସରଯୂନଦୀକୁ ପାରି କରାଇଥିଲା, ରାମଚନ୍ଦ୍ର ତାକୁ ଗୋଟିଏ ଘୋଡ଼ା ପୁରସ୍କାରରୂପେ ଦେଇ ଯାଇଥିଲେ; ସେହି ଦିନରୁ କେଉଟମାନେ ଘୋଡ଼ାର ରୂପ ନିର୍ମାଣ କରି ପୂଜା କରି ଆସୁଅଛନ୍ତି । କେଉଟମାନେ ବାଉଁଶ ବତାରେ ଘୋଡ଼ାର ପାଦହୀନ ଦେହ ଓ ବେକ ଆକାରର ଗୋଟିଏ ଥାଟ ତିଆରି କରି ତା ଉପରେ ଲୁଗା ଆବି ଘୋଡ଼ାନ୍ତି ଓ ବେକ ଉପରେ ଘୋଡ଼ାମୁହଁ ପରି ଚିତ୍ରିତ ମୁଖାଟିଏ ଲଗାନ୍ତି । ଉକ୍ତ ଚଇତଘୋଡ଼ାର ପିଠିରେ ଗୋଟିଏ କଣା ଥାଏ । ସେହି କଣାବାଟେ ମନୁଷ୍ୟ ଅଣ୍ଟା ପର୍ଯ୍ୟନ୍ତ ପଶି କରି ଭୂମିରେ ଠିଆହୁଏ ଓ ଘୋଡ଼ାରୂପର ଆଗରୁ ଓ ପଛରୁ ଡୋରି ଲଟକା ଯାଏ । ମନୁଷ୍ୟର ଅଣ୍ଟାଠାରୁ ନିମ୍ନ ଅଂଶ ଘୋଡ଼ା ଭିତରେ ଲୁଚି ଥାଏ ଓ ଅଣ୍ଟାଠାରୁ ଉପର ଅଂଶ ଘୋଡ଼ା ଉପରେ ବସିବା ପରି ଅନୁମିତ ହୁଏ । ଏ ବ୍ୟକ୍ତି ନାଚିବା ସଙ୍ଗେ ସଙ୍ଗେ ଘୋଡ଼ା ମଧ୍ୟ ନାଚେ । ଘୋଡ଼ାର ମୁହଁଆଡ଼େ ଲଗାମପରି କନାଡୋରି ବନ୍ଧା ହୋଇଥାଏ । ଉକ୍ତ ଡୋରିକୁ ନାଚିଲାବାଲା ଧରି ଘୋଡ଼ାର ଲଗାମ ଧରିବାର ଅଭିନୟ କରେ । କେଉଟମାନେ ଏହି ପର୍ବ ଉପଲକ୍ଷରେ ଚଢ଼େଇଆ ଓ ଚଢ଼େଇଣୀ ବେଶ ହୋଇ ନାଚନ୍ତି ଓ ଗୀତ ବୋଲନ୍ତି ।]

**ଚଇତପୁନେଇଁ**—ଗ୍ରା. ବି.—(ସଂ. ଚୈତ୍ରପୂର୍ଣ୍ଣିମା)—
Chaiti puneiñ ଚଇତପୁନେଇଁ (ଦେଖ)
Chaita puneiñ (See)

**ଚଇତମତା**—ଦେ. ବି. (ସଂ. ଚୈତ୍ର ଓ ମତ୍ତତା)—ଚୈତ୍ରମାସରେ ବର୍ଷା
Chaiti matā ହେବା—Raining in the month of Chaitra.
ମେଘ ଚଇତମତା କଲା, ଚଉତ ଗାଈ ଦୁହିଁ ଦୁହିଁ ମଲା । ପ୍ରବଚନ ।
ଦେ. ବିଣ.—ଚଇତ୍ରମାସରେ ବର୍ଷିବା ବା ମାତିବା (ମେଘ)—
Raining in the month of Chaitra.

**ଚଇତମାସ**—ଗ୍ରା. ବି. (ସଂ. ଚୈତ୍ର+ମାସ)—ଚଇତ (ଦେଖ)
Chaiti māsa Chaita (See)

**ଚଇତ୍ର**—ଦେ. ବି.—(ସଂ. ଚୈତ୍ର)—ଚୈତ୍ର ୧ (ଦେଖ)
Chaitra Chaitra (1) (See)
ଜ୍ୟେଷ୍ଠ ଯେ ଚଇତ୍ର ପୁଷ ନକ୍ଷେତ୍ର କରିବ ।
ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା ।

**ଚଇତ୍ରରଥ**—ଗ୍ରା. (ପଦ୍ୟ) ବି.—(ସଂ. ଚୈତ୍ରରଥ)—
Chaitra ratha ଚୈତ୍ରରଥ (ଦେଖ)
Chaitra ratha (See)
ବଳଭ ଚଇତ୍ରରଥୁଁ ଏମନ୍ତ ଭାବନା ।
ଉପେ. ବୈଦେହୀଶବିଳାସ ।

**ଚଇନ୍‌**—ବୈଦେ. ବିଣ. (ଆ. ଚୈନ୍‌)—୧ । ସ୍ଥିର; ଶାନ୍ତ—
Chain 1. Quiet; calm; tranquil.
চয়ন, চয়েন ୨ । ନିଶ୍ଚଳ—
चैन 2. Motionless.
(ବେଚଇନ୍‌—ବିପରୀତ) ୩ । ସୁସ୍ଥ—3. Healthy.
ବୈଦେ. ବି.—୧ । ସ୍ଥିରତା—1. Calmness.
୨ । ମନର ସ୍ଥିରତା—2. Calmness of mind; mental tranquility.
୩ । ସ୍ୱାସ୍ଥ୍ୟ—3. Health.
୪ । ସ୍ୱଚ୍ଛନ୍ଦତା; ଆରାମ—4. Ease; relief.
চেইন ବୈଦେ. ବି. (ଇଂ. ଚେନ୍‌)—୧ । ଶିକୁଳି—
चेन 1. A chain.
୨ । ଘଣ୍ଟାର ଶିକୁଳି—2. Watch-chain.
୩ । ଜମି ମାପିବାର ଶିକୁଳି (୧୦୦ ଲିଙ୍କ୍ ବା ୬୬ ଫୁଟ ଲମ୍ବା)—3. A chain of 100 links (66 ft) for measuring land; Gunter's chain.

**ଚଇନ୍‌ଫିଟ୍‌**—ବୈଦେ. ବିଣ. (ଇଂ ଚେନ୍=ଘଣ୍ଟାର ଶିକୁଳି+ଫିଟ୍=
Chain phit ସଜ୍ଜିତ)—ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ କାରୁଗିରର ଉପଯୁକ୍ତ ସାଜସଜ୍ଜାରେ ସଜ୍ଜିତ; ଲମ୍ଫଣାଟପଟାରୂଢ଼—Equipped from top to toe; foppish; gorgeously equipped.

| ୧ | ଇ | ଉ | ର,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇସ୍ | ଉଅ | ଘ୍ନ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ | ଇଅ | ଡ଼ | ନ୍ତ |

**ଚଇନ ମାହାପାତ୍ରେ**—ଦେ. ବି.—୧ । ( ଅବଜ୍ଞାସୂଚକ ବ୍ୟବହାର )
Chaina mahāpātre ସର୍ବେସର୍ବା; ପ୍ରଧାନ ଲୋକ—
(ଚଇନ ମାହାପାତ୍ରେ—ଅନ୍ୟରୂପ) 1. (satirical) A principal personage.
(ଯଥା—ଭୁ ମନେ ମନେ ଭାବୁଅଛୁ ସେ ଭୁ ଏଠେଇଁ ଚଇନ ମହାପାତ୍ରେ ।)
୨ । ( ବ୍ୟଙ୍ଗୋକ୍ତି ) କେହିନୁହେଁ—2. (ironical) A man of no importance.

**ଚଇନ**—ଦେ. ବିଣ. ଓ ବି. (ଅ. ଚୈନ୍)—ସ୍ଥିର—
Chaini Quiet; calm.

**ଚଉ**—ଦେ. ବିଣ. (ସଂ. ଚତୁର୍)—୧ । ଚାରି ସଂଖ୍ୟକ—
Chau 1. Four.
चौ ୨ । ଚାରିଦିଗରେ ଅବସ୍ଥିତ (ଯଥା, ଚଉହଦ୍ଦୀ)—
**चौ, चउ** 2. Situate on four sides.
[ଦ୍ର—ଏହି ପଦ ଚାରି ସଂଖ୍ୟା ବୁଝାଇବା ପାଇଁ ଅନ୍ୟ ବସ୍ତୁବାଚକ ଶବ୍ଦ ପୂର୍ବରେ ଯୁକ୍ତ ହୁଏ । ଯଥା—ଚଉକୋଣ; ଚଉଦୋଳ; ଚଉଭାଗ; ଚଉମଥା; ଚଉବାହା । ଏହି ପଦ ସଂଖ୍ୟାବାଚକ ଦଶକ ଶବ୍ଦ ପୂର୍ବେ ଯୁକ୍ତ ହେଲେ ତହିଁରେ ୪ ସଂଖ୍ୟା ମିଶିବାର ବୁଝାଏ ; ଯଥା—ଚଉଦଶ ସ୍ଥଳରେ ଚଉଦ=୧୪; ଚଉବିଶ ସ୍ଥଳରେ ଚବିଶ =୨୪; ଚଉତିରିଶ ବା ଚଉତିଶ=୩୪; ଚଉଚାଳିଶ ସ୍ଥଳରେ ଚଉରାଳିଶ=୪୪; ଚଉପଚାଶ ସ୍ଥଳରେ ଚଉବନ=୫୪; ଚଉଷାଠି ସ୍ଥଳରେ ଚଉଷଠି=୬୪; ଚଉସତୁରି ସ୍ଥଳରେ ଚଉସ୍ତରି=୭୪; ଚଉଅଶି ସ୍ଥଳରେ ଚଉରାଅଶି=୮୪; ଚଉନବେ ସ୍ଥଳରେ ଚଉରାନବେ=୯୪ । ]
ଦେ. ଅ—ଅମୁକ ସଂଖ୍ୟାରେ ୪ ଦ୍ୱାରା ଗୁଣିତ ହେଲେ (ଯଥା—ଛଅ ଚଉ ବାର ପଣ; ପାଞ୍ଚ ଚଉ କୋଡ଼ିଏ ପଣ—ପଣିକିଆ)—
Multiplied by four.

**ଚଉଅଂଶ**—ଦେ. ବି (ସଂ. ଚତୁର୍ଥାଂଶ)—ଏକଚତୁର୍ଥାଂଶ—
Chau-aṁśa One fourth.

**ଚଉଅଂଶା**—ଦେ. ବିଣ ( ସଂ. ଚତୁରଂଶ; ଚତୁରସ୍ର )—
Chau-aṁśā ୧ । ଚାରିପାଖବିଶିଷ୍ଟ—1. Foursided;
चउअंशा having four sides; quadrilateral.
**चौखूँटा; चौपहल** ୨ । ବର୍ଗକ୍ଷେତ୍ରାକୃତି; ଚାରି ସମକୋଣବିଶିଷ୍ଟ
(ଚଉଅଂଶିଆ, ଚଉଅଂଶୀ -ଅନ୍ୟରୂପ) ( କ୍ଷେତ୍ର )—
2. Square; rectangular.

**ଚଉଆ**—ଦେ. ବି.—ଅଲଈ; ଶିଶୁମାନଙ୍କ ମୁହଁରେ ଓ ଦେହରେ ହେବା
Chauā ଚକାଚକା ନାଲିମନ୍ଦା (ରୋଗ)—
A kind of red round eruption in patches on the body of infants.
ଦେ. ବିଣ. (ସଂ. ଚତୁର୍ଥ)—ଚତୁର୍ଥ—Fourth.
ପ୍ରାଦେ. (ବାଲେଶ୍ୱର) ବି.—ଗୋରୁଙ୍କ ରୋଗବିଶେଷ—
A cattle-disease.

**ଚଉଅଂଶ**—ଦେ. ବିଣ—ଚଉଅଂଶା (ଦେଖ)
Chau-aṁśa Chauaṁśā (See).
(ଚଉଅଂଶିଆ, ଚଉଅଂଶୀ—ଅନ୍ୟରୂପ)

**ଚଉଆଖିଆ**—ଦେ. ବିଣ ( ସଂ. ଚତୁରକ୍ଷ )—
Chau-ākhiā ୧ । ଯେ ଚାରିଆଡ଼କୁ ଆଖି ରଖି କାର୍ଯ୍ୟ କରେ—
(a person) Who acts by having his vision directed to all sides.
୨ । (ଲକ୍ଷଣାର୍ଥ) ଖୁବ୍ ସତର୍କ ଓ ସାବଧାନ—
2. (figurative) Very cautious and watchful.
୩ । ( ଲକ୍ଷଣାର୍ଥ ) କୌଶଳୀ; ବୁଦ୍ଧିମାନ୍—
3. (figurative) Very dexterous; ingenious.

**ଚଉଁର**—ପ୍ରାଦେ (ସମ୍ବଲପୁର) ବି—ବାଉଁଶ ନିଶୁଣିରେ ଲାଗିଥିବା ଆଡ଼ବାଡ଼ି
Chaunra ବା ପଣି (ଯହିଁରେ ଗୋଡ଼ ଦେଇ ଚଢ଼ାଯାଏ)—
The foot-pad of a ladder.
ଦେ. ବି—ଚଉରୀ (ଦେଖ)
Chaurā (See).

**ଚଉଁରିବା**—ଦେ. କ୍ରି—(ସଂ. ଚମର)—ପୁଷ୍ପଗୁଚ୍ଛ ବାହାରିତ ହେବା—
Chaunribā To blossom in clusters.
ଭୁରୁବେଲ ଚଉଁରିଲେ ଅଛ ଉଗ. ଗନ୍ଧ—ପ୍ରାଚୀ. ରହସ୍ୟମଞ୍ଜରୀ ।

**ଚଉଁରୀ** (ଇତ୍ୟାଦି)—ଦେ. ବି—ଚଉରୀ ଇତ୍ୟାଦି (ଦେଖ)
Chaunri (etc) Chauri etc (See).
କହନ୍ତେ କବରୀ କରନ୍ତ ଚଉଁରୀ ଏ ଚାରୁ ଚାମର—ଭଞ୍ଜ. ବୈଦେହୀଶବିଳାସ ।
ନାଳ ଚଉଁରୀରେ ଗେନଗଲେ ଘାଉ ହସ୍ତ ଧରୁ ମହାଦରେ—ରାଧାନାଥ. ପାର୍ବତୀ ।

**ଚଉଁଳ**—ପ୍ରାଦେ (ସମ୍ବଲପୁର) (ଇତର) ବି—ଚାଉଳ—
Chaunla Rice.
[ ଦ୍ର —ସମ୍ବଲପୁର ଅଞ୍ଚଳରେ ଶ୍ରେଣୀଜାତିମାନେ 'ଚାଉଳ' ସ୍ଥଳେ ଚଉଁଳ କହନ୍ତି । କଟକ ପୁରୀ ଆଦି ଜିଲ୍ଲାମାନଙ୍କରେ ବାଉରୀ, କଣ୍ଡରା ପ୍ରଭୃତି ଶ୍ରେଣୀଜାତି 'ଚାଉଳ' ସ୍ଥଳେ 'ଚାଉର' ଉଚ୍ଚାରଣ କରନ୍ତି । ]

**ଚଉଁସର**—ପ୍ରାଦେ (ସମ୍ବଲପୁର) ବି—ଚଉପାର; ପଶାଖେଳ—
Chaunsara The game of dice.

**ଚଉକ**—ଦେ. ବି (ସଂ. ଚତୁଷ୍କ, ପ୍ରା. ଚଉକ୍କ)—
Chauka ୧ । ଚାରିଅଙ୍ଗୁଳ ପରମାଣ—
चौक 1. A measure of the breadth
**चौक** of 4 fingers.
ଚଉକେ ଅନ୍ତର ନୁହଇ କେବେ—କବିସୂର୍ଯ୍ୟ. ବଳଭଦ୍ର ।
୨ । ଚଉରାସ୍ତା; ଚତୁଷ୍ପଥ—
2. A meeting place for 4 roads
୩ । ବହୁ ଲୋକଙ୍କ ମିଳନସ୍ଥଳ; ଗଞ୍ଜ—
3. A market place; a public square.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

୪ । ଗୃହର କାଷ୍ଠସ୍ତମ୍ଭର ମୁଣ୍ଡ ଉପରେ ଥିବା କାଷ୍ଠଖଣ୍ଡ— 4. A piece of wood put on the top of a pillar of a house.

୫ । ଚତୁଷ୍କୋଣବିଶିଷ୍ଟ କ୍ଷେତ୍ର ବା ସ୍ଥାନ— 5. Quadrangle; a square.

୬ । ଚଉକା; ଚାରି ଫୁଟବିଶିଷ୍ଟ ତାସ— 6. A card with four points.

୭ । ଚାରି ପାଖରେ ଘର ଥିବା ଖଞ୍ଜା— 7. A courtyard sorrounded by houses on four sides.

ପ୍ରାଦେ. (ସମ୍ବଲପୁର) ବି—ପାଞ୍ଚଖେଣିଆ ଚାଳଘରର ତଳଖେଣି ଓ ମଥାନ-ଖେଣିର ମଧ୍ୟରେ ଥିବା ଦୁଇପାଖର ଖେଣିଦ୍ୱୟ—The middlemost pair of plates in a five-plated thatched house.

**ଚଉକଠ**—ଦେ. ବି. (ସଂ. ଚତୁଷ୍କାଷ୍ଠ; ପ୍ରା. ଚୌକାଠ୍ଠ)—ଘରର ଦୁଆର-
Chaukaṭha ମୁହଁରେ ବା ଝରକାରେ ଲାଗିଥିବା ଫରମା, ଯହିଁରେ
চৌকাঠ କବାଟ ଲାଗେ—Door-frame; casement of
**चौखुंट; चौखट; चौकठ** a door or window.

**ଚଉକଡ଼ି**—ଦେ ବି. ( ବଣିଆ ଶବ୍ଦ )—ସୁନାରେ ତିଆରି ଗଳାର
Chaukarḍhi ଅଳଙ୍କାରବିଶେଷ—A gold necklace.

**ଚଉକଣି**—ଦେ. ବିଣ. ( ସଂ. ଚତୁଷ୍କୋଣ )—ଚାରିକୋଣବିଶିଷ୍ଟ—
Chaukaṇi Quadrangular.
(ଚଉକଣିଆଁ—ଅନ୍ୟରୂପ)

**ଚଉକତି**—ଦେ. ବି.—ଚାରିଦିଗ; ଚାରିପାଖ—
Chaukati Four sides.

କେ ବାରନାରୀ ପୁରୁ ପ୍ରସର ଚଉକତିକ ଚାହିଁ । —ଗୋପୀକୃଷ୍ଣ ରସକଲ୍ଲୋଳ ।

ଦେ, କ୍ରି. ବିଣ—ଚାରିପାଖେ—On all sides.

ବେଢ଼ିଛନ୍ତି ଚଉକତି ଯୂଥପତି ବଳ ଅଙ୍କ ଦେବେ ସମ୍ରାଟ । —ଉପେ. ବୈଦେହୀଶବିଳାସ ।

**ଚଉକନା**—ଦେ. ବି—ଚାରିଗୋଟି ମୁନ ବା ଶାଖା ଥିବା ଅସ୍ତ୍ରବିଶେଷ—
Chaukanā A weapon having four points or forks.

**ଚଉକନି**—ପ୍ରାଦେ. (ସମ୍ବଲପୁର) ବି.—(ସଂ. ଚତୁଷ୍କୋଣ)—ପତ୍ରନିର୍ମିତ
Chaukani ଚତୁଷ୍କୋଣ ପାତ୍ର; ଚଉପଟା—A square pot made of leaves, sewn together.

**ଚଉକସ**—ଦେ: ବିଣ.—୧ । ଦୃଢ଼ଭାବରେ ଆବଦ୍ଧ; ଶକ୍ତଆଡ଼୍‌ ବନ୍ଧା
Chaukasa ହୋଇଥିବା—1. Strongly fixed or firmly
চউকস attached; firmly tied or secured.
**चौकस** ୨ । ଦୃଢ଼—2. Tight.
(ଚଉକସିଆ—ଅନ୍ୟରୂପ) ୩ । ମଜଭୁତ; ବଳୁଆ—
(ଚଉକସୀ—ବି) 3. Strong.

୪ । ଚତୁର—4. Cunning.

୫ । ସର୍ବକର୍ମନିପୁଣ; ଧୁରନ୍ଧର—5. Very active; pert; square-headed; square; able to do any and every work.

୬ । (ଭୁଲ. ସଂ. ଚକ୍ଷୁଷ୍ମାନ୍‌) ଖୁବ୍‌ ସାବଧାନ; ସତର୍କ— 6. Vigilant; careful; cautious; circumspect; very careful.

୭ । ଯାହାର ସବୁଆଡ଼କୁ ଦୃଷ୍ଟି ଥାଏ; (ଭୁଲ ସଂ. ଚକ୍ଷୁଷ୍ମାନ୍‌) 7. Far-sighted; having always his eyes wide open.

୮ । ଚତୁର୍ଦ୍ଦିଗରେ ସମତଳ— 8. Level on all sides.

**ଚଉକା**—ଦେ. ବି. (ସଂ ଚତୁଷ୍କ; ପ୍ରା. ଚଉକ୍କା)—୧ । ଜଳସଞ୍ଚୟାର୍ଥ
Chaukā ଗାତୁଆ ବା ଗର୍ତ୍ତ—1. A square excavation of water; a small hole dug in the ground for water to ooze and accumulate.

୨ । ଗଞ୍ଜପା ଓ ତାସ ଖେଳରେ ୪ ଗୋଟି ଫୁଟ ଥିବା ପାଉ— 2. The playing-card having four tips on it.

চউকা ୩ । ପାକ ପୂର୍ବରୁ ଲିପାପୋଛା ହୋଇଥିବା ଚୁଲିର ଚାରି
**चौका** ପାଖ ଓ ନିକଟବର୍ତ୍ତୀ ଚିହ୍ନିତ ସ୍ଥାନ—
3. Space near about an oven marked out, cleaned and washed with cowdung-water before cooking.

— [ଦ୍ର—ପଣ୍ଡିମାନେ ଓ ମାରୁଆଡ଼ିମାନେ ଚୁଲିର ଚାରି ପାଖର ଚିହ୍ନିତ ସ୍ଥାନ ଲିପାପୋଛା କରି ସେହି ସୀମା ମଧ୍ୟରେ ନିଜେ ନିଜେ ରୋଷେଇ କରନ୍ତି ଓ ଭୋଜନ କରନ୍ତି । ଅନ୍ୟ କେହି ସେହି ସୀମା ମଧ୍ୟକୁ ପଶି ଗଲେ ସମସ୍ତ ଖାଦ୍ୟ ଅପବିତ୍ର ହୋଇଯାଏ । ]

**ଚଉକାଠ**—ଦେ. ବି—ଚଉକଠ ( ଦେଖ )
Chaukāṭha Chaukaṭha ( See )

**ଚଉକା ଦେବା**—ଦେ. କ୍ରି—ପାକ ପୂର୍ବରୁ ଚୁଲିର ଚାରିପାଖ ଗୋବରରେ
Chaukā debā ଲିପି ପରିଷ୍କାର ଓ ପରିଶୁଦ୍ଧ କରିବା—
চৌকা দেওয়া To mark out and wash a space
**चौका देना** near the cooking oven with cow-dung-water before cooking.

ପ୍ରାଦେ. ( କଟକ ) କ୍ରି—ଦୈନିକ କାର୍ଯ୍ୟ ସ୍ୱରୂପ ବିଶେଷତଃ ପର୍ବପର୍ବାଣିରେ ଘରର ଦୁଆରମୁହଁ ପାଖ ଗୋବରମିଶା ପାଣିରେ ଲିପିବା—To smear the precincts of the door-step with cow-dung and water daily and specially on festive occasions.

| ୧ | ଇ | ଉ | ଋ, ଋ୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ, ଷ | ଙ୍କ | ଇଯ୍ଂ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଝ | ନ୍ହ |

**ଚଉକି**—ଦେ. ବି. ( ସଂ. ଚତୁଷ୍କୀ; ପ୍ରା. ଚଉକ୍କୀ )—
Chauki ୧ । ବସିବା ନିମନ୍ତେ ଚାରିଗୋଡ଼ିଆ କାଷ୍ଠ ବା ପଥରର
চৌকী ଆସନ—1. Stool of wood or stone.
चौकी କାଠିଲଗି ପାଇଁ ଚଉକିରେ ଯାଇ ସଧୀରେ ବିଜୟ କଲେ ।
ଗୋପାଳକୃଷ୍ଣ. ରସବିନୋଦ ।

୨ । ପଛପଟରେ ଆଉଜିବାର ଉପଯୋଗୀ ବାଡ଼ ଥିବା କାଷ୍ଠ ବା ବେତର ଆସନ; ଖୁରସୀ—2. Chair.

[ ଦ୍ର—ପ୍ରାଚୀନ କାଳରେ କେବଳ ଚାରିଗୋଡ଼ିଆ ପଥର ବା କାଠର ବା ବେତବୁଣା ଆସନକୁ ଚୌକି କହୁଥିଲେ, ତହିଁରେ ପଛପଟେ ଆଉଜିବା ପାଇଁ ଆଶ୍ରୟ ରହୁ ନ ଥିଲା । ଏହା କେବଳ ଗାଧୋଇବାବେଳେ ବ୍ୟବହୃତ ହୁଏ ଓ ମୁଦି ଦୋକାନମାନଙ୍କରେ ଦୋକାନୀର ବସିବାରେ ଲାଗେ । କିନ୍ତୁ ବର୍ତ୍ତମାନ ଯୁଗରେ କାଠ-ତିଆରି ଓ ବେତବୁଣା ନାନାପ୍ରକାର ଚଉକି ବ୍ୟବହୃତ ହେଉଅଛି । ଏ ସବୁର ବସିବା ଆସନ ଓ ପୃଷ୍ଠଦେଶର ଆଶ୍ରୟ ବେତ ବା କାଷ୍ଠ ନିର୍ମିତ । କୌଣସି କୌଣସି ଚଉକି ଲୌହରେ ମଧ୍ୟ ନିର୍ମିତ ହେଉଅଛି; କାହିଁରେ ସ୍ପ୍ରିଙ୍ଗ୍ ବା ତୂଳାର ଗଦି ଅଣା ଯାଉଅଛି । ଦୀର୍ଘ ବାହୁଯୁକ୍ତ ଆରାମ ଚଉକି ବା Arm chair ସର୍ବତ୍ର ସୁପରିଚିତ । ]

୩ । କର୍ଣ୍ଣର ଅଳଙ୍କାରବିଶେଷ—
3. A kind of ear-ring.

୪ । ଗ୍ରାମ ବା ନଗର ରକ୍ଷା କରିବା ନିମନ୍ତେ ନିର୍ଦ୍ଦିଷ୍ଟ ସ୍ଥାନ ବା ଚତୁଷ୍ପଥରେ ଅବସ୍ଥିତ ପ୍ରହରୀଙ୍କ ଆଡ୍ଡା; ଫାଣ୍ଡି—
4. Police outpost.

୫ । ଜଗିବା କର୍ମ; ପହରା—
5. Watch; watching; guarding.

୬ । ( ଜାହାଜିଆଭାଷା ) ମାସ୍ତୁଲର ଅଗ୍ରଭାଗରେ ସଂଯୁକ୍ତ ଆସନ; ଯେଉଁଠାରେ ନାବିକମାନେ ବସି ଦୂରବୀକ୍ଷଣ ସାହାଯ୍ୟରେ ଦୂରସ୍ଥ ବସ୍ତୁମାନ ଦେଖନ୍ତି—
6. ( nautical ) A seat attached to the top of the main mast of a ship for sailors taking observation of far off things with the telescope.
ମୁଁ ନାବର ପଛତ ଧରି ଚଉକୀ ଉପରକୁ ଉଠି ଯାଇ ଦୂରବିନ କଷିଦେଲି—
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଚଉକିଆ**—ଦେ. ବି.—ଚଉକିଦାର ( ଦେଖ )
Chaukiā Chaukidāra ( See )
ଦେ. ବିଣ—(ସଂ. ଚତୁଷ୍କ) ଚାରିକୋଣିଆ—Quadrangular.
ସମ୍ମେମୁଖୀ ବ୍ରହ୍ମା ତହିଁ ଚଉକିଆ ସ୍ତମ୍ଭ—ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

**ଚଉକି କରିବା**—ଦେ. କ୍ରି.—ପହରା ଦେବା—
Chauki karibā To watch; to guard.
চৌকীদেওয়া
चौकीदेना

**ଚଉକିଦାର**—ଦେ. ବି. ( ସଂ. ଚତୁଷ୍କ+ଫା. ପ୍ରତ୍ୟୟ. ଦାର୍ )—ଗ୍ରାମ
Chaukidāra ବା ଗୃହରକ୍ଷକ; ପହରାବାଲା—Watchman;
চৌকীদার village-chowkidar.
चौकीदार [ ଦ୍ର—ଏ ଶବ୍ଦ ଇଂରାଜୀଭାଷାରେ ବ୍ୟବହୃତ ହେଲାଣି । ]

**ଚଉକିଦାର ପରେଟ୍**—ଦେ. ବି. ( ଚଉକିଦାର+ଇଂ. ପାରେଡ୍ )—
Chaukidāra paret ଚଉକିଦାରମାନଙ୍କର ପ୍ରେସିଡେଣ୍ଟ୍ ଓ ଥାନା ହାକିମଙ୍କ ନିକଟରେ ସପ୍ତାହର ବା ପକ୍ଷର ନିର୍ଦ୍ଦିଷ୍ଟ ଦିନରେ ଗ୍ରାମରେ ଘଟୁଥିବା ବିଶିଷ୍ଟ ସମ୍ବାଦ ଦେବାରୂପ କର୍ମ—Chowkidars' parade held weekly or fortnightly at the police station and before the President of the chowkidari union respectively.

**ଚଉକିଦାରି**—ଦେ. ବି—୧ । ଚୌକିଦାରର କର୍ମ—
Chaukidāri 1. The duty of a watchman.
চৌকিদারী ୨ । ଚୌକିଦାରର ଚାକିରି—
चौकिदारी 2. The post or service of a watchman.
ଦେ. ବିଣ—ଚଉକିଦାର ସମ୍ବନ୍ଧୀୟ—
Relating to a watchman.

**ଚଉକିଦାରି ଆଇନ୍**—ଦେ. ବି—ବଙ୍ଗର ୧୮୭୦ ସାଲର ୬ ଆଇନ୍,
Chaukidāri āin ଯେଉଁ ଆଇନ୍ ଅନୁସାରେ ବଙ୍ଗ-ବିହାର-ଓଡ଼ିଶାରେ ବର୍ତ୍ତମାନ ଚଉକିଦାରମାନେ ଓ ପ୍ରେସିଡେଣ୍ଟ୍ ଓ ପଞ୍ଚାଏତମାନେ ନିଯୁକ୍ତ ହୋଇଅଛନ୍ତି ଓ ଚଉକିଦାରି ଟିକସ ଆଦାୟ ହେଉଅଛି—The Bengal Village Chowkidari act ( Act 6 of 1870 B. C ).

**ଚଉକିଦାରି ୟୁନିଅନ୍**—ଦେ. ବି. ( ଚଉକିଦାରି+ଇଂ. ୟୁନିଅନ୍ )—
Chaukidāri iunian ଚଉକିଦାରି ଆଇନ୍ ଅନୁସାରେ ଗଠିତ ଗ୍ରାମପୁଞ୍ଜ—Chowkidari union; a union consisting of a group of villages for the adminstration of the Village Chowkidari Act.

**ଚଉକିଦାରି ଟିକସ**—ଦେ. ବି. ( ଚଉକିଦାରି+ଇଂ. ଟାକ୍ସ )—ଚଳି-
Chaukidāri ṭikasa ଟିକସ, ଚଉକିଦାରର ଦରମା ତୁଟାଇବା ନିମନ୍ତେ ଗ୍ରାମସ୍ଥ ପ୍ରତ୍ୟେକ ସକ୍ଷମ ଗୃହସ୍ଥଠାରୁ ଆଦାୟ ହେବା କର—Village-chowkidari tax.

**ଚଉକିଦାରି ପଞ୍ଚାଏତ**—ଦେ. ବି—ଚଉକିଦାରି ଆଇନ୍ ଅନୁସାରେ
Chaukidāri pañchāeta ନିଯୁକ୍ତ ୟୁନିଅନ୍ ବା ଗ୍ରାମପୁଞ୍ଜର ପ୍ରଧାନ ବ୍ୟକ୍ତିମଣ୍ଡଳୀ—A Chowkidari Panchayat; a group of headmen constituted under the Village Chowkidari Act for a Village union.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଚଉକିଦାରି ପ୍ରେସିଡେଣ୍ଟ୍**—ଦେ. ବି. (ଚୌକିଦାର + ଇଂ. ପ୍ରେସିଡେଣ୍ଟ୍)—
Chaukidāri president ଚଉକିଦାରି ଆଇନ୍ ଅନୁସାରେ ଗ୍ରାମ-ପୁଞ୍ଜରେ ନିର୍ବାଚିତ ପଞ୍ଚାଏତମାନଙ୍କର ସଭାପତି; ଶିରପଞ୍ଚ— The President of a Chowkidari union.

**ଚଉକି ଦେବା**—ଦେ. କ୍ରି.—ଚଉକି କରିବା (ଦେଖ)
Chauki debā   Chauki karibā (See)

**ଚଉକିବେଇ**—ପ୍ରାଦେ. (ଗଡ଼ଜାତ) ବି. ସ୍ତ୍ରୀ—ରାଜାମାନଙ୍କ ରକ୍ଷିତା
Chaukibei ସ୍ତ୍ରୀବିଶେଷଙ୍କ ନାମ—A class of concubines.
(ଚଉକିବାଇ—ଅନ୍ୟରୂପ) [ଦ୍ର—ଏମାନଙ୍କୁ ରାଜା ଚଉକିରେ ବସାଇ ଗାନ୍ଧର୍ବ ବିବାହ ବିଧିରେ ସ୍ତ୍ରୀରୂପେ ଗ୍ରହଣ କରନ୍ତି । ଏହିପରି ଫୁଲ ଓ ମାଳ ଉପହାର ଦେଇ 'ଫୁଲବେଇ' ଓ 'ମାଳବେଇ'ଙ୍କୁ ରଜା ରଖନ୍ତି । ]

**ଚଉକୁଣା**—ଦେ. ବିଣ— (ସଂ. ଚତୁଷ୍କୋଣ)—ଚଉକୋଣିଆ (ଦେଖ)
Chaukuṇā   Chaukoṇiā (See)
(ଚଉକୁଣିଆଁ—ଅନ୍ୟରୂପ)

**ଚଉକୁଣି**—ଦେ. ବି. (ସଂ. ଚତୁଷ୍କୋଣ)—ଏକପ୍ରକାର ଖେଳ—
Chaukuṇi   A kind of out-of-door game.
[ଦ୍ର—ଏଥିରେ ୮ ଜଣ ଖେଳନ୍ତି । ଏମାନଙ୍କ ମଧ୍ୟରୁ ୪ ଜଣ ଚାରି କୋଣରେ ଜଗିଥାନ୍ତି ଓ ଅନ୍ୟ ୪ ଜଣ ନିର୍ଦ୍ଦିଷ୍ଟ ସୀମା (ପାଲ) ମଧ୍ୟକୁ ଆସିବାପାଇଁ ସୁବିଧା ଖୋଜୁଥାଆନ୍ତି । ]

**ଚଉକୁଣ୍ଡି**—ଦେ. ବି—ଚଉକୁଣି (ଦେଖ)
Chaukuṇḍi   Chaukuṇi (See)

**ଚଉକୋଣା**—ଦେ. ବିଣ. (ସଂ. ଚତୁଷ୍କୋଣ)—
Chaukoṇā ଚତୁଷ୍କୋଣ; ଯେଉଁ କ୍ଷେତ୍ର ବା ବସ୍ତୁର ୪ଟି କୋଣ
चोकोना   ଥାଏ—Quadrangular.
**चौकोना**
(ଚଉକୋଣିଆ—ଅନ୍ୟରୂପ)

**ଚଉକୋଣି**—ଦେ. ବିଣ. (ସଂ. ଚତୁଷ୍କୋଣ)—
Chaukoṇi   ଚଉକୋଣା (ଦେଖ)
Chaukoṇā (See)
ପ୍ରାଦେ. (ସମ୍ବଲପୁର) ବି—ଚଉକନି (ଦେଖ)
Chaukani (See)

**ଚଉକୋନି**—ପ୍ରାଦେ. (ସମ୍ବଲପୁର) ବି—ଚଉକନି (ଦେଖ)
Chaukoni   Chaukani (See)
ପ୍ରାଦେ. (ସମ୍ବଲପୁର) ବିଣ—ଚଉକଣି (ଦେଖ)
Chaukaṇi (See)

**ଚଉଖାନା**—ପ୍ରାଦେ. (ସମ୍ବଲପୁର) ବି—ଚଉଖାନି (ଦେଖ)
Chaukhānā   Chaukhāni (See)

**ଚଉଖାନି**—ଦେ. ବି—୧ । ଚତୁଷ୍କାକାରରେ ବୁଣା ଯାଇଥିବା ବା ଚିହ୍ନିତ
Chaukhāni ହୋଇଥିବା ବସ୍ତ୍ର—Cloth painted or
**चौखानि**   woven into squares.
୨ । ଚାରି ଭାଷା—2. Four languages.
୩ । ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍ଭିଜ୍ଜ ଏହି ଚାରି ଜାତିର ଜୀବ—2. The four classes of animals born of womb, of eggs, of sweat and of vegetable

**ଚଉଖୁଣ୍ଟ**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ଏହି ଅର୍ଥରେ ହି.
Chaukhunṭa ଚୌଖୁଣ୍ଟ)—ଚଉକାଠ—Door-frame.

**ଚଉଖୁଣ୍ଟା**—ଦେ. ବିଣ—ଚଉଖୁଣ୍ଟିଆ (ଦେଖ)
Chaukhunṭā   Chaukhunṭia (See)

**ଚଉଖୁଣ୍ଟିଆ**—ଦେ. ବିଣ—୧ । ଚାରି ଗୋଟି ଖୁଣ୍ଟବିଶିଷ୍ଟ—
Chaukhunṭiā   1. Having four pillars to
चौखूँट   support it.
**चौखुन्द, चौखुन्टा, चौखुन्टि** ୨ । ଚତୁଷ୍କୋଣ; ଚାରିକୋଣିଆ—
2. Quadrangular.
୩ । ସମଚତୁଷ୍କୋଣ—3. Square.
ଚଉଖୁଣ୍ଟିଆ ସେ ପୁର ହୋଇଛି ନିର୍ମାଣ । ପ୍ରାଚୀ.-କୁଞ୍ଜବିହାରୀ ଗୀତା ।

**ଚଉଗଦି**—ପ୍ରାଦେ. (ସମ୍ବଲପୁର) ବି—
Chaugadi ଚଉହଦ୍ଦି; କୌଣସି ଜମିର ଚାରିଆଡ଼ର ସୀମା—
Boundaries on the 4 sides.

**ଚଉଗୁଣ**—ଦେ. ବିଣ. (ସଂ. ଚତୁର୍ଗୁଣ; ପ୍ରା. ଚଉଗୁଣ)—
Chaturguṇa ଚାରିଗୁଣା; ଚତୁର୍ଗୁଣ; ମୂଳ ସଂଖ୍ୟାକୁ ଚାରିରେ
चौगुन   ଗୁଣିଲେ ଯାହା ହେବ ସେହି ପରିମିତ—
**चौगुना, चौगुन** Fourtimes as much; qurdrupled.
(ଚଉଗୁଣା—ଅନ୍ୟରୂପ)

**ଚଉଗୁନ୍**—ପ୍ରାଦେ. (ସମ୍ବଲପୁର) ବିଣ. (ଣ ସ୍ଥାନରେ ନ ଉଚ୍ଚାରଣ)—
Chaugun   ଚଉଗୁଣ (ଦେଖ)
(ଚଉଗୁନା—ଅନ୍ୟରୂପ)   Chauguṇa (See)

**ଚଉଗୋଡ଼ିଆ**—ଦେ. ବିଣ—ଚାରି ପାଦବିଶିଷ୍ଟ; ଚତୁଷ୍ପଦ—
Chaugorḍia   Having four legs; quadruped.
चारपाया   ଦେ.ବି—ଉଚ୍ଚ ଛାତ ଓ କାନ୍ଥ ଆଦିକୁ ଝାଡ଼ିବା
**चौगोड़िया, चौगोड़ा** ବା ଚୂନ ସଫେଦ କରିବା ବ୍ୟକ୍ତି ଚଢ଼ିବା ପାଇଁ ୪ଟି ଗୋଡ଼ ଲଗା ଯାଇ ଥିବା ଉଚ୍ଚ କାଠର ଘୋଡ଼ାଟ—
A tall stool used by persons cleansing or whitewashing high roofs or walls.

**ଚଉଘରା**—ଦେ. ବି. (ସଂ. ଚତୁର୍ + ଘର)—
Chaugharā (କଣିଆ ଶବ୍ଦ) ଚାରି ଗୋଟି ଘରଥିବା ରୂପାରେ
**चौघड़ा**   ତିଆରି ମସଲା ରଖିବାର ପାତ୍ର ବା ଗୁଣ୍ଡଗଡ଼ା—
A plate with 4 apartments for keeping spices.
ପ୍ରାଦେ. (ସମ୍ବଲପୁର) ବି—ଚାରିଆଡ଼େ ଘର ରହିଥିବା ଅଗଣା—
A courtyard enclosed by houses on four sides.

| ୧ | ଘ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଅ | ଉଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଏ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟିଂ | ଇଅ | ଡ଼ | ନ |

ଚଉଗୁଲ—ଦେ. ବ—ଚଉଶାଳା ( ଦେଖ )
Chauchāli Chauśālā ( See )
(ଚଉଗୁଲଅ—ଅନ୍ୟରୂପ)

ଚଉଛକ—ଦେ. ବ.—ଚଉରାସ୍ତା (ଦେଖ)
Chauchhaka Chaurāstā (See)

ଚଉଛକି—ଦେ. ବ.—ଚଉରାସ୍ତା (ଦେଖ)
Chauchhaki Chaurāstā (See)
ଦେ. ବିଣ.—ଯେଉଁ ରାସ୍ତା ଚାରି ରାସ୍ତାର ମିଳନ ସ୍ଥଳ ବା ଛକରୁ ବାହାରି ଅଛି—(a road) Which comes out of the meeting place of 2 cross-roads.

ଚଉଠ—ଦେ. ବ. (ସଂ. ଚତୁର୍ଥ; ପ୍ରା. ଚଉତ୍ଥ)—୧ । ଚାରିଭାଗରୁ ଏକ
Chauṭha ଭାଗ—1. One fourth; $\frac{1}{4}$.
चउठ, चउठा ଚଉଠେ କ ରଖିଲ ସେ ସ୍ନେହକୁ ।
चौथ, चौथाई କବିସୂର୍ଯ୍ୟ, ବକିତା ।
୨ । ପୂଜକ ଆପଣା ପାରଶ୍ରମିକ ସ୍ୱରୂପ ନେବା ପୂଜାଦ୍ରବ୍ୟର ଏକ ଚତୁର୍ଥାଂଶ—2. The fourth of the offering taken by the priest who officiates at the function.
। ଜମିଦାରଙ୍କର ପ୍ରଜାଠାରୁ ପ୍ରାପ୍ୟ ଜମିରୁ ଉତ୍ପନ୍ନଦ୍ରବ୍ୟର ଏକଚତୁର୍ଥାଂଶ—3. The quarter of the produce of a holding payable as rent to the landlord.

ଚଉଠା—ଦେ. ବ.—(ସଂ. ଚତୁର୍ଥ, ପ୍ରା. ଚଉତ୍ଥ)—
Chauṭhā ୧ । ଚଉଠ (ଦେଖ)
चउठा 1. Chauṭha (See)
चौथा ୨ । (ମାସର) ୪ର୍ଥ ଦିବସ ବା ତାରିଖ—
2. The 4th day (of a month).
ଦେ. ବିଣ— ଚତୁର୍ଥ—Fourth.

ଚଉଠି—ଦେ. ବ. (ସଂ. ଚତୁର୍ଥୀ; ପ୍ରା. ଚଉତ୍ଥି)—୧ । ଶୁକ୍ଳମାନ ପକ୍ଷର
Chauṭhi ଚତୁର୍ଥୀ ତିଥି—1. The fourth day of a
चउठी, चउथी lunar fortnight.
चौथ, चौथी ୨ । ଶିଶୁଜନ୍ମର ଚତୁର୍ଥ ଦିବସର କୃତ୍ୟ—
2. Ceremony performed on the fourth day of a child's birth.
୩ । ବିବାହର ଚତୁର୍ଥ ଦିବସ ଓ ସେଦିନ କର୍ତ୍ତବ୍ୟ ଉତ୍ସବାଦି—3. The fourth day after marriage and the ceremony thereof.
ବୈଦେହୀଙ୍କ ବଡଙ୍କ ଚଉଠି ଉତ୍ସବ । ଉଷ. ବୈଦେହୀଶବିଳାସ ।
[ ଦ୍ର—ଚଉଠି ଦିନ ବରକନ୍ୟା ଏକାସନରେ ବସି ବର ହୋମ କରନ୍ତି, ବର ଓ କନ୍ୟା ଦୁହେଁ କାଟିଚ ଝୁଲୁଛି ପିନ୍ଧନ୍ତି ଓ ଏକକ ନିକଟବର୍ତ୍ତୀ କୌଣସି ଜଳାଶୟକୁ ଯାଇ ସେଠାରେ ସ୍ନାନ କରନ୍ତି । ]

୪ । ମାସର ଚତୁର୍ଥ ଦିବସ—
4. Fourth day of the month.

ଚଉଠି ବେଭାର—ଦେ. ବ.—ବିବାହର ଚତୁର୍ଥ ଦିନ କନ୍ୟାର ବାପ-
Chauṭhi bebhāra ଘରେ ଦମ୍ପତି ଥିଲେ ବରର ବାପଘରୁ କିମ୍ବା
( ଚଉଠି ବୋଝ—ଅନ୍ୟରୂପ ) ବରର ବାପ ଘରେ ଦମ୍ପତି ଥିଲେ କନ୍ୟାର ବାପଘରୁ ପଠାଯିବା ଚତୁର୍ଥୀକର୍ମର ଉପକରଣ ପଦାର୍ଥମାନ—A present of articles required for the ceremonies performed on the fourth day of the marriage, sent to the house where the newly married couple stay on that day, by the father of the bride or bridegroom (as the case may be).

ଚଉଠେ—ଦେ. ବ. ଓ ବିଣ.—ଏକ ଚତୁର୍ଥାଂଶ ମାତ୍ର—
Chauṭhe One fourth only.
ପ୍ରାଦେ. (ସମ୍ବଲପୁର) ବ.—ଚଉଠୀ (ଦେଖ)
Chauṭhi (See)

ଚଉଡ଼ା—ଦେ. ବ.—(ସଂ. ଚର୍ପଟ=ବିପୁଳ, ସ. ଚର୍ବଟ =ଚେପଟା)—
Chaurḍā ପ୍ରସ୍ଥ; ଓସାର, ଆଡ଼—
चउड़ा, चौड़ा Breadth; width.
चौड़ाई
(ଲମ୍ବା—ବିପରୀତ)
चउडा ଦେ. ବିଣ—୧ । ଓସାର; ବିସ୍ତୀର୍ଣ୍ଣ—
चौड़ा 1. Wide; extensive.
ସକଳ ଦେଶର ଭୂମି ହୋଇଛି ଚଉଡା । ପ୍ରାଚୀ. ଚିତ୍ରକଳାଭୂଷଣଗୀତ ।
୨ । ପ୍ରସ୍ଥଯୁକ୍ତ; ପ୍ରଶସ୍ତ—2. Broad.

ଚଉଡ଼ାଇ—ଦେ. ବ—ପ୍ରସ୍ଥ—Breadth; width.
Chaurḍāi
चउड़ा
चौड़ाई

ଚଉଡ଼ାଇବା—ଦେ. କି—୧ । ଚଉଡ଼ା କରିବା—
Chaurḍāibā 1. To widen.
चउड़ान ୨ । ତଡ଼କାଇବା; ଫଟାଇବା—2. To crack.
चौड़ाना ଚଉଡ଼ାଇ ଦେଇକ ସ୍ନେହ ଘଟ । କବିସୂର୍ଯ୍ୟ. ବକିତା ।

ଚଉଡୁଲା—ପ୍ରାଦେ. ( ସମ୍ବଲପୁର ) ବ. ( ଭୁଲ. ହି. ଚଂଡୋଲ୍;
Chaudulā ଚୌଡୋଲ୍ )—ଚଉଦୋଳ ( ଦେଖ )
Chaudolā ( See )

ଚଉଡୋଳ—ଗ୍ରା. ବ—ଚଉଦୋଳ ( ଦେଖ )
Chaudola Chandola ( See )
(ଚଉଡୋଲା—ଅନ୍ୟରୂପ)

ଚଉଡ—ଦେ. ବ. ( ସଂ. ଚତୁଷ୍ଟ- M. W. )—( ଲୁଗାଆଦିର)
Chauta ଚାରିଭାଙ୍ଗ—Folding into four folds.

ସାଧାରଣ ଲୋକେ ଅପର ପୃଷ୍ଠାରେ ୨,୭ଠ ୧ ଚକ୍ଷ୍ଣିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷ୍ଣିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷ୍ଣିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚକ୍ଷ୍ଣିତ ବର୍ଣ୍ଣ ବା ମାତ୍ରାଯୁକ୍ତ କେ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଦେଖିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଗିଧ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ଚାବପାଟ ଦେ. ବିଣ—ଚାରିଭାଗରେ ଭଙ୍ଗା ବା ସଙ୍କୁଚିତ ହୋଇଥିବା (ଲୁଗା)—Four folded; quadrupled; folded into four; having four folds.
**चउपत**

**ଚଉତନା**—ଦେ ବି. (ସଂ. ଚତୁସ୍ ଓ ତନ୍; କର୍ମ୍ମ ତନ ଧାତୁ = ବିସ୍ତାର କରିବା)—୧ । ଚାରିକୋଣିଆଁ ରୁମାଲ ବା ଚାଦର—(ଚଉତୁନା—ଅନ୍ୟରୂପ) 1. A square napkin or wrapper.
Chautanā
**चौतनी; चौतनियाँ**

୨ । ଯେଉଁ ମରହଟ୍ଟୀ କୁରୁତା ବା ଅଙ୍ଗାରେ ବୋତାମ ପରିବର୍ତ୍ତେ ଦୁଇପାଖେ ଚାରିଖଣ୍ଡ ଫିତା ଲାଗିଥାଏ — 2. A coat with 4 tapes on two sides for fastening the flaps.

୩ । ଶିଶୁମାନଙ୍କ ମୁଣ୍ଡର ଟୋପି ଯହିଁର ଦୁଇପାଖରେ ଚାରି ଖଣ୍ଡ ଫିତା ଲାଗିଥାଏ—3. Infant's cap to which 4 tapes are attached.

**ଚଉତରଫ**—ଦେ. ବି—ଚାରି ଦିଗ—Four sides.
Chautaraph ଦେ. କ୍ରି. ବିଣ—୧ । ଚାରିଦିଗରେ—1. On four sides.
चौदिग
**चौतरफ** ୨ । ସର୍ବତ୍ର; ସବୁଠାରେ—2. Throughout.

**ଚଉତରା**—ଦେ. ବି. (ସଂ. ଚତ୍ୱର; ଚତ୍ୱାଳ)—୧ । ଗୃହକମ୍ମ, ବସିବା ପାଇଁ ପ୍ରସ୍ତୁତ ମେଲା ଚତୁଷ୍କୋଣ ପୀଠ—1. A raised pucca square platform.
Chautarā
চউতারা; চবুতারা
**चबुतरा; चौंरा; चउतरा** ୨ । ପକ୍କା ତୁଳସୀଚଉରା—
(ଚଉତୁରା—ଅନ୍ୟରୂପ) 2. A raised pucca platform to plant the Holy Basil plant

୩ । ଗୌବଚ୍ଛା; ଗୃହସ୍ଥର ବ୍ୟବହାରାର୍ଥ ଜଳ ସଂଗ୍ରହ କରି ରଖିବା ନିମନ୍ତେ ପ୍ରସ୍ତୁତ ଚତୁଷ୍କୋଣ ଜଳକୁଣ୍ଡ—3. A square reserevoir to store water for daily household use or consumption.

**ଚଉତଲା**—ଦେ. ବି. (ସଂ. ଚତୁସ୍ତଳ)—ଚଉତାଲା ( ଦେଖ )
Chautalā Chautālā ( See )

**ଚଉତା**—ଦେ. ବି ଓ ବିଣ—ଚଉତି ( ଦେଖ )
Chautā Chauta ( See )

**ଚଉତାଇବା**—ଦେ. କ୍ରି—୧ । ଚଉତିବାର ଣିଜନ୍ତରୂପ—1. Causative of Chautibā.
Chautāibā

ଚଉତାଇ ରଖିଥିଲେ ଯାହା ଯତନରେ । ମଧୁସୂଦନ. ଉତ୍କଳଗାଥା ।

୨ । ଚଉତିବା (ଦେଖ ) 2. Chautibā ( See )

**ଚଉତା ଚଉତି**—ଦେ. ବି. (ସଂ. ଚତୁଷ୍ଟୟ)—(ଲୁଗାକୁ) ଚାରିଭାଗରେ ଉତ୍ତମରୂପେ ଭାଙ୍ଗିବା—Folding (cloth) into four folds.
Chautā chauti

ଦେ. ବିଣ—ଚାରିଭାଗ ହୋଇ ଉତ୍ତମରୂପେ ଭଙ୍ଗା ହୋଇଥିବା—Nicely folded into four.

**ଚଉତାରା**—ଦେ. ବି—୧ । (ସଂ. ଚତ୍ୱର)—ଚଉତରା (ଦେଖ) 1. Chautarā (See).
Chautārā

୨ । (ସଂ. ଚତୁସ୍+ତନ୍ତ୍ର) ଚାରି ତାର ଲାଗିଥିବା ତନ୍ତ୍ରୀ—2. A four-stringed musical instrument.

**ଚଉତାରି**—ଦେ. ବିଣ (ସଂ. ଚତ୍ୱର)—୧ । ବସ୍ତ୍ର ଚତୁଷ୍କ ଆକାରରେ ବୁଣା ହୋଇଥିବା ( ଲୁଗା )—1. (cloth) Woven into squares.
Chautāri

୨ । କଳକଣ୍ଠବର୍ତ୍ତୀ ଦୁଇଦୁଇ ସୂତାରେ ଏକତ୍ର ବୁଣା ଯାଇଥିବା (ମସିଣା) 2. (mat) Woven with 2 strings at a time.

**ଚଉତାଳ**—ପ୍ରାଦେ (ସମ୍ବଲପୁର) ବି (ସଂ. ଚତୁସ୍ତଳ)—ଦେବତାଙ୍କ ରଥର ଚାରିପାଖରେ ବୋମାଦାଳ ପରି ବୁଲିଥିବା କାଠର ସ୍ତର—A roof or upper story raised on the 4 sides of a Deity's car.
Chautāla

ତହିଁର ଦୁଆରେ ଚଉତାଳ ଛତ ଅଛି—ପ୍ରାଚୀ. ବ୍ରହ୍ମନଟବଂଶଗୀତା ।

চউতালা ଦେ. ବି (ସଂ. ଚତୁସ୍ତାଳ) - ମୃଦଙ୍ଗର ତାଳବିଶେଷ—Name of a measure accompanying the striking of the Mrudanga drum.
**चौताल**

[ଦ୍ର—ଏଥିରେ ୭ ଦୀର୍ଘ ବା ୧୨ ଲଘୁ ମାତ୍ରା ଥାଏ ଓ ୪ ଆଘାତ ଓ ୨ ଶୂନ୍ୟ ଥାଏ; ଏଥିର ଉତ୍କୃଷ୍ଟ—ଧାଧାଧିନ୍‌ତାକତା, ଗଂଦ୍ଧିନ୍‌ତା ତେଟେକତା ଗେଦ୍ଧୀନ୍—ହି. ଶବ୍ଦସାଗର । ]

**ଚଉତାଲା**—ଦେ. ବି (ସଂ. ଚତୁସ୍ତଳ)—୧ । ଚାରିତଳବିଶିଷ୍ଟ କୋଠା—1. Four-storied building.
Chautālā
চৌতালা; চৌতলা ୨ । ଚତୁର୍ଥ ତଳ—2. Fourth story of a building.
**चौताला; चौमहला**

**ଚଉତି**—ପ୍ରାଦେ (ଗଡ଼ଜାତ) ବି—ଚଉପଟା ବା ପତ୍ରର ଠୋଲା—A pot made of leaves sewn together.
Chauti

**ଚଉତିବା**—ଦେ. କ୍ରି ( ସଂ. ଚତୁଷ୍ଟୟ—M. W.)—ବସ୍ତ୍ରାଦିକୁ ଚାରିଭାଗ ବା ୪ ପରସ୍ତ କରି ସଜାଡ଼ିବା—To fold a cloth fourfold.
Chautibā
চাবপাট করা
**चउपताना; चउपरताना** ଯୋଉଛି ବୁଣାଗଲା ବାଦ ଖାରଆ ଖାକୁ ଓ.ଏ ଯାଏ ଚଉତଲା—ଫକୀରମୋହନ. ଛମାଣଆଠଗୁଣ୍ଠ ।

**ଚଉତିରିଶ**—ଦେ. ବି (ସଂ. ଚତୁସ୍ତ୍ରିଂଶ )—୩୪ ସଂଖ୍ୟା—Thirty four.
Chautirisa
চৌত্রিশ ବିଣ—୩୪ ସଂଖ୍ୟକ—Numbering thirty-four.
**चौतीस**

ଚଉତିରିଶି, ଚଉତିଶ, ଚଉତିଶି —ଅନ୍ୟରୂପ

**ଚଉତିରିଶାଶଏ**—ଦେ. ବି—( ସଂ. ଚତୁସ୍ତ୍ରିଂଶୋତ୍ତରଶତ )—ଏକଶତ ଚଉତିରିଶ; ୧୩୪—One hundred thirty-four; 134.
Chautirisāsae

ଚଉତିରିଶାଶହେ, ଚଉତିଶାଶଏ, ଚଉତିଶାଶହେ —ଅନ୍ୟରୂପ

[ ଦ୍ର—ଏହିପରି ଚଉତିରିଶାବୃଇଶ ହୁଏ । ]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଞ୍ଚ | ଞ୍ଜ | ଣ୍ଟ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଜ୍ଞ | ହ୍ନ |

ଚଉତିଶା—ଦେ. ବି ( ସଂ. ଚତୁସ୍ତ୍ରିଂଶ )—କ ଠାରୁ କ୍ଷ ପର୍ଯ୍ୟନ୍ତ କ୍ରମରେ
Chautiśā · ଆଦ୍ୟ ଅକ୍ଷର ଯୁକ୍ତ ହୋଇ ରଚିତ ହୋଇଥିବା ୩୪ପଦ-
ବିଶିଷ୍ଟ ପଦ୍ୟ; କଉଁଷ—Abecedarian poem;
a poem consisting of 34 couplets beginning with the 34 letters of the alphabet from ka to ksha successively.

[ ଦ୍ର—ଏଥିରେ ସାଧାରଣତଃ ପଦର ଆଦ୍ୟରେ ଙ ଅକ୍ଷର ସ୍ଥାନରେ ନ, ଞ ଅକ୍ଷର ସ୍ଥାନରେ ନ, ଣ ଅକ୍ଷର ସ୍ଥାନରେ ଅ, କ୍ଷ ସ୍ଥାନରେ ଛ ଆଦ୍ୟବର୍ଣ୍ଣଯୁକ୍ତ ଶବ୍ଦ ବସିଥାଏ । ]

ଚଉଥ—ଦେ ବି (ସଂ. ଚତୁର୍ଥ)—୧ । ଏକଚତୁର୍ଥାଂଶ; ଚତୁର୍ଥ ଭାଗ—
Chautha 1. A fourth part; a quarter.
চৌথ ୨ । ମରହଟ୍ଟାମାନେ ମୁସଲମାନ୍ ଶାସିତ ବଙ୍ଗବିହାରଓଡ଼ିଶାରୁ
चौथ; चौथेया ଆଦାୟ କରୁଥିବା କର—2. A fourth part of the land revenue which the Marhattas used to collect from the tenants of Bengal, Bihar and Orissa under Mahomedan rule.

[ ଦ୍ର—ମରହଟ୍ଟାମାନେ ଓଡ଼ିଶା ଅଧିକାର କରି ପ୍ରଜାମାନଙ୍କ ଠାରୁ ନିର୍ଦ୍ଦିଷ୍ଟ ଭୂମିରାଜସ୍ୱର ¼ ଅଂଶ ଗ୍ରହଣକରି ଅବଶିଷ୍ଟ ଜମିଦାରମାନଙ୍କ ପାଇଁ ଛାଡ଼ି ଦେଉଥିଲେ, ତେଣୁ ଏହାକୁ 'ଚଉଥ' କୁହା ଯାଉଥିଲା । ଶିବଜୀଙ୍କ ଅମଳରେ ମରହଟ୍ଟାମାନେ ମଧ୍ୟ ଅନ୍ୟ ରାଜାମାନଙ୍କ ରାଜ୍ୟକୁ ଆକ୍ରମଣକରି ଉକ୍ତ ରାଜ୍ୟରୁ ଚୌଥ ଆଦାୟ କରୁଥିଲେ । ମରହଟ୍ଟାମାନଙ୍କ ଲୁଟପାଟ ଓ ଅତ୍ୟାଚାରରୁ ରାଜ୍ୟକୁ ରକ୍ଷା କରିବା ପାଇଁ ଭିନ୍ନ ରାଜ୍ୟର ରାଜାମାନେ ମଧ୍ୟ ସେମାନଙ୍କ ରାଜ୍ୟରୁ ମରହଟ୍ଟାମାନଙ୍କର ଚୌଥ ଆଦାୟ କରିବାର ଅଧିକାର ମରହଟ୍ଟାମାନଙ୍କୁ ସନନ୍ଦ ଦ୍ୱାରା ଅର୍ପଣ କରୁଥିଲେ । ]

୩ । କୌଣସି ରୟତି ଜମି ବିକ୍ରି ହେଲେ ଜରସମନର ¼ ଅଂଶ, ଯାହାକି ଖରିଦଦାର ଜମିଦାରଙ୍କୁ ପ୍ରେସମ ଦେଇ ଆପଣା ନାମ ଦାଖଲଖାରଜ କରାଏ—
3. Mutation fee, being ¼ of the consideration money paid to a Zamindar to register the name of the purchaser of a royati holding.

ଚଉଥା—ପ୍ରାଦେ (ସମ୍ବଲପୁର) ବି ( ସଂ. ଚତୁର୍ଥ )—୧ । ଚତୁର୍ଥାଂଶ—
Chauthā 1. One fourth.
୨ । ମାସର ୪ର୍ଥ ଦିନ ବା ତାରିଖ—
2. The fourth day of a month.
ପ୍ରାଦେ. (ସମ୍ବଲପୁର) ବିଣ—ଚତୁର୍ଥ—Fourth.

ଚଉଦ—ଦେ.ବି ଓ ବିଣ (ସଂ. ଚତୁର୍ଦ୍ଦଶ; ପ୍ରା.ଚଉଦ୍ଦହ)—୧୪ ସଂଖ୍ୟା—
Chauda Fourteen.
চৌদ, চৌদ্দ
चौदह

ଚଉଦନ୍ତା—ଦେ. ବିଣ (ସଂ. ଚତୁର୍+ଦନ୍ତ)—୧ । ଯେଉଁ ବଳଦ ବା
Chaudantā ଘୋଡ଼ାର କେବଳ ୪ଟି ମାତ୍ର ଦାନ୍ତ ଉଠିଅଛି,
चौदन्त ଅର୍ଥାତ୍ ଯେ ପୂର୍ଣ୍ଣ ଯୁବାବସ୍ଥା ପ୍ରାପ୍ତ ହୋଇ ନାହିଁ;
ଯେଉଁ ଘୋଡ଼ା ବା ବଳଦ ଚାରିଟି ଦାନ୍ତ ଅଛି—
1. (a horse or bullock) Which has got only four teeth come out; not yet full grown.
୨ । ଚାରିଗୋଟି ଦନ୍ତବିଶିଷ୍ଟ (ହାତୀ)—
2. (an elephant) Having four teeth or tusks.
ଦେ. ବି—ଶ୍ୟାମଦେଶର ଏକଜାତୀୟ ହାତୀ ( ଏମାନଙ୍କର ୪ଟି ଦାନ୍ତ ବାହାରେ—
Four-tusked elephant of Siam in Burma.

ଚଉଦ ପହଣ୍ଡିଆ—ଦେ. ବି—ସାତପାହୁଣ୍ଡିଆ ଖେଳ ପରି ଏକପ୍ରକାର
Chauda pahaṇḍiā ଖେଳ—A kind of outdoor game;
( ଚଉଦ ପାହୁଣ୍ଡିଆ—ଅନ୍ୟରୂପ ) a contest at running.

[ ଦ୍ର—ପିଲାମାନେ ବାଲିଗୁଡ଼ାଏ ଗଦା କରି ତହିଁରେ ଖଣ୍ଡେ ବାଡ଼ି ପୋତି ଦିଅନ୍ତି ଓ ସେହି ବାଡ଼ିଠାରୁ ୧୪ ପାହୁଣ୍ଡ ମାପି ଖେଳାଳିମାନେ ଦୂରରେ ଠିଆ ହୁଅନ୍ତି । ସମସ୍ତେ ଠିଆ ହେଲା ପରେ ଖେଳର ବିଚାରପତି ୩ଟି ତାଳି ମାରିଦିଅନ୍ତି ଓ ଦୂରରେ ଠିଆ ହେବା ପିଲାମାନଙ୍କ ମଧ୍ୟରୁ ୩ଟି ତାଳିମାରି ଶେଷ ହେବା ସମୟକୁ ଯେଉଁ ଖେଳାଳି ଆସି ସେ ବାଡ଼ିକୁ ପ୍ରଥମେ ସ୍ପର୍ଶ କରେ ସେ ଜିତେ । ଏଥିରେ ଦୂରତ୍ୱ ମାପିବାରେ ପ୍ରକାରଭେଦ ଅଛି । ]

ଚଉଦ ପୁରୁଷ—ଦେ. ବି. (ସଂ. ଚତୁର୍ଦ୍ଦଶ ପୁରୁଷ)—ମନୁଷ୍ୟର ପୂର୍ବବର୍ତ୍ତୀ
Chauda purusha ୭ ପୁରୁଷ ଓ ପରବର୍ତ୍ତୀ ୭ ପୁରୁଷ—
চোদ্দপুরুষ 7 generations above and 7 generations
चौदहपुरुष below a person.

ଚଉଦପୋଇ—ଦେ. ବି—ଚତୁର୍ଦ୍ଦଶପଦୀ କବିତା ( ଦେଖ )
Chaudapoi Chaturddaśapadī kabitā ( See )

ଚଉଦ ବିଶ୍ୱା—ଦେ. ବି—୧ । କୌଣସି ରୋଗ ବା ବିପଦ ଦ୍ୱାରା ବିଶେଷ
Chauda biśwā ଭାବରେ ଆକ୍ରାନ୍ତ ହେବା; ଅତି ଆକ୍ରାନ୍ତ ଅବସ୍ଥା-
1 Great distress.
ନିଶ୍ୱାସ ବନ୍ଦ ହୋଇ ପେଟ ଫୁଲିଲା ଚଉଦବିଶ୍ୱା ହେଲାଣି—
ନୀଳକଣ୍ଠ, ପିଲାଙ୍କ ରାମାୟଣ ।
୨ । ଦୁର୍ବିସହ ଅବସ୍ଥା—2. Unbearable condition.

ଚଉଦ ବ୍ରହ୍ମାଣ୍ଡ—ଦେ. ବି—ସପ୍ତପାତାଳ ଓ ସପ୍ତସ୍ୱର୍ଗ—Seven nether
Chauda brahmāṇḍa worlds and seven heavens.
ସପ୍ତପାତାଳ ନବଖଣ୍ଡ
ଅଶେଷ ଚଉଦ ବ୍ରହ୍ମାଣ୍ଡ—ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।

ଚଉଦ ମାଦଳ—ଦେ. ବି—ପୁରୀ ସହରରେ ଥିବା ଚୈତନ୍ୟଭକ୍ତ
Chauda mādaḷa ସମ୍ପ୍ରଦାୟଗଣ ଚଉଦଖଣ୍ଡି ମାଦଳ ବା ମୃଦଙ୍ଗ ଓ ଝାଞ୍ଜ ବଜାଇ ନଗର ଓ ଜଗନ୍ନାଥଙ୍କ ବେଢ଼ାରେ କରିବା ସଂକୀର୍ତ୍ତନ—A procession of the followers of

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଚାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

Chaitanya round the compound of the Temple and in the town of Puri accompanied by 14 drums and cymbals.

**ଚଉଦଳ**—ଦେ. ବି. ( ସଂ. ଚତୁର୍ଦ୍ଦଳ ବା ଚତୁର୍ଦ୍ଦୋଳ )—
Chaudaḻa ୧ । ଚଉଦୋଳ ( ଦେଖ )
1. Chaudoḻa ( See )
୨ । ଚାରିଜଣ ଖେଳିବା ଖେଳ—
2. A game played by four players.

**ଚଉଦଳା**—ଦେ. ବି—ଚଉଦୋଳ ( ଦେଖ )
Chaudaḻā Chaudoḻa ( See )

**ଚଉଦାନୀ**—ଦେ. ବି. (ସଂ. ଚତୁର୍ଧାନ୍ୟା; ଚତୁର୍ଦ୍ଧାନିକା)—ଧାନ ଆକାରର
Chaudāni ୪ଟି ମୁକ୍ତାର ଦାନା ଝୁଲୁଥିବା କର୍ଣ୍ଣଭୂଷଣ—
চৌদানী An earring having 4 long pearls ( like
चौदानी paddy ) as pendants.

**ଚଉଦିଗ**—ଦେ. ବି. ( ସଂ. ଚତୁର୍ଦ୍ଦିକ୍ )—ଚାରିଆଡ଼ ( ପୂର୍ବ, ପଶ୍ଚିମ,
Chaudiga ଉତ୍ତର ଓ ଦକ୍ଷିଣ )—Four corners of the
চৌদিক; চৌদিগ globe; four points of the compass.
चारओर ଚଉଦିଗ ଘୋଟିଥିଲା ଅନ୍ଧକାର
ନାରବ ନିଶ୍ଚଳ ଥିଲା ଏ ସଂସାର—ମଧୁସୂଦନ. ଛନ୍ଦମାଳା ।
କ୍ରି. ବିଂ—ସବୁଆଡ଼େ—On all sides.

**ଚଉଦିଗା**—ଦେ. ବିଣ. ( ସଂ. ଚତୁର୍ଦ୍ଦିକ୍ )—ଚତୁର୍ଦ୍ଦିଗ ଘେରିଥିବା;
Chaudigā ଚତୁର୍ଦ୍ଦିଗ୍‌ବ୍ୟାପୀ—
Surrounding on all sides.
( ଯଥା—ଏଥର ଓଡ଼ିଶାରେ ଚଉଦିଗା ବରଷା ହୋଇଅଛି । )
ଦେ. ଅ—ଚାରିଆଡ଼େ; ସବୁଆଡ଼େ—
On all sides.

**ଚଉଦିନ**—ଦେ. ବି—ଚାରି ଦିନ—
Chaudina Four days.
ଚଉଦିନ କରିବ ଯେ ମହୋତ୍ସବ ମୋର । ପ୍ରାଚୀ. ଶ୍ରୀ ଗୁରୁଭକ୍ତିଗୀତା ।

**ଚଉଦୁଆର**—ଦେ. ବି—ଓଡ଼ିଶାର ପ୍ରାଚୀନ ରାଜାମାନଙ୍କର ସାମୟିକ
Chauduāra ରାଜଧାନୀବିଶେଷ—A town for sometime capital of ancient Oria kings.
[ ଦ୍ର—ଏହା କଟକର ଉତ୍ତର ପଶ୍ଚିମ ସାତ ମାଇଲ ଦୂରରେ ବିରୂପା ନଦୀ କୂଳରେ ଅବସ୍ଥିତ । ଚଉଦୁଆର, ଜୋବରା ଓ ନରାଜରେ ଆନିକଟ ( ପଥର ବନ୍ଧ ) ପକାଇ ସରକାର ୧୨ ମାଇଲ ଲମ୍ବର ଗୋଟିଏ ଜଳଭଣ୍ଡାର କରି ଓଡ଼ିଶାର କେନାଲ ସୃଷ୍ଟି କରିଅଛନ୍ତି । ଏଠାରେ ଜନମେଜୟ ମହାରାଜ ଯଜ୍ଞ କରିଥିବା ବିଷୟରେ ସ୍ଥାନୀୟ କିମ୍ବଦନ୍ତୀ ଅଛି । ଭୂଗର୍ଭରୁ ଏଠାରେ ପୁରୁଣା ମୁଦ୍ରା ଅବଧି ମିଳୁଅଛି । ଚୈତନ୍ୟଦେବ ଓଡ଼ିଶାକୁ ଆସିଥିଲା ବେଳେ ଏଠାରେ ଓଡ଼ିଶା ରଜାଙ୍କର ଗୋଟିଏ ରାଜଧାନୀ ଥିଲା । ]
ଦେ ବିଣ. ( ସଂ. ଚତୁର୍ଦ୍ୱାର )—ଚତୁର୍ଦ୍ୱାରବିଶିଷ୍ଟ—
Having four doors or gates.

**ଚଉଦୃଢ଼**—ଦେ. ବିଣ. ( ସଂ. ଚତୁର୍ + ଦୃଢ଼ )—ଅତ୍ୟନ୍ତ ଦୃଢ଼—
Chaudṛuṛdha Very tight or rigid.

**ଚଉଦୋଳ**—ଦେ ବି. ( ସଂ. ଚତୁର୍ଦ୍ଦୋଳ )—
Chaudoḻa ୧ । ମନୁଷ୍ୟବାହ୍ୟ ରାଜକୀୟ ଯାନବିଶେଷ—
চৌডুলি, চৌদোল 1. A royal palanquin.
चौडोल, चंडोल ୨ । ଚାରିଜଣ ବୋହିବା ଶିବିକା—
(ଚଉଦୋଳା—ଅନ୍ୟରୂପ) 2. A litter or palanquin borne on the shoulders of 4 persons.
୩ । ବିମାନ—3. A square sedan chair for carrying idols in a procession.
୪ । ବିବାହରେ ବରକନ୍ୟା ବସି ଶୋଭାଯାତ୍ରା କରିବାର ବଡ଼ ବିମାନାକୃତି ପାଲିଙ୍କି (ଏଥିରେ ୮ ଠାରୁ ୧୬ଜଣ ଯାଏ ବାହକ ଲାଗନ୍ତି)—4. A grand marriage-palanquin ( borne by 8 to 16 bearers ) to convey the bride and bride-groom in the marriage-procession.

**ଚଉଧୁରୀ**—ଦେ. ବି ପୁଂ. (ସଂ. ଚତୁର୍ଧୁରୀ କିମ୍ବା ସଂ. ଚତୁର୍=ଚକିଆ + ଧୃ ଧାତୁ; ଯେ ସର୍ବଦା ଚକିଆରେ ଆଉଜି ବସିଥାଏ)—
Chaudhurī
চৌধুরী ୧ । ଜାତି ଓ ବ୍ୟବସାୟୀଙ୍କ ମଧ୍ୟରେ ପ୍ରଧାନ ବ୍ୟକ୍ତିଙ୍କ
चौधुरी ଉପାଧି—Surname of the headman of a caste or trade.
ଚଉଧୁରାଣୀ, ଚଉଧୁରଆଣୀ } ସ୍ତ୍ରୀ.
୨ । ଓଡ଼ିଆ ଜମିଦାରମାନଙ୍କ ସମ୍ମାନସୂଚକ ଉପାଧିବିଶେଷ—2. An honorific title; a surname of distinction amongst the Oria Zamindars.
[ ଦ୍ର—ଏହା ନାମ ପୂର୍ବରେ ଲାଗେ; ଯଥା—ଭେଡ଼ାର ଜମିଦାର ଚଉଧୁରୀ ରାଧାନାଥ ମିଶ୍ର । ଏଥିର ସାଙ୍କେତିକ 'ଚୌ' କିମ୍ବା 'ଚ' । ]
୩ । ମୁସଲମାନ୍ ଅଧିକାର କାଳରେ ତାଲୁକାର ପ୍ରଧାନ କର୍ମଚାରୀ—3. The name of the chief revenue-officer of a Tālukā under the Mahomedan rule.
୪ । ( ସ୍ଥୂଳକାୟ ବ୍ୟକ୍ତି ପ୍ରତି ବିଦ୍ରୂପରେ ପ୍ରଯୁଜ୍ୟ ) ସ୍ଥୂଳକାୟ ବ୍ୟକ୍ତି—4. ( witticism ) A pot-bellied or fat man.

**ଚଉପଟ**—ଦେ. ବି—୧ । ଚାରିଆଡ଼; ଚାରିପାଖ—
Chaupaṭa 1. Four sides; all sides.
চৌপট ୨ । ଯେଉଁ ମୁଣ୍ଡି କାଠରୁ ପଲକା ବାହାର କରାଯାଇ
तलपट, चौकोर, ତାକୁ ଚାରିଅଂଶିଆ କରାଯାଇ ଅଛି—
चोपट 2. A four-sided log of wood from the sides of which the unsubstantial portions have been sawn or scraped off.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଏ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ବ |

୩ । ଏକପ୍ରକାର ପଶା ଖେଳ—
3 A kind of game of dice.
୪ । ସର୍ବନାଶ—4. Ruin.

ଦେ. ବିଣ.—୧ । ଚାରିଆଡ଼େ ଖୋଲା—
1. Open on all sides.
୨ । ଅରକ୍ଷିତ—2. Unprotected.

**ଚଉ ପଟନାଏକ**—ଦେ. ବି.—ଓଡ଼ିଶାରେ ରାଜପ୍ରଦତ୍ତ କରଣମାନଙ୍କ
Chau paṭanāeka ଉପାଧିବିଶେଷ; ଚ୍ୟାଉପଟ୍ଟନାଏକ—
(ଚ୍ୟାଉପଟନାଏକ—ଅନ୍ୟରୂପ) A title given to Karaṇas by Orissa Rajās

**ଚଉପଣି**—ଦେ. ବି.—୧ । ¼ ହିସାବରେ ଆଦାୟ କରାଯିବା ଶୁଳ୍କ—
Chaupaṇi 1. Cess livied af the rate of ¼.
चौपणी ୨ । କୌଣସି ବସ୍ତୁର ଏକ ଚତୁର୍ଥାଂଶ—
चौअनी 2. One fourth.
୩ । ରୟତି ଜମି ବିକ୍ରି ହେଲେ ଜରସମନର ¼ ହିସାବେ ନିଆଯିବା ଜମିଦାରଙ୍କ ପ୍ରାପ୍ୟ ଦାଖଲଖାରିଜ ରେସମ—
3. Mutation fees payable to the zamindar at the rate of ¼ of the consideration on the sale of a rayati holding.

ଦେ. ବିଣ.—୧ । ଚାରିପଣ ବା ¼ ହିସାବରେ ନିଆଯିବା (ଶୁଳ୍କ)—
1. (a tax) Levied at the rate of ¼.
୨ । ସାଧାରଣ ଉତ୍ପନ୍ନ ଫସଲର ହାରହାର ¼ ହିସାବରେ ହୋଇଥିବା (ଫସଲ)—2. (crop) Produced at the rate of ¼ of the normal produce.
୩ । ଚାରିଭାଗରୁ ଭାଗେ ପାଇବା (ଅଂଶୀଦାର)—
3. (share-holder) Entitled to a fourth share
୪ । ଚାରିଭାଗରୁ ଏକଭାଗରେ ମାଲିକ ହୋଇଥିବା(ଜମିଦାର)—
4 (a zamindar) Owning one-fourth of the proprietory right of an estate.
୫ । ଯେଉଁ କିସ୍ତିରେ ରାଜସ୍ୱର ବା ଖଜଣାର ¼ ଦାଖଲ କରାଯାଏ—6. (an instalment) In which ¼ of the rent or revenue is to be deposited.

**ଚଉପଣିଆଁ**—ଦେ. ବିଣ.—ଚଉପଣି (ଦେଖ)
Chaupaniān Chaupaṇi (See)

**ଚଉପଦୀ**—ଦେ. ବି. ( ସଂ. ଚତୁଷ୍ପଦୀ )—୧ । ଚାରି ଓ କୃତର୍
Chaupadi ଉତୋଧିକ ପଦ ବିଶିଷ୍ଟ ସଙ୍ଗୀତ ବା କବିତା—
चौपदी 1. A song or poem ordinarily consisting of
चौबोला, चौपई, चौपैया, चौपाई 4 couplets.

ଗୁରୁବେଶର ମୁହିଁ ଅଳଙ୍କାର
ଚଉପଦୀ ଗୀତ ରଚନା ସାର । କବିସୂର୍ଯ୍ୟ. ବ୍ରଜଲୀଳା

୨ । (ସଂ. ଚତୁଷ୍କୁଣୀ) ଚାରିକୋଣିଆଁ ପତ୍ରର ଦନା; ଠୋଲା—
2. A square cup made of leaves sewn together.

**ଚଉପହରା**—ଦେ. ବିଣ.—(ସ ଚତୁଷ୍ପ୍ରହର)—୧ । ଯେଉଁ ଦାସ ବା
Chaupaharā ଦାସୀମାନେ ପ୍ରଭୁଙ୍କ ନିକଟରେ ରାତ୍ରି ଓ ଦିନ ଚାରି
चउपहरा ପହର ଲେଖାଏଁ ପାଳି କରି ଉପସ୍ଥିତ ଥାଆନ୍ତି; ଅର୍ଦ୍ଦଲୀ—
चौपहरा 1. Servants attending on the master throughout the day and night by turns of 4 prahars or 12 hours each.

ଚଉପହରା ଦାସୀଙ୍କ ଉପରେ,
ଶୁଭଯୋଗ ପରମାସର କୋପରେ । କବିସୂର୍ଯ୍ୟ. କବିତା ।

୨ । ଯେଉଁ ଚାକର ଓ ମୂଲିଆମାନେ ଦିନ ରାତ୍ରି ୮ ପହର ମଧ୍ୟରୁ କେବଳ ଦିନ ଚାରି ପ୍ରହର ପାଇଁ ଖଟନ୍ତି—
2. A labourer or servant who attends on his master for 12 hours only in 24 hours.

**ଚଉପାଖ**—ଦେ. ବି.—ଚାରିପାର୍ଶ୍ୱ—
Chaupākha Four sides.
चउतरफ ଦୁହେଁ ଅହାର ଧରି ମୁଖେ
चौतरफ ଖୋଜନ୍ତି ବୃକ୍ଷ ଚଉପାଖେ । ପ୍ରାଚୀ. ନଗୁଣିମାହାତ୍ମ୍ୟ ।

**ଚଉପାଟ**—ଦେ. ବି—ଚଉପଟ ୧ ( ଦେଖ )
Chaupāṭa Chaupaṭa 1 ( See )

ପୁଷ୍କରଣୀ ଚଉପାଟ ମାଣିକ୍ୟ ପାବଚ୍ଛ ସାଟ
ମକ୍ତା ମର୍କତ ହେମ ବଚନ କମ ଯେ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଚଉପାଟଳି**—ଦେ. ବି.—ପାଟଳି ( ଦେଖ )
Chaupāṭali Pāṭali ( See )

**ଚଉପାଟି**—ଦେ. ବି. ( ସ. ଚତୁଷ୍ପଟ୍ଟି )—ଗୋଲ ନ ହୋଇ ଚାରିପାଖ
Chaupāṭi ସମାନ ଭାବରେ ଚଞ୍ଛା ହୋଇଥିବା କାଷ୍ଠଖଣ୍ଡ—
(ଚଉପାଟିଆ—ଅନ୍ୟରୂପ) A square log of wood or timber.

ଦେ. ବିଣ—ଚତୁରସ୍ର—Four-sided; quadrangular.

**ଚଉପାଠୀ**—ଦେ. ବି. ( ସଂ. ଚତୁଷ୍ପାଠୀ )—ଚଉପାଢ଼ୀ ( ଦେଖ )
Chaupāṭhi Chaupārdhi ( See )

**ଚଉପାଡ଼ୀ**—ଦେ. ବି. ( ସଂ. ଚତୁଷ୍ପାଠୀ )—ଚଉପାଢ଼ୀ ( ଦେଖ )
Chaupārdi Chaupārdhi ( See )

ଭଦ୍ର ଚଉପାଡ଼ ଭଗୁ ଉ ପଢ଼ଇ
ଓଢ଼ଇ ଅଙ୍ଗୁଳ ପୁର । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଚଉପାଢ଼ୀ**—ଦେ. ବି. ( ସଂ. ଚତୁଷ୍ପାଠୀ; ଯେଉଁଠାରେ ୪ ବେଦ
Chaupārdhi ଅଧ୍ୟାପନା କରାଯାଉଥିଲା )—
चौपाड़; चौपाड़ी; चोवाड़ी ୧ । ଗ୍ରାମ୍ୟବିଦ୍ୟାଳୟ; ପାଠଶାଳା—
चौपाड़; चौपाल 1. A village school.
୨ । ସଂସ୍କୃତ ପାଠଶାଳା; ଟୋଲ—2. Tol; a school for teaching Sanskrit free of charge.

ସାଧାରଣ ଲେଖେ: ଅପଠ ପୃଷ୍ଠାରେ ଦୂରତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାବାକେ ଘରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଉ' ନ ମିଳିଲେ 'ଗାଇ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ପାଇଲେ 'ଅର୍ଘ' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍ଲବଡ଼' ଦେଖିବେ

୩ । ଉପରେ ଛାତ ବା ଛପର ଥିବା କିନ୍ତୁ ଚାରିଆଡ଼େ ଖୋଲା ଥିବା ବୈଠକ ଘର—3. A roofed hall open on all sides and used as a sitting room.

୪ । ଚତୁର୍ଦ୍ୱାରଯୁକ୍ତ ମଣ୍ଡପ—4. A pavillion or square hall with 4 doors.

**ଚଉପାୟା**—ଦେ. ବି. ( ସଂ. ଚତୁଷ୍ପାଦ; ଚତୁଷ୍ପଦ )—
Chaupāyā ଚାରିଗୋଡ଼ିଆ ଛୋଟ ଖାଲୁକା ଖଟ; ଖଟୁଆ—
चौपाया A small portable bedstead with four
**चौपैया; चौपाइ** legs.

(ଚଉପାହିଆ; ଚଉପାଦ୍ୟା—ଅନ୍ୟରୂପ) ଦେ. ବିଣ—ଯାହାର ଚାରିଟି ଗୋଡ଼ ଅଛି—Four-legged.

**ଚଉପାଲା**—ଦେ. ବି—ସ୍ତ୍ରୀଲୋକଙ୍କୁ ବହିବା ପାଇଁ ବ୍ୟବହୃତ ମନୁଷ୍ୟବାହ୍ୟ
Chaupālā ଛୋଟ ଡୋଲି ବା ଖଟୁଆ —
A kind of litter for carrying women ( Howells ).

**ଚଉପିଠି**—ଦେ. ବି. ( ସଂ. ( ସଂ. ଚତୁର୍ ଓ ପୃଷ୍ଠ )—
Chaupiṭhi ୧ । କୌଣସି ଘନ ପଦାର୍ଥର ଚାରି ପାର୍ଶ୍ୱ ବା ତଳ-
चउपिठ 1. The four surfaces or sides of a
**चौतर्फ** solid thing.

୨ । କୌଣସି ସ୍ଥାନର ଚାରିଆଡ଼; ଚାରିଦିଗ—
2. The four sides of a place.

ପୋଷାକ ପିନ୍ଧି ଉଆସ ଚଉପିଠି ବଚିଗ୍ ଥର
ଅଗବାଣ୍ଡରେ ପ୍ରାତଭ୍ରମଣ କରି ଆସନ୍ତି । ଫକୀରମୋହନ- ଗଳ୍ପସ୍ୱଳ୍ପ ।

**ଚଉପିଠିଆ**—ଦେ. ବିଣ—୧ । ଯେଉଁ ପଶୁ ସବୁପ୍ରକାର ( ୪ ପ୍ରକାର )
Chaupiṭhiā ଭାର ବୋହିବାରେ ଅଭ୍ୟସ୍ତ—1. ( beast of
चौपिठा burden or animal ) Habituated to
**चौकस** do all sorts of work; dexterous in all sorts of work.

[ ଦ୍ର—କେତେକ ବଳଦ, ଘୋଡ଼ା ପ୍ରଭୃତି ଶଗଡ଼, ହଳ, ଲଦନ ଓ ଘଣା ଟାଣିବାକୁ ଅଭ୍ୟସ୍ତ ହୋଇଥାନ୍ତି । ]

୨ । ( ଲକ୍ଷଣାର୍ଥ ) ଚଉକସ୍; ଯେଉଁ ବ୍ୟକ୍ତି ସବୁ କାର୍ଯ୍ୟ ( କାୟିକ ଓ ମାନସିକ ) ରେ ପାରଙ୍ଗମ—
2. ( Figurative ) Strong on all sides; all round; clever at everything ( manual and intellectual work ).

୩ । ( ଲକ୍ଷଣାର୍ଥ ) ସବୁପ୍ରକାର କାର୍ଯ୍ୟ କରିବାରେ ଅଭ୍ୟସ୍ତ—
3. (Figurative) Thoroughly qualified.

**ଚଉପିଠି ଖରଚ**—ଦେ. ବି (ପ୍ରଥମ ପକ୍ଷର ଯିବା ଏକପିଠି ଆସିବା ଏକ
Chaupiṭhik haracha ପିଠି, ଅନ୍ୟ ପକ୍ଷର ଯିବା ଏକ ପିଠି ଓ ଆସିବା ଏକ ପିଠି, ଏପରି ୪ ପିଠି ବା ଥର)—ବିବାହ ଓ ମକଦମା ଆଦି ଉପଲକ୍ଷେ ଉଭୟ ପକ୍ଷର ଯିବାର ଓ ଆସିବାର ସମସ୍ତ ଖରଚ—All the expenses of both parties for coming and going; entire travelling expenses of the two parties (in a case or marriage).

**ଚଉଫେରି**—ଦେ. ବି ( ସଂ. ଚତୁଃ + ପ୍ରତ୍ୟାଗମନ )—ମନ୍ଦିର ବା ଦେବ-
Chaupheri ବିଗ୍ରହଙ୍କର ଚାରିପାଖ ବୁଲିଆସିବା; ପରିକ୍ରମା—
चौफेरी Going round a temple or idol;
**चौफेरी** circumambulation.

**ଚଉବଚ୍ଚା**—ଦେ. ବି (ଫା. ଚହ୍‌ବଚା; ଚହ୍ = କୂଅ + ବଚା = କ୍ଷୁଦ୍ର; ଛୋଟ
Chaubachā କୂଅ)—ଭୂମି ଉପରେ ଇଟା, ପଥର ଆଦି ଦ୍ୱାରା
चौबाच्चा ଚୂନରେ ଗଢ଼ାଯିବା ଜଳାଧାର ; କ୍ଷୁଦ୍ର ଜଳାଧାର; କୁଣ୍ଡ—
**चौबच्चा** A small reservoir of stone or brick
ଚଉବଚା, ଚଉବାଚ୍ଚ, ଚଉବାଚା } ଅନ୍ୟରୂପ masonry for storage of water.

**ଚଉବନ**—ଦେ. ବି (ସଂ. ଚତୁଃପଞ୍ଚାଶତ୍, ପ୍ରା. ଚଉବଣ୍ଣ)—
Chaubana ପଚାଶ ଅପେକ୍ଷା ଚାରି ଅଧିକ ସଂଖ୍ୟା; ୫୪ ସଂଖ୍ୟା—
चुआन Fiftyfour; 54.
**चव्वन; चौवन** ଦେ ବିଣ.—୫୪ ସଂଖ୍ୟକ—
Numbering fiftyfour.

**ଚଉବନାଶଏ**—ଦେ. ବି (ସଂ. ଚତୁଃପଞ୍ଚାଶତ୍ + ଶତ)—ଏକଶ ଚଉବନ;
Chaubanāsae ୧୫୪—One hundred and fiftyfour;
(ଚଉବନାଶହେ—ଅନ୍ୟରୂପ) 154.

**ଚଉବନା**—ଦେ. ବିଣ—୧ । କଟକରେ ବ୍ୟବହୃତ ( ସେର ); ଯାହା
Chaubanī ଓଜନରେ ୧୦୮ ଟଙ୍କା ସଙ୍ଗେ ସମାନ; ପକ୍କା (ସେର)—
1. (a Cuttack seer) Weighing 108. tolas.

୨ । (ସଂ. ଚତୁର୍ବର୍ଣ୍ଣ )—ଚାରିବର୍ଣ୍ଣବିଶିଷ୍ଟ; ଧଳା, କଳା, ନାଲି ଓ ହଳଦିଆ ଏହି ୪ଟି ରଙ୍ଗର (ଯଥା—ଚଉବନା ମୃଦଙ୍ଗ)—
2. Of four different colours (black, white, red and yellow).

ଦେ. ବି —ଚଉବନା ସେର (ଦେଖ)--Chaubanī sera (See).

**ଚଉବନା ସେର**—ଦେ. ବି— ୧୦୮ ଟଙ୍କା ଓଜନର ସେର; କଟକୀ ସେର
Chaubanī sera A seer of 108 tolas
पाकीसेर [ ଦ୍ର—କଟକୀ ସେରର ଓଜନ ୧୦୮ ତୋଲା; କିନ୍ତୁ
**पक्कासेर** ଏଥିର ଅଧେ ଅର୍ଥାତ୍ ୫୪ ସଂଖ୍ୟା ଦ୍ୱାରା ଏହାର କାଳ୍ପନିକ ନାମକରଣ ହୋଇଅଛି ? ୮୦ ତୋଲା ଓଜନର ସେରକୁ ବାଲେଶ୍ୱରୀ ବା କଚା ସେର କହନ୍ତି; କଲିକତାରେ ଏବଂ ଉତ୍କଳଭାଷୀ ଅନ୍ୟସମସ୍ତ ଅଞ୍ଚଳମାନଙ୍କରେ ବାଲେଶ୍ୱରୀ ସେର ବ୍ୟବହୃତ ହୁଏ, କେବଳ କଟକ ଓ ତନ୍ନିକଟବର୍ତ୍ତୀ ଅଞ୍ଚଳରେ ଚଉବନା ସେର ପ୍ରଚଳିତ । ]

| ୯ | ଇ | ଈ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇପ୍ସ | ଉଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଢ | ନ୍ତ |

ଚଉବନ୍ଦୀ—ଦେ. ବ ( ସଂ. ଚତୁଃ+ବନ୍ଧନ )—୧ । ଅଣ୍ଟା ପର୍ଯ୍ୟନ୍ତ
Chaubandi ଲମ୍ବିବା ପୁରୁଣାକାଳିଆ ଏକପ୍ରକାର ମରହଟ୍ଟିଆ
चउवन्दी ଜାମା ବା ମିରଜେଇ—1. A kind of old-
चौबन्दी fashioned coat with double flaps on the breast tied by 4 cords.

[ଦ୍ର—ଏଥିର ଛାତି ଉପରେ ୨ ପରସ୍ତ ଲୁଗା ଥାଏ ଓ ଉକ୍ତ ଲୁଗା ଦୁଇ ଖଣ୍ଡର ୨ ମୁଣ୍ଡ ଡୋର୍ ଦ୍ୱାରା ଯଥାକ୍ରମେ ବାଁଆପାଖେ ଓ ଡାହାଣପାଖେ ବନ୍ଧାଯାଏ । ]

୨ । ଘୋଡ଼ାର ବା ବଳଦର ୪ ଗୋଡ଼ର ନାଲବନ୍ଦୀ—2. Shoeing of the four feet of a horse or bullock.

ଚଉବନ୍ଧ—ଦେ. ବ (ସଂ. ଚତୁର୍ବନ୍ଧ)—ଚଉକଠ (ଦେଖ)
Chaubandha Chaukatha (See).
(ଚଉବନ୍ଦ—ଅନ୍ୟରୂପ)

ଚଉବର୍ଗ—ଦେ.ବ (ସଂ.ଚତୁର୍ବର୍ଗ)—ଧର୍ମ, ଅର୍ଥ, କାମ ଓ ମୋକ୍ଷରୂପ ମନୁଷ୍ୟ-
Chaubarga ଜୀବନର ଚାରିଗୋଟି ଲକ୍ଷ୍ୟ ବ. ଫଳ— Fourfold
चउवर्ग aims or summum bonum of the life of
चौबरग a man (religion, wealth, desire and salvation).

ତେଣେ ସନ୍ତୋଷ ବିଷ୍ଣୁ ହୋଇ,
ପ୍ରାଣିଙ୍କି ଚଉବର୍ଗ ଦେଇ । ଜଗନ୍ନାଥ. ଭାଗବତ ।

ଚଉବର୍ଷ—ଦେ. ବ (ସଂ. ଚତୁର୍ବର୍ଷ)—ମୃତର ଚତୁର୍ଥ ବର୍ଷରେ ଯେ ଶ୍ରାଦ୍ଧ
Chaubarsha ଓ ଦାନପୁଣ୍ୟ ଆଦି ଧର୍ମଶାସ୍ତ୍ରର ନିୟମ ଅନୁସାରେ
चौबरसा ଅନୁଷ୍ଠିତ ହୁଏ—An obsequial rite performed on the 4th anniversary of the death of a person.

ଚଉବଳ—ଦେ. ବ ( ସଂ. ଚତୁର୍+ବଳ )—୧ । (ଏଥିରେ ପ୍ରତ୍ୟେକ
Chaubala ବ୍ୟକ୍ତିର ୨ ହାତ ଓ ୨ ଗୋଡ଼, ଏପରି ୪ଟି ଅଙ୍ଗର ବଳ ପରୀକ୍ଷା କରାଯିବାରୁ) ଦୁଇଜଣଙ୍କ ମଧ୍ୟରେ ଏକପ୍ରକାର ବଳକଷାକଷି କସରତ୍—
1. An athletic test of strength between two persons, like a tug of war, with a stick.

[ ଦ୍ର—ଏଥିରେ ୨ ଜଣ ମନୁଷ୍ୟ ପରସ୍ପର ଆଡ଼କୁ ମୁହଁକରି ଦୁଇ ଗୋଡ଼କୁ ଅଲଗା ଲମ୍ବାଇ ବସନ୍ତି ଓ ପରସ୍ପରଙ୍କ ଗୋଡ଼ର ତଳପା ପରସ୍ପର ସଙ୍ଗେ ଲଗାନ୍ତି; ମଝିରେ ଖଣ୍ଡିଏ ବାଡ଼ିକୁ ଦୁହେଁଯାକ ପରସ୍ପରର ଦୁଇହାତ ଦ୍ୱାରା ଧରନ୍ତି । ଦୁହେ ପରସ୍ପରଙ୍କ ପାଦକୁ ଠେଲୁଥାଆନ୍ତି ଏଣେ ହାତଦ୍ୱାରା ବାଡ଼ିକୁ ପରସ୍ପର ଆଡ଼କୁ ଟାଣୁଥାଆନ୍ତି । ଯାହା ଆଡ଼କୁ ବାଡ଼ିଖଣ୍ଡ ଟାଣିହୋଇ ଆସେ ତାହାର ବଳ ବେଶି ହେଲା ଓ ସେ ଜିତିଲା ବୋଲି ଅବଧାରିତ ହୁଏ । ]

୨ । ଚତୁରଙ୍ଗବଳ—2. The army consisting of 4 branches (e. g. infantry, cavalry, elephants and cars.

୩ । ଚଉପାର; ପଶା ଖେଳ—3. The Game of dice.

୪ । ସତରଞ୍ଜି ଖେଳ—4. The Game of chess.

ଚଉବାହା—ଦେ. ବଣ (ସଂ. ଚତୁର୍ବାହୁ)—ଚତୁର୍ଭୁଜବିଶିଷ୍ଟ—
Chaubāhā Having four arms.
(ଚଉବାହୁ—ଅନ୍ୟରୂପ) ଦେ. ବ—ଶ୍ରୀ ଜଗନ୍ନାଥ; ବିଷ୍ଣୁ—
God Jagannātha; Bishṇu.

ମୋ ବୁଦ୍ଧିରେ ଭୂଷନ୍ତୁ କେହୁ ଚଉବାହା,
କାଣିକର ଭଜନ କହ ମତେ ତାହା । କୃଷ୍ଣସିଂହ. ମହାଭାରତ. ସଭା ।

ଚଉବିଂଶ—ଦେ. ( ପଦ୍ୟ ) ବ ( ସଂ. ଚତୁର୍ବିଂଶ; ପ୍ରା. ଚଉବୀସା )—
Chaubimśa ଚବିଶି; ୨୪ ସଂଖ୍ୟା—24.
चव्विश ଦେ. ବଣ—୨୪ ସଂଖ୍ୟକ—Numbering 24.
चौबीस ଚଉବିଂଶ ସହସ୍ର ଭରତ ଋଷି କଲେ—କୃଷ୍ଣସିଂହ. ମହାଭାରତ. ଆଦି ।

ଚଉଭିତେ—ଦେ. (ପଦ୍ୟ) କ୍ରି. ବଣ—୧ । ଚାରିଦିଗରେ—
Chaubhite 1. On four sides.
୨ । ଚାରିପାଖରେ—2. On all sides.

ଚଉଭୁଜୀ—ଦେ. ବଣ (ସଂ. ଚତୁର୍ଭୁଜ)—ଚାରିବାହୁବିଶିଷ୍ଟ—
Chaubhuji Having four sides.

ଚଉଭୁଜୀ କୁଞ୍ଜଘର ସହସ୍ରେ ପାଖୁଡ଼ା—ପ୍ରାଚୀ. ବ୍ରହ୍ମନନ୍ଦୁପଣଗୀତା ।

ପ୍ରାଦେ. (ସମ୍ବଲପୁର) ବ—ଚଉହଦ; ଚତୁଃସୀମା—
Boundaries on the 4 sides.

ଚଉଭୋମି—ଦେ ବଣ—ବର୍ଗାକାର—
Chaubhomi Square.

ଅଣମେଡ଼ା ଅଣବେଢ଼ା ଚଉଭୋମି ଘର—ପ୍ରାଚୀ. ବ୍ରହ୍ମନନ୍ଦୁପଣ ଗୀତା ।

ଚଉମଥା—ଦେ. ବ (ସଂ. ଚତୁର୍ମସ୍ତକ)—୧ । ବ୍ରହ୍ମା—
Chaumathā 1. God Brahmā.
चौमाथा ୨ । ( ସଂ. ଚତୁଷ୍ପଥ ) ଚଉଛକ ରାସ୍ତା—2 A place where four roads meet; a place where two roads cross each other.
( ଚଉମସ୍ତା, ଚଉମାଥ—ଅନ୍ୟରୂପ ) ଦେ. ବଣ—ଚାରିଟି ମସ୍ତକଯୁକ୍ତ—Four-headed.

ଚଉମହଲା—ଦେ. ବ. ( ସଂ. ଚତୁର୍+ଫା. ମହଲ୍ )—
Chaumahala ଚଉତାଳ ( ଦେଖ )
( ଚଉମାହାଲ—ଅନ୍ୟରୂପ ) Chautāla ( See )

ଚଉମୁହାଁ—ଦେ. ବଣ. ( ସଂ. ଚତୁର୍ମୁଖ )—ଚାରିଟି ମୁଖ ବା ଦ୍ୱାରବିଶିଷ୍ଟ;
Chaumuhān ଚାରିଦିଗକୁ ଯାହାର ମୁହଁ ଚାରିଗୋଟି ଅଛି—
चउमुखा Four-faced; facing towards the four
चौमुखा sides.

ସାଧାରଣ ଲୋକେ ଅପଢ଼ ମୁଖରେ ଦୃଢ଼ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଅନ୍ୟ ବର୍ଣ୍ଣ ବା ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷଅ' ନ ମିଳିଲେ 'କ୍ଷଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ, 'ଅର୍ଣ୍ଣୋ' ନ ପାଇଲେ 'ଅର୍ଣ୍ଣୋ' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

**ଚଉମୁହାଣୀ**—ଦେ. ବି. ( ସଂ· ଚତୁର୍‌+ଫା. ମୁହାନା=ନଦୀର ସମୁଦ୍ରରେ ମିଳନସ୍ଥଳ )—୧ । ଯେଉଁ ସ୍ଥାନରେ ନଦୀ ଏକାଧିକ ଶାଖା ମେଲି ସମୁଦ୍ରରେ ଯାଇ ପଡ଼ୁଅଛି—
Chaumuhāni
चौमुहानो
1. Delta; the pla ce where a river branches off and falls into the sea.
୨ । ଚୌରାସ୍ତା ( ଦେଖ )
2. Chaurāsta ( See )

**ଚଉର**—ଗ୍ରା. ( ପଦ୍ୟ ) ବି. ( ସଂ. ଚୌର )—ଚୋର—
Chaura
चउर
चउर
Thief.
କୁଞ୍ଜ କୁହରରେ ପଲାସିଲି ଚଉର ଅଭିସାରିକା—
ଉପେ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଚଉରଙ୍ଗୀ**—ଦେ. ବି. ( ସଂ. ଚତୁରଙ୍ଗ )—
Chaurangi
चौरंगी
चौरंगा
୧ । ଏକପ୍ରକାର ଖେଳ—
1. A kind of game.
୨ । ଛକରାସ୍ତା—
2. A place where four roads meet.
୩ । ଏକପ୍ରକାର ବାତ ଯାହା ସମସ୍ତ ଅଙ୍ଗକୁ ଅବଶ କରେ—
3. Complete paralysis; acute rheumatism.
୪ । ଚତୁରଙ୍ଗଦଳ—
4. Army consisting of four divisions (cars, elephants, cavalry and infantry ).

**ଚଉରବାସ**—ଦେ. ( ପଦ୍ୟ ) ବି. ( ସଂ· ଚୌରବାସ )—ବନ୍ଦୀଘର—
Chaurabāsa
Jail.
କହରତ ଲଙ୍କାରେ ସ୍ୱଜନବଳେ
ବନ୍ଧନ ପାଏ ରକ୍ଷ ଚଉରବାସେ—ଉପେ· ବୈଦେହୀଶବିଳାସ ।

**ଚଉରସ୍**—ଦେ. ବିଣ. ( ସଂ. ଚତୁରସ୍ର=ଚତୁଷ୍କୋଣ )—
Chauras
चौरस
चौरस.
୧ । ବର୍ଗ ( କ୍ଷେତ୍ର ); ଯାହାର ଚାରିବାହୁ ସମାନ—
1. Square.
୨ । ଚାରିଆଡ଼ରେ ସମପରିମିତ—
2. Even; equally or evenly distributed.
୩ । ଭଲ; ସମ୍ପୂର୍ଣ୍ଣ; ଷୋଳପଣୀ—
3. Full; abundant.
( ଯଥା—ଏ ବର୍ଷ ଚାରିଆଡ଼େ ଚଉରସ୍ ଫସଲ ହୋଇଅଛି; ଚଉରସ ଭୋଜନ । )
( ଚଉରସିଆ—ଅନ୍ୟରୂପ ) ୪ । ସମତଳ; ସମଭୂଲ—
4. Level; flat; even; smooth.
୫ । ଶକ୍ତ; ମଜଭୁତ—5. Strong; firm.
୬ । ( ଅଠାଁସିଙ୍କ ବ୍ୟବହୃତ ଶବ୍ଦ ) କଂସା ଆଦି ବାସନକୁ ଚିକ୍କଣ ପାଲିସ କରିବାପାଇଁ ବ୍ୟବହୃତ ହତିଆର—
6. A scraper used by braziers to scrape and polish utensils
୭ । ଖୁବ୍—7. Excessive.
( ଯଥା—ଚଉରସ ମାଡ଼, ଚଉରସ ସୋଧନ । )
ପ୍ରାଦେ ( ଗଡ଼ଜାତ ) ବି—ଚରସ୍ ( ଦେଖ )
Charas ( See )

**ଚଉରସ୍ ରୁଲି**—ଦେ. ବି. ( ବଣିଆଶବ୍ଦ )—ଖୁବ୍ ଛୋଟ ଛୋଟ ଅଳଙ୍କାର ଗଢ଼ିବା ପାଇଁ ଚାରିକୋଣିଆ ଏକପ୍ରକାର ଠସା—A kind of square mould used by goldsmiths to beat out small ornaments.
Chauras ruli

**ଚଉରା**—ଦେ. ବି. ( ସଂ. ଚତ୍ୱର; ଚତ୍ୱାର )—ଗୃହସଂଲଗ୍ନ ଯେଉଁ ମାଟି; ପଥର ବା ଇଟା ନିର୍ମିତ ସ୍ତୂପରେ ତୁଳସୀବୃକ୍ଷ ଲଗା ହୋଇଥାଏ; ତୁଳସୀଚଉରା— A raised mound or structure near the house in which the Tulsi plant ( a daily worshippable plant in every Hindu household ) is reared.
Chaurā
চৌতারা
चौरांह
ସୁବର୍ଣ୍ଣ ଚଉରା ଥାଡ଼ୀ ଥାଡ଼ୀ
ତୋଳି ବସୁଅଛି ଉଦ୍ଧିତଳ ସେ । ବିଶ୍ୱନାଥ· ବିଚିତ୍ରରାମାୟଣ ।

[ ଦ୍ର—ହିନ୍ଦୁଗୃହସ୍ଥ ପ୍ରାତଃଦିନ ସ୍ନାନ କରି ଚଉରାରେ ପାଣି ଦିଏ ଓ କୁଳବଧୂମାନେ ପ୍ରତିଦିନ ଓ ବିଶେଷତଃ ଗୁରୁବାର, ଏକାଦଶୀ ଓ କାର୍ତ୍ତିକମାସରେ ସକାଳୁ ଉଠି ଗୋବରପାଣିରେ ଚଉରାମୂଳକୁ ଲିପନ୍ତି ଓ କାର୍ତ୍ତିକମାସରେ ବିଧବାମାନେ ଲିପା ଚଉରାମୂଳରେ ମୁରୁଜ ଦେଇ ରାଧାଦାମୋଦରଙ୍କୁ ପୂଜା ଓ ନୈବେଦ୍ୟଆଦି ଦିଅନ୍ତି; କୁମାରପୂର୍ଣ୍ଣିମୀ, କାଞ୍ଜିଅଁଳା, ନାଗଲ ଚଉଠି, ସୋମନାଥ ବ୍ରତ ଆଦି ଉପଲକ୍ଷରେ ଚଉରା ମୂଳେ ଭୋଗ ଦିଆଯାଏ । ପଣାସଂକ୍ରାନ୍ତି ଦିନ ତୁଳସୀଚଉରା ଉପରେ ତ୍ରିମୁଣ୍ଡିଆ ବାଉଁ ତୁଳସୀଗଛରେ ମାଠିଆର ତଳକଣା ବାଟେ ଠୋପା ଠୋପା ପାଣି ପଡ଼ିଲା ପରି ତୁଳସୀଗଛ ଉପରେ ଗୋଟିଏ ଶିକାରେ ସଛିଦ୍ର ଘଟ ବା ମାଠିଆ (ବସୁନ୍ଧରା) ଟଙ୍ଗା ଯାଏ । ସନ୍ଧ୍ୟା ବେଳେ ମଧ୍ୟ ଗୃହବଧୂ ଓ ଗୃହିଣୀମାନେ ଚଉରାମୂଳେ ସଞ୍ଜବତୀ ବସାନ୍ତି । ]

**ଚଉରାଅଶି**—ଦେ. ବି. ( ସଂ. ଚତୁରଶୀତି; ପ୍ରା. ଚଉରାସୀଇ )—ଅଶି ଅପେକ୍ଷା ଚାରି ଅଧିକ ସଂଖ୍ୟା; ୮୪—
Chaurā-asi
चुबाशी
चौरासी
Eightyfour.
ଦେ. ବିଣ—୮୪ ସଂଖ୍ୟକ—
(ଚଉରାଶି—ଅନ୍ୟରୂପ) Numbering eightyfour.

**ଚଉରାଁଣବେ**—ଦେ. ବି. ( ସଂ. ଚତୁର୍ନବତି, ପ୍ରା. ଚଉଣ୍ଣବଇ )—ନବେ ଅପେକ୍ଷା ୪ ଅଧିକ ସଂଖ୍ୟା; ୯୪—
Chaurānlabe
চুরানব্বই
चौरानबे
94; Ninetyfour.
ଦେ. ବିଣ—୯୪ ସଂଖ୍ୟକ—Numbering 94.
(ଚଉରାଁଣୋଇ, ଚଉରାଣବେ, ଚଉରାନବେ, ଚଉରାଲବେ } ଅନ୍ୟରୂପ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଅ | ଝ |
| ୨ | ଈ | ଊ | ରୁ | ଲୁ | ଏ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ୱ | ନ୍ତ |

**ଚଉରାଳିଶ**—ଦେ. ବି. ( ସଂ. ଚତୁଶ୍ଚତ୍ୱାରିଂଶତ୍; ପ୍ରା. ଚଉଆଳିସଇ )—
Chaurālisa ଚାଳିଶିରୁ ଚାରି ଅଧିକ ସଂଖ୍ୟା; ୪୪ ସଂଖ୍ୟା —
চুয়ালিশ 44; fortyfour.
**चौवालीस** ଦେ. ବିଣ.—୪୪ ସଂଖ୍ୟକ—
(ଚଉରାଳିଶି—ଅନ୍ୟରୂପ) Numbering fortyfour.

**ଚଉରାଳିଶାଶଏ**—ଦେ. ବି. ( ସଂ. ଚତୁଶ୍ଚତ୍ୱାରିଂଶତ୍+ଶତ )—
Chaurālisāsae ଏକଶତ ଚଉରାଳିଶ; ୧୪୪—144.
(ଚଉରାଳିଶାଶହେ—ଅନ୍ୟରୂପ) ଦେ. ବିଣ—୧୪୪ ସଂଖ୍ୟକ—
Numbering 144.

**ଚଉରା ସେବା**—ଦେ. ବି—ତୁଳସୀଚଉରାରେ ରୋପିତ ଓ ସଯତ୍ନବର୍ଦ୍ଧିତ
Chaurā sebā ତୁଳସୀ ବା ବୃନ୍ଦାବତୀଙ୍କୁ ଜଳଦାନ ଓ ପୂଜାଆଦି କରିବାରୂପ କର୍ତ୍ତବ୍ୟ କାର୍ଯ୍ୟ—Act of worshipping and watering the holy Basil plant reared up on a mound.

**ଚଉରାସ୍ତା**—ଦେ. ବି. ( ସଂ. ଚତୁର୍+ଫା. ରାସ୍ତା )—
Chaurāstā ଚାରିପଥର ମିଳନ ସ୍ଥାନ; ଛକ—
চৌরাস্তা A place where four roads meet,
**चौराहा; चौहट्टा; चौरास्ता** i. e roads cross each other.

**ଚଉରୀ**— ଦେ. ବି—୧ । (ସଂ. ଚମରୀ)—କେଶଦ୍ୱାରା ନିର୍ମିତ କେଶବନ୍ଧନ-
Chaurī ରଜ୍ଜୁ—1. A string made of hairs strung
চউরি, চৌবি together and used as a tape for tying
**चौरी** the hair.
୨ । (ସଂ. ଚତ୍ୱର)—ଚାରିଆଡ଼େ ଘେରିଥିବା ପ୍ରାଙ୍ଗଣ; ଖଞ୍ଜା-
2. Courtyard surrounded by houses on four sides.
୩ । (ସଂ. ଚତ୍ୱର) ଚଉଶାଳା ( ଦେଖ )
3. Chausālā ( See )
୪ । ଚାମର ( ଦେଖ )
4. Chāmara ( See )
୫ । ସତ୍ୟଆମ୍ବ (ଦେଖ)
5. Satya-āmba (See).
୬ । ଅଗଣା ମଧ୍ୟରେ ଥିବା ଛୋଟ ପକ୍କା ବେଦୀ—
6. A small pucca raised platform or altar in a courtyard.
୭ । (ସଂ. ଚତୁରକା)—ଚାରିକୋଣିଆ ଅଗଣା—
7. A quadrangular courtyard.

**ଚଉରୀ ଭୁଣ୍ଡି**—ଦେ.ବି.-ଚଉରୀର ଗୁଚ୍ଛର ମୂଳଗଣ୍ଠି ଉପରେ ଜଉଦ୍ୱାରା ଦୃଢ଼
Chaurī bhuṇḍi ହୋଇ ବସା ଯାଇଥିବା ପାତ୍ରାକୃତି ଅଳଙ୍କାର-ବିଶେଷ—A cup-shaped ornament for the hair into which a bunch of Chauri is firmly attached with wax.

**ଚଉର୍ଯ୍ୟ**—ଗ୍ରା. ( ପଦ୍ୟ ) ବି ( ସଂ. ଚୌର୍ଯ୍ୟ )—ଚୋରବୃତ୍ତି—
Chaurjya Theft; stealing; habit of stealing.
চৌর্য্য ବାଧ ପ୍ରଭୁ ଚାଉଥିବୁ ହେବ
ବେନ ବଶଂସୁ ଚଉର୍ଯ୍ୟେ ଯିବ । ଭଞ୍ଜ. ବୈଦେହୀଶବିଳାସ ।

**ଚଉଲରୀ**—ଦେ. ବି—ଚାରିସରିଆ ହାର—
Chaularī A necklace with 4 strings.

**ଚଉଶାଳା**—ଦେ. ବି. ( ସଂ. ଚତୁଃଶାଳା )—
Chausālā ୧ । ବର୍ଗାକୃତି ଘର; ମୁନିମାନଙ୍କ ଘର—
চৌচালা 1. A block-house; a square house;
**बंगला** the hut of a hermit.
୨ । ଚାରି ପାଖେ ଛାଲୁ ଗଳିଥିବା ଘର—
2. A house having 4 sloping thatches on 4 sides; a thatched bungalow.

**ଚଉଶିଙ୍ଗା**—ଦେ. ବି. ( ସଂ. ଚତୁଃ ଶୃଙ୍ଗ )—
Chausingā କୋଟରା ମୃଗ; ଚାରିଶୃଙ୍ଗବିଶିଷ୍ଟ କୃଷ୍ଣସାର ମୃଗ-
চৌশিঙগা ବିଶେଷ—The four-horned antelope;
**चौसिंघा** Zetracerus Quadricornis.
(ଚଉଶିଂଘା—ଅନ୍ୟରୂପ) [ ଦ୍ର—ଏହାର ବର୍ଣ୍ଣ ଖଇରା, ଲୋମ କର୍କଶ, ଆକାର ଛୋଟ ଓ ପୁଚ୍ଛ ହ୍ରସ୍ୱ; ଅଣ୍ଡିରା ମୃଗର ୩।୫ ଅଙ୍ଗୁଳ ଲମ୍ବର ଚାରି ଗୋଟି ଶିଙ୍ଗ ଥାଏ; ମାଂସ ସୁସ୍ୱାଦୁ—ଯୋଗେଶଚନ୍ଦ୍ର । ]
ଦେ. ବିଣ—ଚାରି ଗୋଟି ଶୃଙ୍ଗବିଶିଷ୍ଟ—
Four-horned.

**ଚଉଷଠାଶଏ**—ଦେ. ବି ଓ ବିଣ – ଏକଶତ ଚଉଷଠି—
Chaushaṭhāsa-e 164.
(ଚଉଷଠାଶହେ—ଅନ୍ୟରୂପ)

**ଚଉଷଠି**—ଦେ. ବି. ( ସଂ. ଚତୁଃଷଷ୍ଟି; ପ୍ରା. ଚଉସଟ୍ଠି )—
Chaushaṭhi ଷାଠିଏ ଅପେକ୍ଷା ୪ ଅଧିକ ସଂଖ୍ୟା; ୬୪—
চৌষঠি 64; sixtyfour.
**चौसठ** ଦେ. ବିଣ—୬୪ ସଂଖ୍ୟକ—Numbering 64.

**ଚଉଷଠି କଳା**—ଦେ. ବି. ( ସଂ. ଚତୁଃଷଷ୍ଟି ଓ କଳା )—
Chaushaṭhi kalā ଚଉଷଠି ପ୍ରକାର କଳା ବିଦ୍ୟା ( ଯାହା କ ପ୍ରତ୍ୟେକ ସୁଶିକ୍ଷିତା ରସିକା ସ୍ତ୍ରୀଙ୍କର ଶିକ୍ଷା କରିବା କର୍ତ୍ତବ୍ୟ)-
Sixtyfour kinds of fine arts according to the Hindu Sāstras ( which a woman must learn before she becomes perfect ).
[ ଦ୍ର—ଶୁକ୍ରନୀତି ମତରେ ୬୪ କଳା ଯଥା—୧ ସଙ୍ଗୀତ, ୨ ନୃତ୍ୟ, ୩ ବାଦ୍ୟ, ୪ ଉଦକ ବାଦ୍ୟ, ୫ ନାଟ୍ୟାଭିନୟ, ୬ ରୂପ-ବିଧାନ, ୭ ତିଳକ ରଚନା, ୮ ବେଶ ରଚନା, ୯ ଅଙ୍ଗରଞ୍ଜନ, ୧୦ ମୁଣ୍ଡରେ ପୁଷ୍ପବିନ୍ୟାସ, ୧୧ କେଶବିନ୍ୟାସ, ୧୨ ପୁଷ୍ପଶଯ୍ୟା-ରଚନା, ୧୩ ମାଳ ଗନ୍ଥିବା, ୧୪ ଗନ୍ଧଦ୍ରବ୍ୟ ପ୍ରସ୍ତୁତ କରିବାର ୧୫ ଅତରବିଦ୍ୟା, ୧୬ ପ୍ରତିମା ନିର୍ମାଣ, ୧୭ ବୈଜୟନ୍ତିକା ବିଦ୍ୟା,

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅଁ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ, 'ଅର୍ଣ୍ଣ' ନ ପାଇଲେ 'ଅର୍ଣ୍ଣ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୧୮ ବୃକ୍ଷାୟୁର୍ବେଦ ବିଦ୍ୟା, ୧୯ ପାକକ୍ରିୟା, ୨୦ ପାନୀୟରଚନା, ୨୧ ବଢ଼େଇ କର୍ମ, ୨୨ ସୂତା କାଟିବା, ୨୩ ବେତ ବାଉଁଶ ବୁଣିବା, ୨୪ ଶଯ୍ୟାରଚନା, ୨୫ ସୂଚୀକର୍ମ, ୨୬ ଅଳଙ୍କାର ପିନ୍ଧିବା, ୨୭ ଶିଶୁ କ୍ରୀଡ଼ନକ, ୨୮ ଅଳଙ୍କାର ନିର୍ମାଣ, ୨୯ ତଣ୍ଡୁଳକୁସୁମ-ବିକାର, ୩୦ ସୂତ୍ର କାଟିବା, ୩୧ ମଣିଭୂମିକା, ୩୨ ବାସ୍ତୁବିଦ୍ୟା, ୩୩ ମଣିରାଗ ବିଜ୍ଞାନ, ୩୪ ସ୍ୱର୍ଣ୍ଣ ରୌପ୍ୟ ପରୀକ୍ଷା, ୩୫ ଖନି ବିଦ୍ୟା, ୩୬ ଧାତୁ ରସାୟନ, ୩୭ ଇନ୍ଦ୍ରଜାଲ, ୩୮ ବସ୍ତ୍ର ଗୋପନ, ୩୯ ଚିତ୍ର ପ୍ରଦର୍ଶନ, ୪୦ ହସ୍ତଲାଘବ, ୪୧ ଦ୍ୟୁତକ୍ରୀଡ଼ା, ୪୨ ମେଷ କୁକ୍କୁଟ ଯୁଦ୍ଧ, ୪୩ ଶୁକସାରିକା ପଢ଼ାଇବା, ୪୪ ଦ୍ୟୁତ କ୍ରୀଡ଼ା, ୪୫ ଆକର୍ଷ କ୍ରୀଡ଼ା, ୪୬ ଅଭିଧାନ, ୪୭ ଦେଶ ଭାଷା, ୪୮ ବିବିଧ ଭାଷା, ୪୯ ବୈନାୟିକୀ ବିଦ୍ୟା, ୫୦ କାବ୍ୟ ସମସ୍ୟା, ୫୧ ଅକ୍ଷର-ମୁଷ୍ଟିକା କଥନ, ୫୨ ଗ୍ରନ୍ଥ ପାଠ, ୫୩ ନାଟକ ଜ୍ଞାନ, ୫୪ ମାନସୀ କାର୍ଯ୍ୟ ୫୫ ପ୍ରହେଳିକା, ୫୬ ଯନ୍ତ୍ରମାତୃକା, ୫୭ ଜଳସ୍ତମ୍ଭ ବିଦ୍ୟା, ୫୮ ବସ୍ତୁଗୁପ୍ତ ବିଦ୍ୟା, ୫୯ ଦୁର୍ବାଚକ ଯୋଗ, ୬୦ ବାୟୁ ମେଘ ବିଦ୍ୟା, ୬୧ ଧାରଣ ମାତୃକା, ୬୨ କ୍ରିୟା କୌଶଳ, ୬୩ ଛଳିତକ (ନାଟକଭେଦ), ୬୪ ବୈତାଳିକ ଜ୍ଞାନ । ]

**ଚଉଷଠି ବନ୍ଧ**—ଦେ ବି—କାମଶାସ୍ତ୍ରାଦିରେ ବର୍ଣ୍ଣିତ ସ୍ତ୍ରୀପୁରୁଷସଙ୍ଗମର Chaushaṭhi bandha ୬୪ ପ୍ରକାର ବିଧି ବା ଅବସ୍ଥାନ— 64 kinds of poses in copulation described in the erotic books of ancient India.

**ଚଉସମ**—ଦେ. ବି.—(ସଂ. ଚତୁଃସମ)—୧ । ଚାରିଗୋଟି ସୁଗନ୍ଧ ଦ୍ରବ୍ୟର Chausama ସମାହାର [ଚନ୍ଦନ; ଅଗୁରୁ (ମତାନ୍ତରରେ କର୍ପୂର) चउसम କସ୍ତୁରୀ ଓ କୁଙ୍କୁମ]—1. Aggregate of 4 scents चौसम used as a paste for the body (sandal, bdellium or camphor, musk and saffron).

୨ । ଚାରିଗୋଟି ଶ୍ଳେଷ୍ମା ନିବାରକ ଔଷଧ ଦ୍ରବ୍ୟର ଚୂର୍ଣ୍ଣ—
2. Powder of 4 drugs for cold.
[ଦ୍ର—ଶୁଣ୍ଠି, ପିପ୍ପଳି, ମରିଚ ଓ କଞ୍ଚା ଚୂର୍ଣ୍ଣ ହୋଇ ଏହା ପ୍ରସ୍ତୁତ ହୁଏ । ]

୩ । ଲବଙ୍ଗ, ଜୀରା, ଜୁଆଣି ଓ ହରିଡ଼ାର ଚୂର୍ଣ୍ଣରେ ପ୍ରସ୍ତୁତ ପାଚକ, ଭେଦକ ଓ ଶୂଳନିବାରକ ଔଷଧବିଶେଷ—
3. A medicinal preparation consisting of powdered clove, cumin, ptychotis and myrobalan.

**ଚଉସମାଲି**—ଦେ. ବି.—( ସଂ. ଚତୁଃ+ସୀମା; ତୁଳ. ଦୋସମାଲୀ, Chausamāli ତ୍ରସମାଲୀ)—ଯେଉଁ ସ୍ଥାନରେ ୪ଟି ମଉଜାର ସୀମା चौमेंड़ा, चौवा, ମିଳିଅଛି—A point where the boundaries चौसिंहा of four villages meet.

**ଚଉସରି**—ଦେ. ବି.—(ସଂ. ଚତୁଃସର)—ଚାରିସରିଆ ହାର; ଚଉଲସରି Chausari ହାର—Four-stringed necklace.

ଚ୍ୟବନରୀ ଦେ. ବିଣ.—୧ । ଚାରିସରିଆ ( ହାର ); ଚାରିସୋରା-चौलड़ा ବିଶିଷ୍ଟ—1. (necklace) Consisting of 4 strings; four-stringed.
ଚଉସରା, ଚଉସରିଆ }—ଅନ୍ୟରୂପ

୨ । ଚତୁସ୍ତ୍ର; ଚତୁଷ୍କୋଣବିଶିଷ୍ଟ—2. Quadrangular.

**ଚଉସାର**—ଦେ. ବି.—(ସଂ. ଚତୁଃସାରି, ଏଥିରେ ଚାରି ବର୍ଣ୍ଣର ୪ଟି Chausāra ଲେଖାଏଁ ସାର ବା ଗୋଟି ଥିବାରୁ)—୧ । ପଶାପାଲି-ପାଶୀ 1. The dice-board.
चौपड़, चौसर ୨ । ପଶାଖେଳ—2. The game of dice.

**ଚଉସ୍ତରଶଏ**—ଦେ. ବି. ଓ ବିଣ.—ଏକଶତ ଚଉସ୍ତରି—
Chaustarāsa-e 174; one hundred seventyfour.
(ଚଉସ୍ତରଶହେ—ଅନ୍ୟରୂପ)

**ଚଉସ୍ତରି**—ଦେ. ବି.—( ସଂ. ଚତୁଃସପ୍ତତି; ପ୍ରା. ଚୌହତ୍ତରି )—ସତୁରି Chaustari ଅପେକ୍ଷା ଚାରି ଅଧିକ ସଂଖ୍ୟା; ୭୪—
चूहत्तर 74; seventyfour.
चौहत्तर
(ଚଉସ୍ତୁରି ଚଉସ୍ତୋରି } — ଦେ. ବିଣ—୭୪ ସଂଖ୍ୟକ—
Numbering 74.

**ଚଉହଟ୍ଟା**—ଦେ. ବିଣ.—( ସଂ. ଚତୁର୍+ଆ ହଦ୍‌ଦ୍ )—୧ । ଚାରି Chauhaṭṭā ଦିଗରେ କାନ୍ଥ ବା ପ୍ରାଚୀରଦ୍ୱାରା ବେଷ୍ଟନ କରା ଯାଇ चउहाता 1. Surrounded by a compound wall on चौहत्ता all sides.

୨ । (ସଂ. ଚତୁଃ+ହସ୍ତ)—ହୃଷ୍ଟପୁଷ୍ଟ ଓ ବଳବାନ୍ (ମରଦ)--
(ଚଉହତା—ଅନ୍ୟରୂପ) Tall and strong (man).
[ ଦ୍ର—ସାଧାରଣ ଲୋକେ ଉଚ୍ଚରେ ୩୍ୟ ହାତ ହୁଅନ୍ତି, ଚାରି ହାତ ଡେଙ୍ଗା ଲୋକ ସାଧାରଣଙ୍କ ଅପେକ୍ଷା ବଡ଼ । ]
ଦେ. ବି.—ଚାରିପାଖେ ବୁଲିଥିବା ପାଚେରୀ—
A compound-wall raised round a place.

**ଚଉହଦି**—ଦେ. ବି.—(ସଂ. ଚତୁଃ+ଆ. ହଦ୍ =ସୀମା)—୧ । ସୀମା-Chauhadi 1. Boundary.
चौहद्दि ୨ । ଚତୁଃସୀମା—
चौहद्दी; चौसीमा 2. Boundaries on the 4 sides
ଦେ. ବିଣ.—୧ । ଚତୁଃସୀମାରେ ଅବସ୍ଥିତ—
(ଚଉହଦି—ଅନ୍ୟରୂପ) 1. Situated on the 4 boundaries
୨ । ସୀମାକୁ ଲାଗି କରି ଅବସ୍ଥିତ—
2. Adjoining the boundary; adjacent.

**ଚଏତୁ**—ପ୍ରାଦେ (ସମ୍ବଲପୁର) ବି (ସଂ. ଚୈତ୍ର)—ଚୈତ୍ରମାସ—
Chaetu The lunar month of Chaitra.

**ଚଁକି ପଶିବା**—ପ୍ରାଦେ (ସମ୍ବଲପୁର) କି . (ତୁଳ. ହି. ଚୌଂକ୍‌ନା)—
Chaṅki pasibā ଚମକିପଡ଼ିବା—To be startled; to be alarmed.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଙ | ର୍,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ୱ |
| ୨ | ଈ | ଊ | ରୁ | ଲୁ | ଯ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଗଁ୍ୟ | ଇଅ | ଵ | ନୃ |

ଚଁକିବା—ପ୍ରାଦେ (ସମ୍ବଲପୁର) କି (ଭୁଲ. ହ୍ର. ଚୌଂକ୍‌ନା)—ଚମକିବା—
Chañkibā To be startled.

ଚଁଘର—ପ୍ରାଦେ (ସମ୍ବଲପୁର) ବ ( ଭୁଲ. ହ୍ର. ଚୌଘଡ଼ା)—ଶୃଙ୍ଗଡ଼ା;
Chañgharā ଶୃଙ୍ଗୁଡ଼ା—Wicker-work tray.

ଚଁଚଁ—ଦେ. ଅ—ଚଅଁଚଅଁ (ଦେଖ)
Chañchañ Cha-añ cha-añ (See).

ଚଁର—ପ୍ରାଦେ (ସମ୍ବଲପୁର)—ବ—ଚଁଅର; ନିଶୁଣିର ଅଡ଼ କାଠ—
Chañr The steps or foot-pads of a ladder.

ଚକ୍ (ଧାତୁ)—ସଂ.—୧ । ବ୍ୟାଘାତ କରିବା—
Chak (root) 1. To obstruct.
୨ । ବାଧା ଦେବା—2. To resist; to repel.
୩ । ତୃପ୍ତ ହେବା—3. To be pleased; to be satiated or contented.
୪ । ଭୀତ ହେବା—4. To be frightened.
୫ । ଚକଚକ କରିବା—5. To shine.

ଚକ୍—ବୈଦେ. ବ (ଇଂ. ଚକ୍)—ଫୁଲଖଡ଼ି—
Chak Chalk.
ଚକ୍ ଦେ. ଅ—ହଠାତ୍—Suddenly.
चक

ଚକ୍‌ଚକ୍—ବୈଦେ. ବ (ସଂ. ଚାକଚକ୍ୟ; ଭୁଲ. ଭୁକୀ. ଚକ୍‌ମକ୍; ସଂ. ଚକ୍ ଧାତୁ=ତୃପ୍ତି ପାଇବା)—୧ । ଦୀପ୍ତି; ଚମକ—
Chakchak 1. Splendour; lustre; brilliancy.
चकचक
जगमगाहट ୨ । ଚାକଚକ୍ୟ; ବର୍ଣ୍ଣର ଔଜ୍ଜ୍ୱଲ୍ୟ—2. Brightness of colour; dazzling brightness.
चकचकिया; चुकचुके ଦେ. ବିଣ—ଜାଜ୍ୱଲ୍ୟମାନ; ଉଜ୍ଜ୍ୱଳ;
जगमग ଜକ୍‌ଜକ୍—Shining; bright; brilliant, dazzling.
ଦେ. ଅ (ଧ୍ୱନ୍ୟନୁକରଣ)—ବିରାଡ଼ି କୁକୁର ପାଣିଆ ପଦାର୍ଥ ଜିଭ ଦ୍ୱାରା ଚାଟି ପିଇବାର ଶବ୍ଦ—Sound of licking of milk or water by cats and dogs.
ପ୍ରାଦେ (ସମ୍ବଲପୁର) ବ—ଆସନ୍ନ ବିପଦଜନିତ ଆଶଙ୍କାଯୋଗୁଁ ମନର ଅସ୍ଥିରତା—Uneasiness due to the fear of impending danger.

ଚକ୍‌ଚକ୍ ଲାଗିବା—ପ୍ରାଦେ (ସମ୍ବଲପୁର) ବ—ଆସନ୍ନ ବିପଦର ଆଶଙ୍କାରେ
Chakchak lāgibā ମନରେ ଅସ୍ଥିରତା ଜାତହେବା—Feeling of uneasiness due to apprehension of impending danger.

ଚକ୍‌ଚକାଇବା—ପ୍ରାଦେ (ସମ୍ବଲପୁର) କି ( ଭୁଲ. ଏହି ଅର୍ଥରେ ହ୍ର.
Chakchakāibā ଚର୍କ୍‌ଚକାନା)—ଜଳକଣା ଆଦି କୌଣସି ପାତ୍ରରୁ ଚହଲି ବାହାରେ ପଡ଼ିବା—To split (said of any liquid coming out of a pot).

ଚକଚକି—ଦେ. ବ—ଏକପ୍ରକାର ଡଙ୍ଗା—
Chakchaki A kind of country-boat.
ବାଇଗୋଡ଼ିଆ ପନ୍ଦରଗୋଡ଼ିଆ ଭୁଗଲୀ, ଚକ୍‌ଚକି ନାଆ ଅଛି—
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଚକ—ଦେ. ବ (ସଂ. ଚକ୍ର, ପ୍ରାକୃତ. ଚକ୍କ)—୧ । ଶକଟ ପ୍ରଭୃତିର ଚକ୍ର—
Chaka 1. Wheel.
चाका ଚକେ ଗଲେ ବାରହାତ—ଚଗ ।
चाक [ ଦ୍ର—ଶଗଡ଼ ଚକର ଭିନ୍ନ ଭିନ୍ନ ଅଂଶର ନାମ—ଯଥା—ପହି, ପୁଟ, ଅର, ନାହିଆ, ସନ୍ଧିଆ, ପଚଗ୍, ପିଚକଲା, ପନାଡ଼ି, କୋକଆ, ଝାମ ଓ ବଳା । ]
चक ୨ । ଏକତ୍ରାବସ୍ଥିତ ବହୁ କ୍ଷେତ୍ରର ସମଷ୍ଟି—
चक 2. A compact and large block of land.
ସେ ଛମାଣ ଆଠଗୁଣ୍ଠ ଚକକୁ ହଳ ସିଁ ଚ ?—ଫକୀରମୋହନ. ଛମାଣଆଠଗୁଣ୍ଠ ।
୩ । ମୌଜା ମଧ୍ୟସ୍ଥ ଏକଶ୍ରେଣୀର ଭୂମି—
3. One class or lot of land in a village.
୪ । ବେଦୀ ମଧ୍ୟସ୍ଥ ବରକନ୍ୟାଙ୍କ ଆସନ—4. The place occupied by the couple on the marriage altar.
୫ । ଚଉକୋଣିଆ ଭୂମି—5. A square plot of land.
୬ । ଘରପାଖରେ କୋଠା ଥିବା ଅଗଣା—
6 A square courtyard.
୭ । ବଜାର; ହାଟସ୍ଥାନ—7. Marketplace.
୮ । ଜମିଦାରୀର ଅଂଶ—8. Part of an estate.
୯ । ନଗର ମଧ୍ୟସ୍ଥ ଚତୁଷ୍କୋଣ ସ୍ଥାନ—
9 A square in a town.
୧୦ । କୁମ୍ଭାର ଯେଉଁ ଚକକୁ ବୁଲାଇ ହାଣ୍ଡି ଆଦି ଗଢ଼େ—
10. Potter's wheel.

ଚକଚକିଆ—ଦେ. ବିଣ (ସଂ. ଚାକଚକ୍ୟ)—ଚକ୍‌ଚକ୍ ( ଦେଖ )—
Chakachakiā Chakchak ( See )
ଠିକ୍ ନୂଆ ଚକଚକିଆ ପୋଷାକ—ରାଧାନାଥ. ଦରବାର ।

ଚକଚନ୍ଦି—ଦେ. ବ (ସଂ. ଚକ ଓ ଚକ୍ଷୁସ୍)— ୧ । କିଂକର୍ତ୍ତବ୍ୟବିମୂଢ଼ତା;
Chakachāndi ଧନ୍ଦା; ଘାବରା; ବିହ୍ୱଳତା—1. State of
भेवाचाका being confounded; bewilderment.
चकचौंध; तिलमिलि ୨ । ଅତ୍ୟନ୍ତ ଅଧିକ ଆଲୋକ ଦେଖି ଆଖି ଝଲସି ଯିବା—2. The state of the eyes becoming dazzled by excessive glare of light.
( ଯଥା— ମତେ ଚକଚନ୍ଦି ଲାଗିଗଲା; ମୋର ଚକଚନ୍ଦି ବୁଲିଗଲା ।)
୩ । ଅଧିକ ବାଟ ଚାଲିବା ଯୋଗୁ ତଳପାଦରେ ହେବା କ୍ଷୟଥିବାରୁ ତଳପାଦରେ ଗଣ୍ଡ ଫୁଟିଯିବା—
3. Foot-sore due to excessive walking.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଆଖି ନ ପାଇଲେ 'ଆକ୍ଷି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୪ । ବିଶେଷ ଉଦ୍ବେଗ ବା ଚିନ୍ତା ଯୋଗୁଁ ମନରେ ଜନ୍ମିବା ଅସ୍ଥିରତା—4. Uneasiness or restlessness due to anxiety.

**ଚକଗୁନ୍ଧି ଉଠିବା**—ଦେ. କ୍ରି—୧ । କିଂକର୍ତ୍ତବ୍ୟବିମୂଢ଼ତା ଉପସ୍ଥିତ ହେବା; ଉଦ୍ବେଗ ଯୋଗୁଁ ଅସ୍ଥିର ହେବା—
Chakachāndi uṭhibā
1. Becoming extremely restless through anxiety; being bewildered
୨ । ବହୁତ ବାଟ ଚାଲିବା ଯୋଗୁଁ ଗୋଡ଼ ତଳପାରେ ବ୍ରଣ ହେବା; ଗୁନ୍ଧି ଫୁଟିଯିବା—
2. Having foot-sores.

**ଚକଗୁନ୍ଧି ଘୁମିବା**—ଦେ. କ୍ରି—ଚକଗୁନ୍ଧି ଉଠିବା (୧) (ଦେଖ)—
Chakachāndi ghumibā
Chakachāndi uṭhibā (1) (See)

**ଚକଗୁନ୍ଧି ଘୂରିବା**—ଦେ. କ୍ରି—ଚକଗୁନ୍ଧି ଉଠିବା (୧) (ଦେଖ)—
Chakachāndi ghuribā
Chakachandi uṭhibā (1) (See)

**ଚକଗୁନ୍ଧି ଫୁଟିବା**—ଦେ. କ୍ରି—ଚକଚାନ୍ଦି ଉଠିବା (୨) (ଦେଖ)—
Chakachāndi phuṭibā
Chakachandi uṭhibā (2) (See)

**ଚକଗୁନ୍ଧି ବଣା ହେବା**—ଦେ. କ୍ରି—ଚକଚାନ୍ଦି ଉଠିବା (୧) (ଦେଖ)—
Chakachāndi baṇā hebā
Chakachāndi uṭhibā (1) (See)

**ଚକଗୁନ୍ଧି ବୁଲିବା**—ଦେ. କ୍ରି—ଚକଚାନ୍ଦି ଲାଗିବା ( ଦେଖ )—
Chakachāndi bulibā Chakachāndi lāgibā (See)

**ଚକଗୁନ୍ଧି ଲାଗିବା**—ଦେ. କ୍ରି—ଅତ୍ୟନ୍ତ ଅଧିକ ଆଲୋକ ଯୋଗୁଁ ଆଖି ଝଲସି ଯିବା—The eyes becoming dazzled by excessive light.
Chakachāndi lāgibā
(ଯଥା— ବିଜୁଳି ମାରିବାରୁ ମତେ ଚକଗୁନ୍ଧି ଲାଗିଗଲା । )

**ଚକଟ ମନ୍ଥନ**—ଦେ. ବି—୧ । ଚକଟାମନ୍ଥା; କୌଣସି ବିଷୟର ପୁଙ୍ଖାନୁପୁଙ୍ଖରୂପେ ଅନୁସନ୍ଧାନ ବା ଆଲୋଚନା—
Chakaṭa manthana
(ଚକଟମନ୍ଥ—ଅନ୍ୟରୂପ) 1. Thorough or sifting enquiry or discussion of any matter.
୨ । ବିଶେଷ ଆନ୍ଦୋଳନ—2. Great agitation.

**ଚକଟା**—ଦେ. ବି. (ସଂ. ଚଟ ଧାତୁ=ଭେଦନ; ଭା. ଚଖଲ=ଜାବୁଅ)-
Chakaṭā
ଚଟକା
ଗୁଁଧାଇ
୧ । ଦୁଇ ବସ୍ତୁକୁ ପାଣି ସଙ୍ଗେ ବା ଗୋଟିଏ ଘନ ବସ୍ତୁକୁ ତରଳ ବସ୍ତୁ ସଙ୍ଗେ ସାନ୍ଧିବା କର୍ମ—
1. Act of mixing two things one of which is a liquid; kneading.
୨ । ଦୁଧ, ପାଚିଲାକଦଳୀ ପ୍ରଭୃତିର ସମ୍ମିଶ୍ରଣରେ ପ୍ରସ୍ତୁତ ଖାଦ୍ୟବିଶେଷ; କଦଳୀ ଚକଟା — 2. A food prepared with milk and ripe plantains mixed together.
୩ । ହସ୍ତଦଳିତ ଖାଦ୍ୟ—3. Well kneaded food.
୪ । ଦଳିତ ପଦାର୍ଥ—4. Well mixed thing; solid thing mixed with a liquid thing.
୫ । ଗୋଡ଼ରେ ଦଳିବା—
5. Treading with the feet.
ଦେ. ବିଣ—୧ । ଦଳିତ; ଦଳା ହୋଇଥିବା—
1. Well mixed; thoroughly pressed.
୨ । ପଦଦଳିତ—2. Trodden.

**ଚକଟାଇବା**—ଦେ. କ୍ରି—ଚକଟିବା କ୍ରିୟାର ଣିଜନ୍ତ ରୂପ—
Chakaṭāibā Causative form of Chakaṭibā.
कचटान
गुँधवाना
(ଚକଟେଇବା—ଅନ୍ୟରୂପ)

ଅଙ୍କୁଶେ ସେନାଙ୍କ କାଣ୍ଡକୁ କାଟି ଦେଇ
ପକାଇଲେ ହାତୀ ଗୋଡରେ ଚକଟାଇ ।
କୃଷ୍ଣସିଂହ, ମହାଭାରତ, ଦ୍ରୋଣ ।

**ଚକଟାଚକଟି**—ଦେ. ବି—୧ । ଦଳାଦଳି—1. Thoroughly mixing up or kneading.
Chakaṭāchakaṭi
कचटाकचटि
गुँधागुँधि
୨ । ଉତ୍ତମରୂପେ ଦଳିବା; ଘଣ୍ଟାଚକଟା; ଗୋଳଘାଣ୍ଟ—
2. Thorough agitation; disturbance.

**ଚକଟାମନ୍ଥା**—ଦେ. ବି—ଚକଟାଚକଟି ( ଦେଖ )
Chakaṭāmanthā Chakaṭāchakaṭi ( See )

**ଚକଟିବା**—ଦେ. କ୍ରି. ( ସଂ. ଚଟଧାତୁ=ଭେଦନ )—
Chakaṭibā
चटकान
गुँधना, सानना
୧ । କରତଳଦ୍ୱାରା ମଳିବା ବା ଦଳିବା—
1. To mix with the hands.

ବାବୁ ଯେତେକ ଅନ୍ନ ବଳିଲା ଚକଟି
ଦେହରେ ବୋଳି ହେଲେ ଦୁର୍ବାସାଋଷି ।
କୃଷ୍ଣସିଂହ, ମହାଭାରତ ବନ ।

୨ । ଗୋଡ଼ରେ ଦଳିବା; ଖୁନ୍ଦିବା—
2. To tread with the feet.

ବଣିକାରୂପମାନେ ତ ଶୋଇଥିଲେ ବାଟେ
ଚକଟି ଗଲେ ପାଦ ପକାଇ ଯେ ଅଣ୍ଟେ ।
କୃଷ୍ଣସିଂହ, ମହାଭାରତ ।

୩ । ( ଲକ୍ଷଣାର୍ଥ ) ବିଧ୍ୱସ୍ତ କରିବା—
3. (figurative) To destroy; to ruin.

ତମସାଜ୍ୟୋତ୍ସ୍ନା କି ସୃଷ୍ଟ ପାଦରେ
ଚକଟି ପକାଇଲୁ ଅନାଦରେ । କବିସୂର୍ଯ୍ୟ, କବିତା ।

୪ । (ଲକ୍ଷଣାର୍ଥ) ଆଲୋଡ଼ିତ କରିବା; ବ୍ୟାକୁଳିତ କରିବା—
4. (figurative) To agitate; to disturb.
ଚକଟି ଦେଲୁ ମୋ ହୃଦାଳୟ । କବିସୂର୍ଯ୍ୟ, ବିଶୋକ ଚମ୍ପୂ ।
୫ । (ଲକ୍ଷଣାର୍ଥ) ଗୋଳମାଳ ସୃଷ୍ଟି କରିବା—
5. (figurative) To create confusion.

**ଚକଡ଼ା**—ଦେ. ବି. ( ସଂ. ଚକ୍ର )—୧ । ବିସ୍ତୃତ ଭୂଖଣ୍ଡ—
Chakaṛā 1. A wide expanse of land.
चक ୨ । ଅଞ୍ଚଳ—2. A tract of the country; locality.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍‌,ରୂ | ୠ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଢ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ହ୍ |

ଥଡ଼ା; ଚକ ୩ । ଖାନାବାଡ଼ି; ବାସ୍ତୁ, ଦେବାଳୟଆଦିର ସୀମା— 3. The boundary and premises of a temple (exclosed within a compound); homestead.

୪ । ଚକଲା (ଦେଖ)—4. Chakalā (See)

୫ । ରଥଚକ୍ରମାନଙ୍କଦ୍ୱାରା ଅଧିକୃତ ସ୍ଥାନ—5. The space occupied by the wheels of a car.

୬ । ଚକ୍ରାକୃତ ସ୍ଥାନ—6. A circular place.

୭ । ଚକ୍ରାକୃତ ବଡ଼ ଖଣ୍ଡ—7. A big circular bit.

ଚକଡ଼ା ଦାନ—ଦେ. ବି.—ବିସ୍ତୃତ ଭୂଖଣ୍ଡ ବା ଚକଲା ଦାନ—
Chakarḏā dāna Gift of a larg tract of land.

[ ଦ୍ର—ଉତ୍କଳୀୟ ରାଜାମାନେ ବ୍ରାହ୍ମଣମାନଙ୍କର ଭରଣପୋଷଣ ନିମନ୍ତେ ସେମାନଙ୍କୁ ଚକଡ଼ା ଦାନ କରୁଥିଲେ ।
ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

ଚକଡ଼ାଭେଜି—ଦେ. ବି.—(ବୈଦ୍ୟକ)—କଣ୍ଟାକାରି (ଦେଖ)
Chakarḏābheji Kanṭakāri (See)

ଚକତି—ଦେ. ବି. (ସଂ. ଚକ୍ରବତ୍ ବା ଚକ୍ର+ପତ୍ର)—ଧାତୁ, ଚମଡ଼ା, ମୋଟା କାଗଜ ବା କନାର ଗୋଲ ପତଳା ଛୋଟ ଖଣ୍ଡ; ଟୁକୁଲି; ଢାଳ—A small circular bit of thin metal, leather, tough paper or cloth.
Chakati
চাকতি
चकति

ଚକନି—ପ୍ରାଦେ. (ସମ୍ବଲପୁର) ବି.—ଦୌପତ୍ରୀ; ପତ୍ରର ଠୋଲା—
Chakani Leaves made or sewn into a pot

ଚକବନ୍ଦୀ—ଦେ. ବି.—( ସଂ. ଚକ୍ର+ବନ୍ଧ ଧାତୁ )—୧ । ଗ୍ରାମର ସୀମା-ନିରୂପଣ—1. Ascertaining the boundary of a village.
Chakabandi

୨ । ଖଣ୍ଡ ଖଣ୍ଡ କରି ଭୂମିର ଭାଗକରଣ—2. Allotment of land by lots.
চকবন্দি
चकबन्दी

୩ । ଭୂସମ୍ପତ୍ତି (ଜ୍ଞାନେନ୍ଦ୍ର)—3. An estate.

୪ । ରାଜସ୍ୱ ବା ପୁଲିସ ଅଧିକାରର ସୀମା (ଜ୍ଞାନେନ୍ଦ୍ର)—
4. The limit of a Revenue or Police jurisdiction.

ଚକଭୁଅ—ଗ୍ରା. ବି (ସଂ. ଚକ୍ରବ୍ୟୂହ)—ଚକ୍ରବ୍ୟୂହ (ଦେଖ)
Chakabhua Chakrabyūha (See).
चकाबु

ଚକମକ—ବୈଦେ. ବି (ତୁର୍କୀ ଚକ୍‌ମକ୍; ତୁଳ. ସଂ. ଶୁକଚକ୍ୟ)—ଚକ୍‌ଚକ୍ (ଦେଖ)
Chakamaka Chakchak (See).

ଚକମକି—ଦେ. ବି (ତୁର୍କୀ. ଚକ୍‌ମକ=ହଠାତ୍ ଆଲୁଅ ମାରିବା, ଯଥା—ବିଦ୍ୟୁତ୍ )—୧ । ନିଆଁ ଝାଡ଼ିବାରେ ପଥର ( ଖଣ୍ଡେ ବାଲିଗରଡ଼ା ଓ ଖଣ୍ଡେ ଲୁହା )—1. Flint and steel for striking out fire.
Chakamaki
চকমকী
चकमक

୨ । ଯେଉଁ ଟାଣୁଆ ପଥରରେ ଅନ୍ୟ ପଥର ବା ଲୁହା ଆଘାତ କଲେ ନିଆଁ ବାହାରେ—2 Flint.

୩ । ଝଟକ; ବିଦ୍ୟୁତ୍‌ର ଝଟକ—3. The striking out of lightning; sudden glow of lightning.

ଦେ. ବିଣ—ଚକମକି ଲଗାଯାଇଥିବା (ବନ୍ଧୁକ)—
(gun) Having a flint

ଚକମକିଆ—ଦେ. ବିଣ (ସଂ. ଶୁକଚକ୍ୟ)—ଚକ୍‌ଚକ୍ (ଦେଖ)
Chakamakiā Chakchak (See).

ଚକମକି ଝାଡ଼ିବା—ଦେ. କ୍ରି—ଚକମକି ପଥରରେ ଲୁହା ମାରି ଅଗ୍ନି ବାହାର କରିବା—To strike out fire from flint stone.
Chakamaki jhārḏibā
চকমকীঝাড়া
चकमकमारना
(ଚକମକି ମାରିବା—ଅନ୍ୟରୂପ)

ଚକମକି ଥଳି—ଦେ. ବି—ଯେଉଁ ମୁଣିରେ ଚକମକି ପଥର ଓ ଶୋଲ ଥାଏ—A pouch containing materials for striking out a fire ( e. g flint, iron and a combustible cork ).
Chakamaki thaḻi
(ଚକମକି ମୁଣି—ଅନ୍ୟରୂପ)

ଚକମକି ପଥର—ଦେ. ବି (ତୁ. ଚକ୍‌ମକ୍+ସଂ. ପ୍ରସ୍ତର)—ଏକପ୍ରକାର ଅଗ୍ନିଗର୍ଭଶୀଳା ପଥର, ଲୁହାରେ ଆଘାତ କଲେ ଯହିଁରୁ ଅଗ୍ନିସ୍ଫୁଲିଙ୍ଗ ବାହାରେ—Flint-stone.
Chakamaki pathara
চকমকি পাথর
चकमक

ଚକମକି ବନ୍ଧୁକ—ଦେ. ବି—ଯେଉଁ ବନ୍ଧୁକରେ ଚକମକିରୁ ଝଡ଼ିବା ନିଆଁ ଲାଗି ବନ୍ଧୁକ ଫାଏର୍ ହୁଏ—Flint-lock.
Chakamaki bandhuka
চকমকি বন্দুক
चकमकि बंधुक

ଚକମାଚୁର—ଦେ. ବିଣ—ଚୂର୍ଣ୍ଣବିଚୂର୍ଣ୍ଣ; ଚୁନାଚୁନା; ଚୁରମାର—
Chakamāchur Shattered to pieces.
চুরমার
चकनाचूर

ଚକର୍—ପ୍ରାଦେ. ( ସମ୍ବଲପୁର ) ବି. (ସଂ. ଚକ୍ର; ତୁଳ. ହି. ଚକ୍କର୍)—ଚକ—Wheel.
Chakar

ପ୍ରାଦେ. ( ସମ୍ବଲପୁର ) ବିଣ—ଚକ୍ରାକୃତବିଶିଷ୍ଟ—
Round; circular.

ଚକର୍ ପବନ—ପ୍ରାଦେ. ( ସମ୍ବଲପୁର ) ବି. ( ସଂ. ଚକ୍ର ଓ ପବନ )—ଘୂର୍ଣ୍ଣିବାୟୁ—Whirlwind.
Chakar pabana

ଚକର—ଗ୍ରା. ବି. ( ସଂ. ଚକ୍ର )—୧ । ଚକ୍ରାନ୍ତ—1. Collusion; evil plot.
Chakara
চক্কর

୨ । ଚକ୍ରଧରଙ୍କ ଡାକନାମ—2. Name for calling Chakradhara.
चक्कर

ଚକର ( ଇତ୍ୟାଦି )—ଦେ. ବି—ଚକ୍କର ଇତ୍ୟାଦି (ଦେଖ )
Chakara ( etc ) Chakkara etc ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ନି' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

ଚକର ଛେଉଣ୍ଡା—ଗ୍ରା. ବିଣ. ପୁଂ. (ଗାଳି) (ସଂ ଚକ୍ର ଓ ଛେଦନ)—
Chakara chheuṇḍā ବାସସ୍ଥାନ; ବାଉଳୁଲା; ଛନ୍ନଛଡ଼ା; ଦୁଷ୍ଟ;
(ଚକରଛେଉଣ୍ଡୀ—ସ୍ତ୍ରୀ) ବସ୍ତିହୀନ—Wicked; one who has
(ଚକରଛେଣ୍ଡା—ଅନ୍ୟରୂପ) got no house of his own.

୨ । ଯେଉଁ ପିଲା ଗର୍ଭରେ ଥିଲାବେଳେ ପିତା ବା ମାତା ମରି ଯାଇ ଥାଆନ୍ତି ।—2. Posthumous (child).

[ଦ୍ର—ଅଶ୍ୱତ୍ଥାମା ଉତ୍ତରାଙ୍କ ଗର୍ଭକୁ ଶର ନିକ୍ଷେପ କଲାବେଳେ ଶ୍ରୀକୃଷ୍ଣ ଚକ୍ର ଉଦ୍‌ଘାଟନ କରି ପରୀକ୍ଷିତଙ୍କୁ ରକ୍ଷା କରିଥିଲେ ।]

ଚକରାନ୍ତ—ଗ୍ରା. ଓ ପଦ୍ୟ ବି. (ସଂ. ଚକ୍ରାନ୍ତ)—ଚକ୍ରାନ୍ତ (ଦେଖ)—
Chakarānta Chakrānta (See)

ଚକରେ ଗଢ଼ାଇବା—ଦେ. କ୍ରି—ଚକରେ ଗଢ଼ିବା କ୍ରିୟାର ଣିଜନ୍ତ ରୂପ—
Chakare gaṛḍhāibā Causative of Chakaregaṛḍhibā.

ଚକରେ ଗଢ଼ିବା—ଦେ. କ୍ରି—(କୁମ୍ଭାର ଚକଦ୍ୱାରା ହାଣ୍ଡି ଆଦି ଗଢ଼ିବା
Chakaregaṛḍhibā ଅର୍ଥରୁ)—(ଲକ୍ଷଣାର୍ଥ) ନ ଥିବା ପଦାର୍ଥକୁ ଉତ୍ପାଦନ କରିବା—
चाकाम्र गढ़ा
चाकमेगढ़ना (figurative) To bring a thing into existence.

ଚକରେ କର ଗଢ଼ିବ ନାଁ, ସରଗରୁ ଚୋଳ ଅଣିବ—
କୁନ୍ତଳାକୁମାରୀ. କଥଉଣ୍ଡୀ.

ଚକଲା—ଦେ. ବି—ମରହଟ୍ଟା ରାଜତ୍ୱରେ ଶାସନଶୃଙ୍ଖଳା ପାଇଁ କରାଯାଇ-
Chakalā ଥିବା ଭୂଖଣ୍ଡ ବିଭାଗ ।
চকলা
चकला

ଚକଲେଟ୍—ବୈଦେ. ବି (ଇଂ. ଚକୋଲେଟ୍)—
Chakaleṭ କୋକାଓ ନାମକ ବୃକ୍ଷିଜାତ ଗୁଳୁର ଫଳକୁ ଭାଜି, ଚୂର
চকলেট ଓ ଜଳରେ ମିଶାଇ ପ୍ରସ୍ତୁତ କରାଯାଇଥିବା ଏକ ପ୍ରକାର
चकलेट ଶିଶୁପ୍ରିୟ ମିଷ୍ଟାନ୍ନ—Chocolate.

[ଦ୍ର—ଏ ଦ୍ରବ୍ୟର ବର୍ଣ୍ଣ ରକ୍ତାଭ ପାଣ୍ଡୁର ବା ପିଙ୍ଗଳ ବର୍ଣ୍ଣ ଥିବାରୁ ଚକଲେଟ୍ ବର୍ଣ୍ଣ (Chocolate colour) କହିଲେ ରକ୍ତାଭ ପାଣ୍ଡୁର ବର୍ଣ୍ଣ ବୁଝାଯାଏ ।]

ଚକଶ୍—ଦେ. ବିଣ—ଚଉକଶ (ଦେଖ)
Chakaś Chaukaśa (See)

ଚକା—ଦେ. ବି. (ସଂ. ଚକ୍ର)—୧ । ଚକଡ଼ା; ଗୋଲାକାର ପଦାର୍ଥର
Chakā ଅଧିକୃତ ସ୍ଥାନ—1. Place occupied by a round thing; the base of a round thing.

୨ । ଦୁଇ ଜାନୁକୁ ପରସ୍ପର ମଣ୍ଡଳାକାରରେ ଛନ୍ଦି ଭୂମିରେ ବସିବା ଆସନ; ପଦ୍ମାସନ—2. Squatting cross legged; sitting on the ground by entwining the two thighs and knees and legs, with hips touching the ground.

ଚକାଆସନରେ ବସିଣ ଶୁକ ଋଷି
କେନ୍ଦ୍ର ଦୁଇ ଭାଲ ପୃଷ୍ଠରେ ଦେଇ ଖୋଷି । କୃଷ୍ଣସିଂହ, ମହାଭାରତ. ଶାନ୍ତି ।

୩ । ବସିବା ନିମନ୍ତେ ଚକ୍ରାକାର ପୀଢ଼—
3. A circular slab of stone used as a seat.

୪ । ଜଗନ୍ନାଥ ମହାପ୍ରଭୁଆଦି ସ୍ନାନ-ମଣ୍ଡପରେ ଯେଉଁ ଗୋଲ ପଥରରେ ବସି ସ୍ନାନ କରନ୍ତି—4. Round slabs of stone on which the deities Jagannath, Balabhadra and Subhadra are seated and bathed during Snāna Jātrā.

୫ । ଗୋଲାକାର ପଥର ଯାହା ଉପରେ ମଲ୍ଲମାନେ ହାତ ଭରା ଦେଇ ଦଣ୍ଡ ପକାନ୍ତି—5. A slab of stone on which athletes make physical exercises.

ଏକ ସ୍ଥଳ ଚକାରେ ହସ୍ତ ନ୍ୟସ୍ତ
କଲେ ଆରମ୍ଭ ହୋଇ ଚମତ୍କୃତ । ଭଞ୍ଜ. ପ୍ରେମସୁଧାନିଧି ।

୬ । ଚକୁଆ ( ଦେଖ )
6. Chakuā ( See )

୭ । ଚେକା; କୋଡ଼ି ବା ଫାଉଡ଼ାରେ ହାଣି ଉଠାଇବା ଘାସଲଗା ମାଟିର ଖଣ୍ଡ—7. Sod; turf.

ଦେ. ବିଣ—ବର୍ତ୍ତୁଳ; ଗୋଲ—Circular; round.

ଗ୍ରା. ବି—ଚେକା; ଘାସ ସହିତ ମାଟିର ଗୋଲାକାର ଚେଲା—
A circular cake of turf; sod.

ଚକାଆଖି—ଦେ. ବି. ( ସଂ. ଚକ୍ର + ଅକ୍ଷି; ଚକ୍ଷୁ ଗୋଲ ଥିବାରୁ )—
Chakāākhi (ଜଗନ୍ନାଥଙ୍କ ପ୍ରତିମାର ଚକ୍ଷୁ ଗୋଲ ଥିବାରୁ) ପୁରୀରେ ପ୍ରତିଷ୍ଠିତ ଗୋଲ ଚକ୍ଷୁଯୁକ୍ତ ଜଗନ୍ନାଥଙ୍କ ପ୍ରତିମା—The idol of Jagannath at Puri (having round eyes and a peculiar face).

୨ । ଜଗନ୍ନାଥଙ୍କ ଗୋଲାକାର ଚକ୍ଷୁ—2. The round eyes of the idol Jagannatha at Puri.

ବୁଝିଁଛ ଥରେ ଚକା ଆଖି ହେ କୃପାନିଧି । କବିସୂର୍ଯ୍ୟ—କବିତା ।

ଦେ. ବିଣ—ଗୋଲ ଚକ୍ଷୁବିଶିଷ୍ଟ—Round-eyed.

ଚକାଚକା—ଦେ. ବିଣ. (ବହୁବଚନ)—୧ । ବହୁ ସଂଖ୍ୟକ ଗୋଲାକାର
Chakāchakā (ବସ୍ତୁ)—1 Numerous and circular (things).

୨ । ବହୁସଂଖ୍ୟକ ଚକାକାର ଚିହ୍ନବିଶିଷ୍ଟ—
2. Consisting of many circular marks.

ଚକାଚକା ଭଉଁରି—ଦେ. ବି. (ସଂ. ଚକ୍ର ଓ ଭ୍ରମ)—
Chakāchakā bhauñri ୧ । ଚକ୍ରାକାରରେ ଘୂରିବା—
चाकभाउँरि; चाकाभउँरि 1. Whirling round; making circles.
ଚକାଚକାମଣ୍ଡଳ } ଅନ୍ୟରୂପ
ଚକାଚକାମାଣ୍ଡଳ }

୨ । ପିଲାମାନଙ୍କର ଚକ୍ରାକାରରେ ବୁଲିବା ଏକପ୍ରକାର ଖେଳ—2. A play of children whirling round or making circuits.

ଚକାଚକା ଭଉଁରି, ମାମୁଁଘର ତଉଁରି । ଶିଶୁଗୀତ ।

| ୧ | ଇ | ଉ | ରୃ,ରୂ | ୠ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଛ | ଇଯ୍ | ଉଅ | ଲ୍ପ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଢ଼ | ନ୍ |

ଚକାଚକି—ଦେ. ବି—ଚକୁଆଚକି ( ଦେଖ )
Chakāchaki Chakuāchaki ( See )

ଚକାଛଆଣି—ଦେ. ବି. (ଚକ+ଛାଦନ)—ଚେକା ଛଇଣି; ମାଟିବନ୍ଧଅନ୍ଧ
Chakāchhāāṇi ପାଣିରେ ଧୋଇ ନ ଯିବ ଏଥିପାଇଁ ତହିଁ ଉପରେ
ଘାସ ଅଧର ଚେକା ବିଛାଇବା—
ଚକାଛଇଣି, ଚକାଛାଆଣି, ଚକାଛୁଆଣି (ଅନ୍ୟରୂପ) Laying of turf on earth; turfing.

ଚକାଡୋଳା—ଦେ. ବି. ଓ ବିଣ.—ଚକାଆଖି (ଦେଖ)
Chakādolā Chakāākhi (See)
କଳା ଆଖି ଚକାଡୋଳା ସୁରଙ୍ଗ ଅଧର,
ସେଛୁ ଅବଲୋକନ କରନ୍ତୁ ନବକୁର । ପ୍ରାଚୀ ନଳଚରିତ ।

ଚକାଦାଗ—ଦେ. ବି.—ଦେହରେ ଫଳିବା ଗୋଲ ଚିହ୍ନ—
Chakādāga Circular marks appearing on the body.
চাকাদাগ
**চকতা**

ଚକାନୟନ—ଦେ. ବି. ଓ ବିଣ.—ଚକାଆଖି (ଦେଖ)
Chakānayana Chakāākhi (See)
ଚକାନୟନକୁ ଚକାରେ ମାନସ । ଭଜନ ।

ଚକାପକାଇବା—ଦେ. କ୍ରି.—୧ । ଜାନୁ ଛନ୍ଦି ବସିବା—
Chakā pakāibā 1. To squat; to sit with the legs as in a knot with hips touching the ground.
আসন পীড়িকরা,
চাপ্পঠিলি খাওয়া
**পলথীমারনা**
ଚକାପାଡ଼ିବା, ଚକାପାରିବା, ଚକାମାରିବା (ଅନ୍ୟରୂପ)
୨ । ପଦ୍ମାସନରେ ବସିବା—
2. To sit cross-legged.

ଚକାପିଡ଼ା—ଦେ. ବି.—୧ । ଜାନୁ ଛନ୍ଦି ଉପବେଶନ—1. A posture of sitting on with hips on the ground.
Chakāpirḍhā
୨ । ବର୍ତ୍ତୁଳ ପୀଠ ବା ଆସନ—
2. A circular seat.

ଚକାପିଡ଼ା ମାରିବା—ଦେ. କ୍ରି—ଚକା ପକାଇବା (ଦେଖ)
Chakāpirḍhā māribā Chakā pakāibā (See)

ଚକାଭଉଁରି—ଦେ. ବି.—ଚକା ଚକା ଭଉଁରି (ଦେଖ)
Chakābhauṅri Chakā chakā bhauṅri (See)
(ଚକାମଉର— ଅନ୍ୟରୂପ)

ଚକାମାଉଳି—ଦେ. ବି.—୧ । ଚକା ଚକା ଭଉଁରି (ଦେଖ)
Chakāmāuli Chakā chakā bhauṅri (See)
୨ । ଚକାମାଣ୍ଡୁ (ଦେଖ)
2. Chakāmāṇḍu (See)

ଚକାମାଉଳି ପକାଇବା—ଦେ. କ୍ରି.—୧ । ଚକାଭଉଁରି କରିବା (ଦେଖ)
Chakāmāuli pakāibā 1. Chakābhauṅri karibā (See)
୨ । ଚକାମାଣ୍ଡୁ ପକାଇବା (ଦେଖ)
2 Chakāmāṇḍu pakāibā (See)

ଚକାମାଡ଼ିବା—ଦେ. କ୍ରି.—ଚକାପକାଇବା (ଦେଖ)
Chakā mārdibā Chakāpakāibā (See)
ମୋ ବୋଲେ ଚକାମାଡ଼ି ବସ ଧନ କର ।
କୃଷ୍ଣସିଂହ. ମହାଭାରତ. ବନ ।

ଚକାମାଣ୍ଡୁ—ଦେ ବି. ( ସଂ. ଚକ୍ର ଓ ମଣ୍ଡଳ )—ଜାନୁ ଛନ୍ଦି ଭୂମିରେ
Chakāmāṇḍu ଉପବେଶନ; ପଦ୍ମାସନ—Squatting;
(ଚକାମାଲି—ଅନ୍ୟରୂପ) sitting cross-legged (with hips on the ground.)

ଚକାମାଣ୍ଡୁ ପକାଇବା—ଦେ. କ୍ରି.—ଭୂମିରେ ଜାନୁ ଛନ୍ଦି ପଦ୍ମାସନରେ
Chakāmāṇḍu pakāibā ବସିବା—To sit cross-legged with hips to the ground.

ଚକାମୁଆଁ—ଦେ. ବି—ଚକ୍ରାକାରର ମୁଆଁ ଧନୁମୁଆଁ—
Chakāmuāṅ A round cake of fried paddy seasoned with sugar.
(ଚକାମୁଦ୍ଧାଁ—ଅନ୍ୟରୂପ)
ଚକାମୁଆଁ ଶହେ ଦେବୀମାନଙ୍କୁ । କବିସୂର୍ଯ୍ୟ କବିତା ।

ଚକାମୁଟ୍ଲି—ପ୍ରାଦେ (ସମ୍ବଲପୁର)—ବି.—ଚକାମାଡ଼ି ବସିବା—
Chakāmutlā Squatting.

ଚକାସ୍ (ଧାତୁ)—ସଂ.—୧ । ଦୀପ୍ତି ପାଇବା —
Chakās (root) 1. To glitter; to shine.
୨ । ( ଲକ୍ଷଣାର୍ଥ ) ଖୁସୀ ହେବା—
2. To be happy.
୩ । ଦୀପ୍ତି କରିବା; ଉଜ୍ଜ୍ୱଳ କରିବା—
3. To brighten; to illuminate.

ଚକାସନ—ଦେ. ବି—ପଦ୍ମାସନ—
Chakāsana Posture of sitting cross-legged.
ଦେ. ବିଣ—ଭୂମିରେ ଜାନୁ ଛନ୍ଦି ଚକାସନରେ ବସିବା,
ଚେକାମାଉଳି ପକାଇ ବସିଥିବା—Sitting cross-legged.
ସମସ୍ତେ ସଭରେ ଚକାସନ ହୋଇ—କୃଷ୍ଣସିଂହ. ମହାଭାରତ. ସଭା ।

ଚକାସିତ—ସଂ. ବିଣ (ଚକାସ୍ ଧାତୁ+ତ)—
Chakāsita ୧ । (+କର୍ତ୍ତୃ. ତ ) ଦୀପ୍ତ; ଉଜ୍ଜ୍ୱଳ—
1. Glittering; bright; splendid; shining.
୨ । ଅଲଙ୍କୃତ; ଶୋଭିତ —2. Adorned.
୩ । ( +କର୍ମ+ଅ) ଆଲୋକିତ; ପ୍ରକାଶିତ—
3. Lighted; illuminated.
୪ । ସୁନ୍ଦର—4. Beautiful.

ଚକି—ଦେ. ବି (ସଂ. ଚକ୍ର)—୧ । କାଗଜର ଗୁଡ଼ି—
Chaki 1. Paper kite.
চাকী
୨ । ଚକତି; କ୍ଷୁଦ୍ର ବର୍ତ୍ତୁଳାକାରଖଣ୍ଡ—
**चकती; चक्की; चकता** 2. Circular pieces or bits.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

୩ । ଚୂନ ପେଷିବା ପାଇଁ ଚକ୍ରାକାର ପଥର—
3. A circular stone used to pound and mix lime.

ଜାନ୍ତୁ; ଜନ୍ତା ୪ । ଯନ୍ତା; ପେଷଣ ଯନ୍ତ୍ର—
4. Mill stone; grinding stone.

[ ଦ୍ର—ଦୁଇଟି ପଥରର ଚକ ଉପର ତଳ ହୋଇ ରଖାଯାଏ, ତଳ ଚକଟି ସ୍ଥିର ଥାଏ ତହିଁ ଉପରେ ଉପର ଚକକୁ ଘୁରାଇ ଦୁଇ ଚକ ମଧ୍ୟରେ ଶସ୍ୟାଦି ରଗଡ଼ାଯାଏ ବା ଚୂନା କରାଯାଏ । ଚକ ଦୁଇଟି କାର୍ଯ୍ୟରେ ବ୍ୟବହୃତ ହୁଏ । ୧—ଗୋଟା ମୁଗ ଆଦିକୁ ଫାଳ ଫାଳ କରି ରଗଡ଼ିବା; ୨—ଗୁଣ୍ଡଳ ଆଦିକୁ ଚୂନା କରିବା । ଚକ ଦୁଇପଟ; ଉପର ଚକ ପଟର ଗୋଟିଏ ପାଖରେ ଗୋଟିଏ କଣା ହୋଇଥାଏ । ସେହି କଣାରେ ଗୋଟିଏ କାଠି (ଚକକାଠି) ପୂରାଇ ସେ କାଠିକୁ ଘୁରାଇଲେ ଚକ ଚଳେ । ତଳପଟ କେନ୍ଦ୍ରରେ ଗୋଟିଏ କଣା ହୋଇ ଖୁଣ୍ଟିଟିଏ (ମାଣିଖୁଣ୍ଟି) ପୋତା ହୋଇଥାଏ । ଉପର ପଟର କେନ୍ଦ୍ରସ୍ଥ ଛିଦ୍ର ସେହି ମାଣିଖୁଣ୍ଟିରେ ଗଳାଯିବାରୁ ଘୁରାଇଲା ବେଳେ ଚକ ଖସି ଯାଏ ନାହିଁ । କେତେକସ୍ଥଳରେ ଉପର ଚକରେ ଥିବା ବଡ଼ କଣାରେ ଖଣ୍ଡିଏ ରନ୍ଧ୍ରଯୁକ୍ତ କାଠ ଚକଡ଼ି ବା ପିହାଣିଆ ଥାଏ । ]

୫ । ( ସଂ. ଚକ୍ରିକା ) ଗୋଡ଼ ଆଣ୍ଠୁଗଣ୍ଠିରେ ଥିବା ଗୋଲକାର ହାଡ଼ଖଣ୍ଡ; ଆଣ୍ଠୁର ଚକ—
5. The knee-bone.

୬ । ହାତର ଲେଡ଼ି; କରତଳର ମଧ୍ୟଭାଗ, କରତଳର ଖାଲୁଆ ଜାଗା—6. Palm; middle of the palm; the depressed centre of the palm; hollow of the hand.

**ଚକ୍‌ଆଇବା**—ଦେ. କ୍ରି (ସଂ. ଚକ୍ର)—ଚେକ୍‌ଆଇବା (ଦେଖ)
Chakiāiba — Chekiāiba (See).

ତରାଇ ଭକତ ସୁଖ ପାଦପେ
ଚକଆଉ ମୂର୍ଚ୍ଛି କାନ୍ତଲେ କୋପେ—କବିସୂର୍ଯ୍ୟ. କବିତା ।

**ଚକିଏ**—ଦେ. ବି ଓ ବିଣ—ହାତ ଲେଡ଼ିର ଚକ ମଧ୍ୟରେ ଯେତିକି
Chakie ( ମୁଷ୍ଟି ) ସମ୍ଭବେ—As much as can be contained in the hollow of the palm.

**ଚକକାଠି**—ଦେ. ବି—ଚକର ଉପର ପଟର ପାର୍ଶ୍ୱରେ ଥିବା ଛିଦ୍ରରେ
Chakikāṭhi ଯେଉଁ ଗୋଟିଏ ଲମ୍ବର କାଠିକୁ ପୂରାଇ ବୁଲାଇବାକୁ ହୁଏ—The wooden rod which is thrust inside the lateral hole of the upper mill stone and which is held by the hands while the mill is set in motion.

**ଚକଗୁଡ଼**—ଦେ. ବି—ଅଖାରେ ଗୋଲକାର ପୋଟଳା ପରି ବନ୍ଧା ହୋଇ
Chakigurda ଥିବା ଗୁଡ଼—Molasses made into round blocks and rolled in gunny-bags.

[ ଦ୍ର—ଗଣ୍ଡୀ ଓ ଆସିଲି ଗଞ୍ଜରେ ଏହିପରି ଗୁଡ଼ ପ୍ରସ୍ତୁତ ହୁଏ । ]

**ଚକିତ**—ସଂ. ବିଣ. ପୁଂ. ( ଚକ୍ ଧାତୁ=ଭୀତ ହେବା; ବ୍ୟାଘାତ କରିବା
Chakita +କର୍ତ୍ତୃ. ତ )—୧ । ଭୀତ; ଭୟବ୍ୟାକୁଳ—
(ଚକିତା—ସ୍ତ୍ରୀ) 1. Frightened; afraid.

ଚମକ ଚକିତ ଇବାସୀ
ହାସ୍ୟ ଯେବନ ମିଶାମିଶି । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

୨ । ଭୟତ୍ରସ୍ତ; ଭୟ କମ୍ପିତ—2. Trembling through fear; struck with fear.
୩ । ଚମକି ପଡ଼ିଥିବା—3. Startled; alarmed
୪ । ତୃପ୍ତ—4. Satisfied.
୫ । ଥରୁଥିବା—5. Trembling.
୬ । ଆଶ୍ଚର୍ଯ୍ୟାନ୍ୱିତ—6. Wondering.
ସଂ. ବି. ( +ଭାବ. ତ )—ଭୟ—Fear; fright.

**ଚକୁ**—ବୈଦେ. ବି. (ଫା. ଚକୁ; ତୁର୍କୀ. ଚୁକୁ )—
Chaku ଛିଲିକାତି; ଛୋଟ ଛୁରୀ—A small knife.
ଚାଖୁ, ଚାକୁ
**चक्कु, चाकु**

**ଚକୁଆ**—ଦେ. ବି. (ସଂ. ଚକ୍ରାହ୍ୱ; ପ୍ରାକୃତ. ଚକାଓ )—
Chakuā ଚକ୍ରବାକ ପକ୍ଷୀ; ରଥାଙ୍ଗ ପକ୍ଷୀ—
(ଚକୋଇ—ସ୍ତ୍ରୀ) The ruddy sheldrake (male); the Brahmine duck ( male ).
চকা
**चकवा**
(ଚକୋଆ—ଅନ୍ୟରୂପ)

**ଚକୁଆଚକୀ**—ଦେ. ବି. ( ଚକ୍ରବାକ+ଚକ୍ରବାକୀ )—
Chakuāchaki ରଥାଙ୍ଗ ମିଥୁନ; ଚକ୍ରବାକ ଦମ୍ପତି—
চকাচকী The Brahmini duck ( male and female); the ruddy sheldrake (male and female).
**चकवाचकई**
ଚକୁଆଚକେଇ } ଅନ୍ୟରୂପ
ଚକୁଆଚକୋଇ }

**ଚକୁଳି**—ଦେ. ବି. ( ସଂ. ଶଷ୍କୁଲୀ )—
Chakuḷi ଚାଉଳ ଓ ବିରି ବଟାରେ ତିଆରି ପତଳା ପିଷ୍ଟକ-
চকলি, চুকলী ବିଶେଷ—Thin roll of cakes prepared
**चपाटी, चपाती** from rice and phasolus paste.

ଚକୁଳି ଖାଇବ ନା ଛିଦ୍ର ଗଣିବ—ପ୍ରବଚନ ।

[ ଦ୍ର—ବଟା ଅଣ ବା ପିଠଉକୁ ପାଣିଆ କରି ନିଆଁ ଉପରେ କଡ଼େଇ ବା ପଲମ ବସାଇ ସେ ପଲମରେ ଘିଅ ବା ତେଲ ବୋଳି ପିଠଉ ଢଳାଯାଏ ଓ ପଲମକୁ ଧରି ଘୁରାଇଲେ ପିଠଉଟିକ ପତଳା ଓ ଚକ୍ରସ ହୋଇଯାଏ । ସେହି ଚକୁଳିର ମଝିରେ ପୁର ଦେଇ ତାକୁ ଗୁଡ଼ିଆଡ଼ୁ ଭାଙ୍ଗି ଦେବାକୁ ହୁଏ. ତାକୁ ପୋଟଳ ଚକୁଳି ବୋଲାଯାଏ । ବଡ଼ାଏ ଚୁଡ଼ାକୁ ପିଠଉରେ ବୁଡ଼ାଇ କଡ଼େଇରେ ଛାଣି

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଭ | ର୍,ର୍ | ଛ | ଏ ' | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇସ୍ତ | ଉ୍‌ଥ | ଞ |
| ୨ | ଈ | ଊ | ରୁ | ଲୁ | ସ୍ରୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚିଁ୍ୟ | ଇଥ | ଝ | ନ୍ |

ଯେଉଁ ପିଠା କରାଯାଏ ତାକୁ ଛୁଞ୍ଚ ପତର ବୋଲାଯାଏ । ପତଳା ଚକୁଳ ଲେଉଟା ଯାଏ ନାହିଁ । କିନ୍ତୁ ପିଠଉକୁ ମୋଟ କରି କଟେଇରେ ଦେଲେ ତହିଁର ଉପର ପାଖ ସିଝିବାପାଇଁ ଚକୁଳକୁ ଲେଉଟାଇବାକୁ ହୁଏ । ତାକୁ ଲେଉଟ ଚକୁଳ ବୋଲାଯାଏ । ଘରୁ ପୁଅ ଆଦି ବିଦେଶକୁ ଯିବା ସମୟରେ ସ୍ତ୍ରୀମାନେ ତାକୁ ଲେଉଟ ଚକୁଳ ଖୁଆନ୍ତି, ଏହାର ଉଦ୍ଦେଶ୍ୟ ସେ ବ୍ୟକ୍ତି ବିଦେଶରୁ ଘରକୁ ଶୀଘ୍ର ଲେଉଟି ଆସିବ । ]

**ଚକୁଲି**—ପ୍ରାଦେ. (ସମ୍ବଲପୁର) ବି.—ଚକୁଳ ପିଠା—Thin roll of
Chakuli cakes prepared from rice paste.

**ଚକୁଲିଆ ପଣ୍ଡା**—ଦେ. ବି—ଏକ ଜାତୀୟ ନୀଚ ଶ୍ରେଣୀର ଭିକ୍ଷୁକ ବ୍ରାହ୍ମଣ--
Chakuliāpandā A class of low Brahmans, living by begging.

[ ଦ୍ର—ଏମାନେ କାଶ୍ୟପ ଗୋତ୍ରୀ । କଥିତ ଅଛି ଏମାନେ ପର୍ଶୁରାମଙ୍କ ବଂଶଧର ଏବଂ ରାମଙ୍କ ଆଜ୍ଞାପରୁ ଭିକ୍ଷା ମାଗନ୍ତି । ମତାନ୍ତରରେ-- ଶ୍ରୀରାମ ବିରାଟ ଭବନରେ ଛଦ୍ମବେଶରେ ଅଜ୍ଞାତବାସ କରିବା ସମୟରେ ବିରାଟ ରାଜାଙ୍କର ପାଚକ ରୂପରେ ବଲ୍ଲଭ ପଣ୍ଡା ନାମ ଧରିଥିଲେ । ସେହି ସମୟରେ ସେ ଦେଶ ବୁଲି 'ଚକ ଭିକ୍ଷା' କରୁଥିଲେ । ଭିକ୍ଷାନ୍ନ ସଂଗ୍ରହାର୍ଥ ସେ ଗ୍ରାମରେ କାହାର ଦ୍ୱାରସ୍ଥ ନ ହୋଇ ଗ୍ରାମ ଦାଣ୍ଡରେ ତିନି ଥର ବୁଲିଯାଉଥିଲେ ଓ ଯେ ଯାହା ଦେଉଥିଲା ନେଉଥିଲେ । ତାଙ୍କ ସଙ୍ଗେ ଚକଭିକ୍ଷା ସମୟରେ ଯେଉଁ ବ୍ରାହ୍ମଣମାନେ ଯୋଗ ଦେଇଥିଲେ ଆଧୁନିକ ଚକୁଳିଆ ପଣ୍ଡାମାନେ ସେମାନଙ୍କ ବଂଶଧର ଅଟନ୍ତି ।

ପୁରୀ ଜିଲ୍ଲାର ଖୋର୍ଦ୍ଧା ସବଡିଭିଜନ ଦାଣ୍ଡିମାଳ ପ୍ରଗନାରେ ଏମାନଙ୍କ ମଧ୍ୟରୁ ଅନେକ ବାସ କରନ୍ତି । ଏମାନେ କାହା ଦ୍ୱାରକୁ ଭିକ୍ଷା କରିବାକୁ ନ ଯାଇ ଗ୍ରାମ ଦାଣ୍ଡରେ ବୁଲି ବୁଲି ଉଚ୍ଚୈଃସ୍ୱରରେ "ଦେବ, ଦ୍ୟାଇବ, ଦେ ପଦ କୋଳିବ, ପଡ଼ିଆ ଭୂମିରେ ଗୋଧନ ଚରାଇବ; ଦେଇଥିଲେ ପାଇ ବୁଣିଥିଲେ ଦାଇ ଇତ୍ୟାଦି ବାକ୍ୟ ଆବୃତ୍ତି କରନ୍ତି ଓ ଯେ ଯାହା ଦିଏ ତାହା ଗ୍ରହଣ କରନ୍ତି । ]

**ଚକେ**—ଦେ. କ୍ରି. ବିଣ.—୧ । ଚକ ଥରେ ଘୂରିଯିବା ଦୂରତ୍ୱ—
Chake 1. Space travelled by a wheel in one circuit.

ଚକେ ଗଲେ ବାରହାତ । ଢଗ ।

୨ । ଚକାଏ; ମନୁଷ୍ୟ ବସିଥିବା ଭୂମିପରିମିତ—
2. Measuring as much space as is occupied by a man sitting on the ground.

୩ । ଚଉକେ (ଦେଖ)
3. Chauke (See).

ସମସ୍ତଙ୍କ ଦେହଯାକ ଧୂଳି କାଦୁଅ ବୋଳା, ମୁଣ୍ଡରେ ଚକେ ଚକେ ଭୂଆ ।
ପଞ୍ଚାଗମୋହନ. ଗଳ୍ପସ୍ୱଳ୍ପ ।

**ଚକେଇ**—ଦେ. ବି. ସ୍ତ୍ରୀ. ( ସଂ. ଚକ୍ରବାକୀ )—
Chakei ଚକ୍ରବାକ ସ୍ତ୍ରୀ ପକ୍ଷୀ—
चकी The Brahmini duck ( female ).
चकई
(ଚକୋଇ—ଅନ୍ୟରୂପ)

**ଚକୋଆ**—ଦେ. ବି. ପୁଂ—ଚକୁଆ ( ଦେଖ )
Chakoā Chakuā ( See )

**ଚକୋୟା**—ଦେ. ବି. ପୁଂ—ଚକୁଆ ( ଦେଖ )
Chakoyā Chakuā ( See )

ଯେସନେ ଚକୋୟା ପଛ—କାରୁଣ କରଇ କତି
ତେ ନ ମୋ ଅଭ୍ୟର୍ଥନା କଷ୍ଟପୋତରେ । ପ୍ରାଚୀ. ରସବାରିଧି ।

**ଚକୋର**—ସଂ. ବି. ପୁଂ ( ଚକ୍ ଧାତୁ ତୃପ୍ତ ହେବା+କର୍ତ୍ତୃ. ଓର; ଯେ
Chakora ଚନ୍ଦ୍ର କିରଣ ପାନ କରି ତୃପ୍ତ ହୁଏ )—
(ଚକୋରୀ—ସ୍ତ୍ରୀ) ପାର୍ବତ୍ୟ ଜାତୀୟ ପଶ୍ଚିମ ହିମାଳୟସ୍ଥ ନଖର ପକ୍ଷୀ-ବିଶେଷ—The red-legged or Himalaya Patridge; Caccabis Chucar or Rubra; the greak Patridge (a gallinacious bird).

ଚକୋର ବଧୂ-ଛବି ହେଉ ଉଷତ
ହରଙ୍କି ଧାନେ ଧରି ଯଥା ଭକତ । ଉପାନାଥ. ଲୁଳସୀସ୍ତବକ ।

[ ଦ୍ର—ଏମାନେ ଲମ୍ବାରେ ପ୍ରାୟ ଏକ ହାତ ହୁଅନ୍ତି, ଗୋଡ଼ ଲାଲ, ଚକ୍ଷୁ ସୁନ୍ଦର । ସନ୍ଧ୍ୟା ସମୟରେ ଅନେକ ଚକୋର ଏକ ସଙ୍ଗରେ ରବ କରନ୍ତି । ଏଥିପାଇଁ ପ୍ରବାଦ ଅଛି ଯେ ଏମାନେ ଚନ୍ଦ୍ର କିରଣ ପାନ କରି ବଞ୍ଚନ୍ତି ଓ ଜ୍ୟୋତ୍ସ୍ନା ଦେଖି ତୃପ୍ତ ହୁଅନ୍ତି । ]

**ଚକୋରକ**—ସଂ. ବି. ପୁଂ. ( ଚକୋର+ସ୍ୱାର୍ଥେ. କ )—
Chakoraka ଚକୋର ( ଦେଖ )
(ଚକୋରିକା—ସ୍ତ୍ରୀ) Chakora ( See )

**ଚକୋରନୟନା**—ସଂ. ବିଣ. ସ୍ତ୍ରୀ. (ବହୁବ୍ରୀହି; ଚକୋର+ନୟନ+ଆ)-
Chakoranayanā ଯେଉଁ ସ୍ତ୍ରୀର ଚକ୍ଷୁ ଚକୋର ଚକ୍ଷୁ ପରି ସୁନ୍ଦର—
Fair eyed ( woman ).

**ଚକୋରନୟନୀ**—ଦେ. ବିଣ. ସ୍ତ୍ରୀ. ( ସଂ. ଚକୋରନୟନା )—
Chakoranayani ଚକୋରନୟନା ( ଦେଖ )
Chakoranayanā ( See )

**ଚକ୍କ** ( ଧାତୁ )—ସଂ—୧ । ଦୁଃଖ ଭୋଗ କରିବା—
Chakka (root) 1. To suffer.
୨ । ଦୁଃଖ ଦେବା—2. To suffer pain.

**ଚକ୍କର**—ଦେ. ବି—୧ । ମସ୍ତକ ଘୂର୍ଣ୍ଣନ—
Chakkara 1. Giddiness; dizziness.
चक्कर ୨ । ପ୍ରଦକ୍ଷିଣ—2. Walking round a thing; making circuit; circumambulation.
चक्कर
୩ । ଘୋଡ଼ାର ଚକ୍ରାକାର ଗତି—
3. Wheeling motion of the horse.

କାହିଁ ଅଶ୍ୱାରୋହୀ ସେନ ଅଶ୍ୱବର
ଚକ୍କର ବୁଲାଇ ଦୌଡ଼ାଇ ଚକର । ପ୍ରାଚୀ. ଚନ୍ଦ୍ରକେଶରୀ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଗିଁଆ' ନ ପାଇଲେ 'ଅଙ୍ଗା' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

୪ । ଘୋଡ଼ା ଦଉଡ଼ର ଚକ୍ରାକାର ଭୂଖଣ୍ଡ—
4. The circuit of a race-course.

**ଚକ୍କର ଖାଇବା**—ଦେ. କ୍ରି—୧ । ମୁଣ୍ଡ ବୁଲାଇବା—
Chakorakhāibā — 1. To feel dizziness in the head.
चक्करदेओया
चक्कर खाना
୨ । ଚକ୍ର ପରି ଘୂରିବା—
(ଚକ୍କର ଦେବା—ଅନ୍ୟରୂପ) 2. To revolve round.
୩ । ଘୋଡ଼ାକୁ ଚକ୍ରାକାର ଗତି କରାଇବା— 3. To make a horse perform a wheeling motion.
୪ । ଚକ୍ରାକାର ବିସ୍ତୃତ ଭୂଖଣ୍ଡରେ ବୃତ୍ତାକାର ଆବୃତ୍ତନରେ ଘୋଡ଼ାକୁ ଦଉଡ଼ାଇ ଆଣି ସ୍ୱସ୍ଥାନରେ ପହଞ୍ଚାଇବା—
4. To make the horse run over a large circuit.

**ଚକ୍କରପଡ଼ିଆ**—ଦେ. ବି—ଘୋଡ଼ଦଉଡ଼ ପାଇଁ ବିସ୍ତୃତ ମଇଦାନ—
Chakkarapaṛdiā — Race-ground; a field for horse race.

**ଚକ୍କଳ**—ସଂ. ବିଣ. ( ଚକ୍କ୍ + ଅଳ )—ଚକା; ଗୋଲ—
Chakkaḻa — Circular; round.

**ଚକ୍କୁ**—ବୈଦେ. ବି—ଚକୁ ( ଦେଖ )
Chakku — Chaku ( See )

**ଚକ୍ତି**—ଦେ. ବି—ଚକତି ( ଦେଖ )
Chakti — Chakati ( See )

**ଚକ୍ର**—ସଂ ବି. ( କୃ ଧାତୁ + କର୍ତ୍ତୃ. ଅ ନିପାତନ )—୧ । ଚକ୍ରବାକପକ୍ଷୀ; ଚକୁଆ—1. The shel drake (bird).
Chakra
୨ । ରଥାଙ୍ଗ; ରଥର ଚକ—2. Wheel of a car.
୩ । ଚକ୍ରରଥ; ଚକ୍ରଯାନ—
3. Cycle; vehicle; a wheeled conveyance.
୪ । କାଳଚକ୍ର—4. Cycle of time.
୫ । ଘୋଡ଼ଦୌଡ଼ର ଚକ୍ରାକାର ପଥ—
5. Race circle; race course.
୬ । ଘେର; ଗୃହଅଙ୍ଗେ ଘୂରି କରି ବୁଲିବା—6. Circuit
୭ । ଚକାକାର ବେଷ୍ଟନୀ—
7. Ring or circular belt.
୮ । କୁମ୍ଭାରର ଚକ—8. Potter's wheel.
୯ । ବହୁବର୍ଷର ସମଷ୍ଟି ବା ସମାହାର—
9. A cycle of years.
୧୦ । ଜଳାବର୍ତ୍ତ—10. Eddy; whirlpool.
୧୧ । ବୃତ୍ତ—11. Circle.
୧୨ । ଗୋଲକ—12. Sphere.
୧୩ । ବିଷ୍ଣୁଙ୍କ ଶସ୍ତ୍ର; ସୁଦର୍ଶନ ଚକ୍ର—
13. The discus; circular weapon of Bishṇu.
୧୪ । ବୃତ୍ତର ପରିଧି— 14. Circumference.
୧୫ । ଚକ୍ରାକାର ଅସ୍ତ୍ର—15. A sharp circular weapon (disc) of offense.
୧୬ । ଗ୍ରାମସମୂହ; ଚକଲା—16. An aggregate of many villages; a village union for revenue administration purposes.
୧୭ । ଦଳ; ସମୂହ—17. Troop; multitude; collection; assemblage.
ବନ୍ଦୀ ବୋଇଲା ଆହେ ଶୁଣ ଅଶ୍ୱଚକ୍ର
ପାଠ ଶାଠରେ ମୁହିଁ ଜାଣି ଦ୍ୱିଜଚକ୍ର । କୃଷ୍ଣସିଂହ. ମହାଭାରତ. ବନ ।
୧୮ । ଗ୍ରହମଣ୍ଡଳ—18. Halo round a planet or disc.
୧୯ । ଚକ୍ରବ୍ୟୂହ; ଚକ୍ରାକାର ସୈନ୍ୟସମାବେଶ—
19. A circular battle-array.
୨୦ । ଦେଶାଂଶ; ପ୍ରଦେଶ; ଜିଲ୍ଲା—
20. Province; district.
୨୧ । ରାଜ୍ୟ—21 Kingdom; realm.
୨୨ । ଜମିଦାରୀ—22. Estate.
୨୩ । ରାଶିଚକ୍ର—23. Zodiac; astronomical circle.
୨୪ । ବଳୟ, ମୁଦିଆ—
24. A ring used as an ornament.
୨୫ । ତେଲ ଘଣା—25. Oil mill.
୨୬ । କୂଟ; କପଟ; କୌଶଳ; ଛଳ—
26 Fraud; crooked contrivance; deception.
୨୭ । କୁମନ୍ତ୍ରଣା; କୂଟମନ୍ତ୍ରଣା; ଷଡ଼୍‌ଯନ୍ତ୍ର—
27. A plot for mischief; conspiracy.
୨୮ । ଶାଳଗ୍ରାମଶିଳାରେ ଥିବା ଚକ୍ରାକାର ଚିହ୍ନ — The convolutions or spiral marks found in Sāḻagrāma or the sacred stone of the Hindus.
୨୯ । ପୁସ୍ତକ ବା ଗ୍ରନ୍ଥର ଭାଗ ବା ଅଧ୍ୟାୟ—
29. Section of a book.
୩୦ । ଶରୀରରେ ଥିବା ଚକ୍ରାକାର ଦାଗ—30. A circular spot on the body.
୩୧ । ପକ୍ଷୀମାନଙ୍କର ଚକ୍ରବତ୍ ଉଡ୍ଡୟନ—
31. Circular fligts of birds.
୩୨ । ସାପର ଫଣା—32. Serpent's hood.
୩୩ । ଦେହରେ ରୋଗାଦି ଯୋଗୁ ଦେଖାଯିବା ; ଚକା ଦାଗ—
33. Circular marks on the body due to disease.
୩୪ । ଯୋଗଶାସ୍ତ୍ରବର୍ଣ୍ଣିତ ଶରୀରାଭ୍ୟନ୍ତରସ୍ଥ କାଳ୍ପନିକ ଆଧ୍ୟାତ୍ମିକ ଚକ୍ର—34. The six esoteric circles imagined to be inside the human body.

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇସ୍ଥ | ଡ଼ଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ୠ | ଲୃ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଥ | ଡ଼ | ନ୍ତ |

୩୫ । ସେନା; ସୈନ୍ୟଗଣ—35. A host; an army; troop of soldiers.

୩୬ । ଦେବାର୍ଚ୍ଚନରେ ଅଙ୍କିତ ଯନ୍ତ୍ର—36. A circle drawn for worshipping a deity.

୩୭ । ନଦୀର ବାଙ୍କ—37. The winding of a river.

୩୮ । ଭେଲ୍କି; ଇନ୍ଦ୍ରଜାଲ—38. Magic; jugglery.

୩୯ । (ଜ୍ୟୋତିଷ) ଷଡ଼୍‌ଭୁଜାକାରର ନକ୍ଷତ୍ରପୁଞ୍ଜ; ବ୍ରହ୍ମକଟାହ ପୁଞ୍ଜ (ଦେଖ)
39. (astrology) A particular constellation in the form of a hexagon.

୪୦ । ସୁଧ—4. Interest.

୪୧ । ରାଜ୍ୟର କୌଣସି ନିର୍ଦ୍ଦିଷ୍ଟ ଶାସନବିଭାଗ—
41. Administrative department of a state.

୪୨ । ହସ୍ତ ଓ ପାଦସ୍ଥ ଚକ୍ରାକାର ରେଖା—42. Circular lines in the palm of hand and heel.

ଚକ୍କର ଦେ. ବି — ୧ । ଚକ୍ରବନ୍ଧ (ଦେଖ)
1. Chakrabandha (See)

୨ । (ଚନ୍ଦନ ତିଳକାଦିର) ଚକ୍ରାକାର ଛାପ—2. A circular mark of sandal-paste on the body.

ବୈଷ୍ଣବ ସରସୀ ପ୍ରାୟେ ଚକ୍ର ଚକ୍କେ ଯୋଗ । ଉଞ୍ଜ. ବୈଦେହୀଶବିଳାସ ।

୩ । ଗୁଞ୍ଜି; ଘୁଞ୍ଜି—3. Kite.

ଚକ୍କ ପ୍ରାୟ ମୋତେ ଉଡ଼ାଇ ଗଗନେ,
ଘଞ୍ଜି ଦେଇ କଲୁ ହେଲା ଗୋ । ଘର୍ମବିନୟଲଥ ।

୪ । ନିଆଁ ଲଗାଇଲେ ଚକ୍ର ପରି ବୁଲିବା ବାଣ—
4. A kind of whirling fire-work

୫ । କୌଣସି ଜଟିଳ ବିଷୟ—
5. Any intricate matter.

ଚକ୍ର ଉହାଡ଼ କରିବା—ଦେ. କ୍ରି.—ଚକ୍ରାଷ୍ଟିକୁ ଟେକି ଧରି ଚକ୍ର ତଳେ
Chakra uhārḍa kariba ମନୁଷ୍ୟକୁ ଶତ୍ରୁର ଅସ୍ତ୍ରରୁ ରକ୍ଷା
(ଚକ୍ର ଉହାଡ଼ିବା—ଅନ୍ୟରୂପ) କରିବା—To protect a person from danger by extending the discus over him.

ଚକ୍ରକ—ସଂ. ବି.—(ଚକ୍ର+କ)—୧ । (ନ୍ୟାୟ) କୁତର୍କ; ହେତ୍ୱାଭାସ—
Chakraka 1. (Logic) Arguing in a circle.

୨ । ଏକପ୍ରକାର ସର୍ପ (ହି. ଶବ୍ଦସାଗର)—
3. A kind of serpent.

ସଂ. ବିଣ.— ଚକ୍ରା—Circular; wheels haped.

ଚକ୍ରକାରକ—ସଂ. ବି—୧ । ଲୁହାକଣ୍ଟା—
Chakrakāraka 1. Iron nail

୨ । ସୁଗନ୍ଧବିଶେଷ—2. A kind of perfume.

୩ । ହାତର ନଖ ( ହି. ଶବ୍ଦସାଗର )—
3. Finger-nail of the hand.

ଚକ୍ରକେଳି—ଦେ. ବି—ଓଡ଼ିଆ ରାଗବିଶେଷ—
Chakrakeḷi A kind of Oria musical tune.
ରାଗ ତଳେ ନୋଟ (ଦେଖ)
See notes under Rāga

ଚକ୍ରଗଣ୍ଡୁ—ସଂ. ବି—ଗୋଲ ତକିଆ; ମାଣ୍ଡି; ମୁଡ଼ୁଲା—
Chakragaṇḍu A round pillow

ଚକ୍ରଗତି—ସଂ. ବି—୧ । ଚକ୍ରର ଗତି—
Chakragati 1. The motion of a wheel; rotation, revolution of a wheel.

୨ । ଚକ୍ରାକାରରେ ଗମନ—
2. Circular movement.

ଚକ୍ରଗୁଚ୍ଛ—ସଂ. ବି—ଅଶୋକ ଗଛ—
Chakraguchha The Aśoka tree

ଚକ୍ରଚର—ସଂ. ବିଣ. ପୁଂ (ଚକ୍ର+ଚର ଧାତୁ+ଅ)—
Chakrachara ଚକ୍ର ପରି ବୁଲୁଥିବା—
Whirling; moving in a circle.

ସଂ. ବି. ପୁଂ—୧ । ଐନ୍ଦ୍ରଜାଲିକ—
1. A juggler; a magician.

୨ । ତେଲି (ହି. ଶବ୍ଦସାଗର)—2. Oilman

୩ । କୁମ୍ଭାର (ହି. ଶବ୍ଦସାଗର)—3. Potter.

ଚକ୍ରଚାରୀ—ସଂ. ବିଣ. ପୁଂ (ଚକ୍ର+ଚର ଧାତୁ, ଇନ୍ ୧ମା. ୧ ବ)—
Chakrachārī ଚକ୍ରଚର (ଦେଖ)
(ଚକ୍ରଚାରିଣୀ—ସ୍ତ୍ରୀ) Chakrachara (See).

ସଂ. ବି—ରଥ—Chariot; car.

ଚକ୍ରଚୂଡ଼ାମଣି—ସଂ. ବି. ( ଚକ୍ରବତ୍ ଚୂଡ଼ାରେ ଥିବା ମଣି )—
Chakrachūrḍāmaṇi ମୁକୁଟର ଗୋଲାକାର ମଧ୍ୟ ମଣି—
A round jewel in a diadem.

ଚକ୍ରଛେଉଣ୍ଡ—ଦେ. ବିଣ. ପୁଂ—ଚକର ଛେଉଣ୍ଡା ( ଦେଖ )
Chakrachheuṇḍa Chakara chheuṇḍā (See)
(ଚକ୍ରଛେଉଣ୍ଡୀ—ସ୍ତ୍ରୀ)
(ଚକ୍ରଛେଉଣ୍ଡା—ଅନ୍ୟରୂପ)

ଚକ୍ରଜୀବକ—ସଂ. ବି. (ଚକ୍ର+ଜୀବ ଧାତୁ+କର୍ତ୍ତୃ. ଅକ =ଯେ ଚକ୍ରଦ୍ୱାରା
Chakrajībaka ଜୀବିକା ନିର୍ବାହ କରେ)—କୁମ୍ଭାର—Potter.
(ଚକ୍ରଜୀବୀ—ଅନ୍ୟରୂପ)

ଚକ୍ରଣୀ—ଦେ. ବି—ଚକ୍ରଥିବା ରଥ—A car having its wheels.
Chakraṇi

ଜମାନେ ଗୁରୁ ଯୋଚ ଚକ୍ରଣୀର ଯନ୍ତ୍ର ଅଜଣାଚନ୍ତି ଯୋଷ୍ଟ ସେ ।
ଉଞ୍ଜ. ବୈଦେହୀଶବିଳାସ ।

ଚକ୍ରତୀର୍ଥ—ସଂ.ବି—(ଯସ୍ମା ତତ୍ପୁରୁଷ; ଚକ୍ର=ସୁଦର୍ଶନ ଚକ୍ର, ତଦ୍ୱାରା କୃତ
Chakratīrtha ତୀର୍ଥ )—୧ । ଶ୍ରୀକୃଷ୍ଣଙ୍କ ସୁଦର୍ଶନ ଚକ୍ରଦ୍ୱାରା
ନିର୍ମିତ ପ୍ରଭାସକ୍ଷେତ୍ରସ୍ଥ ତୀର୍ଥବିଶେଷ (ସ୍କନ୍ଦପୁରାଣୋକ୍ତ)—
3. A sacred place in Prabhāsa.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' କ ମଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଁଖି' ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୨ । ବୃନ୍ଦାବନସ୍ଥ ତୀର୍ଥବିଶେଷ—
2. Name of a sacred place in Brindabana.

୩ । ପୁରୀର ସମୁଦ୍ରତୀରସ୍ଥ ତୀର୍ଥବିଶେଷ—
3. Name of a sacred place in Puri

ସେହିନ୍ତୁ, ହେ ପୁଣ୍ୟଶ୍ଳୋକ ଲୋକେ ଏହିସ୍ଥଳୀ
ସିନ୍ଧୁ ତୀରେ ବୋଲନ୍ତି ଚକ୍ରତୀର୍ଥ ନାମେ—ରାଧାନାଥ, ମହାଯାତ୍ରା ।

୪ । ଦାକ୍ଷିଣାତ୍ୟର ଋଷ୍ୟମୂକ ପର୍ବତ ନିକଟରେ ତୁଙ୍ଗଭଦ୍ରାନଦୀ ଘୂରିକରି ଯାଇଥିବା ତୀର୍ଥବିଶେଷ ( ହି. ଶବ୍ଦସାଗର )—
4. Name of a sacred place in the Deccan.

[ ଦ୍ର—ମହାଭାରତ ଆଦି ପୁରାଣରେ ନିମ୍ନଲିଖିତ ସ୍ଥାନମାନଙ୍କରେ ଅନେକଗୁଡ଼ିଏ ଚକ୍ରତୀର୍ଥର ବର୍ଣ୍ଣନ ଅଛି । ଯଥା—କାଶୀ; କାମରୂପ, ନର୍ମଦା, କ୍ଷେତ୍ର, ସେତୁବନ୍ଧ ରାମେଶ୍ୱର—ହି. ଶବ୍ଦସାଗର । ]

ଚକ୍ରତୁଣ୍ଡୀ—ସଂ. ବିଣ—( ବିଜ୍ଞାନପରିଭାଷା ) ଯାହାର ମୁଖ ଚକ୍ର ପରି ମଣ୍ଡଳାକାର—Cyclostomata; having circular faces.
Chakratundi

ଚକ୍ରଦଂଷ୍ଟ୍ର—ସଂ. ବି. ପୁଂ (ବହୁବ୍ରୀହି)—ଶୂକର—Hog.
Chakradamshtra

ଚକ୍ରଦଣ୍ଡ—ସଂ. ବି—ଏକପ୍ରକାର କସରତ ବା ଦଣ୍ଡ ( ହି. ଶବ୍ଦସାଗର )—A kind of physical exercise.
Chakradanda

[ ଦ୍ର—ଏଥିରେ ସାଧକ ଦୁଇ ହାତକୁ ଭୂମିରେ ଲଗାଇ ଥରେ ଦଣ୍ଡ କରିବା ପରେ ଦୁଇ ଗୋଡ଼କୁ ଉଠାଇ ଏକ ହାତକୁ ଟେକି ଦେଇ ଦୁଇ ଗୋଡ଼କୁ କୁମ୍ଭାର ଚକ୍ର ପରି ଯଥାକ୍ରମେ ବାମ ଓ ଡାହାଣ ହାତ ତଳେ ବୁଲାଇ ଆଣନ୍ତି । ]

ଚକ୍ରଦତ୍ତ—ସଂ. ବି—ବୈଦ୍ୟକ ଗ୍ରନ୍ଥବିଶେଷ—Name of a sanskrit medical treatise.
Chakradatta

ଚକ୍ରଦନ୍ତୀ—ସଂ. ବି—ଦନ୍ତୀ ( ଦେଖ )—Danti ( See )
Chakradanti

ଚକ୍ରଧର—ସଂ. ବିଣ. ( ଚକ୍ର + ଧୃ ଧାତୁ + କର୍ତ୍ତୃ. ଅ )—
Chakradhara ୧ । ଚକ୍ରରୂପ ଅସ୍ତ୍ର ଧରିଥିବା —1. Holding a discus or wheel as a weapon.
( ଚକ୍ରଧାରୀ—ଅନ୍ୟରୂପ )

୨ । ଯାହାର ଚକ୍ର ଥାଏ—2. Wheeled

ସଂ. ବି. ( ବହୁବ୍ରୀହି )—୧ । ବିଷ୍ଣୁ—1. Bishnu.

୨ । ରାଜା—2. King.

୩ । ମଣ୍ଡଳାଧିପ—
3. The ruller or chief of a province.

୪ । ସର୍ପ—4. Serpent; snake.

୫ । କୁମ୍ଭାର— 5. Potter.

୬ । କୁହୁକିଆ; ଐନ୍ଦ୍ରଜାଲିକ—
6 A juggler; magician.

୭ । ଚକ୍ରାସ୍ତ୍ରଧାରଣକାରୀ ବ୍ୟକ୍ତି—
7. One who holds the discus ( weapon ).

୮ । ଗ୍ରାମପୁରୋହିତ ( ହି. ଶବ୍ଦସାଗର )—
8. The priest of a village.

୯ । ଗ୍ରାମ ବା ନଗରର ଅଧିପତି ( ହି. ଶବ୍ଦସାଗର )—
9. The chief of a village or town.

୧୦ । ରାଗବିଶେଷ ( ହି. ଶବ୍ଦସାଗର )—
10. Name of musical tune.

[ ଦ୍ର—ଏହା ନଟ ରାଗପରି ଷାଡ଼ବଜାତିର ରାଗ । ଏହା ଷଡ୍‌ଜ ସ୍ୱରରୁ ଆରମ୍ଭ ହୁଏ ଓ ଏଥିରେ ପଞ୍ଚମସ୍ୱର ଲାଗେ ନାହିଁ । ଏହା ସନ୍ଧ୍ୟା ସମୟରେ ଗୀତ ହୁଏ । ]

ଦେ. ବି. ପୁଂ—ଲୋକଙ୍କ ନାମ—Name given to males.

ଚକ୍ରଧାରା—ସଂ. ବି ( ୬ଷ୍ଠୀ ତତ୍; ଚକ୍ର + ଧାରା )—୧ । ଚକ୍ରର ପରିଧି—1 Periphery of a wheel.
Chakradhara

୨ । ୧୧୦୦ ଶତାବ୍ଦୀ ଠାରୁ ୧୬୦୦ ଶତାବ୍ଦୀ ମଧ୍ୟରେ ରଚିତ ଯନ୍ତ୍ର ଚିନ୍ତାମଣି ନାମକ ବେଧ ଗ୍ରନ୍ଥ—2. Name of an astronomical treatise.

[ ଦ୍ର—ଏହାଙ୍କ ଯନ୍ତ୍ର ଭୂମିସ୍ଥ ଯନ୍ତ୍ର—Quadrant । ]

ଚକ୍ରନଖ—ସଂ ବି—ବ୍ୟାଘ୍ରନଖ ନାମକ ଔଷଧି; ନଖୀ ( ଦେଖ )—Nakhi ( See )
Chakranakha

ଚକ୍ରନଦୀ—ସଂ. ବି (ମଧ୍ୟପଦଲୋପୀ କର୍ମଧା; ଏଥିରୁ ଶାଳଗ୍ରାମ (ଚକ୍ର) ମିଳୁଥିବାରୁ)— ଗଣ୍ଡକୀ ନଦୀ ( ଦେଖ )—Gandaki nadi ( See )
Chakranadi

ଚକ୍ରନାଭି—ବି ( ୬ଷ୍ଠୀ ତତ୍; ଚକ୍ର + ନାଭି )—ଶଗଡ଼ ଚକର କେନ୍ଦ୍ର; ଚକର ନାହିଆ—The name of a wheel.
Chakranabhi

ଚକ୍ରନାମା—ସଂ. ବି ( ଚକ୍ର + ନାମନ୍; ୧ମା. ୧ବଚନ )—
Chakranama ୧ । ଚକ୍ରବାକ ପକ୍ଷୀ— 1. Ruddy goose.
(ଚକ୍ରନାମ—ଅନ୍ୟରୂପ) ୨ । ଲୌହ ସଙ୍ଗେ ଅନ୍ୟ ଧାତୁ ମିଶ୍ରିତ ଖଣିଜ ଦ୍ରବ୍ୟ; ମାକ୍ଷିକ ଧାତୁ—2. A pyritic oxe of iron (Apte)

ଚକ୍ରନାୟକ—ସଂ. ବି (୬ଷ୍ଠୀ ତତ୍; ଚକ୍ର + ନାୟକ)—୧ । ସେନାପତି—1. Leader of a troop.
Chakranayaka

୨ । ସୁଗନ୍ଧିବିଶେଷ; ନଖୀ—2. A kind of perfume.

ଚକ୍ରନେମି—ସଂ. ବି (୬ଷ୍ଠୀ ତତ୍; ଚକ୍ର + ନେମି)—ଚକର ପରିଧି—The periphery of a wheel.
Chakranemi

ଚକ୍ରପାଣି—ସଂ. ବିଣ (ବହୁବ୍ରୀହି)—ଚକ୍ରଧାରଣ କରିବା ବ୍ୟକ୍ତି—One who holds a discus; holding a discus in the hand.
Chakrapani

ସଂ. ବି. ପୁଂ—ବିଷ୍ଣୁ—Bishnu.

ଦେ. ବି. ପୁଂ—ଲୋକଙ୍କ ନାମ—Name given to males.

ଚକ୍ରପାଣି ପଟ୍ଟନାୟକ—ଦେ. ବି—ଗଞ୍ଜାମ ଖଲ୍ଲିକୋଟ ନିବାସୀ ଜଣେ ସଂସ୍କୃତଜ୍ଞ କରଣ ପଣ୍ଡିତ (ଜଗବନ୍ଧୁ—ପ୍ରାଚୀନ-ଉତ୍କଳ)—A Karana Sanskrit Pandit of Khalikota in Ganjam.
Chakrapani pattanayaka

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ସ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ | ନ୍ତ |

ଚକ୍ରପାଦ—ସଂ. ବି (ବହୁବ୍ରୀହି; ଚକ୍ର+ପାଦ)—୧ । ( ଚକ୍ର ଅଟେ ପାଦ Chakrapāda ଯାହାର) ରଥ; ଗାଡ଼ି—1. Wheeled (ଚକ୍ରପାଦକ—ଅନ୍ୟରୂପ) vehicle; carriage.
୨ । (ଚକ୍ରପରି ଗୋଲାକାର ପାଦ ଯାହାର) ହସ୍ତୀ—
2. Elephant.

ଚକ୍ରପାଳ—ସଂ. ବି ( ଚକ୍ର+ପାଳ ଧାତୁ+କର୍ତ୍ତୃ. ଅ )—୧ । ପ୍ରାଦେଶିକ Chakrapāḷa ଶାସନକର୍ତ୍ତା—1. Provincial Governor
୨ । ନିର୍ଦ୍ଦିଷ୍ଟ ସେନା ଦଳର ଅଧ୍ୟକ୍ଷ; ସୁବାଦାର—
2. Officer in charge of a division of army.
୩ । ଦିଗ୍‌ବଳୟ—3. Horizon.
୪ । ବୃତ୍ତ—4. Circle.
୫ । ଚକ୍ରାସ୍ତ୍ରଧାରୀ ବ୍ୟକ୍ତି—
5. A person armed with a discus.
୬ । ଶୁଦ୍ଧରାଗର ଏକଭେଦ (ହି. ଶବ୍ଦସାଗର)—
6. A musical tune.

ଚକ୍ରବତ୍—ସଂ.—୧ । ଚକ୍ରପରି ଗୋଲାକାର—1. Circular.
Chakrabat ୨ । ଚକ୍ରପରି—2. Like a wheel or cycle.

ଚକ୍ରବନ୍ଧ—ବି—୧ । ରତିବନ୍ଧବିଶେଷ—1. A particular pose Chakrabandha during copulation.

ଚକ୍ରବନ୍ଧକୁ ବଶ୍ୟ ଚତୁରେ—ଗୋପୀଭାଷା. ଲାବଣ୍ୟବତୀ ।

୨ । ଛନ୍ଦୋବଦ୍ଧ ରଚନାବିଶେଷ; ଚିତ୍ରକାବ୍ୟବିଶେଷ—
2. A sort of artistic composition.

ଚକ୍ର ଚକ୍ରେ ଅଧୀରେ ରୁଚି କର୍ତ୍ତୁର । ଗୋପୀଭାଷା. ଲାବଣ୍ୟବତୀ ।

[ ଦ୍ର—ଏଥିରେ ପଦମାନଙ୍କ ଅକ୍ଷରମାନ ଚକ୍ରାକାର ହୋଇ ସଜ୍ଜିତ ହୁଏ । ]

ଚକ୍ରବନ୍ଧୁ—ସଂ. ବି. ( ଷଷ୍ଠୀ ତତ୍; ଚକ୍ର+ବନ୍ଧୁ; ସୂର୍ଯ୍ୟ ପ୍ରକାଶିତ ହେଲେ Chakrabandhu ଚକ୍ରବାକ ମିଥୁନଙ୍କ ମିଳନ ହେବାରୁ )— (ଚକ୍ରବାକ—ଅନ୍ୟରୂପ) ସୂର୍ଯ୍ୟ—The sun.

ଚକ୍ରବର୍ତ୍ତୀ—ସଂ. ବି. ପୁଂ. (ଚକ୍ର+ବୃତ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)— Chakrabartti ୧ । ସମ୍ରାଟ; ସାର୍ବଭୌମ; ଆସମୁଦ୍ରାନ୍ତ ଭୂମିର ଅଧିପତି (ଚକ୍ରବର୍ତ୍ତିନୀ—ସ୍ତ୍ରୀ) 1. Emperor,
୨ । ( ଲକ୍ଷଣାର୍ଥେ ) ବହୁ ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରଧାନ ବା ଅଧ୍ୟକ୍ଷ ବା ଅଗ୍ରଣୀ—2. ( fig ) A chief or head of many persons; the foremost person; a leader amongst men.
୩ । ବାସ୍ତୁକ ନାମକ ଶାକ; କ୍ଷୁଥିଆ ( ହି. ଶବ୍ଦସାଗର )—
3. A kind of pot herb.
ଦେ. ବି—ବଙ୍ଗୀୟ ବ୍ରାହ୍ମଣଙ୍କ ବଂଶୋପାଧି ବିଶେଷ—
A title of Bengali Brahmin.

ଚକ୍ରବାଉଳି—ଦେ. ବି—ଉପର କାନରେ ପିନ୍ଧାଯିବାର ଚକ୍ରାକାର Chakrabāuḷi ଚେପଟା ଫାଳିଆ—A flat circular ear-ring for the upper ear.

ଚକ୍ରବାକ—ସଂ. ବି. ପୁଂ. ( ଚକ୍ର+ବଚ ଧାତୁ+କର୍ମ. ଅ; ଯେ ଚକ୍ର Chakrabāka ନାମରେ ଉକ୍ତ ହୁଏ; ଯାହାର ଏକ ନାମ ଚକ୍ର)—
ସଂ. ଭୂରିପ୍ରେମା, ଦ୍ୱନ୍ଦ୍ୱଚାରୀ, ଚକୁଆ ପକ୍ଷୀ—
ରଥାଙ୍ଗ, ଚକ୍ର The ruddy shel drake
(ଚକ୍ରବାକୀ—ସ୍ତ୍ରୀ) [ ଦ୍ର—କଥିତ ଅଛି ରାମଚନ୍ଦ୍ରଙ୍କ ଅଭିଶାପରୁ ଚକ୍ରବାକ ଯୁଗଳ ଦିନଯାକ ଏକତ୍ର ରହନ୍ତି ଓ ରାତି ହେଲାରୁ ଏମାନଙ୍କର ବିଚ୍ଛେଦ ହୁଏ । ଗୋଟିଏ ନଦୀର ଏକ କୂଳରେ ଅପର ନଦୀର ଅନ୍ୟ କୂଳରେ ରହି ପରସ୍ପରକୁ ଝୁରି ରାବ କରୁଥାନ୍ତି । ]

ଚକ୍ରବାଟ—ସଂ. ବି—୧ । ସୀମା—1. Boundary.
Chakrabāta ୨ । ଦୀପରୁଖା—2 Lamp-stand.
୩ । କୌଣସି କାର୍ଯ୍ୟରେ ଲାଗିବା—
3. Being engaged in an action.

ଚକ୍ରବାଡ଼—ସଂ. ବି.— ଚକ୍ରବାଳ (ଦେଖ)
Chakrabāṛda Chakrabāḷa (See)
ଦେ. ବି.—ଚନ୍ଦ୍ରମଣ୍ଡଳ; ସୂର୍ଯ୍ୟମଣ୍ଡଳ—
The halo of the sun or moon.

ପୁନ ଉଲଟ ଚକ୍ରବାଡ଼ ସୀମାରୁ ନେତ୍ର କମଳ ନ ବଳଇ ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ଚକ୍ରବାତ – ସଂ. ବି.—(ଚକ୍ର + ବାତ)—ଘୂର୍ଣ୍ଣିଅବୁଡ଼ା; ଘୂର୍ଣ୍ଣିବାୟୁ—
Chakrabāta Whirlwind; hurri-cane; tornado.

ଚକ୍ରବାନ୍—ସଂ. ଗୁଣ. (ଚକ୍ର+ବତ୍ ୧ମା. ୧ବ.)—୧ । ଚକ୍ରଧର—
Chakrabān 1. Armed with discus.
୨ । ଯାହାର ଚକ୍ର ଥାଏ; ଚକ୍ରବିଶିଷ୍ଟ—2. Wheeled.
୩ । ଗୋଲାକାର—3. Round; circular.
ସଂ. ବି.—୧ । ତେଲି—1. Oilman.
୨ । ସମ୍ରାଟ—2. Emperor.
୩ । ବିଷ୍ଣୁ—3. A name of a Bishnu.
୪ । ପୌରାଣିକ ପର୍ବତବିଶେଷ (ହି. ଶବ୍ଦସାଗର )—
4. Name of a legendary mountain.
[ ଦ୍ର—ଏହି ପର୍ବତରେ ବିଷ୍ଣୁ ହୟଗ୍ରୀବ ଓ ପଞ୍ଚଜନ ଦୈତ୍ୟଦ୍ୱୟଙ୍କୁ ବଧ କରି ସେମାନଙ୍କଠାରୁ ଯଥାକ୍ରମେ ଚକ୍ର ଓ ଶଙ୍ଖ ଆୟୁଧ ଆଣିଥିଲେ । ]

ଚକ୍ରବାନ୍ଧବ—ସଂ. ବି.—ଚକ୍ରବନ୍ଧୁ (ଦେଖ)
Chakrabāndhaba Chakrabandhu (See)

ଚକ୍ରବାଳ—ସଂ. ବି.—( ଚକ୍ର=ଦେଶ ସମୂହ+ବଲ ବେଷ୍ଟନ ବା Chakrabāḷa ଆବରଣ କରିବା+କର୍ତ୍ତୃ. ଅ)—୧ । ଦିଗ୍‌ବଳୟ; ଦିଙ୍ମଣ୍ଡଳ—1. Horizon.

| |
|---|
| ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ, କୁଥ ନ ମିଳିଲେ 'କୂଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଆଙ୍ଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ । |

[ ଦ୍ର—କୌଣସି ସ୍ଥାନରେ ଠିଆ ହୋଇ ଚତୁର୍ଦ୍ଦିଗକୁ ଚାହିଁଲେ ଯେଉଁଠାରେ ପୃଥିବୀ ଓ ଆକାଶ ମିଶିଲା ପରି ଦେଖାଯାଏ ସେହି ଚକ୍ରାକାର ରେଖା । ]

୨ । ଚକ୍ରବାକ ପକ୍ଷୀ—2. Ruddy goose.

୩ । ଲୋକାଲୋକ ପର୍ବତ; ପୃଥିବୀକୁ ଘେରିଥିବା ପୌରାଣିକ ପର୍ବତ—3. The imaginary mountain on the horizon encircling the globe; the fabulous range of mountains encircling the earth

୪ । ପୁଞ୍ଜ; ଦଳ; ରାଶି; ସମୂହ—
4. Mass; multitude; group.

ଦେ. ବିଣ—ମଣ୍ଡଳାକାର—Circular.

କରେ କର ଦେଇ ଚକ୍ରବାଳ ହୋଇ କମଳ୍ଲ କମଳ ତୋଳନ୍ତି ।
ଯାଦବକୃଷ୍ଣ. ରସକଲ୍ଲୋଳ ।

ଚକ୍ରବାଳଧି—ସଂ. ବି (ବହୁବ୍ରୀହି; ଚକ୍ର ପରି ବାଳଧି = ପୁଚ୍ଛ ଯାହାର; Chakrabāladhi କୁକୁର ଲାଞ୍ଜ ସର୍ବଦା ଚକ୍ର ପରି ବଙ୍କା ହୋଇଥିବାରୁ)—କୁକୁର—Dog.

ଚକ୍ରବିଶାଇ—ଦେ. ବି (ନାମ)—ଇଂରାଜ ଗଭର୍ଣ୍ଣମେଣ୍ଟଙ୍କ ବିପକ୍ଷରେ ମେଳ Chakrabisāi କରିଥିବା ଜଣେ ସର୍ଦ୍ଦାର—Name of an Oria warrior of Ghumsar who headed the rebellion against the British in 1836.
ଚକ୍ରବିଷେଇ, ଚକ୍ରବିଶୋଇ } ଅନ୍ୟରୂପ

[ ଦ୍ର—୧୮୩୬ ଖ୍ରୀଷ୍ଟାବ୍ଦରେ ଘୁମୁସର ଇଂରାଜମାନଙ୍କର ହସ୍ତଗତ ହେବାର ୨୦ ବର୍ଷ ପରେ ଏ ଘୁମୁସର ରାଜ୍ୟରେ ମେଳି କରାଇଥିଲେ । କିନ୍ତୁ ପରାସ୍ତ ହୋଇ ପ୍ରାଣଦଣ୍ଡ ପାଇଥିଲେ । ]

ଚକ୍ରବୁଲା—ଦେ. ବି—ଶୋଭାଯାତ୍ରାପୂର୍ବକ ଚକ୍ରବୁଲା ଏକାଦଶୀ ଦିନ Chakrabulā ଜଗନ୍ନାଥଙ୍କ ସୁଦର୍ଶନ ଚକ୍ରକୁ ପୁରୀର ସାତ ସାହିରେ ବୁଲାଇବାରୂପ ଉତ୍ସବ—The festival of taking the discus of Jagannatha throughout the town of Puri in the month of Srābaṇa.

ଚକ୍ରବୁଲା ଏକାଦଶୀ—ଦେ. ବି—ଶ୍ରାବଣ କୃଷ୍ଣ ଏକାଦଶୀ—
Chakrabulā ekādasi The 11th day of the dark fortnight of the month of Srābaṇa.

[ ଦ୍ର—ଏ ଦିନ ଜଗନ୍ନାଥଙ୍କ ପ୍ରତିନିଧିସ୍ୱରୂପ ସୁଦର୍ଶନଚକ୍ରକୁ ବିମାନରେ ପୁରୀର ସାତ ସାହିରେ ବୁଲାଯାଏ । ]

ଚକ୍ରବୃଦ୍ଧି—ସଂ. ବି. (୬ଷ୍ଠୀ ତତ୍; ଚକ୍ର + ବୃଦ୍ଧି)—୧ । ବୃଦ୍ଧିର ବୃଦ୍ଧି; Chakrabṛuddhi ସୁଧ ଉପରେ ସୁଧ—1. Compound interest; interest upon interest.

[ ଦ୍ର—ଖାତକ କର୍ଜ୍ଜାବଧି ସମୟ ମଧ୍ୟରେ ସୁଧ ନ ଶୁଝିଲେ ଉକ୍ତ ସୁଧ ମୂଳଧନ ସଙ୍ଗେ ମିଶି ତହିଁ ଉପରେ ସୁଧ ଚଢ଼େ । ]

୨ । ଗାଡ଼ିରେ ଜିନିଷ ବୋହିବା ପାଇଁ ଭଡ଼ା—
2. Wages paid for transportation of things in a carriage.

ଚକ୍ରବ୍ୟୂହ—ସଂ. ବି. (ମ. ପ. ଲୋ; ଚକ୍ର + ବ୍ୟୂହ)—
Chakrabyūha ମଣ୍ଡଳ ବା ଚକ୍ରାକାରରେ ରଚିତ ସୈନ୍ୟ-ସଂସ୍ଥାନ—Circular battle array.

[ ଦ୍ର—ମହାଭାରତ ଯୁଦ୍ଧରେ ଦ୍ରୋଣାଚାର୍ଯ୍ୟ ଏ ବ୍ୟୂହ ରଚନା କରିଥିଲେ । ଏଥିରେ ଅଭିମନ୍ୟୁ ପଶିଯାଇ ଆଉ ବାହାରି ନ ପାରି ହତ ହେଲେ । ]

ଚକ୍ରଭିକ୍ଷା—ସଂ. ବି—ବହୁଗ୍ରାମର ଗ୍ରାମଦାଣ୍ଡରେ ବୁଲି ବୁଲି ଭିକ୍ଷା କରିବା—
Chakrabhikshā Begging alms by walking along the village roads of many villages.

[ ଦ୍ର—ଚକ୍ରୁଳିଆ ପଣ୍ଡାମାନେ ଚକ୍ର ଭିକ୍ଷା କରନ୍ତି । ]

ଚକ୍ରଭୃତ୍—ସଂ. ବି. ଓ ବିଣ. (ଚକ୍ର + ଭୃ ଧାତୁ + କର୍ତ୍ତୃ. କ୍ୱିପ୍)—
Chakrabhṛut ଚକ୍ରଧର (ଦେଖ) Chakradhara (See)

ଚକ୍ରଭେଦିନୀ—ସଂ. ବି. (ଚକ୍ର = ଚକ୍ରବାକ ପକ୍ଷୀ + ଭିଦ୍ ଧାତୁ = ଦୁଇଖ Chakrabhedini କରିବା + ଇନ୍ + ଈ; ଯାହା ଚକ୍ରବାକ ମିଥୁନର ବିଚ୍ଛେଦ ଘଟାଏ)—ରାତ୍ରି—Night

ଚକ୍ରଭ୍ରମ—ସଂ. ବି. (ଚକ୍ର + ଭ୍ରମ)—
Chakrabhrama ୧ । (୬ଷ୍ଠୀ ତତ୍) ଚକର ଘୂରିବା—
(ଚକ୍ରଭ୍ରମି—ଅନ୍ୟରୂପ) 1. Revolution of a wheel.

୨ । (ବହୁବ୍ରୀହି) କୁନ୍ଦିବା ଯନ୍ତ୍ର; ଶାଣଯନ୍ତ୍ର—
2. Turning lath.

୩ । ଚକ୍ର—3. Grind stone.

ଚକ୍ରଭ୍ରମର—ସଂ. ବି—ଏକପ୍ରକାର ନୃତ୍ୟ (ହି. ଶବ୍ଦସାଗର)—
Chakrabhramara A kind of whirling dance.
(ଚକ୍ରମଣ୍ଡଳ—ଅନ୍ୟରୂପ)

ଚକ୍ରଭ୍ରାନ୍ତି—ସଂ. ବି. (୬ଷ୍ଠୀ ତତ୍; ଚକ୍ର + ଭ୍ରାନ୍ତି)—ଚକ୍ର ଘୂରିବା—
Chakrabhrānti Revolution of a wheel.

ଚକ୍ରମଣ୍ଡଳୀ—ସଂ. ବି. (ଚକ୍ର + ମଣ୍ଡଳ + ଇନ୍; ୧ମା. ୧ବ.)—
Chakramaṇḍali ୧ । ଗୋଖୁରସାପ (ଯାହା ଫଣାରେ ଚକ୍ର ଚିହ୍ନ ଥାଏ)—1. A species of cobra (having circlets on the fang).

୨ । ଅଜଗର ସାପ (ହି. ଶବ୍ଦସାଗର)—
2. Boa constrictor.

ଚକ୍ରମର୍ଦ୍ଦ—ସଂ. ବି—ଚକୁଣ୍ଡା (ଦେଖ)
Chakramardda Chakuṇḍa (See)

ଚକ୍ରମୀମାଂସା—ସଂ. ବି—୧ । ବୈଷ୍ଣବମାନଙ୍କର ଚକ୍ରମୁଦ୍ରା ଧାରଣ Chakramimāmsā କରିବାର ବିଧି (ହି. ଶବ୍ଦସାଗର)—

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ଼ | ଉଅ | ଙ୍ଖ |
| ୨ | ଈ | ଊ | ରୁ | ଲ୍ରୁ | ଯେ଼ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗିଁ୍ୟ | ଇଅ | ଊ | ନ୍ଖ |

1. The ritual for the Baishnabas and getting a stamp put on their body.

୨ । ଧଳଯେ଼ନ୍ଦ୍ର ସ୍ୱାମୀଙ୍କ ରଚିତ ଚକ୍ରମୁଦ୍ରା ଧାରଣବିଧି ସମ୍ବଳିତ ଗ୍ରନ୍ଥବିଶେଷ —

2. Name of a sanscrit treatise.

ଚକ୍ରମୁଖ—ସଂ. ବ. ( ବହୁବ୍ରୀହି; ଏହାର ଥୋମଣିର ଅଗ ଚକ୍ର ପରି ଗୋଲ)—ଘୁଷୁରି—Hog.
Chakramukha

ଚକ୍ରମୁଣୋହି—ପ୍ରାଦେ. ( ପୁରୀ ). ବ—ଜଗନ୍ନାଥ ମନ୍ଦିରର ନୀଳଚକ୍ରକୁ ଦେଖାଇ ଦେବତାଙ୍କ ନାମରେ ଉତ୍ସର୍ଗୀକୃତ ଭୋଗ—The offerings made to the diety Jagannātha by showing to the discus over the temple.
Chakramuṇohi

[ ଦ୍ର—ଯାତ୍ରୀ ଅନ୍ଦର ଭଡ଼ ସମୟରେ ଜଗନ୍ନାଥଙ୍କ ଶ୍ରୀମୁଖ ଯାଇଁ ନୈବେଦ୍ୟ ଦେବାର ସୁଯୋଗ ନ ମିଳିଲେ ଏପରି କରାଯାଏ । ]

ଚକ୍ରମୁଦ୍ରା—ସଂ. ବି. (ଚକ୍ର+ମୁଦ୍ରା)—୧ । ଦେବପୂଜା କାଳୀନ କରମୁଦ୍ରା ବିଶେଷ—1. A pose of the palms of the hands joined together like a circle used during worship.
Chakramudrā

୨ । ବିଷ୍ଣୁଙ୍କ ଚକ୍ରାଦି ଆୟୁଧର ଛାପ ଯାହା ଭକ୍ତମାନେ ଦେହରେ ପେନନ୍ତି—2. The marks of the weapons of Bishṇu which are stamped on the body of his devotees.

[ ଦ୍ର—ଏହା ଦୁଇ ପ୍ରକାର । ୧ ତପ୍ତମୁଦ୍ରା=ତ୍ୱାରକାଛାପା; ୨ ଶୀତଳମୁଦ୍ରା=ଚନ୍ଦନାଦି ଦେହରେ ଛାପା । ]

ଚକ୍ରଯାନ—ସଂ. ବି. ( ମ. ପ. ଲୋ, କର୍ମଧା, ଚକ୍ର+ଯାନ )— ୧ । ରଥ; ଗାଡ଼ି; ଶକଟ—
Chakrajāna
1. Cart; car; vehicle; wheeled conveyance.

୨ । ଶୂନ୍ୟ ଗାଡ଼ି—2. Cycle.

ଚକ୍ରରବ—ସଂ. ବ. ( ବହୁବ୍ରୀହି; ଚକ୍ର+ରବ ) —ଘୁଷୁରି—Hog.
Chakraraba

ଚକ୍ରସଂଜ୍ଞ—ସଂ. ବ. ( ବହୁବ୍ରୀହି; ଚକ୍ର+ସଂଜ୍ଞା )— ୧ । ଧାତୁବିଶେଷ; ସୀସା; ବଙ୍ଗ—
Chakrasamjña
1. Tin ( metal .

୨ । ଚକ୍ରବାକ ପକ୍ଷୀ—
2. The ruddy shel drake.

ଚକ୍ରସିଂହାବଲୋକନ—ଦେ. ବି—ଶବ୍ଦାଳଙ୍କାରବିଶେଷ; ଚକ୍ରକାବ୍ୟ ବିଶେଷ—A kind of artistic composition.
Chakrasimhābalokana

[ଦ୍ର—ଏକ ଶବ୍ଦ ନେଇ ସିଂହାବଲୋକନ ଅଳଙ୍କାର ଏକାଧିକ ପଦରେ କମ୍ବା ସମ୍ପୂର୍ଣ୍ଣ ଛନ୍ଦରେ ଥିଲେ ତାହାକୁ ଚକ୍ରସିଂହାବଲୋକନ କହନ୍ତି । ଏଥିର ଉଦାହରଣ ଭଞ୍ଜ, ବୈଦେହୀଶବିଳାସ ବିଂଶ ଛନ୍ଦରେ ଅଛି । ]

ଚକ୍ରହସ୍ତ—ସଂ. ବ. ପୁଂ. (ବହୁବ୍ରୀହି; ଚକ୍ର+ହସ୍ତ)—ବିଷ୍ଣୁ—Bishṇu.
Chakrahasta

(ଚକ୍ରହସ୍ତା—ସ୍ତ୍ରୀ) ସଂ. ବଣ. ପୁଂ.—ଚକ୍ର ଧାରଣକାରୀ—Holding or armed with a discus.

ଚକ୍ରା—ସଂ. ବ.—୧ । ନାଗର ମୁଥା (ଦେଖ)
Chakrā
Nāgaramuthā (See)

୨ । କକଡ଼ାଶୃଙ୍ଗୀ (ଦେଖ)
2. Kakarḍāsṛungī (See)

ଚକ୍ରାକାର—ସଂ. ବଣ. ( ବହୁବ୍ରୀହି; ଚକ୍ର+ଆକାର )—ମଣ୍ଡଳାକାର; ଗୋଲ—Round; circular.
Chakrākāra

(ଚକ୍ରାକୃତି—ଅନ୍ୟରୂପ)

ଚକ୍ରାଙ୍କୀ—ସଂ. ବ.—ମାଈହଂସ —
Chakrākī
Goose.

(ଚକ୍ରାଙ୍ଗୀ—ଅନ୍ୟରୂପ)

ଚକ୍ରାଙ୍କ—ସଂ. ବ. (୬ଷ୍ଠୀ ତତ୍; ଚକ୍ର+ଅଙ୍କ)—୧ । ଚକ୍ରର ଚିହ୍ନ—
Chakrāṅka
1. The mark or sign of a wheel.

୨ । ଚକ୍ରମୁଦ୍ରା (ଦେଖ)—2. Chakramudrā (See)

ଚକ୍ରାଙ୍ଗ—ସଂ. ବ. (ବହୁବ୍ରୀହି; ଚକ୍ର+ଅଙ୍ଗ)—୧ । ରଥ; ଗାଡ଼ି—
Chakrāṅga
1. Wheeled vehicle; cart.

୨ । ବଗିଚା—2. Pleasure garden.

୩ । ବତକ; ହଂସ—3. Swan; gander.

୪ । ଛତା—Parasol umbrella.

୫ । ଚକ୍ରବାକ ପକ୍ଷୀ—5. Ruddy goose.

୬ । ହୁଡ଼ମିଚ ଶାଗ—(ହି. ଶବ୍ଦସାଗର)—
6. A kind of pot herb.

୭ । କଟୁକୀ (ହି. ଶବ୍ଦସାଗର)—7. A herb.

ଚକ୍ରାଙ୍ଗୀ—ସଂ. ବ ସ୍ତ୍ରୀ.—୧ । କଟୁକୀ (ଦେଖ)
Chakrāṅgī
1. Kaṭukī (See)

୨ । ମାଈ ବତକ—2. Goose.

୩ । ହୁଲମୋଚକା ଶାଗ—3 A kind of potherb.

୪ । ମଞ୍ଜିଷ୍ଠା—4. Indian madder

୫ । କକଡ଼ାଶୃଙ୍ଗୀ (ଦେଖ)
5. Kakarḍāsṛungī (See)

ଚକ୍ରାଟ—ସଂ. ବ. (ଚକ୍ର+ଗ୍ରାମସମୂହ+ଅଟ ଧାତୁ=ଭ୍ରମଣ କରିବା+ କର୍ତ୍ତୃ. ଅ)—୧ । ଠକ; ପ୍ରତାରକ—
Chakrāṭa
1. A knave; a cheat; a rogue.

୨ । ଐନ୍ଦ୍ରଜାଲିକ; ଭୁଆଁବାଜ—2. A juggler.

୩ । ସାପୁଆ କେଳା—3. A snake charmer.

୪ । ସ୍ୱର୍ଣ୍ଣମୁଦ୍ରା; ଦିନାର—4. A gold coin.

ଚକ୍ରାଧିବାସୀ—ସଂ. ବ.—ଲେମ୍ବୁ—
Chakrādhibāsī
Orange.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

ଚକ୍ରାନ୍ତ—ସଂ. ବି. (ଚକ୍ର+ଅନ୍ତ; ୬ଷ୍ଠୀ ତତ୍)—୧ । ଷଡ଼ଯନ୍ତ୍ର; କୁମନ୍ତ୍ରଣା;
Chakrānta ପରର ଅନିଷ୍ଟ ସାଧନାର୍ଥ ଗୁପ୍ତ ମନ୍ତ୍ରଣା—
1. Evil plot; conspiracy;.
୨ । ମେଳ—2. Combination.

ଚକ୍ରାବର୍ତ୍ତ—ସଂ. ବି.—( ଚକ୍ର+ଆବର୍ତ୍ତ )—୧ । ଚକାଭଉଁରି; ଘୂର୍ଣ୍ଣନ;
Chakrābartta ମଣ୍ଡଳାକାର ଭ୍ରମଣ; ଚକ ପରି ଘାଉଁରି ଖାଇବା—
1. Whirling motion; movement in a circle.
୨ । ପରିକ୍ରମା—2. Walking in a circuit; circumambulation.

ଚକ୍ରାୟୁଧ—ସଂ.ବିଣ.(ବହୁବ୍ରୀହି; ଚକ୍ର+ଆୟୁଧ) ଯାହାର ଚକ୍ର ଶସ୍ତ୍ର ଅଟେ
Chakrāyudha Having the discus as his weapon.
ସଂ. ବି.—ବିଷ୍ଣୁ—Bishṇu.

ଚକ୍ରାହ୍ୱ—ସଂ. ବି. (ବହୁବ୍ରୀହି; ଚକ୍ର+ଆହ୍ୱା)—ଚକ୍ରବାକ ପକ୍ଷୀ—
Chakrāhwa Ruddy goose.
(ଚକ୍ରାହ୍ୱୟ—ଅନ୍ୟରୂପ)

ଚକ୍ରିଆ—ଦେ. ବିଣ. ( ସଂ. ଚକ୍ରୀ )—୧ । କୁମନ୍ତ୍ରଣାକାରୀ—
Chakriā 1. Conspiring.
୨ । ପ୍ରତାରକ—2. Cheating; deceitful.

ଚକ୍ରିକ—ସଂ. ବିଣ. ପୁଂ. ( ଚକ୍ର+ଇକ )—ଚକ୍ରଧାରୀ—
Chakrika Armed with discus.
ସଂ. ବି—୧ । କୂଟ—1. Fraudulent; device
୨ । ଚକ୍ରଧର; ଚକ୍ରଧାରୀ ବ୍ୟକ୍ତି—
2. A person armed with the discus.

ଚକ୍ରିକା—ସଂ. ବି. ସ୍ତ୍ରୀ. ( ଚକ୍ରକ+ଆ )—
Chakrikā ୧ । ଆଣ୍ଠୁର ଗୋଲ ହାଡ଼ ବା ଚକି—1. The circular bone at the knee joint; kneebone.
୨ । ଜାନୁ—2. Knee.
୩ । ରାଶି; ଗଦା—3. Heap.
୪ । ଦଳ—4 Troop; crowd.
୫ । ସେନା ଦଳ—5. A troop of soldiers.

ଚକ୍ରିଣୀ—ଦେ. ବି. ( ଚକ୍ରିନ୍+ଈ )—ରଥ—
Chakriṇī Chariot.
କୃଷ୍ଣଙ୍କୁ ରଥୁଁ ଓହ୍ଲାଇ ଅବଲୋକି
କୋପଭରେ ସେ ଚକ୍ରିଣୀ ଅପେକ୍ଷି । ଦୀନକୃଷ୍ଣ—ରସକଲ୍ଲୋଳ ।
ସଂ. ବି ଓ ବିଣ. ସ୍ତ୍ରୀ—ଚକ୍ରୀର ସ୍ତ୍ରୀଲିଙ୍ଗ—
Feminine of Chakrī.

ଚକ୍ରିବାଣ—ଦେ. ବି—ଚକ୍ରୀ ( ଦେଖ )
Chakribāṇa Chakrī ( See ).

ଚକ୍ରିୟ—ସଂ. ବିଣ. ପୁଂ. ( ଚକ୍ର+ଇୟ )—
Chakriya ଭ୍ରମଣକାଳରେ ଚକ୍ରଯାନ ଚଢ଼ିଥିବା—
(ଚକ୍ରିୟା—ସ୍ତ୍ରୀ) Going or travelling in a carriage.

ଚକ୍ରୀ—ସଂ. ବି. ପୁଂ. ( ଚକ୍ର+ଇନ୍; ୧ମା. ୧ବ. )—୧ । ବିଷ୍ଣୁ—
Chakrī 1. Bishṇu.
(ଚକ୍ରିଣୀ—ସ୍ତ୍ରୀ) ୨ । କୁମ୍ଭକାର—2. Potter.
୩ । ସମ୍ରାଟ୍—3 Emperor.
୪ । ସର୍ପ—4. Serpent; snake.
୫ । ଚକ୍ରବାକ ପକ୍ଷୀ—5 Ruddy shel-drake.
୬ । ତେଲି—6. Oilman.
୭ । ବାଜିକର—7. Juggler.
୮ । ଗୁପ୍ତଚର; ଗୁଇନ୍ଦା—8. Informer; spy.
୯ । କାକ—9. Crow.
୧୦ । ଗର୍ଦ୍ଦଭ—10. Ass.
୧୧ । ପ୍ରାଦେଶିକ ଶାସନକର୍ତ୍ତା—
11. Provincial Governor.
୧୨ । ଗ୍ରାମର ପୁରୋହିତ (ହି. ଶବ୍ଦସାଗର)—
12. The priest of a whole village.
୧୩ । ବକରା; ଅଣ୍ଡିରା ଛେଳି (ହି. ଶବ୍ଦସାଗର)—
13. A male goat.
୧୪ । ଚକୁଣ୍ଡା ( ଦେଖ )
14. Chakuṇḍā ( See )
୧୫ । ତିନିଶ ( ଦେଖ )
15. Tiniśa ( See )
୧୬ । ରଥାରୋହୀ ବ୍ୟକ୍ତି (ହି. ଶବ୍ଦସାଗର)—
16 A person who rides on a car.
୧୭ । ଉଶନସଙ୍କ ଜାତି ବିବେକ ଗ୍ରନ୍ଥରେ ଉଲ୍ଲିଖିତ ବର୍ଣ୍ଣସଙ୍କର ଜାତିବିଶେଷ (ହି. ଶବ୍ଦସାଗର)—
17. Name of a hybrid tribe of ancient India.
୧୮ । (ଚନ୍ଦ୍ରଶେଖରଙ୍କ ମତରେ) ଆର୍ଯ୍ୟାଛନ୍ଦର ୨୬ଟି ଭେଦମଧ୍ୟରୁ ଏକ (ହି. ଶବ୍ଦସାଗର)—
18. Name of a musical tune.
[ ଦ୍ର—ଏଥିରେ ୬ ଗୁରୁ ଓ ୪୫ ଲଘୁସ୍ୱର ଥାଏ । ]
ସଂ. ବିଣ—୧ । ଚକ୍ରବିଶିଷ୍ଟ—1. Wheeled.
୨ । ଚକ୍ରଧାରୀ—2 Armed with a discus.
୩ । ଗୋଲାକାର—3. Circular; round.
୪ । ସୂଚକ—4 Indicative.
୫ । କୁମନ୍ତ୍ରଣାକାରକ; ଷଡ଼ଯନ୍ତ୍ରକାରୀ—
5. Plotting; conspirating.
ଦେ. ବି. ( ସଂ. ଚକ୍ର )—ଏକ ପ୍ରକାର ବାଣ ଯହିଁରେ ନିଆଁ ଲାଗିଲେ ଚକ ପରି ଘୂରେ—A whirling firework. Catherine wheel.
[ ଦ୍ର—ଏହା ୨ ପ୍ରକାର; ଏକପ୍ରକାର ଚକ୍ରୀ ତାଳ ପଟକାପରି, ଏଥିରେ ନିଆଁ ଲଗାଇ ଦେଲେ ଏହା ଚକ ପରି ଖାଲୁ ଘୁରୁଘୁରୁ ନ୍ୟାୟ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ଯ | ଉଅ | ଞ୍ଚ |
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଊ | ନ୍ଚ |

ହୁଏ । ଆଉ ଏକ ପ୍ରକାର ଚକ୍ରାକାର ବତାରେ ୩/୪ ସ୍ଥାନରେ ବାରୁଦ ପୂର୍ଣ୍ଣ ନଳୀ ଲାଗିଥାଏ ଓ ଉକ୍ତ ଚକ୍ରର କେନ୍ଦ୍ରକୁ ଭୂମିରେ ପୋତା ବାଉଁଶରେ ବାନ୍ଧିବାକୁ ହୁଏ । ନିଆଁ ଲଗାଇଲେ ତାହା ଉକ୍ତ ପୋତା ବାଉଁଶ ଉପରେ ବାରମ୍ବାର ଘୂରେ । ]

**ଚକ୍ରୀକରଣ**—ସଂ. ବି. ( ଚକ୍ର+ଅଭୂତ ତଦ୍ଭାବେ. (ଚ୍ୱି) ଈ+କରଣ)—
Chakrīkaraṇa ସିଧା ହୋଇଥିବା କୌଣସି ବସ୍ତୁ ( ଧନୁ ଆଦି ) (ଚକ୍ରୀକୃତ—ବିଣ) କୁ ଗୋଲ କରିବା—To form into a circle; to make circular.

**ଚକ୍ରୀବାନ୍**—ସଂ. ବି. ( ଚକ୍ରୀ+ବତ୍; ୧ମା. ୧ବ )—
Chakrībān ୧ । ଗର୍ଦ୍ଦଭ—1. Ass.
୨ । ନୃପବିଶେଷ ( ପ୍ରକୃତିବାଦ )—
2. Name of a king.

**ଚକ୍ରେଶ୍ୱର**—ସଂ. ବି. ( ୬ଷ୍ଠୀ ତତ୍; ଚକ୍ର+ଈଶ୍ୱର )—
Chakreśwara ୧ । ସମ୍ରାଟ୍—1. Emperor.
୨ । ରାଜା—2. King.
୩ । ପ୍ରାଦେଶିକଶାସନକର୍ତ୍ତା—
3. Provincial Governor.
୪ । ଜିଲ୍ଲାର ଶାସନକର୍ତ୍ତା—4. District officer.
୫ । ବିଷ୍ଣୁ—5. Bishṇu.
୬ । ତାନ୍ତ୍ରିକ ସାଧନାର ଚକ୍ରର ଅଧିଷ୍ଠାତା—
6. The presiding Deity of a mystic circle of the Tāntrikas.

**ଚକ୍ଷ (ଧାତୁ)**—ସଂ—୧।କୋଲିବା; କହିବା—
Chaksh (root) 1. To speak; to tell; to say.
୨ । ଖାଇବା—2 To eat.
୩ । ଚାଖିବା—3. To taste.
୪ । ଦେଖିବା—4. To see; to perceive.
୫ । ତ୍ୟାଗ କରିବା—5. To abandon; to leave.

**ଚକ୍ଷଣ**—ସଂ. ବି. ( ଚକ୍ଷ୍ ଧାତୁ+ଅନ )—
Chakshaṇa ୧ । ( +ଭାବ. ଅନ ) କଥନ—
1. Speaking
୨ । ( +କର୍ମ. ଅନ ) ଚଟଣି—2. Sauce; chutney.
୩ । ମଦ୍ୟର ଗୁଡ଼; ମଦ୍ୟପାୟୀର ମୁଖରୋଚକ ବସ୍ତୁ; ଚୁଖଣା—
3. A relish; a sweet thing taken by the winedrinker after drink.
୪ । ମୁଦ୍ରଁ ପୁଅାଦଅ ବା କ୍ଷୁଧାବୃଦ୍ଧି କରିବାପାଇଁ ଗୁଡ଼ ଚାଖିବା—
4. Eating of a relish to promote appetite.
୫ । ( +ଭାବ. ଅନ ) ଚାଖିବା—5. Tasting.
୬ । (+ଭାବ. ଅନ) କୃପାଦୃଷ୍ଟି; ଅନୁଗ୍ରହ (ହି. ଶବ୍ଦସାଗର)-
6. A look of favour.

**ଚକ୍ଷମ**—ସଂ. ବି. ( ଚକ୍ଷ୍ ଧାତୁ—କହିବା+କର୍ତ୍ତୃ. ଅମ )—
Chakshama ୧ । ସୁରଗୁରୁ; ବୃହସ୍ପତି—1. Bṛuhaspati.
୨ । ଉପାଧ୍ୟାୟ ( ହି. ଶବ୍ଦସାଗର )—
2. Teacher; pedagogue.

**ଚକ୍ଷୁ**—ଦେ. ବି. ( ସଂ. ଚକ୍ଷୁସ୍ )—ଚକ୍ଷୁଃ ( ଦେଖ )
Chakshu Chakshuḥ ( See )
ଚୋକ

**ଚକ୍ଷୁଃ**—ସଂ. ବି. (ଚକ୍ଷ୍ ଧାତୁ+ଉସ୍ )—୧ । ( +କରଣ. ଉସ୍ ) ଆଖି;
Chakshuḥ ନୟନ; ଦର୍ଶନେନ୍ଦ୍ରିୟ—1. Eye.
୨ । (+ଭାବ. ଅନ) ଦୃଷ୍ଟି—2. Sight; vision; look.
୩ । ଦୃଷ୍ଟିଶକ୍ତି—3 The faculty of sight.
୪ । ଉଜ୍ଜ୍ୱଳତା; କାନ୍ତି; ତେଜଃ—
4. Lustre; radiance; splendour.
୫ । ଆଲୋକ—5. Light.
୬ । ଅଜମୀଢ଼ବଂଶୀୟ ପୁରୁଜାନୁଙ୍କ ପୁତ୍ର ଓ ହର୍ଯ୍ୟଶ୍ୱଙ୍କ ପିତା; ବିଷ୍ଣୁପୁରାଣୋକ୍ତ ରାଜାବିଶେଷ —6. Name of a king of ancient India.
୭ । ଅକ୍ସସ୍ ନଦୀ—7 The river Oxus.

[ ଦ୍ର—ବିଷ୍ଣୁପୁରାଣରେ ଅଛି ଯେ ଗଙ୍ଗା ବ୍ରହ୍ମଲୋକରୁ ପଡ଼ି ୪ଟି ଧାରରେ ପ୍ରବାହିତ ହେଲା । ଯେଉଁ ଧାର କେତୁମାଳ ପର୍ବତ ପାଖରେ ପଶ୍ଚିମସାଗରରେ ଯାଇ ପଡ଼ିଲା ତାହାର ନାମ ଚକ୍ଷୁଃ । ବେଦରେ ମଧ୍ୟ ଏ ନାମ ମିଳେ (ହି. ଶବ୍ଦସାଗର) । ]

**ଚକ୍ଷୁଃପଥ**—ସଂ. ବି ( ଷଷ୍ଠୀତତ୍; ଚକ୍ଷୁଃ+ପଥ )—
Chakshuḥpatha ୧ । ଦୃଷ୍ଟିର ସୀମା—
(ଚକ୍ଷୁଷ୍ପଥ—ଅନ୍ୟରୂପ) 1. Range of vision.
୨ । ଚକ୍ରବାଳ; ଦିଗ୍‌ବଳୟ—2 Horizon.

**ଚକ୍ଷୁଃପୀଡ଼ା**—ସଂ. ବି ( ୬ଷ୍ଠୀ ତତ୍; ଚକ୍ଷୁଃ+ପୀଡ଼ା )—
Chakshuḥpirḍā ଆଖି ବିନ୍ଧିବା; ଆଖି ଖୁଣ୍ଟିହେବା—
(ଚକ୍ଷୁଷ୍ପୀଡ଼ା—ଅନ୍ୟରୂପ) Pain in the eye.

**ଚକ୍ଷୁଃପ୍ରୀତି**—ସଂ. ବି—କୌଣସି ସୁନ୍ଦର ବସ୍ତୁ ଦେଖିବାଦ୍ୱାରା ଜନ୍ମିବା
Chakshuḥpriti ଆନନ୍ଦ—Pleasure derived from seeing a beautiful thing.

**ଚକ୍ଷୁଃଶୂଳ**—ସଂ. ବି (୬ଷ୍ଠୀ ତତ୍; ଚକ୍ଷୁଃ+ଶୂଳ )—୧ । (ଲକ୍ଷଣାର୍ଥ) ଯାହା
Chakshuḥśūla ଦେଖିବା ବ୍ୟକ୍ତିର ମନରେ କଷ୍ଟ ଦିଏ—
1. (fig) An eyesore.
୨ । ଚକ୍ଷୁଃପୀଡ଼ା—2. Pain in the eye.
ସଂ. ବିଣ (ଲକ୍ଷଣାର୍ଥ) ଯାହା ଦେଖିଲେ କଷ୍ଟ ଜାତ ହୁଏ; ନେତ୍ରର ଅପ୍ରୀତିକର—Very unpleasant or offensive to look at.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଢୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଆଗ୍ୟା' ନ ପାଇଲେ 'ଆଜ୍ଞା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚକ୍ଷୁଃଶ୍ରବ**—ଦେ ବି ( ସଂ. ଚକ୍ଷୁଃଶ୍ରବାଃ )—
Chakshuhṡraba — ଚକ୍ଷୁଃଶ୍ରବାଃ (ଦେଖ)
(ଚକ୍ଷୁଃଶ୍ରବା—ଅନ୍ୟରୂପ) — Chakshuhṡrabāḥ (See).
କୋପେ କିମ୍ପାଁ ଚକ୍ଷୁଃଶ୍ରବ—ଜଗନ୍ନାଥ. ଭାଗବତ ।

**ଚକ୍ଷୁଃଶ୍ରବାଃ**—ସଂ.ବି (ବହୁବ୍ରୀହି; ଚକ୍ଷୁ+ଶ୍ରବସ୍, ଯେ ଚକ୍ଷୁଦ୍ୱାରା ଶୁଣେ)—
Chakshuhṡrabāḥ — ସର୍ପ—Serpent
[ ଦ୍ର—ସାପମାନଙ୍କ ମୁଣ୍ଡରେ କାନ ଦେଖା ନ ଯିବାରୁ ସାପମାନେ ଆଖିଦ୍ୱାରା ଶୁଣନ୍ତି ବୋଲି ଲୋକେ ବିଶ୍ୱାସ କରୁଥିଲେ, କିନ୍ତୁ ଆଧୁନିକ ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ସର୍ପମାନଙ୍କର ସ୍ୱତନ୍ତ୍ର କର୍ଣ୍ଣଯନ୍ତ୍ର ମସ୍ତକର ଚର୍ମ ତଳେ ନାହିଁ । ]

**ଚକ୍ଷୁଃସ୍ପନ୍ଦନ**—ସଂ. ବି ( ୬ଷ୍ଠୀ ତତ୍; ଚକ୍ଷୁଃ+ସ୍ପନ୍ଦନ )—
Chakshuhspandana — ଆଖିର ପତା ଡେଇଁବା—
(ଚକ୍ଷୁସ୍ପନ୍ଦନ, ଚକ୍ଷୁଃସ୍ଫୁରଣ, ଚକ୍ଷୁସ୍ଫୁରଣ—ଅନ୍ୟରୂପ) — The throbbing of the eyelid; involuntary vibration of the different parts of the eyelid.
[ ଦ୍ର—ବେଳେବେଳେ ଆଖିର ଉପରପତା, ଆଖିର ତଳପତା, ଆଖିପତାର କୋଣ ଓ ଆଖିପତାର ପ୍ରାନ୍ତର ସ୍ପନ୍ଦନ ହୁଏ । ପୁରୁଷର ଡାହାଣ ଆଖିର ଓ ସ୍ତ୍ରୀର ବାମ ଆଖିର ଭିନ୍ନ ଭିନ୍ନ ଅଂଶର ସ୍ପନ୍ଦନ ହେଲେ ଶୁଭମଙ୍ଗଳର ଓ ପୁରୁଷର ବାମ ଆଖି ଓ ସ୍ତ୍ରୀର ଡାହାଣ ଆଖିର ଭିନ୍ନ ଭିନ୍ନ ଅଂଶର ସ୍ପନ୍ଦନ ହେଲେ ଅଶୁଭମଙ୍ଗଳର ସୂଚନା ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ]

**ଚକ୍ଷୁ କର୍ଣ୍ଣର ବିବାଦ ମେଣ୍ଟାଇବା**—ଦେ. କ୍ରି—ଶୁଣିଥିବା ବିଷୟକୁ ଦର୍ଶନ
Chakshu karṇṇara bibāda meṇṭāibā — କରିବା ଦ୍ୱାରା
ଚକ୍ଷু কর্ণের বিবাদ মেটান — ଶୁଣା କଥା ଓ ଦେଖା କଥା ଏକ ଥିବା ଜାଣି ସନ୍ତୁଷ୍ଟ ହେବା—To test the truth or otherwise of a report (heard) about a thing or person by actually seeing the thing or person.

**ଚକ୍ଷୁ କର୍ଣ୍ଣର ବିବାଦ ମେଣ୍ଟିବା**—ଦେ. ବି—ଶୁଣିଥିବା ବିଷୟ ବା
Chakshu karṇṇara bibāda meṇṭibā — ବର୍ଣ୍ଣନାକୁ ସ୍ୱଚକ୍ଷୁରେ
চক্ষু কর্ণের বিবাদ মিটা — ଦେଖିବାଦ୍ୱାରା ଶୁଣା କଥା ସଙ୍ଗେ ଦେଖା କଥାର ସାମଞ୍ଜସ୍ୟ ପ୍ରତିପାଦିତ ହେବା—
Reconciliation of the hearsay report with the actual facts by visual test.

**ଚକ୍ଷୁଖୋଲିବା**—ଦେ. କ୍ରି—ଆଖି ମେଲାକରିବା—
Chakshu kholibā — To open one's eyes.
চোখ খুলা — ଦେ. ବି—(ଲକ୍ଷଣାର୍ଥ) ଚୈତନ୍ୟ ଉଦୟ ହେବା; ପ୍ରକୃତ
আঁখ খুলনা — ଅବସ୍ଥା ହୃଦୟଙ୍ଗମ ହେବା—
(figurative) Becoming alive to the reality.

**ଚକ୍ଷୁଗୋଚର**—ଦେ. ବିଣ ( ସଂ. ଚକ୍ଷୁର୍ଗୋଚର )—
Chakshugochara — ଚକ୍ଷୁର୍ଗୋଚର (ଦେଖ)
Chakshurgochara (See).

**ଚକ୍ଷୁଦାନ**—ଦେ. ବି.—(ସଂ. ଚକ୍ଷୁର୍ଦାନ)—ଚକ୍ଷୁର୍ଦାନ (ଦେଖ).
Chakshudāna — Chakshurdāna (See)

**ଚକ୍ଷୁ ପୀଡ଼ା**—ଦେ. ବି—(ସଂ.ଚକ୍ଷୁଃ ପୀଡ଼ା)—୧ । ଚକ୍ଷୁଃ ପୀଡ଼ା (ଦେଖ)
Chakshu pirḍā — Chakshuh pirḍā (See)

**ଚକ୍ଷୁରୋଗ**—ସଂ. ବି—(ଚକ୍ଷୁଃ+ରୋଗ)—ଚକ୍ଷୁକୁ ବାଧା କରିବା ରୋଗ;
Chakshuroga — ନେତ୍ରବ୍ୟାଧି—Eye disease (M. W)
(ଚକ୍ଷୂରୋଗ-ଅନ୍ୟରୂପ)

**ଚକ୍ଷୁର୍ଗୋଚର**—ସଂ ବିଣ.—(୬ଷ୍ଠୀ ତତ୍; ଚକ୍ଷୁଃ+ଗୋଚର)—
Chakshurgochara — ୧ । ଦୃଷ୍ଟିଗୋଚର—1. Coming
(ଚକ୍ଷୁର୍ଗୋଚରା—ସ୍ତ୍ରୀ) — under the ken of one's eyes.
୨ । ଦେଖା ଯାଉଥିବା—3. Visible.

**ଚକ୍ଷୁର୍ଗ୍ରହଣ**—ସଂ. ବି. (୬ଷ୍ଠୀ ତତ୍; ଚକ୍ଷୁଃ+ଗ୍ରହଣ)—ଆଖିଧରା ରୋଗ—
Chakshurgrahaṇa — A morbid affection of the eye

**ଚକ୍ଷୁର୍ଦାନ**—ସଂ. ବି—(୬ଷ୍ଠୀ ତତ୍; ଚକ୍ଷୁଃ+ଦାନ)—୧ । ଚିକିତ୍ସା ବା
Chakshurdāna — ଔଷଧପ୍ରୟୋଗ ଦ୍ୱାରା ଲୁପ୍ତ ଦୃଷ୍ଟିଶକ୍ତିକୁ ଉଦ୍ଧାର କରିବା—1. Restoration of lost eyesight by treatment.
୨ । ଦେବ ପ୍ରତିମାର ଚକ୍ଷୁରେ ରଙ୍ଗ ଦେଇ ମନ୍ତ୍ରଦ୍ୱାରା ପ୍ରାଣପ୍ରତିଷ୍ଠା କରିବା; ଚକ୍ଷୁଦାନ—2. The ritual of painting the eyes of an image and infusing life into it

**ଚକ୍ଷୁର୍ବନ୍ଧ**—ସଂ. ବି.—(୬ଷ୍ଠୀ ତତ୍; ଚକ୍ଷୁଃ+ବନ୍ଧ)—
Chakshurbandha — ୧ । ଆଖିରେ ଅନ୍ଧପୋଟଳି ବାନ୍ଧିବା—
(ଚକ୍ଷୁର୍ବନ୍ଧନ—ଅନ୍ୟରୂପ) — 1. Putting of a blind over the eyes
୨ । ମନ୍ତ୍ରପ୍ରୟୋଗ ଦ୍ୱାରା ଦୃଷ୍ଟିଶକ୍ତିର ଲୋପକରଣ—
2. Blinding the sight by charms.

**ଚକ୍ଷୁର୍ବିଷୟ**—ସଂ. ବି.—(୬ଷ୍ଠୀ ତତ୍; ଚକ୍ଷୁଃ+ବିଷୟ)—
Chakshurbishaya — ନୟନଗୋଚର; ଦର୍ଶନୀୟ ବସ୍ତୁ—
Thing seen by the eye; object of sight
ସଂ. ବିଣ—ଦର୍ଶନୀୟ—Perceivable by the eye; perceptible.

**ଚକ୍ଷୁର୍ମଳ**—ସଂ. ବି. (୬ଷ୍ଠୀ ତତ୍; ଚକ୍ଷୁଃ+ମଳ)—ଆଖିର ଲେଚରା—
Chakshurmaḷa — The excretion of the eye; rheum of the eye.

**ଚକ୍ଷୁର୍ଲଜ୍ଜା**—ସଂ. ବି—(ମ. ପ. ଲୋ; ଚକ୍ଷୁଦ୍ୱାରା ଅନୁଭୂତ ଲଜ୍ଜା)—
Chakshurlajjā — ମୋହବଶତ; ମୁହଁ ଉପ୍ରୋଧ; ଅଶିଷ୍ଟ ଆଚରଣ ହେତୁ ଲଜ୍ଜା ବୋଧ ବା କୁଣ୍ଠା ବୋଧ—
Scruple; sensitiveness felt by one in the presence of a gentleman.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ଁ | ଡ୍ଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ |

**ଚକ୍ଷୁଲଜ୍ଜା**—ଦେ. ବ. (ସଂ. ଚକ୍ଷୁର୍ଲଜ୍ଜା)—ଚକ୍ଷୁର୍ଲଜ୍ଜା (ଦେଖ)
Chakshulajjā Chakshurlajjā (See)
ଏ ପଦଗୌରବ ଏଭେ ସାଜସଜ୍ଜା—
ପ୍ରଭଭାର ହେଲେ କାହିଁ ଚକ୍ଷୁଲଜ୍ଜା । ରଘୁନାଥ—ଦରବାର ।

**ଚକ୍ଷୁଷ୍କର୍ଣ୍ଣ**—ସଂ. ବ (ବହୁବ୍ରୀହି; ଚକ୍ଷୁଃ ଅଟେ କର୍ଣ୍ଣ ଯାହାର)—ଚକ୍ଷୁଃଶ୍ରବାଃ,
Chakshushkarṇṇa ସର୍ପ—Serpent (M. W.)

**ଚକ୍ଷୁଷ୍ପତି**—ସଂ. ବ.—(୬ଷ୍ଠୀ ତତ୍; ଚକ୍ଷୁଃ=ଆଲୋକ+ପତି)—
Chakshushpati ସୂର୍ଯ୍ୟ (ହ୍ର. ଶବ୍ଦସାଗର)—The sun

**ଚକ୍ଷୁଷ୍ପୀଡ଼ା**—ସଂ. ବି.—ଚକ୍ଷୁଃ ପୀଡ଼ା (ଦେଖ)
Chakshushpīṛdā Chakshuḥ pīṛdā (See)

**ଚକ୍ଷୁଷ୍ମତ୍ତା**—ସଂ. ବ (ଚକ୍ଷୁଷ୍ମତ୍+ତା)—୧ । ଦୃଷ୍ଟିର ଶକ୍ତି—
Chakshushmattā 1. The faculty of sight
(ଚକ୍ଷୁଷ୍ମତ୍ତ୍ୱ—ଅନ୍ୟରୂପ) ୨ । ପ୍ରଖର ଦୃଷ୍ଟିଶକ୍ତି—
2. Keen eye-sight.
୩ । ସ୍ପଷ୍ଟ ଦେଖି ପାରିବା—3 Clear vision.

**ଚକ୍ଷୁଷ୍ମାନ୍**—ସଂ. ଗୁଣ. ପୁଂ ( ଚକ୍ଷୁସ୍+ମତ୍; ୧ମା. ୧ବ; ଷତ୍ୱବିଧାନର
Chakshushmān ନିୟମ ଅନୁସାରେ ସ+ମ ମିଶି 'ଷ୍ମ' ହେଲା)—
(ଚକ୍ଷୁଷ୍ମତୀ—ସ୍ତ୍ରୀ) ୧ । ଯାହାର ଆଖି ଅଛି—1. Having eyes
୨ । ସ୍ପଷ୍ଟ ଦୃଷ୍ଟିଶକ୍ତିଯୁକ୍ତ—
2. Having clear eye-sights, clear-sighted.
୩ । ଯାହାର ପ୍ରଖର ଦୃଷ୍ଟିଶକ୍ତି ଅଛି—3. Keen sighted.
୪ । ଯାହାର ଦୃଷ୍ଟିଶକ୍ତି ଅଛି —
4. Endowed with the faculty of sight.

**ଚକ୍ଷୁଷ୍ୟ**—ସଂ. ଗୁଣ ( ଚକ୍ଷୁସ୍+ହିତାର୍ଥେ ଯ )—୧ । ଚକ୍ଷୁର ହିତକର—
Chakshushya 1. Beneficial to the eye.
(ଚକ୍ଷୁଷ୍ୟା—ସ୍ତ୍ରୀ) ୨ । ନୟନାଭିରାମ, ଯାହା ଦେଖିଲେ ମନ ଆନନ୍ଦିତ
ହୁଏ; ପ୍ରିୟଦର୍ଶନ—2. Soothing to the eyes;
pleasing to the eyes
୩ । ପ୍ରିୟଦର୍ଶନ; ସୁନ୍ଦର—
3. Beautiful; good-looking.
୪ । ଯାହା ଦୃଷ୍ଟିଶକ୍ତିର ହିତକର—
4. Wholesome for the eye-sight.
ସଂ. ବ—୧ । ଆଖି ପାଇଁ କଜ୍ଜ୍ୱଳ—1. Collyrium.
୨ । କିଆଗଛ—2. Pandanus Odoratissinus; the
screwpine (M. W.)
୩ । ସଜନାଗଛ—
3. Hyperanthera Moringa (tree) (M. W.)
୪ । ପ୍ରପୌଣ୍ଡରୀକ ଗୁଳ୍ମ—
4. A kind of small shrub (M. W.)

**ଚକ୍ଷୁଷ୍ୟା**—ସଂ. ଗୁଣ. ସ୍ତ୍ରୀ (ଚକ୍ଷୁଷ୍ୟ+ଆ)—ଚକ୍ଷୁଷ୍ୟର ସ୍ତ୍ରୀଲିଙ୍ଗ—
Chakshushyā Feminine of Chakshushya.
ସଂ. ବ ସ୍ତ୍ରୀ—୧ । ସୁନ୍ଦରୀ ସ୍ତ୍ରୀ—1. A graceful woman.
୨ । ଏକପ୍ରକାର କଜ୍ଜ୍ୱଳ—2. A kind of collyrium.
୩ । କିଆଗଛ—
3. Pandanus Odoratissinus (M W.)

**ଚକ୍ଷୂରାଗ**—ସଂ. ବ (ଚକ୍ଷୁଃ+ରାଗ; ସନ୍ଧିରେ 'ଉ' ଠାରେ 'ଊ')—
Chakshūrāga ୧ । ଚକ୍ଷୁର ରକ୍ତିମା—1 Redness of the
eye.
୨ । ଚକ୍ଷୁକୁ କଜ୍ଜ୍ୱଳ ଆଦି ରଙ୍ଗଦେଇ ରଙ୍ଗାଇବା—
2. Painting the eye-lids with collyrium etc.
୩ । ଚକ୍ଷୁଃପ୍ରୀତି ( ଦେଖ )—
3. Chakshuḥpriti (See) (M. W.)

**ଚକ୍ଷୂରୋଗ**—ସଂ. ବ ( ୬ଷ୍ଠୀ ତତ୍; ଚକ୍ଷୁଃ+ରୋଗ, ସନ୍ଧି ଯୋଗେ 'ଉ'
Chakshūroga ଠାରେ 'ଊ') ନେତ୍ରରୋଗ—
ଚକ୍ଷୁରୋଗ—ଅନ୍ୟରୂପ) Disease of the eye.

**ଚଖନା**—ପ୍ରାଦେ. (ସମ୍ବଲପୁର) ବ—ଚାଖଣା, ଚାଖିବା ଯୋଗ୍ୟ ବସ୍ତୁ—
Chakhnā A thing which is eaten by licking.

**ଚଖ**—ପ୍ରାଦେ (ସିଂହଭୂମ) କ୍ରି—ଅସ୍ତ୍ରାଦି ପଜାଇବା—
Chakha Whetting of weapons.

**ଚଖିଁଡ଼ା** ପ୍ରାଦେ (ସମ୍ବଲପୁର) ବି. (ସଂ. ଚକ୍ରମର୍ଦ୍ଦ)—ଚାକୁଣ୍ଡା (ଦେଖ)
Chakhaṅrdā Chākuṇdā (See)

**ଚଖା**—ଦେ. ବି.—(ସଂ.ଚକ୍ଷଣ)—ଜିହ୍ୱାଦ୍ୱାରା ସ୍ୱାଦଗ୍ରହଣ; ଚାଖିବାକର୍ମ—
Chakhā Tasting.
चाका, चाखा
**चखना**
(ଚଖେଇ—ସ୍ତ୍ରୀ) ଦେ. ଗୁଣ. ପୁଂ—୧ । ଯେ ସବୁ ପଦାର୍ଥ ଚାଖେ
କିନ୍ତୁ କୌଣସି ପଦାର୍ଥ ଖାଏନାହିଁ—1. Tasting
everything but not eating anything.
୨ । ଯେ ଖାଦ୍ୟଦ୍ରବ୍ୟ କିଣିବା ବାହାନାରେ ସବୁ ଖାଦ୍ୟ
ଦ୍ରବ୍ୟରୁ ଟିକିଏ ଟିକିଏ ଚାଖେ କିନ୍ତୁ ଶେଷରେ ସ୍ୱାଦ
ଗ୍ରହଣ କରିସାରି ଫାଙ୍କିଦେଇ କୌଣସି ପଦାର୍ଥ ନ କିଣି
ଚାଲିଯାଏ—2. One who, pretending to
purchase different foods exposed for
sale after ascertaining which is good
and which is bad tastes different
articles, but goes away without pur-
chasing anything
୩ । (ଗାଳିରେ ବ୍ୟବହୃତ) ଯେ କୌଣସି ଗୋଟିଏ ବିଷୟକୁ
ଦୃଢ଼ଭାବରେ ନ ଧରି ଆଜି ଏ କାମ କାଲି ସେ କାମ
କରେ ଓ ସବୁ କାମକୁ ଚାଖିଲାପରି ଚାଖିଦେଇ ଛାଡ଼ି
ଦିଏ—3. (term of abuse) A person who
does not stick to any particular thing
or profession; a jack of all trades.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଚଭ ୧ ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ଵିପରୀତ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗ୍ନି' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୪ । ଚଖା ହୋଇଥିବା ବସ୍ତୁ— 4. (a thing) Tasted
ବଞ୍ଚଲାଗି ଏକ ଇଚ୍ଛେ, ଚଖା ଦ୍ରବ୍ୟେ ଲୋଭ ଉଦ୍ରେ—
ଅଭିମନ୍ୟୁ. ବଦଗ୍ଧଚନ୍ତାମଣି ।

**ଚଖାଇବା**—ଦେ. କ୍ରି—(ସଂ. ଚଷ ଧାତୁର ଣିଜନ୍ତ)—୧ । ଚାଖିବା କ୍ରିୟାର
Chakhāibā ଣିଜନ୍ତ ରୂପ—1. Causative of Chākhibā.
চাখান ୨ । ଅନ୍ୟ ବ୍ୟକ୍ତିକୁ କୌଣସି ପଦାର୍ଥ ଚାଖିବାର ସୁଯୋଗ
**चखाना** ବା ଅନୁମତି ଦେବା—2. To permit or cause a
(ଚଖେଇବା—ଅନ୍ୟରୂପ) person to taste a thing.
ଚ଼ାଇ ଭୁଞ୍ଜାଇଲ ଦେଇଛ କ୍ଷୀରକୁ—କୃଷ୍ଣସିଂହ. ମହାଭାରତ, ସଭାପର୍ବ ।

**ଚଖାଚଖି**—ଦେ. ବି—୧ । ଅନେକ ବସ୍ତୁକୁ ଚାଖିବା କର୍ମ—
Chakhāchakhi 1. Tasting of many things.
চাখাচাখি ୨ । କୌଣସି ବସ୍ତୁର ସ୍ୱାଦ ପରସ୍ପରକୁ ଗ୍ରହଣ କରିବା—
**चखाचखि** 2. Causing each other to taste anything.
୩ । (ଲକ୍ଷଣାର୍ଥ) ପରସ୍ପରର ବଳ ବା ପରାକ୍ରମ ପରୀକ୍ଷା କରିବା; କସାକସି—3. Tasting of each other's strength or might.
୪ । ବିବାଦ; ବୈର—4. Dispute.
ଦେ. ବିଣ—ପରସ୍ପର ବଳ କସାକସି ହେଉଥିବା (ବ୍ୟକ୍ତି ଦ୍ୱୟ)—
(two persons) Engaged in tasting each other's strength.

**ଚଖୁ**—ଗ୍ରା. ବି. (ସଂ. ଚକ୍ଷୁଃ)—ଚକ୍ଷୁଃ; ଆଖି—
Chakhu Eye.
চোখ
**चखु**

**ଚଗଲ**—ଦେ. ବି.—(ସଂ. ଚପଲ; କମ୍ବା ଚଗଲ)—୧ । ଅସ୍ଥିରତା;
Chagal ଚପଳତା—1. Unstability;
**चुलबुल** restlessness; fickleness.
୨ । ଅମନୋଯୋଗ—2. Inattention.
ଦେ. ବିଣ—୧ । ଅସ୍ଥିର—1. Restless.
୨ । ଅମନୋଯୋଗୀ—2. Inattentive.

**ଚଗଲ୍‌ବଗଲ୍‌**—ଦେ. ବିଣ.—(ଫା. ଅଗଲ୍ ବଗଲ୍ କମ୍ବା. ସଂ. ଚପଲ
Chagalbagal ସଙ୍ଗେ ଅନର୍ଥକ ଧ୍ୱନ୍ୟନୁକାରୀ ଶବ୍ଦ ସହିତ)—
୧ । ଚଞ୍ଚଳ ମତି; ଚପଳ— Fickle.
**अगल बगल** ୨ । ଅସ୍ଥିର—2. Restless.
ଦେ. ବି.—୧ । ଅସ୍ଥିରତା—1. Restlessness.
୨ । ଅନିଶ୍ଚିତତା—2. Uncertainty.

**ଚଗଲପଣ**—ଦେ. ବି.—୧ । ଦୁଷ୍ଟାମି—1. Wickedness.
Chagalapana ୨ । ଅସ୍ଥିରତା—2. Restlessness;
(ଚଗଲପଣିଆ—ଅନ୍ୟରୂପ) fickleness.
**चुलबुलापन** ୩ । ଅମନୋଯୋଗିତା—3. Inattentiveness

**ଚଗଲା**—ଦେ. ବିଣ. ପୁଂ. (ସଂ. ଚଗଲ=ଧୂର୍ତ୍ତ; ସଂ. ଚପଲ, ଭୁଲ. ହି.
Chagalā ଚଗଡ଼ୁ=ଚତୁର; ସଂ. ଚଙ୍ଗ=ଦକ୍ଷ)—
চেংগড়া, চেংগড়া ୧ । ଅସ୍ଥିରମନା; ଚପଳ; ଚଞ୍ଚଳମତି—
**चिबिल्ला, चुलबुला** 1. Fickle; of unstable mind.
**चिलबिला** ୨ । ମନୋଯୋଗଶୂନ୍ୟ; ଅମନୋଯୋଗୀ—
(ଚଗଲୀ—ସ୍ତ୍ରୀ) 2. Inattentive; of wandering mind
ଚଗଲା
ଚଗଲାପଣିଆଁ } ବି ୩ । ଦୁଷ୍ଟ—3. Wicked; naughty.
ଚଗଲାମି ୪ । ଅସ୍ଥିର—4. Restless
୫ । ଚନ୍ତିତ ବା କୃତ ବିଷୟରୁ ଅନ୍ୟ ଆଡ଼କୁ ଆକର୍ଷିତ ମନ-
5. (mind) Diverted from the act or thought in hand.

**ଚଗଲିଆ**—ପ୍ରାଦେ. (ସମ୍ବଲପୁର) ବିଣ—ଚଗଲା; ଅସ୍ଥିର—
Chagaliā Restless.

**ଚଗଲେଇବା**—ଦେ. କ୍ରି—(ମନକୁ) ଅସ୍ଥିର କରିବା ବା ଚଞ୍ଚଳ କରିବା-
Chagaleibā To divert (one's attention) to allow one's mind to rove.

**ଚଘିବା**—ପ୍ରାଦେ. (ସମ୍ବଲପୁର) କ୍ରି—୧ । ଆରୋହଣ କରିବା; ଚଢ଼ିବା—
Chaghibā 1. To ride; to ascend.
୨ । ଅବରୋହଣ କରିବା—
2. To descend to alight; to get down.

**ଚଙ୍କାଇବା**—ଦେ. କ୍ରି. (ସଂ. ଚଙ୍କ୍ରମ ଧାତୁର ଣିଜନ୍ତ)—
Chankāibā ୧ । ଚଙ୍କିବା କ୍ରିୟାର ଣିଜନ୍ତ ରୂପ—
সরান 1 Causative of Chankibā.
**सरकाना** ୨ । ଘୁଞ୍ଚାଇବା; ସ୍ଥାନଚ୍ୟୁତ କରିବା—To dis-
(ଚଙ୍କେଇବା—ଅନ୍ୟରୂପ) place; to cause to budge.

**ଚଙ୍କିବା**—ଦେ. କ୍ରି. (ଚଙ୍କ୍ରମଣ)—
Chankibā ସାମାନ୍ୟ ମାତ୍ର ହଲିବା ବା ସ୍ଥାନାନ୍ତର ହେବା—
সরা To budge; to move a little.
**सरकना** ସମସ୍ତେ ମିଶି ଭୂମିକର୍ଣ୍ଣକୁ ହଲାଇଲେ, ଭୂମିକର୍ଣ୍ଣ ଚଙ୍କିଲ ନାହିଁ ।
(ଚଙ୍କାଇବା—ଣିଜନ୍ତରୂପ) ନୀଳକଣ୍ଠ ଦାସ. ପିଲଙ୍କ ରାମାୟଣ ।

**ଚଙ୍କୁଣ**—ସଂ. ବି. (କ୍ରମ ଧାତୁ ଯଙ୍‌ଲୁଗନ୍ତ=ଚଙ୍କ୍ରମ ଧାତୁ+ଉଣ)—
Chankuna ୧ । (ଭାବ. ଉଣ) ପୁନଃ ପୁନଃ ଗମନ କରିବା—
1. Going repeatedly, repeated movements.
୨ । (+କର୍ତ୍ତୃ. ଉଣ) ଚଙ୍କୁର (ଦେଖ)
2. Chankura (See)

**ଚଙ୍କୁର**—ସଂ. ବି. (କ୍ରମ ଧାତୁ; ପୁନଃ ପୁନଃ ଅର୍ଥରେ ଯଙ୍‌ଲୁଗନ୍ତ=
Chankura ଚଙ୍କ୍ରମ ଧାତୁ+କର୍ତ୍ତୃ. ଉର)—୧ । ବୃକ୍ଷ—1. Tree.
୨ । ଗାଡ଼ି—2. Carriage.
୩ । ଚକ୍ରବିଶିଷ୍ଟ ଯାନ—
3. Any vehicle or wheeled contrivance; car.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଡ଼ | ନୃ |

ଚଙ୍କ୍ରମଣ—ସଂ ବି. ( କ୍ରମ ଧାତୁ; ପୁନଃ ପୁନଃ ଅର୍ଥରେ ଯଙ୍ଲୁଗନ୍ତ= Chankramaṇa ଚଙ୍କ୍ରମ୍ ଧାତୁ + ଭାବ. ଅନ )—୧ । ଇତସ୍ତତଃ ( ଚଙ୍କମା—ଅନ୍ୟରୂପ ) ଭ୍ରମଣ—1 Moving about.

୨ । ଧୀରେ ଧୀରେ ପୁନଃ ପୁନଃ ଗମନ –2 Slowly moving up and down; coming and going.

୩ । ପୁନଃ ପୁନଃ ଭ୍ରମଣ—3. Roving about.

୪ । ବାରମ୍ବାର ବୁଲିବା—4. Repeated whirling.

୫ । ଭ୍ରମଣ—5. Walking.

୬ । ପରିଭ୍ରମଣ—6. Travelling.

୭ । ଧୀରଗତି—7. Slow movement.

୮ । ବକ୍ର ଗମନ—8. Going crookedly or tortuously.

୯ । କୁଦା—9. Leap; jump; spring.

ଚଙ୍ଗ୍ରା—ପ୍ରାଦେ. (ସମ୍ବଲପୁର) ବି. (ସଂ ଚଙ୍ଗେରିକ; ଚଙ୍ଗେର; ତୁଲ. ହି. Changrā ଚଙ୍ଗେରା)—ଗୁଙ୍ଗଡ଼ା; ଚଉକୋଣିଆ ଡାଲା—A square tray.

ଚଙ୍ଗ—ସଂ. ବିଣ. (ଚ=ଚନ୍ଦ୍ର+ଗମ ଧାତୁ+କର୍ତ୍ତି. ଅ; ଯେ ଚନ୍ଦ୍ର Changa ନିକଟକୁ ଗମନ କରେ ଅର୍ଥାତ୍ ଚନ୍ଦ୍ର ସଙ୍ଗେ ଯାହାର ତୁଳନା କରିଯାଇ ପାରେ ବା ଯେ ଚନ୍ଦ୍ର ପରି)—

୧ । ସୁନ୍ଦର—1. Beautiful; handsome.

୨ । ଦକ୍ଷ; କର୍ମଠ—2. Clever; fit for work.

୩ । ସୁସ୍ଥ—3. Healthy; hale and hearty.

ସଂ. ବି.—୧ । ମଲ୍ଲ; ପହିଲିଭାନ—1. An athlet.

୨ । ଯୋଦ୍ଧା; ସୈନ୍ୟ—2. Warrior; soldier.

ଚଙ୍ଗ ଦେ.ବି —୧ । ନକାସି କାମ୍ କରା ଥିବା ସୁନା ବା ରୁପାର ବଳୟ-- ଚଂଗ 1. A gold or silver bracelet on which figures have been wrought.

୨ । ଚମକ—2. Fright; startling.

୩ । ଗଞ୍ଜପାର ଆଠ ରଙ୍ଗରୁ ଏକ ରଙ୍ଗ—3. One of the 8 colours of the ganjapa cards.

୪ । ସିତାରର ଚଢ଼ା ହୋଇଥିବା ସ୍ୱର—4. Highly pitched tune of guitar.

ଦେ. ବିଣ.—(ସଂ. ଜଙ୍ଗମ)—୧ । ଅସ୍ଥିର—1 Restless.

୨ । ଚଞ୍ଚଳ—2. Active.

୩ । ସ୍ଫୂର୍ତ୍ତିଯୁକ୍ତ—3. Vigorous

ପ୍ରାଦେ.—(ସିଂହଭୂମ) ବି.—କାଗଜଚଙ୍କ; ଗୁଡ଼ି—Paper kite.

ଚଙ୍ଗଚଙ୍ଗ ହେବା—ଦେ. କ୍ରି.—୧ । ଅସ୍ଥିର ହେବା—Changa changa hebā 1. To become restless.

ଚମଚମ ଗୀତର ଶବ୍ଦ ଅବିରଳ ଅନ୍ଧକାର ସଣି ଭେଦ କରି, କାନରେ ପଡ଼ିବାରୁ ବାଣ୍ଡୋଇ ଚଙ୍ଗଚଙ୍ଗ ହୋଇ ଠିଆ ହୋଇ ସେହି ଦିଗକୁ ଅନାଇଲା । ଫକୀରମୋହନ- ଛମାଣଆଠଗୁଣ୍ଠ ।

୨ । ଅସ୍ଥିରଭାବରେ ଏଣେତେଣେ ଦୃଷ୍ଟି କରିବା—2. To look uneasily to this side and that.

ଚଙ୍ଗଚଙ୍ଗିଆ—ଦେ. ବିଣ. ପୁଂ.—(ସଂ. ଚଙ୍ଗ)—୧ । ଅସ୍ଥିର; ଅବ୍ୟ-Changachangiā ବସ୍ଥିତ ଚିତ୍ତ—1. Unsteady; restless; ଚ୍ୟାଙ୍ଗଡ଼ା; চনমনা ficklеminded. चञ्चल; चौकन्ना ୨ । ସୁନ୍ଦର—2. Handsome; charming. (ଚଙ୍ଗଚଙ୍ଗେଇ—ଅନ୍ୟରୂପ) ୩ । ସୁସ୍ଥ ଓ ସବଳ—3. Spirited and healthy.

୪ । ଯେ ସର୍ବଦା ଚମକେ—4. Hartlish.

ଚଙ୍ଗଡ଼ା—ପ୍ରାଦେ. (ସମ୍ବଲପୁର) ବି—ଚଙ୍ଗ୍ରା ( ଦେଖ ) Changarḍā Changrā ( See )

ଚଙ୍ଗାରି—ଦେ. ବି. ( ସଂ. ଚଙ୍ଗେରିକ; ଶୃଙ୍ଖଳିକା )—Changāri ବାଉଁଶଟୋକେଇ—চাঙ্গারী Bamboo basket. चङ्गेरी

ଚଙ୍ଗି—ଦେ. ବି – ଚଙ୍ଗୁ ( ଦେଖ ) Changi Changu ( See )

ଚଙ୍ଗିମା—ସଂ. ବି. ( ଚଙ୍ଗ + ଇମନ୍ )—ସୌନ୍ଦର୍ଯ୍ୟ—Changimā Beauty; grace.

ଚଙ୍ଗିମାଡ଼—ଦେ. ବି—ଚଙ୍ଗୁମାଡ଼ ( ଦେଖ ) Changimārḍa Changumārḍa ( See )

ଚଙ୍ଗୁ—ଦେ. ବି. (ଫା. ଚଙ୍ଗ୍)—ଏକପ୍ରକାର ଆନଦ୍ଧବାଦ୍ୟ; ଗୁଙ୍ଗୁ—Changu A kind of drum. चङ्ग [ ଦ୍ର—ଏହା କରତଳଦ୍ୱାରା ବଜାନ୍ତି । ]

ଚଙ୍ଗୁମାଡ଼—ଦେ. ବି—ଚଙ୍ଗିବାଦ୍ୟ ବଜାଇବା; ଗୁଙ୍ଗୁମାଡ଼—Changumārḍa Beating of the (changi) drum.

ଚଙ୍ଘରା—ପ୍ରାଦେ. ( ସମ୍ବଲପୁର ) ବି. ( ତୁଲ. ହି. ଚଁଗେର )—Changharā ଚଙ୍ଗ୍ରା ( ଦେଖ ) Changrā ( See )

ଚଚ୍ଚଡ଼ି—ଦେ. ବି. ( ବଙ୍ଗଳାରୁ ଅନୁକୃତ; ଧ୍ୱନ୍ୟନୁକରଣ )—Chachcharḍi ଚଡ଼ଚଡ଼ି; ଶଲୁଲା ଛୁଅଣ; ଅଳ୍ପ ରସାବଶିଷ୍ଟ চড়চড়ী ବ୍ୟଞ୍ଜନ—A kind of curry.

ଚଚ୍ଚପୁଟ—ସଂ. ବି—ଚଞ୍ଚପୁଟ; ସଙ୍ଗୀତର ତାଳବିଶେଷ—Chachchapuṭa A kind of musical measure (M.W) (ଚଚ୍ଚତ୍ପୁଟ—ଅନ୍ୟରୂପ)

ଚଚ୍ଛା—ଦେ. ବି. ପୁଂ (ସଂ. ତାତ)—କକେଇ; କନିଷ୍ଠ ପିତୃବ୍ୟ—Chachchā Father's younger brother; junior চাচা paternal uncle. चचा; चाचा (ଚଚୀ—ସ୍ତ୍ରୀ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ସ୍ୱରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତଙ୍କର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଗିଁଆ' ପାଇଲେ 'ଅଗିଁଆ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲବଟ' ଦେଖିବେ ।

**ଚଛୁ**—ଗ୍ରା. ବି (ସଂ. ଚକ୍ଷୁଃ)—୧ । ଚକ୍ଷୁ—
Chachhu — 1. Eye.
ଚୋଖ — ଲେଖେଁ କଥା କହିଲେ କୁରଙ୍ଗଙ୍କ ଚଛୁ—ପ୍ରତାପ. ଶଶିସେଣା ।
ଚଷ୍ — ୨ । ପ୍ରତିମାର ଚକ୍ଷୁ—2. The eye of an image.
(ଚଛୁ—ଅନ୍ୟରୂପ)

**ଚଛୁଦାନ**—ଗ୍ରା. ବି (ସଂ. ଚକ୍ଷୁର୍ଦାନ)—ଚଛୁଦାନ (ଦେଖ)
Chachhudāna — Tachchhudāna (See).

**ଚଛୁପାଇବା**—ଗ୍ରା. ବି—ଦେବପ୍ରତିମାର ଚକ୍ଷୁଦାନ—
Chachhupāibā — The painting of the eye and consecration of the image of a deity.

**ଚଜା**—ଦେ. ବି (ସଂ. ତର୍ଜ ଧାତୁ)—ଚଦା; ତର୍ଜନ; ଭୟପ୍ରଦର୍ଶନ—
Chajā — Threatening.
ଧମକ
ଡାଟା

**ଚଜାଚଜି**—ଦେ. ବି. ଓ ବିଣ—ଅନ୍ୟୋନ୍ୟରେ ଭୟ ଦେଖାଦେଖି,
Chajāchaji — ଚଦାଚଦି—Threatening each other.
ଧମକାଧମକୀ — ବାହାସ୍ଫୋଟ ମାରି ଅଟନ୍ତି କଡକଡି
ଡାଁଟାଡାଁଟି — ଚଜାଚଜି ହୋଇଲେ କରେ ଗଦା ଧରି ।
— କୃଷ୍ଣସିଂ ହ. ମହାଭାରତ. ଶଲ୍ୟ ।

**ଚଜିବା**—ଦେ. କ୍ରି. (ସଂ. ତର୍ଜଧାତୁ)—୧ । ଚଦିବା; ଧମକାଇବା;
Chajibā — ତର୍ଜନ କରିବା, ଭୟ ଦେଖାଇବା—To threaten,
ଧମକାନା; ତର୍ଜା — ତୁମ୍ଭେ ଏଣୁ ବନେ ବାମଦେବ ପ୍ରାୟେ କାମକୁ ଚିତ୍ତ ଚଜୁଥାଇ ।
ଡାଁଟନା, ଘୁଡ଼କନା — ଭକ୍ତ ମଧୁସୂଦନଙ୍କ ।
୨ । ଭର୍ତ୍ସନା କରିବା—2. To reprimand.
ଚଜିଲ ପଦଘେ ଭଣି । ଗ୍ଲେଗଲ ସୁମନ କରୁଛ ସୁମାନ
କାହିଁ ଗିବ ଅଜ ପୁଣି । — ଅଭିମନ୍ୟୁ—ବିଦଗ୍ଧ ଚିନ୍ତାମଣି ।

**ଚଜିମର୍କଟି ହେବା**—ଦେ. କ୍ରି. (ସଂ. ତର୍ଜ ଧାତୁ ଓ ସଂ. କଷ୍ଟ)—
Chajimarkaṭi hebā — ଭୟଦେଖାଇ ମାଙ୍କଡ଼ ଭଳି ଗର୍ଜିବା ବା
ତର୍ଜାଗର୍ଜା — ଖେଙ୍କାରି ହେବା—To threaten and fret like an ape.
କଡ଼କନା, ଘୁଡ଼କନା

**ଚଞ୍ଚ (ଧାତୁ)**—ସଂ—୧ । ଗତି କରିବା—1. To move.
Chañch (root) — ୨ । ଅସ୍ଥିର ହେବା—2. To be restless.
୩ । ଖାଇବା—3. To eat.
୪ । ହଲାଇବା—4. To dangle about; to shake.
୫ । ଡେଇଁବା; ଲୁଦିବା—5. To jump; to leap.

**ଚଞ୍ଚ**—ସଂ. ବି. (ଚଞ୍ଚ୍ ଧାତୁ+ଅ)—୧ । ଟୋକେଇ; ବାଉଁଶିଆ—
Chañcha — 1. Basket.
୨ । ପଞ୍ଚାଙ୍ଗୁଳମାନ—2. A measure of length equal to 5 fingers.

**ଚଞ୍ଚକ**—ଗ୍ରା. ବି—କପଟତା—Crooked-ness.
Chañchaka — ଟଞ୍ଚକ (ଦେଖ)—Tañchaka (See)

**ଚଞ୍ଚତ୍**—ସଂ. ବିଣ. ପୁଂ. (ଚଞ୍ଚ ଧାତୁ=ଚଞ୍ଚଳ ହେବା+କର୍ତ୍ତୃ. ଅତ୍=
Chañchat — ଶତୃ)—୧ । ଚଞ୍ଚଳ; ଅସ୍ଥିର—
(ଚଞ୍ଚତୀ—ସ୍ତ୍ରୀ) — 1. Unsteady; restless.
୨ । ଗତିଶୀଳ—2. Moving.
୩ । ଦୋହଲୁଥିବା—3. Waving; oscillating.

**ଚଞ୍ଚତ୍କ**—ସଂ. ବିଣ. (ଚଞ୍ଚତ୍+କ)—୧ । ଲୁଦୁଥିବା—
Chañchatka — 1. Leaping; jumping.
୨ । ଥରୁଥିବା—2. Trembling; shaking.
୩ । ଗତି କରୁଥିବା—3. Moving.
୪ । ଅସ୍ଥିର—4. Restless.

**ଚଞ୍ଚନ୍**—ଦେ. ଅ—ଚନ୍‌ଚନ୍ (ଦେଖ)
Chañchan — Chanchan (See)

**ଚଞ୍ଚପୁଟ**—ଦେ. ବି. (ସଂ. ଚଚ୍ଚତ୍ପୁଟ=ତାଳବିଶେଷ)—
Chañchapuṭa — ୧ । ଏକ ପ୍ରକାର ଆନଦ୍ଧ ବାଦ୍ୟ—
1. A kind of drum.
୨ । ଚଞ୍ଚୁପୁଟ (ଦେଖ)
2. Chañchupuṭa (See)

**ଚଞ୍ଚର**—ସଂ. ବି. ପୁଂ. (ଚର ଧାତୁ ଯଙ୍‌ଲୁଗନ୍ତ; ଚଞ୍ଚର୍ ଧାତୁ+କର୍ତ୍ତୃ.
Chañchara — ଅ; ଯେ ପୁଷ୍ପ ଆଦିରେ ବାରମ୍ବାର ବିଚରଣ କରେ)-
(ଚଞ୍ଚରୀ—ସ୍ତ୍ରୀ) — ଭ୍ରମର—Large black wasp.

**ଚଞ୍ଚରଣୀ**—ସଂ. ବି. ସ୍ତ୍ରୀ. (ଚଞ୍ଚରନ୍+ଈ)—ଭ୍ରମରୀ—
Chañcharini — A she-bee.

**ଚଞ୍ଚରୀ**—ସଂ. ବି. ପୁଂ. (ଚଂର+ଇନ୍. ୧ମା. ୧ବ)—ଭ୍ରମର—
Chañchari — A male large black wasp.
ସଂ. ବି. ସ୍ତ୍ରୀ. (ଚଞ୍ଚର+ଈ)—
୧ । ଭ୍ରମରୀ—1. A female large black wasp.
୨ । ଗୀତବିଶେଷ; ହୋଲି ସମୟରେ ବୋଲାଯିବା ଗୀତ (ହି. ଶବ୍ଦସାଗର)—2. A class of songs sung during the Holi festival.

**ଚଞ୍ଚରୀକ**—ସଂ. ବି. ପୁଂ. (ଚର ଧାତୁ=ବିଚରଣ କରିବା; ପୁନଃ ପୁନଃ
Chañcharika — ଅର୍ଥରେ ଯଙ୍‌ଲୁଗନ୍ତ ଚଞ୍ଚର ଧାତୁ+କର୍ତ୍ତୃ. ଈକ;
ଚଞ୍ଚରୀକା } ଅନ୍ୟରୂପ — ଯେ ପୁଷ୍ପମାନଙ୍କ ନିକଟରେ ବାରମ୍ବାର ବିଚରଣ
ଚଞ୍ଚରୀକା } — କରେ)—୧ । ଭଅଁର; ଭ୍ରମର—
1. The black wasp.
ତୋଳା ଚଞ୍ଚରୀକେ ଚଞ୍ଚଳ ଗୁରୁଙ୍କ, ଅଣିମ କଟାକ୍ଷେ କରି ।
— ଉପେ. ଲାବଣ୍ୟବତୀ ।
୩ । ଗୁଣୁ ଗୁଣୁ ସ୍ୱର କରି ମକରନ୍ଦ ପାନ କରିବା ପାଇଁ ଫୁଲ ଉପରେ ଉଡ଼ିବା ଏକ ପ୍ରକାର ପକ୍ଷୀ—
3. Humming bird.

**ଚଞ୍ଚରୀକାବଳୀ**—ସଂ. ବି. (୬ଷ୍ଠୀ ତତ୍; ଚଞ୍ଚରୀକ+ଆବଳୀ)—
Chañcharikābali — ୧ । ଭ୍ରମର ଶ୍ରେଣୀ—1. A row or number of black bees.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ସ | ଜ୍ଞ | ଙ୍ଯ | ଡ଼ଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ଵାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଡ଼ଅ | ଞ | ନ୍ତ |

୨ । ୧୩ ଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ—
2. A Sanscrit metre of 13 syllables.
[ ଦ୍ର—ଏଥିର ପ୍ରତ୍ୟେକ ଚରଣରେ ଯ ଗଣ ମ ଗଣ ଦୁଇ ର ଗଣ ଓ ଏକ ଗୁରୁବର୍ଣ୍ଣ ଥାଏ । ହି. ଶବ୍ଦସାଗର । ]

**ଚଞ୍ଚଳ**—ସଂ. ବିଣ. ( ଚଲ ଧାତୁ ପୁନଃ ପୁନଃ ଅର୍ଥରେ ଯଙ୍‌ଲୁଗନ୍ତ
Chanchala ଚଞ୍ଚଲ ଧାତୁ+କର୍ତ୍ତୃ. ଅ)—୧ । ଗତିଶୀଳ—
(ଚଞ୍ଚଳା—ସ୍ତ୍ରୀ) 1. Moving.
ଚଞ୍ଚଳତା } ବି. ୨ । ଅସ୍ଥିର—2. Restless; unsteady;
ଚଞ୍ଚଳତ୍ଵ } fickle; unstable.
୩ । ଅବ୍ୟବସ୍ଥିତ; ଅଧୀର—3. Capricious.
୪ । ଚପଳ—4. Hasty.
୫ । ଥରୁଥିବା—5. Trembling; tremulous.
୬ । କମ୍ପିତ; ହଲୁଥିବା—6. Shaking; oscillating.
୭ । ତ୍ଵରିତ—7. Quick; brisk.
୮ । ବିଚଳିତ—8. Moving; shifting.
୯ । ଲୋଲୁପ—9. Covetuous.
୧୦ । ଲମ୍ପଟ—10. Adulterous.
୧୧ । ଚିନ୍ତାନ୍ଵିତ; ଉଦ୍‌ବିଗ୍ନ—11. Anxious.
ସଂ. ବି.—୧ । ବାୟୁ—1. Air.
୨ । ପ୍ରେମିକ ବ୍ୟକ୍ତି; ନାଗର—2. Lover.
୩ । ରସିକ ବ୍ୟକ୍ତି—3 A libertine.
ଦେ. ବି.—(ପ୍ରାଚୀନ ପଦ୍ୟ)—ଅବ୍ୟବସ୍ଥିତତା—
Capriciousness.

ସ୍ତ୍ରୀ ଭାବଙ୍ଗ ଚଞ୍ଚଳ କ ଛଡ଼ଲେ,
ବୋର୍ଯ୍ୟ ଦନୟେ ଧୀର ଧୀର ହେଲେ । ଉପେ. ବୈଦେହୀଶବିଳାସ ।

ଦେ. କ୍ରି. ବିଣ—ଶୀଘ୍ର; ତୁରନ୍ତ—Soon.

**ଚଞ୍ଚଳଚିତ୍ତ**—ସଂ. ବିଣ. ପୁଂ. (ବହୁବ୍ରୀହି)—୧ । ଅସ୍ଥିର ହୃଦୟ—
Chanchalachitta 1. Unsteady
(ଚଞ୍ଚଳଚିତ୍ତା—ସ୍ତ୍ରୀ) ୨ । ଅବ୍ୟବସ୍ଥିତ ଚିତ୍ତ—
(ଚଞ୍ଚଳଚିତ୍ତତା—ବି) 2. Restless; fickle-minded.
୩ । ଉଦ୍‌ବିଗ୍ନ—3. Anxious.

**ଚଞ୍ଚଳଚେତାଃ**—ସଂ. ବି (ବହୁବ୍ରୀହି; ଚଞ୍ଚଳ+ଚେତସ୍; ୧ମା. ୧ବ)—
Chanchalachetāh ଚଞ୍ଚଳଚିତ୍ତ ( ଦେଖ )—
Chanchalachitta ( See )

**ଚଞ୍ଚଳନୟନ**—ସଂ. ବି ( କର୍ମଧା; ଚଞ୍ଚଳ+ନୟନ )—୧ । ଇତସ୍ତତଃ
Chanchalanayana ଘୂର୍ଣ୍ଣିତ ନେତ୍ର—1. Moving eye.
(ଚଞ୍ଚଳନୟନା—ସ୍ତ୍ରୀ) ୨ । ଅସ୍ଥିର ଦୃଷ୍ଟି—
2. Unsteady glance.
ସଂ. ବିଣ (ବହୁବ୍ରୀହି)—ଅସ୍ଥିର ଦୃଷ୍ଟି; ଚାରିଆଡ଼କୁ ଆଖି ବୁଲାଉଥିବା—Looking here and there.

**ଚଞ୍ଚଳପ୍ରକୃତି**—ସଂ. ବିଣ (ବହୁବ୍ରୀହି)—ଯେ ସ୍ଵଭାବତଃ ଅସ୍ଥିର—
Chanchalaprakruti Of restless or changing nature.

**ଚଞ୍ଚଳପ୍ରକୃତିକ**—ସଂ. ବିଣ. ପୁଂ—ଚଞ୍ଚଳପ୍ରକୃତି ( ଦେଖ )—
Chanchalaprakrutika Chanchalaprakruti (See)
(ଚଞ୍ଚଳପ୍ରକୃତିକା—ସ୍ତ୍ରୀ)

**ଚଞ୍ଚଳମନାଃ**—ସଂ. ବିଣ. ( ବହୁବ୍ରୀହି; ଚଞ୍ଚଳ+ମନସ୍; ୧ମା. ୧ବ )—
Chanchalamanāh ୧ । ଚଞ୍ଚଳଚିତ୍ତ ( ଦେଖ )—
1. Chanchalachitta (See)
୨ । ଚଞ୍ଚଳପ୍ରକୃତି ( ଦେଖ )—
Chanchalaprakruti (See)

**ଚଞ୍ଚଳା**—ସଂ ବିଣ. ସ୍ତ୍ରୀ (ଚଞ୍ଚଳ+ଆ)—ଚଞ୍ଚଳର ସ୍ତ୍ରୀ ଲିଙ୍ଗ—
Chanchalā Feminine of Chanchala.
୧ । ଅସ୍ଥିରା ( ସ୍ତ୍ରୀ )—
1. Restless; hasty; fickle-minded.
୨ । ନଷ୍ଟଚରିତ୍ରା—2. Adulterous; unchaste.
୩ । ବିଚଳିତା—Evershifting; changing.
ସଂ. ବି—୧ । ବିଦ୍ୟୁତ୍—1. Lightning.
୨ । ଲକ୍ଷ୍ମୀ—2. Lakshmi; goddess of fortune.
[ ଦ୍ର—ଲକ୍ଷ୍ମୀ ଚିରକାଳ ଜଣକଠାରେ ବା ଏକ ପରିବାରରେ ସ୍ଥିର ହୋଇ ନ ରହିବାରୁ ଲକ୍ଷ୍ମୀଙ୍କର ଏହି ନାମ ହୋଇଅଛି । ]
ଦେ. ବି. ସ୍ତ୍ରୀ—ସ୍ତ୍ରୀଲୋକଙ୍କ ନାମ—Name given to females.
ଦେ. ବିଣ. ସ୍ତ୍ରୀ—ଚଞ୍ଚଳୀ (ଦେଖ) Chanchali (See)

**ଚଞ୍ଚଳିଆ**—ଦେ. ବିଣ ପୁଂ ଓ ସ୍ତ୍ରୀ (ସଂ. ଚଞ୍ଚଳ)—ଯେଉଁ ବ୍ୟକ୍ତି ଖୁବ୍
Chanchalia ସ୍ଫୂର୍ତ୍ତିରେ କାର୍ଯ୍ୟ କରେ—Very active; of
(ଚଞ୍ଚଳେଇ—ସ୍ତ୍ରୀ) active habits.

**ଚଞ୍ଚଳିତ**—ସଂ. ବିଣ—( ଚଞ୍ଚଳ ନାମଧାତୁରୁ+କର୍ତ୍ତୃ. ତ )—ଚଞ୍ଚଳପଣ
Chanchalita ଆଚରଣ କରୁଥିବା; ଗୁଲ. ଧବଳିତ, ତରଳିତ, କମ୍ପିତ ହେଉଥିବା; ଦୋହଲୁଥିବା—Shaking; trembling; oscillating.

ବନ୍ଧୁ ପାଶେ ଚଞ୍ଚଳିତ ତାଙ୍କ ।
ଉପେ. ବୈଦେହୀଶବିଳାସ ।

**ଚଞ୍ଚଳୀ**—ଦେ. ବିଣ. ସ୍ତ୍ରୀ (ସଂ. ଚଞ୍ଚଳା)—୧ । ଯେଉଁ ସ୍ତ୍ରୀ ଖୁବ୍ ସ୍ଫୂର୍ତ୍ତିରେ
Chanchali କାର୍ଯ୍ୟକରେ—1. Of active habits; very active (woman)
୨ । ନିରଳସ—2. Not lazy; brisk.

**ଚଞ୍ଚଳେଇବା**—ପ୍ରାଦେ. (ଗଡ଼ଜାତ) କ୍ରି.—କୌଣସି କାର୍ଯ୍ୟକୁ ଶୀଘ୍ର
Chanchaleibā କରିବା—To do anything quickly.

**ଚଞ୍ଚଳେଇ**—ଦେ. ବିଣ. ସ୍ତ୍ରୀ—ଚଞ୍ଚଳୀ (ଦେଖ)—Chanchali (See)
Chanchalei

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଦ୍ଧେ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଚଞ୍ଚା**—ସଂ. ବି. ସ୍ତ୍ରୀ. (ଚଞ୍ଚ୍+ଅ+ଆ)—୧ । ବାଉଁଶ କାଠି ନିର୍ମିତ ଆସନ ବା ମୋଡ଼ା—1. Stool made of wickerwork.
Chañchā

୨ । ବାଉଁଶ କାଠି ନିର୍ମିତ ଆସନ; ଗୁଞ୍ଜ; ମୁନ୍ଦୁରି; ତଲେଇ—2. Mat made of reeds.

୩ । (ଯେଉଁରୁ ଶୃଗାଲ, କାକ ଆଦିକୁ ଭୟ ଦେଖାଇବା ନିମନ୍ତେ ବ୍ୟବହୃତ) କାଠି କୁଟାରେ ତିଆରି ମନୁଷ୍ୟାକୃତି ମୂର୍ତ୍ତି—3 Scare-crow.

ଦେ ବି. (ସଂ. ଚଞ୍ଚା=ତଲେଇ ପରି ପତଳା ଥିବାରୁ)—
চাঁচড়ি ୧ । ନଡ଼ିଆ ବାହୁଙ୍ଗା ମୂଳରେ ଥିବା ଜାଲ ଆକାରର ବକ୍କଳ;
জালী ଗୁଞ୍ଜ—1. A net-like thin bark at the root of a cocoanut branch.

୨ । ଅପରିପକ୍ୱ ଆମ୍ବଫଳର ନୂତନ କୋମଳ ଟାକୁଆ—2. The newly hardened stone of a newly developed mango fruit.

চাঁছা ୩ । (ସଂ. ତକ୍ଷଣ) ଚାଞ୍ଛିବା; ଚଞ୍ଚା—
खुरचन 3. Scraping.

ଦେ. ବିଣ. (ସଂ. ତକ୍ଷଣ)—୧ । ଯାହା ଦେହରୁ ଚୋପାକୁ ଚାଞ୍ଛି ଥାନ୍ତି; ଚଞ୍ଚା—1. Scraped of the bark.

চাঁছা ୨ । ଯେଉଁ ଭୂମି ଉପରୁ ଘାସ ଆଦି ଚଞ୍ଚା ହୋଇଥାଏ—2. (land) From which grass has been scraped off

୩ । ଗାଳିବିଶେଷ—3. A term of abuse.

**ଚଞ୍ଚୁ**—ସଂ. ବି. (ଚଞ୍ଚ୍ ଧାତୁ=ଖାଇବା=କରଣ ଉ; ଯାହାଦ୍ୱାରା ପକ୍ଷୀ ଖାଦ୍ୟ ଗ୍ରହଣ କରେ)—
Chañchu

୧ । ପକ୍ଷୀର ଥଣ୍ଟ—1. Bill or beak of a bird

୨ । ରକ୍ତଏରଣ୍ଡ; ନାଲି ଭେରଣ୍ଡାଗଛ; ନାଲି ଗବଗଛ (ଦ୍ରବ୍ୟଗୁଣ)—2. The red variety castor seed plant.

୩ । ମୃଗ; ହରିଣ—3. Deer.

୪ । ବର୍ଷାଦିନେ ଜନ୍ମୁଥିବା ଏକପ୍ରକାର ଶାଗ (ହି.ଶବ୍ଦସାଗର)—4. A kind of pot-herb coming out during the rains.

ଦେ. ବି—ଚଞ୍ଚା (ଦେଖ)—Chañchā (See)

**ଚଞ୍ଚୁକା**—ସଂ. ବି (ଚଞ୍ଚୁ+କ+ସ୍ତ୍ରୀ. ଆ)—ପକ୍ଷୀର ଥଣ୍ଟ—
Chañchukā Beak.

**ଚଞ୍ଚୁପୁଟ**—ସଂ. ବି. (ରୂପକ କର୍ମଧାରୟ; ଚଞ୍ଚୁ+ପୁଟ)—ପକ୍ଷୀର ବୁଜି ଥଣ୍ଟ
Chañchuputa ବୁଜା ହୋଇଥିବା ଅବସ୍ଥା—The bill of a bird when shut; the cavity enclosed by the upper and the lower beaks of a bird.

**ଚଞ୍ଚୁପ୍ରହାର**—ସଂ. ବି. (ଷଷ୍ଠୀ ତତ୍, ଚଞ୍ଚୁ+ପ୍ରହାର)—ଥଣ୍ଟରେ
Chañchuprahāra ଠୁକିବା ବା ଥଣ୍ଟରେ ହାଣିବା; ଥଣ୍ଟ ମାରିବା—A peck with a beak.

**ଚଞ୍ଚୁଭୃତ୍**—ସଂ. ବି. (ଚଞ୍ଚୁ+ଭୃ ଧାତୁ+କର୍ତ୍ତୃ. କ୍ୱିପ୍)—ପକ୍ଷୀ—
Chañchubhṛut Bird.

**ଚଞ୍ଚୁର**—ସଂ. ବିଣ. (ଚଞ୍ଚ୍ ଧାତୁ=ଗମନ କରିବା+କର୍ତ୍ତୃ. ଉର)—
Chañchura ଦକ୍ଷ; ନିପୁଣ—Active; clever; expert; skilful.
(ଚଞ୍ଚୁରା—ସ୍ତ୍ରୀ)

ସଂ. ବି—ଏକପ୍ରକାର ଶାଗ—A kind of pot-herb.

**ଚଞ୍ଚୁରୀ**—ବି. ସ୍ତ୍ରୀ. (ଚଞ୍ଚୁର+ଈ)—ବାୟାଚଢ଼େଇ—
Chañchurī Tailor -bird.

**ଚଞ୍ଚୁସୂଚି**—ସଂ. ବି. (ବହୁବ୍ରୀହି; ଚଞ୍ଚୁ+ସୂଚି)—୧ । ବାୟାଚଢ଼େଇ—
Chañchusūchi 1. The tailor bird.

୨ । କାରଣ୍ଡବ ପକ୍ଷୀ (ହି. ଶବ୍ଦସାଗର)—2. A kind of gander.

**ଚଞ୍ଚୂ**—ସଂ. ବି—ଚଞ୍ଚୁ (ଦେଖ)
Chañchū Chañchu (See)

**ଚଞ୍ଛା**—ଦେ. ବି ଓ ବିଣ. (ସଂ ତକ୍ଷ ଧାତୁ)—ଚଞ୍ଚା (ଦେଖ)
Chañchhā Chañchā (See)

**ଚଞ୍ଛାଇବା**—ଦେ. କ୍ରି—ଚାଞ୍ଛିବା କ୍ରିୟାର ଣିଜନ୍ତରୂପ—
Chañchhāibā Causative of Chāñchhibā.

**ଚଟ୍** (ଧାତୁ)—ସଂ.—୧ । ଭେଦ କରିବା—
Chaṭ (root) 1. To pierce.

୨ । ଭାଙ୍ଗିବା—2. To break.

୩ । ବଧ କରିବା—3. To kill.

୪ । ହିଂସା କରିବା—4. To injure.

୫ । ମର୍ଦ୍ଦନ କରିବା—5. To rub.

୬ । ପୃଥକ୍ କରିବା—6. To separate.

୭ । ଘୋଡ଼ାଇବା—7. To cover.

୮ । ଫଟାଇବା—8, To split.

**ଚଟ୍**—ଦେ. ଅ. (ସଂ ଝଟିତି; ସଂ. ଚଟୁଲ+ଚଞ୍ଚଳ)—
Chaṭ ୧ । ଅତି ଶୀଘ୍ର—1. Presently.
চট ୨ । ଝଟିତି; ଝଟ୍—2 Immediately; sharp.
चट ୩ । ଚଞ୍ଚଳ—3. Quickly.

ଗୋପାଳ ବାବୁ ଭଗବତୀ ଡାଆଣି ନାମ ଚଟ୍ ବୁଝିଗଲେ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଚଟ୍‌କନ୍**—ପ୍ରାଦେ. (ସମ୍ବଲପୁର) ବି—ଚଟକଣା—
Chaṭkan Slap.

**ଚଟକରି**—ଦେ. କ୍ରି. ବିଣ—ଅତି ଶୀଘ୍ର; ସତ୍ୱର; ତୁରନ୍ତ—
Chaṭkari Immediately; at once; instantly; presently.
চটকরে
चटसे

ଚଟ୍‌କିନା } ଅନ୍ୟରୂପ
ଚଟ୍‌କିନି }

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ | ଞ | ଣ,ଷ | କ୍ଷ | ଇଯ୍ | ଉଅ | ଛ |
| ୨ | ଈ | ଊ | ୠ | ୡ | 'ଯ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଚଁ | ଇଅ | ଜ୍ଞ | ନ୍ତ |

**ଚଟ୍‌ପଟ୍**—ଦେ. ଅ. ( ସ. ଝଟ୍ଟିତ )—
Chatpat ୧ । ଚଟ୍ ( ଦେଖ )
चटपट 1. Chat ( See )
**चटपट** ୨ । ( ଧ୍ୱନ୍ୟନୁକରଣ ) ଭଣ୍ଡାର ଚମରେ କ୍ଷୁର ଘଷିବାର ଶବ୍ଦ—
2. Sound produced by the strapping of a razor.
୨ । ସ୍ଫୁର୍ତ୍ତି ସହିତ—2. Briskly; quickly.

**ଚଟ**—ଦେ. ବି. ( ସ. ଜଟା )—୧ । ଥଳ; ବୋରା; ଅଖା—
Chata 1. Gunny bag; sack cloth.
चट ୨ । ଚଟେଇ; ମସିଣା—2. Mat.
**जुट, टाट** ପ୍ରାଦେ. ( ମେଦନୀପୁର ଓ ବାଲେଶ୍ୱର ) ବି—
ଝୋଟ—Jute.
ଦେ. ଅ—ଚଟ୍ ( ଦେଖ )
Chat ( See )

**ଚଟକ**—ସ. ବି. ପୁଂ. ( ଚଟ୍ ଧାତୁ=ଖାଇବା+କର୍ତ୍ତୃ. ଅକ )—
Chataka ଘରଚଟିଆ ଚଢ଼େଇ—Sparrow.
ଚଟକା, ଚଟକା, ଚଟକିକା } ସ୍ତ୍ରୀ. ଦେ. ବି. ( ସ. ଚଟ ଧାତୁ=ଭେଦନ )—
୧ । ପୂର୍ବାନୁଭୂତ ସୁଖ ଓ ସ୍ୱାଦ ଭୋଗ କରିବାର ଲୋଭ ବା ଆଶା—
चटक 1. Hankering after a thing once tasted;
**चटक** craving for a food once tasted.
୨ । ଜାକଜମକ; ବାହ୍ୟାଡ଼ମ୍ବର; ଛଟା; ଚମକ—
2. Grandeur; splendour; glamour.

ଚକଣ ଚଟକେ ଗଲେ ହୋଇ ରହି ଏବେ କାଳ
କ ଦଶା ହେଲଣି ଅରେ ଚେତ ମନରେ ।
ଦ୍ୱିଜ୍ଞାସ. ଗୀତଲହରୀ ।

୩ । ଖାଦ୍ୟ ପ୍ରତି ରୁଚି—3. Relish.

**ଚଟକଣା**—ଦେ. ବି. ( ଧ୍ୱନ୍ୟନୁକରଣ; ସ. ଚପେଟ )—ଗୁପୁଡ଼ା—
Chatakana A slap.
चड़
**चपत, चपट**

ଗାଲେ ଚଟକଣା କାନେ କାନ୍ ମୋଡ଼ା
ଖାଇବାକୁ ବଡ଼ ଖୁସି ପାଇଁ ।
ଦ୍ୱିଜ୍ଞାସ. ଗୀତଲହରୀ ।

**ଚଟକଣି**—ଦେ. ବି—କ୍ଷୁଦ୍ର ଗୁପୁଡ଼ା; ଗୁପୁଡ଼—
Chatakani Slight slap.

**ଚଟକଳ**—ଦେ. ବି—୧ । ଯେଉଁ କଳରେ ଅଖା ବା ବସ୍ତା ତିଆର ହୁଏ—
Chatakala 1. Gunny making machine.
चटकल ୨ । ବସ୍ତା ତିଆର କାରଖାନା—
**टाटकाकल** 2. Gunny bag factory.

**ଚଟକ ଲଗାଇବା**—ଦେ. କ୍ରି—ଲୋଭ ଦେଖାଇ ବଶ କରିବା—
Chataka lagāibā To captivate by making a
चटक लागान person taste a thing once.
**चटक लगाना**

**ଚଟକଲାଗିବା**—ଦେ. କ୍ରି—ଲୋଭ ଲାଗିବା—
Chataka lāgibā Hankering after a thing once
चटकलागा tasted.
**चटकलगना**

**ଚଟକା**—ସ. ବି. ସ୍ତ୍ରୀ.—(ଚଟକ+ଆ)—୧ । ମାଈ ଘରଚଟିଆ ଚଢ଼େଇ—
Chatakā 1. A hen-sparrow.
୨ । ପିପ୍ପଳୀ ମୂଳ—2. Root of long pepper.
ଦେ. ବଣ. (ସ. ଚପିଟ=ଚୁଡ଼ା; ଚୁଡ଼ାପରି ପତଳା)—
୧ । ଚେପଟା—1. Flat.
चाटाल, चेटका ୨ । ସମତଳ—
**चपटा** 2. Even.
ଦେ. ବି. (ନାମ)—ନୀଳଗିରିର ଦୁଇ କ୍ରୋଶ ଦୂରରେ ଅବସ୍ଥିତ ଗୋଟିଏ ନିର୍ଝର—Name of a mountain-spring in the Nilgiri state of Orissa.

**ଚଟକାଇବା**—ଦେ କ୍ରି.—୧ । ଚେପଟା କରିବା—
Chatakāibā 1. To flatten.
୨ । ଚଟାଇବା—2. To cause to lick.

**ଚଟକାମୁଖ**—ଦେ. ବି.—ଅସ୍ତ୍ରବିଶେଷ—
Chatakā mukha A kind of weapon.

**ଚଟକାମୁହାଁ**—ଦେ ବଣ. ପୁଂ.—ଯାହାର ମୁହଁ ଚେପଟା—
Chatakāmuhān̄ Flat-faced.
(ଚଟକାମୁହାଁ—ସ୍ତ୍ରୀ)

**ଚଟକାର**—ସ. ବଣ.—ଚଟକା; ଚେପଟା—
Chatakāra Flat (Howells)

**ଚଟଚଟ**—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ସୁଦାହ୍ୟ ପଦାର୍ଥରେ ଚଞ୍ଚଳ ଅଗ୍ନି ଲାଗିବାର ଶବ୍ଦ—1. Sound of
Chatachata
चटचट fire setting into easily combustible materials.
**चटचट** ୨ । ବାହୁକୁ ଭୂମିରେ ଅଘାତ କରିବା ଓ ଚପେଟାଘାତରୁ ଜାତ ଶବ୍ଦ—2. Sound of slapping and of striking the arms on the ground.

ମାରନ୍ତେ ଉଚେ ଠେକ ଭୂମିରେ ବାହାପଟ,
ଚହିଁରୁ ଶୁଭେ ମହା ଧ୍ୱନ ଚଟ ଚଟ । କୃଷ୍ଣସିଂହ. ମହାଭାରତ. ସଭା ।

चटचटे ଦେ. ବଣ.—ଅଠାଳିଆ; ଅଠାପରି ଲାଗିବା—
**चिपचिपा** Gummy; sticky.
ଦେ. କ୍ରି. ବିଣ.—ଅବିଲମ୍ବେ; ଅତି ଚଞ୍ଚଳ—
Without dealy; instantly.

**ଚଟଚଟା**—ସ. ଅ. (ଧ୍ୱନ୍ୟନୁକରଣ)—୧ । ଅଗ୍ନି ଜଳିବାର ଚଡ଼ ଚଡ଼ ଶବ୍ଦ—1. Cracking of burning fire.
Chatachatā

ଶୀଘ୍ରେ ଶୀତ ତ୍ୟଜି ପଳାଇବେ ଶୁଣି ସେ ଅନଳ ଚଟ ଚଟ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ତିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ତିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ତିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚକ୍ତିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଦ' ନ ମିଳିଲେ 'ଗାଧ' ଖୋଜିବେ, ଲୁଥ ନ ମିଳିଲେ 'ଲୂଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଗିଂ ନ ପାଇଲେ 'ଅଙ୍କି' ଦେଖିବେ; 'ଅଲବଟି' ନ ପାଇଲେ 'ଅଲବତି' ଦେଖିବେ ।

୨ । ଶସ୍ତ୍ରାଦିର ସଂଘର୍ଷଜନିତ ଶବ୍ଦ—
2. Clashing sound of weapons.

**ଚଟଚଟାୟନ**—ସଂ. ବି. (ଚଟଚଟା ନାମ ଧାତୁ + ଅନ)—ଚଡ଼ ଚଡ଼ ଶବ୍ଦ—
Chaṭachaṭāyana Cracking

**ଚଟଚଟିଆ**—ଦେ. ବିଣ.—ଚଟଚଟ (ଦେଖ)
Chaṭachaṭiā Chaṭachaṭa (See)

**ଚଟଚ୍ଚଟ**—ଦେ. ଅ. ବିଣ ଓ କ୍ରି. ବଣ.—ଚଟଚଟ (ଦେଖ)
Chaṭachāṭa Chaṭachaṭa (See)

ମଗମରୁ ଛୁଅନ୍ତେ ସୁଟେ ବାହାପଟ,
ଚହୁଁ କାଳ ହେଲା ଶବଦ ଚଟଚ୍ଚଟ । କୃଷ୍ଣସିଂହ. ମହାଭାରତ. ବନ ।

**ଚଟଣି**—ଦେ. ବି.—( ସଂ. ଚଷଣୀ )—ଖଟା ଫଳ, ଲୁଣ, ଲଙ୍କା ଓ ମିଠା
Chaṭaṇi ଏକତ୍ର ବଟା ଯାଇ ପ୍ରସ୍ତୁତ ରୁଚିକର ଅମ୍ଳପ୍ରଧାନ ଲେହ୍ୟ;
চাটনী ଚଟ୍ଣୀ—1. Sauce; chutny; chutnee.
**चटनी** [ ଦ୍ର—ଏ ଶବ୍ଦ ଇଂରାଜୀରେ ପ୍ରଚଳିତ ହୋଇଅଛି । ]
୨ । (ଲକ୍ଷଣାର୍ଥ) ପ୍ରୀତିପ୍ରଦ କଥା; ରସିକତାପୂର୍ଣ୍ଣ ବାକ୍ୟ—
2. (fig) Witty saying; witticism wit and humour.

**ଚଟଣି କରିବା**—ଦେ. କ୍ରି.—୧ । କୌଣସି ପଦାର୍ଥକୁ ବାଟି ଲେହ୍ୟରେ
Chaṭaṇi karibā ପରିଣତ କରିବା—1. To prepare sauce by bruising.
চাটনীকরা ୨ । (ଲକ୍ଷଣାର୍ଥ) ଦଳିବା; ଧ୍ୱସ୍ତବିଧ୍ୱସ୍ତ କରିବା—
**चटनीबनाना** 2. (figurative) To crush.

ସେଥିରେ ରାକ୍ଷସ ଗୁଡ଼ିକୁ ଏକାବେଳକେ ଦେଖି ଚଟଣି କରିଦେଲା ।
ମାଳକଣ୍ଠ ଦାସ—ପିଲାଙ୍କ ରାମାୟଣ ।

**ଚଟଣିପତ୍ର**—ପ୍ରାଦେ. (ଯାଜପୁର) ବି. ( ଏ ପତ୍ରକୁ ବାଟି ଲୋକେ ଚଟଣି
Chaṭaṇipatra ତିଆରି କରୁଥିବାରୁ )—ଧନିଆ ପତ୍ର—
Coriander.

**ଚଟଣିପତ୍ର ମଞ୍ଜି**—ପ୍ରାଦେ. (ଯାଜପୁର) ବି—ଧନିଆ—Coriander.
Chaṭaṇipatra mañji

**ଚଟତ୍କାର**—ସଂ. ବଣ. (ଚଟତ୍ = ଅନୁକରଣ ଶବ୍ଦ + କୃ ଧାତୁ + କର୍ତ୍ତୃ. ଅ)—
Chaṭatkāra ଅସ୍ଫୁଟ ଶବ୍ଦକାରକ—
Making a slight slapping sound.
ସଂ. ବି. ( + ଭାବ. ଅ )—ଅସ୍ଫୁଟ ଶବ୍ଦକରଣ—
Low slapping sound.

**ଚଟନ**—ସଂ. ବି. ( ଚଟ ଧାତୁ + ଭାବ. ଅନ )—୧ । ଫାଟିଯିବା,
Chaṭana ଫାଳେଇବା—1. Splitting; cracking.
୨ । ଚୂରିଚୂରି ହୋଇ ଭାଙ୍ଗିଯିବା—
2. Falling to small pieces.

**ଚଟପଟ**—ଦେ. ଅ. ( ସଂ. ଝଟିତି )—ଝଟିତି; ଅତିଶୀଘ୍ର—
Chaṭapaṭa Swiftly; instantly.
চটপট্‌
**चटपट**

**ଚଟପଟି**—ଦେ. ବି—୧ । (ସଂ. ଚର୍ମପଟ୍ଟ)—ଯେଉଁ ଚର୍ମପଟରେ ଭଣ୍ଡାରି
Chaṭapaṭi ଖୁରର ଧାରକୁ ମସୃଣ କରେ—
চামাতি; চামাটি 1. Barber's strop.
**चमोटी; चमोटा** ୨ । ତ୍ୱରା—2. Haste; swiftness.

**ଚଟପଟିଆ**—ଦେ. ବଣ. ପୁଂ ଓ ସ୍ତ୍ରୀ. ( ସଂ. ଚଟୁଳ = ଚଞ୍ଚଳ + ପଟୁ )—
Chaṭapaṭiā ୧ । ଅତି ଚଞ୍ଚଳ—1. Hasty.
চটপটিয়া ୨ । ତ୍ୱରିତ—2. Brisk; swift.
(ଚଟପଟେଇ—ସ୍ତ୍ରୀ)

**ଚଟରପଟର**—ଦେ. ଅ—ଚଟ୍‌ପଟ୍ ( ଦେଖ )
Chaṭarapaṭara Chaṭpaṭ ( See )

**ଚଟଲଫିରଙ୍ଗି**—ପ୍ରାଦେ. ( ଗଞ୍ଜାମ ) ବି—ରୋଗବିଶେଷ—
Chaṭalaphiraṅgi A kind of disease.

**ଚଟା**—ଦେ. ବି—୧ । ( ସଂ. ଚଷଣ ) ଚାଟିବା କର୍ମ—
চাটা 1. Act of licking.
**चटाई** ୨ । କୁମ୍ଭାରମାନେ ବାମହାତରେ ହାଣ୍ଡିକୁ ଧରି ଡାହାଣ ହାତରେ କଞ୍ଚା ହାଣ୍ଡିଆଦିର ପିଠିକୁ ଯେଉଁ ଚଟକା କାଠର କୋବା ଦ୍ୱାରା ଗୁଡ଼ାନ୍ତି—2. A flat piece of wood which the potters pat over a newly made unbaked earthen pot.
[ ଦ୍ର—ହାଣ୍ଡିର ତଳପାଖରେ ବାଆଁ ହାତଦ୍ୱାରା 'ବିଣ୍ଡି' ଧରଥାନ୍ତି ଓ ବିଣ୍ଡି ଲାଗିଥିବା ସ୍ଥାନର ଉପରପାଖକୁ ଚଟାଦ୍ୱାରା ଗୁଡ଼ାନ୍ତି । ]
চাটা ଦେ. ବିଣ—୧ । ଯେ ଚାଟେ—1. Licking.
**चटोरा; चट्टू** ୨ । ( ଗାଳି ) ଅଇଁଠାଖିଆ—2. ( a term of abuse ) Licking the food left by another.
ପ୍ରାଦେ. (କଟକ) ବି. (କୋଡ଼କାଙ୍କଆଦିରେ) ଥରେ ହାଣିବା—
One stroke with the spade.
(ଯଥା—ସେ ହୁଡ଼ାରେ କୋଡ଼ିରେ ଚଟାଏ ମାଇଲା । )
ପ୍ରାଦେ. ( କଟକ ) ବିଣ—କୋଡ଼କାଙ୍କଆଦ ଥରେ ହାଣିଲେ ଯେଉଁ ମାଟି ସମ୍ଭାଳି ଯିବ—(earth) Which will withstand one stroke of a spade.
( ଯଥା—ଏ ଘଳଅରେ ଚଟାମାଟି ପକାଅ । )
ପ୍ରାଦେ. (ମେଦିନୀପୁର; ଭୁଲ. ବ. ଚଟା) ବି.—୧ । ରାଗ, କ୍ରୋଧ-
1. Anger; rage.
୨ । ରାଗିବା—2. Being angry.
ପ୍ରାଦେ. (ସମ୍ବଲପୁର) ବି—ଚଡ୍ଡୁ ( ଦେଖ )
Chardu ( See )
ପ୍ରାଦେ. (ସମ୍ବଲପୁର) ବିଣ—୧ । ଚେପଟା; ଚଟକା—
1 Flat.
୨ । ସମତଳ—2. Level.
୩ । ଶୁଖିଲା—3. Dry.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଘ | ଢ | ଶ,ଷ | କ୍ଷ | ଇଗ୍ଧ | ଉଅ | ଖ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଘ | ଯ | ସ | ଗଁ୍ୟ | ଋଅ | ଢ଼ | ନ୍ |

(ଯଥା—ବକଟା କାଟିଦେଲେ ଘୋଷରାଟା ଚଟା ପଡ଼ିଯିବ ।)

୪ । ଚଠା (ଦେଖ)
4. Chaṭhā (See).

ପ୍ରାଦେ (ଗଡ଼ଜାତ) ବିଣ—ସାନ; କ୍ଷୁଦ୍ର—Small; tiny.
(ଯଥା—ଚଟା ଛୁଆଟି କାନ୍ଦ କାନ୍ଦ ରହୁଲାଣି । )

ଚଟାଇ—ଦେ. ବି ( ସଂ. ଚଟୁ=ବ୍ରତଧାରୀମାନଙ୍କ ଆସନ; କଟ= ତୃଣାସନ)—ତୃଣାସନ; ମସିଣା—Grass-mat; a mat made of reeds.
Chaṭāi
ଚାଟାଈ; ଚେଟାଈ; ଚେଟା
चटाई

ପ୍ରାଦେ ( ସମ୍ବଲପୁର; ଭୁଲ. ବ୍ୟୁ. ଚଟ୍ଟା ) ବି—ଗୃହ ତଳେ ପାରିବା ବାଉଁଶପାତିଆର ପଟି; ତଲେଇ—A mat woven with thin bamboo-laths.

ଚଟାଇ ପକାଇବା—ଦେ. କ୍ରି — ଭୂମିଉପରେ ମସିଣାକୁ ଲମ୍ବକରି ପକାଇବା—To spread a mat on the ground.
Chaṭāipakāibā
ଚଟାଇପାତା
चटाईबिछाना

ଚଟାଇ ପାଡ଼ିବା
ଚଟାଇ ପାରିବା
ଚଟାଇ ବିଛାଇବା
ଚଟାଇ ଲମ୍ବାଇବା
} ଅନ୍ୟରୂପ

ଚଟାଇବା—ପ୍ରାଦେ (ମେଦିନୀପୁର) କ୍ରି (ଭୁଲ. ବ୍ୟୁ. ଚଟାନ )—( ଚଟିବା କ୍ରିୟାର ଣିଜନ୍ତରୂପ) ରଗାଇବା; ରାଗ କରାଇବା; ଉତ୍ତେଜିତ କରିବା—To tease; to make angry; to irritate.
Chaṭāibā

ଚାଟାନ ଦେ. କ୍ରି. ( ଚାଟିବାର ଣିଜନ୍ତରୂପ )—ଅନ୍ୟ ବ୍ୟକ୍ତିକୁ ଚାଟିବାକୁ ବାଧ କରାଇବା—To cause another to lick; to cause to lap.
चटाना

ଚଟାକ୍—ଦେ. କ୍ରି. ବିଣ (ସଂ. ଝଟିତି)—ଝଟ୍; ତୁରନ୍ତ—Quickly.
Chaṭāk
চটকরে
चटाक्

ଚଟାଚଟ୍—ଦେ. କ୍ରି. ବିଂ (ସଂ. ଝଟିତି)—ଅତିଶୀଘ୍ର—Very quickly.
Chaṭāchaṭ
চটাপট
चटापट

ଚଟାଚଟି—ଦେ. ବି—୧ । ( ପଶୁମାନଙ୍କର ) ପରସ୍ପର ଦେହକୁ ଚାଟିବା କର୍ମ—1. Act of beasts licking each other's body.
Chaṭāchaṭi
চাটাচাটি
चटाचटि

୨ । ରଗାରଗି; ପରସ୍ପର ପ୍ରତି ରାଗିବା—2. Being angry with each other.
চটাচটি

ପରସ୍ପର ଚଟାଚଟି ପୁଣି ଗଡ଼ାଗଡ଼ି—ମଧୁସୂଦନ. କବିତା ।

ଦେ. ବିଣ—୧ । ପରସ୍ପରର ଦେହକୁ ଚାଟୁଥିବା—1. Licking each other.

୨ । ପରସ୍ପରପ୍ରତି କ୍ରୁଦ୍ଧ—2. Mutually angry.

ଚଟାଡାଙ୍ଗ—ପ୍ରାଦେ (ସମ୍ବଲପୁର) ବି—ଚଡ଼ୁକାଠି (ଦେଖ) Chardukāṭhi (See)
Chaṭāḍāṅga

ଚଟାଣ—ଦେ. ବି—୧ । ସମତଳ ଭୂମି—1. Level ground.
Chaṭāṇa
চটান
चट्टान

୨ । ପଥୁରିଆ ସମତଳ; ବିସ୍ତୃତ ଶିଳାପଟଳ—2. Rocky even surface.
୩ । ଗୃହତଳ—3 Floor of a house.
୪ । କୋଠା ଘରର ପକ୍କା ସମତଳ—4. The pucca floor of a building.

ଚଟାତ୍—ଦେ. ଅ (ସଂ. ଝଟିତି; ହଠାତ୍)—୧ । ହଠାତ୍—1. Unexpectedly.
Chaṭāt
চটাত্
चटाक

୨ । ତତ୍‌କ୍ଷଣାତ୍—2. At once.

ଚଟାତ୍‌କରି
ଚଟାତ୍‌କିନା
ଚଟାତ୍‌କିନି
} ଅନ୍ୟରୂପ

୩ । ଶୀଘ୍ର—3. Quickly; briskly.

ଚଟାଲ—ଦେ. କ୍ରି. ବିଣ—ଶୀଘ୍ର—(ଗୋପୀନାଥ ନନ୍ଦ) Quickly; sharp.
Chaṭāla

ଚଟାଳିଆ—ଦେ. ବିଣ—ଈଷତ୍ ଚେପଟା—Slightly flat; flattish.
Chaṭāḷiā
চাটাল
चिपटासा

ଚଟି—ଦେ. ବି ( ପ୍ରା. ଚଲ୍‌ଲି=ତମ୍ବୁ, ଡେରା; ତମ୍ବା ସଂ. ଚର )—
Chaṭi
চটী
चटी

୧ । ପାନ୍ଥଶାଳା; ପଥିକମାନଙ୍କ ବିଶ୍ରାମାର୍ଥ ମାର୍ଗନିକଟରେ ନିର୍ମିତ ଗୃହ—1. Rest house along a road; traveller's rest house; serai.

ଅଳ୍ପଦିନ ସ୍ଥିତି ପାଇଁ ଭବଚଟି—ରାଧାନାଥ. ଦରବାର ।

୨ । ଏଡ଼ାକୁ ପିନ୍ଧି (ଚାଲିବାବେଳେ ଏଥିର ତଳାରେ ଗୋଇଠି ବାରଂବାର ବାଜି ଚଟ୍ ଚଟ୍ ଶବ୍ଦ ହେଉଥିବାରୁ ) ପଛ ନ ଥିବା ଯୋତା—2. Slippers.

ପ୍ରାଦେ (ବାଲେଶ୍ୱର; ମେଦିନୀପୁର) ବି—କ୍ଷୁଦ୍ର ବହି—Pamphlets; booklets.

ପ୍ରାଦେ ( ବାଲେଶ୍ୱର; ମେଦିନୀପୁର ) ବିଣ (ଭୁଲ. ବ. ଚଟୀ)—
୧ । କ୍ଷୁଦ୍ର; ଛୋଟ—1. Little; small.
୨ । ସାନ; କନିଷ୍ଠ—2. Younger; junior.
( ଯଥା—ଚଟିବାବୁ । )
୩ । ପତଳା—3. Thin.
( ଯଥା—ଚଟି ବହି । )

ଚଟିଆ—ଦେ. ବି (ସଂ. ଚଟକ)—ଘରଚଟିଆ ଚଢ଼େଇ—Sparrow; martins.
Chaṭiā

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ତାହା ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗଁଧ' ନ ପାଇଲେ 'ଅଗ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ଚଟାଇ ପ୍ରାଦେ. (ଯାଜପୁର) ବି—ଖଜୁରିପତ୍ରର ବୁଣା ପଟି—
**ଚିଡ଼ା; ଗୌରା** A mat woven with datepalm leaves.
ପ୍ରାଦେ. (ସମ୍ବଲପୁର) ବିଣ—ଚଟକା—Flat.

ଚଟିକା—ସଂ. ବି. ସ୍ତ୍ରୀ (ଚଟକ+ଆ)--ଚଟକୀ; ମାଈ ଘରଚଟିଆ ଚଢ଼େଇ—
Chaṭikā Hen sparrow.

ଚଟିବା—ପ୍ରାଦେ ( ମେଦନୀପୁର ) କ୍ରି (ଭୂଲ. ବ. ଚଟା)—କ୍ରୁଦ୍ଧହେବା; ରାଗିବା—To be angry.
Chaṭibā

ଚଟୁ—ସଂ. ବି ( ଚଟ୍ ଧାତୁ=ଭେଦନ କରିବା+କରଣ. ଉ )—
Chaṭu ୧ । ଚାଟୁବାକ୍ୟ—1. Flattery.
୨ । ଚିତ୍କାର ଶବ୍ଦ—2. Scream.
୩ । (+କର୍ତ୍ତୃ. ଉ) ଉଦର; ପେଟ—3. Belly.
୪ । ବ୍ରତଧାରୀମାନଙ୍କ ଆସନବିଶେଷ—4. A kind of seat for persons observing fasts.

ଚାଟୁ ଦେ. ବି ( ସଂ. ଚର୍ଦ୍ଦୁ; ଯୋଗେଶଚନ୍ଦ୍ର )—ବ୍ୟଞ୍ଜନ ପ୍ରଭୃତି
**ଚଳୌନା** ଘାଣ୍ଟିବା ପାଇଁ ବ୍ୟବହୃତ ଚେପଟା ଦଣ୍ଡ; ଦର୍ବୀ—
A flat stick to stir curry etc on fire; pot stick; stick ladle.

ନାନାଜାତି ପାକ ରସେ ଚଟୁପରଶେ,
କହୁଛ ତାର ସ୍ୱାଦୁ ଜାଣେ କଛ କ ସେ । କୃଷ୍ଣସିଂହ. ମହାଭାରତ. ସଭା ।

ପ୍ରାଦେ ( ସମ୍ବଲପୁର ) ବି—କରଚୁଲି; କରଛୁଲି—A big metal spoon for agitating boiling food.

ଚଟୁଆ—ଦେ. ବି (ସଂ. କଟି)—୧ । ଫଡ଼ୁଆ; ପିଠି ଓ ଜଂଘ ମଧ୍ୟସ୍ଥ ଅଂଶ;
Chaṭuā କଟି ଓ ଅଣ୍ଟୁ ମଧ୍ୟରେ ଥିବା ଗୋଡ଼ର ପଛ ଅଂଶ—
ପାଛା 1. Hip; the back of the thigh.
**କୁହା ପୁଟା** ସେ ଶବଦ ମୋର ହାତରୁ ଫିଟିଗଲା
ଭୁକାଉରେ ବାଜି ଚଟୁଆ ଫୁଟିଗଲା । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।
୨ । ମୃଗାଦିର ପଡ଼ୁଆ—
2. The ham hip of beasts; haunch.
୩ । ଧାନ କିଆରିରେ ଜନ୍ମିବା ଏକପ୍ରକାର ଘାସ—
3. A sort of weed growing in paddy fields
[ ଦ୍ର—ଏହା ଏକ ଫୁଟ ପର୍ଯ୍ୟନ୍ତ ଉଚ୍ଚ, କାଣ୍ଡ ଚେପଟା, ପତ୍ର ଲମ୍ବାପରି । ]
ପ୍ରାଦେ. (ସମ୍ବଲପୁର) ବି—ସାନ ଚଟୁ—Small stick-ladle.

ଚଟୁଆଫୁଲ—ଦେ. ବି—ଗୋରୁଙ୍କର ଏକପ୍ରକାର ରୋଗ—
Chaṭuāphulā Black quarter; a disease of cattle.

ଚଟୁଆମୁଣ୍ଡା—ଦେ. ବିଣ. ପୁଂ.—ପୁରୁଷଙ୍କ ପ୍ରତି ଗାଳି (ଚଟୁପରି ଯାହାର
Chaṭuāmuṇḍā ମୁଣ୍ଡ ଚେପ୍ଟା )—A term of abuse
(ଚଟୁଆମୁଣ୍ଡୀ—ସ୍ତ୍ରୀ) applied to males.

ଚଟୁଚଲାଇବା—ଦେ. କ୍ରି.—୧ । ଚଟୁଦ୍ୱାରା ପାକହାଣ୍ଡିରେ ଥିବା ବସ୍ତୁକୁ
Chaṭuchalāibā ଘାଣ୍ଟିବା—1. To stir up the contents of a pot with a ladle.
୨ । (ଲକ୍ଷଣାର୍ଥ) ବନ୍ଧୁବ୍ୟକ୍ତିଙ୍କ ମଧ୍ୟରେ ଆପଣା ଜାଣିବା ପଣର ବା ବାହାଦୁର ଦେଖାଇ ଦେବା ବା ପ୍ରୌଢ଼ି କରିବା—
2. ( fig ) To boast of one's knowledge.
୩ । (ଲକ୍ଷଣାର୍ଥ) କିଛି ନ ବୁଝି ନ ସୁଝି ଗୋଟିଏ ଅଖାଡୁଆ ଆଦେଶ ଜାରି କରିବା—3. (fig.) To pass an order without mature consideration.

ଚଟୁଣି—ଦେ. ବି.—ଚଟଣି (ଦେଖ)
Chaṭuṇi Chaṭaṇi (See)

ଚଟୁତାସ—ଦେ. ବି.—ଲୁହାର ଚଟୁକୁ ରଡ଼ନିଆଁରେ ତତାଇ କୁମ୍ଭଟ
Chaṭutrasa ରୋଗରେ ଫୁଲିଥିବା ଗାଲ ପାଖରେ ଦେଖାଇ ଫୁଲା-ଯାଗାକୁ ସେକିବା—Fomentation of the smotten cheek by holding a red hot ladle near it.
ଦେ. ବି—ଭୟ ବା ଲଜ୍ଜାରେ ବିବର୍ଣ୍ଣ—Pale through fear.
( ଯଥା—ଏକଥା ଶୁଣି ତା ମୁହଁ ଚଟୁତାସ ପଡ଼ିଗଲା—
ଅପର୍ଣ୍ଣା. ଦଶକୁମାରଚରିତ)

ଚଟୁଳ—ସଂ. ବିଣ. (ଚଟ୍ ଧାତୁ+କର୍ତ୍ତୃ. ଉଲ) —୧ । ଚଞ୍ଚଳ; ଅସ୍ଥିର—
Chaṭuḷa 1. Restless; unsteady.
(ଚଟୁଳା—ସ୍ତ୍ରୀ) ୨ । ଚପଳ—2. Fickle.
୩ । ସୁନ୍ଦର—3. Beautiful; nice.
୪ । ପ୍ରିୟବାଦୀ—4. One who speaks kindly.

ଚଟୁଳା—ସଂ. ବି. ସ୍ତ୍ରୀ—(ଚଟୁଳ+ଆ) ବିଦ୍ୟୁତ୍—Lightning.
Chaṭuḷā ସଂ. ବିଣ. ସ୍ତ୍ରୀ—ଚଟୁଳର ସ୍ତ୍ରୀଲିଙ୍ଗ—Feminine of chaṭuḷa.

ଚଟୁଳୋଳ—ସଂ. ବିଣ. (ଚଟୁ+ଲୋଳ)—୧ । ଅତିଶୟ ଚଞ୍ଚଳ; ଅତ୍ୟନ୍ତ
Chaṭuloḷa ଚପଳ—1. Very unsteady; very fickle.
(ଚଟୁଳୋଳ—ଅନ୍ୟରୂପ) ୨ । ଅତିଶୟ ସୁନ୍ଦର—
2, Very graceful or charming; lovely,
୩ । ଥରୁଥିବା—Trembling; tremulous.
୪ । ଚାଟୁକାରୀ—4. Flattering.

ଚଟେଇ (ଇତ୍ୟାଦି)—ଦେ. ବି. —ଚଟାଇ (ଇତ୍ୟାଦି) (ଦେଖ)
Chaṭei (etc) Chaṭāi (etc) (See)
ପ୍ରାଦେ.(ଯାଜପୁର) ବି.—ନଡ଼ିଆ ଛପା; ଗୁନ୍ଥି—A mat made of cocoanut leaves woven with each other.

ଚଟ୍ଟ—ସଂ. ବି.—ଛାତ୍ର; ଚାଟ—Student; pupil.
Chaṭṭa ଶିଷ୍ୟ, ଚେଲା—Desciple.

ଚଟ୍ଟଗ୍ରାମ—ସଂ.ବି. (ଅଧୁନିକ) ସଂ.ଚଟୁଳ+ଗ୍ରାମ);ସଂ.ଚଟ୍ଟଗ୍ରାମ. M.W)-
Chaṭṭagrāma ବଙ୍ଗ ଦେଶର ଗୋଟିଏ ଜିଲ୍ଲା ଓ ତାହାର ରାଜଧାନୀ; ଚାଟଗାଁ—Chittagong; name of a district and its capital in the province of Bengal.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଙ୍ଘ | ଞ୍ଚ | ଞ୍ଜ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଙ୍ଗ | ଞ୍ଚ | ନ୍ଦ |

[ ଦ୍ର—ଏହା ବଙ୍ଗୋପସାଗରର ଉତ୍ତରପୂର୍ବ କୋଣ ଉପକୂଳରେ ଅବସ୍ଥିତ ଓ ବ୍ରହ୍ମଦେଶର ଉତ୍ତରପଶ୍ଚିମ କୋଣକୁ ଲାଗି ଅଛି । ଚଟ୍ଟଗ୍ରାମର ଗୋଟିଏ ଅଂଶ ଗଡ଼ଜାତ ଓ ଅନ୍ୟ ଅଂଶ ବ୍ରିଟିଶ-ଶାସିତ । ଏଥିର ପୌରାଣିକ ନାମ ଚଟ୍ଟଳ ଓ ମୁସଲମାନ ରାଜତ୍ୱ ସମୟରେ ଏହାର ନାମ ଇସ୍ଲାମାବାଦ୍ ଥିଲା; ଏହାର ଇଂରାଜୀ ନାମ ଚିଟ୍ଟାଗଙ୍ଗ୍ ଓ ବଙ୍ଗୀୟ ନାମ ଚାଟିଗାଁ ]

ଚଟ୍ଟଳ—ସଂ. ବି—ଚଟ୍ଟଗ୍ରାମର ପୌରାଣିକ ନାମ (ଜ୍ଞାନେନ୍ଦ୍ର)—
Chattala — The old name of Chittagong.
[ ଦ୍ର—ମୁସଲମାନ ରାଜତ୍ୱ ସମୟର ନାମ ଇସ୍ଲାମାବାଦ୍ । ]

ଚଟ୍ଟି—ଦେ. ବି—ଚଟି ( ଦେଖ )—
Chatti — Chaṭi ( See )

ଚଟ୍ଟୋପାଧ୍ୟାୟ—ସଂ. ବି. (ଆଧୁନିକ)--(ସଂ. ଚଟ୍ଟ=ଗୃହ, ଗ୍ରାମ+ଉପାଧ୍ୟାୟ-- ଶିକ୍ଷକ)--ବଙ୍ଗୀୟ ବ୍ରାହ୍ମଣଙ୍କ ଉପାଧିବିଶେଷ—
Chattopādhyāya — A family-title of Bengalee Brahmins.

ଚଠା ପ୍ରାଦେ. (ସମ୍ବଲପୁର) ବିଣ (ଗାଳି)—୧ । ଉଦରମ୍ଭରି; ପେଟୁ—
Chaṭhā — 1. Greedy.
(ଚଠୀ—ସ୍ତ୍ରୀ) ୨ । ବିନା ନିମନ୍ତ୍ରଣରେ ଭୋଜନ ସ୍ଥାନକୁ ଯିବା (ବ୍ୟକ୍ତି)—
2. (a person) Attending a feast without invitation.
୩ । ଅଇଁଠା ଚାଟିଆ; ପରାନ୍ନଭୋଗୀ—3. Slavishly living on the leavings of other's dishes.
୪ । ଅତ୍ୟନ୍ତ ସ୍ୱାଦଲୋଲୁପ; ଲାଳଚୀ—
4. Hankering after dainties.

ଚଡ଼୍ (ଧାତୁ)—ସଂ--ଚଡ଼ିବା; ବିରକ୍ତ ହେବା; କ୍ରୁଦ୍ଧ ହେବା (ଯୋଗେଶଚନ୍ଦ୍ର)--
Chard (root) — To be enraged.

ଚଡ଼୍‌ଚଡ଼୍—ଦେ. ଅ (ଧ୍ୱନ୍ୟନୁକରଣ) (ସଂ. ଚଟଚଟା)—
Chardchard — ୧ । ଉପର୍ଯ୍ୟୁପରି ଚାପୁଡ଼ା ବାଜିବାର ଶବ୍ଦ—
ଚଡ଼୍‌ଚଡ଼୍, ଚଡ଼୍‌ବଡ଼୍ — 1. Sound of constant slapping.
**चड़चड़** ୨ । ଧାନ ଭାଜିବା ସମୟରେ ଖଇ ଫୁଟିବାର ଶବ୍ଦ—
2. Sound of fried paddy bursting quickly over fire.

ବାଣ୍ଡ ବାଲିରେ ମୁଠାଏ ଧାନ ପକାଇ ଦେଲେ
ଚଡ଼୍‌ଚଡ଼୍ କରି ଖଇ ଫୁଟିଯିବ । ଫକୀରମୋହନ. ଛମାଣଆଠଗୁଣ୍ଠ ।

୩ । କଞ୍ଚା ଫଳ ନିଆଁରେ ପୋଡ଼ି ଫାଟିଯିବାର ଶବ୍ଦ—
3. Crackling sound of unripe fruits in burning fire while bursting.
୪ । ଜଳନ୍ତା ନିଆଁରେ ଜଳୁଥିବା କାଠର ଶବ୍ଦ—
4. Crackling sound of wood in burning fire.
୫ । ଶୁଖିଲା କାଠ ବା ବକଳ ଫାଟିଯିବାର ଶବ୍ଦ—
5. Crackling sound of dry wood or bark breaking.

ଦେ. କ୍ରି. ବିଣ—୧ । ଚଡ଼୍‌ଚଡ଼୍ ଶବ୍ଦ କରି—
1. Making a crackling noise.
( ଯଥା—ନିଆଁରେ ଲୁଣ ପକାଇଲେ ତାହା ଚଡ଼୍‌ଚଡ଼୍ ଫୁଟେ ।)
୨ । ଆଖି ଆଗରେ; ଶୀଘ୍ର; ଶୀଘ୍ର ଶୀଘ୍ର—
2. Before one's eyes; quickly; in quick succession.
[ ଦ୍ର—ଘାଆ ବା ଦେହ ଫାଟିବା ଅର୍ଥରେ ବ୍ୟବହୃତ । ଯଥା—ଘାଆଟା ଚଡ଼୍‌ଚଡ଼୍ ଫାଟିଗଲା; ଖୁବ୍ ଖରାରେ କାଦୁଆ ଭୂମି ଶୁଖିଯାଇଁ ଚଡ଼ଚଡ଼ ଫାଟେ । ]

ଚଡ଼ଚଡ଼ିଆ—ଦେ. ବିଣ—ଚଡ଼୍‌ଚଡ଼୍‌ଶବ୍ଦକାରୀ—
Chardchardiā — Making a crackling sound.

ଚଡ଼୍‌ଚଡ଼ୁଆ—ଦେ. ବିଣ—ଚଡ଼୍‌ଚଡ଼ିଆ (ଦେଖ)
Chardcharduā — Chardchardiā (See).

ଚଡ଼୍‌ଚାଡ଼୍—ଦେ. ଅ (ଧ୍ୱନ୍ୟନୁକରଣ)—ଚଡ଼୍‌ଚଡ଼୍ (ଦେଖ)
Chardchārd — Chardchard (See)

ଚଡ଼୍‌ଭଡ଼୍—ଦେ. ଅ (ଧ୍ୱନ୍ୟନୁକରଣ)—ଚଡ଼୍‌ଚଡ଼୍ (ଦେଖ)
Chardbhard — Chardchard (See)

ଚଡ଼ା—ପ୍ରାଦେ (ଗଞ୍ଜାମ ଓ ମେଦିନୀପୁର) ବି (ତୁଳ. ବ. ଚଡ଼୍)--ଚାପୁଡ଼ା—
Charda — Slap.

ଚଡ଼ଉ—ଦେ. ବି—ଚଢ଼ଉ (ଦେଖ)
Chrdau — Chardhau (See).

ଚଡ଼କ—ଦେ. ବି.—(ଚଡ଼ଚଡ଼ ଧ୍ୱନ୍ୟନୁକରଣ; ଉଚ୍ଚତ)—
Chardaka ୧ । ବଜ୍ର—1. Thunder.
बाज ୨ । ବଜ୍ରଘାତ—2. Thunder bolt.
**बिजलीकीकड़क** ଗଳ ନଭଛ ଗଗ ବକ ।
**बिजलीकी तड़प** ଶକଟେ ପଡ଼ଲ ଚଡକ—ଉପଦ, ପ୍ରେମପଞ୍ଚାମୃତ ।
ପ୍ରାଦେ. (ମେଦିନୀପୁର, ବାଲେଶ୍ୱର) ବି. (ତୁଳ. ବ. ଚଡ଼କ; ସଂ. ଚକ୍ର; ଫା. ଚର୍ଖ=ଚକ୍ର)—
ଚଡ଼କ ପୂଜା (ଦେଖ)—Chardaka pūjā (See)

ଚଡ଼କ ପକାଇବା—ଦେ. କ୍ରି.—(ଲକ୍ଷଣାର୍ଥ) ନାଶ କରିବା; ଧ୍ୱଂସ କରାଇବା—
Chardaka pakāibā — ('fig.) To destory.

ଚର ଅରଜଳ ସ୍ନେହ ସମ୍ପଦେ ।
ଚଡକ ପକାଇ ନିର୍ଦ୍ଦୟ ହୃଦେ—କବିସୂର୍ଯ୍ୟ, କବିତା ।

ଚଡ଼କ ପଡ଼ିବା—ଦେ. ବି.—୧ । ବଜ୍ରପାତ—1. The falling of thunder.
Chardaka pardibā
बाजपड़ा ୨ । (ଲକ୍ଷଣାର୍ଥ) ସର୍ବନାଶ ଘଟିବା—
**बिजलीगिरना** 2. (figurative) Ruination.

ଚଡ଼କ ପୂଜା—ପ୍ରାଦେ. (ମେଦିନୀପୁର, ବାଲେଶ୍ୱର) ବି.—
Chardaka pūjā ( ତୁଳ. ବ. ଚଡ଼କ ପୂଜା )—
ଓଡ଼ିଶାରେ 'ପାଟୁଆ' ଉତ୍ସବ—A swinging or whirling ceremony performed by the

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍ଗିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ

low caste Hindus on the Chaitra Saṁkrānti day

[ ଦ୍ର—କେତେକ ଗଡ଼ଜାତ ଓ ବାଙ୍କି ଅଞ୍ଚଳରେ ବାଉରି, କଣ୍ଡରା, ପାଣ, ଶବର ଆଦି ଲୋକେ ଏ ଉତ୍ସବ କରନ୍ତି । ଯେଉଁମାନେ ପୂର୍ବରୁ ମାନସିକ କରି ଏ ବ୍ରତ କରନ୍ତି ତାଙ୍କୁ 'ପାଟୁଆ' ବୋଲାଯାଏ ଓ ଏ ଯାତ୍ରାକୁ 'ଦଣ୍ଡଯାତ' ବା 'ଝାମୁଯାତ' ବୋଲାଯାଏ । ବ୍ରତଧାରୀର ପିଠିକୁ ପୋଡ଼ା ଚୂଣ ଫିଙ୍ଗି ପିଠିର ଚମକୁ କଷ୍ଟସହନକ୍ଷମ କରାଯାଏ । ପୋଡ଼ା ଚୂଣ ମରାଯିବା ଯୋଗୁଁ ପିଠି ଚମ ଅଜାଡ଼ି ହେଲାରୁ ପିଠିକୁ ଫୋଡ଼ି ବେଏଁଶିରା ତଳେ ଗୋଟିଏ ବନଶୀକଣ୍ଟା ପରି ବଡ଼ ମୁନିଆଁ ହୁକ ଫୋଡ଼ାଯାଏ ଓ ସେ ହୁକର ମୂଳରେ ଦଉଡ଼ି ଲାଗେ । ଭୂମିରେ ଗୋଟିଏ ୨୦।୨୫ ହାତ ଉଚ୍ଚ ବାଉଁଶ ପୋତା ଯାଇ ସେ ବାଉଁଶର ଅଗରେ ତରାଜୁଦଣ୍ଡି ବା ବାହୁଙ୍ଗୀ ପରି ଗୋଟିଏ ନମନୀୟ ବାଉଁଶ ଲଗାଯାଏ । ସେହି ବାହୁଙ୍ଗୀର ଗୋଟିଏ ମୁଣ୍ଡରେ ଏକ ଲମ୍ବ ଦଉଡ଼ି ଲଗାଯାଏ ଓ ଅନ୍ୟ ମୁଣ୍ଡରେ ପାଟୁଆର ପିଠିରେ ଫୋଡ଼ା ହୋଇଥିବା ବନଶୀକଣ୍ଟାର ମୂଳରେ ଲାଗିଥିବା ଦଉଡ଼ିରେ ପାଟୁଆକୁ ଟାଙ୍ଗି ଦିଅନ୍ତି ଓ ପାଟୁଆ ଶୂନ୍ୟରେ ଝୁଲୁଥାଏ ଏବଂ ଲୋକେ ଆର ମୁଣ୍ଡର ଦଉଡ଼ିକୁ ଟାଣି ସେ ବାହୁଙ୍ଗୀକୁ ଘୂରାନ୍ତି ଓ ପାଟୁଆ ଶୂନ୍ୟରେ ୭ ଫେରା ବା ୨୧ ଫେରା ଘାଉଁଟି ଖାଇ ବୁଲୁଥାଏ । ତତ୍ପରେ ପାଟୁଆକୁ ସେଥିରୁ ମୁକ୍ତ କରନ୍ତି ଓ ପାଟୁଆ ମାସେ ଯାକେ ଗ୍ରାମେ ଗ୍ରାମେ ବୁଲି ବାଜା ସହିତ ନାଚେ ଓ ଗୀତ ବୋଲେ ।]

**ଚଡ଼କବାଜି**—ଦେ. ବି. ( ସଂ. ଚକ୍ର ଓ ଫା. ବାଜୀ=କ୍ରୀଡ଼ା )—
Chardakabāji ଚଡ଼ ଚଡ଼ ଶବ୍ଦ କରି ଫୁଟିବା ଏକପ୍ରକାର
চড়কবাজী ବାଣ—A kind of cracking work.
**चरखीबाजी,** [ ଦ୍ର—ଏହା ବମ୍ବାଜି ଓ ତୋପବାଜିଠାରୁ
**चरकीबाजी** ଅଧିକତର ଶବ୍ଦ କରେ ।]
( ଚଡ଼କାବାଜି—ଅନ୍ୟରୂପ )

**ଚଡ଼କ ସଂକ୍ରାନ୍ତି**—ପ୍ରାଦେ. ( ମେଦିନୀପୁର, ବାଲେଶ୍ୱର ) ବି. ( ତୁଳ. ବଂ.
Chardaka saṁkrānti ଚଡ଼କ ସଂକ୍ରାନ୍ତି )—ପଣା ସଂକ୍ରାନ୍ତି; ଚୈତ୍ର ସଂକ୍ରାନ୍ତି—The Saṁkrānti of the month of Chaitra.

**ଚଡ଼କା**—ଦେ. ବି—୧ । (ସଂ. ଚର୍ଚ୍ଚରୀ)--ବାଦ୍ୟବିଶେଷ; ଚର୍ଚ୍ଚରୀବାଦ୍ୟ;
Chardakā ଓଡ଼ିଶାର ତାସା ବାଜା—1. A kind of shallow drum making a crackling sound.
চিড়ফাট ୨ । ( ସଂ. ଚୀର୍ଣ୍ଣ ) କାଠ ବା ଧାତୁ ବା କାଚରେ ଖୁବ ସରୁ
**चटक; कड़क** ଫଟା ଦାଗ—2. Crack in a wood or glass or metalware.

**ଚଡ଼କାଇବା**—ଦେ. କ୍ରି. ( ଧ୍ୱନ୍ୟନୁକରଣ )—
Chardakāibā ୧ । ଚଡ଼କିବାର ଣିଜନ୍ତରୂପ—
1. The causative form of Chardakibā.
চড়কান ୨ । ଫଟାଇବା—2. To cause to crack; to split.
**चटकाना** ୩ । ଭୟରେ ସ୍ତମ୍ଭିତ ବା ଚମକିତ କରିବା—
(ଚଡ଼କେଇବା—ଅନ୍ୟରୂପ) 3. To startle; to alarm.

ତାହା ସଙ୍ଗତେ ସଙ୍ଗ ହୋଇଣ ଚଡ଼କ
ଚଡ଼କାଇବ ଏ ସବୁରି ହୃଦଯାକ—କୃଷ୍ଣସିଂହ, ମହାଭାରତ. ବନ ।

**ଚଡ଼କିବା**—ଦେ. କ୍ରି. ( ଧ୍ୱନ୍ୟନୁକରଣ )—
Chardakibā ୧ । ଚଡ଼ ଚଡ଼ ଶବ୍ଦ କରିବା—
চড়কা 1. To make a crackling sound
**चिटकना; चटकना** ୨ । (ଲୁଣ କଅଁରେ)ଚଡ଼ ଚଡ଼ ହୋଇ ଫୁଟିବା—
2. To crackle ( said of particles of salt thrown into fire ).
୩ । ( ପଟା ଆଦି ) ଚଡ଼ ଚଡ଼ ହୋଇ ଫାଟିଯିବା—
3. ( planks ) To be cracked.
୪ । ( ବିଜୁଳି ଆଦି ) ଘନଘନ ଝଲକିବା—
4. To flash repeatedly.
୫ । ( ମନ ) ଘୋର ଗର୍ଜ୍ଜନନାଦ ଶୁଣି ଚକିତ ବା ତ୍ରସ୍ତ ହେବା—5. ( mind ) To be startled; to be alarmed.
୬ । ( କାଦୁଅ ମାଟି ) ଖରାରେ ଶୁଖି ଫାଟିଯିବା—
6. To crack ( said of dried up clayey soil. )

**ଚଡ଼ଚଡ଼ାଇବା**—ଦେ. କ୍ରି.—ଚଡ଼ ଚଡ଼ ଶବ୍ଦ କରିବା ।—
Chardachardāibā To make a crackling sound.

**ଚଡ଼ଚଡ଼ି**—ଦେ. ବି.—୧ । ବଜ୍ରପାତ—
Chardachardi 1. Stroke of lightning
୨ । ଚଡ଼କ; ବଜ୍ରସୂଚି; ବଜ୍ର—2. Thunderbolt.

ଘଡଘଡ଼ି ଉପରେ ପଡଇ ଚଡଚଡ଼ି । ପ୍ରାଚୀ. ରହସ୍ୟମଞ୍ଜରୀ ।

[ଦ୍ର – ଘଡ଼ଘଡ଼ି=ମେଘ ଗର୍ଜ୍ଜନ; ଚଡ଼ଚଡ଼ି=ବଜ୍ରସୂଚି । ]
ପ୍ରାଦେ. (ମେଦିନୀପୁର) ବି.—(ତୁଳ. ବଂ. ଚଡ଼ଚଡ଼ି)—
ସନ୍ତୁଳା ତିଅଣ—A kind of curry with very little water left in it.

**ଚଡ଼ ଚାପଡ଼**—ଦେ. ବି.—(ଏକାର୍ଥକ ସହଚର; ଚଡ଼ ଧ୍ୱନ୍ୟନୁକରଣ+ସଂ.
Charda chāparda ଚପଟ)—୧ । ଚାପୁଡ଼ା—1. Slap.
চড়চাপড় ୨ । ଚାପୁଡ଼ାରୂପ ଦଣ୍ଡ—
**चपत** 2. Punishment in the shape of slaps
(ଚଡ଼ଚାପୁଡ଼ା—ଅନ୍ୟରୂପ)

ଅବଧାନ୍ । ଆଗ ମାଇପକୁ ଚଡଚାପଡ,
ପଛ ମାଇପକୁ ସାବଧାନ୍ । ଢଗ ।

**ଚଡ଼ତି**—ପ୍ରାଦେ. (ମେଦିନୀପୁର) ବି.—(ସଂ. ଚର ଧାତୁ; ତୁଳ. ବଂ.
Chardati ଚଡ଼ତି)—୧ । ଆରୋହଣ—1. Riding.
(ପଡ଼ତି—ବିପରୀତ) ୨ । ଊର୍ଦ୍ଧ୍ୱ ଗମନ—2. Ascent; rising up.
୩ । ବୃଦ୍ଧି; ବଢ଼ିବା—3. Increase.
୪ । ମୂଲ୍ୟବୃଦ୍ଧି—4. Rise in price.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଂସ୍ | ଡ଼,ଢ଼ | ଞ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଡ଼ | ନ |

ଚଡ଼ନ୍—ପ୍ରାଦେ. (ମେଦନୀପୁର)—ବି.—୧ । ଆରୋହଣ—
Chardan 1. Ascending.
୨ । (ପଶ୍ୱାଦିର) ପୃଷ୍ଠରେ ଆରୋହଣ—2 Riding.
୩ । ବର୍ଦ୍ଧନ—3. Increasing.
୪ । ଜଡ଼ାଉ କାମ କରିବା; ଖଚିତ କରିବା—
4. Mounting a gem on a metal.

ଚଡ଼ନ୍‌ଦାର୍—ପ୍ରାଦେ. (ମେଦନୀପୁର) ବି.—(ଭୁଲ. ଏହି ଅର୍ଥରେ ବଂ ଓ
Chardan-dār ହି)—୧ । ଆରୋହୀ—1. Riding.
୨ । ଅଳଙ୍କାରରେ ଜଡ଼ାଉ କରିବା କାରିଗର—2. An artisan who mounts gems on an ornament.
୩ । ଯେଉଁ ଅଳଙ୍କାରରେ ଜଡ଼ାଉ କାମ ହୋଇଥାଏ—
3. Mounted ornament; gem-set ornament
୪ । ଯେଉଁ ବ୍ୟକ୍ତି ବୋଝାଇମାଲକୁ ଜଗିବା ପାଇଁ ଗାଡ଼ି, ଡଙ୍ଗା ବା ରେଳରେ ଯାଏ—4. A passenger who accompanies the merchandises laden in a cart, boat or rail.

ଚଡ଼ୟା—ପ୍ରାଦେ. (ଗଞ୍ଜାମ) ବି—କାଶତୃଣ ( ଦେଖ )
Chardayā Kāsatruna (See)
ଦେ. ବି—ଚଢ଼େୟା (ଦେଖ)—Chardheyā (See)

ଚଡ଼ୟା ଅଠା—ଦେ. ବି—ପକ୍ଷୀ ଧରିବା ନିମିତ୍ତ ଅଠାକାଠିରେ ଦିଆଯାଇ-
Chardayā athā ଥିବା ଅଠା—Bird-lime.

ଗୁରୁସେ ମାଧୁସଜ୍ଞା ଗୃହାଣୀ ଚଡ଼ୟା ଅଠା
ଚିବିକ ଲଗତ ଠାଣି ନିଜଗ ଜାଣି ସେ । ପ୍ରାଚୀ. ରହସ୍ୟମଞ୍ଜରୀ ।

ଚଡ଼ା—ଦେ. ବି.—(ସଂ. ଚର୍)—୧ । ନଦୀ ଗର୍ଭରେ ବନ୍ୟା ବେଳେ
Chardā ସ୍ରୋତଦ୍ୱାରା ସ୍ତୂପୀକୃତ ବାଲି ବା ପଙ୍କ; ପଠା,—
ଚଡ଼ା 1. Sand-bank; alluvion or accretion formed
ପଟ୍ଟି; କଚ୍ଛାର in the bed of a river
ଚଡ଼୍ହା ୨ । (ସଂ. ଚର ଧାତୁ) ଆରୋହଣ—2. Ascending.
ଚଢ଼ାଇ ୩ । ଉଠାଣି—3. Ascent.
୪ । ପ୍ରଶ୍ନ—(ବିପରୀତ—ଉତ୍ତର)—4. Question
ଚଢ଼ା (ଦେଖ)— Chardha (See)

ଚଡ଼ାଇ (ଇତ୍ୟାଦି)—ଦେ. ବି—ଚଢ଼ାଇ ଇତ୍ୟାଦି (ଦେଖ)
Chardāi (etc) Chardhāi etc (See)

ଚଡ଼ାଇବା—ପ୍ରାଦେ. (ସମ୍ବଲପୁର) କ୍ରି—୧ । ଚଢ଼ାଇବା (ଦେଖ)
Chardāibā 1. Chardhāibā (See)
୨ । ଧନୁରେ ଗୁଣ ଚଢ଼ାଇବା—2. To put the string
(ଚଢ଼େଇବା—ଅନ୍ୟରୂପ) into the bow; to string a bow.

ଚଡ଼ାଏବା ପ୍ରାଦେ. (ସମ୍ବଲପୁର) କ୍ରି—ଚଢ଼ାଇବା (ଦେଖ)
Chardāebā Chardhāibā (See)

ଚଡ଼ା ପଡ଼ିବା—ଦେ. କ୍ରି.—(ସଂ. ଚର+ପତନ)—ନଦୀ ଗର୍ଭରେ ସ୍ରୋତ-
Chardā pardibā ଦ୍ୱାରା ଏକ ସ୍ଥାନରେ ଗୁଡ଼ାଏ ବାଲି ବା ମାଟି
ଚଡ଼ାପଡ଼ା ଜମା ହୋଇ ଯିବା—Formation of alluvial
ଚରପଡ଼ନା deposit or sand-bank in the bed of a river.

ଚଡ଼ୁ—ଦେ. ବି—୧ । ରୋଗ ନିବାରଣାର୍ଥ ତପ୍ତଲୌହଦ୍ୱାରା ଜୀବଶରୀରର
Chardu ଶିରାରେ ଦିଆଯିବା ଦାଗ; ଚଅଁ; ବାଣୀ—
ଶେଁକ; ଦାଗ 1. Cauterization; branding marking
ଦାଗ; ଛାପ; ଚରକା with a hot iron.
୨ । ଗରମ ଲୌହଦ୍ୱାରା ଦେହରେ କରାଯିବା ଚିହ୍ନ—
2 A mark with a branding iron.

ଚଡ଼ୁଆ—ପ୍ରାଦେ. (ଗଡ଼ଜାତ) ବି. (ଭୁଲ. ସଂ. ଚରୁ; ଚରୁସ୍ଥାଳୀ)—
Charduā ଧାତୁର ଥାଳିଆ—Small metal plate.

ଚଡ଼ୁକାଠି—ଦେ. ବି—ଯେଉଁ ଲୌହଶଳାକାର ଅଗ୍ରଭାଗ ଉତ୍ତପ୍ତ କରି
Chardukāthi ମନୁଷ୍ୟ ଶରୀରରେ ଚଡ଼ୁ ଦିଆଯାଏ—
ଦାଗନୀ Searing iron; an iron used for canterising.
ଚରକାଠୀ

ଚଡ଼ୁ ଘିନିବା—ଦେ. କ୍ରି—ଦଗାଇ ହେବା; ଆପଣା ଶରୀରରେ ଚଡ଼ୁ ଦାଗ
Chardu ghinibā ଗ୍ରହଣ କରିବା—To allow one's self
ଦାଗଲଓୟା to be seared.
ଦାଗଲେନା; ଦଗବାନା; ଛାପଲେନା

ଚଡ଼ୁ ଦେବା—ଦେ. କ୍ରି—ଅନ୍ୟର ଶରୀରରେ ଚଅଁ ମାଡ଼ିବା; ଦାଗିବା—
Chardu debā To sear another's body.
ଦାଗା
ଦାଗନା; ଚରଦେନା; ଛାପଦେନା

ଚଡ଼େଇ—ଦେ. ବି—ଚଢ଼ାଇ ( ଦେଖ )
Chardei Chardhāi ( See )

ଚଡ଼େୟା—ପ୍ରାଦେ. ( ଗଞ୍ଜାମ ) ବି—ଚଡ଼ୟା ( ଦେଖ )
Chardeyā Chardayā ( See )

ଚଢ଼ଇ—ପ୍ରାଦେ. ( ମେଦନୀପୁର ) ବି. ( ଭୁଲ. ବଂ. ଚଢ଼ଇ )—
Chardhai ଚଢ଼ାଇ ( ଦେଖ )—Chardhāi ( See )

ଚଢ଼ଉ—ଦେ. ବି. (ସଂ. ଚର ଧାତୁ)—୧ । ଉଠାଣି—1. Ascent.
Chardhau ୨ । ଉଠିବା କର୍ମ—2. Act of ascending.
ଚଡାଇ; ଚଢ଼ାଉ ୩ । ଚଢ଼ାଉ; ଆକ୍ରମଣ—3. Attack,
ଚଢ଼ାଇ; ଚଢ଼ାଉ

ଚଢ଼ଉ ଜୋତା—ଦେ. ବି.—ଯେଉଁ ଜୋତାର ପଛ ପାଖ ବା ଏଡ଼ୀର
Chardhau jotā ଚମଡ଼ା ଗୋଇଠି ଉପରକୁ ଉଠିଥାଏ—
ଚଢ଼ୌଵା High-backed shoes.

ଚଢ଼ା—ଦେ. ବି. ( ସଂ. ଚର ଧାତୁ )—ଚଡ଼ା ( ଦେଖ )
Chardhā Chardā ( See )
ଚଢ଼ା ଚଢ଼ଣ—୧ । ଆରୋହୀ—1. Riding; ascending.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ଷ୍ମିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷ୍ମିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷ୍ମିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚକ୍ଷ୍ମିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ

चढ़ाव, चढ़ाइ ( ଯଥା—ଘୋଡ଼ା ଚଢ଼ା ଲୋକ । )

୨ । ମହର୍ଘ; ଦୁର୍ମୂଲ୍ୟ—
2. High; dear; of high price.
ପୁଣି ଦର ଖର ଚଢ଼ା । ଫକୀରମୋହନ, ଗଳ୍ପସ୍ୱଳ୍ପ ।

୩ । ଯାହା ଉପରେ ଚଢ଼ାଯାଏ ( ଘୋଡ଼ା; ହାତୀ )—
3. Used in riding; riding ( horse or elephant ).

୪ । ଉଚ୍ଚୈଃସ୍ୱରବିଶିଷ୍ଟ ( କଥା )—
4 Loud; high-toned ( speech ).

୫ । ଉଦ୍ଧତ ( ସ୍ୱଭାବ )—5. Irritable ( temper ).

୬ । ଉଠାଣିଆ ( ରାସ୍ତା )—6. Ascending ( road ).

ଚଢ଼ାଇ—ଦେ. ବି, ( ସଂ. ଚଟକ କମ୍ବା ଚର ଧାତୁ )—
Chardhāi ୧ । ଛୋଟ ପକ୍ଷୀ—1. Small bird.
চড়ুই ୨ । ପକ୍ଷୀ—2. Bird.
चिड़िआ, चरैरु

ଚଢ଼ାଇବା—ଦେ. କ୍ରି—(ସଂ. ଚରଧାତୁର ପ୍ରେରଣାର୍ଥକ)—
Chardhāibā ୧ । ଚଢ଼ିବାର ଣିଜନ୍ତରୂପ—
চড়ান 1. The causative form of 'chardhibā'
चढ़ाना, चढ़वाना ୨ । ଆରୋହଣ କରାଇବା—
2. To cause to ascend or ride.
(ଚଢ଼େଇବା—ଅନ୍ୟରୂପ) ଚଢ଼ାଇ ଉନ୍ନତ ସୁଖପାଦପେ
ଚକଅର ମୂଳ୍ୟ କାଟିଲେ କୋପେ—
କବିସୂର୍ଯ୍ୟ. କବିତାକଲ୍ଲୋଳ ।

୩ । ଉତ୍ତୋଳିତ କରିବା; ଉପରକୁ ଉଠାଇବା—
3. To lift up.

୪ । ରେଲ, ଜାହାଜ ବା ଯାନରେ ଯାତ୍ରୀଙ୍କୁ ଆରୋହଣ କରିବାର ସୁବିଧା କରିଦେବା—4. To see a man get into a conveyance.

୫ । ନିଜର ପିଠିରେ ଅନ୍ୟକୁ ବସିବାକୁ ସମର୍ଥ କରିବା—
5. To cause another to sit or come over one's back.
( ଯଥା—ଏ ଘୋଡ଼ା କାହାକୁ ଚଢ଼ାଇ ଦେଉନାହିଁ । )

୬ । ( ଔଷଧ ) ନିଜେ ଖାଇବା—6. To eat.

୭ । ( ଔଷଧ ) ପରକୁ ଖୁଆଇବା—7. To feed.

୮ । ( ମାଡ଼ ) ମାରିବା—
8. To deal ( blows ); to administer.
( ଯଥା— ଭୂଧା ଚଢ଼ାଇବା । )

୯ । ( ସ୍ୱର ) ଉଚ୍ଚ କରିବା—
9 To highten; to raise ( one's voice ).

୧୦ । ( ଯନ୍ତ୍ରର ତାର ) କସିବା; ଟାଣିବା —
10. To tighten (the strings).
ଟେକାଇ ଚଢ଼ାଉ ଅଛି କସେ ନିଜ ବୀଣା-ଯନ୍ତ୍ରେ ନୂଆତାର—
ରାଧାନାଥ. ଉର୍ବଶୀ ।

୧୧ । ( ଫୁଲମାଳ ଓ ପୋଷାକ ) ନିଜେ ପିନ୍ଧିବା—
11. To wear; to put on.
( ଯଥା—ସେ ଆଜି ଚକଚକିଆ କୋଟ୍ ଚଢ଼ାଇ ଦରବାରକୁ ଆସିଛି । )

୧୨ । ( ବ୍ୟଙ୍ଗାର୍ଥ ) ( ନିଶା ) ଖାଇବା—
12. To take ( some intoxicant ).
ଯେଉଁରୂପେ ମହୁଆ ଚଢ଼ାଇ ଥାଇ ନିଶା—ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

୧୩ । ଦେବବିଗ୍ରହଙ୍କ ଉପରେ ଲାଗି କରିବା—
13. To put on the body of an image.
ସେ ଦେଶରେ ଯେତେକ ଦେବଦେବୀ ଥିଲେ
ତାହାଙ୍କୁ ଭୋଗ ଦେଇ ମାଳ ଚଢ଼ାଇଲେ—କୃଷ୍ଣସିଂହ. ମହାଭାରତ. ବନ ।

ଚଢ଼ାଇମାରୁ—ଦେ. ବି —ବ୍ୟାଧ; ଯେ ପକ୍ଷୀ ଧରି ଜୀବିକା ନିର୍ବାହ କରେ—
Chardhāimāru Bird-catcher; bird-shooter; fowler.
চিড়িআমার
चिड़ीमार

ଚଢ଼ାଉ—ଦେ. ବି. (ସଂ. ଉଚ୍ଚଳନ; ପ୍ରା. ଉଚ୍ଚଢ଼ଣ)—୧ । ଆକ୍ରମଣ—
Chardhāu 1. Attack; onset.
চড়াউ ଏକ ଏକ ହୋଇ ରାଜପୁତ୍ରଗଣ ସଦଳେ କଲେ ଚଢ଼ାଉ—
चढ़ाई ରାଧାନାଥ. ପାର୍ବତୀ ।

୨ । ବହୁସଂଖ୍ୟାରେ ଏକ ସ୍ଥାନରେ ପ୍ରବେଶ—
2. Arriving at or entering a place with a large number of people.

୩ । ସୈନିକଙ୍କଦ୍ୱାରା ରାଜ୍ୟାଦି ଆକ୍ରମଣ—
3. Invasion of a kingdom by an army.

ପ୍ରାଦେ. ( ପୁରୀ ) ବି—ଜଗନ୍ନାଥଙ୍କ କର୍ମଚାରିବିଶେଷ; ତଡ଼ାଉ—
A class of record-keepers of the Purī tremple.
[ ଦ୍ର—ମାଦଳାପାଞ୍ଜି ଏମାନଙ୍କ ଘରେ ଥାଏ । ଏମାନେ ରାଜବଂଶର ଇତିହାସ ଲେଖନ୍ତି—ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

ଚଢ଼ାଉତ୍ରା କରିବା—ଦେ. କ୍ରି—ଢାଲୁଜାଗାରେ ଉପରକୁ ତଳୁ ଓ ତଳୁ
Chardhāutrā karibā ଉପରକୁ ଆସିବା ଓ ଯିବା—
Repeatedly to go up and come down; to walk up and down a steep incline.

ଚଢ଼ା ଉତାର—ଦେ. ବି. ( ବିପରୀତାର୍ଥକ ସହଚର )—୧ । କୌଣସି
Chardhā utāra ପଦାର୍ଥକୁ ଉପରକୁ ଉଠାଇବା ଓ ତଳକୁ
চড়াউতার ଓହ୍ଲାଇ ଆଣିବା—
चढ़ाउतार; चढ़ाउतरी 1. Lifting and lowering.

୨ । ଉଠାଣି ଓ ଗଡ଼ାଣି—2. Ascent and descent; upward and downwand slopes.

୩ । ପ୍ରଶ୍ନ ଓ ତହିଁର ଉତ୍ତର—
3. 3. Question and its reply.

୪ । ଉପରକୁ ଉଠିବା ଓ ତଳକୁ ଖସିବା—
4. Ascending and descending; going up and coming down.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ସ | ଭ୍ରଅ | ଘ୍ନ |
| ୨ | ଈ | ଉ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଞ୍ଜ | ନ୍ତ |

୫ । ଖୁବ କଡ଼ା ସ୍ୱର ଓ ଖୁବ ନରମା ସ୍ୱର—
5. Sounds of high and low pitch.

ଚଢ଼ାଚଢ଼ି—ଦେ. ବି—୧ । ଅନ୍ୟୋନ୍ୟ ଉପରେ ଚଢ଼ିବା—
Chardhāchardhi 1. Getting over the body of each other; mounting upon one another.
চড়াচড়ি
चढ़ाचढ़ि

୨ । ବହୁବାର ଆରୋହଣ—
2. Repeated riding or ascending.

୩ । ( ଅଶ୍ଳୀଳ ) ମୈଥୁନ କ୍ରିୟା—
3. Copulation (by the male and female atternately getting on each other ).

ଚଢ଼ାନ୍—ପ୍ରାଦେ. ( ସମ୍ବଲପୁର ) ବିଣ—ଉଠାଣି ( ସ୍ଥାନ )—
Chardhān Ascending ( slope ).
(ପଢ଼ରେନ୍—ବିପରୀତ) ବି—ଉଠାଣି ସ୍ଥାନ—
An sscending slope; an ascent.

ଚଢ଼ାଳି—ଦେ. ବିଣ. ( ସଂ. ଉଚ୍ଚଲନକାରୀ )—
Chardhāli ୧ । ଘୋଡ଼ା ଚଢ଼ିବାରେ ଅଭ୍ୟସ୍ତ—
चढ़ैत 1. Habituated to riding.

୨ । ଘୋଡ଼ା ଚଢ଼ିବାରେ ପଟୁ—
2. Expert in horse-riding.

୩ । ଆରୋହଣକାରୀ—3 Riding; ascending.

୪ । ( ଅନ୍ୟ ଶବ୍ଦ ସଙ୍ଗେ ଲାଗେ; ଯଥା—ଘୋଡ଼ାଚଢ଼ାଳି, ଗଛଚଢ଼ାଳି, ପର୍ବତଚଢ଼ାଳି )
ଅମୁକ ଉପରେ ଚଢ଼ିବାରେ ଅଭ୍ୟସ୍ତ ବା ପଟୁ—
4. Habituated to or expert in riding ( a horse or tree ).

ଦେ. ବି—ଘୋଡ଼ାସବାର—1. Jockey.

୨ । ଅଶ୍ୱାରୋହୀ ବ୍ୟକ୍ତି—2. A rider.

୩ । ଆରୋହଣରେ ପଟୁ ବ୍ୟକ୍ତି—
3. A skilful rider.

ଚଢ଼ିଆ ଘାସ—ପ୍ରାଦେ. ( ଗଞ୍ଜାମ ) ବି—ତଣ୍ଡା ( ଦେଖ )
Chardhiā ghāsa Tandā ( See )

ଚଢ଼ିବା—ଦେ. କ୍ରି. ( ସଂ. ଚର୍ ଧାତୁ; ସଂ. ଉଚ୍ଚଲନ ପ୍ରା. ଉଚ୍ଚଡ଼ନ; ଚଢ଼ନ )—୧ । ଉପରକୁ ଆରୋହଣ କରିବା—
Chardhibā 1. To ascend; to get on.
চড়া
चढ़ना
ଚଢ଼ିଲେ ଜଗତରେ ନକୁଳ ଦେଖିବାକୁ । କୃଷ୍ଣସିଂହ. ମହାଭାରତ. ବନ

୨ । ଯାନ ବାହାନରେ ଆରୋହଣ କରିବା—
2. To ride on a beast or conveyance.

୩ । ବୃଦ୍ଧି ହେବା—3. To increase.

୪ । ମହର୍ଘ ହେବା; ଦୁର୍ମୂଲ୍ୟ ହେବା—
4. To become dear or high ( in price ).

୫ । ( ସ୍ୱର ) ଉଚ୍ଚତର ହେବା ବା କର୍କଶତର ହେବା—
5, ( sound ) To become louder or harsher.

୬ । ( ପ୍ରକୃତି ) କଡ଼ା ବା ରୁକ୍ଷ ହେବା—
6 ( temper ) To be rude or rough.

ସ୍ତ୍ରୀ. (ଇତର; ଅଶ୍ଳୀଳ) କ୍ରି—ସହବାସ କରିବା, ସଙ୍ଗମ କରିବା—
( slang ) To cohabit; to copulate.

ଚଢ଼େଇ—ଦେ. ବି—ଚଢ଼ାଇ ( ଦେଖ )
Chardhei Chardhāi ( See )

ଚଢ଼େଇଆ—ଦେ. ବି—ଯେ ଚଢ଼େଇ ଧରି ବିକ୍ରୟ କରି ପେଟ ପୋଷେ—
Chardheiā Bird-catcher; fowler.
(ଚଢ଼ଉଣୀ—ସ୍ତ୍ରୀ) [ ଦ୍ର—କେଉଟମାନଙ୍କର ଚଇତଘୋଡ଼ାଯାତରେ ଚଇତଘୋଡ଼ା ନାଚ ସଙ୍ଗେ ଚଢ଼େଇଆ-ଚଢ଼ଉଣୀଙ୍କର ମଧ୍ୟ ନାଚ ହୁଏ । ]

ଚଢ଼େଇଗୋଡ଼ି—ପ୍ରାଦେ ( ଗଡ଼ଜାତ ) ବି—ପାଣି କୂଳରେ ଜନ୍ମିବା
Chardheigordi ଜଙ୍ଗଲି ବୁଦାଳିଆ ବୃକ୍ଷବିଶେଷ—
Ixora Undulata; name of a large shrub growing near water ( Haines )
[ ଦ୍ର—ଏ ଗଛ ଝାମ୍ପୁଡ଼ା; ୬।୮ ହାତ ଉଚ୍ଚ ହୁଏ । କାଠ ଖୁବ ଟାଣ, କୁରାଢ଼ି ଚଳେ ନାହିଁ । ଭଲ ଜାଳ ହୁଏ । ]

ଚଢ଼େଇନଖୀ—ଦେ. ବି.—ଏକପ୍ରକାର ଧାନ—
Chardeinakhi A species of paddy.

ଚଢ଼େଇ ମାଛିମରା ବେଳ—ପ୍ରାଦେ. (ଗଡ଼ଜାତ) ବି.—ସନ୍ଧ୍ୟା ବୁଡ଼ିବାର ଠିକ୍ ପୂର୍ବକାଳ ( ଏ ସମୟରେ ଚଢ଼େଇମାନେ ଉଡ଼ୁଥିବା ମଚ୍ଛ ଓ ମଶାଙ୍କୁ ଖାଆନ୍ତି)—
Chardhei māchhimara bela Dusk.

ଚଢ଼େଇଲେଦା—ଦେ. ବି.—୧ । ପକ୍ଷିବିଷ୍ଠା—
Chardheiledā . The ordure of birds.

୨ । ଜଗନ୍ନାଥଙ୍କୁ ଭୋଗ ଲାଗିବାପାଇଁ ପ୍ରସ୍ତୁତ ନାନାପ୍ରକାର ପିଠାରୁ ବଳି ପଡ଼ିଥିବା କ୍ଷୁଦ୍ର ଖଣ୍ଡମାନଙ୍କୁ ମିଶାଇ ତିଆରି କରାଯିବା ମିଷ୍ଟାନ୍ନ—2. The remnants of different cakes kneaded and rolled into a mass & offered to Lord Jagannath.

ଚଢ଼େନ—ପ୍ରାଦେ. (ସମ୍ବଲପୁର) ବି ଓ ବିଣ.—ଚଢ଼ାନ୍ (ଦେଖ)
Chardhen Chardhān (See)

ଚଣ୍ (ଧାତୁ)—ସଂ.—ଦାନ କରିବା—
Chan (root). To give away.

ଚଣକ—ସଂ. ବି.—(ଚଣ୍ ଧାତୁ+କର୍ମ. ଅ+କ)—୧ । ବୁଟ—
Chanaka 1. Gram.
(ଅନ୍ୟ ସଂ ନାମ—ଚଣ, ହରିମନ୍ଥ, କୃଷ୍ଣ ଚଞ୍ଚୁକ, ବାଲଭୋଜ୍ୟ, ରାଜଭକ୍ଷ୍ୟ, କଞ୍ଚୁକୀ)
୨ । ଚଣା—2. Chick pea.
୩ । ମୁନିବିଶେଷ—
3. Name of a sage.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗୀ' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ଚଣା**—ଦେ. ବି.— (ସଂ. ଚଣକ)—୧ । ବୁଟ ପରି ଏକପ୍ରକାର ଶସ୍ୟ—
Chaṇā 1. A kind of leguminous grain; Cicer Arietinum; Panicum Maliaceum
চণা
चना [ ଦ୍ର—ଚଣା ଶସ୍ୟ ବୁଟ ଆକାରର; ବୁଟ ଈଷତ୍ ଚେପଟା ଓ ଶୃଙ୍ଗଯୁକ୍ତ, କିନ୍ତୁ ଚଣା ଗୋଲ । ଏ ଫସଲ ମାଘ, ଫଗୁଣ ଓ ଚୈତ୍ର ମାସରେ ଅମଳ କରାଯାଏ । ବୁଟ ଅପେକ୍ଷା ଚଣା ହାଲୁକା । କଞ୍ଚା ଚଣାକୁ ବଉଳାଇ କରି, ଡାଲି କରି ଓ ଭଜା କରି ଖାଆନ୍ତି ଓ ଏଥିରେ ମିଠାଇ ମଧ୍ୟ କରାଯାଏ । ଦୋଳଯାତ୍ରାରେ ଭଜା ଚଣା ଓ ଖଜା ଠାକୁରଙ୍କୁ ଭୋଗ ଦିଆଯାଏ । ବୈଦ୍ୟଙ୍କ ମତରେ ଏହା ମଧୁର, ଦୀପକ, ରୁକ୍ଷ, ରୁଚକ ଓ ବଳ ବର୍ଦ୍ଧକ; ଏହା ମେହ କୃମି ଓ ରକ୍ତପିତ୍ତନାଶକ; ବଂ ଓ ହି. ରେ ଏହାକୁ ବୁଟ ମଧ୍ୟ କହନ୍ତି; କିନ୍ତୁ ଏହା ବୁଟ ନୁହେଁ; ଆକାର ଭେଦରେ ଏ ଶସ୍ୟ ଦୁଇ ପ୍ରକାର—ସାନ ଚଣା ଓ ବଡ଼ଚଣା । ]

୨ । ଆମ୍ବବଉଳରୁ ବାହାରିବା ଚଣା ପରି କ୍ଷୁଦ୍ର କଷି—
2. The pea-like mango fruit first appearing from the bud.

୩ । ଖେସାରି (ଦେଖ)
3. Khesāri (See)

**ଚଣାଚଟା**—ଦେ. ବିଣ. (ଗାଳି)—୧ । (ଲୋକ) ବେହିଆ—
Chaṇāchaṭā 1. (Term of abuse) Shameless.
୨ । (ଲୋକ) ନାଛୋଡ଼—2. Importunate; nagging.

**ଚଣାଚୂର**—ଦେ. ବି. (ସଂ. ଚଣକ+ଚୂର୍ଣ୍ଣ)—୧ । ଲୁଣ, ରାଗ ଓ ମସଲା ଦିଆ ଚଣା ବା ବୁଟର ଭଜା—
Chaṇāchūr 1. Gram fried with salt, pepper and spices.
চণাচুর
चनाचुर

**ଚଣା ଧରିବା**—ଦେ. କ୍ରି.—ଆମ୍ବବଉଳରୁ ପ୍ରଥମେ ଚଣାପରି ଅତି ଛୋଟ କଷି ବାହାରିବା—The coming out of pea-like fruits from the mango blossoms.
Chaṇā dharibā
सरसाईं बैठना
[ ଦ୍ର—ଚଣା ଅପେକ୍ଷା ବଡ଼ ହେଲେ ଆମ୍ବଫଳକୁ କଷି କୁହାଯାଏ । ]

**ଚଣାଫଳି**—ଦେ. ବି.—ଶଗଡ଼ର ଦୁଇଦଣ୍ଡି ଅଗ ଓ ପଛରେ ଥିବା କାଷ୍ଠଖଣ୍ଡ—The small cross-bars joining the shafts of a bullock-cart near its two ends.
Chaṇāphali

**ଚଣ୍ଡ୍** (ଧାତୁ)—ସଂ.—କ୍ରୋଧ କରିବା—
Chaṇḍ (root) To be angry.

**ଚଣ୍ଡ**—ସଂ. ବି. (ଚଣ୍ଡ୍ ଧାତୁ+ଅ)—୧ । (+ଭାବ. ଅ) କ୍ରୋଧ—
Chaṇḍa 1. Anger; rage; fit of passion; wrath.
୨ । ତିନ୍ତିଡ଼ି ବା ତେନ୍ତୁଳି ଗଛ—2. Tamarind tree.
୩ । (+କର୍ତ୍ତୃ. ଅ) ଯମଦୂତ—
3. Messenger of the God of death.
୪ । ଶିବାନୁଚରବିଶେଷ—4. An attendant of Śiba.
୫ । ଚଣ୍ଡୀପୁରାଣବର୍ଣ୍ଣିତ ଦୁର୍ଗାଙ୍କଦ୍ୱାରା ନିହତ ଦୁଷ୍ଟ ଦୈତ୍ୟବିଶେଷ—5. A wicked demon killed by Durgā.
[ ଦ୍ର—ଏ ମୁଣ୍ଡଦୈତ୍ୟର ଭାଇ ଓ ଶୁମ୍ଭନିଶୁମ୍ଭଙ୍କ ସେନାପତି ଥିଲେ ।]
୬ । ନିଷ୍ଠୁରତା—6. Cruelty.
୭ । ଉଷ୍ଣତା—7. Warmth; heat.
୮ । ଭୀଷଣତା—Fury; ferocity
୯ । ଉଗ୍ରତା; ତୀକ୍ଷ୍ଣତା—9. Sharpness.
୧୦ । ତୀବ୍ରତା—1. Pungency.
୧୧ । ଜଳିବା ଅଗ୍ନିର ତାପ—
11. Violent heat; burning heat.
୧୨ । ବିଷ୍ଣୁଙ୍କ ପାରିଷଦବିଶେଷ (ହି. ଶବ୍ଦସାଗର)—
12. One of the courtiers of Bishṇu.
୧୩ । ଚଣ୍ଡବଳି ( ଦେଖ )
13. Chaṇḍabaḷi ( See )
୧୪ । ଶ୍ରୀକୃଷ୍ଣଙ୍କ ଦ୍ୱାରା ନିହତ କଂସାସୁରର ଭାଇ (ହି. ଶବ୍ଦସାଗର)—14 Name of a brother of Kaṁsa slain by Śrikrushṇa.
[ ଦ୍ର—ପୁରାଣ ମତରେ ଏ କୁବେରଙ୍କ ଆଠପୁଅ ମଧ୍ୟରୁ ଏକ । ଏ ଶିବପୂଜା ପାଇଁ ନେଉଥିବା ଫୁଲକୁ ବାଟରେ ଶୁଙ୍ଘିବାରୁ ପିତାଙ୍କ ଶାପରେ କଂସର ଭାଇ ହୋଇ ଜନ୍ମିଥିଲା । ହି. ଶବ୍ଦସାଗର । ]

ବିଣ. ପୁଂ—୧ । ଅତିଶୟ କ୍ରୁଦ୍ଧ—
(ଚଣ୍ଡା—ସ୍ତ୍ରୀ) 1. Passionate; very angry; wrathful.
(ଚଣ୍ଡତା—ବି) ଚଣ୍ଡ ମୂରତି ଧରିଲା କା ବୋଲେ
ଚରଣ ପଙ୍କଜ ଧରିଲେ ହେଲେ । କବିସୂର୍ଯ୍ୟ- କବିତାକଲ୍ଲୋଳମା ।
୨ । ଉଷ୍ଣ—2. Hot; very warm.
୩ । ଜଳୁଥିବା—3. Burning.
୫ । ଭୀଷଣ, ବିକଟ—5. Furious; frightful; violent; fierce.
୬ । ପ୍ରଚଣ୍ଡ; ତୀକ୍ଷ୍ଣ; ଉଗ୍ର—6. Fiery; sharp.
ଟଙ୍କାରିକ ଶ୍ରବ ସରିକ ବାସବ କୋଦଣ୍ଡରୁ ଚଣ୍ଡ ଧନୁ ।
କବିସୂର୍ଯ୍ୟ- କଣୋୟାଚମ୍ପୂ. ୫ ଗୀତ ।
୭ । କଠୋର—7. Severe; hard.
୮ । ଦୁର୍ଦ୍ଦମନୀୟ—8. Indomitable.
୯ । ନିଷ୍ଠୁର—9. Cruel.
୧୦ । ଦୁଷ୍ଟ; ଦୁର୍ବୃତ୍ତ—10 Wicked; wanton.

ଦେ. ବି—ଜଣେ ଉଗ୍ରତେଜା ରାଜସ୍ଥାନନିବାସୀ ରାଜପୁତ ରାଜକୁମାରଙ୍କ ନାମ ( ଏ ପୃଥ୍ୱୀରାଜଙ୍କର ଜଣେ ସାମନ୍ତ ଥିଲେ ହି. ଶବ୍ଦସାଗର)—Name of a prince of Rajputānā.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ଦ |

ପିତୃ ସତ୍ୟ ପାଳ ବଣ୍ଡବେଳା ଚଣ୍ଡ
ରାଜ୍ୟହାସନ କଲେ ବର୍ଜନ । ନନ୍ଦକିଶୋର- କୃଷ୍ଣକୁମାରୀ ।

ଚଣ୍ଡକର—ସଂ. ବି. (ବହୁବ୍ରୀହି; ଚଣ୍ଡ+କର; ତୀକ୍ଷ୍ଣକିରଣ ଯୁକ୍ତ)-ସୂର୍ଯ୍ୟ—
Chandakara The sun

ଚଣ୍ଡକୌଶିକ—ସଂ ବି—୧ । ମୁନି ବିଶେଷ—
Chandakausika 1. Name of a sage.
୨ । ବିଶ୍ୱାମିତ୍ର ଓ ହରିଶ୍ଚନ୍ଦ୍ରଙ୍କ ଆଖ୍ୟାୟିକାଯୁକ୍ତ ନାଟକ-ବିଶେଷ—2. Name of a Sanscrit drama.
୩ । ଜୈନପୁରାଣରେ ବର୍ଣ୍ଣିତ ବିଷଧର ସର୍ପବିଶେଷ—
3. Name of a venomous serpent mentioned in the Jaina scriptures.
[ ଦ୍ର—ଏ ଜୈନଧର୍ମ ପ୍ରବର୍ତ୍ତକ ମହାବୀରସ୍ୱାମୀଙ୍କୁ ଦର୍ଶନ କରି ହିଂସାବୃତ୍ତି ତ୍ୟାଗକରି ଜୀବମାନଙ୍କୁ ଆଉ ଦଂଶନ କଲା ନାହିଁ ଓ ସବୁବେଳେ ନିଜ ଗାତରେ ପଡ଼ି ରହୁଥାଏ । ତାଙ୍କୁ ଏପରି ନିଶ୍ଚଳ ଦେଖି ତା ଦେହଯାକ ପିମ୍ପୁଡ଼ି ବେଢ଼ିଲେ, ତଥାପି ସେ କଡ଼ ଲେଉଟାଇଲା ନାହିଁ—ହି. ଶବ୍ଦସାଗର । ]

ଚଣ୍ଡଚାମୁଣ୍ଡ—ସଂ. ବି—ଶିବଙ୍କର ଭୀଷଣ ଅନୁଚରଦ୍ୱୟ—
Chandachāmunda Two of the fierce attendants of Śiba.
ଦେ. ବି—ଦୁର୍ଦ୍ଦାନ୍ତ ଅନୁଚର—
The fierce attendant of a person.

ଚଣ୍ଡତା—ସଂ. ବି (ଚଣ୍ଡ+ଭାବ. ତା)—
Chandatā ୧ । ଭୀଷଣତା—1. Ferocity.
(ଚଣ୍ଡତ୍ୱ—ଅନ୍ୟରୂପ) ୨ । ଦୁଷ୍ଟତା—2. Wickedness.

ଚଣ୍ଡତେଜାଃ—ସଂ. ବିଣ (ବହୁବ୍ରୀହି; ଚଣ୍ଡ+ତେଜସ୍; ୧ମା. ୧ବ)—
Chandatejāh ଉଗ୍ରତେଜାଃ; ଅତ୍ୟନ୍ତ ଶକ୍ତିଶାଳୀ—
Of great prowess.

ଚଣ୍ଡଦକ୍ଷିଣା—ଦେ. ବି—ଦେବତାଙ୍କ ନିକଟରେ ଅର୍ପିତ ଭୋଗରୁ ଚଣ୍ଡଙ୍କ
Chandadakshinā ପାଇଁ କଢ଼ା ହୋଇଥିବା ଅଂଶ, ଯାହା କି ପୂଜକଙ୍କୁ ଦକ୍ଷିଣାରୂପେ ଦିଆଯାଏ; ଚଣ୍ଡବଳି (୩) (ଦେଖ)-
Fixed portion of offering to a Deity which is set apart as 'Chandabali' and which is taken by the officiating priest as his remuneration (usually $\frac{1}{4}$ part).

ଚଣ୍ଡଦୀଧିତି—ସଂ. ବି (ବହୁବ୍ରୀହି; ଚଣ୍ଡ+ଦୀଧିତି; ଯାହାର କିରଣ ଉଗ୍ର)—
Chandadidhiti ସୂର୍ଯ୍ୟ The sun.

ଚଣ୍ଡନାୟିକା—ସଂ. ବି. ସ୍ତ୍ରୀ—୧ । ଦୁର୍ଗା; ଚଣ୍ଡୀ—
Chandanāyikā 1. Goddess Durgā.
୨ । ହିନ୍ଦୁଶାସ୍ତ୍ରବର୍ଣ୍ଣିତ କୋପନସ୍ୱଭାବା ନାୟିକାବିଶେଷ; ନାୟକ ଅନ୍ୟ ନାୟିକା ପ୍ରତି ଆସକ୍ତ ଥିବାର ସୂଚନା ବା ପ୍ରମାଣ ପାଇଲେ ଯେଉଁ ନାୟିକା ନାୟକ ପ୍ରତି ଅତି କ୍ରୁଦ୍ଧ ହୁଏ—2 One of the 8 classes of woman lovers described in the Hindu books; a lady who becomes furious on finding her lover attached to another woman.
୩ । ତାନ୍ତ୍ରିକମାନଙ୍କ ପୂଜିତା ଅଷ୍ଟନାୟିକାଙ୍କ ମଧ୍ୟରୁ ଏକ (ଏ ଦୁର୍ଗାଙ୍କର ସଖୀ—ହି. ଶବ୍ଦସାଗର)—
3. One of the 8 Goddesses worshipped by the Tāntrikas.

ଚଣ୍ଡନୈବିଦ୍ୟ—ଦେ. ବି (ସଂ. ଚଣ୍ଡନୈବେଦ୍ୟର ଅଶୁଦ୍ଧ ଉଚ୍ଚାରଣ)—
Chandanaibidya ଚଣ୍ଡବଳି (ଦେଖ)
Chandabali (See)

ଚଣ୍ଡନୈବେଦ୍ୟ—ସଂ. ବି ( ମ. ପ. ଲୋ; ଚଣ୍ଡଙ୍କ ନାମରେ ଉତ୍ସୃଷ୍ଟ
Chandanaibedya ନୈବେଦ୍ୟ)—ଚଣ୍ଡବଳି (ଦେଖ)
Chandabali (See)

ଚଣ୍ଡବତୀ—ସଂ. ବି. ସ୍ତ୍ରୀ ( ଚଣ୍ଡ+ବତ୍+ସ୍ତ୍ରୀ. ଈ )—
Chandabatī ଚଣ୍ଡନାୟିକା ( ଦେଖ )
Chandanāyikā (See)

ଚଣ୍ଡବଳି—ସଂ. ବି—୧ । ଚଣ୍ଡେଶ୍ୱର; ମହାଦେବଙ୍କ ଅନୁଚରବିଶେଷ—
Chandabali 1. An attendant of Śiba.
[ ଦ—ମହାଦେବଙ୍କୁ ନୈବେଦ୍ୟ ଦେବା ସମୟରେ ନୈବେଦ୍ୟର ଏକଦଶମାଂଶ ଏହାଙ୍କ ନାମରେ ଉତ୍ସର୍ଗ କରାଯାଏ । ]
୨ । ମହାଦେବଙ୍କର ଚଣ୍ଡଦେବତାଙ୍କୁ ନିବେଦିତ ଭୋଗାଂଶ ବା ବଳି; ବିଷ୍ଣୁଙ୍କର ପାର୍ଶ୍ୱଚର ଦେବତାଙ୍କୁ ନିବେଦିତ ଭୋଗାଂଶ—
2. Part of the offering set apart for being given to the principal demigod-attendant of a Deity.
୩ । ଭୋଗ ହେବା ପରେ ନିବେଦିତ ଦ୍ରବ୍ୟରୁ ପୂଜକ ନିଜର ପାରିଶ୍ରମିକ ନିମନ୍ତେ କାଢ଼ି ରଖିବା $\frac{1}{4}$, $\frac{1}{10}$ ବା $\frac{1}{16}$ ଅଂଶ (ଅର୍ଥାତ୍ ଭୋଗ କରିବା ପରେ ଯାହା ଚଣ୍ଡଦେବତାଙ୍କୁ ସ୍ୱତନ୍ତ୍ର ଉତ୍ସର୍ଗ କରାଯାଏ)—
3. A part ($\frac{1}{4}$, $\frac{1}{10}$ or $\frac{1}{16}$) of the offering set apart for Chanda and taken by the priest as his remuneration.
[ଦ୍ର—ଶିବଙ୍କର ଜଣେ ଅନୁଚରଙ୍କ ନାମ ଚଣ୍ଡ ଓ ବିଷ୍ଣୁଙ୍କର ଜଣେ ଅନୁଚରଙ୍କ ନାମ ଚଣ୍ଡ । ଶିବ ବା ବିଷ୍ଣୁଙ୍କୁ କୌଣସି ଦ୍ରବ୍ୟ ମନ୍ତ୍ରାଦି ପାଠପୂର୍ବକ ନିବେଦିତ ହୋଇ ସାରିଲା କ୍ଷଣି ନିବେଦିତ ଦ୍ରବ୍ୟର କିଞ୍ଚିଦଂଶ ଉକ୍ତ ଦ୍ରବ୍ୟରୁ ପୃଥକ୍ ହୋଇ କଢ଼ାଯାଏ ଓ ତାହା ପୁଣି ଚଣ୍ଡଙ୍କ ମନ୍ତ୍ରରେ ଉତ୍ସୃଷ୍ଟ ହୁଏ । ଏହାକୁ ଚଣ୍ଡବଳି କହନ୍ତି । ଚଣ୍ଡଙ୍କ ପାଇଁ ଏହି କଢ଼ା ହେବା ଅଂଶ ପୂଜକ ବା ପୂଜାପଣ୍ଡା ନିଜର ପାରିଶ୍ରମିକ ରୂପେ ନିଏ । ]

ଚଣ୍ଡବିକ୍ରମ—ସଂ. ବି (କର୍ମଧାରୟ; ଚଣ୍ଡ + ବିକ୍ରମ)—ପ୍ରଚଣ୍ଡ ପରାକ୍ରମ—
Chandabikrama Great prowess.

ସାଧାରଣ ଲୋକେ: ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବର୍ଣ୍ଣର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଳବତ' ନ ପାଇଲେ 'ଅଲବତ' ଦେଖିବେ

ବିଣ ପୁ· (ବହୁବ୍ରୀହି) ପ୍ରବଳପ୍ରତାପଶାଳୀ—Fierce in prowess
(ଚଣ୍ଡବିକ୍ରମା-ସ୍ତ୍ରୀ)

**ଚଣ୍ଡମୟୂଖ**—ସଂ. ବି (ବହୁବ୍ରୀହି; ଚଣ୍ଡ+ମୟୂଖ; ଯାହାର କିରଣ ପ୍ରଖର)—
Chaṇḍamayūkha ସୂର୍ଯ୍ୟ—The sun (having fierce rays).

ଚଣ୍ଡମୟୂଖ ମଣ୍ଡଳ ସମାନ, ଗୃହଁ ଗୃହଁ ଯନ୍ତୁଁ ଜଣ ବଦନ ।
କବିସୂର୍ଯ୍ୟ. କବିତାକଲ୍ଲୋଳମା ।

**ଚଣ୍ଡମୁଣ୍ଡ**—ସଂ. ବି. (ଦ୍ୱନ୍ଦ୍ୱ; ଚଣ୍ଡ+ମୁଣ୍ଡ)—ଦୁର୍ଗାଙ୍କ ଦ୍ୱାରା ନିହତ ରାକ୍ଷସ
Chaṇḍamuṇḍa ଭ୍ରାତୃଦ୍ୱୟ—Two fierce and wicked demon brothers killed by Durgā.
[ଦ୍ର—ଏହାଙ୍କ ବଧ ବିଷୟ ଚଣ୍ଡୀପୁରାଣରେ ବର୍ଣ୍ଣିତ ହୋଇଅଛି । ଏ ଦୁହେଁ ଶୁମ୍ଭ ନିଶୁମ୍ଭ ଦୈତ୍ୟଙ୍କର ସେନାପତି ଥିଲେ]
ଦେ. ବି—ଅତି ଦୁଷ୍ଟ ବ୍ୟକ୍ତି—A very wicked person

**ଚଣ୍ଡମୁଣ୍ଡା**—ସଂ. ବି. ସ୍ତ୍ରୀ (ଚଣ୍ଡ+ମୁଣ୍ଡ+ଅ; ଯେ ଚଣ୍ଡମୁଣ୍ଡ ରାକ୍ଷସ ଦ୍ୱୟଙ୍କୁ
Chaṇḍamuṇḍā ବଧ କରିଥିଲେ)—
ଚଣ୍ଡୀ; ଚାମୁଣ୍ଡା (ହି. ଶବ୍ଦସାଗର)—An incarnation of Durgā.

**ଚଣ୍ଡରଶ୍ମି**—ସଂ. ବି (ବହୁବ୍ରୀହି; ଚଣ୍ଡ+ରଶ୍ମି)—ଚଣ୍ଡମୟୂଖ (ଦେଖ)—
Chaṇḍaraśmi Chaṇḍamayūkha (See)

**ଚଣ୍ଡଶକ୍ତି**—ସଂ. ବି—୧ । (ବହୁବ୍ରୀହି; ଚଣ୍ଡ+ଶକ୍ତି; ପ୍ରବଳ ପରାକ୍ରମଶାଳୀ)
Chaṇḍaśakti ବଳୀଙ୍କ ସୈନ୍ୟସ୍ଥିତ ଦାନବ ବିଶେଷ—A fierce demon in the army of the demon-king Baḷi.
୨ । (କର୍ମଧା) ପ୍ରବଳ ପରାକ୍ରମ—Great prowess.
ବିଣ ପୁ. ଓ ସ୍ତ୍ରୀ-ପ୍ରଚଣ୍ଡ ପରାକ୍ରମଶାଳୀ—Very powerful or mighty.

**ଚଣ୍ଡା**—ସଂ. ବିଣ. ସ୍ତ୍ରୀ (ଚଣ୍ଡ+ଆ)—ଚଣ୍ଡର ସ୍ତ୍ରୀଲିଙ୍ଗ—
Chaṇḍā Feminine of Chaṇḍa·
ବି. ସ୍ତ୍ରୀ—୧ । କୋପନା ସ୍ତ୍ରୀ—1. A woman of fiery temper; a termagant woman.
୨ । ଅଷ୍ଟନାୟିକା ମଧ୍ୟରୁ ଏକ (ହି. ଶବ୍ଦସାଗର)—
ଚଣ୍ଡନାୟିକା ୨ ଓ ୩. (ଦେଖ)
2. Chaṇḍanāyikā 2 and 3 (See)
୩ । ଶ୍ୱେତକ ନାମକ ସୁଗନ୍ଧ (ହି. ଶବ୍ଦସାଗର)—
3. Name of a scented herb.
୪ । କପିକଚ୍ଛୁ; ବାଇଡଙ୍କ (ହି. ଶବ୍ଦସାଗର)—
4. Cowhage.
୫ । ଶ୍ୱେତଦୂବ (ହି. ଶବ୍ଦସାଗର)—5. The white variety of Duba grass.
୬ । ସଲ୍ପ (ହି. ଶବ୍ଦସାଗର)—6. The Sowa seed.
୭ । ପାନମହୁରି (ହି. ଶବ୍ଦସାଗର)—7. Aniseed.
୮ । ଏକ ପ୍ରାଚୀନ ନଦୀର ନାମ (ହି. ଶବ୍ଦସାଗର)—
8 Name of an ancient river.
ଗ୍ରା (ପଦ୍ୟ) ବିଣ. ପୁଂ.—ଅତି କ୍ରୋଧାନ୍ୱିତ—Very much enraged; fiery with rage.

କାଣି ତାହା ଗଲବେ, କୋପ କରିଣ ସବେ, ମାରୁତି ଅଗ୍ରତେ ମିଳିଲେ ସେ,
ଅତିଚଣ୍ଡା, ମାଇଲେ ଚକ୍ଷୁ କାଣ୍ଡ ଗଣ୍ଡ । ବିଶ୍ୱନାଥ. ବିଚିତ୍ରରାମ ପୃଣ ।

**ଚଣ୍ଡାଂଶୁ**—ସଂ. ବି (କର୍ମଧା; ଚଣ୍ଡ+ଅଂଶୁ)—୧ । ତୀକ୍ଷ୍ଣ କିରଣ—
Chaṇḍāṁśu 1. Sharp rays.
୨ । ସୂର୍ଯ୍ୟକିରଣ—2. Sun's rays.
୩ । (ବହୁବ୍ରୀହି) ସୂର୍ଯ୍ୟ—3. The sun.

ଚଣ୍ଡାଂଶୁକିରଣେ ଶର ଅତିଶୟ—ସ୍ୱଧାନାଥ. ଚଲିକା ।

**ଚଣ୍ଡାତକ**—ସଂ. ବି. (ଚଣ୍ଡା=କୋପନା ସ୍ତ୍ରୀ+ଅତ୍ ଧାତୁ=ଗମନ କରିବା
Chaṇḍātaka +କର୍ତ୍ତୃ, ଅକ)—୧ । ସ୍ତ୍ରୀମାନଙ୍କ ଅର୍ଦ୍ଧୋରୁ (ଜଙ୍ଘ) ପର୍ଯ୍ୟନ୍ତ ଲମ୍ବା ହୋଇ କଣ୍ଟିମାର ପିନ୍ଧା ଯାଇଥିବା ବସ୍ତ୍ର; ଲହଙ୍ଗା—1. Cloth worn tightly round the waist of females and extending half-way to the thighs; a tight half-pant-like dress worn by ladies.
[ଦ୍ର—ଏହାକୁ ପିନ୍ଧିବାଲୋକ ଛଡ଼ା ଅନ୍ୟ କେହି ବ୍ୟକ୍ତି ସହଜରେ ଫିଟାଇ ପାରନ୍ତି ନାହିଁ । ]
୨ । ସ୍ତ୍ରୀମାନଙ୍କ କୁରୁତା; ଚୋଲି (ହି. ଶବ୍ଦସାଗର)—
2 A female jacket.

**ଚଣ୍ଡାଧିକାର**—ସଂ. ବି (ଷଷ୍ଠୀ ତତ୍; ଚଣ୍ଡ+ଅଧିକାର)—୧ । ଦେବତାଙ୍କୁ
Chaṇḍādhikāra ଅର୍ପିତ ହେବା ଭୋଗରୁ ନିର୍ଦ୍ଦିଷ୍ଟ ଅଂଶ (ଚି, ୧୮, ୧୬) ଚଣ୍ଡବଳରୂପେ କଡ଼ା ହୋଇ ସ୍ୱତନ୍ତ୍ର ରଖା ଯିବାର ବିଧି—1. The custom or practice of a fixed portion out of the offering to a Deity being set apart as 'Chaṇḍa.'
[ଦ—ଭୁବନେଶ୍ୱର ଲିଙ୍ଗରାଜ ମହାପ୍ରଭୁଙ୍କ ଭୋଗରେ ଚଣ୍ଡାଧିକାର ନାହିଁ । ]
୨ । ଦେବତାଙ୍କୁ ଅର୍ପିତ ହେବା ନୈବେଦ୍ୟ ବସ୍ତୁ ମଧ୍ୟରୁ ନିଜର ପାରିଶ୍ରମିକ ପାଇଁ ପୂଜକର କେତେକ ଅଂଶ କାଢ଼ି ରଖିବା ଅଧିକାର—2. The right of a worshipping priest taking out a fixed portion out of the offering for his remuneration.

**ଚଣ୍ଡାଳ**—ସଂ. ବି. ପୁଂ (ଚଣ୍ଡ=କ୍ରୁଦ୍ଧ+ଅଲ ଧାତୁ=ପାରଗ ହେବା+
Chaṇḍāla କର୍ତ୍ତୃ. ଅ)—୧ । ଶୂଦ୍ର ଔରସରେ ବ୍ରାହ୍ମଣୀ-
(ଚଣ୍ଡାଲ - ଅନ୍ୟରୂପ) ଗର୍ଭଜାତ ଜାତି ବିଶେଷ—

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ସ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ହ |

ଚଣ୍ଡାଳକ୍ଷ୍ମ | ସଂ. ସ୍ତ୍ରୀ
ଚଣ୍ଡାଳି
ଚଣ୍ଡାଳୁଣୀ—ଦେ ସ୍ତ୍ରୀ

1. A low caste originating from the issue of a Brāhmaṇa woman by a Śūdra male.

[ଦ୍ର—ହିନ୍ଦୁମାନେ ଅବହମାନକାଳରୁ ଚଣ୍ଡାଳ ଜାତିକୁ ଅତି ଘୃଣା-ଚକ୍ଷୁରେ ଦେଖି ଆସୁଅଛନ୍ତି । ଏମାନେ ଅସ୍ପୃଶ୍ୟ, ଏମନ୍ତକି ଏମାନଙ୍କ ଛାଇ ଉଚ୍ଚଜାତୀୟ ହିନ୍ଦୁ ଉପରେ ପଡ଼ିଗଲେ ଉକ୍ତ ହିନ୍ଦୁ ସ୍ନାନ କରି ପବିତ୍ର ହୁଏ । ଏମାନଙ୍କ ବସତି ଗ୍ରାମ ବା ନଗରର ବାହାରେ; ଉଚ୍ଚ ଜାତିମାନେ ଯେଉଁ ବାଟେ ଯିବେ ଓ ଯେଉଁ ପୋଖରୀ ବା କୂଅ ବ୍ୟବହାର କରିବେ ଚଣ୍ଡାଳମାନେ ତାହାର ପାଖ ମାଡ଼ିବେ ନାହିଁ; ହିନ୍ଦୁଙ୍କ ପୂଜିତ ଦେବତାଙ୍କୁ ଏମାନେ ଦର୍ଶନ କରି ପାରିବେ ନାହିଁ ଓ ହିନ୍ଦୁମନ୍ଦିର ମଧ୍ୟକୁ ପଶିବେ ନାହିଁ । ହିନ୍ଦୁ ସ୍ମୃତି ଅନୁସାରେ ଏମାନେ ସୁନା ବା ରୁପାର ବାସନ ବା ଅଳଙ୍କାର ବ୍ୟବହାର କରିପାରିବେ ନାହିଁ, ଏମନ୍ତ କି ଏମାନେ ଉଚ୍ଚଜାତୀୟ ହିନ୍ଦୁଙ୍କୁ ସ୍ୱହସ୍ତରେ ଦାନ ମଧ ଦେଇ ପାରିବେ ନାହିଁ । କୁକୁର ଓ ଗଧ ପାଳିବା, ମୁର୍ଦ୍ଦାର ଓ ମଡ଼ା ଉଠାଇବା, ବାଜା ବଜାଇବା, ଡଲେଇ ଓ ଝୋକେଇ ଆଦି ବୁଣିବା, ପ୍ରାଣଦଣ୍ଡରେ ଦଣ୍ଡିତ ଅପରାଧୀଙ୍କୁ ବଧ କରିବା, ଏମାନଙ୍କ ଜୀବିକା ଥିଲା । ଏମାନେ ଗୋମାଂସଭୋଜୀ ଓ ମଦ୍ୟପାୟୀ । ଯଜ୍ଞ ଓ ଶ୍ରାଦ୍ଧାଦି ଧର୍ମାନୁଷ୍ଠାନକାରୀ ବ୍ୟକ୍ତି ଏମାନଙ୍କୁ ଦେଖିଲେ ବା ଏମାନଙ୍କ ପାଟି ଶୁଣିଲେ ଉକ୍ତ ଅନୁଷ୍ଠାନମାନ ମାଟି ହେଉଥିଲା । ହିନ୍ଦୁ ସମାଜ ଏମାନଙ୍କୁ କୁକୁର, ଘୁଷୁରି ଓ ଗଧ ଆଦିଙ୍କ ଅପେକ୍ଷା ହୀନତର ଦୃଷ୍ଟିରେ ଦେଖୁଥିଲା । ହିନ୍ଦୁ ଗ୍ରାମରେ ରାତିରେ ରହିଯିବା ଚଣ୍ଡାଳଙ୍କୁ ଗ୍ରାମରୁ ତଡ଼ି ଦେବାର ବିଧି ଥିଲା । ବର୍ତ୍ତମାନ ମଧ ଦାକ୍ଷିଣାତ୍ୟରେ ଏମାନଙ୍କୁ ଏହିପରି ହୀନ ଅବସ୍ଥା ଭୋଗିବାକୁ ପଡ଼ୁଅଛି । ଅନେକ ଚଣ୍ଡାଳ ଏହି ସାମାଜିକ ନିର୍ଯ୍ୟାତନ ସହି ନ ପାରି ମୁସଲମାନ୍ ଓ ଖ୍ରୀଷ୍ଟାନ୍ ଧର୍ମ ଗ୍ରହଣ କରୁଥିଲେ । ପାଶ୍ଚାତ୍ୟ ଶିକ୍ଷାର ବିସ୍ତାର ସଙ୍ଗେ ସଙ୍ଗେ ଏମାନଙ୍କ ପ୍ରତି ଉଚ୍ଚ ଜାତୀୟ ହିନ୍ଦୁମାନଙ୍କର ବ୍ୟବହାର କ୍ରମଶଃ ବଦଳୁ ଅଛି । ଦାକ୍ଷିଣାତ୍ୟରେ ଏମାନଙ୍କୁ ପଞ୍ଚମା (ଅର୍ଥାତ୍ ହିନ୍ଦୁ ୪ ବର୍ଣ୍ଣରୁ ବାହାର ପଞ୍ଚମ ଜାତି) ବୋଲାଯାଏ । ମହାତ୍ମା ଗାନ୍ଧୀ ହିନ୍ଦୁ ସମାଜରୁ ଏ ଅସ୍ପୃଶ୍ୟତାକଳଙ୍କ ଲୋପ କରିବାକୁ ଚେଷ୍ଟା କରୁଅଛନ୍ତି । ଏହିଠାରେ ଉଲ୍ଲେଖ କରିବା ଉଚିତ ଯେ ପ୍ରତ୍ୟେକ ହିନ୍ଦୁ ଗୃହସ୍ଥ 'ବୈଶ୍ୱଦେବ' କରିବା ସମୟରେ କୁକୁର (ଶ୍ୱ), ଚଣ୍ଡାଳ (ଶ୍ୱପଚ) ଓ କୁଆ (ବାୟସ) ମାନଙ୍କ ପାଇଁ ଗୃହର ବାହାରେ 'ଅନ୍ନବଳି' ଦେଇ ସାରି ପରେ ଭୋଜନ କରୁଥିଲେ । ]

୨ । ହିନ୍ଦୁମାନଙ୍କର ନୀଚତମ ଅସ୍ପୃଶ୍ୟ ଜାତି—
2. The lowest untouchable caste amongst the Hindus.

ଚାଁଡ଼ାଳ
ଚଁଡାଲ
୩ । ପତିତ ଓ ମହାପାପୀ ବ୍ୟକ୍ତି—3. A reprobate and depraved person.

୪ । ପାପୀ ବ୍ୟକ୍ତି—4. A sinner.

ବିଣ. ପୁଂ—୧ । ପାପକର୍ମୀ—Sinful.

ଚଣ୍ଡାଳତା } ବି
ଚଣ୍ଡାଳତ୍ୱ }
୨ । ନିଷ୍ଠୁର—2. Cruel.
୩ । କ୍ରୁରକର୍ମୀ—3. Doing evil and vile deeds.
୪ । ନୀଚମନାଃ—4. Mean-minded; vile.

ଦେ. ବି—ହାଡ଼ି; ମେହେନ୍ତର ଜାତି—The sweeper-caste (an untouchable class).

[ ଦ୍ର—ଏମାନେ ସାଧାରଣ ସ୍ଥାନରୁ ମଇଳା ଓ ବିଷ୍ଠା ଆଦି କାଢ଼ନ୍ତି, ପାଇଖାନା ସଫା କରନ୍ତି, ମଡ଼ ଓ ମଡ଼ା କାଢ଼ନ୍ତି ଓ ବାଜା ବଜାନ୍ତି । ଏମାନେ ଗୋମାଂସ ଓ ମଦ ଖାଆନ୍ତି । ]

ପ୍ରାଦେ. (ଗଞ୍ଜାମ) ବି—ଗଞ୍ଜାମ ଜିଲ୍ଲାର ପାଠକବିଶେଷ—
A class of low-caste Śūdras in the district of Ganjam.

ଚଣ୍ଡାଳପକ୍ଷୀ—ସଂ. ବି—କାକପକ୍ଷୀ; କୁଆ (ହି. ଶବ୍ଦସାଗର)—
Chaṇḍālapakshī The crow.

ଚଣ୍ଡାଳବଲ୍ଲକୀ—ସଂ. ବି ( ମଧ୍ୟପଦଲୋପୀ; ଚଣ୍ଡାଳ+ବଲ୍ଲକୀ —ଚଣ୍ଡାଳ-
Chaṇḍālaballakī ମାନଙ୍କର ବଜାଇବା ଏକପ୍ରକାର ତାରଯୁକ୍ତ
(ଚଣ୍ଡାଳବୀଣା—ଅନ୍ୟରୂପ) ବାଦ୍ୟ ଯନ୍ତ୍ର)—କଣ୍ଡୋଲ ବୀଣା; କେନ୍ଦରା—
A guitar or lute used by low caste people; the beggars' lute.

ଚଣ୍ଡାଳିକା—ସଂ. ବି. ସ୍ତ୍ରୀ (ଚଣ୍ଡାଳ+କ+ଆ)—୧ । ଦୁର୍ଗା; ଚଣ୍ଡିକା—
Chaṇḍālikā 1. Durga.

୨ । ଚଣ୍ଡାଳବଲ୍ଲକୀ ( ଦେଖ )—
2. Chaṇḍālaballakī ( See )

୩ । ଔଷଧାର୍ଥ ବ୍ୟବହୃତ ବୃକ୍ଷବିଶେଷ (ହି. ଶବ୍ଦସାଗର)—
3. Name of a medicinal tree.

୪ । ଶିମ୍ବାଦି ବର୍ଗର ବର୍ଷାୟୁଃ ବନ୍ୟ ଶାକ ବା କ୍ଷୁପବିଶେଷ—
ବନଚାଁଡ଼ାଳ 4. The Telegraph plant; Desmodium Gajrans.

[ ଦ୍ର—ଏ ଗଛ ୧½ ହାତ ବଢ଼େ; ଶିମ୍ବପରି ପତ୍ର ବି ପର୍ଣ୍ଣି, ପାଖର ଦୁଇ ପର୍ଣ୍ଣି ଗରମ ସମୟରେ ଉପରକୁ ଉଠେ ଓ ଥଣ୍ଡାବେଳେ ତଳକୁ ପଡ଼େ. ଯୋଗେଶ୍ଚନ୍ଦ୍ର । ]

ଚଣ୍ଡାଳିନୀ—ସଂ. ବି. ସ୍ତ୍ରୀ (ଚଣ୍ଡାଳ+ସ୍ତ୍ରୀ. ଇ)—ଚଣ୍ଡାଳୁଣୀ ( ଦେଖ )—
Chaṇḍālinī Chaṇḍāluṇī ( See )
(ଚଣ୍ଡାଳୀ—ଅନ୍ୟରୂପ)

ଚଣ୍ଡାଳୁଣୀ—ଦେ. ବି. ସ୍ତ୍ରୀ ( ସଂ. ଚଣ୍ଡାଳକ୍ଷ୍ମ; ଚଣ୍ଡାଳ ଶବ୍ଦରେ ଓଡ଼ିଆ
Chaṇḍāluṇī ସ୍ତ୍ରୀବାଚକ ଉଣୀ ପ୍ରତ୍ୟୟ ଯୋଗ; ତୁଳ. ଡମୁଣୀ,
ଚାଁଡ଼ାଳିନୀ ଶବରୁଣୀ, କନ୍ଧୁଣୀ)—୧ । ଚଣ୍ଡାଳର ସ୍ତ୍ରୀ—
ଚଣ୍ଡାଲିନ 1. A woman of the 'chaṇḍāla' caste.

ଗୃହଜାତଯାକ ହେବେକ୍ତ ଏକଜାତ
କହିବେ ଚଣ୍ଡାଳୁଣୀ ସଙ୍ଗରେ ସୁରତ—କୃଷ୍ଣସିଂହ. ମହାଭାରତ. ବନ ।

୨ । ମେହେନ୍ତରାଣୀ—2. A sweeper woman.

୩ । ପାପିନୀ—3. Sinful woman; a female sinner.

୪ । ନିଷ୍ଠୁର ସ୍ତ୍ରୀ—4. Hard-hearted or cruel woman.

୫ । ଦୁଷ୍ଟା ସ୍ତ୍ରୀ, ନଷ୍ଟା ସ୍ତ୍ରୀ, ଦୁଷ୍କର୍ମକାରିଣୀ ସ୍ତ୍ରୀ—5. A reprobate or depraved woman.

**ଚଣ୍ଡିଆ**—ଦେ. ବିଣ. ପୁଂ ( ସଂ. ଚଣ୍ଡ )—୧ । ଦୁଷ୍ଟ; କ୍ରୂରକର୍ମୀ, ଲୁଚୁଚୁଣ୍ଡିଆ—1. Wicked (person); wanton.
Chandiā
(ଚଣ୍ଡେଇ—ସ୍ତ୍ରୀ) ୨ । ଭୂଲ—2. Vagabond.

**ଚଣ୍ଡିକା**—ସଂ. ବି (ଚଣ୍ଡ+କ+ଆ)—୧ । ଚଣ୍ଡୀ (ଦେଖ)
Chandikā 1. Chandi (See).

୨ । ଗାୟତ୍ରୀଦେବୀ (ହି. ଶବ୍ଦସାଗର)—2. The Gāyatri formula personified.

ସଂ. ବିଣ. ସ୍ତ୍ରୀ—୧ । କୋପନା; ଦୁଷ୍ଟା—1. Shrewish; irritable (woman).

୨ । କଳହପ୍ରିୟା—2. Quarrelsome (woman).

**ଚଣ୍ଡିମା**—ସଂ. ବି (ଚଣ୍ଡ+ଭାବେ. ଇମନ୍ ୧ମା. ୧ବ.)—
Chandimā ୧ । ଚଣ୍ଡତା, ପ୍ରଚଣ୍ଡତା—1. Ferocity.

୨ । ଉଗ୍ରତା—2. Violence.

୩ । କ୍ରୋଧ—3. Wrath; passion.

୪ । କୋପନସ୍ୱଭାବ—4. Wrathfulness.

**ଚଣ୍ଡୀ**—ସଂ. ବି. (ଚଣ୍ଡ+ଈ)—୧ । ଦୁର୍ଗା; ପାର୍ବତୀଙ୍କର ଅସୁରବିଧ୍ୱଂସୀ ଦଶଭୁଜବିଶିଷ୍ଟ ଅବତାର—1. Goddess Durgā (in her incarnation of demon-killer with 10 arms).
Chandi

[ଦ୍ର—ଓଡ଼ିଶାର ୮ କୋଟ ସ୍ଥାନରେ ଚଣ୍ଡୀଙ୍କର ପ୍ରଧାନ ବିଗ୍ରହ ଅଛି । ବାଣପୁରରେ ଭଗବତୀ, ପୁରୀରେ ବିମଳା, କାକଟପୁରରେ ମଙ୍ଗଳା, ଝଙ୍କଡ଼ରେ ଶାରଳା, ଯାଜପୁରରେ ବିରଜା, ବାଙ୍କିରେ ଚର୍ଚ୍ଚିକା, ସମ୍ବଲପୁରରେ ସମଲାଇ, ଓ ଭାଲଚେରରେ ହିଙ୍ଗୁଳା । ଏମାନେ ପରମ ବୈଷ୍ଣବୀ ଓ ହାତରେ ଜପମାଳା ଧରି ଅଛନ୍ତି ।]

୨ । ଅତି କୋପନା ସ୍ତ୍ରୀ—2. A wrathful or termagant woman; a shrewish woman; virago.

ବାମକର କପୋଳେ ଚଣ୍ଡୀସ୍ୱରୂପା—ଉଞ୍ଜ. ବୈଦେହୀଶବିଳାସ ।

୩ । କଳହପ୍ରିୟା ସ୍ତ୍ରୀ—3. A quarrelsome woman.

୪ । ତ୍ରୟୋଦଶାକ୍ଷର ଛନ୍ଦୋବିଶେଷ—4. Name of a Sanskrit metre of 13 syllables.

ଦେ.ବି.—(ଚଣ୍ଡୀପୁରାଣ) ମାର୍କଣ୍ଡେୟ ପୁରାଣାନ୍ତର୍ଗତ ଦେବୀମାହାତ୍ମ୍ୟ; ଦୁର୍ଗାଙ୍କର ଶୁମ୍ଭନିଶୁମ୍ଭ, ମହିଷାସୁର, ଚଣ୍ଡମୁଣ୍ଡାଦି ଅସୁରବଧକୀର୍ତ୍ତିନାତ୍ମକ ଗ୍ରନ୍ଥ—A part of the Mārkandeya Purāna describing the prowess and doings of Durgā in killing many wicked demons.

ହେବ ହବସ ଏକଷଣ ଷଣାଦାବୃଦ୍ଧିଙ୍କ ନଣ୍ଡୀ ଗୁଣାଇବ—ରଞ୍ଜ. ପ୍ରେମସୁଧାନିଧି ।

[ଦ୍ର—ଦୁର୍ଗା ଚଣ୍ଡୀରୂପରେ ଶୁମ୍ଭନିଶୁମ୍ଭ, ରକ୍ତବୀଜ, ଚଣ୍ଡମୁଣ୍ଡ, ମହିଷାସୁର ପ୍ରଭୃତି ରାକ୍ଷସମାନଙ୍କୁ ବଧ କରିଥିଲେ ।]

**ଚଣ୍ଡୀ ଗୁଣା**—ଦେ. ବି—୧ । ଅନୁଚ୍ଚ ସ୍ୱରରେ ଚଣ୍ଡୀପାଠ—
Chandi guna 1. Recital of 'Chandi Purāna' in a low voice.

୨ । ( ଲକ୍ଷଣାର୍ଥ ) ଚଣ୍ଡୀଗୁଣିବା ଭଳି କୋପରେ ଅନୁଚ୍ଚ ଗୁଣୁଗୁଣୁ ଶବ୍ଦ କରିବା—2. Grumbling due to rage.

ଦେ. ବିଣ—ଚଣ୍ଡୀପାଠକାରୀ—Reciting the Chandi Purāna.

**ଚଣ୍ଡୀ ଗୁଣିବା**—ଦେ. କ୍ରି—୧ । ଅନୁଚ୍ଚ ସ୍ୱରରେ ଚଣ୍ଡୀପାଠ କରିବା—
Chandi gunibā 1. To recite or read 'Chandi-purāna' in a low voice.

୨ । ( ବ୍ୟଙ୍ଗ୍ୟ; ଲକ୍ଷଣାର୍ଥ ) କ୍ରୋଧ ବା ଅପମାନରେ ଗୁଣୁଗୁଣୁ ଶବ୍ଦ କରିବା—2. ( figurative ) To grumble with rage.

**ଚଣ୍ଡୀଦାସ**—ସଂ. ବି—ଚଣ୍ଡୀଙ୍କର ସେବକ—
Chandidāsa A worshipper devoted to Goddess Chandi.

ଦେ ବି—ପଞ୍ଚଦଶ ଶତାବ୍ଦୀର ବଙ୍ଗୀୟ କବିବିଶେଷ—A Bengalee classical poet of the 15th century.

[ଦ୍ର—ଏ ଜାତିରେ ବ୍ରାହ୍ମଣ ଥିଲେ । ବୀରଭୂମି ଜିଲ୍ଲାରେ ଖ୍ରୀ. ୧୪୧୭ ରେ ଜନ୍ମ ଗ୍ରହଣ କରି ଖ୍ରୀ ୧୪୭୭ ରେ ମୃତ ହୋଇଥିଲେ । ଏ ଗୀତଚନ୍ଦ୍ରାମଣି ନାମକ ବଙ୍ଗଳା ଗ୍ରନ୍ଥର ରଚୟିତା । ଏ ବଙ୍ଗୀୟ କବି ବିଦ୍ୟାପତିଙ୍କ ସମସାମୟିକ ଓ ଚୈତନ୍ୟଙ୍କ ପୂର୍ବବର୍ତ୍ତୀ । ଚଣ୍ଡୀଦାସଙ୍କ ସମୟ ବଙ୍ଗଳା ସାହିତ୍ୟ ରଚନାର ଆଦିକାଳ । ଏହାଙ୍କ ରଚନା ସରଳ ଓ ମଧୁର ଥିଲା । ଏହାଙ୍କ ଗୀତମାନ ପ୍ରତ୍ୟେକ ବଙ୍ଗୀୟ ସାହିତ୍ୟିକଙ୍କର ଆଦରର ସାମଗ୍ରୀ ।]

**ଚଣ୍ଡୀପର୍ବ**—ଦେ. ବି—ଦୁର୍ଗୋତ୍ସବ—
Chandiparba The festival of Durgāpūjā.

ବଢ଼ାଇଲ ବେଗେ ଚଣ୍ଡୀପର୍ବ କାଳ ପଶ୍ଚ ଶଶି
ରକ୍ତଧାର ପାନବୋଲେ ଓଷ୍ଠ ରଞ୍ଜନ । ଉଞ୍ଜ. ବୈଦେହୀଶବିଳାସ ।

**ଚଣ୍ଡୀପାଠ**—ସଂ. ବି. (୬ଷ୍ଠୀ ତତ୍; ଚଣ୍ଡୀ+ପାଠ)—
Chandipātha ଦେବୀମାହାତ୍ମ୍ୟ ଗ୍ରନ୍ଥର ଆବୃତ୍ତି—Recital of the text of Chandi Purāna.

**ଚଣ୍ଡୀପୂଜା**—ସଂ. ବି. ( ୬ଷ୍ଠୀ ତତ୍; ଚଣ୍ଡୀ+ପୂଜା )—୧ । ଚଣ୍ଡୀ ବା ଦୁର୍ଗାଙ୍କର ଉପାସନା—2. The worship of the Goddess Chandi.
Chandipūjā

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଡ଼ | ର୍‌,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଘ |
| ୨ | ଈ | ଊ | ଋ | ଳୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ତ |

୨ । ଦୁର୍ଗାପୂଜା; ଶାରଦୀୟ ଦୁର୍ଗୋତ୍ସବ—2. The annual autumnal ceremony of worshipping Goddess Durgā.

**ଚଣ୍ଡୀପୁରାଣ**—ସଂ. ବି.—( ୬ଷ୍ଠୀ ତତ୍; ଚଣ୍ଡୀ + ପୁରାଣ )— ମାର୍କଣ୍ଡେୟ
Chaṇḍipurāṇa ପୁରାଣାନ୍ତର୍ଗତ ଦେବୀମାହାତ୍ମ୍ୟ—
A part of the Mārkaṇḍeya Purāṇa describing the prowess and doings of Durgā in her incarnation of Chaṇḍi.

[ ଦ୍ର—ଏହି ଆଖ୍ୟାୟିକାରେ ବର୍ଣ୍ଣିତ ହୋଇ ଅଛି ଯେ ସୁରଥ ନାମରେ ଜଣେ ପ୍ରଜାପାଳକ ରାଜା ଥିଲେ; ସେ ଶତ୍ରୁମାନଙ୍କଦ୍ୱାରା ପରାଜିତ ହୋଇ ଅମାତ୍ୟାଦିପରିତ୍ୟକ୍ତ ଓ ଭ୍ରଷ୍ଟରାଜ୍ୟ ହେଲେ । ଅମାତ୍ୟାଦିଙ୍କ ଦ୍ୱାରା ତାଙ୍କ ଧନ ଅପହୃତ ହେବାରୁ ସେ ମୃଗୟାଛଳରେ ବଣକୁ ଯାଇ କୌଣସି ମୁନିଙ୍କ ଆଶ୍ରମରେ କିଛିକାଳ ଅବସ୍ଥାନ କଲେ; ତଥାପି ନିଜ ରାଜ୍ୟର ମମତା ତାଙ୍କ ଚିତ୍ତକୁ ଆକୃଷ୍ଟ କରୁଥାଏ । ଏହି ସମୟରେ ସ୍ତ୍ରୀପୁତ୍ରମାନଙ୍କଦ୍ୱାରା ଧନଲୋଭରେ ବିତାଡ଼ିତ ସମାଧି ନାମରେ ଜଣେ ବୈଶ୍ୟ ସେଠାରେ ପହଞ୍ଚିଲେ; ସେ ମଧ୍ୟ ସର୍ବଦା ତ୍ୟକ୍ତ ଗୃହର ମମତାଦ୍ୱାରା ବ୍ୟଥିତ ହେଉଥାଆନ୍ତି । ସୁରଥ ଏହା ଦେଖି ତାଙ୍କ ଆଶ୍ରୟଦାତା ମୁନିଙ୍କୁ ପଚାରିଲେ:—ଯେଉଁ ଅମାତ୍ୟ, ସ୍ତ୍ରୀ ଓ ପୁତ୍ର ଆଦି ଆମ୍ଭମାନଙ୍କ ପ୍ରତି ଅତ୍ୟାଚାର କରିବାରୁ ଆମ୍ଭେମାନେ ଘରୁ ପଳାଇ ଆସି ଏ ଆଶ୍ରମରେ ଆଶ୍ରୟ ନେଇ ଅଛୁଁ ପୁଣି ସେହି ଦୁର୍ବୃତ୍ତମାନଙ୍କ ପ୍ରତି ଆମ୍ଭମାନଙ୍କ ମନ ଆକୃଷ୍ଟ ହେଉଅଛି କାହିଁକି ? ମୁନି ଉତ୍ତର କଲେ:—ବିଷ୍ଣୁଙ୍କର ମହାମାୟା ପ୍ରଭାବରୁ ପ୍ରାଣିଗଣ ମମତାରୂପ ଆବର୍ତ୍ତରେ ଓ ସଂସାରର ମୋହଗର୍ତ୍ତରେ ପଡ଼ିଅଛନ୍ତି; ଏହି ବିଷ୍ଣୁମାୟା ଜଗତକୁ ସୃଷ୍ଟି କରିଅଛି, ପାଳନ କରୁଅଛି ଓ ସଂହାର କରୁଅଛି; ଏହି ମାୟା ଜୀବକୁ ମୋହରେ ପକାଏ, ବିଶ୍ୱବାସୀଙ୍କୁ ମୁକ୍ତି ପ୍ରଦାନ କରେ ଓ ବିଶ୍ୱକୁ ବ୍ୟାପି ଅଛି; ରାଜା ପଚାରିଲେ:—ସେ ମହାମାୟା କିଏ ? ମୁନି ସେହି ଯୋଗମାୟାଙ୍କ ସ୍ୱରୂପ ଓ ଭିନ୍ନ ଭିନ୍ନ ଆବିର୍ଭାବ ଚଣ୍ଡୀପୁରାଣରେ ବର୍ଣ୍ଣନା କଲେ:—ମହାପ୍ରଳୟରେ ବିଷ୍ଣୁଙ୍କୁ ଅଭିଭୂତ କରିଥିବା ଯୋଗନିଦ୍ରା ସେହି ଅଟନ୍ତି ଓ ଦେବତାମାନଙ୍କ କାର୍ଯ୍ୟସିଦ୍ଧି କରିବା ପାଇଁ ଦୁଷ୍ଟ ଦାନବମାନଙ୍କୁ ବଧ କରିବାକୁ ସେ ଯୁଗେଯୁଗେ ପୃଥିବୀରେ ଅବତାର ଗ୍ରହଣ କରନ୍ତି; ସେ ବିଷ୍ଣୁଙ୍କର ଓ ଅନ୍ୟ ଦେବତାମାନଙ୍କର ଶକ୍ତିସଂଭୂତା ଓ ଦେବଶକ୍ତିର ସମଷ୍ଟି ଅଟନ୍ତି; ସେ ମହିଷାସୁର, ଧୂମ୍ରଲୋଚନ, ଚଣ୍ଡ, ମୁଣ୍ଡ, ରକ୍ତବୀଜ, ଶୁମ୍ଭ ଓ ନିଶୁମ୍ଭ ରାକ୍ଷସଙ୍କୁ ବଧ କରିଥିଲେ ଓ ପରେ ପୁଣି ଯେତେବେଳେ ରାକ୍ଷସମାନେ ମାତିବେ ସେ ସେହି ରାକ୍ଷସମାନଙ୍କୁ ବଧ କରିବାକୁ ପୃଥିବୀରେ ଅବତୀର୍ଣ୍ଣ ହେବେ ବୋଲି ଦେବତାମାନଙ୍କୁ ବର ଦେଇ ଅଛନ୍ତି; ତାଙ୍କର ପୂଜା କଲେ ମନୁଷ୍ୟମାନେ ସର୍ବ ପାପ, ସର୍ବ ଦୁଃଖ ଓ ସର୍ବ ଦୁର୍ଦ୍ଦଶାରୁ ମୁକ୍ତ ହେବେ । ସୁରଥ ଓ ସମାଧି ମୁନିଙ୍କଠାରୁ ଏହା ଶୁଣି ସେହି ଦୁର୍ଗାଙ୍କର ମୃଣ୍ମୟୀ ପ୍ରତିମା ନିର୍ମାଣ ଓ ପ୍ରତିଷ୍ଠା କରି ପୂଜା କଲେ । ଏହି ପୂଜାର ଫଳରେ ସୁରଥ ରାଜ୍ୟ ପାଇଲେ, ବୈଶ୍ୟ ମଧ୍ୟ ଗୃହକୁ ଫେରିଯାଇ ସୁଖଭୋଗ କଲେ । ଏହି ସବୁ ବିଷୟ ୧୩ ଅଧ୍ୟାୟରେ ଚଣ୍ଡୀପୁରାଣରେ ବର୍ଣ୍ଣିତ ହୋଇଅଛି । ]

**ଚଣ୍ଡୀମଣ୍ଡପ**—ସଂ. ବି. ( ୬ଷ୍ଠୀ ତତ୍; ଚଣ୍ଡୀ + ମଣ୍ଡପ )—
Chaṇḍimaṇḍapa ୧ । ଯେଉଁ ମଣ୍ଡପ ବା ମେଲିରେ ଚଣ୍ଡୀପାଠ ଓ ବାର୍ଷିକ ଶାରଦୀୟ ଦୁର୍ଗାପୂଜା ହୁଏ—
1 An open thatched pavillion where Chaṇḍi Purāṇa is recited and Durga is worshipped during the month of Āświna.

୨ । ଗ୍ରାମର ସାଧାରଣ ଠାକୁରାଣୀ-ମଣ୍ଡପ—
2. The temple of the village Goddess where villagers perform their common worship and assemble for social purposes.

[ ଦ୍ର—ବଙ୍ଗଦେଶରେ ଅନେକ ଗ୍ରାମରେ ଚଣ୍ଡୀମଣ୍ଡପ ଅଛି । ଓଡ଼ିଶାରେ ଅନେକ ଗ୍ରାମରେ 'ଭାଗବତଟୁଙ୍ଗୀ' ଓ ଗ୍ରାମ ଦେବତାଙ୍କ ମଣ୍ଡପ ବା ମନ୍ଦିରମାନ ଅଛି । ସାହେବମାନଙ୍କ 'କ୍ଲବ୍' ଘରେ ଯେଉଁପରି ଗ୍ରାମବାସୀ ବା ସ୍ଥାନୀୟ ସାଧାରଣ ଲୋକେ ସନ୍ଧ୍ୟା ପରେ ସମ୍ମିଳିତ ହୋଇ ବୈଠକ କରନ୍ତି ଓ ନାନାଦି ବିଷୟର ଚର୍ଚ୍ଚା କରନ୍ତି, ବଙ୍ଗଦେଶରେ ଚଣ୍ଡୀମଣ୍ଡପରେ ଓ ଓଡ଼ିଶାର ଭାଗବତଟୁଙ୍ଗୀ ଓ ଠାକୁରଘର ମାନଙ୍କରେ ସେହିପରି ହୁଏ । ]

**ଚଣ୍ଡୁ**—ସଂ. ବି. ( ଚଣ୍ଡ ଧାତୁ + ସଂଜ୍ଞାର୍ଥେ ଉ )—ଇନ୍ଦୁର; ମୂଷା—
Chaṇḍu Rat.

চণ্ডু ଦେ. ବି. (ସଂ. ଚଣ୍ଡ = ଉଗ୍ର)—ଅଫିମରେ ପ୍ରସ୍ତୁତ ଧୂମ୍ରପାନପୂର୍ବକ
**चंडू** ସେବିତ ଉଗ୍ର ମାଦକଦ୍ରବ୍ୟବିଶେଷ—A highly intoxicating smoking preparation of opium; chandoo.

[ ଦ୍ର—ଏହା ଗୁଲି ବା ମଦତ୍ ଅପେକ୍ଷା ଉଗ୍ରତର ନିଶା ଜନ୍ମାଏ; ଗୁଲି ପରି ହୁକ୍କାନଳୀଦ୍ୱାରା ଚଣ୍ଡୁର ଧୂମ୍ରପାନ କରାଯାଏ; ଚୀନାମାନେ ବେଶି ଚଣ୍ଡୁ ପିଅନ୍ତି । ଆଫଗାନିସ୍ଥାନରୁ ଚଣ୍ଡୁ ତିଆରି ହୋଇ ହିନ୍ଦୁସ୍ଥାନକୁ ଆସେ । ଅଫିମକୁ ପାଣିଆଁ କରି ଛାଣି ନିଆଁରେ ବସାଇ ଲୋକେ ଚଣ୍ଡୁ ତିଆରି କରନ୍ତି— ହି. ଶବ୍ଦସାଗର; ଏ ଶବ୍ଦ ଇଂରେଜୀ ଭାଷାରେ ମଧ୍ୟ ଚଳିଲାଣି । ]

**ଚଣ୍ଡୁଖୋର**—ଦେ. ବିଣ—ଯେ ଚଣ୍ଡୁ ନାମକ ମାଦକଦ୍ରବ୍ୟର ଧୂମ୍ରପାନ
Chaṇḍukhor କରେ; ଯେ ଚଣ୍ଡୁ ପିଏ—Chaṇḍu-smoker.
চণ্ডুখোর
**चंडूखोर; चंडूल**
(ଚଣ୍ଡୁବାଜ୍—ଅନ୍ୟରୂପ)

**ଚଣ୍ଡୁଲ**—ସଂ. ବି—ଏକପ୍ରକାର ସୁନ୍ଦର ଭରଡ଼ିଆ ପକ୍ଷୀ—
Chaṇḍuḷa A kind of beautiful lark; the skylark; Alonda Gulgula.
(ଚଣ୍ଡୂଳ—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚହ୍ନିର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅଗିଆ ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବର୍ତ୍ତ' ନ ପାଇଲେ 'ଅଲ୍‌ବର୍ତ୍ତ' ଦେଖିବେ ।

[ ଦ୍ର—ଏହାର ବର୍ଣ୍ଣ ମାଟିଆ; ଏ ଗଛଉପରେ ସୁନ୍ଦର ବସା ନିର୍ମାଣ କରେ ଓ ଏହାର ସ୍ୱର ସୁମଧୁର । ]

**ଚଣ୍ଡୁଶ୍**—ଦେ. ବି—ଚଣ୍ଡୁ ( ଦେଖ )
Chandus — Chandu ( See )

**ଚଣ୍ଡେଶ୍ୱର**—ସଂ. ବି ( ଚଣ୍ଡ + ଈଶ୍ୱର )—୧ । ଶିବଙ୍କର ଅନୁଚରବିଶେଷ—1. The chief attendant of Siba and the participator of a fixed portion of food offered to Siba.
Cnandeswara

[ ଦ୍ର—ମହାଦେବଙ୍କୁ ନିବେଦିତ ଦ୍ରବ୍ୟର ଏକଚତୁର୍ଥାଂଶ ବା ଏକାଦଶମାଂଶ ବା ଷୋଡ଼ଶାଂଶ ଏହାଙ୍କୁ ଉତ୍ସର୍ଗ କରାଯାଏ । ]

୨ । ରକ୍ତବର୍ଣ୍ଣ ଶସ୍ତ୍ରଧାରୀ ଶିବଙ୍କର ଏକରୂପ (ହି. ଶବ୍ଦସାଗର); ଶିବମୂର୍ତ୍ତିବିଶେଷ—2. A red-tinted image or incarnation of Siba

୩ । ଭୁବନେଶ୍ୱର ଲିଙ୍ଗରାଜଙ୍କ ବେଢ଼ା ମଧ୍ୟରେ ଈଶାନକୋଣରେ ସ୍ୱତନ୍ତ୍ର ମନ୍ଦିରରେ ଅବସ୍ଥିତ ଶିବଲିଙ୍ଗବିଶେଷ – 3. One of the images representing God Siba set up in a separate temple, to the north-east of the Lingaraja temple of Bhubaneswar, to whom separate offering isd aily offered

[ ଦ୍ର—ଭୁବନେଶ୍ୱରସ୍ଥ ଲିଙ୍ଗରାଜ ସାଧାରଣ ଶିବ ନ ଥାଇ ସ୍ୱୟମ୍ଭୂ ଲିଙ୍ଗ ଅଟନ୍ତି, ଅତଏବ ତାଙ୍କ ଭୋଗରୁ ନିର୍ଦ୍ଦିଷ୍ଟ ଅଂଶ ଚଣ୍ଡେଶ୍ୱରଙ୍କୁ ଉତ୍ସୃଷ୍ଟ ହୁଏ ନାହିଁ; ସେ ସ୍ୱୟମ୍ଭୂ ଲିଙ୍ଗ ଥିବାରୁ ତାଙ୍କ ଭୋଗରେ ଚଣ୍ଡାଧିକାର ନାହିଁ । ଏଥିପାଇଁ ସାଧାରଣ ଶିବଙ୍କ ପ୍ରସାଦ ଅଗ୍ରାହ୍ୟ ହେଲେ ହିଁ ମଧ୍ୟ ଲିଙ୍ଗରାଜଙ୍କ ପ୍ରସାଦକୁ ସମସ୍ତେ ଖାଇ ପାରନ୍ତି (ଶିବପୁରାଣ, ଲିଙ୍ଗପୁରାଣ) । ଲିଙ୍ଗରାଜଙ୍କ ଭୋଗରୁ ଚଣ୍ଡ କାଢ଼ାଯାଉ ନ ଥିବାରୁ ଏଠାରେ ଚଣ୍ଡେଶ୍ୱରଙ୍କୁ ସ୍ୱତନ୍ତ୍ର ଭୋଗ ଦିଆ ଯାଏ ।]

**ଚତ୍** (ଧାତୁ)—ସଂ—୧ । ପ୍ରାର୍ଥନା କରିବା—1. To pray.
Chat (root) ୨ । ଗମନ କରିବା – 2. To go.
୩ । ଲୁଚିବା—3. To hide one's self (M. W.).
୪ । ମାଗିବା—4. To beg.

**ଚତର**—ଦେ. ବି. (ସଂ. ଚତ୍ୱର;ଚତୁଃ + ତର୍କ)-୧ । ଗୋଲ ସମତଳ ଭୂମି—
Chatara 1. A circular plot of level ground.
চাতাল
ତଲୈୟା
୨ । ଜଳାଶୟ ମଧ୍ୟରେ ଦଳଆଦି ଦ୍ୱାରା ଆବୃତ ହୋଇ ନ ଥିବା ଜଳର ଉପରଭାଗର ବିସ୍ତୃତ ଅଂଶ—
2. A wide expanse or plot of the surface of a tank not overgrown or covered with aquatic grass or reeds.
୩ । ଜଳସଞ୍ଚୟ କମନ୍ତେ ଭୂମିରେ ଖୋଳା ହୋଇଥିବା ଅଗଭୀର ଚତୁଷ୍କୋଣିଆ ଗାତ—3. A square shallow pit dug in the ground for storing oozing water.
୪ । ଅଗଭୀର ବଡ଼ ଜଳାଶୟ; ଜୋଡ଼—
4. A wide expanse of shallow water.

ଦେ. ବିଣ—୧ । ବିସ୍ତୃତ—1. Extensive; wide.
୨ । ବିସ୍ତୃତ ବହୁଶାଖାଯୁକ୍ତ(ବୃକ୍ଷ); ଝାମ୍ପୁଲ—2 Bushy (tree); spreading over a large area.

**ଚତରାଇବା**—ଦେ. କ୍ରି ( ସଂ. ଚତ୍ୱର; ସଂ. ଛତ୍ର )—
Chataraiba ୧ । (ଅକର୍ମକ) ଅଧିକତର ବିସ୍ତୃତ କରିବା—
ছাতলান 1. To make more extensive; to widen.
छितराना ୨ । (ଅକର୍ମକ) ବହୁ ଶାଖା ମେଲିବା; ଛତା ପରି ବିସ୍ତୃତ (ଚତରେଇବା—ଅନ୍ୟରୂପ) ହେବା—2. To bifurcate or shoot out or spread into numerous branches like an umbrella.
୩ । (ସକର୍ମକ) ଖେଳାଇ ଦେବା—
3. To thin out; to scatter; to spread.

**ଚତରି** – ପ୍ରାଦେ. ( ଆଠମଲ୍ଲିକ ) ବି—ଚତୁପଦି; ପତ୍ରଠୋଲି—
Chatari A pot or cup made of leaves sewn together

**ଚତୁଃ**—ସଂ. ବି ଓ ବିଣ (ସଂଖ୍ୟାବାଚକ)—ଚାରି—
Chatuh Four.

[ ଦ୍ର—ଚତୁଃର ବ୍ୟବହାର କେବଳ ସଂସ୍କୃତରେ ହୁଏ, କିନ୍ତୁ ଓଡ଼ିଆରେ ଏଥିର ସ୍ୱତନ୍ତ୍ର ବ୍ୟବହାର ନାହିଁ; ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବା ସନ୍ଧି ହୋଇ ବ୍ୟବହୃତ ହେବା ଶବ୍ଦମାନ ଓଡ଼ିଆରେ ଚଳେ । ଯଥା—ଚତୁଃସୀମା; ଚତୁରଙ୍ଗ । ]

**ଚତୁଃପଞ୍ଚାଶ**—ସଂ. ବିଣ. (ଚତୁଃ+ପଞ୍ଚାଶତ୍ + ପୂରଣାର୍ଥ ଅ. )—
Chatuhpanchasa ୫୪ର ପୂରକ—Fiftyfourth (M.W).
( ଚତୁଷ୍ପଞ୍ଚାଶ—ଅନ୍ୟରୂପ )

**ଚତୁଃପଞ୍ଚାଶତ୍**—ସଂ. ବି. ( ମ. ପ. ଲୋ; ଚତୁଃ ଅଧିକ ପଞ୍ଚାଶତ୍ )—
Chatuhpanchasat ପଚାଶରୁ ଚାରି ଅଧିକ ସଂଖ୍ୟା; ଚଉବନ;
( ଚତୁଷ୍ପଞ୍ଚାଶତ୍—ଅନ୍ୟରୂପ ) ୫୪—54; Fiftyfour.
ସଂ ବିଣ—ଚଉବନ ସଂଖ୍ୟକ—
Numbering fiftyfour.

**ଚତୁଃପଞ୍ଚାଶତ୍ତମ**—ସଂ. ବିଣ—୫୪ର ପୂରକ—
Chatuhpanchasattama Fiftyfourth.
( ଚତୁଷ୍ପଞ୍ଚାଶତ୍ତମ—ଅନ୍ୟରୂପ )

**ଚତୁଃପାର୍ଶ୍ୱ**—ସଂ. ବି—୧ । ଚାରିଦିଗ—1 .Four corners or points of the compass.
Chatuhparswa
୨ । ସବୁଆଡ଼—2. All sides.
୩ । ଚାରିପାଖ—3. Four sides e.g. north, south, east and west.
( ଚତୁଷ୍ପାର୍ଶ୍ୱ—ଅନ୍ୟରୂପ ) ୪ । ବର୍ଗକ୍ଷେତ୍ରର ୪ଟି ବାହୁ—
4. The four sides of a square ( Wilson ).
[ ଦ୍ର—ଚତୁର୍ପାର୍ଶ୍ୱ ଶବ୍ଦ ଅବ୍ୟାକରଣିକ ଅଟେ । ]

| ୧ | ଇ | ଉ | ର,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ପ | ଲୃଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଲୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଞ୍ଚ | ଟ୍ଟ |

**ଚତୁଃଶତ**—ସଂ. ବି. ( ଚତୁଃ+ଶତ )—୧ । ( ଦ୍ବିଗୁ ) ଚାରିଶହ—
Chatuḥśata 1. Four hundred; 400.
୨ । ( ମ. ପ. ଲୋ; ଚତୁରଧିକଶତ ) ଏକଶହ ଚାରି—
2. One hundred and four; 104 ( M W. )

**ଚତୁଃଶଫ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଚତୁଃ+ଶଫ )—
Chatuḥśapha ଯେଉଁ ଜୀବର ୪ଟି ଖୁରା ଅଛି—
( ଚତୁଃଶଫା—ସ୍ତ୍ରୀ ) Four-hoofed ( animal ).

**ଚତୁଃଶାଖ**—ସଂ. ବିଣ. ( ବହୁବ୍ରୀହି )—୧ । ଚାରିଶାଖାବିଶିଷ୍ଟ—
Chatuḥśākha 1. Having four branches; pointing to the 4 sides of the compass.
୨ । ଚାରିଗୋଟି ଶାଖା ବା ଅଙ୍ଗବିଶିଷ୍ଟ (ଯଥା—ବେଦ)—
2. Having four component parts.
ସଂ. ବି—( ଏହାର ଦୁଇ ହାତ ଓ ଦୁଇ ଗୋଡ଼ ଏହି ୪ ଶାଖା ଥିବାରୁ ) ଦେହ; ଶରୀର—Body ( M. W. )
ଦେ. ବି—ବେଦ—The Bedas ( 4 in number ).

**ଚତୁଃଶାଳ**—ସଂ. ବି. ( ବହୁବ୍ରୀହି; ଚତୁଃ+ଶାଲା )—
Chatuḥśāla ୧ । ଯେଉଁ କୋଠାରେ ୪ଟି କାମରା ଅଛି—
ଚତୁଃଶାଳକ; ଚତୁଃଶାଲା } ଅନ୍ୟରୂପ 1. A building with 4 halls ( M. W. ).
୨ । ଚାରି ଦିଗରେ ୪ଟି କୋଠରି ବା କାମରା ଥିବା ବଡ଼ଘର—
2. A square four roomed house
୩ । ଚାରିପାଖେ ୪ଟି ଘରଦ୍ୱାରା ଆବଦ୍ଧ ଅଗଣା—
3. A square courtyard enclosed by 4 houses on the 4 sides facing each other.

**ଚତୁଃଶୃଙ୍ଗ**—ସଂ. ବି. ( ବହୁବ୍ରୀହି; ଚତୁଃ+ଶୃଙ୍ଗ )—
Chatuḥśṛuṅga ୧ । ଯେଉଁ ଜୀବର ୪ଟି ଶିଙ୍ଗ ଥାଏ; ଚଉଶିଙ୍ଗା—
1. Four-horned ( animal ).
୨ । ଯେଉଁ ପର୍ବତର ୪ଟି ଶୃଙ୍ଗ ଥାଏ—
2. Four-peaked ( mountain ).

**ଚତୁଃଷଷ୍ଟ**—ସଂ. ବି. (ଚତୁଃଷଷ୍ଟି+ପୂରଣାର୍ଥେ. ଅ)—ଚଉଷଠି ସଂଖ୍ୟାର
Chatuḥshashṭa ପୂରଣ—Sixtyfourth ( M. W. )

**ଚତୁଃଷଷ୍ଟି**—ସଂ. ବି. ( ମ. ପ. ଲୋ; ଚତୁରଧିକ ଷଷ୍ଟି )—
Chatuḥshashṭi ଷାଠିଏରୁ ଚାରି ଅଧିକ ସଂଖ୍ୟା; ଚଉଷଠି; ୬୪ ସଂଖ୍ୟା —64; Sixtyfour.
ସଂ. ବିଣ.—ଚଉଷଠି ସଂଖ୍ୟକ—
Numbering sixtyfour.

**ଚତୁଃଷଷ୍ଟିତମ**—ସଂ. ବିଣ—୬୪ ସଂଖ୍ୟାର ପୂରଣ—
Chatuḥshashṭitama 64th; sixtyfourth

**ଚତୁଃଷ୍ଟୋମ**—ସଂ. ବି ( ଚତୁଃ+ସ୍ତୋମ )—
Chatuḥshṭoma ୪ଟି ଅଂଶ ଥିବା ବୈଦିକ ସ୍ତବବିଶେଷ—
(ଚତୁଷ୍ଟୋମ—ଅନ୍ୟରୂପ) A vedic hymn consisting of 4 parts.

[ ଦ୍ର—ଏଥିରେ ୨ୟ, ୩ୟ ଓ ୪ର୍ଥ ଅଂଶରେ ପୂର୍ବାଂଶ ଅପେକ୍ଷା ୪ଟି ଲେଖାଏଁ ଅଧିକା ଶ୍ଳୋକ ଥାଏ M. W. ]

**ଚତୁଃଶଙ୍କର**—ସଂ. ବି. ( ଚତୁଃ+ଶଙ୍କର )—
Chatuḥsaṅkara ( ହିନ୍ଦୁ ସ୍ମୃତି ) ଯେଉଁ ମକଦ୍ଦମାରେ ୪ଟି ନାଲିସର କାରଣ ଏକତ୍ର ମିଶିଅଛି ( ଯାଜ୍ଞବଲ୍କ୍ୟ )—
( Hindu Law ) A lawsuit in which there is multiplicity of ( four ) causes of action. ( M. W. )

**ଚତୁଃସନ**—ସଂ. ବି. ( ଚତୁଃ+ସନ, ଯେଉଁ ଚାରି ଜଣଙ୍କ ନାମର
Chatuḥsana ଆଦ୍ୟରେ 'ସନ' ଅଛି )—
'ସନ' ପଦ ଆଦ୍ୟରେ ଥିବା ( ସନକ, ସନନ୍ଦ, ସନତ୍କୁମାର ଓ ସନାତନ ) ନାମଚତୁଷ୍ଟୟଯୁକ୍ତ ବ୍ରହ୍ମାଙ୍କ ଚାରି ପୁତ୍ର—
The four sons of Brahmā whose names begin with the 2 letters 'Sana'.

ତପରେ ବୋଲେ ଭଗବାନ
ଜାତ ହୋଇଲେ ଚତୁଃସନ । ଜଗନ୍ନାଥ. ଭାଗବତ ।

ସଂ ବିଣ—ଯହିଁରେ ବ୍ରହ୍ମାଙ୍କର ଉପରୋକ୍ତ ୪ ପୁତ୍ର ଥାଆନ୍ତି—
Containing the above four sons of Brahmā ( M. W. ).

**ଚତୁଃସପ୍ତତ**—ସଂ. ବିଣ. ( ଚତୁଃସପ୍ତତି+ପୂରଣାର୍ଥେ. ଅ )—
Chatuḥsaptata ଚଉସ୍ତରି ସଂଖ୍ୟାର ପୂରଣ—
Seventyfourth. ( M. W. )

**ଚତୁଃସପ୍ତତି**—ସଂ. ବି. (ମଧ୍ୟପଦଲୋପୀ କର୍ମଧାରୟ; ଚତୁଃ+ସପ୍ତତି)—
Chatuḥsaptati ଚଉସ୍ତରି; ୭୪—74.
ବିଣ—ଚଉସ୍ତରିସଂଖ୍ୟକ—74 in number.

**ଚତୁଃସପ୍ତତିତମ**—ସଂ. ବିଣ. (ଚତୁଃସପ୍ତତି+ପୂରଣାର୍ଥେ ତମ )—
Chatuḥsaptatitama ଚଉସ୍ତରିର ପୂରଣ—
Seventyfourth.

**ଚତୁଃସମ**—ସଂ. ବି. ( ବହୁବ୍ରୀହି; ଚତୁଃ+ସମ=ସମଗୁଣବିଶିଷ୍ଟ )—
Chatuḥsama ୧ । ( ବୈଦ୍ୟକ ) ସମଗୁଣବିଶିଷ୍ଟ ଔଷଧ ଦ୍ରବ୍ୟ-ଚତୁଷ୍ଟୟ; ଚଉସମ ( ଲବଙ୍ଗ, ହରଡ଼ା, ସୈନ୍ଧବ, ଓ ଯୁଆଣି )—1. A collection of four drugs ( cloves, rocksalt, myrobalan and caraway )
୨ । ସମଗୁଣବିଶିଷ୍ଟ ଗନ୍ଧଦ୍ରବ୍ୟଚତୁଷ୍ଟୟ; ( ଚନ୍ଦନ, ଅଗୁରୁ, କସ୍ତୁରୀ ଓ କୁଙ୍କୁମ )—2. A collection of four scented articles ( sandal, aloe-wood, musk and saffron).
୩ । ଏକତ୍ର ମିଶ୍ରିତ କର୍ପୂର, କସ୍ତୁରୀ, ଜାଫ୍ରାନ୍‌କେଶର ଓ ଚନ୍ଦନ—3. A mixture of 4 unguents, (viz camphor, musk, saffron and sandal.)

ଶ୍ରୀକରେ ଘେନ ଚତୁଃସମ
ସୌରଭ ଗନ୍ଧେ ମନୋରମ । ଜଗନ୍ନାଥ. ଭାଗବତ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ତାଇ' ନ ମିଳିଲେ 'ତାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ ଦେଖିବ

**ଚତୁଃସହସ୍ର**— ସଂ. ବି. ( ଚତୁଃ + ସହସ୍ର )—
Chatuḥsahasra ୧ । ( ଦ୍ୱିଗୁ ) ଚାରି ହଜାର—
1. Four thousand; 4000.
୨ । ( ମ. ପ. ଲୋ; ଚତୁରଧିକ ସହସ୍ର )—
ଏକ ହଜାର ଚାରି ସଂଖ୍ୟା—
2 One thousand and four; 1004 ( M. W. )

**ଚତୁଃସୀମା**—ସଂ. ବି—ଚାରି ଦିଗର ସୀମା ବା ସରହଦ; ଚୌହଦ୍ଦି—
Chatuḥsīmā The borders or boundaries on 4 sides; the northern, southern, eastern and western boundaries of a thing or place.

**ଚତୁଃସ୍ତନା**—ସଂ. ବିଣ. ସ୍ତ୍ରୀ. ( ବହୁବ୍ରୀହି; ଚତୁଃ+ସ୍ତନ+ଆ )—
Chatuḥstanā ଚାରୋଟି ଥନ ଥିବା ( ଗାଈ )—
(ଚତୁସ୍ତନା—ଅନ୍ୟରୂପ) ( a cow ) Having four nipples.

**ଚତୁର୍**—ସଂ. ବି. ( ଚତ୍ ଧାତୁ=ପ୍ରାର୍ଥନା କରିବା+କର୍ତ୍ତୃ ଉର୍ )—
Chatur ଚାରି—Four
ସଂ. ବିଣ—ଚାରି ସଂଖ୍ୟକ—Numbering four
[ ଦ୍ର—ଚତୁଃଶବ୍ଦ ପରି ଏ ଶବ୍ଦର ସ୍ୱତନ୍ତ୍ର ପ୍ରୟୋଗ ଓଡ଼ିଆରେ ନାହିଁ । ]

**ଚତୁର**—ସଂ. ବିଣ. ପୁଂ. ( ଚତ୍ ଧାତୁ=ଗମନ କରିବା ଇତ୍ୟାଦି+କର୍ତ୍ତୃ. ଉର )—୧ । ବୁଦ୍ଧିମାନ୍; ସୁଲକ୍ଷ—
Chatura
(ଚତୁରା—ସ୍ତ୍ରୀ) 1, Clever; ingenuous

ବୋଲେ ଅଗସ୍ତି ହୋଇଣ ଚତୁର ବଣା ତୁଅ ଥିଲ ଭୂଜ ଚତୁର ।
ଉଞ୍ଜ. ବୈଦେହୀଶ ବିଳାସ ।

ଚତୁରତା, ଚତୁରତ୍ୱ, ଚାତୁର୍ଯ୍ୟ, ଚାତୁରୀ—ବି.
୨ । ନିପୁଣ; କାର୍ଯ୍ୟଦକ୍ଷ; କର୍ମଠ—
2. Expert; dexterous.
୩ । କୌଶଳୀ—3. Crafty; shrewd.
୪ । ଧୂର୍ତ୍ତ—4. Fraudulent.
୫ । ଚଞ୍ଚଳଗତି—5. Swift; quick; brisk (M. W.)
୬ । ନେତ୍ରଗୋଚର—6. Visible (M. W.).
୭ । ସୁନ୍ଦର; ମନୋହର—7. Beautiful; charming.
ସଂ. ବି—୧ । ଚାରି (ସଂଖ୍ୟା)—1. Four.
୨ । ଚତୁରଙ୍ଗ ସେନା—2. Army consisting of 4 arms or divisions. ( viz Elephants, cars, cavalry and infantry )

ବଧତମ୍ଭୁ ଚତୁର ଅଭିମାନେ ଅତୁଳ ସଦ୍ଭାବ ସ୍ପଷ୍ଟ ଦେଇ ସେ ।
ଉଞ୍ଜ. ବୈଦେହୀଶବିଳାସ ।

୩ । (ଚତ୍ ଧାତୁ+କର୍ମ. ଉର) ଗୋଲ ତକିଆ—
3. A circular pillow.
୪ । ହସ୍ତିଶାଳା—4. A stable for elephants.
୫ । ରୋହିମାଛ—5. The fish Cyprinus Rohita. ( M. W. ).
ଦେ ବିଣ. (ସଂ. ଚତୁର୍)—ଚାରିସଂଖ୍ୟକ—Four in number.

ବୋଲେ ଅଗସ୍ତି ହୋଇଣ ଚତୁର
ବଣାତୁଅ ଥିଲ ଭୂଜ ଚତୁର । ଉଞ୍ଜ. ବୈଦେହୀଶବିଳାସ ।

**ଚତୁରଂଶ**—ସଂ ବି. ( ଦ୍ୱିଗୁ; ଚତୁଃ+ଅଂଶ)—ଚାରି ଭାଗ—
Chaturaṁśa Four parts.
(ଚତୁରଂଶିତ—ଅନ୍ୟରୂପ ସଂ. ବିଣ. ( ବହୁବ୍ରୀହି )—୧ । ଚାରିଭାଗରେ ବିଭକ୍ତ—1 Divided into 4 parts
୨ । ଚାରିପେଜି; ଏକଫର୍ଦ୍ଦ କାଗଜ ଚାରିପୃଷ୍ଠାରେ ଭଙ୍ଗା ହୋଇଥିବା (କାଗଜ)—2 Quarto ( paper ).
୩ । ଚଉଅଂଶିଆ; ଚାରିକୋଣିଆ—
3 Square; quadrangular.
୪ । ଚାରିଗୋଟି ସମତଳବିଶିଷ୍ଟ—
4. Having four equal surfaces.

**ଚତୁରକ**—ସଂ. ବିଣ ଓ ବି. ପୁଂ. ( ଚତୁର+ସ୍ୱାର୍ଥେ. କ )—
Chaturaka ଚତୁର ( ଦେଖ )
(ଚତୁରକା—ସ୍ତ୍ରୀ) Chatura ( See )

**ଚତୁରକ୍ଷ**—ସଂ. ବିଣ. (ବହୁବ୍ରୀହି; ଚତୁଃ+ଅକ୍ଷି)—୧ । ଚାରିଆଖି ବିଶିଷ୍ଟ—
Chaturaksha 1. Four-eyed.
(ଚତୁରକ୍ଷୀ—ସ୍ତ୍ରୀ) ୨ । ସାମନାସାମନି ଭେଟ ହେବା (ଦୁଇ ବ୍ୟକ୍ତି)—
2 ( two persons) Meeting each other face to face; confronted with each other.

ଗୃହରକ୍ଷଣକୁ ଏହା କ କର, ଚତୁରକ୍ଷ କେବେ ନ ହେଲ ପର ।
କବିସୂର୍ଯ୍ୟ. କଳାବତୀକଲ୍ଲୋଳ ।

ଦେ. ବି—ଚତୁରାକ୍ଷ ( ଦେଖ )
Chaturāksha ( See )

**ଚତୁରଗ**—ସଂ. ବିଣ ପୁଂ. (ଚତୁର+ଗମ ଧାତୁ+କର୍ତ୍ତୃ. ଅ)—
Chaturaga ଦ୍ରୁତଗାମୀ—Going quickly. (M. W.)
(ଚତୁରଗା—ସ୍ତ୍ରୀ)

**ଚତୁରଙ୍ଗ**—ସଂ. ବିଣ. ( ବହୁବ୍ରୀହି; ଚତୁଃ+ଅଙ୍ଗ )—
Chaturaṅga ୧ । ଚାରିଗୋଟି ଅଙ୍ଗବିଶିଷ୍ଟ; ଚାରି ଅଂଶବିଶିଷ୍ଟ—
1. Having four component parts or limbs or members; quadripartite.
୨ । ସର୍ବାଙ୍ଗସମ୍ପନ୍ନ—2. Complete; completely equipped; shipshape.
୩ । ସମସ୍ତ ଅଙ୍ଗକୁ ଘୋଟିଥିବା (ବାତ); ଚଉରଙ୍ଗୀ (ବାତ)—
3. Attacking all the limbs of the body.
୪ । ହସ୍ତୀ, ଅଶ୍ୱ, ରଥ ଓ ପଦାତି ସେନାବିଶିଷ୍ଟ (ବଳ)
4. (army) Consisting or comprising of four distinct divisions ( elephants, chariots, cavalry and infantry ).

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍‌,ର୍ହ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ଯ | ଡ଼ଅ | ଙ୍ଗ |
| ୨ | ଈ | ଊ | ରୁ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ |

ସଂ. ବି—୧ । ସଙ୍ଗୀତର ଚଞ୍ଚଳ ସ୍ୱରବିଶେଷ—
1. A quick musical note.

୨ । ଚାରିଜଣ ଖେଳାଳିଙ୍କ ଦ୍ୱାରା ଖେଳାଯିବା ସତରଞ୍ଚ ବା ଦ୍ୟୂତବଳ ଖେଳ—2. A kind of game at chess played by 4 parties (M. W.)

୩ । ପଶାଖେଳ—3. Game at dice.

୪ । ହସ୍ତୀ, ରଥ, ଅଶ୍ୱ ଓ ପଦାତି ଏହି ଚାରିଅଙ୍ଗବିଶିଷ୍ଟ ସେନା; ଚତୁରଙ୍ଗ ବଳ—4 Army consisting of 4 divisions ( elephants, cars, horses and men).

୫ । ଏକପ୍ରକାର କାକୁଡ଼ି—
5. Cucumis Utilissimus ( creeper and fruit . (M. W.)

୬ । ଲୋମପାଦ ରାଜାଙ୍କର ଏକ ପୁତ୍ର—6. Name of a son of king Lomapāda (M. W.)

**ଚତୁରଙ୍ଗ ବଳ**—ସଂ. ବି.—୧ । ହସ୍ତୀ, ରଥ, ଅଶ୍ୱ ଓ ପଦାତିଯୁକ୍ତ ପୂର୍ଣ୍ଣାବୟବ ସେନା—1. A complete or entire army consisting of 4 divisions viz, elephants, chariots, cavalry and infantry.
Chaturaṅga baḷa
ଚତୁରଙ୍ଗବାହିନୀ } ଅନ୍ୟରୂପ
ଚତୁରଙ୍ଗ ସେନା }

୨ । ୪ ଜଣ ଖେଳାଳି ଖେଳିବା ଏକପ୍ରକାର ସତରଞ୍ଚ ଖେଳ—
2. A kind of chess played by 4 parties. (M. W.)

**ଚତୁରଙ୍ଗିଣୀ**—ସଂ. ବି.—(ଚତୁଃ+ଅଙ୍ଗ+ଇନ୍+ସ୍ତ୍ରୀ. ଈ)—
Chaturaṅginī ଚତୁରଙ୍ଗ ବଳ (ଦେଖ)
Chaturaṅga baḷa (See)

**ଚତୁରଙ୍ଗୁଳ**—ସଂ. ବି.—୧ । ବୁଢ଼ା ଆଙ୍ଗୁଠି ଛଡ଼ା ହାତର ଚାରି ଆଙ୍ଗୁଠି—1. The four fingers of the hand except the thumb.
Chaturaṅguḷa

୨ । ଚାରିଅଙ୍ଗୁଳ ଅଧିକୃତ ଦୈର୍ଘ୍ୟ ବା ପ୍ରସ୍ଥ—
2. A measure of the breadth of four fingers.

୩ । ଆରଗ୍ୱଧ; ସୁନାରି ଗଛ—3. A kind of plant; Cassia Fistula; Cathatocarpus Fistula (M. W.)

ସଂ ବିଣ.—ଚାରିଅଙ୍ଗୁଳ ପରିମିତ—Four fingers broad; measuring 4 fingers.

**ଚତୁରତା**—ସଂ. ବି.—(ଚତୁର+ଭାବ ତା)—୧ । ଦକ୍ଷତା; ନିପୁଣତା—
Chaturatā 1. Dexterity.
(ଚତୁରତ୍ୱ—ଅନ୍ୟରୂପ) ୨ । ଚାଲାକପଣିଆ—2. Cleverness.
୩ । ଧୂର୍ତ୍ତତା—3. Shrewdness; carftiness.

**ଚତୁରଦଶ**—ଗ୍ରା. (ପଦ୍ୟ) ବି ଓ ବିଣ—ଚତୁର୍ଦ୍ଦଶ (ଦେଖ)
Chaturadaśa Chaturddaśa (See)

ଚତୁରଦଶ ଲୋକ ସ୍ଥିତ,
କେତେକେ ଅନ୍ତରେ ବସନ୍ତି । ଜଗନ୍ନାଥ. ଭାଗବତ ।

**ଚତୁରନ୍ତ**—ସଂ. ବି—(ଦ୍ୱିଗୁ; ଚତୁଃ+ଅନ୍ତ)—ଚାରି ସୀମା—
Chaturanta The four boundaries.
(ଚତୁରନ୍ତା—ସ୍ତ୍ରୀ) ବିଣ. (ବହୁବ୍ରୀହି)—ଚାରି ପଦାର୍ଥଦ୍ୱାରା ପରିବୃତ—
1. Consisting of 4 things.
୨ । ଚାରି ସୀମାଦ୍ୱାରା ପରିବେଷ୍ଟିତ—2. Surrounded or bordered on all four sides. (M.W.)

**ଚତୁରନ୍ତା**—ସଂ. ବି. ସ୍ତ୍ରୀ.—(ଚତୁରନ୍ତ+ସ୍ତ୍ରୀ. ଆ)—ପୃଥିବୀ—
Chaturantā The earth (M. W.)

**ଚତୁର ପଣ**—ଦେ. ବି.—୧ । ଚତୁରତା—
Chatura paṇa 1 Cleverness.
চতুরপণা ୨ । ଧୂର୍ତ୍ତତା—
चतुराई 2. Shrewdness.
(ଚତୁରପଣିଆ—ଅନ୍ୟରୂପ)

**ଚତୁର ବଦନ**—ଗ୍ରା (ପଦ୍ୟ) ବି.—(ସଂ. ଚତୁର୍ବଦନ)
Chutura badana ଚତୁର୍ମୁଖ (ଦେଖ)
Chaturmukha (See)

ସୁରନଦୀ ତୀର୍ଥ ଜଳେ କରଇ ଯେ ସ୍ନାନ,
ପୂଜା ଯାକୁ କରନ୍ତି ଚତୁରବଦନ । କୃଷ୍ଣସିଂହ. ମହାଭାରତ. ବନ ।

**ଚତୁର ବିଧ**—ଗ୍ରା. (ପଦ୍ୟ) ବିଣ.—(ସଂ. ଚତୁର୍ବିଧ)—
Chaturabidha ଚତୁର୍ବିଧ (ଦେଖ)
Chaturbidha (See)

**ଚତୁରମ୍ଳ**—ସଂ. ବି.—(ସମାହାର ଦ୍ୱିଗୁ; ଚତୁଃ+ଅମ୍ଳ)—ବୈଦ୍ୟଶାସ୍ତ୍ରୋକ୍ତ ୪ଟି ଅମ୍ଳ ବସ୍ତୁ; ଅମ୍ଳବେତସ, ବୃକ୍ଷାମ୍ଳ (ତେନ୍ତୁଳି), ବୃହଜ୍ଜମ୍ବୀର (ଠେଙ୍ଗା) ଓ କାଗଜୀଲେମ୍ବୁ—Four sour articles presented as medicine; ( common sorrel, tamarind, orange and lime).
Chaturamḷa

**ଚତୁରଶୀତ**—ସଂ ବିଣ. (ଚତୁରଶୀତି+ପୂରଣାର୍ଥେ. ଅ)—୮୪ର ପୂରଣ-
Chaturaśīta Eightyfourth (M. W.)

**ଚତୁରଶୀତି**—ସଂ. ବି.—(ମ. ପ. ଲୋ. କ; ଚତୁଃ+ଅଶୀତି)—ଅଶୀରୁ ୪ ଅଧିକ ସଂଖ୍ୟା; ଚଉରାଅଶି—84; Eightyfour.
Chaturaśīti
ବିଣ.—୮୪ ସଂଖ୍ୟକ—84 in number.

**ଚତୁରଶୀତିତମ**—ସଂ. ବିଣ.—୮୪ ସଂଖ୍ୟାର ପୂରଣ—
Chaturaśītitama 84; Eightyfourth.

**ଚତୁରଶ୍ୱ**—ସଂ. ବି.—(ସମାହାର ଦ୍ୱିଗୁ; ଚତୁଃ+ଅଶ୍ୱ)—ଅଶ୍ୱ ଚତୁଷ୍ଟୟ; ଚାରି ଗୋଟି ଘୋଡ଼ା—Four horses.
Chaturaśwa
ବିଣ. (ବହୁବ୍ରୀହି) ଅଶ୍ୱ ଚତୁଷ୍ଟୟଯୁକ୍ତ; ଚାରି ଘୋଡ଼ା ଲାଗିଥିବା (ରଥ)—(chariot) Having or drawn by 4 horses.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ, 'ଅଗିଂ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଚତୁରସ୍ର**—ସଂ. ବି ( ବହୁବ୍ରୀହି; ଚତୁଃ+ଅସ୍ର=କୋଣ )—
Chaturasra ଚାରିକୋଣିଆ କ୍ଷେତ୍ର—Four-sided figure; square.
(ଚତୁରସ୍ରକ—ଅନ୍ୟରୂପ)
ବିଣ—୧ । ଚତୁଷ୍କୋଣ; ଚାରିକୋଣିଆ—
1. Quadrangular; square; four-cornered.
୨ । ଚଉଡ଼ା; ସମତଳ —2. Wide and level
୩ । ନିର୍ଦ୍ଦୋଷ—3. Faultless.
୪ । ସବୁ କାର୍ଯ୍ୟରେ ଦକ୍ଷ—
4. Expert; clever in every matter

**ଚତୁରା**—ଦେ. ବିଣ. ପୁଂ. (ସଂ. ଚତୁର)—ଚତୁର; ଧୂର୍ତ୍ତ; ଶଠ—
Chaturā Artful; shrewd; cunning.
ସଂ. ବିଣ. ସ୍ତ୍ରୀ (ଚତୁର+ଆ; ଚତୁରର ସ୍ତ୍ରୀଲିଙ୍ଗ)—
୧ । ବୁଦ୍ଧିଶାଳିନୀ—1. Clever (woman).
୨ । ବୁଦ୍ଧିମତୀ—2. Intelligent; ingenuous.
୩ । ଧୂର୍ତ୍ତା—3. Shrewd; cunning.
୪ । ଶଠତାପୂର୍ଣ୍ଣା ସ୍ତ୍ରୀ—4. Artful; wily.
ବି. ସ୍ତ୍ରୀ—ବୁଦ୍ଧିମତୀ ସ୍ତ୍ରୀ—An intelligent woman.

**ଚତୁରାଇବା**—ଦେ. କ୍ରି—୧ । ଚତୁରତା ଦେଖାଇବା—
Chaturaibā 1. To show shrewdness.
୨ । ଆତ୍ମପ୍ରଶଂସା କରିବା—2. To boast; to brag.

**ଚତୁରାଇ**—ଦେ. ବିଣ. ସ୍ତ୍ରୀ (ସଂ. ଚତୁରା)—୧ । ଚତୁରା (ଦେଖ)
Chaturāi, 1. Chaturā (See).
चतुराई ୨ । ଆତ୍ମପ୍ରଶଂସାକାରିଣୀ—
2. Boastful; braggart (woman).
ବି—ଚତୁରାଙ୍ଗୀ (ଦେଖ)
Chaturāngi (See).

**ଚତୁରାଇପଣ**—ଦେ. ବି—ଚତୁରାଙ୍ଗୀ (ଦେଖ)
Chaturāipaṇa Chaturāngi (See).
କରୁଥାଇ ଚତୁରାଇପଣ ତ ଅମ୍ଭକୁ—ଗୋପୀକୃଷ୍ଣ. ରସକଲ୍ଲୋଳ ।
( ଚତୁରାଇପଣିଆ—ଅନ୍ୟରୂପ )

**ଚତୁରାକ୍ଷ**—ଗ୍ରା. ବିଣ. ଓ ପ୍ରାଚୀନ ପଦ୍ୟ ( ସଂ. ଚତୁରକ୍ଷ )—
Chaturāksha ୧ । ସାମନାସାମନି ଭେଟହେବା (୨ଜଣ ବ୍ୟକ୍ତି)—
(two persons) Meeting each other face to face; confronted with each other.
୨ । ଦୁଇ ଜଣଙ୍କର ଭେଟ ହେବାର (ସମୟ)—
2. (time) Of interview or meeting of 2 persons.
ଚକ୍ରଚନ୍ଦ୍ର କେ ଉପାସ୍ତି ସେଜଥାନ୍ତ ତାହା ଚତୁରାକ୍ଷ ବେଳ ପଇଁ ।
ଉପେନ୍ଦ୍ର. କୋଟିବ୍ରହ୍ମ ସୁନ୍ଦରୀ ।
ବି—ଦୁଇ ଜଣ ମନୁଷ୍ୟଙ୍କର ଭେଟାଭେଟି—
Interview between two persons; two persons being confronted with each other.

ବେନି ଚତୁରାକ୍ଷ ସ୍ୱଭାବ ପ୍ରାପ୍ତେ ବପଷ ପଷ ଯୁଗ କୋଷ୍ଠ ଏଥୁ ରକ୍ଷ ରଷ ।
ଉପେନ୍ଦ୍ର. ପ୍ରେମସୁଧା ନିଧି ।

**ଚତୁରାଙ୍ଗ**—ଦେ. ବି—ଚତୁରାଙ୍ଗୀ (ଦେଖ)
Chaturānga Chaturāngi (See).

**ଚତୁରାଙ୍ଗି**—ଦେ ବି (ସଂ. ଚତୁରତା)—୧ । ଚତୁରତା; ଚାତୁର୍ଯ୍ୟ—
Chaturāngi 1. Cleverness; shrewdness; cunning; art; wiles.
চতুরালী
चतुराई ୨ । ଆତ୍ମପ୍ରଶଂସା; ଡାହାଫି—2. Bragging.
୩ । ଗୌରବ—3 Self-aggrandisement
୪ । ସ୍ୱଗୁଣକୀର୍ତ୍ତନ—4. Self-advertisement.

**ଚତୁରାନନ**—ସଂ. ବି (ବହୁବ୍ରୀହି; ଚତୁର+ଆନନ)—ଚତୁର୍ମୁଖ (ଦେଖ)
Chaturānana Chaturmukha (See).

**ଚତୁରାଶ୍ରମ**—ସଂ. ବି (କର୍ମଧାରୟ; ଚତୁର୍+ଆଶ୍ରମ)—ବ୍ରାହ୍ମଣଜୀବନରେ ପାଳନୀୟ ୪ଟି ଅବସ୍ଥା—
Chaturāsrama
Four successive stages in the lifetime of a Brāhmaṇa as enjoined in the Sastras.
[ଯଥା—ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ସନ୍ନ୍ୟାସ । ]

**ଚତୁରାଶ୍ରମୀ**—ସଂ. ବି. ପୁଂ (ଚତୁରାଶ୍ରମ+ଇନ୍, ୧ମା. ୧ବ) ବ୍ରାହ୍ମଣ—
Chaturāsrami A Brāhmaṇa,

**ଚତୁରିକା**—ସଂ. ବି ( ଚତୁର୍+ଇକ+ଆ )—ଅତିଥିମାନଙ୍କ ସମ୍ବର୍ଦ୍ଧନାର୍ଥ ବ୍ୟବହୃତ ଚାରିକୋଣିଆ ଅଗଣା—
Chaturikā A quadrangular courtyard used for receiving guests (M.W )
ସଂ. ବିଣ. ସ୍ତ୍ରୀ (ଚତୁରକ+ଆ)—ଚତୁରକର ସ୍ତ୍ରୀଲିଙ୍ଗ—
Feminine of Chaturaka.

**ଚତୁରୀ**—ଦେ. ବିଣ. ଓ ବି (ସଂ. ଚତୁରା)—ଚତୁରା (ଦେଖ)—
Chaturi Chaturā (See)
ଚେତ ଚତୁରୀ ଗହିଁଲ କଣିକା ଶେ ପାଶେ ନାହିଁ ଦ୍ରବ୍ୟ ଚରୁଣ ।
ଉପେନ୍ଦ୍ର. ଲାବଣ୍ୟବତୀ ।

**ଚତୁରୀ ଚମ୍ପା**—ଗ୍ରା. ବି — ସ୍ତ୍ରୀଲୋକମାନଙ୍କ ପ୍ରତି ପ୍ରଯୁଜ୍ୟ ବ୍ୟଙ୍ଗୋକ୍ତି-ବିଶେଷ; ଚତୁରୀ ସ୍ତ୍ରୀ—
Chaturi champā A term applied to a female in jest; a smart woman.

**ଚତୁରୁଗୁଣ**—ଗ୍ରା. (ଇତର) ବି (ସଂ. ଚତୁର୍ଗୁଣ)—ଚତୁର୍ଗୁଣ (ଦେଖ )—
Chaturuguṇa Chaturguṇa ( See )

**ଚତୁରୁଥ**—ଗ୍ରା (ଇତର) ବି ଓ ବିଣ (ସଂ. ଚତୁର୍ଥ)—ଚତୁର୍ଥ (ଦେଖ )—
Chaturutha Chaturtha ( See )

**ଚତୁରୁଥି**—ଗ୍ରା (ଇତର) ବି (ସଂ. ଚତୁର୍ଥୀ)—ଚତୁର୍ଥୀ ( ଦେଖ )—
Chaturuṭhi Chaturthi (See)

**ଚତୁରୁଦଶି**—ଗ୍ରା (ଇତର) ବି (ସଂ. ଚତୁର୍ଦ୍ଦଶୀ)—ଚତୁର୍ଦ୍ଦଶୀ ( ଦେଖ )—
Chaturudaśi Chaturddaśi (See)

**ଚତୁରୁଦ୍ଦିଗ**—ଗ୍ରା. (ଇତର) ବି (ସଂ. ଚତୁର୍ଦ୍ଦିଗ)—ଚତୁର୍ଦ୍ଦିଗ ( ଦେଖ )—
Chaturudiga Chaturdiga ( See )

| ୧ | ଇ | ଉ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ | ଜୁଅ | ସ୍ତ |
|---|---|---|---|---|---|---|---|---|---|---|---|---|---|---|
| ୨ | ଇ | ଉ | ରୁ | ଲୁ | ସ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ତ |

ଚତୁରୁଧା—ଗ୍ରା. (ଇତର) ବିଣ (ସଂ. ଚତୁର୍ଦ୍ଧା)—ଚତୁର୍ଧା (ଦେଖ)—
Chaturudhā Chaturdhā (See)

ଚତୁରୁମାସିଆ—ଗ୍ରା. (ଇତର) ବି (ସଂ. ଚତୁର୍ମାସ୍ୟ)—
Chaturumāsiā ଚତୁର୍ମାସ୍ୟ (ଦେଖ)—
Chaturmāsyā (See)

ଚତୁରୁଷଣ—ସଂ. ବି (ସମାହାରଦ୍ୱିଗୁ; ଚତୁଃ+ଉଷଣ) (ବୈଦ୍ୟକ)
Chaturūshaṇa ଔଷଧାର୍ଥେ ଏକତ୍ର ମିଶ୍ରିତ ଶୁଣ୍ଠି, ପିପ୍ପଳୀ, ମରଚ ଓ ପିପ୍ପଳୀମୂଳ—A mixture of dried ginger, longpepper, blackpepper and long-pepper-root used as medicine.

ଚତୁର୍ଗତି—ସଂ. ବି (ବହୁବ୍ରୀହି; ଚତୁଃ+ଗତି)—୧ । (ଚାରିଗୋଡ଼ରେ
Chaturgati ଗତିକାରୀ) କଚ୍ଛପ—1. Tortoise.

୨ । (ଆଶ୍ରମଚତୁଷ୍ଟୟର ଗତିସ୍ୱରୂପ) ପରମେଶ୍ୱର—
2. God (the ultimate aim of attainment in all the 4 stages of the life of a man.)

ସଂ. ବିଣ—ଯାହାର ୪ ପ୍ରକାର ଗତି ଅଛି—Having four kinds of motion or going (M. W.)

ଚତୁର୍ଗବ—ସଂ. ବି (ବହୁବ୍ରୀହି; ଚତୁର୍+ଗୋ)—ଚାରି ବଳଦରେ ଟଣା-
Chaturgaba ଯିବା ଗାଡ଼ି—A carriage drawn by four oxen.

ଚତୁର୍ଗୁଣ—ସଂ. ବିଣ (କର୍ମଧାରୟ)—୧ । ଚାରିଗୁଣ—
Chaturguṇa 1. Fourfold; quadruple.
(ଚତୁର୍ଗୁଣା—ସ୍ତ୍ରୀ) ୨ । ଅତ୍ୟନ୍ତ—2 Inordinate; excessive; manifold.

୩ । ଯେଉଁ କୁରୁତାରେ ୪ଟି ଫିତା ବା ଡୋର ଲାଗିଥାଏ—
3. (upper garment) Tied with 4 strings (M W.)

୪ । ଚାରିସରିଆ (ହାର)—4. Four stringed

ଚତୁର୍ଜାତ—ସଂ. ବି (ଆୟୁର୍ବେଦ)—୪ ଗୋଟି ଔଷଧଦ୍ରବ୍ୟ (ଗୁଡ଼ତ୍ୱକ,
Chaturjāta ଅଳାଇଚ, ତେଜପତ୍ର ଓ ନାଗେଶ୍ୱର)—Four
(ଚତୁର୍ଜାତକ—ଅନ୍ୟରୂପ) kinds of articles used as medicine (viz cinnamon, cardamom, Cassia leaves and Messua Ferra).

ଚତୁର୍ଥ—ସଂ. ବିଣ (ଚତୁର୍+ପୂରଣାର୍ଥେ. ଥ)—ଚାରି ସଂଖ୍ୟାର ପୂରକ—
Chaturtha 4th; fourth.
(ଚତୁର୍ଥୀ—ସ୍ତ୍ରୀ) ଦେ. ବି—୧ । ମୃତ୍ୟୁର ୪ର୍ଥ ଦିନ କର୍ତ୍ତବ୍ୟ ଜ୍ଞାତି-ବନ୍ଧୁମାନଙ୍କୁ ଦିଆଯିବା ଜଳଯୋଗ—1. Refreshments given to guests and relatives assembled on the 4th day of a person's death.

[ଦ୍ର—ଏ ଦିନ ମୃତବ୍ୟକ୍ତିର ଉପଲକ୍ଷରେ ଶ୍ରାଦ୍ଧ ଓ ଭୋଜ୍ୟୋତ୍ସର୍ଗ ହୁଏ । ଏହି ଭୋଜ୍ୟୋତ୍ସର୍ଗକୁ ଶୀତଳ କୁହାଯାଏ ।]

୨ । ମୃତ୍ୟୁର ୪ର୍ଥ ଦିବସ—
2. The fourth day after death.

୩ । ବର୍ଗମାନଙ୍କର ଚତୁର୍ଥ ବର୍ଣ୍ଣ; (ଘ, ଝ, ଢ, ଧ, ଭ,)—
The fourth letter of the five classes of consonants (M. W.)

୪ । ଚତୁର୍ଥ ବର୍ଣ୍ଣ; ଶୂଦ୍ର—4. A Śūdra (M. W.)

୫ । ଏକଚତୁର୍ଥାଂଶ—
5. A quarter; one fourth (M. W.)

୬ । ଚାରିର ସମାହାର—6. A collection of four.

ଚତୁର୍ଥ ଉପାୟ—ସଂ. ବି.—୧ । ଭେଦ; ପରସ୍ପର ବିବାଦ—
Chaturtha upāya 1. Mutual discord.
[ଦ୍ର—ଶତ୍ରୁକୁ ଅଧିକାର କରିବା ପାଇଁ ନୀତିଶାସ୍ତ୍ରକଥିତ ରାଜାଙ୍କ ଆଚରିତ ସାମ, ଦାନ, ଦଣ୍ଡ, ଭେଦ ଏହି ଚାରିଗୋଟି ଉପାୟ ମଧ୍ୟରୁ ଏହା ଚତୁର୍ଥ ।]

୨ । ବିବାଦ; କଳହ—2. Dispute.

ଚାହ ଥରେ ଅଙ୍ଗ ପର ନଜାନା, ଚତୁର୍ଥ ଉପାୟ କଥିଲା ସିନା ।
କବିସୂର୍ଯ୍ୟ. କଦଳୀକଲ୍ଲୋଳିକା ।

ଦେ. ବି. ଓ ବିଣ—ଚାରି—Four.

ଚତୁର୍ଥକ—ସଂ. ବି. (ଚତୁର୍ଥ+କ; ଯେଉଁ ଜ୍ୱର ପ୍ରତି ୪ର୍ଥ ଦିନ
Chaturthaka ଆକ୍ରମଣ କରେ)—୧ । ବିଷମଜ୍ୱରବିଶେଷ; ପାଳିଜର—1. A kind of remittent fever; quartan.

୨ । ସଙ୍ଗୀତର ତାଳବିଶେଷ—2. A kind of measure in music (M.W.)

ଚତୁର୍ଥକାଳିକ—ସଂ. ବିଣ. ପୁଂ (ଚତୁର୍ଥକାଳ+ଇକ)—ଯେଉଁ ବ୍ୟକ୍ତି
Chaturthakālika ୪ ଓଳରେ ଥରେ ଖାଏ · One who takes every fourth meal (M.W.)

ଚତୁର୍ଥଭାକ୍—ସଂ.ବିଣ—(ଚତୁର୍ଥ+ଭଜ୍ ଧାତୁ+କର୍ତ୍ତୃ କ୍ୱିପ୍; ୧ମା.୧ବ)—
Chaturthabhāk ୧ । ଚତୁର୍ଥାଂଶ ନେବା ବ୍ୟକ୍ତି—
1. One who takes ¼ of a thing or one's income; entitled to a quarter share.

ବି—(ଭୂମିର ଉତ୍ପନ୍ନରୁ ଚତୁର୍ଥାଂଶ ଗ୍ରହଣ କରୁଥିବାରୁ) ରାଜା—
King (who takes ¼ of the income of the subject as revenue.)

ଚତୁର୍ଥସ୍ୱର—ସଂ. ବି.—ବୃଦ୍ଧ ବ୍ୟକ୍ତିର ସ୍ୱର—The tone of
Chaturthaswara an old man.

ବଚନେ ନାହିଁ ପାଞ୍ଚ ଚତୁର୍ଥସ୍ୱରେ ବଚ ପ୍ରକାଶ କଲ ଯଥା ଖଚ ସେ ।
ଭଞ୍ଜ. ବୈଦେହୀଶବିଳାସ ।

ସଂ. ବିଣ.—ସଙ୍ଗୀତର ୭ ସ୍ୱର ମଧ୍ୟରୁ ୪ର୍ଥ ସ୍ୱରଯୁକ୍ତ—
Having the 4th tone or accent (M. W.)

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚତୁର୍ଥାଂଶ**—ସଂ. ବି. ( କର୍ମଧାରୟ; ଚତୁର୍ଥ+ଅଂଶ )—ଚଉଠ; Chaturthāmsa ଚାରି ଭାଗରୁ ଏକ ଭାଗ—One fourth; a quarter.

**ଚତୁର୍ଥାବସ୍ଥା**—ସଂ. ବି. (କର୍ମଧାରୟ; ଚତୁର୍ଥ+ଅବସ୍ଥା)—ବୃଦ୍ଧାବସ୍ଥା—Chaturthābasthā Old age; last (4th) stage of human life.
[ଦ୍ର—୧ । ବାଲ ବା ବାଲ୍ୟ—Childhood.
୨ । କୁମାର ବା କୌମାର୍ଯ୍ୟ—Boyhood.
୩ । ଯୁବା ବା ଯୌବନ—Youth.
୪ । ବୃଦ୍ଧ ବା ବାର୍ଦ୍ଧକ୍ୟ—Old age ]

**ଚତୁର୍ଥିକା**—ସଂ. ବି—୧ । ସମବେଶନ; ବିବାହର ଚତୁର୍ଥୀ ରାତ୍ରରେ Chaturthikā ସଙ୍ଗମାର୍ଥ ଦମ୍ପତିଙ୍କର ଏକତ୍ର ଶୟନ—
2. The sleeping together of the newly married couple on the 4th night of marriage for sexual intercourse.
୨ । ୪ କର୍ଷ ଓଜନ—2 A weight of 4 Karshas (M W.)

**ଚତୁର୍ଥୀ**—ସଂ. ବି. (ଚତୁର୍ଥ+ଈ)—୧ । ଶୁକ୍ଳପକ୍ଷ ଓ କୃଷ୍ଣପକ୍ଷର ଚତୁର୍ଥୀ-Chaturthī ତିଥି; ଅମାବାସ୍ୟା ଓ ପୂର୍ଣ୍ଣିମାର ପରବର୍ତ୍ତୀ ଚତୁର୍ଥ ଦିବସ—1. The 4th day of the lunar fortnight.

[ ଦ୍ର—ଚତୁର୍ଥୀ ତିଥି ୨ ପ୍ରକାର । ଯଥା—ଶୁକ୍ଳପକ୍ଷ ଚତୁର୍ଥୀ ଓ କୃଷ୍ଣପକ୍ଷ ଚତୁର୍ଥୀ । ପ୍ରତ୍ୟେକ ମାସରେ ଦୁଇଟି କରି ଚତୁର୍ଥୀ ହୁଏ । ସେମାନଙ୍କ ମଧ୍ୟରୁ ଭାଦ୍ର ଶୁକ୍ଳ ଚତୁର୍ଥୀ ଗଣେଶପୂଜା ଓ ମାଘ ଶୁକ୍ଳ ଚତୁର୍ଥୀ ଗୌରୀପୂଜା ଯୋଗୁଁ ପ୍ରସିଦ୍ଧ । ]

୨ । ଚଉଠି; ବିବାହର ଚତୁର୍ଥ ଦିବସ—2. The 4th day of marriage.
୩ । ବ୍ୟାକରଣର ବିଭକ୍ତିବିଶେଷ; ସମ୍ପ୍ରଦାନକାରକର ବିଭକ୍ତି—(grammar) The fourth case.
ସଂ. ବିଣ. ସ୍ତ୍ରୀ—ଚତୁର୍ଥର ସ୍ତ୍ରୀଲିଙ୍ଗ—Feminine of Chaturtha.

**ଚତୁର୍ଥୀକର୍ମ**—ସଂ. ବି—ବିବାହର ୪ର୍ଥ ଦିବସରେ କରଣୀୟ କର୍ମ—Chaturthīkarma The ceremonies performed by the bride and bridegroom on the 4th day of marriage.

**ଚତୁର୍ଥ କ୍ରିୟା**—ସଂ. ବି—ପିତାମାତାଙ୍କ ମୃତ୍ୟୁର ୪ର୍ଥ ଦିବସରେ ବିବାହିତା Chaturthīkriyā କନ୍ୟାକର୍ତ୍ତୃକ କରଣୀୟ ଶ୍ରାଦ୍ଧ—The Sraddha ceremony performed on the 4th day of a parent's death by the married daughter.

**ଚତୁର୍ଦ୍ଦନ୍ତ**—ସଂ. ବି. ( ବହୁବ୍ରୀହି )—ଐରାବତ ହସ୍ତୀ—Chaturdanta An epithet of Indra's elephant
(ଚତୁର୍ଦ୍ଦନ୍ତ—ଅନ୍ୟରୂପ)
ଚତୁର୍ଦ୍ଦତ, ଚତୁର୍ଦ୍ଦଂଷ୍ଟ୍ର } ଅନ୍ୟରୂପ ସଂ. ବିଣ—ଚାରିଦନ୍ତଯୁକ୍ତ—Having four teeth or tusks.

**ଚତୁର୍ଦ୍ଦଳ**—ସଂ. ବି. (ବହୁବ୍ରୀହି; ଚତୁର+ଦଳ)—ଚତୁଷ୍ପୁଷ୍ପୀ (ଦେଖ) Chaturdala Chatushpushpī (See)

**ଚତୁର୍ଦ୍ଦଶ**—ସଂ. ବି. (ମ ପ. ଲୋ କର୍ମଧାରୟ; ଚତୁଃ ଅଧିକ ଦଶ)—Chaturdasa ଚଉଦ; ୧୪—14; fourteen.
(ଚତୁର୍ଦ୍ଦଶ—ଅନ୍ୟରୂପ) ବିଣ—୧ । ୧୪ ସଂଖ୍ୟକ—1. Numbering 14
୨ । ୧୪ର ପୂରଣ—2. Fourteenth.
ଦେ. ବି—ଚଉଦ ବ୍ରହ୍ମାଣ୍ଡ—The 14 worlds.

ଘୋର ଅଧୀନ ଚତୁର୍ଦ୍ଦଶ, ରୁ ହୋଇ ଯେଉଁ ଭାବେ ବଶ ।
ଭୂମଣ୍ଡ. ପ୍ରେମପଞ୍ଚାମୃତ ।

**ଚତୁର୍ଦ୍ଦଶକ**—ସଂ. ବିଣ.(ଚତୁର୍ଦ୍ଦଶ+ପୂରଣାର୍ଥେ.କ)—ଚଉଦର ପୂରଣ—Chaturdasaka Fourteenth (M. W.).
(ଚତୁର୍ଦ୍ଦଶମ—ଅନ୍ୟରୂପ)

**ଚତୁର୍ଦ୍ଦଶପଦୀ କବିତା**—ସଂ. ବି· ( ଆଧୁନିକ ପ୍ରୟୋଗ )—Chaturdasapadī kabitā ୨ । ଇଂରାଜୀ ସନେଟ ଅନୁକରଣରେ ରଚିତ ୧୪ଟି ଧାଡ଼ିବିଶିଷ୍ଟ କବିତା—
1. A poem with 14 lines; sonnet.
[ ଦ୍ର—ମଧୁସୂଦନ ରାଓ ଓଡ଼ିଆ ଭାଷାରେ ଏହିପରି କେତେଗୁଡ଼ିଏ କବିତା ଲେଖିଅଛନ୍ତି । ]
୨ । ଚଉଦପୋଇ—2. Poems with fourteen lines.
[ ଦ୍ର—ସ୍ୱର୍ଣ୍ଣପୁରର ସ୍ୱର୍ଗୀୟ ଯୁବରାଜ ଶ୍ରୀ ପ୍ରତାପରୁଦ୍ର ସିଂହ ଦେବଙ୍କ ରଚିତ ଗୁଡ଼ିଏ ଚତୁର୍ଦ୍ଦଶପଦୀ ବା ଚଉଦପୋଇ ପ୍ରାଚୀନ କବିତା ସୋନପୁରର ପଣ୍ଡିତ ସୁଧାଂଶୁଶେଖର ସିଂହ ଦେବଙ୍କଦ୍ୱାରା ପୁସ୍ତକାକାରରେ ପ୍ରକାଶିତ ହୋଇଅଛି । ]

**ଚତୁର୍ଦ୍ଦଶବିଦ୍ୟା**—ସଂ. ବି—ବ୍ରାହ୍ମଣର ପଠନୀୟ ୧୪ଟି ବିଦ୍ୟା (ଯଥା—Chaturddasabidyā ୪ ବେଦ, ୬ ବେଦାଙ୍ଗ, ଧର୍ମଶାସ୍ତ୍ର ବା ସଂହିତା, ପୁରାଣ, ମୀମାଂସା ଓ ତର୍କ ଏହି ୪ ଶାସ୍ତ୍ର )—Fourteen lores or arts to be learnt by every Brahman as enjoined in the Sastras ( viz, 4 Vedas, 6 Vedangas and Law, Mythology, Logic and Philosophy).

**ଚତୁର୍ଦ୍ଦଶଭୁବନ**—ସଂ. ବି—ହିନ୍ଦୁଶାସ୍ତ୍ରଅନୁସାରେ ୭ ଗୋଟି ସ୍ୱର୍ଗ ଓ ୭ Chaturddasabhubana ଗୋଟି ପାତାଳ ଏହିପରି ୧୪ଟି ସଂସାର ବା ଲୋକ—The 14 worlds described in

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଙ୍ଗ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଓ | ନ୍ତ |

the Hindu Sastras, 7 above heaven and 7 below (Nether worlds) the Earth.

[ ଦ୍ର—ଯଥା—ଭୂଃ, ଭୁବଃ, ସ୍ୱଃ, ମହଃ, ଜନ, ତପ ଓ ସତ୍ୟ ଏହି ସପ୍ତସ୍ୱର୍ଗ ( ଊର୍ଦ୍ଧ୍ୱଭୁବନ ) ଓ ଅତଳ, ସୁତଳ, ବିତଳ. ତଳାତଳ, . ମହାତଳ, ରସାତଳ ଓ ପାତାଳ ଏହି ସପ୍ତପାତାଳ ( ଅଧୋଭୁବନ ) । ]

ଚତୁର୍ଦ୍ଦଶଲୋକ—ସଂ. ବି—ଚତୁର୍ଦ୍ଦଶଭୁବନ ( ଦେଖ )—
Chaturddaśaloka Chaturddaśabhubana (See)

ଚତୁର୍ଦ୍ଦଶୀ—ସଂ.ବି ସ୍ତ୍ରୀ (ଚତୁର୍ଦ୍ଦଶ + ଈ)—ଅମାବାସ୍ୟା ଓ ପୂର୍ଣ୍ଣିମାର ପୂର୍ବ
Chaturdaśi ଦିବସ—The 14th day of the dark and
(ଚତୁର୍ଦ୍ଦଶୀ—ଅନ୍ୟରୂପ) bright fortnight of the lunar month.

[ ଦ୍ର—ଏ ଦିନ ଶିବପୂଜା, ରାତ୍ରିରେ ଉପବାସ ଓ ମହାଦେବଙ୍କ ବେଢ଼ା ପରିକ୍ରମା କରାଯାଏ । ଚତୁର୍ଦ୍ଦଶୀମାନଙ୍କ ମଧ୍ୟରେ ନିମ୍ନଲିଖିତ ୧୫ଟିରେ ହିନ୍ଦୁମାନଙ୍କ ପର୍ବ ହୁଏ । ]

୧ । ବୈଶାଖ ଶୁକ୍ଳପକ୍ଷ—ନୃସିଂହଚତୁର୍ଦ୍ଦଶୀ ।
୨ । ଜ୍ୟୈଷ୍ଠ କୃଷ୍ଣ—ସାବିତ୍ରୀଚତୁର୍ଦ୍ଦଶୀ ।
୩ । ଜ୍ୟୈଷ୍ଠ ଶୁକ୍ଳ—ଚମ୍ପକଚତୁର୍ଦ୍ଦଶୀ ।
୪ । ଆଷାଢ଼ କୃଷ୍ଣ—ଜଗନ୍ନାଥ ନେତ୍ରୋତ୍ସବ ଓ ନବଯୌବନ-ଦର୍ଶନଯାତ୍ରା ।
୫ । ଆଷାଢ଼ ଶୁକ୍ଳ—ଶିବଶୟନଚତୁର୍ଦ୍ଦଶୀ ( ଲିଙ୍ଗରାଜଙ୍କଉତ୍ସବ )
୬ । ଶ୍ରାବଣ ଶୁକ୍ଳ—ପବିତ୍ରାରୋପଣ ଚତୁର୍ଦ୍ଦଶୀ ( ଲିଙ୍ଗରାଜଙ୍କ ଯାତ୍ରା )
୭ । ଭାଦ୍ର କୃଷ୍ଣ—ଅଘୋର ଚତୁର୍ଦ୍ଦଶୀ ।
୮ । ଭାଦ୍ର ଶୁକ୍ଳ—ଅନନ୍ତ ଚତୁର୍ଦ୍ଦଶୀ ।
୯ । କାର୍ତ୍ତିକ କୃଷ୍ଣ—ନରକ ବା ଭୂତ-ଚତୁର୍ଦ୍ଦଶୀ ।
୧୦ । କାର୍ତ୍ତିକ ଶୁକ୍ଳ—ଶିବୋତ୍ଥାପନ ଚତୁର୍ଦ୍ଦଶୀ ( ଲିଙ୍ଗରାଜଙ୍କ ଯାତ୍ରା )
୧୧ । ମାର୍ଗଶିର ଶୁକ୍ଳ—ପାଷାଣ ଚତୁର୍ଦ୍ଦଶୀ ।
୧୨ । ମାଘ କୃଷ୍ଣ—ରଟନ୍ତୀ ଚତୁର୍ଦ୍ଦଶୀ ।
୧୩ । ଫାଲ୍ଗୁନ କୃଷ୍ଣ—ଶିବ ଚତୁର୍ଦ୍ଦଶୀ ( ଲିଙ୍ଗରାଜଙ୍କ ଯାତ୍ରା )
୧୪ । ଚୈତ୍ର କୃଷ୍ଣ—ମୁଣ୍ଡା ଚତୁର୍ଦ୍ଦଶୀ ।
୧୫ । ଚୈତ୍ର ଶୁକ୍ଳ—ଅଙ୍ଗାରକ ବା ଦମନକ ଚତୁର୍ଦ୍ଦଶୀ ।

ଚତୁର୍ଦ୍ଦିକ୍—ସଂ. ବି (ସମାହାର ଦ୍ୱନ୍ଦ୍ୱ; ଚତୁର୍ + ଦିଶ; ୧ମା. ୧ବ)—
Chaturdik ୧ । ଚତୁର୍ଦ୍ଦିଗ; ପୂର୍ବପଶ୍ଚିମ ଓ ଉତ୍ତରଦକ୍ଷିଣ ଦିକ୍-
(ଚତୁର୍ଦ୍ଦିକ୍—ଅନ୍ୟରୂପ) ଚତୁଷ୍ଟୟ—1. The four quarters or points of the compass.
୨ । କୌଣସି ବସ୍ତୁର ଚାରି ଆଡ଼ ବା ପାର୍ଶ୍ୱ—
2. The four sides of a thing.
୩ । ସମସ୍ତ ବିଷୟ—3. All matters.
ଦେ. ଅ—୧ । ଚାରିଆଡ଼େ—1. On all sides.
୨ । ସବୁଆଡ଼େ—2. All round.

ଚତୁର୍ଦ୍ଦିଗ—ଦେ. ବି (ସଂ. ଚତୁର୍ଦ୍ଦିକ୍)—ଚତୁର୍ଦ୍ଦିକ୍ (ଦେଖ)
Chaturdiga Chaturdik (See)

ଚତୁର୍ଦ୍ଦିଗା—ଦେ. ବିଣ ( ସଂ. ଚତୁର୍ଦ୍ଦିକ୍ )—ଚତୁର୍ଦ୍ଦିଗ ବ୍ୟାପିଥିବା;
Chaturdigā ଚଉଦିଗା—Pervading the four points of the compass; extending over the four quarters.
କ୍ରି. ବିଣ—୧ । ଚତୁର୍ଦ୍ଦିଗରେ; ଚାରିଆଡ଼େ—
1. On all sides; in every quarter.
(ଯଥା—ଏଥରକ ମେଘ ଚତୁର୍ଦ୍ଦିଗା ବରଷିଛି ।)
୨ । ଯେ ସବୁଆଡ଼େ ଘେରକର ( ଥାଏ )—
2. All round.

ଚତୁର୍ଦ୍ଦୋଳ—ସଂ ବି (ଚତୁଃ + ଦୁଲ୍ ଧାତୁ + ଅ)—ଚଉଦୋଳ; ୪ ଜଣ
Chahurdola ବାହକଙ୍କ ବହନଯୋଗ୍ୟ ଶିବିକା—
(ଚତୁର୍ଦ୍ଦୋଳ—ଅନ୍ୟରୂପ) A sedan chair or state-litter carried on the shoulders of 4 bearers.

ଚତୁର୍ଦ୍ୱାର—ସଂ. ବିଂ (ବହୁବ୍ରୀହି; ଚତୁର୍ + ଦ୍ୱାର)—ଚାରିଦ୍ୱାରବିଶିଷ୍ଟ—
Chaturdwāra Having four doors.
(ଚତୁର୍ଦ୍ଦ୍ୱାର—ଅନ୍ୟରୂପ)
(ଚତୁର୍ଦ୍ୱାରା—ସ୍ତ୍ରୀ)

ଚତୁର୍ଦ୍ଧା—ସଂ. ଅ (ଚତୁର୍ + ପ୍ରକାରାର୍ଥେ ଧା; ତୁଳ. ବହୁଧା)—
Chaturdhā ୧ । ଚତୁର୍ବିଧ; ଚାରିପ୍ରକାରେ—
1. Of four kinds; in four ways.
ଚତୁର୍ଦ୍ଧାରୂପରେ ଅଂଶେ ଜନମ ହୋଇବୁଁ—ବିଶ୍ୱନାଥ. ବଡଜଗମାସୁଣ ।
(ଚତୁର୍ଦ୍ଧା—ଅନ୍ୟରୂପ) ୨ । ଚାରିଗୁଣ—2. Fourfold.
୩ । ଚାରିଦିଗରେ—3. On four sides.
୪ । ଚାରିଥର—4 Four times.
୫ । ଚାରିଖଣ୍ଡ—5. In four pieces
୬ । ଚାରି ବିଷୟରେ—6. In four matters.
୭ । ଚାରି ଅଂଶରେ—7. In four parts

ଚତୁର୍ଦ୍ଧାଟା—ଗ୍ରା. (ପଦ୍ୟ) ବିଣ—ଚାରି—
Chaturdhāṭā Four.
ଶୁଣ କମଳାକାର ତୁଚ୍ଛୋ ଚତୁର୍ଦ୍ଧାଟା ବାହା ।
ପ୍ରାଚୀ. ବ୍ରହ୍ମାଣ୍ଡରୂପଗୀତା ।

ଚତୁର୍ଦ୍ଧାମୂରତ—ଦେ. ବି. (ସଂ. ଚତୁର୍ଦ୍ଧା + ମୂର୍ତ୍ତି)—୧ । ଶ୍ରୀ ବିଷ୍ଣୁଙ୍କର
Chaturdhā mūrati ଶଙ୍ଖ, ଚକ୍ର, ଗଦା, ପଦ୍ମ ଧରିଥିବା ମୂର୍ତ୍ତି—
1. The image of Bishnu holding couch, discus, mace and lotus in hands.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧ୍ୟ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

(ଚତୁର୍ଦ୍ଧାମୂରତି—ଅନ୍ୟରୂପ) ୨ । ଜଗନ୍ନାଥଙ୍କ ମନ୍ଦିରରେ ଥିବା ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଚକ୍ର ଏହିପରି ଚାରୋଟି ମୂର୍ତ୍ତି—2. Four images inside the temple of Jagannath.

ସୁଭଦ୍ରା ସୁଦର୍ଶନ ଶ୍ରୀପତି
ବଳଦେବ ଆଦି ଚତୁର୍ଦ୍ଧା ମୂରତି । ପ୍ରାଚୀ. ରହସ୍ୟମଞ୍ଜରୀ ।

ଚତୁର୍ଦ୍ଧାମୂର୍ତ୍ତି—ଦେ. ବି.—ଚତୁର୍ଦ୍ଧାମୂରତି (ଦେଖ)
Chaturdhā mūrtti Chaturdhā mūrati (See)

ଚତୁର୍ଦ୍ଧାରୂପ—ଦେ. ବି.—ଚତୁର୍ଦ୍ଧାମୂରତି (ଦେଖ)
Chaturdhā rūpa Chaturdhā mūrati ( See)

ଚତୁର୍ଦ୍ଧାମ— ସଂ. ବି. (ଚତୁର୍ + ଧାମନ୍ ୧ମା· ୧ବ)—
Chaturdhāma ଭାରତରେ ହିନ୍ଦୁଙ୍କର ପ୍ରସିଦ୍ଧ ୪ ତୀର୍ଥକେନ୍ଦ୍ର— (ଚତୁର୍ଦ୍ଧାମ—ଅନ୍ୟରୂପ) (ଯଥା— ଜଗନ୍ନାଥ, ରାମନାଥ, ଦ୍ୱାରକାନାଥ ଓ ବଦ୍ରିନାଥ)—The four centres of Hindu pilgrimage in India (e. g. Puri, Rameswara, Dwārakā and Badrināatha.

ଚତୁର୍ନବତ—ସଂ. ବିଣ (ଚତୁର୍ନବତି + ପୂରଣାର୍ଥେ. ଅ)—୯୪ର ପୂରଣ—
Chaturnabata Nintyfourth (M. W)
(ଚତୁର୍ଣବତ—ଅନ୍ୟରୂପ)

ଚତୁର୍ନବତି—ସଂ. ବି. ( ମ. ପ. ଲୋ; ଚତୁର୍ ଅଧିକ ନବତି )—
Chaturnabati ଚଉରାନବେ; ୯୪—94.
ବିଣ— ୯୪ ସଂଖ୍ୟକ—94 in number.

ଚତୁର୍ନବତିତମ—ସଂ. ବିଣ—୯୪ର ପୂରଣ—
Chaturnabatitama 94th.

ଚତୁର୍ବକ୍ତ୍ର—ସଂ. ବି. ( ବହୁବ୍ରୀହି; ଚତୁଃ + ବକ୍ତ୍ର )—ଚତୁର୍ମୁଖ (ଦେଖ)
Chaturbaktra Chaturmukha ( See )

ଚତୁର୍ବର୍ଗ—ସଂ. ବି. ( ସମାହାର ଦ୍ୱିଗୁ; ଚତୁର୍ + ବର୍ଗ )—ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ପୁରୁଷାର୍ଥ ଚତୁଷ୍ଟୟ—
Chaturbarga The four main objects or somum bonum of human pursuit ( viz. 1 Religion or virtue, 2 wealth or riches, 3 enjoyment or love, 4 final salvation or beatitude ).

ଚତୁର୍ବର୍ଗକର୍ତ୍ତା—ସଂ. ବି. ( ୬ଷ୍ଠୀ ତତ୍; ଚତୁର୍ବର୍ଗ + କର୍ତ୍ତା )—
Chaturbarga karttā ଚତୁର୍ବର୍ଗଦାତା ( ଦେଖ )
Chaturbarga dātā ( See)

ଚତୁର୍ବର୍ଗଦାତା—ସଂ. ବି. (୬ଷ୍ଠୀ ତତ୍; ଚତୁର୍ବର୍ଗ + ଦାତା; ଯେ ମନୁଷ୍ୟକୁ ଚତୁର୍ବର୍ଗ ଦିଅନ୍ତି)—ପରମେଶ୍ୱର; ଭଗବାନ—
Chaturbrga dātā God.

ଚତୁର୍ବର୍ଣ୍ଣ—ସଂ. ବି. ( ସମାହାର ଦ୍ୱିଗୁ; ଚତୁର୍ + ବର୍ଣ୍ଣ )—
Chaturbarnna ୧ । ହିନ୍ଦୁମାନଙ୍କର ଜାତିଚତୁଷ୍ଟୟ ( ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର )—1. The four castes amongst the Hindus ( Brāhmana, Kshatriya, Baisya and Sūdra ).
୨ । ଚାରୋଟି ପ୍ରଧାନ ବର୍ଣ୍ଣ ବା ରଙ୍ଗ ( ଧଳା, କଳା, ନାଲି ଓ ନେଳୀ )—2 The four principal colours ( white, black, red and blue ).

ଚତୁର୍ବାର୍ଷିକା—ସଂ. ବି. ( ଚତୁର୍ + ବର୍ଷ + ଇକ + ଆ )—୪ ବର୍ଷ ବୟସ୍କା ଗାଈ —A cow 4 years old ( M. W. )
Chaturbārshikā

ଚତୁର୍ବାହୀ—ସଂ. ବି ( ଚତୁର୍ + ବହ ଧାତୁ + ଇନ୍, ୧ମା. ୧ବ. )—
Chaturbāhī ଚାରି ଘୋଡ଼ା ବା ବଳଦଙ୍କଦ୍ୱାରା ଟଣାହେବା ରଥ—A carriage drawn by four horses or oxen ( M. W. ).

ଚତୁର୍ବାହୁ—ସଂ. ବିଣ. ( ବହୁବ୍ରୀହି; ଚତୁର୍ + ବାହୁ )—
Chaturbāhu ୧ । ଚଉବାହା; ଯାହାର ଚାରୋଟି ବାହା ବା ହାତ ଅଛି—1. Four-handed.
୨ । ଚାରିବାହୁବିଶିଷ୍ଟ ( କ୍ଷେତ୍ର )—
2. Four sided ( figure ); quadrilateral.
ବି—ବିଷ୍ଣୁ—God; Bishnu.
[ ଦ୍ର—ଏହାଙ୍କର ଶଙ୍ଖ, ଚକ୍ର, ଗଦା ଓ ପଦ୍ମ-ଧାରୀ ୪ଟି ବାହୁ ଅଛି । ]

ଚତୁର୍ବିଂଶ—ସଂ. ବିଣ. ( ମଧ୍ୟପଦଲୋପୀ; ଚତୁର୍ ଅଧିକ ବିଂଶ )—
Chaturbimsa ୨୪ ସଂଖ୍ୟାର ପୂରଣ—24th.

ଚତୁର୍ବିଂଶତତ୍ତ୍ୱ—ଦେ. ବି. (ସଂ. ଚତୁର୍ବିଂଶତି + ତତ୍ତ୍ୱ )—
Chaturbimsa tattwa ୨୪ ଗୋଟି ତତ୍ତ୍ୱ ( ପଞ୍ଚମହାଭୂତ, ଏକାଦଶ ଇନ୍ଦ୍ରିୟ, ପଞ୍ଚ ତନ୍ମାତ୍ର, ଅହଙ୍କାର, ମହତ୍ତତ୍ତ୍ୱ ଓ ପ୍ରକୃତି )—

ଏକ ଚତୁର୍ବିଂଶତତ୍ତ୍ୱ ଜାଣ
ସୃଷ୍ଟିର ଅଟନ୍ତି କାରଣ । ପ୍ରାଚୀ. ଦୃଷ୍ଟିମତନ୍ତ୍ରୋଦୟ ।

ଚତୁର୍ବିଂଶତି—ସଂ. ବି. ( ମଧ୍ୟପଦଲୋପୀ; କର୍ମଧାରୟ; ଚତୁଃ + ବିଂଶତି)—
Chaturbimsati ଚବିଶ; ୨୪—24.
ସଂ. ବିଣ—୨୪ ସଂଖ୍ୟକ—24 in number.

ଚତୁର୍ବିଂଶତିକ—ସଂ. ବିଣ. ( ଚତୁର୍ବିଂଶତି + କ )—
Chaturbimsatika ଚତୁର୍ବିଂଶତି-ସଂଖ୍ୟା-ଯୁକ୍ତ—
Consisting of twenty four.

ଚତୁର୍ବିଂଶତିତମ—ସଂ. ବିଣ. ( ଚତୁର୍ବିଂଶତି + ପୂରଣାର୍ଥେ ତମ )—
Chaturbimsatitama ୨୪ ର ପୂରଣ—24th.

ଚତୁର୍ବିଦ୍ୟ—ସଂ. ବିଣ. ପୁଂ. ( ବହୁବ୍ରୀହି; ଚତୁର୍ + ବିଦ୍ୟା )—
Chaturbidya ୧ । ଚାରିବେଦଜ୍ଞ; ଚତୁର୍ବେଦୀ—
4. Knowing the 4 Bedas; read or versed in 4 Vedas.

| ଂ | ଇ | ଉ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ସ୍ୱଳ୍ପାକ୍ଷର | ଯ | ଜ | ଶ,ଷ | କ୍ଷ | ଇପ୍ସ | ଉଅ | ଶ୍ୱ |
|---|---|---|---|---|---|---|---|---|---|---|---|---|---|---|
| ୍ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଁୟ | ଇଅ | ଢ଼ | ନ୍ବ |

ଚତୁର୍ବିଧ—ସଂ. ବଣ.—(ବହୁବ୍ରୀହି, ଚତୁର୍ + ବିଧା = ପ୍ରକାର)—
Chaturbidha ଚାରି ପ୍ରକାର—Of four kinds.

ଚତୁର୍ବିଧାନ୍ନ—ସଂ. ବି. ( ଚତୁର୍ବିଧ + ଅନ୍ନ )—ଚାରି ପ୍ରକାରର ଖାଦ୍ୟ
Chaturbidhānna ପଦାର୍ଥ (ଚର୍ବ୍ୟ, ଚୋଷ୍ୟ, ଲେହ୍ୟ ଓ ପେୟ)—
Four kinds of eatables (viz that which can be chewed; which can be sucked; which can be licked and which can be drunk )

ଚତୁର୍ବେଦ—ସଂ. ବି. (ସମାହାର ଦ୍ୱିଗୁ; ଚତୁର୍ + ବେଦ)—ଚାରିଗୋଟି
Chaturbeda ବେଦର ସମଷ୍ଟି; ବେଦଚତୁଷ୍ଟୟ ( ଋକ୍, ସାମ, ଯଜୁଃ ଓ ଅଥର୍ବ )—The four Bedas ( Ṛuk, Sāma, Jajur and Atharba ).

ଚତୁର୍ବେଦୀ—ସଂ. ବି. ( ଚତୁର୍ + ବେଦ + ଇନ୍; ୧ମା. ୧ବ. )—
Chaturbedī ଚାରିବେଦ ପଢ଼ିଥିବା ବ୍ରାହ୍ମଣ; ଚୌବେ—
One who has read 4 Bedas; one versed in the 4 Bedas.

ସଂ. ବିଣ—ଚତୁର୍ବିଦ୍ୟ—Versed in the four Bedas.

ଚତୁର୍ଭଦ୍ର—ସଂ. ବି. ( ଦ୍ୱିଗୁ; ଚତୁର୍ + ଭଦ୍ର = ମଙ୍ଗଳକର ବସ୍ତୁ )—
Chaturbhadra ୧। ଚତୁର୍ବର୍ଗ ( ଦେଖ )
1. Chaturbarga ( See )
୨। ନାଗରମୁଥା; ( ମତାନ୍ତରେ ପୁଷ୍କର ମୂଳ ) ପିପ୍ପଳୀ; ଅତୁସୀ ( ମତାନ୍ତରେ ଜାଇଫଳ ) ଓ କକଡ଼ାଶୃଙ୍ଗୀକୁ ଚୂର୍ଣ୍ଣ କରି ପ୍ରସ୍ତୁତ କରାଯିବା ଅବଲେହ ( ଏହା ଶ୍ୱାସ, କାସ, ଅତିସାର ଓ ଜ୍ୱରରେ ଉପକାରୀ )—
2 A medicinal paste consisting of 4 particular ingredients and taken as an antidote for cough, dysentery and fever.

ଚତୁର୍ଭାଗ—ସଂ. ବି ( ଚତୁର୍ + ଭାଗ )—ଚଉଠ, ଏକଚତୁର୍ଥାଂଶ—
Chaturbhāga A quarter; the fourth part.

ଚତୁର୍ଭୁଜ—ସଂ. ବି. ( ବହୁବ୍ରୀହି )—୧। ବିଷ୍ଣୁ—
Chaturbhuja 1. Bishṇu ( having 4 hands ).
୨। ଯେଉଁ କ୍ଷେତ୍ର ୪ଟି ରେଖାଦ୍ୱାରା ଆବଦ୍ଧ—
2. A quadrilateral figure.
ସଂ. ବିଣ—୧। ଚାରିହାତବିଶିଷ୍ଟ—
1. Four-armed; four-handed.
୨। ଚାରିରେଖାବିଶିଷ୍ଟ—
2 Quadrilateral; four-sided.
ଦେ. ବି. ପୁଂ—ଲୋକଙ୍କ ନାମ—
Name given to males

ଚତୁର୍ମାସ—ସଂ. ବିଣ. ( ନିପାତନ, ଚତୁର୍ + ମାସ )—
Chaturmasa ଚତୁର୍ମାସ୍ୟା ( ଦେଖ )
Chaturmāsyā ( See )

ଚତୁର୍ମାଥ—ଦେ. ବି. ( ସଂ. ଚତୁର୍ + ମସ୍ତକ )—ଚତୁର୍ମୁଖ ( ଦେଖ )
Chaturmātha Chaturmukha ( See )

ରଣ କରନ୍ତି ଚତୁର୍ମାଥ
ଦିଲେ ସୋମର ଅଗ୍ରତ—ଜଗନ୍ନାଥ. ଭାଗବତ ।

ଚତୁର୍ମାସ—ସଂ. ବି. ( ଦ୍ୱିଗୁ; ଚତୁର୍ + ମାସ )—
Chaturmāsa ୧। ବର୍ଷା ଚାରିମାସ, ଆଷାଢ଼ ଶୁକ୍ଳ ଦ୍ୱାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଦ୍ୱାଦଶୀ ପର୍ଯ୍ୟନ୍ତ ସମୟ, ଦେବଶୟନ ଏକାଦଶୀଠାରୁ ଉତ୍ଥାନ ଏକାଦଶୀ ପର୍ଯ୍ୟନ୍ତ ୪ ମାସ ସମୟ; ଚତୁର୍ମାସ୍ୟା—1. The monsoon months; the time of 4 month from the 12th day of the bright fortnight of Āshārdha to the 12th day of the bright fortnight of Kārttika.

ଏରୂପେ କରି କ୍ଷେତ୍ରବାସ
ରହିଲେ ଜନ ଚତୁର୍ମାସ—ଭୂପତି. ପ୍ରେମପଞ୍ଚାମୃତ ।

୨। ୪ ମାସ ସମୟ—2 A period of 4 months

ଚତୁର୍ମାସିକ—ସଂ. ବିଣ. ( ଚତୁର୍ + ମାସ + ଇକ )—ଚତୁର୍ମାସବ୍ୟାପୀ
Chaturmāsika (ବ୍ରତ); ଚାତୁର୍ମାସ୍ୟ; ଚତୁର୍ମାସରେ ଅନୁଷ୍ଠେୟ—
( a religious observance ) Extening over a period of 4 months from 12th (bright) Āshārdha to 12th ( bright ) Kārttika.

ଚତୁର୍ମାସ୍ୟା—ଦେ. ବି. ( ସଂ. ଚାତୁର୍ମାସ୍ୟ)—ଶ୍ରାବଣ, ଭାଦ୍ର, ଆଶ୍ୱିନ ଓ
Chaturmāsyā କାର୍ତ୍ତିକ ଏହି ଚାରି ମାସ; ବର୍ଷା ସମୟ—The 4
**चौमसिया** monsoon months; the rainy season; the four months from Śrābaṇa to Kārttika.

ଏମନ୍ତେ ଚତୁର୍ମାସ୍ୟା ହୋଇ
ଶୟନଯାତ୍ରା ସେ ହୁଅଇ—ଯଶୋବନ୍ତ ପ୍ରେମଭକ୍ତିଗୀତା ।

ଚତୁର୍ମୁଖ—ସଂ. ବି. ( ବହୁବ୍ରୀହି; ଚତୁର୍ + ମୁଖ )—ବ୍ରହ୍ମା—
Chaturmukha The four-faced God Brahmā.
ସଂ. ବିଣ. ପୁଂ—ଚାରିମୁଖବିଶିଷ୍ଟ—
Having four faces.

ଚତୁର୍ଯୁଗ—ସଂ ବି. ( ଦ୍ୱିଗୁ; ଚତୁର୍ + ଯୁଗ )—
Chaturjuga ହିନ୍ଦୁଶାସ୍ତ୍ରୋକ୍ତ ସତ୍ୟ, ତ୍ରେତା, ଦ୍ୱାପର ଓ କଳି ନାମକ ପୃଥିବୀର ୪ ଗୋଟି ଯୁଗ—The four ages of the world viz, Satya, Tretā, Dwāpara and Kaḷi ( according to the Hindu mythology)

ଚତୁଶ୍ଚତ୍ୱାରିଂଶ—ସଂ. ବିଣ. ( ଚତୁଶ୍ଚତ୍ୱାରିଂଶତ୍ + ପୂରଣାର୍ଥେ. ଅ )—
Chatuśchatwāriṁśa ୪୪ର ପୂରଣ—44 th

ଚତୁଶ୍ଚତ୍ୱାରିଂଶତ୍—ସଂ ବି. ( ମଧ୍ୟପଦଲୋପୀ କର୍ମଧାରୟ; ଚତୁଃ ଅଧିକ
Chatuśchatwāriṁśat ଚତ୍ୱାରିଂଶତ୍ )—ଚଉରାଳିଶି; ୪୪—
44; fortyfour.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଢ' ନ ମିଳିଲେ 'ଗାଢ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, ଅଗିଆ ନ ପାଇଲେ 'ଅଜ୍ଞା' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

ବିଣ—୪୪ ସଂଖ୍ୟକ—Numbering 44

**ଚତୁଶ୍ଚତ୍ୱାରିଂଶତ୍ତମ**—ସଂ. ବିଣ. (ଚତୁଶ୍ଚତ୍ୱାରିଂଶତ୍+ପୂରଣାର୍ଥେ ତମ)—
Chatuśchatwārimśattama ୪୪ର ପୂରଣ—44th.

**ଚତୁଷ୍କ**—ସଂ ବି. ( ଚତୁର୍ + ସଂଜ୍ଞାର୍ଥେ କ )—
Chatushka ୧ । ଚାରିକୋଣିଆ ପ୍ରାଙ୍ଗଣ; ଚହର; ଚଉକ—
1. A square courtyard. ( used for receiving guests (M.W. )
୨ । ଚାରିକୋଣରେ ଚାରିଗୋଟି ସ୍ତମ୍ଭଯୁକ୍ତ ମଣ୍ଡପ—
2. A hall standing or resting upon 4 pillars.
୩ । ଚାରିଟି ବସ୍ତୁର ସମାହାର—3. A collection or aggregate of four; a set of 4.
୪ । ଚଉରାସ୍ତା; ଛକ—4. A crossing where 4 roads meet or 2 roads cross; a cross-way.
୫ । ଚାରିସରିଆ ହାର—
5. A necklace of 4 strings ( M. W. )
ସଂ. ବିଣ—୧ । ୪ଟି ବସ୍ତୁବିଶିଷ୍ଟ—
1. Consisting of four.
୨ । ୪ ଦ୍ୱାରା ଯୋଗକରାଯିବ —
2. Increased by four.

**ଚତୁଷ୍କବେଶ୍ମ**—ସଂ. ବି. ( କର୍ମଧା; ଚତୁଷ୍କ + ବେଶ୍ମନ୍ )—
Chatushkabeśma ଚାରିଟି ଖୁଣ୍ଟ ଉପରେ ଯେଉଁ ମଣ୍ଡପର ଛାତ ଥାଏ—A hall resting on 4 columns.

**ଚତୁଷ୍କର**—ସଂ. ବି. ( ବହୁବ୍ରୀହି; ଚତୁଃ+କର )—
Chatushkara ଚତୁର୍ବାହୁ, ନାରାୟଣ; ବିଷ୍ଣୁ—
( four-armed ) Bishṇu.

ଏକାକରେ ଚିକରେ ସ୍ୱୀକରେ ଧରୁ ଚତୁଷ୍କର ଦର୍ଶନକୁ ପଙ୍କଜରେ
ସଡ଼କରେ ଯାଉଅଛନ୍ତି । ଯଦୁମଣି. ରହସ୍ୟ ।

ବିଣ—୧ । ଚାରିହସ୍ତଯୁକ୍ତ ( ଜନ୍ତୁ ); ଯେଉଁ ଜନ୍ତୁଙ୍କର ପାଦଦ୍ୱୟ ମଧ୍ୟ ହାତ ପରି ( ଯଥା—ବାନର )—
1. Quadrumanous ( e.g. apes ).
୨ । ( କ୍ଷେତ୍ରତତ୍ତ୍ୱ ) ଚାରିଭୁଜ ବା ବାହୁବିଶିଷ୍ଟ—
2. Quadrilateral.
୩ । ଚାରିହାତବିଶିଷ୍ଟ—
3. Having 4 arms or hands.

**ଚତୁଷ୍କା**—ସଂ. ବି ସ୍ତ୍ରୀ. ( ଚତୁଷ୍କ+ଆ )—
Chatushkā ୧ । ଚାରିକୋଣିଆ ଛୋଟ ପୋଖରୀ; ଚଉକା—
1. Small square tank.
୨ । ଚଉକି; ବେତ୍ରାସନ—2. Chair; a square stool.
୩ । ମଶାରି; ଚାନ୍ଦୁଆ—3. A square awning; a mosquito curtain.

୪ । ଚାରିସରିଆ ହାର—
4. A necklace of 4 strings ( M. W. )

**ଚତୁଷ୍କୀ**—ସଂ ବି. ସ୍ତ୍ରୀ. ( ଚତୁଷ୍କ+ଈ )—ଚତୁଷ୍କା ( ଦେଖ )
Chatushkī Chatushkā ( See )

**ଚତୁଷ୍କୋଣ**—ସଂ. ବିଣ ( ବହୁବ୍ରୀହି; ଚତୁଃ+କୋଣ )—
Chatushkoṇa ଚାରିକୋଣଯୁକ୍ତ ( କ୍ଷେତ୍ର )—
Quadrangular; having 4 angles.
ସଂ. ବି.—୧ । (ଦ୍ୱିଗୁ) ଚାରିଟି କୋଣ—1. Four angles.
୨ । ( ବହୁବ୍ରୀହି )—ଚାରିକୋଣଯୁକ୍ତ କ୍ଷେତ୍ର, ଚତୁର୍ଭୁଜ କ୍ଷେତ୍ର—Tetragon; a figure with 4 sides.

**ଚତୁଷ୍ଖଣ୍ଡ**—ସଂ. ବିଣ.—(ବହୁବ୍ରୀହି; ଚତୁଃ+ଖଣ୍ଡ) ଚାରିଖଣ୍ଡିଆ, ଯାହାର
Chatushkhaṇḍa ୪ ଟି ଭାଗ ଥାଏ—
Consisting of four parts or volumes.

**ଚତୁଷ୍ଟୟ**—ସଂ. ବିଣ.—(ଚତୁର୍ +ଅବୟବାର୍ଥେ. ତୟ)—୧ । ଯାହାର
Chatushṭaya ୪ଟି ଅବୟବ ବା ଅଙ୍ଗ ଅଛି—
1. Composed of 4 parts.
୨ । ଚତୁର୍ବିଧ—2. Of four kinds
୩ । ୪ ସଂଖ୍ୟକ—3. Numbering four.
ବି.—୧ । ଚାରିଗୋଟି ପଦାର୍ଥର ସମଷ୍ଟି—1. An aggregate of four things.
୨ । ୪ ସଂଖ୍ୟା—2. Four.

**ଚତୁଷ୍ପଞ୍ଚାଶ**—ସଂ ବିଣ.—( ଚତୁଷ୍ପଞ୍ଚାଶତ୍+ପୂରଣାର୍ଥେ. ଅ ) ୫୪ ର
Chatushpañchāśa ପୂରଣ—Fifty fourth.
(ଚତୁଷ୍ପଞ୍ଚାଶତ୍ତମ—ଅନ୍ୟରୂପ)

**ଚତୁଷ୍ପଞ୍ଚାଶତ୍**—ସଂ ବି.—(ମ. ପ ଲୋ; ଚତୁରଧିକ ପଞ୍ଚାଶତ୍)—ପଚାଶରୁ
Chatushpañchāśat ଚାରି ଅଧିକ ସଂଖ୍ୟା; ଚଉବନ; ୫୪—
Fiftyfour.
ବିଣ.—୫୪ ସଂଖ୍ୟକ—Numbering 54.

**ଚତୁଷ୍ପତ୍ରୀ**—ସଂ ବି. (ବହୁବ୍ରୀହି; ଚତୁଃ+ପତ୍ର+ଈ; ଏହାର ପତ୍ର ଚାରି-
Chatushpatrī ଚାରିକିଆ )—ସୁନୁସୁନିଆଶାଗ—Marselia Quadrifolia; a potherb; Blephares Edulis.

**ଚତୁଷ୍ପଥ**—ସଂ. ବି.—( ଦ୍ୱିଗୁ; ଚତୁର୍+ପଥିନ୍ )—୧ । ଚଉରାସ୍ତା;
Chatushpatha ଛକ—1. Meeting of 2 crossing roads; cross-way.

ଜନପଦ ଅଳ୍ପ-କଷ୍ଟରେ ଅଛି ହେବ,
ଚତୁଷ୍ପଥ ଲକ୍ଷତ ବେଶ୍ୟାରେ ପୂରିବ । କୃଷ୍ଣସିଂହ. ମହାଭାରତ ।

୨ । ଚାରିମୁହାଁଣିଆ ସ୍ଥାନ—
2. Place having four outlets.
୩ । (ଚତୁରାଶ୍ରମୀ ବା ଚତୁର୍ବେଦାଧ୍ୟାୟୀ) ବ୍ରାହ୍ମଣ—
3. A Brahman (treading on the path of the 4 Vedas or following the 4 āśramas)

| ୧ | ଇ | ଊ | ରୂ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ | ଉଅ | ଛ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ସେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ତ |

ସଂ. ବିଣ —(ବହୁବ୍ରୀହି) ଯହିଁର ୪ଟି ବାଟ ଅଛି— Having four outlets.

ଚତୁଷ୍ପଦ—ସଂ ବି. ପୁଂ.—( ବହୁବ୍ରୀହି )—୧ । ଚାରିଗୋଡ଼ିଆ ଜନ୍ତୁ; Chatushpada ପଶୁ - 1. Quadruped.

(ଚତୁଷ୍ପଦା—ସ୍ତ୍ରୀ) ୨ । (ଦ୍ୱିଗୁ) ଚାରିଚରଣବିଶିଷ୍ଟ ଶ୍ଳୋକ— 1. A verse with 4 lines or parts; a quartet.

୩ । ଚଉପଦୀ, ୪ ପାଦିଆ ଗୀତ— 3. A song with 4 stanzas.

୪ । ଚାରିଗୋଡ଼ିଆ ଖାଟ; ଚଉପାଯ୍ୟା— 4. A bedstead with 4 posts.

୫ । ରତିବନ୍ଧବିଶେଷ—5 A kind of coitus (M W)

ଚତୁଷ୍ପଦା, ଚତୁଷ୍ପଦିକା, ଚତୁଷ୍ପଦୀ } ସ୍ତ୍ରୀ ସଂ. ବିଣ.—୧ । ଚାରୋଟି ଗୋଡ଼ ଥିବା (ଜନ୍ତୁ) 1. (animal) Having four feets or legs, four-legged.

୨ । ଚାରିଚରଣବିଶିଷ୍ଟ (ଶ୍ଳୋକ)— 2. Consisting of four lines.

୩ । ଚାରୋଟି ଶ୍ଳୋକଯୁକ୍ତ (ଗୀତ) ବା ପଦ୍ୟ— 3. Having four stanzas.

୪ । ଚାରୋଟି ପାଦ ବା ଖୁରା ଥିବା (ଆସନାଦି)— 4 Four-footed (seat).

୫ । (ବୀଜଗଣିତ)—୪ଟି ପାଦ ଥିବା ସମୀକରଣ— 5 (algebra) Tetranomial (equation)

୬ । ଚାରୋଟି ପଦ ବା ଶବ୍ଦଯୁକ୍ତ (ବାକ୍ୟ)— 6. (a sentence) Having four words.

ଚତୁଷ୍ପାଠୀ—ସଂ.ବିଣ.—(ଚତୁର + ପଠ ଧାତୁ + ଈ)—୧ । ଚଉପାଢ଼ୀ, Chatushpāṭhi ଟୋଲ—1 Sanscrit Tol or Academy.

୨ । ଯେଉଁଠାରେ ୪ ବେଦ ଶିକ୍ଷା ଦିଆ ଯାଏ; ବେଦ ବିଦ୍ୟାଳୟ—2 A college where 4 vedas are taught

ଚତୁଷ୍ପାଦ—ସଂ. ବି.—ଚତୁଷ୍ପଦ (ଦେଖ) Chatushpāda Chatushpada (See)

ବିଣ – ୧ । ଚାରିଗୋଡ଼ବିଶିଷ୍ଟ—1. Four-legged

୨ । ସର୍ବାବୟବସମ୍ପନ୍ନ—2. Complete with all the component parts.

ଚତୁଷ୍ପାଦଯୋଗ—ସଂ. ବି.—ଶୁଭଯୋଗବିଶେଷ— Chatushpādajoga An auspicious astrological conjunction.

[ ଦ୍ର—ଆଷାଢ଼ ଶୁକ୍ଳପଞ୍ଚମୀ ଓ ମଘାନକ୍ଷତ୍ରରେ ଶ୍ରୀ ଭଗବାନଙ୍କର ମହାବେଦୀ ସମାଗମ ଓ ଇନ୍ଦ୍ରଦ୍ୟୁମ୍ନ ସରୋବରରେ ଏହି ଚତୁର୍ବିଧ ମିଳନରେ ଉକ୍ତ ଯୋଗ ପଡ଼େ । ମଦନମୋହନ—ତୀର୍ଥଦର୍ଶନ । ]

ଚତୁଷ୍ପାର୍ଶ୍ୱ—ଦେ. ବି—ଚତୁଃପାର୍ଶ୍ୱ ( ଦେଖ ) Chatushpārśwa Chatuḥpārśwa ( See )

ଚତୁସମ—ଦେ ବି. (ସଂ ଚତୁଃସମ) —ଚତୁଃସମ (ଦେଖ) Chatusama Chatuḥsama (See)

ସୁବେଶ ହୋଇଣ ବାଳୀ, ଚତୁସମ ଅଙ୍ଗେବୋଳି
ମେଳେଣିହି ମାଳୀଙ୍କ ସଙ୍ଗେ, ବଦଧ ରଙ୍ଗେ ସେ । ପ୍ରତାପ. ଶଶିଶେଣା ।

ଚତୁସ୍ତଳ—ସଂ. ବିଣ ( ଚତୁଃ + ତଳ; ବହୁବ୍ରୀହି )— Chatustaḷa ୧ । ଚାରିମହାଲା, ଚଉତାଲା— 1. Four-storied ( building ).

୨ । ଚାରିଗୋଟି ସମତଳ ବା ପାଖଥିବା (ବସ୍ତୁ)— 2. Consisting of 4 planes or sides; cubical.

ସଂ. ବି. (ଦ୍ୱିଗୁ)—କୋଠାର ଚାରିଟି ମହାଲା— Four stories of a building.

ଚତୁସ୍ତାଳ—ସଂ. ବି—ସଙ୍ଗୀତର ତାଳବିଶେଷ— Chatustāla A kind of measure in music (M. W.).

ଚତୁସ୍ତ୍ରିଂଶ—ସଂ. ବିଣ. (ଚତୁସ୍ତ୍ରିଂଶତ୍ + ପୂରଣାର୍ଥେ. ଅ)—୩୪ର ପୂରଣ— Chatustrimśa 34 th.

ସଂ. ବି—ପ୍ରଜାପତି—God Prajāpati ( M. W. )

ଚତୁସ୍ତ୍ରିଂଶତ୍—ସଂ. ବି. ( ମ ପ. ଲୋ, ଚତୁଃ + ତ୍ରିଂଶତ୍; ଚତୁରଧିକ- Chatustrimśat ତ୍ରିଂଶତ୍ )—ଚଉତିରିଶି; ୩୪—34.

ବିଣ—୩୪ ସଂଖ୍ୟକ—34 in number.

ଚତୁସ୍ତ୍ରିଂଶତ୍ତମ—ସଂ. ବିଣ. ( ଚତୁଃ + ତ୍ରିଂଶତ୍ + ତମ )— Chatustrimsattama ଚତୁସ୍ତ୍ରିଂଶ ( ଦେଖ ) Chatustrimśa ( See )

ଚତୂରାତ୍ର—ସଂ. ବିଣ. (ଚତୁଃ + ରାତ୍ରି)—ଚାରିରାତ୍ରବ୍ୟାପୀ— Chatūrātra Covering a period of 4 successive nights.

ସଂ. ବି—ଉତ୍ସବବିଶେଷ— Name of a ceremony (M W.).

ଚତୃ (ଇତ୍ୟାଦି)—ଗ୍ରା. (ଇତର) ବିଣ ( ସଂ. ଚତୁର୍) ଚତୁରର ଅଶୁଦ୍ଧ Chatṛu (etc) ଉଚ୍ଚାରଣ (ଚତୁର୍ ଶବ୍ଦଯୁକ୍ତ ପଦମାନ ଦେଖ)— Incorrect pronunciation of the word chatur prefixed to words (see words beginning with Chatur ).

[ ଦ୍ର – ଅଶିକ୍ଷିତ ଓ ଇତରଲୋକେ ଚତୁର୍ ଶବ୍ଦଯୁକ୍ତ ଚତୁର୍ଭୁଜ, ଚତୁର୍ମାସ୍ୟା, ଚତୁର୍ଥ, ଚତୁର୍ଥୀ ଆଦିକୁ ଚତୃଭୁଜ, ଚତୃମାସ୍ୟା, ଚତୃଥ, ଚତୃର୍ଥୀ ଆଦି ରୂପେ ଉଚ୍ଚାରଣ କରନ୍ତି । ]

ଚତ୍ୱର—ସଂ. ବି. ( ଚତ୍ ଧାତୁ=ଗମନ କରିବା + ବର )— Chatwara ୧ । ପ୍ରାଙ୍ଗଣ; ଅଗଣା—1. Court-yard.

୨ । ଯଜ୍ଞାର୍ଥ ପ୍ରସ୍ତୁତ ସମତଳ ଭୂମି— 2. A levelled spot of ground prepared for a sacrifice.

ସାଧାରଣ ଲୋକେ ଅନେକ ସ୍ଥଳରେ ମୂଳର ୧ ଚହ୍ନିତ ଅକ୍ଷର ଓ ମନା ୧ବ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରା ଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'ଦୂଧ' ନ ମିଳିଲେ 'ଦୁଧ' ଦେଖିବେ, 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲକ୍ତ' ନ ପାଇଲେ 'ଅଲ୍‌କତ୍ର' ଦେଖିବେ

୩ । ଆବାସ —3. Ward; quarter; premises.

୪ । ରଙ୍ଗଭୂମି—4 Stage; ampitheatre; arena.

୫ । ଚଉକ; ଚତୁଷ୍କୋଣିଆ ଭୂମି—5 A squar.

୬ । ଚଉଛକ, ଛକ—6. Cross-way (M. W.)

**ଚତ୍ୱରତରୁ**— ସଂ ବ ( ମ. ପ. କ୍ଳୋ; ଚତ୍ୱର+ତରୁ )— Chatwarataru ଛକରେ ଉଠିଥିବା ଗଛ— A tree growing on a cross-way (M W.)

**ଚତ୍ୱାର**— ସଂ. ବି. ( ଚତ୍‌+ଆର )—୧ । ୪ ସଂଖ୍ୟା— Chatwāra 1. Four.

ଯେ ଅନ୍ତଃ କରଣ ଚତ୍ୱାର
ଏ ମନ ବୁଦ୍ଧି ଅହଙ୍କାର । ଜଗନ୍ନାଥ. ଭାଗବତ ।

୨ । ଚତ୍ୱାଲ ( ଦେଖ )
2. Chatwāla (See)

**ଚତ୍ୱାରିଂଶ**—ସଂ. ବି. (ଚତ୍ୱାରିଂଶତ୍ +ପୂରଣାର୍ଥ. ଅ)—୪୦ର ପୂରଣ— Chatwārimsa 40 th.
(ଚତ୍ୱାରିଂଶତ୍ତମ—ଅନ୍ୟରୂପ)

**ଚତ୍ୱାରିଂଶତ୍**—ସ. ବ ( ଚତୁର୍ ୧୦ଗୁଣ ଅର୍ଥରେ ନିପାତନ ସିଦ୍ଧ )— Chatwārimsat ଚାଳିଶ; ୪୦—40.
(ଚତ୍ୱାରିଂଶତ—ଅନ୍ୟରୂପ) ବଣ—୪୦ ସଂଖ୍ୟକ—40 in number

**ଚତ୍ୱାଲ**—ସଂ. ବ (ଚତ୍ ଧାତୁ+ବାଲ)—୧ । ହୋମାଗ୍ନି ନିମନ୍ତେ ଖୋଦିତ Chatwala ଗର୍ତ୍ତ—1. A hole in the ground for the sacrificial fire.
(ଚତ୍ୱାଲ—ଅନ୍ୟରୂପ)

୨ । ପକ୍କା ବା ପଥରବନ୍ଧା ଚଟାଣ; ଚଉତରା—
2. A paved floor or platform.

୩ । ଗର୍ଭ—3. Womb (M. W.)

୪ । ଦର୍ଭ; କୁଶତୃଣ—4. The Kusa grass (M.W.)

**ଚଦର** (ଇତ୍ୟାଦି)—ବୈଦେ. ବ ( ଆ. ଚଦର୍ )— Chadara etc ଚଦର ଇତ୍ୟାଦି (ଦେଖ)
(ଚଦର—ଅନ୍ୟରୂପ) Chādara etc. (See).

**ଚଢା**—ଦେ. ବ (ସଂ. ଚଢ୍ ଧାତୁ)—ଧମକା; ଭର୍ତ୍ସନା— Chadā Threatening; reprimand.
ତର୍ଜା
**ଘୁଡ଼କୀ**

**ଚଢାଇବା**—ଦେ. କ୍ରି —ଚଢିବାର ଣିଜନ୍ତରୂପ— Chadāibā The causative form of Chadibā.
**ତର୍ଜନ** କାମେ ଚଢାଇଲାଇ ଅଣ ଛେଦାଇଲାଇ, ପ୍ରଳୟ ଅନଳ ରୂପେ ଲଦାଇଲାଇ ।
**ଘୁଡ଼କନା** ଅଭିମନ୍ୟୁ. ବଦଗ୍ଧଚନ୍ତାମଣି ।

**ଚଢାଚଢ**—ଦେ. ଅ (ସଂ. ଭର୍ଜ ଧାତୁ)—ଅନ୍ୟୋନ୍ୟରେ ଭର୍ତ୍ସନା ବା Chadāchadi ଧମକ—Mutual threatening or reprimand.
ତର୍ଜାତର୍ଜ
**ଘୁଡ଼କାଘୁଡ଼କୀ**

**ଚଢାମର୍କଟା**—ଦେ. ବ (ସଂ. ଭର୍ଜନ ଓ ମର୍କଟ)—ଭର୍ଜନଗର୍ଜନ; ଧମକ Chadāmarkatā ଓ ମୁଖଭଙ୍ଗୀ—Threatening and making faces.

**ଚଢିବା** —ଦେ. କ୍ରି (ସ. ଭର୍ଜ ଧାତୁ; ପ୍ରା. ଚଢ)—୧ । ଧମକାଇବା — Chadibā 1. To threaten.
ତର୍ଜା ହିରଣ୍ୟ ବୋଇଲାରେ ନର ଚଢି କେତେ—କୃଷ୍ଣସିଂ. ମହାଭାରତ. ଅଦ ।
**ଘୁଡ଼କନା**

୨ । ସାବଧାନ କରିବା, ତାଗିଦ କରିବା—
2 To caution; to warn.

ଚଢ ଥରେ ଆଗପଛେ ନଜାନ
ଚତୁର୍ଥ ଉତାପ୍ ବସ୍ତ୍ରା ସିନା—କବିସୂର୍ଯ୍ୟ. ବଳଭାକଲ୍ଲୋଳଲଳା ।

**ଚଢିମର୍କଟି ହେବା**—ଦେ. କ୍ରି —ଚଢିମର୍କଟି ହେବା (ଦେଖ) Chadimarkati hebā Chajimarkati hebā (See).

**ଚନ୍ଖା** —ପ୍ରାଦେ (ସମ୍ବଲପୁର) ବ—ଖୁଲଘର ଉପରେ ପକାଇବା ଭୁଅ- Chankhā ବିଶେଷ—A kind of rafter put on the roof of thatched house.

**ଚନ୍‌ଚନ୍** - ଦେ. ଅ—୧ । ଚନ୍‌ଚନ୍; ଚୁଇଁ ଚୁଇଁ, ଶିରା, ସ୍ନାୟୁ ପ୍ରଭୃତିର Chanchan ସଙ୍କୋଚନଜାତ ଉପର୍ଯ୍ୟୁପରି କ୍ଷଣସ୍ଥାୟୀ ବ୍ୟଥା ବା
ଚିନ୍‌ଚିନ୍, ଚନଚନ ଶାରୀରିକ କ୍ଳେଶାନୁଭୂତି— 1. Smarting pain due to contraction of vens or muscle.

୨ । ଛନ୍‌ଛନ୍ (ଦେଖ)
2. Chhanchhan (See .

**ଚନଚନାଇବା**—ପ୍ରାଦେ ( ସମ୍ବଲପୁର ) କ୍ରି—୧ । କୌଣସି କାର୍ଯ୍ୟରେ Chanchanāibā ଖୁବ୍ ଦୃଢ଼ତାସହିତ ଲାଗିଯିବା— 1. To be engaged in a work with avidity.

୨ । (ବଥ) ବଥିବା; ବଥାଇବା, କଟ୍‌କଟ୍ ହେବା—
2 To ache (said of boil).

**ଚନନ୍‌ହାର**—ଦେ. ବ—ଚନ୍ଦ୍ରହାର (ଦେଖ) Chananhāra Chandrahāra (See).

**ଚନାବ୍**—ଦେ. ବ (ନାମ)—(ସ, ଚନ୍ଦ୍ରଭାଗା)— ପଞ୍ଜାବର ୫ ନଦୀ ମଧ୍ୟରୁ Chanāb ଏକ, ସିନ୍ଧୁନଦର ଏକ ଉପନଦୀ— The chanab, a
ଚେନାବ tributary of the Indus
**ଚନାବ** [ ବ୍ର—ଏହା ହିମାଳୟର ଦକ୍ଷିଣ କାଶ୍ମିର ରାଜଧାନୀ ଶ୍ରୀନଗରର ପୂର୍ବ ଅଞ୍ଚଳ ପର୍ବତରୁ ବାହାରି ଝେଲମ୍ ଓ ଶତଦ୍ରୁ ଉପନଦୀ ସଙ୍ଗେ ମିଳିତ ହୋଇ ସିନ୍ଧୁନଦୀରେ ପଡ଼ିଅଛି । ମୁଲତାନ ଚେନାବ୍ ନଦୀର ତୀରରେ ଅବସ୍ଥିତ । ]

**ଚନୀ**—ଗ୍ରା. ବ—ଗୋମୂତ୍ର— Chanī Cow's wine.

**ଚନ୍ଦ୍** (ଧାତୁ) —ସ—୧ । ଦୀପ୍ତିପାଇବା— Chand (root) 1. To shine; to glitter.

୨ । ଆହ୍ଲାଦିତ କରିବା—2. To gladden.

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଅ୍ | ଢ଼ଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଡ଼ | ଢ଼ |

**ଚନ୍ଦ**—ଦେ. ବି (ସଂ. ଚନ୍ଦ୍ର)—ଚନ୍ଦ୍ର; ଇନ୍ଦୁ—
Chanda Moon

**ଚନ୍ଦକ**—ସଂ. ବି. (ଚନ୍ଦ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅକ)—ଠିକ୍ରା-
Chandaka ଶୁକ୍ଳମାଛ—A small white circular fresh-water fish.

**ଚନ୍ଦନ**—ସଂ. ବି (ଚନ୍ଦ୍ ଧାତୁ=ଆହ୍ଲାଦିତ କରିବା+କର୍ତ୍ତୃ. ଅନ; ଏ
Chandana ଶବ୍ଦ ଦ୍ରାବିଡ଼ ଭାଷାରୁ ସଂସ୍କୃତକୁ ଆସିଅଛି)—
୧। ସ୍ୱନାମପ୍ରସିଦ୍ଧ ସୁଗନ୍ଧ କାଠ ଓ ବୃକ୍ଷ (ଯାହା ଘୋରିଲେ ବାସେ)—1. Sandal wood; Santanum Album (Kirtikar)

ସଂ. ନାମ—ଚନ୍ଦନ, ଶ୍ରୀଖଣ୍ଡ, ଚନ୍ଦ୍ରକାନ୍ତ, ଗୋଶୀର୍ଷ, ଭୋଗୀବଲ୍ଲଭ, ଭଦ୍ରସାର, ମଳୟଜ, ଗନ୍ଧସାର, ଏକାଙ୍ଗ, ବର୍ଣ୍ଣିକ, ଭଦ୍ରଶ୍ରୀ, ଗନ୍ଧରାଜ, ରୌହିଣ, ସେବ୍ୟ, ସର୍ପେଷ୍ଟ, ମଳୟୋଦ୍ଭବ, ସୁଗନ୍ଧ, ଶୀତଗନ୍ଧ, ତୈଳପର୍ଣ୍ଣିକ, ଗନ୍ଧସାର, ଚନ୍ଦ୍ରଦ୍ୟୁତି
ଚନ୍ଦନ
ଚଂଦନ
ତେ. ମାଂଚଗନ୍ଧମୁ, ଚନ୍ଦନମୁ
ଗୁ. ସୁଖଡ଼
ଆ. ସନ୍ଦଲେ ଅବୀୟଦ୍
ମ. ଚନ୍ଦନ

[ ଦ୍ର—ଚନ୍ଦନ ଦକ୍ଷିଣଭାରତର କ୍ଷୁଦ୍ର ଅରଣ୍ୟରେ ଜନ୍ମିବା ନାତିଉଚ୍ଚ ଚିରଶ୍ୟାମଳତରୁ । ପଥୁରିଆ ଭୂମିରେ ଓ ଘାସମୟ ଅରମା ସ୍ଥାନରେ ଏ ଗଛ ଉଧାଏ । ଏଥିପାଇଁ ଚନ୍ଦନ ଗଛ ଜନ୍ମିବା ସ୍ଥାନରେ ସାପ ରହନ୍ତି । ଏ ଗଛର ମଞ୍ଜ-କାଠ ସୁଗନ୍ଧ ଓ ତାହା ପଥରରେ ପାଣିଦେଇ ଘୋରିଲେ ଗୋଟିଏ ସୁବାସିତ ଲେପ ହୁଏ । ଏ ଗଛ ଉଚ୍ଚରେ ୩୦।୪୦ ଫୁଟ ଉଚ୍ଚ ହୁଏ ଓ ପତ୍ରଝଡ଼ା ହୁଏ ନାହିଁ । ଘୃଷ୍ଟଚନ୍ଦନକୁ ଲୋକେ ଦେହରେ ବୋଳନ୍ତି ଓ ଦେବତାଙ୍କୁ ଅର୍ପଣ କରନ୍ତି ଓ ଚନ୍ଦନକାଠର ଗୁଣ୍ଡି ଦ୍ୱାରା ଧୂପ ହୁଅନ୍ତି । ଏ କାଠରୁ ଚନ୍ଦନ ତେଲ ବାହାର କରାଯାଏ । ଏ କାଠରେ ତିଆରି ବାକ୍ସ, ପଲଙ୍କ ଓ ଚଉକାଠ ଆଦିରେ ପୋକ ଲାଗନ୍ତି ନାହିଁ । ନାନାଜାତିର ଚନ୍ଦନଗଛ ଅଛି । ସବୁଠାରୁ ଶ୍ରୀଖଣ୍ଡ ବା ଧଳା ଚନ୍ଦନ ସୁବାସ ଓ ଗୁଣରେ ଶ୍ରେଷ୍ଠ । ଏ କାଠର ସ୍ୱାଦ ତିକ୍ତ । ଏ ଗଛ ଭାରି ଗଣ୍ଠିଗଣ୍ଠିଆ ଓ କୋଟରମୟ; ଏହି କୋଟରମାନଙ୍କରେ ସାପ ରହନ୍ତି । ମଳୟ ପବନ ବାଜିଲେ ଅନ୍ୟ ଗଛର କାଠ ମଧ୍ୟ ଚନ୍ଦନ ପାଲଟିଯାଏ ବୋଲି ପ୍ରବାଦ ଅଛି । କାଠର ବର୍ଣ୍ଣ ଓ ବାସ ଅନୁସାରେ ଶ୍ରୀଖଣ୍ଡ ବା ଶ୍ୱେତଚନ୍ଦନ, ଶବରଚନ୍ଦନ, ହରିଚନ୍ଦନ ବା ପୀତଚନ୍ଦନ, ରକ୍ତଚନ୍ଦନ, ବର୍ବର-ଚନ୍ଦନ, ଅଗୁରୁଚନ୍ଦନ ଶ୍ରେଣୀ ବିଧାନ କରାଯାଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଶ୍ରାନ୍ତି, ଶୋଥ, ବିଷ, ଶ୍ଲେଷ୍ମା, ତୃଷ୍ଣା, ପିତ୍ତ, ରକ୍ତଦୋଷ ଓ ଦାହନାଶକ । ଚନ୍ଦନତେଲ ପ୍ରମେହ ରୋଗରେ ବିଶେଷ ଉପକାରୀ । ]

୨। ଘୃଷ୍ଟଚନ୍ଦନ; ଘୋରାଚନ୍ଦନ—
2. Sandal-paste.

୩। ରାମାୟଣବର୍ଣ୍ଣିତ ମର୍କଟଯୂଥପତି—
3. Name of a monkey-general.

ବନକେ ତାଜନ୍ତ ଜାମ୍ବବ ପନସ ଚନ୍ଦନ ହୁଁ ମନୋରମ—
ଉପେ. ବୈଦେହୀଶବିଳାସ ।

୪। ପସାରୁଣୀଲତା (ଦେଖ (ହି. ଶବ୍ଦସାଗର)—
4. Pasāruṇi (See)

ଦେ. ବି—ଚନ୍ଦନ ଯାତ୍ରା (ଦେଖ)—
Chandana jātrā (See)

**ଚନ୍ଦନ ଅର୍ଗଳ**—ଦେ. ବି (ସଂ. ଚନ୍ଦନ+ଅର୍ଗଳ; ଜଗନ୍ନାଥଙ୍କ ଦେଉଳର
Chandana-argaḷi ଅର୍ଗଳମାନ ସାଧାରଣତଃ ଚନ୍ଦନକାଠରେ ଥିବାରୁ)
—ଦେବତାଙ୍କ ଦର୍ଶନ ନିମିତ୍ତ ଗର୍ଭଗୃହ ବା ଦେଉଳ ମଧ୍ୟକୁ ଯିବା ପୂର୍ବରୁ ବାଟରେ ଦୁଇପାଖେ ଖୁଣ୍ଟ ପୋତା ହୋଇ ସେମାନଙ୍କର ଛିଦ୍ରମାନଙ୍କରେ ଯେଉଁ କାଠର ଲମ୍ବ ଗଲା ଯାଇ-ଥାଏ ଓ ଯାହା ଫିଟାଇଦେଲେ ବାଟ ମେଲା ହୁଏ ଓ ପକାଇ-ଦେଲେ ବାଟ ବନ୍ଦ ହୁଏ—Stout wooden bars put at the entrance to the main temple of a Deity.

ଦ୍ୱାରେ ଚନ୍ଦନ ଅର୍ଗଳ ଉଜାଣି ଉଠନ୍ତି । ପ୍ରାଚୀ. ବୃନ୍ଦାବନରୂପଣଗୀତା ।

**ଚନ୍ଦନ ଘେନିବା**—ଦେ. କ୍ରି—ଶରୀରରେ ଘୃଷ୍ଟଚନ୍ଦନ ଲେପନ କରିବା—
Chandana ghenibā To besmear the body with sandal paste.
চন্দন মাখা
चन्दन चढ़ाना

**ଚନ୍ଦନ ଘୋରିବା**—ଦେ. କ୍ରି (ସଂ. ଚନ୍ଦନ+ଘୃଷ୍ ଧାତୁ)—ଚନ୍ଦନକାଠକୁ
Chandana ghoribā ଚନ୍ଦନପେଡ଼ିରେ ପାଣିଦେଇ ଘଷିବା—
চন্দন ঘষা To rub sandal-wood on a stone
चन्दन घिसना slab with water to prepare paste.

**ଚନ୍ଦନଚର୍ଚ୍ଚିତ**—ସଂ. ବି (ସ୍ତ୍ରୀ ତତ୍; ଚନ୍ଦନ+ଚର୍ଚ୍ଚିତ)—ଚନ୍ଦନ ବୋଳା-
Chandanacharchchita ହୋଇଥିବା (ଶରୀର)—
(body) Besmeared with sandal-paste.

**ଚନ୍ଦନଜାତ**—ଗ୍ରା. ବି (ସଂ. ଚନ୍ଦନ+ଯାତ୍ରା)—ଚନ୍ଦନଯାତ୍ରା (ଦେଖ)—
Chandanajata Chandanajātrā (See)
চন্দনযাত্রা
चन्दनयात्रा

**ଚନ୍ଦନ ତେଲ**—ଦେ. ବି (ସଂ. ଚନ୍ଦନ+ତୈଳ)—ଚନ୍ଦନ କାଠରୁ
Chandana tela ବୈଜ୍ଞାନିକପ୍ରକ୍ରିୟାଦ୍ୱାରା ବାହାର କରାଯିବା ତେଲ—
চন্দন তেল Sandal oil
चन्दन तेल

**ଚନ୍ଦନ ଦାନ**—ଦେ. ବି. (ସଂ. ଚନ୍ଦନ+ଆଧାନୀ)—ଘୋରା ଚନ୍ଦନକୁ
Chandana dān ରଖି ବ୍ୟବହାର କରିବା ନିମନ୍ତେ ରୂପାର ପାତ୍ର—
চন্দন দান A tray or cup for keeping sandal-paste
चन्दन दान

**ଚନ୍ଦନ ଧେନୁ**—ସଂ. ବି. (ମ. ପ. ଲୋ; ଚନ୍ଦନଚର୍ଚ୍ଚିତା ଧେନୁ)—
Chandana dhenu ପତିପୁତ୍ରବତୀ ମୃତା ନାରୀର ମୃତାହ ଉପଲକ୍ଷରେ ବୃଷୋତ୍ସର୍ଗ ପରବର୍ତ୍ତୀରେ ପୁତ୍ରଦ୍ୱାରା ବ୍ରାହ୍ମଣଙ୍କୁ ଦାନ କରାଯିବା ଚନ୍ଦନଚର୍ଚ୍ଚିତା ସବତ୍ସା ଗାଈ—
A cow with its calf smeared with sandal-paste and given to a Brāhmaṇa by the

son of a deceased female (who dies leaving her husband and sons behind) during her obsequies.

[ଦ୍ର—ଶାସ୍ତ୍ର ଅନୁସାରେ ଜୀବତ୍‌ପିତୃକ ପୁତ୍ରର ବୃଷୋତ୍ସର୍ଗ କରିବାର ଅଧିକାର ନ ଥିବାରୁ ମାତାଙ୍କ ଉଦ୍ଦେଶ୍ୟରେ ଚନ୍ଦନଧେନୁ ଦାନ କରନ୍ତି ।]

**ଚନ୍ଦନ ନଗର**—ଦେ. ବ (ନାମ —ଫରାସୀ ଅଧିକୃତ କଲିକତା ନିକଟସ୍ଥ ନଗରବିଶେଷ—Name of a village belonging to the French near Calcutta.
Chandana nagara
चन्दननगर
**चन्दननगर**

**ଚନ୍ଦନ ନାଇବା**—ଗ୍ରା. (ଇତର) କ୍ରି.—ଚନ୍ଦନ ଘେନିବା (ଦେଖ)
Chandana naibā Chandana ghenibā (See)

**ଚନ୍ଦନ ପଙ୍କ**—ସଂ. ବ. (୬ଷ୍ଠୀ ତତ୍; ଚନ୍ଦନ+ପଙ୍କ)—ଘୃଷ୍ଟ ଚନ୍ଦନ; ଘୋରା ଚନ୍ଦନ—Sandal-paste.
Chandna panka

**ଚନ୍ଦନ ପାଟି**—ଦେ ବ. (ସଂ. ଚନ୍ଦନ+ପଟ୍ଟ)—କପାଳର ଦୁଇ ପାଖରେ ଗାଲ ପର୍ଯ୍ୟନ୍ତ ବୋଳା ହୋଇଥିବା ଚନ୍ଦନର ପଟ୍ଟ ବା ଚିତ୍ର—Strips of sandal-paste painted over the brow from the middle along the cheeks on both sides (right and left)
Chandana pāti
चन्दनपाटी
**चन्दनकी पट्टी**

ଚନ୍ଦନପାଟି ଏ ଥିବ କପୋଳେ—ଭଞ୍ଜ, ଲାବଣ୍ୟବତୀ ।

**ଚନ୍ଦନ ପାଲି**—ଦେ. ବ.—ଏକୋଇଶଦିନବ୍ୟାପୀ ଚନ୍ଦନଯାତ୍ରାର ଗୋଟିଏ ଲେଖାଏଁ ଦିନର ଉତ୍ସବ ଓ ଭକ୍ତ ଉତ୍ସବର ବ୍ୟୟାଦି ନିର୍ବାହର ଭାର—One of the 21 days of the festival of Chandanajātrā.
Chandana pāli

**ଚନ୍ଦନ ପୁଷ୍ପ**—ସଂ. ବି.—(ବହୁବ୍ରୀହି; ଚନ୍ଦନ ପରି ସୁବାସିତ ପୁଷ୍ପ ଯାହାର)—
Chandana pushpa ୧ । ଲବଙ୍ଗ—1. Cloves
୨ । (୬ଷ୍ଠୀ ତତ୍) ଚନ୍ଦନ ଗଛର ଫୁଲ—2 The flowers of the Sandal tree.

**ଚନ୍ଦନ ପେଢ଼ି**—ଦେ. ବି. ( ସଂ ଚନ୍ଦନ+ପୀଠ )—ଚନ୍ଦନକାଠ ଘୋରିବାର ପଥରଚକି—A piece of circular plate or slab of stone on which sandal wood is rubbed for preparing sandal-paste.
Chandana perdi
चन्दनपीडि
**चन्दन घीषनेकी पटिया**

ଯୋଗାଏ ଚନ୍ଦନ ପେଢ଼ି ଲଗାଇବି ଲଲାଟରେ ଚନ୍ଦନ ।—ଭିଖାରୀଦାସ, ପାର୍ବଣ ।

**ଚନ୍ଦନ ବେଶ**—ସଂ.ବି. (ମ.ପ.ଲୋ; ଚନ୍ଦନ ଲେପନ କରାଯିବା ବେଶ)—ଶରୀରରେ ବା ସର୍ବାଙ୍ଗରେ ଚନ୍ଦନ ଲେପନଦ୍ୱାରା କରାଯିବା ବେଶ—Annointing or besmearing the body with sandal-paste.
Chandana besa

ଚନ୍ଦନବେଶ ମୁଁ କରନ୍ତି ମୋର ହେଉଛି ମନ ।
କଳାକଳେବର ଚଉତିଶା ।

**ଚନ୍ଦନବୋଡ଼ା**—ଦେ. ବ. (ସଂ. ଚନ୍ଦ୍ର+ବୋଡ଼ା )—ହଳଦିଆ ଦେହରେ ତିନି ଧାଡ଼ି ବଡ଼ ବଡ଼ କଳା ଗୋଲ ଚିହ୍ନ ଥିବା ଭୟାନକ ବିଷଧର ବୋଡ଼ା ସାପ(ଏ ଲମ୍ବରେ ୨ ହାତ ବଢ଼େ; ଲାଙ୍ଗୁଡ଼ ପତଳା ଓ ୫୲୧୦ ଅଙ୍ଗୁଳ ଲମ୍ବ)—A kind of venemous viper with yellow body with 3 lines of black circular marks; Vipera Russelai Daboia Russelli; Russell's viper.
Chandanabordā
चन्दन बोड़ा, चन्द्रबोड़ा
**चन्द्रबोड़ा**

**ଚନ୍ଦନ ବୋଳିବା**—ଦେ. କ୍ରି.—ସର୍ବାଙ୍ଗରେ ଚନ୍ଦନ ଲେପନ କରିବା—To smear the body with sandal-paste.
Chandana bolibā
(ଚନ୍ଦନ ଲେପିବା—ଅନ୍ୟରୂପ)

**ଚନ୍ଦନ ଯାତ୍ରା**—ସଂ. ବ.—ବୈଶାଖ ଶୁକ୍ଳ ତୃତୀୟା (ଅକ୍ଷୟ ତୃତୀୟା) ଠାରୁ ୨୧ ଦିନ ଅପରାହ୍ନ ଓ ସନ୍ଧ୍ୟାରେ ପୁରୀ, ଭୁବନେଶ୍ୱର,ସତ୍ୟବାଦୀ ଓ ରାଜଧାନୀ ଓ ବଡ଼ ବଡ଼ ଗ୍ରାମମାନଙ୍କରେ ପ୍ରତିଷ୍ଠିତ ଦେବବିଗ୍ରହମାନଙ୍କୁ ନିକଟବର୍ତ୍ତୀ ପୁଷ୍କରିଣୀକୁ ନେଇ ସେଠାରେ ନୌକାରେ ବସାଇ କରାଯିବା ଜଳକ୍ରୀଡ଼ାରୂପ ଉତ୍ସବ—The festival of taking out the image of a Deity to a tank and giving it a boating in the afternoon and evening for 21 days begining with the third day of the light fortnight of the month of Baisākha.
Chandana jātrā

**ଚନ୍ଦନ ଲଗାଇବା**—ଦେ. କ୍ରି.—ଚନ୍ଦନ ଘେନିବା (ଦେଖ)
Chandana lagāibā Chandana ghenibā (See)

**ଚନ୍ଦନଶାରିବା**—ସଂ. ବ. (ମ. ପ. ଲୋ, ଚନ୍ଦନଗନ୍ଧଯୁକ୍ତା ଶାରିବା)—ଲତାବିଶେଷ ସୁବାସଯୁକ୍ତ ଔଷଧ ଲତାବିଶେଷ—A kind of sweet smelling medicinal creeper.
Chandanaśāribā

**ଚନ୍ଦନା**—ସଂ. ବ—୧ । ଶୁକସଦୃଶ କିନ୍ତୁ ହ୍ରସ୍ୱପୁଚ୍ଛବିଶିଷ୍ଟ ଉଜ୍ଜ୍ୱଳ ହରିତ୍‌ବର୍ଣ୍ଣ ପକ୍ଷୀ; ପୁଂପକ୍ଷୀର ଗଳାରେ ଗୋଲାପି କଣ୍ଠରେଖା ରହିଥାଏ;ଏ ମନୁଷ୍ୟର ବୋଲି ଶିଖି ପାରେ—Palœornis Nepalensis; a species of short and broad-tailed singing parrots which can be taught to sing; the jaco bird.
Chandanā

[ଦ୍ର · ଏମାନେ ସାଧାରଣ ଶୁଆଠାରୁ ବଡ଼ ଓ ମୋଟା । ଏମାନଙ୍କ ପୁଚ୍ଛ ଶ୍ରେଷ୍ଠ ଓ ଚେପ୍ଟା ଏବଂ ପୁଚ୍ଛର ଅଗ ଚଉଡ଼ା । ଏମାନଙ୍କ ଉପରଓଷ୍ଠ ଅଙ୍କୁଶ ପରି ତଳଓଷ୍ଠର ଉପରକୁ ଆବରଣ କରିଥାଏ । ଏମାନେ ଲମ୍ବରେ ହାତେ ପର୍ଯ୍ୟନ୍ତ ବଢ଼ନ୍ତି । ]

୨ । ଚନ୍ଦନଶାରିବା ( ଦେଖ )
2 Chandanaśāribā ( See )

**ଚନ୍ଦନାଚଳ**—ସଂ. ବ. (ମ. ପ. ଲୋ; ଚନ୍ଦନବୃକ୍ଷବିଶିଷ୍ଟ ଅଚଳ)—ମଳୟ ପର୍ବତ—The Malaya range
Chandanāchala

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଅ | ଉଅ | ଡ଼ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଡ଼ | ନ୍ତ |

(ଚନ୍ଦନାଦ୍ରି—ଅନ୍ୟରୂପ) of mountains in the Eastern Ghats in South India where sandal trees abound.

ଚନ୍ଦନାଦ୍ୟ ତୈଳ—ସଂ. ବି — ଆୟୁର୍ବେଦୋକ୍ତ ମସ୍ତିଷ୍କହିତକର ଔଷଧ
Chandanādi taila ତୈଳବିଶେଷ—A medicated oil
(ଚନ୍ଦନାଦ୍ୟତୈଳ – ଅନ୍ୟନାମ) prepared for keeping the brain cool.

[ ଦ୍ର— ଏଥିର ପ୍ରଧାନ ଉପାଦାନ ଚନ୍ଦନ । ଏହା ଚନ୍ଦନ, ଅଗୁରୁ, ଦେବଦାରୁ, ପଦ୍ମକାଷ୍ଠ, ଅଳାଇଚ, ନାଗକେଶର, କର୍ପୂର, ଜାଇଫଳ, କସ୍ତୂରୀ, ଶିଉଳଚମ୍ପା, ଡାଲଚିନି, ଜାଫ୍ରାନ କେଶରରୁ ବାହ୍ୟ ତୈଳରେ ସିଦ୍ଧ କରାଯିବା କବିରାଜୀତୈଳ ଅଟେ । ଏହା ମସ୍ତିଷ୍କବିକୃତିନାଶକ, କାନ୍ତିବର୍ଦ୍ଧକ ଓ ବାତନାଶକ । ]

ଚନ୍ଦନ ମାଟି—ଦେ. ବି - ଯେଉଁ ମାଟିରେ ବାଲି, ଗୋଡ଼ିଆଦି ନ ଥାଏ—
Chandani māṭi Pebbly soil.

ଚନ୍ଦର (ଇତ୍ୟାଦି)—ଗ୍ରା. (ଇତର) ବି—ଚନ୍ଦ୍ର ଇତ୍ୟାଦି ( ଦେଖ )
Chandara (etc) Chandra etc ( See )
চাঁদ
चन्द

ଚନ୍ଦରସ୍—ବୈଦେ. ବ. ( ଇଂ ସାନ୍ଦରାକ୍ )—
Chandaras ଧୂପ ନିମନ୍ତେ ବ୍ୟବହୃତ ବୃକ୍ଷନିର୍ଯ୍ୟାସବିଶେଷ;
চান্দরস্ ଧୂନା ସନ୍ଦରସ୍; ଏକ ପ୍ରକାର ଝୁଣା—
सफेद डुमर, A white-yellow resin exuding from
सान्दरस Barbary tree; Indian capal; Peney;
ତା. କୁଣ୍ଡିରୁମ୍ Varnish tree; Vateria Indica;
ତେ. ଦୁପାଦୁ Sandarac.

[ ଦ୍ର—ଏହା ଦକ୍ଷିଣ ଓ ପଶ୍ଚିମ ଭାରତରେ ଶାଳଜାତୀୟ ଏକ ପ୍ରକାର ଗଛର ଶୁଖାଯାଇଥିବା ନିର୍ଯ୍ୟାସ । ଏହା ଧୂପ ଓ ବାର୍ଣ୍ଣିସ ନିମନ୍ତେ ବ୍ୟବହୃତ ହୁଏ ।

ଏହାର ଗଛ ପ୍ରଥମେ କାନେଡ଼ାରୁ ବା କାହାର କାହାର ମତରେ ଆଫ୍ରିକାର ମରକ୍କୋ ଦେଶରୁ ଭାରତକୁ ଆନୀତ ହୋଇଥିଲା । ଏହି ଗଛ ସୁନ୍ଦର ଓ ସର୍ବଦା ଫୁଲଫଳ ଧରେ । ଏଥିର ପଲଙ୍କା କାଠ ଧଳା; ମଞ୍ଜି ପାଉଁଶିଆ; ଏହା ଶାଳ କାଠଠାରୁ ବେଶି ଶକ୍ତ ଓ ଗଣ୍ଠିଳ; ପତ୍ର ୩ଇଞ୍ଚ ୪ଇଞ୍ଚ । ଏହାର ଫଳର ତେଲ ବାତ ରୋଗରେ ଔଷଧ ରୂପରେ ବ୍ୟବହୃତ ହୁଏ । ]

ଚନ୍ଦା—ଦେ ବ. ( ସଂ. ଚନ୍ଦ୍ର )—୧ । ଚିହ୍ନ—1. Mark.
Chandā ୨ । ଅନାବୃତ ସ୍ଥାନ—
চাঁদা 2. Bare or open space.
चांदा ୩ । ଜମିର ସୀମାନିର୍ଦ୍ଦେଶକ ଚିହ୍ନ ବା ଶଙ୍କୁ—
3. A distinguishing mark on the boundary of a land.

ଟେକୋ ବଣ—କେଶରହିତ ( ମସ୍ତକ ); ଟାଙ୍ଗରା—
चँदला Bald-headed.

ପ୍ରାଦେ. ( ସମ୍ବଲପୁର ) ବଣ—ଚନ୍ଦିଆ ( ଦେଖ )
Chandiā ( See )

ଚନ୍ଦାଇ—ଦେ. ବଣ. ଓ ବ. ସ୍ତ୍ରୀ—(ସଂ. ଚୁନ୍ଦୀ=କୁଟ୍ଟିନୀ)—
Chandāi ୧ । କୁଟ୍ଟିନୀ; ବେଧୋଇ; ଛିଣ୍ଡାଳୀ; ନଷ୍ଟା ସ୍ତ୍ରୀ—
ছাবলা 1. An adulteress.
चोंचलहाई ୨ । ଯେ ଆପଣାର ପ୍ରଶଂସା ଆପେ କରେ—
(ଚନ୍ଦେଇ—ଅନ୍ୟରୂପ) 2 A self-advertising woman.
୩ । ଯେଉଁ ସ୍ତ୍ରୀ ହାବଭାବଦ୍ୱାରା ପୁରୁଷ ନିକଟରେ କାମେଚ୍ଛା ଦେଖାଇ ହୁଏ —A flirt.

ଚନ୍ଦାଇ ପଣ—ଦେ. ବ.—୧ । ସ୍ତ୍ରୀର ଆତ୍ମବଡ଼ିମା ପ୍ରକାଶ—
Chandāi paṇa 1. Self-adulation of a woman;
ছাবলামী self-aggrandisement.
चे.चला ୨ । ଭାବଭଙ୍ଗୀଦ୍ୱାରା ପୁରୁଷ ନିକଟରେ ସ୍ତ୍ରୀର କାମେଚ୍ଛା
(ଚନ୍ଦେଇପଣ—ଅନ୍ୟରୂପ) ପ୍ରକଟନ—Flirtation

ଚନ୍ଦାଇ ହେବା—ଦେ. କ୍ରି.—(ସ୍ତ୍ରୀଲୋକଙ୍କପ୍ରତି ପ୍ରଯୁଜ୍ୟ)—୧ । ଆତ୍ମଶ୍ଳାଘା
Chandāi hebā କରିବା; ଆପଣାକୁ ଆପେ ଦେଖାଇ ହେବା,
ছাবলামীকরা କମ କମ ହେବା —1. To self-adver-
(ଚନ୍ଦେଇ ହେବା—ଅନ୍ୟରୂପ) tise; to aggrandise one's self.
୨ । ମକମକ ହେବା; ଭାବଭଙ୍ଗୀଦ୍ୱାରା କାମଚେଷ୍ଟା ପ୍ରକାଶ କରିବା—2. To show outward signs of amour; to flirt.

ଚନ୍ଦାମୁଣ୍ଡା—ଦେ. ବଣ—ଯାହାର ମୁଣ୍ଡରେ କେଶ ନାହିଁ—
Chandāmuṇḍā Bald-headed.
টেকো
चन्दला
(ଚନ୍ଦାମୁଣ୍ଡୀ, ଚନ୍ଦାମୁଣ୍ଡେଇ—ସ୍ତ୍ରୀ)
(ଚନ୍ଦାମୁଣ୍ଡିଆ—ଅନ୍ୟରୂପ)

ଚନ୍ଦିଆ—ପ୍ରାଦେ (ସମ୍ବଲପୁର) ବଣ (ସଂ ଚନ୍ଦ୍ର)—ଚନ୍ଦିଆ; ମୁଣ୍ଡରେ ଚନ୍ଦ ବା
Chandiā ଧଳା ଦାଗ ଥିବା (ପଶୁ ଆଦି)—(a horse or cow)
Having a white patch on the face or brow.

(ଯଥା—ଚନ୍ଦିଆ ଘୋଡ଼ା । )

ଚନ୍ଦିର—ସଂ. ବ (ଚନ୍ଦ୍ ଧାତୁ=ଦୀପ୍ତି ପାଇବା+ସଂଜ୍ଞାର୍ଥେ. ଇର)—
Chandira ୧ । ଚନ୍ଦ୍ର—1. The moon.
୨ । ହସ୍ତୀ—2. Elephant.

ଚନ୍ଦୁଆ—ପ୍ରାଦେ (ସମ୍ବଲପୁର) ବ (ସଂ. ଚନ୍ଦ୍ରାତପ, ଭୁଲ ହି. ଚନ୍ଦୱା)—
Chanduā ଚନ୍ଦ୍ରାତପ; ସାମିଆନା—An awning.

ଚନ୍ଦୁକ—ଦେ.ବ (ବଣିଆ ଶବ୍ଦ)—ଭିନ୍ନ ଭିନ୍ନ ପ୍ରକାରର ଛିଦ୍ର ଥାଇ ଛାଞ୍ଚର
Chanduka ହୋଇଥିବା ଏକପ୍ରକାର ଠସା—
A goldsmith's mould with several holes to suit many forms.

| |
|---|
| ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାର' ନ ମିଳିଲେ 'ଗାଡ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗଁଧା' ନ ପାଇଲେ 'ଅନ୍ଧା' ଦେଖିବେ; 'ଅଲଢେ' ନ ପାଇଲେ 'ଅଳ୍‌ଢ଼ ଦେଖିବେ |

ଚନ୍ଦେଇ—ଦେ. ବି. ଓ ବିଣ. ସ୍ତ୍ରୀ—ଚନ୍ଦାଇ (ଦେଖ)
Chandei Chandāi (See)

ଚନ୍ଦେରି—ଦେ. ବି (ନାମ) (ସଂ. ଚେଦୀ)—ଗ୍ୱାଲିୟର ରାଜ୍ୟର ନରବାର ଜିଲ୍ଲାରେ ଥିବା ପ୍ରାଚୀନ ନଗର—
Chanderī
चंदेरी Name of an ancient town in Gwaliar.
(ଚନ୍ଦେଲ—ଅନ୍ୟରୂପ) [ଦ୍ର—ଏହା ପୂର୍ବେ ଶିଶୁପାଳଙ୍କ ରାଜଧାନୀ ଚେଦୀ ଥିଲା । ]

ଚନ୍ଦେଲି—ଦେ. ବି (ନାମ) (ସଂ. ଚେଦୀ ବା ଚନ୍ଦ୍ରାତ୍ରେୟ)—
Chandelī କ୍ଷତ୍ରିୟ ବା ରାଜପୁତମାନଙ୍କର ଏକ ଶାଖା—
चन्देल Name of a branch of the Rājputs.
चंदेली
(ଚନ୍ଦେଲ—ଅନ୍ୟରୂପ) [ଦ୍ର—ଏ ବଂଶର କ୍ଷତ୍ରିୟମାନେ ମହର୍ଷିଙ୍କ ପୌତ୍ର ଚନ୍ଦ୍ରାତ୍ରେୟଙ୍କଠାରୁ ଉଦ୍ଭୂତ ବୋଲି କଥିତ ଅଛି । ଏହି ବଂଶର ରାଜାମାନେ ବୁନ୍ଦେଲଖଣ୍ଡ ଓ ମଧ୍ୟଭାରତରେ ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀଠାରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ରାଜତ୍ୱ କରୁଥିଲେ— ହି. ଶବ୍ଦସାଗର । ]

ଚନ୍ଦ୍ର—ସଂ. ବି (ଚନ୍ଦ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ର)—
Chandra ୧ । ଶଶୀ; ଜହ୍ନ—1. Moon.
୨ । ସୋମ; ଜ୍ୟୋତିଃଶାସ୍ତ୍ରୋକ୍ତ ନବଗ୍ରହ ମଧ୍ୟରୁ ଏକତମ— 2. One of the nine planets of Hindu astrology.
[ଦ୍ର—ଜ୍ୟୋତିଷ ମତରେ ମନୁଷ୍ୟର ପରମାୟୁରେ ଚନ୍ଦ୍ରଙ୍କ ଦଶା-ଭୋଗ କାଳ ୧୦ ବର୍ଷ । ଯେଉଁ ମାସରେ ପୃଥିବୀରେ ଚନ୍ଦ୍ର ଅଧିପତି ହୁଅନ୍ତି, ସେ ମାସରେ ଲୋକଙ୍କର ଶ୍ଳେଷ୍ମାବୃଦ୍ଧି ହୁଏ; ଦେଶରେ ସୁଭିକ୍ଷ, ଶସ୍ୟବର୍ଦ୍ଧନ ଓ ସର୍ବମଙ୍ଗଳ ହୁଏ । ରାହୁ (ପୃଥିବୀର ଛାଇ) ଚନ୍ଦ୍ରଙ୍କୁ ଗ୍ରାସ କଲେ ଚନ୍ଦ୍ରଗ୍ରହଣ ହୁଏ । ଚନ୍ଦ୍ରଯୁକ୍ତ ସୋମବାର ଜ୍ୟୋତିଷ ମତରେ ସର୍ବକର୍ମରେ ଶୁଭ । ଚନ୍ଦ୍ର ଯେଉଁ ରାଶିମାନଙ୍କ ସଙ୍ଗେ ଯୁକ୍ତ ହୋଇ ଯେଉଁ ତିଥିରେ ଥାଆନ୍ତି ତଦନୁସାରେ ମନୁଷ୍ୟ ଭିନ୍ନଭିନ୍ନ ଫଳ ଭୋଗ କରେ । ଚନ୍ଦ୍ର ଗୋଟିଏ ରାଶିରେ ୨¼ ଅର୍ଥାତ୍ ୨¼ ଦିନ ରହନ୍ତି । ଆଧୁନିକ ବିଜ୍ଞାନମତରେ ଚନ୍ଦ୍ର ଗୋଟିଏ ନିର୍ଜ୍ଜୀବ ବସ୍ତୁ ଓ ଏହା ପୃଥିବୀର ଚାରି ପାଖରେ ୨୮ ଦିନରେ ଥରେ ବୁଲେ; ଏହା ଗୋଟିଏ ମରୁ ଓ ପାଷାଣମୟ ପିଣ୍ଡ ଅଟେ ଓ ଏଥିରେ ଦେଖାଯିବା କଳଙ୍କ ପର୍ବତର ଗହ୍ୱର ଅଟେ । ଏହାର ବ୍ୟାସ ୨୧୬୨ ମାଇଲ ଓ ଏହା ପୃଥିବୀଠାରୁ ୨ ଲକ୍ଷ ୮ ହଜାର ୮ଶହ ମାଇଲ ଦୂରରେ ଅବସ୍ଥିତ । ଏହାର ଆକାର ପୃଥିବୀର ୪୯ ଭାଗରୁ ଭାଗେ । ପୁରାଣମତରେ ଏ ଏହାଙ୍କ ଗୁରୁ ବୃହସ୍ପତିଙ୍କ ପତ୍ନୀ ତାରାଙ୍କୁ ହରଣ କରିଥିବାରୁ ଗୁରୁଙ୍କ ଅଭିଶାପରେ ଏ କ୍ଷୟରୋଗୀ ହୋଇ ତଦନୁସାରେ ପ୍ରତି ପକ୍ଷରେ କ୍ଷୟ ଓ ବୃଦ୍ଧି ପାଆନ୍ତି । ରାତିରେ କଇଁ ଫୁଟୁଥିବାରୁ ଚନ୍ଦ୍ରଙ୍କୁ କୁମୁଦବନ୍ଧୁ ବୋଲାଯାଏ । କଥିତ ଅଛି ଯେ ଚକୋର ଚନ୍ଦ୍ରକିରଣ ପାନ କରେ । ଚନ୍ଦ୍ର ମହାଦେବଙ୍କ ମସ୍ତକରେ ଅବସ୍ଥାନ କରିବା ବିଷୟ ପୁରାଣରେ ଅଛି । ]
୩ । ମୟୂରଚନ୍ଦ୍ରିକା—3. The black round spots bordered by concentric bands of brilliant blue, green and gold on the tail-feathers of a peacock.
୪ । କର୍ପୂର—4. Campher.
୫ । ଜଳ—5 Water.
୬ । ସ୍ୱର୍ଣ୍ଣ—6. Gold.
୭ । ହୀରକ—7. Diamond.
୮ । ଦ୍ୱୀପବିଶେଷ—3. Name of an island.
୯ । (କାମଶାସ୍ତ୍ର) ସ୍ତ୍ରୀମାନଙ୍କ ଭିନ୍ନଭିନ୍ନ ଅଙ୍ଗରେ ଭିନ୍ନଭିନ୍ନ ତିଥିରେ ଥିବା କାମୋଦ୍ଦୀପକ କେନ୍ଦ୍ର— 2. The amorous centres said to be in the different limbs of a woman on different days, by titillating which a woman becomes very amorous andundergoes orgasm.
[ ଦ୍ର—ଉକ୍ତ ତିଥିମାନଙ୍କରେ ସ୍ତ୍ରୀମାନଙ୍କର ଉକ୍ତ ଅଙ୍ଗମାନଙ୍କୁ ଲୁଳୁଲୁଳୁ କଲେ ସ୍ତ୍ରୀମାନେ ରମଣକାଳରେ କାମୋନ୍ମତ୍ତ ହୁଅନ୍ତି । ]
୧୦ । (ଅନ୍ୟ ଶବ୍ଦ ପରେ ଯୋଗ କଲେ) ଶ୍ରେଷ୍ଠ ବ୍ୟକ୍ତି— 10. A superior being.
( ଯଥା—କବିଚନ୍ଦ୍ର, କୁଳଚନ୍ଦ୍ର; ପୁରୁଷଚନ୍ଦ୍ର ଇତ୍ୟାଦି । )
୧୧ । ଚନ୍ଦ୍ରବିନ୍ଦୁ ( ଦେଖ )
11 Chandrabindu ( See )
୧୨ । ରକ୍ତବର୍ଣ୍ଣ ମୁକ୍ତା (ହି. ଶବ୍ଦସାଗର)—12. Red pearl.
ଦେ. ବି—୧ । ଚନ୍ଦ୍ରଶେଖରର ଡାକ ନାମ—
1. Name for calling Chandraśekhara.
୨ । ସ୍ୱର୍ଣ୍ଣ ବା ରୌପ୍ୟମୁଦ୍ରା—
2 Gold or silver coin.
ଏହା ଶୁଣି ଅତି ହରଷ ପୁରୁଷ ଲକ୍ଷେ ଚନ୍ଦ୍ର ଦେଇ ତାହାକୁ—
ଭଞ୍ଜ ପ୍ରେମସୁଧାନିଧି ।
୩ । ଧୂପକଳାରେ କଇଥଅଠା ମିଶାଇ ଗଞ୍ଜପାସାରରେ ରଙ୍ଗ ଦେବା ନିମନ୍ତେ ବ୍ୟବହୃତ କଳାରଙ୍ଗ—3. Black paint used for dying Gañjapā cards.
୪ । ( ବଣିଆ ଶବ୍ଦ ) ସ୍ତ୍ରୀ ମସ୍ତକରେ ଅର୍ଦ୍ଧଚନ୍ଦ୍ରାକୃତି ରୂପା ବା ସୁନାର ଅଳଙ୍କାରବିଶେଷ—4. A gold or silver ornament for the head, shaped like a crescent.
୫ । ବଙ୍ଗାଳ ବଣିଆଙ୍କ ବଂଶୋପାଧିବିଶେଷ—
5. A family-title of Bengalee goldsmiths.

| | | | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇସ୍ମ | ଉଈ | ଙ୍ଗ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଚିଁ୍ୟ | ଇଅ | ଜ୍ଞ | ନ୍ତ |

୬ । ଚେନାବ୍ ନଦୀର ଉତ୍ପତ୍ତିସ୍ଥଳରୁ ବାହାରିବା ଅଂଶର ନାମ—6 Name of the part of the river Chenab near its source.

ସଂ, ବିଣ—ଆହ୍ଲାଦକର—Delightful

[ ଦ୍ର—ଚନ୍ଦ୍ର ଶ୍ରେଷ୍ଠତାବାଚକ ଥିବାରୁ ବ୍ୟକ୍ତିମାନଙ୍କ ନାମ ପରେ ଯୁକ୍ତ ହୁଏ । ଯଥା—ରାମଚନ୍ଦ୍ର, କୃଷ୍ଣଚନ୍ଦ୍ର, ଗୌରଚନ୍ଦ୍ର, କିଶୋରଚନ୍ଦ୍ର, ଶିବଚନ୍ଦ୍ର, ଶମ୍ଭୁଚନ୍ଦ୍ର, କୈଳାଶଚନ୍ଦ୍ର, ନବଦ୍ୱୀପଚନ୍ଦ୍ର ଇତ୍ୟାଦି । ]

**ଚନ୍ଦ୍ରଉଦଅ**—ଦେ. ବି. (ସଂ. ଚନ୍ଦ୍ର ଓ ଉଦୟ)—ବାଣବିଶେଷ; ଯେଉଁ ବାଣକୁ Chandra-udiā ଜାଳିଲେ ଚନ୍ଦ୍ରୋଦୟ ହେଲା ଭଳି ଧଳା ଆଲୋକ ରଣମସାଲ ଦେଖାଯାଏ; ମହତାପ—A firework emitting **महताबो** white light; the Bengal Lights.

କୁବେଲ ଗ୍ରାମର ସହସ୍ରେ ପଡେ
ଚନ୍ଦ୍ରଉଦଅ ବାଜ ଦାଜ ଛଡେ—ପ୍ରାଚୀ. ରହସ୍ୟମଞ୍ଜରୀ ।

ଦେ, ବିଣ—ଚନ୍ଦ୍ର ପରି ସୁନ୍ଦର ଓ ଉଜ୍ଜ୍ୱଳ—
Lovely and bright like the moon; moonlike.

**ଚନ୍ଦ୍ରକ**—ସଂ. ବି. ( ଚନ୍ଦ୍ର + ତୁଲ୍ୟାର୍ଥେ. କ )—୧ । ମୟୂରଚନ୍ଦ୍ରିକା—Chandraka 1. The circular spot or eye on the tail-feather of the peacock.

୨ । ମଣ୍ଡଳ; ବଳୟ; ମୁଦଅ—2. A circular thing; a circular ring shaped like the moon ( M. W. ).

୩ । ଚନ୍ଦ୍ରମଣ୍ଡଳ—3. The orb of the moon.

୪ । (+ସ୍ୱାର୍ଥେ. କ) ଚନ୍ଦ୍ର—4. The moon.

୫ । ନଖ—5. Finger-nail.

୬ । ଟଙ୍କାଗୁନ୍ଦିମାଛ—
6. A small circular freshwater-fish.

୭ । ଚନ୍ଦ୍ରକିରଣ ( ହ୍ରୁ. ଶବ୍ଦସାଗର )—
7. Moon's rays.

୮ । ଧଳା ମରିଚ ( ହ୍ରୁ. ଶବ୍ଦସାଗର )—
8. White pepper.

୯ । ମାଲକୋଶ ରାଗର ପୁତ୍ର ରାଗିଣୀବିଶେଷ(ହ୍ରୁ.ଶବ୍ଦସାଗର)—
9. Name of a secondary musical air.

୧୦ । ଗୋଲମରିଚ—
10. Black pepper ( M. W. )

**ଚନ୍ଦ୍ରକ ଚୂଳ**—ସଂ. ବି. (ଚନ୍ଦ୍ରକ + ଚୂଳ )—Chandraka chūḷa ମସ୍ତକ ଉପରେ ଅଳଙ୍କାର ରୂପେ ବ୍ୟବହୃତ ମୟୂରପୁଚ୍ଛର ଗୁଚ୍ଛ—Tail-feathers of the peacock tied into a bunch and put on the head as an ornament.

ଚନ୍ଦ୍ରକଚୂଳ ଶିର ଦେଶେ । ପ୍ରାଚୀ. ପୂର୍ଣ୍ଣଚନ୍ଦ୍ରୋଦୟ

**ଚନ୍ଦ୍ରକଳା**—ସଂ. ବି. ( ୬ଷ୍ଠୀ ତତ୍; ଚନ୍ଦ୍ର + କଳା )—Chandrakaḷā ୧ । ପୂର୍ଣ୍ଣ ଚନ୍ଦ୍ରର ୧୬ ଅଂଶର ଏକାଂଶ; ଚନ୍ଦ୍ରମଣ୍ଡଳର ଷୋଡ଼ଶ ଭାଗର ଏକ ଭାଗ—
1. One of the 16 parts of a full moon; a digit of the moon's orb.

ଛୁରେ ସେଟକ୍କ ଚନ୍ଦ୍ରକଳା ଅଦର୍ଶନେ କୁମୁଦାକର ।
ରାଧାନାଥ. ଉଷା ।

[ ଦ୍ର—ଚନ୍ଦ୍ରଙ୍କର ଷୋଡ଼ଶ କଳାର ନାମ—ପୂଷା, ଯଶା, ସୁମନସା, ରତି, ପ୍ରାପ୍ତି, ଧୃତି, ଋଦ୍ଧି, ସୌମ୍ୟା, ମରୀଚି, ଅଂଶୁମାଳିନୀ, ଅଙ୍ଗିରା, ଶଶିନୀ, ଛାୟା, ସମ୍ପୂର୍ଣ୍ଣମଣ୍ଡଳା, ତୁଷ୍ଟି ଓ ଅମୃତା । ]

୨ । ଚନ୍ଦ୍ରମଣ୍ଡଳରେ ଦେଖାଯିବା କଳଙ୍କ—
2. Spots on the moon's disc.

୩ । ସ୍ୱର୍ଗବେଶ୍ୟାବିଶେଷ—
3. Name of a heavenly nymph.

କମଳ ଚନ୍ଦ୍ରକକୁ ଛୁଇଁ, ବିଜୟୀ ଚନ୍ଦ୍ରକଳା ହୋଇ ।
ଉଞ୍ଜ. ବୈଦେହୀଶବିଳାସ ।

୪ । ଚନ୍ଦ୍ରକିରଣ ( ହ୍ରୁ. ଶବ୍ଦସାଗର )—
4. Moon's rays

୫ । ଛୋଟ ଢୋଲ ( ହ୍ରୁ. ଶବ୍ଦସାଗର )—
5. A small drum.

୬ । ସଙ୍ଗୀତର ତାଳବିଶେଷ—
6. Name of a musical measure or cadence.

ଦେ. ବି—୧ । କବିସୂର୍ଯ୍ୟଙ୍କ ସମକାଳୀନ ଜଳନ୍ତର ରାଜାଙ୍କର ପାଳିତା କନ୍ୟା—1. Name of a girl brought up by the Raja of Jaḷantara who was the patron of the Oria poet Kabisūrjya.

୨ । କବିସୂର୍ଯ୍ୟଙ୍କ ଦ୍ୱାରା ଲାବଣ୍ୟବତୀ କାବ୍ୟର ଅନୁକରଣରେ ଲିଖିତ ଓ ଜଳନ୍ତରର ରାଜା ରାମଚନ୍ଦ୍ରଙ୍କର ନାମରେ ଭଣିତ ଅସମ୍ପୂର୍ଣ୍ଣ କାବ୍ୟବିଶେଷ—2. Title of an unfinished Oria poem by poet Kabisūrjya.

**ଚନ୍ଦ୍ରକାନ୍ତ**—ସଂ. ବି. (ବହୁବ୍ରୀହି; ଚନ୍ଦ୍ର ଅଟେ କାନ୍ତ ଅର୍ଥାତ୍ ପ୍ରିୟ ଯାହାର)—Chandrakānta ୧ । କାଳ୍ପନିକ ମଣିବିଶେଷ—1. A fabulous gem; the moon-stone; jasper.
ସଂ. ଚନ୍ଦ୍ରମଣି, ଚନ୍ଦ୍ରୋପଳ, ଚନ୍ଦ୍ରକାନ୍ତାବ

[ ଦ୍ର—କଥିତ ଅଛି ଯେ ଏହା ଚନ୍ଦ୍ରକିରଣ ସ୍ପର୍ଶରେ ଦ୍ରବୀଭୂତ ହୁଏ । ବୋଧହୁଏ ଏହାକୁ ରାତିରେ ପଦାରେ ରଖିଲେ ଏହା ଉପରେ ଶିଶିରବିନ୍ଦୁ ପଡ଼ିବାରୁ ଏହା ତରଳିଯିବା ପରି ଦେଖାଯାଏ । ]

୨ । ଚନ୍ଦନ କାଠ—2. Sandal-wood.

୩ । ( ବହୁବ୍ରୀହି ) କୁମୁଦ—3 Water-lily.

ସାଧାରଣ ଲୋକେ ଅପଠ ପୃଷ୍ଠାରେ ଦୃଢ଼ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ରୁଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କୋ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

ସଂ ବିଣ—ଚନ୍ଦ୍ର ପରି ସୁନ୍ଦର—
Beautiful or charming as the moon.

ଦେ. ବି. ପୁଂ ( ନାମ )—ଲୋକଙ୍କ ନାମ—
Name given to males.

**ଚନ୍ଦ୍ରକାନ୍ତା**—ସଂ. ବି ସ୍ତ୍ରୀ. ( ୬ଷ୍ଠୀ ତତ୍, ବହୁବ୍ରୀହି; ଚନ୍ଦ୍ର+କାନ୍ତ+ସ୍ତ୍ରୀ. ଆ )—୧ । ଜ୍ୟୋତ୍ସ୍ନା—
Chandrakāntā
1. Rays of the moon; moon-light.
୨ । ରାତ୍ରି—2. Night
୩ । ତାରକା—3. Star.
୪ । ଔଷଧି—4. Herbs
୫ । ଚନ୍ଦ୍ରପତ୍ନୀ—5. The wife of the moon-god.
୬ । ଲକ୍ଷ୍ମଣଙ୍କ ପୁତ୍ର ଚନ୍ଦ୍ରକେତୁଙ୍କ ରାଜଧାନୀ—
6. Name of the capital of the ancient King Chandraketu.

**ଚନ୍ଦ୍ରକାନ୍ତ**—ସଂ. ବି. ( ବହୁବ୍ରୀହି; ଚନ୍ଦ୍ର+କାନ୍ତ )—
Chandrakānti ୧ । ରଜତ; ରୁପା; ରୂପା—1 Silver.
୨ । ଶୁକ୍ତି; ସାମୁକା—2. Oyster.
ସୂନ୍ଦ-ଲମ୍ବିତ ଚନ୍ଦ୍ରକାନ୍ତ ଶକର । ରାଧାନାଥ. ମେଘଦୂତ ।
୩ । ( ୬ଷ୍ଠୀ ତତ୍ ) ଚନ୍ଦ୍ରଙ୍କ ଜ୍ୟୋତିଃ—
3. The brightness of the moon.
ଦେ. ବି—ମିଷ୍ଟାନ୍ନବିଶେଷ—
A kind of sweetmeat.
ଚନ୍ଦ୍ରକାନ୍ତ, ଝିଲ୍ଲି, ନାଡ଼ୁକା ସୁଶୋଭନ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଚନ୍ଦ୍ରକୀ**—ସଂ. ବି. ( ଚନ୍ଦ୍ରକ+ଇନ୍; ୧ମା. ୧ବ. )—ମୟୂର—
Chandrakī Peacock

**ଚନ୍ଦ୍ରକିତ**—ସଂ. ବିଣ. ( ଚନ୍ଦ୍ରକ+ଯୁକ୍ତାର୍ଥେ ଇତ; ଭୁଲ. ତାରକିତ, କଣ୍ଟକିତ )—ଚନ୍ଦ୍ରପରି ଉଜ୍ଜ୍ୱଳ ଗୋଲଗୋଲ ଚିହ୍ନବିଶିଷ୍ଟ—Furnished with myriads of brilliant moonlike spots (M. W.).
Chandrakita

**ଚନ୍ଦ୍ରକେତୁ**—ସଂ. ବି. (ନାମ)—ଲକ୍ଷ୍ମଣଙ୍କର ଏକ ପୁତ୍ର—
Chandraketu Name of a son of Lakshmaṇa.

**ଚନ୍ଦ୍ରକ୍ଷୟ**—ସଂ. ବି. (୬ଷ୍ଠୀ ତତ୍; ଚନ୍ଦ୍ର+କ୍ଷୟ)—୧ । ଅମାବାସ୍ୟା—
Chandrakshaya The newmoon day.
୨ । ଯେଉଁ ତିଥିରେ ପୂର୍ଣ୍ଣ ଅମାବାସ୍ୟା ଥାଏ, ଅର୍ଥାତ୍ ଚନ୍ଦ୍ର ଆଦୌ ଦେଖାଯାଏ ନାହିଁ—2 The night when the moon is not at all seen.

**ଚନ୍ଦ୍ରଗୁପ୍ତ**—ସଂ. ବି. (ନାମ)—ଚିତ୍ରଗୁପ୍ତ ( ଦେଖ )
Chandragupta Chitragupta ( See )
ଦେ. ବି—୧ । ଗ୍ରୀକ୍ ମହାବୀର ସିକନ୍ଦରଙ୍କ ସମସାମୟିକ ଓ ଖ୍ରୀ: ପୂ: ଚତୁର୍ଥ ଶତାବ୍ଦୀର ଭାରତସମ୍ରାଟ—An emperor of India ( whose capital was Magadha), a contemporary of Alexander the Great.
[ ଦ୍ର—ଏ ମଗଧ ଦେଶର ପ୍ରଥମ ମୌର୍ଯ୍ୟବଂଶୀ ରାଜା । ପାଟଳୀପୁତ୍ର ଏହାଙ୍କ ରାଜଧାନୀ ଥିଲା । ଏ ବଲ୍‌ଖ୍ ରାଜ୍ୟର ଗ୍ରୀକ୍‌ରାଜା ସେଲ୍ୟୁକସଙ୍କୁ ଜୟ କରି ତାଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ଏ ରାଜା ମହାପଦ୍ମ ନନ୍ଦଙ୍କର ମୁରାନାମ୍ନୀ ରକ୍ଷିତା ଦାସୀର ପୁତ୍ର ଥିଲେ । ଚାଣକ୍ୟଙ୍କ କୂଟନୀତି ସାହାଯ୍ୟରେ ଏ ମହାନନ୍ଦଙ୍କୁ ମାରି ନନ୍ଦବଂଶୀୟମାନଙ୍କର ଉଚ୍ଛେଦସାଧନ କରି ମଗଧରାଜସିଂହାସନ ଅଧିକାର କଲେ । ବିଶାଖଦତ୍ତଙ୍କ ପ୍ରସ୍ତୁତ ମୁଦ୍ରାରାକ୍ଷସ ନାଟକ ଏହାଙ୍କୁ ଲକ୍ଷ୍ୟ କରି ରଚିତ; ଏ ବିଶେଷ ପ୍ରତାପୀ ଥିଲେ ଓ ପଞ୍ଜାବରୁ ଯବନମାନଙ୍କୁ ତଡ଼ାଇଡ଼ିତ କରିଥିଲେ । ଏ ଖ୍ରୀ: ପୂ: ୩୨୨ ରେ ସିଂହାସନ ଆରୋହଣ କରି ୨୪ ବର୍ଷ ରାଜତ୍ୱ କରିଥିଲେ । ଗ୍ରୀକ୍‌ମାନେ ଏହାଙ୍କୁ 'ସାନ୍ଦ୍ରାକୋଟସ୍' ନାମରେ ଡାକୁଥିଲେ । ]
୨ । ୪ର୍ଥ ଶତାବ୍ଦୀର ଗୁପ୍ତବଂଶର ଜଣେ ପ୍ରତାପୀ ରାଜା—
2. Name of a powerful king of the Gupta Dynasty.
[ ଦ୍ର— ଏହାଙ୍କୁ କେହିକେହି ବିକ୍ରମ ବା ବିକ୍ରମାଦିତ୍ୟ କହନ୍ତି । ଏ ୩୧୮ ଖ୍ରୀଷ୍ଟାବ୍ଦରେ ସମସ୍ତ ଉତ୍ତରଭାରତରେ ସାମ୍ରାଜ୍ୟ ସ୍ଥାପିତ କରିଥିବାର ଶିଳାଲିପିରୁ ଜଣାଯାଉଅଛି । କେହିକେହି ଅନୁମାନ କରନ୍ତି ଯେ ଏ ଗୁପ୍ତସମ୍ବତ୍ ଚଳାଇ ଥିଲେ । ( ଏହାଙ୍କ ରାଣୀ କୁମାରୀ ଦେବୀ ) । ]
୩ । ଉପରୋକ୍ତ ଚନ୍ଦ୍ରଗୁପ୍ତଙ୍କ ପୁତ୍ର ସମୁଦ୍ରଗୁପ୍ତଙ୍କ ପୁତ୍ର—
3. Name of the grandson of the above Chandragupta.
[ ଦ୍ର—ଏହାଙ୍କର ଅନ୍ୟ ନାମ ବିକ୍ରମାଙ୍କ ବା ଦେବରାଜ । ଏ ନେପାଳ ରାଜକନ୍ୟା ଧ୍ରୁବଦେବୀଙ୍କୁ ବିବାହ କରିଥିଲେ । ଏ ଖ୍ରୀ: ୪୦୦ ଠାରୁ ୪୧୩ ପର୍ଯ୍ୟନ୍ତ ରାଜତ୍ୱ କରି ଦିଗ୍‌ବିଜୟ କରି ଅନେକ ଦେଶରେ କୀର୍ତ୍ତିସ୍ଥାପନ କରିଥିବାର ଶିଳାଲେଖରୁ ଜଣାଯାଏ । ( ହି. ଶବ୍ଦସାଗର ) ]

**ଚନ୍ଦ୍ରଗୃହ**—ସଂ. ବି. (୬ଷ୍ଠୀ ତତ୍, ଚନ୍ଦ୍ର+ଗୃହ)—(ଜ୍ୟୋତିଷ)କର୍କଟରାଶି—
Chandragṛuha The zodiacal sign of Cancer.

**ଚନ୍ଦ୍ରଗ୍ରହଣ**—ସଂ. ବି. (୬ଷ୍ଠୀ ତତ୍; ରାହୁଦ୍ୱାରା ଚନ୍ଦ୍ରଙ୍କର ଗ୍ରହଣ)—
Chandragrahaṇa ରାହୁ ବା ପୃଥିବୀର ଛାୟାଦ୍ୱାରା ଚନ୍ଦ୍ରଙ୍କର ଆଚ୍ଛାଦନ—Lunar eclipse.

**ଚନ୍ଦ୍ରଚଞ୍ଚଳ**—ସଂ. ବି—ଏକପ୍ରକାର ମାଛ; (ହି. ଖଇରା) ଖୁରୁସାଣ ମାଛ—
Chandrachañchaḷa A kind of freshwater fish.

**ଚନ୍ଦ୍ରଚଳନ**—ସଂ. ବି. ( ୬ଷ୍ଠୀ ତତ୍; ଚନ୍ଦ୍ର+ଚଳନ )—
Chandrachaḷana (ଜ୍ୟୋତିଷ) ଚନ୍ଦ୍ରଙ୍କର ଏକରାଶିରୁ ଅନ୍ୟ ରାଶିକୁ ଗତି—(Astrology) The motion of the moon from one zodiacal sign to another.

**ଚନ୍ଦ୍ରଚାଳକ**—ଦେ. ବି. (ସଂ. ଚନ୍ଦ୍ରଚାଳନ,—(କାମଶାସ୍ତ୍ର) ଭିନ୍ନଭିନ୍ନ ତିଥିରେ
Chandra chāḷaka ସ୍ତ୍ରୀମାନଙ୍କ ଅଙ୍ଗର ଭିନ୍ନଭିନ୍ନ ଅଂଶରେ ଥିବା

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଢ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଙ୍ଖ | ନ୍ |

'ଚନ୍ଦ୍ର'ଙ୍କୁ କାମଶାସ୍ତ୍ରୋକ୍ତ ବିଧିଦ୍ୱାରା ଉତ୍ତେଜିତ କରି କାମୋପଭୋଗ କରିବା ବିଧି—Titillation of a particular limb of a woman on a particular day of the lunar fortnight by a lover, by which she becomes very excited.

**ଚନ୍ଦ୍ରଚାଳନ**—ସଂ. ବି—( ୬ଷ୍ଠୀ ତତ୍; ଚନ୍ଦ୍ର+ଚାଳନ )—
Chandra chālana — ଚନ୍ଦ୍ରଚାଳକ (ଦେଖ) Chandra chālaka (See).

**ଚନ୍ଦ୍ର ଚାଳିବା**—ଦେ. କ୍ରି—ସ୍ତ୍ରୀମାନଙ୍କ ଭିନ୍ନ ଭିନ୍ନ ଅଙ୍ଗରେ ଭିନ୍ନ ଭିନ୍ନ
Chandra chālibā — ତିଥିରେ ଅବସ୍ଥିତ 'ଚନ୍ଦ୍ର'ଙ୍କୁ କାମଶାସ୍ତ୍ରୋକ୍ତ ବିଧିଦ୍ୱାରା ଚଳାଇବା—To titillate the different parts of the body of a woman on different days of the fortnight.

ନିତ ନିଧୁବନେ ଅନେକ ବିଧାନେ କେତେ ଚନ୍ଦ୍ର ଆଉ ଚାଳ ।
କବିସୂର୍ଯ୍ୟ. ସଙ୍ଗୀତ ।

**ଚନ୍ଦ୍ରଚୂଡ଼**—ସଂ. ବି (ବହୁବ୍ରୀହି; ଚନ୍ଦ୍ର ଚୂଡ଼ାରେ ଯାହାର, ଚନ୍ଦ୍ରଙ୍କୁ ମସ୍ତକରେ
Chandrachūrda — ବହିଥିବା ଯୋଗୁଁ)—୧ । ମହାଦେବ — 1. God Śiba ( lit moon-crested).
୨ । ପର୍ବତବିଶେଷ—2. Name of a mountain.

**ଚନ୍ଦ୍ରଚୂଡ଼ାମଣି ହରିଚନ୍ଦନ ଜଗଦେବ**—ଦେ. ବି ( ନାମ )—
Chandrachūrdāmaṇi harichandana jagadeba
ଗଞ୍ଜାମ ସୁରଙ୍ଗୀ ରାଜ୍ୟର ସ୍ୱର୍ଗୀୟ ରାଜା । ଏ 'ମାତୃପୂଜା' 'ସଙ୍ଗୀତସର୍ବସ୍ୱ' ଓ 'ଦଶମହାବିଦ୍ୟା' ଆଦି ପୁସ୍ତକମାନ ଲେଖିଅଛନ୍ତି ( ଭାରତୀ-ଉତ୍କଳସାହିତ୍ୟର ଇତିହାସ ) । ଏ ଇଉରୋପ ଭ୍ରମଣ କରି 'ପାଶ୍ଚାତ୍ୟଭ୍ରମଣ' ଓ ଅନେକ-ଗୁଡ଼ିଏ କବିତା ରଚନା କରିଥିଲେ—
Name of the late Raja of Surangi in the district of Ganjam.

**ଚନ୍ଦ୍ରଚୋର ବାହିନୀପତି**—ଦେ. ବି ( ନାମ )— ମୋଗଲ ବାଦଶାହା
Chandrachora bāhinīpati — ଅକବରଙ୍କ ରାଜତ୍ୱକାଳର ପୁରୀ
(ଚନ୍ଦ୍ରଚୂଡ଼ଗୁରୁ—ଅନ୍ୟ ନାମ) — ଜିଲ୍ଲା ବିହାଙ୍ଗ ପ୍ରଗନ୍ନାର ବୀର-ନରସିଂହପୁର ଶାସନର ଜଣେ ପ୍ରସିଦ୍ଧ ତାନ୍ତ୍ରିକ ବ୍ରାହ୍ମଣ—
Name of a Brahman Pandit of Puri district in the reign of Akbar, who is reputed to have acquired supernatural powers by Tantric exercises.

[ ଦ୍ର—ଏ ଅକବର ବାଦଶାହାଙ୍କ ଦରବାରରେ ତପବଳରେ ଆଶ୍ଚର୍ଯ୍ୟଜନକ ଶକ୍ତି ଦେଖାଇଥିଲେ । କଥିତଅଛି ଦିନେ ପୂର୍ଣ୍ଣିମାଦିନ ରାଜସଭାରେ ଏ କହିପକାଇଲେ ଯେ ଆଜି ଅମାବାସ୍ୟା ଅଟେ । ଏହା ଦେଖି ସଭାପଣ୍ଡିତମାନେ ହସିଲେ । ଏଥିରେ ଏ ଲଜ୍ଜିତ ହୋଇ ବସାକୁ ଫେରିଆସି ଇଷ୍ଟଦେବୀଙ୍କ ଧ୍ୟାନ କରି ଏହି ବର ମାଗିଲେ ଯେ "ଆଜି ଚନ୍ଦ୍ର ଉଦୟ ହେବେ ନାହିଁ" । ଏଥିରେ ଦେବୀ ରାଜି ହୋଇ ଚନ୍ଦ୍ରୋଦୟ ପୂର୍ବରୁ ଚନ୍ଦ୍ରଙ୍କୁ ଘେନିଆସି ଏହାଙ୍କ ବସାରେ ହାଣ୍ଡିତଳେ ଲୁଚାଇଦେଲେ । ଏଣେ ସନ୍ଧ୍ୟାବେଳେ ଚନ୍ଦ୍ର ଉଦୟ ନ ହେବାରୁ ବାଦଶାହା ଆଶ୍ଚର୍ଯ୍ୟାନ୍ୱିତ ହୋଇ ଏହାଙ୍କୁ ଡକାଇ ପଠାଇଲେ ଓ ଏହାଙ୍କର ଏହି ଅସାଧାରଣ କ୍ଷମତା ଯୋଗୁଁ ଏହାଙ୍କୁ ପୁରସ୍କୃତ ଓ ସମ୍ମାନିତ କଲେ । ଏହାଙ୍କ ଭାଇଙ୍କ ନାମ ବଣି ପାଢ଼ୁଣୀ । ]

**ଚନ୍ଦ୍ରଝଲକା**—ଦେ. ବି—୧ । ଚନ୍ଦ୍ରକିରଣ—
Chandrajhalakā — 1. The rays of the moon.
(ଚନ୍ଦ୍ରଝଲକ—ଅନ୍ୟରୂପ) — ୨ । ମୁଣ୍ଡର ଅଳଙ୍କାରବିଶେଷ—2. An ornament for the head.

ତଥିତ ଚନ୍ଦ୍ରଝଲକାବଳି କି ମାଧୁରୀ—ଭଞ୍ଜ. ବୈଦେହୀଶବିଳାସ ।

**ଚନ୍ଦ୍ରଝୁମ୍ପା**—ଦେ. ବି—ସ୍ତ୍ରୀମାନଙ୍କ ମୁଣ୍ଡର ଚଉଁରିଭୁଣ୍ଡିରେ ଲାଗିଥିବା
Chandrajhumpā — ଚନ୍ଦ୍ରାକାର ଝୁମ୍ପା— A kind of pendant for the chignon.

କେ ବୋଲେ ଚନ୍ଦ୍ରଝୁମ୍ପା ମୂଳରୁ ପ୍ରକାଶେ—କୃଷ୍ଣସିଂହ. ମହାଭାରତ. ବନ ।

**ଚନ୍ଦ୍ରଝୁମ୍ପି**—ଦେ. ବି—୧ । ଚନ୍ଦ୍ରଝୁମ୍ପା (ଦେଖ)
Chandrajhumpi — Chandrajhumpā (See).

ବନ୍ଧୁ ଚନ୍ଦ୍ରଝୁମ୍ପି ଝିଲମିଲିକା—ଭଞ୍ଜ. ବୈଦେହୀଶବିଳାସ ।

୨ । ଉପର କାନରେ ପିନ୍ଧାଯିବା ଅର୍ଦ୍ଧଚନ୍ଦ୍ରାକାର ଫାସିଆ— 2. A kind of crescent-shaped ear-ring for the upper ear.

**ଚନ୍ଦ୍ରଦୀପ**—ଦେ ବି—ରାତିରେ ଚାଲିବା ବେଳେ ବାଟ ସ୍ପଷ୍ଟରୂପେ
Chandradīpa — ଦେଖାଯିବା ଉଦ୍ଦେଶ୍ୟରେ ବ୍ୟବହୃତ ଉଜ୍ଜ୍ୱଳ କିରଣଯୁକ୍ତ ପ୍ରଦୀପ ବା ଲଣ୍ଠନ—
A bright lamp or lantern used to show the way during the night.

ଚନ୍ଦ୍ରହୀନବସ୍ଥାନ ରଜନୀକାଳେ, ଗୃହକୀ ସୋପାନ ଉଠିବାବେଳେ ।
ଚନ୍ଦ୍ରଦୀପ ତା ସମ୍ମୁଖରେ ନ ଥିଲେ, ଚେତନା ମୋ ଦେହେ ନ ଥାଇ ଭଲେ ।
କବିସୂର୍ଯ୍ୟ. କଳାକଉତୁକ ।

**ଚନ୍ଦ୍ରଦ୍ୱୀପ**—ସଂ. ବି.—ହିନ୍ଦୁଶାସ୍ତ୍ରୋକ୍ତ ୧୧ ଦ୍ୱୀପ ମଧ୍ୟରୁ ଏକତମ—
Chandradwīpa One of the 11 islands mentioned in Hindu mythology.
[ ଦ୍ର—ଶ୍ୱେତଦ୍ୱୀପ ତଳେ ନୋଟ ଦେଖ]

**ଚନ୍ଦ୍ରନେତ୍ର**—ଦେ. ବି.—ରାମାୟଣୋକ୍ତ ରାକ୍ଷସବିଶେଷ—
Chandranetra — Name of a demon.

ବଧୁଲୁଦ ବାଲସୂନ ଜ୍ୟୋତହୀନ ଚନ୍ଦ୍ରନେତ୍ର ମୋଚକର୍ଣ୍ଣେ ପାବନ ଶାର୍ଦ୍ଦୂଳ ।
ଭଞ୍ଜ. ବୈଦେହୀଶବିଳାସ ।

**ଚନ୍ଦ୍ରପ୍ରଭ**—ସଂ. ବିଣ ପୁଂ.—(ବହୁବ୍ରୀହି; ଚନ୍ଦ୍ର+ପ୍ରଭା)—ଚନ୍ଦ୍ରଙ୍କ ପରି
Chadraprabha — ସୁନ୍ଦର—Beautiful like the moon
(ଚନ୍ଦ୍ରପ୍ରଭା—ସ୍ତ୍ରୀ )

**ଚନ୍ଦ୍ରପ୍ରଭା**—ସଂ. ବି. ସ୍ତ୍ରୀ.—(୬ଷ୍ଠୀ ତତ୍; ଚନ୍ଦ୍ର+ପ୍ରଭା)—୧ । ଜ୍ୟୋତ୍ସ୍ନା—
Chandraprabhā — 1. Moon-light.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଯେ ସ୍ଥଳେ ଯେବେ ଏ ଭାଷାକୋଷରେ ନ ମିଳିବ, ସେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'ଲୁଅ' ନ ମିଳିଲେ 'ଲୁଆ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଗ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୨ । ବାକୁଚି (ଦେଖ)
2. Bākuchi (See)
ସଂ. ବଣ. ସ୍ତ୍ରୀ.—(ବହୁବ୍ରୀହି) ସୁନ୍ଦରୀ (ସ୍ତ୍ରୀ)
Beautiful (woman).

**ଚନ୍ଦ୍ରପୃଷ୍ଠ**—ଗ୍ରା. ବଣ. ପୁଂ.—ଯାହାର ଜାନୁ, ଭୁଜ ଓ ହୃଦୟ ମୋଟ ଓ
Chandraprushta ପେଟ କୃଶ ଏବଂ ଯେ ଦିବସରେ ନିଦ୍ରା ଯାଏ ଓ ରସଦ୍ରବ୍ୟ ଭକ୍ଷଣ କରେ—A person who has thick thighs, arms and breast and a thin belly.

ଚନ୍ଦ୍ରପୃଷ୍ଠ ବୋଲି ତାହାକୁ କହି । ପ୍ରାଚୀ. ପରଚେ ଗୀତା ।

**ଚନ୍ଦ୍ରବଂଶ**—ସଂ. ବି. (୬ଷ୍ଠୀ ତତ୍; ଚନ୍ଦ୍ର + ବଂଶ)—ଚନ୍ଦ୍ରଙ୍କଠାରୁ ଉତ୍ପନ୍ନ
Chandrabamsa ଭାରତର ପୁରାତନ ରାଜବଂଶବିଶେଷ; ଯଦୁ ଓ ପୁରୁ ରାଜାଙ୍କ ବଂଶ—Name of an ancient family of kings of ancient India; the Lunar royal race of India.

[ ଦ୍ର—ପୁରାଣ ଅନୁସାରେ ଚନ୍ଦ୍ର ବା ସୋମ ଅତ୍ରି ମୁନିଙ୍କ ପୁତ୍ର; ଚନ୍ଦ୍ରଙ୍କ ପୁତ୍ର ବୁଧ; ସୂର୍ଯ୍ୟବଂଶୀୟ ରାଜାଙ୍କ କନ୍ୟା ଇଳାଙ୍କୁ ବୁଧ ବିବାହ କଲେ ଏବଂ ଇଳାଙ୍କ ଗର୍ଭରୁ ଐଳ ବା ପୁରୁରବା ନାମକ ପୁତ୍ର ଜନ୍ମିଲେ । ପୁରୁରବାଙ୍କ ଔରସରେ ଉର୍ବଶୀଙ୍କ ଗର୍ଭରୁ ଆୟୁଃ ନାମକ ପୁତ୍ର ଜନ୍ମିଲେ । ଆୟୁଙ୍କ ପୁତ୍ର ନହୁଷ; ନହୁଷଙ୍କ ପୁତ୍ର ଯଯାତି । ଯଯାତିଙ୍କର ଦୁଇ ପୁତ୍ର ପୁରୁ ଓ ଯଦୁ, ଏ ଦୁହିଙ୍କଠାରୁ ଚନ୍ଦ୍ରବଂଶର ଦୁଇଟି ଶାଖା ହେଲା । ଯଦୁବଂଶରେ କୃଷ୍ଣ, ବଳରାମ ଆଦି ଜନ୍ମିଥିଲେ । ପୁରୁବଂଶରେ ଦୁଷ୍ୟନ୍ତ ଜନ୍ମିଥିଲେ । ଦୁଷ୍ୟନ୍ତଙ୍କ ପୁତ୍ର ଭରତ । ଭରତଙ୍କ ନବମ ବଂଶଧର କୁରୁ ଏବଂ ଚତୁର୍ଦ୍ଦଶ ବଂଶଧର ଶାନ୍ତନୁ । ଶାନ୍ତନୁଙ୍କ ବିବାହିତା ଭାର୍ଯ୍ୟାଗର୍ଭଜାତ ପୁତ୍ର ଭୀଷ୍ମ, ଚିତ୍ରାଙ୍ଗଦ, ବିଚିତ୍ରବୀର୍ଯ୍ୟ ଓ ଦାସୀ ସତ୍ୟବତୀଙ୍କ କାନୀନ ପୁତ୍ର ବ୍ୟାସ । ଭୀଷ୍ମ ଚିରକୁମାର ଥିଲେ । ଚିତ୍ରାଙ୍ଗଦ ଓ ବିଚିତ୍ରବୀର୍ଯ୍ୟ ଅପୁତ୍ରକ ହୋଇ ମରିବାରୁ କାନୀନ ବ୍ୟାସଙ୍କ ଦ୍ୱାରା ସେମାନଙ୍କ ବିଧବା ସ୍ତ୍ରୀଙ୍କ ଗର୍ଭରେ ବ୍ୟାସଦେବ ଧୃତରାଷ୍ଟ୍ର ଓ ପାଣ୍ଡୁଙ୍କୁ ଉତ୍ପାଦନ କଲେ । ଧୃତରାଷ୍ଟ୍ର ଜ୍ୟେଷ୍ଠ କିନ୍ତୁ ଜନ୍ମାନ୍ଧ ଥିବାରୁ ପାଣ୍ଡୁ ରାଜ୍ୟ ପାଇଲେ । ପାଣ୍ଡୁଙ୍କ ଅନ୍ତେ ପାଣ୍ଡୁଙ୍କର ପାଞ୍ଚପୁତ୍ର ରାଜ୍ୟରେ ବସିବାରୁ ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନାଦି ଶତ ପୁତ୍ର ରାଜ୍ୟ ଦାବି କଲେ ଓ ମହାଭାରତ ଯୁଦ୍ଧର ସୂତ୍ରପାତ ହେଲା । ଚନ୍ଦ୍ରବଂଶ ପରି ସୂର୍ଯ୍ୟବଂଶ ଭାରତର ଆଉ ଗୋଟିଏ ପ୍ରାଚୀନ ରାଜବଂଶ ରାମଚନ୍ଦ୍ର ସୂର୍ଯ୍ୟବଂଶୀୟ । ]

**ଚନ୍ଦ୍ରବଦନ**—ସଂ. ବି.—(ଉପମିତ ସମାସ; ଚନ୍ଦ୍ର + ବଦନ)—ଚନ୍ଦ୍ରପରି
Chandrabadana ସୁନ୍ଦର ମୁଖ—Moon-like lovely face.
(ଚନ୍ଦ୍ରବଦନା—ସ୍ତ୍ରୀ) ସଂ. ବଣ. ପୁଂ. (ବହୁବ୍ରୀହି)—ଚନ୍ଦ୍ରଙ୍କ ପରି ସୁନ୍ଦର ମୁଖଯୁକ୍ତ (ପୁରୁଷ)—(a male) Having a lovely face like the moon.

**ଚନ୍ଦ୍ରବଦନୀ**—ସଂ. ବଣ. ସ୍ତ୍ରୀ. (ସଂ. ଚନ୍ଦ୍ରବଦନା)—ଚନ୍ଦ୍ରମୁଖୀ—
Chandrabadani (a woman) Having a lovely and fair face.

**ଚନ୍ଦ୍ରବନ୍ଧନୀ**—ଦେ ବି. (ଗଣିତ)—ଏକପ୍ରକାର ଗାଣିତିକ ସଙ୍କେତ—
Chandrabandhani A sign used in mathematics; simple bracket.
ବନ୍ଧନୀ ତଳେ ନୋଟ ଦେଖ—
See notes under Bandhani.

**ଚନ୍ଦ୍ରବଲ୍ଲରୀ**—ସଂ. ବି. ସ୍ତ୍ରୀ. ( ଉପମିତ କର୍ମଧାରୟ; ଚନ୍ଦ୍ର ସଦୃଶ ଉଜ୍ଜ୍ୱଳ
Chandraballari ବଲ୍ଲରୀ )—୧ । ସୋମ ଲତା—
1. The Soma creeper.
୨ । ଶାକଲତାବିଶେଷ—2. Ruta Graveolens; a kind of pot-herb ( M. W. ).

**ଚନ୍ଦ୍ରବଲ୍ଲୀ**—ସଂ. ବି—୧ । ପସାରୁଣୀ ଲତା—
Chandraballi 1. Pæderia Foetida (creeper)(M.W.)
୨ । ମାଧବୀ ଲତା—2. Gærtnera Racemosa (creeper). (M. W.).

**ଚନ୍ଦ୍ରବାଡ଼ି**—ଦେ. ବି—ଉତ୍କଟ ବିସୂଚିକା ରୋଗ—
Chandrabārdi Asiatic cholera; a very dangerous kind of cholera

**ଚନ୍ଦ୍ରବାଣ**—ସଂ. ବି—ଅର୍ଦ୍ଧଚନ୍ଦ୍ରାକୃତି ବାଣବିଶେଷ, ଯେଉଁ ବାଣର
Chandrabāna ଫଳକ ଅର୍ଦ୍ଧଚନ୍ଦ୍ରାକୃତି —A kind of
चंद्वान crescent-bladed arrow.

**ଚନ୍ଦ୍ରବାନ୍**—ସଂ. ବଣ ( ଚନ୍ଦ୍ର + ଅସ୍ତି ଅର୍ଥରେ ବତ୍; ୧ମା. ୧ବ )—
Chandrabān ୧ । ଚନ୍ଦ୍ରକିରଣ ଦ୍ୱାରା ଆଲୋକିତ—
(ଚନ୍ଦ୍ରବତୀ—ସ୍ତ୍ରୀ) 1 Illuminated by the moon. (M W.).
୨ । (ବୈଦିକ) ଯହିଁରେ ପ୍ରଚୁର ସ୍ୱର୍ଣ୍ଣ ଅଛି—
2. Abounding in gold. (M. W.)

**ଚନ୍ଦ୍ରବିନ୍ଦୁ**—ସଂ. ବି—ଅନୁନାସିକ ବର୍ଣ୍ଣବିଶେଷ; ବିନ୍ଦୁ ଯୁକ୍ତ ଅର୍ଦ୍ଧଚନ୍ଦ୍ରାକୃତି ଅକ୍ଷର ँ—A nasal alphabet or
Chandrabindu adjunct to a letter ँ in Sanscrit and Oria.

**ଚନ୍ଦ୍ରବିମ୍ବ**—ସଂ. ବି (୬ଷ୍ଠୀ ତତ୍; ଚନ୍ଦ୍ର + ବିମ୍ବ)—ଚନ୍ଦ୍ରମଣ୍ଡଳ (ଦେଖ)—
Chandrabimba Chandramandala (See)

**ଚନ୍ଦ୍ରବିମ୍ବା**—ଦେ. ବି—ଧବଳ ପୁଷ୍ପବିଶେଷ—
Chandrabimbā A kind of white flower
ଶତବର୍ଗ କୁନ୍ଦଅନା ରଙ୍ଗମଲ୍ଲୀ, ମୃଦୁଳା ଏ ଚନ୍ଦ୍ରବିମ୍ବା—ପ୍ରାଚୀ. ରହସ୍ୟମଞ୍ଜରୀ ।

**ଚନ୍ଦ୍ରବିହଙ୍ଗମ**—ସଂ. ବି (ମଧ୍ୟପଦଲୋପୀ; ଚନ୍ଦ୍ରବତ୍ ଶୁକ୍ଳ ବିହଙ୍ଗମ)—
Chandrabihangama ବଗପକ୍ଷୀ—The heron; Ardea Nivea, ( M. W. ).

**ଚନ୍ଦ୍ରବୋଡ଼ା**—ଦେ. ବି—ଚନ୍ଦନବୋଡ଼ା ( ଦେଖ )—
Chandraborda Chandanaborda ( See ).

**ଚନ୍ଦ୍ରବ୍ରତ**—ସଂ. ବି—ଚାନ୍ଦ୍ରାୟଣବ୍ରତ ( ଦେଖ )
Chandrabrata Chāndrāyana brata (See).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ସ | ଜ | ଶ,ଷ | ଙ୍କ | ଇଫ୍ସ | ଡ଼ଥ | ଢ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଥ | ଢ଼ | ନ୍ତ |

**ଚନ୍ଦ୍ରଭଗା**—ଗ୍ରା. ବି (ସଂ. ଚନ୍ଦ୍ରଭାଗା)—ଚନ୍ଦ୍ରଭାଗା ୨ ( ଦେଖ )—
Chandrabhagā Chandrabhāgā 2 ( See )

**ଚନ୍ଦ୍ରଭବନ**—ସଂ. ବି—ଚନ୍ଦ୍ରଶାଳା ( ଦେଖ )—
Chandrabhabana Chandraśālā ( See)

ବସନ୍ତେ ବନେ ଚନ୍ଦ୍ରଭବନେ ସୁଖୀ ସେବନେ ମୋର,
ପିଡନ୍ତା ଘନସାରରେ ଘନ ମାରେ ଜଘନ ଡର । ଉଞ୍ଜ. ପ୍ରେମ-ସୁଧାନିଧି ।

**ଚନ୍ଦ୍ରଭାଗ**—ସଂ. ବି—ହିମାଳୟର ଶୃଙ୍ଗବିଶେଷ—
Chandrabhāga Name of a mountain-peak in the Himalayan range.

[ ଦ୍ର—ପୁରାଣରେ ଅଛି ଯେ ଏହିଠାରେ ବ୍ରହ୍ମା ଚନ୍ଦ୍ରଙ୍କର ହ୍ରାସ-ବୃଦ୍ଧିର ଭାଗ ନିରୂପଣ କରିଥିଲେ । ]

**ଚନ୍ଦ୍ରଭାଗା**—ସଂ. ବି. ସ୍ତ୍ରୀ ( ଚନ୍ଦ୍ରଭାଗ+ଆ; ଚନ୍ଦ୍ରଭାଗ ପର୍ବତରୁ ଉତ୍ପନ୍ନ )
Chandrabhāgā ୧ । ସିନ୍ଧୁର ଉପନଦୀବିଶେଷ; ଆଧୁନିକ ଚେନାବ ନଦୀ—1. The Chenab, a tributary of the Indus.

୨ । ଉତ୍କଳର ପୁରୀଜିଲ୍ଲାର ସମୁଦ୍ର ଉପକୂଳସ୍ଥ କୋଣାର୍କ ନିକଟବର୍ତ୍ତୀ ଲୁପ୍ତ ନଦୀ—2. A vanished stream near Koṇārka in the sea-coast of the Puri district.

[ଦ୍ର—ଏହିଠାରେ ମାଘ ଶୁକ୍ଳସପ୍ତମୀରୁ ସ୍ନାନଯୋଗ ପଡ଼ିବାରୁ ବହୁ ସହସ୍ର ଯାତ୍ରୀ ଅରୁଣୋଦୟ ସମୟରେ ସ୍ନାନ କରିଥାନ୍ତି । ପୂର୍ବେ ଏହା ଗୋଟିଏ ପ୍ରଧାନ ବାଣିଜ୍ୟ କେନ୍ଦ୍ର ଓ ବନ୍ଦର ଥିଲା ।

ଖୋର୍ଦ୍ଧା ଜିଲ୍ଲା ଓ କଟକ ଜିଲ୍ଲା ଅନ୍ତର୍ଗତ ସାରଙ୍ଗଗଡ଼ ଓ ନୟାଗଡ଼ ମଧ୍ୟସ୍ଥିତ ପର୍ବତ ଓ ତତ୍ପାର୍ଶ୍ୱବର୍ତ୍ତୀ ଭୂମିଖଣ୍ଡର ଜଳ ମିଶି ବାରଙ୍ଗ ପୋଲ ଦେଇ ନିମ୍ନଗାମୀ ହେଉଥିଲା । ବାରଙ୍ଗ ନିକଟରେ ଏହାର ଆକାର କ୍ଷୁଦ୍ର, ଦେଖାଗଲେ ମଧ୍ୟ ପୁରୀ ଜିଲ୍ଲା ମଧ୍ୟସ୍ଥିତ ନାନାସ୍ଥାନ ଓ ଶାଖାନଦୀମାନଙ୍କରୁ ଜଳ ଆହରଣକରି ଏହା କ୍ରମେ ବୃହଦାକାର ହୋଇ ସମୁଦ୍ରାଭିମୁଖରେ ଯାଉଥିଲା । କୁଶଭଦ୍ରା ନଦୀର ଜଳ ଏଥିରେ ମିଳିତ ହେଉଥିଲା । ଏହାକୁ ପୂର୍ବେ ପ୍ରାଚୀନଦୀ ବୋଲି କହୁଥିଲେ । ଏହା ଏକ ସୁବିସ୍ତୃତ ଗଭୀର ଓ ବେଗବତୀ ନଦୀ ଥିଲା । ବାଣିଜ୍ୟ ସକାଶେ ନୌକା ସମୂହ ଏଥିରେ ଯାତାୟାତ କରୁଥିଲା । ଚନ୍ଦ୍ରଭାଗାନଦୀ ଏହାର ଏକ ଅଂଶ ଥିଲା । କାଳକ୍ରମେ ପ୍ରାଚୀ ନଦୀର ଆକାର ଓ ଗତି ପରିବର୍ତ୍ତିତ ହୋଇଅଛି । ପ୍ରାଚୀର ଏକଶାଖା (ବର୍ତ୍ତମାନ କାଦୁଆ) ବାହାରି ପ୍ରଥମେ ଭଦ୍ରା ଓ କମ୍ପିତଭୂର ଯାଇ ଚନ୍ଦ୍ରୋତ୍କଳା ନାମ ଧାରଣ କରି ଅର୍କକ୍ଷେତ୍ର ଦେଇ ସମୁଦ୍ରରେ ପଡ଼ୁଥିଲା । ଏହି ଚନ୍ଦ୍ରୋତ୍କଳା ଚନ୍ଦ୍ରଭାଗାର ନାମାନ୍ତର ମାତ୍ର । ଏହା କୋଣାର୍କଠାରେ ଲୁପ୍ତ ହୋଇଅଛି ।

ମଦନ ମୋହନ ତୀର୍ଥଦର୍ଶନ ।]

୩ । କବି ରାଧାନାଥଙ୍କ ଓଡ଼ିଆ କାବ୍ୟଗ୍ରନ୍ଥବିଶେଷ—
3. Name of a poem of poet Radhanath of Orissa.

୪ । ପର୍ଶୁରାମଙ୍କ ଶିଷ୍ୟା ଓ ସୁମନ୍ୟୁଙ୍କ କନ୍ୟା—4 Name of a disciple of Pārśurāma and the daughter of Sumanyu

**ଚନ୍ଦ୍ରଭାଗାଳିକା**—ଦେ.ବିଣ ସ୍ତ୍ରୀ—ଅର୍ଦ୍ଧଚନ୍ଦ୍ର ସଦୃଶ ଲଲାଟବିଶିଷ୍ଟା (ସ୍ତ୍ରୀ)—
Chandrabhāgālikā (a woman) Having a crescent-shaped brow.

ବ୍ୟାକୁଳ ବନାଶେ ନଖାନାମଣି, କାନ୍ତାକ ଚନ୍ଦ୍ରଭାଗାଳିକା ପୁଣି ।
ଉଞ୍ଜ. ବୈଦେହୀଶବିଳାସ ।

**ଚନ୍ଦ୍ରଭାନୁ**—ସଂ ବ. (ନାମ)—ଶ୍ରୀକୃଷ୍ଣଙ୍କ ରାଣୀ ସତ୍ୟଭାମାଙ୍କର ଦଶ ପୁତ୍ର
Chandrabhānu ମଧ୍ୟରୁ ଏକ—One of the ten sons of Śrīkrushṇa by Satyabhāmā.

ଦେ. ବ.—୧ । ଶ୍ରୀକୃଷ୍ଣଙ୍କ ସହଚରୀ ଚନ୍ଦ୍ରାବଳୀଙ୍କ ପିତା—
1. The father of Chandrābaḷī.

୨ । ଉପେନ୍ଦ୍ରଭଞ୍ଜଙ୍କ କଳ୍ପିତ କାବ୍ୟର ନାୟିକା ଲାବଣ୍ୟବତୀର ସ୍ୱାମୀ—2. Name of the husband of Upendrabhañja's Lābaṇyabatī.

**ଚନ୍ଦ୍ରଭାସ**—ସ.ବ. (ଚନ୍ଦ୍ର+ଭାସ୍ ଧାତୁ=ଦୀପ୍ତି ପାଇବା+ଅ;)—
Chandrabhāsa ଚନ୍ଦ୍ରହାସ ୩ (ଦେଖ)
Chandrahāsa 3. (See)

**ଚନ୍ଦ୍ରଭୂତି**—ସ. ବ. (ବହୁବ୍ରୀହି; ଚନ୍ଦ୍ରପରି ଭୂତି ଯାହାର)—
Chandrabhūti ରୂପା—Silver.

**ଚନ୍ଦ୍ରମ**—ଦେ. ବ. ( ସ. ଚନ୍ଦ୍ରିକା )—ଚନ୍ଦ୍ରକିରଣ; ଜ୍ୟୋତ୍ସ୍ନା—
Chandrama Moon-light.

**ଚନ୍ଦ୍ରମଣି**—ସ. ବ. (ମଧ୍ୟପଦଲୋପୀ କର୍ମଧାରୟ; ଚନ୍ଦ୍ର+ମଣି)—
Chandramaṇi ଚନ୍ଦ୍ରକାନ୍ତ ମଣି—The moonstone; a gem.

ଦେ ବ. (ପୁଂ ଓ ସ୍ତ୍ରୀ)—ଲୋକଙ୍କ ନାମ—
A name given to males and females.

**ଚନ୍ଦ୍ରମଣି ଦାଶ**—ଦେ. ବ. (ନାମ)—ପ୍ରାଚୀନ ଓଡ଼ିଆ କବିବିଶେଷ—
Chandramaṇi dāsa Name of an ancient Orḍiā poet.

[ଦ୍ର—ଏ ଜାତିରେ ବ୍ରାହ୍ମଣ; ବୈଷ୍ଣବଧର୍ମ ଗ୍ରହଣ କରିଥିଲେ । 'ସୁଧାସାଗର ଗୀତା' ଏହାଙ୍କ ଦ୍ୱାରା ରଚିତ ।
ଭାଇଣୀ ଉତ୍କଳସାହିତ୍ୟ ଇତିହାସ ।

**ଚନ୍ଦ୍ରମଣି ମହାନ୍ତି**—ଦେ. ବ. ( ନାମ )—ପ୍ରାଚୀନ କବିବିଶେଷ—
Chandramaṇi mahānti Name of an ancient poet.

[ଦ୍ର— ଏ କବିଙ୍କ ଲିଖିତ ଗ୍ରନ୍ଥମାନଙ୍କ ମଧ୍ୟରେ 'ହଂସଦୂତ' ପ୍ରଧାନ ।]

**ଚନ୍ଦ୍ରମଣ୍ଡଳ**—ସଂ.ବ ( ୬ଷ୍ଠୀ ତତ୍; ଚନ୍ଦ୍ର+ମଣ୍ଡଳ)—୧ । ଚନ୍ଦ୍ରଙ୍କ ଗୋଲାକାର କଳେବର—1. The orb of the moon; the lunar orb.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, କୃଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୨। ସମୟ ସମୟରେ ଚନ୍ଦ୍ରଙ୍କ ଚାରିପାଖେ କିଛିଦୂର ପର୍ଯ୍ୟନ୍ତ ଯେଉଁ ମଣ୍ଡଳାକାର ପ୍ରଭା ଚନ୍ଦ୍ରଙ୍କୁ ବେଷ୍ଟନ କଲାପରି ଦେଖାଯାଏ—2. A halo or circle seen surrounding the moon on some cloudy nights.

ଚନ୍ଦ୍ରମଣ୍ଡଳ ଭିତରେ ତାରା, ମେଘ ବରଷିବ ମୂଷଳଧାର—ଭାକରୃଷିବଚନ।

**ଚନ୍ଦ୍ରମଣ୍ଡଳ ପୁର**—ଦେ. ବି—ଚନ୍ଦ୍ରଶାଳାପୁର—
Chandramaṇḍaḷa pura  A pleasure-house at the top of a building.

ଚନ୍ଦ୍ରମଣ୍ଡଳପୁର ଝଣ୍ଡା ପଡ଼ନ୍ତା ଦେଖିଲେ ଭର ମାତଇ—ପ୍ରାଚୀ. ଉଦ୍ଧବ୍ୟମଞ୍ଜରୀ।

**ଚନ୍ଦ୍ରମଲ୍ଲିକା**—ଫ. ବି (ଭୁଲ. ଫା. ଗୁଲ୍‌ଦାଉଦୀ)—ଏକଜାତୀୟ ବହୁଦଳ ଫୁଲ
Chandramallikā  ବୈଦେଶିକ ସୁବାସଫୁଲ—Chrysanthemum Indicum.
चन्द्रमल्लिका
गुल्‌दाउदी  [ ଦ୍ର—ଏହା ହେମନ୍ତ କାଳରେ ଫୁଟେ। ଫୁଲର ପରିଧି (ଚନ୍ଦ୍ରମଲ୍ଲୀ—ଅନ୍ୟରୂପ) ୨ ଇଞ୍ଚ ଠାରୁ ୧୪ ଫୁଟ ପର୍ଯ୍ୟନ୍ତ ହୁଏ। ଫୁଲ ଫୁଟିବା ପରେ ଏକମାସ ପର୍ଯ୍ୟନ୍ତ ସତେଜ ରହିପାରେ। ]।

**ଚନ୍ଦ୍ରମହ**—ଫ. ବି—କୁକୁର—
Chandramaha  A dog ( M. W. )

**ଚନ୍ଦ୍ରମହାଦଶା**—ଫ. ବି (୬ଷ୍ଠୀ ତତ୍; ଚନ୍ଦ୍ର+ମହାଦଶା)—(ଜ୍ୟୋତିଷ)
Chandra mahādaśā  ମନୁଷ୍ୟର ଜାତକରେ ଗ୍ରହ ଅବସ୍ଥାନ ଅନୁସାରେ ଗଣନା କରାଯିବା ମନୁଷ୍ୟର ଜୀବନରେ ଚନ୍ଦ୍ରଗ୍ରହ ଭୋଗ କରିବା କାଳ (ଏହାର ପରିମାଣ ୧୦ ବରଷ)—Ten years of the life time of a man when the moon presides over his life.

**ଚନ୍ଦ୍ରମହାରାଜା**—ଦେ. ବି (ନାମ)—ଗଞ୍ଜାମ ପାରଳାଖେମୁଣ୍ଡିର ସ୍ୱର୍ଗୀୟ
Chandra mahārājā  ସେକେଣ୍ଡ୍ ପ୍ରିନ୍ସ (୨ୟ ରାଜକୁମାର) ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କର ଗଞ୍ଜାମରେ ସୁପରିଚିତ ନାମ ବା ଡାକନାମ—The name by which the late ( Second Prince ) Padmanābha Nārāyaṇ Deb of Parlakhemedi was popularly known and called.

[ ଦ୍ର—ଏ ସାହିତ୍ୟ ଚର୍ଚ୍ଚା, ପଦ୍ୟ, ନାଟକ, ପ୍ରବନ୍ଧଲେଖା ଓ ନାଟ୍ୟକଳାରେ ରତ ଥିଲେ ଓ ସାହିତ୍ୟସେବକମାନଙ୍କୁ ନାନା ପ୍ରକାରେ ସାହାଯ୍ୟ କରି ଉତ୍ସାହିତ କରୁଥିଲେ। ଏହାଙ୍କର ଆଚରଣ ଅତି ସରଳ ଥିଲା। ଏ ଅତ୍ୟନ୍ତ ଦୟାଳୁ, ମିଷ୍ଟଭାଷୀ ଓ ଶାନ୍ତ ପ୍ରକୃତିକ ଥିଲେ। ସ୍ୱର୍ଗୀୟ ଶ୍ୟାମସୁନ୍ଦର ରାଜଗୁରୁ ଏହାଙ୍କର ବାଲ୍ୟକାଳର ଗୃହଶିକ୍ଷକ ଥିଲେ। ଏହାଙ୍କ ଅକାଳ ମୃତ୍ୟୁରେ ଉତ୍କଳାକାଶ ଗୋଟିଏ ଉଜ୍ଜ୍ୱଳ ଗ୍ରହ ହରାଇଲା। ]

**ଚନ୍ଦ୍ରମା**—ଦେ. ବି ( ଫ. ଚନ୍ଦ୍ରମସ୍ ଶବ୍ଦର ୧ମା. ୧ବ. ଚନ୍ଦ୍ରମାଃ )—
Chandramā  ୧। ଚନ୍ଦ୍ର—1. The moon.

୨। ସ୍ତ୍ରୀମାନଙ୍କୁ ଦିଆଯିବା ନାମ—
2. A name given to females.

**ଚନ୍ଦ୍ରମାଃ**—ଫ. ବି (ଚନ୍ଦ୍ର=କର୍ପୂର+ମସ୍ ଧାତୁ=ତୁଲ୍ୟକରିବା+କ୍ୱିପ୍;
Chandramāḥ  ଯେ କର୍ପୂର ତୁଲ୍ୟ ଶୁଭ୍ର ଜ୍ୟୋତି ଦାନକରେ)—
୧। ଚନ୍ଦ୍ର—1. The moon.
୨। ଦେବ ବା ଦାନବରୂପେ କଳ୍ପିତ ଚନ୍ଦ୍ର—2. The moon considered as a Dānaba or Deity (M. W.)
[ ଦ୍ର—ଏହା ଅଷ୍ଟବସୁଙ୍କ ମଧ୍ୟରେ ଏକ। ]
୩। ବିଷ୍ଣୁପୁରାଣୋକ୍ତ ନଦୀବିଶେଷ—1. Name of a river mentioned in Bishṇu purāṇa.

**ଚନ୍ଦ୍ରମାଗାର**—ଦେ. ବି—୧। ଚନ୍ଦ୍ରଶାଳାପୁର—
Chandramāgāra  1. A pleasure-house on the top of a building.
୨। ଦେହରେ ଚନ୍ଦ୍ରାକୃତି ନଖ ଚିହ୍ନ—
2 Crescent shaped scar caused by scratching the body with the finger-nails.

ଥିଲା ସେ ସ୍ତନେ ନଖ ଚନ୍ଦ୍ରମାଗାର
ଦେଖୁଛୁ ତାହା ବସି ଚନ୍ଦ୍ରମାଗାର। ଭଞ୍ଜ. ପ୍ରେମସୁଧାନିଧି।

**ଚନ୍ଦ୍ରମାର୍ଗ**—ଫ. ବି. ( ୬ଷ୍ଠୀ ତତ୍; ଚନ୍ଦ୍ର+ମାର୍ଗ )—
Chandramārga  ୧। ଚନ୍ଦ୍ର ଯେଉଁ କଳ୍ପିତ ମଣ୍ଡଳାକାର ରେଖାରେ ପୃଥିବୀ ଚାରି ପାଖେ ଘୂରେ—
1. The moon's orbit.
୨। ବାୟୁମଣ୍ଡଳ—2 The atmosphere. ( M. W.)

**ଚନ୍ଦ୍ରମାସ**—ଫ. ବି. ( ୬ଷ୍ଠୀ ତତ୍; ଚନ୍ଦ୍ର+ମାସ )—
Chandramāsa  ଚାନ୍ଦ୍ରମାନ ମାସ; ଚନ୍ଦ୍ର ପୃଥିବୀର ଚାରି ପାଖରେ ଥରେ ଘୂରି ଆସିବାର କାଳ—Lunar month.

**ଚନ୍ଦ୍ରମୁଖ**—ଫ. ବି ଓ ବିଣ—ଚନ୍ଦ୍ରବଦନ ( ଦେଖ )
Chandramukha  Chandrabadana ( See )
(ଚନ୍ଦ୍ରମୁଖୀ—ସ୍ତ୍ରୀ)

**ଚନ୍ଦ୍ରମୁଖୀ**—ଫ. ବି. ସ୍ତ୍ରୀ—୧। ସ୍ତ୍ରୀ ଜନନେନ୍ଦ୍ରିୟର ଶିରାବିଶେଷ—
Chandramukhī  1 A particular blood-vessel of the vulva ( M. W. )
୨। ସ୍ୱର୍ଗାଙ୍ଗନାବିଶେଷ—
2. Name of a heavenly nymph
୩। ୧୦ ଅକ୍ଷରବିଶିଷ୍ଟ ୪ ପାଦଥିବା ଛନ୍ଦୋବିଶେଷ—
3. Name of a metre of 4×10 syllables ( M. W. )

**ଚନ୍ଦ୍ରମୁହାଁ**—ଦେ. ବିଣ. ସ୍ତ୍ରୀ. ( ଫ. ଚନ୍ଦ୍ରମୁଖୀ )—ଚନ୍ଦ୍ରପରି ସୁନ୍ଦର ମୁଖ-
Chandramuhāñ  ବିଶିଷ୍ଟା (ସ୍ତ୍ରୀ); ସୁନ୍ଦରୀ—(woman) Having a lovely face like the moon; beautiful (woman)

ଏବେ ତ ମୋଠାରୁ ଶୁଣିଲୁ ଚନ୍ଦ୍ରମୁହାଁ। କୃଷ୍ଣସିଂ. ମହାଭାରତ. ବନ।

| ୧ | ଇ | ଊ | ଋ,ହ୍ର | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ଯ | ଊଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଭ | ଲ୍ଲ | ଲୃ | ଯ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଞ୍ଚ | ନ୍ତ |

ଚନ୍ଦ୍ରମୌଳି—ସଂ. ବି. ( ବହୁବ୍ରୀହି; ଚନ୍ଦ୍ର+ମୌଳି )—
Chandramauli ୧ । ଚନ୍ଦ୍ରଚୂଡ଼ ୧ ( ଦେଖ )
1. Chandrachūrda 1 ( See )
୨ । ଚନ୍ଦ୍ରମୁଖୀ ୧ ( ଦେଖ )
2 Chandramukhī 1. ( See )

ଚନ୍ଦ୍ରରତ୍ନ—ସଂ. ବି—ମୁକ୍ତା; ମୋତି—Pearl ( M. W. ).
Chandraratna

ଚନ୍ଦ୍ରରେଖା—ସଂ. ବି. ସ୍ତ୍ରୀ. ( ୬ଷ୍ଠୀ ତତ୍; ଚନ୍ଦ୍ର+ରେଖା )—
Chandrarekhā ୧ । ଶୁକ୍ଳ ପ୍ରତିପଦ ବା ଦ୍ୱିତୀୟା ତିଥିର କ୍ଷୀଣଚନ୍ଦ୍ର—1 The first digit of the moon; the slender moon of the first day of the bright fortnight.
୨ । ବାଣରାଜକନ୍ୟା ଉଷାର ସଖୀ—
1 Name of an attendant or companion of Ushā, daughter of king Bāṇa.
୩ । ଚନ୍ଦ୍ରକିରଣ (ହି. ଶବ୍ଦସାଗର)—3. Moonlight.
୪ । ଗୁଳ୍ମବିଶେଷ—4. Serratula Anthelminthica. (M. W.)
୫ । ଅପ୍ସରୋବିଶେଷ—
5. Name of a heavenly nymph (M. W.)

ଚନ୍ଦ୍ରରେଣୁ—ସଂ. ବି—ଗ୍ରନ୍ଥଚୌର; ଯେ ପର ଗ୍ରନ୍ଥକୁ ଚୋରି କରି
Chandrareṇu ଆପଣା ଲେଖା ବୋଲି ପରିଚୟ ଦିଏ—
A plagiarist.

ଚନ୍ଦ୍ରଲେଖା—ସଂ. ବି.—୧ । ଚନ୍ଦ୍ରରେଖା (ଦେଖ)
Chandralekhā Chandrarekhā (See)
୨ । ଲତାବିଶେଷ—2. A kind of creeper
୩ । ପଞ୍ଚଦଶାକ୍ଷର ସଂସ୍କୃତ ଛନ୍ଦୋବିଶେଷ—
3. Name of Sanskrit metre.
୪ । ନଦୀବିଶେଷ—4. Name of a river.

ଚନ୍ଦ୍ରଲୋକ—ସଂ. ବି —(୬ଷ୍ଠୀ ତତ୍; ଚନ୍ଦ୍ର+ଲୋକ)—୧ । ସୌର-
Chandraloka ଜଗତରେ ଯେଉଁ ସ୍ଥାନରେ ଚନ୍ଦ୍ର ପୃଥିବୀକୁ ପରି-ଭ୍ରମଣ କରେ—1 The space of the moon's orbit round the earth.
୨ । ପୁରାଣୋକ୍ତ ସ୍ୱର୍ଗଲୋକବିଶେଷ, ଯହିଁର ଅଧିଷ୍ଠାତା ଚନ୍ଦ୍ର—
2 A heaven or sphere said to be presided over by the moon-god
୩ । ଚନ୍ଦ୍ର ଗ୍ରହର ଅଭ୍ୟନ୍ତର ସ୍ଥାନ—3. The place on the face of the planet-moon.

ଚନ୍ଦ୍ରଲୋହକ—ସଂ. ବି. ( ମ. ପ. ଲୋ; ଚନ୍ଦ୍ରପରି ଶୁକ୍ଳ ଲୋହ=ଧାତୁ )
Chandralohaka ରୌପ୍ୟ; ରୁପା—Silver
ଚନ୍ଦ୍ରଲୌହ
ଚନ୍ଦ୍ରଲୌହକ } ଅନ୍ୟରୂପ

ଚନ୍ଦ୍ରଶାଳା—ସଂ. ବି.—୧ । ପ୍ରାସାଦ ଉପରସ୍ଥ ଗୃହ; ଶିରୋଗୃହ—
Chandraśālā 1 A room at the top of a house or building; a turret at the top of a house.
୨ । ଚନ୍ଦ୍ର କିରଣ (ହି. ଶବ୍ଦସାଗର)—
2. Moonlight (M. W.)

ଚନ୍ଦ୍ରଶିଖର—ସଂ. ବି.—(ବହୁବ୍ରୀହି; ଚନ୍ଦ୍ର+ଶିଖର)—
Chandraśikhara ଚନ୍ଦ୍ରଚୂଡ଼ (ଦେଖ)
(ଚନ୍ଦ୍ରଶେଖର—ଅନ୍ୟରୂପ) Chandrachūrda (See)
ଦେ ବି. ପୁଂ.—ଲୋକଙ୍କ ନାମ—
A name given to males.

ଚନ୍ଦ୍ରଶୂର—ସଂ ବି—ହାଲିମ (ଦେଖ)
Chandraśūra Hālima (See).

ଚନ୍ଦ୍ରଶେଖର ରାଜଗୁରୁ—ଦେ. ବି—ଜନୈକ ଆଧୁନିକ ଉତ୍କଳୀୟ ବ୍ରାହ୍ମଣ
Chandraśekhara rājaguru ପଣ୍ଡିତ—Name of a modern Oriya Brahman author.
[ ଦ୍ର—ଏ ସଂସ୍କୃତ ଭାଷାରେ ଅନେକ କାବ୍ୟ ଓ ନାଟକ ରଚନା କରିଅଛନ୍ତି । ]

ଚନ୍ଦ୍ରଶେଖର ସାମନ୍ତ—ଦେ. ବି—ଉତ୍କଳର ଗଡ଼ଜାତ ଖଣ୍ଡପଡ଼ାର
Chandraśekhara sāmanta ରାଜବଂଶୀୟ ପ୍ରସିଦ୍ଧ ସ୍ୱର୍ଗୀୟ ଜ୍ୟୋତିର୍ବିଦ୍—Name of the late astronomer of Khandapardā Raj family of Orissa.

[ ଦ୍ର—ଏହାଙ୍କର ପୁରାନାମ ମହାମହୋପାଧ୍ୟାୟ ସାମନ୍ତ ଶ୍ରୀ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର । ଏ ତଦାନୀନ୍ତନ ରାଜାଙ୍କର ପିତୃବ୍ୟ ଥିଲେ, କିନ୍ତୁ ଏହାଙ୍କର ସାଂସାରିକ ଅବସ୍ଥା ଅତ୍ୟନ୍ତ ଶୋଚନୀୟ ଥିଲା । ଏହାଙ୍କ ପିତା ଶ୍ୟାମବନ୍ଧୁ ଜ୍ୟୋତିଷ ଶାସ୍ତ୍ରରେ ପଣ୍ଡିତ ଥିଲେ । ଚନ୍ଦ୍ରଶେଖର ପିତାଙ୍କଠାରୁ ଜ୍ୟୋତିଷ ଶିକ୍ଷାକଲେ ଓ ପରେ ସଂସ୍କୃତ ଭାଷା ଶିକ୍ଷାକରି ପୁରାତନ ଜ୍ୟୋତିଷ ଗ୍ରନ୍ଥମାନ ଅଧ୍ୟୟନ କରି, ଭାସ୍କରାଚାର୍ଯ୍ୟ ଆଦି ଜ୍ୟୋତିଷାଚାର୍ଯ୍ୟମାନଙ୍କର ପୂର୍ବକାଳର ଗଣନା ଅନୁସାରେ ଗ୍ରହ, ରାଶି ଓ ନକ୍ଷତ୍ରମାନଙ୍କର ଗତି ଓ ସ୍ଥିତି ବଦଳିଥିବାର ସିଦ୍ଧାନ୍ତ କଲେ ଓ 'ସିଦ୍ଧାନ୍ତଦର୍ପଣ' ନାମରେ ଗୋଟିଏ ଉତ୍କୃଷ୍ଟ ଜ୍ୟୋତିଷଗ୍ରନ୍ଥ ସଂସ୍କୃତ ପଦ୍ୟରେ ରଚନାକଲେ । ଦୂରବୀକ୍ଷଣ ଆଦି ବୈଜ୍ଞାନିକ ଯନ୍ତ୍ରମାନଙ୍କର ବିନା ସାହାଯ୍ୟରେ ସାମାନ୍ୟ କେତେଖଣ୍ଡ କାଠି ଓ ସୂତାଦ୍ୱାରା ମାପି ଜ୍ୟୋତିଷମାନଙ୍କ ସମ୍ବନ୍ଧେ ଏ ଯେଉଁ ତଥ୍ୟମାନଙ୍କରେ ଉପନୀତ ହୋଇଥିଲେ ତାହା ଦେଖି ପାଶ୍ଚାତ୍ୟ ପଣ୍ଡିତମାନେ ବିସ୍ମିତ ହୋଇଥିଲେ । କଟକ କଲେଜର ବଙ୍ଗାଳୀାଚାର୍ଯ୍ୟ ରାୟବାହାଦୁର ଯୋଗେଶଚନ୍ଦ୍ର ଚନ୍ଦ୍ରଶେଖରଙ୍କ ଅସାଧାରଣ ପ୍ରତିଭା ପ୍ରତି ପାଶ୍ଚାତ୍ୟମାନଙ୍କ ଦୃଷ୍ଟି ଆକର୍ଷଣ କଲେ । ଚନ୍ଦ୍ରଶେଖରଙ୍କର ଗଣନା ଅନୁସାରେ ନୂତନ ପାଞ୍ଜି ପ୍ରସ୍ତୁତ ହୋଇ ତାହା ଜଗନ୍ନାଥ ମନ୍ଦିରର ମୁକ୍ତିମଣ୍ଡପ ପଣ୍ଡିତସଭାଦ୍ୱାରା ଅନୁମୋଦିତ ହେଲା ଓ ତଦନୁସାରେ ବଡ଼ଦେଉଳର ନୀତିମାନ ଚାଲିତ ହେଲା ।

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଗଳ' ନ ପାଇଲେ 'ଅର୍ଗ୍ଗଳ' ଦେଖିବେ; 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ

ମୃତ୍ୟୁର ଅଳ୍ପକାଳ ପୂର୍ବରୁ ଗଭର୍ଣ୍ଣମେଣ୍ଟ ଏହାଙ୍କୁ ମହାମହୋପାଧ୍ୟାୟ ଉପାଧି ଓ ମାସିକ ଟ ୫୦୯ ବୃତ୍ତି ଦେଲେ । ଏ ଧର୍ମପ୍ରାଣ ଓ ଜଗନ୍ନାଥଙ୍କ ଭକ୍ତ ଥିଲେ । ଏହାଙ୍କ ବିଷୟ ବିଲାତର ବିଖ୍ୟାତ ଜ୍ୟୋତିର୍ବିଦ ମଣ୍ଡର ସାହେବ (E. W. Maunder) ତାଙ୍କର ଯନ୍ତ୍ର-ସାହାଯ୍ୟବିନା ଜ୍ୟୋତିଷଚର୍ଚ୍ଚା (Astronomy without a telescope) ଗ୍ରନ୍ଥରେ ଲେଖିଅଛନ୍ତି ଓ ବିଲାତର ପ୍ରଧାନ ବୈଜ୍ଞାନିକ ପତ୍ରିକା ନଲେଜ (Knowledge, Vol. 22) ରେ 'ସିଦ୍ଧାନ୍ତଦର୍ପଣ' ଗ୍ରନ୍ଥର ଗଣନା ସମ୍ବନ୍ଧେ ପ୍ରଶଂସାସୂଚକ ମନ୍ତବ୍ୟ ପ୍ରକାଶିତ ହୋଇଅଛି । ଆମେରିକା, ଜର୍ମାନୀ, ହଲଣ୍ଡ ଓ ଇଟାଲୀ ଆଦି ଦେଶରେ ଏ ମଧ୍ୟ ପ୍ରତିପତ୍ତି ଲାଭ କରିଥିଲେ । ]

**ଚନ୍ଦ୍ରସଚିବ**—ସଂ. ବି. (ଷଷ୍ଠୀ ତତ୍‌ କମ୍ପା ବହୁବ୍ରୀହି; ଚନ୍ଦ୍ର+ସଚିବ)
Chandrasachiba ୧ । କାମଦେବ—1. The God of love (M. W).
୨ । କର୍ପୂର—2. Camphor (M. W.)

**ଚନ୍ଦ୍ରସଦନ**—ଦେ. ବି—ଚୂନଲିପା ଘର—
Chandrasadana A whitewashed house.
ସେ ଚନ୍ଦନେ ଚନ୍ଦ୍ର ସଦନେ ଚନ୍ଦ୍ର ଚନ୍ଦ୍ରେ ବଞ୍ଚିତ । ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଚନ୍ଦ୍ରସୂର୍ଯ୍ୟ**—ଦେ. ବି—ସ୍ତ୍ରୀମାନଙ୍କ କପାଳ ଉପରେ କେଶରେ ଖଞ୍ଜାଯିବା
Chandrasūrjya ଖଣ୍ଡଚନ୍ଦ୍ର ଓ ସୂର୍ଯ୍ୟ ଆକୃତିବିଶିଷ୍ଟ ଅଳଙ୍କାର-ବିଶେଷ—An ornament consisting of 2 pieces like a crescent below a sun worn on the brow or skull over the hair by females.
କେ ବୋଇଲେ ଚନ୍ଦ୍ରସୂର୍ଯ୍ୟ ଚନ୍ଦ୍ରସୂର୍ଯ୍ୟ
କେଶ ଗନ୍ଧି ବୋହୁଛି ଏ ବଡ ଆଶ୍ଚର୍ଯ୍ୟ—କୃଷ୍ଣସିଂହ. ମହାଭାରତ ବନ ।
ସଂ. ବି (ଦ୍ୱନ୍ଦ୍ୱ)—ଚନ୍ଦ୍ର ଓ ସୂର୍ଯ୍ୟ—
The moon and the sun.

**ଚନ୍ଦ୍ରସେଣା**—ଦେ. ବି (ସଂ. ଚନ୍ଦ୍ରସେନା)—ରାଧିକାଙ୍କ ସ୍ୱାମୀ—
Chandrasenā Name of the husband of Radhā.

**ଚନ୍ଦ୍ରସେନା**—ସଂ. ବି. (ନାମ)—ମହାଭାରତୋକ୍ତ ରାଜା ସମୁଦ୍ରସେନାଙ୍କ
Chandrasenā ପୁତ୍ର ରାଜକୁମାରବିଶେଷ—Name of a prince, son of king Samudrasenā (M. W.)

**ଚନ୍ଦ୍ରସ୍ୱର**—ସଂ. ବି—(ମ. ପ. ଲୋ; ଚନ୍ଦ୍ରଯୁକ୍ତ ସ୍ୱର)—ସ୍ୱରସାଧକ ବା
Chandraswara ବାୟୁସାଧକମାନଙ୍କର ସାଧନାଶାସ୍ତ୍ରର ଅନୁକୂଳ ଅବସ୍ଥାବିଶେଷ; ଯେଉଁ ସମୟରେ ନିଶ୍ୱାସ ବାଆଁ ପୁଡ଼ାରେ ବହୁଥାଏ—
A breath exercise consisting of doing some acts while the breath is passing through the left nostril.
ଚନ୍ଦ୍ରସ୍ୱରେ ଏମାନ ସାଧିଲେ ଧ୍ରୁବ ସିଦ୍ଧି—ପ୍ରାଚୀ ଶିବସ୍ୱରୋଦୟ ।
[ ଦ୍ର—ନାକର ଡାହାଣ ପୁଡ଼ାରେ ନିଶ୍ୱାସ ଯାଉଥିବା ସମୟରେ କରାଯିବା ସାଧନାକୁ ସୂର୍ଯ୍ୟସ୍ୱର ବୋଲାଯାଏ । ]

**ଚନ୍ଦ୍ରହାର**—ଦେ. ବି. ( ଏଥିରେ ଚନ୍ଦ୍ର ପରି ଗୋଲାକାର ଚକତିମାନ
Chandrahāra ଖଞ୍ଜା ଥିବାରୁ )—ଗୋଠ ବା କଟିଭୂଷଣବିଶେଷ—
ଚନ୍ଦ୍ରହାର 1. A waist-chain set with circular
चन्द्रहार; चन्दनहार bits.
୨ । ଗଳାର ହାରବିଶେଷ—
2 A kind of necklace.
ପ୍ରାଦେ. ( ଅଠମଲ୍ଲିକ ) ବି—ଗୋଖର ଆଦିରେ ଲାଗିଥିବା ଶିକୁଳି; ଯାହା କାନ ଉପରେ ଝୁଲି ଆସିଥାଏ—
Chain which keeps the heavy pendants of the ear suspended.

**ଚନ୍ଦ୍ରହାସ**—ସଂ. ବି. ( ଚନ୍ଦ୍ର+ହସ୍‌ ଧାତୁ+ଅ; ଉଜ୍ଜ୍ୱଳତାରେ ଯେ ଚନ୍ଦ୍ରକୁ
Chandrahāsa ଉପହାସ କରେ )—୧ । ରାବଣର ଖଡ୍ଗ—
1. The sword of Rābaṇa.
ବଧିବ ଅବଧି ଚନ୍ଦ୍ରହାସ ବେନି
ଚନ୍ଦ୍ରହାସ ଶୋଭି ଥାଅ ଜାଣରେ । ଉପେ. ବୈଦେହୀଶବିଳାସ ।
୨ । ରୌପ୍ୟ—2. Silver.
୩ । ଚକଚକିଆ ତରବାରି—3. A dazzling sword, a glittering scimitar ( M. W. )
ହିରୁଳି କେବଳ ଯିନା ଚନ୍ଦ୍ରୋଜ୍ଜ୍ୱଳ ଭୂଷା
ଯାହାଙ୍କର ଚନ୍ଦ୍ରହାସ ବ୍ରଣାଙ୍କିତ ଦେହେ । ରାଧାନାଥ. ମହାଯାତ୍ରା ।
୪ । ଚନ୍ଦ୍ରୋଦୟ ବା ଚନ୍ଦ୍ରକିରଣ ପରି ମନୋହର ହାସ୍ୟ—
4. A sweet smile (compared to the rising of the moon or the moon's ray).
ବଧିବ ଅବଧି ଚନ୍ଦ୍ରହାସ ବେନି । ଚନ୍ଦ୍ରହାସଶୋଭି ଥାଅ ଜାଣରେ ।
ଉପେ. ବୈଦେହୀଶବିଳାସ ।
ଦେ. ବି—(ଷଷ୍ଠୀ ତତ୍‌) ଚନ୍ଦ୍ରକିରଣ—Moon light.
ବୋଲଇବା ସନ୍ଧି ମା ସକାଶେ । କାଶିତା ହେଲୁ କିବା ଚନ୍ଦ୍ରହାସେ ।
ଉପେ. ବୈଦେହୀଶବିଳାସ ।

**ଚନ୍ଦ୍ରହାସା**—ସଂ. ବି. ସ୍ତ୍ରୀ (ଚନ୍ଦ୍ର+ହସ୍ ଧାତୁ+ଅ+ସ୍ତ୍ରୀ. ଆ)—
Chandrahāsā ୧ । ଗୁଳୁଚ ଲତା ଓ ଫୁଲ—1. Tinaspora Cardifolia; Cocculus Cordifolius (creeper and flower).
୨ । ଯୋଗିନୀବିଶେଷ—2. Name of a Jogini (M. W.)

**ଚନ୍ଦ୍ରହିରଣ୍ୟ**—ସଂ. ବି. ( ଚନ୍ଦ୍ର+ହିରଣ୍ୟ; ତୁଳ. ଚନ୍ଦ୍ରଲୋହକ )—
Chandrahiraṇya ରୌପ୍ୟ—Silver.
ଝଟକିଲା ଶତଗୁଣ ଝଳ, ଫଳି ଯଥା ଚନ୍ଦ୍ରକା ପରଶେ
ଚନ୍ଦ୍ରହିରଣ୍ୟରଞ୍ଜନୀ—ଚନ୍ଦ୍ରାମଣି · ବଜ୍ରମାଳିକା ।

**ଚନ୍ଦ୍ରା**—ସଂ, ବି. ସ୍ତ୍ରୀ. ( ଚନ୍ଦ୍ର+ଆ )—୧ । ଚନ୍ଦ୍ରାତପ; ଚାନ୍ଦୁଆ—
Chandrā 1. Awning; canopy.
୨ । ଅଳାଇଚ—2. Cardamum.
୩ । ଗୁଳୁଚ ଲତା—
3. Coccutus Cardifolius ( creeper ).

| ୧ | ଇ | ଉ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଥ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଡ଼ | ଢ଼ |

୪ । ଗୃହଆଡ଼ ମେଲ୍ଲା କେବଳ ଛାତ ବନ୍ଦ ହୋଇଥିବା ଘର—
4 A hall covered only at the top(M.W)

ଦେ. ବି—୧ । ଚନ୍ଦ୍ରାବଳୀର ଡାକନାମ—
1. A name for calling Chandrābaḻi.
ଚନ୍ଦ୍ରା ମୁରଲି କଲୁ କରଣ ପକାଉଛୁ କ ମ ଛନ୍ତ—
ଅଭିମନ୍ୟୁ, ବଦଗ୍ରେଥଚନ୍ଦ୍ରାମଣି ।

୨ । ଚନ୍ଦ୍ର ନାମକ ବ୍ୟକ୍ତିର ଅନାଦର ଡାକନାମ—
2. A name for calling a person named Chandra in familiarity

୩ । ବହୁପୁରୁଷ ହେଲା ଓଡ଼ିଶାରେ ଉପନିବେଶ କରି ଆଗ୍ରୁ ବ୍ୟବହାର ଓ ଗୃହଚଳନରେ ଓଡ଼ିଆ ପାଲଟି ଯାଇଥିବା ବଙ୍ଗାଳ ବର୍ଣିଆଙ୍କ ବଂଶୋପାଧି ( ବଙ୍ଗୀୟ ଚନ୍ଦ୍ର ଉପାଧିର ଅପଭ୍ରଂଶ )— 3. A family title of Bengalee goldsmiths domiciled and naturalised in Orissa for generation

[ ଦ୍ର—କଟକ ଜିଲ୍ଲାର କୋଦଣ୍ଡା ପ୍ରଗଣାରେ 'ଚନ୍ଦ୍ରା' ଉପାଧିଧାରୀ ବଣିଆ ଓ ଶୂଦ୍ର ଅଛନ୍ତି । ]

**ଚନ୍ଦ୍ରାତପ**— ସଂ. ବି—୧ । ( ୬ଷ୍ଠୀ ତତ୍; ଚନ୍ଦ୍ର+ଆତପ ) ଜ୍ୟୋତ୍ସ୍ନା—
Chandrātapa 1 Moonlight.

୨ । ( ଚନ୍ଦ୍ର+ଆତ୍ ଧାତୁ=ଗମନ କରିବା+ପା ଧାତୁ=ରକ୍ଷା କରିବା+ଅ; ଯାହା ଚନ୍ଦ୍ରକିରଣର ଗତି ନିବାରଣ କରେ ) ଚାନ୍ଦୁଆ—2. Canopy; awning.
ଆବରଣ ଚନ୍ଦ୍ରାତପ ଥିଲା ପୂରେ କେବେହେଁ ବନ୍ଧୁ ନ ରସି—
ଭକ୍ତ ପ୍ରେମସୁଧାନିଧି ।

୩ । ଗୃହପାଖ ମେଲା ଘର—
3. An open hall ( M. W. )

**ଚନ୍ଦ୍ରାନନ**— ସଂ. ବିଣ. ( ବହୁବ୍ରୀହି; ଚନ୍ଦ୍ର+ଆନନ )—
Chandrānana ଚନ୍ଦ୍ରବଦନ ( ଦେଖ ) Chandrabadana ( See )
( ଚନ୍ଦ୍ରାନନା—ସ୍ତ୍ରୀ )

ସଂ ବି—୧ । କାର୍ତ୍ତିକେୟ—
1. A name of Kārttikeya.

୨ । କାଳିକାପୁରାଣୋକ୍ତ ବୀରବିଶେଷ ( ବୀରଚରିତ )—
2 Name of a hero of Kāḻikā ( M W. )

**ଚନ୍ଦ୍ରାନନୀ**—ଦେ ବିଣ. ସ୍ତ୍ରୀ. ( ସଂ. ଚନ୍ଦ୍ରାନନା; ଜ୍ଞାନେନ୍ଦ୍ର ଏହି ଶବ୍ଦକୁ
Chandrānanī ସଂ. ଚନ୍ଦ୍ରାନନାର ରୂପାନ୍ତର ବୋଲି ଲେଖି ଅଛନ୍ତି )— ଚନ୍ଦ୍ରବଦନା; ଚନ୍ଦ୍ର ପରି ମନୋହର ମୁଖ ବିଶିଷ୍ଟା ( ସ୍ତ୍ରୀ )—( a woman ) Having a face as lovely as the moon.

ଠକ ଠବଣ୍ଡିଲ ଚନ୍ଦ୍ରାନନୀ ଗୋ ଚରଣରେ—
କବିସୂର୍ଯ୍ୟ, କଣୋସଚମ୍ପୂ, ଠ ଗୀତର ପାଠାନ୍ତର ।

**ଚନ୍ଦ୍ରାପୀଡ଼**—ସଂ. ବି. ( ବହୁବ୍ରୀହି; ଚନ୍ଦ୍ର+ଆପୀଡ଼=ଶିରୋଭୂଷଣ )—
Chandrāpirda ୧ । ଚନ୍ଦ୍ରଚୂଡ଼; ଶିବ—1 Śiba.

୨ । କାଦମ୍ବରୀ କାବ୍ୟବର୍ଣ୍ଣିତ ନାୟକ ତାରାପୀଡ଼ଙ୍କ ପୁତ୍ର—
2 Name of the son of Tārāpirda, a hero of the sanscrit novel Kādambarī.

୩ । ରାଜା ଜନମେଜୟଙ୍କର ଏକ ପୁତ୍ର ( ହରିବଂଶ )—
3. Name of a son of king Janamejaya ( M. W. )

୪ । ତାରାପୀଡ଼ଙ୍କ ଭାଇ କାଶ୍ମୀରର ଜଣେ ରାଜା ( ରାଜତରଙ୍ଗିଣୀ )—4. Name of a king of Kāśmīra, brother of Tārāpirda (M.W)

୫ । କାନ୍ୟକୁବ୍ଜର ରାଜପୁତ୍ରବିଶେଷ (କଥାସରିତ୍ସାଗର)—
5. Name of a prince of Kānyakubja(M.W)

୬ । କାଳିକାପୁରାଣୋକ୍ତ ବୀରବିଶେଷ ( ବୀରଚରିତ )—
6. Name of a hero of Kāḻikā ( M. W. )

**ଚନ୍ଦ୍ରାବଳୀ**—ସଂ. ବି. ସ୍ତ୍ରୀ—୧ । ଗୋବର୍ଦ୍ଧନମଲ୍ଲଙ୍କ ସ୍ତ୍ରୀ (କୃଷ୍ଣଙ୍କର ଜଣେ
Chandrābaḻī ପ୍ରଣୟିନୀ)—The wife of Gobardhhana Malla and said to be a female-companion of Srikrishna.

[ ଦ୍ର—କୌଣସି କୌଣସି ବୈଷ୍ଣବ କବି ଏହାଙ୍କୁ ରାଧା ମଧ କହନ୍ତି କିନ୍ତୁ ଏ ରାଧାଙ୍କ ସଖୀ, ଚନ୍ଦ୍ରଭାନୁଙ୍କ କନ୍ୟା, ଏହାଙ୍କ ମାତାଙ୍କ ନାମ ଇନ୍ଦୁମତୀ । ]

୨ । ଯୋଗିନୀବିଶେଷ ( ହର୍ଷଚରିତ)—
2. Name of a Jogini.

ସଂ. ବି. ପୁଂ—ଚନ୍ଦ୍ରକିରଣ—Moonlight; moon-beam.

**ଚନ୍ଦ୍ରାଭାସ**—ସଂ. ବି. (ବହୁବ୍ରୀହି; ଚନ୍ଦ୍ର+ଆଭାସ)—ଚନ୍ଦ୍ରପରି ଆକାଶରେ
Chandrābhāsa ବେଳେ ବେଳେ ଦେଖାଯିବା ମରୀଚିକା—False moon; a mirage resemleling the moon appearing in the sky (M. W.).

**ଚନ୍ଦ୍ରାର୍ଦ୍ଧ**—ସଂ. ବି. (୬ଷ୍ଠୀ ତତ୍; ଚନ୍ଦ୍ର+ଅର୍ଦ୍ଧ)—୧ । ଅର୍ଦ୍ଧଚନ୍ଦ୍ର—
Chandrārddha 1. Half-moon.

୨ । ( ଲକ୍ଷଣାର୍ଥ ) ନାୟିକାନାୟକର ଅଙ୍ଗରେ କାମକ୍ରୀଡ଼ା ସମୟରେ ନାୟକ ବା ନାୟିକାଦ୍ୱାରା କରାଯାଇଥିବା ଅର୍ଦ୍ଧଚନ୍ଦ୍ରାକାର ନଖକ୍ଷତ—A semicircular mark made by a lover on the body of his or her sweet heart during amorous dalliance.

ଦନାଗ ଚନ୍ଦ୍ରାର୍ଦ୍ଧ ବପାକ କର୍ମିରୁ କୋହୁରୁ କପାଳି ଭ୍ରମ ।
ଭକ୍ତ. ବୈଦେହୀଶବିଳାସ ।

୩ । କପାଳରେ ଅର୍ଦ୍ଧଚନ୍ଦ୍ରାକାର ତିଲକ—
3. A semicircular or crescent shaped mark drawn on the forehead with sandal-paste.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ' ଖୋଜିବେ; 'ବୃଥ' ନ ମିଳିଲେ 'ବୃଥା' ଦେଖିବେ; 'ବ୍ୟୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ ଦେଖିବେ

ଚନ୍ଦ୍ରାଲୋକ—ସଂ. ବି. ( ୬ଷ୍ଠୀ ତତ୍; ଚନ୍ଦ୍ର+ଆଲୋକ )—
Chandrāloka ୧ । ଚନ୍ଦ୍ରକିରଣ—1. Moonlight.
୨ । ପୀୟୂଷ ବର୍ଷ ନାମକ କବିଙ୍କ ପ୍ରଣୀତ ସଂସ୍କୃତ ଅଳଙ୍କାର-ଗ୍ରନ୍ଥବିଶେଷ ( ପ୍ରକୃତିବାଦ )—2. Title of a work on rhetoric by Piyūshabarsha.
୩ । ଜୟଦେବକୃତ ଅଳଙ୍କାରଗ୍ରନ୍ଥବିଶେଷ—3. Name of a work on rhetoric by Jayadeba (M. W.).

ଚନ୍ଦ୍ରାଶ୍ମା—ସଂ. ବି. (ଚନ୍ଦ୍ର+ଅଶ୍ମନ୍; ୧ମା. ୧ବ.)—ଚନ୍ଦ୍ରକାନ୍ତମଣି—
Chandrāsmā Moon-stone; a kind of gem.
(ଚନ୍ଦ୍ରୋପଲ—ଅନ୍ୟରୂପ)

ଚନ୍ଦ୍ରିକା—ସଂ. ବି. (ଚନ୍ଦ୍ର+ଇକ+ଆ)—୧ । ଚନ୍ଦ୍ରକିରଣ—
Chandrikā 1 Moonlight.
୨ । ନୟନତାରା—2. The pupil of the eye.
୩ । ଚନ୍ଦ୍ରଭାଗା ନଦୀ—3. River Chandrabhāgā
୪ । ମୟୂରପୁଚ୍ଛର ଗୋଲାକାର ଚିତ୍ରିତ ଚକ୍ର—
4. The circular multicoloured mark or eye on the tail-feather of a peacock.
୫ । ଚନ୍ଦାଗୁନ୍ଥିମାଛ— 5. The chanda fish; a kind of small circular white water-fish.
୬ । ଅଭ୍ର—6. Mica.
୭ । ୧୩ ଅକ୍ଷରଯୁକ୍ତ ଛନ୍ଦୋବିଶେଷ, ଉତ୍କଳନାଟକ—
7. A metre of 13 letters.
[ ଦ୍ର—ଏଥିର ୧୦, ୧୧ ଓ ୧୩ ବର୍ଣ୍ଣ ଗୁରୁ । ]
୮ । ଶ୍ୱେତ କଣ୍ଟକାରୀ ଗୁଳ୍ମ—8. A kind of thorny plant; Ranwofolia Serpentina
୯ । ହାଲିମ ( ଦେଖ )
9. Hālima ( See )
୧୦ । ଆଭା; ଜ୍ୟୋତିଃ—10. Splendour (M. W.).
୧୧ । ଟାଙ୍ଗର; ଚନ୍ଦା—11. Baldness (M W ).
୧୨ । ଅଳାଇଚ—12 Cardamums (M. W.).
୧୩ । ମଲ୍ଲୀ ଫୁଲ—
13. Jasmine; Jasminum Zambac ( M. W. )
୧୪ । ସଲପ—
14. Trigonella Fenugreek ( M. W. )
୧୫ । ଚନ୍ଦ୍ରଭାଗା ନଦୀ—
15. A name of the Chandrabhāgā river.
୧୬ । ( ଅନ୍ୟ ଶବ୍ଦ ପରେ ଯୁକ୍ତ ହେଲେ ) କୌଣସି ବିଷୟର ଆଲୋଚନା ବା ବ୍ୟାଖ୍ୟାମୂଳକ ଗ୍ରନ୍ଥ—
16. Elucidation of a particular subject. (M.W.)
[ ଦ୍ର—କେତେକ ବ୍ୟାଖ୍ୟା, ଟୀକା ଓ ବ୍ୟାକରଣ ଗ୍ରନ୍ଥ ପରେ ଏ ପଦ ଯୁକ୍ତ ହୁଏ । ଯଥା—ଅଲଙ୍କାରଚନ୍ଦ୍ରିକା, ସିଦ୍ଧାନ୍ତଚନ୍ଦ୍ରିକା, କାତନ୍ତ୍ରଚନ୍ଦ୍ରିକା । ]
୧୭ । ଉଗଗନ୍ଧ ବର୍ଗର କ୍ଷୁପବିଶେଷ (ଯୋଗେଶଚନ୍ଦ୍ର)—
17. A flowering shrub.
[ଦ୍ର—ଏଥିର ଫୁଲ ଧଳା, ଫୁଲ ଉପର ଆଗାଲ ରକ୍ତ, ଫଳ କୃଷ୍ଣ ବର୍ଣ୍ଣ ଓ ଯୋଡ଼ା ଯୋଡ଼ା, ପ୍ରତି ଗଣ୍ଠିରେ ୩।୪ ଟା ପତ୍ର ବଳୟାକାରରେ ଥାଏ, ତେର ଔଷଧରେ ଲାଗେ । ]

ଚନ୍ଦ୍ରିକାଦ୍ରବ—ସଂ ବି. (ଚନ୍ଦ୍ରିକା+ଦ୍ରୁ ଧାତୁ+କର୍ତ୍ତି. ଅ; ଯାହା ଚନ୍ଦ୍ର-
Chandrikādraba କିରଣଦ୍ୱାରା ଦ୍ରବୀଭୂତ ହୁଏ )—
ଚନ୍ଦ୍ରକାନ୍ତମଣି—Moon-stone.

ଚନ୍ଦ୍ରିକାପାୟୀ—ସଂ ବି. (ଚନ୍ଦ୍ରିକା+ପା ଧାତୁ+କର୍ତ୍ତି. ଇନ୍; ୧ମା. ୧ବ.)
Chandrikāpāyī ଯେ ଚନ୍ଦ୍ରକିରଣ ପାନ କରେ )—ଚକୋର ପକ୍ଷୀ The chakora bird (M W.)

ଚନ୍ଦ୍ରିତା—ଦେ. ବି—ରକ୍ତିମା—Redness.
Chandritā
ଚନ୍ଦ୍ରିତା ଭୃଙ୍ଗ ଭା ପ୍ରମାଣେ, ବାନ୍ଧିଂଗ ଜାଣ ବେ ଲକ୍ଷଣେ ।
ପ୍ରାଚୀ. ପୂର୍ଣ୍ଣଚନ୍ଦ୍ରୋଦୟ ।

ଚନ୍ଦ୍ରିମା—ସଂ. ବି. ( ଚନ୍ଦ୍ର+ଇମନ୍; ୧ମା. ୧ବ )—
Chandrimā ଚନ୍ଦ୍ର କିରଣ; ଜ୍ୟୋତ୍ସ୍ନା—Moonlight (M. W.)

ଚନ୍ଦ୍ରିଲ—ସଂ. ବି. ( ଚନ୍ଦ୍ର+ଅସ୍ତି ଅର୍ଥରେ. ଇଲ )—
Chandrila ୧ । ଶିବ—1. God Śiba.
୨ । ନାପିତ; ଭଣ୍ଡାରୀ—2. Barber.
୩ । ବାସ୍ତୁକ ବା ବଥୁଆ ଶାଗ—3. A kitchen herb; Chenopodium Album.

ଚନ୍ଦ୍ରୋଦୟ—ସଂ. ବି. ( ୬ଷ୍ଠୀ ତତ୍; ଚନ୍ଦ୍ର+ଉଦୟ )—
Chandrodaya ୧ । ଚନ୍ଦ୍ରଙ୍କର ଆବିର୍ଭାବ; ଜ୍ୟୋତ୍ସ୍ନାର ଆବିର୍ଭାବ-
1. The rising of the moon; moon-rise.
୨ । ଚନ୍ଦ୍ରାତପ; ଚାନ୍ଦୁଆ—2. Canopy ( M. W. )
୩ । ଚନ୍ଦ୍ରୋଦୟ ମକରଧ୍ୱଜ ( ଦେଖ )
3. Name of mercurial preparation
୪ । (ନାମ) ପାଣ୍ଡବପକ୍ଷୀୟ ଯୋଦ୍ଧାବିଶେଷ—
4. Name of a Pāndaba warrior ( M. W. )

ଚନ୍ଦ୍ରୋଦୟମକରଧ୍ୱଜ—ସଂ. ବି. ( ବୈଦ୍ୟକ )—ପାରଦ, ଗନ୍ଧକ ଓ
Chandrodayamakaradhwaja ସ୍ୱର୍ଣ୍ଣଘଟିତ ରସାୟନ ଔଷଧବିଶେଷ ( ମକରଧ୍ୱଜ ତଳେ କୋଠ ଦେଖ )—
Name of a mercurial preparation of mercury and sulpher burnt in a covered bottle with gold

ଚନ୍ଦ୍ରୋଦୟା—ଦେ. ବି—ଚନ୍ଦ୍ରଉଦିଆ ( ଦେଖ)
Chandrodayā Chandraudiā ( See )
ଗୁରୁ ଚନ୍ଦ୍ରୋଦୟା ମଶାଲ ପାଖେ
ବନ୍ଧି ଜାଳିତ ଯେବେ ଛଟା ମୁଖେ । କବିସୂର୍ଯ୍ୟ. କୃଷ୍ଣଲୀଳାଶ୍ଲୋକଚଉତିଶା ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇୟ | ଡ଼ଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ରଅ | ଞ୍ଜ | ନ୍ |

**ଚନ୍ଦ୍ରୋପରାଗ**—ସଂ. ବି. ( ୬ଷ୍ଠୀ ତତ୍; ଚନ୍ଦ୍ର+ଉପରାଗ )—ଚନ୍ଦ୍ରଗ୍ରହଣ
Chandroparāga Lunar Eclipse.

**ଚନ୍ଦ୍ରୋପଳ**—ସଂ. ବି. (ମ.ପ. ଲୋ; ଚନ୍ଦ୍ରକିରଣଦ୍ୱାରା ଦ୍ରବୀଭୂତ ଉପଳ)—
Chandropaḷa ଚନ୍ଦ୍ରକାନ୍ତମଣି—The moon-stone.

**ଚନ୍ଧା** (ଇତ୍ୟାଦି)—ଦେ. ବି—ଚନ୍ଦା ଇତ୍ୟାଦି ( ଦେଖ )
Chandhā (etc) Chandā etc. ( See )

**ଚନ୍ଧେଇ**—ଦେ. ବି. ସ୍ତ୍ରୀ—ଯେଉଁ ସ୍ତ୍ରୀ ଅଙ୍ଗଭଙ୍ଗୀ ବା ହାବଭାବ ଦ୍ୱାରା
Chandhei କାମୁକତା ପ୍ରକାଶ କରେ—Flirt
**चोँचलहाइ**

**ଚନ୍ନ** (ଇତ୍ୟାଦି)—ଗ୍ରା. ବି—ଚନ୍ଦନ ଇତ୍ୟାଦି ( ଦେଖ )
Channa (etc) Chandana etc. ( See )
চন্নন
**चन्नन**

**ଚନ୍ନୀ**—ଦେ ବି.—ଚନି (ଦେଖ)
Channī Chanī (See)

**ଚପ୍** (ଧାତୁ)—୧ । ଚୂର୍ଣ୍ଣ କରିବା; ଚୂରିବା—
Chap (root) 1. To reduce to powder; to pound.
୨ । ଗମନ କରିବା—2. To go.
୩ । ଆଉଁସିବା—3. To caress; to soothe (M.W.)
୪ । ସାନ୍ତ୍ୱନା ଦେବା—4. To console (M. W.)
୫ । ଚକଟିବା; ଦଳିବା—5. To knead.
୬ । ଠକିବା—6. To cheat.
୭ । ଥାପଡ଼େଇବା—7. To pat.
୮ । କୁଟିବା—8. To bruise; to pestle.

**ଚପ୍**—ବୈଦେ. ବି. (ଇଂ. ଚପ୍)—ଛେଚା ହୋଇ ପିଷ୍ଟକାକାର ଭଜା
Chap ମାଂସଖଣ୍ଡ—Fried piece of minced meat;
চপ chop.
**चप**
[ ଦ୍ର—ଏହାର ସହିତର ଖାଦ୍ୟ କଟ୍‌ଲେଟ୍ ।]

**ଚପ୍‌କନ୍**—ଦେ. ବି —(ସଂ. ଗୁପ୍ତ ଶବ୍ଦ ଜାତ ଉର୍ଦ୍ଦୁ ଚପକନା (=ଓଡ଼ିଆ
Chapkan ଚମିବା) କିମ୍ବାରୁ ଉତ୍ପନ୍ନ, ଯାହା ଦେହକୁ ଗୁଡ଼ ଆଡ଼ୁ
চাপকান ଚମି ଧରେ')—ଆଜାନୁଲମ୍ବିତ ବସ୍ତ୍ର କୁର୍ତ୍ତା—A long
**चपकन** Indian coat reaching to the knees
chapkan.

ପୋଷାକ ଉଚ୍ଚକ୍ଷାପ୍ ଚିଲ୍ଲ ପାଜମା ସାହାନ ଚପ୍‌କନ୍ ।
ଫକୀରମୋହନ, ଛମାଣଆଠଗୁଣ୍ଠ ।

[ ଦ୍ର—ଇଂରାଜରେ ଏହି ଶବ୍ଦ ଏହି ଆକାରରେ ବ୍ୟବହୃତ ହେଉଅଛି; ଏ ପୋଷାକ ମୁସଲମାନମାନଙ୍କ ଅମଳରେ ଓ ଇଂରାଜ ଅମଳରେ ଭାରତୀୟ ବ୍ୟକ୍ତିମାନଙ୍କ ଦରବାରୀ ପୋଷାକ ଅଟେ । ଏହା ଉପରେ ଯେଉଁ ଖୋଲା କୁର୍ତ୍ତା ପିନ୍ଧା ଯାଏ ତାକୁ ଚୋଗା କହନ୍ତି ।]

**ଚପ୍‌ଚପ୍**—ଦେ. କ୍ରି. ବିଣ.—( ସଂ. ଚପଳ )—ଝପାଝପ୍; ଅତି ଶୀଘ୍ର;
Chapchap ତୁରନ୍ତ—Very quickly; hastily; very
চটপট swiftly.

**चपचप** ଦେ. ଅ.—(ଧ୍ୱନ୍ୟର୍ଥକ)—୧ । କୁକୁର ବା ବିରାଡ଼ି ଚୁକୁ
চপচপ ଚୁକୁ କରି ପାଣି ବା ଦୁଧ ଚାଟିବାର ଶବ୍ଦ; ଚୁକୁ ଚୁକୁ—
**चटचट, चपड़ चपड़** Sound of licking or lapping of some liquid by a dog or cat.
୨ । ୧।୨ ଇଞ୍ଚ ପାଣି ବା କାଦୁଅ ଥିବା ଜାଗାରେ ଚାଲିବାର ଶବ୍ଦ; ଚପର ଚପର—2. Splasting sound produced by walking on a place in which there is 1 or 2 inches of water or slime.

**ଚପ୍‌ଚପିଆ**—ପ୍ରାଦେ. ( ସମ୍ବଲପୁର ) ବିଣ.—( ଭୁଲ; ଦ୍ର. ଚପଚପା )
Chapchapiā ଅଠାଳିଆ—Gummy; sticking.

**ଚପ୍‌ରା**—ପ୍ରାଦେ. (ସମ୍ବଲପୁର) ବି.—ଜଳାଭୂମି—
Chaprā Marsh; moor; fen.
**दलदाल** ଦେ ବି. (ସଂ. ଚତ୍ୱର)—ଚତର୍ (ଦେଖ)
Chatarā (See)
ଦେ. ବିଣ.—୧ । କର୍ଦ୍ଦମାକ୍ତ (ସ୍ଥାନ)—
1. Muddy (place) (Beams).
୨ । ସନ୍ତସନ୍ତିଆ—2. Moist (place).

**ଚପ୍‌ରାସ୍**—ବୈଦେ. ବି.—୧ । (ଫା. ଚପ୍‌ରାସ୍;) ଚପ୍=ବାମ+ରାସ୍ତ=
Chap-rās ଡାହାଣ; ଯାହା ବାମ କାନ୍ଧରୁ ପଇତାପରି ଅଣ୍ଟାର
চাপরাস ଡାହାଣକୁ ପଡ଼ି ଥାଏ)—ପିଅଦାମାନେ ସରକାରୀ ଚିହ୍ନସ୍ୱରୂପ
**चपरास** ପୋଷାକ ଉପରେ ଧାରଣ କରିଥିବା ପିତଳାଦି ନିର୍ମିତ ଫଳକ—A badge of a peon; a plate containing engravings of the name of the master or department under whom a peon serves.
୨ । (ଫା. ଚପ୍‌ରାସି)—ଚପରାସୀ; ପିଅଦା—A peon.
୩ । (ଫା)—କରତର ଦାନ୍ତମାନଙ୍କୁ ଏକାନ୍ତରକ୍ରମେ ବାଆଁ ଓ ଡାହାଣଆଡ଼କୁ ଝୁଙ୍କାଇବା କର୍ମ ( ଏପରି ନ ହେଲେ କରତର ଦାନ୍ତ କାଠରେ ଘର କରି ପାରେ ନାହିଁ )—3. The act of bending the teeth of a saw alternatively a little to the right and to the left.

ଚପରାସନସ୍ୟ ପେଶି କଂସରାସ୍ତ—କବିସୂର୍ଯ୍ୟ ସଙ୍ଗୀତ ।

**ଚପ୍‌ରାସି**—ବୈଦେ. ବି (ଫା. ଚପ୍‌ରାସି; ବାମ+ରାସ୍ତ=ଡାହାଣ; ଯେ
Chaprāsi ପ୍ରଭୁଙ୍କର ବାମ ଦକ୍ଷିଣ ସବୁ ଦିଗରେ ଉପସ୍ଥିତ ଥାଏ
চাপরাসী କିମ୍ବା ଯେ ଚପ୍‌ରାସ୍ ପିନ୍ଧିଥାଏ)—ଅର୍ଦ୍ଦଳୀ, ପିଅଦା; ପିଅନ—
**चपरासी** An orderly peon; peon (wearing a badge ).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଟାଇ' ନ ମିଳିଲେ 'ଗାଣ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଟୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଟ୍ୟା' ନ ପାଇଲେ 'ଆଙ୍କା' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଚପଟ୍ଟ**— ସଂ. ବି ( ଚପ୍ + ଭାବ ଧାତୁ. ଅଟ୍ଟ )—ଚାପୁଡ଼ା—
Chapaṭa — Slapping; slap.

ଚପେଟ — ଦେ. ବି ( ସଂ. ଚପେଟ; ଚାପ )—୧ । ଆଘାତ—
**चपत** — Hurt, injury.

୨ । ବିପତ୍‌ପାତର ଆଶଙ୍କା—
2. Risk; hazard; apprehension of danger.

୩ । ଚାପ; ଉତ୍ପୀଡ଼ନ—3. Pressure.

୪ । ଦାୟିତ୍ୱ—4. Responsibility.

୫ । ପୀଡ଼ା—5. Oppression.

୬ । ହାନି; କ୍ଷତି; ଲୋକ୍‌ସାନ୍—6. Loss.

୭ । ବହୁ କାର୍ଯ୍ୟର ଜଞ୍ଜାଳ—
7. Pressure of business; overwork.

**ଚପଟ୍ଟାଘାତ**—ସଂ. ବି (୩ୟା ତତ୍; ଚପଟ୍ଟ + ଆଘାତ)—ଚାପୁଡ଼ା ମାରିବା—
Chapaṭāghāta — Slapping; blow with the flattened palm.

**ଚପର୍‌ଚପର୍**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ବର୍ଷାର ଝପ୍‌ଝପ୍‌ଶବ୍ଦ—
Chaparchapar — 1. Pattering of rain.

ଚପଚପ ୨ । ଦୁଇ ତିନି ଅଙ୍ଗୁଳ ପାଣି ବା କାଦୁଅ ଥିବା ସ୍ଥାନରେ
**चपड़्चपड़्** ଲୋକ ଚାଲିଲେ ପଦାଘାତଜନିତ ଶବ୍ଦ—2. Splasting sound produced by a person walking on a ground in which there is one or two inches of water.

**ଚପରା**—ଦେ. ବିଣ— ୧ । ଅଳ୍ପ ପାଣି ଥିବା (ସ୍ଥାନ)—
Chaparā — 1. Marshy (Grundy).

୨ । କର୍ଦ୍ଦମମୟ; ପଙ୍କୁଆ—Muddy (Grundy).

**ଚପଳ**—ସଂ. ବିଣ (ଚପ୍ ଧାତୁ + କର୍ତ୍ତୃ. ଅଳ କିମ୍ବା କମ୍ପ୍ ଧାତୁ + କର୍ତ୍ତୃ. ଅଳ
Chapaḻa — ନିପାତନ )—୧ । କମ୍ପୁଥିବା—1. Shaking;
(ଚପଳା — ସ୍ତ୍ରୀ) — trembling; wavering.

୨ । ଚଞ୍ଚଳ; ତରତରିଆ—2 Agile; quick.

୩ । ତରଳ; ଅସ୍ଥିର—3. Restless; unsteady.

୪ । ଚଗଲା; ଅବ୍ୟବସ୍ଥିତ; ଅନବସ୍ଥିତ—
4. Unstable; fickle; inconstant.

୫ । ଅସ୍ଥାୟୀ—5. Momentary; temporary.

ଚପଳତା, ଚପଳତ୍ୱ, ଚାପଲ୍ୟ } ବି.
୬ । ଦୁର୍ବିନୀତ, ଦୁଷ୍ଟ; ବଗୁଲିଆ—6. Wicked, illmannered; wonton.

୭ । ଧୃଷ୍ଟ—7. Insubordinate; insolent.

୮ । ପ୍ରଗଲ୍‌ଭ—8. Boastful.

୯ । ବିହ୍ୱଳ—9. Agitated.

୧୦ । ଅବ୍ୟବସ୍ଥିତଚିତ୍ତ—
10. Of unsteady disposition; fickleminded.

୧୧ । ଅବିବେଚକ—11. Inconsiderate; thoughtless.

୧୨ । ତୁରୁତୁରିଆ—12. Hasty.

୧୩ । କ୍ଷଣିକ—13. Momentary; instantaneous.

୧୪ । ଦୋହୋଲୁଥିବା—14 Moving to and fro.

ବି—୧ । ପାରଦ—1 Mercury.

୨ । ଚୋର—2. Thief.

୩ । ମତ୍ସ୍ୟ—3. Fish.

୪ । ମୂଷିକବିଶେଷ—4 A kind of mouse.

୫ । ବାୟୁ; ପବନ—5. The wind.

୬ । କଳା ସୋରିଷ—6. Black mustard (M. W)

୭ । ଚୋରକ ନାମକ ସୁଗନ୍ଧ —
7. A kind of perfume.

୮ । ପ୍ରସ୍ତରବିଶେଷ—8. A kind of stone (M. W.)

୯ । ରୋଗ ଉତ୍ପାଦନକାରୀ ରାକ୍ଷସବିଶେଷ—
9. Name of a demon causing diseases.

କ୍ରି. ବିଣ—ଶୀଘ୍ର; ଚଞ୍ଚଳ—Quickly.

ଦେ. ବି—ପ୍ରାଚୀନ ଜଳଯାନବିଶେଷ—Name of a boat of ancient India.

ଭୋଜରାଜାଙ୍କ 'ଯୁକ୍ତିକଳ୍ପତରୁ' ଦ୍ରଷ୍ଟବ୍ୟ—ଜଗବନ୍ଧୁ. ପ୍ରାଚୀନ. ଉତ୍କଳ ।

**ଚପଳଗଣ**— ସଂ.ବି. (୬ଷ୍ଠୀ ତତ୍; ଚପଳ + ଗଣ)— ପଞ୍ଝାଏ ବଗୁଲିଆ ଟୋକା ।
Chapaḻagaṇa — —A troop of ill-mannered boys ( M. W. )

**ଚପଳତା**—ସଂ. ବି (ଚପଳ + ଭାବ. ତା)—କମ୍ପ; ଥରି—
Chapaḻatā — 1. Trembling.

ଚପଳତ୍ୱ, ଚାପଲ୍ୟ } ଅନ୍ୟରୂପ
୨ । ଅବ୍ୟବସ୍ଥିତି—2. Fickleness; inconstancy.

୩ । ଚାଞ୍ଚଲ୍ୟ—3. Hastiness.

୪ । ଧୃଷ୍ଟତା—4. Insolence.

୫ । ଦୁଷ୍ଟାମୀ; ଖେଳଉଡ଼ାଣୀ—
5. Wickedness; wantonness

୬ । ଅଭଦ୍ରତା—6. Rudeness; bad manners.

**ଚପଳତାଶୟ**—ସଂ. ବି—୧ । ପେଟଫମ୍ପା—
Chapaḻatāśaya — 1 Flatulence (M. W.).

୨ । ଅଜୀର୍ଣ୍ଣ—2. Indigestion.

**ଚପଳସ୍ୱଭାବ**—ସଂ.ବି ( କର୍ମଧାରୟ; ଚପଳ + ସ୍ୱଭାବ)—ଅସ୍ଥିର ପ୍ରକୃତି—
Chapaḻaswabhāba — Unsteady nature.
(ଚପଳସ୍ୱଭାବା—ସ୍ତ୍ରୀ) ବିଣ.ପୁଂ.(ବହୁବ୍ରୀହି) ଅସ୍ଥିରପ୍ରକୃତିକ (ବ୍ୟକ୍ତି)—
Fickle-minded ( person ).

**ଚପଳା**—ସଂ. ବିଣ. ସ୍ତ୍ରୀ ( ଚପଳ + ସ୍ତ୍ରୀ. ଆ )—ଚପଳର ସ୍ତ୍ରୀ ଲିଙ୍ଗ—
Chapaḻā — Feminine of chapaḻa.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ମ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ଚ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ତୁ |

ସଂ. ବି. ସ୍ତ୍ରୀ (ଚପଳ+ଆ)—୧ । ସୁରା, ମଦ୍ୟ—
1. Spirit of wine; spirituous liquor.
୨ । ଲକ୍ଷ୍ମୀ—2. The Goddess of fortune.
୩ । ବିଜୁଳି; ବିଦ୍ୟୁତ୍—3 Lightning.
୪ । ବେଶ୍ୟା—4 Prostitute.
୫ । ଛନ୍ଦୋବିଶେଷ—5. Name of a metre.
୬ । ଜିହ୍ୱା—6. The tongue.
୭ । ପିପ୍ପଳୀ—7. The longpeper (M. W.)
୮ । ଅସତୀ ସ୍ତ୍ରୀ—3. A disloyal wife (M. W.)
୯ । ସଙ୍ଗୀତର ୫ମ ସ୍ୱର—
9. The fifth note in music (M. W.)

ଚପଳାକ୍ରୀଡ଼ା—ସଂ. ବି ( ୬ଷ୍ଠୀ ତତ୍; ଚପଳା+କ୍ରୀଡ଼ା )—
Chapalākrirdā ଚପଳାଲୀଳା ( ଦେଖ )—
Chapalālilā (See)

ଚପଳାକ୍ଷ—ସଂ ବିଣ. ପୁଂ (ବହୁବ୍ରୀହି; ଚପଳ ଅକ୍ଷି)--ଯେ ଇତସ୍ତତଃ ଆଖି
Chapalāksha ବୁଲାଉଥାଏ—One whose eyes move to and fro
(ଚପଳାକ୍ଷୀ—ସ୍ତ୍ରୀ)

ଚପଳାଙ୍ଗ—ସଂ. ବି ( ବହୁବ୍ରୀହି; ଚପଳ+ଅଙ୍ଗ )—ଶିଶୁମାର; ଜଳଜନ୍ତୁ-
Chapalānga ବିଶେଷ—Porpoise; Gangeticus Delphinus.

ଚପଳାଲୀଳା—ସଂ. ବି ( ଚପଳା+ଲୀଳା )—୧ । (୬ଷ୍ଠୀ ତତ୍ )
Chapalālilā ମେଘରେ ବିଜୁଳି ଝଟକିବା; ବିଜୁଳି ଝଟକ—
1. The play-flash of lightning in the clouds.

ଘନେ ଚପଳାଲୀଳା, ଗୃହେଁ ଘନ ଜ୍ୱାଳା ରୁ କ ଏ ଅଭିଳାଷ ବହୁଳରେ—
କବିସୂର୍ଯ୍ୟ. କଳୋଗଚନ୍ଦ୍ର୍ ସ. ଗୀତ ।

୨ । ( ଉପମିତ ସମାସ ) ବିଜୁଳି ଝଟକପରି ଚଞ୍ଚଳ ଅଙ୍ଗ ସଞ୍ଚାଳନ—2. Brisk movement of the limbs like lightning flash.

ଚପଳେ—ଦେ. କ୍ରି. ବିଣ (ସଂ. ଚପଳମ୍)—୧ । ଶୀଘ୍ର; ଚଞ୍ଚଳ—
Chapale 1. Quickly.

ଚମ୍ପି ବାରୁଣୀକି ବନ ଯିବାକୁ, ଚପଳେ ଅମ୍ବର ବରଜନ୍ତି ।
କବିସୂର୍ଯ୍ୟ. କଳୋଗଚନ୍ଦ୍ର୍ ଚ. ଗୀତ ।

୨ । ( ଲକ୍ଷଣାର୍ଥ ) ଚପଳତା ସହକାରେ; ଆଗ ପଛ ବିଚାର ନ କରି—2. Precipitously.

ଚଉଠେ ନ ରଖିଲ ସେ ସ୍ନେହକୁ, ଚପଳେ ଛଡାଇ ଦେଇ ଦେହକୁ ।
କବିସୂର୍ଯ୍ୟ. କବିତା. କଙ୍କାଳ ।

ଚପସିବା—ଦେ. କ୍ରି (ସଂ. ଶୁଷ ଧାତୁ)—୧ । କାଳି ଶୋଷିନେବା; ଛପା
Chapasibā କାଗଜରେ କାଳି ଟାଣି ହୋଇଯିବା—1 To soak (said of a blotting paper).
ଚପସାନ
सोखना ୨ । ପୁରୁଣା କାଗଜରେ ଲେଖିଲାବେଳେ କାଗଜରେ କାଳି ଭେଦିଯିବା—2. To soak ( said of old paper when written upon.)

ଚପା—ଦେ. ବି (ସଂ. ଚପ ଧାତୁ=କୁଟିବା; ଦଳିବା)—୧ । ଚୁପ—
Chapā 1. Pressure.
চাপা ୨ । ଚୁପିବା; ଦାବିବା—2. Pressing down.
दाब; चपना

ଚପାଇବା—ଦେ. କ୍ରି—୧ । ଚପିବା କ୍ରିୟାର ଣିଜନ୍ତରୂପ—
Chapaibā 1 The causative form of chapibā.
চাপান ୨ । କାଗଜରେ ଅଠାଦ୍ୱାରା ଅନ୍ୟ ପାତଳା ବସ୍ତୁ (କୋର୍ଟଫି,
चपाना चापना ଟିକଟ) ଲଗାଇବା—2. To stick something with gum to another thing.
(ଯଥା—ଦରଖାସ୍ତ ଉପରେ କୋର୍ଟଫି ଚପାଇବା । )
୩ । ଦବାଇବା; ଦାବିବା—3. To press.
୪ । ଲୁଚାଇବା; ଗଡ଼ପକରିବା—
4. To hush up a thing; to suppress.
୫ । ସମସ୍ତଙ୍କ ଭୟରେ ନତମସ୍ତକ ବା ଚୁପ୍ କରାଇବା—
5. To silence a person by frightening.
୬ । ଅନ୍ୟଦ୍ୱାରା ଚୁପିବା କର୍ମ କରାଇବା—
6 To cause to press
୭ । କାଗଜ ଉପରେ ଲେଖା ହୋଇଥିବା କାଳିକୁ ଶୋଷିବା ନିମନ୍ତେ ଚପା କାଗଜ ମାଡ଼ିବା—To blot a writting with blotting.
୮ । ଧମକାଇବା—8. To threaten.

ଚପାକାଗଜ—ଦେ. ବି.—୧ । ଯେଉଁ କାଗଜରେ ଲେଖିଲେ କାଳି
Chapākāgaja କାଗଜଦ୍ୱାରା ଶୋଷି ହୋଇ ଯାଏ ବା କାଗଜ
চাপাকাগজ ମଧ୍ୟକୁ କାଳି ଚପି ଯାଏ—
सोखता 1. Paper into which the ink soaks.
୨ । ମସିଶୋଷକ ପତ୍ର; ଛପାକାଗଜ; ଯେଉଁ କାଗଜ ସାହାଯ୍ୟରେ ଲିଖିତ କାଗଜରୁ କାଳି ଶୋଷି ନିଆଯାଏ—
2. Blotting paper.

ଚପାଚପି—ଦେ. ବି.—ଚପା (ଦେଖ)
Chapāchapi Chapā (See)
চাপাচাপী

ଚପିବା—ଦେ. କ୍ରି.—(ସଂ. ଚପ ଧାତୁ=କୁଟିବା)—୧ । ଦବିବା—
Chapibā 1. To sink down.
চাপা ୨ । କାଳି ଆଦି କାଗଜରେ ଶୋଷି ହୋଇ ଯିବା—
चपना, दबना 2. To soak or sink (said of ink soaking into paper).
୩ । ଅନ୍ୟର ପ୍ରତାପରେ ଭୟ ପାଇ ଚୁପ ହେବା—
3. To be frightened to silence.

ସାଧାରଣ ସେକେ: ଅପର ପୃଷ୍ଠାରେ ୧,୨ ଓ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତର ସମ୍ପର୍କିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍ଗିଆ' ନ ପାଇଲେ 'ଅଙ୍ଗା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୪ । ଲଜ୍ଜିତ ହେବା—4. To be ashamed.

ଚପିଯିବା—ଦେ. କ୍ରି.—ଚପିବା (ଦେଖ)
Chapijibā Chapibā (See)
চেপেযাওয়া
चपयाना

ଚପେଟ—ସଂ. ବି.—(ଚପ ଧାତୁ + ଭାବ. ଏଟ)—୧ । ଗୁଡ଼ୁପା—
Chapeṭa 1. Slap.
୨ । ଗୁଡ଼ୁପାଇବା—2 Patting; slapping.

ଚପେଟାଘାତ—ସଂ. ବି.—ଚପଟାଘାତ (ଦେଖ)
Chapeṭāghāta Chapaṭāghāta (See)

ଚପେଟିକ—ସଂ. ବି.—ଚପେଟ (ଦେଖ)
Chapeṭika Chapeṭa (See)

ଚପେଟିକା—ସଂ. ବି.—ଚପେଟ (ଦେଖ)
Chapeṭikā Chapeṭa (See)

ଚବ୍ ଚବ୍—ଦେ. ଅ.—(ଧ୍ୱନ୍ୟନୁକରଣ)—ଅଳ୍ପ ପାଣିରେ ବା କାଦୁଅରେ
Chab chab ଚାଲିବାର ବା ହାତ ପାପୁଲି ବାଡ଼େଇବାର ଶବ୍ଦ—
চপচপ Splattering or splashing sound of striking
चपड़ चपड़ or walking shallow water or mud.

ଚବ୍ରା—ପ୍ରାଦେ. (ସମ୍ବଲପୁର) ବିଶ.—ଚବ୍ରା (ଦେଖ)
Chabrā Chabrā (See)

ଚବ୍‌ଲାଇବା—ପ୍ରାଦେ. (ସମ୍ବଲପୁର) କ୍ରି.—(ଭୂଲ. ହି. ଚବାନା)—
Chablāibā ପାଗୁଲାଇବା—To ruminate.

ଚବକା—ଦେ. ବି.—ଅତି କ୍ଷୁଦ୍ର ଅଗଭୀର ଜଳାଶୟ—
Chabakā Very small shallow tank.

ଚବତି—ପ୍ରାଦେ. (ସିଂହଭୂମ) ବି.—ପତରର ଦନା—A cup made
Chabati of leaves sewn together.

ଚ ବର୍ଗ—ସଂ. ବି.—(୬ଷ୍ଠୀ ତତ୍; ଚ + ବର୍ଗ)—ଚ, ଛ, ଜ, ଝ, ଞ ଏହି
Cha barga ୫ ବ୍ୟଞ୍ଜନ ବର୍ଣ୍ଣ—The 5 consonants allied to 'ch'.

ଚବନ—ସଂ. ବି.—ଚଇଁକାଠ (ଦେଖ)
Chabana Chaiṅkāṭha.

ଚବା—ପ୍ରାଦେ. (ସମ୍ବଲପୁର) ବି.—କାଇଁଶ—
Chabā The kāsa reed.

ଚବି—ସଂ. ବି.—ଚଇଁକାଠ (ଦେଖ)
Chabi Chaiṅkāṭha (See)

ଚବିକ
ଚବିକା } ଅନ୍ୟରୂପ
ଚବ୍ୟ

ଚବିଦସ୍ତିଆମାଣ—ଗ୍ରା. ବି—ଚବିଶିଦସ୍ତିଆମାଣ (ଦେଖ)
Chabidastiāmāṇa Chabisidastiāmāṇa (See).

ଚବିଦସ୍ତିପଦିକା—ଗ୍ରା. ବି—ଚବିଶିଦସ୍ତିଆପଦିକା (ଦେଖ)
Chabidastipadikā Chabisidastiāpadikā (See).

ଚବିଲା—ଦେ. ବିଣ (ସଂ. ଛବିଲ)—୧ । ଛଇଲ (ଦେଖ)
Chabilā 1. Chhaiḷa (See)
छबेला (ସଂ. ଚପଳ)—୨ । ଚଗଲା; ଚପଳସ୍ୱଭାବ—2. Fickle.

ଚବିଶ (ଇତ୍ୟାଦି)—ଦେ. ବି (ସଂ. ଚତୁର୍ବିଂଶ; ପ୍ରା. ଚଉବିଶା)—
Chabiśa etc ଚବିଶି ଇତ୍ୟାଦି (ଦେଖ)
Chabiśi etc (See)

ଚବିଶାକୁଟା—ଦେ. ବି—୨୪ ଗୌଣୀ ଧାନ କୁଟା ଦେଲେ ତହିଁରୁ
Chabiśākuṭā ୧୦ ଗଉଣି ଚାଉଳ ପାଇବାର ରୀତି—
The mode of supplying 10 'Gaunies' of rice for every 24 Gaunies of paddy given to a woman of husking.
[ ବ୍ୟୁ—ଅମ ଦେଶରେ ୨୨ ଗୌଣୀ ଧାନ ଦେଲେ କୁଟୁଣୀମାନେ ୧୦ ଗୌଣୀ ଉଷୁନା ଚାଉଳ ଦଅନ୍ତି ଓ ୨୪ ଗୌଣୀ ଧାନ ଦେଲେ ୧୦ ଗୌଣୀ ଅରୁଆ ଚାଉଳ ଦଅନ୍ତି । ୧୦ ଗୌଣୀ ଚାଉଳ ଦେଇ ଅତିରିକ୍ତ ଯାହା ବଳେ ତାହା କୁଟୁଣୀମାନେ ଆପଣାର ପାରିଶ୍ରମିକରୂପେ ନିଅନ୍ତି । ]

ଚବିଶାକୁଟାପ୍ରମାଣେ—ଦେ. କ୍ରି. ବିଣ—୨୪ ଗୌଣୀ ଧାନରୁ ୧୦
Chabiśākuṭāpramāṇe ଗୌଣୀ ଚାଉଳ ମିଳିବା ହିସାବରେ—
At the rate of 10 gaunies of rice for every 24 gounies of paddy given to the husked.
(ଯଥା—ଗୁରୁ ଭରଣ ଧାନରୁ ଚବିଶା କୁଟାପ୍ରମାଣେ କେତେ ଚାଉଳ ହେବ ?)

ଚବିଶାଦୁଇଶହ—ଦେ. ବି—ଦୁଇଶହ ଚବିଶ—
Chabiśāduiśaha 224.

ଚବିଶାଶହେ—ଦେ. ବି. (ସଂ. ଚତୁର୍ବିଂଶୋତ୍ତରଶତ)—ଏକଶହଚବିଶ—
Chabiśāśahe 124

ଚବିଶି—ଦେ. ବି. ( ସଂ. ଚତୁର୍ବିଂଶ, ପ୍ରା. ଚଉବିସା )—
Chabiśi କୋଡ଼ିଏରୁ ଚାରି ଅଧିକ ସଂଖ୍ୟା; ଚତୁର୍ବିଂଶ ସଂଖ୍ୟା—
চবিশ 24; Twentyfour.
चौबिस ବିଣ—୧ । ଚତୁର୍ବିଂଶ ସଂଖ୍ୟକ—
1 Numbering twentyfour.
୨ । ଚତୁର୍ବିଂଶର ପୂରଣ—2. Twentyfourth.

ଚବିଶିଘଣ୍ଟା—ଦେ. ବି—ଦିନରାତି; ଅହୋରାତ୍ର—
Chabiśighaṇṭā Day and night.
চবিশঘণ্টা
चौबिसघन्टा

ଚବିଶିଦସ୍ତିଆ ମାଣ—ଦେ. ବି—ଉତ୍କଳ ଦେଶପ୍ରଚଳିତ ଭୂମିପରିମାଣ
Chabiśidastiāmāṇa ବିଶେଷ; ଏକ ଏକର୍—One acre; a unit of land measurement in Orissa
[ ବ୍ୟୁ—ଚବିଶିଦସ୍ତି ପଦିକାରେ ଦୀର୍ଘରେ ୨୦ ପଦିକା ଓ ପ୍ରସ୍ଥରେ ୨୦ ପଦିକା ପରିମିତ ବର୍ଗକ୍ଷେତ୍ର । ]

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ହ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଊ | ମ୍ବ |

ଚବଶିଦସ୍ତି ପଦକା—ଦେ. ବି—ଉତ୍କଳର ଭୂମି ମାପିବାର ନଳ ବା କାଠି-
Chabisidasti padikā ବିଶେଷ; ୧୦ ଫୁଟ ୫ ଇଞ୍ଚ ୧ ଯବ-
ପରିମିତ ଋଣି—A measing rod for land measure in Orissa.

[ ଦ୍ର—ଚବିଶଦସ୍ତି ପଦକାର ପରିମାଣ ୭ ହାତ, ମାତ୍ର ପୂର୍ବ-କାଳରେ ପ୍ରଜାମାନଙ୍କୁ ଜମି ଚଷିବାରେ ପ୍ରଲୋଭିତ କରିବାପାଇଁ ଜମିଦାରମାନେ ଏହି ପରିମାଣକୁ ବଢ଼ାଇ ଦେଇ ପଦକାକୁ ଛଅ ହାତ ଏକକାଣୀ ବା ହା ୭।୨୨ ଅଙ୍ଗୁଳ ରଖିଥିଲେ; ଏହା ଇଂରେଜ ୧୦ ଫୁଟ ୫ ଇଞ୍ଚ ୧ ଯବ ସଙ୍ଗେ ସମାନ । ]

ଚବଶିଦସ୍ତି ମାଣ—ଦେ. ବି—ଚବିଶିଦସ୍ତିଆ ମାଣ (ଦେଖ)
Chabisidasti māṇa Chabisidastiā māṇa (See)

ଚବେଣା—ଦେ. ବି. ( ସଂ. ଚର୍ବଣ; ହିନ୍ଦିରୁ ଅନୁକୃତ )—
Chabeṇā ଶୁଖିଲ, ମୁଗ, ବିରି, ବୁଟ ଓ ଚଣାଆଦି ଶସ୍ୟ ଭଜା
ଚବେନା ହୋଇ ଚୋବାଇବାପାଇଁ ବ୍ୟବହୃତ ଖାଦ୍ୟ—
**चबैना** Fried grains of several kinds mixed together and chewed as a refreshment.

ଚବ୍ୟ—ଗ୍ରା. ବିଣ (ସଂ. ଚର୍ବ୍ୟର ଅଶୁଦ୍ଧ ଉଚ୍ଚାରଣ)—୧ । ଚୋବାଇବାର
Chabya ଯୋଗ୍ୟ—Chewable.

[ଦ୍ର—ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ, ସ୍ଥାନରେ କେହି କେହି ଲେଖକ 'ଚବ୍ୟ' ବ୍ୟବହାର କରିବାର ଦେଖାଯାଏ । ]

ସଂ. ବି—୧ । ଚଇଁକାଠ (ଦେଖ)
1. A medicinal creeper; piper chaba
୨ । କପାଗଛ—2. The cotton plant (M.W.)

ଚବ୍ୟକାଷ୍ଠ—ସଂ. ବି.—ଚଇଁକାଠ (ଦେଖ)
Chabyakāshṭha A piper chaba.

ଚବ୍ୟଜା—ସଂ. ବି—ଗଜପିପ୍ପଳୀ—
Chabyajā Scinapsus officinalis (fruit).
(ଚବ୍ୟଫଳ—ଅନ୍ୟରୂପ)

ଚବ୍ରା—ପ୍ରାଦେ. (ସମ୍ବଲପୁର) ବିଣ—(ଯେ ଚୋବେ)—୧ । ହିଂସ୍ର—
Chabrā 1. Destructive; malicious; injurious
୨ । କାମୁଡ଼ା—2. Currish; given to biting.

ଚମ୍ (ଧାତୁ)—ସଂ. ୧ । ଭକ୍ଷଣ କରିବା—1. To eat.
Cham (root) ୨ । ଗମନ କରିବା—2. To go
୩ । ଧ୍ୱଂସ କରିବା—3. To destroy.

ଚମ୍—ପ୍ରାଦେ. (ସମ୍ବଲପୁର) ବି—(ସଂ. ଚର୍ମ)—ଚମ—
Cham Skin.

ଚମ୍‌ଚଟା—ପ୍ରାଦେ· (ସମ୍ବଲପୁର) ବି. (ସଂ. ଚର୍ମଚଟକା)—
Chamchaṭā ଚର୍ମିଣି ଚଢ଼େଇ; ଚମଚଟା—Small bat.

ଚମ୍‌ଚମ୍—ଦେ. ବି. (ସଂ. ଚମଧାତୁ=ଖାଇବା)—ଚିନି ରସରେ ପାକ
Chamcham ହୋଇଥିବା ଦୁଧଛେନାର ଏକପ୍ରକାର ମିଷ୍ଟାନ୍ନ—
ଚମଚମ A kind of sweetmeat.
**चमचम**

ଚମ୍‌ଡୁଲା—ପ୍ରାଦେ. (ସମ୍ବଲପୁର) ବି. ( ସଂ. ଚର୍ମ ଓ ଦଳ ଧାତୁ )—
Chamdulā ଚମଦଲା—A kind of itches.

ଚମ—ଦେ. ବି. ( ସଂ. ଚର୍ମ; ପ୍ରା. ଚମ୍ମ, ଚମ୍ମ )—
Chama ୧ । ଜୀବଦେହର ଚର୍ମ; ଜୀବଦେହର ମାଂସ; ଶିରା
ଚାମଡ଼ା, ଚାମ ଓ ହାଡ଼କୁ ଘୋଡ଼ାଇଥିବା ପତଳା ଆବରଣ—
**चाम** 1. Skin.

ଚମ ବେଢ଼ିଛି ଶିରା ଚଉଦିଗେ । ମନବୋଧ ଚଉତିଶା ।

୨ । ଖୋଲ; ଚମଡ଼ା—2. Hide.

ଗୋରୁ ଚମ ଭୁଷି ଯେ ଢାହାଳ ବେନି ଦାନ୍ତ । ବଳରାମ. ରାମାୟଣ ।

୩ । ପରିଷ୍କୃତ ଚମଡ଼ା—3. Leather.
୪ । ମଳଚମ—4. A very thin layer of skin on the body.
୫ । ଭଣ୍ଡାରିଙ୍କ ଚଟପଟି—5. Barber's strop.

ଚମଉକୁଣି—ଦେ. ବି. ( ଚର୍ମ+ଉକୁଣ )—
Chamaukuṇi ଦେହ, ଚର୍ମ ଓ ଆଖି ପତା ପ୍ରଭୃତି ସ୍ଥାନର କେଶରେ
ଚାମଉକୁନ୍ ଜାତ ଉକୁଣିଆ ପୋକବିଶେଷ—
**चमोकन, चमजूँ** Skin-louse; louse-mite; crab-louse; morpion; Pediculus pubies.

ଚମଉକୁଣିଆଁ—ଦେ. ବିଣ. (ଲକ୍ଷଣାର୍ଥ)—ଚମ ଉକୁଣି ଚମରେ ଲାଗିଲା
Chamaukuṇiāṅ ପରି ଯେ କୌଣସି ବିଷୟରେ ଜଗର କରି ଲାଗି
**चिमड़ी** ରହେ ଓ ସହଜରେ ଛାଡ଼େ ନାହିଁ—
( figurative ) Tenaciously sticking to a thing ( like skin louse )

[ ଦ୍ର—ବଙ୍ଗଳାରେ ଓ ହିନ୍ଦୀରେ 'ନାଛୋଡ଼ବନ୍ଦା' ଯେଉଁ ଅର୍ଥରେ ବ୍ୟବହୃତ ହୁଏ ଓଡ଼ିଆରେ 'ଚମଉକୁଣିଆଁ', 'ଚେମେରଚଟୁ' ସେହି ଅର୍ଥରେ ବ୍ୟବହୃତ ହୁଏ । ତହିଁରେ ମଧ୍ୟ ଚମଜଇ ବ୍ୟବହୃତ ହୁଏ । ]

ଚମକ—ଦେ. ବି. ( ସଂ. ଚମତ୍କାର; ପ୍ରା. ଚମକ୍କ; ଚିଁବିଁକ )—
Chamaka ୧ । ହଠାତ୍ ଉପସ୍ଥିତ କ୍ଷଣିକ ଭୟ; ଛନକା; ଚମକ
ଚମକ ପଡ଼ିବା—1. Panic; alarm; mincing
**चौंक** through sudden fright; alarm.

ବିଦ୍ୟୁ କରପଦ ପୁରେ ଚମକ ପଡ଼ିଲା । ଶିଶୁଶଙ୍କର. ଉଷାଅଭିଳାଷ ।

୨ । ବିସ୍ମୟ—2. Astonishment.

ଚମକ ଚକିତ ହିଦ ଯା
ହା ୱ ସେବେନ ମିଶାମିଶି । ଭୂପତି ପ୍ରେମପଞ୍ଚାମୃତ ।

ଚମକ ୩ । ( ବିଦ୍ୟୁତ ଆଦିର ) ହଠାତ୍ ପ୍ରକାଶିତ କ୍ଷଣିକ ଆଲୋକ;
**चमक** ଝଟକ—3. A flashing light; flash; glitter.
୪ । ହଠାତ୍ ଭୟଜନିତ ଛାତିର କମ୍ପନ ବା ସ୍ପନ୍ଦନ—
4. Palpitation of the heart ( due to fright )

ଛଠେ ଗାଙ୍ଗରେ ଚମକ ଶତ ଶତ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍ଗୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୫ । ଚକଚକ୍ୟ; ଝଟକ—5. Glitter.

ବିଣ—୧ । ଅସ୍ଥିର, ଛନକା—
1. Wincing; suddenly frightened.

୨ । ଯାହା ହଠାତ୍ ଭୟ ଜନ୍ମାଏ—
2. Frightening; frightful; alarming

ବାଦ୍ୟ ଶବଦର ଗମକ ଚମକ ଦାନବେନ୍ଦ୍ର ଦାନ କରଣ ।
ଭଞ୍ଜ, ବୈଦେହୀଶବିଳାସ ।

୩ । ଚକମକ କରୁଥିବା—3. Glittering; flashing.

**ଚମକ ଛଡ଼ାଇବା**—ଦେ. କ୍ରି—ଚମକ ଭାଙ୍ଗିବା ( ଦେଖ )
Chamaka chhardāibā Chamaka bhāngibā ( See )

**ଚମକଛିଣ୍ଡାଳ**—ଦେ. ବିଣ. ସ୍ତ୍ରୀ. ( ଗାଳିବିଶେଷ )—
Chamakachhindāla
चमकचाँन्दनी
चुपछिनाल
(ଚମକଛିଣ୍ଡାଳୀ—ଅନ୍ୟରୂପ)
୧ । ଯେ ଜାଣି ଶୁଣି ପର ପୁରୁଷ ସଙ୍ଗେ ପାପପ୍ରଣୟ କରୁଥାଏ ଅଥଚ ମଝିରେ ମଝିରେ କେହି ମୁରବୀ ଲୋକ ଆସିବା ବା ଧରା ପଡ଼ିବା ଭୟର ବାହାନା କରି ଚମକି ପଡ଼ୁଥାଏ—
1. A flirt; a term of abuse applied to a cunning and loose flirt.

୨ । ଯେଉଁ ଦୁଶ୍ଚରିତ୍ରା ସ୍ତ୍ରୀ ଖୁବ ଆଡ଼ମ୍ବରରେ ଥାଏ—
2. A gaudy adulteress.

୩ । ଗୁପ୍ତ ବ୍ୟଭିଚାରିଣୀ ସ୍ତ୍ରୀ—3. An adulteress who plies her trade secretly.

**ଚମକଡ଼ା**—ଦେ. ବି—ଗୋଡ଼ ଓ ଗୋଇଠିତଳପାରୁ ମଳଚମ ଚାଞ୍ଛି
Chamakardhā
चामकाटा
चमछिलनी
ନେବାର ନହୁରୁଣୀ—An instrument used by barbers to scrape off the redundant layers of skin from the heels.

[ ଦ୍ର—ଆମ ଦେଶର ସ୍ତ୍ରୀଲୋକମାନେ ବହୁତ ଚାଲବୁଲ ନ କରିବାରୁ ସେମାନଙ୍କ ତଳପାରେ ମଳଚମ ଜନ୍ମେ । ଭଣ୍ଡାରୁଣୀମାନେ ତଳପାକୁ ପାଣିରେ ବତୁରାଇ ମଳଚମ ଫଦ୍ଲା ଗଲାରୁ ଚମକଡ଼ାରେ ତାକୁ ଚାଞ୍ଛି ଦେଇ ତା ଉପରେ ଅଳତା ଦିଅନ୍ତି । ]

**ଚମକଦମକ**—ଦେ, ବି. (ସହଚର)—ଚକଚକ୍ୟ; ଉଜ୍ଜ୍ୱଳତା; ଦୀପ୍ତି—
Chamakadamaka
चमकदमक
चमकदमक
Glitter; splendour.
( ଯଥା—ତା ଚମକଦମକ ଦେଖି ମୁଁ ତ ଆଶ୍ଚର୍ଯ୍ୟ ହୋଇଗଲି । )

**ଚମକଦାର**— ଦେ. ବିଣ—ଚକଚକିଆ—
Chamakadāra
चमकदार
चमकदार
Glittering; dazzling.

**ଚମକଧମକ**—ଦେ. ବି—ଧମକଚମକ; ଧମକାଧମକି—
Chamakadhamaka
धमकचमक
Threats; threatenings.

**ଚମକ ପଡ଼ିବା**—ଦେ. ବି—ଶୁଣିବା ଲୋକ ମନରେ ଛନକା ବା କମ୍ପ
Chamaka pardibā
चमकआसा
चौंकआना
ଉପସ୍ଥିତ ହେବା—Being frightened or startled.

ନୋହିଲେ ଚମକ ଭୂମ କାମେ ଏତେ ପଡେ
ମେରୁମନ୍ଦର ଯେ ଭଜିସିବ ତୋର ଦାଢ଼େ—ପୀତାମ୍ବର. ନୃସିଂହପୁରାଣ

**ଚମକ ପଶିବା**—ଦେ. ବି—ମନରେ ହଠାତ୍ ଉପସ୍ଥିତ ଭୟର ସ୍ଥାୟୀ
Chamaka paśibā
चमकटुका
ରହିଯିବା— Lingering of wincing sensation in the mind.

**ଚମକ ଭଙ୍ଗାଇବା**—ଦେ. କ୍ରି—ଚମକ ଭାଙ୍ଗିବା ( ଦେଖ )
Chamaka bhangāibā Chamaka bhāngibā (See).
चमकभाङ्गान
चमकतोड़ना

**ଚମକ ଭାଙ୍ଗିବା**—ଦେ. କ୍ରି—୧ । ଯୁଦ୍ଧସ୍ଥଳାଦିକୁ ମନୁଷ୍ୟ ବା ଘୋଡ଼ା
Chamaka bhāngibā
चमकभाङ्गान
चौंकतोड़ना
ଆଦିକୁ ନେଇ ସେମାନଙ୍କ ମନରୁ ହଠାତ୍ ଛନକା ହେବା ଖୋଇକୁ ଛଡ଼ାଇବା; ଅଭ୍ୟାସ-ଦ୍ୱାରା ମନରୁ ହଠାତ୍ ଭୟ ଛଡ଼ାଇବା—
1. To make a man or animal invulnerable against wincing by constantly habituating him to frightening scenes.

୨ । ଭୟ ଦୂର କରାଇବା—2. To remove fear,

**ଚମକରେ**—ଦେ. କ୍ରି. ବିଣ—ଝଟକରେ; ଆଡ଼ମ୍ବରରେ—
By the splendour of.

କଥା ଚମକରେ ଚମକଇ ମଣ୍ଟି ରହେ ସିନା କ୍ଷଣ ମାତର—
ଭକ୍ତଚରଣ. ଗୀତଲହରୀ ।

**ଚମକ ଲାଗିବା**—ଦେ. ବି—ଚମକ ପଶିବା ( ଦେଖ )
Chamaka lāgibā Chamaka paśibā ( See ).

**ଚମକା**—ଦେ. ବି—ମନରେ ହଠାତ୍ ଭୟ ବା ଛନକା ପଶିବା—
Chamakā
चमका
चौंका
Wincing.

चमकिया ଦେ. ବିଣ. ପୁଂ ଓ ସ୍ତ୍ରୀ—ଯେ ହଠାତ୍ ଚମକିଉଠେ;
चौंकना
ଛନକା—Wincing; timid.
( ଯଥା— ଚମକା ଘୋଡ଼ା । )

**ଚମକାଇବା**—ଦେ. କ୍ରି. ( ସଂ. ଚମତ୍କୃତ; ପ୍ରା. ଚଁମକ୍କ; ଚମକିବାର ଣିଜନ୍ତ
Chamakāibā
चमकाना
चौंकाना
(ଚମକେଇବା—ଅନ୍ୟରୂପ)
ରୂପ )—୧ । ଭୟ ଦେଖାଇବା; ଡରାଇବା—
1. To frighten.

ମିଛ ନୋହେ ସ୍ୱଚ୍ଛ ସେ ଶ୍ଳୋକ ଯୋଗେ ଯୋଗେନ୍ଦ୍ରଙ୍କୁ ଚମକାଇବ—
ଭଞ୍ଜ. ପ୍ରେମସୁଧାନିଧି ।

୨ । ଅସ୍ତ୍ରଆଦିର ଉଜ୍ଜ୍ୱଳଫଳାକୁ ଇତସ୍ତତଃ ସଞ୍ଚାଳିତ କରିବା ଝଟକାଇବା—
2. To cause to glitter; to flash ( bright bladed weapons ).

| ୧ | ଇ | ଉ | ଋ,ଋ | ଌ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍ଷ | ଇଯ୍ | ଉଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଡ଼ | ନ୍ତ |

ଏଇ ଦେଖ ସୈନ୍ୟଗଣମାନେ ଅସ୍ତ୍ରଗୁଡାକ ଚମକାଇ କରନ୍ତି ଅଗ୍ନି ତପ୍ତ
ଅନାଭଅବନ୍ତୁ—ମଧୁସୂଦନ. ଉତ୍ତରରାମଚରିତ ।

चमकाना ୩ । ଚକଚକିଆ ପୋଷାକ ଦେଖାଇବା—
3. To parade one's dress.

୪ । ଇତସ୍ତତଃ ସଞ୍ଚାଳିତ କରାଇବା—
4. To cause to move to and fro.
ଭାବ ଅନୁରୂପ କର୍ମ ଚମକାଏ ଶିଖାବନ୍ଧନ ମସ୍ତକେ—
ମଧୁସୂଦନ. ଉତ୍ତରରାମଚରିତ ।

ଚମକାଣ—ଦେ. ବି—୧ । ଚମକାଇବା କର୍ମ—
Chamakāṇa 1. Act of causing to flash.
চমকানি ୨ । ଚମକ ( ଦେଖ )—2. Chamaka ( See )

ଚମକ ଉଠିବା—ଦେ. କ୍ରି—ଚମକ ପଡ଼ିବା ( ଦେଖ )
Chamaki uṭhibā Chamaki paṛdibā ( See )
চমকেউঠা
चौँकउठना

ଚମକିତ—ଦେ. ( ପଦ୍ୟ ) ବିଣ. ( ସଂ. ଚମତ୍କୃତ )—ହଠାତ୍ ବିସ୍ମିତ—
Chamakita Suddenly frightened; alarmed.

ଚମକ ପଡ଼ିବା—ଦେ. କ୍ରି. ( ସଂ. ଚମତ୍; ଚମତ୍କାର )—
Chamaki paṛdibā ୧ । ହଠାତ୍ ଛନକିଆଁ ହେବା—
চমকেউঠা 1. To wince; to be startled; to take a sudden fright.
चौँकपड़ना

୨ । ଭୟତ୍ରସ୍ତ ହେବା; ( ଲକ୍ଷ ) ଧଡ଼ଫଡ଼ କରିବା—
2. To be alarmed.
୩ । କମ୍ପିବା—3. To tremble.
୪ । ଭୟତ୍ରସ୍ତ ହେବାରୁ କମ୍ପିତ ହେବା—
4. To shake in fear.

ଚମକିବା—ଦେ. କ୍ରି. ( ସଂ. ଚମତ୍କୃତ; ପ୍ରା. ଚମଁକ୍କି )—
Chamakibā ୧ । ହଠାତ୍ ଦୂରକୁ ଖରବେଗରେ ଗତି କରିବା—
চমকা 1. To shoot forth; to shoot out.
चमचमाना; चमकना ବଜ୍ରକୁ ପଶ୍ଚେ ବାଣ ଚମକେ ଗଗନେ—
ମଧୁସୂଦନ. ବର୍ଣ୍ଣବୋଧ ।

୨ । ( ଶସ୍ତ୍ରାଦି ) ଇତସ୍ତତ ସଞ୍ଚାଳିତ ହେବା—
2. To be marshalled or moved to and fro ( weapons ).
ସଂଗ୍ରାମପ୍ରାଙ୍ଗଣେ ଧୂଳିପଟଳ ମଧ୍ୟରେ
ସୈନିକଙ୍କ କ୍ଷିପ୍ରଜାଳ ଚମକଇ ଶରେ—ମଧୁସୂଦନ. ଉତ୍ତରରାମଚରିତ ।

୩ । ଝଟକିବା —3. To flash; to glitter.

चौंकना; चौंधना ୪ । ଭୟ ଯୋଗୁଁ ( ଲକ୍ଷ ) ଧଡ଼ଫଡ଼ କରିବା—
4. To palpitate; to throb.
ଚମକି ତ ନାହିଁ ମୋର ଛାତି—କବିସୂର୍ଯ୍ୟ. ଉଣୋଇଶ ଚମ୍ପୂ. ଚ ଗୀତ ।

୫ । ଚମକ ଉଠିବା; ହଠାତ୍ ଭୟରେ ଛନକିଆଁ ହେବା—
5. To be startled; to wince.
୬ । କମ୍ପିବା—6. To tremble.

କଟା ଚମକରେ ଚମକଇ ନାହିଁ ରହେ ବିନା ଷଣମାତର—
ରାଧାନାଥ. ଗୀତାଭିଧାନ ।

୭ । ଭୟରେ କମ୍ପିବା—
7. To tremble through fear.
କୋକିଳ ବଚନ ଶୁଣି ଚମକଇ ଦେହ—ପ୍ରାଚୀ. ଶିଶୁଶଙ୍କର ଭ୍ରଷାଭିଳାଷ

[ ଦ୍ର—ଚମକିବାର ଅସମାପିକା ରୂପ ସଙ୍ଗେ ଉଠିବା, ପଡ଼ିବା, ଯିବା କ୍ରିୟା ଲାଗେ । ]

ଚମଚ—ଦେ. ବି. ( ସଂ. ଚମସ; ପା. ଚମଚ୍ )—ଚାମଚ; ଧାତୁନିର୍ମିତ
Chamacha କ୍ଷୁଦ୍ର ଅଣିକ—Spoon.
চামচ
चमचा

ଚମଚଟା—ଦେ. ବି. ( ସଂ. ଚର୍ମଚଟିକା )—୧ । ଚେମିଣି ଚଢ଼ାଇ—
Chamachaṭā 1. House bats, small bat.
চামচিকা ଚମିରକୁ ଦେଖି ବଜନ୍ତି ବଜନେ ପକ୍ଷବାଟେ ଚମଚଟା—
चमचिचड़ ରାଧାନାଥ. ପାର୍ବତୀ ।

ଚମଚଟିଆ
ଚମଚଟୁଆ
ଚମଚିଟା
ଚମଚଟାଳ
} ଅନ୍ୟରୂପ

୨ । ( ଲକ୍ଷଣାର୍ଥ ) ଚେମିଣି ଭଳିଆ ସାଙ୍ଗରେ ଲାଗିବା—2. Pertinacity.

ଦେ. ବିଣ—୧ । ଯେ କୌଣସି କାର୍ଯ୍ୟରେ ଜିଦ୍ ଧରି ଲାଗି ରହୁଥାଏ—ନୋଛୋଡ଼ବନ୍ଦା; 1. Pertinacious.'
୨ । ଏକଗୁଣ୍ଡିଆ; ଏକଜିଦିଆ—
2. Stubborn; obbstinate
୩ । ଅକ୍ଳାନ୍ତ—3. Untired.

ଚମଚୋର—ଦେ. ବିଣ. ପୁଂ ( ସଂ. ଚର୍ମ+ଚୌର )—
Chamachora ୧ । ଗୁପ୍ତ ପ୍ରଣୟକାରୀ—
লোচ্চা 1 Mixing in love intrigues.
वजिनाकार, ୨ । ପର ସ୍ତ୍ରୀ ସଙ୍ଗେ ଆସକ୍ତ; ଲମ୍ପଟ—
चामचोर 2. Adulterous.

ଚମଚୋରି—ଦେ. ବି. ( ସଂ. ଚର୍ମ+ଚୌର୍ଯ୍ୟ )—
Chamachori ୧ । ଲମ୍ପଟ୍ୟ; ପରସ୍ତ୍ରୀହରଣ—
লোচ্চামী 1. Adultry.
चामचोरी ୨ । ଗୁପ୍ତପ୍ରୀତି—2 Macking illicit or secret love; love intrigues.

ଚମଡ଼—ଦେ. ବିଣ—ଚେମଡ଼ ( ଦେଖ )
Chamarḍa Chemarḍa ( See )

ଚମଡ଼ଚଟା—ଦେ. ବି ଓ ବିଣ—ଚମଚଟା ( ଦେଖ )
Chamarḍachaṭā Chamachaṭā ( See )

ଚମଡ଼ଚଟି
ଚମଡ଼ଚଟିଆ
ଚମଡ଼ଚଟୁ
ଚମଡ଼ଚଟୁଆ
} ଅନ୍ୟରୂପ

ସାଧାରଣ ଲେଖେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚମଡ଼ା**—ଦେ. ବି. ( ସଂ. ଚର୍ମ )— ୧ । ଶରୀରର ଚର୍ମ—1. Skin
Chamarḍā ୨ । ଖଲ—2. Hide.
চামড়া ୩ । ମସଲାଦ୍ୱାରା କଷୁରୁ ହୋଇ ରଙ୍ଗ ଓ ପାଲିସ
**चमड़ा** ହୋଇଥିବା ଚର୍ମ—2. Leather.

**ଚମଡ଼ା ଉତାରିବା**—ଦେ. କ୍ରି. ( ସଂ. ଚର୍ମ+ଉତ୍ତରଣ )—
Chamarḍā utāribā ୧ । ଜୀବ ଦେହରୁ ଚମଡ଼ାକୁ ବାହାର
চামড়া উতরান କରିବା; ଖଲ ଉତାରିବା—
**चमड़ा उधेड़ना** 1. To flay
୨ । ( ଲକ୍ଷଣାର୍ଥ ) ବିଶେଷ ପ୍ରହାର କରିବା—
2 To give a sound thrashing.

**ଚମଡ଼ା କଶିବା**—ଦେ. କ୍ରି—ଚମଡ଼ାକୁ ମସଲାପାଣିଦ୍ୱାରା ନରମ କରିବା-
Chamarḍā kaśibā To tan leather.
চমড়া কাষা
**चमड़ा सिझाना**

**ଚମଡ଼ାଛାଆଣି**—ଦେ. ବି—ଢୋଲ ଆଦିର ମୁହଁରେ ଚମ ଆବୃତ କରିବା-
Chamarḍā chhāāṇi Covering or binding a drum with leather.
ଚମଡ଼ାଛୁଆଣ } ଅନ୍ୟରୂପ
ଚମଡ଼ାଛୁଆଣି }
ଦେ. ବିଣ—ଉପରେ ଚମଡ଼ା ପଡ଼ିଥିବା; ଚର୍ମାବୃତ—
Hide-bound; having the mouth or surface covered with leather.

**ଚମତ୍**—ସଂ. ଅ. ( ଚମ୍ ଧାତୁ=ଚମକି ପଡ଼ିବା+କର୍ତ୍ତୃ. ଅତ୍ )—
Chamat ଚମକିବା—Wincing.
[ ଦ୍ର—ଏ ଶବ୍ଦର ସ୍ୱତନ୍ତ୍ର ବ୍ୟବହାର ଓଡ଼ିଆ ଭାଷାରେ ନାହିଁ ।]

**ଚମତ୍କରଣ**—ସଂ. ବି. ( ଚମତ୍=ଆଶ୍ଚର୍ଯ୍ୟବୋଧ+କୃ ଧାତୁ+ଭାବ. Chamatkaraṇa ଅନ )—୧ । ହଠାତ୍ ଆଶ୍ଚର୍ଯ୍ୟ କରିବା; ଆଶ୍ଚର୍ଯ୍ୟ ବୋଧ ଜନ୍ମାଇବା, ଛନଆଁ କରିବା—
1. Astonishing; surprising; alarming
୨ । ଆଶ୍ଚର୍ଯ୍ୟବୋଧ—2. Astonishment.
୩ । ଉତ୍ସବ—3. Festival.
୪ । ଉଚ୍ଚ ଧରଣର ପଦ୍ୟ ରଚନା—
4. High poetical composition

**ଚମତ୍କାର**—ସଂ. ବି. ( ଚମତ୍+କୃ ଧାତୁ+ଭାବ. ଅ )—
Chamatkāra ୧ । ଆଶ୍ଚର୍ଯ୍ୟ; ବିସ୍ମୟ—1. Astonishment; surprize; amazement.
ଏହମନ୍ତ ଶୁଣି ଲଭିଲେ ଚମତ୍କାର । କୃଷ୍ଣସିଂ. ମହାଭାରତ. ବନ ।
୨ । ଅନିର୍ବଚନୀୟ ଆନନ୍ଦ—2. Exquisite; pleasure.
୩ । ମଉଜ ମଜଲିସ—
3 Festive turbulance ( M. W. )
୪ । ଆଡ଼ମ୍ବର—4. Show ( M. W. )
୫ । ଉଚ୍ଚ ଧରଣର ପଦ୍ୟରଚନା—
5. High poetical composition ( M. W. )
୬ । ବୃକ୍ଷବିଶେଷ—
6. Achyranthes Aspera tree ( M. W. )
୭ । ଆଶ୍ଚର୍ଯ୍ୟଜନକ ବିଷୟ ( ହି. ଶବ୍ଦସାଗର )—
7. Wonderful thing.
୮ । ଅଲୌକିକ ବା ଅସାଧାରଣ ବିଷୟ (ହି. ଶବ୍ଦସାଗର)—
8. Extraordinary thing.
ଦେ. ବିଣ — ୧ । ଆଶ୍ଚର୍ଯ୍ୟଜନକ—
1. Wonderful; surprizing; imazing
ସେ କଥା ଚମତ୍କାର ହେଲା ଏ ଲୋକର । କୃଷ୍ଣସିଂ. ମହାଭାରତ. ବନ ।
୨ । ଆନନ୍ଦଦାୟକ—2. Charming.
୩ । ଉତ୍କୃଷ୍ଟ—3. Excelent; capital.
୪ । ଆଶ୍ଚର୍ଯ୍ୟାନ୍ୱିତ—
4. Amazed; wondering; surprised.
ତୁମ୍ଭ କଥା ଶୁଣି ମୁଁ ଚମତ୍କାର ହୁଏଁ । କୃଷ୍ଣସିଂ. ମହାଭାରତ. ବନ ।

**ଚମତ୍କାରକ**—ସଂ. ବିଣ. ( ଚମତ୍+କୃ ଧାତୁ+କର୍ତ୍ତୃ. ଅକ )—
Chamatkāraka ୧ । ଆଶ୍ଚର୍ଯ୍ୟ ଉତ୍ପାଦନକାରୀ; ବିସ୍ମୟକର—
(ଚମତ୍କାରିକା—ସ୍ତ୍ରୀ) 1. Astonishing; wonderful.
(ଚମତ୍କାରୀ—ଅନ୍ୟରୂପ) ୨ । ଅତ୍ୟନ୍ତ ସୁନ୍ଦର—
2. Very beautiful.
୩ । ମନୋମୋହକର—3. Captivating; charming.

**ଚମତ୍କାର ପାଇବା**—ଦେ. କ୍ରି—୧ । ଆଶ୍ଚର୍ଯ୍ୟ ବୋଧ ହେବା—
Chamatkāra pāibā 1. To seem wonderful
ଏ କଥା ମୋ ମନକୁ ବଡ଼ ଚମତ୍କାର
ପାଉଛି କହ ଆହେ ତପୋଧନବର । କୃଷ୍ଣସିଂ, ମହାଭାରତ. ବନ ।
୨ । ଆଶ୍ଚର୍ଯ୍ୟାନ୍ୱିତ ହେବା—2. To be surprised.
ତା ଶୁଣି ଅରଜୁନ ପାଇଲେ ଚମତ୍କାର । କୃଷ୍ଣସିଂ. ମହାଭାରତ ବନ ।

**ଚମତ୍କାରିତ**—ସଂ. ବିଣ. ପୁଂ. ( ଚମତ୍କାର+ଇତ )—ଚମତ୍କୃତ—
Chamatkārita Astonished (M. W,)
(ଚମତ୍କାରିତା—ସ୍ତ୍ରୀ)

**ଚମତ୍କାରିତା**—ସଂ. ବି. (ଚମତ୍କାରିନ୍+ତା)—୧ । ବିସ୍ମୟକରତ୍ୱ—
Chamatkāritā 1. Wonderfulness.
(ଚମତ୍କାରିତ୍ୱ—ଅନ୍ୟରୂପ) ୨ । ମୁଗ୍ଧକାରିତା—
2. Charm; beauty.

**ଚମତ୍କାରୀ**—ସଂ. ବିଣ. ପୁଂ. ( ଚମତ୍କାର+ଇନ୍ ୧ମା. ୧ବ. )—
Chamatkārī ଚମତ୍କାରକ ( ଦେଖ )
(ଚମତ୍କାରିଣୀ—ସ୍ତ୍ରୀ) Chamatkāraka (See)

**ଚମତ୍କୃତ**—ସଂ ବିଣ. ପୁଂ ( ଚମତ୍+କୃ ଧାତୁ+କର୍ମ. ତ )—
Chamatkṛuta ୧ । ଆଶ୍ଚର୍ଯ୍ୟାନ୍ୱିତ; ବିସ୍ମିତ—
(ଚମତ୍କୃତା—ସ୍ତ୍ରୀ) 1. Surprised; astonished.
(ଚମତ୍କୃତ—ବି) ୨ । ବିମୁଗ୍ଧ—2. Captivated; charmed.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଅୁ | ଉଅ | ଘ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଜ୍ଞ୍ୟ | ଇଅ | ଡ଼ | ହ୍ମ |

ଚମଦଉଡ଼ି—ଦେ. ବି—ଚର୍ମରଜ୍ଜୁ; ଚମଡ଼ାରୁ ବାହାରିଥିବା ଦଉଡ଼ି;
Chamadaurdi ଚମଡ଼ାର ତନ୍ତୁରେ ବଳାଯାଇଥିବା ଦଉଡ଼ି—
চামদড়ি Leathern string or strap; leathern thong.
चमड़ाकी रस्सि

ଚମଦଳା—ଦେ. ବି ( ସଂ. ଚର୍ମ ଓ ଦଳ ଧାତୁ )—
Chamadaḷā କୁଣ୍ଡିଆ ରୋଗବିଶେଷ—
A kind of itching eruption.

ଚମବାଇଦ—ଦେ. ବି. ( ସଂ. ଚର୍ମ ଓ ବାଦ୍ୟ )—
Chamabāida ଚମଡ଼ାଛାଉଣି ବାଦ୍ୟ; ଆନଦ୍ଧ ବାଦ୍ୟ; ଢୋଲ—
Drum covered with skin.

ଚମବାଇଦ କୋଶେ; ଭୁଣବାଇଦ ସହସ୍ର କୋଶ । ଢଗ ।

ଚମମୁଠିଆ (ଭଣ୍ଡାରୀ)—ଦେ ବି—ଉଚ୍ଚ ଶ୍ରେଣୀର ଭଣ୍ଡାରୀ ଜାତି—
Chamamuṭhiā A high class barber.
[ ଦ୍ର—ଏମାନେ ଛେଲଚମର ମୁଠିରେ ଖୁର ଆଦି ରଖି ଉକ୍ତ ମୁଠିକୁ ସାଙ୍ଗେ ସାଙ୍ଗେ ଧେନି ବୁଲନ୍ତି । ଅନ୍ୟ ଶ୍ରେଣୀର କନାମୁଠିଆ ଭଣ୍ଡାରମାନେ ନିମ୍ନତର ଶ୍ରେଣୀର, ଏମାନେ କନାର ମୁଠିରେ ଖୁର ଆଦି ରଖନ୍ତି । ନିମ୍ନ ଶ୍ରେଣୀକୁ ହାଣ୍ଡୁଆ ଭଣ୍ଡାର ବୋଲାଯାଏ । ]

ଚମମୁଣା—ଦେ. ବି—ଚର୍ମନିର୍ମିତ ବଡ଼ ଥଳୀ—
Chamamuṇā Leather bag.
চামড়ার থলী
चमड़ाका थैला

ଚମର—ସଂ. ବି. ( ଚମ୍ + ଧାତୁ = ଗତି କରିବା + କର୍ତ୍ତୃ. ଅର )—
Chamara ୧ । ଚାମର ( ଦେଖ )
(ଚମରୀ—ସ୍ତ୍ରୀ) 1. Chāmara ( See )

କଙ୍କଳ ଚମର, ପ୍ରତ୍ୟକ୍ଷ ପରକଟ ଚରମର । ଭଞ୍ଜ ପ୍ରେମସୁଧାନିଧି ।

୨ । ଚମରମୃଗ; ମୃଗବିଶେଷ—2. A kind of deer.
୩ । ଅଣ୍ଡିରା ଚମରୀ ଗୋ —3. The yak.
୪ । ଦୈତ୍ୟବିଶେଷ —4 Name of a demon

ଚମରଚଟା—ଦେ. ବି ଓ ବିଣ—ଚମଚଟା (ଦେଖ)
Chamarachaṭā Chamachaṭā (See)

ଚମରଚଟୁ
ଚମରଚଟୁଆ
ଚମରଚଟା
ଚମରଚଟାଳ
} ଅନ୍ୟରୂପ

ଚମରମୃଗ—ସଂ. ବି—ଚାମର ପରି ପୁଚ୍ଛଯୁକ୍ତ ଏକପ୍ରକାର ମୃଗ—
Chamaramṛuga A kind of deer with bushy tail.

ଚମରୀ—ସଂ. ବି.—(ଚମର + ଈ)—କପିଲା ଗାଈ—
Chamarī The female yak
सुरगाया, सुरागाय [ ଦ୍ର—ଏ ଗାଈ ହିମାଳୟ ଅଞ୍ଚଳ ଓ ତିବ୍ବତରେ ମିଳନ୍ତି । ଏହାଙ୍କ ଲାଙ୍ଗୁଡ଼ରେ ଗୋଛାଏ ବାଳ ଥାଏ । ଏହି ବାଳରେ ଚାମର ହୁଏ । ଏହାଙ୍କ ଦେହରୁ ମଧ୍ୟ ଲମ୍ବ ଲୋମମାନ ଓହୋଳିଥାଏ ।]

ଚମରୀ ଗୋ—ସଂ. ବି. ସ୍ତ୍ରୀ.—ଚମରୀ (ଦେଖ)
Chamarī go Chamarī (See)

ଚମରୁ—ଦେ. ବି.—(ସଂ. ଚମରୀ)—ଚମରୀ ମୃଗ—
Chamaru The yak.

ପନ୍ନ ପନ୍ତ ଗତି ଗିରେ ପଗିରନ୍ତି ଚମରୁ ଭ୍ରମଇ କାହିଁ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଚମସ—ସଂ. ବି.—(ଚମ ଧାତୁ = ଭକ୍ଷଣ କରିବା + କରଣ. ଅ)—
Chamasa ୧ । କାଷ୍ଠର ଯଜ୍ଞପାତ୍ରବିଶେଷ— 1. A wooden spoon or bowl used in vedic sacrifice.
୨ । ଚାମଚ—2. Spoon.
୩ । କରଚୁଲି—3. Ladle.
୪ । (+କର୍ମ. ଅ) ଲଡ୍ଡୁ (ହି. ଶବ୍ଦସାଗର)—
4. A ball of sweetmeat.
୫ । ବିରିଅଟା; ବ୍ରୀହିଚୂର୍ଣ୍ଣ (ହି. ଶବ୍ଦସାଗର)—
5. The flour of phaseolus Brihi.
୬ । ପାପଡ଼ (ହି. ଶବ୍ଦସାଗର)—
6. A kind of flat cake made of corn-paste.

ଚମସୀ—ସଂ ବି. ସ୍ତ୍ରୀ.—୧ । ଶସ୍ୟଚୂର୍ଣ୍ଣନିର୍ମିତ ପିଠା—
Chamasi 1. A kind of cake made of corn flour.

ଚମାର—ଦେ. ବି. ପୁଂ.—(ସଂ. ଚର୍ମକାର ବା ଚର୍ମୀର; ପ୍ରା. ଚମାର)—
Chamāra ୧ । ତାଳଗଛ ଝାଡ଼ିବା ଓ ତାଳପତ୍ରରେ ଛାଟି,
চামার ବାଉଁସିଆ ଓ ଚୋକେଇ ଆଦି ପ୍ରସ୍ତୁତକାରୀ ଜାତି—
चमार 1. A caste dealing with palmleaf articles.
(ଚମାରୁଣୀ—ସ୍ତ୍ରୀ) [ ଦ୍ର—ବଙ୍ଗଳାରେ ହିନ୍ଦୀରେ ଚମାର ଶବ୍ଦ ମୋଚିଙ୍କୁ ବୁଝାଏ ।]
୨ । ଅତି ନୀଚକର୍ମୀ ବା ହୀନ ବ୍ୟକ୍ତି—
2. A very mean or low person.
ପ୍ରାଦେ. (ସମ୍ବଲପୁର ଓ ସିଂହଭୂମ) ବି.—ମୋଚି—
Cobbler.
ପ୍ରାଦେ. (ବାଲେଶ୍ୱର) ବି.—୧ । ଏକଜାତୀୟ ଅସ୍ପୃଶ୍ୟ ତନ୍ତୀ—
1 A class of untouchable weavers
୨ । ଏକଜାତୀୟ ବଢ଼େଇ—
2. A class of carpenters.

ଚମାରପ୍ରେତ—ଦେ. ବି.—(ଗାଳିବିଶେଷ)—ଚମାରଙ୍କ ପ୍ରେତକାର୍ଯ୍ୟରେ
Chamārapreta ପୌରୋହିତ୍ୟ କରିବା ନାହାକ ଜାତି—
A caste of astrologers who officiate as priests in the funeral ceremonies of chamāras.

ଚମାରୁଣୀ—ଦେ. ବି. ସ୍ତ୍ରୀ.—( ସଂ. ଚର୍ମକାରିଣୀ )—ଚମାରଜାତୀୟା ସ୍ତ୍ରୀ—
Chamāruṇī A female of the chamāra caste.
চামারনী
चमारनी, चमारिन, चमारी

ସାଧାରଣ ଲୋକେ ଅପର ପୃଷ୍ଠାରେ ଶୃଙ୍ଖଳିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଥ' ନ ମିଳିଲେ 'କୁଥ' ଦେଖିବେ; 'ବ୍‌ଧୂ' ନ ପାଇଲେ 'ବଧୂ' ଦେଖିବେ; 'ଆଁଖି' ନ ପାଇଲେ 'ଆଖି' ଦେଖିବେ; 'ଅଲବଟ' ନ ପାଇଲେ 'ଅଲବଟ୍' ଦେଖିବେ ।

ଚମିତ୍କାର—ଗ୍ରା. ବିଣ.—(ସଂ. ଚମତ୍କାର)—ଆଶ୍ଚର୍ଯ୍ୟଜନକ—
Chamitkāra Wonderful.

ଚମୀକର—ସଂ. ବି.—୧ । ସ୍ୱର୍ଣ୍ଣଖଣି—
Chamīkara Gold mine.
(ଯଥା—ଏଥିରୁ ଉତ୍ପନ୍ନ ହୁଏ ବୋଲି ସୁନାକୁ ଚାମୀକର କହନ୍ତି ।)

ଚମୁ—ପ୍ରାଦେ. ବି.—( ଗଞ୍ଜାମ ) ( ତୁଳ. ତେଲି. ,, ଚେମ୍ବୁ )—ଏକଜାତୀୟ
Chamu ପିତଳର ଛୋଟ ଗାଲ—Small brass water-jar used in the Madras Presidency.

ଚମୂ—ସଂ. ବି.—(ଚମ୍ ଧାତୁ=ଗଣ୍ଡ କରିବା+କର୍ତ୍ତୃ. ଉ)—
Chamū ୧ । ସେନାଦଳ—1. Army.
୨ । ୭୨୯ ହାତୀ, ୭୨୯ ରଥ, ୨୧୮୭ ଅଶ୍ୱାରୋହୀ; ୩୬୪୫ ପଦାତି, ଏମାନଙ୍କ ଦ୍ୱାରା ଗଠିତ ସେନା—2. A division of army consisting of 729; chariots; 729 elephants; 2187 cavalry and 3645 infantry.

ଚମୂଚର—ସଂ. ବି ( ଚମୂ+ଚର୍ ଧାତୁ କର୍ତ୍ତୃ ଅ )—
Chamūchara ୧ । ଯୋଦ୍ଧା; ସୈନିକ—Warrior; soldier.
୨ । ସେନାନାୟକ—2. A captain; commander of an army.

ଚମୂପତି—ସଂ. ବି (୬ଷ୍ଠୀ ତତ୍, ଚମୂ+ପତି)—ସେନାଧ୍ୟକ୍ଷ—
Chamūpati General; commander of an army.

ଚମୂପତିସିଂହ—ଦେ. ବି—ଚମ୍ପତିସିଂହ (ଦେଖ)
Chamūpatisimha Champati Simha (See).

ଚମୂରୁ—ସଂ. ବି ( ଚମ୍ ଧାତୁ=ଭକ୍ଷଣକରିବା+କର୍ମ ଉରୁ; ଯାହାକୁ
Chamūru ଭକ୍ଷଣ କରାଯାଏ)—ଏକପ୍ରକାର ମୃଗ ( ଏହାର ମାଂସ
ଚମୂରୁକ } ଅନ୍ୟରୂପ— ସୁଖାଦ୍ୟ)—A kind of deer whose
ଚମୂରୁ } venison is dainty.

ଚମେଲି—ଦେ.ବି (ସଂ. ଚମ୍ପକବେଲି; ଚମ୍ପେଲି)—ବୈଦ୍ୟକ ନିର୍ଘଣ୍ଟରେ
Chameli ଚମ୍ପେଲି ଶବ୍ଦ ବ୍ୟବହୃତ ହୋଇଅଛି )—
ଚାମେଲି ( ଦେଖ )
Chāmelī (See.

ଚମ୍ପ୍ (ଧାତୁ)—୧ । ଦୀପ୍ତି ପାଇବା—
Champ (root) 1 To glitter.
୨ । ଗମନ କରିବା—2. To go; to move.

ଚମ୍ପ—ସଂ. ବି (ନାମ)—ଚମ୍ପକନଗର ସ୍ଥାପୟିତା ରାଜାବିଶେଷ—
Champa Name of a king the founder of the town Champakapura.

ଚମ୍ପଉତି—ପ୍ରାଦେ (ଗଡ଼ଜାତ) ବି—ଚମ୍ପେଇତି ଅମ୍ବୁଲ (ଦେଖ)
Champauta Champaiti āmbula (See).

ଚମ୍ପକ—ସଂ. ବି ( ଚମ୍ପ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅକ )—
Champaka ୧ । ଚମ୍ପା ଫୁଲ ଓ ଗଛ—1. The Champaka flower and tree; Michelia Champaka.
[ଦ୍ରୁ—ଏହି ଫୁଲ ହେମବର୍ଣ୍ଣ ଓ ଉଗ୍ରଗନ୍ଧବିଶିଷ୍ଟ । ନାନାବର୍ଣ୍ଣର ଚମ୍ପକ ପୁଷ୍ପ ଦେଖାଯାଏ । ଯଥା—ନାଲିମିଶା ହଳଦିଆ, ଗାଢ଼ ହଳଦିଆ, ଫିକା ହଳଦିଆ ଓ ଧଳା । ମୂର୍ଖମାନେ 'ଚମ୍ପକ'କୁ 'ଚମ୍ପେକ' ବୋଲି ଉଚ୍ଚାରଣ କରନ୍ତି । କୌଣସି କୌଣସି ଓଡ଼ିଆ ପୁସ୍ତକରେ ମଧ୍ୟ ଏପରି ଲେଖାଥିବାର ଦେଖାଯାଏ ।]
୨ । ନଗରବିଶେଷ—
2. Name of a town in ancient India.
[ ଦ୍ରୁ—ଏହା ପୂର୍ବେ ଅଙ୍ଗ ଦେଶର ରାଜଧାନୀ ଥିଲା; କର୍ଣ୍ଣ ଏଥିର ରାଜା ଥିଲେ । ଆଧୁନିକ ଭାଗଲପୁରର ପାଖଆଖରେ ଏ ନଗରୀ ଥିଲା । ]
୩ । ଚମ୍ପାକଦଳୀ—
3. A kind of banana with sweet smell.
୪ । ଧ୍ୟାନଯୋଗସାଧ୍ୟ ସିଦ୍ଧିବିଶେଷ; ରମ୍ୟକସିଦ୍ଧି ( ହି ଶବ୍ଦସାଗର )—4 A kind of success in meditation.
୫ । ଦୀପକରାଗର ପୁତ୍ର; ରାଗବିଶେଷ (ହି. ଶବ୍ଦସାଗର)—
5. Name of a musical tune.
[ ଦ୍ରୁ—ଏହା ସମ୍ପୂର୍ଣ୍ଣ ଜାତିର ଏକ ରାଗ । ଏହା ଦିବସର ତୃତୀୟ ପ୍ରହରରେ ଗେୟ । ]

ଚମ୍ପକ କଦଳୀ—ସଂ. ବି—ଚମ୍ପାକଦଳୀ (ଦେଖ)
Champaka kadalī Champākadalī (See).

ଚମ୍ପକଗୋରୀ—ଦେ. ବିଣ. ସ୍ତ୍ରୀ ( ସଂ. ଚମ୍ପକ+ଗୌରୀ )—
Champakagorī ଚମ୍ପାଗୋରୀ (ଦେଖ)
Champāgorī (See).

ଚମ୍ପକଚତୁର୍ଦ୍ଦଶୀ—ସଂ ବି. ସ୍ତ୍ରୀ ( ଏ ଦିନ ଚମ୍ପାଫୁଲ ଚଢ଼ାଇ ଶିବଙ୍କ ପୂଜା
Champakachaturddaśī କରିବାର ବିଧି ଥିବାରୁ)—
ଜ୍ୟେଷ୍ଠ ମାସର ଶୁକ୍ଳ ଚତୁର୍ଦ୍ଦଶୀ—The 14th day of the bright fortnight of the month of 'Jyeshṭha'.

ଚମ୍ପକଦ୍ୱାଦଶୀ—ସଂ. ବି. ସ୍ତ୍ରୀ ( ଏ ଦିନ ଚମ୍ପାଫୁଲଦ୍ୱାରା ବିଷ୍ଣୁ ପୂଜା
Champakadwādaśī କରିବାର ବିଧି ଥିବାରୁ )—
ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ—The 12th day of the bright fortnight of the month of 'Jyeshṭha.'

ଚମ୍ପକମାଳା—ସଂ. ବି. ସ୍ତ୍ରୀ—୧ । ଚମ୍ପକଫୁଲନିର୍ମିତ ହାର—
Champakamālā 1. A garland of champaka flowers.
୨ । ୧୦ ଅକ୍ଷରବିଶିଷ୍ଟ ଛନ୍ଦୋବିଶେଷ –
2. A sanskrit metre of 10 letters.
[ ଦ୍ରୁ—ଏଥିର ୨ୟ, ୩ୟ, ୭ମ ଓ ୮ମ ବର୍ଣ୍ଣ ଲଘୁ । ]
୩ । କଣ୍ଠାଭରଣବିଶେଷ ( ଏଥିର ଦାନାଗୁଡ଼ିକ ଚମ୍ପାକଢ଼ି ପରି )—3. A kind of necklace.

| ୧ | ଇ | ଉ | ର,ଋ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ଼ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୃ | ଯ଼େ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ଟ୍ର |

**ଚମ୍ପକଲତା**—ସଂ. ବି. ସ୍ତ୍ରୀ—ରାଧିକାଙ୍କର ସଖୀବିଶେଷ—
Champakalatā Name of a companion of Rādhikā.

**ଚମ୍ପକଲି**—ଦେ.ବି (ଥା) (ମୁସଲମାନୀ ଅଲଙ୍କାର)--ଚମ୍ପାକଢ଼ି ୨ । (ଦେଖ)-
Champakali Champākarḍhi 2 (See)
**चम्पाकली**

**ଚମ୍ପକାଳୁ**—ସଂ. ବି ଚମ୍ପକ+ଆଳୁ)-ରୋଟିଫଳଗଛ (ହ୍ର. ଶବ୍ଦସାଗର)—
Champakālu Bread fruit tree.

**ଚମ୍ପଟ**— ଦେ. ବି ( ସଂ. ଚମ୍ପ ଧ ଭୁ=ଗମନ କରିବା )—୧ । କୌଣସି
Champaṭ ସ୍ଥାନରୁ ଗୋପନରେ ପଳାୟନ—1. Escaping
চম্পত্, চম্পট্ from a place unnoticed.
**चम्पत्** ୨ । ହଠାତ୍ ପଳାୟନ—2. Sudden flight.
୩ । ହଠାତ୍ ଅନ୍ତର୍ଦ୍ଧାନ—
3. Sudden disappearance.

**ଚମ୍ପଟ୍ କରିବା**—ଦେ. କ୍ରି—କୌଣସି ସ୍ଥାନରୁ ହଠାତ୍ ଗୋପନରେ
Champaṭ karibā ପଳାଇବା—To flee away from a
চম্পটদেওয়া place unnoticed.
**चम्पटहोना**
ଚମ୍ପଟଦେବା } ଅନ୍ୟରୂପ
ଚମ୍ପଟମାରିବା }

**ଚମ୍ପତ୍**--ଦେ. ବି—ଚମ୍ପଟ୍ ( ଦେଖ )—
Champat Champaṭ ( See )

**ଚମ୍ପତି**—ଦେ. ବି ( ସଂ. ଚମୂପତି )—୧ । ଶ୍ରେଷ୍ଠ ରଜା ବା ଜମିଦାର ବା
Champati ସେନାପତିଙ୍କର ରାଜଦତ୍ତ ଉପାଧି—1. A title given to a small landlord or commander of a small company of a soldiers.
୨ । ଓଡ଼ିଶା ଗଡ଼ଜାତ ରଜାମାନଙ୍କର ବରିଷ୍ଠ ଶୂଦ୍ର ଓ ଖଣ୍ଡାୟତ ପ୍ରଜାଙ୍କୁ ପ୍ରଦତ୍ତ ଉପାଧିବିଶେଷ—2. An honorary title given to prominent Śūdra and Khanḍāyet royats by the chiefs of Orissa States.
୩ । ଖଣ୍ଡାଏତ ଓ କ୍ଷତ୍ରିୟମାନଙ୍କର ବଂଶୋପାଧିବିଶେଷ—
3. A family title of Khanḍāyats and Kshyatriyas.

**ଚମ୍ପତିରାୟ**—ଦେ. ବି—ଚମ୍ପତି ( ଦେଖ )—
Champatirāya Champati ( See )
[ ଦ୍ର—ଚମ୍ପତିରାୟ ଶବ୍ଦ ଉଚ୍ଚାରଣ କରିବା ସମୟରେ କେହି କେହି ଚମ୍ପତିରା ବୋଲି ମଧ୍ୟ କହନ୍ତି । ]

**ଚମ୍ପତିସିଂହ**— ଦେ. ବି—କ୍ଷତ୍ରିୟଙ୍କ ବଂଶୋପାଧିବିଶେଷ—
Champatisimha A family title of Kshytriyas.
[ ଦ୍ର—ଢେଙ୍କାନାଳ ରାଜବଂଶର ଉପାଧି ଛତ୍ରିୟ ଖାରବର ଚମ୍ପତିସିଂହ ମହାପାତ୍ର । ]

**ଚମ୍ପା**— ସଂ. ବି. ସ୍ତ୍ରୀ ( ଚମ୍ପ+ଅଧି. ଅ+ସ୍ତ୍ରୀ. ଆ )—୧ । ଚମ୍ପ ନାମକ
Champā ରାଜାଙ୍କ ସ୍ଥାପିତ ଅଙ୍ଗରାଜ କର୍ଣ୍ଣଙ୍କ ରାଜଧାନୀ ( ଅଧୁନାତନ ଭାଗଲପୁର ନିକଟସ୍ଥ )—1. Name of the old capital of the king of Anga ( near the present town of Bhagalpur).
୨ । ନଦୀବିଶେଷ—2. Name of a river.
୩ । ଅଙ୍ଗରାଜ କର୍ଣ୍ଣଙ୍କ ପତ୍ନୀ—
3. Queen of Karna, king of Anga.
ଦେ. ବି (ସଂ. ଚମ୍ପକ)—୧ । ଚମ୍ପାଫୁଲ ଓ ବୃକ୍ଷ—
1. The Champak flower and tree; Michelia champka.

ସଂ. ଚମ୍ପକ, କାଞ୍ଚନ, ରମ୍ୟଗନ୍ଧ, ଚମ୍ପେୟ, ସୁରଭି
চাঁপা, চাম্পা
**चम्पा, कञ्चनाम्र**
ମ. ସୋନାଚମ୍ପା, ଭୁଟ୍ଚମ୍ପା
ତେ. ଶାମ୍ପାଙ୍ଗୀ ପୁରନ୍, ଚମ୍ପକାମୁ, ଚମ୍ପେୟମୁ, କଚନାମ, ଗନ୍ଧଫଳ
ତା. ଶାମ୍ପାଙ୍ଗ, ଶେମ୍ବୁଗ, ଶିମ୍ବୁ
(Kirtikar)

[ ଦ୍ର—ପ୍ରସିଦ୍ଧ ହେମବର୍ଣ୍ଣ ପୁଷ୍ପ, ଉଗ୍ରଗନ୍ଧ । ଶୀତକାଳରେ ଫୁଲ ଧରେ । ଗୋଟିଏ ଫୁଲରୁ ଅନେକ ଫଳ ହୁଏ । ଅସଂଖ୍ୟ ଫଳ ପ୍ରସବ କରିବା ହେତୁ ଗଛ ଦୀର୍ଘଜୀବୀ ହୁଏ ନାହିଁ । ଏ ଫୁଲ ସାଧାରଣତଃ ହଳଦିଆ, କିନ୍ତୁ ଧଳା, ଫିକା ହଳଦିଆ, ନାଲିମିଶା ହଳଦିଆ, ଓ ଗାଢ଼ ହଳଦିଆ ରଙ୍ଗର ଫୁଲ ମଧ୍ୟ ଦେଖାଯାଏ । ଧଳାଚମ୍ପା (ଶ୍ୱେତଚମ୍ପା)ର ଗନ୍ଧ କୋମଳତର; ଚମ୍ପାଗଛ ଉଚ୍ଚରେ ୬୦ ହାତ ବଢ଼େ । ମୂଳରେ ପାଣି ନ ଦେଲେ ଗଛ ଶୀଘ୍ର ମରିଯାଏ । ଏ ଫୁଲରୁ ଅନ୍ୟାନ୍ୟ ଅନେକ ଫୁଲର ନାମକରଣ ହୋଇଅଛି । ଯଥା—କାଠଚମ୍ପା, ଗୋବରଚମ୍ପା, ଜହ୍ନର ଚମ୍ପା, ଦୋଳଚମ୍ପା, ଭୂଇଁଚମ୍ପା, ସୁଲ୍ତାନଚମ୍ପା, ଚନ୍ଦନଚମ୍ପା ଇତ୍ୟାଦି; କିନ୍ତୁ ଏ ଫୁଲମାନ ଚମ୍ପକ ଜାତୀୟ ନୁହେଁ ।
ଚମ୍ପାଫୁଲର ତୀବ୍ର ଗନ୍ଧ ଯୋଗୁଁ ସମ୍ଭବତଃ ଏ ଫୁଲରେ ଭ୍ରମର ବସନ୍ତି ନାହିଁ । ଉଦ୍ୟାନରୋପିତ ଚମ୍ପାଗଛ ଅପେକ୍ଷା ଜଙ୍ଗଲରେ ଉଠିବା ଚମ୍ପାଗଛ ବହୁତ ମୋଟ ଓ ଉଚ୍ଚ ହୁଏ । ଚମ୍ପା ଗଛର ମଞ୍ଜ କାଠ ହଳଦିଆ ଓ ଖୁବ ମଜଭୁତ ହୁଏ ଏବଂ ଏଥିରେ ଚଉକି, ମେଜ, ଆଦି ଗୃହର ଉପକରଣମାନ ତିଆରି ହୁଏ । ନେପାଳ ତରାଇ ଅଞ୍ଚଳ, ବଙ୍ଗ, ଆସାମ ଓ ଦକ୍ଷିଣଭାରତର ଜଙ୍ଗଲରେ ଏ ଗଛ ଅଧିକ ଦେଖାଯାଏ । ]

୨ । ଚଳ କାନର ଏକପ୍ରକାର ସୁନା ଅଳଙ୍କାର—
2. Name of a golden ornament of the ear.
୩ । ବାଣ୍ଡିବାଣ; ଯେଉଁ ବାଣରୁ ଚମ୍ପାଫୁଲ ଭଳି ଅଗ୍ନିଷ୍ଫୁଲିଙ୍ଗ ଝଡ଼େ—3. A fire work which sheds particles of fire ( like champā flower ) when lighted.
ସ୍ତ୍ରୀ—ସ୍ତ୍ରୀ ଲୋକଙ୍କ ନାମ—Name given to femals.
ପ୍ରାଦେ. (ପୁରୀ) ବି—ଏକପ୍ରକାର ଧାନ୍ୟ—A species of paddy.

ସାଧାରଣ ଲୋକେ ଅନେକ ସ୍ଥଳରେ ବର୍ଣ୍ଣର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍ଗିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ପ୍ରାଦେ (ସମ୍ବଲପୁର) ବି— ଗୋବରଗଡ଼େଇ—A kind of bird.

**ଚମ୍ପାଇନଳି**—ଦେ. ବି—ଚମ୍ପେଇନେଉଳି (ଦେଖ)
Champāinali — Champeineuli (See).

**ଚମ୍ପାଈ**—ଦେ. ବି. ସ୍ତ୍ରୀ (ସଂ. ଚମ୍ପାବତୀ)—୧ । ଗ୍ରାମଦେବୀବିଶେଷ—
Champāi — 1, Name of a village Goddess
୨ । ଚମ୍ପାର ଡାକନାମ—
2, Name for calling Champā.

**ଚମ୍ପାକଢ଼**—ଦେ. ବି (ସଂ. ଚମ୍ପକ+କଳୀ)—୧ । ଚମ୍ପାଫୁଲର କଳିକା—
Champākardha — 1. The bud of champak flower.
চাঁপাকলী — ୨ । ଚମ୍ପାକଢ଼ ପରି ଗଢ଼ା ହୋଇଥିବା
चंपाकली — ଦାନାମାନ ଗୁନ୍ଥା ହୋଇଥିବା ଗଳାର ହାର—
(ଚମ୍ପାକଢି—ଅନ୍ୟରୂପ) 2. A necklace having pieces like champak buds string together.

**ଚମ୍ପାକଦଳୀ**—ଦେ. ବି ( ସଂ. ଚମ୍ପକକଦଳୀ, କନକକଦଳୀ )—
Champākadali — ଏକଜାତୀୟ ସୁଗନ୍ଧ ଗୋଲ କଦଳୀ ( ପାଚିଲେ
চাঁপাকলা — ଖିଆଯାଏ )—A kind of sweet scented
चंपाकेला — banana or plantain eaten when ripe.

**ଚମ୍ପାକଳି**— ଦେ. ବି—ଚମ୍ପାକଢ଼ି (ଦେଖ)
Champākali — Champākardhi (See).
চাঁপাকলি

**ଚମ୍ପାଗୋରୀ**—ଦେ. ବି. ସ୍ତ୍ରୀ ( ସଂ. ଚମ୍ପକ ଓ ଗୌରୀ )—ଯେଉଁ ସ୍ତ୍ରୀର
Champāgori — ଶରୀରର ବର୍ଣ୍ଣ ଚମ୍ପା ଫୁଲ ପରି ହଳଦିଆ ଗୌରବର୍ଣ୍ଣ; ଯେ ଶେତା ଗୋରୀ ନୁହେ—(a woman) With a bright yellow fair complexion; yellow complexioned (woman)

**ଚମ୍ପାଝଲକା**—ଦେ. ବି —ସୁନାର ଅଳଙ୍କାରବିଶେଷ—
Champājhalakā — A short of gold ornament for the hair.
[ଦ୍ର — ଏହାକୁ ମୁଣ୍ଡ ବାଳର ସୁନାର ଗୋଟିଏ ପାଖରେ ଖୋସିଲେ ଏହା କାନ ସାମନାରେ ଗାଲ ଉପରେ ଝୁଲୁଥାଏ । ]

**ଚମ୍ପାଧିପ**—ସଂ. ବି (୬ଷ୍ଠୀ ତତ୍; ଚମ୍ପା+ ଅଧିପ)—ଚମ୍ପା ନଗରର ରାଜା
Champādhipa — କର୍ଣ୍ଣ—King Karna.

**ଚମ୍ପାବତୀ**— ଦେ. ବି. ସ୍ତ୍ରୀ—୧ । ଅଙ୍ଗରାଜ କର୍ଣ୍ଣଙ୍କ ରାଜଧାନୀ—
Champābati — 1. Name of the capital of the king of Anga.
୨ । କାହାଣୀରେ ବର୍ଣ୍ଣିତ ରାଜକନ୍ୟାବିଶେଷ—
2. Name of a princess in the folktales.
୩ । ଗ୍ରାମଠାକୁରାଣୀଙ୍କ ନାମ—
3. Name of a village Goddess.
୪ । ସ୍ତ୍ରୀଲୋକଙ୍କ ନାମ—
4. A name given to females.

[ ଦ୍ର—ଚମ୍ପାବତୀ ନାମକ ସ୍ତ୍ରୀକୁ କେହି କେହି ଚମ୍ପା, ଚମ୍ପୀ ଚମ୍ପେଈ ଓ ଚମ୍ପାଈ ବୋଲି ମଧ୍ୟ ଡାକନ୍ତି । ]

**ଚମ୍ପାରଣ୍ୟ**—ସଂ. ବି. (ନାମ)—ଆଧୁନିକ ବିହାର ପ୍ରଦେଶର ଚମ୍ପାରନର
Champāranya — ପ୍ରାଚୀନ ନାମ (ହି. ଶବ୍ଦସାଗର)—
The ancient name of Champaran, a district in Bihar
[ ଦ୍ର—ଚମ୍ପାରନ ବିହାରର ବିହୃତ ବିଭାଗର ଗୋଟିଏ ଜିଲ୍ଲା, ଏହାର ରାଜଧାନୀ ମୋତିହାରୀ; ଏହା ନେପାଳର ଦକ୍ଷିଣରେ । ]

**ଚମ୍ପୂ**—ସଂ. ବି.—(ଚମ୍ପ ଧାତୁ=ପ୍ରାପ୍ତି ପାଇବା+କର୍ତ୍ତୃ. ଉ —ଗଦ୍ୟ ଓ
Champū — ପଦ୍ୟମିଶ୍ରିତ କାବ୍ୟଗ୍ରନ୍ଥ—An elaborate composition interspersed in prose and verse.
(ଯଥା—କବିସୂର୍ଯ୍ୟରଚିତ କିଶୋରଚନ୍ଦ୍ରାନନ୍ଦଚମ୍ପୂ ।)

**ଚମ୍ପେଇନଳି** — ଦେ. ବି.—ଚମ୍ପେଇନେଉଳି (ଦେଖ)
Champeinali — Champeineuli (See)

**ଚମ୍ପେଇନେଉଳ**—ଦେ. ବି.—ଚମ୍ପେଇନେଉଳି (ଦେଖ)
Champeineula — Champeineuli (See)

**ଚମ୍ପେଇନେଉଳି**—ଦେ. ବି.—(ସଂ. ନାମ ଅଞ୍ଜନ, ଅଞ୍ଜନିକା)—ଝିଟିପିଟି
Champeineuli — ଶ୍ରେଣୀୟ ଏକପ୍ରକାର ଚତୁଷ୍ପଦବିଶିଷ୍ଟ ସରୀସୃପ (ଏହାର ଲାଞ୍ଜ ନାଲି ଓ ଦେହ ଚିକ୍କଣ ପାଣ୍ଡୁର
আংজনী — ଓ ଧଳା ଲମ୍ବ ଗାରବିଶିଷ୍ଟ)—A kind of lizard
छिपकलि — living in the precinct of the house with a smooth skin and red tail

[ ଦ୍ର—ଏହାର ଶରୀର ମସୃଣ ଓ କାନ୍ତିଯୁକ୍ତ, ଲାଙ୍ଗୁଡ଼ ନାଲିଆ । ଆଘାତଦ୍ୱାରା ଏହାର ଲାଙ୍ଗୁଡ଼କୁ ଦେହରୁ ବିଚ୍ଛିନ୍ନ କଲେ ଝିଟିପିଟି ଲାଙ୍ଗୁଡ଼ ଭଳି ଏହା ଲାଙ୍ଗୁଡ଼ ଖଣ୍ଡି ଅନେକ ସମୟ ପର୍ଯ୍ୟନ୍ତ ଠକ୍ ଠକ୍ ହୋଇ ଡେଇଁ ଥାଏ ଓ ଲାଙ୍ଗୁଳହୀନ ଜୀବଟି ଚାଲି ପଳାଏ । ପ୍ରବାଦ ଅଛି ଯେ ଏ ବଡ଼ ବିଷାକ୍ତ ଜୀବ । ଯାହାକୁ କାମୁଡ଼ିବ ତାହାର ମୃତ୍ୟୁ ନିଶ୍ଚୟ ହେବ ଏହା ଜାଣି ଭଗବାନ ତା ଲାଙ୍ଗୁଡ଼ରେ 'କାଲି' ଏହି ଶବ୍ଦ ଲେଖି ଦେଇ ଅଛନ୍ତି, ଏଣୁ ଏ ମନୁଷ୍ୟକୁ ଗଲା ବେଳେ ପଛକୁ ଲାଙ୍ଗୁଡ଼ ଆଡ଼କୁ ଚାହିଁ ଦେଇ 'କାଲି କାମୁଡ଼ିବି' ବୋଲି କାମୁଡ଼େ ନାହିଁ ଓ ପ୍ରତିଦିନ 'କାଲି' 'କାଲି' କରି ଆଦୌ ମନୁଷ୍ୟକୁ କାମୁଡ଼େ ନାହିଁ ।
ଏଥିପାଇଁ "ଚମ୍ପେଇ ନେଉଳି 'କାଲି' କରିବା" ପ୍ରବଚନର ଅର୍ଥ ଯେ କୌଣସି କାର୍ଯ୍ୟ କରିବାକୁ ଯାଇଁ ପ୍ରତିଦିନ 'କାଲି' କରିବି 'କାଲି' କରିବି ବୋଲି କହେ ଓ ଆଦୌ ସେ କରି ପାରେ ନାହିଁ । ]

**ଚମ୍ପେଈ**—ଦେ. ବି. ସ୍ତ୍ରୀ.—(ସଂ. ଚମ୍ପାବତୀ) —ଚମ୍ପାଈ (ଦେଖ)
Champei — Champāi (See)

**ଚମ୍ପେକ**—ଗ୍ରା. (ଉତ୍ତର) ବି.—(ସଂ. ଚମ୍ପକର ଅଶୁଦ୍ଧ ଉଚ୍ଚାରଣ)—
Champeka — ଚମ୍ପାଫୁଲ—Champak flower.

| ୧ | ଇ | ଉ | ର୍, ଋ | ୠ | ଏ | ଦସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ସେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଔ | ନ୍ |

ଚମ୍ପେଣୀ—ଦେ. ବି. ସ୍ତ୍ରୀ.—(ସଂ. ଚମ୍ପାବର୍ଣ୍ଣା—ଚମ୍ପାଇ (ଦେଖ)
Champeṇi Champāi (See)

ଚମ୍ପୈତିଆମ୍ବୁଲ—ପ୍ରାଦେ.˙(ଗଞ୍ଜାମ) ବି.– ବନ୍ୟଜାତ ଏକ ପ୍ରକାର ଆମ୍ବରୁ
Champaitiāmbula ପ୍ରସ୍ତୁତ କରାଯାଇଥିବା ଆମ୍ବୁଲ—A kind of mango-pickle prepared from wild-mango fruit.

ଚମ୍ପୌତ - ପ୍ରାଦେ. (ଗଡ଼ଜାତ) ବି—ଚମ୍ପୈତି ଆମ୍ବୁଲ (ଦେଖ)
Champauta Champaiti āmbula (See)

ଚମ୍ବଲ୍ - ଦେ ବ (ଚର୍ମଣ୍ୱତୀ—ଚର୍ମଣ୍ୱତୀ (ଦେଖ)
Chambal Charmanbatī (See)

ଚମ୍ବା—ଦେ. ବି. (ନାମ)—ପଞ୍ଜାବର ଦେଶୀୟ ରାଜ୍ୟବିଶେଷ—
Chambā Name of a native state in Punjab.
[ଦ୍ର—ଏହି ରାଜ୍ୟ ପଞ୍ଜାବର ଉତ୍ତରରେ; କାଶ୍ମୀର ରାଜ୍ୟର ଦକ୍ଷିଣ ପୂର୍ବରେ, ଜଲନ୍ଧର ବିଭାଗର ପଶ୍ଚିମରେ ଓ ହିମାଳୟର ଦକ୍ଷିଣରେ ଅବସ୍ଥିତ । ଏହି ରାଜ୍ୟର ପୂର୍ବସୀମାରୁ ସିନ୍ଧୁର ଉପନଦୀ ଚେନାବ ନଦୀ ବାହାରି ପ୍ରଥମେ ଚନ୍ଦ୍ର ନଦୀ ନାମ ଗ୍ରହଣ କରିଅଛି, ସିନ୍ଧୁର ଉପନଦୀ ରାଭୀ ନଦୀ ଏହି ରାଜ୍ୟରୁ ବାହାରି ଅଛି । ଏ ରାଜ୍ୟର ରାଜଧାନୀ ଚମ୍ବା ରାଭୀ ନଦୀକୂଳରେ । ]

ଚମ୍ବୁ—ଦେ. ବି. ( ଭୁଲ. ତେ. ଚେମ୍ବୁ )—ଛୋଟମୁହାଁ ଗାଲ –
Chambu A small-mouthed water-pitcher.
ଚମ୍ବୁ

ଚମ୍ବେଇବା—ଦେ. କ୍ରି. ( ସ. ଚୁମ୍ବ୍ ଧାତୁ )—ଏକ ପଦାର୍ଥକୁ ଅନ୍ୟ
Chambeibā କୌଣସି ପଦାର୍ଥ ନିକଟରେ ପହଞ୍ଚାଇବା—
To cause a thing touch another.
ଚୁଂଵାନା
( ଯଥା—ଏ ଶେଣୀକୁ ଖୁଣ୍ଟ ଦେହରେ ଚମ୍ବେଇଲେ ଦେଖାଯିବ ଏହା ଖୁଣ୍ଟରେ ଖାପ ଖାଇବ କି ନାହିଁ । )

ଚମ୍ବେଲି—ସ. ବି. (ବୈଦ୍ୟକ; ନିଘଣ୍ଟୁ )—ଚମେଲି (ଦେଖ)
Chambeli Chāmelī (See)

ଚମ୍ଭା – ଦେ. ବିଣ (ସ. ଚମତ୍କାର)—୧ । ଉଜ୍ଜ୍ୱଳ –
Chambhā 1. Bright.
ଚାଂଗଲା ୨ । ଚକଚକିଆ—2. Glittering.
୩ । ସତେଜ—3. Energetic; brisk; vigorous
୪ । ଚତୁର —4. Clever.

ଚୟ—ସ. ବି. (ଚି ଧାତୁ=ଏକତ୍ର କରିବା; ତୋଳିବା+କର୍ମ. ଅ)—
Chaya ୧ । ସମୂହ; ରାଶି; ପୁଞ୍ଜ—
1. Collection; assemblage.
୨ । ସ୍ତୂପ - 2 Mound; heap; mass
୩ । ସକଳ; ସମୂହ; ବହୁ—3. Many, multitude.
[ ଦ୍ର—ସକଳ ଓ ସମୂହାର୍ଥରେ ଏହା ବିଶେଷ ଶବ୍ଦ ପରେ ବ୍ୟବହୃତ ହୁଏ । ଯଥା—ଗ୍ରାମଚୟ=ଗ୍ରାମସମୂହ । ]
୪ । ପ୍ରାକାର; ପାଚିରି—4. High wall
୫ । (+ଭାବ. ଅ)— ତୋଳିବା; ସାଉଁଟିବା—
5. Picking up.
୬ । ସଂଗ୍ରହ; ସଞ୍ଚୟ; ଆହରଣ–
6. Act of gathering or compiling.
୭ । ହୋମାଗ୍ନି ଆହରଣ କରି ସଂସ୍କାରପୂର୍ବକ ସ୍ଥାପନ—
7. Ignition of the sacrificial fire.

ଚୟନ୍—ବୈଦେ. ବି ଓ ବିଣ. (ଫା. ଚୈନ୍ ଓ ଇଂ. ଚେନ୍ )—
Chayan ଚଇନ୍ ( ଦେଖ )—Chain ( See )
ଚଏନ ଦେ. ବି. (ଭୁଲ. ହି. ଚଏନ୍)—୧ । ମନର ସ୍ଥିରତା—
ଚୈନ 1. Mutual tranquility.
୨ । ସ୍ଥିରତା; ବିଶ୍ରାମ—2. Rest; repose.
୩ । ଫୁରସତ୍—3. Liesure.

ଚୟନ୍‌ଘଡ଼ି—ଦେ. ବି. ( ଇଂ. ଚେନ୍ + ସଂ. ଘଟୀ )—ଶିକୁଳିସଂଯୁକ୍ତ
Chayanghaṛdi କ୍ଷୁଦ୍ର ଘଡ଼ି; କୁର୍ତ୍ତା ପକେଟରେ ସମ୍ଭାଇବା ଭଳି ଛୋଟ ଓ ପତଳା ଘଣ୍ଟା—
Pocket-watch (attached to a chain).

ଚୟନ୍‌ଫିଟ୍—ବୈଦେ. ବିଣ—ଚଇନ୍‌ଫିଟ୍ ( ଦେଖ )
Chayanfiṭ Chainphiṭ ( See )

ଚୟନ — ସ. ବି. ( ଚି ଧାତୁ=ଏକତ୍ର କରିବା+ଭାବ. ଅନ )—
Chayana ୧ । ସଂଗ୍ରହ—1. Gathering; collecting.
୨ । ସଂକଳନ—2. Compiling; compilation
୩ । ଫୁଲତୋଳା—3 Picking up; of plucking of flowers.
୪ । ନିର୍ବାଚନ—4. Selection.
୫ । ଇଷ୍ଟକାଦିଦ୍ୱାରା ନିର୍ମାଣ; ଗ୍ରଥନ—
5. Setting of bricks.

ଚୟନିକା — ସ. ବି. ( ଚୟନ+ସ୍ୱାର୍ଥେ କ+ସ୍ତ୍ରୀ. ଆ )—
Chayanikā କ୍ଷୁଦ୍ର ସଂଗ୍ରହ—A small collection.

ଚୟନ କରିବା— ଦେ କ୍ରି —ତୋଳ ସଂଗ୍ରହ କରିବା —
Chayana karibā To gather; to cull; to pick up; to compile; to collect.

ଚୟନୀୟ—ସ. ବିଣ. ( ଚି ଧାତୁ+କର୍ମ ଅନୀୟ )—
Chayanīya ତୋଳା ବା ସଂଗୃହୀତ ହେବାର ଯୋଗ୍ୟ—
Fit to be compiled, gathered, heaped, picked up or plucked.

ଚର୍ (ଧାତୁ)—ସ—୧ । ଗମନ କରିବା—
Char (root) 1. To go or walk.
୨ । ଆଚରଣ କରିବା—2. To practise.
୩ । ବିଚରଣ କରିବା—3. To frequent.
୪ । ବୋଧ କରିବା—4. To feel.

ଚର୍—ଦେ. ଅ. ( ଧ୍ୱନ୍ୟନୁକରଣ )—ଚର୍‌ଚର୍ ( ଦେଖ )
Char Charchar ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଁଟା' ନ ପାଇଲେ 'ଅଣ୍ଟା' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ

ପ୍ରାଦେ. (ସମ୍ବଲପୁର ଭୁଲ. ଏହି ଅର୍ଥରେ ହି. ଚର୍କା) ଚଡ୍ଡୁ— Cauterisation; marking with a red hot iron.

ଚର୍କାଠି—ପ୍ରାଦେ. (ସମ୍ବଲପୁର) ବି—ଚଡ୍ଡୁକାଠି ( ଦେଖ )
Charkāṭhi — Chardukāṭhi ( See )

ଚର୍କିବା—ଦେ. କ୍ରି—ଚିରିକିବା ( ଦେଖ )
Charkibā — Chirikibā ( See )

ଚରକିଦେବା
ଚରକିପକାଇବା } ଅନ୍ୟରୂପ

ଚର୍‌ଚର୍—ଦେ. ଅ. ( ଧ୍ୱନ୍ୟନୁକରଣ )—
Charchar ୧ । ଲୁଗା ବା କାଗଜ ଚିରିବାର ବା କାଟିବାରେ କାଟିବାର ଶବ୍ଦ—1. Sound of tearing or cutting through a sheet of cloth or paper.

୨ । ସରୁ ମୁହଁ ବାଟେ ଜଳସ୍ରୋତ ( ପ୍ରବାହ ) ବାହାର ତଳକୁ ପଡ଼ିବାର ଶବ୍ଦ—2. Sound of water coming through a narrow hole.

चर्‌चर्, सन्‌सन्, ୩ । କାଗଜ ଉପରେ ପକ୍ଷୀ କଲମଦ୍ୱାରା ଚଞ୍ଚଳ
छरछर ଲେଖିବାର ଶବ୍ଦ—3. Sound of scribbling on a paper with a soft pen
चरचर point.

ପଣ୍ଡିତମାନଙ୍କ ମଧ୍ୟ ସ୍ୱା··· ·····ଚର୍‌ଚର୍ କରି ଦସ୍ତଖତ୍ କରନ୍ତି ।
ରାଧାନାଥ· ବିବେକୀ ।

୪ । ନଈବଢ଼ି ପାଣି କୂଳସ୍ଥ ସମତଳ ବାଲି ଉପରେ ମାଡ଼ିଯିବାର ଶବ୍ଦ—4. Sound of flood-water spreading into a level piece of sand on the shore.

କ୍ରି ବିଣ—ଚର୍‌ଚର୍ ଶବ୍ଦ କରି ଲେଖିବା— (writting) Producing a 'churchur' sound.

ଚର୍‌ଚରା—ଦେ. ବି—୧ । ନଈବଢ଼ି ସମୟରେ କୂଳସ୍ଥ ସମତଳ ବାଲି
Charchara ଉପରକୁ ଚଞ୍ଚଳ ଚଞ୍ଚଳ ମାଡ଼ିଯିବା ଫେଣଯୁକ୍ତ ପାଣି— 1. The foaming flood-water creeping up to a level sanday ground on the shore of the river.

୨ । ନଈବଢ଼ି ସମୟରେ କୂଳରେ ଲାଗିଥିବା ଫେଣ— 2. Foam of blood-water creeping to the shore.

ପ୍ରାଦେ. ( ସମ୍ବଲପୁର ) ବିଣ. ( ସଂ. ଚର୍ଚ୍ଚ ଧାତୁ )— ଅତିରିକ୍ତ ପରିମାଣରେ ବୋଳାଯାଇଥିବା ( ତୈଳାଦି )— (oil etc.) Excessively annointed over the body.

ଚର୍‌ଚରାଇବା—ଦେ. କ୍ରି—ଚର୍‌ଚର୍ ଶବ୍ଦପୂର୍ବକ କୌଣସି କାର୍ଯ୍ୟ କରିବା-
Charcharāibā — To do some work producing a
चरचरान् 'churchur' sound.
चरचराना

ଚର୍ଡ଼ାଂ—ପ୍ରାଦେ. ( ସମ୍ବଲପୁର ) ବି—ଚଡ୍ଡୁକାଠି ( ଦେଖ )
Charrḍām — Charḍukāṭhi ( See )

ଚର୍ପା—ଦେ. ବି—ଖଜୁରି ଗଛର ଫାଳିଡ଼ା ବା ତଳ ଡାଳର ମୂଳ-
Charpā ଭାଗ— The lower broad part of the branch of a date leaf which adheres to the trunk.

ଚର୍ବା—ଦେ. ( ସମ୍ବଲପୁର ) କ୍ରି. ( ଭୁଲ. ହି. ଚର୍ନା; ସଂ. ଚର୍
Charbā ଧାତୁ )—୧ । ଚରିବା—1 To graze.
୨ । ଚୋବିବା; କାମୁଡ଼ିବା—2 To bite.

ଚର୍ର୍——ଦେ. ଅ. ( ଧ୍ୱନ୍ୟନୁକରଣ )—ଚର୍‌ଚର୍ ( ଦେଖ )
Charr — Charchar ( See )

ଚର୍ଲା—ପ୍ରାଦେ. ( ସମ୍ବଲପୁର ) ବି—ବୃକ୍ଷବଲ୍କଳ—
Charlā — Bark of trees.

ଚର— ସଂ. ବି. ( ଚର୍ ଧାତୁ=ଗମନ କରିବା+କର୍ତ୍ତୃ. ଅ )—
Chara ୧ । ରାଜଦୂତ—1. Ambassador; royal-messenger.

୨ । ଗୁପ୍ତଦୂତ—2. Spy; secret emissary.

୩ । ନଦୀଗର୍ଭରେ ନଈବଢ଼ି ଦ୍ୱାରା ଆନୀତ ଓ କ୍ରମସଞ୍ଚିତ ଭୂଭାଗ; ଚଡ଼ା; ପଠା; ବାଲିଚର— 3. Alluvial land; chur land.

୪ । ଗୋଚାରଣ ଭୂମି—4. Pasture.

୫ । ( ଜ୍ୟୋତିଷ ) ମେଷ, କର୍କଟ, ତୁଳ ଓ ମକର ରାଶି— 5. ( astronomy ) The four signs raun ( aries ; crab ( cancer ); balance ( libra); shark(capricorn) in the zodiac.

୬ । ( ଜ୍ୟୋତିଷ ) ସ୍ୱାତୀ, ପୁନର୍ବସୁ ଓ ଶ୍ରବଣା ନକ୍ଷତ୍ର— 6. ( astronomy ) Three constellations or lunar mansions-viz; swati (15th) punerbasu ( 7th ); srabana ( 23rd ).

୭ । କପର୍ଦ୍ଦକ; କଉଡ଼ି—7. Cowrie; sea-shell.

୮ । ଜୀବ; ପ୍ରାଣୀ—8. Animal; living being.

୯ । ଅକ୍ଷକ୍ରୀଡ଼ାବିଶେଷ—9. Game of chess.

୧୦ । ମଙ୍ଗଳଗ୍ରହ—10. The planet mars.

୧୧ । ଖଞ୍ଜନପକ୍ଷୀ ( ହି. ଶବ୍ଦସାଗର )—11. A bird.

୧୨ । ପଶାଦ୍ୱାରା ଖେଳାଯିବା ଏକପ୍ରକାର ଜୁଆ (ହି.ଶବ୍ଦସାଗର)— 12. A kind of gambling in the dice.

ଚରନ୍ତା
ଚରନ୍ତି } ବି ବିଣ—୧ । ଗତିବିଶିଷ୍ଟ; ଜଙ୍ଗମ— 1. Moveable, moving.
( ଯଥା—ଚର ନକ୍ଷତ୍ର । )

| ୯ | ଇ | ଉ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଃ | ଙ୍କ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଙ୍ଗ | ନ୍ନ |

୨ । ଅସ୍ଥିର—2. Unsteady; restless.

୩ । ଜୀବ ବା ପ୍ରାଣଯୁକ୍ତ—3. Living; animate.

୪ । ଯେ ବିଚରଣ କରେ; ଗମନକାରୀ—4. Moving about in; one who moves or goes about

[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ । ଯଥା—ଗୃହିଚର ନିଶାଚର, ଗୁପ୍ତଚର, ବନଚର ଇତ୍ୟାଦି । ]

**ଚରଉ**—ଦେ. ବି. ( ସଂ. ଚରଣ )—୧ । ପଶୁଚରଣ—
Charau 1. Tending of cattle
ଚବାଉ ୨ । ଚରଉ ଖଜଣା ( ଦେଖ )
चरवाई 2. Charau khajaṇā ( See )

**ଚରଉ ଖଜଣା**—ଦେ, ବି— ଚରଣି; ଜମିରେ ଗୋରୁ ପ୍ରଭୃତି ଗୃହପାଳିତ
Charau khajaṇā ଜନ୍ତୁଙ୍କୁ ଚରାଇବାପାଇଁ ଦିଆଯିବା ନିର୍ଦ୍ଦିଷ୍ଟ ଖଜଣା—Grazing rent.

**ଚରକ**- ସଂ. ବି. ପୁଂ. ( ଚର ଧାତୁ+କର୍ତ୍ତୃ. ଅକ )—
Charaka ୧ । ଚରକ ସଂହିତା ଆୟୁର୍ବେଦ ଗ୍ରନ୍ଥ; ଚରକ ମୁନି ସଂକଳିତ ଆୟୁର୍ବେଦୀୟ ଗ୍ରନ୍ଥ—1. A treatise on Hindu medicine by sage Charaka.

୨ । ଚରକ ସଂହିତା ସଂକଳୟିତା ଆଚାର୍ଯ୍ୟ ବା ଋଷିବିଶେଷ—2. Name a sage who compiled the treatise or Hindu medicine.

[ ଦ୍ର—ଚରକ ସଂହିତା ଦ୍ୱାପର ଯୁଗରେ ରଚିତ ହୋଇଥିବାର କଥିତ । କଥିତ ଅଛି ଯେ, ଚରକ ଋଷି ବ୍ରହ୍ମା, ଧନ୍ୱନ୍ତରୀ, ଇନ୍ଦ୍ର, ଅଶ୍ୱିନୀକୁମାରଦ୍ୱୟ, ଭରଦ୍ୱାଜ, ଆତ୍ରେୟ ଓ ଅଗ୍ନିବେଶ୍ୟ ଆଦିଙ୍କ ନିକଟରେ ବୈଦ୍ୟକ ଶାସ୍ତ୍ରମାନ ଅଧ୍ୟୟନ କରିଥିଲେ । ଇଉରୋପୀୟମାନେ ଚରକ ସଂହିତାର ଅନୁବାଦ ଦେଖି ବିସ୍ମିତ ହୋଇଅଛନ୍ତି । ଚରକ ମାଦକ ଓ ମଦ୍ୟର ଖୁବ୍ ପ୍ରଶଂସା କରିଅଛନ୍ତି । ଏହା ଚିକିତ୍ସା ପାଇଁ ପ୍ରୟୋଜନୀୟ । ପରନ୍ତୁ ଯାଗ, ଯଜ୍ଞ, ଧ୍ୟାନଧାରଣା ଆଦି ପାଇଁ ମଧ୍ୟ ଅତ୍ୟାବଶ୍ୟକ ବୋଲି ସେ ପ୍ରକାଶ କରିଅଛନ୍ତି—ସୁବଳଚନ୍ଦ୍ର. ବଙ୍ଗଳା ଅଭିଧାନ ।

ଚରକ ସଂହିତାରେ ଯଥାକ୍ରମେ ସୂତ୍ର, ଶରୀରସ୍ଥାନ, ଐନ୍ଦ୍ରିୟ, ଚିକିତ୍ସା, ନିଦାନ, ବିମାନ, ବିକଳ୍ପ ଓ ସିଦ୍ଧି ଏହି ଆଠଗୋଟି ବିଷୟ ବା ସ୍ଥାନ ଅଛି—ଜ୍ଞାନେନ୍ଦ୍ର. ବଙ୍ଗଳା ଅଭିଧାନ । ]

୩ । ଚଟକ; ଘରଚଟିଆ ଚଢ଼େଇ ( ହି. ଶବ୍ଦସାଗର )—3. Sparrot.

୪ । ଚର; ଦୂତ—4. Messenger.

୫ । ଭିକ୍ଷୁକ—5 Beggar.

୬ । ଖେତପାପଡ଼ା ବା ଘରପୋଡ଼ିଆ ଗୁଳ୍ମ—6. A herbarious plant; Oldenlandia Biflora.

୭ । ଭେଦୁଆ; ଗୁପ୍ତଚର—7. A spy.

୮ । ବାଟୋଇ; ପଥିକ—8. A traveller.

**ଚରକା**—ଦେ. ବି. ( ସଂ. ଚକ୍ର; ଫା. ଚର୍ଖ୍ )—
Charakā ୧ । ସୂତା କାଟିବାର ଚକ୍ରଯୁକ୍ତ ଯନ୍ତ୍ର; ଅରଟ—
ଚରଖା; ଚରକା 1. Spining wheel.
चर्खा; चरखा ୨ । ଚକ୍ରାକାର ଅଗ୍ନିକ୍ରୀଡ଼ା ଦ୍ରବ୍ୟ; ଚକ୍ରୀବାଣ; ଚଡ଼କ୍‌ବାଜି—2 A revolving or whirling firework.

୩ । ଚଡ଼କ ଯନ୍ତ୍ର; ପଣାସଂକ୍ରାନ୍ତିରେ ପାଟୁଆମାନେ ଯେଉଁ ଯନ୍ତ୍ରରେ ଦେହକୁ ଘୂରାନ୍ତି—3. The contrivance on which religious dancers perform the swinging of the body as a vow on the Paṇāsaṁkrānti day.

୪ । ଟାକୁଡ଼ି—4. Distaff.

୫ । ନଟେଇ—5. Reel.

୬ । ଡଙ୍ଗା ବା ବୋଟ ବା ଜାହାଜର ଦଉଡ଼ି ଗୁଡ଼ାଇବାର ଖୁଣ୍ଟି—6. A capstan.

୭ । କୂଅରୁ ପାଣି ଉଠାଇବା ଯନ୍ତ୍ର ଓ କପିକଲ ଆଦିରେ ଲାଗିବା ଶଗଡ଼ି—7. Pulley.

ବୈଦେ. ବି. ( ଭୁଲ. ଫା. ଚରାଖ୍ )—୧ । ବତି—1. Lamp wick.

୨ । ପ୍ରଦୀପ—2. Lamp; light.

**ଚରକି**—ଦେ ବି.—୧ । ଚରକା ( ଦେଖ )
Charaki 1 Charakā ( See )
ଚରଖୀ ୨ । ନଟେଇ—2. Distaff.
चरखी ୩ । ଚକ୍ର ପରି ଘୂରିବା ଅଙ୍ଗବିଶିଷ୍ଟ କୌଣସି ଯନ୍ତ୍ର—3. Any machine or contrivance which has a revolving wheel attacted to it.

ପ୍ରାଦେ. ( ଯାଜପୁର ) ବି—ଶିକ୍ଷିତ ପାରା ଉଡ଼ିଲାବେଳେ କରିବା ଚକ୍ରାକାର ଗତି—A whirling motion made by trained pigeons while flying.

**ଚରକିବା**—ଦେ. କ୍ରି—ଚିରକିବା ( ଦେଖ )
Charakibā Chirikibā ( See )

**ଚରଖା**—ଦେ. ବି—୧ । ଚରକା ( ଦେଖ )
Charakhā 1. Charakā ( See )

୨ । କପାଖାଇ—2. A machine for separating seed from cotton pods.

ପ୍ରାଦେ. ( ସମ୍ବଲପୁର, ଭୁଲ. ଏହି ଅର୍ଥରେ ହି. ଚରଖା ) ବି—ଆଖୁଖାଇ—A sugarcane mill.

**ଚରଖା କାଟିବା**—ଦେ. କ୍ରି—ଚରଖା ଯନ୍ତ୍ରଦ୍ୱାରା ସୂତା ପ୍ରସ୍ତୁତ କରିବା—
Charakhā kāṭibā To spin thread.
ଚରଖା ଚାଲାନ
चरखा कातना

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ

**ଚରଖି**—ଦେ. ବି—ଚରକି ( ଦେଖ )—
Charakhi Charaki ( See )
ପ୍ରାଦେ. (ସମ୍ବଲପୁର) ବି—କପାଖାଇ—
A mill for pressing cotton pods.

**ଚରଖିଦେବା**—ପ୍ରାଦେ. ( ଯାଜପୁର ) କ୍ରି—ପାରା ଉଡ଼ିଲାବେଳେ ଘୁରି
Charakhidebā ଘୁରି ଉଡ଼ିବା—To make a whirling motion while flying ( said of trained pigeons ).

**ଚରଚ୍ଚ**—ଗ୍ରାମ୍ୟ ବି. (ସଂ. ଚର୍ଯ୍ୟା)—ସମାଗତ ଅତିଥି ବା ବନ୍ଧୁବାନ୍ଧବଙ୍କୁ
Charachā ସମ୍ମାନ ବା ମର୍ଯ୍ୟାଦାପୂର୍ବକ ଭୋଜନାଦି ଦେବା;
मेहमनदारी ଅଭ୍ୟାଗତ ବା ଅତିଥିଚର୍ଚ୍ଚା; ଆତିଥେୟତା—
Serving or attending upon guests or comers with due respect; hospitality.

ଜଣ ଜଣକେ ଚରଚ୍ଚ କଲେ ଭୃତ୍ୟ ବୀର
ଦିବ୍ୟ ଅଶନମାନଙ୍କେ ପୂରିଲା ଉଦର । ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଚରଚ୍ଚଇତ**— ପ୍ରାଦେ. (ଗଡ଼ଜାତ) ବି—ରାଜଦ୍ୱାରକୁ ଆଗତ ଅତିଥିମାନଙ୍କ
Charachāita ଖବର ବୁଝିବା ନିମନ୍ତେ ନିଯୁକ୍ତ ରାଜଭୃତ୍ୟ-ବିଶେଷ—A servant whose duty is to look after the proper serving of the guests of Rajas.

**ଚରଚ୍ଚ କରିବା**—ଦେ. ( ଗ୍ରାମ୍ୟ ) କ୍ରି—ଅତିଥିମାନଙ୍କୁ ଭୋଜନାଦିଦ୍ୱାରା
Charachā karibā ମର୍ଯ୍ୟାଦାପୂର୍ବକ ସେବା କରିବା—
मेहमनदारी करना To serve and attend upon guests.

କେବଳ ବ୍ରାହ୍ମଣେ ଚରଚ୍ଚ କରିବାକୁ । କୃଷ୍ଣସିଂହ. ମହାଭାରତ. ସଭା ।

**ଚରଚ୍ଚ ବେହେରା**—ପ୍ରାଦେ. (ଗଡ଼ଜାତ) ବି—ଚରଚ୍ଚଇତ (ଦେଖ)
Charachā beherā Charachāita (See)

ଖରଚ୍ଚ ନ ଦେଇ ଚରଚ୍ଚ ବେହେରା ପରଚ୍ଚ ହୋଇଣ ଗଲା । ଯଦୁମଣି ରହସ୍ୟ ।

**ଚରଚିଆ**— ପ୍ରାଦେ. (ଗଡ଼ଜାତ) ବି—ଚରଚ୍ଚଇତ (ଦେଖ)
Charachiā Charachāita (See)

**ଚରଚିବା**—ଗ୍ରା. କ୍ରି. (ସଂ. ଚର୍ଯ୍ୟା)— ଚରଚ୍ଚ କରିବା (ଦେଖ)
Charachibā Charachā karibā (See)

**ଚରଚେଇତ**— ପ୍ରାଦେ. (ଗଡ଼ଜାତ) ବି—ଚରଚ୍ଚଇତ (ଦେଖ)
Characheita Charachāita (See)

**ଚରଡ଼**—ଦେ. ବି. ( ସଂ. ଶରାଳ ? )—ଏକଜାତୀୟ କୂଳେଚର ପକ୍ଷୀ;
Chararda ଜଳାଭୂମିରେ ଚରି ଗେଣ୍ଡାଆଦି ଖାଆନ୍ତି; ବଡ଼ିଆକାଙ୍କ
शराड़ ବା ଗେଣ୍ଡାଳିଆ ଜାତୀୟ; ଏମାନେ ବିଷଧର ସାପଙ୍କୁ ମଧ୍ୟ ଖାଇଯାଆନ୍ତି—Adjutant bird; gigantic Indian stork; Flamingo a kind of wading bird living upon snails etc found on marshy ground and devouring poisonous snakes; Cisonia Agrala.
[ ଦ୍ର—ଏମାନଙ୍କ ପେଟରୁ ଜାରମହୁରା ନାମକ ସର୍ପବିଷହର ପଦାର୍ଥ ମିଳେ । ଜାରମହୁରା ତଳେ ନୋଟ ଦେଖ । ]

**ଚରଡ଼ା**—ଦେ. ବି—ଚରଡ଼ (ଦେଖ)
Charardā Chararda (See)

**ଚରଡ଼ି**—ପ୍ରାଦେ. ( ବସ୍ତର ଓ ଜୟପୁର ) ବି—ମଧ୍ୟପ୍ରଦେଶର ବସ୍ତର ଓ
Charardi ଭିଜାଗାପାଟଣାର ଜୟପୁର ଅଞ୍ଚଳର ପାହାଡ଼ର ଜଙ୍ଗଲି ଜାତିବିଶେଷ—A wild caste of people living in hills of Bastar in C. P. and jaypur in Vizagapattam.
[ ଦ୍ର—ଏମାନେ 'ରାମାୟଣବର୍ଣ୍ଣିତ ବାନରମାନଙ୍କର ବଂଶଧର' ବୋଲି ଆପଣାର ପରିଚୟ ଦିଅନ୍ତି । ]

**ଚରଣ**—ସଂ. ବି. ( ଚର ଧାତୁ + କରଣ. ଅନ )—୧ । ପଦ; ଗୋଡ଼—
Charaṇa 1 Leg; the foot.
୨ । ଶ୍ଳୋକର ଚତୁର୍ଥାଂଶ ପଂକ୍ତି—
2. A quarter or foot of a stanza.
୩ । କବିତା ପଦକର ଅଂଶ ବା ପାଦ—
3. A part of a foot of a stanza.

ତଥାପି ଗୁଣିଗଣ ଅନୁସରଣେ
କବିତା କରି ଥାଇ ପଦେ ଚରଣେ । ବ୍ରଜନାଥ. ସମରତରଙ୍ଗ ।

୪ । ଗୋତ୍ର—4. Family; clan.
୫ । ମୂଳ—5. Root.
୬ । ( + ଭାବ. ଅନ ) ଭ୍ରମଣ—
6. Wandering; walking.
୭ । ଚଳନ; ଗତି—7. Motion.
୮ । ଭକ୍ଷଣ—8. Eating; consuming
୯ । ଆହାରାନ୍ୱେଷଣ; ଚରିବା—
9. Grazing; roaming in quest of food.
୧୦ । ଆଚରଣ—10. Conduct; behaviour.
୧୧ । ସ୍ୱଭାବ; ଶୀଳ—11. Nature.
୧୨ । ଚରିତ୍ର—12. Character.
୧୩ । ବେଦର କଠ; କୌଥୁମ; ବହ୍ୱୃଚାଦିଶାଖା; ଉପନିଷଦ୍—
13 Branch of the Vedas; the Upanishads.
୧୪ । ( ପୂଜ୍ୟ ବ୍ୟକ୍ତିଙ୍କ ପ୍ରତି ଭକ୍ତର ଭକ୍ତିପ୍ରଣୋଦିତ ବଚନ ) ଚରଣକମଳ; ସମ୍ବୋଧିତ ପୂଜ୍ୟ ବ୍ୟକ୍ତି ବା ଦେବତା ସ୍ୱୟଂ—14. ( a use of the word prompted by devotion to one's elder or superior)

ସେ କଥା କହି ମୁନି ମତେ, ମୁଁ ସେ ହରି ଚରଣେ ଯେମନ୍ତେ ।
ନିଷ୍ଠେ ମନ କରି ସ୍ଥିର, ଯେମନ୍ତେ ଛାଡ଼ଇ ଶରୀର । ଜଗନ୍ନାଥ. ଭାଗବତ ।

୧୫ । ( ଲକ୍ଷଣାର୍ଥ ) କୌଣସି ବସ୍ତୁର ନିମ୍ନ ଭାଗ—
15. The foot or lower part of a thing.
୧୬ । ବ୍ରତାଦି ପାଳନ; ସମ୍ପାଦନ—16. Performance; observance; practising. ( M. W. )
( ଯଥା—ଉପସ୍ଥରଣ । )

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍ଷ | ଇଯ୍ | ଡ଼ଥ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଚ୍ୟ | ଇଅ | ଢ଼ | ନ୍ତ |

ଦେ. ବ. ପୁଂ—ପୁରୁଷବାଚକ ଗୋପାଳ, ଶ୍ୟାମ, କୃଷ୍ଣ, ରାମ, ବିଷ୍ଣୁ, ହରି, ଧ୍ରୁବ, ଇତ୍ୟାଦି ଓ ସ୍ତ୍ରୀବାଚକ ରାଧା, ଶ୍ୟାମା, ଲକ୍ଷ୍ମୀ, କାଳିନ୍ଦୀ, କାଳୀ, ପାର୍ବତୀ ଆଦି ସ୍ତ୍ରୀବାଚକ ଓ ଅଭୟ, ଧର୍ମ, ସତ୍ୟ ଓ ମିଥ୍ୟା ଆଦି ଶବ୍ଦମାନଙ୍କ ପରେ ଲାଗି ପୁରୁଷଙ୍କ ନାମ ହୋଇଥିବା ଶବ୍ଦ—A word added to some other words constituting names of males.

ଚରଣକମଳ—ସଂ. ବି. (ରୂପକ କର୍ମଧାରୟ; ଚରଣ+କମଳ, ଭକ୍ତିସୂଚକ ବାକ୍ୟରେ ଦେବତା ବା ପୂଜ୍ୟ ବ୍ୟକ୍ତିଙ୍କ ପ୍ରତି ବ୍ୟବହୃତ)—୧ । ପାଦପଦ୍ମ, ପୂଜାର୍ହ ପାଦଦ୍ୱୟ; ପୂଜ୍ୟ ବ୍ୟକ୍ତିଙ୍କ ଗୋଡ଼ଯୁଗଳ—
Charaṇakamaḷa
ଚରଣପଦ୍ମ } ଅନ୍ୟରୂପ
ଚରଣସରୋଜ }
1 ( literaly ) Foot which is graceful like the lotus or lily; lotus-feet ( of a revered person )

୨ । ଯେଉଁ ଗୁରୁ ସ୍ଥାନୀୟ ବ୍ୟକ୍ତି ବା ଦେବତାଙ୍କର ଚରଣକମଳ ବୋଲି କୁହାଯାଉଥାଏ ସେ ସ୍ୱୟଂ—
2. The person himself who is styled to have the Charaṇakamaḷa

[ ଦ୍ର—ଏ ପତ୍ର ପିତୃଦେବଙ୍କ ଚରଣ କମଳରେ ପହଞ୍ଚିବ, ଅର୍ଥାତ୍ ପିତୃଦେବଙ୍କ ନିକଟରେ ପହଞ୍ଚିବ । ଆପଣଙ୍କ ଚରଣକମଳ ମୋର ଆଶ୍ରୟ ସ୍ଥଳ ଅର୍ଥାତ୍ ଆପଣ ସ୍ୱୟଂ ମୋର ଆଶ୍ରୟ । ଆପଣଙ୍କ ଚରଣ କମଳରେ ଅଧୀନଙ୍କୁ ସ୍ଥାନ ଦେବେ । ଆପଣଙ୍କ ନିକଟରେ ମୋତେ ରଖିବେ । କମଳାର୍ଥବାଚକ ଅନ୍ୟ ଶବ୍ଦମାନ ଚରଣାର୍ଥ ବାଚକ ଅନ୍ୟ ଶବ୍ଦମାନଙ୍କ ସଙ୍ଗେ ଯୁକ୍ତ ହୋଇ ଏହି ଅର୍ଥରେ ବ୍ୟବହୃତ ହୁଏ । ଯଥା—ପାଦପଦ୍ମ, ପଦସରୋଜ । ]

ଚରଣକମଳେଷୁ—ସଂ. ବି. ( ସପ୍ତମୀ ବିଭକ୍ତି ବହୁବଚନ; ଗୁରୁଜନଙ୍କ ନିକଟକୁ ଲେଖାଯିବା ପତ୍ରର ଶିରୋନାମାରେ ବ୍ୟବହୃତ, ଯଥା—ପିତୃଦେବଙ୍କ ଚରଣକମଳେଷୁ)- ଶ୍ରୀଚରଣକମଳେଷୁ ( ଦେଖ )
Charaṇakamaḷeshu
Śricharaṇakamaḷeshu ( See )

ଚରଣକୃପା—ସଂ. ବି. ( ୬ଷ୍ଠୀ ତତ୍; ଚରଣ+କୃପା; ଗୁରୁଜନଙ୍କ ପ୍ରତି ବ୍ୟବହୃତ ଶବ୍ଦ )—ଚରଣର ଦୟା; (ଅର୍ଥାତ୍ ସେ ଚରଣ ଯାହାଙ୍କର ତାଙ୍କର ) ଦୟା ବା ଅନୁଗ୍ରହ; ସମ୍ବୋଧିତ ଗୁରୁଜନଙ୍କ ଦୟା—
Charaṇakṛupā
(ଚରଣଦୟା—ଅନ୍ୟରୂପ )
The kindness or favour ( of the elderly person addressed)
(ଯଥା—ଆପଣଙ୍କ ଚରଣକୃପାରୁ ମୁଁ ସୁଖରେ ଅଛି । ଅର୍ଥାତ୍ ଆପଣଙ୍କ କୃପାରୁ ମୁଁ ସୁଖରେ ଅଛି ।)

[ ଦ୍ର— ଚରଣାନୁଗ୍ରହ ଓ ଚରଣାନୁକମ୍ପା ଇତ୍ୟାଦି କେତେକ ଶବ୍ଦ ମଧ୍ୟ ଏହି ଅର୍ଥରେ ବ୍ୟବହୃତ ହୁଅନ୍ତି । ]

ଚରଣଗତ—ସଂ. ବିଣ. ପୁଂ.—( ୨ୟା ତତ୍ କମ୍ବା ୭ମୀ ତତ୍ )—
Charaṇagata ଗୋଡ଼ତଳେ ପଡ଼ିଥିବା—
(ଚରଣଗତା—ସ୍ତ୍ରୀ) Fallen at one's feet (Wilson).

ଚରଣଗୁପ୍ତ—ସଂ. ବି. (ବହୁବ୍ରୀହି; ଚରଣ ହୋଇଅଛି ଗୁପ୍ତ ଯହିଁରେ)—
Charaṇa gupta ଚିତ୍ରକାବ୍ୟ ବା ଚିତ୍ର ରଚନାବିଶେଷ—
A kind of artistic poetical composition.
[ ଦ୍ର—ଏପରି ରଚନା ଭଞ୍ଜୀୟ ଯୁଗର ସାହିତ୍ୟରେ ବହୁଳ ହୋଇଥିଲା । ଦଣ୍ଡାକ୍ଷର, ଚ୍ୟୁତାକ୍ଷର ଓ ଦତ୍ତଚ୍ୟୁତାକ୍ଷର ଆଦି ନାମରେ ଏହି ଶ୍ରେଣୀର ବହୁ ରଚନା ତତ୍କାଳୀନ କବିମାନେ କରି ନିଜର ଶବ୍ଦପାଣ୍ଡିତ୍ୟ ଦେଖାଇବା ସଙ୍ଗେ ସଙ୍ଗେ ରଚନାମାନଙ୍କୁ ଦୁର୍ବୋଧ କରି ପାରୁଥିଲେ । ]

ଚରଣଗ୍ରନ୍ଥି—ସଂ. ବି.—(୬ଷ୍ଠୀ ତତ୍; ଚରଣ=ପାଦ+ଗ୍ରନ୍ଥି=ଗଣ୍ଠି)—
Charaṇagranthi ୧ । ଗୋଡ଼ର ଗୋଇଠି ବା ଗୋଇଠି—
1. Posterior heel of foot.
୨ । ବଳାଗଣ୍ଠି – 2. Ankle.

ଚରଣଚିହ୍ନ—ସଂ. ବି.—(୬ଷ୍ଠୀ ତତ୍; ଚରଣ+ଚିହ୍ନ)—୧ । ଭୂମିଆଦିରେ
Charaṇa chihna ମୁଦ୍ରିତ ହୋଇ ରହି ଯିବା ତଳପାଦ ଦାଗ—
1. Foot-print.
୨ । ପଥର, ମାଟି, କାଦୁଅ ଆଦିରେ ଅଙ୍କିତ ବିଷ୍ଣୁ ଓ ମହାତ୍ମାମାନଙ୍କ ପଦଚିହ୍ନ ( ଯାହାକୁ ଭକ୍ତମାନେ ପୂଜା କରନ୍ତି)—2. Foot prints taken on stone, clay, line etc of Bishnu or great-men worshipped and devotees.

ଚରଣଘଷା—ଦେ. ବି.—(ସଂ. ଚରଣ+ଘର୍ଷଣ)—ଗୋଡ଼ଘଷା ପଥର—
Charaṇaghashā ଯେଉଁ କଳା ପଥରରେ ଲୋକେ ନିଜ ଗୋଡ଼ର ତଳପାଦ ଘଷି ମଳଚମ ସଫା କରନ୍ତି—
A slap of sand-stone on which people rub the soles of their feet to clear away the overgrown skin.

ଚରଣଚୁଟିଆ—ଦେ. ବିଣ. ପୁଂ.—(ମନ୍ଦାର୍ଥ —(ସଂ. ଚରଣ ଓ ଓଡ଼ିଆ
Charaṇachuṭiā ଚୁଟି=ଶିଖା)—ଯେଉଁ ବ୍ୟକ୍ତି ସମୟ ପଡ଼ିଲେ
(ଚରଣଚୁଟେଇ—ସ୍ତ୍ରୀ) ଚରଣ ଧରି ଖୋସାମତ କରେ ଓ ସମୟ ପଡ଼ିଲେ ପୁଣି ଚୁଟି ଧରି ମାରେ—Time-serving; a person who acts slavishly and impudently as occasion requires; a man of no principles.

ଚରଣଚୁଟିଆ—ଦେ. ବିଣ. ପୁଂ.—ଚରଣଚୁଟିଆ (ଦେଖ)
Charaṇachuṭiā Charaṇachuṭiā (See)
(ଚରଣଚୁଟେଇ—ସ୍ତ୍ରୀ)

ଚରଣଟୀକା—ସଂ. ବି. ( ଆଧୁନିକ ବ୍ୟବହାର; ମ. ପ. ଲୋ; ଚରଣ
Charaṇaṭikā ଲକ୍ଷ୍ୟ ଟୀକା )—ପଦଟୀକା; ଲିଖିତ ବିଷୟ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ରଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରଚିହ୍ନ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ଦ୍ୱିତୀୟ ବା ପ୍ରଥମ ବିପରୀତ ୨ ବା ୧ ଚକ୍ରଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'ବୃଥ' ନ ମିଳିଲେ 'ବୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଗଳ' ନ ପାଇଲେ 'ଅର୍ଗଳା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ବୁଝାଇବା ପାଇଁ ପୃଷ୍ଠାର ତଳଭାଗରେ ଲିପିବଦ୍ଧ ହୋଇଥିବା ଟିପ୍ପଣୀ—Foot-note.

**ଚରଣତଳ**—ସଂ. ବି.—(୬ଷ୍ଠୀ ତତ୍; ଚରଣ+ତଳ; ଭକ୍ତି ବା ବିନୟପ୍ରଣୋଦିତ ଅଭୁକ୍ତି ବଚନ)—ଗୁରୁଜନାଦି ପୂଜ୍ୟ ବ୍ୟକ୍ତିଙ୍କ ପ୍ରତି ପ୍ରଯୁଜ୍ୟ)—ଗୋଡ଼ପାଖ; ପାଦନିକଟ, ନିକଟ—
Charaṇataḷa

1. (at) The feet (of the person addressed to or referred)

(ଯଥା—ଏ ପତ୍ର ପିତୃଦେବଙ୍କ ଚରଣ ତଳେ ପହଞ୍ଚିବ ଅର୍ଥାତ୍ ପିତୃଦେବଙ୍କ ନିକଟରେ ପହଞ୍ଚିବ ।)

(ଯଥା—ମତେ ଆପଣଙ୍କ ଚରଣ ତଳେ ସ୍ଥାନ ଦେବେ । ଅର୍ଥାତ୍ ଆପଣଙ୍କ ନିକଟରେ ଆଶ୍ରୟ ଦେବେ ।)

ମୁଁ ଆପଣଙ୍କ ଚରଣ ତଳେ ଦୋଷୀ ଅଟେ=ମୁଁ ଆପଣଙ୍କଠାରେ ଦୋଷୀ ଅଟେ ।

୨ । ପାଦତଳ ଭୂମି; ଯାହା ଉପରେ ପାଦ ସ୍ଥାପନ କରାଯାଏ—
2. The earth which (the addressee's) foot is treading; a thing on which the addressee is putting his foot.

(ଯଥା—ମୁଁ ଆପଣଙ୍କ ଚରଣ ତଳକୁ ଯୋଗ୍ୟ ନୁହେଁ । ମୁଁ ଏଡ଼େ ହେୟ ଯେ ଆପଣଙ୍କ ପାଦ ମଧ୍ୟ ମୋ ଉପରେ ରହିବାର ଉପଯୁକ୍ତ ନୁହେଁ, ଅର୍ଥାତ୍ ଆପଣଙ୍କ ପାଦତଳ ଭୂମି ଅପେକ୍ଷା ମଧ୍ୟ ମୁଁ ହେୟ ।)

୩ । ( ସମ୍ବୋଧିତବ୍ୟକ୍ତିଙ୍କ ) ହୃଦୟ—
3. The mind (of the persou addressed to)

(ଯଥା—ଏ ଦାସୀକୁ ସର୍ବଦା ଚରଣତଳେ ସ୍ଥାନ ଦେବେ ଅର୍ଥାତ୍ ଏ ଦାସୀକୁ ସର୍ବଦା ମନରେ ବା ହୃଦୟରେ ରଖିଥିବେ ପାସୋରିବେ ନାହିଁ ।)

୪ । ( ସମ୍ବୋଧିତବ୍ୟକ୍ତିଙ୍କ ) ଆଶ୍ରୟ—
4. Patronage; protection.

(ଯଥା— ଦେବତାଙ୍କ ଚରଣତଳ ମତେ ରକ୍ଷାକରିବ ।)

୫ । ତଳପା—5. Sole of the feet.

ସ ହୃଦଲ୍ଲବର ନବକୁଞ୍ଜ ସଞ୍ଚାର ଶ୍ରମୁଁ ମୋ ଚରଣତଳ—କବିସୂର୍ଯ୍ୟ. କିଶୋରଚନ୍ଦ୍ର, ସ ଗୀତ ।

**ଚରଣତଳିଆ**—ଦେ. ବିଣ (ସଂ, ଚରଣତଳ+ଓଡ଼ିଆପ୍ରତ୍ୟୟ ଇଆ)—
Charaṇataḷiā ୧ । ପାଦତଳେ ରହିବାର ଉପଯୁକ୍ତ; ଅତି ନ୍ୟୂନ; ପାଅତଳିଆ—1. Very humble; one who is fit to stay at the foot (of the person referred to.)

୨ । ଚରଣାଶ୍ରିତ ( ବ୍ୟକ୍ତି ); ଆଶ୍ରିତ—
2. Living on the patronage or favour of a nother person.

**ଚରଣତଳେପଡ଼ିବା**—ଦେ. କ୍ରି—ଗୋଡ଼ତଳେପଡ଼ିବା—
Charaṇataḷepaṛibā ୧ । ଅନୁଗ୍ରହ, ଦୟା, କ୍ଷମା, ଆଶୀର୍ବାଦ ପାଏପଡ଼ା ପାଇବା ଉଦ୍ଦେଶ୍ୟରେ ମାନ୍ୟ ବ୍ୟକ୍ତିର ଗୋଡ଼ତଳେ

चरनोंमें ପ୍ରଣିପାତ କରିବା—1. To fall at the foot of another; to lie prostrate at the foot of a person (to gain blessing, favour, kindness or forgiveness)

୨ । ଗୋଡ଼ପାଖରେ ମୁଣ୍ଡ ଲଗାଇ ପ୍ରଣାମକରିବା—
2. To make obeisance by touching one's head to the feet of an elderly person.

**ଚରଣଦାସ**—ସଂ. ବି. ପୁଂ ( ୬ଷ୍ଠୀ ବା ୭ମୀ ତତ୍; ଚରଣ+ଦାସ )—
Charaṇadāsa ୧ । ପ୍ରଭୁଙ୍କର ଚରଣସେବା କରିବା ଭୃତ୍ୟ—
1. Servant tending the legs of a master.

(ଚରଣଦାସୀ—ସ୍ତ୍ରୀ) ୨ । ପ୍ରଭୁଙ୍କର ଅତ୍ୟନ୍ତ ଅନୁଗତ ଭୃତ୍ୟ; କିଙ୍କର—2. Most obedient and humble servant.

୩ । ଆଜ୍ଞାକାରୀ ଶିଷ୍ୟ—3. An obedient deciple.

ଦେ. ବି—୧ । ( ନାମ; 'ରାଧାରମଣଚରଣଦାସ'ର ସଂକ୍ଷିପ୍ତ ଡାକନାମ; ଏହି ନାମରେ ସେ କଟକରେ ସୁପରିଚିତ ଥିଲେ)—ରାଧାରମଣଚରଣଦାସ (ଦେଖ) Rādhāramaṇacharaṇadāsa (See).

୨ । ଦିଲ୍ଲୀରେ ବାସକରୁଥିବା ଏକ ସ୍ୱର୍ଗୀୟ ହିନ୍ଦୁଧର୍ମପ୍ରଚାରକ ( ଜନ୍ମ ସମ୍ବତ୍ ୧୭୬୦ ଦେହାନ୍ତ ସମ୍ବତ୍ ୧୮୬୨; ଏ ସ୍ୱରୋଦୟ ଆଦି ଅନେକଗୁଡ଼ିଏ ଗ୍ରନ୍ଥ ରଚନା କରିଥିଲେ, ଏ ଗୋଟିଏ ନୂତନ ବୈଷ୍ଣବସଂପ୍ରଦାୟର ପ୍ରବର୍ତ୍ତନ କରିଥିଲେ—ହି. ଶବ୍ଦସାଗର )—
2. Name of a deceased Hindu Saint of Delhi.

**ଚରଣଦାସୀ**—ସଂ. ବି. ସ୍ତ୍ରୀ (୬ଷ୍ଠୀ ବା ୭ମୀ ତତ୍; ଚରଣ+ଦାସୀ)—
Charaṇadāsī ୧ । ଚରଣଦାସର ସ୍ତ୍ରୀଲିଙ୍ଗ—
1 The feminine of Charaṇadāsa.

୨ । ପ୍ରଭୁଙ୍କର ପଦସେବାକାରିଣୀ ଚାକରାଣୀ—
2. A maidservant who massages the legs of the master.

୩ । ଆପଣାର ସ୍ତ୍ରୀ—3 One's wife.

୪ । ଅତ୍ୟନ୍ତ ଅନୁଗତା ଚାକରାଣୀ—
4. Most humble and obedient maid servant.

ଦେ. ବି. ପୁଂ—ଚରଣଦାସଙ୍କ ପ୍ରବର୍ତ୍ତିତ ବୈଷ୍ଣବ ସମ୍ପ୍ରଦାୟବିଶେଷ—Name of a sect following the tenants of saint Charaṇadāsa.

**ଚରଣଦେଶ**—ଦେ. ବି (ରୂପକ କର୍ମ୍ମ ମ. ପ.ଲୋ; ଚରଣାଧିକୃତ ଦେଶ)—
Charaṇadeśa ଚରଣତଳ; ପାଦଦେଶ; ଗୋଡ଼ତଳ; ପୂଜ୍ୟ ବ୍ୟକ୍ତିଙ୍କର ଚରଣ ଯେଉଁ ସ୍ଥାନରେ ପଡ଼ୁଥାଏ—
Ground near one's foot.

ପଡ଼ିଲେ ସେ ତାହାଙ୍କ ଚରଣଦେଶରେ—କୃଷ୍ଣସିଂହ. ମହାଭାରତ. ସଭା ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଊଅ | ଜ୍ଞ |
| ୨ | ଈ | ଉ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଓ | ନ୍ଥ |

**ଚରଣଧୂଳି**—ସଂ. ବି (୬ଷ୍ଠୀ ତତ୍; ଚରଣ+ଧୂଳି)—୧। ପ୍ରଭୁ ବା Charaṇadhūḷi ଗୁରୁଜନଙ୍କ ଚରଣରେ ଲାଗିଥିବା ଧୂଳି—1. The dust of the feet of a master or Gurujana.

[ ଦ୍ର—ଶିଷ୍ୟମାନେ ଏହାକୁ ଅତ୍ୟନ୍ତ ପବିତ୍ର ମନେ କରି ମୁଣ୍ଡରେ ଲଗାନ୍ତି । ]

୨। (ଅତି ଭକ୍ତିପ୍ରଣୋଦିତ ବ୍ୟବହାର) ଗୁରୁଜନ ବା ପୂଜ୍ୟ ବ୍ୟକ୍ତିଙ୍କର ପାଦ—2. The feet of a revered person.

(ଯଥା—ଆମ ଘରେ ଆପଣଙ୍କ ଚରଣଧୂଳି ପଡ଼ୁନାହିଁ ।)

**ଚରଣନ୍ୟାସ**—ସଂ. ବି (୬ଷ୍ଠୀ ତତ୍; ଚରଣ+ନ୍ୟାସ)—୧। ଚାଲିବା Charaṇanyāsa ପାଇଁ ଗୋଡ଼ ଭୂମିରେ ପକାଇବା; ପଦନ୍ୟାସ—Footstep (M. W.)

୨। ପାଦଚିହ୍ନ; ଚରଣଚିହ୍ନ—2. Footmark (M. W.)

**ଚରଣପଦ୍ମ**—ସଂ. ବି (ରୂପକ କର୍ମଧାରୟ; ଚରଣ+ପଦ୍ମ)—
Charaṇapadma ଚରଣକମଳ (ଦେଖ)—Charaṇakamaḷa (See)

ଚରଣପଦ୍ମ ଚିନ୍ତ ଦୟାସାଗର ସନ୍ତେ କି ଏ ଦାସୀକି କଲ ଅନ୍ତର—
ମଧୁସୂଦନ. ସୀତାବନବାସ ।

**ଚରଣପର୍ବଣ**—ସଂ. ବିଣ (୬ଷ୍ଠୀ ତତ୍; ଚରଣ+ପର୍ବନ୍)—୧। ଗୋଇଠି; Charaṇaparbaṇa ଏଡ଼ି (ହି. ଶବ୍ଦସାଗର)—1. The back part of the heel.

୨। ଗୁଲ୍ଫ; ଗୋଇଠି (ହି. ଶବ୍ଦସାଗର)—2. The part of the ankle where the muscles of the leg combine.

**ଚରଣପାଦୁକା**—ସଂ. ବି (୬ଷ୍ଠୀ ତତ୍; ଚରଣ+ପାଦୁକା)—୧। କଠଉ; Charaṇapādukā ଖଡ଼ମ—1. Wooden sandals.

୨। ଜୋତା—2. Shoes.

୩। ଚରଣଚିହ୍ନ (ହି. ଶବ୍ଦସାଗର) (ଦେଖ)—3. Charaṇachihna (See)

**ଚରଣପୀଠ**—ସଂ. ବି (ମଧ୍ୟପଦଲୋପୀ; ଚରଣାଶ୍ରିତ ପୀଠ)—
Charaṇapītha ୧। ଚରଣପାଦୁକା (ହି. ଶବ୍ଦସାଗର) (ଦେଖ)—1. Charaṇapādukā (See)

୨। ଉଚ୍ଚ ସ୍ଥାନରେ ବସିବା ବ୍ୟକ୍ତି ଯେଉଁ ପୀଢ଼ା ବା ଟୁଲ ଉପରେ ଆରାମ ପାଇଁ ଗୋଡ଼ ରଖନ୍ତି—2. Footstool.

୩। ପାଉଁଦାନ; ଗାଡ଼ି ଆଦିରେ ଚଢ଼ିବାବେଳେ ଯେଉଁ ଛୋଟକା ଧାତୁଖଣ୍ଡ ଉପରେ ଗୋଡ଼ ଦିଆଯାଏ—3. Foot-board.

**ଚରଣପ୍ରସାର**—ସଂ. ବି (୬ଷ୍ଠୀ ତତ୍; ଚରଣ+ପ୍ରସାର) ଗୋଡ଼ ଲମ୍ବା- Charaṇaprasāra କରିବା—Stretching the leg (M.W.)

**ଚରଣଫାଟୁଆ**—ଦେ. ବିଣ—ଗୋଡ଼ଫାଟ ରୋଗଗ୍ରସ୍ତ; ଯାହାର ଗୋଡ଼ର Charaṇaphāṭuā ତଳପା ଶୀତ ଋତୁରେ ରୋଗ ହେତୁ ଫାଟି ଯିବାରୁ ସେ ଚାଲି ପାରେ ନାହିଁ—One whose heels become cracked in winter (a disease).

ଦେ. ବି.—ଗୋଡ଼ଫାଟ ରୋଗ—A disease by which the heels becom cracked.

**ଚରଣଯୋଧୀ**—ସଂ. ବି (ଚରଣ+ଯୁଧ ଧାତୁ+ଇନ୍, ୧ମା. ୧ବ)—
Charaṇajodhī କୁକୁଡ଼ା—A cock (M. W.)

**ଚରଣରେଣୁ**—ସଂ. ବି (୬ଷ୍ଠୀ ତତ୍; ଚରଣ+ରେଣୁ)—
Charaṇareṇu ଚରଣଧୂଳି (ଦେଖ)—Charaṇadhūḷi (See)

**ଚରଣଶରଣ**—ସଂ. ବିଣ. ପୁଂ. (ବହୁବ୍ରୀହି; ଚରଣ+ଶରଣ) ଚରଣା- Charaṇaśaraṇa ଶ୍ରିତ (ଦେଖ)—Charaṇāśrita (See).

(ଚରଣଶରଣା—ସ୍ତ୍ରୀ) ଚରଣ-ଶରଣ ଲୋକଙ୍କୁ ନାହିଁ । କଥାତ ଉଚିତ କୋହି—
ଭକ୍ତ. ପ୍ରେମସୁଧାନିଧି ।

**ଚରଣସରୋଜ**—ସଂ. ବି (ରୂପକ କର୍ମଧା; ଚରଣ+ସରୋଜ)—
Charaṇasaroja ଚରଣକମଳ (ଦେଖ)—Charaṇakamaḷa (See)

**ଚରଣସେବକ**—ସଂ. ବି. ପୁଂ (୬ଷ୍ଠୀ ତତ୍; ଚରଣ+ସେବକ)—
Charaṇasebaka ଚରଣଦାସ (ଦେଖ)—Charaṇadāsa (See)

ଚରଣସେବକା } ସ୍ତ୍ରୀ
ଚରଣସେବିକା }

**ଚରଣସେବକୀ**—ଦେ. ବି. ସ୍ତ୍ରୀ (ସଂ. ଚରଣସେବିକା)—ଚରଣଦାସୀ (ଦେଖ)—
Charaṇasebakī Charaṇadāsī (See)

**ଚରଣସେବା**—ସଂ. ବି (୬ଷ୍ଠୀ ତତ୍; ଚରଣ+ସେବା)—୧। ଗୋଡ଼ Charaṇasebā ଘଷିବା; ପଦସମ୍ବାହନ—1. Caressing of the feet of another.

୨। ଗୁରୁଜନଙ୍କ ପ୍ରତି ଶିଷ୍ୟାଦିଙ୍କର ଆନୁଗତ୍ୟ—2. Obedience; whole hearted devotion; one's elder or superior.

୩। ପ୍ରଭୁ ବା ଗୁରୁଜନଙ୍କର ସେବା—3. A master's service; serving at the feet of the master; devoted service to one's master.

**ଚରଣା**—ସଂ. ବି (ବୈଦ୍ୟକ)—ଯୋନିରୋଗବିଶେଷ—A disease of Charaṇā the female organ.

[ ଦ୍ର—ଏ ରୋଗଗ୍ରସ୍ତା ସ୍ତ୍ରୀର ମୈଥୁନ କାଳରେ ଅତିଶୀଘ୍ର ଅଧିକ ପରିମାଣରେ ରଜଃସ୍ରାବ ହୁଏ । (ହି. ଶବ୍ଦସାଗର) ]

**ଚରଣାଙ୍କିତ**—ସଂ ବିଣ (୩ୟା ତତ୍; ଚରଣ+ଅଙ୍କିତ)—୧। ପାଦର Charaṇāṅkita ଛାପ—1. The print of ones foot; foot-print.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ସ୍ଥଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା—ଗଢ଼' ନ ମିଳିଲେ 'ଗାଢ଼' ଖୋଜିବେ, ଦ୍ଧଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; ଆଖି ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୨। (୭ମୀ ତତ୍) ପାଦରେ ଚିହ୍ନିତ—2. (lines and figures seen) Marked on the soles of the leg.

**ଚରଣାଦ୍ରି**—ସଂ. ବି (ନାମ) (ମଧ୍ୟପଦଲୋପୀ; ଚରଣାଙ୍କିତ ଅଦ୍ରି)—
Charaṇādri ଚୁନାର; କାଶୀ ଓ ମିର୍ଜାପୁର ମଧ୍ୟରେ ଥିବା ସ୍ଥାନ—Chunar, a town between Benares and Mirjapur.

[ଦ୍ର—ଏଠାର ଗୋଟିଏ ଛୋଟ ପାହାଡ଼ରେ ବୁଦ୍ଧଦେବଙ୍କର ଚରଣଚିହ୍ନାଙ୍କିତ ଖଣ୍ଡିଏ ପଥର ଅଛି। ଏ ପଥରକୁ ମୁସଲମାନମାନେ ନେଇ ଗୋଟିଏ ମସ୍‌ଜିଦ୍‌ରେ ରଖି କହନ୍ତି ଯେ, ଏ କଦମ୍ ରସୁଲ୍ (ମହମ୍ମଦଙ୍କ ପଦଚିହ୍ନ) ଅଟେ। ହି. ଶବ୍ଦସାଗର]

**ଚରଣାନୁଗ**—ସଂ. ବିଣ. ପୁଂ. (୭ମୀ ତତ୍; ଚରଣ+ଅନୁ+ଗମ୍+
Charaṇānuga କର୍ତ୍ତୃ. ଅ)—ଚରଣାନୁଗତ (ଦେଖ)
(ଚରଣାନୁଗା—ସ୍ତ୍ରୀ) Charaṇānugata (See)

**ଚରଣାନୁଗତ**—ସଂ. ବିଣ. ପୁଂ. (୭ମୀ ତତ୍; ଚରଣ+ଅନୁ+ଗମ୍+
Charaṇānugata କର୍ତ୍ତୃ. ତ)—୧। ଅନ୍ୟର ପଦାଙ୍କ ଅନୁସରଣ-
(ଚରଣାନୁଗତା—ସ୍ତ୍ରୀ) କାରୀ ବା ପଶ୍ଚାଦ୍‌ଗାମୀ—
1. Following another's foot steps

୨। ଅତ୍ୟନ୍ତ ବିନୀତ ଓ ଆଜ୍ଞାପାଳକ—2. Most humble and obedient subservient.

୩। ପ୍ରଭୁଙ୍କର ଚରଣ ସେବାକାରୀ—3. Tending the feet of or serving the master.

୪। ଶରଣାଗତ (ହି. ଶବ୍ଦସାଗର)—4. One who is under the shelter of another.

**ଚରଣାବରଣ**—ସଂ. ବି—(୬ଷ୍ଠୀ ତତ୍; ଚରଣ+ଆବରଣ)—ମୋଜା—
Charaṇābaraṇa Stocking; socks.

**ଚରଣାଭରଣ**—ସଂ. ବି—(୬ଷ୍ଠୀ ତତ୍; ଚରଣ+ଆଭରଣ)—
Charaṇābharaṇa ଗୋଡ଼ର ଅଳଙ୍କାର—Ornament for the leg.

**ଚରଣାମ୍ବୁଜ**—ସଂ. ବି—(ରୂପକ କର୍ମଧାରୟ; ଚରଣ+ଅମ୍ବୁଜ)—
Charaṇāmbuja ଚରଣକମଳ (ଦେଖ)
Charaṇakamaḷa (See)

**ଚରଣାମୃତ**—ସଂ. ବି—(୬ଷ୍ଠୀ ତତ୍ କମ୍ବା ମ. ପ. ଲୋ; ଚରଣ+
Charaṇāmṛuta ଅମୃତ)—ଦେବତା, ବ୍ରାହ୍ମଣ ବା ଗୁରୁଜନଙ୍କର ପାଦପ୍ରକ୍ଷାଳନ ଜଳ; ଯେଉଁ ଜଳକୁ ଭକ୍ତ ପାନ କରେ; ପାଦୋଦକ; ପାଦୁକ; ଗୋଡ଼ଧୁଆ ପାଣି—Water with which the feet of a Diety, Brahmana or spiritual preceptor have been washed and which is taken with avidity by a devotee or disciple.

[ଦ୍ର—ଚରଣାମୃତ 'ପିଇବା'କୁ ଭକ୍ତିରେ ଚରଣାମୃତ 'ପାଇବା' ବା 'ସେବା କରିବା' ବୋଲାଯାଏ]

**ଚରଣାୟୁଧ**—ସଂ ବି. (ବହୁବ୍ରୀହି, ଯାହାର ଚରଣ ଆୟୁଧସ୍ୱରୂପ; ଯାହାର
Charaṇāyudha ଚରଣ ତୀକ୍ଷ୍ଣ ନଖଯୁକ୍ତ; ଯେ ଚରଣଦ୍ୱାରା ଅନ୍ୟ କୁକ୍କୁଟ ସଙ୍ଗେ ଯୁଦ୍ଧ କରେ)—

୧। କୁକ୍କୁଟ; କୁକୁଡ଼ା—1. Cock

ଚରଣାୟୁଧବନ୍ଦ ଉଠିଲ ରେ, କାଳ କରୁଣା ବୋଲି ଯେତେ ଗୃହୀ ଉଚ୍ଚଲ। ତୋ ମାନଙ୍କୁ ତ ନ ଫିଟିଲ ରେ। କବିସୂର୍ଯ୍ୟ—ସଙ୍ଗୀତ।

୨। ଶିକାରୀ ପଶୁପକ୍ଷୀ ଓ ଜୀବଜନ୍ତୁ—
2. Birds and beasts of pray.

ସଂ. ବିଣ—ଯାହାର ଗୋଡ଼ ଅସ୍ତ୍ରରୂପେ ବ୍ୟବହୃତ—
Having the feet as weapon (animal) fighting with the feet.

**ଚରଣାରବିନ୍ଦ**—ସଂ. ବି—(ରୂପକ କର୍ମଧାରୟ, ଚରଣ+ଅରବିନ୍ଦ)—
Charaṇārabinda ଚରଣକମଳ (ଦେଖ)
Charaṇakamaḷa (See)

**ଚରଣାଶ୍ରିତ**—ସଂ. ବିଣ. ପୁଂ (୭ମୀ ତତ୍; ଚରଣ+ଆଶ୍ରିତ, ଅତିଭକ୍ତି-
Charaṇāsrita ପ୍ରଣୋଦିତ ବ୍ୟବହାର)—ଗୁରୁଜନ, ଦେବତା,
(ଚରଣାଶ୍ରିତା—ସ୍ତ୍ରୀ) ପ୍ରଭୁ, ଧନୀ ବା ବଡ଼ ଲୋକଙ୍କ ଆଶ୍ରୟରେ ଚଳୁଥିବା ବ୍ୟକ୍ତି; ଚରଣାନୁଗତ—(a person) Who is dependent on the favour or bounty of another great or rich man or diety.

**ଚରଣାସ୍କନ୍ଦନ**—ସଂ. ବି. (୭ମୀ ତତ୍, ଚରଣ+ଆସ୍କନ୍ଦନ)—
Charaṇāskandana ଗୋଡ଼ରେ ମଳିବା; ପାଦଦଳନ—
Treading down with the feet.

**ଚରଣି**—ସଂ.ବି. (ଚର ଧାତୁ+କର୍ତ୍ତୃ. ଅନି—
Charaṇi ମନୁଷ୍ୟ (ହି. ଶବ୍ଦସାଗର)—Man.

चरानी ଦେ. ବି—(ସଂ. ଚର୍ ଧାତୁ)—୧। ଘାସ; ଗୋରୁ ଘୋଡ଼ାଙ୍କ
**चरवाइ** ଖାଦ୍ୟ—1 Food for beasts.

୨। (ସଂ. ଗୃରଣ) ଗୋଚାରଣ; ଗୋରୁ ଚରାଇବା—
2. Tending cattle; pasturing.

୩। (ସଂ. ଚରଣ) ଗୋରୁ ମହିଷାଦିମାନଙ୍କର ଘାସ ଚରିବା—
3. The beasts feeding on pasture; grazing.

୪। (ସଂ. ଚରୁ) ଗୋଚାରଣ ଭୂମି—4. Pasturage.

୫। (ସଂ. ଚରୁ) ଜମିଦାର ବା ରାଜାଙ୍କ ଭୂମିରେ ଗୋ-ମହିଷାଦିଙ୍କ ଘାସ ଚରିବା ନିମନ୍ତେ ଗୋରୁର ସ୍ୱାମୀ ରାଜାଙ୍କୁ ଯେଉଁ କର ଦିଏ—5. Pasture tax; grazing tax; tax paid to the Raja or zamindar for ones cattle grazing on the Zamindar's land or pasture.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ୟ | ଉଅ | ଘ୍ନ |
| ୨ | ଈ | ଊ | ଋୁ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଜ | ନ୍ବ |

୬ । ଗୋରୁ ମଇଁଷି ରାଜା ବା ଜମିଦାରଙ୍କ ଜମି ବା ଜଙ୍ଗଲ ବା ପଠାରେ ଚରିବାରୁ ଗଉଡ଼ମାନେ ରାଜାଙ୍କୁ କର ବଦଳରେ ଯେଉଁ ଘିଅ ଦିଅନ୍ତି—6. Ghee paid by cowherds to the Raja or Zamindar in lieu of grazing tax

ଦେ. ବିଣ—ଗୋରୁ ଗାଈ ଚରାଇବାପାଇଁ ଭୂସ୍ୱାମିଙ୍କୁ ଦେୟ (ଘୃତ; ରାଜସ୍ୱ) —Payable for grazing.

(ଯଥା—ଚରଣି ଘିଅ, ଚରଣି ଖଜଣା, ଚରଣି ଟଙ୍କସ ।)

**ଚରଣି ଘିଅ**—ଦେ. ବି.—ରାଜାଙ୍କ ଭୂମିରେ ଚରା କରନ୍ତେ ଗୋରୁ
Charaṇi ghia ଚରାଇବା ଯୋଗୁଁ ଗଉଡ଼ମାନେ ରାଜାଙ୍କୁ ମାଗଣା ଦେବା ନିର୍ଦ୍ଦିଷ୍ଟ ଘିଅ—Ghee paid to a landlord by cowherds in lieu of grazing tax.

**ଚରଣିଭୂଇଁ** - ଦେ. ବି. ( ସଂ ଚରଣ + ଭୂମି )—୧ । ଗୋଚର ଜମି;
Charaṇi bhuüiñ ଚରାଭୂଇଁ—1. Pasture land.

**ଚରଣୋଦକ**—ସଂ. ବି.—(୬ଷ୍ଠୀ ତତ୍, ଚରଣ+ଉଦକ —
Charaṇodaka ଚରଣାମୃତ (ଦେଖ)
Charaṇāmṛuta (See)

**ଚରଣୋପଧାନ**—ସଂ. ବି. ( ୬ଷ୍ଠୀ ତତ୍; ଚରଣ + ଉପଧାନ)—ଯେଉଁ
Charaṇopadhāna ମାଣ୍ଡି ବା ଆସନ ଉପରେ ଗୋଡ଼ ରଖା ଯାଏ—Foot rest (M. W.)

**ଚରତି**—ସଂ. ବି—ଦୀର୍ଘଜୀବୀ ଶାକତରୁବିଶେଷ—Name of a perennial potherb; Ionidium suffruticosum; Viola Suffruticosa (Kirtikar).
Charati
ହୁନବୋରା
ରତନପୁରୁଷ
ତେ. ସୂର୍ଯ୍ୟକେନ୍ତ, ମାଲ-କୋବାସି, ପୁରୁଷରତ୍ନମ୍
ସାନ୍ତାଲୀ. ଡାଣ୍ଡି, ସୋଲ୍,
ବୀରସୂର୍ଯ୍ୟମୁଖୀ

[ ଦ୍ର—ଏହା ଭାରତର ଉତ୍ତର ପଶ୍ଚିମ ପ୍ରଦେଶ, ମଧ୍ୟପ୍ରଦେଶ, ବଙ୍ଗ ଓ ସିଂହଳରେ ଜାତ ହୁଏ । ଏହାର ଶାଖାଗୁଡ଼ିକ ଝୁଙ୍କି ମେଲିଯାଏ ଓ ଫୁଲ ନାଲିଆ ଦିଶେ । ଏହି ଗଛର ପତ୍ର, ଡାଙ୍ଗ ଓ ଚେର ବାତଜ୍ୱର, ଗୋଦର, ମେହ ଆଦିର ଔଷଧରେ ବ୍ୟବହୃତ ହୁଏ । ]

**ଚରବଣ**— ଗ୍ରା· ( ପଦ୍ୟ ) ବି. (ସଂ. ଚର୍ବଣ)—ଚର୍ବଣ; ଚୋବାଇବା—
Charabaṇa Chewing
( ଚରବଣା –ଅନ୍ୟରୂପ )

**ଚରବସ୍ତ୍**—ଦେ. ବି. ( ସଂ. ଚର=ପଟୁ + ବସ ଧାତୁ; ଯେଉଁ ଜମିରେ
Charabast' ପଟୁ ବସି ଯାଇଥାଏ )—ନଈବଢ଼ି ଦ୍ୱାରା ନଦୀଗର୍ଭରେ
चरवस्त ପଟୁ ପଡ଼ି ଯେଉଁ କୃଷି ଉପଯୋଗୀ ଜମି ଜାତ ହୋଇ-
चरबस्त ଥାଏ; ପଟୁଜମି—Silted land on the bed of a river fit for cultivation.

**ଚରବି** (ଇତ୍ୟାଦି)—ଗ୍ରା. ବୈଦେ. ବି. (ଫା)—ଚର୍ବି ଇତ୍ୟାଦି (ଦେଖ)
Charabi ( etc ) Charbi etc ( See )

**ଚରବ୍ୟ**—ସଂ. ବିଣ. ( ଚରୁ + ଯ )—ହୋମରେ ଚରୁରୂପେ ବ୍ୟବହୃତ
Charabya ହେବାର ଉପଯୁକ୍ତ ( ହି. ଶବ୍ଦସାଗର )— Fit to be employed as an accompaniment to the ghee offered to fire

**ଚରମ**—ସଂ. ବି. ( ଚର ଧାତୁ + କର୍ତ୍ତୃ. ଅମ )—୧ । ଶେଷଭାଗ—
Charama 1. Last or finishing stage.
୨ । ପଶ୍ଚିମ ( ହି. ଶବ୍ଦସାଗର )—2 The west.
୩ । ଶେଷ—3. Finish; end.
୪ । ପଛଆଡ଼—4. Back side.

ବଭେଦ ନ ରହିବ ଚରମରେ, ବୀର ଶାର୍ଦ୍ଦୁଳ ମୁଖ-ପଦ୍ମରେ—
ଭଞ୍ଜ. ବୈଦେହୀଶବିଳାସ ।

୫ । ପିଠି; ପୃଷ୍ଠ—5. Back.

ଚରମଭାଗ ମୋ ଭାର. ଲାଗି ନାହିଁ ଭ୍ରମେ ତାର
ଚମକ ତ ନାହିଁ ମେର ଗଡ ରେ—କବିସୂର୍ଯ୍ୟ. କଶୋରଚନ୍ଦ୍ର; ଚ-ଗୀତା

ସଂ. ବିଣ—୧ । ଅନ୍ତିମ; ଶେଷ—
1. Last; final; ultimate; extreme
୨ । ସବା ଶେଷରେ ବାହାରେ ଥିବା—
2. Outermost (M W.)
୩ । କ୍ଷୁଦ୍ରତମ—3 Lowest; least (M W.)
୪ । ପାଶ୍ଚାତ୍ୟ—4. Western (M. W.)
୫ । ସର୍ବୋଚ୍ଚ; ଯାହାଠାରୁ ଆଉ ବଡ଼ ନାହିଁ; ବୃହତ୍ତମ—
5 Highest; largest.
( ଯଥା— ଚରମ ସଂଖ୍ୟା । )
୬ । ପଛଆଡ଼ର—6. Of the back side; posterior.
ଗ୍ରାମ୍ୟ. ( ପଦ୍ୟ ) ବି. ( ସଂ. ଚର୍ମ )—ଚର୍ମ—Skin.

**ଚରମ ଆଦର୍ଶ**—ଦେ. ବି. ( ସଂ. ଚରମ+ଆଦର୍ଶ; ସଂ. ରେ ସନ୍ଧିଦ୍ୱାରା
Charama ādarśa ଚରମାଦର୍ଶ ପଦ ହେବ; ଓଡ଼ିଆରେ ୨ଟି ଶବ୍ଦ ପୃଥକ ରଖାଯାଇଅଛି )—ମନୁଷ୍ୟ ଜୀବନର ସର୍ବୋତ୍କୃଷ୍ଟ ବା ଅନ୍ତିମ ଲକ୍ଷ୍ୟ—The beau-ideal; the ultimate model or aim of life; the highest aim of human existence

**ଚରମ କରିବା**—ଦେ କ୍ରି —କୌଣସି ବ୍ୟକ୍ତି ଆଡ଼କୁ ଆପଣାର ପିଠିକୁ
Charama karibā ବୁଲାଇବା; କୌଣସି ବ୍ୟକ୍ତି ଆଡ଼କୁ ଆପଣାର ମୁହଁକୁ ବୁଲାଇବା—To turn back; to turn one's face away from a person.

ଭରମରମ୍ୟଦେହା ଚରମ କଲୁ ଯହା ଜାଣିଲି ମୋ କରମ ଫାଟିଲା ରେ—
କବିସୂର୍ଯ୍ୟ. ସଙ୍ଗୀତ ।

**ଚରମକାଳ**—ସଂ. ବି ( କର୍ମଧାରୟ; ଚରମ + କାଳ )—
Charamakāḷa ୧ । ଅନ୍ତିମ ବା ଶେଷ ଅବସ୍ଥା—
1. Last stage; final stage,
୨ । ବୃଦ୍ଧାବସ୍ଥା—2. Old age.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଦୁଇକୋଷଗ୍ରନ୍ଥରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଗଳ' ନ ପାଇଲେ 'ଅର୍ଗ୍ଗଳ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

୩ । ମୁମୂର୍ଷୁ ଅବସ୍ଥା; ମଲାବେଳ—3. Dying state; one's last moments; the hour of death.

**ଚରମକୋଟି**—ସଂ. ବି—ପରାକାଷ୍ଠା; ଶେଷସୀମା—
Charamakoti The highest pitch; the last point.

**ଚରମକ୍ରିୟା**—ସଂ ବି—(କର୍ମଧା; ଚରମ+କ୍ରିୟା)—ମୃତ ବ୍ୟକ୍ତିର
Charamakriyā ଶ୍ରାଦ୍ଧକ୍ରିୟା—Funeral ceremony (M.W)

**ଚରମଗିରି**—ସଂ. ବି (କର୍ମଧା; ଚରମ+ଗିରି)—ଅସ୍ତାଚଳ ପର୍ବତ—
Charamagiri The mythological mountain in the west beyond which the sun is said to set.

**ଚରମଦଶା**—ସଂ. ବି. ( କର୍ମଧାରୟ; ଚରମ+ଦଶା)—
Charamadaśā ୧ । ଚରମକାଳ (ଦେଖ)—
1. Charama kāla (See)
୨ । (ମନୁଷ୍ୟର ଦଶ ଦଶା ମଧ୍ୟରୁ ଶେଷ ଦଶା) ମୃତ୍ୟୁ—
2. Death.

**ଚରମଦେଶ**—ଦେ. ବି.—୧ । ପଛଆଡ଼—1. Back side.
Charamadeśa ୨ । ପୃଷ୍ଠ; ପିଠି—2. Back.

**ଚରମପତ୍ର**—ସଂ ବି. (ଆଧୁନିକ ପ୍ରୟୋଗ) (କର୍ମଧାରୟ; ଚରମ+ପତ୍ର)—
Charamapatra ମୃତ୍ୟୁ ପରେ ଦ୍ରବ୍ୟ ସମ୍ପତ୍ତି ସମ୍ବନ୍ଧରେ ମୃତ୍ୟୁ ପୂର୍ବରୁ କୌଣସି ବ୍ୟକ୍ତି ସମ୍ପାଦନ କରିଯିବା ଦଲିଲ—A will; last will; testament
(ଚରମ ପତ୍ରିକା, ଚରମଲିପି, ଚରମଲେଖ — ଅନ୍ୟରୂପ)

**ଚରମପନ୍ଥା**—ସଂ. ବି (ଚରମ+ପଥ; ଆଧୁନିକ ପ୍ରୟୋଗ)—ରାଜା ବା
Charamapanthā ଶାସକଙ୍କ ବହିଷ୍କୃତ କରି ସ୍ୱାୟତ୍ତଶାସନ ଲାଭ କରିବାରୂପ ରାଜନୀତିକ ଉପାୟ—The way of the extrements in politics; extremist in politics.

**ଚରମପନ୍ଥୀ**—ସଂ. ବି (ଆଧୁନିକ ପ୍ରୟୋଗ; ଚରମପନ୍ଥା+ଇନ୍, ୧ମା.୧ବ.)—
Charamapanthī ରାଜନୀତିରେ ଯେଉଁମାନେ ଚରମପନ୍ଥା ଅବଲମ୍ବନ କରନ୍ତି; ଅର୍ଥାତ୍ ମାରପିଟ ଆଦି କ୍ରିୟା ଦ୍ୱାରା ସରକାରଙ୍କୁ ଧ୍ୱଂସ କରି ବା ଅନ୍ୟ ପ୍ରକାର ସ୍ୱାୟତ୍ତଶାସନ ବା ଅନ୍ୟ ପ୍ରକାର ସ୍ୱାଧୀନତା ଲାଭ କରିବାର ଉଦ୍ୟୋଗ କରନ୍ତି—
(ନରମପନ୍ଥୀ—ବିପରୀତ)
Extremists in politics; persons who want to destroy the present form of Government.

**ଚରମଫଳ**—ସଂ. ବି. ( ୬ଷ୍ଠୀ ତତ୍; ଚରମ+ଫଳ )—ଶେଷ ଫଳ—
Charamaphala Last resutl; ultimate result.

**ଚରମବୟଃ**—ସଂ. ବିଣ. ( ବହୁବ୍ରୀହି; ଚରମ+ବୟସ୍ )—
Charamabayah ଅତି ବୁଢ଼ା; ଯେ ମରିବାକୁ ବସିଲାଣି—
Very old; being in the last stage of life (M. W).

**ଚରମଭାଗ**—ସଂ. ବି—ଶେଷ ଅଂଶ—
Charamabhāga Final or last position.

ଦେ. ବି—୧ । ପୃଷ୍ଠଆଡ଼; ପିଠିପଟ—1. Back side; the side towards ones back.
୨ । ପଛଆଡ଼—2. Hind part.

ଚରମଭାଗ ମୋ ଘର ଲାଗି ନାହିଁ ଭୂମେ ତାର ଚମକ ତ ନାହିଁ
ମୋର ଘର ରେ । କବିସୂର୍ଯ୍ୟ. କଳୋଳଚନ୍ଦ୍ର ।

**ଚରମଲିପି**—ଦେ. ବି. ( କର୍ମଧା କିମ୍ବା ୬ଷ୍ଠୀ ତତ୍; ଚରମ+ଲିପି)—
Charamalipi ଚରମପତ୍ର (ଦେଖ)
(ଚରମଲେଖ—ଅନ୍ୟରୂପ) Charamapatra (See)

**ଚରମଲେଖା**—ଦେ. ବି. ( ସଂ. ଚରମଲେଖ )—ଚରମପତ୍ର (ଦେଖ)
Charamalekhā Charamapatra (See)

**ଚରମସ୍ଥଳ**—ଦେ. ବି—ପୃଷ୍ଠଭାଗ—The back.
Charamasthala ଚରମସ୍ଥଳ ସହଜେ ଅଗମ୍ୟ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଚରମାଚଳ**—ସଂ. ବି. ( କର୍ମଧା ବା ୬ଷ୍ଠୀ ତତ୍; ଚରମ+ଅଚଳ )—
Charamāchala ଅସ୍ତଗିରି, ଯେଉଁ ପୌରାଣିକ ପର୍ବତ ପଛରେ ସୂର୍ଯ୍ୟ ବୁଡ଼ିଯାଆନ୍ତି—The mythological or fabulous mountain to which the sun enters while setting in the west.

**ଚରମାଦ୍ରି**—ସଂ. ବି. ( କର୍ମଧା; କିମ୍ବା ୬ଷ୍ଠୀ ତତ୍; ଚରମ+ଅଦ୍ରି )—
Charamādri ଚରମାଚଳ (ଦେଖ)
Charamāchala (See)

**ଚରମାବସ୍ଥା**—ସଂ. ବି. ( କର୍ମଧା; ଚରମ+ଅବସ୍ଥା )—
Charamābasthā ଚରମକାଳ (ଦେଖ)
Charamakāla (See)

**ଚରଳ**—ଦେ. ବି (ସଂ. ଶବଳ)—ଚରଡ଼ (ଦେଖ)
Charala Chararda (See).

**ଚରଳା**—ଦେ. ବି (ସଂ. ଶବଳ)—ଚରଡ଼ (ଦେଖ)
Charalā Chararda (See).

**ଚରସ**—ଦେ. ବି ( ସଂ ଚର୍ମ )—ଗଞ୍ଜେଇ ଗଛ ବା ଫୁଲ ବା କଢ଼ରୁ
Charas ବାହାରିବା ଅଠା; ମାଦକଦ୍ରବ୍ୟ ବିଶେଷ—An intoxicant
ଚରସ slimygum collected from the flowers stems
चरस and buds of the Indian hemp plant (Ganjā).

[ ଦ୍ର—ଚରସ୍ ଶବ୍ଦର ହିନ୍ଦୀ ବା ଉର୍ଦ୍ଦୁରେ ଏକ ଅର୍ଥ ଗୋରୁ ବା ମଇଁଷି ଚମଡ଼ାର ଥଳି । ପୂର୍ବେ ଚରସ୍ ମଧ୍ୟଆସିଆରୁ ଚମଡ଼ା ଥଳିରେ ପଶି ଭାରତକୁ ଆସୁଥିଲା । ଏଥିଯୋଗୁଁ ଏହାର ନାମ ଚରସ୍ ହେଲା । ଏହା ଗଞ୍ଜେଇଗଛର ଫୁଲ ଓ ଡେମ୍ଫ ଓ ମଞ୍ଜିଶିରୁ ବାହାରେ । ଏହା ଦେଖିବାକୁ ମହଣ ଭଳି, ଈଷତ୍ ହଳଦିଆ ଓ ଅଠାଳିଆ । ଏହାକୁ ଲୋକେ ଗଞ୍ଜେଇ କଳି ବା ଧୂଆଁପତ୍ର ସଙ୍ଗେ ମିଶାଇ ଧୂମ୍ରପାନ କରନ୍ତି । ଏହା ପିଇବାମାତ୍ରକେ ନିଶା ଧରେ ଓ ଆଖି ଲାଲ ହୋଇଯାଏ । ଏହାର ନିଶା ଗଞ୍ଜେଇ ନିଶାଠାରୁ କିଞ୍ଚିତ୍ ଉଗ୍ର; ଏହି ଅଠା ଉତ୍ତର ପଶ୍ଚିମ ହିମାଳୟ, ନେପାଳ, କମାଉନ୍, କାଶ୍ମୀର, ଅଫଗାନିସ୍ଥାନ,

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍‌,ରୂ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇପ୍ସ | ଢ଼ଅ | ହ୍ମ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚଁ୍ୟ | ଇଅ | ଢ଼ | ନ୍ହ |

ଭୁର୍କା ସ୍ଥାନର ଗଞ୍ଜେଇ ଗଛରୁ ବେଶି ବାହାରେ ଓ ସେ ଦେଶ-ମାନଙ୍କରୁ ଭାରତକୁ ଅଣାଯାଏ । ଗ୍ରୀଷ୍ମକାଳରେ ଗଞ୍ଜେଇ ଗଛରେ ଫୁଲ ଧରିବା ପୂର୍ବରୁ ଏହା ସଂଗ୍ରହ କରାଯାଏ । ଗଞ୍ଜେଇ ଗଛ ଉପରେ କୌଣସି ପକ୍ଷିର ପର ବା ପତଳା ଚମଡ଼ା ଚଳାଇଲେ ପରରେ ବା ଚମଡ଼ାରେ ଏ ଅଠା ଲାଗିଥାଏ । ଏହା ଅଧିକ ବ୍ୟବହାର କଲେ ମସ୍ତିଷ୍କର ବିକୃତି ଘଟେ—ହି. ଶବ୍ଦସାଗର । ]

**ଚରସିଆ**—ଦେ. ବିଣ—ଚରସ. ଧୂମ୍ରପାନରେ ଅଭ୍ୟାସକ୍ତ—
Charasiā — Addicted to smoking Charas.
चरसी
**चरसी**
(ଚରସୀ —ଅନ୍ୟରୂପ)

**ଚରା**—ଦେ. ବି. ( ସଂ. ଚର୍ ଧାତୁ )—
Charā — ୧ । ପଶୁପକ୍ଷି ପ୍ରଭୃତିଙ୍କର ପଡ଼ିଆ ଆଦିରେ ବୁଲି ଖାଦ୍ୟ ଆଦି ଖାଇବା—1. Grazing; browsing of cattle and birds.
चारा
**चराई,चरवा**

ଚରା ସାରି ପକ୍ଷୀ ଆକାଶେ ଉଡ଼େ । ମଧୁସୂଦନ. ସନ୍ଧ୍ୟା ।

୨ । ଗୋରୁମାନଙ୍କର ଖାଇବା ଘାସ ଆଦି—
2. Grass; fodder.

୩ । ମାଛମାନେ ବନଶୀ ପକାଇବା ସ୍ଥାନକୁ ଆକୃଷ୍ଟ ହୋଇ ଆସିବା ନିମନ୍ତେ ଜଳାଶୟର ନିର୍ଦ୍ଦିଷ୍ଟ ଅଂଶରେ ବୁଣାଯିବା ଖାଦ୍ୟ; ଚରେଇ—3. Food for fishes strewn on a particular spot of a tank or river to attract fishes ( so that a person may successfully angle there ).

୪ । ଚରାଭୂଇଁ; ଗୋଚରଣ ସ୍ଥାନ; ତୃଣାଦିବହୁଳ ଗୋଚରଣୋପଯୋଗୀ ସ୍ଥାନ—4. Pasture.

୫ । ( ସଂ. ଚର ) ନଦୀର ଚର; ପଠା; ପଟୁ—
5. Sand bank; accretions; alluvial land.

ନୈଋତ୍ୟ ଚରାରେ ଲାଗି ରହିଲା ସେ ବାହିତ୍ର ନାହିଁ ଆଉ '
ରାଧାନାଥ. ଯଯାତି ।

୬ । ଗବାଦି ପଶୁଙ୍କର ଗିଳିତ ବସ୍ତୁର ଉଦ୍ଗିରଣ; ପାଗୁଳି—
6. Rumination.

ଦେ. ବିଣ—୧ । ଚରୁଥିବା—1. Grazing; browsing.

୨ । ଗୋରୁ ଚରିବାର ଯୋଗ୍ୟ—
2. Fit for pasture.

୩ । ଯେଉଁଠାରେ ଗୋରୁ ଚରନ୍ତି—
3. Used as a pasture
( ଯଥା—ଚରା ଭୂଇଁ । )

୪ । ଯେଉଁ ସ୍ଥାନରେ ମାଛ ଆଦି ଖାଦ୍ୟ ଖୋଜି ବୁଲନ୍ତି—
4. ( land ) Used by fish to find food.
( ଯଥା— ଚରାଭୂଇଁ । )

୫ । (ଅନ୍ୟ ଶବ୍ଦ ପରେ ପ୍ରଯୁଜ୍ୟ) ଯେ ଚରାଏ; ରଖୁଆଳ—
5. Tending cattle.
( ଯଥା—ଗାଈଚରା ଟୋକା । )

ପ୍ରାଦେ. ( ସମ୍ବଲପୁର ) ବି—୧ । ଖାଦ୍ୟ—1. Food.

୨ । ଗ୍ରାସାଚ୍ଛାଦନ—
2. Maintenance; food and raiment.

**ଚରାଇ**—ଦେ. କ୍ରି—ଚରେଇ ( ଦେଖ )
Charāi — Charei ( See )

**ଚରାଇ ଦେବା**—ଦେ କ୍ରି—ଶସ୍ୟକ୍ଷେତ୍ରାଦିରେ ଗୋରୁ ପୂରାଇ ଫସଲ ନଷ୍ଟ କରାଇବା; ଖଦା କରିବା—To cause or allow cattle to damage a crop by grazing.
Charāi debā
चरियेदेओया
**चरादेना**
( ଚରେଇ ଦେବା—ଅନ୍ୟରୂପ )

**ଚରାଇବା**—ଦେ. କ୍ରି. ( ସଂ. ଚର୍ ଧାତୁ ଣିଜନ୍ତ—ଚୁର୍ ଧାତୁ )—
Charāibā — ୧ । ଗୋରୁ ପ୍ରଭୃତି ଧଣୁଙ୍କୁ ଚରିବାବେଳେ ଜଗିବା—1. To watch or tend cattle while grazing.
चवान
**चराना; चरावाना**
( ଚରେଇବା—ଅନ୍ୟରୂପ )

ଘର ହରିତରେ ଘେର, ଚରାଉଥାନ୍ତି ବାଛୁରୀ—
କବିସୂର୍ଯ୍ୟ. କଳୋଶାସଚଖ୍ଯ. ଚ-ଗୀତ ।

୨ । ଗୋରୁ ପ୍ରଭୃତିଙ୍କର ଚରିବାର ସୁବିଧା କରିବା—
2 To allow the cattle to graze.

୩ । ଆଡ଼ଜାଡ଼ କରାଇବା; ଚଳାଇବା—
3. To look after; to take care; to attend to.

ଗାଉଡ଼ ଗୋରୁ ଚରାଏ. ରଜା ମଣିଷ ଚରାନ୍ତି—ଢଗ ।

୪ । ଚରିବାର ଣିଜନ୍ତ—
4. The causative form of Charibā.

ପ୍ରାଦେ. ( ସମ୍ବଲପୁର ) କ୍ରି—ବଳି ଦିଆଯିବା ବୋଦାକୁ ବଳି ଦିଆଯିବା ପୂର୍ବରୁ ଦେବୀଙ୍କ ପ୍ରସାଦ ଖୁଆଇବା—
To feed a victin ( goat or sheep ) with the offerring of a Goddess before it is killed.

[ ଦ୍ର—ଚରାଇବା କ୍ରିୟାର ଅସମାପିକା ରୂପ ସଙ୍ଗେ ଆଣିବା, ଦେବା, ନେବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

**ଚରାଚର**—ସଂ. ବିଣ. ( ଦ୍ୱନ୍ଦ୍ୱ; ଚର+ଅଚର )—ସ୍ଥାବର ଓ ଜଙ୍ଗମ; ଚଳନ୍ତି ଓ ଅଚଳନ୍ତି ( ବସ୍ତୁ )—Animate and inanimate; locomotive and stationary; moveable and immoveable ( things ).
Charāchara

ସଂ. ବି - ୧ । ଜଙ୍ଗମ ଜୀବ ଓ ସ୍ଥାବର ବସ୍ତୁସମନ୍ୱିତ ଜଗତ୍; ବିଶ୍ୱସଂସାର—1.The universe; the aggregate of all things animate and inanimate ( moving and stationary ) creation; the world.

ଚରାଚର ଗୁରୁ ଇଚ୍ଛାମୟ—କବିସୂର୍ଯ୍ୟ. କଳୋଶାସଚଖ୍ଯ. ଚ-ଗୀତ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୁଥ' ନ ମିଳିଲେ 'କୁଥ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ, 'ଅର୍ଗ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବଡ଼ ନ ପାଇଲେ 'ଅଲ୍‌ବଡ଼ ଦେଖିବେ

୨ । ବାୟୁ—2 Atmosphere or air.

ଦେ. ବି—ମନୁଷ୍ୟସମାଜ—The human society.

**ଚରାଚରଗୁରୁ**— ସଂ. ବି. ( ୬ଷ୍ଠୀ ତତ୍, ଚରାଚର+ଗୁରୁ=କର୍ତ୍ତା )— Charācharaguru ପରମେଶ୍ୱର; ବିଶ୍ୱଗୁରୁ— The creator; the Lord of the creation.

**ଚରାଣି** ( ଇତ୍ୟାଦି )—ଦେ. ବି—ଚରଣି ଇତ୍ୟାଦି ( ଦେଖ ) Charāṇi ( etc ) Charaṇi etc (See)

**ଚରାବାତ**—ଦେ. ବି—ଯେଉଁ ବାତ ବା ବାୟୁ ଶରୀରର ଅଭ୍ୟନ୍ତରରେ Charābāta ଚରି ବୁଲୁଥାଏ, ଅର୍ଥାତ୍ ବର୍ତ୍ତମାନ ଏକ ସ୍ଥାନରେ ବ୍ୟଥା ଦେଇ ପରକ୍ଷଣରେ ଅନ୍ୟ ସ୍ଥାନରେ ମାରେ — A wind which pangs or throbs or appears now in one part of the body now in another.

**ଚରାବୁଲା**—ଦେ ବି. ( ଏକାର୍ଥକ ସହଚର ଶବ୍ଦ )—ଚଲାବୁଲା; ଗୁଲବୁଲ; Charābulā ଚରିବା ଓ ବୁଲିବା ଆଦି କ୍ରିୟା—Roaming and grazing etc.
চলাফিবা
**চলনা ঘুমনা**

**ଚରାଭୂଇଁ**— ଦେ. ବି. ( ସଂ. ଚରଣ+ଭୂମି )—୧ । ଚରିବାର ଭୂମି; Charābhūiṅ ଯେଉଁଠାକୁ କୌଣସି ପଶୁ ବା ପଶୁଦଳ ବା ମାଛ ଚରିବାକୁ ଆସନ୍ତି—1. A place to which an animal or herd or fishes frequent for grazing or browsing or feeding; pasture-land.
**চরাগহ; চরোখর**
(ଚରାଭୂମି—ଅନ୍ୟରୂପ)

୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ସର୍ବଦା ଯାତାୟାତ କରିବାର ସ୍ଥାନ—2. (figurative) Resort; one's much frequented place.

**ଚରାମୂଲ**—ଦେ. ବି—ଗୋରୁ ବା ମେଣ୍ଢା ଚରାଇବା ସକାଶେ ଜଗୁଆଳ Charāmūla ନେବା ବର୍ତ୍ତନ ବା ମୂଲ—Wages paid to the person who tends cattle and sheep.
চরানের মজুবা
**চরাবাহা**

**ଚରାମେଘ**— ଦେ. ବି ( ସଂ. ଚରୁର ଏକ ଅର୍ଥ ମେଘ ଦ୍ର. ଶବ୍ଦସାଗର) — Charāmegha ଯେଉଁ ମେଘ ଏକସ୍ଥାନରୁ ଅନ୍ୟସ୍ଥାନକୁ ଚରି ବୁଲୁଥାଏ; ଗତିବିଶିଷ୍ଟ ମେଘ; ବିଚରଣଶୀଳ ମେଘ— Drifting cloud

**ଚରାୟିବା**—ପ୍ରାଦେ. (ବସ୍ତର) ବି —ଚରାଇବା (ଦେଖ) Charāybā Charāibā (See)

**ଚରାଲି**— ଦେ. ବିଣ. ( ସଂ. ଚୃବକ )—ଗୋରୁ ମେଣ୍ଢା ଚରାଉଥିବା Charāli ଜଗୁଆଳ—A herdsman; a person who looks after grazing beasts.
রাখাল
**চরাবাহা; চরৌআ**

**ଚରିଆ**—ପ୍ରାଦେ. (ସମ୍ବଲପୁର) ବି—୧ । କାଶଗୁଳ୍ମବିଶେଷ — Chariā 1. A kind of reed grass.

୨ । ଯେଉଁ ମନୁଷ୍ୟ କୃଷିକ୍ଷେତ୍ରରେ ବଳିରୂପେ ଅର୍ପିତ ହୁଏ; ମେରିଆ—2. A man who is sacrificed as a victim in a cultivated land.

**ଚରିତ**—ସଂ. ବି. (ଚର ଧାତୁ=ବିଚରଣ କରିବା+ଭାବ. ତ )— Charita ୧ । ପୁରାଣାଦିରେ ବର୍ଣ୍ଣିତ ବିଷୟ ବା ଘଟନା ବା ବୃତ୍ତାନ୍ତ— 1. Mythological event or topic; episode.
( ଯଥା—ମହାଭାରତର ପଞ୍ଚାଖ୍ୟାନଚରିତ । )

୨ । ଐତିହାସିକ ଘଟନା—2 Historical episode.

୩ । ଚରିତ୍ର—3. Character.

୪ । ଆଚରଣ—4 Conduct; behaviour.

ସବୁ ଅନ୍ୟାୟ ଚରିତ, ଶିକ୍ଷାକୁ ଗୁରୁ ରୁହିତ ।
କବିସୂର୍ଯ୍ୟ. ବଳୋରାଚମ୍ପୁ. ସ. ଗୀତ ।

୫ । ବିବରଣ—5. Delineation.

୬ । ଅନୁଷ୍ଠାନ; ପ୍ରତିଷ୍ଠାନ— 6. An institution; a fixed institute.

୭ । ପ୍ରଥା; ରୀତି—7. Usage; practice; custom; manners.

୮ । ଭ୍ରମଣ, ଚଳନ; ସଞ୍ଚାର; ଗତି— 8. Movement; walking; moving; motion.

୯ । କାର୍ଯ୍ୟ—9. Action; work; doings.

୧୦ । ବ୍ୟବହାର—10 Treatment.

୧୧ । ଚେଷ୍ଟା; ଉପାୟ— 11. Endeavour; steps taken.

୧୨ । ଜୀବନଚରିତ—12. Biography

୧୩ । କାର୍ଯ୍ୟବିଧି; କାର୍ଯ୍ୟଗତି—13. Proceedure.

୧୪ । ଢଙ୍ଗ; ଗୁଲଚଳନ – 14. Ways; mode of life.
ମାର ଋଷିଙ୍କ ଶରଣାଣି, ତାର ଚରିତ ଅଛୁ ଜାଣି । କବିସୂର୍ଯ୍ୟ ସଙ୍ଗୀତ ।

ସଂ. ବିଣ. (ଚର୍ ଧାତୁ+କର୍ମ. ତ)— ୧ । ଅନୁଷ୍ଠିତ— 1. Performed; initiated; conducted.

୨ । କୃତ—2. Done.

୩ । ସିଦ୍ଧ—3- Fulfilled; attained.

୪ । ସମ୍ପନ୍ନ—4. Finished.

୫ । ଫଳିତ— 5. Resulting from.

୬ । ଭକ୍ଷିତ— 6. Eaten

୭ । ଅନୁଗତ – 7. Followed.

୮ । ଅଭ୍ୟସ୍ତ—8. Practised.

୯ । ଚରଦ୍ୱାରା ସ୍ଥିରୀକୃତ— 9. Ascertained by a spy ( M. W. )

ଦେ. ବି.—କଳାବିଦ୍ୟା—Art.

ସୁରତଚରିତେ ପଣ୍ଡିତା, କନ୍ଦର୍ପକେଳି କଳ୍ପଲତା ।
ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

| | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇୟ | ଉଅ | ଷ୍ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଚ | ଙ୍ଗ |

**ଚରିତପୂର୍ବ**—ସଂ. ବିଣ. ( ପରନିପାତ; ପୂର୍ବ+ଚରିତ )—
Charitapūrba ପୂର୍ବେ କରାଯାଇଥିବା—
Performed formerly ( M. W. )

**ଚରିତବ୍ୟ**—ସଂ. ବିଣ ( ଚର ଧାତୁ+କର୍ମ. ତବ୍ୟ )—
Charitabya ୧ । ଯାହା କରାଯିବ—
1. To be performed or practised.
୨ । ଯାହା କରାଯିବା ଉଚିତ—
2. Fit or proper to be performed.

**ଚରିତବ୍ରତ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଚରିତ=ଅନୁଷ୍ଠିତ ହୋଇ
Charitabrata ଅଛି ବ୍ରତ ଯାହା ଦ୍ୱାରା )—ଯେ ବ୍ରତ ଅନୁଷ୍ଠାନ
(ଚରିତବ୍ରତା— ସ୍ତ୍ରୀ) କରିଅଛି; କୃତବ୍ରତ—
One who has observed a religious vow.

**ଚରିତାଖ୍ୟାନ**—ସଂ. ବି. ( ୬ଷ୍ଠୀ ତତ୍; ଚରିତ+ଆଖ୍ୟାନ )—
Charitākhyāna କୌଣସି ବ୍ୟକ୍ତିର ଜୀବନଚରିତ ବର୍ଣ୍ଣନ—
Biography of a person; relating the life and doings of a man

**ଚରିତାଖ୍ୟାୟକ**—ସଂ ବିଣ. ପୁଂ. (୬ଷ୍ଠୀ ତତ୍, ଚରିତ+ଆଖ୍ୟାୟକ)—
Charitākhyāyaka ଚରିତର ଆଖ୍ୟାୟକ; ଜୀବନବୃତ୍ତାନ୍ତ ଲେଖକ-
(ଚରିତାଖ୍ୟାୟିକା—ସ୍ତ୍ରୀ) Biographer.

**ଚରିତାବଳି**—ସଂ. ବି. ( ୬ଷ୍ଠୀ ତତ୍; ଚରିତ+ଆବଳୀ=ସମୂହ )—
Charitābaḷi ଅନେକଗୁଡ଼ିଏ ଜୀବନଚରିତର ସଂଗ୍ରହ—
(ଚରିତାବଳୀ—ଅନ୍ୟରୂପ) A collection of biographies and lives.

**ଚରିତାର୍ଥ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଚରିତ=ସମ୍ପାଦିତ ହୋଇଅଛି
Charitārtha ଅର୍ଥ=ଉଦ୍ଦେଶ୍ୟ ବା କାର୍ଯ୍ୟ ଯାହାର ବା ଯାହା-
(ଚରିତାର୍ଥା—ସ୍ତ୍ରୀ) ଦ୍ୱାରା)—୧ । କୃତକାର୍ଯ୍ୟ—1. Successful.
(ଚରିତାର୍ଥତା—ବି) ୨ । ସଫଳକାମ; ଯାହାର ଅଭୀଷ୍ଟ ସିଦ୍ଧ
(ଚରିତାର୍ଥିତ—ଅନ୍ୟରୂପ) ହୋଇଅଛି; ସିଦ୍ଧକାମ—
2. One who has attained his wishes one who has his aim fulfilled or accomplished.
୩ । ଚିରବାଧିତ; ଅପ୍ୟାୟିତ—3. Obliged.
୪ । ସନ୍ତୁଷ୍ଟ—4. Pleased; satisfied

**ଚରିତାର୍ଥ କରିବା**—ଦେ. କ୍ରି. ( ସଂ. ଚରିତାର୍ଥୟ ନାମ ଧାତୁ )—
Charitārtha karibā ୧ । ଅନ୍ୟର ବାଞ୍ଛା ସିଦ୍ଧ କରି ତାକୁ
চরিতার্থকরা ସନ୍ତୁଷ୍ଟ ବା ସୁଖୀ କରାଇବା—
**चरितार्थकरना** 1. To make one happy by fulfilling one's desire.
୨ । ଅନ୍ୟକୁ ସନ୍ତୁଷ୍ଟ କରିବା—
2. To satisfy a person
୩ । ଅନ୍ୟ ବ୍ୟକ୍ତିର ଉଦ୍ଦେଶ୍ୟ ସାଧନରେ ସହାୟ ହେବା—
3. To cause any one to attain his aim.

**ଚରିତାର୍ଥୀ**—ସଂ. ବିଣ. ( ଚରିତାର୍ଥ+ଇନ୍ ୧ମା. ୧ବ )—
Charitārthī ଚରିତାର୍ଥ ବ ସଫଳକାମ ହେବାପାଇଁ ଇଚ୍ଛୁକ—
Desirous of success ( M. W. )

**ଚରିତ୍ର**—ସଂ. ବି. ( ଚର୍ ଧାତୁ+କରଣ ଇତ୍ର )—
Charitra ୧ । ଆଚରଣ; ଚାଲିଚଳନ; ବ୍ୟବହାର—
1. Conduct; behaviour.
୨ । ସ୍ୱଭାବ; ପ୍ରକୃତି—2. Nature; disposition.
୩ । ଆଚାର; ରୀତି—2. Practice; custom; usage
୪ । ଚେଷ୍ଟା; ଉପାୟ—4. Endeavour.
୫ । ସଦ୍ ବା ଅସଦ୍ ଗୁଣ; ନୈତିକ ଆଚରଣ—
5 Character; morality,
୬ । ଇତିହାସ, ନାଟକ, ପୁରାଣ, କାବ୍ୟାଦିରେ ନାୟକ ଆଦିଙ୍କର ଚିତ୍ରିତ ସ୍ୱଭାବ—6. The character of a personage as depicted in a book or history gathered from the book.
୭ । ଇତିହାସ—7. History; memoir.
୮ । ଐତିହାସିକ ବା ପୌରାଣିକ ବ୍ୟକ୍ତିଙ୍କର ଜୀବନର ଘଟନା ବା ବିଷୟବର୍ଣ୍ଣନ, ପୌରାଣିକ ଉପାଖ୍ୟାନ—
8 Historical or mythological anecdote or narrative.

ମହାନନ୍ଦ ମଙ୍ଗଳ ଚରିତ୍ର ମୋତେ କହ । ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

୯ । ରୀତି ଉପରେ ପ୍ରତିଷ୍ଠିତ ଆଇନ; ଧର୍ମ—
9 Law as based on custom or usage.
୧୦ । ବୌଦ୍ଧ ସମ୍ପ୍ରଦାୟ ବା ଧର୍ମବିଶେଷ—
10 A Buddhistic religion or sect.
ଦେ. ବି.—ଚରିତ; ଜୀବନବୃତ୍ତାନ୍ତ—Biography.

ରାମଚରିତ୍ର ବଖାଣ କଲେ ଧୀବର ଧୀରେ ଯେ ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଚରିତ୍ରଚିତ୍ରଣ**—ସଂ. ବି. (୬ଷ୍ଠୀ ତତ୍; ଚରିତ୍ର+ଚିତ୍ରଣ)—୧ । କୌଣସି
Charitra chitraṇa ଐତିହାସିକ ବା ପୌରାଣିକ ବ୍ୟକ୍ତିଙ୍କର ସ୍ୱଭାବ ଉପରେ ଆଲୋକପାତ କରି ତାହାଁର ବିଶଦ ବର୍ଣ୍ଣନା—
1 Depicting the character of a historical or a mythological personage.
୨ । ମନୁଷ୍ୟ ଚରିତ୍ରର ବ୍ୟାଖ୍ୟାନ—2. Depicting human nature; a study of human nature as depicted in a work of history; biography or fiction.

**ଚରିତ୍ରଜୀବୀ**—ଦେ. ବିଣ. ପୁଂ.—(ଚରିତ୍ର+ଜୀବ ଧାତୁ+କର୍ତ୍ତୃ. ଇନ୍;
Charitrajībi ୧ମା. ୧ବ.)—ଅତି ଚରିତ୍ରବାନ୍—
(ଚରିତ୍ରଜୀବିନୀ—ସ୍ତ୍ରୀ) Of a very good character.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଟୁ' ନ ପାଇଲେ 'ବଟୁ' ଦେଖିବେ; 'ଅଙ୍କା' ନ ପାଇଲେ 'ଆଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚରିତ୍ରବାନ୍**—ସଂ. ବିଣ. ପୁଂ. (ଚରିତ୍ର+ଅସ୍ତି ଅର୍ଥରେ ବତ୍. ୧ମା. ୧ବ)
Charitrabān ୧ । ସଚ୍ଚରିତ୍ର; ସୁଗୁଣସମ୍ପନ୍ନ—1. Of good (ଚରିତ୍ରବତୀ—ସ୍ତ୍ରୀ) character; of an excellent moral character.
୨ । ଯେ ହୋମ ବା ବ୍ରତ କରି ସାରିଅଛି—
2. One who has already performed a sacrifice (M. W)

**ଚରିତ୍ରହୀନ**—ସଂ. ବିଣ. ପୁଂ.—(୬ଷ୍ଠୀ ତତ୍; ଚରିତ୍ରଦ୍ୱାରା ହୀନ)—
Charitrahīna ଅସଚ୍ଚରିତ୍ର; ନଷ୍ଟଚରିତ୍ର; କୁଚରିତ୍ର; ଅନୈତିକ; (ଚରିତ୍ରହୀନା—ସ୍ତ୍ରୀ) ସଦ୍‌ଗୁଣଶୂନ୍ୟ; ଯାହାର ସଦ୍‌ଗୁଣ ନାହିଁ—
Immoral; of bad character; devoid of moral stamina.

**ଚରିତ୍ରା**—ସଂ. ବି.—(ମୂଳ. ବ. ଚାଲ୍‌ତା=ଓଡ଼ି)—ତିନ୍ତିଳଗଛ—
Charitrā Tamarind tree.

**ଚରିବା**—ଦେ. କ୍ରି.—(ସଂ ଚର୍ ଧାତୁ)—୧ । ବିଚରଣ କରିବା;ଇତସ୍ତତଃ
Charibā ବୁଲିବା—1. To wander; to rove; to run about.
ଚବା
**चरना**
ମୃଗେନ୍ଦ୍ର ଯେସନ୍ତେ ଲଙ୍ଘି ତୋଳ, ଚରନ୍ତି ଦେଳେ ମହାବଳୀ ।
ଜଗନ୍ନାଥ. ଭାଗବତ ।
୨ । ସର୍ବତ୍ର ବ୍ୟାପ୍ତ ହେବା; ସଂଚରିତ ହେବା—2. To circulate; to be diffused, to suffuse.
ପ୍ରାଣିଙ୍କ ଦେହେ ଚରି ଭିତ୍ତି;
ଅନଳ ପ୍ରାପ୍ତ ଗୋପ୍ୟ ହୋଇ । ଜଗନ୍ନାଥ. ଭାଗବତ ।
୩ । ପଶୁ ଆଦି ଚର ଭୂମିରେ ବୁଲି ଘାସ ଇତ୍ୟାଦି ଖାଇବା—
3. To graze; to browse.
ଗଜ ହଏ ଯେବେ ନନ୍ଦ ଚଲ ମନ୍ଦଶାଳ ଚିନ୍ତିବାସୀ,
ଚରିବାକୁ ବର୍ଦ୍ଧିଶୃଙ୍ଖଳେ ପୂର୍ଣ୍ଣ ପାଟେ । ଉପାନାଥ. ମହାଯାନ ।
୪ । ମାଛଆଦି ପାଣିତଳ ଭୂଇଁରେ ଖାଦ୍ୟାନ୍ୱେଷଣରେ ବୁଲିବା-
4. To feed (said of fishes); to move in quest of food
୫ । ଖାଇବା—5. To eat.
ଅନେକ ଭୁଞ୍ଜେ ତପ କରି, ଜଳ ପବନ ପତ୍ର ଚରି । ଭାଗବତ ।
[ଦ୍ର—ଚରିବା କ୍ରିୟାର ଅସମାପିକା ରୂପ ସଙ୍ଗେ ବୁଲିବା, ଯିବା କ୍ରିୟାର ସମାପିକା ରୂପ ହୁଏ । ]
୬ । ( ପୋକ, ଉଈ, ସମ୍ବାଳୁଆ ) କୌଣସି ଗଛର ପତ୍ର ବା କାଠ ବା ଲୁଗା ବା ବହିକୁ ଆକ୍ରମଣ କରି ନଷ୍ଟ କରିବା—6. To damage a cloth or book or wood or leaves of a tree (said of worms, white ants and caber pillars.)
(ଯଥା—ପେଡ଼ିକଯାକ ପୋଥି ଉଈ ଚରିଲେ ।)
୭ । (ମେଘ) ପର୍ବତ ଦେହକୁ ଆବରଣ କରିବା; ଘୋଟିବା—
7. (cloud) To envelop the body of a mountain.
(ଯଥା—ମେଘ ପାହାଡ଼ ଉପରେ ଚରୁଛି ।)
[ ଦ୍ର—ଇତର ଲୋକେ ବିଶ୍ୱାସ କରନ୍ତି ଯେ, ମେଘ ପର୍ବତରେ ଚରିଲା ବେଳେ ପର୍ବତ ଉପରେ ମେଘରୁ ଯେଉଁ ଜଳ ବହେ ତାହା ଅଭ୍ର ସ୍ତରରୂପେ ପର୍ବତରେ ପଡ଼ିଯାଏ । ଏଥିପାଇଁ ଅଭ୍ରର ଅନ୍ୟ ଦେ. ନାମ. ମେଘନାଳ । ]

**ଚରିବୁଲିବା**—ଦେ. କ୍ରି—(ସଂ. ଚର୍ ଧାତୁ)—ଚରିବା (ଦେଖ)
Charibulibā Charibā (See)

**ଚରିଯିବା**—ଦେ. କ୍ରି.—୧ । (କୌଣସି ରୋଗ ଔଷଧ ବା ବିଷର କ୍ରିୟା)
Charijibā ଦେହଯାକ ବ୍ୟାପ୍ତ ହେବା—1. ( any disease
चरे जाना or medicine or poison) To pervade or to
**चरयाना** to be diffused through the whole system.
ବିଷା ଗରଳ ଦେହେ ଯାଉଛି ଚରି । ମଧୁସୂଦନ, ଉତ୍ତରରାମଚରିତ ।
୨ । (ଗୋରୁ ଆଦି) କୌଣସି କ୍ଷେତର ଫସଲକୁ ଖାଇ ବିଶେଷ ଭାବରେ ବା ସମୂଳେ ନଷ୍ଟ କରିବା—
2 (cattle) To completely or excessively damage the crop of a field.
(ଯଥା—ମୋ ବାଇଗଣବାଡ଼ିରେ ଗୋରୁ ଚରି ଗଲେ । )
୩ । (ଗୋରୁମାନେ) ଚରିବା ନିମନ୍ତେ ଘରୁ ବା ଗୁହାଳରୁ ଚିନ୍ତି ବାହାରକୁ ବାହାରିବା—3 To go out for grazing.
( ଯଥା—ଆମ ଗାଈ ବଳଦ ସକାଳୁ ଚରିଯାଇଛନ୍ତି, ସନ୍ଧ୍ୟାକୁ ଘରକୁ ଫେରି ଆସିବେ । )
[ ଦ୍ର—ଏ ବର୍ଷ ଏଡ଼େ ବେଶି ଆମ୍ବ ଫସଲ ହୋଇଥିଲା ଯେ ଆମ୍ବଯାକ ଗୋରୁ ଚରିଗଲେ । ତା ପିଠିରେ ମାଡ଼ରେ ଗୋରୁ ଚରିଗଲେ । ଏପରି ସ୍ଥଳରେ 'ଗୋରୁ ଚରିଯିବା' ପ୍ରୟୋଗ ଆମ୍ବର ବା ମାଡ଼ର ଅତ୍ୟନ୍ତାଧିକ୍ୟ ଭାବ ବୁଝାଏ । ]
୪ । ( ଲକ୍ଷଣାର୍ଥ ) ଗୋରୁ ଘାସ ଚରିଯିବା ଭଳି ଅନ୍ଧ ଧ୍ୱଂସ କରିବା—4 To feed extensively.
୫ । ଚରିବା ୬ । (ଦେଖ)—
5 Charibā 6 ( See )

**ଚରିଷ୍ଣୁ**—ସଂ. ବିଣ ( ଚର୍ ଧାତୁ+ଶୀଳାର୍ଥେ. ଇଷ୍ଣୁ; ମୂଳ. ସହିଷ୍ଣୁ,
Charishṇu ବର୍ଦ୍ଧିଷ୍ଣୁ, ଭ୍ରାଜିଷ୍ଣୁ )—ଚଳନଶୀଳ, ଗତିଶୀଳ; ଜଙ୍ଗମ-
1. Moving about; moveable.
ବି ( ନାମ )—କୀର୍ତ୍ତିମାନ୍ ରାଜାଙ୍କ ପୁତ୍ର—
Name of the son of the king Kīrtiman.

**ଚରୀ**—ସଂ. ବି ( ଚର ଧାତୁ+କର୍ତ୍ତୃ ଇନ୍, ୧ମା. ୧ବ. ଯେ ବିଚରଣ
Charī କରେ )—ପ୍ରାଣୀ—An animal ( M. W. ).

**ଚରୁ**—ସଂ ବି (ଚର୍ ଧାତୁ+ସଜ୍ଞାର୍ଥେ. କର୍ମ. ଉ; ଯାହା ଦେବତାମାନେ
Charu ଭକ୍ଷଣ କରନ୍ତି )—୧ । ହୋମାଗ୍ନିରେ ଦେବତାଙ୍କ ଉଦ୍ଦେଶ୍ୟରେ ଦୁଗ୍ଧ ଚାଉଳ ଦେବାବେଳେ ତହିଁ ସଙ୍ଗେ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇସ୍ତ | ଢ଼ଅ | ଢ଼ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଟଁ୍ୟ | ଇଅ | ଢ଼ | ନ୍ତ |

ଅଗ୍ନିରେ ଅର୍ପିତ ହେବା ପାୟସାନ୍ନ ବା ମିଷ୍ଟାନ୍ନ; ହୋମାଗ୍ନିରେ ଢାଳିଯିବାପାଇଁ ଦୁଗ୍ଧ, କନ୍ଦ ଓ ଶୃଙ୍ଖଳ ଏକତ୍ର ରନ୍ଧା ହୋଇଥିବା ଅନ୍ନ—1. Boiled sweetened rice or sweetmeat put into the 'Homa'-fire along with the ghee-offering.

୨ । ଚରୁସ୍ଥାଳୀ (ଦେଖ) ( ହି. ଶବ୍ଦସାଗର )—
2. Charusthāḷī (See).

୩ । ପେଜୁଆ ଭାତ; ଯେଉଁ ଭାତରୁ ପେଜ ଗଲା ହୋଇ ନାହିଁ ( ହି. ଶବ୍ଦସାଗର )—3. Boiled rice from which water has not been poured off.

୪ । ପଶୁଚାରଣଭୂମି ( ହି. ଶବ୍ଦସାଗର )—
4. Pasture-land; pasturage.

୫ । ପଶୁଚାରଣ ପାଇଁ ପଶୁସ୍ୱାମୀ ଜମିଦାରଙ୍କୁ ଦେବା ଖଜଣା (ହି. ଶବ୍ଦସାଗର)—5. Grazing tax.

୬ । ଯଜ୍ଞ (ହି. ଶବ୍ଦସାଗର)—6. Vedic sacrifice.

୭ । ବାଦଲ; ମେଘ ( ହି. ଶବ୍ଦସାଗର )—7. Cloud.

ପ୍ରାଦେ (ସମ୍ବଲପୁର) ବି—୧ । ଚଡ଼ୁ (ଦେଖ)
1. Chaṛḍu (See)

୨ । ଚରୁଆ (ଦେଖ)
2. Chariā (See).

**ଚରୁକାଠି**—ଗ୍ରା. ବି—ଚଡ଼ୁକାଠି (ଦେଖ)
Charukāṭhi  Chaṛḍukāṭhi (See).

**ଚରୁସମିଧ**—ସଂ. ବି ( ଦ୍ୱନ୍ଦ୍ୱ; ଚରୁ ଓ ସମିଧ )—ହୋମାଗ୍ନିରେ ଘୃତ ସହିତ ଅର୍ପିତ ହେବା ମିଷ୍ଟାନ୍ନ ଓ କାଠ—
Charusamidha  Sweetmeat and fuel given into a sacrificial fire along with the offer-ings of ghee.

**ଚରୁସ୍ଥାଳୀ**—ସଂ. ବି (୬ଷ୍ଠୀ ତତ୍; ଚରୁ+ସ୍ଥାଳୀ=ପାକପାତ୍ର ବା ହାଣ୍ଡି)—
Charusthāḷī  ଯେଉଁ ହାଣ୍ଡିରେ ଚରୁଅନ୍ନ ରନ୍ଧାଯାଏ—
The earthen pot in which 'charu' is cooked.

**ଚରୁହା**—ପ୍ରାଦେ (ସମ୍ବଲପୁର) ବି (ତୁଳନାକର ହି. ଚରବାହା)—
Charuhā  ଗୋରୁ ଚରିବା ସମୟରେ ଜଗିବା ବ୍ୟକ୍ତି; ଗୋଚାରଣରେ ନିଯୁକ୍ତ ବ୍ୟକ୍ତି; ଯେ ଗାଈ ଜଗେ; ଗାଈଆଳ; ଚରାଳୀ—A person who looks after cattle while grazing, a cowherd.

**ଚରୁହୋମ**—ସଂ. ବି — ଦେବତାଙ୍କ ଉଦ୍ଦେଶ୍ୟରେ ହୋମାଗ୍ନିରେ
Charuhoma  ଢାଳିଯିବା ମାଂସ; ମାଂସବଳି (ଜ୍ଞାନେନ୍ଦ୍ର)—
Oblation of meat offering into the sacrificial fire ( as laid down for certain occasions)

**ଚରେଇ**—ଦେ. ବି—୧ । ଚରାଇବା କର୍ମ—
Charei  1. Tending of cattle.
ଚାରା
चारा  ୨ । ଗୋରୁ ଆଦି ଚରିବାପାଇଁ ତୃଣପୂର୍ଣ୍ଣ ଭୂମି—
2. Rich pasturage.

୩ । ବନଶୀ ପକାଇବା ଦୃଷ୍ଟିରୁ ଜଳାଶୟରେ ବିଞ୍ଚାଯିବା ଭୁଟଖଣ୍ଡ ବା ମଇଦାର ଛୋଟ ଗୁଳା ବା ମାଛମାନଙ୍କ ଲୋଭନୀୟ ପଦାର୍ଥ, ଯାହା ପାଣିରେ ବିଞ୍ଚାଯାଏ—3. Bits of food strewn in the water to attract fishes to a place where a person intends to angle.

[ ଦ୍ର—ମାଛମାନେ ଏହାର ଗନ୍ଧରେ ଆକୃଷ୍ଟ ହୋଇ ସେ ସ୍ଥାନରେ ଜମା ହୁଅନ୍ତି ଓ ପରେ ବନଶୀଆ ଥୋପ ଦେଇ ସେଠାରେ ବନ୍ଶୀ ପକାଏ । ସୋରିଷ ପିଡ଼ିଆ ଭଜା, ମେଥି ଭଜା, ଗନ୍ଧଶୁଣ୍ଠ, ପଶୁଘୃତ, ‹ କାଙ୍ଗିମଞ୍ଜି, ଘୋଡ଼ାବଚ, ଲେମ୍ବୁନାଲୁ ଭୃଙ୍ଗ ଅଣ୍ଡା ବା ମାଂସ ସଙ୍ଗେ ଏକତ୍ର ବାଟି ଗୁଳା ବାନ୍ଧି ଏହା ପ୍ରସ୍ତୁତ କରାଯାଏ ।]

**ଚରେଇଘର**—ପ୍ରାଦେ. (ସମ୍ବଲପୁର) ବି—ପକ୍ଷୀବସା—
Chareigharā  Bird's nest.

**ଚରେନ୍‌ଗୁଡ଼ା**—ପ୍ରାଦେ (ସମ୍ବଲପୁର) ବି—ଗୋଚରଭୂମି—
Charenguṛḍā  Grazing ground.

**ଚର୍ଚ୍**—ବୈଦେ. ବି (ଇଂ) —ଗିର୍ଜା; ଖ୍ରୀଷ୍ଟାନମାନଙ୍କ ଭଜନାଳୟ—
Charch  Church.
চর্চ্চ
चर्च

**ଚର୍ଚ୍‌ବେଲ୍**—ବୈଦେ. ବି (ଇଂ) —ଉପାସକମାନଙ୍କୁ ଆହ୍ୱାନ କରିବା ପାଇଁ
Charchbel  ଗିର୍ଜାରେ ବାଜିବା ଘଣ୍ଟା—Church-bell.
চর্চ্চবেল
चर्चबेल

**ଚର୍ଚ୍ଚ**—ସଂ. ବି (ଚର୍ଚ୍ଚ ଧାତୁ+ଭାବ. ଅ)—ବିଚାର; ବିବେଚନା—
Charcha  Consideration; delebration (M. W.)
(ଚର୍ଚ୍ଚା—ଅନ୍ୟରୂପ)

**ଚର୍ଚ୍ଚର୍ (ଇତ୍ୟାଦି)**—ଦେ. ଅ ( ଧ୍ୱନ୍ୟନୁକରଣ )—
Charchar etc  ଚରଚର୍ ଇତ୍ୟାଦି (ଦେଖ)—
Charchar etc. (See)

**ଚର୍ଚ୍ଚରା**—ଦେ. ବି— ଚରଚରା ( ଦେଖ )—
Charcharā  Charcharā ( See )

**ଚର୍ଚ୍ଚରାଇବା**—ଦେ. କ୍ରି—ଚରଚରାଇବା ( ଦେଖ )—
Charchrāibā  Charcharāibā ( See )

**ଚର୍ଚ୍ଚା**—ସଂ ବି. ସ୍ତ୍ରୀ (ଚର୍ଚ୍ଚ ଧାତୁ+ଭାବ ଅ; ସ୍ତ୍ରୀ. ଆ)—
Charchā  ୧ । ଆନ୍ଦୋଳନ—1 Agitation.
(ଚର୍ଚ୍ଚା—ଅନ୍ୟରୂପ)  ୨ । ଆଲୋଚନା—2. Discussion; dealing with a subject.

୩ । ବିଚାର; ବିବେଚନା—
3. Consideration; deliberation.

ସାଧାରଣ ଲୋକେ ଅପଠ ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଉ' ନ ମିଳିଲେ 'ଗାଈ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂଁକି ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବର' ନ ପାଇଲେ 'ଅଲ୍‌ବର' ଦେଖିବେ ।

୪ । ଅନୁଶୀଳନ—4. Study of a theme.
୫ । ପୁନଃ ପୁନଃ ଆବୃତ୍ତି—5. Recitation; repetition.
୬ । ଜପ; ଚିନ୍ତା, ଅନୁଧ୍ୟାନ—6. Constant pondering over a matter; reflecting upon.
୭ । ଲେପନ; ବୋଳିବା—
7. Besmearing; anointing; laying on
୮ । ଅନୁସନ୍ଧାନ—8 Investigation, enquiry.
୯ । ଭ୍ରମଣ—9. Walking; travelling.
୧୦ । ପରୀକ୍ଷା—10. Testing; examination.
୧୧ । ଯତ୍ନ—11. Care; attention.
୧୨ । ବର୍ଣ୍ଣନ; ବ୍ୟାଖ୍ୟାନ ( ହି. ଶବ୍ଦସାଗର )—
12. Description.
୧୩ । ବେଦପାଠ ସମୟରେ 'ଇତି' ଶବ୍ଦ ପ୍ରୟୋଗପୂର୍ବକ କୌଣସି ଶବ୍ଦର ପୁନରୁଚ୍ଚାରଣ—13. Repetition of a word in reciting the Vedas, specially while adding 'iti' (M.W.)
୧୪ । କୌଣସି ବିଷୟରେ କଥୋପକଥନ—
14. Talking about; conversation (M. W.)
୧୫ । ପାଳି କରି ଦୁଇଜଣଙ୍କ ଦ୍ୱାରା ଗୋଟିଏ ପଦ୍ୟର ଆବୃତ୍ତି—
15. Alternate recitation of a poem by two persons (Wilson).
୧୬ । ତଦନ୍ତ; ଅନୁସନ୍ଧାନ—16. Inquiry (Wilson).
୧୭ । କିମ୍ବଦନ୍ତୀ; ଜନଶ୍ରୁତି (ହି. ଶବ୍ଦସାଗର)—
17. Rumour.
୧୮ । ଦୁର୍ଗା (ହି. ଶବ୍ଦସାଗର)—18. Goddess Durgā.
୧୯ । ଗାୟତ୍ରୀରୂପା ମହାଦେବୀ (ହି. ଶବ୍ଦସାଗର)—
19. Gāyatrī personified.
ଦେ. ବି ( ସଂ. ଚର୍ଯ୍ୟା )—ସମ୍ଭାବନା ସହିତ ଗୃହାଗତ ଅତିଥି ବା ବନ୍ଧୁଙ୍କର ସେବା ବା "ସତ୍କାର; ଆତିଥେୟତା— Serving or treating of a guest; a treat; hospitality.

ବଣ୍ଣାଶ୍ରମ ସ୍ୱର୍ଗସମାନଙ୍କୁ ଯେଣ ମୁନି ଋଷିଙ୍କ ଚର୍ଚ୍ଚାରେ ରହିଲେ—
ଗାଳକଣ୍ଠ• ପିଲ୍ଲଙ୍କସ୍ମାସୃଣ ।

**ଚର୍ଚ୍ଚାଇତ**—ଦେ. ବି—ଚରଚ୍ଚାଇତ ( ଦେଖ )—
Charchāita Charachāita (See)

**ଚର୍ଚ୍ଚାକରିବା**—ଦେ. କ୍ରି—୧ । ଆଲୋଚନା କରିବା—
Charchākaribā 1. To discuss a matter.
चर्चाकरना
चर्चाकरना ୨ । ଅନୁଶୀଳନ କରିବା—2. To study a subject or theme.
୩ । ମର୍ଯ୍ୟାଦାପୂର୍ବକ ଅତିଥି ବା ଅଭ୍ୟାଗତଙ୍କୁ ଖାଦ୍ୟ-ପାନାଦି ଦ୍ୱାରା ସେବା କରିବା—3. To serve a guest.

**ଚର୍ଚ୍ଚା ବେହେରା**—ଦେ. ବି—ଚରଚ୍ଚାଇତ ( ଦେଖ)—
Charchā beherā Charachāita ( See )

**ଚର୍ଚ୍ଚିଆ**—ଦେ. ବି—ଚରଚ୍ଚାଇତ ( ଦେଖ )—
Charchiā Charachāita ( See )

**ଚର୍ଚ୍ଚିକା**—ସଂ. ବି. ସ୍ତ୍ରୀ ( ଚର୍ଚ୍ଚ ଧାତୁ + ଭାବ. ଅକ + ସ୍ତ୍ରୀ. ଆ )—
Charchikā ୧ । ଅଙ୍ଗରେ ଚନ୍ଦନାଦି ଲେପନ—1. Smearing
(ଚର୍ଚ୍ଚିକା—ଅନ୍ୟରୂପ) the body with scented pastes.
୨ । ଚର୍ଚ୍ଚା, ଆଲୋଚନା ( ହି. ଶବ୍ଦସାଗର)—
2. Discussion.
୩ । ଦୁର୍ଗା ( ହି. ଶବ୍ଦସାଗର)—3. Goddess Durga (M. W.)
୪ । ଏକପ୍ରକାର ଶିମ୍ବ ( ହି. ଶବ୍ଦସାଗର)—
4. A kind of bean

ଦେ. ବି.—୧ । କଟକ ଜିଲ୍ଲାର ବାଙ୍କି ରାଜ୍ୟର ପ୍ରଧାନ ଗ୍ରାମ—
1. The big village of Banki in Cuttack District.
୨ । ବାଙ୍କିରେ ପୂଜିତା ଦୁର୍ଗାମୂର୍ତ୍ତି; ଗ୍ରାମଦେବୀ—
2 Name of the goddess in Banki.
[ଦ୍ର—ଉତ୍କଳରେ ପୂଜା ପାଉଥିବା ଅଷ୍ଟ ଚଣ୍ଡିଙ୍କ ମଧ୍ୟରୁ ଏ ଏକତମ, ଏହାଙ୍କ ମନ୍ଦିର ଗୋଟିଏ ପାହାଡ଼ ଉପରେ ଓ ମହାନଦୀ ନିକଟରେ ଅବସ୍ଥିତ ।

।ବିକ ଅଚ୍ଛି ଚର୍ଚ୍ଚିକା ଦେବୀ ବାଙ୍କି ଈଶ୍ୱରୀ । ରାଧାନାଥ ଚନ୍ଦ୍ରଭାଗା।

**ଚର୍ଚ୍ଚିତ**—ସଂ. ବିଣ.(ଚର୍ଚ୍ଚ + କର୍ମ. ତ; ଚର୍ଚ୍ଚା + ସଞ୍ଜାତାର୍ଥେ. ଇତ)—୧ । ପୂଜିତ;
Charchita ସେବିତ—1. Served; worshipped.
(ଚର୍ଚ୍ଚିତ—ଅନ୍ୟରୂପ) ୨ । ପ୍ରଲିପ୍ତ—2. Besmered; anointed.
୩ । ଆଲୋଚିତ—3. Considered.
୪ । ଆନ୍ଦୋଳିତ—4 Discussed; treated.
୫ । ଅନୁଧ୍ୟାତ; ଚିନ୍ତିତ—5. Pondered over.

**ଚର୍ଚ୍ଚିବା**—ଦେ କ୍ରି.—ଚରଚ୍ଚ କରିବା (ଦେଖ)
Charchibā Charachā karibā (See)

ବପିଳେ ଭରଦ୍ୱାଜର ସବଳେ ପ୍ରବେଶ ଗାଦ
ତପୋବଳେ ସମସ୍ତ ଚର୍ଚ୍ଚିଲେ । ଉଞ୍ଜ• ବୈଦେହୀଶବିଳାସ ।

**ଚର୍ଚ୍ଚ୍ (ଧାତୁ)**—ସଂ.—୧ । ଚଡ଼ଚଡ଼ ଶବ୍ଦ କରିବା—
Charchch (root) To produce a crackling sound.
୨ । ଆଲୋଚନା କରିବା—2. To discuss; to deal with a subject; to study a subject.
୩ । କହିବା—3. To speak; to talk.
୪ । ସୁନ୍ଦର ହେବା—
4. To look beautiful or lovely.
୫ । ବୋଳିବା; ଲେପିବା—5. To smear over; to anoint.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଓ | ଋ,ଌ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଋ | ଳ | ଢ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ |

୬ । ଗାଳିଦେବା—
6. To abuse; to censure (M. W.)

୭ । ଭର୍ତ୍ସନା କରିବା; ଧମକାଇବା; ଚମକିବା—
7. To menace (M. W.)

୮ । ବେଦ ପାଠ ସମୟରେ 'ଇତି' ଶବ୍ଦ ଲଗାଇ କୌଣସି ଶବ୍ଦକୁ ପୁନର୍ବାର ବୋଲିବା—8. To repeat a word in reciting the Vedas spesially while adding 'iti' (M W.)

ଚର୍ଚ୍ଚକ—ସଂ. ବିଣ. ପୁଂ. ( ଚର୍ଚ୍ଚ ଧାତୁ+କର୍ତ୍ତୃ. ଅକ )—
Charchchaka ୧ । ଆଲୋଚନାକାରୀ—1 Discussing.
(ଚର୍ଚ୍ଚିକା—ସ୍ତ୍ରୀ) ୨ । ଲେପନକାରୀ—2. Besmearing.
(ଚର୍ଚକ—ଅନ୍ୟରୂପ) ସଂ. ବି—୧ । ବେଦ ପାଠ ସମୟରେ ଗୋଟିଏ ଶବ୍ଦର ପୁନରାବୃତ୍ତି—1 Repetition of a word in reciting the Bedas ( M W )

୨ । ବେଦଜ୍ଞ ବ୍ୟକ୍ତି ( ହି. ଶବ୍ଦସାଗର )—
2. A person versed in the Bedas

ଚର୍ଚ୍ଚନ—ସଂ. ବି. ( ଚର୍ଚ୍ଚ ଧାତୁ+ଭାବ ଅନ )—
Charchchana ୧ । ଆଲୋଚନ—1. Discussion.
(ଚର୍ଚ୍ଚିତ—ବିଣ) ୨ । ଲେପନ—2. Besmearing; anointing
(ଚର୍ଚନ— ଅନ୍ୟରୂପ)

ଚର୍ଚ୍ଚର—ସଂ. ବିଣ. ପୁଂ. ( ଚର ଧାତୁ+କର୍ତ୍ତୃ. ଚର )—
Charchchara ଗମନଶୀଳ - Moving.
ଚର୍ଚ୍ଚରୀ } ସ୍ତ୍ରୀ.
ଚର୍ଚ୍ଚରୀ }
(ଚର୍ଚର— ଅନ୍ୟରୂପ)

ଚର୍ଚ୍ଚରିକା—ସଂ. ବି. ସ୍ତ୍ରୀ.—(ଚର୍ଚ୍ଚ ଧାତୁ=ଚରଚର ଶବ୍ଦ କରିବା+
Charchcharikā ସ୍ୱାର୍ଥେ. ଅର+କ+ସ୍ତ୍ରୀ. ଆ)—୧ । ଆନଦ୍ଧ
(ଚର୍ଚରିକା—ଅନ୍ୟରୂପ) ବାଦ୍ୟ ଯନ୍ତ୍ରବିଶେଷ; ତାସା —1. A kind of drum producing a crackling sound.

୨ । ବହୁ ବାଦ୍ୟସମନ୍ୱିତ ଧ୍ୱନି—
2. Musical symptony.

୩ । ଗାନବିଶେଷ; ପୁନଃ ପୁନଃ ଉଚ୍ଚାରିତ ଗାନ—
3. A kind of swiftly sung song; an alternately recited song.

୪ । ବସନ୍ତୋତ୍ସବ; ଚୈତ୍ରର ଉତ୍ସବ; ହୋଲି ଉତ୍ସବ—
4. Name of a religious ceremony performed in spring time.

[ ଦ୍ର—ଦୋଳ ସମୟରେ ପିଚକାରି ମାରିବା, ଅବିର ପକାଇବା ଆଦି ହୁଏ ଓ ହୋଲି ଗୀତ ବୋଲାଯାଏ । ]

୫ । ହୋଲି ସମୟରେ ବୋଲା ଯିବା ଗୀତ —
5. A kind of song sung during the Holi festival.

୬ । କରତଳ ଧ୍ୱନି; ତାଳି ବଜାଇବାର ଶବ୍ଦ (ହି. ଶବ୍ଦସାଗର)—
6. Sound of clapping.

୭ । ନାଟକ ଅଭିନୟ ବେଳେ ଏକ ଅଭିନୟର ସମାପ୍ତି ଓ ପରବର୍ତ୍ତୀ ଅଭିନୟ ଆରମ୍ଭ ମଧ୍ୟରେ ଦର୍ଶକମାନଙ୍କ ମନୋରଞ୍ଜନାର୍ଥ ବୋଲାଯିବା ଗାନ ( ହି. ଶବ୍ଦସାଗର )—
7. A song sung during intervals of acting.

[ ଦ୍ର—କାଳିଦାସଙ୍କ ବିକ୍ରମୋର୍ବଶୀ ନାଟକରେ ଅନେକ ଚର୍ଚ୍ଚରିକା ଅଛି । ]

ଚର୍ଚ୍ଚରୀ—ସଂ. ବି. ସ୍ତ୍ରୀ (ଚର୍ଚ୍ଚ ଧାତୁ+ସ୍ୱାର୍ଥେ. ଅର+ସ୍ତ୍ରୀ. ଈ)—
Charchcharī ୧ । ଚର୍ଚ୍ଚରିକା (ଦେଖ)
(ଚର୍ଚରୀ—ଅନ୍ୟରୂପ) 1. Charchcharikā (See).
ଧାଁ ଉପରେ ପୁଣି ଦୋଳ ଚର୍ଚରୀର—ରାଧାନାଥ ପାର୍ବତୀ ।

୨ । ଆମୋଦପ୍ରମୋଦ ( ହି. ଶବ୍ଦସାଗର )—
2. Amusement

୩ । ନାଚରଙ୍ଗ; ନାଚତାମସା ( ହି. ଶବ୍ଦସାଗର )—
3. Songs and music.

ଚର୍ଚ୍ଚରିକ—ସଂ. ବି—୧ । ମହାକାଳ ଭୈରବ; ଶିବଙ୍କ ଅନୁଚରବିଶେଷ
Charcharika ( ହି. ଶବ୍ଦସାଗର )—1. One of the attendants of Siba

୨ । ଶାଗ; ଶାକ ( ହି. ଶବ୍ଦସାଗର )—2 Pot-herb.

୩ । କେଶବିନ୍ୟାସ; ମୁଣ୍ଡ ବାଳ ସାଉଁଳିବା କର୍ମ ( ହି. ଶବ୍ଦସାଗର )—3. Act of dressing up of the hair.

ଚର୍ଚ୍ଚରୀବିହାର—ସଂ. ବି—ଦୋଳଯାତ୍ରା ସମୟର ଫଗୁଖେଳ—
Charchcharībihāra The sports in the red powder during the Dolajātrā festival.

ଚର୍ଚ୍ଚସ୍—ସଂ ବି—କୁବେରଙ୍କ ନବ ନିଧି ମଧ୍ୟରୁ ଏକ (ହି. ଶବ୍ଦସାଗର)—
Charchchas One of the nine treasures possessed
(ଚରସ୍—ଅନ୍ୟରୂପ) by God Kubera (M. W.).

ଚର୍ଡାଙ୍ଗ—ପ୍ରାଦେ (ସମ୍ବଲପୁର) ବି—ଚଡ଼୍‌କାଠି (ଦେଖ)
Chardāng Chardukāṭhi (See).

ଚର୍ପ ( ଧାତୁ )—ସ —୧ । ବିସ୍ତୃତ ହେବା—
Charpa (root) 1. To extend.

୨ । ଚଟକାହେବା—2. To lie flat.

ଚର୍ପଟ—ସ ବି ( ଚର୍ପ ଧାତୁ+କର୍ତ୍ତୃ. ଅଟ )—୧ । ଚାପୁଡ଼ା; ଚପେଟ;
Charpaṭa ଥାବଡ଼ା; ଚଟକଣା; କରତଳ ଦ୍ୱାରା ଆଘାତ—
ଓ. ଚାପଡ଼ା, ଚାପୁଡ଼ା 1. A slap (by the palm of the hand)-
ଚାପଡ଼
ଚପତ ୨ । କରତାଳି—2. Clapping.

୩ । ବିସ୍ତାର—3. Extention; extent; span.

୪ । ପ୍ରସାରିତ କରତଳ—
4 The open palm of the hand (M. W.)

ସଂ ବିଣ—୧ । ବିପୁଳ; ଅଧିକ (ହି. ଶବ୍ଦସାଗର)—
1. Great, excessive.

୨ । ମୁଣ୍ଡ ପର୍ଯ୍ୟନ୍ତ ଚଟକା ହୋଇ ପଡ଼ିଥିବା—
2. Lying flat to the head (M. W).

**ଚର୍ପଟା**—ସଂ. ବି. ( ଚର୍ପଟ + ସ୍ତ୍ରୀ. ଆ )—୧ । ଚାପୁଡ଼ାଧ୍ୱନି—
Charpaṭā 1. Sound produced by slapping.

୨ । ତାଳି ଶବ୍ଦ—2. Clapping sound

୩ । ଭାଦ୍ର ଶୁକ୍ଳଷଷ୍ଠୀ; ଷଠୀଓଷା; ଷଷ୍ଠୀଦେବୀ ପୂଜା—
3. A ceremony observed on the 6th day of the bright fortnight of Bhādrab on which Shashthidebī is worshipped and children are patted with a bunch of small branches by elderly women.

[ଦ୍ର—ଏ ଦିନ ଶିଶୁମାନଙ୍କ ପିଠିରେ ବୟୋବୃଦ୍ଧା ସ୍ତ୍ରୀମାନେ କେତେଗୁଡ଼ିଏ ଡାଳର ଗୋଛାକୁ କୌତୁକରେ ଚାପୁଡ଼ାନ୍ତି (ଆଘାତ କରନ୍ତି) । ]

**ଚର୍ପଟିକା**—ସଂ. ବି. ସ୍ତ୍ରୀ. ( ଚର୍ପଟ + କ + ସ୍ତ୍ରୀ. ଆ )—
Charpaṭikā ୧ । କରତଳଦ୍ୱାରା ମଡ଼ା ହୋଇ ପ୍ରସ୍ତୁତ ହୋଇଥିବା
ଚାପାତୀ ପିଷ୍ଟକ; ବାଙ୍କକାକରା ପିଠା; ହାତବେଲା ରୁଟି; ପର୍ପଟୀ;
चपाटी ପାପୁଡ଼ି—1. A thin piece of bread or cake ( pressed thin by the palm ).

୨ । ବିସ୍କୁଟ—2. Biscuit

**ଚର୍ପଟୀ**—ସଂ. ବି. ( ଚର୍ପଟ + ସ୍ତ୍ରୀ. ଈ )—୧ । ଚର୍ପଟା ( ଦେଖ )
Charpaṭī 1. Charpaṭā ( See )

୨ । ଚର୍ପଟିକା ( ଦେଖ )
2. Charpaṭikā ( See )

**ଚର୍ବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ଚର୍ବିବା ( ଦେଖ )
Charbā Charbā ( See )

ବିଣ. ( ପୁଂ )—୧ । କାମୁଡ଼ା ( ପଶୁଆଦି )—
1. Biting; given to biting; currish.

(ଚର୍ବୀ—ସ୍ତ୍ରୀ) ୨ । ହିଂସ୍ର ( ଜନ୍ତୁ )—
2. Ferocious (animal); malignant.

**ଚର୍ବି**—ବୈଦେ. ବି. (ଫା)—୧ । ମେଦ; ବସା—
Charbi 1. Animal fat.
चर्बी ୨ । ମୃତ ଜୀବର ବସା ତରଳାଇ ପ୍ରସ୍ତୁତ ହେବା ଦ୍ରବ୍ୟ—
चरबी 2. Lard; grease.

[ଦ୍ର—ଏହା ସଫେଦ ବା ଈଷତ୍ ହଳଦିଆ ତୈଳାକ୍ତ ଗାଢ଼ ଦ୍ରବ; ପ୍ରାଣୀମାନଙ୍କ ଦେହରେ ଓ ଗଛ ଘଡରେ ଓ କେତେକ ଫଳରେ ଥାଏ । ବୈଦ୍ୟକ ଅନୁସାରେ ଏହା ଶରୀରସ୍ଥ ସପ୍ତଧାତୁରୁ ଏକ; ଏହା ପାଣିରେ ଗୋଳିହୁଏ ନାହିଁ; ଏଥିରେ ମଲମ, ସାବୁନ ମହମ ବତୀ ହୁଏ । ଏହା ଇଞ୍ଜିନର ଗଣ୍ଠିମାନଙ୍କରେ ଦିଆଯାଏ ଓ ତେଲ ପରିବର୍ତ୍ତେ ଏହା ବ୍ୟବହୃତ ହୁଏ ।]

**ଚର୍ବିଚକ୍ତି**—ଦେ. ବି—ଘୋଡ଼ା ଗାଡ଼ିର ଚକ ଓ ଅଖ ଘର୍ଷଣ ସ୍ଥାନରେ
Charbichakti ସାମୟିକ ଦିଆଯିବା ଗୋଲାକାର ଚର୍ମଖଣ୍ଡ ଓ ଚର୍ବି—
Lard and circular piece of leather given on the wheel and axle of a cirrage-wheel to grease (prevent wearing due to friction of) the wheel.

**ଚର୍ବିବତି**—ଦେ. ବି—ଚର୍ବିରେ ତିଆରି ବତି; ମହମବତି—
Charbibati Candle made of animal fat; tallow candle.

**ଚର୍ବି ହେବା**—ଦେ. କ୍ରି—୧ । ମେଦବୃଦ୍ଧି ହେବା—
Charbi hebā 1. Increase of fat in the body.

୨ । ମୋଟା ହେବା—2. Fattening.

୩ । (ଲକ୍ଷଣାର୍ଥ) ଗର୍ବୀ ହେବା—3. (figurative) To become elated with pride.

**ଚର୍ବ (ଧାତୁ)**—ସଂ.—ଚୋବାଇବା—To munch; to chew.
Charbba (root)
(ଚର୍ବି—ଅନ୍ୟରୂପ)

**ଚର୍ବଣ**—ସଂ. ବି (ଚର୍ବ ଧାତୁ + ଭାବ. ଅନ)—୧ । ଚୋବାଇବା; ଦନ୍ତ-
Charbbaṇa ଦ୍ୱାରା ପେଷଣ କ୍ରିୟା—1 Chewing; mun-
(ଚବଣ-ଅନ୍ୟରୂପ) ching; masticating
(ଚର୍ବିତ—ବିଣ) ୨ । ଯେଉଁ ବସ୍ତୁ ଚୋବାଯାଇପାରେ—
2. A thing which can be chewd.

୩ । ଚବେଣା (ହି. ଶବ୍ଦସାଗର) (ଦେଖ)—
3. Chabeṇā (See)

**ଚର୍ବଣା**—ଦେ. ବିଣ—ଯେ ଚୋବାଇ କରି ଖାଏ—
Charbbaṇā Chewing; masticating.
(ଚବଣା—ଅନ୍ୟରୂପ) ସପତ ଜନମ ପର୍ଯ୍ୟନ୍ତେ ଚର୍ବଣା ଚର୍ବଣା—ଚଗ ।

**ଚର୍ବଣୀୟ**—ସଂ. ବିଣ. ( ଚର୍ବ ଧାତୁ + କର୍ମ. ଅନୀୟ )—
Charbbaṇiya ଚୋବାଇବାର ଯୋଗ୍ୟ—Fit to be
(ଚବଣୀୟ—ଅନ୍ୟରୂପ) chewed; masticable.

**ଚର୍ବିତ**—ସଂ. ବିଣ. ( ଚର୍ବ ଧାତୁ କର୍ମ + ତ )—
Charbbita ୧ । ସ୍ୱାଦିତ—1. Tasted.
(ଚର୍ବିତ—ଅନ୍ୟରୂପ) ୨ । ଯାହାକୁ ଚୋବା ଯାଏ—
2. Chewed; masticated

୩ । ଚୋବାଇ କରି ଖିଆଯିବା—
3. Eaten after mastication

ସଂ. ବି—୧ । ପାନପିକ, ଛେପ; ଥୁପ—1. Spittle.

୨ । ଗୋରୁ ଆଦିଙ୍କ ପାଗୁଳ—2. Cud.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଜ୍ଞ | ଓଅ | ଙ୍ଗ |
| ୨ | ଈ | ଊ | ଋୁ | ଲ୍ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଙ୍ଗ | ନ୍ଦ |

୩ । ଚର୍ବ୍ବଣ—3. Chewing; mastication.

**ଚର୍ବ୍ବିତଚର୍ବ୍ବଣ**—ସଂ. ବି. ( ୬ଷ୍ଠୀ ତତ୍; ଚର୍ବ୍ବିତ+ଚର୍ବ୍ବଣ )—
Charbbitacharbbaṇa ୧ । ପାଗୁଳି—1. Chewing of the cud.

୨ । (ଲକ୍ଷଣାର୍ଥ) କଥିତ ବସ୍ତୁର ପୁନଃ କଥନ –
2. ( figurative ) Repetition of a thing already said.

୩ । (ଲକ୍ଷଣାର୍ଥ) କୃତ କାର୍ଯ୍ୟର ପୁନଃକରଣ—3. ( fig. ) Redoing of a work once done.

**ଚର୍ବ୍ବ୍ୟ**—ସଂ. ବିଣ. (ଚର୍ବ୍ବ ଧାତୁ+କର୍ମ. ଯ)—ଚୋବାଇବାର ଯୋଗ୍ୟ;
Charbbya ଚର୍ବ୍ବଣୀୟ—Masticable.

[ଦ୍ର—ଏହାକୁ କେହି କେହି ଭ୍ରମକ୍ରମେ 'ଚବ୍ୟ' ବୋଲି କହନ୍ତି ଓ ଲେଖନ୍ତି । ]

**ଚର୍ବ୍ବ୍ୟ ଚୂଷ୍ୟ ଲେହ୍ୟ ପେୟ**—ସଂ. ବିଣ. ( ଦ୍ୱନ୍ଦ୍ୱ; କିନ୍ତୁ ବିଶେଷ୍ୟରୂପେ
Charbbya chūshya lehya peya ଭାଷାରେ ବ୍ୟବହାର )—
ସବୁପ୍ରକାରର ଖାଦ୍ୟଦ୍ରବ୍ୟ; ଯାହା ଚୋବାଇ କରି, ଯାହା ଚୋଷିକରି, ଯାହା ଚାଟିକରି ଓ ଯାହା ପିଇକରି ଖିଆଯାଏ—Food of every kind; sundry eatables (consisting of articles taken by chewing, by sucking, by licking and by drinking).

[ ଦ୍ର—କେହି କେହି ଲେଖକ ଚର୍ବ୍ବ୍ୟ, ଚୂଷ୍ୟ, ଲେହ୍ୟ, ପେୟ ସ୍ଥଳରେ ଅଶୁଦ୍ଧରୂପେ ଚବ୍ୟ, ଚୋଷ୍ୟ, ଲେହ୍ୟ, ପେୟ ବ୍ୟବହାର କରିବାର ଦେଖାଯାଏ । ]

**ଚର୍ମ୍ମ**—ସଂ. ବି. (ଚର୍ ଧାତୁ+କରଣ ମନ୍, ୧ମା ୧ବ. ଯାହାଦ୍ୱାରା ବୋଧ
Charma ବା ସ୍ପର୍ଶ କରାଯାଏ)—୧ । ଚମଡ଼ା; ତ୍ୱକ୍; ଚମ—
(ଚର୍ମ୍ମ—ଅନ୍ୟରୂପ) 1. Skin.

୨ । ଜୀବ ଦେହର ଖୋଲ—2. Hide
୩ । ଗଛର ଛେଲି; ବକଳ—3. Bark.
୪ । ଢାଲ—4. Shield.
୫ । ବର୍ମ୍ମ—5. Armour
୬ । ମସଲାଦ୍ୱାରା କଷା ହୋଇ ପାଳିସ ଓ ସ୍ଥାୟୀ କରାଯାଇଥିବା ଚମଡ଼ା—6. Leather.

ଦେ. ବି—ଚରମ ( ଦେଖ ) Charama ( See )

କର୍ମ୍ମ କର କର୍ମ୍ମକାଣ୍ଡ କର ଚର୍ମ୍ମ କରିଁକର ଅଭ୍ରମ ନଧେ ।
ଗୋ. କୃଷ୍ଣ. ରସକଲ୍ଲୋଳ ।

**ଚର୍ମ୍ମକ**—ସଂ. ବି.—ଚର୍ମକାର (ଦେଖ) (ହି. ଶବ୍ଦସାଗର)
Charmaka Charmakāra (See)

ଦେ. ବିଣ.—ଚମରେ ତିଆରି (ବାଜଣା)—
Made of leather or hide.

ଚର୍ମ୍ମକରନ୍ତ୍ର-ବାଦ୍ୟ ଯେତେ, ସକଳ ବଶୀରହି ଗତେ ।
ଭୂପତି. ପ୍ରେମପଞ୍ଚାମୃତ

**ଚର୍ମ୍ମକଷ୍ଣ**—ସଂ ବି.—୧ । ଏକ ସୁଗନ୍ଧ ଦ୍ରବ୍ୟ—
Charmakarī 1. A kind of scent.
(ଚର୍ମ୍ମକଷ୍ଣ—ଅନ୍ୟରୂପ) ୨ । ମାଂସରୋହିଣୀ ଲତା (ହି. ଶବ୍ଦସାଗର)–
2. Name of a creeper.

**ଚର୍ମ୍ମକଷା**—ସଂ. ବି—ଛେଳିପାଗୁଳିଆ (ଦେଖ) (ହରେକୃଷ୍ଣ—ଦ୍ରବ୍ୟଗୁଣ)
Charmakashā Chhelipāguliā ( See )
ଚର୍ମକଷା
ଚର୍ମ୍ମକଷା } ଅନ୍ୟରୂପ

**ଚର୍ମ୍ମକାର**—ସଂ. ବି. ( ଚର୍ମ୍ମ+କୃ+କର୍ତ୍ତୃ. ଅ )—୧ । ମୋଚୀ—
Charmakāra 1. Shoe-maker; tanner; cobbler.
ଚର୍ମକୃତ
ଚର୍ମ୍ମକାରି } ଅନ୍ୟରୂପ
(ଚର୍ମ୍ମକାରୀ—ସ୍ତ୍ରୀ)
୨ । ନୀଚ ଅସ୍ପୃଶ୍ୟ ହିନ୍ଦୁଜାତିବିଶେଷ; ଶ୍ରାବର ସ୍ୱାମୀ ଔରସରେ ଚଣ୍ଡାଳୀ ସ୍ତ୍ରୀ ଗର୍ଭଜାତ–
2. A low untouchable caste amongst Hindus.

[ ଦ୍ର—ଏହି ଶବ୍ଦରୁ ଓଡ଼ିଆ 'ଚମାର' ଶବ୍ଦ ହୋଇଅଛି । କିନ୍ତୁ ଆମ ଦେଶରେ 'ଚମାର'ମାନେ 'ଚମ' କାମ କରନ୍ତି ନାହିଁ । ଚମାରମାନେ ତାଳଗଛ କାଟନ୍ତି, ତାଳପତ୍ରର ଜିନିଷ ବିକନ୍ତି ଓ ତାଳପତ୍ରର ଛାତି ତିଆରି କରନ୍ତି । ଆମ ଦେଶରେ 'ମୋଚୀ' ଜାତି 'ଚମ' କାମ କରନ୍ତି ଓ ଏମାନେ ଚମାରଙ୍କଠାରୁ ସ୍ୱତନ୍ତ୍ର । ଏଥିରୁ ଜଣାଯାଏ ଯେ ପୂର୍ବେ ଚମାରମାନେ ଚମଡ଼ା କାମ କରୁଥିଲେ । ପରେ ମୋଚି ଓ ଚମାର ସ୍ୱତନ୍ତ୍ର ଜାତି ହେଲେ । ]

**ଚର୍ମ୍ମକୀଲ**—ସଂ. ବି. ( ୬ଷ୍ଠୀ ତତ୍; ଚର୍ମ୍ମ+କୀଲ )—୧ । ଆଞ୍ଚୁଡ଼ି—
Charmakīla 1. A wart or mole on the body.
( ଚର୍ମ୍ମକୀଲ—ଅନ୍ୟରୂପ ) ୨ । ଅର୍ଶରୋଗ—
2. Piles ( a disease ).

୩ । ବାଘୀରୋଗ ( ହି. ଶବ୍ଦସାଗର )—3. Bubo.

**ଚର୍ମ୍ମଘଟିକା**—ସଂ. ବି. ( ଚର୍ମ୍ମ+ଘଟ୍ ଧାତୁ=ବେଧ କରିବା+କ+ସ୍ତ୍ରୀ.
Charmaghaṭikā ଆ )—ଜୋକ—Leech.
( ଚର୍ମ୍ମଘଟିକା—ଅନ୍ୟରୂପ )

**ଚର୍ମ୍ମଚକ୍ଷୁଃ**—ସଂ. ବି—ଜୀବର ସାଧାରଣ ଚକ୍ଷୁ ( ଜ୍ଞାନଚକ୍ଷୁର ବିପରୀତ )—
Charmachakshuḥ The ordinary eye ( as opposed to the eye of knowledge ).

**ଚର୍ମ୍ମଚଟକ**—ସଂ. ବି. ପୁଂ. ( ଚର୍ମ୍ମ+ଚଟ୍=ଆବରଣ କରିବା+ଅକ;
Charmachaṭaka ଯାହାର ପକ୍ଷ ଚର୍ମଦ୍ୱାରା ଆବୃତ)—ବାଦୁଡ଼ି—
(ଚର୍ମ୍ମଚଟକ—ଅନ୍ୟରୂପ) Bat; flying fox

[ ଦ୍ର—ଏମାନେ ଗଛରେ ରହନ୍ତି । ]

**ଚର୍ମ୍ମଚଟିକା**—ସଂ. ବି. ସ୍ତ୍ରୀ. ( ଚର୍ମ୍ମ+ଚଟ୍+ଇକ+ସ୍ତ୍ରୀ. ଆ )—
Charmachaṭikā ଚମଚଟା; ଚମରଚଟିଆ; ଚେମ୍ପିଣି—The small house bat; Cynopterus Marginatus.
ଚର୍ମ୍ମଚଟକା
ଚର୍ମଚଟୀ
ଚର୍ମଚଟକା } ଅନ୍ୟରୂପ

[ ଦ୍ର—ଏମାନେ ଘରେ ଓ ଦେଉଳରେ ରହନ୍ତି । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ କିମ୍ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚର୍ମଚିତ୍ର**—ସଂ. ବି. ( ବହୁବ୍ରୀହି; ଚର୍ମ+ଚିତ୍ର; ଯାହା ଚର୍ମକୁ ଚିତ୍ରବିଚିତ୍ର କରେ )—୧ । ଶ୍ୱେତ କୁଷ୍ଠରୋଗ—
Charmachitra
ଚର୍ମ୍ମଚିତ୍ର } ଅନ୍ୟରୂପ
ଚର୍ମଚିତ୍ରକ
1. Lencoderma; the white disease.
୨ । ( ଯାହାର ଚର୍ମ ଚିତ୍ରବିଚିତ୍ର ) ଚିତ୍ରମୃଗ; ବାହୁଟିଆ—
2 Spotted deer

**ଚର୍ମଜ**—ସଂ. ବି. ( ଚର୍ମ+ଜନ୍ ଧାତୁ+କର୍ତ୍ତୃ. ଅ )—
Charmaja ୧ । ଲୋମ; ରୋମ—1. Fur.
୨ । ରକ୍ତ—2 Blood.
ଦେ. ବି—୧ । ମୃଦଙ୍ଗ; ଢୋଲ ଆଦି ଆନଦ୍ଧ ବାଦ୍ୟ—
2 Hide-bound instruments; drums.
ଅବର ନାନା ବାଦ୍ୟ ଜାଣ,
ଚର୍ମଜ ଆଦି ଯେତେ ପୁଣ— ଯଶୋବନ୍ତ. ପ୍ରେମଭକ୍ତିଗୀତା ।
୨ । ରୋମ, ଲୋମ ( ହି. ଶବ୍ଦସାଗର )—
2. Down of the blood.
୩ । ରକ୍ତ; ଲହୁ ( ହି. ଶବ୍ଦସାଗର )—3. Blood
ସଂ. ବିଣ—୧ । ଚର୍ମରୁ ଉତ୍ପନ୍ନ—
1. Born of the skin.
( ଯଥା—ଚର୍ମଜ ରୋଗ, ଚର୍ମଜ କୀଟ । )
୨ । ଚର୍ମନିର୍ମିତ—2 Made of leather or hide.

**ଚର୍ମଣ୍ୱତୀ**—ସଂ. ବି. ସ୍ତ୍ରୀ. (ଚର୍ମନ୍+ବତ୍+ସ୍ତ୍ରୀ.ଈ)—୧ । ଭାରତର ଉତ୍ତର ପଶ୍ଚିମସ୍ଥ ବୁନ୍ଦେଲଖଣ୍ଡ ଅନ୍ତର୍ଗତ 'ଚମ୍ବଲ' ନଦୀ; ହିନ୍ଦୁମାନଙ୍କର ତୀର୍ଥବିଶେଷ—
Charmanbati
(ଚର୍ମ୍ମଣ୍ୱତୀ—ଅନ୍ୟରୂପ)
1. The river Chambal in Bundel-khand ( N. W provinces of India ); a sacred river of the Hindus
ଚର୍ମଣ୍ୱତୀ ନଦୀରେ ଦେହ ଚର୍ମ ଧୋଇ
ଯେ ଅଛି ତାହା ପର ଭାଗ୍ୟବନ୍ତ ନାହିଁ । କୃଷ୍ଣସିଂହ. ମହାଭାରତ. ବନ ।

[ ଦ୍ର—ଏହା ମଧ୍ୟଭାରତର ବିନ୍ଧ୍ୟ ପର୍ବତରୁ ବାହାରି ଉତ୍ତର-ପୂର୍ବ ମୁଖ ହୋଇ ଯମୁନାରେ ପଡ଼ିଅଛି । ଶିପ୍ରା ନଦୀ ଏହାର ଗୋଟିଏ ଶାଖା ।
ପୂର୍ବକାଳରେ ରାଜା ରନ୍ତିଦେବ ଅସଂଖ୍ୟ ବୃଷ ବଧ କରାଇ ବ୍ରାହ୍ମଣ ଭୋଜନ କରାଉଥିଲେ । ଏହି ନିହତ ପଶୁମାନଙ୍କ ରକ୍ତ ସ୍ରୋତରୁ ଏ ନଦୀ ଉତ୍ପନ୍ନ ହୋଇଥିବା କଥା ପୁରାଣରେ ଉକ୍ତଅଛି । ]
୨ । କଦଳୀ ଗଛ—2. Plantain tree.

**ଚର୍ମତରଙ୍ଗ**—ସଂ. ବି. ( ଜରା ବା ରୋଗଗ୍ରସ୍ତ ବ୍ୟକ୍ତିର )—
Charmataranga ୧ । ଶିଥିଳ ଚର୍ମ୍ମ; ବଳପଡ଼ିଥିବା ଚର୍ମ—
(ଚର୍ମ୍ମତରଙ୍ଗ—ଅନ୍ୟରୂପ) 1. Hanging skin of an old or sick person.
୨ । ପଲିତ ଚର୍ମର ବଳି—Folds or flaps of hanging skin of an old or sick person
୩ । ସ୍ଥୂଳକାୟ ବ୍ୟକ୍ତିଙ୍କ ପେଟର ମେରୁ ଓହ୍ଲାଇଥିବା ପୁଟୀ—
3. Folds of skin bulging out of the belly of a fat person

**ଚର୍ମଦଣ୍ଡ**—ସଂ. ବି ( ୬ଷ୍ଠୀ ତତ୍; ଚର୍ମ+ଦଣ୍ଡ )—ଚମଡ଼ାର ଚାବୁକ—
Charmadanda Whip made of strings and leather; leathern whip
ଚର୍ମନାଳିକା
ଚର୍ମନାସିକା } ଅନ୍ୟରୂପ
ଚର୍ମ୍ମଦଣ୍ଡ

**ଚର୍ମଦଳ**—ସଂ. ବି—କ୍ଷୁଦ୍ର କୁଷ୍ଠବିଶେଷ—Impetigo; a kind of skin disease.
Charmadala
(ଚର୍ମ୍ମଦଳ—ଅନ୍ୟରୂପ)

**ଚର୍ମଦୂଷିକା**—ସଂ. ବି. ( ୬ଷ୍ଠୀ ତତ୍; ଚର୍ମ+ଦୂଷିକା )—
Charmadūshikā ଦଦ୍ରୁରୋଗ (ହି. ଶବ୍ଦସାଗର)—
(ଚର୍ମ୍ମଦୂଷିକା—ଅନ୍ୟରୂପ) Ringworm.

**ଚର୍ମଦ୍ରୁମ**—ସଂ. ବି—ଭୂର୍ଜ ପତ୍ରର ଗଛ (ଯାହାର ପାତଳା ଛାଲ କାଗଜରୂପେ ଲେଖିବାରେ ବ୍ୟବହୃତ ହୋଇପାରେ)—
Charmadruma
(ଚର୍ମ୍ମଦ୍ରୁମ—ଅନ୍ୟରୂପ) A variety of the birch tree whose thin bark was used for paper; Betula Bhurja.

**ଚର୍ମନୟନ**—ଦେ. ବି—ସ୍ଥୂଳ ଚକ୍ଷୁ—
Charmanayana The ordinary eye.
କେତେକାଳ ବସି କେତେ ତପ କଲୁ
ଦେଖିଲୁ ଁ ଚର୍ମ ନୟନେ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଚର୍ମପତ୍ରା**—ସଂ ବି. ସ୍ତ୍ରୀ. (ଚର୍ମ+ପତ୍ର+ଅଳ୍ପାର୍ଥେ ଆ; ଚର୍ମପରି ପତ୍ର=ପକ୍ଷ ଯାହାର)—ବାଦୁଡ଼ି; ଚେମିଣୀ—The bat.
Charmapatrā
ଚର୍ମ୍ମପତ୍ରା } ଅନ୍ୟରୂପ
ଚର୍ମପତ୍ରୀ

**ଚର୍ମପାଦୁକା**—ସଂ. ବି. ସ୍ତ୍ରୀ. ( ମ. ପ. ଲୋ; ଚର୍ମ+ପାଦୁକା )
Charmapādukā ଉପାନହ, ଜୋତା—
(ଚର୍ମ୍ମପାଦୁକା—ଅନ୍ୟରୂପ) Shoes (made of leather).

**ଚର୍ମପୀଡ଼ିକା**—ସଂ. ବି. ସ୍ତ୍ରୀ. ( ଚର୍ମ+ପୀଡ଼ ଧାତୁ+ଇକ+ଆ )—
Charmapirdikā ୧ । ଏକପ୍ରକାର ମସୂରିକା ବା ବସନ୍ତ ରୋଗ—
(ଚର୍ମ୍ମପୀଡ଼ିକା—ଅନ୍ୟରୂପ) 1. A kind of small pox.
[ ଦ୍ର—ଏଥିରେ ରୋଗୀର ଗଳା ବନ୍ଦ ହୋଇଯାଏ ଓ ପ୍ରଳାପ ଓ ବ୍ୟାକୁଳତା ହୁଏ । ହି. ଶବ୍ଦସାଗର । ]
୨ । ଦେହରେ ବଡ଼ ବଡ଼ ହୋଇ ଫଳିବା କୁଣ୍ଡିଆ—
2 Small pimples or eruptions on the body.
୩ । ମିଳିମିଳା—3. Measles.

**ଚର୍ମପୁଟ**—ସଂ. ବି. ( ଚର୍ମ+ପୁଟ )—ତେଲ ଘୃତାଦି ରଖିବା ନିମନ୍ତେ ପ୍ରସ୍ତୁତ ଚମଡ଼ାର କୁମ୍ପା ବା କୋତ—
Charmaputa
ଚର୍ମ୍ମପୁଟ } ଅନ୍ୟରୂପ
ଚର୍ମ୍ମପୁଟକ
Big leathern jars ( for storing oil, ghee etc ).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୯ | ଇ | ଉ | ର୍,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ପ | ଉ୍ଥ | ଐ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚଂ୍ୟ | ଇଅ | ଔ | ନ୍ତୁ |

**ଚର୍ମପୁଡ଼ା**—ଦେ. ବ ( ସଂ. ଚର୍ମପୁଟକା )—ଚମମୁଣା—
Charmapurdā Leather bag.

ମାଗ। ଚର୍ମପୁଡ଼ା ସ୍ୱରୂପ। ନଗ୍ନାକ୍ଷିତ
ଡାଠାରେ ସ୍ତୁତରୂପେ ପିଣ୍ଡାକୁ ଏ କାଟ। କୃଷ୍ଣସିଂ. ମହାଭାରତ. ଅଦ।

**ଚର୍ମପ୍ରଭେଦକା**—ସଂ.ବ. ସ୍ତ୍ରୀ.(ଚର୍ମ+ପ୍ର+ଭିଦ୍ ଧାତୁ+କର୍ତ୍ତୃ ଅକ+ସ୍ତ୍ରୀ. ଆ)—ମନୁଷ୍ୟର ଶରୀର ଫୁଟାଇବାର
Charmaprabhedikā
( ଚର୍ମ୍ମପ୍ରଭେଦକା—ଅନ୍ୟରୂପ ) ଚିକିତ୍ସାସ୍ତ୍ରବିଶେଷ—Lancet; a surgical instrument for piercing the skin.

**ଚର୍ମପ୍ରସେବକ**—ସଂ. ବ. ପୁଂ. ( ଚର୍ମ+ପ୍ର+ସିବ ଧାତୁ=ସେଇବା+କର୍ମ. ଅକ )—୧ । ନିଆଁକୁ ବାୟୁଦ୍ୱାରା
Charmaprasebaka
(ଚର୍ମ୍ମପ୍ରସେବକ—ଅନ୍ୟରୂପ) ଉତ୍ତେଜିତ କରିବା ନିମନ୍ତେ କମାର-
(ଚର୍ମପ୍ରସେବିକା—ସ୍ତ୍ରୀ) ମାନଙ୍କ ବ୍ୟବହୃତ ଯନ୍ତ୍ର, ଭାଟି, ଭସ୍ତ୍ରା—
1. Leathern bellows.
୨ । ଭସ୍ତି; ଜଳ ତେଲାଦି ବୋହିବା ନିମନ୍ତେ ପ୍ରସ୍ତୁତ ଚମଡ଼ାର ମୁଣି—2. Leathern bag or pouch for carrying water and oil; Vistee

**ଚର୍ମବତୀ**—ସଂ. ବ. ସ୍ତ୍ରୀ. ( ଚର୍ମ+ବତ୍+ସ୍ତ୍ରୀ. ଈ )—
Charmabatī ଚର୍ମଣ୍ୱତୀ ( ଦେଖ )
(ଚର୍ମ୍ମବତୀ—ଅନ୍ୟରୂପ) Charmanbatī ( See )

**ଚର୍ମବାସ**—ସଂ. ବଣ. ( ବହୁବ୍ରୀହି; ଚର୍ମ+ବାସ )—
Charmabāsa ବ୍ୟାଘ୍ର ଓ ମୃଗଚର୍ମ ପିନ୍ଧିଥିବା (ବ୍ୟକ୍ତି)—
Wearing skin (of tiger and deer).

ଶ୍ଲୋକ ତହୁଁରେ ଅଛ ସହସ୍ର ଦ୍ୱାଦଶ
କହୁଅଛନ୍ତି ଚର୍ମବାସ ବେଦବ୍ୟାସ। କୃଷ୍ଣସିଂ. ମହାଭାରତ. ଅଦ।

**ଚର୍ମମସୂରିକା**—ସଂ. ବ.—ଚର୍ମପୀଡ଼ିକା (ଦେଖ)
Charma masūrikā Charmapirdikā (See)

**ଚର୍ମରୁ**—ସଂ. ବ. (ଚର୍ମ+ରୁ ଧାତୁ=ରବ କରିବା+କର୍ତ୍ତୃ. କ୍ୱିପ୍)—
Charmaru ଚର୍ମକାର; ମୋଚି—
(ଚର୍ମ୍ମରୁ—ଅନ୍ୟରୂପ) Cobbler; shoe-maker.

**ଚର୍ମରୋଗ**—ସଂ. ବ. (ମ. ପ. ଲୋ; ଚର୍ମ+ରୋଗ)—ଚର୍ମକୁ ଆକ୍ରମଣ
Charmaroga କରିବା ରୋଗ; (କାଛୁ; କୁଣ୍ଡିଆ; ଜାଦୁ ପ୍ରଭୃତି—
(ଚର୍ମ୍ମରୋଗ—ଅନ୍ୟରୂପ) Skin disease.

**ଚର୍ମହନ୍ତ୍ରୀ**—ସଂ. ବ.—(ଚର୍ମ+ହନ ଧାତୁ+କର୍ତ୍ତୃ. ତୃ+ସ୍ତ୍ରୀ. ଈ)—
Charmahantrī ହାଲିମ (ଦେଖ)
(ଚର୍ମ୍ମହନ୍ତ୍ରୀ—ଅନ୍ୟରୂପ) Hālima (See)

**ଚର୍ମାଖ୍ୟ**—ସଂ. ବ. ସ୍ତ୍ରୀ—(ଚର୍ମ+ଆଖ୍ୟା )—କ୍ଷୁଦ୍ର କୁଷ୍ଠବିଶେଷ (ଏଥିରେ)
Charmākhya ଦେହର ଚମଡ଼ା ଟାଣୁଆ ହୋଇଯାଏ )—
(ଚର୍ମ୍ମାଖ୍ୟ—ଅନ୍ୟରୂପ) A kind of skin disease; Scleroderma (accompanied by rigidity and hardness of the skin.)

**ଚର୍ମାତ**—ସଂ. ବ.—ସୁଶ୍ରୁତୋକ୍ତ ପ୍ରାଚୀନକାଳରେ ଅସ୍ତ୍ରଚିକିତ୍ସାର୍ଥ ବ୍ୟବହୃତ
Charmāta ଯନ୍ତ୍ରବିଶେଷ—An ancient surgical instrument

**ଚର୍ମାନୁରଞ୍ଜକ**—ସଂ. ବଣ. (୬ଷ୍ଠୀ ତତ୍; ଚର୍ମ+ଅନୁରଞ୍ଜକ)—ଯେ
Charmānurañjaka ଚମଡ଼ାକୁ ରଙ୍ଗାଏ ବା କଷେ—
(ଚର୍ମ୍ମାନୁରଞ୍ଜକ—ଅନ୍ୟରୂପ) A tanner; a person who dyes leather

**ଚର୍ମାନୁରଞ୍ଜନ**—ସଂ. ବ. ( ଚର୍ମ+ଅନୁରଞ୍ଜନ )—୧ । (୬ଷ୍ଠୀ ତତ୍;)
Charmānurañjana ଚମଡ଼ା କଷିବା ବା ରଙ୍ଗେଇବା—
(ଚର୍ମ୍ମାନୁରଞ୍ଜନ—ଅନ୍ୟରୂପ) 1. Tanning.
୨ । (ବହୁବ୍ରୀହି) ହରିତାଳ—2. Yellow orpiment.

**ଚର୍ମାର**—ସଂ. ବ. (ଚର୍ମ+ରୁ ଧାତୁ=ରବ କରିବା+ଅ)—ମୋଚି—
Charmāra Cobbler.
(ଚର୍ମ୍ମାର—ଅନ୍ୟରୂପ)

**ଚର୍ମିକ**—ସଂ. ବଣ. (ଚର୍ମ+ଇକ; ଯେ ଚର୍ମନିର୍ମିତ ଫଳକ ଧାରଣ କରି
Charmika ଯୁଦ୍ଧ କରେ)—ଢାଲ ଧରିଥିବା(ଯୋଦ୍ଧା); ଢାଲଧାରୀ—
(ଚର୍ମ୍ମିକ—ଅନ୍ୟରୂପ) Fighting with or carrying a leathern shield

ସଂ ବ.—୧ । ଢାଲ ଧରି ଯୁଦ୍ଧ କରିବା ଯୋଦ୍ଧା—
1. A warrier who fights with a shield in his hand.
୨ । (ଚର୍ମ+କ) ଭୂର୍ଜପତ୍ର (ପ୍ରକୃତିବାଦ)—
2. The leaf of Birch.
୩ । ପାର୍ଚ୍‌ମେଣ୍ଟ (ପ୍ରକୃତିବାଦ)—3 Parchment.

**ଚର୍ମିକା**—ସଂ. ବ. ( ଚର୍ମକ+ସ୍ତ୍ରୀ. ଆ )—୧ । ଭୂର୍ଜପତ୍ର—1. The
Charmikā paperlike bark of the birch tree.
(ଚର୍ମ୍ମିକା—ଅନ୍ୟରୂପ) ୨ । ଚମଡ଼ାନିର୍ମିତ କାଗଜ—
2. Parchment.

**ଚର୍ମୀ**—ସଂ. ବଣ. ( ଚର୍ମ=ଢାଲ+ଅଛି ଅର୍ଥରେ ଇନ୍ )—
Charmī ଚର୍ମିକ (ଦେଖ)
(ଚର୍ମ୍ମୀ—ଅନ୍ୟରୂପ) Charmika (See)
ସଂ. ବ.—ଚର୍ମକ ୧ (ଦେଖ)
Charmaka 1. (See)

**ଚର୍ଯ୍ୟ**—ସଂ. ବଣ. ପୁଂ. (ଚର୍ ଧାତୁ+କର୍ମ. ଯ)—ଆଚରିତ ହେବାର
Charjya ଯୋଗ୍ୟ; ଆଚରଣୀୟ; କରଣୀୟ; କର୍ତ୍ତବ୍ୟ—
(ଚର୍ଯ୍ୟା—ସ୍ତ୍ରୀ) Proper or fit to be practised; incumbent.

**ଚର୍ଯ୍ୟା**—ସଂ. ବ. (ଚର ଧାତୁ+ଭାବ. ଯ+ସ୍ତ୍ରୀ. ଆ)—୧ । ଆଚରଣ—
Charjyā 1. Conduct; rules of conduct.
(ଯଥା—ବନଚର୍ଯ୍ୟା; ଋତୁଚର୍ଯ୍ୟା । )
୨ । ଗତି—2. Movement; motion.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଆଖି ନ ପାଇଲେ 'ଆକ୍ଷି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୩ । ପାଳନ—3. Bringing up; practising; observance.
(ଯଥା—ବ୍ରତଚର୍ଯ୍ୟା ।)
୪ । ରକ୍ଷା—4. Protecting.
୫ । ସେବା—5. Serving; tending; looking after.
(ଯଥା—ଅତିଥିଚର୍ଯ୍ୟା ।)
୬ । ଆହାର; ଭୋଜନ—6. Eating.
୭ । ଚରିତ୍ର—7. Character.
୮ । ବିଧି ବା ଆଚାର ପାଳନ—
8. Observance of rules and customs.
୯ । ବ୍ରତ ବା ଧର୍ମକାର୍ଯ୍ୟ କରଣ—
9. Parctice of religious austerities.
୧୦ । ବୃତ୍ତି; ଜୀବିକା (ହି. ଶବ୍ଦସାଗର)—
10 Profession.

**ଚର୍ଷଣି**—ସଂ. ବି. (ଚର ଧାତୁ+କର୍ତ୍ତୃ. ଅଣି)—୧ । (ପୁଂ) ମନୁଷ୍ୟ
Charshaṇi (ହି. ଶବ୍ଦସାଗର)—1. Man
୨ । (ସ୍ତ୍ରୀ) କୁଳଟା ସ୍ତ୍ରୀ (ହି. ଶବ୍ଦସାଗର)—
2. An adulteress.

**ଚର୍ଷଣୀ**—ସଂ. ବି—ମନୁଷ୍ୟଜାତି; ମାନବଜାତି (ହି. ଶବ୍ଦସାଗର)—
Charshaṇī The human kind.

**ଚଲ୍ (ଧାତୁ)**—ସଂ.—ଗତି କରିବା –
Chal (root) To move.

**ଚଲ୍**—ଦେ. ବିଣ. ( ସଂ. ଚଳିତ, ହିନ୍ଦୀରୁ ଅନୁକୃତ )—୧ । ଗତ; ଚାଲି
Chal ଯାଇଥିବା—1. Gone; departed.
ଚଲ ୨ । ପଳାୟିତ—2. Run away.
(ଯଥା—ସେ ଏଥୁ କହି ଚଲ୍ ।)
ଦେ. ବି—ପଳାୟନ—Running away.
( ଯଥା—ସେ ଯାଇ କହି ଚଲ୍ ଦେଲା । )
ଦେ. ଅ ( ଭୁଲ. (ହି) କ୍ରି. ଚଲ୍=ଚାଲ ଯାଅ )—
୧ । ଚାଲ୍; ଚାଲଯା—
1. ( Interjection ) Get off; be gone !
୨ । ଅଗ୍ରସର ହୁଅ—2. Proceed; go on.

**ଚଲକରିବା**—ଦେ, କ୍ରି. (ଭୁଲ.ହି. ଚଲ୍‌ଦେନା)—ଚାଲିଯିବା, ଚାଲିଯିବା-
Chalkaribā To go away; to depart.
ଚଲ୍‌ଦେବା } ଅନ୍ୟରୂପ
ଚଲ୍‌ବରେଲିବା }

**ଚଲ୍‌ତି**—ଦେ. ବିଣ ଓ ବି—ଚଳନ୍ତି ( ଦେଖ )
Chalti Chaḷati ( See )

**ଚଲ୍‌ଧା**—ପ୍ରାଦେ. ( ସମ୍ବଲପୁର ) ବି—ଚାଙ୍ଗୁଡ଼ି—
Chaldhā A wicker work-tray.

**ଚଲ୍‌ଫେରୁ**—ପ୍ରାଦେ, (ବାଲେଶ୍ୱର) ବି—ଚଲାବୁଲା; ଚାଲବୁଲ—
Chalpher Walking.

**ଚଲ୍‌ବା**—ପ୍ର ଦେ. (ସମ୍ବଲପୁର) କ୍ରି. ( ସଂ. ଚଲ ଧାତୁ. ହି. ଚଲ୍‌ନା )—
Chalbā ୧ । ଚଳିବା; ଗତି କରିବା—1. To move.
୨ । ଭ୍ରମଣ କରିବା—2 To walk.

**ଚଲ୍‌ଭାଇଛୁଟି**—ଦେ. ଅ. ( ହିନ୍ଦୀରୁ ଅନୁକୃତ ଭୁଲ. ହି ଚଲଭାଇଛୁଟି,
Chalbhāichhuṭṭi ଅର୍ଥାତ୍ ଚାଲରେ ଭାଇ ! ଆମର କାର୍ଯ୍ୟ ଶେଷ ହେଲା, ଆମେ ଖଲାସ ପାଇଲୁଁ )—
୧ । କୃତକର୍ମା; ଆପଣାଠାରେ ନିର୍ଦ୍ଦିଷ୍ଟ କୌଣସି କାର୍ଯ୍ୟ ସମାପ୍ତ ହେଲେ ମନୁଷ୍ୟର ଯେଉଁ ଅବସ୍ଥା ହୁଏ—
1. Set free after one's work is finished.
୨ । ଦାୟିତ୍ୱରୁ ମୁକ୍ତ—2. Freed from a liability.
( ଯଥା—ମୋ ଉପରେ ଭାର ଥିବା କାର୍ଯ୍ୟ ଶେଷ ହେଲା, ଏଥର ମୁଁ 'ଚଲ୍‌ଭାଇଛୁଟି' । )

**ଚଳ**—ସଂ ବିଣ. ପୁଂ. ( ଚଲ୍ ଧାତୁ+କର୍ତ୍ତୃ. ଅ )—
Chaḷa ୧ । ଗମନଶୀଳ; ଗତିବିଶିଷ୍ଟ; ଜଙ୍ଗମ—
(ଚଳା – ସ୍ତ୍ରୀ) 1. Moving.
ଚଳିତା } ହି. ୨ । ଜୀବିତ; ପ୍ରାଣୀ—
ଚଳନ୍ତି } 2. Living; animate.
୩ । ଆଚରିତ—3. Observed; practised.
୪ । ଅସ୍ଥିର; ଚଞ୍ଚଳ—
4 Unsteady; fickle; wavering.
୫ । କମ୍ପିତ—5. Trembling; tremulous.
୬ । ଦୋହଲୁଥିବା; ହଲୁଥିବା—
6. Moving to and fro; shaking
୭ । ପଳାୟିତ; ପଳାତକ—7. Fugitive.
୮ । ବ୍ୟବହୃତ—8. In use.
ସଂ. ବି—୧ । ( +ଭାବ. ଅ) ଚାଞ୍ଚଲ୍ୟ; ଅସ୍ଥିରତା—
1. Unsteadiness; fickleness.
୨ । (+କର୍ତ୍ତୃ. ଅ) ବାୟୁରୋଗ, ବାୟୁଜନିତ ରୋଗ—
2 Wind disease; disorder or disorganisation of the system due to wind
[ ଦ୍ର—ଋକା, ପେଟଫମ୍ପା ଓ ବାୟୁ ଅଡ଼ିବା ଇତ୍ୟାଦି ବାୟୁ ରୋଗ । ]
୩ । ( ଅସ୍ଥି ବିଜ୍ଞାନ ) ଶରୀରର ଯେଉଁ ଅସ୍ଥିସନ୍ଧି ସ୍ଥିର ନୁହେ ଅର୍ଥାତ୍ ଇତସ୍ତତଃ ହଲେ ( ଯଥା — ଆଣ୍ଠୁର ଚକିତ )—3. Moveable bone joints of the body; a complete joint in the human body.
୪ । ପାରଦ ( ହି. ଶବ୍ଦସାଗର )—4. Mercury
୫ । ଶିବ; ମହାଦେବ ( ହି. ଶବ୍ଦସାଗର )—5. Śiba

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଋଅ | ୠ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଋଅ | ଢ଼ | ନୃ |

୬ । ବିଷ୍ଣୁ ( ହି. ଶବ୍ଦସାଗର )—6 Bishnu.

୭ । ( +ଭାବ. ଅ) କମ୍ପନ (ହି. ଶବ୍ଦସାଗର)—
7. Shaking; tremour; vibration.

୮ । ଦୋଷ; ତ୍ରୁଟି (ହି. ଶବ୍ଦସାଗର)—8. Defect; flaw.

୯ । ଭୁଲ; ଭ୍ରାନ୍ତି ( ହି. ଶବ୍ଦସାଗର ) -- 9. Mistake.

୧୦ । ଛଳ; କପଟ ( ହି. ଶବ୍ଦସାଗର )—1. Deception.

୧୧ । ନୃତ୍ୟର ଚେଷ୍ଟାବିଶେଷ, ଯହିଁରେ ହାତ ଠାରି କାହାକୁ ପାଖକୁ ଆସିବାକୁ ଇସାରା ଦିଆଯାଏ (ହି. ଶବ୍ଦସାଗର)-
11. Beckoning with the hand during dancing.

୧୨ । ନୃତ୍ୟକାଳରେ ଶୋକ, ଉତ୍କଣ୍ଠା, ଚିନ୍ତା ଓ ପରିଶ୍ରମସୂଚକ ଗମ୍ଭୀର ନିଶ୍ୱାସ ମାରିବା ( ହି. ଶବ୍ଦସାଗର )—
12. Deep sighing indicating grief; anxiety and exertion during dancing.

ଦେ. ବିଣ— ୧ । ସୁପରିଚାଳିତ—1. Well conducted.
( ଯଥା—ତାହାଙ୍କର ଚଳପକ୍ଷ । )

୨ । ସଚଳ; ସାଂସାରିକ ସମ୍ପଦଯୁକ୍ତ—2. Prosperous

ଦେ. ବି—୧ । ରାଗ; କ୍ରୋଧ; ବିରକ୍ତି —
1. Anger; displeasure.

୨ । ଆଳସ୍ୟ ଯୋଗୁଁ ବିରକ୍ତିବୋଧ —
2. Feeling of ennui.
(ଯଥା—ବସି ବସି ମୋତେ ଚଳ ମାଡ଼ିଲାଣି । )

୩ । (ସଂ. ଚୁଲୁ) ଗୋଟିଏ ହାତର ସଙ୍କୁଚିତ କରତଳ ବା ପୁଟ ମଧ୍ୟରେ ଯେତିକି ପାଣି ସମ୍ଭାଇ ପାରେ; ପୋଷ—
3. Quantity of water which can be contained in the hollowed palm of one hand; handful.

ବ୍ରାହ୍ମଣ ଚେଲି ଉହୁଁ ମୃତ୍ୟୁସଞ୍ଜୀବନୀ
ପାଇଁଶରେ ବିଷ୍ଣୁଦେଲ ଚଳେ ପାଣି ଯେନ—ଚୈତ ନ ପଞ୍ଚବଂଶତ ।

[ ଦ୍ର—ଏକ ହାତର ସପୁଟୀକୃତ କରତଳରେ ଯେତେ ବସ୍ତୁ ସମ୍ଭାଏ ତାକୁ ବା ତହିଁର ପରିମାଣକୁ ପୋଷ ବୋଲାଯାଏ । ଯଥା—ପୋଷେ ପାଣି, ପୋଷେ ଚାଉଳ । ତରଳ ଓ ଘନ ବସ୍ତୁ ସମ୍ବନ୍ଧରେ 'ପୋଷ' ବ୍ୟବହୃତ ହୁଏ । କିନ୍ତୁ 'ଚଳ' କେବଳ ତରଳ ବସ୍ତୁ ପ୍ରତି ପ୍ରଯୁଜ୍ୟ । ଯଥା—ଚଳେ ପାଣି । ପୋଷେ ପାଣି ଅପେକ୍ଷା ଚଳେ ପାଣି ପରିମାଣରେ ଅଳ୍ପ । ହସ୍ତଦ୍ୱୟ ସପୁଟୀକୃତ କରତଳଦ୍ୱୟରେ ସମ୍ଭାଇବା ବସ୍ତୁକୁ ବା ତହିଁର ପରିମାଣକୁ ଅଞ୍ଜୁଳା (ସଂ. ଅଞ୍ଜଳି) ବୋଲାଯାଏ । ଅଞ୍ଜୁଳାଏ ପାଣି ଅପେକ୍ଷା ପୋଷେ ପାଣି ଅଳ୍ପ ଓ ପୋଷେ ପାଣି ଅପେକ୍ଷା ଚଳେ ପାଣି ଅଳ୍ପ । ]

୪ । ସାଂସାରିକ ସ୍ୱାଚ୍ଛନ୍ଦ୍ୟତା; ସଚଳ ଅବସ୍ଥା; ଗୃହସ୍ଥର ବୈଷୟିକ ଅବସ୍ଥା—4. A householder's worldly prosperity or plenty; the state of being well-to-do.

ଚଳଉ—ଦେ ବି (ସଂ. ଚଳନ)—୧ । ଯାନବାହନର ଗତିର ବେଗ—
Chalau — 1. Velocity of a conveyance.
(ଯଥା—ଏ ରେଳଗାଡ଼ିର ଚଳଉ ଘଣ୍ଟାକେ ୩୦ ମାଇଲ । )
ଚଳନ — ୨ । ଗତିର କ୍ରମ ବା ପ୍ରକାର; ଚାଲି—
ଚାଲ — 2. Mode or manner of motion.
୩ । ଗତି—3. Motion.
( ଯଥା—ଏ ହାଲୁକା ସବାରୀ ଖଣ୍ଡିକର ଚଳଉ ଭଲ ଅଟେ । )

ଚଳକର୍ଣ୍ଣ—ସଂ. ବିଣ. ପୁଂ (ବହୁବ୍ରୀହି; ଚଳ+କର୍ଣ୍ଣ)—ଯେ ସର୍ବଦା କାନ ହଲାଉଥାଏ—Moving the ears.
Chalakarnna
ସଂ. ବି—୧ । ପୃଥିବୀଠାରୁ ଗ୍ରହର ସ୍ୱାଭାବିକ ଅନ୍ତର ( ହି. ଶବ୍ଦସାଗର)—1. The natural distance between the earth and planet.
୨ । ହାତୀ (ହି. ଶବ୍ଦସାଗର) —2. Elephant.

ଚଳକା—ଦେ. ବି—ହସ୍ତକୋଷ, ପାତ୍ରୀକୃତ ଗୋଟିଏ କରତଳ
Chalaka (ଗୋପୀନାଥ ନନ୍ଦ)—Cuplike position of the palm of one hand.

ଚଳକାଚଳ—ଦେ. ଅ —ଏକଚଳ ( ତରଳ ପଦାର୍ଥ ) ପରେ ଅନ୍ୟ ଏକ ଚଳ; ଅନେକ ପୋଷ; ପୋଷକୁପୋଷ (ତରଳ ପଦାର୍ଥ)—Many or successive handfuls (of liquid).
Chalakachala
(ଚଳକୁଚଳ — ଅନ୍ୟରୂପ)
(ଯଥା—ଚଳକାଚଳ ପାଣି ତା ମୁହଁକୁ ମାରିବାରୁ ତାର ସଂଜ୍ଞାଲାଭ ହେଲା । )

ଚଳକେତୁ — ସଂ. ବି (କର୍ମଧା; ଚଳ+କେତୁ) ଧୂମକେତୁବିଶେଷ--
Chalaketu — Name of a comet.
[ ଦ୍ର—ଏହା ପଶ୍ଚିମ ଆକାଶରେ ଉଦୟ ହୁଏ । ଏହାର ମୁଣ୍ଡ ଦକ୍ଷିଣକୁ ଓ ପୁଚ୍ଛ ଉତ୍ତରକୁ ଥାଏ । ଏହା ଉଦୟ ହୋଇ କ୍ରମଶଃ ଉତ୍ତର ଆଡ଼କୁ ଗତି କରି ସପ୍ତର୍ଷିମଣ୍ଡଳ ବା ଅଭିଜିତ୍ ନକ୍ଷତ୍ର ପର୍ଯ୍ୟନ୍ତ ଅଗ୍ରସର ହୁଏ ଓ ହଠାତ୍ ଆକାଶ ମଧ୍ୟରେ ଅଦୃଶ୍ୟ ହୋଇଯାଏ । ଫଳିତ ଜ୍ୟୋତିଷ ମତରେ ଏହାର ଉଦୟ ହେବାର ୧୦ମାସଠାରୁ ୧୮ମାସ ମଧ୍ୟରେ ଦେଶରେ ଦୁର୍ଭିକ୍ଷାଦି ଉପଦ୍ରବ ହୁଏ— (ହି. ଶବ୍ଦସାଗର) । ]

ଚଳଚଞ୍ଚୁ—ସଂ. ବି (ବହୁବ୍ରୀହି; ଚଳ + ଚଞ୍ଚୁ ) —ଚକୋରପକ୍ଷୀ—
Chalachanchu — The red legged Himalayan Partridge (which always moves its beak).

ଚଳଚିତ୍ତ—ସଂ. ବିଣ. ପୁଂ ( ବହୁବ୍ରୀହି; ଚଳ + ଚିତ୍ତ )—
Chalachitta ୧ । ଯାହାର ମନର ସ୍ଥିରତା ନାହିଁ; ଚଞ୍ଚଳସ୍ୱଭାବ;
(ଚଳ ଚିତ୍ତା—ସ୍ତ୍ରୀ) ଚପଳଚିତ୍ତ—1. Fickle-minded.
ଚଳଚିତ୍ତତା } ବି. ୨ । ଅବ୍ୟବସ୍ଥିତଚିତ୍ତ— 2. Of unsteady mind; of movable temper.
ଚଳଚିତ୍ତତ୍ୱ }
୩ । ଉଦ୍‌ବିଗ୍ନ; ବ୍ୟାକୁଳ —
3. Anxious; agitated; perturbed.

| ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚହ୍ନିର ବିପରୀତ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅଁ' ନ ମିଳିଲେ 'ଭୂଇଁ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଁଶିଆ' ନ ପାଇଲେ 'ଅଁଶିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ |
|---|

**ଚଳଚ୍ଛକ୍ତି**—ସଂ. ବି (ଚଳତ୍ = ଚଳୁଥିବା + ଶକ୍ତି)—ଚଳିବାର କ୍ଷମତା; ଗତିଶକ୍ତି; ଗୁଲି ବୁଲି ପାରିବାର କ୍ଷମତା—
Chalachchhakti — Power of motion; power of walking; walking strength.
(ଯଥା—ସେ ଗୁରମାସ ହେଲା ରୋଗ ଭୋଗି ବର୍ତ୍ତମାନ ଚଳଚ୍ଛକ୍ତି-ରହିତ ହେଲେଣି ।)

**ଚଳଜାତି**—ଦେ. ବି—ପାଣିଛୁଆଁ ହିନ୍ଦୁଜାତି, ଯେଉଁ ଜାତିର ଲୋକଙ୍କ ସ୍ପୃଷ୍ଟ ଜଳକୁ ବ୍ରାହ୍ମଣ କ୍ଷତ୍ରିୟାଦି ଉଚ୍ଚଜାତିର ହିନ୍ଦୁମାନେ ପିଇ ପାରନ୍ତି—
Chalajāti — Touchable caste; a caste from whose hands Hindus of high caste can drink water.

**ଚଳଣ**—ଦେ. ବି (ସଂ. ଚଳନ)—୧ । ଚଳିବାର ରୀତି—
Chalaṇa — 1. Usage; custom.
चलन — ୨ । ଆଚରଣ—2. Conduct.
**चलन** — ୩ । ବ୍ୟବହାର—3 The state of being vogue or use.
୪ । ସାମାଜିକ ଆଦାନପ୍ରଦାନ ବା ସମ୍ପର୍କ—
4. Social connection; social intercourse
[ ଦ୍ର—ଗୁଲି ଶବ୍ଦ ପରେ ଏ ଶବ୍ଦ ସହଚରରୂପେ ବ୍ୟବହୃତ ହୁଏ । ଯଥା—ଗୁଲିଚଳଣ । ]

**ଚଲଣ**—ଗ୍ରା. ବି (ସଂ. ଚଳନ)—ଚଳଣ ( ଦେଖ )—
Chalaṇa — Chalaṇa ( See )

**ଚଲଣା**—ଦେ. ବି—୧ । (ସଂ. ଚଳନ)—ଚଳଣ ( ଦେଖ )—
Chalaṇā — 1. Chalaṇa ( See)
୨ । ( ସଂ. ଦୋଲାଣ୍ଡ—ହରେକୃଷ୍ଣ ଦ୍ରବ୍ୟଗୁଣ ) ଏକ ପ୍ରକାର ନିକୃଷ୍ଟ ଲଭ ଜାତୀୟ ଫଳ; ଜରୁଭୂଳବିଶେଷ—
2. A kind of inferior gourd.
ଚଲଣା ଗ୍ରେଇକୁ ମୂଷ୍ଟ କାଟ ଶାସ୍ତି—ଉଗ ।
चालता — ୩ । ଏକପ୍ରକାର ଖଟା ଫଳ; ଚଲତା—
**चलता** — 3. A kind of acid fruit (Howells )
୪ । ଏକପ୍ରକାର ବସ୍ତ୍ର; ଏକପ୍ରକାର କାଛ ବା ଲେଙ୍ଗୁଟି—(ଗୋପୀନାଥ ନନ୍ଦ)—
4. A kind of under wear or strip of cloth worn under the dress round the private parts.
ସ୍ତ୍ରୀମ ଚଲଣାଟିଏ ପିନ୍ଧି ହୋଇଲେ କାଛବନ୍ଧ—କୃଷ୍ଣସିଂ ହ. ମହାଭାରତ. ବନ୍ତ ।

**ଚଲଣି**—ଗ୍ରା· ବି (ସଂ. ଚଳନ)—୧ । ବ୍ୟବହାର—
Chalaṇi — 1. Practice.
चलन — ୨ । ଦେଶାଚାର—2. Usage of a country; custom.
**चलन** — ୩ । ଦେଶରେ ମୁଦ୍ରାରୂପେ ବ୍ୟବହାର—3. Currency.
୪ । ଅଭ୍ୟାସ—4. Habit.
୫ । ଆଚରଣ; ବ୍ୟବହାର—5 Behaviour; conduct
୬ । ଚଳିବାର ରୀତି—6 Mode of life.
ଦେ. ବିଣ—୧ । ପ୍ରଚଳିତ—1. In use; customary.
୨ । ମୁଦ୍ରାରୂପେ ପ୍ରଚଳିତ—2. Current (coin).

**ଚଲଣି**—ଗ୍ରା. ବି—ଚଳଣି ( ଦେଖ )—
Chalaṇi — Chalaṇi ( See )

**ଚଳତ୍**—ସଂ. ବିଣ ( ଚଳତ୍ = ଚଳୁଥିବା, ଚଳ + କର୍ତ୍ତ୍ରି. ଅତ୍ ( ଶତୃ ପ୍ରତ୍ୟୟ)—୧ । ଚଞ୍ଚଳ; ଚପଳ—
Chalat — 1. Unsteady.
୨ । ଜଙ୍ଗମ; ଗମନଶୀଳ; ଚଳୁଥିବା, ଚଳନ୍ତ—
2. Moving; movable.
୩ । ଦେଶରେ ବ୍ୟବହୃତ; ପ୍ରଚଳିତ, ଚଳନ୍ତି—
3. Current; in use; in vogue.
( ଯଥା—ଅମୁକ ଶବ୍ଦକୁ ତୁମଅଡ଼େ ଚଳତ୍ କଥାରେ କି ନାମରେ ଡାକନ୍ତି ? )
୪ । ଧାବମାନ—4. Running.
୫ । କମ୍ପମାନ—5. Trembling.
୬ । କାର୍ଯ୍ୟ ଚଳିଯିବା ଉପଯୋଗୀ ( ଅବସ୍ଥା )—
6 (condition) Fit or proper for the doing of a work; passable; tolerable.
୭ । ସଚଳ; ସଂସାର ଚଳିବା ଭଳି ସକ୍ଷମ (ବୈଷୟିକ ଅବସ୍ଥା)—
7. Well-to-do worldly circumstance).

**ଚଳତା**—ଦେ. ବି (ସଂ. ଚଲିତା, ଗୁଲିତା = ଛନ୍ନଲ)—ଅମ୍ଳକଷାୟବିଶିଷ୍ଟ ଫଳ; ଓଉ ( ଦେଖ )—
Chalatā — A kind of sour fruit; Ou ( See)
चालता
**चालता**
(ଚଲତା—ଅନ୍ୟରୂପ)

**ଚଳତି**—ଦେ. ବିଣ. ( ସଂ ଚଳତ୍; ସ୍ତ୍ରୀ ଚଳନ୍ତୀ )—
Chalati — ୧ । ପ୍ରଚଳିତ; ଚଳନ୍ତି—1 Current; in vogue.
चलति — ୨ । ବ୍ୟବହୃତ—2. In use.
**चलता, चलती** — ୩ । ଗତିବିଶିଷ୍ଟ—3 Moving.
(ଚଲ୍‌ତି—ଅନ୍ୟରୂପ) ବି—୧ । ସାମାଜିକ କାର୍ଯ୍ୟରେ ପରସ୍ପର ମଧ୍ୟରେ ବିବାହ, ଶବବହନ ଓ ଖାଦ୍ୟଭୋଜନାଦି ସମ୍ପର୍କ—
1 Social intercommunication (in the matter of dining, marriage, carrying dead-body etc ).
୨ । ବ୍ୟବହାର; ପ୍ରଚଳନ—2 Use.

**ଚଳଦଙ୍ଗ**—ସଂ. ବି. ( ବହୁବ୍ରୀହି; ଚଳତ୍ + ଅଙ୍ଗ )—
Chaladaṅga — ଯାହାର ଅଙ୍ଗ ଚଞ୍ଚଳ ବା ଅସ୍ଥିର; ଏକ ପ୍ରକାର ମାଛ ( ହି. ଝିଙ୍ଗା ) ( ହ୍ରୁ. ଶବ୍ଦସାଗର ) ଚେଙ୍ଗ ମାଛ—
A kind of fresh-water-fish.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଊ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଡ଼ | ନ୍ |

**ଚଳଦଳ**—ସଂ. ବି. ( ବହୁବ୍ରୀହି; ଚଳ+ଦଳ; ଯାହାର ପତ୍ର ସର୍ବଦା ପବନରେ ଥରୁଥାଏ )—ଅଶ୍ୱତ୍ଥଗଛ; ଓସ୍ତଗଛ—
Chaladala
The Peepal tree; the holy fig; Ficus Religiosa.

**ଚଳନ**—ସଂ. ବି. ( ଚଲ୍ ଧାତୁ+ଭାବ. ଅନ )—
Chalana
ଚଲନ୍
ଚଳନ୍
୧ । ଚାଲି; ଭ୍ରମଣ; ଗମନ—1. Walking; going; roaming; wandering.
୨ । ଗତି—2 Motion; movement.
୩ । ଦୋହଲିବା—3. Waving.
୪ । ହଲିବା; କମ୍ପନ—4. Trembling; shaking.
୫ । ଚାଲିବାର ରୀତି—5. Gait
୬ । ରୀତି; ଆଚାର; ବ୍ୟବହାର—
6. Usage, custom; practice
୭ । ଅଭ୍ୟାସ; ଚାଲି; ଧରଣ—
7. Habit; manner; mode, ways; style.
୮ । ଅନୁଷ୍ଠାନ—8. Institution.
୯ । ( +କରଣ. ଅନ ) ଚରଣ; ପାଦ; ଗୋଡ଼—
9. Leg; foot.
୧୦ । ( +କର୍ତ୍ତୃ. ଅନ ) ହରିଣ—11. Deer
୧୧ । ( ଗଣିତ ଜ୍ୟୋତିଷ ) ଗ୍ରହାଦିର ସଞ୍ଚାର; ଏକ ରାଶିରୁ ଅନ୍ୟ ରାଶିକୁ ଗମନ—11. ( astronomy ) The movement of a planet from one sign to another.
( ଯଥା—ଶନିଚଳନ । )
୧୨ । ଦେଶରେ ବା ସମାଜରେ ବ୍ୟବହାର—
12. Currency; vogue.
୧୩ । ବ୍ୟବହାର—13. Use.
୧୪ । (ଗଣିତ ଜ୍ୟୋତିଷ) ଦିନ ଓ ରାତି ସମାନ ଥିବା ସମୟରେ କ୍ରାନ୍ତିପାତ ବା ବିଷୁବବୃତ୍ତର ଗତି ( ହି. ଶବ୍ଦସାଗର )—
14. ( Astronomy ) Equinoxial motion; the apparent motion of the sun during the vernal and autumnal Equinox.
୧୫ । ହାତି ବନ୍ଧାଯିବା ଦଉଡ଼ି—
15. The rope for tying an elephant (M W)
୧୬ । (ସମାସରେ) କୌଣସି ମାର୍ଗରୁ ଚ୍ୟୁତି; ବିଚଳନ—
16. ( in compound ) Turning off from.
ବିଣ. ପୁଂ—୧ । ଗତିଶୀଳ—1. Moving.
୨ । କମ୍ପଯୁକ୍ତ—2. Trembling; shivering.
ଦେ. ବି—୧ । ପରସ୍ପର ସଙ୍ଗେ ଥିବା ସାମାଜିକ ସମ୍ପର୍କ—
1. Mutual social connection or intermixture or intercourse.
୨ । କୌଣସି ବ୍ୟକ୍ତି ସମାଜରେ ଚଳିବା ଅବସ୍ଥା—
2. The state of a person being a member of the society.

**ଚଳନକ**—ସଂ ବି ( ଚଲ ଧାତୁ+ଅନ+କ )—ନର୍ତ୍ତକୀମାନେ ପିନ୍ଧିବା ଘଘେରି; କାଛିଲ୍ଲ—A short petty coat worn by dancing girls (M. W.)
Chalanaka

**ଚଳନକଳନ**—ସଂ. ବି (୬ଷ୍ଠୀ ତତ୍; ଚଳନ+କଳନ)—ଜ୍ୟୋତିଷରେ ଯେଉଁ ଗଣନାଦ୍ୱାରା ପୃଥିବୀର ଗତିର ତାରତମ୍ୟ ଅନୁସାରେ ଦିନ ରାତି ବଢ଼ିବା ଓ କମିବାର ହିସାବ କରାଯାଏ ( ହି. ଶବ୍ଦସାଗର )—
Chalanakalana
Astronomical calculation by which the gradual lengthening and shortening of the day and night are calculated according to difference in the motion of the Earth.

**ଚଳନକ୍ଷମ**—ସଂ. ବିଣ. ପୁଂ.—( ଚଳନ+କ୍ଷମ୍+କର୍ତ୍ତୃ. ଅ )—୧ । ଚାଲି ଚାଲିବାକୁ ସମର୍ଥ—
Chalanakshama
(ଚଳନକ୍ଷମା—ସ୍ତ୍ରୀ) 1. Able to walk or move about.
୨ । ଚଳନସହି (ଦେଖ)
2. Chalanasahi (See)

**ଚଳନକ୍ଷମତା**—( ୬ଷ୍ଠୀ ତତ୍; ଚଳନ+କ୍ଷମତା )—ଚାଲିବାର ଶକ୍ତି ବା ସାମର୍ଥ୍ୟ; ଚଳଚ୍ଛକ୍ତି—
Chalanakshamatā
Strength or ability to move about.

**ଚଳନଶୀଳ**—ସଂ. ବିଣ. —ଗତିବିଶିଷ୍ଟ; ଗତିଶୀଳ—
Chalanasīla
Having motion; moving.

**ଚଳନସହି**—ଦେ. ବିଣ.—(ସଂ. ଚଳନ ଓ ସହ ଧାତୁ)—
Chalanasahi
(ଚଳନସଇ—ଅନ୍ୟରୂପ)
ଚଲନସଇ
ଚଲନସାର
୧ । ତାର୍ଯ୍ୟ ଚଳିବାର ଉପଯୁକ୍ତ; ଯାହା ଦ୍ୱାରା କାମ ଚଳି ଯାଇପାରେ—
1. Passable; tolerable.
୨ । ସାଧାରଣରେ ପ୍ରଚଳିତ—
2. In current or ordinary use.

**ଚଳନା**—ସଂ. ବିଣ. ସ୍ତ୍ରୀ.—(ଚଳନ+ଆ)—୧ । ଚଳନର ସ୍ତ୍ରୀଲିଙ୍ଗ—
Chalanā
1. Feminine of chalana.
୨ । ଦୁଷ୍ଟା; ଅସଚ୍ଚରିତ୍ରା (ସ୍ତ୍ରୀ)—
2. Wanton (woman) (M. W.)

**ଚଳନାକାଛ**—ଦେ. ବି.—(ସଂ ଚଳତ୍ ଓ. କଚ୍ଛ)—ଫେର ଲମ୍ବିଥିବା କାଛ ବା କାଛୁଆ; ଯେଉଁ କାଛର ଅଗ ପାଖ ଫେର ତଳକୁ ଲମ୍ବି ଥିବାରୁ ହଲୁଥାଏ—A tight loin-strip of cloth of which one end hangs down from the navel in front.
Chalanākāchha

**ଚଳନି**—ଦେ. ବି.—ଚଳଣି (ଦେଖ)
Chalani
Chalaṇi (See)

> ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଚାଉଳ' ନ ମିଳିଲେ 'ଚାଉଳ' ଖୋଜିବେ; 'କୃଥ' ନ ମିଳିଲେ 'କୃଥ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଚଳନିକା**—ସଂ. ବି. ସ୍ତ୍ରୀ. (ଚଳନକ+ଆ)—ରେଶମୀ ଝାଲର—
Chalanikā — Silken fringes (M. W.).

**ଚଳନୀ**—ସଂ. ବି. ସ୍ତ୍ରୀ. (ଚଳନ+ଈ)—୧ । ଚଳନକ ( ଦେଖ )
Chalanī — 1. Chalanaka ( See )
୨ । ଘାଗରା (କ୍ଲାନେକ୍ସ)—2 Gown.

**ଚଳନୀୟ**—ସଂ. ବିଣ. ( ଚଲ୍ ଧାତୁ+କର୍ମ. ଅନୀୟ )—
Chalanīya — ୧ । ବ୍ୟବହାର୍ଯ୍ୟ; ଚଳିବାର ଯୋଗ୍ୟ—
1. Fit to be used.
୨ । ପ୍ରଚଳିତ; ଚଳୁଥିବା—2. In use; in vogue.
୩ । ଚାଳିତ ହେବାର ଯୋଗ୍ୟ—
3. Fit to be moved or shaken (M.W.); current.

**ଚଳନ୍ତା**—ଦେ. ବିଣ—ଚଳନ୍ତି (ଦେଖ)
Chalantā — Chalanti (See)

**ଚଳନ୍ତି**—ଦେ ବିଣ. (ସଂ. ଚଳତ୍)—୧ । ପ୍ରଚଳିତ; ଚଳୁଥିବା—
Chalanti — 1. In use; current; in vogue.
चलति; चलन्त — ୨ । ଗତି କରୁଥିବା; ଗତିଶୀଳ; ଜଙ୍ଗମ—
चलता — 2. Having motion; moving; movable
(ଅଚଳନ୍ତି; ଅଚଳନ୍ତା—ବିପରୀତ) (ଯଥା—ଚଳନ୍ତି ଶଗଡ଼ରେ ହାତ ପୂରାଇବା—ନ୍ୟାୟ । )
୩ । ଅଧୁନା ବ୍ୟବହୃତ; ଉପସ୍ଥିତ; ବର୍ତ୍ତମାନ ଘଟୁଥିବା; ଅଧୁନା ଲକ୍ଷିତ—3. Present; happening now.
୪ । ବ୍ୟବହାରରେ ଯାହାର ନେବା ଦେବା ହେଉଅଛି -
4. Now in circulation (e g. coin)
(ଯଥା—ଚଳନ୍ତି ମୁଦ୍ରା ।)
୫ । ଅସ୍ଥାବର ସମ୍ପତ୍ତି—5. Movable (property).
୬ । ଯେଉଁ ମୁଦ୍ରାରେ କୌଣସି ଦୋଷ (ଯଥା—ଘଷରା ହୋଇଥିବା, ଭେଲ, କୌଣସି ଅଂଶରେ ଦାଗ ବା କଟା ଚିହ୍ନ ନ ଥିବା) ନ ଥିବାରୁ ତାହା ଚଳିବାରେ ବାଧା ନ ଥାଏ; ଚଳନୀୟ—6. Circulable (coin) which is not defective.
ଦେ. ବି—ଚଳନ୍ତି ମାଲ ( ଦେଖ )—
Chalantimāla ( See )

**ଚଳନ୍ତି କୋରଖ**—ଦେ. ବି ( ସଂ. ଚଳତ୍+ଫା. କୁର୍କ୍ )—ଡିକ୍ରିଦାରର
Chalanti korakha — ଦେୟ ପରିଶୋଧାର୍ଥ ଦେଣଦାରର ଅସ୍ଥାବର
चलतिमालक्रोख् — ସମ୍ପତ୍ତି ବିକ୍ରି ହେବାପାଇଁ ଅଦାଲତଦ୍ୱାରା ଅଟକା
चलतामालकी कुर्की — ହେବା—Confiscation or attachment of the movables of a judgment debtor.

**ଚଳନ୍ତି ତହବିଲ**—ଦେ. ବି ( ସଂ. ଚଳତ୍+ଫା. ତହବିଲ ) ବାହାରର
Chalanti tahabila — ତହବିଲ; ଯେଉଁ ତହବିଲରୁ ଦୈନନ୍ଦିନ
चलति तविल — ବ୍ୟୟାଦି ଚଳେ—Current cash ( as
चलता तहवील — opposed to hoarded cash ).
(ଗଚ୍ଛିତ—ବିପରୀତ ତହବିଲ)

**ଚଳନ୍ତି ପ୍ରତିମା**—ଦେ. ବି ( ସଂ. ଚଳତ୍ ଓ ପ୍ରତିମା )—୧ । ଛୋଟ
Chalanti pratimā — ପ୍ରତିମା; ପ୍ରତିନିଧିରୂପେ ସ୍ଥାପିତ ଦେବମୂର୍ତ୍ତି—
चलति प्रतिमा — 1 Removable images of irremov-
चलती मूर्त्ति — able idols ( which are taken out to different places.)
[ ଦ୍ର—ଯେଉଁ ଦେବମୂର୍ତ୍ତିମାନ ଅଚଳ ଅର୍ଥାତ୍ ସ୍ଥାନାନ୍ତରିତ ହେବା ଅସମ୍ଭବ ( ଯଥା—ଶିବଲିଙ୍ଗ, ବଡ଼ ବଡ଼ ପାଷାଣବିଗ୍ରହ ) ଦେବାଳୟମାନଙ୍କରେ ସେହି ମୂର୍ତ୍ତିମାନଙ୍କର ପ୍ରତିନିଧିରୂପେ କ୍ଷୁଦ୍ରତର ଅବୟବବିଶିଷ୍ଟ ଓ ସ୍ଥାନାନ୍ତରକୁ ଚାଳିତ ହେବା ଯୋଗ୍ୟ ମୂର୍ତ୍ତିମାନ ରଖାଯାଇ ପୂଜା କରାଯାଉଥାଆନ୍ତି । ଯାତ୍ରାଯାତ୍ରା ସମୟରେ ପ୍ରକୃତ ଦେବବିଗ୍ରହମାନଙ୍କୁ ବାହାରକୁ ନିଆ ନ ଯାଇ ଉକ୍ତ ଚଳନ୍ତି ପ୍ରତିମାମାନଙ୍କୁ ବିମାନାଦିରେ ଉତ୍ସବସ୍ଥଳକୁ ନିଆଯାଏ । ]
୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିଙ୍କର ପ୍ରତିନିଧି—
2. (figurative) A representative of a person.
(ଯଥା—ମେନେଜର ବାବୁ ରାଜା ସାହେବଙ୍କର ଚଳନ୍ତି ପ୍ରତିମା ।)

**ଚଳନ୍ତି ମାଲ**—ଦେ. ବି ( ସଂ ଚଳତ୍ ଓ ଫା. ମାଲ୍ )—
Chalanti māla — ଚଳନ୍ତି ସମ୍ପତ୍ତି ( ଦେଖ )—
Chalanti sampatti ( See )

**ଚଳନ୍ତି ମୁଦ୍ରା**—ଦେ. ବି. (ସଂ. ଚଳତ୍+ଓ. ମୁଦ୍ରା )—
Chalanti mudrā — ୧ । ପ୍ରଚଳିତ ମୁଦ୍ରା; ଯେଉଁ ମୁଦ୍ରା ଧନାଦିର
चलतिमुद्रा — ଦାନସମୟରେ ବ୍ୟବହୃତ ହୁଏ—
चलति सिक्का — 1. Current coin.
୨ । ଯେଉଁ ମୁଦ୍ରାର ରାଜକୀୟ ଛାପ ଆଦି ଘଷରା ହୋଇ ନ ଥାଏ ଓ ଯହିଁରେ ଦାଗ ଆଦି ନ ଥାଏ—
2. A coin in which the marks have not been worn out.

**ଚଳନ୍ତି ସମ୍ପତ୍ତି**—ଦେ. ବି. ( ସଂ. ଚଳତ୍+ସମ୍ପତ୍ତି )—ଅସ୍ଥାବର ଧନ;
Chalanti sampatti — ଯେଉଁ ସମ୍ପତ୍ତିକୁ ସ୍ଥାନାନ୍ତରିତ କରାଯାଇ
चलति सम्पत्ति — ପାରେ—Movable property; the
चलती चीज — movables; personal property.
(ଅଚଳନ୍ତି ସମ୍ପତ୍ତି—ବିପରୀତ)

**ଚଳପକ୍ଷ**—ଦେ. ବି. ( ସଂ. ଚଳତ୍+ଓ. ପକ୍ଷ)—
Chalapaksha — ୧ । ସଚଳ ଅବସ୍ଥା; ଉତ୍ତମ ସାଂସାରିକ ଅବସ୍ଥା—
चलत्पक्ष — 1. Well-to-do condition; worldly
खुसहाल — prosperity; easy worldly circumstance.
୨ । କୌଣସି କାର୍ଯ୍ୟ ଅଟକି ନ ଯାଇ ଚଳିଯିବା ଅବସ୍ଥା—
2. State of being passable or tolerable.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଡ଼ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଂ | ଉଅ | ଢ଼ |
| ୨ | ଈ | ଡ଼ି | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚିଁ୍ୟ | ଇଅ | ଢ଼ି | ନ୍ତ୍ର |

ଚଳପଟ—ଦେ. ବି—ଚଳପକ୍ଷ ( ଦେଖ )
Cha̱lapaṭa Cha̱lapaksha ( See )

ଚଳପତ୍ର—ସଂ. ବି ( ବହୁବ୍ରୀହି; ଚଳ=ଚଞ୍ଚଳ+ପତ୍ର )—
Cha̱lapatra ଅଶ୍ୱତ୍ଥବୃକ୍ଷ; ଓସ୍ତଗଛ—
The Peepal tree; Ficus Religiosa.

ଚଳପ୍ରଚଳ—ଦେ. ବି (ଏକାର୍ଥକ ସହଚର)—୧ । ଗମନାଗମନ—
Cha̱laprachaḻa 1. Coming and going; frequenting.
চলপ্রচল ୨ । ପରସ୍ପର ମଧ୍ୟରେ ସଂଶ୍ରବ—2. Intercourse.

ତୋହର ବନ୍ଧ ମୁକ୍ତି ନାହିଁ,
ଚଳପ୍ରଚଳ ଅବା କାହିଁ—ଭୂପତି. ପ୍ରେମପଞ୍ଚାମୃତ ।

୩ । ଗତିବିଧି—3. Movements.

ଦେ. ବିଣ—୧ । ନିର୍ଦ୍ଧାରିତ ମାତ୍ରାରୁ ସାମାନ୍ୟ ମାତ୍ରାରେ କମ ବେଶୀ; ନିର୍ଦ୍ଦିଷ୍ଟ ମାତ୍ରାରୁ ସାମାନ୍ୟ ଅତିକ୍ରମ କରିଥିବା—
1. A little more or less than the given quantity.

୨ । ଯାତାୟାତ—2. Frequenting; coming and going.

(ଯଥା—କଟକରେ ମୁଁ ପଇଁଚାଳିଶି ବର୍ଷ ହେଲା ଚଳପ୍ରଚଳ ହେଉଅଛି । )

୩ । ପରସ୍ପର ମଧ୍ୟରେ ସଂଶ୍ରବଯୁକ୍ତ—3. Having mutual intercourse or connection.

ଚଳବିଚଳ—ଦେ. ବି—ଚଳପ୍ରଚଳ (ଦେଖ)
Cha̱labichaḻa Cha̱laprachaḻa (See).

[ ଦ୍ର—ହିନ୍ଦୀରେ 'ଚଳବିଚଳ' ଶବ୍ଦର ବିଶେଷଣ ଅର୍ଥ ବେଠିକଣା, ଅବ୍ୟବସ୍ଥିତ ଓ ସ୍ୱସ୍ଥାନଚ୍ୟୁତ ଓ ବିଶେଷ୍ୟ ଅର୍ଥ ବ୍ୟତିକ୍ରମ । ]

ଚଳମାଡ଼ିବା—ଦେ. କ୍ରି—୧ । ବିରକ୍ତି ବୋଧ ହେବା—
Cha̱lamārḏibā 1. Feeling of displeasure
দিকদাবীলাগা dissatisfaction.
**हिकमालुमहोना** ୨ । କାର୍ଯ୍ୟରେ ଦୁରାଗ୍ରହ ବା ଆଳସ୍ୟ ବା ବ୍ୟାପାରହୀନତା ଯୋଗୁଁ ବିରକ୍ତି ବୋଧ ହେବା; ଛଟା ଲାଗିବା—2. A feeling of ennui or disgust.

ଚଳମୁକୁଟିଆ—ଦେ. ବିଣ (ସଂ. ଚଳ ଓ ମୁକୁଟ)—ମସ୍ତକଚାଳନ ହେତୁରୁ
Cha̱lamukuṭiā ଯେଉଁମାନଙ୍କ ମୁକୁଟ ଇତସ୍ତତଃ ସଞ୍ଚାଳିତ ହେଉଥାଏ—With the crowns moving to and fro (due to the movement of the head).

ଚାରୁ ହରିଚରେ ଘେରୁ, ଚଗଭଥାନ୍ତି ଚାଳୁଣ୍ଡ ଚଳମୁକୁଟିଆ ସଖାମାନେ ।
କବିସୂର୍ଯ୍ୟ. କଣୋଗଚନ୍ଦ୍ର ।

ଚଳସି—ଦେ (ପ୍ରାଚୀନ ପଦ୍ୟ) କ୍ରି ( ସଂ. ଚଳ ଧାତୁ ବର୍ତ୍ତମାନ କାଳ
Cha̱lasi ମଧ୍ୟମପୁରୁଷ ୧ ବଚନର ରୂପ)—(ତୁମ୍ଭେ) ଯାଅ; ଚାଲ—
(you) Go.

ଦ୍ରୁତ୍ତସିତମୁଖେ ଚଳସି ସଖୀ,
ଶ୍ରୀକୃଷ୍ଣ ହୃଦରେ ମଦନବାଧା—ପ୍ରାଚୀ. ରସବାରିଧି ।

ଚଳା—ସଂ. ବିଣ. ସ୍ତ୍ରୀ (ଚଳ+ସ୍ତ୍ରୀ. ଆ)—ଚଳର ସ୍ତ୍ରୀଲିଙ୍ଗ—
Cha̱lā Feminine of Cha̱la.

୧ । ଚଞ୍ଚଳା ( ସ୍ତ୍ରୀ )—1 Moving (female).
୨ । ଅସ୍ଥିରା—2. Roving.

ସଂ. ବି. ସ୍ତ୍ରୀ—୧ । ଲକ୍ଷ୍ମୀ—1. Lakshmi; Goddess of fortune

୨ । ବିଦ୍ୟୁତ୍—2. Lightning.

ଦେ. ବି—୧ । ବିଚଳିତ ହେବା—1. Moving.

୨ । ଟିପ୍ପଣୀ; ଚିଠା; ସଂକ୍ଷିପ୍ତ ହିସାବ—
2. Short note; memo.

୩ । ( ସଂ. ଚଳୁ ) ଚଳ; ପୋସ—3. Handful.

୪ । ପ୍ରେରିତ ଟଙ୍କା ବା ଜିନିଷର ତାଲିକା; ଚାଲାଣ—
4. Invoice; memo of consigned or transmitted articles or cash.

ଚଲା—ଦେ. ବି—୧ । ଚାଲୁଣୀଦ୍ୱାରା ଚଲାଇବା କାର୍ଯ୍ୟ—
Chaḻā 1. Act of sifting through a sieve.
চলা ୨ । ଚାଲିବା—2 Walking.

୩ । ଥଳ; ନଦୀର ପାଣି କମିଯିବା ଯୋଗୁଁ ଲୋକେ ନଈରେ ପଶି ନଈ ପାର ହେବା ଅବସ୍ଥା—
3. Fordable condition of a river.

୪ । (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ; ଯଥା—ଖଇଚଲା, ବିରିଚଲା, ଚାଉଳଚଲା ) ଚାଲୁଣୀ—4. Sieve.

ଦେ. ବିଣ—୧ । ଯେଉଁ ପଥରେ କେବଳ ପାଦରେ ଚାଲି ଯିବାକୁ ହୁଏ—
1. ( road or path ) Passable by foot.
( ଯଥା—ଚଲା ବାଟ । )

( ଗମ୍ଭୀର; ଗଣ୍ଡ—ବିପରୀତ ) ୨ । ନଦୀର ଯେଉଁ ଅଂଶରେ ମନୁଷ୍ୟ ପଶି ଚାଲିଯାଇ ପାରେ—
2. Fordable part of a river.

ପ୍ରାଦେ. ( ଗଞ୍ଜାମ ) ବି—ଜଳମିଶ୍ରିତ ଘୋଳଦହି; ଚହ୍ଲା—
Churned curd.

ଚଲାଇବା—ଦେ. କ୍ରି. ( ସଂ. ଚଲ୍ ଧାତୁ ଣିଚ୍—ଚାଳ ଧାତୁ; ଚଳିବାର
Chaḻāibā ଣିଜନ୍ତରୂପ; Causative form of Chaḻbā)—
চালান ୧ । ଚାଳିତ କରିବା; ଚାଳିବା; ଗତି କରାଇବା—
**चलाना; चलावाना** 1. To set a going; to cause to
(ଚଲେଇବା—ଅନ୍ୟରୂପ) move; to set in motion.

ଠାକୁରପାଶରେ ଦଣ୍ଡପତ୍ରିକା, ଚଲାଇବାକୁ ହେବାରୁ ମୋଦକା—
କବିସୂର୍ଯ୍ୟ. କବିତାକଲ୍ଲୋଳିନୀ ।

୨ । ଅନ୍ୟ ଲୋକଙ୍କୁ କାର୍ଯ୍ୟ କରାଇବା—2. To cause another to work; to have a work done by another.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂଁକ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଟୋ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୩ । କାମ ଅଣ୍ଟାମ କରିବା; କାର୍ଯ୍ୟ ସମାଧା କରିବା; କାର୍ଯ୍ୟ ତୁଲାଇବା; ନିର୍ବାହ କରିବା—3. To accomplish a work any how; to carry on a work.

( ଯଥା—ଏ ବିଭାଘରକୁ ଟଙ୍କା ପଚାଶଟି ମଧ୍ୟରେ ଚଳାଇନିଅ ) ।

୪ । ନେତାରୂପେ ପରିଚାଳନ କରିବା—
4. To guide; to conduct; to lead.

ଆସିଲେ ସେହିଠାକୁ ସଇନ ଚଳାଇ—କୃଷ୍ଣସିଂ ହ. ମହାଭାରତ. ବନ ।

୫ । ବିରକ୍ତ କରିବା; ଦିକ୍ କରିବା —
5. To tease; to displease.

୬ । ରଗାଇବା; କ୍ରୁଦ୍ଧ କରିବା; ଚିଡ଼ାଇବା —
6. To enrage; to irritate.

୭ । କୌଣସି ନୂତନ ରୀତି ବା ନିୟମର ପ୍ରବର୍ତ୍ତନ କରିବା—
7. To introduce a new rule or system; to promulgate.

୮ । କୌଣସି ଜାତିଚ୍ୟୁତ ବା ନବାଗତ ବ୍ୟକ୍ତିକୁ ସମାଜଭୁକ୍ତ କରି ସାମାଜିକ କାର୍ଯ୍ୟରେ ତାହାର ଯୋଗ ଦେବାର ସୁବିଧା କରିବା—8. To enable a person to have social intercourse in a particular society; to introduce a person into a society.

୯ । ଅପ୍ରଚଳିତ ବସ୍ତୁକୁ ଲୋକସାଧାରଣଙ୍କ ମଧ୍ୟରେ ପ୍ରଚଳିତ କରାଇବା—9. To utter ( a coin ); to make a thing current; to pass a counterfiet coin.

( ଯଥା—ଇଂରେଜ ଗଭର୍ଣ୍ଣମେଣ୍ଟ ଏବେ ଏ ଦେଶରେ ଟଙ୍କା ଯଥପରୋନ୍ତି ନୋଟ ଚଳାଇଲେଣି । )

୧୦ । ଯାନାଦି ଚାଳିତ କରିବାପାଇଁ କଳ ବା ଘୋଡ଼ା ଆଦିଙ୍କୁ ନିୟନ୍ତ୍ରିତ କରିବା—10. To drive a conveyance ( e. g. carriage, cart, motor or rail.

୧୧ । କୌଣସି ନୂତନ ବସ୍ତୁ କୌଣସି ଅଞ୍ଚଳରେ ଚଳିବାର ବା ବ୍ୟବହୃତ ହେବାର ଉପାୟ କରିବା—11. To introduce the use of a new thing; to cause a thing to be used.

(ଯଥା— ବ୍ରହ୍ମଚାରୀ ସାକ୍ଷୀଗୋପାଳଙ୍କ ଭୋଗରେ କଦଳୀ, ଆଳୁ, ପଣସ ମଞ୍ଜି ଓ କାଙ୍କଡ଼ଭଜା ଚଳାଇଲେ କିନ୍ତୁ ଅନ୍ନ, ତିଅଣ ଚଳାଇ ପାରିଲେ ନାହିଁ । )

୧୨ । ପ୍ରଚାରିତ କରିବା—
12. To circulate; to promulgate.

୧୩ । କୌଣସି ବିଷୟ ବା ବସ୍ତୁକୁ ବ୍ୟବହାର କରିବାପାଇଁ ସମାଜରେ ଗ୍ରହଣ କରିବା—13. To admit or accept a thing into social use.

[ ଦ୍ର—ଆଜିକାଲି ନବ୍ୟଶିକ୍ଷିତ ଯୁବକମାନେ ବ୍ରାହ୍ମଣକୁଳରେ ବିଧବାବିବାହ ଚଳାଇଲେଣି । ]

୧୪ । ଆଭରଣସ୍ୱରୂପ ଗ୍ରହଣ କରିବା; ଭିଡ଼ିବା—
14. To put on.

ବରହା ମୃଗ ପଛରେ ପୁଚ୍ଛକୁ ଲୁଚାଇ,
ବସୁଧାପତି ନେଇ ତା ମସ୍ତକେ ଚଳାଇ । ଭଞ୍ଜ. ବୈଦେହୀଶବିଳାସ ।

୧୫ । ସ୍ଥାନାନ୍ତରକୁ ପଠାଯିବାର ଉପାୟ କରିବା—
15. To cause a thing to be sent from one place to another.

(ଯଥା—ବିଭାଘର ପାଇଁ ଗୃହକର୍ତ୍ତା ନିମନ୍ତ୍ରଣପତ୍ର ଓ ଗୁଆ ଚଳାଇ ଦେଲେ ।)

୧୬ । କୌଣସି ଦ୍ରବ୍ୟ ବ୍ୟବହାର କରିବାକୁ ନିଜକୁ ଅଭ୍ୟସ୍ତ କରିବା—16. To habituate one'sself to the use of something.

( ଯଥା—ଆଗେ ମୋ ଦେହରେ ଅଫିମ ଚଳୁ ନ ଥିଲା; କିନ୍ତୁ ଫରୁସାଇ କରି ଦିନାକେତେ ଖାଇବାଦ୍ୱାରା ମୁଁ ମୋ ଦେହରେ ଏବେ ଅଫିମକୁ ଚଳାଇଲିଣି । )

୧୭ । କୌଣସି ବ୍ୟକ୍ତିର ଅଭାବ ଆଦି ପୂରଣ କରିବା—
17. To administer to the wants of a person.

( ଯଥା— ଆପଣ ମୋତେ ୧୦ ବର୍ଷ ହେଲା ଚଳାଇ ଆସିଲେ, ବର୍ତ୍ତମାନ ବୃଦ୍ଧ ବୟସରେ ଦରମା କାଟି ଦେଲେ ମୁଁ କେଉଁଆଡ଼େ ଯିବି ।)

ଚଲାଇବା—ଦେ. କ୍ରି.—୧ । ଚାଲିବାର ଣିଜନ୍ତ ରୂପ—1 Causative form of chāliba.
Chalāibā
ଚାଲାନ
ଚଲାନା

୨ । କୌଣସି ବ୍ୟକ୍ତି ପାଦଚାରଣଦ୍ୱାରା ଗତି କରିବାର ଘଟନା କରିବା—2. To cause a person to walk.

( ଯଥା— ବାପା ଖଣ୍ଡେ ଗାଡ଼ି ଭଡ଼ା ନ କରି ୫ ବର୍ଷର ପିଲାଟାକୁ ତିନି କୋଶ ବାଟ ଚଲାଇଲେ । )

୩ । ଚାଲୁଣୀଦ୍ୱାରା କୌଣସି ବସ୍ତୁରୁ ସୂକ୍ଷ୍ମାଂଶ ବା ଚୋପା ବାହାର କରିବା—3. To sift with a sieve.

୪ । ପ୍ରଚାରିତ କରିବା; ଜାରି କରିବା—
4. To promulgate.

(ଯଥା—ମେନେଜର ବାବୁ ଡେସ୍କରେ ବସି ଭୁଚ୍ଛା ହୁକୁମ ଚଲାଉଅଛନ୍ତି । )

୫ । ଅଙ୍ଗରେ ଅସ୍ତ୍ରାଦି ପ୍ରୟୋଗ କରିବା— 5. To apply a knife or other insrument to the body.

( ଯଥା—ଡାକ୍ତର ବ୍ରଣରେ ଛୁରୀ ଚଲାଇଲେ; ସେ ନିଜ ଢଙ୍ଗିରେ ଖୁବ୍ ଚଲାଇଦେଲା । )

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୯ | ଇ | ଉ | ର୍,ର୍ହ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ସ | ଜ | ଶ,ଷ | କ୍ଷ | ଇୟ୍ | ଭୃଅ | ଣ୍ଡ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଞ୍ଚ | ନ୍ତ |

୬ । ଅସ୍ତ୍ରଶସ୍ତ୍ର ଓ ଯନ୍ତ୍ରାଦିଦ୍ୱାରା ଅଭିପ୍ରେତ କର୍ମ କରିବା—
6. To wield a weapon or instrument.
(ଯଥା – ବନ୍ଧୁକ ଚଳାଇବା, ଖଣ୍ଡା ଚଳାଇବା, ଠେଙ୍ଗା ଚଳାଇବା) ।
୭ । ଚଳାଇବା; ସୁପରିଚାଳିତ କରିବା—7. To manage.
(ଯଥା—ସ୍କୁଲ ଚଳାଇବା; ଜମିଦାରୀ ଚଳାଇବା ।)
ଚଲେଯାଓଯ଼ା ୮ । ପାଦଦ୍ୱାରା ଗମନ କରିବା; ଚାଲିଯିବା—
**ଚଲଯାନା** 8. To walk.
( ଚଲେଇବା—ଅନ୍ୟରୂପ )
(ଯଥା—ବାବାଜୀ ରଜାଙ୍କଠାରୁ ବିଦାକ ପାଇ ବଡ଼ଭୁଇଁରୁ ଚଳାଇଲେ ।)
୯ । କୌଣସି ସ୍ଥାନ ତ୍ୟାଗ କରିବା—9. To go away from or leave a place.
୧୦ । ମୃତ ହେବା; ପରଲୋକ ଗମନ କରିବା—10 To die.
(ଯଥା—ଗୁରୁଦେବ ଶିଷ୍ୟମାନଙ୍କୁ ଛାଡ଼ିଦେଇ ଚଳାଇଲେ ।)

**ଚଲାକ୍**—ବୈଦେ. ବିଣ. (ଫା. ଚାଲାକ୍) ଭୁଲ ସଂ. ଚାଲକ)—
Chalāk ୧ । ବୁଦ୍ଧିମାନ—
ଚାଲାକ, ଚାଲାଖ 1. Intelligent.
**ଚଲାକ** ୨ । ଚତୁର—2 Clever.
ଚଲାକ ଲୋକ କହୁଛ·· ··ସେଥିର ଫିକର ମୋତେ କଣ ।
ଫକୀରମୋହନ- ଛମାଣଆଠଗୁଣ୍ଠ ।
(ଚଲାଖ—ଅନ୍ୟରୂପ) ୩ । ଧୂର୍ତ୍ତ; ଚାଲ୍‌ବାଜ୍—
3. Sly; cunning; artful; shrewd; crafty.

**ଚଲାକ୍‌ଚତୁର**—ଦେ. ବିଣ. (ସହଚର)—୧ । ଚତୁର—1. Clever.
Chalākchatura ୨ । ଧୂର୍ତ୍ତ ଓ ଚତୁର—
ଚାଲାଖଚତୁର 2 Sly and active.
(ଚଲାଖଚତୁର—ଅନ୍ୟରୂପ)

**ଚଲାକି**—ଦେ. ବି. ( ସଂ. ଚଳ ଧାତୁ )—ପାଦରେ ଚାଲିବା; ପଦବ୍ରଜ;
Chalāki ପାଦଚାରଣ—Walking on foot.
(ଯଥା—ମୁଁ ପୁରୀଠାରୁ ଚଲାକିରେ କଟକ ଆସିଲି ।)
ଦେ. ବିଣ—୧ । ଯେଉଁ ବାଟରେ ଗାଡ଼ି ଘୋଡ଼ାର ବ୍ୟବହାର କରାଯାଇ ପାରେ ନାହିଁ—କେବଳ ଗୋଡ଼ରେ ଚାଲିବାକୁ ହୁଏ—( a road ) Passable by foot only (i. e. not passable by any conveyance).
୨ । ଯେଉଁ ପଥରେ କାଦୁଅ ଆଦି ନ ଥିବାରୁ କିମ୍ବା ସମତଳ ହୋଇଥିବାରୁ ସେଥିରେ ଚାଲିବାକୁ ସୁଖ ହୁଏ—
2. (a road) Which is comfortable to walk upon.

ବୈଦେ. ବି. (ଫା. ଚାଲାକୀ)—୧ । ତୀକ୍ଷ୍ଣବୁଦ୍ଧି—
ଚାଲାକୀ; ଚାଲାଖୀ 1. Sharp intelligence.
**ଚାଲାକୀ** ୨ । ଚତୁରତା—2. Cleverness
(ଚଲାଖି—ଅନ୍ୟରୂପ) ୩ । ଫନ୍ଦି; ଧୂର୍ତ୍ତତା—
3. Trick; fraud; artifice.

**ଚଲାକିଆ**—ଦେ. ବିଣ—ଚଲାକ (ଦେଖ)
Chalākiā Chalāka (See)
(ଚଲାଖିଆ—ଅନ୍ୟରୂପ)

**ଚଲାକି କାଢ଼ିବା**—ଦେ. କ୍ରି—କାର୍ଯ୍ୟରେ ବା ବାକ୍ୟରେ ଫନ୍ଦି ବା
Chalāki kāṛhibā ଧୂର୍ତ୍ତପଣ ପ୍ରକାଶ କରିବା—
ଚାଲାକୀମାରା To show any trick.
**ଚାଲାକୀଖେଲନା**
ଚଲାକି ଖେଳିବା
ଚଲାକି ଦେଖାଇବା
ଚଲାକି ବଢାଇବା
ଚଲାକି ବାହାର କରିବା } ଅନ୍ୟରୂପ

**ଚଲାଖ୍** (ଇତ୍ୟାଦି)—ବୈଦେ. ବିଣ. (ଫା)—ଚଲାକ୍ ଇତ୍ୟାଦି (ଦେଖ)
Chalākh (etc) Chalāk etc (See)

**ଚଲାଖି** (ଇତ୍ୟାଦି)—ବୈଦେ. ବି. (ଫା)—ଚଲାକି ଇତ୍ୟାଦି (ଦେଖ)
Chalākhi (etc) Chalāki etc (See)

**ଚଲାଖିଆ**—ଦେ. ବିଣ—ଚଲାକିଆ (ଦେଖ)
Chalākhiā Chalākiā (See)

**ଚଳାଚଳ**—ସଂ. ବିଣ. ପୁଂ. (ଚଳ+ଚଳ; ନିପାତନ)—୧ । ତ୍ୱରିତ—
Chaḷāchaḷa 1. Quick; speedy.
୨ । ଲୋଲ; ଅତ୍ୟନ୍ତ ଚଞ୍ଚଳ—
2. Very fickle; unstable wavering.
୩ । ସର୍ବଦା ଗତିବିଶିଷ୍ଟ (ସଂସାରରକ୍ଷ)—
3. Evermoving (M. W.)
୪ । ଇତସ୍ତତଃ ଗତିଶୀଳ—4. Moving to and fro.
କ ଦଶେ ଚଳାଚଳ ଗୁରୁ ଚକ୍ର କାରୁଳ । କବିସୂର୍ଯ୍ୟ- କଳୋଗଦାଦି ।
୫ । ପରିବର୍ତ୍ତନଶୀଳ—5 Changeable (M. W.)
୬ । (ଚଳ+ଅଚଳ)—ପ୍ରଚଳିତ ଓ ଅପ୍ରଚଳିତ; ବ୍ୟବହୃତ ଓ ଅବ୍ୟବହୃତ—6. Current and obsolete; used and unused.
୭ । ଚଳନ୍ତ ଓ ଅଚଳନ୍ତ ( ପଦାର୍ଥ )—7. Movable and immovable; locomotive and stationary (things).
୮ । (ଅସ୍ଥିବିଜ୍ଞାନ) ଅଂଶିକ ଚଳୁଥିବା ପୁଣି ଅଚଳ ହେବା (ଅସ୍ଥିସନ୍ଧି) (ଜ୍ଞାନେନ୍ଦ୍ର)—8. ( osteology ) Appearthrodial (bone-joints).
ସଂ. ବି—୧ । କାକ—1. Crow; raven.
୨ । ବାକ୍ୟ (ଜ୍ଞାନେନ୍ଦ୍ର)—2. Word; speech.
୩ । ( ଆଧୁନିକ ଅସ୍ଥିବିଜ୍ଞାନପରିଭାଷା )—ଯେଉଁ ସବୁ ଅସ୍ଥିସନ୍ଧି ଅଂଶିକ ଚଳେ ଓ ପୁଣି ଅଚଳ ହୁଏ (ଜ୍ଞାନେନ୍ଦ୍ର)—( osteology ) Amphiarthrodial joints; mixed joints.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଗିଆ ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୬ । ପ୍ରଚଳିତ ହେବା; ସାଧାରଣରେ ବ୍ୟବହୃତ ହେବା; ବ୍ୟବହାରରେ ଲାଗିବା—6. To be in vogue; to pass current; to be current.
( ଯଥା—ଏ ଟଙ୍କା ବଜାରରେ ଚଳିବ । )

୭ । ସମାଜରେ ଅନ୍ୟ ବ୍ୟକ୍ତିମାନଙ୍କ ପଂକ୍ତିରେ ଭୋଜନାଦି କରିବାକୁ ଅନୁମତି ପାଇବା ବା ଯୋଗ୍ୟ ହେବା—7 To be admitted to social intercourse or communion.
( ଯଥା—ସେ ଏବେ ଆମ ଗ୍ରାମ ସମାଜରେ ଚଳିଲେଣି । )

୮ । ଗତି କରିବା; ଗତିଯୁକ୍ତ ହେବା—
8. To move; to have motion.

ଦେଖିଲେ ନିଜ ପେଟ ଭିତର ନ ଚଳନ୍ତି,
ପଥର ପରି ଅଣ୍ଡା ହୋଇଣ ରହନ୍ତି । କୃଷ୍ଣସିଂହ. ମହାଭାରତ. ଆଦି ।

୯ । ସଙ୍ଗତ ହେବା—9. To be fitting; to fit in.
( ଯଥା—ଗୁରୁଜନଙ୍କ ପାଖରେ ଧୃଷ୍ଟତା ଚଳିବ ନାହିଁ । )

୧୦ । ବହିବା; ପ୍ରବାହିତ ହେବା—10. To flow.
( ଯଥା—ଖାଦ୍ୟ ରକ୍ତରେ ପରିଣତ ହୋଇ ଶରୀରର ପ୍ରତ୍ୟେକ ଅଂଶକୁ ଚଳେ; ବାୟୁ ଚଳିବା । )

୧୧ । କ୍ରମାଗତ ଘଟିବା ବା ହେବା—11. To happen or take place continually; to continue.

ବନଦେବୀଙ୍କର ଅଭିସାରଲୀଳା ଚଳୁଥାଇ ଅବିରତେ—ରାଧାନାଥ ଯଯାତି ।

୧୨ । ଇହଲୋକରୁ ପ୍ରସ୍ଥାନ କରିବା; ମହାଯାତ୍ରା କରିବା; ମରିବା—12. To die.

ସର୍ବେ ଚଳିବେ କାଳବଳେ, ଯଶ ରହିବ ମହୀତଳେ—ଜଗନ୍ନାଥ. ଭାଗବତ ।

୧୩ । ଘଣ୍ଟିକାଯନ୍ତ୍ରାଦି ଠିକ ମତେ କାର୍ଯ୍ୟ କରିବା; କାର୍ଯ୍ୟକ୍ଷମ ହେବା—13. To be in a working order; to work; to go on; to get on.
( ଯଥା—ଏ ଘଣ୍ଟାଟି ଦଶ ବର୍ଷ ହେଲା ଚଳୁଛି । )

୧୪ । ସଂସାରରେ ସୁଖରେ ଜୀବନ ଯାପନ କରିବା—
14. To be well off; to get on the world.
( ଯଥା—ସେ ଏବେ (ସୁଖରେ) ଚଳୁଛନ୍ତି । )

୧୫ । ଶରୀରରେ ସହ୍ୟ ହେବା; ଦେହରେ ଯିବା—
15. To agree with one's system.
( ଯଥା—ତାଙ୍କ ଦେହରେ ଘିଅ ଚଳେ ନାହିଁ । )

୧୬ । ଅସନ୍ତୁଷ୍ଟ ବା ବିରକ୍ତ ହେବା; ଚିଡ଼ିବା; ରାଗିବା—
16. To be angry or displeased.

ଚରଣେ ପୁଣି ଦଳି ପକାଇଦେଲୁ ଚଳି ତୁ ସୁନ୍ଦର କୁସୁମଭୂଷାକୁ ରେ—
କବିସୂର୍ଯ୍ୟ. ସଙ୍ଗୀତ ।

୧୭ । ସୁଚାରୁରୂପେ ନିର୍ବାହିତ ହେବା—
17. To go on well; to be conducted.
( ଯଥା—କେବଳ ଛାତ୍ରଦତ୍ତ ବେତନରେ ସ୍କୁଲଟି ଚଳେ । )

୧୮ । ( କୌଣସି ବସ୍ତୁ ବା ବିଷୟ ) ସମାଜରେ ଗୃହୀତ ହେବା ବା ପ୍ରକାଶ୍ୟଭାବରେ ବ୍ୟବହୃତ ହେବା—
18. (anything) To be recognised by or be in a vogue in a society.
( ଯଥା—ଆଜିକାଲି ବ୍ରାହ୍ମଣଜାତିରେ କଣ ରଖିବା ଚଳିଲାଣି ପରା ? )

୧୯ । ପ୍ରଚାରିତ ହେବା—
19 To be circulated or published.
( ଯଥା—ଆଜ୍ଞାପତ୍ରିକା ଗାଁ ଗାଁ ଚଳିଲାଣି । )

୨୦ । ଅଭିପ୍ରେତ କର୍ମରେ ନିଯୁକ୍ତ ହେବା—
20. To be engaged in its proper function.
(ଯଥା—ଦାନ୍ତ ଚଳିବା; ପାଟି ଚଳିବା; ଠେଙ୍ଗା ଚଳିବା । )

୨୧ । ସ୍ଥାନାନ୍ତରକୁ ପ୍ରେରିତ ହେବା—21. To be sent to another place; to be transmitted.
(ଯଥା—ନିମନ୍ତ୍ରଣ ଚଳିବା, ଗୁଆ ଚଳିବା, ବେଭାର ଚଳିବା । )

୨୨ । କୌଣସି ଗ୍ରହ ଏକ ରାଶିର ସୀମା ଟପି ଅନ୍ୟ ରାଶିର ସୀମାରେ ପହଞ୍ଚିବା—22 ( a planet ) To pass from one zodiacal sign to another.
( ଯଥା—ଶନି କୁମ୍ଭରାଶିରୁ ମୀନରାଶିକୁ ଚଳିଲା । )

୨୩ । ଆରବ୍ଧ ହେବା । (ପ୍ରସ୍ତାବ ଚଳିବା)—
23 To be begun.

୨୪ । ପ୍ରବର୍ତ୍ତିତ ହେବା; କାର୍ଯ୍ୟରେ ପରିଣତ ହେବା—
24. To be carried out.
( ଯଥା—ହୁକୁମ ଚଳିବା; ଆଇନ ଚଳିବା । )

୨୫ । ପରିଷାଯିବା; ଖାଦ୍ୟଦ୍ରବ୍ୟ ଖାଇବା ପତ୍ରରେ ପରଷା ଯିବା—25. (food) To be served on plate.
( ଯଥ—ସଙ୍କ୍ରାନ୍ତି ସଭାରେ ବର୍ତ୍ତମାନ ଖିରି ଚଳୁଛି । )

୨୬ । ଫଳପ୍ରଦ ହେବା—26 To be effective
( ଯଥା—ମୋଠାରେ ତୋର ଶୁଳାଖି ଚଳିବ ନାହିଁ । )

୨୭ । ବାସ କରିବା; ବଞ୍ଚି ରହିବା—27. To live.
( ଯଥା—ଦୁନିଆରେ ଚଳିବାକୁ ହେଲେ କେତେ ଦୁଃଖ ସହିବାକୁ ହୁଏ । )

ଚଳି ମରିବା—ଦେ. କ୍ରି—ଅତ୍ୟନ୍ତ ବିରକ୍ତି ହେତୁରୁ ବିଷମ ମାନସିକ କଷ୍ଟ
Chali mariba — ବୋଧ କରିବା—To be mortified

ଟେକ ବଥ ମୁଖ ଏ ଶୀତମୟୁଖଜିତ ହୋଇ ମରୁ ଚଳି—କବିସୂର୍ଯ୍ୟ. ସଙ୍ଗୀତ ।

ଚଳିଷ୍ଣୁ—ସଂ. ବିଣ (ଚଲ୍ ଧାତୁ + ଶୀଳାର୍ଥରେ. ଇଷ୍ଣୁ)—୧ । ଗମନଶୀଳ;
Chalishnu — ଗତିବିଶିଷ୍ଟ—1. Moving.
୨ । ଗମନୋଦ୍ୟତ; ଗମନୋନ୍ମୁଖ—2. About to go.

ଚଳି ହେବା—ଦେ. କ୍ରି—୧ । କୌଣସି ବ୍ୟକ୍ତି ପ୍ରତି ବିରକ୍ତ ହୋଇ
Chali heba — ଗାଳିଦେବା ବା ବିରକ୍ତି ପ୍ରକାଶ କରିବା—
1 To give vent to one's displeasure

ଲୋଚିତ ମୋତେ ଗୁରୁଜନେ ଚଳି ହେଉଥିବେ ପରା ତାକ—କବିସୂର୍ଯ୍ୟ. ସଙ୍ଗୀତ ।

| | | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଣ | ଜ | ଶ,ଷ | କ୍ଷ | ଇୟ | ଉଅ | ଓ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଔ | କୃ |

ଦେ. ବି—ସୁବିଧାଜନକଭାବରେ ଚଳପ୍ରଚଳ ହେବା; ସୁବିଧା— Convenience; being convenient for one's movements.

( ଯଥା—ଏଠାରେ ବିଶେଷ ଗୋଳମାଳ ଲାଗିବାରୁ ଏଣିକି ଚଳ ହେବା କଥା ଦିଶୁ ନାହିଁ । )

ଚଳୁ—ସଂ. ବି. ( ଚଲ ଧାତୁ + ଉ )—୧ । ଗଣ୍ଡୂଷ—
Chalu 1. The hollow of an open palm.
চলু; চলুক ୨ । ଗଣ୍ଡୂଷରେ ଧରିବା ଜଳ—2. Water contained in the hollow of an open palm.

୩ । ( ପାଣି ଆଦିର ) ଏକ ଚଳ— 3. A handful ( of water etc ).

୪ । ଭୋଜନାଦ୍ୟରେ ଓ ଭୋଜନାନ୍ତରେ ବ୍ରାହ୍ମଣାଦିଙ୍କର କରିବା ଆଚମନ—4 The sipping of a little water done by Brāhmaṇas just before and after meals.

ଦେ. ବି—୧ । ବ୍ରାହ୍ମଣମାନେ ଭୋଜନ ପୂର୍ବରୁ ଓ ପରେ କରିବା ଆଚମନର ବୈଦିକ ମନ୍ତ୍ର— 1. The formulae recited by Brāhmaṇs just before and after meals.

[ଦ୍ର—ଯଜୁର୍ବେଦୀୟ ଚଳୁବିଧି, ଯଥା—'ଓଁ ବ୍ରହ୍ମଣେ ନମଃ', କହି ତଳେ ଗଣ୍ଡୂଷେ ଜଳ ଛିଞ୍ଚିବା; 'ଓଁ ଧର୍ମରାଜାୟ ନମଃ' 'ଓଁ ଚିତ୍ରଗୁପ୍ତାୟ ନମଃ' କହି ଜଳ ଛିଞ୍ଚା ହୋଇଥିବା ସ୍ଥାନରେ ଦୁଇ ଜାଗାରେ କିଛି କିଛି ଅନ୍ନ ରଖିବା, 'ଓଁ ଧର୍ମରାଜାୟ ସ୍ୱାହା', 'ଓଁ ଚିତ୍ରଗୁପ୍ତାୟ ସ୍ୱାହା' କହି ରଖାଯାଇଥିବା ଅନ୍ନ ଉପରେ ଜଳ ଛିଞ୍ଚିବା; 'ଓଁ ଅମୃତୋପସ୍ତରଣମସି ସ୍ୱାହା' ( ଅମୃତର ଆସନ ହେଲ ) କହି ଗଣ୍ଡୂଷେ ଜଳ ପାନ କଲା ପରେ ପଞ୍ଚପ୍ରାଣ ବାୟୁକୁ ( ପ୍ରାଣ, ଅପାନ, ବ୍ୟାନ, ଉଦାନ ଓ ସମାନ ) ପାଞ୍ଚଗୁଣ୍ଡା ଅନ୍ନ ( ପଞ୍ଚଗ୍ରାସି ) ଦେବା; ତତ୍ପରେ ଇଚ୍ଛା ଅନୁସାରେ ଭୋଜନ କରି ଶେଷରେ 'ଓଁ ଅମୃତାପିଧାନମସି ସ୍ୱାହା' ( =ଅମୃତର ଅପିଧାନ ବା ଘୋଡ଼ଣୀ ହେଲ ) କହି ଗଣ୍ଡୂଷେ ଜଳ ପାନ କରି ଭୋଜନ ଶେଷ କରିବା, ଅର୍ଥାତ୍ ମୁଁ ଯାହା ଭୋଜନ କଲି ତାହାର ତଳେ ଓ ଉପରେ ଅମୃତ ରହିଲା । ]

୨ । ( ଲକ୍ଷଣାର୍ଥ ) ଭୋଜନ— 2. ( fig Eating.

ଚଳୁଆ—ଦେ. ବିଣ. ପୁଂ—୧ । ରାଗାନ୍ୱିତ—
Chaluā 1. Angry.
( ଚଳୋଇ—ସ୍ତ୍ରୀ ) ୨ । କୋପନସ୍ୱଭାବ, ଚିଡ଼ିଲ୍— 2. Of irritable disposition; passionate.

ଚଳୁଆ ସୁରଣାର୍ଦ୍ଧ ନିଲୁ ଯେବେ
ଚର୍ବଣ କର ବୋଲି ହେଲା ଏବେ—କବିସୂର୍ଯ୍ୟ, କବତା ।

ଚଳୁକ—ସଂ. ବି. ( ଚଲ୍ ଧାତୁ + ପରିମାଣ ଅର୍ଥରେ. ଉକ )—
Chaluka ୧ । ମେଲା ହାତ ପାପୁଲି; ଗଣ୍ଡୂଷ— 1. Space in the hollow of the open palm.

୨ । ଚୁମୁକ; ଗଣ୍ଡୂଷ ପରିମିତ ଜଳ— 2. That much water which can be contained in the hollow of the open palm; a handful of water.

୩ । କ୍ଷୁଦ୍ର ପାତ୍ର—3. A tiny water-pot.

ଚଳୁକରିଦେବା—ଦେ. କ୍ରି—୧ । ( ଲକ୍ଷଣାର୍ଥ ) ଏକା ଥରକେ ଭୋଜନ କରି ଦେବା; ଖାଇଦେବା —
Chalukaridebā
চলুকরেদেওয়া 1. ( figurative ) To eat at one gulp.
चुल्लुकर देना

୨ । ( ଲକ୍ଷଣାର୍ଥ ) ଆତ୍ମସାତ୍ କରିବା— 2. ( figurative ) To misappropriate.

ଚଳୁ କରିବା—ଦେ. କ୍ରି—୧ । ଗଣ୍ଡୂଷ ପରିମିତ ଜଳ ପାନ କରିବା—
Chalu karibā 1. To sip a handful of water.
চলুকরা ଏ ନାମ ଅଗସ୍ତି ଶୁଣିଲେ, ସାତ ସମୁଦ୍ର ଚଳୁ କଲେ ।
चुल्लुकरना ଯଶୋବନ୍ତ, ପ୍ରେମଭକ୍ତି ବ୍ରହ୍ମଗୀତା ।

୨ । ବ୍ରାହ୍ମଣର ଖାଇବା ପୂର୍ବରୁ ଓ ପରେ ଚଳୁବିଧି ପାଳନ କରିବା—2. To perform the rites of chalu before and after meals.

୩ । ( ଲକ୍ଷଣାର୍ଥ ) ଭୋଜନ କରିବା— 3. ( fig ) To eat.

୪ । ଭୋଜନରେ ବସିବା—4. To sit at meal.

୫ । ( ଲକ୍ଷଣାର୍ଥ ) ଆତ୍ମସାତ୍ କରିବା— 5 ( figurative ) To appropriate.

ଚଳୁ ଧରିବା—ଦେ କ୍ରି—୧ । ବ୍ରାହ୍ମଣମାନଙ୍କର ଭୋଜନ କରିବା ପୂର୍ବରୁ
Chalu dharibā ଚଳୁ କରିବାକୁ ଗଣ୍ଡୂଷ ପରିମିତ ଜଳ ହାତରେ ଧରିବା—1. (Brāhmaṇas) To hold a handful of water in order to sip it before taking meal.

୨ । ( ଲକ୍ଷଣାର୍ଥ ) ଭୋଜନ ଆରମ୍ଭ କରିବା— 2. ( fig. ) To begin eating.

ଚଳୁ ଲାଗିବା—ଦେ. ବି—ବ୍ରାହ୍ମଣମାନଙ୍କର ପଂକ୍ତିଭୋଜନ ସଭାରେ
Chalu lāgibā ଭୋଜନ ପୂର୍ବରୁ ଆଚମନ ବା ଚଳୁର ବିଧି ପାଳନ କରିବା; ଆଚମନବିଧି ପାଳନ—The act of performing the rites of 'Chalu' as observed by Brahmans in a caste-dinner before taking meals.

ଚଳେନ୍ଦ୍ରିୟ—ସଂ. ବିଣ. ପୁଂ. ( ବହୁବ୍ରୀହି; ଚଳ=ଚଞ୍ଚଳ; ବିଚଳିତ +
Chalendriya ଇନ୍ଦ୍ରିୟ )—୧ । ଅଜିତେନ୍ଦ୍ରିୟ—

> ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା – 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗଧ' ନ ପାଇଲେ 'ଅଗାଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

(ଚଳେନ୍ଦ୍ରିୟା—ସ୍ତ୍ରୀ) 1. Lustful; one who has not his
(ଚଳେନ୍ଦ୍ରିୟତା—ବି) passions under control.

୨ । ସାମାନ୍ୟ କାରଣରୁ ଯାହାର ଚତ୍ତଶୃଙ୍ଖଳ୍ୟ ଘଟେ— 2. One who loses his balance of mind at a little provocation.

୩ । ସାମାନ୍ୟ କାରଣରୁ ଯେ ରାଗିଯାଏ—3. Irritable.

୪ । ଅସ୍ଥିରଚିତ୍ତ—4 Fickle-minded.

**ଚଳୋର୍ମି**—ସଂ. ବି. ( କର୍ମଧା; ଚଳ=ଚଞ୍ଚଳ+ଊର୍ମି )—ନର୍ତ୍ତନଶୀଳ ତରଙ୍ଗ—Dancing wave; billow
Chalormi

**ଚଲ୍ହା**—ପ୍ରାଦେ. (ଗଞ୍ଜାମ) ବି.—ଘୋଳଦହି—
Chalhā Churned cud.

**ଚଲ୍ହା ପୋକ**—ପ୍ରାଦେ. (ସମ୍ବଲପୁର) ବି.—ଗଉଡୁଣୀ ପୋକ (ଦେଖ)
Chalhā poka Gaurduni poka (See)

**ଚଷ୍ (ଧାତୁ)**—ସଂ. ଭୋଜନ କରିବା—
Chash (root) To eat.

**ଚଷକ**—ସଂ. ବି. (ଚଷ୍ ଧାତୁ+କରଣ. ଅକ) – ୧ । ମଦ୍ୟପାନପାତ୍ର—
Chashaka 1. Wine glass; goblet; wine cup.

ଶୁଣ୍ଡରୁ ଚଷକ ହସ୍ତରୁ ଅଲଗା ହୋଇଗଲେ ଯଥା ଘଟେ—
ରାଧାନାଥ. ଚାନ୍ଦଭା—

୨ । (+କର୍ମ. ଅକ)—ସୁରା; ମଦ୍ୟ—2. Wine.

୩ । ମଧୁ—3. Honey.

**ଚଷଡ଼୍**—ଦେ ବି. (ଗାଳି; ସଂ. କୃଷକ)—ମୂର୍ଖ ଓ ନିର୍ବୁଦ୍ଧିଆ ବା ଅଖାଡୁଆ ବ୍ୟକ୍ତି; ଚଷାଭୁଷା ଲୋକ—A boor; a churl
Chashard

**ଚଷା**—ଦେ. ବି. (ସଂ. କୃଷ୍ ଧାତୁ=କର୍ଷଣ କରିବା)—୧ । କର୍ଷଣ କାର୍ଯ୍ୟ; ଚଷିବା; କର୍ଷଣ—1. Ploughing
Chashā
चाषा

୨ । କୃଷକ; ଯେ ଚାଷ କରେ— 2. Cultivator; peasant.
किसान; चाषा

୩ । ଓଡ଼ିଶାର କୃଷକଜାତି (ଶୂଦ୍ର)—
3. The peasant class of Orissa.

[ ଦ୍ର—ଓଡ଼ିଶାରେ ନାନା ଶ୍ରେଣୀର ଚଷା ଅଛନ୍ତି । ତହିଁ ମଧ୍ୟରୁ ଓଡ଼ଚଷା, ଓଡ଼ପଧାନ, ଶୁଦ୍ଧଚଷା, ବେଣାଟିଆ, କଲୁଭୁଆ ଏବଂ ଗୁଆଟିଆ ପ୍ରଧାନ ।

୧୯୦୧ ମସିହା ସେନ୍‌ସସ୍ ରିପୋର୍ଟରେ ଓଡ଼ିଶାର ଚଷା ସଂଖ୍ୟା ୮୩ ଲକ୍ଷ ଥିଲା; ମାତ୍ର ୧୯୨୧ ମସିହାର ରିପୋର୍ଟରେ ୭୩ ଲକ୍ଷ ହୋଇଅଛି । ]

୪ । (ଲକ୍ଷଣାର୍ଥ) ଇତର ଜନ—4. (fig) One of the common people.

୫ । ଅସଭ୍ୟ ବ୍ୟକ୍ତି—5 An uncivilized person

ଦେ. ବିଣ—କୃଷ୍ଟ; ଯାହା ଚଷାଯାଇଅଛି—Ploughed.

**ଚଷାଇବା**—ଦେ. କ୍ରି—୧ । ଚଷିବାର ଣିଜନ୍ତ ରୂପ—
Chashāibā 1. Causative form of chashibā.

चाषाना ୨ । ଅନ୍ୟଦ୍ୱାରା ଚାଷ କରାଇବା—To have ploughing done by another.
जुतवाना

ହଳ ଲଙ୍ଗଳ ଯାଥ ଅଣି ।
ଚଷାଅ ଆଗେ ଯଜ୍ଞଭୂମି—ଜଗନ୍ନାଥ, ଦଶକନ୍ଧସମାସ୍ୟଣ ।

**ଚଷାଚଷି**—ଦେ. ବି—(ସଂ. କୃଷ ଧାତୁ)—୧ । କୃଷିକର୍ମ—
Chashāchashi 1. Ploughing operations. agriculture.
चाषाचाषि

୨ । ଭୂମିକର୍ଷଣ—2. Ploughing of a field
जोताजोति

**ଚଷାଚପେଣ୍ଡିଆ**—ଦେ. ବିଣ—ଚଷାଣ୍ଡିଆ (ଦେଖ)
Chashāchāpendiā Chashāndiā (See)

**ଚଷାଟିଆ**—ଦେ. ବିଣ—ଚଷାଣ୍ଡିଆ (ଦେଖ)
Chashātiā Chashāndiā (See)

**ଚଷାଣ୍ଡିଆ**—ଦେ. ବିଣ—୧ । ଚଷାପରି ଜଡ଼ବୋଧ—
Chashāndiā 1. Foolish; stupid.

चाषाड़िआ ୨ । ଅଖାଡୁଆ—2. Rash.

उजड्ड ୩ । ଉଦ୍ଧତାସ୍ପଦ—3. Churlish; boorish.

୪ । ମଫସଲିଆ; ଓଲ୍ଟ—Rustic.

**ଚଷାପକ୍ଷୀ**—ଦେ. ବି ( ସଂ. ନାମ ଗୃଷପକ୍ଷୀ )—ଭରଦ୍ୱାଜ; ଭରଦ୍ୱାଅପକ୍ଷୀ; ଉଦଭଦଳିଆ ପକ୍ଷୀ; ସ୍ୱର୍ଣ୍ଣଗୃଧ୍ରକ; ଚଷାପୁଅ—
Chashāpakshi
चाषपाखी; नीलकंठ The lark; the jay; the Indian roller; Coracias Indica.
भरतपक्षी

[ ଦ୍ର—ଏହା ଶାଖାଶ୍ରୟୀ ବର୍ଗର ଦେଢ଼ ଗୃଖଣ୍ଡ ଲମ୍ବ ପକ୍ଷୀ । ସଂ. ନାମ ଗୃଷ ପକ୍ଷୀ, ଭରଦ୍ୱାଜ । ଏହାର ପକ୍ଷ ନୀଳ ବର୍ଣ୍ଣ, କଣ୍ଠ ନୀଳରଙ୍ଗ, ଥଣ୍ଟ ଲୁଆ ଥଣ୍ଟ ପରି କଳୁ ଦେଖେ । ଏହା ଶସ୍ୟ ଓ ପୋକ ଜୋକ ଖାଏ । ବଂ. ରେ ଏହାକୁ ନୀଳକଣ୍ଠ କହନ୍ତି । କିନ୍ତୁ ସଂ. ନୀଳକଣ୍ଠର ଅର୍ଥ ନୀଳ ମୟୂର, ଡାହୁକ ଓ ଖଞ୍ଜନ—ଯୋଗେଶ୍ଚନ୍ଦ୍ର । ଏହା ଭୂମିରେ ଘାସ ମଧ୍ୟରେ ବସା ବାନ୍ଧେ, ଖୁବ୍ ଉଚ୍ଚରୁ ଉଡ଼ି ପାରେ, ଏହାର ସ୍ୱର ମଧୁର । ହି. ଶବ୍ଦସାଗର । ]

**ଚଷାପୁଅ**—ଦେ. ବି.—୧ । ଚଷାପକ୍ଷୀ (ଦେଖ)
Chashāpua 1. Chashā pakshi (See)

ବହିଲେ କାନ୍ତାରେ କୁକ୍କୁଟ କୌଶିକ
ଚଷାପୁଏ ମିଳି ଭଷା-ଚୌର୍ଯ୍ୟକିକ । ରାଧାନାଥ ନନ୍ଦକେଶ୍ୱରୀ ।

୨ । ଚଷାଘରର ସନ୍ତାନ; କୃଷକପୁତ୍ର—2. A man belonging to a chashā family.

**ଚଷାଭାଗ**—ଦେ. ବି—ଜମିଦାରଠାରୁ ପ୍ରଜା ଭାଗରେ ନେଇ ଚାଷ କରିଥିବା ଜମିର ଉତ୍ପନ୍ନରୁ ରାଜଭାଗ ବା ଜମିଦାରଙ୍କ ପ୍ରାପ୍ୟ ଅଧକ ଗଲା ପରେ ପ୍ରଜାର ପାରିଶ୍ରମିକ ସ୍ୱରୂପ ପ୍ରାପ୍ୟ ଅପର ଅର୍ଦ୍ଧ—Half of the produce of a field cultivated by a farmer on produce-rent which is retained by himself after making over the landlords moity to the landlord.
Chashābhāga
चाषीर भाग

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍ୟ,ର୍ବ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଘ୍ନ | ଉଅ | ଞ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଶଁ୍ୟ | ଇଅ | ଈ | ନ୍ |

**ଚଷାଭୁଷା**—ଦେ. ବଣ—୧ । ଗ୍ରାମ୍ୟ; ଅଶିକ୍ଷିତ—1. Rustic.
Chashābhūshā ୨ । ଅଖାଡୁଆ—2. Churlish; boorish.
चाषाभुषो ୩ । ଅସଭ୍ୟ; ଅଭଦ୍ର—3. Rude; uncivilized.
**गँवार**

**ଚଷାଳ**—ସଂ. ବି. ( ଚଷ୍ ଧାତୁ+କର୍ମ. ଅଲ; ସଂଜ୍ଞାର୍ଥେ )—
Chashāla ୧ । ଯଜ୍ଞୀୟ ପଶୁବନ୍ଧନାର୍ଥ କାଷ୍ଠ; ଯୂପକଣ୍ଟକ—
1. The peg to tie the beast to be sacrificed.
୨ । ଯୂପୋପରସ୍ଥ ଲୌହ ବା କାଷ୍ଠନିର୍ମିତ ବଳୟ—
2. Wooden or iron ring at the top of the peg for tying a sacrificial beast.
୩ । ମଧୁଚକ୍ର—3. Hive.

**ଚଷିବା**—ଦେ. କ୍ରି (ସଂ. କୃଷ୍ ଧାତୁ)—ଭୂମିକର୍ଷଣ କରିବା—
Chashibā To plough.
चाषा ବୃଷଭ ମଣଶାଳକୁରେ ଧନେ ଚଷି ଅବନୀ—ଭକ୍ତ, ବୈଦେହୀଶବିଳାସ ।
**जोतना, चासना**

**ଚଷୁ**—ଦେ ବି (ସଂ. ତୁଷ)—ତଷୁ; ଧାନର ଶ୍ୱେପା—
Chashu Husks of paddy; chaff.
तुस्
**भूसा, चोकर, भूसा**

**ଚଷୁକୁଟା**—ଦେ. ବି (ସଂ. ତୁଷ+କୁଟ୍ଟନ)—୧ । ( ଲକ୍ଷଣାର୍ଥ )—ଚଷୁ
Chashukuṭā କୁଟିବା ପରି ନିଷ୍ଫଳ ବା ବୃଥା ପରିଶ୍ରମ; ପଣ୍ଡଶ୍ରମ;
ନିଷ୍ଫଳ ପରିଶ୍ରମ—1. Fruitless labour.
୨ । ନିଷ୍ଫଳ ଆଲୋଚନା—
2. Fruitless discussion.
୩ । ବହ୍ୱାରମ୍ଭ ଲଘୁକ୍ରିୟା—
3. Much ado about nothing.

**ଚଷୁ କୁଟିବା**—ଦେ. କ୍ରି.—(ଧାନ ପରିବର୍ତ୍ତରେ ଚଷୁ ଅର୍ଥାତ୍ ଧାନର
Chashu kuṭibā ଶ୍ୱେପାକୁ କୁଟିବା ଯେପରି ନିଷ୍ପ୍ରୟୋଜନ)—
୧ । (ଲକ୍ଷଣାର୍ଥ) ବୃଥା ପରିଶ୍ରମ କରିବା—
1. To perform a fruitless task
ବହୁ ବ୍ୟୟେଁ ଏହୁ ବହୁଶାର୍ଙ୍ଗ ପଶୁ,
ପୋଷି ସିନା ଖାଲି କୁଟୁଅଛ ଚଷୁ—ରାଧାନାଥ. ଦରବାର ।
୨ । ଅପ୍ରୟୋଜନୀୟ ବିଷୟର ଆଲୋଚନା ବା ଆନ୍ଦୋଳନ
କରିବା—2. To discuss unnecessary matters.
୩ । ନିଷ୍ଫଳ କାର୍ଯ୍ୟ ବା ଆଲୋଚନାରେ ସମୟ ନଷ୍ଟ କରିବା—
3. To waste time in a wild goose chase.

**ଚସମ୍‌ଖୋର୍**—ବୈଦେ. ବଣ. (ଫା. ଚଶ୍ମ=ଚକ୍ଷୁ+ଖୋର୍=ଖାଦକ)—
Chasamkhor ଯାହାର ଚକ୍ଷୁଲଜ୍ଜା ନାହିଁ; ବେମୋହବତଥା—
चशमखोर Regardless of the feelings of others;
**चशमखोर** one who has no respect for the feelings of others.

**ଚସମଇ**—ପ୍ରାଦେ. ବି. ( ପୁରୀ )—କ୍ଷୀରୀ; ପାୟସ; ଚସମଇ; ଚସମି—
Chasamai Gruel; frumenty.
ଚସମେଇ }
ଚସ୍ମଇ } ଅନ୍ୟରୂପ
ଚସ୍ମେଇ }

**ଚସମା**—ବୈଦେ. ବି. ( ଫା. ଚଶ୍ମ=ଆଖିରୁ )—ଉପନେତ୍ର;
Chasamā ଚଷମା—Spectacles; eyeglasses.
चश्मा ନ ସିବା-ଶୋଭନ ସୁବର୍ଣ୍ଣ ଚସମା—ରାଧାନାଥ ଦରବାର ।
**चश्मा**
( ଚସ୍ମା—ଅନ୍ୟରୂପ )

**ଚହଁକ**—ଦେ. ବି—ଚମକ ( ଦେଖ )
Chahañka Chamaka ( See )

**ଚହଁକା**—ଦେ. ବି. ଓ ବଣ—ଚମକା ( ଦେଖ )
Chahañkā Chamakā ( See )

**ଚହଁକାଇବା**—ଦେ. କ୍ରି. ( ଚହଁକିବାର ଣିଜନ୍ତ ରୂପ )—
Chahañkāibā ଚମକାଇବା ( ଦେଖ )
Chamakāibā ( See )

**ଚହଁକିବା**—ଦେ. କ୍ରି.—ଚମକିବା ( ଦେଖ )
Chahañkibā Chamakibā ( See )
( ଚହଁକାଇବା—ଣିଜନ୍ତରୂପ )

**ଚହଁଫଳା**—ପ୍ରାଦେ. ( ଗଡ଼ଜାତ ) ବଣ. ପୁଂ. ଓ ସ୍ତ୍ରୀ. (ସଂ. ଚପଳ)—
Chahañphaḷā ଚଗଲିଆ; ଚଳଚିତ୍ତ; ଚପଳପ୍ରକୃତିକ (ବ୍ୟକ୍ତି)—
(ଚହଁଫଳୀ—ସ୍ତ୍ରୀ) Fickle minded.

**ଚହକ**—ଦେ. ବି—୧ । ଚମକ ( ଦେଖ )
Chahaka 1. Chamaka ( See )

**ଚହକଚକଣ**—ଦେ. ବଣ. ( ସଂ. ଚମତ୍କାର+ଚିକ୍କଣ )—
Chahakachikaṇa ୧ । ଚକଚକ୍ୟଯୁକ୍ତ; ଚକ୍‌ଚକଚକଣ—
चमकदार; चटकिला 1. Splendid; gorgeous.
**चमकदार; चटकीला** ୨ । ବେଶଭୂଷାରେ ସୁସଜ୍ଜିତ—
2. Dressed gorgeously.
୩ । ବିଳାସପ୍ରିୟ—3. Luxurious; fond of luxury.

**ଚହକମହକ**—ଦେ. ବି. ( ସହରର )—ଚାକଚକ୍ୟ—
Chahakamahaka Splendour; lustre; glare.
चमक दमक
**चमक दमक**

**ଚହକା**—ଦେ. ବି. ଓ ବଣ—ଚମକା ( ଦେଖ )
Chahakā Chamakā ( See )

**ଚହକାଇବା**—ଦେ. କ୍ରି—୧ । ଚହକିବାର ଣିଜନ୍ତ ରୂପ—
Chahakāibā 1. Causative form of Chahakibā.

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ବୃଥା' ନ ମିଳିଲେ 'ବୃଥା' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖି. ବ

( ଚହକେଇବା—ଅନ୍ୟରୂପ ) ୨ । ଚମକାଇବା ( ଦେଖ )
2. Chamakāibā ( See )

ଗ୍ରନ୍ଥରତ୍ନକୁ ମତେ ଚହକାଇ ପଶୁବଳୁ କହ—
କବିସୂର୍ଯ୍ୟ, କଳୋଶାଚମ୍ପୁ ।

**ଚହକିବା**—ଦେ. କ୍ରି.—ଚମକିବା ( ଦେଖ )
Chahakibā — Chamakibā ( See )

ଚନ୍ଦ୍ରକୁ ଚନ୍ଦ୍ରିକା ପିଇବା ଅଶେ
ଚକୋର ପଣ ଅବସର ପାଶେ
ଚନ୍ଦ୍ରୁଆଇ ଅସାଧାରଣ ଫଳ
ଚହକଇକାଳେ ଏମନ୍ତି ମନ୍ତ୍ର—କବିସୂର୍ଯ୍ୟ, କବିତାକଲ୍ଲୋଳନୀ ।

**ଚହଚହ** - ଦେ. ଅ. ( ଧ୍ୱନ୍ୟନୁକରଣ )—
Chahachaha ୧ । ଲୋକଗହଳ ବା ଗୋଳମାଳର ଅବ୍ୟକ୍ତ
**गहगह; चहचह** ଶବ୍ଦ; ଗହଗହ—1. Indistinct noise arising from a crowd of people

୨ । ଚମକ; ଶୁଭ୍ରଚକ୍ୟ—2. Splendour.

୩ । ଅତ୍ୟନ୍ତ; ଠହଠହ—
3. Very; too much.
( ଯଥା— ନାଲଚହଚହ । )

**ଚହଚହ ମହମହ**—ପ୍ରାଦେ. ବିଣ. ( କଟକ )—ଆଡ଼ମ୍ବରପୂର୍ଣ୍ଣ—
Chahachaha mahamaha With much splendour; grand; in a grand style.
( ଯଥା—ସେ ଚହଚହ ମହମହ ହୋଇଘର କଲେ । )

**ଚହଟ**—ଦେ. ବି—୧ । ଶୁଭ୍ରଚକ୍ୟ—
Chahaṭa — 1. Brightness.
চটক — ୨ । ଶୋଭା; କାନ୍ତି—2. Beauty, sheen.
**चटक**

ଲଣିଣ ଡୋଳା ଖଞ୍ଜଣ୍ଟର ଚହଟ
ବନ୍ଦୀ କଲେ ଅଞ୍ଜନ ଅଠାରେ କରି ହଟ—କୃଷ୍ଣସିଂ. ମହାଭାରତ, ଆଦି ।

୩ । ଆଡ଼ମ୍ବର; ବ୍ୟାପିବା —
3. Splendour; gaudiness; grandeur.

ବାଗ୍ମୀ ଅପଙ୍କ ଗଜ ଚହଟକୁ ସ୍ଥାନ ନୋହି ଯନ୍ତ୍ରାଯନ୍ତ୍ର ।
ଉପେ. ବୈଦେହୀଶବିଳାସ ।

୪ । ପ୍ରକାଶ—4. Diffusion; exibition.

୫ । ପ୍ରଚାର; ପ୍ରକଟନ—
5. Disclosure; publication.

ଦେ. ବିଣ—୧ । ପ୍ରକାଶିତ—1. Exibited.

୨ । ପ୍ରଚାରିତ; ପ୍ରକଟ—2. Published.

କ୍ରମେ ତା ହେଲା ଚହଟ । ରାଧାନାଥ. ଯଯାତି ।

୩ । ଚକଚକଆ; ଉଜ୍ଜ୍ୱଳ—3. Bright; dazzling.

**ଚହଟଚମ୍ପା**—ଦେ. ବିଣ. ସ୍ତ୍ରୀ—ଫୁଟିଥିବା ଚମ୍ପା ଫୁଲ ପରି ସୁନ୍ଦରୀ ଓ
Chahaṭachampā — ଗୋରୀ ( ସ୍ତ୍ରୀ )—( female )
Beautiful and fair coloured like a full-blown Champaka flower.

**ଚହଟଚିକଣ**—ଦେ. ବିଣ—୧ । ସର୍ବଗୁଣରେ ସୁନ୍ଦର—
Chahaṭachikaṇa — 1. Full of all good qualities.
চটকিয়া — ୨ । ଶୋଭାମୟ—2. Splendid; gaudy; grand.
**चटकमटक**

୩ । ବାହ୍ୟାଡ଼ମ୍ବରପୂର୍ଣ୍ଣ—3. Foppish; gaudy.

ଚହଟ ଚିକଣ ଘଣ୍ଟା ଛଡ଼ ସବୁରେ । ଦୀନକୃଷ୍ଣ. ଗୀତଲହରୀ ।

ଦେ. ବି—୧ । କୃତ୍ରିମ ସୌନ୍ଦର୍ଯ୍ୟ; ପ୍ରସାଧନଦ୍ୱାରା ପ୍ରସ୍ତୁତ ସୌନ୍ଦର୍ଯ୍ୟ—1. Beauty due to dressing and toilet artificial or made up grace.

୨ । ଆଡ଼ମ୍ବର—2. Gaudiness

**ଚହଟନାଗର**—ଦେ ବିଣ. ପୁଂ—ସୁବେଶ ସଜ୍ଜିତ ରସିକ ନାଗର; ଛଇଲ;
Chahaṭanāgara — ବେଶଭୂଷାପ୍ରିୟ ରସିକ ପୁରୁଷ—
ফুলবাবু — A fop; a beau.
**छैला**

**ଚହଟା**—ଦେ. ବି—୧ । ବିସ୍ତୃତ ସମତଳ ଭୂଖଣ୍ଡ—
Chahaṭā — 1. A wide plot of level land.

ସେ ଚହଟା ଭିତରେ ଅଛି ଯେଉଁ ମନ୍ଦିର
ତହିଁରେ ଶବଦ ଶୁଭେ ହାଦଶ ପ୍ରକାର । ପୀତାମ୍ବର. ନୃସିଂହପୁରାଣ ।

୨ । ବିଷ ଆଦି ମନୁଷ୍ୟର ମସ୍ତକରେ ବା ଶରୀରସାରା ବ୍ୟାପିଯିବା—
2. Diffusion through the system ( as poison ).

୩ । ସୁଗନ୍ଧ ବିସ୍ତାର; ସୁଗନ୍ଧ ସବୁଆଡ଼େ ବ୍ୟାପିଯିବା—
3. Diffusion of smell.

ପ୍ରାଦେ. (ଗଡ଼ଜାତ) ବି—ଚାରିପାଖେ ଜଙ୍ଗଲ ଥିବା ବିସ୍ତୃତ ଭୂଖଣ୍ଡ-
A wide plot of land having jungles on all sides.

ଦେ. ବିଣ—ଚପଳସ୍ୱଭାବ; ଚଞ୍ଚଳମତି—Fickle-minded.

ଅରେ ଚହଟା, ଝଟା ଲଟା ହେଲେ ନ କର ହଟା ।
ଯଦୁମଣି. ରହସ୍ୟ ଚଉତି ।

**ଚହଟାଇବା**—ଦେ. କ୍ରି. ( ଚହଟିବାର ଣିଜନ୍ତ ରୂପ )—
Chahaṭāibā ୧ । ଆମୋଦରେ ଦିଗଦିଗନ୍ତ ପୂର୍ଣ୍ଣ କରିବା—
छाओयान — 1. To fill the air with smell.
**फैलाना**

ସୁରଭି କୁସୁମ ଚହଟାଇ ବାସ ମହକାଏ ତା ମାଧୁରୀ ।
ନନ୍ଦକିଶୋର. ଶର୍ମିଷ୍ଠା ।

୨ । ପ୍ରକାଶିତ କରାଇବା—
2 To cause to come out.

୩ । ପ୍ରଚାରିତ କରିବା—
3. To publish; to reveal; to disclose

୪ । ଶୋଭିତ କରାଇବା; ଶୋଭାଯୁକ୍ତ କରିବା—
4. To make beautiful; to cause to be charming.

କାହା ଶିର ମୁକୁଟ ହେଲେ ପଡ଼ିଯାଏ
ରତନ ଜ୍ୟୋତରେ ସେ ମହୀ ଚହଟାଏ । କୃଷ୍ଣସିଂ. ମହାଭାରତ. ଆଦି ।

| ୨ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇସ୍ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଡ଼ | ଟ୍ଟ |

ଚହଟିଆ—ଦେ. ବିଣ—ଶୋଭାମୟ; କାନ୍ତିବିଶିଷ୍ଟ—
Chahaṭiā Charming; beautiful.
चटकीला
**चटकीला**

ଚହଟିବା—ଦେ. କ୍ରି—୧ । (ସୁଗନ୍ଧ) ପ୍ରକାଶିତ ହେବା; ମହକିବା—
Chahaṭibā 1. To diffuse; to fill the air
ছাওয়া (as a smell).
**छैलना**

ଚନ୍ଦନରେ ସେ ପଦ୍ମ ବାସନା ଚହଟେ ।
କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

୨ । (ବିଷ) ମନୁଷ୍ୟ ଶରୀରରେ ବ୍ୟାପିବା—2. To diffuse through the system (as a poison).

୩ । (ବିଦ୍ୟୁତ୍ ଆଦି) ଉଜ୍ଜ୍ୱଳରୂପେ ପ୍ରକାଶିତ ହେବା—3. To flash.

ସେ କର ଉପରେ ଚହଟେ ବିଦ୍ୟୁତ,
କରର ନୟନକୁ ଦେଉଥାନ୍ତି ଭୂତ । କୃଷ୍ଣସିଂହ. ମହାଭାରତ ବନ ।

୪ । (ହରିଦ୍ରାଦିଗନ୍ଧ) ସୁବାସରେ ପୂର୍ଣ୍ଣ ହେବା—4. To be filled with (e. g. the air with a smell.)

୫ । ପ୍ରକାଶିତ ହେବା; ପ୍ରକଟିତ ହେବା—5. To be opened to view; to be disclosed or revealed.

ବନ ପାଶରେ ଜଳଘାଟେ କଂଶାର ଭୂଲହିଁ ଚହଟେ ।
ଉପେ. ବୈଦେହୀଶବିଳାସ ।

୬ । (ମାଛ ଆଦି) ଉପରକୁ ଉଠିବା; ଉପୁଡି ଉଠିବା—
6. To rise up to the surface; (e. g. as a fish in water).

ମାଛର ଦେହ ଘୋଟ ପ୍ରବଳେ ବଢ଼ିଲା,
ଚହଟି ଖେଳିବାକୁ ଜଳ ନ ମିଳିଲା । କୃଷ୍ଣସିଂହ. ମହାଭାରତ. ବନ ।

ଚହଟି ହେବା—ଦେ. କ୍ରି.—ଦର୍ଶନର ମାଛ ପରି ଉପରକୁ ଉଠି ପଡ଼
Chahaṭi hebā ପଡ଼ ହେବା; ପ୍ରକାଶିତ ହେବା—To flutter or become prominent.

ବ୍ରାହ୍ମଣଙ୍କୁଲେ କାନ୍ତି ବଷ୍ଟୁବଙ୍କର ପୁଏ ।
ଚହଟି ହୋଇଛନ୍ତି ସଫରୀ ମୀନ ପ୍ରାୟେ । ପୀତାମ୍ବର. ନୃସିଂହପୁରାଣ ।

ଚହରାଇବା–ପ୍ରାଦେ. (ସମ୍ବଲପୁର; ଭୁଲ. ହି. ଚହରୁନା=ଆନନ୍ଦିତ
Chaharāibā ହେବା ) କ୍ରି.—ପ୍ରଲୋଭନ ଦେଖାଇବା—To hold out temptation; to allure.

ଚହଳ—ଦେ. ବି. (ସଂ. ଚଳ୍ ଧାତୁ)—୧ । ଆନ୍ଦୋଳନ—
Chahaḷa 1 Agitation; disturbance.
हैचै ୨ । ଗୋଳମାଳ; ବହୁଲୋକଙ୍କ ମୁଖରବ; ହୁଲର; ଘୋଷା—
**चहल** 2. Noise; ado; hue and cry; out cry bustle.

ଗୌଡ଼ରେ ଉଠିଲା ମହାଶୋକର ଚହଳ । ରଘୁ ନାଥ. ମହାଯାତ୍ରା ।

୨ । ବହୁ ମନୁଷ୍ୟଙ୍କର ଏକତ୍ର ଯିବା ଆସିବା ହେତୁରୁ ଭିଡ଼; ଗହଳ—2. Pressure of a crowd.

୩ । ପ୍ରଘଟ; ପ୍ରକାଶ—
3. Disclosing; publication; revealing.
[ ଦ୍ର—ଏ ଶବ୍ଦ ଗହଳ ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ । ଯଥା—ଗହଳ ଚହଳ । ]

ଚହଲ—ଦେ. ବି.—୧ । (ସଂ. ଚଲ ଧାତୁ) ସ୍ପନ୍ଦନ; କମ୍ପନ—
Chahala 1. Throbbing; vibration.
**छलकन** ୨ । (ସଂ. ଚିକ୍ଖଲ=ପଙ୍କ)—କାଦୁଅ; ପଙ୍କ—
चहल Clay; mire.
**चहला** ଦେ. ବିଣ.—କର୍ଦ୍ଦମମୟ; ପଙ୍କିଳ—Clayey; miry

ଚହଳା—ଦେ. ବିଣ.—ଚହଳିଆ (ଦେଖ)
Chahaḷā Chahaḷiā (See)

କୁଟେ କାଠ ଘେନେ କାଠରେ ଅଗ୍ନି ଥିଲା;
ପର ରହି ଥାନ୍ତି ନୋହୁଣ ଚହଳା । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

ଚହଲା—ଦେ. ବି. (ସଂ. ଚିକ୍ଖଲ; ପଙ୍କ)—୧ । ମଳ; ମଇଳା—
Chahalā 1. Dirt.
चहल, चहला ୨ । ପଙ୍କ—
**चहला; छलकन** 2. Mire; soft mud.
ଦ୍ୱି. ବିଣ.—ପଙ୍କୁଆ; କର୍ଦ୍ଦମମୟ—Clayey; miry
ପ୍ରାଦେ ( ସମ୍ବଲପୁର; ଭୁଲ. ହି. ଚହଲା କୂଅରୁ ପାଣି କାଢିବା ପାଇଁ କୂଅ ଉପରେ ଲାଗିଥିବା ଶଗଡ଼ ) ବି—
୧ । ବଡ଼କୂଅ, ବାଓ୍ୱାଁ—1. A wide well.
୨ । ଜଳକୁଣ୍ଡ—2. Reservoir of water.
୩ । ନଈବାଲି ବା ଖାଲ ଭୂମିରେ ପାଣି ପାଇଁ ଖୋଳାଯାଇଥିବା ଚଉଡ଼ା ବା ଓସାରିଆ ଗାତ; ଚୂଆ—
3. A small pool or hole dug in the ground to get water.
ପ୍ରାଦେ. (ବସ୍ତର) ବି—ବୟସ ଛଉ (ଦେଖ)
Bayasa chhau (See)

ଚହଲାଇବା—ଦେ. କ୍ରି—'ଚହଲିବା'ର ଣିଜନ୍ତ ରୂପ—
Chahalāibā Causative form of Chahalibā.
চলকান আନ୍ଦୋଳିତ କରିବା; ହଲାଇବା—
**छलकाना** To agitate; to shake.

ଚହଳି—ଦେ ବି—ଚହଳ; ଗୋଳମାଳ—
Chahaḷi Tumult; noise.
[ ଦ୍ର—ଏ ଶବ୍ଦ ଗହଳ ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ :—ଗହଳି ଚହଳି । ]

ଚହଳିଆ—ଦେ. ବିଣ. (ସଂ. ଚଲ)—୧ । ଅସ୍ଥିର; ଚଞ୍ଚଳ—
Chahaḷiā 1. Moving here and there; restless.
୨ । ଚପଳ—2. Fickle; unsteady.
୩ । ଯେ ହୁଲ୍ଲା କରେ—3. Noisy.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅଁ' ନ ମିଳିଲେ 'ଭୂଇଁ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଙ୍ଗିଆ' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଚହଲିବା**—ଦେ. କ୍ରି. (ସଂ. ଚଲ୍ ଧାତୁ)—୧ । (ପାତ୍ରର ଚଳନ ଯୋଗୁଁ ତରଳ ପଦାର୍ଥ ) ହଲିବା ବା ହଲଚଲ ହେବା— 1. To be agitated; to vibrate ( said of a liquid being agitated ).
Chahalibā
चलका
छलकाना
(ଚହଳିବା—ଅନ୍ୟରୂପ) ୨ । ଚଳିବା; ଗତିଯୁକ୍ତ ହେବା— 2. To be in motion; to move.

ତରୁଅଛି ପଦ ଟେକି ଚଳି
ତେଉ କର୍ଣ୍ଣପାଶ ନ ଚହଲି । କବିସୂର୍ଯ୍ୟ. କବିତା ।

୩ । ଅସ୍ଥିର ହେବା— 3. To be restless
୪ । କମ୍ପିବା—4. To shake.

ସେ ପୃଥିବୀ ଟଳଟଳ ହୋଇ ଚହଲିଲା
ଚହଲନ୍ତେ ପୃଥିବୀଙ୍କ ପିଡା ଦଗ୍ଧିଲା । ପିତାମ୍ବର. ନୃସିଂହପୁରାଣ ।

**ଚହାଁଚହିଁ**—ସ୍ତ୍ରୀ. ବି. (ଓ. ଚାହିଁବା କ୍ରିୟା)—ଚାହାଁଚାହିଁ (ଦେଖ)
Chahāñchahiñ — Chāhāñchāhiñ (See)
(ଚହାଁଚହିଁ—ଅନ୍ୟରୂପ)

**ଚହ୍ଲା**—ପ୍ରାଦେ. (ଗଞ୍ଜାମ) ବି—ତଲ୍ଲିଦହି; ଘୋଲଦହି— Churned curd.
Chahlā

ଯେ ବାସି ଛେନା ଚହ୍ଲାପାଣି,
ତାହିଁ ଚାଳିଲ ଯେଷେ ଆଣି । ଭୂପତି, ପ୍ରେମପଞ୍ଚାମୃତ ।

**ଚହ୍ଲାପୋକ**—ପ୍ରାଦେ. (ସମ୍ବଲପୁର) ବି—ଗଉଡୁଣୀପୋକ (ଦେଖ)
Chahlāpoka — Gaurḍunipoka (See)

**ଚା**—ବୈଦେ. ବି. (ଚୀନ୍ ଭାଷା ଚା; ତୁଳ. ଏହି ଅର୍ଥରେ ଫା. ଚାୟ୍ )—
Chā ୧ । ଏକଜାତୀୟ ଗୁଳ୍ମ ଏବଂ ତାହାର ଶୁଷ୍କ ପତ୍ରବିଶେଷ;
चा ଚାହା ଗଛ ଓ ପତ୍ର—1. Tea; tea-plant and
चा; चाय its leaves
ତେ. ଟେଯାକୁ

[ଦ୍ର—ଏ ଗୁଳ୍ମ ପ୍ରଥମେ ଚୀନ ଦେଶରୁ ଭାରତକୁ ଆସିଥିଲା । ଆସାମ ଜଙ୍ଗଲରେ 'ଚା' ଗୁଳ୍ମ ଦେଖାଯିବାରୁ ପରୀକ୍ଷାସ୍ୱରୂପ ଆସାମରେ ଏହାର କୃଷି କରାଗଲା ଓ କ୍ରମେ କ୍ରମେ ଆସାମରେ ଓ ଲଙ୍କାରେ ଏହାର ବିସ୍ତୃତ କୃଷି ହେଲା । ବର୍ତ୍ତମାନ ଏହା ଭାରତରୁ ଓ ଲଙ୍କାରୁ ବିଦେଶକୁ ପଠାଯିବା ଗୋଟିଏ ଲାଭଜନକ ପଣ୍ୟଦ୍ରବ୍ୟ ହୋଇଅଛି । 'ଚା' ଗଛ ଉଚ୍ଚରେ ୨ ହାତଠାରୁ ୪ ହାତ ବଢ଼େ । ଏହାର ପତ୍ର ୧୦।୧୨ ଅଙ୍ଗୁଳ ଲମ୍ବ ଓ ୩।୪ ଅଙ୍ଗୁଳ ଚଉଡ଼ା ଓ ପତ୍ରର ଦୁଇ ମୁଣ୍ଡ ମୁନିଆଁ; ଏଥିର ଫୁଲ ୫।୬ ପାଖୁଡ଼ିଆ ଓ ଧଳା । ଫୁଲ ଝଡ଼ିଗଲା ପରେ ଗଛରେ ଫଳ ଧରେ । ଫଳ ମଧ୍ୟରେ ଏକଠାରୁ ୩ ପର୍ଯ୍ୟନ୍ତ ମଞ୍ଜି ଥାଏ । ଏହାର ପତ୍ରକୁ କଅଁଳ ସମୟରେ ତୋଳି ତାକୁ ଶୁଖାଇ ଟୁକୁଟୁକୁ କରି ରଖାଯାଏ । ଶୁଖିଲା ପତ୍ରର ବର୍ଣ୍ଣ ଫିକା କଳା । ଫୁଟିଲା ପାଣିରେ ଏହି ଶୁଖିଲା ପତ୍ରକୁ ପକାଇ ଚୁଲିରୁ ଓହ୍ଲାଇଆଣି ସେ ପାଣିରୁ ବତୁରିଥିବା 'ଚା' ପତ୍ରଗୁଡ଼ିକ ଛାଣି ଫିଙ୍ଗିଦିଆଯାଏ । ସେ ପାଣି ଈଷତ୍ ନାଲି ଓ କଷା ଲାଗେ । ଉକ୍ତ ପାଣିରେ ଦୁଧ ଓ ଚିନି ମିଶାଇ ତାହା ଗରମ ଥାଉଁ ଥାଉଁ ପିଆଯାଏ । କେହି କେହି ଦୁଧ ଓ ଚିନି ନ ଦେଇ ଖାଲି ଚା ସିଝା ପାଣି ପିଅନ୍ତି ଓ କେହି କେହି ଲୁଣ ମିଶାଇ ଖାଆନ୍ତି । ସଭ୍ୟସମାଜରେ ଓ ସଭ୍ୟସମାଜ ସଂସ୍ରବରେ ଆସିଥିବା ବନ୍ୟ ଓ ଅସଭ୍ୟ ଜାତିମାନଙ୍କ ମଧ୍ୟରେ 'ଚା' ପିଇବା ଗୋଟିଏ ଅପରିହାର୍ଯ୍ୟ ଅଭ୍ୟାସରେ ପରିଣତ ହୋଇଅଛି । ଚୀନ ଦେଶରେ ଲୋକେ ଅତି ପ୍ରାଚୀନକାଳରେ ଔଷଧରୂପେ ଚା ପତ୍ର ବ୍ୟବହାର କରୁଥିଲେ । କିନ୍ତୁ ଆଜିକାଲି ପରି ଚା ପତ୍ର ବତୁରା ଗରମ ପାଣିକୁ ପିଇବାର ରୀତି ଖ୍ରୀଷ୍ଟ ୭ମ ବା ଅଷ୍ଟମ ଶତାବ୍ଦୀରୁ ଚଳିଲା । ଏ ପାଣି ପିଇଲେ ଦେହରୁ ଆଳସ୍ୟ ଦୂର ହୋଇ ସ୍ଫୂର୍ତ୍ତି ଜନ୍ମେ ଓ ଅନିଦ୍ରା ଏବଂ ପରିଶ୍ରମଜନିତ କ୍ଲାନ୍ତି ଦୂର ହୁଏ । ଇଷ୍ଟଇଣ୍ଡିଆ କୋମ୍ପାନି ଭାରତକୁ ପ୍ରଥମେ ବ୍ୟବସାୟ ପାଇଁ ଆସିଲାବେଳେ ଚୀନ ଦେଶରୁ 'ଚା' କିଣି ବିଲାତକୁ ପଠାଉଥିଲେ । ପରେ ଆସାମରେ 'ଚା' ଗଛ ବଣରେ ଉଠୁଥିବାର ଦେଖାଯିବାରୁ ଭାରତରେ ଏହାର ଚାଷ ହେଲା । 'ଚା' ଗଛ ଅନେକ ପ୍ରକାର ଓ ତାହାର ପତ୍ର ମଧ୍ୟ ଅନେକ ପ୍ରକାରର । ଶୁଖିଲା ପତ୍ରର ବର୍ଣ୍ଣ ମଧ୍ୟ ନାନାପ୍ରକାରର— ହି. ଶବ୍ଦସାଗର । ]

୨ । ଫୁଟିବା ପାଣିରେ ଶୁଖିଲା 'ଚା'ର ପତ୍ର ପକାଇ ଉକ୍ତ ଜଳକୁ ଛାଣି ସେ ଆରକ୍ତ ଜଳ ସଙ୍ଗେ ଦୁଧ ଓ ଚିନି ମିଶାଇ ପ୍ରସ୍ତୁତ କରାଯିବା ପାନୀୟ—2 Tea (drink); concoction of dry tea leaves mixed with milk and sugar and used as a drink.

**ଚାଅଲତା**—ଦେ. ବି—ମେଜେଣ୍ଟାର; ମାଜେଣ୍ଟା; ବୈଜ୍ଞାନିକ ପ୍ରକ୍ରିୟାରେ ଆଲକାତରାରୁ ପ୍ରସ୍ତୁତ ଈଷତ୍ ନୀଳଦାନାଦାର ରଙ୍ଗବିଶେଷ—Magenta; a red pigment.
Chāalatā

[ଦ୍ର—ଏହି ମେଜେଣ୍ଟାରଦାନାମାନ 'ଚା' ପତ୍ର ପରି କଳା ଦିଶେ ଓ ପାଣିରେ ପକାଇଲେ ପାଣି ଅଲତା ପରି ନାଲିଆ ହୁଏ । ଏଥିଯୋଗୁଁ ଏଥିର ନାମ ଚା-ଅଲତା ହୋଇଅଛି । ]

**ଚାଆ** ( ଇତ୍ୟାଦି )—ବୈଦେ. ବି ( ଚୀନ ଭାଷା ଚା )— ଚା (ଇତ୍ୟାଦି) (ଦେଖ)
Chāā (etc) — Chā (etc) (See).

**ଚାଆଁରା**—ଦେ. ବି—ଏକପ୍ରକାର ଘାସ— A kind of grass.
Chāāñrā

**चाङ्गा** ଦେ. ବିଣ ( ସଂ. ଚଙ୍ଗ=ସୁସ୍ଥ, ଦକ୍ଷ, ନୀରୋଗ )—
चाङ्गला ୧ । ଚାଙ୍ଗଲା; ସତେଜ (ବୃକ୍ଷାଦି)— 1. Vigorous (trees).
୨ । ହୃଷ୍ଟପୁଷ୍ଟ—2. Strong and well developed.

**ଚାଇ**—ଦେ. ବି—୧ । ଗୋଲମରିଚ ( ଦେଖ )— 1. Golamaricha (See) (Haines).
Chāi
୨ । ଚାଇକାଠ ( ଦେଖ )— Chaikaṭha ( See )

| ୧ | ଇ | ଉ | ଋ,ୠ | ଌ | ବ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଞ୍ଚ | ଈଯ୍ | ଉଅ | ଊ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଔ | ନ୍ |

ଚଇଁ—ଦେ. ବିଣ—୧ । (ସଂ. ଚପଳ)—ଚଞ୍ଚଳମତି; ଚପଳ—
Chāiṅ 1. Unsteady; fickle.
ଚାଞ୍ଚାଁ ୨ । ସ୍ଫୂର୍ତ୍ତିଯୁକ୍ତ; ଚଞ୍ଚଳ—2 Brisk.
चाँई ୩ । ଠକ; ପ୍ରତାରକ—3. Cheating; fraudulent.
(ଚ଼ଇଁ—ଅନ୍ୟରୂପ) ୪ । ଧୂର୍ତ୍ତ—4 Sly.
୫ । ଚତୁର - 5. Clever.
୬ । ଦକ୍ଷ; କର୍ମଠ—6. Active; skilful.
୭ । (ସଂ. ତପ୍ତ) ତାତିଲା, ଉତ୍ତପ୍ତ—7. Hot; heated.
ଦେ ବି—୧ । ଯେଉଁ ଲୋକ ଆଖି ଆଗରୁ ଜିନିଷ ଚୋରିକରି ନିଏ—1. A sly thief who steals things before one's eyes.
୨ । ଧପାବାଜ୍ ବା ଠକ ବ୍ୟକ୍ତି—2. A cheat.
୩ । ଠକାମି—3. Cheating

ଚଇଁଆ—ଦେ. ବିଣ—ଚଇଁ ( ଦେଖ ) —
Chāiṅā Chāiṅ ( See )

ଚଇଁକରିବା—ଦେ. କ୍ରି—୧ । ତାତିବା; ଉତ୍ତପ୍ତ ହେବା—
Chāiṅkaribā 1. To become heated.
୨ । ଚଇଁ ଶବ୍ଦ କରିବା—2.To produce the sound of a drop of water falling on a very hot metal.

ଚଇଁକାଠ—ଦେ. ବି. (ସଂ. ଚବିକା; ଚବ୍ୟ)—ଚଇକାଠ (ଦେଖ)
Chāiṅkāṭha Chaikāṭha (See)

ଚଇଁକିନା—ଦେ. ଅ—ଚଇଁ ଚଇଁ (ଦେଖ)
Chāiṅkinā Chāiṅchāiṅ (See)
ଚଇଁ କରି
ଚଇଁ କରି } ଅନ୍ୟରୂପ
ଚଇଁ ଦସ୍

ଚଇଁଖରା—ଦେ. ବି—ମଧ୍ୟାହ୍ନ ପୂର୍ବେ ବା ପରେ ହେବା ପ୍ରବଳ ଖରା; ଚଇଁ
Chāiṅkharā ଚଇଁଆ ରୌଦ୍ର—Very hot rays of the sun.

ଚଇଁଖସିବା—ଦେ. ବି—ଭୟରେ ଛାତିଥ ପଶିବା; ହୃଦୟରେ ହଠାତ୍
Chāiṅkhasibā ଭୟଜାତ ହେବା—Becoming terrified.
चमकेयाओया (ଯଥା—ସେଠାରେ ହାଣକାଟ ହେଉଥିବା ଖବର
चौंकना ଶୁଣି ତାର ବା ତାଠଉଁ ଚଇଁ ଖସିଲା ।)
ଚଇଁ ଖସିପଡ଼ିବା } ଅନ୍ୟରୂପ
ଚଇଁ ଖସିଯିବା

ଚଇଁଚଇଁ—ଦେ. ଅ—୧ । ତୀକ୍ଷ୍ଣ-ସ୍ପର୍ଶ-ଅନୁଭୂତି ସହିତ—
Chāiṅchāiṅ 1 A sharp biting sensation.
୨ । ତଅଁ ବା ନିଆଁ ଖୁଣ୍ଟା ଦେହରେ ମାଡ଼ି ଦେଲେ ଯେଉଁ ଅନୁଭୂତି ହୁଏ ସେହିପରି—2. A burning sensation in the body ( when touched with a searing rod).
୩ । ଦେହରେ ଛୁଞ୍ଚି ଫୋଡ଼ି ହୋଇ ଗଲେ ଯେଉଁ କଷ୍ଟ ଅନୁଭୂତ ହୁଏ—3 The pang of a pin pricking the body.
୪ । ଶୀଘ୍ର ଶୀଘ୍ର—
4 Repeatedly; in quick succession.
୫ । ଘନ ଘନ ଦେହ ଭୋଳ ଖିଲ୍ଲ ହେବାର ଅନୁଭୂତି ସହିତ—5. With a feeling of repeated momentary pangs in the system (as by pin-prick or pricking with a fire brand. )
୬ । ତାତିଲା ଲୁହା ଉପରେ ବା ତାତିଲା ହାଣ୍ଡିରେ ଟୋପା ଟୋପା ପାଣି ପଡ଼ିବାର ଶବ୍ଦ; ଚେଁଚେଁ ଶବ୍ଦ—6. Sound produced by drops of water falling on a red-hot metal or earthen pot.

ଚଇଁପଖାଳ—ଦେ· ବି—ଭାତ ଗରମ ଥାଉଁ ଥାଉଁ ସେଥିରେ ପାଣି
Chāiṅpakhāḷa ଢଳାଯାଇଥିବା ପଖାଳ; ଯେଉଁ ପଖାଳ
( ବାସୀ ପଖାଳ—ବିପରୀତ ) ଭିତରୁ ଉଷୁମ ଛାଡ଼ି ନ ଥାଏ—
1 Boiled rice mixed with water while still hot and served while still hot.
୨ । ସଜ ପଖାଳ—2. Freshly watered boiled rice.

ଚଇଁମାରିବା—ଦେ. କ୍ରି—୧ । ଧପ୍ପାମାରିବା—
Chāiṅmāribā 1 To practise cheating.
୨ । ଆଖି ଆଗରୁ କୌଣସି ପଦାର୍ଥ ଚୋରି କରି ନେବା—
2. To steal a thing before one's eyes; to pilfer.

ଚଇଁ ମୁଗ—ଦେ. ବି—ଝାଙ୍ଗିମୁଗ; ଖରାଦିନେ ପାଚିବା ଏକଜାତୀୟ କଳିଆ
Chāiṅ muga ମୁଗ—A leguminous seed harvested in summer.
[ ଦ୍ର—ଏହା ମାଘ ମାସରେ ବୁଣା ହୋଇ ଗ୍ରୀଷ୍ମ ଋତୁରେ ଅମଳ ହୁଏ । ଏହାର ବର୍ଣ୍ଣ ସବୁଜ । ]

ଚଇକଚିକା—ଦେ. ବି. ( ସଂ. ଚାକଚକ୍ୟ )—
Chāikichikā ୧ । ବେଶଭୂଷାର ଆଡ଼ମ୍ବର—
1. Foppishness; gaudiness in dress.
୨ । ଉଜ୍ଜ୍ୱଳତା—2. Glitter; dazzle
ଦେ. ବିଣ—୧ । ଚାକଚକ୍ୟ ବା ଆଡ଼ମ୍ବରପୂର୍ଣ୍ଣ—
1. Foppish; gaudy.
୨ । ଉଜ୍ଜ୍ୱଳ—2. Bright; glittering; dazzling.

ଚଇନାପାମ୍—ବୈଦେ. ବି. ( ଇଂ. ଚଇନା=ଚୀନ୍‌ଦେଶ+ପାମ୍=
Chāināpām ତାଳଗଛ )—ବିଦେଶାଗତ ତାଳ ଓ ଖଜୁରିଜାତୀୟ ବୃକ୍ଷବିଶେଷ—China palm; Phoenix Rotundipotea.

ସାଧାରଣ ଲୋକେ ଅପଢ଼ ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ, ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାର' ନ ମିଳିଲେ 'ଗାଡ଼' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ'କୁ ନ ପାଇଲେ 'ବନ୍ଧୂ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଚଉଁ**—ଦେ. ଅ. ( ଧ୍ୱନ୍ୟନୁକରଣ )—୧ । ହଠାତ୍ ତାତିଲା ଧାତୁଖଣ୍ଡ
Chaun̐ ଦେହରେ ମାଡ଼ିବାର ଅନୁଭୂତି—1. Sensation felt when the body is touched with a piece of hot metal.
୨ । ହଠାତ୍—2. Suddenly.
୩ । ହଠାତ୍ ଭୟ ପାଇ ଚମକିବା—3. Being startled suddenly.
୪ । ହଠାତ୍ ଭୟ; ଚମକା—4. Sudden fear or fright.

**ଚଉଁକିନା**—ଦେ. ଅ—ଚଇଁଚଇଁ ( ଦେଖ )
Chaun̐kinā Chain̐chain̐ ( See )
ଚଉଁକିରି, ଚଉଁକିର, ଚଉଁଦିସ୍ } ଅନ୍ୟରୂପ

**ଚଉଁଚଉଁ**—ଦେ. ଅ—୧ । ଚଇଁଚଇଁ ( ଦେଖ )
Chaun̐chaun̐ 1. Chain̐chain̐ ( See )
୨ । ଚଉଁଚଉଁଆ (ଦେଖ)
2. Chaun̐chaun̐ā (See).

**ଚଉଁଚଉଁଆଁ**—ଦେ. ଅ—୧ । ନିଶୂନ୍‌ଆ ହେବାଯୋଗୁଁ ଡର ବା ଭୟ—
Chaun̐chaun̐ān̐ 1. Fear on being lonely.
୨ । ନିର୍ଜନତା ଯୋଗୁଁ ଭୟପ୍ରଦ (ସ୍ଥାନ)—
2. (a place) Fearful on account of being lonely.
୩ । ନିଶୂନ୍‌ଆ; ନିର୍ଜନ—3. Lonely; lonesome.
୪ । କୌଣସି ବସ୍ତୁ ହଠାତ୍ ଉପସ୍ଥିତ ହେବା ଦେଖି ଭୟ—
4. Startled or frightened on account of sudden appearance of a thing.

**ଚଉଁରୀ**—ପ୍ରାଦେ (ସମ୍ବଲପୁର) ବି—ଚଉଁରୀ ( ଦେଖ )—
Chaun̐ri Chaun̐ri ( See )

**ଚଉଁରୀମୁଠି**—ପ୍ରାଦେ (ମେଦିନୀପୁର) ବି—ଚଉଁରୀଭୁଣ୍ଡି ( ଦେଖ )—
Chaun̐rimuṭhi Chaun̐ribhuṇḍi ( See )

**ଚଉଁରୀମୁଣ୍ଡି**—ପ୍ରାଦେ (ସମ୍ବଲପୁର) ବି—ଚଉଁରୀଭୁଣ୍ଡି ( ଦେଖ )—
Chaun̐rimuṇḍi Chaun̐ribhuṇḍi ( See )

**ଚାଉର୍‌ପିସାନ୍**—ପ୍ରାଦେ (ବସ୍ତର) ବି—ଚାଉଳଚୂନା—
Chāurpisān The powder of rice.

**ଚାଉର**—ଗ୍ରା. ବି (ଅଶୁଦ୍ଧ ଉଚ୍ଚାରଣ)—ଚାଉଳ ( ଦେଖ )—
Chāura Chāuḷa ( See )
[ ଦ୍ର—ବାଲେଶ୍ୱର, କଟକ, ପୁରୀ ଆଦି ଜିଲ୍ଲାର ଲୋକେ 'ଚାଉଳ' ସ୍ଥଳରେ 'ଚାଉର' ଉଚ୍ଚାରଣ କରନ୍ତି; ଏହିପରି 'ନେଉର', 'ଖେଉର' ଇତ୍ୟାଦି ମଧ୍ୟ କହନ୍ତି । ]

**ଚାଉଳ୍**—ପ୍ରାଦେ (ସମ୍ବଲପୁର, ମେଦିନୀପୁର; ଭୁଲ. ହି. ଚାୱଲ୍; ବ. ଚାଲ୍)—
Chāul ବି—ଚାଉଳ; ତଣ୍ଡୁଳ—Rice.

**ଚାଉଳ୍‌ଚୀ**—ପ୍ରାଦେ. (ପୁରୀ) ବି. ସ୍ତ୍ରୀ—ଚାଉଳ୍‌ତୀ ( ଦେଖ )—
Chāuḷchi Chāuḷti ( See )

**ଚାଉଳ୍‌ତୀ**—ପ୍ରାଦେ (ପୁରୀ) ବି. ସ୍ତ୍ରୀ—ଯେଉଁ ସ୍ତ୍ରୀ ଧାନ କିଣି ଅଣି ଚାଉଳ
Chāuḷti କୁଟି ବେପାର କରେ—The woman whose profession is to purchase paddy, husk it and sell the rice so produced on profit.

**ଚାଉଳ୍‌ପୋକ୍**—ପ୍ରାଦେ (ସମ୍ବଲପୁର) ବି—ଚାଉଳିଆ ପୋକ ( ଦେଖ )—
Chāulpok Chāuḷiā poka (See)

**ଚାଉଳ**—ଦେ. ବି ( ସଂ. ତଣ୍ଡୁଳ; ଚାଳନାଦ୍ୱାରା ପରିଷ୍କୃତ ହେବାରୁ କି ? )
Chāuḷa ୧ । ତଣ୍ଡୁଳ—1. Rice; Oryza Sativa.
চাউল, চাল [ ଦ୍ର—ଧାନର ପ୍ରକାରଭେଦରେ ଚାଉଳ
প্রাচীন চালু ବହୁବିଧ ଜାତୀୟ ହୁଏ । ଧାନରୁ ଚାଉଳ ପ୍ରସ୍ତୁତ
चावल, चाबल କରିବା ପ୍ରଣାଳୀଭେଦରେ ଏହା ପ୍ରଧାନତଃ ଅରୁଆ ଓ ଉଷୁନା ଏହିପରି ଦୁଇପ୍ରକାର । ]
୨ । ତୁଷ ବା ଚୋପା କଢ଼ା ହୋଇଥିବା କେତେକ ଶସ୍ୟ-ଜାତ—2. Husked seed of certain corns
( ଯଥା—ବାଉଁଶ ଚାଉଳ, ଶୁଆଁ ଚାଉଳ, କୋଦୁଅ ଚାଉଳ । )
୩ । ଏକ ରତିର ଅଷ୍ଟମାଂଶ (ଓଜନ)—
3. A standard of weight; $\frac{1}{8}$ of a grain.

**ଚାଉଳ ଧରିବା**—ଦେ. କ୍ରି—ଚାଉଳ ମହାଜନ କୃଷକ ଓ ଛୋଟ ବେପା-
Chāuḷa dhariba ରିଙ୍କଠାରୁ ବାଣିଜ୍ୟାର୍ଥ ବହୁପରିମାଣରେ
চালধরা ଚାଉଳ କ୍ରୟ କରିବା—To purchase rice from producers or petty traders in large quantities for commerce.

**ଚାଉଳଧୁଆ**—ଦେ. ବି—୧ । ଯେଉଁ ପାଚିଆ ବା ବାଉଁଶିଆରେ ଚାଉଳ
Chāuḷadhuā ରଖି ଧୌତ କରାଯାଏ—1. A basket used
ধুচনী for washing rice.
୨ । ଗୁଳ୍ମବିଶେଷ—2 A kind of bush; Glycosmis Arborea; Uveria.
[ ଦ୍ର—ଏହା ନଈମୁହାଣର ପଟୁମାଟିରେ ଉତ୍ତମରୂପେ ବଢ଼େ; ଉଚ୍ଚତାରେ ୫।୬ ଫୁଟ ହୁଏ । ଲୋକେ ଏହାର କୋଳ ଖାଆନ୍ତି । ]

**ଚାଉଳଧୁଆପାଣି**—ଦେ. ବି—ତଣ୍ଡୁଳୋଦକ; ଯେଉଁ ଜଳରେ ଚାଉଳ
Chāuḷadhuāpāṇi ମଳିତା ହୋଇ ଧୁଆ ହେବାରୁ ତାହାର
চাল ধোয়ান জল, ଅଂଶ ବିଦ୍ୟମାନ ଥାଏ—Water left
চেলুনি; চোঁয়ানি after washing rice in it.

**ଚାଉଳ ପକାଇବା**—ଦେ. କ୍ରି—୧ । ଅନ୍ନ ପ୍ରସ୍ତୁତ କରିବା ସକାଶେ
Chāuḷa pakāibā ଚୁଲିରେ ବସିଥିବା ପାଣି ହାଣ୍ଡିରେ ଧୁଆ
চালফেলা ଚାଉଳକୁ ଛାଡ଼ିଦେବା—1. To put washed
चावलडालना rice into the water of a pot boiling over fire in order to prepare boiled rice for meal.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଏ | ଢ଼ | ଝ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଞ | ନ୍ |

୨ । (ଲକ୍ଷଣାର୍ଥ) କୌଣସି କନ୍ୟା କୌଣସି ନିର୍ଦ୍ଦିଷ୍ଟ ପୁରୁଷକୁ ବା ନିର୍ଦ୍ଦିଷ୍ଟ ପରିବାରସ୍ଥ ସନ୍ତାନକୁ ବିବାହ କରିବ ବୋଲି ପୂର୍ବରୁ ପ୍ରଜାପତିଙ୍କଦ୍ୱାରା ନିର୍ଦ୍ଦିଷ୍ଟ ହୋଇଥିବା—
2. (figurative) ( a bride ) To have been ordained by Prajapati to be the bride of (so and so male).
( ଯଥା—ଅମୁକ (କନ୍ୟା) ଅମୁକ (ବର) ଙ୍କ ଘରେ ତ ଚାଉଳ ପକାଇଥିଲି, ସେଠେଇଁ ବିଭା ନ ହୋଇ ଆଉ କାହାକୁ ବିଭା ହୋଇ ଥାଆନ୍ତା । )

**ଚାଉଳ ବାଛିବା**—ଦେ. କ୍ରି.—ଅନ୍ନ ପାକାର୍ଥ ଚାଉଳରୁ ଧାନ, ଗୋଡ଼ି ଆଦି
Chāuḷa bāchhibā କାଢ଼ି ପରିଷ୍କାର କରିବା—To pick
চালবাছা out foreign matters or particles from
**चावलछाटना** a quantity of rice before boiling it for food.

**ଚାଉଳଭଜା**—ଦେ ବି.—(ସଂ. ତଣ୍ଡୁଳ + ଭର୍ଜନ)—୧ । ଭଜା ହୋଇ-
Chāuḷabhajā ଥିବା ଚାଉଳ; ଭୃଷ୍ଟ ତଣ୍ଡୁଳ; ମୁଢ଼ି—
চালভাজা 1. Fried rice.
**चावल भुनना** ୨ । ହାଣ୍ଡି ମଧ୍ୟରେ ବାଲି ବସାଇ ସେହି ବାଲିସ୍ତର ଉପରେ ଚାଉଳକୁ ଖଡ଼ିକାମୁଠାରେ ଖରଡ଼ି ଖରଡ଼ି ଅଗ୍ନି-ତ ପରେ ଭାଜିବା ପ୍ରକ୍ରିୟା—2 The operation of frying rice on sand in a pot over fire.

**ଚାଉଳଭାଜିଲି ଝାଇଁ**—ଦେ. ପ୍ରବଚନ—ଚାଉଳଭଜା ପ୍ରସ୍ତୁତ କରିବା
Chāuḷa bhājili jhāiṅ ଉଦ୍ଦେଶ୍ୟରେ ଚାଉଳ ଓ ବାଲି ଖଡ଼ିକାମୁଠାରେ ଖରଡ଼ିବା ବେଳେ ଖଡ଼ିକାମୁଠାର ମୂଳ, ଚାଉଳ, ବାଲି ଓ ହାଣ୍ଡିର ପରସ୍ପର ଘର୍ଷଣରୁ ଜାତ ଝାଇଁ ଝାଇଁ ଶବ୍ଦ ।

**ଚାଉଳ ମୁଗୁରା**—ଦେ. ବି.—(ଏହାର ମଞ୍ଜି ଚାଉଳ ପରି ଥିବାରୁ) ବନ୍ୟ
Chāuḷa mugurā ତରୁବିଶେଷ—A tree growing in
চালমুগুরা the forest; Tarak Togenus Kurzii.
[ ଦ୍ର—ଶ୍ରୀହଟ୍ଟ, ଚଟ୍ଟଗ୍ରାମ ଓ ବ୍ରହ୍ମଦେଶର ଜଙ୍ଗଲମାନଙ୍କରେ ଏ ଗଛ ଜନ୍ମେ । ଏହାର ପତ୍ର ମସୃଣ ଓ ଫଳ ଗୋଲ । ଏହାର ମଞ୍ଜିରୁ ଚର୍ମରୋଗନାଶକ ଏକପ୍ରକାର ତୈଳ ପ୍ରସ୍ତୁତ ହୁଏ । ]

**ଚାଉଳି**—ଦେ. ବିଣ—ଚାଉଳରୁ ପ୍ରସ୍ତୁତ ( ମଦ )—
Chāuḷi ( wine ) Made from rice.

**ଚାଉଳିଆ**—ଦେ. ବି—୧ । ପିଜୁଳି—
Chāuḷiā 1 Guava.
পিআরা ୨ । ( ସଂ. ତଣ୍ଡୁଳ = ରେଖା ପରି ମାଛ ) ଚିଲିକାରେ
**अमरूद; अमरुत** ମିଳିବା ଏକପ୍ରକାର ମାଛ—
2. A kind of fish ( in Chilka ).
୩ । ବଡ଼ ବଡ଼ ଜାମୁକୋଳି ( ନକେ )—
3. Large black-berries.
୪ । ଚାଉଳବ୍ୟବସାୟୀ ମହାଜନ—
4. A rice merchant.
ଦେ. ବିଣ—୧ । ଚାଉଳବ୍ୟବସାୟୀ—
1 Trading in rice.
( ଯଥା—ଚାଉଳିଆ ମହାଜନ । )
୨ । ଚାଉଳ ପରି ଟାଣୁଆ ( ବସ୍ତୁ )—
2. Hard as grains of rice.
୩ । ପାଟିରେ ଚାଉଳ ଚୋବାଉଥିବା ଅବସ୍ଥାରେ ଉଚ୍ଚାରିତ ହେବା ଭଳି—3. Uttered as if the speaker is chewing a mouthful of rice.
୪ । ଚାଉଳସମ୍ବନ୍ଧୀୟ—
4. Relating to rice.

**ଚାଉଳିଆ କେଳା**—ଦେ.ବି—ଏକଜାତୀୟ କେଳା—
Chāuḷiā keḷā A wandering tribe.
[ ଦ୍ର—ଏ କେଳାଙ୍କ ସ୍ତ୍ରୀମାନେ ଅଳଙ୍କାର ମାଳିବାରେ ବ୍ୟବହୃତ ହେଉଥିବା ବେଣାଚେରର ମୁଠା ଓ ତାଳପତ୍ର ଝୁମ୍ପା ପ୍ରସ୍ତୁତ କରି ବିକ୍ରୟ କରନ୍ତି । ]

**ଚାଉଳିଆଗଞ୍ଜ**—ଦେ. ବି—୧ । ଚାଉଳ ବେପାରର ଅଡ୍ଡା—
Chāuḷiāgañja 1. A mart of rice trade.
( ଚାଉଳିଆଗଣ୍ଡ—ଅନ୍ୟରୂପ ) ୨ । ( ନାମ ) କଟକ ରେଲଷ୍ଟେସନ ନିକଟବର୍ତ୍ତୀ ବୃହତ୍ ଗ୍ରାମବିଶେଷ—2. A large village near the Cuttack station B. N. Ry.
[ ଦ୍ର—ଏହି ଗ୍ରାମରେ ବର୍ତ୍ତମାନ ବହୁତ ପାଠାଣ ବାସ କରନ୍ତି । ଏହି ମଉଜାରେ ମରହଟ୍ଟା ଅମଳର ସୈନିକ ଘୋଡ଼ା ଅସ୍ତବଲ ଅଦ୍ୟାପି ଅଛି; ଏହି ଘୋଡ଼ା ଅସ୍ତବଲ ବର୍ତ୍ତମାନ ସରକାରୀ ଅଧସ୍ତନ ପୁଲିସଙ୍କ ବସାଘର ଓ ଥାନାରୂପେ ବ୍ୟବହୃତ ହେଉଅଛି । ପୂର୍ବେ ଏ ଗ୍ରାମସଂଲଗ୍ନ ପଡ଼ିଆରେ ଘୋଡ଼ଦଉଡ଼ ହେଉଥିଲା, କିନ୍ତୁ ବର୍ତ୍ତମାନ ସେଠାରେ କଟକ ଷ୍ଟେସନ ଓ ରେଭେନ୍ସା କଲେଜ ଭବନ ନିର୍ମିତ ହୋଇଅଛି । ]

**ଚାଉଳିଆ ଗୁଣା**—ଦେ. ବି ( ବର୍ଣ୍ଣିଆଶବ୍ଦ )—ଦୁଇ ଧାଡ଼ି ଗୁଆ ବସା
Chāuḷiā guṇā ହୋଇଥିବା, ମଝିରେ ପଥର ଘସା ଥିବା ଏକପ୍ରକାର ଗୋଲ ଗୁଣା; ଯାଉଁଳି ଗୁଣା—
A kind of nose ring.

**ଚାଉଳିଆ ପୋକ**—ଦେ.ବି—ପୁରୁଣା ଚାଉଳରେ ହେବା ଧଳା ଲମ୍ବ କୀଟ-
Chāuḷiā poka ବିଶେଷ—A kind of white in-
চেলেপোকা sects infesting rice kept for some time; Calandra.

**ଚାଉଳି କୋକଲି**—ଦେ. ବି—ଏକ ପ୍ରକାର କୋକଲି ମାଛ;
Chāuḷi kokali ( କୋକଲି ତଳେ ନୋଟ ଦେଖ )—
A kind of fish (see notes under 'Kokali')

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଆଁଖି' ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ

**ଚାଉଳେଇ ଚାଉଳେଇ କଥା କହିବା**—ଦେ. କ୍ରି—
Chāulei chāulei kathā kahibā ଦସ୍ତେଷ୍ଟ କଥା କହିବା; ଅସ୍ପଷ୍ଟ ଭାବରେ କଥା କହିବା ( ପାଟିରେ ଚାଉଳ ଚୋବାଇ ଚୋବାଇ କଥା କହିଲେ କଥା ଯେପରି ଅସ୍ପଷ୍ଟ ହୁଏ, ସେହିପରି କହିବା—To speak indistinctly and confusedly (as if speaking while chewing rice).

**ଚାଁବର**—ପ୍ରାଦେ. ( ବସ୍ତର; ଭୁଲ. ହି. ଚଁବର )—
Chāñbara ଚଅଁର ( ଦେଖ )
Chaañra ( See )

**ଚାକ୍**—ପ୍ରାଦେ. ( ମେଦିନୀପୁର ) ବି. ( ସଂ. ଚକ୍ର; ଭୁଲ. ଏହି ଅର୍ଥରେ ବ. ଚାକ୍ )—୧ । ମଧୁଚକ୍ର; ମହୁଫେଣା; ମଧୁମକ୍ଷିକାର ଚକ୍ରାକାର ବସା—1 Bee hive.
Chāk
୨ । ( ସିଂହଭୂମ ) ବି—ଶଗଡ଼ର ଚକ—
2. The wheel of a cart.

**ଚାକଚକ୍ୟ**—ସଂ. ବି. ( ଚକ୍ ଧାତୁ=ତୃପ୍ତ ହେବା; ଦ୍ୱିତ୍ୱ; ଚକଚକ ଧାତୁ +ଭାବ. ଅ )—ବର୍ଣ୍ଣର ଉଜ୍ଜ୍ୱଳତା; ଦୀପ୍ତି; ଚକଚକ—Brightness; glitter; brilliance.
Chākachakya

**ଚାକଚକ୍ୟବନ୍ତ**—ଦେ. ବିଣ—ଚକଚକିଆ; ଦୀପ୍ତିଶାଳୀ—
Chākachakyabanta Bright; dazzling.
ଚାକଚକ୍ୟବନ୍ତ ସୁନ୍ଦର ଗାଲେ
ଚୁମ୍ବନ ଯେବେ ମୁଁ କାମ ଅନଳେ । କବିସୂର୍ଯ୍ୟ. କବିତା ।

**ଚାକଚିକ୍ୟ**—ସଂ. ବି—୧ । ଚାକଚକ୍ୟ ( ଦେଖ )
Chākachikya 1. Chākachakya ( See )
୨ । ମାୟା—2. Illusion.

**ଚା କପ୍**—ବୈଦେ. ବି. ( ଚୀନ ଭାଷା. ଚା ଓ ଇଂ. କପ୍ )—
Chā kap ଚାହା ପାନ କରିବା ନିମନ୍ତେ ସାଧାରଣତଃ ବ୍ୟବହୃତ ଚିନା ମାଟିର ଗିନା ବା ପିଆଲା—Tea cup.
चा कप्
**চা কাপ**

**ଚାକର**—ବୈଦେ. ବି ( ଫା. ଚାକର)—ଦାସ; ଭୃତ୍ୟ; ସେବକ—
Chākara Servant; attendant.
चाकर ଚାକର କୁହେ କୁକୁର—ପ୍ରବାଦ ।
**চাকর** [ଦ୍ର—ଚାକରର ମୌଳିକ ଅର୍ଥ ପ୍ରଭୁଙ୍କର ସେବାକାରୀ ଦରମାଖିଆ ଭୃତ୍ୟ କିନ୍ତୁ ବର୍ତ୍ତମାନ ଏହା କୌଣସି ବେତନଭୋଗୀ ବ୍ୟକ୍ତି ପ୍ରତି ଖଟା ଯାଉଅଛି । ପ୍ରଧାନ ମନ୍ତ୍ରୀଙ୍କଠାରୁ ଆରମ୍ଭ କରି ଚପରାସୀ ପର୍ଯ୍ୟନ୍ତ ଓ ଦରମାଖିଆ ଘାଟ ସେବକ ଭୃତ୍ୟ ପର୍ଯ୍ୟନ୍ତ ସମସ୍ତଙ୍କୁ ଚାକର ବୋଲି ଯାଉଅଛି । ]
(ଚାକରିଆ—ଅନ୍ୟରୂପ)
ଚାକରାଣୀ } ସ୍ତ୍ରୀ.
ଚାକରିଆଣୀ }

**ଚା-କର**—ଦେ.ବି. (ଚୀନ୍.ଚା+ସଂ ପ୍ରତ୍ୟୟ.କର)—ଚା ବଗିଚାର ମାଲିକ—
Chā-kara A tea planter.
चाकर

**ଚାକରନୌକର**—ବୈଦେ. (ଫା)—ବି. ( ଏକାର୍ଥକ ସହଚର; ଫା. ଚାକର+ନୌକର)—
Chākaranaukara ଚାକରବାକର (ଦେଖ)
**চাকরনৌকর**
(ଚାକରନଫର—ଅନ୍ୟରୂପ) Chākarabākara (See)

**ଚାକରବାକର**—ଦେ. ବି. (ଧ୍ୱନ୍ୟନୁକାରୀ ନିରର୍ଥକ ଦ୍ୱିତୀୟ ସହଚର)—
Chākarabākara ଭୃତ୍ୟାଦି, ଅନୁଚରବର୍ଗ—
चाकरबाकर Servants; attendants; followers.
**চাকরনৌকর** ଲୁଚା ଚାକରବାକର ସମସ୍ତଙ୍କୁ ହାତ କରି × ପୋଷ୍ୟ ପୁତ୍ର ବୋଲି ସରକାରରୁ ବାହାଲ୍ ହୋଇ ଅଛନ୍ତି—ଫକୀରମୋହନ—ଗଳ୍ପସ୍ୱଳ୍ପ ।

**ଚାକରାଣୀ**—ଦେ.ବି. ସ୍ତ୍ରୀ (ଫା ଚାକର୍+ଓଡ଼ିଆ ସ୍ତ୍ରୀ ପ୍ରତ୍ୟୟ ଆଣୀ=ଦାସୀ)—
Chākarāṇi Maid servant.
चाकरानी
**চাকরানী**

**ଚାକରାନ୍**—ବୈଦେ. ବି. (ଫା.)—ଭୃତ୍ୟବର୍ଗ—
Chākarān A body of attendants.
चाकरन ବିଣ.—ଚାକରମାନଙ୍କୁ ଦରମା ପରିବର୍ତ୍ତେ ପ୍ରଦତ୍ତ;
**চাকরান** (ଜାଗିର)—(grants of land) Given to servants in lieu of pay.

**ଚାକରାନଜାଗିରି**—ବୈଦେ. ବି ( ଫା. ଚାକରାନ୍+ଜାଗୀର )—
Chākarānjāgiri ଭୃତ୍ୟମାନଙ୍କୁ ଦରମା ପରିବର୍ତ୍ତେ ଦିଆଯାଇଥିବା ଭୂମି; ଚାକରଙ୍କ ଖଞ୍ଜାବାଡ଼ି—
चाकरानजायगीर Service grants.
**চাকরানযাগীর**

**ଚାକରି (ଇତ୍ୟାଦି)**—ଦେ. ବି—ଚାକିରି ଇତ୍ୟାଦି (ଦେଖ)
Chākari (etc) Chākiri (etc) (See).
ଇହିଲେ ଛଡ଼ା ରୂପ ଙ୍କ ଚାକରି—କୃଷ୍ଣସିଂହ. ମହାଭାରତ. ବନ ।

**ଚା କରିବା**—ଦେ. କ୍ରି—ଗରମ ଜଳରେ ଚାହା ସିଝ କରି ପାନୀୟ ପ୍ରସ୍ତୁତ କରିବା—To make or prepare tea.
Chā kariba

**ଚାକଳେଇବା**—ଦେ. କ୍ରି—ଚାକୁଳେଇବା (ଦେଖ)
Chākaḷeibā Chākuḷeibā (See).

**ଚାକି (ଇତ୍ୟାଦି)**—ଦେ. ବି—ଚାଖି ଇତ୍ୟାଦି (ଦେଖ)
Chāki etc) Chākhi (etc) (See).
ଚାଉଳ ପୀଇବାରେ ଏ କ ଚାକି—କବିସୂର୍ଯ୍ୟ. ସଙ୍ଗୀତ ।

**ଚାକିରି**—ବୈଦେ. ବି (ଫା. ଚାକ୍‌ରୀ)—୧ । ଭୃତ୍ୟର କର୍ମ—
Chākiri 1. Post of a servant.
चाकुरी, चाकरी ୨ । ଦାସତ୍ୱ; ଭୃତ୍ୟପଣିଆ—
**চাকরী** 2. Service under a master.
୩ । ନିର୍ଦ୍ଦିଷ୍ଟ ବେତନ ପାଇଁ କରାଯିବା କର୍ମ—
3 Any service for pay salaried job.

**ଚାକିରିଆ**—ଦେ. ବି. ପୁଂ (ଫା. ଚାକର୍)—ଭୃତ୍ୟ; ଦାସ; ଚାକର—
Chākiriā Servant.
चाकरे
**চাকর**
(ଚାକିରିଆଣୀ—ସ୍ତ୍ରୀ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ | ଉଅ | ଝ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଁଡ୍ୟ | ଇଅ | ଔ | ନ୍ତୁ |

ଚାକିରି ଉଠାଇବା—ଦେ. କ୍ରି | ୧ । ଚାକିରି ତୁଲାଇବା (ଦେଖ)
Chākiriuṭhāibā 1. Chākiri tulāibā (See).
୨ । ଚାକିରିରୁ ବରଖାସ୍ତ କରାଇବା—
2. To cause to dismiss a servant.

ଚାକିରି କରିବା—ଦେ. କ୍ରି—୧ । ପ୍ରଭୁର ସେବା କରିବା—
Chākiri karibā 1 To serve or attend on a master
চাকুরিকরা ୨ । ଦାସତ୍ୱ ଗ୍ରହଣ କରିବା—
**चाकरीकरना** 2. To take or accept service under a person

ଚାକିରି ଛଡ଼ାଇବା—ଦେ. କ୍ରି—ଭୃତ୍ୟଙ୍କୁ ବରଖାସ୍ତ ବା ଅନ୍ତର କରିବା—
Chākiri chhardāibā To dismiss a servant.
চাকুরি ছাড়ান
**चाकरीछुड़ाना**

ଚାକିରି ଛାଡ଼ିବା—ଦେ. କ୍ରି—ଦାସତ୍ୱରୁ ନିଜେ ଅନ୍ତର ହେବା—
Chākiri chhārdibā To give up or resign a service.
চাকুরিছাড়া
**चाकरीछोड़ना**

ଚାକିରି ଜୁଟିବା—ଦେ. ବି—କର୍ମପ୍ରାପ୍ତି ; ଚାକିରି ମିଳିବା—Employment; engagement in service; getting a job.
Chākiri juṭibā
চাকুরীজুটা
**चाकरीजुटना**

ଚାକିରି ତୁଲାଇବା—ଦେ. କ୍ରି—ଦାସରୂପେ ଆପଣା ଉପରେ ନ୍ୟସ୍ତ କାର୍ଯ୍ୟ ସମ୍ପାଦନ କରିବା—To discharge one's responsibility as a servant; to discharge the routine duties of an office.
Chākiri tulāibā
চাকারী বাজান
**चाकरी बजाना**

ଚାକିରି ଦେଖିବା—ଦେ. କ୍ରି—୧ । ଆପଣା ପାଇଁ କିମ୍ବା ଅନ୍ୟ ନିମନ୍ତେ ଉପଯୁକ୍ତ ଚାକିରି ବା କର୍ମର ଅନ୍ୱେଷଣ କରିବା—1. To be on the lookout for a suitable job or post or service for one's self or another.
Chākiri dekhibā
চাকুরিদেখা
**चाकरी देखना**
୨ । ଖୋଜି ଉପଯୁକ୍ତ ଚାକିରି ଠିକଣା କରିବା—
2. To find out a suitable job or post.
୩ । ଚାକିରିର ସୁଖ ଦୁଃଖ ଅନୁଭବ କରିବା—
3 To have or gain experience of actual service under another.

ଚାକିରି ଦେବା—ଦେ. କ୍ରି—୧ । ଚାକରରୂପେ ନିଯୁକ୍ତ କରିବା—
Chākiri debā 1. To engage a man as servant.
চাকুরিদেওয়া ୨ । କୌଣସି ସେବାରେ ନିଯୁକ୍ତ ବା ମୁକରର କରିବା—2. To appoint a person in a post.
**चाकरी देना**

ଚାକିରି ନେବା—ଦେ କ୍ରି—କୌଣସି ବ୍ୟକ୍ତିଙ୍କୁ ତାହାର ଚାକିରିରୁ ଛଡ଼ାଇ ଆପେ ଉକ୍ତ ଚାକିରିରେ ନିଯୁକ୍ତ ହେବା—To take from one his post and get one's self appointed in his place.
Chākiri nebā
চাকুরি নেওআ
**चकरी लेना**

ଚାକିରି ପାଇବା—ଦେ. କ୍ରି—କୌଣସି ଚାକିରିରେ ମୁକରର ହେବା—
Chākiri pāibā To get a service; to be appointed in a post.
চাকুরি পাওয়া
**चाकरी पाना**

ଚାକିରି ବଜାଇବା—ଦେ. କ୍ରି—ଚାକିରି ତୁଲାଇବା ( ଦେଖ )
Chākiri bajāibā Chākiri tulāibā ( See )

ଚାକିରି ବାକିରି—ଦେ. ବି. ( ଧ୍ୱନ୍ୟନୁକାରୀ ନିରର୍ଥକ ୨ୟ ସହଚର )—
Chākiri bākiri ଚାକିରି ଆଦି; ଚାକିରି ବା ସେହିପରି ଆଉ କିଛି ଅବଲମ୍ବନ—Services etc; service or some such occupation.
চাকরী বাকরী
**चाकरी नौकरी**

ଚାକିରି ରହିବା—ଦେ. କ୍ରି—୧ । କୌଣସି ଚାକିରି ସ୍ଥାୟୀ ହେବା—
Chākiri rahibā 1 The state of a post being permanent.
( ଯଥା—ଭଲ କରି କାମ ନ କଲେ ମୋର ଚାକିରି ରହିବ ନାହିଁ । )
୨ । କିଛିକାଳ ପାଇଁ ଚାକିରି ସ୍ଥିର ହେବା—
2 The continuance of a service.
ଦେ. କ୍ରି—( କୌଣସି ବ୍ୟକ୍ତି ) ବେତନ ସକାଶେ ଅନ୍ୟର କାର୍ଯ୍ୟ କରିବା; ଚାକିରି କରିବା—To serve; to work for remuneration
( ଯଥା—ମୁଁ ଆଜିକି ଚାରି ମାସ ହେଲା କଟକରେ ଚାକିରି ରହିଛି । )

ଚାକୁ—ବୈଦେ. ବି. ( ତୁର୍କୀ. ଚାକୁ )—
Chāku ୧ । ଛୋଟ ଛୁରୀ; କଲମତରାସ; ଚକ୍କୁ; କଲମକଟା ଛୁରୀ—
চাকু 1. Small knife; pen knife.
**चाकु;चक्कु** ଚାକୁରେ କାଟି ତରୁଣୀ ପର
ତର ସଜଡାଇ ଅଶ୍ୱାସି କର—କବିସୂର୍ଯ୍ୟ, କଳଭା ।
୨ । ଯେଉଁ ଛୁରୀର ଦାଢ଼ ବେଣ୍ଟ ଭିତରର ଘରରେ ବୁଜି ହୋଇଯାଏ—2. Clasp knife.

ଚାକୁଚାକୁ—ଦେ. ଅ. (ଧନ୍ୟନୁକରଣ) — ପାଣିଆ ଜିନିଷକୁ ବିରାଡ଼ି କୁକୁର ଆଦି ଜିଭରେ ଚାଟିଲେ ଯେଉଁ ଶବ୍ଦ ହୁଏ—Sound of cats and dogs eating any watery substance by licking.
Chākuchāku
চাক্ চাক্, চুক্ চুক্
**चपड़चपड़**

ଚାକୁ ଛୁରୀ—ଦେ. ବି. (ଏକାର୍ଥକ ଦୁଇ ଭାଷାର ସହଚର ପା. ଚାକୁ ଓ ସଂ. ଛୁରୀ)—ଚାକୁ (ଦେଖ)
Chāku chhurī Chāku (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ସହଜ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବ୍ୟତ୍ୟସ୍ତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ ଗାଢ଼' ଖୋଜିବେ, କୁଥ ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, ଅର୍ଘ୍ୟ ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ଚାକୁଣ୍ଡା**—ଦେ. ବି. (ସଂ. ଚକ୍ରମର୍ଦ୍ଦ)—୧ । କାଞ୍ଚନାଦି ବର୍ଗର ବନ୍ୟ କ୍ଷୁପ Chākuṇḍā ବିଶେଷ; ଯାଦୁଖାଇ ଗଛ—1. Cassia Tora.
(ସଂ. ପର୍ଯ୍ୟାୟ—ଦଦ୍ରୁଘ୍ନ, ଚକ୍ରୀ, ଦଦ୍ରୁମର୍ଦ୍ଦନ, ପ୍ରପୁନାଥ, ପ୍ରପୁନ୍ନାଟ, ଏଡ଼ଗଜ, ଏଳଗଜ, ଚକ୍ରମର୍ଦ୍ଦ, ମେଷଲୋଚନ, ପଦ୍ମାଟ, ପୁନ୍ନାଟ । ଦାଦମାରି, ଚାକୁନ୍ଦେ **पवाँर, फाबार, चकवड़** ଫା. ସଞ୍ଜୀସ୍‌ବୋୟା ମ. ତରବଟା ତେ. ତଗିରଷ; ତା. ଟାମ୍ପୁ ସ. କୁବାଖ୍ୟୋ)
[ ଦ୍ର—ଏହାର ଫୁଲ ହେଣ୍ଡା ହେଣ୍ଡା ହୋଇ ଫୁଟେ, ଫୁଲର ବର୍ଣ୍ଣ ହଳଦିଆ, ମଞ୍ଜି ଚକ୍ରାକାର ଯାଦୁ ମାରିବାରେ ବ୍ୟବହୃତ ହୁଏ । ବୈଦ୍ୟକ ଅନୁସାରେ ଏହା ପିତ୍ତ, ବାୟୁ, କଫ, ଶ୍ୱାସ, ଦଦ୍ରୁ ଓ କୃମିନାଶକ ।]
୨ । କାଶମର୍ଦ୍ଦ (ଦେଖ) 2. Kāśamardda (See)
୩ । ହଳଦି ଚାକୁଣ୍ଡା—3. Delbergia Lanceolaria.
[ ଦ୍ର—ଏହା ନଈ ବା ଝରଣା କୂଳରେ ବା ପାହାଡ଼ରେ ଜନ୍ମେ । ଏ ଗଛ ଅଳ୍ପକାଳ ମଧ୍ୟରେ ମହାଦ୍ରୁମ ଆକାର ଧାରଣ କରେ । ଏହାର ପତ୍ର ଚାକୁଣ୍ଡା ଗଛର ପତ୍ର ପରି । ଏହାର ଫୁଲ ନାଲି ଏବଂ କେଶରଯୁକ୍ତ । କାଠ ଧଳା ମାତ୍ର ମଞ୍ଜ କଳା । ଏ କାଠ କଞ୍ଚା ବେଳେ ମଧ୍ୟ ଜଳେ । ]
ଦେ. ବିଣ.—ଦାର, ସୁତ, ଧନ ଆଦି ସାଂସାରିକ ବିଷୟରେ ଏକାନ୍ତ ଆସକ୍ତ— Tied down or addicted to worldly affairs.

ଦାର ତନୟ ଧନରେ ଯେ ହୁଅନ୍ତି ମୋହି,
ଚାକୁଣ୍ଡା ବୋଲି ତାହାଙ୍କୁ ସଂସାରରେ କହି । ପୀତାମ୍ବର· ନୃସିଂହପୁରାଣ ।

**ଚାକୁଣ୍ଡି**—ଗ୍ରା. ବି.—(ସଂ. କଣ୍ଡୁଲକ)—କାଉଁଚ; ମଳ ବା ବାନ୍ତି ସଙ୍ଗେ Chākuṇḍi ପଡ଼ିବା ବୃହତ୍ କୃମି—Long and large (½ ଫେଁଟୁଳ foot) intestinal worms; large and round tape worms coming out with the faecus and vomiting.

**ଚାକୁନ୍ଦା**—ଦେ. ବି.—ଚାକୁଣ୍ଡା (ଦେଖ)
Chākundā Chākuṇḍā (See)

**ଚା-କୁଲି**—ଦେ. ବି.—ଯେଉଁ ମୂଲିଆମାନେ ନିର୍ଦ୍ଦିଷ୍ଟ କାଳ ପାଇଁ ଏଗ୍ରିମେଣ୍ଟ Chā-kuli ସମ୍ପାଦନ କରି ଚା ବା କ୍ଷେତ୍ରରେ କାର୍ଯ୍ୟ କରିବା ସକାଶେ ନିଯୁକ୍ତ ହୁଅନ୍ତି—Tea-garden coolies.

**ଚାକୁଳିଆ**—ଦେ. ବି. ( ସଂ. ଚକ୍ରକୁଲ୍ୟା )—କୃଷ୍ଣପର୍ଣ୍ଣୀ; ଶିମ୍ବାଦି ବର୍ଗର Chākuliā ବନ୍ୟ କ୍ଷୁଦ୍ରାକାର କ୍ଷୁପବିଶେଷ—Uraria Lagopoides; Hemionites Cordifolia
( ସଂ. ପର୍ଯ୍ୟାୟ—ଚକ୍ରପର୍ଣ୍ଣୀ, ଚକ୍ରକୁଲ୍ୟା, ଅର୍ଦ୍ଧଚନ୍ଦ୍ରିକା; ପୃଥକ୍‌ପର୍ଣ୍ଣୀ, ପୃଶ୍ନିପର୍ଣ୍ଣୀ, ଚିତ୍ରପର୍ଣ୍ଣୀ, କୋଷ୍ଟୁବିନ୍ନା, ସିଂହପୁଚ୍ଛୀ, କଳସୀ; ଧାବନୀଗୁହା । चाकुल्या, चाकुले **पिठवन; पेठवान; पीठौनी** ମ. ସେବର୍; ପୀଠବଣ ତେ. କୋଲାକୁପନ୍ନା)
[ ଦ୍ର—ଏହାର ପତ୍ର ପ୍ରାୟ ଗୋଲ ଓ ଲୋମଶ; ଫୁଲ ଆରକ୍ତ ଓ ବହୁ ପରିମାଣରେ ଫୁଟେ; ଛୁଇଁଲେ ୨୪ ଘଣ୍ଟା ହଳହଳିଆ ଲାଗିଥାଏ । ଗଛ ଲଟାଇଲାବେଳେ ପ୍ରତି ଗଣ୍ଠିରୁ ଚେର ବାହାରେ । ଏହା ତ୍ରିଦୋଷନାଶକ, ଶୁକ୍ରବର୍ଦ୍ଧକ, ଉଷ୍ଣବୀର୍ଯ୍ୟ, ମଧୁରରସ ଓ ସାରକ । ଏହା ଦାହ, ଜ୍ୱର, ଶ୍ୱାସ, ରକ୍ତାତିସାର, ତୃଷ୍ଣା ଓ ବମନ ନିବାରକ । ]

**ଚାକୁଳଥ**—ପ୍ରା. ଦେ.—(ମେଦିନୀପୁର) ବି.—ଚାକୁଳିଆ (ଦେଖ)
Chākulia Chākuliā (See)

**ଚାକୁଲ୍ୟା**—ପ୍ରାଦେ. (ମେଦିନୀପୁର) ବି.—ଚାକୁଳିଆ (ଦେଖ)
Chākulyā Chākuliā (See)

**ଚାକେରି (ଇତ୍ୟାଦି)** – ଗ୍ରା. ବୈଦେ. ବି ( ଫା. ଚାକର୍ )—
Chākeri (etc) ଚାକିରି ଇତ୍ୟାଦି ( ଦେଖ )
Chākiri (etc) ( See)

**ଚାକୁଲେଇବା**—ଦେ. କ୍ରି. ( ଚକ୍ ଚକ୍ ଧ୍ୱନି ଦେବାରୁ )—
Chākuḷeibā ୧ । କୌଣସି ଖାଦ୍ୟକୁ ଧୀରେ ଧୀରେ ପାଟିରେ ଚିବିୟେ ଚିବିୟେ ଖାଓଆ ଜୋଭାଇ ଜିଭ ସାହାଯ୍ୟରେ ଏକଳ ସେକଳ **चपरचपर खाना** କରିବା—1. To slowly munch a food in the mouth.
୨ । ପାଗୁଳେଇବା—2. To ruminate.

**ଚାକ୍ରିକ**—ସଂ. ବି. ( ଚକ୍ର=ସମୂହ+ଅସ୍ତି ଅର୍ଥରେ. ଇକ )—
Chākrika ୧ । ଚକ୍ରାକାର ଦଳବଦ୍ଧ ସ୍ତୁତିପାଠକ—
1. A circular gathering of choristers or hymn-singers.
୨ । ତେଲି—2. Oilman.
୩ । ଗାଡ଼ିଆଳ୍—3. Cartman; coachman.

**ଚାକ୍ଷୁଷ**—ସଂ. ବିଣ. ( ଚକ୍ଷୁସ୍+ସମ୍ବନ୍ଧ ଅର୍ଥରେ. ଅ )—
Chākshusha ୧ । ଚକ୍ଷୁର୍ଗୋଚର; ପ୍ରତ୍ୟକ୍ଷ—
1. Directly perceived by the eyes; ocular.
୨ । ଦୃଷ୍ଟିଦ୍ୱାରା ଲବ୍ଧ ( ଜ୍ଞାନ )—
2. (knowledge) Acquired by sight.
ସଂ. ବି—୧ । ଚକ୍ଷୁର୍ଜନ୍ୟ ଜ୍ଞାନ—
1. Direct perception by the eye.
୨ । ୬ଷ୍ଠ ମନୁ; ମନୁଙ୍କର ୬ଷ୍ଠ ବଂଶଧର—
2- Name of the 6th Manu or progenitor of mankind.

ଷଷ୍ଠରେ ଚକ୍ଷୁଷଙ୍କ ସୁତ, ଚାକ୍ଷୁଷ ନାମେ ସେ ବିଦିତ ।
ଜଗନ୍ନାଥ—ଭାଗବତ ।

**ଚାକ୍ଷୁଷ ପ୍ରମାଣ**—ସଂ. ବି. ( କର୍ମଧା; ଚାକ୍ଷୁଷ+ପ୍ରମାଣ )—
Chākshusha pramāṇa ୧ । ପ୍ରତ୍ୟକ୍ଷ ପ୍ରମାଣ—
1. Direct evidence; evidence of a person who himself saw an occurrence.
୨ । ଯେଉଁ ପ୍ରମାଣ ସ୍ୱଚକ୍ଷୁରେ ଦେଖାଯାଏ—
2. Ocular demonstration.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ଼ | ଡଅ | ଞ୍ଚ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଂ୍ୟ | ଇଅ | ଡ଼ | ନ୍ଥ |

**ଚ-ଖଡ଼ି**—ଦେ. ବି· ( ଇଂ. ଚକ୍+କଠିନୀ )—ଚକ୍ (ଦେଖ)
Chā-khardi Chak (See)

**ଚଖଣା**—ଦେ. ବି. (ସଂ. ଚକ୍ଷଣ)—୧ । ସ୍ୱାଦଗ୍ରହଣ; ଚଖିବା—
Chākhaṇā 1. Tasting; trying the taste of a
ଚାକନ; ଚାଖନ food.
**चखना** ୨ । କୌଣସି ବସ୍ତୁର ସ୍ୱାଦ ପରୀକ୍ଷା କରିବା—.
2. Examining the taste of a thing.
୩ । ଆଚାର ପ୍ରଭୃତି ମୁଖରୋଚକ ଦ୍ରବ୍ୟ—
3. Pickles; things which palliate one's sense of taste.
୪ । ଚାଟ୍; ମଦ୍ୟପାନ କାଳରେ ଖିଆଯିବା ବା ଚଟାଯିବା ମୁଖରୋଚକ ଖାଦ୍ୟ—4. Something licked or eaten after swallowing some strong intoxicating liquor.

**ଚଖଣିଆ**—ଦେ. ବି—ଚଖୁଣିଆ (ଦେଖ)
Chākhaṇiā Chākhuṇiā (See)

**ଚଖଣ୍ଡ**—ଦେ. ବି—ବିତସ୍ତି; ବିସ୍ତାରିତ କରତଳର କାଣୀଆଙ୍ଗୁଠି
Chākhaṇḍa ଅଗଠାରୁ ବୁଢ଼ାଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ପରିମାଣ;
চাঁকর; চাঁখর; বিঘত୍ ୧୨ ଅଙ୍ଗୁଳ—A span; a measure
**बिलाद्; बित्ता** of length by the span of the extended palm from the tip of the little finger to that of the thumb; a length of about 9 inches.

ହିସପ୍ତ ଭୁବନ ଯେ ମଣିଲେ ଅଳ୍ପ
ଆଣିଲେ ସେ ସପ୍ତ ଚଖଣ୍ଡର ତଳ୍ପ । ରାଧାନାଥ—ଚିଲିକା ।

**ଚଖଣ୍ଡିକଆ**—ଦେ. ବିଣ—ଏକ ଚଖଣ୍ଡ ପରିମିତ—
Chākhaṇḍikiā Measuring one span only.
(ଚଖଣ୍ଡକଆ—ଅନ୍ୟରୂପ)

**ଚଖି**—ଦେ. ବି· ( ଚକ୍ ଧାତୁ=କହିବା )—
Chākhi ୧ । ଗର୍ବ; ବାଳଙ୍ଗି ବା ଚଖାନ୍—
ফুটানী 1. Boasting; bragging.
**शेखी** ଅର୍ଜୁନ କାଣ୍ଡେ ମଣି ହେବ ଯେବେ ଗଣି
ତଉଦେବ ତେବେ କହିବା ଚଖିରେ । କୃଷ୍ଣସିଂହ. ମହାଭାରତ କର୍ଣ୍ଣ ।
୨ । ଆତ୍ମପ୍ରଶଂସା—2. Self adulation.
ପଶୁରାମ ବୋଇଲେ ଚଖି କଥା ଛାଡ଼
ମୋହ ଧନୁରେ ଗୁଣ ଦେଇ ଏବେ ଇଡ଼ । କୃଷ୍ଣସିଂହ. ମହାଭାରତ ବନ ।
୩ । ଦାମ୍ଭିକତା; କଥାର ଡାରିଫି; ଗୁନ୍ଦର—
3. Vanity; ostentation.
୪ । ନମୁନା—4 Sample (Howells).
ଦେ. ବିଣ—୧ । ଆତ୍ମଶ୍ଳାଘୀ—1. Self adulating.
୨ । ଯେ ବାଳଙ୍ଗି ଦେଖାଏ—
2. Boastful; bragging.
୩ । ଗର୍ବୀ—3. Vain.

**ଚଖିଖୁଣ୍ଟିଆ**—ଦେ. ବି (ନାମ)—ପୁରୀର ଜଣେକି ବଳଶାଳୀ ସ୍ୱାଧୀନଚେତା
Chākhikhuṇṭiā ବ୍ରାହ୍ମଣସେବକ—Name of a Brahman Panda of Puri who was of very strong constitution and indipendent spirit.
[ ଦ୍ର—ଏ ନେପାଳୀମାନଙ୍କ ପଣ୍ଡା ଥିଲେ । ୧୮୫୭ ସାଲରେ ଭାରତର ସିପାହୀବିଦ୍ରୋହବେଳେ ଏ ଉତ୍ତରପଶ୍ଚିମାଞ୍ଚଳର ହିନ୍ଦୁ ନେପାଳୀ ସୈନ୍ୟଙ୍କୁ ଇଂରେଜମାନଙ୍କ ବିପକ୍ଷରେ ଉତ୍ତେଜିତ କରୁଥିଲେ । ଏ ଶେଷରେ ଧରାପଡ଼ି ଦଣ୍ଡ ପାଇଥିଲେ । ଏହାଙ୍କର ଶାରୀରିକ ବଳ ଅସାଧାରଣ ଥିଲା । ]

**ଚଖିବା**—ଦେ. କ୍ରି (ସଂ. ଚକ୍ଷଣ)—୧ । ସ୍ୱାଦ ଗ୍ରହଣ କରିବା; ଆସ୍ୱାଦନ
Chākhibā କରିବା—1. To taste a thing.
চাকা, চাখা ଦମୟନ୍ତୀ ଯେ ସେହି ମାଂସରୁ ଖଣ୍ଡିଏ
**चखना** ଚଖିଦେଲେ ନଳଙ୍କୁ ଜାଣିବା ଉପାୟେ ।
(ଚଖାଇବା—ଣିଜନ୍ତ) କୃଷ୍ଣସିଂହ. ମହାଭାରତ ବନ ।
୨ । ସ୍ୱାଦ ପରୀକ୍ଷା କରିବା—
2. To try the taste of a thing.
ସ୍ୱାଦୁ ଫଳ ଯେତେ ପାଇ
ଚଖି ଗୋବିନ୍ଦଙ୍କୁ ଦେଉ—ଭୂପତି. ପ୍ରେମପଞ୍ଚାମୃତ ।
୩ । ( ଲକ୍ଷଣାର୍ଥ ) ଇନ୍ଦ୍ରିୟଦ୍ୱାରା ଉପଲବ୍ଧି କରିବା—
3. ( fig ) To enjoy with any organ of sense.

ଚମ୍ପୀକର ଚରୁଣିସମତା ସେ କେଉଁ ଅମଙ୍ଗ ଚଖି ନାହିଁ ଜନେ ମୋ ନୟନ ।
ଜନ୍ନସୂର୍ଯ୍ୟ କଣୋଲ୍ଲକଲ୍ପ ।

**ଚଖୁ**—ବୈଦେ. ବି (ଫା.)—ଚକୁ (ଦେଖ)
Chākhu Chāku (See).

**ଚଖୁଆ** ଦେ. ବିଣ. ପୁଂ (ଗାଳି)—ଚଖା (ଦେଖ)
Chākhuā Chakhā (See).

**ଚଖୁଣିଆ**—ଦେ. ବି (ସଂ. ଚକ୍ଷଣ)—ରାଜଭୋଜ୍ୟ ଖାଦ୍ୟକୁ ଆସ୍ୱାଦନ କରି
Chākhuṇiā ପରୀକ୍ଷା କରିବା କାମରେ ନିଯୁକ୍ତ ଭୃତ୍ୟ—
চাকুনিয়া, চাকুনী A servant whose duty is to taste
(ଚଖୁଣୀ—ସ୍ତ୍ରୀ) the food prepared for the king before it is taken by the king.
[ ଦ୍ର—ରାଜାମାନଙ୍କ ଖାଦ୍ୟରେ ବିଷପ୍ରୟୋଗର ଆଶଙ୍କା ଥିବାରୁ ପ୍ରଥମେ ଜଣେ ଲୋକଦ୍ୱାରା ଖାଦ୍ୟ ପରୀକ୍ଷା କରିବାର ବିଧି ଥିଲା । ବର୍ତ୍ତମାନ ମଧ୍ୟ ଏ ବିଧି ସ୍ଥାନେ ସ୍ଥାନେ ଚଳୁଅଛି । ]
ଦେ. ବିଣ—ଚଖୁଣିଆ; ଯେ ଚଖେ—One who tries or examines the taste of a food.

**ଚଗଡ଼ା (ଇତ୍ୟାଦି)**—ଦେ. ବି—ଚଙ୍ଗଡ଼ା ଇତ୍ୟାଦି (ଦେଖ)
Chagardā etc Changardā etc (See).

**ଚଙ୍କିବା**—ପ୍ରାଦେ ( ଗଡ଼ଜାତ ) କ୍ରି—ଅଳ୍ପ ଘୁଞ୍ଚାଇଦେବା; ସ୍ଥାନଚ୍ୟୁତ
Chānkibā କରିବା—To dislodge.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବେ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାର' ନ ମିଳିଲେ 'ଗାଡ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

ଚଙ୍ଗ୍ରି—ପ୍ରାଦେ ( ସମ୍ବଲପୁର; ଭୁଲ. ହି. ଚଙ୍ଗେରୀ ) ବି—
Chāṅgri — ଚଙ୍ଗୁଡ଼ି ( ଦେଖ ) Chāṅgurḍi (See).

ଚଙ୍ଗଡ଼ା – ଦେ. ବି—୧ । ଡାଲା; ଚଙ୍ଗୁଡ଼ି—
Chāṅgarḍā — 1. A tray of wicker-work of wood; a shallow; wicker basket.
ଟାଁଗଡ଼ା, ଚାଁଙ୍ଗାରୀ
চাঙ্গেরী

ଜୁସୁମ ଚଙ୍ଗଡ଼ା ପଦ୍ମହସ୍ତେ ଧରି
ଠାବେ ଠାବେ ଫୁଲ ପ୍ରାଙ୍ଗଣେ ନାଗରୀ—ରାଧାନାଥ. ନନ୍ଦିକେଶ୍ୱରୀ ।

୨ । କୌଣସି ବଡ଼ ଗଛକୁ ମୂଳରୁ କାଟିଦେଲା ପରେ ଗଛ ମୂଳ ଖୋଳ ଯେଉଁ ଗଡ଼ଖଣ୍ଡି ବାହାର କରାଯାଏ—
2. The part of the trunk of a tree which is just abone the root.

ଚଙ୍ଗଡ଼ା ଘର—ଦେ. ବି—ଯେଉଁ ଘରେ ବସ୍ତ୍ର ଅଳଙ୍କାରାଦି ରଖା ହୋଇ ଥାଏ; ଗନ୍ଧାଘର—War drobe; a room for storing dress and ornaments etc.
Chāṅgrḍā ghara

ଚଙ୍ଗଡ଼ା ଘର ଜୁରେ ପରମାଦେ । କବିସୂର୍ଯ୍ୟ, କବିତା ।

ଚଙ୍ଗଡ଼ା ଚେର—ଦେ. ବି—କୌଣସି ଗଛର ଚଙ୍ଗଡ଼ାରୁ ବାହାର ମାଟି ଉପରକୁ ଦିଶୁଥିବା ଚେର—
Chāṅgarḍā chera — The root of a tree which is seen above the ground.

ଚଙ୍ଗଡ଼ା ତୁମ୍ବ—ଦେ. ବି—ଗଛର ଚଙ୍ଗଡ଼ାର ମଝିରେ ଗାତ କରି ତହିଁରେ ବାରୁଦ ଭର୍ତ୍ତି ଯେଉଁ ତୁମ୍ବ ବାଣ କରାଯାଏ—A fire work made by putting gun-powder in a hole made in the Chāṅgarḍā of a tree.
Chāṅgarḍā tumba

ଚଙ୍ଗଡ଼ା ମେକାପ—ଦେ.ବି—ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସେବକବିଶେଷ-
Chāṅgarḍā mekāpa — A class of Sebaka of Lord Jagannath

[ ଦ୍ର—ଶ୍ରୀ ଜୀଉଙ୍କର ଭିନ୍ନ ଭିନ୍ନ ବେଶ ନିମନ୍ତେ ପ୍ରୟୋଜନୀୟ ସାଜସଜ୍ଜା ( ବସ୍ତ୍ର, ଅଳଙ୍କାରାଦି ) ଏମାନଙ୍କ ଜିମା ଥାଏ । ଏମାନେ ପ୍ରତ୍ୟେକ ବେଶ ପୂର୍ବରୁ ପ୍ରୟୋଜନୀୟ ସଜମାନ ଚଙ୍ଗଡ଼ା ବା ଡାଲାରେ ସଜ୍ଜିତ କରି ବେଶକାରୀ ସେବକଙ୍କୁ ଦିଅନ୍ତି ଏବଂ ବେଶ ଫିଟିବା ସମୟରେ ଫେରାଇ ଆଣି ନିଜ ତତ୍ତ୍ୱାବଧାନରେ ରଖନ୍ତି । ]

ଚଙ୍ଗଡ଼ି—ଦେ. ବି—ଚଙ୍ଗୁଡ଼ି ( ଦେଖ )
Chāṅgarḍi — Chāṅgurḍi ( See )

ଚଙ୍ଗଲ—ଦେ. ବିଣ—ଚେଙ୍ଗା ( ଦେଖ )
Chāṅgalā — Cheṅgā ( See )

ଚଙ୍ଗା – ଦେ. ବିଣ—ଚେଙ୍ଗା ( ଦେଖ )
Chāṅgā — Cheṅgā ( See )

ଚଙ୍ଗାରି—ବୈଦେ. ବି—ଚଙ୍ଗାରି ( ଦେଖ )
Chāṅgāri — Chaṅgāri ( See )

ଚଙ୍ଗୁ—ପ୍ରାଦେ. (ଗଡ଼ଜାତ) ବି—୧ । ଓଡ଼ିଶା ଗଡ଼ଜାତର ଜୁଆଙ୍ଗ ଆଦି ଅଧିବାସୀଙ୍କର ଚଙ୍ଗୁ ବାଦ୍ୟ ସହ ନାଚ—
Chāṅgu — 1. A dance prevalent among the wild tribes of the Oriya agency tracts.

୨ । ଚଙ୍ଗୁବାଦ୍ୟ ( ଦେଖ )
2. Chāṅgubādya ( See )

ଚଙ୍ଗୁଡ଼ା— ବୈଦେ. ବି— ୧ । ଚଙ୍ଗଡ଼ା ( ଦେଖ )
Chāṅgurḍā — 1. Chāṅgarḍā ( See )
୨ । ପୁଷ୍ପାଧାର—2 A flower-tray.

ଚଙ୍ଗୁଡ଼ି—ଦେ. ବି—୧ । ଛୋଟ ଡାଲା; ଚଙ୍ଗଡ଼ି—
Chāṅgurḍi — 1. A small tray.
চাঙ্গড়ী
চাঙ্গেরী

ବାଳକ ବାଳିକା ଧରିଣ ଚଙ୍ଗୁଡ଼ି
ଫୁଲ ତୋଳୁଛନ୍ତି ଦଳଛି ଦଉଡ଼ି । ମଧୁସୂଦନ. ପ୍ରଭାତ ।

୨ । ବାକ୍ସ ବା ପେଡ଼ିର ମୁହଁ ବା ଢାଙ୍କୁଣୀ—
2. The cover for a box.

ଚଙ୍ଗୁନାଟ—ପ୍ରାଦେ. (ଗଡ଼ଜାତ) ବି—ଚଙ୍ଗୁ ବାଦ୍ୟସହ ଅନାର୍ଯ୍ୟମାନଙ୍କର ନୃତ୍ୟବିଶେଷ—A dancing accomp-anied with the music of Chāṅgu.
Chāṅgunāṭa

ରାତିପାହି ବସି ଶିଖରେ ଜୁଆଙ୍ଗେ କରୁଥିବେ ଚଙ୍ଗୁନାଟ ।
ରାଧାନାଥ ପାର୍ବତୀ ।

ଚଙ୍ଗୁନିରଡ଼ା—ପ୍ରାଦେ. (ଗଡ଼ଜାତ) ବି—ଆନଦ୍ଧ ବାଦ୍ୟବିଶେଷ—
Chāṅgunirḍā — A kind of drum.

ଚଙ୍ଗୁବାଦ୍ୟ—ପ୍ରାଦେ (ଗଡ଼ଜାତ) ବି – ୧ । ଆନଦ୍ଧ ବାଦ୍ୟବିଶେଷ—
Chāṅgubādya — 1. A kind of drum.

[ ଦ୍ର—ଏହା କାଠର ଗୋଟିଏ ଦୁଇ ମୁହଁ ମେଲା ଡାଲା । ଏହାର ବ୍ୟାସ ୧ ବା ୧½ ହାତ । ଏହାର ଗୋଟିଏ ମୁହଁରେ ଚମଡ଼ା ଛାଉଣି ହୋଇଥାଏ । ଏଥିରେ ଡୋରି ବାନ୍ଧି କାନ୍ଧରେ ପକାଇ ଡେବରି ହାତରେ ଧରିବାକୁ ହୁଏ । ଡେବରି ହାତରେ ଖଣ୍ଡେ ସରୁ କାଠି ଓ ଡାହାଣ ହାତରେ ଆଉ ଖଣ୍ଡେ ମୋଟା କାଠି ଧରି ଏହାକୁ ବାଡ଼ିଆଯାଏ । ଏହା ଓଡ଼ିଶାର ଢୋଲ୍ ବାଦ୍ୟ ଭଳି । ଏହାକୁ ବଡ଼ ଚଙ୍ଗୁ ବୋଲାଯାଏ ।

ଗଡ଼ଜାତରେ ଛୋଟ ଜାତିମାନେ ଏବଂ ଜୟପୁର ଅଞ୍ଚଳରେ ଭଦ୍ର ଲୋକେ ଏ ବାଦ୍ୟ ବଜାନ୍ତି । ]

୨ । ମାଦେଳ ଚଙ୍ଗୁ ବା ସାନ ଚଙ୍ଗୁ—2. A kind of drum smaller than Chāṅgu

[ ଦ୍ର—ଏହା ଚାଙ୍ଗୁ ଭଳି, କିନ୍ତୁ ଏହାର ଗୋଟିଏ ମୁହ କାଠ ଓ ଅନ୍ୟ ମୁହଁରେ ବଡ଼ ଚାଙ୍ଗୁ ଭଳି ଚମଡ଼ା ଛାଉଣି ହୋଇଥାଏ । ଏହାର ବ୍ୟାସ ୧ ହାତ ବା ତହିଁରୁ କମ୍ । ବଜେଇବା ଲୋକ ଉଭୟ ହାତରେ ୨ ଖଣ୍ଡି ଲେଖାଏଁ ସରୁ କାଠି ଧରି ଏହାକୁ ବଜାଏ ।]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇପ୍ସ | ଢ଼ଅ | ଢ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଜ | ନ |

**ଚାଚକ**—ଗ୍ରା. ବି (ସଂ. ଚାତକ)—ଚାତକ ( ଦେଖ )—
Chāchaka Chātaka (See)

**ଚାଚକା**—ଗ୍ରା. ବି. ସ୍ତ୍ରୀ ( ସଂ. ଚର୍ଚ୍ଚିକା )—୧ । କଟକ ଜିଲ୍ଲାର ବାଙ୍କି ବା ଚର୍ଚ୍ଚିକା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ—1. The Deity worshipped at Banki in Cuttack district.
Chāchakā

୨ । ଗ୍ରାମଦେବତାବିଶେଷ — 2. Name of a village Goddess.

**ଚାଚକାଈ**—ଦେ. ବି. ସ୍ତ୍ରୀ—ଚାଚକା ( ଦେଖ )—
Chāchakāi Chāchakā ( See )
(ଚାଚକେଈ—ଅନ୍ୟରୂପ)

**ଚା-ଚଢ଼େଇ**—ଦେ. ବି.—କାଦୁଅଖୁମ୍ପୀ ( ଦେଖ )—
Cha-chardhei Kaduakhumpi ( See )

**ଚାଚପୁଟ**—ସଂ. ବି - ସଙ୍ଗୀତରେ ତାଳର ୬୦ ପ୍ରକାର ମୁଖ୍ୟ ଭେଦ ମଧ୍ୟରୁ ଏକ ( ହି. ଶବ୍ଦସାଗର )—One of the 60 musical measures in Hindu music.
Chāchaputa

[ ଦ୍ର— ଏଥିରେ ଏକ ଲଘୁ, ଏକ ଗୁରୁ, ଏକ ପ୍ଳୁତ ସ୍ୱର ଥାଏ । ]

ଦେ. ବି ( ସଂ. ଚଞ୍ଚୁପୁଟ; ପକ୍ଷୀର ଥଣ୍ଟ ସଦୃଶ ଏକତ୍ର ସଂଯୁକ୍ତ ହେବାରୁ; କିମ୍ବା ସଂ. ଚାଚପୁଟ=ତାଳଭେଦ )— ଦୁଇଖଣ୍ଡ କାଠରେ ବଜାଯିବା ବାଦ୍ୟବିଶେଷ; କରତାଳକା ବାଦ୍ୟ—A kind of musical instrument; the castanets consisting of 2 concave and flat pieces of wood sounded by clapping together.

**ଚାଚର**—ଦେ. ବିଣ—କୁଞ୍ଚିତ ବା କୁଟିଳ (କେଶ)—
Chāchara Curled; curling ( hair ).
চাঁচর

**ଚା ଚାମଚ**—ବୈଦେ., ବି. ( ଚୀନ୍ ଭାଷା ଚା ଓ ଫା. ଚମ୍‌ଚହ୍ )—ଚାହା ପାନ କରିବାରେ ବ୍ୟବହୃତ ଚାମଚ—
Chā chāmachā Tea-spoon.
চা চামচ

**ଚାଚିକା**—ଦେ. ବି—ଭିକ୍ଷାପାତ୍ର—
Chāchikā Beggar's bowl.

[ ଯଥା —ସୀତା ପର୍ଣ୍ଣକୁଟୀରରୁ ଫଳମୂଳ ଆଣି ରାବଣର ଚାଚିକାରେ ଦେଲେ । ]

**ଚାଚେର**—ଦେ. ବି—ଚାଚର ( ଦେଖ )
Chāchera Chāchara ( See )

**ଚାଚେରି ମୁଦ୍ରା**—ଦେ. ବି—ମୁଦ୍ରାବିଶେଷ (ମୁଦ୍ରା ତଳେ ନୋଟ ଦେଖ)—
Chācheri mudrā A kind of rifualistic pose of the hands (See notes under Mudrā ).

ଚାଚେରି ମୁଦ୍ରା ଯେ ସବୁର ମୂଳ
ଚନ୍ଦ୍ରସୂର୍ଯ୍ୟ ସେହୁ ଅଟଇ ଶୀତଳ—ପ୍ରାଚୀ. ପଞ୍ଚଗୀତା ।

**ଚାଚେରି**—ଦେ. ବି. ( ସଂ. ଚର୍ଚ୍ଚରୀ )—
Chācheri ୧ । ଦୋଳପୂର୍ଣ୍ଣିମାର ପୂର୍ବ ଦିନ ଅବିର ପିଚକାରୀ ଆଦି ମାରି କରତାଳି ଧ୍ୱନି କରି ଯେଉଁ ହୋରି ଉତ୍ସବ କରାଯାଏ; ବସନ୍ତୋତ୍ସବବିଶେଷ—1. A festival accompanied with syringing and singing on the eve of Dolapūrṇṇamī.
চাঁচর
चाचर

ଚାଚେରି ଗହଳ ସଖୀ ଗୋବିନ୍ଦଙ୍କ ଦୋଳ—ପ୍ରାଚୀ. ରହସ୍ୟମଞ୍ଜରୀ ।

୨ । ଗ୍ରାମଦେବତାବିଶେଷ — 2. Name of a village Goddess.

**ଚାଛେଣି**—ଦେ. ବି—ଚାହାକୁ ଛାଣିବା ସକାଶେ ବ୍ୟବହୃତ ଛିଦ୍ରଯୁକ୍ତ ପାତ୍ରବିଶେଷ—Tea-sieve for sifting tea from the boiled leaves.
Chāchchheṇi
চাচ্ছনী
चाच्छनी

**ଚାଛଣି** —ଦେ, ବି—ଚାଛେଣି ( ଦେଖ )
Chāchhaṇi Chāchcheṇi ( See )

**ଚାଞ୍ଚ** —ଦେ. ବି. ( ସଂ. ଚଞ୍ଚା ) ନଡ଼ିଆ ବରଡ଼ା, ତାଳପତ୍ର ବା ବାଉଁଶ-ପାତିଆରେ ବୁଣା ହୋଇଥିବା ଆସ୍ତରଣବିଶେଷ; ଚଟେଇ—A mat made of cocoanut leaves or palm leaves or thin strips of bamboo woven together.
Chāñcha
চাঁচ
चटाई

**ଚାଞ୍ଚଖାଇ**—ପ୍ରାଦେ. ( ଗଡ଼ଜାତ ) ବି. ସ୍ତ୍ରୀ — ପିଲାଙ୍କର ରକ୍ତ ଶୋଷି ନେବା ଡାହାଣୀ—
Chāñchakhāi A witch believsd to suck blood out of children.

**ଚାଞ୍ଚଡ଼ା**— ଦେ. ବି.— ଚାଞ୍ଚ (ଦେଖ)
Chāñcharḍā Chāñcha (See)

**ଚାଞ୍ଚଡ଼ା ପଥର**— ପ୍ରାଦେ. (ଗଡ଼ଜାତ ଓ ଗଞ୍ଜାମ)—ବି.—ସମତଳ ଭାବରେ ବିସ୍ତୃତ ପଥରଖଣ୍ଡ—A big level or plain slab of stone.
Chāñcharḍā pathara

**ଚାଞ୍ଚର** —ଦେ. ବିଣ.—ଚାଚର (ଦେଖ)
Chāñchara Chāchara (See)

**ଚାଞ୍ଚରା**—ଗ୍ରା. ବି.—ଚାଞ୍ଚ (ଦେଖ)
Chāñcharā Chāñcha (See)

**ଚାଞ୍ଚଲ୍ୟ** —ସଂ. ବି.—(ଚଞ୍ଚଳ + ଭାବ. ଯ)—୧ । ଚଞ୍ଚଳତା—
Chāñchalya 1. Speed; quickness.

୨ । ଅସ୍ଥିରତା—2 Restlessness; fickleness; inconstancy.

୩ । ବ୍ୟଗ୍ରତା; ଉତ୍କଣ୍ଠା—3. Anxiety.

**ଚାଞ୍ଚି**— ଦେ. ବି.—(ସଂ. ଚେଚ =ନଡ଼ିଆ ଜଟା)—୧ । ନଡ଼ିଆ ବାହୁଙ୍ଗାର ମୂଳରେ ନଡ଼ିଆ ଗଛର ଗଣ୍ଡିକୁ ବେଢ଼ିଥିବା ଜାଲି ଆକୃତିର ବଲ୍କଳ; ଚାଞ୍ଚୁ—1. A netlike bark entwining the trunk of a cocoanut tree at the place whence branches come out.
Chāñchi
চাঁচাড়ি
जालि

ସାଧାରଣ ଲୋକେ ଅପର ପୃଷ୍ଠାରେ '୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ନାଇ' ନ ମିଳିଲେ 'ଣାଇ' ଖୋଜିବେ; 'ଲୁଅ' ନ ମିଳିଲେ 'ଳୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ ଦେଖିବେ

୨ । ପାକଲ ଆମ୍ବର ନୂତନ ଟାକୁଆର ଦୃଢ଼ ଆବରଣ—
2. The hard rind formed on the stone of a fully developed mango fruit.
୩ । ଚାଞ୍ଛି (ଦେଖ)
3. Chānchhi (See).

**ଚାଞ୍ଚିବା**—ଦେ. କ୍ରି—ଚାଞ୍ଛିବା (ଦେଖ)
Chānchiba Chānchhiba (See)

**ଚାଞ୍ଚୁ**—ଦେ. ବି—ଚାଞ୍ଚି (ଦେଖ)
Chānchu Chānchi (See)

**ଚାଞ୍ଛି**—ଦେ. ବି—(ସଂ. ତକ୍ଷ ଧାତୁ; ସଂ. ଚୋଚ=ବକ୍କଲ)—
Chānchhi ୧ । ଫଳ ବା କାଠରୁ ଚାଞ୍ଛା ହୋଇଥିବା ଚୋପା ବା
चाछुँनि ବକ୍କଲ—Thin scrapings (of bark or rind).
**छिलका** ୨ । ଚାଞ୍ଚି (ଦେଖ)—2. Chānchi (See)

**ଚାଞ୍ଛିବା**—ଦେ. କ୍ରି. (ସଂ ତକ୍ଷ ଧାତୁ)—୧ । କାଠ ବା ଫଳର ଚୋପା
Chānchhiba ଛଡ଼ାଇବା; ଛାଞ୍ଛିବା; ଛେଲିବା—
চাঁছা, চাঁচা 1. To scrape off the bark or rind
**छीलना; खुरचना** from a wood, branch or fruit.
(ଚାଞ୍ଛାଇବା—ଣିଜନ୍ତ)
୨ । ଭୂମି ଉପରୁ ଘାସ ସହିତ ମାଟିର ପତଳା ସ୍ତର ଉଠାଇବା—
2. To scrape off grass from the ground
ବାମ ଦକ୍ଷିଣେ ଚାଞ୍ଛା ଗଲା, ଚାଞ୍ଛିଲ ବାଟ ପ୍ରାସୁ ଚଳି—ଜଗନ୍ନାଥ. ଭାଗବତ ।
୩ । ଉପରୁ ପତଳା ପ୍ରସ୍ତ ଉଠାଇବା—3. To pare; to clip; to prune; to trim.

**ଚାଟ୍**—ଦେ. ବି (ଜିଭରେ ଚାଟି ଖାଇବା ହେତୁ; ସଂ. ଚକ୍ଷଣ)—
Chāṭ ୧ । ମଦ୍ୟାଦି ମାଦକ ସେବନ ପରେ ଖାଇବା ମୁଖରୋଚକ
চাট ଖାଦ୍ୟ—1. A relishing food eaten after drink-
**चाट** ing in order to palliate the sharpness left in the mouth after drinking spirits or wine
ଅଜା ମାଲ ସାଙ୍ଗରେ ପେଟେ ଚାଟ୍ ପଡ଼ିଲେଇଛି—ଫକୀରମୋହନ. ଗଳ୍ପସ୍ୱଳ୍ପ ।
୨ । ଲାଳସା; ଝୁଙ୍କ—2. Hankering.

**ଚାଟ୍ ଧରିବା**—ଦେ. ବି—୧ । (ଖରାପ) ଅଭ୍ୟାସ ହେବା—
Chāṭ dhariba 1. Formation of a habit (bad sense)
চাট ধরা ୨ । କୌଣସି ଦ୍ରବ୍ୟ ପ୍ରତି ଝୁଙ୍କ ଲାଗିବା ବା ଲାଳସା ଜନ୍ମିବା—
**चाट लगना** 2. Growth of a hankering after something once tasted.

**ଚାଟ୍‌ନି**—ଦେ. ବି.—ଚାଟ୍ (ଦେଖ)
Chāṭni Chāṭ (See)

**ଚାଟ୍ ଲାଗିବା**—ଦେ. ବି—ଚାଟ୍ ଧରିବା (ଦେଖ)
Chāṭ lāgiba Chāṭ dhariba (See)

**ଚାଟ**—ସଂ.ବି. (ଚଟ୍ ଧାତୁ=ବଧ କରିବା+କର୍ତ୍ତୃ ଅ; ତୁଳ ଇଂ.ଚୀଟ୍)—
Chāṭa ୧ । ବିଶ୍ୱାସ ଘାତକ—1. A perfidious person.
୨ । ଚୋର—2. Thief.
୩ । ଠକ—3. A cheat.

ଛାତ୍ର ଦେ. ବି. (ସଂ. ଛାତ୍ର; ନବ୍ୟ ସଂ. ଚଟ୍ଟ; ସଂ. ଚେଟକ=
**चट्टा** ସେବକ, ଦାସ)—
୧ । ପାଠଶାଳାରେ ପଢ଼ୁଥିବା ଛାତ୍ର; ଶିଷ୍ୟ—
1. Student reading in a school.
କାହିଁ ବା ଚାଟେ ରହାଇରେ
ପଢ଼ନ୍ତି ପୋଥି ଧୀରେ ଧୀରେ—ମଧୁସୂଦନ. ଛାନ୍ଦମାଳା ।
୨ । ବତ୍ସ; କୁମାର; ପୁଅ—2. Son.
ସେ ହୋଇବେ ଯାଇଣ ହେଲେ ପଦ୍ମଙ୍କ ଚାଟ—କୃଷ୍ଣସିଂହ. ମହାଭାରତ. ସଭା ।
୩ । (ସଂ ଚଟ୍ଟୁ; ପାଲି. ଚାଟି=ପାତ୍ର) ବଡ଼ ଡାଲା; ଚାଟ—
3. A large shallow tray.
୪ । (ସଂ. ଚକ୍ଷଣ) ଚାଟ୍ (୧) (ଦେଖ)
4. Chāṭ (1) (See)
ଦେ. ବି—୧ । ବିଦ୍ୱାନ୍—1. Learned
(ଚାଟପୃଷ୍ଠ ଚାଟ, ଘାଟପୃଷ୍ଠ ଘାଟ—ଚଗ)
୨ । ବିଦ୍ୟାର୍ଥୀ—2. Bent on studying.

**ଚାଟକେର**—ସଂ. ବି (ସଂ. ଚଟକା=ମାଈ ଘରଚଟିଆ+ଅପତ୍ୟାର୍ଥେ ଏର;
Chāṭakera ଚଟକାର ସନ୍ତାନ)—ଛୁଆ ଘରଚଟିଆ ଚଢ଼େଇ—
The young ones of the sparrow.

**ଚାଟକୈର**—ସଂ. ବି (ଚଟକା+ଅପତ୍ୟାର୍ଥରେ ଐର)—ଚାଟକେର (ଦେଖ)—
Chāṭakaira Chāṭakera ( See )

**ଚାଟଗାଁ**—ଦେ. ବି (ନାମ) (ସଂ. ଚଟ୍ଟଗ୍ରାମ)—ଚଟ୍ଟଗ୍ରାମ (ଦେଖ)—
Chātgān Chaṭṭagrāma (See)
চাটিগাঁ

**ଚାଟଶାଲ**—ଦେ. ବି—ଚାଟଶାଲା ( ଦେଖ )—
Chāṭaśāla Chāṭaśāḻa (See)

**ଚାଟଶାଳା**—ଦେ. ବି (ସଂ. ଛାତ୍ରଶାଳା; ନବ୍ୟ ସଂ. ଚଟ୍ଟଶାଳା )—ଚାଟାଳ;
Chāṭaśāḻa ପାଠଶାଳା; ଦେଶୀୟ ପ୍ରାଥମିକ ବିଦ୍ୟାଳୟ—
पाठशाला Village-school; a primary school
**चटशाला** where the vernacular is taught.

**ଚାଟଶାଳିଆ**—ଦେ. ବିଣ—୧ । ପାଠଶାଳାରେ ଶିକ୍ଷା ହୋଇଥିବା (ପାଠ)—
Chāṭaśāḻia 1. Learnt in the village-school.
୨ । ପାଠଶାଳାରେ ପଢ଼ୁଥିବା (ଛାତ୍ର)—
2. Studying in the village-school.
୩ । ପାଠଶାଳାରେ ବ୍ୟବହୃତ (ଦଣ୍ଡ)—
3. (punishment) In vogue in village-schools
୪ । ଚାଟାଳୀ ସମ୍ବନ୍ଧୀୟ—
4. Relating to a village-school.

**ଚାଟଶାଳୀ**—ଦେ. ବି—ଚାଟଶାଳା ( ଦେଖ )—
Chāṭaśāḻi Chāṭaśāḻa ( See )
ମାଡ ମାରୁଥିବେ ଚାଟଶାଳୀ—ଲୁପଡ. ପ୍ରେମପଞ୍ଚାମୃତ ।

**ଚାଟି**—ଦେ. ବି—୧ । ବଡ଼ ଟୋକେଇ; ବେତା—
Chāṭi 1. A big basket.

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇୟ୍ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | କ୍ଷ | ନ୍ତ |

ପେଟୁମାନଙ୍କୁ ସେ ଛେଳାରୁଟ ପର,
ବଢାଇଲେ ସମସ୍ତେ ଚକ୍ଷୁଣ୍ଟ କର । କୃଷ୍ଣସିଂହ. ମହାଭାରତ. ବନ ।

୨ । ଲୁଣ ପୋକ୍ତାନ ହେବାର ସ୍ଥାନ—2. A place where sea-salt is manufactured.

ଗୁଲ୍ଥା ଦାତକ ସେକ ଚାଟ୍ଟକୁ ଗୁଲସାଏ—ଫକୀରମୋହନ. ଗଳ୍ପସ୍ୱଳ୍ପ ।

ପ୍ରାଦେ (ବସ୍ତର) ବ (ଭୁଲ. ଏହି ଅର୍ଥରେ ହି. ଚାଁଟୀ)—
୧ । ଜନ୍ତା—1. Big ants.
୨ । ପିମ୍ପୁଡ଼ି—2. Small ants

ପ୍ରାଦେ ( ମେଦନାପୁର ) ବ ( ଭୁଲ. ଏହି ଅର୍ଥରେ ବ. ଚାଟା, ଚାଟାଇ )—ଖଜୁରପଟ—Mat made of date-palm leaves woven together.

ଚାଟିଗ୍ରାମ—ସଂ. ବ (ନାମ)—ଚଟ୍ଟଗ୍ରାମ ( ଦେଖ )—
Chāṭigrāma Name of a place (M W.); Chaṭṭagrāma (See)

ଚାଟିଚୁଟି—ଦେ. କି. ବଣ—ପୋଛପାଛ; ନିଃଶେଷ କରି (ଖାଦ୍ୟ ପଦାର୍ଥକୁ
Chāṭichuṭi ଖାଇବା)—( to eat a food given to one )
চেঁচেপুঁছে; চেটেচুটে To the dregs; without leaving
चाटपोंछकर any particle of food in the plate; by licking the plate.

ଚାଟିବା—ଦେ. କି (ଧ୍ୱନ୍ୟନୁକରଣ; ଚାଟିବାବେଳେ ଶୁଣାଯିବା ଚଟଚଟ
Chāṭibā ଶବ୍ଦରୁ; ସଂ. ଚଷଣ; ଲେହନ)—୧ । ଜିହ୍ୱାଦ୍ୱାରା ଲେହନ
চাটা କରିବା—1. To lick.
चाटना ଅଷ୍ଟବର୍ଗ ଭୂପତି, ମିଳିଲ ସେ ଦଣ୍ଡି
(ଚଟାଇବା—ଣିଜନ୍ତ ରୂପ) ପଦାବ୍ଜମକରନ୍ଦ ଚାଟିଲ ରେ ।
କବିସୂର୍ଯ୍ୟ. ସଙ୍ଗୀତକଲ୍ପଲତା ।

୨ । ଜିଭଦ୍ୱାରା ସ୍ୱାଦ ଗ୍ରହଣ କରିବା;—
2. To taste with the tongue.
୩ । (ଲକ୍ଷଣାର୍ଥ) ବ୍ୟଗ୍ରତା ସହିତ ଖାଇବା—
3 (figurative) To eat with gusto.
୪ । (ଲକ୍ଷଣାର୍ଥ) ଧ୍ୱଂସ କରିବା—
4. (figurative) To destroy; to ruin.
(ଯଥା— କ୍ଷଣକ ମଧ୍ୟରେ ନିଆଁ ରାଜପ୍ରାସାଦକୁ ଚାଟି ଦେଇଗଲା ।)
[ଦ୍ର—ଚାଟିବା କ୍ରିୟାର ଅସମାପିକାରୂପ ସଙ୍ଗେ ଖାଇବା, ଦେବା, ପକାଇବା, ଯିବା କ୍ରିୟାମାନଙ୍କର ସମାପିକାରୂପ ଯୁକ୍ତ ହୁଏ ।]

ଚାଟୁ—ସଂ. ବ (ଚଟ୍ ଧାତୁ=(କୋଧରୁ) ଭେଦ କରିବା+କରଣ. ଉ )—
Chāṭu ୧ । ସ୍ତୁତିବାକ୍ୟ; ପ୍ରିୟବଚନ—1. Encomium; eulogy; praise.
୨ । ତୋଷାମୋଦ; ମିଥ୍ୟା ପ୍ରିୟବାକ୍ୟ; ମିଥ୍ୟା ପ୍ରଶଂସା—
2. Flattery.
। ବିନୟବଚନ—3. Supplicating words; humble prayer.
୪ । ପାକଲାପାକଲ କରିବା; କଥଁଲେଇ ସଥଁଲେଇ କରି ଭୁଲାଯିବା କଥା—4. Coaxing; blandishment; cajolery.

ପ୍ରାଦେ (ବସ୍ତର) ବ—୧ । ଚାଟୁ (ଦେଖ)
1. Chaṭu (See).
୨ । କରଚୁଲି (ଦେଖ)
2. Karachuli (See).

ଚାଟୁଆ—ଦେ. ବଣ. ପୁଂ ( ସଂ. ଚାଟୁକାର )—୧ । ଚାଟୁକାରୀ; ଯେ
Chāṭuā ତୋଷାମଦ କରେ—1. Flattering.
(ଚାଟୋଇ—ସ୍ତ୍ରୀ) ୨ । ଚାଟୁପ୍ରିୟ; ଯେ ଚାଟୁକଥା ଶୁଣିବାକୁ ସୁଖ ପାଏ—
2. Loving to be flattered; liking flattery.
ଦେ. ବ—ଚାଟି (ଦେଖ)
Chāṭi (See).

ଚାଟୁଆଇବା—ଦେ. କି ( ସଂ. ଚାଟୁ )—୧ । ତୋଷାମଦ କରିବା—
Chāṭuāibā 1. To flatter.
୨ । ପାକଲାପାକଲ କରିବା; ମନଯୋଗା କଥା କହିବା—
2 To coax; to cajole.
କାନ୍ଧିକେ କୋଳରେ ବସାଇ
କହନ୍ତି ବାକ୍ୟ ଚାଟୁଆଇ—ଭୂପତି. ପ୍ରେମପଞ୍ଚାମୃତ ।
୩ । ବିନୟପୂର୍ଣ୍ଣ କଥା କହିବା—
3. To speak with humility;
ଦ୍ରବ୍ୟ ଭେଟକନ ଅଗ୍ରେ ଦେଇ,
ବାକ୍ୟ କହିବ ଚାଟୁଆଇ—ଜଗନ୍ନାଥ. ଭାଗବତ ।

ଚାଟୁକଟୁ—ଦେ. ବ ( ବିପରୀତାର୍ଥକ ସନ୍ଧିରେ )—
Chāṭu kaṭu ଚାଟୁବାକ୍ୟ ଓ କଟୁବାକ୍ୟ—
Flattery and pungent speech.

ଚାଟୁକାର—ସଂ. ବଣ. ପୁଂ ( ଚାଟୁ+କୃ ଧାତୁ+କର୍ତ୍ତୃ. ଅ )—
Chāṭukāra ୧ । ଯେ ମନ ରଞ୍ଜାଇ କଥା କହେ—
1. Humouring; complaisant.
(ଚାଟୁକାରୀ—ଅନ୍ୟରୂପ) ୨ । ତୋଷାମଦ କରିବା ( ବ୍ୟକ୍ତି );
ଚାଟୁକାରୀ—2. Flattering; sycophant.
ସଂ. ବ—ତୋଷାମଦିଆ ବ୍ୟକ୍ତି—Flatterer; a sycophant.

ଚାଟୁପଟୁ—ସଂ. ବ. ( ୭ମୀ ତତ୍; ଚାଟୁ+ପଟୁ )—
Chāṭupaṭu ତୋଷାମଦିଆ; ଯେ ଖୁବ୍ ତୋଷାମଦ କରି ପାରେ—
Flattering; expert in flattering.
ଚତୁର ଅଲୀକ ଯଶ ଭଣନେ କେ ରତ, ଚାଟୁପଟୁ × ×
ବ୍ରଜନାଥ. ମହାଯାତ୍ରା ।
ସଂ. ବ—ଭଣ୍ଡ; ବିଦୂଷକ—A jester or fool in a king's; court or in a drama.

ଚାଟୁପ୍ରିୟ—ସଂ. ବଣ ପୁଂ ( ବହୁବ୍ରୀହି; ଚାଟୁ+ପ୍ରିୟ )—
Chāṭupriya ଯେ ତୋଷାମଦିଆ କଥା ଶୁଣିବାକୁ ସୁଖ ପାଏ—
(ଚାଟୁପ୍ରିୟା—ସ୍ତ୍ରୀ) Fond of flattery; fond of being flattered.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଟାଣ' ନ ମିଳିଲେ 'ଟାଣ' ଖୋଜିବେ; 'କୃଷ' ନ ମିଳିଲେ 'କୃଷ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କିଆ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଚାଟୁବଚନ**—ସଂ. ବି. ( ମ. ପ. ଲୋ; ଚାଟୁ+ବଚନ )—
Chāṭu bachana ୧ । ଖୋସାମଦିଆ କଥା; ଚାଟୁପୂର୍ଣ୍ଣ ବଚନ—
1. Flattering words.
୨ । ଅତିରିକ୍ତ ପ୍ରଶଂସା—
2. Undue praise; adulation.
୩ । ପ୍ରାର୍ଥନା—3. Entreaty

**ଚାଟୁବଟୁ**—ସଂ. ବିଣ. ( ୬ଷ୍ଠୀ ତତ୍; ଚାଟୁ+ବଟୁ )—
Chāṭubatu ଚାଟୁପଟୁ ( ଦେଖ )
Chāṭupatu ( See )
ସଂ. ବି—ବିଦୂଷକ—Jester.

ଚାଟୁବଟୁକୁ ସୁଜାଣ ବୋଲି ଜାଣ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଚାଟୁବାକ୍ୟ**—ସଂ. ବି. (ମ. ପ. ଲୋ; ଚାଟୁ+ବାକ୍ୟ)—
Chāṭu bākya ଚାଟୁବଚନ (ଦେଖ)
Chāṭubachana (See)

**ଚାଟୁବାଦ**—ସଂ. ବି.—(ଚାଟୁ+ବଦ୍ ଧାତୁ+ଭାବ. ଅ)—
Chāṭu bāda ଚାଟୁବଚନ (ଦେଖ)
Chāṭu bachana (See)

**ଚାଟୁବାଦୀ**—ସଂ. ବିଣ. ପୁଂ—(ଚାଟୁ+ବଦ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)
Chāṭu bādī ଚାଟୁକାର (ଦେଖ)
(ଚାଟୁବାଦିନୀ—ସ୍ତ୍ରୀ) Chāṭukāra (See)

**ଚାଟୁଭାଷୀ**—ସଂ. ବିଣ. ( ଚାଟୁ+ଭାଷ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )
Chāṭubhāshī ଚାଟୁକାର (ଦେଖ)
(ଚାଟୁଭାଷିଣୀ—ସ୍ତ୍ରୀ) Chāṭukāra (See)

**ଚାଟୁର୍ଯ୍ୟା**—ଦେ. ବି.—(ସଂ. ଚଟ୍ଟୋପାଧ୍ୟାୟ)—ଚାଟୁର୍ଯ୍ୟା; ଚଟ୍ଟୋପାଧ୍ୟାୟ;
Chāṭurjyā ବଙ୍ଗାଳି ବ୍ରାହ୍ମଣଙ୍କ ଉପାଧିବିଶେଷ—Chatterjee,
চাটুর্য্যা a title of Bengale Brāhmaṇas.

**ଚାଟୂକ୍ତି**—ସଂ. ବି. ( ମ. ପ. ଲୋ କର୍ମଧା; ଚାଟୁ+ଉକ୍ତି )—
Chāṭūkti ଚାଟୁବଚନ ( ଦେଖ )
Chāṭubachana (See)

**ଚାଟୋଲ**—ଦେ. ବିଣ. ( ସଂ. ଚଟୁଲ=ଅସ୍ଥିର )—
Chāṭola ୧ । ରୋଗାଦି ଯୋଗୁଁ ବ୍ୟାକୁଳତା ଅନୁଭବ କରୁଥିବା—
ବେଚୈନ 1. (a person) Feeling restless on account of disease.
୨ । ଡହଳ ବିକଳ ( ଦେଖ )
2. Dahala bikala ( See )
( ଦ୍ର—ଯେଉଁ ରୋଗୀ ଚାଟୋଲ ହୁଏ, ସେ ଅସ୍ଥିର ହୁଏ ନାହିଁ, ଥଣ୍ଡା ସ୍ଥାନ ଓ ପବନ ଲୋଡ଼େ, ଦେହରୁ ଲୁଗାପଟା କାଢ଼ି ପକାଏ ଓ ହାତଗୋଡ଼ କାଡ଼େଇ ହୁଏ । )

**ଚାଡ୍ରା**—ପ୍ରାଦେ. (ମେଦିନୀପୁର) ବିଣ—ଟାଙ୍ଗସମୁଣ୍ଡିଆ—
Chādrā Bald-headed.

**ଚାଣକ୍ୟ**—ସଂ. ବି. (ଚଣକ=ମୁନିବିଶେଷ+ଅପତ୍ୟାର୍ଥେ ଯ)—
Chāṇakya ୧ । ରାଜା ଚନ୍ଦ୍ରଗୁପ୍ତଙ୍କର ତୀକ୍ଷ୍ଣବୁଦ୍ଧି ମନ୍ତ୍ରୀ ବିଷ୍ଣୁଗୁପ୍ତ—
1. The name of a minister of Raja Chandragupta noted for his political acumen.
[ ଦ୍ର—ଏ ଜାତିରେ ବ୍ରାହ୍ମଣ ଥିଲେ । ମଗଧ ବା ପାଟଳିପୁତ୍ରର ନନ୍ଦବଂଶର ରାଜା ମହାନନ୍ଦଙ୍କଠାରୁ ଏ ଅପମାନ ପାଇ ତହିଁର ପ୍ରତିଶୋଧ ନେବା ପାଇଁ ମହାନନ୍ଦଙ୍କ ଦାସୀପୁତ୍ର ଚନ୍ଦ୍ରଗୁପ୍ତଙ୍କୁ ସହାୟତା ଦେଇ ଏ ନନ୍ଦବଂଶର ଉଚ୍ଛେଦ ସାଧନ କଲେ, ଓ ଚନ୍ଦ୍ରଗୁପ୍ତଙ୍କୁ ମଗଧ ସିଂହାସନରେ ବସାଇଲେ । ଏହାଙ୍କ ଜନ୍ମସ୍ଥାନ ତକ୍ଷଶିଳା (ଆଧୁନିକ ରାୱଲପିଣ୍ଡିର ପାଖ) ରେ ଥିଲା । ଚାଣକ୍ୟଙ୍କ ରଚିତ 'ଅର୍ଥଶାସ୍ତ୍ର' ରାଜନୀତି ସମ୍ବନ୍ଧରେ ପ୍ରାମାଣିକ ଗ୍ରନ୍ଥ ଅଟେ । ଏହାଙ୍କ ରଚିତ ଶ୍ଳୋକମାନଙ୍କ ମଧ୍ୟରୁ ବାଛି ବାଛି ପରବର୍ତ୍ତୀ ସଂକଳୟିତାମାନେ 'ବୃଦ୍ଧଚାଣକ୍ୟ', 'ଲଘୁଚାଣକ୍ୟ' 'ବୋଧଚାଣକ୍ୟ' 'ଚାଣକ୍ୟସାରସଂଗ୍ରହ' ନାମକ ଗ୍ରନ୍ଥମାନ ସଙ୍କଳନ କରିଅଛନ୍ତି । ଚାଣକ୍ୟଙ୍କ ରଚିତ 'ବିଷ୍ଣୁଗୁପ୍ତସିଦ୍ଧାନ୍ତ' ରେ ଜ୍ୟୋତିଷ ବିଷୟର ଚର୍ଚ୍ଚା ହୋଇଅଛି । ସେ 'ବୈଦ୍ୟଜୀବନ' ନାମକ ଖଣ୍ଡିଏ ଆୟୁର୍ବେଦୀୟ ଚିକିତ୍ସାଗ୍ରନ୍ଥ ମଧ ଲେଖିଥିଲେ; ବିଷ୍ଣୁପୁରାଣ, ଭାଗବତ ଓ କଥାସରିତ୍‌ସାଗର ଆଦି ସଂସ୍କୃତ ଗ୍ରନ୍ଥରେ ଏହାଙ୍କର ନାମ ଉଲ୍ଲେଖ ଅଛି । ଏହାଙ୍କର ଅନ୍ୟ ନାମ ବାତ୍ସ୍ୟାୟନ, ମଲ୍ଲନାଗ, କୌଟିଲ୍ୟ, ଚଣକାତ୍ମଜ, ଦ୍ରାମିଲସ୍ୱାମୀ, ବିଷ୍ଣୁଗୁପ୍ତ ଓ ଅଙ୍ଗୁଳ ଥିବାର ଅଭିଧାନକାର ହେମଚନ୍ଦ୍ର ଲେଖିଅଛନ୍ତି—
ହି. ଶବ୍ଦସାଗର । ]
୨ । ଚାଣକ୍ୟଙ୍କ ରଚିତ ନୀତିଗ୍ରନ୍ଥ—2. A work of political and moral aphorisms compiled by Chāṇakya

**ଚାଣକ୍ୟନୀତି**—ସଂ. ବି. (୬ଷ୍ଠୀ ତତ୍; ଚାଣକ୍ୟ+ନୀତି)—ଚାଣକ୍ୟଙ୍କ
Chāṇakya niti ସଂକଳିତ ଅର୍ଥନୀତି ଓ ରାଜନୀତି—Principles of Ethics and Politics compiled or enunciated by Chāṇakya.

**ଚାଣିକ୍ୟ**—ଗ୍ରା ବି (ସଂ. ଚାଣକ୍ୟ)—ଚାଣକ୍ୟ (ଦେଖ)
Chāṇikya Chāṇakya (See).

**ଚାଣୂର**—ସଂ. ବି (ନାମ) (ଚଣ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଊର)—
Chāṇūra ଦୈତ୍ୟବିଶେଷ—Name of a demon.
[ ଦ୍ର—ଏ କଂସପାଖରେ ମଲ୍ଲ ବା ମାଲରୂପେ ଥାଇ ବଡ଼ ସମ୍ମାନ ପାଉଥିଲେ । ଶ୍ରୀକୃଷ୍ଣ ଏହାଙ୍କୁ ନିହତ କରିଥିଲେ । ]

**ଚାଣୂରମର୍ଦ୍ଦନ**—ସଂ. ବି (୬ଷ୍ଠୀତତ୍; ଚାଣୂର+ମର୍ଦ୍ଦନ)—ଶ୍ରୀକୃଷ୍ଣ—
Chāṇura marddana Srikrushṇa.
( ଚାଣୂରନିସୂଦନ—ଅନ୍ୟରୂପ )

**ଚାଣ୍ଟ**—ଦେ. ବି (କଣିଆ ଶବ୍ଦ)—ସୁନାରୂପାରେ ନିର୍ମିତ ଗୋଲାପଫୁଲ ପ୍ରଭୃତି
Chānṭa ସୁନ୍ଦର ଦିଶିବାପାଇଁ ତହିଁ ତଳେ ଝୁଲୁଥିବା ଚେପ୍‌ଟା ଚେପ୍‌ଟା ଚୁଆ—Flat pendants hanging from the fringe of gold and silver flowerlike ornaments.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଅ | ଉଅ | ଞ୍ଚ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଯ | ଇଅ | ଢ଼ | ନ୍ଧ |

ଚାଣ୍ଟି — ପ୍ରାଦେ (ସମ୍ବଲପୁର) ବ ( ଭୁଲ. ଏହି ଅର୍ଥରେ ହି. ଚୀଁଟୀ ) —
Chāṇṭi
୧ । ପିମ୍ପୁଡ଼ି—1. Ant.
(ଯଥା—ଚାଣ୍ଟି ଚାବିବା = ପିମ୍ପୁଡ଼ି କାମୁଡ଼ିବା )

୨ । ଚାଣ୍ଟିଶାଗ୍; ଅମ୍ଳିତିପତ୍ର— 2. A kind of wild kitchen-herb which tastes sour

ଚାଣ୍ଟିଶାଗ୍ — ପ୍ରାଦେ. ( ସମ୍ବଲପୁର ) ବ. ( ସଂ ଚାଙ୍ଗେରୀ ) —
Chāṇṭiśāg
ଅମ୍ଳିତିପତ୍ର ( ଦେଖ )
Āmḷitipatra ( See )

ଚାଣ୍ଡ — ଦେ. ବ. ( ସଂ. ଚଣ୍ଡତା ବା ଚାଣ୍ଡ୍ୟ ) — ତୀବ୍ରତା —
Chāṇḍa
Acuteness.

ରାମଙ୍କ କାଣ୍ଡ ଚାଣ୍ଡ ରାବଣ ନ ବୁଝି—କୃଷ୍ଣସିଂହ. ମହାଭାରତ. ବନ ।

ଦେ. କ୍ରି. ବଣ — ଚାଣ୍ଡେ ( ଦେଖ )
Chāṇḍe ( See )

ଚାଣ୍ଡରସ — ଦେ. ବ. ( ସଂ. ଚଣ୍ଡ + ରସ ) — ଭୂମ୍ବବାଣ ଆଦିରେ ନିଆଁ
Chāṇḍarasa
ଲଗାଇବା ପୂର୍ବରୁ ହଠାତ୍ ନିଆଁ ଧରିବାପାଇଁ ବାଣ ମୁହଁରେ ଯେଉଁ ବାରୁଦ ବ୍ୟବହୃତ ହୁଏ; ରଞ୍ଜକ — Gunpowder which is put inside the wick at the mouth of a firework to ignite it very quickly.

ଚାଣ୍ଡାଳ — ସଂ. ବ. ପୁଂ. ( ଚଣ୍ଡାଳ + ସ୍ୱାର୍ଥରେ. ଅ ) —
Chāṇḍāḷa
୧ । ନିଷାଦ; ଚଣ୍ଡାଳ; ହାଡ଼ି—
(ଚାଣ୍ଡାଳୀ—ସ୍ତ୍ରୀ) 1. A man belonging to a very low caste amongst the Hindus.

୨ । ନୀଚତମ ଅସ୍ପୃଶ୍ୟଜାତି—2. A pariah.

চাঁড়াল
ଦେ. ବ — ୧ । ନୀଚ ବ୍ୟକ୍ତି; ଅସ୍ପୃଶ୍ୟଜାତୀୟ ବ୍ୟକ୍ତି —
**चाण्डाल** 1. A low mean fellow; a pariah; an outcaste
( ଚାଣ୍ଡାଳୁଣୀ — ସ୍ତ୍ରୀ )

୨ । କ୍ରୂରକର୍ମା ବ୍ୟକ୍ତି—2. A cruel person

ମୋହର କନିଷ୍ଠ ଭାଇ କଷ୍ଟପୂରୁ ଚାଣ୍ଡାଳ ମାରିଗଲା—
ବିଶ୍ୱନାଥ. ବିଚିତ୍ରରାମାୟଣ ।

ଚାଣ୍ଡେ — ଦେ. କ୍ରି. ବଣ. ( ସଂ. ଚଣ୍ଡ ) —
Chāṇḍe
୧ । କ୍ଷଣମାତ୍ରକେ; ଅତିଶୀଘ୍ର—
তুরিতে
1. Quickly; very soon; instantaneously; in a moment.
**फौरन**
(ଚାଣ୍ଡେକେ—ଅନ୍ୟରୂପ)
ବନ୍ଧୁବନ୍ଧାବାତବଣି ଚାଣ୍ଡେ ଯାଆନ୍ତେ ଲସି—
ମଧୁସୂଦନ. ଛନ୍ଦମାଳା ।

୨ । ପ୍ରତ୍ୟକ୍ଷଭାବରେ—2. Directly.

× × ଚାଣ୍ଡେ ଦେଇଥିଲି ବାଳାମଣିକି
ଉପୁଜିଲା ଦେଲି ସେ ଭାବ ଏଣିକି—କବିସୂର୍ଯ୍ୟ. ହରିଭା ।

ଚାଣ୍ଡେ ଚାଣ୍ଡେ — ଦେ. କ୍ରି. ବଣ — ଅତି ଶୀଘ୍ର; କ୍ଷଣମାତ୍ରକେ —
Chāṇḍe chāṇḍe
Instantaneously; in a moment.

ବିଶ୍ୱାମିତ୍ର ସଙ୍ଗେ ଶ୍ରୀରାମ ଲକ୍ଷ୍ମଣ ସାଜି କେହି ଚାଣ୍ଡେ ଚାଣ୍ଡେ—
ନନ୍ଦକିଶୋର. ନିର୍ଝରିଣୀ ।

ଚାତକ — ସଂ. ବ. ପୁଂ. ( ଚତ୍ ଧାତୁ = ମାଗିବା + କର୍ତ୍ତୃ. ଅକ; ଯେ
Chātaka
ଚାତ୍କାର କରି ମେଘକୁ ଜଳ ମାଗେ ) —
ଚାତକୀ } ସ୍ତ୍ରୀ
ଚାତକିନୀ }
୧ । ସ୍ୱନାମଖ୍ୟାତ କୃଷ୍ଣବର୍ଣ୍ଣ ପକ୍ଷୀବିଶେଷ —
1. Pied-crested cuckoo; Coccyster, genus Coculus.

[ ଦ୍ର—ଏହାର ଥଣ୍ଟ ଖୁବ୍ ଛୋଟ । ପୁଚ୍ଛ କୋଡ଼ି ପରି ଏବଂ ଗୋଡ଼ ଛୋଟିଆ; ଡେଣାର ଶେଷ ପରି ଦୁଇଟି ସନ୍ନ୍ୟାସୀଙ୍କ ଚୂମୁଟା ପରି ଦୁଇ ପାଖକୁ ବାହାରିଥାଏ । ପକ୍ଷର ବର୍ଣ୍ଣ କଳା, ବାଇଗଣୀ ଓ ଧୂସର । ଛାତି ଓ ପେଟ ରକ୍ତାଭ ଶୁକ୍ଳ—ଜ୍ଞାନେନ୍ଦ୍ର ।

ଚାତକ କୋକିଳ ପରି ପରଭୃତ୍ ଅର୍ଥାତ୍ ଅନ୍ୟ ଚଢ଼େଇ ଏହାର ଡିମ୍ବକୁ ଫୁଟାଏ—ଯୋଗେଶଚନ୍ଦ୍ର ।

କିନ୍ତୁ ବର୍ଷାଦିନେ ମେଘ ଉଠାଇଲାବେଳେ ଯେଉଁ ଛୋଟ ଚଢ଼େଇମାନେ ଦୀର୍ଘ ଚେଁ ଚେଁ ଶବ୍ଦ କରି ଆକାଶରେ ଅତିଶୀଘ୍ର ଚକ୍ରାକାର ଗତିରେ ଉଡ଼ି ବୁଲନ୍ତି ଓ ଯେ ଉଡ଼ିଲାବେଳେ ଗୁଆକାତି ଆକାର ଦେଖାଯାଆନ୍ତି ସେମାନେ କୋକିଳଜାତୀୟ ନୁହନ୍ତି । ସେମାନେ ଘରଚଟିଆଙ୍କ ପରି ଘରର ଚାଳ ଓ କାନ୍ଥ ସନ୍ଧିରେ, କୋଠାର କଡ଼ିସନ୍ଧିରେ କୋମଳ ପର ଓ କାଠିକୁଟାରେ ବସା ନିର୍ମାଣ କରି ଜ୍ୟେଷ୍ଠ ମାସରେ ଡିମ୍ବ ଦିଅନ୍ତି ଓ ଆପଣା ଡିମ୍ବକୁ ଆପେ ଫୁଟାଇ ଛୁଆଙ୍କୁ ପାଳନ୍ତି । ଏମାନେ ଲମ୍ବରେ ୮।୧୦ ଅଙ୍ଗୁଳି ବଢ଼ନ୍ତି । ଜେର୍ଡ୍ଡନ୍ଙ୍କ ଇଂରାଜି ଅଭିଧାନରେ ସ୍ୱିଫ୍ଟ ( Swift ) ପକ୍ଷୀର ବସିବାର ଓ ଉଡ଼ିବାର ଯେଉଁ ଚିତ୍ର ଦିଆଯାଇଅଛି, ଏ ପକ୍ଷୀର ରୂପ ସେହିପରି । ଏ ପକ୍ଷୀ କୋଠା ଛାତ ତଳେ ବସା କରିବାର ଓ ଖୁବ୍ ଦ୍ରୁତବେଗରେ ଉଡ଼ିବାର ଓ ଚେଁ ଚେଁ ଶବ୍ଦ କରିବାର ଯାହା ଲେଖା ଅଛି, ତାହା ଏ ପକ୍ଷୀ ପ୍ରତି ପ୍ରଯୁଜ୍ୟ ଅଟେ । ପ୍ରବାଦ ଅଛି, ଚାତକ ବୃଷ୍ଟି ଜଳ ଭିନ୍ନ ଅନ୍ୟ ଜଳ କେବେହେଁ ପାନ କରେ ନାହିଁ । ଏ ବୃଷ୍ଟି ଜଳ ଆଶାରେ ମେଘକୁ ବିକଳକଣ୍ଠରେ ପ୍ରାର୍ଥନା କରେ, ଅଥଚ କେବେ ହେଲେ ଭୂପୃଷ୍ଠର ଜଳ ପିଏ ନାହିଁ ।

ପୁରାଣ ମତରେ ବୃହଦଶ୍ରବା ଗନ୍ଧର୍ବଙ୍କୁ ଇନ୍ଦ୍ର ଅଭିଶାପ ଦେବାରୁ ସେ ଚାତକ ପକ୍ଷୀର ରୂପ ଧାରଣ କଲା । ତେଣୁ ସେ 'କଷ୍ଟ ଫେଡ଼' 'କଷ୍ଟ ଫେଡ଼' ବୋଲି ଇନ୍ଦ୍ରଙ୍କୁ ପ୍ରାର୍ଥନା କରୁଥାଏ । କବି ଲେଖିଅଛନ୍ତି :—

ବୃହଦଶ୍ରବା ଗନ୍ଧର୍ବ ଯେ କଷ୍ଟରେ ସେବଇ
କଷ୍ଟ ଫେଡ କଷ୍ଟ ଫେଡ଼ ଇନ୍ଦ୍ରଙ୍କୁ ଡାକଇ—ସାରଳା, ମହାଭାରତ, ମଧ୍ୟ ।

୨ । ଘରଚଟିଆଜାତୀୟ କ୍ଷୁଦ୍ର ପକ୍ଷୀବିଶେଷ—
2. The common Indian Swift; Cypselus Affinis.

ସାଧାରଣ ଲୋକେ: ଅପର ପୃଷ୍ଠାରେ ଦେଖିବ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ବୃଥା' ନ ମିଳିଲେ 'ବୃଥା' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ; 'ଅଳଙ୍କାର' ନ ପାଇଲେ 'ଅଲଙ୍କାର' ଦେଖନ୍ତୁ ।

**ଚାତକାନନ୍ଦନ**—ସଂ. ବି. (ଚାତକ+ଆନନ୍ଦନ=ଆନନ୍ଦଦାୟକ)—
Chātakānandana ୧ । ବର୍ଷାକାଳ—1. Rainy season.
୨ । ମେଘ—2. Cloud.

**ଚାତନ**—ସଂ ବି. (ଚତ୍ ଧାତୁ ଣିଜନ୍ତ=ଚାତି ଧାତୁ=ପୀଡ଼ା ଦେବା+ଭାବ. ଅନ)—ପୀଡ଼ନ; କ୍ଳେଶ ଦେବା—
Chātana
Troubling; oppressing; teasing.

**ଚାତର**—ଦେ. ବି. (ସଂ. ଚାତୁରୀ)—୧ । ଚାତୁରୀ; କୌଶଳ—
Chātara 1. Deceit; fraud.
ଦେଖ ୨ । ଚାତୁରି; କଥାର ବଡ଼ାଇ; ବାଲ୍‌ଙ୍ଗି—
2. Boasting; bragging.
ଚାକର ମାତର କାହାର ଚାତର ଏଥିକି କର ଏ ଆଶେ ।
ଅଭିମନ୍ୟୁ. ବଦଗ୍ଧ ଚନ୍ଦ୍ରାମଣି ।
୩ । ଅହଙ୍କାର; ଗର୍ବ—3. Pride; arrogance.
ଗିରିବର ଧର କେତେ ମାତର,
କୋଟି ବ୍ରହ୍ମାଣ୍ଡେ ଗୋ ନେ କହୁଁ ଥିଲୁ ଚାତର । ଗ୍ରାମୀ. ରହସ୍ୟମଞ୍ଜରୀ ।
ଦେ. ବିଣ.—ଗର୍ବୀ; ଗର୍ବାନ୍ଧାନ୍ଧିତ—Elated with pride.
ବଢ଼ନ୍ତବେଳେ ନ ହୁଅ କାତର,
ସଞ୍ଚନ୍ତବେଳେ ନ ହୁଅ ଚାତର । ପ୍ରବଚନ ।

**ଚାତରା**—ଦେ. ବି. ଓ ବିଣ.—ଚାତର (ଦେଖ)
Chātarā Chātara (See)

**ଚାତରିଆ**—ଦେ. ବିଣ.—୧ । ଆତ୍ମଗର୍ବୀ—
Chātariā 1. Vainglorious.
୨ । ଯେ ମୁହଁବାଲ୍‌ଙ୍ଗି କରେ—
2. Bragging; boastful.

**ଚାତୁର**—ସଂ. ବି.—(ଚତୁର+ସମ୍ବନ୍ଧାର୍ଥେ. ଅ)—୧ । ଗୋଲ ତକିଆ; ମାନ୍ଦି—1. Circular leaning cushion.
Chātura
୨ । ଚାରିଜଣ ବସିବା ଭଳି ଗାଡ଼ି—
2. A four-seated carriage.
୩ । (ଚତୁର+ଭାବାର୍ଥେ. ଅ)—ଚାତୁରୀ—
3. Cunning; fraud.
(ଚାତୁରୀ—ସ୍ତ୍ରୀ) ସଂ. ବିଣ. ପୁଂ. (ଚତୁର+ସ୍ୱାର୍ଥେ. ଅ)—
୧ । ପ୍ରିୟଭାଷୀ—1 Flattering; sweet-speaking.
୨ । ଚକ୍ଷୁଗୋଚର—2 Within the ken of one's eyes.

**ଚାତୁରକ**—ସଂ. ବି. ପୁଂ (ଚତୁର=ରଥ+ଚଳାଇବା ଅର୍ଥରେ. ଇକ)—
Chāturika ସାରଥି—Coachman; driver of a car

**ଚାତୁରୀ**—ସଂ. ବି. ସ୍ତ୍ରୀ. (ଚତୁର+ଭାବ. ଅ+ସ୍ତ୍ରୀ. ଈ)—୧ । ଚାତୁର୍ଯ୍ୟ; ଚତୁରତା—1. Cleverness; dexterity.
Chaturī
ଦେ. ବି.—ପ୍ରବଞ୍ଚନା; ଶଠତା; ଛଳ—
1. Fraud; deceit; craft.
୨ । ଚାତର (ଦେଖ)
2. Chātara (See)

**ଚାତୁର୍ଜାତକ**—ସଂ. ବି. (ଚତୁର୍ଜାତକ+ସ୍ୱାର୍ଥେ. ଅ)—ଔଷଧାର୍ଥ ଡାଲଚିନି, ତେଜପତ୍ର, ଅଲାଇଚ ଓ ନାଗେଶ୍ୱର ଏହି ଚାରି-
Chāturjātaka
(ଚାତୁର୍ଜାତ—ଅନ୍ୟରୂପ) ଗୋଟି ପଦାର୍ଥର ମିଳନ—A mixture of cinnamon, cassia-leaves, cardamum and the filaments of the flowers of Mesua Fera for medicinal purposes.

**ଚାତୁର୍ଥିକ**—ସଂ. ବିଣ. (ଚତୁର୍ଥ+ଇକ)—ଚତୁର୍ଥ ଦିନରେ ଦେଖାଯିବା—
Chāturthika Appearing at an interval of 4 days.
(ଚାତୁର୍ଥକ—ଅନ୍ୟରୂପ)
ସଂ. ବି.—୪ ଦିନ ଛଡ଼ା ହେବା ପାଳି ଜ୍ୱର—
Quartan; quotidian fever.

**ଚାତୁର୍ଦ୍ଦଶ**—ସଂ. ବିଣ. (ଚତୁର୍ଦ୍ଦଶ+ଭାବାର୍ଥେ. ଅ)—ଚତୁର୍ଦ୍ଦଶୀ ତିଥିରେ ଜାତ ବା ଘଟିତ—Happening on the 14th day of the lunar fortnight.
Chāturddaśa
ସଂ. ବି.- ରାକ୍ଷସ (ହି. ଶବ୍ଦସାଗର)—Demon.

**ଚାତୁର୍ବର୍ଣ୍ଣ୍ୟ**—ସଂ. ବିଣ.—(ଚତୁର୍ବର୍ଣ୍ଣ+ସମ୍ବନ୍ଧାର୍ଥେ. ଯ)—ଚତୁର୍ବର୍ଣ୍ଣ ସମ୍ବନ୍ଧୀୟ—Relating to the 4 chief castes amongst the Hindus.
Chāturbarṇṇya
ସଂ. ବି.—(+ସ୍ୱାର୍ଥେ. ଯ) ୧ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର-ଏହି ଚାରି ଜାତି—1. The 4 principal caste-divisions amongst the Hindus, viz Brāhmaṇa, Kshatriya, Baiśya and Śūdra.
୨ । ବ୍ରାହ୍ମଣାଦି ୪ ଜାତିଙ୍କ ଅନୁଷ୍ଠେୟ କର୍ମ ବା ଧର୍ମ—
2. The duties and religious observances enjoined for the 4 castes of the Hindus.
(ଯଥା—ବ୍ରାହ୍ମଣର ଯଜନ, ଯାଜନ, ଅଧ୍ୟୟନ, ଅଧ୍ୟାପନ, ଦାନ ଓ ପ୍ରତିଗ୍ରହ; କ୍ଷତ୍ରିୟର ବାହୁବଳରେ ପ୍ରଜାପାଳନ; ବୈଶ୍ୟର କୃଷି, ଗୋରକ୍ଷା ଓ ବାଣିଜ୍ୟ ଏବଂ ଶୂଦ୍ରର ଦ୍ୱିଜାତିସେବା-କର୍ମ ।)

**ଚାତୁର୍ଭଦ୍ର**—ସଂ. ବି. (ଚତୁର୍ଭଦ୍ର+ସ୍ୱାର୍ଥେ ଅ)—ଚତୁର୍ଭଦ୍ର (ଦେଖ)
Chāturbhadra Chaturbhadra (See)
(ଚାତୁର୍ଭଦ୍ରକ—ଅନ୍ୟରୂପ)

**ଚାତୁର୍ଭୌତିକ**—ସଂ. ବିଣ. (ଚତୁର୍ଭୂତ+ଜାତାର୍ଥରେ ଇକ)—
Chāturbhautika ମୃତ୍ତିକା, ଜଳ, ଅଗ୍ନି ଓ ବାୟୁରୁ ଉତ୍ପନ୍ନ (ଶରୀରାଦି)—(matter) Evolved from the 4 elements viz. water, earth, fire and air.
[ ଦ୍ର—ନ୍ୟାୟଦର୍ଶନରେ ଆକାଶ-ଉପାଦାନ ସ୍ୱୀକୃତ ହୋଇ ନାହିଁ । ]

**ଚାତୁର୍ମହାରାଜକ**—ସଂ. ବି—୧ । ବିଷ୍ଣୁ; ଭଗବାନ୍ (ହି. ଶବ୍ଦସାଗର)—
Chāturmahārājika 1. Bishṇu.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯୁ | ଉଅ | ଓ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ୱ | ନ୍ତ |

୨ । ବୁଦ୍ଧଦେବ (ହି. ଶବ୍ଦସାଗର)—2 The Buddha

**ଚାତୁର୍ମାସ**—ସଂ. ବିଣ. (ଚତୁର୍ମାସ+ଭାବାର୍ଥେ. ଅ)—୪ ମାସରେ ସମ୍ପାଦ୍ୟ (ବ୍ରତ)—(rites) To be performed during 4 months.
Chāturmāsa

**ଚାତୁର୍ମାସିକ**—ସଂ. ବିଣ. (ଚତୁର୍ମାସ+ଇକ)—ଚାତୁର୍ମାସ (ଦେଖ) Chāturmāsa (See)
Chāturmāsika

ସଂ. ବି—ଚାରିମାସବ୍ୟାପୀ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବା (ପ୍ରକୃତିବାଦ)—Observance of the vow of continence for a period of 4 months

**ଚାତୁର୍ମାସ୍ୟ**—ସଂ. ବି. ପୁଂ. (ଚତୁର୍ମାସ+ଯ)—୧ । ଆଷାଢ଼ ଶୁକ୍ଳ ଦ୍ୱାଦଶୀ ବା ପୂର୍ଣ୍ଣିମାଠାରୁ କାର୍ତ୍ତିକ ଶୁକ୍ଳଦ୍ୱାଦଶୀ ବା ପୂର୍ଣ୍ଣିମା ପର୍ଯ୍ୟନ୍ତ ୪ ମାସ କାଳ ପାଳନ କରାଯିବା ବ୍ରତବିଶେଷ—1. A vow observed during the 4 rainy months (viz. Śrābaṇa, Bhādraba, Āświna and Kārttika)
Chāturmāsya

[ ଦ୍ର—ବରାହପୁରାଣ ଓ ମତ୍ସ୍ୟପୁରାଣରେ ଏ ବ୍ରତର ବିଧି ବର୍ଣ୍ଣିତ ହୋଇଅଛି । ଏହା ବିଷ୍ଣୁ ପୂଜନ ବ୍ରତ ଅଟେ ଓ ଏହା ଗୃହସ୍ଥମାନେ ପାଳନ କଲେ ମଧୁରସ୍ୱର, ଯୋଗସିଦ୍ଧି ଓ ସନ୍ତାନବୃଦ୍ଧି ହୁଏ । ଏଥିରେ ଗୁଡ଼, ମଦ୍ୟ, ଧାତୁପାତ୍ରରେ ପକ୍ୱ ଅନ୍ନ ଖାଇବା ନିଷିଦ୍ଧ ଓ 'ଓଁ ନମୋନାରାୟଣାୟ' ମନ୍ତ୍ର ଜପ କରିବା ବିଧେୟ । ଏ ବ୍ରତ ଯତିମାନେ ମଧ୍ୟ କରିବାର ବିଧି ଅଛି । ବ୍ରତପାଳନକାଳରେ ଯତିମାନଙ୍କର ଏକ ସ୍ଥାନରେ ଏ ଚାରି ମାସ ବାସ କରିବା ବିଧେୟ । ବୌଦ୍ଧଭିକ୍ଷୁ (ଯତି) ମାନେ ଏ ନିୟମ ପାଳନ କରନ୍ତି—ହି. ଶବ୍ଦସାଗର । ]

୨ । ଫାଲ୍ଗୁନ, ଚୈତ୍ର ବା ବୈଶାଖ ପୂର୍ଣ୍ଣିମାଠାରୁ ଆରମ୍ଭ କରାଯାଇ ୪ ମାସ କାଳ ଅନୁଷ୍ଠିତ ହେବା ଯଜ୍ଞବିଶେଷ (ଏହି ଯଜ୍ଞର ୪ଟି ପର୍ବ—ବୈଶ୍ୱଦେବ, ବରୁଣପ୍ରଘାସ, ଶାକମେଧ ଓ ସୁନାଶୀରୀୟ—ହି. ଶବ୍ଦସାଗର)—2. A vedic sacrifice perfomed in the course of 4 months.

ସଂ ବିଣ—ଚାରି ମାସରେ ସମ୍ପାଦନୀୟ—Performable in 4 months.

ସବୁ ନଦୀ ମିଶିବା ସ୍ଥାନେ ବୋଲି ଗଲେ
ତହିଁ ଉତ୍ତମ ଚାତୁର୍ମାସ୍ୟ ଯାଗ କଲେ । କୃଷ୍ଣସିଂହ. ମହାଭାରତ ବନ ।

**ଚାତୁର୍ମାସ୍ୟା**—ସଂ. ବି. ସ୍ତ୍ରୀ. (ଚତୁର୍ମାସ+ଯ+ସ୍ତ୍ରୀ. ଆ)—ଚାତୁର୍ମାସ୍ୟ (ଦେଖ) Chāturmāsya (See)
Chāturmāsyā

ଦେ. ବି. (ସଂ. ଚାତୁର୍ମାସ)—୧ । ବର୍ଷା ଋତୁର ଚାରି ମାସ—1. The 4 rainy months of Śrābaṇa, Bhādraba, Āświna and Kārttika.

୨ । ବର୍ଷାଋତୁ—2. The rainy season.

ବସି ଚାତୁର୍ମାସ୍ୟା ଗୀତ ଶୁଣିଥିଲି
ମନେ ପଡ଼େ ତାହା ଏବେ । ନନ୍ଦକିଶୋର—ନିର୍ଝରିଣୀ ।

**ଚାତୁର୍ହୋତ୍ର**—ସଂ. ବି. (ଚତୁର୍+ହୋତୃ+ଅ)—ଚାରିଜଣ ହୋତାଙ୍କ ଦ୍ୱାରା ସମ୍ପାଦ୍ୟ ଯଜ୍ଞ (ଚାତୁର୍ହୋତ୍ରିୟ—ବିଣ)—A vedic sacrifice performed by 4 priests together.
Chāturhotra

**ଚାତୁର୍ଯ୍ୟ**—ସଂ. ବି. (ଚତୁର+ଭାବାର୍ଥରେ ଯ)—୧ । ଚତୁରତା—1. Cleverness; cunning.
Chāturjya

୨ । ନିପୁଣତା; ନୈପୁଣ୍ୟ—2. Skill; dexterity.

ଦେ. ବି—ପ୍ରବଞ୍ଚନା; ଶଠତା—Fraud, deceit; craft.

**ଚାଦର**—ବୈଦେ ବି (ଫା. ଚାଦର୍=ଶବଦେହ ଆଚ୍ଛାଦକ ବସ୍ତ୍ର)—୧ । ଦୋପଟ୍ଟା; ଉତ୍ତରୀୟ ବସ୍ତ୍ର—1. A sheet of cloth used as a scarf.
Chādara
চাদর
**चद्दर; चादरा**

୨ । ବିଛଣାର ଆସ୍ତରଣ; ବିଛଣା ଉପରେ ପଡ଼ିବା ବସ୍ତ୍ର—2 Bed-sheet.

୩ । ଖୁବ୍ ଲମ୍ବା ଓ ଚଉଡ଼ା ଲୁଗା—3. A piece of cloth long and wide.

୪ । ଧାତୁଆଦିର ପତଳା ଓ ଦୀର୍ଘ ଏବଂ ପ୍ରଶସ୍ତ ଖଣ୍ଡ—4. A thin long and broad sheet of a metal

[ ଦ୍ର—ହିନ୍ଦୀରେ ପୁରୁଷଙ୍କ ଊର୍ଦ୍ଧ୍ୱାଙ୍ଗ ଆବରକ ବସ୍ତ୍ରକୁ ଚାଦର ଓ ସ୍ତ୍ରୀମାନଙ୍କ ଓଢ଼ଣୀକୁ ଚାଦର ବୋଲାଯାଏ । ]

**ଚାଦରଧରା**—ଦେ. ବି—ରାଜା ବା ବରକନ୍ୟା ଦୁଆରି ମୁହଁ ବାଟେ ଚାଲିଯିବା ବେଳେ ଯେଉଁ ଚାକର ସେମାନଙ୍କ ମୁଣ୍ଡ ଉପରେ ଖଣ୍ଡିଏ ଚାଦର ଟେକି ଧରେ—The servant or a person who holds a cloth as canopy over the head of a king or a resently married couple while passing through a door-way.
Chādaradharā

ଚାଦରଧରାକୁ ଏହା କି କର, ଚଉରକ୍ଷ କେବେ କି ହେଲା ପର—
ନବସୂର୍ଯ୍ୟ କଳଡ଼ା ।

**ଚାଦର ଧରିବା**—ଦେ. କ୍ରି—ରାଜା ବା ବରକନ୍ୟା କୌଣସି ଦୁଆରି ମୁହଁ ବାଟେ ଗଲାବେଳେ (ଆଗପଛ ହୋଇ ଛିଡ଼ା ହୋଇଥିବା ଦୁଇ ଜଣ ବ୍ୟକ୍ତି) ତାଙ୍କ ମୁଣ୍ଡ ଉପରେ ଖଣ୍ଡିଏ ଚାଦର ଟେକି ଧରିବା—To hold a sheet as a canopy over the head of a king or a newly married couple while passing through a door-way.
Chādara dharibā
চাদরধরা
**चादर पकड़ना**

**ଚାଦର ବିଜୁଳି**—ଦେ. ବି—ଯେଉଁ ବିଜୁଳି ମାରିବା ସମୟରେ ମେଘବ୍ୟାପୀ ଆଲୋକ ଦେଖାଯାଏ—Sheet lightning.
Chādara bijuḷi
চাদর বিজলি
**चद्दर बिजली**

ସାଧାରଣ ଲୋକେ ଅପଢ଼ ପୃଷ୍ଠାରେ ମୁଦ୍ରିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷଥ' ନ ମିଳିଲେ 'କ୍ଷଥ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

**ଚା ଦାନ୍**—ଦେ. ବି. ( ଚୀନ. ଚା + ଫା. ଦାନ୍ = ଫ. ଆଧାର )— Chā-dān ଯେଉଁ ପାତ୍ରରେ ଛଣା ହୋଇଥିବା ଗରମ ଚା'ପାଣି ଚା-ଦାନ ରଖାଯାଇଥାଏ ଏବଂ ଯହିଁରୁ ଉକ୍ତ ଜଳକୁ ଚା' **चा-दान** ପିଆଲାରେ ଢାଳି ତହିଁରେ ଆବଶ୍ୟକ ପରିମାଣରେ (ଚା-ଦାନି-ଅନ୍ୟରୂପ) ଦୁଧ ଓ ଚିନି ମିଶାଇ ପାନୀୟ ଚା'ପାଣି ପ୍ରସ୍ତୁତ କରାଯାଏ; ଚାହାପୋତ—Tea pot.

**ଚାନ୍ସ୍**—ବୈଦେ. ବି. ( ଇଂ )—୧ ।ସୁବିଧା— Chān-s 1. Opportunity.

୨ । କପାଳବାଚ୍ଛା କାମ ବା ଅବସ୍ଥା—2 Chance

**ଚାନ୍ସରି**—ବୈଦେ. ବି. ( ଇଂ. ଚାନ୍ସେରୀ )— Chān-sari ସ୍ୱତ୍ୱାସ୍ୱତ୍ୱ ବିଚାରାର୍ଥ ବିଲାତରେ ଥିବା ସର୍ବୋଚ୍ଚ ଅଦାଲତ— चानसेरी Court of Chancery. **चैंसरी**

**ଚାନ୍ସୀ**—ଦେ. ବି.—ଯେଉଁ ଦେଶୀ ଡାକ୍ତର ଅସ୍ତ୍ରଚିକିତ୍ସା ନ କରି Chān-sī କେବଳ ତୈଳ ଓ ଲେପ ଆଦିରେ ବ୍ରଣ ଓ ନାଳୀ ଘାଆ ଇତ୍ୟାଦି ଆରୋଗ୍ୟ କରନ୍ତି—A class of Indian medical practitioners who cure surgecal-cases without operation by the application of oils and ointments.

**ଚାନ୍ସେଲର୍**—ବୈଦେ. ବି. (ଇଂ)—ବିଶ୍ୱବିଦ୍ୟାଳୟର ଶାସନ ଓ ଚାଳନ Chān-selar ଭାର ପ୍ରାପ୍ତ ସର୍ବୋଚ୍ଚ କର୍ମଚାରୀ—Chanceller of चानसेलर an university. **चैंसलर; चैंसेलर**

**ଚାନକା**—ଦେ. ବି ଓ ବିଣ—ଛାନକା ( ଦେଖ ) Chānakā Chhanakā ( See ) (ଚାନକା—ଅନ୍ୟରୂପ)

**ଚାନ୍ଦସୀ**—ଦେ. ବି—ଚାନ୍ସୀ ( ଦେଖ ) Chānd-sī Chān-sī ( See )

**ଚାନ୍ଦ**—ଦେ. ବି. ( ସଂ. ଚନ୍ଦ୍ର )— Chānda ୧ । ଚନ୍ଦ୍ର—1. The moon चान्द **चांद**

ବଦନବଦନାରବିନ୍ଦ; କବରି ପୂର୍ଣ୍ଣିମାର ଚାନ୍ଦ ।
ଜଗନ୍ନାଥ. ଭାଗବତ ।

୨ । ବିବାହର ପରବର୍ତ୍ତୀ ଶୁକ୍ଳ ତୃତୀୟା ଦିନ ବରକନ୍ୟାଙ୍କ ଦ୍ୱାରା କରାଯିବା ଚନ୍ଦ୍ରବନ୍ଦାପନା ବିଧି; ଚନ୍ଦ୍ରବନ୍ଦାପନା— 2. The ceremony of worshipping the moon on the third day of the bright lunar fortnight succeeding the marriage.

। କୁମାରପୂର୍ଣ୍ଣିମା ଦିନ ସନ୍ଧ୍ୟାବେଳେ ଚନ୍ଦ୍ରଙ୍କୁ ଭୋଗ ଦିଆଯିବା ନୈବେଦ୍ୟ ( ଛେନା ଗୁଡ଼ ଚକଟା ବା ଖଇ ପାଚିଲା କଦଳୀ ଚକଟା )—3. The sweet offerings offered to the Moon-god in the evening of Kumārapūrṇṇimā.

୪ । କୁମାରପୂର୍ଣ୍ଣିମାର ନୈବେଦ୍ୟ ପରସ୍ପର ପାଟିରେ ଦିଆଦେଇ ହୋଇ ଦୁଇ ଜଣ ସ୍ତ୍ରୀଲୋକ ବା ବାଳକଙ୍କ ମଧ୍ୟରେ ସ୍ଥାପିତ ବନ୍ଧୁତା ଓ ପରସ୍ପରକୁ ଡାକିବା ସମ୍ବୋଧନ— 4. Name by which two females or children friends address each other after feeding each other with the offerings of Kumāra Pūrṇṇimā evening; the mutual friendship springing up from such mutual feeding.

୫ । ଗାଈ, ବଳଦ ଓ ଘୋଡ଼ାଙ୍କର ମୁହଁ ସମ୍ମୁଖରେ କପାଳ-ତଳକୁ ଥିବା ଶୁକ୍ଳ ବର୍ଣ୍ଣ ଗୋଲ ବା ଲମ୍ବ ରୋମରେଖା— 5. White mark or star on the forehead of a coloured beast (e. g. horse, cattle).

୬ । ଦ୍ୱିତୀୟା ଚନ୍ଦ୍ର, ଅର୍ଦ୍ଧଚନ୍ଦ୍ର ବା ପୂର୍ଣ୍ଣଚନ୍ଦ୍ର ଆକୃତିର ଧାତୁ-ନିର୍ମିତ ଅଳଙ୍କାରବିଶେଷ—6. Crescent-shaped or moon-shaped orhament.

୭ । ( ଲକ୍ଷଣାର୍ଥ ) ଚନ୍ଦ୍ର ପରି ପ୍ରୀତିଦାୟକ ବ୍ୟକ୍ତି ବା ବସ୍ତୁ— 7. (figurative) A pleasing person or thing.

ହେ ତଉବରଭୁବନ-ଲୋକଙ୍କର ଚାନ୍ଦ
ତୁମ୍ଭଙ୍କୁ ଦେଖି ସୁଖୀ ହୁଅନ୍ତି ନନ୍ଦ—କୃଷ୍ଣସିଂହ. ମହାଭାରତ. ବିରାଟ ।

୮ । ବନ୍ଧୁକ ମାରିବାକୁ ଶିକ୍ଷା କରିବା ବ୍ୟକ୍ତିର ଲକ୍ଷ୍ୟ ରୂପେ ଦୂରରେ ସ୍ଥାପିତ କୌଣସି ଚିହ୍ନ—8 Target.

୯ । ଧଳା ଓ ଗୋଲ ଦାଗମାନ—9. Round white spots.

**ଚାନ୍ଦଉଦିଆ**—ଦେ. ବି—ଚନ୍ଦ୍ରଉଦିଆ (ଦେଖ) Chānda-udiā Chandra-udiā (See).

**ଚାନ୍ଦକଳା** - ଦେ. ବି (ସଂ. ଚନ୍ଦ୍ର + କାଳ)—କୃଷ୍ଣବର୍ଣ୍ଣ ରଙ୍ଗବିଶେଷ— Chāndakaḷā A black pigment or dye used by females to put on the middle of the forehead as a tip.

[ ଦ୍ର—ସ୍ତ୍ରୀଲୋକେ କପାଳରେ ଚାନ୍ଦକଳାର ଟୋପି ଦିଅନ୍ତି । ]

**ଚାନ୍ଦକା**—ଦେ. ବି (ସଂ. ଚନ୍ଦ୍ର; ଚନ୍ଦ୍ରକ)—ଅର୍ଦ୍ଧଚନ୍ଦ୍ରାକାର ଖିଲାଣ— Chandakā A semicircular arch. चान्दका

**ଚାନ୍ଦନା**—ବୈଦେ. ବି (ଫା ଚାନ୍ଦନା )—ରଇତ ଘରବାଡ଼ି ରୂପେ ଭୋଗ Chāndanā କରୁଥିବା ଭୂମି ବା ଯୋତ; ଘରବାଡ଼ି; ରଏତୀ ଘରଡିହ चांदना ଜମି—Homestead holding of a tenant.

**ଚାନ୍ଦନାଦାର୍**—ଦେ. ବି - ଚାନ୍ଦନା ପ୍ରଜା (ଦେଖ) Chāndanādār Chāndanā prajā (See).

**ଚାନ୍ଦନା ପ୍ରଜା**—ଦେ. ବି—ଯେଉଁ ରଇତ ଆପଣା ଯୋତରେ ଘର Chāndanā prajā କରିଥାଏ—A royat who has residence on his own holding.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଙ୍ଗ | ଡଥ | ଣ୍ଟ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଂ | ଇଥ | ଢ଼ | ନ୍ତୁ |

ଚାନ୍ଦନୀ—ଦେ. ବିଣ (ସଂ. ଚନ୍ଦ୍ରଣୀ, ଚାନ୍ଦ୍ରୀ—ଜ୍ୟୋତ୍ସ୍ନାମୟୀ ( ରାତ୍ରି ); Chāndani ଚନ୍ଦ୍ରକାଯୁକ୍ତ; ଚନ୍ଦ୍ରକିରଣ ଥିବା—Moon-lit (night)
চান্দনিয়া; চান্দনী
**चान्दनी**

ସବୁଦିନେ କାହୁଁ ଚାନ୍ଦନୀ ରାତ ?
ସବୁଦିନେ ନାହିଁ ଶୀତପାହାନ୍ତି—ଢଗ ?

ଦେ. ବି—୧ । ଚନ୍ଦ୍ରକିରଣ—1. Moon light.

କି ମଧୁରେ ଖେଳେ ମନ୍ଦହାସର ଚାନ୍ଦନୀ
ବଧୂବଦନର ଚାରୁ-ବନ୍ଧୁଳି-ଅଧରେ—ରାଧାନାଥ. ମହ ଯାତ୍ରା ।

୨ । ଚନ୍ଦ୍ରଶାଳା (ଦେଖ)
2. Chandrasālā (See).

ଚନ୍ଦ୍ରକାନ୍ତସ୍ଥାନ ରଜନୀକାଳେ
ଚାନ୍ଦନୀ ସୋପାନ ଉଠିବାବେଳେ—ବିଦଗ୍ଧପର୍ଯ୍ୟ. କବିତା

୩ । ପଥର, ଇଟା, ଚୂନ ଆଦିରେ ନିର୍ମିତ ଖୋଲା ପକ୍କା ମଣ୍ଡପ—3. A pucca platform with no roof.

[ ଦ୍ର—ମଣ୍ଡପର ଛାତ ଥାଏ, ମାତ୍ର ସାଧାରଣତଃ ଚାନ୍ଦନୀର ଛାତ ନ ଥାଏ । ]

ଚାନ୍ଦବଦନ—ଦେ. ବି. ଓ ବିଣ—ଚନ୍ଦ୍ରବଦନ (ଦେଖ)
Chāndabadana Chandrabadana (See).

ଚାନ୍ଦବଦନା } ସ୍ତ୍ରୀ—
ଚାନ୍ଦବଦନୀ }
চান্দমুখ
**चाँदकामुखड़ा**

ଚାନ୍ଦବନ୍ଦା—ଦେ. ବି—ଚାନ୍ଦବନ୍ଦାପନା (ଦେଖ)
Chānda bandā Chānda bandāpanā (See).

ଚାନ୍ଦ ବନ୍ଦାଇବା—ଦେ. କ୍ରି—୧ । (କୁମାର କୁମାରୀମାନେ) କୁମାରପୂର୍ଣ୍ଣିମା Chānda bandāibā ସନ୍ଧ୍ୟାବେଳେ ନବୋଦିତ ଚନ୍ଦ୍ରଙ୍କୁ ବନ୍ଦାପନା (ଚାନ୍ଦ ବନ୍ଦେଇବା—ଅନ୍ୟରୂପ) କରିବା—(boys and girls) To worship the moon in the evening of Kumārapūrṇṇimā.

୨ । ବିବାହର ପରବର୍ତ୍ତୀ ଶୁକ୍ଳ ତୃତୀୟାର ସନ୍ଧ୍ୟାରେ ଚନ୍ଦ୍ରଙ୍କୁ ବରକନ୍ୟା ବନ୍ଦାପନା କରିବା - 2. (a newly married couple) To worship the moon on the third day of the bright fortnight following the marriage

ଚାନ୍ଦ ବନ୍ଦାପନା—ଦେ. ବି ( ସଂ. ଚନ୍ଦ୍ରବନ୍ଦନ )—
Chānda bandāpanā ୧ । ବିବାହର ପରବର୍ତ୍ତୀ ଶୁକ୍ଳ ତୃତୀୟା ଦିନ ( ଚାନ୍ଦବନ୍ଦାଣ—ଅନ୍ୟରୂପ ) ବରକନ୍ୟା ଚନ୍ଦ୍ରଙ୍କୁ ପୂଜା କରିବା ବିଧି; ଚନ୍ଦ୍ରବନ୍ଦାପନା--The ceremoney of the newly married couple worshipping the moon on the evening of the third day of the bright fortnight which succeeds the marriage.

୨ । କୁମାରପୂର୍ଣ୍ଣିମୀ ସନ୍ଧ୍ୟାବେଳେ ବାଳକବାଳିକାମାନଙ୍କ ଦ୍ୱାରା ଚନ୍ଦ୍ରଙ୍କ ପୂଜା—2. Worship of the moon on the evening of the Kumārapūrṇṇamī by boys and girls.

ଚାନ୍ଦ ବସିବା—ଦେ. କ୍ରି—( ଦୁଇ ଜଣ ସ୍ତ୍ରୀ ବା ବାଳକ ବା ବାଳିକା )
Chānda basibā କୁମାରପୂର୍ଣ୍ଣିମୀ ସନ୍ଧ୍ୟାବେଳେ ନବୋଦିତ ଚନ୍ଦ୍ରଙ୍କୁ ନୈବେଦ୍ୟସ୍ୱରୂପ ଦିଆଯାଇଥିବା 'ଚାନ୍ଦ' ଖିଆଖେଇ ହୋଇ ପରସ୍ପର ମଧ୍ୟରେ 'ଚାନ୍ଦ' ସମ୍ବନ୍ଧ ସ୍ଥାପନ କରିବା—(two women or boys or girls) To set up the god-relationship of Chānda between them on the evening of the Kumārapūrṇṇamī.

ଚାନ୍ଦ ବାଢ଼ିବା—ଦେ. କ୍ରି—କୁମାରପୂର୍ଣ୍ଣିମୀ ସନ୍ଧ୍ୟାବେଳେ ଚନ୍ଦ୍ରଙ୍କୁ ପୂଜା Chānda bārdhibā କରିବାପାଇଁ ଛେନାଗୁଡ଼ ବା ଖଇଚକଟା ତୁଳସୀଚଉରା ମୂଳେ ଥୋଇବା—To put some sweets as offering to the moon-god on the Kumārapūrṇṇimā evening near the Holy Basil plant.

ଚାନ୍ଦବାଲି—ଦେ. ବି (ନାମ)—ବାଲେଶ୍ୱର ଜିଲ୍ଲାର ଗ୍ରାମବିଶେଷ—
Chāndabāli Name of a village in the district of Balasore.

[ ଦ୍ର—ଏହା କଟକ ଓ ବାଲେଶ୍ୱର ଜିଲ୍ଲାର ସୀମାରେ ବ୍ରାହ୍ମଣୀ ଓ ବୈତରଣୀ ନଦୀର ସଙ୍ଗମସ୍ଥଳ ଧାମରା ମୁହାଁଣଠାରୁ କିଛିବାଟ ଦୂରରେ ଅବସ୍ଥିତ । ଏହା ଆଜିକାଲି ଓଡ଼ିଶାର ଏକମାତ୍ର ବାଣିଜ୍ୟପ୍ରଧାନ ବନ୍ଦର । ଏହି ସ୍ଥାନ ପର୍ଯ୍ୟନ୍ତ ଛୋଟଛୋଟ ଜାହାଜ କଲିକତାରୁ ଆସେ ଏବଂ ଏଠାରୁ କେନାଲ ବାଟେ କଟକକୁ ଷ୍ଟିମର ଯାତାୟାତ କରେ । ରେଳ ହେବା ପୂର୍ବରୁ କଟକରୁ କଲିକତା ଯିବା ଯାତ୍ରିମାନେ କଟକରୁ ଚାନ୍ଦବାଲି ପର୍ଯ୍ୟନ୍ତ ଷ୍ଟିମରରେ ଯାଇ ସେଠାରେ କଲିକତାକୁ ସମୁଦ୍ର ବାଟେ ଜାହାଜରେ ଯାଉଥିଲେ । ବର୍ତ୍ତମାନ କେବଳ ପଣ୍ୟଦ୍ରବ୍ୟମାନ ଏହିବାଟେ ଯାଉଅଛି । ]

ଚାନ୍ଦ ବୁଢ଼ା ହୋଇଯିବା—ଦେ. ବି—କୁମାରପୂର୍ଣ୍ଣିମା ସନ୍ଧ୍ୟାବେଳେ ଚାନ୍ଦ Chānda burdhā hoijibā ବନ୍ଦାଇବାର ସମୟ ଅତିକ୍ରାନ୍ତ ହେବା—The proper time for worshipping the moon on the Kumārapūrṇṇimā evening being over.

ଚାନ୍ଦମଣି—ଦେ. ବି—ଚନ୍ଦ୍ରମଣି ( ଦେଖ )—
Chāndamaṇi Chandramaṇi ( See )

ଚାନ୍ଦମାରି—ଦେ. ବି (ସଂ. ଚନ୍ଦ୍ର+ମୃ ଧାତୁ ଣିଜନ୍ତ=ମାର ଧାତୁ)-ବନ୍ଧୁକ Chāndamāri ଦ୍ୱାରା ଲକ୍ଷ୍ୟ ଭେଦ ଶିକ୍ଷା କରିବା ନିମନ୍ତେ କିଛି ଦୂରରେ ରଖାଯାଇଥିବା ଚନ୍ଦ୍ରାକାର ଚକ୍ରବିଶେଷ—Target.
চাঁদমারী
**चाँदमारी**

ସାଧାରଣ ଲୋକେ ଅନେକ ଦୃଷ୍ଟାନ୍ତରେ ମୂର୍ଦ୍ଧନ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଥ' ନ ମିଳିଲେ 'କ୍ରଥ' ଦେଖିବେ, 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲଚଢ଼' ନ ପାଇଲେ 'ଅଲ୍‌କଢ଼' ଦେଖିବେ

**ଚାନ୍ଦମୁଖ**—ଦେ. ବି ଓ ବିଣ. (ସଂ. ଚନ୍ଦ୍ରମୁଖ)—ଚନ୍ଦ୍ରବଦନ (ଦେଖ)
Chāndamukha Chandrabadana (See)
চাঁদমুখ
**चाँदसामुखड़ा**
(ଚାନ୍ଦମୁଖୀ—ସ୍ତ୍ରୀ)

**ଚାନ୍ଦମୁହିଁ**—ଦେ. ବଣ. ସ୍ତ୍ରୀ (ସଂ. ଚନ୍ଦ୍ରମୁଖୀ )—ଚନ୍ଦ୍ରମୁଖୀ; ଚନ୍ଦ୍ରବଦନା—
Chāndamuhiṅ (a lady) Having the face as beautiful and charming as the moon.
ଚରଣ ଛୁଇଁ ଚାହେଁ ଦେଖ ପରତେକ ପୁଚ୍ଛି ନାରୁ ଚାନ୍ଦମୁହିଁ—ରାଧାନାଥ. ଯଯାତି ।

**ଚାନ୍ଦ ରାୟଗୁରୁ**—ଦେ. ବ ( ନାମ ) ପୁରୀ ଜିଲ୍ଲାର ଜନୈକ ସଂସ୍କୃତଜ୍ଞ
Chānda rāyaguru ପଣ୍ଡିତ—A great Sanskrit Pandit of Puri district.

[ ଦ୍ର—ପୁରୀଜିଲ୍ଲା ବୀରନରସିଂହପୁର ଶାସନରେ ଏହାଙ୍କର ଜନ୍ମ । ଏ ସଂସ୍କୃତ ଭାଷାରେ 'ଭ୍ରଷାପରିଣୟ' ନାଟକ ରଚନା କରିଥିଲେ ଏବଂ 'ନୈଷଧ'କାବ୍ୟର ଗୋଟିଏ ଉତ୍କୃଷ୍ଟ ଟୀକା ଲେଖି ଥିଲେ । ପୁରୀର ତଦାନୀନ୍ତନ ଗଜପତି ରାଜା ବୀରକିଶୋରଦେବଙ୍କ ରାଜସଭାରେ ଏହାଙ୍କର ଅଖଣ୍ଡ ପ୍ରତିପତ୍ତି ଥିଲା ।

କିମ୍ବଦନ୍ତୀ ଅଛି ଯେ ଥରେ ପୂର୍ଣ୍ଣିମାରେ ରାୟଗୁରୁ ସେଦିନ ଅମାବାସ୍ୟା ଅଟେ ବୋଲି ଭ୍ରମରେ କହି ପକାଇଲେ ଏବଂ ତନ୍ତ୍ରସାଧନ ବଳରେ ପୂର୍ଣ୍ଣିମା ରାତିରେ ଚନ୍ଦ୍ରଙ୍କୁ ଆଣି ନିଜଘରର ଧାନଭୁଷୁଆଁ ହାଣ୍ଡିତଳେ ଘୋଡ଼ାଇ ରଖିଦେବାରୁ ସେ ରାତିରେ ଚନ୍ଦ୍ର ଆଉ ଆକାଶରେ ଉଇଁଲେ ନାହିଁ; ଫଳତଃ ପୂର୍ଣ୍ଣିମାରାତି ଅମାବାସ୍ୟା ରାତିପରି ଅନ୍ଧକାରମୟ ହୋଇ ଉଠିଲା । ତାଙ୍କର ଏହି ଅସାଧାରଣ ଶକ୍ତିମତ୍ତାରେ ରାଜା ଓ ରାଜପାରିଷଦମାନେ ଏକାନ୍ତ ବିସ୍ମିତ ହୋଇ ଯାଇଥିଲେ । ଚନ୍ଦ୍ରଶେଖର ବାହାନପତି ଓ ଚାନ୍ଦରାୟଗୁରୁ ଭିନ୍ନ ଭିନ୍ନ ବ୍ୟକ୍ତି ଥିବାର କେହି କେହି କହନ୍ତି । ]

**ଚାନ୍ଦସୁର**—ଦେ. ବ ( ସଂ. ଚନ୍ଦ୍ରଶୂର )—ଚନ୍ଦ୍ରଶୂର ( ଦେଖ )—
Chāndasurā Chandraśūra ( See )
চাঁদসুর
**चंसुर**

**ଚାନ୍ଦ ସୁରଜ**—ଦେ. ବ (ସଂ ଚନ୍ଦ୍ର+ସୂର୍ଯ୍ୟ)—ସ୍ତ୍ରୀଲୋକମାନେ କାପାଳର
Chānda suraja କେଶ ଉପରେ ଖୋସି ପିନ୍ଧିବା ସୁନା ବା ରୁପାର
চাঁদসুর্চী ଦ୍ୱିତୀୟାଚନ୍ଦ୍ର ପରି ବୃତ୍ତଖଣ୍ଡାକାର ଫଳକ ଓ ତହିଁ
**चाँदसुरज** ଉପରେ ସୂର୍ଯ୍ୟପରି ବୃତ୍ତାକାର ଅଲଙ୍କାରବିଶେଷ—
(ଚାନ୍ଦସୁରୁଜ—ଅନ୍ୟରୂପ) An ornament consisting of 2 pieces of gold or silver in the shape of a crescent below the sun and worn on the hair over the brow.

**ଚାନ୍ଦସୁରୁଜ ଚୁଟୁକି**—ଦେ. ବ—ପାଆପଦ୍ମ ( ଦେଖ )—
Chāndasuruja chuṭuki Pā-ā padma (See)

**ଚାନ୍ଦା**—ବୈଦେ. ବ ( ଫା. ଚନ୍ଦେ=ଅଳ୍ପ, କେତେକ; କେତେ ଜଣଙ୍କ
Chāndā ନିକଟରୁ ଏହା ଅଳ୍ପ ଅଳ୍ପ ଆଦାୟ କରାଯିବାରୁ )—
চাঁদা ୧ । ଭେଦା; ଅନେକ ବ୍ୟକ୍ତିଙ୍କ ଠାରୁ କୌଣସି ବିଶିଷ୍ଟ
**चँदा** କାର୍ଯ୍ୟପାଇଁ ସଂଗୃହୀତ ଅର୍ଥ—1 Subscription.
୨ । ସମ୍ବାଦପତ୍ର ପାଇଁ ଗ୍ରାହକ ଦେବା ମୂଲ୍ୟ—
2. Subscription for a newspaper.
চাঁদা ୩ । ଭୂମିମାପ ବେଳେ ବିଶିଷ୍ଟ ସ୍ଥାନର ନିଦର୍ଶନ ସ୍ୱରୂପ ଭୂମିରେ
**चांदा** ପୋତାଯିବା କାଠଆଦି ଚିହ୍ନ—3 A distinctive peg put on the ground during a survey.

**ଚାନ୍ଦା ଉଠା(ଠେ)ଇବା**—ଦେ. କ୍ରି—ବହୁବ୍ୟକ୍ତିଙ୍କ ଠାରୁ ଚାନ୍ଦା ଅସୁଲ
Chāndā uṭhā(e)ibā କରିବା—To raise subscription from many persons.
চাঁদাউঠান
**चँदाउठाना**

**ଚାନ୍ଦା ଉଠିବା**—ଦେ. ବ—ବହୁ ବ୍ୟକ୍ତିଙ୍କଠାରୁ ଚାନ୍ଦା ଆଦାୟ କରାଯିବା—
Chāndā uṭhibā Raising of subscription.
চাঁদাউঠা
**चँदाउठना**

**ଚାନ୍ଦା ସ୍ୱାକ୍ଷର କରିବା**—ଦେ. କ୍ରି.—ନିଜର ଦେୟ ଚାନ୍ଦାର ପରିମାଣ ଅଙ୍ଗୀ-
Chāndā swākshara karibā କାର କରି ଦସ୍ତଖତ କରିବା—
চাঁদাসাথব কবা To subscribe or sign promising payment of subscription for a certain purpose.

**ଚାନ୍ଦି**—ଦେ. ବ. (ସଂ. ଚନ୍ଦ୍ର)—୧ । ବିଶୁଦ୍ଧ ରୌପ୍ୟ—
Chāndi 1 Pure silver.
চাঁদী ୨ । (ସଂ. ଚନ୍ଦ୍ରକ, ଚନ୍ଦ୍ରଗୋଳକା) ମତ୍ସ୍ୟ ବିଶେଷ—
**चाँदी** 2 Ambassia Ranga; a kind of fish.
চাঁদগুড়া, চান্দামাচ [ଦ୍ର—ଏମାନେ ଚେପଟା ଓ ଦେଖିବାକୁ
**चाँदा** ଧଳା; ପିଠିରେ କଣ୍ଟାଳିଆ ଡେଣା ଥାଏ । ଏମାନଙ୍କୁ 'ଠେକାଚାନ୍ଦି' ମଧ୍ୟ କୁହାଯାଏ । ଏ ମାଛର ବ୍ୟାସ ୧ ଠାରୁ ୨ ଇଞ୍ଚ । ]
୩ । ଗୋଡ଼ର ତଳପା—3. The sole or heel of the foot.
[ଯଥା—ବହୁତ ବାଟ ଚାଲିବାରୁ ତା ଚାନ୍ଦି ଫୁଟିଗଲା । ]
ପ୍ରାଦେ. (ପୁରୀ) ବ.—ଘୋଡ଼ା ଓ ଗୋରୁଙ୍କ ଖୁରରେ ମରାଯିବା ନାଲ ବା ଲୁହାପାତିଆ—Horse-shoe; shoes for the hoofs of bullocks.

**ଚାନ୍ଦିଆ**—ଦେ. ବଣ.—ଯେଉଁ ରଙ୍ଗିନ୍ ଘୋଡ଼ା ଓ ଗୋରୁ ପ୍ରଭୃତିଙ୍କ
Chāndiā କପାଳରେ ଚନ୍ଦ୍ରାକୃତି ଧଳା ରୋମରେଖା ଥାଏ—
(a coloured beast) Having a white mark or star on the forehead.
ଦେ. ବ.—କପାଳରେ ଚାନ୍ଦଥିବା ପଶୁ—A beast having a white mark or star on the forehead.

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ୟ | ଜ | ଶ,ଷ | କ୍ଷ | ଡ଼ୃ | ଢ଼ଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଡ଼ଅ | ଞ | ହ୍ନ |

ଚାନ୍ଦିନା (ଇତ୍ୟାଦି) — ବୈଦେ. ବି. (ଫା.)—ଚାନ୍ଦନା ଇତ୍ୟାଦି (ଦେଖ)
Chāndinā (etc). Chāndanā etc. (See)

ଚାନ୍ଦି ଫୁଟିବା—ଦେ, କ୍ରି—ଅନେକ ବାଟ ଚାଲିବାରୁ ବା କଙ୍କରମୟ
Chāndi phuṭibā ରାସ୍ତାରେ ପଦଗତି କରିବା ହେତୁ ଗୋଡ଼ର ତଳପା ଫାଟି ଯିବା ବା କ୍ଷତଯୁକ୍ତ ହେବା—The state of having foot-sores.

ଚାନ୍ଦିବୁଡ଼ା— ପ୍ରାଦେ (ସମ୍ବଲପୁର) ବି (ତୁଲ. ହି. ଚାଁଦୀ=ବ୍ରହ୍ମତାଳୁ)
Chāndiburḍā କ୍ରିଣ—୧। ସର୍ବସ୍ୱାନ୍ତ (ବ୍ୟକ୍ତି)—
1. (a person) Destitute of all his belongings; ruined.
୨। ଆକ୍ରାନ୍ତ—2. Overpowered.

ଚାନ୍ଦୀ—ଦେ. କ୍ରିଣ. ସ୍ତ୍ରୀ—ଚାନ୍ଦିଆ ( ଦେଖ )
Chāndi Chāndiā ( See )

କାଳୀ କସ୍ତୁରୀ ଧଳୀ ରଙ୍ଗୀ
ଚାନ୍ଦୀ ଚାମରୀ ଚକ୍ର ଅଙ୍ଗୀ। ଭୂପତି ପ୍ରେମପଞ୍ଚାମୃତ।

ଚାନ୍ଦୁଆ—ଦେ. ବି. ( ସଂ. ଚନ୍ଦ୍ରା; ଚନ୍ଦ୍ରାତପ )—
Chānduā ବିତାନ; ନାନାବର୍ଣ୍ଣରେ ଚିତ୍ରିତ ସାମିୟାନା—
চাঁদোয়া An awning.
चँदवा

ଚାନ୍ଦୁଆ ଅବନୀ ମଣ୍ଡ ଚଳେ
ଟାଳଇ ଯେବେ ଜେବେ କୁଞ୍ଜୁହୁଳେ। କବିସୂର୍ଯ୍ୟ, କବିତା।

ଚାନ୍ଦୁୟା—ପ୍ରାଦେ. (ଗଞ୍ଜାମ) ବି—ଚାନ୍ଦୁଆ (ଦେଖ)
Chānduyā Chānduā (See)

ଚାନ୍ଦ୍ର—ସଂ. କ୍ରିଣ. ପୁ. (ଚନ୍ଦ୍ର+ସମ୍ବନ୍ଧାର୍ଥେ. ଅ.)—୧। ଚନ୍ଦ୍ର ସମ୍ବନ୍ଧୀୟ—
Chāndra 1. Pertaining to the moon; lunar.
(ଚାନ୍ଦ୍ରୀ—ସ୍ତ୍ରୀ) ୨। ଚନ୍ଦ୍ରଙ୍କ ଗତିଦ୍ୱାରା ନିୟମିତ—2 Regulated by the motion of the moon.
୩। ଚାନ୍ଦ୍ର ବ୍ୟାକରଣ ଅଧ୍ୟୟନକାରୀ—3. Studying the Sanscrit grammar named Chāndra

ସଂ. ବି.—୧। ଚନ୍ଦ୍ରଲୋକ (ଦେଖ)
Chandraloka (See)
୨। ଚନ୍ଦ୍ରକାନ୍ତ ମଣି—2. Moonstone.
୩। ତ୍ରିଂଶତ୍ ତିଥି ଘଟିତ ମାସ; ଚାନ୍ଦ୍ର ମାସ—
3 Lunar month.
୪। ଚାନ୍ଦ୍ରାୟଣ (ବ୍ରତ) (ଦେଖ)
4. Chāndrāyaṇa (See)
୫। ସଂସ୍କୃତ ବ୍ୟାକରଣବିଶେଷ—
5 Name of a Sanscrit grammar.

ଚାନ୍ଦ୍ରମଳ—ସଂ. ବି ( କର୍ମଧା; ଚାନ୍ଦ୍ର+ମଳ=ମଳମାସ )—
Chāndramaḷa ଅଧିକା ଚାନ୍ଦ୍ରମାସ; ମଳମାସ—
An additional lunar month added to the lunar calculation of months at intervals of 3 years to make the lunar year approximate the solar year.
[ ଦ୍ର—ଚାନ୍ଦ୍ର ବର୍ଷ ପ୍ରାୟ ୩୫୪ ଦିନ ଓ ସୌରବର୍ଷ ପ୍ରାୟ ୩୬୫ ଦିନ। ଏହି ଉଭୟବିଧ ବର୍ଷରେ ସାମଞ୍ଜସ୍ୟ ରକ୍ଷା କରିବା ପାଇଁ ପ୍ରତି ୩ ବର୍ଷରେ ହିନ୍ଦୁ ଜ୍ୟୋତିଷମତେ ଚାନ୍ଦ୍ରମାନ ବର୍ଷର ଗୋଟିଏ ଅଧିକା ମାସ ଗଣନା କରାଯାଏ ଏବଂ ତଦ୍ୱାରା ଚାନ୍ଦ୍ରମାନ ବର୍ଷ ଓ ସୌରମାନ ବର୍ଷ ମଧ୍ୟରେ ଋତୁଗତ ମିଳନ ପ୍ରାୟ ରକ୍ଷିତ ହୁଏ। ଏହି ଅଧିକା ମାସର ନାମ ମଳମାସ ବା ଚାନ୍ଦ୍ରମଳ। ମଳମାସରେ ହିନ୍ଦୁଶାସ୍ତ୍ରମତେ ଶୁଭକର୍ମାଦି ନିଷିଦ୍ଧ। ]

ଚାନ୍ଦ୍ରମାସ—ସଂ. କ୍ରିଣ. ପୁଂ (ଚନ୍ଦ୍ରମସ୍+ସମ୍ବନ୍ଧାର୍ଥେ ଅ)—
Chāndramāsa ୧। ଚନ୍ଦ୍ରମା ସମ୍ବନ୍ଧୀୟ—1. Relating to
(ଚାନ୍ଦ୍ରମାସୀ—ସ୍ତ୍ରୀ) the moon; lunar.
୨। ମୃଗଶିରାନକ୍ଷତ୍ର—The fifth asterism of the Hindu Astronomy.

ଚାନ୍ଦ୍ରମାନ ବତ୍ସର—ସଂ. ବି—ଚନ୍ଦ୍ରଙ୍କ ଗତି ଦ୍ୱାରା ନିୟମିତ ଦ୍ୱାଦଶ ମାସ-
Chāndramāna batsara ବିଶିଷ୍ଟ ବର୍ଷ ବା ୩୫୪. ୧୯୨ ଦିନ—
Lunar year of 354. 192 days.

ଚାନ୍ଦ୍ରମାନ ମାସ—ସଂ. ବି—ଚନ୍ଦ୍ରଙ୍କ ଗତି ଦ୍ୱାରା ନିୟମିତ ମାସ ( ଶୁକ୍ଳପକ୍ଷ
Chāndramāna māsa ୧୫ ଦିନ ଓ କୃଷ୍ଣପକ୍ଷ ୧୫ଦିନ; ୨୯. ୫୧୬ ସାବନ ଦିନ)—Lunar month, 29.516 days.

ଚାନ୍ଦ୍ରାୟଣ—ସ. ବି ( ଚାନ୍ଦ୍ର=ଚନ୍ଦ୍ରଲୋକ+ଅୟ ଧାତୁ=ପାଇବା+
Chāndrāyaṇa କରଣ. ଅନ; ଯେଉଁ ବ୍ରତ କଲେ ମୃତ୍ୟୁ ପର ମନୁଷ୍ୟ ଚନ୍ଦ୍ରଲୋକକୁ ଯାଏ )—ଚାନ୍ଦ୍ର ତିଥି ଦ୍ୱାରା ନିୟମିତ ବ୍ରତବିଶେଷ—A religious vow and penance consisting of regulating one's daily diet by gradual diminution for the first 15 days of the lunar month and gradual increment for the next lunar fortnight and observing continence and self-control.
[ ଦ୍ର—ଏ ବ୍ରତରେ ଶୁକ୍ଳ ପ୍ରତିପଦଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ପ୍ରତିଦିନ ଆପଣାର ସାଧାରଣ ଭୋଜନର ପରିମାଣରୁ ପନ୍ଦର ଭାଗରୁ ଏକଭାଗ ଲେଖାଏଁ କମାଇବାକୁ ହୁଏ ଏବଂ କୃଷ୍ଣ ପ୍ରତିପଦଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପ୍ରତ୍ୟହ ସେହିପରି ଭାଗେ ଲେଖାଏଁ ଭୋଜନର ମାତ୍ରା ବଢ଼ାଇ ଶେଷରେ ପୂର୍ଣ୍ଣିମା ଦିନ ପୂର୍ଣ୍ଣ ଭୋଜନ କରିବାକୁ ହୁଏ। ଏହିପରି ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରିବା ବ୍ରତ ଓ ପ୍ରାୟଶ୍ଚିତ୍ତର ବିଧାନ ଶାସ୍ତ୍ରସମ୍ମତ। ]

ଚାନ୍ଦ୍ରାୟଣ ବାର—ଦେ. ବି—ସୋମବାର—
Chāndrāyaṇa bāra Monday.

ଚାନ୍ଦ୍ରାୟଣ ବାରରେ ଗୋ ଭକ୍ତଙ୍କ ପ୍ରଧାନ
କଳଭକ୍ତେ ଚନ୍ଦ୍ରସ୍ୱାମୀ ବୁଧେ ପୃଥ୍ୱୀ ଜାଣ। ପ୍ରାଚୀ, ଶିବସ୍ୱରୋଦୟ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବ. ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, ଅଗିଆ ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**ଚାନ୍ଦ୍ରାୟଣିକ**—ସ. ବିଣ. ପୁଂ ( ଚାନ୍ଦ୍ରାୟଣ+କରିବା ଅର୍ଥରେ. ଇକ )—
Chāndrāyaṇika ଚାନ୍ଦ୍ରାୟଣ ବ୍ରତର ଅନୁଷ୍ଠାତା—
Observing the vow or penance of
( ଚାନ୍ଦ୍ରାୟଣିକା—ସ୍ତ୍ରୀ ) Chāndrāyaṇa.

**ଚାନ୍ଦ୍ରୀ**—ସ. ବି. ସ୍ତ୍ରୀ. ( ଚନ୍ଦ୍ର+ଅ+ସ୍ତ୍ରୀ. ଈ )—
Chāndrī ୧ । ଚନ୍ଦ୍ର ପତ୍ନୀ—
1. The wife of the Moon-god.
୨ । ଜ୍ୟୋତ୍ସ୍ନା—2. Moon-light.
୩ । ଶ୍ୱେତ କଣ୍ଟକାରୀ—3. Solanium Nigrum.
ସ. ବିଣ. ସ୍ତ୍ରୀ—'ଚାନ୍ଦ୍ର'ର ସ୍ତ୍ରୀ ଲିଙ୍ଗ—
Feminine of Chāndra.

**ଚାନ୍ସ**—ବୈଦେ. ବି. (ଇଂ)—ଚାନ୍‌ସ୍ ( ଦେଖ )
Chāns Chān-s ( See )

**ଚାନ୍ସୀ**—ଦେ. ବି—ଚାନ୍‌ସୀ ( ଦେଖ )
Chānsi Chān-si ( See)

**ଚାନ୍ସେରି**—ବୈଦେ. ବି. (ଇଂ. ଚାନ୍‌ସେରୀ)—ବିଲାତର ଦେବାନୀ ମକଦ୍ଦମା
Chānseri ବିଚାର ପାଇଁ ନିଯୁକ୍ତ ସର୍ବୋଚ୍ଚ ଅଦାଲତ—
ଚାନସେରୀ Court of Chancery in England.
**चैंसरी**

**ଚାନ୍ସେଲର୍**—ବୈଦେ. ବି. (ଇଂ. ଚାନ୍‌ସେଲର୍)—୧ । ବିଲାତର
Chānselar ଚାନ୍ସେରୀ ଅଦାଲତର ସର୍ବପ୍ରଧାନ ବିଚାରକ—
ଚାନସেলার 1. The President of the Court of
**चैंसलर** Chancery.
୨ । ବିଶ୍ୱବିଦ୍ୟାଳୟର ପ୍ରଧାନ ଅଧିକାରୀ—
2. Chancellor of a University.
[ଦ୍ର—ଏହାଙ୍କ ସହକାରୀଙ୍କୁ ଭାଇସ୍ ଚାନ୍ସେଲର୍ ବୋଲାଯାଏ।] ଚାନ୍ସେଲର୍ ବିଶ୍ୱବିଦ୍ୟାଳୟର ଶାସନ ଓ ଚାଳନସଂକ୍ରାନ୍ତ ସଭାସମିତିରେ ସଭାପତି ରୂପେ କାର୍ଯ୍ୟ କରନ୍ତି। ଭାରତର ପ୍ରାୟ ସବୁ ପ୍ରାଦେଶିକ ବିଶ୍ୱବିଦ୍ୟାଳୟର ଚାନ୍ସେଲର୍ ତତ୍ତତ୍ ପ୍ରଦେଶର ଲାଟ ଅଟନ୍ତି। ସାଧାରଣତଃ ତାଙ୍କର ଅଧିକାଂଶ କାର୍ଯ୍ୟ ଭାଇସ୍‌ଚାନ୍ସେଲର୍ ଚଳାନ୍ତି। ଉତ୍ତୀର୍ଣ୍ଣ ଛାତ୍ରମାନଙ୍କୁ ଉପାଧି ଓ ସନନ୍ଦ ବିତରଣ କରାଯିବା ସଭାରେ ଚାନ୍ସେଲର୍ ସଭାପତି ହୁଅନ୍ତି। ପାଶ୍ କରିବା ଛାତ୍ରମାନଙ୍କ ସନନ୍ଦରେ ବିଶ୍ୱବିଦ୍ୟାଳୟ ପକ୍ଷରୁ ଚାନ୍ସେଲର୍ ଦସ୍ତଖତ୍ କରନ୍ତି। ]

**ଚାପ**—ସ. ବି. (ଚପ୍ ଧାତୁ=ନିକ୍ଷେପ କରିବା, ପେଷଣ କରିବା+କର୍ତ୍ତୃ.
Chāpa ଅ.)—୧ । କୋଦଣ୍ଡ; ଧନୁ—1. Bow.
୨ । ବୃତ୍ତଖଣ୍ଡ; ବୃତ୍ତର କୌଣସି ଅଂଶ—
2. Arc of a circle.
ଦେ. ବି—୧ । ଓଜନ; ଭାର—1. Weight; burden
ଚାপা ୨ । ପୀଡ଼ନ; ଦାବିବା—2. Pressure.
**चाप** ୩ । ଚାପସରି; କଣ୍ଠର ଅଳଙ୍କାର ବିଶେଷ; ଚକ୍—
3. A collar (ornament) for the neck
୪ । ରାଜା ବା ଦେବତାମାନଙ୍କର ଯାତ୍ରା ଉପଲକ୍ଷେ ସଜ୍ଜିତ ନୌକା—4. A pleasure-boat fitted up for special occasions.
କସ୍ତୁରି ଚନ୍ଦ୍ର ପଲଙ୍କ ତେଜ ପ୍ରଭୁ ନରେନ୍ଦ୍ର ଚାପେ ଗମନ।
ମଦନମୋହନ. ଚନ୍ଦନଯାତ୍ରା ସଙ୍ଗୀତ।
୫ । ଗାଡ଼ି ପ୍ରଭୃତି ପାର କରାଇବା ପାଇଁ ଯେଉଁ ବଡ଼ ନୌକାର ଉପରେ ପ୍ରଶସ୍ତ କାଠ ପଟାମାନ ଆଚ୍ଛାଦିତ ହୋଇଥାଏ—5. A big boat overspread with wooden planks and used in ferrying over carts and carriages.
ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବି—ଦୁଇଟି ନୌକା ଏକତ୍ର ଯୋଡ଼ା ହୋଇ ତା ଉପରେ ପଟା ପଡ଼ି ଅପେକ୍ଷାକୃତ ପ୍ରଶସ୍ତ କରାଯାଇଥିବା ନୌକା—Two boats joined and planked together so as to make the deck more spacious.

**ଚାପ ଖେଳିବା**—ଦେ. କ୍ରି—ନୌକାବିହାର କରିବା—
Chāpa kheḷibā To sport in a pleasure-boat.

**ଚାପଡ଼ (ଇତ୍ୟାଦି)**—ଦେ. ବି—ଚାପଡ଼ା ଇତ୍ୟାଦି (ଦେଖ)
Chāparda (etc) Chāpardā etc (See).
ଚଉପଦର ଦାସୀଙ୍କ ଉପରେ,
ଚାପଡ଼ ପରମାସଇ କୋପରେ—କବିସୂର୍ଯ୍ୟ. କବିତା।

**ଚାପଡ଼ା**—ଦେ. ବି. (ସ. ଚପେଟ; ଚପଟ )—ଚାପୁଡ଼ା; ମୁକ୍ତ କରତଳଦ୍ୱାରା
Chāpardā ଆଘାତ; ଚାପୋଡ଼; ଚାବଡ଼ା—Slap.
চড়; চাপট
**चपेत; चपेटा; चपेट; चटेकन**

**ଚାପଡ଼ାଇବା**—ଦେ. କ୍ରି—୧ । ମୁକ୍ତ କରତଳଦ୍ୱାରା ଅସ୍ତେ ଅସ୍ତେ ଆଘାତ
Chāpardāibā କରିବା; ଥାପଡ଼େଇବା—1. To pat; to tap.
চাপড়ান ୨ । ଚାପଡ଼ା ମାରିବା (ଦେଖ)
**थपथपाना; थपकना** 2. Chāpardā māribā (See)
(ଚାପଡ଼େଇବା—ଅନ୍ୟରୂପ) ୩ । କରତଳ ଦ୍ୱାରା ଗୁଣ୍ଠି ଗୋବରକୁ ଚକାକାର କରି ଭୂମିରେ ବା କାନ୍ଥରେ ଦସି ପାରିବା—
3. To lay flat circular cakes of cowdung on the ground or wall.

**ଚାପଡ଼ା ଖାଇବା**—ଦେ. କ୍ରି—ଅନ୍ୟର ଚପେଟାଘାତ ସହିବା—
Chāpardā khāibā To be slapped by another.

**ଚାପଡ଼ାଖିଆ**—ଦେ. ବିଣ. ପୁଂ—ଯେ ବହୁବାର ଅନ୍ୟଠାରୁ ଚାପଡ଼ାମାଡ଼
Chāpardākhiā ଖାଏ—One who is used to get slapped.

**ଚାପଡ଼ା ଛାଡ଼ିବା**—ଦେ. କ୍ରି—ଜୋରରେ ଚାପଡ଼ା ମାରିବା (ଦେଖ)
Chāpardā chhārdibā To slap with force.

**ଚାପଡ଼ାପକା(କେ)ଇବା**—ଦେ. କ୍ରି—ଚପୋଟାଘାତ କରିବା—
Chāpardā pakā(e)ibā To give a slap.
(ଚାପଡ଼ା ବକା(କେ)ଇବା—ଅନ୍ୟରୂପ)

| ୯ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଚ୍ଛ | ଉଥ | ଈ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଢ଼ | ଡ଼ |

**ଚପଡ଼ା ମାରିବା**—ଦେ. କ୍ରି—ଚପେଟାଘାତ କରିବା; ଚପଡ଼ା ଦେବା; ଥାପଡ଼ ମାରିବା—
Chāparḏā māribā
চাপড়ান
To slap; to administer slaps.
**थपकाना; थपना**

**ଚପଦଣ୍ଡ**—ସ. ବ—ପିଚକାରୀର ଦଣ୍ଡ ପରି ଯାହାଦ୍ୱାରା ଜଳାଦି ଉର୍ଦ୍ଧ୍ୱଗତ ଓ ଅଧୋଗତ ହୁଏ—Piston.
Chāpadanda

**ଚପଦାର୍**—ଦେ. ବ—ଜାହାଜ ଉପରେ ଯାତ୍ରୀମାନେ ରହିବା ଘର—
Chāpadār
চাপদার
A cabin in a ship.
**चापदार; झोपड़ी**

**ଚପର୍**—ପ୍ରାଦେ ( ସମ୍ବଲପୁର ) ବ—ଚପଡ଼ା ( ଦେଖ )
Chāpar
Chāparḏā ( See )

**ଚପର୍ କୁଟିବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ଚପଡ଼ା ମାରିବା—
Chāpar kuṭibā
To slap; to give slaps.

**ଚପରାସ୍**—ବୈଦେ. ବ. ( ଫା. ଚପ୍‌ରାସ୍ )—ଭୃତ୍ୟର ପରିଚୟସୂଚକ ଧାତୁପଟ୍ଟ—A servant's or a peon's badge.
Chāparās

**ଚପରାସୀ**—ବୈଦେ. ବ. ( ଫା. ଚପ୍‌ରାସୀ )—
Chāparāsi
୧ । କୌଣସି ହାକିମଙ୍କ ଆଜ୍ଞାକାରୀ ଭୃତ୍ୟ—
1 An orderly.
୨ । ପିଅଦା—2 A peon.

**ଚପଳ**—ସ. ବ. ( ଚପଳ+ଭାବ. ଅ )—ଚପଳ୍ୟ ( ଦେଖ )
Chāpala
Chāpalya ( See )

**ଚପଳ୍ୟ**—ସ. ବ. ( ଚପଳ+ଭାବ. ଯ )—
Chāpalya
୧ । ଚପଳତା; ଅସ୍ଥିରତା—
1. Fickleness; unsteadiness.
୨ । ଧୃଷ୍ଟତା—
2. Insolence; impertinence.
୩ । ପ୍ରଗଳ୍‌ଭତା—3. Bragging; boasting.
୪ । ଅବିମୃଷ୍ୟକାରିତା—
4. Shortsightedness; rashness.

**ଚପସରି**—ଦେ. ବ. ( ସ. ଚଳମାଳିକା)—
Chāpasari
চীক
୧ । ବେକରେ ପିନ୍ଧା ଯିବା ଅଳଙ୍କାରବିଶେଷ—
1. A collar ( ornament ) worn round the neck.
୨ । ମୁଦିରେ ଲାଗିଥିବା ଏକପ୍ରକାର ଅଣ୍ଟାସୂତା—
2. A kind of waist-chain consisting of more than one string and kept attached by rings.

ଉଚ୍ଚ ତରଳ ହୋଇ ମୋହରେ
ଚପସରି ବାନ୍ଧି ହେବ ଅଧରେ—କବିସୂର୍ଯ୍ୟ. ବଳଦ୍ରା ।

**ଚପସୋରି**—ଗ୍ରା. ବି—ଚପସରି ( ଦେଖ )
Chāpasori
Chāpasari ( See )

**ଚପା**—ଦେ. ବି—ଉପରୁ ଦିଆଯିବା ଭାର—
Chāpā 1 Downward pressure.
চাপা
**चाप**
চাপা ୨ । ପୀଡ଼ନ—2. Pressure.
**चापा** ୩ । ଅତିରିକ୍ତ ଭୋଜନ—3. Overeating.

**ଚପାଇବା**—ଦେ. କ୍ରି. ( 'ଚପିବା' ଓ 'ଚପିବା'ର ଣିଜନ୍ତରୂପ )—
Chāpāibā ଚପାଇବା ( ୨ ଓ ୭ ) ( ଦେଖ )
চাপান
Chapāibā ( 2 and 7 ) ( See )
**चापाना**

**ଚପା କାଗଜ**—ଦେ· ବି—ଚପାକାଗଜ ( ଦେଖ )
Chāpā kāgaja
Chapākāgaja ( See )

**ଚା-ପିଆଲା**—ବୈଦେ. ବି. ( ଚୀନଭାଷା ଚା ଓ ଫା. ପିଆଲ )—ଯେଉଁ ଚୀନା ବା କଲେଇ ହୋଇଥିବା ବାସନରେ ପ୍ରସ୍ତୁତ ଚାହା ପାନ କରାଯାଏ—Tea-cup.
Chā-piālā
চাপিয়ালা
**चापिआला**

**ଚପି ଚପି କଥା କହିବା**—ଦେ. କ୍ରି. ( ଲକ୍ଷଣାର୍ଥ )—ସତର୍କତା ସହିତ କଥା କହିବା—To speak ( some thing ) very carefully.
Chāpi chāpi kathā kahibā
চেপেচেপে কথাবলা
**चपचपकर बात बोलना**

**ଚପିବା**—ଦେ. କ୍ରି.—୧ । ଭାର ଦେଇ ତଳକୁ ଦାବିବା—
Chāpibā
চাপা
1. To press downwards by weight.
**चपेकना, चापना, दबाना**

ବଳଶୁ ବଳକୁ ଚପି ଅଧୋଭୁବନରେ,
ଭଞ୍ଜ. ବୈଦେହୀଶବିଳାସ ।

୨ । ଚପିବା—2. To squeeze.
୩ । (କୌଣସି ବ୍ୟକ୍ତିର ଅଙ୍ଗପ୍ରତ୍ୟଙ୍ଗ) ଘଷିବା ବା ଚପିବା—
3. To massage.

ପାଦ ଚପନ୍ତି ମିତ୍ର ସୁତେ । ରୁପନ୍ତ ପ୍ରେମପଞ୍ଚାମୃତେ ।

୪ । ଦାବିବା—4 To press tightly.

**ଚପୁଆଣି**—ଦେ. ବ.—୧ । ଘରର ଚାଳ ବାମଡ଼ା ଦିଆ ହୋଇ ବେଢ଼ଣ୍ଡ ହେବା ପରେ ବତାଗୁଡ଼ିକୁ ଚପି ରଖିବା ପାଇଁ ଚୁଳିଆରୁ ପାରିଆ ଆଡ଼କୁ ଯେଉଁ ବତା ଖୁବ୍ କସ୍ କରି ବାନ୍ଧି ଦିଆ ଯାଏ—1. A split bamboo which is laid over the bamboo-frame of a thatch to keep the bamboos tight.
Chāpuāṇi
୨ । ଚାଳର ପାଣିପାଟିଆକୁ ଭୁଅ ସଙ୍ଗେ ଉଡ଼ ରଖିବା ପାଇଁ କଣ୍ଟା ମାରିବା ପୂର୍ବରୁ ବ୍ୟବହୃତ ବତାର ବନ୍ଧନୀ—
2. A tie-band of split bamboo in a thatch.
୩ । ଜାଲ୍‌ଠୀ ବାଡ଼ରୁ ଜାଲ ଫିଟାଇବାକୁ ଯେଉଁ ଯନ୍ତ୍ରର ଚପା ଦିଆ ଯାଏ—3. An instrument for pressing the net while untying it.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗଂଧା' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

୪ । ଦୁଇ ବା ତତୋଧିକ ସେର୍‌ଯୁକ୍ତ ଅଣ୍ଟାସୂତା ବା ଗୋପର ସରମାନଙ୍କୁ ଏକାଠେଇଁ ଧରି ରଖିବା ପାଇଁ ବ୍ୟବହୃତ ମୁଦିଆ—4 A ring set in a waist-chain, having two or more strings, to hold them together.

**ଚାପୁଡ଼ା** (ଇତ୍ୟାଦି)—ଦେ. ବି.—ଚାପଡ଼ା ଇତ୍ୟାଦି (ଦେଖ)
Chāpurḍā (etc.) Chāparḍā etc. (See)

**ଚାପୁଡ଼ାଇବା**—ଦେ. କ୍ରି.—ଚାପଡ଼ାଇବା; ସ୍ନେହରେ ଧୀରେ ଧୀରେ କରତଳଦ୍ୱାରା ଆଘାତ କରିବା—
Chāpurḍāibā
(ଚାପୁଡ଼େଇବା—ଅନ୍ୟରୂପ) To pat; to tap.

**ଚା-ପୋଚି**— ଦେ. ବି.—ଚା-ଦାନ୍—
Chā-pochi Tea-pot. (Howells)

**ଚାପୋଡ଼୍ଡ଼** (ଇତ୍ୟାଦି)—ଦେ. ବି.—ଚାପଡ଼ା ଇତ୍ୟାଦି (ଦେଖ)
Chāporḍa (etc.) Chāparḍā etc. (See)

**ଚାପୋଡ଼ା** (ଇତ୍ୟାଦି)—ଦେ. ବି.—ଚାପଡ଼ା ଇତ୍ୟାଦି (ଦେଖ)
Chāporḍā (etc) Chāparḍā etc. (See)

ବଡ ବଡ ଚାପୋଡ଼ାମାନଙ୍କୁ ପ୍ରହାରି,
ଯୁଦ୍ଧ କରିଲେ କେହି କାହାରି ନ ଡରି । କୃଷ୍ଣସିଂହ. ମହାଭାରତ ବନ ।

**ଚାବ୍ରା**—ପ୍ରାଦେ. ( ସମ୍ବଲପୁର, ଗଞ୍ଜାମ, ଗଡ଼ଜାତ ) ବିଣ.—(ମୂଳ. ଚାବିବା=କାମୁଡ଼ିବା)—କାମୁଡ଼ା—
Chābrā Currish; biting snappish.

**ଚାବ୍ରି ଚାଁଟି**—ପ୍ରାଦେ. (ସମ୍ବଲପୁର) ବି—କାମୁଡ଼ା ପିମ୍ପୁଡ଼ି—
Chābri chāṅti Biting ant.

**ଚା ବଗିଚା**— ଦେ. ବି.— ଚା ଗଛର କୃଷି କରାଯିବା କ୍ଷେତ୍ର—
Chā bagichā Tea-garden; tea-plantation.

**ଚାବରା**—ପ୍ରାଦେ. (ଗଞ୍ଜାମ; ଗଡ଼ଜାତ)—ବିଣ.—(ସଂ. ଚର୍ବ ଧାତୁ; ଯେ ଚାବେ ବା କାମୁଡ଼େ)—କାମୁଡ଼ା—
Chābarā Currish; snappish.

**ଚାବି**— ବୈଦେ. ବି. (ପର୍ତ୍ତୁ. ଚାବେ)—୧ । କୁଞ୍ଚି; କୋଲପର କାଠି; ଯେଉଁ ଧାତୁମୟ ଶଳାକ ସାହାଯ୍ୟରେ କୋଲପ ଫିଟା ଯାଏ ଓ ବନ୍ଦ କରାଯାଏ—
Chābi
চাবি
चाबी Key of a padlock.

୨ । କୌଣସି କଳର ଚାଳନ ଓ ସ୍ଥଗିତକରଣର ଯନ୍ତ୍ର—
2. Key to move or stop a machine;

୩ । ଘଣ୍ଟାରେ ଦମ୍ ଦେବା କାଠି—3. The key of clock or watch.

**ଚାବି ଆନ୍‌ବା**—ପ୍ରାଦେ. (ସମ୍ବଲପୁର) କ୍ରି.—ଚାବିବା (ଦେଖ)
Chābi ānbā Chābibā (See)

**ଚାବି କାଠି**—ଦେ. ବି.—ଚାବି. ୧ ( ଦେଖ )
Chābi kāthi Chābi. 1 (See)

**ଚାବିଦାର**—ଦେ. ବିଣ.—ଯେଉଁ ଯନ୍ତ୍ର (ଯଥା. ଘଡ଼ି) ସ୍ୱତନ୍ତ୍ର ଚାବିଦ୍ୱାରା ଚାଳିତ ହୁଏ— Key-winding (watch.)
Chābidār
চাবিদার
चाबीदार

**ଚାବି ଦେବା**—ଦେ. କ୍ରି.—୧ । ଚାବି ପକାଇବା (ଦେଖ)
Chābi debā 1. Chābi pakāibā (See)
চাবিদেওয়া
चाबीदेना

୨ । ଘଣ୍ଟା ଭିତରର ସ୍ପ୍ରିଙ୍ଗ୍ ଖୋଲି ଯାଇଥିଲେ ତାକୁ ଚାବି ଦ୍ୱାରା ମୋଡ଼ାଇବା; ଘଣ୍ଟାରେ ଦମ୍ ଦେବା—
2 To wind up the spring of a clock or watch by a key

ପ୍ରାଦେ. ( ସମ୍ବଲପୁର ) କ୍ରି—କାମୁଡ଼ିବା— To bite.

**ଚାବି ପକା(କେ)ଇବା**—ଦେ. କ୍ରି—୧ । କୋଲପକୁ ବନ୍ଦ କରିବା—
Chābi pakā(e)ibā 1 To close a lock
. চাবিফেলা

୨ । ଘର କବାଟରେ ତାଲା ଦେବା —
तालादेना 2. To lock up a door.

**ଚାବି ଫିଟା(ଟେ)ଇବା**—ଦେ. କ୍ରି—୧ । କୋଲପକୁ ମେଲା କରିବା—
Chābi phiṭā(e)ibā 1 To open a lock.
চাবিখোলা

୨ । ଘର କବାଟରୁ କୋଲପ ଫିଟାଇବା—
चाबीखुलना 2. To unlock the door of a room

**ଚାବିବା**—ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ଚର୍ବଣ, ମୂଳ. ହି. ଚାବ୍‌ନା)—
Chābibā କାମୁଡ଼ିବା— To bite.

**ଚାବୁକ**— ବୈଦେ. ବି. (ଫା ଚାବୁକ୍)—୧ । ଅଶ୍ୱତାଡ଼ନ ଦଣ୍ଡ; କୋରଡ଼ା—
Chābuka 1. A horse-whip; scourge.
চাবুক
चाबुक

ଚାବୁକ ବାଜିଲ ପରି ମୁଁ ଡରେ
ତହିଁକି ପଡଇ ପହିଲୁଁ ଥରେ । କବିସୂର୍ଯ୍ୟ. କବିତା ।

୨ । ଚାବୁକ ମାଡ଼; ଚାବୁକଦ୍ୱାରା ପ୍ରହାର—
2. Whipping; a cut by the whip.

ପ୍ରାଦେ. (ଗଞ୍ଜାମ) ବି—ଗଛ —Tree.

**ଚାବୁକ ଖାଇବା**—ଦେ. କ୍ରି—କଶାଘାତ ସହିବା; କୋରଡ଼ାଦ୍ୱାରା ପ୍ରହାର ଖାଇବା
Chābuka khāibā – To be whipped,

**ଚାବୁକ ଦେବା**—ଦେ· କ୍ରି—ଚାବୁକ ମାରିବା (ଦେଖ)
Chābuka debā Chābuka māribā (See)
চাবুকদেওআ
चाबुकदेना

**ଚାବୁକ ମାରିବା**—ଦେ. କ୍ରି —କଶାଘାତ କରିବା—
Chābuka māribā To whip.
চাবুকমারা
चाबुकमारना

**ଚାବୁକ ଲଗା(ଗେ)ଇବା**—ଦେ. କ୍ରି—ଚାବୁକ ମାରିବା (ଦେଖ)
Chābuka lagā(e)ibā Chābukamāribā (See)

**ଚାବୁକସବାର**—ବୈଦେ. ବି. ( ଫା. ଚାବୁକ୍‌ସବାର୍ )—
Chābukasabāra ଯେଉଁ ଅଶ୍ୱାରୋହୀ ଘୋଡ଼ାକୁ ମଣ କରେ—
চাবুকসোয়ার Horse-trainer; jockey.
चाबुकसवार

ଶଙ୍କିଲେ କେଲେ ଚାବୁକସବାର । କବିସୂର୍ଯ୍ୟ. କବିତା ।

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇୟ | ତ୍ଥ | ଡ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଞ୍ଜ | ନ୍ |

ଚାବୁକାଇବା—ଦେ. କ୍ରି· (ଫା. ଚାବୁକ୍)—ଚାବୁକଦ୍ୱାରା ପ୍ରହାର କରିବା—
Chābukāibā To whip.
चाबुका, चावका
**चाबुकमारना**
( ଚାବୁକେଇବା—ଅନ୍ୟରୂପ )

ଚାବୁଚାବୁ- ଦେ. ଅ. ( ଧ୍ୱନ୍ୟନୁକରଣ )—ଅଳ୍ପ ପାଣିରେ ଆଙ୍ଗୁଠି ବା
Chābuchābu କ୍ଷୁଦ୍ର ବସ୍ତୁ ବାଡ଼େଇବା ଶବ୍ଦ; ଚବଚବ ଶବ୍ଦ—
Sound produced by striking the fingers or small articles on shallow water.

ଚାମ— ପ୍ରାଦେ. (ବସ୍ତର) ବି—ଚେମଣୀ—
Chāma House-bat

ଚାମଚ—ବୈଦେ. ବି. (ଫା. ଚମ୍‌ଚହ୍)—ଚାମଚ୍ (ଦେଖ)
Chāmacha Chāmachā (See)

ଚାମଚା—ବୈଦେ. ବି. ( ଫା. ଚମ୍‌ଚହ୍; ତୁଳ. ସଂ. ଚମସ )—
Chāmachā ଧାତୁନିର୍ମିତ ଡଙ୍କି ବା ସାନ ଅଣକ—
चामच A spoon.
**चमचा** [ ଦ୍ର—କଣ୍ଟାଚାମଚ, ଚଡ଼ାଚାମଚ ଓ ଖାନାଚାମଚ ଆଦି ବିଭିନ୍ନ ପ୍ରକାରର ଚାମଚ ଦେଖାଯାଏ । ଆମ୍ଭେମାନେ ଥାଳରୁ ଖାଦ୍ୟଦ୍ରବ୍ୟକୁ ହାତଦ୍ୱାରା ଉଠାଇ ପାଟିକୁ ନେଉଁ, ମାତ୍ର ସାହେବମାନେ ପାଣିଆ ଓ କାଦୁଅା ଖାଦ୍ୟ ପଦାର୍ଥ ଏବଂ ମାଛଆଦିକୁ ଚାମଚ ସାହାଯ୍ୟରେ ପାଟିକୁ ନିଅନ୍ତି । ]

ଚାମଚି— ବୈଦେ. ବି. (ଫା)—ଚାମଚ (ଦେଖ)
Chāmachi Chāmachā (See)
चामचि
**चमची**

ଚାମଚିକା—ଦେ. ବି. ସ୍ତ୍ରୀ. ( ସଂ. ଚର୍ମଚଟିକା )—
Chāmachikā ଚର୍ମଚଟୀ; ଚମିଣିଆ; ଚେମଣୀ; ଚର୍ମପକ୍ଷୀ—
House-bat; Cynopterous Margina.
[ ଦ୍ର—ଏହା ଆକାରରେ ୫।୬ ଅଙ୍ଗୁଳ; ଏହାର କାନ ବଡ଼ ବଡ଼ । ବୃକ୍ଷର ଫଳ ଓ ମଶା ଏହାର ଖାଦ୍ୟ । ଜୀର୍ଣ୍ଣମନ୍ଦିର ଓ ପୁରାତନ ଗୃହରେ ଏ ବାସ କରେ । ]

ଚାମଠା—ପ୍ରାଦେ. ( ସିଂହଭୂମ ) ବି—ଶଗଡ଼ର ଯୁଆଳି ଓ ଦଣ୍ଡା ଅଗକୁ
Chāmaṭhā ଯୋଡ଼ି ରଖିବାରେ ବ୍ୟବହୃତ ରଜ୍ଜୁ—
The rope with which the yoke is tied to the fore ends of the shafts of a cart.

ଚାମଡ଼ା —ଦେ. ବି—୧ । ଚମଡ଼ା (ଦେଖ)
Chāmarḍā 1. Chamarḍa (See)
(ଚାମଡ଼େଇ—ଅନ୍ୟରୂପ) ୨ । ଚାମୁଣ୍ଡା (ଦେଖ)
2 Chāmuṇḍā (See)

ଚାମଡ଼ା ବସନ୍ତ—ଦେ. ବି. (ସଂ.ଚାମୁଣ୍ଡା ଓ ବସନ୍ତ; ଏଥିର ସଂ. ନାମ ଚର୍ମ-
Chāmarḍā basanta ମସୂରିକା)—ଏକପ୍ରକାର ମାରାତ୍ମକ ବସନ୍ତ ରୋଗ—A sort of fatal smallpox which is marked by discoloration of the body and very tiny eruptions; confluent pox.
[ ଦ୍ର—ଏହା ମାରାତ୍ମକ । ଏଥିରେ ଅନ୍ୟଜାତୀୟ ବସନ୍ତ ପରି ଚର୍ମ ଉପରେ ବିସ୍ଫୋଟକ ବାହାରେ ନାହିଁ, ମାତ୍ର ମିଳମିଳା ବା ଘିମିଉପରି ଦେହଯାକ ଫଳିଯାଏ; ତିନିଦିନ ପରେ ଦାଗଗୁଡ଼ିକ ମଉଳି ଯାଏ ଓ ଦେହର ଚର୍ମ ବିବର୍ଣ୍ଣ ହୋଇଯାଏ; ତାପରେ ପାଞ୍ଚ ଦିନରେ ରୋଗୀର ମୃତ୍ୟୁ ଘଟେ । ଏ ବସନ୍ତ ଶରୀରର ଅଭ୍ୟନ୍ତରରେ ଜାତ ହୁଏ; କଣ୍ଠ ଫୁଲି ବରଜ ହୋଇଯାଏ ଏବଂ ରୋଗୀ ପାଣି ଘୁଟୁକା ପିଇପାରେ ନାହିଁ । ]

ଚାମଣ୍ଡା—ଦେ. ବି. ସ୍ତ୍ରୀ—ଚାମୁଣ୍ଡା ( ଦେଖ )
Chāmaṇḍā Chāmuṇḍā ( See )
( ଚାମଣ୍ଡେଇ—ଅନ୍ୟରୂପ) ଦେବୀମାନଙ୍କୁ ଜଗିଅଛନ୍ତି ଯେ ଚାମଣ୍ଡା ।
ପ୍ରାଚୀ, ବ୍ରହ୍ମନୂପଣଗୀତା ।

ଚାମର—ସଂ. ବି. ( ଚମର=ମୃଗ ବିଶେଷ+ସମ୍ବନ୍ଧାର୍ଥେ. ଅ )—
Chāmara ୧ । କେଶଗୁଚ୍ଛନିର୍ମିତ ବ୍ୟଜନ; ଚଅଁର; ବାଳବ୍ୟଜନ—
1. Chowrie; a fan consisting of a bunch of tail-hair; a fly-flap or fan made from the bushy tail of the yak.
[ ଦ୍ର—ଏହା ଦେବତା ଓ ରାଜାମହାରାଜାଙ୍କ ନିକଟରେ ଚାଳିତ ହୋଇ ବ୍ୟଜନ ରୂପେ ବ୍ୟବହୃତ ହୁଏ । ]
୨ । କେଶଗୁଚ୍ଛ—2. A bunch of hair.

ଚାମରଚିକୁରା—ସଂ. ବିଣ. ସ୍ତ୍ରୀ. (ବହୁବ୍ରୀହି, ଚାମର+ଚିକୁର+ସ୍ତ୍ରୀ. ଆ)-
Chāmara chikurā ଘନକେଶୀ; ଯେଉଁ ସ୍ତ୍ରୀର ମୁଣ୍ଡର ବାଳ ଚାମର ପରି ଘନ ଓ ଲମ୍ବ—
Thick or dense haired ( woman ).
ଚାମରଚିକୁରା ମତେ ଚନ୍ଦ୍ରକାଇ ପଚାରିଲୁ କହ ।
କବିସୂର୍ଯ୍ୟ, କଳୋପାରକମ୍ପ ।

ଚାମର ଢାଳିବା—ଦେ. କ୍ରି. ( ସଂ. ଚାମର+ଢ଼ୁଲ ଧାତୁ )—
Chāmara ḍhāḷibā ଚଅଁର ପକାଇବା, ଚଅଁର ଚାଳିବା—
**चँवर डोलना** To fan with a chowrie.

ଚାମର ପକା(କେ)ଇବା—ଦେ. କ୍ରି—ଚାମର ଢାଳିବା ( ଦେଖ )
Chāmara pakā(e)ibā Chāmara ḍhāḷibā ( See )

ଚାମର ପୁଷ୍ପ—ସଂ. ବି. ( ବହୁବ୍ରୀହି; ଚାମର+ପୁଷ୍ପ; ଯେଉଁ ବୃକ୍ଷର ପୁଷ୍ପ-
Chāmara pushpa ଗୁଚ୍ଛମାନ ଚାମର ପରି )—ନଡ଼ିଆ, ଗୁଆ, ଅମ୍ବ, କେତକୀ, କାଶ ଆଦି ବୃକ୍ଷମାନ—
Trees bearing bunches of flowers resembling a chowrie e. g. cocoanut, betelnut, mango,

ଚାମରା—ଦେ. ବି—ଚାମର ( ଦେଖ )
Chāmarā Chāmara ( See )

ଚାମରୀ—ସଂ. ବି. (ଚାମର+ଅସ୍ତି ଯାହାର ଏହି ଅର୍ଥରେ ଇନ୍; ୧ମା. ୧ବ)—
Chāmari ୧ । ଘୋଡ଼ା—1. The horse.
୨ । ଚମର ମୃଗ—2. Bushy-tailed deer.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଚାଇ' ନ ମିଳିଲେ 'ଚାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧେ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୩ । ଚମରୀ ଗୋ—3. The yak.

୪ । ( ଚମର+ଅ+ସ୍ତ୍ରୀ. ଈ ) ଚାମର; ଚଅଁର—
4. A fan made of a bunch of tail-hair.

ସଂ. ବିଣ. ପୁଂ—୧ । ଚାମରବିଶିଷ୍ଟ; ଚଅଁର ଥିବା (ପଶୁ)—
(ଚାମରିଣୀ—ସ୍ତ୍ରୀ) 1 Bushy-haired ( beast ).
୨ । ଚଅଁର ଧରିଥିବା ( ବ୍ୟକ୍ତି )—2. ( a person ) Holding a chowrie or tail-fan.

**ଚାମୀକର**—ସଂ. ବି. ( ଚମୀକର=ଖଣି+ଭବାର୍ଥେ. ଅ )—ସୁନା—
Chāmikara Gold.
ସଂ. ବିଣ—ସ୍ୱର୍ଣ୍ଣମୟ—Golden; made of gold.

**ଚାମୀକରଗୌର**—ସଂ ବିଣ. ପୁଂ. ( ଉପମିତ କର୍ମଧାରୟ; ଚାମୀକର ପରି ଗୌର )—ଯାହାର ଦେହର ବର୍ଣ୍ଣ ସୁନାପରି—Fair-skinned; ( yellowish ) gold-complexioned.
Chāmikara gaura
(ଚାମୀକର ଗୌରୀ—ସ୍ତ୍ରୀ)

**ଚାମୁଣ୍ଡା**— ସଂ. ବି. ସ୍ତ୍ରୀ. (ଚଣ୍ଡ+ମୁଣ୍ଡ; ନିପାତନ=ଚାମୁଣ୍ଡ+ସ୍ତ୍ରୀ.ଆ )—
Chāmuṇḍā ଚଣ୍ଡମୁଣ୍ଡବିନାଶକାରିଣୀ ଦୁର୍ଗା—
An incarnation of Goddess Durgā.
[ ଦ୍ର—ଚଣ୍ଡ ଓ ମୁଣ୍ଡ ନାମକ ଦୁଇଟି ଅସୁରଙ୍କୁ ବିନାଶ କରିଥିବାରୁ ଦୁର୍ଗାଙ୍କର ଏହି ନାମ ହୋଇଅଛି—ଚଣ୍ଡୀ. ୭ମ ଅ. । ]

**ଚାମେଲି**—ଦେ. ବି. ( ସଂ. ଚମ୍ପକବେଲୀ—ହି. ଶବ୍ଦସାଗର; ସଂ. ଚମ୍ପକେଲି, ଚମ୍ବେଲୀ—ଯୋଗେଶଚନ୍ଦ୍ର; ବୈଦ୍ୟକ ନିର୍ଘଣ୍ଟରେ ଚମ୍ବେଲୀ ଶବ୍ଦର ଉଲ୍ଲେଖ ଅଛି; ପ୍ରକୃତ ସଂ. ନାମ ଜାତି )—ଜାଇ ଫୁଲ—
Chāmeli
ଚାମେଲୀ
**चंबेली, चमेली**
ସଂ. ନାମ—ଜାତି, ଚମ୍ପକେଲି, ଚମ୍ପକବେଲୀ, ଚମ୍ବେଲୀ
Catalian or Spanish Jasmine; Jasminum Grandiflorium.
[ ଦ୍ର—ଏହା ମଲ୍ଲିକାଦି ବର୍ଗର ପୁଷ୍ପକ୍ଷୁପ; ପୁଷ୍ପଭେଦରେ ଏହା ୨ ପ୍ରକାର, ଯଥା—ଧଳା ଓ ହଳଦିଆ । ଏ ଫୁଲର ମହକ ଅତି ମୃଦୁ ଓ ମଧୁର । ରାଶିତେଲକୁ ଏ ଫୁଲର ପାଖୁଡ଼ା ଦ୍ୱାରା ସୁଗନ୍ଧିତ କରି ସୁବାସିତ ତେଲ ପ୍ରସ୍ତୁତ କରାଯାଏ । ଏ ଗଛର ପତ୍ର ପକ୍ଷାକାର । ଗ୍ରୀଷ୍ମ ଓ ବର୍ଷା ଦିନେ ଏଥିର ଫୁଲ ଫୁଟେ; ପଥୁରିଆ ମାଟିରେ ଏ ଗଛ ଉଠେ; ଏ ଗଛ ଜଙ୍ଗଲରେ ସ୍ଥାନେ ସ୍ଥାନେ ମନକୁ ଉଠେ । ]

**ଚାମ୍ପ**—ଦେ. ବି. (ସଂ. ଚାମର)—ନଡ଼ିଆ ଓ ଗୁଆ ଗଛର ଚଅଁରର ବୃନ୍ତ-
Chāmpa ସଦୃଶ ବୃନ୍ତ ( ଯହିଁରେ ଫଳ ଓହ୍ଲାଇ ଥାଏ)—
The stem from which the cocoanut and areca-nut fruits hang down from the bunch.

ଲମ୍ବାଇ ଚାମ୍ପ ଉନ୍ନତରେ ବାନ୍ଧି ନାରିକେଳ
ବୃକ୍ଷରେ ବୃଦ୍ଧିବା କଏ ? ତାଙ୍କ ସୃଷ୍ଟି ଖେଳ । ବ୍. ଷ୍ଟୁ. (ନନ୍ଦେ)

**ଚାମ୍ପିବା**—ପ୍ରାଦେ. (ଯାଜପୁର) କ୍ରି—(ନଡ଼ିଆଗଛ) ନୂଆ ଚଅଁର ବାହାରିବା-
Chāmpibā ( a cocoanut tree ) To bring forth a new bunch of flowers.

**ଚାମ୍ପେୟ**—ସଂ. ବି. ( ଚମ୍ପା=ଦେଶବିଶେଷ+ଭବାର୍ଥେ. ଏୟ )—
Chāmpeya ୧ । ଚମ୍ପାଫୁଲ—
1. The Champaka flower.
୨ । ନାଗେଶ୍ୱର ଫୁଲ—
2. The Nāgeśwara flower.
୩ । ସ୍ୱର୍ଣ୍ଣ—3. Gold.
୪ । କିଞ୍ଜଳ୍କ; କେଶର—
4 Pollen or slender filaments of flowers.

**ଚାୟାଁ**—ଦେ. ବି—ପଖୋଜର ଡାହାଣ ମୁଣ୍ଡରେ ଥିବା ଚମଡ଼ା ଏବଂ ଉକ୍ତ ପାଖରୁ ଜାତ ହେବା ଧ୍ୱନି—The right-hand side of a two-sided drum and the sound produced by striking it.
Chāyān̄
[ ଦ୍ର—ପଖୋଜର ବାମପାଖ ଚମଡ଼ା ଓ ତନ୍ନିର୍ଗତ ଧ୍ୱନିକୁ ଧେୟାଁ କହନ୍ତି । ]

**ଚାର ଡବଲ୍**—ଦେ. ବିଣ. ( ସଂ. ଚତୁର୍ ଓ ଇଂ. ଡବ୍ଲ୍ )—ଚାରିଗୁଣ;
Chār ḍabal ଚାରଡବଲ୍—Four times as much.

**ଚାରସମା**—ବୈଦେ. ବି. ( ଆ. ଚହାର୍ ସମ୍ବାହ୍=ଚତୁର୍ଥ ଦିବସ )—
Chārsamā ବୁଧବାର—Wednesday.
চারশম্বা
**चाहारसम्बाह**
(ଚାରସମ୍ବା—ଅନ୍ୟରୂପ)
[ ଦ୍ର—ମୁସଲ୍‌ମାନ୍‌ମାନେ ଶନିବାରଠାରୁ ସପ୍ତାହ ଗଣନ୍ତି । ଶୁକ୍ରବାର ସପ୍ତାହର ଶେଷ ପର୍ବଦିବସ ଅଟେ । ]

**ଚାର**—ସଂ ବି. ( ଚର୍ ଧାତୁ=ଗମନ କରିବା+ଭାବ. ଅ )—
Chāra ୧ । ଗତି; ସଞ୍ଚାର—1. Motion; course
୨ । ବନ୍ଧନ—2. Binding.
୩ । ( +ଅଧି; ଅ ) କାରାଗାର—3. Prison.
୪ । ( +କର୍ମ ଅ ) ଶୃଙ୍ଖଳ—
4. Chain; fetters; bond.
୫ । ( +କର୍ତ୍ତୃ. ଅ ) କୃତ୍ରିମ ବିଷ—
5. Prepared poison; artificial poison.
୬ । ସମ୍ବାଦବାହକ—6. Messenger.
ବ ନଗରପଥର ଚାର ହେବେ ଏ କପାଇଁ—ଭଞ୍ଜ. ବୈଦେହୀଶବିଳାସ ।
୭ । (ଚର+ସ୍ୱାର୍ଥେ ଅ) ଗୁପ୍ତଚର—
7. A spy; a secret emissary.
୮ । ଚାରକୋଳି ( ଦେଖ )—
8. Chārakoḷi ( See )
ଦାରକ୍ଷ ଜେଉଁ ତାଳ ଖଜୁରି, ଉଗ୍ରତ ଚାର ଖଇର ସୁନାଙ୍କ—
ପ୍ରାଚୀ ପ୍ରତାପ. ଶଶିସେଣା ।

ଦେ. ବି ( ସଂ. ଚର ଧାତୁ )—୧ । ଉଚ୍ଚ କୋଠାଘରରେ କାମ-କରିବା ରାଜମିସ୍ତ୍ରୀମାନଙ୍କ ସୁବିଧା ନିମନ୍ତେ ବନ୍ଧା-ହୋଇଥିବା ମଞ୍ଚା ବା ଭାଡ଼ି; ଭାରା—
1. Scaffolding raised for masons and labourers working in high buildings.

| ୧ | ଇ | ଉ | ର,ରୁ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇଷ୍ଟ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୂ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ତ |

୨ । ଦେଉଳ ବା କୋଠାର ଛାତ ଓ ରଥଆଦି ଉଚ୍ଚସ୍ଥାନକୁ କାଠ ପଥର ଇତ୍ୟାଦି ଉଠାଇବା ପାଇଁ ପ୍ରସ୍ତୁତ ପାହାଚଥିବା ସିଡ଼ି—2. Temporary inclined plane for lifting building materials to the roof of a high building during its construction.

୩ । ଉଚ୍ଚଭୂମି ଉପରଦେଇ ଦୂରସ୍ଥ ଜମିକୁ ଜଳ ଯିବା ସକାଶେ କରାଯାଇଥିବା ପାଣିନାଳ ବା ବାଟ—3. Water-channel constructed on a high ground to convey water for irrigation to distant fields.

୪ । ଜୋଡ଼ ବା ନାଳ ପାର ହେବାପାଇଁ ଏକ ପାଖରୁ ଅନ୍ୟ ପାଖକୁ ପଡ଼ିଥିବା କାଠ ବା ବାଉଁଶ ଏବଂ ତା ଉପରେ ଗଲାବେଳେ ହାତଭରା ଦେବାପାଇଁ ଆଡ଼ବାଗରେ ବନ୍ଧା ହୋଇଥିବା ବାଡ଼ା—4. A temporary contrivance consisting of long bamboos or planks laid across a deep channel and a side-railing.

୫ । ମାଛଙ୍କ ପାଇଁ ଜଳରେ ପକାଯିବା ଖାଦ୍ୟ; ଚାରା—5. Bait strewn in water to attract fishes (for angling).

ପ୍ରାଦେ. (ଉତ୍ତରଭାଷା; ଭୁଲ ହି. ଚାର=ଚାରି) ବି—ଚାରି; '୪'—The number 4.

**ଚାରକ**—ସଂ. ବି. ପୁଂ ( ଚର ଧାତୁ ଣିଚ୍=ଚାରି ଧାତୁ=ଚରାଇବା+କର୍ତ୍ତୃ. ଅକ; ଯେ ଚରାଏ )—୧ । ଗୋରୁଜଗୁଆଳ; ଗୋପାଳକ—1. A keeper or tender of cattle; a cowherd or shephered.
Chāraka

( ଯଥା—ଗୋଚାରକ; ପଶୁଚାରକ । )

୨ । (ଚାର+ସ୍ୱାର୍ଥେ. କ) ପିଆଳଗଛ ( ଦେଖ )—2 Piyāla tree ( See )

୩ । ବନ୍ଧ—3. Embankment, dam.

୪ । ଗତି—4. Motion

୫ । କାରାଗାର—5. Jail; prison.

**ଚାର କୋଲି**—ଦେ. ବି (ସଂ. ଚାର ଓ କୋଲି) ପିଆଳ—( ଦେଖ )—Piyāla ( See )
Chāra koli

**ଚାରଚକ୍ଷୁଃ**—ସଂ. ବି ( ବହୁବ୍ରୀହି; ଚାର=ଗୁପ୍ତଚର+ଚକ୍ଷୁଃ )—ରାଜା—A king ( whose spies are his eyes, i, e, who sees every thing through his spies.)
Chārachakshuh

**ଚାରଜ** (ଇତ୍ୟାଦି—ବୈଦେ. ଗ୍ରା. ବି—( ଇଂ ଚାର୍ଜ୍ )—ଚାର୍ଜ୍ ଇତ୍ୟାଦି (ଦେଖ)—Chārj etc (See)
Chāraj (etc)
চারজ
**चारज**

**ଚାରଣ**—ସଂ. ବି ( ଚର ଧାତୁ. ଣିଚ୍=ଚାରି ଧାତୁ+କର୍ତ୍ତୃ. ଅନ )—୧ । ଭାଟ; ସ୍ତୁତିପାଠକ—1. A herald; a bard.
Chāraṇa

୨ । ନଟ—2. A dancer; actor.

୩ । ଦେବଯୋନିବିଶେଷ; ଦେବଗାୟକ—3. A class of aereal beings or divine singers.

ସିଦ୍ଧ ଚାରଣେ ରହିଁ ଯୁଦ୍ଧ ଦେଖୁଥିଲେ,
ଅଦ୍ଭୁତ ଆଜ ସଂଗ୍ରାମ ବୋଲି ପ୍ରଶଂସିଲେ । କୃଷ୍ଣସିଂ. ମହାଭାରତ. ଦ୍ରୋଣ ।

୪ । ଧର୍ମଶାସ୍ତ୍ରପାଠକ—4. A reader or reciter (of religious works).

୪ । ରାଜପୁତମାନଙ୍କ ଶ୍ରେଣୀବିଶେଷ—4. A class of Rajputs who used to incite warriors to action in the battle-field by reciting stories of illustrious warriors.

[ ଦ୍ର—ଏମାନେ ଯୁଦ୍ଧଭୂମିରେ ବୀରମାନଙ୍କ କାହାଣୀ ଗାଇ ଯୋଦ୍ଧାମାନଙ୍କୁ ଉତ୍ତେଜିତ କରୁଥିଲେ । ]

୫ । ( +ଭାବ. ଅନ) ଗୋରୁ ଆଦିଙ୍କୁ ଚରାଇବା—5. Tending cattle.

୬ । ଗୋଚର ଭୂମି—6. Pasture; grazing ground.

୭ । କାରାଗାର ( ପ୍ରକୃତିବାଦ )—7. Prison.

**ଚାରଣା** - ଗ୍ରା ବି—ଚାରି ଅଣା—Four annas.
Chāraṇā
চারানা
**चारआना**

**ଚାରଣି**—ଦେ. ବି—ସୁକି; ଚାରି ଅଣା ମୂଲ୍ୟର ମୁଦ୍ରା; ସୁକି—Four anna-piece.
Chāraṇi
চারানি
**चवअन्नी**

**ଚାରଣିଆ**—ଦେ. ବିଣ—ସବୁଁର ପ୍ରତ୍ୟେକର ମୂଲ୍ୟ ଚାରି ଅଣା—Worth four annas each.
Chāraṇiā
চাবানিআ
**चोअन्नी**

**ଚାରଦୃଷ୍ଟି**—ସଂ, ବି—(ରୂପକ କର୍ମଧା; ଚାର+ଦୃଷ୍ଟି)—ଚାର ବା ଦୂତଙ୍କ ଦ୍ୱାରା ଦେଶବିଦେଶର ସମ୍ବାଦ ଜାଣିବା—Getting information of the kingdom and of the outside world through messengers and spies.
Charadṛushti

[ ଦ୍ର—ରାଜାମାନେ ଚାର ପଠାଇ ଦେଶ ବିଦେଶର ସମ୍ବାଦ ସଂଗ୍ରହ କରନ୍ତି; ଏ ବିଧାନ ପ୍ରାଚୀନକାଳରୁ ଚଳି ଆସୁଅଛି । ]

**ଚାରପାଇ**—ଦେ. ବି—ଚାରିପାହିଆ (ଦେଖ)—Chāripahiā (See).
Chārapāi

ସାଧାରଣ ଲୋକେ ଅପଠ ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବର୍ଣ୍ଣର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂଁ'କୁ ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲବଡ଼' ଦେଖିବେ ।

**ଚାରମାଚାଣ୍ଡୁ**—ପ୍ରାଦେ ( ସମ୍ବଲପୁର ) ବି—ବାଟିଖେଳ ବା ଗୁଲିଖେଳରେ
Chāramāchāṇḍu ଖାତରେ ପକାଇ ଖେଳିବା ବାଟିର ଚତୁର୍ଥ ଆଘାତ—The 4th stroke in a game of marble.

**ଚାରମାର**—ଗ୍ରା. ବି— ଚାର (୧ ଓ ୨) (ଦେଖ)
Chāramāra Chāra (1 and 2) (See).
(ଚ ରମାଳ—ଅନ୍ୟରୂପ)

**ଚାରା**—ବୈଦେ. ବି (ଫା. ଚାରହା=ଔଷଧ, ଉପାୟ, ସହାୟ)—
Chārā ୧ । ଶକ୍ତି; କ୍ଷମତା—1. Power.
चारा
ଏଥିରେ ତାର ଚାରା ନାହିଁ—ରାଧାନାଥ, ବିବେକୀ ।
चारा ୨ । ଉପାୟ—2. Means; expedient; alternative; help; resource; resort
ଅପ୍ରକଟ ହୋଇ ରହିବାପାଇଁ କାହିଁ ତା ଚାରା—ରାଧାନାଥ. ଚନ୍ଦ୍ରଭାଗା ।
୩ । ପ୍ରତିବିଧାନ— 3. Remedy; redress.
୪ । ସାହାଯ୍ୟ—4. Help.
[ ଦ୍ର—ଏହି ଫାର୍ସୀ ଶବ୍ଦରୁ 'ବେଚାରା', 'ନାଚାର' ପ୍ରଭୃତି ଓଡ଼ିଆ ଶବ୍ଦର ଉତ୍ପତ୍ତି ହୋଇଅଛି । ]
ଦେ. ବି (ସଂ. ଚର୍ ଧାତୁ) —୧ । ଖାଦ୍ୟସାମଗ୍ରୀ; ଖାଦ୍ୟସମ୍ଭାର — 1. Provisions; victuals.
୨ । ବନସିର ଥୋପ—2. Bait for fishes.
୩ । ଚରେଇ; ବନସି ପଡ଼ିବା ସ୍ଥାନକୁ ମାଛଙ୍କୁ ଲୋଭନୀୟ ଗନ୍ଧ ଦ୍ୱାରା ପ୍ରଲୋଭିତ କରି ଆଣାଇବା ନିମନ୍ତେ ପାଣିରେ ପକାଯିବା ମଇଦା ବା ମସଲାର ଗୁଳା—3. Small balls prepared of various powders strewn on water to attract fishes to a place where an angler wishes to angle.
[ଦ୍ର—ଭଜା ମେଥି, ମଥାଘଷା ଆଦି ଚୂର୍ଣ୍ଣ କରି ସାନ ସାନ ଗୋଟାଳ ବାନ୍ଧି ବା ଅଠାର ଗୋଟିକା ପ୍ରସ୍ତୁତ କରି ପାଣିରେ ପକାଇଲେ ମାଛମାନେ ଲୋଭରେ ପଡ଼ି ତାହା ପଡ଼ିଥିବା ସ୍ଥାନକୁ ଆସନ୍ତି । ]
चारा ୪ । ମଞ୍ଜିରୁ ବାହାରିବା କ୍ଷୁଦ୍ର ଗଛ; ତଳ—4. Seedlings
अङ्कुर
ଗୋଟିଏ ଆମ୍ବ ଚାରା ବଡ଼ ହୋଇଗଲା ଗଛ—ଭୂକାସ, ଗାଉଁଲିଗୀତ ।
चारागाछ ୫ । କ୍ଷୁଦ୍ର ଗଛ— 5. Plant; young tree.
पाधा

**ଚାରା ଗଛ**—ଦେ. ବି—୧ । କ୍ଷୁଦ୍ର ଗଛ—
Chārā gachha 1. A young tree.
চারাগাছ ୨ । ଯେଉଁ ଗଛ ବେଶି ଡେଙ୍ଗା ହୁଏ ନାହିଁ—
पौधा 2. Plant.

**ଚାରାମାଛ**—ଦେ. ବି—ଶିଶୁ ମତ୍ସ୍ୟ; ମାଛ ଛୁଆଁଳ—
Chārā māchha Fry of fishes.

**ଚାରି**—ଦେ. ବି. ( ସଂ. ଚତୁର୍ )—
Chāri ଚତୁଃ ସଂଖ୍ୟା—The number 4.
চার, চারি ଦେ. ବିଣ—୪ ସଂଖ୍ୟକ—Numbering 4
चार, चारों

**ଚାରିଆଖି**—ଦେ. ବି. (ସଂ. ଚତୁରକ୍ଷ)—୧ । ଦୁଇ ଜଣଙ୍କର ପରସ୍ପର
Chāriākhi ସାକ୍ଷାତ୍କାର ବା ଭେଟାଭେଟି—
চারচোখ 1. A face-to-face meeting; meeting of two persons ( i e 4 eyes).
आँखेचार

ଅଗଣ ହୋଇ ଚାରିଆଖି, ଦେଖିବୁ କ କରିଣ ସଖୀ—
ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

୨ । ବ୍ରହ୍ମା – 2. God Brahmā
୩ । ଆଗପଛ ଦୃଷ୍ଟି ; ଦୂରଦୃଷ୍ଟି ; ଅତିଶୟ ସାବଧାନତା—
3. Insight ( looking in front and behind ); utmost carefulness.
ଦେ. ବିଣ—ଚାରିଆଖିଆ (ଦେଖ)
Chāriākhiā (See)

**ଚାରିଆଖିଆ**—ଦେ. ବିଣ—୧ । ଚାରି ଗୋଟି ଆଖି ବିଶିଷ୍ଟ—
Chāriākhiā 1. Four-eyed; having 4 eyes.
চারচোখ্ ୨ । ଦୂରଦର୍ଶୀ—2. Very careful and considerate; having a deep insight into things.
आँखेचार
୩ । ପରସ୍ପରକୁ ଭେଟିଥିବା (ଦୁଇ ଜଣ) —3. (two persons) Having met face to face.
ଦେ. ବି—୧ । ଚାରିଆଖିଆ ମାଛ (ଦେଖ)
1. Chāriākhiā māchha (See)
୨ । ବ୍ରହ୍ମା—2. God Brahmā.
୩ । ପିଲାମାନଙ୍କ ମଧ୍ୟରେ ଏକପ୍ରକାର ଖେଳ—
3. A kind of game amongst boys
[ଦ୍ର—ଏ ଖେଳରେ ଗୋଟିଏ ପିଲା ଏକସ୍ଥାନରେ ବସେ, ତା ଅଜ୍ଞାତରେ ଚାରିଆଡ଼େ ଅନ୍ୟ ପିଲାମାନେ ଘେରି ତା ଚୁଟି ଟାଣନ୍ତି ଓ ତା ମୁଣ୍ଡରେ ଥୋପି ଦେଇ ତାକୁ ବ୍ୟତିବ୍ୟସ୍ତ କରନ୍ତି ।]

**ଚାରିଆଖିଆ ମାଛ**—ଦେ. ବି—ମତ୍ସ୍ୟ ବିଶେଷ; ମଣ୍ଡୁଗ୍ରନ୍ଥିଜାତୀୟ ମାଛ—
Chāriākhiā māchha A kind of fish having
চোখপনীমাছ্, চক্ষুদানী মাছ্ 2 projecting eyes (mistaken for 2 additional eyes) Aspidoparia marar.
[ଦ୍ର—ଏହା ୧୨ ବା ୨ ଇଞ୍ଚ ଲମ୍ବା; ମୁଣ୍ଡର ମଝି ଆଖିପରି ଜଳ ଜଳ ଦିଶୁଥାଏ ।]

**ଚାରିଆଖି ମିଳା(ଳେ)ଇବା**—ଦେ. କ୍ରି—ଚତୁରକ୍ଷ ହେବା; (ଦୁଇ ଜଣ)
Chāriākhi milā(e)ibā ପରସ୍ପରକୁ ମୁହାଁମୁହିଁ ଭେଟିବା—
চারচোখ মেলান (2 persons) To meet face to face.
चुवार होना, आँखेचार होना

**ଚାରିଆଖି ମିଶା(ଶେ)ଇବା**—ଦେ. କ୍ରି—ଚାରିଆଖି ମିଳାଇବା (ଦେଖ)
Chāriākhi misā(e)ibā Chāriākhi milāibā (See).
চারচোখমেশান

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ତୃ | ଭୂଅ | ନ୍ତ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ଼୍ୟ | ଇଅ | ଡ଼ | ନ୍ |

**ଚାରିଆଡ଼**—ଦେ. ବି—୧ । ଚତୁର୍ଦ୍ଦିଗ; ସର୍ବଦିଗ—
চারধার, চারদিগ 1. Every side; all sides; all quarters.
**चारओर; चार तरफ** ଚାରିଆଡ଼ରେ ଭୂଲ ଆହାର ତା ପାଇଁ ।
ଅଣଶ୍ରୀ ପକ୍ଷୀମାନେ ଅନ୍ତ ଚୋଷ ବହୁ—କୃଷ୍ଣହରି ବ୍ର.ମହାଭାରତ.ସଭା ।

୨ । ସବୁ ବିଷୟ—2. All matters; everything

**ଚାରି ଉତ୍ତର ଶହେ**—ଦେ.ବି. (ସଂ. ଚତୁରଧିକଶତ)—ଏକଶତ ଚାରି—
Chāri uttara śahe One hundred four.

**ଚାରିକଣ୍ଟା**—ଦେ. ବିଣ—ଓଜନରେ ଠିକ୍ ( କମ୍ ବା ବେଶୀ ନୁହେଁ )—
Chārikaṇṭā Accurately weighed (not more
চারকাঁটা nor less) in the scale.
( ଯଥା—ଏ ସବୁ ଜିନିଷ ଚାରିକଣ୍ଟା ଓଜନ କରିଦିଅ । )

**ଚାରିକାତ**—ଦେ. ବି (ଚାରିଗୋଟା କାତପରି ଶରୀରରୁ ଲମ୍ବିଥିବାରୁ)—
Chārikāta ୨ ହାତ ଓ ୨ ଗୋଡ଼; ହାତଗୋଡ଼—
The extended arms and legs.
( ଯଥା—ସେ ଚାରିକାତ ଲମ୍ବେଇ ଶୋଇଛି । )
ଦେ. ବିଣ—ଦୁଇ ହାତ ଦୁଇ ଗୋଡ଼ ଲମ୍ବାଇଥିବା ବା ବିସ୍ତାର କରିଥିବା (ବ୍ୟକ୍ତି)—( a person ) With the arms and legs extended on the ground.

**ଚାରିକାନ**—ଦେ. ବିଣ—୧ । ଦୁଇ ଜଣ ବ୍ୟକ୍ତି ଶୁଣିଥିବା (ବିଷୟ)—
Chārikāna 1. Heard by 4 ears (i.e. only by
চারকান 2 persons).
୨ । ପ୍ରକଟ ହୋଇଥିବା (ଗୁପ୍ତ କଥା)—
2. Divulged (secret).
( ଯଥା—କଥାଟା ଚାରିକାନ ହୋଇଥିଲା । )

**ଚାରିକୋଣ**—ଦେ. ବି (ସଂ. ଚତୁଷ୍କୋଣ)—(କ୍ଷେତ୍ର ବା ଗୃହର) ୪ ଗୋଟି
Chārikoṇa କୋଣ—The four corners ( of a house
চারকোনা or field.)
**चारकोन**

**ଚାରିକୋଣିଆଁ**—ଦେ. ବିଣ ( ସଂ. ଚତୁଷ୍କୋଣ ) ଚାରିକୋଣ ବିଶିଷ୍ଟ—
Chārikoṇiān̐ Quadrangular; square.
চারকোণা
**चौकोना**

**ଚାରିଖାନା**—ଦେ. ବି—ଦେବଦାସଙ୍କ ଛକ ପଡ଼ି ବୁଣା ହୋଇଥିବା ବସ୍ତ୍ର;
Chārikhānā ଚେକ୍‌ଲୁଗା—Checkered cloth; check.
চারখানা
**चारखाना**

**ଚାରିଖାନି**—ଦେ. ବି. (ସଂ. ଚତୁସ୍‌+ଖଣ୍ଡ)—୧ । ଚତୁର୍ବିଧ ସୃଷ୍ଟ ଜୀବ
Chārikhāni (ଯଥା—ଜରାୟୁଜ, ଅଣ୍ଡଜ, ସ୍ୱେଦଜ ଓ ଉଦ୍ଭିଜ୍ଜ)—
চারখানি 1. The created beings consisting of 4
**चौखानि** classes e. g. born of womb (man, beast), born of eggs (reptiles and birds), born of sweat (insects and maggots) and born of the earth (trees etc.)
ଏହାକୁ ଜାତ ବୋଲି କହି, ଭୂତରେ ଚାରିଖାନି ଏହି ।
ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।

୨ । (ସଂ. ଚତୁଷ୍କୋଣ) ଚାରିଦିଗ; ଉତ୍ତର, ଦକ୍ଷିଣ, ପୂର୍ବ ଓ ପଶ୍ଚିମ—2. The four quarters of the globe.
ଖେଳିବା ଅର୍ଥେ ହରିମଣି,
କଲ୍ପି ରଖିଲ ଚାରିଖାନି । ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।

୩ । (ସଂ. ଚତୁସ୍‌+ସ୍ଥାନ) ଭାରତର ୪ ଦିଗରେ ଥିବା ଚାରି ଗୋଟି ପ୍ରସିଦ୍ଧ ତୀର୍ଥ—3. The 4 sacred places of the Hindus in the 4 quarters of India.

[ ଦ୍ର—ପୂର୍ବରେ ପୁରୀ, ପଶ୍ଚିମରେ ଦ୍ୱାରକା, ଉତ୍ତରରେ ବଦ୍ରିନାଥ ଏବଂ ଦକ୍ଷିଣରେ ରାମେଶ୍ୱର ଭାରତର ପ୍ରଧାନ ଚାରି ତୀର୍ଥ । ]

୪ । ଚାରିଭାଷା (ଓଡ଼ିଆ, ବଙ୍ଗଳା, ଫାରସୀ ଓ ନାଗରୀ)—
5 Four languages.
(ଯଥା—ସେ ଚାରିଖାନି ପଢ଼ିଛି ।)
ଦେ. ବିଣ—ଚତୁର୍ବିଧ—Of 4 kinds; consisting of 4 elements.

**ଚାରି ଖୁନି ମାଫ୍**—ଦେ. ବି. ( ସଂ. ଚତୁର୍+ଫା. ଖୁନ୍=ହତ୍ୟା+
Chāri khuṇi māph ଫା. ମୁଆଫ୍=କ୍ଷମା, ଦୋଷ ମାଜନା )—
চারখুন মাফ ୧ । ମୁସଲ୍‌ମାନ୍ ରାଜତ୍ୱରେ ସମ୍ରାଟଙ୍କର
**चारखून मुआफ** ବିଶେଷ ଅନୁଗ୍ରହପ୍ରାପ୍ତ ବ୍ୟକ୍ତିଙ୍କୁ ସମ୍ମାନ ରୂପେ ଦିଆ ଯାଉଥିବା ବିଶିଷ୍ଟ ଅଧିକାର ( ଏପରି କି, ସେ ୪ଟି ପର୍ଯ୍ୟନ୍ତ ନରହତ୍ୟା କଲେ ମଧ୍ୟ ତାଙ୍କୁ ରାଜଦଣ୍ଡ ଦିଆଯାଉ ନ ଥିଲା )—1. A privilage granted to a favourite of the Mahomedan emperors in ancient India ( viz. he would not be punished for committing murder to the maximum of four.
୨ । (ଲକ୍ଷଣାର୍ଥେ) କୌଣସି ପ୍ରତାପଶାଳୀ ବ୍ୟକ୍ତି ତାଙ୍କର ଅନୁଗ୍ରହପାତ୍ରକୁ ଦେବା ବିଶିଷ୍ଟ ଅଧିକାର—2. Any special privilage granted to the favourite of a powerful person.

**ଚାରିଖୁଣ୍ଟ**—ଦେ. ବି—୧ । ପୃଥିବୀର ୪ ଦିଗ ( ଉତ୍ତର, ପଶ୍ଚିମ, ଦକ୍ଷିଣ
Chārikhuṇṭa ଓ ପୂର୍ବ)—1. The four quarters of
চারখুঁট the globe.
**चौखुंट**

**ଚାରିଗଣ୍ଡା**—ପ୍ରାଦେ. (ଗଞ୍ଜାମ) ବି—ଏକପ୍ରକାର କଉଡ଼ି ଖେଳ; ଷୋଳକଉଡ଼ି
Chārigaṇḍā ଖେଳ—A kind of in-door game
চারগণ্ডা played with 16 cowries.

ସାଧାରଣ ଲେଖକେ: ଅପଟ ପୃଷ୍ଠାରେ ଦିଆଯ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳିବ, ସେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' କୁ ପାଇଲେ 'ବଧୁ' ଦେଖିବେ; 'ଅଗାଁ'କୁ ପାଇଲେ 'ଆଙ୍କ' ଦେଖିବେ; 'ଅଲବତ' କୁ ପାଇଲେ 'ଅଲ୍‌ବତ୍' ଦେଖିବେ।

[ ଦ୍ର—ଏ ଖେଳରେ ୧୬ଟ କଉଡ଼ି ଲୋଡ଼ା ହୁଏ । ]

ଦେ. ବି ଓ ବିଣ (ସଂଖ୍ୟାବାଚକ)—ଷୋଳ ସଂଖ୍ୟା—Sixteen.

**ଚାରିଗୁଣ**—ଦେ ବ୍ (ସଂ ଚତୁର୍ଗୁଣ)—ଚତୁର୍ଗୁଣ; ଚାରିଡ଼ବଲ—
Chāriguṇa — Four times.
ଚାବଗୁଣ — ଦେ. ବିଣ—୧ । ଚତୁର୍ଗୁଣିତ—1. Fourfold;
**चारगुन; चौगुना** — multiplied by four.
୨ । ଅତ୍ୟଧିକ—2. Excessive.
ଦେ. କ୍ରି. ବିଣ—୧ । ଚତୁର୍ଗୁଣରେ—1. Four times.
୨ । ଅତ୍ୟଧିକ ପରିମାଣରେ—2. Excessively.

**ଚାରିଗୁଣା**—ଦେ. ବିଣ (ସଂ. ଚତୁର୍ଗୁଣ)—ଚତୁର୍ଗୁଣ—
Chāriguṇā — Four times as much of; fourfold.
ଚାବଗୁଣା
**चौगुना**

**ଚାରିଗୋଡ଼ିଆ**—ଦେ. ବିଣ—୧ । ଚତୁଷ୍ପଦ—
Chāri goṛiā — 1. Having four legs.
ଚାରପାୟା — ୨ । ଦୁଇ ହାତ ଓ ଦୁଇ ଆଣ୍ଠୁ ଭୂମିରେ
**चौगोड़या,चोपाया** — ଲଗାଇ ଗୁରୁଣ୍ଡିବା (ବ୍ୟକ୍ତି)—
2. (a persos) Crawling with the 2 hands and 2 knees.
ଦେ. ବି—୧ । ଚତୁଷ୍ପଦ ଜନ୍ତୁ—1. Quadruped.
୨ । ପୂର୍ବେ ଚାଟଶାଳୀରେ ଛାତ୍ରମାନଙ୍କୁ ଦୁଇ ହାତ ଓ ଦୁଇ ଆଣ୍ଠୁ ଭୂମିରେ ଲଗାଇ କେତେ ସମୟ ଅବସ୍ଥାନ କରିବାକୁ ଦିଆ ଯାଉଥିବା ଦଣ୍ଡ—2 A punishment formerly given in village-schools consisting of an offender remaining in a crawling posture for a long time.
୩ । ଘୋଡ଼ା, ଗୋରୁ ଆଦି ଚାରି ଠାଙ୍ଗ ଉଠାଇ ଦଉଡ଼ିବା—
3. (beasts) Running on all fours.

**ଚାରିଘଣ୍ଟିଆ**—ଦେ. ବିଣ—ଦୁଇ ଓଳି କାମ ନ କରି ମୂଲିଆମାନଙ୍କର
Chāri ghaṇṭiā — ବେଳ ୧ଟା ବା ୧୦ଟା ଠାରୁ ୪ଟା ପର୍ଯ୍ୟନ୍ତ କାମ କରିବା (ପ୍ରଥା)—(the system) Of working for wages from 10 A. M. till 4 P. M instead of working morning and evening.

**ଚାରିଙ୍କି ଚାରିହେଁ**—ଦେ. ସବ—ଚାରିଜଣଯାକ ସମସ୍ତେ—
Chāriṅki chārihen̐ — All the four persons.
ଚାରକେଚାର — ( ଯଥା—ସାଆନ୍ତ ସାଆନ୍ତାଣୀ, ଶୁକର ଶୁକରାଣୀ, ଚାରିଙ୍କି
**चारकोचार** — ଚାରିହେଁ ଘରକରଣା ବିଷୟରେ ଚାରିଚଉକସ । )

**ଚାରିଚଉକ**—ଦେ. ବିଣ, ( ସଂ. ଚତୁଃ+ଚତୁଷ୍କ )—ସମଚତୁଷ୍କୋଣ—
Chārichauka — Square.
**चारकाने** — ଦେ. ବି—ପଶା ଓ କଉଡ଼ିରେ ପକାଯିବା ୪ ସଂଖ୍ୟକ ଦାନ—A turn of the dice or cowries resulting in the turning up of the number 4.

**ଚାରିଚଉକସ**—ଦେ. ବିଣ—୧ । ସମ୍ପୂର୍ଣ୍ଣରୂପେ ସଜ୍ଜିତ—
Chārichaukasa — 1 Fully equipped or dressed.
চৌকস — ୨ । ଖୁବ୍ ସାବଧାନ (ବ୍ୟକ୍ତି)—
**चौकस** — 2. Very cautious (person).
୩ । ଖୁବ୍ ଦୃଢ଼ ରୂପେ ଉଡ଼ା ହୋଇ ବନ୍ଧା ହୋଇଥିବା—
3. Very tightly tied or bound
୪ । ଖୁବ୍ ବଳିଷ୍ଠ ( ବ୍ୟକ୍ତି )—
4. Very strong ( person ).
୫ । ଦୁରନ୍ଧର; ପାରଙ୍ଗମ;—5 Able; capable.
୬ । ବହୁ ବିଦ୍ୟାରେ ପାରଙ୍ଗମ—
6. Versed in many arts.
୭ । ପରସ୍ପର ସଙ୍ଗେ ସମ୍ପୂର୍ଣ୍ଣ ରୂପେ ମେଳ ଖାଉଥିବା ( ବସ୍ତୁଦ୍ୱୟ )—7. ( two things ) Completely tallying or coinciding with each other.
୮ । ସମ୍ପୂର୍ଣ୍ଣ ରୂପେ ପ୍ରସ୍ତୁତ—
8. Fully ready or prepared.

**ଚାରିଚଉକା**—ଦେ' ବି—ଏକପ୍ରକାର କଉଡ଼ି ଖେଳ—A kind of
Chārichaukā — game played with 4 cowries.
[ ଦ୍ର—୪ଟି କଉଡ଼ିରେ ଏ ଖେଳ ଖେଳାଯାଏ । ]

**ଚାରିଚଉରସ**—ଦେ. ବିଣ ( ସଂ. ଚତୁର୍ ଓ ଚତୁରସ୍ର )—
Chārichaurasa — ୧ । ଯେଉଁ କ୍ଷେତ୍ରର ଚାରିଆଡ଼ ସମତଳ;
চারচউরস — ସମତଳ—1. ( a plot ) Which is level on all sides.
**चौरस**
୨ । ବର୍ଗ ( କ୍ଷେତ୍ର )—2. Square.

**ଚାରିଚକ୍ଷୁ** ( ଇତ୍ୟାଦି )—ଦେ. ବି. ଓ ବିଣ—ଚାରିଆଖି ଇତ୍ୟାଦି (ଦେଖ)
Chārichakshu ( etc ) — Chāriākhi etc (See)
ଚାରିଚକ୍ଷୁ ମିଳାଇଲୁ ଆସି—କବିସୂର୍ଯ୍ୟ. କଣୋପାଚମ୍ପୂ ।

**ଚାରିଚବକା**—ଦେ. ବି—ଚାରିଚଉକା ( ଦେଖ )
Chārichabakā — Chārichaukā ( See )

**ଚାରିଚେମା**—ପ୍ରାଦେ. (ଗଞ୍ଜାମ) ବି—ଚାରିକଡ଼ା କଉଡ଼ିରେ ଖେଳାଯିବା
Chārichemā — ଏକ ପ୍ରକାର ଖେଳ—An indoor game played by the players alternately throwing 4 cowries on the ground.

**ଚାରି ଜଣ**—ଦେ. ବି—୧ । ଚାରି ସଂଖ୍ୟକ ବ୍ୟକ୍ତି—1. Four men.
Chāri jana — ୨ । ଏକତ୍ର ଉପବିଷ୍ଟ କେତେ ଜଣ ବ୍ୟକ୍ତି—
চারজন — 2 Some men sitting together.
**चारआदमी** — ୩ । କତିପୟ ସଂଖ୍ୟକ ଅଳ୍ପ ବ୍ୟକ୍ତି—
3 A few men.

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | ଙ୍କ | ଇଯ୍ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ୱ | ୠ |

**ଚାରିଜଣିଆଁ**—ଦେ. ଣ—୧ । ଚାରିଜଣ ବ୍ୟକ୍ତିଙ୍କଦ୍ୱାରା ସମ୍ପାଦ୍ୟ—
Chārijaṇiāṅ 1. Capable of being done by 4 men.
ଚାରଜନା
**चारआदमीयोंका** (ଯଥା—ଚାରିଜଣିଆଁ କାମ ।)
୨ । ଚାରିବ୍ୟକ୍ତିଙ୍କ ବ୍ୟବହାରାର୍ଥ ଅଭିପ୍ରେତ—
2 Intended for the use of 4 persons.
(ଯଥା—ଚାରିଜଣିଆଁ ରୁସେଇ)
୩ । ଚାରି ବ୍ୟକ୍ତିଙ୍କଦ୍ୱାରା ବାହ୍ୟ (ଯାନାଦି)—
3. ( a conveyance ) Drawn or carried by 4 persons.

**ଚାରିଜମା**—ପ୍ରାଦେ. (ଗଡ଼ଜାତ) ଣ—ଖୁବ୍ ମଜ୍‌ଭୁତ୍—
Chāri jamā Very strong.

**ଚାରିଜ.ମା**—ବୈଦେ. ବି.(ଫା. ଚାର୍‌ଜାମା )—ଘୋଡ଼ାର ପିଠିରେ ପଡ଼ିବା
Chārijāmā ତୂଳାରେ ପୂର୍ଣ୍ଣ ବସ୍ତ୍ରନିର୍ମିତ କୋମଳ ଚତୁଷ୍କୋଣ
ଚାବଜାମା ଆସ୍ତରଣବିଶେଷ—Quilted saddle; padded saddle.
**चारजामा**
[ ଦ୍ର—ଚମଡ଼ାନିର୍ମିତ ଆଧୁନିକ ଜିନ୍‌ର ବ୍ୟବହାର ହେବା ପୂର୍ବରୁ ଘୋଡ଼ାଙ୍କ ପିଠିରେ ଚାରିଜାମା ପକାଯାଇ ସବାର ଘୋଡ଼ା ଚଢ଼ୁଥିଲେ; ଏହା ସମଚତୁର୍ଷ୍କୋଣ ଓ କୋମଳ ଏବଂ ଏଥି ଉପରେ ଅନେକ ପ୍ରକାରର ଜରି ଓ ସୂତାର ଚୁମ୍କିକାମ କରାଯାଉଥିଲା । ]
ଦେ. ଣ.—ଚାରି ଚଉକସ (ଦେଖ)
Chāri chaukasa (See)

**ଚାରିଟା**—ଦେ. ବି. (ଅନାଦରାର୍ଥ)—୧ । ସଂଖ୍ୟାରେ ଚାରି—
Chāriṭā 1. Four in number.
ଚାରଟେ ୨ । ଅପରାହ୍ନ ଓ ଭୋର୍ର ୪ ଘଣ୍ଟା ବେଳ—
**चारठो** 2. Four o'clock (A. M. or P. M.)
(ଚାରିଟି; ଚାରୋଟି—ଆଦରାର୍ଥକ)
ଦେ. ଣ—୧ । ଚାରି ସଂଖ୍ୟକ—1. Numbering four
୨ । ଅଳ୍ପସଂଖ୍ୟକ; ସାମାନ୍ୟ—2. A little; a few.
[ଯଥା—ବେଳ ହୋଇଯିବାରୁ ସେ ଚାରିଟା ଭାତ ଖାଇଦେଇ ପଳାଇଗଲା ।]

**ଚାରିତୁଲା**—ଦେ. ଣ—୧ । ଚତୁର୍ବର୍ଗଯୁକ୍ତ; ପୂର୍ଣ୍ଣସୁଖୀ—
Chāritulā 1. Happy in every respect
୨ । ପୂର୍ଣ୍ଣ (ଭୋଜନ)—2. Full (meal).

**ଚାରିତ୍ର**—ସଂ. ବି (ଚରିତ୍ର+ସ୍ୱାର୍ଥରେ ଅ)—୧ । ଚରିତ୍ର; ସ୍ୱଭାବ—
Chāritra 1. Character; nature.
୨ । କୁଳକ୍ରମାଗତ ଆଚାର ( ହି. ଶବ୍ଦସାଗର )—
2. Family-custom
୩ । ଚାଲିଚଳନ; ଢଙ୍ଗ (ହି. ଶବ୍ଦସାଗର)—
Movements; mode of life
୪ । ଜୈନମାନଙ୍କ ସନ୍ନ୍ୟାସ ( ହି. ଶବ୍ଦସାଗର )—
4. Relinquishment of the world by the Jainas.

**ଚାରିତ୍ରବିନୟ**—ସଂ. ବି—୧ । ଚରିତ୍ରଦ୍ୱାରା ବିନୀତଭାବ ପ୍ରଦର୍ଶନ; ନମ୍ରତା
Chāritrabinaya ( ହି. ଶବ୍ଦସାଗର )—1 Humility; humbleness of character.
୨ । ଶିଷ୍ଟାଚାର; ସୌଜନ୍ୟ ( ହି. ଶବ୍ଦସାଗର )—
2. Civility; etiquette.

**ଚାରିତ୍ରା**—ସଂ. ବି. ସ୍ତ୍ରୀ—ତିନ୍ତୁଳିଗଛ—
Chāritrā Tamarind tree.

**ଚାରିତ୍ର୍ୟ**—ସଂ. ବି. ( ଚରିତ୍ର+ସ୍ୱାର୍ଥରେ ଯ )—ଚରିତ୍ର ( ଦେଖ )
Chāritrya Charitra ( See )

**ଚାରି ଦଉଡ଼ି କଟା**—ଦେ. ଣ—ଯାହାର ସଂସାରରେ କୌଣସି ମାୟା-
Chāri daurḍi kaṭā ବନ୍ଧନ ନାହିଁ; ଯାହାର ଆତ୍ମୀୟସ୍ୱଜନ ସମସ୍ତେ ମରିଅଛନ୍ତି ବା ଯେ ସଂସାର ଛାଡ଼ି ବୈରାଗୀ ହୋଇଅଛି—One who has no worldly ties to tie him down to the world; freed from worldly ties.

**ଚାରିଦାମ**—ବୈଦେ. ଗ୍ରା. ବି. ( ଫା. ଚାର୍‌ଜାମା )—
Chāridamā ଚାରିଜାମା ( ଦେଖ )—Chārijāmā ( See )
ସାଜିଲେ ସବୁ ସମ୍ଭାର, ଜିନ ଜିହିସ ଲଲମେଣ୍ଟ ଦରିଡ
ଚାରିଦମା କଡ଼ିଆଳ—ବ୍ରଜନାଥ, ସମରତରଙ୍ଗ ।

**ଚାରିଦଶ**—ଦେ. ବି. ( ସଂ. ଚତୁର୍ଦ୍ଦଶ )—ଦଶରୁ ଚାରି ଅଧିକ ସଂଖ୍ୟା—
Chāridaśa The number 14.
ଦେ. ଣ—ଚତୁର୍ଦ୍ଦଶ ସଂଖ୍ୟକ—14 in number.
ଭୁବନ ମହିମାର ସୀମା ଏ ଚାରିଦଶ
ଲୋକମାନଙ୍କୁ ତ ହୋଇଅଛ ଅଦୃଶ୍ୟ—କୃଷ୍ଣସିଂହ. ମହାଭାରତ. ବନ ।

**ଚାରି ପଇସା**—ଦେ. ବି—୧ । ଚାରିଗୋଟି ପଇସା ବା ତାମ୍ରମୁଦ୍ରା—
Chāri paisā 1. Four pice.
ଚାରପୟସା ୨ । ( ଲକ୍ଷଣାର୍ଥ ) କିଛି ଧନ; କିଛି ଅର୍ଥ—
2. Some money.
**चारपैसा**
( ଯଥା—ତା ହାତରେ ଚାରିପଇସା ହେଲାଣି, ସେ କାହିଁ କାହାକୁ ଡରିବ ? )

**ଚାରି ପହର**—ଦେ. କ୍ରି. ଣ. ( ସଂ. ଚତୁଃ+ପ୍ରହର )—ଦିନତମାମ୍;
Chāri pahara ସାରାଦିନ—Throughout the whole day; the whole day long.
ଚାରପ୍ରହର
**चौपहर** ଜନଜନ ବାର ନାଃସରିବ ଚାରିପହର ନୟନସୁଖଁ—
କବିସୂର୍ଯ୍ୟ, କଳୋଲ୍ଲାସଚମ୍ପୂ. ୬-ଗୀତ ।

**ଚାରି ପା**—ଦେ. ବି—ଏକସେର୍ ପରିମାଣ—
Chāri pā One seer ( weight ).
( ଚାରି ପାଅ—ଅନ୍ୟରୂପ ) ଦେ. ଣ—ସମ୍ପୂର୍ଣ୍ଣ; ଷୋଳଅଣା; ପୂରା—Full; complete.

ସାଧାରଣ ଲୋକେ ଅପର ପୃଷ୍ଠାରେ ସବୁ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଟୁ' ନ ପାଇଲେ 'ବଟୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବଡ' ନ ପାଇଲେ 'ଅଲବଡ଼' ଦେଖିବ

**ଚାରି ପାଇ**—ଦେ. ବି. ( ସଂ ଚତୁଃ ଓ ପାଦ )—
Chāri pāi — ଚାରି ପାହିଆ ( ଦେଖ )
( ଚାରିପାହି—ଅନ୍ୟରୂପ ) — Chāri pāhiā ( See)

**ଚାରି ପାଇଆ**—ଦେ. ବି—ଚାରିପାହିଆ ( ଦେଖ )
Chāri pāiā — Chāripāhiā (See)

**ଚାରି ପାଠ**—ଦେ. ବି—ଓଡ଼ିଆ, ବଙ୍ଗଳା, ନାଗରୀ ଓ ଫାରସୀ ଏହି
Chāri pātha — ଚାରି ଭାଷା ଶିକ୍ଷା—Learning of the 4
চারপাঠ — languages ( formerly prevalent in
चारविद्या — Orissa, e. g. Oria, Bengali, Persian and Debanagari ).

ଉଦ୍ଧାସୁଅ ଚାରି ଦିନରେ ଚାରିପାଠ ହାସଲ କଲା—କାହାଣୀ ।

[ ଦ୍ର—ଇଂରାଜୀ ପାଠ ଆମ ଦେଶରେ ଚଳିବା ପୂର୍ବରୁ ଓଡ଼ିଆ, ବଙ୍ଗଳା, ଫାରସୀ ଓ ନାଗରୀ ଭାଷାର ପ୍ରଚଳନ ଥିଲା । ଏହାକୁ ଚାରିଖାନି ବା ଚାରିପାଠ କହୁଥିଲେ । ଯେ ଚାରିପାଠ ଜାଣୁଥିଲେ ସେ ମହାପଣ୍ଡିତରୂପେ ଗଣ୍ୟ ହେଉଥିଲେ । ]

**ଚାରି ପାହାଡ଼ିଆ**—ଦେ· ବିଣ—ସକଳ କାର୍ଯ୍ୟରେ ସମର୍ଥ—Able to
Chāri pahārdiā — do anything and every thing.

**ଚାରି ପାହିଆ**—ଦେ. ବି. ( ସଂ. ଚତୁଃ ଓ ପାଦ )—
Chāri pāhiā — ୧ । କାଷ୍ଠନିର୍ମିତ କ୍ଷୁଦ୍ର ଖଟ ବା ଖଟୁଆ—
চারপায়া, চারপাএ — 1. Charpoy; a movable bedstead.
चारपाया; चारपाइ — ୨ । ଚଉକି—2. Chair.
(ଚାରିପାଦ୍ୟା—ଅନ୍ୟରୂପ) — ୩ । ଛୋଟ ଟେବୁଲ ବା ମେଜ; ଟୁଲ୍—
3. Small table; stool.

**ଚାରି ଫଳା**—ଦେ. ବିଣ. ( ସଂ. ଚତୁଃ+ଫଳ, ଫଳକ )—ଯେଉଁ
Chāri phalā — ଖିଲକାଡ଼ି ବା ଛୁରିରେ ୪ଟି ଫଳା ବା ଫଳକ ଥାଏ—
চারফলা — ( a clasp knife) Having four blades;
चौफला — four-bladed.
(ଚାରିଫଳିଆ—ଅନ୍ୟରୂପ)

**ଚାରିଫୁଲିଆ**—ଦେ. ବିଣ.—ଧଡ଼ିରେ ଚାରି ଧାଡ଼ି ଫୁଲ ଥିବା (ବସ୍ତ୍ର)—
Chāri phuliā — ( cloth ) Having hems with floral designs in 4 lines.

ମାଣିଅବନ୍ଧୀ ଚାରିଫୁଲିଆ ଖୋଜା ପିନ୍ଧା ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

**ଚାରିଫୁଲି ଅଗ**—ଦେ. ବି.—୧ । ପୂରା ଏକ ବିଶା ଓଜନ—1. Full
Chāriphuli āga — one Bisā in weight.

[ ଦ୍ର—ବିଶାକାଠିରେ ପ୍ରତି ୫ ପଲ ଓଜନ ଚିହ୍ନାଇବା ପାଇଁ ଗୋଟିଏ ଲେଖାଏଁ ଫୁଲ ବା ଛକ(✻) ଯୁକ୍ତ ଦାଗ ଥାଏ । ଚାରିଫୁଲରେ ସୂତୁଲି ବସିଲେ ବିଶାର ପରୁଡ଼ିରେ ଥିବା ଦ୍ରବ୍ୟ ୨୦ ପଲ ଓଜନର ବୋଲି ଜଣାଯାଏ ଏବଂ ଚାରିଫୁଲି ଅଗରେ ସୂତୁଲି ବସିଲେ ୨୫ ପଲ ଅର୍ଥାତ୍ ପୂର୍ଣ୍ଣ ୧ ବିଶା ହୁଏ । ]

କ୍ରି. ବିଣ.—ପୂର୍ଣ୍ଣ ପରିମାଣରେ; ପୂରା ମାତ୍ରାରେ—
In full measure.
(ଯଥା—ସେ ତା ପାଉଣା ନେବାକୁ ଚାରିଫୁଲି ଅଗ ଧରି ବସିଛି ।)

**ଚାରିଭାଇଙ୍କ କାନ୍ଧରେ ଯିବା**—ଦେ. କ୍ରି.—୧ । (ଲକ୍ଷଣାର୍ଥ)—
Chāribhāinka kāndhare jibā — ମୃତ ହେବା—
1. (figurative) To die.
୨ । ମଲା ପରେ ଆପଣା ଶବ ୪ ଜଣ ଜ୍ଞାତି ବା ମଡ଼ାସାଙ୍ଗିଆ ଭାଇଙ୍କ କାନ୍ଧରେ କୋକେଇରେ ଶ୍ମଶାନକୁ ନିଆଯିବା—
2. To be carried on the shoulders of one's four kinsmen to the cremation-ground after one's death.

[ ଦ୍ର—ହିନ୍ଦୁ ସମାଜରେ ମୃତ ବ୍ୟକ୍ତିର ଶବକୁ କୋକେଇରେ ଥୋଇ କୋକେଇର ଆଗ ପାଖର ଦୁଇ ବାଉଁଶକୁ ଦୁଇ ଜଣ ଓ ପଛପାଖର ଦୁଇ ବାଉଁଶକୁ ଦୁଇ ଜଣ, ଏପରି ୪ ଜଣ କାନ୍ଧେଇ କରି ଶ୍ମଶାନକୁ ନିଅନ୍ତି । ମୃତ ବ୍ୟକ୍ତିର ଜ୍ଞାତି, କୁଟୁମ୍ବ ଓ ଯେଉଁମାନେ ମଡ଼ାସାଙ୍ଗିଆ ଭାଇ ବୋଲି ଗୃହୀତ, ସେହିମାନେ ଏହା ଶବ ବହନ କରନ୍ତି । ]

**ଚାରି ଭିତ୍**—ପ୍ରାଦେ. (ମେଦିନୀପୁର) ଅ (ତୁଳ. ବଂ. ଚଉଦିଗେ)—
Chāri bhit — ଚୌଦିଗରେ; ଚାରିଆଡ଼େ—All around; on all sides; in every direction.

**ଚାରିମା**—ସଂ. ବି. (ଚାରୁ+ଭାବାର୍ଥରେ ଇମନ୍; ତୁଳ. ଲଘିମା, ଗରିମା)—
Chārimā — ୧ । ଚାରୁତା; ସୌନ୍ଦର୍ଯ୍ୟ—1. Beauty
୨ । ଲାଳିତ୍ୟ—2. Charm; sweetness.

**ଚାରିମାଥ**—ଦେ. ପଦ୍ୟ. ବି. (ସଂ. ଚତୁର୍+ମସ୍ତକ)—ଚତୁର୍ମୁଖ;
Chāri māthā — ବ୍ରହ୍ମା—Brahmā.

କେତେକାଳ ବଞ୍ଚିବ ଚାରିମାଥ,
ଲେଖିଥିଲେ ମୋର କର୍ମେ ଏ ଦୁଃଖ ପଥ । କୃଷ୍ଣସିଂହ. ମହାଭାରତ. ଉ.

**ଚାରିମୁଖ**—ଦେ. ବି. (ସଂ· ଚତୁର୍ମୁଖ)—ବ୍ରହ୍ମା—
Chārimukha — God Brahmā.

**ଚାରି ହରିତ**—ଦେ. ବି. (ସଂ. ଚତୁଃ ଓ ହରିତ୍)—ଚତୁର୍ଦ୍ଦିଗ—
Chāri harita — Four sides; all sides.

ଚାରି ହରିତରେ ଘେରି, ଚଳାଉଥାନ୍ତି ବାଟୁଳି ଚଳ ମାଲୁଆ ସଖା·ମାନେ ।
କବିସୂର୍ଯ୍ୟ. କଣୋଲାଚମ୍ପୂ. ତ ଗୀତ ।

**ଚାରୀ**—ସଂ. ବିଣ. ତ୍ରି. ( ଚର୍ ଧାତୁ+ଣିନ୍; ୧ମା. ୧ବ. )—ବିଚରଣ-
Chārī — କାରୀ Wandering; walking.
(ଚାରିଣୀ—ସ୍ତ୍ରୀ) [ଦ୍ର—ଏହା ଅନ୍ୟ ସଙ୍ଗେ ଯୁକ୍ତ ହୋଇ ବ୍ୟବହୃତ ହୁଏ; ଯଥା—ବନଚାରୀ, ବ୍ୟୋମଚାରୀ । ]

ସଂ. ବି. ପୁଂ—୧ । ପଦାତି ସୈନ୍ୟ ( ହି. ଶବ୍ଦସାଗର )—
1 Infantryman; foot soldier.
୨ । ସଞ୍ଚାରୀ ଭାବ ( ହି. ଶବ୍ଦସାଗର )—
2. The pervading element in a sentiment in literature.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ଈ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଔ | ନ୍ଦ |

୩ । (ସ୍ତ୍ରୀ; ଚର+ଈ) ନୃତ୍ୟର ଅଙ୍ଗବିଶେଷ (ହି. ଶବ୍ଦସାଗର)—
3. A particular part of dancing
[ ଶୃଙ୍ଗାର ଆଦି ରସର ଉଦ୍ଦୀପନକାରୀ ମଧୁର ଗତିକୁ ଚାରୀ ବୋଲାଯାଏ; କାହାକାହା ମତରେ ଏକ ବା ଦୁଇ ଗୋଡ଼ରେ ନାଚିବାର ନାମ ଚାରୀ ଅଟେ । ଚାରୀ ଦୁଇ ପ୍ରକାର—୧ । ଭୂଚାରୀ, ୨ । ଆକାଶଚାରୀ; ଭୂଚାରୀ ୧୬ ଓ ମତାନ୍ତରରେ ୨୬ ପ୍ରକାର । ଆକାଶଚାରୀ ୧୬ ପ୍ରକାର । ହି ଶବ୍ଦସାଗର । ]

ଚାରୁ—ସଂ. ବିଣ. ( ଚର୍ ଧାତୁ + କର୍ତ୍ତୃ. ଉ )—
Chāru ୧ । ମନୋହର; ସୁନ୍ଦର—1. Agreeable; beautiful;
(ଚାର୍ବୀ—ସ୍ତ୍ରୀ) pleasing; lovely; handsome; elegant.
୨ । ସୁସ୍ୱାଦୁ; ସୁମିଷ୍ଟ—
2. Sweet.
୩ । ସମ୍ୟକ୍—3. Peculiar; particular.
୪ । ଅସାଧାରଣ—4. Extraordinary.
ସଂ. ବି—୧ । ବୃହସ୍ପତି—1. Bruhaspati; the preceptor of the Gods.
୨ । ରୁକ୍ମିଣୀତନୟ—
2 The son of Srikrushna by Rukmini.
[ ଦ୍ର—ହରିବଂଶ ଓ ମହାଭାରତରେ ଚାରୁ ଶବ୍ଦଯୁକ୍ତ ଚାରୁଗର୍ଭ, ଚାରୁଗୁପ୍ତ, ଚାରୁଦେଷ୍ଣ, ଚାରୁବାହୁ, ଚାରୁଭଦ୍ର, ଚାରୁଯଶ, ଚାରୁବିନ୍ଦ, ଚାରୁବେଶ, ଚାରୁଶ୍ରବା ନାମରେ ରୁକ୍ମିଣୀଙ୍କ ଗର୍ଭରୁ ଶ୍ରୀକୃଷ୍ଣଙ୍କର ପୁତ୍ରମାନେ ଓ ଚାରୁମତୀ ନାମରେ କନ୍ୟା ଜନ୍ମିଥିଲେ—ହି. ଶବ୍ଦସାଗର । ]
୩ । ଜାଫ୍ରାନ୍—3. Saffron (Apte)
ଦେ. ବି—୧ । ଚାରୁପାଣି (ଦେଖ)
1. Charupāni (See)
୨ । (ପୁଂ) ପୁରୁଷଙ୍କୁ ଦିଆଯିବା ନାମ—
2. A name given to males.

ଚାରୁକାନ୍ତି—ସଂ. ବି. (କର୍ମଧା; ଚାରୁ + କାନ୍ତି)—ଲାବଣ୍ୟ—
Chārukānti Beauty; grace.
ସଂ. ବିଣ. ପୁଂ ଓ ସ୍ତ୍ରୀ. (ବହୁବ୍ରୀହି)—ସୁନ୍ଦର; ଲାବଣ୍ୟମୟ—
Graceful; beautiful.
ମୁଁ ଯେ ସଖୀଙ୍କରୁ ଧରୁ ପଙ୍କଁ କି ବିଗରୁ ଚାରୁ-
କାନ୍ତି ଗଲା ମୋ କୋଡରୁ ଡରୁ । ଭଞ୍ଜ. ପ୍ରେମସୁଧାନିଧି ।

ଚାରୁକେଶରୀ—ସଂ. ବି—ନାଗରମୁଥା (ଦେଖ)
Chārukesari 1. Nāgaramuthā (See)
୨ । ସେବତୀଫୁଲ (ଦେଖ)
2. Sebati flower (See)

ଚାରୁତା—ସଂ. ବି. (ଚାରୁ + ଭାବାର୍ଥରେ ତା)—୧ । ସୌନ୍ଦର୍ଯ୍ୟ—
Chārutā 1. Beauty; elegance,
(ଚାରୁତ୍ୱ—ଅନ୍ୟରୂପ) ୨ । ମାଧୁର୍ଯ୍ୟ—2. Sweetness.

ଚାରୁଦର୍ଶନ—ସଂ, ବିଣ. ପୁଂ. (ବହୁବ୍ରୀହି; ଚାରୁ + ଦର୍ଶନ)—
Chārudarsana ଦେଖିବାକୁ ସୁନ୍ଦର—
(ଚାରୁଦର୍ଶନା—ସ୍ତ୍ରୀ) Good-looking; graceful; lovely.

ଚାରୁଧାମା—ସଂ. ବି. ସ୍ତ୍ରୀ. (ଚାରୁ + ଧାମନ୍=ସ୍ଥାନ; ଆଧାର)—
Chārudhāmā ଶଚୀ; ଇନ୍ଦ୍ରପତ୍ନୀ—Wife of God Indra.

ଚାରୁଧାରା—ସଂ. ବି. ସ୍ତ୍ରୀ. ୧ । ( ଚାରୁ + ଧୃ ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ.
Chārudhārā ଆ )—ଶଚୀ; ଇନ୍ଦ୍ରପତ୍ନୀ—
1. Wife of God Indra.
୨ । (କର୍ମଧା; ଚାରୁ + ଧାରା) ସୁମନୋହର ପ୍ରବାହ—
2. Charming current.
ସଂ. ବିଣ. (ସ୍ତ୍ରୀ)—ମନୋହର ପ୍ରବାହଯୁକ୍ତ (ନଦୀ)—
(river) Having a charming current.
ବଳଭଲୁ ଅଲିଙ୍ଗନ କରି ଜାହ୍ନବୀ ଶୋଭନ
ହରେ ସୁରତର ତାପ ଚାରୁଧାରା ସେ । ଭଞ୍ଜ. ବୈଦେହୀଶବିଳାସ ।

ଚାରୁନୟନ—ସଂ ବିଣ. ପୁଂ. ( ବହୁବ୍ରୀହି; ଚାରୁ + ନୟନ )—
Chārunayana ଯାହାର ଆଖି ସୁନ୍ଦର; ଚାରୁନେତ୍ର—
ଚାରୁନୟନା, ଚାରୁନୟନୀ } ସ୍ତ୍ରୀ Having beautiful eyes.
ସଂ. ବି—ମୃଗ—Deer.

ଚାରୁନେତ୍ର—ସଂ. ବି ଓ ବିଣ—୧ । ଚାରୁନୟନ (ଦେଖ)
Chārunetra 1. Chārunayana (See)
ଚାରୁନେତ୍ରା, ଚାରୁନେତ୍ରୀ } ସ୍ତ୍ରୀ ୨ । ଅପ୍ସରୋବିଶେଷ—
2. Name of a heavenly nymph.

ଚାରୁପର୍ଣ୍ଣୀ—ସଂ. ବି. ସ୍ତ୍ରୀ—( ବହୁବ୍ରୀହି; ଚାରୁ+ପର୍ଣ୍ଣ + ଈ; ଏହାର
Chāruparṇṇi ପତ୍ରମାନ ଦେଖିବାକୁ ସୁନ୍ଦର )—
ପସାରୁଣୀ ଲତା (ଦେଖ)
Pasāruṇi creeper (See)

ଚାରୁପାଣି—ପ୍ରାଦେ (ଗଞ୍ଜାମ) ବି—ମାଡ୍ରାଜ ଅଞ୍ଚଳରେ ବ୍ୟବହୃତ ରୋଚକ,
Chārupāṇi ସୁପକ୍ୱ, ଅମ୍ଳ ଓ ଝାଳ ରସଯୁକ୍ତ ପାନୀୟ ବିଶେଷ (ଏହାକୁ ଭାତ ସଙ୍ଗେ ଗୋଳାଇ ଖାଆନ୍ତି)—A tasteful acid drink prepared for being taken with boiled rice in Madras presidency.

ଚାରୁଫଳା—ସଂ. ବି. (ବହୁବ୍ରୀହି; ଚାରୁ + ଫଳ + ସ୍ତ୍ରୀ. ଆ)—
Chāruphaḷā ଦ୍ରାକ୍ଷାଲତା; ଅଙ୍ଗୁର ଗଛ—Vine.

ଚାରୁବର୍ଦ୍ଧନା—ସଂ. ବି. ସ୍ତ୍ରୀ(ବହୁବ୍ରୀହି; ଚାରୁ + ବର୍ଦ୍ଧନ + ସ୍ତ୍ରୀ. ଆ)—
Chārubardhanā ସ୍ତ୍ରୀଲୋକ—Woman.

ଚାରୁବ୍ରତା—ସଂ. ବିଣ. ସ୍ତ୍ରୀ. (ବହୁବ୍ରୀହି; ଚାରୁ + ବ୍ରତ + ସ୍ତ୍ରୀ. ଆ)—
Chārubratā ପୂର୍ଣ୍ଣ ଏକମାସ ପର୍ଯ୍ୟନ୍ତ ଉପବାସ ବ୍ରତ ଆଚରଣ କରିବା
(ସ୍ତ୍ରୀ)—(a woman) Observing fast for a whole month.

ଚାରୁରବା—ସଂ. ବି. ସ୍ତ୍ରୀ (ଚାରୁ + ରବ + ସ୍ତ୍ରୀ. ଆ)—ଚାରୁଧାମା (ଦେଖ)
Chārurābā Chārudhāmā (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ, ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ, 'ଅଳତ' ନ ପାଇଲେ 'ଅଲ୍‌ତ' ଦେଖିବେ

**ଚାରୁଶିଳା**—ସଂ. ବି. ( କର୍ମଧା; ଚାରୁ+ଶିଳା )—୧ । ସୁଦୃଶ୍ୟ ପ୍ରସ୍ତର
Chārusilā ଖଣ୍ଡ—1. A beautiful piece of stone.
୨ । ମଣି; ରତ୍ନ—2. Gem.

**ଚାରୁଶୀଳ**—ସଂ. ବିଣ. ପୁଂ. (ବହୁବ୍ରୀହି; ଚାରୁ+ଶୀଳ=ସ୍ୱଭାବ)—
Chārusīla ୧ । ସତ୍‌ସ୍ୱଭାବବିଶିଷ୍ଟ—1. Of lovely disposition; good-natured.
(ଚାରୁଶୀଳା—ସ୍ତ୍ରୀ)
୨ । ସଚ୍ଚରିତ୍ର; ସୁଶୀଳ—2. Of good conduct; of good morals.
୩ । ନମ୍ରସ୍ୱଭାବ; ମର୍ଯ୍ୟାଦାବନ୍ତ—3. Amiable; modest; good-mannered; of gentle manners.

**ଚାରୁଶୀଳତା**—ସଂ. ବି (ଚାରୁଶୀଳ+ଭାବ. ତା)—ସୁଶୀଳତା—
Chārusīltā Modesty; elegance of manners; good manners.

**ଚାରୁହାସୀ**—ସଂ. ବିଣ. ପୁଂ ( ଚାରୁ+ହସ୍ ଧାତୁ+ଇନ୍; ୧ମା. ୧ବ )—
Chāruhāsi ଯାହାର ମୁଖ ସର୍ବଦା ହାସ୍ୟଯୁକ୍ତ; ଯେ ମୃଦୁମଧୁର
(ଚାରୁହାସିନୀ—ସ୍ତ୍ରୀ) ହସ ହସେ; ହର୍ଷମୁଖ—Having a smiling face or countenance; smiling modestly; with enchanting or enrapturing smiles on the face.

**ଚାରୋଟା**—ଗ୍ରା. ବି ଓ ବିଣ (ଅନାଦରାର୍ଥକ)—ଚାରିଟା ( ଦେଖ )—
Chārotā Charitā ( See )
(ଚାରୁଟା—ଅନ୍ୟରୂପ)
(ଚାରୁଟି; ଚାରୋଟି—ଆଦରାର୍ଥକ)

**ଚାର୍ଚ୍ଚକ**—ସଂ. ବିଣ. ପୁଂ (ଚର୍ଚ୍ଚ ଧାତୁ+କର୍ତ୍ତୃ. ଅକ)—ବେଦପାଠରେ
Chārchchaka ନିପୁଣ—Proficient in the recital of
(ଚାର୍ଚ୍ଚିକା—ସ୍ତ୍ରୀ) the Vedas.

**ଚାର୍ଚ୍ଚିକ୍ୟ**—ସଂ. ବି (ଚର୍ଚ୍ଚିକା=ଚନ୍ଦନାଦି ଦ୍ୱାରା ବିଲେପନ+ଭାବ. ଯ)—
Chārchchikya ୧ । ଚର୍ଚ୍ଚିକା; ଅଙ୍ଗରେ ଚନ୍ଦନାଦି ଲେପନ—
1. Besmearing the body with scented pastes or ointments.
୨ । ଲେପ—2. Liniment; plaster.

**ଚାର୍ଜ୍**—ବୈଦେ. ବି (ଇଂ)—୧ । ଅପରାଧୀ ବ୍ୟକ୍ତି ଉପରେ ବିଚାରପତି ଧାର୍ଯ୍ୟ
Chārj କରିବା ଅଭିଯୋଗ—1. Charge framed against
চার্জ an accused.
**चारज** ୨ । କୌଣସି ଅଫିସ୍ ବା କାର୍ଯ୍ୟର ଦାୟିତ୍ୱ; କାର୍ଯ୍ୟଭାର—
2. Charge of an office.
୩ । ଜିମ୍ମାଦାରୀ; କୌଣସି ବସ୍ତୁର ସଂରକ୍ଷଣର ଭାର—
3. Custody.

**ଚାର୍ଜ୍ କରିବା**—ଦେ. କ୍ରି —( ବିଚାରପତି ) ମୁଦେଇର ସାକ୍ଷୀମାନଙ୍କଠାରୁ
Chārj karibā ଆସାମୀ ବିପକ୍ଷରେ ଅପରାଧର ପ୍ରମାଣ ଗ୍ରହଣ କରି
চার্জকরা ଅପରାଧୀ ନାମରେ ଅଭିଯୋଗ ଲିପିବଦ୍ଧ କରିବା—
**चारजकरना** ( a Court ) To frame a charge against an accused.

**ଚାର୍ଜ୍ ଦେବା**—ଦେ. କ୍ରି—ନୂତନ ନିଯୁକ୍ତ କର୍ମଚାରୀଙ୍କୁ ପୂର୍ବବର୍ତ୍ତୀ କର୍ମଚାରୀ
Chārj debā ଆପଣା ଉପରେ ନ୍ୟସ୍ତ କର୍ମର ଭାର ଅର୍ପଣ କରିବା—
চার্জদেওয়া To make over charge.
**चरजदेना**

**ଚାର୍ଜ୍ ନେବା**—ଦେ. କ୍ରି — ପୁରାତନ ଭାରପ୍ରାପ୍ତ କର୍ମଚାରୀଙ୍କଠାରୁ
Chārj nebā ନବନିଯୁକ୍ତ ବ୍ୟକ୍ତି ଅଫିସ୍‌ର ଭାର ଗ୍ରହଣ କରିବା—
চার্জলওয়া To take over charge from the
**चारजलना** former incumbent.

**ଚାର୍ଜ ଫରଦ**—ବୈଦେ. ବି (ଇଂ. ଚାର୍ଜ୍ ଓ ଫା. ଫରଦ୍=କାଗଜଖଣ୍ଡ)—
Chārj pharada ୧ । ଆସାମୀ ବିପକ୍ଷରେ ନିର୍ଦ୍ଧାରିତ ଅଭିଯୋଗ
চার্জফর্দ ଲିପିବଦ୍ଧ ହୋଇଥିବା କାଗଜ—
**चारजकाफरद** 1. Charge-sheet.
୨ । ନବନିଯୁକ୍ତ କର୍ମଚାରୀ ପୁରାତନ କର୍ମଚାରୀଙ୍କଠାରୁ ଚାର୍ଜ୍ ବୁଝିନେବା ସମୟରେ ପ୍ରସ୍ତୁତ ତାଲିକା—
2. List of items taken charge of.

**ଚାର୍ଜ୍ ବୁଝା(ଝେ)ଇବା**—ଦେ. କ୍ରି—ଚାର୍ଜ୍ ଦେବା (ଦେଖ)
Chārj bujhā(e)ibā Chārj debā (See).
চার্জবুঝান
**चारजबुझाना**

**ଚାର୍ଜାମା**—ବୈଦେ. ବି—ଚାରିଜାମା (ଦେଖ)
Chārjāmā Chārijāmā (See)

**ଚାର୍ବଙ୍ଗ**—ସଂ. ବିଣ. ପୁଂ (ବହୁବ୍ରୀହି; ଚାରୁ+ଅଙ୍ଗ; ସନ୍ଧିରେ ଉ+ଅ=
Chārbanga ବ)—ଯାହାର ଅଙ୍ଗ ବା ଶରୀର ସୁନ୍ଦର ଓ କୋମଳ -
(ଚାର୍ବଙ୍ଗୀ—ସ୍ତ୍ରୀ) Having a soft, graceful and well-proportioned body and limbs.

**ଚାର୍ବାକ**—ସଂ. ବି (ବହୁବ୍ରୀହି; ଚାରୁ+ବାକ୍; ଯାହାଙ୍କର ବାକ୍ୟ ଆପାତ-
Chārbāka ମଧୁର )—୧ । ନାସ୍ତିକତା ବା ଅନୀଶ୍ୱରବାଦ-ପ୍ରତିପାଦକ ଦର୍ଶନଶାସ୍ତ୍ରପ୍ରଣେତା ଋଷିବିଶେଷ—
1. Name of a sage; the propounder of the materialistic or atheistic system of Hindu Philosophy; name of a sophistical philosopher of ancient India.

[ ଦ୍ର—ଚାର୍ବାକ କେବେ ଜନ୍ମିଥିଲେ ଓ ସେ କେଉଁ କାଳର ଲୋକ ତହିଁର କିଛି ଦୃଢ଼ ପ୍ରମାଣ ମିଳି ନାହିଁ । ସେ ବୃହସ୍ପତିଙ୍କ ଶିଷ୍ୟ ଥିଲେ ଓ ତାଙ୍କ ପ୍ରଚାରିତ ମତ ବିଷୟ ଚାଣକ୍ୟଙ୍କ ଅର୍ଥଶାସ୍ତ୍ର, ନୈଷଧର ସପ୍ତଦଶ ସର୍ଗ, ପଦ୍ମପୁରାଣ, ବିଷ୍ଣୁପୁରାଣ ଓ ଲିଙ୍ଗପୁରାଣରେ ଉଲ୍ଲେଖ ଅଛି । ଚାର୍ବାକ ଈଶ୍ୱର, ପୁନର୍ଜନ୍ମ ଓ ପରଲୋକ ସ୍ୱୀକାର କରୁ ନ ଥିଲେ, ସେ କେବଳ ଆତ୍ମାକୁ ମାନୁଥିଲେ । ଅନୁଭବ ଉପରେ ନିର୍ଭରକରିବା ଏବଂ ଅନୁମାନ ଉପରେ ନିର୍ଭର ନ କରିବା ପାଇଁ ସେ ଉପଦେଶ ଦେଇ ଅଛନ୍ତି । ତାଙ୍କ ମତ ସର୍ବଦର୍ଶନସଂଗ୍ରହ, ସର୍ବଦର୍ଶନ-

| ୧ | ଇ | ଉ | ଋ,ଝ | ୡ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ୍କ | ଞ୍ଜ | ଣ୍ଟ,ଣ୍ଡ | ନ୍ତ | ମ୍ପ | ଙ୍ଖ | ଞ୍ଚ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଗ | ଞ୍ଜ | ଣ୍ଡ | ନ୍ଦ | ମ୍ବ | ଙ୍ଘ | ନ୍ତ |

ଶିରୋମଣି ଓ ବୃହସ୍ପତିସୂତ୍ରରେ ଅଛି । ରାମାୟଣରେ ଜାବାଳ ଋଷି ରାମଚନ୍ଦ୍ରଙ୍କୁ ବନକୁ ନ ଯାଇ ଘରକୁ ଲେଉଟି ଯିବାକୁ ଯେଉଁ ଉପଦେଶ ଦେଇ ଅଛନ୍ତି ଚାର୍ବାକଙ୍କ ମତ ସଙ୍ଗେ ତାହା ମିଳୁଅଛି । ଚାର୍ବାକଙ୍କ ମତରେ ସୁଖହିଁ ଜୀବନର ଏକ ମାତ୍ର ଲକ୍ଷ୍ୟ ଅଟେ । ତାଙ୍କର ଗୋଟିଏ ପଦ ସାଧାରଣଙ୍କ ମୁଖରୁ ଶୁଣାଯାଏ 'ଯାବତ୍ ଜୀବେତ୍ ସୁଖଂ ଜୀବେତ୍, ଋଣଂ କୃତ୍ୱା ଘୃତଂ ପିବେତ୍'—ହି ଶବ୍ଦସାଗର । ]

୨ । ରାକ୍ଷସବିଶେଷ – 2. Name of a demon who was engaged by Durjodhana to assassinate Judhishṭhira.

[ ଦ୍ର—ଯୁଧିଷ୍ଠିରଙ୍କୁ ହତ୍ୟା କରିବା ସକାଶେ ଦୁର୍ଯ୍ୟୋଧନ ଏହି ରାକ୍ଷସକୁ ନିଯୁକ୍ତ କରି ଥିଲେ । ଯୁଧିଷ୍ଠିରଙ୍କର ହସ୍ତିନାପୁରରେ ପ୍ରବେଶ କାଳରେ ଏ ବ୍ରାହ୍ମଣରୂପ ଧରି ତାହାଙ୍କୁ ଗାଳି ଦେଲା । ପରେ ବ୍ରାହ୍ମଣମାନେ ଏହାକୁ ଚଡ଼ି ପାରି ହତ୍ୟା କଲେ । ]

**ଚାର୍ବାକ ଦର୍ଶନ**—ସଂ. ବି. (ନାମ)—ଚାର୍ବାକ ମୁନିଙ୍କ ପ୍ରବର୍ତ୍ତିତ ନାସ୍ତିକତା-
Chārbāka darśana ପ୍ରତିପାଦକ ଦର୍ଶନଶାସ୍ତ୍ରବିଶେଷ—The system of atheistic or materialistic Philosophy propounded by sage Chārbāka

**ଚାର୍ବା**—ପ୍ରାଦେ ( ସମ୍ବଲପୁର ) ବିଣ. ପୁଂ—କାମୁଡ଼ା—
Chārbā Currish.

**ଚାର୍ବୀ**—ସଂ. ବିଣ ସ୍ତ୍ରୀ. ( ଚାରୁ+ସ୍ତ୍ରୀ. ଈ )—ସୁନ୍ଦରୀ—
Chārbī Beautiful; of charming appearance; handsome (female).
ଚାରୁ—ପୁଂ

ସଂ. ବି—୧ । ସୁନ୍ଦରୀ ସ୍ତ୍ରୀ—
1 A handsome damsel.
୨ । କୁବେରଙ୍କ ପତ୍ନୀ—
2. The wife of the Hindu God of wealth.
୩ । ଶୋଭା; ଦୀପ୍ତି; ଆଭା—
3. Beauty; charm; lustre.
୪ । ଜ୍ୟୋତ୍ସ୍ନା—4. Moon-light.
୫ । ବୁଦ୍ଧି—5. Intelligence.
୬ । ଦାରୁ ହଳଦୀ ( ହି. ଶବ୍ଦସାଗର )—
6. A kind of wild turmeric.

ପ୍ରାଦେ. (ସମ୍ବଲପୁର) ବିଣ. ସ୍ତ୍ରୀ—କାମୁଡ଼ା—
Currish; snappish.

**ଚାର୍ମ**—ସଂ. ବିଣ. ( ଚର୍ମ+ସମ୍ବନ୍ଧାର୍ଥେ. ଅ )—
Chārma ୧ । ଚର୍ମ ସମ୍ବନ୍ଧୀୟ—
1. Relating to the skin.
୨ । ଚର୍ମ ନିର୍ମିତ—
2. Made of skin; leathern.

ସଂ. ବି—ଚର୍ମାବୃତ ଯାନ—A conveyance covered over with leather.

**ଚାର୍ମଣ**—ସଂ. ବିଣ. ( ଚର୍ମନ୍+ଅ )—
Chārmaṇa ଚର୍ମନିର୍ମିତ; ଚମଡ଼ାଘୋଡ଼ାଥିବା—
(ଚାର୍ମଣୀ—ସ୍ତ୍ରୀ) Covered with skin.

ସଂ. ବି—ଚର୍ମସମୂହ—A multitude or number of hides.

**ଚାର୍ମିକ**—ସଂ. ବିଣ. ( ଚର୍ମ+ନିର୍ବୃତ୍ତ ଓ ବ୍ୟବସାୟ ଅର୍ଥେ. କ )—
Chārmika ୧ । ଚର୍ମନିର୍ମିତ—
1. Leathern; made of skin.
୨ । ଚର୍ମ ବ୍ୟବସାୟୀ—
2 Dealing in hide or leather.

**ଚାର୍ମିଣ**—ସଂ. ବି. ( ଚର୍ମିନ୍+ସମୂହାର୍ଥରେ. ଅ )—
Chārmiṇa ଢାଲ-ସଜ୍ଜିତ ବହୁଲୋକ—A number of warriors armed with leathern shields.

**ଚାଲ୍**—ଦେ. ବି. ( ସଂ. ଚଲ୍ ଓ ଚର୍ ଧାତୁ; ସଂ. ଚାର )—
Chāl ୧ । ଦେଶାଚାର; ରୀତି; ପ୍ରଥା—
ଚାଲ 1. Custom; usage.
चाल ୨ । ଅଭ୍ୟାସ—2. Habit.
୩ । ପ୍ରଣାଳୀ; କାର୍ଯ୍ୟର ଧାରା—
3. Method; manner; course of action.
୪ । ବ୍ୟବହାର; ଆଚରଣ—
4. Conduct; treatment; behaviour
୫ । ସ୍ୱଭାବ; ଚରିତ୍ର—5. Character.
୬ । କୌଶଳ—6 Skill; dexterity.
୭ । ଫନ୍ଦି; ଫିକର—
7. Tactics; tactful movement.
୮ । ଚଳନ; ଗତି; ଚାଲି—
8. Movement; motion; course.
୯ । ଧରଣ; ଢଙ୍ଗ; ଢଙ୍ଗ—9. Mode; manner.
୧୦ । ପଶା ଓ ସତରଞ୍ଜ ଆଦି ଖେଳରେ ଗୋଟିର ଏକ ଘରୁ ଅନ୍ୟ ଘରକୁ ଚାଳନ—10. A move of the play-balls in a game of chess or dice.
୧୧ । ସଂସାରରେ ଚଳିବା ରୀତି ବା ପ୍ରଣାଳୀ—
11. Mode of living.
୧୨ । ପ୍ରଚଳନ—12. Currency; use.
( ଯଥା—ଏ ଦେଶରେ ପାଉଣ୍ଡ, ସିଲିଙ୍ଗ୍ ଆଦିର ଚାଲ୍ ନାହିଁ )
୧୩ । କପଟ; କୂଟ 13. Fraud; trick.
୧୪ । ଚାଲାକି—14 Cleverness; trickery.

**ଚାଲ୍ ଚଲଣ**—ଦେ. ବି—ଚାଲ୍‌ଚଲଣି ( ଦେଖ )
Chāl chalaṇa Chālchalaṇi ( See )

**ଚାଲ୍ ଚଲଣି**— ଦେ. ବି. ( ସଂ ଚଲ ଧାତୁ )— ୧ । ଆଚରଣ—
Chāl chalaṇi — 1. Conduct; deportment.
ଚାଲଚଲନ — ୨ । ବ୍ୟବହାର—2. Behaviour.
**चालचलन** — ୩ । ସ୍ୱଭାବ; ଚରିତ୍ର—3. Character.
ଚାଲ୍‌ଚଲନ୍, ଚାଲ୍‌ଚଲନ୍, ଚାଲଚଲନ, ଚାଲଚଲଣି } ଅନ୍ୟରୂପ — ୪ । ରୀତିନୀତି— 4. Custom; usage
୫ । ପରସ୍ପର ମିଶାମିଶି; ଯାତାୟାତ— 5. Intercourse; communion.
୬ । ସମ୍ପର୍କ—6. Connection
୭ । ସମାଜରେ ଚଳିବା—7. Social intercourse.

**ଚାଲ୍ ଚାଲିବା**—ଦେ. କ୍ରି—୧ । ଫନ୍ଦ ବା କୌଶଳରେ କାର୍ଯ୍ୟ କରିବା—1. To move tactfully.
Chāl chāliba
ଚାଲଚଲା (ଯଥା—ସେ ମୋ ସଙ୍ଗେ ଚାଲ୍ ଚାଲୁଛି ।)
**चालचलना** ୨ । ବିଶିଷ୍ଟ ଧରଣରେ ଚଳିବା—
2. To go on with a particular mode of life.

**ଚାଲ୍‌ନି**—ପ୍ରାଦେ ( ସମ୍ବଲପୁର) ବି ( ସଂ. ଚାଲନୀ; ତୁଲ. ହି. ଚଲ୍‌ନୀ; ଛଲ୍‌ନୀ)—ଚାଲୁଣୀ—Sieve.
Chālni

**ଚାଲ୍‌ବାଜ୍**—ବୈଦେ. ବିଣ ( ହି. ଚାଲ୍+ଫା. ବାଜ୍ )—
Chālbāj — ୧ । କୌଶଳୀ; ଫନ୍ଦିବାଜ୍—
ଚାଲବାଜ — 1. Crafty; artful; plotting; machinating; tactician.
**चालबाज**
(ଚାଲବାଜୀ—ବି) ୨ । ପ୍ରବଞ୍ଚକ—2. Fraudulent.

**ଚାଳ**—ସଂ. ବି (ଚଲ୍ ଧାତୁ=କମ୍ପିତକରିବା, ଗମନ କରିବା+କର୍ତ୍ତୃ. ଅ)
Chāḷa — ୧ । ଘରର କ୍ରମନିମ୍ନ ଛପର; ଗୃହପଟଳ—
ଚାଳ — 1. The sloping thatch of a house.
**पाखा; छप्पर** — କସେ ନିଜ ସ୍ଥାନରେ ଗଣକରି ଊର୍ଦ୍ଧ୍ୱରେ
ମନ୍ଦର ଚାଳ ନଗରରେ ସେ—ଭଞ୍ଜ. ବୈଦେହୀଶବିଳାସ ।

୨ । କନ୍ଥାଘରର ତୃଣାଚ୍ଛାଦନ—
2. Reed-covering of a thatched house.
୩ । ଖଞ୍ଜନପକ୍ଷୀ; ସ୍ୱର୍ଣ୍ଣଚୂଡ଼ ପକ୍ଷୀ (ହି. ଶବ୍ଦସାଗର)—
3. The blue jay.
୪ । (+ଭାବ. ଅ) ଚଳନଶୀଳତା—
4. The state of being movable.

**ଚାଳ ଅଟୁ**—ପ୍ରାଦେ (ଗଡ଼ଜାତ) ବି—ଯେଉଁ ଅଟୁ ଚାଳପର ଦୁଇଆଡ଼କୁ ପାହାଚଥା ହୋଇଥାଏ; ଦକ୍ଷିଣୀ ଅଟୁ—A double-thatched house of which the mud-thatch is sloping towards both sides.
Chāḷa-aṭu

**ଚାଳକ**—ସଂ. ବି. ପୁଂ (ଚଲ୍ ଧାତୁ ଣିଚ=ଚାଳ ଧାତୁ+କର୍ତ୍ତୃ. ଅକ)—
Chāḷaka — ୧ । ଗାଡ଼ି ଚଳାଇବା ବ୍ୟକ୍ତି—
(ଚାଳକା—ସ୍ତ୍ରୀ) 1. The driver of a vehicle.
୨ । ପରିଚାଳକ; ତତ୍ତ୍ୱାବଧାରକ—
2. Superintendent; guide.
୩ । କୌଣସି ଯନ୍ତ୍ରକୁ ଚଳାଇବା ବ୍ୟକ୍ତି—
3. Conductor of a machine.
୪ । ନେତା—4. Leader.
୫ । ମତ୍ତ ହସ୍ତୀ—5. A mad or infuriated elephant.
୬ । ଯେଉଁ ହାତୀ ଅଙ୍କୁଶକୁ ମାନେ ନାହିଁ (ହି.ଶବ୍ଦସାଗର)—
6. An elephant which does not mind the goad.
୭ । ନୃତ୍ୟରେ ଭାବପ୍ରକାଶ ବା ଗୁରୁତାବକାଶ କରିବାପାଇଁ ନର୍ତ୍ତକର ହସ୍ତଚାଳନ କ୍ରିୟା (ହି. ଶବ୍ଦସାଗର); ଧାଉଜା—
7. A significant movement of the hands of a dancer to gracefully express the sentiment of the song.
ସଂ. ବିଣ. ପୁଂ—ଚାଳନକାରୀ; ଯେ ଚଳାଏ—Conducting; driving; guiding; causing to move.
ଦେ. ବି—୧ । କୌଣସି ବ୍ୟକ୍ତି ପ୍ରତି ମନ୍ତ୍ରଯନ୍ତ୍ରାଦିର ପ୍ରୟୋଗ—
1. Employing charm or black art against a person.
( ଯଥା—ସେ ଅମୁକକୁ ଚାଳକ କରୁଛି । )
୨ । ଉଚ୍ଚାଟନ; ଉତ୍ତେଜନ—
2. Irritating; exciting; inciting.

**ଚାଳକ କରିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ଉଚ୍ଚାଟନ କରିବା ବା ବଶ କରିବା ସକାଶେ ତାହା ପ୍ରତି ମନ୍ତ୍ରଯନ୍ତ୍ର ପ୍ରୟୋଗ କରିବା—1. To employ charms against a person to bring him under control or to madden him.
Chāḷaka kariba
୨ । କଥାରେ ଚଳାଇବା; ଚିଡ଼ାଇବା—
2. To tease or provoke by words.
କୃଷ୍ଣ କହୁଲେ ହସ୍ତିପାନକ, କଥା କହୁଛ କରି ଚାଳକ—
ସାଳକୃଷ୍ଣ. ରସକଲ୍ଲୋଳ ।

**ଚାଳକ ଲଗା(ଗେ)ଇବା**—ଦେ କ୍ରି—ଚାଳକ କରିବା ୧ ( ଦେଖ )—
Chāḷaka lagā(e)ibā — Chāḷaka karibā 1 (See)

**ଚାଳକୁଡ଼ି**—ପ୍ରାଦେ (ଗଡ଼ଜାତ) ବି—ଚାଳଚାଟି ( ଦେଖ )—
Chāḷakuṛdi — Chāḷitāṭi ( See )

**ଚାଳକୁଣ୍ଡ**—ସଂ. ବି ( ନାମ )—ଓଡ଼ିଶାର ପୁରୀଜିଲ୍ଲା ଓ ଗଞ୍ଜାମର ପୂର୍ବପ୍ରାନ୍ତସ୍ଥ ସାମୁଦ୍ରିକ ହ୍ରଦ; ଚିଲିକାହ୍ରଦ ( ହି. ଶବ୍ଦସାଗର)—The Chilka lake lying in the districts of Puri and Ganjam.
Chāḷakunda

**ଚାଳଧୂଆ**—ପ୍ରାଦେ (ମେଦିନୀପୁର) ବି—କଣ୍ଟାଳିଆ ଛୋଟ ବୃକ୍ଷବିଶେଷ—
Chāḷadhuā — Erythrena Suberosa; a thorny shrub.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଏ | ଉଅ | ଷ୍ଣ |
| ୨ | ଈ | ଊ ରୁ | | ଳୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ତ |

**ଚାଳନ**—ସଂ ବି ( ଚଲ୍ ଧାତୁ ଣିଚ=ଚାଳ ଧାତୁ+ଭାବ. ଅନ )—
Chālana ୧ । ସ୍ଥାନାନ୍ତର କରିବା, ଚଳାଇବା କର୍ମ—
1. Causing motion; moving a thing.
୨ । ( ଅବୟବ ଆଦି ) ଇତସ୍ତତଃ ଘୁରାଇବା—2. Brisk exercise; moving to and fro; brandishing.
୩ । ପରିଚାଳନ—3. Management.
୪ । ଖେଳାଇବା, ସଞ୍ଚାଳନ—
4. Movement; ventilation.
୫ । କାର୍ଯ୍ୟରେ ଲଗାଇବା; ପ୍ରୟୋଗ କରିବା—
5. Application.
୬ । ଢିଲା କରିବା—6. Loosening
୭ । ହଲାଇବା—7. Shaking; wagging.
୮ । ଚାଲୁଣି—8. A sieve; a strainer.
୯ । (+କରଣ ଅନ) ଚାଲୁଣିରେ ଚଲାଇ କରି ଛାଣିବା—
9. Sifting or straining through a sieve.
୧୦ । ଗତି; ଗମନ (ହି. ଶବ୍ଦସାଗର)—
10. Movement; motion.

**ଚାଳନା**—ସଂ. ବି (ଚଲ୍ ଧାତୁ ଣିଚ୍=ଚାଳଧାତୁ+ଭାବ. ଅନ+ଆ)—
Chālanā ୧ । ଆନ୍ଦୋଳନ—1. Agitation.
୨ । ଅନୁଶୀଳନ—2. Exercise.
୩ । ଚର୍ଚ୍ଚା—3. Practice; discussion.
୪ । ଗତି—4. Movement; moving
୫ । ଗତି କରାଇବା—5. Causing anything to move.
୬ । ନିୟନ୍ତ୍ରିତ କରିବା; ନିୟମନ; ପରିଚାଳନ—
6. Guidance; regulation.
୭ । ସୂଚନା; ପ୍ରସ୍ତାବ—7 Hint; proposal.

**ଚାଳନୀ**—ସଂ. ବି. ସ୍ତ୍ରୀ (ଚାଳଧାତୁ+କରଣ. ଅନ+ସ୍ତ୍ରୀ ଈ)—ଚାଲୁଣୀ—
Chālanī Sieve; a strainer.

**ଚାଳନୀୟ**—ସଂ. ବିଣ (ଚଲ୍ ଧାତୁ. ଣିଚ=ଚାଳଧାତୁ+କର୍ମ. ଅନୀୟ )—
Chālanīya ୧ । ଚାଳିତ ହେବା ଯୋଗ୍ୟ—1 Capable of being moved
୨ । ଚାଲୁଣୀରେ ଚଲା ହେବା ଯୋଗ୍ୟ—
2. Fit to be sifted or strained.
୩ । ଢିଲା ଯିବା ଯୋଗ୍ୟ; ଯାହା ଢିଲା କରିବା ଉଚିତ—
3. Fit to be loosened.

**ଚାଳ ବୁଲ**—ଦେ. ବି—୧ । ଚଲାବୁଲା; ଯିବା ଆସିବା; ଗମନାଗମନ—
Chāla bula 1. Coming and going.
चलाफिरा ୨ । ଭ୍ରମଣ—2. Walking; walk
**चलताफिरता, डोलडाल**

**ଚାଳ**—ଦେ. ବି (ସଂ. ଛାଲ)—ଘରର ଚାଳ ବା ଛପର—
Chāla Thatch of a house.

**ଚାଲ**—ପ୍ରାଦେ. (ଗଡ଼ଜାତ) ଓ. ଗ୍ରାମ୍ୟ. (ଇତର) ବି (ସଂ. ଚେଟକ; ପ୍ରା.
Chāla ଚେଡ଼ା)—ଚେଲା; ଶିଷ୍ୟ—Disciple.
ଦେ. ବି (ସଂ. ଚଲନ)—ଚାଲି (ଦେଖ)
Chāli (See)

**ଚାଲକ** (ଇତ୍ୟାଦି)--ବୈଦେ.ବିଣ (ଫା. ଚାଲାକ୍)—ଚଲାକ ଇତ୍ୟାଦି(ଦେଖ)
Chālāka (etc) Chalāka etc (See)
(ଚାଲାକ—ଅନ୍ୟରୂପ)

**ଚାଲାକି** (ଇତ୍ୟାଦି)--ବୈଦେ.ବି (ଫା. ଚାଲାକୀ)--ଚଲାକି ଇତ୍ୟାଦି (ଦେଖ)
Chālāki etc) Chalāki etc. (See)
(ଚାଲାଖି – ଅନ୍ୟରୂପ) ସେଠାରୁ ଚାଲାକି କରି କୈକେୟୀ ନଜେ କହିଲେ—
ମାଳକଣ୍ଠ ଦାଶ ପିଲାଙ୍କ ରାମାୟଣ ।

**ଚାଲାକିଆ**—ଦେ ବିଣ—ଚଲାକିଆ (ଦେଖ)
Chālākiā Chalākiā (See)
(ଚାଲାଖିଆ—ଅନ୍ୟରୂପ)

**ଚାଲାଖି** (ଇତ୍ୟାଦି)—ବୈଦେ. ବି (ଫା.)—ଚଲାକି ଇତ୍ୟାଦି (ଦେଖ)
Chālākhi (etc) Chalāki etc (See)

**ଚାଲାଣ**—(ଇତ୍ୟାଦି) ଦେ ବି—ଚଲାଣ ଇତ୍ୟାଦି (ଦେଖ)
Chālāṇa (etc) Chalāṇa etc (See)

**ଚାଲଣି**—ଦେ. ବି ଓ ବିଣ—ଚଲଣି (ଦେଖ)
Chālaṇi Chālaṇi (See)

**ଚାଳି**—ଦେ. ବି (ସଂ ଛାଲ)—୧ । ଛୋଟ ଚାଳ—
Chāli 1. A small thatch.
एकचाला ୨ । ଏକପାଖକୁ ଢାଲୁ ଚାଳ ଥିବା ଘର; ଏକଚାଳିଆ ଘର -
**एकचाला** A house having one sloping thatch only; a thatched lean-to.

**ଚାଲି**—ଦେ. ବି. (ସଂ.ଚଲ୍ ଧାତୁ)—୧ । ଗମନ; ଭ୍ରମଣ; ପାଦଚାରଣ—
Chāli 1. Walking.
चलन ହେଲେ ଯେ ମନ୍ଦରସ୍ତନୀ ତୋ ସୁନ୍ଦର ଚାଲିରେ କରିବ ଦୃଷ୍ଟିଦାନ ।
**चाल** କବିସୂର୍ଯ୍ୟ, ସଙ୍ଗୀତ ।
୨ । ଗମନ କରିବାର ରୀତି—2. Gait; mode of walking; deportment.
୩ । ଗତିର ବେଗ—3. Velocity.
୪ । ଆଚରଣ—4 Conduct.
ଚରାଚର ଚାଲି ଭୟମୟ । କବିସୂର୍ଯ୍ୟ. କଣୋଘଚମ୍ପୂ, ଚ ଗୀତ ।

**ଚାଳିଆ**— ଦେ. ବି —ଚାଳି (ଦେଖ)
Chāḷia Chāḷi (See)
ଦେ. ବିଣ.—( ଅନ୍ୟ ଶବ୍ଦ ପରେ ଯୁକ୍ତ ହୋଇ )—ଚାଳ ବା ଛପରଯୁକ୍ତ—(used in compound) Thatched; having such or such a thatch.
(ଯଥା—ଏକଚାଳିଆ, ଦୋଚାଳିଆ, ନାହାଚାଳିଆ ।)

**ଚାଳିତ**—ସଂ. ବିଣ.—(ଚଲ୍ ଧାତୁ, ଣିଚ+କର୍ମ. ତ)—୧ । ସଚାଳିତ -
Chālita 1. Caused to move; made to move.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ପର୍ଯ୍ୟାୟକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୃଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୨ । ସ୍ଥାନାନ୍ତରିତ—2. Moved away, transferred.
୩ । ଆନ୍ଦୋଳିତ—3 Agitated, stirred.
୪ । ପ୍ରସ୍ତାବିତ—4. Proposed.
୫ । ଅନୁଶୀଳିତ—5 Exercised

**ଚଳି ଟାଟି**—ପ୍ରାଦେ. (ଗଡ଼ଜାତ) ବି.—ଦୁଇ ପାଖରେ ବାଉଁଶବତା ଦ୍ୱାରା ବୁଣା ଯାଇ ତିଆରି କରା ଯାଇଥିବା ଏକ ପ୍ରକାର ସ୍ଥାନାନ୍ତରଯୋଗ୍ୟ ଚଳି ବା ଛପର—
Chali tati
A movable frame of thatch which is bound by split bamboos on both sides.
[ ଦ୍ର—ଏହି ଚଳିର ମଝି ବାଉଁଶକୁ ଠେକି ଦେଲେ ଦୁଇ ପାଖକୁ ଚାଳର ଦୁଇଟି ପଞ୍ଜରା ଓହୋଳି ପଡ଼େ । ଲୋକେ ଏ ପ୍ରକାର ଚାଳକୁ ସହଜରେ ଉଠାଇ ନେଇ ଖୁଣ୍ଟ ଉପରେ ଉଚ୍ଚ ଭାଡ଼ି କରି ଭାଡ଼ିଉପରେ କୁଡ଼ିଆ ମାରି ଜଙ୍ଗଲ ଭିତରେ କ୍ଷେତ ଜଗନ୍ତି ଓ ଫସଲ ଉଠିଯାଇ ଜଗିବା କାର୍ଯ୍ୟ ଶେଷ ହେଲେ ଚାଳଟାଟିକୁ ପୁଣି ଉଠାଇ ଆଣନ୍ତି । ]

**ଚଳିବା**—ଦେ. କ୍ରି. (ସଂ. ଚଲ୍ ଧାତୁ. ଣିଚ=ଚାଲି ଧାତୁ; 'ଚଳିବା'ର ଣିଜନ୍ତରୂପ)—୧ । ଚାଳନ କରିବା; ଗତି କରାଇବା—
Chaliba
ଚାଲାନ 1, To move; to set in motion.
**ଚଲାନା** ହେ ଜଳଧର, ବଞ୍ଚଣୀ ପାଦ ମଞ୍ଜୀର ଚଳି ।
(ଚଳାଇବା—ଅନ୍ୟରୂପ) ଭଞ୍ଜ. ପ୍ରେମସୁଧାନିଧି ।
୨ । ଉତ୍ତେଜିତ କରିବା; ଠେଲିବା; ମତାଇବା—
2. To excite; to incite; to instigate.
ଅଳୀକ ଆଳାପି ଚାଳି ଦେଉଥିଲା ପ୍ରଚ୍ଛଦପଟରେ କେଳିଚପଳକ—
କବିସୂର୍ଯ୍ୟ. ସଙ୍ଗୀତ ।
୩ । ଆନ୍ଦୋଳିତ କରିବା—3. To stir up; to agitate.
୪ । ରଗାଇବା; ଚିଡ଼ାଇବା—
4. To make angry; to irritate.
ଏତେ ଅନୀତି ଆଚରିଲେ । ନିର୍ଗୁଣ ମୁନିଙ୍କି ଚଳିଲେ—
ଜଗନ୍ନାଥ. ଭାଗବତ ।
୫ । (ବିବାହାଦି କାର୍ଯ୍ୟ) ସମ୍ପନ୍ନ ହେବା ବିଷୟରେ ସାହାଯ୍ୟ କରିବା—5. To help some one in accomplishing a work.
୬ । (ମୁଣ୍ଡ, ହାତ, ଯଷ୍ଟି) ହଲାଇବା—6. To shake from one side to another; to brandish.
୭ । ଅଭାବ ବା ଗରଜ ପୂରଣ କରିବା; ଆବଶ୍ୟକ ପଡ଼ିବା ବେଳେ ସାହାଯ୍ୟ କରିବା—7. To help a person in need.
୮ । ସ୍ଥାନାନ୍ତରିତ କରିବା; ଘୁଞ୍ଚାଇବା—
8. To remove; to shuffle.
ଉଦ୍ଧବ ହରଷ ବଦନ । ଚରଣେ ଚଳିଲା ଆସନ—
ଜଗନ୍ନାଥ. ଭାଗବତ ।
୯ । (ପଶାଖେଳ ଆଦିରେ ସାରିକୁ) ଦାନ ପକାଇ ଦାନ ଅନୁସାରେ ଏକ ଘରୁ ଅନ୍ୟ ଘରକୁ ନେବା—
9. To move the chessmen on a chess-board or dice-board from one room to another according to the throw.
୧୦ । (ଗାଡ଼ି, ଘୋଡ଼ା ଓ ଯନ୍ତ୍ରାଦି) ଚାଳିତ କରିବା—
10. To conduct or drive ( a conveyance or animal ).
୧୧ । ( କୌଣସି ସମ୍ବାଦ ) ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ପଠାଇବା—11. To circulate (some news).
ଚଳାଇ ଯେବେ ମୁଁ ଶୁଭ ସନ୍ଦେଶ—କବିସୂର୍ଯ୍ୟ. କବିତା ।
୧୨ । ମନ୍ତ୍ରଯନ୍ତ୍ର ଦ୍ୱାରା କୌଣସି ବ୍ୟକ୍ତିକୁ ଉନ୍ମତ୍ତ କରିବା—
12. To madden or excite a person by the use of charms.
୧୩ । ( ସାପକୁ ) ଖେଳାଇବା; ସାପର ଦେହରେ ହାତ ମାରି ଓ ପଦ୍ମତୋଳା ବୋଲି ତାକୁ ଗତିବିଶିଷ୍ଟ କରିବା—
13. To cause a snake to move by exciting it
ଖଳକାର ନୋହି କଳା ନାଗକୁ ଚଳିଲୁ ରେ—
କବିସୂର୍ଯ୍ୟ. କଣ୍ଠେଶ୍ୱରୀମୁଖ ଗୀତ ।

**ଚଳିବା**—ଦେ. କ୍ରି (ସଂ. ଚଲ୍ ଧାତୁ )—୧ । ଗତି କରିବା—
Chaliba 1. To move.
**ଚଲ୍ନା** ଚଳିଲେ ମହେନ୍ଦ୍ରମୁଖେ ଅନଳ ସହିତେ—ରାଧାନାଥ. ମହାଯାତ୍ରା ।
**ଚଲନା** ୨ । ଭ୍ରମଣ କରିବା; ପାଦଚାରଣ କରିବା—
[ ଚଳା(ଲେ)ଇବା—ଣିଜନ୍ତରୂପ ] 2 To walk.
୩ । ପୂର୍ବପରି ଗତି କରିବା—
3. To continue; to go on as before.
୪ । ଘଟିବା—4. To happen.
୫ । ( କାର୍ଯ୍ୟ ) ଚଳିବା; ପରିଚାଳିତ ହେବା—
5. To be conducted or moved.
୬ । ବ୍ୟବହାରରେ ଲାଗୁଥିବା—
6. To be used or utilised.
୭ । ଗମନାଗମନ କରିବା—7. To come and go.
୮ । ଲମ୍ବଭାବରେ ପାଡ଼ିତ ହେବା—
8. To be laid along.
(ଯଥା—କାନ୍ଥ ଉପରେ ଉପରେ ଶେଣୀ ଚଳିଛି ।)
[ ଦ୍ର—ଚଳିବା କ୍ରିୟାର ଅସମାପିକାରୂପ ସଙ୍ଗେ ଆସିବା, ଯିବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ଚଳି ବେଲି**—ଦେ ବି—ଚଳ୍‌ଚଳଣି (ଦେଖ)
Chali beli Chal chalani (See)
ଅର୍ଜୁନଙ୍କର ଚଳିବେଲିଟି ଯେତେକଟି
ଦେଖ ଏହା ଦେହରେ ଅଛି ତ ଚେତେକ—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ଈ |
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଓ | ନ୍ତ |

**ଚାଲି ଯିବା**—ଦେ. କ୍ରି—୧ । ପାଦରେ ଗତି କରି କୌଣସି ସ୍ଥାନକୁ ଯିବା—
Chāli jibā 1. To go by walking on foot; to walk.
চলেযাওয়া
चलाजाना

୨ । କୌଣସି ସ୍ଥାନ ପରିତ୍ୟାଗ କରିବା; ପ୍ରସ୍ଥାନ କରିବା—To leave; to depart; to go away.

୩ । (ଶୁଭବାଦନ) ମରିଯିବା—3. ( Euphemism ) To die; to pass away.

୪ । ସଂସାର ତ୍ୟାଗ କରିବା; ବୈରାଗ୍ୟ ବା ବାନପ୍ରସ୍ଥ ଅବଲମ୍ବନ କରିବା—4 To retire from worldly concerns; to renounce the world.

୫ । ( କାର୍ଯ୍ୟ ) ଚାଲିବା; ସମ୍ପାଦିତ ହେବା—5. (a work) To go on; to be accomplished.

୬ । ଲୋପ ପାଇବା; ଲୁପ୍ତ ହେବା—6. To disappear; to vanish.

ସେ ପ୍ରଭୃତି ଚାଲିଗଲେ କହିର କୌଶଳ
ବଳେ ଯିବ ସ୍ୱାଧୀନତା × × × ରାଧାନାଥ. ମହାଯାତ୍ରା ।

୭ । (ଏତେ କାଳ ପାଇଁ) ସ୍ଥାୟୀ ହେବା—
7. To last for (some time).
[ଯଥା—ଏ ଲୁଗା ଖଣ୍ଡି ୩ ବର୍ଷ ଚାଲିଯିବ ।]

୮ । (ସମୟ) ଅତିବାହିତ ହେବା, ଅତିକ୍ରାନ୍ତ ହେବା—
8. (time) To pass away
[ଯଥା—ଏ ସୁଖର ଦିନ ଶୀଘ୍ର ଚାଲିଯିବ]

**ଚାଲିଲା ଚାଲିଲା ହୋଇ ଯିବା**—ଦେ. କ୍ରି—ଧୀରେ ଧୀରେ ଚାଲି ଚାଲି
Chālilā chālilā hoi jibā କୌଣସି ସ୍ଥାନକୁ ଯିବା—
To go to a place by slow walking.

**ଚାଳିଶ**—ଦେ. ବି. (ସଂ. ଚତ୍ୱାରିଂଶତ୍; ପ୍ରା. ଚତ୍ତାଲୀସ)—୪୦ ସଂଖ୍ୟା—
Chā̱lisa The number 40.
চাল্লিশ
चालीस
ଦେ. ବିଣ.—୧ । ୪୦ ସଂଖ୍ୟକ—1. Numbering forty.
୨ । ଚାଳିଶ ସଂଖ୍ୟାର ପୂରଣ—2 Fortieth.

**ଚାଳିଶା**—ଦେ. ବିଣ. ( ସଂ. ଚତ୍ୱାରିଂଶ; ପ୍ରା. ଚତ୍ତାଲୀସା )—
Chā̱lisā ୪୦ ସଂଖ୍ୟା ସମ୍ବନ୍ଧୀୟ—Relating to 40.
চল্লিশা; চালসা
चालीसा
ଦେ. ବି—୧ । ପ୍ରାୟ ୪୦ ବର୍ଷ ବୟସ ପରେ ମନୁଷ୍ୟର ଦୃଷ୍ଟିଶକ୍ତିର କ୍ଷୀଣତା—1. Dimness of eyesight which overtakes a man generally after the age of 40.
୨ । ଚାଳିଶ ନମ୍ବରିଆ କଳ ସୂତା—2. Twist of 40 counts.
୩ । ୪୦ ବସ୍ତୁର ପୁଞ୍ଜ ବା ସମାହାର—3. A group or aggregate of 40 things.

**ଚାଳିଶାଦୁଇଶ**—ଦେ. ବି. ( ସଂ. ଚତ୍ୱାରିଂଶତ୍ + ଦ୍ୱିଶତ )—ଦୁଇ ଶତ ଚାଳିଶ ସଂଖ୍ୟା—240.
Chā̱lisā duiśa

ଚବିଶି ଦଶ । ଚାଳିଶାଦୁଇଶ ପଣ ପନ୍ଦର କାହାଣ—ପଣିକିଆ ।

ବିଣ—ଦୁଇଶତ ଚାଳିଶ ସଂଖ୍ୟକ—Numbering 240.

**ଚାଳିଶାଶହେ**—ଦେ. ବି—୧୪୦ ସଂଖ୍ୟା—
Chā̱lisā śahe The number 140.
ଦେ. ବିଣ—୧୪୦ ସଂଖ୍ୟକ—140 in number.

ଚଉଦ ଦଶ । ଚାଳିଶାଶହେ ପଣ ଅଠ କାହାଣ ବାର ପଣ—ପଣିକିଆ ।

**ଚାଳିଶି**—ଦେ. ବି. ଓ ବିଣ—ଚାଳିଶ ( ଦେଖ )
Chā̱lisi Chā̱lisa ( See )

**ଚାଳିଶି ଘରିଆ**—ପ୍ରାଦେ. ( ବାଲେଶ୍ୱର ) ବି—ଏକ ଶ୍ରେଣୀର ଗଉଡ଼;
Chā̱lisi gharia ଗୋପପୁରିଆ ଗଉଡ଼—
A sect of cowherds
[ ଦ୍ର—ଏମାନେ ପାଲିଙ୍କି, ସବାରି ଆଦି ବୁହନ୍ତି ନାହିଁ; କେବଳ ଗୋରୁ ଜଗନ୍ତି । ]

**ଚାଳୁ**—ଦେ. ବି. ( ସଂ. ଚଳନ )—ଯାନାଦିର ଗତି; ଚାଲି—
Chālu Motion of a conveyance.
( ଯଥା—ଏ ପାଲିଙ୍କିର ଭଲ ଚାଳୁ ଅଛି । )

**ଚାଳୁଆ**—ଦେ. ବିଣ—୧ । ଚାଳ ସମ୍ବନ୍ଧୀୟ—
Chāluā 1. Relating to the thatch.
୨ । ଯେଉଁ ମୂଷାମାନେ ଚାଳରେ ବସା କରି ରହନ୍ତି—
2. ( mice ) Living in the thatches.

**ଚାଳୁକ୍ୟ**—ଦେ. ବି. (ନାମ)—ଦାକ୍ଷିଣାତ୍ୟର ଏକ ପ୍ରାଚୀନ ପ୍ରସିଦ୍ଧ ପରାକ୍ରମୀ
Chālukya ରାଜବଂଶ—Name of a historic line of powerful kings of the Deccan.
[ ଦ୍ର—ବିହ୍ଲଣଙ୍କ ବିକ୍ରମାଙ୍କଚରିତରେ ଲେଖା ଅଛି ଯେ ବ୍ରହ୍ମାଙ୍କ ଚୁଳୁକ (ଚଳୁ)ରୁ ଏ ବଂଶର ଆଦିପୁରୁଷ ଜନ୍ମିଥିବାରୁ ଏ ବଂଶର ଏହି ନାମ । କିନ୍ତୁ ତାମ୍ରପତ୍ର ଶାସନମାନଙ୍କରୁ ଦେଖାଯାଏ ଯେ ଏମାନେ ଚନ୍ଦ୍ରବଂଶୀୟ । ବିଷ୍ଣୁବର୍ଦ୍ଧନ, ୧ମ ପୁଲକେଶୀ, କୀର୍ତ୍ତିବର୍ମା, ମଙ୍ଗଳୀଶ, ସତ୍ୟାଶ୍ରୟ ବା ୨ୟ ପୁଲକେଶୀ, ଚନ୍ଦ୍ରାଦିତ୍ୟ, ଆଦିତ୍ୟବର୍ମା, ବିକ୍ରମାଦିତ୍ୟ, ବିନୟାଦିତ୍ୟ, ତ୍ରିଭୁବନମଲ୍ଲ, ତୈଳ ଆଦି ଏହି ବଂଶୀୟ ରାଜା ଥିଲେ । ବିଷ୍ଣୁବର୍ଦ୍ଧନ, ଗଙ୍ଗ ଓ କାଦମ୍ବବଂଶକୁ ପରାସ୍ତ କରି ଦକ୍ଷିଣରେ ରାଜତ୍ୱ ସ୍ଥାପନ କରିଥିଲେ । ୨ୟ ପୁଲକେଶୀ ମାଳବା, ଗୁଜରାଟ, ମହାରାଷ୍ଟ୍ର, କୋଙ୍କଣ ଓ କାଞ୍ଚି ଆଦି ଜୟ କରି ଆପଣା ରାଜ୍ୟଭୁକ୍ତ କରିଥିଲେ । ଚୀନ ପରିବ୍ରାଜକ ୨ୟ ପୁଲକେଶୀଙ୍କ ବର୍ଣ୍ଣନା କରିଅଛନ୍ତି । ଏ ରାଜବଂଶରେ ବିକ୍ରମାଦିତ୍ୟ ଓ ତୈଳ ନାମଧାରୀ ଏକାଧିକ ରାଜା ଥିଲେ । ଏ ବଂଶ ଶକାବ୍ଦ ୪୧୧ ଠାରୁ ୧୧୧୧ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମହୀଶୁରର ହୟଶାଳ ବଂଶର ରାଜାମାନେ ଏ ବଂଶର ରାଜାଙ୍କୁ ପରାସ୍ତ କରି ରାଜ୍ୟ ବିସ୍ତାର କରିଥିଲେ—
ହି. ଶବ୍ଦସାଗର । ]

ସାଧାରଣ ଲୋକେ ଅପଡ ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଠ' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଦ୍ଧା' ନ ପାଇଲେ 'ଅର୍ଦ୍ଧା' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲବଡ଼' ଦେଖିବେ ।

**ଚାଲୁଣିଆଁ**—ଦେ. ବି. (ଚାଲୁଣୀ ପରି ବହୁ ଛିଦ୍ରବିଶିଷ୍ଟ ଥିବାରୁ)—
Chāluniān̐ ୧ । ବହୁ ମୁଖବିଶିଷ୍ଟ ବ୍ରଣ; ପଠାବ୍ରଣ—
বোলতারবাসা 1. Carbuncle or boil bursting out into
**तलवासना** many holes like a sieve
୨ । ଗୋଡ଼ ତଳପାରେ ହେବା ବହୁଛିଦ୍ରଯୁକ୍ତ ରୋଗବିଶେଷ—
2. A disease causing numerous pores in the sole or heel.

**ଚାଲୁଣିଆଁ କରି ମାଟି ପକା(କେ)ଇବା**—ଦେ. କ୍ରି.—ଟୋକେଇରେ
Chāluniān̐ kari māṭi pakā(e)ibā ବୋହିବା ମାଟିକୁ ଏକ ସ୍ଥାନରେ ଗଦା ନ କରି ଗୁଡ଼ିଆଡ଼େ ଛଡ଼େଇ ବା ଖେଳେଇ କରି ବିଛି ଦେବା—To scatter a basketful of earth in a large area (instead of pouring it down to a heap.)

**ଚାଲୁଣି ଜାଲ**—ଦେ. ବି.—ନଖ ଦର୍ପଣ (ଦେଖ)
Chāluṇi jāla Nakha darpaṇa (See)

**ଚାଲୁଣି ପାଣି**—ଦେ. ବି.—ପ୍ରଥମ ରଜସ୍ୱଳା ବାଳିକାର ପ୍ରଥମ ରଜୋ-
Chāluṇi pāṇi ଦର୍ଶନ ହେବା ମାତ୍ରକେ ତାକୁ ନେଇ ବାଡ଼ିଆଡ଼େ ନଡ଼ିଆ ବା ଅନ୍ୟ ଗଛ ମୂଳେ ବସାଇ ତା ମୁଣ୍ଡ ଉପରେ ଗୋଟିଏ ଚାଲୁଣୀ ଧରି ଉହିଁରେ ସାତ ଜଣ ଅଧବା ସ୍ତ୍ରୀ ଢାଳିବାପାଣି ଢାଳିବା ରୂପ ସ୍ତ୍ରୀଆଚାର—
A rite consisting of seven housewives holding a sieve over the head of a girl and giving her a shower bath by pouring water on the sieve just after her first menses.

**ଚାଲୁଣୀ**—ଦେ. ବି.—(ସଂ. ଚାଲନୀ)—ଚାଉଳାଦିର ସୂକ୍ଷ୍ମ ଅଂଶ ଛାଣିବା
Chāluṇī ନିମନ୍ତେ ବ୍ୟବହୃତ ବହୁଛିଦ୍ରଯୁକ୍ତ ପାତ୍ରବିଶେଷ—
চালুনী A sieve; a strainer.
**चलनी, छलनी** ଚାଲୁଣୀ ଜଳାର ପ୍ରାୟ ଅସହ୍ୟର ଗର୍ଭ,
ସୁଲ୍ଲଭି ପକାଇ ସେ ଅଲଗି ରତେ ସର୍ବ ।
ପ୍ରାଚୀ. ରହସ୍ୟମଞ୍ଜରୀ ।

**ଚାଲ୍ୟ**—ସଂ. ବିଣ. (ଚଲ୍ ଧାତୁ. ଣିଚ+କର୍ମ. ଯ)—ଚାଳନୀୟ (ଦେଖ)
Chālya Chālaniya (See)

**ଚାଶାଲୀ**—ଗ୍ରା. (ଇତର) ବି—(ସଂ ଛାତ୍ରଶାଳା; ନବ୍ୟ ସଂ. ଚାଟ୍ଟଶାଳା)—
Chāśāli ଚାହାଳି; ପାଠଶାଳା; ଚାଟଶାଳ—Village-school.
ଚାଶାଳି ତ ଗଲ କରିବ ବତିଶ ସାଙ୍ଗ ବସିଛନ୍ତି ଚାହିଁ ।
ଭକ୍ତଦାସ. ସାଥିପୁଅ ବାହା ।

**ଚାଷ**—ସଂ. ବି. (ଚଷ୍ ଧାତୁ=ଭକ୍ଷଣ କରିବା+କର୍ତ୍ତୃ. ଅ)—୧ । ସ୍ୱର୍ଣ୍ଣ-
Chāsha ଚାତକ; ଚଷାପୁଅ ପକ୍ଷୀ; ଭଦଭଦଳିଆ ପକ୍ଷୀ—
1. Fairy blue bird (a kind of swallow).
୨ । ଇକ୍ଷୁ; ଆଖୁ—2. Sugarcane.
ଦେ. ବି. (ସଂ. କୃଷ୍ ଧାତୁ)—୧ । କୃଷି କର୍ମ—
চাষ 1 Agriculture; agricultural operations;
**चास** farming husbandry.
୨ । ଭୂମି କର୍ଷଣ—
2. Ploughing; cultivating; tillage.
୩ । କୃଷି ବୃତ୍ତି; ହଳବାଡ଼; କ୍ଷେତ—
3. Plough-land; holding; tenure.

**ଚାଷ କରିବା**—ଦେ. କ୍ରି. (ସଂ. କୃଷ୍ ଧାତୁ)—୧ । କୃଷି କରିବା—
Chāsha karibā 1. To perform agricultural
চাষকরা operations.
**चासना** ୨ । ହଳ ବୁଲାଇବା—2. To plough a field.

**ଚାଷବାସ**—ଦେ. ବି. (ନିରର୍ଥକ ଦ୍ୱିତୀୟ ସହଚର ଶବ୍ଦ)—୧ । ହଳବାଡ଼;
Chāsha bāsa ହଳ ଓ ଘର ବାଡ଼ି—
চাষবাস 1. Plough-land and homestead.
**खेतीबारी** ୨ । କୃଷିକର୍ମମାନ—2. Agricultural operations.
୩ । କୃଷିବୃତ୍ତି—3. Agriculture as a profession.

**ଚାଷମୁଣ୍ଡ**—ଦେ. ବି.—(ଲକ୍ଷଣାର୍ଥ) କୃଷିର ଶେଷ ବା ଫସଲ ଅଦାୟ
Chāsha muṇḍa ହେବା ସମୟ—Harvest-season.
ମଝିରେ ଅଛ ବାହାରକୁ ଲଗା ନ ରଖି ଚାଷ ମୁଣ୍ଡରେ ଚାଷିମାନଙ୍କଠାରୁ ସଉଦା
କଲେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଚାଷୀ**—ଦେ. ବି. (ସଂ. କର୍ଷକ)—କୃଷିଜୀବୀ; କୃଷକ; ଚଷା—
চাষী Cultivator; peasant; farmer.
**किसान**
(ଚାଷୁଣୀ—ସ୍ତ୍ରୀ) ଦେ. ବିଣ.—ଜମି ଚାଷ କରୁଥିବା (ବ୍ୟକ୍ତି)—
(a person) Cultivating a plot of land.

**ଚାସ୍**—ବୈଦେ. ବି. (ଅ. ତାସ୍)—ତାସ୍ (ଦେଖ)
Chās Tās (See)

**ଚାସ**—ସଂ. ବି.—ଚାଷ (ଦେଖ)
Chāsa Chāsha (See)

**ଚାହା (ଇତ୍ୟାଦି)**—୧ । ବୈଦେ. ବି. (ଚୀନ୍‌ଭାଷା. ଚା)—
Chāhā (etc) ଚା ଇତ୍ୟାଦି (ଦେଖ)
1. Chā etc (See)
୨ । ଚାହିତା (ଦେଖ)
2. Chāhitā (See)

**ଚାହାଁ** ଦେ. ବି. (ସଂ. ଚକ୍ଷୁଧାତୁ)—ଦେଖିବା; ଅନାଇବା; ଚାହାଣି—
Chāhān̐ Look; glance.
ଦେ. ଅ. (ଦୃଷ୍ଟିସୂଚକ)—(ତୁ) ଦେଖ୍—
Look; (you) see.
ଦେ. କ୍ରି. (ଦେଖିବା କ୍ରିୟାର ଅନୁଜ୍ଞା)—(ତୁ) ଦେଖ୍—
ଚାହାଁରେ ନନ୍ଦନନ୍ଦନକୁ (you) See.
ଜୀବନର ବନ୍ଧୁ ରାଧାଗୋବିନ୍ଦ ସଙ୍ଗକୁ । ପ୍ରାଚୀନ ସଙ୍ଗୀତ ।

**ଚାହାଁଇବା**—ଦେ. କ୍ରି. ('ଚାହିଁବାର' ଣିଜନ୍ତରୂପ)—
Chāhān̐ibā ଚହାଁଇବା; ଚହୁଁାଇବା; ଦେଖାଇବା—
1. To show.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଝ୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇସ୍ପ | ଋଅ | ଢ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଈ | ନ୍ତ |

୨ । ଚାହିଁବା; ଦେଖିବା—2. To look at; to see.

ଉଦ୍‌ଦେଶେ ଚାହିଁ ସେ ପଙ୍କଜ ଲୋଚନା । ପ୍ରାଚୀ. ରଘୁବୀରଥ ।

ଚାହାଁଚହିଁ—ଦେ. ବ—ଚାହାଁଚାହିଁ (ଦେଖ)
Chahān chahin Chahān chahin (See)

ଚାହାଁଚାହାଁ—ଦେ. କି. ବଣ—ଚାହିଁ ଚାହିଁ କା; ଦୃଷ୍ଟିନିକ୍ଷେପ କରି କରି—
Chahān chahān Looking on or glancing for some time.

ଦେ. ବ—ବାରଂବାର ଇତସ୍ତତଃ ଦୃଷ୍ଟିନିକ୍ଷେପ—
Repeated glancing

ଦେ. ବଣ—ବାରଂବାର ଇତସ୍ତତଃ ଦୃଷ୍ଟି ନିକ୍ଷେପ କରୁଥିବା—
Repeatedly glancing about

ଚାହାଁଚାହାଁ କରିବା—ଦେ. କି—୧ । ସାବଧାନତା ସହିତ ଇତସ୍ତତଃ
Chahānchahān kariba ବାରମ୍ବାର ଦୃଷ୍ଟି ବୁଲାଇବା—
1. To cast repeated glances on all sides with caution.

୨ । କୌଣସି ବ୍ୟକ୍ତିଙ୍କୁ ଅପେକ୍ଷା କରି ବିଳମ୍ବ କରିବା—
2. To loiter waiting for some one.

ଚାହାଁଚାହାଁ ହେବା—ଦେ. କି—ଚାହାଁଚାହାଁ କରିବା (ଦେଖ)
Chahānchahān heba Chahānchahān kariba (See)

ଚାହାଁଚାହିଁ—ଦେ. ବ—ପରସ୍ପର ପ୍ରତି ଦୃଷ୍ଟି ନିକ୍ଷେପ—
Chahānchahin Looking at each other; mutual glance.
चाहाचाहि

ଚାହାଁଚୁହିଁ—ଦେ. ବ—ଚାହାଁଚାହିଁ (ଦେଖ)
Chahānchuhin Chahānchahin (See)

ଚାହାଡ଼ା—ଦେ. ବ. ସ୍ତ୍ରୀ—ରାଣୀଙ୍କ ଦାସୀ ବିଶେଷ—
Chahārdā A class of maid servants of the ranees.

ଚାହାଁଣି—ଦେ. ବ—ଚାହାଣି (ଦେଖ)
Chahāṅni Chahāṇi (See)

ଚାହାଣି—ଦେ. ବ (ସଂ. ଚାକ୍ଷ୍ ଧାତୁ=ଚାକ୍ଷୁଷ ଜ୍ଞାନ ଲଭିବା)—
Chahāṇi ୧ । ଦୃଷ୍ଟି—1. Look.
चाहनि; चाउनि ଏହା ଶୁଣିଣ ଧୃତରାଷ୍ଟ୍ର ନରମଣି
चितवन;चितवनी ଫୁଟିଗଲେ ଅଶିରେ କରିଣ ଚାହାଣି ।
କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

୨ । ଦୃଷ୍ଟିଭଙ୍ଗୀ—2. Glance

୩ । ଦେଖିବା—3. Seeing.

୪ । ଅପାଙ୍ଗ ଦୃଷ୍ଟି—4. Sidelong glance.
ରୂପ ଦେଇ ଗଣି ଗଣି ଧଇର୍ଯ୍ୟ ଚାହାଣି ବାଣି
ଶୁଣେ ପ୍ରେରେ ପିକବାଣୀ ବାଣୀ । ଭଞ୍ଜ. ପ୍ରେମସୁଧାନିଧି ।

ଚାହାଣି ଛଟକ—ଦେ. ବ—ଚାହିଁବାର ଢଙ୍ଗ; ଅପାଙ୍ଗଦୃଷ୍ଟି—
Chahāṇi chhaṭaka Sidelong glance.

ଚାହାଣି ମଣ୍ଡପ—ଦେ. ବ—ରଥଯାତ୍ରାରୁ ଜଗନ୍ନାଥ ଓ ଲିଙ୍ଗରାଜ ମହାପ୍ରଭୁ
Chahāṇi maṇḍapa ଫେରିବା ସମୟରେ ଦେଉଳରେ ପହଞ୍ଚିବା ପୂର୍ବରୁ ବାହରେ ଆସୁଥିବା ଅବସ୍ଥାରେ ଦେଉଳର ବେଢ଼ା ମଧ୍ୟରେ ଥିବା ଯେଉଁ ମଣ୍ଡପରେ ଠାକୁରାଣୀଙ୍କ ପ୍ରତିମାକୁ ନେଇ ବିଜେ କରାଯାଏ ଓ ଯେଉଁଠାରୁ ଠାକୁରାଣୀ ବାହୁଡ଼ାବିଜେ କରୁଥିବା ଦେବଙ୍କୁ ଚାହିଁବେ ବୋଲି ଅନୁମାନ କରାଯାଏ—A platform where the Goddess of a Deity is taken to have a look at the Deity in the car in his return-journey to the temple

ଚାହାନି—ପ୍ରାଦେ. (ସମ୍ବଲପୁର) ବ—ଚାହାଣି (ଦେଖ)
Chahāni Chahāṇi (See)

ଚାହାରସମ୍ବା—ବୈଦେ. ବ. ( ଆ ଚାହାରସମ୍ବାହ୍ )—
Chahār sambā ଚାରସମା ( ଦେଖ )
(ଚହାର ସମ୍ବା—ଅନ୍ୟରୂପ) Chārsamā ( See )

ଚାହାରମ୍—ବୈଦେ. ବଣ. ( ଫା. ଚାହାରମ୍ )—୧ । ଚତୁର୍ଥ—
Chahāram 1. Fourth.
ଚୌଥା ୨ । ଚତୁର୍ଥ ବା ନିକୃଷ୍ଟ ଶ୍ରେଣୀର—
चाहारम 2. Of the 4th or inferior class.

ଚାହାରମ୍ ଜମି—ବୈଦେ. ବ. ( ଫା. ଚାହାରମ୍+ଜମୀନ୍ )—
Chahāram jami ମୁସଲମାନ୍ ରାଜାଙ୍କ ଅମଳରେ ଜମିର ଶ୍ରେଣୀବିଭାଗ ବିଶେଷ; ଚତୁର୍ଥ ଶ୍ରେଣୀର ନିକୃଷ୍ଟ ଜମି—
A classification of lands made during the Mahomedan rule in India; land of the 4th or inferior class.

ଚାହାରମ୍ ଫାତିଆ—ବୈଦେ. ବ ( ଫା ) ବ—ମୁସଲମାନ୍‌ମାନଙ୍କର
Chahāram phātiā ମୃତ୍ୟୁ ପରେ ଚତୁର୍ଥ ଦିବସରେ ହେବା
चाहारम फातिआ ଅନୁଷ୍ଠାନ ବା ଉତ୍ସବ—
चाहारम फातिआ The religious rites performed on the 4th day after the death of a Mahomedan.

ଚାହାଳି—ଦେ. ବ. ( ସଂ. ଚଟ୍ଟଶାଳା )—ଚାଟଶାଳୀ ( ଦେଖ )
Chahāḷi Chāṭasāḷi ( See )

ଚାହାଳିଆ—ଦେ. ବଣ—ଚାଟଶାଳିଆ ( ଦେଖ )
Chahāḷiā Chāṭasāḷiā ( See ).

ଚାହାଳି କରିବା—ଦେ. କି—କୁଛିଏ ଛାତ୍ର ସଂଗ୍ରହ କରି ଗୋଟିଏ ପାଠଶାଳା
Chahāḷi kariba ଖୋଲିବା—To open an elementary school, by gathering some pupils.

ଚାହାଳରେ ବସିବା—ଦେ. କି—(ବାଳକ ବା ବାଳିକା) ପାଠଶାଳାରେ
Chahāḷire basiba ପ୍ରବେଶ କରି ପାଠ ଆରମ୍ଭ କରିବା—
( a boy or girl ) To be admitted into a village-school to begin education.

ସାଧାରଣ ଲୋକେ: ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ ।

**ଚାହାଲ୍ଲମ୍**—ବୈଦେ. ବି. (ଆ)—ମୁସଲମାନ୍‌ମାନଙ୍କର ସଫର ମାସର ବିଂଶ ଦିନ—The 20th day of the Mahomedan month of Safar.
Chahallam
**चाहाल्लम**

**ଚାହି**—ଦେ. ବିଣ—୧ । ଆବଶ୍ୟକ; ଦର୍କାର—
Chahi 1. Necessary; required.
चाई
**दरकार**
ସୁସେବୁଛ ବୋଇଲେ ଅଛେ ନଚସାରି
ଉପାୟ ଅଛି କର ପାରିବାର ଚାହି । କୃଷ୍ଣସିଂହ. ମହାଭାରତ, ବନ ।
୨ । ଉଚିତ—2 Proper.
(ଯଥା—ଶିଷ୍ୟମାନେ ଗୁରୁଙ୍କୁ ମାନିବା ଚାହି । )
ଦେ. ଅ—ଅପେକ୍ଷା; ଠାରୁ—Than.
छे
**चाहि**
( ଯଥା—ତା ଚାହି ମୋର ସଂସାରରେ ଆଉ କେହି ପ୍ରିୟ ବ୍ୟକ୍ତି ନାହିଁ । )

**ଚାହିଁ**—ଦେ. ବିଣ—ଚାଇଁ ( ଦେଖ )
Chahiñ Chaiñ ( See )
ଦେ. ଅ—ଅନୁରୂପେ; ଅନୁଯାୟୀ—
According to; suiting.
ତହିଁକି ଚାହିଁ ଦଣ୍ଡ ଦିଅନ୍ତି ଆସ ନୃପ । କୃଷ୍ଣସିଂହ. ମହାଭାରତ, ବନ ।

**ଚାହିଁ ଅନ୍ଧ**—ଦେ. ବିଣ. ପୁଂ—ଚକ୍ଷୁ ବିଦ୍ୟମାନ ଥାଇ ସୁଦ୍ଧା ଯେଉଁ ବ୍ୟକ୍ତିକୁ ଆଦୌ ଦେଖାଯାଏ ନାହିଁ—
Chahiñ andha
(ଚାହିଁ ଅନ୍ଧୁଣୀ—ସ୍ତ୍ରୀ) Purblind; ( a person ) who has his eyes intact to all appearances but who has completely lost his eyesight

**ଚାହିଁଆ**—ଦେ. ବିଣ—ଚାଇଁ ( ଦେଖ )
Chahiña Chaiñ ( See )

**ଚାହିଁ ଜଳକା**—ଦେ. ବିଣ. ପୁଂ—ଯେଉଁ ଲୋକର ଆଖି ବିଦ୍ୟମାନ ଥାଏ ଅଥଚ ସେ ସ୍ପଷ୍ଟ ଦେଖି ପାରେ ନାହିଁ—
Chahiñ jalaka
ଚାହିଁ ଜଳକୀ—ସ୍ତ୍ରୀ A person suffering from Retinitis.
**चुँधा**
ଚାହିଁ ଜଳକା ବଂଶୀ ନାସା, ସଖି ଗୋ । ମଦନ । ଦନେଇଦାସଙ୍କ ପଦ୍ମ ।
ଦେ. ବି—ରୋଗ ବିଶେଷ; ଆଖିର ଘୂଅ ଉପରେ ଗୋଟିଏ ପଟଳା ଆବରଣ ମାଡ଼ି ଯିବା ହେତୁ ଆଖି ଥାଇଁ ଥାଇଁ ସୁଦ୍ଧା ସ୍ପଷ୍ଟ ଦେଖି ନ ପାରିବା ରୋଗ—A disease of the eye; Retinitis.

**ଚାହିଁ ଜଳକା ବନା(ନେ)ଇବା**—ଦେ. କ୍ରି—(କୌଣସି ବ୍ୟକ୍ତିକୁ ) ଆଖି ଆଗରେ ଠକାଇବା—
Chahiñ jalaka bana(e)iba
To cheat a person before his own eyes

**ଚାହିଁ ବସିବା**—ଦେ. କ୍ରି—୧ । ବହୁକ୍ଷଣ ଅପେକ୍ଷା କରିବା—
Chahiñ basiba 1. To wait long
चेयेबसा
**तकाकर बैठना**
୨ । ଉତ୍କଣ୍ଠା ଓ ଆଶା ସହକାରେ କୌଣସି ବିଷୟକୁ ଅପେକ୍ଷା କରିବା; ଠାବ ରହିବା—
2. To eagerly expect or long for a thing; to wish for.
୨ । ଠେଇଁ କରି ବସିବା—
2. To sit up.

**ଚାହିଁବା**—ଦେ. କ୍ରି ( ସଂ. ଚାକ୍ଷୁ ଧାତୁ=ଚାକ୍ଷୁଷ ଜ୍ଞାନ ଲଭିବା)—
Chahiñba ୧ । ଅନାଇବା; ଦୃଷ୍ଟି ପକାଇବା—
चाहा 1. To look at; to glance at
**दिखना, तकाना, चितवना**
ଚାହିଁ ଦେଲେ ଥାଇ କାହିଁ ନ ଦିଶଇ ଆଖି ଥାଇଁ ଥାଇଁ ପଥ । କବିସୂର୍ଯ୍ୟ. ସଙ୍ଗୀତ ।
୨ । ଦେଖିବା—2. To see.
୩ । ଆଖି ମେଲା କରିବା—
3. To open the eyes.
୪ । ଅପେକ୍ଷା କରିବା; ଠାବ ରହିବା—
4. To wait in expectation
ତହିଁକୁ ଶୀଘ୍ରେ ଚଳି ଯାଇ, ରହିଲା ମୃତ୍ୟୁ ବାଟ ଚାହିଁ । ଜଗନ୍ନାଥ. ଭାଗବତ ।
୫ । ଜେଇଁବା—5 To keep awake.
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ପକାଇବା, ରହିବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ଚାହିଁ ଯୋଗା(ଗେ)ଇବା**—ଦେ. କ୍ରି—ଦୃଷ୍ଟି ପକାଇବାର ଉପଯୋଗୀ ହେବା—To be fit for being looked at; to deserve a look.
Chahiñ joga(e)iba

**ଚାହିଁ ରହିବା**—ଦେ. କ୍ରି—ଚାହିଁ ବସିବା (ଦେଖ)
Chahiñ rahiba Chahiñbasiba (See).

**ଚାହିଁଲେ**—ଦେ. ଅ—(ଅମୁକକୁ ଅମୁକ ସଙ୍ଗେ) ତୁଳନା କଲେ ଦେଖାଯିବ ଯେ—It will be found on comparison that.
Chahiñle
(ଯଥା—ଆଠଗଡ଼କୁ ଚାହିଁଲେ ମୟୂରଭଞ୍ଜ ବଡ଼ । )

**ଚାହିକି**—ଦେ. ବିଣ—ଚାହିକିଚିକଣ (ଦେଖ)
Chahiki Chahikichikana (See).

**ଚାହିକିଚିକଣ**—ଦେ. ବିଣ ( ସଂ. ଚାକଚକ୍ୟ )—ଚକଚକ କରୁଥିବା; ବାହ୍ୟାଡ଼ମ୍ବରଯୁକ୍ତ—Glittering; grandiose.
Chahiki chikana

**ଚାହିକିଚିକା**—ଦେ. ବି—ଚାକଚକ୍ୟ—
Chahikichika Glitter; grandeur.
ଦେ. ବିଣ—ଚାହିକିଚିକଣ (ଦେଖ)—
Chahikichikana (See).

**ଚାହିଦା**—ଦେ. ବି (ସଂ. ଉତ୍ସାହ; ପ୍ରା. ଉଚ୍ଛାହ)—୧ । ଯତ୍ନ; ଆଦର—
Chahita 1. Care.
চাহিদা ୨ । ସ୍ନେହ; ଚେଷ୍ଟା—
**चाहता, चाहा, चाह** 2. Affection; fondness.
୩ । (କୌଣସି ଦ୍ରବ୍ୟର) ଆବଶ୍ୟକତା—
3. Necessity; demand for a thing.
୪ । ଅଭିଳାଷ; ଇଚ୍ଛା—4. Desire.

| ୯ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇଯ଼ | ଉଅ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ଼ୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ଟ |

**ଚାହିଦା**—ପ୍ରାଦେ (ଗଞ୍ଜାମ) ବି—ଚାହିତା (ଦେଖ)
Chāhidā — Chāhitā (See).

**ଚାହିବା**—ଦେ, କ୍ରି (ସଂ. ଇଚ୍ଛା; କମ୍ୱା ଉତ୍ସାହ)—୧ । ଇଚ୍ଛାକରିବା—
Chāhibā — 1. To wish; to desire.
চাওয়া, চাহা — ନବାଙ୍ଗନେ ଚାହୁ ଜଣଙ୍କେ ବହୁଭ ଚାହାନ୍ତି ନାହିଁ
**चाहना** — କଙ୍କ ହଂସାଳୀ ଯନ୍ତୁଁ ଗୋଡକାଟି ଯିବାକୁ ଚାହିଁ—ରାଧାନାଥ.ଉଷା ।
୨ । ମାଗିବା—2. To ask for.
୩ । ଲୋଡ଼ିବା; ଦରକାର କରିବା—3 To want.
୪ । ସ୍ନେହ କରିବା—4. To like; to be attached to.
୫ । ଆଦର କରିବା; ଯତ୍ନ କରିବା—
5. To take much care of.

**ଚାହୁ**—ପ୍ରାଦେ (କୋରାପୁଟ) ବିଣ—ଉଚିତ—
Chāhu — Proper.
ଦେ. ବି.—ଚାହିତା (ଦେଖ)—
Chāhitā (See).
( ଯଥା—ସେ କୁକୁରକୁ ଭାରି ଚାହୁରେ ରଖିଛି । )

**ଚାହୁଁଚାହୁଁ**—ଦେ. ଅ-୧ । ହଠାତ୍; ତତ୍‌କ୍ଷଣାତ୍—
Chāhuñchāhuñ — 1. All on a sudden.
দেখতেদেখতে — ଦେହ ବୃକ୍ଷ ଜ୍ଞାନ ହେଲେ ଚାହୁଁ ଚାହୁଁ—ଦାଶରଥି. ବ୍ରଜବିହାର ।
୨ । କେତେକ ସମୟ ଅନ୍ତେ—2. After a time.

**ଚାହୁକମ**—ଦେ. ବି—ଯୁଦ୍ଧବାଦ୍ୟବିଶେଷ—
Chāhu kama — A kind of battle-drum.

**ଚି (ଧାତୁ)**—ସଂ—ସଂଗ୍ରହ କରିବା—
Chi (root) — To collect; to gather; to pick up.

**ଚିଆଇଁବା**—ଦେ. କ୍ରି (ସଂ. ଚିତ୍ ଧାତୁ=ଜାଗରଣ)—
Chiāiñbā — ୧ । ଚେଇଁବା; ସଚେତ ହେବା—
চিয়া, চিয়ান — 1 To be awake; to watch up.
**जागना** — କୁମ୍ଭକର୍ଣ୍ଣ ବୋଇଲ ନ ପାରେ ଚିଆଇଁ
ଶୋଇବ ଏହୁ ବର ଦିଅ ହେ ଗୋସାଇଁ—କୃଷ୍ଣସିଂହ. ମହାଭାରତ. ବନ ।
୨ । ( ଚେଇଁବାର ଣିଜନ୍ତରୂପ ) ଚେତା କରାଇବା; ନିଦରୁ ଉଠାଇବା — To awaken from sleep.
୩ । ନିର୍ଜୀବ ବା ମୃତ ଜୀବକୁ ପୁନରୁଜ୍ଜୀବିତ କରିବା; ଜିଆଇଁବା—3. To enliven; to revive; to bring to life.
୪ । ଶସ୍ତ୍ରାଦି ଅସ୍ଫାଳନ କରିବା; କମ୍ପାଇବା—
4 To brandish
ଖଣ୍ଡା ଗଣ୍ଡା ହୋଇଣ ଖଣ୍ଡାକୁ ଚିଆଇଁ—କୃଷ୍ଣସିଂହ ମହାଭାରତ. ସଭା ।

**ଚିଆଇବା**—ପ୍ରାଦେ (ସମ୍ୱଲପୁର) କ୍ରି—ବିଥାଇବା—
Chiāibā — To ache

**ଚିଆଁ**—ଦେ. ବି (ସଂ. ଚିତ୍ ଧାତୁ=ଜାଗରଣ; ଚେତନ)
Chiāñ — ୧ । ତପ୍ତଲୌହଦ୍ୱାରା ମନୁଷ୍ୟ ବା ପଶୁର ଦେହରେ ଦିଆଯିବା
শেক দাগ; ଚିହ୍ନ—1. Mark made on the body with
**चरका, दाग** — hot iron; searing mark; brand.
୨ । ତପ୍ତ ଲୌହରେ ଦାଗ ଦେଲେ ଯେପରି କଷ୍ଟ ହୁଏ ସେହିପରି ତୀବ୍ର ବେଦନା—2. Acute pang like that due to searing or branding.
୩ । ଦେହରେ ନିଆଁଖୁଣ୍ଟା ମାଡ଼ିଲେ ଯେଉଁ ତୀବ୍ର ଅନୁଭୂତି ହୁଏ—3. Acute pain due to a fire-brand being suddenly applied to the body.
୪ । ଚେଇଁବା; ଚେତା—
4 Wakefulness from sleep.
ଦେ ବିଣ—୧ । ଚେଇଁଥିବା; ଶୋଇ ନ ଥିବା—
সজাগ — 1. Wakeful; not asleep.
**जागता** — ( ଯଥା—ଚିଆଁ ପହଡ଼ )
୨ । ଚେତନାଯୁକ୍ତ, ସଚେତନ—2. Conscious.
ମନକୁ ନଷ୍ଟଲେ ଉଦିବ ଚିଆଁ ଚୈତନ୍ୟ ଜଗାଇବ—ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।
চটী — ୩ । ଅତି ଛୋଟ—3. Very small; tiny.
**चिऑसा**

**ଚିଆଁଇଁ ଉଠିବା**—ଦେ. କ୍ରି—୧ । ଚେଇଁ ଉଠିବା; ନିଦରୁ ଉଠିବା—
Chiāñiñ uṭhibā — 1. To wake up from sleep; to awake.
জেগেউঠা
**जगउठना** — ଚେତ ଚାହିଁଲ ନନ୍ଦରାଣୀ, ଚିଆଁଇଁ ଉଠି ସୁଲକ୍ଷଣୀ—ଜଗନ୍ନାଥ. ଭାଗବତ
୨ । ସଚେତ ହେବା—2. To gain consciousness.
୩ । ସତେଜ ହେବା—3. To become enlivened.

**ଚିଆଁ ଚଇତନ**—ଦେ. ବି (ସଂ. ଚେତନା)—ଜୀବାତ୍ମା—
Chiāñ chaitana — The living soul.

**ଚିଆଁ ଦେବା**—ଦେ. କ୍ରି—ଲୁହା ତତାଇ ଦେହ ଦାଗିବା ବା ଲାଗିବା—
Chiāñ debā — To brand with a hot iron.
শেঁকদেওয়া, শেঁকা
**चरकाईना**
ଚିଆଁ ମାଡ଼ିବା }
ଚିଆଁ ଲଗା(ଗେ)ଇବା } ଅନ୍ୟରୂପ

**ଚିଆଁ ପହଡ଼**—ଦେ. ବି—୧ । ବିଛଣାରେ ପଡ଼ିଥିବା ଅଥଚ ନିଦ ହୋଇ ନ ଥିବା ଅବସ୍ଥା—1. Lying awake in bed; wakeful sleep.
Chiāñ pahaṛḍa
୨ । ରାଜାଙ୍କ ନିଦ୍ରାହୀନ ଅବସ୍ଥାରେ ବିଶ୍ରାମ—2. Taking rest in bed without sleep (a term applied to Rajas).

**ଚିଆର**—ଦେ. ବିଣ—ତୀକ୍ଷ୍ଣ—
Chiāra — Sharp.
ରୁଦ୍ର ଇନ୍ଦ୍ର ପରି ବିକ୍ରମ କର୍ଣ୍ଣ କଲେ
ଚିଆର କାଣ୍ଡେ ଘଟୋତ୍କଚେ ଭେଦ ଦେଲେ—କୃଷ୍ଣସିଂହ ମହାଭାରତ. ଦ୍ରୋଣ
চিয়াড়; চিআরী — ଦେ. ବି—ଶର; ବାଣ—Arrow.
ବୈଦେ. ପ୍ରାଦେ. ( ମେଦିନୀପୁର ) ବି. ( ଇଂ. ଚେଅର )—
ଚଉକି—Chair.

ସାଧାରଣ ଲୋକେ ଅନେକ ସ୍ଥଳରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚିଅଳ**—ଦେ. ବିଣ—ଚିଅର ( ଦେଖ )
Chiā̤ḻa Chiā̤ra ( See )

**ଚିଇଁ**—ଦେ. ଅ. ( ଧ୍ୱନ୍ୟନୁକରଣ )—
Chi-iñ ୧। ଚଢ଼େଇ ଛୁଆଙ୍କର ଅସ୍ପଷ୍ଟ ଶବ୍ଦ; ଚେମେଣି ଚଢ଼େଇଙ୍କ
चिं ଶବ୍ଦ—1. Indistinct sound of unfledged
चीँ young birds or house-bats; chirping
(ଚିଁ—ଅନ୍ୟରୂପ) sound.
୨। ରୁଗ୍ଣ ଦୁର୍ବଳ ବ୍ୟକ୍ତିର କ୍ଷୀଣ କଣ୍ଠ ସ୍ୱର—
2. The feeble sound of a weak and sick man.

**ଚିଇଁକା**—ଦେ. ବି. ( ସଂ. ଚମତ୍କୃତ; ପ୍ରା. ଚମକ୍କ; ଚିଁକ୍କ )—
Chi-iñkā ହଠାତ୍ ଚମକି ଉଠିବା—Startling up
चमक
**चौंक**

**ଚିଇଁକିବା**—ଦେ. କ୍ରି. ( ସଂ. ଚମତ୍କୃତ )—ହଠାତ୍ ଚମକି ଉଠିବା—
Chiñkibā To be startled; to shy.
चमकेउठा
**चौंकना**

**ଚିଇଁଚିଇଁ**—ଦେ. ଅ—ଚିଇଁ ( ଦେଖ )
Chi-iñ chi-iñ Chi-iñ ( See )
चिँचिँ
**चौँचौँ**
( ଚିଁଚିଁ—ଅନ୍ୟରୂପ )

**ଚିଇଁଚିଇଁଆ**—ଦେ. ବିଣ—୧। ଚିଇଁ ଚିଇଁ ଶବ୍ଦକାରୀ—
Chi-iñ chi-iñā 1. Making a chirping sound.
(ଚିଇଁଚିଆଁ—ଅନ୍ୟରୂପ) ୨। (ଲକ୍ଷଣାର୍ଥ) ଅତି କ୍ଷୀଣ (ବ୍ୟକ୍ତି)—
2. ( figurative ) Slender; of delicate health

**ଚିଇଁବା**—ଦେ· କ୍ରି. (ସଂ. ଚ୍ୟୁ ଧାତୁ=କ୍ଷରଣ)—ଭୂମିରେ ଭେଦିଯିବା—
Chi-iñbā To be absorbed or soaked in the ground.
ପ୍ରାଦେ· (ଗଞ୍ଜାମ) କ୍ରି·—ଶୋଷିବା; ଚୁଚୁମିବା—To suck.

**ଚିଉଡ଼ି ଦଳ**—ଦେ ବି.—ଏକଜାତୀୟ ଦଳ—
Chiurḍi daḻa Villisnaria (a kind of aquatic weed).

**ଚିଉତାଣି**—ଦେ. ବି. (ସଂ. ଚିତ୍ ଧାତୁ)—୧। ଚିନ୍ତନ—
Chiutāṇi 1 Resolving in one's mind; thinking.
चेतानि
**चेत** ୨। ସ୍ମରଣ—2. Recollection.
୩। ଜାଗରଣ—3. Waking up.

**ଚିଉତିବା**—ଦେ. କ୍ରି. (ସଂ. ଚିତ୍ ଧାତୁ)—ସ୍ମରଣ କରିବା—
Chiutibā To recollect.
चेता
**चेतना**

**ଚିଉର**—ପ୍ରାଦେ. (ସମ୍ବଲପୁର) ବି.—ଶାକବିଶେଷ—
Chiura A species of pot-herb.

**ଚିଏଲ୍ କାଣ୍ଡ**—ପ୍ରାଦେ. (ସମ୍ବଲପୁର) ବି—ଶରବିଶେଷ—
Chiel kāṇḍ A kind of arrow.

**ଚିକ୍** (ଧାତୁ)—ସଂ.—ବ୍ୟାଘାତ କରିବା—To mar; to obstruct.
Chik (root)

**ଚିକ୍ ଚିକ୍**—ଦେ.ବି (ସଂ. ଶୁକ୍ଳଚାକଚକ୍ୟ; ସଂ.ଚକାସ୍ ଧାତୁ=ଦୀପ୍ତି ପାଇବା)—
Chik chik ୧। ଝଲ୍ମଲ୍ ଲଗା; ଝକଝକ—
चकचक,चिकचिक 1. Sparkling; glitter; gloss; lustre.
**जगमग** ୨। ଶୁକଚକ୍ୟ—2. Splendour; glimmer.
(ଚିକ ଚିକ—ଅନ୍ୟରୂପ)
ଦେ. ବିଣ—୧। ଝକ ଝକ—1. Glittering.
୨। ଚକଚକିଆ; ଚିକ୍କଣିଆ—2. Glimmering; glossy.

**ଚିକ ଚିକ୍ ଚିହ୍ନିକିଚିକା**—ଗ୍ରା. ବି—୧। ଶୁକଚକ୍ୟ—1. Glitter.
Chik chik chāhikichikā ୨। ଆଡ଼ମ୍ବର—2. Grandeur.
ଦେ ବିଣ—୧। ଚକଚକିଆ—1. Glittering;
୨। ଆଡ଼ମ୍ବରମୟ—2. Grandiose

**ଚିକ୍‌ନା**—ପ୍ରାଦେ (ସମ୍ବଲପୁର) ବି (ସଂ. ଚିକ୍କଣ)—ଲହୁଣୀ; ମାଖନ—
Chiknā Butter.

**ଚିକ**—ଦେ. ବି ( ସଂ. ଚନ୍ଦ୍ରମଲ୍ଲିକା; କିମ୍ବା ସଂ. ଶୁକଚକ୍ୟ; ଏହା ଖୁବ୍
Chika ଉଜ୍ଜ୍ୱଳ ଦେଖାଯିବାରୁ)—ଶୁପସରି ପରି କଣ୍ଠାଭରଣବିଶେଷ—
चिक A collar (ornament) for the neck.
**चिक**
ବୈଦେ. ବି (ତୁର୍କୀ-ଚିକ୍)—ଦରଜାରେ ଟଙ୍ଗା ଯିବା ବାଉଁଶକାଠି-
चिक କାଟିତ ପରଦା—A screen-mat made of thin
**चिक, चिकमन** narrow strips of bamboo.
୩। ତୁଚ୍ଛ ବା ହେୟ ବ୍ୟକ୍ତି—3 A mean detestable person.

**ଚିକଟ**—ଦେ. ବିଣ—ଚିକଟା (ଦେଖ)
Chikata Chikaṭā (See)

**ଚିକଟା**—ଦେ. ବିଣ (ସଂ. ଚିକିଲ=ପଙ୍କ ବା ଚିକ୍କଣ=ମସୃଣ)—
Chikaṭā ୧। ଅଠାଳିଆ (ମାଟି)—1. Sticky; gummy;
चिकटा, चिकिटा, चिकटिया glutinous (soil).
**चिकट, चिकनाहट** ୨। ତେଲିଆ; ତେଲକାଦି ଯୋଗୁଁ ମଇଳା—
2. Soiled with oil; oily and dirty.
୩। (ଲକ୍ଷଣାର୍ଥ) କୃପଣ; ବ୍ୟୟକୁଣ୍ଠ—3. ( figurative ) Miserly; close-fisted.
ଦେ. ବି—ଚିକଟାମାଟି (ଦେଖ)—1. Chikaṭā māṭi (See)
୨। ତେଲ ଯୋଗୁଁ ଲୁଗା ବା ବାଳରେ ଲାଗିବା ଅଠାଳିଆ ମଇଳା—Gummy dirt on cloth or hair due to oil

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ଼ | ଉଅ | ହ୍ମ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଊ | ନ୍ |

**ଚକଟା ଦୋରସା ମାଟି**—ଦେ. ବି—ବାଲି ଓ କାଦୁଅ ମିଶା ମାଟି;ଯେଉଁ
Chikatā dorasā māti ମାଟିରେ ବାଲିର ଦୁଇଗୁଣ କାଦୁଅ ଥାଏ—Loamy soil; soil consisting of one part of sand to 2 parts of clay.

**ଚକଟା ମଟାଳ**—ଦେ. ବି—ଯେଉଁ ଠାଣୁଆ ମାଟି ବରଷା ହେଲେ ଖୁବ୍
Chikatā matāla ଅଠାଳିଆ ହୋଇଯାଏ—Sticky hard soil.

**ଚକଟା ମାଟି**—ଦେ ବି—ଅଠାଳିଆ ମାଟି; ଯେଉଁ ମାଟିରେ ବାଲିର
Chikatā māti ୯ ଗୁଣ କାଦୁଅ ଥାଏ—Sticky soil;
ଏଁଟେଲ୍‌ମାଟି clayey soil.
**चिकनीमिट्टी**

**ଚିକଣ**—ଦେ. ବି (ସଂ. ଚିକ୍କଣ; ତୁଳ. ଦେ. ଚିକ୍କଣୀ = ସୁପାରି)—
Chikaṇa ୧ । ତେଲ—1. Oil.

ବାଳକ ହିନଙ୍କ ସେ କରନ୍ତି ଉପସ୍ୟା,
ଚିକଣ ନ ଘେନନ୍ତି ସଙ୍କ୍ରାନ୍ତି ଅମାବାସ୍ୟା । ପୀତାମ୍ବର. ନୃସିଂହପୁରାଣ ।

୨ । ତୈଳବତ୍ ସ୍ନିଗ୍ଧ ପଦାର୍ଥ—2. Any oily substance.
ଦେ. ବିଣ—୧ । ମସୃଣ ଓ ଉଜ୍ଜ୍ୱଳ—1. Bright and
ଚିକଣ, ଚିକ୍‌ନା polished; smooth.
**चिकना** ୨ । ଖସଡ଼ା—2. Slippery.
୩ । ସୁନ୍ଦର—3. Beautiful; fine; nice.
୪ । ତେଲ ଲଗାଇଲାପରି ଜକଜକ—4. Glossy.
୫ । ସ୍ନିଗ୍ଧ ବା ତୈଳାକ୍ତ—5. Oily.
ଚିକଣ ତ ଦିଶୁଛ ମୋ ଦେହ—କବିସୂର୍ଯ୍ୟ. ଚଉପଦୀଭୂଷଣ. ୨ ଗୀତ ।
୬ । ଉତ୍ତମରୂପେ ବଟା ହୋଇଥିବା—
6. Reduced to a fine paste.

**ଚିକଣ କୁହା**—ଦେ. ବିଣ. ପୁଂ.—୧ । ଯେଉଁ ବ୍ୟକ୍ତି ମଧୁର କଥା କହେ
Chikaṇa kuhā ମାତ୍ର ଅଯୋଗ୍ୟ ବା ଅବିଶ୍ୱାସୀ ଅଟେ—
चिकना 1. Oily-tongued.
୨ । ଖୋସାମଦିଆ; ଚାଟୁଭାଷୀ—2. Flattering

ଚିକଣ କୋହୀ
ଚିକଣ କହୀ } ସ୍ତ୍ରୀ
ଚିକଣ କୁହୀ

**ଚିକଣ ଚାକଣ**—ଦେ. ବିଣ ( ସଂ. ଚିକ୍କଣ + ଧ୍ୱନ୍ୟନୁକାରୀ ଦ୍ୱିତୀୟ ସହଚର
Chikaṇa chākaṇa ଶବ୍ଦ)—୧ । ସୁନ୍ଦର ଓ ମସୃଣ—
ଚିକଣଚାକଣ 1. Fine and smooth.
**चिकनाचुपड़ा** ୨ । ସୁନ୍ଦରରୂପେ ସଜ୍ଜିତ ( ବ୍ୟକ୍ତି ); ଫିଟ୍‌ଫାଟ୍;
ଛଇଳା—2. Foppishly dressed.

**ଚିକଣପଟୁ**—ଦେ. ବିଣ—( ବ୍ୟଙ୍ଗ ) ହୃଷ୍ଟପୁଷ୍ଟ, ବିଳାସୀ ଓ ଆଳସ୍ୟ-
Chikaṇapatu ପରାୟଣ (ବ୍ୟକ୍ତି)—(ironical) Stout and
**चिकनाचुपड़ा** strong but idle and foppish.

**ଚିକଣ ହାତ**—ଦେ. ବି—ତେଲ ଘିଅ ଆଦି ଚିକ୍କଣ ପଦାର୍ଥ ଲାଗିଥିବା ହାତ;
Chikaṇa hāta ତୈଳାକ୍ତ ହସ୍ତ—Hand besmeared with oil or ghee.

**ଚିକଣା**—ଦେ. ବି ଓ ବିଣ—ଚିକଣ ( ଦେଖ )—
Chikaṇā Chikaṇa ( See )
ଚିକନାଈ ବି (ସଂ. ଚିକ୍କଣତା)—ଚିକ୍କଣ ହେବାର ଅବସ୍ଥା—
**चिकनाई** Smoothness; oiliness.

**ଚିକଣା(ଣେ)ଇବା**—ଦେ. କ୍ରି ( ସଂ. ଚିକ୍କଣରୁ ଓଡ଼ିଆ ନାମଧାତୁ )—
Chikaṇā(e)ibā ୧ । ତୈଳାକ୍ତ କରିବା—
ଚିକଣାନ 1. To besmear with oil.
**चिकनाना** ୨ । ମସୃଣ କରିବା; ପାଲିସ୍ କରିବା—
2. To make smooth; to polish; to burnish.
୩ । ସୁନ୍ଦର କରିବା—

ଚିକଣେଇବା
ଚିକଣାଇବା } ଅନ୍ୟରୂପ 3. To beautify.
ଚିକଣେଇବା

୪ । ହଳଦୀ ଇତ୍ୟାଦି ଚିକ୍କଣ କରି ବାଟିବା—
4. To reduce turmeric etc. into a fine paste.
୫ । ଖୋସାମଦ୍ କରିବା; ଚାଟୁ କରିବା—5. To flatter.
୬ । ଶ୍ରୋତାର ମନୋରଞ୍ଜକ ପୂର୍ବକ କଥା କହିବା—
6. To use pleasing and oily words.

**ଚିକଣା ଚିକଣି**—ଦେ. ବିଣ—ସୁନ୍ଦର ଓ ମସୃଣ —
Chikaṇā chikaṇi Fine and smooth.
ଦେ. ବି.—ହଳଦି ଆଦି ବାଟି ଚିକ୍କଣ କରିବା କର୍ମ—The act of reducing turmeric etc. into a fine paste.

**ଚିକଣା ମାଟି**—ଦେ. ବି.—କୁମ୍ଭାର ହାଣ୍ଡି ଆଦି ଗଢ଼ିବା କାମରେ ଚିକ୍କଣ
Chikaṇā māti କରି ଚକଟିଥିବା ମାଟି—
ଚିକନାମାଟୀ Prepared potter's soil.
**चिकनिमट्टि**

**ଚିକଣା ହାତ**—ଦେ. ବି.—ଚିକଣ ହାତ; ତୈଳାକ୍ତ ହସ୍ତ —Hand
Chikaṇā hāta besmeared with ghee or oil.

**ଚିକଣିଆ**—ଦେ. ବିଣ.—ଚିକ୍କଣ (ଦେଖ)
Chikaṇiā Chikkaṇa (See)

**ଚିକନ୍**—ବୈଦେ. ବି. (ଫା.)—ଛୁଞ୍ଚିଦ୍ୱାରା ଲୁଗାରେ ଫୁଲ ଲତା ଆଦି ବୁଣା
Chikan ହୋଇଥିବା କାମ—1. Embroidery work.
ଚିକନ ୨ । ଛୁଞ୍ଚି ସାହାଯ୍ୟରେ ଜରି ଓ ସୂତାରେ ଫୁଲ ଓ ଲତା ଆଦି
**चिकन** ବୁଣା ହୋଇଥିବା ଖୁବ୍ ସରୁ ଲୁଗା—A kind of fine cloth of embroidery work
ପ୍ରାଦେ. ( ସମ୍ବଲପୁର ) ବିଣ– ଚିକ୍କଣ—Smooth.

**ଚିକା**—ପ୍ରାଦେ. ( ଗଞ୍ଜାମର ଦକ୍ଷିଣାଞ୍ଚଳ ) ବି—
Chikā ୧ । ଆଶା—1. Hope.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଟାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୁଅ' ନ ମିଳିଲେ 'ବୃଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଁଟ୍ୟା' ନ ପାଇଲେ 'ଆଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବ

୨ । ପ୍ରଲୋଭନ—2. Temptation; allurement.
୩ । କୌଣସି ମଧୁର ବସ୍ତୁର ଆସ୍ୱାଦନଜନିତ ଲାଳସା—
3. Hankering after a sweet thing due to having taken it once.

**ଚିକା ଦେଖା(ଖେ)ଇବା**—ପ୍ରାଦେ (ଗଞ୍ଜାମ) କ୍ରି—ପ୍ରଲୋଭନ ଦେଖାଇବା—
Chikā dekhā(e)ibā To tempt; to allure.

**ଚିକାରି**—ଦେ. ବି—ସିତାରର ଦଣ୍ଡରେ ସଂଲଗ୍ନ ପ୍ରଧାନ ୫ଟି ତାର ଛଡ଼ା
Chikāri ଅତିରିକ୍ତ ୩।୪ ଟି କ୍ଷୁଦ୍ର କ୍ଷୁଦ୍ର ତାର—
ଚିକାରୀ The 3 or 4 minor strings of a
चिकारी guitar.

**ଚିକି**—ଦେ. ବି (ସଂ. ଚିକ୍କଣ)—ଚେକଚେକ ହୋଇ କଟା ହୋଇ ଦୁଧରେ
Chiki ସିଝାଯାଇ ଶୁଖା ଯାଇଥିବା ଏକ ପ୍ରକାର ଗୁଆ—
ଚିକି A kind of areca nut which is cut into
चिकनीसुपारी slides and boiled in milk.
[ ଦ୍ର—ଦକ୍ଷିଣ ଭାରତ କର୍ଣ୍ଣାଟକ ଅଞ୍ଚଳରୁ ଏ ଗୁଆ ଚେକ-ଚେକ ହୋଇ କଟା ଓ ସିଝା ହୋଇ ଅନ୍ୟାନ୍ୟ ଦେଶକୁ ପଠାଯାଏ ।]

**ଚିକଟା (ଇତ୍ୟାଦି)**—ଦେ. ବିଣ—ଚିକଟା ଇତ୍ୟାଦି (ଦେଖ)
Chikitā etc Chikaṭā etc (See,
(ଚିକିଟିଆ—ଅନ୍ୟରୂପ)

**ଚିକିତ୍ସକ**—ସଂ. ବି. [କିତ୍ ଧାତୁ=ରୋଗନାଶ କରିବା+ସ୍ୱାର୍ଥେ ସନ୍(ଦ୍ୱିତ୍ୱ) =ଚିକିତ୍ସ ଧାତୁ+କର୍ତ୍ତୃ ଅକ ]—
Chikitsaka ବୈଦ୍ୟ; ଡାକ୍ତର—Physician; doctor.

**ଚିକିତ୍ସନ**—ସଂ. ବି. [କିତ୍ ଧାତୁ ସ୍ୱାର୍ଥେ ସନ୍ (ଦ୍ୱିତ୍ୱ)=ଚିକିତ୍ସ ଧାତୁ+
Chikitsana ଭାବ ଅନ]—କୌଣସି ରୋଗରୁ ଆରୋଗ୍ୟକରଣ—
Curing or treatment of a disease.

**ଚିକିତ୍ସା**—ସଂ. ବି. ( ଚିକିତ୍ସ ଧାତୁ+ଭାବ ଅ+ଆ )—
Chikitsā ୧ । ରୋଗର ପ୍ରତିକାରାର୍ଥ ବୈଦ୍ୟଙ୍କ କ୍ରିୟାସମୂହ—
1. Medical treatment of a disease.
୨ । ରୋଗର ଆରୋଗ୍ୟ ପାଇଁ ଚିକିତ୍ସକଙ୍କ କୃତ କର୍ମମାନଙ୍କ ବ୍ୟବସ୍ଥା—2. Therapeutics (M. W.).
[ ଦ୍ର— ଆୟୁର୍ବେଦର ୨ଟି ବିଭାଗ—୧ । ନିଦାନ, ୨ । ଚିକିତ୍ସା; ନିଦାନରେ ଭିନ୍ନଭିନ୍ନ ରୋଗର ଲକ୍ଷଣମାନ ବର୍ଣ୍ଣିତ ହୋଇଅଛି । ଚିକିତ୍ସାରେ ଭିନ୍ନଭିନ୍ନ ରୋଗ ପାଇଁ ଭିନ୍ନଭିନ୍ନ ଔଷଧାଦିର ବ୍ୟବସ୍ଥା ବର୍ଣ୍ଣିତ ହୋଇଅଛି । ଚିକିତ୍ସା ତ୍ରିବିଧ;—୧ । ଦୈବୀ, ୨ । ମାନୁଷୀ ଓ ୩ । ଆସୁରୀ; ଦେବପୂଜନ, ଗ୍ରହଯଜ୍ଞ ଆଦି ଦ୍ୱାରା ରୋଗୋପଶମନ-ଚେଷ୍ଟା ଦୈବୀ; ଔଷଧ ଓ ପଥ୍ୟାଦି ଦ୍ୱାରା ରୋଗୋପଶମନଚେଷ୍ଟା ମାନୁଷୀ ଓ ଅସ୍ତ୍ରପ୍ରୟୋଗ ( ଅପରେସନ୍ ) ଦ୍ୱାରା ରୋଗୋପଶମନ-ଚେଷ୍ଟା ଆସୁରୀ—ହି. ଶବ୍ଦସାଗର ]

**ଚିକିତ୍ସାଳୟ**—ସଂ. ବି. ( ୬ଷ୍ଠୀ ତତ୍; ଚିକିତ୍ସା+ଆଳୟ ); ଡାକ୍ତରଖାନା-
Chikitsālaya ହାସପାତାଳ—Hospital.

**ଚିକିତ୍ସିତ**—ସଂ. ବିଣ. ପୁଂ (କିତ୍ ଧାତୁ+ସ୍ୱାର୍ଥେ ସନ୍+କର୍ମ ତ)—
Chikitsita ୧ । ଯାହାର ରୋଗର ଚିକିତ୍ସା କରାଯାଇଅଛି—
ଚିକିତ୍ସିତା—ସ୍ତ୍ରୀ 1. Treated for a disease; under medical treatment.
୨ । ଯେ ରୋଗରୁ ଆରୋଗ୍ୟ ଲାଭ କରିଅଛି—
2. Cured (Wilson).

**ଚିକିତ୍ସ୍ୟ**—ସଂ. ବିଣ (ଚିକିତ୍ସ ଧାତୁ+କର୍ମ. ଯ)—୧ । ପ୍ରତିକାର ପାଇବା
Chikitsya ଯୋଗ୍ୟ—1. Deserving treatment.
(ଚିକିତ୍ସନୀୟ-ଅନ୍ୟରୂପ) ୨ । ଚିକିତ୍ସିତ ହେବାର ଉପଯୋଗୀ—
2. Fit to be medically treated.
୩ । ଯେଉଁ ଚିକିତ୍ସାଦ୍ୱାରା ପ୍ରଶମିତ ହୁଏ—3. Curable.
୪ । ପ୍ରତିବିଧେୟ; ସଂଶୋଧ୍ୟ—4. Remediable.

**ଚିକିଲ**—ସଂ ବି ( ଚକ୍ ଧାତୁ=ବ୍ୟାଘାତ କରିବା+କର୍ତ୍ତୃ. ଇଲ )—
Chikila ୧ । ପଙ୍କ—1. Mud; mire.
(ଚିଖଲ୍ଲ—ଅନ୍ୟରୂପ) ୨ । କାଦୁଅ—2. Clay.

**ଚିକୀର୍ଷା**—ସଂ. ବି. (କୃ ଧାତୁ+ଇଚ୍ଛାର୍ଥରେ ସନ୍=ଚିକୀର୍ଷ ଧାତୁ+
Chikirshā ଭାବ ଅ+ଆ)—କରିବାର ଇଚ୍ଛା—A wish to do (a work).

**ଚିକୀର୍ଷିତ**—ସଂ. ବିଣ (କୃ. ଧାତୁ+ଇଚ୍ଛାର୍ଥରେ ସନ୍=ଚିକୀର୍ଷ ଧାତୁ+
Chikirshita କର୍ମ ତ)—ଅଭିଲଷିତ; ବାଞ୍ଛିତ; ଅଭିପ୍ରେତ—
Intended to be done; designed, wished for; longed for.
ସଂ. ବି—(+ଭାବ. ତ) କରିବାର ଇଚ୍ଛା—A wish to do,

**ଚିକୀର୍ଷୁ**—ସଂ. ବିଣ (ଚିକୀର୍ଷ ଧାତୁ+କର୍ତ୍ତୃ ଉ) କରିବାକୁ ଇଚ୍ଛୁକ—
Chikirshu Wishing to act; desirous of doing.

**ଚିକୁର**—ସଂ. ବି (ଚି ଧାତୁ=ବର୍ଦ୍ଧିତ ହେବା+ସଂଜ୍ଞାର୍ଥେ ଉର)—
Chikura ୧ । କେଶ—1. Hair.
(ଚିକୂର—ଅନ୍ୟରୂପ) ୨ । ପର୍ବତ—2 Mountain.
୩ । ସରୀସୃପ—3. Reptile. ୪ । ସର୍ପ—4. Serpent.
୫ । ପକ୍ଷିବିଶେଷ—5. A kind of bird
୬ । ଛୁଞ୍ଚୁନ୍ଦ୍ରା—6. Musk-rat (M. W).
ସଂ ବିଣ—୧ । ଚପଳ—1. Hasty.
୨ । ବିମୃଶ୍ୟକାରୀଶୂନ୍ୟ—2. Rash; inconsiderate.
୩ । ଅପରାଧୀ—3. Sinning; offending.

**ଚିକୁରପକ୍ଷ**—ସଂ. ବି (୬ଷ୍ଠୀତତ୍; ଚିକୁର+ପକ୍ଷ)—କେଶସମୂହ; କେଶଗୁଚ୍ଛ;
Chikurapaksha ମୁଣ୍ଡର ଗୋଛାଏ ବାଳ—A tuft of hair (on the head).
ଚିକୁରକଳାପ
ଚିକୁରପାଶ
ଚିକୁରନିକର
ଚିକୁରଭାର
ଚିକୁରରଚନା
ଚିକୁରହସ୍ତ
} ଅନ୍ୟରୂପ—(M. W).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ | ଡଅ | ଢ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ନ |

**ଚିକ୍କ**—ସଂ. ବିଣ ପୁଂ (ଚିକ୍=ଅନୁକରଣଶବ୍ଦ+କୈ ଧାତୁ=ଶବ୍ଦକରିବା+
Chikka କର୍ତ୍ତୃ. ଅ)—ଚେପଟାନାକ—Flat-nosed (M.W.)
( ଚିକ୍କା—ସ୍ତ୍ରୀ )
ବି—୧ । ଛୁଚୁନ୍ଦରୀ; ଛୁଚୁନ୍ଦ୍ରା—1. Mole; musk rat; Sorex Coerulens.
୨ । ଗୁଆ—2. Betel nut (M. W.)
୩ । ନାକ ଚେପଟା ହେବା ଅବସ୍ଥା—3. Flat-nosedness (M. W.)

**ଚିକ୍କଣ**—ସଂ. ବିଣ (ଚିକ୍ ଧାତୁ=ବୋଧକରିବା+କର୍ମ. କନ)—
Chikkaṇa ୧ । ସ୍ନିଗ୍ଧ; ଚିକଣ—1. Smooth; glossy.
୨ । ତେଲିଆ; ତୈଳାକ୍ତ—2. Unctuous; oily.
୩ । ଖସଡ଼ା—3. Slippery.
ସଂ ବି—୧ । ଗୁଆଗଛ ଓ ଫଳ—1. Betel-nut and its tree.
୨ । ନାଳନାଳୁଆ ବସ୍ତୁ; ଅଠା—2. Any smooth liquid; gum (M. W.)

**ଚିକ୍କଣା**—ସଂ. ବି. ସ୍ତ୍ରୀ (ଚିକ୍କଣ+ସ୍ତ୍ରୀ. ଆ)—୧ । ଯେଉଁ ଗାଈର ଗାତ୍ରଚର୍ମ
Chikkaṇā ମସୃଣ ଏବଂ ଉଜ୍ଜ୍ୱଳ—1. A cow with a
(ଚିକ୍କିଣା—ଅନ୍ୟରୂପ) smooth and shining skin.
୨ । ଉତ୍କୃଷ୍ଟ ଗାଈ—2. An excellent cow (M W.)
୩ । ଗୁଆ—3. Betel nut (M. W.)
ଦେ. ବି ଓ ବିଣ—ଚିକଣ ( ଦେଖ )—Chikaṇa ( See )

**ଚିକ୍କଣୀ**—ସଂ. ବି.—ଗୁବାକ; ଗୁଆ (ଗଛ ଓ ଫଳ)—
Chikkaṇi The betel nut (tree and fruit).

**ଚିକ୍କସ**—ସଂ. ବି—୧ । ଯବଚୂର୍ଣ୍ଣ—
Chikkasa 1. Barley-meal.
୨ । ବିବାହାଦି ଉତ୍ସବରେ ଦେହରେ ବୋଳାଯିବା ବଟା ହଳଦୀ ଓ ତେଲ ମିଶା ଯବଚୂର୍ଣ୍ଣ (ବୃ. ଶବ୍ଦସାଗର)—2. Barley-meal mixed with turmeric-paste and oil, anointed on the body on festive occasions.

**ଚିକ୍କା**—ସଂ. ବି (ଚିକ୍କ+ଆ)—ଗୁଆଗଛ ଓ ତାହାର ଫଳ—
Chikkā The betelnut ( tree and fruit )

**ଚିକ୍କୁର**—ସଂ. ବି. ( ଚିକ୍ ଧାତୁ=ବ୍ୟାଘାତ କରିବା+କର୍ତ୍ତୃ. ଊର )—
Chikkura ଘଡ଼ଘଡ଼ି—Thunderbolt.

**ଚିଖଲ୍ଲ**—ସଂ. ବି. ( ଚିକ୍ ଧାତୁ=ବ୍ୟାଘାତ କରିବା+କର୍ତ୍ତୃ. ଅଲ୍ଲ;
Chikhalla ନିପାତନ )—
୧ । କାଦୁଅ—1. Clay; mud.
୨ । ପଙ୍କ—2 Mire.

**ଚିଙ୍ଗଡ଼ା**—ପ୍ରାଦେ. ( ସମ୍ବଲପୁର ଓ ସିଂହଭୂମ ) ବି—
Chingrdā ଚିଙ୍ଗୁଡ଼ି ( ଦେଖ )
( ଚିଙ୍ଗଡ଼ି—ଅନ୍ୟରୂପ ) Chingurdi ( See )
ଚିଙ୍ଗଡ଼ା ଝୁରର ଝୋଲ୍—ଚଗ ।

**ଚିଙ୍ଗରା**—ପ୍ରାଦେ. ( ସମ୍ବଲପୁର ) ବି—ଚିଙ୍ଗୁଡ଼ି ( ଦେଖ )
Chingrā Chingurdi ( See )

**ଚିଙ୍ଗରି**—ପ୍ରାଦେ. ( ସମ୍ବଲପୁର ) ବି—ଚିଙ୍ଗୁଡ଼ି ( ଦେଖ )
Chingri Chingurdi ( See )

**ଚିଙ୍ଗଟ**—ସଂ. ବି. ( ଚିଙ୍ଗ=ସୁନ୍ଦର+ଅଟ୍ ଧାତୁ=ଗମନ କରିବା+
Chingata କର୍ତ୍ତୃ. ଅ )—ଚିଙ୍ଗୁଡ଼ିମାଛ—
( ଚିଙ୍ଗଡ଼—ଅନ୍ୟରୂପ ) Shrimp; prawn.

**ଚିଙ୍ଗଟୀ**—ସଂ. ବି. ( ଚିଙ୍ଗଟ+କ୍ଷୁଦ୍ର ଅର୍ଥରେ ଈ )—ଛୋଟ ଚିଙ୍ଗୁଡ଼ି
Chingaṭi ମାଛ—Small shrimp.

**ଚିଙ୍ଗିଡ଼ି**—ପ୍ରାଦେ. ( ସିଂହଭୂମ ) ବି—ଏକଜାତୀୟ ଧାନ—
Chingirdi A species of paddy.
ପ୍ରାଦେ. ( ସମ୍ବଲପୁର ) ବି—ଚିଙ୍ଗୁଡ଼ି ( ଦେଖ )
Chingurdi ( See )

**ଚିଙ୍ଗିର** ପ୍ରାଦେ. ( ସମ୍ବଲପୁର ) ବି—ଚିଙ୍ଗୁଡ଼ି ( ଦେଖ )
Chingiri Chingurdi ( See )

**ଚିଙ୍ଗୁଡ଼ି**—ଦେ. ବି. ( ସଂ. ଚିଙ୍ଗଟ; ଚିଙ୍ଗଡ଼ )—ମତ୍ସ୍ୟବିଶେଷ—
Chingurdi A kind of fish; shrimp; prawn.
চিঙ্গড়ি [ ଦ୍ର—ଏମାନଙ୍କ ଦେହରେ ହାଡ଼ ବା ବକ୍ତ
झींगा; चिंगड़ा ନାହିଁ; ମୁଣ୍ଡରେ ବଡ଼ବଡ଼ ଜଣ ଥାଏ । ବଙ୍ଗ-
(ଚୁଙ୍ଗୁଡ଼ି—ଅନ୍ୟରୂପ) ବାଳିଆ, ଗଣ୍ଡିଆ, କାଦୁଅ ଓ ପୁଣି ଚୁଙ୍ଗୁଡ଼ି ଭେଦରେ ବଡ଼ ଓ ସାନ ଚିଙ୍ଗୁଡ଼ି ନାନାଜାତୀୟ ।]

**ଚିଙ୍ଗୁଡ଼ିଆ ଦଳ**—ଦେ. ବି—ଚିଙ୍ଗୁଡ଼ି ମାଛର ଜଣ ପରି ଲମ୍ବଲମ୍ବ
Chingurdiā dala କେଶଯୁକ୍ତ ପାଣିରେ ଜନ୍ମିବା ଅପୁଷ୍ପକ
চিঙ্গড়িদল ଜଳଜ ଉଦ୍ଭିଦବିଶେଷ—A kind of
(ଚୁଙ୍ଗୁଡ଼ିଆଦଳ—ଅନ୍ୟରୂପ) hairy moss growing in water; Hydrilla Verticillata; Chara.
[ ଦ୍ର—ଏହା ସାମାନ୍ୟ ସୁଅ ଥିବା ପାଣିରେ ଜନ୍ମେ ଏବଂ ପାଣିତଳର ମାଟିକୁ ଛୁଇଁ ନ ଥାଏ । ଏହାର ପତ୍ର ନାହିଁ, ଡାଙ୍ଗ ଗୁଡ଼ିକ ସରୁ ଓ ହରିଦ୍ବର୍ଣ୍ଣ । ]

**ଚିଙ୍ଗୁଡ଼ିଚିପା**—ପ୍ରାଦେ. ( ଆଠମଲ୍ଲିକ ) ବି ବିଛା ( ଦେଖ )
Chingurdi chipā Bichhā ( See )

**ଚିଙ୍ଗୁଡ଼ିଚୋପା**—ପ୍ରାଦେ. ( ଗଞ୍ଜାମ ) ବି—ଚିଙ୍ଗୁଡ଼ି ମାଛର ଚୋପା ବା
Chingurdi chopā ଖୋଳ ପରି ଦିଶୁଥିବା ଆଙ୍ଗୁଠିରେ ପିନ୍ଧାଯିବା ଅଳଙ୍କାରବିଶେଷ—An ornament for the finger resembling the broad ring-like shell of the shrimp.

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ କିମ୍ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚିଚିଙ୍ଗା**— ପ୍ରାଦେ. ( ମେଦିନୀପୁର ) ବି ( ଭୁଲ. ବଂ. ଚିଚିଙ୍ଗା; ସଂ. ଚିଚିଣ୍ଡ )—ଛଚିନ୍ଦା—Snake-gourd.
Chichingā

**ଚିଚିଣ୍ଡ**—ସଂ. ବି—ଛଚିନ୍ଦା ନାମକ ସର୍ପାକୃତି ଖାଦ୍ୟ ଲତାଫଳ—
Chichiṇḍa — The snake gourd; Tricosanthes Anguina.
चिचिंगा
**चचैंडा; चचिंडा**
( ଚିଚିଣ୍ଡା— ଅନ୍ୟରୂପ )

**ଚିଚ୍ଛକ୍ତି**—ସଂ ବି. ( ରୂପକ; ଚିତ୍+ଶକ୍ତି; ସନ୍ଧିଦ୍ୱାରା ତ୍+ଶ=ଚ୍ଛ )—୧ । ଚୈତନ୍ୟ; ଚେତନା—1. Sense; consciousness.
Chichchhakti
୨ । ତତ୍ତ୍ୱଜ୍ଞାନ; ବିବେଚନା—
2. Intellect; intelligence.

**ଚିଜ**—ବୈଦେ. ବି. ( ଫା. ଚୀଜ୍ )—
Chija — ୧ । ବସ୍ତୁ; ପଦାର୍ଥ; ଦ୍ରବ୍ୟ—1. Thing; article
चीज — ୨ । ଚଳନ୍ତି ସମ୍ପତ୍ତି—
**चीज** — 2. Goods; movable property.
କେ ନାନା କୌତୁକ ଚିଜ ଦେଇ ଲୋକ ପେଷି ମାନସ ତୋଷିଲେ ।
ବ୍ରଜନାଥ. ସମରତରଙ୍ଗ ।
୩ । ମୂଲ୍ୟବାନ୍ ପଦାର୍ଥ—3. Valuable thing
୪ । ସମ୍ପତ୍ତି—4. Property.
୫ । ସ୍ପୃହଣୀୟ ପଦାର୍ଥ—5. Desirable thing.
୬ । ସୁଖାଦ୍ୟ ପଦାର୍ଥ—
6. Daintly article of food.
୭ । ଗହଣା— 7. Ornament.

**ଚିଜପତ୍ର**—ଦେ. ବି—ଚିଜବସ୍ତୁ ( ଦେଖ )
Chijapatra — Chijabasta ( See )

**ଚିଜବସ୍ତୁ**—ଦେ. ବି. ( ଫା. ଚୀଜ୍ ଓ ସଂ. ବସ୍ତୁ; ସହଚର )—
Chijabasta — ୧ । ନାନାବିଧ ପଦାର୍ଥ—1. Many things.
चीजवस्तु — ମା ପୁଏ ଯୋଡ଼ାକଯାକ ଯାଙ୍କୁ ବାଅ, ତାଙ୍କ ବାଅ, ଘରୁ ଚିଜବସ୍ତୁ
**चीजवस्त** — ବାଣ୍ଟରେ ଲଗିଥିବେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।
୨ । ଭ୍ରମଣକାରୀ ବ୍ୟକ୍ତି ସଙ୍ଗରେ ଥିବା ବ୍ୟବହାର୍ଯ୍ୟ ଦ୍ରବ୍ୟସମୂହ-
2. Luggage; equipage.
୩ । ଅସବାବ୍ ପତ୍ର—3. Furnitures.

**ଚିଞ୍ଚା**— ସଂ. ବି. ( ଚମ୍=ଭୋଜନ କାଳୀନ ଶବ୍ଦ+ଚର ଧାତୁ=ଗମନ କରିବା+କର୍ତ୍ତୃ. ଅ+ଆ; ଅତ୍ୟମ୍ଳ ହେତୁରୁ ଯାହା ମୁଖ ମଧ୍ୟରେ 'ଚଂ' ଶବ୍ଦ ଜାତ କରେ—ପ୍ରକୃତିବାଦ)—
Chiñchā
ତେନ୍ତୁଳି (ଫଳ ଓ ଗଛ)—
Tamarind ( tree and fruit ).
ଲଙ୍କା ଚିଞ୍ଚାରସେ ପଗାଇଛି ଦନ୍ତସଙ୍ଗ । ଭଞ୍ଜ. ଲାବଣ୍ୟବତୀ ।

**ଚିଞ୍ଚାମ୍ଳ**—ସ. ବି. ( ଆଧୁନିକ ରାସାୟନିକ ବ୍ୟବହାର )—
Chiñchāmla — ୧ । ତେନ୍ତୁଳିରୁ ପ୍ରସ୍ତୁତ ରାସାୟନିକ ଦ୍ରବବିଶେଷ—
1. Tartaric acid.
୨ । ଖଟାପାଳଙ୍ଗ ଶାଗ ( ହି. ଶବ୍ଦସାଗର )—
2. A kind of sour pot-herb

**ଚିଞ୍ଚୀ**—ସଂ. ବି. ସ୍ତ୍ରୀ— ଗୁଞ୍ଜା; କାଇଞ୍ଚ—
Chiñchī — The seed of a papilionaceous creeper ( red or white with a black cap-like spot at its head ) used as a weight by goldsmiths.

**ଚିଞ୍ଚୋଟକ**—ସଂ. ବି. ( ବୈଦ୍ୟକ )—ଶାକଗୁଳ୍ମବିଶେଷ—
Chiñchoṭaka — A herbaceous plant.
चेंचको, चिंचोड़ — [ଦ୍ର—ଏହା ଗୁରୁ, ଅଜୀର୍ଣ୍ଣକାରକ ଓ ଶୀତଳ ।
**चेंच** — (ଶବ୍ଦ କଳ୍ପଦ୍ରୁମ) ଏହା ବର୍ଷା ଦିନେ ବାହାରେ ।
ଅନ୍ୟ ସଂ. ନାମ— କୌଞ୍ଚାଦନ (M.W) } ଏଥିର ଫୁଲ ଓ ଚୁଇଁ ହଳଦିଆ ।
ହି. ଶବ୍ଦସାଗର ]
ଚିଞ୍ଚାଟକ, ଚିଞ୍ଚୋଡ଼ } ଅନ୍ୟରୂପ.

**ଚିଟ୍** (ଧାତୁ)—ସଂ—ଦୂରକୁ ପ୍ରେରଣ କରିବା—
Chiṭ (root) — To send out ( M. W. ).

**ଚିଟ୍**—ଦେ. ବି. ( ସଂ. ଚୀର=କନ୍ଥା, ଚିରି କନା; ହି ଚିଟ୍ )—
Chiṭ — କାଗଜର ଟୁକୁରା; ଚିରକୁଟ୍—
चिट — A bit of paper.
**चिट**

**ଚିଟ୍‌ଚିଟ୍**—ଦେ. ବିଣ. ( ଧ୍ୱନ୍ୟନୁକରଣ ବା ଅନୁଭୂତ୍ୟନୁକରଣ )—
Chiṭchiṭ — ଅଠାଳିଆ—Viscous; clammy; sticky.
चटचटे
**चिपचिपा**
(ଚିଟ୍‌ଚିଟା—ଅନ୍ୟରୂପ)

**ଚିଟ**—ଦେ. ବି. ( ସଂ. କିଟ୍ଟ=ତେଲକାଣ୍ଟି )—
Chiṭa — ୧ । ଅଠା—1. Gum
चिटा — ୨ । ବିରକ୍ତି—2. Vexation.
**चीठ** — ଦେ. ବିଣ— ୧ । ଅଠାଳିଆ—
1. Gummy; sticky; clammy.
୨ । ବିରକ୍ତିକର— 2. Vexatious.
୩ । ନିର୍ଲଜ୍ଜ ଭାବରେ କୌଣସି କାର୍ଯ୍ୟ ନିମନ୍ତେ ଜିଦ୍ କରି ସାଙ୍ଗରେ ଲାଗିଥିବା (ବ୍ୟକ୍ତି)—3. Pertinacious.

**ଚିଟଉ** (ଇତ୍ୟାଦି)—ଦେ. ବି—ଚିଟାଉ ଇତ୍ୟାଦି ( ଦେଖ )
Chiṭau (etc) — Chiṭāu etc. ( See )

**ଚିଟ କପୂର**—ଦେ. ବି—ଚିଟା କପୂର ( ଦେଖ )
Chiṭa kapūra — Chiṭā kapūra ( See )

**ଚିଟରା**—ଦେ. ବି. ( ସ. ଚିତ୍ରକ )—ଚିତାବାଘ—
Chiṭarā — Panther; leopard.

**ଚିଟଲ**—ପ୍ରାଦେ. ( ସିଂହଭୂମ ) ବିଣ. ( ଭୁଲ. ଇଂ. ଚୀଟ୍ )—
Chiṭala — ଠକ; ପ୍ରତାରକ—Cheating; fraudulent.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଅ | ଉଅ | ଊ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଥ | ଔ | କୃ |

**ଚଟା**—ଦେ. ଗୁଣ. ( ସଂ. କିଟ୍ଟ=ତେଲକାଣ୍ଟି )—
Chiṭā ୧ । ଅତ୍ୟନ୍ତ ବିରକ୍ତ—
ଚିଟା 2. Vexed; displeased.

ଚକ୍ଷୁଣ କୃତ୍ୟ ବୋଲି ନ ଜାଣି
ଚଟା ହେଲ ମୋରେ କାହୁଁ କି ଶୁଣି । କବିସୂର୍ଯ୍ୟ କବିତା ।

୨ । କାର୍ଯ୍ୟ ନ କରି ବହୁକାଳ ବସିରହିବାଯୋଗୁଁ ବିରକ୍ତ—
2. Ennui; disgusted for sitting idle for a long time.

୩ । ଅଠାଳିଆ—3. Clammy; glutinous

୪ । ଅତି କୃପଣ—4. Close-fisted; higgling and haggling

୫ । ବିରକ୍ତିକର—5. Vexatious.

୬ । ଧୀଟ—6. Pertinacious.

୭ । ତେଲାକ୍ତ ଓ ମଳିଆ—7. Dirty and besmeared with oil; soiled with oil.

ଦେ. ବି—୧ । ମୋଟାମୋଟି ଲେଖା ହୋଇଥିବା ହିସାବ; ଚିଠା—1. A rough account.

୨ । ହାତଚିଠା ବହି—
2. Memorandum; note-book.

୩ । ତେଲ ଯୋଗୁଁ କେଶ ଓ ବସ୍ତ୍ରାଦିରେ ଜମିଥିବା ମଳ ବା ଅଠା—3. Clamminess or dirt due to deposit of oil ( said of a dirty cloth or a tuft of hair ).

୪ । କିଛି କାର୍ଯ୍ୟ ନ କରି ବହୁକାଳ କଟାଇବା ଯୋଗୁ ଅନୁଭୂତ ବିରକ୍ତି—4. Ennui; annoyance or disgust due to spending a long time doing nothing.

**ଚଟା(ଟେ)ଇବା**—ଦେ. କ୍ରି—ଧୀଟପଣରେ ଅନ୍ୟକୁ ବିରକ୍ତ କରିବା—
Chiṭā(e)ibā To tire or vex a persen by pertinacity or obstinate demands.
चटाना
चोढ़ाना

**ଚଟାଉ**—ଦେ. ବି· (ସଂ. ଚଟ୍ ଧାତୁ=ଦୂରକୁ ପଠାଇବା;)—୧ । ପତ୍ର; ଚିଠି—1. Letter
Chiṭāu
ଚିଠି, ଚିଠି ବିଧାନ କରଇ କରୁଣାନିଧାନ ସୁବେଶେଣ ଚଟାଉ ଦେଲେ ।
चिट्ठी ଉପେ. ବୈଦେହୀଶବିଳାସ ।

୨ । ପ୍ରେମପତ୍ର—2. Love-letter.

ଗୁଳଇ ସେବେ ମୁଁ ଶୁଭ ସନ୍ଦେଶ,
ଚଟାଉରେ ଲେଖି ରହି ବିଦେଶ । କବିସୂର୍ଯ୍ୟ. କବିତା ।

୩ । ବନ୍ଧୁ ବା ଜ୍ଞାତିର ମୃତ୍ୟୁସମ୍ବାଦଜ୍ଞାପକ ପତ୍ର—
3. Letter conveying the news of the death of a relation.

**ଚଟାଉ କରିବା**—ଦେ. କ୍ରି.—୧ । ମୃତବ୍ୟକ୍ତିଙ୍କ ଦୂରସ୍ଥ ବନ୍ଧୁବାନ୍ଧବଙ୍କ
Chiṭāu karibā ନିକଟକୁ ମୃତ୍ୟୁସମ୍ବାଦ ପଠାଇବା—1. To senp the news of the death of a person to his absent relations.

୨ । (ଗ୍ରାମର ଭଣ୍ଡାରି) ଗ୍ରାମର କୌଣସି ବ୍ୟକ୍ତିଙ୍କ ମୃତ୍ୟୁଖବର ବା ମୃତ୍ୟୁଜ୍ଞାପକ ପତ୍ର ଦୂରସ୍ଥ ବନ୍ଧୁମାନଙ୍କୁ ଦେବା—
2. ( the village-barber ) To convey the message of the death of a person to his absent friends and relatives.

**ଚଟା କପୂର**—ଦେ. ବି.—ଏକପ୍ରକାର ନିକୃଷ୍ଟ ଓ କୃତ୍ରିମ କର୍ପୂର—
Chiṭā kapūra A kind of artificial inferior camphor.

**ଚଟା ଗୁଡ଼**—ଦେ. ବି.—୧ । କାଳିଆ ଅଠାଳିଆ ଗୁଡ଼; କୋଡ଼ିଆ ଗୁଡ଼—
Chiṭā gurda 1. Treacle.
ଚିଟେଗୁଡ଼ ଏ ସ୍ଥାନର ମିଠା କଥା ଚଟାଗୁଡ଼ ଭଳି,
चिटियागुड़ ପାଚଲା ସାଲିମା କମ୍ବା ଶଙ୍କର କଦଳୀ । ଫକୀରମୋହନ. ଉତ୍କଳଭ୍ରମଣ

୨ । ପାଣିଆ ଗୁଡ଼—2. Liquid molasses.

**ଚଟି**—ଦେ. ବି. (ସଂ. ଚଟ୍ ଧାତୁ=ପଠାଇବା; ସଂ. ଚଟିକା=କାଗଜର
Chiṭi କ୍ଷୁଦ୍ର ଖଣ୍ଡ)—୧ । ପତ୍ର—
ଚିଠି, ଚିଠି 1. Letter; a written message; a note.
चिट, चिट्ठी, चिट्ठी ୨ । କ୍ଷୁଦ୍ର ଆଦେଶପତ୍ର—2. A slip or chit
(ଚିଠି—ଅନ୍ୟରୂପ) bearing a message or orders.

୩ । ଭଗବାନଙ୍କ ବିଧାନ—
3 God's dispensation.
(ଯଥା—ଏ ସମ୍ପତ୍ତି ଭୋଗ କରିବାକୁ ତ ତାଙ୍କ ଚଟି ଅଛି ।)

୪ । ଖାତକ ନିକଟକୁ ମହାଜନର ବା ପ୍ରଜା ନିକଟକୁ ଜମିଦାରର ଟଙ୍କାତଲବ ପତ୍ର—4. A business-letter of demand sent by a creditor to a debtor, or by a Zamindar to a tenant.

୫ । (ସଂ. ଚିତ୍ର ସର୍ପ)—ଚିତ୍ର ସାପ—5. A kind of snake.

**ଚଟି କରିବା**—ଦେ. କ୍ରି.—୧ । (ମହାଜନ) ଖାତକ ନିକଟକୁ ପତ୍ରଦେବା—
Chiṭi karibā 1. ( a creditor ) To send a letter of demand to a debtor.

୨ । କୌଣସି ବ୍ୟକ୍ତି ନିକଟକୁ ଲିଖିତ ଆଦେଶ ପଠାଇବା—
2. To send a written order.

**ଚଟି ଚପଟ**—ଦେ. ବି. ( ଅନର୍ଥକ ଦ୍ୱିତୀୟ ସହଚର )—୧ । ଚିଠିପତ୍ର;
Chiṭi chapaṭa ପତ୍ରାଦି; ଆଦେଶଲିପି ଆଦି—1. Letters
ଚିଠିଚାପାଟି generally; notes and letters.
चिट्ठीचपाटी ୨ । ଡାକଦ୍ୱାରା ଯିବା ଆସିବା ପତ୍ରାଦି—
(ଚଟଚପଟା } ଅନ୍ୟରୂପ 2. Postal articles (e. g. letters, packets and covers.)
ଚଟଚପଟୀ }

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଗାଁ ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**ଚିଟିଚପଟ କରିବା**—ଦେ. କ୍ରି.—କୌଣସି ବ୍ୟକ୍ତିର ଅଦେଶଲିପି ଓ
Chiṭi chapaṭa karibā ବ୍ୟବସାୟସମ୍ପର୍କୀୟ ପତ୍ର ବା ସମ୍ବାଦ ଅନ୍ୟ ବ୍ୟକ୍ତି ନିକଟକୁ ନେବା ଓ ଆଣିବା—To carry letters and written messages of a master or a trader to his subordinates, debtors or constituents.

**ଚିଟି ଦେବା**—ଦେ. କ୍ରି.—୧। କୌଣସି ବ୍ୟକ୍ତିଙ୍କ ନିକଟକୁ ପତ୍ର ଲେଖି
Chiṭi debā ପଠାଇବା; ଡାକରେ ବା ଲୋକଦ୍ୱାରା ପତ୍ର ପ୍ରେରଣ
চিঠি দেওয়া କରିବା 1. To write letters; to send a
**चिट्ठि देना** letter to the addressee through post or through a messenger.
୨। ପତ୍ରକୁ ଉଦ୍ଦିଷ୍ଟ ବ୍ୟକ୍ତିଙ୍କ ହାତରେ ଅର୍ପଣ କରିବା—
2. To hand over a letter to the addressee.

**ଚିଟି ପତ୍ର**—ଦେ. ବି.—ଚିଟି ଚପଟ (ଦେଖ)
Chiṭi patra Chiṭi chapaṭa (See)
চিঠিপত্র
**चिट्ठीपत्र**

**ଚିଟି ପେଡ଼ି**—ପ୍ରାଦେ. (ଗଞ୍ଜାମ) ବି.—ଚିଠିବାକ୍‌ସ; ଯେଉଁ ବାକ୍‌ସରେ
Chiṭi peṛi ଡାକଚିଠି ପକାଯାଏ—Letter-box; postal letter-box.

**ଚିଟି ବାକ୍‌ସ**—ଦେ. ବି.—୧। ଯେଉଁ ବାକ୍‌ସରେ ଡାକରେ ପଠାଯିବା
Chiṭi bāksa ଚିଠି ପକାଇ ଦିଆଯାଏ—
চিঠির বাক্স 1. Letter-box; post-box.
**चिट्ठिका बाकस**
୨। ଗୃହର ବାହାରେ ଥିବା ଯେଉଁ ବାକ୍ସରେ ଡାକବାଲା (ଚିଠି ବାକ୍‌ସ—ଅନ୍ୟରୂପ) ଗୃହସ୍ୱାମୀଙ୍କ ନିମନ୍ତେ ଆଣିଥିବା ଚିଠି ଗଳାଇ ପକାଏ—2. Letter-box kept outisde one's house.

**ଚିଟି ମାରିବା**—ଦେ. କ୍ରି—ଚିଟି ପଠାଇବା; ପତ୍ର ଲେଖିବା—
Chiṭi māribā To write letters; to send letters.
[ ଦ୍ର—ଚିଟି ଦେବା ବା ଚିଟି ପଠାଇବାଠାରୁ ଚିଟି ମାରିବା ଦ୍ୱାରା କଥାରେ ବେଶି ଜୋର୍ (emphasis) ବୁଝାଯାଏ। ]

**ଚିଟୁଆ**—ଦେ. ବିଣ—୧। ଅଠାଳିଆ—1 Clammy; viscid.
Chiṭuā ୨। ଧୀଟୁଆ—2. Pertinacious; causing vexation by pertinacity.

**ଚିଟୁକୁଣି**—ଦେ. ବି—୧। ଚଟକଣି (ଦେଖ)
Chiṭukuṇi 1 Chaṭakaṇi ( See )
୨। ତିର୍ଯ୍ୟକ୍‌ଭାବରେ ମୁଷ୍ଟିପ୍ରହାର (ଜନେ)—
2. A horizontal stroke with the fist.

**ଚିଠ**—ଦେ. ବି—ଚିଠା ( ଦେଖ )
Chiṭha Chiṭhā ( See )

**ଚିଠା**—ଦେ. ବି. ( ହି. ଚିଟ୍ଠା )—୧। କୌଣସି ଦଲିଲର ମୌଳିକ
Chiṭhā ପାଣ୍ଡୁଲିପି ବା ଖସଡ଼ା—1. A rough draft of
চিঠা a document.
**चिट्ठा** ଦୁଇ ସଖା ମଧ୍ୟରେ ସିଠାମ ଜଣା
କବଲ ଚିଠା ଓ ସାଫି। ଫକୀରମୋହନ ଛମାଣଆଠଗୁଣ୍ଠ।
୨। ବଣିକର ଦୈନିକ ଆୟବ୍ୟୟର ମୋଟାମୋଟି ଖାତା—
2. Rough daily ledger or account-book of a trader.
୩। ଜମିର ଭର୍ତ୍ତିବହି—3. A field-book.
୪। ଜମିଦାରିସଂକ୍ରାନ୍ତ ଜମିଜମା ଲେଖାଥିବା କାଗଜ ବା ତାଲିକା; ଖସଡ଼ା—4. An account or tally of plots of land in an estate; a schedule or rough history (record of rights) of the lands of a village.
୫। ପଣ୍ୟଦ୍ରବ୍ୟ ବା ଟଙ୍କା ଦେଣନେଣର ସ୍ମାରକଲିପି; ହାତଚିଠା—5. Memorandum or note of money paid or received or commodities advanced or taken.

**ଚିଠା କରିବା**—ଦେ. କ୍ରି—କୌଣସି ପ୍ରସ୍ତାବିତ ବିଷୟକୁ ପ୍ରଥମେ ମୋଟା-
Chiṭhā karibā ମୋଟି ଲେଖିବା—To make a rough
চিঠাকরা draft; to draft out.
**चिट्ठाकरना**

**ଚିଠା ଖାତା**—ଦେ. ବି—୧। ବ୍ୟବସାୟୀର ଦୈନିକ ଆୟବ୍ୟୟର ହିସାବ-
Chiṭhā khātā ପୁସ୍ତକ—1 Daily account-book or
চিঠাখাতা ledger of a trader.
**चिट्ठाबही** ୨। ଦୈନିକ ନେଣଦେଣ ବା କାରବାରର ସ୍ମାରକପୁସ୍ତକ—
(ଚିଠାବହି—ଅନ୍ୟରୂପ) 2. A note-book of daily transactions.

**ଚିଠା ସିହା**— ଦେ. ବି—ଚିଠା ଖାତା (ଦେଖ)
Chiṭhā sihā Chiṭhā khātā (See)

**ଚିଠି (ଇତ୍ୟାଦି)**—ଦେ. ବି—ଚିଟି ଇତ୍ୟାଦି (ଦେଖ)
Chiṭhi etc) Chiṭi etc (See)

**ଚିଡ଼୍ ଚିଡ଼୍**—ଦେ. ବି. (ଧ୍ୱନ୍ୟନୁକରଣ,କିମ୍ବା ସଂ. ଚଡ଼୍ ଧାତୁ=କ୍ରୁଦ୍ଧ ହେବା+
Chiṛchiṛ ଯୋଗେଣ୍ଟନ୍ଦ୍ର )—ବିରକ୍ତି—Vexation;
চিড়চিড় annoyance; irritation.
**चिड़चिड़**
চিড়চিড়ে ଦେ. ବିଣ. ପୁଂ—୧। ବିରକ୍ତ—
**चिड़चड़ा** 1. Vexed; bothered.
(ଚିଡ଼ଚିଡ଼ା—ଅନ୍ୟରୂପ) ୨। ଯେ ସାମାନ୍ୟ କଥାରେ ବିରକ୍ତ ହୁଏ—
ଚିଡ଼ଚିଡ଼େଇ } ସ୍ତ୍ରୀ 2. Surly; growling; sulky;
ଚିଡ଼ଚିଡ଼ୋଇ } peevish; irritable; irascible fretful.

| ୧ | ଇ | ଉ | ର,ଋ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | ଙ୍କ | ଇସ୍ପ | ଡ଼ଅ | ଯ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଘ | ଇଅ | ଢ଼ | ନ୍ନ |

୩ । ସ୍ୱଭାବତଃ କ୍ରୋଧୀ—3. Angry by nature,

**ଚଡ଼୍‌ଚଡ଼୍ ହେବା**—ଦେ. କ୍ରି—ସାମାନ୍ୟ କଥାରେ ବିରକ୍ତ ହେବା; ଗାଣ୍ଠି-
Chirdchird hebā ଗାଣ୍ଠି ହେବା—To grumble or
চিড়চিড়হওয়া growl; to be in sulks.
**चिड़चिड़ाना; चटकना**

**ଚଡ଼୍‌ଚଡ଼ା**—ଦେ. ବିଣ. ପୁଂ—ଚଡ଼୍‌ଚଡ଼୍ (ଦେଖ)
Chirdchirdā Chirdchird (See).
(ଚଡ଼୍‌ଚଡ଼ିଆ—ଅନ୍ୟରୂପ) ଦେ. ବି—ଶୀର୍ଷ ଗୁଳ୍ମାକାର ଘାସବିଶେଷ—
চিড়চিড়া Digitaria Pedicillaris (a kind of grass).

**ଚଡ଼ (ଇତ୍ୟାଦି)**—ଦେ. ବି—ଚିଡ଼ା ଇତ୍ୟାଦି (ଦେଖ)
Chirda (etc) Chirdā etc (See).

**ଚଡ଼ଲ**—ଦେ. ବିଣ. ପୁଂ ଓ ସ୍ତ୍ରୀ—ଉଗ୍ରସ୍ୱଭାବ; ଚିଡ଼୍‌ଚିଡ଼୍; ସାମାନ୍ୟ
Chirdala କଥାରେ ଯେ ଚିଡ଼େ—Irascible; peevish;
চিড়চিড়ে; চিচ্চিড়া irritable; fretful.
**चिड़चिड़ा**
(ଚିଡ଼ଲିଆ—ଅନ୍ୟରୂପ)

**ଚଡ଼ା**—ଦେ. ବି ( ସଂ. ଚଡ଼ ଧାତୁ=ବିରକ୍ତ ହେବା, ଯୋଗେଶଚନ୍ଦ୍ର;
Chirdā ଭୁଲ. ସଂ. ଶୀର୍ଣ୍ଣ=ବିପାର୍ଣ୍ଣ )—ବିରକ୍ତି—
চটা; চিড়ন Vexation.
**चिड़; चिढ़** ଦେ. ବିଣ—କ୍ରୋଧୀ; ରାଗୀ; ଚିଡ଼୍‌ଚିଡ଼୍; ଉଗ୍ରସ୍ୱଭାବ—
চিচ্চিড়া Of an irascible temper; peevish; irritable.
**चिड़चिड़ा**

**ଚଡ଼ା (ଡ଼େ)ଇବା**—ଦେ. କ୍ରି ( ଚିଢ଼ିବାର ଣିଜନ୍ତରୂପ ) ୧ । ବିରକ୍ତ-
Chirdāibā କରାଇବା—1. To irritate; to annoy; to
চটান, চিড়ান exasperate; to provoke.
**चिड़ाना; चिढ़ाना** ୨ । କଥା ବା କାର୍ଯ୍ୟ ଦ୍ୱାରା ଅନ୍ୟ ବ୍ୟକ୍ତିର
ମନରେ ରାଗ ଜନ୍ମାଇବା; ରାଗାଇବା—2 To excite a
person to anger (by words or conduct).

**ଚଡ଼ାଚଢ଼ି**—ଦେ. ବି—୧ । ଅତ୍ୟନ୍ତ ବିରକ୍ତି—
Chirdāchirdi 1. Exasperation
চটাচটি, চিড়াচিড়ি ୨ । ଅନ୍ୟୋନ୍ୟରେ ବିରକ୍ତି କରିବା—
**चिढ़ाचिढ़ि** 2. Mutual provocation or exasperation.

**ଚଡ଼ା ମାଡ଼ିବା**—ଦେ. କ୍ରି—ରାଗ ଲାଗିବା; ବିରକ୍ତି ବୋଧହେବା—
Chirdā mārdibā The state of feeling irritated
( ଚିଡ଼ା ଲାଗିବା—ଅନ୍ୟରୂପ ) or exasperated.

**ଚଢ଼ି**—ପ୍ରାଦେ (ସମ୍ବଲପୁର) ବି—ବଡ଼ ଟୋକେଇ—
Chirdi A big basket.

ପ୍ରାଦେ ( ଗଞ୍ଜାମ ) ବି—୧ । ଚିଙ୍ଗୁଡ଼ିମାଛ—
1. Shrimp; prawn.
୨ । ଛୋଟ ଡାଲା; ଚୁଙ୍ଗୁଡ଼ି—2. Small tray.

**ଚଢ଼ିଆ**—ଦେ. ବି ( ସଂ. ଚଟକ=ଘରଚଟିଆ ପକ୍ଷୀ )—
Chirdiā ୧ । ପକ୍ଷୀ; ଚଢ଼େଇ—1. Bird.
চিড়িয়া ୨ । ଚଢ଼ିତନ (ଦେଖ)
**चिड़िया, चिड़ी** 2. Chirditana (See).

**ଚଢ଼ିଆ ଖାନା**—ଦେ. ବି ( ହି. ଚିଡ଼ିୟା=ପକ୍ଷୀ+ଫା. ଖାନା=
Chirdiā khānā ୧ । ପକ୍ଷିଶାଳା; ପକ୍ଷୀମାନଙ୍କୁ ପାଳ ରଖିବା ସ୍ଥାନ—
চিড়িয়াখানা 1. An aviary; a bird-house.
**चिड़ियाखाना** ୨ । ଯେଉଁଠାରେ ନାନାଜାତୀୟ ଜୀବଜନ୍ତୁଙ୍କୁ ପାଳ
କରି ରଖାଯାଏ—2. The Zoo; a
zoological house; a place where
various animals are kept

**ଚଢ଼ିଆମାରୁ**—ଦେ. ବି—ଚଢ଼େଇମାରୁ; ବ୍ୟାଧ; ଯେ ପକ୍ଷୀଙ୍କୁ ମାରି
Chirdiāmār ଜୀବିକା ନିର୍ବାହ କରେ—
চিড়িমার One who kills birds for a living;
**चिड़ीमार** fowler.
(ଚଢ଼ିଆମାରୁ—ଅନ୍ୟରୂପ)

**ଚଢ଼ିଚଡ଼ା**—ଦେ. ବିଣ. ପୁଂ ଓ ସ୍ତ୍ରୀ—ଚିଡ଼୍‌ଚିଡ଼୍ ( ଦେଖ )—
Chirdichirdā Chirdchird ( See )

**ଚଢ଼ିଚଢ଼ି**—ଦେ. ବିଣ. ପୁଂ ଓ ସ୍ତ୍ରୀ—ଚିଡ଼୍‌ଚିଡ଼୍ ( ଦେଖ )—
Chirdichirdi Chirdchird ( See )
(ଚିଢ଼ିଚିଢ଼ିଆ—ଅନ୍ୟରୂପ)
(ଚିଢ଼ିଚିଢ଼େଇ, ଚିଢ଼ିଚିଢ଼ୋଇ—ଅନ୍ୟରୂପ)

**ଚଢ଼ିତନ୍**—ବୈଦେ. ବି ( ହି; ଏହା ଉଡ଼ୁଥିବା ପକ୍ଷୀର ଆକାରବିଶିଷ୍ଟ )
Chirditan ୧ । ତାସ୍ ଖେଳରେ ତ୍ରିକୋଳକ ଓ ପୁଚ୍ଛବିଶିଷ୍ଟ କଳା-
চিড়িতন ରଙ୍ଗ; ଚଢ଼ିଆରଙ୍ଗ—1. The club in playing
**चिड़ितन** cards
[ ଦ୍ର—ତାସ୍ ଖେଳ ତଳେ ନୋଟ୍ ଦେଖ । ]
୨ । ନାକପୁଡ଼ାରେ ପିନ୍ଧିବା ସୁନାର ଅଲଙ୍କାରବିଶେଷ; ଚଢ଼ିଆ
ଆକାରର ନାକଫୁଲ—2. A gold ornament
for the nose

**ଚଢ଼ିବା**—ଦେ. କ୍ରି (ସଂ. ଚଢ଼ ଧାତୁ)—୧ । କ୍ରୁଦ୍ଧ ହେବା; ରାଗ କରିବା—
Chirdibā 1. To be angry; to
চটা, চিড়া become irritated.
**चिढ़ना, चिढ़ना** ୨ । ବିରକ୍ତହେବା—2. To be displeased.
[ଚଢ଼ା(ଡ଼େ)ଇବା—ଣିଜନ୍ତରୂପ] ୩ । ବିରକ୍ତି ପ୍ରକାଶ କରିବା—
3. To give vent to anger
or displeasure.

**ଚଢ଼ିଭିଢ଼ି ହେବା**—ଦେ. କ୍ରି—ଚଡ଼୍‌ଚଡ଼୍ ହେବା—
Chirdibhirdi hebā To be teased or irritated.
(ଚଢ଼ିଭିଢ଼ିହେବା—ଅନ୍ୟରୂପ)

**ଚଢ଼େଇ**—ଦେ. ବି—ମାଛ ଧୋଇବା ଓ ରଖିବାପାଇଁ ବ୍ୟବହୃତ ବାଉଁଶ-
Chirdei ପାଢ଼ିଆରେ ବୁଣା ଛୋଟ ବାଉଁଶିଆ—A small

ସାଧାରଣ ଲୋକେ ଅପର ପୃଷ୍ଠାରେ ୯ରତ ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବିପରୀତ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ

basket made of thin strips of bamboo to put in and wash the fish for cooking.

**ଚଡ଼ୋଲ**—ଦେ. ବଣ.—ଚଡ଼ଲ (ଦେଖ)
Chirdola Chirdala (See)

**ଚଣି**—ଦେ. ବଣ.—କ୍ଷୁଦ୍ର; ଛୋଟ—
Chini Small.

ଶ୍ରୀଦ୍ଧତିଙ୍କ ସମକକ୍ଷ ଚଣିପିଣ୍ଡମାନ । ବୃ. ଦୁ. (ଜଦେ) ।

ସ୍ତ୍ରୀ. ବି.—ଚନି (ଦେଖ)
Chini (See)

ସାରି ଚିଣି ଗୋଟାଏ ପଇଡ଼ ମିଶାଇ । ପ୍ରାଚୀ. ରହସ୍ୟମଞ୍ଜରୀ ।

ଦେ. ଅ.—ଚଣି ଚଣି (ଦେଖ)
Chini chini (See)

**ଚଣି ଚମ୍ପା**—ଦେ. ବି.—ଚନି ଚମ୍ପା (ଦେଖ)
Chini champā Chini champā (See)

**ଚଣିଚଣି**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଛୁଇଁ ଛୁଇଁ ମାରିଦେବା; ଛୁଞ୍ଚି ମାରିଲା ପରି ହେବା; ଦେହର ସ୍ଥାନେ ସ୍ଥାନେ ଛୁଞ୍ଚି ମାରିବା ପରି ତୀବ୍ର ବେଦନା ଅନୁଭବ କରିବା—1. Acute twitching or twinging sensation resembling that of pricking the body with needle-points; pin-prick sensation.
Chinichini
चिड़चिड़. चिड़बिबिड़. चिडिक्
खटक

୨ । କଂସାଆଦି ଧାତୁନିର୍ମିତ ବାଦ୍ୟାଦିର ଶବ୍ଦ—
2. Tinkling sound of slightly broken metal drums, bells etc.

ଚଣିଚଣି କଣିକଣି ଶଙ୍ଖ ଘୋର ନାଦ,
ତାଳ କଂସାଳ ମୃଦଙ୍ଗ ବଇଂଶୀ ଶବଦ । ପୀତାମ୍ବର. ନୃସିଂହପୁରାଣ ।

୩ । ନଡ଼ିଆ ଭିତରେ ଥିବା ପାଣି ଶୁଖି ଶୁଖି ଅଳ୍ପ ପାଣି ଥିବାବେଳେ ନଡ଼ିଆକୁ ବଜାଇଲେ ଯେଉଁ ଶବ୍ଦ ହୁଏ; ଝୁରୁଡ଼ାରେ ପରିଣତ ହେବା ପୂର୍ବରୁ ନଡ଼ିଆର ଶବ୍ଦ—3. The sound when a cocoanut fruit is shaken about at a stage when the water inside it is almost dried up.

**ଚଣିସିନ୍ଦୁର**—ଦେ. ବି—ଚନିସିନ୍ଦୁର (ଦେଖ)
Chinisindūra Chinisindūra (See)

**ଚତ୍ (ଧାତୁ)**—ସ—୧ । ବୋଧ କରିବା—
Chit (root) 1. To feel.

୨ । ଜାଣିବା—2. To know.

**ଚତ୍**—ସ. ବି (ଚତ୍ ଧାତୁ+ଭାବ. କ୍ୱିପ୍)—୧ । ଜ୍ଞାନ; ଚିତ୍ତବୃତ୍ତି—
Chit 1. Intellect.

୨ । ଚୈତନ୍ୟ—2. Spirit.

୩ । ଚେତନା—3. Consciousness.

୪ । ଆତ୍ମା—4. Soul.

୫ । (+କର୍ମ. କ୍ୱିପ୍) ଅଗ୍ନି (ହି. ଶବ୍ଦସାଗର)—5. Fire.

ସ. ଅ (ପ୍ରତ୍ୟୟବିଶେଷ) ଅସାକଲ୍ୟ, ଯଥା—କିଂଚିତ୍, କଦାଚିତ୍—
A sanskrit suffix indicating any.

ଚିତ୍ ଦେ. ବି (ସ. ଚିତ୍=ହୃଦୟ; ହୃଦୟ ଉପରିଆଡ଼କୁ ରହିବାରୁ;
चित କିମ୍ୱା ସ. ଚିତ=ଗଦାକରି ଯାଇଥିବା)—୧ । (ମୁଦ୍ରାଦିର) ଉପରପାଖ; ମୁହଁପାଖ—1. Upper side; front side (e. g of a coin).

[ ଦ୍ର—ମୁଦ୍ରାର ଯେଉଁ ପାଖରେ ରାଜାଙ୍କ ମୁଣ୍ଡ ଥାଏ ତାକୁ 'ଚିତ୍' ଓ ପଛଆଡ଼କୁ ପଟ୍ ବା ପାଟ୍ ବୋଲାଯାଏ । ]

୨ । ଉତ୍ତାନ ଶୟନ; ମୁହଁ ଉପରକୁ କରି ଶୋଇବା—
2. Lying flat on the back.

୩ । ମଲ୍ଲଯୁଦ୍ଧରେ ବିପକ୍ଷଦ୍ୱାରା ପରାଜିତ ହୋଇ ଉତ୍ତାନଶାୟୀ ହେବା—3. The condition of being laid flat on the ground by the adversary in contest.

୪ । କଉଡ଼ି ଖେଳରେ କଉଡ଼ିର ମେଲା ପାଖ ଉପରକୁ ହୋଇ ପଡ଼ିବା ଅବସ୍ଥା—4. The state of a cowrie falling flat when thrown on the ground.

ଦେ. ବଣ—ଉତ୍ତାନଶାୟୀ; ଊର୍ଦ୍ଧ୍ୱମୁଖ ହୋଇ ଶାୟିତ—
Supine; lying flat on the back.

ଦିନେ ଓପରଓଳି ଅଖୁନ୍‌ଜି ସାହେବ ଖାନା ଖାଇ ଚିତ୍ ହୋଇ ଶୋଇଥିଲେ—
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ଚିତ୍ କରିବା**—ଦେ. କ୍ରି—ମଲ୍ଲଯୁଦ୍ଧରେ ଜେତା ବିଜେତାକୁ ଭୂମିରେ ଉପରମୁହାଁ କରି ପକାଇ ତା ଛାତି ଉପରେ ମାଡ଼ି ବସିବା—To throw the adversary on his back in an athletic contest.
Chit kariba
চিত্ করা
चित करना

**ଚିତ୍‌କାତ୍ ହେବା**—ଦେ. କ୍ରି—ଅବଶ ହେବାରୁ ଗୋଡ଼ହାତ ଲମ୍ୱାଇ ଚିତ୍ ହୋଇ ଭୂମିରେ ଶୋଇ ପଡ଼ିବା—To lie flat on the ground stretching out one's hands and legs
Chit kāt hebā
চিত্ কাতহওয়া

**ଚିତ୍‌ପଟ୍**—ଦେ. ବି (ବିପରୀତାର୍ଥକ ସହଚର)—ମୁହଁପାଖ ଓ ପିଠିପାଖ; କୌଣସି ଦୋମୁହାଁ ପଦାର୍ଥର ଉପରମୁହଁ ଓ ତଳମୁହଁ (ଯଥା—ମୁଦ୍ରା, କଉଡ଼ି)—Head and tail; cross and pile, front and back (e. g. of a coin).
Chitpat
চিতউপুট, চিতপাত্
चितपट, चितआंधा

ଦେ. ବଣ—ଚିତ୍‌ପଟାଙ୍ଗ୍ (ଦେଖ)—
Chitpatāng (See)

**ଚିତ୍‌ପଟାଙ୍ଗ୍**—ଦେ. ବଣ—ଉପରକୁ ମୁହଁ କରି ପଡ଼ିଥିବା—
Chit patāng Fallen with the face upwards.
चितपटांग ଦେ. ବି—ଉପରକୁ ମୁହଁ କରି ପତନ—
चितपट A fall with the face upwards.
(ଚିତ୍‌ପଟାଙ୍ଗ୍—ଅନ୍ୟରୂପ)

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍ଗ | ଇଯ୍ୟ | ନ୍ଥ | ଞ୍ଚ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଝ | ନ୍ତ |

**ଚିତ୍ ପବନ**—ଦେ. ବି.—ମରହଟ୍ଟା ବ୍ରାହ୍ମଣମାନଙ୍କ ଶାଖାବିଶେଷ—
Chit pabana A sub class amongst the Marahattā
চিত্তপবন Brahmans.
**चितपवन** [ ଦ୍ର—ପୁନାର ଅଧିକାଂଶ ବ୍ରାହ୍ମଣ ଏହି ଶାଖାଭୁକ୍ତ ।]

**ଚିତ୍ ପାଟ୍**—ଦେ. ବି.—ଚିତ୍ ପଟ୍ (ଦେଖ)
Chitpāṭ Chitpaṭ (See)
ଦେ. ବିଣ.—ଚିତ୍ପଟାଙ୍ଗ୍ (ଦେଖ)
Chit paṭāng (See)

**ଚିତ୍ ପାତ୍**—ଦେ. ବି—ଚିତ୍ପଟ୍ (ଦେଖ)
Chit pāt Chitpaṭ (See)
ଦେ. ବିଣ.—ଚିତ୍ପଟାଙ୍ଗ୍ (ଦେଖ)
Chit paṭāng (See)
ପଡ଼ିଲା ଦୁର୍ଜନ ଦୂରେ କରୁଣ ଚିତ୍ପାତେ । ଚନ୍ଦ୍ରାମଣି. ବକ୍ରମାଦିତ୍ୟ ।

**ଚିତ**—ସଂ. ବିଣ—(ଚି ଧାତୁ=ସଂଗ୍ରହ କରିବା+କର୍ମ. କ୍ତ)—
Chita ୧ । ଗୋଟିଏଗୋଟି ହୋଇ ଗଦା କରି ଯାଇଥିବା—
1. Heaped up.
୨ । ସଂଗୃହୀତ—2. Gathered; collected; compiled.
୩ । ସଞ୍ଚିତ—3. Stored.
୪ । ରଚିତ—4. Composed.
୫ । ସମ୍ପାଦିତ—5 Performed; edited.
୬ । ଗୁମ୍ଫିତ—6. Strung together.
୭ । ଆଚ୍ଛାଦିତ—7. Covered up.
୮ । ବ୍ୟାପ୍ତ—8. Diffused; spread.
୯ । (ଫଳ ଫୁଲ ଆଦି ଗଛରୁ) ତୋଳା ଯାଇଥିବା—
9 Picked.
ସଂ. ବି.—(ଚି ଧାତୁ+ଭାବ. କ୍ତ)—୧ । ଚୟନ; ସଂଗ୍ରହକରଣ—1. Collection; gathering.
୨ । ସଂକଳନ—2. Compilation.
୩ । ଫଳଫୁଲ ଆଦି ତୋଳିବା କର୍ମ—3. Picking (fruits and flowers.)
୪ । ଗଦା କରିବା—4 Heaping up; amassing.
ଗ୍ରା. ବି. ( ସଂ. ଚିତ୍ତ)—ଚିତ୍ତ (ଦେଖ)
Chitta (See)
ସୁଚିତେ ଶୁଣ ନୃପଗଣ । ଭୂପତି. ପ୍ରେମପଞ୍ଚାମୃତ ।
ପ୍ରାଦେ. (ଗଞ୍ଜାମ) ଅ—ହେଉ; ଆପଣଙ୍କ ଇଚ୍ଛା; ଆପଣଙ୍କ ମରଜି—
As you wish; so be it; yes.
[ ଦ୍ର—ଗୁରୁଜନ ବା ହାକିମ କୌଣସି ଆଦେଶ ଦେଲେ ଓଡ଼ିଶାରେ ଯେପରି "ଅବଧାନ୍, ହଉ, ଆଜ୍ଞା" ଇତ୍ୟାଦି ସମ୍ମତି-ସୂଚକ ବାକ୍ୟ କୁହାଯାଏ ଗଞ୍ଜାମୀ ଓଡ଼ିଆମାନେ ସେହିପରି "ଚିତ୍, ଚିତ୍ତ" କହନ୍ତି । ]

**ଚିତଉ**—ଦେ. ବି. ( ସଂ. ଚକ୍ରକ; ଏଥିର ଦେହଯାକ ଫୋଡ଼ାଫୋଡ଼ା
Chitau ଦାଗ ହୋଇଥିବାରୁ )—ବାଷ୍ପସିଦ୍ଧ ପିଷ୍ଟକବିଶେଷ—
চিতই; আশুকা; আস্কে A sort of perforated steam-boiled pancake swollen on one side.
ଚିତଉ ଖାଇବା ଲୋକର ଦନ୍ତ ଗଣିବାରେ ଅଛି କେଉଁ ପ୍ରୟୋଜନ ।
ଚନ୍ଦ୍ରାମଣି. ବିକ୍ରମାଦିତ୍ୟ
[ଦ୍ର—ଚାଉଳକୁ ବାଟି ପିଠଉ କରି ସେହି ପିଠଉକୁ ନିଆଁ ଉପରେ ତେଲଚୁଲିରେ ଢାଳି ତା ଉପରେ ଗୋଟିଏ ସରା ଘୋଡ଼ାଇ ଦିଆଯାଏ ଏବଂ ସରାଉପରେ ପାଣିଛିଞ୍ଚାଯାଏ । ଏ ପିଠା ବାଷ୍ପଦ୍ୱାରା ସିଦ୍ଧ ହୁଏ । ଏହାର ଦେହଯାକ ଛିଦ୍ର ହୋଇଥାଏ ଓ ଉପର ପାଖ ଫୁଲିଥାଏ । ]

**ଚିତଉ ଅମାବାସ୍ୟା**—ଦେ. ବି. ( ସଂ. ଚକ୍ରକ ଓ ଅମାବାସ୍ୟ )—
Chitau-amābāsyā ଶ୍ରାବଣମାସର ଅମାବାସ୍ୟା—
The Amābāsyā or newmoon of the month of Śrābaṇa in which chitau cakes are offered to the Deities.
[ ଦ୍ର—ଏ ଦିନ ଶ୍ରୀ ଜଗନ୍ନାଥଙ୍କର ଚିତାଲାଗି ହୁଏ ଓ ଚିତଉ ପିଠା ଭୋଗ ହୁଏ; ଏ ଦେଶର ହିନ୍ଦୁ ଗୃହସ୍ଥମାନେ ମଧ୍ୟ ଚିତଉ ପିଠା କରି ଦେବଦେବୀଙ୍କୁ ଭୋଗ ଦେଇ ଏ ଉତ୍ସବ ପାଳନ କରନ୍ତି । ]

**ଚିତଉ ଖିଆ**—ଦେ ବି—ଗର୍ଭବତୀଙ୍କୁ ସପ୍ତମ ମାସରେ ଦିଆଯିବା ସାଧ;
Chitau khiā ଗର୍ଭବତୀର ସାଧଖିଆ ପାଇଁ ପିତ୍ରାଳୟରୁ ଓ ବନ୍ଧୁମାନଙ୍କ
সাধ, সাদ ଘରୁ ପଠାଯିବା ଚିତଉ ପିଠାର ସାମଗ୍ରୀ ଓ ମିଷ୍ଟାନ୍ନାଦି—
**साध** Sweetmeats and victuals sent on the occasion cf the 7th month of pregnancy of a relative.

**ଚିତଉ ଚିଙ୍ଗୁଡ଼ି**—ଦେ. ବି—ଏକପ୍ରକାର ଅତି କ୍ଷୁଦ୍ର ଚିଙ୍ଗୁଡ଼ି ମାଛ;
Chitau chingurḍi ଗିନେଇ ଚିଙ୍ଗୁଡ଼ି—A very minute
গুঁড়িচিঙ্গড়ী shrimp.
[ ଦ୍ର—କଟକ ଓ ବାଲେଶ୍ୱରର ସମୁଦ୍ରନିକଟସ୍ଥ ନଦୀ ଓ ବିଲରେ ଏମାନେ ମିଳନ୍ତି । ଲୋକେ ଏମାନଙ୍କୁ ପାଣିରୁ ଛାଣିଆଣି ଏକତ୍ରକରି ଅଥାରରେ ବସାଇ ପିଠା ପରି ସିଝାଇ ଖାଆନ୍ତି । ]

**ଚିତଉମୁହାଁ**—ଦେ. ବିଣ. ପୁଂ—(ପୁରୁଷଙ୍କୁ ଦିଆଯିବା ଗାଳି) ଯେଉଁ ବ୍ୟକ୍ତି
Chitau-muhāṅ ସବୁବେଳେ ମୁହଁ ଫୁଲାଇ ବିରସମୁହାଁ ହୋଇଥାଏ—
(ଚିତଉମୁହିଁ—ସ୍ତ୍ରୀ) (term of abuse applicable to males)
A person always assuming a scowling face.

**ଚିତକୁ ଆଣିବା**—ପ୍ରାଦେ (ଗଞ୍ଜାମ) କ୍ରି—ମନରେ ବିବେଚନା କରିବା—
Chitaku ānibā To take into consideration.

**ଚିତଚୋର**—ଦେ. କ୍ରି—ଚିତ୍ତଚୋର (ଦେଖ)
Chita chorā Chitta chorā (See).

ସାଧାରଣ ଲୋକେ ଅପଠ ପୁସ୍ତକରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଉ' ନ ମିଳିଲେ 'ଗାଈ' ଖୋଜିବେ, 'କୁଥ' ନ ମିଳିଲେ 'କୂଥ' ଦେଖିବେ; 'ବନ୍ଧୁ'କୁ ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍ଖୀ' ନ ପାଇଲେ 'ଅଙ୍ଖି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଚିତର**—ଗ୍ରା (ଇତର) ବି ଓ ବିଣ—ଚିତ୍ର (ଦେଖ)
Chitara — Chitra (See).

**ଚିତରା**—ଗ୍ରା (ଇତର) ବିଣ (ସଂ. ଚିତ୍ରିତ)—୧ । ଚିତ୍ରିତ—
Chitarā — 1. Painted
୨ । ନାନାବର୍ଣ୍ଣରଞ୍ଜିତ—2. Multi-coloured.

**ଚିତରା(ରେ)ଇବା**—ଗ୍ରା (ଇତର) କ୍ରି—ଚିତ୍ରଣ କରିବା—
Chitarā(e)ibā — To paint.

**ଚିତରା ମାତରା**—ପ୍ରାଦେ. (ସମ୍ବଲପୁର) ବି—ଅନନ୍ତମୂଳ (ଦେଖ)
Chitarā mātarā — Anantamūḷa (See)

**ଚିତଳ**—ଦେ. ବି. ( ସଂ. ଚିତ୍ରଫଳ )—ଫଳଜାତୀୟ ବୃହଦାକାର ମତ୍ସ୍ୟ-ବିଶେଷ—A large sweet-water-fish; Notopteris Chitala.
Chitaḷa
ଚିତଳ
**चितला** [ ଦ୍ର—ଏମାନଙ୍କ ମୁଣ୍ଡ କୁଞ୍ଚିମୁହିଁ ପରି ଗୋଳିଆ; ଦେହ ଚେପଟା; ଏମାନେ ଫଳଠାରୁ ବଡ଼; ଦୀର୍ଘରେ ୩ ହାତ ଓ ଓସାରରେ ୧½ ହାତ ପର୍ଯ୍ୟନ୍ତ ବଢନ୍ତି; ଦେହରେ କାତି ଅଛି । ଏମାନେ ଗଭୀର ଜଳାଶୟ ମଧ୍ୟରେ ବିବର କରି ତହିଁରେ ରହନ୍ତି ଓ ଡିମ୍ବ ଦିଅନ୍ତି । ଏମାନଙ୍କ ଡିମ୍ବ ଭାତ ପରି ବଡ଼ ବଡ଼ ଦାନାବିଶିଷ୍ଟ । ବଡ଼-ବଡ଼ ଚିତଳ ମାଛ ପଟେ ଲେଖାଏଁ କବାଟ ପରି ଲମ୍ବା ଓ ଓସାରିଆ ଥିବାର ଦେଖାଯାଇ ଅଛି ।

**ଚିତା**—ସଂ. ବି. (ଚି ଧାତୁ=ସଂଗ୍ରହ କରିବା+କର୍ମ ତ+ସ୍ତ୍ରୀ. ଆ)—
Chitā ୧ । ଚୁଲ୍ଲି (ମେଦିନୀ)—1. Oven.
୨ । ଶବଦାହ-ଚୁଲ୍ଲୀ; ଜୁଇ; ଚଇ—2. Funeral pyre.
୩ । ଶବଦାହାର୍ଥ ରଚିତ କାଷ୍ଠରାଶି—3. A pile of wood for cremation.
୪ । ମଶାଣି; ଶ୍ମଶାନ—4. Cremation-ground

ফোঁটা;ছিটা ଦେ. ବି. ( ସଂ. ଚିତ୍ର )—୧ । କପାଳ ଓ ଶରୀରର
छाप ଅନ୍ୟାନ୍ୟ ଅଙ୍ଗରେ ଅଙ୍କିତ ତିଳକ ବା ଚନ୍ଦନର ନାନାପ୍ରକାର ଚିହ୍ନ—1. Signs made with sandal and other pastes on the forehead and other parts of the bodys.

କାହା ଲଲାଟରେ ଦେବ ଚିତା । ଉପେନ୍ଦ୍ରଚରଣ. ମଥୁରାମଙ୍ଗଳ ।

୨ । ସ୍ତ୍ରୀଲୋକଙ୍କ କପାଳରେ ଦିଆଯିବା ଟିକିଲି ବା ଟୋପି—
2. Tips (circular points) put by females on the forehead.

ନାହିଁ ଭଦ୍ରରେଖା ସୁବର୍ଣ୍ଣ ଚିତା । ଗୋପୀକୃଷ୍ଣ. ଜଗମୋହନ ।

୩ । ବଟା ଚନ୍ଦନ—3. Sandal-paste.

ডঙ্ক ୪ । ସ୍ତ୍ରୀଲୋକମାନେ ଛୁଞ୍ଚି ଓ କାଳୀ ଦ୍ୱାରା ଦେହର ଭିନ୍ନ ଭିନ୍ନ
उङ्क ପ୍ରକାଶ୍ୟ ସ୍ଥାନରେ ଯେଉଁ ସ୍ଥାୟୀ ଚିତ୍ର ଲେଖନ୍ତି—
4. Various designs permanently engraved on the body of females with needle and black paint.

୫ । ମନୁଷ୍ୟର କପାଳ ବା ଭ୍ରୂମଧ୍ୟସ୍ଥଳ ( ଯେଉଁଠାରେ ଚନ୍ଦନ ଟୋପା ମରାଯାଏ )—5 The middle of the forehead; the space between the two eyebrows.
( ଯଥା—ତା ଠେଙ୍ଗାଟି ଚିତାଏ ଉଚ୍ଚ । )

୬ । ସୁପିଷ୍ଟ ଚନ୍ଦନାଦିର ଲେପ—
6. Finely pasted sandal or other ointment.
( ଯଥା—ଦୁଲଣୀଙ୍କୁ ଚିତା ପରି ବାଟିବୁ । )

୭ । ସ୍ତ୍ରୀଲୋକଙ୍କ କର୍ତ୍ତୃକ ଘରର କାନ୍ଥ ଓ କବାଟରେ ପିଠଉ ଓ ଚୂନ ଦ୍ୱାରା ଲେଖାଯିବା ଚିତ୍ର—
7. Drawings and paintings made on walls and doors with rice-paste or lime.

୮ । ଚିତାପାରୁ ( ଗଛ ) ( ଦେଖ )
8. Chitāpāru ( tree ) ( See )

୯ । ଏକଜାତୀୟ ଶ୍ରେଷ୍ଠ ବାଘ; ଚିତ୍ରବ୍ୟାଘ୍ର; ଚିତାବାଘ—
9. A spotted tiger; leopard.

୧୦ । ହ୍ରସ୍ୱ 'ଇ' କାର; 'ଇ' ମାତ୍ରା—
10. The sign of the vowel 'i' in Oṛiā (viz. ' ି ') put on the top of a consonant.
( ଯଥା—'କ' ରେ ଚିତା ଦେଲେ 'କି' । )
[ ଦ୍ର—ଦେଶୀୟ ଅବଧାନମାନେ ଚାଟଶାଳୀରେ ପିଲାଙ୍କୁ ପଢ଼ାଇବା ବେଳେ 'ଇ' କାରକୁ ଚିତା ବୋଲି କହନ୍ତି । ]

**ଚିତା ଅମାବାସ୍ୟା**—ଦେ. ବି—ଚିତଉ ଅମାବାସ୍ୟା ( ଦେଖ )
Chitā amābāsyā — Chitau amābāsyā ( See )

**ଚିତାଇବା**—ଦେ. କ୍ରି—୧ । ଚିତୋଇବା ( ଦେଖ )
Chitāibā — 1. Chitoibā ( See )
୨ । ଚିତେଇବା ( ଦେଖ )
2 Chiteibā ( See )

**ଚିତାଉ**—ଗ୍ରା. ବି—ଚିତଉ ( ଦେଖ )
Chitāu — Chitau ( See )

**ଚିତା କରିବା**—ଦେ.କ୍ରି—ସ୍ନାନ ପରେ କପାଳାଦିରେ ଚନ୍ଦନ ଓ ତିଳକାଦି ଲଗାଇବା—To put sandal-paste or other mark on the fore head and body after bathing
Chitā karibā
ଚିତା କାଟିବା
ଚିତାଦିଅଁବା
ଚିତାପକେଇବା } ଅନ୍ୟରୂପ
ଚିତାଦେବା
ଚିତାଲଗେଇବା

**ଚିତା କାଟିବା**—ଦେ କ୍ରି—୧ । କପାଳରେ ଲମ୍ବ ବା ଠିଆ ଦାଗରେ ତିଳକ ବା ଚନ୍ଦନର ଚିତ୍ର ଅଙ୍କନ କରିବା—
Chitā kāṭibā
ফোঁটাকাটা — 1. To draw lines on the forehead with sandal paste etc.
तिलककाढ़ना

| ୧ | ଇ | ଉ | ରୃ,ର | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ତ |

କଳିଯୁଗର ଦ୍ୱିଜ ନ ପଢିଣ ବେଦ
ଚିତା କାଟି ଗୃଲିବେ କହୁଣ ପ୍ରମାଦ—କୃଷ୍ଣସିଂହ. ମହାଭାରତ. ଶାନ୍ତି ।

୨ । ଠକିବା; ଧପ୍ପା ମାରିବା—
2. To cheat; to hoodwink.

( ଯଥା—ସେ ମୋତେ ଜିନିଷର ଦାମ୍ ନ ଦେଇ ଦବ ଦବ ବୋଲି କହି ଚିତା କାଟି ଗ୍ଲିଲି ଗଲା । )

**ଚିତା କୁଟା(ଟେ)ଇବା**—ଦେ. କ୍ରି—'ଚିତାକୁଟିବା'ର ଣିଜନ୍ତରୂପ—
Chitā kuṭā(e)ibā Causative form of 'Chitā kuṭibā'.

**ଚିତା କୁଟିବା**—ଦେ. କ୍ରି—କୌଣସି ବ୍ୟକ୍ତିର ଦେହରେ ଛୁଞ୍ଚି ଓ କଳା ଦ୍ୱାରା ନାନାବିଧ ସ୍ଥାୟୀ ଚିହ୍ନ ଅଙ୍କନ କରିବା—
Chitā kuṭibā
উল্কিবেঁধা To tattoo the body of a person.
**उल्किगोदना** [ ଦ୍ର—ଆମ ଦେଶରେ ସ୍ତ୍ରୀଲୋକେ ଓ ଅନ୍ୟ ଦେଶରେ କେତେକ ସ୍ତ୍ରୀ ଓ ପୁରୁଷ ଉଭୟେ ଶରୀରର ବିଭିନ୍ନ ଅଙ୍ଗରେ ନାନା ଚିହ୍ନ ( ବୃକ୍ଷ, ଲତା, ଦେବତା, ଅଳଙ୍କାର, ଜୀବ, ପକ୍ଷ ଇତ୍ୟାଦି ) ସ୍ଥାୟିଭାବରେ ଅଙ୍କିତ କରନ୍ତି । ସାଧାରଣତଃ କେଳୁଣୀମାନେ ଚିତା କୁଟନ୍ତି; ପ୍ରଥମେ ପାଣିଅଁ କଳା ବା କାଳୀରେ ଗୋଟିଏ ଚିହ୍ନ ଆଙ୍କି ଦେଇ ସେହି ଅଙ୍କିତ ରେଖାମାନଙ୍କରେ ଛୁଞ୍ଚିମୁନ ଫୁଟାଇ ଫୁଟାଇ ଘାଆ କରନ୍ତି । ଉକ୍ତ ଘାଆ ଶୁଖି ଗ୍ଲେପା ଛାଡ଼ିଗଲେ ସେ ଚିହ୍ନଟି ଆଜୀବନ ଶରୀରରେ ରହିଯାଏ । ଅସଭ୍ୟ ଜାତିମାନେ ଚିତା କୁଟାଇ ଶରୀରକୁ ଅତ୍ୟନ୍ତ କଦାକାର କରି ପକାନ୍ତି । ଏବେ ପାଶ୍ଚାତ୍ୟମାନଙ୍କର ଦେଖାଦେଖି ଏ ଦେଶରେ କେହି କେହି ସଉକରେ ନିଜନିଜର ପ୍ରେମିକପ୍ରେମିକାଙ୍କ ନାମକୁ ଦେହରେ ଚିତା ଆକାରରେ କୁଟାଇଥିବା ଦେଖାଯାଏ । ]

**ଚିତା ଗଛ**—ପ୍ରାଦେ. ( ଗଞ୍ଜାମ ) ବି—
Chitā gachha ଚିତାପାରୁ ( ଗଛ ) ( ଦେଖ )
Chitāpāru ( tree ) ( See )

**ଚିତାଗ୍ନି**—ସଂ. ବି. ( ଚିତା+ଅଗ୍ନି )—
Chitāgni ଶବଦାହାର୍ଥ ଅଗ୍ନି; ନିଆଁ—
Funeral fire.
( ଚିତାନଳ—ଅନ୍ୟରୂପ )

**ଚିତା ଚଇତନ**—ଦେ. ବି—ହିନ୍ଦୁର ଚିତା କରିବା ଆଦି ନିତ୍ୟକ୍ରିୟା—.
Chitā chaitana The daily devotional acts of a Hindu

**ଚିତା ଦେବା**—ଦେ. କ୍ରି—୧ । ଘରର କବାଟ, କାନ୍ଥ ଓ ତଳରେ ଚୂନ ଓ ଗୁଣ୍ଡଲ ପିଠଉ ଦ୍ୱାରା ଚିତ୍ର ଅଙ୍କନ କରିବା—
Chitā debā
1. To draw figures on the wall, door and floor with rice-paste or lime.

୨ । ଧପ୍ପା ମାରିବା; ଠକିବା—
2. To hoodwink; to cheat.

ଗୋଟାଏ ଲୁଗାକଣାରେ ସିକି କଥା ପିଟାଇ ପକାଇ
ଅଚ୍ଛା କରି ଚିତା ଦେବ—ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଚିତା ପାଟି**—ଦେ. ବି—ଚନ୍ଦନାଦିରେ କପାଳର ଦୁଇ ପାଖରେ କାଟିବା ପତ୍ରାକାର ଚିହ୍ନ—Leaf-like painting of sandal-paste on both sides of the forehead.
Chitā pāṭi

**ଚିତାପାରି**—ଦେ. ବି—ଚିତାପାରୁ ( ଦେଖ )
Chitāpāri Chitāpāru ( See )

**ଚିତାପାରୁ**—ଦେ. ବି. ( ସଂ. ଚିତ୍ରକ )—ଗୁଳ୍ମବିଶେଷ—A kind of bush; Plumbago Zeylanica.
Chitāpāru

ସଂ. ନାମ—ଚିତ୍ରକ, ପୀଠ, ଅନଳ, ବହ୍ନି, ବହ୍ନିକର, ଶିଖାବାନ୍, ପାବକ, ଶୁଷ୍ମା, ଦାରୁଣ, ଶଂବର, ଶିଖୀ, ହୁତଭୁକ୍, ବ୍ୟାଳ, ଉଷଣ, ପାଠୀ
चिता
**चिता**
ତେ. ଚିତ୍ରମୂଲମୁ
ଫା. ରେଶବରଂଦା,
**ଅଂଶିତରଜ**
ମ. ଚିତ୍ରକୁ
ଗୁ. ଚତୋ

[ ଦ୍ର—ଏହାର ପତ୍ର ଜାମୁପତ୍ର ପରି ଓ ପତ୍ରରେ କୋଣ ନାହିଁ; ଫଳ ପଞ୍ଚଦଳବିଶିଷ୍ଟ । ଏହାର ମୂଳ ବଟାଯାଇ, ଏହି ମୂଳକୁ ବାଟି ଦେହରେ ଲଗାଇ ଦେଲେ ଘାଆ ହୋଇଯାଏ । ଏହାର ଛାଲି ଓ ମୂଳ ଔଷଧରେ ଲାଗେ । ଏହା କଟୁବିପାକ, ଅଗ୍ନିକାରକ, ପାଚକ, ଲଘୁ, ରୁକ୍ଷ, ଉଷ୍ଣବୀର୍ଯ୍ୟ ଓ ମଳସଂଗ୍ରାହକ । ଏହା ଗ୍ରହଣୀ, କୁଷ୍ଠ, ଶୋଥ, ଅର୍ଶ, କ୍ରିମି, କାଶ, ବାତଶ୍ଲେଷ୍ମା ଓ ପିତ୍ତ ପ୍ରଶମକ, କ୍ଷୁଧାବର୍ଦ୍ଧକ, ଚର୍ମରୋଗନାଶକ ଓ ତ୍ରିଦୋଷନାଶକ । ଏ ଗଛ ଫୁଲର ଭେଦରେ ତିନିପ୍ରକାର—

୧ । ଧଳାଚିତା ବା ଶ୍ୱେତଚିତ୍ରକ—1. Zeylanica.

୨ । ନାଲିଚିତା ବା ରକ୍ତଚିତ୍ରକ—
2. Plumbago Rosea or the Lead-wort.

୩ । କଳାଚିତା ବା କୃଷ୍ଣଚିତ୍ରକ—3. Plumbago.

ଧଳାଚିତା ଓ ନାଲିଚିତାଗଛ ବେଶି ଦେଖାଯାଏ । ଏହାର ଫୁଲ ସୁଗନ୍ଧ ଓ ଦେଖିବାକୁ ଯୂଇ ଫୁଲ ଆକାରର । କେହି କେହି କହନ୍ତି ଯେ ନାଲିଚିତାମୂଳ ସେବନ କଲେ ଶରୀର ସ୍ଥୂଳ ହୁଏ ଓ କଳାଚିତାମୂଳ ସେବନ କଲେ ବାଳ କଳା ହୋଇ ଯାଏ—ହି. ଶବ୍ଦସାଗର । ]

**ଚିତା ପେଢ଼ି**—ଦେ. ବି. ( ସଂ. ରକ୍ତ+ପୀଠ )—
Chitā peṛhi ୧ । ଚନ୍ଦନପେଢ଼ି; ତିଳକପେଢ଼ି; ଯେଉଁ ପଥରଖଣ୍ଡ ଉପରେ ଚନ୍ଦନ ବା ତିଳକ ଘୋରି ଯାଏ—
চন্দনপীড়ি
1. A slab of stone on which sandal wood is reduced to paste by rubbing.

ଚିତାପେଢ଼ି ନନ୍ଦର ଭିତର ବଖାଳ—କୃଷ୍ଣସିଂହ. ମହାଭାରତ. ବନ ।

୨ । ପୂଜାପେଢ଼ି; ଯେଉଁ ବାକ୍ସ ବା ପେଢ଼ିରେ ଚିତା ଦେବାର ସରଞ୍ଜାମ ( ଚନ୍ଦନକାଠ, ଚନ୍ଦନପେଢ଼ି, ଦର୍ପଣ ଇତ୍ୟାଦି ) ରଖାଯାଏ—2. A box in which the requisites for painting Tilaka or sandal-paste are kept.

ସାଧାରଣ ଲୋକେ ଅପର ଦୃଷ୍ଟାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାଂ ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ, 'ବନ୍ଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚିତାବାଘ**—ଦେ. ବି. ( ସଂ ଚିତ୍ରବ୍ୟାଘ୍ର )—ଏକପ୍ରକାର ଶ୍ରେଷ୍ଠବାଘ—
Chitābāgha Leopard; spotted tiger; Cynaelurus Jaleatus.
চিতাবাঘ
**चीता** [ ଦ୍ର—ଏହାର ଦେହର ଲୋମ ହଳଦିଆ ଓ ଦେହସାରା ଛୁଟିଛୁଟି କଳା ଦାଗମାନ ଥାଏ । ଏ ଜାତିରେ ୧୪ ହାତ ଓ ଲାଞ୍ଜ ସହିତ ଲମ୍ବରେ ୩ ହାତ ପର୍ଯ୍ୟନ୍ତ ହୁଏ । ]

**ଚିତା ଭସ୍ମ**—ସଂ. ବି. ( ୬ଷ୍ଠୀ ତତ୍; ଚିତା+ଭସ୍ମ )—ମଶାଣିପାଉଁଶ; ଚିତାଗ୍ନିର ପାଉଁଶ—
Chitā bhasma The ashes of a funeral pyre

**ଚିତା ରନ୍ଧା**—ଦେ. ବି. (ସଂ. ଚିତ୍ର+ରଦନ)—କାଠକୁ ପାଲିସ୍ କରିବା ନିମନ୍ତେ ବ୍ୟବହୃତ ଅସ୍ତ୍ରବିଶେଷ; ଶ୍ରେଷ୍ଠରନ୍ଧା—
Chitā randā A carpenter's small plane which leaves minute furrows on the wood.
চিন্না
**छोटारन्दा**
[ ଦ୍ର—ଏ ରନ୍ଧାର ଫଳକରେ ପାନିଆ ଧରି ଅତି କ୍ଷୁଦ୍ର କ୍ଷୁଦ୍ର ଦାନ୍ତ ଥାଏ । ]

**ଚିତାରୋହଣ**—ଦେ. ବି. (୭ମୀ ତତ୍; ଚିତା+ଆରୋହଣ)—ମୃତସ୍ୱାମୀଙ୍କ ଶବ ସଙ୍ଗେ ପୋଡ଼ି ହୋଇ ପ୍ରାଣତ୍ୟାଗ କରିବା ସକାଶେ ସତୀମାନଙ୍କର ମୃତ ସ୍ୱାମୀର ଜଳନ୍ତା ଚିତାଗ୍ନି ଉପରେ ଚଢ଼ିବା; ସହମରଣ ପ୍ରଥା—The obesolete custom of women ascending the funeral pyre of their late husbands and thus being burnt to ashes with their husbands' corpse.
Chitārohaṇa

**ଚିତାଲାଗି ଅମାବାସ୍ୟା**—ଦେ. ବି.—ଚିତଉ ଅମାବାସ୍ୟା (ଦେଖ)
Chitālāgi amābāsyā Chitau amābāsyā (See)

**ଚିତାଲାଗି ହେବା**—ଦେ. କ୍ରି—ଦେହରେ ଚନ୍ଦନ ବୋଳି ହେବା—
Chitālāgi hebā To paint the body with marks of sandal-paste.

**ଚିତା ଶାଗ**—ଦେ. ବି.—ଔଷଧ ଗୁଳ୍ମବିଶେଷ—
Chitā śāga A species of medicinal herb.

**ଚିତାସାଧନ**—ସଂ. ବି. (୭ମୀ ତତ୍; ଚିତା+ସାଧନ )—ଚତୁର୍ଦ୍ଦଶୀ ବା ଅଷ୍ଟମୀ ରାତ୍ରି ଦେଢ଼ପ୍ରହର ଅତୀତ ହେବା ପରେ ଶ୍ମଶାନରେ ଚିତାଭସ୍ମ ଉପରେ ବସି ଇଷ୍ଟମନ୍ତ୍ର ଜପପୂର୍ବକ ତାନ୍ତ୍ରିକ ସାଧନାବିଶେଷ (ହି. ଶବ୍ଦସାଗର)—
Chitā sādhana A tantric rite consisting of counting one's particular formula in the cremation-ground at dead of night on certain days of the lunar fortnight.

**ଚିତି**—ସଂ. ବି. (ଚି ଧାତୁ+କର୍ମ. ତି)—୧ । ଚିତାଗ୍ନି—
Chiti 1. Funeral pyre.
୨ । ସମୂହ; ରାଶି—2. A heap; collection.
୩ । ରାଶୀକୃତ ଇଷ୍ଟକ, ତୃଣ, କାଷ୍ଠାଦିର ପରିମାଣଦ୍ୱାରା ଘନଫଳଗଣନ—3. Finding out the solid contents of a stock of brick, fuel, hay etc. of uniform dimensions.
୪ । ଇଷ୍ଟକାଦିର ପୁଞ୍ଜ—4. A heap of bricks etc.
୫ । (+ଭାବ. ତି) ଜଡ଼ବିଷୟ ଜ୍ଞାନ—
5. Knowledge about immaterial things.
୬ । ଚୟନ; ରାଶୀକରଣ (ହି. ଶବ୍ଦସାଗର)—
6. Heaping up; gathering.
୭ । ଅଗ୍ନିର ସଂସ୍କାର ବିଶେଷ (ହି. ଶବ୍ଦସାଗର)
7. Consecration of the sacrificial fire.
୮ । ଇଟା ଗାନ୍ଥିବା; କାନ୍ଥ ଆଦିରେ ଇଟା ବସାଇବା (ହି. ଶବ୍ଦସାଗର)—
8 Brick masonry.
୯ । ଚୈତନ୍ୟ (ହି. ଶବ୍ଦସାଗର)—9. Consciousness.
୧୦ । ଯଜ୍ଞବେଦୀ ପାଇଁ ଇଷ୍ଟକର ସଂସ୍କାରବିଶେଷ(ହି.ଶବ୍ଦସାଗର)-
10. Consecration of the bricks for building a sacrificial platform.
୧୧ । (+କର୍ତ୍ତୃ. ତି)—ଦୁର୍ଗା (ହି. ଶବ୍ଦସାଗର)—
11. Goddess Durgā.
ଦେ. ବି.—(ସଂ. ଚିହ୍ନ)—ଅଧିକ ସମୟ ଓଦା ରହିବାରୁ ଲୁଗାରେ ପଡ଼ୁଥିବା କଳା ଓ ଧଳା ଦାଗମାନ—1. Black and white spots appearing on a cloth on its being kept wet for a long time; mildew; mould.
চিতা
**चित्ती**
( ଯଥା—ଧଳାଚିତି; କଳାଚିତି । )
୨ । ଚିତିସାପ (ଦେଖ)
2. Chiti sāpa (See)
ଦେ. ବିଣ.—ଚିତ୍ (ଦେଖ)
Chit (See)
କେତେବେଳେ ପୁଣି ପଡନ୍ତି ହୋଇ ଚିତ ।
କୃଷ୍ଣସିଂ ହ. ମହାଭାରତ. ସଭା ।

**ଚିତିକା**—ସଂ. ବି.—୧ । ଅଣ୍ଟାସୂତା; କଟିସୂତ୍ର; ମେଖଳା (ହି.ଶବ୍ଦସାଗର)
Chitikā 1. Belt; waist-chain.
୨ । ଚିତି (ଦେଖ)
2. Chiti (See)

**ଚିତିପଟା**—ଦେ. ବିଣ.—ଚିତ୍ପଟାଙ୍ଗ୍ (ଦେଖ)
Chitipaṭā Chitpaṭāṅg (See)

**ଚିତିପଟାଙ୍ଗ୍**—ଦେ. ବିଣ.—ଚିତ୍ପଟାଙ୍ଗ୍ (ଦେଖ)
Chitipaṭāṅg Chitpaṭāṅg (See)
ଏଣିକି ଓଡ଼ିଶାଯାକ ଚିତିପଟାଙ୍ଗ୍ ହୋଇ ନାନାପଟା ଗେଲେବ—ହୃଦୟରହାଳଗୁଳ ।

**ଚିତିପାଟ୍**—ଦେ. ବିଣ—ଚିତ୍ପଟାଙ୍ଗ୍ (ଦେଖ)
Chitipāṭ Chitpaṭāṅg (See)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇୟ | ଉଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଏ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ |

**ଚିତିପାଟି**—ଦେ. ବି—ଉତ୍ତର ସୁନ୍ଦର ଦିଶିବା ପାଇଁ ଉତ୍ତରତଳେ ଲଗାଯିବା
Chitipāṭi କାରୁକାର୍ଯ୍ୟବିଶିଷ୍ଟ କାଠପଟା—A plank worked with various designs and put on the lower face of a cross-beam in a thatched house

**ଚିତି ବ୍ୟବହାର**—ସଂ. ବି. ( ମ. ପ. ଲୋ; ଚିତିଜ୍ଞାପକ ବ୍ୟବହାର )—
Chiti byabahāra ୧ । କାନ୍ଥରେ କେତେ ଇଟା ବା ପଥର ଲାଗିବ ଏହା ସ୍ଥିର କରିବା ପାଇଁ ଗଣନା ବିଶେଷ ( ହି. ଶବ୍ଦସାଗର )—
1. The mathematical calculation for finding out the number of bucks or stones for a wall or house.

[ ଦ୍ର—ଲୀଳାବତୀର ସୂତ୍ର ଅନୁସାରେ କାନ୍ଥର ଘନଫଳକୁ ପ୍ରତ୍ୟେକ ଇଟା ବା ପଥରର ଘନଫଳ ସଙ୍ଗେ ହରଣ କଲେ ଇଟା ବା ପଥରର ସଂଖ୍ୟା ଧରା ପଡ଼େ । ]

୨ । ଇଷ୍ଟକରାଶି ବା ତୃଣସ୍ତୂପର ଘନଫଳ ବାହାର କରିବାର ନିୟମ (ଜ୍ଞାନେନ୍ଦ୍ର)—2. The rule for finding out the cubical contents of a heap of bricks of hay mass.

୩ । ଗୋଟିଏ ସ୍ତୂପର ଘନଫଳ ନିରୂପଣ—3. Calculation of the cubic measure of a pile (M. W.).

**ଚିତିମାତ୍**—ଦେ. ବିଣ—ଚିତ୍‌ପଟାଙ୍ଗ୍ (ଦେଖ)
Chitimāt Chitpaṭāṅg (See)

**ଚିତି ମାରିବା**—ଦେ. କ୍ରି—୧ । ଦରମରା ବା ବିକଳ ଯାଇଥିବା ମାଛମାନେ ପେଟପାଖ ଉପରକୁ ଦେଖାଇ ଜଳରେ ଭାସିବା; (ମାଛ) ଚିତେଇବା—
Chiti māribā
1. ( fishes exhausted or dying) To float or swim on water with bellies turned upside or by displaying the flat sides.

मईसाधरा;चितापडा ୨ । ଗାମୁଛା ବା ଲୁଗା ଅଧିକରୁ ସମୟ ଓଦା
चित्तीपड़ना ରହିବାରୁ ତହିଁରେ ଧଳାକଳା ଛିଟ ଛିଟ ଦାଗ ହୋଇଯିବା—2. (cloth) To be soiled with black or white spots (due to being kept wet for a long time).

। ମଲ୍ଲମାନେ ଶୂନ୍ୟକୁ ଲମ୍ଫ ଦେଇ ଚିତ ମାରି ଚିତ୍ ହେବା; ମାକଡ଼ଚିତ ମାରିବା—3. ( athlets ) To come down with the back to the ground after making a dexterous jump into the air

**ଚିତିର**—ଗ୍ରା. (ଇତର) ବି. (ସଂ. ଚିତ୍ର)—ଛବି—Picture.
Chitira ଗ୍ରା. ବିଣ—ଚିତ୍ରିତ; ଚିତ୍ରକରା—Painted.

**ଚିତିରା**—ଗ୍ରା. ( ଇତର ) ବିଣ. ( ସଂ. ଚିତ୍ରିତ )—୧ । ଚିତ୍ରିତ—
Chitirā 1. Painted.
୨ । ନାନା ବର୍ଣ୍ଣରେ ଚିତ୍ରିତ—
2. Multicoloured; mottled.
ଦେ. ବି—ଚିତ୍ରାନନ୍ଦର ଡାକନାମ—
Name for calling Chitrānanda.

**ଚିତିରାଇବା**—ଗ୍ରା. (ଇତର) କ୍ରି. ( ସଂ. ଚିତ୍ରରୁ ଓଡ଼ିଆ ନାମ ଧାତୁ )—
Chitirāibā ଚିତ୍ରିତ କରିବା—To paint.
चितरान
चितराना

**ଚିତି ସାପ**—ଦେ. ବି. ( ସଂ. ଚିତ୍ରସର୍ପ; ଚିତ୍ରାଙ୍ଗ )—ବୋଡ଼ାଜାତୀୟ
Chiti sāpa ଏକପ୍ରକାର ସାପ—A kind of hoodless snake
चिती with circular marks on the body.
चिक्ती; चितल [ଦ୍ର—ଏମାନେ ହାତେ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ଏମାନଙ୍କ ଦେହ ଖଇରିରଙ୍ଗ; ଦେହରେ ଧଳା ଦାଗମାନ ଥାଏ । ଏମାନେ ଘରର ଚାଳରେ ଓ କାନ୍ଥ ଉପରେ ଥାଆନ୍ତି; ଏମାନଙ୍କର ଫଣା ନାହିଁ । ]

**ଚିତୁ**—ପ୍ରାଦେ. (ଗଞ୍ଜାମ) ବୈଦେ. (ତେ) ବି—କଉଡ଼ିଖେଳରେ କଟେ
Chitu କଉଡ଼ିର ପେଟ ଉପରକୁ ହୋଇ ପଡ଼ିବା ଅବସ୍ଥା—
The state of a cowrie ( shell ) falling with its ventral side upwards in a game with cowries.
ପ୍ରାଦେ. (ଗଞ୍ଜାମ) ବିଣ—ରଦ୍ଦି ( କାଗଜ ଆଦି )—
Waste ( paper etc ).
( ଯଥା—ଚିତୁ କାଗଜ । )

**ଚିତୁଆଇବା**—ଦେ. କ୍ରି. (ସଂ. ଚିତ୍)—ଚିତୋଇବା (ଦେଖ)
Chituāibā Chitoibā (See)
(ଚିତୁଆଇବା—ଅନ୍ୟରୂପ)

**ଚିତୁଆଣ**—ଦେ. ବି. (ସଂ. ଚିନ୍ତନ)—ଚିନ୍ତନ; ସ୍ମରଣ—
Chituāṇa Remenbrance; recollection

ବନ୍ଧୁ ବାନ୍ଧବଙ୍କର ପୀରତି ରୀତି
ଚିତୁଆଣକୁ ଏ ବିରସା ଦୂତୀ । ଭଞ୍ଜ, ଲାବଣ୍ୟବତୀ ।

**ଚିତୁକୁଟ**—ଗ୍ରା. ବି. ( ସଂ. ଚିତ୍ରକୂଟ )—ଚିତ୍ରକୂଟ ( ଦେଖ )
Chitukūṭa Chitrakūṭa ( See )
(ଚିତୁକୋଟ—ଅନ୍ୟରୂପ)

**ଚିତୁଲୁ**—ପ୍ରାଦେ. ( ଗଞ୍ଜାମ ) ବି—କଉଡ଼ିଖେଳରେ ସବୁ କଉଡ଼ିଙ୍କ
Chitulu ପେଟ ଉପରକୁ ହୋଇ ପଡ଼ିବା—
The state of all the cowries being thrown on the ground with the ventral side upwards in a game with cowries.

**ଚିତେଇବା**—ଦେ. କ୍ରି—୧ । ଚିତୋଇବା ( ଦେଖ )
Chiteibā 1. Chitoibā ( See )

| |
|---|
| ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେହେଁ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ, 'ଅଙ୍ଗିଆ' ନ ପାଇଲେ 'ଅଙ୍ଗୀଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ |

୨ । ଚିତ୍ ହୋଇ ପଡ଼ିବା ବା ଶୋଇବା—
2 To lie with the face upwards.

**ଚିତୋଇବା**—ଦେ. କ୍ରି. ( ସଂ. ଚିତ୍ତ; ସଂ. ଚିତ୍ ଧାତୁ=ଚେଇଁବା)—
Chitoibā — ୧ । ଅନ୍ୟ ବ୍ୟକ୍ତିକୁ କୌଣସି ବିଷୟ ସ୍ମରଣ କରାଇବା; ମନେ କରାଇବା—
চিতান, চেতান
**चिताना, चेताना** — 1. To remind a person of some matter.
(ଚିତ୍ତୋଇବା—ଅନ୍ୟରୂପ)

୨ । ମନେ ପକାଇବା; ସ୍ମରଣ କରିବା; ହେଜିବା—
2. To remember; to recollect.

ଏହା ଦେଖିଣ ଦଶରଥଙ୍କ କୁମର
ଦୁଃଖ ଚିତୋଇଣ ହସିଲେ ମୁନିବର । କୃଷ୍ଣସିଂହ. ମହାଭାରତ. ବନ ।

୩ । ( ଚେଇଁବାର ଣିଜନ୍ତ ରୂପ) ସଚେତ କରିବା; ଜାଗ୍ରତ କରିବା; ନିଦରୁ ଉଠାଇବା; ଚେତାଇବା—
3 To cause to rise from sleep; to rouse from sleep; to awaken.

ବିବେକୀ ଶୁଆଇ ସଦା ନିଦ୍ରା ଚିତୋଇ । ଉକ୍ତ. ବୈଦେହୀଶବିଳାସ ।

୪ । କୌଣସି ବ୍ୟକ୍ତିକୁ ସାବଧାନ ବା ସତର୍କ କରିବା—
4. To caution or warn a person.

**ଚିତୋଉ** (ଇତ୍ୟାଦି)—ଗ୍ରା ବି—ଚିତଉ ଇତ୍ୟାଦି ( ଦେଖ )
Chitou (etc) — Chitau etc. ( See )

**ଚିତୋର**—ଦେ. ବି. (ନାମ) ( ସଂ. ଚିତ୍ରକୂଟ; ପ୍ରା. ଚିତ୍ତଉଡ଼, ହି. ଶବ୍ଦସାଗର )—ରାଜପୁତାନାର ଇତିହାସପ୍ରସିଦ୍ଧ ନଗର-ବିଶେଷ—Name of a historically famous town in Rajputana; Chitor.
Chitora
চিতোর
**चित्तौर**

[ଦ୍ର—ଏହା ମେବାରର ଉଦୟପୁର ମହାରାଣାଙ୍କ ପ୍ରାଚୀନ ରାଜଧାନୀ ଥିଲା । ମୁସଲମାନ୍ ରାଜା ଅଲ୍ଲାଉଦ୍ଦିନ୍ ଚିତୋରର ମହିଷୀ ପଦ୍ମାବତୀଙ୍କ ରୂପର ଖ୍ୟାତି ଶୁଣି ମୁଗ୍ଧ ହୋଇ ତାଙ୍କୁ ପାଇବା ଆଶାରେ ଚିତୋର ଦୁର୍ଗକୁ ଆକ୍ରମଣ କଲେ । ଯବନ ହାତରେ ପଡ଼ିବା ପୂର୍ବରୁ ରାଣୀ ବହୁଶତ କ୍ଷତ୍ରିୟ ରମଣୀଙ୍କସହ ଅଗ୍ନିରେ ଝାସ ଦେଲେ । ଏହା ଖ୍ରୀ: ଷୋଡ଼ଶ ଶତାବ୍ଦି ପର୍ଯ୍ୟନ୍ତ ମେବାରର ରାଣାମାନଙ୍କ ରାଜଧାନୀ ଥିଲା । ଆକବର ଏ ଦୁର୍ଗକୁ ଅଧିକାର କରିବାରୁ ମହାରାଣା ଉଦୟ-ପୁର ନାମକ ନୂଆ ରାଜଧାନୀ ବସାଇଲେ । ଚିତୋର ଦୁର୍ଗ ଗୋଟିଏ ଉଚ୍ଚ ପାହାଡ଼ ଉପରେ ଅବସ୍ଥିତ । ଏ ଗଡ଼ ମଧ୍ୟରେ ଅନେକ ଦେବମନ୍ଦିର, କୀର୍ତ୍ତିସ୍ତମ୍ଭ, ପ୍ରାସାଦ, ବିହାରଭବନର ଭଗ୍ନାବଶେଷ ଅଛି । ]

**ଚିତ୍କାର**—ସଂ. ବି. ( ଚିତ୍=ଧ୍ୱନି ବିଶେଷ+କୃ ଧାତୁ+ଭାବ. ଅ )—
Chitkāra — ୧ । ଉଚ୍ଚ ସ୍ୱର; ବଡ଼ ପାଟି—
(ଚୀତ୍କାର—ଅନ୍ୟରୂପ) — 1. Shout; loud sound.

୨ । ହଠାତ୍ କରାଯିବା ଉଚ୍ଚ ସ୍ୱର; ହୁଲ୍ଲା –
2. Scream; hue and cry.

**ଚିତ୍ତ**—ସଂ. ବି. କ୍ଲୀ. ( ଚିତ୍ ଧାତୁ=ବୋଧ କରିବା+କରଣ. ତ; ଯାହା ଦ୍ୱାରା ଜ୍ଞାନଲାଭ ହୁଏ )—
Chitta

୧ । ମନଃ—1. Mind; mental faculty.
୨ । ହୃଦୟ; ଅନ୍ତଃକରଣ—2 Heart.
୩ । ସ୍ମରଣଶକ୍ତି—3. Memory
୪ । ଇଚ୍ଛା; ମରଜି—4. Wish; liking; will.

[ ଦ୍ର—ବେଦାନ୍ତସାର ଅନୁସାରେ ଅନ୍ତଃକରଣର ୪ଟି ବୃତ୍ତି—ମନ, ବୁଦ୍ଧି, ଚିତ୍ତ ଓ ଅହଙ୍କାର । ସଂକଳ୍ପବିକଳ୍ପାତ୍ମକ ବୃତ୍ତିର ନାମ ମନଃ, ନିଶ୍ଚୟାତ୍ମକ ବୃତ୍ତିର ନାମ ବୁଦ୍ଧି, ଉପରୋକ୍ତ ଦୁଇ ବୃତ୍ତିର ଅନ୍ତର୍ଗତ ଅନୁସନ୍ଧାନାତ୍ମକ ବୃତ୍ତିକୁ ଚିତ୍ତ ଓ ଅଭିମାନାତ୍ମକ ବୃତ୍ତିକୁ ଅହଙ୍କାର ବୋଲାଯାଏ । ପଞ୍ଚଦଶୀରେ ଇନ୍ଦ୍ରିୟମାନଙ୍କ ନିୟନ୍ତା ମନଃକୁ ଅନ୍ତଃକରଣ ବୋଲା ଯାଇଅଛି । ବୌଦ୍ଧମାନେ ଚିତ୍ତକୁହିଁ ଆତ୍ମା ବୋଲି ମାନିଅଛନ୍ତି । ବୌଦ୍ଧମତାନୁସାରେ ଚିତ୍ତର ଭେଦ :—କାମାବଚର, ରୂପାବଚର, ଅରୂପାବଚର ଓ ଲୋକୋତ୍ତର । ଚାର୍ବାକଙ୍କ ମତରେ ମନହିଁ ଆତ୍ମା ଅଟେ । ପତଞ୍ଜଳି ଚିତ୍ତକୁ ସ୍ୱପ୍ରକାଶ ବୋଲି ସ୍ୱୀକାର ନ କରି ଏହାକୁ ଦୃଶ୍ୟ ଓ ଜଡ଼ପଦାର୍ଥ ବୋଲି କହି ଆତ୍ମାକୁ ଚିତ୍ତର ପ୍ରକାଶକ ବୋଲି କହିଅଛନ୍ତି । ଯୋଗସୂତ୍ର ଅନୁସାରେ ଚିତ୍ତବୃତ୍ତି ୫ ପ୍ରକାର :—ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା ଓ ସ୍ମୃତି । ହିନ୍ଦୁଦର୍ଶନ ଅନୁସାରେ ମନଃ ବା ଚିତ୍ତର ସ୍ଥାନ ହୃଦୟ ବା ହୃତ୍‌ପଦ୍ମ ଅଟେ, କିନ୍ତୁ ଆଧୁନିକ ପାଶ୍ଚାତ୍ୟ ବିଜ୍ଞାନ ଅନୁସାରେ ଅନ୍ତଃକରଣର ସମସ୍ତ ବ୍ୟାପାରର ସ୍ଥାନ ମୁଣ୍ଡର ଖପୁରି ତଳେ ଥିବା ମସ୍ତିଷ୍କ ଅଟେ । ଏହାହିଁ ସବୁ ଜ୍ଞାନତନ୍ତୁମାନଙ୍କର କେନ୍ଦ୍ର । ମୁଣ୍ଡର ଖପୁରି ତଳେ ଥିବା ସୂକ୍ଷ୍ମ ତଳତଳିଆ କ୍ଷୁଦ୍ର କ୍ଷୁଦ୍ର ତନ୍ତୁ ବା କୋଷ-ସମୂହହିଁ ଅନ୍ତଃକରଣ । ଭୂତବାଦୀ ବୈଜ୍ଞାନିକମାନଙ୍କ ମତରେ ଚିତ୍ତ, ମନ ଓ ଆତ୍ମା ପୃଥକ୍ ନୁହନ୍ତି । ଏହା କେବଳ ମସ୍ତିଷ୍କଚାଳନାର ବ୍ୟାପାରବିଶେଷ । ଏହା କ୍ଷୁଦ୍ର ଓ ନୀଚ ଜୀବମାନଙ୍କଠାରେ ଅଳ୍ପ ପରିମାଣରେ ଥାଏ ଓ ଉଚ୍ଚତର ଜୀବମାନଙ୍କଠାରେ ବେଶି ଥାଏ । ଏହି ବ୍ୟାପାର ସଙ୍ଗେ ପ୍ରାଣରସ (ପ୍ରୋଟୋପ୍ଲାଜ୍ମ) ର କେତେକ ବିକାର ସଙ୍ଗେ କିଛି ସମ୍ପର୍କ ଅଛି । ଏହି ପ୍ରାଣରସରୁ ଇନ୍ଦ୍ରିୟ ଓ ମସ୍ତିଷ୍କର ସୃଷ୍ଟି—ହି. ଶବ୍ଦସାଗର । ]

ଦେ. ବି—ଧୈର୍ଯ୍ୟ—Patience.

କଣ୍ଠ କୁଣ୍ଠିତ ଶୋକେ ପୂରି, ପ୍ରାଣକୁ ନ ପାରନ୍ତି ଧରି—ଜଗନ୍ନାଥ. ଭାଗବତ ।

ଦେ. ଅ—ଚିତ୍ତ ( ଦେଖ )
Chita ( See )

ପ୍ରାଦେ ( ଗଞ୍ଜାମ )—ଅ– ଚିତ (ଦେଖ)
Chita (See).

**ଚିତ୍ତକୁ ଆଣିବା**—ଦେ. କ୍ରି—୧ । ମନରେ ଧରିବା; କୌଣସି କଥା ପାଇଁ ଦୁଃଖିତ ହେବା—1. To grieve for.
Chittaku ānibā
মনেধরা

ଜଳଭିଷିତକୁ ସରସଚିତ୍ତକୁ ଆଣିରୁ ନାହିଁ ନବୀନା—କବିସୂର୍ଯ୍ୟ. ସଙ୍ଗୀତ ।

**दिलको लेना** — ୨ । ବିଚାର କରିବା; ବିବେଚନା କରିବା—
2. To take into consideration.

| ୧ | ଇ | ଉ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇୟ | ଙ୍‌ | ଙ୍କ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ଞ୍ଜ | ନ୍ |

**ଚିତ୍ତକୁ ପାଇବା**—ଦେ. କ୍ରି—୧ । ( କୌଣସି ବିଷୟ ) ସମ୍ଭବପର ବା ଅବଶ୍ୟଂଭାବୀ ବୋଧହେବା—
Chittaku pāibā
मनउठा
**दिलकुआना; दिलकुपाना**
1. To seem to be likely.

ସେ କଥା ହେବା ପର ପାଉନାହିଁ ଚିତ୍ତ ।
କୃଷ୍ଣସିଂହ. ମହାଭାରତ ବନ ।

୨ । ଘଟିବ ବୋଲି ମନରେ ବିଶ୍ୱାସ ଜନ୍ମିବା; ଜଣାଯିବା—
2. To appear.

ମହତ କାର୍ଯ୍ୟ ମୋର ହେଲେ ଉପଗତ
କୃଷ୍ଣ ଭୁଲେ ଭଣ୍ଟେ କରିବ ପାଏ ଚିତ୍ତ—କୃଷ୍ଣସିଂହ, ମହାଭାରତ. ଦ୍ରୋଣ ।

୩ । ଚିତ୍ତରେ ଗୋଟିଏ ସ୍ଥାୟୀଭାବ ଜନ୍ମାଇବା —
3. To make a deep impression on one's mind.
( ଯଥା—ପଣ୍ଡିତଙ୍କ ଉପଦେଶ ମୋ ଚିତ୍ତକୁ ଭାରି ପାଇଛି । )

୪ । ମନୋମତ ହେବା—
4. To meet with one's approval.
[ ଦ୍ର—ଏ ଲୁଗା ଖଣ୍ଡିକ ପିଲାର ଚିତ୍ତକୁ ପାଉ ନାହିଁ । ]

**ଚିତ୍ତ ଗର୍ଭ**—ସଂ. ବିଣ—ମନୋହର; ସୁନ୍ଦର ( ହି. ଶବ୍ଦସାଗର)—
Chitta garbha Lovely; beautiful, graceful.
(ଚିତ୍ତଗର୍ଭା—ସ୍ତ୍ରୀ)

**ଚିତ୍ତ ଗର୍ଭା**—ସଂ. ବିଣ. ସ୍ତ୍ରୀ—୧ । ଚିତ୍ତଗର୍ଭର ସ୍ତ୍ରୀଲିଙ୍ଗ—
Chitta garbhā 1. Feminine of Chittagarbha.
୨ । (ବୈଦିକ) ଗର୍ଭଧାରଣ କରିଥିବାର ଦେଖାଯାଉଥିବା(ସ୍ତ୍ରୀ)—
2. (vedic) Visibly pregnant (women).

**ଚିତ୍ତଚାଞ୍ଚଲ୍ୟ**—ସଂ. ବି (୬ଷ୍ଠୀ ତତ୍; ଚିତ୍ତ+ଚାଞ୍ଚଲ୍ୟ )—
Chitta chāñchalya ୧ । ମାନସିକ ଉଦ୍‌ବେଗ —
1. Anxiety; mental disturbance.
୨ । ମତିଭ୍ରମ; ଉନ୍ମାଦ; ପାଗଳାମି—2. Derangement of mind; loss of mental faculty; madness.
୩ । ମନୋଭାବର ଅସ୍ଥିରତା; ଅବ୍ୟବସ୍ଥିତଚିତ୍ତତା—
3. Fickleness of mind.
୪ । କିଂକର୍ତ୍ତବ୍ୟବିମୂଢ଼ତା—4. Bewilderment.
୫ । ସ୍ମୃତିଶକ୍ତିର ଲୋପ—5. Loss of memory.
୬ । ଏକ ବିଷୟର ଆଲୋଚନା ସମୟରେ ବିଷୟାନ୍ତର ପ୍ରତି ମନର ଗତି—6. Absence of mind; inattention.

**ଚିତ୍ତଚାଳନ**—ସଂ. ବି (୬ଷ୍ଠୀ ତତ୍; ଚିତ୍ତ+ଚାଳନ)—ମାନସିକ ବୃତ୍ତିର
Chitta chālana ପରିଚାଳନା—Exercise of the mental faculties.

**ଚିତ୍ତଚୋର**—ଦେ. ବି (ସଂ. ଚିତ୍ତ+ଚୌର)—ଚିତ୍ତଚୌର (ଦେଖ)
Chittachora Chittachaura (See)
**चितचोर**
(ଚିତ୍ତଚୋରି—ଅନ୍ୟରୂପ)

**ଚିତ୍ତଚୌର**—ସଂ. ବି (୬ଷ୍ଠୀ ତତ୍; ଚିତ୍ତ+ଚୌର)—ପ୍ରଣୟୀ—
Chittachaura A lover (literally—a stealer of one's heart) (M. W.)

**ଚିତ୍ତଜ**—ସଂ. ବି (ଚିତ୍ତ+ଜନ୍ ଧାତୁ+କର୍ତ୍ତୃ. ଅ)—ଚିତ୍ତଜନ୍ମା (ଦେଖ)
Chittaja Chittajanmā ( See )

ନ ଦେଇ ଚିତ୍ତ ଯେ ଦେଇ ଚିତ୍ତଜେ କାହିଁକି—ଭଞ୍ଜ. ପ୍ରେମସୁଧାନିଧି ।

**ଚିତ୍ତଜନ୍ମା**—ସଂ. ବି (ବହୁବ୍ରୀହି; ଚିତ୍ତ+ଜନ୍ମନ୍; ୧ମା. ୧ବ)—ମନସିଜ;
Chittajanmā କନ୍ଦର୍ପ; କାମ—Cupid; the God of love.

**ଚିତ୍ତଜାତ**—ସଂ. ବି. ( ବହୁବ୍ରୀହି; ଚିତ୍ତ+ଜାତ)—ଚିତ୍ତଜନ୍ମା; କନ୍ଦର୍ପ—
Chittajāta Cupid.

ଏଥୁ ଅନନ୍ତରେ ସଖା ଚିତ୍ତଜାତେ ଖିନ୍ନ ।
ଗୋପୀନାଥ, ରସବାରିଧି ।

**ଚିତ୍ତଜ୍ଞ**—ସଂ. ବିଣ. (ଚିତ୍ତ+ଜ୍ଞା ଧାତୁ+କର୍ତ୍ତୃ. ଅ)—ଯେ ଅନ୍ୟର
Chittajña ମନୋଗତ ଭାବକୁ ବୁଝି ପାରେ; ଭାବଜ୍ଞ; ଅଭିପ୍ରାୟବିଦ୍—One who understands another's mind or sentiment.

**ଚିତ୍ତଦୋଷ**—ସଂ. ବି. ( ୬ଷ୍ଠୀ ତତ୍; ଚିତ୍ତ+ଦୋଷ )—ମନରେ
Chittadosha ବିଷୟାତ୍ମକ ଜ୍ଞାନରାହିତ୍ୟରୂପ ଦୋଷ—The mental defect of want of mental knowledge.

**ଚିତ୍ତଦ୍ରାବକ**—ସଂ. ବିଣ. ( ଚିତ୍ତ+ଦ୍ରୁ ଧାତୁ+କର୍ତ୍ତୃ. ଅକ )—ଯେ
Chittadrābaka ମନକୁ ତରଳାଇ ଦିଏ—
That which melts the heart with pity.

**ଚିତ୍ତପ୍ରମାଥୀ**—ସଂ. ବିଣ. ପୁଂ. ( ଚିତ୍ତ+ପ୍ର+ମଥ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ. )—
Chittapramāthī
( ଚିତ୍ତପ୍ରମାଥିନୀ—ସ୍ତ୍ରୀ ) ୧ । ଯେ ମନକୁ ଗୋଳାଇ ଦିଏ—
1. Confusing ones mind.
୨ । ଅନ୍ୟର ମନରେ ପ୍ରଣୟ ବା ଅନୁରାଗ ଉଦ୍ରେକକାରୀ—
2. Exciting any one's passion or lore.

**ଚିତ୍ତପ୍ରସନ୍ନତା**—ସଂ. ବି. ( ୬ଷ୍ଠୀ ତତ୍; ଚିତ୍ତ+ପ୍ରସନ୍ନତା )—
Chittaprasannatā ୧ । ମାନସିକ ପ୍ରଫୁଲ୍ଲତା; ମନର ତୃପ୍ତି—
(ଚିତ୍ତପ୍ରସାଦ—ଅନ୍ୟରୂପ) 1. Satisfaction; contentment.
୨ । ମନର ଶାନ୍ତି—
2. Tranquility of mind.

**ଚିତ୍ତପ୍ରସାଦ**—ସଂ. ବି. ( ୬ଷ୍ଠୀ ତତ୍; ଚିତ୍ତ+ପ୍ରସାଦ )—
Chittaprasāda ଚିତ୍ତପ୍ରସନ୍ନତା ( ଦେଖ )
Chittaprasannatā ( See )

**ଚିତ୍ତପ୍ରସାଦନ**—ସଂ. ବି. ( ୬ଷ୍ଠୀ ତତ୍; ଚିତ୍ତ+ପ୍ରସାଦନ )—
Chittaprasādana ୧ । ଅନ୍ୟର ମନକୁ ପ୍ରସନ୍ନ କରିବା କର୍ମ—
1. Gladness of anothers mind.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଁଖି' ନ ପାଇଲେ 'ଆଖି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୨ । ଯୋଗଶାସ୍ତ୍ର ଅନୁସାରେ ମୈତ୍ରୀ, କରୁଣା, ହର୍ଷ, ଉପେକ୍ଷା ଆଦିର ଉପଯୁକ୍ତ ବ୍ୟବହାରଦ୍ୱାରା ଚିତ୍ତର ସଂସ୍କାରବିଶେଷ—Reformation of the mental faculties by practising friendship, kindness, gladness, regard etc

[ ଦ୍ର—ଏଥିରେ ସୁଖୀ ପ୍ରତି ମିତ୍ରଭାବ ରଖିବା, ଦୁଃଖୀ ପ୍ରତି କରୁଣା କରିବା, ପୁଣ୍ୟବାନ୍ ପ୍ରତି ପ୍ରସନ୍ନ ହେବା, ପାପୀକୁ ଉପେକ୍ଷା କରିବା ଏହିପରି ସାଧନାଦ୍ୱାରା ଚିତ୍ତରୁ ରାଜସ ଓ ତାମସଭାବମାନ ତିରୋହିତ ହୋଇ କେବଳ ସାତ୍ତ୍ୱିକ ଧର୍ମର ପ୍ରାଦୁର୍ଭାବ ହୁଏ— ହି. ଶବ୍ଦସାଗର । ]

**ଚିତ୍ତବିକାର**—ସଂ. ବି. ( ୬ଷ୍ଠୀ ତତ୍ ; ଚିତ୍ତ+ବିକାର )—
Chittabikāra ଚିତ୍ତଚାଞ୍ଚଲ୍ୟ ( ଦେଖ )
Chittachānchalya ( See )

ଚିତ୍ତବିକ୍ଷେପ
ଚିତ୍ତବିପ୍ଳବ
ଚିତ୍ତବିଭ୍ରମ
ଚିତ୍ତବୈକଲ୍ୟ
ଚିତ୍ତବୈକ୍ଳବ୍ୟ
ଚିତ୍ତଭଂଶ
ଚିତ୍ତଭ୍ରାନ୍ତି
ଚିତ୍ତଭ୍ରମ
} ଅନ୍ୟରୂପ

**ଚିତ୍ତବିଶ୍ଳେଷ**—ସଂ. ବି (୬ଷ୍ଠୀ ତତ୍; ଚିତ୍ତ+ବିଶ୍ଳେଷ)—ବନ୍ଧୁତାର ଛେଦନ; ବନ୍ଧୁ ମଧ୍ୟରେ ବିବାଦ ଜନ୍ମିବା—Breach of friendship (M. W.)
Chittabiślesha

**ଚିତ୍ତବୃତ୍ତି**—ସଂ. ବି (ଚିତ୍ତ+ବୃତ୍ତି)— ମନୋବୃତ୍ତି; ( ମନର ଧର୍ମ ); ଚିନ୍ତାଶକ୍ତି—Mental faculties; emotion; feeling.
Chittabṛutti

[ ଦ୍ର—ଯୋଗଶାସ୍ତ୍ରରେ ଚିତ୍ତବୃତ୍ତି ୫ ପ୍ରକାରର :—ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା ଓ ସ୍ମୃତି । ଏ ପ୍ରତି ପ୍ରକାରରେ କ୍ଲିଷ୍ଟ ଓ ଅକ୍ଲିଷ୍ଟ ଏପରି ଦୁଇ ଭେଦ ଅଛି । ଅବିଦ୍ୟା ଆଦି କ୍ଲେଶହେତୁକ ବୃତ୍ତି କ୍ଲିଷ୍ଟ ଓ ଏହା ଛଡ଼ା ଅନ୍ୟ ବୃତ୍ତି ଅକ୍ଲିଷ୍ଟ (ହି. ଶବ୍ଦସାଗର) ମତାନ୍ତରରେ କରୁଣା, ମୁଦିତା, ମୈତ୍ରୀ ଓ ଉପେକ୍ଷା ଏହି ୪ ଟି ଚିତ୍ତବୃତ୍ତି ଅଟେ—ପ୍ରକୃତିବାଦ । ]

**ଚିତ୍ତଭୂ**—ସଂ. ବି. ( ଚିତ୍ତ+ଭୂ ଧାତୁ+କର୍ତ୍ତୃ. କ୍ୱିପ୍ )—
Chittabhū ଚିତ୍ତଜନ୍ମା ( ଦେଖ )
Chittajanmā ( See )

**ଚିତ୍ତଭେଦ**—ସଂ. ବି. ( ୬ଷ୍ଠୀ ତତ୍ ; ଚିତ୍ତ+ଭେଦ )—
Chittabheda ଏକାଧିକ ବ୍ୟକ୍ତିଙ୍କ ମନର ବା ଉଦ୍ଦେଶ୍ୟର ଅମେଳ—
Contrariety of purpose or will

**ଚିତ୍ତଯୋନି**—ସଂ. ବି. ( ବହୁବ୍ରୀହି; ଚିତ୍ତ+ଯୋନି )—
Chittajoni ଚିତ୍ତଜନ୍ମା; କନ୍ଦର୍ପ; ମଦନ—
Cupid; God of Love.

**ଚିତ୍ତରଞ୍ଜନ**—ସଂ. ବି. ( ୬ଷ୍ଠୀ ତତ୍ ; ଚିତ୍ତ+ରଞ୍ଜନ )—
Chittarañjana ଅନ୍ୟର ମନକୁ ତୃପ୍ତ କରିବା—
Satisfying or giving satisfaction to another; pleasing a person; enchantment.

ଦେ. ବି. ପୁଂ—ଲୋକଙ୍କ ନାମ—
Name given to males.

ସଂ. ବିଣ—ଯେ ମନକୁ ହରଣ କରେ ବା ମନରେ ପ୍ରୀତି ଉତ୍ପାଦନ କରେ; ମନୋମୋହନ—
(ଚିତ୍ତରଞ୍ଜନୀ—ସ୍ତ୍ରୀ)
enrapturing; enchanting; charming.

**ଚିତ୍ତରଞ୍ଜନ ଦାସ**—ଦେ. ବି. ( ନାମ )—ବଙ୍ଗର ଅସହଯୋଗ ଆନ୍ଦୋଳନର ନେତା—
Chittarañjana dāsa
The late C. R. Das of Bengal.

[ ଦ୍ର—ଏ ମହାପୁରୁଷ ୧୮୭୦ ମସିହା ନଭେମ୍ବର ମାସରେ ଜନ୍ମଗ୍ରହଣ କରି ୧୯୨୫ ମସିହା ଜୁନ ମାସ ୧୬ ତାରିଖରେ ଇହଧାମ ତ୍ୟାଗ କଲେ । ଏ ବାରିଷ୍ଟର କରୁଥିଲେ, କିନ୍ତୁ ପରେ ବ୍ୟବସାୟ ତ୍ୟାଗ କରି ସମସ୍ତ ସମ୍ପତ୍ତି ଦେଶର ସେବାପାଇଁ ଦାନ କଲେ । ]

**ଚିତ୍ତରସ**—ଦେ. ବି – ହୃଦୟର ପ୍ରଗାଢ଼ ଅନୁରାଗ—
Chittarasa Deep love of the heart.

ଏ ସ୍ନେହରେ ନ ରସଇ, ଚିତ୍ତରସ ବରଷଇ
ମୁକୁନ୍ଦ କୋଳେ ବସଇ, ଲକ୍ଷ୍ମୀ ତୋଷଇ । ଭଞ୍ଜ. ପ୍ରେମସୁଧାନିଧି ।

**ଚିତ୍ତଶୁଦ୍ଧି**—ସଂ. ବି ( ୬ଷ୍ଠୀ ତତ୍; ଚିତ୍ତ+ଶୁଦ୍ଧି )—
Chittaśuddhi ମନର ନିର୍ମଳତା; ମନର ପବିତ୍ରତା—
Purity of mind.

**ଚିତ୍ତସଂଖ୍ୟ**—ସଂ. ବିଣ. ପୁଂ. ( ଚିତ୍ତ+ସମ୍+ଖ୍ୟା ଧାତୁ+କର୍ତ୍ତୃ. ଅ)—
Chittasaṁkhya ଯେ ଅନ୍ୟର ମନୋଭାବ ଜାଣି ପାରେ—
(ଚିତ୍ତସଂଖ୍ୟା—ସ୍ତ୍ରୀ) Knowing the thoughts of others (M. W.).

**ଚିତ୍ତସମୁନ୍ନତି**—ସଂ.ବି.(୬ଷ୍ଠୀ ତତ୍;ଚିତ୍ତ+ସମୁନ୍ନତି)—ଗର୍ବ; ଅହଙ୍କାର—
Chittasamunnati Pride; haughtiness (M. W.)

**ଚିତ୍ତସ୍ଥିରତା**—ସଂ. ବି. (୬ଷ୍ଠୀ ତତ୍; ଚିତ୍ତ+ସ୍ଥିରତା)—
Chittasthiratā ଉଦ୍‌ବେଗହୀନତା—Mental serenity or settledness.
(ଚିତ୍ତସ୍ଥୈର୍ଯ୍ୟ—ଅନ୍ୟରୂପ)

**ଚିତ୍ତହାରକ**—ସଂ. ବିଣ. ପୁଂ. (ଚିତ୍ତ+ହୃ ଧାତୁ+କର୍ତ୍ତୃ. ଅକ)—
Chittahāraka ଚିତ୍ତହାରୀ; ଯାହା ମନକୁ ଲୋଭାଏ—
(ଚିତ୍ତହାରିକା—ସ୍ତ୍ରୀ) Fascinating; enchanting; charming.

**ଚିତ୍ତହାରୀ**—ସଂ. ବିଣ. ପୁଂ. (ଚିତ୍ତ+ହୃ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)
Chittahārī ଚିତ୍ତହାରକ (ଦେଖ)
(ଚିତ୍ତହାରିଣୀ—ସ୍ତ୍ରୀ) Chittahāraka (See)
(ଚିତ୍ତହୃତ୍—ଅନ୍ୟରୂପ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଙ୍ଗ | ଞ୍ଚ | ଢ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଞ୍ଜ | ନ୍ତ |

**ଚିତ୍ତାକର୍ଷକ**—ସଂ. ବିଣ. ପୁ. (ଉପପଦ ତତ୍ପୁରୁଷ; ଚିତ୍ତକୁ ଆକର୍ଷଣ
Chittākarshaka କରେ ଯେ; ଚିତ୍ତ+ଆକର୍ଷକ)—ହୃଦୟ-
(ଚିତ୍ତାକର୍ଷିକା—ସ୍ତ୍ରୀ) ମୋହକର—Enchanting; charming; fascinating; attractive.

**ଚିତ୍ତାକର୍ଷଣ**—ସଂ. ବି. (୬ଷ୍ଠୀ ତତ୍; ଚିତ୍ତ+ଆକର୍ଷଣ)—ହୃଦୟକୁ ମୁଗ୍ଧ
Chittākarshaṇa କରିବା—
Fascination; enchantment.

**ଚିତ୍ତାପହରଣ**—ସଂ. ବି. (୬ଷ୍ଠୀ ତତ୍; ଚିତ୍ତ+ଅପହରଣ)—
Chittāpaharaṇa ଚିତ୍ତାକର୍ଷଣ (ଦେଖ)
Chittākarshaṇa (See)

**ଚିତ୍ତାପହାରକ**—ସଂ. ବିଣ ପୁଂ.—ଚିତ୍ତାକର୍ଷକ (ଦେଖ)
Chittāpahāraka Chittākarshaka (See)
(ଚିତ୍ତାପହାରିକା—ସ୍ତ୍ରୀ)
(ଚିତ୍ତାପହାରୀ—ଅନ୍ୟରୂପ)

**ଚିତ୍ତାଭୋଗ**—ସଂ. ବି. (୬ଷ୍ଠୀ ତତ୍; ଚିତ୍ତ+ଆଭୋଗ)—
Chittābhoga ୧ । ମନସ୍କାମନା—
1. Desire; wish.
୨ । ମନୋବୃତ୍ତି—2. Mental faculty.

**ଚିତ୍ତାସଙ୍ଗ**—ସଂ. ବି. (୬ଷ୍ଠୀ ତତ୍; ଚିତ୍ତ+ଆସଙ୍ଗ=ଆସକ୍ତି)—
Chittāsaṅga ୧ । ପ୍ରଣୟ—1. Love.
୨ । ସ୍ନେହ—2 Affection
୩ । ଅନୁରାଗ—3. Attachment.

**ଚିତ୍ତେ ଆସିବା**—ଦେ. (ପଦ୍ୟ) କ୍ରି.—ମନକୁ ଆସିବା; ବୋଧ ହେବା;
Chitte āsibā ଜଣାଯିବା—To seem; to appear.

ଗଛ ଦେଖି ଚିତ୍ତେ ଆସଇ, ସାଗର-ଲହରୀ ପରେ,
ଦଉଡ଼ିଲେ ବେନି, ନ ରହିବେ ପଣି ମୁକ୍ତି ପୟରେ—ରାଧାନାଥ. ଉଷା ।

**ଚିତ୍ତେ ଘେନିବା**—ଦେ. କ୍ରି—ମଙ୍ଗିବା—
Chitte ghenibā To agree to.

ତୁମ୍ଭ କହିବାର କହିଲ ମୁହିଁ କେତେ
ଦମୟନ୍ତୀ ତାହାକୁ ନ ଘେନିଲା ଚିତ୍ତେ—କୃଷ୍ଣସିଂହ. ମହାଭାରତ. ବନ ।

**ଚିତ୍ତୋଇବା**—ଦେ. କ୍ରି (ସଂ. ଚିତ୍ତ)—୧ । ସ୍ମରଣ କରିବା—
Chittoibā 1. To remember.
चितान
चितावना

ନଳ ଦମୟନ୍ତୀ ଏବେ ଚିତ୍ତୋଇଲା ପରାୟେ ମନକୁ ଆସେ ।
କୃଷ୍ଣସିଂହ. ମହାଭାରତ ବନ ।

୨ । ମନେକରାଇଦେବା; ଅନ୍ୟର ମନରେ ସ୍ମୃତିର ଉଦ୍ରେକ
କରିବା; ଚେତାଇବା—2. To remind
୩ । ସାବଧାନ କରିବା—3. To caution.

**ଚିତ୍ତୋତ୍କର୍ଷ**—ସଂ. ବି (୬ଷ୍ଠୀତତ୍; ଚିତ୍ତ+ଉତ୍କର୍ଷ)—ମନର ଉନ୍ନତି—
Chittotkarsha Mental excellence.

**ଚିତ୍ତୋଦ୍ବେଗ**—ସଂ. ବି (୬ଷ୍ଠୀତତ୍; ଚିତ୍ତ+ଉଦ୍‌ବେଗ)—
Chittodbega ମାନସିକ ଅଶାନ୍ତି ବା ଚିନ୍ତା—
Anxiety; distress of mind.

**ଚିତ୍ତୋନ୍ନତି**—ସଂ. ବି (୬ଷ୍ଠୀ ତତ୍; ଚିତ୍ତ+ଉନ୍ନତି)—
Chittonnati ୧ । ହୃଦୟର ଉନ୍ନତ ଅବସ୍ଥା—
1. Mental improvement.
୨ । ଗର୍ବ—2. Pride
୩ । ଆତ୍ମଗର୍ବ—3. Self esteem.

**ଚିତ୍ର (ଧାତୁ)**—ସଂ.—ଚିତ୍ର କରିବା—
Chitra (root) To paint.

**ଚିତ୍ର**—ସଂ. ବି (ଚିତ୍+ତ୍ରୈ ଧାତୁ=ତ୍ରାଣକରିବା+କର୍ତ୍ତୃ. ଅ)—
Chitra ୧ । ଆଶ୍ଚର୍ଯ୍ୟ—1. Wonder; miracle.

ଶୁଣ ରାଜନ ଚିତ୍ର କଥା
ରାମ ଗୋବିନ୍ଦଙ୍କ ବ୍ୟବସ୍ଥା—ଜଗନ୍ନାଥ. ଭାଗବତ ।

୨ । ଚିହ୍ନ; ଦାଗ—2. Spot; mark.
तसबीर ୩ । (ଚିତ୍ର ଧାତୁ+କର୍ମ. ଅ) ଆଲେଖ୍ୟ, ଛବି—
3. Picture; drawing.

ଚିତ୍ରପିତୁଳୀର ସଦୃଶ,
ନୟନ କଲେ ଅନିମିଷ—ଭୂପତି. ପ୍ରେମପଞ୍ଚାମୃତ ।

୪ । ଅର୍ଥବୋଧକ ଲିପି—4. Illustration.
୫ । ଚିତ୍ରଫଳକ; ମାନଚିତ୍ର—
5. Map; painter's tablet.
୬ । ଆକାଶ—6. The sky.
୭ । ତିଳକ; ଚନ୍ଦନାଦିଦ୍ୱାରା ଅଙ୍ଗରେ ଅଙ୍କିତ ଚିହ୍ନ—
7. A circlet or mark painted on the body or forehead with sandal paste etc.
୮ । (+କରଣ. ଅ)—ନାନା ବର୍ଣ୍ଣ—
8 Variegated colour.
୯ । (+ଭାବ. ଅ)—ରଞ୍ଜନ; ରଙ୍ଗଦେବା—
9. Painting.
୧୦ । (ଚି+କର୍ତ୍ତୃ. ତ୍ର)—ଯମ—
10 Jama; the God of death.
୧୧ । ରଡ଼ ବା ଏରଣ୍ଡଗଛ—
11. The Castor oil plant.
୧୨ । ଅଶୋକଗଛ—
12. The Jonesia Asoka tree.
୧୩ । ଚିତାପାରୁଗଛ; ଧଳା ଚିତା ଗୁଳ୍ମ—
13. The Leadwart plant.
୧୪ । ଲିପି; ଲିଖନ—14. Writing.
୧୫ । (ଚି ଧାତୁ+କର୍ମ. ତ୍ର) କାବ୍ୟ ବା ଅଳଙ୍କାରବିଶେଷ; ଅନ୍ତ୍ୟଲିପି ଓ ବହୁଲିପି ଆଦି ଯୁକ୍ତ କାବ୍ୟ—15. An acrostic; a composition in verse in which the first or last letters of the lines form a motto or word.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଆଙ୍ଗିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୧୬ । ବର୍ଣ୍ଣନ ଆଦିଦ୍ୱାରା ବର୍ଣ୍ଣିତ ବିଷୟକୁ ଶ୍ରୋତା ବା ଦର୍ଶକର ସମ୍ମୁଖରେ ଉପସ୍ଥାପିତ କରିବା (ହି. ଶବ୍ଦସାଗର)—
16. Delineation; vesual representation of a described matter.

୧୭ । କାବ୍ୟର ଅଳଙ୍କାର; କାବ୍ୟର ୩ ଅଙ୍ଗରେ ଏକ, ଯହିଁରେ ବ୍ୟଙ୍ଗର ପ୍ରଧାନତା ରହେ ନାହିଁ (ହି. ଶବ୍ଦସାଗର)—17. Rhetorical figure

୧୮ । ରଥ, ପଦ୍ମ, ଚକ୍ର, ଖଡ୍ଗ ଆଦିର ଆକାରରେ ଅକ୍ଷର ସନ୍ନିବେଶିତ କରିବା ରୂପ କାବ୍ୟରଚନାବିଶେଷ—
18 Picturial composition in which the letters can be arranged into certain shapes.

୧୯ । ଚିତ୍ରଗୁପ୍ତ ( ଦେଖ )—
19. Chitragupta ( See )

ବିଣ—୧ । ଆଶ୍ଚର୍ଯ୍ୟଜନକ; ବିଚିତ୍ର—1. Wonderful; astonishing.

ଚିତ୍ର ମଣିଲି ମୁଁ ଇଚେ, ଗୃହୁଁ ଯା ଅନ୍ତରକଲେ, ଗୁରୁଚକ୍ଷୁ ମିଶାଇଲୁ ଅସି—
କବିସୂର୍ଯ୍ୟ· ବଳଦେବରଥ, ଚ. ଗୀତ ।

୨ । ଚିତ୍ରିତ—2. Painted.

୩ । ବିବିଧ ବର୍ଣ୍ଣରେ ରଞ୍ଜିତ—
3. Multicoloured; veriegated.

୪ । ଛିପିଛିପିକିଆ—
4 Speckled; motted; dapple.

୫ । ଅସାଧାରଣ—5. Extraordinary; distinguished

୬ । ନାନାପ୍ରକାରର—6 Of various kinds.

**ଚିତ୍ରଂ ଦେବାନାଂ ଦେବା**—ଦେ. କ୍ରି—ଠକିବା—
Chitram̐ debānām̐ debā To cheat.
( ଯଥା—ସେ ମୋତେ ଚିତ୍ରଂ ଦେବାନାଂ ଦେଇ ଚାଲିଗଲା । )
[ ଦ୍ର—ଚିତ୍ରଂ ଦେବାନାଂ ଉଦଗାଦନୀକଂ ଗୋଟିଏ ବୈଦିକ ମନ୍ତ୍ରର ଆଦ୍ୟ ଅଂଶ; ବ୍ରାହ୍ମଣମାନେ ଦୈନିକ ସନ୍ଧ୍ୟା ବନ୍ଦନା କଲା-ବେଳେ ଗାୟତ୍ରୀ ଜପିବା ପୂର୍ବରୁ ଏ ମନ୍ତ୍ର ଉଚ୍ଚାରଣ କରନ୍ତି । ଏହି ପରି ଭିନ୍ନ ଭିନ୍ନ ମନ୍ତ୍ରର ଅଂଶକୁ ଲୋକେ ନାନା ଅର୍ଥରେ କଥା-ବାର୍ତ୍ତା ଉପଲକ୍ଷରେ ଲଗାନ୍ତି, ଯଥା ଗୋଟାକେତେ 'ଜୀବଂ ବଦନ୍ତି' ଦେବା; 'ଅତର ପିତର' କରିବା । ]

**ଚିତ୍ରକ** ସଂ. ବି (ଚିତ୍ର+ସ୍ୱାର୍ଥେ. କ)—୧ । ଛବି; ଆଲେଖ୍ୟ—
Chitraka 1. Picture.

୨ । ତିଳକ—2. Painted mark on the body or forehead.

ବଦନେ ଚିତ୍ରକ ଗଇରିକେ ପତ୍ର ଲେଖିଥିଲେ ଛବି ସ୍ଥଳେ—
ଉପେ. ବୈଦେହୀଶବିଳାସ ।

୩ । ( ଚିତ୍ର+କୈ ଧାତୁ. ଅ ) ଚିତାବାଘ—
3. Leopard.

୪ । ଧଳାଚିତା ଗୁଳ୍ମ; ଚିତାପାରୁ—4. The leadwort.

୫ । ଚିରେଇତା (ହି. ଶବ୍ଦସାଗର) (ଦେଖ)—
5. Chireitā ( See )

୬ । ଗବଗଛ ( ହି. ଶବ୍ଦସାଗର )—
6. Castor seed plant.

୭ । ମୁଚୁକୁନ୍ଦଗଛ (ହି. ଶବ୍ଦସାଗର) (ଦେଖ)
7. Muchukunda tree ( See )

୮ । ଚିତ୍ରକାର—8. A painter

୯ । ଶୂର; ବୀର ( ହି. ଶବ୍ଦସାଗର )—9. Hero

(ଚିତ୍ରିକା—ସ୍ତ୍ରୀ) ସଂ. ବିଣ (ଚିତ୍ର+କର୍ତ୍ତୃ. ଅକ) ଯେ ଚିତ୍ର କରେ; ଚିତ୍ରକାରୀ; ଅଙ୍କନକାରୀ—Painting.

**ଚିତ୍ରକଣ୍ଠ**—ସଂ. ବି (ବହୁବ୍ରୀହି; ଚିତ୍ର+କଣ୍ଠ)—୧ । ପାରା—
Chitrakaṇṭha 1. Pegeon-

୨ । କପୋତ – 2. Turtle-dove.

**ଚିତ୍ରକମ୍ବଳ**—ସଂ. ବି.—ନାନା ବର୍ଣ୍ଣବିଶିଷ୍ଟ ଗାଲିଚା; ଖରଡ଼—
Chitrakambaḻa A variegated carpet.

**ଚିତ୍ରକର**—ସଂ ବିଣ—(ଚିତ୍ର+କୃ ଧାତୁ+କର୍ତ୍ତୃ. ଅ)—୧ । ଯେ ରଙ୍ଗ
Chitrakara ଦ୍ୱାରା କୌଣସି ପଦାର୍ଥକୁ ରଙ୍ଗାଏ—
1. Painter; artist.

୨ । ବର୍ଣ୍ଣସଙ୍କର ଜାତିବିଶେଷ—2. A low mixed caste amongst the Hindus who are painters.
[ଦ୍ର—ଶୂଦ୍ରାଣୀ ଗର୍ଭରେ ବିଶ୍ୱକର୍ମାଙ୍କ ଔରସରେ ଏହି ଜାତିର ଉତ୍ପତ୍ତି ହୋଇଥିବାର ବ୍ରହ୍ମବୈବର୍ତ୍ତ ପୁରାଣରେ ଅଛି]

୩ । ତିନିଶ ବୃକ୍ଷ (ଦେଖ)—3. Tiniśa tree (See)

**ଚିତ୍ରକର୍ମ**—ସଂ. ବି—୧ । ରଙ୍ଗାଇବା କାର୍ଯ୍ୟ—1. Painting.
Chitrakarma ୨ । ଅଳଙ୍କରଣ—2. Adornment; ornament; decorating.

୩ । ଚିତ୍ର ଅଙ୍କନ—3. Drawing; pictures.

**ଚିତ୍ରକର୍ମା**—ସଂ ବି (ଚିତ୍ର+କର୍ମନ୍; ୧ମା ୧ବ)—୧ । ଚିତ୍ରକର—
Chitrakarmā 1. Painter.

୨ । ତିନିଶ ବୃକ୍ଷ (ହି. ଶବ୍ଦସାଗର) ଦେଖ—2. Tiniśa tree (See).

୩ । ବିଚିତ୍ର କର୍ମ କରିବା ବ୍ୟକ୍ତି—3. A performer of wonderful works.

**ଚିତ୍ରକଳା**—ବି.ସ୍ତ୍ରୀ—ଚିତ୍ର ଆଙ୍କିବା ବିଦ୍ୟା— The art of painting.
Chitrakaḻā
[ଦ୍ର—ଚିତ୍ରକଳା ଚୀନ, ମିଶର ଓ ଭାରତ ଆଦି ଦେଶରେ ବହୁ ପ୍ରାଚୀନ କାଳରେ ଥିଲା । ମିଶରର ଚିତ୍ରକଳାକୁ ଗ୍ରୀକ୍‌ମାନେ ଶିକ୍ଷାକରି ଚିତ୍ରବିଦ୍ୟାର ବହୁତ ଉନ୍ନତି କରିଥିଲେ । ବିଲାତର ବ୍ରିଟିଶ୍ ମିଉଜିୟମ୍‌ରେ ୩୦୦୦ ବର୍ଷ ପୂର୍ବର ମିଶରଦେଶର ଚିତ୍ର ଅଛି । ରାମାୟଣରେ ଚିତ୍ର, ଚିତ୍ରକର ଓ ଚିତ୍ରଶାଳାର ଉଲ୍ଲେଖ ଅଛି । ଅଜନ୍ତା ଗୁମ୍ଫାରେ ଯେଉଁ ଚିତ୍ରମାନ ଅଛି ତାହା ପାଶ୍ଚାତ୍ୟ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଇୟ୍ | ଉଅ | ଘ୍ର |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଢ଼ | ନ୍ |

ପଣ୍ଡିତମାନେ ଦେଖି ମୁଗ୍ଧ ହୋଇଅଛନ୍ତି । ଏ ଗୁମ୍ଫାର ଚିତ୍ରମାନ ଖ୍ରୀ. ପୂର୍ବ ୨୦୦ ଠାରୁ ଖ୍ରୀଷ୍ଟାବ୍ଦ ୮୦୦ ପର୍ଯ୍ୟନ୍ତ ଅଙ୍କିତ ହୋଇଥିବାର ଅନୁମିତ ହୁଏ । ପଞ୍ଜାବର ସିନ୍ଧୁପ୍ରଦେଶର ହରପ୍ପା ଓ ମହେଞ୍ଜୋଦାରୁ ଆଦି ସ୍ଥାନରେ ଭୂଗର୍ଭରୁ ଯେଉଁ ଚିତ୍ରମାନ ମିଳିଅଛି ତାହା ଅନ୍ତତଃ ୪୫ ହଜାର ବର୍ଷ ପୂର୍ବେ ଅଙ୍କିତ ହୋଇଥିବାର ପଣ୍ଡିତମାନେ ଅନୁମାନ କରନ୍ତି ।]

**ଚିତ୍ରକାଠି**—ଦେ. ବି—ତୁଳିକା; ଚିତ୍ରଶଲାକା; ଯେଉଁ କାଠିରୁ ରଙ୍ଗରେ
Chitrakāṭhi ବୁଡ଼ାଇ ଚିତ୍ର ଅଙ୍କନ କରନ୍ତି—Painter's brush or pen.

**ଚିତ୍ରକାବ୍ୟ**—ସଂ. ବି—ଶବ୍ଦାଳଙ୍କାର ପୂର୍ଣ୍ଣକାବ୍ୟବିଶେଷ; ପଦ୍ମବନ୍ଧାଦି ଯୁକ୍ତ
Chitrakābya କାବ୍ୟ—A composition in which the letters can be arranged in particular shapes.

**ଚିତ୍ରକାୟ**—ସଂ. ବିଣ. ପୁଂ (ବହୁବ୍ରୀହି; ଚିତ୍ର+କାୟ)—ଯାହାର ଦେହ
Chitrakāya ଚିତ୍ରିତ—With spotted body.
(ଚିତ୍ରକାୟା-ସ୍ତ୍ରୀ) ସଂ. ବି—ଚିତାବାଘ—Spotted leopard.

**ଚିତ୍ରକାର**—ସଂ. ବି—ଚିତ୍ରକର (ଦେଖ)
Chitrakāra Chitrakara (See)

**ଚିତ୍ରକାରୀ**—ସଂ. ବି (ଚିତ୍ରକାର+ଈ)—୧ । ଚିତ୍ରକଳା—
Chitrakārī 1. The art of painting.
୨ । ଚିତ୍ର ତିଆରି କରିବା ବ୍ୟବସାୟ (ହି. ଶବ୍ଦସାଗର)—
2. The profession of a painter.

**ଚିତ୍ରକୂଟ**—ସଂ. ବି (ନାମ) ବହୁବ୍ରୀହି; ଚିତ୍ର=ଆଶ୍ଚର୍ଯ୍ୟଜନକ+
Chitrakūṭa କୂଟ=ଶୃଙ୍ଗ)—୧ । ରାମଗିରି ପର୍ବତ, ରାମଚନ୍ଦ୍ର ବନବାସ ସମୟରେ ଏହି ପର୍ବତରେ କିଛି ଦିନ ବାସକରି ରହିଥିଲେ । ବୁନ୍ଦେଲଖଣ୍ଡ ପ୍ରଦେଶସ୍ଥ ପ୍ରସିଦ୍ଧ କାମ୍ପ୍ତା ପାହାଡ଼; ଏହା ବାନ୍ଦା ନଗରଠାରୁ ୨୫ କୋଶ ଦକ୍ଷିଣ ପୂର୍ବରେ ଅବସ୍ଥିତ ।—A mountain in Bundelkhaṇḍa now called Comptch, about 15 miles from the town of Bāndā.
୨ । ଚିତୋର (ଦେଖ)—2. Chitora (See)
(ଶିଳାଲେଖରେ ଚିତୋରର ଏହି ନାମ ମିଳେ ।
୩ । ହିମାଳୟର ଶୃଙ୍ଗବିଶେଷ (ହି. ଶବ୍ଦସାଗର)—
3. Name of a peak of the Himālayas.
ଦେ. ବି—ଆଶ୍ଚର୍ଯ୍ୟ; କପଟ—Wonderful; hypocricy.

ବିରଳ୍କ ଚିତ୍ରକୂଟରେ ବିହରେ ଚିତ୍ର କୂଟରେ କଟକକୁ ଡେଙ୍ଗ କଟକ କରେ ସେ ।
ଉଜ୍ଞ. ବୈଦେହୀଶବିଳାସ ।

**ଚିତ୍ରକୃତ୍**—ସଂ. ବି. (ଚିତ୍ର+କୃ ଧାତୁ+କର୍ତ୍ତୃ. କ୍ୱିପ୍)—
Chitrakrut ଚିତ୍ରକର (ଦେଖ)—Chitrakara (See)

**ଚିତ୍ରକେତୁ**—ସଂ. ବି. (ନାମ)—୧ । ଲକ୍ଷ୍ମଣଙ୍କ ଦୁଇ ପୁତ୍ର ମଧ୍ୟରୁ ଏକ
Chitraketu ପୁତ୍ର—1. The name of a son of Lakshmaṇa.

ଅଙ୍ଗଦ ଚିତ୍ରକେତୁ ଦୁଇ
ଲକ୍ଷ୍ମଣ ବୀର୍ଯ୍ୟେ ଜାତ ହୋଇ—ଜଗନ୍ନାଥ. ଭାଗବତ ।

୨ । ଗରୁଡ଼ର ଏକ ପୁତ୍ର—
2. Name of a son of Garurḍa.
୩ । ଶୂରସେନ ଦେଶର ଏକ ରାଜା (ଭାଗବତ)
3. Name of a king of Śūrasena country

**ଚିତ୍ରଗୁପ୍ତ**—ସଂ. (ନାମ) (ଚିତ୍ର=ଲେଖନ+ଗୁପ୍ତ=ଯେ ରକ୍ଷା କରେ)—
Chitragupta ୧ । ଚତୁର୍ଦ୍ଦଶ ଯମଙ୍କ ମଧ୍ୟରୁ ଏକତମ—
1. One of the 14 Jamas of the Hindus; said to be the notary public or recorder of the acts of every human being.
୨ । ଯମଙ୍କ ପାଞ୍ଜିଆ—
2. Record keeper of the Hindus God of death.

[ ଦ୍ର—ଯମଙ୍କ ପାଞ୍ଜି ଏହାଙ୍କ ଜିମାରେ ଥାଏ । ପ୍ରତ୍ୟେକ ଜୀବିତ ମନୁଷ୍ୟର ପାପପୁଣ୍ୟର ତାଲିକା ଏ ଲେଖି ରଖୁଥାଆନ୍ତି ଓ ମନୁଷ୍ୟ ମଲା ପରେ ଯେତେବେଳେ ଯମଦୂତମାନେ ମନୁଷ୍ୟଙ୍କୁ ନେଇ ଯମଙ୍କ ପାଖରେ ଦଣ୍ଡ ବା ପୁରସ୍କାରର ଶେଷ ବିଚାର ନିମନ୍ତେ ହାଜର କରନ୍ତି ସେତେବେଳେ ଚିତ୍ରଗୁପ୍ତ ପାଞ୍ଜି ଫିଟାଇ ମନୁଷ୍ୟର ପାପ ପୁଣ୍ୟର ତାଲିକା ଯମରାଜାଙ୍କୁ ଜଣାନ୍ତି । ଭବିଷ୍ୟତପୁରାଣ ଓ ଗରୁଡ଼ପୁରାଣରେ ଲେଖାଅଛି ଯେ, ହାତରେ କଲମ ଦୁଆତ ଧରି ଏକ ବିଚିତ୍ରବର୍ଣ୍ଣ ପୁରୁଷ ବ୍ରହ୍ମାଙ୍କଠାରୁ ଜାତ ହେଲେ । ଭଟ୍ଟ, ନାଗର, ସେନକ, ଗୌଡ଼, ଶ୍ରୀବାସ୍ତବ, ମାଥୁର, ଅହିଷ୍ଠାନ, ଶୈକସେନ ଓ ଅମ୍ବଷ୍ଠ ନାମରେ ଏହାଙ୍କ ୯ ପୁତ୍ର ହେଲେ । ଚିତ୍ରଗୁପ୍ତହିଁ କାୟସ୍ଥମାନଙ୍କ ଆଦିପୁରୁଷ ଅଟନ୍ତି—ହି. ଶବ୍ଦସାଗର । ]

**ଚିତ୍ରଣ**—ସଂ. ବି. (ଚିତ୍ର ଧାତୁ+ଭାବ. ଅନ)—୧ । ଚିତ୍ର ଲିଖନ—
Chitraṇa 1. Painting.
୨ । ଛବି ଆଙ୍କିବା—2. Drawing a picture.

**ଚିତ୍ରତଣ୍ଡୁଳ**—ସଂ. ବି—ବାଇବିଡ଼ଙ୍ଗ (ଦେଖ)
Chitrataṇḍula Bāibirḍaṅga (See)

**ଚିତ୍ରତ୍ୱକ୍**—ସଂ. ବି. (ବହୁବ୍ରୀହି; ଚିତ୍ର+ତ୍ୱଚ୍)—ଭୂର୍ଜପତ୍ର ବୃକ୍ଷ—
Chitratwak The birch tree.

**ଚିତ୍ରଦଣ୍ଡକ**—ସଂ. ବି. (ବହୁବ୍ରୀହି, ଚିତ୍ର+ଦଣ୍ଡ+କ)—ଶୂରଣ; ଓଲୁଅ—
Chitradaṇḍaka Wild-arum.

**ଚିତ୍ରନେତ୍ରା**—ସଂ. ବି. ସ୍ତ୍ରୀ—ସାରିକା ପକ୍ଷୀ—The myna bird;
Chitranetrā Turdus salika.

**ଚିତ୍ରପକ୍ଷ**—ସଂ. ବି. (ବହୁବ୍ରୀହି; ଚିତ୍ର+ପକ୍ଷ)—ତିତିରପକ୍ଷୀ—
Chitrapaksha Patridge.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଁଟା' ନ ପାଇଲେ 'ଅଣ୍ଟା' ଦେଖିବେ, 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ଚିତ୍ରପଟ**—ସଂ. ବି. ( ୬ଷ୍ଠୀ ତତ୍ ; ଚିତ୍ର+ପଟ )—
Chitrapata ୧ । ଯେଉଁ ବସ୍ତ୍ର ବା କାଷ୍ଠଖଣ୍ଡ ଉପରେ ଛବି ଅଙ୍କା ଯାଏ; ଆଲେଖ୍ୟ ପଟ—
1. Canvas; painting tablet.
୨ । ଛବି ଅଙ୍କା ହୋଇଥିବା ବସ୍ତ୍ର ବା କାଗଜଖଣ୍ଡ; ଛିଟ—
2. Piece of paper or cloth on which a painting is executed.

**ଚିତ୍ରପାଟୀ**—ଦେ. ବି—ଘରର ଦୈର୍ଘ୍ୟରୁ ଗର୍ଭ କଟିଗଲେ ଅବଶିଷ୍ଟ
Chitrapāṭi ଯେଉଁ ଅଂଶ ରହେ—The difference between the whole length and the inside measurement of a house.
[ ଯଥା—ଘରର ଦୈର୍ଘ୍ୟ ୧୨—୨ ଗର୍ଭ=୧୦ ଚିତ୍ରପାଟୀ ଲମ୍ବ— କଳବକ୍ର; ପ୍ରାଚୀନ ଉତ୍କଳ । ]

**ଚିତ୍ରପାଦା**—ସଂ. ବି. ସ୍ତ୍ରୀ ( ବହୁବ୍ରୀହି; ଚିତ୍ର+ପାଦ+ସ୍ତ୍ରୀ. ଆ )—
Chitrapādā ସାରିକା ପକ୍ଷିଣୀ—The myna bird.

**ଚିତ୍ରପାଲୁ**—ପ୍ରାଦେ. ( ଗଞ୍ଜାମ ) ବି—କାଠକୁ ଚିକ୍କଣ କରିବା ଅସ୍ତ୍ର;
Chitrapālu ଚିଛାରନ୍ଦା—Carpenter s small plane

**ଚିତ୍ରପିଚ୍ଛକ**—ସଂ. ବି. ( ବହୁବ୍ରୀହି; ଚିତ୍ର+ପିଚ୍ଛ+କ )—ମୟୂର—
Chitrapichchhaka Peacock.

**ଚିତ୍ରପିତୁଲା**—ଦେ. ବି—ଚିତ୍ରପିତୁଳି ( ଦେଖ )
Chitrapituḷā Chitrapituḷi ( See )

**ଚିତ୍ରପିତୁଳି**—ଦେ. ବି. ( ସଂ. ଚିତ୍ର+ପୁତ୍ତଳିକା )—କୁଣ୍ଢେଇ—
Chitrapituḷi Idol.
ଅନେକ ବିଦ୍ୟା ସେ ସଙ୍ଗରେ
ଚିତ୍ରପିତୁଳି ନାଟ କରେ । ପ୍ରାଚୀ. ନର୍ମଦାମାହାତ୍ମ୍ୟ ।

**ଚିତ୍ରପୁଙ୍ଖ**—ସଂ. ବି. ( ଚିତ୍ର+ପୁଙ୍ଖ=ବାଣର ପକ୍ଷଯୁକ୍ତ ସ୍ଥାନ )—
Chitrapuṅkha ଶର, ବାଣ—Arrow.

**ଚିତ୍ରପୁଂସ**—ଦେ. ବି—ଅଦ୍ଭୁତ ପୁରୁଷ—
Chitrapuṁsa A strange man.
ଚିତ୍ରପୁଂସ ବୋଲି ସାର କର ନେ ଭାଷା । ଉତ୍କ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଚିତ୍ରପୁରୁଷ**—ଦେ. ବି. ( କର୍ମଧାରୟ; ଚିତ୍ର=ଚିତ୍ରିତ+ପୁରୁଷ )—
Chitrapurusha ପଟରେ ଲିଖିତ ପୁରୁଷର ଛବି—
The likeliness of a man painted on a canvas.
ଚିତ୍ର ଚିତ୍ରପୁରୁଷଙ୍କୁ ସେ ରଜା ଗହି
ସୁଷମା ସୁଷମାରେ ସ୍ୱଜନ ଏହି । ଉତ୍କ. ପ୍ରେମସୁଧାନିଧି ।

**ଚିତ୍ରପୃଷ୍ଠ**—ସଂ. ବି ( ବହୁବ୍ରୀହି; ଚିତ୍ର+ପୃଷ୍ଠ )—
Chitrapṛushṭha କଳବିଙ୍କ ପକ୍ଷୀ; ଘର ଚଟିଆ—
Sparrow.

**ଚିତ୍ରପେଡ଼ି**—ଦେ. ବି. ( ସଂ. ଚିତ୍ର ଓ ପେଟିକା )—
Chitraperḍi ଉପର ଚିତ୍ରିତ ହୋଇଥିବା ପେଡ଼ି—
A painted box.

**ଚିତ୍ରଫଳ**—ସଂ. ବି—୧ । ଚିତ୍ରଫଳକ ୨ ( ଦେଖ )
Chitraphaḷa 1. Chitraphaḷaka 2 ( See )
୨ । ତରଭୁଜ—2. Melon
ଦେ. ବି—ଗହମ କାକୁଡ଼ି ( ଦେଖ )
Gahama kākurḍi ( See )

**ଚିତ୍ରଫଳକ**—ସଂ. ବି. ( ୬ଷ୍ଠୀ ତତ୍ ; ଚିତ୍ର+ଫଳକ )—
Chitraphaḷaka ୧ । ଚିତ୍ରପଟ—1. Canvas; a tablet for painting.
୨ । ଚିତଳ ମାଛ—2. A species of flat; large sweet water fish.

**ଚିତ୍ରଫଳା**—ସଂ. ବି. ( ବହୁବ୍ରୀହି, ଚିତ୍ର+ଫଳ+ଆ )—
Chitraphaḷā ୧ । କାକୁଡ଼ି—1. Cucumber.
୨ । ବାଇଗଣ—2 Egg plant.
୩ । କଣ୍ଟାକାରି ( ଦେଖ )
3 Kanṭakāri ( See )
୪ । ଲିଙ୍ଗିନୀ ଲତା—4. A kind of kreeper.
୫ । ଫଲି ମାଛ—5. A kind of fish.

**ଚିତ୍ରବଦଳ**—ସଂ. ବି—ପାଠୀନ ମତ୍ସ୍ୟ; ବାଳଅ ମାଛ (ବୃ. ଶବ୍ଦସାଗର)—
Chitrabadaḷa The boal fish.

**ଚିତ୍ରବର୍ହ**—ସଂ. ବି. ( ବହୁବ୍ରୀହି, ଚିତ୍ର+ବର୍ହ )—
Chitrabarha ୧ । ମୟୂର—1. Pea-cock.
୨ । ( ନାମ ) ଗରୁଡ଼ର ଏକ ପୁତ୍ର—
2 Name of a son of Garurḍa.

**ଚିତ୍ରବଲ୍ଲିକ**—ସଂ. ବି—ବାଳଅ ମାଛ—
Chitraballika The boal fish; the sheat fish.

**ଚିତ୍ରବଲ୍ଲୀ**—ସଂ. ବି. ( ଚିତ୍ର+ବଲ୍ଲୀ )—
Chitraballi ୧ । ବିଚିତ୍ର ଲତା—
1. A wonderful creeper.
୨ । ମହେନ୍ଦ୍ରବାରୁଣୀ ଲତା—
2. Name of a creeper.

**ଚିତ୍ରବାଡ଼ି**—ଦେ. ବି—ପିଲାମାନଙ୍କ ଖେଳିବାରେ ବ୍ୟବହୃତ ଚିତ୍ର କରାଯାଇ
Chitrabārḍi ଥିବା ଯଷ୍ଟି—A painted stick used by children.
ବାଳ ବୟସ ଖଡ଼ଗଡ଼, ଧରାଇଲ ଚିତ୍ରବାଡ଼ି, ପଳାଇଲୁ ରଇଜ ଛାଡ଼ି ।
ଶିଶୁ ଗୀତ ।

**ଚିତ୍ରବାହନ**—ସଂ. ବି. (ନାମ)—ଚିତ୍ରଭାନୁ ୬ ( ଦେଖ )
Chitrabāhana Chitrabhānu 6 ( See )

**ଚିତ୍ରବିଚିତ୍ର**—ସଂ. ବିଣ. ( ୩ୟା ତତ୍ ; ଚିତ୍ର+ବିଚିତ୍ର )—
Chitrabichitra ୧ । ବିବିଧ ବର୍ଣ୍ଣ ବା ଚିତ୍ରରେ ଚିତ୍ରିତ—
1. Multicoloured.
୨ । ଛିପିଛିପିକିଆ—2. Mottled; variegated.
୩ । ନାନାବର୍ଣ୍ଣର—3. Of various colours.

| ୧ | ଇ | ଉ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ତ | ଉଅ | ଯ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚଁ୍ୟ | ଇଅ | ଊ | ନ୍ତ |

ଚିତ୍ରବିଦ୍ୟା—ସଂ. ବି—ଚିତ୍ରକଳା; ଚିତ୍ରଅଙ୍କନ ବିଦ୍ୟା—
Chitrabidyā The art of painting.

ଚିତ୍ରବୃତ୍ତି—ସଂ. ବିଣ ( ବହୁବ୍ରୀହି; ଚିତ୍ର+ବୃତ୍ତି=ବ୍ୟାପାର ) ଅଦ୍ଭୁତ
Chitrabr̥utti ବ୍ୟାପାରଶାଳୀ—Of wonderful action.

ଚିତ୍ରଭାନୁ—ସଂ. ବି. (ବହୁବ୍ରୀହି; ଚିତ୍ର=ବିଚିତ୍ର+ଭାନୁ=କିରଣ)—
Chitrabhānu ୧ । ଅଗ୍ନି—1. Fire.
୨ । ସୂର୍ଯ୍ୟ—2. The sun.
୩ । ଅଶ୍ୱିନୀକୁମାର ଦ୍ୱୟ—3. The twin sons of Aswini; the Heavenly physicians.
୪ । ଚିତାପାରୁ ଗଛ—4. The Leadwort shrub.
୫ । ଭୈରବ; ଶିବ—5 The god Siba.
୬ । ଅର୍ଜ୍ଜୁନପତ୍ନୀ ଚିତ୍ରାଙ୍ଗଦାଙ୍କ ପିତା; ମଣିପୁରର ରାଜା; ବଭ୍ରୁବାହନଙ୍କ ମାତାମହ—6. The father of Arjuna's wife Chitrāngadā.
୭ । ଅର୍କଗଛ ( ହି· ଶବ୍ଦସାଗର )—
7. The swallow wort plant.

ଚିତ୍ର ମଣିବା—ଦେ. କ୍ରି—ଆଶ୍ଚର୍ଯ୍ୟ ବୋଧ କରିବା—
Chitra maṇibā To be ashtonished.
ପୁଣି ଶ୍ରୀ ଠାକୁରାଣୀ ଚିତ୍ର ମଣିଲେ ଜାଣି ନ ଥିଲା ପରି ହରପ୍ରୀତିକ ରେ ।
କବିସୂର୍ଯ୍ୟ—ସଙ୍ଗୀତ ।

ଚିତ୍ରମଦ—ସଂ. ବି. ପୁଂ—ନାଟକ ଓ ଉପନ୍ୟାସରେ କୌଣସି ସ୍ତ୍ରୀର ଆପଣାର
Chitramada ଅନୁପସ୍ଥିତ ପତି ବା ପ୍ରେମିକର ଚିତ୍ର ଦେଖି ହରଷୋଲ୍ଲାସ ପ୍ରକାଶ କରିବା ( ହି. ଶବ୍ଦସାଗର )—
The manifestation of pathatic feeling by a woman on seeing the picture of her absent husband or lover.

ଚିତ୍ରମତ୍ସ୍ୟ—ସଂ. ବି—ଚିତ୍ରଫଳକ ୨ (ଦେଖ)
Chitramatsya Chitraphaḷaka 2 (See)

ଚିତ୍ରମାଛି—ଦେ. ବି—କସ୍ତୁରୀ ପ୍ରଭୃତିଦ୍ୱାରା ସ୍ତ୍ରୀମାନଙ୍କ ଗଣ୍ଡସ୍ଥଳରେ ଅଙ୍କିତ
Chitramāchhi ହୋଇଥିବା ମାଛିର ଚିତ୍ର—
A representation of a flea painted on the cheek of women.
ବ୍ୟସ୍ତ ହୋଇ ଚିତ୍ରମାଛିରେ ବାଳା ବ୍ରଣଗଣ ତ ଦିଶୁଛି ।
କବିସୂର୍ଯ୍ୟ· କଣୋଣସଙ୍ଖ୍ୟ, ବ· ଗୀତ ।

ଚିତ୍ରମୃଗ—ସଂ. ବି—କଳା ବାଦୁଟିଆ—
Chitramr̥uga Spotted deer.

ଚିତ୍ରମେଖଳ—ସଂ. ବି. ( ବହୁବ୍ରୀହି; ଚିତ୍ର+ମେଖଳ )—
Chitramekhaḷa ଚିତ୍ରପିଚ୍ଛକ ( ଦେଖ )
Chitrapichchhaka (See)

ଚିତ୍ରଯୋଗ—ସଂ. ବି—୬୪ କଳା ମଧ୍ୟରୁ ଏକ; ବୃଦ୍ଧାକୁ ଯୁବକ ବା
Chitrajoga ଯୁବକକୁ ବୃଦ୍ଧ ଓ ନପୁଂସକ କରିଦେବା ବିଦ୍ୟା—
( ହି. ଶବ୍ଦସାଗର )
The art of turning an old man into a young man and viceversa.

ଚିତ୍ରଯୋଧୀ—ସଂ. ବି. (ଚିତ୍ର+ଯୁଧ୍+କର୍ତ୍ତୃ. ଇନ୍)—୧ । ଅର୍ଜ୍ଜୁନ—
Chitrajodhī 1. A name of Arjuna.
୨ । ଅର୍ଜ୍ଜୁନବୃକ୍ଷ ( ଦେଖ )
2. Arjuna tree ( See)
ସଂ. ବିଣ—ଯେ ଅଦ୍ଭୁତରୂପେ ଯୁଦ୍ଧ କରେ—
Fighting wonderfully.

ଚିତ୍ରରଥ—ସଂ. ବି. (ନାମ) (ବହୁବ୍ରୀହି; ଚିତ୍ର+ରଥ)—୧ । କଶ୍ୟପଙ୍କ
Chitraratha ଔରସରେ ଦକ୍ଷକନ୍ୟାଙ୍କ ଗର୍ଭରୁ ଜାତ ଗନ୍ଧର୍ବବିଶେଷ—1. Name of a Gandharba.
[ ଦ୍ର—ଏ ଇନ୍ଦ୍ରଙ୍କର ରଥବାହକ ଓ କୁବେରଙ୍କ ସଖା ଅଟନ୍ତି । ଏହାଙ୍କ ଅନ୍ୟ ନାମ ଗନ୍ଧର୍ବରାଜ, ଅଙ୍ଗାରପର୍ଣ୍ଣ ଦଗ୍ଧରଥ, କୁବେର ସଖ । ]
୨ । ସୂର୍ଯ୍ୟ—2. The sun.
୩ । ଶ୍ରୀକୃଷ୍ଣଙ୍କ ନାତି; ଗଦଙ୍କ ପୁତ୍ର—
3. Name of a grandson of Śrikr̥ushṇa.
୪ । ଅଙ୍ଗଦେଶର ଜଣେ ରାଜା (ମହାଭାରତ)—
4. Name of a king of Anga.
୫ । ଯଦୁବଂଶୀୟ ଜଣେ ରାଜା (ଭାଗବତ ଓ ବିଷ୍ଣୁପୁରାଣ)—
5. A king of the Jadu dynasty.

ଚିତ୍ରରେଖା—ଦେ. ବି—୧ । ଅଳତା—1. Lac-dye.
Chitrarekhā ୨ । ସ୍ୱର୍ଗବେଶ୍ୟାବିଶେଷ—
2. Name of a heavenly nymph.
କନକ ପାଦେ ଦେଇ ଦେଖା
କନକ ଧର ଚିତ୍ରରେଖା । ଉପେନ୍ଦ୍ର—ବୈଦେହୀଶବିଳାସ ।
୩ । ବାଣାସୁରର କନ୍ୟା ଉଷାର ଏକ ସହଚରୀ—
3. Name of a female companion of Ushā, the daughter of demon Bāṇa.

ଚିତ୍ରଳ—ସଂ. ବିଣ. (ଚିତ୍ର+ଳ)—ବିବିଧ ବର୍ଣ୍ଣଯୁକ୍ତ—
Chitraḷa Variegated.

ଚିତ୍ରଲତା—ସଂ. ବି.—ମଞ୍ଜିଷ୍ଠା—The Indian madder (Rubia
Chitralatā Muñjisṭhā).

ଚିତ୍ରଲେଖା—ସଂ. ବି ସ୍ତ୍ରୀ—୧ । ବାଣରାଜାଙ୍କ ମନ୍ତ୍ରୀ କୁଷ୍ମାଣ୍ଡର କନ୍ୟା;
Chitralekhā ଉଷାର ସଖୀ—1. A companion of Ushā, the daughter of king Bāṇa.
୨ । ଅପ୍ସରାବିଶେଷ—
2. Name of a heavenly nymph.
୩ । ସଂସ୍କୃତ ଛନ୍ଦୋବିଶେଷ (୧୮ ଅକ୍ଷର ୨।୩।୫।୬ ବର୍ଣ୍ଣ ଲଘୁ)—3. A metre with 18 letters having its 2nd, 3rd, 5th and 6th letters short.

୪ । ଚିତ୍ର ଅଙ୍କିବାର ତୂଳିକା—4. Painter's brush.

ଦେ. ବି.—୧ । ଚିତ୍ର ଅଙ୍କନ—1. Drawing of pictures.

୨ । ସାରୀ—2. The myna bird

୩ । ମୟୂର—3. Pea-cock.

ବଲ୍ଲୋକୁଥାଇଁ ଚିତ୍ରଲେଖା ବଲ୍ଲୋକୁ ଥାଇଁ ଚିତ୍ରଲେଖାପୂର୍ଣ୍ଣ ।
ଉଞ୍ଜ. ବୈଦେହୀଶବିଳାସ ।

**ଚିତ୍ରଲେଖନୀ**—ସଂ. ବି.—ରଙ୍ଗ କରିବାର ତୂଳି—
Chitralekhanī Painter's brush.

**ଚିତ୍ରଲୋଚନା**—ସଂ. ବି.—ଚିତ୍ରନେତ୍ରା (ଦେଖ)
Chitralochanā Chitranetrā (See)

**ଚିତ୍ରଶାର୍ଦ୍ଦୂଳ**—ସଂ. ବି—ଚିତାବାଘ—
Chitraśārddūḻa Leopard; panther.

**ଚିତ୍ରଶାଳା**—ଦେ. ବି.—୧ । ଚିତ୍ରସଂଗ୍ରହ ଗୃହ, ଯେଉଁ ଘରେ ନାନା ସ୍ଥାନରୁ ସଂଗୃହୀତ ଚିତ୍ରମାନ ରଖାଯାଇଥାଏ—
Chitraśāḻā 1. Picture-gallery; art-gallery.

୨ । ଯେଉଁ ସ୍ଥାନରେ ପ୍ରକୃତ ସାହିତ୍ୟ, ଇତିବୃତ୍ତ ସମ୍ବନ୍ଧୀୟ ବସ୍ତୁ ଓ ଶିଳ୍ପସାଧିତ ବସ୍ତୁସବୁ ପ୍ରଦର୍ଶନାର୍ଥ ସଜ୍ଜିତ ହୋଇ ଥାଏ—2. Art-museum.

୩ । ଯେଉଁଠାରେ ଚିତ୍ରକର ଛବି ଆଙ୍କେ—
3. Painter's studio.

**ଚିତ୍ରଶାଳିକା**—ଦେ. ବି.—ଚିତ୍ରଶାଳା—
Chitraśāḻikā Chitraśāḻā (See)

**ଚିତ୍ରଶିଖଣ୍ଡିଜ**—ସଂ. ବି. (ଚିତ୍ରଶିଖଣ୍ଡି =ସପ୍ତର୍ଷି ମଧ୍ୟରେ ଏକତମ; ଅଙ୍ଗିରାଃ +ଜନ୍ ଧାତୁ + କର୍ତ୍ତୃ. ଅ)—ଦେବଗୁରୁ ବୃହସ୍ପତି—
Chitraśikhaṇḍija Bṛuhaspati, the preceptor of the Gods.

**ଚିତ୍ରଶିଖଣ୍ଡୀ**—ସଂ. ବି. (ଚିତ୍ର+ଶିଖଣ୍ଡ+ଇନ୍; ୧ମା. ୧ବ.)—
Chitraśikhaṇḍī ୧ । ମରୀଚି ପ୍ରମୁଖ ସପ୍ତ ଋଷି—1. The collective name of 7 sages—Marīchi and six others.

୨ । ସପ୍ତର୍ଷି ନକ୍ଷତ୍ରମଣ୍ଡଳ—
2. The constellation of Ursa major.

[ ଦ୍ର—ମରୀଚି, ଅଙ୍ଗିରା, ଅତ୍ରି, ପୁଲସ୍ତ୍ୟ, ପୁଲହ, କ୍ରତୁ ଓ ବଶିଷ୍ଠ ଏମାନଙ୍କ ନାମରେ ଚିହ୍ନିତ ନକ୍ଷତ୍ରପୁଞ୍ଜକୁ ସପ୍ତର୍ଷିମଣ୍ଡଳ କୁହାଯାଏ; ଏହି ଋଷିମାନେ ଚିତ୍ରଶିଖଣ୍ଡୀ ନାମରେ ପରିଚିତ । ନକ୍ଷତ୍ର ତଳେ କୋଠ ଦେଖ ।]

**ଚିତ୍ରସର୍ପ**—ସଂ. ବି.—ଚିତ୍ରିତ ସାପ—
Chitrasarpa A species of spotted snake.

**ଚିତ୍ରସେନ**—ସଂ. ବି. (ନାମ)—୧ । ଧୃତରାଷ୍ଟ୍ରଙ୍କ ପୁତ୍ରବିଶେଷ—
Chitrasena 1. Name of a son of Dhṛutarāshṭra.

୨ । ଗନ୍ଧର୍ବବିଶେଷ; ଗନ୍ଧର୍ବରାଜ ବିଶ୍ୱାବସୁଙ୍କ ପୁତ୍ର ଓ ଅର୍ଜ୍ଜୁନଙ୍କର ସଙ୍ଗୀତଶିକ୍ଷକ—2. Name of a Gandharba, the music precepter of Arjuna.

୩ । ପାଣ୍ଡବପକ୍ଷୀୟ ବୀରବିଶେଷ—
3. Name of a warrior who fought for the Pāṇḍabas.

୪ । ପୁରୁବଂଶୀୟ ରାଜାବିଶେଷ—4. Name of a king of the Puru dynasty.

୫ । ଶମ୍ବରାସୁରର ଏକ ପୁତ୍ର (ହରିବଂଶ)—
5. Name of a son of demon Śambara

**ଚିତ୍ରହସ୍ତ**—ସଂ. ବି—୧ । ସମରକୌଶଳରେ ହସ୍ତକ୍ରିୟାବିଶେଷ—
Chitrahasta 1. A slight of hand in fighting.

୨ । ପ୍ରସାରିତ କରତଳ (ଜ୍ଞାନେନ୍ଦ୍ର)—
2. The extended palm.

ସଂ. ବିଣ. ପୁଂ—ଯୁଦ୍ଧରେ କ୍ଷିପ୍ରହସ୍ତ—Deft handed in war.

**ଚିତ୍ରା**—ସଂ. ବି. ସ୍ତ୍ରୀ (ଚିତ୍ର+ଆ)—୧ । ଚତୁର୍ଦ୍ଦଶ ନକ୍ଷତ୍ର; ନକ୍ଷତ୍ରବିଶେଷ;.
Chitrā (ନକ୍ଷତ୍ର ତଳେ କୋଠ ଦେଖ)—1. The 14th of the 27 lunar mansions.

[ ଦ୍ର—ଏହା ନିକଟରେ ଚନ୍ଦ୍ର ଥିବା ସମୟରେ ସୁନ୍ଦର ଦେଖାଯାଆନ୍ତି । ]

ଚିତ୍ରା ସଙ୍ଗେ ଏବେ ମିଳିଲେ ଚନ୍ଦ୍ରମା—ରାଧାନାଥ. ଚିଲିକା ।

୨ । ଅପ୍ସରାବିଶେଷ—
2. Name of a heavenly nymph.

୩ । ଚିତ୍ରସାପ—3. The spotted snake.

୪ । ୧୫ ଅକ୍ଷରର ସଂସ୍କୃତ ଛନ୍ଦୋବିଶେଷ—
4. Name of a Sanskrit metre of 15 syllables.

୫ । ନଦୀବିଶେଷ—5. Name of a river.

୬ । ରାଧିକାଙ୍କ ସଖୀବିଶେଷ—6 Name of one of the companions of Rādhikā.

୭ । ମଞ୍ଜିଷ୍ଠା—7. The Indian madder.

୮ । ମାୟା—8. Delusion.

୯ । ମୂଷିକପର୍ଣ୍ଣୀ (ହି. ଶବ୍ଦସାଗର) (ଦେଖ)
9 Mūshikaparṇṇī (See).

୧୦ । କାକୁଡ଼(ହି. ଶବ୍ଦସାଗର)—10. Cucumber.

୧୧ । ଗଣ୍ଡଦୂବା ( ହି. ଶବ୍ଦସାଗର )—
11. A kind of knotted grass.

୧୨ । ଦନ୍ତୀବୃକ୍ଷ ( ହି. ଶବ୍ଦସାଗର ) (ଦେଖ)
12. Dantī ( tree ) (See).

୧୩ । ବାଇବିଡ଼ଙ୍ଗ (ହି. ଶବ୍ଦସାଗର) (ଦେଖ)
13. Bāibirḍaṅga (See).

୧୪ । ଆଖୁକର୍ଣ୍ଣୀ (ହି. ଶବ୍ଦସାଗର) (ଦେଖ)
14. Ākhukarṇṇī (See).

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଅ୍ | ଡ଼ଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଳୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଗଁ୍ୟ | ଇଅ | ଡ଼ | ଢ଼ |

୧୫ । ଜୁଆଣି (ହି. ଶବ୍ଦସାଗର) (ଦେଖ)
15. Juāṇi (See).

୧୬ । ଭୈରବ ରାଗର ସ୍ତ୍ରୀ ରାଗିଣୀ (ହି. ଶବ୍ଦସାଗର)—
16. Name of a secondary musical note

୧୭ । ଚିତ୍ରିତଦେହା ଗାଈ (ହି. ଶବ୍ଦସାଗର)—
17. A mottled cow.

୧୮ । ପ୍ରାଚୀନ ତନ୍ତ୍ରୀବାଦ୍ୟବିଶେଷ (ହି. ଶବ୍ଦସାଗର)—
18. A stringed musical instrument of ancient India.

ଦେ. ବି (ସ. ଚିତ୍ରିତ)—ଚିତ୍ରିତ—Painted.

**ଚିତ୍ରାଇବା**—ଦେ. କ୍ରି (ସ. ଚିତ୍ର)—୧ । କୌଣସି ବସ୍ତୁ ଉପରେ ଚିତ୍ର ଅଙ୍କନ କରିବା—1. To draw pictures on a thing.
Chitrāibā
চিত্রকরা
**বাঙ্গলা**
୨ । ଚିତ୍ରିତ କରିବା; ରଙ୍ଗାଇବା—2. To paint.

**ଚିତ୍ରାଗୁଣ୍ଡୁରି**—ଦେ. ବି—ଏକପ୍ରକାର ଗୁଣ୍ଡୁରି ପୋକ—
Chitrā gunḍuri A kind of spotted sand borer.
[ ଦ୍ର—ଗୁଣ୍ଡୁରି ତଳେ ନୋଟ ଦେଖ । ]

**ଚିତ୍ରାଙ୍ଗ**—ସ. ବିଣ ( ବହୁବ୍ରୀହି; ଚିତ୍ର+ଅଙ୍ଗ )—
Chitrāṅga ୧ । ଯାହା ଦେହ ଚିତ୍ରିତ—1. Multicoloured; having a dappled body.

ବି—୧ । ଚିତ୍ର ସାପ—1. A kind of spotted snake.
୨ । ଚିତ୍ରମୃଗ—2. Spotted deer.
୩ । ରକ୍ତଚିତା ଗୁଳ୍ମ—The red Leadwort.
୪ । ହିଙ୍ଗୁଳ—4 Vermillion
୫ । ଚିତଳମାଛ (ହରେକୃଷ୍ଣ. ଦ୍ରବ୍ୟଗୁଣ )—
5. A large flat sweet-water-fish; Notopheris Chitala
୬ । ହରିତାଳ—6 Yellow orpiment.

**ଚିତ୍ରାଙ୍ଗଦ**—ସ. ବି. ପୁଂ (ନାମ)—(ବହୁବ୍ରୀହି; ଚିତ୍ର=ଅଦ୍ଭୁତ+ଅଙ୍ଗଦ =ବାହୁଭୂଷଣ)—୧ । ଚନ୍ଦ୍ରବଂଶୀୟ ଶାନ୍ତନୁ ରାଜାଙ୍କ ଏକ ପୁତ୍ର—1. A son of king Śāntanu.
Chitrāṅgada
[ଦ୍ର—ଏ ସତ୍ୟବତୀଙ୍କ ଗର୍ଭରୁ ଜନ୍ମିଥିଲେ ଓ ବିଚିତ୍ରବୀର୍ଯ୍ୟଙ୍କ ଜ୍ୟେଷ୍ଠ ଭାଇ । ]
(ଚିତ୍ରାଙ୍ଗଦା—ସ୍ତ୍ରୀ) ୨ । ଗନ୍ଧର୍ବବିଶେଷ—
2. Name of a Gandharba.
୩ । କଳିଙ୍ଗ ବା ଦଶାର୍ଣ୍ଣ ଦେଶର ଜନୈକ ନରପତି (ମହାଭାରତ)—3. Name of a king of ancient Kaliṅga.

**ଚିତ୍ରାଙ୍ଗଦା**—ସ. ବି. ସ୍ତ୍ରୀ (ଚିତ୍ରାଙ୍ଗଦ+ସ୍ତ୍ରୀ. ଆ)—୧ । ଅର୍ଜ୍ଜୁନପତ୍ନୀ—
Chitrāṅgadā 1. The wife of Arjuna.

ପୁଣି ସେ ଚିତ୍ରାଙ୍ଗଦା କନ୍ୟାଠାରୁ ଗଲେ,
ବଭ୍ରୁବାହନଙ୍କ ତହିଁରୁ ଜନ୍ମିଲେ । କୃଷ୍ଣସିଂହ. ମହାଭାରତ, ଆଦି ।

[ ଦ୍ର—ଅର୍ଜ୍ଜୁନ ଦ୍ୱାଦଶ ବର୍ଷ ବନବାସକାଳରେ ମଣିପୁରରେ ଉପସ୍ଥିତ ହୋଇ ମଣିପୁର ରାଜା ଚିତ୍ରଭାନୁ ବା ଚିତ୍ରବାହନଙ୍କର କନ୍ୟା ଚିତ୍ରାଙ୍ଗଦାଙ୍କୁ ବିବାହ କରିଥିଲେ; କିନ୍ତୁ ଚିତ୍ରଭାନୁଙ୍କର ଏହି ସର୍ତ୍ତ ଥିଲା ଯେ ଚିତ୍ରାଙ୍ଗଦାଙ୍କର ପୁତ୍ର ହେଲେ, ସେ ମଣିପୁରର ରାଜା ହେବେ । ଏହି ପ୍ରସ୍ତାବରେ ଅର୍ଜ୍ଜୁନ ସମ୍ମତ ହୋଇଥିଲେ । ଅର୍ଜ୍ଜୁନଙ୍କ ଔରସରେ ଚିତ୍ରାଙ୍ଗଦାଙ୍କର ବଭ୍ରୁବାହନ ନାମରେ ଗୋଟିଏ ପୁତ୍ର ଜାତ ହୋଇଥିଲା । ଯୁଧିଷ୍ଠିରଙ୍କ ଅଶ୍ୱମେଧଯଜ୍ଞ ସମୟରେ ଯଜ୍ଞାଶ୍ୱ ଯୋଗୁଁ ଅର୍ଜ୍ଜୁନଙ୍କ ସହିତ ବଭ୍ରୁବାହନଙ୍କର ଯୁଦ୍ଧ ହୋଇଥିଲା । ସେହି ଯୁଦ୍ଧରେ ଅର୍ଜ୍ଜୁନ ପରାସ୍ତ ହୋଇଥିଲେ । ]

୨ । କଳିଙ୍ଗରାଜକନ୍ୟା; କୁରୁରାଜ ଦୁର୍ଯ୍ୟୋଧନଙ୍କ ପତ୍ନୀ—(କୃପାସିନ୍ଧୁ. ଇତିହାସ)—
2. Name of a wife of Durjyodhana.
୩ । ରାବଣର ଏକ ପତ୍ନୀ—
3. Name of a wife of Rābaṇa.

**ଚିତ୍ରାଙ୍ଗି ହେବା**—ଦେ. କ୍ରି—୧ । ଚିତା କାଟିବା; ଧପା ମାରିବା; ପ୍ରତାରଣା କରିବା—1. To cheat.
Chitrāṅgi debā
(ଚିତ୍ରାଙ୍ଗି କାଟିବା । } ଅନ୍ୟରୂପ
(ଚିତ୍ରାଙ୍ଗି ବତାଇବା ।
୨ । ଲୁଚିକରି ପଳାଇବା—
2. To fly away stealthily.

**ଚିତ୍ରାଫଳ**—ସ. ବି—ଗହମକାକୁଡ଼ି (ହରେକୃଷ୍ଣ ଦ୍ରବ୍ୟଗୁଣ) (ଦେଖ)
Chitrāphaḷa Gahamakākurḍi (See)

**ଚିତ୍ରାବସୁ**—ସ. ବି—ନକ୍ଷତ୍ରମାନଙ୍କରେ ମଣ୍ଡିତ ରାତ୍ରି (ହିନ୍ଦି ଶବ୍ଦସାଗର)
Chitrābasu A clear night with stars shining in the sky.

**ଚିତ୍ରାର୍ପିତ**—ସ. ବିଣ. ପୁଂ (୭ମୀ ତତ୍; ଚିତ୍ର+ଅର୍ପିତ)—୧ । ଚିତ୍ରପଟରେ ଅଙ୍କିତ—1. Painted in a picture.
Chitrārpita
(ଚିତ୍ରାର୍ପିତା—ସ୍ତ୍ରୀ) ୨ । ଚିତ୍ରପଟରେ ଅଙ୍କିତ ଛବି ବା ଚିତ୍ର ପରି ନିଶ୍ଚଳ—2. Still or quiet as a painting.

ରହିଁ ରହିଁ ହୋ ସରଣୀ, କଳୁଲୁ ରେ ତରୁଣୀ, ଚିତ୍ରାର୍ପିତ ପରି ଥିଲ ବସି—
କବିସୂର୍ଯ୍ୟ. କଳୋକାଚନ୍ଦ୍ର, ଚ ଗୀତ ।

**ଚିତ୍ରାଶ୍ୱ**—ସ. ବି—ସତ୍ୟବାନ୍; ସାବିତ୍ରୀଙ୍କ ସ୍ୱାମୀ—
Chitrāśwa Satyabān, the husband of Sābitri.

ସତ୍ୟବାନ ତନରେ ଅଶ୍ୱ ତ ଲେଖନ୍ତି,
ଏହି ସକାଶରୁ ଚିତ୍ରାଶ୍ୱ ସେ ବୋଲନ୍ତି । କୃଷ୍ଣସିଂହ. ମହାଭାରତ ବନପର୍ବ ।

**ଚିତ୍ରିକ**—ସ. ବି. ( ଚିତ୍ର+ମାସାର୍ଥେ. ଇକ ) ଚିତ୍ରାନକ୍ଷତ୍ରଯୁକ୍ତ ପୂର୍ଣ୍ଣିମାର ମାସ; ଚୈତ୍ର ମାସ—The month of Chaitra.
Chitrika

**ଚିତ୍ରିଣୀ**—ସ. ବି. ସ୍ତ୍ରୀ—କାମଶାସ୍ତ୍ରୋକ୍ତ ଚାରିଜାତି ସ୍ତ୍ରୀ ମଧ୍ୟରୁ ଏକତମା (୨ୟ ଶ୍ରେଣୀ)—One of the 4 classes of females as classified in the Hindu Śāstras.
Chitriṇi

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଲୁଅ' ନ ମିଳିଲେ 'ଲୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

[ ଦ୍ର—ହିନ୍ଦୁଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ସ୍ତ୍ରୀମାନଙ୍କର ୪ ଶ୍ରେଣୀ (ପଦ୍ମିନୀ, ଚିତ୍ରିଣୀ, ଶଙ୍ଖିନୀ, ହସ୍ତିନୀ) ମଧ୍ୟରୁ ଚିତ୍ରିଣୀ ୨ୟ ଶ୍ରେଣୀର । ଏହାର ଆକାର ନାତିହ୍ରସ୍ୱ ନାତିଦୀର୍ଘ, ନାକ ତିଳଫୁଲ ପରି, ନେତ୍ର ପଦ୍ମଦଳ ପରି, ମୁଖ ଚଳଚଞ୍ଚଳ । ଏ ବିବିଧ କଳା ଓ ଶୃଙ୍ଗାରଚେଷ୍ଟାରେ ନିପୁଣା; ଏ ଜାତୀୟା ସ୍ତ୍ରୀର ମୃଗଜାତୀୟ ପୁରୁଷ ସ୍ୱାମୀ ହେବା ଉପଯୁକ୍ତ— ହି. ଶବ୍ଦସାଗର । ]

**ଚିତ୍ରିତ**—ସଂ. ବିଣ. ( ଚିତ୍ର ଧାତୁ=ଚିତ୍ରିତ କରିବା + କର୍ମ. ତ )—
Chitrita ୧ । ରଞ୍ଜିତ; ଚିତ୍ରାର୍ପିତ—1. Painted.
୨ । ଅଙ୍କିତ—2. Drawn; delineated.
୩ । ବିଚିତ୍ର—3 Variegated; chequered.
୪ । ନାନା ବର୍ଣ୍ଣବିଶିଷ୍ଟ—
4. Of various colours.
୫ । ଚିହ୍ନଯୁକ୍ତ; ଛିଟିଛିଟିକିଆ—
5. Spotted; mottled.

**ଚିତ୍ରିବା**—ଦେ. କ୍ରି—୧ । ଚିତ୍ରିତ କରିବା—
Chitriba 1. To paint.
চিত্রিতকরা
**চিতনা**
ଚିତ୍ରିଲ ଚରଣ ଅଳତାବୋଲେ—
କବିସୂର୍ଯ୍ୟ. କବିତା ।
୨ । ( ଲକ୍ଷଣାର୍ଥ ) ଚିତ୍ରିତ ବିବରଣ କରିବା; ବର୍ଣ୍ଣନା କରିବା—
2. ( figurative ) To paint; to describe vividly.
ଚିତ୍ରିତଲ ମହା-ଅଦ୍ଭୁତ-ଚରିତ୍ରକୁ—ମଧୁସୂଦନ. ଭକ୍ତିମାଳିକା ।

**ଚିତ୍ରେଶ**—ସଂ. ବି. ( ୬ଷ୍ଠୀ ତତ୍; ଚିତ୍ରା + ଈଶ; ଚିତ୍ରାନକ୍ଷତ୍ରର ସ୍ୱାମୀ )—
Chitresa ଚନ୍ଦ୍ର—The moon

**ଚିତ୍ରେଶ୍ୱର**—ସଂ. ବି—ପ୍ରଭାସ ତୀର୍ଥରେ ଚିତ୍ରଗୁପ୍ତଙ୍କ ପ୍ରତିଷ୍ଠିତ ଶିବଲିଙ୍ଗ—
Chitreswara Name of a Sibalinga said to have been established by Chitragupta.

**ଚିତ୍ରୋକ୍ତି**—ସଂ. ବି. ( କର୍ମଧା; ଚିତ୍ର + ଉକ୍ତି )—୧ । ଆକାଶବାଣୀ—
Chitrokti 1. A voice from the sky.
୨ । ଅଦ୍ଭୁତ ବାକ୍ୟ—2 Wonderful words.
୩ । ଅଳଙ୍କାରଯୁକ୍ତ ଭାଷାରେ କଥନ—
3. Speech full of rhetorical excellence.

**ଚିତ୍ରୋତ୍ତର**—ସଂ. ବି—କାବ୍ୟାଲଙ୍କାରବିଶେଷ; ଯହିଁରେ ପ୍ରଶ୍ନ ଓ ଉତ୍ତର
Chitrottara ଏକ ସଙ୍ଗେ ଏକ ରଚନାରେ ଥାଏ—
An artistic camposition which is the question and the answer at the same time.

( ଯଥା— କା କାଳୀ, କା ମଧୁରା, କା ଶୀତଳବାହିନୀ ଗଙ୍ଗା, କେ ଦାରପୋଷଣରତା, କଂ ବଳବନ୍ତଂ ନ ବାଧତେ ଶୀତଃ । ଏଥିରେ ୫ଟି ବାକ୍ୟ ପ୍ରଶ୍ନରୂପେ ଓ ସେହି ୫ଟି ବାକ୍ୟ ଉକ୍ତ ପ୍ରଶ୍ନର ଉତ୍ତର ରୂପେ ରଚିତ । )

**ଚିତ୍ରୋତ୍ପଳ**—ସଂ. ବି. ( ବହୁବ୍ରୀହି; ଚିତ୍ର + ଉତ୍ପଳ )—ନାନା ବର୍ଣ୍ଣବିଶିଷ୍ଟ
Chitrotpaḷa କଇଁଫୁଲ—Waterlily of variegated colour.

**ଚିତ୍ରୋତ୍ପଳା**—ସଂ. ବି. ସ୍ତ୍ରୀ—୧ । ମହାନଦୀର ପ୍ରାଚୀନ ନାମ—
Chitrotpaḷā 1. The ancient name of the Mahānadī river.
[ ଦ୍ର—ଚିତ୍ରୋତ୍ପଳାକୁ ସୁକାନ୍ତିଜନନୀ ବୋଲାଯାଏ । ]
୨ । କଟକ ଜିଲ୍ଲାର ଆଇତପୁରଠାରୁ ବାହାରିଥିବା ମହାନଦୀର ଶାଖାନଦୀବିଶେଷ—2. A branch of the Mahānadī rising at Āitipur in Cuttack District.
ଶାଳୀପୁର ଯହିଁ ଚିତ୍ରୋତ୍ପଳା ତୀର, ପୂତ ଧରଶେକ ସ୍ଥାଗଦଳର—
ରାଧାନାଥ. ନନ୍ଦିକେଶ୍ୱରୀ ।
୩ । ମତ୍ସ୍ୟପୁରାଣ, ବାମନପୁରାଣ ଓ ମାର୍କଣ୍ଡେୟପୁରାଣ ମତରେ ଅକ୍ଷପାଦ ପର୍ବତରୁ ବାହାରିଥିବା ନଦୀବିଶେଷ ( ହି. ଶବ୍ଦସାଗର )—3. Name of a mythological river of India.

**ଚିତ୍ରୋପଳା**—ସଂ. ବି. ( ଚିତ୍ର=ବିଚିତ୍ର + ଉପଳ = ପ୍ରସ୍ତରଖଣ୍ଡ ଅଛି
Chitropaḷā ଯହିଁରେ)— ମହାଭାରତୋକ୍ତ ନଦୀବିଶେଷ (ହି. ଶବ୍ଦସାଗର)—Name of a river of ancient India.

**ଚିଥଲ**—ଦେ. ବି. ( ସଂ. ଚିତ୍ରମୃଗ )—ଖୁରାଣ୍ଟି; କୁରଙ୍ଗ; ଏକପ୍ରକାର
Chithala ମୃଗ—A species of deer.

**ଚିଦାକାଶ**—ସଂ. ବି. (ଚିତ୍ + ଆକାଶ; ଆକାଶ ପରି ନିର୍ଲିପ୍ତ ଓ ସମସ୍ତଙ୍କର
Chidākāsa ଆଧାରଭୂତ)—ପରବ୍ରହ୍ମ—
The Universal Soul.

**ଚିଦାତ୍ମା**—ସଂ. ବି. ( ଚିତ୍ + ଆତ୍ମା )—୧ । ଚେତନା—1. The intellect; the thinking soul.
Chidātmā
୨ । ଜ୍ଞାନମୟ ଆତ୍ମା—2. The soul of man.
୩ । ଚୈତନ୍ୟ; ଜୀବାତ୍ମା—
3. The divine essence in man.
୪ । ଜ୍ଞାନର ପ୍ରକାଶ—
4. The semblance of intellect.
୫ । ଜ୍ଞାନସ୍ୱରୂପ ପରମାତ୍ମା—5 The Divine Soul which is the embodiment of intelligence.

**ଚିଦାନନ୍ଦ**—ସଂ. ବି. ( ବହୁବ୍ରୀହି; ଚିତ୍ + ଆନନ୍ଦ; ଚିତ୍ = ଜ୍ଞାନ ଓ
Chidānanda ଆନନ୍ଦ ଅଛି ଯାହାର)—୧ । ଚୈତନ୍ୟମୟ ଓ ଜ୍ଞାନମୟ ବ୍ରହ୍ମ; ପରମାତ୍ମା—
1. The Universal Soul.
୨ । ପରମଜ୍ଞାନୀ ସଦାନନ୍ଦ ଶିବ—2. God Siba.

**ଚିଦାଭାସ**—ସଂ. ବି. (ଷଷ୍ଠୀ ତତ୍; ଚିତ୍ + ଆଭାସ)—୧ । ଜ୍ଞାନର ଆଭାସ;
Chidābhāsa ଜ୍ଞାନର ପ୍ରକାଶ—
1. The manifestation of intelligence.

| ୧ | ଇ | ଉ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ତ | ଉଥ | ଜ୍ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ଢ଼ | ନ୍ନ |

୨ । ଜ୍ଞାନ—2. Knowledge.

୩ । ଜୀବାତ୍ମା—3. The Living Soul.

**ଚିଦ୍ରୂପ**—ସଂ. ବି. ( ଚିତ୍+ରୂପ )—୧ । ଚୈତନ୍ୟସ୍ୱରୂପ ବା ଜ୍ଞାନମୟ ଆତ୍ମା—1. Pure intelligence.
Chidrūpa

ବିଣ.—୧ । ଚୈତନ୍ୟମୟ—Intelligent; intellectual

୨ । ପ୍ରିୟ—2. Dear; beloved.

୩ । ସ୍ଫୂର୍ତ୍ତିମାନ୍—3. Manifest.

୪ । ଜ୍ଞାନମୟ—4. Full of wisdom.

**ଚିନ୍‌ଚିନ୍**—ଦେ. ବି.—(ଧ୍ୱନି ଓ ଅନୁଭୂତ୍ୟନୁକରଣ )—୧ । ଛୁଞ୍ଚି ମାଇଲା ପରି ସାମାନ୍ୟ ତୀବ୍ର ଯନ୍ତ୍ରଣାର ଅନୁଭୂତି—
Chinchin
चिनचिन 1. A twinging sensation resembling that
**चुनचुनाहट** produced by slight pin-pricks.

୨ । ଝିମ୍‌ଝିମ୍ (ଦେଖ)
2. Jhimjhim (See)

**ଚିନ**—ଦେ. ବି.—୧ । ଚିହ୍ନ; ଦାଗ—
China 1. Mark.
चिन ୨ । ଚୀନ ଦେଶ—
**चिन्ह** 2. China (country).
चीन ବିଣ.—ଚୀନ ଦେଶୀୟ—
**चिनिया** Of or pertaining to China.

**ଚିନ୍‌ବାସନ**—ଦେ. ବି.—ଚିନା ବାସନ (ଦେଖ)
Chin bāsana China bāsana (See)

**ଚିନ୍‌ମାଟି**—ଦେ. ବି.—ଚିନା ମାଟି (ଦେଖ)
Chinmāti China māti (See)

**ଚିନର**—ଦେ. ବିଣ.—ଚିହ୍ନର (ଦେଖ)
Chinarā Chihnarā (See)

**ଚିନା**—ଦେ. ବି.—୧ । (ସଂ. ଚୀନକ)—ଏକଜାତୀୟ ଗୋଲାକୃତିବିଶିଷ୍ଟ କ୍ଷୁଦ୍ର ଶସ୍ୟ—1. A kind of small grain; millet.
China
चीनेधान ୨ । ଗୁଞ୍ଜ କାଇଁଚ ପରିମାଣ କ୍ଷୁଦ୍ର ଓଜନ; ସୁନା, ରୂପା ଓଜନ
**चेना** କରିବାର ପରିମାଣବିଶେଷ—2. A small weight
ଦ୍ରା. ଚେନ୍ନା equal to 4 kāïnchas; one grain
ତେ. ଚିନ୍ନ ଜ୍ୟୋତି କେତେ ଚିନା କେତେକ ଧାନ । ପ୍ରାଚୀ. ପରଚେଗୀତା ।
ତା. ସିନ୍ନା ୩ । (ସଂ. ଚିହ୍ନ ଧାତୁ )—ଚିହ୍ନା; ପରିଚୟ—
3. Acquaintance.

୪ । (ସଂ. ଚୀନ)—ଚୀନଦେଶବାସୀ ମନୁଷ୍ୟ—
4. A Chinaman

ଗ୍ରା. ବି. (ସଂ. ଚିହ୍ନିତ)—ଚିହ୍ନା; ପରିଚିତ—
Acquainted; well known.

चिना ବିଣ—୧ । ଚିନଦେଶୀୟ—
**चिनिया** 1. Pertaining to China.

( ଯଥା—ଚିନା ଘାସ, ଚିନା କପୁର, ଚିନା ମାଟି, ଚିନା ବାସନ ଇତ୍ୟାଦି । )

୨ । ପ୍ରଥମରେ ଚୀନ ଦେଶରୁ ଆନୀତ—
2. Originally imported from China.

୩ । ଚୀନଦେଶୋତ୍ପନ୍ନ—3. Produced in China.

୪ । ଚୀନ ଦେଶବାସୀ—
4. Belonging to or residing in China; Chinese.

**ଚିନାଇବା**—ଗ୍ରା କ୍ରି—ଚିହ୍ନାଇବା ( ଦେଖ )
Chināibā Chihnāibā ( See )

**ଚିନାଏ**—ଦେ. ବି—ଏକ ଚିନା ପରିମାଣ—One grain only.
Chināe ବିଣ—୧ । ଏକଚିନା ପରିମିତ—
1. A grain of.

୨ । (ଲକ୍ଷଣାର୍ଥ) ଟିକିଏ ମାତ୍ର—2. ( Figurative ) A little of; a grain or particle of; a bit of.
ଚିନାଏଁ ତ ଖେଦ ନାହିଁ ମୋର । କବିସୂର୍ଯ୍ୟ. କଳୌ୍ଷଚନ୍ଦ୍ର, ଚ. ଗୀତ ।
[ ଦ୍ର—ତୁଳନା କର; ଏହିପରି ଲକ୍ଷଣାର୍ଥଯୁକ୍ତ ରତିଏ, ଧାନେ ।]

**ଚିନାକପୂର**—ଦେ. ବି. (ସଂ. ଚୀନକକର୍ପୂର)—କର୍ପୂର ଗଛର କାଠରୁ
Chinākapūra ଜଳୀଁରେ ସିଝାଇ ଯେଉଁ କପୂର ବାହାର କରାଯାଏ
चिनाकपूर ( କପୂର ଦେଖ )—Camphor extracted
**चीनियाकपूर** from the wood of a tree; Cinnamonum Camphora.

**ଚିନାଘାସ**—ବୈଦେ. ବି. (ଇଂ. ଚାଇନା ଗ୍ରାସ)—
Chinaghāsa ଏକପ୍ରକାର ସୁଦୃଶ୍ୟ ବିଦେଶୀୟ ତୃଣବିଶେଷ—
चिनाघास China grass.
**चिनियाघास**

**ଚିନାଘୋଡ଼ା**—ସଂ. ବି. ( ସଂ. ଚୀନକ+ଘୋଟକ )—
Chināghorḍā ଯେଉଁ ଘୋଡ଼ାର ୪ ଗୋଡ଼ ଧଳା ଓ ଦେହଯାକ
चिनियाघोड़ा ଲାଲ ଓ ଧଳା ରଙ୍ଗମିଶା ଲୋମ ଥାଏ—
**चिनियाघोड़ा** A horse with white legs and body covered with white and red hairs.

**ଚିନାପାଟଣା**—ପ୍ରାଦେ. (ଗଞ୍ଜାମ) ବି—ମନ୍ଦ୍ରାଜ ସହର ଓ ମାନ୍ଦ୍ରାଜ ଉପକୂଳ-
Chināpātanā The city and the coast of Madras.

**ଚିନାବ୍**—ଦେ. ବି. (ନାମ) (ସଂ. ଚନ୍ଦ୍ରଭାଗା)—ଚନାବ (ଦେଖ)
Chināb Chanāb (See)

**ଚିନା ବାଦାମ୍**—ଦେ. ବି—ଭୁଇଁଚଣା; ଚେରଚଣା; ମୁଗଫଳୀ—
China bādām Groundnut; pea-nut; earth-nut.
चिनाबादाम [ ଦ୍ର—ଏହା ଶିମ୍ବାବର୍ଗର ଛୋଟ ଲତାଗୁଳ୍ମ । ଏଥିର
**चिनियाबदाम** ଚେରରେ ପତଳା ତ୍ୱେଷ୍ପାବିଶିଷ୍ଟ ଛୁଇଁ ଧରେ ଓ ଏ ଛୁଇଁ ଭିତରେ ମଟର ପରି ଶସ୍ୟ ଥାଏ ଓ ଏହାକୁ ଖାଆନ୍ତି । ଏ ମଞ୍ଜିରୁ ତେଲ ବାହାରେ । ଏହା ପ୍ରଥମେ ଆମେରିକାର ବ୍ରାଜିଲ ଦେଶରୁ ଆସିଥିଲା । ବିଦେଶରୁ ଆସିଥିବା ବୋଲି ଏହାର ନାମ ଚିନାବାଦାମ୍ ହୋଇଅଛି । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅକ୍ଷୋ' ନ ପାଇଲେ 'ଅକ୍ଷା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

**ଚିନା ବାସନ**—ଦେ. ବି—ଏକପ୍ରକାର ଧଳାମାଟିରେ ତିଆରି ହୋଇଥିବା ବାସନ—China ware; crockery.
China bāsana
चिनावासन
**चिनीमिट्टिकावासन**

**ଚିନା ମାଟି**—ଦେ. ବି. (ସଂ. ଚୀନକ+ମୃତ୍ତିକା)—ବାସନ ଇତ୍ୟାଦି ତିଆରି କରିବା ନିମନ୍ତେ ବ୍ୟବହୃତ ଏକପ୍ରକାର ଧଳା ମାଟି—Keolin; a kind of white clay.
Chinā māṭi
चिनामाटि
**चिनीमिट्टी**

**ଚିନାମାଳ**—ଦେ. ବି—ମେଣ୍ଢା ଓ ଛେଳିର କୋଷ—The testicle of a sheep or goat.
Chināmāḷa

**ଚିନାମାଳି**—ଦେ. ବି—୧ । କଣ୍ଠର ମାଳ ବିଶେଷ—1. A kind of necklace.
Chināmāḷi
୨ । ଏକପ୍ରକାର ସରୁ ଧାନ—2. A kind of fine paddy.
୩ । ଚିନାମାଳ ( ଦେଖ )—3. Chināmāḷa ( See )
ସବୁ ବୃଥା ହେଲା ଦଶହରା ଗଲା ନ ପାଇଲି ଚିନାମାଳି । (ଜ. ମ. ନନ୍ଦେ)

**ଚିନାର**—ପ୍ରାଦେ (ସମ୍ବଲପୁର) ବିଣ (ଭୁଲ. ଏହି ଅର୍ଥରେ ହି. ଚିହ୍ନାର)—ଚିହ୍ନା; ପରିଚିତ—Acquainted; familiar.
Chinār

**ଚିନି**—ଦେ. ବି ( ଭୁଲ. ଫା, ଶୀର୍ନୀ=ମିଷ୍ଟାନ୍ନ )—୧ । ପରିଷ୍କୃତ ଗୁଣ୍ଡା ଆକାରର ଗୁଡ଼—1. Refined powdered sugar.
Chini
चिनि
**चीनी**
ପଇଡ଼ ପାଣି ଖଜା ଖଜୁରିଖଣ୍ଡ ଚିନି—ପୀତାମ୍ବର. କୃଷ୍ଣ ହିତସ୍ମରଣ ।
୨ । ଚିନାମାଟି—2. Keolin.
ପ୍ରାଦେ (ସମ୍ବଲପୁର) ବିଣ—ଛୋଟ; କ୍ଷୁଦ୍ର—Small.

**ଚିନି ଅଙ୍ଗୁଳି**—ପ୍ରାଦେ (ସମ୍ବଲପୁର) ବି—କନିଷ୍ଠାଙ୍ଗୁଳି (ହାତର ଓ ଗୋଡ଼ର)—The little finger.
Chini aṅguli

**ଚିନି ଆଳୁ**—ଦେ. ବି—ଶଙ୍ଖଆଳୁ; ଏକପ୍ରକାର ମିଠା ଆଳୁ; ଗସ୍ତା ଆଳୁ—Pachyrhizus Angulātus.
Chini āḷu
[ ଦ୍ର—ଶଙ୍ଖସାରୁ ୨ ତଳେ ନୋଟ ଦେଖ । ]

**ଚିନିକପୁର**—ଦେ. ବି—ଚିନାକପୂର (ଦେଖ)
Chinikapura Chinākapūra (See).

**ଚିନିଚମ୍ପା**—ଦେ. ବି (ଚୀନ ଦେଶରୁ ପ୍ରଥମେ ଆନୀତ ହୋଇଥିବାରୁ)—୧ । ଏକପ୍ରକାର ଉଗ୍ରଗନ୍ଧ ଚମ୍ପକଜାତୀୟ ଫୁଲ—Artabotrys Odoratissimus ( a kind of Magnolia flowering in a creeper).
Chinichampā
কাঁঠালীচাঁপা
**कटहलियाचंपा**
[ଦ୍ର—ଏହା ଲତାରୁ ହୁଏ । ଫୁଲର ଗନ୍ଧରେ ଦିଗଦିଗନ୍ତ ମହକୁଥାଏ । ଏହାର ପତ୍ର ସୁନ୍ଦର, ଫୁଲ ଅପୀତ । ପାଚିଲା ପଣସ ବା କଦଳୀ ପରି ଏଥିର ଗନ୍ଧ । ଏହାର ୬ଗୋଟି ମୋଟ ପାଖୁଡ଼ା ଥାଏ; ଅତଫୁଲ ପରି । ଫୁଲର ନାଡ଼ ମୂଳ ଅଙ୍କୁଶୀ ପରି ବଙ୍କା । ଏକ ଫୁଲରୁ ଅନେକ ଫଳ ହୁଏ । ]

চাঁপকেলা
**चिनीचम्पा**
୨ । ଏକପ୍ରକାର ଚମ୍ପା କଦଳୀଠାରୁ ସାନ ଓ ଉତ୍କୃଷ୍ଟ କଦଳୀ—2. A kind of excellent banana.
ପ୍ରାଦେ (ଆଠମଲ୍ଲିକ) ବି—କାନର ଗହଣାବିଶେଷ—A kind of ornament for the ear.

**ଚିନିବା**—ଗ୍ରା. କ୍ରି. (ସଂ. ଚିହ୍ନ ଧାତୁ)—ଚିହ୍ନିବା (ଦେଖ)
Chinibā Chihnibā (See).

**ଚିନିବାସନ**—ଦେ. ବି—ଚିନାବାସନ (ଦେଖ)
Chinibāsana Chinābāsana (See).

**ଚିନିମାଟି**—ଦେ. ବି—ଚିନାମାଟି (ଦେଖ)
Chinimāṭi Chināmāṭi (See).

**ଚିନିରା**—ଦେ. ବିଣ (ସଂ. ଚିହ୍ନ ଧାତୁ)—ଚିହ୍ନିରା (ଦେଖ)
Chinirā Chihnarā (See).
ଜାଣିଲି ପରା ମୁଁ ସେହି ଚିନିରା,
ଚିହ୍ନିଲି କେ କାହିଁ କେଉଁଠା ଝିଅରା—ଉତ୍କଳ-ସାହିତ୍ୟ (ନନ୍ଦେ)

**ଚିନିସିନ୍ଦୂର**—ଦେ. ବି (ଚୀନ ଦେଶରୁ ଏ ଦେଶକୁ ଆସୁଥିବାରୁ)—ଏକପ୍ରକାର ଉତ୍କୃଷ୍ଟ ଉଜ୍ଜ୍ୱଳବର୍ଣ୍ଣ ସିନ୍ଦୂର—A kind of bright red vermillion.
Chinisindura
चिनासिन्दूर
**चिनिआसिंदूर**
[ ଦ୍ର—ପାରଦ ଓ ଗନ୍ଧକଘଟିତ ସିନ୍ଦୂରର ରଙ୍ଗ ଖୁବ୍ ଉଜ୍ଜ୍ୱଳ; ଏହାକୁ ଚିନିସିନ୍ଦୂର କହନ୍ତି । ସୀସକଘଟିତ ସିନ୍ଦୂର ଫିକା; ଏହାକୁ ମାଟିଆ ବା ଫିକା ସିନ୍ଦୂର କହନ୍ତି । ସଂସ୍କୃତ ଗ୍ରନ୍ଥରେ ଉଲ୍ଲିଖିତ ସିନ୍ଦୂର ସୀସକଘଟିତ ବା ନାଗସମ୍ଭବ । ]

**ଚିନ୍ତ** (ଧାତୁ)—ସଂ—ଚିନ୍ତା କରିବା—To think.
Chinta (root)

**ଚିନ୍ତକ**—ସଂ. ବିଣ. ପୁଂ ( ଚିନ୍ତ ଧାତୁ+କର୍ତ୍ତୃ. ଅକ )—୧ । ଯେ ଚିନ୍ତା ବା ଧ୍ୟାନ କରୁଥାଏ—1. Caring for.
Chintaka
୨ । ଚିନ୍ତାକରିବା (ବ୍ୟକ୍ତି)—2. Thoughtful; thinking of.

**ଚିନ୍ତନ**—ସଂ. ବି (ଚିନ୍ତ ଧାତୁ+ଭାବ. ଅନ)—୧ । ଚିନ୍ତା (ଦେଖ)—1. Chintā (See).
Chintana
(ଚିନ୍ତନା—ସ୍ତ୍ରୀ)
୨ । ବାରମ୍ବାର ସ୍ମରଣ—3. Repeated remembrance.

**ଚିନ୍ତନୀୟ**—ସଂ ବିଣ. ( ଚିନ୍ତ ଧାତୁ+କର୍ମ. ଅନୀୟ )—ଚିନ୍ତାକରିବାଯୋଗ୍ୟ—Thinkable; deserving thought or consideration.
Chintaniya
(ଚିନ୍ତ୍ୟ—ଅନ୍ୟରୂପ)

**ଚିନ୍ତା**—ସଂ. ବି (ଚିନ୍ତ ଧାତୁ+ଭାବ. ଅ+ଆ)—୧ । ଧ୍ୟାନ; ଉପାସନା—1. Reflection; meditation.
Chintā
୨ । ଭାବନା—2. Thought; thinking.
୩ । ଉଦ୍‌ବେଗ—3. Anxiety; care.
୪ । ସ୍ମରଣ—4 Recollection.
୫ । ଶଙ୍କା ବା ଭୟ—5. Fear.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଚ୍ଛ | ଉଥ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଥ | ଔ | ନ୍ |

୬ । ମନରେ ଆନ୍ଦୋଳନ—
6. Revolving in the mind.
୭ । ବିଚାର; ବିବେଚନା—7. Consideration.

**ଚିନ୍ତାକାମୋଦୀ**—ଦେ. ବି—ରାଗବିଶେଷ—
Chintākāmodī Name of a tune of music.
[ ଦ୍ର—ରାଗ ତଳେ ନୋଟ ଦେଖ । ]

**ଚିନ୍ତାକୁଳ**—ସଂ. ବିଣ. ପୁଂ ( ଷଷ୍ଠୀ ତତ୍; ଚିନ୍ତା+ଆକୁଳ )—
Chintākula ୧ । ଚିନ୍ତାଯୁକ୍ତ—1. Thoughtful.
(ଚିନ୍ତାକୁଳା—ସ୍ତ୍ରୀ) ୨ । ଉଦ୍‌ବିଗ୍ନ—2. Distracted; disturbed in mind; agitated; anxious.

**ଚିନ୍ତାକୁଳିତ**—ସଂ. ବି. ପୁଂ ( ଷଷ୍ଠୀ ତତ୍; ଚିନ୍ତା+ଆକୁଳିତ )—
Chintākulita ଚିନ୍ତାକୁଳ ( ଦେଖ )
(ଚିନ୍ତାକୁଳିତା—ସ୍ତ୍ରୀ) Chintākula (See)

**ଚିନ୍ତା ଖାଇବା**—ଦେ. ବି—( ଲକ୍ଷଣାର୍ଥ ) ଅତ୍ୟଧିକ ଭାବନା ଗ୍ରାସ କରି
Chintā khāibā ଶରୀର ଓ ମନକୁ କ୍ଷୀଣ ଓ ଦୁର୍ବଳ କରି ପକାଇବା—(figurative) Too much serious thought (to rendering a person lean and lank both in the mind and the body).
( ଯଥା—ମୋତେ ଧନଗୁଡ଼ିକ ବଢ଼ିଲା ଝିଅକୁ ବିଭା କରାଇବା ଚିନ୍ତା ଖାଇଲାଣି । )

**ଚିନ୍ତାଦେଶାକ୍ଷ**—ଦେ. ବି—ରାଗବିଶେଷ—
Chintādeśāksha Name of a tune of music
[ ଦ୍ର—ରାଗ ତଳେ ନୋଟ ଦେଖ । ]

**ଚିନ୍ତାନ୍ୱିତ**—ସଂ. ବିଣ. ପୁଂ—ଚିନ୍ତାକୁଳ ( ଦେଖ )
Chintānwita Chintākula (See)
(ଚିନ୍ତାନ୍ୱିତା—ସ୍ତ୍ରୀ)

**ଚିନ୍ତାପତ୍ରି**—ଦେ ବି—ଢେଙ୍କାନାଳଆଦି ଗଡ଼ଜାତରେ ଠାକୁର
Chintāpatri ଠାକୁରାଣୀଙ୍କ ମାଳି ସେବକ—The Māli Sebaks of village-deities in the Orissa Garjats

**ଚିନ୍ତାପାଣ୍ଡୁ**—ପ୍ରାଦେ (ଗଞ୍ଜାମ) ବି (ଭୁଲ ତେ. ଚିଂତାପାଣ୍ଡୁ)—ତେନ୍ତୁଳି—
Chintāpāṇḍu Tamarind.

**ଚିନ୍ତାବେଶ୍ମ**—ସଂ. ବି—ଯେଉଁ ଘରେ ବସି ଗୁରୁତର ବିଷୟମାନ ଚିନ୍ତା
Chintābeśma ବା ପରାମର୍ଶ କରାଯାଏ; ମନ୍ତ୍ରଣାଗୃହ—Council-room

**ଚିନ୍ତାଭର**—ଦେ. ବିଣ—ଚିନ୍ତାଗ୍ରସ୍ତ; ଚିନ୍ତିତ; ଉଦ୍‌ବିଗ୍ନ—
Chintābhara Anxious
ଲଭିବା ଆଶେ ଲୁବ୍‌ଧି ନ ଆସେ ଚିନ୍ତାଭର ମତି ଅତି । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଚିନ୍ତାମଣି**—ସଂ ବି. ( ମଧ୍ୟପଦଲୋପୀ; ଚିନ୍ତାପ୍ରଦ ମଣି )—୧ । ବାଞ୍ଛାପ୍ରଦ
Chintāmaṇi ରତ୍ନବିଶେଷ—1. A fabulous gem said to give the wearer his wished for results.
୨ । ପରଶୁପଥର; ସ୍ପର୍ଶମଣି—
2 The philosopher's stone
ଚିନ୍ତାମଣି ଥାଇଁ ଥାଇଁ କେ ରସେ ରୂପାରେ । କବିସୂର୍ଯ୍ୟ. ସଙ୍ଗୀତ ।
୩ । ବ୍ରହ୍ମା—3. Brahmā.
୪ । ବୁଦ୍ଧବିଶେଷ—4. One of the incarnations of Buddha
ଦେ. ବି. ପୁଂ ଓ ସ୍ତ୍ରୀ—ପୁରୁଷ ଓ ସ୍ତ୍ରୀଙ୍କୁ ଦିଆଯିବା ନାମ—
A name given to males and females.

**ଚିନ୍ତାମଣି ଦୀକ୍ଷିତ**—ଦେ. ବି (ନାମ )—୧୮ଶ ଶତାବ୍ଦୀର 'ସାରଣୀ'ନାମକ
Chintāmaṇi dīkshita ଜ୍ୟୋତିଷ ଗ୍ରନ୍ଥର ରଚୟିତା—An astrologer; the author of Sāraṇī, a treatise on astrology.

**ଚିନ୍ତାମଣି ରଘୁନାଥ ଆଚାର୍ଯ୍ୟ**—ସଂ ବି. (ନାମ)—ମାନ୍ଦ୍ରାଜ ବେଧଶାଳାର
Chintāmaṇi raghunātha āchārjya ସହକାରୀ—
A co-worker of the observatory in Madras.
[ ଦ୍ର—ଏ ପାଶ୍ଚାତ୍ୟ ନାବିକପଞ୍ଜିକା ଅନୁସାରେ ୧୭୯୧ ଶତାବ୍ଦୀରେ ଦୃଗ୍‌ଗଣିତ ପଞ୍ଜିକା ନାମରେ ଖଣ୍ଡିଏ ପଞ୍ଜିକା ତେଲିଙ୍ଗା ଭାଷାରେ ପ୍ରକାଶ କରିଥିଲେ । ]

**ଚିନ୍ତାର୍ଥୀ**—ସଂ. ବିଣ ପୁଂ. ( ଚିନ୍ତା+ଅର୍ଥ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ. )—ଚିନ୍ତିତ ( ଦେଖ )
Chitārthī
( ଚିନ୍ତାର୍ଥିନୀ—ସ୍ତ୍ରୀ ) Chintita ( See )

**ଚିନ୍ତିତ**—ସଂ. ବିଣ. ( ଚିନ୍ତ ଧାତୁ+କର୍ମ. ତ )—୧ । ସ୍ମୃତ—
Chintita 1. Remembered.
୨ । ଆଲୋଚିତ—2. Considered.
୩ । ଭାବିତ; ଯାହା ଚିନ୍ତା କରାଯାଇଅଛି—
3. Thought of.
୪ । ( +କର୍ତ୍ତୃ. ତ ) ଯେ ଚିନ୍ତା କରେ; ଚିନ୍ତାକାରକ—
4. Thinking.
୫ । ଚିନ୍ତାଯୁକ୍ତ; ଉଦ୍‌ବିଗ୍ନ—5. Anxious.
ସଂ. ବି. ( +ଭାବ. ତ )—ଚିନ୍ତା—Thought.

**ଚିନ୍ତିତପୂର୍ବ**—ସଂ. ବିଣ—ଯାହା ପୂର୍ବରୁ ଚିନ୍ତା କରାଯାଇଅଛି—
Chintitapūrba Premeditated.
( ଅଚିନ୍ତିତପୂର୍ବ—ବିପରୀତ )

**ଚିନ୍ତିତବ୍ୟ**—ସଂ. ବିଣ. ( ଚିନ୍ତ ଧାତୁ+କର୍ମ. ତବ୍ୟ )—
Chintitabya ଚିନ୍ତନୀୟ ( ଦେଖ )—Chintanīya ( See )

**ଚିନ୍ତିବା**—ଦେ. (ପଦ୍ୟ) କ୍ରି. (ସଂ. ଚିନ୍ତ ଧାତୁ)—୧ । ଚିନ୍ତା କରିବା—
Chintibā 1. To think.
ଚିଂତା ୨ । ସ୍ମରଣ କରିବା—
चंतना 2. To recollect; to remember.

**ଚିନ୍ତ୍ୟ**—ସଂ. ବିଣ. ( ଚିନ୍ତ ଧାତୁ+କର୍ମ. ଯ )—ଚିନ୍ତନୀୟ ( ଦେଖ )
Chintya Chintanīya ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୁଇ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷୋକ୍ତରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଅନ୍ୟ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗ' ନ ପାଇଲେ 'ଅଙ୍ଗ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଚିନ୍ତ୍ୟମାନ**—ସଂ. ବିଣ. ( ଚିନ୍ତ୍ ଧାତୁ + କର୍ମ. ଶାନ )—ଅନୁଧ୍ୟାୟମାନ, Chintyamāna ଯାହା ଚିନ୍ତା କରା ହେଉଅଛି—Which is being thought of.

**ଚିନ୍ନ**—ସଂ. ବି. ( ଚି ଧାତୁ + କର୍ମ. ତ )—ଚିନା ଶସ୍ୟ— Chinna Millet ( M. W. ).

**ଚିନ୍ମୟ**—ସଂ. ବିଣ. ପୁଂ ( ଚିତ୍ + ସ୍ୱରୂପାର୍ଥେ. ମୟ )—
Chinmaya ୧ । ଜ୍ଞାନମୟ; ଚୈତନ୍ୟମୟ—
(ଚିନ୍ମୟୀ—ସ୍ତ୍ରୀ) 1. Full of animation or conscieousness.
୨ । ଆଧ୍ୟାତ୍ମିକ—2. Spiritual.
ବି—୧ । ପରମେଶ୍ୱର—1. God.
୨ । ପରମାତ୍ମା—2. The Supreme Soul.

**ଚିନ୍ହିବା**—ଦେ. କ୍ରି—ଚିହ୍ନିବା ( ଦେଖ )
Chinhibā Chihnibā ( See )
ଚିନ୍ହିଲେ ମଇତ୍ର ପ୍ରମାଣ
ଅନଙ୍ଗେ ଅଭୁର ଗମନ—ଭୂପତି. ପ୍ରେମପଞ୍ଚାମୃତ ।

**ଚିପ**—ଦେ. ବି—୧ । କୁରାଢ଼ି ପ୍ରଭୃତି ଅସ୍ତ୍ରର ଫଳକ ବେଣ୍ଟରେ ଦୃଢ଼-
Chipa ବଦ୍ଧ ହୋଇ ରହିବାପାଇଁ ବେଣ୍ଟ ଓ କୁରାଢ଼ିର ଆଖି
गौज, चिप मଧ୍ୟସ୍ଥ ଫାଙ୍କରେ ଦିଆଯିବା କ୍ଷୁଦ୍ର କାଷ୍ଠଖଣ୍ଡ; ଚିପୁଆ;
पच्चड़ ପତଳା ଶିଲ; ପଚରା—1. A wedge or chip of wood driven alongside the handle into the hole of an axe to tighten its hold with the blade.
୨ । ଢିଲା ମୁଦି ଖସି ନ ପଡ଼ିବା ନିମନ୍ତେ ତାହାଁ ଆଗରେ ବ୍ୟବହୃତ ମୁଦିଆ; ଆଗୁଆ—
2. A small ring worn after a slack ring to keep it in position on the finger.

**ଚିପା**—ଦେ. ବି—୧ । ଦୁଇପଟ ଦିଗରୁ ଚାପ ଦେବା—
Chipā 1. Pressing a thing on both sides.
चिपा, टेपा ୨ । ଚିପ ( ଦେଖ )
चिपक, दाब 2. Chipa ( See )
୩ । ( ଲଙ୍ଗଳର ) ପିଚିକିଲା ( ଦେଖ )
3. Pichikilā ( See )
चिपा ବିଣ—୧ । କୃପଣ—
कंजूस 1. Close fisted; miserly; niggardly.
୨ । ଚାପଦ୍ୱାରା ସଙ୍କୁଚିତ—
2. Pressed; squeezed.
ପ୍ରାଦେ. ( ଗଡ଼ଜାତ ) ବି—କ୍ଷୁଦ୍ର କଂସା ବା ଟେକି—
Small bell-metal pot.

**ଚିପାଇବା**—ଦେ. କ୍ରି—ଚିପିବା କ୍ରିୟାର ଣିଜନ୍ତ ରୂପ—
Chipāiba The causative form of Chipiba.
चेपान, चिपान
चिपकाना, दबाना
(ଚିପେଇବା—ଅନ୍ୟରୂପ)

**ଚିପାଚିପି**—ଦେ. ବି—୧ । ବହୁବାର ଚିପିବା କର୍ମ—
Chipāchipi 1. Acts of squeezing.
टेपाटेपी ୨ । ଅନ୍ୟୋନ୍ୟରେ ଚିପିବା—
चिपकाचिपकि 1. Pressing each other.

**ଚିପିଚାପି ହେବା**—ଦେ. କ୍ରି—ସଙ୍କୁଚିତ ରୂପେ ସଙ୍କୁଚିତ ହେବା—
Chipichāpi hebā To be contracted or tightened.

**ଚିପିଟ**—ସଂ. ବି. ( ଚି + ପିଟ୍ ଧାତୁ = ଚେପଟା କରିବା + କର୍ମ. ଅ; ନପାତନ )—୧ । ଚୂଡ଼ା—
Chipita 1. Parched flattened rice.
୨ । ଆଖି ପତା ଉପରେ ଆଙ୍ଗୁଠି ଚାପିଲେ ଦୃଷ୍ଟ ବସ୍ତୁ ଏକାଧିକ ବୋଲି ଦେଖା ଯିବା ( ହି. ଶବ୍ଦସାଗର )—
2 Aberration of the eyesight due to pressing a finger on the eyelid.
ଦେ. ବିଣ—୧ । ଚେପ୍ଟା—1. Flattened
୨ । ଚେପ୍ଟାନାକା—2. Flat-nosed.
୩ । ବିସ୍ତୃତ—3 Extended.

**ଚିପିଟକ**—ସଂ. ବି. ( ଚିପିଟ + ସ୍ୱାର୍ଥେ. କ )—ଚିପିଟ ୧ ( ଦେଖ )
Chipitaka Chipita. ( See )
(ଚପିଟକ—ଅନ୍ୟରୂପ)

**ଚିପିଟ ନାସିକ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଚିପିଟ + ନାସିକା )—
Chipita nāsika ଚେପଟାନାକା—Flat-nosed.
(ଚିପିଟ ନାସିକା—ସ୍ତ୍ରୀ) ସଂ. ବି—୧ । ବୃହତ୍‌ସଂହିତା ଅନୁସାରେ କୈଳାସର ଉତ୍ତରରେ ଅବସ୍ଥିତ ଦେଶବିଶେଷ; ତାତାର ବା ମଙ୍ଗୋଲିଆ ଅଞ୍ଚଳ ( ଏଠାର ଲୋକଙ୍କ ନାକ ଚେପଟା ( ହି. ଶବ୍ଦସାଗର )—
1 Tartary; Mongolia.
୨ । ତାତାର ବା ମଙ୍ଗୋଲୀୟ ବ୍ୟକ୍ତି ( ହି. ଶବ୍ଦସାଗର )—
2. A Tartar or Mongolian.

**ଚିପିବା**—ଦେ. କ୍ରି. ( ସଂ. ଚାପ )—
Chipibā ୧ । ଚାରିଆଡ଼ୁ ଚାପ ଦେବା—1. To compress; to press on all sides.
टिपा, चिपा
चिपटाना, चाँपना ୨ । ସଙ୍କୋଚନ କରିବା—
2. To tighten, to contract by pressure.
୩ । ମୁଠାଇ ଧରିବା—3. To squeeze.
୪ । ହାତ ଆଙ୍ଗୁଠି ଦ୍ୱାରା ଚାପିବା; ମଳିବା—
4. To press with the hand or fingers.
୫ । ଗୋଡ଼ ହାତ ଆଦିକୁ ହାତ ଦ୍ୱାରା ଚିପିବା—
5. To perform massage.
ପ୍ରାଦେ. ( ସିଂହଭୂମ ) କ୍ରି. ( ଜୋତା, ଗହଣା, ଲୁଗା )—
ଦେହକୁ କସି ହେବା—
(shoes or ornament or dress) To sit tight over the body.
( ଯଥା—ଏ ଜୋତା ମତେ ଚିପୁଛି । )

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଣ,ଷ | ଙ୍କ | ଇଏ | ଉଅ | ଧ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚିଁ୍ୟ | ଇଅ | ଦ୍ଧ | ନ୍ଦ |

**ଚିପୁଆ**—ଦେ. ବି. ( ସଂ. ଗ୍ରୁପ )—୧ । ଶଗଡ଼ର ଚକକୁ ଦୃଢ଼ କରିବା
Chipuā ନିମନ୍ତେ ଚକର ପରିଧିରେ ମରାଯିବା ପତଳା ଛିଲିକା-
চিপ 1. A chip or peg driven into the rim
**कसनी, चुटकी** of a wheel to make it tight.
୨ । କୁରାଢ଼ିର ବେଣ୍ଟକୁ ଦୃଢ଼ କରି ରଖିବା ନିମନ୍ତେ ଦିଆଯିବା କାଠର ଖିଲ— 2. A chip of wood driven into the eye of an axe to make the handle fit tightly into it
୩ । ଢିଲା ମୁଦି ଉପରେ ପିନ୍ଧା ଯିବା ଅଗୁଆ—
3. Tight ring worn after a slack ring.

**ଚିପୁଆଣି**—ଦେ ବି. ( ସଂ. ଗ୍ରୁପ )—ଯେଉଁ ଧାତୁମୟ ବନ୍ଧନ ଦ୍ୱାରା
Chipuāṇi କୌଣସି ଢିଲା ବସ୍ତୁକୁ ଦୃଢ଼ୀଭୂତ କରାଯାଏ —
চিপ A clamp; a fastener; clasp.
**चुटकी**

**ଚିପୁଟ**—ସଂ. ବି—ଚିପିଟ ( ଦେଖ )
Chipuṭa Chipiṭa ( See )

**ଚିପୁଡ଼ା**—ଦେ. ବି—କୌଣସି ବସ୍ତୁକୁ ହସ୍ତଦ୍ୱାରା ସଂପୀଡ଼ିତ କରି ତହିଁରୁ
Chipurḍā ରସ ବା ଜଳ ବାହାର କରିବା—
নিচোড়া; নিঙড়া Wringing out water or juice of a
**निचोड़न** thing by pressure; extracting juice or water by pressing.
ବିଣ—ଚିପୁଡ଼ା ହୋଇଥିବା—From which water has been pressed out; squeezed.

**ଚିପୁଡ଼ାଇବା**—ଦେ. କ୍ରି—ଚିପୁଡ଼ିବା କ୍ରିୟାର ଣିଜନ୍ତ ରୂପ—
Chipurḍāibā The causative form of Chipurḍibā.
নিঙড়ান
**निचोड़वाना**
(ଚିପୁଡ଼େଇବା—ଅନ୍ୟରୂପ)

**ଚିପୁଡ଼ା ଚିପୁଡ଼ି**—ଦେ. ବି—ସମ୍ପୂର୍ଣ୍ଣରୂପେ ଚିପୁଡ଼ିବା —
Chipurḍā chipurḍi Fully wringing out.

**ଚିପୁଡ଼ିବା**—ଦେ. କ୍ରି. ( ସଂ. ଗ୍ରୁପ )—କୌଣସି ବସ୍ତୁକୁ ହାତରେ ଚିପି
Chipurḍibā ତହିଁରୁ ରସ ବା ଜଳ ବାହାର କରିବା—
নিচোড়া; নিঙড়ান 1. To wring out water or juice
**निचोड़ना; चहेटना** by pressing; to squeeze out or press out juice.

ଚନ୍ଦ୍ରକୁ ଚିପୁଡ଼ି ସୁଧାଙ୍କର । କବିସୂର୍ଯ୍ୟ. କଳଶାମ୍ବରଖ୍ଣ୍. ଚ. ଗୀତ ।

୨ । (ଲକ୍ଷଣାର୍ଥ) କୌଣସି ବିଷୟ ସମ୍ୟକ୍ ଆଲୋଚନା କରିବା—
2. ( figurative ) To consider a matter very minutely.

ଯାନକୃଷ୍ଣ ଦ.ସ ଉସକାଣ୍ଟୋଳ ଚିପୁଡ଼ିଲାରୁ ଅନେକ ରସ ବାହାର ଥିଲା ।
ରାଧାନାଥ. ବିବେକୀ ।

୩ । (ଲକ୍ଷଣାର୍ଥ) ନିଃଶେଷିତ କରିବା—
3. (figurative) To exhaust.

ଚିପୁଡ଼ି ଦେଲା ସେ ଭବ ଏଣିକି । କବିସୂର୍ଯ୍ୟ. କବିତା ।

ଦେ. ବି—ଚିପୁଡ଼ିବା କର୍ମ—
The act of wringing out or pressing out.

**ଚିପୁଲି**—ଦେ. ବି ( ସଂ. ନାମ-ଶ୍ଳେଷ୍ଟକା )—୧ । ଚଟିଜୋତା; ଚମର
Chipuli ଗୋଟିଏ ପଟିରେ ଅଙ୍ଗୁଠି ଗଳାଇବା ପାଇଁ ଲାଗିଥିବା
চুটকী ଚମ ଦଉଡ଼ିଯୁକ୍ତ ଯୋତା; ଉପର ଅଂଶ ନ ଥିବା ଚଟି
**चुटकी** ଜୋତା—1. Slippers; sandals.
୨ । ସ୍ତ୍ରୀଲୋକମାନେ ଗୋଡ଼ର ବୁଢ଼ା ଆଙ୍ଗୁଠିରେ ଯେଉଁ ମୁଦିଆଯୁକ୍ତ ଅଳଙ୍କାର ପିନ୍ଧନ୍ତି; ଚୁଟୁକି—
2. An ornamental ring worn by females on the toes.
୩ । ବବୁରି ବାଳ; ବେଣି—3. Bobbed hair; hair cut into overhanging ringlets.

**ଚିପ୍ଟା**—ଦେ. ବିଣ. ( ସଂ ଚିପିଟ )—ଚେପଟା—
Chipṭā Flattened.
চিপটা
**चपटा**

**ଚିପ୍ପ**—ସଂ. ବି—କଣନଖା ରୋଗ (ଏଥିରେ ନଖର ତଳ ମାଂସ ସଢ଼ିଯାଏ
Chippa ଓ ନଖ ତଳ ଦରଜ ହୁଏ ଓ ବଢେ)—(ହି. ଶବ୍ଦସାଗର)
A disease of the nails; whitlow.

**ଚିପ୍ରା**—ପ୍ରାଦେ. (ସମ୍ବଲପୁର) ବି. (ତୁଲ. ହି. ଚିପଡ଼ୀ; ଚିପରା)—
Chiprā ଆଖିର ଲେଞ୍ଚରା—The rheum of the eyes.

**ଚିଫ୍**—ବୈଦେ. ବି. ( ଇଂ. ଚୀଫ୍ )—ସ୍ୱାଧୀନ ରାଜା ବା ସମ୍ରାଟଙ୍କୁ
Chiph କରଦାୟୀ ଦେଶୀୟ ରାଜା—
চীফ্ A chief; a feudatory chief.
**चीफ** ବୈଦେ. ବିଣ—ପ୍ରଧାନ (ଏହି ଶବ୍ଦ ଅନ୍ୟ ଇଂରେଜି ଶବ୍ଦ ପୂର୍ବରେ ବସି ଶ୍ରେଷ୍ଠ ବା ପ୍ରଧାନ ଅର୍ଥ ପ୍ରକାଶ କରେ; ଯଥା—ଚିଫ୍ଇଞ୍ଜିନିୟର, ଚିଫ୍ଏଜେଣ୍ଟ, ଚିଫ୍କମିସନର, ଚିଫ୍କୋର୍ଟ ଇତ୍ୟାଦି )—Chief ( prefixed to other words denoting officer or office).

**ଚିଫ୍ ଇଞ୍ଜିନିୟର**—ବୈଦେ. ବି. (ଇଂ)—ପ୍ରାଦେଶିକ ପ୍ରଧାନ ଇଞ୍ଜିନିୟର—
Chiph iñjiniyar The Chief Engineer of a province.

**ଚିଫ୍ ଏଜେଣ୍ଟ**—ବୈଦେ. ବି. ( ଇଂ )—ଇନ୍ସିଓରାନ୍ସ କୋମ୍ପାନି
Chiph ejeṇṭ ଆଦିର ପ୍ରଧାନ କ୍ଷମତା ପ୍ରାପ୍ତ କର୍ମଚାରୀ—
The Chief agent of a Company.

**ଚିଫ୍ କମିସନର**—ବୈଦେ. ବି. ( ଇଂ, ଚୀଫ୍କମିସନର )—ନନ୍-
Chiph kamisanar ରେଗୁଲେଶନ୍ ପ୍ରଦେଶରେ ଉଚ୍ଚତମ ଶାସନ-କର୍ତ୍ତା—Chief Commissioner.

[ ଦ୍ର—ନନ୍ରେଗୁଲେସନ ପ୍ରଦେଶରେ ଜିଲ୍ଲାମାନଙ୍କ ଶାସନକର୍ତ୍ତାମାନଙ୍କୁ ଡେପୁଟୀ କମିସନର ବୋଲାଯାଏ । ]

ସାଧାରଣ ଲୋକେ ଅପଠ ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାନା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ'କି ପାଇଲେ 'ବନ୍ଧୂ' ଦେଖିବେ, 'ଅଣ୍ଟା' ନ ପାଇଲେ 'ଅଣ୍ଠା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଚିଫ୍ କୋର୍ଟ**—ବୈଦେ. ବି. ( ଇଂ. ଚୀଫ୍ + କୋର୍ଟ୍ )—ହାଇକୋର୍ଟ
Chiph kot ଅପେକ୍ଷା ନିମ୍ନଶ୍ରେଣୀସ୍ଥ ପ୍ରାଦେଶିକ ପ୍ରଧାନ ବିଚାରାଳୟ—Chief Court of a Province; ( of a lower status than the High Court ).
[ ଦ୍ର—ଏହିପରି କୋର୍ଟ୍ ପଞ୍ଜାବ ଓ ବ୍ରହ୍ମଦେଶରେ ଅଛି । ]

**ଚିଫ୍ ଜଷ୍ଟିସ୍**—ବୈଦେ. ବି. ( ଇଂ )—ହାଇକୋର୍ଟ୍ ଓ ଚିଫ୍‌କୋର୍ଟ୍‌ର
Chiph jashtis ପ୍ରଧାନ ବିଚାରପତି—The Chief Justice of a High Court or of a Chief Court.

**ଚିବ୍** ( ଧାତୁ )—ସଂ—ଆଚ୍ଛାଦନ କରିବା—
Chib ( root ) To cover.

**ଚିବି**—ସଂ. ବି. ( ଚିବ୍ ଧାତୁ + କର୍ତ୍ତୃ. ଇ )—ଚିବୁକ ( ଦେଖ )
Chibi Chibuka ( See )

**ଚିବିଟ**—ସଂ ବି—ଚିପିଟ ( ଦେଖ )
Chibiṭa Chipiṭa ( See )

**ଚିବୁ**—ସଂ. ବି. ( ଚିବ୍ ଧାତୁ + କର୍ତ୍ତୃ. ଉ )—ଚିବୁକ ( ଦେଖ )
Chibu Chibuka ( See )

**ଚିବୁକ**—ସଂ. ବି. ( ଚିବୁ + ସ୍ୱାର୍ଥେ. କ )—ଓଠ; ଥୋଡ଼ି—
Chibuka The chin

**ଚିମ୍‌ଟା**—ପ୍ରାଦେ. ( ସମ୍ବଲପୁର ) ବି ( ତୁଲ. ହି. ଚିମଟା )—ଚିମୁଟା—
Chimṭa' Pincers.

**ଚିମ୍ଡ଼ିଲଇ**—ଦେ· ବି—ଚେମଡ଼ିଲଇ ( ଦେଖ )
Chim-rdilai Chemardilai ( See )

**ଚିମ୍‌ଣି**—ଦେ. ବି—ଚିମିଣି ( ଦେଖ )
Chimni Chimini ( See )

**ଚିମ୍‌ନି**—ବୈଦେ. ବି. ( ଇଂ. ଚିମ୍‌ନୀ )—
Chimni ୧ । କେରାସିନ୍ ଲାମ୍ପରୁ ଧୂଆଁ ବାହାରିବା ନିମନ୍ତେ ଆଲୁଅ
ଚିମନୀ ଘେରିପାଖେ ବେଢ଼ା ଯିବା କାଚର ନଳ—
**चमनी** The chimney or glass-tube of a kerosine-lamp.
୨ । ଘରୁ ଓ କାରଖାନା ଭିତରୁ ଧୂଆଁ ଆକାଶକୁ ବାହାରି ଯିବା ପାଇଁ ଛାତ ଉପରେ ନିର୍ମିତ ଲୁହା ବା ଇଟାରୁ କର ବଡ଼ ନଳ—2. Chimney of a house or factory.
ପ୍ରାଦେ. ( ବସ୍ତର ) ବି—କିରାସିନ୍ ଜଳିବା ଡିବି—
An open lamp for burning kerosine oil.

**ଚିମ୍‌ଟା ବାଉଳି**—ଦେ. ବି. ( ବର୍ଣ୍ଣିଅଶବ୍ଦ )—ଉପରକାନରେ ପିନ୍ଧାଯିବା
Chimṭabāuḷi ସୁନାର ଅଳଙ୍କାରବିଶେଷ—A kind of earring worn on the upper part of the ear.

**ଚିମଣ**—ଦେ. ବି. ( ସଂ. ଚର୍ମଚଟକ )—ଚମଚଟା ( ଦେଖ )
Chimaṇa Chamachaṭa ( See )
ତା ଶିଖା ଦେଖେ ବଧିନ୍ତ ଲଭିଲ
ଦେଖା ବଣ୍ଣ ତରତମ ସଙ୍ଗରେ ଚିମଣ—ଧ୍ୟାନାଥ· ମହାଯାତ୍ରା ।

**ଚିମିଣି**—ଦେ. ବି. ( ସଂ. ଚର୍ମଚଟକ )—
Chimiṇi ଚମଚଟା ( ଦେଖ )
চামচিকা Chamachaṭa ( See )
**चमगादड़**
( ଚିମିଣିଆଁ—ଅନ୍ୟରୂପ )

**ଚିମିଣିଆଁ**—ଦେ. ବି—ଚମଚଟା ( ଦେଖ )
Chimiṇiāñ Chamachaṭa ( See )
ଦେ. ବିଣ—୧ । ( ଲକ୍ଷଣାର୍ଥ )—ଯେ ଚେମିଣି ଚଢ଼େଇ ପରି ଚେଁ ଚେଁ ଶବ୍ଦ କରୁଥାଏ—
1. ( figurative ) Making a chirping or squeaking noise like the house-bat.
୨ । ( ଲକ୍ଷଣାର୍ଥ ) ଚେମିଣିଙ୍କ ପରି ଶୀର୍ଣ୍ଣ—
2. ( figurative ) Very weak or lean.

**ଚିମୁଟା**—ଦେ. ବି. ( ସଂ. ଚିପିଟ = ଚେପଟା )—
Chimuṭā ୧ । ଦୁଇ ଟିପ ଦ୍ୱାରା ଚିପି ଆଘାତ କରିବା—
চিমটী 2. Pinching.
**चुटकी; चिहुँटी** ୨ । ବଣିଆ, ସନ୍ନ୍ୟାସୀ ଓ କମାରମାନଙ୍କ ଯନ୍ତ୍ର-
চিমটা ବିଶେଷ ( ସଂ. ନାମ ସୂଚୀ; ସଂଦଂଶ )—
**चिमटा; चिमोटी** 2. A pair of tongs; forceps; nippers pincers.
চিমট [ ଦ୍ର—ଏଥିର ଦୁଇଟି ଲମ୍ବ ଓ ପତଳା ବାହୁ ଥାଏ;
**चुटका; चुंगल** ନିଆଁ ବା ତପ୍ତ ବସ୍ତୁ ଆଦି ଯାହା ହାତରେ ଧରି ହେବ ନାହିଁ ଏପରି ବସ୍ତୁସବୁକୁ ଚିମୁଟାର ଦୁଇ ବାହୁ ଦ୍ୱାରା ଚିପି ଧରି ଉଠାଇବାକୁ ହୁଏ । ]
୩ । ବୁଢ଼ା ଆଙ୍ଗୁଠି ଓ ବଣି ଆଙ୍ଗୁଠି ଟିପରେ ଧରାଯିବା ପରିମାଣ—3. As much as can be taken in a pinch; a pinch.
୪ । ଯେଉଁ ପରିମିତ ବସ୍ତୁ ସଙ୍କୁଚିତ କରିଥିଲେ ୪ ବା ୫ ଆଙ୍ଗୁଠିର ଟିପ ଦ୍ୱାରା ଧରା ଯାଇ ପାରେ—
4 A quantity of thing which can be taken up by holding it with 4 or 5 fingers.
ଦେ. ବିଣ—ଦୁଇ ଟିପରେ ସମ୍ଭାଇବା ପରିମିତ—
A pinch of.
( ଯଥା—ଚିମୁଟାଏ ଲୁଣ, ଚିମୁଟାଏ ନାସ । )

**ଚିମୁଟା ଚିମୁଟି**—ଦେ. ବି—୧ । ଏକାଧିକ ଥର ଚିମୁଟିବା କର୍ମ—
Chimuṭā chimuṭi 1. Various acts of pinching.
চিমটা চিমটি ୨ । ଅନ୍ୟୋନ୍ୟରେ ଚିମୁଟିବା—
**चुटका चुटकि** 2 Pinching each other.

**ଚିମୁଟିବା**—ଦେ. କ୍ରି—୧ । ବୁଢ଼ା ଓ ବଣି ଆଙ୍ଗୁଠିର ଟିପ ଦ୍ୱାରା ଅନ୍ୟ-
Chimuṭibā ବ୍ୟକ୍ତିର ଅଙ୍ଗର କୌଣସି ସ୍ଥାନକୁ ଦୃଢ଼
চিমটা, চিমটিকাটা ଭାବରେ ଚିପିବା—1. To pinch.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | ଙ୍କ | ଞ୍ଚ | ଡଅ | ଢ |
| ୨ | ଈ | ଊ | ରୁ | ଲୁ | ସ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ତ |

**चुटकिलाना,** ୨ । ଦୃଢ଼ କରି ଚିପି ଧରିବା—
**चिहुँटना** 2. To gripe hard; to clutch.
(ଚିମୁଟାଇବା, ଚିମୁଟେଇବା—ଣିଜନ୍ତରୂପ)

**ଚମୁଣି**—ଗ୍ରା. ବି. ( ସଂ. ଚର୍ମଚଟକ )—ଚମଚଟା ( ଦେଖ )
Chimuni Chamachatā ( See )
(ଚିମୁଣିଆଁ—ଅନ୍ୟରୂପ) ଚମୁଣି ଚଷାପୁଅ ମହୁଲା ନାମେ ପକ୍ଷୀ ।
ପୀତାମ୍ବର. ନୃସିଂହପୁରାଣ ।

**ଚମୁଣିଆଁ**—ଦେ. ବି ଓ ବିଣ—ଚମିଣିଆଁ ( ଦେଖ )
Chimuniān Chiminiān ( See )

**ଚମୁଲା**—ଗ୍ରା. (ଇତର)—ମୁଚୁଲା ( ଦେଖ )
Chimulā Muchulā ( See )
(ଚିମୁରା—ଅନ୍ୟରୂପ)

**ଚୟ**—ପ୍ରାଦେ. ( ସିଂହଭୂମ ) ବିଣ—କ୍ଷୁଦ୍ର; ସାନ—
Chiya Insignificant.

**ଚୟାର୍**—ପ୍ରାଦେ. (ମେଦିନୀପୁର) ବୈଦେ. ବି. ( ଇଂ. ଚେଅର୍ )—
Chiyār ଚେୟାର୍; ଚଉକୀ—Chair.

**ଚର୍କିବା**—ଦେ. କ୍ରି—ଚିରିକିବା ( ଦେଖ )
Chir-kibā Chirikibā ( See )
(ଚିରିକି ପକେଇବା—ଅନ୍ୟରୂପ)

**ଚିର୍କୁଟ୍**—ଦେ. ବି. (ସଂ. ଚୀରିକା, ଚିଟିକା=କାଗଜର କ୍ଷୁଦ୍ର ଖଣ୍ଡ)—
Chir-kut ୧ । କାଗଜର କ୍ଷୁଦ୍ର ଖଣ୍ଡ—
चिरकुट 1. A torne bit of paper.
**चिरकुट** ୨ । ଟିକି କାଗଜ—2 A slip of paper.
(ଚିର୍କୁଟି—ଅନ୍ୟରୂପ) ୩ । ଛିଣ୍ଡା ଲୁଗା; ନେକ୍ଟୁଡ଼ି—
3. Rag; torne cloth.
ମଳିଆ ଚିରକୁଟ ଲୁଗା, ଦେହରେ ଅଧଆଙ୍ଗୁଳେ ବହଳ ମଳି ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।
୪ । ଭୂରାଜସ୍ୱ ବନ୍ଦୋବସ୍ତରେ ଖସଡ଼ା ଓ ଅଟେଷ୍ଟେସନ୍ ପରେ ଓ ଭୂସ୍ୱତ୍ୱଲିପିର ଅନ୍ତିମ କାଗଜ ବା ପଟ୍ଟା ପ୍ରଜାଙ୍କୁ ମିଳିବା ପୂର୍ବରୁ ପ୍ରଜାର ଜମିର ବିବରଣ ଛପାଥିବା କାଗଜ ଯାହା ପ୍ରଜାଙ୍କୁ ମିଳେ; ପାରଚା—4. A slip of paper given to a tenant before a copy of the final Record of Rights is granted during a Revenue Settlement.
ପ୍ରାଦେ. (ସମ୍ବଲପୁର) ବି.—ଚିରୁକନା—Rag.
ବିଣ.—ଛିନ୍ନଭିନ୍ନ; ଟିକି ଟିକି ହୋଇ ଛିନ୍ନ—
Torne to shreds; shreded.

**ଚର୍କୁଣୀ**—ଦେ. ବି.—ଚିରିଗୁଣୀ (ଦେଖ)
Chir-kuni Chiriguni (See)
(ଚିରୁଗୁଣୀ—ଅନ୍ୟରୂପ)

**ଚର୍ଗୁଡ଼ିଆ**—ପ୍ରାଦେ. (ଗଡ଼ଜାତ) ବି.—ଚିରିଗୁଡ଼ିଆ (ଦେଖ)
Chir-gurdiā Chirigurdiā (See)

**ଚର୍ଗେନ୍**—ପ୍ରାଦେ. (ସମ୍ବଲପୁର) ବି. ସ୍ତ୍ରୀ—ଚିରିଗୁଣୀ (ଦେଖ)
Chirgen Chiriguni (See)

**ଚର୍ଚର** (ଇତ୍ୟାଦି)—ଦେ. ବି. ଓ ବିଣ—ଚିରିଚିରା ଇତ୍ୟାଦି (ଦେଖ)
Chir-chirā (etc) Chirichirā etc. (See).

**ଚର୍ଣୀ**—ଦେ. ବି—ଚିରୁଣୀ (ଦେଖ)
Chir-ni Chiruni (See)
ଚିରୁଣି } ଅନ୍ୟରୂପ
ଚିରଣୀ }

**ଚର୍ଫାଡ଼**—ଦେ. ବି—(ସଂ ଚୀର୍ଣ୍ଣ+ସ୍ଫୋଟନ)—୧ । କୌଣସି ବସ୍ତୁକୁ
Chir-phārd ଚିରିବା ଓ ଫାଡ଼ିବା କର୍ମ—
चिरफाड़ 1. Act of tearing.
**चरफाड़** ୨ । ଚିକିତ୍ସାର୍ଥ ଅସ୍ତ୍ରଚାଳନ; ଅପରେସନ୍—
2. Surgical operation.

**ଚର୍ମୁଦ୍ରି**—ପ୍ରାଦେ. (ସମ୍ବଲପୁର) ବି.—ବିବାହ ପୂର୍ବେ ବରପକ୍ଷର
Chir-mudri ଲୋକଙ୍କ ଦ୍ୱାରା କନ୍ୟାପାଇଁ ଅଭିପ୍ରେତ ଓ ଅଭିମନ୍ତ୍ରିତ ବସ୍ତ୍ର ଓ ଆଭରଣାଦିର କନ୍ୟାଘରକୁ ପ୍ରେରଣ ପ୍ରଥା—
The custom of the bridegroom's party sending the bridal cloth and ornaments after consecration to the bride's house before marriage.
[ଦ୍ର—ବିବାହ ଦିନ ବିବାହ ବା ହାତଗଣ୍ଠି ପଡ଼ିବା ପୂର୍ବରୁ ବର-ପକ୍ଷର ଲୋକେ କନ୍ୟାଘରକୁ ଯାଆନ୍ତି । ସେଠାରେ ବରର ପିନ୍ଧିବା ପାଇଁ ଅଭିପ୍ରେତ ପାଟ ଓ କନ୍ୟାର ବଉଳପାଟ ଓ ଅଳଙ୍କାରମାନ ପୁରୋହିତଙ୍କ ଦ୍ୱାରା ଅଭିମନ୍ତ୍ରିତ କରାଇ କନ୍ୟାର ଲୁଗା ଓ ଅଳଙ୍କାର କନ୍ୟାପାଇଁ ପଠାନ୍ତି ଓ ବରର ଲୁଗା ବର ପିନ୍ଧିବାପାଇଁ ଆପଣା ସଙ୍ଗେ ନେଇ ଆସନ୍ତି । ସେହି ଅଭିମନ୍ତ୍ରିତ ଲୁଗାକୁ ବିବାହ ବେଦୀରେ ବର ଓ କନ୍ୟା ପିନ୍ଧନ୍ତି ।]

**ଚିର**—ସଂ. ବିଣ.—(ଚି ଧାତୁ+ଅବଚ୍ଛେଦାର୍ଥେ କର୍ତ୍ତୃ. ର)—୧ । ବହୁ-
Chira କାଳବ୍ୟାପୀ; ଦୀର୍ଘକାଳବ୍ୟାପୀ—
1. Long (in point of time)
୨ । ଅନନ୍ତକାଳ ସ୍ଥାୟୀ—Eternal.
୩ । ବହୁଦିନ ସ୍ଥାୟୀ—3. Permanent
୪ । ଅପରିବର୍ତ୍ତନଶୀଳ—4. Constant; immutable; unchangeable.
ବି—୧ । ଅନନ୍ତକାଳ—1. Eternity.
୨ । ଦୀର୍ଘକାଳ—2. Time immemorial.
୩ । ବହୁକାଳ—3. Long time.
କ୍ରି. ବିଣ,—୧ । ବହୁକାଳ ପର୍ଯ୍ୟନ୍ତ—1. For a long time.
୨ । ବହୁକାଳରୁ—2. Since a long time.
୩ । ଅନନ୍ତକାଳ ପାଇଁ—3. For eternity.
୪ । ବାରମ୍ବାର—4. Continuously; repeatedly; constantly.

ସାଧାରଣ ଲୋକେ ଅପର ଦୃଷ୍ଟାରେ ନୂତନ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତିନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭଳି କୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲବଡ଼' ଦେଖିବେ

ষ্তনেরবোঁটা ଦେ. ବି.—( ସଂ. ଚୂଚୁକ ) ଗୋରୁ ଆଦି ପଶୁଙ୍କ
स्तुचिं ढ़िपनी ସ୍ତନାଗ୍ର ବା ଚୂଚୁକ—The top or nipple of the udder of a cow or sheep; teat of a beast.

ବରଜ ଅଙ୍ଗଣରେ ଧେନୁକୁ ସଜଗଲକରମକୁ ଚିର ବେଲ ଦୁହିଁଲ ଗୋ ।
କବସୂର୍ଯ୍ୟ. ସଙ୍ଗୀତ ।

୨ । ଏକାଥରକେ ଗାଈର ଚିର ବା ଗୋଟିଏ ଚୂଚୁକରୁ ଯେତେ ଦୁଧ ଦୁହିଁ ହୁଏ—2. That much milk as can be drawn from one teat of a cow's udder

ଦୁହିଁଲ ଦଇ ପଟୁକୁ ଗୋପାଳ ଦୁହନ୍ତ
ପ୍ରଥମରୁ ଚିରେ ଚିରେ ଭୂମିରେ ପକାନ୍ତ । ସାରଳା. ମହାଭାରତ ଆଦି ।

ପ୍ରାଦେ. ( ସମ୍ବଲପୁର, ଗଡ଼ଜାତ )—ନଦୀକୂଳରେ ବନ୍ଧା ହେବା ପଥରର ବନ୍ଧ—Stone-embankment built on the bank of a river.

**ଚିରଆୟୁ**—ଗ୍ରା. ବିଣ. ( ସଂ. ଚିରାୟୁଃ )—ଚିରାୟୁଃ; ଦୀର୍ଘଜୀବୀ—
Chira-āyu Of a long life; living for long time.

ମାର୍କଣ୍ଡେୟ ଋଷ ବହୁତ ଧର୍ମ କଲେ
ଚିରଆୟୁ ହୋଇଣ ଜଗତେ ରହିଲେ । କୃଷ୍ଣସିଂହ. ମହାଭାରତ ବନ ।

**ଚିରଇ**—ପ୍ରାଦେ. (ବସ୍ତର) ବି ( ସଂ. ଚଟକ; ଭୁଲ. ଏହି ଅର୍ଥରେ ହି. ଚିରଇ )—ଚଢ଼େଇ— Bird.
Chirai

**ଚିରଂଜୀବ**—ସଂ. (ବାକ୍ୟ)—( ଗୁରୁଜନଙ୍କର ବାଳକ ପ୍ରତି ଆଶୀର୍ବାଦ ବଚନ)—ତୁ ବହୁକାଳ ବଞ୍ଚିରହ ବା ଦୀର୍ଘଜୀବୀ ହୋ—
Chiram-jība (A phrase of blessing) Live long.

ସଂ. ବିଣ ଓ ବି—ଚିରଜୀବକ (ଦେଖ)
Chirajībaka (See)

**ଚିରଂଜୀବତା**—ସଂ. ବି— ଚିରଜୀବତା (ଦେଖ)
Chiramjibitā Chirajibitā (See)

**ଚିରଂଜୀବୀ**—ସଂ. ବିଣ ଓ ବି—ଚିରଜୀବକ (ଦେଖ)
Chiramjibi Chirajibaka (See)

**ଚିରକର୍ମା**—ସଂ. ବିଣ. ପୁଂ. ( ବହୁବ୍ରୀହି; ଚିର+କର୍ମନ୍; ୧ମା. ୧ବ. )—
Chirakarmā ଦୀର୍ଘସୂତ୍ରୀ; ଯେ କୌଣସି କାର୍ଯ୍ୟକୁ ବହୁକାଳରେ କରେ—Procrastinating; dilatory; sluggish; tardy.

**ଚିରକଷ୍ଟୀ**—ସଂ. ବିଣ. ପୁଂ. (ଚିର+କଷ୍ଟ+ଇନ୍; ୧ମା. ୧ବ.)—
Chirakashti ଆଜୀବନ ଦୁଃଖଭୋଗୀ; ଚିରଦୁଃଖୀ—
(ଚିରକଷ୍ଟିନୀ—ସ୍ତ୍ରୀ) Miserable throughout life.

**ଚିରକାଂକ୍ଷିତ**—ସଂ. ବିଣ. ( ସୁପ୍‌ସୁପ୍ ସମାସ; ଚିର+କାଂକ୍ଷିତ )—
Chirakānkshita ବହୁକାଳର ବାଞ୍ଛିତ; ବହୁଦିନରୁ ଅଭିଳଷିତ—Long wished for.

**ଚିରକାରୀ**—ସଂ. ବିଣ. ପୁଂ. ( ଚିର+କୃ+ଇନ୍ ୧ମା. ୧ବ.)—
Chirakāri ଚିରକର୍ମା ( ଦେଖ )
(ଚିରକାରିଣୀ—ସ୍ତ୍ରୀ) Chirakarmā ( See )

(ଚିରକାରିତା—ବି) ସଂ. ବି—ଗୌତମମୁନିଙ୍କର ପୁତ୍ର—The son of the sage Goutama.

**ଚିରକାଳ**—ସଂ. କ୍ରି. ବିଣ —୧ । ବହୁକାଳ ପର୍ଯ୍ୟନ୍ତ—
Chirakāla 1. For a long time.

୨ । ବହୁକାଳ ହେଲା—2, Since a lang time.

୩ । ଅନନ୍ତକାଳ— ପର୍ଯ୍ୟନ୍ତ—3. For ever.

ସଂ. ବି—୧ । ବହୁକାଳ—1 Time immemorial.

୨ । ଅନନ୍ତକାଳ—2. Eternity.

ଦେ. ବି—କେନାଲ ଓ ନଦୀବନ୍ଧ ନିମନ୍ତେ ସରକାର ଯେଉଁ ଭୂମିମାନ ଭୂସ୍ୱାମୀମାନଙ୍କଠାରୁ ଖରିଦ କରି ନେଇଅଛନ୍ତି ଓ ଯହିଁରେ ସରକାରଙ୍କର ଚିରସ୍ଥାୟିସ୍ୱତ୍ୱ କଦାପି ଲୋପ ହେବ ନାହିଁ—Lands acquired by the Government(Public works Department) for the canal and river embankments, in which the Government has a permanent right and in which no lessee can acquire any right of occupancy;, be his possession however long.

**ଚିରକାଳିଆ**—ଦେ. ବିଣ. (ସଂ. ଚିରକାଳକ)—ଚିରକାଳସ୍ଥାୟୀ—
Chirakālia Permanent.
চিরকালিয়া; চিরকেলে
चिरकालका

**ଚିରକାଳିକ**—ସଂ. ବିଣ. ( ଚିରକାଳ+ଇକ )—
Chirakālika ଚିରକାଳସ୍ଥାୟୀ; ଚିରନ୍ତନ—
(ଚିରକାଳୀନ—ଅନ୍ୟରୂପ) Existing from time immemorial; immemorial.

**ଚିରକୁଟି**—ଦେ. ବି—ଚିରକୁଟ (ଦେଖ)
Chirakuti Chirkut (See)

ଚିରକୁଟ ବସ୍ତ୍ରେକ କଟିରେ ଅଛି ପିନ୍ଧି । ସାରଳା. ମହାଭାରତ ଆଦ୍ୟ ।

**ଚିରକୁମାର**—ସଂ. ବିଣ. ପୁଂ—୧ । ଯେ ଆଜୀବନ ଅବିବାହିତ—
Chirakumāra 1. Living unmarried through life;
(ଚିରକୁମାରୀ—ସ୍ତ୍ରୀ) lifelong celebate.
(ଚିରକୌମାର୍ଯ୍ୟ—ବି) ୨ । ଯେ ଆଜୀବନ ଅବିବାହିତ ରହିବାର ବ୍ରତ କରିଅଛି—2. A person who has taken the vow of celebacy.

ସଂ. ବି—ଯାବଜ୍ଜୀବନ ବିବାହ କରିବାରୂପ ବ୍ରତବିଶେଷ—A vow of lifelong celebacy.

**ଚିରକ୍ରିୟ**— ସଂ. ବିଣ. ପୁଂ (ବହୁବ୍ରୀହି; ଚିର+କ୍ରିୟା)— ଚିରକର୍ମା (ଦେଖ)
Chirakriya Chirakarmā (See).
(ଚିରକ୍ରିୟା—ସ୍ତ୍ରୀ)
(ଚିରକ୍ରିୟତା—ବି)

| ୧ | ଇ | ଉ | ୠ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଫ୍ର | ଉଅ | ଙ୍ଖ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଜ | ନ୍ତ |

**ଚିରକ୍ରୀତ**—ସଂ. ବିଣ. ପୁଂ (ସୁପ୍‌ସୁପ୍ ସମାସ; ଚିର+କ୍ରୀତ)—
Chirakrita ୧ । ବହୁକାଳ ହେଲା ଯାହା କିଣା ଯାଇଅଛି—
1 Purchased since a long time.
(ଚିରକ୍ରୀତା—ସ୍ତ୍ରୀ) ୨ । ଯାବଜ୍ଜୀବନ ନିମନ୍ତେ କିଣା ଯାଇଥିବା—
2. Acquired for life.
୩ । ଯାବଜ୍ଜୀବନ ପ୍ରତ୍ୟୁପକାର ଦ୍ୱାରା ପରିଶୋଧ ହୋଇ ନ ପାରିବା ଉପକାର ଦ୍ୱାରା ଉପକୃତ—
3. Benifitted beyond the hope of being ever able to repay the benifit.

**ଚିରଗୁଣୀ**—ଦେ. ବି—ଚିରିଗୁଣୀ (ଦେଖ)
Chiraguṇī Chiriguṇī (See).

**ଚିରଚିରା**—ଦେ. ବିଣ—ଯେଉଁ ଛାତ୍ର କୌଣସି ପାଠକୁ ବହୁକାଳ ଲାଗି
Chirachirā ଆବୃତ୍ତି କରେ ଓ ଥରେ ଅଭ୍ୟାସ କଲେ ତାହା ଚିରକାଳ ଭୁଲେ ନାହିଁ—A student who takes long to study a matter and does not forget it soon.

[ ଦ୍ର—ଶିଷ୍ୟ ବା ଛାତ୍ର ୪ ପ୍ରକାର—୧ । ଚିରଚିରା—ଯେ ପାଠକୁ ବିଲମ୍ବରେ ଆବୃତ୍ତି କରେ ଓ ବିଲମ୍ବରେ ପାଶୋରେ । ୨ । ଚିରବେଗା—ଯେ ପାଠକୁ ବିଲମ୍ବରେ ଆବୃତ୍ତି କରେ କିନ୍ତୁ ଚଞ୍ଚଳ ପାଶୋରି ପକାଏ । ୩—ବେଗବେଗା—ଯେ ପାଠକୁ ଚଞ୍ଚଳ ଆବୃତ୍ତି କରେ ଓ ଚଞ୍ଚଳ ପାଶୋରିପକାଏ । ୪—ବେଗଚିରା—ଯେ ପାଠକୁ ଚଞ୍ଚଳ ଆବୃତ୍ତି କରେ କିନ୍ତୁ ବିଲମ୍ବରେ ପାଶୋରେ । ଏଥି ମଧ୍ୟରୁ ୦ର୍ଥ ଶ୍ରେଣୀର ଛାତ୍ର ବୁଦ୍ଧିମାନ୍ ଓ ପ୍ରଶଂସାର୍ହ । ]
ଦେ. ବି (ସଂ ଚିତ୍କାର)—ଚିରିଚିରା (ଦେଖ)
Chirichirā (See).

**ଚିରଚିରାଇବା**—ପଦ. କ୍ରି (ସଂ. ଚିତ୍କାର)—ଚିରିଚିରାଇବା (ଦେଖ)
Chirachirāibā Chirichirāibā (See)
(ଚିରଚିରେଇବା—ଅନ୍ୟରୂପ)

**ଚିରଜୀବକ**—ସଂ. ବିଣ. ପୁଂ (ଚିର+ଜୀବ୍ ଧାତୁ=ବଞ୍ଚିରହିବା+କର୍ତ୍ତୃ.
Chirajībaka ଅକ)—୧ । ଦୀର୍ଘାୟୁଃ; ଦୀର୍ଘଜୀବୀ; ଯେ ଅନେକ
(ଚିରଜୀବିକା—ସ୍ତ୍ରୀ) ଦିନ ବଞ୍ଚେ—1 Long-lived.
୨ । ଅମର—2. Undying; immortal
ବି—୧ । ବିଷ୍ଣୁ—1. Bishṇu.
୨ । କାକ—2. The crow.
୩ । ମାର୍କଣ୍ଡେୟ ଋଷି—3 Sage Mārkaṇḍeya ( said to be still alive).
୪ । ଶାଲ୍ମଳୀ ଗଛ; ଶିମିଳିଗଛ—4. The silk-cotton tree; Bambax Heptaphyllia.
ଅଶ୍ୱତ୍ଥାମା—5. Aśwatthāmā, the son of Droṇāchārjya.
୬ । ବଳିରାଜା—6. Baḻi, the king who was pressed down into the nether regions by Bishṇu in his incarnation of Bāmana.
୭ । ବ୍ୟାସଦେବ—7. Byāsa, the author of the Mahābhārata.
୮ । ପରଶୁରାମ—8. Paraśurām.
୯ । ହନୁମାନ୍—9. Hanumān, the devoted follower of Rāmchandra.
୧୦ । ବିଭୀଷଣ—10. Bibhīshaṇa, the brother of Rābaṇa.
୧୧ । କୃପ—11. Kṛupa, the preceptor of the Pandu and Kuru princes in archery.
[ଦ୍ର—ପୁରାଣ ମତରେ ଅଶ୍ୱତ୍ଥାମା, ବଳି, ବ୍ୟାସ, ହନୁମାନ୍, ବିଭୀଷଣ, କୃପ ଓ ପରଶୁରାମ ଏ ୮ ଜଣ ଅମର ଓ ପ୍ରତିଦିନ ସକାଳେ ଏମାନଙ୍କ ନାମ ସ୍ମରଣ କରିବା ଲୋକ ଦୀର୍ଘାୟୁ ହୁଏ ।]
୧୨ । (ବୈଦିକ) ଜୀବକ ନାମକ ବୃକ୍ଷ—
12. Name of a very rare medicinal plant.

**ଚିରଜୀବନ**—ସଂ. ବି.—ମନୁଷ୍ୟର ଜୀବିତ କାଳ—
Chirajībana The lifetime of a person.
କ୍ରି. ବିଣ.—ଆଜୀବନ; ଜୀଇଁବା ପର୍ଯ୍ୟନ୍ତ—
Till death; for life.

**ଚିରଜୀବିତା**—ସଂ. ବି. ( ଚିରଜୀବିନ୍+ଭାବ. ତା )—
Chirajībitā ୧ । ବହୁକାଳ ବଞ୍ଚିବା—1. Longevity.
୨ । ଅମରତ୍ୱ—2. Immortality.

**ଚିରଜୀବୀ**—ସଂ. ବିଣ ଓ ବି.ପୁଂ—(ଚିର+ଜୀବ୍ ଧାତୁ+କର୍ତ୍ତୃ. ଇନ୍)—
Chirajībī ଚିରଜୀବକ (ଦେଖ)
(ଚିରଜୀବିନୀ—ସ୍ତ୍ରୀ) Chirajībaka (See)
(ଚିରଞ୍ଜୀବୀ—ଅନ୍ୟରୂପ)

**ଚିରଞ୍ଜି**—ଦେ. ବି.—(ସଂ. ଚିର+ବୀଜ)—୧ । ପିଆଳ ବୃକ୍ଷ—
Chirañji 1. Buchanonia Latifolia (a wild timber-tree.
চিরৌঞ্জি
**पियार, चिरौञ्ज** ୨ । ପିଆଳଫଳ; ଏକପ୍ରକାର ବାଦାମ—
2. Seed of the Chironjia Sapida.

[ ଦ୍ର—ଏହି ମଞ୍ଜିର ଶସ ବାଦାମ ପରି ସୁସ୍ୱାଦୁ ଓ ଏଥିରୁ ଏକପ୍ରକାର ତେଲ ବାହାରେ । ପଶ୍ଚିମ ଅଞ୍ଚଳରେ ଏହି ତେଲ (ଆମ ଦେଶରେ ରାଶିତେଲ, ସୋରିଷତେଲ ପରି ) ତିଅଣକୁ ସୁସ୍ୱାଦୁ କରିବାରେ ବ୍ୟବହୃତ ହୁଏ ଓ ଏ ମଞ୍ଜିର ଶସ ପିଠା ଓ ମିଠାଇରେ ପଡ଼େ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ସତତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ ଗାଇ' ଖୋଜିବେ, ଭୂଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍ଗା ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଚିରନ୍ତୀ**—ସଂ. ବି. ସ୍ତ୍ରୀ—(ଚିର+ଅଟ୍ ଧାତୁ=ଗମନ କରିବା+କର୍ତ୍ତୃ. ଅ +ସ୍ତ୍ରୀ. ଈ; ନିପାତନ)—୧ । ଯେଉଁ କନ୍ୟା ପିତୃ ଗୃହରେ ଆଜୀବନ ବାସ କରେ (ବିବାହିତା କିମ୍ବା ଅବିବାହିତା ଅବସ୍ଥାରେ); ଅତି ସେହଭାଜିଅ; ପିତୃଗୃହବାସିନୀ କନ୍ୟା; ବିବାହିତା ହୋଇ ମଧ୍ୟ ପିତୃଗୃହବାସିନୀ କନ୍ୟା—A daughter who (instead of living in her husband's house) lives in her father's house through life; a woman (married or unmarried) who on account of fondness or affection of the parnets passes her whole life in her father's house.

Chiraṭi

ଚିରଣ୍ଟୀ, ଚିରିଣ୍ଟୀ, ଚିରଣ୍ଟିକା, ଚିରଣ୍ଟୀ, ଚିରଣ୍ଟୀ, ଚିରଣ୍ଠୀ — ଅନ୍ୟରୂପ

୨ । ଯୁବତୀ (ହି. ଶବ୍ଦସାଗର)—2. A young woman.

**ଚିରତିକ୍ତ**—ସଂ. ବି.—ଚିରେଇତା; କିରାତତିକ୍ତ; ଭୂନିମ୍ବ; କିରାତକ—
Chiratikta A bitter medicinal plant used as vermifuge; Gentiana Chersyta.

**ଚିରତୁଷାର**—ଦେ. ବି —ଯେଉଁ ବରଫ ଆଦୌ ତରଳେ ନାହିଁ—
Chiratushāra Perpetual snow.

**ଚିରତୁଷାରବଳୟ**—ସଂ. ବି. ( ଆଧୁନିକ ବ୍ୟବହାର )—ପର୍ବତ ବା ଦେଶର ଯେଉଁ ଭାଗ ସବୁଦିନେ ବରଫରେ ଆଚ୍ଛାଦିତ ହୋଇ ରହି ଥାଏ (ଅର୍ଥାତ ଯେଉଁ ସ୍ଥାନରେ ବରଫ ଖରାରେ ଶୁଖି ତରଳେ ନାହିଁ) ତାହାର ସୀମାନ୍ତ ସୀମା—Snowline; the line of perpetual snow.

Chiratushārabalaya

ଚିରତୁଷାର ରେଖା, ଚିରତୁଷାର ସୀମା — ଅନ୍ୟରୂପ

**ଚିରତୁଷାରବାହୁ**—ସଂ. ବି. (ଆଧୁନିକ ପ୍ରୟୋଗ)—ଯେଉଁ ବୃହଦାକାର ବରଫ ଖଣ୍ଡ ତରଳେ ନାହିଁ—
Chiratushārabāhu
(ଚିରତୁଷାରସ୍ତୂପ—ଅନ୍ୟରୂପ) A glacier.

**ଚିରତୃଷିତ**—ସଂ. ବିଣ ( ସୁପ୍ ସୁପ୍ ସମାସ )—ଦୀର୍ଘକାଳ ହେଲା ପାଣି ପିଇ ନ ଥିବାରୁ ଅତ୍ୟନ୍ତ ତୃଷାତୁର ( ବ୍ୟକ୍ତି )—
Chiratrushita
(ଚିରତୃଷିତା—ସ୍ତ୍ରୀ) (person) Very thirsty, not having drunk for a long time.

ଚନ୍ଦ୍ରରୁ ବର୍ଷଇ ସୁଧା ଝର
ଚିରତୃଷିତର ମୁଖେ ଉଦେ—କବିସୂର୍ଯ୍ୟ, କଳୋଚିତମ୍ଭ୍ ତ ଗୀତ ।

**ଚିରତ୍ନ**—ସଂ. ବିଣ (ଚିର+ଘଟିବା ଅର୍ଥରେ. ତ୍ନ)—ଚିରନ୍ତନ (ଦେଖ)
Chiratna Chirantana (See).

**ଚିରଦାସ**—ସଂ. ବିଣ. ପୁଂ—୧ । ଚିରାନୁଗତ; ଯାବଜ୍ଜୀବନ କୌଣସି ବ୍ୟକ୍ତିଠାରେ ଅନୁଗତ—1. Ever devoted; devoted for life to a master.
Chiradāsa
(ଚିରଦାସୀ—ସ୍ତ୍ରୀ)
(ଚିରଦାସତ୍ୱ—ବି) ୨ । ଆଜୀବନ ପ୍ରଭୁଙ୍କଠାରେ ଭୃତ୍ୟରୂପେ ଅବଦ୍ଧ—2. Tied to a master as a slave for life.

ବି—୧ । ଆଜୀବନ ଦାସ—1. A slave for life.
୨ । ଆଜୀବନ ଭକ୍ତ—2. A life-long devotee.

**ଚିରଦିନ**—ସଂ. ବି—ଚିରକାଳ (ଦେଖ)
Chiradina Chirakāla (See)

**ଚିରଦିନିଆଁ**—ଦେ. ବିଣ—ଚିରକାଳିଆ (ଦେଖ)
Chiradiniāñ Chirakālia (See)

**ଚିରନିଦ୍ରା**—ସଂ. ବି. (କର୍ମଧା; ଚିର+ନିଦ୍ରା)—ଯେଉଁ ନିଦ କେବେହେଁ ଭାଙ୍ଗେ ନାହିଁ ଅର୍ଥାତ୍ ମୃତ୍ୟୁ—
Chiranidrā
(ଚିରନିଦ୍ରିତ—ବିଣ) Everlasting sleep; death.

**ଚିରନିବାସ**—ସଂ. ବି. ( କର୍ମଧା; ଚିର+ନିବାସ )—
Chiranibāsa ୧ । ପୁରୁଷାନୁକ୍ରମେ ଏକସ୍ଥାନରେ ବାସ କରିବା—1. Residence at one place for generations.
ଚିରନିବାସୀ, ଚିରନିବଷ୍ଟ } ବିଣ.
୨ । ଆଜୀବନ କୌଣସି ସ୍ଥାନରେ ବାସ—
2. Permanent or lifelong residence at a place.

**ଚିରନିର୍ଦ୍ଦିଷ୍ଟ**—ସଂ. ବିଣ (ସୁପ୍ ସୁପ୍ ସମାସ)—ଚିରକାଳ ସକାଶେ ନିର୍ଦ୍ଦିଷ୍ଟ; ଯହିଁରେ କେବେହେଁ ବ୍ୟତିକ୍ରମ ଘଟିବ ନାହିଁ; ଅପରିବର୍ତ୍ତନୀୟ—Ever constant, immutable.
Chiranirddishṭa

**ଚିରନିର୍ବାସନ**—ସଂ. ବି. (ଚିର+ନିର୍+ବସ୍ ଧାତୁ ଣିଚ୍=ବାସି ଧାତୁ +ଭାବ. ଅନ )—ଅପରାଧୀକୁ ପ୍ରଦତ୍ତ ଯାବଜ୍ଜୀବନ ଦେଶାନ୍ତରରେ ବାସ କରିବା ରୂପ ଦଣ୍ଡ—
Chiranirbāsana
(ଚିରନିର୍ବାସିତ—ବିଣ. ପୁଂ)
(ଚିରନିର୍ବାସିତା—ବିଣ. ସ୍ତ୍ରୀ)
Transportation for life; lifelong exile.

**ଚିରନିହାର** (ଇତ୍ୟାଦି)—ଚିରତୁଷାର ଇତ୍ୟାଦି (ଦେଖ)
Chiranihāra (etc) Chiratushāra etc (See)

**ଚିରନ୍ତନ**—ସଂ. ବିଣ. ( ଚିରଂ+ଭବାର୍ଥେ. ତନ )—୧ । ଚିରକାଳୀନ; ଯାହା ଆବହମାନ କାଳରୁ ଚଳି ଆସୁଅଛି—
Chirantana
(ଚିରନ୍ତନୀ—ସ୍ତ୍ରୀ) 1. Existing from time immemorial.
୨ । ଅତି ପୁରାତନ 2. Very old; ancient.

**ଚିରପରିଚିତ**—ସଂ. ବିଣ. ପୁଂ. ( ସୁପ୍ ସୁପ୍ ସମାସ; ଚିର+ପରିଚିତ )—
Chiraparichita ୧ । ଦୀର୍ଘକାଳ ଯେଉଁ ବ୍ୟକ୍ତିଙ୍କ ସଙ୍ଗେ ପରିଚୟ ବା ଜଣାଶୁଣା ଅଛି—
(ଚିରପରିଚିତା—ସ୍ତ୍ରୀ)
(ଚିରପରିଚୟ—ବି) 1. Long acquainted or familiar; known for a pretty long time.
୨ । ବହୁକାଳ ହେଲା ଯେଉଁ କାର୍ଯ୍ୟ ଅଭ୍ୟାସ କରାଯାଇଅଛି; ଚିରାଭ୍ୟସ୍ତ—2 Long practised.

**ଚିରପାକୀ**—ସଂ. ବି (ଚିର+ପଚ ଧାତୁ=ପକ୍ୱ ହେବା+କର୍ତ୍ତୃ. ଇନ୍; ଏ ଫଳ ପାଚିବାକୁ ଅନେକ ସମୟ ଲାଗେ ବୋଲି) କଇଥ ଗଛ ଓ ଫଳ—Wood-apple (tree and fruit) Feronia Elephantum.
Chirapāki

| ୧ | ଇ | ଉ | ର୍‌,ର୍ଦ୍ଧ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ୟ | ଡ଼ଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଢ଼ | ‍୍ |

**ଚିରପାଳିତ**—ସଂ. ବିଣ. ପୁଂ—ଚିରପୋଷିତ (ଦେଖ)
Chirapālita Chiraposhita (See)
(ଚିରପାଳିତା—ସ୍ତ୍ରୀ)

**ଚିରପୁଷ୍ପ**—ସଂ. ବି. (ବହୁବ୍ରୀହି; ଚିର+ପୁଷ୍ପ; ଏଥିର ଫୁଲ ସବୁ ଋତୁରେ
Chirapushpa ଫୁଟେ )—ବଉଳ ଗଛ—Bakula tree
Mimusops Elengi.

**ଚିରପୋଷିତ**—ସଂ. ବିଣ. ପୁଂ. (ସୁପ୍ ସୁପ୍ ସମାସ; ଚିର+ପୋଷିତ)—
Chiraposhita ୧ । ଯେଉଁ ବ୍ୟକ୍ତି ଦୀର୍ଘକାଳ ହେଲା ପାଳନ
(ଚିରପୋଷିତା—ସ୍ତ୍ରୀ) କରାଯାଉଅଛି—1. Long maintained.
୨ । ବହୁକାଳ ହେଲା ଯେଉଁ ଆଶା ବା ଇଚ୍ଛା ମନରେ
ପୋଷଣ କରାଯାଇଅଛି - 2 Long cherished
hope or desire.

**ଚିରପ୍ରଚଳିତ**—ସଂ ବିଣ ( ସୁପ୍‌ସୁପ୍ ସମାସ; ଚିର+ପ୍ରଚଳିତ )—
Chiraprachalita ଅବହମାନକାଳରୁ ଚଳୁଥିବା—
Immemorial; obtaining for a long
time past.

**ଚିରପ୍ରବାସ**—ସଂ. ବି ( କର୍ମଧା; ଚିର+ପ୍ରବାସ )—
Chiraprabāsa ୧ । ବହୁକାଳ ବିଦେଶରେ ବାସ—
1. Long sojourn; staying abroad for a
very long time
ଚିରପ୍ରବାସୀ } ବିଣ ୨ । ଆଜୀବନ ବିଦେଶରେ ବାସ—
ଚିରପ୍ରୋଷିତ } 2. Lifelong sojourn.

**ଚିରପ୍ରବାସୀ**—ସଂ. ବିଣ ପୁଂ ( ଚିରପ୍ରବାସ+ଇନ୍ ୧ମା. ୧ବ. )—
Chiraprabāsī ୧ । ବହୁକାଳ ହେଲା ଯେ ବିଦେଶରେ ରହୁଅଛି—
1. A person who has been staying
abroad for a very long time.
(ଚିରପ୍ରବାସିନୀ—ସ୍ତ୍ରୀ) ୨ । ଯେ ଆଜୀବନ ବିଦେଶରେ କଟାଇଅଛି—
2. A sojourner for life.

**ଚିରପ୍ରବାହ**—ସଂ. ବି (କର୍ମଧା; ଚିର+ପ୍ରବାହ)—ଅନନ୍ତ ବା ଅବିରତ
Chiraprabāha ସ୍ରୋତୋଧାରା—Eternal or continuous
current; perennial spring.
ଚିରପ୍ରବାହିତ } ବିଣ
ଚିରପ୍ରବାହୀ }

**ଚିରପ୍ରବାହିତ**—ସଂ. ବିଣ. ପୁଂ (ସୁପ୍ ସୁପ୍ ସମାସ; ଚିର+ପ୍ରବାହିତ)—
Chiraprabāhita ୧ । ଯାହା ଅବହମାନକାଳରୁ ବହି ଆସୁ-
ଅଛି—1 Ever flowing; ever running.
(ଚିରପ୍ରବାହିତା—ସ୍ତ୍ରୀ) ୨ । ବାର ମାସ ଯହିଁରେ ସୁଅ ଥାଏ; ଯେଉଁ
ନଈର ସୁଅ ଖରାଦିନେ ସୁଦ୍ଧା ଶୁଖିଯାଏ ନାହିଁ—
2. Having a current flowing throughout
the year; perennial.
ଚିରପ୍ରବାହୀ—ବିଣ. ପୁଂ } ଅନ୍ୟରୂପ— ୩ । ଯେଉଁ ନଦୀ ଆଦିର
ଚିରପ୍ରବାହିଣୀ—ବିଣ. ସ୍ତ୍ରୀ } ସ୍ରୋତ ବା ପ୍ରବାହ
ଆଦୌ ବନ୍ଦ ହୁଏ ନାହିଁ—3. Never drying;
never ceasing to flow.

**ଚିରପ୍ରାପ୍ତ**—ସଂ. ବିଣ. ପୁଂ ( ସୁପ୍ ସୁପ୍ ସମାସ; ଚିର+ପ୍ରାପ୍ତ )—
Chiraprāpta ୧ । ଯାହା ବହୁଦିନପୂର୍ବେ ମିଳିଥିଲା—
1. Acquired long long ago.
( ଚିରପ୍ରାପ୍ତା—ସ୍ତ୍ରୀ ) ୨ । ଯାହା ଆଜନ୍ମ ତପସ୍ୟା ବା ସାଧନାରେ
ମିଳିଅଛି—2. Acquired after lifelong
labour or penance.
୩ । ଯାହା ବହୁ ବିଳମ୍ବରେ ମିଳିଅଛି—
3. Got after a long delay.
୪ । ଯାହା ଯାବଜ୍ଜୀବନ ଭୋଗକରିବା ସକାଶେ ମିଳିଛି—
4 Acquired for lifelong enjoyment.

**ଚିରପ୍ରାର୍ଥିତ**—ସଂ. ବିଣ. ପୁଂ ( ସୁପ୍ ସୁପ୍ ସମାସ; ଚିର+ପ୍ରାର୍ଥିତ )—
Chiraprārthita ୧ । ଯେଉଁ ବସ୍ତୁକୁ ପାଇବା ପାଇଁ ବହୁକାଳ
( ଚିରପ୍ରାର୍ଥିତା—ସ୍ତ୍ରୀ ) ହେଲା ଅଭିଳାଷ କରି ଯାଇଅଛି;
ଚିରବାଞ୍ଛିତ—1. Ever prayed for.
୨ । ଯାହା ପାଇବାପାଇଁ ଆଜୀବନ ପ୍ରାର୍ଥନା କରି ଯାଇଅଛି—
2. That for whom prayers are offered
since a long time.
୩ । ଯାହାକୁ ବହୁକାଳ ଅନୁସରଣ ବା ପ୍ରାର୍ଥନା କରି ଯାଇଅଛି—
3 One who has been approached or
solicited for a long time.

**ଚିରପ୍ରୋଷିତ**—ସଂ. ବିଣ. ପୁଂ ( ସୁପ୍‌ସୁପ୍ ସମାସ; ଚିର+ପ୍ରୋଷିତ=
Chiraproshita ପ୍ରବାସୀ)—ଚିରପ୍ରବାସୀ ଦେଖ)
(ଚିରପ୍ରୋଷିତା—ସ୍ତ୍ରୀ) Chiraprabāsī (See).

**ଚିରବଚ୍ଚା**—ଦେ. ବି ( ଓ. ଚିର=ସ୍ତନାଗ୍ର+ହି. ବଚ୍ଚା=ଶିଶୁ )—
Chirabachā ସ୍ତନନ୍ଧୟ. ଶିଶୁ; ଦୁଧଖିଆ ପିଲା—
A suckling; sucking baby.
ଚିରବଚ୍ଚାରୁ ପେଟ ହେବାକାଳେ ଶକଟ ହେଲାଣି ଯାହା ସେ ବଟଲାଇ ମୃତ୍ୟୁ ।
କବିସୂର୍ଯ୍ୟ. ସଙ୍ଗୀତ ।

**ଚିରବନ୍ଧୁ**—ସଂ. ବି. ପୁଂ. ( କର୍ମଧା; ଚିର+ବନ୍ଧୁ )—
Chirabandhu ୧ । ଅନେକ ଦିନର ପୁରୁଣା ବନ୍ଧୁ—
( ଚିରବନ୍ଧୁତା—ବି ) 1. Very old friend.
୨ । ସ୍ଥାୟୀ ବନ୍ଧୁ; ଯେଉଁ ବନ୍ଧୁର ମିତ୍ରତା ନଷ୍ଟ ହେବାର
ନୁହେ—2. Constant friend.

**ଚିରବାଞ୍ଛିତ**—ସଂ. ବିଣ. ପୁଂ. ( ସୁପ୍ ସୁପ୍ ସମାସ; ଚିର+ବାଞ୍ଛିତ )—
Chirabānchhita ୧ । ଯାହାକୁ ପାଇବା ସକାଶେ ବହୁକାଳରୁ
( ଚିରବାଞ୍ଛିତା—ସ୍ତ୍ରୀ ) ବଳବତୀ ଇଚ୍ଛା ରହିଅଛି—1. Ever
longed for; desired for since a long time.
୨ । ଚିରପ୍ରାର୍ଥିତ—2. Ever prayed for.

**ଚିରବାହୀ**—ସଂ. ବିଣ. ପୁଂ. ( ଚିର+ବହ୍ ଧାତୁ+ଇନ୍. ୧ମା. ୧ବ)—
Chirabāhī ଚିରପ୍ରବାହିତ ( ଦେଖ )
( ଚିରବାହିନୀ—ସ୍ତ୍ରୀ ) Chiraprabāhita ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଚିରବିଚ୍ଛିନ୍ନ**—ସଂ. ବିଣ. ପୁଂ. ( ଚିର+ବିଚ୍ଛିନ୍ନ )—
Chirabichchhinna ୧ । ଯାହାଠାରୁ ବହୁଦିନ ହେଲା ଅନ୍ତରିତ ହେବାକୁ ହୋଇଅଛି—
( ଚିରବିଚ୍ଛିନ୍ନା—ସ୍ତ୍ରୀ )
1. Long separated.
୨ । ଚିରକାଳ ପାଇଁ ଅନ୍ତରିତ—
2. Separated for ever; separated never to meet.

**ଚିରବିଚ୍ଛେଦ**—ସଂ. ବି. ( କର୍ମଧା; ଚିର+ବିଚ୍ଛେଦ ) —
Chirabichchheda ୧ । ବନ୍ଧୁ ବା ଦମ୍ପତିଙ୍କର ଦୀର୍ଘକାଳ ପାଖ ଛଡ଼ାଛଡ଼ି—Long separation from each other ( of friends or husband and wife ).
୨ । ଯାବଜ୍ଜୀବନ ପାଖ ଛଡ଼ାଛଡ଼ି ହେବା—
2. Separation for ever.
୩ । ମୃତ୍ୟୁ—3. Death.

**ଚିରବିଦାୟ**—ସଂ. ବି—୧ । ଚିରଦିନ ସକାଶେ ପ୍ରସ୍ଥାନ—
Chirabidāya 1. Separation not to meet again; eternal adiew.
୨ । ମୃତ୍ୟୁ—2. Death.

**ଚିରବିରହ**—ସଂ. ବି. ( ଚିର+ବିରହ )—ଚିରବିଚ୍ଛେଦ ( ଦେଖ )
Chirabiraha Chirabichchheda ( See )

**ଚିରବିରହୀ**—ସଂ. ବିଣ. ପୁଂ. ( ଚିରବିରହ+ଇନ୍; ୧ମା. ୧ବ. )—
Chirabirahī ୧ । ବହୁକାଳ ପାଖ ଛଡ଼ାଛଡ଼ି ହୋଇ ରହିଥିବା ( ସ୍ୱାମୀ ବା ସ୍ତ୍ରୀ )—
(ଚିରବିରହିଣୀ—ସ୍ତ୍ରୀ)
1. Long separated ( couple ).
୨ । ଆଜୀବନ ସ୍ୱାମୀ ବା ସ୍ତ୍ରୀସଙ୍ଗରୁ ବଞ୍ଚିତ—
2. Deprived of the association of one's wife or husband for life.

**ଚିରବିରୁଦ୍ଧ**—ସଂ. ବିଣ. ପୁଂ. ( ସୁପ୍ ସୁପ୍ ସମାସ; ଚିର+ବିରୁଦ୍ଧ )—
Chirabiruddha ୧ । ଯେ ଆଜୀବନ ପ୍ରତିକୂଳ ବା ବିପକ୍ଷ; ଯାହା ସଙ୍ଗେ ଆଜୀବନ ଶତ୍ରୁତା ଲାଗିଅଛି; ବହୁକାଳ ହେଲା ଶତ୍ରୁ—
(ଚିରବିରୋଧୀ—ଅନ୍ୟରୂପ)
(ଚିରବିରୁଦ୍ଧା—ସ୍ତ୍ରୀ)
ଚିରବିରୁଦ୍ଧତା } ବି. 1. Inimical for a long time; having lifelong enmity with each other.
ଚିରବିରୋଧ
୨ । ଯେଉଁ ଦ୍ରବ୍ୟଦ୍ୱୟ (ଯଥା—କ୍ଷୀର କ୍ଷାର ଏକତ୍ର ସେବନ କଲେ ଅନିଷ୍ଟ ଘଟେ)—2. (two things) Which do not agree with each other.

**ଚିରବିଲ୍ୱ**—ସଂ. ବି—୧ । କରଞ୍ଜବୃକ୍ଷ—
Chirabilwa 1. Pongamia Glabra (M. W).
୨ । ସୁରୁବୁଲି ( ଦେଖ ) 2. Surubuli ( See )

**ଚିରବିସ୍ମୟ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଚିର+ବିସ୍ମୟ )—
Chirabismaya ଯେଉଁ ବ୍ୟକ୍ତି ବା ବସ୍ତୁ ଚିରଦିନ ବିସ୍ମୟ ଉତ୍ପାଦନ କରେ—Ever wonderful; ever enrapturing
(ଚିରବିସ୍ମୟା—ସ୍ତ୍ରୀ)

**ଚିରବିସ୍ମୃତ**—ସଂ. ବିଣ. ପୁଂ. ( ସୁପ୍ ସୁପ୍ ସମାସ; ଚିର+ବିସ୍ମୃତ )—
Chirabismṛuta ୧ । ଯେ ବହୁଦିନ ହେଲା କୌଣସି କଥା ଭୁଲି ଯାଇଅଛି—1. Long forgetting; long oblivious.
(ଚିରବିସ୍ମୃତା—ସ୍ତ୍ରୀ)
(ଚିରବିସ୍ମୃତି—ବି)
୨ । ଯାହାକୁ ବହୁଦିନ ହେଲା ଭୁଲାଯାଇଅଛି—
2. Long forgotton,

**ଚିରବୀର୍ଯ୍ୟ**—ସଂ ବି—ନାଲି ଜଡ଼ଗଛ (ହି. ଶବ୍ଦସାଗର)—
Chirabīrjya The redvariety of the castor-seed-plant.

**ଚିରବେଗା**—ଦେ. ବିଣ—ଯେଉଁ ଛାତ୍ର କୌଣସି ପାଠକୁ ଆୟତ୍ତ କରିବାକୁ ବହୁସମୟ ନିଏ କିନ୍ତୁ ଶୀଘ୍ର ପାସୋରି ପକାଏ—
Chirabegā
(ବେଗଚିରି—ରୂପାନ୍ତର) Acquiring a lesson very slowly but forgetting it very fast; long to acquire but quick to forget ( said of memory or students ).
[ ଦ୍ର—ଚିରଚିରି ତଳେ ନୋଟ ଦେଖ । ]

**ଚିରବୈର**—ସଂ. ବି. ( କର୍ମଧା; ଚିର+ବୈର )—
Chirabaira ବହୁକାଳ ବ୍ୟାପୀ ଶତ୍ରୁତା—
Long standing enmity; life long antipathy.
ସଂ. ବିଣ (ବହୁବ୍ରୀହି)—ଚିରବିରୁଦ୍ଧ (ଦେଖ)
Chirabiruddha (See).

**ଚିରବୈରାଗୀ**—ସଂ. ବିଣ. ( ସଂ. ଚିର+ବୈରାଗୀ )—
Chirabairāgī ୧ । ଯେ ବାଲ୍ୟକାଳରୁ ସଂସାର ତ୍ୟାଗ କରିଅଛି—
(ଚିରବୈରାଗ୍ୟ—ବି) 1. One who has renounced the world for life; since boyhood.
୨ । ଯେ ବଞ୍ଚିଥିବା ପର୍ଯ୍ୟନ୍ତ ସଂସାର ତ୍ୟାଗ କରେ—
2. Renouncing the world for life.

**ଚିରବୈରୀ**—ସଂ. ବିଣ. ପୁଂ. ( କର୍ମଧା; ଚିର+ବୈରୀ )—
Chirabairī ୧ । ଆଜୀବନ ବା ବହୁକାଳ ହେଲା ପ୍ରତିକୂଳ—
(ଚିରବୈରିଣୀ—ସ୍ତ୍ରୀ) 1. Enmical for life or for a long time.
୨ । ଜନ୍ମତଃ ବା ପ୍ରକୃତିତଃ ପରସ୍ପର ଶତ୍ରୁ—
( ଯଥା—ଘୋଡ଼ା, ମଇଁଷି, ବାଘ, ଛେଳି । )
2. Enmical to each other by nature.

**ଚିରମଳିନ**—ସଂ. ବିଣ. ପୁଂ. ( କର୍ମଧା; ଚିର+ମଳିନ )—
Chiramalina ୧ । ଯେଉଁ ପଦାର୍ଥ ବା ବ୍ୟକ୍ତିଠାରୁ ମଳିନତା କଦାପି ଦୂର ହେବ ନାହିଁ—
(ଚିରମଳିନା—ସ୍ତ୍ରୀ)
ଚିରମଳିନତା } ବି. 1. Ever dirty; ever soiled; that which can never be purified or chastened.
ଚିରମାଳିନ୍ୟ

| ୧ | ଇ | ଉ | ର୍, ରୂ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ, ଷ | ଙ୍କ | ଇଘ୍ର | ଢ଼ଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ନିଂ୍ୟ | ଋଅ | ଢ଼ | ନ୍ |

୨ । ଯେଉଁ ବ୍ୟକ୍ତିଠାରେ ଲାଗିବା କଳଙ୍କ ଦୂରପନେୟ—
1. Having a stain which will never be effaced.

**ଚିରମେହୀ**—ସଂ. ବି. ( ଚିର+ମିହ ଧାତୁ=ପ୍ରସ୍ରାବ କରିବା+କର୍ତ୍ତୃ. ଇନ୍; ଯେ ବହୁବାର ଓ ଅନେକ ସମୟ ପର୍ଯ୍ୟନ୍ତ ପ୍ରସ୍ରାବ କରେ )—ଗଧ—The ass.
Chiramehī

**ଚିରମ୍ଭ**—ସଂ. ବି. ( ଚି=ଚକାର ଧ୍ୱନି+ରମ୍ଭ ଧାତୁ=ଆରମ୍ଭ କରିବା +କର୍ତ୍ତୃ. ଅ )—ଚିଲ—
Chirambha
(ଚିରମ୍ଭଣ—ଅନ୍ୟରୂପ) The common Indian kite.

**ଚିରଯଶଃ**—ସଂ. ବି.—(କର୍ମଧାରୟ, ଚିର+ଯଶଃ)—ଯେଉଁ ଯଶ ଚିରକାଳ ରହିଥିବ; ଅନନ୍ତକୀର୍ତ୍ତି—
Chirajaśah
Everlasting or undying fame.
ଚିରଯଶାଃ
ଚିରଯଶସ୍ୱୀ } ବିଣ

**ଚିରଯୁବା**—ସଂ. ବିଣ.—( ଚିର+ଯୁବନ୍ )—୧ । ଯାହାର ଯୌବନ କେବେ ହେଲେ ମଉଳେ ନାହିଁ (ଯଥା—ଦେବତା)—
Chirajubā
ଚିରଯୁବକ—ପୁଂ
ଚିରଯୁବତୀ—ସ୍ତ୍ରୀ } ଅନ୍ୟରୂପ
ଚିରଯୌବନ—ବି
1. Of never fading youth.
୨ । ଯାହାର ଯୌବନ ବହୁକାଳ ରହେ—2. Of lasting youth; one who maintains his or her youth for an extraordinarily long time.
୩ । ବାର୍ଦ୍ଧକ୍ୟରେ ମଧ୍ୟ ଯେ ଯୁବକ ପରି ସତେଜ ଥାଏ—
3. Sprightly and energetic even in old age.
୪ । ଯେଉଁ ବ୍ୟକ୍ତିର ଯୌବନଜନିତ ଅଙ୍ଗସୌଷ୍ଠବ ବୃଦ୍ଧକାଳରେ ମଧ୍ୟ ରହେ—Maintaining youthful plumpness and grace even in advanced age.

**ଚିରରହସ୍ୟ**—ସଂ. ବି. ( କର୍ମଧା; ଚିର+ରହସ୍ୟ )—ଯେଉଁ ରହସ୍ୟ କେବେହେଁ ସମାଧାନ ହୋଇ ପାରିବ ନାହିଁ—
Chirarahasya
Insoluble problem or riddle.

**ଚିରରାତ୍ର**—ସଂ. କ୍ରି. ବିଣ. (ଚିର+ରାତ୍ରି+ଅ)—ଚିରକାଳ—
Chirarātra
For ever

**ଚିରରୁଗ୍ଣ** ସଂ. ବିଣ. ପୁଂ—(ସୁପ୍ ସୁପ୍ ସମାସ, ଚିର+ରୁଗ୍ଣ)—
Chirarugṇa ୧ । ଯେ ବହୁକାଳ ହେଲା ରୋଗ ଭୋଗ କରୁ ଅଛି—
(ଚିରରୁଗ୍ଣା—ସ୍ତ୍ରୀ) 1. Suffering from a chronic disease;
ଚିରରୋଗୀ—ପୁଂ.
ଚିରରୋଗିଣୀ—ସ୍ତ୍ରୀ. } ଅନ୍ୟରୂପ
Valetudinarian; invalid.
୨ । ଆଜନ୍ମ ରୋଗୀ—2. Delicately constituted or sickly from birth.

**ଚିରରୋଗ**—ସଂ. ବି.—ବହୁଦିନ ବ୍ୟାପୀ ଅସୁସ୍ଥତା—
Chiraroga
Chronic disease.

**ଚିରରୋଗଣା**—ଦେ. ବିଣ. ପୁଂ (ସଂ. ଚିର+ରୁଗ୍ଣ)—ଚିରରୋଗୀ—
Chiraroganā Suffering from a chronic disease;
(ଚିରରୋଗଣୀ—ସ୍ତ୍ରୀ) constantly ailing.
ଚିରରୋଗା; ଚିରରୋଗିଣା—ପୁଂ
ଚିରରୋଗେଣ୍ଡ, ଚିରରୋଗେଣୀ—ସ୍ତ୍ରୀ } ଅନ୍ୟରୂପ
चिरकतास

**ଚିରଲୁବ୍ଧ**—ସଂ. ବିଣ. ପୁଂ.—ଚିରବାଞ୍ଛିତ (ଦେଖ)
Chiralubdha Chirabānchhita (See)
(ଚିରଲୁବ୍ଧା—ସ୍ତ୍ରୀ)

**ଚିରଶୟନ**—ସଂ. ବି. (ଚିର+ଶୟନ)—ମୃତ୍ୟୁ—
Chiraśayana Death.
ଚିରଶୟିତ; ଚିରସୁପ୍ତ—ପୁଂ
ଚିରଶୟିତା; ଚିରସୁପ୍ତା—ସ୍ତ୍ରୀ } ବିଣ
ହଳାହଳ ପାନେ ଦାରୁଣ ଶ୍ମଶାନେ କୋଳେ କଲେ ଆହା ଚିରଶୟନ ।
ନନ୍ଦକିଶୋର. କୃଷ୍ଣକୁମାରୀ ।

**ଚିରଶାନ୍ତ**—ସଂ ବିଣ. ପୁଂ ( ସୁପ୍ ସୁପ୍ ସମାସ; ଚିର+ଶାନ୍ତ )—
Chiraśānta ୧ । ଯେ ଆଜୀବନ ସଂଯତ—1. Observing lifelong self control
(ଚିରଶାନ୍ତା—ସ୍ତ୍ରୀ)
୨ । ଆଜୀବନ ଧୀର—2. Calm and quiet by nature.
୩ । ଦୀର୍ଘକାଳ ହେଲା ନିରୁପଦ୍ରୁତ ଓ ସ୍ଥିର—
3. Pacified for a long time.
୪ । ଯେଉଁଠାରେ କେବେ ହେଲେ ଅଶାନ୍ତି ଘଟେ ନାହିଁ—
4. Ever peaceful and quiet (place).

**ଚିରଶାନ୍ତି**—ସଂ. ବି. ପୁଂ ( କର୍ମଧାରୟ; ଚିର+ଶାନ୍ତି )—୧ । ଦୀର୍ଘକାଳ ବ୍ୟାପୀ ଶାନ୍ତି; ଅନବଚ୍ଛିନ୍ନ ଶାନ୍ତି—1. Everlasting peace or contentment.
Chiraśānti
୨ । ମୃତ୍ୟୁ—2 Death.

**ଚିରଶ୍ୟାମଳ**—ସଂ. ବିଣ. ପୁଂ. (ସୁପ୍ ସୁପ୍ ସମାସ; ଚିର+ଶ୍ୟାମଳ)—
Chiraśyāmala ଯାହା ବଞ୍ଚିଥିବା ପର୍ଯ୍ୟନ୍ତ ( ବୃକ୍ଷ ବା ପତ୍ର ) ସବୁଦିନେ ସବୁଜ ବର୍ଣ୍ଣ ଥାଏ; ଯେଉଁ ଗଛ ପତ୍ରହୁଡ଼ା ହଏ ନାହିଁ—Ever green (tree).
(ଚିରଶ୍ୟାମଳା—ସ୍ତ୍ରୀ)
(ଯଥା—ନଡ଼ିଆ, ଛାଲ, ଖଜୁରୀ, ପୋଲାଙ୍ଗ ଆଦି ଗଛ । )

**ଚିରସଙ୍ଗୀ**—ସଂ. ବି. ପୁଂ—୧ । ନିତ୍ୟସଙ୍ଗୀ; ଆଜନ୍ମସଙ୍ଗୀ ବା ଅନ୍ତର—
Chirasangi 1. Friends constantly attached to each other; companion for life.
(ଚିରସଙ୍ଗିନୀ—ସ୍ତ୍ରୀ)
୨ । ବହୁକାଳ ହେଲା ଯେଉଁ ସଙ୍ଗୀର ସଙ୍ଗଲାଭ ହୋଇଅଛି—
2 Long established friends; very old friend
୩ । ଯାହାକୁ ଜୀବନରେ କେବେ ହେଲେ ଛାଡ଼ି ହେବ ନାହିଁ—
3. Unavoidable companion.
( ଯଥା—ଦାରିଦ୍ର୍ୟ ସରସ୍ୱତୀପୁତ୍ରମାନଙ୍କର ଚିରସଙ୍ଗୀ ।)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବଧ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଚିରସହାୟ**—ସଂ. ବି. ପୁଂ. ( ଚିର+ସହାୟ )—
Chirasahāya ୧ । ବହୁକାଳର ଆଶ୍ରୟଦାତା ବା ଉପକାରୀ
(ଚିରସହାୟା—ସ୍ତ୍ରୀ) 1. An old benefactor.
୨ । ଯେ ସର୍ବଦା ଆପଦ ବା ଅଭାବବେଳେ ସାହାଯ୍ୟ କରେ—
2. A person who invariably renders help when required
୩ । ସର୍ବଦା ସହକାରୀ—3. A constant assistant

**ଚିରସୁଖ**—ସଂ ବି. ( କର୍ମଧାରୟ; ଚିର+ସୁଖ )—
Chirasukha ୧ । ଚିରସ୍ଥାୟୀ ଆନନ୍ଦ—
ଚିରସୁଖୀ—ପୁଂ, ଚିରସୁଖିନୀ—ସ୍ତ୍ରୀ
1. Constant or lasting happiness.
୨ । ଯାବଜ୍ଜୀବନ ଭୋଗ କରାଯିବା ଆନନ୍ଦ—
2. Lifelong bliss
୩ । ଅନନ୍ତକାଳ ପାଇଁ ସୁଖ—
3. Eternal happiness; beatitude.

**ଚିରସୁନ୍ଦର**—ସଂ. ବିଣ. (ସୁପ୍ ସୁପ୍ ସମାସ; ଚିର+ସୁନ୍ଦର; ଯେ ଭକ୍ତର
Chirasundara ଚକ୍ଷୁରେ ସର୍ବଦା ସୁନ୍ଦର)—
ଯାହା ସବୁଦିନେ ସୁନ୍ଦର ଦେଖାଯାଏ—Ever beautiful.
ସଂ. ବି—ପରମେଶ୍ୱର—A name of God.

**ଚିରସୂତା**—ସଂ. ବିଣ. ସ୍ତ୍ରୀ. ( ଚିର+ସୂତା=ପ୍ରସୂତା )—
Chirasūtā ୧ । ( ଗାଈ ବା ସ୍ତ୍ରୀ ) ଯେ ଅନେକ ଦିନ ପୂର୍ବେ ସନ୍ତାନ ଜନ୍ମ କରିଥିଲା; କାକବନ୍ଧ୍ୟା; କାକବାନ୍ଧ୍ୟୀ—
1. ( woman or cow ) Which lore a child long ago.
୨ । ଯେଉଁ ଗାଈ ଅନେକ ଥର ପ୍ରସବ କରେ—
2 (cow)Bearing calves in quick succession.
୩ । ଯେଉଁ ଗାଈ ଅନେକ ଦିନ ପରେ ପ୍ରସବ କରେ—
3. Bearing calves at long intervals

**ଚିରସେବିତ**—ସଂ. ବିଣ. ପୁଂ. ( ଚିର+ସେବିତ )—
Chirasebita ୧ । ଯାହାକୁ କୌଣସି ବ୍ୟକ୍ତି ବହୁକାଳ ହେଲା
(ଚିରସେବିତା—ସ୍ତ୍ରୀ) ସେବା କରି ଆସୁଥାଏ—
1. Long served; long enjoyed; long attended.
୨ । ଯେଉଁ କାର୍ଯ୍ୟ ବହୁ ଦିନ ହେଲା ଅନୁଷ୍ଠିତ ବା ଆଚରିତ ହେଉଅଛି—2. Being done for a long time.
୩ । ଲୋକେ ଯାହା ବହୁକାଳ ହେଲା ମାନି ଚଳି ଆସୁ ଅଛନ୍ତି—
3. Long followed or obeyed.

**ଚିରସ୍ଥାୟୀ**—ସଂ. ବିଣ. ପୁଂ. ( ଚିର+ସ୍ଥା ଧାତୁ+କର୍ତ୍ତି. ଇନ୍ )—
Chirasthāyi ୧ । ଅବିନାଶୀ—1. Indestructible;
(ଚିରସ୍ଥାୟିନୀ—ସ୍ତ୍ରୀ) permanent; ever lasting.
(ଚିରସ୍ଥାୟୀ—ବିପରୀତ) ୨ । ସାର୍ବକାଳସ୍ଥାୟୀ—
ଚିରସ୍ଥାୟିତା, ଚିରସ୍ଥାୟିତ୍ୱ } ବି.
2. Long standing; durable; lasting.
୩ । ଚିରସ୍ଥାୟୀ—3. Perpetual.

**ଚିରସ୍ଥାୟୀ ପଟ୍ଟା**—ଦେ. ବି—ଯେଉଁ ପଟ୍ଟାଦ୍ୱାରା ଭୂମି ଚିରକାଳ
Chirasthāyi paṭā ସକାଶେ ଉଇତକୁ ନିର୍ଦ୍ଦିଷ୍ଟ ଜମାରେ ଭୋଗ
ଚିରସ୍ଥାୟୀ ପଟ୍ଟା କରିବାକୁ ଦିଆଯାଏ; ଇସ୍ତମରାରୀ ପଟ୍ଟା—
चिरस्थायी पट्टा Permanent lease granted by a Zamindar; a lease in perpetuity.

**ଚିରସ୍ଥାୟୀ ବନ୍ଦୋବସ୍ତ**—ଦେ. ବି—୧ । ଚିରଦିନ ସକାଶେ ଭୂମିର
Chirasthāyi bandobasta ସରକାରୀ ରାଜସ୍ୱ ନିରୂପଣ—
চিরস্থায়ী বন্দোবস্ত 1. Permanent revenue Settlement
चिरस्थायी बन्दोबस्त in which the revenue payable to Government is fixed in perpetuity.
[ଦ୍ର—ବଙ୍ଗ, ବିହାର ଓ ଓଡ଼ିଶା ଦେଶରେ ଲର୍ଡ୍ କର୍ଣ୍ଣୱାଲିସ୍ ୧୭୯୩ ସାଲରେ ପ୍ରଥମେ ଜମିଦାରମାନଙ୍କ ଉପରେ ୧୦ ବର୍ଷ ସକାଶେ ବସାଇଥିବା ନିର୍ଦ୍ଦିଷ୍ଟ ଜମା ପରେ ଚିରକାଳ ସକାଶେ ସ୍ଥାୟୀ ରହିବ ବୋଲି ଆଦେଶ କଲେ । ଏ ଜମା ଆଉ ବଦଳିବ ନାହିଁ । ଓଡ଼ିଶାର କେତେଗୁଡ଼ିଏ ରାଜ୍ୟର ରାଜସ୍ୱ ମଧ୍ୟ ଚିରକାଳ ସକାଶେ ସ୍ଥିରୀକୃତ ହୋଇଥିଲା । ଇଂରାଜୀରେ ଏହାକୁ The Permanent Settlement of Bengal, Bihar & Orissa ବୋଲି କହନ୍ତି । ]
୨ । ଯେଉଁ ବ୍ୟବସ୍ଥାର ପରିବର୍ତ୍ତନ ଘଟେ ନାହିଁ—
2. A permanent arrangement.

**ଚିରସ୍ମରଣୀୟ**—ସଂ. ବିଣ (ଚିର+ସ୍ମରଣୀୟ)—୧ । ଯାହା ଚିରକାଳ
Chirasmaraṇiya ସକାଶେ ଲୋକଙ୍କ ମନରେ ରହିବ—
Ever memorable.
ଚିରସ୍ମରଣୀୟତା, ଚିରସ୍ମୃତି } ବି
୨ । ଅବହମାନକାଳରୁ ଲୋକେ ଯାହାକୁ ମନେ ରଖିଅଛନ୍ତି—
2 Ever-remembered.

**ଚିରସ୍ରୋତ**—ଦେ. ବି (ଚିର+ସ୍ରୋତସ୍)—ଚିରପ୍ରବାହ (ଦେଖ)
Chirasrota Chiraprabāha (See)
ଦେ. ବିଣ. ପୁଂ (ସଂ. ଚିରସ୍ରୋତା)—ଚିରପ୍ରବାହିତ (ଦେଖ)
Chiraprabāhita (See).

**ଚିରସ୍ରୋତାଃ**—ସଂ. ବିଣ. (ବହୁବ୍ରୀହି; ଚିର+ସ୍ରୋତସ୍; ୧ମା. ୧ବ)—
Chirasrotāh ଚିରପ୍ରବାହିତ (ଦେଖ)—
Chiraprabāhita (See)

**ଚିରା**—ଦେ. ବି (ସଂ.ଚୀର=କନ୍ଥା;ଜୀର୍ଣ୍ଣ ବସ୍ତ୍ରଖଣ୍ଡ, କନା); ସଂ ଚୀର୍ଣ୍ଣ)—
Chirā ୧ । ଫାଡ଼ିବା; ଚିରିବା—1. Tearing; tear
চিরা, চেরা ୨ । ସ୍ୱଶ୍ମ ଡ଼ିବା—2. Scratching, lacerating.
चिराव, चिर, चीरा ୩ । କନା—3. Rags.
୪ । ଦୁଇଫାଳ କରିବା—4. Splitting up into two
୫ । ଅସ୍ତ୍ରଦ୍ୱାରା କାଟିବା ବା କ୍ଷତବିକ୍ଷତ କରିବା—
5. To cut through or wound by an instrument.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଙ୍ଗ | ଉଅ | ଣ୍ଡ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଢ଼ | ନ୍ଧ |

୬ । ଫଟା—6. Rent.

କୁଦା ୭ । (ସଂ. ଚର ଧାତୁ=ଗତି) ଲମ୍ଫ, ଡିଆଁ—
**ଫଲାଙ୍କ, ଚୌକଡ଼ୀ** 7. A high jump; a running jump; leap

ଚରମର ଶୁଙ୍ଗ ବେଣୁ, ବାଦ୍ୟବାଦ ଶୁଣୁ ଶୁଣୁ—କବସୂର୍ଯ୍ୟ. କ. ଚ ।

ବିଣ—୧ । (ସଂ. ଚର=କନା; ନେକୁଡ଼ି) ଖାଣ୍ଡି; ଛିଣ୍ଡା ଯାଇଥିବା
ଚିବା (କନା)—1. Torne to pieces; tattered (cloth).
**चीरा** ଚିରିକନାରେ ମଣିବର ଥିଲେ ନ ଭୁଟେ ମୂଲ୍ୟ ତାର ।
ଭୂପତି. ପ୍ରେମଚନ୍ଦ୍ରାମୃତ ।

୨ । ( ସଂ. ଚୃଧାତୁ ) ନଖଦ୍ୱାରା କ୍ଷତବିକ୍ଷତ; ରକ୍ତମୁଖା ହୋଇଥିବା—2. Scratched (with finger nails); lacerated.

୩ । ଫାଳ ଫାଳ କରାଯାଇଥିବା—(ଯଥା—ଚିରାକାଠ)—
3. Split up into two.

୪ । କ୍ଷତବିକ୍ଷତ—4 Scarred at many places

ସହସ୍ରେ କାଣ୍ଡ ବଳେ ସାଧ୍ୟକ ମହାବୀର, କଲେ ଅଶ୍ୱତ୍ଥାମାଙ୍କ ଦେହକୁ ଚିର—
କୃଷ୍ଣସ ହି. ମହାଭାରତ. ଦ୍ରୋଣ ।

ପ୍ରାଦେ (ଗଡ଼ଜାତ) ବି—ପଟି; ଏକାଧିକ ଅଂଶୀଦାର ଗୋଟିଏ କିଆରିକୁ ବାଣ୍ଟିନେଲେ ପ୍ରତି ଭାଗରେ ପଡ଼ିବା ଲମ୍ବ ଓ ସରୁ ଅଂଶମାନ—A land partitioned amongst many co-sharers.

ଚିରାଇ—ଦେ. ବି—ଚିରେଇ ( ଦେଖ )—
Chirāi Chirei ( See )

ଚିରାଇତା—ଦେ. ବି—ଚିରେଇତା ( ଦେଖ )—
Chirāitā Chireitā ( See )

ଚିରାଇବା—ଦେ କ୍ରି—(ଚିରିବାର ଣିଜନ୍ତ ରୂପ) ଅନ୍ୟଦ୍ୱାରା ଫଡ଼ାଇବା—
Chirāibā To cause a thing to be split up or torne up by another.
চেবান
**चिरवाना, चिराना**
(ଚିରେଇବା—ଅନ୍ୟରୂପ)

ଚିରାଇସ—ଦେ. ବିଣ (ସଂ. ଚିରାୟୁଃ)—ଚିରାୟୁଃ ( ଦେଖ )—
Chirāisa Chirāyuḥ ( See )

ଚିରାକ୍ (ଇତ୍ୟାଦି)—ଚିରାଗ୍ ଇତ୍ୟାଦି ( ଦେଖ ) --
Chirāk (etc) Chirāg etc ( See )

ଚିରା କନା—ଦେ. ବି ( ସଂ. ଚୀର୍ଣ୍ଣ+କର୍ଣ୍ଣ=ବସ୍ତ୍ରର କୋଣ ) ଛିଣ୍ଡା
Chirā kanā ବସ୍ତ୍ରାଂଶ—Rag; tattered piece of cloth.
চিরা কাপড়, ছেঁড়া কানি ଥିଲାବେଳେ ଚିରାକନା ହଜିଗଲେ ମାଠ । ଢଗ ।
**चिथड़ा**

ଚିରାକୁଟୀ—ଦେ. ବି—ଚିରକୁଟ୍ ( ଦେଖ )
Chirākuti Chirkuṭ ( See )

ବାଙ୍କୁରେ ବାନ୍ଧନ୍ତି ତାଙ୍କ କଣ୍ଠେ ଚିରାକୁଟୀ—ସାରଳା. ମହାଭାରତ. ସଭା ।

ଚିରାଖ୍ ( ଇତ୍ୟାଦି )—ଚିରାଗ୍ ଇତ୍ୟାଦି ( ଦେଖ )—
Chirākh ( etc ) Chirāg etc ( See )

ଚିରାଗ୍—ବୈଦେ. ବି. ( ଫା. ଚରାଗ୍; ଚିରାଗ୍ )—୧ । ପ୍ରଦୀପ—
Chirāg 1. Lamp.
চিরাগ; চেরাগ ୨ । ଆଲୁଅ—2. Light.
**चिराग** ୩ । ସନ୍ଧ୍ୟାବେଳେ ମୁସଲମାନଙ୍କ ମସଜିଦ ଓ ପୀରଙ୍କ ଅସ୍ଥାନ ଆଦିରେ ଜଳାଯିବା ବତି—3 Wick lighted in mosques and shrined in the evening by Mahomedans.

ଚିରାଗ୍‌ଦାନ—ବୈଦେ. ବି. ( ଫା. ଚରାଗ୍‌ଦାନ୍ )—ପ୍ରଦୀପସ୍ତମ୍ଭ;
Chirāgdān ଦୀପରୁଖା—Lamp stand.
চেরাগদান
**चिरागदान**

ଚିରାଗତ—ସଂ. ବିଣ. ( ଚିର+ଆଗତ )—୧ । ବହୁକାଳ ହେଲା
Chirāgata ପ୍ରଚଳିତ ବା ଅନୁଷ୍ଠିତ—1. Long prevalent.

୨ । ପୁରୁଷାନୁକ୍ରମେ ବା ଅବହମାନକାଳରୁ ଚଳି ଆସୁଥିବା—
2 Continuing from time immemorial; transmitted from generation to generation.

ଚିରାଚରିତ—ସଂ. ବି. ( ସନ୍ଧି; ଚିର+ଆଚରିତ )—ଚିରାଗତ ( ଦେଖ )
Chirācharita Chirāgata ( See )

ଚିରାଚିରି ଦେ. ବି—ଅନେକ ବସ୍ତ୍ର ବା କାଗଜକୁ ଚିରିବା କର୍ମ—
Chirāchiri Various acts of tearing or rending.
ছেঁড়াছেঁড়ি ବିଣ—ଛିଣ୍ଡା ( କାଗଜ କନା ଆଦି )—
**चिराचिरि** Tattered; torne.

ଚିରାଚିରି କରିବା—ଦେ. କ୍ରି—ଅନେକ କାଗଜ ବା ବସ୍ତ୍ରଆଦି ଚିରିବା
Chirāchiri karibā ବା ଟିକି ଟିକି କରିବା—
To tear cloths or papers to pieces.

ଚିରାତିକ୍ତ—ସଂ. ବି—ଚିରେଇତା ( ଦେଖ )
Chirātikta Chireitā ( See )

ଚିରା ଦରବା—ଦେ. ବି—ଚିରା କନା ( ଦେଖ )
Chira darabā Chirā kanā ( See )

ଚିରା ଦରବାରେ ନ ଲୁଚେ ଅଣ୍ଡି—ଢଗ ।

ଚିରାନୁଷ୍ଠିତ—ସଂ. ବିଣ—ବହୁକାଳ ହେଲା ଚଳି ଆସୁଥିବା—
Chirānushthita Continuing since time immemorial; long practised.

ଚିରାନ୍ଧ—ସଂ ବିଣ. ପୁଂ. ( ଚିର+ଅନ୍ଧ )—୧ । ଜନ୍ମାନ୍ଧ—
Chirāndha 1 Blind from birth.
( ଚିରାନ୍ଧା—ସ୍ତ୍ରୀ ) ୨ । ( ଲକ୍ଷଣାର୍ଥ ) ଯେ କେବେହେଁ ସତ୍ୟ ତତ୍ତ୍ୱ ଦେଖେ ନାହିଁ ( କ୍ଲୀନେନ୍ଦ୍ର )—2. A person who does never see the truth.

ଚିରାଭ୍ୟସ୍ତ—ସଂ. ବିଣ—୧ । ଚିରାନୁଷ୍ଠିତ ( ଦେଖ )
Chirabhyasta 1. Chirānushthita ( See )
୨ । ବହୁଦିନ ହେଲା ଯେଉଁ ବ୍ୟକ୍ତିର କୌଣସି କଥା

ଅଭ୍ୟାସ କରୁଥାଇଅଛି—2. Habituated to a certain thing for a very long time.

**ଚିରମର**—ଦେ ବଣ—ଜୀର୍ଣ୍ଣ—
Chirāmarā — Torne; worn out
କୁଦାମାରା — ବ—ଡିଆଁ ଡେଇଁ—
**फलांगमारना** — Leaping; frisking; jumping.

ଚିରମର ଶୃଙ୍ଗ ବେଣୁ
ବାଦ୍ୟନାଦ ଶୁଣୁ ଶୁଣୁ—କବିସୂର୍ଯ୍ୟ, କଂଶୋଷରଙ୍ଗୀ, ନ-ଗୀତ ।

**ଚିରମାରିବା**—ଦେ. କ୍ରି. ( ସଂ. ଚର ଧାତୁ )—
Chirāmāribā — ୧ । ଊର୍ଦ୍ଧ୍ୱକୁ ଲମ୍ଫ ଦେବା; ଡେଇଁବା; ଡିଆଁ
କୁଦାମାବା — ମାରିବା—1. To spring or jump up;
**फलांगमारना** — to make a high jump.

ନାଚଲେ ରଣବାଦ୍ୟେ ଚିରମାର କରି—କୃଷ୍ଣସିଂହ. ମହାଭାରତ. ଖ୍ରୀଷ୍ଣ ।

୨ । ଡିଆଁ ମାରି ଦଉଡ଼ି ପଳାଇବା—
2. To run away with bounds.

**ଚିରାଯିବା**—ଦେ. କ୍ରି. (ସଂ. ଚୃ ଧାତୁ=ଚୀର୍ଣ୍ଣ )—
Chirājibā — ଚିରିବା କ୍ରିୟାର କର୍ମବାଚ୍ୟରେ ରୂପ—
(ଚିରି ହେବା—ଅନ୍ୟରୂପ) — Passive voice of the verb
চেরান হওয়া — to tear.
**चिरना**

**ଚିରାୟୁ**—ଦେ. ବଣ. ( ସଂ. ଚିରାୟୁଃ )—ଚିରାୟୁଃ ( ଦେଖ )
Chirāyu — Chirāyuḥ ( See )
চিরাই — ଚିରାୟୁ ରଖିଲ କରତାରେ । କବିସୂର୍ଯ୍ୟ. କଂଶୋଷରଙ୍ଗୀ. କ ଗୀତ ।
**चिरायु**

**ଚିରାୟୁଃ**—ସଂ. ବଣ. ( ବହୁବ୍ରୀହି; ଚିର+ଆୟୁସ୍ )—
Chirāyuḥ — ଦୀର୍ଘଜୀବୀ; ଦୀର୍ଘାୟୁଃ—
Long lived; living to a good old age.
ସଂ. ବ—ଦେବତା—God; Deity.

**ଚିରାୟୁଷ**—ଦେ. ବଣ. ( ସଂ. ଚିରାୟୁସ୍ )—ଦୀର୍ଘଜୀବୀ—
Chirāyusha — Long lived.

ବାଞ୍ଛିଲେ ପାବନ ହେବ ଚିରାୟୁଷ ହୁଦେ । ଉଞ୍ଜ. ବୈଦେହୀଶବିଳାସ ।

**ଚିରାଲ**—ଦେ. ବ. ( ସଂ. ଚୀର=ବସ୍ତ୍ର; କଳା )—ପତାକା—
Chirāla — Flag; banner.
নিশান — ଶଲ୍ୟବଧ ଦେଖି ପାଣ୍ଡବ ରଥ ଭୂଲ
**फरेरा** — ଲେକଙ୍କୁ ବୋଇଲେ ରେ ଉଡ଼ାଅ ଚିରାଲ ।
କୃଷ୍ଣସିଂହ. ମହାଭାରତ. ଶଲ୍ୟ

**ଚିରାଶ୍ରିତ**—ସଂ. ବଣ. ( ଚିର+ଆଶ୍ରିତ )—
Chirāśrita — ୧ । ବହୁକାଳରୁ ଅନୁଗତ—
1. Following or depending upon a person for a long time; an old dependant
୨ । ଚିରପାଳିତ—
2. Maintained for a long time.

**ଚିରିକା**—ଦେ. ବ. ( ଧ୍ୱନ୍ୟନୁକରଣ )—କୌଣସି ଜଳୀୟ ବସ୍ତୁକୁ
Chirikā — ସାମାନ୍ୟ ପରିମାଣରେ ଜୋରରେ ଛାଡ଼ି ଦେବା—
চিবকা — To emit forcibly any liquid substance
**चिरकना** — in small quantities.
(ଯଥା—ପକ୍ଷୀମାନେ ପାଣିଆ ମଳ ଚିରିକ ପକାନ୍ତି । )

**ଚିରିକାଇବା**—ଦେ. କ୍ରି—ଚିରିକିବା ( ଦେଖ )
Chirikāibā — Chirikibā ( See )
(ଚିରିକେଇବା—ଅନ୍ୟରୂପ)

**ଚିରିକାଏ**—ଦେ. ବ—ଅତ୍ୟଳ୍ପ ପରିମାଣ—
Chirikāe — A little in quantity.

**ଚିରିକା ଚିରିକି**—ଦେ. ବ—ଚିରିକା ( ଦେଖ )
Chirikā chiriki — Chirikā ( See )

**ଚିରିକିବା**—ଦେ. କ୍ରି. ( ସଂ ଉତ୍ସର୍ଗ; କମ୍ବା ଧ୍ୱନ୍ୟନୁକରଣ; ଈଷତ୍
Chirikibā — ପରିମାଣରେ ମଳ ଗୁହ୍ୟଦ୍ୱାରରୁ ବାହାରି ପଡ଼ିବା
চিরকা — ସମୟରେ ଶୁଣାଯିବା 'ଚିର୍' ଧ୍ୱନି )—
**चिरकना** — ୧ । ଅତି ଅଳ୍ପ ମାତ୍ରାରେ ଜଳୀୟ ମଳ ବିସର୍ଜନ କରିବା-
1 To pass a scanty quantity of loose stool at a time.
[ ଦ୍ର—କୁଆ ଓ ବଗ ଆଦି ପକ୍ଷୀ ଚିରିକନ୍ତି । ]
୨ । କୌଣସି ଜଳୀୟ ବସ୍ତୁକୁ କ୍ଷୁଦ୍ର ରନ୍ଧ୍ର ବାଟେ ଅଳ୍ପ ପରିମାଣରେ ଜୋରରେ ଛାଡ଼ି ଦେବା—
2. To emit a liquid through a small hole forcibly and in small quantities.
[ ଦ୍ର—ନାଳରେ ଝାଡ଼ା ହେଲେ ରୋଗୀ ଏହିପରି ଚିରିକେ ।]
୩ । ଟୋପା ଟୋପା ହୋଇ ସାମାନ୍ୟ ମାତ୍ରାରେ ପଡ଼ିବା—
3. To drizzle; to dribble.
( ଯଥା—ଆଜି ସକାଳୁ ମେଘ ଚିରିକୁଛି । )
୪ । ଦନ୍ତୁର ବା ଭଙ୍ଗା ଅସମାନ ଥିବା କଲମରେ ଲେଖିବା ସମୟରେ ଲେଖୁଥିବା କାଗଜରେ କାଳିକୁ ଇତସ୍ତତଃ ଛିଞ୍ଚାଡ଼ିବା—4. To sprinkle ink on a piece of paper while writing slovenly with a blunt or irregularly pointed pen.
( ଯଥା—ବାଳକ ଖାତାଟିଯାକ ଚିରିକ ପକାଇଛି । )
[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା ଓ ପକାଇବା କ୍ରିୟାର ସମାପିକା ରୂପ ଯୁକ୍ତ ହୋଇ ବ୍ୟବହୃତ ହୁଏ । ]

**ଚିରିଗୁଡ଼ିଆ**—ପ୍ରାଦେ. (ଗଡ଼ଜାତ) ବ—ଲଇ ଦେବା ଭଳି ଜଙ୍ଗଲି ଲତା-
Chirigurḍiā — ବିଶେଷ—A kind of wild fibrous creeper.

**ଚିରିଗୁଣୀ**—ଦେ. ବ. (ସଂ. ଚୀରଗୁଣୀ-ନନ୍ଦେ; ସଂ. ନାମ ପିଶାଚଦୀପିକା;
Chiriguṇi — ସଂ. ଅଚିର+ଅଗ୍ନି)—ଅନ୍ଧାର ଓ ମେଘୁଆ ରାତିରେ
(ଚିରୁଗୁଣୀ—ଅନ୍ୟରୂପ) — ନିର୍ଜନ ସ୍ଥାନ ଓ ଶ୍ମଶାନାଦିରେ ଯେଉଁ

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଆ | ଡଅ | ଞ୍ଚ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଙ୍ଗ | ନ୍ତ |

আলেয়া; আলায়া   ଅସ୍ଥିର ( କ୍ଷଣେ ଲିଭ କ୍ଷଣେ ଜଳ ଉଠିବା )
**छलावा; अजयावत्ताल**   ଆଲୋକ ଦେଖାଯାଏ—
Ignis-fatuus; will-o'-the-wisp

[ ଦ୍ର—ବର୍ଷାଦିନେ ଭୂଗର୍ଭରୁ ଏକପ୍ରକାର ବାଷ୍ପ ଉଠେ, ଏହା ବେଳେ ବେଳେ ଜଳ ଉଠେ ଓ ବେଳେ ବେଳେ ଲିଭଯାଏ ଓ ଗନ୍ଧ କରେ, ଲୋକେ ଏହାକୁ ମୃତ ନବପ୍ରସୂତିର ପ୍ରେତ ବୋଲି ବିଶ୍ୱାସ କରନ୍ତି । ଅନ୍ୟ କେହି କେହି କହନ୍ତି ଯେ, ଜ୍ୱାଳାମୁଖୀ ନାମକ ଏକ ବିଲୁଅ ପାଟି ମେଲା କଲେ ତା ପାଟିରୁ ଏ ଆଲୁଅ ବାହାରେ । କିନ୍ତୁ ବିଜ୍ଞାନ ମତରେ ଏହା ସଢ଼ା ସବାଦିରୁ ଜାତ ଭୂପୃଷ୍ଠରୁ ଉତ୍ଥିତ ଏକପ୍ରକାର ବାଷ୍ପ ଓ ଏହା ବାୟୁଦ୍ୱାରା ଇତସ୍ତତଃ ସଞ୍ଚାଳିତ ହୁଏ ଏବଂ ବାୟୁରେ ଥିବା ଅମ୍ଳଜାନ ବାଷ୍ପଦ୍ୱାରା ଏହା ଜଳି ଉଠେ । ସ୍ତ୍ରୀମାନଙ୍କର ବିଶ୍ୱାସ ଯେ ଅନୁଢ଼ାନଅଁ ନ ହଉଣୁ ଯେଉଁ ପ୍ରସୂତି ମରିଯାଏ, ସେ ପ୍ରେତ ହୋଇ ଅନୁଢ଼ି ଜଳାଉଥାଏ ଓ ସେହି ନିଆଁହିଁ ଚିରଗୁଣୀ ଆଲୁଅ । ]

**ଚିରଚିର**—ଦେ. ବି. (ସଂ. ଚିତ୍କାର)—ହଠାତ୍ ଭୟଜନିତ ବିକଟ ଚିତ୍କାର—
Chirichirā  A cry of horror; a loud cry of a
চিচকাব   person when beset with sudden fright;
**चिंघार; चीख**   scream; shriek.

**ଚିରଚିରାଇବା**—ଦେ. କ୍ରି. ( ସଂ. ଚିତ୍କାର )—ହଠାତ୍ ଉପସ୍ଥିତ ଭୟରେ
Chirichirāibā  ବିକଟ ଚିତ୍କାର କରିବା—To raising a
চেঁচান; চিচকাবকরা  loud cry of horror at a sudden
**चिंघारना; चिंघाड़ना**   danger; to scream; to shriek.

**ଚିରିଟୀ**—ସଂ. ବି. ସ୍ତ୍ରୀ—ଚିରଣ୍ଟୀ (ଦେଖ)
Chiriṭī   Chiraṭī (See)

**ଚିରଣୀ**—ଦେ. ବି. (ସଂ. ଚୀର୍ଣ୍ଣ=ବିଦୀର୍ଣ୍ଣ)—୧ । ଚିରୁଣୀ (ଦେଖ)
Chiriṇī   1. Chiruṇī (See)
চিবনী   ୨ । ବଣିଆଙ୍କର ଏକ ଶସ୍ତ୍ର ଯହିଁରେ ସେମାନେ ଧାତୁମୟ
**चिरना**   ତାର ବା ପାତଆଡ଼ୁ କାଟନ୍ତି—
2. Goldsmith's cutting instrument.
୩ । ଥାଳଆଦିରେ ଗାର ଖୋଳିବା ପାଇଁ ବ୍ୟବହୃତ ଅଷ୍ଟାଗ୍ରକ ଯନ୍ତ୍ର—3. A brazier's tool for cutting lines on utensils
୪ । କୁମ୍ଭାର ଯେଉଁଥିରେ କଣ୍ଢା ମାଟିପାତ୍ର କାଟନ୍ତି—
4. Potter's knife

**ଚିରଣ୍ଟୀ**—ସଂ. ବି. ସ୍ତ୍ରୀ—ଚିରଣ୍ଟୀ (ଦେଖ)
Chiriṇṭī   Chiraṭī (See)
(ଚିରିଣ୍ଟିକା—ଅନ୍ୟରୂପ)

**ଚିରଣୀ**—ପ୍ରାଦେ. (ବାଲେଶ୍ୱର; ମେଦିନୀପୁର) ବି. (ଭୁଲ ବି. ଚିରଣୀ)—
Chirinī   ଚିରୁଣୀ ( ଦେଖ )
Chiruṇī ( See )

**ଚିରିବା**—ଦେ. କ୍ରି. ( ସଂ. ଚୃ ଧାତୁରୁ ଚୀର୍ଣ୍ଣ )—୧ । ଫାଡ଼ିବା—
Chiribā   1. To split up; to rend.
চিবা; চেরা   ନୃସିଂହରୂପ ଅସମ୍ଭବ । ଚିରିଲୁ ଦୁର୍ଜୟ ଦାନବ ।
**चिथना; चिरना; चिथाड़ना**   ଭୂପତି, ପ୍ରେମପଞ୍ଚାମୃତ ।
ଚିରାଇବା } ଣିଜନ୍ତରୂପ
ଚିରେଇବା }
୨ । (ବସ୍ତ୍ର; କାଗଜ) ଛିଣ୍ଡେଇବା—
2. To tear up.
ଚିରାଯିବା } କର୍ମବାଚ୍ୟରୂପ
ଚିରାହେବା }
୩ । କୁରାଢ଼ିଆଦି ଅସ୍ତ୍ରଦ୍ୱାରା କାଠକୁ ଲମ୍ବ ଲମ୍ବ ଖଣ୍ଡ ଖଣ୍ଡ କରି କାଟିବା—
3. To cut wood into long pieces with axe; to split up wood.
୪ । କରତରେ ଫାଳ ଫାଳ କରିବା—
4. To cleave or saw into pieces.
୫ । ରାମ୍ପୁଡ଼ିବା—5 To scratch.
୬ । କ୍ଷତବିକ୍ଷତ କରିବା—6. To lacerate.
୭ । କେଶକୁ କେରା କେରା କରି ବିଭକ୍ତ କରିବା—
7. To part (the hair).

ଗୃହରେ କରଜ ଚିରୁଣୀ ପରି,
ଚିର ସଜାଡ଼ଇ ଅଶ୍ଳାଘି କରି ।   କବିସୂର୍ଯ୍ୟ, ସଙ୍ଗୀତ ।

୮ । ଦ୍ୱିଫାଳ କରିବା—8. To split into two.
୯ । ( ଅଭିମାନରେ କନ୍ୟା ନଶ୍ରମୀ ହୋଇ ଠିଆ ହେବା ବା ବସିବାବେଳେ) ହାତ ବା ଗୋଡ଼ ନଖରେ ଭୂମିରେ ଗାର କାଟିବା—9. To scratch lines on the ground with the finger nails.

ଅଶ୍ରୁ ପ୍ରସରିବାର ମସ୍ତକ ଚିରିବାର ।   କବିସୂର୍ଯ୍ୟ, ସଙ୍ଗୀତ ।

[ଦ୍ର—ପ୍ରବାଦ ଅଛି ଯେ, ନଖରେ ଭୂମି ଚିରିଲେ ଲକ୍ଷ୍ମୀ ଛାଡ଼ନ୍ତି । ଏହି ଧାତୁର ଅସମାପିକା ରୂପ ସଙ୍ଗେ ଦେବା, ପକାଇବା କ୍ରିୟାର ସମାପିକା ରୂପ ଲାଗେ—ଚିରିଦେବା, ଚିରି ପକାଇବା ଓ କର୍ମବାଚ୍ୟରେ ଚିରା ହେବା, ଚିରାଯିବା ରୂପ ହୁଏ ।]

**ଚିରିଯିବା**—ଦେ. କ୍ରି.—ଲୁଗା ଆଦି ଜୀର୍ଣ୍ଣ ହେବାରୁ ବା କଣ୍ଟା ଲାଗିବାରୁ
Chirijibā  ଛିଣ୍ଡିଯିବା; ଫାଟି ହୋଇଯିବା—
ছিঁড়ে যাওয়া   To become torne to pieces.
**चरना, चिरजाना**

**ଚିରିହେବା**—ଦେ. କ୍ରି.—ଫାଡ଼ି ହେବା; ଚିରାଯିବାର ଉପଯୁକ୍ତ ହେବା—
Chirihebā  To be capable of being torne to pieces

**ଚିରୁଗୁଣୀ**—ଦେ. ବି.—ଚିରଗୁଣୀ (ଦେଖ)
Chiruguṇī   Chiriguṇī (See)

**ଚିରୁଡ଼ା**—ଦେ. ବି.—(ସଂ. ଚତୁର ବା ଚତୁର୍ଥାଂଶ)—ଆମ୍ବ ଆଦି ଫଳର
Chirurḍā  ଏକ ଫାଳ ବା ଏକ ଚତୁର୍ଥାଂଶ ବା ଚଉଠ; କୋଳ—
চোকলা  A strip out of a ripe fruit (mango or lemon
**कोया**   etc.)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ୧ ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍କୋ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚିରୁଣୀ**—ଦେ. ବି.—(ଯାହାଦ୍ୱାରା ବାଳ ଚିରାଯାଏ; ସଂ. ଚୃ ଧାତୁରୁ ଚୀର୍ଣ୍ଣ)
Chiruṇī ପାନିଆଁ; କଙ୍କତିକା—
ଚିରନୀ, ଚିରୁଣୀ A hair comb.
**कंघा** ଶୃଙ୍ଗରେ କରିଲ ଚିରୁଣୀ ପରି,
ତହିଁ ସଜାଉଛି ଅଶ୍ୱାସି କରି । କବିସୂର୍ଯ୍ୟ. ସଙ୍ଗୀତ ।

**ଚିରୁଣି**—ଦେ. ବି.—ଚିରୁଣୀ (ଦେଖ)
Chiruni Chiruṇī (See)

**ଚିରୁଳା**—ଦେ. ବି.—ଚିରୁଡ଼ା (ଦେଖ)
Chiruḻā Chirurdā (See)

**ଚିରୁଳି**—ପ୍ରାଦେ (ଗଡ଼ଜାତ) ବି.—ଗୁଞ୍ଜି ଲାଗିଥିବା କଞ୍ଚା ଆମ୍ବକୁ ଆଣି
Chiruḻi ଗୁଞ୍ଜି ଚିରୁଡ଼ା କରି କାଟି ମସଲା ଆଦି ଦେଇ କରାଯିବା ଆଚାର ।

**ଚିରେ**—ଦେ. କ୍ରି ବି. (ପଦ୍ୟ) (ସଂ. ଚିର)—ଚିର (ଦେଖ)
Chire Chira (See)
ବାସୁକୀ ବିନା ଧରା ଭାର ଧାରଣ ଆନ ଯୋଗରେ କି ଚିରେ ହେ ।
ଭଞ୍ଜ. ବୈଦେହୀଶବିଳାସ ।

**ଚିରେଇ**—ଦେ. ବି.—(ସଂ. ଚୀର୍ଣ୍ଣ)—୧ । ଚିରିବା କର୍ମ—
Chirei 1. Act of tearing or splitting up.
ଚେରାଇ ୨ । କାଠ ଆଦି ଚିରିବା ମଜୁରି—
**चिराई** 2. Wages for splitting up wood etc.

**ଚିରେଇତା**—ଦେ. ବି. (ସଂ. ଚିରତିକ୍ତ)—ହିମାଳୟଜାତ କ୍ଷୁଦ୍ର ଶାକ-
Chireitā ବିଶେଷ; ଭୂନିମ୍ବ; ଅତ୍ୟନ୍ତ ତିକ୍ତ କୃମିନାଶକ ଔଷଧ-
ଚିରାତା, ଚିରେତା ଗୁଳ୍ମବିଶେଷ—A medicinal bitter
**चिरायता, चिरेता, महतिआ** plant used as a febrifuge and vermifuge; swertia chirata; Gentiana chirayta Agathotis chirayata; Andrographis paniculata (Kirtikar).
ସଂ. ଭୂନିମ୍ବ, ଅନାର୍ଯ୍ୟତିକ୍ତ
କିରାତକ, ଚିରତିକ୍ତ, କିରାତତିକ୍ତ
ତିକ୍ତକ, ସୁତିକ୍ତକ, ଚିରାଷ୍ଟକା,
ରାମସେନକ, କିରାତ,
କୈରାତହୈମ, କାଣ୍ଡତିକ୍ତ,
କିରାତତିକ୍ତକ, ଜ୍ୱରାନ୍ତକ,
ସନ୍ନିପାତହା, ନାଡ଼ୀର
ତେ. ନେଲ ବେମୁ
ଓ. ଭୁଇଁନିମ୍ବ
[ ଦ୍ର—ଏହାର ସିଦ୍ଧ ଜଳ ଜ୍ୱରଘ୍ନ ଓ କୃମିନାଶକ । ଏହା ପାଶ୍ଚାତ୍ୟ ଚିକିତ୍ସାଶାସ୍ତ୍ର ଅନୁସାରେ ତ୍ରିବିଧ । ଯଥା—(a) Wallichiana. (b) Pyramidals. (c) Pulchella. (Haines)]

**ଚିରେତା**—ଦେ. ବି—ଚିରେଇତା (ଦେଖ)
Chiretā Chireitā (See).

**ଚିରୋଞ୍ଜି**—ପ୍ରାଦେ (ସମ୍ବଲପୁର ଓ ଛତିଶଗଡ଼) ବି—ପିୟାଳ (ଦେଖ)
Chironji Piyāḻa (See).

**ଚିରୋପକୃତ**—ସଂ. ବିଣ. ପୁଂ—୧ । ଚିରକୀତ ୩ (ଦେଖ)
Chiropakṛuta 1. Chirakrita 3 (See)
( ଚିରୋପକୃତା—ସ୍ତ୍ରୀ ) ୨ । ଏପରି ଉପକାରପ୍ରାପ୍ତ ଯେ ଯେଉଁ ଉପକାରକୁ ଉପକୃତ ବ୍ୟକ୍ତି ଯାବଜ୍ଜୀବନ ଭୋଗ କରିବ—
2. Benefited in such a way as to enjoy the benefit for ever.

**ଚିରୋମାରେ**—ପ୍ରାଦେ (ସମ୍ବଲପୁର) ବି (ତୁଳ. ଗଞ୍ଜାମରେ ଚେରମାରୁ)—
Chiromāre ଅନନ୍ତମୂଳ; ଚେମଡ଼ୁଲଇ ବା ଗୁଆପାନ ଲତାର ମୂଳ—The root of 'Chemardılai creeper.

**ଚିର୍ଭଟା**—ସଂ. ବି. ସ୍ତ୍ରୀ—ଚିର୍ଭଟୀ (ଦେଖ)
Chirbhaṭā Chirbhaṭī (See).

**ଚିର୍ଭଟୀ**—ସଂ. ବି. ସ୍ତ୍ରୀ—୧ । କାକୁଡ଼ି—
Chirbhaṭī 1. Cucumber.
୨ । ଫୁଟି କାକୁଡ଼ି—2. Melon.

**ଚିଲ୍** (ଧାତୁ)—ସଂ.—ପିନ୍ଧିବା—
Chiḻ (root) To wear.

**ଚିଲ୍ରା**—ପ୍ରାଦେ (ଗଞ୍ଜାମ) ବି—ଟଙ୍କା ଭଙ୍ଗାଇ ତତ୍‌ପରିବର୍ତ୍ତରେ ନେବା
Chilrā କ୍ଷୁଦ୍ର ମୁଦ୍ରା; ଖୁଚୁରା ପଇସା ଆଦି; ରେଜା, ରେଜକି—
Small change for a larger coin.
ବିଣ—୧ । ରେଜା; ଖୁଚୁରା—
1. Consisting of coins of small value.
୨ । ହିସାବବେଳେ ଟଙ୍କାରୁ ବଳିପଡ଼ିବା (ଅଥ)—
2, ( small coins ) In excess of a whole rupee found after counting.
୩ । ସାମାନ୍ୟ—3. Insignificant; of small value.
ସଂ. ବି—ଚିଲଚିମ (ଦେଖ)
Chiḻichima (See).

**ଚିଲ**—ଦେ. ବି (ସଂ. ଚିଲ୍ଲ)—( ପ୍ରସହବର୍ଗର ତୀକ୍ଷ୍ଣ ନଖରଯୁକ୍ତ ହିଂସ୍ର ପକ୍ଷୀ)—୧ । ଶଙ୍ଖଚିଲ—1. The Brahmini kite;
Chila Haliastus Indicus.
ଚିଲ
**चिल्ह**
୨ । ମାଛୁଆ ଚିଲ—2. Common kite; Milvus govinda
[ ଦ୍ର—ଦୁଇପ୍ରକାରର ଚିଲ ଦେଖାଯାନ୍ତି । ଯଥା—ମାଛୁଆ ଓ ଶଙ୍ଖଚିଲ । ମାଛୁଆ ଚିଲର ରଙ୍ଗ ଖଇରବର୍ଣ୍ଣ ଓ ଶଙ୍ଖଚିଲର ଦେହ ନାଲି ଏବଂ ମୁଣ୍ଡ, ଗଳା ଓ ପେଟ ଧଳା । ଏମାନେ ହାତକରୁ ବେଶି ଲମ୍ବ ହୁଅନ୍ତି । ଏମାନଙ୍କ ପକ୍ଷ ଦୀର୍ଘ; ଚଞ୍ଚୁ ଅଗ୍ର ବକ୍ର; ଏମାନେ ମାଛ ଇତ୍ୟାଦି ଝାମ୍ପମାରି ନେଇ ଖାଆନ୍ତି ଓ ମାଛପାଇଁ ଗଡ଼ିଆ ପୋଖରୀ ଗୋଳ ହେଲେ ଏମାନେ ବହୁତ ଉଡ଼ନ୍ତି । ଆଉ ଜାତିଏ ଖଇରା ରଙ୍ଗର ଚିଲଙ୍କଠାରୁ ବଡ଼ ଦେହଦାତ ଲମ୍ବର ପକ୍ଷୀ ଚିଲ ପରି ଦେଖାଯାନ୍ତି । ଏମାନେ ସହରମାନଙ୍କରେ ଉଡ଼ି ଲୋକଙ୍କ ହାତରୁ ମାଛ, ଜଳଖିଆ ଆଦି ଝାମ୍ପି ନେଇଯାନ୍ତି, ଚିଲମାନେ ବହୁ

| ୧ | ଇ | ଉ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇସ୍ତ | ଉଅ | ଲ୍ଲ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଥ | ଝ | ନ୍ନ |

ଦୀର୍ଘକାଳବ୍ୟାପୀ ଚିଁ ଶବ୍ଦ କରନ୍ତି ଓ ଏହା ଶୁଣିଲେ ମନୁଷ୍ୟ କାନ୍ଦିଲା ପରି ଶୁଣାଯାଏ । ମାଈ ଚିଲ ଅଣ୍ଡିରା ଚିଲ ଅପେକ୍ଷା ବଡ଼ । ସଂ. ନାମ—କୁରର, ଏ ଉଚ୍ଚ ଗଛରେ ବସା କରେ । ]

**ଚଲଆଖି** ଇତ୍ୟାଦି—ଚିଲ୍ଲଆଖି ଇତ୍ୟାଦି ( ଦେଖ )—
Chila-ākhi etc — Chilā-ākhi etc (See)

**ଚଲବିଲ୍ୱ**—ସଂ. ବ—ସୋଲ୍ହ ( ଦେଖ )—
Chilabilwa — Solha ( See )

**ଚଲମ୍ଚି**—ବୈଦେ. ବ (ତୁର୍କୀ)—୧ । ପିତ୍ତଳଆଦି ଧାତୁ ନିର୍ମିତ ହାତଧୁଆ କୁଣ୍ଡ—1. A metal washing basin or tub.
Chilamchi
चिलमचि
**चिलमची, चिलमगर्दा** ୨ । ( ଫା. ଚଲମ୍ଗର୍ଦା ) ହୁକାର ଯେଉଁ ନଳ ଉପରେ ଚଲମ ବସାଯାଏ—2. The main tube of a hubble-bubble on which the fire-bowl is set.

**ଚଲମ**—ଦେ. ବ ( ଫା. ଚଲମ୍ ) ଗଞ୍ଜେଇ, ଗୁଡ଼ାଖୁ ଆଦିର ଧୂମପାନର ଉପକରଣବିଶେଷ—The bowl or firepot of a hookah for smoking tobacco or gunja.
Chilama
চিলম্, ছিলম্
**चिलम्**
[ ଦ୍ର—ଏଥିରେ ଗଞ୍ଜେଇ ବା ଗୁଡ଼ାଖୁ ଉପରେ ନିଆଁ ଦିଆଯାଏ ଏହାର ତଳେ ଥିବା କଣା ବାଟେ ଧୂଆଁ ଟାଣି ନେବାକୁ ହୁଏ; ଏହାକୁ ହୁକା ଉପରେ ରଖି ଗୁଡ଼ାଖୁଧୂଆଁ ଟାଣିଆଯାଏ ଓ ହାତରେ ଧରି ଗଞ୍ଜେଇଧୂଆଁ ଖିଆଯାଏ । ଗଞ୍ଜାଇ, ଗୁଡ଼ାଖୁ ଓ ମଦକ୍ ପିଇବାର ଚଲମମାନଙ୍କ ଆକାର ପୃଥକ୍ । ]

**ଚଲମପୋସ୍**—ବୈଦେ. ବ. ( ଫା )—ଚଲମ ଉପରେ ଦିଆଯିବା ଛିଦ୍ରଯୁକ୍ତ ଧାତୁର ଢାଙ୍କୁଣି—A perforated metal covering for the fire-bowl.
Chilamapos
চিলমপোস
**चिलमपोस**

**ଚଲମବରଦାର**—ବୈଦେ. ବ (ଫା) ରାଜା ଓ ନବାବଆଦିଙ୍କ ପାଖରେ ଚିଲମରେ ଗୁଡ଼ାଖୁଆଦି ସଜାଇବା ଓ ତାଙ୍କ ଗମନରେ ଚିଲମ ଧରି ଯିବା ଭୃତ୍ୟ—A servant of Rajas and Nababs who is in charge of the chilam and makes it ready for smoking.
Chilamabardār
চিলমবরদার
**चिलमबरदार**

**ଚଲମବାଜ୍**—ବୈଦେ. ବଣ (ଫା)—ଚିଲମି ( ଦେଖ )—
Chilamabāj — Chilami (See)

**ଚଲମା**—ଦେ. ବଣ—ଚଲମି ( ଦେଖ )
Chilamā — Chilami ( See )

**ଚଲମି**—ଦେ. ବଣ—ଚଲମଦ୍ୱାରା ଗଞ୍ଜାଧୂମ ପାନ କରିବାରେ ଅତ୍ୟନ୍ତ ଅଭ୍ୟସ୍ତ—Addicted to smoking Ganja.
Chilami
ছিলিমী
**चिलमचट**

**ଚଲମିଲିକା**—ସଂ. ବ. ସ୍ତ୍ରୀ. ( ଚର+ମିଲ ଧାତୁ=ଚକ୍‌ଚକ୍ କରିବା +ଇକ; ସ୍ତ୍ରୀ. ଆ )—୧ । ଖଦ୍ୟୋତ—1. Firefly.
Chilamilikā
ଚଲମିଲିକା } ଅନ୍ୟରୂପ
ଚଲ୍ଲମିଲିକା }
୨ । ବିଦ୍ୟୁତ୍—2. Lightning.
୩ । କଣ୍ଠାଭରଣବିଶେଷ; ଚିକ୍; ଝିଲିମିଲି ମାଳ—3. A collar ( ornament ) of the neck

**ଚଲ୍ଲ**—ଦେ. ବ—୧ । ଚିଲ ଆଦି ହିଂସ୍ର ପକ୍ଷୀମାନଙ୍କର ନଖଦ୍ୱାରା କୌଣସି ବସ୍ତୁକୁ ଝାମ୍ପିବା—1, A swooping by a bird of prey.
Chilā
ছোঁ
**चपट्टा, झपट्टा** ୨ । ଡେଇଁବା; ଝେପା—2. Jump; leap.
ବୁଢ଼ ତଳରେ ସର ଉପରକୁ ଯାଇ ମାଆକୁ ଆଉ କେଶାକୁ ଖବର ଦେଲା । ଫକୀରମୋହନ. ଗଳ୍ପସ୍ୱଳ୍ପ ।
**ବଣ**—୧ । ଫିକା; ମାଟିଆ—1. Light-coloured.
୨ । ପାଣ୍ଡୁର ବର୍ଣ୍ଣ—2. Grey.

**ଚଲ୍ଲଆଖି**—ଦେ. ବ ( ସଂ. ଚିଲ୍ଲ+ଅକ୍ଷି )—
Chilāākhi — ମାଟିଆ ବା ପାଣ୍ଡୁର ଡୋଳାଯୁକ୍ତ ଆଖି—
বিরাল্ আখি, কটাচোখ — Eye with grey pupils.

**ଚଲ୍ଲଆଖିଆ**—ଦେ. ବଣ. ( ସଂ. ଚିଲ୍ଲ=କ୍ଲିନ୍ନଚକ୍ଷୁ ବ୍ୟକ୍ତି )—
Chilā-ākhiā — ଚିଲର ଆଖି ପରି ଯାହାର ଆଖିର କଳା ଡୋଳା ମାଟିଆ ବା ପାଣ୍ଡୁର ବା ଈଷତ୍ ସବୁଜ ବର୍ଣ୍ଣ—Grey-eyed; having pupils of the eye grey or greenish.
কটাচোখ,
বিরালচোখ
(ଚିଲ୍ଲ ଆଖେଇ—ସ୍ତ୍ରୀ)
ଚଲ୍ଲଆଖିଆ ବଇଦାମା, ଗୋଡ଼େଇ ଗୋଡେଇ ଯଉଛା ଖା—ଢଗ ।

**ଚଲ୍ଲଇବା**—ଦେ. କି. ( ଚିଲ ପରି ତୀବ୍ର ଚେଁ ଚେଁ ଶବ୍ଦ )—
Chilāibā — ଉଚ୍ଚ ସ୍ୱରରେ ଡାକିବା; ରଡ଼ି ଦେବା; କଣ୍ଠକୁ ରଡ଼ି ଦେବା; ଚିତ୍କାର କରିବା—To utter a loud cry; to halloo; to make a shrill sound; to scream.
চেঁচান
**चिल्लाना**
ପଡଶୋଇଲା ଠାବରେ କାକ ଭୁ ଚଲ୍ଲଇ । ବେହାଳ ପଞ୍ଚବିଂଶତ ନନ୍ଦେ ।

**ଚଲ୍ଲ ମାରିବା**—ଦେ. କି—୧ । (ହିଂସ୍ର ପକ୍ଷୀ) ଝାମ୍ପ ମାରିବା—1. To swoop down or pounce upon a thing ( said of a bird of prey ).
Chilāmāribā
ছোঁমারা
**झपट्टामारना**
ଚଳ ମଧ୍ୟେ ଚଲ୍ଲ ମାରନ୍ତି ଗାଙ୍ଗୋଇ । ସଧାନାଥ. ଚନ୍ଦ୍ରିକା ।
୨ । ( ଲକ୍ଷଣାର୍ଥ ) ହଠାତ୍ ଆକ୍ରମଣ କରି ନେଇଯିବା—2. To take away by a sudden attack.
ମନେ କରୁଁ ହେବେ କାଳ ପକ୍ଷିସିଙ୍କ ଉପରୁ ମାରିବ ଚିଲ୍ଲ ।
ରାଧାନାଥ. ପାର୍ବତୀ ।
୩ । ( ଲକ୍ଷଣାର୍ଥ ) ଠକି ନେଇଯିବା—3. To take away by deceitful means.

୪ । କୁଦିବା; ନାଚିବା—
4. Jump up; leap up; dance.
ମୋ ଶାରଥ, ମୋ ଛମାଣ ଅଠଗୁଣ୍ଠ କହୁ ନାଚେ ଚିଲ ମାରେ, ଉଡ଼ା ପାଡ଼େ, ହସେ । ଫକୀରମୋହନ ଛମାଣ, ଅଠଗୁଣ୍ଠ ।

**ଚିଲ**—ଦେ. ବି. ( ସଂ. ଚିଲ୍ଲୀ; ଚିଲ୍ଲିକା )—
Chili ୧ । ଚିଲ୍ଲୀ ( ଦେଖ )
ଚିଲ୍ଲୀ 1. Chillī ( See )
୨ । ଠାଙ୍ଗିବଥୁଆ; ଝଙ୍କବଥୁଆ— ହରେକୃଷ୍ଣ ଦ୍ରବ୍ୟଗୁଣ । )
2. A kind of pot-herb.
୩ । ଭୂଲତା—3. Eyebrow.
ରଶ୍ମି କମାଣ ସେ କରେ କଷାଇଲେ କଟାକ୍ଷର ଭୂ ଏକା ଭୋ ଚିଲ—
ବିଶ୍ୱନାଥ. ବଚିତ୍ର ରାମାୟଣ ।
୪ । (ଦକ୍ଷିଣ ଆମେରିକାର ମିକ୍ସିକୋ ଦେଶ ପ୍ରଚଳିତ ଭାଷା । ଏହା ମଧ୍ୟ ଇଂରାଜୀ ଭାଷାରେ ଗୃହୀତ)—ଲଙ୍କାମରିଚ—
4. Red pepper; cayenne pepper.

**ଚିଲକା**—ଦେ. ବି—୧ । ଓଡ଼ିଶାର ଦକ୍ଷିଣପୂର୍ବସ୍ଥ ପୁରୀ ଜିଲ୍ଲା ଓ ଗଞ୍ଜାମ
Chilikā ଜିଲ୍ଲାରେ ସ୍ଥିତ ପ୍ରସିଦ୍ଧ ଲବଣାକ୍ତ ହ୍ରଦ—
A salt-lake in the southeast corner of Orissa; the Chilka lake.
[ ଦ୍ର—ପୂର୍ବେ ଚିଲକାହ୍ରଦ ନୌବାଣିଜ୍ୟର ଗୋଟିଏ ପ୍ରଧାନ କେନ୍ଦ୍ର ଥିଲା । ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ଗ୍ରୀକ୍ ଐତିହାସିକ ଟଲେମୀ ପ୍ରାଚୀନ ଓଡ଼ିଶାର ୩ ଗୋଟି ବନ୍ଦର ମଧ୍ୟରେ ଚିଲକା ଗୋଟିଏ ପ୍ରଧାନ ବନ୍ଦର ଥିବାର ଉଲ୍ଲେଖ କରିଅଛନ୍ତି । ଚିଲକାର ଆୟତନ ଉତ୍ତର ଦକ୍ଷିଣରେ ୮୪ ଓ ପୂର୍ବ ପଶ୍ଚିମରେ ୨୦ ମାଇଲ । ପୂର୍ବେ ଏହାର ଆକୃତି ଆହୁରି ବଡ଼ ଓ ଏହା ସୁଗଭୀର ଥିଲା । କିନ୍ତୁ କାଳକ୍ରମେ ନଦୀ ପଟୁ ଓ ସମୁଦ୍ର ବାଲିଦ୍ୱାରା ଏହା ପୋତି ହୋଇ ଯାଉଅଛି । ଏହା ମଧ୍ୟରେ କେତେଗୁଡ଼ିଏ ବଡ଼ ଓ ସାନ ଦ୍ୱୀପ ଅଛି । ଯାରକୁଦ, ମାଳୁଦ, ବଳକୋଟ, ଗୁରୁବାଇ ଗୋଟିଏ ଗୋଟିଏ ଦ୍ୱୀପ । ଏଥିମଧ୍ୟରୁ ଅନେକଗୁଡ଼ିଏ ପୋତି ହୋଇ ଉପଦ୍ୱୀପ ହୋଇଗଲାଣି । ଏହା ବଙ୍ଗୋପସାଗର ସଙ୍ଗେ ଗୋଟିଏ ସରୁ ମୁହାଣ ଦ୍ୱାରା ଯୁକ୍ତ । କିନ୍ତୁ କ୍ରମେ କ୍ରମେ ସେ ମୁହାଣ ପୋତିହୋଇ ଯାଉଅଛି । ଚିଲକାର ପାଣି ଲୁଣି । ଏଥିରୁ ଅନେକ ବଡ଼ ମାଛ, କଙ୍କଡ଼ା ଓ ଚିଙ୍ଗୁଡ଼ି ଇତ୍ୟାଦି ଜଳଚର ଜନ୍ତୁ ମରନ୍ତି । ସ୍ଥାନେ ସ୍ଥାନେ ଚିଲକା ଗର୍ଭରୁ ସିପ ଆମଦାନୀ ହୋଇ ସେ ସିପରୁ କଲିଚୂନ ହୁଏ । ଶୀତଦିନେ ଅନେକ ଜଳଚର ପକ୍ଷୀ ଚିଲକାକୁ ଆସନ୍ତି ଓ ଦଳଦଳ ହୋଇ ପହଁରନ୍ତି । ଏ ପକ୍ଷୀମାନଙ୍କୁ ଲୋକେ ଯାଇ ଶିକାର କରନ୍ତି । ପୂର୍ବେ ଚିଲକାକୂଳରେ ଲୁଣ ମରାଯାଉଥିଲା । ଇଂରାଜଙ୍କ ଅମଳରେ ତାହା ବନ୍ଦ ହୋଇଅଛି । ]
୨ । କବିବର ରାଧାନାଥଙ୍କ କୃତ ଚିଲକାହ୍ରଦର ଦୃଶ୍ୟବର୍ଣ୍ଣନାତ୍ମକ ପଦ୍ୟଗ୍ରନ୍ଥ—2. Name of a poem by Radhanath, describing the sceneries of the Chilkā lake.

**ଚିଲଚିମ**—ସଂ. ବି—ମିଠା ପାଣିରେ ରହୁବା ଏକପ୍ରକାର ଛୋଟ ମାଛ;
Chilichima ଖଙ୍କାରଖାଇ ମାଛ—A kind of small
(ଅନ୍ୟ ସଂ. ନାମ ଚିଲ, fresh-water-fish; the
ଚିଲମିଳିକା, ଚିଲମୀନକ Chela fish.
ଚେଲା
चेलहवा; चिलहुल;
चिलिया;)
[ ଦ୍ର—ଏହା ଦୁଇ ଜାତିର; ବଡ଼ ମାଛ (ବି. ଘୋଡ଼ାଚେଲା; Chelaghora) ଲମ୍ବରେ ୧୦।୧୨ ଅଙ୍ଗୁଳ ବଢ଼େ; ସାନ ମାଛ (ବି. ଫଲଚେଲା; Chelaphula) ୬।୭ ଅଙ୍ଗୁଳ ଲମ୍ବ ହୁଏ । ଏହାର ଦେହ ଲମ୍ବ ଓ ଚେପ୍ଟା, କାତି ଛୋଟ । ମୁହଁର ଥୋମଣି ଉପର-ଆଡ଼କୁ ଉଠିଥାଏ; ଉଦରର ଧାର ଦନ୍ତୁର—ଯୋଗେଶଚନ୍ଦ୍ର । ]

**ଚିଲମ**—ଦେ. ବି—ଚିଲମ (ଦେଖ)
Chilima Chilama (See).

**ଚିଲମିଲ ପୋକ**—ଦେ. ବି (ସଂ. ଚିଲମିଲିକା)—ଜୁଳୁଜୁଳିଆପୋକ—
Chilimili poka Firefly.

**ଚିଲମିଲ ମାଳି**—ଦେ. ବି (ସଂ. ଚିଲମିଲିକା)—ଏକପ୍ରକାର କଣ୍ଠାଭରଣ;
Chilimili māli ଝିଲମିଲ ମାଳ; ଚିକ—A kind of collor (ornament) for the neck.

**ଚିଲ୍କା**—ଦେ. ବି—ଚିଲିକା (ଦେଖ)
Chilkā Chilikā (See).

**ଚିଲ୍ଲ (ଧାତୁ)**—ସଂ—୧ । ବିଳାସ କରିବା—
Chilla (root) 1. To play; to sport.
୨ । ଢିଲା ହେବା; ଶ୍ଲଥ ହେବା—
2 To become loose (M. W.).
୩ । ହାବଭାବ ଦେଖାଇବା—3. To exhibit amorous glance or movements (M. W.).

**ଚିଲ୍ଲ**—ସଂ. ବି (ଚିଲ୍ଲ ଧାତୁ + କର୍ତ୍ତୃ. ଅ)—୧ । ଚିଲପକ୍ଷୀ—
Chilla 1. The Indian Kite.
୨ । ଲେଦେଇପୂର୍ଣ୍ଣ ଆଖି—
2. A bleared or sore eye (M. W.).
ବିଣ—କ୍ଲିନ୍ନାକ୍ଷ; ଯାହାର ଆଖି ଲେଦେଇପୂର୍ଣ୍ଣ—
Having eyes full of dirt and execrecessence; with exuding eyes; blear-eyed.

**ଚିଲ୍ଲକ**—ସଂ. ବି. ( ଚିଲ୍ଲ + ସ୍ୱାର୍ଥେ. କ )—୧ । ଚିଲପକ୍ଷୀ—
Chillaka 1. Kite.
୨ । ଝିଲ୍ଲିକା; ଝିଙ୍କାରିପୋକ—2. A cricket (insect).
୩ । ଚିତ୍ରକ ( ଦେଖ )
3. Chitraka (See) (M. W.).

**ଚିଲ୍ଲାଭ**—ସଂ. ବି. ପୁଂ. ( ବହୁବ୍ରୀହି; ଚିଲ୍ଲ + ଆଭା; ଯେ ଚିଲ୍ଲ ପରି
Chillābha ଝାମ୍ପ ମାରେ )—ଠାଉକା ଚୋର—
A petty thief; a pickpocket (M. W.).

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇସ୍ପ | ତ୍ରଅ | ଦ୍ଧ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ରୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ୍ୟ | ଇଅ | ଓ | ନ୍ଦ୍ର |

**ଚିଲ୍ଲି**— ସଂ. ବି—୧ । ଚିଲ୍ଲ ପକ୍ଷୀ—
Chilli 1. The Bengal kite (M W ).

**ଚିଲ୍ଲିକା**—ସଂ. ବି. (ଚିଲ୍ଲିକ+ସ୍ତ୍ରୀ. ଆ)—୧ । ଝିଲ୍ଲିକା; ଝିଙ୍କାରପୋକ—
Chillikā 1. An insect emitting a very shrill sound in the night; a cricket (insect).
[ ଦ୍ର—ଏମାନେ ଝିଞ୍ଜିକା ପରି ଦେଖାଯାନ୍ତି । ]
୨ । ଭ୍ରୂଲତା; ଭୁଲତା—2 Eyebrow.
୩ । ଭୁଇଭୁର ମଧ୍ୟବର୍ତ୍ତୀ ସ୍ଥାନ (ହ୍ରି. ଶବ୍ଦସାଗର)—
3. The middle of both the eyebrows.
୪ । ଶାଗବିଶେଷ; କ୍ଷୁଦ୍ରପତ୍ର ବଥୁଆଶାଗ (ହ୍ରି. ଶବ୍ଦସାଗର)—
4. A kind of pot-herb.
ଦେ. ବି—ଚିଲିକା ( ଦେଖ )
Chilikā ( See )

**ଚିଲ୍ଲିକାଲତା**—ସଂ. ବି—ଭ୍ରୂଲତା—
Chlllikālata Eyebrow (M. W.).

**ଚିଲ୍ଲୀ**—ସଂ. ବି. (ଚିଲ୍ଲ ଧାତୁ+ଅ+ଈ)—୧ । ଭ୍ରୂଲତା—
Chilli 1. Eye brow.
ଡରୁଆଚି ପରି ଟେକ ଚିଲ୍ଲୀ
ଭେଦ କର୍ଣ୍ଣପାଶ ନ ଚହଲ । କବିସୂର୍ଯ୍ୟ. ସଙ୍ଗୀତ ।
୨ । ଝିଲ୍ଲୀ; ଝିଙ୍କାର—2. Cricket (ensect).
ଦେ. ବି—ଚିଲି ( ଦେଖ )
Chili ( See )

**ଚିଲ୍ଲୀକା**—ସଂ. ବି— ଚିଲ୍ଲିକା ୧ (ଦେଖ)
Chillikā Chillikā 1 (See)

**ଚିହିଁକା**—ଦେ. ବି—ହଠାତ୍ ଚମକ ଉଠିବା; ଚିଁଇକା—
Chihiñkā Wincing; being startled with a sudden fright,
চমকানি
**चौंक, चिलक; चमक**

**ଚିହିଁକାଇବା**—ଦେ. କ୍ରି. (ସଂ. ଚମତ୍କାର; ଚକିତ)—ହଠାତ୍ ଭୟ ଦେଖାଇ
Chihiñkāibā ଚମକାଇବା; ଭୟଚକିତ କରିବା—
চমকান To frighten and cause a person to wince; to startle; to alarm.
**चिलकाना**
(ଚିହିଁକେଇବା—ଅନ୍ୟରୂପ)
ଚିହ୍ନିକ ଲକ୍ଷଣ ସତେ, ଘୁମରଚିଭୁଗ ପୋତେ
ନିହିଁକ ଇ ପଗ୍ରିଲୁ କହ । କବିସୂର୍ଯ୍ୟ. କଣୋପଚନ୍ଦ୍ର ଚ ଗୀତ ।

**ଚିହିଁକିବା**—ଦେ. କ୍ରି. ( ସଂ. ଚମତ୍କୃତ; ଚକିତ )—
Chihiñkibā ହଠାତ୍ ଭୟରେ ଚମକିବା—
চমকা; চমকপড়া To wince; to take fright; to be alarmed; to be startled
**चिलकना; चौंकना; चिहुँकना**
ଗୁରୁକ ବାଜଲ ପରି ମୁଁ ଡରେ
ଚିହ୍ନିକ ଚଢ଼ଇ ପଛଲୁ ଥରେ । କବିସୂର୍ଯ୍ୟ—ସଙ୍ଗୀତ ।
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଉଠିବା, ପଡ଼ିବା, ଯିବା କ୍ରିୟାର ସମାପିକାରୂପ ଯୁକ୍ତ ହୋଇ ବ୍ୟବହୃତ ହୁଏ । ]

**ଚିହୁଡ଼ିବା**—ପ୍ରାଦେ. (ସଂ ହିଦ୍ରୁମ) କ୍ରି—ଚିତ୍କାର କରିବା; ଚିଲେଇବା—
Chihirdibā To halloo.

**ଚିହୁର**—ସଂ. ବି—ଚିକୁର; ମୁଣ୍ଡର କେଶ—
Chihura The hair of the head (M. W.).

**ଚିହ୍ନ** (ଧାତୁ)—ସଂ—୧ । ଲକ୍ଷ୍ୟ କରିବା—
Chihna (root) 1. To mark; to observe.
୨ । ଦାଗ ଦେବା—2. To put a mark; to stamp.
୩ । ପରିଚିତ ବ୍ୟକ୍ତି ବା ବସ୍ତୁକୁ ଠଉରାଇବା—
3. To recognise a thing or person.

**ଚିହ୍ନ**—ସଂ. ବି. (ଚିହ୍ନ ଧାତୁ+ଭାବ. ଅ)—୧ । ଛାପ; ଦାଗ—
Chihna 1. Mark; stamp; spot.
୨ । କଳଙ୍କ—2. Stain.
୩ । ( +କରଣ. ଅ) ଲକ୍ଷଣ—3. Sign; vestige; symptom; characteristic.
୪ । ନିଦର୍ଶନ; ସଙ୍କେତ—5. Signal; token; symbol; indication; insignia.
୫ । ଧ୍ୱଜା; ପତାକା—5. Flag; banner,
୬ । ସମ୍ପ୍ରଦାୟ ବା ପଦ ଜ୍ଞାପକ ବସ୍ତୁ; ପଦକ; ତପସ୍ୱ—
6. Badge.
୭ । କ୍ଷତଚିହ୍ନ—7. Cicatrice; scar.
୮ । ସ୍ମାରକ ବସ୍ତୁ—8. Memento; souvenir.
୯ । ଜ୍ୟୋତିଷିକ ରାଶି—9. A zodiacal sign (M.W.)

**ଚିହ୍ନକ**—ସଂ. ବି.—୧ । ଏକ ଚଣା ବା ୪ କାଇଁଚ ଓଜନ—
Chihnaka 1 A small weight; 4 grains.
୨ । କ୍ଷୁଦ୍ର ଚିହ୍ନ ବା ଦାଗ—2 A small mark (M.W.)

**ଚିହ୍ନକାରୀ**—ସଂ. ବି. ପୁଂ (ଚିହ୍ନ+କୃ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ. )—
Chihnakārī ଯେ ଚିହ୍ନ ଦିଏ —A marker; a mark-man.
( ଚିହ୍ନକାରିଣୀ— ସ୍ତ୍ରୀ) ବିଣ. ପୁଂ.—୧ । ଚିହ୍ନ ଦେଉଥିବା—
1. Marking; stamping.
୨ । କ୍ଷତ କରୁଥିବା—2. Wounding (M.W.)
୩ । ଭୟଙ୍କର—3. Frightful (M. W.)

**ଚିହ୍ନଟ**—ଦେ. ବି. (ସଂ. ଚିହ୍ନ)—ଯେଉଁ ବିଶିଷ୍ଟ ଚିହ୍ନରୁ କୌଣସି ବ୍ୟକ୍ତି
Chihnaṭa ବା ବସ୍ତୁ ଚିହ୍ନି ହୁଏ—1 Identifying mark.
চিহ্নত; চেনত ଚିହ୍ନଟ କରି କହିବା ବ୍ରହ୍ମର ଶରୀର,
**चिह्नानी, चिह्नट** ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।
୨ । କୌଣସି ବ୍ୟକ୍ତି ବା ବସ୍ତୁ ପ୍ରକୃତରେ ସେହି ଅଟେ ବୋଲି ଚିହ୍ନାଇବା—2 Identification.
୩ । ଯେ ଅନ୍ୟ ବ୍ୟକ୍ତିର ପରିଚୟ ଜଣାଇଦିଏ—
3. Identifier.
ବିଣ.—(ସଂ. ଚିହ୍ନିତ) – ୧ । ଅନ୍ୟର ପରିଚୟଜ୍ଞାପକ—
1. Identifying.
୨ । ସୁପରିଚିତ—2. Well known.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୩ । ସ୍ମାରକ—3. Memorial; aiding the memory.

**ଚିହ୍ନଟ କରିବା**—ଦେ. କ୍ରି.—୧ । କୌଣସି ଦଲିଲ ସମ୍ପାଦନ କରି Chihnaṭa karibā ରେଜିଷ୍ଟ୍ରର କରିବାକୁ କଚେରୀକୁ ଯିବା चिह्नतकरा ବ୍ୟକ୍ତି କିମ୍ବା ହାକିମଙ୍କ ନିକଟରେ ଉପସ୍ଥିତ ହେବା ବ୍ୟକ୍ତି **चिह्नाना चिह्नाना** ପ୍ରକୃତ ବ୍ୟକ୍ତି କି ନାହିଁ ଏହା ହାକିମଙ୍କୁ ଚିହ୍ନାଇ ଦେବା—1 To identify an executant of a document or a party (to be the true person he represents to be) before a public servant (e. g. Registrar, Judge.)

(ଚିହ୍ନଟ ଦେବା, ଚିହ୍ନଟ ହେବା — ଅନ୍ୟରୂପ)

[ ଦ୍ର—ଦଲିଲ ରେଜିଷ୍ଟ୍ରାରୀ କରିବା ହାକିମ ଯେବେ ସ୍ୱୟଂ ଦଲିଲ ସମ୍ପାଦନକାରୀ ବ୍ୟକ୍ତିଙ୍କୁ ଚିହ୍ନିଥାଆନ୍ତି ତେବେ ଉକ୍ତ ବ୍ୟକ୍ତିର ହାକିମଙ୍କ ଆଗରେ ଚିହ୍ନଟ କରିବା ଦରକାର ହୁଏ ନାହିଁ, ଅନ୍ୟଥା କେହି ଜଣେ ଉକ୍ତ ବ୍ୟକ୍ତିଙ୍କୁ ଚିହ୍ନଟ ନ ଦେଲେ ହାକିମ ଦଲିଲ ରେଜିଷ୍ଟ୍ରାରୀ କରନ୍ତି ନାହିଁ । ଯେ ଉକ୍ତ ବ୍ୟକ୍ତିକୁ ଚିହ୍ନଟ କରେ ସେ ମଧ୍ୟ ହାକିମଙ୍କ ଆଗରେ ଚିହ୍ନଟ-ସାକ୍ଷୀରୂପେ ଦଲିଲପୃଷ୍ଠରେ ସ୍ୱାକ୍ଷର କରେ । ]

୨ । କୌଣସି ଜମି ବା ବସ୍ତୁକୁ ରାଜକୀୟ କର୍ମଚାରୀଙ୍କୁ ଚିହ୍ନାଇ ଦେବା—2. To identify a thing or land to a public servant.

[ ଦ୍ର—ରାଜକୀୟ କର୍ମଚାରୀ କୌଣସି ଜମିକୁ କୋରକ କରିବାକୁ ବା ଡିକ୍ରୀ ହୋଇଥିବା ସମ୍ପତ୍ତିକୁ ଡିକ୍ରୀଦାରକୁ ଦଖଲ ଦେବାକୁ ବା ସମନ ଆଦି ଜାରି କରିବାକୁ ସରଜମିନକୁ ଗଲେ ଡିକ୍ରୀଦାରଙ୍କ ପକ୍ଷରୁ ଜଣେ ଲୋକ ଉକ୍ତ ବସ୍ତୁ ବା ବ୍ୟକ୍ତି ପ୍ରକୃତ ଥିବା ବିଷୟ ଉକ୍ତ କର୍ମଚାରୀଙ୍କୁ ଚିହ୍ନାଇଦିଏ । ]

**ଚିହ୍ନଟଦାର**—ଦେ. ବି—ଯେଉଁ ବ୍ୟକ୍ତି କୌଣସି ବସ୍ତୁ ବା ବ୍ୟକ୍ତିକୁ Chihnaṭadār ରାଜକର୍ମଚାରୀଙ୍କ ଆଗରେ ଚିହ୍ନଟ କରେ— चिह्नतदार **चिह्नटदार** An identifier of a person or thing before a public servant.

**ଚିହ୍ନଟ ପଡ଼ିବା**—ଦେ. କ୍ରି—କୌଣସି ପକ୍ଷ ବା ବସ୍ତୁ ବା ଜମିକୁ ରାଜ- Chihnaṭa paṛibā କର୍ମଚାରୀଙ୍କ ଆଗରେ ଚିହ୍ନାଇ ଦେଇ ତତ୍- चेह्लतपड़ा ସମ୍ବନ୍ଧୀୟ ଦଲିଲରେ ଚିହ୍ନଟ-ସାକ୍ଷୀରୂପେ ଦସ୍ତଖତ୍ କରିବା—To sign in a public document as the identifier of a certain person or property before a public servant (e.g a registering offieer; a searching or attaching offieer ).

**ଚିହ୍ନଟ ସାକ୍ଷୀ**—ଦେ. ବି—ଯେଉଁ ସାକ୍ଷୀ କୌଣସି ଦଲିଲର ସମ୍ପାଦନକାରୀ Chihnaṭa sākshī ବ୍ୟକ୍ତିକୁ ବା ମକଦ୍ଦମାର ପକ୍ଷକୁ ବା चेह्लत साक्षी ବସ୍ତୁକୁ ବା ସମ୍ପତ୍ତିକୁ ନିଜେ ଚିହ୍ନେ ବୋଲି **चिह्नानी साक्षी** ଚିହ୍ନଟ-ସାକ୍ଷୀରୂପେ ଆପଣାର ନାମ ଦସ୍ତଖତ୍ କରେ—An identifying witness of a document.

**ଚିହ୍ନତ** ( ଇତ୍ୟାଦି )—ଚିହ୍ନଟ ଇତ୍ୟାଦି ( ଦେଖ ) Chihnata ( etc ) Chihnata etc ( See )

**ଚିହ୍ନଧାରୀ**—ସଂ. ବିଣ. ପୁଂ—୧ । ଚିହ୍ନଯୁକ୍ତ; ଯେ ଚିହ୍ନ ଧାରଣ କରେ— Chihnadhārī 1. Bearing marks.
( ଚିହ୍ନଧାରିଣୀ—ସ୍ତ୍ରୀ )
( ଚିହ୍ନଧର—ଅନ୍ୟରୂପ )

୨ । ପତାକାଧାରୀ—2. Bearing a standard.

୩ । ରାଜକୀୟ ଛତ୍ରଚାମରାଦି ଯେ ବହନ କରେ—3 Bearing the insignia of office (M. W.).

**ଚିହ୍ନନ**—ସଂ. ବି. ( ଚିହ୍ନ ଧାତୁ+କରଣ. ଅନ; ଯାହାଦ୍ୱାରା କୌଣସି Chihnana ବସ୍ତୁ ଚିହ୍ନାଯାଏ )—ଲକ୍ଷଣ—Characteristic ( M. W. ).

**ଚିହ୍ନବର୍ଣ୍ଣ**—ଦେ. ବି. (ଏକଭାବାତ୍ମକ ସହଚର)—ଅସ୍ତିତ୍ୱ; ପତ୍ତା; ଚିହ୍ନମାତ୍ର; Chihnabarṇṇa କୌଣସି ବସ୍ତୁର ଅସ୍ତିତ୍ୱର କୌଣସି ନିଦର୍ଶନ— चिह्नवर्ण **चिह्नबरन** Trace or sign of any thing; slightest indication of the existence of a thing.

ଚିହ୍ନବର୍ଣ୍ଣ ଯେ କିଛି ନ ଦେଖିଲୁ—ଫ୍ରାଗୀ, ନଳଚରିତ ।

**ଚିହ୍ନୟିତବ୍ୟ**—ସଂ. ବିଣ. ( ଚିହ୍ନ ଧାତୁ+କର୍ମ. ତବ୍ୟ )—ଯହିଁରେ ଚିହ୍ନ Chihnayitabya ଦିଆଯିବ—To be marked (M.W).

**ଚିହ୍ନାରୀ**—ଦେ. ବିଣ. ( ସଂ. ଚିହ୍ନ )— Chihnarā ୧ । ଯେ ଭଲ ମନ୍ଦ ଚିହ୍ନି ପାରେ— चेना **चिह्नार** 1. One who can distinguish a good thing from bad.
( ଚିହ୍ନିରୀ—ଅନ୍ୟରୂପ )

ଶ୍ରୀରାଧା ବାଉଲୀ ପ୍ରେମରସାଭୁଲୀ ଯେକ ଚିହ୍ନାରୀ ଗ୍ରାହକମାନେ—ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି ।

୨ । ଯେ ଭଲ ମନ୍ଦ ପରୀକ୍ଷା କରି ବାଛି ପାରେ; ସୁପରୀକ୍ଷକ—2. One who can taste and find out what is good and what is bad.

୩ । ଯେ ସୁନା ରୂପା ଆଦିର ଉତ୍କୃଷ୍ଟତା ବାରି ପାରେ—3. One who can taste gold, silver etc.

ପ୍ରେମବଜାରରେ ଚିହ୍ନାରୀ ଗ୍ରାହକ ଛାର ବିନା ପ୍ରେମିଜନ—ରାଧାନାଥ· ଉର୍ବଶୀ ।

ଦେ. ବି—ବଣିଆମାନଙ୍କ ଉପାଧିବିଶେଷ; ଚିନରୀ—A family-title among gold-smiths.

**ଚିହ୍ନା**—ଦେ. ବି. (ସଂ. ଚିହ୍ନ)—୧ । ପରିଚୟ; କୌଣସି ବ୍ୟକ୍ତି ବା ବସ୍ତୁକୁ Chihnā ପୂର୍ବରୁ ଜାଣିଥିବା; ଜଣାଶୁଣା—1. Acquintance. चेना **पहचान**

୨ । ଏକ ଚିନା ବା ଗୁଞ୍ଜ କାଠିର ପରିମାଣ ଓଜନ—2. A small weight; about 4 grains.

ବିଣ—୧ । ସୁପରିଚିତ; ଜଣାଶୁଣା—1. Well known; well acquainted. चेना; चिना

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍ଷ | ଇୟ | ଉଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଵ | ନ୍ |

चिह्नार ୨ । ଯେ ଚହ୍ନିପାରେ—2. One who can distinguish good from bad.

ଦୁଷ୍ଟଚିହ୍ନା ଲୋକକୁ ବୋଲନ୍ତି ଦୁଷ୍ଟଜ୍ଞାନୀ—ପୀତାମ୍ବର. ନୃସିଂହପୁରାଣ ।

୩ । ଚହ୍ନିତ—3. Marked.

ଚିହ୍ନାଇବା—ଦେ. କ୍ରି—( ସ. ଚିହ୍ନ ଧାତୁ ଣିଜନ୍ତ; ଚିହ୍ନିବାର ଣିଜନ୍ତ Chihnāibā ରୂପ )—୧ । କୌଣସି ବ୍ୟକ୍ତିଙ୍କୁ ଅନ୍ୟ ବ୍ୟକ୍ତିଙ୍କ ଚେନାନ ନିକଟରେ ପରିଚିତ କରାଇବା—1. To introduce चिह्नाना; पहचानवाना a person to another.

କହ କେଉଁ କ୍ରମରେ ସୃଜନ୍ତି ଚିହ୍ନାଇ—କୃଷ୍ଣସିଂହ. ମହାଭାରତ, ଅଦ ।

୨ । କୌଣସି ବିଶିଷ୍ଟ ଚିହ୍ନଦ୍ୱାରା ଚିହ୍ନିତ କରାଇବା—
2. To mark; to indicate by a particular mark.

୩ । କୌଣସି ବସ୍ତୁ ବା ବ୍ୟକ୍ତିଙ୍କୁ ଅନ୍ୟ ଲୋକଙ୍କୁ ଦେଖାଇ-ଦେବା—3. To point out.

୪ । କୌଣସି ବ୍ୟକ୍ତି ବା ବସ୍ତୁ ବା ସମ୍ପତ୍ତି ଲୋଡ଼ା ହେବା ବ୍ୟକ୍ତି, ବସ୍ତୁ ବା ସମ୍ପତ୍ତି ଅଟେ ବୋଲି ରାଜକୀୟ କର୍ମଚାରୀଙ୍କୁ ଦେଖାଇଦେବା—4. To identify a person, thing or property to a public servant.
(ଚହ୍ନେଇବା—ଅନ୍ୟରୂପ)

ଚହ୍ନାକ—ଦେ. ବି (ସ. ଚିହ୍ନକ)—ଏକଚିନା ପରିମିତ—
Chihnāka . Weight of one 'chinā'.

ଦେ. ବିଣ—ଚିହ୍ନି ପାରିବା ବ୍ୟକ୍ତି—One who can recognise or distinguish a thing

ଚହ୍ନାଚହ୍ନି—ଦେ. ବି—ଅନ୍ୟୋନ୍ୟ ପରିଚୟ—
Chihnāchihi Mutual recognition.
ଚେନାଚିନି

ସେ ଯୁଦ୍ଧେ ପିତା ପୁତ୍ରେ ନୋହି ଚହ୍ନାଚହ୍ନି,
ଦ୍ୱଣାଦ୍ୱଣି ହୋଇ ସେ ପଡ଼ିଲେ ଅବନୀ ।
କୃଷ୍ଣସିଂହ, ମହାଭାରତ, କର୍ଣ୍ଣ ।

ବିଣ—ଅନ୍ୟୋନ୍ୟରେ ପରିଚିତ ହେବା—Mutually recognising.

ଯାନ୍ତୁ ଭମସରେ ଚହ୍ନାଚହ୍ନି ନୋହି ପୁରୁଷ ବନସ୍ତ କହୁ—ଭଞ୍ଜ. ରସପଞ୍ଚକ ।

ଚହ୍ନା ଦେବା—ଦେ. କ୍ରି—ଆପେ ଆପଣାର ପରିଚୟ ପ୍ରକାଶ କରିବା—
Chihnā debā To give out one's identity; to make ଚେନାଦେଓ୍ୱା one's self known; to announce one's self.
चिह्नादेना

ଚହ୍ନା ନେବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କର ପରିଚୟ ଆଦି ଜିଜ୍ଞାସା Chihnā nebā କରିବା ବା ସ୍ଥିର କରିବା—To ascertain ଚେନାନେଓ୍ୱା or enquire about a person's whereabouts or identity.
चिह्नालेना

ଚହ୍ନା ପଡ଼ିବା—ଦେ. କ୍ରି—୧ । ଜଣା ପଡ଼ିବା; ଚହ୍ନିତ ହେବା; ପ୍ରକାଶ Chihnā pardibā ପାଇବା—1. To be detected or marked.
ଚେନାପଡ଼ା
मालुम पड़ना ସବୁ ଗୃହାଣିଙ୍କୁ ଚହ୍ନା ପଡୁଥାଇ—କବିସୂର୍ଯ୍ୟ. ସଙ୍ଗୀତ ।

୨ । କୌଣସି କାର୍ଯ୍ୟରେ ନିଜର ଗୁପ୍ତ ସହାନୁଭୂତି ବା ସାହଚର୍ଯ୍ୟ ଥିବା ବିଷୟ ସାଧାରଣରେ ପ୍ରକାଶିତ ହେବା--
2 To be publicly known as an accessary to or sympathiser with any matter.

୩ । ଉତ୍ତମରୂପେ ଜ୍ଞାତ ହେବା—
3 To be well known.

୪ । ଲକ୍ଷଣାଦିଦ୍ୱାରା ସୁନିଶ୍ଚିତରୂପେ ସ୍ଥିରୀକୃତ ହେବା—
4. To be ascertained by symptoms.

ଚହ୍ନା ପରିଚୟ—ଦେ ବି ( ଓ. ଚହ୍ନା+ସ. ପରିଚୟ; ଏକାର୍ଥକ Chihnā parichaya ଶବ୍ଦଚର )—ସୁପରିଚୟ; ଘନିଷ୍ଠ ପରିଚୟ; ଚେନାପରିଚୟ ଜଣାଶୁଣା; ପରସ୍ପର ପରସ୍ପରକୁ ଉତ୍ତମରୂପେ ଜାଣିବା—
जानपहचान Intimacy; close acquaintance.

[ ଦ୍ର—କୌଣସି ବ୍ୟକ୍ତିଙ୍କୁ ମୁଁ ଅନେକବାର ଦେଖିଥିଲେ ବା ତାଙ୍କ ଛବି ଦେଖିଥିଲେ ତାଙ୍କ ସଙ୍ଗେ ମୋର ଚହ୍ନା ଅଛି ବୋଲି କୁହାଯିବ; କିନ୍ତୁ ଯେବେ ସେ ମଧ୍ୟ ମୋତେ ଜାଣନ୍ତି ତେବେ ତାଙ୍କ ସଙ୍ଗେ ମୋର ପରିଚୟ ବୋଲି ବୋଲାଯିବ । ]

ଚହ୍ନାର୍—ପ୍ରାଦେ. ( ସମ୍ବଲପୁର ) ବିଣ. ( ତୁଳ. ଏହି ଅର୍ଥରେ ହି. Chihnār ଚହ୍ନାର୍ )—ସୁପରିଚିତ—Well known.

ଚହ୍ନାର୍ ବାମନ୍‌କେ କାହିଁ ପଚରା—ଉଗ ।

ଚହ୍ନାଳି—ଦେ. ବିଣ. (ସ. ଚହ୍ନ ଧାତୁ )—ଯେ ଚହ୍ନି ପାରେ; ଚହ୍ନିରା—
Chihnāli One who can test or distinguish good ଚେନାଲି from bad; expert in testing things.
चिह्ननेवाला

ଚହ୍ନିତ—ସ. ବିଣ. ( ଚହ୍ନ ଧାତୁ + କର୍ମ. ତ )—୧ । ସୁପରିଚିତ—
Chihnita 1. Well acquainted.

୨ । ଚିହ୍ନଯୁକ୍ତ—2. Having marks.

୩ । ସଙ୍କେତଦ୍ୱାରା ପରିଚିତ—
3. Indicated; symbolised.

୪ । ଅଙ୍କିତ—4 Drawn; delineated.

୫ । ବିଶିଷ୍ଟ ଲକ୍ଷଣ ଯୋଗୁଁ ଅନ୍ୟମାନଙ୍କଠାରୁ ପ୍ରଧାନ—
5. Conspicious by piculiar signs.

୬ । ଦାଗ ଦିଆଯାଇଥିବା—6. Branded, marked.

୭ । ପ୍ରସିଦ୍ଧ—7. Famous; noted.

୮ । ( ଆଧୁନିକ ବ୍ୟବହାର ) ଉଚ୍ଚଶ୍ରେଣୀର ରାଜକାର୍ଯ୍ୟରେ ନିଯୁକ୍ତ ହୋଇ ଆପଣା ଉପରେ ନ୍ୟସ୍ତ କାର୍ଯ୍ୟଭାର ଚଳାଇବାପାଇଁ ସରକାରଙ୍କ ସଙ୍ଗେ ଯେ ଚୁକ୍ତି କରି କାର୍ଯ୍ୟରେ ନିଯୁକ୍ତ ହୋଇଥାଆନ୍ତି—
8. Covenanted ( high Government-official).

୯ । ଉତ୍ତମରୂପେ ଯାହାଙ୍କୁ ଲୋକେ ଜାଣିଥାଆନ୍ତି—
9. Well known.

୧୦ । ଯାହା ଅନ୍ୟ ବ୍ୟକ୍ତି ବା ବସ୍ତୁଠାରୁ ବାରି ହୁଏ—
10. Distinguished ( M. W. ).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୧୧ । ଲକ୍ଷଣଦ୍ୱାରା ସ୍ଥିରୀକୃତ—11. Diagnosed; ascertained by means of symptoms.

**ଚହ୍ନିଦେବା**—ଦେ. କ୍ରି—୧ । ଭଲ ମନ୍ଦ ବାଛିଦେବା—
Chihnidebā 1. To distinguish the good from bad.
ଚେନେଦେଓ୍ୱା ୨ । ପରିଚୟ କରିବା; ପୂର୍ବ ପରିଚିତ ବ୍ୟକ୍ତିକୁ ଜାଣି
**चिह्नदेना** ନେବା—2. To recognise.

**ଚହ୍ନିନେବା**—ଦେ. କ୍ରି—ସୁପରିଚିତ ବ୍ୟକ୍ତିକୁ ବା ବାଞ୍ଛିତ ପଦାର୍ଥକୁ
Chihninebā ଅନେକ ମଧ୍ୟରୁ ବାଛି ନେବା—To select
ଚେନେଲଓ୍ୱା what is wanted from amongst many.
**चिह्नलेना**

**ଚହ୍ନିପକାଇବା**—ଦେ. କ୍ରି—ଚହ୍ନିଦେବା (ଦେଖ)
Chihnipakāibā Chihnidebā (See)

**ଚହ୍ନିବା**—ଦେ. କ୍ରି. ( ସଂ. ଚହ୍ନ ଧାତୁ )—୧ । ପୂର୍ବପରିଚିତ ବା ଜ୍ଞାତ
Chihnibā ବ୍ୟକ୍ତିକୁ ବା ବସ୍ତୁକୁ ଜାଣିବା; ଠଉରାଇବା; ପରିଚୟ
ଚେନା କରିବା—1. To recognise.
**चिह्नाना; पहचानना** ପ୍ରଥମ ପାଣ୍ଡବେ ଯହୁଁ ସେ ବନ୍ୟ ପୁରୁଷ
(ଚହ୍ନାଇବା—ଣିଜନ୍ତ) ବୋଇଲେ "ହେ ବୀର" ନ ଚହ୍ନି ପାରିଲନ୍ତି ମୋତେ ।
—ଧନ ନ ଥ. ମହାଯାତ୍ରା ।
ଚହ୍ନାହେବା } କର୍ମବାଚ୍ୟ
ଚହ୍ନାଯିବା } ୨ । ପରୀକ୍ଷା କରି ଭଲମନ୍ଦ ବସ୍ତୁ ଜାଣିବା—
2 To distinguish the good from bad; to discriminate; to ascertain after testing.

ମୂଲ୍ୟ ଚହ୍ନି ମୂଲ୍ୟ ଦେବାକୁ କେବଳ ଜାଣନ୍ତି ବୀରେ । ରଘୁନାଥ. ଉଷା ।

୩ । ଉତ୍ତମରୂପେ ଜାଣିବା—
3. To know well or intimately
( ଯଥା—ଅକ୍ଷର ଚହ୍ନିବା । )
୪ । ଲକ୍ଷଣ ଦେଖି ରୋଗ ନିର୍ଣ୍ଣୟ କର—
4. To diagnose a disease by symptoms.
୫ । ନିରେଖି ଦେଖିବା—
5. To mark; to observe; to percieve.

ଚହ୍ନି କି ଲକ୍ଷଣ ସତେ, ଶ୍ରମରତକୁରି ମତେ
ଚହ୍ନକାଇ ପଡ଼ିଲୁ କହ । କବିସୂର୍ଯ୍ୟ. କଳୋଲଷେଖୁ ଚ. ଗୀତ ।

[ ଦ୍ର—ଚହ୍ନ୍‌ବା କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ନେବା, ପକାଇବା କ୍ରିୟାର ସମାପିକା ରୂପମାନ ବ୍ୟବହୃତ ହୁଏ । ]

**ଚହ୍ନୀକୃତ**—ସଂ. ବିଣ. ( ଚହ୍ନ୍+ଅଭୂତତଦ୍‌ଭାବେ ଚ୍ୱି+କୃତ )—
Chihnīkruta ଯହିଁରେ ମାର୍କା ବା ଚହ୍ନ ମରାଯାଇଅଛି—
(ଚହ୍ନୀକରଣ—ବି) Marked; branded.

**ଚୀକ୍ (ଧାତୁ)**—ସଂ—ସହ୍ୟ କରିବା—
Chīk (root) To endure.

**ଚୀଚୀକୂଚୀ**—ସଂ. ବି. ( ଧ୍ୱନ୍ୟନୁକରଣ )—ଚଢ଼େଇମାନଙ୍କ ଚେଁ ଚେଁ ଚୁଁ ଚୁଁ
Chīchīkūchī ଧ୍ୱନି—Warbling of birds (M. W.).

**ଚୀଠିକା**—ସଂ. ବି. (ଚିଟ୍ଠ ଧାତୁ=ପ୍ରେରଣ କରିବା+କର୍ମ. ଇକ+ଆ)—
Chīthikā କାଗଜର କ୍ଷୁଦ୍ର ଖଣ୍ଡ—
A small slip of paper (M. W).

**ଚୀଣ**—ସଂ. ବି—ଚୀନ ( ଦେଖ )
Chīṇa China (See) (M W.).
(ଚୀଣକ—ଅନ୍ୟରୂପ)

**ଚୀତ୍‌କାର**—ସଂ. ବି, ( ଚୀତ୍=ଅନୁକରଣ ଧ୍ୱନିବିଶେଷ+କୃ ଧାତୁ+
Chītkāra ଭାବ. ଅ )—୧ । ଚିତ୍କାର; ଉଚ୍ଚୈଃସ୍ୱର; ଡାକ—
(ଚିତ୍କାର—ଅନ୍ୟରୂପ) 1. Loud cry; shout; exclamation.
୨ । ଗୋଳମାଳ; ଗୋଳମାଳ—
2. Noise; hubbub; uproar (M. W.).

**ଚୀତ୍‌କୃତ**—ସଂ. ବି. ( ଚୀତ୍+କୃ ଧାତୁ+ଭାବ. ତ )—
Chītkruta ଚିତ୍କାର ( ଦେଖ )
Chītkāra ( See )

**ଚୀତ୍‌କୃତି**—ସଂ. ବି. (ଚୀତ୍+କୃ ଧାତୁ+ଭାବ. ତି )—ଗଡ଼ଗଡ଼ ଶବ୍ଦ—
Chītkruti Rattling (M. W ).

**ଚୀନ**—ସଂ. ବି. ( ଚି. ଧାତୁ=ଚୟନ କରିବା+କର୍ମ. ନ )—
Chīna ୧ । ଚମସ୍ତ ମୃଗ—1. A deer with bushy tail.
୨ । ଚୀନ ଦେଶ 2. The country of China.

[ଦ୍ର—ଏ ଦେଶ ଆସିଆ ମହାଦେଶର ପୂର୍ବରେ । ଏଥିର ଉତ୍ତରରେ ରୁଷିଆ, ପଶ୍ଚିମରେ ମଧ୍ୟ-ଆସିଆ, ଦକ୍ଷିଣରେ ବ୍ରହ୍ମଦେଶ, ଶ୍ୟାମ ଓ ଚୀନ ସାଗର ଓ ପୂର୍ବରେ ଚୀନ ସାଗର । ଏ ଦେଶରେ ୧୮ଟି ପ୍ରଦେଶ, ଏଥିର ରାଜଧାନୀ ପିକିଙ୍ଗ୍; ଚୀନ ସାମ୍ରାଜ୍ୟ ପୂର୍ବେ ରାଜତନ୍ତ୍ର ଥିଲା, ବର୍ତ୍ତମାନ ସାଧାରଣତନ୍ତ୍ର ହୋଇଅଛି; ଅଧିବାସୀମାନେ ବୌଦ୍ଧ-ଧର୍ମାବଲମ୍ବୀ; ଚୀନାମାନେ ଆପଣା ଦେଶକୁ 'ଚଙ୍ଗକ୍ୟୁଓ' ନାମରେ ଡାକନ୍ତି । ଚୀନ ଦେଶ ବହୁ ପ୍ରାଚୀନକାଳର ସଭ୍ୟ ଥିଲା । ଭାରତ ସଙ୍ଗେ ବହୁ ପ୍ରାଚୀନକାଳରୁ ଚୀନର ସମ୍ପର୍କ ରହିଅଛି ଓ ଏ ଦେଶର ଅନେକ ପରିବ୍ରାଜକ ଭାରତ ପରିଭ୍ରମଣ କରି ଆମ ଦେଶର ଅନେକ ତଦାନୀନ୍ତନ ବିଷୟ ଲେଖି ଯାଇଅଛନ୍ତି । ମହାଭାରତ, ମନୁସଂହିତା ଆଦିରେ ଚୀନ ଦେଶର ଉଲ୍ଲେଖ ଅଛି । ଚୀନ ଦେଶରେ ବୁଣା ଅତି ବାରିକ୍ ରେଶମ ଲୁଗାର ନାମରୁ ସୂକ୍ଷ୍ମ ରେଶମୀ ଲୁଗାର ନାମ 'ଚୀନାଂଶୁକ' ହୋଇଅଛି । ତିବ୍ବତ, ମାଞ୍ଚୁରିଆ, ମଙ୍ଗୋଲିଆ, ତୁର୍କିସ୍ଥାନ ଏହି ଦେଶର ଅଧୀନ ରାଜ୍ୟ । ଗ୍ରନ୍ଥମୁଦ୍ରଣ ଓ ବାରୁଦକୁ ଇଉରୋପ ଚୀନଦେଶରୁ ଗ୍ରହଣ କରିଅଛି । ଖ୍ରୀଷ୍ଟପୂର୍ବ ୨୦୦୦ ବର୍ଷଠାରୁ ଚୀନଦେଶର ଧାରାବାହିକ ଇତିହାସ ମିଳେ । ଭାରତବର୍ଷରୁ ଖ୍ରୀଷ୍ଟପୂର୍ବ ୨୧୭ ଅବ୍ଦରେ ବୌଦ୍ଧଧର୍ମ ଯାଇ ଚୀନରେ ପ୍ରଚରିତ ହେଲା । ଚୀନ ଦେଶରେ କେତେକ ସ୍ତୂପ ଅଶୋକ ନିର୍ମାଣ କରିଥିବାର କଥିତ । ଏ ଦେଶର ପଶ୍ଚିମ ଓ ଉତ୍ତର ସୀମାରେ ୧୫୦୦ ମାଇଲ ଲମ୍ବର ଗୋଟିଏ ପକ୍କା ପାଚୀରି ଅଛି । ଏ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍,ର୍‌ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଙ୍ଗ | ଞ୍ଚ | ଞ୍ଜ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଙ୍ଖ | ଞ୍ଛ | ନ୍ଦ |

ପ୍ରାଚୀନ ସଂସାରର ୭ ଆଶ୍ଚର୍ଯ୍ୟ ବସ୍ତୁ ମଧ୍ୟରେ ଏକ । ଚୀନା ପୁରୁଷମାନେ ମୁଣ୍ଡରୁ ଗୋଟିଏ ଲମ୍ବ ବେଣୀ ଲମ୍ବାଉଥିଲେ ଓ ସ୍ତ୍ରୀମାନଙ୍କ ଗୋଡ଼ ପିଲାଦିନୁ ଲୁହାଜୋତାରେ ପଶି ରହୁଥିଲା । ଚୀନାମାନଙ୍କ ଲେଖା ଆମ ପରି ଧାଡ଼ି ଧାଡ଼ି ନ ହୋଇ ଖୁମ୍ବ ପରି ଉପରୁ ତଳକୁ ଲେଖାଯାଏ । ବୁଦ୍ଧଦେବଙ୍କ ଜନ୍ମସ୍ଥାନ ବୋଲି ଭାରତକୁ ଚୀନାମାନେ ତୀର୍ଥରୂପେ ଗଣନା କରନ୍ତି । ]

୩ । ଚିନା; କ୍ଷୁଦ୍ର ଧାନ୍ୟବିଶେଷ—3 A kind of globular small grain; millet; Panicum Miliaceum.

୪ । ଚୀନ ଦେଶବାସୀ ଲୋକ—4. A Chinese.

୫ । ଚୀନଦେଶୀୟ ପତଳା ରେଶମ ଲୁଗା—5. A thin silk stuff made in China.

ଗ୍ରୀଷ୍ମକରସାରଦେହା ଦେହରେ,
ଚୀନ ବାସ ପରି ଧନ ଯେ ହରେ । କବିସୂର୍ଯ୍ୟ, ସଙ୍ଗୀତ ।

୬ । ସୂତ୍ର; ସୂତା—6. Thread (M W.)

୭ । ସୀସକ; ସୀସା ଧାତୁ—7. Lead. (M. W.)

୮ । ପତାକା—8. Flag; banner.

୯ । ଆଖିର କୋଣ ଉପରେ ବନ୍ଧାଯିବା ପଟି (ଶୁଶ୍ରୁତ)—9 A bandage for the corners of the eyes (M. W.)

ବିଣ. —ଚୀନ୍ ଦେଶୀୟ—Of or pertaining to China.

**ଚୀନକ**—ସଂ. ବି. (ଚୀନ+କ)—୧ । ଚୀନ ଦେଶବାସୀ ଲୋକ—
Chinaka 1. A Chinese.

୨ । ଚିନା ଶସ୍ୟ—2. A small grain; Panicum Miliaceum.

୩ । ଚୀନକର୍ପୂର—3. Camphor

୪ । ସଉଁଫ (ମସଲା)—4 Fennel (M. W.).

**ଚୀନକର୍ପୂର**—ସଂ. ବି. ( କର୍ମଧା; ଚୀନ+କର୍ପୂର )—
Chīnakarpūra ଏକପ୍ରକାରର କର୍ପୂର ( କର୍ପୂର ତଳେ ଦେଖ )— A kind of camphor.

**ଚୀନଜ**—ସଂ. ବି. (ଚୀନ+ଜନ୍ ଧାତୁ+କର୍ତ୍ତୃ. ଅ)—ଇସ୍ପାତ୍
Chīnaja Steel.

**ଚୀନାଂଶୁକ**—ସଂ. ବି. (୬ଷ୍ଠୀ ତତ୍; ଚୀନ+ଅଂଶୁକ)—ଚୀନଦେଶାଗତ
Chīnāmsuka ସରୁ ପଟ୍ଟବସ୍ତ୍ର—A thin silk stuff orginally imported from China

**ଚୀନାକ**—ସଂ. ବି.—୧ । ଚିନା କାକୁଡ଼ି; ଏକପ୍ରକାର ଧଳା କାକୁଡ଼ି
Chīnāka 1. White cucumber.

୨ । ସଉଁଫ; ଶତପୁଷ୍ପ—2. Fennel (M. W.)

**ଚୀବର**—ସଂ. ବି —(ଚି ଧାତୁ=ସଂଗ୍ରହ କରିବା+କର୍ମ. ବର)—
Chībara ୧ । ସନ୍ନ୍ୟାସୀ (ବିଶେଷତଃ ବୌଦ୍ଧ ଓ ଜୈନ ସନ୍ନ୍ୟାସୀ) ମାନଙ୍କ ପରିଧେୟ ଜୀର୍ଣ୍ଣ ବସ୍ତ୍ର; ଚୀର; କନ୍ଥା—1. A mendicant's rags or garment.

୨ । କନା—2. A torn piece of cloth

[ ଦ୍ର—ସାହେବମାନେ ବେକରେ ଯେଉଁ କନା ଖଣ୍ଡିକୁ ( Necktie=ଗଳା ବନ୍ଧ ରୂପେ ) ବାନ୍ଧନ୍ତି ତାକୁ "ଶେଷବନ୍ଦୀ ଭାରତୀ"ରେ ଅନ୍ଧସୂତନ୍ତ୍ର 'ଚୀବର' ନାମ ଦେଇଅଛନ୍ତି । ଯଥା—କୌଷେୟ ଚୀବର ଊର୍ମ୍ମିକା ଗ୍ରଥିତ ]

୩ । ଭିକ୍ଷାପାତ୍ର—3. Beggar's bowl.

୪ । ଲୁହାର ଗୁଣ୍ଡ—4. Iron filings ( M. W. )

**ଚୀବରୀ**—ସଂ. ବି. ପୁଂ ( ଚୀବର+ଅସ୍ତ୍ୟର୍ଥରେ. ଇନ୍; ୧ମା. ୧ବ )—
Chībari ବୌଦ୍ଧ ବା ଜୈନ ସନ୍ନ୍ୟାସୀ—A Buddhist or Jaina monk.

ବିଣ—ଚୀବରଧାରୀ—Wearing rags.

**ଚୀଭଟ**—ସଂ. ବି — ଗଯ୍ୟା କଲରା ( ହରେକୃଷ୍ଣ ଦ୍ରବ୍ୟଗୁଣ )—
Chībhaṭa A kind of Memordica.

**ଚୀର**—ସଂ. ବି—୧ । କନ୍ଥା; ଚିରାକନା; ଛିନ୍ନ ବସ୍ତ୍ରଖଣ୍ଡ—
Chīra 1 Rag; tatter.

(ଚେରି—ଅନ୍ୟରୂପ) ୨ । କୌପୀନ—2 A strip or long and narrowpiece of bark or cloth for wearing along the privities (M. W.)

୩ । ବୌଦ୍ଧ ସନ୍ନ୍ୟାସୀଙ୍କ ପରିଧେୟ ବସ୍ତ୍ର; ଚୀବର—3. The dress of a Buddhist monk.

୪ । ଚାରିସରିଆ ମୋତି ହାର—4. A necklace of 4 pearl-strings (M. W.)

୫ । ଚୂଡ଼ା—5. A crest (M. W.)

୬ । ବେତ ଆଦିଦ୍ୱାରା ପ୍ରହାର—6. A stripe; stroke ( M. W. )

୭ । ରେଖା—7. Line. ( M. W. )

୮ । ଗଛର ଛାଲ—8. Bark of a tree.

୯ । କଦର୍ଯ୍ୟ ରେଖା ଓ ଲେଖାବିଶେଷ; ଗାବରଗାବର—9. Slovenly writing.

ଦେ. ବି — ମାଲ୍ଲକଚ୍ଛ; ପିନ୍ଧା ଲୁଗାର ଖୋସଣୀ—The knot of the wearing cloth by which it is fastened to the waist.

ଯେବେ ବୃଦ୍ଧ ଚୀର କଲେ ପରଇ କରଣି
ବୃଦ୍ଧ ସରବକୁ ବାଲ ବନ୍ଧ ନକ ସଶି ଶୋ । ଭଞ୍ଜ. ଲାବଣ୍ୟବତୀ ।

**ଚୀରକ**—ସଂ. ବି —୧ । ଖଣ୍ଡିଏ ଛୋଟ କାଗଜରେ କୌଣସି ରାଜକୀୟ
Cheraka ଆଦେଶର ପ୍ରଚାର—1. Public announcement
(ଚୀରିକା—ଅନ୍ୟରୂପ) on a slip of paper ( M. W.)

୨ । କାଗଜର ଟିକଖଣ୍ଡ; ଚିରକୁଟ—2. A small slip of paper.

ସାଧାରଣ ଲୋକେ ଅପର ପୃଷ୍ଠାରେ ବ୍ରତ ୧ ଚକ୍ଷୁ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷୁ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷୁ ଯୁକ୍ତ କୌଣସି ବର୍ଣ୍ଣ ବା ମାତ୍ରାଙ୍କ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବ ବଦଳେ ୨ ବା ୧ ଚକ୍ଷୁ ବର୍ଣ୍ଣ ବା ମାତ୍ରାଙ୍କ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବ; 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଣ୍ଣିଆ' ନ ପାଇଲେ 'ଅର୍ଣ୍ଣା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବ ।

**ଚୀରଧାରୀ**—ସଂ ବଣ (ଉପପଦ୍‌ତତ୍ପୁରୁଷ; ଚୀର + ଧୃ. ଧାତୁ + ଇନ୍)—
Chiradhāri — ଯେ ଛିଣ୍ଡା କନ୍ଥା ପିନ୍ଧେ; କୌପୀନଧାରୀ—Wearing rags.

**ଚୀରଭବନ୍ତୀ**—ସଂ. ବି. ସ୍ତ୍ରୀ—ସ୍ତ୍ରୀଙ୍କ ବଡ଼ ଭଉଣୀ; ଦେଢ଼ଶାଶୁ—
Chirabhabanti — The elder sister of one's wife ( M. W. )

**ଚୀର**—ସଂ. ବି (ଚୀର + ଅ)—୧ । କନା—
Chira — 1. A piece of cloth ( M. W. )
୨ । ଚିରା କନା; ଲେଙ୍ଗୁଡ଼ି—2. Rag (M. W )

**ଚୀରା (ଇତ୍ୟାଦି)**—ଦେ. ବଣ—ଚିରା ଇତ୍ୟାଦି (ଦେଖ)
Chirā (etc) — Chirā etc (See).

**ଚୀରାଣି**—ଦେ. ବଣ—ଛିଣ୍ଡା—Torne.
Chirāṇi — ଚୀରାଣି ବସ୍ତ୍ର ପଥେ ଦେଖି
ତାର ଗ୍ରହଣେ ହେତୁ ସୁଖୀ—ଜଗନ୍ନାଥ. ଭାଗବତ ।

**ଚୀରି**—ସଂ. ବି—ଆଖିକୁ ଘୋଡ଼ାଇବାପାଇଁ ବ୍ୟବହୃତ ଓଢ଼ଣା—
Chiri — A veil for the eyes ( M.W.)

**ଚୀର୍ଣ୍ଣ**—ସଂ. ବଣ (ଚର୍ ଧାତୁ—ବିଭାଗ କରିବା + କର୍ମ. କ୍ତ)—
Chirṇṇa — ୧ । ବିଦୀର୍ଣ୍ଣ—1. Pierced, split up.
୨ । ଖଣ୍ଡିତ; ବିଭକ୍ତ—2. Divided; cut into
୩ । କୃତ; ସମ୍ପାଦିତ—3. Done; accomplished.
୪ । ଅନୁଶୀଳିତ—4. Studied; persued.
୫ । ସଞ୍ଚିତ—5. Stored; collected.
୬ । ଚିରା ହୋଇଥିବା—6. Torne.
୭ । ଅଭ୍ୟସ୍ତ—7. Practised.
୮ । ଆଚରିତ (ବ୍ରତ)—8. Observed (vow).

**ଚୀର୍ଣ୍ଣପର୍ଣ୍ଣ**—ସଂ. ବି (ବହୁବ୍ରୀହି; ଚୀର୍ଣ୍ଣ + ପର୍ଣ୍ଣ; ଯେଉଁ ଗଛର ପତ୍ର ଖଣ୍ଡିତ)—
Chirṇṇaparṇṇa — ୧ । ନିମ୍ବ ଗଛ—1 The Neem tree; Margosa; Melia Azadirachta.
୨ ଖଜୁରି ଗଛ—2. The date-palm; Phoenix Sylvestris.

**ଚୀଲି**—ଦେ. ବି—ଚିଲିକାର ଏକପ୍ରକାର ମାଛ—
Chili — A class of fish found in the Chilka lake

**ଚୀଲ୍ଲିକ**—ସଂ. ବି—ଚିଙ୍ଗୁଡ଼ିମାଛ (ବୃ. ଶବ୍ଦସାଗର )—
Chillaka — Shrimp.

**ଚୁ**—ଦେ. ବି—ଚୁଚୁକାର ( ଦେଖ )
Chu — Chuchukāra ( See )

**ଚୁଆ**—ଦେ. ବି. ( ସଂ. ଚ୍ୟୁ ଧାତୁ—କ୍ଷରିତ ହେବା )—
Chuā — ୧ । ସୁଗନ୍ଧ ତୈଳବିଶେଷ—
ଚୁଆ
ଚୋଆ — 1. A kind of fragrant oil extracted by destructive distillation of resin and some other fragrant articles; a strong oil-like perfume.

[ ଦ୍ର—ଝୁଣା ସଙ୍ଗେ ବେଣାମୂଳ, ଚନ୍ଦନକାଠଗୁଣ୍ଡି, ମୁଥା, କସ୍ତୁରି ମିଶାଇ ତାକୁ ମୁହଁ ନିରୁଜ ହୋଇ ବନ୍ଦ ଥିବା ହାଣ୍ଡିରେ ପୁରାଇ ନିଆଁରେ ବସାଇବାକୁ ହୁଏ । ହାଣ୍ଡିର ଉପର ଧାରା ପଲମରେ ଗୋଟିଏ ଛିଦ୍ର ଥାଏ । ସେହି ଛିଦ୍ରବାଟେ ବାହାରିବା ଧୂଆଁକୁ ବକଯନ୍ତ୍ର ଦ୍ୱାରା ଥଣ୍ଡା କଲେ ସେଥିରୁ ଯେଉଁ ରସ ନିଗିଡ଼େ ତାହାହିଁ ସୁବାସିତ ତୈଳବତ୍ ଚୁଆ ଅଟେ । ପୂର୍ବକାଳରେ ସ୍ତ୍ରୀମାନେ ଓ ଏବେ ମଧ୍ୟ ପ୍ରାଚୀନାମାନେ ଚନ୍ଦନ ଓ ହଳଦୀ ସଙ୍ଗେ ଚୁଆ ମିଶାଇ ଦେହରେ ଲଗାଉଥିଲେ । ଓଡ଼ିଶାର ଲୋକେ ଏହାକୁ ଗୁଣ୍ଡିରେ ମିଶାନ୍ତି । କଟକରେ ବହୁ ପରିମାଣରେ ହାଣ୍ଡି ସାହାଯ୍ୟରେ ଚୁଆ ତିଆରି ହୁଏ ।

ଆଇନ୍-ଇ-ଆକବରୀରେ ଲେଖାଅଛି ଯେ, ଏକପ୍ରକାର ଗଛର ଚେରକୁ କାଟି ଅଣି ମାଟି ଉପରେ କିଛି ଦିନ ପୋତି ରଖିବା ପରେ ଚେରର ଯେଉଁ ଅଂଶ ସଢ଼ି ଯିବାର ତାହା ସଢ଼ିଯାଏ । ଯେଉଁ ଅଂଶ ବାକି ରହେ ତାକୁ ୧ ସପ୍ତାହ ପାଣିରେ ବତୁରାଇ ରଖାଯାଏ । ପରେ ସେହି ଜଳକୁ ଗୋଟିଏ ସରୁ ମୁହାଁ ବୋତଲରେ ପୁରାଇ ବୋତଲର ମୁହଁ ଆଚ୍ଛା କରି ମୁଦି ଦିଆଯାଏ ଓ ଉକ୍ତ ବୋତଲକୁ ଓଲଟାଇ କରି ତଳେ ଛିଦ୍ର ଥିବା ଅନ୍ୟ ଗୋଟିଏ ବୋତଲ ଉପରେ ବସାଇବାକୁ ହୁଏ ଓ ସର୍ବୁ ତଳେ ଗୋଟିଏ ଜଳପୂର୍ଣ୍ଣ ପାତ୍ର ରଖି ଏହି ପାତ୍ରର ଶୂର ପାଖେ ଘର୍ଷଣଅଗ୍ନି ଦ୍ୱାରା ସାମାନ୍ୟ ତାପ ପ୍ରୟୋଗ କରାଯାଏ । ଏପରି କଲାରୁ ତାପ ଲାଗି ଯାହା ଚୁଆଇ ହୋଇ ତଳବୋତଲରେ ଜମା ହୁଏ ତାହାହିଁ 'ଚୁଆ' । ଏହି ଚୁଆକୁ ପୁଣି ଗୋଲାପପାଣିରେ ଧୂଆଯାଏ । ଜ୍ଞାନେନ୍ଦ୍ରଙ୍କ ଉଦ୍ଧୃତ ପାଞ୍ଚକଡ଼ି ବନ୍ଦୋପାଧ୍ୟାୟ ]

୨ । ( ସଂ. କୂପ ) ଝର ଜଳ କମନ୍ତେ ଖୋଳାଯାଇଥିବା ପାତକୂଆ, କୁଆ କ୍ଷୁଦ୍ର ତଡ଼ାଗ ବା ଗର୍ତ୍ତ—2. Small hole or
ଗଡ଼ା — pit made for collecting underground water which filteres into it.

ପ୍ରାଦେ. ( ସମ୍ବଲପୁର ) ବି—କୂଅ; କୂପ—Well.

**ଚୁଆଇବା**—ଦେ. କି. ( ସଂ. ଚ୍ୟୁ ଧାତୁ )—
Chuāibā — ଚୁଆଁଇବା ( ଦେଖ )
Chuāñibā ( See )

**ଚୁଆଁ**—ଦେ. ବି. ( ଧ୍ୱନ୍ୟନୁକରଣ )—୧ । ଚୁଁଚୁଁ ( ଦେଖ )
Chuāñ — 1. Chuñchuñ ( See )
୨ । ଚୁଆ ୨ ( ଦେଖ )
2. Chuā 2 ( See )

ପକ୍ଷିବାମାନେ ସ୍ନାନଘାଟେ ଆସି
ଚୁଆଁ ତଡ଼ପାଶେ ଗଳପତ୍ର ବସି । ଉ.ବ୍ରଣୀ. ରଷିକୁଲ୍ୟା ।

ପ୍ରାଦେ. (ବସ୍ତର) ବି—କୁଅ—Well.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍ଷ | ଇଯ୍ | ଓଅ | ଙ୍କ |
| ୨ | ଈ | ଊ | ରୁ | ଲୁ | ଏ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ଥ |

ଚୁଆଁଇବା—ଦେ. କ୍ରି. ( ସଂ. ଚ୍ୟୁ ଧାତୁ=କ୍ଷରିତ ହେବାର ଣିଜନ୍ତ )—
Chuāñibā ୧ । ଜନ୍ତ୍ରଦ୍ୱାରା କୌଣସି ବସ୍ତୁରୁ ଅଗ୍ନି
ଚୁଆନ, ଚୁଁଆନ ଉତ୍ତାପରେ ବାଷ୍ପ ବାହାର କରି ସେହି ବାଷ୍ପକୁ
ଚୁଆନା ଶୀତଳପାତ୍ରସଂସ୍ପର୍ଶରେ ଥଣ୍ଡା କରି ଅର୍କ
ବାହାର କରିବା—1. To distil; to cause to ooze.

୨ । ଚୁଇଁବା ( ଦେଖ )
2. Chuiñbā ( See )
୩ । ( ସଂ. ଚଳ୍ ଧାତୁ ) ନିଦ ଭଙ୍ଗାଇବା—
3. To awaken a person from sleep; to rouse.

ଚୁଆଁଚୁଇଁ—ଦେ. ବି. ( ଧ୍ୱନ୍ୟନୁକରଣ )—ଚୁଁଚୁଁ ( ଦେଖ )
Chuāñchuiñ Chuñchuñ ( See )
ଚୁଆଁଚୁହିଁ } ଅନ୍ୟରୂପ
ଚୁହାଁଚୁହିଁ } ଦେ. ବି ଓ ବିଣ—ପରସ୍ପରକୁ ଚାହିଁବା—
Looking at each other.

ମାନଗୋବିନ୍ଦର ଏସନ ବଚନ ଶୁଣି
ଚୁହିଁ ଚୁଆଁଚୁହିଁ ହେଲେ ବିବେକ ନୃମଣି । ସାରଳା. ମହାଭାରତ. ଆଦି

ଚୁଆଡ଼—ଦେ. ବି ଓ ବିଣ—ଚୁହାଡ଼ ( ଦେଖ )
Chuārda Chuhārda ( See )

ଚୁଇଁ—ଦେ. ବିଣ (ଅନ୍ୟ ଶବ୍ଦର ପୂର୍ବରେ ବ୍ୟବହୃତ ହୁଏ; ସଂ. ଶିଶୁ)—
Chuiñ ଅତି କ୍ଷୁଦ୍ର—Very small; tiny.
କଚି ( ଯଥା—ଚୁଇଁ କଙ୍କଡ଼, ଚୁଇଁ ମାଙ୍କଡ଼, ଚୁଇଁ ମୂଷା । )
ଟେନୀ

ଚୁଇଁବା—ଦେ. କ୍ରି—ଚୁଇବା ( ଦେଖ )
Chuiñbā Chuibā ( See )

ଚୁଇ ପଡ଼ିବା—ଦେ. କ୍ରି. ( ସଂ. ଚ୍ୟୁ ଧାତୁ )—ଟୋପା ଟୋପା ହୋଇ
Chui pardibā ପଡ଼ିବା—To flow down; to fall in drops; to ooze.

ଚୁଇ ପଡ଼ୁଥାଇ ଅଧରୁ ରଙ୍ଗ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ଚୁଇବା—ଦେ. କ୍ରି. ( ସଂ. ଚ୍ୟୁ ଧାତୁ=କ୍ଷରିତ ହେବା—
Chuibā କ୍ଷରିବା; ଝରିବା—To ooze; to fall down
ଚୁଁଆ in drops; to be distilled.
ଚୁଆ
(ଚୁଇଁବା—ଅନ୍ୟରୂପ)

ଚୁଇଲ—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ହି. ଚୁପ୍‌ଲୁସୀ; ସଂ. ଚାଟୁ)—
Chuili ଖୋସାମତ; ଚାଟୁବାକ୍ୟ—Flattery.

ଚୁଉଁ ଚୁଉଁ—ଦେ ବି. ( ଧ୍ୱନ୍ୟନୁକରଣ )—ଚୁଁଚୁଁ ( ଦେଖ )
Chu-uñ chu-uñ Chuñ chuñ ( See )

ଚୁଉଁ ଚୁଉଁ କରି ଡାକରୁ ମୋତେ
ହାଟୋର ଶିଶି ଠାଉରୁ ସେତେ । ଖୋରେ ବାସୁ ଭୋ ।

ଚୁଁ—ଦେ. ବି ( ଧ୍ୱନ୍ୟନୁକରଣ )—୧ । ଚୁଁଚୁଁ ( ଦେଖ )
Chuñ 1. Chuñchuñ ( See )
ଚୁଁ ୨ । ଚୁମ୍ବନଜନିତ ଶବ୍ଦ—
ଚୀଁ,ଚ୍ଚୁଁ 2. Sound of loud kissing.
୩ । ଅତି ସାମାନ୍ୟ ମାତ୍ର ଶବ୍ଦ—
3. Very slight sound.

ଚୁଁ କରିବା—ଦେ. କ୍ରି—ଜିଭ ଓ ଦନ୍ତମୂଳ ସାହାଯ୍ୟରେ ପାଟି ଦ୍ୱାରା
Chuñ karibā ଚୁଁ ଚୁଁ ଶବ୍ଦ କରିବା—To make a
ଚୁଁକବା squeaking sound with the tongue and teeth.

ଚୁଁକାର—ସଂ. ବି—ଚୁଁ ଚୁ ଶବ୍ଦ—The sound of making
Chuñkāra slight squeaking sound with the mouth.

ଗୁରୁଜନରେ ଦେଖି ସଖୀ ସଲଜ୍ଜ
ଚୁଁକାରେ ଡାକୁ କରି ଅଧର ଭୋଜ—ଭଞ୍ଜ. ରସପଞ୍ଚକ ।

ଚୁଁକୃତ—ସଂ.ବି (ଚୁଁ + କୃତ)—ଚୁମ୍ବନ ଦେଲାବେଳେ କରିବା ଚୁଁ ଚୁଁ
Chuñkṛuti ଶବ୍ଦ—The sound produced by kissing.

ବଧୂ ବଧୂର ବଧୂ ଅଧର କଣ୍ଠୋର କରି ବଦନାମ୍ବର
ବନ୍ଧୁ ଚୁମ୍ବନ ଚୁଁକୃତସ୍ୱନ ମେଳା ।—କବିସୂର୍ଯ୍ୟ ବଳଦେବ ରଥ. ମ. ଗୀତ ।

ଚୁଁଚାଁ—ଦେ. ବି. (ଧ୍ୱନ୍ୟନୁକରଣ)--ସବଳ ବ୍ୟକ୍ତିର ଲୀଳ କର୍ମରେ ଦୁର୍ବଳ-
Chuñchāñ ବ୍ୟକ୍ତିର ବିରୋଧ ବା ଅସନ୍ତୋଷସୂଚକ ଶବ୍ଦ—
ଚୁଁଚାଁ Any sound indicating protest of a weak
ଚୀଁ ଚପଡ଼ person against the doings of a strong person.

ଚୁଁ ଚୁଁ—ଦେ. ବି. (ଧ୍ୱନ୍ୟନୁକରଣ)—୧ । ବୋହୂଭୂଆସୁଣୀମାନେ
Chuñchuñ ଗୁରୁଜନ ମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ
ଚୁଁ; କଥା କହି ନ ଡାକି ଦାନ୍ତ ଓ ଜିଭ ସାହାଯ୍ୟରେ ଉଚ୍ଚାରଣ
ଚ୍ଚୁଁଚ୍ଚୁଁ; ଚୀଁଚୀଁ କରିବା ଚୁଁ ଚୁଁ ମଧୁର ଶବ୍ଦ—(ଏ ଶବ୍ଦ ଜିଭ ଓ
ଚ୍ଚୁଁଚ୍ଚୁଁ ଉପର ଦାନ୍ତମୂଳଦ୍ୱାରା ଦୁଇ ଓଠର ମଝିଦେଇ
ପବନକୁ ଭିତରକୁ ଟାଣିନେବାର ଈଷତ୍ ଚେଷ୍ଟାଦ୍ୱାରା
ଉତ୍ପନ୍ନ ହୁଏ; ଚୁଁ ଚୁଁ କରିବା ପ୍ରଥା ବଙ୍ଗଦେଶରେ
ନାହିଁ )—1. A squeaking sound made by newly come daughters-in-law with the tongue and teeth, to draw the attention of the elderly females

[ଦ୍ର—ହିନ୍ଦୁ ସମାଜରେ ବଧୂ, ଶାଶୁ ଓ ଗୁରୁଜନମାନଙ୍କ ସଙ୍ଗେ ପାଟିକରି କଥା କହିବା ନିଷିଦ୍ଧ ଅଟେ । ଏଣୁ ଉତ୍କଳରେ ଚୁଁ ଚୁଁ ଧ୍ୱନିଦ୍ୱାରା ଗୁରୁଜନମାନଙ୍କ ଦୃଷ୍ଟି ଆକର୍ଷଣପୂର୍ବକ 'ହାତର 'ଠାରି' ଦ୍ୱାରା ବଧୂମାନେ ଗୁରୁଜନଙ୍କ ନିକଟରେ ନିଜର ମନୋଗତ ଭାବ ପ୍ରକାଶ କରନ୍ତି । ଅତି କୋମଳ ଓ ମଧୁର ଚୁଁ ଶବ୍ଦ ଉଚ୍ଚାରଣପୂର୍ବକ ହାତର ଠାରିଦ୍ୱାରା ବଧୂମାନଙ୍କର ଗୁରୁଜନଙ୍କ ଆଗେ ଭାବ ପ୍ରକାଶ କରିବା କ୍ରମଶଃ ଶିକ୍ଷିତ ସମାଜରୁ ଲୁପ୍ତ ହେଉଅଛି ଓ ଏତଦ୍ୱାରା ସ୍ତ୍ରୀମାନଙ୍କର ଗୋଟିଏ 'କଳା' ଲୁପ୍ତ ହେଉଅଛି ।

୨ । ଚୁଚୁନ୍ଦ୍ରୀର ଶବ୍ଦ—2. Squeaking of a mole.

ସାଧାରଣ ଲେକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଏବେ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଦେ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ'ନ ପାଇଲେ 'ବଧୂ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚୁଁଚୁଁଆଁ**—ଦେ. ବି.—୧ । ଚୁଚୁମା (ଦେଖ)
Chuñchuñāñ 1. Chuchumā (See)
୨ । ଚୁଁ ଚୁଁ ଶବ୍ଦ—2. Squeaking sound.

**ଚୁଁଟ୍ରା**—ପ୍ରାଦେ. (ସମ୍ବଲପୁର) ବିଣ.—ଚୁଗୁଲିଆ—
Chuñṭ-rā Tell-tale; backbiting.

**ଚୁଁଟି**—ପ୍ରାଦେ. (ସମ୍ବଲପୁର) ବି.—ଚୁଟି—
Chuñṭi A tuft.

**ଚୁଁଟିଆ**—ପ୍ରାଦେ. (ସମ୍ବଲପୁର) ବି.—(ସଂ. ଚଟକ)—ଘରଚଟିଆ ଚଢ଼େଇ
Chuñṭiā — Sparrow.

**ଚୁଁ ମାରିବା**—ଦେ. କ୍ରି.—ଚୁଁ କରିବା (ଦେଖ)
Chuñ māribā Chuñ karibā (See)

**ଚୁକ୍ (ଧାତୁ)**—ସଂ.—ତୃପ୍ତ ହେବା—
Chuk (root) To be satisfied

**ଚୁକ୍**—ଦେ. ବି.—(ଭୁଲ୍ ଚୁକ୍ ଶବ୍ଦରେ ଭୁଲ୍ ଶବ୍ଦର ସହଚରରୂପେ, ଚୁକ୍=ଭୁଲ୍; ସଂ. ଚ୍ୟୁତ)—୧ । ଭ୍ରାନ୍ତି; ଭ୍ରମ—
Chuk 1. Mistake, error; blunder, oversight.
चूक ୨ । ବିସ୍ମୃତି—2. Forgetting.
चुक ୩ । ଅଭାବ—3. Defect; omission.

**ଚୁକ୍ ଚୁକ୍**—ଦେ. ଅ. (ଧ୍ୱନ୍ୟନୁକରଣ)—ଚୁକୁ ଚୁକୁ (ଦେଖ)
Chukchuk Chuku chuku (See)

**ଚୁକ୍‌ଚୁକିଆ**—ପ୍ରାଦେ. (ସମ୍ବଲପୁର) ବି.—ଆଗବୋଲା; ନିରର୍ଥକ କଥା, ବା ପଚାରି ନ ହେଉଣୁ କଥା କହିବା (ବ୍ୟକ୍ତି)—
Chukchukiā (a person) Who speaks unasked.

**ଚୁକ**—ଗ୍ରା ବିଣ. ପୁଂ (ଅଶ୍ଳୀଳ)—ଚୁକା (ଦେଖ)
Chuka Chukā (See)
(ଚୁକି—ସ୍ତ୍ରୀ)

**ଚୁକଣା**—ଗ୍ରା. ବିଣ. ପୁଂ (ଅଶ୍ଳୀଳ)—ଚୁକା (ଦେଖ)
Chukaṇā Chukā (See)
(ଚୁକଣୀ—ସ୍ତ୍ରୀ)

**ଚୁକଣୀ (ଇତ୍ୟାଦି)**—ଚୁକୁଣୀ ଇତ୍ୟାଦି (ଦେଖ)
Chukaṇi (etc) Chukuṇi etc. (See)

**ଚୁକା**—ଗ୍ରା. ବିଣ. ପୁଂ. (ଅଶ୍ଳୀଳ)—(ସଂ. ଚୁକ୍ ଧାତୁ=ତୃପ୍ତ ହେବା)—
Chukā ଯେ ଅନ୍ୟ ବ୍ୟକ୍ତିର କାମବୃତ୍ତିକୁ ଅସ୍ୱାଭାବିକ ପ୍ରକ୍ରିୟା, (ଚୁକି—ସ୍ତ୍ରୀ) ଅର୍ଥାତ୍ ମୁଖଦ୍ୱାରା ଶାନ୍ତ କରଏ—One who pacifies another's lust by repeatedly sucking his male organ; sodomite; bugger.
ଗ୍ରା. ବି. (ଅଶ୍ଳୀଳ)—ମୁଖରତି—
Sodomy by means of the mouth; buggery.
ପ୍ରାଦେ. (ସମ୍ବଲପୁର) ବିଣ.—ଟଟ୍‌କା—Fresh.
ବି.—ନିଷ୍ପତ୍ତି—Decision.

**ଚୁକାଇବା**—ଦେ. କ୍ରି.—(ବଙ୍ଗଳା ଓ ହିନ୍ଦୀରୁ ଅନୁକୃତ)—୧ । ନିଷ୍ପତ୍ତି କରିବା; ଶେଷ ହିସାବ ନିକାଶ କରିବା—
Chukāibā 1. To settle accounts finally.
चुकान
चुकाना ୨ । ଋଣ ଅବା ଦେୟକୁ ଏକାକ ପରିଶୋଧ କରିବା—
(ଚୁକେଇବା—ଅନ୍ୟରୂପ) To liquidate a loan.
ଗ୍ରା. କ୍ରି (ଅଶ୍ଳୀଳ) ଅନ୍ୟ ବ୍ୟକ୍ତିର ମୁଖଦ୍ୱାରା ଆପଣାର କାମବୃତ୍ତି ଚରିତାର୍ଥ କରାଇବା—To pacify lust through another's mouth; to have one's male organ sucked by another.

**ଚୁକାଣ୍ଡିଆ**—ଗ୍ରା. ବିଣ ପୁଂ. (ପୁରୁଷଙ୍କ ପ୍ରତି ଗାଳି)—
Chukāṇḍiā ୧ । ବେହିଆ; ଭଣ୍ଡ—1 Shameless.
୨ । ଚୁକା (ଦେଖ)
2. Chukā (See)

**ଚୁକା ମାରିବା**—ପ୍ରାଦେ. (ଜୟପୁର) କ୍ରି—ଗାଣ୍ଡି ମାରିବା (ଦେଖ)
Chukā māribā Gāṇḍi māribā (See)

**ଚୁକିବା**—ପ୍ରାଦେ. (ଗଡ଼ଜାତ) କ୍ରି. (ସଂ. ଚୁକ୍ ଧାତୁ=ତୃପ୍ତ ହେବା-
Chukibā ଭୁଲ. ଇଂ. ସକ୍=ଶୋଷିବା; ଚୁଚୁମିବା)—
୧ । ସ୍ତନ୍ୟପାନ କରିବା—1. To suck milk
୨ । ଭ୍ରମରେ ପଡ଼ିବା (ନଦେ)—
2 To commit a mistake.
ଗ୍ରା. କ୍ରି. (ଅଶ୍ଳୀଳ)—ଅନ୍ୟ ବ୍ୟକ୍ତିର କାମପ୍ରବୃତ୍ତି ଚରିତାର୍ଥ କରିବା ନିମନ୍ତେ ତାହାର ଉପସ୍ଥକୁ ଚୁଚୁମିବା -
To pacify a male person's lust by sucking his male organ.

**ଚୁକି**—ଗ୍ରା. ବିଣ ସ୍ତ୍ରୀ. (ଗାଳି)—ଚୁକୁଣୀ (ଦେଖ)
Chuki Chukuṇi (See)
ପ୍ରାଦେ. (ଜୟପୁର) ବିଣ—ସ୍ତ୍ରୀମାନଙ୍କ ପ୍ରତି ସାଧାରଣ ପ୍ରଚଳିତ ଗାଳିବିଶେଷ A term of abuse used generally to women.

**ଚୁକିପୁଅ**—ଗ୍ରା. ବି ପୁଂ. (ଗାଳି)—ଚୁକୁଣୀପୁଅ (ଦେଖ)
Chukipua Chukuṇipua (See)
(ଚୁକିପୋ—ଅନ୍ୟରୂପ)

**ଚୁକୁଚୁକିଆ**—ପ୍ରାଦେ. (ସମ୍ବଲପୁର) ବି—ଚୁକ୍‌ଚୁକିଆ (ଦେଖ)
Chukuchukiā Chukchukiā (See)

**ଚୁକୁଚୁକୁ**—ଦେ. ଅ (ଧ୍ୱନ୍ୟନୁକରଣ)—ଚୁକୁଚୁକୁ ଶବ୍ଦ; ଦୁଗ୍ଧାଦି ଜିଭଦ୍ୱାରା ପିଇବାର ଶବ୍ଦ; ବାଳକର ମାଆଦୁଧ ଚୁଚୁମି ଖାଇବାର ଶବ୍ଦ—The sound produced by licking milk or of a child sucking milk; the sound of lapping gently.
Chukuchuku
चुकचुक; चुकचुकानि
चपड़ चपड़

| ୧ | ଇ | ଉ | ରୃ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ତ | ଉଥ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ସ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଔ | କୃ |

ଚୁକୁଣା—ଗ୍ରା. ବିଣ. ପୁଂ. (ଅଶ୍ଳୀଳ)—ଚୁକା (ଦେଖ)
Chukuṇā Chukā (See)
(ଚୁକୁଣୀ—ସ୍ତ୍ରୀ)

ଚୁକୁଣିଆଁ—ଗ୍ରା. ବିଣ. ପୁଂ. (ଅଶ୍ଳୀଳ)—ଚୁକା (ଦେଖ)
Chukuṇiān̐ Chukā (See)
(ଚୁକେଇ, ଚୁକୁଣୀ—ସ୍ତ୍ରୀ)

ଚୁକୁଣୀ—ଗ୍ରା. ବିଣ. ସ୍ତ୍ରୀ. (ଗାଳି)—ଯେଉଁ ସ୍ତ୍ରୀ ଅସ୍ୱାଭାବିକ ଭାବରେ
Chukuṇī ଅର୍ଥାତ୍ ମୁଖଦ୍ୱାରା ପୁରୁଷର କାମ ପ୍ରବୃତ୍ତି ଶାନ୍ତ କରେ—
A woman who satisfies a man's lust through her mouth.

ଚୁକୁଣୀପୁଅ—ଗ୍ରା. ବି. ପୁଂ. (ଗାଳି—ଅସ୍ୱାଭାବିକ କ୍ରିୟାନୁରକ୍ତା ମାତାର
Chukuṇīpua ପୁତ୍ର A term of abuse; (reflecting
(ଚୁକୁଣୀପୋ—ଅନ୍ୟରୂପ) on the mother's unnatural propensities or sodomy).

ଚୁକୁତି—ଗ୍ରା. ବି—ଚୁକ୍ତି (ଦେଖ)
Chukuti Chukti (See)

ଚୁକୁରାଇବା—ଗ୍ରା. କ୍ରି. (ଅଶ୍ଳୀଳ)—ଦୁଇଟି ସ୍ତ୍ରୀଲୋକ ପରସ୍ପରକୁ ଆଲିଙ୍ଗନ
Chukurāibā କରି ପରସ୍ପର ଯୋନି-ମଣି ଘର୍ଷଣପୂର୍ବକ ଉଭୟଙ୍କର
चपटीलड़ाइकवा ଇନ୍ଦ୍ରିୟବୃତ୍ତି ଚରିତାର୍ଥ କରିବାର ଚେଷ୍ଟା କରିବା—
**चपटिलढ़ाना;** (two women) To hug each other
**चपटि खेलना** and satiate lust
(ଚୁକୁରଚୁକୁର ହେବା; ଚୁକୁରେଇବା—ଅନ୍ୟରୂପ)

ଚୁକୁରୀ—ଗ୍ରା. ବି. ସ୍ତ୍ରୀ. (ଅଶ୍ଳୀଳ)—ଯେଉଁ ସ୍ତ୍ରୀ ଅନ୍ୟସ୍ତ୍ରୀକୁ ପୁନଃପୁନଃ
Chukurī ଆଲିଙ୍ଗନ ଓ ଚୁମ୍ବନାଦିଦ୍ୱାରା ନିଜର ଇନ୍ଦ୍ରିୟବୃତ୍ତି ଚରିତାର୍ଥ
**चपटबाज; चपटाई** କରେ—A woman addicted to embracing and hugging another woman to satiate lust.

ଚୁକେଇ (ଇତ୍ୟାଦି)—ଚୁକୁଣୀ ଇତ୍ୟାଦି (ଦେଖ)
Chukeī (etc) Chukuṇī etc (See)

ଚୁକ୍କାର—ଦେ. ବି—ସିଂହନାଦ—
Chukkāra Roaring sound.

ଚୁକ୍ତି—ଦେ. ବି. (ସଂ ଚ୍ୟୁତକୃତ; ପ୍ରା. ଚୁକ୍କି ହି. ଶବ୍ଦସାଗର)—
Chukti ୧। ଶେଷ ନିଷ୍ପତ୍ତି—1. Final decision
চুকতি; চুক্তি ୨। ବିବାଦର ମୀମାଂସା ବା ସମାଧାନ—
**चुकता; चुकती; चुक्ति** 2. Settlement of a dispute.
୩। ହିସାବର ବା ଦେୟଦ୍ରବ୍ୟର ବାକି ପରିଶୋଧ; ଋଣାଦିର ଶେଷ ନିଷ୍ପତ୍ତି—3. Final settlement of accounts or payment; liquidation of a loan.
୪। ଅଙ୍ଗୀକାର; କୌଣସି କାର୍ଯ୍ୟ କରିବା ପାଇଁ ଜବାବ୍—
4. Agreement; promise.
୫। ଉଭୟପକ୍ଷଦ୍ୱାରା ସ୍ୱୀକୃତ ଜବାବ—5. Contract.
୬। ଶେଷ; ଅନ୍ତ—6. End; finish.

ଚୁକ୍ତି ଆଇନ୍—ଯେଉଁ ଆଇନରେ ଚୁକ୍ତି ବା ଦୁଇଜଣଙ୍କ ମଧ୍ୟରେ କରାଯିବା
Chukti āin ଜବାବର ବିଧିମାନ ଲିପିବଦ୍ଧ ହୋଇଅଛି—
চুক্তিআইন The Law of Contract.
**चुकतिआईन**

ଚୁକ୍ତିପତ୍ର—ଦେ. ବି—ଅଙ୍ଗୀକାର ପତ୍ର—
Chuktipatra Deed of agreement; deed of contract.

ଚୁକ୍ତିଭଙ୍ଗ—ଦେ ବି—ଅଙ୍ଗୀକାରର ଲଙ୍ଘନ—
Chuktibhaṅga Breach of contract or agreement.

ଚୁକ୍ର—ସଂ. ବି (ଚୁକ୍ ଧାତୁ=ଦୁଃଖଦେବା+କରଣ.ର)—ଚୁକ୍ରକ (ଦେଖ)
Chukra Chukraka (See)

ଚୁକ୍ରକ—ସଂ. ବି (ଚୁକ୍ର+ସ୍ୱାର୍ଥେ. କ)—୧। ଖଟାପାଳଙ୍ଗ ଶାଗ;
Chukraka ଅମ୍ଳବେତସ ଶାଗ—1. A kind of sour sorrel (pot-herb).
୨। ଏକପ୍ରକାର କାଞ୍ଜି—2. A kind of sour gruel.

ଚୁଗୁଡ଼ା—ପ୍ରାଦେ (ସମ୍ବଲପୁର) ବି—ଏକପ୍ରକାର ଛତୁ—
Chugurḍā A kind of mushroom.

ଚୁଗଲ (ଇତ୍ୟାଦି)—ଚୁଗୁଲି ଇତ୍ୟାଦି (ଦେଖ)—
Chugala (etc) Chuguli etc (See)

ଚୁଗୁଲ (ଇତ୍ୟାଦି)—ଚୁଗୁଲି ଇତ୍ୟାଦି (ଦେଖ)—
Chugula (etc) Chuguli etc (See)

ଚୁଗୁଲି—ବୈଦେ. ବି (ଆ. ଚୁଗଲ୍)—ଖଚ; ପଶ୍ଚାତରେ କୌଣସି ବ୍ୟକ୍ତିର
Chuguli ନିନ୍ଦା—Slander; calumny; backbiting
চুক্‌লি; চুগ্‌লি tale-bearing.
**चुगलि; चाड़ि** ଯେଣୁ ଚଗୁଲି ନାନାମତେ କଲେ,
ଅପେ ଚେମଣା ବାରୁ ବାହାଇଲେ। ବ୍ରଜନାଥ. ସମରତରଙ୍ଗ।

ଚୁଗୁଲିଆ—ଦେ. ବିଣ—ଖଚୁଆ; ଯେ ପରୋକ୍ଷରେ ଅନ୍ୟର ନିନ୍ଦାକରେ—
Chuguliā Slanderer.
চুগলে
**चुगल; चुगलखोर**

ଚୁଗୁଲି କରିବା—ଦେ. କ୍ରି—ପରୋକ୍ଷରେ ପରର ବଦନାମ କରିବା—
Chuguli karibā To backbite; to calumniate or
চুকলিখাওয়া slander a person behind his back.
**चुगलिकहना, चाड़िखाना**
(ଚୁଗୁଲିଖାଇବା—ଅନ୍ୟରୂପ)

ଚୁଗୁଲିଖୋର—ବୈଦେ. ବି (ଅ. ଚୁଗଲ୍+ଫା. ପ୍ରତ୍ୟୟ ଖୋର)—
Chugulikhor ୧। ଖଚୁଆ; ଯେ ଖଚ କହେ—
1. A backbiter; slanderer.
**चुगलखोर** ୨। ଯେ ଖଚ କଥା ଶୁଣେ—2. One who gives ear to slanders behind another's back.

ସାଧାରଣ ଲୋକେ ଅପର ପୃଷ୍ଠାରେ ସଙ୍କେତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅଙ୍ଗିଆ ନ ପାଇଲେ 'ଅଙ୍ଗା' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ୍' ଦେଖିବେ ।

ଚୁଙ୍ଗ୍‌ଚୁଙ୍ଗ୍ — ଦେ ବିଣ — ଅସ୍ଥିର —
Chuṅgchuṅg Restive; restless.
চংবং

ଚୁଙ୍ଗ୍‌ଚୁଙ୍ଗ୍ ହେବା — ଦେ. କ୍ରି — ଅସ୍ଥିର ହେବା —
Chuṅgchuṅg hebā To be restive or restless
চংবংকরা

ଚୁଙ୍ଗ୍‌ଚୁଙ୍ଗା — ଦେ. ବିଣ. ପୁଂ — ଚୁଙ୍ଗ୍‌ଚୁଙ୍ଗିଆ (ଦେଖ)
Chuṅgchuṅgā Chuṅgchuṅgiā (See).
(ଚୁଙ୍ଗ୍‌ଚୁଙ୍ଗୀ — ସ୍ତ୍ରୀ)
(ଚୁଙ୍ଗ୍‌ଚୁଙ୍ଗା — ଅନ୍ୟରୂପ)

ଚୁଙ୍ଗ୍‌ଚୁଙ୍ଗା ବୟସ — ଦେ. ବି — ପୂର୍ଣ୍ଣ ଯୌବନ —
Chuṅgchuṅgā bayasa The full bloom of youth.

ଚୁଙ୍ଗ୍‌ଚୁଙ୍ଗିଆ — ଦେ. ବିଣ. ପୁଂ (ସଂ. ରଙ୍ଗ = ଦୀପ୍ତ) — ୧ । ଅସ୍ଥିର; ଚପଳ, ଚଇଁଚଇଁଆ — 1. Restless; unsettled; fickle.
Chuṅgchuṅgiā
(ଚୁଙ୍ଗ୍‌ଚୁଙ୍ଗେଇ — ସ୍ତ୍ରୀ)
(ଚୁଙ୍ଗ୍‌ଚୁଙ୍ଗିଆ — ଅନ୍ୟରୂପ) ଚୁଙ୍ଗ୍‌ଚୁଙ୍ଗିଆ ମାଇକିନିଆ ହାତରେ ନ ଥାଏ ବାଳ ଏ ଚଇଁକି ପଡ଼େ ନ ଶିବ ଖାଇଥିବ ଯେତେକାଳ ଚଗ—
চেঙ্গড়া
**चाँगला**
୨ । ଅଧୀର — 2. Impatient.
୩ । ଯୁବା ଓ ସୁନ୍ଦର — 3. Youthful and handsome.
୩ । ବିଳାସଲୋଲ — 3. Frolicsome; buxom.
୪ । ସୁସ୍ଥ ଓ ସବଳ — 4. Healthy and spirited.
୫ । ନବଯୌବନଯୁକ୍ତ (ବୟସ) —
5. Youthful (age).
୬ । ନବଯୁବକ (ବ୍ୟକ୍ତି) — 7. A person who is in the full bloom of youth.

ଚୁଙ୍ଗ — ଦେ. ବି. (ହି. ଚୋଙ୍ଗା) — ଚୁଙ୍ଗା (ଦେଖ)
Chuṅga Chuṅgā (See)

ଚୁଙ୍ଗା — ଦେ. ବି. (ସଂ. ଚୂର୍ଣ୍ଣୀ = ନଳ) — ୧ । ନଳ; ନଳୀ —
Chuṅgā 1; A long tube
চোঙা ୨ । ବାଉଁଶ ନଳ — 2. A bamboo tube.
**चोंगा** ୩ । ବୋତଲରେ ତୈଳାଦି ପୂରାଇବା ପାଇଁ କ୍ରମଶଃ ସରୁ ହୋଇ ଯାଇଥିବା ନଳୀ; କାହାଳୀ —
(ଚୁଙ୍ଗୀ — କ୍ଷୁଦ୍ରାର୍ଥକ)
3. Cone-shaped funnel for pouring liquids into a bottle
ଦେ. ବିଣ — ଚୁଙ୍ଗ୍‌ଚୁଙ୍ଗିଆ (ଦେଖ)
Chuṅgchuṅgiā (See)

ଚୁଙ୍ଗା ବୟସ — ଦେ. ବି — ନବଯୌବନ —
Chuṅgā bayasa Full bloom of youth.

ଚୁଙ୍ଗି — ଦେ. ବି — ଚୁଙ୍ଗା (ଦେଖ)
Chuṅgi Chuṅgā (See)
ପ୍ରାଦେ. (କାନ୍ଥି) ବି — ଡିବି; ଡିବିରି — A funnel-shaped kerosene lamp without chimney.
ଦେ. ବି — ୧ । ଅଳ୍ପଗୁଣା ମଞ୍ଜିର ଦାନାରେ ବାରୁଦ ଭର୍ତ୍ତି କରି ସେଥିରେ ଗୋଟିଏ ଖଡ଼ିକା ବାନ୍ଧି ଦାବାନଳ ପରି ମାରିଯିବା ବାଣ — 1. A kind of small rocket.
୨ । ନଳୀ; ସାନ ନଳ — 2. Small tube.
୩ । ସାନ ଚିଲମ — 3. A small fire-bowl used for smoking gurḍākhu, ganja etc.
চুংগী ୪ । (ସଂ. ଚତୁରଙ୍ଗୁଳ; ଫା. ଚଂଗାଲ୍; ଯେତିକି ବସ୍ତୁ ହସ୍ତର
**चुंगी** ଆଙ୍ଗୁଠିର ଚିପ ସାହାଯ୍ୟରେ ଉଠାଇ ହୁଏ ଯାଇପାରେ; ପୂର୍ବେ ହାଟକୁ ପଣ୍ୟ ବିକ୍ରି କରିବାକୁ ଆସୁଥିବା ପ୍ରତ୍ୟେକ ପସାରୀମାନଙ୍କଠାରୁ ଜମିଦାର ଚୁଙ୍ଗିଏ ଲେଖାଏଁ ଦ୍ରବ୍ୟ ହାଟତୋଳା ସ୍ୱରୂପ ନେଉଥିବାରୁ) — ସହର ଭିତରକୁ ସହରର ବାହାରୁ ପଣ୍ୟଦ୍ରବ୍ୟ ଆଣିବାକୁ ଅଣିବା ବ୍ୟକ୍ତିଠାରୁ ରାଜା ବା ମିଉନିସିପାଲିଟି ଯେଉଁ ଶୁଳ୍କ ନିଅନ୍ତି —
4. A tax on commodities brougut into a town for sale; octroi.

ଚୁଙ୍ଗିବା — ପ୍ରାଦେ. (ଗଡ଼ଜାତ) କ୍ରି — କୋଡ଼, କୁରାଢ଼ି ଓ ବାଡ଼ି ଆଦିର
Chuṅgibā ବେଣ୍ଟର ଦୁଇ ମୁଣ୍ଡକୁ ଗୋଲ ଓ ସମତୁଲ କରି କାଟିବା — To cut the both ends nicely and evenly of any stick or handle intended for a spade, axe, stick etc.

ଚୁଙ୍ଗି ଭଡ଼କା — ଦେ. ବି. (ବ୍ୟଙ୍ଗ୍ୟାର୍ଥ) — ଗୁଡ଼ାଖୁ ଖାଇବାର ହୁକା;
Chuṅgi bhaṛḍakā (ଯହିଁରେ ଚୁଙ୍ଗି = ନଳୀ, ଓ ଭଡ଼କା = ଭଡ଼ଭଡ଼ ଶବ୍ଦ ଜାତ ହେଉଥିବା ନଡ଼ିଆ ଖୋଳ ଥାଏ) —
A hooka; a hubble-bubble.

ଚୁଙ୍ଗୁଡ଼ି — ଦେ. ବି — ଚିଙ୍ଗୁଡ଼ି (ଦେଖ)
Chuṅgurḍi Chiṅgurḍi (See)

ଚୁଙ୍ଗୁଡ଼ିଆ ଦଳ — ଦେ. ବି — ଚିଙ୍ଗୁଡ଼ିଆ ଦଳ (ଦେଖ)
Chuṅgurḍiā daḷa Chiṅgurḍiā daḷa (See)

ଚୁଙ୍ଗୁଡ଼ି ବାଛୁରି କୁଟୁମ୍ବ — ଦେ. ବି — ଯେଉଁ କୁଟୁମ୍ବରେ ଅନେକଗୁଡ଼ିଏ
Chuṅgurḍi bāchhuri kuṭumba ଛୋଟ ପିଲା ଥାଆନ୍ତି —
A family consisting of a bevy of children.
(ଯଥା — ମୋ ଗୃହକର୍ତ୍ତା ଗଲେ ମୋ ଚୁଙ୍ଗୁଡ଼ି ବାଛୁରି କୁଟୁମ୍ବ ଛିନ୍ନଛିନ୍ନ ହୋଇଯିବେ ।)

ଚୁଚ୍‌କାର — ଦେ. ବି — ଚୁଚୁକାର (ଦେଖ)
Chuchkāra Chuchukāra (See)

ଚୁଚି — ଦେ. ବି. (ସଂ. ଚୂଚୁକ) — ୧ । ଦୁଧଭେଣ୍ଡି; ସ୍ତ୍ରୀସ୍ତନାଗ୍ର —
Chuchi 1 Nipple; teat.
চুঁচি ୨ । ଯୁବତୀସ୍ତନ — 2. The developed
**ढिपनी; ढेपनी** breasts of a youthful woman

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଃ | ଣ୍ଣ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଢ଼ | ନ୍ତ |

**ଚୁଚୁ**—ଦେ. ବି. ( ଧ୍ୱନ୍ୟନୁକରଣ )—୧ । ଚୁଚୁକାର ( ଦେଖ )
Chuchu 1. Chuchukāra ( See )
ଚୁମକୁଡ଼ି; ଚୁକଚୁକ ୨ । ବିରାଡ଼ିକୁ ନିକଟକୁ ଡାକିବାର ଶବ୍ଦ—
**चुचु; चुचुकारी** 2. The sound for calling cats.
ଦେ. ଅ—୧ । ( କୌଣସି ବସ୍ତୁ ବା ଉଦ୍ଦେଶ୍ୟ ନଷ୍ଟ ହେଲେ ବା କୌଣସି ବ୍ୟକ୍ତି ମଲେ ବା ବିପନ୍ନ ହେଲେ ତଜ୍ଜନିତ ଦୁଃଖରେ ଅନ୍ୟ ବ୍ୟକ୍ତିଦ୍ୱାରା ଉଚ୍ଚାରିତ ଶବ୍ଦ ) ହାୟ—
1. (word uttered expressing regret) Alas !
୨ । ( ବିରାଡ଼ି କୁକୁର ଆଦିଙ୍କୁ ପାଖକୁ ଡାକିବା ବେଳେ ବା ପାଳିତ ଜୀବଙ୍କୁ ଗେଲ କଲା ବେଳେ ଉଚ୍ଚାରିତ ଶବ୍ଦ ) ଆସ୍ !—2. Come ! (a word uttered while caressing or calling a pet animal.

**ଚୁଚୁକ**—ସଂ. ବି. ( ଚୁଚୁ=ଶିଶୁ ସ୍ତନ୍ୟପାନ କରିବାର ଅନୁକରଣ ଶବ୍ଦ +କୈ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅ )—
Chuchuka
୧ । ସ୍ତ୍ରୀ ସ୍ତନାଗ୍ର; ଦୁଧଭୁଣ୍ଡି—
1. Nipple of female breast.
୨ । ଦାକ୍ଷିଣାତ୍ୟର ଦେଶବିଶେଷ ( ହି. ଶବ୍ଦସାଗର )—
2. Name of a country of South India.
୩ । ଚୁଚୁକ ଦେଶବାସୀ ବ୍ୟକ୍ତି ( ହି. ଶବ୍ଦସାଗର )—
3 An inhabitant of the Chuchuka country.

**ଚୁଚୁ କରିବା**—ଦେ. କ୍ରି—୧ । ପାଳିତ ପଶୁପକ୍ଷୀ ଆଦିଙ୍କୁ ଗେଲ କରିବା
Chuchu karibā ବା ପାଖକୁ ଡାକିବାପାଇଁ ଜିଭ ଓ ଦାନ୍ତଦ୍ୱାରା
ଚୁମକୁଡ଼ି ଦେଓ୍ୱା; ଚୁକ୍ ଚୁକ୍ କବା ଚୁ ଚୁ ଶବ୍ଦ କରିବା—
**पुचकरना, चुचकारना,** 1. To make a chirping or
**चुमकारना** coaxing sound with the tongue and lips.
୨ । ଅନୁତାପ ବା ଆକ୍ଷେପ ପ୍ରକାଶାର୍ଥ ଜିଭ ଓ ଦାନ୍ତଦ୍ୱାରା ଏକାଧିକ ଥର ଚୁ ଚୁ ଶବ୍ଦ କରିବା—2. To make a chirping sound in expression of regret or grief

**ଚୁଚୁକାର**—ଦେ. ବି—(ସଂ ଚୁଚୁକୃତ)-ଜିଭ ଓ ଦାନ୍ତଦ୍ୱାରା ପବନକୁ
Chuchukāra ଈଷତ୍ ପାଟି ଭିତରକୁ ଟାଣିନେବାଦ୍ୱାରା ଉତ୍ପନ୍ନ
ଚୁମକୁଡ଼ି, ଚୁଚୁକାର ଚୁ ଚୁ ଶବ୍ଦ—Chirping or coaxing
**पुचपुच, चुचकारी** or sucking sound with the tongue and the teeth.

ବହୁକ ଘୋଡାଙ୍କର ଏ ସ୍ୱଭ ଦେଖିଲେ
ଚୁଚୁକାର କରିବା ଘାଟେ ଉଠାଇଲେ—କୃଷ୍ଣସିଂ. ମହାଭାରତ. ବନ ।

ଚୁଚୁକାଲ } ଅନ୍ୟରୂପ
ଚୁଚୁକାଳ }

[ ଦ୍ର—କୁକୁର ବିରାଡ଼ି ଆଦି ପଶୁଙ୍କୁ କଅଁଳେଇ କରି ପାଖକୁ ଡାକିବାବେଳେ ବା ଗେଲ କରିବା ବେଳେ ଓ ଅନୁତାପ ବା ଆକ୍ଷେପ ପ୍ରକାଶ ସମୟରେ ମନୁଷ୍ୟ ଏହି ଶବ୍ଦ କରେ । ପୋଷା ଜୀବ ( ଯଥା—ଘୋଡ଼ା, ପକ୍ଷୀ ) ଆଦିଙ୍କୁ ଆଦର ବା ଗେଲ କଲାବେଳେ ମଧ୍ୟ ଏ ଶବ୍ଦ କରାଯାଏ । ଏ ଶବ୍ଦ ଉପରପାଟିର ଦାନ୍ତମୂଳ ଓ ଜିଭ ସାହାଯ୍ୟରେ ଉଚ୍ଚାରିତ ହୁଏ । ଏ ଧ୍ୱନି କଲାବେଳେ ଓଠ ଖୋଲା ଥାଏ ଓ ଜିଭ ଏବଂ ଦାନ୍ତର ବ୍ୟବଧାନ ବାଟେ ପବନ ପାଟି ଭିତରକୁ ଈଷତ୍ ଟଣାଯାଏ । ଏ ଧ୍ୱନି ଓ ବଧୂମାନେ କରିବା ଚୁଁ ଚୁଁ ମଧ୍ୟରେ ପ୍ରଭେଦ ଏହି କି ବଧୂମାନଙ୍କ ଧ୍ୱନି କୋମଳତର ଓ ଦୀର୍ଘକାଳସ୍ଥାୟୀ । ]

**ଚୁଚୁକାରିବା**—ଦେ. କ୍ରି. ( ଧ୍ୱନ୍ୟନୁକରଣ; ଚୁଚୁ+କୃ ଧାତୁ )—
Chuchukāribā ୧ । ଜିଭ ଓ ଦନ୍ତମୂଳଦ୍ୱାରା ଚୁଚୁ ଶବ୍ଦ କରି
ଚୁମରା; ଚୁମକୁଡ଼ିଦେଓ୍ୱା ବିରାଡ଼ି, ଘୋଡ଼ା, ଶୁଆ ଆଦିଙ୍କୁ ଗେଲ
**चुचकारना; चुमकारना** ବା ଆଦର କରିବା—1. To fondle
(ଚୁଚୁକାଳିବା—ଅନ୍ୟରୂପ) or coax a cat, horse or parrot by uttering a chirping sound of chu chu.
୨ । ( ଲକ୍ଷଣାର୍ଥ ) ଫୁସୁଲାଇବା; କଅଁଳେଇ ସଅଁଳେଇବା; ବଢ଼ଲେଇବା—2. To coax; to cajole.

**ଚୁଚୁକୃତି**—ସଂ. ବି.(ଚୁଚୁ=ଅନୁକରଣ ଧ୍ୱନି+କୃ ଧାତୁ+ଭାବ. କ୍ତି)—
Chuchukruti ୧ । ଚୁଚୁକାର ଶବ୍ଦ—1. Chirping sound.
୨ । ଚୁମ୍ବନଶବ୍ଦ—2. Kissing sound.
୩ । ସ୍ତ୍ରୀ କୁଚାଗ୍ର—3. Nipple or teat of female breast.

**ଚୁଚୁନ୍ଦରା**—ଗ୍ରା ବି. ପୁଂ. ( ସଂ. ଛୁଚ୍ଛୁନ୍ଦରୀ )—ଚୁଚୁନ୍ଦ୍ରା ( ଦେଖ )
Chuchundarā Chuchundrā ( See )
ଛୁଚା ଚୁଚୁନ୍ଦରାକୁ ମାରିଲେ ହାତ ଗନ୍ଧାଏ—ଢଗ ।
**छुछुन्दर**
( ଚୁଚୁନ୍ଦରୀ—ସ୍ତ୍ରୀ )
( ଚୁଚୁନ୍ଦୁରି—ଅନ୍ୟରୂପ )

**ଚୁଚୁନ୍ଦରି**—ଗ୍ରା. ବି—ଚୁଚୁନ୍ଦ୍ରି ( ଦେଖ )
Chuchundari Chuchundri ( See )
( ଚୁଚୁନ୍ଦୁରି—ଅନ୍ୟରୂପ )

**ଚୁଚୁନ୍ଦ୍ରା**—ଦେ. ବି. ( ସଂ. ଛୁଚ୍ଛୁନ୍ଦରୀ; ଚୁଞ୍ଚୁ )—ଗନ୍ଧମୂଷିକ—
Chuchundrā A mole; the musk-rat; musk-shrew;
ସଂ. ଗନ୍ଧନକୁଳ, ରାଜପୁତ୍ରୀ, Sorex Ceoruleses; Crocedura Caerulea.
- ଗନ୍ଧମୂଷିକ
( ଚୁଚୁନ୍ଦ୍ରୀ—ସ୍ତ୍ରୀ ) ନାଗସାପ ଚୁଚୁନ୍ଦ୍ରାକୁ ଧରିବା ନ୍ୟାୟ—ଢଗ ।
ଛୁଚା;ଛୁଁଚୋ
**छुछुन्दर**
[ ଦ୍ର—ଚୁଚୁନ୍ଦ୍ରାର ଦେହର ଗଢ଼ଣ ମୂଷା ପରି, କିନ୍ତୁ ଗୋଡ଼ ଛୋଟ ଏବଂ ଥୋମଣି ଲମ୍ବ ଓ ମୁନିଆଁ । ଏହାର ଦେହର ରଙ୍ଗ ମୂଷାର ଦେହର ରଙ୍ଗ ଅପେକ୍ଷା ଫିକା । ଏହା ଦେହ ସର୍ବଦା ଗନ୍ଧାଉଥାଏ । ଏମାନେ ମାଟିରେ ଗାତ ଖୋଳି ରହନ୍ତି ଓ ଗୃହର ଏବଂ ଉଦ୍ୟାନ ବୃକ୍ଷର ଶତ୍ରୁ ନାନାପ୍ରକାର କୀଟ, ବିଛା, ଜିଆ, ପିମ୍ପୁଡ଼ି, ସମ୍ବାକୁଆ ପୋକ ଆଦିକୁ ଖାଆନ୍ତି । ଏମାନେ ଚିଁ ଚିଁ ବା ଚେଁ ଚେଁ ଶବ୍ଦ କରନ୍ତି ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷଅ' ନ ମିଳିଲେ 'କଥ' ଦେଖିବେ; 'ବର୍ଦ୍ଧି' ନ ପାଇଲେ 'ବର୍ଦ୍ଧି' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଳଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ ।

କଥିତ ଅଛି ଯେ, ଏମାନଙ୍କ ଦେହର ଦୁର୍ଗନ୍ଧରେ ଏମାନେ ବିଚରଣ କରିବା ସ୍ଥାନରେ ସାପ ରହନ୍ତି ନାହିଁ । ମଧ୍ୟ କଥିତ ଅଛି ଯେ, ଯେବେ କଦାଚିତ୍ ନାଗସାପ ଚୁଚୁନ୍ଦ୍ରାକୁ ଆକ୍ରମଣ କରି ଧରେ ତେବେ ସାପ ଅତି ବିବ୍ରତ ହୁଏ, କାରଣ ଚୁଚୁନ୍ଦ୍ରାକୁ ଖାଇଲେ ସାପ ମରିଯିବ ଓ ତାକୁ ଛାଡ଼ିଦେଲେ ସାପ ଅନ୍ଧ ହୋଇଯିବ । ଏଥିପାଇଁ ଲୋକ ଉଭୟ ସଙ୍କଟରେ ପଡ଼ିଲେ 'ନାଗସାପ ଚୁଚୁନ୍ଦ୍ରାକୁ ଧରିବା ନ୍ୟାୟ' ଉକ୍ଷାଣ ଦିଆଯାଏ । ଚୁଚୁନ୍ଦ୍ରା ଗୃହଭିତର ଓ ଗାତଭେଳୀ । ଏମାନେ ନରମ ଭୂଇଁରେ ଗାତ କରି ରହନ୍ତି ଓ କେବେ କେବେ ଘର ଓ ଅଗଣା କୋଣରେ ଜମା ହୋଇଥିବା ଅଳଅ, ଖପରା, ଇଟା, ଚିରିକନା, ଚିରିକାଗଜ ମଧ୍ୟରେ ବସା କରି ରହନ୍ତି । ଚୁଚୁନ୍ଦ୍ରା କୌଣସି ଖାଦ୍ୟଦ୍ରବ୍ୟରେ ମୁହଁ ମାରିଲେ ବା କେତେକ ଅଂଶ ଖାଇଲେ ଉକ୍ତ ଦ୍ରବ୍ୟରେ ଚୁଚୁନ୍ଦ୍ରାର ଦେହର ତୀବ୍ର ଗନ୍ଧ ରହିଯାଏ । କଥିତ ଅଛି ଯେ, ଦାରୁଆ ଖଣ୍ଡାରେ ଚୁଚୁନ୍ଦ୍ରାର ମୁହଁ ବାଜିଲେ ସେ ଖଣ୍ଡା ଆଉ କାଟୁ କରେ ନାହିଁ । ଚୁଚୁନ୍ଦ୍ରା ଭୀତ ହେଲେ ଚେଁ ଚେଁ ଶବ୍ଦ କରେ । ଏହାର ଆଖି ଛୋଟ ଓ ସମ୍ଭବତଃ ଦୃଷ୍ଟିଶକ୍ତି ମଧ୍ୟ କମ୍, କାରଣ ପାଖରେ ମନୁଷ୍ୟ ଚଳପ୍ରଚଳ ହେଉଥିଲେ ମଧ୍ୟ ଏ ଯିବା ଆସିବା କରୁଥାଏ; କିନ୍ତୁ ହୁରୁଡ଼ାଇ ଦେଲେ ଚେଁ ଚେଁ ଶବ୍ଦ କରି ପଳାଏ । ଗର୍ଭିଣୀ ଚୁଚୁନ୍ଦ୍ରାର ଦଂଶନ ମାରାତ୍ମକ । ]

**ଚୁଚୁନ୍ଦ୍ରି**—ଦେ. ବି—୧ । ଏକ ଜାତୀୟ ବାଣ; [ ଚମନଳୀରେ ବାରୁଦ ଭର୍ତ୍ତି କରି ଏହା ପ୍ରସ୍ତୁତ ହୁଏ; ନିଆଁ ଲଗାଇ ଛାଡ଼ି ଦେଲେ ଏହା ଚୁଚୁନ୍ଦ୍ରା ପରି ଭୂଇଁରେ ଏଣେ ତେଣେ ପଳାଇ ବୁଲେ ]—
Chuchundri
ଛୁଁଚା,ଛୁଚୋ
ଛୁଚୁନ୍ଦର
1. A kind of small ground-rocket or fire-work made by enclosing some gunpowder in a cartridge
୨ । ଲିଙ୍ଗର ରୋଗବିଶେଷ—
2. A disease of the penis; Phimosis.

[ ଦ୍ର—ଏହି ରୋଗଦ୍ୱାରା ଲିଙ୍ଗର ଅଗ୍ରଭାଗ ବା ସୁପାରିକୁ ଆବରଣ କରିଥିବା ଚମଡ଼ାର ମୁହଁ ସଂକୀର୍ଣ୍ଣ ହୋଇଯିବାରୁ ଚମଡ଼ା ତଳେ ଲିଙ୍ଗର ସୁପାରି ତଳ ଗଣ୍ଠିର ଗୃହ ପାଖେ ମଇଳା ଜମି ଘାଆ ହୋଇଯାଏ; ମୁସଲମାନ୍‌ମାନଙ୍କ 'ସୁନ୍ନତ୍' ନାମକ ସଂସ୍କାରଦ୍ୱାରା ବାଲ୍ୟକାଳରେ ଲିଙ୍ଗର ଅଗ୍ର ଭାଗକୁ ଘୋଡ଼ାଇଥିବା ଚମଡ଼ା (foreskin ) କଟା ହୋଇ ଯିବାରୁ ସେମାନଙ୍କ ଲିଙ୍ଗାଗ୍ର ବା ସୁପାରି ଖୋଲା ଥାଏ ଏବଂ ସେମାନଙ୍କୁ ଚୁଚୁନ୍ଦ୍ରି ରୋଗ ଧରେ ନାହିଁ । ]

**ଚୁଚୁମା**—ଦେ. ବି. ( ଧ୍ୱନ୍ୟନୁକରଣ କିମ୍ବା ସଂ. ଚୁମ୍ବ ଧାତୁ )—
Chuchumā ୧ । ଜିଭ ଓ ଓଠଦ୍ୱାରା ଶୋଷିବା କର୍ମ—
ଚୁଷା 1. Sucking by the tongue and lips.
**ଚଚୋଡ଼ନା,** ୨ । ଶିଶୁମାନଙ୍କର ଚୁଚୁମିବା ନିମନ୍ତେ ଏକ ପ୍ରକାର କ୍ରୀଡ଼ନକ—2. A play-thing in the
ଚୁଷୀ shape of nipple which the infants suck.

୩ । ଚୁକା ( ଦେଖ )
3. Chukā ( See )
ଦେ. ବିଣ—୧ । ଯେ ଚୁଚୁମେ—1. Sucking.
୨ । ( ଗାଳିରେ ବ୍ୟବହୃତ ) ଚୁକା ( ଦେଖ )
2. Chukā ( See )

**ଚୁଚୁମାଇବା**—ଦେ. କ୍ରି. ( ସଂ ଚୁମ୍ବ ଧାତୁ କିମ୍ବା ଧ୍ୱନ୍ୟନୁକରଣ, ଚୁଚୁମିବାର ଣିଜନ୍ତ ରୂପ )—
Chuchumāibā
ଚୁଷାନ ଅନ୍ୟକୁ ( ଯଥା—ଶିଶୁକୁ ) କୌଣସି ବସ୍ତୁ
**ଚଚୋଡ଼ୱାନା,ଛୁଁ ଯାନା** (ଯଥା—ସ୍ତନାଗ୍ର) ଚୁଚୁମିବାକୁ ଦେବା—
2. To suckle ( e.g. a child ); to cause another to suck
( ଚୁଚୁମେଇବା—ଅନ୍ୟରୂପ )

**ଚୁଚୁମା ଚୁଚୁମି**—ଦେ. ବି. ( ବହୁବାର ସୂଚକ ଦୁଇଥର ପ୍ରୟୋଗ )—
Chuchumā chuchumi ବହୁବାର ଚୁଚୁମିବା କର୍ମ—
Repeated sucking.

**ଚୁଚୁମିବା**—ଦେ. କ୍ରି. (ସଂ. ଚୁମ୍ବ ଧାତୁର ଯଙନ୍ତ ଚୁଚୁମ୍ବ ଧାତୁ=ଅତିଶୟ
Chuchumibā ବା ବାରମ୍ବାର ଚୁମ୍ବନ କରିବା )—
ଚୁଷା ଜିଭ ଓ ଓଠଦ୍ୱାରା ବାରମ୍ବାର ଶୋଷିବା—
**ଚଚୋଡ଼ନା, ଚୋଖନା, ଚୁସନା** To suck ( e.g. mother's milk ).
(ଚୁଚୁମାଇବା—ଣିଜନ୍ତ)
(ଚୁଚୁମା ଯିବା, ଚୁଚୁମା ହେବା—କର୍ମବାଚ୍ୟ)

[ ଦ୍ର—ଚୁମ୍ବନ କରିବା ବସ୍ତୁ ଓଠର ବାହାରେ ଥାଏ, କିନ୍ତୁ ଚୁଚୁମା ଯିବା ବସ୍ତୁକୁ ପାଟିରେ ପୂରାଇ ଦାନ୍ତ ଓ ଜିଭ ସାହାଯ୍ୟରେ ତହିଁରୁ ରସ ଶୋଷଣ କରାଯାଏ । ଚୁଚୁମିବା ଓ ଶୋଷିବା ବା ଚୁଷିବା ମଧ୍ୟରେ ପ୍ରଭେଦ ଏହି ଯେ ଶୋଷିବାବେଳେ କୌଣସି ବସ୍ତୁର ଆଗପାଖ ଅଂଶକୁ ପାଟିରେ ପୂରାଇ ତହିଁରୁ ରସ ଶୋଷଣ କରାଯାଏ, ଯଥା—ଶିଶୁ ମାତୃସ୍ତନକୁ ଶୋଷେ, କିନ୍ତୁ ଚଚୁମିବା ବେଳେ ଚୁଚୁମା ଯିବା ବସ୍ତୁର ଅଧିକ ଅଂଶ ପାଟିଭିତରକୁ ପୁରାଇବାକୁ ହୁଏ । ଯଥା—ଆମ୍ବଟାକୁଆ ଚୁଚୁମିବା । ]

**ଚୁଚ୍ଛା**—ଗ୍ରା. ବିଣ ଓ କ୍ରି. ବିଣ ଓ ବିଣର ବିଣ—ତୁଚ୍ଛା ( ଦେଖ )
Chuchhā Tuchchhā ( See )

**ଚୁଞ୍ଚି**—ଦେ. ବି ( ସଂ. ଚୁଚୁକ )—ଚୁଚି ( ଦେଖ )
Chuñchi Chuchi ( See )

**ଚୁଞ୍ଚୁ**—ସଂ. ବି. ( ଅନ୍ୟ ଶବ୍ଦ ସଙ୍ଗେ ଲାଗିଲେ, ଯଥା—ବିଦ୍ୟାଚୁଞ୍ଚୁ, ଅକ୍ଷରଚୁଞ୍ଚୁ, ନ୍ୟାୟଚୁଞ୍ଚୁ )—୧ । (ଅମୁକ କର୍ମପାଇଁ) ବିଖ୍ୟାତ—1. Famous for a certain thing.
Chuñchu
୨ । (ଅମୁକ ବିଷୟରେ) ପାରଙ୍ଗମ—2. Expert.
ସଂ. ବି—୧ । ଚୁଚୁନ୍ଦ୍ରା ( ହି. ଶବ୍ଦସାଗର )—
1. Mole; shrew.

| ୧ | ଇ | ଉ | ୠ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ୟ | ଡ଼ଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଡ଼ | ନ୍ |

୨ । ବୈଦେହକ ସ୍ତ୍ରୀ ଓ ବ୍ରାହ୍ମଣ ପିତାଠାରୁ ଉତ୍ପନ୍ନ ସଙ୍କର ଜାତିବିଶେଷ ( ହି. ଶବ୍ଦସାଗର )—
2. Name of a mixed caste

ପ୍ରାଦେ. ( ଯାଜପୁର ) ବି—ନଡ଼ିଆ ତେଲ ରନ୍ଧା ହେବା ପରେ ବଳ ପଡ଼ିବା କୋରୁଅ—The dregs left in the pan after cocoanut-juice is boiled and turned into oil.

ଚୁଞ୍ଚୁରି—ଦେ. ବି.—ତିନ୍ତୁଳି ମଞ୍ଜିରେ ଖେଳାଯିବା ଜୁଆ ଖେଳ
Chuñchuri (ହି. ଶବ୍ଦସାଗର)—A kind of game at hazards played with tamarind-seeds.

ଚୁଟ୍‌କା - ପ୍ରାଦେ. (ସମ୍ବଲପୁର) ବି.—୧ । ଗୋଡ଼ର ବୁଢ଼ା ଆଙ୍ଗୁଠିରେ
Chutkā ପିନ୍ଧାଯିବା ଅଳଙ୍କାର; ଚଟୁଲ; ଚୁଟ୍‌କି—1. An ornament worn on the big toe
(ଚୁଟୁକା—ଅନ୍ୟରୂପ)

୨ । ଗୋଡ଼ର ବର୍ଣ୍ଣ ଅଙ୍ଗୁଠିରେ ପିନ୍ଧାଯିବା ରୂପା ବା ପିତଳର ମୁଦିଆ; ଝୁଣ୍ଟିଆ—2 A ring worn on the second finger of the leg.

ଚୁଟ୍‌କି—ଦେ. ବି.—୧ । ସ୍ତ୍ରୀଲୋକମାନେ ବୁଢ଼ା ଆଙ୍ଗୁଠିରେ ଯେଉଁ
Chutki ଘୁଙ୍ଗୁର ଲଗିଥିବା ଏକପ୍ରକାର ମୁଦି ପିନ୍ଧନ୍ତି; ଚଟୁଲ—
चुटकि 1 A kind of tinkling ring worn on the toe
चुटकि by females.
(ଚୁଟୁକି—ଅନ୍ୟରୂପ) ୨ । ମୁଷ୍ଟି ବନ୍ଦ କରି ଅଙ୍ଗୁଠିର ଗଣ୍ଠି ଦ୍ୱାରା
ଠୋନା କରାଯିବା ଆଘାତ; ଠଣା—2. Stroke with the knob
ग of a fisted finger.
चुटकी ୩ । କ୍ଷୁଦ୍ର ଅଂଶ
3. Small particle.

୪ । ଅତି ସାମାନ୍ୟ ଅଂଶ—4 A pinch.

୫ । ବୁଢ଼ା ଆଙ୍ଗୁଠିର ଟିପକୁ ମଧ୍ୟମା ଆଙ୍ଗୁଠିର ଟିପ ଉପରେ
चुटकी, तुड़ी ରଖି ଜୋରରେ ଘଷାଇ ନେଲେ ଯେଉଁ ଶବ୍ଦ ହୁଏ—
5. Snapping of the finger-tips; fillip.

ପ୍ରାଦେ. (ମେଦିନୀପୁର) (ଭୁଲ. ବ. ଚୁଟ୍‌କୀ)—ଚୁରୁକା; ମସ୍ତକର ଶିଖା—Pigtail.

ଦେ. ବିଣ.—ଚୁଟ୍‌କିଆ (ଦେଖ)
Chutkiā (See)

ଚୁଟ୍‌କିଆ—ଦେ. ବିଣ.—୧ । କ୍ଷୁଦ୍ର—
Chutkiā 1. Small.
चुटकी ୨ । ଖର୍ବାକାର—2 Diminutive.
चुटफुट ୩ । ସାମାନ୍ୟ; ଅଳ୍ପ; ବାଜେ (ଯଥା—ଚୁଟ୍‌କିଆ ଖର୍ଚ୍ଚ)—
(ଚୁଟୁକିଆ—ଅନ୍ୟରୂପ) 3. Sundry or miscellaneous (expenses.)

୪ । ଅନାୟାସଗେୟ (ସ୍ୱର)—4. Light (musical air).

ଚୁଟ୍‌କିନି—ଦେ. କ୍ରି. ବିଣ. (ସ୍ପ. ଝଟିତି)—୧ । ଚଞ୍ଚଳ; ଅତିଶୀଘ୍ର—
Chuṭ kini Very soon.
चटकवे ୨ । ହଠାତ୍—2. Suddenly.
झटसे, झटपट (ଯଥା—ସେ ଚୁଟ୍‌କିନି ଆସି ପହଞ୍ଚିଗଲା ।)
(ଚୁଟ୍‌କିନା—ଅନ୍ୟରୂପ)

ଚୁଟ୍‌କୁରିଆ—ଦେ. ବିଣ.—ଚୁଟ୍‌କିଆ (ଦେଖ)
Chuṭkuriā Chuṭkiā (See)
(ଚୁଟୁକୁରିଆ—ଅନ୍ୟରୂପ)

ଚୁଟ୍‌ଚୁଟ୍—ଦେ ଅ. ( ଧ୍ୱନ୍ୟନୁକରଣ )—୧ । ଜଳମିଶ୍ରିତ କୌଣସି କ୍ଷୁଦ୍ର
Chuṭchut ବସ୍ତୁକୁ ନିଆଁରେ ଭାଜିଲେ ତାହା ଯେପରି ଅନୁକୂଳ
चुटचुट ଶବ୍ଦ କରେ—1. Crackling sound of a small
चटचट thing (containing water) while roasted over fire.

୨ । ମୁହୂର୍ତ୍ତକୁ ମୁହୂର୍ତ୍ତ—2. Every moment.

୩ । ଉପର୍ଯ୍ୟୁପରି—3. In quick saccession; at very short intervals; momentarily; repeatedly.
(ଯଥା—ସେ ଚୁଟ୍‌ଚୁଟ୍ ଝାଡ଼ାଫେରି ଦଉଡ଼ୁଛି ।)

ଚୁଟ୍‌ଚୁଟି—ପ୍ରାଦେ. ( ସମ୍ବଲପୁର ) ବି.—( ବାଇଗଣ ଆଦି ) ପୋଡ଼ର
Chuṭchuṭi ଭରତା—Sauce prepared with burnt brinjals and other fruits.

ଚୁଟି—ଦେ. ବି. (ସ. ଚୂଡ଼ା)—୧ । ମସ୍ତକରେ ରଖାଯିବା ଲମ୍ବ କେଶ
Chuti ବା ଶିଖା; ଚୂଡ଼ା—1. Tuft of long hair left on
ঝুঁটি চুটক the head; pigtail.
चोटि, चुटिआ, चुटैया ନଖ କେଶ ରଖି କେଶିର ବ୍ରତ । ଯାତା ପରବେଶୀତା

୨ । କେଶଗୁଚ୍ଛ—2. A tuft of hair.

ପ୍ରାଦେ. (ସମ୍ବଲପୁର) ବି—ଚୁଟିଆମୂଷା; ସାନମୂଷା; ଭୁଙ୍ଗୋଇମୂଷା-
A small rat.

ଚୁଟିଆ—ଦେ. ବିଣ—ଯାହା ମୁଣ୍ଡରେ ଶିଖା ଥାଏ—
Chuṭiā Having a tuft of hair on the head.
ঝুঁটিওয়ালা ବି—୧ । ଚୁଟିଧରି ଟିଙ୍କା—1. Pulling a person
चुटियावाला; चुँड़ित by the tuft of his hair.
चोटिवाला ୨ । ଏକପ୍ରକାର କ୍ଷୁଦ୍ର ମୂଷା—
2. A kind of small rat.

ପୁଣି ସେ ଘରେ ମୂଷା ଥିଲେ, ଚୁଚୁନ୍ଦ୍ରା ଥିଲେ, ଚୁଟିଆ ଥିଲେ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ଚୁଟିଆ ମୂଷା—ଦେ. ବି—ଭୁଙ୍ଗୋଇ ମୂଷା; ଏକପ୍ରକାର କ୍ଷୁଦ୍ର ମୂଷା—
Chuṭiā mūshā A kind of small mouse; the
নেংটীইঁদুর common house-mouse; Mus Musculus
चुहियो ଗୋଖାକ ଚୁଟିଆ ମୂଷାର ଆହାର । ରାଧାନାଥ. ଦରବାର ।

ପ୍ରାଦେ (ବଲୁଚ) ବି—ଗୁଣ୍ଡୁଚିମୂଷା—Squirrel.

**ଚୁଟି ଓହ୍ଲାଇବା**—ଦେ. କ୍ରି—କୌଣସି ବ୍ୟକ୍ତିର ମୁଣ୍ଡକୁ ଓହ୍ଲାଇ ଅର୍ଥାତ୍ ତା ବେକକୁ ନୁଆଇଁ ପିଠିରେ ବିଧା ମାରିବା ପାଇଁ ବାଆଁ ହାତରେ ତା ଚୁଟିକୁ ତଳ ଆଡ଼କୁ ଝିଙ୍କିବା—To pull down a person's head by catching hold of his tuft ( to give blows on the back )

Chuṭi ohaḻaibā

ଚୁଟିଓହଲେଇବା
ଚୁଟିଓହୋଲାଇବା } ଅନ୍ୟରୂପ
ଚୁଟିଓହୋଲେଇବା

**ଚୁଟିକଟା**—ଦେ. ବିଣ. ( ବ୍ୟଙ୍ଗ୍ୟ )—ଲଣ୍ଡା; ଲୂନଶିଖ; ଯାହାର ବାଳ କଟୁଯାଇଥାଏ—(ironical) Having the hairs cropped off.

Chuṭikaṭā

ନେଡ଼ା; ନେଡ଼େ

ବିଣ—ମୁସଲମାନ୍—A Mohamedan.

ପରତେ ନ ଯିବ ଚୋଟିକଟାକୁ
ପରତେ ନ ଯିବ ଚୁଟିକଟାକୁ—ଚଗ ।

**ଚୁଟି ଝିଙ୍କିବା**—ଦେ. କ୍ରି—କୌଣସି ବ୍ୟକ୍ତିକୁ ଦଣ୍ଡଦେବା ନିମନ୍ତେ ତାର କେଶ ଧରି ଘୋଷାରିବା; କେଶାକର୍ଷଣ କରିବା—To catch or drag a man by holding the tuft of his hair.

Chuṭi jhiṅkibā

**चोटियाना**

ବେଗ ବ୍ୟାଜେ କାଳ ଥରେ ଥରେ ଚୁଟି
ଝିଙ୍କି ଦେଲେ, ଏହୁ ଦର୍ପଯାଏ ତୁଟି । ରାଧାନାଥ. ଦରବାର ।

[ ଦ୍ର—ଆଗେ ଆମ ଦେଶରେ ଅଧିକାଂଶ ପୁରୁଷ ଗୋଟିଏ ଲେଖାଏଁ ବାଳ (ଚୁଟି) ମୁଣ୍ଡରେ ରଖୁଥିଲେ । ତଦ୍ୱାରା ଗୋଟାଏ ହାତରେ ଚୁଟିଧରି ଚୁଟିଆ ଲୋକକୁ ଅକ୍ତିଆରରେ ରଖି ଆର-ହାତରେ ତାକୁ ମାରିବାର ବିଶେଷ ସୁବିଧା ହେଉଥିଲା । ଏବକୁ ଅଧିକାଂଶ ଲୋକେ ସଭ୍ୟ ହୋଇ ଲଣ୍ଡା ହେବାରୁ ଲୋକଙ୍କ ଚୁଟି ଧରିବାର ଆଉ ସୁବିଧା ନାହିଁ । ନିତାନ୍ତ ମରହଟ୍ଟି ଓ ଅସଭ୍ୟମାନେ ଅବଧି ଚୁଟିରଖା ଛାଡ଼ି ନାହାନ୍ତି । ]

**ଚୁଟିପିଠି**—ଦେ. ବି. (ସହରର ଶବ୍ଦ)—ଚୁଟି ଓ ପିଠି (ମନୁଷ୍ୟକୁ ମାରିବାର ଦୁଇଟି ସ୍ଥାନ, ଯଥା—୧ ଚୁଟି ଧରିବା, ୨ ପିଠିରେ ବିଧା ଦେବା)—The tuft of hair on the head and the back.

Chuṭipithi

( ଯଥା—ମୋ ଚୁଟି ପିଠି ରହିବ ନାହିଁ, ଅର୍ଥାତ୍ ମତେ ଭାରି ମାଡ଼ ହେବ, ମୋ ମୁଣ୍ଡର କେଶ ଝିଙ୍କା ହେବ ଓ ପୃଷ୍ଠଦେଶରେ ମାଡ଼ ହେବ । )

**ଚୁଟି ରଖିବା**—ଦେ. କ୍ରି—ମୁଣ୍ଡରେ କେଶଗୁଚ୍ଛ ଛାଡ଼ିବା—To allow a tuft of hair to grow on the head.

Chuṭi rakhibā

ঝুঁটিরাখা

**चोटीरखना**

**ଚୁଟି ହାତରେ ପଡ଼ିବା**—ଦେ. କ୍ରି—୧। କୌଣସି ଲମ୍ବ କେଶ ଥିବା ବ୍ୟକ୍ତିର ଶିଖା ଅନ୍ୟ ଲୋକର ମୁଠାରେ ଧୃତ ହେବା—1. The tuft of a person's long hair being caught by another person.

Chuṭi hātare pardibā

ଭଣ୍ଡାର ହାତରେ ପଡ଼ିଛି ଚୁଟି
ସେବକେ କହୁଛି ଚେଣିକ ଉଠି । ଚଗ ।

[ ଦ୍ର—ଚୁଟିଆ ଲୋକଙ୍କୁ ଖିଅର କଲାବେଳେ ତାଙ୍କ ଚୁଟିକୁ ଭଣ୍ଡାରି ବାମ ହାତରେ ମୁଠାଇ ଧରି ଡାହାଣ ହାତରେ ଖିଅର କରେ ।]

**चोटी हाथमे होना** ୨। (ଲକ୍ଷଣାର୍ଥ) ଅନ୍ୟର କାବୁରେ ଆସିବା—2. (figurative) Being under the complete sway of another.

(ଯଥା—ତାଙ୍କଦ୍ୱାରା ମୋର କେତେକ କାର୍ଯ୍ୟୋଦ୍ଧାର ହେବାର ଆଶା ଥିବାରୁ ମୋ ଚୁଟି ତାଙ୍କ ହାତରେ ପଡ଼ିଛି, ସେ ବର୍ତ୍ତମାନ ଯାହା କରିବାକୁ କହିବେ ମୁଁ ତାହା ଭାଙ୍ଗି ପାରିବ ନାହିଁ । )

**ଚୁଡ଼୍‌ଚୁଡ଼୍**—ଦେ. ଅ (ଧ୍ୱନ୍ୟନୁକରଣ)—ଚୁଙ୍ଗୁଡ଼ି ଆଦି ଜଳୀୟାଂଶ ଯୁକ୍ତ ପଦାର୍ଥକୁ ନିଆଁରେ ପକାଇଲେ ଯେଉଁ ଶବ୍ଦ ହୁଏ—Crackling sound of a watery thing being roasted in a naked fire.

Churḏchurḏ

(ଚୁଡ଼ୁଚୁଡ଼ୁ—ଅନ୍ୟରୂପ)

চুরচুর

**चड़चड़**

**ଚୁଡ଼୍‌ମୁଡ଼୍**—ଦେ. ଅ (ଧ୍ୱନ୍ୟନୁକରଣ)—ତଟକା ଚୁଡ଼ାଭଜା ବା ମୁଢ଼ି ଚୋବାଇବା ସମୟରେ ଯେଉଁ ଶବ୍ଦ ହୁଏ—Crackling sound produced while chewing small and crisp things.

Churḏmurḏ

(ଚଡ଼ୁମୁଡ଼ୁ—ଅନ୍ୟରୂପ)

চুড়মুড়

**चुरमुर**

**ଚୁଡ଼ଙ୍ଗ ଗଡ଼**—ଦେ. ବି (ଚୋରଗଙ୍ଗ)—କଟକ ସହରର ୪ ମାଇଲ ଉତ୍ତର ବାରଙ୍ଗ ନିକଟରେ ଥିବା ଗୋଟିଏ ପ୍ରାଚୀନ ଗଡ଼—Name of an ancient fort to the north of Cuttack town.

Churḏaṅga garḏa

**ଚୁଡ଼ଙ୍ଗ ଦହ**—ଦେ. ବି—କଟକର ଉତ୍ତରରେ ୨ କୋଶ ଦୂରବର୍ତ୍ତୀ ସାରଙ୍ଗଗଡ଼ ନିକଟରେ ଅବସ୍ଥିତ ଜଳପୂର୍ଣ୍ଣ ପାଟବିଶେଷ—Name of a fen or marsh to the north of Cuttack town.

Churḏaṅga daha

[ ଦ୍ର—ଏଥିରୁ କଟକ ସହରକୁ ବହୁପରିମାଣରେ ପଦ୍ମ ଫୁଲ, ପଦ୍ମ ପତ୍ର, କଉ, ମାଗୁର ଓ ରଘା ମାଛ ଓ ଶିଂଘଡ଼ା ବିକ୍ରି ହେବାକୁ ଗରିବ ଲୋକେ ଆଣନ୍ତି । ]

**ଚୁଡ଼ଙ୍ଗ ଦେବ**—ଦେ. ବି (ନାମ)—ଚୋରଗଙ୍ଗଦେବ (ଦେଖ) Choragaṅgadeba (See).

Churḏaṅga deba

**ଚୁଡ଼ଙ୍ଗ ବନ୍ଧ**—ଦେ. ବି—ଚୁଡ଼ଙ୍ଗଗଡ଼ଠାରୁ ଭୁବନେଶ୍ୱର ପର୍ଯ୍ୟନ୍ତ ରାଜା ଚୋରଗଙ୍ଗଦେବଙ୍କ ଦ୍ୱାରା କୃତ ଉଚ୍ଚ ଓ ପ୍ରଶସ୍ତ ପଥ ( ବର୍ତ୍ତମାନ ଏହାର ଭଗ୍ନାବଶେଷ ମାତ୍ର ଅଛି )—Name of an embankment (now in ruins) laid by king Choragaṅga Deba from Churḏaṅga fort to Bhubaneśwara.

Churḏaṅga bandha

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଣ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ | ନ୍ |

**ଚୂଡ଼ା**—ଦେ. ବି (ସଂ. ଚିପିଟ, ଚିପୀଟକ; ପ୍ରା. ଚିବିଡ଼ା)—ବତୁରା ଧାନକୁ
Churḍā ସାମାନ୍ୟରେ ଭାଜି, କୁଟି ତହିଁରୁ ପ୍ରସ୍ତୁତ କରିବା ପତଳା
ଚିଡ଼େ ଖାଦ୍ୟ—Flattened and parched rice.
**चिउड़ा; चिड़ुआ**

[ ଦ୍ର— ଧାନକୁ ବତୁରାଇ ସେହି ବତୁରା ଧାନକୁ ହିକିଏ ଉଷାଇ ସଙ୍ଗେସଙ୍ଗେ ଢିଙ୍କିରେ କୁଟିଲେ ଧାନମଧ୍ୟସ୍ଥ ବତୁରା ଚାଉଳ ଚେପଟା ହୋଇଯାଏ; ତତ୍ପରେ ଉକ୍ତ କୁଟା ଧାନକୁ ପାଛୁଡ଼ିଦେଲେ ସେଥିରୁ ଧାନ ଚୋପା ( ତୁଷ ) ବାହାରିଯାଇ ଚେପଟା ଚାଉଳ ରହେ; ଏହାକୁ ଚୂଡ଼ା କହନ୍ତି । ଏହାକୁ ପାଣିରେ ବତୁରାଇଲେ ଏହା ନରମ ହୋଇଯାଏ ଓ ଏହାକୁ ନ ସିଝାଇ ବା ନ ରାନ୍ଧି ଖିଆଯାଏ । ସରୁ ଧାନରୁ ସରୁ ଚୂଡ଼ା ହୁଏ, ବଗଡ଼ା ବା ମୋଟ ଧାନରୁ ବଗଡ଼ା ବା ମୋଟ ଚୂଡ଼ା ହୁଏ । ଚୂଡ଼ା କୁଟିବା କେଉଟୁଣୀମାନଙ୍କ ଜାତୀୟ ବ୍ୟବସାୟ । ଯେଉଁମାନେ ଉପବାସ ଓ ଶ୍ରାଦ୍ଧ କରନ୍ତି ସେମାନେ କେଉଟୁଣୀଙ୍କଦ୍ୱାରା ଉଷୁଆଁ ଧାନର ଚୂଡ଼ା ( ଉଷୁନା ଚୂଡ଼ା ) ନ ଖାଇ ଉଷୁଆ ନ ହୋଇ କେବଳ ବତୁରା ଧାନରୁ ପ୍ରସ୍ତୁତ ଚୂଡ଼ା (ଅରୁଆ ଚୂଡ଼ା) ଖାଆନ୍ତି । କିନ୍ତୁ ଉଷୁନା ଓ ଅରୁଆ ଚୂଡ଼ାର ସ୍ପଷ୍ଟ ପ୍ରଭେଦ ଆଖିକୁ ଦେଖା ନ ଯିବାରୁ ଚୂଡ଼ା ଉଷୁନା କି ଅରୁଆ ଏ ତଥ୍ୟ ପାଇଁ କେଉଟୁଣୀଙ୍କ ମୁହଁକଥା ଉପରେ ନିର୍ଭର କରାଯାଏ । ଚୂଡ଼ାକୁ ଗୁଡ଼ ଓ ଦହି ସଙ୍ଗେ ଚକଟି କିମ୍ବା ଚୂଡ଼ାଘସା କରି, କିମ୍ବା ଚୂଡ଼ାଭଜା କରି କିମ୍ବା ଖିରି କରି ଖିଆଯାଏ । ]

ପ୍ରାଦେ (ମେଦିନୀପୁର) ବି ( ସଂ. ଚୂଡ଼ା ) ସ୍ତ୍ରୀଲୋକମାନେ ମୁଣ୍ଡରେ ପିନ୍ଧିବା ରୂପା ଚିରୁଣୀ—Silver comblike ornament for the chignon.

**ଚୂଡ଼ାକୁଟି**—ଦେ. ବି—ଏକପ୍ରକାର ବୁଦାଳିଆ ଘାସ (ଏହା ଧାନ ବିଲରେ
Churḍākuti ଜନ୍ମେ)—A kind of bushy weed growing in paddy-fields.

[ ଦ୍ର—ଏହାର ଚେର ଏଡ଼େ ଶକ୍ତ ଯେ ଦାଆର ମୂନରେ ଏହାକୁ ନ ଉଖାରିଲେ ଏ ଉପୁଡ଼େ ନାହିଁ । ]

**ଚୂଡ଼ା କୁଟିବା**—ଦେ. କ୍ରି—ଧାନକୁ ଓଦା କରି ଓଦା ଅବସ୍ଥାରେ ଉଷାଇଁ,
Churḍā kuṭibā କୁଟି ତହିଁରୁ ଚୂଡ଼ା ବାହାର କରିବା—To flatten paddy into 'churḍā' by pounding or beating.

**ଚୂଡ଼ା ଚାଉଳ**—ଦେ. ବି ( ସହରର ଶବ୍ଦ )—ଜଳଖିଆ ପାଇଁ ଚୂଡ଼ା ଓ
Churḍā chāuḷa ରୋଷାଇ ପାଇଁ ଚାଉଳ ( ଯାହାକୁ ଲୋକେ ବିଦେଶ ଗଲାବେଳେ ସଙ୍ଗରେ ବାନ୍ଧି ନିଅନ୍ତି) ଚୂଡ଼ା
ଚିଡ଼େଚାଲ ଓ ଚାଉଳ—Parched rice and rice carried by a person going abroad.

ମୁଁ ଘରୁ ଚୂଡ଼ା ଚାଉଳ ବାନ୍ଧି ଅଣିଅଛି—ଫକୀରମୋହନ. ଛମାଣଆଠଗୁଣ୍ଠ ।

**ଚୂଡ଼ାଦହି**— ଦେ. ବି (ଓ. ଦ୍ୱନ୍ଦ୍ୱ ସମାସ, ଚୂଡ଼ା+ଦହି )—୧ । ଖାଦ୍ୟାର୍ଥ
Churḍādahi ବ୍ୟବହୃତ ଚୂଡ଼ାମିଶ୍ରିତ ଦହି—1. Parched
ଚିଡ଼େଦହି rice and curd ( and molasses ) mixed together.

୨ । ସାମାଜିକ ବା ଧର୍ମାନୁଷ୍ଠାନ ଉପଲକ୍ଷରେ ବ୍ରାହ୍ମଣଭୋଜନ
ଫଲାହାର; ଫଲାବ ( ଚୂଡ଼ା ଓ ଦହି ଯହିଁର ପ୍ରଧାନ ଉପାଦାନ)—2. Feeding the Brahmans on occasions of social and religious ceremonies ( the chief ingredients of which are churḍā and dahi).

**ଚୂଡ଼ାଦହିଆ**—ଦେ. ବିଣ (ବ୍ୟଙ୍ଗ୍ୟାର୍ଥ)—୧ । ଯେଉଁ ବ୍ରାହ୍ମଣମାନେ ଅନ୍ୟର
Churḍādahiā ଘରକୁ ଆମନ୍ତ୍ରିତ ହୋଇ ଚୂଡ଼ା ଓ ଦହି
ଫଲାବେ ଖାଇବାକୁ ଯାଆନ୍ତି—1. (Brahmans) attending a feast for feeding Brahmans with churḍā and dahi.

୨ । ଚୂଡ଼ାଦହି ପ୍ରିୟ—2. Fond of taking 'churḍā and dahi at a feast.

**ଚୂଡ଼ାଭଜା**—ଦେ. ବି—ଚୂଡ଼ାକୁ ଭାଜି ତିଆର କରିବା ଖାଦ୍ୟ; ହୁଡ଼ୁମ୍ବ
Churḍābhajā ( ଏହା ଲଘୁ ଖାଦ୍ୟ )—Fried parched
ଚିଡ଼େଭାଜା rice (this is light food.)

[ ଦ୍ର—ଦରକୁଟା ଚୂଡ଼ା ଓଦା ଥାଉଁଥାଉଁ କେଉଟଣୀମାନେ ତାକୁ ଭାଜିଲେ ତାହା ହୁଡ଼ୁମ୍ବ ହୁଏ । କିନ୍ତୁ ଚୂଡ଼ା ଶୁଖିଯିବା ପରେ ଆମ୍ଭେମାନେ ତାକୁ ଘରେ ଭାଜିଲେ ତାହା ଚୂଡ଼ାଭଜା ହୁଏ । ହୁଡ଼ୁମ୍ବ ଚୂଡ଼ାଭଜା ଅପେକ୍ଷା ଫୁଲୁକା ଓ ଫମ୍ପା ଏବଂ ଏହା ଚୂଡ଼ା-ଅପେକ୍ଷା ଲଘୁତର ଖାଦ୍ୟ । ]

**ଚୂଡ଼ି**—ଦେ. ବି ( ସଂ. ଚୁଡ଼ା=ବାହୁଭୂଷଣ—ଯୋଗେଶ୍ଚନ୍ଦ୍ର )—
Churḍi ୧ । ସ୍ତ୍ରୀଲୋକମାନଙ୍କର ହାତରେ ପିନ୍ଧିବା ଚଟକା ଓ
চুড়ী ପତଳା ଅଲଙ୍କାରବିଶେଷ—1. Choorie; a kind
**चूड़ी** of flat and broad bracelet used by females.

ରଙ୍ଗ ହିନ୍ଦୁର ରଙ୍ଗଚୂଡ଼ି, ଦେବୁ ଗୋ ରଙ୍ଗ ପାଟଶାଢ଼ୀ—ଭୂପତି. ପ୍ରେମପଞ୍ଚାମୃତ ।

[ ଦ୍ର—ବଙ୍ଗଦେଶରେ ଓ ହିନ୍ଦୁସ୍ଥାନରେ ଯାହାକୁ ଚୁଡ଼ି ବୋଲି ବୋଲାଯାଏ ତାହା ଓଡ଼ିଶାର 'କାଚ' ଅଟେ ଏବଂ ତାହା ସୁନା ବା ରୁପାର ସରୁ ଓ ପତଳା ବଳୟ ଅଟେ । ପ୍ରତି ହାତରେ ଏକାଧିକ ପଟି ଉକ୍ତ ଚୂଡ଼ି ପିନ୍ଧାଯାଏ । କିନ୍ତୁ ଓଡ଼ିଶାରେ ଆମେ ଯାହାକୁ ଚୂଡ଼ି କହୁଁ ତାହା ପ୍ରତି ହାତରେ ପଟେ ଲେଖାଏଁ ପିନ୍ଧାଯାଏ ଓ ତାହା କଚଟି ଠାରୁ କହୁଣୀ ଆଡ଼କୁ ୩।୪।୫।୬।୭।୮।୯।୧୦।୧୧।୧୨। ଅଙ୍ଗୁଳି ପର୍ଯ୍ୟନ୍ତ ସ୍ଥାନ ଅଧିକାର କରି ଥାଏ । ]

୨ । କମିଜର ହସ୍ତପ୍ରାନ୍ତର ପଟି; କଫ୍—2. Cuff of the sleeve of a shirt; the fold at the end of a sleeve.

୩ । ସ୍ତ୍ରୀଲୋକମାନଙ୍କ ହାତରେ ପିନ୍ଧାଯିବା ପତଳା ପତଳା କାଚ ବା ଧାତୁର ଖଡ଼ୁ—3. Small bangles worn by females on the hand.

ସାଧାରଣ ଲୋକେ ଅପର ଦୃଷ୍ଟାରେ ଦେଖାଇ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୪ । (ଦେଶି ଗୁଆ ବ୍ୟବସାୟରେ ଗୁଆ ସୁମାରି କରାଯିବା ସଂଖ୍ୟା ବିଶେଷ ) ୯ ପଣ ବା ୭୨୦ ଗୋଟା ( ଗୁଆ )—
4 A unit of 720 areca-nuts

୫ । ଗ୍ରାମୋଫୋନ୍ ଯନ୍ତ୍ରରେ ଲଗାଯିବା ରେକର୍ଡ଼—
5. Gramophone record

[ ଦ୍ର— ପୂର୍ବେ ଫନୋଗ୍ରାଫ୍ ଯନ୍ତ୍ରରେ ଚୁଡ଼ି ଆକାରର ରେକର୍ଡ ଲଗାଯାଇ ବଜା ଯାଉଥିଲା । ବର୍ତ୍ତମାନ ଗ୍ରାମୋଫୋନ୍ ରେକର୍ଡ଼ ଆବିଷ୍କାର ହେବା ପରେ ଗ୍ରାମୋଫନ୍ ରେକର୍ଡ଼ ଚୁଡ଼ି ଆକାରର ନ ହେଲେ ମଧ୍ୟ ଫନୋଗ୍ରାଫ୍ ରେକର୍ଡ଼ର ଚୁଡ଼ି ବ୍ୟବହାର ଅନୁସାରେ ଏହାକୁ ମଧ୍ୟ କେହି କେହି ଚୁଡ଼ି କହନ୍ତି । ]

**ଚୁଡ଼ିଆ**—ଦେ. ବି—୧ । (ସଂ. ଚୂଡ଼ା) ମୁଣ୍ଡରେ ଚୁଳଥିବା ଏକପ୍ରକାର Churḍiā ଯୁଦ୍ଧପ୍ରିୟ ପକ୍ଷୀ; ଗୋବର୍ ଗଡ଼େଇ; ଚୁଳିଆ—
1. A kind of tufted bird which loves fighting with another of its kind.

୨ । (ସଂ. ଚେଲ୍ଲ) ଏକପ୍ରକାର ଓଢ଼ଣୀ—
2 A kind of veil or wrapper.

୩ । ( ସଂ. ଚେଲ୍ଲକ ) ଏକପ୍ରକାର ଚୁଡ଼ିପରି ଚିତ୍ରିତ ଧଡ଼ି ଥିବା (ଲମ୍ବ ଓ ଓସାର) ଲୁଗାଯୋଡ଼—3. A pair of cloths, (very broad and long.

**ଚୁଡ଼ିଆ ଫେଟା**—ଦେ. ବି.—(ଏହା ରଣପୁର ଓ ଢେଙ୍କାନାଳର ମାଣିଆ-Churḍiā pheṭā ବନ୍ଧ ଆଦି ସ୍ଥାନରେ ବୁଣାଯାଏ) ଖୁବ୍ ଲମ୍ବ ଓ ଚଉଡ଼ା ଧଡ଼ିବାଲୁ ଲୁଗା—Long and broad bordered wearing cloth.

**ଚୁଡ଼ିତିଆ**—ପ୍ରାଦେ. (ଗଞ୍ଜାମ) ବି. ପୁଂ.—(ଏମାନେ ଚୁଡ଼ା କୁଟୁଥିବାରୁ) Churḍitiā କେଉଟ ବା ଲିଆରି ଜାତି-(ଗୋପୀନାଥ ନନ୍ଦ)—(ଚୁଡ଼େଇତିଆଣୀ—ସ୍ତ୍ରୀ) A caste of Hindus who prepare parched rice.

**ଚୁଡ଼ିଦାର୍ କମିଜ**—ଦେ. ବି.—ଯେଉଁ କମିଜର ହାତରେ କଫ୍ ଥାଏ—Churḍidār kamija Cuffed shirt; shirt with sleeves having cuffs.
चुड़िदार
**चूड़ीदार**

**ଚୁଡ଼ିପାଡ଼୍**—ଦେ. ବି.—ଯେଉଁ ଲୁଗାର ଧଡ଼ି ଚୁଡ଼ିପରି ଚିତ୍ରିତ ହୋଇ Churḍipārḍ ଥାଏ—(cloth) Having its borders pictured like the churḍi.
चुड़िपाड़
(ଚୁଡ଼ିପାଡ଼ୁ—ଅନ୍ୟରୂପ)

**ଚୁଡ଼ି ଶୀତଳେଇବା**—ଦେ. କ୍ରି. (ଶୁଭବାଚକ)—ହାତରୁ ଚୁଡ଼ି ଓହ୍ଲାଇବା Churḍi Sītaḷeibā ବା କାଢ଼ିଦେବା—(euphemism) To put off the chooree from the hand.
चुड़िशीतलान
**चूड़ियाँ बढ़ाना** [ଦ୍ର—ଖଡ଼ୁ ଓ ଚୁଡ଼ି ସ୍ତ୍ରୀଲୋକମାନଙ୍କର ସଧବା ଥିବାର ଚିହ୍ନ ଥିବାରୁ, ଏହାକୁ କାଢ଼ିବା କଥା ନ କହି ଶୀତଳେଇବା ଶବ୍ଦ ସ୍ତ୍ରୀଲୋକମାନେ କହନ୍ତି । ]

**ଚୁଡ଼ୁଚୁଡ଼ା**—ଦେ. ବି.—କୌଣସି ଜଳୀୟାଂଶ ଥିବା ପଦାର୍ଥ ଖରା ବା Churḍuchurḍā ନିଆଁରେ ପଡ଼ି ଧଡ଼୍‌ଧଡ଼୍ ହୋଇ ଶୁଖି ଯିବା—Drying up in the sun or fire (said of a thing containing water
**चिड़्‌चिड़ा**

**ଚୁଡ଼ୁଚୁଡ଼ା କେନ୍ଦୁ**—ପ୍ରାଦେ (ଗଞ୍ଜାମ) ବି.–ଧାନ କେନ୍ଦୁ—A small Churḍuchurḍā kendu variety of Kendu tree.

**ଚୁଡ଼େଇତିଆଣୀ**—ପ୍ରାଦେ ( ଗଞ୍ଜାମ )—ବି —(ଚୁଡ଼ା କୁଟିବା ଓ Churḍeitiāṇi ବିକିବାରୁ ) ଚୁଡ଼ିତିଆ ଜାତିର ସ୍ତ୍ରୀଲୋକ; କେଉଟୁଣୀ—A woman of the Churḍitiā caste.

**ଚୁଣ୍ଟା**—ଦେ. ବି.—ବୋତଲ ମୁହଁ ବା ଅନ୍ୟ ଛିଦ୍ର ମୁଦିବାପାଇଁ ଦିଆଯିବା Chunṭā (ପାଳ ବା ଚିରିକନାର) ବିଣ୍ଡା—A rolled bundle ( of straw or rags ) used as a gag or cork to stop the mouth of a jar or a hole.
गौंज

**ଚୁଣ୍ଟା ଦେବା**—ଦେ. କ୍ରି —ବିଣ୍ଡାରେ ମୁହଁ ବନ୍ଦ କରି ଦେବା—Chunṭā debā To gag.
गौंजदेओया
(ଚୁଣ୍ଟା ମାରିବା—ଅନ୍ୟରୂପ)

**ଚୁଣ୍ଟି**—ପ୍ରାଦେ. (ସମ୍ବଲପୁର) ବି — ଚୁଟି (ଦେଖ)
Chunṭi Chuṭi (See)

**ଚୁଣ୍ଟିବା**—ପ୍ରାଦେ. ( ସମ୍ବଲପୁର ଓ ଗଞ୍ଜାମ ) କ୍ରି —ଖାଇବା; ଖାଦ୍ୟକୁ Chuntibā ଚିଳେପକାଇବା—To eat voraciously.

ପଢ଼ିଥିବା ଅଇଁଠ ଭାତ ଥିଲେ ଚୁଣ୍ଟି,
ପେଟକୁ ତୋଷ କଲେ ତାହା ଦେଇ ଚୁଣ୍ଟି । କୃଷ୍ଣସିଂହ, ମହାଭାରତ, ବିରାଟ ।

ପ୍ରାଦେ. (ଗଡ଼ଜାତ) କ୍ରି.—ଭେଜ଼ିଦେବା; ପୂରାଇ ଦେବା—
To put in; to thrust in.

**ଚୁତଲ୍**—ପ୍ରାଦେ. (ସମ୍ବଲପୁର) ବି.—(ଭୁଲ ହି. ଚୂତଡ଼୍; ସଂ. ଚ୍ୟୁତ= Chutal ଭଗ; ଚୁତ=ଗୁଦଦ୍ୱାର)—୧ । ଗାଣ୍ଡି; ପିଚ୍ଛ—
1. Buttocks.

୨ । ଗୁହ୍ୟଦ୍ୱାର—2. Anus.

**ଚୁତିଆ**—ଦେ. ବି.—୧ । କମାରଙ୍କ ସଣ୍ଡୁଆସି—
Chutiā 1. Pincers; forceps.

୨ । ଛୋଟ ହାତୁଡ଼ି—2. A small hammer.

ଦେ. ବିଣ. (ଗାଳି); (ହି ଚୁତିୟା=ମୂର୍ଖ; ସଂ. ଚୁତ= गुदद्वार)—୧ । ପାଜି—1. Rascal.
लोच्चा
**चूतिया**

୨ । କୁଳାଙ୍ଗାର—2. Unworthy or evil (person).

୩ । ଧୀଠ—3 Pertinacious; stubborn.

୪ । ମୂର୍ଖ—4. Illiterate.

**ଚୁଦ୍** (ଧାତୁ)—ସଂ - ୧ । ପ୍ରବର୍ତ୍ତାଇବା—
Chud (rood) 1. To impel; to incita; to urge.

୨ । ଉତ୍ତେଜିତ କରିବା; ମତାଇବା—
2. To inspire; to excite.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଞ୍ଚ | ଙ୍ଘ | ତ୍ଥ | ଞ୍ଜ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଥ | ଞ୍ଚ | ନ୍ତ |

୩ । ଅନୁରୋଧ ବା ପ୍ରାର୍ଥନା କରିବା—
3 To request; to solicit; to pray.
୪ । ଆଦେଶ କରିବା—4. To enjoin; to direct.
୫ । ଅଳି କରିବା; ଯିଦ୍ଦ କରିବା—
5. To importune; to press with a request.
୬ । ପହଜାଇବା; ଦାଢ଼ୁଆ କରିବା—
6. To whet, to sharpen (M W )
୭ । ଅଡ଼ାଇବା—7. To goad; to drive (M. W.)
୮ । ନିମନ୍ତ୍ରଣ କରିବା—8. To invite (M. W )
୯ । ଅନ୍ୱେଷଣ କରିବା—9 To seek after.

ଚୁନ୍‌ଚୁନ୍ କରିବା—ଦେ. କ୍ରି—ଚୂନାଇବା ( ଦେଖ )
Chunchun kariba Chūnāibā ( See )

ଚୁନ୍‌ଚୁନିଆ—ଦେ. ବି ଓ ବିଣ—ଚୂନାଚୂନା ( ଦେଖ )
Chunchuniā Chūnā chūnā ( See )

ଚୁନ (ଇତ୍ୟାଦି)—ଦେ. ବି—ଚୂନ ଇତ୍ୟାଦି ( ଦେଖ )
Chuna (etc) Chūna etc ( See )

ଚୁନଟ୍—ଦେ. ବି. ( ସଂ. ଚୟନ )—୧ । ବସ୍ତ୍ରାଦିର କୁଞ୍ଚା; କୁଞ୍ଚ—
Chunaṭ 1. Curling of cloth into artistic
ଚୁନାଟ folds; making wrinkles in a cloth.
ଚୁନାଟ୍ } ଅନ୍ୟରୂପ ୨ । କୁରୁତା ଇତ୍ୟାଦିରେ ଯେଉଁ କୁଞ୍ଚା କନାରେ
ଚୂନାଟ୍ ସିଲାଇ କାମ କରାଯାଏ—
2. Frills; ruffle.

ଚୁନପତର—ଗ୍ରା. ବି. ( ସଂ. ଚୂର୍ଣ୍ଣ+ପତ୍ର )—ଚୂନପତ୍ର ( ଦେଖ )
Chunapatara Chūnapatra ( See )

ଚୁନା (ଇତ୍ୟାଦି)—ଗ୍ରା ବି. ( ସଂ. ଚୂର୍ଣ୍ଣ )—ଚୂନା ଇତ୍ୟାଦି ( ଦେଖ )
Chunā (etc) Chūnā etc. ( See )

ଚୁନି—ଦେ. ବି. ( ସଂ ଚୂର୍ଣ୍ଣ )—ମାଣିକ; ପଦ୍ମରାଗ ମଣି—
Chuni Ruby.
ଚୁନୀ ଦେ. ବି ଓ ବିଣ—ଚୂନି ( ଦେଖ )
चुन्नी Chūni ( See )

ଚୁନି ଚୁନି—ଦେ. ବି ଓ ବିଣ - ଚୂନାଚୂନା ( ଦେଖ )
Chuni chuni Chūnāchūnā ( See )

ଚୁନିଦା—ଦେ. ବିଣ. ( ସଂ. ଚୟନ; ହି. ଚୁନ୍‌ନା=ବାଛିବା; ତୁଳ. ଫା. ଚାଂଦାଦ୍=ବଛା )—
Chunidā
ବାଛା ୧ । ବହୁ ବସ୍ତୁ ବା ବ୍ୟକ୍ତି ମଧ୍ୟରୁ ବଛା ହୋଇଥିବା—
चुनिन्दा 1. Chosen; selected.
(ଚୁନ୍‌ଦା—ଅନ୍ୟରୂପ) ୨ । ଉତ୍କୃଷ୍ଟ—2 Excellent.
୩ । ପ୍ରଧାନ, ମୁଖ୍ୟ—3 Chief; principal.

ଚୁନକୋଳି—ଗ୍ରା. ବି - ଚୂନକୋଳି ( ଦେଖ )
Chunakoḷi Chūnakoḷi ( See )

[ ଦ୍ର—ଚୂନ ଶବ୍ଦର ପ୍ରଥମ ଅକ୍ଷର ଊକାରାନ୍ତ ଥିବାରୁ ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହେଲେ ଉଚ୍ଚାରଣ ବେଳେ ଚୂନ ସ୍ଥାନରେ 'ଚୁନୁ' ଉଚ୍ଚାରଣ ସ୍ୱଭାବତଃ ହୋଇଯାଏ । ତୁଳ. ଚୁନୁଖାଇ, ଚୁନୁଦାନି, ଚୁନୁପତର । ]

ଚୁନୁଖାଇ—ଗ୍ରା. ବି—ଚୂନଦାନି ( ଦେଖ )
Chunukhāi Chūnadāni ( See )

ଚୁନୁଚୁନିଆଁ—ଦେ ବି ଓ ବିଣ—ଚୂନାଚୂନା ( ଦେଖ )
Chunuchuniāṅ Chūnāchūnā ( See )

ଚୁନୁଦାନି—ଗ୍ରା. ବି—ଚୂନଦାନି ( ଦେଖ )
Chunudāni Chūnadāni ( See )

ଚୁନୁପତର—ଗ୍ରା ବି—ଚୂନପତ୍ର ( ଦେଖ )
Chunupatara Chūnapatra ( See )

ଚୁନୁରା—ଗ୍ରା. ବି—ଚୂନରା ( ଦେଖ )
Chunurā Chūnarā ( See )

ଚୁନ୍ଦ (ଧାତୁ)—ସଂ—ବିଜ୍ଞାପନ ଦେବା—
Chunda (root) To advertise.

ଚୁନ୍ଦି—ପ୍ରାଦେ. (ଲରିଆ) ବି—କେଶ; ବାଳ—
Chundi Hair.

ପ୍ରାଦେ (ସମ୍ବଲପୁର) ବି. (ତୁଳ. ହି. ଏହି ଅର୍ଥରେ ଚୁନ୍ଦୀ)—ଚୁଟି; ଶିଖା—Chignon; pigtail; a tuft of long hair left on the middle of the head.

ଚୁନ୍ଦିବା—ପ୍ରାଦେ. (ଗଡ଼ଜାତ) କ୍ରି—କାଠରେ କଛି ପଦାର୍ଥ ଗଢ଼ିବା—
Chundibā To do some wood-work.

ଚୁନ୍ଦୀ—ସଂ. ବି. ସ୍ତ୍ରୀ. ( ଚୁଦ୍ ଧାତୁ=ଅନ୍ୱେଷଣ କରିବା, ପ୍ରବର୍ତ୍ତାଇବା, ମଜାଇବା+କର୍ତ୍ତୃ. ଅ+ସ୍ତ୍ରୀ. ଈ; ନ ଆଗମ )—ଦୂତୀ; କୁଟ୍ଟିନୀ—A procuress.
Chundī

ଚୁପ୍—ଦେ. ଅ. ( ଅନାଦରାର୍ଥ )—(ସଂ. ଚୁପ ଧାତୁ=ମୌନ ହେବା-
Chup ହି. ଶବ୍ଦସାଗର; ହି. ଚୁପ୍=ନୀରବ; ଗୋପନ, ଗାଳରେ
ଚୁପ ବ୍ୟବହୃତ )—ପାଟି ବନ୍ଦକର; ତୁନି ହୋ—
चूप Shut up your mouth ! hush !

[ ଦ୍ର—ଏହା ନିମ୍ନତର ବ୍ୟକ୍ତିଙ୍କ ପ୍ରତି ବ୍ୟବହୃତ ହୁଏ ଓ ତାଚ୍ଛଲ୍ୟାର୍ଥେ ବ୍ୟବହୃତ ହୁଏ । ]
ବି—ମୌନ—Silence,
ବିଣ—ନୀରବ—Silent.

ଚୁପ୍ କରି—ଦେ. କି. ବିଣ—୧ । ନୀରବରେ—1 Silently.
Chup kari ୨ । ଅନ୍ୟଦ୍ୱାରା ଅତର୍କିତ ଭାବରେ; ଗୁପ୍ତରେ—
ଚୁପକରେ 2 Without the knowledge of
चुपकरके, चुपकेसे another; secretly.

ଚୁପ୍ କରିବା—ଦେ. କ୍ରି—୧ । ( ଅକର୍ମକ ) ମୌନାବଲମ୍ବନ କରିବା; ନୀରବ ହେବା—1. To keep silent
Chup karibā
ଚୁପକବା ୨ । କଥା ବନ୍ଦ କରିବା—2. To stop talking.
चुपकरना ୩ । ନିଶ୍ଚଳ ହେବା—3. To keep quiet

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାର' ନ ମିଳିଲେ 'ଗାଡ଼' ଖୋଜିବେ; 'ଭୂଅ' ନ ମିଳଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

୪ । (ସକର୍ମକ) କୌଣସି ବ୍ୟକ୍ତିକୁ କଥା କୁହାଇ ନ ଦେବା—
4. Not to let a person speak; to silence a person; to stop the mouth of a person.

ଚୁପ୍‌ଚାପ୍—ଦେ. ବି—ମୌନ—Silence.
Chupchāp ବିଣ—୧ । ନୀରବ; ନିଃଶବ୍ଦ—1. Silent.
ଚୁପଚାପ, ଚୁପିଚାପି ୨ । ନିଶ୍ଚଳ—2. Quiet; motionless.
चुपचाप ୩ । ଗୋପନୀୟ; ଗୁପ୍ତ—3. Secret.
୪ । ଅସ୍ତେ ଅସ୍ତେ ବୋଲା ଯାଉଥିବା; ଫୁସ୍‌ଫୁସ୍—
5. Whispered; uttered in a suppressed tone.
୫ । ଘୋଓଘାଆଶୂନ୍ୟ—5 Noiseless.
କ୍ରି° ବିଣ—୧ । ନୀରବରେ—1. Silently; quietly.
୨ । ଗୋପନରେ—2. Secretly; stealthily.
୩ । ଅସ୍ତେ ଅସ୍ତେ (କଥା କହିବା); ଫୁସ୍ ଫୁସ୍ ହୋଇ—
3. In whispers; softly.
୪ । ଅନୁଚ୍ଚ ସ୍ୱରରେ—
4. In low tones; in low voice
୫ । ଘୋଓଘାଆ ନ କରି—
5. Without making a noise.

ଚୁପ୍‌ଚୁପ୍—ଦେ. ଅ—ଚୁପ୍ (ଦେଖ)
Chupchup Chup (See)
ଚୁପଚୁପ ବିଣ ଓ କ୍ରି° ବିଣ—ଚୁପ୍‌ଚାପ୍ (ଦେଖ)
चुपचुप Chupchāp (See)

ଚୁପ୍‌ଟେ—ଦେ. କ୍ରି. ବିଣ. ( ବଙ୍ଗଳାରୁ ଅନୁକୃତ )—
Chupte ଚୁପ୍‌ଚାପ୍ (ଦେଖ)
ଚୁପତେ Chupchāp (See)

ଚୁପ୍‌ବେ—ଗ୍ରା. ଅ. (ଅନାଦରାର୍ଥକ ଓ ଘୃଣାର୍ଥକ)—ଚୁପ୍ (ଦେଖ)
Chup-be Chup (See)

ଚୁପ୍ ମାରିବା—ଦେ. କ୍ରି—ଚୁପ୍ କରିବା ୧. ୨. ୩ (ଦେଖ)
Chup māribā Chup karibā 1. 2. 3 (See)
ଚପମାରା
चुपमारना
(ଚୁପ୍‌ରହିବା—ଅନ୍ୟରୂପ)

ଚୁପ୍‌ରହ—ଦେ. ଅ. (ଅନାଦର ଓ ଘୃଣାର୍ଥକ)—ଚୁପ୍ (ଦେଖ)
Chupraha Chup (See)
ଚପରହ
चुपरहो

ଚୁପ୍‌ସଇତାନ୍—ଦେ. ବିଣ—(ହି. ଚୁପ୍+ପା. ଶୈତାନ୍)—
Chupsaitān ୧ । ଯେ ବାହାରେ ନମ୍ର ଦେଖାଯାଏ କିନ୍ତୁ ଭିତରେ
ଚୁପ୍‌ସୟତାନ୍ ଭିତରେ ଦୁଷ୍ଟାମି ବା ପାଜିପଣିଆ କରେ—
चुप्‌सैतान, चुप्‌छिनाल 1. Seemingly or outwordly quiet but really wicked.
(ଚୁପ୍‌ସଏତାନ୍—ଅନ୍ୟରୂପ)
(ଚୁପ୍‌ସଇତାନ—ବି) ୨ । ଷଡ଼ଯନ୍ତ୍ରକାରୀ; ଯେ ଗୋପନରେ ପରର ଅନିଷ୍ଟ କାମନା ପୂର୍ବକ ଅନ୍ୟମାନଙ୍କୁ ମତାଏ—
2. Intriguing; scheming.

ଚୁପ୍‌ସି—ଦେ. କ୍ରି. ବିଣ—ତୁନି ହୋଇ—
Chupsi Silently.
ଦେ. ବିଣ.—ଚୁପ୍‌ସଇତାନ୍ (ଦେଖ) —Chupsaitān (See)
ଦେ. ବିଣ. ସ୍ତ୍ରୀ—ଚୁପୁସୀ—Chupusī (See)

ଚୁପ୍‌ସେ—ଦେ. କ୍ରି. ବିଣ ( ହିନ୍ଦୀରୁ ଅନୁକୃତ)—ଚୁପ୍‌ଚାପ୍ (ଦେଖ)
Chupse Chupchāp (See)
चुप्‌से

ଚୁପ୍ ହେବା—ଦେ. କ୍ରି —ଚୁପ୍ କରିବା (ଦେଖ)
Chup hebā Chup karibā (See)

ଚୁପା—ପ୍ରାଦେ (ସମ୍ବଲପୁର; ବାଲେଶ୍ୱର) ବି—ଚୋପା—
Chupā Peel.

ଚୁପୁଡ଼ା (ଇତ୍ୟାଦି)—ଚିପୁଡ଼ା ଇତ୍ୟାଦି (ଦେଖ)
Chupur̲d̲ā (etc). Chipur̲d̲ā etc. (See)

ଚୁପୁଡ଼ିବା—ଦେ କ୍ରି.—ଚିପୁଡ଼ିବା (ଦେଖ)
Chupur̲d̲ibā Chipur̲d̲ibā (See)

ଚୁପୁଲି—ଦେ. ବି.—ଚିପୁଲି (ଦେଖ)
Chupuli Chipuli (See)

ଚୁପୁସୀ—ଦେ. ବିଣ. ସ୍ତ୍ରୀ—ଯେଉଁ ସ୍ତ୍ରୀ ବାହାରେ ସୁଶୀଳା ଦେଖାଯାଏ,
Chupusī କିନ୍ତୁ ଭିତରେ ଭିତରେ ଗୋପନରେ ପରର ଚୁଗୁଲି କରୁଥାଏ—A slandering woman (though seemingly innocent); seemingly innocent gossiping woman.

ଚୁବୁଡ଼ି—ଦେ. ବି.—ବାଉଁଶ ଟୋକାଇ; ପାଛିଆ—
Chub-r̲d̲i Bamboo-basket.
ଝୁଡ଼ୀ
टोकरी
(ଚୁବୁଡୀ—ଅନ୍ୟରୂପ)

ଚୁବ୍‌ଲା ହତ୍‌ଲା—ପ୍ରାଦେ (ସମ୍ବଲପୁର) ବିଣ—ଘଣ୍ଟାଘାଣ୍ଟି ହୋଇଥିବା
Chub-lā hat-lā (ଖାଦ୍ୟ, ଜଳାଦି)—(food) Which has been spoiled by much handling.

ଚୁବ୍‌ଲିବା—ପ୍ରାଦେ. (ସମ୍ବଲପୁର) କ୍ରି.—ଛାଲ ଗିଲାସ ପ୍ରଭୃତି ଜଳ-
Chub-libā ପାତ୍ରରେ ହାତକୁ ବୁଡ଼ାଇ ଦେଇ ପାଣିକୁ ମାଇ କରିଦେବା—To spoil the water of a pot by dipping the hand into it.

ଚୁବନ୍ୟ—ଗ୍ରା. ବି. (ସଂ. ଚୁମ୍ବନ)—ଚୁମ୍ବନ—
Chubanya Kiss.

ଚୁବାଇବା – ପ୍ରାଦେ. (ବାଲେଶ୍ୱର) କ୍ରି—ଚୋବାଇବା—
Chubāibā To chew.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇୟ | ଉଅ | ଯ୍ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଜ୍ଞ | ନ୍ |

ଚୁବୁକ—ସଂ. ବି—ଚିବୁକ (ଦେଖ)
Chubnka Chibuka (See)

ଚୁବ୍ର—ସଂ. ବି (ଚୁମ୍ବ ଧାତୁ=ଚୁମ୍ବନ କରିବା+କର୍ମ. ର)—
Chubra ୧ । ମୁଖ; ମୁହଁ—1. The face.
୨ । ପାଟି—2. Mouth

ଚୁମ୍—ଦେ. ବି. ( ସଂ. ଚୁମ୍ବ ଧାତୁ; ବଙ୍ଗଳାରୁ ଅନୁକୃତ )—
Chum ଚୁମା; ଚୁମ୍ବନ—Kiss.
চুম্, চমো, চুমা
**चूमा, चुम्मा**

ଚୁମ୍କି—ଦେ. ବି. ( ସଂ. ଚମତ୍କାର; ଯାହା ଚକ୍‌ଚକ୍ କରେ )—
Chumki ଧାତୁର କ୍ଷୁଦ୍ର କ୍ଷୁଦ୍ର ପତଳା ଖଣ୍ଡ; ରେପଟା ଓ ଚକ୍-
চুমকী ଚକିଆ କ୍ଷୁଦ୍ର ଧାତୁଖଣ୍ଡ—Minute metal-
**चमकी** foils; spangles ( set on cloth etc. ).
[ ଦ୍ର—ଏହା ଲୁଗା ଆଦିରେ ଓ ପ୍ରତିମାର ମେଢ଼ରେ ଜଡ଼ାଯାଏ । ]

ଚୁମ୍କି ବସା—ଦେ. ବିଣ—ଯହିଁରେ ଧାତୁର କ୍ଷୁଦ୍ର କ୍ଷୁଦ୍ର ପତଳା ଖଣ୍ଡ
Chumki basā ଲଗାଯାଇ ଯାଏ—Spangled; overlaid
চুমকীদার with minute metal-foils.
**चमकीदार**
ଚୁମ୍କିଲଗା } ଅନ୍ୟରୂପ
ଚୁମ୍କିଦାର }

ଚୁମ୍ ଖାଇବା—ଦେ. କ୍ରି—ଚୁମ୍ବନ ଦେବା—
Chum khāibā To imprint a kiss; to kiss.
চুম্‌খাওয়া
**चुम्मादेना**
(ଚୁମ୍‌ଦେବା—ଅନ୍ୟରୂପ)

ଚୁମ—ପ୍ରାଦେ. ( ହିନ୍ଦୁଭୂମ ) ବି. ( ସଂ. ଚୁମ୍ବ; ଚୁମ୍ବନ )—
Chuma ଚୁମ୍ବନ—Kiss.

ଚୁମା—ପ୍ରାଦେ. (ସମ୍ବଲପୁର) ବି. ( ତୁଳ. ହି. ଚୁମ୍ମା )—ଚୁମ୍ବନ—
Chumā Kiss.

ଚୁମାଇବା—ଦେ. କ୍ରି—ଚୁମ୍ବିବାର ଣିଜନ୍ତ ରୂପ—
Chumāibā Causative form of Chumibā.
(ଚୁମେଇବା—ଅନ୍ୟରୂପ)

ଚୁମା ଖାଇବା—ପ୍ରାଦେ. କ୍ରି (ସମ୍ବଲପୁର)—ଚୁମ୍ ଖାଇବା ( ଦେଖ )
Chumā khāibā 'Chum khāibā ( See )
ଚୁମାଦେବା } ଅନ୍ୟରୂପ
ଚୁମାନେବା }

ଚୁମାଚୁମି ହେବା—ଦେ. କ୍ରି. ( ସଂ. ଚୁମ୍ବନ )—ପରସ୍ପର ପରସ୍ପରକୁ
Chumāchumi hebā ଚୁମ୍ବନ କରିବା, ଚୁମା ଦିଆଦେଇ
চুমাচুমি হওয়া ହେବା—To kiss each other.
**चुम्माचुम्मी होना**

ଚୁମିବା—ଦେ. କ୍ରି. ( ସଂ. ଚୁମ୍ବ ଧାତୁ )—ଚୁମ୍ବିବା; ଚୁମ୍ବନ କରିବା—
Chumibā To kiss.
চুমা
**चुमना**

ଚୁମୁ—ଦେ. ବି. ( ସଂ. ଚୁମ୍ବକୀ )—ପାଣି ପିଇବାର ଛୋଟ ସାମଶେଇ—
Chumu A small water-pot to sip wate torm

ଚୁମୁଟା—ଦେ. ବି—ଚିମୁଟା ( ଦେଖ )
Chumuṭā Chimuṭā ( See )

ଚୁମୁଟିବା—ଦେ. କ୍ରି—ଚିମୁଟିବା ( ଦେଖ )
Chumutibā Chimuṭibā ( See )

ଚୁମୁତ୍କାର—ସଂ. ବି. (ଧ୍ୱନ୍ୟନୁକରଣ)—ଚୁମ୍ବନଜନିତ ଚୁଁଚୁଁ ଶବ୍ଦ—
Chumutkāra Sound of kissing.
ଚୁମୁତ୍କାର ରବ କ କରେଁ ଥରେ । କବିସୂର୍ଯ୍ୟ. ସଙ୍ଗୀତ ।

ଚୁମୁଳା—ଦେ. ବି—ମୁଚୁଳା ( ଦେଖ )
Chumuḻā Muchuḻā ( See )

ଚୁମ୍ବ୍ (ଧାତୁ)—ସଂ—୧ । ଓଠ ଦ୍ୱାରା ଗଣ୍ଡାଦି ସ୍ପର୍ଶ କରିବା—
Chumb (root) 1 To kiss; to touch with the lips.
୨ । ଈଷତ୍ ସ୍ପର୍ଶ କରିବା—
2. To touch slightly or softly.
୩ । ଆଘାତ କରିବା—3. To hurt. ( M. W. )
୪ । ଆକର୍ଷଣ କରିବା—4. To attract.

ଚୁମ୍ବ—ସଂ. ବି. ( ଚମ୍ବ୍ ଧାତୁ+ଭାବ, ଅ )—ଚୁମ୍ବନ ( ଦେଖ )
Chumba Chumbana ( See )

ଚୁମ୍ବକ—ସଂ. ବି. ( ଚୁମ୍ବ ଧାତୁ+କର୍ତ୍ତୃ. ଅକ; ଯାହା ଲୌହକୁ ଚୁମ୍ବନ ବା ଆକର୍ଷଣ କରେ )—
Chumbaka
୧ । ଅୟସ୍କାନ୍ତ ମଣି; ଲୋହକୁ ନିକଟକୁ ଟାଣିବା ପଥର—
1 Load-stone.
ମନ ଲୋହ ହୋଇଥିଲା, ତୋ ଚୁମ୍ବ ଚୁମ୍ବକ ବଳେ ଛୁହିଁ କାଟି ନେଲା—
ଅଭି. ପ୍ରେମସୁଧାନିଧି ।
୨ । ଚୁମ୍ବକ ଲୌହ ( ଦେଖ )—
2. Chumbaka lauha ( See )
୩ । ବହୁ ବିସ୍ତୃତ ବିଷୟର ସାରସଂଗ୍ରହ; ସଂକ୍ଷିପ୍ତ ବିବରଣ—
3. Epitome; summary; abstract.
୪ । ନିକିତିର ଉପରଭାଗ—
4. The upper part of a balance. (M. W.)
୫ । ଗ୍ରନ୍ଥାନ୍ତରରୁ ସମଶ୍ରେଣୀର ବା ସମଭାବଗର୍ଭିତ ଉଦ୍ଧୃତ ଅଂଶ—5. A parallel passage. (M. W.)
ବିଣ—୧ । ଚୁମ୍ବନକାମୀ—1. Kissing.
୨ । ଲମ୍ପଟ—2. Lecherous.
୩ । ଧୂର୍ତ୍ତ—3. Cunning.
୪ । ଗ୍ରନ୍ଥାଦିର ସାର ସଂଗ୍ରାହକ—4. Compiling.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—
'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଖୋ' ନ ପାଇଲେ 'ଅକ୍ଷୋ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୫ । ଯେଉଁ ଗ୍ରନ୍ଥର ସାର ସଂଗୃହୀତ ହୋଇଥାଏ—
5 Abridged; summarised.

୬ । ଯେ ବହୁତ ପଢିଛି କିନ୍ତୁ ଗଭୀର ଜ୍ଞାନଲାଭ କରିନାହିଁ—
6. Superficial ( M. W. )

୭ । ଠକ; ଧୂର୍ତ୍ତ—7. Knavish; roguish. (M. W)

**ଚୁମ୍ବକ ଲୌହ**—ଦେ. ବି—ଯେଉଁ ଲୁହାରେ ଚୁମ୍ବକ ପଥରର ଗୁଣ
Chumbaka lauha ( ଅନ୍ୟ ଲୁହାକୁ ଟାଣିବାର ଗୁଣ ) ନିହିତ କରା ଯାଇଥାଏ—Magnetic iron

[ ଦ୍ର—ନାନାସ୍ଥାନରେ ଭୂଗର୍ଭରୁ ଚୁମ୍ବକ ଲୌହ ଓ ଚୁମ୍ବକ-ପଥର ମିଳେ । ଏହା ଲୌହକୁ ଆପଣା ଆଡ଼କୁ ଆକର୍ଷଣ କରେ । ଏହି ଆକର୍ଷଣ-ଶକ୍ତି ବୈଦ୍ୟୁତିକ ଶକ୍ତି ଅଟେ । ସାଧାରଣ ଲୁହାକୁ ଚୁମ୍ବକପଥର ବା ଚୁମ୍ବକଲୁହାରେ ଘଷିଲେ ତାହା ଚୁମ୍ବକର ଗୁଣଯୁକ୍ତ ହୁଏ । ଚୁମ୍ବକ ଲୌହର ଦୁଇ ପ୍ରାନ୍ତ ଲୁହାକୁ ଆକର୍ଷଣ କରେ । ଏ ଦୁଇ ପ୍ରାନ୍ତକୁ ଆକର୍ଷଣପ୍ରାନ୍ତ କହନ୍ତି । ଚୁମ୍ବକ ଲୌହର ମଧ୍ୟଭାଗରେ ଉକ୍ତ ଶକ୍ତି ନ ଥାଏ, ଏହାକୁ ଶୂନ୍ୟପ୍ରାନ୍ତ କହନ୍ତି । ଗୋଟିଏ ଚୁମ୍ବକ ଶଳାକାକୁ ତାହାର କେନ୍ଦ୍ରବିନ୍ଦୁ ଉପରେ ରଖିଲେ ବା ଝୁଲାଇଲେ ବା ପାଣିରେ ଭସାଇଲେ ତାହାର ଗୋଟିଏ ପ୍ରାନ୍ତ ଉତ୍ତରଦିଗକୁ ଓ ଗୋଟିଏ ପ୍ରାନ୍ତ ଦକ୍ଷିଣ ଦିଗକୁ ବୁଲିଯାଏ । ଚୁମ୍ବକ-ଶଳାକାର ଏହି ଗୁଣ ଯୋଗୁଁ ଏହାଦ୍ୱାରା ଦିଗ୍‌ନିର୍ଣ୍ଣୟଯନ୍ତ୍ର (କମ୍ପାସ୍) ନିର୍ମିତ ହୁଏ । କମ୍ପାସ୍ ମଧ୍ୟରେ ଥିବା ଚୁମ୍ବକ-ଶଳାକାର ଗୋଟିଏ ପ୍ରାନ୍ତ ଉତ୍ତରକୁ ଓ ଗୋଟିଏ ପ୍ରାନ୍ତ ଦକ୍ଷିଣକୁ ବୁଲି ଯାଉଥିବାରୁ ନାବିକମାନେ ଅକୂଳ ସମୁଦ୍ରରେ ଓ ପର୍ଯ୍ୟଟକମାନେ ମରୁଭୂମି ଓ ଅରଣ୍ୟରେ ଦିଗ ବାରି ପାରନ୍ତି । ଏକ ଚୁମ୍ବକ ଶଳାକାର ଉତ୍ତରପ୍ରାନ୍ତ ଅନ୍ୟ ଚୁମ୍ବକଶଳାକାର ଦକ୍ଷିଣପ୍ରାନ୍ତକୁ ଆକର୍ଷଣ କରେ । ଇସ୍ପାତର ଛଡ଼ରେ ବିଦ୍ୟୁତ୍‌ପ୍ରବାହ ପ୍ରବେଶ କରାଇଲେ ତାହା ଚୁମ୍ବକରେ ପରିଣତ ହୁଏ । ଚୁମ୍ବକଗୁଣଯୁକ୍ତ ଇସ୍ପାତରୁ ମଧ୍ୟ ବିଦ୍ୟୁତ୍‌ପ୍ରବାହ ଉତ୍ପାଦନ କରାଯାଏ । ]

**ଚୁମ୍ବକଶଳାକା**—ସଂ. ବି ( ଆଧୁନିକ ପ୍ରୟୋଗ )—୧ । ଲୌହ ଆକର୍ଷକ
Chumbakaśalākā ଚୁମ୍ବକ କଣ୍ଟା—1. Magnetic needle.
ଚୁମ୍ବକସୂଚିକା }
ଚୁମ୍ବକସୂଚୀ } —ଅନ୍ୟରୂପ

୨ । ଚୁମ୍ବକ ଗୁଣବିଶିଷ୍ଟ ଲୁହାଛଡ଼—
2. Magnetic rod.

**ଚୁମ୍ବ ଘେନିବା**—ଦେ. କ୍ରି—ଅନ୍ୟ ଲୋକ ଚୁମ୍ବ ଦେବାକୁ ଗାଲ
Chumba ghenibā ଦେଖାଇବା—To show one's lip to be kissed by another person.

କୋଟିଏ ସବରେ ଅଳଙ୍କର ହେଲେ ଗୋଟିଏ ନ ଘେନୁ ଚୁମ୍ବ—କବିସୂର୍ଯ୍ୟ ସଙ୍ଗୀତ ।

**ଚୁମ୍ବନ**—ସଂ. ବି (ଚୁମ୍ବ ଧାତୁ + ଭାବ. ଅନ)—୧ । ସ୍ନେହ ଓ ଆଦରରେ
Chumbana ଅନ୍ୟର ମୁଖଆଦି ସ୍ଥାନରେ ଓଷ୍ଠସ୍ପର୍ଶନ—
1. Kissing; a kiss.

କେତେ ରୂପେ ଚୁମ୍ବନ, କେତେ ସ୍ଥାନେ ପ୍ରଦାନ । ଗୋପୀକୃଷ୍ଣ. ରସକଲ୍ଲୋଳ ।

[ ଦ୍ର—ଚୁମ୍ବନ ଦେହର ନାନା ସ୍ଥାନରେ, ପ୍ରଧାନତଃ—ଲଲାଟ, ଅଳକ, କପୋଳ, ନୟନ, ବକ୍ଷ, ସ୍ତନ, ଓଷ୍ଠ ଓ ମୁଖରେ ଦିଆଯାଏ । ସ୍ଥାନଭେଦରେ ଟୁଚକ, ଉଚ୍ଛୂନକ, ପ୍ରବାଳମଣି, ଖଣ୍ଡାଭ୍ରକ, କୋଲତବିନ୍ଦୁ ଇତ୍ୟାଦି ଚୁମ୍ବନର ଅନେକ ନାମକରଣ ହୁଏ । ]

୨ । ସ୍ପର୍ଶ; ବାଜିବା—2. Touch.

କୋପରେ ହନୁମନ୍ତ ମାଇଲା ପଥରେ,
ଚୁମ୍ବନ ସେ ଦେଲା ଯାଇଁ ତାହାର ମୂର୍ଦ୍ଧରେ । ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଚୁମ୍ବନଦାନ**—ସଂ. ବି ( ୬ଷ୍ଠୀ ତତ୍; ଚୁମ୍ବନ + ଦାନ )—ଅନ୍ୟର ମୁଖ
Chumbanadāna ଆଦିର ଚୁମ୍ବନ—Giving a kiss.

**ଚୁମ୍ବନ୍ୟ**—ଗ୍ରା. ବି (ସଂ. ଚୁମ୍ବନ)—ଚୁମ୍ବନ—
Chumbanya Kiss.

**ଚୁମ୍ବା**—ଦେ. ବି—ଚୁମ୍ବନ—
Chumbā Kiss.
ଚୁମ
ଚୁମା

**ଚୁମ୍ବାଇବା**—ଦେ. କ୍ରି—ଚୁମ୍ବିବାର ଣିଜନ୍ତ ରୂପ—
Chumbāibā The causative form of Chumbibā.
(ଚୁମ୍ବେଇବା—ଅନ୍ୟରୂପ)

ଚୁମ୍ବାଇ ଚୁମ୍ବି ମୋ ଅଧର ବଦଳେ ପୀତ କେତକୀଙ୍କ ଖୋସି—କବିସୂର୍ଯ୍ୟ ସଙ୍ଗୀତ ।

**ଚୁମ୍ବା ଖାଇବା**—ଦେ. କ୍ରି—ଚୁମ୍ବ ଖାଇବା ( ଦେଖ )—
Chumbā khāibā Chum khāibā (See)
(ଚୁମ୍ବାଦେବା, ଚୁମ୍ବାନେବା—ଅନ୍ୟରୂପ)

**ଚୁମ୍ବିତ**—ସଂ. ବିଣ ( ଚୁମ୍ବ ଧାତୁ + କର୍ମ. ତ )—୧ । କୃତଚୁମ୍ବନ;
Chumbita ଯାହାକୁ ଅନ୍ୟ ବ୍ୟକ୍ତି ଚୁମ୍ବନ ଦିଏ—1. Kissed.

୨ । କୋମଳଭାବରେ ସ୍ପୃଷ୍ଟ
2. Tenderly touched; lightly touched.

୩ । ପରସ୍ପର ସମ୍ମିଳିତ—3. Joined to each other.

**ଚୁମ୍ବିବା**—ଦେ. କ୍ରି ( ସଂ. ଚୁମ୍ବ ଧାତୁ )—୧ । ସ୍ନେହରେ କୌଣସି
Chumbibā ବ୍ୟକ୍ତିର ଗଣ୍ଡଦେଶ, ଚିବୁକ ବା ମସ୍ତକରେ ଓଠ
ଚମା ଲଗାଇବା; ଚୁମ୍ବନ କରିବା—1. To kiss.
ଚୁମନା

ଚୁମ୍ବିଲେ ଭରତ ଶତ୍ରୁଘ୍ନ ଶିର,
ଆଲିଙ୍ଗି ଆଦରେ ରଘୁପ୍ରବୀର । ମଧୁସୂଦନ. କବିତାବଳୀ ।

୨ । କୋମଳଭାବରେ ସ୍ପର୍ଶ କରିବା—
2. To touch tenderly or lightly

କୋମଳତର ମୋହନ, ଲୁଣ୍ଠିତକିରୁ ଜ ସ୍ତନ
ଆସି ଚୁମ୍ବିଦେଲା ମୋ ଶ୍ରୁତରେ । କବିସୂର୍ଯ୍ୟ. କଳେଶବର୍ମ୍ମ. କ. ଗୀତ ।

୩ । ସମ୍ମିଳିତ ହେବା—3. To be joined together; to be attached.

୪ । ଭେଟିବା; ହାବୁଡ଼ିବା—4 To meet.

ଗୋଭନଥ ଭୋ ଗାହ, ନ ଚୁମ୍ବ ଶ୍ୟାମ ନେତ୍ର । କବିସୂର୍ଯ୍ୟ, ଚମ୍ପୂ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଫ୍ | ଢ଼ଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଂ | ଇଅ | ଢ଼ | ନ୍ହ |

୫ । କଥା ସଙ୍ଗେସଙ୍ଗେ ଅର୍ଥ ଗୋଡ଼ାଇବା—
5. To follow behind (e. g. a meaning following a sentence).
( ଯଥା— ମୋ କଥାକୁ ଅର୍ଥ ଚୁମ୍ବୁଛି କି ? )
୬ । (ଲକ୍ଷଣାର୍ଥ) ଅନୁଭୂତ ହେବା; ବୋଧ ହେବା—
6. To affect; to be felt.
ଶରଦଚନ୍ଦ୍ର ଚୁମ୍ବ ନାହିଁ କି ଗଜ—କବିସୂର୍ଯ୍ୟ. କଣୋସ୍ୱଚମ୍ପୂ. ଶ ଗୀତ ।
୭ । (ସ. ଆଚମନ) ଆଚମନ କରିବା - 7. To sip.
୮ । ପାନ କରିବା; ପିଇବା—8. To drink.
୯ । ଉପଭୋଗ କରିବା; ସୁଖ ବା ଆନନ୍ଦରେ ସେବା କରିବା—
9. To enjoy with delight.
ଚୁମ୍ବି ରଦନଦନାର ସାର, ବନ୍ଧୁ କାଚଯୁ ଭୂଷାର ସ ର—
କବିସୂର୍ଯ୍ୟ. କଣୋସ୍ୱଚମ୍ପୂ. ଚ. ଗୀତ ।
୧୦ । ଆକ୍ରମଣ କରିବା; ଘୋଟିବା —10. To overtake.
ଘୋଟକ ଚୁମ୍ବିଲା ତୃଷା—କବିସୂର୍ଯ୍ୟ. କଣୋସ୍ୱଚମ୍ପୂ. ଘ. ଗୀତ ।

ଚୁମ୍ବୀ—ସଂ. ବିଣ ପୁଂ ( ଚୁମ୍ବ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ; ଅନ୍ୟ Chumbi ଶବ୍ଦ ପରେ ଯୁକ୍ତ ହୋଇ ବ୍ୟବହୃତ ଯଥା—ଗଗନଚୁମ୍ବୀ; (ଚୁମ୍ବିନୀ—ସ୍ତ୍ରୀ) ନଭଶ୍ଚୁମ୍ବୀ)—୧ । (ଅମୁକକୁ) ଚୁମ୍ବନ କରୁଥିବା—
1. Kissing.
( ଯଥା— ବଦନଚୁମ୍ବୀ । )
୨ । (ଅମୁକକୁ) ସ୍ପର୍ଶ କରୁଥିବା—2. Touching.
( ଯଥା – ଗଗନଚୁମ୍ବୀ । )
୩ । (ଅମୁକଦ୍ୱାରା) ଆକ୍ରାନ୍ତ—3. Affected with. (M. W.)
୪ । (ଅମୁକ) ସମ୍ବନ୍ଧୀୟ—4. Relating to (M.W.)
୫ । (ଅମୁକ କାର୍ଯ୍ୟରେ) ବ୍ୟାପୃତ—
5. Busy with (M W.)

ଚୁର—ଦେ. ବିଣ ( ସଂ. ଚୂର୍ଣ୍ଣ )—ଅତ୍ୟନ୍ତ ନଶାରେ ବିହ୍ୱଳ; ମାଦକ-Chur ସେବନର ଫଳରେ ବାହ୍ୟଜ୍ଞାନଶୂନ୍ୟ—Much intoxicated; inebriated.
ଚୂର
चूर

ଚୁରକି – ଦେ. ବି (ସଂ. ଚୂଡ଼ା)–ମସ୍ତକର ମଧ୍ୟଭାଗସ୍ଥ ଲମ୍ବ ଓ କ୍ଷୁଦ୍ର କେଶ-Chur-ki ଗୁଚ୍ଛ—Long and small tuft of hair left on the middle of the head.
ଚୁଟ୍‌କୀ
চুরকী
ମଝିରେ ଚଉଛିକ ଡେଙ୍ଗପର ଚୁରକି, ବେକରେ ମୋଟ'-
ମୋଟା ତୁଳସୀକଣ୍ଠି ପ ଛପେଗ ବସିଛି । ଫକୀରମୋହନ. ଛମାଣ ଆଠଗୁଣ୍ଠ ।
ପ୍ରାଦେ (ବସ୍ତର) ବି—ଭୋଗେଇ—A small basket.

ଚୁରଚୁର—ଦେ. ଅ (ସଂ. ଚୂର୍ଣ୍ଣ)—୧ । ସହଜରେ କୌଣସି ଭଙ୍ଗପ୍ରବଣ Churchur ବସ୍ତୁକୁ ଚୂର୍ଣ୍ଣ କରିବା—1. Reducing of a fragile thing into powder; pulverisation
ଟୁକୁରା ଟୁକୁରା ବିଣ—୧ । ଚୂନାଚୂନା; ଗୁଣ୍ଡାଗୁଣ୍ଡା—
चूरचूर; চুরকুর 1. Reduced into powder; pulverised.
( ଯଥା—ସେ ଇଟାକାନ୍ଥ ଲୁଣି ମାରି ଚୁରଚୁର ହୋଇ ଝଡ଼ି ପଡ଼ୁଛି । )
୨ । ଟୁକ୍‌ଟୁକ୍—2. Shredded.
ବି—(ଧ୍ୱନ୍ୟନୁକରଣ) ୧ । କୋମଳତର ଘୁରୁ ଘୁରୁ ଶବ୍ଦ; ଅଳ୍ପ-
ଚୁବଚୁର ଅଳ୍ପ ପରିମାଣରେ ପରିସ୍ରା କରିବାର ଶବ୍ଦ—1. Soft pissing sound made by urine when being discharged in small quantities.
[ ଦ୍ର– ଘରୁଘରୁ ଠାରୁ ଘୁରୁଘୁରୁ ଶବ୍ଦ ଅନୁଚ୍ଛ । ]
୨ । ଘୁର୍ଡ଼ୁଘୁର୍ଡ଼ୁ ( ଦେଖ )—
2. Ghurd ghurd ( See )
ଚଡ଼ଚଡ଼ ୩ । କୌଣସି ମସକା ସ୍ପୃଷ୍ଟ ପଦାର୍ଥ ଭାଙ୍ଗିଯିବାର ଶବ୍ଦ;
চুরচুর ମୁଡ଼ୁମୁଡ଼ୁ—3. The sound of the breaking of a small brittle thing.

ଚୁର (ଧାତୁ)—ସ୍କ—୧ । ଚୋରିକରିବା; ଅନ୍ୟର ଧନ ଅପହରଣ Chur (root) କରିବା—1. To steal; to commit theft.
୨ । କୌଣସି ବସ୍ତୁକୁ ଅଦୃଶ୍ୟ କରାଇବା—
2. To cause to disappear (M. W.).
୩ । ବହିବା; ନେବା—3. To bear; to take (Apte).
୪ । ଅଧିକାର କରିବା—4. To possess, to assume (M. W.)

ଚୁରୁଣୀ—ପ୍ରାଦେ (ସମ୍ବଲପୁର) ବିଣ ଓ ବି. ସ୍ତ୍ରୀ—ଚୋରୁଣୀ—
Chur-ni A female thief.

ଚୁରୁମା—ଦେ. ବି (ଧ୍ୱନ୍ୟନୁକରଣ; ତୁଳ. ହି. ଚୁରୁମୁରୁ=ମସକା)—
Chur-mā ଗଜା; ସହଜରେ ଚୂନା ହୋଇଯିବା ଏକପ୍ରକାର ପିଠା—
ଚୂରମ A kind of easily fragile cake.
चरमा [ ଦ୍ର— ଅଟାକୁ ପ୍ରଥମେ ଘିଅରେ ଭାଜି ତତ୍‌ପରେ ପାଣିରେ ଚକଟି ଗୁଳା କରି ପୁଣି ଘିଅରେ ଭାଜି ଏହାକୁ ତିଆର କରାଯାଏ । ଅଟାରେ ଲୁଣ ମିଶାଇଥିଲେ ଏହା ଲୁଣିଆ ଲାଗେ, କିମ୍ବା ଲୁଣ ନ ମିଶାଇ ଘିଅରେ ଛାଣିବା ପରେ ଏହାକୁ ଚିନିରସରେ ବୁଡ଼ାଇଲେ ଏହା ମିଠା ହୁଏ । ]

ଚୁରମାର—ବୈଦେ. ବିଣ (ହି)—୧ । ଚୂର୍ଣ୍ଣ ଓ ମର୍ଦ୍ଦିତ; ଚୂର୍ଣ୍ଣବିଚୂର୍ଣ୍ଣ;
Churmār ଚୂନାହୋଇଯିବା—1. Reduced into powder, pulverised.
ଚୁରମାର
चकनाचूर ୨ । ଭାଙ୍ଗିତୁଟି ଖିନ୍ନଖଣ୍ଡ ହୋଇଥିବା—
2. Demolished; smashed to atoms.

ଚୁର—ସଂ. ବିଣ. ପୁଂ (ଚୁର ଧାତୁ+କର୍ତ୍ତୃ. ଅ)—ଚୋରିକରୁଥିବା—
Chura Stealing. (Apte)
ଚୁର ଦେ. ବି ( ସଂ. ଚୂର୍ଣ୍ଣ ) ଚୂନା —Powder.
चूर ( ଯଥା—ଖଇରଚୁର ) ।
ପ୍ରାଦେ (ବାଲେଶ୍ୱର) ବି ('ଓ' ସ୍ଥାନରେ 'ଉ' ଉଚ୍ଚାରଣ)—
ଚୋର—Thief.

ସାଧାରଣ ଲୋକେ ଅପର ପୃଷ୍ଠାରେ ସଙ୍ଗତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜୁଥିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଁଗାଁ ନ ପାଇଲେ 'ଆଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଚୁରଟ୍—ବୈଦେ. ବି (ଫା)—ଚୁରୁଟ୍ (ଦେଖ)
Churat — Churut (Sse).

ଚୁରଣ—ସଂ. ବି (ଚୁର ଧାତୁ+ଭାବ. ଅନ)—ଚୋରି—
Churana — Theft. (Apte).

ଚୁରନ୍—ପ୍ରାଦେ (ସମ୍ବଲପୁର) ବି (ଭୁଲ. ହି. ଉଚ୍ଚାରଣ-ଚୂରନ୍)—
Churan — ଚୂର୍ଣ୍ଣ—Powder.

ଚୁରା—ସଂ. ବି (ଚୁର ଧାତୁ+ଭାବ. ଅ+ଆ)—ଚୋରି—
Churā — Theft.

ଦେ. ବି ଓ ବିଣ—ଚୂରା (ଦେଖ)
Chūrā (See).

ଚୁରାଇବା—ଦେ. କ୍ରି (ସଂ. ଚୁ ଧାତୁ)—ଚୂରାଇବା (ଦେଖ)
Churāibā — Chūrāibā (See).
(ଚୁରେଇବା—ଅନ୍ୟରୂପ) ପ୍ରାଦେ (ବାଲେଶ୍ୱର) କ୍ରି (ସଂ. ଚୁର ଧାତୁ)—ଚୋରାଇବା (ଦେଖ; Chorāibā (See).

ଚୁରାଲି—ପ୍ରାଦେ (ସମ୍ବଲପୁର) ବି—ଚୁଗୁଲି—
Churāli — Back-biting.

ଚୁରି—ପ୍ରାଦେ (ବାଲେଶ୍ୱର) ବି ('ଓ' ସ୍ଥାନରେ 'ଉ' ଉଚ୍ଚାରଣ)—ଚୋରି
Churi — Theft.

ଚୁରିଆ—ପ୍ରାଦେ (ସମ୍ବଲପୁର) ବି—ବେଣା ଘାସରେ ନିର୍ମିତ ମାଛ ଧରିବା
Churiā — ଯନ୍ତ୍ରବିଶେଷ—A contrivance made of 'Beṇā' grass for catching fish.

ଚୁରୁକି—ଦେ. ବି—ଚୁରୁକି (ଦେଖ)
Churuki — Chur-ki (See).

ଚୁରୁଚୁରୁ—ଦେ. ଅ; କ୍ରି. ବିଣ ଓ ବି—ଚୁରୁଚୁରୁ (ଦେଖ)
Churuchuru — Chur-chur (See).

ଚୁରୁଟ୍—ବୈଦେ. ବି (ତା. ଚୁରୁଟ୍ଟୁ; ଇଂ. ଚେରୁଟ୍; ଫା. ଚେରୁଟ୍)—
Churuṭ — ୧ । ଧୂଆଁ ପତ୍ରର ଛୋଟ ପିକା; ସିଗାରେଟ୍—1. Cigarette.
ଚୁରୁଟ
चुरट — ୨ । ପିକା—2. Cigar; cheroot.
[ ଦ୍ର—ଏ ଶବ୍ଦ ଇଂରାଜୀ ଭାଷାରେ ମଧ୍ୟ ବ୍ୟବହୃତ ହୁଏ । ]

ଚୁରୁଡ଼ା—ଦେ. ବି—ଚିରୁଡ଼ା (ଦେଖ)
Churuṛā — Chiruṛā (See).

ଚୁରୁମା—ବୈଦେ. ବି. (ହି. ଚୂରମା)—ଚୁରମା (ଦେଖ)
Churumā — Chur-mā (See)

ଚୁରୁମାର—ବୈଦେ. ବିଣ. (ହି)—ଚୁରମାର (ଦେଖ)
Churumār — Chur-mār (See)

ଚୁରେଇ—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ହି. ଚରୈୟା)—
Churei — ଚଢ଼େଇ; ପକ୍ଷୀ—Bird.

ଚୁଲ୍ (ଧାତୁ)—ସଂ—୧ । ପାନ କରିବା—1. To drink; to sip.
Chul (root) — ୨ । ଉତ୍ତୋଳନ କରିବା; ଉପରକୁ ଉଠାଇବା—2. To raise (M. W.).
୩ । ବୁଡ଼ିବା—3 To dive into (M. W.).

ଚୁଲ୍—ପ୍ରାଦେ. (ସମ୍ବଲପୁର) ବି—୧ । (ଭୁଲ. ବଂ. ଚୂଲ୍=କେଶ; ସଂ. ଚୂଡ଼ା)—କେଶ—1. Hair.
Chul
୨ । (ସଂ. ଚୂଡ଼ା) ଚୂଳ—2. Hump.

ଚୁଲକ—ସଂ. ବି—ଚୁଲୁକ (ଦେଖ)
Chulakā — Chuluka (See) (M. W.).

ଚୁଲା—ଦେ. ବି. (ସଂ. ଚୁଲ୍ଲୀ)—୧ । ଚୁଲ୍ଲୀ (ଦେଖ)
Chulā — 1. Chullī (See)
ଚୂଲା — ୨ । ଇଟାଭାଟି ବା ଚୂନଭାଟି ବା ଲୁହାଅଉଟା ଭାଟି ବା
चुल्हा — କୁମ୍ଭାରଙ୍କ ଭାଟିରେ ନିଆଁ ଲଗାଇବା ପାଇଁ ନିର୍ମିତ ପ୍ରକୋଷ୍ଠ—2. Furnace in a brick-kiln or lime-kiln or potter's kiln.

ଚୁଲି—ଦେ. ବି. (ସଂ. ଚୁଲ୍ଲୀ)—୧ । ରନ୍ଧନ ନିମନ୍ତେ ଯେଉଁ କୁଣ୍ଡ ବା
Chulī — ଗର୍ତ୍ତରେ ନିଆଁ ଜଳାଯାଏ; ଅଗ୍ନ୍ୟାଧାନ—
চুলা; চুলী; चूलो — 1 Oven; hearth; fire-place.
चूल्हा — ଚୁଲିରେ ବସିଥିଲା କ୍ଷୀର
ଗୃହିଁଲେ ପ୍ରଭୁ ଚକ୍ରଧର । ଜଗନ୍ନାଥ ଭାଗବତ ।
୨ । କମାରଆଦିଙ୍କ ଅଗ୍ନିକୁଣ୍ଡ—2 Furnace.
୩ । ଉଠାଚୁଲି—3. A portable stove; movable oven.
[ ଦ୍ର—ଚୁଲିର ଯେଉଁ ବାଟେ ଜାଳକାଠ ଭରତି କରାଯାଏ ତାକୁ 'ମୁହଁ' ଓ ଯେଉଁ ବାଟେ ନିଆଁର ଧାସ ବାହାରେ ଓ ଯାହାଉପରେ ହାଣ୍ଡି ବସେ ତାକୁ 'ପଖା' କହନ୍ତି । ଚୁଲି ଉପରେ ତିନୋଟି ଗୋବ ଥାଏ, ସେହି ଗୋବମାନଙ୍କ ଉପରେ ହାଣ୍ଡି ବସେ; ତାକୁ ଚୁଲିଝିଙ୍କା କହନ୍ତି । ]
୪ । ଗାଳିବିଶେଷ—4. A term of abuse.
[ ଦ୍ର—କୌଣସି କାର୍ଯ୍ୟ ନଷ୍ଟ ହେଲେ ବା ଖରାପ ହେଲେ ଲୋକେ ବିରକ୍ତ ହୋଇ କହନ୍ତି:—ଅମୁକ କଥାଟା ଚୁଲି ହେଲା; ତା ପଢ଼ାପଢ଼ି ଚୁଲିଟା ହେବ । ]

ଚୁଲିଆ—ଦେ. ବି—୧ । ସୁପକାର; ପାଚକ—1. Cook.
Chuliā — ୨ । ଚାଳଘରର ମଝିଶେଣୀ ଉପରେ ପଡ଼ିଥିବା ଭୁଅମାନ ଯେଉଁ ବାଉଁଶରେ ଭିଡ଼ା ହୋଇ ବନ୍ଧା ହୋଇଥାଏ—2. A bamboo to which the rafters are fastened over the central wall-plate of a thatched house.
ସପ୍ତ ଶେଣୀ ଲଗି ମୁଦ ମାରିଛ ଚୁଲିଆ । ପ୍ର.ଚୀ. ବ୍ରହ୍ମନିରୂପଣଗୀତା ।
ପ୍ରାଦେ. ( ବାଲେଶ୍ୱର ) ବି—ସମୁଦ୍ର ପାଣିକୁ ନିଆଁରେ ଗରମ କରି ତହିଁରୁ ଲୁଣ ତିଆରି କରିବା ପାଇଁ ନିଯୁକ୍ତ ବ୍ୟକ୍ତିମାନଙ୍କର ସରଦାର—The chief of the employees engaged in the preparation of salt by heating the sea-water.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଲ | ଉ | ଋ,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ଖ |
| ୨ | ଳ | ଓ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଝ୍ୟ | ଯ | ସ | ଙ୍ଗ | ଇଅ | ଢ଼ | ନ୍ତ |

**ଚୁଲୀ ଉଖାରିବା**—ଦେ. କ୍ରି—ଚୁଲୀରେ ଥିବା ଜଳାଣୋନ୍ମୁଖ ନିଆଁକୁ Chulī ukhāribā କାଠିଦ୍ୱାରା ଇତସ୍ତତଃ କରି ସତେଜ କରିବା—To stir up the smouldering fire in an oven by a rod.

**ଚୁଲୀ ଉଠାଇବା**—ଦେ. କ୍ରି. (ଲକ୍ଷଣାର୍ଥ)—ଏକ ସ୍ଥାନରୁ ବାସ ଭାଙ୍ଗି Chulī uṭhāibā ଅନ୍ୟତ୍ର ଚାଲିଯିବା—(figurative) To leave (ଚୁଲୀ ଉଠେଇବା—ଅନ୍ୟରୂପ) one place of abode and go to another place to live.

**ଚୁଲୀକା**—ପ୍ରାଦେ. (ସମ୍ବଲପୁର) ବି—କାନ୍ଥକୁଡ଼—Chulikā A niche in the wall.

**ଚୁଲୀକି ଯାଉ**—ଦେ. ଅ—( ଅମୁକ ବିଷୟ ) ଆଲୋଚନା କରିବାର Chulīki jāu ବର୍ତ୍ତମାନ ଲୋଡ଼ା ନାହିଁ—Not to speak of চুলোয়ে যাক ( such or such a matter ). **चूल्हेमे जाय** ( ଯଥା—ବାବୁ ଗୁଡ଼ିକର କର ଧନ ଅର୍ଜିବାକୁ ବିଦେଶକୁ ଯାଇଥିଲେ, ଧନ ଅର୍ଜିବା କଥା ଚୁଲୀକି ଯାଉ, ବାବୁ ସେଠାରେ ରୋଗରେ ପଡ଼ିଲେ ଯେ, ବର୍ତ୍ତମାନ ତାଙ୍କର ବଞ୍ଚିବା କଥା ବେଠିକଣା । )

**ଚୁଲୀକି ଯିବା**—ଗ୍ରା. କ୍ରି. ( ବିରକ୍ତିସୂଚକ ବାକ୍ୟରେ ବ୍ୟବହୃତ )—Chulīki jibā ୧ । ( କୌଣସି ବ୍ୟକ୍ତିର ଅନୁରୋଧ ) ଅଗ୍ରାହ୍ୟ চুলোয়যাওয়া ହେବା—1. Not to be taken any **चूल्हेमेजाना** notice of ( ଯଥା—ମୋ କଥା ଚୁଲୀକି ଗଲା । )

୨ । ( କୌଣସି ବ୍ୟକ୍ତିର ଉପଦେଶ ବା ବାକ୍ୟ ) କାହାଦ୍ୱାରା ମନୋଯୋଗପୂର୍ବକ ଶୁଣା ନ ଯିବା—2. Not to be attended to by any person

୩ । ( ଗାଳିରେ ବ୍ୟବହୃତ ) ମରିବା—3. To die.

୪ । ପୋଡ଼ି ହୋଇ ମରିବା—4. To be burnt to death.

୫ । ପୋଡ଼ି ଜଳି ଯିବା; ଭସ୍ମୀଭୂତ ହେବା—5. To be burnt to ashes.

୬ । ନଷ୍ଟଭ୍ରଷ୍ଟ ହେବା—7. To be utterly spoiled; to go to dogs.

**ଚୁଲୀଖପରା**—ଦେ. ବି—ଚୁଲୀ ତିଆରିବେଳେ ତହିଁରେ ଲାଗିଥିବା ହାଣ୍ଡି Chulīkhaparā ବହୁଦିନ ବ୍ୟବହାର ପରେ ଭାଙ୍ଗି ଯିବାରୁ উনুনের খপরা ସେଥିରୁ ବାହାରିବା କ୍ଷୁଦ୍ର କ୍ଷୁଦ୍ର ଖପରା—The potsherds which are brought out of an old fireplace when it is renewed and replaced by a new earthen pot.

[ ଦ୍ର—ଏହା ଔଷଧରୂପେ ବ୍ୟବହୃତ ହୁଏ । ]

**ଚୁଲୀଚଉକା**—ଦେ. ବି. ( ସହଚର )—ରାନ୍ଧିବା ପୂର୍ବରୁ ଚୁଲୀ ଓ Chulīchaukā ତାହାର ଚାରିପାଖ ଗୋବରପାଣିରେ ପରିଷ୍କାର উনুনে চউকা ହୋଇ ଲିପା ହୋଇଥିବା ସୀମା—The fire-**चूल्हाचौका** place and its vicinity swept clean ( with cowdung and water ) before cooking.

**ଚୁଲୀଚଉକା ଦେବା**—ଦେ. କ୍ରି—ରାନ୍ଧିବା ପୂର୍ବରୁ ଚୁଲୀର ଚାରିପାଖ Chulīchaukā debā ଗୋବରପାଣିରେ ଲିପି ପରିଷ୍କାର କରିବା—উনুনে চউকাদেওয়া To sweep the fireplace and **चूल्हाचौका करना** its vicinity clean with cow-dung-water before cooking.

**ଚୁଲୀ ଚାଲ ନାହିଁ ଅଘରବାସ**—ଦେ. ପ୍ରବଚନ—ଯେଉଁ ବ୍ୟକ୍ତିର ରହିବା-Chulī chāla nāhĩ agharabāsa ପାଇଁ ଗୃହ ଓ ରନ୍ଧନ চুলিচাল নাইঁ জঙ্গলে বাস କରିବା ପାଇଁ ଚୁଲୀ ନାହିଁ—A homeless person ( who has neither home nor hearth ).

**ଚୁଲୀ ଚାଲରେ ବାସ ପାଇବା**—ଦେ. କ୍ରି—ନିରାଶ୍ରୟ ଅବସ୍ଥାରେ କୌଣସି Chulī chālare bāsa pāibā ସ୍ଥାନରେ ଯେନକେନ ପ୍ରକାରେ ଆଶ୍ରୟ ପାଇବା—To get shelter anyhow somewhere

**ଚୁଲୀ ଜଳିବା**—ଦେ. ବି—୧ । ଚୁଲୀ ମଧ୍ୟରେ ଥିବା ଜାଳ ଅଗ୍ନି Chulī jaḷibā ଜଳିବା—1 The burning of the fuel চুলাজলা in the oven. **चूल्हाजलना** ୨ । ରୁଷେଇବାସ ହେବା—2. Cooking. ( ଯଥା—ବିଦେଶରୁ ପୁଅର ରୋଗ କଥା ଶୁଣି ଆସିବା ଦିନ-ଠାରୁ ତାଙ୍କ ଘରେ ଚୁଲୀ ଜଳି ନାହିଁ । )

**ଚୁଲୀ ଜାଳିବା**—ଦେ କ୍ରି—୧ । ଚୁଲୀର ନିଆଁକୁ ସତେଜ କରିବା—Chulī jāḷibā 1. To stir up the fire in the oven. চুলাজালা ୨ । ଚୁଲୀ ଜଳିବା ପାଇଁ ତହିଁରେ କାଠ ଆଦି ଖଞ୍ଜିବା—**चूल्हाजालना** 2. To arrange fuel in an oven for burning; to fuel an oven.

୩ । ଚୁଲୀ ମଧ୍ୟରେ ଥିବା କାଠ ଅଗ୍ନି ଜଳିବା ପାଇଁ ମୁହଁଦ୍ୱାରା ବା ନଳଦ୍ୱାରା ଫୁଙ୍କିବା—3. To blow the fire of the oven by the mouth or a blow-tube.

**ଚୁଲୀଝିଙ୍କା**—ଦେ. ବି (ସ ଚୁଲ୍ଲୀ+ଶିଖା)-ଚୁଲୀର ଉପରେ ହାଣ୍ଡି ବସିବା Chulījhinkā ପାଇଁ ସ୍ଥାପିତ ତିନିଗୋଟି ଖୁଣ୍ଟି ବା ମାଟିପିଣ୍ଡ—চুলীরঝিঁক Projections over an oven on which pots are put.

[ ଦ୍ର—ଚୁଲୀ ଉପରେ ହାଣ୍ଡି ବସାଇଲେ ଏହି ଝିଙ୍କାମାନ ଥିବାରୁ ଝିଙ୍କା ଯୋଗୁଁ ଚୁଲୀର ପିଣ୍ଡ ଓ ହାଣ୍ଡି ମଧ୍ୟରେ ଯେଉଁ ଫାଙ୍କ ରହେ ସେ ଫାଙ୍କ ବାଟେ ନିଆଁର ଧାସ ଓ ଧୂଆଁ ବାହାରି ଯାଏ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ୧ ୨ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଶବ୍ଦକୋଷରେ ଯେବେ ଏ ସ୍ଥାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ଭୃଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲବଡ଼' ଦେଖିବେ

୨ । ବନ୍ୟ ବୃକ୍ଷବିଶେଷ—
2. A wild tree; Hugonia Mystax (Haines).

**ଚୁଲିଝୁଣ୍ଟିଆ**—ଦେ. ବି—ବୃଦ୍ଧାଅଙ୍ଗୁଠି ଛଡ଼ା ଅନ୍ୟ ପଦାଙ୍ଗୁଳିରେ ପିନ୍ଧା
Chulijhuntia ଯିବା ମୁଦି୍କା (ଏଥିର ଉପରେ ଚୂଳ ଥାଏ)—
A kind of ring worn on the minor fingers of the feet.

ହୃଦେକ ଜଙ୍ଘର ପାଦେ, ଚୁଳିଝୁଣ୍ଟିଆ ପ୍ରପଦେ ।
ଭକ୍ତ. କୋଷ୍ଠଦୃଷ୍ଟାନ୍ତସ୍ୱରବସ ।

**ଚୁଲି ପକାଇବା**—ଦେ. କ୍ରି—ଗୋଟିଏ ନୂଆ ଚୁଲି ତିଆରି କରିବା—
Chuli pakaiba To construct a new oven.
ଚୂଲ୍ହାପାତା

ଚୁଲିପକେଇବା
ଚୁଲିପାଡ଼ିବା } ଅନ୍ୟରୂପ
ଚୁଲିପାରିବା

**ଚୁଲିପଖା**—ଦେ. ବି. (ସ ଚୁଲ୍ଲୀ+ପକ୍ଷ)—
Chulipakha ୧ । ଚୁଲି ଉପରେ ହାଣ୍ଡି ବସିବା ସମୟରେ
(ଚୁଲିପଖା—ଅନ୍ୟରୂପ) ଚୁଲିର ଝିଙ୍କା ଓ ହାଣ୍ଡି ମଧ୍ୟରେ ଯେଉଁ ବ୍ୟବଧାନ ଥାଏ—
1. The space between the cooking pot and the clods of earth put on the rim of an oven.

୨ । ଚୁଲିର ଉପର ପାଖର ମେଲା ଅଂଶ—
2. The upper opening of an oven.

**ଚୁଲିପଶା**—ଗ୍ରା. ବିଣ. ପୁଂ. (ଗାଳିରେ ବ୍ୟବହୃତ)—
Chulipasa ୧ । ପୋଡ଼ି ହୋଇ ମରିବାର ଉପଯୁକ୍ତ (ବ୍ୟକ୍ତି)—
(ଚୁଲିପଶୀ—ସ୍ତ୍ରୀ) 1. Fit to be burnt to death.
୨ । ପୋଡ଼ାମୁହାଁ (ଦେଖ)
2. Pordamuhan (See)

ବରେ ଚୁଲିପଶାଟି । ବୁଢ଼ା ସାଅନ୍ତମାନେ ସଙ୍ଗରେ ଶୂନ୍ୟ ହୋଇ ରହି ଅଛନ୍ତି ।
ଉତ୍କଳ, ରତ୍ନମାଳୀ ।

**ଚୁଲି ପାଉଁଶ**—ଦେ. ବି—୧ । ଚୁଲିରେ ଜଳିବା କାଠର ପାଉଁଶ—
Chuli paunsa 1. The ashes left in the oven after a fire.
୨ । (ବିରକ୍ତି ବା ଘୃଣାବ୍ୟଞ୍ଜକ) ନଷ୍ଟ ହୋଇଥିବା ବସ୍ତୁ ବା ବିଷୟ—2. Any spoilt thing or matter.

**ଚୁଲିପୂଜା**—ପ୍ରାଦେ. (ଯାଜପୁର) ବି—ଭାଦ୍ରବ ଶୁକ୍ଳ ଏକାଦଶୀ ଦିନ
Chulipuja ଉପରଓଳି ଚୁଲିକୁ କରାଯିବା ପୂଜା—
The ceremony of worshipping the family-hearth on the eleventh day of the light fortnight of the month of Bhadraba.
[ ଦ୍ର—ସେଓଳି ଚୁଲିରେ ଅନ୍ନବ୍ୟଞ୍ଜନାଦି ରନ୍ଧା ହୁଏ ନାହିଁ । ]

**ଚୁଲି ଫୁଙ୍କା**—ଦେ. ବି—ଚୁଲିରେ ନିଆଁ ଜାଳିବା ପାଇଁ ମୁହଁ ବା ନଳ
Chuli phunka ଦ୍ୱାରା ଚୁଲିରେ ଥିବା କାଠ ଆଦିକୁ ଫୁଙ୍କିବା—
ଉନୁନେଫୂଂ Blowing of the fuel in an oven to light them.

**ଚୁଲି ଫୁଙ୍କିବା**—ଦେ. କ୍ରି—୧ । ଚୁଲି ଜଳାଇବା ସକାଶେ ମୁହଁରେ
Chuli phunkiba ଫୁଙ୍କିବା—To blow the fuel in
ଉନୁନେଫୁଂ ଦେଓୟା an oven with the mouth.
चुल्हाफुकना ୨ । (ଲକ୍ଷଣାର୍ଥ) ଅନ୍ନାଦି ପାକ କରିବା—
2. To cook food

କେବେବେଳେ ଜୋଡ଼ା ସାଇପରେ ଘର
କେବେବେଳେ ଚୁଲି ଫୁଙ୍କି ଫୁଙ୍କି ମର—ଢଗ ।

**ଚୁଲିଫନ୍ଦ**—ଦେ. ବି—ଚୁଲିର ଉପର ଆଡ଼ର ଧାର—
Chuliphanda The upper edge of an oven.

**ଚୁଲି ବସାଇବା**—ଦେ କ୍ରି—ଚୁଲି ପକାଇବା (ଦେଖ)
Chuli basaiba Chuli pakaiba (See)
(ଚୁଲି ବସେଇବା—ଅନ୍ୟରୂପ)

**ଚୁଲିମୁଣ୍ଡ**—ଦେ. ବି—୧ । ଚୁଲିର ନିକଟବର୍ତ୍ତୀ ସ୍ଥାନ—
Chulimunda 1. The vicinity of an oven.
(ଯଥା—ବୋହୂଟି ସବୁବେଳେ ଚୁଲିମୁଣ୍ଡରେ ପଶିଛି ।)
୨ । ଦୁଇଟି ଚୁଲିର ମଧ୍ୟବର୍ତ୍ତୀ ସ୍ଥାନ—
2. The space between two ovens.

ବାପ ପୋ ବାପ । ଚୁଲି ମୁଣ୍ଡ ଦେଇଁ ଜୋଡାଏ ସାପ—ଢଗ ।

[ ଦ୍ର—ଏ ସ୍ଥାନ ଉଷୁମଥିବାରୁ ବିରାଡ଼ିମାନେ ଶୀତଦିନରେ ଲିଭିଲା ଚୁଲିର ଚୁଲିମୁଣ୍ଡରେ ଶୁଅନ୍ତି । ]
୩ । (ଲକ୍ଷଣାର୍ଥ) ଅନ୍ତଃପୁର—
3. Female compartments; zenana.
(ଯଥା—ଗମ୍ଭୀରସାଆନ୍ତେ ସବୁବେଳେ ଚୁଲିମୁଣ୍ଡରେ ରହୁଲେ ।)
୪ । (ଲକ୍ଷଣାର୍ଥ) ପାକଶାଳା—4. Kitchen.

ଝିଅଜନମ ଚୁଲ୍ଲା ଚୁଲିମୁଣ୍ଡକୁ । ଢଗ ।

୫ । (ଲକ୍ଷଣାର୍ଥ) ଅନ୍ତଃପୁରସ୍ଥା ସ୍ତ୍ରୀମାନଙ୍କ ସାହଚର୍ଯ୍ୟ—
5. Company of females in the cook room.
୬ । ପାକକର୍ମ—6. The act of cooking.

ଝିଅ ହୋଇ ଯେବେ ଚୁଲିମୁଣ୍ଡକୁ ଯୋଗ୍ୟ ନ ହେଲା, ତା ଜନମଟା ବୃଥା ।
ଢଗ ।

୭ । (ଗାଳି ଓ ବିରକ୍ତିରେ ବ୍ୟବହୃତ)—କୌଣସି ନଷ୍ଟ ବସ୍ତୁ ବା ବିଷୟ—6. ( A term used in abuse or vexation ) Any spoilt thing or matter

**ଚୁଲିମୁଣ୍ଡକୁ ଆଶ୍ରା କରିବା**—ଦେ. କ୍ରି—୧ । କେବଳ ଗଣ୍ଡାଏ ଖାଇବା
Chulimundaku ashra kariba ଲାଗି କୌଣସିଠାରେ ପଡ଼ି ରହିବା—1 To remain at a place only for getting a meal.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇଷ୍ଟ | ଜ୍ଞ | ଛ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ତ୍ୟ | ଇଅ | ଙ୍କ | କ୍ |

**ଚୁଲୀମୁହଁ**—ଦେ. ବି—ଚୁଲୀରେ କାଠ ଓ ଜାଳ ଦେବା ଓ ଫୁଙ୍କିବା ନିମନ୍ତେ Chulimuhañ ଚୁଲୀର ସାମନା ପାଖରେ ଯେଉଁ ରନ୍ଧ୍ର ହୋଇ ଥାଏ—A lateral opening in an oven through which fuel is pushed into it.
ଚୁଲାବମୁଖ; ଉନାନେରମୁଖ
ଚୁଲ୍ହାକାମୁହଁ

**ଚୁଲୀମୁହାଁ**—ଗ୍ରା. ବିଣ ପୁଂ (ଗାଳିବିଶେଷ)—ପୋଡ଼ାମୁହାଁ; ଯାହା ମୁହଁରେ Chulimuhāñ ନିଆଁ ଲାଗି ଯାଇଛି— (ଚୁଲୀମୁହାଁ—ସ୍ତ୍ରୀ) (A term of abuse) With a burnt or charred face
ଚୁଲୋମୁଖ; ଚୁଲାମୁଖୀ

ବି—ଚୁଲୀରେ ଜାଳେଣି କାଠ ପୂରାଇବା - Adding of fuel to an oven.

**ଚୁଲୀ ମୁହାଁଇବା**—ଦେ. କ୍ରି—ଚୁଲୀମୁହଁ ବାଟେ ଜାଳଆଦି ପୂରାଇ ନିଆଁକୁ Chuli muhāñibā ପ୍ରଜ୍ୱଳିତ କରିବା—To add fuel to the fire in the oven to enliven it.
ଚୁଲୀମୁହାଁବା
ଚୁଲୀମୋହାଁଇବା } ଅନ୍ୟରୂପ
ଚୁଲୀମୋହାଁବା

**ଚୁଲୀରେ ପଶିବା**—ଗ୍ରା. କ୍ରି (ବିରକ୍ତିସୂଚକ ବାକ୍ୟରେ ବ୍ୟବହୃତ)— Chulire pasibā ଚୁଲୀକି ଯିବା (ଦେଖ) Chuliki jibā (See)
(ଯଥା—ତୁ ଘୁଣ୍ଡୀ ! ଚୁଲୀରେ ପଶ୍ ।)

**ଚୁଲୀ ଲଗାଇବା**— ଦେ. କ୍ରି — ଚୁଲୀରେ ପ୍ରଥମେ ନିଆଁ ଜାଳିବା— Chuli lagāibā To make a fire in the oven; to ignite fire in the oven.
ଉନୁନଧରାନ
(ଚୁଲୀଲଗେଇବା – ଅନ୍ୟରୂପ) [ଦ୍ର—ଚୁଲୀ ଲଗାଇବାର ଅର୍ଥ ଚୁଲୀରେ ଥିବା ଜାଳରେ ନିଆଁ ଲଗାଇବା ।]

**ଚୁଲୀ ଲିଭାଇବା**— ଦେ କ୍ରି — ଚୁଲୀର ନିଆଁକୁ ନିର୍ବାପିତ କରିବା— Chuli libhāibā To extinguish the fire in an oven.
ଉନୁନନିଭାନ [ଦ୍ର—ଚୁଲୀ ଲିଭାଇବାର ଅର୍ଥ ଚୁଲୀରେ ଜଳୁଥିବା ନିଆଁକୁ ଲିଭାଇବା ।]
ଚୁଲୀ ଲିଭେଇବା
ଚୁଲୀ ନିଭା(ଭେ)ଇବା } ଅନ୍ୟରୂପ

**ଚୁଲୀହଗୁରା**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ଭୟରେ ପଦାକୁ ଝାଡ଼ା Chulihagurā ଫେରି ନ ଯାଇ ଲୁଚିକି ଚୁଲୀରେ (ବିଶେଷତଃ (ଚୁଲୀହଗୁରୀ—ସ୍ତ୍ରୀ) ରାତିରେ) ଝାଡ଼ା ଫେରେ—A person who eases in the oven for fear of going out to answer the call of nature, specially during the night

କାହାର ବାହାରେ ଘଣ୍ଟେଲେ ପୋଡପିଠା
ତାର ଚୁଲୀରେ ହଗିଲେ ପୋଡପିଠା । ଢଗ ।

[ଦ୍ର—ପୂର୍ବେ ସମାଜରେ ଏପରି କଡ଼ା ପ୍ରଥା ଥିଲା ଯେ ନବାଗତବଧୂ ନିର୍ଜନସ୍ଥିତି ନ ହେଲେ ଘରୁ ପଦାକୁ ବାହାରିବ ନାହିଁ, ଏପରି ଅବସ୍ଥାରେ ନବବଧୂମାନଙ୍କ ବର୍ହିର୍ଯାତନ ଓ ଦୁଃଖଭୋଗ କହିଲେ ସରୁ ନ ଥିଲା । ଫଳତଃ ସେମାନଙ୍କୁ କାଲେ ଦିନବେଳେ ପୋଖରୀ ଭଳିବ ହେବ ଏଥିପାଇଁ ସେମାନେ ପେଟପୂରି କରି ମୁଠିଏ ଖାଉ ନ ଥିଲେ; ତଥାପି କେତେବେଳେ ଦୁର୍ଭାଗ୍ୟକୁ ଦିନରେ ପ୍ରସ୍ରାବ ବା ଝାଡ଼ା ମାଡ଼ିଲେ ବହୁ ସମୟ ମଳମୂତ୍ରର ବେଗ ରୋଧ କରୁ ଥିଲେ ଓ ନିତାନ୍ତ ଅସମ୍ଭାଳ ହେଲା ବେଳକୁ ପଦାକୁ ଯାଇ ନ ପାରି ଚୁଲୀରେ ଅବଜାତିକା କରି ପକାଉଥିଲେ ।]

**ଚୁଳୁକ**—ସଂ ବି (ଚୁଲ୍ ଧାତୁ=ବୁଡ଼ିବା, ପାନ କରିବା+ଅଧିକରଣ ଉକ) Chuḷuka ୧ । କର୍ଦ୍ଦମ ବା କାଦୁଅ—1. Mud; clay.
୨ । ଗଣ୍ଡୂଷ; ଖୋଲା ହାତର ପାପୁଲିରେ ଏକା ଥରକେ ସମ୍ଭାଇବା ଜଳ—2. One sip of water; that much water as can be contained in the flat palm of the hand.
୩ । କ୍ଷୁଦ୍ର ଜଳପାତ୍ର; ସାମସେଇ—3. A small water-pot.
୪ । ମାଷମଜ୍ଜନୋପଯୁକ୍ତ ପାପୁଲିରେ ସମ୍ଭାଇବା ଜଳ—4. A quantity of water contained in the flat palm of the hand in which a grain of Brihi can be immersed.
୫ । ଗୋତ୍ରପ୍ରବର୍ତ୍ତକ ଋଷିବିଶେଷ—5 Name of a sage who was the founder of a clan.

**ଚୁଳୁକିତ**—ସଂ. ବିଣ. (ଚୁଳୁକ+ଇ ପିଅ ଯିବା ଅର୍ଥରେ. ଇତ)— Chuḷukita ୧ । ଗଣ୍ଡୂଷଦ୍ୱାରା ପୀତ ବା ପିଅ ଯାଇ ଥିବା— 1. Sipped from the palm of the hand.
୨ । କର୍ଦ୍ଦମାକ୍ତ—2 Muddy; clayey.

**ଚୁଲ୍ଲ** (ଧାତୁ)—ସଂ.—ବିଳାସ କରିବା; କେଳି କରିବା— Chulla (root) To play; to disport.

**ଚୁଲ୍ଲ** ସଂ. ବିଣ.—(ଚୁଲ୍ଲ ଧାତୁ+ଅ)—କ୍ଲିନ୍ନ ଚକ୍ଷୁବିଶିଷ୍ଟ— Chulla Blear-eyed; having moistened eyes.
ବି — କ୍ଲିନ୍ନ ଚକ୍ଷୁ—Bleared eye

**ଚୁଲ୍ଲକୀ**—ସଂ. ବି. [ଚୁଲ୍ଲ ଧାତୁ=(ଜଳରେ) ବିଳାସ କରିବା+କର୍ତ୍ତୃ. ଅକ+ସ୍ତ୍ରୀ. ଈ]—୧ । ଶିଶୁମାର ନାମକ ଜଳଜନ୍ତୁ— Chullaki 1. A purpoise.
୨ । ନଦୀର ଅପର ପାର—2. The opposite shore of a river.
୩ । କ୍ଷୁଦ୍ର ପାତ୍ରବିଶେଷ; ରେକାବ—3 A small plate or vessel; saucer.

**ଚୁଲ୍ଲୀ** — ସଂ. ବି.—(ଚୁଲ୍ଲ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଈ)—୧ । ନିଆଁ Chullī ଜାଳିବା ସ୍ଥାନ—1 Oven; furnace.
୨ । ଚିତା; ଜୁଇ - Funeral pyre; cermation-fire-place.

**ଚୁଲ୍ଲି** —ସଂ ବି. (ଚୁଲ୍ଲ ଧାତୁ+କର୍ତ୍ତୃ. ଇ)—ଚୁଲ୍ଲୀ (ଦେଖ) Chulli Chullī (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଗଣ୍ଡିର ଅକ୍ଷର ଓ ମାତ୍ରା ଏବଂ ୨ ଗଣ୍ଡିର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଗଣ୍ଡିର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ୨ ବା ୧ ଗଣ୍ଡିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାର' ନ ମିଳିଲେ 'ଗାଡ଼' ଖୋଜିବେ, 'କ୍ଷ' ନ ମିଳିଲେ, 'କ୍ଷ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍ବଟ' ଦେଖିବେ ।

ଚୁଲ୍ଲୀ—ସଂ. ବି. (ଚୁଲ୍ଲ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଈ)—ଚୁଲ୍ଲା (ଦେଖ)
Chulli Chullā (See)

ଚୁଷ୍ (ଧାତୁ)—ସଂ. ଚୂଷ୍ (ଧାତୁ) (ଦେଖ)
Chush (root) Chūsh (root) (See)

ଚୁଷ୍—ଦେ. ବି.—ଚୁଚୁ ୨ ଦେଖ)
Chush Chuchu 2 (See)

ଚୁଷିବା—ଦେ. କ୍ରି.—(ସଂ. ଚୂଷ ଧାତୁ)—ଶୋଷିବା—
Chushibā To suck
चूषा
चुषना

ଚୁସ୍ତ—ବିଦେ ବିଣ. (ଫା.)—୧ । ଟାଣୁଆ; ଶକ୍ତ—
Chust 1. Hard; smart.
चोस्त ୨ । ଦୃଢ଼; ଅଶିଥିଳ; ଯାହା ଢ଼ିଲା ନ ହୋଇ ଖୁବ୍ କସି
चुस्त ହୋଇ ଥାଏ—2. Tight.
୩ । ଚୌରସ—3. Level.
(ଢିଲା—ବିପରୀତ) ୪ । କର୍ମଠ; ଚଲାଖ—4. Active.
୫ । ଦେହରେ କସି ହୋଇ ବସିବା (ପୋଷାକ)—
5. Fit; tightly fitting the body.
୬ । ଯାହା ଶିଥିଳ ବା ଢ଼ିଲା ନୁହେଁ—
6. Not loose or slack.

ଚୁହା—ଦେ. ବି.—ଚୁଆ (ଦେଖ)
Chuhā Chuā (See)

ଚୁହାଁ—ଦେ. କ୍ରି.—ଚାହିଁବା; ଅବଲୋକନ—Looking; look.
चाओया ଚନ୍ଦ୍ର ଚୁହାଁ ସୁଖ ବଡ଼ ? କି ତା ମୁଖ ଦେଖା ବଡ଼ ?
चितवन କବିସୂର୍ଯ୍ୟ. ସଙ୍ଗୀତ ।

ଚୁହାଁଇବା—ଦେ. କ୍ରି—ଚାହିଁବାର ଣିଜନ୍ତରୂପ—
Chuhāniba The causative form of
चाओयान Chāhiñbā.
ଚୁହାଁଇଲ ଚହଁ ହଲଇ ତା ବଦନ—କୃଷ୍ଣସିଂ. ମହାଭାରତ. ବନ ।

ଚୁହାଁଚୁହିଁ—ଦେ. ବିଣ—୧ । ଅନ୍ୟୋନ୍ୟରେ ଦେଖାଦେଖି; ଚହାଁଚହିଁ—
Chuhāñchuhiñ 1. Looking at each other.
ताकाताकि
ପାଣ୍ଡବମାନେ ତାହା ଦେଖି କ୍ରୋଧ ହୋଇ
ହୋଇଲେ ପରସ୍ପରେ ମୁହିଁ ଚୁହାଁଚୁହିଁ—କୃଷ୍ଣସିଂହ ମହାଭାରତ. ସଭା ।
୨ । ଅନ୍ୟକୁ ଦେଖିବା କର୍ମ—
2. Act of seeing any person.
ଚୁହାଁଚୁହିଁ ନାହିଁ ଆନରେ ବୋଲ
ଚକାରେ ନୟନ ଯେବେ ମୁଁ କଲ—କବିସୂର୍ଯ୍ୟ. ସଙ୍ଗୀତ ।

ଚୁହାଡ଼—ଦେ. ବି—(ହି. ଚୁହଡ଼ା=ଶୃଗାଳ, ଶ୍ୱପଚ; ହି. ଗୈଆଡ଼=
Chuhārda ପାହାଡ଼ିଆ ଜଙ୍ଗଲ ଜାତିବିଶେଷ)—
चुयाड़, चोयाड़ ୧ । ଚୁଆଡ଼; ଗୈହାଡ଼; ଅସଭ୍ୟ ଜଙ୍ଗଲ ଜାତି—
चुहड़ा A wild tribe.
୨ । ହାଡ଼ି; ମେହେନ୍ତର—
2. A man of the sweeper caste.
ବିଣ—୧ । ଅସଭ୍ୟ; ଜଙ୍ଗଲି—1. Uncivilised.
୨ । ବର୍ବର; ନିଷ୍ଠୁର—2. Cruel.
୩ । ଅଭଦ୍ର—3. Rude.
୪ । ନୀଚ—4. Low; mean.

ଚୁହାଣ—ଦେ. ବି—୧ । ଚୌହାଣ; ଚୌହାନବଂଶ; କ୍ଷତ୍ରିୟ ବା ରାଜପୁତଙ୍କ
Chuhāna ଶାଖାବିଶେଷ (ଚୌହାଣ ତଳେ ନୋଟ ଦେଖ)—
चुहान 1. A branch of Kshyatriyas or
चौहान, चोहान Rajputs
ଏବେ ରାଜପୁତ ଚୌହାଣ ମୁଗଲ ବସେଲ ଚୁହାଣ ପଠାଣ
ଗଡକୁ ବୋଲି ପରି ଥାଇଁ ସିବେ ସେ କଳ ଲଙ୍ଘିବେ କେହି ପୁଣ ।
ବ୍ରଜନାଥ. ସମରତରଙ୍ଗ ।
୨ । ଗୃହଦାହକ—2. An incendiary.
୩ । ନୀଚଜାତିର ଗୃହଦାହକ ରାଜସେବକବିଶେଷ—
(ଗୋପୀନାଥ ନନ୍ଦ)
ଶୂନ୍ୟ ଘର ଗୁଡାଏ ଅଚଳ ସବୁ ଲୋକ
ଚୁହାଣଙ୍କୁ ବୋଇଲ ରେ ଘର ଦିଅ ପୋଡ଼ି—ପୀତାମ୍ବର ନୃସିଂହପୁରାଣ ।
3. A class of king's servants of low
caste whose duty it was to set fire
to houses under the king's order.

ଚୁହାନ୍—ଦେ. ବି—ଚୁହାଣ ୧ ( ଦେଖ )—
Chuhān Chuhāna 1 (See)

ଚୁହାର—ଦେ. ବି—ଛୁଆର ( ଦେଖ )—
Chuhārā Chhuārā (See)

ଚୁହିବା—ପ୍ରାଦେ (ସମ୍ବଲପୁର) କ୍ରି (ତୁଳ. ହି. ଚୁହନା; ସଂ ଚୂଷ ଧାତୁ)
Chuhibā ଶୋଷିବା—To suck.

ଚୂଚୁକ—ସଂ. ବି—ଚୁଚୁକ ( ଦେଖ )—
Chūchuka Chuchuka (See)

ଚୂର୍ଡ୍ (ଧାତୁ)—ସଂ—ମୁଣ୍ଡନ କରିବା—
Chūrd (root) To shave.

ଚୂଡ଼—ସଂ. ବି ( ଚୂଡ଼ ଧାତୁ+କର୍ମ. ଅ )—୧ । ଚୂଳ; ବୃଷଭାଦି ପଶୁଙ୍କ
Chūrda ପିଠିରେ ବାହାରିଥିବା ମାଂସ ପିଣ୍ଡ—1. A hump or
protuberance on the back of certain
animals e g. bulls.
୨ । ଚୁଟି—2. A tuft of long hair on the head.
୩ । ଶଙ୍ଖଚୂଡ଼ ନାମକ ଦୈତ୍ୟ—3. Name of a demon.
୪ । ଶୃଙ୍ଗ, ଘର ଓ ପାହାଡ଼ ଆଦିର ଶିଖା—
4. Top; summit.
୫ । ଛୋଟ କୂଅ (ହି. ଶବ୍ଦସାଗର)—5. Small well.

ଚୂଡ଼କ—ସଂ. ବି (ଚୂଡ଼ ଧାତୁ+କର୍ମ. ଅକ)—ଚୂଡ଼ ( ଦେଖ )—
Chūrdaka Chūrda (See)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇୟ | ଡ଼ଅ | ଞ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚଁ୍ୟ | ଇଅ | ଢ଼ | ନ୍ |

ଚୂଡ଼ନ୍ତ (ଇତ୍ୟାଦି) (ସଂ. ଚୂଡ଼ାନ୍ତ)—ଚୂଡ଼ାନ୍ତ ଇତ୍ୟାଦି (ଦେଖ)—
Chūrdanta (etc) Chūrdānta etc (See)
ଚୁଡ଼ନ୍ତ

ଚୂଡ଼ା—ସଂ. ବି (ଚୂଡ଼ ଧାତୁ=ମୁଣ୍ଡନ କରିବା+କର୍ମ. ଅ+ସ୍ତ୍ରୀ. ଆ)—
Chūrdā ହିନ୍ଦୁ ବାଳକର ମସ୍ତକମୁଣ୍ଡନରୂପ ସଂସ୍କାର—
1. The ceremony of shaving performed on a Hindu boy.

୨ । କେଶ—2. Hair.

୩ । ଜୁଡ଼ା; ଜଟ; ମୁଣ୍ଡ ଉପରେ ପକାଯିବା ଗଣ୍ଠି—
3. A mass of hair artistically dressed into a knot ever the head; chignon.

ବନ୍ଧୁ ଅଛ କ ଲେଡା, ନୂଆ ନଥାନ କର୍ମ ଚୂଡ଼ା—କବିସୂର୍ଯ୍ୟ. ସଙ୍ଗୀତ ।

୪ । କେଶର ଶିଖା; ଚୁଟି—
4. Tuft of hair left on the crown of the head after the 1st shaving ceremony; a single lock of hair.

୫ । ମୟୂରାଦି ପକ୍ଷିଙ୍କ ମୁଣ୍ଡରେ ଦେଖୁଁ ଉନ୍ନତ ପକ୍ଷଗୁଚ୍ଛ ଥାଏ—
5. Tuft of feathers standing on the head of certain birds (e. g. peacock).

୬ । ପର୍ବତର ଶିଖର; ପର୍ବତ ଶୃଙ୍ଗ—
6. Mountain-peak; crest; pinnacle.

୭ । ଅଗ୍ରଭାଗ—Top; summit; crown.

୮ । ମୁକୁଟ; ମସ୍ତକଭୂଷଣ—
8. A conical head-dress; crown.

୯ । ମୁକୁଟ ବା ପଗଡ଼ି ଉପରେ ଲମ୍ବଭାବରେ ଠିଆ ହୋଇଥିବା ଶିଖା—9. Diadem; an ornament put upright on the crown or turban

୧୦ । ସ୍ତ୍ରୀମାନଙ୍କ ଚୁଡ଼ି, କବର ଭୂଷଣ—
10. A flat bracelet.

୧୧ । ଭୂଷଣ; ଅଳଙ୍କାର—
10. Ornament; jewellery.

୧୨ । ମସ୍ତକ ( ହି. ଶବ୍ଦସାଗର )—12. Head

୧୩ । ପ୍ରଧାନ ନାୟକ ( ହି. ଶବ୍ଦସାଗର )—
13. Chief; leader.

୧୪ । କୂଅ ( ହି. ଶବ୍ଦସାଗର )—14. Well.

୧୫ । କାଇଞ୍ଚ ( ହି. ଶବ୍ଦସାଗର )—
15. A black-topped red seed.

୧୬ । ବାହୁଭୂଷଣବିଶେଷ ( ହି. ଶବ୍ଦସାଗର )—
16. A kind of ornament for the arms; armlet.

୧୭ । ଚୂଡ଼ାକରଣ ( ଦେଖ ) ( ହି. ଶବ୍ଦସାଗର )—
17. Chūrdākaraṇa (See)

୧୮ । ( ଚୁଦ ଧାତୁ=ପ୍ରେରଣ କରିବା+ଭାବ. ଅ+ସ୍ତ୍ରୀ. ଆ )
ପ୍ରେରଣ ( ପ୍ରକୃତିବାଦ )—18. Sending

ବିଣ—ଶ୍ରେଷ୍ଠ; ପ୍ରଧାନ—Chief; principal.

ଚୂଡ଼ାକରଣ—ସଂ. ବି—ବ୍ରାହ୍ମଣାଦି ଦ୍ୱିଜାତି ବାଳକର ପ୍ରଥମ କ୍ଷୌର ବା
Chūrdākaraṇa କେଶମୁଣ୍ଡନ ରୂପ ସଂସ୍କାର; ବାଳପକା—
(ଚୂଡ଼ାକର୍ମ—ଅନ୍ୟରୂପ) The ceremony of first shaving done on a boy of the twice-born castes amongst the Hindus; the ceremony of tonsure practised amongst the 3 higher caste-boys amongst the Hindus.

[ ଦ୍ର—ଏଥିରେ ବାଳକର ମୁଣ୍ଡସାକ ଲଣ୍ଡା କରାଯାଇ ମଝିରେ ଚୂଡ଼ା ବା ଶିଖା ଛାଡ଼ି ଦିଆ ଯାଉଥିଲା । ]

ଚୂଡ଼ାନ୍ତ—ସଂ. ବି. ( ୬ଷ୍ଠୀ ତତ୍; ଚୂଡ଼ା=ଶିଖା+ଅନ୍ତ=ଶେଷ )—
Chūrdānta ୧ । ଶେଷ ମୀମାଂସା—1. Final decision or determination; conclusion.

୨ । ଯୁକ୍ତିଜନିତ ଅନୁମାନ—
2. Deduction; inference.

୩ । ଚରମ ବା ଶେଷ ସୀମା—
3. Extremity; limit.

୪ । ପରାକାଷ୍ଠା—4 Acme

୫ । କାର୍ଯ୍ୟସମାପ୍ତି—5. Completion of work.

୬ । ଚୂଡ଼ାର ଅଗ୍ର—6. The top of a chignon or knot of hair.

ଦେ. ବି—ଶେଷ; ଅନ୍ତ—Finish; end.

ଦେ. ବିଣ—ଅନ୍ତିମ; ଚରମ—
Final; conclusive.

ଚୂଡ଼ାନ୍ତ କରିବା—ଦେ. କ୍ରି—କୌଣସି କାର୍ଯ୍ୟକୁ ଶେଷ ବା ସାଙ୍ଗ କରିବା—
Chūrdānta karibā To bring a thing to completion; to give the finishing touch to a thing.
ଚୁଡ଼ନ୍ତକରିବା

ଚୂଡ଼ାନ୍ତ ଡିଗ୍ରି—ଦେ (କଚେରିଆ ଭାଷା) ବି—ବନ୍ଧକ ଓ ବଣ୍ଟା ମକଦ୍ଦମାରେ
Chūrdāntadigri ହାକିମ ପ୍ରଥମ ଡିଗ୍ରି ବା ଫଇସଲା ଲିପିବଦ୍ଧ
ଚୁଡ଼ନ୍ତଡ଼ିଗ୍ରି କରିବା ପରେ ମିଆଦଗତେ କମ୍ପା ଅମିନ ଜରିଫର୍ଦ୍ଦ
(ଚୂଡ଼ାନ୍ତ ଫଇସଲା—ଅନ୍ୟରୂପ) ଉପର କର ରିପୋର୍ଟ ଦେବା ପରେ ଅଦାଲତ ଶେଷରେ ଯେଉଁ ଡିଗ୍ରି ଲିପିବଦ୍ଧ କରନ୍ତି—
Final decree passed in a mortgage-suit or partition-suit at its final stage, i. e. some time after a preliminary decreee ts passed.

ଚୂଡ଼ାନ୍ତ ନିଷ୍ପତ୍ତି—ଦେ. ବି—ଶେଷ ନିଷ୍ପତ୍ତି—
Chūrdānta nishpatti Final decision.
(ଚୂଡ଼ାନ୍ତନିଷ୍ପତ୍ତି—ଅନ୍ୟରୂପ)

ସାଧାରଣ ଲୋକେ ଅଳ୍ପ ଦୃଷ୍ଟିରେ ସମସ୍ତ ୧ ଛନ୍ଦର ଅକ୍ଷର ଓ ମାନ ଏବଂ ୨ ଛନ୍ଦର ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଛନ୍ଦର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ନମିଳେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଛନ୍ଦର ବିପରୀତ ୨ ବା ୧ ଛନ୍ଦର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଦେଖିବେ; 'ଭୁଅଁ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅତିଯା' ନ ପାଇଲେ 'ଅଜ୍ଞା' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ ।

ଚୂଡ଼ାନ୍ତ ହୁକୁମ—ଦେ. ( କଚେରୀଆ ଭାଷା ) ବି—
Churdānta hukuma ୧ । ଚୂଡ଼ାନ୍ତ ନିଷ୍ପତ୍ତି (ଦେଖ)
1. Chūrdānta nishpatti (See)
୨ । ଶେଷ ନିଷ୍ପତ୍ତି ପରେ ହାକିମ ଯେଉଁ ଆଦେଶ ଦିଅନ୍ତି—
2. Final order.

ଚୂଡ଼ାବାନ୍—ସଂ ବିଣ ପୁଂ (ଚୂଡ଼ା+ଅଛି ଅର୍ଥରେ ବତ୍; ୧ମା.୧ବ)—
Chūrdābān ଯାହାର ଚୂଡ଼ା ଅଛି—
(ଚୂଡ଼ାବତୀ—ସ୍ତ୍ରୀ) Having a tuft or chignon.

ଚୂଡ଼ାମଣି—ସଂ. ବି. ( ୬ଷ୍ଠୀ ତତ୍; ଚୂଡ଼ା+ମଣି )—୧ । ମୁକୁଟର ପ୍ରଧାନ ମଣି—
Chūrdāmaṇi 1. Crest-jewel; a jewel worn on the diadem or crest; the gem worn in the crown.
୨ । ସର୍ବଶ୍ରେଷ୍ଠ ବ୍ୟକ୍ତି—
2. Chief or principal person.
୩ । କାକମାଚି (ଦେଖ)
3. Kākamāchi (See)
ଦେ. ବି—୧ । ବଙ୍ଗଦେଶର ବିଦ୍ୱାନ୍ ପଣ୍ଡିତମାନଙ୍କୁ ଦିଆଯିବା ଉପାଧି—1. A title given to Bengal Pandits for eminent scholarship.
୨ । ଉତ୍କଳର କେତେକ ବିଶିଷ୍ଟ ଜମିଦାରଙ୍କ ଉପାଧି—
2. The title of some prominent zamindars of Orissa.
୩ । (ନାମ) ଚୂଡ଼ାମନ୍ (ଦେଖ)
3. Chūrdāman (See)
ବିଣ—୧ । ସର୍ବଶ୍ରେଷ୍ଠ—1. Chief; principal; eminent

ଏହା କହି ସାଧୁ ଧନୁର୍ଦ୍ଧରଚୂଡ଼ାମଣି
ଅରଜୁନ କହିଲେ ଶ୍ରୀକୃଷ୍ଣଙ୍କୁ ବାଣୀ । କୃଷ୍ଣସିଂହ. ମହାଭାରତ କର୍ଣ୍ଣ ।

୨ । ସର୍ବୋଚ୍ଚ—2. highest.

ଝିଲେକ ଚୂଡ଼ାମଣି ସ୍ଥଳେ
ବସିଛ ନିଷ୍ଫଳ ଆସନେ । ଜଗନ୍ନାଥ. ଗୁଣ୍ଡିଚା ।

ଚୂଡ଼ାମନ୍—ଦେ. ବି.—ଓଡ଼ିଶା ବାଲେଶ୍ୱର ଉପକୂଳର ପ୍ରାଚୀନ ବନ୍ଦର ବିଶେଷ—(ଜଗବନ୍ଧୁ ପ୍ରାଚୀନ ଉତ୍କଳ)—Name
Chūrdāman of an ancient port in the Orissa sea-coast in the district of Balasore.

ଚୂଡ଼ାମ୍ଳ—ସଂ. ବି. (ବହୁବ୍ରୀହି; ଚୂଡ଼ା+ଅମ୍ଳ)—ତିନ୍ତୁଳ (ହି. ଶବ୍ଦସାଗର)—
Chūrdāmla Tamarind

ଚୂଡ଼ାଳ—ସଂ. ବି. (ଚୂଡ଼ା+ଅଛି ଅର୍ଥରେ ଲ)—ମସ୍ତକ—
Chūrdāla The head.
ବିଣ.—ଚୂଡ଼ାବିଶିଷ୍ଟ; ଶିଖାଯୁକ୍ତ—
Having a tuft or chignon.

ଚୂଡ଼ାଳା—ସଂ, ବି. (ଚୂଡ଼ାଳ+ଆ)—୧ । ଧଳା କାଇଁଚ—1. White
Chūrdālā variety of Kaiñcha.
୨ । ନାଗର ମୁଥା (ଦେଖ)
2. Nāgaramuthā (See).
୩ । କବିଁଶୀ ତୃଣ (ହି. ଶବ୍ଦସାଗର)—
3 A kind of grass.

ଚୂଡ଼ି (ଇତ୍ୟାଦି)—ଦେ. ବି. (ସଂ. ଚୂଡ଼ା)—ଚୁଡ଼ି ଇତ୍ୟାଦି (ଦେଖ)
Chūrdi (etc) Churdi etc (See)

ଚୂତ—ସଂ. ବି.—୧ । (ଚୁସ୍ ଧାତୁ=ଶୋଷିବା, ଚୁଚୁମିବା+କର୍ମ. ତ; ଯେଉଁ ଫଳକୁ ଚୁଚୁମି କରି ଖିଆଯାଏ)—ଆମ୍ବ (ବୃକ୍ଷ ଓ ଫଳ)—1. Mango (tree and fruit); Magnifera Indica.
Chūta
୨ । ( ଚ୍ୟୁତ୍ ଧାତୁ=କ୍ଷରିତ ହେବା+ଅପାଦାନେ. ଅ. କ୍ରପାଦନ)—ଭଗ; ପ୍ରସବଦ୍ୱାର; ଯୋନି—
2. Vagina.
୩ । ଗୁହ୍ୟଦ୍ୱାର—3 Anus.
୪ । ଗୃହଦ୍ୱାର—4. Door of a house (M.W).

ଚୂତକ—ସଂ. ବି. (ଚୂତ+ସ୍ୱାର୍ଥେକ)—ଚୂତ (ଦେଖ)
Chūtaka Chūta (See)

ଚୂତମୁକୁଳ—ସଂ. ବି (୬ଷ୍ଠୀତତ୍; ଚୂତ+ମୁକୁଳ)—ଆମ୍ବ ବଉଳ—
Chūtamukula Mango-flowers; mongo-buds.

ଚୂତଲତା—ସଂ. ବି (ଚୂତ+ଲତା )—୧ । (୬ଷ୍ଠୀତତ୍ )—ଲଟାଣିଆଁ ଆମ୍ବଗଛ—1. A kind of mango tree with spreading or overhanging branches
Chūtalatā
୨ । (ମ. ପ. କ୍ଲୋ.)· ଆମ୍ବ ଗଛରେ ମାଡ଼ିଥିବା ଲତା—
2. A creeper creeping over a mango tree.

ଚୂନ—ଦେ. ବି ( ସଂ. ଚୂର୍ଣ୍ଣ )—ପଥର, ଶିପ ପ୍ରଭୃତିକୁ ପୋଡ଼ିବା ଦ୍ୱାରା ଜାତ ଚୂର୍ଣ୍ଣ—Slaked lime.
Chūna
चून, चुन [ ଦ୍ର—ଚୂନ ଦୁଇ ପ୍ରକାର । ୧. ପଥର ଚୂନ
चून, चूना ବା Stone-lime ଓ ୨. ଶିପଚୂନ ବା Shell-lime.
ଚୂନିଆ ପଥର ବା ଗେଙ୍ଗୁଟିକୁ ପୋଡ଼ି (୧) ପଥରଚୂନ, ଓ ଶାମୁକା ବା ସିପକୁ ପୋଡ଼ି (୨) ସିପଚୂନ ବା କଳିଚୂନ କରାଯାଏ । ପୋଡ଼ା ହୋଇଥିବା ଚୂନରେ ପାଣି ପକାଇଲେ ତାହା ପାଣିକୁ ଶୋଷିନିଏ ଓ ପାଣି ଗରମ ହୋଇ ଫୁଟେ । ଏହାକୁ ଫୁରୁସା ଚୂନ (Slaked lime) କୁହାଯାଏ । ଶିପଚୂନକୁ ଫୁରୁସାଇ କଳିଚୂନ କରାଯାଏ । ଏହା ପାନରେ ଖିଆଯାଏ ଓ କୋଠାଘରେ ଇଟା ପ୍ରଭୃତି ଗାନ୍ଥିବା କରିବାରେ ଲାଗେ । ପଥରଚୂନରେ ସାଧାରଣତଃ ଇଟାର ଓ ପଥରର ଗାନ୍ଥୁନି ହୁଏ ଓ କଳିଚୂନରେ କାନ୍ଥଆଦି ଧଉଳା ଯାଏ । ଶଙ୍ଖ ଓ ମୋତିକୁ ପୋଡ଼ି ମଧ୍ୟ ଚୂନ କରାଯାଏ । ଚୂନ ଔଷଧରେ ଲାଗେ ଓ କ୍ଷେତରେ ସାର ଦିଆଯାଏ । ]

| ୧ | ଇ | ଉ | ଋ,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଙ୍ଘ | ଋଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ଢ଼ |

ଚୂନକଳା - ଦେ. ବ— କୌଣସି ବ୍ୟକ୍ତିକୁ ହାସ୍ୟାସ୍ପଦ କରିବା ବା ଦଣ୍ଡ
Chūnakaḻā ଦେବା ନିମନ୍ତେ ତା ଦୁଇ ଗାଲରେ ବୋଳାଯିବା
चूनकाली ଚୂନ ଓ ଅନ୍ୟ ଗାଲରେ ବୋଳାଯିବା କଳା—
(ଚୂନକାଳ— ଅନ୍ୟରୂପ) Lime and lamp-black used for painting the two cheeks of a person (as punishment or in jest).

[ ଦ୍ର— ପୂର୍ବେ ଅପରାଧୀ ଲୋକଙ୍କ ମୁହଁରେ ଚୂନକଳା ବୋଳି ଦାଣ୍ଡରେ ବୁଲାଉଥିଲେ ଓ ସେ ଲୋକ ଏତଦ୍ୱାରା ଅତି ଲଜ୍ଜିତ, ଅପମାନିତ ଓ ଉପହସିତ ହେଉଥିଲା । ]

ଚୂନକଳା ଦେବା (ମୁହଁରେ)—ଦେ. କ୍ରି—୧ । ଲଜ୍ଜିତ କରିବା ପାଇଁ
Chūnakaḻā debā ଅପରାଧୀ ବ୍ୟକ୍ତିର ଏକଗାଲରେ ଚୂନ ଓ
(गाले) चूनकाली देओया ଏକ ଗାଲରେ କାଳୀ ବୋଳିବା—
**চুনকালানা** 1. To besmear lime on one side and black on the other side of the face of an offendor to put him to derision and shame.
୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଅତି ଲଜ୍ଜିତ କରିବା—
2. (figurative) To put a person to shame.

ଚୂନକାମ—ସ ବି. ( ସଂ. ଚୂର୍ଣ୍ଣ+କର୍ମ )—ଚୂନରେ କରାଯିବା ପଲସ୍ତରା
Chūnakāma ଓ ଗାନ୍ଥିନି—Plaster-work and masonry
चुणकाम of lime
**চুনাই**

ଚୂନକୋଳି—ଦେ. ବି—ଏକପ୍ରକାର ସୁଖାଦ୍ୟ କୋଳି—
Chūnakoḻi A kind of edible plum.
[ ଦ୍ର—ଏହାର ଗଛ କଣ୍ଟାଳିଆ, କୋଳିର ବର୍ଣ୍ଣ ଧଳା ଓ ସ୍ୱାଦ ମିଷ୍ଟ । ] (ଚୂନୁକୋଳି—ଅନ୍ୟରୂପ)

ଚୂନଖାଇ—ଦେ. ବି—ଚୂନଦାନି (ଦେଖ)
Chūnakhāi Chūnadāni (See)

ଚୂନଗୋଡି—ଦେ. ବି—ପୋଡ଼ା ଚୂନକୁ କୁଟି ଚାଲୁଣୀରେ ଚାଳି ନେବା
Chūnagoṛḍi ପରେ ଯେଉଁ କଠିନ ପ୍ରସ୍ତରଖଣ୍ଡମାନ ରହୁଯାଏ--
चूनगुड़ी The concrete left after sifting pounded lime.
**চুনাকাঙ্কড়**
(ଚୂନୁଗୋଡ଼ି — ଅନ୍ୟରୂପ)

ଚୂନଚଉଁରି—ଦେ. ବି—ଚୂର୍ଣ୍ଣଚଉଁରି (ଦେଖ)
Chūnachauṅri Chūrṇnachauṅri (See)

ଚୂନଦାନି—ଦେ. ବି. ( ସଂ. ଚୂର୍ଣ୍ଣ+ଆଧାନ )—ପାନରେ ଲଗାଇବା
Chūnadāni ପାଇଁ ଅଭିପ୍ରେତ ଚୂନ ଯେଉଁ ଧାତୁପାତ୍ର ବା
चुनटी; चुनाती ଡବାରେ ରଖାଯାଏ—A pot containing
**চুনৌটী, চুনাদানী** lime used for applying on betel leaves.

ଚୂନପତ୍ର—ଦେ. ବି. (ସଂ. ଚୂର୍ଣ୍ଣ+ପତ୍ର; ଏହା ଚୂନ ସଙ୍ଗେ ମିଶାଯାଇ
Chūnapatra ଖିଆ ହେବାରୁ )—ପାନ ସଙ୍ଗେ କିମ୍ବା ଖାଲି
खईनी ପାଟିରେ ପକାଇବା ନିମନ୍ତେ ଚୂନ ସଙ୍ଗେ ଏକତ୍ର
**भांग, खैनी** ଦଳା ହୋଇଥିବା ତମାଖୁ ପତ୍ର—Bits of tobacco-leaves pressed with a little lime and used with betel or taken alone.

ଚୂନପୋଡ଼ା—ଦେ. ବି—ଶିପ ବା ଗେଙ୍ଗୁଟିକୁ ଚୂନରେ ପରିଣତ କରିବା
Chūnaporḍā ପାଇଁ ଭାଟିରେ ପୋଡ଼ିବା—Slaking or
चूनपुड़ान burning of limestone or shells.
**চুনাফুকনা** [ ଦ୍ର—ଗେଙ୍ଗୁଟି ଓ ଶାମୁକା ଆଦି ପୋଡ଼ାଯାଇ ଚୂନରେ ପରିଣତ ହୁଏ । ଅତଏବ ଏହା ଚୂନପୋଡ଼ା ନ ହୋଇ ପ୍ରକୃତରେ ଗେଙ୍ଗୁଟିପୋଡ଼ା ବା ଶାମୁକାପୋଡ଼ା ଅଟେ । ]

ଚୂନଫେରା—ଦେ. ବି—୧ ଫୁଟ ଲମ୍ବା, ଚଉଡ଼ା ଓ ଗଭୀର ଚୂନ
Chūnapherā ମାପିବାର ପାତ୍ର—A measure one cubic foot) for lime.

ଚୂନ ଫେରାଇବା—ଦେ. କ୍ରି—ଚୂନସଫେଦ କରିବା (ଦେଖ)
Chūna pherāibā Chūnasaphedi karibā (See)
(ଚୂନଫେରେଇବା —ଅନ୍ୟରୂପ)

ଚୂନଭାଟି—ଦେ. ବି—ଯେଉଁ ଚୁଲିରେ ଗେଙ୍ଗୁଟି ବା ଶିପ ପୋଡ଼ାଯାଇ
Chūnabhāṭi ଚୂନ ତିଆରି ହୁଏ—Lime-kiln
चूनेव भाटी
**চুনেকিভট্টী**

ଚୂନରା—ଦେ. ବି.—(ସଂ. ଚୂର୍ଣ୍ଣକାର)—୧ । ଯେଉଁ ଜାତି ଶିପ ଓ
Chūnarā ଗେଙ୍ଗୁଟି ପୋଡ଼ି ଚୂନ ତିଆରି କରନ୍ତି—1. A caste
(ଚୂନୁରା—ଅନ୍ୟରୂପ) of men who prepare slaked lime; a lime-burner.
चूनावी
**চুনারী** ୨ । ଯେ ଚୂନ ପୋଡ଼ି ବିକି କରେ—
2. One who sells slaked lime.

ଚୂନସଫେଦି କରିବା—ଦେ. କ୍ରି—ଚୂନଗୋଳିଆ ପାଣିରେ ଘର
Chūnasaphedi karibā ଧଉଳାଇବା—To whitewash
चून सफेदि करा; चूनफिरा a house with lime-water.
**চুনাফেরানা**

ଚୂନସୁରକି—ଦେ. ବି.—ପକ୍କା-ଗାନ୍ଥିଣି କରାଯିବା ପାଇଁ ଚୂନ ସଙ୍ଗେ
Chūnasurki ଇଟାଗୁଣ୍ଡା ମିଶା ଯାଇ ତିଆରି କରାଯିବା ମସଲା—
चूनसुर्की Mortar made of brick-dust and lime.
**চুনাসুরখী**
(ଚୂନ ସୁରୁକି, ଚୂନୁସୁରୁକି—ଅନ୍ୟରୂପ)

ଚୂନହଳଦି—ଦେ. ବି.— ଏକତ୍ର ମିଶ୍ରିତ କଳିଚୂନ ଓ ବଟା ହଳଦି—
Chūna haḻadi Mixture of quicklime and
चूनहलुद turmeric.
[ ଦ୍ର—ଏହି ଦୁଇଟି ପଦାର୍ଥ ମିଶାଇଲେ ମିଶ୍ରିତ ପଦାର୍ଥର ବର୍ଣ୍ଣ ଲାଲ ହୁଏ । ]
(ଚୂନହଳସୀ, ଚୂନୁହଳସୀ—ଅନ୍ୟରୂପ)

ଚୂନା—ଦେ. ବି. (ସଂ. ଚୂର୍ଣ୍ଣ)—୧ । କୌଣସି ପଦାର୍ଥର ଚୂର୍ଣ୍ଣ—
Chūnā 1. Powder.
चना, चूर (ଯଥା—ଗୁଆଳ ଚୂନା, ଗହମ ଚୂନା)

> ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ବୂଅ' ଦେଖିବେ; 'ବଧ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲଚ୍ଛ' ନ ପାଇଲେ 'ଅଲ୍‌ବତ୍ର' ଦେଖିବେ

**ଭୁକନୀ, ଚୂନ, ଚୂନୀ, ଚୂର** ୨ । ଧାତୁ ବା କାଠ ଆଦିର ଗୁଣ୍ଡ; କରତ ଗୁଣ୍ଡ—2. Saw-dust; filings.

ବିଣ.—୧ । ଚୂର୍ଣ୍ଣୀକୃତ—1. Powdered; pulverised.

ମୋଡାରେ ଚୂନା ହୋଇ ଯାଇ ପାରେ ମେରୁ ।
କୃଷ୍ଣସିଂହ· ମହାଭାରତ· ବନ ।

୨ । ଅତି କ୍ଷୁଦ୍ର—2. Very small; minute.
(ଯଥା—ଚୂନା ମାଛ ।)

**ଚୂନାଇବା**—ଦେ. କ୍ରି. (ସଂ. ଚୂର୍ଣ୍ଣ)—୧ । ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ କାଟିବା—1. To cut into very small pieces.
Chūnāibā
(ଚୂନେଇବା—ଅନ୍ୟରୂପ)

(ଯଥା—ପରିବାକୁ ଚୂନାଇଁ କରି କାଟିଲେ ଶୀଘ୍ର ସିଝି ଯାଏ)

୨ । ଚୂର୍ଣ୍ଣ କରିବା; ଚୂରିବା—
2. To pound; to reduce into powder.

**ଚୂନା କରିବା**—ଦେ. କ୍ରି.—୧ । କୌଣସି ବସ୍ତୁକୁ ଚୂର୍ଣ୍ଣରେ ପରିଣତ କରିବା—1. To reduce into powder; to pulverise.
Chūnā karibā
चूनाकरना

୨ । (ଲକ୍ଷଣାର୍ଥ) କ୍ଷୟ ବା ବିନାଶ କରିବା—
2. (figurative) to destroy.

ଅନାଦରରହିତ, ଅନାଇଣି ନରତ, ଚୂନାକରୁ ଦୁରିତ ।
କବିସୂର୍ଯ୍ୟ· କଣୋସ୍ୱାଚନ୍ଦ୍ରୁ କ ଗୀତ ।

**ଚୂନାକୁ ଚାହିଁ ପିଠା କରିବା**—ଦେ. କ୍ରି.—(ଲକ୍ଷଣାର୍ଥ) ଉପାଦାନକୁ ଚାହିଁ ବିବାଦ କରିବା—(figurative) To cut your coat according to your cloth.
Chūnāku chāhin̄ pithā karibā

**ଚୂନା କୁଟିବା**—ଦେ. କ୍ରି.—ଚାଉଳ ଇତ୍ୟାଦିକୁ କୁଟି ଚୂନା କରିବା—To pound or press rice etc into powder.
Chūnā kuṭibā
चालकूटा

[ ଦ୍ର—ପ୍ରକୃତରେ ଚୂନା କୁଟା ଯାଏ ନାହିଁ, ଚାଉଳ ଆଦି କୁଟାଯାଇ ଚୂନାରେ ପରିଣତ ହୁଏ ।]

**ଚୂନା ଚୂନା**—ଦେ. ବିଣ.—୧ । ଚୂର୍ଣ୍ଣିତ—1. Powdered
Chūnā chūnā
चूना चूना

୨ । ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡମାନଙ୍କରେ ବିଭକ୍ତ—
**ଚକନାଚୂର**
2. Reduced into minute pieces

ବି—୧ । ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ (ବହୁବସ୍ତୁ)—
1. Many minute bits.

୨ । ବହୁ ପରିମିତ ଚୂର୍ଣ୍ଣ—
2. A large quantity of powder.

**ଚୂନାଟ୍**—ବୈଦେ. ବି. ( ହି. ଚୂନଟ୍ )—ଚୂନଟ୍ (ଦେଖ)
Chūnāt — Chūnat ( See )

**ଚୂନା ଧାନ**—ଦେ. ବି—ବିଲାରୁ ଝଡ଼ା ହୋଇ ଏକତ୍ର ଜମା କରାଯାଇ ଥିବା ଧାନ—Paddy separated from the sheaves and gathered into a heap.
Chūnā dhāna

**ଚୂନା ମାଛ**—ଦେ. ବି—ଅତି ଛୋଟ ଛୋଟ ମାଛ—Small fishes.
Chūnā māchha
चूनापूँठी, चुनोपूँटी

[ ଦ୍ର—ଦଣ୍ଡକଣ୍ଠ, କେରାଣ୍ଡୀ ଇତ୍ୟାଦିକୁ ଚୂନା ମାଛ କୁହାଯାଏ । ]

**ଚୂନା ହେବା**—ଦେ.କ୍ରି—୧ । ଚୂର୍ଣ୍ଣ ହେବା; ନଷ୍ଟ ହେବା—1. To be destroyed.
Chūnā hebā
चूनाहओया

୨ । ଭାଙ୍ଗି ଯାଇ ଟିକି ଟିକି ହେବା—
**চকনাচূর হোনা** 2. To be broken into small pieces.

୩ । ଚୂର୍ଣ୍ଣରେ ପରିଣତ ହେବା—
3. To be reduced into powder

**ଚୂନି**—ଦେ. ବି. ( ସଂ. ଚୂର୍ଣ୍ଣିକା )—
Chūni
खुद
**ভুক্‌নী, চূন; চূন্নী**

୧ । ଚୂନା ହୋଇ ଚାଲୁଣିରେ ଚଲା ହେବା ପରେ ବାକି ରହିଯିବା ଗହମ ଚୋପାର ଅତି କ୍ଷୁଦ୍ର କ୍ଷୁଦ୍ର ଅଂଶ; ଚୋକଡ଼; ଶସ୍ୟରୁ ବାହାରି ଥିବା ଚୋପାର କ୍ଷୁଦ୍ରାଂଶ; କାଣ୍ଡିଆ କୁଣ୍ଡା—1. Small particles of the chaff or bran of wheat or other grains after they are pounded and the husks sifted and separated.

୨ । କରତ ଗୁଣ୍ଡ—2. Saw dust.

चूनि
**চুনী**
୩ । ରକ୍ତବର୍ଣ୍ଣ ବହୁମୂଲ୍ୟ କ୍ଷୁଦ୍ର ପ୍ରସ୍ତର ବିଶେଷ; ପଦ୍ମରାଗ ମଣି; କ୍ଷୁଦ୍ର ମାଣିକ—3. A ruby.

ବିଣ—୧ । ଅତି କ୍ଷୁଦ୍ର—1. Very small; minute.

୨ । ଚୂର୍ଣ୍ଣୀକୃତ—2. Powdered; pulverised.

**ଚୂନିଆଁ ପଥର**—ଦେ. ବି. ( ସଂ. ଚୂର୍ଣ୍ଣ+ପ୍ରସ୍ତର )—ଯେଉଁ ପଥରରେ ଚୂନର ଭାଗ ଥାଏ; ଖଡ଼ିଆ ପଥର; ଯେଉଁ ପଥରକୁ ପୋଡ଼ିଲେ ଚୂନ ବାହାରେ—Limestone; chalkstone.
Chūniān̄ pathara
चूनियापाथर

**ଚୂନିଗବ**—ଦେ. ବି—ଏକ ପ୍ରକାର କ୍ଷୁଦ୍ର ଗବ ବା ଏରଣ୍ଡ—A kind of small castor-oil-seed.
Chūnigaba

**ଚୂନୁରା**—ଦେ. ବି—ଚୂନରା ( ଦେଖ )
Chūnurā — Chūnarā ( See )

**ଚୂନି ଚୂନି**—ଦେ. ବିଣ ଓ ବି—ଚୂନା ଚୂନା ( ଦେଖ )
Chūni chūni — Chūnā chūnā ( See )

[ ଦ୍ର—ଚୂନାଚୂନା ଅପେକ୍ଷା ଚୂନିଚୂନି କ୍ଷୁଦ୍ରତର । ]

**ଚୂର**—ଦେ. ବି. ( ସଂ. ଚୂର୍ଣ୍ଣ )—ଚୂର୍ଣ୍ଣ—Powder.
Chūra
चूर
**চূর**

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଜ୍ଞ | ଇଅ | ଉଅ | ଋ |
| ୨ | ଈ | ଉ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟଁ୍ୟ | ଇଅ | ଔ | ନ୍ଦ |

ଚୂର—ଦେ. ବି—୧ । ଚୂର୍ଣ୍ଣ କରିବା—
Chūrā 1 Reducing into powder.
ପେଷା ୨ । ଚୂରିବା; ପେଷଣ—
ଚୂରା 2. Pounding
୩ । ଚୂନା—3. Powder.
ବିଣ—ଚୂର୍ଣ୍ଣ କରି ଯାଇଥିବା—Pounded; reduced to powder; pulverized.

ଚୂରାଳି—ଦେ. ବି. ପୁଂ ଓ ସ୍ତ୍ରୀ—ଯେଉଁ ବ୍ୟକ୍ତି କୌଣସି ଦ୍ରବ୍ୟକୁ ଚୂରେ
Chūrāli ବା ପେଷେ—A person who grinds or pounds some thing; a grinder.
( ଯଥା—ଗହମ ଚୂରାଳି । )

ଚୂରିବା—ଦେ. କ୍ରି. ( ସଂ. ଚୂର୍ଣ୍ଣ ଧାତୁ )—
Chūribā ୧ । ଚୂନା କରିବା; ଗୁଣ୍ଡା କରିବା; ଚୂର୍ଣ୍ଣ କରିବା—
ପିଷା,ପେଷା 1. To reduce into powder
ଚୂର୍ନା, ଚୂରନା ମାଂସ ହାଡ ସହିତେ କରନ୍ତୁ ଚୂରିଲେ ।
(ଚୂରାଇବା, ଚୂରେଇବା—ଣିଜନ୍ତ) କୃଷ୍ଣସିଂ. ମହାଭାରତ. ବନ ।
୨ । ଶିଳ ବା ଢେଙ୍କିରେ ପେଷିବା—2. To pound.
୩ । ବିଦାରଣ କରିବା; ଚିରିବା—3 To tear up.

ବକ୍ରଚଞ୍ଚୁରେ ଚୂରେ, ନଖୁଣ ଅଗ୍ର ଚିରେ ଶଙ୍କା ନନମି ଗଲେ ଯେ ।
ଭଞ୍ଜ. ବୈଦେହୀଶବିଳାସ ।

ଚୂର୍ଣ୍ଣ ( ଧାତୁ )—ସଂ—ଗୁଣ୍ଡା କରିବା—
Chūrṇṇa ( root ) To reduce to powder.

ଚୂର୍ଣ୍ଣ—ସଂ. ବି. ( ଚୂର୍ଣ୍ଣ ଧାତୁ=ଗୁଣ୍ଡା କରିବା+କର୍ମ. ଅ )—
Chūrṇṇa ୧ । ଚୂନା; ଗୁଣ୍ଡା—1 Powder.
୨ । ପଥର ଓ ଶିପ ପୋଡ଼ି ବାହାର କରିବା ଚୂନ—
2. Slaked lime; burnt lime.
୩ । ସୁଗନ୍ଧି ଧୂଳି—
3. Fragrant powder; toilet powder.
୪ । ଅବିର—4. A red powder used in the spring-festival for sprinkling in sport.
୫ । ଅଟା; ମଇଦା; ଛତୁଆ—
5. Barley-meal; corn-flour.
୬ । ଧୂଳି ( ହି. ଶବ୍ଦସାଗର )—6. Dust.
୭ । କପର୍ଦ୍ଦକ; କଉଡ଼ି ( ହି. ଶବ୍ଦସାଗର )—
7. Small sea-shell.
୮ । ଅଙ୍ଗଭଙ୍ଗୀ—8. Artistic pose of the limbs.
ବିଣ—୧ । ଗୁଣ୍ଡା ହୋଇଥିବା—1. Powdered.
୨ । ନଷ୍ଟ—
2. Destroyed.
୩ । ପିଷ୍ଟ—2. Pounded.
୪ । କୁଞ୍ଚିତ—4. Curled.

ଚୂର୍ଣ୍ଣକ—ସଂ. ବି. ( ଚୂର୍ଣ୍ଣ+ସ୍ୱାର୍ଥେ. କ )—୧ । ଚୂନା; ଗୁଣ୍ଡା—
Chūrṇṇaka 1. Powder.
୨ । ଗଦ୍ୟଦ୍ୱାରା ପଦ୍ୟର ବ୍ୟାଖ୍ୟା କରିବା ଗ୍ରନ୍ଥବିଶେଷ—
2. A composition expounding by a sentence in prose, the purport of a preceding verse.
[ ଦ୍ର—ଚୂର୍ଣ୍ଣିକ ଗ୍ରନ୍ଥରେ ପଦ୍ୟ ଥାଏ ଓ ତହିଁ ତଳେ ଉକ୍ତ ପଦ୍ୟର ଗଦ୍ୟରେ ବିଶଦ ବ୍ୟାଖ୍ୟା ଥାଏ । ]
୩ । ବିଶଦ ବ୍ୟାଖ୍ୟାନ ପୁସ୍ତକ; ମାନେ ବହି—
3. An elabarate commentary, a key.
୪ । ( ଚୂର୍ଣ୍ଣ ଧାତୁ+କର୍ମ ଅକ ) ଅଟା; ଛତୁଆ—
4. Barley-meal, corn-flour.
୫ । ଔଷଧଚୂର୍ଣ୍ଣ—5. A medicinal powder.
୬ । କଠୋରବର୍ଣ୍ଣ ଓ ଦୀର୍ଘସମାସ ବିରହିତ ଏବଂ ବୈଦର୍ଭୀ ରୀତିରେ ଲିଖିତ ରଚନା—
6. A very simple style of composition.
୭ । ଆଭାସ; ଅଭିପ୍ରାୟ ପ୍ରଦର୍ଶନ ( ପ୍ରକୃତିବାଦ )—
7. Indication of one's intention.
୮ । ଏକପ୍ରକାର ଶାଳିଧାନ୍ୟ ( ହି. ଶବ୍ଦସାଗର )—
8. A kind of winter-paddy.
୯ । ବୃକ୍ଷବିଶେଷ ( ହି. ଶବ୍ଦସାଗର )—
9. A kind of tree.

ଚୂର୍ଣ୍ଣ କରିବା—ଦେ କ୍ରି. ( ସଂ ଚୂର୍ଣ୍ଣ ଧାତୁ )—୧ । ଗୁଣ୍ଡା କରିବା—
Chūrṇṇa karibā 1. To pulverise.
୨ । ପେଷି ଚୂନା କରିବା—
2. To pound or grind into powder.
୩ । ( ଲକ୍ଷଣାର୍ଥ ) ବିନାଶ କରିବା—
3 (figurative) To destroy; to crush.
( ଯଥା—ସେ ଶତ୍ରୁର ଗର୍ବକୁ ଚୂର୍ଣ୍ଣ କଲେ । )

ଚୂର୍ଣ୍ଣକାର—ସଂ. ବି—୧ । ଯେ ଚୂନ ପୋଡ଼େ; ଚୂନରୀ—
Chūrṇṇakāra 1 A lime burner.
୨ । ଚୂନ ବ୍ୟବସାୟୀ—2. A dealer in lime
୩ । ଯେ ଅଟା ପେଷେ—3. Corn-grinder.
୪ । ନଟଜାତୀୟା ସ୍ତ୍ରୀ ଓ ପୁଣ୍ଡ୍ରକଜାତୀୟ ପୁରୁଷ ଔରସରେ ଉତ୍ପନ୍ନ ବର୍ଣ୍ଣସଙ୍କର ଜାତିବିଶେଷ ( ପରାଶର ସଂହିତା )—
4. A mixed caste amongst the Hindus.

ଚୂର୍ଣ୍ଣକୁନ୍ତଳ—ସଂ. ବି. ( କର୍ମଧାରୟ; ଚୂର୍ଣ୍ଣ+କୁନ୍ତଳ )—ଯେଉଁ କେଶ
Chūrṇṇakuntaḷa କୁଞ୍ଚୁକୁଞ୍ଚୁଆ ହୋଇ କପାଳ ଓ ଗାଲ ଉପରକୁ ଝୁଲିପଡ଼ି ଥାଏ; ଅଳକ; ଝୁମ୍ପିବାଳ—Locks or rings of curling short hairs overhanging the brow and cheeks.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ-ରକ୍ଷା କରନ୍ତି ନାହିଁ । ଏଣୁ ସେ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ଚୂର୍ଣ୍ଣଖଣ୍ଡ—ସଂ. ବି—ଗେଙ୍ଗୁଟି; ଯେଉଁ ଗୋଡ଼କୁ ପୋଡ଼ି ଚୂନ କରାଯାଏ—
Chūrṇṇakhaṇḍa Line-stone: lime-ghooting.

ଚୂର୍ଣ୍ଣତା—ସଂ. ବି. (ଚୂର୍ଣ୍ଣ+ଭାବାର୍ଥେ. ତା)—ଚୂନା ହେବାର ଅବସ୍ଥା—
Chūrṇṇatā The state of being reduced into powder.

ଚୂର୍ଣ୍ଣନ—ସଂ. ବି. ( ଚୂର୍ଣ୍ଣ ଧାତୁ + ଭାବ. ଅନ )—
Chūrṇṇana ଗୁଣ୍ଡା କରିବା; ଚୂନା କରିବା—
Reducing into powder; pounding; pulverising.

ଚୂର୍ଣ୍ଣଚଉଁରି—ଦେ. ବି—ଚାରି ଆଡ଼େ ଚୂନକାମ କରାଯାଇଥିବା ପିଣ୍ଡା ବା
Chūrṇṇa-chauñri ସ୍ତୂପ ବା ଘର—A house or mound or platform having limework masonry on all sides.

ବଡ଼ ବଡ଼ଙ୍କ ବେଢ଼ି କି ଶୋଭେ ଚୂର୍ଣ୍ଣଚଉଁରି ।
ଭକ୍ତ. ଲାବଣ୍ୟବତୀ ।

ଚୂର୍ଣ୍ଣନୀୟ—ସଂ. ବିଣ. ( ଚୂର୍ଣ୍ଣ ଧାତୁ + କର୍ମ. ଅନୀୟ )—
Chūrṇṇaniya ଚୂନା କରିଯିବାର ଯୋଗ୍ୟ—
Fit to be reduced to powder; capable of being pulverised

ଚୂର୍ଣ୍ଣପତର—ଦେ. ବି—ଚୂନପତ୍ର ( ଦେଖ )
Chūrṇṇapatara Chūnapatra ( See )

ଚୂର୍ଣ୍ଣପତର ଘୂର୍ଣ୍ଣି କରି
ମାରିଦେ ନାକ ପୂର୍ଣ୍ଣ କରି । ( ନସ୍ୟ ସମ୍ବନ୍ଧେ ଢଗ )

ଚୂର୍ଣ୍ଣପଦ—ସଂ. ବି. ( ବହୁବ୍ରୀହି; ଚୂର୍ଣ୍ଣ=ଅଙ୍ଗଭଙ୍ଗୀ ଘଟିତ+ପଦ=
Chūrṇṇapada ପଦକ୍ଷେପ ଯହିଁରେ )—
ଏକ ପ୍ରକାର ବିଶେଷ ଅଙ୍ଗଭଙ୍ଗୀଘଟିତ ନୃତ୍ୟ—
A kind of dexterous dance accompanied with brisk undulations or artistic poses of the limbs.

ଚୂର୍ଣ୍ଣହାର—ସଂ. ବି—ଏକ ପ୍ରକାର ଜଙ୍ଗଲୀ ଗଛ—
Chūrṇṇahāra A kind of wild tree.
चूरनहार [ ଦ୍ର—ଏଥିର ପତ୍ର ଖୁବ୍ ଲମ୍ବା, ଚକଣା ଓ ମୋଟା; ଏଥିର ଫୁଲ ମୃଦୁଗନ୍ଧଯୁକ୍ତ ଓ ଶ୍ୱେତ; ଏଥିର ମୂଳ, ଛାଲି ଓ ପତ୍ର ଔଷଧରେ ଲାଗେ । ବୈଦ୍ୟକ ମତରେ ଏହା କଷା, ଗରମ, ତ୍ରିଦୋଷନାଶକ, ରକ୍ତଦୋଷନାଶକ ଓ କୃମିନାଶକ; ବିଷମ ଜ୍ୱରର ଏହା ଉତ୍କୃଷ୍ଟ ଔଷଧ ବୋଲି ବିଖ୍ୟାତ । ହି. ଶବ୍ଦସାଗର । ]

ଚୂର୍ଣ୍ଣା—ସଂ. ବି. ( ଚୂର୍ଣ୍ଣ+ଆ )—
Chūrṇṇā ଆର୍ଯ୍ୟା ଛନ୍ଦର ପ୍ରକାର ବିଶେଷ ( ଏଥିରେ ୧୮ଟି ଗୁରୁ ଓ ୨୭ଟି ଲଘୁ ବର୍ଣ୍ଣ ଥାଏ--ହି. ଶବ୍ଦସାଗର)—
A kind of Sanscrit metre.

ଚର୍ଣ୍ଣି—ସଂ. ବି. ( ଚୂର୍ଣ୍ଣ+ଇ )—୧ । ଚୂର୍ଣ୍ଣୀ ( ଦେଖ )
Chūrṇṇi 1. Chūrṇṇī ( See )
୨ । କପର୍ଦ୍ଦକ; କଉଡ଼ି ( ହି. ଶବ୍ଦସାଗର )—
2. Small sea-shell.

ଚୂର୍ଣ୍ଣିକା—ସଂ. ବି. ସ୍ତ୍ରୀ ( ଚୂର୍ଣ୍ଣିକ+ଆ )—ଚୂନା; ଛତୁଆ—
Churṇṇikā Barley-meal; corn-flour.

ଚୂର୍ଣ୍ଣିକୃତ—ସଂ. ବି. (ନାମ)—ମହାଭାଷ୍ୟକାର ପତଞ୍ଜଳି ମୁନି—
Chūrṇṇikṛuta A name of the great commentator Patañjaḻa.

ଚୂର୍ଣ୍ଣିତ—ସଂ. ବିଣ. ( ଚୂର୍ଣ୍ଣ ଧାତୁ + କର୍ମ. ତ )—
Chūrṇṇita ୧ । ଗୁଣ୍ଡା କରି ଯାଇଥିବା—1 Powdered.
୨ । ଧ୍ୱଂସପ୍ରାପ୍ତ; ବିଧ୍ୱସ୍ତ—2 Annihilated; destroyed.
୩ । ଟିକିଟିକି କରି ଯାଇଥିବା—
3 Chopped into small bits.

ଚୂର୍ଣ୍ଣୀ—ସଂ. ବି. ( ଚୂର୍ଣ୍ଣ ଧାତୁ + କର୍ମ. ଇ; ଇ ସ୍ଥାନରେ ଈ ଆଦେଶ )—
Chūrṇṇī ୧ । ସଂସ୍କୃତ ପାଣିନି ବ୍ୟାକରଣର ପାତଞ୍ଜଳ ଭାଷ୍ୟ—
1 The learned commentary of Patañjaḻi on the Sanskrit Grammar of Pāṇini.
୨ । ଭାରତରେ ପୂର୍ବେ ପ୍ରଚଳିତ ଶହେ କଉଡ଼ି ମୂଲ୍ୟର ମୁଦ୍ରାବିଶେଷ—2. An ancient Indian coin equal in price to 100 cowries.
୩ । ବଙ୍ଗଦେଶର ପ୍ରସିଦ୍ଧ ନଦୀବିଶେଷ—
3 Name of a river in Bengal.
୪ । କାର୍ଷାପଣ; ମୁଦ୍ରା ରୂପେ ପୂର୍ବେ ଚଳୁଥିବା ଏକ କାହାଣ କଉଡ଼ି ( ହି. ଶବ୍ଦସାଗର )—4. 180 bits of small sea-shells formerly used as a standard of currency in India.
୫ । ଏକ ପ୍ରାଚୀନ ନଦୀର ନାମ ( ହି. ଶବ୍ଦସାଗର )—
5 Name of a river in ancient India.

ଚୂର୍ଣ୍ଣୀକୃତ—ସଂ. ବିଣ. [ଚୂର୍ଣ୍ଣ+ଅଭୂତ ତଦ୍ଭାବେ ଚ୍ୱି (ଈ)+କୃତ]—
Chūrṇṇīkṛuta ଯାହା ପୂର୍ବେ ଚୂର୍ଣ୍ଣ ହୋଇ ନ ଥିଲା, କିନ୍ତୁ ବର୍ତ୍ତମାନ (ଚୂର୍ଣ୍ଣୀକରଣ—ବି) ଚୂର୍ଣ୍ଣ କରାଯାଇଅଛି—Lately reduced into powder.

ଚୂର୍ଣ୍ଣୀଭୂତ—ସଂ. ବିଣ. (ଚୂର୍ଣ୍ଣ+ଅଭୂତ ତଦ୍ଭାବେ ଚ୍ୱି+ଭୂତ)—
Chūrṇṇībhūta ୧ । ଯାହା ପୂର୍ବେ ଚୂନା ହୋଇ ନ ଥିଲା, (ଚୂର୍ଣ୍ଣୀଭାବ—ବି) ବର୍ତ୍ତମାନ ଚୂନା ହୋଇଅଛି; ଗୁଣ୍ଡା ହୋଇଥିବା—
1 Turned into powder; pulverised.
୨ । ସମ୍ପୂର୍ଣ୍ଣରୂପେ ଧ୍ୱଂସପ୍ରାପ୍ତ; ବିଧ୍ୱସ୍ତ—
2. Completely destroyed or ruined.

ଚୂଲ୍ (ଧାତୁ)—ସଂ—ଉନ୍ନତ ହେବା—
Chūḻ (root) To rise up; to stand high.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ୍ଯ | ଜ୍ଞ | ଶ,ଷ | ଙ୍କ | ଇସ୍ୱ | ଉଅ | ଙ୍ଗ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଗ୍ୟ | ଯ | ସ | ଗଁ୍ୟ | ଇଅ | ଙ୍ଗ | ନ୍ତ |

ଚୂଳ—ସଂ. ବି. ( ଚୂଲ୍ ଧାତୁ = ଉନ୍ନତ ହେବା + କର୍ତ୍ତୃ. ଅ )—
Chūḻa ୧ । ଶିରୋରୁହ; କେଶ; ବାଳ—
1 Hair of the head

ନାନା ସୁଗନ୍ଧ ଦ୍ରବ୍ୟଫୁଲେ, ଲୁବ୍ଧେ ଭୃଙ୍ଗମାନେ ଚୂଳେ ।
ଭୂପତି, ପ୍ରେମପଞ୍ଚାମୃତ ।

୨ । ଚୁଟି; ଶିଖା; ମୁଣ୍ଡରେ ଛଡ଼ାଯିବା ଲମ୍ବ କେଶଗୁଚ୍ଛ— 2. A long tuft of hair left on the head.

ଦେ. ବି—୧ । ମସ୍ତକର ନଳାକାର ଭୂଷଣବିଶେଷ; ଲମ୍ବ ମୁକୁଟ—1. A conical head-dress worn on the skull.

୨ । ଗଣ୍ଠି ଦିଆ ହୋଇ କପାଳ ଉପରେ ସଜ୍ଜିତ ହେବା କେଶଗୁଚ୍ଛ; ଜୁଟ—2. A knot of hair tied and placed in upright position over the skull or brow.

୩ । ମୁଣ୍ଡ ଉପରେ ବନ୍ଧା ଯାଇଥିବା ଦଣ୍ଡାୟମାନ ପୁଷ୍ପସଜ୍ଜା— 3. A nosegay put on the brow in an upright position

( ଯଥା—ଜଗନ୍ନାଥଙ୍କ ମାଳଚୂଳ । )

ଝୁଁଟି ଡାଠା ୪ । ଓଟ; ଷଣ୍ଢଆଦିଙ୍କ କାନ୍ଧ ଉପରେ ବାହାରି ଥିବା ମାଂସପିଣ୍ଡ; କକୁଦ—4. Hump on the shoulders of certain animals (e.g. bull, camel).

୫ । ଚୁଲି ଉପରେ ହାଣ୍ଡିକୁ ମୁଣ୍ଡାଇବା ନିମନ୍ତେ ବାହାରିଥିବା ମାଟି ପିଣ୍ଡୁଳା; ଚୂଲିଝିଙ୍କା—
5. The balls or clods of clay or earth (usually three) protruding from the rim of an oven to sustain the cooking pot.

୬ । କେତେକ ପକ୍ଷୀଙ୍କ (ଯଥା ମୟୂର, ଚୂଳିଆ ଚଢ଼େଇ, ଅଣ୍ଡିରା କୁକୁଡ଼ାର) ମୁଣ୍ଡ ଉପରୁ ବାହାରି ଥିବା ପକ୍ଷଗୁଚ୍ଛ
6 A tuft of feathers protruding from the head of certain birds (e. g. peacock); cocks-comb.

୭ । ( ସଂ. ଚୂଡ଼ ) — ପର୍ବତ ଶିଖର —
7. Crest of a mountain.

ଭର୍ଗୋ-ପୂଜନ୍ତିଁ ହିଁଧବଳ ଉଚ୍ଚ ଗଲେ ଟେଣ୍ଡିଗିରି ଚୂଳେ ।
ରାଧାନାଥ, ପାର୍ବତୀ ।

୮ । ଅଗ୍ରଭାଗ—8. Top.

ଆଜ ରହେ ସୁନି ପେଟକ ସବଳ ଚନ୍ଦ୍ରଶାଳା ଚୂଳେ ବସି ।
ରାଧାନାଥ—ପାର୍ବତୀ ।

୯ । କଣା ବା ଘର କରାଯାଇଥିବା କାଠର ଛିଦ୍ରରେ ପୂରାଯିବା କାଠର ଅଂଶ—9. Tennon.

୧୦ । ଚୂଳି ( ଦେଖ )
10. Chūḻi ( See )

୧୧ । ଝୁଣ୍ଟିଆ ଆଦି ଅଳଙ୍କାର ଉପରେ ବସାଯାଇ ଥିବ ଗୋବ—11. Knobs put on some ornaments.

ଚୂଳକ—ସଂ. ବି.(ଚୂଳ + ସ୍ୱାର୍ଥେ. କ)—୧ । ଚୂଳ (ଦେଖ)
Chūḻaka 1. Chūḻa (See)

ଢ଼ୁ.ଲ ୨ । ଏକ ପ୍ରକାର ପାର୍ବତ୍ୟ ସିଜୁ—
2. A kind of mountain-cactus

[ ଦ୍ର—ଏ ଗଛ ହିମାଳୟର ଦକ୍ଷିଣଭାଗ ଓ ପଞ୍ଜାବର କେତେକ ଜିଲ୍ଲାରେ ଦେଖାଯାଏ । ଏଥିର କ୍ଷୀରରେ ଗନ୍ଧାପର୍ଣ୍ଣିର ଅଂଶ ଅଧିକ ଥାଏ । ଏ କ୍ଷୀର ଆଖିର ଅନିଷ୍ଟକାରକ । ଉଟକା କ୍ଷୀର ସୁଗନ୍ଧ । ବାସି କ୍ଷୀର ଦେହରେ ଲାଗିଲେ ଦେହରୁ ଛାଲ ଉଠିଯାଏ —
ହି.ଶବ୍ଦସାଗର ]

ଚୂଳମୁକୁଟିଆ—ଦେ.ବିଣ.(ସଂ ଚୂଳ + ମୁକୁଟ)— ମୟୂର ଚୂଳର ମୁକୁଟଧାରୀ;
Chūḻamukṭiā ଯେ ମୟୂର ଚୂଳର ମୁକୁଟ ପିନ୍ଧେ— Wearing a crown of peacock-feathers.

ତରଳ ଥାଉ ବାଳୁଙ୍କ. ଚୂଳମୁକୁଟିଆ ସଖାମାନେ
କବିସୂର୍ଯ୍ୟ, କଳଶୋସବ ଉତ୍କଳ, ଚ. ଗୀତ

ଚୂଳା—ସଂ. ବି. (ଚୂଳ+ଆ)—୧ । ଚୂଡ଼ା (ଦେଖ)
Chūḻā 1. Chūṛā (See)

୨ । ପ୍ରାସାଦ ଉପରସ୍ଥ ଗୃହ; ଚନ୍ଦ୍ରଶାଳା—2. A pleasure-dome or turret at the top of a building.

ଚୂଳି—ଦେ.ବି. ୧ । (ସଂ. ଚୂଳ)—କଠଉର ଆଗ ପାଖରେ ଛିଦ୍ର ହୋଇ
Chūḻi ଉପରେ ଠିଆ ଭାଗରେ ମରିଥିବା ଛତ୍ରାଗ୍ର କାଷ୍ଠଖଣ୍ଡ (ଏହାକୁ
ବଉଳ ବୁଢ଼ାଆଙ୍ଗୁଠି ଓ ତର୍ଜନୀଆଙ୍ଗୁଠିର ସନ୍ଧିରେ ରଖି ଲୋକେ କଠଉ
ଅଙ୍କୋଠା ମାଡ଼ନ୍ତି—A button-topped peg driven into the upper front of wooden sandals (which is thrust into the interstics of the toe and second finger of the leg, while walking.

୨ । ପାହାଡ଼ର ଗୋଳିଆ ଶିଖର—
2. Conical peak of a hill.

ଚୂଳିଆ—ଦେ. ବିଣ.—୧ । ଯାହାର ଚୂଳ ଥାଏ; ଚୂଳଧାରୀ—
Chūḻiā 1. Having a tuft; tufted.

ହେ କୃଷ୍ଣ କଦମ୍ବମୂଳିଆ ମୟୂରଚନ୍ଦ୍ରିକାଚୂଳିଆ । ଭୂପତି, ପ୍ରେମପଞ୍ଚାମୃତ ।

୨ । ଯେଉଁ ଅଳଙ୍କାର ଆଦି ଉପରେ ଚୂଳ ବା ଗୋବ ଥାଏ—
2 Knobbed; having a knob.

୩ । ଗୋଲିଆ—3. Conical.

ବି.—୧ । ବାମଣ୍ଡା ରାଜ୍ୟର ଗୋଟିଏ ଉଚ୍ଚ ପର୍ବତ—1. Name of a lofty mountain in the Bamra state of Orissa.

ସାଧାରଣ ଲୋକେ ଅପର ବୃଷ୍ଟାରେ ସଚରାଚର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; ଅଙ୍କା ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଭୂମି ପାଦଧର ସ୍ଥଳୀ—
ଚୂଳିଆ ଅଚଳ ତହିଁ ଶାର୍ଦ୍ଦୂଳ ଯେସନେ,
ଏକାକ୍ଷ ଶିକାର ଲୋକେ ବ୍ରାହ୍ମୀଗରଭୂମେ । ଜଗନ୍ନାଥ. ମହାଯାତ୍ରା ।

शाबुलबुल ୨ । ଚୂଳିଥିବା ଗୋବର ଚଢ଼େଇ—
साबूलबुल 2. The Paradise-fly-catcher (bird).

**ଚୂଳିଆ ହଦ୍‌ହଦ୍**—ପ୍ରାଦେ. (ସମ୍ବଲପୁର; ଗଡ଼ଜାତ) ବି.—
Chūḻiā had had କାଠକଟା (ପକ୍ଷୀ) (ଦେଖ)
Kāthakaṭā (bird) (See)

**ଚୂଳିକ**—ସଂ. ବି.—(ଚୂଳ ଧାତୁ=ଉନ୍ନତ ହେବା+କର୍ତ୍ତୃ. ଇକ; ଯାହା
Chūḻika ଘିଅରେ ଛଣା ହୋଇ ଉନ୍ନତ ବା ଫୁଲୁକା ହୁଏ)—
୧ । ଘିଅପିଠା; କାକରା—1. A kind of sweeet puffed up cake fried in ghee.
୨ । ଲୁଚି; ପତଳା ପୁରି (ହି. ଶବ୍ଦସାଗର)—2. A kind of thin bloated cake fried in ghee.
୩ । ଅଥର୍ବ ବେଦର ଏକ ଉପନିଷଦର ନାମ; ଚୂଳିକୋପନିଷଦ—2. Title of an Upanishada in the Atharba Beda.

**ଚୂଳିକା**—ସଂ. ବି.(ଚୂଳିକ+ଆ)—୧ । ଚୂଳିକ (ଦେଖ)
Chūḻikā 1. Chūḻaka (See)
୨ । ନାଟକର ଅଙ୍ଗବିଶେଷ, ଯହିଁରେ ନେପଥ୍ୟରୁ କୌଣସି ଘଟଣାର ସୂଚନା ଦିଆଯାଏ; ନାଟ୍ୟାଙ୍ଗବିଶେଷ—
2. A part of a drama in which indication of some event is given from behind the scene.

[ ଦ୍ର—ସଂସ୍କୃତ ନାଟକର ନିୟମ ଅନୁସାରେ ରଙ୍ଗମଞ୍ଚରେ ଯୁଦ୍ଧ, ମୃତ୍ୟୁ ଓ ହତ୍ୟାଦିର ଅଭିନୟ କରିବା ନିଷିଦ୍ଧ; ଏଥିପାଇଁ ଏ ବିଷୟମାନଙ୍କର ସୂଚନା ନେପଥ୍ୟରୁ କରାଯାଏ । ବୀରଚରିତ ନାମକ ସଂସ୍କୃତ ନାଟକରେ ରାମ ଓ ପରଶୁରାମଙ୍କ ଯୁଦ୍ଧ ଓ ରାମଚନ୍ଦ୍ରଙ୍କ ବିଜୟ ବିଷୟରେ ଏବମ୍ଭୂତ ସୂଚନା ଅଛି—ହି. ଶବ୍ଦସାଗର । ]

୩ । ହସ୍ତୀର କର୍ଣ୍ଣମୂଳ; ହାତୀର କାନମୁଣ୍ଡା—
3. The root of an elephant's ear.
୪ । ଚୂଡ଼ା (ଦେଖ)
4. Chūrdā (See).

**ଚୂଳିଝୁଣ୍ଟିଆ**—ଦେ. ବି—ସ୍ତ୍ରୀଲୋକମାନଙ୍କ ଗୋଡ଼ର ଦ୍ୱିତୀ ଅଙ୍ଗୁଠି ଓ ମଝି-
Chūḻi-jhunṭiā ଅଙ୍ଗୁଠିରେ ପିନ୍ଧାଯିବା ଝୁଣ୍ଟୁରିଲଗା ଏକପ୍ରକାର
छुटकी ମୁଦି, ଯହିଁ ଉପରେ ଚୂଳ ବା ଗୋବ ଲାଗିଥାଏ—
चुटकी A kind of tinkling ring with a knob worn by females on the 2nd and 3rd fingers of the leg.

**ଚୂଷ୍ (ଧାତୁ)**—ସ— ଜିଭଦ୍ୱାରା ଶୋଷିବା; ଚୁଚୁମିବା—
Chūsh (root) Te suck.

**ଚୂଷଣ**—ସଂ. ବି (ଚୂଷ୍ ଧାତୁ+ଭାବ. ଅନ)—ଜିଭ ଓ ଓଠଦ୍ୱାରା
Chūshaṇa ଶୋଷିବା; ଶୋଷିବା; ଚୁଚୁମିବା—Sucking
(ଚୂଷିତ, ଚୂଷଣୀୟ, ଚୂଷ୍ୟ—ବିଶେଷଣ)

**ଚୂଷଣୀୟ**—ସଂ. ବିଣ (ଚୂଷ୍ ଧାତୁ+କର୍ମ. ଅନୀୟ)—ଯାହା ଶୋଷା ହୋଇ
Chūshaṇiya ପାରେ; ଯାହା ଚୁଚୁମା ଯାଇ ପାରେ—
(ଚୂଷ୍ୟ—ଅନ୍ୟରୂପ) Capable of being sucked.

**ଚୂଷା**—ସଂ. ବି (ଚୂଷ୍ ଧାତୁ+ଭାବ ଅ+ସ୍ତ୍ରୀ. ଆ)—
Chūshā ୧ । ଶୋଷିବା; ଶୋଷିବା; ଚୂଷଣ—1. Sucking.
୨ । (+କର୍ତ୍ତୃ ଅ+ସ୍ତ୍ରୀ. ଆ)—ହାତୀର ଅଣ୍ଟାଚାରିପାଖେ ବନ୍ଧାଯିବା ପେଟି ବା ରଜ୍ଜୁ—
2. A strap or rope passed round the waist of an elephant.

**ଚୂଷି**—ଦେ. ବି(ସଂ. ଚୂଷ ଧାତୁ)—ଚୁଚୁମା; ପିଲାଏ ଚୁଚୁମିବା ଖେଳନା—
Chūshi A plaything given to infants to suck
चूषी ( representing mother's nipple )

**ଚୂଷିତ**—ସଂ. ବିଣ (ଚୂଷ୍ ଧାତୁ+କର୍ମ. ତ)—ଶୋଷା ହୋଇଥିବା;
Chūshita ଚୁଚୁମା ଯାଇଥିବା—Sucked.

**ଚୂଷିବା**—ଦେ. କ୍ରି (ସଂ. ଚୂଷ୍ ଧାତୁ)—ମୁହଁରେ ଶୋଷିବା; ଚୁଚୁମିବା;
Chushibā ଜିଭ ସାହାଯ୍ୟରେ କୌଣସି ଦ୍ରବ୍ୟରୁ ରସ ଶୋଷିନେବା-
চুষা, চোষা To suck.
चचोड़ना, चूसना

**ଚୂଷ୍ୟ**—ସଂ. ବିଣ (ଚୂଷ୍ ଧାତୁ+କର୍ମ. ଯ)—ଶୋଷିବାର ଯୋଗ୍ୟ—
Chushya Fit to be sucked.
( ଚୋଷ୍ୟ—ଅନ୍ୟରୂପ )

**ଚେଆର୍**—ବୈଦେ. ବି (ଇଂ. ଚେଆର୍)—ବେତ୍ରାସନ; ଚଉକି—
Cheār Chair.
চেয়ার
चेअर

**ଚେଆରମାନ୍**—ବୈଦେ ବି (ଇଂ ଚେଆରମାନ୍; ଏଥିର ମୌଳିକ ଅର୍ଥ
Cheārmān ଯେ ଚଉକିରେ ବସେ)—ସଭାପତି; କୌଣସି ସଭା ବା
চেয়ারমান ସମାଜର ଅଧ୍ୟକ୍ଷ ବା ନେତା—Chairman;
चेअरमेन president.
(ଚେଆରମେନ୍; ଚେରମେନ୍—ଅନ୍ୟରୂପ)

**ଚେଇ**—ଦେ. ଅ—ଚେଇ ଚେଇ ( ଦେଖ )—
Chei Chei chei ( See )
হই
चहँ

**ଚେଇ ! ଚେଇ !**—ଦେ. ଅ—ହାତୀକୁ ଆଗକୁ ଚାଳିତ କରିବାପାଇଁ ବା ପାଖ-
Chei! chei! ଆଡ଼କୁ ବୁଲାଇବା ପାଇଁ ବା ଫେରାଇବା ପାଇଁ
হইহই ମାହୁନ୍ତ ଦ୍ୱାରା ବ୍ୟବହୃତ ଆଦେଶ—A word
चइचइ used in goading an elephant to advance or to turn round or to turn back.

[ ଦ୍ର—ହାତୀକୁ ଠିଆ କରିବାପାଇଁ ବ୍ୟବହୃତ ଶବ୍ଦ—ଧାତ୍ । ]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଘ୍ନ |
| ୨ | ଈ | ଊ | ଋ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଞ୍ଜ | ନ୍ନ |

**ଚେଇଁ ଉଠିବା**—ଦେ. କ୍ରି—୧ । (ଝାଉଁଳି ଯାଇଥିବା ଗଛ ଆଦି ପାଣି ପାଇଲେ ; ପୁନର୍ବାର ସତେଜ ହେବା—1. To revive (said of withering plants when watered).
Cheiñ uṭhibā
জেগেউঠা
**जगउठना**

୨ । (ବିଶ୍ରାମ ନେଉଥିବା ବା ମନ୍ତ୍ର ଯନ୍ତ୍ରଦ୍ୱାରା କିଲା ଯାଇଥିବା ଡାହାଣୀ, ଭୂତ, ପ୍ରେତ ଆଦି ମନ୍ତ୍ରଯନ୍ତ୍ରର ପ୍ରଭାବରୁ ମୁକ୍ତ ହେବା ପରେ) ପୁଣି ନିଜର କରାମତି ଦେଖାଇ ଲୋକଙ୍କୁ ଉତ୍ପୀଡ଼ନ କରିବା—2. (said of ghosts which had been made powerless by magic) To revive after torpor.

୩ । ନିଦରୁ ଉଠିବା—3. To rise up from sleep.

**ଚେଇଁ ବସିବା**—ଦେ. କ୍ରି—ଜାଗର ହୋଇ ଅର୍ଥାତ୍ ନ ଶୋଇ ବସି ରହିବା—To keep a watch or vigil; to sit up; to keep watch.
Cheiñ basibā
জেগেবসা

**ଚେଇଁବା**—ଦେ କ୍ରି (ସଂ. ଚେତନ; ଚିତ ଧାତୁ)—୧ । ନିଦରୁ ଉଠିବା—1. To wake up from sleep; to rise up from sleep.
Cheiñbā
জাগা
**चेतना**

୨ । ଜାଗ୍ରତ ରହିବା—2. To keep awake; to sit up.
(ଚିଆଁଇବା; ଚ୍ୟାଇଁବା—ନିଜନ୍ତରୂପ)

ଭୁଲ ତ ମୋର ପାଶେ ବହିଲୁ ଚିଆଇଁ—କୃଷ୍ଣସିଂହ ମହାଭାରତ. ବନ ।

୩ । ଆଳସ୍ୟ ଛାଡ଼ି ସଚେତ ହେବା—3. To be enlivened; to wake up from torpor; to shake up drowsiness.

୪ । ସଜୀବ ହେବା; ପୁନରୁଜ୍ଜୀବିତ ହେବା—4. To show signs of vitality; to revive

ଚିଆନ ୫ । (ଚେଇଁବାର ଣିଜନ୍ତରୂପ) ଚିଆଁଇବା; କୌଣସି ବ୍ୟକ୍ତିକୁ ନିଦ୍ରାରୁ ଜାଗରିତ କରିବା—5 To awaken a person for sleep.

**ଚେଇଁ ଶୋଇବା**—ଦେ. କ୍ରି—ନିଦ୍ରାର ବାହାନା କରି ବିଛଣାରେ ପଡ଼ି ରହିବା—To feign sleep; to lie awake while seeming to be sleeping.
Cheiñ śoibā
জেগেশোয়া

**ଚେଉ**—ଦେ. ବି— ଚ୍ୟାଉ ପଟ୍ଟନାୟକ ( ଦେଖ )—Chyāu paṭṭanāyaka ( See )
Cheu

**ଚେଉ ପଟନାଏକ**—ଦେ. ବି—ଚ୍ୟାଉ ପଟ୍ଟନାୟକ ( ଦେଖ )—Chyāu paṭṭanāyaka ( See )
Cheu paṭanaeka

**ଚେଓର**—ଦେ. ବି—ସତ୍ୟଅମ୍ବା (ଫଳ)—Cocum Butter-fruit.
Cheora

**ଚେଁ**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଚକୁଳିପିଠା ବା ଭଜା ଭାଜିବାର ଶବ୍ଦ—1. Sound produced when a pastry-cake is fried.
Cheñ
চিঁ
**चें**

ସାତ ଚକୁଳିକୁ ଚଉଦ ଚେଁ,
ଶାଶୁ ବୋଇଲେ କୋଉଁ ସବଙ୍କେ । ଢଗ ।

[ ଦ୍ର—ଚକୁଳି ପିଠା କରିବା ପାଇଁ ଚୁଲି ଉପରେ ବସିଥିବା ଉତ୍ତପ୍ତ କରେଇ ବା ତେଲକଡ଼ାଇରେ ଟିଠୋଉ ଚଳା ହେଲାବେଳେ ଓ ଚକୁଳି ଲେଉଟା ହେବାବେଳେ ଓ ତେଲ, ଘିଅ ଆଦି ଦ୍ୱାରା ଭଜାଭଜି ହେବାବେଳେ ଓ କାକରାଆଦି ପିଠା ଘିଅରେ ଛଣା ହେଲାବେଳେ "ଚେଁ" ଶବ୍ଦ ଶୁଣାଯାଏ । ]

୨ । ଦେହରେ ତାତିଲା ଲୁହା ମାରିବାର ଶବ୍ଦ—2. Sound produced while marking the body with red-hot iron.

୩ । ଚେମ୍ପିଣୀ ଆଦି ଚଢ଼େଇ ଓ ଚୂଚୁନ୍ଦ୍ରା ଆଦିଙ୍କର ଧ୍ୱନି—3. Chirping or squeaking sound of house-bats and moles.

**ଚେଁ ଏଁ**—ଦେ. ଅ (ଧ୍ୱନ୍ୟନୁକରଣ)—ଚେଁ ( ଦେଖ )—Cheñ ( See )
Cheñ-eñ

**ଚେଁଖ**—ଦେ. ବି—୧ । ତାତିଲା ଲୁହାଦ୍ୱାରା ଦେହରେ ଚିଆଁ ଦେବା—1. Branding or singeing the body with red-hot iron.
Cheñkha
ছেঁকা; দাগা
**दाग** ୨ । ଚିଆଁ; ଦାଗ—2. Brand or mark of singeing.

୩ । ଦୁଃଖ; ଯାତନା, ଉତ୍ପୀଡ଼ନ—3 Torture; harassment.

୪ । ପ୍ରତାରଣା—4 Deception; cheating.

୫ । ଦୁଃଖର ଅନୁଭୂତିରୁ ମନୁଷ୍ୟ ଲଭିବା ଶିକ୍ଷା—5 Lesson acquired by bitter experience.

**ଚେଁଖ ଦେବା**—ଦେ. କ୍ରି—୧ । ଦେହରେ ଗରମ ଲୁହାର ଦାଗ ବସାଇବା; ଚିଆଁଦେବା—1. To brand the body with red-hot iron.
Cheñkha debā
ছেঁকাদেওয়া; দাগা
**दागना** ୨ । ଯାତନା ଦେବା—2. To torture.

୩ । ପ୍ରତାରଣା କରିବା—3. To deceive.

**ଚେଁଖ ପାଇବା**—ଦେ କ୍ରି—୧ । ଆପଣା ଦେହରେ ଚିଆଁ ବସିବା—1. To be branded with red-hot iron.
Cheñkha pāibā
দাগাপাওয়া
**दागपाना** ୨ । ଯାତନା ପାଇବା—2. To suffer pains.
(ଚେଁଖେ ପାଇବା—ଅନ୍ୟରୂପ)

**ଚେଁଖ ବସାଇବା**—ଦେ. କ୍ରି.—ଚେଁଖ ଦେବା ୧ (ଦେଖ)—Chenkha debā 1 (See)
Cheñkha basāibā
(ଚେଁଖ ବସେଇବା—ଅନ୍ୟରୂପ)

**ଚେଁଖା (ଇତ୍ୟାଦି)**—ଦେ. ବି.—ଚେଁଖ ଇତ୍ୟାଦି (ଦେଖ)—Cheñkha etc (See)
Cheñkhā (etc)
ବିଣ.—ପ୍ରତାରକ—Deceitful

**ଚେଁଖାଇବା**—ଦେ. କ୍ରି.—୧ । ପ୍ରତାରଣାରେ ପକାଇବା; ଠକାଇବା—1. To deceive.
Cheñkhāibā
(ଚେଁଖେଇବା - ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଡ଼' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଗ୍ୟା' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ ।

୨ । ଉତ୍ପୀଡ଼ନ କରିବା—2. To harass; to oppress.
୩ । ଚେତାଇଦେବା—3. To remind.

**ଚେଁଖାଏ ଦେବା**—ଦେ. କ୍ରି.—ଚେଁଖେ ଦେବା (ଦେଖ)—
Cheñkhāe debā — To teach a lesson.

**ଚେଁଖିବା**—ଦେ. କ୍ରି.—୧ । (ଅକର୍ମକ)—ପ୍ରତାରିତ ହେବା—
Cheñkhibā — 1. To be deceived.
ଠକା ୨ । (ସକର୍ମକ) ଚିହ୍ନ ଦେବା—2. To sear; to cauterise
୩ । ଦୁଃଖମୟ ଅନୁଭବ ଦ୍ୱାରା ଶିକ୍ଷା ଲାଭ କରିବା—
3. To learn a lesson by bitter experience.

**ଚେଁଖେ ଦେବା**—ଦେ. କ୍ରି.—୧ । ଅତ୍ୟନ୍ତ କଷ୍ଟ ଦେବା—
Cheñkhe debā — 1. To give much pain; to harass.
ଛେଁକାଦେଓୟା ୨ । ଯବଦ୍ କରିବା; ପ୍ରତିହିଂସା ନେବା—
चोटदेना, दागदेना — 2. To take revenge.
୩ । ଠକାଇବା—3. To cheat.

**ଚେଁଚ୍ଚାଁ**—ଦେ. ଅ. (ଧ୍ୱନ୍ୟନୁକରଣ; ଫ. ଚୀଚୀକୃତୀ)—ପକ୍ଷୀମାନଙ୍କର
Cheñchāñ — ଚେଁଚାଁ ଶବ୍ଦ—
କିଚିରୀ ମିଚିରୀ, ଚିଁଚିଁ — Chirping of birds; twittering;
चह चह, चिँचिँ, चेँचेँ — warbling of birds.

**ଚେଁଚେଁ**—ଦେ. ଅ.—(ଧ୍ୱନ୍ୟନୁକରଣ)—୧ । ଅତିରୁଗ୍ଣ ଓ ଦୁର୍ବଳ
Cheñcheñ — ବ୍ୟକ୍ତିର ଖନଖନ କଥା—
ଚେଁଚେଁ — 1. Faint faltering nasal voice of a weak
चेँचेँ — and sickly person.
୨ । ଉତ୍ତପ୍ତ କଡ଼ାହାଦରେ ଜଳାଦି ଶୀତଳ ଦ୍ରବ୍ୟ ଢାଳିବା ଶବ୍ଦ—2. The sound produced when some cold liquid is poured into a hot pan.
୩ । ଚେଁ (ଦେଖ)
Cheñ (See)

**ଚେଁଚେଁୟା**—ଦେ. ବିଣ.—୧ । ଅତି ଦୁର୍ବଳ ଓ କ୍ଷୀଣ—
Cheñcheñyāñ — 1. Very weak and debilitated.
ଚିଁଚିଁୟା ୨ । ଅତି ଦୁର୍ବଳ ଓ କ୍ଷୀଣ ଗଳାରେ ସ୍ୱର କରୁଥିବା—
चेँचर — Having a very weak and faltering voice (due to weakness and chronic illness).
୩ । ଚେଁ ଚେଁ ଶବ୍ଦ କରୁଥିବା—3. Making a chirping or squeaking sound.

**ଚେଁ ଚେଁ ହେବା**—ଦେ. କ୍ରି.—୧ । (ପକ୍ଷୀ) କେଁ କେଁ ଶବ୍ଦ କରିବା—
Cheñ cheñ hebā — 1. To chirp; to twitter.
ଚେଁଚାନ, କିଚକିଚକବା ୨ । (ଚାଉଳ ଆଦି ପିଠା ପାଇଁ ପିଠଉ କରେଇର
चिचियाना, चहचहाना — ତଳା ହେବା ସମୟରେ) ଚେଁ ଧ୍ୱନି କରିବା—
2. To produce a squeaking sound (said of a liquid or paste while poured into a pan on a fire).

୩ । (ଚଟୁକୁନ୍ତା ଆଦି) ଚେଁ ଚେଁ ଶବ୍ଦ କରିବା—
3. To squeak.
୪ । (ଅତି କ୍ଷୀଣ ବା ରୁଗ୍ଣ ବ୍ୟକ୍ତି) କ୍ଷୀଣ ବା ଖନା ସ୍ୱରରେ କଥା କହିବା—4. To speak in faint or faltering nasal tone (said of a very weak or invalid person.)

**ଚେକ୍**—ବୈଦେ. ବି. (ଇଂ)—୧ । ହିସାବପତ୍ର ବା ଟିକଟ ଆଦିର
Chek — ମୁକାବିଲା—1. Checking of accounts or tickets
ଚେକ ୨ । ଖଜଣାଖାନାରୁ ବା ବାଙ୍କରୁ କୌଣସି ବ୍ୟକ୍ତିଙ୍କୁ ଟଙ୍କା ଦିଆ
चेक — ଯିବା ପାଇଁ ତାଙ୍କୁ ଯେଉଁ ବରାଦ ଚିଠି ବା ହୁଣ୍ଡି ଦିଆଯାଏ—
2. A cheque for payment of money to the holder by a treasury or bank.

[ ଦ୍ର—ସାଧାରଣତଃ ଯାହାଙ୍କର କୌଣସି ବାଙ୍କ୍ ବା ଟ୍ରେଜେରୀରେ ଟଙ୍କା ଜମା ଥାଏ, ଉକ୍ତ ବାଙ୍କ୍ ବା ଟ୍ରେଜେରୀ କର୍ତ୍ତୃପକ୍ଷଙ୍କ ସାଧା ଚେକ-ସମ୍ବଳିତ ଖଣ୍ଡିଏ ଲେଖାଏଁ ଚେକ୍ ବହି ତାଙ୍କୁ ଦେଇଥାନ୍ତି । ସେ ବହିରେ ଚେକ୍ ଓ ମୁଣ୍ଡା ଥାଏ । ଉକ୍ତ ବ୍ୟକ୍ତିଙ୍କର କାହାରିକୁ ଟଙ୍କା ଦେବାର ଦରକାର ହେଲେ ସେ ଖଣ୍ଡିଏ ଚେକ୍‌ରେ ଟଙ୍କାନେବା ବ୍ୟକ୍ତିଙ୍କ ନାମ ଓ ଟଙ୍କାର ପରିମାଣ ଲେଖି, ଦସ୍ତଖତ କରି ମୁଣ୍ଡାରେ ତହିଁର ନିଦର୍ଶନ ଟିପି ରଖି ଚେକ୍ ଖଣ୍ଡି ଚେକ୍-ବହିରୁ କାଟି ତାଙ୍କୁ ଦିଅନ୍ତି ଓ ମୁଣ୍ଡାଚେକ୍ ଖଣ୍ଡି ଆପଣା ପାଖରେ ରଖନ୍ତି । ]

୩ । ଚଉକୋଣିଆ ଘର ଅଙ୍କିତ ବା ବୁଣା ହୋଇଥିବା ଲୁଗା—
3. A chequered cloth; check.
୪ । ଚେକ୍ ପାଉତି (ଦେଖ)
4. Chek pāuti (See)

**ଚେକ୍ କରିବା**—ଦେ. କ୍ରି—୧ । ହିସାବପତ୍ର ମୁକାବିଲା କରିବା—
Chek karibā — 1. To check accounts.
ଚେକକରା ୨ । ରେଲ ବା ଭଡ଼ା ମଟର ବା ଟ୍ରାମ୍ ଗାଡ଼ିର ଯାତ୍ରୀ-
चेककरना — ମାନଙ୍କଠାରୁ ଟିକେଟକୁ ଦେଖି ମୁକାବିଲା କରିବା—
2. To check the tickets of the passengers of a railway, steamer, tram, or taxi.

**ଚେକ୍ କାଟିବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ନିର୍ଦ୍ଦିଷ୍ଟ ପରିମିତ ଧନ
Chek kāṭibā — ଦେବା ପାଇଁ କୌଣସି ବାଙ୍କ୍ ବା ଖଜଣାଖାନାର
ଚେକକାଟା — ଭାରପ୍ରାପ୍ତ ବ୍ୟକ୍ତିଙ୍କ ନାମରେ ଚେକ୍ (ହୁଣ୍ଡି ବା
चेककाटना — ବରାଦପତ୍ର) ଲେଖି, ସେ ଚେକ୍ ଖଣ୍ଡି ଚେକ୍-ବହିରୁ ଚିରି ଟଙ୍କା ନେବା ବ୍ୟକ୍ତିଙ୍କୁ ଦେବା ବା ବାଙ୍କ୍‌କୁ ପଠାଇ ଦେବା—To issue a cheque in favour of a payee.

**ଚେକ୍‌ଦାଖିଲ୍ଲ**—ବୈଦେ. ବି—ଚେକ୍ ପାଉତି (ଦେଖ)
Chek-dākhilā — Chek pāuti (See)

| ୯ | ଚ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଈଯ୍ | ଉଥ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଥ | ଢ଼ | ଟ୍ଟ |

ଚେକ୍ ପଉତି—ବୈଦେ. ବି—ପ୍ରଜା ଖଜଣା ଦାଖଲ କଲେ ଜମିଦାର ପ୍ରଜାଙ୍କୁ ଯେଉଁ ଛପା ରସିଦ ଦିଅନ୍ତି—
Chek pauti
চেক দাখিলা
चेक दाखिला
Printed rent-receipt granted by the Zamindar to a rent-paying tenant.

ଚେକ୍ ବହି—ବୈଦେ. ବି. ( ଇଂ ଚେକ୍+ଫା. ବହି )—ଯେଉଁ ବହିରେ ଗୁଡ଼ିଏ ସାଧା ରସିଦ-ପତ୍ର ଥାଏ—
Chek bahi
চেক বহি
चेक बहि
Cheque-book; a book containing blank cheques
[ ଦ୍ର—ଧନସ୍ୱାମୀ ଉକ୍ତ ବହିରୁ ଖଣ୍ଡିଏ ଖଣ୍ଡିଏ ଚେକ୍ ପୂରଣ ଓ ଦସ୍ତଖତ କରି କୌଣସି ବ୍ୟକ୍ତି ନାମରେ ରସିଦ ଲେଖି ତାଙ୍କୁ ଉକ୍ତ ଚେକ ଦେଲେ ସେ ବାଙ୍କ୍‌ରୁ କମ୍ବା ଖଜଣାଖାନାରୁ ଉକ୍ତ ଚେକ୍‌କୁ ଭଙ୍ଗାଇ ଟଙ୍କା ଆଣି ପାରେ । ]

ଚେକ୍ ବୁକ୍—ବୈଦେ. ବି. (ଇଂ)—ଚେକ ବହି ( ଦେଖ )
Chek buk — Chek bahi ( See )

ଚେକ୍ ମୁଣ୍ଡା—ଦେ. ବି— ମୁଣ୍ଡାଚେକ୍; ମୁଣ୍ଡିଚେକ୍; ପ୍ରଜାଙ୍କୁ ବା ଟଙ୍କା ଦାଖଲ କରିବା ବ୍ୟକ୍ତିଙ୍କୁ ଦିଆଯିବା ଛପା ରସିଦର ମୂଳପାଳ (ଯାହା ଟଙ୍କା ଗ୍ରହଣ କରିବ ବ୍ୟକ୍ତି ନିଜ ପାଖରେ ରଖେ )—
Chek munda
চেক মুঁড়ি
मुंड़ा चेक
(ଚେକମୁଣ୍ଡି—ଅନ୍ୟରୂପ) Counterfoil of cheque-receipts kept with the person who grants the receipts on receipt of money.

ଚେକ୍ ରସିଦ୍—ବୈଦେ. ବି ( ଇଂ. ଚେକ୍ ରସିଦ୍ )—
Chek rasid
চেকরসিদ
चेक रसिद
୧ । ଚେକ୍ ପାଉତି (ଦେଖ)
1. Chek pauti (See).
୨ । ଯେକୌଣସି ପ୍ରକାର ଧନପ୍ରାପ୍ତିର ଛପା ହୋଇଥିବା ସ୍ୱୀକାରପତ୍ର—Cheque-receipt.

ଚେକ୍ ମାଷୁମୀ ଭିଡ଼ି ବସିବା—ପ୍ରାଦେ (ଯାଜପୁର) କ୍ରି—ଚେକା ପକାଇବା;
Chek mashumi bhirdi basiba ଚେକାମାଲ ପକାଇ ବସିବା—To squat cross-legged.

ଚେକର୍—ବୈଦେ. ବି. (ଇଂ)—ଯେଉଁ କର୍ମଚାରୀ ରେଲ ଆଦିର ଯାତ୍ରୀଙ୍କ ଟିକଟ୍‌ମାନ ଚେକ୍ କରନ୍ତି—Ticket-checker.
Chekar

ଚେକା—ଦେ. ବିଣ (ସଂ. ଚକ୍ର)—ଚକା; ଗୋଲ; ଚକ୍ରାକାର—
Cheka — Circular.
ବି—୧ । ପଦ୍ମାସନ; ଚକା—1. Squatting on the ground with the buttocks and hips on the ground and entwining the legs together as to form a ring; squatting cross-legged
ঘাসের চাবড়ী
चीप; ढेला
୨ । କୋଡ଼ି ବା କାଉଡ଼ିଆ ଦ୍ୱାରା ଉଠାଯିବା ଚକ୍ରାକୃତ ମୃତ୍ତିକା ଓ ଘାସଖଣ୍ଡ—2. Clod of grassy earth; sod; turf cut by a spade.
୩ । ଗୋଲାକାର ଖଣ୍ଡ—3. A circular piece.
୪ । ଗୋଲାକାର ସୀମାବିଶିଷ୍ଟ ଭୂମି—4. A circular plot or area.
୫ । ସାପ, ଚେଲୁଣିପୋକ ଆଦିଙ୍କର କୁଣ୍ଡଳୀକୃତ ଅବସ୍ଥାନ—5. The spiral position or coil of the body assumed by serpents while at rest.

ଚେକାଇବା—ଦେ. କ୍ରି—ଚେକିଆଇବା (ଦେଖ)
Chekaiba — Chekiaiba (See)

ଚେକା ଉଠାଇବା – ଦେ କ୍ରି—ଚେକା କାଟିବା (ଦେଖ)
Cheka uthaiba — Cheka katiba (See)
(ଚେକା ଉଠେଇବା—ଅନ୍ୟରୂପ)

ଚେକା କାଟିବା—ଦେ.କ୍ରି—ବନ୍ଧ ବା ସଡ଼କର ନୂଆ ମାଟି ଉପରେ ବସାଇବା ପାଇଁ ତୃଣାବୃତ ମାଟିର ଢେଲାମାନଙ୍କୁ କୋଡ଼ିରେ ହାଣିବା—
Cheka katiba
ঘাসের চাবড়ী কাটা
चीपकाटना
To cut turf or sods.

ଚେକା କୋଶଲା—ଦେ. ବି—ଯେଉଁ କୋଶଲାଶାଗର ଗଛ ଡେଙ୍ଗା ହୋଇ ନ ବଢ଼ି ଭୂମିରେ ଚକ୍ରାକାର ସ୍ଥାନ (ଡେଙ୍ଗା କୋଶଲା—ବିପରୀତ) ଅଧିକାର କରି ମାଡ଼େ—
Cheka kosala
The creeping variety of Kosala pot-herb.

ଚେକା ଚେକା—ଦେ. ବିଣ. (ସଂ. ଚକ୍ରାକାର)—୧ । ଗୋଲ ବସ୍ତୁଖଣ୍ଡ ବିଶିଷ୍ଟ—1. Round slices of.
Cheka cheka
গোল গোল
गोल गोल
୨ । ଚକା ଚକା; ଗୋଲ ଗୋଲ (ବହୁତ ବସ୍ତୁ)—2. Circular (said of many things).

ଚେକାଚେକା ମାଉଲି—ଗ୍ରା.ବି.(ଶିଶୁଭାଷା)—ଚକାଚକା ଭଉଁରି(ଦେଖ)
Cheka cheka mauli — Chaka chaka bhaunri (See)

ଚେକାଛାଉଣି—ଦେ. ବି. ( ସଂ. ଚକ୍ର+ଛାଦନ )—କୌଣସି ସ୍ଥାନକୁ ଘାସଯୁକ୍ତ ଚକ୍ରାକାର ମୃତ୍ତିକାଖଣ୍ଡଦ୍ୱାରା ଆବୃତ କରିବା—Covering a place with sods or turfs; turfing
Cheka-chhauni
চাবড়াছাওনী
ढेलाजमाना
(ଚେକାଛାଆଣି, ଚେକାଛୁଆଣି, ଚେକାଛୁଆଣି—ଅନ୍ୟରୂପ)

ଚେକା ପକାଇବା – ଦେ. କ୍ରି—ଚକା ପକାଇବା (ଦେଖ)
Cheka pakaiba — Chaka pakaiba (See)
(ଚେକା ପକେଇବା—ଅନ୍ୟରୂପ)

ଚେକା ପାଡ଼ିବା—ଦେ କ୍ରି—ଚକା ପକାଇବା (ଦେଖ)
Chaka pardiba — Chaka pakaiba (See)
(ଚେକା ପାରିବା—ଅନ୍ୟରୂପ)

ଚେକାବନ୍ଦି—ଦେ. ବି—ଚେକା ଛାଉଣି (ଦେଖ)
Cheka-bandi — Cheka chhauni (See)

ଚେକା ଭିଡ଼ି ବସିବା—ପ୍ରାଦେ. (ଯାଜପୁର) କ୍ରି—
Cheka bhirdi basiba ଚେକା ପକାଇବା (ଦେଖ)
Chaka pakaiba (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ୧ ଚିହ୍ନ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଠେ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

• ଚେକାମାଉଲି—ଦେ. ବି—୧ । ଚକାଚକା ଭଉଁରି (ଦେଖ)
Chekā-māuli Chakāchakā bhaunri (See)
୨ । ପଦ୍ମାସନ—2. Cross-legged squatting.
(ଚେକାମାଲି, ଚେକାମଉଲି, ଚେକାମଲି—ଅନ୍ୟରୂପ)

ଚେକା ମାଡ଼ିବା—ଦେ. କ୍ରି—ଚକା ପକାଇବା (ଦେଖ)
Chekā mārdibā Chakā pakāibā (See)

ଚେକାସନରେ ବସିବା—ପ୍ରାଦେ ( ଯାଜପୁର ) କ୍ରି—
Chikāsanare basibā ଚକା ପକାଇବା (ଦେଖ)
Chakā pakāibā (See).

ଚେକା ହାଣିବା—ଦେ. କ୍ରି—ଚେକା କାଟିବା (ଦେଖ)
Chekā hānibā Chekā katibā (See).

ଚେକି—ଦେ. ବି (ସଂ. ଚକ୍ର)—୧ । କ୍ଷୁଦ୍ର ଗୋଲାକାର ଖଣ୍ଡ; ଚକଡ଼—
Cheki 1. Small circular pieces
চকতি ୨ । ସ୍ୱର୍ଣ୍ଣ ରୌପ୍ୟାଦିର ମୁଦ୍ରା—
**चकत्ति** 2. Gold and silver coin.

ଚେକିଆ—ଦେ. ବି—ଚେକିଆ ସୁନା (ଦେଖ)
Chekiā Chekiā sunā (See).

ଚେକିଆଇବା—ଦେ. କ୍ରି (ସଂ. ଚକ୍ର)—୧ । ଚେକା ବା ଗୋଲ କରି
Chekiāibā କାଟିବା; ମଣ୍ଡଳାକାର କରି କାଟିବା—
1. To cut into circle or circular slices; to make a circular cut.
୨ । ଗଛର ଗଣ୍ଡିକୁ ମୂଳରୁ ପୋଛିକରି କାଟିଦେବା—
2. To cut off a tree from the base.
(ଚେକାଇବା, ଚେକେଇବା—ଅନ୍ୟରୂପ)

ଚେକିଆ ସୁନା—ଦେ. ବି (ସଂ. ଚକ୍ରାକାର+ସ୍ୱର୍ଣ୍ଣ)—ସୁନା ମୋହର; ସ୍ୱର୍ଣ୍ଣ-
Chekiā sunā ମୁଦ୍ରା—Gold coin.

ଚେକି କନ୍ଦା—ପ୍ରାଦେ (ଗଞ୍ଜାମ) ବି (ସଂ ଚକ୍ର+କନ୍ଦ)—(ବୈଦ୍ୟକ)
Cheki kandā ଏକପ୍ରକାର ଗଛ—
A kind of medicinal plant.
[ ଦ୍ର—ଏହାର ମୂଳର କନ୍ଦା ଗୁଆଦିହି ସହିତ ବାଟି ଅତିସାର, ଆମରକ୍ତାତିସାର, ଗ୍ରହଣୀ ଓ ପ୍ରଦର ରୋଗରେ ସେବନ କରାଯାଏ । ]

ଚେକି ଚେକି—ଦେ. ବିଣ—୧ । କ୍ଷୁଦ୍ର କ୍ଷୁଦ୍ର ଖଣ୍ଡଯୁକ୍ତ—
Cheki cheki 1. Full of circular bits.
୨ । କ୍ଷୁଦ୍ର ଓ ଗୋଲାକାର ବହୁ (ବସ୍ତୁ)—
2. Myriads of small and circular (things).
ଚେକି ଚେକି ମକରନ୍ଦା,
ଫୁଲ ଫୁଟେ ରଙ୍ଗା ରଙ୍ଗା—ଶିଶୁଗୀତ ।
୩ । କ୍ଷୁଦ୍ର ଗୋଲାକାର (ଖଣ୍ଡ ମାନ)—
3. Small and round (slices).

ଚେକିତାନ—ସଂ. ବିଣ ( ଚିତ୍ ଧାତୁ ଯଙ୍ ଲୁଗନ୍ତ + କର୍ତ୍ତୃବାଚ୍ୟରେ ଚାହିଁଲାର୍ଥେ. ଅନ )—ସର୍ବଜ୍ଞ—
Chekitāna Omniscient
ସଂ. ବି—୧,। ମହାଦେବ—1. The God Siba.
୨ । ପ୍ରାଚୀନ ଭାରତର ଜନୈକ ନୃପତି—2. Name of a king of ancient India mentioned in the Mahābhārata.
[ ଦ୍ର—ଏ କୁରୁକ୍ଷେତ୍ର ଯୁଦ୍ଧରେ ପାଣ୍ଡବଗଣ ପକ୍ଷରେ ଯୁଦ୍ଧ କରୁଥିଲେ ଏବଂ ଦୁର୍ଯ୍ୟୋଧନଙ୍କ ଦ୍ୱାରା ହତ ହୋଇଥିଲେ । ]

ଚେଙ୍କ—ଦେ. ବି—ଚେଙ୍ଗ ୨ (ହରେକୃଷ୍ଣ ଦ୍ରବ୍ୟଗୁଣ) (ଦେଖ)
Chenka Chenga 2 (See)

ଚେଙ୍କା—ପ୍ରାଦେ (ସିଂହଭୂମ) ବିଣ—ଖଟା—
Chenkā Of acid taste.
ପ୍ରାଦେ (ଯାଜପୁର) ବିଣ (ଗାଳିରେ ବ୍ୟବହୃତ)—
ଯାହାକୁ ଅଗ୍ନିତପ୍ତ ଶଲାକାରେ ଚେଙ୍କିବା ବା ଲାଞ୍ଛିବା ଉଚିତ—
(a term of abuse) (a person) Deserving to be seared.
ପ୍ରାଦେ (ଯାଜପୁର) ବି—ଚିଆଁ (ଦେଖ)
Chiañ (See)

ଚେଙ୍କିବା—ପ୍ରାଦେ (ଯାଜପୁର) କ୍ରି—କୌଣସି ଜୀବର ଦେହକୁ ତାତିଲା
Chenkibā ଲୁହାରେ ଛେଙ୍କିବା ବା ଦାଗିବା—To sear or mark the body of an animal with hot iron.

ଚେଙ୍ଖ (ଇତ୍ୟାଦି)—ଚେଁଖ (ଇତ୍ୟାଦି) )ଦେଖ)
Chenkha (etc) Cheñkha etc (See).

ଚେଙ୍ଗ—ଦେ. ବି—୧ । ଗଞ୍ଜପା ସାରପାଇଁ ହରିତାଳ ଓ ନୀଳ ବାଟି ପ୍ରସ୍ତୁତ
Chenga କରାଯିବା ରଙ୍ଗ—1. A paint for the
চংগ Ganjapā cards ( prepared with yellow orpiment and indigo mixed together.
୨ । ( ସଂ. ଚଲଦଙ୍ଗ; ଏହା ଚେଇଁ ଚେଇଁ ଯାଇ ପାରେ )
ଛୋଟ ଶକୁଣା ମାଛ; କାଦୁଥିବା ଓ ପଙ୍କରେ ରହୁଥିବା
ଏକପ୍ରକାର ଛୋଟ ମାଛ—2. A kind of small fish
চেঙ্গ, চাঙ্গ, চেং ( with scales) living in muddy tanks;
**चेङ्ग, चेनगा** Ophicephalus Gachua.
[ ଦ୍ର—ଯାଜପୁର ଅଞ୍ଚଳରେ ବ୍ରାହ୍ମଣମାନେ ଚେଙ୍ଗ ମାଛ ଖାଆନ୍ତି ନାହିଁ ।
ଚାରି ଅଙ୍ଗୁଳ ପର୍ଯ୍ୟନ୍ତ ଲମ୍ବ ଶକୁଣା ମାଛକୁ ଚେଙ୍ଗ କୁହାଯାଏ । ଏମାନେ ଦେଖିବାକୁ ସାନ ଶେଉଳ ମାଛ ପରି, କିନ୍ତୁ ଏମାନଙ୍କ ଦେହ ଭାରି ଚିକ୍କଣ । ଚେଙ୍ଗ ଜଳଯୁକ୍ତର । ଚେଙ୍ଗ ପାଣି, ପଙ୍କ ଓ ପାଣିକୂଳରେ ଥିବା ଗାତମାନଙ୍କରେ ରହେ । ଏହାର ମୁଣ୍ଡ, ଚେପ୍ଟା; ଧଣ୍ଡ ସାପ ପରି ଏହାର ଦେହ ଲମ୍ବା ଓ ଗୋଲ ।.]

| ୧ | ଇ | ଉ | ଋ,ଋ଼ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଋଗ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଋଅ | ଡ଼ | ନୃ |

୩ । ଚେଙ୍ଗ ହାବେଳ ( ଦେଖ )
3. Chenga hābel ( See )

ପ୍ରାଦେ. (କଟକ) ବି—ଲମ୍ବ ଲୁଞ୍ଜପୁଷ୍ଟ କାଗଜର ଗୁଡ଼ି । (ଏହାର ଶେଷରେ ଖଣ୍ଡିଏ ଲମ୍ବା ନେତ ପର ଲାଙ୍ଗୁଡ଼ି ଲାଗିଥାଏ, ଓ ସେଥିଯୋଗୁଁ ଉଡ଼ିଲା ବେଳେ ସେହି ଲାଙ୍ଗୁଡ଼ି ଇତସ୍ତତଃ ସଞ୍ଚାଳିତ ହୋଇ ଶବ୍ଦ କରେ )—A kind of paper-kite having streamers hanging down from it and making a humming sound while flying.

ଚେଙ୍ଗ ଗୃଶି ବେଙ୍ଗ ଗୃଶି—ଦେ. ବି. ( ପ୍ରବଚନ ବା ଉକ୍ତାଖ )—
Chenga rāsi benga rāsi
(ଚେଙ୍ଗ ଗୃଶିକି ବେଙ୍ଗ ଗୃଶି—ଅନ୍ୟରୂପ)
୧ । ଦୁଇ ଜଣଙ୍କ ମଧ୍ୟରେ କେବେ ହେଲେ ମନ ନ ମିଳିବା ଅବସ୍ଥା—1. A phrase used with reference to two persons who are inimical to each other or who do never agree.

୨ । ଦୁଇ ଜଣଙ୍କର ଖୁବ ମନ ମିଳିବା ଅବସ୍ଥା—
2. A state of close intimacy or agreement between two persons.

ଯଥା—ସେ ଦୁଇ ଜଣଙ୍କର ଚେଙ୍ଗ ଗୃଶି ବେଙ୍ଗ ଗୃଶି । )
[ ଦ୍ର—ଚେଙ୍ଗମାନେ ଅଳ୍ପ ପାଣିରେ ଥାଆନ୍ତି ଓ ପାଣିକୂଳରୁ ଥଳକୁ କିଛି ଦୂର ଡେଇଁ ଆସନ୍ତି । ବେଙ୍ଗମାନେ ମଧ୍ୟ ଅଳ୍ପ ପାଣିରେ ଥାଆନ୍ତି ଓ ପାଣିକୂଳରୁ ଥଳକୁ କିଛି ଦୂର ଡେଇଁ ଆସନ୍ତି । ପାଣି କୂଳକୁ କେହି ଗଲା ମାତ୍ରେ କୂଳରେ ଥଳରେ ଥିବା ଚେଙ୍ଗ ଓ ବେଙ୍ଗମାନେ ପାଣି ଭିତରକୁ ଫକ୍ ଫାକ୍ ଡେଇଁ ପଡ଼ନ୍ତି । ଏହି କାରଣରୁ ଏମାନଙ୍କ ମଧ୍ୟରେ ଶତ୍ରୁତା ବା ମିତ୍ରତା ଥିବାର କଳ୍ପନା କରି ଏ ପ୍ରବଚନ ବ୍ୟବହୃତ ହୋଇଅଛି । ]

ଚେଙ୍ଗ ହାବିଲି—ଦେ. ବି—ଏକ ପ୍ରକାର ବାଣ; ଛୋଟ ହାବିଳ (ଏଥିରେ
Chenga hābili
ଛୋଟହାଅଈ
छोटीहवाई
ନିଆଁ ଲଗାଇଲାକ୍ଷଣି ଚେଙ୍ଗ ମାଛକୁ ଧରିବା ବେଳେ ହାତରୁ ଖସିଗଲାପରି ଏହା ଆକାଶକୁ ଉଠି ପଳାଏ )—
1. A kind of small rocket used as fire-works.

ଚେଙ୍ଗା—ଦେ. ବି—୧ । ହାତର ବୁଢ଼ା ଅଙ୍ଗୁଠି ଓ ତର୍ଜନୀ ଅଙ୍ଗୁଠି ଦ୍ୱାରା
Chengā
ଅନ୍ୟର ଜଙ୍ଘକୁ ଚିମୁଟିବା; ଚିମୁଟା—
1. A pinch on the thigh of a person with the thumb and index fingers; a pinch with the thumb and index finger.

୨ । ଚେଙ୍ଗ ୨ ( ଦେଖ )
2. Chenga 2 ( See )

୩ । ଚେଙ୍ଗ ହାବିଳ ( ଦେଖ )
3. Chenga hābili ( See )

ବିଣ. ( ସ୍ୱ. ଚଙ୍ଗ=ଦକ୍ଷ, କର୍ମଠ, ନୀରୋଗ )—
୧ । ସତେଜ; ତାଜା—
1. Animated; lively; fresh; enlivened.
चाङ्गा
୨ । ନୀରୋଗ; ସୁସ୍ଥ—2. Hale and hearty.
चङ्गा, चाङ्गा
୩ । ଆଳସ୍ୟ ବା ନିଦ୍ରାମୁକ୍ତ—
3. Having shaken off stupor or slumber, freshened after sleep or rest.

ଚେଙ୍ଗି—ଦେ. ବି—ଚେଙ୍ଗା ୧ ( ଦେଖ )
Chengi Chengā 1 ( See )

ଚେଙ୍ଗେଇ ଚାଉଳ—ଦେ. ବି—୧ । ଗାଈଜଗା ପିଲାମାନେ ବିଲରୁ
Chengei chāula
ନୂଆ ଧାନ ଆଣି ସଢ଼େଇରେ ବସି ପାଞ୍ଚଣ ଅଗରେ କୁଟି ଖାଇବା ପାଇଁ ସେ ଧାନରୁ ଯେଉଁ ଚାଉଳ କାଢ଼ନ୍ତି—1. Rice got from new paddy gathered by cowherd boys from the field in small quantities and husked in a cocoanut shell with the help of the cow-herd's staff.

୨ । ବାଳକମାନେ ପାଚିଲା କଣ୍ଟେଇ କୋଳିକୁ ଆଣି ଗୋଟିଏ ସଢ଼େଇରେ ଚଳିଁରେ ଲୁଣ ଓ ଲଙ୍କା ମରିଚ ମିଶାଇ ଘୋଟି ପ୍ରସ୍ତୁତ କରିବା ଖାଦ୍ୟ ପଦାର୍ଥ—2. Ripe Kantei berries plucked by children from the bushes and mixed with salt and red pepper and crushed in a cocoanut shell.

ଚେଞ୍ଚୁରୁଲି—ପ୍ରାଦେ. (ମେଦିନୀପୁର) ବି—ଚମ୍ପେଇ ନେଉଳି ( ଦେଖ )
Chenchruli Champei neuli ( See )

ଚେଞ୍ଜ—ବୈଦେ. ବି. (ଇଂ)—ସ୍ୱାସ୍ଥ୍ୟ ଲାଭ କରିବା ଲାଗି ଜଳବାୟୁ
Chenj
ଚେଁଜ
चेंज
ପରିବର୍ତ୍ତନ ପାଇଁ କିଛିଦିନ ସ୍ଥାନାନ୍ତର ଗମନ—Temporary change of climate; change of ones' place of residence for improvement of health

ଚେଟ—ସଂ. ବି. ପୁଂ. ( ଚିଟ୍ ଧାତୁ=ପ୍ରେରଣ କରିବା+କର୍ମ. ଅ )—
Cheta
(ଚେଟୀ—ସ୍ତ୍ରୀ)
୧ । ଭୃତ୍ୟ; ଦାସ—
1. A slave; an orderly; a servant.

୨ । ଉପନାୟକ ( ଯେଉଁ ନାୟକ ମିଷ୍ଟବାକ୍ୟ ଦ୍ୱାରା ରୁଷ୍ଟା ସ୍ତ୍ରୀକୁ ତୁଷ୍ଟ କରେ)—2. A gallant who pacifies his enraged sweetheart with endearing words.

୩ । ଭଣ୍ଡ; ବିଦୂଷକ—3. A fool; jester.

୪ । ନାୟକ ଓ ନାୟିକାଙ୍କ ମିଳନ ଘଟାଇବା ପୁରୁଷ ( ହି. ଶବ୍ଦସାଗର )—1. A go-between.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଳଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ।

୫ । ଏକ ପ୍ରକାର ମାଛ ( ହି. ଶବ୍ଦସାଗର )—
5. A kind of fish.

୬ । ପତି; ସ୍ୱାମୀ ( ହି. ଶବ୍ଦସାଗର )—6. Husband.

୭ । ଉପପତି; ଜାର ( ଯୋଗେଶ୍ଚନ୍ଦ୍ର )—
7. Paramour.

ଚେଟକ—ସଂ. ବି. ପୁଂ ( ଚଟ୍ ଧାତୁ=ପ୍ରେରଣ କରିବା + କର୍ମ. ଅକ )—୧ । ଚେଟ ( ଦେଖ )
Chetaka ( ଚେଟକା—ସ୍ତ୍ରୀ ) 1. Cheta ( See )

୨ । ଦୂତ ( ହି. ଶବ୍ଦସାଗର )—2. A messenger.

୩ । ଆଡ଼ମ୍ବର; ଜାକ୍‌ଜମକ୍ ( ହି. ଶବ୍ଦସାଗର )—
3. Show; parade.

ଚେଟକୀ—ସଂ. ବି. ପୁଂ. (ଚେଟକ+ଇନ୍, ୧ମା. ୧ବ.)—ଇନ୍ଦ୍ରଜାଲିକ; ବାଜୀଗର; ଯାଦୁକର ( ହି. ଶବ୍ଦସାଗର )—
Chetaki (ଚେଟକିନୀ—ସ୍ତ୍ରୀ) Magician.

ଚେଟିକା—ସଂ. ବି. ସ୍ତ୍ରୀ. ( ଚେଟକ+ସ୍ତ୍ରୀ. ଆ )—ଚେଟୀ ( ଦେଖ )
Chetika Cheti ( See )

ଚେଟୀ—ସଂ. ବି. ସ୍ତ୍ରୀ. ( ଚେଟ+ସ୍ତ୍ରୀ. ଈ )—୧ । ଦାସୀ—
Cheti 1 A slave-girl; a maid-servant.

ଚେଟୀ ହେଲେ ହେଲେ ଏ ପୁରୁଷେ
ତରନ୍ତି ଜନ୍ମ ପୁଣ୍ୟ ପୁଣ୍ୟରେ—କଦର୍ଯ୍ୟଧ. ରତ୍ନାକରଚମ୍ପୂ; ଚ. ଗୀତ ।

୨ । ଉପନାୟିକା; ରକ୍ଷିତା ସ୍ତ୍ରୀ—2. A concubine.

ଚେଟୁ—ପ୍ରାଦେ. ( ବସ୍ତର ) ବି—ଅଣଳ; ଡଙ୍କା—
Chetu A wooden spoon or ladle.

ଚେଡ଼—ସଂ. ବି. ପୁଂ ( ଚଟ୍ ଧାତୁ+କର୍ମ. ଅ )—ଦାସ; ଭୃତ୍ୟ—
Cherda ( ଚେଡ଼ୀ—ସ୍ତ୍ରୀ ) Servant.

ପ୍ରାଦେ. ( ପୁରୀ ) ବି—ପଣସକଷା; ଅପୁଷ୍ଟ ପଣସଫଳ; ପଣସଫଳର କସି—Small and young jack-fruit.

ଚେଡ଼କ—ସଂ. ବି. ପୁଂ ( ଚଟ୍ ଧାତୁ+କର୍ମ. ଅକ )—ଚେଡ଼ ( ଦେଖ )
Cherdaka ( ଚେଡ଼କା—ସ୍ତ୍ରୀ ) Cherda ( See )

ଚେଡ଼ୀ—ସଂ. ବି. ସ୍ତ୍ରୀ. ( ଚେଡ଼+ସ୍ତ୍ରୀ. ଈ )—ଚେଟୀ ( ଦେଖ )
Cherdi Cheti ( See )

ତହୁଁ ଶିବକାର ଆବରଣ ଫେଡ଼ି
କେମାନ୍ତ ଦେଖିଲେ ନବ୍ଯାଗତ ଚେଡ଼ୀ—ରଘୁନାଥ, ନବକେଶ୍ୱରୀ ।

ଚେଡ଼ୀପୁଅ—ଗ୍ରା. ବି. ପୁଂ. ( ଗାଳିବିଶେଷ )—୧ । ଦାସୀପୁତ୍ର—
Cherdipua 1. ( a term of abuse ) Son of a
(ଚେଡ଼ୀପୋ—ଅନ୍ୟରୂପ) concubine or maid servant.

ବିନ୍ଦୁର ଫଳୁଆ ଗୋଷ୍ଠ କାହ ଚେଡ଼ୀପୋ ନେଲା
କାହ ଚେଡ଼ୀପୋ ନେଇ କର ଦେଉଛ ଭୋଜନ—ଶିଶୁଗୀତ ।

୨ । ନୀଚକୁଳ ପ୍ରସୂତ ବ୍ୟକ୍ତି—2 A lowborn person.

୩ । ନୀଚଲୋକ—3 A mean person

ଚେଣି ( ଇତ୍ୟାଦି )—ଗ୍ରା. ବି—ଚିନି ଇତ୍ୟାଦି ( ଦେଖ )
Cheni ( etc ) Chini etc ( See )

ଚେଣ୍ଟା—ଦେ. ବିଣ. ପୁଂ—୧ । ଯେ ଏକ କଥାକୁ ବାରମ୍ବାର କହି ଚିଡ଼ାଏ—
Chenta କରେ—1. Teasing; pertinacious.
(ଚେଣ୍ଟେଇ—ସ୍ତ୍ରୀ) ୨ । କଳହପ୍ରିୟ—2. Quarrelsome.

୩ । ଅତି କୃପଣ—3. Very miserly; niggardly.

୪ । ଯେ ଦରଦାମରେ ଧିକମାଡ଼ି କରେ—
4. Higgling and haggling.

ଚେଣ୍ଟାଲ୍—ଦେ ବି. ଓ ବିଣ. ସ୍ତ୍ରୀ. ( ଗାଳିବିଶେଷ; ସଂ. ଛିନ୍ନା; ଭୁଲ. ପ୍ରା. ଛିନ୍ନାଳିଆ )—ନଷ୍ଟା ( ସ୍ତ୍ରୀ ); ଛିଣ୍ଡାଳ—
Chental Adulteress; lewd (woman).
ছেনাল
छिनाल
( ଚେଣ୍ଟାଳୀ—ଅନ୍ୟରୂପ )

ଚେଣ୍ଟେଇବା ଦେ କ୍ରି. ( ସଂ. ଚଣ୍ଡ, କ୍ରମ୍ଧ ଚଣ୍ଡ ଧାତୁ=ବେଦନ )—
Chenteiba ୧ । ଧିକମାଡ଼ ହେବା; ଗୋଟାଏ କଥାକୁ ବାରମ୍ବାର କହି ବିରକ୍ତ କରିବା—1. To tease a person by repeatedly saying the same thing; to importune.
চটান
खिजाना

୨ । କୃପଣତା ପ୍ରକାଶପୂର୍ବକ ଦରଦାମରେ ଧିକମାଡ଼ି କରିବା—
2. To higgle and haggle.

ଚେଣ୍ଟେଇ—ଦେ. ବି. ସ୍ତ୍ରୀ—ସାମାନ୍ୟ ବାଳିକା—
Chentei An ordinary girl.

ଦେ. ବିଣ. ସ୍ତ୍ରୀ—ଚେଣ୍ଟାର ସ୍ତ୍ରୀଲିଙ୍ଗ—
Feminine Chenta.

ଚେଣ୍ଟ୍ରି ହାତ—ପ୍ରାଦେ. (କାନ୍ଥି; ମେଦିନୀପୁର; ଯାଜପୁର) ବି—ବାଁଆଁହାତ—
Chentri hata Left hand

ଚେଣ୍ଡା—ପ୍ରାଦେ. (ଗଡ଼ଜାତ) (ସଂ. ଚଣ୍ଡ)—ଅଣ୍ଡିରା ମଇଁଷି—
Chenda A male buffalo.

ବିଣ.—ଯୁବା ବୟସ୍କ—Youthful.

ଚେଣ୍ଡିଆ—ପ୍ରାଦେ. (ଗଡ଼ଜାତ) ବିଣ. (ସଂ. ଚଣ୍ଡ)—ନବଯୁବା—
Chendia Youthful (person); of blooming youth.

ଚେତ୍—ସଂ. ଅ.—(ଚିତ୍ ଧାତୁ=ଜାଣିବା+କର୍ତ୍ତୃ. କ୍ୱିପ୍)—୧ । ଯଦି—
Chet 1. If.

୨ । କଦାଚିତ୍—2. If ever.

[ଦ୍ର—ଏ ଶବ୍ଦର ଓଡ଼ିଆରେ ସ୍ୱତନ୍ତ୍ର ବ୍ୟବହାର ନାହିଁ; କିନ୍ତୁ ସଂ. ନୋଚେତ୍, ନଚେତ୍ ଶବ୍ଦମାନ ଓଡ଼ିଆରେ ବ୍ୟବହୃତ ହୁଏ । ]

ଦେ. ବି. (ସଂ. ଚେତନ)—୧ । ବିବେଚନା—
1. Thought; reasoning.

୨ । ସଂଜ୍ଞା; ଜ୍ଞାନ—2. Consciousness.

ଚେତ—ଦେ ବି. (ସଂ. ଚେତସ୍)—୧ । ହେଜ; ଜ୍ଞାନ—
Cheta 1. Consciousness.
চেত
चेत
୨ । ଜାଗରଣ—
2. Awakening.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋୃ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ଊ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ୱ | ନ୍ |

୩। ଇଚ୍ଛା; ମନ—3. Mind; wish.

ଚେତ ମୋ ଯେବେ ନ ବଳେ ଅରକୁ। ଚନ୍ଦ୍ରସୂର୍ଯ୍ୟ. ସଙ୍ଗୀତ।

୪। ସାବଧାନତା; ହୁସିଆର—4 Carefulness; caution.

୫। ସ୍ମରଣ; ଖିଆଲ—5. Remembrance; memory.

ଚେତଃ—ସଂ. ବି (ଚିତ୍ ଧାତୁ+କର୍ତ୍ତୃ. ଅସ୍; ଚେତସ୍ ଶବ୍ଦ)—
Chetaḥ ୧। ମନ; ଅନ୍ତଃକରଣ; ଚିତ୍ତ—1. Mind; heart.

୨। ଜ୍ଞାନ—2. Knowledge

୩। ଚିନ୍ତାବୃତ୍ତି—3. Reasoning faculty.

୪। ଚୈତନ୍ୟ—4. Consciousness

୫। ଆତ୍ମା—5 Soul

ଚେତକ—ସଂ. ବିଣ. (ଚିତ୍ ଧାତୁ+କର୍ତ୍ତୃ. ଅକ)—୧। ଯେ ସ୍ମରଣ
Chetaka କରାଏ—One who reminds; reminding

୨। ଯେ ଚେତନା ଜନ୍ମାଏ—2 One who restores consciousness.

୩। ଯାହା କର୍ତ୍ତବ୍ୟାକର୍ତ୍ତବ୍ୟବୋଧ ଜନ୍ମାଏ—
3. That which arouses one's conscience

ଚେତକୀ—ସଂ. ବି. ସ୍ତ୍ରୀ. (ଚେତକ+ସ୍ତ୍ରୀ. ଈ)—୧। ବୈଦ୍ୟଶାସ୍ତ୍ରୋକ୍ତ
Chetakī ସୁଗନ୍ଧଯୁକ୍ତ ହରିଡ଼ା—A kind of sweet-scented myrobalan.

[ ଦ୍ର—କଥିତ ଅଛି ଯେ ଏ ହରିଡ଼ାକୁ ହାତରେ ଧଇଲେ ବା ଉକ୍ତ ଗଛର ତଳକୁ ଗଲେ ଲୋକର ଝାଡ଼ା ହୋଇ ଯାଏ; ଏ ପ୍ରକାର ହରିଡ଼ା ଉପରେ ୩ଟ ରେଖା ଥାଏ। ଏ ହରିଡ଼ା ଆଜକାଲି ମିଳେ ନାହିଁ। (ହି. ଶବ୍ଦସାଗର)]

୨। ଜାଇଫୁଲ; ଜାତୀପୁଷ୍ପ—2 Jasminum Grandifloria.

୩। ଶ୍ରୀରାଗର ସ୍ତ୍ରୀ ରାଗିଣୀ ବିଶେଷ (ହି. ଶବ୍ଦସାଗର)—
1. A kind of secondary tune

୪। ହରିଡ଼ା (ହି. ଶବ୍ଦସାଗର)—4 Myrobalan

ଚେତନ—ସଂ. ବି. (ଚିତ୍ ଧାତୁ+କର୍ତ୍ତୃ. ଅନ)—୧। ଆତ୍ମା—
Chetana 1. Soul.

୨। ଜୀବ; ପ୍ରାଣୀ—2. Animal.

୩। ଚିତ୍ତ—3. Heart; mind.

୪। (+ଭାବ ଅନ) ଚେତନା; ଜ୍ଞାନ—
4. Consciousness; perception.

କ୍ଷଣକେ ହୋଇ ହତଜ୍ଞାନ,
କ୍ଷଣକେ ଲଭଇ ଚେତନ। ଜଗନ୍ନାଥ. ଭାଗବତ।

ବିଣ.—୧। ଚେତନାଶାଳୀ; ସଜୀବ—
1. Animate; sentient; intelligent.

ଚେତନତା } ବି.
ଚେତନତ୍ୱ }

୨। ଜାଗ୍ରତ; ହୁସିଆର; ସାବଧାନ—
2. Wakeful; on one's guard.

ଦେ. ବି—ଜୀବନ—Life

ବ୍ୟାଧି ହସ୍ତୀବିଦ ଜୀବନ ହରଣେ କେହି ଚେତନ ରହୁନ୍ତି ଏହି କରନ୍ତି ହେଲା ସେ।
ଭଞ୍ଜ. ବୈଦେହୀଶବିଳାସ।

ଚେତନକୀ—ସଂ ବି. ସ୍ତ୍ରୀ (ଚେତନ+ସ୍ୱାର୍ଥେ କ+ଈ)—
Chetanakī ଚେତକୀ ୧ (ଦେଖ)
Chetakī 1 (See).

ଚେତନ ପଦାର୍ଥ—ସଂ. ବି—ଜୀବ; ଯାହାର ଜୀବନର ଅନୁଭୂତି ଅଛି—
Chetana padārtha A sentient or living being.

ଚେତନା—ସଂ. ବି. (ଚେତନ+ଆ)—୧। ସଂଜ୍ଞା; ଜ୍ଞାନ; ଅନୁଭୂତି;
Chetanā ଚୈତନ୍ୟ—1 Sensation; consciousness.

୨। ବୁଦ୍ଧି—2. Inward perception.

୩। ଜୀବନ—3. Animation.

୪। ମନ—4. Mind.

୫। ଜାଗରଣ; ନିଦ୍ରାଭଙ୍ଗ—5 Awakening.

୬। ସ୍ମୃତି—6. Remembrance.

ଚେତନାହୀନ—ସଂ. ବିଣ (ଷଷ୍ଠୀ ତତ୍; ଚେତନା+ହୀନ)—
Chetanā-hīna ୧। ନିର୍ଜୀବ—1. Inanimate

୨। ସଂଜ୍ଞାହୀନ—2. Unconscious; insensible.

ଚେତନୀୟ—ସଂ. ବିଣ. (ଚିତ ଧାତୁ+କର୍ମ ଅନୀୟ)—ଜାଣିବା ଯୋଗ୍ୟ—
Chetanīya Knowable.

ଚେତ ପଶିବା—ଦେ. କ୍ରି—୧। ସାବଧାନ ହେବା; ହେଜ ହେବା—
Cheta pasibā 1 Becoming careful.
চেতহওয়া ୨। ଚେତା ପଶିବା (ଦେଖ)—
चैतनयहोना 2 Chetā pasibā (See)

ଚେତବ୍ୟ—ସଂ. ବିଣ (ଚି ଧାତୁ+କର୍ମ ତବ୍ୟ)—ଚୟନ କରିବା ଯୋଗ୍ୟ—
Chetabya Fit to be plucked or gathered.

ଚେତସ୍—ସଂ. ବି—ଚେତଃ (ଦେଖ)
Chetas Chetaḥ (See)

ଚେତା—ଦେ. ବି. (ସଂ. ଚେତଃ)—୧। ଚେତନା; ଚୈତନ୍ୟ; ହୋସ୍;
Chetā ଜ୍ଞାନ—1. Consciousness
চৈতন্য ଚେତା ଅଛି ପର କହ, ପଗଡ଼ ତ ହେଉଅଛ।
चैत ବଳସ୍ୱର୍ଣ୍ଣ. କଣୋବରତ୍ମ ତ. ଗୀତ।

୨। ଜାଗରଣ—2. Awakening; watchfulness.

୩। ସ୍ମରଣ—3. Remembrance.

সজাগ ବିଣ—୧। ଜାଗ୍ରତ; ଗତନିଦ୍ର—
होसिआर 1. Awakened from sleep; watchful.

୨। ମୋହରୁ ବିମୁକ୍ତ—2. Free from illusion.

୩। ହୋସ୍ ଥିବା (ବ୍ୟକ୍ତି)—3. Conscious (person).

ଚେତାଇବା—ଦେ. କ୍ରି. (ଚିତ୍ ଧାତୁର୍ ଣିଚ୍=ଚେତ ଧାତୁ; ଚେତିବାର
Chetaibā ଣିଜନ୍ତ ରୂପ)—୧। ଅନ୍ୟକୁ ସ୍ମରଣ କରାଇବା—
চিতান; চেতান; চিয়ান 1. To remind a person.
चिताना ଲଜ୍ଜା ହେଉଛି ତାହାକୁ, ଚେତାଇବାର ଅପୂର୍ବ ସିନା ମୋ ନାହାକୁ।
ଭଞ୍ଜ. ପ୍ରେମସୁଧାନିଧି।

ସାଧାରଣ ଲୋକେ ଅପର ପୃଷ୍ଠାରେ ବୃତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଂଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

(ଚେତେଇବା—ଅନ୍ୟରୂପ) ୨ । ସତର୍କ କରିବା—
2. To caution a person.
୩ । ନିଦ୍ରାରୁ ଉଠାଇବା—
3. To awaken a person from sleep.
୪ । ଜ୍ଞାନ ଉଦୟ କରିବା; ଏମିତିକେତେ ମନେ ରହିଲା ଭଳି ଶିକ୍ଷା ଦେବା—4. To teach a lesson which will last in the mind for some time to come.
ଦୁଷ୍ଟକୁ ଦଣ୍ଡ ବାଞ୍ଛାବର
ଚେତାଇ ଦେଇ ଇଷ୍ଟପୁର । ଭୂପତି. ପ୍ରେମପଞ୍ଚାମୃତ ।
୫ । ପୁନରୁଜ୍ଜୀବିତ କରିବା—
5. To bring one to senses.
୬ । ଆଲସ୍ୟ ଛଡ଼ାଇବା; ଉତ୍ତେଜିତ କରିବା—
6. To excite; to stimulate.
୭ । ଦେଖିବା; ସ୍ମରଣ କରିବା—
7. To remember; to recollect.
ଚେତାଇଲେ କୃଷ୍ଣଙ୍କୁ ଚେତାଇ
ଡାକିଲେ ବେଦାନ୍ତ ମିଶାଇ । ଭୂପତି. ପ୍ରେମପଞ୍ଚାମୃତ ।

**ଚେତାଉଣି**—ଗ୍ରା. ବି. (ସଂ. ଚିତ୍ ଧାତୁ)—ଚେତାଣି (ଦେଖ)
Chetāuṇi Chetāni (See)
चेतावनी

**ଚେତା କରାଇବା**—ଦେ. କ୍ରି—ଅଚେତନ ଲୋକର ଚେତନା ଆଣିବା—
Chetā karāibā To restore a person to consciousness.
জাগান
होस दिलाना
(ଚେତା କରିବା—ଅନ୍ୟରୂପ)

**ଚେତା ଚଇତନ**—ଗ୍ରା. ବି. (ସହଚର)—ଚେତନା—
Chetā chaitana Consciousness.
চেতোচৈতন্য
होसहवास

**ଚେତାଣି**—ଦେ. ବି (ସଂ. ଚିତ୍ ଧାତୁ)—୧ । ସତର୍କ କରିବା—
Chetāni 1. Making one watchful.
চিতানি ୨ । ନିଦରୁ ଉଠାଇବା—2. A wakening.
चितानी ୩ । ଉତ୍ତେଜନା—3. Exciting; stimulating.
୪ । ସ୍ମରଣ କରାଇବା—4. Reminding.

**ଚେତା ପଶିବା**—ଦେ. ବି—୧ । ହଠାତ୍ କୌଣସି ବିଷୟରେ ସତର୍କତା ବା ଜ୍ଞାନର ଉଦୟ ହେବା—1. Becoming suddenly conscious or cautious.
Chetā paśibā
জ্ঞানআসা
होसआना ୨ । ସଂଜ୍ଞା ଲାଭ କରିବା—2 Being restored to consciousness.
(ଚେତା ବହିବା, ଚେତା ହେବା—ଅନ୍ୟରୂପ)

**ଚେତା ବୁଡ଼ିବା**—ଦେ. ବି ( ରୋଗାଦି ହେତୁରୁ ) ବାହ୍ୟଜ୍ଞାନର ଲୋପ ହେବା—Loss of consciousness.
Chetā burḍibā
জ্ঞানলোপ হওয়া
होस डुबना

**ଚେତା ହେବା**—ଦେ. କ୍ରି—ସଚେତନ ହେବା; ଚେତନ ଅବସ୍ଥାକୁ ଆସିବା—To come to one's senses.
Chetā hebā
ଦେ. ବି—ଚେତା ପଶିବା (ଦେଖ)
Chetā paśibā (See)

**ଚେତାଳ**—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. ଚେତନ)—୧ । ଜାଗ୍ରତ—
Chetāḷa 1. Watchful; wakeful.
হোসিআর ୨ । ଯେ ଆଗ ପଛ ବିଚାରି କାର୍ଯ୍ୟ କରେ—
होशियार 2. Circumspect.
୩ । ହୁସିଆର; ସତର୍କ; ସାବଧାନ—
3 Cautious; careful.
୪ । ବ୍ୟୟ ସମ୍ବନ୍ଧରେ ସାବଧାନ—4 Provident.
ଘୋଡାଶାଳ, ଉଷ୍ଟ୍ରଶାଳ, ଭୂଅ ହେନ୍ତାଳ, ଗର୍ଣ୍ଣ ବେତାଳ,
ଘରଣୀ ଚେତାଳ, ତେବେ ସେ ଘର ଯାଏ ଅପାରକାଳ । ଢଗ ।

**ଚେତିତ**—ସଂ. ବିଣ ( ଚିତ୍ ଧାତୁ ଣିଚ=ଚେତି ଧାତୁ+କର୍ମ. ତ )—
Chetita ୧ । ଜ୍ଞାପିତ—1. Informed.
୨ । ଜାଗ୍ରତ—2. Awakened.

**ଚେତିବା**—ଦେ. କ୍ରି (ସଂ. ଚିତ୍ ଧାତୁ)—୧ । ନିଦରୁ ଉଠିବା—
Chetibā 1. To wake up from sleep.
চিআ ଚେତି ଚତୁର ସ୍ତ୍ରୀହିଁଙ୍କ ନଚି ନାଗେ ପାଗେ ନାହିଁ ଦ୍ରବ୍ୟ ତରୁଣ ।
चेता ଉପେ. ଲାବଣ୍ୟବତୀ ।
୨ । ଦେଖିବା; ସ୍ମରଣ କରିବା—2. To recollect.
ଚେତି ପାଇଲେ ନିଜ ଜ୍ଞାନ, ଜାଣିଲେ କୃଷ୍ଣ ଭଗବାନ । ଭୂପତି. ପ୍ରେମପଞ୍ଚାମୃତ ।
୩ । ଇନ୍ଦ୍ରିୟାଦିଦ୍ୱାରା ଜାଣିବା—
3. To perceive; to be conscious.
୪ । ସତର୍କ ହେବା—4. To be cautious.
ଚେତିଲା ନାଶ ଘର କରେ—ଢଗ ।
୫ । ଜାଣିବା—5. To know; to realise.
ମୋତେ ଭୁଲାଇକରି ଏକା ଘେନିଲ୍ଲ ମୁଁ ନଖର ଖର ହିଁ ଚେତି ଲାଗେ ଜାଇଜର ।
ଭକ୍ତ. ପ୍ରେମସୁଧାନିଧି ।
୬ । ମନେ ରଖିବା—
6. To remember.
ଦୂରକର ହୃଦରଙ୍କୁ ଚେତ—କବିସୂର୍ଯ୍ୟ. ଉଦ୍ଧାକରତମ୍ଭ ଦ ଗୀତ ।
ପ୍ରାଦେ (ସମ୍ବଲପୁର) କ୍ରି—ଚେଇଁବା; ଜାଗ୍ରତ ହେବା—
To watch up; to keep awake.
[ଚେତା(ତୋ)ଇବା—ଣିଜନ୍ତରୂପ]

**ଚେତୁଆ**—ଦେ. ବିଣ—୧ । ଜାଗରୂକ—
Chetuā 1. Watchful.
୨ । ସତର୍କ—2. Cautious.
(ଚେତୁଆଳ - ଅନ୍ୟରୂପ) ୩ । ଯେ ଅନୁଭବଦ୍ୱାରା ଜ୍ଞାନ ଲାଭ କରେ—3. Profiting by experience.

**ଚେତୋଇବା**—ଦେ. କ୍ରି. ( ସଂ. ଚେତୋଇବା )—
Chetoibā ୧ । ଚେତାଇବା ( ଦେଖ )
चियान 1. Chetāibā ( See )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଇଯ୍ର | ଜଅ | ଘ |
| ୨ | ଈ | ଊ | ଋୁ | ଌୁ | ଏ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଜ୍ଞ | ନ୍ମ |

**चेताना** ୨ । ସ୍ମରଣ କରିବା; ଚେତାଇବା—2. To recollect
ଚେତିଲେ ଯାହା ବୋଲି ଲଭ ଲଜ
ଚେତୋଉ ନାହିଁ ସେ ରସକୁ ଅଜ—ବୈଦେହୀଶ ବିଳାସ।

**ଚେଦି**—ସଂ. ବି (ନାମ)—ପ୍ରାଚୀନ ଭାରତର ରାଜ୍ୟବିଶେଷ; ଶିଶୁପାଳର ରାଜ୍ୟ; ଚନ୍ଦେଲ୍ (ଆଧୁନିକ ବୁନ୍ଦେଲଖଣ୍ଡ)—
Chedi
(ଚୈଦ୍ୟ; ଚେଦୀ—ଅନ୍ୟରୂପ) Name of a kingdom of ancient India (modern Bundelkhand).

**ଚେଦିପତି**—ସଂ. ବି (୬ଷ୍ଠୀ ତତ୍, ଚେଦି+ପତି)—ଶିଶୁପାଳ—
Chedipati King Sisupāla.
ଚେଦିରାଜ } —ଅନ୍ୟରୂପ
ଚେଦୀଶ୍ୱର }

**ଚେଦୀ (ଇତ୍ୟାଦି)**—ସଂ. ବି—ଚେଦି ଇତ୍ୟାଦି ( ଦେଖ )—
Chedī (etc) Chedi etc (See)
ଅସହ୍ୟ ଅମିତ୍ରଚେଦୀ ଚେଦୀ ମହୀପାଳରେ—ରାଧାନାଥ. ମହାଯାତ୍ରା।

**ଚେନ୍**—ବୈଦେ ବି (ଇଂ ଚେନ୍)—୧ । ଜଞ୍ଜିର; ଶିକୁଳି—
Chen 1. Chain
ଚେନ 
୨ । ଘଣ୍ଟାରେ ପକେଟ-ଘଡ଼ି ଝୁଲାଇବା ଶିକୁଳି—
**चेन; चेइन्** 2. Watch-chain
ନବ୍ୟ ଗଳେ ଚେନ୍ ପ୍ରାଚୀନ କୁଣ୍ଡଳ—ରାଧାନାଥ. ଦରବାର।
୩ । ଭୂମି ମାପିବା ଶିକୁଳି; ଜରିବ୍—
3. Gunter's chain; a chain to measure land.
[ ଦ୍ର—୧ ଚେନ୍=୧୦୦ ଲିଙ୍କ୍=୬୬ ଫୁଟ । ଦୀର୍ଘରେ ୧୦ ଚେନ୍ ଓ ପ୍ରସ୍ଥରେ ୧୦ ଚେନ୍ ହେଲେ ଜମିର କ୍ଷେତ୍ରଫଳ ଏକ ଏକର ବା ୨୪ ଦସ୍ତାରେ ୧ ମାଣ ହେବ । ଦୀର୍ଘ ୧ ଚେନ୍ ପ୍ରସ୍ଥ ୧ ଚେନ୍=୧୦ ଡେସିମଲ୍ ବା ୨୪ ଗୁଣ୍ଠ । ପ୍ରତି ଚେନ୍‌ରେ ୧୦୦ଟି କାଠି (ଲିଙ୍କ୍) ମୁଦଥା ଦ୍ୱାରା ପରସ୍ପର ସହିତ ଯୁକ୍ତ ହୋଇଥାଏ । ]

**ଚେନ୍‌ମାପ**—ଦେ ବି—ଚେନ୍ ସର୍ଭେ ( ଦେଖ )—
Chen-māpa Chen-sarbhe (See)

**ଚେନ୍‌ମେନ୍**—ବୈଦେ. ବି (ଇଂ ଚେନ୍‌ମାନ୍)—୧ । ଜମି ମାପ ବେଳେ ଜଞ୍ଜିରକୁ ଭୂମିରେ ଟାଣିବା ମୂଲିଆ —1 Chain-man; a cooly who drags the chain through a field
Chen-men
ଚେଇନମେନ୍
**चेनमेन**
୨ । ଓଡ଼ିଶାରେ କାନୁନଗୋମାନଙ୍କ ସଙ୍ଗେ ନିଯୁକ୍ତ ସରକାରୀ ପିଅନ୍—2 The peon accompanying a Kanungo in Orissa.

**ଚେନ୍ ଲାଇନ୍**—ବୈଦେ. ବି (ଇଂ. ଚେନ୍ ଲାଇନ୍)—୧ । ମାପ କରିବା ପାଇଁ ଭୂମିରେ ଯେଉଁ ବାଟେ ଚେନ୍ ଓଟାରୁଯାଏ—
Chen lāin
ଚେଇନ୍ ଲାଇନ 1. Chain-line; a line on the field during chain-measurement.
**चेनलाइन**
୨ । ମାପ କରିବାବେଳେ ଯେଉଁ ବାଟେ ଚେନ୍ ଓଟାରୁଯାଇ ଥାଏ, ନକସାରେ ତାହାର ଚିହ୍ନଟ—2. A chain-line shown on the map.

**ଚେନ୍ ସର୍ଭେ**—ବୈଦେ. ବି (ଇଂ)—ଲୁହା ଶିକୁଳି ସାହାଯ୍ୟରେ ଆଧୁନିକ ପ୍ରଣାଳୀଦ୍ୱାରା ଜମି ମାପିବାର ପ୍ରକ୍ରିୟା —
Chen-sarbhe
ଚେଇନସର୍ଭେ Chain-survey.
**चेनसर्वे**

**ଚେନା**—ଦେ. ବି—୧ । କ୍ଷୁଦ୍ର ଲମ୍ବ ଖଣ୍ଡ (ଯଥା ଜମିର)—
Chenā 1. A small narrow strip.
**धजी** ୨ । ଅତି କ୍ଷୁଦ୍ର ଖଣ୍ଡ—2. A very small piece.
ଦେ. ବିଣ—ଅତି କ୍ଷୁଦ୍ର—Very small.

**ଚେନାଇବା**—ଦେ କ୍ରି—( ସ ଚୀର୍ଣ୍ଣ ) ୧ । କାଠରୁ ଛାଲି ବାହାର କରିବା—1. To take out the rind or bark from wood.
Chenāibā
ଚେଲାନ
**चीरना** ୨ । କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ କରିବା; ଟିକଟିକ କରି ଚିରିବା—
2. To tear into pieces; to split into thin strips or splinters.
(ଚେନେଇବା —ଅନ୍ୟରୂପ)

**ଚେନାଏଁ**—ଦେ. ବି ଓ ବିଣ—ଅତି କ୍ଷୁଦ୍ର (ଖଣ୍ଡ)—
Chenāeṅ A very small strip of.
( ଯଥା—ଚେନାଏଁ କାଗଜ, ଚେନାଏଁ ଜମି । )

**ଚେନାଚେନା କରିବା**—ଦେ. କ୍ରି—ଚେନାଇବା ( ଦେଖ )—
Chenāchenā karibā Chenāibā ( See)

**ଚେନାପଟମ୍**—ଦେ ବି (ନାମ)—ମାନ୍ଦ୍ରାଜ—
Chenāpaṭam Madras.

**ଚେନି (ଇତ୍ୟାଦି)**—ଗ୍ରା. ବି—ଚିନି ଇତ୍ୟାଦି ( ଦେଖ )—
Cheni (etc) Chini etc ( See )

**ଚେନ୍ଦ୍ରି**—ପ୍ରାଦେ (ସମ୍ବଲପୁର) ବି (ସ. ଚୀର)—୧ । କନା—
Chendri 1. A bit of cloth.
୨ । କନ୍ଥା—2. Rag; a bit of torne cloth.
ଘରେ କାହିଁ ଚେନ୍ଦ୍ରି ମୁଣ୍ଡ କୁଣ୍ଡୁଛେ ବେକ୍ତ—ଧ୍ୟଙ୍ଗ ପ୍ରବଚନ ।

**ଚେପଟା (ଇତ୍ୟାଦି)**—ଦେ. ବିଣ (ସ. ଚିପିଟ)—ଚେପ୍ଟା ଇତ୍ୟାଦି (ଦେଖ)
Chepaṭā (etc) Chep-ṭā etc (See)

**ଚେପା**—ଦେ. ବିଣ.—୧ । ଚେପ୍ଟା (ଦେଖ)
Chepā 1. Chep-ṭā (See)
ଚେପ୍‌ଟା ୨ । ଯେଉଁ ପାତ୍ରାଦିର ଉପର ପାଖ ଭିତରକୁ ପଶିଯାଇ ଥାଏ -
**चिपटा** 2. Pressed inside (e. g a pot).
ପ୍ରାଦେ. ( କଳାହାଣ୍ଡି ) ବି.—ବାହୁଙ୍ଗିର ପେଟରେ ବନ୍ଧାଯିବା ପତଳା କାଠ ବା ବାଉଁଶ—A thin strip of wood or bamboo put in the inside of a bāhuṅgi.
ଗ୍ରା. ବି — ପେଚା—Owl.

**ଚେପ୍ଟା**—ଦେ. ବିଣ. (ସ. ଚିପିଟ)—୧ । (ଉଚ୍ଚତା ପରି ଅଳ୍ପତାବିଶିଷ୍ଟ) ପତଳା; ଚକଟା—1. Flattened; thin.
Chep-ṭā
ଚାପ୍‌ଟା, ଚେପ୍‌ଟା ୨ । ଚେପା; ଯାହା ଭିତରଆଡ଼କୁ ଦବିଯାଏ—
**चिपटा** 2. Compressed; flat.

**ଚେପ୍ଟା ଢୋଲ**- ପ୍ରାଦେ. (ସମ୍ବଲପୁର) ବି.—ଆଶ୍ୱିନପର୍ବ ସମୟରେ
Chep-tā ḍhola ସମଲେଶ୍ୱରୀ ଠାକୁରାଣୀଙ୍କ ଭୋଗ କରିବା ଉପଲକ୍ଷରେ ବଜାଯିବା ଏକପ୍ରକାର ଢୋଲ—A kind of drum beat before Goddess Samaleśwarī of Sambalpur during the Durgā-pujā festival.

[ ଦ୍ର—ଏ ଢୋଲ ଗୋଲାକାର । ମାତ୍ର ଏହାର ଗଠନ ଚେପ୍ଟା । ଏହାର ସ୍ୱର ଢୋଲର ସ୍ୱରଠାରୁ ଉଚ୍ଚତର । ଏହାକୁ ଚୂନା କଣ୍ଡି ଓ ଓ ଫୁଲ ଚନ୍ଦନରେ ବିଭୂଷିତ କରି ଘାସୀମାନେ ବଜାନ୍ତି । ବଜାଉଥିବା ବେଳେ ଓ ବାଦ୍ୟନାଦରେ ଥରେ ଉତ୍କଣ୍ଠା ଓ ଛନ୍ଦୋଶ୍ରାଣ କରାଯାଇ ଗୋଟିଏ ଗୋଟିଏ ଭରଣୀ ହୁଏ । ଏହିପରି ଷୋଳଟି ଭରଣୀ ବାଦିତ ହେଲେ କାଳସୀ (ବଳି) ଠାରେ ଠାକୁରାଣୀ ଭୋଗ ହୁଅନ୍ତି । ]

**ଚେପ୍ଟାନାକା**—ଦେ. ବିଣ. ପୁଂ.—(ସଂ. ଚିପିଟନାସିକ)—ଯାହାର ନାକ
Chep-tā-nākā ଚେପ୍ଟା ବା ବସି ଯାଇଥାଏ—
চেপটানাকো Flat-nosed.
**चिपटी नाक**
(ଚେପ୍ଟାନାକୀ—ସ୍ତ୍ରୀ)

**ଚେପ୍ଟାମୁହାଁ**—ଦେ. ବିଣ. ପୁଂ — ଯେଉଁ ବ୍ୟକ୍ତିର ମୁହଁ ଚଟକା—
Cheptā-muhāñ Flat-faced.
চেপটা মুখ
(ଚେପ୍ଟାମୁହାଁ—ସ୍ତ୍ରୀ)

**ଚେପ୍ଟୀ**— ଦେ. ବି. (ଅଶ୍ଳୀଳ) (ସଂ. ଚିପିଟ = ଚେପଟା)—ଭଗ; ଯୋନି—
Chepṭi Female organ.
**चिपटी**

**ଚେପ୍ଟୀ ଲଢ଼େଇବା**— ଦେ. (ଅଶ୍ଳୀଳ) କ୍ରି.—କାମାତୁରା ଦୁଇ ଜଣ ସ୍ତ୍ରୀ
Chep-ti larḍheibā ପୁରୁଷସଂସର୍ଗ ଅଭାବରେ ପରସ୍ପରଙ୍କୁ ଆଲିଙ୍ଗନ
**चिपटिलेखना** ପୂର୍ବକ ପରସ୍ପର ଯୋନିଲିଙ୍ଗ ଘଷାଘଷି
**चिपटी लड़ाना** ହେବା—(two woman) To embrace each other and rub each other's organ in the absence of any other means of satiating lust.
(ଚେପ୍ଟୀ ଲଢ଼େଇ—ବି)

**ଚେଭଡ଼ା**—ଦେ. ବିଣ. ପୁଂ.—ଡଟା; ଯେ ମନୁଷ୍ୟଙ୍କୁ ଅତିଶୟ ବିରକ୍ତ
Chebharḍā କରେ—Teasing; vexatious.
(ଚେଭଡ଼ୀ—ସ୍ତ୍ରୀ)

**ଚେଭଡ଼ାଇବା**—ଦେ. କ୍ରି.—ଅତ୍ୟନ୍ତ ବିରକ୍ତ କରିବା—
Chebharḍāibā To tease; to vex.
(ଚେଭଡ଼େଇବା—ଅନ୍ୟରୂପ)

**ଚେଭରା**—ଦେ. ବିଣ.—ଦାବୀ ଥିବାରୁ ଯେଉଁ ବ୍ୟକ୍ତି ବାରମ୍ବାର ମାଗେ—
Chebharā One who pressingly asks for his dues.
(ଚେଭରୀ—ସ୍ତ୍ରୀ)

**ଚେମଟା**—ଦେ. ବିଣ.—(ସଂ. କ୍ଷାମ)—୧ । ଅତି କ୍ଷୀଣ ବା ପତଳା—
Chemaṭā 1. Very lean.
୨ । ଶୀର୍ଣ୍ଣ—2 Emaciated (Howells).

**ଚେମଠା**—ଦେ. ବିଣ.—ଚେମଡ଼ା (ଦେଖ)
Chemaṭhā Chemarḍā (See)

**ଚେମଡ଼**—ଦେ. ବିଣ. ( ସଂ ଚର୍ମ; ଚମ ପରି ଅଭଙ୍ଗପ୍ରବଣ ) —
Chemarḍa ୧ । ଘାତସହ; କଠାଳିଆ; ଚମ ପରି ଟାଆଁସା—
চিমড়, চিমড়া 1 Tenacious; inflexible; tough.
**चिमड़ा** ୨ । ଯାହା ସହଜରେ ଛିନ୍ନେ ନାହିଁ—
2 Not fragile; in frangible.
୩ । ଯାହା ଲଇଁ ଯାଏ, ଭାଙ୍ଗେ ନାହିଁ—3. Pliant
୪ । ଦୁର୍ଦ୍ଦମନୀୟ—4. Pertinacious.
୫ । ଏକଗୁଆଁ—5. Obstinate
ପ୍ରାଦେ. ( ସମ୍ବଲପୁର ) ବିଣ—ଅକ୍ଳାନ୍ତ—Untired.

**ଚେମଡ଼ଚଟି**—ଦେ. ବି. ( ସଂ. ଚର୍ମଚଟକ )—
Chemarḍachaṭi ଚମଚଟା ( ଦେଖ )
Chamachaṭā ( See )

ଚେମଡ଼ଚଟିଆ, ଚେମଡ଼ଚଟି, ଚେମଡ଼ଚଟିଆ, ଚେମଡ଼ଚେଟି, ଚେମଡ଼ଚେଟିଆ — ଅନ୍ୟରୂପ
ଦେ ବିଣ—ଯେ କୌଣସି ବିଷୟରେ ଅତି ଜିଦ ବା ଅଳି କରେ ( ଦ୍ର. ଶବ୍ଦ-ସାଗର )—Importunate.

**ଚେମଡ଼ା ଲଇ**—ଦେ ବି— ଶାରିବା ( ଦେଖ )
Chemarḍā lai Sāribā ( See )

ଚେମଡ଼ିଲଇ, ଚେମିଡ଼ିଲଇ, ଚେମେଡ଼ିଲଇ — ଅନ୍ୟରୂପ

**ଚେମଣାବାବୁ**—ଦେ. ବି. ( ନାମ )—ନାଗପୁର ମରହଟ୍ଟା ରାଜା ମାଧୋଜୀ
Chemaṇābābu ଭୋଁସଲାଙ୍କ ସାନ ଭାଇ—The younger brother of Mādhojī Bhonsalā, the Marhatta ruler of Nagpur.

[ ଦ୍ର—ମାଧୋଜୀ ଏହାଙ୍କୁ ଢେଙ୍କାନାଳ ବିଦ୍ରୋହ ଦମନ କରିବା ଓ ବଙ୍ଗପ୍ରଦେଶ ଆକ୍ରମଣ କରିବା ପାଇଁ ପଠାଇଥିଲେ । ଢେଙ୍କା-ନାଳର ରାଜା ତ୍ରିଲୋଚନଙ୍କ ସଙ୍ଗେ ଏହାଙ୍କର ଯୁଦ୍ଧ ହେବା ପରେ ସନ୍ଧି ସ୍ଥାପିତ ହୋଇଥିଲା (ଖ୍ରୀ. ଅ, ୧୭୧୮) । ବ୍ରଜନାଥ ବଡ଼ଜେନା ସମର-ତରଙ୍ଗରେ ଢେଙ୍କାନାଳ ରାଜାଙ୍କ ଯୁଦ୍ଧ ବିଷୟ ବର୍ଣ୍ଣନା କରିଅଛନ୍ତି । ]

**ଚେମଣି**—ଦେ. ବି. ( ସଂ. ଚର୍ମଚଟକ )—ଚେମଣି ଚଢ଼େଇ—
Chemaṇi The house-bat.
চামচিকে
**चमगादड़**
( ଚେମଣିଆ, ଚେମିଣି, ଚେମେଣି—ଅନ୍ୟରୂପ )

| ୯ | ଇ | ଊ | ର୍,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଫ୍ର | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| . | ଈ | ଉ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ | ନ୍ଥ |

**ଚେମଣି ଲଇ**—ଦେ. ବି—ଶାରିବା ( ଦେଖ )
Chemaṇi lai   Śāribā ( See )
( ଚେମିଣି ଲଇ—ଅନ୍ୟରୂପ )

**ଚେମର୍**—ପ୍ରାଦେ. ( ସମ୍ବଲପୁର ) ବିଣ—୧ । ଚେମଡ଼—
Chemar   1. Tenacions.
୨ । ଅକ୍ଳାନ୍ତ—2. Untired.

**ଚେମରଚଟି**—ଦେ. ବି ( ସଂ. ଚର୍ମଚଟକ )—
Chemara-chati   ଚମଚଟା ( ଦେଖ )
Chama-chaṭā ( See )
ଚେମରଚଟୁଆ }
ଚେମଚଟୁ } ଅନ୍ୟରୂପ ବିଣ—ଚେମଡ଼ଚଟ ( ଦେଖ )
ଚେମରଚଟୁଆ } Chemardachaṭi ( See )

**ଚେମା**—ଦେ. ବି—ଏକପ୍ରକାର କଉଡ଼ି ଖେଳ—A kind of game
Chemā   at hazards with five Kaurdis.
[ ଦ୍ର—ଏ ଖେଳକୁ ଆଠପଚଶ ଖେଳ ମଧ୍ୟ କୁହାଯାଏ । ଏଥିରେ ଦୁଇ ବା ଗୃହଜଣ ଖେଳାଳି ପାଞ୍ଚୋଟି କଉଡ଼ି ମୁଠାଇ ଭୂମିରେ ପକାଇ ତାହାର ଅନୁସାରେ ଦାନ ଗଣି ଖେଳନ୍ତି । ]

**ଚେମଡ଼ି ଲଇ**—ଦେ. ବି—ଶାରିବା ( ଦେଖ )
Chamardi lai   Śāribā ( See )

**ଚେମିଣି**—ଦେ. ବି ( ସଂ. ଚର୍ମଚର୍ଣ୍ଣି )—
Chemiṇi   ଚମଚଟା ( ଦେଖ )
( ଚେମେଣି—ଅନ୍ୟରୂପ )   Chamachaṭā ( See )

**ଚେମ୍ବର୍**—ପ୍ରାଦେ. ( ସମ୍ବଲପୁର ) ବିଣ—ଚେମଡ଼ ( ଦେଖ )
Chembar   Chemarda ( See )
চেম্বর   ବୈଦେ. ( ଇଂ. ) ବି—୧ । କୋଠରି—
चैंबर   1. Chamber; room.
( ଯଥା—ବେଡ୍‌ଚେମ୍ବର୍—ରାଜାଙ୍କ ଶୟନମନ୍ଦିର । )
୨ । ହାକିମମାନଙ୍କ ଅଫିସ୍‌ସଂଲଗ୍ନ ଖାସ୍ କାମରା—
2. The chamber of an official.
୩ । ବାରିଷ୍ଟର ଓ ଓକିଲମାନଙ୍କର ଖାସ୍ ବୈଠକଖାନା ବା ଅଫିସ୍—3. The sitting room or office of a barrister or pleader.
[ ଦ୍ର—କେତେକ ସଭା ବା ସଙ୍ଘକୁ ମଧ୍ୟ ଚେମ୍ବର୍ ନାମ ଦିଆଯାଏ । ଯଥା – ଚେମ୍ବର୍ ଅଫ୍ କମର୍ସ, ଅପର୍ ଚେମ୍ବର୍, ଚେମ୍ବର ଅଫ୍ ପ୍ରିନ୍ସେସ୍ । ]

**ଚେମ୍ବର୍ ଅଫ୍ କମର୍ସ୍**—ବୈଦେ. ବି. (ଇଂ)—ପ୍ରାଦେଶିକ ବଣିକ ସଙ୍ଘ—
Chember of kamars   The Chamber of Commerce.
চেম্বর অফ্ কমর্স
चैंबर अफ् कामर्ष

**ଚେମ୍ବର୍ ଅଫ୍ ପ୍ରିନ୍ସେସ୍**—ବୈଦେ. ବି. (ଇଂ)—ଭାରତର ଭାଇସରାୟଙ୍କ
Chember af prinses   ସଭାପତିତ୍ୱରେ ଗଠିତ ଦେଶୀୟ ରାଜନ୍ୟବର୍ଗଙ୍କ ସଭା; ନରେନ୍ଦ୍ରମଣ୍ଡଳ—
The Chamber of Princes.

**ଚେମ୍ବର୍ଲେନ୍**—ବୈଦେ. ବି. ( ଇଂ )—ରାଜାଙ୍କ ଶୟନମନ୍ଦିରରେ ରାଜା
Chemberlen   ଶୋଇଲା ବେଳେ ତାଙ୍କୁ ଜଗିବା ବ୍ୟକ୍ତି ବା ପ୍ରହରୀ—
Chamberlain.

**ଚେମ୍ବର୍ସ ଡିକ୍ସନାରି**—ବୈଦେ. ବି. (ଇଂ)—ଇଂରାଜ ପଢ଼ୁଥିବା ଭାରତୀୟ
Chembers diksinārī   ବାଳକବାଳିକାମାନଙ୍କ ବ୍ୟବହୃତ ଚେମ୍ବର୍ସ ନାମକ ସାହେବଙ୍କ ସଙ୍କଳିତ ଇଂରାଜୀ ଭାଷାକୋଷ—
A dictionary of the English language compiled by Mr. Chambers.

**ଚେମ୍ବଲ୍**—ଦେ. ବି. ( ନାମ ) ( ସଂ. ଚର୍ମଣ୍ୱତୀ )—
Chembal   ଚମ୍ବଲ୍ (ନଦୀ) ( ଦେଖ )
Chambal (river) ( See )

**ଚେୟ**—ସଂ. ବିଣ. ( ଚି ଧାତୁ=ସଂଗ୍ରହ କରିବା + କର୍ମ. ଯ )—
Cheya   ଚୟନଯୋଗ୍ୟ—
(ଚେତବ୍ୟ—ଅନ୍ୟରୂପ)   Fit to be plucked.

**ଚେୟାଡ଼**—ଦେ. ବି. ( ସଂ. ଶର )—୧ । ଶର—
Cheyārḍa   1. Arrow.
চিআর   ୨ । ଅସ୍ତ୍ର—2. Weapon.
तीर   ୩ । ଅସ୍ତ୍ର ରୂପେ ବ୍ୟବହୃତ ବାଉଁଶପାତିଆ—
3. Sharp bamboo-splinter used as a weapon of offence.

**ଚେରପି**—ପ୍ରାଦେ. (ମେଦିନୀପୁର) ବି—ଚର୍ବି ( ଦେଖ )—
Cher-pi   Charbi ( See )

**ଚେର**—ଦେ. ବି—୧ । (ସଂ. ଚର ଧାତୁ=ଗତି କରିବା; ଯାହା ଭୂମି
Chera   ମଧ୍ୟକୁ ଗତି କରେ; କମ୍ବା ସଂ. ଚୂଡ଼ା)—ବୃକ୍ଷମୂଳରୁ
শিকড়; জড়   ଭୂମିଭିତରକୁ ଭେଦ କରିଥିବା ଲମ୍ବ ସୂକ୍ଷ୍ମ ରଜ୍ଜୁ ରୂପ ଅଂଶ—
जड़   1. Root of a tree.
ମାୟା ଚେର ଛେଦେ ଭେଦିବା ଯେତେକ,
ଅଗୁଳ ରଗଡେ ଝିଙ୍କିବ ତେତେକ । ରାଧାନାଥ. ଦରବାର ।

ছুঁচী; বাঁট   ୨ । (ସଂ. ଚୀର) ପଶୁସ୍ତନର ଅଗ୍ରଭାଗ, ଚର—
थन; चुँची   2 The nipple or teat of the udder of a beast; the dug of a beast.
ଖୋଲ ଚେର ଗାଈ ବସ ତଡ଼ପନ । ପ୍ରାଚୀ. ପରତେ ଗୀତା ।
আঁশ   ୩ । ପାଚିଲା ଆମ୍ବ, ତାଳ ଆଦି ଫଳମାନଙ୍କ ମଧ୍ୟରେ ଥିବା
रिसा   ସୂକ୍ଷ୍ମ ତନ୍ତୁ—3. Tough fibres found in some ripe mangoes and palm fruits.
୪ । (ନାମ) ପ୍ରାଚୀନ ଭାରତର ରାଜ୍ୟବିଶେଷ ( ଏହାର ଉତ୍ତରରେ କର୍ଣ୍ଣାଟ, ଦକ୍ଷିଣରେ ସମୁଦ୍ର ଓ ପଶ୍ଚିମରେ କେରଳ ରାଜ୍ୟ ଥିଲା)—4. Name of an ancient kingdom in South India..
୫ । ( ଲକ୍ଷଣାର୍ଥ ) ବଂଶଧର; ସନ୍ତାନ ସନ୍ତତି—
5. ( figurative ) Descendent; offspring

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଡ' ନ ମିଳିଲେ 'ଗାଡ଼' ଖୋଜିବେ, କୁଥ ନ ମିଳିଲେ 'କୂଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

( ଯଥା—ସାଆନ୍ତଙ୍କ ବଂଶର କେହି ହେଲେ ଚେର ରହିଲା ନାହିଁ । )

୬ । ( ଲକ୍ଷଣାର୍ଥ ) ସମ୍ପର୍କ—
6. ( figurative ) Connection; relation.

**ଚେର ଉପାଡ଼ିବା**—ଦେ. କ୍ରି. ( ଓ ଚେର୍ + ସଂ. ଉତ୍ପାଟନ )—
Chera upārdibā ୧ । କୌଣସି ଗଛକୁ ଭୂମିରୁ ଟାଣି ତାହାଁର
ଜଡ଼ ଉପଡା ମୂଳକୁ ଭୂମିମଧ୍ୟରୁ ଝିଙ୍କି ଆଣିବା;
**जड़ उखाड़ना** ମୂଳୋତ୍ପାଟନ କରିବା —
2. To root out a tree; to uproot.

୨ । ( ଲକ୍ଷଣାର୍ଥ; ମୂଳ ଉପାଡ଼ିଲେ ଗଛ ମରିଯିବାରୁ) କୌଣସି ବ୍ୟକ୍ତିର ବା ବସ୍ତୁର ଉଚ୍ଛେଦ ସାଧନ କରିବା—
2. ( figurative ) To cause ruin or eradicate a person or thing.

**ଚେର କାଟିବା**—ଦେ. କ୍ରି- ୧ । କୌଣସି ବୃକ୍ଷର ମୂଳକୁ କାଟିବା—
Chera kātibā 1. To cut the root of a tree.
শিকড় কাটা ୨ । ( ଲକ୍ଷଣାର୍ଥ; ଚେର କାଟିଲେ ଗଛ
**जड़ काटना** ମରି ଯିବାରୁ ) କୌଣସି ବ୍ୟକ୍ତିର ଅନିଷ୍ଟ ବା ଉଚ୍ଛେଦ ସାଧନ କରିବା—
2. (figurative) To injure or ruin a person.

( ଯଥା—ସେ ମୋର ଉପରେ ଉପରେ ପାଣି ଢାଳୁଛି, ହେଲେ, ତଳରେ ତଳରେ ଚେର କାଟୁଛି ।)

**ଚେରଚଣା**—ଦେ. ବି—ଭୂଇଁଚଣା; ମୁଗଫଳି; ଚିନାବାଦାମ—
Cherachanā Groundnut
চীনেবাদাম
**चीनावादाम; मुँगफली**

**ଚେରଚେଣ୍ଡା**—ପ୍ରାଦେ. (ବସ୍ତର) ବି—ପୋଟଳ (ଦେଖ)
Cherachendā Potala (See)

**ଚେର ଦେବା**—ଦେ. କ୍ରି—୧ । ( ଦୃଢ଼ମୂଳ ହୋଇଥିବା ଗଛ ) ଭୂମିର
Chera debā ଗଭୀର ପ୍ରଦେଶକୁ ଚେର ବିସ୍ତାର କରିବା—
শিকড়গাড়া 1. ( a tree ) To strike root; to send
**जड़पकड़ना** forth the roots deep into the soil; to
(ଚେର ମାରିବା—ଅନ୍ୟରୂପ) take root.

୨ । (ଲକ୍ଷଣାର୍ଥ) କୌଣସି ସ୍ଥାନରେ ସ୍ଥାୟୀଭାବରେ ଅବସ୍ଥାନ କରିବା—2. (figurative) To become firmly established at a place; to permanently reside at a place.

୩ । (ଲକ୍ଷଣାର୍ଥ )—କୌଣସି ସ୍ଥାନରେ ନିଜର ଅଧିକାର ବା ସମ୍ପତ୍ତି ବା ସମ୍ପର୍କ ବା ଆଧିପତ୍ୟ ବିସ୍ତାର କରିବା
3. (figurative) To extend one's authority, influence, property or connection in a place.

୪ । ( ଲକ୍ଷଣାର୍ଥ ) ନିଜର ବଂଶବୃଦ୍ଧିଦ୍ୱାରା ବହୁସଂଖ୍ୟକ ବ୍ୟକ୍ତି-ସମ୍ବଳିତ ପରିବାରର କର୍ତ୍ତା ହେବା—
4. (figurative) To have a large number of children added to one's family,

୫ । (ଲକ୍ଷଣାର୍ଥ) (ସ୍ତ୍ରୀ ପକ୍ଷରେ)—ସନ୍ତାନ ପ୍ରସବ କରିବା—
5. (figurative) (in the case of a woman) To give birth to a child.

୬ । (ଭୂମିରେ ପୋତା ହୋଇଥିବା କମ୍ବା କଲମ କରାଯାଇଥିବା କୌଣସି ଗଛର ଡାଳ ) ମୂଳଦେଶରୁ ଚେର କାଢ଼ିବା—6. To send forth roots ( said of a branch planted on the ground or grafted).

**ଚେରପାରୁ**—ଦେ. ବି. (ସମାନ୍ୟ ଭିନ୍ନାର୍ଥକ ସହଚର)—ପାଚିଲା ଆମ୍ବ,
Cherapāru ନଡ଼ିଆକତା, ପାଚିଲା ତାଳ ଓ ତେନ୍ତୁଳିରେ ଥିବା ବଡ଼ ବଡ଼ ଅଂଶୁ (ଚେର) ଓ କ୍ଷୁଦ୍ର କ୍ଷୁଦ୍ର ଅଂଶୁ—
Large and small fibres of ripe mango, palm, tamarind fruit and cocoanut-coir.

(ଯଥା - ସେ ଦାରିଦ୍ର୍ୟଗୁଡ଼ାକ ଆମ୍ବ ଖାଇଛନ୍ତି ଯେ, ଆମ୍ବର ଚେରପାରୁ ସୁଦ୍ଧା ରଖି ନାହାନ୍ତି । )

**ଚେର ମାଡ଼ିବା**—ଦେ. କ୍ରି.—(ଗଛ କ୍ରମଶଃ ବଢ଼ିବା ଯୋଗୁଁ) ଭୂମି ମଧ୍ୟକୁ
Chera mārdibā ଚେରର କ୍ରମଶ ବିସ୍ତାର—The spreading out or striking of the roots underground of a growing tree.

**ଚେରମାରୁ**—ପ୍ରାଦେ. (ଗଞ୍ଜାମ) ବି - ଚେମିଡ଼ି ଲଇ (ଦେଖ,
Cheramāru Chemirdi lai (See)

**ଚେରମୂଳ**—ଦେ. ବି (ଏକାର୍ଥକ ସହଚର)—ଔଷଧରେ ବ୍ୟବହୃତ ମୂଳ-
Cheramūla ମୂଳିକା; ଜଡ଼ିବୁଟୀ; ଚେରଗୁଣୀ; ଚୋଟିକା ଔଷଧ—
জড়ীবুটী Various medicinal roots and drugs.
**जड़ीबुटी**
(ଚେରମୂଳ —ଅନ୍ୟରୂପ)

**ଚେରଲ**—ଦେ. ବି—ଚରଡ଼ (ଦେଖ)
Cherala Chararda (See).

**ଚେରଷ୍ଟା**—ଗ୍ରା. ବି (ସଂ. ଚେଷ୍ଟା)—୧ । ଆଚରଣ—
Cherashtā 1, Conduct.
(ଚେରେଷ୍ଟା—ଅନ୍ୟରୂପ) ଦୁର୍ଯ୍ୟୋଧନ ସୈନ୍ୟର ଚେରଷ୍ଟା କହିଲେ ।
କୃଷ୍ଣସିଂହ, ମହାଭାରତ. ବନ ।

୨ । ବ୍ୟବହାର; କାର୍ଯ୍ୟକଳାପ—2. Behaviour.
ଅନେକ କାଳର ସେ ଅଟଇ ବୁଢ଼ୀ ଗୋଠା
ତାହାଠାରେ ହେଲା ମୋର ଏତେକ ଚେରଷ୍ଟା—ସାରଳା. ମହାଭାରତ. ଆଦି.

୩ । କର୍ମ; କାର୍ଯ୍ୟ—3. Act.

୪ । ଚୈତନ୍ୟ; ଜ୍ଞାନ—4. Conciousness.

୫ । ଜୀବନୀଶକ୍ତି—5. Vital power.

୬ । ରୀତି; ଢଙ୍ଗ—6. Manner.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଁ | ଡ଼,ଢ଼ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଡ଼ | ନୃ |

**ଚେରାଇବା**—ଦେ. କ୍ରି—୧ । (ଗଛ ଭୂଗର୍ଭରେ କାଜର ଚେରକୁ) ବିସ୍ତାର କରିବା—1. To take root; to strike root.
Cheraibā
চাঙ্গাহওয়া
२ । ସବଳ ଓ ସତେଜ ହେବା— 2 To become healthy and strong.
जीना, चँङ्गाहोना
(ଚେରେଇବା—ଅନ୍ୟରୂପ) ୩ । (ଲକ୍ଷଣାର୍ଥ) ଚେହେରା କ୍ରମେ କ୍ରମେ ସତେଜ ଦେଖାଯିବା—3 (figurative) To appear more and more strong and blooming; to become enlivened.

**ଚେରାଗ୍ ( ଇତ୍ୟାଦି )**—ପ୍ରାଦେ. ( ବାଲେଶ୍ୱର, ମେଦନୀପୁର ) ବୈଦେ.
Cherāg (etc) ବି. ( ଫା. ଚିରାଗ୍; ଭୁଲ. ବ ଚେରାଗ୍ )—
(ଚେରାଗ୍, ଚିରାଖ୍, ଚିରଗ୍—ଅନ୍ୟରୂପ) ଚିରାଖ୍ ଇତ୍ୟାଦି ( ଦେଖ ) Chirākh etc ( See )

**ଚେରାପୁଞ୍ଜି**—ଦେ. ବି. ( ନାମ )—ଆସାମ ପ୍ରଦେଶର ଖାସିଆ ପାହାଡ଼ର
Cherāpuñji ପାଦଦେଶରେ ଅବସ୍ଥିତ ନଗର ଓ ପର୍ବତବିଶେଷ—Cherrapunji in the Khāsiā hills of Assam.
[ ଦ୍ର—ଏଠାରେ ପୃଥିବୀର ସକଳ ସ୍ଥାନ ଅପେକ୍ଷା ବେଶି ବର୍ଷା ହୁଏ । ଏପରକି, ଏକଦିନ ମଧ୍ୟରେ ଏଠାରେ ୪୧ ଇଞ୍ଚ ବା ଦୁଇ ହାତ ପର୍ଯ୍ୟନ୍ତ ପାଣି ଜମା ହେବା ଭଳି ବର୍ଷା ହେବାର ଦେଖା ଯାଇଅଛି । ଏହା ସିଲ୍‌ହଟ୍ ଜିଲ୍ଲା ଓ ନଗରର ଉତ୍ତର ଓ ସିଲଙ୍ଗର ଦକ୍ଷିଣରେ ଅବସ୍ଥିତ । ]

**ଚେରିଙ୍ଗି**—ଦେ. ବି—୧ । ପିତ୍ତ—
Cheringi 1. Bile.
୨ । ( ଲକ୍ଷଣାର୍ଥ ) - ବାଲିଙ୍ଗି—
2. Bragging; boasting.
( ଯଥା—ତୋ ଚେରଙ୍ଗି ମାଡିଲାଣି । )

**ଚେରିପୁଅ**—ଗ୍ରା. ବି—ଚେଡ଼ିପୋ ( ଦେଖ )
Cheripua Cherdipo ( See )
( ଚେରିପୋ—ଅନ୍ୟରୂପ )

**ଚେରୁଆ**—ଦେ ବିଣ—ଚେରପୂର୍ଣ୍ଣ (ପାଚିଲା ଅମ୍ବ)—
Cheruā Filbrous ( ripe mango ).
रेसादार

**ଚେରୁଡ଼ା**—ଗ୍ରା. ବି—ଚିରୁଡ଼ା ( ଦେଖ )
Cherurdā Chirurdā ( See )
( ଚେରୁଲା—ଅନ୍ୟରୂପ )

**ଚେଲ୍**—ଦେ. ବି. ( ହି. ଚଲ୍ )—ଚଲ୍ ( ଦେଖ )
Chel Chal ( See )
ମହନ୍ତ ମହାବଳ ଖାଲ ଏଣିକ କହୁଥିଲେ, ହୁଁ—ଚେଲ୍—ବାବା କାହିଁଡା । ଚେଲ୍—ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଚେଲ** ସ. ବି. ( ଚଲ୍ ଧାତୁ=ପିନ୍ଧିବା+କର୍ମ. ଅ )—୧ । ବସ୍ତ୍ର—
Chela 1. Cloth; garment.
୨ । ପୋଷାକ—2. Apparel; dress.
୩ । ପଟ୍ଟବସ୍ତ୍ର—3. Silk cloth.
ସ. ବିଣ. ( +କର୍ତ୍ତୃ. ଅ )—ଅଧମ, କୁତ୍ସିତ—Inferior; mean.

**ଚେଲା**—ବୈଦେ. ବି. ( ସ. ଚେଟକ; ପ୍ରା. ଚେଡ଼ଅ; ସ. ଚେଲ= ଦାସ; ସ. ଚେଲୁକ=ବୌଦ୍ଧଭିକ୍ଷୁଙ୍କ ଶିଷ୍ୟ )—
Chelā
চেলা ୧ । ଶିଷ୍ୟ; ଯେଉଁ ବ୍ୟକ୍ତିକୁ ସନ୍ନ୍ୟାସୀ ଦୀକ୍ଷା ଦେଇଥାଆନ୍ତି;
चेला ଦୀକ୍ଷିତ ଶିଷ୍ୟ—1. Disciple; a person initiated
(ଚେଲୀ—ସ୍ତ୍ରୀ) into the mysteries of a sect by an ascetic.
୨ । ମହନ୍ତ, ବୈଷ୍ଣବ ଓ ସନ୍ନ୍ୟାସୀମାନଙ୍କର ନିର୍ବାଚିତ ଶିଷ୍ୟ— 2 The selected heir-apparent of a Mahanta or Sannyāsī.
ତୁମ୍ଭ ଚେଲା ଅଂଶ ଘରେ ପ୍ରବେଶ—ପ୍ରାଚୀ. ଶ୍ରୀଗୁରୁଭକ୍ତିଗୀତା ।
[ ଦ୍ର—ଯାହାଙ୍କଠାରୁ ଚେଲା ଦୀକ୍ଷା ନିଏ ତାଙ୍କୁ ଗୁରୁ ବୋଲି ଯାଏ । ]

**ଚେଲା ଚେଲି**—ଦେ ବି. ( ସହଚର )—୧ । ଚେଲା ଇତ୍ୟାଦି—
Chelācheli 1. Disciples and others.
চেলাচেলি ୨ । କୌଣସି ଗୁରୁଙ୍କର ଶିଷ୍ୟବୃନ୍ଦ—
चेलाचाटे 2. The body of one's disciples.

**ଚେଲାନ**—ସ. ବି—ତରଭୁଜ ( ହି. ଶବ୍ଦସାଗର )—
Chelāna Melon.
( ଚେଲାଲ—ଅନ୍ୟରୂପ )

**ଚେଲି**—ସ. ବି—ତୁଚ୍ଛ ବା ନୀଚ ବ୍ୟକ୍ତି—
Cheli A mean person.

**ଚେଲିକା**—ସ. ବି. ସ୍ତ୍ରୀ. ( ଚେଲ+ସ୍ୱାର୍ଥେ. କ+ଆ )—
Chelikā ୧ । ପରିଚ୍ଛଦ; ପୋଷାକ—
1 Garment; clothes.
୨ । ପଟ୍ଟବସ୍ତ୍ର; ପାଟଶାଢ଼ୀ—
2. Silken cloth for females.

**ଚେଲୀ**—ସ. ବି. ସ୍ତ୍ରୀ (ଚେଲ+ଈ)—ଚେଲିକା (ଦେଖ)
Chelī Chelikā (See).

**ଚେଲୀ**—ଦେ. ବି. ସ୍ତ୍ରୀ (ସ. ଚେଟୀ)—ଶିଷ୍ୟା; ସନ୍ନ୍ୟାସୀ ଆଦିଙ୍କଠାରୁ
Chelī ଦୀକ୍ଷାଗ୍ରହଣ କରିଥିବା ସ୍ତ୍ରୀ—A female disciple.
চেলী
चेलिन; चेली

**ଚେଲୁକ**—ସ. ବି. ପୁଂ—ବୌଦ୍ଧ ଭିକ୍ଷୁ—
Cheluka A Buddist itinerant ascetic.

**ଚେଶିସ୍**—ବୈଦେ. ବି. (ଇଂ) ( ମଟର ଗାଡ଼ିର ଅଂଶ; ଇଂ. ଚ୍ୟାସିସ୍ )—
Chesis ମଟର ଗାଡ଼ିର ଫର୍ମା ଚୁଲିବାର ଢାଞ୍ଚା—
চেসিস Chasis; a traversing base or frame along
चैसिस which the body of a car moves.

**ଚେଷ୍ଟ୍ (ଧାତୁ)**—ସ—ଚେଷ୍ଟା କରିବା—
Chesht (root) To try; to endeavour; to exert.

ସାଧାରଣ ଲୋକେ ଅପର ଦୃଷ୍ଟାରେ ସର୍ବଦା ୧ ଚିହ୍ନିତ ଅକ୍ଷର ଓ ମାନ। ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଦୃଷ୍ଟାନ୍ତକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଆତ୍ମା' ନ ପାଇଲେ 'ଆତ୍ମା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଚେଷ୍ଟକ**—ସଂ. ବିଣ. ପୁଂ. ( ଚେଷ୍ଟ୍ ଧାତୁ + କର୍ତ୍ତୃ. ଅକ )—
Cheshtaka ଯେ ଚେଷ୍ଟା କରେ—
(ଚେଷ୍ଟିକା—ସ୍ତ୍ରୀ) Endeavouring; exerting
ସଂ. ବି—ରତିବନ୍ଧବିଶେଷ—A pose in copulation.
[ ଦ୍ର—ପାଦମେକଂ କୁଚେ ନ୍ୟସ୍ୟ ଇତରେଣୈବ ଚେଷ୍ଟୟେତ୍ । କାନ୍ତଃ କ୍ରୋଡେ ସ୍ଥିତାଂ ନାରୀଂ ବନ୍ଧୋଽୟଂ ଚେଷ୍ଟକୋ ମତଃ ॥ ]

**ଚେଷ୍ଟମାନ**—ସଂ ବିଣ. ପୁଂ. ( ଚେଷ୍ଟ ଧାତୁ + କର୍ତ୍ତୃ. ଶାନଚ୍ )—
Cheshṭamāna ୧ । ଯେ ଚେଷ୍ଟା କରୁଅଛି; ଉଦ୍‌ଯୋଗୀ—
(ଚେଷ୍ଟମାନା—ସ୍ତ୍ରୀ) 1. Endeavouring; exerting.
୨ । ଚଳନ୍ତ; ଚଳୁଥିବା—2. Moving.

**ଚେଷ୍ଟା**—ସଂ. ବି. ସ୍ତ୍ରୀ. ( ଚେଷ୍ଟ୍ ଧାତୁ + ଭାବ. ଅ + ସ୍ତ୍ରୀ. ଆ )—
Cheshṭā ୧ । ପ୍ରୟାସ; ଉଦ୍‌ଯୋଗ, ଯତ୍ନ—
1. Endeavour; exertion; effort.
୨ । କାୟିକ ବ୍ୟାପାର, ଅଙ୍ଗାଦିର ଗତି—
2. Motion of limbs; bodily movement.
୩ । ପରିଶ୍ରମ—3. Labour.
୪ । ଅଭୀଷ୍ଟସାଧକ ଅନିଷ୍ଟନାଶକ କ୍ରିୟା—
4 Any motion, movement or activity for bringing about the desired result or for evading an injury.
୫ । ସାହସ—5. Courage.
୬ । କର୍ମ; କାର୍ଯ୍ୟ 6 Act.
ସେ କେତେବେଳେ ନାନା ଚେଷ୍ଟା କରୁ ଥିଲେ । କୃଷ୍ଣସିଂହ, ମହାଭାରତ. ଅଦି ।
୭ । ମନର ଭାବ ବା ବିଷୟର ପ୍ରକଟନକାରୀ ଦୈହିକ ଗତି—
7. Bodily movement which indicates the mover's mental condition.
୮ । ପ୍ରେମପାତ୍ର ପ୍ରତି ପ୍ରେମ ପ୍ରକଟ କରିବାର ନାୟକ-ନାୟିକାଙ୍କ ପ୍ରଯତ୍ନ—2. A lover's outward indication of love
୯ । ଇଚ୍ଛା; କାମନା ( ଦ୍ର. ଶବ୍ଦସାଗର )—
9. Wish; desire
ଦେ. ବି—୧ । ଚୈତନ୍ୟ; ଜ୍ଞାନ—1. Consciousness
୨ । ସ୍ୱଭାବ; ଢଙ୍ଗ—3. Manner; mode

**ଚେଷ୍ଟାସାଧ୍ୟ**—ସଂ. ବିଣ. ( ୬ଷ୍ଠୀ ତତ୍; ଚେଷ୍ଟା + ସାଧ୍ୟ )—
Cheshṭā sādhya ଯାହା ଚେଷ୍ଟା ଦ୍ୱାରା ସାଧିତ କରାଯାଇ ପାରେ- Accomplishable with efforts.

**ଚେଷ୍ଟିତ**—ସଂ. ବିଣ. ( ଚେଷ୍ଟ ଧାତୁ + କର୍ତ୍ତୃ. ତ )—
Cheshtita ୧ । ସଚେଷ୍ଟ—1 Exerting; active; endeavouring.
୨ । (+କର୍ମ ତ) ଯେଉଁ ବିଷୟ ପାଇଁ ଚେଷ୍ଟା କରାଯାଇ ଅଛି- 2. Persued; sought after; laboured for.
ସଂ. ବି. ( ଚେଷ୍ଟ୍ ଧାତୁ + ଭାବ ତ )—
୧ । ଉଦ୍ୟମ—1 Exertion
୨ । କର୍ମ—2. Action
୩ । ଗତି—3. Motion

**ଚେହେଁକା**—ଦେ. ବି. ( ସଂ. ଚମତ୍କୃତ, ପ୍ରା. ଚମଁକ; ଚଇଁକ )—
Chehenkā ୧ । ଚମକ; ଭୟରେ ଚମକିବା—
चमक 1 Wincing; startling.
चौंक ୨ । ଚେଙ୍ଗା ( ଦେଖ )
2. Chengā ( See )
ଦେ. ବିଣ—ଚେଙ୍ଗା ( ଦେଖ )
Chengā ( See )

**ଚେହେଁକାଇବା**—ଦେ କ୍ରି—ଚମକାଇବା—
Chehenkāibā To startle.
चमकाना
चौंकाना
(ଚେହେଁକେଇବା —ଅନ୍ୟରୂପ)

**ଚେହେଁକିବା**—ଦେ . କ୍ରି (ସଂ. ଚମତ୍କୃତ)—ଭୟରେ ଚମକିବା; ଛନକା ହେବା—To wince; to take a sudden fright; to start.
Chehenkibā
चमके उठा
चौंकना

**ଚେହେରା**—ବୈଦେ. ବି. ( ଫା. ଚେହ୍‌ରା )—୧ । ମୁଖମଣ୍ଡଳର ଛବି; ମୁଖଚ୍ଛବି—1. Appearance; countenance; facial expression.
Cheherā
चेहरा
ସେ କ ମାନେ ଭଲ ଯେପରି ଚେହେରା । ପ୍ରୟାଗଦତ୍ତ, ଦରବାର ।
୨ । ସୌନ୍ଦର୍ଯ୍ୟ—2. Fairness; beauty.
୩ । କୌଣସି ବ୍ୟକ୍ତିର ମୁଖମଣ୍ଡଳର ପ୍ରତିକୃତି ବା ରୂପ—
3 Likeness of the face; a picture of one's face.
୪ । ମୁଖମଣ୍ଡଳ—4. The whole face.

**ଚେହେରାବନ୍ତ**—ଦେ. ବିଣ —ସୁନ୍ଦର ମୁଖଯୁକ୍ତ—
Cheherābanta Having a beautiful face; of a graceful countenance.
चेहेराबन्त
चेहरामंद्

**ଚେହେଲମ୍**—ବୈଦେ. ବି. ( ଫା. ଚେହ୍‌ଲୁମ୍=ଚତ୍ୱାରିଂଶତ୍ତମ )—
Chehelam ୧ । ମୁସଲମାନ୍‌ମାନଙ୍କ ସଫର୍ ମାସର ୨୦ ତାରିଖରେ ପଡ଼ିବା ପର୍ବ—The anniversary of the funeral (40th day of the death) of Hassan amongst the Mahomedans.
चेहेलम
चेहलुम
[ଦ୍ର—ସଫର୍ ମାସର ବିଂଶ ଦିବସରେ ଏହା ପଡ଼େ । ମହରମର ଚାଳିଶ ଦିନରେ ମୁସଲମାନ୍‌ମାନଙ୍କର ଏ ପର୍ବ ହୁଏ । ମହରମ ଦିନ ହୋସେନ୍ ଓ ହସନ୍‌ଙ୍କ ମୃତ୍ୟୁ ଘଟିଥିଲା । ମୁସଲମାନ୍-

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଣ,ଷ | ଙ୍କ | ଇଯ୍ବ | ଉଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଙ୍ଗ | ଢ଼ |

ମାନେ ମୃତ୍ୟୁର ୪୦ ଦିନରେ ଶ୍ରାଦ୍ଧ କରନ୍ତି ଅତଏବ ମହରମ ପର୍ବର ୪୦ ଦିନ ପରେ ହୋସେନ୍ ଓ ହସନଙ୍କ ସାମ୍ବତ୍ସରିକ ଶ୍ରାଦ୍ଧଦିବସ ପାଳିତ ହୁଏ । ]

୨ । କୌଣସି ମୁସଲମାନଙ୍କ ମୃତ୍ୟୁର ୪୦ ଦିନ— 2. The 40th day of a Mahomedan's death.

**ଚେହେଲମ୍ ଫାତିଆ**— ବୈଦେ. ବି. (ଫା)— ମୁସଲମାନ୍‌ମାନଙ୍କ ମୃତ୍ୟୁ
Chehelam phātiā ପରେ ଚାଳିଶ ଦିନରେ ହେବା ଦେବାରାଧନ
চেহেলম ফাতিয়া ଆଦି—The worship and rites per-
**चेहेलुम फातिया** formed by the Mahomedans on the 40th day of a person's death.

**ଚୈ**—ଦେ ବି —ଚଇ (ଦେଖ)
Chai Chai (See)

[ଦ୍ର—ଦେଶଜ ଓ ବୈଦେଶିକ ଓ ସଂସ୍କୃତ ପଦମାନ ଯହିଁର ଆଦ୍ୟ ଅକ୍ଷର 'ଚୈ' ଅଟେ ତାହା, ଗ୍ରାମ୍ୟ, ଅଶିକ୍ଷିତ ଓ ସଠେଇ ଭାଷାରେ 'ଚଇ' ଯୁକ୍ତ ହୁଏ । ଚୈ ଆଦ୍ୟରେ ଥିବା କୌଣସି ଶବ୍ଦ 'ଚୈ' ତଳେ ନ ପାଇଲେ 'ଚଇ' ତଳେ ଦେଖିବାକୁ ହେବ । ]

**ଚୈ ଚୈ**— ଦେ. ଅ — ହାତୀଙ୍କୁ ଆଗକୁ ଚଲାଇବା ପାଇଁ ମାହୁନ୍ତର
Chai chai ଡାକ—Sound uttered by the driver of an elephant to make the elephant proceed.

**ଚୈତ** (ଇତ୍ୟାଦି)—ଗ୍ରା. ବି.— ଚଇତ ଇତ୍ୟାଦି (ଦେଖ)
Chaita (etc) Chaita etc. (See)
চৈত
**चैत**

**ଚୈତନ** (ଇତ୍ୟାଦି)—ଦେ. ବି.— ଚଇତନ ଇତ୍ୟାଦି (ଦେଖ)
Chaitana (etc) Chaitana etc (See)

**ଚୈତନ୍ୟ**—ସଂ. ବି. ( ଚେତନ + ଭାବ ବା ସ୍ୱାର୍ଥ. ଯ )—୧ । ଜ୍ଞାନ;
Chaitanya ଅନୁଭୂତି; ବୋଧ—1 Sensation; knowledge; perception; intelligence.

୨ । ଚେତନା—2. Animation; consciousness.

୩ । ଜାଗରଣ—3. Awakening.

୪ । ପ୍ରକୃତି—4. Nature

୫ । ଜୀବନ; ପ୍ରାଣ—5 Life

୬ । ପରମାତ୍ମା, ବ୍ରହ୍ମ—6. Brahma; the Universal Soul.

୭ । ପରମେଶ୍ୱର (ହି. ଶବ୍ଦସାଗର)—7. God.

୮ । ଜୀବାତ୍ମା—8. The individual soul.

[ ଦ୍ର—ନ୍ୟାୟଦର୍ଶନରେ ଜ୍ଞାନ ଓ ଚୈତନ୍ୟ ଏକ ଥିବାର ବୋଲାଯାଇ ଅଛି । ଏହା ଆତ୍ମାର ଧର୍ମ ଅଟେ । କିନ୍ତୁ ସାଂଖ୍ୟଦର୍ଶନ ମତରେ ଜ୍ଞାନ ଓ ଚୈତନ୍ୟ ପୃଥକ୍, ଚୈତନ୍ୟକୁ ଆତ୍ମାର ଧର୍ମ ଓ ଜ୍ଞାନକୁ ବୁଦ୍ଧିର ଧର୍ମ ବୋଲାଯାଇଅଛି—ହି. ଶବ୍ଦସାଗର । ]

ଦେ. ବି—୧ । ବଙ୍ଗର ପ୍ରସିଦ୍ଧ ବୈଷ୍ଣବ ପ୍ରଚାରକ ଶ୍ରୀ ଚୈତନ୍ୟ ଦେବ—Name of the Bengalee religious reformer Chaitanya.

[ ଦ୍ର—ଶ୍ରୀ ଚୈତନ୍ୟ ଦେବ ୧୪୮୪ ଖ୍ରୀଷ୍ଟାବ୍ଦ (୧୪୦୮ ଶକାବ୍ଦ) ଦୋଳପୂର୍ଣ୍ଣିମା ରାତ୍ରରେ ଚନ୍ଦ୍ରଗ୍ରହଣ ସମୟରେ ବଙ୍ଗଦେଶର ନଦିଆ ବା ନବଦ୍ୱୀପ ନଗରରେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କର ପିତାଙ୍କ ନାମ ଜଗନ୍ନାଥ ମିଶ୍ର ଓ ମାତାଙ୍କ ନାମ ଶଚୀଦେବୀ । ବାଲେଶ୍ୱର ଜିଲ୍ଲାରେ ତାହାଙ୍କ ବଂଶର ଆଦି ବାସସ୍ଥାନ ଥିଲା । ଜଗନ୍ନାଥ ମିଶ୍ର ବଡ଼ ପଣ୍ଡିତ ଥିଲେ । ବିଦ୍ୟାଚର୍ଚ୍ଚା କରିବା ନିମନ୍ତେ ସ୍ୱଦେଶ ଛାଡ଼ି ସେ ସକୁଟୁମ୍ବ ନବଦ୍ୱୀପରେ ବାସ କରିଥିଲେ ।

ଚୈତନ୍ୟ ବୈଷ୍ଣବ-ଧର୍ମ-ପ୍ରଚାରକ । ସେ ୧୫୧୦ ଖ୍ରୀଷ୍ଟାବ୍ଦରେ ରାଜା ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱ ସମୟରେ ଉତ୍କଳକୁ ଆସିଥିଲେ । ରାଜା ବୈଷ୍ଣବ ଥିବାରୁ ତାହାଙ୍କ ସହାୟତାରେ ଶ୍ରୀ ଚୈତନ୍ୟଦେବ ସମଗ୍ର ଉତ୍କଳରେ ବୈଷ୍ଣବ ଧର୍ମର ପ୍ରେମଲହରୀ ଖେଳାଇ ଦେଇଥିଲେ । ପୁରୀର ରାଧାକାନ୍ତ ମଠ ତାହାଙ୍କ ସାଧନାର ପ୍ରଧାନ ପୀଠ ଥିଲା । ପୁରୀର 'ଟୋଟା ଗୋପୀନାଥ'ଙ୍କ ମନ୍ଦିରରେ ସେ ତନୁତ୍ୟାଗ କରିଥିଲେ । କୃପାସିନ୍ଧୁ. ଉତ୍କଳ ଇତିହାସ ।

ଏହାଙ୍କର ଅନ୍ୟ ନାମ ଗୌରାଙ୍ଗ, ନିମାଇ, ଗୋରା, ଗୋରାଚାନ୍ଦ, ଚୈତନ୍ୟଚନ୍ଦ୍ର । ଏହାଙ୍କୁ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କ ଅବତାର ବୋଲି ମାନନ୍ତି । ବାଲ୍ୟକାଳରେ ଏହାଙ୍କର ପିତାଙ୍କ ମୃତ୍ୟୁ ହୋଇଥିଲା । ଏ ପ୍ରଥମେ ବିବାହ କରି ତାଙ୍କର ପତ୍ନୀବିୟୋଗ ଘଟିବାରୁ ଦ୍ୱିତୀୟଥର ବିବାହ କଲେ । ଏ କିଛିଦିନ ସଂସାରୀ ହୋଇ ଗୃହତ୍ୟାଗ ପୂର୍ବକ ସନ୍ନ୍ୟାସ ଦୀକ୍ଷା ନେଲେ । ଏ ବୈଷ୍ଣବଧର୍ମର ଅହୈତୁକ ପ୍ରେମ, ଭଗବାନଙ୍କ ପ୍ରତି ସ୍ତ୍ରୀ ସ୍ୱାମୀଙ୍କୁ କରିବା ପ୍ରେମ ଓ ବିଶ୍ୱଜନୀନ ମୈତ୍ରୀ-ଭାବର ପ୍ରଚାର କରିଥିଲେ । ବୈଷ୍ଣବ ହେଲେ ସମସ୍ତେ ଏକ ଜାତି ଓ ଏକ ଭାଇ ହୁଅନ୍ତି ବୋଲି ସେ ପ୍ରଚାର କଲେ । ଶ୍ରୀକୃଷ୍ଣଙ୍କ ସର୍ବଦା ଧ୍ୟାନ ଓ ନାମକୀର୍ତ୍ତନ ହିଁ ମୋକ୍ଷର ପ୍ରଧାନ ପନ୍ଥା ବୋଲି ଏ ପ୍ରଚାର କଲେ । ଏହାଙ୍କ ପ୍ରଚାରିତ ଧର୍ମ ବଙ୍ଗ, ବିହାର, ପଞ୍ଜାବ, ଯୁକ୍ତପ୍ରଦେଶ ଓ ଉତ୍କଳରେ ଖୁବ୍ ବିସ୍ତୃତି ଲାଭ କରିଥିଲା ଓ ବର୍ତ୍ତମାନ ଦାକ୍ଷିଣାତ୍ୟରେ ମଧ୍ୟ ଏ ଧର୍ମର ପ୍ରଚାର ହେଉଥିବାର ଦେଖାଯାଏ । ଏ ୪୮ ବର୍ଷ ବୟସରେ ପୁରୀଠାରେ ଲୋକଚକ୍ଷୁର ଅଗୋଚରରେ ଦେହାନ୍ତର ପ୍ରାପ୍ତ ହେଲେ । ଏହାଙ୍କ ପ୍ରଭାବରେ ବଙ୍ଗୀୟ ବୈଷ୍ଣବ ସାହିତ୍ୟର ବିକାଶ ହେବା ସଙ୍ଗେ ସଙ୍ଗେ ବଙ୍ଗୀୟ ସାହିତ୍ୟର ଉନ୍ନତି ଆରମ୍ଭ ହେଲା । ]

୨ । ପୁରୁଷ ଲୋକଙ୍କୁ ଦିଆଯିବା ନାମ—
2 A name given to males

**ଚୈତନ୍ୟ ଚନ୍ଦ୍ରାମୃତ** —ଦେ· ବି— ବୈଷ୍ଣବ ଗ୍ରନ୍ଥ ବିଶେଷ (ଶ୍ରୀପାଦ ପ୍ରଣେତା
Chaitanya chandrāmruta ପ୍ରବୋଧାନନ୍ଦ ସରସ୍ୱତୀ)—
A book on Baishnavism by Prabodhananda Saraswati.

**ଚୈତନ୍ୟ ଚରିତାମୃତ**— ଦେ. ବି—ଭକ୍ତଶ୍ରେଷ୍ଠ କୃଷ୍ଣଦାସ କବିରାଜଙ୍କ ବିରଚିତ ଶ୍ରୀଚୈତନ୍ୟ ଦେବଙ୍କ ଜୀବନୀ ଓ ଉପଦେଶ ବିଷୟକ ବଙ୍ଗଳା ଗ୍ରନ୍ଥ—
Chaitanya charitāmṛuta — Name of a Bengale book by Kṛushṇa Das dealing with the life and teachings of Chaitanya

**ଚୈତନ୍ୟମୟ**—ସଂ. ବିଣ ପୁଂ—୧ । ଚିନ୍ମୟ—
Chaitanyamaya 1. Essential; consisting of the soul.
(ଚୈତନ୍ୟମୟୀ— ସ୍ତ୍ରୀ)
୨ । ଚେତନାଯୁକ୍ତ—2. Animate, endowed with consciousness.

**ଚୈତନ୍ୟୋଦୟ**—ସଂ. ବି. (୬ଷ୍ଠୀ ତତ୍; ଚୈତନ୍ୟ+ଉଦୟ) —
Chaitanyodaya ୧ । ଚେତନାର ଉଦୟ—
1. Awakening of consciousness.
୨ । ଜ୍ଞାନୋଦୟ; ଜ୍ଞାନର ଆବିର୍ଭାବ—
2. The dawning of knowledge.

**ଚୈତା (ଇତ୍ୟାଦି)**—ଗ୍ରା. ବି ଓ ବିଣ— ଚଇତା ଇତ୍ୟାଦି (ଦେଖ)
Chaitā (etc) Chaitā etc (See).

**ଚୈତାଳି**—ଗ୍ରା ବିଣ—ଚଇତା (ଦେଖ)
Chaitāli Chaitā (See).

**ଚୈତି (ଇତ୍ୟାଦି)**— ଚଇତି ଇତ୍ୟାଦି (ଦେଖ)
Chaiti (etc) Chiti etc (See).

**ଚୈତିଆଳି**—ଗ୍ରା. ବିଣ—ଚଇତା (ଦେଖ)
Chaitiāli Chaitā (See).

**ଚୈତ୍ତ**—ସଂ. ବିଣ (ଚିତ୍ତ+ସମ୍ବନ୍ଧାର୍ଥେ. ଅ)—ଚିତ୍ତସମ୍ବନ୍ଧୀୟ—
Chaitta Pertaining to the heart, mental
ସଂ. ବି—ବୌଦ୍ଧ ମତରେ ବିଜ୍ଞାନସ୍କନ୍ଧର ଅନ୍ତର୍ଗତ ଅନ୍ୟ ସ୍କନ୍ଧମାନ--The attributes of a living being except Bijnāna-skandha according to the Buddhists.
[ ଦ୍ର—ବୌଦ୍ଧମାନେ ଦେହୀର ୫ ଗୋଟି ସ୍କନ୍ଧ ବା ଗୁଣ ଥିବାର ସ୍ୱୀକାର କରନ୍ତି, ଯଥା—ରୂପ, ବେଦନା, ବିଜ୍ଞାନ, ସଂଜ୍ଞା ଓ ସଂସ୍କାର । ଏଥିମଧ୍ୟରୁ ବିଜ୍ଞାନ ଛଡ଼ା ଅନ୍ୟ ୪ ଗୋଟି ଚିତ୍ତସମ୍ବନ୍ଧୀୟ ଥିବାରୁ ଏ ୪ଟି ସ୍କନ୍ଧକୁ ଚୈତ୍ତ ବୋଲାଯାଏ—ହି. ଶବ୍ଦସାଗର ]

**ଚୈତ୍ତିକ**— ସଂ. ବିଣ (ଚିତ୍ତ+ସମ୍ବନ୍ଧାର୍ଥେ. ଇକ)—ଚୈତ୍ତ (ଦେଖ)
Chaittika Chaitta (See)

**ଚୈତ୍ୟ**—ସଂ. ବି (ଚି ଧାତୁ+କର୍ମ. ଯ; ଚିତ୍ୟ=ଅଗ୍ନି + ସମ୍ବନ୍ଧେ. ଅ,--
Chaitya ୧ । ଯଜ୍ଞଶାଳା; ପୂଜାସ୍ଥାନ—
1. A place or house of worship or sacrifice.
୨ । ବୌଦ୍ଧମାନଙ୍କର ଦେବାଳୟ; ବୌଦ୍ଧ ମନ୍ଦିର—
2. A Buddhistic temple.
୩ । ଗୃହ; ଘର (ହି. ଶବ୍ଦସାଗର)—3. House.
୪ । ସ୍ମୃତିସ୍ତମ୍ଭ—4. Monument.
୫ । ଶ୍ମଶାନତରୁ (ବୌଦ୍ଧମାନଙ୍କ ପୂଜ୍ୟ)—
5. A tree near a cremation ground which is considered sacred by the Buddhists.
୬ । ଅଶ୍ୱତ୍ଥ ବୃକ୍ଷ—6 The Religious Fig tree; the Peepal tree.
ଜ୍ଞାତବୃକ୍ଷ ଗୁଲ୍ମ ଦେବତା ଚୈତ୍ୟ ବୃକ୍ଷ—କୃଷ୍ଣସିଂହ. ମହାଭାରତ ସଭା ।
୭ । ଯେଉଁ ଗଛକୁ ଲୋକେ ଦେବତା ଜ୍ଞାନରେ ପୂଜାକରନ୍ତି--
7. Any tree held sacred and worshipped by people.
୮ । ଗ୍ରାମର ସୀମାରେ ଥିବା ବୃକ୍ଷସମୂହ (ହି. ଶବ୍ଦସାଗର)--
8. A cluster of trees on the boundary of a village.
୯ । ବେଲ ଗଛ (ହି. ଶବ୍ଦସାଗର)—
9. The Bel (Marmalos) tree.
୧୦ । ବୁଦ୍ଧ ( ହି. ଶବ୍ଦସାଗର )—
10. A name of Buddha
୧୧ । ବୌଦ୍ଧ ଭିକ୍ଷୁ ( ହି. ଶବ୍ଦସାଗର )—
11 A Buddhist mendicant.
୧୨ । ବିହାର; ବୌଦ୍ଧ ମଠ ( ହି. ଶବ୍ଦସାଗର )—
12. A Buddhistic abbey or Math.
୧୩ । ଚିତା ( ହି. ଶବ୍ଦସାଗର); ଚିତାଗ୍ନି—
13. Cremation-fire.
ସଂ. ବିଣ—ଚିତାସମ୍ବନ୍ଧୀୟ—Pertaining to the funeral pyre.

**ଚୈତ୍ୟବନ୍ଦନ**—ସଂ. ବି—୧ । ଜିନ ବା ବୁଦ୍ଧଙ୍କ ମୂର୍ତ୍ତି (ହି. ଶବ୍ଦସାଗର)--
Chaityabandana 1. An image of the Jina or Buddha.
୨ । ଜୈନ ବା ବୌଦ୍ଧମନ୍ଦିର—
2. A Jaina or Buddhistic temple
୩ । ଚୈତ୍ୟ ବା ଦେବାଳୟ ସମ୍ବନ୍ଧୀୟ ଧନର ରକ୍ଷା—
3. Management and custody of the funds of a religious endowment

**ଚୈତ୍ୟକ**—ସଂ. ବି (ଚୈତ୍ୟ+ସ୍ୱାର୍ଥେ କ)— ୧ । ଅଶ୍ୱତ୍ଥ ଗଛ—
Chaityaka 1. The Peepal tree.
୨ । ବିହାର ପ୍ରଦେଶର ରାଜଗୃହ ନିକଟରେ ଥିବା ପର୍ବତ—
2. Name of a mountain in Bihar.
[ ଦ୍ର—ଏଠାରେ ଗୋଟିଏ ପଥରରେ ଥିବା ଚରଣଚିହ୍ନକୁ ଦେଖିବାକୁ ଜୈନମାନେ ଯାଆନ୍ତି । ]

**ଚୈତ୍ୟତରୁ**—ସଂ. ବି—୧ । ଅଶ୍ୱତ୍ଥଗଛ—
Chaitya taru 1. The Peepal tree.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ହ୍ୟ | ଘ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଞ | ନ୍ |

୨ । ଗ୍ରାମର କୌଣସି ପ୍ରସିଦ୍ଧ ବୃକ୍ଷ—
2. Any celebrated tree of a village.

ଚୈତ୍ୟଦ୍ରୁମ—ସଂ. ବି—୧ । ଅଶ୍ୱତ୍ଥଗଛ—
Chaitya-druma    1. The Peepal tree.
୨ । ଅଶୋକ ବୃକ୍ଷ (ହି. ଶବ୍ଦସାଗର)—
2. The Asoka tree.

ଚୈତ୍ୟମୁଖ—ସଂ. ବି—କମଣ୍ଡଳୁ (ହି. ଶବ୍ଦସାଗର)—
Chaityamukha    An ascetic's water-pot.

ଚୈତ୍ୟଯଜ୍ଞ—ସଂ. ବି—ଆଶ୍ୱଲାୟନ ଗୃହ୍ୟସୂତ୍ରରେ ବର୍ଣ୍ଣିତ ଯଜ୍ଞବିଶେଷ—
Chaitya-jajna    A kind of Vedic sacrifice.
[ ଦ୍ର—କୌଣସି ଦ୍ରବ୍ୟ ହଜିଗଲେ ଦ୍ରବ୍ୟସ୍ୱାମୀ ଏ ଯଜ୍ଞ କରିବା ପାଇଁ ସଂକଳ୍ପ କରୁଥିଲେ ଓ ନଷ୍ଟ ଦ୍ରବ୍ୟ ମିଳିଲେ ଏ ଯଜ୍ଞର ଅନୁଷ୍ଠାନ କରୁଥିଲେ । (ହି ଶବ୍ଦସାଗର) । ]

ଚୈତ୍ୟବିହାର—ସଂ. ବି—ବୌଦ୍ଧ ବା ଜୈନ ମଠ—
Chaitya-bihāra    A Math of the Buddists or Jainas

ଚୈତ୍ୟସ୍ଥାନ—ସଂ. ବି—୧ । ବୁଦ୍ଧଦେବଙ୍କ ମୂର୍ତ୍ତି ସ୍ଥାପିତ ହୋଇଥିବା ସ୍ଥାନ—
Chaitya-sthāna    1. A place containing an image of Buddha.
୨ । କୌଣସି ପବିତ୍ର ସ୍ଥାନ; ତୀର୍ଥ—2. Any sacred place; a centre of pilgrimage

ଚୈତ୍ର—ସଂ. ବି ( ଚୈତ୍ରୀ=ଚିତ୍ରା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା+ଯୁକ୍ତାର୍ଥେ. ଅ;
Chaitra    ଯେଉଁ ମାସରେ ଚିତ୍ରାନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା ହୁଏ—
୧ । ଫାଲ୍‌ଗୁନର ପରବର୍ତ୍ତୀ ଓ ବୈଶାଖର ପୂର୍ବବର୍ତ୍ତୀ ଚାନ୍ଦ୍ରମାସ; ବସନ୍ତର ଦ୍ୱିତୀୟ ମାସ—1. The lunar month succeeding Phālguna (i. e April or May).
[ ଦ୍ର—ସମ୍ବତ୍ ବର୍ଷ ଗଣନାରେ ଏହା ବର୍ଷର ପ୍ରଥମ ମାସ । ]
୨ । ପୌରାଣିକ ଭାରତର ରାଜବଂଶବିଶେଷ—
2. Name of a mythological royal family of India
୩ । ପୌରାଣିକ ୭ଟି ବର୍ଷପର୍ବତ ମଧ୍ୟରୁ ଏକ (ହି. ଶବ୍ଦସାଗର)—
3. One of the 7 mythological Barsha-mountains.
୪ । ବୌଦ୍ଧ ଭିକ୍ଷୁକ (ହି. ଶବ୍ଦସାଗର)—
4. A Buddist mendicant.
୫ । ଯଜ୍ଞଭୂମି (ହି. ଶବ୍ଦସାଗର)—5. A place where vedic sacrifice is performed.
୬ । ଦେବାଳୟ; ମନ୍ଦିର ( ହି. ଶବ୍ଦସାଗର )—
6. A temple.
୭ । ଚୈତ୍ୟ ( ହି. ଶବ୍ଦସାଗର ) ( ଦେଖ )—
7. Chaitya ( See )
୮ । ବୁଧଙ୍କ ଔରସରେ ଚିତ୍ରା (ନକ୍ଷତ୍ର) ଗର୍ଭରୁ ଜାତ ପୌରାଣିକ ସପ୍ତଦ୍ୱୀପର ଅଧୀଶ୍ୱର ରାଜାବିଶେଷ ଓ ଚୈତ୍ର ନାମକ ରାଜବଂଶର ପ୍ରବର୍ତ୍ତକ—8. Name of a king of the seven mythological islands, said to have been born of the 14th lunar mansion as mother and the planet Mercury as father.
[ ଦ୍ର—ଏହାଙ୍କ ବଂଶ ଚୈତ୍ର ବଂଶ ନାମରେ ବିଖ୍ୟାତ ଥିଲା ଏବଂ ଏହି ବଂଶରେ ଚଣ୍ଡୀପୁରାଣୋକ୍ତ ସୁରଥ ରାଜା ଜନ୍ମିଥିଲେ । ]

ଚୈତ୍ରମଖ—ସଂ. ବି. ( ମ. ପ. ଲୋ; ଚୈତ୍ରମାସରେ ଅନୁଷ୍ଠିତ ମଖ )—
Chaitra-makha    ଚୈତ୍ରମାସରେ ଅନୁଷ୍ଠିତ ମଦନୋତ୍ସବ; ( ହି. ଶବ୍ଦସାଗର ) ଫୁଲଦୋଳ ଉତ୍ସବ—A festival in honour of the Hindu God of Love during the month of Chaitra.

ଚୈତ୍ରରଥ—ସଂ. ବି. ( ଚିତ୍ରରଥ=ଗନ୍ଧର୍ବବିଶେଷ+ଉକ୍ତାର୍ଥେ. ଅ )—
Chaitra-ratha    ୧ । ( ଯେଉଁ ଉଦ୍ୟାନର ଚିତ୍ରରଥ ଗନ୍ଧର୍ବ ଜଗୁଆଳ) କୁବେରଙ୍କ ଉଦ୍ୟାନ—1. The pleasure-garden of the Hindu God of Riches.
୨ । ମୁନିବିଶେଷ—2. Name of a sage.
୩ । ଚିତ୍ରରଥ ଗନ୍ଧର୍ବଙ୍କ ବିଷୟର ବର୍ଣ୍ଣନାତ୍ମକ ଗ୍ରନ୍ଥ—
3. Name of a book dealing whith the Gandharba Chitraratha.

ଚୈତ୍ରସଖା—ସଂ ବି. ( ୬ଷ୍ଠୀ ତତ୍; ଚୈତ୍ର+ସଖା, ଚୈତ୍ରମାସ ବସନ୍ତ-
Chaitra-sakhā    କାଳ ଓ କାମଦେବଙ୍କ ପ୍ରିୟମାସ ଥିବାରୁ—
The Hindu God of Love; Cupid.

ଚୈତ୍ରାବଳୀ—ସଂ. ବି. ( ଚୈତ୍ର+ଆବଳୀ, ଅନ୍ୟ ସଂ. ନାମ. ମଧୁଶ୍ରବା,
Chaitrābali    ସୁବସନ୍ତ; କାମମହ, ବାସନ୍ତୀ; କର୍ଦ୍ଦମୀ; ହି. ଶବ୍ଦସାଗର )—୧ । ଚୈତ୍ରପୂର୍ଣ୍ଣିମା—1. The full-moon of the month of Chaitra.
୨ । ମଦନ ତ୍ରୟୋଦଶୀ; ଚୈତ୍ରମାସର ଶୁକ୍ଳତ୍ରୟୋଦଶୀ—
2. The 13th day of the bright fortnight of the month of Chaitra.

ଚୈତ୍ରିକ—ସଂ. ବି. ( ଚୈତ୍ର+ଇକ )—ଚୈତ୍ରମାସ—
Chaitrika    The month of Chaitra.
( ଚୈତ୍ରକ—ଅନ୍ୟରୂପ )

ଚୈତ୍ରୀ—ସଂ. ( ଚିତ୍ରା+ଯୁକ୍ତାର୍ଥେ. ଅ+ସ୍ତ୍ରୀ. ଈ; ଯେଉଁ ପୂର୍ଣ୍ଣିମାରେ
Chaitri    ଚନ୍ଦ୍ର ଚିତ୍ରାନକ୍ଷତ୍ର ସଙ୍ଗେ ରହନ୍ତି )—
୧ । ଚୈତ୍ରପୂର୍ଣ୍ଣିମା—The full-moon of the month of Chaitra.
୨ । ( ଚୈତ୍ରୀ+ବିଦ୍ୟମାନାର୍ଥେ. ଇନ୍. ୧ମା. ୧ବ. ) ଚୈତ୍ର ମାସ, ( ପ୍ରକୃତିବାଦ )—
2. The month of Chaitra.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲଙ୍କୃତ' ନ ପାଇଲେ 'ଅଲଂକୃତ' ଦେଖିବେ।

**ଚୈଦିକ**—ସଂ. ବି.(ଚେଦି+ଇକ)—୧ । ଚେଦିଦେଶର ରାଜା; ଶିଶୁପାଳ-
Chaidika — 1. A name of Śiśupāla.
( ଚୈଦ୍ୟ—ଅନ୍ୟରୂପ ) ୨ । ଚେଦିଦେଶୀୟ ଲୋକ—
2. A resident of the Chedi country.
ସଂ. ବିଣ— ଚେଦିଦେଶ ସମ୍ବନ୍ଧୀୟ—
Relating to the Chedi country.

**ଚୈନ୍** ( ଇତ୍ୟାଦି )—ଦେ. ବି ଓ ବିଣ —ଚଇନ୍ ଇତ୍ୟାଦି ( ଦେଖ )
Chain ( etc ) — Chain etc ( See )
চেইন
चैन
চেন বৈଦେ. ଗ୍ରା. ବି. ( ଇଂ. ଚେନ୍ )—ଶିକୁଳି—
चैन — Chain.

**ଚୈନ**—ସଂ. ବିଣ ( ଚୀନ+ଅ )—୧ । ଚୀନଦେଶୀୟ—
Chaina — 1. Chinese.
୨ । ଚୀନଦେଶ ଜାତ—2 Produced in China.

**ଚୈନେୟ**—ସଂ. ବିଣ. ( ଚୀନ+ଭବାର୍ଥେ. ଏୟ )—ଚୈନ ( ଦେଖ )
Chaineya — Chaina ( See )

**ଚୈଲ**—ସଂ. ବିଣ ( ଚେଲ+ସମ୍ବନ୍ଧାର୍ଥେ. ଅ )— ୧ । ବସ୍ତ୍ରସମ୍ବନ୍ଧୀୟ—
Chaila — 1. Relating to cloth
ସଂ. ବି. (ଚେଲ+ସ୍ୱାର୍ଥେ ଅ)—୧ । ବସ୍ତ୍ର —1. Cloth
୨ । ପୋଷାକ—2 Dress.

**ଚୈଲକ**—ସଂ. ବି—ଶୂଦ୍ର ପିତା ଓ କ୍ଷତ୍ରିୟା ମାତା ଗର୍ଭଜାତ ପ୍ରାଚୀନ ବର୍ଣ୍ଣ-
Chailaka ସଙ୍କର ଜାତିବିଶେଷ ( ହ୍ର. ଶବ୍ଦସାଗର )—Name of mixed caste originating from a Śūdra father and Kshatriya mother.

**ଚୈଲଧାବ**—ସଂ. ବି. ( ଚେଲ+ଧାବ ଧାତୁ+କର୍ତ୍ତୃ. ଅ; ଯେ ଲୁଗା
Chaila-dhāba ଧୁଏ )—ଧୋବା— Washerman.

**ଚୌଉକଟି**—ପ୍ରାଦେ, ( ଯାଜପୁର ) ବି—ଚଉକଟି ( ଦେଖ )
Choukati — Chaukati ( See )

[ ଦ୍ର—ସଂ. ଚତୁଃ ଶବ୍ଦର ଅପଭ୍ରଂଶ 'ଚଉ' ବା 'ଚୌ' ଆଦ୍ୟରେ ଥିବା ଶବ୍ଦମାନ ଯାଜପୁରରେ 'ଚୌଉ' ଯୁକ୍ତ ହୋଇ ଉଚ୍ଚାରିତ ହୁଏ । ଯଥା—ଚଉକାଠ ସ୍ଥାନରେ ଚୌଉକାଠ, ଚଉପାଢ଼ି ସ୍ଥାନରେ ଚୌଉପାଢ଼ି; ପଣ୍ଡିତ ଓ ଶିକ୍ଷିତମାନଙ୍କ ମୁଖରୁ ମଧ୍ୟ ଘରୋଇ କଥାବାର୍ତ୍ତାରେ ଏହା ଶୁଣାଯାଏ । ]

**ଚୋକ୍**—ପ୍ରାଦେ. ( ସମ୍ବଲପୁର ) ବିଣ ( ସଂ. ତୀକ୍ଷ୍ଣ )—ତୀକ୍ଷ୍ଣ—
Chok — Sharp.

**ଚୋକ**—ସଂ. ବି— ଔଷଧାର୍ଥ ବ୍ୟବହୃତ ଗୁଳ୍ମବିଶେଷ—
Choka — A medicinal plant; Cleome Felina.
भड़भाँड़, सतयानासी

**ଚୋକଡ଼**—ଦେ. ବି. (ସଂ. ଶକଲ; ଶଲ୍କ; ତ୍ୱକ୍; ସଂ. ଚୋଲକ=ବଲ୍କଲ)—
Chokarda ଗହମର ଚୋପା; ଭୁଷି—Husk of wheat; bran
ভুসী; চোকল ପ୍ରାଦେ. ( ଯାଜପୁର ) ବିଣ—କୋଚଟ (ଦେଖ )
चोकर — Kochaṭa ( See )
( ଯଥା—ଲୁହା ବି ଚୋକଡ଼, କମାର ବି ଚୋକଡ଼, ଇତ୍ୟାଦି । )

**ଚୋକ୍ଷ**—ସଂ. ବିଣ. ( ଚୁକ୍ଷ୍ ଧାତୁ+କର୍ତ୍ତୃ. ଯ )—ଦକ୍ଷ; ନିପୁଣ—
Choksha — 1. Expert; skilful.
୨ । ତୀକ୍ଷ୍ଣ—2. Sharp.
୩ । ନିର୍ମଳ—3. Clean; pure.
୪ । ମନୋହର—4 Beautiful.
୫ । କ୍ଷୁଦ୍ର ( ହ୍ର. ଶବ୍ଦସାଗର )—5. Small.
୬ । ପବିତ୍ର ( ହ୍ର. ଶବ୍ଦସାଗର )—6. Sacred.
୭ । କୁଶିଆର ( ହ୍ର. ଶବ୍ଦସାଗର )—7. Cautious.
୮ । ପ୍ରଶଂସିତ—8. Praised.
ସଂ. ବି—ପବିତ୍ର ବନପ୍ରଦେଶ—
A solitary and hallowed sylvan spot.

**ଚୋଖ୍**—ପ୍ରାଦେ. (ସମ୍ବଲପୁର) ବିଣ (ସଂ. ତୀକ୍ଷ୍ଣ)—ତୀକ୍ଷ୍ଣ—
Chokh — Sharp.

**ଚୋଖ**—ଦେ. ବି. (ସଂ. ତୀକ୍ଷ୍ଣ; ଭୁଲ ପ୍ରା. ଚୋଖ)—୧ । ରାଗ; କ୍ରୋଧ—
Chokha — 1. Anger.
ଚୋଖରେ ଲଳିତା ଘଟେ, ଚାହିଁ ନାହିଁ ତୁମ୍ଭେ କେବେ ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।
୨ । ମନୋଜ୍ଞତା; ସୌନ୍ଦର୍ଯ୍ୟ; ପରିପାଟୀ—
2. Beauty; charm; elegance.
चोख ୩ । ସଂଯୋଗ—3. Conjunction; connection.
୪ । ସ୍ଫୂର୍ତ୍ତି—4. Activity; briskness.
୫ । ତେଜ—5. Energy.
୬ । ବେଗ—6. Velocity.
চোখা ଦେ. ବିଣ. ( ସଂ. ଚୋକ୍ଷ )—୧ । ସଂଯୁକ୍ତ—
चोखा — 1. Attached.
(ଚୋଖ୍ଖ—ଅନ୍ୟରୂପ) ୨ । ମନୋଜ୍ଞ; ସୁନ୍ଦର—
2. Beautiful; charming; fine.
ସୁନ୍ଦର ଚୋଖଦନ୍ତ ଶୋଭେଗ ଭାରରେ
ଚଳନ କରୁଛି ଯୋଷିତ୍ କନକର ବଂଶ ମନୋହର ଭରରେ ।
ଭଞ୍ଜ. ଲାବଣ୍ୟବତୀ ।
୩ । (ସଂ. ତୀକ୍ଷ୍ଣ) ତୀବ୍ର; ତୀକ୍ଷ୍ଣ—3. Sharp; piercing
ଅଧିକ ହୋଇବ ଚୋଖ ଚନ୍ଦ୍ରା ଅଙ୍କୁର । ପ୍ରାଚୀ. ରହସ୍ୟମଞ୍ଜରୀ ।
୪ । ବିଶୁଦ୍ଧ; ଅମିଶ୍ରିତ—4. Pure; unmixed.
୫ । ଶ୍ରେଷ୍ଠ; ଉତ୍କୃଷ୍ଟ—5. Excellent.
ଏତ ହରିଙ୍କ ଉପରେ ଚୋଖ ହୋ ସଜନ । ପ୍ରାଚୀ. ରହସ୍ୟମଞ୍ଜରୀ ।
୬ । ବେଗଗାମୀ—6. Swift.
୭ । ତେଜୀ; ସ୍ଫୂର୍ତ୍ତିବାନ୍-7. Active; energetic; brisk.

| ୧ | ଇ | ଊ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ | ଉଥ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚିଂ | ଇଅ | ଢ଼ | ନ୍ତ |

ଚୋଖ କରିବା—ପ୍ରାଦେ. (ସମ୍ବଲପୁର) କ୍ରି (ସଂ. ତୀକ୍ଷ୍ଣ)—
Chokha karibā ଛୁରୀ ବା କଟୁରୀ ଆଦିକୁ ଧାର୍ ଥିଆ କରିବା; ଘଷେଇବା—To sharpen.

ଚୋଖା—ଦେ. ବିଣ. (ସଂ. ଚୋକ୍ଷ)—ଚୋଖ (ଦେଖ)
Chokhā Chokha (See)
ଯେଉଁ ବୁଦ୍ଧି ଚୋଖା ହେବ ସେହି ବୁଦ୍ଧିକୁ ଅର୍ପିବା—ଭକ୍ତାଙ୍ଗ ଗୀତଲହରୀ ।

ଚୋଖାର—ଦେ. ବିଣ. (ସଂ. ଚୋକ୍ଷ)—ଚୋଖା (ଦେଖ)
Chokhāra Chokhā (See)
ଦେ. ବି. (ପ୍ରାଚୀନ ଓଡ଼ିଆ ପୁସ୍ତକମାନଙ୍କରେ ବ୍ୟବହୃତ; ମାତ୍ର ଅର୍ଥ ଅସ୍ପଷ୍ଟ)—ବେଗଗାମୀ ଚର (ଗୋପୀନାଥ ନନ୍ଦ)—A swift messenger.

ଚୋଖି—ଦେ. ବି. (ସଂ. ଚୁକ୍ର)—୧ । ଖଟାପାଳଙ୍ଗ; ଏକପ୍ରକାର ଶାଗ—
Chokhi 1. A kind of spinach (pot-herb).
୨ । ସଙ୍ଗୀତର ରାଗବିଶେଷ—
2. A metre of Oria songs.
[ ଦ୍ର—ରାଗ ତଳେ ନୋଟ୍ ଦେଖ । ]
୩ । ଉତ୍କର୍ଷ; ଉତ୍ତମତା—3. Excellence.
चोखाई ୪ । ବାଲଙ୍ଗି—4 Bragging; boasting.
(ଚୋଖ୍ଣୀ—ଅନ୍ୟରୂପ) ଦେ. ବି. (ସଂ. ଚୋକ୍ଷ)—ଚୋଖ (ଦେଖ) Chokha (See)

ଚୋଖ୍ଖୀ ମାଲ୍—ଦେ. ବି—ଅତି ଉତ୍ତମ ବା ଉତ୍କୃଷ୍ଟ ପଦାର୍ଥ—
Chokhkhi māl Very good or excellent thing.

ଚୋଗା—ବୈଦେ. ବି. (ଫା. ଚୋଗା; ଭୁଲ ଇଂ. ଟୋଗା=ଆଣ୍ଠୁ ତଳ ବା ଗୋଡ଼ଭଣ୍ଡା ପର୍ଯ୍ୟନ୍ତ ଲମ୍ବିଥିବା ଢିଲା ଓ ସାମନା ପାଖ ଖୋଲାଥିବା ଜାମା (ଏହା ଚପ୍‌କନ୍ ଉପରେ ପିନ୍ଧାଯାଏ)—
Chogā
চোগা
चोगा Toga; a loose outer garment worn over a Chapkan.

ଚୋଙ୍ଖି ମାଲ—ଗ୍ରା. ବି—ଚୋଖ୍ଖୀ ମାଲ (ଦେଖ)
Chonkhi māla Chokhkhi māla (See)

ଚୋଙ୍ଗା—ଦେ. ବି. (ସଂ. ଚୁଣୀ=ଶରମୁଣା)—ଚୁଙ୍ଗା; ବଡ଼ନଳ—
Chongā A big tube.
চোঁগা
चोँगा
(ଚୁଙ୍ଗୀ=କ୍ଷୁଦ୍ରନଳ)

ଚୋଚ—ସଂ. ବି—୧ । ଡାଲଚିନି ( ଦ୍ରବ୍ୟଗୁଣ )—
Chocha 1. Cinnamon-bark.
୨ । ବଲ୍କଲ—2. Bark (M. W.).
୩ । ଚର୍ମ; ଛାଲ—3. Skin (M. W.).
୪ । ନଡ଼ିଆ ଫଳ—4. Cocoanut fruit (M. W.).
୫ । ତାଳ ଫଳ—5. The fruit of the fan-palm (M. W.).
୬ । କାଠିଆ କଦଳୀ—6. Banana (M. W.).
୭ । ଫଳର ଅଖାଦ୍ୟ ଅଂଶ—
7. The uneatable part of a fruit (M. W.).

ଚୋଚମା (ଇତ୍ୟାଦି)—ଦେ. ବି—ଚୁଚୁମା ଇତ୍ୟାଦି (ଦେଖ)
Chochamā (etc) Chuchumā etc (See)

ଚୋଚମା ଚୋଚମି—ଦେ. ବି ( କହୁବାର ଅର୍ଥରେ ଦ୍ୱିତ୍ୱ )—
Chochamā chochami ବହୁବାର ଚୁଚୁମିବା—Repeated sucking.

ଚୋଚମିବା—ଦେ. କ୍ରି—ଚୁଚୁମିବା (ଦେଖ)
Chochamibā Chuchumibā (See)
(ଚୋଚମାଇବା; ଚୋଚମେଇବା—ଣିଜନ୍ତରୂପ)
ଚୋଚମିବା }
ଚୋଚୁମିବା }

ଚୋଟ—ଦେ. ବି. ( ସଂ. ଚୁଟ୍ ଧାତୁ=କାଟିବା )—
Chota ୧ । ଶସ୍ତ୍ରଦ୍ୱାରା ଆଘାତ; ମାଡ଼; ପ୍ରହାର—
চোট 1. Stroke; blow or cut with a weapon.
चोट ଇସ୍ ବୋଇଲେ କି ଚୋଟ ନ କାଟେ ? ଚଉ ।
୨ । ଶସ୍ତ୍ରାଘାତଜନିତ କ୍ଷତ; ଜଖମ; ଘାଆ—
2. Wound or sore due to a blow with a weapon.
୩ । ଆଘାତଜନିତ ଶାରୀରିକ ବ୍ୟଥା—
3. Physical pain due to a blow.
୪ । ଜୋର; ବଳ; ଶକ୍ତି—
4. Force; power; vigour.
ମୋଟର ଲହର ଚୋଟରେ ସତ୍ତକର ଅଂଗ୍ରା ଶୋଚନୀୟ ହୋଇପଡ଼ିଥିଲା । ଉତ୍କଳସେବକ ୪।୩।୨୧ ।
୫ । ତୀବ୍ରତା; ପ୍ରଖରତା—5. Keenness.
୬ । ବନ୍ଧୁକରେ ଥରେ ଗୁଳି ବାରୁଦ ଖନ୍ଦା ହେବା—
6. Charging of a gun with powder; charge.
( ଯଥା—ଦୋହୋଗ୍ରନଳୀ ବନ୍ଧୁକରେ ଏକାଥରକେ ଦୁଇଚୋଟ ପଡ଼େ । )
୭ । ବନ୍ଧୁକର ଥରେ ଫାଏର୍ ହେବା—
7. Discharge of a gun; firing of a gun.
( ଯଥା—ଉତ୍ସବରେ ଲାଗେଲାଗେ ୭ ଚୋଟ ଫାଏର୍ ହୁଏ । )
୮ । ଶସ୍ତ୍ରଦ୍ୱାରା ଥରେ ଆଘାତ—
8 One blow with a weapon.
କାମୀ କାମିନୀ ଯହୁଁ ହେଲେ ଭେଟ,
ଢେଟ କରନ୍ତି କାମ କୃପାଣ ଚୋଟ । ଗାନକୃଷ୍ଣ. ଜଗମୋହନ ।
୯ । ( ଲକ୍ଷଣାର୍ଥ ) ମନରେ ଲାଗିବା ଆଘାତ ବା ଦୁଃଖ; ମନୋବେଦନା—9. Grief; mental affliction.
୧୦ । ( ଆକ୍ରମଣର ) ବାର ; ଥର—
10. Time (of an attack).

ସାଧାରଣ ଲୋକେ ଅପଠ ପୁସ୍ତକରେ ସ୍ୱତନ୍ତ୍ର ୧ ଚନ୍ଦ୍ରବିନ୍ଦୁ ଅକ୍ଷର ଓ ମାତ୍ରା ଏବଂ ୨ ଚନ୍ଦ୍ରବିନ୍ଦୁ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚନ୍ଦ୍ରବିନ୍ଦୁ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ପୁସ୍ତକାକାରରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚନ୍ଦ୍ରବିନ୍ଦୁର ବଦଳରେ ୨ ବା ୧ ଚନ୍ଦ୍ରବିନ୍ଦୁ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ'ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ ।

୧୧ । ସର୍ପାଦିଙ୍କର ଦଂଶନ—11. Biting of a snake.

୧୨ । ଶସ୍ତ୍ରାଘାତ ବା ସର୍ପଦଂଶନର ଚିହ୍ନ—
12. The mark of a blow or snake-bite.
( ଯଥା—ତା ହାତରେ ୩ ଯାଗାରେ ଚୋଟ ବସିଛି । )

୧୩ । ଗୁରୁ ଦାୟିତ୍ୱ ବା ଜବାବଦେହୀ—
13 Grave responsibility.

[ ଦ୍ର—ଚୋଟ ଶବ୍ଦ ସଙ୍ଗେ ଦେବା, ମାରିବା, ପକାଇବା, ଲଗାଇବା, ଭରିବା, ଖାଇବା, ସହିବା, ସମ୍ଭାଳିବା, ହାଣିବା, ବଜାଇବା ଆଦି ଶବ୍ଦ ଯୁକ୍ତ ହୋଇ କ୍ରିୟାରୂପେ ଓ କାଟିବା, ବସିବା, ବାଜିବା, ଲାଗିବା, ପଡ଼ିବା, ପହଞ୍ଚିବା, ଖସିଯିବା ଆଦି ଶବ୍ଦ ଯୁକ୍ତ ହୋଇ ବିଶେଷ୍ୟରୂପେ ବ୍ୟବହୃତ ହୁଏ । ]

୧୪ । ହଷ୍ଟା; ତୋଡ଼—14. Volley; paroxysm; fit (e. g. of rage).

୧୫ । କୌଣସି କାର୍ଯ୍ୟ ସମ୍ବନ୍ଧେ ଯିଦ୍; ଜିଗର—15 Zid; being bent on doing a thing; fixed determination to do a thing.

୧୬ । ତୀକ୍ଷ୍ଣ ଶସ୍ତ୍ରଦ୍ୱାରା କଟା ଆଘାତ; ହାଣ—
16. Cutting by a sharp instrument; cut.

**ଚୋଟ କାଟିବା**—ଦେ. ବି—୧ । ଅସ୍ତ୍ରର ଆଘାତ ସଫଳ ହେବା—
Choṭa kāṭibā — 1. (a blow from a weapon) Becoming effective.
चोटलागा
**চোট লাগা**
୨ । ଅସ୍ତ୍ର ଶସ୍ତ୍ରାଦିର ଆଘାତଦ୍ୱାରା ବ୍ୟଥା ଜନ୍ମିବା—
2. Suffering or pain resulting from a blow.

**ଚୋଟ ଚପଟ**—ଦେ. ବି (ଏକାର୍ଥକ ସହଚର)—ଆଘାତମାନ—
Choṭa chapaṭa — Strokes.
चोटपाट
**চোটচপট**

**ଚୋଟ ପକା(କେ)ଇବା**—ଦେ. କ୍ରି—୧ । ବନ୍ଧୁକରେ ବାରୁଦ ଭରିବା—
Choṭapakā(ke)ibā — 1. To charge a gun.
चोटमारा
**চোটমারনো**
ଅଗ ଲୋକେ ପୁଣି ଚୋଟ ପକାଇ,
ବେଗେ ହାଜର ହୋଇଥାନ୍ତି ଯାଇ । ଜଗନ୍ନାଥ- ସମରତରଙ୍ଗ ।
୨ । (ସର୍ପ) ଦଂଶନ କରିବା—2. (snake) To bite

**ଚୋଟ ବାଜିବା**—ଦେ. ବି—ଚୋଟ କାଟିବା (ଦେଖ)—
Choṭa bājibā — Choṭa kāṭibā (See)

**ଚୋଟ ମାରିବା**—ଦେ. କ୍ରି—୧ । ଅସ୍ତ୍ରଶସ୍ତ୍ରଦ୍ୱାରା ଆଘାତ କରିବା—
Choṭa māribā — 1. To strike a blow
चोटमारा
୨ । (ସର୍ପ) ଦଂଶନ କରିବା—
**চোটমারনো**
2. (snake) To bite.

**ଚୋଟେ**—ଦେ. ବି—୧ । ଗୋଟିଏମାତ୍ର ଚୋଟ ବା ଆଘାତ—
Choṭe — 1. Only one blow.
एकचोट
୨ । ଥରେମାତ୍ର—2. Once only.

**ଚୋଟେଇବା**—ଦେ. କ୍ରି—ତୀକ୍ଷ୍ଣ କର୍ତ୍ତିନାସ୍ତ୍ର (ଯଥା—ଖଣ୍ଡା, କାତି) ଦ୍ୱାରା ଚୋଟଚୋଟ କରି ହାଣିବା—
Choṭeibā
কোপান — To cut by strokes; to give successive cuts with a sharp weapon; to chop.
**চোটিবানা**

**ଚୋଠା** (ଇତ୍ୟାଦି)—ଦେ. ବିଣ—ଚୋଠା ଇତ୍ୟାଦି (ଦେଖ)
Choṭṭhā (etc) — Chothā etc (See .
(ଚୋଠୀ—ସ୍ତ୍ରୀ)

**ଚୋଠଉଁ ଚୋଠା**—ଦେ. ବିଣ—(ଚୋଠା ଠାରୁ ବଳି ଚୋଠା) ଅତ୍ୟନ୍ତ ଚୋଠା—Very wicked.
Chothauñ chothā
**चोटम चोट्ठा**
(ଚୋଠମ୍ ଚୋଠା—ଅନ୍ୟରୂପ)

**ଚୋଠମ୍ ଚୋଠା**—ଦେ. ବିଣ—ଚୋଠଉଁ ଚୋଠା (ଦେଖ)
Chotham chothā — Chothauñ chothā (See)

**ଚୋଠା**—ଦେ. ବି (ସଂ. ଚୌର; ହିନ୍ଦୀରେ ଚୋଟ୍ଟାର ଅର୍ଥ ଚୋର ଓ ଚୋଟ୍ଟିକା, ଚୋଟ୍ଟି ବାଲା ଶବ୍ଦଦ୍ୱୟ ପୁରୁଷଙ୍କୁ ଗାଳିରେ ବ୍ୟବହୃତ ହୁଏ)—୧ । ଚୋର—
Chothā
(ଚୋଠୀ—ସ୍ତ୍ରୀ)
1. Thief
ଚୋଠାଗିରି, ଚୋଠାପଣ, ଚୋଠାଇ, ଚୋଠାମି
୨ । ଖେଚେଡ଼ା—2. Wicked.
୩ । ପାଜି; ନୀଚପ୍ରକୃତିକ—
3. Mean-minded.
चोट्टा
୪ । କୃପଣ—4. Miserly.
**চোট্টা**
୫ । ହମାକଥା; ଯେଉଁ ଭୃତ୍ୟ ପ୍ରଭୁଙ୍କୁ ମାନେ ନାହିଁ—
5. Insubordinate (servant).

**ଚୋଡ଼**—ସଂ. ବି (ଚୁଲ୍ ଧାତୁ=ଉନ୍ନତ ହେବା+ଅ)—
Chorda — ୧ । ଦକ୍ଷିଣ ଭାରତର ପ୍ରାଚୀନ ଦେଶବିଶେଷ; ଚୋଳ—
1. Name of an ancient kingdom in South India.
୨ । ଉତ୍ତରୀୟ ବସ୍ତ୍ର—2. A sheet for the upper part of the body.
୩ । କାଞ୍ଚୁଲି—3. Bodice.

**ଚୋଡ଼କ**—ସଂ. ବି (ଚୋଡ଼+କ)—ଏକପ୍ରକାର ପରିଧେୟ ବସ୍ତ୍ର ( ହି. ଶବ୍ଦସାଗର )—A kind of cloth for wearing.
Chordaka

**ଚୋଡ଼ା**—ସଂ. ବି (ଚୁଲ ଧାତୁ=ଉନ୍ନତ ହେବା+କର୍ତ୍ତୃ. ଅ+ଆ)—
Chordā — ବଡ଼ ଗୋରଖମୁଣ୍ଡୀ ( ହି ଶବ୍ଦସାଗର) (ଦେଖ)
A variety of Gorakhamundi (See)

**ଚୋଡ଼ୀ**—ସଂ. ବି (ଚୁଲ ଧାତୁ=ଉନ୍ନତହେବା+କର୍ତ୍ତୃ. ଅ+ଈ)—
Chordi — ସ୍ତ୍ରୀମାନଙ୍କ ପିନ୍ଧିବା ଶାଢ଼ୀ (ହି. ଶବ୍ଦସାଗର)—
A cloth with coloured boder worn by women.

**ଚୋତକ**—ସଂ ବି—୧ । ଡାଲଚିନି (ହି. ଶବ୍ଦସାଗର)—
Chotaka — 1 Cinnamon-bark.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇୟ୍ | ଡଅ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନୃ |

୨ । ବଲ୍କଲ—2. Bark of a tree.

ଚୋଦ୍—ଦେ. ବଣ ପୁଂ (ଅନ୍ୟ ଶବ୍ଦ ପରେ ଲାଗେ, ଯଥା—ବାହାନ୍-
Chod ଚୋଦ୍, ମାଦର୍‌ଚୋଦ୍) ଯେ (ଅମୁକ ସ୍ତ୍ରୀଲୁ) ମୈଥୁନ କରେ—
ଚୋଦ (in compounds) Cohabiting with (such
ଚୋଦ୍ a woman.)

ଚୋଦ—ସଂ. ବି—୧ । ଚାବୁକ; କୋରଡ଼ା (ହି. ଶବ୍ଦସାଗର)—
Choda 1. Whip.
୨ । ଅଗରେ ମୁନିଆ ଲୁହାକଣ୍ଟା ଲାଗିଥିବା ଲମ୍ବ ଯଷ୍ଟି (ହି. ଶବ୍ଦସାଗର)—2 A long stick with an iron point at the top; goad.

ଚୋଦକ—ସଂ. ବଣ. ପୁଂ. (ଚୁଦ୍ ଧାତୁ, ଣିଚ=ଚୋଦ ଧାତୁ+କର୍ତ୍ତୃ.
Chodaka ଅକ)—୧ । ଯେ ପ୍ରବର୍ତ୍ତାଏ—
1. Inducing; one who induces
୨ । ଯେ ପଠାଏ—2 Sending; one who sends.
୩ । ନିଯୋଜକ—3. Employing; one who employs
୪ । କୌଣସି କାର୍ଯ୍ୟ କରିବାକୁ ଯେ ଅନ୍ୟକୁ ଉତ୍ତେଜିତ କରେ—4. Inciting another person to do a work; goading to action.

ଚୋଦଣା—ଦେ. ବି—ମୈଥୁନ—
Chodanā Copulation

ଚୋଦନ—ସଂ. ବି. (ଚୁଦ୍ ଧାତୁ ଣିଚ୍=ଚୋଦ ଧାତୁ+ଅନ)—
Chodana ୧ । ବିଧିବାକ୍ୟ; କୌଣସି କାର୍ଯ୍ୟ କରିବା ପାଇଁ ଉପଦେଶ ବାକ୍ୟ—1 Precept
୨ । ପ୍ରେରଣ—2 Sending.
୩ । ନିଯୋଜନ—3. Employing.
୪ । ସଂଯୋଗ ଆଦି ସମ୍ବନ୍ଧ ସ୍ଥାପନ ପାଇଁ ପ୍ରଯତ୍ନ—
4. Exertion for bringing about a union.
୫ । ପ୍ରବର୍ତ୍ତନ—5. Inducing; impelling.
ସଂ. ବଣ—ଚୋଦକ (ଦେଖ)—Chodaka (See)
ଚୁଦନ ଗ୍ରା. ବି. (ଅଶ୍ଳୀଳ)—ସ୍ତ୍ରୀ ପୁରୁଷଙ୍କ ରତିପ୍ରସଙ୍ଗ; ରମଣ—
ଚୁଦାଈ Cohabitation, copulation.

ଚୋଦନା—ସଂ. ବି ସ୍ତ୍ରୀ (ଚୋଦନ+ସ୍ତ୍ରୀ. ଆ)—
Chodanā ୧ । ସୋଧନ; ଭର୍ତ୍ସନ—
1. Reproof (M. W.).
୨ । ଚୋଦନ (ଦେଖ)—2 Chodana (See)
ଗ୍ରା. ବି. (ଅଶ୍ଳୀଳ)—ମୈଥୁନ—Copulation

ଚୋଦନୀ—ଗ୍ରା. ବଣ. ସ୍ତ୍ରୀ (ଅଶ୍ଳୀଳ ଗାଳି)—ଚୋଦେଇ (ଦେଖ)
Chodanī Chodei (See)
ସଂ. ବି—ଚୋଦନୀ ନାମକ ଗୁଳ୍ମ—Name of a plant.

ଚୋଦୟିତା—ସଂ. ବଣ. ପୁ (ଚୁଦ୍ ଧାତୁ ଣିଚ୍=ଚୋଦ ଧାତୁ+କର୍ତ୍ତୃ.
Chodayitā ତୃ; ୧ମା. ୧ବ.)—ଚୋଦକ (ଦେଖ)
(ଚୋଦୟିତ୍ରୀ—ସ୍ତ୍ରୀ) Chodaka (See)

ଚୋଦା—ଗ୍ରା ବି (ଅଶ୍ଳୀଳ) (ସଂ. ଚୁଦ୍ ଧାତୁ ଣିଚ. ଚୋଦ ଧାତୁ=
Chodā ସଂଯୋଗ ପାଇଁ ଯତ୍ନ କରିବା, ପ୍ରବର୍ତ୍ତାଇବା)—ମୈଥୁନ;
ଚୁଦା; ଚୋଦା ସ୍ତ୍ରୀ ପୁରୁଷ ସଙ୍ଗମ—Cohabitation; copulation.
ଚୁଦା

ଚୋଦାଁ ବଣ. ପୁଂ (ଅଶ୍ଳୀଳ)—୧ । ସ୍ତ୍ରୀପ୍ରସଙ୍ଗରେ ଅତିଶକ୍ତ
ଚୁଦବଁୟା
(ଚୋଦେଇ—ସ୍ତ୍ରୀ) ରୂପେ ରତ—1. Addicted to excessive copulation.
୨ । କାମାତୁର—2. Lecherous (male).
୩ । (ଗାଳି) ଲମ୍ପଟ; ପରସ୍ତ୍ରୀରତ—
3. Adulterous (male)
୪ । (ସମାସରେ ବ୍ୟବହୃତ) ଯେ ଅମୁକ ସ୍ତ୍ରୀଲୁ ରମଣ କରେ—
4 Cohabiting with such or such a female

ଚୋଦାଇବା—ଗ୍ରା. କ୍ରି. (ଅଶ୍ଳୀଳ)—୧ । (ସ୍ତ୍ରୀ) ଆପଣାକୁ ପୁରୁଷଦ୍ୱାରା
Chodāibā ରମିତ କରାଇବା—1. (a female) To allow
ଚୁଦାନ; ଚୋଦାନ one's self to be cohabited by a male.
ଚୁଦବାନା, ଚୁଦାନା ୨ । (କୌଣସି ପୁରୁଷ) ଆପଣାର ସ୍ତ୍ରୀ ବା ଅନ୍ୟ କୌଣସି ସମ୍ପର୍କୀୟା ସ୍ତ୍ରୀକୁ ଜାରପୁରୁଷ ସହବାସ କରିବାକୁ ଦେବା—2. (a male) To allow his wife or another woman to have copulation with a paramour.
(ଚୋଦେଇବା—ଅନ୍ୟରୂପ)

ଚୋଦାଇ ହେବା—ଗ୍ରା. କ୍ରି. (ଅଶ୍ଳୀଳ)—ଚୋଦାଇବା ୧ (ଦେଖ)
Chodāi hebā Chodāibā 1 (See)
(ଚୋଦେଇ ହେବା—ଅନ୍ୟରୂପ)

ଚୋଦିତ—ସଂ. ବି. (ଚୁଦ୍ ଧାତୁ+କର୍ମ. ତ)—୧ । ଆଦିଷ୍ଟ—
Chodita 1 Enjoined; directed; ordered (M.W).
୨ । ଉତ୍ତେଜିତ—2. Incited; impelled.
୩ । ଯେଉଁ ପଶୁଆଦିକୁ ଅଡ଼ାଇ ଦିଆ ଯାଉଥାଏ—
3. (beast) Driven or goaded to action (M. W.).
୪ । ଯାହାଙ୍କୁ ଅବଗତ କରାଯାଏ—
4. Informed (M. W.)
୫ । ସ୍ଥିରୀକୃତ—5 Fixed; appointed (M. W).

ଚୋଦିବା—ଦେ. କ୍ରି (ସଂ. ଚୁଦ ଧାତୁ ଣିଚ. ଚୋଦ ଧାତୁ=ପ୍ରବର୍ତ୍ତାଇବା)—
Chodibā ଉତ୍ତେଜନା ଜାତ କରିବା—To excite.
ଚୁଦା; ଚୋଦା ଗ୍ରା ବି. (ଅଶ୍ଳୀଳ) (ସଂ. ଚୁଦ୍ ଧାତୁ)—ସ୍ତ୍ରୀସଙ୍ଗମ
ଚୁଦନା; ଚୋଦ୍‌ନା କରିବା—To cohabit.

ଚୋଦେଇ—ଗ୍ରା. ବଣ. ସ୍ତ୍ରୀ (ଅଶ୍ଳୀଳ ଗାଳି)—୧ । ଅତ୍ୟନ୍ତ ପୁରୁଷ-
Chodei ସଙ୍ଗମାସକ୍ତା (ସ୍ତ୍ରୀ); କାମାତୁରା—
ଚୁତମାରାନୀ 1. (female) Addicted to carnal pleasures;
ଚୁଦାସୀ, ଚୋଦାସୀ lecherous (female); lustful.
୨ । କୁଳଟା; ଦୁଶ୍ଚରିତ୍ରା—2. Adulterous woman.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, ଅଙ୍ଗିଆ ନ ପାଇଲେ 'ଆଙ୍ଗିଆ' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

**ଚୋପ୍ ( ଇତ୍ୟାଦି )**—ଦେ. ଅ—ଚୁପ୍ ଇତ୍ୟାଦି ( ଦେଖ )
Chop ( etc ) Chup etc ( See )

ଆରେ ଚୋପ୍ ଚୋପ୍ ସେଗୁଡାକ ତୋର ବାହୁଁକି କହୁଚୁ—
ଭକ୍ତାସ୍ୱଚରଣ. ଯୌତୁକ ।

ପ୍ରାଦେ ( ସମ୍ବଲପୁର ) ବି. ( ସଂ. ଚ୍ୟୁ ଧାତୁ=କ୍ଷରିବା; ତୁଳ. ହି. ଚୋପ୍=କଞ୍ଚା ଆମ୍ବଫଳର ଲସି )—
୧ । ଗଛର ଅଠା ବା କ୍ଷୀର—
1. Gum or juice from trees.
୨ । ଅଶ୍ୱତ୍ଥ ଗଛର ଅଠା —
2. The gummy juice of Religious Fig tree.
୩ । କଞ୍ଚା ଆମ୍ବ ଫଳର ଡେମ୍ଫ ଭାଙ୍ଗି ଦେଲେ ଫଳର ମୁଣ୍ଡିରୁ ଯେଉଁ ଲସି ବାହାରେ—
3. Acrid juice coming out of a young mango when separated from the stalk

**ଚୋପ୍ କାଣ୍ଡିଆ**—ପ୍ରାଦେ. (ସମ୍ବଲପୁର) ବି—ଅଠାକାଠି; ଅଠାକାଣ୍ଡିଆ—
Chop kāṇḍiā Pointed reed covered with bird-lime.

**ଚୋପ୍‌ଚାପ୍**—ଗ୍ରା. ବି ଓ ବିଣ—ଚୁପ୍‌ଚାପ୍ ( ଦେଖ )
Chopchāp Chupchāp ( See )

**ଚୋପ୍‌ଦାର୍**—ବୈଦେ. ବି. ( ଫା. ଚୋବ୍‌ଦାର୍ )—
Chopdār ରାଜା ଓ ବିଶିଷ୍ଟ ବ୍ୟକ୍ତିମାନେ ଶୋଭାଯାତ୍ରା କରିବା
ଚୋପଦାର ସମୟରେ ତାଙ୍କ ଆଗେ ଆଗେ ଆସା, ସୋଟା
**चोबदार** ବହନ କରି ଅଗ୍ରସର ହେବା ଭୃତ୍ୟ; ରାଜଦଣ୍ଡବାହକ; ଅଗ୍ରଗାମୀ ସିପାହୀ, ଆସାବରଦାର୍—
Chobedār; persons carrying maces before kings on ceremonial occasions.

**ଚୋପ**—ଦେ. ବି—୧ । ରାଗ; କ୍ରୋଧ—
Chopa 1 Anger.
୨ । ଶର; ବାଣ—1. Arrow.
୩ । ଦାନପତ୍ର—3. Deed of gift.
୪ । ଅଧିକାରପତ୍ର—
4. A deed or letter of authority.

ବୈଦେ. ବି. ( ଫା. ଚୋବ୍ )—୧ । ତମ୍ବୁକୁ ସିଧା କରି ଠିଆ କରିବା ପାଇଁ ବ୍ୟବହୃତ ଖୁଣ୍ଟି—
**चाव** 1. Tent-pole.
୨ । ଢୋଲ, ନାଗରା, ତାସା ଆଦି ବାଡ଼େଇବାରେ ବ୍ୟବହୃତ କାଠି—2. Drum-stick.

ଫାଟି ଯାଉ ନାଗରା ତା ଯୋଡ଼ି ଯାଉ ଚୋପ । ଉକାସ. କଟକ ବିଜୟ ।

। ସୁନା ବା ରୁପା କୁଅଣି ହୋଇଥିବା ଦଣ୍ଡ ( ଯାହା ଚୋପ୍‌ଦାରମାନେ ରାଜା ଆଦିଙ୍କ ଗହଣରେ ବହନ୍ତି )—
3. Gilt or silver-covered big sticks carried by bearers in the retinue of great personages.

ପ୍ରାଦେ. ( ସମ୍ବଲପୁର ) ବି—ବରଗଛର ଅଠା—
The gummy juice of Banyan tree.

**ଚୋପକ**—ଦେ. ବି—ବାଣ; କାଣ୍ଡ—
Chopaka Arrow.

ଢାଲ ଚୋପକ ନଳ କାଣ୍ଡ
ଅବିର ଧରି ଠେକା ଫାଡ । ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।

**ଚୋପ କାଠି**—ଦେ. ବି. ( ଫା. ଚୋବ୍+ସଂ. କାଷ୍ଠ )—
Chopa kāṭhi ଯେଉଁ କାଠି ଦ୍ୱାରା ଢୋଲ ଓ ନାଗରା ଆଦି ବାଡ଼ିଆ ହୁଏ—Drum-stick.
[ ଦ୍ର— ପାଣ ଓ ହାଡ଼ିମାନଙ୍କର ଚୋପକାଠି ସନ୍ତକ ଅଟେ । ]

**ଚୋପ ଖଣ୍ଡୁଆଡ**—ଦେ. ବି. (ପ୍ରାଚୀ)—ଅଧିକାରପତ୍ର—
Chopa khaṇḍuāti Deed or letter of authority.

ମହାପାତ୍ରେ ଶାନ୍ତି ପାଇ ପୁରୁଷୋତ୍ତମ ଦେଶ ଲୋକଙ୍କୁ ଚୋପ ଖଣ୍ଡୁଆଡ ଦେଲେ ।
ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।

**ଚୋପଦାର୍**—ଦେ. ବି—ଚୋପ୍‌ଦାର୍ ( ଦେଖ )
Chopadār Chopdār ( See )

ଲଙ୍କବ ଚୋପଦାରେ ତାକନ୍ତି କହି ନୋହେ ଏ ଯେଉଁ ସମ୍ମୁଖି
କି ଅବା ଛାଡ଼ି ପଡ଼ଇ ସୁରନଗରୀ ଶିର । ବ୍ରଜନାଥ. ସମର ତରଙ୍ଗ ।

**ଚୋପ ପତ୍ର**—ଦେ. ବି—ସନନ୍ଦ—
Chopa patra A deed or letter of gift.

**ଚୋପରା**—ପ୍ରାଦେ. (ସମ୍ବଲପୁର) ବି—ଅଳିଆ; ଝାଡ଼ୁଆ—
Choparā Refuse; sweepings.

**ଚୋପରା ଖାତ**—ପ୍ରାଦେ. (ବାଲେଶ୍ୱର) ବି—ଯେଉଁ ଖାତରେ ଅଳିଆ ବା ଝାଡ଼ୁଆ ପକାଯାଏ—Refuse-pit.
Choparā khāta

**ଚୋପା**—ଦେ. ବି. (ସଂ. ଚୁପ ଧାତୁଜାତ ଚୋପନ=ଗୋପନ; ଯାହା ମଧ୍ୟସ୍ଥ ବସ୍ତୁକୁ ଗୋପନ କରେ)—୧ । ବୃକ୍ଷର ଛେଲି ବା ବଲ୍କଲ—1. Bark of trees.
Chopā
ଚୋପବା; ଛିବଡ଼ା
**छाल, छिलका** ୨ । ଫଳର ଉପରସ୍ଥ ଆବରଣ—
2. The rind of a fruit.
୩ । ଶସ୍ୟାଦିର ତୁଷ—3. The husks of grain.
୪ । ଛାଲ; ବାହାରର ଚମଡ଼ା—4 Outer skin.
୫ । ଘାଆର ବକଲା—
5. The slough of a wound or sore.

ଦେ. ବିଣ—ସାରହୀନ; ବଲ୍କଲମାତ୍ରାବଶିଷ୍ଟ—
Hollowed; emptied of the inner substance.

**ଚୋପାଚୋପି**—ଦେ. ବି—କଟା ହୋଇଥିବା ନାନାଫଳର ଚୋପା—
Chopāchopi The rinds of various fruits scraped off from the fruits.

**ଚୋପାଛଡ଼ା**—ଦେ. ବିଣ. (ଅବଜ୍ଞା ସୂଚକ)—ଯେ ସବୁକଥାରୁ କଠେଇ କରି ଦୋଷଗୁଣ ବାଛେ—( a term of contempt ) Over-careful in dealing with a thing.
Chopā-chhaṛā

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଈପ୍ସ | ଢ଼ଅ | ଝ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ୭ | କୃ |

ଚୋପା ଛଡ଼ାଇବା—ଦେ. କ୍ରି—ଉପରୁ ଛାଲ ଛଡ଼ାଇବା; ଛାଲ ଉତାରିବା—
Chopā-chhardāibā To take off the rind or outer skin.
(ଚୋପା ଛଡ଼େଇବା—ଅନ୍ୟରୂପ)

ଚୋପାମୁହାଁ—ଦେ. ବିଣ. ପୁଂ—ଯାହା ମୁହଁ ଫଳର ଚୋପା ପରି ଉଡରକୁ
Chopā-muhāṅ ପଶିଯାଇ ଥାଏ; ଗାଲୁଅଗାଲ—
(ଚୋପାମୁହୀଁ—ସ୍ତ୍ରୀ) One whose cheeks are hollowed like the rind of a fruit.

ଚୋବ୍ (ଇତ୍ୟାଦି)—ବୈଦେ. ବି. (ଫା)—ଚୋପ୍ ଇତ୍ୟାଦି (ଦେଖ)
Chob (etc) Chop etc (See)

ଚୋବ୍‌ଚିନି—ଦେ. ବି. (ଫା. ଚୋବ୍=କାଠି+ଚୀନ=ଚୀନ୍ ଦେଶରୁ
Chob-chini ଆସିଥିବା)—ମୋଦକରେ ବ୍ୟବହୃତ ବିଦେଶୀୟ
ସଂ ନାମ—ଦ୍ୱୀପାନ୍ତ ବଚ୍ଚ, ବଚ, ଚୋପଚିନି—A kind of
ଓ. ଚୋପଚିନି, ଚୋବଚିନି pungent root used as a
ଚୋବଚିନି tonic; Smilax China (tree)
चोबचिनि and its root; China-root.
ଫା. ଚୋବଚିନି [ ଦ୍ର—ଏହା ଚୀନ ଓ ଜାପାନରେ
ଆ. ଖସବୁଲ୍‌ସିନି ଜନ୍ମିବା ଏକ ଲତାର ଚେର; ଏହା
ଈଷତ୍ ତିକ୍ତ, ଉଷ୍ଣବୀର୍ଯ୍ୟ, ଅଗ୍ନି ଦୀପକ, ରକ୍ତଶୋଧକ ଓ ମଳମୂତ୍ର-
ଶୋଧକ । ଏହା ବିବନ୍ଧ, ଉଦରାଧ୍ମାନ, ଶୂଳ, ବାତ, ଅପସ୍ମାର,
ଉନ୍ମାଦ ଓ ଗାତ୍ରବେଦନା-ନିବାରକ; ଫିରଙ୍ଗ (ଗର୍ମି) ରୋଗରେ ଓ
ଦୁର୍ବଳତାରେ ଏହା ବ୍ୟବହୃତ ହୁଏ । ଏ ଲତାର ପତ୍ର ଅଶ୍ୱଗନ୍ଧା
ଗଛର ପତ୍ରପରି । ]

ଚୋବଣା—ଦେ. ବି. (ସଂ. ଚର୍ବଣ)—ଚବଣା, ଚୋବାଇବା ପାଇଁ
Chobaṇā ବ୍ୟବହୃତ ଗୁଡ଼ଲ ମୁଗଆଦି ନାନା ଶସ୍ୟର ମିଶ୍ରିତ ଭଜା—
चबेना Fried grains eaten by chewing.

ଚୋବା—ଦେ. ବି. (ସଂ. ଚର୍ବଣ)—୧ । ଦନ୍ତଦ୍ୱାରା ପେଷଣ—
Chobā 1. Chewing.
ଚିବାନ ୨ । ଭୋଜନବେଳେ ଖାଦ୍ୟଦ୍ରବ୍ୟକୁ ଦନ୍ତଦ୍ୱାରା ଉତ୍ତମରୂପେ
चबेना ଚଗଡ଼ିବା—2. Mastication.
୩ । ଚୋବଣା (ଦେଖ)
3. Chobaṇā (See)

ଚୋବାଇ ଚୋବାଇ କଥା କହିବା—ଦେ. କ୍ରି—ପାଟିରେ ଗୁଡ଼ଲ
Chobāi chobāi kathā kahibā ଚୋବାଉ ଚୋବାଉ କଥା
ଚିବିୟେ ଚିବିୟେ କଥା ବଲା କହିଲେ ମନୁଷ୍ୟ ଯେପରି
चबा चबाकर बातेँ करना ଅସ୍ପଷ୍ଟଭାବରେ କଥା କହେ
ସେହିପରି କଥା କହିବା; ବାରଗୁଡ଼ଲଆ କରି କଥା
କହିବା—To speak indistinctly (as if the speakers were uttering words while engaged in chewing something).

ଚୋବାଇବା—ଦେ. କ୍ରି (ସଂ. ଚର୍ବଣ)—୧ । ଦାନ୍ତଦ୍ୱାରା ଖାଦ୍ୟାଦି
Chobāibā ପେଷିବା—1. To chew.
(ଚୋବେଇବା—ଅନ୍ୟରୂପ) ଚଦନ୍ତେ ତାମ୍ବୂଳ ବଣ୍ଟଆ ଚୋବାଇଲେ ।
ଚିବାନ କୃଷ୍ଣସିଂ. ମହାଭାରତ, ସଭା ।
चबाना, चिबलाना ୨ । ଦୁଇ ପାଟିର ଦାନ୍ତକୁ ପରସ୍ପର ସହିତ
ଚଗଡ଼ିବା=2. To grind the teeth together.
( ଯଥା—ସେ ଦାନ୍ତ ଚୋବାଉଛି ) ।
ପ୍ରାଦେ (ଗଞ୍ଜାମ) କ୍ରି—ଦଂଶନ କରିବା; କାମୁଡ଼ିବା—
To bite.

ଅପରାଧ ବିନା ସେ ପିତାଙ୍କୁ ଭୁଷିର
ଚୋବାଇଲା ବୃକ୍ଷ ତକ୍ଷକ ନାଗବର—କୃଷ୍ଣସିଂ. ମହାଭାରତ ଆଦି ।

ଚୋବା ଚୋବି—ଦେ. କ୍ରି—କୌଣସି ପଦାର୍ଥକୁ ଉପର୍ଯ୍ୟୁପରି ଚୋବାଇବା—
Chobā chobi To masticate.
ଚିବାଚିବି ଦେ. ବିଣ—ପରସ୍ପର କାମୁଡ଼ାକାମୁଡ଼ି—
चबाचबि Biting each other.

କେତେ ଯୋଦ୍ଧାଙ୍କ ଚୋବାଚୋବି ଛଣ୍ଡାଛଣ୍ଡି
ହୋଇଣ ରଣବାନ୍ତେ ପଡ଼ଲେ ଦଗଣ୍ଡି—କୃଷ୍ଣସିଂ. ମହାଭାରତ. ଦ୍ରୋଣ ।

ଚୋବାଣ—ଦେ. ବି (ସଂ. ଚର୍ବଣ)—ଚୋବା (ଦେଖ)
Chobāṇa Chobā (See).
ଚିବାନ
चबाना

ଚୋବେ—ଦେ ବି (ସଂ. ଚତୁର୍ବେଦୀ)—୧ । ଚତୁର୍ବେଦୀ
Chobe ବ୍ରାହ୍ମଣଙ୍କ ବଂଶୋପାଧିବିଶେଷ—
ଚୋବେ 1. Family-title of a class of Brāhmaṇas
चौबे reading the four Bedas.
[ଦ୍ର—ତୁଳନାକର—ଦୁବେ=ଦ୍ୱିବେଦୀ ] ।

ଚୋର୍—ପ୍ରାଦେ (ମେଦିନୀପୁର) ବି—ସ୍ତ୍ରୀଲୋକମାନଙ୍କର ହାତରେ ପିନ୍ଧାଯିବା
Chor ରୂପା ଖଡ଼ୁ—Silver bangle worne on the wrist of females.

ଚୋର—ସଂ. ବି. ପୁଂ (ଚୁର୍ ଧାତୁ=ଚୋରିକରିବା+କର୍ତ୍ତୃ. ଅ)—
Chora ୧ । ତସ୍କର—1 A thief; a robber.
(ଚୋରଣୀ—ସ୍ତ୍ରୀ)
[ଦ୍ର—ଯେଉଁ ବ୍ୟକ୍ତି ଆପଣାର ଅନ୍ୟାଯ୍ୟ ଲାଭ ଆଶାରେ ଦ୍ରବ୍ୟସ୍ୱାମୀର ବିନା ଅନୁମତିରେ କୌଣସି ଦ୍ରବ୍ୟକୁ ସ୍ଥାନାନ୍ତରିତ କରେ ସେ ଚୋର । କିନ୍ତୁ ଲୋକ ମିଳି ବାଧା ଦେବା ବ୍ୟକ୍ତିଙ୍କୁ ଆଘାତ ବା ବଳପ୍ରୟୋଗ କରି ଚୋରିକଲେ ସେମାନଙ୍କୁ ଡକାଇତ ବୋଲାଯାଏ ।]
୨ । ଯେ ଅନ୍ୟର ଗ୍ରନ୍ଥରୁ ଚୋରିକରି ଆପଣା ନାମରେ ପ୍ରକାଶ କରେ; ଗ୍ରନ୍ଥଚୋର—2. A plagiarist (M. W.)
୩ । ଚିତ୍ତଚୋର; ଯେ ମନକୁ ମୋହିତ ବା ବଶୀଭୂତ କରେ—
3. A person who captivates a person's heart (Apte).
୪ । ଗନ୍ଧଦ୍ରବ୍ୟବିଶେଷ; ଗଣ୍ଠିଅନା—
4. A kind of scented drug.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ପାଠକମାନେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ, 'ଅଖ୍ୟ' ନ ପାଇଲେ 'ଅକ୍ଷ' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ

୫ । କୃଷ୍ଣଗ୍ରାଣ୍ଠିଲତା—5. A kind of creeper ( M. W. )

୬ । ଅନ୍ୟାଯ୍ୟଲାଭକାରୀ ବା ପ୍ରତାରକ ବ୍ୟବସାୟୀ—6 Any dishonest dealer ( M.W )

ফিকবেদনা ଦେ. ବି—୧ । ରକ୍ତ; ଦେହରେ ଅଟକିଯିବା ବାୟୁ—
हवाअटकना Wind appearing now and then at different places inside the body and giving pain.

চোর ୨ । ପିଲାଙ୍କ ଲୁଚିଅଣ୍ଡି ବା ଲୁଚକାଳି ଖେଳରେ ଯେଉଁ
चोर ପିଲା ଚୋର ହାତରେ ଧରାପଡ଼େ —
2. A boy who is caught by the seeker in the children's game of hide and seek.

ଦେ. ବିଣ (ଲକ୍ଷଣାର୍ଥ) ୧ । ଚୋରକରିବା ବ୍ୟକ୍ତି ପରି ଲଜ୍ଜିତ— 1. Ashamed like a thief.
(ଯଥା— ମୋର ଅମୁକ ଅନ୍ୟାଯ୍ୟ କାର୍ଯ୍ୟ କରିଥିବା କଥା ଧାର୍ମିକଜଣଙ୍କ ଆଗରେ ପଡ଼ିଯିବାରୁ ମୁଁ ଚୋର ହୋଇଗଲି । )

୨ । ଲଜ୍ଜାଶୀଳ; ଲାଜକୁଳା—2. Bashful; coy.

୩ । ଲଜ୍ଜାରେ ମ୍ରିୟମାଣ—3. Ashamed.

୪ । ପଶ୍ଚାତ୍‌ପଦ—4. Shrinking to do a work.

ଦେ. ବି—ଚୋଳଗଙ୍ଗ ( ଦେଖ )— Cholaganga ( See ;

ଇଙ୍ଗିତେ ବତୁର ଚୋର ସେନାପତି,
ହେଲେ ବଳ ନୋହେ ତାଙ୍କ ମତଗତି । ରାଧାନାଥ. ଚନ୍ଦ୍ରଭେଣ୍ଟ୍ରସା ।

**ଚୋରକ**—ସଂ. ବି (ଚୋର + କ)—୧ । ଗୁଗୁଚିଆ ତୃଣ, ଯାହାର ଶୃଙ୍ଗ-
Choraka ଯୁକ୍ତ ଶସ୍ୟ ଲୁଗାରେ ଲାଗିଯାଏ—A species of
চোরকাঁটা grass having spiked ears which stick
अंधाहुली to the cloth; Andropogen Aciculatus; Spear-grass.

୨ । ସୁଗନ୍ଧ ଔଷଧ ବିଶେଷ; ଗଣ୍ଠିଅନା; ଚୋର—2. A kind medicinal perfume.

**ଚୋରକଣ୍ଟକ**—ସ. ବି—ଚୋରକ ୧ (ଦେଖ )—
Chorakantaka Choraka 1 ( See )

**ଚୋରକଳା**—ଦେ ବି ( ୬ଷ୍ଠୀ ତତ୍; ସଂ. ଚୋର + କଳା)—ଚୋରର
Chora-kala ଲକ୍ଷଣ; ଚୋରଠାରେ ଦେଖାଯିବା କେତେକ ଲକ୍ଷଣ, ଯାହା ଦେଖିଲେ କୌଣସି ଲୋକକୁ ଚୋର ବୋଲି ଠଉରାଇ ହୁଏ)—Indications or marks found in the face of a thief.

[ ଦ୍ର—ଲୋକଙ୍କର ବିଶ୍ୱାସ ଯେ ଚୋରଙ୍କ ଆଖିରେ ଏକପ୍ରକାର ଦାଗ ଥାଏ ଓ ସେହି ଦାଗକୁ ଦେଖି ଅନୁଭବୀ ଲୋକେ ଚୋରକୁ ଚିହ୍ନି ପାରନ୍ତି । । ]

**ଚୋରଖେଳ**—ଦେ. ବି—ଶିଶୁମାନଙ୍କର ଏକପ୍ରକାର କ୍ରୀଡ଼ା ( ଏଥିରେ
Chora khela ଜଣେ ଚୋର ହୁଏ ଓ ଅନ୍ୟମାନେ ଲୁଚନ୍ତି;
লুকোচুরী ଚୋର ଯାହାକୁ ଖୋଜି ଧରି ପକାଏ, ସେ ପୁଣି
चोरखेल; आंखमिचौली ଚୋର ହୁଏ)—The game of hide and seek.

**ଚୋରଗଙ୍ଗଦେବ**—ଦେ. ବି (ନାମ)—ଗଙ୍ଗବଂଶର ପ୍ରଥମ ରାଜା—
Chora-ganga-deba The first king of the Ganga dynasty of anient Orissa.

[ ଦ୍ର—ଏ ଚନ୍ଦ୍ରବଂଶୀୟ ରାଜା । ଏହାଙ୍କ ମାତାଙ୍କ ନାମ 'ଗଙ୍ଗା' ଥିବାରୁ ତାହାଙ୍କ ନାମାନୁସାରେ ଏ ବଂଶଟି 'ଗଙ୍ଗବଂଶ' ନାମରେ ପରିଚିତ । ଏହାଙ୍କ ଘର ଦକ୍ଷିଣ ରାଜ୍ୟରେ ଥିଲା । ବାସୁଦେବ ରଥ ନାମକ ଜଣେ ବ୍ରାହ୍ମଣ ସ୍ୱପ୍ନରେ ଭୁବନେଶ୍ୱରଙ୍କ ଆଦେଶ ପାଇ ଦକ୍ଷିଣ ଯାଇ ଦେଖିଲେ ଯେ ଚୋରଗଙ୍ଗ କେତେକ ବାଳକଙ୍କ ସହିତ ଖେଳୁଛନ୍ତି ଓ ଖେଳରେ ରାଜା ହୋଇଅଛନ୍ତି । ଖେଳ-ରାଜାଙ୍କ ସଙ୍ଗେ ସାକ୍ଷାତ ହେବାକୁ ରଥେ ଉକ୍ତ ରଜା-ପିଲା ନିକଟକୁ ଗୋଟିଏ ପିଲାକୁ ପଠାଇଲେ । ଖେଳ-ରାଜା ଉତ୍ତର କଲେ, "ବର୍ତ୍ତମାନ ସମୟ ନାହିଁ, ସେ ଖର୍ଚ୍ଚ ନେଇ ରହନ୍ତୁ; ପରେ କଥାବାର୍ତ୍ତା ହେବ ।" ପନ୍ଦର ଦିନ ପରେ ରଥଙ୍କର ରାଜାଙ୍କ ସଙ୍ଗେ କଥାବାର୍ତ୍ତା ହେଲା । ବ୍ରାହ୍ମଣ ତାଙ୍କୁ ଭୁବନେଶ୍ୱରଙ୍କ ଆଜ୍ଞା ଜଣାଇଲେ । ରାଜା ବ୍ରାହ୍ମଣ କଥାରେ ସମ୍ମତ ହୋଇ ଓଡ଼ିଶାକୁ ଆସିଲେ । ସେ କେଶରୀବଂଶର ଶେଷ ରାଜା ସୁବର୍ଣ୍ଣକେଶରୀ ବା ସିଂହେଶ୍ୱର କେଶରୀଙ୍କୁ ପରାସ୍ତ କରି ରାଜା ହେଲେ । ଏହାଙ୍କର ଅନ୍ୟ ନାମ ଚୁଡ଼ଗଙ୍ଗ-ଦେବ । ଏହାଙ୍କ ନାମାନୁସାରେ ପୁରୀରେ ଗୋଟିଏ ସାହି ଅଛି । ଏ ଜଗନ୍ନାଥମନ୍ଦିରର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ଏ ଏକାଦଶ ଶତାବ୍ଦୀରେ ଜୀବିତ ଥାଇ ୭୦ ବର୍ଷ ରାଜତ୍ୱ କରିଥିଲେ ।
ଜଗବନ୍ଧୁ. ପ୍ରାଚୀନ ଉତ୍କଳ
ମାଦଳାପାଞ୍ଜି ଲେଖା ଏହାଙ୍କ ଆଦେଶରେ ପ୍ରଥମେ ଆରମ୍ଭ ହେଲା । ଏ ଅସାଧାରଣ ବୀର ଥିଲେ । ଏହାଙ୍କର ବିଦ୍ୟାନୁରାଗ ଅତୀବ ପ୍ରଶଂସନୀୟ । ଏହାଙ୍କ ଉତ୍ସାହରେ ସତାନନ୍ଦ 'ସୂର୍ଯ୍ୟ ସିଦ୍ଧାନ୍ତ' ରଚନା କରିଥିଲେ । କୃପାସିନ୍ଧୁ. ଉତ୍କଳ ଇତିହାସ ।]

**ଚୋରଚୋଟ୍ଟା**—ଦେ. ବିଣ. (ସହଚର)—ଚୋର ଓ ପାଜି—
Chora-choṭṭhā Thievish and wicked.
( ଯଥା—ମୁଁ ଚୋରଚୋଟ୍ଟା ନୁହେଁ । )

**ଚୋରଚୁଇଁବା**—ଦେ. ବି—୧ । ମନରେ ଅନିଷ୍ଟ ବା ଅମଙ୍ଗଳ ଆଶଙ୍କା
Chorachuiñbā ଜାତ ହେବା—Misgiving or presentiment.
( ଯଥା—ତା ଦେହ ବେମାର ହେବା ଶୁଣି ମୋ ମନ ଚୋର ଚୁଇଁଲା । )

୨ । ମନରେ ସନ୍ଦେହ ଜନ୍ମିବା—2. A feeling of doubt or suspicion.

| ୧ | ଇ | ଉ | ର୍‌,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇସ୍ | ଉଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ଷ | ନ୍‌ |

ଚୋରତସ୍କର—ଦେ. ବି ( ସହଚର; ସଂ. ଚୌର+ତସ୍କର )—ଚୋର
Choraṭaskara ଡକେଇତ—Thieves and docayats.

ଆଉ ଟଙ୍କା ପଇସା ଦେଖିଲେ ଚୋର ତସ୍କର ଦୂଆରକୁ ଅଇବେ ।
ଫକୀରମୋହନ. ଗଳ୍ପସ୍ବଳ୍ପ ।

ଚୋରଡ଼ଗଡ଼ିଆଫାଟ—ଦେ. ବି—ଛାତ ବା ମେଝିଆରେ ଚୂନ ମାଠେଣି
Chorardagardiāphāta ହୋଇଥିବା ସ୍ଥାନରେ ଖରା ଯୋଗୁ ଯେଉଁ ସରୁ ଫଟା ଦାଗ ଦେଖାଯାଏ—
Small cracks appearing on a plastered roof or floor.

ଚୋରଡ଼ା—ଗ୍ରା. ବି—ଚିରୁଡ଼ା (ଦେଖ)
Chorardā Chirurdā (See)

ଚୋରଣୀ—ଦେ. ବି. ସ୍ତ୍ରୀ—ଚୌର୍ଯ୍ୟବୃତ୍ତି କରିବା ସ୍ତ୍ରୀ—
Choraṇī A female thief

ଚୋରଣୀଗାଈ—ଦେ. ବି. ସ୍ତ୍ରୀ—ଯେଉଁ ଗାଈକୁ ଦୁହିଁଲାବେଳେ ସେ
Choraṇigāī ଦୁଧକୁ ଲୁଚାଏ, ଅର୍ଥାତ୍ ଆପଣା ଥନରୁ ଶୁଖାଇଦିଏ,
चोरथन ଜଳୁ ବାଛୁରୀ ମୁହଁ ଲଗାଇଲେ ତାହା ଥନରୁ ଦୁଧ ବାହାରେ—
A cow which feigns that her udder is empty when a man milks her, but sucks her calf afterwards.

ଚୋରପଣ—ଦେ. ବି—୧ । ଚୌର୍ଯ୍ୟ—
Chorapana 1. Stealing; theft.
୨ । ଗୋପନ କରାଯିବା ଅପରାଧ—
2. Offences done stealthily.

ଭୋର ଲଗି ଦେଉ ପଣବା ହେବନ୍ତ ଚୋରପଣ ଆଚରଣ ।
କବିସୂର୍ଯ୍ୟ. କଳୋଗ୍ର ଚମ୍ପୂ, ଡ ଗୀତ ।

ଚୋରପୁଷ୍ପୀ—ସଂ. ବି—୧ । ଚୋରକ ୧ (ଦେଖ)
Chorapushpī Choraka 1 (See).
ଚୋରପୁଷ୍ପ } ଅନ୍ୟରୂପ ୨ । ଶଙ୍ଖପୁଷ୍ପୀ (ଦେଖ)
ଚୋରପୁଷ୍ପିକା } 2 Sankhapushpī (See).

ଚୋରବନିବା—ଦେ କ୍ରି—୧ । ଅପ୍ରତିଭ ହେବା—
Chorabanibā 1. To be at the end of one's wits.
( ଯଥା—ମୁଁ ତାଙ୍କ ଯୁକ୍ତି ଶୁଣି ଚୋର ବନିଗଲି )
୨ । କୌଣସି ବ୍ୟକ୍ତି ସମ୍ମୁଖରେ ଉପସ୍ଥିତ ହେବା ପାଇଁ କୁଣ୍ଠିତ ବା ଭୀତ ହେବା—2. To hesitate to appear.

ଚୋରମୁହାଁ—ଦେ. ବିଣ. ପୁଂ—ଅତିଶୟ ଲଜ୍ଜାଶୀଳ ବ୍ୟକ୍ତି—
Choramuhāñ Very sensitive and shy (person).
(ଚୋରମୁହୀଁ—ସ୍ତ୍ରୀ)

ଚୋର ହେବା—ଦେ. କ୍ରି—ଚୋର ବନିବା (ଦେଖ)
Chora hebā Chora banibā (See).

ଚୋର ହେଲ ତାହା ସମ୍ମୁଖେ ଏବେ—କବିସୂର୍ଯ୍ୟ, କବିତା ।

ଚୋରା—ସଂ. ବି—୧ । ଅସୁରବିଶେଷ (ଦୁର୍ଗା ଏହାକୁ ବଧ କରିଥିଲେ)—
Chorā A demon (killed by Goddess Durgā).

୨ । ଚୋରକ ୧ (ଦେଖ) (ହି. ଶବ୍ଦସାଗର)—
2. Choraka 1 (See).

ଦେ. ବି—ଚୋରିକରିବା—Stealing

ଦେ. ବିଣ—୧ । ଅପହାରକ—( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ଯଥା—ଛତ୍ରଚୋରା, ଗାଈଚୋରା )—
1. One who steals; stealing; lifting.
୨ । ଅପହୃତ ( ଯଥା—ଚୋରା ମାଲ—Stolen.
ଚୋରାଈ ୩ । ଲୁକ୍କାୟିତ; ଗୁପ୍ତ (ଯଥା—ଚୋରାପ୍ରୀତି) —
चोरा 3. Hidden; secret; stealthy; clendestine.

ଚୋରା ସ୍ନେହ ଭଉ ହୋଇ କହାଇଲେ
ଧନ ଅତି ଲୁବ୍ଧ ମନେ । ରଘୁନାଥ—ଯଦାଚ ।

୪ । ସରକାରଙ୍କ ଅବକାରୀ ବିଭାଗର ନିୟମକୁ ଲଙ୍ଘନପୂର୍ବକ ନିଆଅଣା କରାଯାଉଥିବା ( ଅବକାରୀ ଦ୍ରବ୍ୟ, ଯଥା—ଚୋରା ଅଫିମ, ଚୋରା ମଦ ) —
4. Smuggld (excise articles).
୫ । ଉପରସ୍ଥ କର୍ମଚାରୀମାନଙ୍କର ବିନା ଅନୁମତିରେ କରାଯାଉଥିବା (କାର୍ଯ୍ୟ)—5. (action) Done without the knowledge or permission of the higher officers

ଚୋରାଇମାଲ—ଦେ. ବି—ଚୋରାମାଲ (ଦେଖ)
Chorāimāla Chorāmāla (See)

ଚୋରାଇବା—ଦେ. କ୍ରି. (ସଂ. ଚୁର୍ ଧାତୁ )—୧ । ଚୋରି କରିବା—
Chorāibā 1. To steal.
চোরান; চুরিকরা ଆଣିଲ ତା ଚୋରାଇ ଦେଖାଇ ଗୁରୁଙ୍କୁ ।
उचुराना; चुराना; चोराना କୃଷ୍ଣସିଂ ମ. ମହାଭାରତ. ବନ ।
(ଚୋରେଇବା—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) ଅନୁକରଣ କରିବା—
2. To imitate.

ଭଗ୍ନ ଚକ୍ର ମନମଥ ବଳଜୀ ମଙ୍ଗଳ ରଥ
ଗଉରାଗ ଚୋରାଇଛ ଗଲ । କବିସୂର୍ଯ୍ୟ. ସଙ୍ଗୀତ ।

ଚୋରାଗସ୍ତ—ଦେ. ବି. ( ସଂ. ଚୋର+ଫା. ଗସ୍ତ୍ )—
Chorāgasta ଗୋପନ ଅନୁସନ୍ଧାନ କରିବା ପାଇଁ ରାଜା ରାଜ-
চোরাগস্ত କର୍ମଚାରୀମାନେ ଗୋପନରେ କରିବା ରାଜ୍ୟ ଭ୍ରମଣ—
चोरगन्द Tour.

ଚୋରାଗାତ—ଦେ. ବି—ଅଦୃଶ୍ୟ ଗାତ—
Chorāgāta A pit-fall; a hidden pit.
চোরাগর্ত্ত

ଚୋରାଚାହାଣି—ଦେ. ବି—୧ । ଅନ୍ୟମାନଙ୍କ ନଜର ନ ପଡ଼ିବା ଭଳି
Chorāchāhāni କିମ୍ବା ଯାହାକୁ ଚାହିଁବ ତାର ଲକ୍ଷ୍ୟ ନ ହେବା ଭଳି ତା ଆଡ଼କୁ ଦୃଷ୍ଟି କରିବା—
1. Covert glances.
୨ । ଆଡ଼ଚାହାଣି—2. Sidelong glances.

**ଚୋରଚୋରି**—ଦେ. ବି—ଏକାଧିକ ଥର ଚୋରି କରିବା କର୍ମ—
Chorāchori    Acts of stealing.
চুবাচুবি
**चोरचोरी**

**ଚୋରନୋଟ୍**—ଦେ. ବି. ( ଓ. ଚୋର+ଇଂ. ନୋଟ୍ )—
Chorānoṭ    ୧ । ଜାଲ୍‌ନୋଟ୍—1. Counterfeit note.
চোবাইনোট    ୨ । ଚୋରିଯାଇଥିବା କରେନ୍ସି ନୋଟ—
2. Stolen currency note.

**ଚୋରପଥ**—ଦେ. ବି—ଗୁପ୍ତପଥ—
Chorāpatha    Secret way; a hidden path.
চোবাপথ
**चोररास्ता**

**ଚୋରପାହାଡ଼**—ଦେ. ବି—ଜଳଭିତରେ ଅଦୃଶ୍ୟ ହୋଇ ରହିଥିବା
Chorāpāhārḍa    ପାହାଡ଼—Mountain sunken under
ডুবাপাহাড়    the water.
**चोरपाहाड़**

**ଚୋରପ୍ରୀତି**—ଦେ. ବି—ଗୁପ୍ତପ୍ରଣୟ—Secret and clandestine
Chorāpriti    love making.

**ଚୋରବସନ୍ତ**—ଦେ. ବି—ବସନ୍ତଋତୁ ଆରମ୍ଭ ନ ହେଉଣୁ ଯେଉଁ
Chorābasanta    ପ୍ରୀତିକର ମଳୟ (ଦକ୍ଷିଣ) ପବନ ବହେ—
(ଚୋରବସନ୍ତ—ଅନ୍ୟରୂପ)    The delicious south wind which begins to blow some time before the advent of the spring proper.

ନଅଳାଁ—ବଳାଣୀ ଚୋର ବସନ୍ତକୁ ବନେ ଯଥା ଫୁଲ ରୁଇଁ ।
ରଥ୍‌ନାଥ—ଯଯାତି ।

**ଚୋରବାଟ**—ଦେ. ବି—ଚୋରପଥ (ଦେଖ)
Chorābāṭa    Chorāpatha (See)
(ଚୋରବାଟ—ଅନ୍ୟରୂପ)

**ଚୋରବାଲି**—ଦେ. ବି.—ଜଳ ଭିତରେ ଅଦୃଶ୍ୟ କୋମଳ ବାଲୁକା,
Chorābāli    ଯହିଁରେ ଘୋଡ଼ା ଗଜ ପଡ଼େ ଓ ଜାହାଜ ଆଦି ଲାଗି
চোরাবালি    ଯାଏ; ଯେଉଁ ବାଲି ଦେଖିବାକୁ ସାଧାରଣ ବାଲି ପରି
**चोरबालू**    ଦେଖାଯାଏ କିନ୍ତୁ ଗୋଡ଼ ଦେଲେ ମନୁଷ୍ୟ ତହିଁରେ ବୁଡ଼ି ମରେ—Quick sand; a bank of sunken sand; sunken sand bank.

**ଚୋରମଦ**—ଦେ. ବି.—ସରକାରଙ୍କୁ ଟିକସ ନ ଦେଇ ଚୋରାଇ ଲୁଚାଇ
Chorā mada    ବିକ୍ରୀ କରାଯାଉଥିବା ମଦ—
Smuggled wine.

**ଚୋରମାଲ**—ଦେ. ବି.—୧ । ଚୋରି ହୋଇଥିବା ପଦାର୍ଥ—
Chorāmāla    1. Stolen property.
চেরাইমাল    ୨ । ଅବକାରୀ ବିଭାଗର ନିୟମ ଲଂଘନ କରିବା; ମାସୁଲ
**चोरिका माल**    ନ ଦେଇ ଦେଶ ମଧ୍ୟକୁ ଗୁପ୍ତ ଭାବରେ ଆଣା ଯିବା ପଣ୍ୟ—2. Smuggled particles; contraband.

**ଚୋରରତି**—ଦେ. ବି.—ପର ସ୍ତ୍ରୀ ହରଣ; ସ୍ତ୍ରୀର ସ୍ୱାମୀ ବା ଗୁରୁଜନମାନଙ୍କ
Chorārati    ଅଜ୍ଞାତରେ ସ୍ତ୍ରୀକୁ ରମଣ କରିବା—
Illicit cohabitation; secret adultery,

**ଚୋରି**—ଦେ. ବି. (ସଂ. ଚୁର ଧାତୁ)—୧ । ଅପହରଣ—
Chori    1. Theft.
চুরি    [ଦ୍ର—ଦ୍ରବ୍ୟ-ସ୍ୱାମୀର ବିନା ଅନୁମତିରେ ଅନ୍ୟାନ୍ୟ ଲାଭ
**चोरि**    ଆଶାରେ ତାଙ୍କ ଧନ ହରଣକୁ ଚୋରି ବୋଲି ଯାଏ ।]
୨ । ଚୌର୍ଯ୍ୟ ବୃତ୍ତି; ତସ୍କରତା—
2. Habit or act of stealing,
୩ । ଗୁପ୍ତକର୍ମ—3. Secret act.

ଅଷ୍ଟଦୁର୍ଗ ହର ହସ୍ତ ବୋଲେ ଚୋର ଧର ପଡ଼ି ଗଲା ପର ।
କବିସୂର୍ଯ୍ୟ, ସଙ୍ଗୀତ ।

୪ । ଚୋରାଧନ; ଚୋରା ମାଲ—4. Stolen article.

କବେକ ଏହି ଚୋର ପ୍ରମାଣ, ବନେ ପଶେ ଯେନ କାଷ୍ଠ ଧାରଣ ।
ଉପେ. ବୈଦେହୀଶବିଳାସ ।

ଦେ. ବିଣ. ( ଅନ୍ୟ ଶବ୍ଦ ପୂର୍ବେ ବ୍ୟବହୃତ, ଯଥା—ଚୋର କବାଟ; ଚୋର ମାଲ ଇତ୍ୟାଦି)—୧ । ଅପହୃତ—
1 Stolen.
୨ । ଗୁପ୍ତ—2. Secret; hidden.

**ଚୋର କବାଟ**—ଦେ. ବି.—୧ । ଗୁପ୍ତଦ୍ୱାର—
Chorikabāṭa    1. A secret door.
চুরীদোর    ୨ । ସବୁବେଳେ ବଡ଼ ଦରଜା ନ ଫିଟାଇ ଯିବା ଆସିବା
**चोरदरजा**    ସକାଶେ ବଡ଼ ଦରଜାର ମଝିରେ ଲଗିଥିବା ଛୋଟ
(ଚୋର ଦୁଆର—ଅନ୍ୟରୂପ )    କବାଟ—2. A small door fixed in an opening made in a larger door so that it may be used in ordiary manner without taking the trouble to open the bigger door.

**ଚୋରିକା**—ସଂ. ବି. ସ୍ତ୍ରୀ—(ଚୋର+ଇକ+ସ୍ତ୍ରୀ. ଆ)—ଚୌର୍ଯ୍ୟବୃତ୍ତି—
Chorikā    Act of stealing; theft,

**ଚୋରିଖୋପ**—ଦେ. ବି.—ଚୋର ବା ସାଧାରଣ ଲୋକ ତାକୁ ଫିଟାଇଲା
Chorikhopa    ବେଳେ ଦେଖି ନ ପାରିଲା ଭଳି ବାକ୍ସ ବା
চুনিকুঠরী    ଆଲମାରି ଆଦି ଭିତରେ ଥିବା ଖୋପ—Secret
**चोरखाना**    drawyers or space in box or shelf done to evade the eye of a rifler

**ଚୋରିଚପାଟି**—ଦେ. ବି. (ସହଚର)—ଚୌର କର୍ମ ଆଦି—
Chorichapāṭi    Theft and other vices.
চুরিচাপাতী    ତାହାଯୋଗେ ଗ୍ରାମରେ ଚୋରିଚପାଟି ହୁଏ ନାହିଁ ।
**चोरीचपाटी**    ଫକୀରମୋହନ. ଟେଲ୍ସଲ୍ସ ।
(ଚୋରିଚମାରି—ଅନ୍ୟରୂପ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇସ୍ତୃ | ଢ଼ିଅ | ଷ୍ଟ |
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ନ |

**ଚୋରିଚାରି କରିବା**—ଦେ. କ୍ରି ( ଚୋରି ସଙ୍ଗେ ନିରର୍ଥକ ସମ ଧ୍ୱନି ଚାରି
Chorichāri karibā ଶବ୍ଦ ଯୋଗ )—ନାନା ଉପାୟରେ ବା
চুরিচারিকরা ଅନେକଥର ଚୋରି କରିବା—
**चोराचोरीकरना** To steal in many ways.
( ଚୁରିଚୋରି କରିବା—ଅନ୍ୟରୂପ ) ( ଯଥା—ମୋର ସନ୍ଧ୍ୟାଉତ୍ତାକ
ଚାକର ଓ କର୍ମଚାରୀମାନେ ଚୋରିଚାରି କରି ନେଇ ଗଲେ । )

**ଚୋରିଛିଣ୍ଡାଳୀ**—ଦେ. ବି. ସ୍ତ୍ରୀ—ଚୌର୍ଯ୍ୟ ଓ ପରପୁରୁଷ ସଙ୍ଗମ—
Chorichhiṇḍāḻī Theft and adultery.
চুরিছিনালি [ ଦ୍ର—ସ୍ତ୍ରୀ ପକ୍ଷରେ ଏ ଦୁଇ କର୍ମ ଲଜ୍ଜାଜନକ । ]
**चोरीछिनाला**

**ଚୋରିତ**—ସଂ. ବିଣ ( ଚୁର ଧାତୁ+କର୍ମ ତ )—ଅପହୃତ—
Chorita Stolen.

**ଚୋରିଧନ**—ଦେ. ବି—ଚୋରମାଲ୍ ( ଦେଖ )
Choridhana Chorāmāl ( See )

**ଚୋରିନାରୀ**—ଦେ. ବି. ( ସହଚର )—ଚୌର୍ଯ୍ୟ ଓ ବେଶ୍ୟାବୃତ୍ତି ବା
Chorināri ପରସ୍ତ୍ରୀ ସଙ୍ଗ—Theft and adultery.
চুরীনারী
**चोरीयारी**

**ଚୋରିପତ୍ର**—ପ୍ରା.ଦେ. ବି ( ପାନବରଜ ଭାଷା )—ପାନବରଜ ଚାଟର
Choripatra କାଣ୍ଡଗରମାନଙ୍କ ମଝିରେ ଦିଆ ଯାଇଥିବା ପତ୍ରର
ତିନିସ୍ତର ମଧ୍ୟରୁ ମଝିସ୍ତରର ପତ୍ର—The middle
most group of leaves in a reed-wall.

**ଚୋରି ପାଳଧୁଆ**—ଦେ. ବି—ଏକପ୍ରକାର ବଣୁଆ ଗଛ—
Chori pāḻadhuā A kind of wild tree.
[ ଦ୍ର—ଏହାର ଉଚ୍ଚତା ଆଠ ଦଶ ହାତ । ଫୁଲ ପାଳଧୁଆଁ ଫୁଲ ପରି ଚେପ୍ଟା ନାଲି ଓ ଗୋଟା ଗୋଟା । ]

**ଚୋରିବସନ୍ତ**—ଦେ. ବି—ଚୋରାବସନ୍ତ ( ଦେଖ )
Choribasanta Chorābasanta ( See )

**ଚୋରିବା**—ଦେ. କ୍ରି ( ପଦ୍ୟ )—ଚୋରାଇବା ( ଦେଖ )
Choribā Chorāibā ( See )
চুরন ଚୋରି ନାହିଁ, ଥିଲେହେଁ ବଞ୍ଚାଅ—କବିସୂର୍ଯ୍ୟ. କଳୋଗିଚମ୍ପୂ. ଚ-ଗୀତ ।
**चोरना**

**ଚୋରିବାଟ**—ଦେ. ବି—ଚୋରାପଥ ( ଦେଖ )
Choribāṭa Chorāpatha ( See )

**ଚୋରିବାଲି**—ଦେ. ବି—ଚୋରାବାଲି ( ଦେଖ )
Choribāli Chorābāli ( See )

**ଚୋରିମାଲ୍**—ଦେ. ବି—ଚୋରାମାଲ୍ ( ଦେଖ )
Chorimāl Chorāmāl ( See )

**ଚୋରିଯିବା**—ଦେ. କ୍ରି ( ଚୋରାଇବା କ୍ରିୟାର କର୍ମବାଚ୍ୟରୂପ )—
Chorijibā ଅପହୃତ ହେବା—To be stolen.
চুরীযাওয়া
**चोरीहोना**
( ଚୋରହେବା—ଅନ୍ୟରୂପ )

**ଚୋରିରତି**—ଦେ. ବି—ଚୋରାରତି ( ଦେଖ )
Chorirati Chorārati ( See )

**ଚୋରୀ**—ସଂ. ବି. (ଚୁର ଧାତୁ; ଭାବ. ଅ+ଈ)—ଚୌର୍ଯ୍ୟ; ଅପହରଣ—
Chorī Theft; stealing ( M. W. )

**ଚୋରୁଣୀ**—ଗ୍ରା. ବି. ସ୍ତ୍ରୀ—ଚୋରର ସ୍ତ୍ରୀଲିଙ୍ଗ; ଚୋରଣୀ—
Choruṇī The feminine of chora.

**ଚୋଳ**—ସଂ. ବି—୧ । ଦାକ୍ଷିଣାତ୍ୟର ପ୍ରାଚୀନ ରାଜ୍ୟବିଶେଷ—
Choḻa A ancient kingdom in southern India.

କଣେ ଭଣେ ଚୋଳଦୁର୍ଗେ ଭରଜସେନାମ
ରହି ନ ପାରିବ ପରି ରଚ ରଣ ଯେନ—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

[ ଦ୍ର—ଅଧୁନିକ ମାନ୍ଦ୍ରାଜ ପ୍ରଦେଶର କୋୟମ୍ବତୁର, ତ୍ରିଚିନାପଲ୍ଲି, ତାଞ୍ଜୋର, ମହୀଶୂରର ଦକ୍ଷିଣାଂଶ ଅର୍ଦ୍ଧେକ ଅଞ୍ଚଳରେ ପ୍ରାଚୀନ ଚୋଳ ରାଜ୍ୟର ବିସ୍ତାର ଥିଲା । ରାମାୟଣ ଓ ମହାଭାରତରେ ଚୋଳ ରାଜ୍ୟର ଉଲ୍ଲେଖ ଅଛି । ଚେର, ଚୋଳ ଓ ପାଣ୍ଡ୍ୟ ଦାକ୍ଷିଣାତ୍ୟର ଅତି ପ୍ରାଚୀନ ପ୍ରତାପଶାଳୀ ରାଜ୍ୟ ଥିଲା । ]

୨ । ମଞ୍ଜିଷ୍ଠା ( ହି. ଶବ୍ଦସାଗର )—
2 Indian madder plant.
୩ । ସ୍ତ୍ରୀମାନଙ୍କ ପିନ୍ଧିବା କାଞ୍ଚଲା—
3. Bodice; females tight jacket.
୪ । ଛାଲ; ବଲ୍କଲ ( ହି. ଶବ୍ଦସାଗର )—
4. Bark of tree
୫ । କବଚ; ସାଞ୍ଜୁ ( ହି. ଶବ୍ଦସାଗର )—
5. Coat of mail.
୬ । ଚୋଳ ଦେଶବାସୀ ବ୍ୟକ୍ତି ( ହି. ଶବ୍ଦସାଗର )—
6. An inhabitant of Choḻa country.
ଗ୍ରା. ବି. ( ସଂ. ଚୁଲ୍ଲକ )—ଚଲ ( ଦେଖ )
Chaḻa ( See )

**ଚୋଳକ**—ସଂ. ବି. ( ଚୋଳ+ସ୍ୱାର୍ଥେ. କ )—
Choḻaka ୧ । ସାଞ୍ଜୁ; କବଚ—1. Armour.
୨ । ଯେଉଁ କବଚରେ ଛାତି ଆବୃତ ରହେ—
2. Breast-plate.
୩ । ବଲ୍କଲ; ଛାଲି—3. Bark.

**ଚୋଳକୀ**—ସଂ. ବି. ( ଚୋଳକ+ଅଛି ଅର୍ଥରେ ଇନ୍; ୧ମା. ୧ବ )—
Choḻakī ୧ । ବାଉଁଶ କରଡ଼ି ( ହି. ଶବ୍ଦସାଗର )—
1. Offshoots of bamboo.
୨ । ନାରଙ୍ଗ ଗଛ ( ହି. ଶବ୍ଦସାଗର )—
2. A kind of orange tree.
୩ । ହାତ ଗଣ୍ଠି ( ହି. ଶବ୍ଦସାଗର )—3. Wrist.
୪ । କରୀର ( ଦେଖ )
4. Karira ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

ଚୋଲଗଙ୍ଗ ଦେବ—ଦେ. ବି—ଚୋରଗଙ୍ଗ ଦେବ ( ଦେଖ )
Cholaganga deba Choraganga deba ( See )

ଚୋଲା—ଦେ. ବି. ( ସଂ. ଚୋଲ )— ସାଧୁ ଓ ଫକୀରମାନେ ପିନ୍ଧିବା ଏକ ପ୍ରକାର ଢିଲା ଓ ଲମ୍ବ କୁରୁତା—
Chola
ଚୋଲା
चोला
A kind of loose and long flowing coat worn by mendicants.

ଚୋଲିକା—ସଂ. ବି. ( ଚୋଲ+କ+ଆ )—ଚୋଲ ( ଦେଖ )
Cholikā Chola ( See )

ଚୋଲି—ସଂ. ବି. ( ଚୋଲ+ଈ )—
Choli ୧ । ସ୍ତ୍ରୀମାନଙ୍କର ଏକ ପ୍ରକାର କାଞ୍ଚୁଲି ( ଏହାର (ଚୋଳି—ଅନ୍ୟରୂପ) ପେଟ ପାଖେ ଥିବା କୋଣ ଦୁଇଁକୁ ଟାଣି ଗଣ୍ଠି ପକାଇବାକୁ ହୁଏ )—1. Bodice.
୨ । ଚୋଲା ( ଦେଖ )
2 Cholā ( See )
୩ । ପାନ ଆଦି ରଖିବାର ଡାଲି ( ହି. ଶବ୍ଦସାଗର )—
3. A wicker work tray for keeping betel-leaves etc.

ଚୋଲି ମାର୍ଗ—ସଂ. ବି— ୧ । ତାନ୍ତ୍ରିକମାନଙ୍କର ବାମ ମାର୍ଗବିଶେଷ—
Choli mārga 1 A kind of tantrik ritual.
୨ । ଘଟକଞ୍ଚୁକୀ ( ଦେଖ )
2 Ghatakanchuki ( See )

ଚୋଲ୍‌ଟ୍ରି—ପ୍ରାଦେ. ( ଗଞ୍ଜାମ ) ବି—ପାନ୍ଥଶାଳା; ଯେଉଁଠାରେ ପଥିକମାନେ ବିନା ଭଡ଼ାରେ କିଛି ଦିନ ରହି ପାରନ୍ତି—
Choltri Choultry; caravansari.

[ ଦ୍ର—ଗଞ୍ଜାମ ଓ ମାନ୍ଦ୍ରାଜରେ ଧନିକମାନେ ଅନେକ ନଗରରେ ବହୁ ଧନ ବ୍ୟୟ କରି ଚୋଲ୍‌ଟ୍ରିମାନେ ପ୍ରତିଷ୍ଠା କରି ଅଛନ୍ତି । ଏଠାରେ ପାନ୍ଥ ଓ ଆଗନ୍ତୁକ ଭଦ୍ର ବ୍ୟକ୍ତିମାନେ ବିନା ଭଡ଼ାରେ ଆଶ୍ରୟ ନିଅନ୍ତି । ]

ଚୋଷକ—ସଂ. ବିଣ. ପୁଂ. ( ଚୁଷ୍ ଧାତୁ+କର୍ତ୍ତୃ. ଅକ )—
Choshaka ଯେ ଶୋଷି ନିଏ—
(ଚୋଷିକା—ସ୍ତ୍ରୀ) Sucking; one who sucks.

ଚୋଷଣ—ସଂ. ବି. ( ଚୁଷ୍ ଧାତୁ+କର୍ତ୍ତୃ. ଅକ )—ଶୋଷିବା—
Choshana Sucking

ଚୋଷା—ଦେ. ବିଣ. ( ସଂ. ଚୁଷ ଧାତୁ )—
Choshā ୧ । ଯେ ନିଃଶେଷ କରି ଶୋଷି ନିଏ—
1. One who sucks out every thing
୨ । ଅତି ଲୋଭୀ; ଶୋଷା—2. Very covetuous.

ଚୋଷି—ଦେ. ବି—ଚୁଷୀ; ପିଲାମାନଙ୍କ ଶୋଷିବା କ୍ରୀଡ଼ନକ—
Choshi
ଚୁଷୀ
A play-thing intended for infants sucking it ( taking it for the mother's nipple.

ଚୋଷିବା—ଦେ. କ୍ରି—(ସଂ. ଚୁଷ୍ ଧାତୁ) ଶୋଷିବା; ଚୁଷିବା—
Choshibā To suck.
চুষান, চোষান
चुसना

ଚୋଷ୍ୟ—ସଂ. ବିଣ—ଯାହା ଶୋଷାଯାଇ ପାରେ—
Choshya Which can be sucked by the mouth.

ଚୋସ୍କ—ସଂ. ବି—ଉତ୍ତମ ଜାତି ଘୋଡ଼ା (ହି. ଶବ୍ଦସାଗର)—
Choska 1. A horse of excellent breed.
୨ । ସିନ୍ଧୁବାରଗଛ (ହି. ଶବ୍ଦସାଗର) (ଦେଖ)—
2. Sindhubāra ( See )

ଚୋସ୍ତ୍—ବୈଦେ. ବିଣ (ଫା. )—ଚୁସ୍ତ୍ ( ଦେଖ )
Chost Chust ( See )

ଚୋହଲା—ଦେ. ବିଣ ( ହି. ଚୁହଡ଼ା=ଚାଣ୍ଡାଲ; ଶ୍ୱପଚ; ଚୋଆଡ଼; ପାହାଡ଼ିଆ ଅସଭ୍ୟ ଜଙ୍ଗଲିଆ ଜାତିବିଶେଷ )—
Chohalā
চোয়াড়
चूहड़ा
(ଚୋହୋଲା—ଅନ୍ୟରୂପ)
୧ । ଉଦ୍ଧତ—1. Impertinent; arrogant; haughty.
୨ । ଅସଭ୍ୟ—2. Uncivilised; rude.
୩ । ଉନ୍ମତ୍ତ—3 Maddened; intoxicated crazy.

ଚୋହାଡ଼—ଦେ. ବି (ହି. ଚୁହଡ଼୍=ବ୍ୟାଧ)—ଚୂହାଡ଼; ଅସଭ୍ୟ ଜାତିବିଶେଷ; ଶ୍ୱପଚ; ବର୍ବର; ହାଡ଼ି; ଅତି ନୀଚ ଜାତିବିଶେଷ (ଯଥା—ହାଜାରିବାଗ ଆଦିର ଧାଙ୍ଗଡ଼ ଜାତି—
Chohardа
চোয়াড়
चोआड़
A low untouchable wild tribe.

[ ଦ୍ର— ହାଜାରିବାଗ ଆଦିର ଧାଙ୍ଗଡ଼ ଜାତି ଅମ ଦେଶର ହାଡ଼ି ଜାତି ପରି । ଏମାନେ ମହାଭାରତୋକ୍ତ ଏକଲବ୍ୟର ସ୍ୱଜାତୀୟ ଏବଂ ବଂଶପରମ୍ପରାକ୍ରମେ ଧାନୁକୀ । ଏହି ଜାତିର ପ୍ରଧାନ ଶାଖା ମଧ୍ୟରେ ଅବଧି ବୃଦ୍ଧାଙ୍ଗୁଳି କାଟିବାର ବିଧି ଅଛି । ଯେଉଁମାନେ ବୁଢ଼ା ଅଙ୍ଗୁଠି କାଟନ୍ତି ନାହିଁ ସେମାନଙ୍କ ମଧ୍ୟରେ ମଧ୍ୟ ଶର ନିକ୍ଷେପ କାଳରେ ତାହାର ହାତ ବୁଢ଼ା ଅଙ୍ଗୁଠି ଛଡ଼ା ଅନ୍ୟ ଚାରି ଅଙ୍ଗୁଠି ବ୍ୟବହାର କରନ୍ତି । ]

ଦେ. ବିଣ—୧ । ଅସଭ୍ୟ; ବର୍ବର—1. Wild; uncivilised.
୨ । ଉଦ୍ଧତ; ଅଭଦ୍ର—2. Rude; arrogant.
୩ । ମୂର୍ଖ—3. Illiterate.
୪ । ଜିଦିଖୋର—4. Obstinate.

ଚୋହାଣ—ଦେ. ବି—ରାଜପୁତନାର ରାଜପୁତ ଜାତିର ଚାରି ଶାଖା ମଧ୍ୟରୁ ଚତୁର୍ଥ ଶାଖା—One of the four classes of Rajputs of Rajputānā
Chohāna
চৌহান, চহান
चौहान
ପ୍ରତିହାର, ପ୍ରମାରକ, ସଠୋର, ଚୋହାନ, ନାମଧାରିକୃତ, ଗୁରୁ ଛନ୍ଦ ମହାବାରେ । ରଥୀନାଥ. ମହାଯାତ୍ରା ।

| ୧ | ଇ | ଉ | ର,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ତ | ଡ଼ଅ | ୟ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ଟ୍ |

[ ଦ୍ର—ଏହା ବଶିଷ୍ଠଙ୍କ ଯଜ୍ଞକୁଣ୍ଡର ଅଗ୍ନିରୁ ଉତ୍ପନ୍ନ ରାଜପୁତ ଜାତିର ଚାରିଗୋଷ୍ଠ ବୀରବଂଶ ମଧ୍ୟରୁ ଚତୁର୍ଥ ଶାଖା । ଏହି ବଂଶର ପ୍ରତିଷ୍ଠାତା ବୀରଶ୍ରେଷ୍ଠ ଚୋହାନ୍ ବା ଚାହୁମାନ୍‌ଙ୍କର ଚାରିହାତ ଥିବାର କଥିତ ଅଛି; କେହି କେହି କହନ୍ତି ମାଣିକ୍ୟ ଏ ବଂଶର ପ୍ରତିଷ୍ଠାତା; ଏହି କୁଳରେ ବୀରବର ଅନହଦଙ୍କଠାରୁ ମହାରାଜ ପୃଥ୍ୱୀରାଜଙ୍କ ପର୍ଯ୍ୟନ୍ତ ୩୯ ଜଣ ରାଜା ରାଜତ୍ୱ କରିଥିଲେ । ୧୦୦୦ ବର୍ଷ ପୂର୍ବେ ଏ ବଂଶର ରାଜାମାନେ ମାଳବ ଓ ରାଜପୁତାନାରେ ରାଜତ୍ୱ କରୁଥିଲେ । ବର୍ତ୍ତମାନ ଉତ୍କଳର କେତେକ ରାଜବଂଶ ଚୋହାନ ବଂଶୀୟ ଅଟନ୍ତି । ]

**ଚୈହାନ**—ଦେ. ବି—ଚୈହାଣ (ଚୈହାଣ)
Chohāna Chohāṇa (See)

**ଚୌ**—ଦେ. ଅ. ( ସଂ. ଚତୁଃ; ଶବ୍ଦର ଆଦ୍ୟରେ ବ୍ୟବହୃତ )—
Chau ଚଉ ( ଦେଖ )
Chau ( See )

[ ଦ୍ର—ଆଦ୍ୟରେ 'ଚଉ' ଥିବା ଯେତେ ଗୁଡ଼ିଏ ଦେଶଜ ଶବ୍ଦ 'ଚଉ' ତଳେ ଦିଆଯାଇଅଛି, ତାହାର 'ଚଉ' ସ୍ଥଳରେ 'ଚୌ' ମଧ୍ୟ କଥାରେ ଓ ଲେଖାରେ ବ୍ୟବହୃତ ହୁଏ, ଯଥା—ଚଉକାଠ, ଚଉକ, ଚଉକିଦାର, ଚଉରସ୍, ଚଉକସ୍, ଚଉଖୁଣ୍ଟିଆ, ଚଉଡ଼ା, ଚଉଡ଼ା, ଚଉତିବା, ଚଉଥ, ଚଉଦ ଇତ୍ୟାଦି ଯଥାକ୍ରମେ ଚୌକାଠ, ଚୌକ, ଚୌକିଦାର, ଚୌରସ୍, ଚୌକସ୍, ଚୌଖୁଣ୍ଟିଆ, ଚୌଠ, ଚୌଡ଼ା, ଚୌତିକା, ଚୌଥ, ଚୌଦ ଇତ୍ୟାଦି ରୂପେ ବ୍ୟବହୃତ ହୁଏ । ଅତଏବ 'ଚୌ' ଆଦ୍ୟରେ ଥିବା ଦେଶଜ ଶବ୍ଦମାନଙ୍କ ନିମନ୍ତେ 'ଚଉ' ଦେଖ । ]

**ଚୌଡ**—ସଂ. ବି. ( ଚୂଡ଼ା+ଭାବ. ଅ )—
Chaurda ଦ୍ୱିଜାତିଙ୍କର ଚୂଡ଼ାକରଣ ସଂସ୍କାର—
The ceremony of tonsure performed on a Hindu boy of the three higher castes.
ସଂ. ବଣ. ( + ସମ୍ବନ୍ଧାର୍ଥେ ଅ)—ଚୂଡ଼ାସମ୍ବନ୍ଧୀୟ—
Pertaining to Chūrdā.

**ଚୌଡକର୍ମ**—ସଂ. ବି—ଚୌଡ଼ (ଦେଖ)
Chaurdakarma Chaurda (See)

**ଚୌତିଶା**—ଦେ. ବି—ଚଉତିଶା (ଦେଖ)
Chautiśā Chautiśā (See)

ଚୌତିଶା ଚଉପଦୀ ଗୀତ
ବର୍ଣ୍ଣ ଶ୍ରୀ ଗୋବିନ୍ଦ ଚରିତ । ଭୂପତି. ପ୍ରେମପଞ୍ଚାମୃତ ।

**ଚୌପଦୀ**—ଦେ. ବି—ଚଉପଦୀ (ଦେଖ)
Chaupadi Chaupadi (See)
ଚୌତିଶା ଚୌପଦୀ କଲ ବଗରେ । ପ୍ରାଚୀ, ଯରତେଗୀତା ।

**ଚୌପଣି**—ଦେ. ବି—ଅଚ୍ୟୁତାନନ୍ଦଙ୍କ ଗାଦି ନେମାଲମଠର ମାଲିକଙ୍କୁ
Chaupani ଉତ୍କଳର ପ୍ରତ୍ୟେକ ଗଉଡ଼ ପରିବାରର ଦେଉଥିବା ବାର୍ଷିକ ମାମୁଲ ବା ଭେଟି—Presents given by each family of cowherds to the authority of the Nemālamaṭha, the seat of Achyutānanda.

**ଚୌପର**—ପ୍ରାଦେ. (ମେଦିନୀପୁର) ବି. (ସଂ. ଚତୁଃ+ପ୍ରହର)—
Chaupar ଚାରିପହର—Four quarters of the day on night.

**ଚୌପାଶ**—ଦେ. ବି—ଚାରିପାଖ; ଚତୁର୍ଦ୍ଦିଗ—
Chaupāśa Four directions; four sides.
ମନ୍ଦର ଗିରି ଚଳ ସେ ପୁର ଚୌପାଶେ । କୃଷ୍ଣସିଂହ. ମହାଭାରତ. ବନ ।

**ଚୌବର୍ଗ** (ଇତ୍ୟାଦି)—ଦେ. ବି—ଚତୁର୍ବର୍ଗ ଇତ୍ୟାଦି (ଦେଖ)
Chaubarga (etc) Chaubarga etc (See)
ଚୌବର୍ଗ ଇଚ୍ଛା ପ୍ରାପ୍ତେ ଦଶେ । ଭୂପତି. ପ୍ରେମପଞ୍ଚାମୃତ ।

**ଚୌମ୍ବକ**—ସଂ. ବିଣ. (ଚୁମ୍ବକ+ସମ୍ବନ୍ଧାର୍ଥେ. ଅ)—ଚୁମ୍ବକ ସମ୍ବନ୍ଧୀୟ—
Chaumbaka Magnetic.
( ଯଥା—ଚୌମ୍ବକାକର୍ଷଣ । )

**ଚୌର**—ସଂ. ବି. (ଚୋର+ସ୍ୱାର୍ଥେ. ଅ)—ଚୋର (ଦେଖ)
Chaura Chora (See)

**ଚୌରି**—ସଂ. ବି (ଚୋର+ଇ)—ଚୌର୍ଯ୍ୟ (ଦେଖ)
Chauri Chaurjya (See)
ଦେ. ବି—ଚଉରି (ଦେଖ)
Chauri (See)

**ଚୌର୍ଯ୍ୟ**—ସଂ. ବି ( ଚୋର+ଭାବ. ଯ )—୧ । ଚୋରି—
Chaurjya 1. Theft.
୨ । ତସ୍କରବୃତ୍ତି—2. The act or profession of stealing.
ଦେ. (ପଦ୍ୟ) ବି—ଚୋର—Thief.
କହ ଉପେ ଚୌର୍ଯ୍ୟ ଶଣ୍ଢ ଯାଏ ଲୁଚ ସେ । ଭଞ୍ଜ. ବୈଦେହୀଶବିଳାସ ।

**ଚୌର୍ଯ୍ୟାପରାଧ**—ସଂ. ବି—ଚୋରିରୂପ ରାଜକୀୟ ଦଣ୍ଡାର୍ହ ଦୋଷ—
Chaurjyāparādha The offence of theft.
[ ଦ୍ର—ଭାରତୀୟ ଦଣ୍ଡବିଧି ଆଇନର ୩୭ ଦଫାରେ ଚୌର୍ଯ୍ୟାପରାଧର ସଂଜ୍ଞା ଓ ୩୭୯ ଦଫା ଆଦିରେ ତାହାର ଦଣ୍ଡବିଧାନ ଅଛି । ]

**ଚୌଳ** ( ଇତ୍ୟାଦି)—ସଂ. ବି. ଓ ବଣ.—ଚୌଡ଼ ଇତ୍ୟାଦି (ଦେଖ)
Chaula (etc) Chaurda etc. (See)
ସଂ. ବି. (ଚୋଳ+ସ୍ୱାର୍ଥ. ଅ)—ଚୋଳ (ଦେଖ)
Chola (See)

**ଚୌଷଠୀ**—ଦେ ବି. ଓ ବଣ—ଚଉଷଠି (ଦେଖ)
Chaushathi Chaushathi (See)
ଏ ମହାପୁରୁଷ ସେ ଗୁଣ,
ଚୌଷଠୀ ପ୍ରକାରେ ସେ ଜାଣ । ପ୍ରାଚୀ. ପୂର୍ଣ୍ଣଚନ୍ଦ୍ରୋଦୟ ।

**ଚୌହାଣ**—ଦେ. ବି.—ଚୋହାଣ (ଦେଖ)
Chauhāna Chohāṇa (See)
(ଚୌହାନ—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ କିମ୍ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ କିମ୍ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଚ୍ୟବନ**—ସଂ. ବି. ( ଚ୍ୟୁ ଧାତୁ + କର୍ତ୍ତୃ. ଅନ )—୧ । ମୁନିବିଶେଷ; ପୁଲୋମାଙ୍କ ଗର୍ଭଜାତ ଭୃଗୁଋଷିଙ୍କ ପୁତ୍ର—
Chyabana 1. A sage; son of Bhrugu

[ ଦ୍ର—ଏହାଙ୍କ ମାତା ଗର୍ଭବତୀ ଥିବା ସମୟରେ ଏକ ରାକ୍ଷସ ତାଙ୍କୁ ଅପହରଣ କରି ନେବାରୁ ଏ ସ୍ୱୟଂ ଗର୍ଭରୁ ଖସି ପଡ଼ି ଦୁଷ୍ଟ ରାକ୍ଷସକୁ ନିଜ ତେଜରେ ଭସ୍ମୀଭୂତ କରିଥିଲେ । ଏ ସ୍ୱୟଂ ଗର୍ଭରୁ ଖସି ପଡ଼ିଥିବାରୁ ( ଚ୍ୟୁ ଧାତୁ ) ଏହାଙ୍କର ଏହି ନାମ ହୋଇଅଛି । ଏ ଏକ ସରୋବର ନିକଟରେ ବହୁକାଳ ତପସ୍ୟା କରୁ କରୁ ଏହାଙ୍କ ଦେହ ଉପରେ ଉଇମାନେ ହୁଙ୍କା ନିର୍ମାଣ କଲେ, କେବଳ ଆଖି ଦୁଇଟି ଉକ୍ତ ହୁଙ୍କା ମଧ୍ୟରୁ ଦେଖାଯାଉ ଥାଏ । ରାଜା ଶର୍ଯ୍ୟାତି ତାଙ୍କ ସେନାସମଭିବ୍ୟାହାରରେ ସେ ସ୍ଥାନକୁ ଆସିଥିବା ସମୟରେ ତାଙ୍କ କନ୍ୟା ସୁକନ୍ୟା ସେଠାରେ ବୁଲୁ ବୁଲୁ ହୁଙ୍କାରେ ଜୁଳୁ ଜୁଳୁ ଦିଶୁଥିବା ଦୁଇଟି ଆଖିକୁ କୌତୂହଳବଶତଃ କଣ୍ଟାରେ ଫୋଡ଼ିଦେବାରୁ ଚ୍ୟବନଙ୍କ ଆଖି ଫୁଟିଗଲା । ଏଥିରେ ଋଷି କ୍ରୁଦ୍ଧ ହୋଇ ରାଜାଙ୍କର ସମସ୍ତ ସୈନ୍ୟ ଓ ଅନୁଚରଙ୍କର ମଳମୂତ୍ର ରୋଧ କରି ଦେଲେ । ରାଜା ଆସି ତାଙ୍କୁ ପ୍ରାର୍ଥନା କରିବାରୁ ମୁନି ଶାନ୍ତ ହେଲେ ଓ ସୁକନ୍ୟାଙ୍କୁ ମୁନିଙ୍କୁ ବିବାହ ଦେଲେ । ସୁକନ୍ୟା ମଧ୍ୟ ବୃଦ୍ଧ ସ୍ୱାମୀଙ୍କ ପ୍ରତି ଅଚଳା ଭକ୍ତି କରି ତାଙ୍କ ସେବାରେ ଲାଗିଲେ । ଦିନେ ଅଶ୍ୱିନୀକୁମାରଦ୍ୱୟ ଆସି ସୁକନ୍ୟାଙ୍କୁ ନାନାବିଧ ପ୍ରଲୋଭନ ଦେଖାଇ ବୃଦ୍ଧ ସ୍ୱାମୀଙ୍କୁ ତ୍ୟାଗ କରି ସେ ଦୁହିଁଙ୍କୁ ବିବାହ କରିବାକୁ ସୁକନ୍ୟାଙ୍କୁ ଫୁସୁଲାଇଲେ କିନ୍ତୁ ସୁକନ୍ୟା କୌଣସି ପ୍ରକାରେ ସମ୍ମତ ନ ହେବାରୁ ଅଶ୍ୱିନୀକୁମାର ଦ୍ୱୟ ପ୍ରସନ୍ନ ହୋଇ ଏକ ଔଷଧ (ଚ୍ୟବନପ୍ରାଶ) ପ୍ରୟୋଗ ପୂର୍ବକ ବୃଦ୍ଧ ଚ୍ୟବନଙ୍କୁ ଯୁବକ କରି ଦେଲେ । ଏହି ଉପକାରର ବଦଳରେ ରାଜା ଶର୍ଯ୍ୟାତିଙ୍କ ଯଜ୍ଞରେ ପ୍ରଥମେ ଇନ୍ଦ୍ରଙ୍କୁ ନ ଦେଇ ଅଶ୍ୱିନୀକୁମାର ଦ୍ୱୟଙ୍କୁ ସୋମରସ ଦେଲେ । ଏଥିରେ ଇନ୍ଦ୍ର କୁପିତ ହୋଇ ଋଷିଙ୍କୁ ବଜ୍ର ମାରିଲେ । କିନ୍ତୁ ଋଷିଙ୍କର ସେଥିରେ କିଛି ନ ହେବାରୁ ଶେଷରେ ଇନ୍ଦ୍ର ଚ୍ୟବନଙ୍କ ଶରଣ ପଶିଲେ । ]

୨ । ( + ଭାବ. ଅନ ) ଝରିବା; କ୍ଷରଣ; ( ଜଳୀୟ ପଦାର୍ଥ ) ତଳକୁ ବହିଯିବା—2. Percolation; oozing; flowing down ( of liquids ).

୩ । ଛତ୍ର—3. Umbrella.

**ଚ୍ୟବନପ୍ରାଶ**—ସଂ. ବି. ( ଚ୍ୟବନ + ପ୍ରାଶ = ସେବ୍ୟ )—ଆୟୁର୍ବେଦୋକ୍ତ କାଶରୋଗର ମହୌଷଧ ଅବଲେହବିଶେଷ—
Chyabana prāśa A medicine paste ( for being taken ) prepared with certain ingredients as an antidote against cough, catarrh and other complaints of the lungs.

[ ଦ୍ର— କାଶରୋଗାକ୍ରାନ୍ତ ବୃଦ୍ଧ ଚ୍ୟବନ ମୁନି ଅଶ୍ୱିନୀକୁମାରଦତ୍ତ ଯେଉଁ ଏହି ପ୍ରାଶ ବା ଔଷଧ ସେବନ କରି କାଶରୋଗରୁ ମୁକ୍ତ ହୋଇ ଯୁବା ହୋଇଥିବାର କଥିତ ଅଛି । ଚକ୍ରଦତ୍ତ ଗ୍ରନ୍ଥରେ ଏହାର ପ୍ରକ୍ରିୟା ଲେଖା ଅଛି । ଏଥିରେ ଅଧିକ ଭାଗ ଅଁଳା କୋଳିର ରସ ଦିଆଯାଏ । ]

**ଚ୍ୟାଉ**—ଦେ. ବି—ଚ୍ୟାଉ ପଟ୍ଟନାୟକ ( ଦେଖ )
Chyāu Chyāu paṭṭanāyaka ( See )

**ଚ୍ୟାଉ ପଟ୍ଟନାୟକ**—ଦେ. ବି—ରାଜପ୍ରଦତ୍ତ କରଣମାନଙ୍କର ଉପାଧିବିଶେଷ—A little of honour given to Karaṇas of Orissa by Rājās.
Chyāu paṭṭanāyka

**ଚ୍ୟାହି**—ଦେ. ବି. ( ସଂ. ଇଚ୍ଛାର ବର୍ଣ୍ଣବିପର୍ଯ୍ୟୟ )—
Chyāhi ୧ । ଯତ୍ନ; ହେପାଜତ; ଚାହିଦା—1. Care.
चाह ୨ । ଆଦର; ଗେଲବସର—2. Fondling.
**चाह** ୩ । ସଚେତନପଣ; ଚାଙ୍ଗଲାପଣ—
3. Activity
( ଯଥା— ସାଆନ୍ତାଣୀଙ୍କର ପାଳିଲା ପୁଅଟିର ଭାରି ଚ୍ୟାହି । )
ଦେ. ବି— ସଚେତ; ସ୍ଫୂର୍ତ୍ତିବାନ୍—Activity.
( ଯଥା— ଆମ ଜଗବନ୍ଧୁ ପିଲାଟି ଭାରି ଚ୍ୟାହି ହୋଇଛି । )

**ଚ୍ୟୁ (ଧାତୁ)**—ସଂ—୧ । ପତିତ ହେବା—
Chyu (root) 1. To fall, to drop.
୨ । କ୍ଷରିତ ହେବା; ଝରିବା—
2. To percolate, to ooze.
୩ । ତରଳ ପଦାର୍ଥ ବୋହିଯିବା—
3 To flow down ( liquid ).
୪ । ଖସି ପଡ଼ିବା—4 To fall down.
୫ । ହସିବା—To laugh.

**ଚ୍ୟୁତ**—ସଂ ବିଣ. ( ଚ୍ୟୁ ଧାତୁ + କର୍ତ୍ତୃ. ତ )—
Chyuta ୧ । ସ୍ଥାନଭ୍ରଷ୍ଟ—1. Excommunicated, displaced.
୨ । ଉଚ୍ଚ ସ୍ଥାନରୁ ପତିତ—2. Fallen down.
ସେ ରାକ୍ଷସହସ୍ତୁଁ ମାତାଙ୍କ ମୋକ୍ଷ ପାଇଁ
ଗର୍ଭରୁ ଚ୍ୟୁତ ହେଲେ ଅତି କ୍ରୋଧ ବହି । କୃଷ୍ଣସିଂହ, ମହାଭାରତ. ଆଦି ।
୩ । କ୍ଷରିତ; ବିନ୍ଦୁ ବିନ୍ଦୁ ହୋଇ ପତିତ; ଝରିଥିବା—
3. Oozed; percolated.
୪ । ନଷ୍ଟ; ବିଚ୍ୟୁତ—4 Spoiled; shorn.
( ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ । ଯଥା—ରାଜ୍ୟଚ୍ୟୁତ, କର୍ମଚ୍ୟୁତ । )
୫ । ବହିଷ୍କୃତ; ବିତାଡ଼ିତ—
5. Degraded; driven out.
୬ । ଚଞ୍ଚଳ, ଚପଳ—6. Unsteady.
୭ । ସ୍ୱସ୍ଥାନଭ୍ରଷ୍ଟ—
7. Displaced from ones proper place.
୮ । ( ସମାସରେ ) ପରାଙ୍ମୁଖ—
8. Backward shrinking from.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇସ୍ | ଉଅ | ଯ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଅ | ଊ | ନ୍ତ |

୯ । ବକଯନ୍ତ୍ରଦ୍ୱାରା ବାଷ୍ପ ଜଳରେ ପରିଣତ ହୋଇ ନିର୍ଗତ ଥିବା—9. Destilled.

**ଚ୍ୟୁତସଂସ୍କାରତା**—ସଂ ବି—ବ୍ୟାକରଣବିରୁଦ୍ଧ ପଦଵିନ୍ୟାସଜନିତ ରଚନାର Chyutasamskāratā ପ୍ରଧାନ ଦୋଷ (ସାହିତ୍ୟଦର୍ପଣ)—A defect in composition consisting of using ungrammatical phrases and words.

**ଚ୍ୟୁତାକ୍ଷର**—ସଂ. ବି—କବିତା ରଚନାର ଏକପ୍ରକାର ପରିପାଟୀ—Chyutākshara A sort of poetic skill in verses. (ଦତ୍ତାକ୍ଷର—ବିପରୀତ) [ ଦ୍ର—ଏଥିର 'ପାଦ' ମଧ୍ୟରେ ଏକ ପଦରୁ ଗୋଟିଏ ଅକ୍ଷର କାଟିଦେଲେ ଅର୍ଥାଗମ ହୁଏ । ଯଥା—

କଟିଲା ଭଣି କଂନରେଶନନ୍ଦନା-ପାଠ-ପଠିମା ପରୁ ହସେ ।

ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଏଠାରେ କଂନରେଶନନ୍ଦନା—ପାଠପଠିମା=କୁବେର କନ୍ୟାର ଶିକ୍ଷୟିତ୍ରୀ । ଏଥିରୁ କଂ ଅକ୍ଷରଟି କାଟିଦେଲେ ନରେଶନନ୍ଦନା-ପାଠ-ପଠିମା=ରାଜକନ୍ୟାର ଶିକ୍ଷୟିତ୍ରୀ ।

ଉପେ. ପ୍ରେମସୁଧାନିଧି ୧୬—୫ ରେ ମଧ୍ୟ ଏହାର ଅନ୍ୟ ଉଦାହରଣ ଅଛି । ]

**ଚ୍ୟୁତାଧିକାର**—ସଂ ବିଣ. ପୁଂ (ବହୁବ୍ରୀହି, ଚ୍ୟୁତ + ଅଧିକାର)--ଅଧିକାର-Chyutādhikāra ଭ୍ରଷ୍ଟ; ଅଧିକାରରୁ ବଞ୍ଚିତ—Shorn of (ଚ୍ୟୁତାଧିକାରା—ସ୍ତ୍ରୀ) one's power or authority; expelled from one's position.

**ଚ୍ୟୁତି**—ସଂ. ବି ( ଚ୍ୟୁ ଧାତୁ + ଭାବ. ତି )—୧ । ଭ୍ରଂଶ; ନାଶ; ହାନି—Chyuti 1. Loss of destruction; ruin. ( ଯଥା—ଧୈର୍ଯ୍ୟଚ୍ୟୁତି । )

୨ । ଅଧୋଗତି; ପତନ—2. Down fall.

୩ । ଅବନତି—3. Degradation.

୪ । କ୍ଷରଣ; ସ୍ରବଣ—4. Percolation; oozing.

୫ । ସ୍ଖଳନ—5 Slipping.

୬ । ଗତି; ଗମନ—6. Movement

୭ । ମୁକ୍ତି—7. Release.

୮ । ଝଡ଼ି ପଡ଼ିବା—8. Dropping down; falling down.

୯ । ଅଭାବ, ତ୍ରୁଟି ( ହି. ଶବ୍ଦସାଗର )—9 Defect; blemish.

୧୦ । କର୍ତ୍ତବ୍ୟବିମୁଖତା (ହି. ଶବ୍ଦସାଗର); କର୍ତ୍ତବ୍ୟ ସାଧନରେ ଅବହେଳା—10. Neglect of duty; negligence.

୧୧ । ଗୁହ୍ୟଦ୍ୱାର (ହି. ଶବ୍ଦସାଗର)—11. Anus.

୧୨ । ଭଗ (ହି. ଶବ୍ଦସାଗର)—12. Female organ.

୧୩ । ଗତି (ହି ଶବ୍ଦସାଗର)--13. Motion; movement.

୧୪ । ସ୍ୱସ୍ଥାନରୁ ହଟିଯିବା (ହି. ଶବ୍ଦସାଗର)—14. Displacement; removal from one's proper position.

**ଚ୍ୟୂତ**—ସଂ ବି--ଆମ୍ବ (ଗଛ ଓ ଫଳ) (ହି. ଶବ୍ଦସାଗର)—Chyūta Mango (tree and fruit).

**ଚ୍ୟୋତ**—ସଂ. ବି (ଚ୍ୟୁତ୍+ଭାବ. ଅ)—ଚ୍ୟୁତି ( ଦେଖ ) Chyota Chyuti ( See )

**ଚ୍ୟୋତନ**—ସଂ ବି (ଚ୍ୟୁତ୍ ଧାତୁ + ଭାବ. ଅନ)—ଚ୍ୟୁତି ( ଦେଖ ) Chyotana Chyuti ( See )

**ଚ୍ରେଷ୍ଟା**—ଗ୍ରା. ବି (ସଂ. ଚେଷ୍ଟା)—ଚେଷ୍ଟା ( ଦେଖ ) Chreshṭā Cheshṭā ( See)



**ଛ**—ସଂ.—ବ୍ୟଞ୍ଜନବର୍ଣ୍ଣର ସପ୍ତମ ବର୍ଣ୍ଣ ଓ ଚ ବର୍ଗର ଦ୍ୱିତୀୟ ବର୍ଣ୍ଣ (ଏହାର Chha ଉଚ୍ଚାରଣସ୍ଥାନ ତାଲୁ)—The seventh consonant of Sanskrit and its daughter languages including Orḍiā, corresponding to the pronunciation of 'chh' ( as pirate of ch).

[ ଦ୍ର—ଏହାର କରଣୀ ଆକାର ଚ୍ଛ; ଛ=ଚ୍ଛ । ]

ସଂ. ବି ( ଛୋ ଧାତୁ=ଛେଦନ କରିବା + ଭାବ. ଅ )—

୧ । ଛେଦ; ଛେଦନ—1. Cutting.

୨ । ଖଣ୍ଡ—2. A piece.

୩ । ଭାଗ—3. A part.

୪ । (ଛଦ ଧାତୁ=ଆଚ୍ଛାଦନ କରିବା + କର୍ତ୍ତୃ. ଅ ) ଗୃହ—4. House.

୫ । ମାହାତ୍ମ୍ୟ—5. Glory

୬ । ଆଚ୍ଛାଦନ (ହି. ଶବ୍ଦସାଗର)—6. Covering.

ସଂ. ବିଣ (ଛୋ ଧାତୁ=ଛେଦନ କରିବା + କର୍ତ୍ତୃ. ଅ)—

୧ । ତରଳ—1. Liquid

୨ । ନିର୍ମଳ—2. Clear.

୩ । ଛେଦକ—3. Cutting.

୪ । କମ୍ପିତ—4. Trembling.

**ଛ, ଛଅ** ଦେ. ବି (ସଂ. ଷଟ୍; ପ୍ରା. ଛ, ପାଞ୍ଚରୁ ଏକ ଅଧିକ ସଂଖ୍ୟା)—**ଛ୍‌, ଛହ** ୧ । ଛଅ ସଂଖ୍ୟା—1 The number six.

ଦେ. ବିଣ—୧ । ଛଅସଂଖ୍ୟକ—1. Numbering six.

୨ । ଷଷ୍ଠସ୍ଥାନୀୟ; ଛଅର ପୂରଣ—2. Sixth.

'ଛ, ନ ଭେଲ; କେତେ 'ନ ଯିବ ଘର—ଭାଳିଵଚନ ।

ସାଧାରଣ ଲୋକେ ଅପର ବୃଷ୍ଟାରେ ସଚତ ୧ ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳେ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗଢ' ନ ମିଳିଲେ 'ଗାଢ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, ଅଙ୍କା ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ଛଅ**—ଦେ. ବି. ଓ ବିଣ—ଛ (ଦେଖ)
Chha-a — Chha (See).
[ ଦ୍ର—ସଂଖ୍ୟାବାଚକ 'ଛ' ଶବ୍ଦଯୁକ୍ତ ଶବ୍ଦମାନ 'ଛଅ' ଯୁକ୍ତ ହୋଇ ମଧ୍ୟ ବ୍ୟବହୃତ ହୁଏ । ]

**ଛଅଁଚା**—ଦେ. ବି (ସଂ. ଶୌଚ)—ମଳଯୁକ୍ତ ଅଙ୍ଗର ଶୌଚକ୍ରିୟା—
Chhañchā — Act of washing or cleansing the anus.
ছোঁচা; ছুঁচা
**आबदस्त, शौचा** — ବିଣ—ଶୌଚ ହୋଇଥିବା—Cleansed.

**ଛଅଁଚାଇବା**—ଦେ. କ୍ରି ( ଛଅଁଚିବା କ୍ରିୟାର ଣିଜନ୍ତ ରୂପ )—ଶିଶୁ ବା ଅସମର୍ଥ ଲୋକର ମଳଯୁକ୍ତ ଗୁହ୍ୟଦେଶକୁ ଶୌଚକରିବା—The act of washing the anus of a child or sick man after passing stools.
Chha-añchāibā
ছোঁচান
**शौचाना**
(ଛଅଚେଇବା—ଅନ୍ୟରୂପ)

**ଛଅଁଚାଛଅଁଚି**—ଦେ. ବି (ସଂ. ଶୌଚ)—ମଳତ୍ୟାଗ ପରେ ଗୁହ୍ୟଦ୍ୱାର, ହସ୍ତ, ପଦ, ମୁଖ ଆଦିର ଶୌଚକର୍ମ—The cleansing operations (of the anus, face, hands, feet etc) after passing stools
Chha-añchāchhaañchi
ছোঁচান খেঁচান
**शौचाशौचि**

**ଛଅଁଚିବା**—ଦେ. କ୍ରି ( ସଂ. ଶୁଚ୍ ଧାତୁ )—ମଳତ୍ୟାଗ ପରେ ନିଜର ମଳଦ୍ୱାର ଧୋଇବା; ପାଣିଛିଞ୍ଚିବା—To wash ones anus after passing stools.
Chha-añchibā
ছোঁচা
**आबदस्तलेना, शौँचना**

**ଛଅଁଚି ହେବା**—ଦେ. କ୍ରି (ସଂ. ଶୌଚ)—ମଳତ୍ୟାଗ ପରେ ଗୁହ୍ୟଦ୍ୱାରକୁ ସ୍ୱୟଂ ପରିଷ୍କାର କରିବା—To wash or cleanse one's own anus after passing stools.
Chha-añchi hebā
ছোচা
**शौँचना**

**ଛଅକ**—ଦେ. ବିଣ—ଯେଉଁ ପଣିକିଆ ବା କଡ଼ାଗଣ୍ଡା ବା ପାହ୍ନପଟିକିଆରେ ୬ ସଂଖ୍ୟାର ହିସାବମାନ ଥାଏ—(a multiplication table) Relating to or giving the various calculations of the number 6.
Chhaaka
(ଯଥା—ଛଅକ ପଣିକିଆ, ଛଅକ ଖଦା ।)
[ ଦ୍ର—ଏହିପରି ଏକକ ପଣିକିଆ; ଦୁଇକ, ତିନିକ ଆଦି ପଣିକିଆ ବା ଖଦା ପୂର୍ବରେ ଯୁକ୍ତ ହେଲେ ସେହି ସେହି ସଂଖ୍ୟା-ସମ୍ବନ୍ଧୀୟ ଖଦାମାନଙ୍କୁ ବୁଝାଏ । ସାଧାରଣତଃ ପ୍ରତି ସଂଖ୍ୟା ପାଇଁ ୧୦ଟି ଖଦା ଥାଏ; ଛଅକ ପଣିକିଆରେ ୬ × ୧ ର ଗଣନାଠାରୁ ୬ × ୧୦ ର ଗଣନା ପର୍ଯ୍ୟନ୍ତ ଦଶଗୋଟି ଖଦା ଥାଏ । ସାଧାରଣତଃ ପିଲାମାନେ ପଚିଶିକି ପଣିକିଆ ପର୍ଯ୍ୟନ୍ତ ଘୋଷି ରଖିଥାଆନ୍ତି । ]

**ଛଅକାନ ହେବା**—ଦେ. କ୍ରି (ସଂ. ଷଟ୍‌କର୍ଣ୍ଣ)—( କୌଣସି ଗୁପ୍ତ ବିଷୟ) ଦୁଇଜଣ ବ୍ୟକ୍ତିରୁ ଅଧିକ ତିନି ବ୍ୟକ୍ତିର କାନରେ ପଡ଼ିବା—(a secret) To be divulged to three i. e. more than two persons.
Chha-akāna hebā
ছয়কানহওয়া
তিনিকানহওয়া

**ଛଅକେ**—ଦେ. ଅ—ଛଅ ଗୁଣିତକ ୧; ୬ × ୧—Six into one; 6 × 1.
Chha-ake
ছয়কে — ଛଅକେ ଛଅପଣ—ପଟିକିଆ ।

**ଛଅକୋଡ଼ି**—ଦେ. ବି.—୧୨୦ ସଂଖ୍ୟା; ୬ × ୨୦—The number 120; 6×20.
Chhaakordi
ছয়কুড়ী — ଦେ ବିଣ –୧୨୦ ସଂଖ୍ୟକ—Numbering 120.
[ ଦ୍ର—ଅଶିକ୍ଷିତମାନେ ଗଣତି କଲାବେଳେ କୋଡ଼ି, ପୁଞ୍ଜା, ଜୋଡ଼ା, ଡଜନ ଆଦି ପର୍ଯ୍ୟନ୍ତ ବସ୍ତୁ ଗଣି ତହିଁରୁ ବେଶୀ ସଂଖ୍ୟାକୁ ଉକ୍ତ ଶବ୍ଦମାନଙ୍କ ଗୁଣିତକଦ୍ୱାରା ପ୍ରକାଶ କରନ୍ତି । ବାଣିଜ୍ୟରେ ମଧ୍ୟ ଏହିପରି ହୁଏ । ]

**ଛଅଚିତ**—ଦେ. ବି.—କଉଡ଼ିଖେଳରେ ଛଅଟିଯାକ କଉଡ଼ି ଚିତ୍ ହୋଇ ପଡ଼ିବା ଅବସ୍ଥା—The state of six kaurdis falling with the ventral side upwards in a game of kaurdi.
Chhaa-chiti
**छक्का**
(ଛଅଚିତ – ଅନ୍ୟରୂପ)

**ଛଅଟା**—ଦେ. ବିଣ·—(ଅନାଦରାର୍ଥ)—ଛଅ ସଂଖ୍ୟକ—Numbering six.
Chhaatā
ছয়টা — ଦେ. ବି.—୧ । ସଂଖ୍ୟାରେ ଛଅ—1. Six in number.
**छठो**
(ଛଅଟି—ଆଦରାର୍ଥକ) ୨ । ୬ ଘଣ୍ଟା ସମୟ—2. Six o'clock.

**ଛଅଣ୍ଡା**—ଗ୍ରା. ବି ଓ ବିଣ.—(ଛଅ ଗଣ୍ଡାର ସଂକ୍ଷିପ୍ତ ଉଚ୍ଚାରଣ)—ଛଅ ଗଣ୍ଡା; ଚବିଶ ଗୋଟା—Six quartets; twentyfour.
Chhaandā
ছয়গণ্ডা
ତିନି ବାଇକଡ଼ା ଛଅଣ୍ଡା ବକଡ଼ା କେତେ । ଶିଶୁ ଗାଣିତିକ ପ୍ରଶ୍ନ ।
[ ଦ୍ର—ଗଣ୍ଡା ସ୍ଥାନରେ ଲୋକେ ଅଣ୍ଡା ଶବ୍ଦର ବ୍ୟବହାର କରନ୍ତି ଯଥା—ଚାରଣ୍ଡା, ସାତଣ୍ଡା, ଆଠଣ୍ଡା, ନଅଣ୍ଡା ଇତ୍ୟାଦି; ଲୋକେ ଯଥାକ୍ରମେ ଦିଅଣ୍ଡା, ତିନଣ୍ଡା, ଚାରଣ୍ଡା, ପାଞ୍ଚଣ୍ଡା, ଛଅଣ୍ଡା, ସାତଣ୍ଡା, ଆଠଣ୍ଡା, ନଅଣ୍ଡା, ଦଶଣ୍ଡା କହନ୍ତି । କିନ୍ତୁ ଦୁଇଅଣ୍ଡା, ତିନିଅଣ୍ଡା, ଚାରିଅଣ୍ଡା, ପାଞ୍ଚଅଣ୍ଡା, ଛଅଅଣ୍ଡା, ସାତଅଣ୍ଡା, ଆଠଅଣ୍ଡା, ନଅଅଣ୍ଡା, ଦଶଅଣ୍ଡା କହନ୍ତି, ନାହିଁ । ]

**ଛଅପୋଇ**—ଦେ. ବି. (ସଂ. ଷଟ୍‌ପଦୀ; ପ୍ରା. ଛପ୍ପଇ)—ଛଅ ଚରଣଯୁକ୍ତ ପଦ୍ୟ-ବିଶେଷ—A poetical composition with 6 lines in each stanza
Chhaapoi
**छप्पय**
(ଛ ପୋଇ—ଅନ୍ୟରୂପ)

**ଛଅବାଆର**—ଗ୍ରା ବି.—ଛଅଚିତ (ଦେଖ)
Chhaa bāara — Chhaachita (See)

**ଛଅର**—ଗ୍ରା. (ଇତର) ବି. (ସଂ. କ୍ଷୌର; ନୀଚ ଭାଷା)—କେଶମୁଣ୍ଡନ—Shaving of the hair.
Chhaara
ক্ষৌরীকামান
**हजामत**
[ ଦ୍ର—ଓଡ଼ିଶାରେ ପୂର୍ବେ ସମସ୍ତେ ଓ ଆଜିକାଲି ନବ୍ୟ ସଭ୍ୟତାର ପ୍ରଭାବରେ ଅଜ୍ଞାନ୍ତ ହୋଇ ନ ଥିବା ବ୍ୟକ୍ତିମାନେ ଖୁରର ମଝିରେ ବେଣୀ ହେଉ କମି ହେଉ ଅଗ୍ରଏ ଶିଖା ବା ଚୁଟି ଛାଡ଼ି ମୁଣ୍ଡର ଅନ୍ୟ ସମସ୍ତ ଅଂଶ, ମୁଛ ଓ ଦାଢ଼ି ଖିଅର କରୁଥିଲେ । ]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | . ଇ | ଉ | ଋ, ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ | ଉଅ | ହ |
| ୨ | ଈ. | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ | ଯ | ସ | ଙ୍ | ଇଅ | ଞ | ନ୍ |

**ଛଅରବାଅର**—ଗ୍ରା. (ଇତର) (ଛଅର ଶବ୍ଦ ସଙ୍ଗେ ଧ୍ୱନ୍ୟନୁକାରୀ ନିରର୍ଥକ
Chha-arabā-āra ୨ୟ ସହଚର )—ମୃତ ବ୍ୟକ୍ତିର ଶୁଦ୍ଧିକ୍ରିୟା
ଖାଟ ଉପଲକ୍ଷରେ ତାଙ୍କର ସ୍ୱଜନ ଓ କୁଟୁମ୍ବୀମାନଙ୍କ ନଖ କାଟିବା ଓ କ୍ଷୌର ହେବା—Shaving of the head and pairing of the nails undergone by the relations and kinsmen of a deceased person on the occasion of purification after the funerals.

**ଛଅଷଠି**—ଦେ. ବି.—(ସଂ ଷଟ୍‌ଷଷ୍ଟି; ପ୍ରା. ଛଅଠି )—୬୬; ଷାଠିଏରୁ
Chha-ashaṭhi ଛଅ ଅଧିକ ସଂଖ୍ୟା—The number 66.
ଛୟଷଠୀ, ଛଷଠୀ ଦେ. ବିଣ.—୬୬ ସଂଖ୍ୟକ—
ଛଯାଠ Numbering 66.
ଛଷଠି
ଛଷଟ୍ଟି }—ଅନ୍ୟରୂପ

**ଛଅସ୍ତରାଶହେ**—ଦେ. ବି.—୧୭୬; ଏକ ଶହ ଛଅସ୍ତରୀ—176; one
Chha-astarāsahe hundred and seventy six.
(ଛଅସ୍ତୁରାଶହେ—ଅନ୍ୟରୂପ) ( ଦ୍ର—ଏହାପର ଛଅସ୍ତରୀଦୁଇଶ= ଦୁଇ ଶହ ଛଅସ୍ତରି । )

**ଛଅସ୍ତରି**—ଦେ. ବି ଓ ବିଣ (ସଂ ଷଟ୍‌ସପ୍ତତି; ପ୍ରା. ଛସତ୍ତରି; ପାଲି—
Chha-astari ଛହତ୍ତରୀ; ଛସତ୍ତରୀ) —୭୬; ସତୁରି ଅପେକ୍ଷା ୬
ଛୟତ୍ତର ଅଧିକ—76; Seventysix.
ଛିହତ୍ତର
ଛଅସ୍ତୁରି
ଛଅସ୍ତୋରି
ଛସ୍ତରି
ଛସ୍ତୁରି } ଅନ୍ୟରୂପ

**ଛଆଁଚି**—ପ୍ରାଦେ. (ସମ୍ବଲପୁର) ବିଣ—ଛୁଆଁଚ (ଦେଖ)
Chha-ānchi Chhuāchi (See)

**ଛଅଙ୍ଗୁଠିଆ**—ଦେ. ବିଣ. ପୁଂ ଓ ସ୍ତ୍ରୀ. ( ସଂ. ଷଟ୍+ଅଙ୍ଗୁଳ )—
Chha-ānguṭhiā ଯାହାର ହାତ କିମ୍ବା ଗୋଡ଼ରେ ବା ହାତଗୋଡ଼
ଛଅଁଗୁଳେ ଉଭୟରେ ପାଞ୍ଚଟି ଲେଖାଏଁ ପରିବର୍ତ୍ତେ ଛଅଟି
ଛାଁଗୁର; ଛାଁଗା; ଛଁଗୁ ଲେଖାଏଁ ଅଙ୍ଗୁଠି ଥାଏ—
(ଛଅଙ୍ଗୁଳିଆ. ପୁଂ—ଅନ୍ୟରୂପ) Hexadactylous.
(ଛଅଙ୍ଗୁଳେଇ—ସ୍ତ୍ରୀଲିଙ୍ଗ)

**ଛଅଳ**—ଦେ. ବିଣ. (ସଂ. ଷଷ୍ଠ)—୧ । ଷଷ୍ଠ—1. Sixth.
Chha-āḷa ପାଞ୍ଚୋଟି ପଡ ଥିବାଠାରେ ମୋର ହନ
ଛଅଇ ନ ସରନ୍ତି କେତେ ମୋ କର୍ମି ସ୍ଥାନମାନ
ଛଠା ଛଅଳ ପଡ ଯେ ଜାତକ ହୋଇ କର
ବ ହାରିଛି ଅନ୍ତ କରନ ବ ଗୁହାରି ।
କୃଷ୍ଣସିଂହ. ମହାଭାରତ. ବନପର୍ବ ।

୨ । (ଆପଣା ରାଜ୍ୟରୁ ପାଞ୍ଚଟି ରାଜ୍ୟ ବ୍ୟବଧାନ ଥିବା)—
ବହୁଦୂରସ୍ଥ (ରାଜ୍ୟ)—
2. Very distant kingdom).

**ଛଇ**—ଦେ. ବି. (ସଂ. ଛବି)—୧ । ଢଙ୍ଗଢାଙ୍ଗ; ଗୁଲଚଲଣ; ବ୍ୟବହାର;
Chhai ଆଚରଣ—1. Conduct; gait; manners.
ଛଟକି; ଛଟା ୨ । ଛଟକ—2. Sportiveness.
ଛବି; ଛବ୍‌ବା ୩ । ବିଳାସ, ଭଙ୍ଗୀ—
3. Gesture; deportment.
୪ । ରସିକତା—4. Gallantry.
୫ । ଥଟ୍ଟା—5. Jest; frolic
୬ । ବାଲଙ୍ଗି; ଗୁମର; ଗର୍ବ—
6. Bragging; arrogance; foppery.
୭ । ଚତୁରତା—7. Cleverness; cunning.
୮ । ଲୋକ ଦେଖିବାପାଇଁ କରାଯିବା ଆଡ଼ମ୍ବର—
8 Ado; ostentation; gaudiness.
୯ । ବୃଥାଗର୍ବ—9. Vainglory.
୧୦ । ଚେହେରା—10 Appearance.
୧୧ । ମନୋହର ରୀତି ବା ଢଙ୍ଗ—
11. Graceful or charming manner.
୧୨ । (ଭୁଲ. ଅ. ସହାଃ=ସୁନ୍ଦର; ସଂ. ଶୋଭା)—ଶୋଭା; ରୂପଶ୍ରୀ; ସୌନ୍ଦର୍ଯ୍ୟ—12 Grace; beauty.
ଛଇ ୧୩ । ( ସଂ. ଛଦ )—ନୌକା ବା ଗାଡ଼ିର ଛାତ—
ଛପର 13 Thatched covering or roof of a boat or cart.
୧୪ । ( ସଂ. ସଜ୍ଜିତ )—ସୁସଜ୍ଜିତ ଶ୍ରେଣୀବଦ୍ଧ ଘନସନ୍ନିବିଷ୍ଟ ରାଶି—14. Will arranged heap; well-set stack.
(ଯଥା—ଇଟା ବା ଛଣତକ ଛଇମାରି ରଖିଦିଅ ।)
୧୫ । ବାକ୍ୟରେ ରସିକତା; ରସବାକ୍ୟ—
15 Wit and humour; witty speech.
ଦେ. ବିଣ. (ସଂ. ବିସ୍ତୃତ)—ଚତୁର୍ଦ୍ଦିଗରେ ପରିବ୍ୟାପ୍ତ; ବିସ୍ତୃତ—
Spread on all sides; diffused.

**ଛଇଆ**—ଦେ. ବିଣ—ବିଳାସଭଙ୍ଗୀଯୁକ୍ତ; ଛଟକଯୁକ୍ତ—
Chhaiā Foppish; coquettish; frolicsome;
ଛୈଲା trickish; sportive.

**ଛଇ କରିବା**—ଦେ. କ୍ରି—୧ । ଛଟକ ବା ଭଙ୍ଗୀ ପ୍ରକାଶ କରିବା—
Chhai karibā 1. To show frolicsomeness; to show
ଛଟାଦେଖାନ off one's fine things.
ଛଇ କାଢ଼ିବା
ଛଇ ଦେଖା (ଖେ)ଇବା
ଛଇ ଦେଖା (ଖୋ)ଇ ଦେ (ହ)ବା
ଛଇ ବାହାର କରିବା } ଅନ୍ୟରୂପ
୨ । ରସିକତା କରିବା—
2. To flirt; to practice gallantry

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଢ଼ ୧ ଚକ୍ଷୁଚ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷୁଚ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷୁଚ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ବଦଳରେ ୨ ବ ୧ ଚକ୍ଷୁଚ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୃଥ' ନ ମିଳିଲେ 'କୃଷ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍କୋ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲଙ୍କର' ନ ପାଇଲେ 'ଅଳଙ୍କାର' ଦେଖିବେ ।

**ଛଇଛଡ଼୍**—ଦେ. ବିଣ. ପୁଂ. ଓ ସ୍ତ୍ରୀ—ଛିଛିଡ଼୍ ( ଦେଖ )
Chhaichhard — Chhaichhard ( See )
ଛଇଛାଡ଼ିଆ, ଛଇଛଲ, ଛଇଛାଳିଆ — ଅନ୍ୟରୂପ

**ଛଇତି ମଇତି**—ପ୍ରାଦେ. ( ପୁରୀ ) ବିଣ ( ସଂ. ହର୍ଷ+ଉନ୍ମତ୍ତ )—
Chhaiti maiti ୧ । ହର୍ଷୋନ୍ମତ୍ତ, ଆନନ୍ଦିତ—1. Delighted.
( ଯଥା—ତାଙ୍କ ଘରକୁ ଆଜ କ୍ୱାଇଁ ଆସିଛନ୍ତି ବୋଲି ଆଜ ସେ ଭାରି ଛଇତି ମଇତି ହେଉଛନ୍ତି । )
୨ । ( ସଂ. ହସ୍ତ+ମୁକ୍ତ ) ମୁକ୍ତହସ୍ତ—
2. Open-handed; liberal.

**ଛଇ ଦେବା**—ଦେ. କ୍ରି—୧ । ( ସଂ. ସଜ୍ଜିତ ) ଗଦା ଗଦା କରି ସୁସଜ୍ଜିତ କରିବା; ଗାଦି ମାରିବା—1 To arrange in rows or heaps ( e. g straw; bricks ).
Chhai deba
गाँदिमारा
( ଛଇମାରିବା—ଅନ୍ୟରୂପ ) ୨ । (ସଂ. ଛଦ୍) ଚାରିଆଡ଼େ ଘୋଡ଼ାଇ ପକାଇବା; ଛାଇବା—2. To cover the whole surface.

**ଛଇବା**—ଦେ. କ୍ରି ( ସଂ. ଛଦ୍ ଧାତୁ )—ଚାରିଆଡ଼େ ବିସ୍ତୃତ ହେବା ବା ବିସ୍ତାର କରିବା—To be diffused over the whole surface; to spread in all directions ( e. g water ).
Chhaiba
छाओना
फैलाना
ଛାଇ ଯିବା, ଛାଇ ଦେବା, ଛାଇ ହୋଇଯିବା — ଅନ୍ୟରୂପ
( ଯଥା—ବର୍ଷାପାଣି ଆମ ଗାଁ ଚାରିପାଖ ଛଇ ହୋଇଛି । )

**ଛଇଲ୍**—ଦେ. ବିଣ ( ସଂ ସୁପ୍ଲାବିତ, ଉଚ୍ଛଳିତ; ଭୁ. ଫା. ଏହି ଅର୍ଥରେ ସୟ୍ଲାବ୍ )—୧ । ଚାରିଆଡ଼େ ଜଳ ପୂରିଥିବା ବା ମାଡ଼ିଥିବା; ଜଳପ୍ଲାବିତ—1. Flooded.
Chhail
छयलाप
फैलाहुआ
( ଯଥା—ଦେଶଯାକ ପାଣିରେ ଛଇଲ୍ ହୋଇଗଲା । )
ଛଇଲାଟ୍, ଛଏଲ୍, ଛଏଲାଟ୍ — ଅନ୍ୟରୂପ
୨ । ଚତୁର୍ଦ୍ଦିଗରେ ପରିବ୍ୟାପ୍ତ—2. Extending towards all directions; diffused; spread on or all sides.
( ଯଥା—ଦେଶଯାକ ନଈବଢ଼ି ପାଣି ଛଇଲ୍ ହୋଇଛି । )
ଦେ. ବି—୧ । ନଈବଢ଼ି—Flood; inundation
୨ । ବର୍ଷା ବା ନଈବଢ଼ି ପାଣି ସବୁଆଡ଼େ ମାଡ଼ିଯିବା ଅବସ୍ଥା—
2. The state of water spreading on all sides.
୩ । ଚାରିଆଡ଼େ ବ୍ୟାପିଯିବା—3. Diffusion.

**ଛଇଲ୍ ଯିବା**—ଦେ. କ୍ରି—( ଜଳ ) ଚାରିଆଡ଼େ ବ୍ୟାପ୍ତ ହେବା—
Chhil jiba — To be diffused; to spread over on all sides.
छयलापहओना
फैलाहोना
ଛଇଲ୍ ହେବା, ଛଇଲ୍ ହୋଇଯିବା, ଛଇଲଯିବା, ଛଇଲେଇବା — ଅନ୍ୟରୂପ

**ଛଇଲ**—ଦେ. ବିଣ ( ସଂ. ଛବ, ପ୍ରା. ଛଇଲ, ଛଇଲ୍ଲ )—
Chhaila ୧ । ଯେ ଛଟକ ଦେଖାଏ; ବିଳାସଭଙ୍ଗୀଯୁକ୍ତ; ରଙ୍ଗିଆ—1. Frolicsome.
ଛଇଲା, ଛଇଲୀ — ସ୍ତ୍ରୀ
२ । ରସିକ—2. Gallant.
चटकदार ୩ । ଚତୁର—3. Clever.
छबीला, छइला, छइल ୪ । ମନୋହର, ସୁନ୍ଦର—
( ଛଇଲ—ଅନ୍ୟରୂପ ) 4. Charming; beautiful; graceful; having a charming appearance.
୫ । ଯେ ଛଇ ବା ଆଡ଼ମ୍ବର ଦେଖାଏ—
5. Ostentatious.
୬ । ବାକ୍‌ଚତୁର; ବାକ୍ୟରେ ରସିକତାକାରୀ—
6 Witty; humorous.
୭ । ବେଶଭୂଷାରେ ପରିପାଟୀରୂପେ ସଜ୍ଜିତ—
7. Foppish; fine.
ଦେ. ବି—୧ ନାଗର ଲୋକ; ରସିକ—
1. A beau; a dandy; a gallant.
ଏ ବଚନେ ଛଇଲ ହୋଇଲ ଛନ୍ଦିଛନ୍ତି । ଭଞ୍ଜ, ଲାବଣ୍ୟବତୀ ।
୨ । ଉଚ୍ଚଟକିଆ ପୋଷାକ ଓ ବେଶପ୍ରିୟ ବ୍ୟକ୍ତି—
2. A person fond of showy dress and toilette

**ଛଇଲା**—ଦେ. ବିଣ. ପୁଂ. ଓ ସ୍ତ୍ରୀ (ସଂ. ଛବ)—୧ । ବିଳାସଭଙ୍ଗୀଯୁକ୍ତ;
Chhaila ଯେ ଛଟକ ଦେଖାଏ—1. Foppish; frolicsome.
ଛଇଲା, ଛଇଲୀ — ସ୍ତ୍ରୀ
୨ । ରସିକ; ନାଗର—2. Gallant; coquettish.
ଛଇଲା । ମୋରେ ଖଇଲ ଖଉ—କବିସୂର୍ଯ୍ୟ ରତ୍ନାକରଚମ୍ପୂ ଛ ଗୀତ ।
୩ । (ସଂ. ଛଳ) ଚତୁର—3 Clever.
୪ । ସୁନ୍ଦର—4 Charming; handsome; attractive.
୫ । ସୁନ୍ଦର ସାଜସଜ୍ଜାପ୍ରିୟ—
5. Fond of finery; foppish.
ବି. ସ୍ତ୍ରୀ—ରସିକା; ନାଗରୀ—A flirt; a coquette.
ଠଉରିବ ନାହିଁ ଖୋଲି ଠଉର ଦବଗ ପାଇଣ ନଦନ ପଳାଏ ଉଠେ ଛଇଲୀ ।
କବିସୂର୍ଯ୍ୟ ଚମ୍ପୂ ଗୀତ ।

**ଛଇଲିଆ**—ଦେ. ବିଣ. ପୁଂ. ଓ ସ୍ତ୍ରୀ—ଛଇଲା (ଦେଖ)
Chhailia — Chhaila (See)
ଛଇଲୀ, ଛଇଲେଇ — ସ୍ତ୍ରୀ
ସେହି ବିଜନ୍ତେ ହୋଇଥିଲ ତ ଭେଣ୍ଡିଆ ଏଣୁ ତା ଭୂଜଙ୍ଗ କରୁଛି ଛଇଲିଆ ।
କୃଷ୍ଣସିଂହ ମହାଭାରତ. ଶାନ୍ତି ।

**ଛଇଲି ଛାଉଲି**—ଦେ. ବି (ସଂ. ଛଳ)—୧ । ଛଳତାପୂର୍ଣ୍ଣ କୌଶଳ—
Chhaili chhauli 1. Stratagem.
୨ । ଛଇ ( ଦେଖ)
Chhai (See)
ଏ ବଡ଼ ଛଇଲ ଛଇଲରେ କାଳ ନେବନ୍ତ—କବିସୂର୍ଯ୍ୟ ରତ୍ନାକର ଚମ୍ପୂ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଲ୍ଲ | ଇଯ୍ | ଉଅ | ୱ |
| ୨ | ଈ | ଊ | ରୁ | ଲୁ | ଯ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଅ | ୱ | ନ୍ |

**ଛଉ**—ଦେ. ବି (ସଂ ଶ୍ୱିତ୍ର)—୧ । ଦେହର ରୋଗବିଶେଷ; ଦେହର
Chhau ସ୍ଥାନେ ସ୍ଥାନେ ଯେଉଁ ଧଳା ଧଳା (ଓ ସମୟେ ସମୟେ କଳା
ଛୂଲି ଓ ନାଲି) ଦାଗ ଚମ ଉପରେ ମାଡ଼ଯାଏ; ଶ୍ୱିତ୍ରରୋଗ; ଧବଳ
**श्वेत** ବା ଶ୍ୱେତକୁଷ୍ଠ ରୋଗ—1. A disease in which the skin becomes discoloured in patches of white or black; leucosis; albinism;

[ ଦ୍ର—ଛଉ ତିନପ୍ରକାର ଯଥା—୧ । କୁଷ୍ଠ ରୋଗର ପୂର୍ବ-ଲକ୍ଷଣ—ଦେହରେ କଳା, ନାଲି ଓ ଧଳା ମକାମକା ଦାଗ । ୨ । ଧବଳ କୁଷ୍ଠ—ଦେହତମାମ୍ ନାଲିମିଶା ଧଳା ଦାଗ; ୩ । ବୟସ୍ଥ ଯୁବକଯୁବତୀଙ୍କର ଚର୍ମରେ ସ୍ଥାନେସ୍ଥାନେ ମାଡ଼ିଯିବା ମକାମକା ଦାଗ । ]

୨ । କଳା ବା ନାଲିବର୍ଣ୍ଣବିଶିଷ୍ଟ ପଶୁ ଆଦିଙ୍କ ଶରୀରରେ ସ୍ଥାନେ-ସ୍ଥାନେ ଧଳା ଲୋମର ମକା—2 Patches of white hair on the body of animals of red or black colour.

୩ । ଛଉନାଚ; ଗଡ଼ଜାତର ଜଙ୍ଗଲି ଜାତିମାନଙ୍କ ମଧ୍ୟରେ ପ୍ରଚଳିତ ଏକପ୍ରକାର ନାଚ—(ଏଥିରେ ସ୍ତ୍ରୀ ଓ ପୁରୁଷ ମାନେ ଦଳବଦ୍ଧ ହୋଇ ବାଦ୍ୟର ତାଳ ସହ ନାଚନ୍ତି--
3. A kind of dance prevalent among the wild tribes of the Orissa Agency tracts.

୪ । (ସଂ. ଶଲ୍କ) ଛେଲି—4. Bark.

୫ । (ସଂ. ଛଦ୍ମ) ଗର୍ବ—
5. Arrogance; pride; vainglory.

୬ । ଚତୁରତା—6. Skill; dexterity.

୭ । ଶିକାର ଝାମ୍ପିବାପାଇଁ ଜଗି ରହିବା—
7. Lying in wait; crouching; being prepared to pounce upon a prey.

छौं ୮ । ଶିକାର ବା ଖାଦ୍ୟ ବସ୍ତୁକୁ ଝାମ୍ପିବା; ଛପଟ୍ଟଆ—
**पञ्जा** 8. Pouncing on a prey.

**ଛଉଁରି**—ଦେ. ବି. (ସଂ. ଛଦ୍ ଧାତୁ)—ଛଉରି (ଦେଖ)
Chhaunri Chhauri (See)

ଅନନ୍ତ ମନ୍ତ୍ରମାନଙ୍କର ଦିବ୍ୟ ଅଉରଣୀ,
ତାଙ୍କ ନାମ ଅଟେ ବଜ୍ର ଛଉଁରି କୌସ୍ତୁଭ ।
ପ୍ର ଚୀ. ବ୍ରହ୍ମନରୂପଣଗୀତା ।

**ଛଉଆ**—ଦେ. ବିଣ. ପୁଂ. ଓ ସ୍ତ୍ରୀ—(ସଂ. ଛବି)—୧ । ଛାପଚ୍ଛାପିକିଆ—
Chhauā 1. Having patches of different colours
ছাপছাপ, on the body (said of cows, cats,
রঙ্গবেরঙ্গ dogs, horses etc); mottled.
**रङ्गबिरङ्ग** ୨ । ଛଉ ରୋଗାକ୍ରାନ୍ତ—2. Albinous; having light patches on the body.

**ଛଉକା**—ଦେ ବିଣ. ପୁଂ.—୧ । ଶିକାରୀ; ଚତୁର; ଖାଦ୍ୟଦ୍ରବ୍ୟକୁ ଛପି
Chhaukā କରି ଖାଇବା ବିଷୟରେ ପାରଙ୍ଗମ (ଯଥା—ବିରାଡ଼ି,
শিকারী କୁକୁର)—1. Clever; cunning; dexterous
(ଛଉକୀ—ସ୍ତ୍ରୀ) (said of cats, dogs etc which are clever in catching things kept away from their reach).

୨ । ଯେ ସୁଯୋଗ ଦେଖି ଶିକାରକୁ ଝାମ୍ପିବାପାଇଁ ଜଗି ରହେ—2. Crouching; lying in wait to pounce on a prey.

୩ । ଛଉଆ (ଦେଖ)—3. Chhauā (See)

**ଛଉଚ**—ଗ୍ରା. ବି. ( ସଂ. ଶୌଚ )—
Chhaucha ୧ । ଦେହରୁ ମଳ ଆଦିର ମାର୍ଜନା—
শৌচ 1. Cleaning impurities off the body.

୨ । ମୃତାହରେ ମୃତ ବ୍ୟକ୍ତିର କୁଟୁମ୍ବାଦିଙ୍କର କ୍ଷୌର, ସ୍ନାନ ଆଦି ଦ୍ୱାରା ଶୁଦ୍ଧ ହେବା—2. Purification of the kinsmen and relatives after the funerals.

୩ । ଝାଡ଼ା ଫେରିବା ପରେ ଛୁଅଁଇବା—
3 Washing of the private parts after passing stools.

ଗ୍ରା. ବିଣ—ମାର୍ଜିତ; ଶୁଦ୍ଧ—Cleansed.

**ଛଉଚ କରିବା**—ଗ୍ରା. କ୍ରି. ( ସଂ. ଶୌଚ )—ଛୁଅଁଚିବା; ମଳ ଆଦି
Chhaucha kariba ତ୍ୟାଗ କରିବା ପରେ ଶରୀରରୁ ମଳାଦି
শৌচকরা ପରିଷ୍କାର କରିବା—To cleanse the
(ଛଉଚ ହେବା—ଅକର୍ମକ) private parts of impurities after answering calls of nature.

**ଛଉନାଚ**—ଦେ. ବି—ଛଉ ୩ ( ଦେଖ )
Chhau-nāta Chhau 3 ( See)

**ଛଉ ମାରିବା**—ଦେ. କ୍ରି—ଶିକାରକୁ ଝାମ୍ପିବା—
Chhau māribā To pounce on a prey.
ছোঁমারা
**पञ्जा मारना**

**ଛଉର**—ଗ୍ରା. ବି. ( ସଂ. କ୍ଷୌର )—ଛଅର ( ଦେଖ )
Chhaura Chha-ara ( See )

**ଛଉରି**—ଦେ. ବି. ( ସଂ. ଛଦ୍ ଧାତୁ )—
Chhauri ୧ । ସାଞ୍ଜୁ; କବଚ; ବର୍ମ—
1 Armour; coat of mail

୨ । ଆଚ୍ଛାଦନ; ଆସ୍ତରଣ - 2. A coverlet.

୩ । ବିଲେପନ—3. Anointing; smearing.

**ଛଉରିବା**—ଦେ. କ୍ରି. ୧ । ( ସଂ. ଛଦ୍ ଧାତୁ )—
Chhauribā ଘୋଡ଼ାଇବା; ଆଚ୍ଛାଦନ କରିବା—
1. To cover.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ ।

୨ । ( ସଂ. କ୍ଷର ଧାତୁ ) ଲେପିବା—2. To anoint;
चुपरना to smear; ( e.g. a paste over the body ).
୩ । ( ସଂ. କ୍ଷୌର ) କ୍ଷୁରଥର କରିବା; କ୍ଷୌର କରିବା—
3. To shave the hair.
ଛକ ନ ଥାଏ ଯେଉଁ ମୁହିଁକୁ
ଭଣ୍ଡାରୁ ନ ଥାଏ ଛଉରିବାକୁ—ଚଗ ।

**ଛଏର୍‌ା**—ପ୍ରାଦେ. ( ସମ୍ବଲପୁର ) ବି—ଛାୟା; ଛାଇ—
Chha-erā Shadow

**ଛଏଲ୍**—ଦେ. ବି—ଛଇଲ୍ ( ଦେଖ )
Chha-el Chhail ( See )
(ଛଏଲାନ୍—ଅନ୍ୟରୂପ)

**ଛଁଚ୍**—ପ୍ରାଦେ. ( ମେଦିନୀପୁର ) ବି—ଘର ଲିପିବା—
Chhañch Smearing the floor by cow-dung and water.

**ଛଁଚା**—ପ୍ରାଦେ. ( ମେଦିନୀପୁର ) ବି—ଓଳିଆ ବାନ୍ଧିବାପାଇଁ ତଳରେ
Chhañchā ପକାଯିବା ପ୍ରଥମ ପ୍ରସ୍ତ ଦଉଡ଼ି—
The first layer of ropes packet a laid on the ground for making of paddy.

**ଛକ**—ଦେ. ବି. ( ସଂ. ଚତୁଷ୍ପଥ; ଚତୁଷ୍କ )—
Chhaka ୧ । ଚତୁଷ୍ପଥ; ଯେଉଁ ସ୍ଥାନରେ ଚାରିଆଡ଼ୁ ଚାରି ଗୋଟି
চৌমাথা ରାସ୍ତା ମିଳିଥାଏ—1. A meeting of two
चौराहा cross-ways; cross-road; a place where four roads meet or two roads cross.
ଛକେ ଛକେ ଜଗି ଅଛନ୍ତି ଚରେ । କବିସୂର୍ଯ୍ୟ. ରତ୍ନାକରଚମ୍ପୂ ଛ ଗୀତ ।
୨ । ଦୁଇ ରେଖା ପରସ୍ପରକୁ କାଟିଥିବା ଅବସ୍ଥା—
ছক 2, A cross.
୩ । ଯୁକ୍ତ ବା ଗୁଣନ ଚିହ୍ନ—3. A cross mark; the arithmetical sign of addition or multiplication.
୪ । ମଝିରେ ପରସ୍ପର କଟିଗଲାପରି ରେଖାଦ୍ୱୟ କଟା ହୋଇଥିବା ପଶାପାଲିର ଘର—4. Chequered figure in a dice or chess board.
छेंका ୫ । ତାଆଁଦ୍ୱାରା ଦାଗ—5. Marks made on the body with hot iron; brand.
୬ । ଚାବୁକ ବା ବେତ ପ୍ରହାରରେ ଦେହରେ ବସିଥିବା ଦାଗ; ନୋଳା—6. Marks left on the body after being caned or whipped.
୭ । ସୁବିଧାଜନକ ସ୍ଥାନ—
7. A convenient place.

**ଛକ କାଟିବା**—ଦେ. କ୍ରି—ଯୁକ୍ତ ବା ଗୁଣନଚିହ୍ନ ଅଙ୍କନ କରିବା—
Chhaka kātibā To draw cross-marks.
ଛକ ଦେବା } ଅନ୍ୟରୂପ
ଛକ ପକେଇବା }

**ଛକଛାକ**—ଦେ. ବି—୧ । ସୁଯୋଗ; ସୁବିଧା; ଖଞ୍ଜ—
Chhaka-chhāka Suitable occasion; opportunity.
घातँ, घोत घात (ଯଥା—ସେ ଛକ ଛାକ ଭିତ୍ତି କାମ କରେ ।)
मौका ୨ । ଆବଶ୍ୟକବେଳେ ସତର୍କତା—Watchfulness on suitable occasions.

**ଛକଡ଼**—ଦେ. ବି. (ସଂ. ଶକଟ ପ୍ରା. ସଗଡ଼, ଛଗଡ଼ )—
Chhakarda ୧ । ଭଡ଼ାଗାଡ଼ି—
ছাকড়া 1. Hackery; hackney
छकड़ा carriage.
(ଛକଡ଼ା—ଅନ୍ୟରୂପ) ୨ । ଶଗଡ଼; ଶକଟ; ଗୋରୁଗାଡ଼ି—
2. A cart drown by oxen.

**ଛକଡ଼ା ନକଡ଼ା**—ଦେ° ବି (ଛଅ କଡ଼ା ଓ ନଅ କଡ଼ା କଉଡ଼ି ଅତି ଅଳ୍ପ
Chhakarda nakarda ଥିବାରୁ ହେୟ)—୧ । ତୁଚ୍ଛତାଚ୍ଛଲ୍ୟ—
ছকড়ানকড়া 1. Derision; contempt.
୨ । ଅପମାନ—2. Neglect; disregard.
( ଛକଡ଼ା ନକଡ଼ା—ଅନ୍ୟରୂପ ) ୩ । ମନ୍ଦ ବ୍ୟବହାର—
3. Ill treatment

**ଛକଡ଼ି**—ଦେ ବି ( ଭୁଲ. ବ. ଛନ୍‌କଡ଼ୀ )—୧ । ଉତ୍କଳରେ
Chhakardi ଅପତ୍ରିଆଣି ଲୋକଙ୍କୁ ଦିଆଯିବା ନାମ)—
ছকড়ি ( ଅପତ୍ରିଆଣି ତଳେ ନୋଟ୍ ଦେଖ )—
1. A name given to boys whose elder brothers or sisters have died (meaning, not worth a penny).
(ଛକଡ଼ି—ଅନ୍ୟରୂପ) ( ଦ୍ର—ଏହାର ଅର୍ଥ :—ଏ
(ଛକଡ଼ିଆ—ଅନାଦରାର୍ଥକରୂପ) ବାଳକକୁ ଛଅ କଡ଼ା ମାତ୍ର ମୂଲ୍ୟରେ କିଣାଯାଇଅଛି । ଯେଉଁ ପିଲାର ଆଗପିଲା ମରି ଯାଇଥାନ୍ତି, ମାଆମାନେ ଯମଙ୍କୁ ଭଣ୍ଡାଇବାପାଇଁ ତାହାକୁ ଛକ, ଛଅ, ନଅ କଡ଼ା କଉଡ଼ିରେ ଖେଟେଲୋକଙ୍କ ହାତରେ ବିକିଦେବାର ବାହାନା କରନ୍ତି । ]
ছক্কড়ী ୨ । ପଶାକାଠିରେ ପଡ଼ିବା '୬' ସଂଖ୍ୟକ ଦାନ—
छक्कड़ी, छक्का A throw of the dice resulting in the coming up of six points

**ଛକପକ**—ଦେ° ବିଣ ( ସଂ. ଶଙ୍କିତ )—୧ । ଶଙ୍କିତ—
Chhaka-paka 1. Apprehensive.
ছটপট ୨ । ଭବିଷ୍ୟତରେ ଅଶୁଭ ଘଟିବା ସମ୍ବନ୍ଧରେ ଆଶଙ୍କିତ—
छटपट 2. Having a presage or presentiment.
୩ । ଅସ୍ଥିର ( ମନ )—3. Restless (mind)
୪ । ଲାଳାୟିତ—4. Hankering.
( ଯଥା—ସେ ପିଲା ହାତରେ କୋଉଟିଏ ଦେଖି ଏ ପିଲାଟି ଛକପକ ହେଉଛି । )

**ଛକ ପାଗଡ଼ା**—ଦେ. ବି—ଛକଟାଖେଳର ଦାନବିଶେଷ; ଛଅ ଏକ—
Chhaka pāgardā One of the throws of dice in a game of dice.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ମ | ଉଅ | ଔ |
| ୨ | ଈ | ଊ | ରୁ | ଲୁ | ଯ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ବ | ନ୍ |

**ଛକଲିଆ**—ଦେ. ବି—ଏକପ୍ରକାର ଜାମା (ଯହିଁରେ ଛଅଟି କଲି ଥାଏ)—
Chhakalia A kind of coat having six trangular
**छकलिया** pieces sewn together.
ଦେ. ବିଣ—୧ । ଯହିଁରେ ଛଅଗୋଟି କଲି ଥାଏ—
1. Having six trangular bits of cloth.
୨ । ନକଲିଆ—2. Witty.

**ଛକା**—ଦେ. ବି—୧ । ଜଗିବା; ଲୁଚିବା—
Chhakā 1 Watching; hiding.
**छका** ୨ । ଅବସରକ୍ରମେ ଶିକାରକୁ ଆକ୍ରମଣ କରିବା ପାଇଁ ଛକି
**छक्का** ରହିବା—2 Lying watchfully; lying in
( ଛକ୍କା—ଅନ୍ୟରୂପ ) ambush; ambush.
୩ । ( ସଂ. ଷଟ୍କ; ପ୍ରା. ଛକ୍କୋ ) ଗଞ୍ଜପା ବା ତାସ ଖେଳରେ ଛଅ ଟିପଯୁକ୍ତ ସାର—3. The playing card having six tips on it.
୪ । ତାସ ଖେଳରେ ଅପର ପକ୍ଷକୁ ପିଠିଏ ମାତ୍ର ତାସ ନେବାର ସୁଯୋଗ ନ ଦେଇ ଏକ ପକ୍ଷ ସବୁ ପିଠିର ତାସଯାକ ଜିତିବା—4. The state of one party wining all the cards in a game of cards.
୫ । କଉଡ଼ିଖେଳରେ ଛଅଟିଯାକ କଉଡ଼ି ମୁହିଁ ମାଡ଼ି ପଡ଼ିବା ଦାନ—5. Six Kaurdis falling on the ground with the vental side down and dorsal side up in a Kaurdi game.
୬ । ସ୍ତ୍ରୀଲୋକମାନେ ଭୂଇଁରେ ଗାର କାଟି ଖେଳିବା କଉଡ଼ି ଖେଳ—6. An indoor game of females with shells.
୭ । ଯୁକ୍ତଚିହ୍ନ ଅଙ୍କିତ କରିବା କର୍ମ—
7. Making or drawing of cross marks.
୮ । ଯେଉଁ ଗଞ୍ଜପା ବା ତାସରେ ୬ଟି ବିନ୍ଦୁ ଥାଏ—
8. A card containing 6 points.
୯ । ଛଅ ଅର୍ଥାତ୍ ଅନେକ ପ୍ରକାର ପରିବାରେ ପ୍ରସ୍ତୁତ ତିଅଣ; ଘାଣ୍ଟତିଅଣ—9. Hodgepodge.
୧୦ । ଛକ୍କା ତିଅଣ; ପାଣି ଦିଆ ହେବା ପୂର୍ବରୁ ପରିବା ଘିଅରେ ଛକ୍କା ହୋଇ ତିଆରି କରାଯିବା ତିଅଣ—
10. A curry prepared from fried vegetables

**ଛକାଇବା**—ଦେ. କ୍ରି—୧ । ଛକିବା ( ଦେଖ )
Chhakāibā 1. Chhakibā ( See )
( ଛକେଇବା—ଅନ୍ୟରୂପ ) ୨ । ଛକିବାର ଣିଜନ୍ତ ରୂପ—
ব্যাকুল হওয়া 2. The causative form of Chhakibā.
୩ । ( ସଂ. ଶଙ୍କା ) ( ମନ ) ଶଙ୍କାଯୁକ୍ତ ହୋଇ ଅସ୍ଥିର ହେବା, ଛକପକ ହେବା—3. To be apprehensive; to become restless through apprehensive.

**ଛକାଖେଳ**—ଦେ. ବି. ( ସଂ. ଷଟ୍କ; ପ୍ରା. ଛକ୍କୋ )—ଏକପ୍ରକାର କଉଡ଼ି
Chhakākhela ଖେଳ—A kind of Kaurdi game.
दशपॅचिश [ ଦ୍ର—ଏଥିରେ ଛଅ କଟି କଉଡ଼ିରେ ଗୃହିଜଣ ବା
**छक्का** ଅଭାବପକ୍ଷେ ଦୁଇଜଣ ଖେଳାଳ ଖେଳନ୍ତି । ପଶାପାଲି ପରି ଘର କଟାଯାଏ, ଏଥିରେ କଉଡ଼ି ପଡ଼ିବା ଅନୁସାରେ ଦାନ ଗୁଳିବାକୁ ହୁଏ । ]

**ଛକାଛକ**—ଦେ. ବିଣ. ( ସଂ. ସତର୍କ )—୧ । ଆକ୍ରମଣ ବା ଅନିଷ୍ଟ
Chhakāchhaka କରିବା ପାଇଁ ପରସ୍ପର ପରସ୍ପରକୁ ଜଗାଜଗି—
তাক্‌বুঝেথাকা 1. Watching each other for doing any
**छक्का** harm or for attaching.
ଛକାଛକ } ଅନ୍ୟରୂପ ୨ । ସତର୍କ; ସାବଧାନ—
ଛକାପକା } 2. On the alert; watchful.
୩ । ( ସଂ. ଶଙ୍କାଯୁକ୍ତ ) କୌଣସି ଦୁର୍ଘଟଣା ନିମନ୍ତେ ପ୍ରସ୍ତୁତ—
3. Prepared or ready for any emergency.
ଦେ.ବି—ସତର୍କତା—Alertness; watchfulness; being in readiness for any emergency.

**ଛକାଛକି**—ଦେ. ବିଣ. ବି—ଛକାଛକ ( ଦେଖ )
Chhakāchhaki Chhakāchhaka ( See )
ବି—ଅନେକଗୁଡ଼ିଏ ଛକ ଆଙ୍କିବା କର୍ମ—
Act of drawing many crosses.

**ଛକାଠି**—ଦେ. ବି. ( ଦେହର ପ୍ରତି ପାଖରେ ଏଥିର ସଂଖ୍ୟା ଛଅ
Chhakāṭhi ଥିବାରୁ )—ପଞ୍ଜରା ହାଡ଼—The ribs.
पाँजरा କେଉଁ ଲେଳର ତଣ୍ଟି ଯାଏ ଫୁଟି
**पसली** ଛଙ୍ଗି ପକାଏ କାହାର ଛକାଠି—ବ୍ରଜନାଥ. ସମରତରଙ୍ଗ ।

**ଛକା ଦେବା**—ଦେ. କ୍ରି—ତାସଖେଳରେ ସବୁ ପିଠିର ତାସଯାକ (ଏକ
Chhakā debā ପକ୍ଷ) ନେବା ଓ ଅପର ପକ୍ଷକୁ ପିଠିଏ ମାତ୍ର
ছকাকরা ତାସ ନେବାର ସୁଯୋଗ ନ ଦେବା—
ଛକା କରିବା } To win all the cards in a
ଛକା ଧରିବା } ଅନ୍ୟରୂପ game of cards without allo-
ଛକା ବସାଇବା } wing of the opposite party to win the cards of any turn.
[ ଦ୍ର—ଯେଉଁ ପକ୍ଷ ଆଦୌ ତାସ ଜିଣି ନ ପାରେ ତା ବିରୁଦ୍ଧରେ ଜିଣିବା ପକ୍ଷ ଗୋଟିଏ ଛଟିପଯୁକ୍ତ ତାସ ସ୍ଥାପନ କରେ । ]

**ଛକାପଞ୍ଝା**—ଦେ. ବି—୧ । ଚାତୁର୍ଯ୍ୟ—
Chhakāpañjhā 1. Cleverness.
ছকাপাঞ্জা ୨ । ଚାକଚକ୍ୟ; ସତର୍କତା—
**छक्कापञ्जा** 2 Alterness.
ଛକାପଞ୍ଝା } ୩ । ପେଁଚପାଚ; ଦାଉଁପେଚ—
ଛକ୍କାପଞ୍ଝା } ଅନ୍ୟରୂପ 3. Tortuous devices; write; tricks.
ଛକ୍କିପଞ୍ଝା }
୪ । ଗଞ୍ଜପା ଖେଳର ୬ ବା ୫ ଟିପ ଥିବା ସାର—
4. Cards having six or five tips on Gañjapā cards.

ସାଧାରଣ ଲୋକେ ଅପର ବୃଷ୍ଟାରେ ସଚର ୧ ଚନ୍ଦ୍ରବିନ୍ଦୁ ଅକ୍ଷର ଓ ମାନ ଏକ ୨ ଚନ୍ଦ୍ରବିନ୍ଦୁ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚନ୍ଦ୍ରବିନ୍ଦୁ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚନ୍ଦ୍ରବିନ୍ଦୁ ବଦଳରେ ୨ ବା ୧ ଚନ୍ଦ୍ରବିନ୍ଦୁ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇଁ' ନ ମିଳିଲେ 'ଗାଇଁ' ଖୋଜିବେ; 'କୁଆଁ' ନ ମିଳିଲେ 'କୁଆଁ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଅଙ୍ଖି' ଦେଖିବେ, 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୫ । ଏକ ପ୍ରକାର କଉଡ଼ିଖେଳ; କସିପାଙ୍ଗି ଖେଳ—
5. A kind of indoor games in Kaurdis.

୬ । ମନୋହର ପଦବିକ୍ଷେପ ସହିତ ଏକ ପ୍ରକାର ନୃତ୍ୟ—
6. A sort of dancing with dexterous steps.

ଦେ. ଵଣ—ଚତୁର୍, ସତର୍କ ( ବ୍ୟକ୍ତି )—
Dexterous; cautious.

**ଛକ**—ଦେ. ବି. ( ଚଉହଟ୍ଟ; ଚଉଷ୍ପଥ )—୧ । ଚଉଷ୍ପଥ—
Chhaki 1. Meeting of cross road.

୨ । ଦୁଇ ରେଖା ପରସ୍ପରକୁ କାଟିବାର ଚିହ୍ନ; ଯୁକ୍ତ ଚିହ୍ନ—
2. Cross-mark

୩ । ପ୍ରହାର ଚିହ୍ନ—3. Marks of beating.

୪ । ଆକ୍ରମଣ କରିବାପାଇଁ ଶିକାରକୁ ଜଗିବା—
4. Ambush; lying in wait for prey.

**ଛକିଛାକି**—ଦେ. କ୍ରି. ଵଣ—୧ । ଅତି ସତର୍କତା ସହିତ—
Chhakichhāki 1. Very cautiously.

୨ । ଲୁକ୍କାୟିତ ଭାବରେ—2. Stealthily.

୩ । କୌଶଳକ୍ରମେ—3. Cunningly.

[ ଦ୍ର—ଛକିବା କିମ୍ବା ସଙ୍ଗେ ଧ୍ୱନ୍ୟନୁକାରୀ କିମ୍ବା ଯୁକ୍ତ ହୋଇ ଛକିଛାକିବା ଶବ୍ଦ ନିଷ୍ପନ୍ନ ହୋଇ, କିନ୍ତୁ ଛକିଛାକିବା କ୍ରିୟାର ସମାପିକା ରୂପ ସ୍ୱତନ୍ତ୍ର ବ୍ୟବହାର ନ ଥାଇ ଅସମାପିକା ରୂପରେ କ୍ରି. ଵଣ ଅର୍ଥରେ 'ଛକିଛାକି' ବ୍ୟବହୃତ ହୁଏ, ତୁଳନା କର ପୋଛିପାଛି=ନିଃଶେଷ କରି ଦେଖିଦାଖି=ଉତ୍ତମରୂପେ ନିରୀକ୍ଷଣପୂର୍ବକ । ]

**ଛକିବା**—ଦେ. କ୍ରି—୧ । ଛକରେ ଜଗିବା—
Chhakibā 1. To lie in wait or watch at
छपटिमेरेबसा, cross roads.
ओतपाता, ताककरा ୨ । ଜଗିବା—2. To watch.
**दाँवमेरहना** ୩ । ଯୁକ୍ତ ବା ଗୁଣିତ ଚିହ୍ନର ଦାଗ ଅଙ୍କିତ କରିବା; ଛକ କାଟିବା—3. To mark with a cross; to draw a cross.

୪ । କୌଣସି ଲେଖା ଉପରେ ଛକ ଦେଇ କାଟି ଦେବା—
4. To cross out or score though some written matter.

୫ । ଶତ୍ରୁକୁ ବା ଶିକାରକୁ ଆକ୍ରମଣ କରିବା ନିମନ୍ତେ ଲୁଚି କରି ଜଗି ରହିବା—5. To wait stealthily to attack an enemy or a prey; to lie in ambush

ସାକ୍ଷାତ ଅଙ୍ଗେ ପ୍ରବେଶ ମୃତ୍ୟୁ କଷ୍ଟ
ଛକି ଅଙ୍ଗେ କ ନାଗରେ ଦୃଷ୍ଟି । ଜଗନ୍ନାଥ, ଜବାକେଶ୍ୱରୀ ।

୬ । ତାତିଲା ଲୁହାରେ ଦେହରେ ଏକାଧିକ ଦାଗ କରିବା—
6. To mark the body with red-hot iron.

୭ । ଦେହରେ ପ୍ରହାରଦ୍ୱାରା ଦାଗ କରିବା—
7. To leave marks on the body of caning or beating.

୮ । କଉଡ଼ି ବା ପଶାଖେଳରେ କଉଡ଼ି ବା ପଶାକାଠିରେ ଅଭିପ୍ରେତ ସାର ପଡ଼ିବା ଉଦ୍ଦେଶ୍ୟରେ କଉଡ଼ି ବା ପଶାକାଠିକୁ ହାତରେ କୌଶଳପୂର୍ବକ ଗଞ୍ଜି କରି ଧରିବା–
8. To hold the Kaurdis or dice inside the fist so as to bring out the desired throw.

[ ଦ୍ର—ଛକି କରି କଉଡ଼ି ବା ପଶାକାଠିକୁ ଧରି ସାର ପକାଇବା ଅନ୍ୟାଯ୍ୟ ବୋଲି ବିବେଚିତ । ]

**ଛକୋଣି**—ଦେ. ଵଣ. ( ସଂ. ଷଟ୍+କୋଣ )—ଛଅକୋଣବିଶିଷ୍ଟ
Chhakoṇi (କ୍ଷେତ୍ର)—Hexagonal (figure).
छयकोना ଦେ. ଵଣ.—ଛଅକୋଣିଆବିଶିଷ୍ଟ କ୍ଷେତ୍ର—
**छकोनिया** Hexagon.
(ଛକୋଣିଆଁ—ଅନ୍ୟରୂପ)

**ଛକ୍କା** (ଇତ୍ୟାଦି)—ଦେ. ବି—ଛକା ଇତ୍ୟାଦି (ଦେଖ)
Chhakkā etc. Chhakā etc (See)

**ଛକ୍କା ବସିବା**—ଦେ. କ୍ରି.—ତାସ୍ ଖେଳରେ ଗୋଟିଏ ହାତ ସୁଦ୍ଧା ଜିଣି ନ
Chhakkā basibā ଥିବା ପକ୍ଷ ବିରୁଦ୍ଧରେ ଖଣ୍ଡେ 'ଛକ୍କା' ତାସ୍
छक्काबसा ଉଠାଯିବା—The putting of a card against the party who does not win even one set of cards during a game of cards.

(ଯଥା—ଆଜି ତାର ଉପରେ ତିନି ଥର ଛକ୍କା ବସିଲା ।)

**ଛଖଣ୍ଡି**—ଦେ. ଵଣ. (ସଂ. ଷଟ୍+ଖଣ୍ଡ)—୧ । ଛଅଖଣ୍ଡ କାଠରେ ପ୍ରସ୍ତୁତ–
Chhakhanda 1. Made with six pieces of sticks.
छयखाना ୨ । ଛଅ ସଂଖ୍ୟକ—2. Consisting of 6 pieces;
**छट्टी, छठ** six pieces of.
खाटिया ଦେ. ବି.—କୋକେଇ; ଶ୍ମଶାନକୁ ଶବବହନାର୍ଥ ମଞ୍ଚା
**अरथी, टिखटी** (ଜଣୁଣି ପରି)—1. A ladder-like stretcher (prepared by thing four sticks crosswise on two longer sticks) for carrying the dead body to the cremation ground; bier.

୨ । ଛଅ ସଂଖ୍ୟକ ଖଣ୍ଡ—2. Six pieces or bits.

**ଛଖଣ୍ଡି**—ଦେ. ଵଣ. ଓ ବି.—ଛଖଣ୍ଡ (ଦେଖ)
Chhakhandi Chhakhanda (See)
छयखानि ଛୁଇଁବେ ନାହିଁ ତୋତେ ବୋଲିବେ ମଡ଼ା,
**छट्टकरा** ଛଖଣ୍ଡି କାଠ ହେବ ତୋ ପାଇଁ ଘେଡ଼ା । ମନବୋଧ. ଚଉତିଶା ।

**ଛଗ** (ଧାତୁ)—ସଂ. ଛେଦନ କରିବା—
Chhaga (root) To cut.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯୃ | ଭୃଅ | ଙ୍କ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ନ |

**ଛଗ**—ସଂ. ବି. ( ଛଗ ଧାତୁ+କର୍ମ. ଅ; ଅଥବା ଛେ ଧାତୁ=ଛେଦନ କରିବା+କର୍ମ. କ; କ ସ୍ଥାନରେ ଗ ଆଦେଶ; ଯାହାକୁ (ଛଗୀ—ସ୍ତ୍ରୀ) ବଳି ବା ଖାଦ୍ୟାର୍ଥ ଛେଦନ କରାଯାଏ)—ଛାଗଲ; ଛେଳି—Goat
Chhaga

**ଛଗଣ**—ସଂ. ବି.—(୬ଷ୍ଠୀ ତତ୍; ଛ=ଖଣ୍ଡ+ଗଣ=ସମୂହ)—ଘସି—
Chhagaṇa Dried cake of cowdung (used as fuel)

**ଛଗଲ**—ସଂ. ବି. ପୁଂ. (ଛେ ଧାତୁ=ଛେଦନ କରିବା+କର୍ମ. କଲ; Chhagaḷa ନିପାତନ)—୧ । ଛାଗ; ଛେଳି—1. He goat.
(ଛଗଲୀ—ସ୍ତ୍ରୀ) ୨ । ଅତ୍ରିମୁନି—2 Sage Atri.
୨ । ଏକପ୍ରକାର ନୀଳବର୍ଣ୍ଣ ବସ୍ତ୍ର—
2. A sort of blue cloth

**ଛଗଲକ**—ସଂ. ବି. ପୁଂ. (ଛଗଲ+ସ୍ୱାର୍ଥେ. କ)—ଛଗଲ (ଦେଖ)
Chhagaḷaka Chhagaḷa (See)

**ଛଙ୍କା**—ଦେ. ବି· (ସଂ. ଗ୍ଳନ)—୧ । ଛାଙ୍କିବା; ଛାଣିବା—
Chhaṅkā 1. Straining; sifting (through a sieve.)
ଛାଁକା ୨ । ଘିଅରେ ପୂର ଅଧ ଛାଣିବା—2. Frying in a
**तलना** large quantity of ghee.
**तलाहुआ** ଦେ. ବିଣ.—୧ । ଛଣା ହୋଇଥିବା—1. Sifted.
୨ । ନିର୍ମଳ—2. Cleansed.
୩ । ବିଶୁଦ୍ଧ—3 Purified.
୪ । ଘିଅରେ ବା ତେଲରେ ଛଣା ହୋଇଥିବା—
4. Fried in ghee or oil.
୫ । ବଛା ହୋଇଥିବା—5. Selected.

**ଛଙ୍କାଇବା**—ଦେ. କି —ଛାଙ୍କିବାର ଣିଜନ୍ତ ରୂପ—Causative form
Chhaṅkāibā of chhāṅkibā.
ଛାଁକାନ
**छनवाना**
(ଛଙ୍କେଇବା—ଅନ୍ୟରୂପ)

**ଛଙ୍କା ଛଙ୍କା**—ଦେ. ବିଣ.—୧ । ବଛା ବଛା ବହୁ ଲୋକଙ୍କ ମଧ୍ୟରୁ ଗୁଣ
Chhaṅkā chhaṅkā ଯୋଗୁଁ ବଛା ହୋଇଥିବା—1. The
ବାଛା ବାଛା selected and fittest few.
**चुनिंदा** ୨ । ସର୍ବୋତ୍କୃଷ୍ଟ—2. Excellent.

**ଛଙ୍କାଛଙ୍କି**—ଦେ. ବି —୧ । ଉତ୍ତମରୂପେ ଛଣା ହେବା—
Chhaṅkāchhaṅki 1. Careful sifting.
ଛାଁକାଛାଁକି ୨ । ଉତ୍ତମରୂପେ ତଦାରଖ—
**छानाछानि, तलातलि** 2. A thorough enquiry.

**ଛଙ୍କା ତରକାରି**—ଦେ. ବି,—ପ୍ରଥମେ ପ୍ରଚୁର ଘିଅ ବା ତେଲରେ ନାନା
Chhaṅkātarakāri ଜାତୀୟ ପରିବା ଛଙ୍କା ହେବା ପରେ
ଛାକାତରକାରୀ, ଛଙ୍କା ତହିଁରେ ମସଲାପାଣି ମିଶାଯାଇ ପ୍ରସ୍ତୁତ ହେବା
**तलाहुआ तरकारी** ପରିବା ତରକାରି—Curry made of
( ଛଙ୍କା ଭଜଣ—ଅନ୍ୟରୂପ ) various kinds chopped vegetables first fried in suffcient oil or ghee and then cooked with spices.
[ଦ୍ର—ଘୃତପକ୍ୱ ଛଙ୍କା ତରକାରି ନିଶଙ୍ଗ ହୁ ବୋଲି ଧରାଯାଏ ।]

**ଛଙ୍କା ମଣ୍ଡା**—ପ୍ରାଦେ. (ସିଂହଭୂମ) ବି.—ନାନମାନ (ଦେଖ)
Chhaṅkā maṇḍā Nānamāna (See)

**ଛଙ୍କା ମାଲ**—ଦେ. ବି—୧ । ଘିଅରେ ଛଣା ହୋଇଥିବା ଟାଟକା ଖାଦ୍ୟ
Chhaṅkā māla ପଦାର୍ଥ—1. Fresh eatables fried in
ଛାକାମାଲ ghee.
**चुनिंदामाल** ୨ । ଉତ୍କୃଷ୍ଟ ପଦାର୍ଥ—2. Excellent thing.

**ଛଚ୍ଚା**—ଗ୍ରା. ବିଣ. ପୁଂ ଓ ସ୍ତ୍ରୀ. ( ସଂ. ସତ୍—ଭୂ. କୃ. ସଚ୍ଚା )—
Chhachchā ୧ । ସତ୍‌ସ୍ୱଭାବଯୁକ୍ତ—
ଭାଲ ମାନୁଯ 1 Honest
**सच्चा** ୨ । ସତୀ—2. Chaste.
(ଛଚେଇ—ସ୍ତ୍ରୀ) ୩ । ସତ୍ୟବାଦୀ—3. Truthful.
୪ । ବିଶ୍ୱାସୀ—4. Faithful; trustworthy.
୫ । ଉତ୍ତମ; ଉତ୍କୃଷ୍ଟ—5. Excellent.
୬ । ନିର୍ଦ୍ଦୋଷ—6. Innocent.

**ଛଚ୍ଚାପଣ**—ଗ୍ରା. ବି. ( ସଂ. ସତ୍ )—୧ । ସତ୍‌ସ୍ୱଭାବ—
Chhachchāpaṇa 1. Honesty.
(ଛଚ୍ଚାପଣିଆଁ—ଅନ୍ୟରୂପ) ୨ । ସତୀତ୍ୱ—2. Chastity.
ଭାଲମାନୁଷୀ ୩ । ସତ୍ୟବାଦିତା—
**सच्चाई; सच्चापन** 3. Truthfulness.
୪ । ବିଶ୍ୱାସୀପଣିଆଁ—
4. Fidelity; trustworthiness; faithfulness.
୫ । ନିର୍ଦ୍ଦୋଷତା—5. Innocence.

**ଛଚିତ**—ଦେ. ବି—ଛଅ ଚିତ (ଦେଖ)
Chhachita Chhaa chita (See)
(ଛଚିତ୍ତ—ଅନ୍ୟରୂପ)

**ଛଚିନା**—ଦେ. ବି—୧ । (ସଂ. ସପ୍ତବର୍ଣ୍ଣ)—ଛତିଆନା ଗଛ; ଉଗ୍ରଗନ୍ଧ
Chhachinā ବର୍ଗର କ୍ଷୀରୀ ବୃହତ୍ ତରୁବିଶେଷ—
ସଂ. ପର୍ଯ୍ୟାୟ—ସପ୍ତପର୍ଣ୍ଣ; 1. A wild tree; Alstonia
ସପ୍ତଚ୍ଛଦ; ସପ୍ତପତ୍ର; ବିଶାଲତ୍ୱକ୍; Schoearis; Schetes.
ଶାରଦ; ଶାରଦୀ; ବିଷମଚ୍ଛଦ, [ ଦ୍ର—ଏହାର ଗଣ୍ଠିକି ଗଣ୍ଠି
ମଦଗନ୍ଧ; ଗୁଚ୍ଛପୁଷ୍ପ ୭।୮ ବା ୯ ଶାଖା ବାହାରିଥାଏ
ଛାତିମ୍; ଛାତିନ୍ ବୋଲି ଏହି ନାମ । ଏ ଗଛର ପତ୍ର
**छातियान; सातौना; छतिवन** ଶିମିଳି ଗଛର ପତ୍ର ପରି । ଫୁଲ ଧୂସର
ମ. ସାତବଣୀ ଧଳଦିଆ । ଶରତ୍‌କାଳରେ ଏ
ତେ. ଏଡ଼ାକୁଲା; ଅଇଟାକୁ ଗଛରେ ଫୁଲ ଧରେ; ଫୁଲରେ ହସ୍ତି-
ମଦର ଗନ୍ଧ ଥାଏ । ଏହା କଷାୟ ତିକ୍ତରସ, ଉଷ୍ଣବୀର୍ଯ୍ୟ, ସ୍ନିଗ୍ଧ, ଧାରକ, ଅଗ୍ନିବର୍ଦ୍ଧକ, ତ୍ରିଦୋଷନାଶକ ଏବଂ ବ୍ରଣ, ରକ୍ତ, କୃମି,

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତୀୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କ୍ଷଥ' ନ ମିଳିଲେ 'କ୍ଷଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ

ଶ୍ୱାସ ଓ ଗୁଲ୍ମରୋଗରେ ଉପକାରୀ, ରସାୟନ, ବଳକାରକ । ଏହାର ଛାଲର ଅର୍କ କ୍ୱିନାଇନ୍ ତୁଲ୍ୟ ଜ୍ୱରନାଶକ, ଛଡ଼ଆନା ଗଛର କ୍ଷୀର ଲେପନ କଲେ ଦୁଷ୍ଟ ବ୍ରଣ ଶାନ୍ତ ହୁଏ । ]

୨ । (ସଂ ଷଟ୍ ଓ ଚଣକ) ୬ ଚନା ପରିମିତ ଓଜନ—
2. Weight of 6 chinās or less than a grain.

୩ । ଛଚନ୍ଦା—3. Chhachindā (See)

ପ୍ରାଦେ. (ଗଡ଼ଜାତ) ବି—ଏକପ୍ରକାର ବଡ଼ ଝଙ୍କା ଗଛ—
A kind of tree.
[ ଦ୍ର—ଏହାର ଛୁଇଁ ଲମ୍ବ, ସରୁ ଓ ଏକହାତ ବା ତହିଁରୁ ଅଧିକ ଲମ୍ବ । ]

**ଛଚନ୍ଦା**—ଦେ. ବି. ( ସଂ. ଚଚଣ୍ଡ, ଚିଞ୍ଚିଡ଼ )—
Chhachindā ଏକପ୍ରକାର ସର୍ପାକୃତି ଖାଦ୍ୟ ଲତାଫଳ—
ଚିଚିଙ୍ଗା; ଚିଚିଙ୍ଗେ Snake-gourd; Trichosanthes
**ଚିଁଚଁଡ଼ା; ଚଚିନ୍ଧା** Anguina
(ଛଚ୍ଛନ୍ଦା—ଅନ୍ୟରୂପ)

**ଛଚନ୍ଦୀ**—ଦେ. ବି. ( ସଂ. ଚଚଣ୍ଡ )—କୁଷ୍ମାଣ୍ଡାଦି ବର୍ଗର ଉଦ୍ୟାନଜାତ
Chhachindi ଏକପ୍ରକାର ଲତାଜାତ ସର୍ପାକୃତି
ସଂ. ନାମ; ଚଚଣ୍ଡ, ଶ୍ୱେତରାଜି ଖାଦ୍ୟଫଳ—Snake gourd;
ସୁଦୀର୍ଘ; ଗୃହକୂଳକ Jricosonthes Anguina.
ଚିଚିଙ୍ଗା: ଚିଚିଙ୍ଗେ; ହୋପା [ ଦ୍ର—ଏହା ବାତପିତ୍ତନାଶକ,
**ଚଁଚଁଡ଼ା; ଚିଚେଣ୍ଡା, ଚଚିଁଧା** ବଳକାରକ ପଥ୍ୟ ଓ ରୁଚିପ୍ରଦ;
ମ. ଚରକାଁକଡ଼ୀ ଏହା ଶୋଷ ରୋଗୀ ପକ୍ଷେ ହିତକର ।
ଗୁ. ପଡ୍ଡୋଲ୍ୟଂ ଏହା ପଟୋଳ ଅପେକ୍ଷା ଅଳ୍ପ
ତେ. ପୋଟଲକାୟୀ ଗୁଣଯୁକ୍ତ । ]
ଆ. ଝିଙ୍କା
(ଛଚ୍ଛନ୍ଦା; ଛଚନା; ଛଚନ୍ଦ୍ରା—ଅନ୍ୟରୂପ)

**ଛଚନ୍ଦ୍ର**—ଗ୍ରା. ବିଣ. ( ସଂ ଶଚୀନ୍ଦ୍ର; ଇନ୍ଦ୍ରଙ୍କ ସଙ୍ଗେ ତୁଳନା )—
Chhachindra ୧ । ବିଦ୍ୟା ପଢ଼ିବା ବିଷୟରେ ମନୋଯୋଗୀ ବା
(ଛଚ୍ଛନ୍ଦ୍ର—ଅନ୍ୟରୂପ) ବାହାଦୁର—1. Attentive to one's studies; diligent in one's studies.

ଛଚନ୍ଦ୍ର ଭରେ ବାବୁ ଭୟ ନ କର
ଛଚନ୍ଦ୍ର ହୋଇ ବିଦ୍ୟା ପଢିବାର । ହରିଦାସ. ଯଶୋଦାଙ୍କ ଉକ୍ତି ଗୀତ ।

୨ । ଉତ୍କୃଷ୍ଟ—2. Excellent.

ଛଚନ୍ଦ୍ର କଥା ଏ ଶ୍ରୀ ଭାଗବତ
କ୍ଷମେ ହରିଦାସ ଗାଇଲେ ଗୀତ । ହରିଦାସ. ଯଶୋଦାଙ୍କ ଉକ୍ତି ଗୀତ ।

**ଛଚେଈ**—ଗ୍ରା. ବିଣ. ସ୍ତ୍ରୀ ( ସଂ ସତ୍ )—୧ । ସତୀ—
Chhachei 1. Chaste.
ସତୀପନା ୨ । ବିଶ୍ୱାସୀ—2. Faithful.
**सच्ची** ୩ । ସତ୍ୟବାଦିନୀ—3. Truthful.
(ଛଚେଇ—ଅନ୍ୟରୂପ) ୪ । ସତ୍‌ସ୍ୱଭାବଯୁକ୍ତ—4. Honest.

**ଛଚା** (ଇତ୍ୟାଦି)—ଦେ. ବିଣ (ସଂ. ସତ୍)—ଛଚ୍ଚ ଇତ୍ୟାଦି (ଦେଖ)
Chhachchā (etc) Chhachā etc (See).

**ଛଚ୍ଛନ୍ଦ**—ଗ୍ରା. ବିଣ—ସ୍ୱଚ୍ଛନ୍ଦ—
Chhachchhanda Convenient.
सच्छन्द ଗ୍ରା. କ୍ରି. ବିଣ—ସ୍ୱଚ୍ଛନ୍ଦରେ—
**सच्छन्द** Without trouble.
(ଛଚ୍ଛନ୍ଦ—ଅନ୍ୟରୂପ)

**ଛଚ୍ଛିକା**—ସଂ. ବି—ଘୋଳଦହି (ହି. ଶବ୍ଦସାଗର)—
Chhachchhikā Churned butter-milk; whey.

**ଛଚ୍ଛାନ୍**—ପ୍ରାଦେ (ସମ୍ବଲପୁର) ବି—ଛଞ୍ଚାଣ ପକ୍ଷୀ—
Chhachhān Hawk.

**ଛଞ୍ଚା**—ଦେ, ବି—୧ । (ସଂ. ଶୌଚ)—ମଳ ଶୌଚକରିବା; ଛଅଞ୍ଚିବା—
Chhañchā 1. Washing of the anus after easing.
ছোঁচা ୨ । (ସଂ. ସଞ୍ଚ)—ଛଞ୍ଚ (ଦେଖ)
**शौंचा** 2. Chhañcha (See).
ছাঁচ ୩ । (ସଂ. ସଞ୍ଚୟ)—ସଞ୍ଚୟ—
**साँचा** 3. Hoarding; saving for future.
সঞ্চয় ୪ । କୃପଣତା—4. Niggardliness.
**सँच**
দাগ ୫ । (ସଂ ସଞ୍ଚ=ଲେଖିବାର କାଳ) ଦେହରେ ଅଳଙ୍କାରାଦିର
**छापा** ଚାପଜନିତ ଦାଗ—5. Mark left on the body by pressure of ornaments.
ভালমানুষী ଗ୍ରା—୧ । (ସଂ. ସତ୍) ସତ୍ୟବାଦିତ୍ୱ—
**सच्चाई** 1. Truthfulness
୨ । ସତ୍‌ପଣ—2 Honesty.
୩ । ସତୀପଣ—3. Chastity
সিধা ୪ । ଆଗନ୍ତୁକ ଭଦ୍ରଲୋକଙ୍କୁ ଦିଆଯିବା ରନ୍ଧା ହୋଇ ନ ଥିବା
**डालि** ଖାଦ୍ୟୋପକରଣ; ସିଧା; ସଞ୍ଚା—
4. Victuals presented to a guest for cooking his food.

ପ୍ରାଦେ (ସମ୍ବଲପୁର) ବି—ଓଳଆ ବା ପୁଡ଼ୁଗ ବାନ୍ଧିବା ଦଉଡ଼ି—
A string or rope for tying a rolled bundle of strand for storing grains.

ଦେ. ବିଣ. ପୁଂ (ସଂ. ସଞ୍ଚୟୀ)—୧ । କୃପଣ—
(ଛଞ୍ଚୀ—ସ୍ତ୍ରୀ) 1. Niggardly; close fisted.
୨ । ଯେ ସବୁ ପଦାର୍ଥକୁ ଭବିଷ୍ୟତ୍ ପାଇଁ ସଞ୍ଚୟକରି ରଖେ—
2. One who stores things for future use.
୩ । ସଞ୍ଚିତ; ଗଚ୍ଛିତ—3. Stored; hoarded.

ଗ୍ରା. ବିଣ. ସ୍ତ୍ରୀ (ସଂ. ସତୀ)—ସତୀ—Chaste.

**ଛଞ୍ଚାଇବା**—ଦେ କ୍ରି—ଛଅଁଞ୍ଚିବାର ଣିଜନ୍ତରୂପ—
Chhañchāibā Causative form of chhaañchibā.
ছোঁচান
**शौंचना**
সংচান ଗ୍ରା. କ୍ରି—ଛଞ୍ଚିବାର ଣିଜନ୍ତ ରୂପ—
**सँचाना** Causative form of chhañchibā.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ଼ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଂଗ୍ୟ | ଇଅ | ଞ | ନ୍ତ |

**ଛଞ୍ଚାଣ**—ଦେ. ବି. ( ସଂ. ସଂଚାନ; ଶଶାଦନ; ଶ୍ୟେନ )—
Chhañchāṇa ବାଜପକ୍ଷୀ; ସଞ୍ଚାଣ— Hawk; falcon
ছঞ্চাণ, বাজপাখী [ ଦ୍ର—ସଞ୍ଚାଣ ପ୍ରସଙ୍ଗକାଗ୍ରାୟ ପକ୍ଷୀବିଶେଷ ।
**शिकरा,सचान** ଏହାର ଦେହର ରଙ୍ଗ ମାଟିଆ, ଲମ୍ବରେ ପ୍ରାୟ ଦେଢ଼ ଫୁଟ; ଏ ଅନ୍ୟ ପକ୍ଷୀଙ୍କୁ ଶିକାର କରେ । ଅନ୍ୟ ପକ୍ଷୀଙ୍କୁ ଶିକାର କରିବାପାଇଁ ଲୋକେ ଛଞ୍ଚାଣ ପୋଷନ୍ତି । ]

**ଛଞ୍ଚି**—ଦେ. ବି. ( ସଂ. ଛଦ୍ ଧାତୁ )—ଘରର ନିମ୍ନ ପ୍ରାନ୍ତ; ଛାଚ; ଓଳି—
Chhañchi The eaves of a thatch; the lower end
ছাঁচ, ছাঁচা, তাকায় ছঞ্চা of a thatch.
**बलति**
म. वलचणी

**ଛଞ୍ଚିତଳ**—ଦେ. ବି—ଓଳିତଳ; ଛଞ୍ଚିର ନିମ୍ନସ୍ଥ ଭୂମି—
Chhañchitaḷa The ground just below the eaves
ছাঁচতলা of a thatch.

**ଛଞ୍ଚିବା**—ଗ୍ରା. କ୍ରି ( ସଂ. ସଞ୍ଚୟ )—
Chhañchibā ୧ । ସଞ୍ଚୟ କରିବା; ଧନାଦି ଜମାଇବା—
সংচিতকরা, জমান 1 To hoard or store for future.
**जमाना**

ସୁମା ଅଣ୍ଟ ଜାବନଯାକ ଛଞ୍ଚି ଛଞ୍ଚି ବେକରେ ଗୋଟାଏ ସୁନାମାଳ ଲଗାଇଥିଲେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

୨ । ( ସଂ. ଶୌଚ )—ଛଆଁଚିବା ( ଦେଖ )
2. Chhaañchibā ( See )

**ଛଟ୍**—ଦେ. ବି ( ସଂ. ଷଷ୍ଠ, ପ୍ରା. ଛଟ୍ଠ )—କାର୍ତ୍ତିକ ଶୁକ୍ଳ ଷଷ୍ଠୀ ତିଥିରେ
Chhaṭ ଅନୁଷ୍ଠିତ ହେବା ବିହାରୀମାନଙ୍କ ପର୍ବ—A festivity
ছট্ observed by the Biharis on the 6th day
**छठ्** of the bright fortnight of the month of Kārttika.

**ଛଟ୍‌କନା**—ଦେ. ଅ—ଛଟାଟ୍‌କନା ( ଦେଖ )
Chhaṭkinā Chhaṭātkinā ( See )

ଛଟ୍‌କନ
ଛଟ୍‌କର } ଅନ୍ୟରୂପ
ଛଟ୍‌ଦସ୍

**ଛଟ୍‌କିବା**—ପ୍ରାଦେ. ( ସମ୍ବଲପୁର ) କ୍ରି. ( ଭୁଲ, ହି. ଛଟକ୍‌ନା )—
Chhaṭkibā ୧ । ଖସିଯିବା—1. To slip out, to slip away.
ଛଟକାଇବା
ଛଟକେଇବା } ଣିଜନ୍ତରୂପ ( ଯଥା—ଶିଲ (ଶଗଡ଼ଚକ)ରୁ ଡାର (ବାଲ) ଛଟ୍‌କିଗଲା । )

୨ । ଛଟ୍‌ପଟ୍ କରିବା—2. To be restless.

**ଛଟ୍‌କୁଛେ (ମୋର)**—ପ୍ରାଦେ. ( ସମ୍ବଲପୁର )—
Chhaṭkuchhe ୧ । ( ବ୍ୟଙ୍ଗ ଓ ଅନାଦରବ୍ୟଞ୍ଜକ; ଯଥା—ମୋର ତ ଛଟ୍‌କୁଛେ ) ମୋର ଏଥିପାଇଁ ଯାଏ ଆସେ କେତେ—1. I do not care for or worry about it.

୨ । ( ମୁଁ ) ବ୍ୟସ୍ତରେ ପଡ଼ୁଛି, ବ୍ୟସ୍ତ ରହୁଛି—
2. ( I ) Feel restless or bothered.

**ଛଟ୍‌ନା**—ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବି—ଛିଟ୍‌ନା ( ଦେଖ )
Chhaṭnā Chhiṭnā ( See )

**ଛଟକ**—ଦେ. ବି. ( ସଂ. ଛଟା )—୧ । ସୌନ୍ଦର୍ଯ୍ୟ —
Chhaṭaka 1. Beauty; grace.
ছটক; চটক ୨ । ଶୋଭା—2. Splendour.
**छटक, चोचला** ପ୍ରବେଶ ହୋଇଲେ ଯାଇଁ ଅଯୋଧ୍ୟା କଟକେ ଶଙ୍କର ଭୁବନ ପ୍ରାପ୍ତ ହଣଇ ଛଟକେ—ବିଶ୍ୱନାଥ. ବିଚିତ୍ରରାମାୟଣ ।
୩ । ଢଙ୍ଗ—3. Manner.
୪ । ଭଙ୍ଗୀ—4. Winsome deportments; arts.
୫ । ମନୋହର ନେତ୍ରଭଙ୍ଗୀ—5 Charming glance.
୬ । ଆଖି ପିଛୁଳାଇବା; ନେତ୍ରଭଙ୍ଗୀ; ପଲକ—
6. Glance; tinkling of the eye.
୭ । ଛଳ; ଗୁଭୁସ୍—7. Trick
ଛଟକେ ଭଗ୍ନକଟକ ସଂହାର—ଗୁଧାନାଥ. ଯଯାତି ।
୮ । ରସିକତା—8. Gallantry.

ଦେ. ବିଣ—୧ । ଶୋଭାଯୁକ୍ତ—
1. Beautiful; charming.
ଦେଖିବା ସକାର କଟକ, କୌଣସେ ବଣଇ ଛଟକ—ଜଗନ୍ନାଥ. ଭାଗବତ ।
୨ । ଭଙ୍ଗୀବିଶିଷ୍ଟ—
2. With winsome deportments.
କଟକେ ଛଟକନାରୀ, ଅଛନ୍ତି ନାନା ଗୁଭୁସ୍—ପ୍ରତାପ—ଶଶିସେଣା ।

**ଛଟକଚାହାଣି**—ଦେ. ବି—୧ । ନେତ୍ରଭଙ୍ଗୀ; ଭ୍ରୂଭଙ୍ଗୀ; ବାଙ୍କଚାହାଣି—
Chhaṭakachāhāṇi 1. Sidelong glance
চটুলচাউনী ୨ । ବିଳାସ ନେତ୍ରଭଙ୍ଗୀ—
**चोचला** 2. Amorous glance.

**ଛଟକମାତ୍ରକେ**—ଦେ. କ୍ରି. ବିଣ—୧ । ଅତି ଅଳ୍ପ ସମୟରେ—
Chhaṭakamātrake 1. In a very short time.
পলকমাত্রে ୨ । ମୁହୂର୍ତ୍ତିକେ—2. At a moment.
୩ । ଏକା ପିଛୁଡ଼ାକେ—
3. At one glance; in a twinkling of the eye.

**ଛଟକରେ**—ଦେ. କ୍ରି. ବିଣ—ଛଟକମାତ୍ରକେ ( ଦେଖ )
Chhaṭakare Chhaṭakamātrake ( See )

**ଛଟକିନୀ**—ଦେ. ବି. ସ୍ତ୍ରୀ. ( ସଂ. ଛଟା )—ଛଟକ୍ ଦେଖାଉଥିବା; ଚତୁରୀ
Chhaṭakini ( ସ୍ତ୍ରୀ )—Coquette; a lady with graceful glance.
ছেনাল
**चोचलहाई** ଅଂଚବ ଜାଣିଥିଲ ଛଟକିନୀ ସଜନୀ ବୋଇଲ ହସି—ସ୍ୱାନାଥ. ଉଦ୍ଦଣୀ ।

ସାଧାରଣ ଲେକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଂଶୁ' ନ ପାଇଲେ 'ଅଂଶୁ' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ

**ଛଟକିବା**—ଦେ. କ୍ରି—୧ । ( ଅକ୍ଷି, ମୁଣ୍ଡ ) ବିନ୍ଧିବା; ଛଟକିବା—
Chhaṭakibā 1. To ache.
ব্যথাকরা ( ଯଥା—ମୋ ଆଖି ଛଟକୁଛି । )
टीसना ୨ । ଛଟକି ଯିବା ( ଦେଖ )
2. Chhaṭakijibā ( See )

**ଛଟକିଯିବା**—ଦେ. କ୍ରି—( କୌଣସି ପଦାର୍ଥରୁ କୌଣସି ଅଂଶ ) ହଠାତ୍
Chhaṭakijibā ଦ୍ରୁତଗତିରେ ବାହାରିଯିବା, ଛିଟିକି ଯିବା—
ছিটকে যাওয়া To shoot forth.
छटकजाना, छिटकजाना

**ଛଟଛଟ**—ଦେ. ବଣ—ଅତ୍ୟନ୍ତ ଶାରୀରିକ କଷ୍ଟ ବା ଯନ୍ତ୍ରଣାରେ ଅଙ୍ଗ-
Chhaṭachhaṭa ବିକ୍ଷେପ କରିବା; କଲବଲ—Restless or
ছটপট struggling through extreme agony.
तड़प डाहट ଛଟଛଟ ହେଲ ଭୂମେ ରହି ଉଦ୍ଭ୍ରାନ୍ତ
ସାଳଙ୍କାର ହସ୍ତପାଦ, ସଶିରସ୍କ ଶିରଃ—ଯଥାକାଳ, ମହାଯାତ୍ରା ।

**ଛଟଛଟକା**—ପ୍ରାଦେ ( ଯାଜପୁର ) ବି—ଉତ୍ସବ ସମୟରେ କାନ୍ଥରେ
Chhaṭachhaṭakā ଦିଆଯିବା ଚୂନ ବା ପିଠଉର ଫଟିକା ଚିହ୍ନ--
Marks of lime or rice ground with water put on the wall by means of a brush or festive occasions.

**ଛଟପଟ**—ଦେ. ବି—ଅସ୍ଥିରତା—
Chhaṭapaṭa Restlessness; agitation
ছটপট; ছটফট ୧ । ଅସ୍ଥିର; ଚଞ୍ଚଳ—
छटपटी 1. Restless; perturbed
୨ । ବେଦନା ଯୋଗୁଁ ଅସ୍ଥିର—
तड़प, छटपट 2. Restless through pain.
କଲବଲ ଛଟପଟ ହୋଇ ଯାଉଛି ଜଗତ ।
କବିସୂର୍ଯ୍ୟ. କଣୋସାରମ୍ଭ. କ ଗୀତ ।
୩ । ଉନ୍ନିଦ୍ର—3. Speechless.
୪ । ଇତସ୍ତତଃ ଶରୀର ଚାଳନ—
4. Moving the body from
୫ । କଲବଲ—5. Restless through pain.
୬ । ଜଞ୍ଜାଳ—6. Troubles.
ଏଇ ପେଟ, ଏଇ ପେଟ ଲାଗି ଛଟପଟ—ତଗ ।

**ଛଟପଟିଆ**—ଦେ. ବି—୧ । କଲବଲ; କାଲୁବାଲୁ—
Chhaṭapaṭiā 1. Anxiety; trouble; restlessness.
ছটপট ୨ । ଅସ୍ଥିରତା; ଅବକାଶହୀନତା—
छटपट 2. Want of leisure.
ଶୋଇଲେ ଦେହ ଛଟପଟିଲୁ ଉଲଇ । କୃଷ୍ଣସିଂହ. ମହାଭାରତ. ବନ ।
ଦେ. ବଣ—୧ । କଲବଲ—1. Anxious in trouble,
ছটপটে ୨ । ଅସ୍ଥିର—2. Restless; moving
तड़प; छटपटी about.
୩ । ଅବକାଶହୀନ —3. Having no leisure.

**ଛଟପଟେଇବା**—ଦେ. କ୍ରି ( ଛଟପଟରୁ ନାମ ଧାତୁ )—ଛଟପଟ ହେବା-
Chhaṭapaṭeibā To be restless; to be troubled.
ছটপটান
तड़पना, छटपटाना

**ଛଟରପଟର** ( ଇତ୍ୟାଦି )—ଦେ. ବଣ—ଛଟପଟ ଇତ୍ୟାଦି ( ଦେଖ )
Chhaṭarapaṭara (etc) Chhaṭapaṭa etc. ( See )

**ଛଟା**—ସଂ. ବି. ସ୍ତ୍ରୀ ( ଛୋ ଧାତୁ=ଖଣ୍ଡି ପାଇବା + କର୍ତ୍ତୃ. ଅଟ
Chhaṭā + ସ୍ତ୍ରୀ ଆ )—
୧ । ପ୍ରଭା; ଦୀପ୍ତି; ଅଲୋକ—
1 Glow; rediance; light; brightness.
୨ । ଭଙ୍ଗୀ, ଶୋଭା; ସୌନ୍ଦର୍ଯ୍ୟ; କାନ୍ତି—
2. Grace; beauty.
ଛଟା କାହା କହାଯାଇ । କବିସୂର୍ଯ୍ୟ. କଣୋସାରମ୍ଭ. ଛ ଗୀତ ।
୩ । ସମୂହ—3. Collection.
୪ । ଅଲୋକରେଖା—4. Ray of light.
୫ । ପରମ୍ପରା—5. Succession.
୬ । ଢଙ୍ଗ; ରୂପ—6. Mode from
ଏହି ସମୟରେ ସେ ଦ୍ରୁପଦଙ୍କ ବେଟା
ଧଇଲେ ମୃତ୍ୟୁଦେବଙ୍କର ଧର ଛଟା । କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।
ଦେ. ବି—୧ । ଅଭୁଆ କାର୍ଯ୍ୟ; ଗୋଲମାଲ—
ঝংঝাট 1 Complicated business.
୨ । ଧନ୍ଦା—2. Work requiring much labour.
छल ୩ । ଛଳ; ବାହାନା—3. Feigning.
୪ । ଚାତୁର୍ଯ୍ୟ; ଚତୁରତା—4. Trick-cunning.
୫ । ବକ୍ରଗତି ବା କୁଟିଳ ଲିପି—5. Slant and confused script or character.
ছাটালেখা
ছাটা, ছিটা, ঝাড়া ୬ । ଛିଞ୍ଚିବା—6. Sprinkling; strewing.
छापा ୭ । ଧାନ ପ୍ରଭୃତି ଶସ୍ୟ କାଦୁଆ ଜମିରେ ବୁଣିବା—
बुना 7. Act of sowing corn-seeds on a clayey field.
୮ । ବାଳ କତୁରିବା—
8 Cropping hair with scissors.
ছাঁটা ୯ । ଗଛର ଅଗକୁ କତୁରିବା—9. Pruning.
छाँटना ୧୦ । ଛିଞ୍ଚିଦେବା ବା ଜୋରରେ ଧକ୍କାଦେଇ ପକାଇଦେବା -
ঝাপটা 10. Act of throwing down with a push.
छिटकना ୧୧ । ଛଅଗୋଟା—11. Six in number.
ছটা ଦେ. ବଣ—୧ । ଛଟା ହୋଇଥିବା; କାନ୍ଥରେ ଦିଆଯାଇ
छटा ଥିବା (ମାଟି)—1. Sprinkled; piled up
ছিটে ( ଯଥା—ଛଟାମାଟିର କାନ୍ଥ—ବି. ଛଟେମାଟିର ଦେଉଥିଲ । )
छाँटा ୨ । କୁଟିଳଭାବରେ ଲେଖା ହୋଇଥିବା (ଅକ୍ଷର)—
2. Intricate; crooked; scrawled.

| ୧ | ଇ | ଊ | ଋ,ୠ | ୫ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇଯ୍ଣ | ଓଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଗ୍ୟ | ଇଅ | ଞ୍ଜ | ନ୍ତ୍ର |

୩ । ଛଅ ସଂଖ୍ୟକ—3. Numbering six.

**ଛଟାଅକ୍ଷର**—ଦେ. ବ—କରଣୀଅକ୍ଷର (ଦେଖ)
Chhaṭāakshara Karaṇiakshara (See)
[ ଦ୍ର—ଏ ଜାତୀୟ ଅକ୍ଷରର ଆକାର ପରିଶିଷ୍ଟରେ ଦିଆଯାଇ ଅଛି । ]

**ଛଟାଇ**—ଦେ. ବ—ଛଟା (ଦେଖ)
Chhaṭāi Chhaṭā (See)
(ଛଟେଇ—ଅନ୍ୟରୂପ) ଦେ. ଣ—ଛଟା ହୋଇଥିବା; କଟାଯାଇ-
ଛଁଟା ଥିବା—Cropped with-scissors.
**छँटाहुआ** ( ଯଥା—ସେ ଅଜକାଲ ଧରଣର ଛଟାଇ ବାଲ ରଖିଛି । )

**ଛଟାଇଙ୍କି**—ଗ୍ରା. ବ—ଛଟାଙ୍କି (ଦେଖ)
Chhaṭāiṅki Chhaṭāṅki (See)
(ଛଟେଇଙ୍କି—ଅନ୍ୟରୂପ)

**ଛଟାଇବା**—ଦେ. କ୍ରି—୧ । ଛଟିବାର ଣିଜନ୍ତ ରୂପ—
Chhaṭāibā 1. The causative form of Chhaṭibā
ছিটান ( See )
**छटकाना** ୨ । ଛାଟ ବା ସରୁ ଯଷ୍ଟିଦ୍ୱାରା ପ୍ରହାର କରିବା—
(ଛଟେଇବା—ଅନ୍ୟରୂପ) 2 To beat with a cane.
୩ । ଅନ୍ୟ ବ୍ୟକ୍ତିଦ୍ୱାରା କୌଣସି ବ୍ୟକ୍ତିକୁ ଛାଟ ମରାଇବା—
3. To cause a person to be caned.

**ଛଟାଗଲ**—ଦେ. ବ—ଛଟା ଗାଳିବା; ଢେଲ କରିବା—
Chhaṭāgaḷa Feigning.
ଦେ. ଣ—ଯେ ଢେଲକରେ ବା ବାହାନା ଦେଖାଏ; ଯେ ଛଟା ଗାଳେ – (person) Feigning.

**ଛଟାଗାଳିବା**—ଦେ. କ୍ରି—ଛଳନା କରିବା; ରୋଗ ବା ଅକ୍ଷମତାର
Chhaṭāgāḷibā ବାହାନା କରିବା—To feign.
ছুটাদেখান
**बहाना करना**

**ଛଟାଙ୍କ**—ଗ୍ରା. ବ—ଛଟାଙ୍କି (ଦେଖ)
Chhaṭāṅk Chhaṭāṅki See)

**ଛଟାଙ୍କି**—ଦେ. ବ. ( ସ. ଷଷ୍ଠାଳୀ=ଘୃତାଦିର ଏକଛଟାଙ୍କି ପରିମାଣ;
Chhaṭāṅki ତମ୍ଭା ଗଣ୍ଡ ଟଙ୍କ=୨ ଟଙ୍କା )—୧ । ଘନ ଓ
ছটাক ତରଳ ପଦାର୍ଥର ପ୍ରାୟ ଛଅଟଙ୍କା ଓଜନ; ଏକ
**छटाँक** ସେରର ଏକ ଷୋଡ଼ଶାଂଶ ପରିମାଣ ଓଜନ—
1 A chittak; weight and measure of solid and liquid, $\frac{1}{16}$th of a seer (roughly weight of six rupees).

[ ଦ୍ର—୪ ଛଟାଙ୍କି=୧ ପାଅ; ୫ ପାଅ=୧ ସେର; କଟକୀ ଏକ ସେର=୧୦୫ ଟଙ୍କା; ବାଲେଶ୍ୱରୀ ୧ ସେର=୮୦ ଟଙ୍କା । କଟକୀ ୧ ଛଟାଙ୍କିର ଓଜନ=ଟ ୬୩ ପ୍ରାୟ; ବାଲେଶ୍ୱରୀ ଛଟାଙ୍କିର ଓଜନ=ଟ ୫ ( ଙ୍କା ]
୨ । ଏକ ଛଟାଙ୍କି ପରିମିତ ବଟକରା—
2 A weight of one chhittak.
୩ । ଛଟାଙ୍କି ମାପର ପାତ୍ର—
3. A chhittack measure.

**ଛଟାଛଟି**—ଦେ. ବ—୧ । (ସ. କ୍ଷିପ୍ର) ବାଡ଼ରେ ବା କାନ୍ଥରେ ମାଟି;
Chhaṭāchhaṭi ଛଟଟା ବା ଲେସିବା କର୍ମ—1. Sprinkling
ছিটাছিঁটি or splashing with mud.
**छोपछाप** ୨ । ଭାଙ୍ଗିଯାଇଥିବା କାନ୍ଥରେ ମାଟି ଛଟିବା କର୍ମ—
2. Reparing of a mud wall.
୩ । (ସ. ଛେଦନ) ଗଛର ଅଗମାନଙ୍କୁ ଛଟିବା କର୍ମ—
3 Pruning.

**ଛଟାଣ**—ଦେ. ବ—୧ । ଛଟିବା କର୍ମ—
Chhaṭāṇa 1. Act of sprinkling or splashing.
ছিঁটান ୨ । ଛଟା (ଦେଖ)
**छोपना** 2 Chhaṭā (See)

**ଛଟାତକିନା**—ଦେ. କ୍ରି. ଣ. (ସ. ହଠାତ୍; ଝଟିତି)—ହଠାତ୍—
Chaṭatkinā All on a sudden.
হঠাৎ
**झट**
ଛଟାତ୍‌କିନା } ଅନ୍ୟରୂପ
ଛଟାତ୍‌କିରି

**ଛଟାଫଳ**—ସ. ବ. ( ଛଟା=ସରଳରେଖା+ଫଳ )—
Chhaṭāphaḷa ୧ । ଗୁବାକ; ଗୁଆ—
1. Betel-nut; areca-nut.
୨ । ତାଳଗଛ (ଦ୍ର. ଶବ୍ଦସାଗର) —2. Palm tree.

**ଛଟାବାଡ଼**—ପ୍ରାଦେ. (ଯାଜପୁର) ବ—ବାଡ଼ିବତାଅଡ଼ କାନ୍ଥ—
Chhaṭābarḍa Wall made of a hedge of split bamboos or twigs filled up with mud; scuttle wall.

**ଛଟାଭା**—ସ. ବି· (୬ଷ୍ଠୀ ତତ୍, ଛଟା=ରେଖା+ଆଭା=କିରଣ)—
Chhaṭābhā ୧ । ବିଦ୍ୟୁତ୍; ବିଜୁଳି—1. Lightning.
୨ । ଦେହେର କାନ୍ତି ବା ଶୋଭା (ଦ୍ର. ଶବ୍ଦସାଗର)
2. The grace or lustre of ones appearance.

**ଛଟାଳି**—ଦେ. ବିଣ.—ଯେ କାନ୍ଥରେ ମାଟି ଛଟେ—One who
Chhaṭāḷi piles or puts mud on a wall.

**ଛଟାଲେଖା**—ଦେ. ବ—କରଣୀ ଲେଖା, ଯେଉଁ ଲେଖାରେ ଅକ୍ଷରର
Chhaṭālekhā ଲାଞ୍ଜ ଓ ହିଡ଼ମାନ ବଙ୍କା ହୋଇ ଲେଖା ହୋଇ-
ছিঁটালেখা ଥାଏ—Crooked writing.
**छाँटालेखा**

ସାଧାରଣ ଲେଖରେ ଅପର ପୃଷ୍ଠାରେ ସହିତ ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । 'ଅତଏବ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳେ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଇ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଛଟିଆ**—ପ୍ରାଦେ. (ସମ୍ବଲପୁର) ବିଣ.—ଢିପ (ଜମି)—
Chhaṭiā High (ground.)

**ଛଟେଇଙ୍କି**—ଗ୍ରା. ବି. ଓ ବିଣ.—ଛଟାଙ୍କି (ଦେଖ)
Chhaṭeinki Chhaṭānki (See)
(ଛଟେଙ୍କି—ଅନ୍ୟରୂପ)

**ଛଟେଇ ହେବା**—ଦେ. କ୍ରି.—୧ । ଅଙ୍ଗଭଙ୍ଗୀ କରିବା—
Chhaṭei hebā 1. To make gestures.
୨ । ଭଣ୍ଡାରିଦ୍ୱାରା ମୁଣ୍ଡର ବାଳ କାଟୁଆଇବା—
2. To have ones hair cropped.
୩ । ଛଟା ଖାଲିବା—3. To feign.

**ଛଡ଼୍‌ଦିଆଲ୍**—ବୈଦେ. ବି. (ଫା. ଚହାରଦିବାରୀ=ଗୃହ ଆଡ଼େ ନିର୍ମିତ
Chhaṛḍdiāl କାନ୍ଥ)—ପ୍ରାଚୀର; ପାଚେରି; କୌଣସି ସ୍ଥାନର ଗୃହ
ଛଡ଼୍‌ଦିଆଲ ପାଖେ ନିର୍ମିତ ଅଳ୍ପ ଉଚ୍ଚ କାନ୍ଥ—
**चहारदीवारी** Compound wall.
ଛଡ଼ଦଆଲ
ଛଡ଼ଦବାଲ
ଛଡ଼ଦବାଲ୍
ଛଡ଼ଦେବାଲ
ଛଡ଼୍‌ଦେବାଲ୍ } ଅନ୍ୟରୂପ

**ଛଡ଼**—ଗ୍ରା. ବିଣ. (ସଂ. ଷଟ୍)—(ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ; ଯଥା—
Chhaṛḍa ଛଡ଼ରସ; ଛଡ଼କାନ)—୬ ସଂଖ୍ୟକ—
Six in number.
ଛଡ ନିଚଡ଼ି ବେକଡରେ । ଯଶୋବନ୍ତ- ପ୍ରେମଭକ୍ତି ବ୍ରହ୍ମଗୀତା ।
ଛାଡ଼ ଦେ. ବି. (ସଂ. ସରଲ; ହିନ୍ଦୀ ଶଚ)—୧ । ଧାତୁ ବା କାଷ୍ଠ
ଛଡ଼ ଆଦିର ଛଡ଼; ଯଷ୍ଟି—1. Stick; staff.
୨ । ସଳଖ ଯଷ୍ଟିବତ୍ ବସ୍ତୁ—
2. Long and straight shoots.
୩ । ବେହେଲା ବଜାଇବାର କାଠି—
3. The bow of a violin.
ପ୍ରାଦେ. (ମେଦିନୀପୁର) ବି.—ଖଲ—Hide.

**ଛଡ଼କାନ**—ଦେ. ବି. (ସଂ. ଷଟ୍ କର୍ଣ୍ଣ ଛଅଟି କାନ ଅର୍ଥାତ୍ ପ୍ରତ୍ୟେକ
Chhaṛḍakāna ଦୁଇଟି ଲେଖାଏଁ କାନ ଥିବା ତିନି ଜଣ
ଛୟକାନ ମନୁଷ୍ୟ)—୧ । ଦୁଇ ଜଣ ଜାଣି ଥିବା କୌଣସି ଗୁପ୍ତ ବିଷୟ
ତୃତୀୟ ବ୍ୟକ୍ତିର କର୍ଣ୍ଣଗୋଚର ହେବା ଅବସ୍ଥା—
1. The state of a secret (known or confined heretofore to two persons reaching the ears of a third person.
୨ । ଗୁପ୍ତ ବିଷୟର ପ୍ରକାଶ—
2. The devulgence of a secret.
ଛଡ଼କାନ ମନ୍ତ୍ର ଭେଦ । ଉଗ ।
ଦେ. ବିଣ.—ତୃତୀୟ ବ୍ୟକ୍ତି ନିକଟରେ ପ୍ରକାଶିତ ବା ତୃତୀୟ
ବ୍ୟକ୍ତିଦ୍ୱାରା ଜ୍ଞାତ (ଗୁପ୍ତ ବିଷୟ)—
Devulged (secret).

**ଛଡ଼କାନ ହେବା**—ଦେ. ବି.—ଛଅକାନ ହେବା (ଦେଖ)
Chhaṛḍakāna hebā Chha-a kāna hebā (See)

**ଛଡ଼ବିନ୍ଦୁ**—ଗ୍ରା. ବି.—ଷଡ଼ବିନ୍ଦୁ (ଦେଖ)
Chhaṛḍabindu Shaṛḍabindu (See)
ଛଡ଼ବିନ୍ଦୁ ବସିଅଛି ଲଙ୍ଗଟକ ଦେହ । ପାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।

**ଛଡ଼ରସ**—ଗ୍ରା. ବି. (ସଂ. ଷଟ୍+ରସ)=ଷଡ଼ରସ; କଟୁ, ତିକ୍ତ, ଲବଣ,
Chhaṛḍarasa କଷାୟ, ଅମ୍ଳ ଓ ମିଷ୍ଟ—ଜିହ୍ୱାଦ୍ୱାରା ବାଧ ହେବା
ଏହି ଛଅ ପ୍ରକାର ରସ ବା ଆସ୍ୱାଦ—1 The six tastes, viz pungent, bitter, saline, astringent; acid and sweet.
୨ । ସବୁ ପ୍ରକାର ମାନସିକ ବୃତ୍ତି ବା ଭାବ (ଯଥା—ଶୃଙ୍ଗାର
ବୀର; କରୁଣ; ହାସ୍ୟ; ଅଦ୍ଭୁତ ଓ ଭୟାନକ)—
1. All the mental sentiments.
୩ । ନାନା ପ୍ରକାରର ବିକାର ବା ଦୁଶ୍ଚେଷ୍ଟା
(ଗୋପୀନାଥ ନନ୍ଦ)—
3. All and sundry human passions.
ବିଣ.—କଟୁତିକ୍ତକଷାୟାଦି ଛଅଟି ଆସ୍ୱାଦଯୁକ୍ତ—
Consisting of the six kinds of taste.

**ଛଡ଼ରସବ୍ୟଞ୍ଜନ**—ଗ୍ରା. ବି. ( ସଂ. ଷଡ଼ରସ+ବ୍ୟଞ୍ଜନ )—
Chhaṛḍarasa-byañjana ଷଡ଼ରସବ୍ୟଞ୍ଜନ ( ଦେଖ )
Shaṛḍarasa-byañjana ( See ).

**ଛଡ଼ରିପୁ**—ଗ୍ରା. ବି. ( ସଂ. ଷଡ଼୍‌ରିପୁ )—ଷଡ଼୍‌ରିପୁ ( ଦେଖ )
Chhaṛḍaripu Shaṛḍripu ( See )

**ଛଡ଼ା**—ଦେ. ବି.—୧ । ସ୍ତ୍ରୀ. ( ସଂ. ଉପସର୍ଯ୍ୟା=ଗର୍ଭଧାରଣୋପଯୁକ୍ତା
Chhaṛḍā କିନ୍ତୁ ଅପ୍ରସୂତା ଗାଭୀ )—ଅପ୍ରସୂତା ଗୌ; ଅଳ୍ପ ବୟସ୍କା
ବକନା ଗାଈ; ଯେଉଁ ଗାଈ ଜନ୍ମ କରି ନ ଥାଏ—
ବସର 1. A young cow which has not yet borne any calf; heifer.
ନେଉଟି ବଡ ସୁଲକ୍ଷଣୀ, ହାଲକୁ ପ୍ରଥମେ ପଛରେ ଛଡାଟିଏ ଗାଈ—
ଫକୀରମୋହନ. ଛମାଣ ଆଠଗୁଣ୍ଠ ।
ଛାଡ଼ା ୨ । ( ସଂ. ଛେ ବା ଛୁର୍ ଧାତୁ ) ଛିଟା; ଇତସ୍ତତଃ ବିକ୍ଷିପ୍ତ ବା
ବିଚ୍ଛୁରିତ ଜଳ—2. Sprinkled water.
ପଡ଼ିଅଛି ଦ୍ରବ୍ୟ ଚନ୍ଦନପାଣି ଛଡା
ଅନେକ ଲୋକ ତହିଁ ହୋଇଛନ୍ତି ଛଡା—କୃଷ୍ଣସିଂହ. ମହାଭାରତ. ଆଦି ।
୩ । ଇତସ୍ତତଃ ଜଳାଦି ଛିଞ୍ଚିବା—3. Sprinkling.
ବାସୁ ମାର୍ଜନ ଛଡା ଦେଇ
ସୁବାସ ଜଳେ ମୁଖ ଧୋଇ—ଜଗନ୍ନାଥ ଭାଗବତ ।
୪ । କଦଳୀ, ପଣସ, ଆମ୍ବ ପ୍ରଭୃତିରୁ ଚୋପା ଛଡ଼ାଇବା—
4. Taking off the rind from fruits.
ଛଡା ୫ । ସ୍ତ୍ରୀଲୋକମାନଙ୍କର ପାଦର ଅଳଙ୍କାରବିଶେଷ, ମଳ—
छड़ा 5. An anklet for the leg.
[ ଦ୍ର—ଏ ଅଳଙ୍କାର ଗୋଡ଼ ଗଣ୍ଠି ପାଖରେ ପିନ୍ଧାଯାଏ, ଏହା
ଗୋଲ ଗୋଲ ଓ ସରୁ । ରୁପାର ପଢଲା ଛଡ଼କୁ ମୋଡ଼ି ମୋଡ଼ି

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଜ୍ଞ | ଇଯ | ଡ଼ଅ | ଙ୍କ |
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଜ୍ଞ | ନ୍ତ |

ଏହା କରାଯାଏ । ଏହା ଗୋଡ଼ରେ ଏକାଧିକ ସଂଖ୍ୟାରେ ପିନ୍ଧା ଯାଏ ଓ ଚଲାଗଣ୍ଡି ଚଲେ ଝୁଣୁଲା ହୋଇ ଥାଏ । ଚଳନ୍ତାବେଳେ ଏକାଧିକ ଛଡ଼ା ପରସ୍ପରକୁ ଆଘାତ କରିବାରୁ ଝୁଣଝୁଣ ଧ୍ୱନି ହୁଏ । ବଙ୍ଗଦେଶରେ ଓ ପଶ୍ଚିମରେ ଏହା ବ୍ୟବହୃତ ହୁଏ; ଓଡ଼ିଶାରେ ବଙ୍ଗାଭ୍ୟନୁକାରିଣୀ ସ୍ତ୍ରୀମାନେ ଏହା ପିନ୍ଧିବାର ଦେଖା ଯାଏ । ]

ছাড়া ୬ । ଅନ୍ତର; ଦୂରତ୍ୱ—6. Distance; interval.

( ଯଥା—କଟକଠାରୁ ପନ୍ଦର କୋଶ ଛଡ଼ାରେ ପୁରୀ । )

୭ । ଛାଡ଼ିବା; ତ୍ୟାଗ କରିବା—7. Act of leaving.

ছড়া ୮ । ହାର ଆଦିର ଗୋଟିଏ ସରି—

**छड़ा** 8. One string of a necklace.

ছাড়া ଦେ. ବିଣ—୧ । ଦୂରସ୍ଥ—1. Distant.

୨ । ଅନ୍ତରରେ ବା କିଛି ଦୂରରେ ଅବସ୍ଥିତ—

2. Situated apart.

ଘନୁରେ ଘର ନ ପଡ଼ୁ ବୋଲି, ଛଡ଼ା ହୋଇ ମୁଁ ଯେ ଛଡ଼ା ହେଲି—
କବିସୂର୍ଯ୍ୟ. ସଙ୍ଗୀତ ।

୩ । ବ୍ୟବହିତ—3. With interval between; separated from each other.

୪ । ( ସଂ. ଉତ୍ସୃଷ୍ଟ ) ବ୍ୟବହାର ହେବା ପରେ ପରିତ୍ୟକ୍ତ ( ଫୁଲ ଆଦି )—4. Discarded after use; cast off.

ছাড়া ଦେ. ଅ—୧ । ବିନା; ବ୍ୟତୀତ—

**छोड़, छोड़कर** 1. Without, except; besides.

( ଯଥା—ତାଙ୍କ ଛଡ଼ା ମୋର ଅନ୍ୟ କେହି ଗତି ନାହିଁ । )

୨ । ଅନ୍ତରରେ; ଦୂରରେ—2. Apart from.

**ଛଡ଼ାଇ ଆଣିବା**—ଦେ. କ୍ରି—ଛଡ଼ାଇ ନେବା ( ଦେଖ )
Chhardāi ānibā Chhardāi nebā ( See )

**ଛଡ଼ାଇ ଦେବା**— ଦେ. କ୍ରି—୧ । ରୋଗମୁକ୍ତ କରିବା—
Chhardāi debā 1. To cure
ছাড়িয়ে দেওয়া ( ଯଥା—ବୈଦ୍ୟ ଏକାବେଳକେ ମୋ ଜର ଛଡ଼ାଇ
**छुड़ादेना** ଦେଲା । )

୨ । ତ୍ୟାଗ କରାଇବା—2. To cause to give up.

( ଯଥା—ଏକା ମାଡ଼କେ ତୋ ମନ୍ଦ ଅଭ୍ୟାସ ଛଡ଼ାଇ ଦେବି । )

୩ । ଫଳରୁ ଚୋପା ବା ଗଛରୁ ବକଳ ଛଡ଼ାଇବା—

3. To remove the rind or bark.

( ଯଥା—ପାଚିଲା ପଣସଟି ଛଡ଼ାଇ ଦେଲେ ଭୋଗ ଲାଗିବ । )

୪ । ଦୁଇଜଣଙ୍କୁ ବିଭିନ୍ନ ବା ପୃଥକ୍ କରାଇ ଦେବା—

4, To separate.

( ଯଥା—ସେ ଦୁହେଁ ମାଡ଼ ମରାମରି ହେଉଥିଲେ, ମୁଁ ଛଡ଼ାଇ ଦେଲି । )

୫ । ହସ୍ତାନ୍ତର କରିବା; ବିକ୍ରି କରିବା—

5. To transfer or sell a thing.

( ଯଥା—ଧାନତକ ଶୀଘ୍ର ଛଡ଼ାଇ ନ ଦେଲେ ଗମରା ହୋଇ ଯିବ । )

୬ । ଭୃତ୍ୟକୁ ଚାକିରିରୁ ବରଖାସ୍ତ କରିବା—

6. To dismiss a servant.

( ଯଥା —ହାକିମ ମତେ ଚାକିରି ଛଡ଼ାଇ ଦେଲେ । )

୭ । ବନ୍ଧନରୁ ମୁକ୍ତ କରିବା; ଉନ୍ମୁକ୍ତ କରିବା —

7. To set free; to release

( ଯଥା—ହୁଡ଼ା କାଟି ବିଲରୁ ପାଣିତକ ଛଡ଼ାଇ ଦିଅ । )

୮ । ମନରୁ ଦୂର କରିବା — 8. To forget.

ଅଗ୍ନିବୃଷ୍ଟି ନ୍ୟବନ ସେ କନ୍ୟାକୁ ପାଇ
କ୍ରୋଧ, ହନ ସେକ୍ଷଣି ଦେଲେ ସେ ଛଡ଼ାଇ — କୃଷ୍ଣସିଂହ, ମହାଭାରତ, ବନ

୯ । ପାଣି ପକାଇ ନୈବେଦ୍ୟ ପଦାର୍ଥକୁ ଉତ୍ସର୍ଗ କରିବା—

9. To consecrate or sprinkle water on an offering.

( ଯଥା— ଯୁଦ୍ଧକୁ ଯିବା ପୂର୍ବରୁ ଯୋଦ୍ଧା ମନ୍ତ୍ରକୁ ପାଣି ଛଡ଼ାଇ ଦେଇଥାଏ । )

୧୦ । ଦେହରେ ବୋଳା ହୋଇଥିବା ଚନ୍ଦନ, ହଳଦୀ, ରଙ୍ଗ ଆଦି ପୋଛିବା, ସାଫ୍ କରିବା—

10. To clear off sandal paste, turmeric paste or paint from the body.

୧୧ । ( ବଙ୍ଗଳାରୁ ଅନୁକୃତ, ଅପର୍ଯ୍ୟାପ୍ତଭାବରେ ବୁଣି ଦେବା ବା ବାଣ୍ଟି ଦେବା—

11 To scatter broad cast

**ଛଡ଼ାଇ ନେବା**—ଦେ. କ୍ରି—୧ । ବଳପୂର୍ବକ କୌଣସି ବ୍ୟକ୍ତିଠାରୁ
Chhardāi nebā କୌଣସି ପଦାର୍ଥକୁ ଅନ୍ତର କରିବା
ছাড়িএ লওয়া ବା ନେଇଯିବା; କାଢ଼ି ନେବା—
**छुड़ालेना, छिनलेना** 1. To snatch away; to take away.

ମୟୂରବର୍ଣ୍ଣ ପର ବହୁ ଘୋଡ଼ା ଥିଲେ
ତ ହା ମଧ୍ୟ ପାର୍ଥ ଛଡ଼ାଇ ନେଇ ଗଲେ । କୃଷ୍ଣସିଂହ. ମହାଭାରତ. ସଭା ।

୨ । ବନ୍ଧକରୁ କୌଣସି ବସ୍ତୁକୁ ମୁକୁଳାଇବା—

2. To free a thing from encombrance or pledge.

୩ । କୌଣସି ବ୍ୟକ୍ତିକୁ ବନ୍ଧକ ବା ଚାକିରିରୁ ମୁକ୍ତ କରାଇ ସଙ୍ଗରେ ଆଣିବା—3. To bring back a person after causing him to give up service or to be liberated.

**ଛଡ଼ାଇବା**— ଦେ. କ୍ରି. ( ସକର୍ମକ; ଛାଡ଼ିବାର ଣିଜନ୍ତ ରୂପ; ସଂ. ଛୋରଣ;
Chhardāibā ଛନ୍ନ)—୧ । ତ୍ୟାଗ କରିବା ବାଧ୍ୟ କରିବା;
ছাড়ান ତ୍ୟାଗ କରାଇବା —1. To cause to give up.

ସାଧାରଣ ଲୋକେ ଅପର ପୃଷ୍ଠାରେ ୧ ଓ ୨ ଚକ୍ରାଙ୍କିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରାଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରାଙ୍କିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଇହାଁର ବଦଳରେ ୨ ବା ୧ ଚକ୍ରାଙ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୃଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂଁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧୋ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**छुड़ाना, छुड़वाना, छीड़ाना, छिनना, झिंड़ाना** ( ଯଥା—ମୁଁ ତାହାର ଅଫିମ ଅଭ୍ୟାସ ଛଡ଼ାଇ ଦେଲି । )

୨ । ନିକଟରୁ ଅନ୍ତର ବା ଦୂର କରିବା; ସ୍ଥାନାନ୍ତର କରିବା—
2. To remove; to cause removal.

(ଛଡ଼େଇବା—ଅନ୍ୟରୂପ) ୩ । ବଳପୂର୍ବକ କାଢ଼ି ନେବା; ବଳପୂର୍ବକ ହରଣ କରିବା 3. To snatch away; to take away by force.

( ଯଥା—କି ନ କଲୁ ମୋତେ, କନା ଖଣ୍ଡିକ ଛଡ଼ାଇ ନେଲୁ ମାଘ ମାସର ଶୀତେ । )

୪ । ଫଳରୁ ଚୋପା ବାହାର କରି ନେବା ବା ପୃଥକ୍ କରିବା-
4. To peel off the skin or rind from a fruit.

୫ । ମୁକ୍ତ କରିବା—
5, To set free; to liberated.

( ଯଥା— ବିଲରୁ ପାଣି ଛଡ଼ାଇଦିଅ । )

୬ । ପୃଥକ୍ କରିବା—6. To separate.

( ଯଥା— ଦଇବ ପ୍ରେମିକଠାରୁ ପ୍ରେମିକାଙ୍କୁ ଛଡ଼ାଇ ନେଲା । )

୭ । ('ପାଣି' ଶବ୍ଦ ସଙ୍ଗେ ବ୍ୟବହୃତ) ମଣ୍ଡଳାକାରରେ (ପାଣି) ଛିଞ୍ଚିବା ହାତରେ ଟିକେ ପାଣି ଧରି ଦେବତାଙ୍କୁ ମାନସିକ କରାଯିବା, ବା ଉତ୍ସର୍ଗ କରାଯିବା ବା ନୈବେଦ୍ୟ ଦିଆଯିବା ପଦାର୍ଥର ଚାରି ପାଖରେ ଉକ୍ତ ପାଣିକୁ ମଣ୍ଡଳାକାରରେ ଛିଞ୍ଚି ଦେବାକୁ ପାଣି ଛଡ଼ାଇବା କହନ୍ତି—
7. To sprinkle water in a circle round any thing dedicated or offered to a Deity.

( ଯଥା—ପୂଜକ ନୈବେଦ୍ୟକୁ ପାଣି ଛଡ଼ାଇ ଦେଲା । )

୮ । ହସ୍ତାନ୍ତର ବା ହସ୍ତଚ୍ୟୁତ କରିବା—
8. To shell away; to part with.

( ଯଥା—ଏ ବରଷ ଧାନଭାଉ କମି ହୋଇଯିବାରୁ ମୁଁ କୋଠିରେ ଥିବା ଧାନତକ ଛଡ଼ାଇ ପାରିଲି ନାହିଁ । )

୯ । ବନ୍ଧକରୁ ମୁକୁଳାଇବା—
9 To free a thing from encumbrance.

( ଯଥା—ଏ ବର୍ଷ ମୋର ହାତରେ ଟଙ୍କା ହେଲେ ବନ୍ଧା ପଡ଼ିଥିବା ଅଳଙ୍କାରତକ ଛଡ଼ାଇବି । )

୧୦ । ବଳିଯିବା; ଟପିଯିବା—10. To surpass

ଡୋଳା ଜ୍ୟୋତି ବୁଡାଇବ, ଶିଳୀମୁଖ ଚଳିବା ଶୋଭାକୁ ଛଡାଇବ ।
ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୧୧ । ଚମଡ଼ା ଉତାରିବା—11. To skin; to flay.

ମାଉଁସ କାଟିଲେ ତ ଛାଲ ଛଡ଼ାଇ । କୃଷ୍ଣସିଂହ. ମହାଭାରତ, ବନ ।

୧୨ । ଦେହର ମଳ ବା ଦେହରେ ବୋଳା ଯାଇଥିବା ଲେପ ବା କୌଣସି ପଦାର୍ଥ ଉପରୁ ପୁଟ ବା ରଙ୍ଗର ସ୍ତର ବା ମଇଳାକୁ ଉଠାଇ ଦେବା ବା କାଢ଼ିବା—
12. To scrape off or clear away a layer of ointment or paint or dirt from the body of some thing.

୧୩ । ନାଶ କରିବା—13. To destroy.

ତେବେ ଆସି ତୋର ଛଡାଇ ଏ ଦୁଃଖକୁ । କୃଷ୍ଣସିଂହ. ମହାଭାରତ. ବନ ।

୧୪ । ମନରୁ ସନ୍ଦେହ ଆଦି ଦୂର ହେବାର ଉପାୟ କରିବା—
14. To remove (doubt) from one's mind.

କହି ତା ଛଡାଅ ମୋ ହୃଦରୁ ସନ୍ଦେହକୁ । କୃଷ୍ଣସିଂହ, ମହାଭାରତ. ବନ ।

୧୫ । କୌଣସି ବ୍ୟକ୍ତିକୁ ବନ୍ଧନରୁ ବା ବିପଦରୁ ମୁକ୍ତ କରିବା—
15. To liberate or extricate a person from confinement or danger.

( ଯଥା—ମୁଁ ଶହେ ଟଙ୍କା ଖରଚ କରି ତାକୁ ଜେଲ ଦଣ୍ଡରୁ ଛଡ଼ାଇଲି । )

୧୬ । ଜଳାଶୟ ଆଦିରେ ଅନ୍ୟ ବ୍ୟକ୍ତି ମାଛଜାଆଁଳ ଆଦି ଛାଡ଼ିବାର ଉପାୟ କରିବା—17. To cause fish-fries to be set free in a pond.

( ଯଥା—ମୁଁ ଏ ବରଷ ପାଞ୍ଚ ହାଣ୍ଡି ଭାକୁଡ଼ ଜାଆଁଳ ଆଣି ଆମ ହାଣ୍ଡି ପୋଖରୀରେ ଛଡ଼ାଇଛି । )

୧୭ । ଡଙ୍ଗା ବା ଜାହାଜ ଆଦିକୁ କୂଳରୁ ପାଣି ଭିତରକୁ ଚଳାଇବା—17. To move a boat from the shore.

( ଯଥା—ନାହୁରିମାନେ ହରିବୋଲ ପକାଇ ବଢ଼ିଲା ନଈରେ ଡଙ୍ଗାକୁ ଛଡ଼ାଇଲେ । )

୧୮ । ( ଲକ୍ଷଣାର୍ଥ ) ( ସମ୍ପର୍କ ଆଦି ) ତୁଟାଇବା; ନିଜ ଉପରୁ ( ଦାୟିତ୍ୱ ଆଦି ) ବିଚ୍ଛିନ୍ନ କରିବା—
18. ( figurative ) Cut or any connection or responsibility from one's self.

( ଯଥା—ସେ ପୁଅ ଉପରେ ସବୁ ଭାର ଦେଇ ଆପଣା ଦେହରୁ ସବୁ ଝୁଣ୍ଟ ଛଡ଼ାଇ ବସିଛି । )

୧୯ । ( ଲକ୍ଷଣାର୍ଥ ) ଆରୋପିତ କଳଙ୍କ ବା ବଦନାମ ଦୋଷ ନିଜର ପ୍ରତ୍ୟାପନ ବା ଅପନୋଦନ କରିବା—
19. ( figurative ) To free or exonerate one's self from any stain or blame.

( ଯଥା—ତାଙ୍କ ନାମରେ ଯେଉଁ କଳଙ୍କ ଉଠିଲାଣି ତାହା ଛଡ଼ାଇବାକୁ ଯାଏ ବରଷ ଲାଗେ । )

[ଦ୍ର—ଛଡ଼ାଇବା କ୍ରିୟାର ଅସମାପିକା ରୂପ ସଙ୍ଗେ ଆଣିବା, ନେବା, ଧକାଇବା କ୍ରିୟାମାନଙ୍କର ସମାପିକା ରୂପ ଯୁକ୍ତ ହୁଏ ।]

**ଛଡ଼ାଇ ହେବା**—ଦେ. କ୍ରି. (ଛାଡ଼ିବା କ୍ରିୟାର କର୍ମବାଚ୍ୟ ରୂପ)—
Chhar̤d̤āi hebā ୧ । ସମସ୍ତଙ୍କଠାରୁ ପୃଥକ୍ ହେବା—
1. To be separated from others.

ଛଡାଇ ହୋଇ ସେ ବ୍ରହ୍ମ ରହନ୍ତି ନିରୋଳେ ।
ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

| | | | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଙ୍ଗ | ଡ଼ଅ | ଜ୍ଞ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଅ | ଞ | ନ୍ |

୨ । ଲେପନ ଦ୍ରବ୍ୟାଦି ନିଜର ଶରୀରରୁ ଛଡ଼ାଇବା— 2. To clear off paste etc smeared on ones own body.

୩ । ଚୋପା ଆଦି ଫଳ ଆଦିରୁ ପୃଥକ୍‌କୃତ ହେବା— 3. To be capable of being pulled off. (ଯଥା— କଞ୍ଚା କଦଳୀ ଛଡ଼ାଇ ହେଉ ନାହିଁ । ଦେହରେ ହଳଦୀ ଶୁଖି ନ ଥିବା ଯୋଗୁଁ ଛଡ଼ାଇ ହେଉ ନାହିଁ ।)

ଛଡ଼ାଙ୍ଗିଆ—ପ୍ରାଦେ (ମେଦିନୀପୁର) ବି. (ଏହା ଛଅ ଖଣ୍ଡ ଡାଙ୍ଗ ବା ଯଷ୍ଟିରେ Chhaṛāngiā ତିଆରି)—କୋକେଇ— A ladder-like stretcher for carrying a dead body to the cremation ground.

ଛଡ଼ା ଛଡ଼ା—ଦେ. ବିଣ.—( ବହୁବଚନ )—ପରସ୍ପରଠାରୁ ଦୂରସ୍ଥିତ/ଅ Chhaṛā chhaṛā ହୋଇ ଅବସ୍ଥିତ—Separated apart from each other.
ଛଡ଼ା ଛଡା
ফাঁক ফাঁক (ଯଥା—ତା ଦାନ୍ତଗୁଡ଼ିକ ଛଡ଼ା ଛଡ଼ା ।)

ଛଡ଼ାଛଡ଼ି—ଦେ. ବିଣ.—୧ । ଭିନ୍ନ ଭିନ୍ନ, ପୃଥକ୍ ପୃଥକ୍; ବିଚ୍ଛିନ୍ନ— Chhaṛāchhaṛi 1. Separated
ছাড়াছাড়ি ସ୍ଫୁରିବା ବେଳେ କଣ୍ୟପଙ୍କୁ ପ୍ରଚ୍ଛିଲେ.
ছীনাছীনী ଅନ୍ୟୋନ୍ୟ ହିଲେ କହିଁ ଛଡାଛଡ଼ି ହେଲେ,
ସବୁ ବର୍ଣ୍ଣ କାହାର ଅଶ୍ରସ୍ତ ଗ୍ରହଣ,
କରଣ ସୁରକ୍ଷିତ ନୁହନ୍ତି ବଖାଣ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।

୨ । (ବଙ୍ଗଳାରୁ ଗୃହୀତ) ବହୁ ପରିମାଣରେ ଇତସ୍ତତଃ ବିକ୍ଷିପ୍ତ ଅପର୍ଯ୍ୟାପ୍ତ ଭାବରେ ଇତସ୍ତତ (କୌଣସି ବସ୍ତୁ)— 2. Indiscriminately distributed or strewn. (ଯଥା—ଆଜି ଭୋଜିରେ ରସଗୋଲ୍ଲାର ଛଡ଼ାଛଡ଼ି ଲାଗିଛି । )

୩ । ପରସ୍ପରଠାରୁ କୌଣସି ବସ୍ତୁ ଛଡ଼ାଇ ନେଉଥିବା (ଦୁଇ ବ୍ୟକ୍ତି)—3. (two persons) Mutually snatching away a thing.

୪ । ଟଣାଟଣି; ଝିଙ୍କାଝିଙ୍କି— 4. Dragging each other; scuffling.

୫ । ପରସ୍ପରଠାରୁ ଅଲଗା କରାଯିବା (କଳି କରୁଥିବା କିମ୍ବା ମାଡ଼ ମରାମରି ହେଉଥିବା ଦୁଇ ବା ତତୋଽଧିକ ବ୍ୟକ୍ତି)— 5. (two person) Separated from each other while engaged in a quarrel or scuffle.

୬ । ଚୋପା ଛଡ଼ା ହୋଇ ନୈବେଦ୍ୟ ବା ଖାଦ୍ୟ ନିମନ୍ତେ ପ୍ରସ୍ତୁତ—(ଫଳ ଆଦି)—6. (fruits) Ready for use after removal of the rind.

୮ . ବି.—୧ । କୌଣସି ବସ୍ତୁକୁ ଜବରଦସ୍ତି ଝିଙ୍କି ଛଡ଼ାଇ ନେବା—1. Forcible snatching away of a thing.

୨ । ଭିନ୍ନ ଭିନ୍ନ ହେବା; ପୃଥକ୍ ହେବା; ବିଚ୍ଛେଦ— 2. Separation.
କେବେହେଁ ନ ଥିଲା ମୋ ତା ଛଡ଼ାଛଡ଼ି । ଉପ. ସୁବର୍ଣ୍ଣରେଖା ।

୩ । କୌଣସି ବସ୍ତୁର ଅପର୍ଯ୍ୟାପ୍ତ ଭାବରେ ବଣ୍ଟନ ବା ବିଞ୍ଚା ହେବା; ହରିଲୁଟ—3. Indiscriminate distribution or strewing of any thing in large quantities.

୪ । ପରସ୍ପରଠାରୁ କୌଣସି ବସ୍ତୁ ଛଡ଼ାଇ ନେବା ପାଇଁ ଦୁଇ ବ୍ୟକ୍ତିଙ୍କର ଚେଷ୍ଟା—4. The state of two persons trying to snatch away a thing from each other.

୫ । ଟଣାଟଣି; ଝିଙ୍କାଝିଙ୍କି (ଗୋପୀନାଥ ନନ୍ଦ)— 5. Bragging each other; scuffling.

୬ । କଳି କରୁଥିବା ବା ମାଡ଼ ମରାମରି ହେଉଥିବା ଦୁଇ ବା ତତୋଽଧିକ ବ୍ୟକ୍ତିଙ୍କୁ ପୃଥକ୍ କରିବା—6. Separating two persons from a scuffling.
ସାଇବାଲା ମିଶି ଛଡ଼ାଛଡ଼ି କଲେ ।
ଭୁଜଙ୍ଗଭୂଷଣ ନଅରଣି ।

୭ । ପକ୍ୱ ଫଳାଦିରୁ ଚୋପା ଛଡ଼ାଇ ନୈବେଦ୍ୟ ବା ଖାଦ୍ୟ ନିମନ୍ତେ ପ୍ରସ୍ତୁତ କରିବା— 7. Peeling off a fruit.

ଛଡ଼ାଛଡ଼ି କରିବା—ଦେ. କ୍ରି.—୧ । କୌଣସି ବ୍ୟକ୍ତିଠାରୁ କୌଣସି Chhaṛāchhaṛi kariba ପଦାର୍ଥ ଟାଣି ଝିଙ୍କି ବଳପୂର୍ବକ ছাড়াছাড়ি করা ନେବାକୁ ଚେଷ୍ଟା କରିବା-1. To try to छिनाछिनि करना snatch away a thing from a person.

୨ । କଳି କରୁଥିବା ଦୁଇ ବା ତତୋଽଧିକ ବ୍ୟକ୍ତିଙ୍କୁ ପୃଥକ୍ କରିବା—2. To separate two persons scuffling or quarrelling with each other.

ଛଡ଼ାଛଡ଼ି ହେବା—ଦେ. କ୍ରି.—୧ । ପରସ୍ପରରେ କୌଣସି ଜିନିଷକୁ Chhaṛā chhaṛi hebā କାଢ଼ି ନେବା—1. To mutu- छीनाछीनी होना ally snatch away a thing from each other.

୨ । ପରସ୍ପରଠାରୁ ପୃଥକ୍ ହେବା—2. To be separated from each other.

୩ । ( ଖାଦ୍ୟପଦାର୍ଥ ) ଅପର୍ଯ୍ୟାପ୍ତ ଭାବରେ ବଣ୍ଟା ଯାଉଥିବା— 3. ( a food ) To be indiscriminatly distributed.

ଛଡ଼ାଣ—ଦେ. ବି.—(ସଂ. ଛୋରଣ; ଛେଦନ)—୧ । ଛାଡ଼ିବା, ତ୍ୟାଗ Chhaṛāṇa କରିବା—1. Forsaking; the act of giving up.
ছাড়া
छुट २ । ଅନ୍ତର; ବ୍ୟବଧାନ—2. Interval.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ।

୩ । ବିଚ୍ଛେଦ—3. Separation.
୪ । ଅବକାଶ; ଫୁରସତ୍—4. Leisure; respect.
୫ । ମୁକ୍ତି—5. Relief; release.

**ଛଡ଼ାପହଁରା**—ଦେ. ବି—ଛରାପହଁରା (ଦେଖ)
Chhardāpahañrā Chharāpahañrā (See)
ଛଡ଼ାଝାଟି

**ଛଡ଼ାଫୁଲ**—ଦେ. ବି. ( ସଂ. ଛିନ୍ନ+ପୁଷ୍ପ ) —ଦେବତା ବା ମନୁଷ୍ୟଙ୍କର ବ୍ୟବହାର ପରେ ଯେଉଁ ଫୁଲ ଶରୀରରୁ କଢ଼ାଯାଇଥାଏ; ଉଲ୍ଲଗି ଫୁଲ—Flower taken off the body after use or enjoyment; discarded; cast off.
Chhardāphula

ସବୁ ସମ୍ପଦ ଦେବା ଭୁଲ, ଛାଡ଼ିଲୁଁ ଯେସ୍ନେ ଛଡ଼ା ଫୁଲ ।
ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

[ ଦ୍ର—ଏହିପରି ଅର୍ଥରେ ଛଡ଼ା ବୋଲପତ୍ରି, ଛଡ଼ା ମାଳ ଇତ୍ୟାଦି ମଧ୍ୟ ହୁଏ । ]

**ଛଡ଼ାହାଣ୍ଡି**—ପ୍ରାଦେ. (ମେଦିନୀପୁର) ବି. (ଭୁଲ. ବି. ଛଡ଼ାହାଁଡ଼ି)—ପ୍ରତିଦିନ ସକାଳେ ଅଗଣାରେ ଛିଞ୍ଚିବା ପାଇଁ ମାଟିଗୋବରମିଶା ପାଣି ଯେଉଁ ହାଣ୍ଡିରେ ଥାଏ—The pot in which cowdung dessolved in water is kept for sprinkling over the courtyard.
Chhardāhāndi

**ଛଡ଼ି**—ଦେ. ବି. (ସଂ ଶର; ସରଳ)— ୧ । ସରୁ ଲମ୍ବ ଯଷ୍ଟି—
Chhardi — 1. Long and slender stick; rod.
ଛଡ଼ୀ
ଛଡ଼ୀ
୨ । ହାତରେ ଧରା ହେବା ସରୁ ବାଡ଼ି—
2. Walking stick.
୩ । ବେହେଲା ବଜାଇବା କାଠି—
3. The bow of a violin
୪ । ଶୋଭାଯାତ୍ରାରେ ମହନ୍ତ ଓ ରାଜାମାନଙ୍କ ଗହଣରେ ନିଆଯିବା ଚିତ୍ରିତ ଓ ଖଚିତ ଠେଙ୍ଗା; ଆଶାବାଡ଼ି—
4. A thick ornamented stick borne as an insignia with kings and big people in processions.
୫ । ଝରକାଆଦିରେ ଲଗିବା ଧାତୁର ଯଷ୍ଟି—
5. Metal rod or railing.
୬ । ମୁସଲମାନ୍‌ମାନେ ପୀରଙ୍କ ଆସ୍ଥାନରେ ଉଡ଼ାଇବା ପତାକା; ଝଣ୍ଡା—6. A flag presented by Mahomedans to be flown over the shrine of a saint.
୭ । (ଦରଜୀଙ୍କ ଭାଷା) ଜାମାଆଦିରେ ଠିଆ ବାଗରେ ସିଲାଇ କରାଯାଇଥିବା ଲମ୍ବ ଓ ସରୁ ବସ୍ତ୍ରଖଣ୍ଡ—
7. (tailors' phraseology) A long and strip of cloth sewn to a coat in an erect position.

[ ଦ୍ର—ଯେଉଁ ସରୁଆ ବସ୍ତ୍ର ଖଣ୍ଡ କୁରୁତାଆଦିରେ ଆଡ଼ବାଗରେ ଦିଆଯାଏ ତାକୁ ପଟି ବୋଲାଯାଏ । ]
୭ । ଆଡ଼ମ୍ବର ( ଗୋପୀନାଥ ନନ୍ଦ )—
7. Ado; splendour; display.

**ଛଡ଼ିଦାର୍**—ଦେ. ବି. (ଓଡ଼ିଆ. ଛଡ଼ି+ଫା. ପ୍ରତ୍ୟୟ ଦାର୍; ଭୁଲ. ସଂ. ଧାରୀ)—୧ । ରାଜା ଓ ମହନ୍ତ ଆଦିଙ୍କ ଗହଣରେ ଶୋଭାଯାତ୍ରାଦିରେ ଯିବା ବେତ୍ରବାହକ ସିପାହୀ ବା ପାଇକ, ବେତ୍ରଧାରୀ ପାଇକ, ଆସାବରଦାର—
Chhardidār
ଛଡ଼ିଦାର୍
ଛଡ଼ୀଦାର
1. A peon carrying a thick stick (insignia) with a Rājā or a big person in a processin.

ଛଡ଼ିଦାରେ ଯେ ସୁନା ରୁପା ଛଡ଼ି ବହି
ଛଡ଼ା ହୋଇ ଅଛନ୍ତି ଧାଡ଼ି ଧାଡ଼ି ହୋଇ । କୃଷ୍ଣସିଂହ. ମହାଭାରତ ଆଦି

୨ । ଦ୍ୱାରପାଳ; ଦରୁଆନ—
2. Door keeper; porter.
ଦେ. ବିଣ—୧ । ଯେ ଆଡ଼ମ୍ବର କରେ; ଆଡ଼ମ୍ବରପ୍ରିୟ (ଗୋପୀନାଥ ନନ୍ଦ)—1. Fond of display.
୨ । ଯହିଁରେ ଛଡ଼ିଲଗି ଥାଏ—
2. Furnished with metal rods.
( ଯଥା—ଛଡ଼ିଦାର ଝରକା । )

**ଛଡ଼ିନ୍ଦା**—ଗ୍ରା. ବିଣ. ପୁଂ ଓ ସ୍ତ୍ରୀ—୧ । ଶଡ଼କା (ଦେଖ)
Chhardindā — 1. Sardakā (See)
ଛନ୍ନାଲ; ଛିନାଲ
୨ । ଚେଙ୍ଗଡ଼ିଆ; ହୃଷ୍ଟପୁଷ୍ଟ; ଡେଙ୍ଗା ଓ ବଳଷ୍ଠ—
2. Stout and strong; tall.
[ ଦ୍ର—ଭୁଲ, ହି. ଛଣ୍ଡା=ଏକାକୀ, ଏକଲା, ଆ. ଜଣ୍ଡାଦିଡ଼ ]
(ଯଥା—ସେ ପାଞ୍ଚହାତିଆ ଛଡ଼ିନ୍ଦା ମରଦ । )

**ଛଡ଼ିବରଦାର୍**—ଦେ; ବି. (ଓଡ଼ିଆ. ଛଡ଼ି+ଫା. ପ୍ରତ୍ୟୟ ବରଦାର୍)—
Chhardibardār — ଛଡ଼ିଦାର୍ ୧ (ଦେଖ)
ଛଡ଼ୀବବଦାର — Chhardidār 1 (See)

**ଛଣ୍**—ପ୍ରାଦେ. (ସମ୍ବଲପୁର) ବି—ଛନ୍ (ଦେଖ)
Chhan — Chhan (See)

**ଛଣ**—ଦେ. ବି. (ସଂ. ଖଡ଼; ଖେଟ —୧ । ଧାନଗଛର ଶୁଷ୍କ କାଣ୍ଡ; ନଡ଼ା—
Chhana — 1. Straw (of paddy plants).
ଖଡ଼
ଖଡ଼
[ ଦ୍ର—ପୂର୍ବାଞ୍ଚଳର ତଳମାଳ ଅଞ୍ଚଳରେ ଧାନଗଛକୁ ବାଡ଼େଇ ତହିଁରୁ ଧାନ କାଢ଼ିନେବା ପରେ ଗଛର ଯେଉଁ ଅଂଶ ରହେ ତାହାକୁ 'ଛଣ' କହନ୍ତି । ଏହା ନଡ଼ାଠାରୁ ଲମ୍ବ । ଧାନଗଛର ଅଗ କଟା ହୋଇ କେଣ୍ଡାମାନଙ୍କୁ ପୃଥକ୍ କଲା ପରେ ଯେଉଁ ଅଂଶ ରହେ ତାହାକୁ 'ନଡ଼ା' କହନ୍ତି । ସାଧାରଣତଃ ନଡ଼ା ଓ ଛଣ ଏକ ଅର୍ଥରେ ବ୍ୟବହୃତ ହୋଇଥାଏ । ବେଙ୍ଗଲା ପଡ଼ ଅଲଅ ତଲଅ ହୋଇଯିବା ଛଣକୁ ପାଲ ବା କୁଟା କୁହାଯାଏ । ]
୨ । ବେଣା—2. Thatching reed.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇସ୍ଥ | ଉଅ | ଓ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ଋୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟିଂ | ଇଅ | ଡ଼ | ନ୍ତ |

ଶନ ୩ । (ସ. ଶଣ)—ଛଣପଟ; ଏକପ୍ରକାର ଝୋଟ—
ସନ 3. Flax (a fibrous plant)

**ଛଣଖାଇ**—ଦେ. ବି—ଘରଚାଳର ଶେଷ ବା ନିମ୍ନରେ ଛପରବନ୍ଧ ହୋଇ-
Chhaṇa-khāi ଥିବା ଛଣକୁ ଅଟକାଇ ରଖିବା ନିମନ୍ତେ ଦିଆ ଯାଇଥିବା ଲମ୍ବ ପଟା—A long plate attached to the lower end of the thatched frame-work of a house to keep the straw in position.

**ଛଣଗୁଣ୍ଡ**—ଦେ ବି—ଘରଚାଳରୁ ତଳକୁ ଝଡ଼ିଥିବା ଛଣର କ୍ଷୁଦ୍ର କ୍ଷୁଦ୍ର
Chhaṇa-guṇḍa ଖଣ୍ଡ—Small pieces of straw which
(ଛଣଗୁଣ୍ଡି—ଅନ୍ୟରୂପ) drop from the main body of straw while being handled.

**ଛଣପଟ**—ଦେ. ବି. (ସ. ଶଣ ଓ ପଟ୍ଟ; ପାଟ ବା ରେଶମ ସଦୃଶ ଶଣ)—
Chhaṇapaṭa ତନ୍ତୁମୟ ଗୁଳ୍ମଜାତୀୟ ବୃକ୍ଷବିଶେଷ—Flax; the
ଅନ୍ୟ ସ. ନାମ—ଶଣ, ଶଣ- Sunhemp; Crotolaria Juncea;
ପୁଷ୍ପୀ, ଘଣ୍ଟା, ବସନ, ତ୍ୱକ୍‌ସାର, hemp; Cannabis ( Haines ).
ବୃହତ୍‌ପୁଷ୍ପୀ, ଘଣ୍ଟାରବ [ ଦ୍ର—ଏହା ଶିମ୍ବାଦିବର୍ଗର କୃଷି-
ଶଣ, ଶନ, ଝନଝିନିଆ, ଝନଝନ ଜାତ ଗୁଳ୍ମ, ଏଥିର ଫୁଲ ହଳଦିଆ ଓ
ସନ, ସୁନାଖୁନିଆ, ଆକାରରେ ଘଣ୍ଟି ପରି । ଶୁଖି ଗଲେ
ବନଶଣାଇ, ଘାଗାହି ଛୁଇଁ ଭିତରର ମଞ୍ଜିଗୁଡ଼ିକ ଝୁଣ୍ଝୁଣ
ଫା. ଲାଜନାଂ ବାଜେ । ଏଥିର ତନ୍ତୁ ଝୋଟ ଅପେକ୍ଷା
ତା. ଯେନାପ୍ପାନାର, ଟିଲଗିଜା ଟାଣ ଓ ଚିକ୍କଣ । ଏଥିରେ ଜାଲ
ତେ. ଯେନାପାନାର, ବୁଣାଯାଏ ଓ ଥଳି ହୁଏ । ପୂର୍ବକାଳରେ
ଶଣାମଭୁବେଲ୍ଲ ଛଣପଟ ସୂତାରେ କ୍ଷତ୍ରିୟଙ୍କର ପଇତା ବନା ଯାଉଥିଲା । ଏହାର ତନ୍ତୁ ଅତ୍ୟନ୍ତ ସୁଦୃଢ଼ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା କଟୁ, ତିକ୍ତ, ବମନକାରକ ଓ ବାତ, ପିତ୍ତ ଓ କଫ ନିବାରକ, ମଳନିଃସାରକ; ଏହାର ଫୁଲ ମଳରୋଧକ ଓ ରକ୍ତପିତ୍ତନାଶକ । ଏହାର ବୀଜଚୂର୍ଣ୍ଣ ରକ୍ତଶୋଧକ । ]

**ଛଣା**—ଦେ. ବି—୧ । ଛାଣିବା—1. Passing through a sieve;
Chhaṇā sifting; straining.
ଛାଁକା ୬ । ଯେଉଁ ଯନ୍ତ୍ର ବା କନାଦ୍ୱାରା ଗୁହା ଆଦି ଛଣା ଯାଏ—
ଛନ୍ନା 2. Straining pot or cloth.
( ଯଥା—ଗୁଆଛଣା, ଭାଙ୍ଗଛଣା । )
୩ । ଜାଲର କ୍ଷେପ—3. Throw of a net.
( ଯଥା—ସେ ଏକା ଛଣାକେ ଗୁରୁଟା ବଡ଼ ମାଛ ଧରିଛି । )
ଦେ. ବିଣ—୧ । ଛଣା ହୋଇଥିବା; ଚାଲୁଣୀ ବା ଜାଲ ବା ଲୁଗାର ସୂକ୍ଷ୍ମ ଛିଦ୍ରବାଟେ ଚଲାଯାଇ ଖଦଡ଼ା ବା ବଡ଼ ଅଂଶମାନ ବାହାର କରାଯାଇଥିବା—1. Strained; passed through a sieve; sifted; filtered.
୬ । ବିମଳ; ପରିଷ୍କୃତ—2 Cleansed ( liquid ).
ଛଣା ସୁଧା ପରି ଭଣେ—କବିସୂର୍ଯ୍ୟ, କଳୋଚନ୍ଦ୍ର, ଛ'ଗୀତ ।
୩ । ଯେଉଁ ଘନ ପଦାର୍ଥ (ଯଥା—ଭାତ ) ପାଣି (ଯଥା—ପେଜ) ମଧ୍ୟରୁ ଛଣା ହୋଇଥାଏ—3. ( any solid e g. rice ) Got after straining the liquid ( e. g. rice-gruel ) in which it was immersed or mixed.

**ଛଣାଇବା**—ଦେ. କି—ଛାଣିବାର ଣିଜନ୍ତ ରୂପ—
Chhaṇāibā Causative form of Chhāṇibā.
ଛାଁକାନ
ଛନାନା
( ଛଣେଇବା—ଅନ୍ୟରୂପ )

**ଛଣା ଦେବା**—ପ୍ରାଦେ ( ବାଲେଶ୍ୱର ) କି—ଖିଅ ଦେବା ( ଦେଖ )
Chhaṇā debā Khia debā ( See)

**ଛଣା ପିତଳ**—ଦେ. ବି - ବିଶୁଦ୍ଧ ଓ ଦୀପ୍ତିମୟ ପିତ୍ତଳ ଧାତୁ—Pure
Chhaṇā pitaḷa and shining brass (metal ).

**ଛଣା ସୁଧା**—ଦେ. ବି—ଖାଣ୍ଟି ଅମୃତ; ବିଶୁଦ୍ଧ ଅମୃତ—
Chhaṇā sudhā Pure nectar; filtered nectar.
ଛାଁକା ସୁଧା ଛଣା ସୁଧା ସରପଣାରୁ ମଧୁର ଲାଗୁଥିଲା ଶ୍ୟାମପ୍ରୀତ—କବିସୂର୍ଯ୍ୟ, ସଙ୍ଗୀତ ।

**ଛଣି**—ଦେ. ବିଣ. ( ସ ଶଣ )—ଛଣପଟରେ ନିର୍ମିତ—
Chhaṇi Hempen.
ଦେ. ବି—୧ । ଯହିଁରେ ଗୁହା ଛଣାଯାଏ—
1. A straining pot; strainer.
୬ । ଛଣପଟର ଦଉଡ଼ି ବା ସୁତୁଲି—
2. Hempen rope or twist.
୩ । ଛଣପଟ ସୁତୁଲିରେ ବୁଣା ହୋଇଥିବା ଟଙ୍କା ରଖିବାର ଥଳି ବା ଡୋଡ଼୍ବା ବା ତୁଣି—3. A net purse or bag made of San-hemp.
୪ । ଛଣପଟ—4 San-hemp.
ବକଲ ଛଣିଠାରୁ ପାଟ ଲୁଗାଯାଏ
ଯାହା ମିଳଇ ତାହା ପିନ୍ଧଇ ମୁଁ ବସ୍ତ୍ରେ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।

**ଛଣିଦା**—ପ୍ରାଦେ. ବିଣ. (କଟକ)—ନିର୍ଭୟ ଓ ଆଡ଼ମ୍ବରଯୁକ୍ତ—
Chhaṇidā Fearless and pompous.
(ଛଣିନ୍ଦା—ଅନ୍ୟରୂପ) ( ଯଥା—ସେ ଭାରି ଛଣିଦା ହୋଇ ଏଠାକୁ ଆସିଥିଲା ଯେ ତାକୁ କେହି ପଚାରିଲେ ନାହିଁ । )

**ଛଣି ନେବା**—ପ୍ରାଦେ. (ସିଂହଭୂମ) କି—ଛଡ଼ାଇ ନେବା—
Chhaṇi nebā To snatch away.

**ଛଣିବା**—ପ୍ରାଦେ. ( ସିଂହଭୂମ )—ଛଡ଼ାଇ ନେବା—
Chhaṇibā To snatch away.

**ଛଣ୍ଟା**—ଦେ. ବି. ( ସ. ଛେଦନ )—(କ୍ଷୁରକର୍ମ ବିନା ଓ କେଶ ଆଦିର )
Chhaṇṭā ଛେଦନ—Cutting; clipping
ଛାଁଟା
ଛାଁଟ, ଛାଁଟାଇ

ସାଧାରଣ ଲୋକେ ଅପର ଦୃଷ୍ଟାରେ ଦନ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତନ୍ନିର ଦପସ୍ଥିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ, 'ବନ୍ଦ' ନ ପାଇଲେ 'ବନ୍ଧ' ଦେଖିବେ; 'ଅଗିଆ' ନ ପାଇଲେ 'ଅଙ୍ଗା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଛଣ୍ଟାଇବା**—ଦେ. କ୍ରି—ଛଣ୍ଟିବାର ଣିଜନ୍ତ ରୂପ—
Chhaṇṭāibā Causative form of Chhāṇṭibā.
ছাঁটান
छँटाना
(ଛଣ୍ଟେଇବା—ଅନ୍ୟରୂପ)

**ଛଣ୍ଟାଛଣ୍ଟି**—ଦେ. ବି—୧ । ମୁଣ୍ଡର ବାଳକୁ କଟୁରିବା କର୍ମ—
Chhaṇṭā-chhaṇṭi 1. Act of cropping the hair.
ছাঁটাছাঁটি ୨ । ଗଛର ଅଗ ଡାଳକୁ କାଟିବା କର୍ମ—
छँटाव 2. Pruning.

**ଛଣ୍ଡା**—ପ୍ରାଦେ. (ସିଂହଭୂମ) ବି. ପୁଂ. (ତୁଳ. ବ. ছোঁড়া=ଟୋକା)—
Chhaṇḍā ୧ । ଟୋକା—1. Chap.
(ଛଣ୍ଡୀ—ସ୍ତ୍ରୀ) ୨ । ଦାସ; ଚାକର—2. Servant.

**ଛଣ୍ଡୀ**—ପ୍ରାଦେ. (ସିଂହଭୂମ) ବି. ସ୍ତ୍ରୀ. (ତୁଳ. ବ. ছুঁড়ী)—
Chhaṇḍī ବଡ଼ କନ୍ୟା; ପ୍ରାପ୍ତବୟସ୍କା ବାଳିକା—
A grown up girl or bride.

**ଛତ୍**—ପ୍ରାଦେ. (ହିନ୍ଦୀ) ବି—ବିହାର ପ୍ରଦେଶର ପର୍ବବିଶେଷ; ଛଟ୍ (ଦେଖ)
Chhat A festival in Behar; Chhaṭ (See)

**ଛତ**—ଦେ. ବି. ( ସଂ. ଛଦ୍, ସଂ. ଛତ୍ର; ପ୍ରା. ଛତ୍ତ )—
Chhata କୋଠା ଉପରର ଆବରଣ—
ছাদ Roof of a building.
छत ଗ୍ରା. ବି. (ପ୍ରାଚୀନ ପଦ୍ୟ) ବି—କ୍ଷତ—Wound.

ଆଶ୍ଳେଷ ଚୁମ୍ବନ କରି, ନଖଦନ୍ତ ଛତ ସାରି
ରତି ଜୟ କରି ଶାନ୍ତ ପ୍ରବୋଧ ବାଣୀ । ପ୍ରାଚୀ. ରସବାରିଧି ।

**ଛତଉରୀ**—ଦେ. ବି. ( ସଂ. ଶତାବରୀ )—ଶତାବରୀ ( ଦେଖ )
Chhataurī Śatābarī ( See )

**ଛତର**—ଦେ. ବି. ( ସଂ. ସତ୍ର )—
Chhatara ୧ । ଅନ୍ନସତ୍ର; ଯେଉଁଠାରେ ରନ୍ଧା ଭାତ ପ୍ରଭୃତି
ছত্র ଖାଦ୍ୟ କଙ୍ଗାଳମାନଙ୍କୁ ବଣ୍ଟାଯାଏ; ସଦାବ୍ରତ—
छत्तर 1. A place where boiled rice is freely distributed to beggars ( without distinction ); a public kitchen.
୨ । ଜଳସତ୍ର—2. A place where water is distributed free to thirsty travellers.
ଗ୍ରା. (ପଦ୍ୟ) ବି: ( ସଂ. ଛତ୍ର )—ଛତା—Umbrella.
ଛ ଅକ୍ଷର ହୋଇଛି ଛତର ଯେ ସତ । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।

**ଛତରଖାଇ**—ଦେ. ବି. ସ୍ତ୍ରୀ. (ସଂ. ଛତ୍ର+ଖାଦକ) ( ସ୍ତ୍ରୀଲୋକମାନଙ୍କୁ
Chhatara-khāī ଗାଳି)—୧ । ନୀଚ ଲୋକ ସଙ୍ଗମକାରିଣୀ ବେଶ୍ୟା;
(ଛତରଖିଆ—ପୁଂ) ଖାନଗୀ—1. A low class prostitute; a whore.
খানকী
खानगी ୨ । ନଷ୍ଟଚରିତ୍ରା ସ୍ତ୍ରୀ—2. A fallen woman; a profligate woman.
୩ । ମାଗିଖାଇ—
3. A wandering beggar-woman.

**ଛତରଖିଆ**—ଦେ. ବିଣ. ପୁଂ. ( ସଂ. ସତ୍ର+ଖାଦକ )—
Chhatara-khiā ୧ । ଯେ ଅନ୍ନସତ୍ରରେ ରନ୍ଧା ଭାତ ଖାଏ—
(ଛତରଖାଇ—ସ୍ତ୍ରୀ) 1. Taking food cooked in a
ছন্নছাড়া public kitchen.
୨ । ଯାହାର ଜାତିବାରଣ ନାହିଁ—
2. Observing no caste-distinction.
୩ । ବାଉଳା—3. Wandering; vagabond.
ଦେ. ବି—୧ । ଓଡ଼ିଶାରେ ନଅଙ୍କ (୧୮୬୬ ସାଲ) ଦୁର୍ଭିକ୍ଷରେ ସରକାର ଖୋଲିଥିବା ଅନ୍ନସତ୍ରରେ ଭାତ ଖାଇ ଯେଉଁ ହିନ୍ଦୁମାନେ ସମାଜଭ୍ରଷ୍ଟ ହୋଇଥିଲେ—
1. Those who lost their caste by eating rice in the public kitchens opened by the Government during the great famine of 1866 A. D. in Orissa.

[ ଦ୍ର—ନଅଙ୍କ ଦୁର୍ଭିକ୍ଷରେ ଏହି ନରନାରୀମାନଙ୍କୁ ଏମାନଙ୍କ ସମାଜ ଗ୍ରହଣ ନ କରିବାରୁ ଅଗତ୍ୟା ଜାତିବର୍ଣ୍ଣର ନ କରି ଛତରଖିଆ ସଙ୍ଗେ ଛତରଖାଇମାନେ ଗାନ୍ଧର୍ବ ବିବାହ କଲେ ଓ ଏହିପରି ଗୋଟିଏ 'ବାରଜାତିଆ' ସମାଜର ସୃଷ୍ଟି ହେଲା । ଏମାନଙ୍କ ବଂଶଧରମାନଙ୍କ ମଧ୍ୟରେ ବିବାହଦ୍ୱାରା ଆଦାନ ପ୍ରଦାନ ଚାଲୁଅଛି । ଅନେକ ସ୍ତ୍ରୀଲୋକ ନୀଚସମାଜରେ ବେଶ୍ୟାବୃତ୍ତି କଲେ ଓ ଅନ୍ୟ କେତେକ ଛତରଖିଆଙ୍କୁ ପାଦ୍ରୀମାନେ ନୂଆ ଗ୍ରାମମାନ ବସାଇ ଖ୍ରୀଷ୍ଟାନ୍ କରାଇ ଓଡ଼ିଶାରେ ଖ୍ରୀଷ୍ଟିଆନ୍ ସମାଜ ପ୍ରତିଷ୍ଠା କଲେ; କ୍ରମଶଃ ଛତରଖିଆମାନେ ହିନ୍ଦୁସମାଜରେ ଆପଣାକୁ ରଜପୁତ, ଛତ୍ରୀ ଆଦିରୂପେ ପରିଚୟ ଦେଉଅଛନ୍ତି । ]

୨ । ନଅଙ୍କରେ ଛତରରେ ଅନ୍ନ ଖାଇଥିବା ବ୍ୟକ୍ତିମାନଙ୍କର ବଂଶଧର—2. The discendants of the persons who were excluded from the Hindu society for having taken cooked rice in public Government kitchens during the great famine of Orissa (1866).
୩ । ବାଉଳା; ଯାହାର ଜାତିପତି କିଛି ନାହିଁ ଓ ଯେ ଯେଉଁଠାରେ ଇଚ୍ଛା ସେଠାରେ ଖାଏ—
3. A homeless vagrant observing no caste-distinction, taking food everywhere and belonging to no caste or society.
୪ । ମାଗିଖିଆ ବ୍ୟକ୍ତି—4. A wandering beggar.

**ଛତରଙ୍ଗି**—ଗ୍ରା. ବି—ସତରଞ୍ଜି (ଦେଖ)
Chhataraṅgi Satarañji (See)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇସ୍ତୃ | ଉ୍ଥ | ଘ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଡ଼ | ନ୍ତ |

**ଛତରଛାଉଳ**—ଦେ. ବ. ( ସ. କ୍ଷିପ୍ତ; ସ. ଛନ୍ନବିଚ୍ଛିନ୍ନ )—
Chhatara-chhāuḷa ୧ । ସମୂଳେ ବିନାଶ—
1 Annihilation; ruin.
୨ । ଛତ୍ରଭଙ୍ଗ—2. Being scattered on all sides.
ছতিচ্ছন্ন ଦେ. ବଣ—୧ । ଇତସ୍ତତଃ ବିକ୍ଷିପ୍ତ; ଛିନ୍ନଭିନ୍ନ—
ছিতরবিতর 1. Scattered on all sides.
ଛତରଛାଉଳ } ଅନ୍ୟରୂପ ୨ । ବିଧ୍ୱସ୍ତ; ଛାରଖାର—
ଛତରଛାଉଳ 2. Ruined; laid waste.
୩ । ଚୂର୍ଣ୍ଣବିଚୂର୍ଣ୍ଣ—3. Reduced to powder; reduced to small pieces.
୪ । ଯାହା ବହୁ ଉଚ୍ଚରୁ ପଡ଼ି ଛିନ୍ନଭିନ୍ନ ହୋଇ ଖଣ୍ଡ ଖଣ୍ଡ ହୋଇ ବିସ୍ତୃତ ହୋଇଯାଏ—4. Strewn in fragments or many pieces, having fallen from a great height.
( ଯଥା—କଞ୍ଚାରୁଚିଟା ଗୃହଉପରୁ ଖସି ପଡ଼ି ଅଗଣାରେ ଛତରଛାଉଳ ହୋଇଗଲା )

**ଛତର ଦେବା**—ଦେ. କ୍ରି—ଦୁର୍ଭିକ୍ଷବେଳେ ଭାତ ରନ୍ଧାଇ ଗରିବଙ୍କୁ
Chhatara debā ଖାଇବାକୁ ଦେବା ନିମନ୍ତେ ଅନ୍ନସତ୍ର ସ୍ଥାପନ
ছত্রবসান କରିବା—To open a public kitchen for distribution of boiled rice gratis to famine-stricken people.

**ଛତର ବସା(ସେ)ଇବା**—ଦେ. କ୍ରି.—ଛତର ଦେବା (ଦେଖ)
Chhatara basā(se)ibā Chhatara debā (See)

**ଛତରରେ ପଶିବା**—ଦେ. କ୍ରି.—୧ । ଉଦରଜ୍ୱାଳାରେ ଜାତି ବା
Chhatarare pasibā ସମାଜବନ୍ଧନ ନ ମାନି ଅନ୍ନସତ୍ରରେ ଭାତ ଖାଇବା—1. To eat cooked rice in a public kitchen by disregarding social restrictions
୨ । ଅନ୍ନସତ୍ରରେ ରନ୍ଧା ହୋଇଥିବା ଭାତ ଖାଇବା ହେତୁରୁ ଜାତି ହରାଇବା—2. To lose one's caste or to be excluded from the pale of one's society by taking rice from a public kitchen.
୩ । ( ପୁରୁଷଙ୍କ ପ୍ରତି ଗାଳିବିଶେଷ ) ଜାତି ହରାଇବା; ଅଜାତିଅଙ୍କ ଘରେ ପକ୍ୱାନ୍ନ ଖାଇବା—3. (a term of abuse to males) To lose one's caste; to take food cooked by people of low caste.
୪ । (ସ୍ତ୍ରୀଙ୍କ ପ୍ରତି ଗାଳିବିଶେଷ)—କୁଳରୁ ବାହାର ଯାଇ ମିଛ ବେଶ୍ୟାବୃତ୍ତି କରିବା; ବଜାଡ଼ାଣ୍ଡିକୁ ଯିବା—
4. (a term of abuse to females) To go out of one's family and take to prostitution.

**ଛତରା**—ଦେ. ବଣ. ପୁଂ.—୧ । (ସ. ସତ୍ର)—ଛତରଖିଆ; ଯେ ଏଣେ
Chhatarā ତେଣେ ବୁଲୁଥାଏ; ବାଉବୁଲା—
ছেঁচড়া 1. Vagrant.
বহেতু, ছিছোরা ୨ । (ସ. ଛିତ୍ୱର=ଧୂର୍ତ୍ତ) ଧୂର୍ତ୍ତ; ଭଣ୍ଡ—
(ଛତରୀ—ସ୍ତ୍ରୀ) 2. Cheat
ଛତରାଙ୍ଗି } —ବି. ୩ । ଦୁଷ୍ଟ; ବଗୁଲିଆ; ଖେଚଡ଼ା; ଛେଚଡ଼ା—
ଛତରାମି 3. Wicked; wanton; dessolute.
୪ । (ଗାଳିବିଶେଷ) ଯାହାର ଘର ବା ଜାତି କିଛି ନାହିଁ—
4. (a term of abuse) Belonging to no society; homeless.
୫ । (ସ. ବିସ୍ତୃତ; ସ. କ୍ଷିପ୍ତ. ପ୍ରା. ଛିତ୍ତ) ଗୃହ ଅଡ଼େ ବିସ୍ତୃତ ହୋଇଥିବା; ଚଉଡ଼ା—4. Spreading; extending on all sides.
(ଯଥା—ଛତରା ବର ।)

**ଛତରାଇବା**—ଦେ. କ୍ରି.—ଛତରେଇବା (ଦେଖ)
Chhatarāibā Chhatareibā (See)

**ଛତରାଙ୍ଗି**—ଦେ. ବ.—୧ । ଛତରାପଣିଆଁ—
Chhatarāṅgi 1. The state of a vagrant.
ছেঁচড়ামী ୨ । ଭଣ୍ଡାମି—2. Wantonness.
ছিছোরপন ୩ । ଖେଚେଡ଼ାଙ୍ଗି—3. Wickedness.
(ଛତରାମି—ଅନ୍ୟରୂପ)

**ଛତରିଆ**—ଦେ. ବି.—ଭଦଭଦଳିଆ ପରି ଏକ ପ୍ରକାର ମଧୁରସ୍ୱର-ବିଶିଷ୍ଟ
Chhatariā ପକ୍ଷୀ—The thrush; Turdus
ছতবিআ, ছাতারে Mustelinus.

**ଛତରେଇବା**—ଦେ. କ୍ରି.—୧ । (ସ. 'ଛତ୍ର'ର ନାମଧାତୁ 'ଛତ୍ରାୟତେ)
Chhatareibā ସ. ଛତ୍ରାକାର)—୧ । (ଅକର୍ମକ) ଛତ୍ରାକାରରେ
ছাতরান, ছাঁতলান ବିସ୍ତୃତ ହେବା—1. ( intransitive ) To
ছিতরানা spread out like an umbrella.
(ଯଥା—ଏ ବରଗଛଟା ଖୁବ ଛତରେଇଛି ।)
୨ । ( ସ. କ୍ଷିପ୍ତକରଣ; ପ୍ରା. ଛିତ୍ତରଣ ) (ସକର୍ମକ)—
ଖେଳାଇ ଦେବା; ବିସ୍ତୃତ କରିବା—
2. (transitive) To spread out.
(ଯଥା—ଏ ଓଦା ଧାନଗଦାକୁ ଛତରେଇ ଦେଲେ ଚଞ୍ଚଳ ଶୁଖି ଯିବ ।)
୩ । (ଅକର୍ମକ) ବୃତ୍ତାକାର ଅଧିକ ସ୍ଥାନ ଅଧିକାର କରିବା ବା ବ୍ୟାପିବା—3. (intransitive) To occupy or spread over a wide and circular place.
(ଯଥା—ନଈବଢ଼ି ପରେ ଏବର୍ଷ ପାଣି କଲଟଣ୍ଡ ଚଉଡ଼େ ପାଖେ ଛତରେଇଛି ।)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଧାଡ଼ିର ଅକ୍ଷର ଓ ମାତ୍ରା ଏବଂ ୨ ଧାଡ଼ିର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଧାଡ଼ିର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଗରେ ଖବରେ ନ ମିଳେ, ଯେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଧାଡ଼ିର ଉପସ୍ଥିତ ୨ ବା ୧ ଧାଡ଼ିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଁା'ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଛତା**— ଦେ. ବି. ( ସଂ. ଛତ୍ର; ପ୍ରା. ଛତ୍ର )—
Chhatā
ଛାତା, ଛାତୀ
**ଛାତା, ଛତ୍ତା**
୧ । ତାଳପତ୍ରରେ ବା କନାରେ ନିର୍ମିତ ଓ କେନ୍ଦ୍ରରେ ଦଣ୍ଡ ଥିବା ଗୋଲାକାର ଶଲାଗୁଡ଼ିକରେ ଗୋଟିଏ ଦଣ୍ଡ ବା ବେଣ୍ଟ ଥିବା ଗୋଲାକାର ଶରୀରାବରଣ ବସ୍ତୁ; ଆତପତ୍ର— 1. Umbrella
୨ । ଛତାକାର ଆବରଣ—2. Parachutte.
୩ । ପରିବ୍ରାଜକ ସାଧୁମାନେ ନିଜ ନିଜର ଅସ୍ଥାନ ଉପରେ ପୋତିବା କନାର ବଡ଼ ଛତା— 3. A big cloth-umbrella installed on a central rod over the seat of a wandering ancharite
୪ । ଘୁଷୁରିଆ ଓ ମଇଁଷିଆଳମାନେ ଘୁଷୁରି ଓ ମଇଁଷିଙ୍କ ସଙ୍ଗରେ ରହିବାବେଳେ ଆଶ୍ରୟ ନେବା ନିମନ୍ତେ ପୋତିବା ତାଳପତ୍ରର ଛତା—4. An umbrella with a palm-leaf covering installed on a central rod to give shelter to buffalo-herds or swineherds while accompanying their herds
୫ । ଦେବତା, ସମ୍ରାଟ ବା ପ୍ରଭୁଙ୍କ ଅଧିକାରଜ୍ଞାପକ ଛତ୍ର; ରାଜଚ୍ଛତ୍ର— 5. An insignia of royalty, represented by an umbrella held over the head of a Raja or a Deity.

ଦେ. ବିଣ—ଛତା ପରି ବିସ୍ତୃତ; ଝାମ୍ପୁଲ; ମୂଳ ସରୁ ଓ ଅଗ ମେଲି ଯାଇଥିବା (ଗଛ)— Spreading like an umbrella ( said of trees ).

**ଛତାଉରୀ**— ଦେ. ବି ( ସଂ. ଶତାବରୀ )— ଶତାବରୀ ( ଦେଖ )
Chhatāuri Satābari ( See )

ଛତୋରୀ } ଅନ୍ୟରୂପ
ଛତୌରୀ

**ଛତାକାଠି**— ଦେ. ବି. ( ସଂ. ଛତ୍ର+କାଷ୍ଠ )—
Chhatā-kāthi
ଛାତାର କାଠି
**ଛାତାକାଠୀଲିୟା**
କନା ଛତାକୁ ଟାଣି ମେଲାଇ ରଖିବାପାଇଁ ବ୍ୟବହୃତ ଲୌହଶଲାକା—The iron rods used to sustain the framework of an umbrella.
(ଛତାକାଡ଼ି— ଅନ୍ୟରୂପ)

**ଛତା ଖୋଲିବା**— ଦେ. କ୍ରି—ବନ୍ଦ ହୋଇଥିବା ଛତାକୁ ବ୍ୟବହାରାର୍ଥ ମେଲା କରିବା—To open up or spread out an umbrella for use; to unfurl a folded umbrella.
Chhatā kholibā
ଛାତାଖୁଲା
**ଛାତାଖୋଲନା**

ଛତା ଟାଣିବା } ଅନ୍ୟରୂପ
ଛତା ମେଲେଇବା

(ଛତା ଭୁଜିବା— ବିପରୀତ )

**ଛତା ଜୋତା**— ଦେ. ବି. ( ସହଚର ଶବ୍ଦ )—ମନୁଷ୍ୟ ଘରୁ ବାହାରକୁ ଗଲାବେଳେ ବ୍ୟବହାର କରିବା ଦୁଇଟି ପଦାର୍ଥ:— ( ମୁଣ୍ଡ ଓ ଗୋଡ଼କୁ ରକ୍ଷା କରିବାପାଇଁ ) ଛତ୍ର ଓ ପାଦୁକା—Umbrella and shoes ( necessary for a man going outside ).
Chhatā jotā
ଛାତାଜୁତୋ
**ଛାତାଜୁତା**
[ ଦ୍ର—ଏ ଦୁଇଟି ପଦାର୍ଥ ଘରର ଦ୍ୱାରରେ ରଖି ଦେଇ ଘର ମଧ୍ୟକୁ ଯିବାର ବିଧି ଭଦ୍ରତାନୁମୋଦିତ । ]

**ଛତା ଟେକା(କେ)ଇବା**—ଦେ. କ୍ରି—ଛତା ଟେକାଇବା ( ଦେଖ )
Chhatā ṭekā(e)ibā Chhatā ṭekāibā ( See )

**ଛତା ଟେକିବା**—ଦେ. କ୍ରି—ଆପଣାର ବା ଅନ୍ୟ ବ୍ୟକ୍ତିଙ୍କ ମୁଣ୍ଡ ଉପରେ ଛତାକୁ ମେଲା କରି ଧରିବା— To hold an umbrella over one's head or over the head of another.
Chhatā ṭekibā
ଛାତାଧବା
**ଛାତାତାନନା**

ଛତା ଟାଣିବା } ଅନ୍ୟରୂପ
ଛତା ଧରିବା

**ଛତା ଢାଙ୍କିବା**—ଦେ. କ୍ରି—(ମେଘ) (ମନୁଷ୍ୟଙ୍କୁ ଘେରିକରି ଛତା ଢାଙ୍କିଲା ପରି) ଚତୁର୍ଦ୍ଦିଗରେ ଘୋଡ଼ିବା— (the cloud) To spread above on all sides; to overspread (like an umbrella).
Chhatā dhānkibā
ଛାତାଢାଁକା
**ଛାତାଢକନା**
( ଯଥା—ଆଜି ସକାଳୁ ମେଘ ଛତା ଢାଙ୍କିଛି । )

**ଛତାନି**—ଦେ. ବି. ( ସଂ. ସପ୍ତ )—ଛତାନି ପୁରୁଷ ( ଦେଖ )
Chhatāni Chhatāni purusha ( See )

**ଛତାନି ପତାନି**—ଦେ. ବି. ( ନିରର୍ଥକ ଦ୍ୱିତୀୟ ସହଚର )—
Chhatāni patāni ଛତାନି ପୁରୁଷ ( ଦେଖ ) Chhatāni purusha ( See )
( ଯଥା—ସେ ମୋର ଛତାନି ପତାନି ଲଗେଇ ଖୋଷିଲା । )

**ଛତାନି ପୁରୁଷ**—ଦେ. ବି. ( ସଂ. ସପ୍ତ+ପୁରୁଷ )—କୌଣସି ବ୍ୟକ୍ତିର ବଂଶର ଏକାଦିକ୍ରମେ ୭ ପୁରୁଷ ବା ବଂଶଧର— Seven generations in the family of a person.
Chhatāni purush
ସାତପୁରୁଷ
( ଯଥା—ସେ ମୋତେ ଛତାନି ପୁରୁଷ ଲଗେଇ ଖୋଷିଲା;
ବି. ସେ ଆମାୟ ସାତ୍ ପୁରୁଷ୍ ତୁଲେ ଗାଲାଗାଲ୍ ଦିଲେ । )

**ଛତା ପକାଇବା**—ଦେ. କ୍ରି—(ମହନ୍ତ, ସାଧୁ, ମଇଁଷିଆ ଓ ଘୁଷୁରିଆମାନେ ଯେଉଁ ସ୍ଥାନରେ କିଛି ସମୟ ଅବସ୍ଥାନ କରିବେ ସେ ସ୍ଥାନରେ ଆପଣାର ଶରୀରକୁ ଖରାବର୍ଷାରୁ ରକ୍ଷା କରିବାପାଇଁ ) ଛତାର ଦେଣ୍ଡକୁ ଭୂମିରେ ଗାତ ଖୋଳି ପୋତିବା— To install an umbrella by planting the central rod on the ground for passing some time under it ( said of wandering anchorites,
Chhatā pakāibā
ଛାତାଗାଡ଼ା
**ଛାତାଗାଡ଼ନା**

ଛତା ପକେଇବା }
ଛତା ପୋତିବା } ଅନ୍ୟରୂପ
ଛତା ମାରିବା }

| ୧ | ଇ | ଉ | ଋ,ଌ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଗ୍ | ଉଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଓ | ନ୍ |

buffalo-herds or swine herds ) who pass days and night in the open )

**ଛତା ବର**—ଦେ. ବି. ( ସଂ. ଛତ୍ରାକାର+ବଟ )—
Chhatā bara ଯେଉଁ ବରଗଛର ଶାଖା ଛତା ପରି ବହୁଦୂର ବିସ୍ତୃତ ହୋଇଥାଏ—A spreading banyan tree
ছাতরা বটগাছ
**छतनावर**

**ଛତା ବୁଜିବା**—ଦେ. କ୍ରି —ଖୋଲା ହୋଇଥିବା ଛତାକୁ ବନ୍ଦ କରିବା—
Chhatā bujibā To shut up or close an umbrella when no longer in use.
ছতা বন্দকরা
**छाताबन्द करना**
ଛତା ମାରିବା } ଅନ୍ୟରୂପ
ଛତା ମୁଡ଼ିବା
(ଛତା ଖୋଲିବା—ବିପରୀତ)

**ଛତାବେଣ୍ଟ**—ଦେ. ବି. (ସଂ. ଛତ୍ର+ବୃନ୍ତ)—ଛତାକୁ ଠେକ କରି ଧରିବା
Chhatābenṭa ପାଇଁ ବ୍ୟବହୃତ ମଧ୍ୟସ୍ଥ ଦଣ୍ଡ—The central rod which supports an umbrella; the handle of an umbrella.
ছাতার বেঁট্
**छाताका डंडा**

**ଛତା ମାରିବା**—ଦେ. କ୍ରି.—୧ । ଛତା ପକାଇବା (ଦେଖ)
Chhatā māribā 1. Chhatā pakāibā (See)
୨ । ଛତା ବୁଜିବା (ଦେଖ)
2. Chhatā bujibā (See)

**ଛତା ମେଲାଇବା**—ଦେ. କ୍ରି.—୧ । ଛତା ପରି ଅଗ ଝାମ୍ପୁଲା ହେବା;
Chhatā melāibā ଛତ୍ରାକାର ହେବା, ଛତରେଇବା—
1. To spread out like an umbrella.
(ଯଥା—ବରଗଛଟା ଖୁବ୍ ଛତା ମେଲାଇ ବଢ଼ୁଛି ।)
ଛତାମେଲିବା } —ଅନ୍ୟରୂପ
ଛତା ମେଲେଇବା
୨ । ଛତା ଖୋଲିବା (ଦେଖ)
2 Chhatā kholibā (See)

**ଛତା ମେଲିବା**—ଦେ. କ୍ରି.—ଛତା ମେଲାଇବା (ଦେଖ)
Chhatā melibā Chhatā melāibā (See)
(ଯଥା—ବରଗଛଟା ଛତା ମେଲି ବଢ଼ୁଛି ।)

**ଛତାଳିଆ**—ଦେ. ବିଣ. (ସଂ. ଛତ୍ରାକାର)—ଛତା ପରି ବିସ୍ତୃତ; ଝାମ୍ପୁଲା—
Chhatāliā Spreading.
ছাতরা
**छितरा हुआ, छतनार**

**ଛତି**—ଦେ. ବି. (ସଂ. ଛତ୍ର)—ଆତପତ୍ର—
Chhati 1. Umbrella.
ছাতি
**छाति**
୨ । ମହନ୍ତ, ଦେବତା, ରାଜା ଆଦିଙ୍କ ମୁଣ୍ଡ ଉପରେ ଧରାଯିବା ବଡ଼ ଛତ୍ର—2. A big umbrella held over the head of deities, kings and mahantas.
୩ । (ସଂ. ଛଦ ଧାତୁ) ମହଳକୁ ପାଲିଙ୍କି ବା ରଥର ଆଚ୍ଛାଦନ—
3. The pood or cover of a palki or car.
୪ । ବର୍ତ୍ତୁଳାକାର ଅଗ୍ରଭାଗ; ( ଲୁହା କଣ୍ଟାର ମୁଣ୍ଡି ପରି )
ଛତ୍ରାକାର ଅଗ୍ରଭାଗ ବା ମୁଣ୍ଡି—4. The spreading top (e g. of a nail.)
୫ । ଲିଙ୍ଗର ବର୍ତ୍ତୁଳାକାର ଅଗ୍ରଭାଗ ବା ସୁପାରି—
5 The round top of the penis; nut.
ପ୍ରାଦେ. (ସମ୍ବଲପୁର) ବି. (ସଂ. ଛତ୍ରାକ; ତୁଲ. ହି. ଛତରୀ)—
ଛତୁ—Mushroom.
[ଦ୍ର—ଛତୁର ପ୍ରକାର ଭେଦ ପ୍ରାଦେ. ନାମ ଯଥା—ଘୁଟୁରା ରୁଗୁଡ଼ା, ଘୁଅଲ, ଭୂଦୋମଡ଼ିଲା, ବନ୍ଧୁଡ଼େନ, ବଣୁଆ, ବାଲ । ]

**ଛତି** (ଇତ୍ୟାଦି)—ଦେ. ବି.—ଛତା ଇତ୍ୟାଦି (ଦେଖ)
Chhati (etc) Chhatā etc (See)

**ଛତିଅନା**—ଦେ. ବି. (ସଂ. ସପ୍ତପର୍ଣ୍ଣୀ ପ୍ରା. ଛତ୍ରବନ୍ନୀ)—ଛଚନା (ଦେଖ)
Chhatianā Chhachinā (See)
(ଛତିଅନା—ଅନ୍ୟରୂପ)

**ଛତିଆ**—ଦେ. ବି. (ସଂ. ଛତ୍ରାକ)—୧ । ବହୁକାଳ ଅବନ୍ଧ ରହିଥିବା
Chhatiā ପଦାର୍ଥ (ଖାଦ୍ୟାଦି) ଉପରେ ମାଡ଼ିଯିବା ଧଳା ଫିମ୍ପି; କଲଙ୍କି—1 Mould; smut; mildew; rust.
ছাতা
**फफुन्दी, मैल**
୨ । ଜିହ୍ୱାମଳ; କ୍ଲେଦ—2. The dirt or foul matter appearing on the tongue (of a sick, famishing or a sleeping person).
୩ । ଦନ୍ତମଳ—3. Foul coating on the teeth; tartar of the teeth.
୪ । ରାଜା ଆଦିଙ୍କ ଗହଣରେ ଛତ୍ର ଧରି ଯିବା ଲୋକ—
4 A carrier of umbrella in the retinue of a king or idol.
ଦେ. ବି. (ନାମ)—ଦର୍ପଣ କିଲ୍ଲାରେ କପିଳାସ ରୋଡ଼୍ ଷ୍ଟେସନ୍ ନିକଟରେ ଥିବା ଗୋଟିଏ ଗ୍ରାମ—A village in the estate of Darpaṇ (in Orissa)
[ଦ୍ର—ଏହିଠାରେ ଗୋଟିଏ ଅତି ପୁରାତନ ବଟଗଛ ମୂଳରେ ନିରାକାର ଉପାସକ ସାଧୁମାନଙ୍କର ସମାଧି ଓ ଭଜନାଳୟ ଅଛି । ଏହା ଜଗନ୍ନାଥ ସଡ଼କ ଉପରେ ଅବସ୍ଥିତ ।]
ଦେ. ବିଣ—୧ । କ୍ଲିନ୍ନ; ମଳଯୁକ୍ତ—
1. Sordid; furred (e.g. tongue).
୨ । କଲଙ୍କି ଲାଗିଥିବା—2. Soiled; rusted.
୩ । ଗମ୍ବୁଅ; ଗମରା; ଫିମ୍ପି ମାଡ଼ି ଯାଇଥିବା—
3. Mildewed.

**ଛତିଆ ଛଡ଼ାଇବା**—ଗ୍ରା. କ୍ରି.—୧ । ଜିଭର ମଳକୁ ପରିଷ୍କାର କରିବା—
Chhatiā chhaṛāibā 1. To scrape off the sordes of the tongue.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଗଳ' ନ ପାଇଲେ 'ଅର୍ଗ୍ଗଳ' ଦେଖିବେ; 'ଅଳକ' ନ ପାଇଲେ 'ଅଳ୍କ' ଦେଖିବେ.

୨ । (ଲକ୍ଷଣାର୍ଥ) ନ ଖାଇଥିବା ବ୍ୟକ୍ତିକୁ ସୁଖାଦ୍ୟ ଖାଇବାକୁ ଦେବା (ଅର୍ଥାତ୍ ତଦ୍ଦ୍ୱାରା ତାହାର ଜିଭର ମଳକୁ ପରିଷ୍କୃତ କରାଇବା)—2. (figurative) To give dainty things to a poor or famished person to eat (thus enabling him to have his tongue cleansed of its fur by the process of eating.)
(ଛତିଆ ଛଡ଼େଇବା—ଅନ୍ୟରୂପ)

**ଛତିଆ ଛାଡ଼ିବା**—ଗ୍ରା. କ୍ରି.—୧ । ମଳ ବା ଫିମ୍ପି ପରିଷ୍କୃତ ହେବା—
Chhatiā chhāṟḍibā 1 Cleansing of the sordes or rust from a thing.
ଛାତା ଛାଡ଼ା
୨ । (ଲକ୍ଷଣାର୍ଥ) ସୁଖାଦ୍ୟ ଖାଇବାଦ୍ୱାରା ମନ୍ଦିର ଜିଭର ଅରୁଚି ଛାଡ଼ିଯିବା—2. ( figurative ) The disappearance of the sords of the tongue or the disappearance of the loathing for food; by the eating of dainty things.

**ଛତିଆ ଧରିବା**—ଦେ. କ୍ରି—(ବହୁକାଳ ଅବଦ୍ଧ ବା ଅବ୍ୟବହୃତ ପଦାର୍ଥ)
Chhatiā dharibā ଫିମ୍ପିଯୁକ୍ତ ବସିବା; ମଳଯୁକ୍ତ ହେବା—
ଛାତା ଧରା To bocome rusted, mildewed or sordid.
(ଛତିଆ ମାରିବା—ଅନ୍ୟରୂପ)

**ଛତିଆନା**—ଦେ. ବି. (ସଂ. ସପ୍ତପର୍ଣ୍ଣୀ) —ଛଚିନା (ଦେଖ)
Chhatiānā Chhachinā (See)

**ଛତିକଣ୍ଟା**—ଦେ. ବି—ଯେଉଁ ଲୁହାକଣ୍ଟାର ମୁଣ୍ଡି ଛତ୍ରାକୃତି ହୋଇଥାଏ—
Chhati-kaṇṭā Bolt; a nail having a flat head.

**ଛତି କାହାଳି**—ଦେ. ବି. (ସହଚର ଶବ୍ଦ; ସଂ. ଛତ୍ର)—ରାଜାଙ୍କ ଗହଣରେ
Chhati kāhāḷi ଥିବା ପ୍ରଭୁତ୍ୱଜ୍ଞାପକ ଦୁଇଟି ବସ୍ତୁ ଛତା ଓ ତୁରୀ—
Umbrella and trumpet ( two things accompanying a king and taken as insignia of royalty ).

**ଛତି ଟେକାଇବା**—ଦେ. କ୍ରି—୧ । ନିଜ ଉପରେ ଅନ୍ୟ ବ୍ୟକ୍ତି ଛତି
Chhati ṭekāibā ଧରିବାର ଉପାୟ କରିବା—1. To have an umbrella held over one's own head by another
(ଛତି ଟେକେଇବା—ଅନ୍ୟରୂପ)
୨ । (ଲକ୍ଷଣାର୍ଥ ) ଶ୍ରେଷ୍ଠ ବୋଲି ପରିଗଣିତ ହେବା—
2. (figurative) To be reckoned as the best.

ପ୍ରେମବଳେ ତାଙ୍କୁ କରି ଛତ୍ରପତି
ପ୍ରେମିକାକୁଳେ ମୁଁ ଟେକାଇବି ଛତି । ରାଧାନାଥ. ନନ୍ଦକେଶରୀ ।

**ଛତି ଟେକିବା**—ଦେ. କ୍ରି—୧ । ରାଜା, ଦେବତା ବା ବଡ଼ଲୋକଙ୍କ
Chhati ṭekibā ମୁଣ୍ଡ ଉପରେ ଛାଇ ହେବାଭଳି ଛତି ଧରିବା—
1. To hold up an umbrella over the head of a Raja, Deity or rich man
୨ । ( ଲକ୍ଷଣାର୍ଥ ) ନିଜକୁ ଶ୍ରେଷ୍ଠ ବୋଲି ପରିଚିତ କରାଇବା—
2. ( figurative ) To make oneself known as the best

ଯେବେ ସେ ହେବ କୋଳେ. କଳାବତୀମଣ୍ଡଳେ
ନ ଟେକିବୁ କି ଶ୍ରେଷ୍ଠ ଛତିକି ରେ । କବିସୂର୍ଯ୍ୟ. ସଙ୍ଗୀତ ।

**ଛତିଦାର୍ କଣ୍ଟା**—ଦେ. ବି—ଯାହାର ଛତି ଅଛି; ଯେଉଁ କଣ୍ଟାର ମୁଣ୍ଡ
Chhatidār kaṇṭā ଉପର ଛତାକାର—
A nail having a spreading top.

**ଛତିବିତି**—ଦେ, ବିଣ. ( ପ୍ରାଚୀନ)—୧ । ଛିନ୍ନଭିନ୍ନ; ବିନଷ୍ଟ—
Chhatibiti 1. Shattered; ruined.
ଛିତିଛିନ୍ନ
ଛତରବିତର

ଏହିକ୍ଷଣି ଦେଖିବ ମୋର କଟକତି
କ୍ଷଣକେ ଦଣ୍ଡଯାଗ ହେବ ଛତିବିତି । କୃଷ୍ଣସିଂହ. ମହାଭାରତ ଶାନ୍ତି ।

୨ । ଇତସ୍ତତଃ ବିକ୍ଷିପ୍ତ; ଚତୁର୍ଦ୍ଦିଗରେ ଖେଳାଇ ହୋଇଥିବା—
2 Scattered all round; routed.

**ଛତିରି**—ପ୍ରାଦେ. ( ସମ୍ବଲପୁର ) ବି. ( ସଂ. ଛତ୍ର )—ବେଣ୍ଟ ନ ଥିବା ଅତି
Chhatiri ଛୋଟ ଛତା; ଝାମ୍ପି—A small umbrella without a holder.
(ଛତରି—ଅନ୍ୟରୂପ)

**ଛତିଶ**—ଦେ. ବି. ( ସଂ. ଷଟ୍‌ତ୍ରିଂଶତ୍, ପ୍ର. ଛତ୍ତୀସା )—ତିରିଶିରୁ ଅଧିକ
Chhatiśa ଛଅ ସଂଖ୍ୟା; ୩୬—The number 36.
ଛତ୍ରିଶ ଦେ. ବିଣ—୧ । ୩୬ ସଂଖ୍ୟକ—
छत्तीस 1. Numbering thirty six.
୨ । ୩୬ର ପୂରଣ—2. Thirtysixth.

ଛତିଉଶ, ଛତିରିଶି, ଛତିଶି—ଅନ୍ୟରୂପ

**ଛତିଶଗଡ଼**—ଦେ. ବି. ( ନାମ )—ମଧ୍ୟପ୍ରଦେଶାନ୍ତର୍ଗତ ଗଡ଼ଜାତସମୂହ ଓ
Chhatiśa-gaṟḍa ଗୋଟିଏ ବିଭାଗ—Name of the agency tracts and of a division in the Central Province.
(ଛତିଶିଗଡ଼—ଅନ୍ୟରୂପ)

[ ଦ୍ର—ପୂର୍ବେ ଛତିଶଗଡ଼ ୩୬ ଟି ଗଡ଼ଜାତ ରାଜ୍ୟର ସମଷ୍ଟି ଥିଲା । ବର୍ତ୍ତମାନ ତହିଁ ମଧ୍ୟରୁ କେତେକ ଓଡ଼ିଶା ଗଡ଼ଜାତ ଓ କେତେକ ମଧ୍ୟପ୍ରଦେଶ ଗଡ଼ଜାତର ଅନ୍ତର୍ଭୁକ୍ତ ହୋଇଅଛି; କିନ୍ତୁ ପୂର୍ବର ନାମଟି ମଧ୍ୟପ୍ରଦେଶ ଗଭର୍ଣ୍ଣରଙ୍କ ଅଧୀନ ଜଣେ ପୋଲିଟିକାଲ ଏଜେଣ୍ଟଙ୍କ ଶାସିତ ୨୦ ଟି ଗଡ଼ଜାତ ଓ ରାୟପୁର, ବିଳାସପୁର ଓ ଦୁର୍ଗ ନାମକ ୩ଟି ବ୍ରିଟିଶ୍-ଶାସିତ ଜିଲ୍ଲାସମ୍ବଳିତ ଜଣେ କମିସନରଙ୍କ ଅଧୀନସ୍ଥ ବିଭାଗକୁ ବୁଝାଉଅଛି । ଛତିଶିଗଡ଼ ଉଭଜନର ଗଡ଼ଜାତମାନଙ୍କ ନାମ :—ବସ୍ତର, ଚଙ୍ଗଭାକର, ଛୁଇଖଦାନ, ଯାଶପୁର, କାଙ୍କେର, କୱାରଦା, ଖଇରାଗଡ଼, କୋରିଆ, ରାୟଗଡ଼, ନନ୍ଦଗାଁ, ଶକ୍ତି, ସାରଣଗଡ଼, ସରଗୁଜା, ଉଦୟପୁର, କୋଣ୍ଡ୍ରାଖା, ରାୟପୁର, ଚାଙ୍ଗଦରିଆ, ଫୁଲଝର, ଖଡିଆଳ, ମକରାଇ । କଳାହାଣ୍ଡି ପୂର୍ବେ ଛତିଶିଗଡ଼ ଇଲାକାରେ ଥିଲା । ବର୍ତ୍ତମାନ ତାହା ଓଡ଼ିଶା ଗଡ଼ଜାତ ଅନ୍ତର୍ଭୁକ୍ତ ହୋଇଅଛି । ବର୍ତ୍ତମାନ ଛତିଶଗଡ଼ ଅନ୍ତର୍ଗତ ଗୁଡ଼ିଏ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋୃ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇମ୍ପ | ଉଅ | ଘ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଞ୍ଚ | ନ୍ଦ |

ଗଡ଼ଜାତ ( ଯଥା,—ଯାଶପୁର, ଚନ୍ଦ୍ରପୁର, ସରଗୁଜା, ଖଡ଼ିଆଲ, ଫୁଲଝର, ରାୟଗଡ଼ା)ରେ ଅନେକ ଓଡ଼ିଆ ବାସ କରନ୍ତି ଓ ପ୍ରକୃତରେ ଏମାନ ଓଡ଼ିଆଭାଷୀ ଅଞ୍ଚଳ ଅଟେ ଓ ରାୟପୁର ଏବଂ ବିଲାସପୁର ଜିଲ୍ଲାର କେତେକ ଅଂଶ ମଧ୍ୟ ଓଡ଼ିଆଭାଷୀ ଅଟେ । ]

**ଛତିଶଗଡ଼ି**—ଦେ. ବି—ଛତିଶଗଡ଼ରେ କଥିତ ହିନ୍ଦୀ ଭାଷାର ଏକ ଶାଖା
Chhatiśa-gaṛḍi   ବା ପ୍ରାଦେଶିକ କଥିତ ରୂପ—A dialect of
ଛତ୍ତିଶଗଡୀ   Hindi current in Chhatiśagaṛḍa
**छत्तीशगढ़ी**   area of the Central Province.

ଦେ. ବିଣ—୧ । ଛତିଶଗଡ଼ ସମ୍ବନ୍ଧୀୟ—
1. Pertaining to Chhtiśagaṛḍa.
୨ । ଛତିଶଗଡ଼ରେ ଉତ୍ପନ୍ନ—
2. Produced in Chhatiśagaṛḍa.
୩ । ଛତିଶଗଡ଼ରେ କଥିତ—
3. Spoken in the Chhatiśagaṛḍa area.

**ଛତିଶଗଡ଼ିଆ**—ଦେ. ବିଣ—ଛତିଶଗଡ଼ରେ ବାସ କରୁଥିବା—
Chhatiśagaṛḍiā   ( person ) Belonging to
(ଛତିଶି ଗଡ଼ିଆ—ଅନ୍ୟରୂପ)   Chhatiśagaṛḍa

**ଛତିଶ ପାଟକ**—ଦେ. ବି—ହିନ୍ଦୁ ଶୂଦ୍ରମାନଙ୍କ ମଧ୍ୟରେ ଥିବା ଛତିଶଟି
Chhatiśa pāṭaka   ହାଟୁଆ ଜାତି—The thirty six sub-
ନବଶାଖ   sectins amongst the Śūdras

ଅଟେ ଛତିଶପାଟକ ଅଟେ ବହେ ନାମ—ପ୍ରାଚୀ, ବ୍ରହ୍ମକଳ୍ପପଣଗୀତା ।

[ ଦ୍ର—ଶୂଦ୍ରମାନଙ୍କ ମଧ୍ୟରେ ଭିନ୍ନ ଭିନ୍ନ ଶାଖା ବା ବୃତ୍ତି-ଅବଲମ୍ବନକାରୀ ବିଭାଗମାନଙ୍କୁ ପାଟକ ବୋଲାଯାଏ । ପ୍ରତ୍ୟେକ ପାଟକର ସାମାଜିକ ସଭା ଅଛି । ଉକ୍ତ ଜାତିର ରୀତିନୀତିକୁ ଏହି ସଭା ତଦାରଖ କରନ୍ତି ଓ ସାମାଜିକ ନିୟମ ଲଙ୍ଘନକାରୀ ବ୍ୟକ୍ତିଙ୍କୁ ଦଣ୍ଡ ଦିଅନ୍ତି । ଆଧୁନିକ କାଳରେ ସମାଜରେ ଗୁଡ଼ିଏ ଉପଜାତିର ସୃଷ୍ଟି ହୋଇଥିବାରୁ ଏ ୩୬ ପାଟକଙ୍କ ସଂଖ୍ୟା କରିବା ଦୁରୂହ । ଯଥା—ଚଷା, ଗଉଡ଼, ଭଣ୍ଡାରି, ଗୁଡ଼ିଆ, ତେଲି । ପାଟକ ତଳେ ନୋଟ ଦେଖ । ]

(ଛତିଶି ପାଟକ—ଅନ୍ୟରୂପ)

**ଛତିଶା**—ଦେ. ବିଣ. ( ତୁଳ. ସଂ. ଛତ୍ୱର=ଧୂର୍ତ୍ତ )—
Chhatiśā   ୧ । ଜାରଜ; ଅଜ୍ଞାତପିତୃକ; ବହୁପିତୃକ—
ଖବୀସ   1. Illegitimate; bastard; of unkown parentage; one whose father can not be fixed upon; born of a whore.
**छकीसा**

୨ । ଦୁଷ୍ଟ; ଖେଚେଡ଼ା; ଖଚଡ଼ା—
2 Wicked; wanton
୩ । ଚତୁର; ଧୂର୍ତ୍ତ; ଛଳପୂର୍ଣ୍ଣ—
3. Cunning; artful.
୪ । ଛତିଶ ସଂଖ୍ୟା ବା ପରିମାଣଦ୍ୱାରା ପରିମିତ—
4. Measured by a standard of 36.

**ଛତିଶା ନିଯୋଗ**—ଦେ. ବି—ପୁରୀର ଶ୍ରୀଜଗନ୍ନାଥଙ୍କର ଓ ଅନ୍ୟ ପ୍ରସିଦ୍ଧ
Chhatiśā nijoga   ଦେବତାମାନଙ୍କର ସବୁ ଶ୍ରେଣୀର ଶୂଦ୍ର ଓ ବ୍ରାହ୍ମଣ
ସେବକ—All classes of servants of the Deity Jagannātha at Purī.

[ ଦ୍ର—ସମ୍ଭବତଃ ଏ ସେବକମାନେ ପ୍ରଥମେ ଛତିଶ ଶ୍ରେଣୀରେ ବିଭକ୍ତ ହେଲେ, ତେଣୁ ଏହି ନାମ; କିନ୍ତୁ ବର୍ତ୍ତମାନ ଦେଖାଯାଏ ଯେ, ପୁରୀ ବଡ଼ଦେଉଳରେ ୯୬ ଶ୍ରେଣୀର ଭିନ୍ନ ଭିନ୍ନ ଜାତୀୟ ସ୍ତ୍ରୀ ଓ ପୁରୁଷ ସେବକ ଓ କର୍ମଚାରୀ ଅଛନ୍ତି । ( ବ୍ରଜକିଶୋର ଘୋଷଙ୍କ ସଙ୍କଳିତ ଇଂରାଜୀ ଭାଷାରେ ଲିଖିତ ପୁରୀର ଇତିହାସରୁ ( The History of Purī) ସଂଗୃହୀତ) ଯଥା—୧. ସ୍ୱୟଂ ପୁରୀ ମହାରାଜା-ରଥ ସମୟରେ ଦେବତାଙ୍କ ପହଣ୍ଡିବିଜେ କଲାବେଳେ ଛେରାପହଁରା ସେବା; ୨. ମୁଦିରଥ—ରାଜାଙ୍କ ପ୍ରତିନିଧି, ରାଜାଙ୍କ ଅନୁପସ୍ଥିତିରେ ସେବାକାର୍ଯ୍ୟ ଚଳାଇବା; ୩ ପୂଜାପଣ୍ଡା—ନୈବେଦ୍ୟ ଦେବା; ୪. ଭିତରଛୁ—ଦେଉଳ ଦୁଆର ଫିଟାଇବା, ଭୋଗ ସମୟରେ ଜଗିବା, ବେଶ କରିବା; ୫. ତଳିଛ—ପଢ଼ିଛଙ୍କ ପ୍ରତିନିଧି; ୬. ପଶୁ-ପାଳକ—ବେଶ କରିବା; ୭ ଦଇତା—ସିଂହାସନରୁ ଦେବତାଙ୍କୁ ନେଇ ରଥରେ ବିଜେ କରାଇବା ଓ ବାହୁଡ଼ାଇ ଆଣିବା ଏବଂ ଅଣସର ସମୟରେ ସେବା କରିବା; ୮. ପାଳିଆ ମହାପାତ୍ର—ଅଣସର ସମୟରେ ସେବା; ୯. ମୁଦୁଲି—ଜୟବିଜୟ ଦ୍ୱାରର ଜଗୁଆଳ ଓ ଭଣ୍ଡାର ଜଗୁଆଳ; ୧୦. ମହାଜନ—ପାର୍ଶ୍ୱଦେବତାଙ୍କୁ ନରେନ୍ଦ୍ରକୁ ନେବା-ଆଣିବା କରିବା; ୧୧. ମୁଖସିଂହାରିଦାର—ତିନି ଠାକୁରଙ୍କର ମୁଖ ଚିତ୍ର କରିବା; ୧୨. ଭଣ୍ଡାର ମେକାପ—ଦେବତାଙ୍କ ପୋଷାକ, ଅଲଙ୍କାର ଓ ଭଣ୍ଡାରର ଜଗିଆ; ୧୩. ଗୃହଗଡ଼ା ମେକାପ—ଦେବତାଙ୍କ ପୋଷାକ ଓ ଅଲଙ୍କାରମାନ ପିନ୍ଧାଯିବା ପାଇଁ ଡାଲାରେ ସଜାଇବା; ୧୪. ଖୁଣ୍ଟିଆ—ପଶୁପାଳକମାନଙ୍କୁ ଡାକିବା, ଘୋଡ଼ାଙ୍କ ଖବର ବୁଝିବା; ୧୫. ଅଖଣ୍ଡଲ ମେକାପ—ପ୍ରଦୀପ ଜଳାଇବା; ୧୬. ଗରାବଡ଼ୁ—ପୂଜାପଣ୍ଡାଙ୍କ ନିକଟରେ ପାଣିଗରା ରଖିବା; ୧୭. ପତ୍ରୀବଡ଼ୁ—ପୂଜାପଣ୍ଡାଙ୍କ ନିକଟରେ ଫୁଲ ତୁଳସୀ ରଖିବା; ୧୮. ପନ୍ତିବଡ଼ୁ—ପୂଜାର ନୈବେଦ୍ୟ ପୂଜାପଣ୍ଡାଙ୍କ ନିକଟରେ ରଖିବା; ୧୯. ସୁଆରବଡ଼ୁ—ପୂଜାସ୍ଥାନ ଝାଡ଼ିବା ଓ ଦେବତାଙ୍କ ଆଗରେ ଭୋଗ ଥୋଇବା; ୨୦. ହଡ଼ପନାୟକ—ଭୋଗ ପରେ ଦେବତାଙ୍କୁ ପାନ ଓ ମସଲା ଯୋଗାଇବା; ୨୧ ଶୁଦ୍ଧସୁଆର—ଭୋଗ ସାରି ହେଲେ ତାହା ଉଠାଇ ନେବା; ୨୨. ଜଗିଆ—ଭୋଗ ସମୟରେ ପହରା ଦେବା; ୨୩. ମୁଖପଖାଳି ପଢ଼ିଆରୀ—ଦେବତାଙ୍କ ଦନ୍ତକାଠି ଓ ମୁହଁଧୁଆ ପାଣି ଯୋଗାଇବା; ୨୪. ଅସ୍ଥାନ ପଢ଼ିଆରୀ—ପର୍ବ ସମୟରେ ଡାକ ଦେବା; ୨୫. ପଟଶେଜ ମେକାପ—ଦେବତାଙ୍କ ଶଯ୍ୟାରଚନା କରିବା; ୨୬. ପୁରାଣ ପଣ୍ଡା—ପୁରାଣ ପାଠ କରିବା; ୨୭ ଡମ୍ବରୁ ସେବକ—ଜୟବିଜୟ ଦ୍ୱାର ନିକଟରେ ମେଘଡମ୍ବରୁ ବା ଢୋଲ ଯୋଗାଇବା;

୨୮. ସୁଆର୍—ପାକାଦି କାର୍ଯ୍ୟ କରିବା; ୨୯. ବଉବୁହା ସୁଆର—ସମର୍ଥୀଠାରୁ ରାନ୍ଧିବା ପାଇଁ ଜିନିଷ ନେଇ ସୁଆରକୁ ଦେବା; ୩୦. ମହାସୁଆର—ଭୋଗ ରାନ୍ଧିବାର ପ୍ରଧାନ ପାଚକ; ୩୧. ରୋଷ ପାଇକ—ରୋଷ ଘରେ ଅଲୁଅ ଦେବା ଓ ଭୋଗ ସଙ୍ଗେ ଜୟ-ବିଜୟ ଦ୍ୱାର ପର୍ଯ୍ୟନ୍ତ ଆସିବା, ୩୨. ଶିକାଧୂଆ ସୁଆର—ରୋଷ-ଘରୁ ଭୋଗ ହେବାପାଇଁ ପଦାର୍ଥମାନ ମନ୍ଦିର ମଧ୍ୟକୁ ଯେଉଁ ଶିକାରେ ବୁହା ହୁଏ, ତାକୁ ଧୋଇବା; ୩୩. ବାହାର ଦେଉଳ ସୁଆର—ଜଗନ୍ନାଥଙ୍କ ବେଢ଼ା ମଧ୍ୟରେ ଥିବା ଅନ୍ୟ ଦେବତାଙ୍କ ଭୋଗ କରିବା; ୩୪. ପଡ଼ିଆରୀ, ଗୋଛିକାର ଓ ଦୁଆର ନାୟକ—ଦେଉଳର ଗୃହ ଦୁଆର ଜଗିବା ଓ ଅମଣିଆଁ ଆସିଲାବେଳେ ଦକ୍ଷିଣ ଦୁଆରେ ବାଜେ ଲୋକଙ୍କୁ 'ଆଡ଼ ହୋ' ବୋଲି ଆଦେଶ ଦେବା; ୩୫. ପ୍ରସାଦବଡ଼ୁ—ଶୁଖୁଲି ଅମୁଣିଆଁ ଦିଅଁଙ୍କ ଆଗରେ ରଖିବା; ୩୬. ଛତାଧରା—ଯାତ୍ରା ସମୟରେ ଧଳା ଓ କଳା ଛତ ବୁହାଇବା; ୩୭. ତରାସିଆ—ଯାତ୍ରା ସମୟରେ ତ୍ରାସ ଧରିବା; ୩୮. ଫାରିକ—ଭଣ୍ଡାର ଜଗିଆ; ୩୯. ବିମାନବଡ଼ୁ—ଯାତ୍ରାଦିରେ ଦେବତାମାନଙ୍କ ବିମାନ କାନ୍ଧେଇବା; ୪୦. ଛାମୁ ଦିହୁଡ଼ିଆ—ଦେବତାଙ୍କ ଆଗରେ ମଶାଲ ଧରିବା; ୪୧. ପାଣିଆଁ—ରୋଷେଇ ପାଇଁ ଜଳ ଯୋଗାଇବା; ୪୨. ପାଣି ଆପଟ—ପାଣି ବୁହାଇବା ଓ ବାସନ ମାଜିବା; ୪୩. ଲୁଗା-ଟୁଆ—ଦେବତାଙ୍କ ଲୁଗା ଧୋଇବା ଓ ଶୁଖାଇବା; ୪୪. ଘଟୁଆରି—ଚନ୍ଦନ ଘୋରିବା; ୪୫. ଚୂନରା—ଗରୁଡ଼ ପ୍ରତିମାଙ୍କ ସେବା କରିବା, ଏକାଦଶୀ ଦିନ ଦେଉଳର ଶିଖରକୁ ମହାଦୀପ ଉଠାଇବା ଓ ପତାକା ରକ୍ଷା କରିବା; ୪୬. ଧୋ ପଖାଳିଆ—ରୋଷ ଧୋଇ ସଫା କରିବା; ୪୭. ଅଙ୍ଗାରୁଆ—ରୋଷଘରୁ ପାଉଁଶ କାଢ଼ିବା; ୪୮. ସମର୍ଥୀ—ରୋଷ ପାଇଁ ଡାଲି ରଗଡ଼ିବା; ୪୯. ରୁବାଢ଼ିଆ—ରୋଷ ଅଗଣା ଓଳାଇବା; ୫୦ ପଶୁଷାବଡ଼ୁ—ପୂଜା ପଣ୍ଡାଙ୍କ ନିକଟରେ ପୂଜାବାସନ ରଖିବା; ୫୧. ପଧାନୀ—ପରିଛାଙ୍କ ହାତକୁ ସୁନାବେତ ଦେବା ଓ ମୁକ୍ତିମଣ୍ଡପ ବ୍ରାହ୍ମଣଙ୍କୁ ଭୋଜନ ଦେବା; ୫୨. ଲେଙ୍କା—ପିଆଦା; ୫୩. ଦଲବେହେରା—ପ୍ରହରୀଙ୍କ ସରଦାର; ୫୪. ପାଇକ—ପ୍ରହରୀ; ୫୫. ଦ୍ୱାରୀ—ଦ୍ୱାରରକ୍ଷକ; ୫୬. ବୀଣାକାର—ବୀଣାବାଦକ; ୭. କାହାଳିଆ; ୫୮. ମହୁରିଆ ବା ଭୁରୀବାଦକ; ୫୯ ଘଣ୍ଟୁଆ; ୬୦. ଭୁଲାବତୀ ବା ହାଣ୍ଡି ଯୋଗଣିଆ, ଭଣ୍ଡାରକୁ ଓ ରୋଷକୁ ହାଣ୍ଡି ଦେବା ଓ ସନ୍ଧ୍ୟାଧୂପ ଅମୁଣିଆ ବୁହାବେଳେ ଦୀପ ଦେଖାଇବା; ୬୧ ଟମକିଆ ବା ବଜନ୍ତ୍ରୀ—ବାଜାଦାର; ୬୨. ନାଗରୁଚ; ୬୩. ନହବତବାଲା ନାଗରୁଚ; ୬୪. ଗୃହଲବଛ; ୬୫. ଖଡ଼ିକା ସୁଆଁସିଆ—ଜଗ-ମୋହନ ଓଳାଇବା, ୬୬. ନଳାହୁଗୁଡ଼ା—ନଳାର ପାଣି ସଫା କରିବା; ୬୭. ଶଙ୍ଖୁଆ; ୬୮. ମାଦଳୀ—ଦେବଦାସୀଙ୍କ ନାଚବେଳେ ମାଦଳ ବଜାଇବା; ୬୯. ଦାସୀ, ମାହାରୀ, ତଳସେବକ—ନର୍ତ୍ତକୀ; ୭୦. ଭିତରଗାଉଣୀ—ଜଗନ୍ନାଥଙ୍କ ଚନ୍ଦନଯାତ୍ରା ବେଳେ ଗୀତ ବୋଲିବା; ୭୧. ଦର୍ପଣିଆଁ—ପୂଜାବେଳେ ଦେବତାଙ୍କ ଆଗରେ ଦର୍ପଣ ଦେଖାଇବା; ୭୨. ବିନାଣି—ବଣିଆଁ; ୭୩ ବଢ଼େଇ; ୭୪. କୁମାର ବିଶେଇ—ହାଣ୍ଡି ଯୋଗାଇବା; ୭୫. ପଥୁରିଆ—ମିସ୍ତ୍ରି; ୭୬. କରତି; ୭୭. ରୂପକାର—ମୂର୍ତ୍ତିଗଢ଼ିବା, ୭୮. ଚିତ୍ରକର—ରଙ୍ଗଦେବା; ୭୯. ସୁଆଁସିଆ—ରୋଷକୁଆଣି ଓ ମୂଲିଆକାମ କରିବା; ୮୦. ଗୃପଦଲେଇ—ଚନ୍ଦନଯାତ୍ରା ସମୟରେ ଗୃପ ଚଲାଇବା; ୮୧. ଦରଜୀ ବା ସିପୁଛି—ସିଲାଇକାମ; ୮୨. ପାତ୍ର—ମାଳାଗୁନ୍ଥିବା; ୮୩. ତଅଁରୀ—କଂସାବାସନ ତିଆରି କରିବା; ୮୪. ମାହୁନ୍ତ—ହସ୍ତି ଚାଳକ; ୮୫. ଗୁଣବଳୁଆ—ଦଉଡ଼ି ବଳିବା; ୮୬. କୋଠିଆ—କୁମ୍ଭାରଘରୁ କୁଡ଼ୁଆ ଆଣିବା, ୮୭ ଚକ୍ର ଦିହୁଡ଼ିଆ—ଚକ୍ରମସାଲ ଧରିବା; ୮୮. ଚୂଲାଭଣା; ୮୯. ଦୋଶାଖା—ଦୁଇ ଶାଖାଯୁକ୍ତ ମସାଲ ଧରିବା; ୯୦. ଖୁରିଘର ନାୟକ—ସମୟଜ୍ଞାପକ ଘଣ୍ଟା ବଜାଇବା; ୯୧. ଭଣ୍ଡାରନାୟକ—ଭଣ୍ଡାରର ହିସାବ ଲେଖିବା; ୯୨. ତଡ଼ଉ—ମୋହରର; ୯୩. ଦେଉଳ କରଣ—ମାଦଳାପାଞ୍ଜି ଓ ହିସାବ ଲେଖିବା; ୯୪. ଗୃଙ୍ଗଡ଼ା କରଣ—ଭଣ୍ଡାରର ଲାଗିବସ୍ତ୍ର ଓ ଅଲଙ୍କାରର ହିସାବ ଲେଖିବା; ୯୫. ମହାସେଠୀ ବା ମଡ଼ିଆଲ—ଲୁଗାକାଚିବା; ୯୬. ପାଳିଆ ମାହାର—ବେଢ଼ା ମଧ୍ୟରୁ ମଇଳା ସଫା କରିବା; ୯୭. ଛତିଶାନିଯୋଗନାୟକ—ଛତିଶା ନିଯୋଗମାନଙ୍କର ଅଧ୍ୟକ୍ଷ ।

ଏଥିରେ ପରିଛା, ପରିକରଣ, ପର୍ଦ୍ଦୀ, ଗରାବଡ଼ୁ ଆଦି କେତେଗୁଡ଼ିଏ ନାମ ନାହିଁ । ବୋଧ ହୁଏ, ଦେଉଳ କରଣ ଓ ପରିକରଣ ଏକ, ପତ୍ରୀ ବଡ଼ୁ ଓ ପର୍ଦ୍ଦୀ ଏକ । ପରିଛା—ମନ୍ଦିର ପରିଚାଳନ, ସେବା, ଯାତ୍ରାଦି ତଦାରଖିବାର ସର୍ବଶ୍ରେଷ୍ଠ ରାଜକର୍ମଚାରୀ । ବୋଧ ହୁଏ ଏହି ୯୭ଶ୍ରେଣୀ ମଧ୍ୟରୁ ବଶିଷ୍ଟ ୩୬ ଟି ଶ୍ରେଣୀ ଯୋଗୁଁ 'ଛତିଶାନିଯୋଗ' ଶବ୍ଦ ଚଳିଅଛି ।

କିନ୍ତୁ ମାଦଳା ପାଞ୍ଜିରେ ନିମ୍ନଲିଖିତ ସେବକ ଓ ସେବାମାନଙ୍କର ଉଲ୍ଲେଖ ଅଛି—

୧. ପାଣିଛଡ଼ା ପଣ୍ଡା ସେବକ ସେବା, ୨. ପଶୁପାଳକ ସେବା; ୩. ଛାମୁଖୁଣ୍ଟିଆ ସେବା; ୪. ଶ୍ରୀମୁଖଶୃଙ୍ଗାରିମାନ ସେବା; ୫. ଗୃଙ୍ଗଡ଼ା ମେକାପ ସେବା; ୬. ଭିତରଭଣ୍ଡାର ମେକାପ ସେବା; ୭. ଅଖଣ୍ଡ ମେକାପ ସେବା; ୮. ଶଯ୍ୟା ମେକାପ ସେବା; ୯. ସୁଆର ବଡ ସେବା; ୧୦. ପର୍ଦ୍ଦୀବଡ଼ୁ ସେବା; ୧୧ ଭିତର ଗରାବଡ଼ୁ ସେବା; ୧୨. ବାହାର ଗରାବଡ଼ୁ ସେବା, ୧୩. ହଡ଼ପ ନାୟକ ସେବା; ୧୪. ପାନ ଯୋଗଣିଆ ସେବା; ୧୫. ମୁଦୁସୁଆର ସେବା; ୧୬. ବ୍ରାହ୍ମଣ କରଟିଆ ମୁଦୁଲି ସେବା; ୧୭. ସନ୍ଧ୍ୟାଧୂପ ଜୟମଙ୍ଗଳାଳତି ସେବା; ୧୮. ପ୍ରସାଦବଡ଼ୁ ସେବା; ୧୯. ଫୁଲବଡ଼ୁ ସେବା; ୨୦. ବିମାନବଡ଼ୁ ସେବା, ୨୧. ଦରପଣିଆଁ ସେବା; ୨୨. ପୁରାଣ ପଣ୍ଡା ସେବା; ୨୩. ଧ୍ୱଜାଧରା ସେବକ ସେବା; ୨୪. ସୁନା ଚନ୍ଦ୍ର ସୂର୍ଯ୍ୟ କଳାପାଟ ରୋଷସେବକ ସେବା; ୨୫. ଉପଗୃହ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇସ୍ବ | ଉ୍ଥ | ଘ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଓ୍ବ | ନ୍ବ |

ଗ୍ରମରସେବକ ସେବା; ୨୬. ରତ୍ନାଲଠ ସେବକ ସେବା; ୨୭. ଖଦ ବାଞ୍ଛବା ସେବକ ସେବା; ୨୮. ସୁନା ବେତ ସେବକ ସେବା; ୨୯. ପାହାନ୍ତ୍ର କବାଟ ଫେଡ଼ା ସେବକ ସେବା; ୩୦ ଦଅଣାମାଳ ଗୋଷ୍ଠଇତ ସେବକ ସେବା; ୩୧. ସୁନା, ରୂପା ତମ୍ବା, କଂସା ଯୋଗାଡ଼ ମହାସେବକ ସେବା; ୩୨. ପଣି ଅପଠ ସେବକ ସେବା; ୩୩. ରତ୍ନକମ ବନ୍ଧାଣି ସେବକ ସେବା; ୩୪. ସୁନା, ରୂପା, ମାଠ, କମବନ୍ଧଣି ସେବକ ସେବା; ୩୫. ଯୋଲ ବଡ଼ା ବନ୍ଧାଣି ସେବକ ସେବା; ୩୬. ଚୁନର ମହାରଣା ସେବକ ସେବା. ୩୭. ସିପୁନ୍ଥ ମହାରଣା ସେବକ ସେବା; ୩୮. ଘଣ୍ଟା ବାଜଣା ସେବକ ସେବା; ୩୯ ଖୀରକାହାଳଅା ସେବକ ସେବା; ୪୦. ପାହାନ୍ତ୍ର ଅବକାଶ ନିଦ୍ରା ଆଲସ୍ୟ ଭାଙ୍ଗିବା ସେବକ ସେବା ବା ପାଣିସଙ୍ଖୁଆ ସେବକ ସେବା; ୪୧. ଧୂପ ଶଙ୍ଖ ମହୁରଅା ସେବକ ସେବା; ୪୨. ଘୋଡ଼ କାହାଳଅା ସେବକ ସେବା, ୪୩. ମାଦେଲ ମୃଦଙ୍ଗ ସେବକ ସେବା, ୪୪. ଉପଙ୍ଗିଆ ସେବକ ସେବା; ୪୫. ବାଇଁସିକାର ସେବକ ସେବା; ୪୬. ଚଉଷଠି ସମ୍ପ୍ରଦା; ୪୭. ମୀନନାୟକ ସେବକ ସେବା; ୪୮. ଗୀତ ଗାଣ ସେବକ ସେବା; ୪୯. ଯନ୍ତ୍ରକାର ସେବକ ସେବା; ୫୦. ଭବାନ୍ଧ ସେବକ ସେବା; ୫୧. ବଡ଼ାଇ ମହାରଣା ସେବକ ସେବା; ୫୨ କରତ ମହାରଣା ସେବକ ସେବା; ୫୩. ସୁନା ଦନ୍ତୁଡ଼ି ସେବକ ସେବା; ୫୪. ତାମ୍ବର ମହାରଣା ସେବକ ସେବା; ୫୫. କଂସାର ମହାରଣା ସେବକ ସେବା; ୫୬. ଅଷ୍ଟଲୋହ ମହାରଣା ସେବକ ସେବା; ୫୭. ପାଟର ବନ୍ଧାଣି ସେବକ ସେବା; ୫୮. ସୁଗନ୍ଧ ଘଟୁଆର ସେବକ ସେବା; ୫୯. ସ୍ରେଷ ଛତିଶା ନିଯୋଗ ସେବା; ୬୦. ପିଠା ସୁଆର ସେବକ ସେବା; ୬୧. ବଗଡ଼ା ପିଠା ସେବକ ସେବା; ୬୨. ମହାସୁଆର ସେବକ ସେବା; ୬୩. ଗିରସୁଆର ସେବକ ସେବା; ୬୪. ତଅଣ ସୁଆର ସେବକ ସେବା; ୬୫. ପଣାସୁଆର ସେବକ ସେବା; ୬୬; ପାଚେଲି ସୁଆର ସେବକ ସେବା; ୬୭. ତୋଲାବଡ଼ୁ ସେବକ ସେବା; ୬୮. ପନ୍ତ୍ର ବଡ଼ସେବକ ୬୯. ଭିତର ବଡ଼ା ସେବକ; ୭୦. ଭୋଗ ମୁଣୋହି ଘରେ ମୁରୁଜ ଦେବା ସେବକ ସେବା; ୭୧. ଘିଅ ପରସା ସେବକ ସେବା; ୭୨. ବ୍ରାହ୍ମଣ ସମରଥା ସେବକ ସେବା; ୭୩. ଶୂଦ୍ର ସମର୍ଥା ସେବକ ସେବା; ୭୪. ସ୍ରେଷସରଘର ମେକାପ ସେବା; ୭୫. କୁଆଉଡ଼ା ସେବକ; ୭୬. ଭୁଲାବତ୍ତି ସେବା;୭୭. ସ୍ରେଷଦ୍ୱାର ଜଗଥ ବ୍ରାହ୍ମଣ ପାଇକ ସେବା; ୭୮. ସ୍ରେଷ ସରଘର ଜଗିଆ ଶୂଦ୍ର ସେବକ ସେବା; ୭୯. ସ୍ରେଷ ଧୋପଖାଳଅା ସେବକ ସେବା; ୮୦. ସ୍ରେଷ ଅଙ୍ଗାରଅା ସେବକ; ୮୧. ସ୍ରେଷ ଭଣ୍ଡାର ମେକାପ ସେବା; ୮୨. ପାହାଡ଼ା ଘର ମେକାପ ସେବା; ୮୩. ଦୁଆର ନାୟକ ସେବା; ୮୪. ଛତା ସେବକ ସେବା; ୮୫. ସୁଆଁସିଆ ସେବକ; ୮୬. ସୁଆଁସ ସରଘର ମେକାପ ସେବା; ୮୭. ବେଣ୍ଟ ବନ୍ଧାସ୍ୱତ ସେବା; ୮୮. ଅଯ୍ୟା ମହାଜନ ସେବକ ସେବା; ୮୯. ଭଣ୍ଡାରଦ୍ୱାର ଜଗିଆ ସେବକ; ୯୦. ସିଂହଦ୍ୱାର ପ୍ରତିହାରି ନିଯୋଗ ସେବା; ୯୧. ପରବଯାତ୍ରା ପ୍ରତିହାରୀ ସେବକ ସେବା; ୯୨. ଆସ୍ଥାନ ପ୍ରତିହାରୀ ସେବକ ସେବା; ୯୩. ବୃନ୍ଦାବନ ନାୟକ ସେବା; ୯୪. ମଣ୍ଡଣି ଖୁଣ୍ଟିଆ ସେବକ ସେବା, ୯୫. ଗୃପଦଲାଇ ସେବକ ସେବା; ୯୬. ଆରତିଆ ସେବକ ସେବା; ୯୭. ହାଟ ସେବକ ସେବା; ୯୮. ପଦ୍ମକଦଳୀ ତୋଠାସେବକ ସେବା; ୯୯. ତୋଠାମାନର ମାଳ ଗୁଡିସେବକ ସେବା; ୧୦୦. ଯନ୍ତ୍ରବୈଦ୍ୟ ସେବକ ସେବା; ୧୦୧. ଶସ୍ତ୍ର ବୈଦ୍ୟ ସେବକ ସେବା; ୧୦୨. ଦୁଧ ଘର ସେବକ ସେବା; ୧୦୩. ଦୁଧ ଘର ଜଗିଆ ପାଇକ ସେବା; ୧୦୪. ତଅଣ ନିଯୋଗ ବିଶୋଇ ସେବା; ୧୦୫. ଗଜଡ଼ି ନିଯୋଗ ବିଶୋଇ ସେବା; ୧୦୬. କୁମ୍ଭାର ନିଯୋଗ ବିଶୋଇ ସେବା; ୧୦୭. ଅମୃତ ମଣୋହି ଖଟିବା ବିଶୋଇ ସେବକ ସେବା, ୧୦୮. ଗୁଆଟିଆ ବିଶୋଇ ସେବକ ସେବା; ୧୦୯. ପାଟ ହାଣ୍ଡି ମାନ୍ଧୁନ୍ତ ସେବକ ସେବା; ୧୧୦. ଧାନ ଘର ସେବକ ସେବା; ୧୧୧. କୋଠାଇତ ସେବକ ସେବା; ୧୧୨. ଭୁଜଣଅା ମୁଦୁଲି ସେବକ ସେବା; ୧୧୩. ଧାନ ଘର ଜଗିଆ ସେବା; ୧୧୪. ଦେଉଳ ଅଯୃତନ ଭିତର ବାହାର ବେଢ଼େହରା ସେବକ ସେବା; ୧୧୫. ଗୁହାରଅା ପ୍ରଧାନୀ ସେବକ ସେବା; ୧୧୬. ଚଳୁରଅା ଲେଙ୍କା ସେବା, ୧୧୭. ତୀର୍ଥ ମାଟିଆ ସେବକ; ୧୧୮. ଷେବ ଜଗିଆ ମାଝି ସେବା; ୧୧୯. ବାଦ୍ୟକାର ସେବା; ୧୨୦. ଭୋଗ ପରୀକ୍ଷା ପଣ ସେବା ।

ଦ୍ର—ମଦଳା ପାଞ୍ଜିରେ ଯେଉଁ ଭାଷାରେ ଏହି ସେବା ଓ ସେବକମାନଙ୍କର ନାମ ଉଲ୍ଲେଖ ଅଛି ଏଠାରେ ସେହି ଭାଷାରେ ସେଗୁଡ଼ିକର ଉଲ୍ଲେଖ କରାଗଲା । ]

**ଛତିଶା ପବନ**- ଦେ. ବି.—ଯେଉଁ ପବନ ସବୁଆଡ଼ୁ ବହୁ ଥାଏ; Chhatisā pabana ଚଇତ୍ରଅାଳ ବତାସ—A wind which blows from all quarters (in the month of Chaitra.)

**ଛତିଶି (ଇତ୍ୟାଦି)** – ଦେ. ବି. – ଛତିଶ ଇତ୍ୟାଦି (ଦେଖ) Chhatisi (etc) Chhatisa etc. See)

**ଛତୁ**—ଦେ. ବି. (ସଂ. ଛତ୍ର; ଛତ୍ରାକ; ଛତ୍ରିକା;)—୧ । ଶିଲୀନ୍ଧ୍ର; କାଠରୁ, Chhatu ଭୂମିରୁ ବା କୁଟାରୁ ବାହାରିବା ଛତାକାର କ୍ଷୁଦ୍ର ଛାତି, ଛାତୁ ଅପୁଷ୍ପକ ଉଦ୍ଭିଦ—1. Toadstool; mushroom; फौड़क, खुमी, छतरी fungus; Agaricus.

[ ଦ୍ର—ଏହା ପଚା କାଠରୁ, ସଢ଼ା ଛଣରୁ, ଉଇ ଗାତରୁ କୁଟାରୁ ଓ ଗୋବରରୁ ବର୍ଷାଦିନେ ବାହାରେ । ଛତୁ ଅନେକ ରଙ୍ଗର ଓ ଆକାରର ହୁଏ । କେତେକ ଖାଦ୍ୟ, କେତେକ ଅଖାଦ୍ୟ ଓ କେତେକ ବିଷାକ୍ତ । ଛତୁ ବହୁତ ପ୍ରକାର ଯଥା—ବାଲି ଛତୁ; ପାଳ ଛତୁ, କାଠ ଛତୁ, ଭୂଇଁ ଛତୁ, ଗୋବର ଛତୁ, ମଣ୍ଡା ଛତୁ, ଖୁଦ ଛତୁ ବା କୁଟା ଛତୁ, ରୁଗୁଡ଼ା ଛତୁ । ଛତୁର ଗୋଟିଏ ଡେମ୍ଫ ଓ ଗୋଟିଏ ଛତାକାର ଭୁଣ୍ଡି ଥାଏ । ଏହାର ବେଙ୍ଗ, ଫଳ,

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ ।

ଫୁଲ ବା ପତ୍ର ନ ଥାଏ । ପରୀକ୍ଷା କରି ଦେଖା ଯାଇଅଛି ଯେ ଯେଉଁଠାରେ ହୁଙ୍କାଭିତରେ ବା ଭୂଇଁତଳେ ଉଈ ବସା ଥାଏ, ସେଠାରେ ଉଈଠାଙ୍କରୁ ଛତୁ ଉପରକୁ ଉଠେ । ]

୨ । ଛତୁଆ ( ଦେଖ )—2. Chhatuā ( See )

୩ । ଚୂର୍ଣ୍ଣ; ଚୂନା—3. Powder.

ଦେ. ବିଣ—୧ । ଚୂର୍ଣ୍ଣବିଚୂର୍ଣ୍ଣ—1. Reduced to powder

୨ । ଟିକିଟିକି କରି ଖଣ୍ଡରେ ବିଭକ୍ତ—2. Reduced or broken into many small bits.

**ଛତୁଆ**—ଦେ. ବି. ( ସଂ. ଶକ୍ତୁ )—୧ । ବୁଟ, ଯବ, ଗହମ ଆଦି ଭଜା ହୋଇ କରି ଯାଇଥିବା ଚୂର୍ଣ୍ଣ—1. Corn-powder: flour of fried corn.
Chhatuā
ଛାତୁ

ଚଣାଶାକ, ପିଣ୍ୟାକ ଫଳ ଯେ ଯବ ନ୍ନ
ଛତୁଆ ଖାଇ ଯୋଗୀ ରହିବନ୍ତି ଜାଣ—କୃଷ୍ଣସିଂହ, ମହାଭାରତ, ଶାନ୍ତି ।

[ ଦ୍ର—ଉତ୍ତର ପଶ୍ଚିମ ଅଞ୍ଚଳରେ ଓ ବିହାରରେ ଖାଦ୍ୟ-ସାମଗ୍ରୀରୂପେ ଏହାର ଭାରି ଆଦର । ଏହାକୁ ପାଣିରେ ଚକଟି ଓ ମିଠା ମିଶାଇ ଖିଆ ଯାଏ । ବୈଶାଖ ମାସର ପଣାସଂକ୍ରାନ୍ତି ଦିନ ଲୋକେ ବ୍ରାହ୍ମଣଙ୍କୁ ଛତା, ବିଞ୍ଚଣା, ଛତୁଆ ଓ ପଣା ଦାନ କରନ୍ତି । କଞ୍ଚା ଶସ୍ୟର ଚୂନାକୁ ଅଟା । ବା ଚୂନା କହନ୍ତି, ଭଜା ଶସ୍ୟର ଛତୁ ବା ଛତୁଆ କହନ୍ତି । ବୈଦ୍ୟଶାସ୍ତ୍ର ମତରେ ଯବର ଛତୁ ଅଗ୍ନିଦୀପକ, ବଳକାରକ, ଲଘୁ, କଫପିତ୍ତନାଶକ, ଶୁକ୍ରବର୍ଦ୍ଧକ, ଶରୀରର ଉପଚୟକାରକ, ଭେଦକ, ତୃପ୍ତିକାରକ, ଶ୍ରାନ୍ତି, ବ୍ରଣ ଓ ନେତ୍ରରୋଗ ନାଶକ । ]

୨ । ପୁରୀଜିଲ୍ଲାର ସତ୍ୟବାଦୀରେ ପ୍ରତିଷ୍ଠିତ ସାକ୍ଷୀଗୋପାଳଙ୍କୁ ଭୋଗ ଦିଆଯିବା ଦୋଭଜା ଖଇର ଚୂର୍ଣ୍ଣ ( ଲୁହାର ଗୋଲ ଛାଞ୍ଚରେ ପୂରାଇ ଏହାକୁ ଗୋଲାକାର ଚକ କରାଯାଏ )— 2. Powdered fried paddy offered to the Deity at Sakhigopal in the Puri district.

**ଛତୁଆରି**—ଦେ. ବି. ( ସଂ. ଶତାବରୀ )—ଶତାବରୀ ( ଦେଖ )
Chhatuāri — Śatābarī ( See )

ଛତୋରି }
ଛତୌରି } ଅନ୍ୟରୂପ

**ଛତୁଆ ସଂକ୍ରାନ୍ତି**—ପ୍ରାଦେ. ( ବାଲେଶ୍ୱର ) ବି. ( ଭୁଲ. ବି ଛତୁସଂକ୍ରାନ୍ତି; ଏହିଦିନ ଛତୁଆ ବ୍ରାହ୍ମଣଙ୍କୁ ଦିଆଯିବାରୁ)—ପଣାସଂକ୍ରାନ୍ତି ( ଦେଖ )
Chhatuā samkrānti — Paṇā-samkrānti (See)

**ଛତୁ ଉଠାଇ ଦେବା**—ଦେ. କ୍ରି—ସର୍ବନାଶ କରିବା—
Chhatu uṭhāi debā — To ruin totally.
ଛାତୁତୁଲେଦେଓୟା

**ଛତୁ କରିବା**—ଦେ. କ୍ରି—୧ । ଚୂର୍ଣ୍ଣବିଚୂର୍ଣ୍ଣ କରିବା; ଧ୍ୱଂସ କରିବା—
Chhatu karibā 1. To reduce into powder; to annihilate.
ଛାତୁକରା

ଛତୁକରାଇବା }
ଛତୁକରେଇବା } ଅନ୍ୟରୂପ

୨ । ବହୁ ଟିକିଟିକି ଖଣ୍ଡରେ ବିଭକ୍ତ କରିବା—2. To turn into hundreds of tiny bits.

**ଛତୁ ନିକାଳିବା**—ଦେ. କ୍ରି—ଛତୁ କରିବା ( ଦେଖ )
Chhatu nikālibā — Chhatu karibā ( See )

ଛତୁ ଫଟାଇବା }
ଛତୁ ଫଟେଇବା } ଅନ୍ୟରୂପ

[ ଦ୍ର—ଏହି ବାକ୍ୟ ଧମକାଣରେ ବ୍ୟବହୃତ ହୁଏ । ମୁଁ ତୋର ଛତୁ ନିକାଳିବି =ମୁଁ ତୋତେ ଏପରି ପ୍ରହାର ଦେବି ଯେ ତୁ ଛତୁ ପରି ଟିକି ଟିକି ହୋଇ ଯିବୁ । ]

**ଛତୁ ନିକଳିବା**—ଦେ. କ୍ରି—ଚୂର୍ଣ୍ଣବିଚୂର୍ଣ୍ଣିତ ହେବା; ବିନଷ୍ଟ ବା ବିଧ୍ୱସ୍ତ ହେବା; ଛତରଖତର ହେବା—
Chhatu nikilibā — To be annihilated; to be completely ruined; to be spoiled.
ଛାତୁହୟେଯାଓୟା

ଛତୁ ଫାଟିଯିବା }
ଛତୁ ବନିବା } ଅନ୍ୟରୂପ

( ଯଥା—କୋଠା ଉପରୁ ଖସି ପଡ଼ିଲେ ତୋର ଛତୁ ନିକଳି ଯିବ । )

**ଛତୁ ପରି ଉଠିବା**—ଦେ. କ୍ରି—(ବର୍ଷା ଦିନେ ହୁଙ୍କାରୁ ବିଶେଷ ପରିମାଣରେ ଛତୁ ବାହାରିବା ପରି (କୌଣସି ପଦାର୍ଥ ) ଅପର୍ଯ୍ୟାପ୍ତ ରୂପେ ଜାତ ହେବା—
Chhatu pari uṭhibā — (a thing) To copiously spring up (like mushrooms in the rains.)
ଛାତୁରମତଉଠା
(ଛତୁ ପରି ମାତିବା—ଅନ୍ୟରୂପ)

**ଛତୁ ଫୁଟିବା**—ଦେ. କ୍ରି—ଛତୁ ଭୂମିରୁ ବାହାରକୁ ଗଜା ମାରିବା—
Chhatu phuṭibā — The shooting or coming out of the mushroom from the ground.
ଛାତୁଫୁଟା

**ଛତୁ ମାତିବା**—ଦେ. କ୍ରି—ବର୍ଷା ଦିନେ ହୁଙ୍କାରୁ ବା ଭୂମିରୁ ବିଶେଷ ପରିମାଣରେ ଛତୁ ଜାତ ହେବା—
Chhatu mātibā — Mushrooms springing up copiously from the ground or ant hills.

ଛ ଲେ ଛତୁ । ପାଣି ବରଷିଲେ କେତେ ତୁ ମାତୁ—ଡଗ ।

**ଛତୁ ରସ**—ଦେ. ବି—ଶସ୍ୟ ଚୂନାରେ ପ୍ରସ୍ତୁତ ଏକ ପ୍ରକାର ମିଷ୍ଟାନ୍ନ—
Chhatu rasa — A sweetmeat prepared from the flour of grains.

**ଛତୁ ସଂକ୍ରାନ୍ତି**—ପ୍ରାଦେ. ( ବାଲେଶ୍ୱର ) ବି—
Chhatu samkrānti — ଛତୁଆ ସଂକ୍ରାନ୍ତି ( ଦେଖ ) Chhatuā samkrānti ( See )

**ଛତୋରି**—ଦେ. ବି. ( ସଂ. ଶତାବରୀ )—ଶତାବରୀ ( ଦେଖ )
Chhatori — Śatābarī ( See )
( ଛତୌରି—ଅନ୍ୟରୂପ )

**ଛତ୍ୱର**—ସଂ, ବି. ( ଛଦ ଧାତୁ + ସଂଜ୍ଞାର୍ଥେ. ବର )—
Chhatwara — ୧ । କୁଞ୍ଜ; ଲତାକୁଞ୍ଜ—1. A grove; a bower.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇଯ୍ବ | ଉଅ | ଞ୍ଚ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ୍ୟ | ଇଅ | ଢ଼ | ନ୍ |

୨ । ଆଶ୍ରମ—2. Hermitage.

୩ । ଗୃହ—3. House ( M W. ).

ଛତ୍ର—ସଂ. ବି. ( ଛଦ ଧାତୁ, ଣିଚ୍=ଛାଦ ଧାତୁ+କରଣ ତ୍ର )— Chhatra (ଛତ୍ର—ଅନ୍ୟରୂପ) ୧ । ଛତା; ଛତ୍ର; ଆତପତ୍ର— 1. Umbrella.

୨ । ରାଜଛତ୍ର—2. One of the insignia of royalty; an umbrella held over the head of a king.

୩ । ଛତୁ; ଛତ୍ରାକ—3. Mushroom; fungus

୪ । ଏକ ପ୍ରକାର ବିଷାକ୍ତ ଛତୁ; ଅହିଛତ୍ର (ହି. ଶବ୍ଦସାଗର)— 4. A kind of poisonous mushroom.

୫ । ( +ଭାବ. ବି ) ଆବରଣ; ଆଚ୍ଛାଦନ— 5. Covering.

ଦେ. ବି—୧ । ( ବିଶିଅ ଶବ୍ଦ ) ରାଜା ବା ଠାକୁରଙ୍କ ଉପରେ ଅଳଙ୍କାର ରୂପେ ଖଞ୍ଜା ଯିବା ସୁନା ବା ରୂପାର ଛତ୍ର— ଛତ୍ର ଛତ୍ତର 1. Gold or silver umbrella set over a king or Deity as a decoration

୨ । ( ସଂ. ସତ୍ର ) ଅନ୍ନସତ୍ର—2. A public kitchen where cooked rice is distributed free to the needy during a famine.

୩ । ଜଳସତ୍ର—3. A place where water is distributed free to thirsty wayfarers during summer.

୪ । ମେଳା—4. A fair.

( ଯଥା—ହରିହର ଛତ୍ର । )

୫ । ପଂକ୍ତି; ଅକ୍ଷରପଙ୍କ୍ତି— 5. Line; a line of letters.

୬ । ଖଏରାତ୍—6 Charitable distribution.

ପ୍ରାଦେ. ( ଗଞ୍ଜାମ ) ବି. ( ତେଲ. ଚେଲୁଗୁ. ଛତ୍ରମୁ )— ଧର୍ମଶାଳା—Choultry.

[ ଦ୍ର—ମାନ୍ଦ୍ରାଜ ଅଞ୍ଚଳରେ ଯେଉଁ ଧର୍ମଶାଳାମାନ ଅଛି ସେ ସବୁକୁ ଚୌଲ୍ଟ୍ରି ବା ଛତ୍ରମ୍ କହନ୍ତି । ଅଧିକାଂଶ ଛତ୍ରରେ ଆଗନ୍ତୁକ ବ୍ୟକ୍ତି ୧ ବା ୨ ଦିନ ଭଡ଼ା ନ ଦେଇ ରହି ପାରିବାର ସୁବିଧା ଏ । ]

ଦେ. ବି. ( ସଂ. ସତ୍ର ) ଯେଉଁ ସ୍ଥାନ ବା ଗଛରେ ସମସ୍ତଙ୍କର ପ୍ରବେଶାଧିକାର ବା ଭୋଗାଧିକାର ଅଛି— A place or tree to which the public have free access.

ଛତ୍ରକ—ସଂ. ବି. (ଛତ୍ର+ସ୍ୱାର୍ଥେ. କ)—୧ । ଛତା— Chhatraka 1. Umbrella.

୨ । ମାଛରଙ୍କା ପକ୍ଷୀ— 2. The kingfisher; Alcedo Ispida.

[ଦ୍ର—ଏହାର ମୁଣ୍ଡରେ ଛତା ପରି ପକ୍ଷଗୁଚ୍ଛ ଥିବାରୁ ଏହି ନାମ ।]

୩ । ଛତୁ—3 Mushroom; toadstool.

୪ । ଛତା ଆକାରର ମହୁଫେଣା— 4. A parasol-shaped beehive.

୫ । ଛତାପରି ଛାତ ଥିବା ଗମ୍ବୁଜଯୁକ୍ତ ଶିବମନ୍ଦିରବିଶେଷ— 6. A parasol-shaped temple in honour of the Deity Śiba (M. W.)

ଛତ୍ରକଦେହୀ—ସଂ. ବି. ( ଆଧୁନିକ ଜୀବବିଜ୍ଞାନ ପରିଭାଷା )—ଏକ ପ୍ରକାର Chhatraka-dehī ଛତ୍ରାକୃତି ସାମୁଦ୍ରିକ ଜୀବ—Medusa; a (ଛତ୍ରାକାଙ୍ଗ—ଅନ୍ୟରୂପ) jellyfish; Discophora.

ଛତ୍ରଖାଈ—ଦେ ବିଣ. ସ୍ତ୍ରୀ—ଛତରଖାଈ (ଦେଖ) Chhatrakhāī Chhatarakhāī (See) (ଛତ୍ରଖିଆ—ପୁଂ)

ଛତ୍ରଖିଆ—ଦେ. ବିଣ. ପୁଂ.—ଛତରଖିଆ (ଦେଖ) Chhatrakhiā Chhatarakhiā (See)

ଛତ୍ରଚକ୍ର—ସଂ. ବି.—ଶୁଭାଶୁଭ ଫଳ ଜାଣିବା ପାଇଁ ଫଳିତ ଜ୍ୟୋତିଷର Chhatra chakra ଚକ୍ରବିଶେଷ—A kind of astrological figure drawn to calculate a person's future.

[ଦ୍ର—ଏଥିରେ ୩ ପଙ୍କ୍ତିରେ ନକ୍ଷତ୍ର ଲେଖାଏଁ ଘରରେ ୨୭ ନକ୍ଷତ୍ର ଲେଖା ଯାଇ ଶୁଭାଶୁଭ ଗଣନା କରାଯାଏ ।]

ଛତ୍ରଛାଉଳ—ଗ୍ରା. ବି. ଓ ବିଣ.—ଛିନ୍ନ ଭିନ୍ନ; ଚୂର୍ଣ୍ଣବିଚୂର୍ଣ୍ଣ— Chhatra-chhāula Shattered to pieces; routed. (ଛତ୍ରଗୁଡ଼ୁଳ, ଛତ୍ରଛାଡ଼ୁଳ—ଅନ୍ୟରୂପ)

ଛତ୍ରଦଣ୍ଡ—ସଂ. ବି.—୧ । (ଦ୍ୱନ୍ଦ୍ୱ କିମ୍ବା ରୂପକ କର୍ମଧାରୟ-ପ୍ରକୃତିବାଦ) Chhatradanda ରାଜଚିହ୍ନସୂଚକ ଛତା ଓ ଠେଙ୍ଗା; ରାଜଛତ୍ର ଓ ରାଜଦଣ୍ଡ; ଦଣ୍ଡଛତ୍ର—1. The umbrella and the sceptre; the two insignia or emblems of royalty.

୨ । (୬ଷ୍ଠୀ ତତ୍) ଛତାର ବେଣ୍ଟ—2. The handle or supporting rod of an umbrella.

ଛତ୍ରଧର—ସଂ. ବିଣ.—(ଛତ୍ର+ଧୃ ଧାତୁ+କର୍ତ୍ତୃ. ଅ)—୧ । ଯେ ଛତା Chhatra-dhara ଧରି ଥାଏ— 1. Holding an umbrella.

ଛତ୍ରଧାର } ଅନ୍ୟରୂପ
ଛତ୍ରଧାରୀ }

୨ । ଯେ ରାଜାଙ୍କ ମୁଣ୍ଡ ଉପରେ ଛତା ଧରେ—2. Holding an umbrella over the head of a king.

ସଂ. ବି.—୧ । ରାଜା; ସମ୍ରାଟ— 1. An emperor; a sovereign.

ସାଧାରଣ ଲୋକେ ଅପର ପୃଷ୍ଠାରେ ସତତ ୧ ଚିହ୍ନିତ ଅକ୍ଷର ଓ ମାନ ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅଗ୍ନି' କ ପାଇଲେ 'ଅଗ୍ନୀ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ ।

୨ । ରାଜାଙ୍କ ମୁଣ୍ଡ ଉପରେ ଛତା ଟେକିବା ଭୃତ୍ୟ—
2. A retainer whose duty is to hold the umbrella over the head of a king.

**ଛତ୍ର ଧରାଇବା**—ଦେ. କ୍ରି.—୧ । ଛତା ଧରାଇବା—
Chhatra dharāibā ছাতা ধরান 1. To have an umbrella held over one's head by another.
୨ । ନିଜକୁ ଶ୍ରେଷ୍ଠ ବ୍ୟକ୍ତି ରୂପେ ପ୍ରଖ୍ୟାତ କରାଇବା—
2. To cause one's self to be highly reckoned.
ତାହା ସେନାସେନ ସେନ ଭାବୀବଳୁ ପଣେ ମୁଁ ଛତ୍ର ଧରାଇବି ।
ଭକ୍ତ ପ୍ରେମସୁଧାନିଧି ।
୩ । ରାଜ୍ୟାଭିଷିକ୍ତ ହେବା—3. To be installed in throne
ବନ୍ତ୍ର ଧରାଇବ ଛତ୍ର କେଉଁ ଦିନ ଜାଣ । ପ୍ରାଚୀ. ଗୁରୁଭକ୍ତିଗୀତ । ।
( ଛତ୍ର ଧରେଇବା—ଅନ୍ୟରୂପ )

**ଛତ୍ରପତି**—ସଂ. ବି. (୬ଷ୍ଠୀ ତତ୍; ଛତ୍ର+ପତି)—୧ । ରାଜା; ସମ୍ରାଟ—
Chhatrapati An emperor; a sovereign.
ପ୍ରବଳ ପ୍ରତାପ ଦାନବ ଶେଖର
ବୃଷପର୍ବା ଛତ୍ରପତି । ନନ୍ଦକିଶୋର. ଶର୍ମିଷ୍ଠା ।
ଦେ. ବି—ମହାରାଷ୍ଟ୍ର ରାଜା ଶିବାଜିଙ୍କ ଉପାଧି—
A title assumed by Sibaji the Marhatta king.

**ଛତ୍ରପତ୍ର**—ସଂ. ବି. ( ବହୁବ୍ରୀହି; ଯେ ଛତ୍ର ପରି ପତ୍ରବିଶିଷ୍ଟ )—
Chhatra-patra ୧ । ସ୍ଥଳପଦ୍ମ—1. Hibiscus Mutabilis.
୨ । ଭୂର୍ଜପତ୍ର ଗଛ—2. A variety of Birch tree ( having leaves like umbrella ); Betula Bhoorja.
୩ । ମାଣସାରୁ (ଦେଖ)
3. Māna-sāru (See)

**ଛତ୍ରବତୀ**—ସଂ. ବି. (ନାମ)—ମହାଭାରତ, ହରିବଂଶ ଓ ବିଷ୍ଣୁପୁରାଣାଦିରେ
Chhatra-bati ବର୍ଣ୍ଣିତ ପାଞ୍ଚାଳର ଉତ୍ତରରେ ଅବସ୍ଥିତ ପ୍ରାଚୀନ ରାଜ୍ୟ ( ଏହାର ଅନ୍ୟ ନାମ ଅହିଚ୍ଛତ୍ର ବା ଅହିକ୍ଷେତ୍ର— ( ହି. ଶବ୍ଦସାଗର )—Name of an ancient kingdom mentioned in the Hindu mythologies.

**ଛତ୍ରବନ୍ଧୁ**—ସଂ. ବି—ନୀଚବଂଶୀୟ କ୍ଷତ୍ରିୟ; କ୍ଷତ୍ରିୟାଧମ (ହି. ଶବ୍ଦସାଗର)--
Chhatra-bandhu A Kshatriya of low grade.

**ଛତ୍ର ବୃକ୍ଷ**—ସଂ. ବି. ( ମ ପ. ଲୋ; ଛତ୍ରାକୃତି ବୃକ୍ଷ )—
Chhatra bruksha ମୁଚୁକୁନ୍ଦ ଗଛ ( ଦେଖ )
Muchukunda tree ( See )

**ଛତ୍ରବିଛତ୍ର**—ଦେ. ବିଣ—ଘୂରଅଡ଼େ ଭାଙ୍ଗି ପଳାଇବା; ଛିନ୍ନଛତ୍ର—
Chhatra-bichhatra ছিনছত্র छितरबितर Routed; disorganised.

**ଛତ୍ରଭଙ୍ଗ**—ସଂ. ବି. (୬ଷ୍ଠୀ ତତ୍; ଛତ୍ରର ଭଙ୍ଗ; ଛତ୍ର=ରାଜଚିହ୍ନ)—
Chhatra-bhanga ୧ । ରାଜାଙ୍କର ରାଜ୍ୟନାଶ—
1. Loss of one's kingdom.
୨ । ରାଜାଙ୍କ ସିଂହାସନଚ୍ୟୁତି—2. Deposition of a king.
୩ । ଅରାଜକତା—3. Anarchy.
୪ । ଗୋଳମାଳ—4. Disorder.
୫ । ରଣଭଙ୍ଗ; ଯୁଦ୍ଧରେ ସୈନ୍ୟମାନେ ପରାସ୍ତ ହୋଇ ଯୁଦ୍ଧଭୂମି ଓ ଆପଣାର ଦଳ ଛାଡ଼ି ପଳାଇବା—
5. A rout.
୬ । ବୈଧବ୍ୟ—6. Widowhood.
୭ । ସ୍ୱାତନ୍ତ୍ର୍ୟ—7. Individuality.

**ଛତ୍ରଭଙ୍ଗ ଦେବା**—ଦେ. କ୍ରି—(ସୈନ୍ୟମାନେ ଶତ୍ରୁଦ୍ୱାରା ପରାସ୍ତ ହୋଇ)
Chhatra-bhanga debā ছত্রভঙ্গদেওয়া ଯୁଦ୍ଧଭୂମି ଛାଡ଼ି ଏଣେତେଣେ ପଳାଇବା-- To be put to rout; to flee from the battle-field (said of a defeated army).

**ଛତ୍ରମହାରାଜ**—ସଂ. ବି. (ନାମ)—ଆକାଶରେ କଳ୍ପିତ ବୌଦ୍ଧମାନଙ୍କର
Chhatra-mahārāja ଚାରି ଦିକ୍‌ପାଳ—The four protectors of the quarters of the earth according to the Buddhists.
(ଯଥା—୧. ପୂର୍ବଦିଗର ଅଧିପତି ଗୀଣାହସ୍ତ—ଗୀଣାରାଜ; ୨. ପଶ୍ଚିମଦିଗର ଅଧିପତି ଖଡ୍ଗହସ୍ତ—ଖଡ୍ଗରାଜ; ୩. ଉତ୍ତରଦିଗର ଅଧିପତି ଧ୍ୱଜହସ୍ତ—ଧ୍ୱଜରାଜ; ୪ ଦକ୍ଷିଣଦିଗର ଅଧିପତି ଚୈତ୍ୟହସ୍ତ ଚୈତ୍ୟରାଜ; ବୌଦ୍ଧମନ୍ଦିରମାନଙ୍କରେ ଏମାନଙ୍କର ମୂର୍ତ୍ତି ରଖାଯାଏ- ହି. ଶବ୍ଦସାଗର ।)

**ଛତ୍ରସାହି**—ଦେ. ବି—ଛତ୍ରାକୃତି ଶିରସ୍ତ୍ରାଣ ବା ପାଗ—
Chhktra-sāhi A wide bushy turban set like an umbrella over the head.
( ଛତ୍ରସାଇ—ଅନ୍ୟରୂପ )
ଛତ୍ରସାହି କରଣ ପାଗ ବାନ୍ଧିଛନ୍ତି । କୃଷ୍ଣସିଂ ହ. ମହାଭାରତ ଆଦି ।

**ଛତ୍ରା**—ସଂ. ବି ସ୍ତ୍ରୀ. (ଛତ୍ର+ଆ)—୧ । ମଞ୍ଜିଷ୍ଠାଗଛ; ମଞ୍ଜୁଆତି ଗଛ—
Chhatrā 1. The Indian madder-plant; Rubia Manjistha.
୨ । ଝାମ୍ପୁଲା ଗଛ—2. A spreading or bushy tree.
୩ । ପାନମହୁରି ଗୁଳ୍ମ—3 Anethum Panmorium; the aniseed plant.
୪ । ସଢ଼ୁପ ଗଛ—4. Anethum Sowa plant.
୫ । ତୃଣ (ଦେଖ) (ହରେକୃଷ୍ଣ ଦ୍ରବ୍ୟଗୁଣ)
5. Tinā (See)
୬ । ଧନିଆ (ହି. ଶବ୍ଦସାଗର)—6. Coriander.
୭ । ଛତୁ; ଛତାକ (ହି. ଶବ୍ଦସାଗର)—7. Mushroom.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଥ | ଡଥ | ଛ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୂ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ |

ଛତ୍ରାକ—ସଂ. ବି. (ଛତ୍ର+ଅକ୍-ଧାତୁ=ଗମନ କରିବା, ଭୁଲ୍କା ଦେବା+
Chhatrāka  କର୍ତ୍ତୃ. ଅ )—୧ । ଶିଲିନ୍ଧ୍ର; ଛତୁ—
1. Mushroom.
୨ । ଗୁଳ୍ମବିଶେଷ; ଜଳବବୁରି ଗୁଳ୍ମ—
2. A plant akin to Acacia Acracia (M. W.).

ଛତ୍ରାକାର—ସଂ. ବିଣ. ( ବହୁବ୍ରୀହି; ଛତ୍ର+ଆକାର )—
Chhatrākāra  ଛତାପରି ଝାମ୍ପୁଳା—Spreading (like
(ଛତ୍ରାକୃତି—ଅନ୍ୟରୂପ)  an umbrella); umbrella-shaped; umbellate.

ଛତ୍ରାକୀ—ସଂ. ବି. ସ୍ତ୍ରୀ. (ଛତ୍ରାକ+ଈ)—୧ । ରାସ୍ନା—
Chhatrākī  1. A parasitic plant growing on trees; Vanda Roxburghii; the Ichneumon plant (M. W.).
[ ଦ୍ର—ଏହା ଏକପ୍ରକାର ବାନ୍ଦୁଲୀ ଗୁଳ୍ମ । ଆସାମ ଓ ଖାସିଆ-ପାହାଡ଼ରେ ପ୍ରାୟ ଆମ୍ବଗଛରେ ଏହା ଜନ୍ମେ । ଏଥିର ଫୁଲ ଧଳବର୍ଣ୍ଣ, ସୁଗନ୍ଧ ଓ ବହୁଦିନସ୍ଥାୟୀ । ଏହାର ଫଳ ଔଷଧରେ ଲାଗେ । ]
୨ । ସର୍ପାକ୍ଷୀ (ଦେଖ)
2. Sarpākshī (See)

ଛତ୍ରାଙ୍ଗ—ସଂ. ବି—ଗୋଦନ୍ତୀ ହରିତାଳ—
Chhatrānga  A kind of yellow orpiment.

ଛତ୍ରାଧାନ୍ୟ—ସଂ. ବି—ଧନିଆଁ; ଧାନ୍ୟାକ—
Chhatrā-dhānya  The coriander seed.

ଛତ୍ରି—ଗ୍ରା. ବି. (ସଂ. ଛତ୍ର)—୧ । ଦେବତା ଓ ରାଜାମାନଙ୍କ ଉପରେ
Chhatri  ଧରାଯିବା ବଡ଼ ଛତା—1. A big umbrella held
ଛତ୍ରୀ  over kings and Deities.
छतरी
୨ । ଚକ୍ରବର୍ତ୍ତୀ ରାଜା—2. A sovereign; emperor.
୩ । ବୀର ପୁରୁଷ—3. A warrior.
ଏତ ଛତ୍ରିଙ୍କ ଉପରେ ରେଖ । ପ୍ରାଚୀ. ରହସ୍ୟସଙ୍ଗୀତ ।
୪ । (ସଂ. କ୍ଷତ୍ରିୟ)—କ୍ଷତ୍ରିୟ—4. A Kshatriya or man of the warrior class amongst the Hindus.
ପୁଣି ପରଶୁରାମ ରୂପେ
ଛତ୍ରି ନାଶିଲୁ ମହାକୋପେ । ଭୂପତି, ପ୍ରେମପଞ୍ଚାମୃତ ।
ଛତ୍ରି ଉତ୍ତମ ଶିରୋମଣି । କମଳଲୋଚନ. ଚଉତିଶା ।
୫ । ରଜପୁତ ଜାତି—5. The Rajput caste.

ଛତ୍ରିଂଶ—ଦେ. ବି ଓ ବିଣ. ( ସଂ. ଷଟ୍ତ୍ରିଂଶ )—
Chhatrimśa  ଛତିଶ ( ଦେଖ )
Chhatiśa ( See )

ଛତ୍ରିକ—ସଂ. ବିଣ. ( ଛତ୍ରିନ୍+ସ୍ୱାର୍ଥେକ. କ )—ଛତ୍ରୀ ( ଦେଖ )
Chhatrika  Chhatrī ( See )

ଛତ୍ରିକା—ସଂ. ବି. ସ୍ତ୍ରୀ. ( ଛତ୍ର+କ+ସ୍ତ୍ରୀ. ଆ )—
Chhatrikā  ୧ । ଶିଲିନ୍ଧ୍ର; ଛତୁ—1. Mushroom.
୨ । ଛୋଟ ଛତା—2. Small parasol.
୩ । ଛତା—3. Parasol; umbrella.
୪ । ମିଶ୍ରି—4. Candied sugar (M. W).

ଛତ୍ରିଶ—ଦେ. ବି (ସଂ. ଷଟ୍ତ୍ରିଂଶ)—ଛତିଶ (ଦେଖ)
Chhatrisa  Chhatiśa (See)

ଛତ୍ରୀ—ସଂ. ବିଣ. ପୁଂ—(ଛତ୍ର+ଅସ୍ତ୍ୟର୍ଥେ ଇନ୍; ୧ମା. ୧ବ)—
Chhatrī  ୧ । ଯାହା ମୁଣ୍ଡଉପରେ ଛତା ଧରା ହୋଇଅଛି—
(ଛତ୍ରିଣୀ—ସ୍ତ୍ରୀଲିଙ୍ଗ)  Having an umbrella held over the head.
୨ । ଛତ୍ରଧାରୀ—2. Bearing an umbrella.
ସଂ. ବି—୧ । ରାଜା—1. A king ( M. W ).
୨ । ଭଣ୍ଡାରି (ହ. ଶବ୍ଦସାଗର)—2 A barber (M.W).

ଛଦ୍ (ଧାତୁ)—ସଂ —ଆଚ୍ଛାଦନ କରିବା—To cover
Chhad (root)

ଛଦ—ସଂ. ବି (ଛଦ୍ ଧାତୁ, ଣିଚ=ଛାଦ ଧାତୁ+କରଣ. ଅ)—
Chhada  ୧ । ତମାଳବୃକ୍ଷ—1. Diospyros Tomentosa (tree).
୨ । ବୃକ୍ଷର ପତ୍ର—2. Leaf of a tree.
୩ । ପକ୍ଷ; ଡେଣା—3. Wing.
୪ । ଆବରଣ; ଢାଙ୍କୁଣୀ—4. A cover; lid
୫ । ଆଚ୍ଛାଦନ-ବସ୍ତ୍ର; ଚାଦର—5. A sheet,
୬ । ଘାସର ପତ୍ର—6. A blade of grass.
୭ । ଗଛର ଛାଲ; ଛେଲି—7. Bark of a tree.
୮ । (+ଭାବ. ଅ) ଆଚ୍ଛାଦନ କରିବା—
Act of covering.

ଛଦନ—ସଂ. ବି—(ଛଦ୍ ଧାତୁ+ଭାବ ଅନ)—୧ । ଆଚ୍ଛାଦନ—
Chhadana  Covering.
୨ । (+କରଣ ଅନ)—ପତ୍ର—Leaf.
ଛଦନ ଯୁଗଳେ ସଦନ କରି ଅଛନ୍ତି ସତ । ଉତ୍କ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୩ । ତେଜପତ୍ର—3 The Cassia Cinnamon (fragrant leaves).
୪ । ପକ୍ଷ—Wing.

ଛଦର୍ମ—ଗ୍ରା. ବି (ସଂ. ଛଦ୍ମ)—ଛଳ; ଛଦ୍ମ; ଛଳ—Deceit; trick.
Chhadarma

ଛଦା—ଦେ. ବି ( ସଂ ଛଦ୍ ଧାତୁ )—୧ । କୋଠାଘରର ପ୍ରାନ୍ତରେ
Chhadā  କାନ୍ଥର ଅଗ୍ରରେ ପଦାକୁ ବାହାରି ବସା ଯିବା ଇଟା କାନ୍ଥି—
1. A parapet at the extremes of a roof at the top of the walls of building.
୨ । ତାଳୀଶ ପତ୍ର (ଦେଖ)
2. Tālīsa patra (See)

> ସାଧାରଣ ଲୋକେ ଅପର ପୃଷ୍ଠାରେ ସଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଗ୍ନି ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଛଦାମ**—ଦେ. ବି—ଏକ ପଇସାର ଚାରିଭାଗରୁ ଏକଭାଗ—
Chhadāma — One fourth of a pice.
छदाम
**छदाम**
ତେ. ଦାମୁଡ଼ି

**ଛଦି**—ସଂ. ବି (ଛଦ୍ ଧାତୁ + କରଣ ଇ)—୧ । ଘରର ଛାତ; ଚାଳ;—
Chhadi — The roof of a house; thatch.
(ଛଦିଃ—ଅନ୍ୟରୂପ) ଛଦି ଅଳିନ୍ଦାଦି ଅଶଙ୍ଖ୍ୟ ଦର୍ଶକ ବୃନ୍ଦେ ଶୋଭିତ । —ରାଧାନାଥ. ଉଷା ।
୨ । (+ଭାବ. ଇ) ଆଚ୍ଛାଦନ—Covering.

**ଛ-ଦୁଇ**—ଦେ. ବି ଓ ବିଣ—ଆଠ—Eight.
Chha-dui — ଛଦୁଇ ଦୁର୍ଗେଶ ଭଣେ । —କବିସୂର୍ଯ୍ୟ. କଳୋଶ୍ୱ ବର୍ଣ୍ଣ. ଛ ଗୀତ ।

**ଛଦ୍ମ**—ସଂ. ବି (ଛଦ୍ ଧାତୁ + କରଣେ ମନ୍; ୧ମା. ୧ବ)—
Chhadma ୧ । ଛଳ—1. Trick.
୨ । କପଟ—2. Pretence.
୩ । ବ୍ୟାଜ—3. Hypocricy; disguise; sham.
୪ । ଗୋପନ—4. Concealment.

**ଛଦ୍ମତପସ୍ୱୀ**—ସଂ. ବି. ପୁଂ—କପଟୀଧର୍ମ୍ମୀ ବୈରାଗୀ—
Chhadma-tapaswī — A hypocritical ascetic.
(ଛଦ୍ମତାପସ—ଅନ୍ୟରୂପ)
(ଛଦ୍ମତପସ୍ୱିନୀ—ସ୍ତ୍ରୀ)

**ଛଦ୍ମବେଶ**—ସଂ. ବି—୧ । କପଟ ବେଶ; ପରକୁ ପ୍ରତାରଣା କରିବାପାଇଁ
Chhadma-beṣa ଧାରଣ କରାଯିବା ଅନ୍ୟ ବେଶ—
A mask; a disguise.
୨ । (ଲକ୍ଷଣାର୍ଥ)—୨ । ନିଜେ ପ୍ରକୃତରେ ଯେପରି ତାହା ଗୋପନ କରି ଲୋକଙ୍କ ନିକଟରେ ଅନ୍ୟ ଭାବରେ ପରିଚିତ ହେବା ନିମିତ୍ତ ଯେଉଁ ଆଚରଣ ବା ଅନୁଷ୍ଠାନ କରାଯାଏ—2. (figurative) Hypocricy; hypocritical conduct or act.

**ଛଦ୍ମବେଶୀ**—ସଂ. ବିଣ. ପୁଂ. (ଛଦ୍ମବେଶ + ଅଛି ଯାହାର ଏହି ଅର୍ଥରେ
Chhadma-beṣī ଇନ୍; ୧ମା. ୧ବ)—ଯେ ଅନ୍ୟକୁ ପ୍ରତାରଣା
(ଛଦ୍ମବେଶିନୀ—ସ୍ତ୍ରୀ) କରିବା ପାଇଁ କପଟବେଶ ଧାରଣ କରିଥାଏ; କାପଟିକ—Masked; incognito; appearing in disguise.

**ଛଦ୍ରମ**—ଗ୍ରା. ବି. (ସଂ. ଛଦ୍ମ)—ଛଳ; ଛଳ; ବ୍ୟାଜ; କପଟ; ବାହାନା—
Chhadrama — Disguise; trick; hypocricy; feigning.
छन्द — ମାୟାମନୁଷ୍ୟରୂପେ ହରି, ଛଦ୍ରମେ ଗୃହବାସ କରି— —ଜଗନ୍ନାଥ. ଭାଗବତ ।

**ଛନ୍**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଶଣ)—ଝୋଟ—
Chhan — Jute; flax.
ପ୍ରାଦେ. (ସମ୍ବଲପୁର) ପ୍ରତ୍ୟୟ—ବର୍ତ୍ତମାନକାଳ ବହୁବଚନ 'ଛନ୍ତି' ସ୍ଥଳରେ ପ୍ରଯୁଜ୍ୟ (ଯଥା—କରଛନ୍, ଖାଛନ୍, ଛନ୍=ସଂ. ସନ୍ତି)—An inflection suffixed to verbs in the present tense plural.

**ଛନ**—ଦେ. ବି. (ଭୁଲ. ସଂ.ଛନ୍ନ=ଗୁପ୍ତ)—୧ । ଭୟ; ଖିଭ—
Chhana — 1. Fear; fright.
୨ । ତ୍ରାସଣ—2. Frightening.

**ଛନକ**—ଦେ. ବି. (ସଂ. ଚମତ୍କାର)—୧ । ଭୟ—
Chhanaka — 1. Fear.
चमक — ଅବସରେ ଅଶି ମୁଁ ଦୃଢ଼ିଲି ଛନକେ—ରାଧାନାଥ. ନନ୍ଦକେଶରୀ ।
**चौंक, छनक** — ୨ । ହଠାତ୍ ଜାତ ଭୟ; ଭଡ଼କ—
2. Sudden fright; terror.

**ଛନ କରିବା**—ଦେ. କ୍ରି—ଡରାଇବା; କପଟଭୟ ଦେଖାଇବା—
Chhana karibā — To frighten in jest.
ଦମ୍ଭ ଦେଖିବାକୁ ସିନା କଲି ଛନ—କବିସୂର୍ଯ୍ୟ. କଳୋଶ୍ୱବର୍ଣ୍ଣ. ଦ ଗୀତ ।

**ଛନକା**—ଦେ. ବି—ଛନକ (ଦେଖ)
Chhanakā — Chhanaka (See)
चमक — ଛନକାରେ ତ୍ରସ୍ତ ହେଲେ ଛଳମତି
**चौंक, छनक** — ସବୁ ପ୍ରାଣୀ ବ ଜଳେ, ବ ସ୍ଥଳେ ବହାସ୍ୱରେ— —ରାଧାନାଥ, ମହାଯାତ୍ରା ।
ଛନକା ପଶିଲା ଛାତରେ, ଜାତି କୁଳ ଉପେକ୍ଷି— —କଳାକଳେବର ଚଉତିଶା. ଛ-ଗୀତ ।

(ଛନକୀ—ସ୍ତ୍ରୀ) ଦେ. ବିଣ. ପୁଂ. (ସଂ. ଚମକିତ)—
୧ । ହଠାତ୍ ଭୟଗ୍ରସ୍ତ—1. Frightened; terrified.
୨ । ଚେହେଙ୍କିବା—2. Shying.

**ଛନକାଇବା**—ଦେ. କ୍ରି. (ଛନକିବା କ୍ରିୟାର ଣିଜନ୍ତରୂପ)—ହଠାତ୍
Chhanakāibā — କପଟରେ ଭୟ ଦେଖାଇବା—
चमकाना — To frighten in jest.
**चमकाना**
(ଛନକେଇବା—ଅନ୍ୟରୂପ)

**ଛନକିବା**—ଦେ. କ୍ରି—୧ । ଡରିବା—
Chhanakibā — 1. To fear.
चमका — ୨ । ଚମକିବା—
**छनकना** — 3 To be startled; to shy.

**ଛନକୀ**—ପ୍ରାଦେ. (ଗଡ଼ଜାତ) ବିଣ. ସ୍ତ୍ରୀ—ଅତି ଅସ୍ଥିର; ଚଞ୍ଚଳ (ଗାଈ);
Chhanakī — ତୁରୁଡ଼ା—Very restless, (cow).

**ଛନଛତ୍ର**—ଦେ. ବିଣ. (ସଂ. ଛନ୍ନଛିନ୍ନ)—
Chhana-chhatra — ୧ । ଅସ୍ତବ୍ୟସ୍ତ; ଛନ୍ନଛତ୍ର; ଛତ୍ରଭଙ୍ଗ ଦେଇ
छन्नछत्र — ପଳାୟିତ—1. Routed; completely
**छितरबितर** — disorganised.
(ଛନଛତ୍ର—ଅନ୍ୟରୂପ) ୨ । ଉଜୁଡ଼ା; ବିନଷ୍ଟ; ବିଧ୍ୱସ୍ତ—
2. Ruined.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ଈ |
| ୨ | ଈ | ଊ | ରୁ | ଲୁ | ପ୍ତେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଊ | ନ୍ତୁ |

**ଛନଛନ**—ଦେ. ବଣ. ( ସଂ. ଚମକିତ )—୧ । ଭୀତ—
Chhana-chhana 1. Frightened.
अस्थिर; चंचं ୨ । ଭୟରେ ଅସ୍ଥିର—
बेचैन 2. Restless through fear, agitated.

ଶଲ୍ୟ କାଣ୍ଡରେ ପୀଡ଼ା ପାଇ ପାଣ୍ଡୁ ସୈନ୍ୟ
ପଳାଇବାକୁ ମନ କରି ଛନଛନ—କୃଷ୍ଣସିଂହ. ମହାଭାରତ. ଶଲ୍ୟ ।

୩ । ଚଞ୍ଚଳ; ଅସ୍ଥିର—3 Restless.

ଛନଛନ ମନ ବାଳୁନ ବଚନ ନରେଣ୍ଡି ଗୃହେ ଦଶଦଶ—
ପ୍ରାଚୀ. ଶିଶୁଶଙ୍କର. ଲକ୍ଷାଭିଳାଷ ।

୪ । ଏଣେ ତେଣେ ଅସ୍ଥିରଭାବରେ ଚାହିଁବା—
4 Glancing restlessly; casting momentary glances.

ଛନଛନ ହୋଇ ଚାହଁଥ ଏଣିତେଣି—କୃଷ୍ଣସିଂହ. ମହାଭାରତ ବନ ।

**ଛନଛନ ଲାଗିବା**—ଦେ. କ୍ରି—ନିର୍ଜନ ସ୍ଥାନରେ ଅନିର୍ଦ୍ଦିଷ୍ଟ ଭୟ ମନରେ
Chhanachhana lāgibā ଉଦ୍ରେକ ହେବା—An undefined fear arising in the mind in solitude or wilderness.

**ଛନ୍ତି**—ଦେ. ( ପଦ୍ୟ ) ( କ୍ରିୟାବାଚକ୍ତିର ଚନ୍ତ ହେବା କ୍ରିୟାର ତୃତୀୟ
Chhanti ପୁରୁଷ ମାନ୍ୟାର୍ଥ ଏକବଚନ ଓ ବହୁବଚନ, ବର୍ତ୍ତମାନ
छेन କାଳ, ସେ ଓ ସେମାନେ କର୍ତ୍ତୃସହିତ ପ୍ରଯୁଜ୍ୟ)—
हैं ଅଛନ୍ତି—Are.

କୋଳରେ ଛନ୍ତି ଗଣନାଥେ—ଭୂପତି. ପ୍ରେମପଞ୍ଚାମୃତ ।

[ ଦ୍ର—ଏହା ପଦ୍ୟରେ ଓ କଥିତ ଭାଷାରେ ସ୍ୱତନ୍ତ୍ର ଆକାରରେ 'ଅଛନ୍ତି' ସ୍ଥଳରେ ବ୍ୟବହୃତ ହୁଏ । ଅନ୍ୟତ୍ର କ୍ରିୟା ସଙ୍ଗରେ ଲାଗି ମଧ୍ୟ ଏହି ଅର୍ଥ ଦିଏ । ଯଥା—କରୁଛନ୍ତି=କରୁଅଛନ୍ତି । ]

**ଛନ୍ଦ୍** ( ଧାତୁ )—ସଂ—୧ । ଆଚ୍ଛାଦନ କରିବା—1. To cover.
Chhand ( root ) ୨ । ଦୀପ୍ତି ପାଇବା—2. To shine.
୩ । ଗୋପନ କରିବା—
3. To conceal; to hide.
୪ । ବେଷ୍ଟନ କରିବା—
4. To envelop; to surround.
୫ । ରକ୍ଷା କରିବା—5. To profect.

**ଛନ୍ଦ**—ସଂ. ବି. ( ଛନ୍ଦ୍ ଧାତୁ+ଭାବ. ଅ )—୧ । ଅଭିପ୍ରାୟ—
Chhanda 1. Intention; pleasure.
୨ । ବଶତା—2. Control; subjection; mastery.
୩ । ଅଭିଳାଷ—3. Wish; will; inclination.
୪ । ପ୍ରବୃତ୍ତି—4. Inclination
୫ । ବିଷ—5. Poison.
୬ । ବନ୍ଧନ—6. Binding; bond.
୭ । କପଟ; ଛଳ ( ହି. ଶବ୍ଦସାଗର )—
7. Fraud; deceit; trick.

କାହିଁ ପାଇଁ କଲ ମୋଠାରେ ଛନ୍ଦ । ଗୋପାଳକୃଷ୍ଣ. ରସକଲ୍ଲୋଳ ।

୮ । ଆକାର; ଚେଷ୍ଟା, ଭଙ୍ଗଢଙ୍ଗ ( ହି. ଶବ୍ଦସାଗର )—
8. Deportment; mode of conduct.
୯ । ଅଭିପ୍ରାୟ ( ହି. ଶବ୍ଦସାଗର )—9. Intention.
୧୦ । ଏକାନ୍ତ; ନିର୍ଜନତା ( ହି. ଶବ୍ଦସାଗର )—
10. Solitude.
୧୧ । ଆବରଣ; ଢାଙ୍କୁଣି ( ହି. ଶବ୍ଦସାଗର )—
11 Lid; cover.
ସଂ. ବିଣ—ଗୋପନୀୟ—Secret.
छन्द ଦେ. ବି.—୧ । ( ସଂ. ଛନ୍ଦଃ ) ରାଗିଣୀ; ସ୍ୱର—
छंद् 1. Metre; musical air.
୨ । ଛନ୍ଦଃ; ବେଦର ରାଗିଣୀ—
2. The air of a vedic hymn.
छाँदनदड़ि ୩ । ଗୋରୁଦୁହାଁ ସମୟରେ ବାଛୁରୀକୁ ବାନ୍ଧିବା ଦଉଡ଼ି—
3. A string to tie the calf during milching the cow.
୪ । (ସଂ. ସନ୍ଦେହ) ସନ୍ଦେହ ସ୍ଥଳ—4. Dilemma.
୫ । (ସଂ. ସନ୍ଧି) ସନ୍ଧି; ସନ୍ନିପାତ—
5. Collapse ( during fever ).

**ଛନ୍ଦଃ**—ସଂ. ବି—ଛନ୍ଦସ୍ ( ଦେଖ )
Chhandaḥ Chhandas ( See )

**ଛନ୍ଦଃ ପତନ**—ସଂ. ବି—ଛନ୍ଦୋଭଙ୍ଗ ( ଦେଖ )
Chhandaḥ patana Chhandobhaṅga ( See )

**ଛନ୍ଦକ**—ସଂ. ବି. ( ଛନ୍ଦ୍ ଧାତୁ=ରକ୍ଷା କରିବା+କର୍ତ୍ତୃ. ଅକ )—
Chhandaka ୧ । ରକ୍ଷକ—1. Protector
୨ । ବାସୁଦେବ; ଶ୍ରୀକୃଷ୍ଣ—
2 A name of Śrīkrushṇa.
୩ । ବୁଦ୍ଧଦେବଙ୍କ ସାରଥି—
3. Name of the charioteer of Buddha.
ସଂ ବିଣ—ଛଳୀ; କପଟୀ (ହି. ଶବ୍ଦସାଗର )—
Deceitful.

**ଛନ୍ଦଣା**—ଦେ. ବି—ବନ୍ଧନ ( ଦେଖ )
Chhandaṇā Bandhana ( See )

**ଛନ୍ଦଣୀ**—ଦେ. ବି—୧ । ଗାଈ ବାଛୁରୀଙ୍କୁ ବାନ୍ଧିବା ଦଉଡ଼ି—
Chhandaṇi 1. A string to tie the legs of cows
छाँदनि and calves to a peg or to each
तौन other.
(ଛନ୍ଦ ଦଉଡ଼ା, ଛନ୍ଦ ଦଉଡ଼ି—ଅନ୍ୟରୂପ)

କେଉଁ ଧେନୁ ଚରଣେ ଛନ୍ଦନ୍ତି ଛନ୍ଦଣି । ଗୋପାଳକୃଷ୍ଣ. ପଦକଲ୍ଲୋଳ ।

୨ । ବନ୍ଧନ; ବନ୍ଧାହେବା—2. Being tied.

କଟୀ ବାନ୍ଧନ୍ତି ହେମ ସୂତେ ଛନ୍ଦଣି
କଣ୍ଠି ଛନ୍ଦେ ପୀତାମ୍ବର ସୁମଣି ଶ୍ରେଣୀ । ବଂଶୀନାଥ. ବଡ଼ଦାଣ୍ଡ ସମାଚାର ।

**ଛନ୍ଦଣୀ ଦଉଡ଼ି**—ପ୍ରାଦେ. (ଗଞ୍ଜାମ) ବି—ସୁତାରେ ବଳା ଯାଇଥିବା ନୂଆ
Chhandaṇi daurḍi ଦଉଡ଼ି ( ଏଥିରେ ଅର୍ଦ୍ଧ ଅମାବସ୍ୟା ଦିନ

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ କିମ୍ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଲ୍‌ଙ୍କାର' ଦେଖିବେ

ଘରର ସ୍ତ୍ରୀଲୋକେ ପିଲାଙ୍କୁ ବାନ୍ଧି ତାଙ୍କ ପିଠିରେ ବଜ୍ରମୂଳୀ ଓ ଅପାମାର୍ଗ ଡାଳ ବାଡ଼େଇ କହନ୍ତି 'ବଜ୍ର ହୋ' )—
A new rope made of thread

**ଛନ୍ଦଣିମନ୍ଦଣି**—ଦେ. ବି—ଗଇଣ୍ଠାଗଇଣ୍ଠି; ଅନେକଗୁଡ଼ାଏ ସୂତାରେ ଗଣ୍ଠି ପଡ଼ିଯିବା; ଅଡ଼ୁଆ ହେବା; ଗୁଡ଼ାଆଗୁଡ଼ି
Chhandaṇi mandaṇi
ଛନ୍ଦବନ୍ଦ Intricacy; beingknotted; confusion; chaos.
**छाँदो, छाँदा**
ଦେ. ବିଣ—୧ । ବିଶେଷ ଅଡ଼ୁଆ ହୋଇଥିବା—
1. Intricately knotted together; knotty; chaotic; tangled.
୨ । ପରସ୍ପର ସଙ୍ଗେ ଛନ୍ଦା ହୋଇଥିବା—
2. Intertwined with each other; crossed.
କୋଇଲି ଲୋ ଛନ୍ଦଣି ମନ୍ଦଣି ଭୁଜ ଦଣ୍ଡ । କେଶବ କୋଇଲି ଛ ଗୀତ ।

**ଛନ୍ଦନ**—ଦେ. ବିଣ. ( ସଂ. ଛନ୍ଦ=ବନ୍ଧନ )—ଛନ୍ଦି ହୋଇଥିବା—
Chhandana Confused; entwined.
ଛାଁଦନ ଲମ୍ବିଛି ସୁମନ ମାଳ ଛନ୍ଦନ ଅହି ତମାଳ
**छँदना** ତଳେ କାଠ ଛନ୍ଦିଆ ଶୋଭନ ହେ ।
ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।

**ଛନ୍ଦମନ୍ଦ**—ସଂ. ବି. ( ସଂ. ଛନ୍ଦ )—୧ । ଛଳ; କପଟ—
Chhanda-manda 1. Deceit; hypocricy.
ଛନ୍ଦକପଟ ୨ । ଗୁଭୁଗୁ—2. Cunning.
**छन्दबन्द, छलछन्द**
ଛନ୍ଦବନ୍ଦ } ଅନ୍ୟରୂପ
ଛନ୍ଦବନ୍ଧ }

**ଛନ୍ଦପାତନ**—ସଂ. ବି—କପଟ ସନ୍ନ୍ୟାସୀ; ସାଧୁବେଶଧାରୀ ଠକ ( ହି. ଶବ୍ଦସାଗର)—A masked mendicant; a cheat in the mask of a saint.
Chhanda-pātana

**ଛନ୍ଦସ୍**—ସଂ. ବି. ( ଛନ୍ଦ୍ ଧାତୁ=ପ୍ରୀତି ପାଇବା+ଭାବ. ଅସ୍ )—
Chhandas ୧ । ପଦ୍ୟବନ୍ଧ—1. Prosody; poetic composition; rhyme.
[ ଦ୍ର—ଯେଉଁ ରଚନାରେ ବର୍ଣ୍ଣ ବା ମାତ୍ରାର ଗଣନା ଅନୁସାରେ ବିରାମ ଆଦିର ନିୟମ ଅଛି ତାକୁ ଛନ୍ଦଃ ବୋଲାଯାଏ । ଏହା ୨ ପ୍ରକାର; ଯଥା—ବାର୍ଣ୍ଣିକ ଓ ମାତ୍ରିକ । ଯହିଁର ପ୍ରତିପାଦରେ ଅକ୍ଷର ସଂଖ୍ୟାର ଓ ଲଘୁଗୁରୁକ୍ରମର ନିୟମ ଥାଏ ତାକୁ ବାର୍ଣ୍ଣିକ ବା ବର୍ଣ୍ଣବୃତ୍ତ, ଓ ଯହିଁରେ ଅକ୍ଷରଗଣନାର ତଥା ଲଘୁଗୁରୁକ୍ରମର ବିଚାର ନ ହୋଇ କେବଳ ମାତ୍ରାର ସଂଖ୍ୟା ରକ୍ଷା କରାଯାଏ ତାକୁ ମାତ୍ରିକ ଛନ୍ଦଃ ବୋଲାଯାଏ । ପାଦର ବିଚାରରେ ବୃତ୍ତ ବା ଛନ୍ଦଃର ୩ଭେଦ, ଯଥା—ସମବୃତ୍ତ, ଅର୍ଦ୍ଧସମବୃତ୍ତ ଓ ବିଷମବୃତ୍ତ । ଯେଉଁ ରଚନାରେ ୪ ପାଦ ସମାନ ତାକୁ ସମବୃତ୍ତ, ଯହିଁରେ ୧ମ ପାଦ ୩ୟ ପାଦ ସଙ୍ଗେ ଓ ୨ୟ ପାଦ ୪ର୍ଥ ପାଦ ସଙ୍ଗେ ସମାନ ତାକୁ ଅର୍ଦ୍ଧସମବୃତ୍ତ ଓ ଯହିଁରେ ପାଦମାନ ଅସମାନ ତାକୁ ବିଷମବୃତ୍ତ ବୋଲାଯାଏ । ଅଧିକାଂଶ ସଂସ୍କୃତ ଛନ୍ଦଃ ବାର୍ଣ୍ଣିକ ଓ ଭାଷାର ଛନ୍ଦମାନ ମାତ୍ରିକ ଅଟେ । ହି. ଶବ୍ଦସାଗର ]
୨ । ପଦ୍ୟ ବା ଗଦ୍ୟ ରଚନାର ରୀତି—
2. Style of prose or poetry.
୩ । ପଦ୍ୟର ରାଗ ବା ରାଗିଣୀ—
3. Poetical air or measure; metre; cadence.
୪ । ଇଚ୍ଛା, ଅଭିଳାଷ—4 Wish; desire.
୫ । ସ୍ୱେଚ୍ଛାଚାର; ମନମୁଖୀ ବ୍ୟବହାର—
5 Voluntary action; arbitrary conduct.
୬ । ବେଦର ମନ୍ତ୍ରର ରାଗ—
6. Metre of vedic texts.
[ ଦ୍ର—ଅକ୍ଷରର ସଂଖ୍ୟା ଅନୁସାରେ ରଚିତ ବେଦମନ୍ତ୍ରମାନଙ୍କର ଭିନ୍ନ ଭିନ୍ନ ଛନ୍ଦଃ ଅଛି । ଛନ୍ଦଃ ମୁଖ୍ୟତଃ ୭ଟି ଯଥା—ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁପ୍, ବୃହତୀ, ପଂକ୍ତି, ତ୍ରିଷ୍ଟୁପ୍ ଓ ଜଗତୀ । ଏ ପ୍ରତ୍ୟେକର ଆର୍ଷୀ, ଦୈବୀ, ଆସୁରୀ, ପ୍ରାଜାପତ୍ୟା, ଯାଜୁଷୀ, ସାମ୍ନୀ, ଆର୍ଚ୍ଚୀ ଓ ବ୍ରାହ୍ମୀ ଏହିପରି ଆଠଗୋଟି ଭେଦଅଛି ଓ ଏମାନଙ୍କ ସମ୍ମିଶ୍ରଣରେ ଅନେକ ସଙ୍କର ଛନ୍ଦଃମାନଙ୍କର କଳ୍ପନା କରାଯାଇଅଛି । ଏହା ଛଡ଼ା ଯଜୁର୍ବେଦର ମନ୍ତ୍ରମାନଙ୍କରେ ଅତିଜଗତୀ, ଶକ୍ୱରୀ, ଅତିଶକ୍ୱରୀ, ଅଷ୍ଟି, ଅତ୍ୟଷ୍ଟି, ଧୃତି, ଅତିଧୃତି, କୃତି, ପ୍ରକୃତି, ଆକୃତି, ବିକୃତି, ସଂସ୍କୃତି, ଅଭିକୃତି ଓ ଉତ୍କୃତି ନାମରେ ଗୁଡ଼ାଏ ଛନ୍ଦଃ ବ୍ୟବହୃତ ହୋଇଅଛି । ବୈଦିକ ଛନ୍ଦଃମାନଙ୍କରେ ମାତ୍ରା ବା ଲଘୁଗୁରୁର ବିଚାର ନାହିଁ; କେବଳ ଅକ୍ଷରସଂଖ୍ୟା ଅନୁସାରେ ଛନ୍ଦଃମାନଙ୍କୁ ନିଶ୍ଚିତ କରାଯାଏ—ହି. ଶବ୍ଦସାଗର । ]
୭ । ବେଦ—7. The Bedas.
୮ । ଛନ୍ଦଃମାନଙ୍କର ଲକ୍ଷଣାଦି ବର୍ଣ୍ଣିତ ହୋଇଥିବା ବେଦାଙ୍ଗ (ହି. ଶବ୍ଦସାଗର)—8. That part of the Bedas which treat of metres.

**ଛନ୍ଦା**—ଦେ. ବି. (ସଂ. ଛନ୍ଦ=ବନ୍ଧନ)—୧ । ବନ୍ଧନ—
Chhandā 1. Tie; bond.
୨ । ବାନ୍ଧିବା—2. Tying; binding.
୩ । ଚଉଛକ; ଛକ—3. A cross-road; a meeting place of cross-roads.
୪ । ଦୁଇ ନଦୀର ସଙ୍ଗମସ୍ଥଳ—
4. A place where two streams meet.
୫ । (ଏଠାରେ ସ୍ଥଳପଥ ନଦୀକୁ ପାର ହୋଇଥିବାରୁ) ନଦୀଘାଟ—
5. River ferry-ghat.
୬ । ଗ୍ରନ୍ଥି; ଗଣ୍ଠି—6. Knot.
ଛାନ୍ଦା ୭ । ଶ୍ରାଦ୍ଧ, ବିବାହାଦି କୌଣସି ସାମାଜିକ ଅନୁଷ୍ଠାନରେ ଯେଉଁ ନିମନ୍ତ୍ରିତ ବ୍ରାହ୍ମଣମାନେ ନିମନ୍ତ୍ରଣକାରୀଙ୍କ ଘରେ ଭୋଜନ କରନ୍ତି ନାହିଁ ସେମାନେ ସେଠାରୁ ସଙ୍ଗରେ ଲୁଗୁଲିବାନ୍ଧି ଘରକୁ ଆଣିବା ଜଳଖିଆ ସାମଗ୍ରୀ—

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋୃ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ବ | ଉ୍ଅ | ଘ୍ନ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଅ | ଊ | ନ୍ |

7. Sweets and tiffen carried home by those of the invited Brāhmaṇas who do not take their meals at the house of the inviter.

ଦେ. ବିଣ—୧ । ଯାହା କୌଣସି ବସ୍ତୁକୁ ଛନ୍ଦେ ବା ବାନ୍ଧେ— 1. Binding.

୩ । ରଚିତ (କବିତା)—3 Composed (poem).

୪ । ବନ୍ଧା ହୋଇଥିବା—4. Tied up.

୫ । ପରସ୍ପରକୁ ଛକ ପରି କାଟୁଥିବା— 5 Crossing each other.

**ଛନ୍ଦାଇବା**—ଦେ. କ୍ରି—ଛନ୍ଦିବାର ଣିଜନ୍ତ ରୂପ—
Chhandāibā Causative form of Chhandibā.
ଛାଁଦାନା
छंदवाना
(ଛନ୍ଦେଇବା—ଅନ୍ୟରୂପ)

**ଛନ୍ଦା ଚରଣ**—ଦେ. ବିଣ. (ବହୁବ୍ରୀହି; ଯେ ଦୁଇ ଗୋଡ଼କୁ ଛନ୍ଦି ତ୍ରିଭଙ୍ଗୀ-
Chhandā charaṇa ଠାଣିରେ ଠିଆ ହୁଅନ୍ତି )—ଶ୍ରୀକୃଷ୍ଣଙ୍କ ବିଶେଷଣ—An epithet of Śrikṛushṇa.

**ଛନ୍ଦାଛନ୍ଦି**—ଦେ. ବି—୧ । ଅନ୍ୟୋନ୍ୟ ବନ୍ଧନ—
Chhandā-chhandi 1. Mutual tie or bond.
ଛାନ୍ଦାଛାନ୍ଦି ଚଉ ବୃନ୍ଦାଙ୍କର ପ୍ରେମେ କବାବନ୍ଧ
छाँदाछाँदि ଛନ୍ଦାଛନ୍ଦ ସେନାସେନ । ରାଧା-ନାଥ. ଯଯାତିକେଶରୀ ।

୨ । ଅନ୍ୟୋନ୍ୟ ସମ୍ବନ୍ଧ—2. Mutual connection.

୩ । ବହୁପଦ୍ୟରଚନା— 3. Composing of many poems.

୪ । ଗୁଡ଼େଇ ଭୁଡ଼େଇ ବାନ୍ଧିବା— 4. Binding together.

୫ । କୁଣ୍ଢାକୁଣ୍ଢେଇ—5. Mutual embrace.

ଦେ. ବିଣ—୧ । ଅନ୍ୟୋନ୍ୟରେ ବନ୍ଧାବନ୍ଧି— 1. Mutually tied up or bound; tied to each other.

ବାଳକ ପ୍ରାଏ ହୋଇ କାହ୍ନ
ଏକ ଅରକେ ଛନ୍ଦାଛନ୍ଦି । ଜଗନ୍ନାଥ. ଭାଗବତ ।

୨ । ବିବାହ ବନ୍ଧନରେ ଆବଦ୍ଧ— 2. Tied together by the tie of marriage.

**ଛନ୍ଦାନୁଗମନ**—ସଂ. ବି. ( ୬ଷ୍ଠୀ. ତତ୍; ଛନ୍ଦ=ଇଚ୍ଛା+ଅନୁଗମନ )—
Chhandānugamana ନିଜ ଇଚ୍ଛା ଅନୁସାରେ ଚଳିବା— Acting according to one's own inclination.

**ଛନ୍ଦାନୁଗାମୀ**—ସଂ. ବିଣ. ପୁଂ (ଛନ୍ଦ=ଇଚ୍ଛା; ପ୍ରବୃତ୍ତି+ଅନୁଗାମୀ)—
Chhandānugāmī ନିଜ ଇଚ୍ଛାନୁସାରେ କାର୍ଯ୍ୟକାରୀ; ମନମୁଖୀ—
(ଛନ୍ଦାନୁଗାମିନୀ—ସ୍ତ୍ରୀ) Following one's free will.

**ଛନ୍ଦାନୁବର୍ତ୍ତନ**—ସଂ. ବି. (୬ଷ୍ଠୀ ତତ୍; (ଛନ୍ଦ+ଅନୁବର୍ତ୍ତନ)—୧ । ପରର
Chhandānubarttana ଇଚ୍ଛା ଅନୁସାରେ ଚଳିବା—1. Acting according to another's will.
ଛନ୍ଦାନୁବର୍ତ୍ତୀ—ପୁଂ }
ଛନ୍ଦାନୁବର୍ତ୍ତିନୀ—ସ୍ତ୍ରୀ }
୨ । ପରର ଅନୁସରଣ; ପର ମନକୁ ଜଗି ଚଳିବା—2. Slavishly following or obeying the dictates of another person.

**ଛନ୍ଦାନୁବର୍ତ୍ତୀ**—ସଂ. ବିଣ. ପୁଂ—ଯେ ପରର ମନ ଜଗି ଚଳେ—
Chhandānubarttī Following another's wish or dictates
(ଛନ୍ଦାନୁବର୍ତ୍ତିନୀ—ସ୍ତ୍ରୀ)

**ଛନ୍ଦାନୁସାରୀ**—ସଂ. ବିଣ. ପୁଂ - ଛନ୍ଦାନୁଗାମୀ (ଦେଖ)
Chhandānusārī Chhandānugāmī (See)
ଛନ୍ଦାନୁସାରିଣୀ—ସ୍ତ୍ରୀ)

**ଛନ୍ଦାବନ୍ଧା**—ଦେ. ବି.—୧ । ବନ୍ଧାଛନ୍ଦା; ସମ୍ପତ୍ତି ବନ୍ଧକ ଦେବା—
Chhandābandhā Pledge or mortgage or pawn of property.
बाँधा छाँदा
छाँदाबाँधा

୨ । ନିମନ୍ତ୍ରିତ ବ୍ୟକ୍ତି ନିମନ୍ତ୍ରଣକାରୀଙ୍କ ଘରେ ଭୋଜନ
(ବନ୍ଧା ଛନ୍ଦା—ଅନ୍ୟରୂପ) ନ କରି ନିଜ ଘରକୁ ଭୋଜ୍ୟ ବସ୍ତୁ ଆଣିବାକୁ ଲୁଗାରେ ବାନ୍ଧିବା—3. Tying of sweets etc in one's cloth for bringing them home instead of eating them at the house of the inviter.

ଦେ ବିଣ.—ବନ୍ଧକ ଦିଆଯାଇଥିବା— Pledged; mortgaged; pawned.

**ଛନ୍ଦିବା**—ଦେ. କ୍ରି. (ସଂ. ଛନ୍ଦ=ବନ୍ଧନ)—୧ । ଦୁଇଟି ପଦାର୍ଥକୁ ସଂଯୁକ୍ତ
Chhandibā କରିବା—1. To join together two things.
ଛାଁଦା କାହିଁ ପାଇବ ମୋତେ ଛନ୍ଦି ଗଲ,
छाँदना କାହିଁ ଅଣି ରେ କାହିଁ ବନ୍ଦୀ କଲ । ପ୍ରାଚୀ. ରହସ୍ୟମଞ୍ଜରୀ ।

୨ । ଅନ୍ୟୋନ୍ୟ ସମ୍ବନ୍ଧ ଘଟାଇବା—2. To bring two
(ଛନ୍ଦାଇବା—ଣିଜନ୍ତ) persons or things together.

ସତେ କି ଏ ଶୋଭା ସ୍ୱପ୍ନପଟ୍ଟମାନଙ୍କ ହାସ୍ୟ ।
ଛନ୍ଦିଦେ ଗଙ୍କ ଉପଦେ ଅମୃ ନଗରର । ଦ୍ରୋମଣୀ. ବିଷ୍ଣୁମାଧବ୍ୟ ।

୩ । ଗଣ୍ଠି ପକାଇବା—3. To tie into a knot.

୪ । ଗୁଡ଼ାଇ କରି ବାନ୍ଧିବା—4. To twine round.

ରତନେଶେ ହସ୍ତ ଛନ୍ଦିଲେ ତୋ କନ୍ଥ ଯାହା ପୀତ ଫେଟା ଫେରରେ ।
କବିସୂର୍ଯ୍ୟ. ଇଚ୍ଛାକରତମ୍ଭ. ର ଗୀତ ।

୫ । ବାନ୍ଧିବା—5. To tie; to bind

ଗାଈକି ଚେବେ ଛନ୍ଦି ଦୁହନ୍ତି ଗଉଡେ । କୃଷ୍ଣସିଂହ. ମହାଭାରତ, ଆଦି ।

୬ । ପଦ୍ୟାଦି ରଚନା କରିବା— 6 To compose (poems).

ସାରବର କାଷଠେ ପଦରେ ଛନ୍ଦାଛନ୍ଦେ । ଉପେ. ବୈଦେହୀଶବିଳାସ ।

୭ । (ଦୁଧ ଦୋହିଁବା ସମୟରେ ଗାଈଙ୍କର) ଗୋଡ଼କୁ ଛନ୍ଦି-ଦଉଡ଼ିଦ୍ୱାରା ବାନ୍ଧିବା—7. To tie the legs a cow with one another during milking.

| |
|---|
| ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବୃଧି' ନ ମିଳିଲେ 'ବୃଦ୍ଧି' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲଙ୍କତ' ନ ପାଇଲେ 'ଅଲଙ୍କୃତ' ଦେଖିବେ, |

**ଛନ୍ଦ ହେବା**—ଦେ. କ୍ରି.—୧ । ଗୁନ୍ଥେଇ ଭୁନ୍ଥେଇ ହେବା; ଛନ୍ଦାଛନ୍ଦି ମନ୍ଦାମନ୍ଦି
Chhandi hebā ହେବା—1. To be intricately bound up; to be intertwined.

ସେ ଚାଲେ ପୁଣି ନଇ ହେବେ ଛନ୍ଦ,
ସେ ଜଞ୍ଜଲ କର୍ମକାଣ୍ଡେ ହୋଇ ବନ୍ଧ । ରାଧାନାଥ. ମହାଯାତ୍ରା ।

୨ । (ସଂ. ସନ୍ଦେହ) ସନ୍ଦେହାକ୍ରାନ୍ତ ହେବା—
2. To be in doubt or dilemma.

୩ । (ଲକ୍ଷଣାର୍ଥ) ବିବାହିତ ହେବା; ବରକନ୍ୟା ପରସ୍ପରଙ୍କ ଲୁଗା ଓ ହାତ ଗଣ୍ଠିଗଣ୍ଠି ହେବା—
3. To be tied in the bond of marriage.

୪ । ସଂଯୁକ୍ତ ହେବା—4. To be connected.

ଛନ୍ଦ ହେଲେ ଲକ୍ଷମାନ ବସନ୍ତ ଅକୃତ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୫ । (ଦୁର୍ବଳତା ଯୋଗୁଁ, ଦୁଇ ଗୋଡ଼) ଚାଲିବାବେଳେ ପରସ୍ପର ବାଜିବା—5. (the legs) To strike each other (owing to weakness), while walking.

ଛନ୍ଦ ହେଲ ଚରଣ କରନ୍ତେ ଗମନ । କୃଷ୍ଣସିଂହ. ମହାଭାରତ. ଅଦ ।

**ଛନ୍ଦେ**—ଦେ. ଅ.—ଅଭିପ୍ରାୟ ଅନୁସାରେ—
Chhande According to the intention or purport of.

ବିସ୍ତୁ ଲୋକ ଅଧ ଉଚ୍ଚେ,
ସହି ବେଦବାକ୍ୟ ଛନ୍ଦେ । ଜଗନ୍ନାଥ. ଭାଗବତ ।

**ଛନ୍ଦୋଗ**—ସଂ. ବି. (ଛନ୍ଦଃ + ଗୈ ଧାତୁ = ଗାଇବା + କର୍ତ୍ତୃ ଅ)—
Chhandoga ୧ । ସାମବେଦଗାନକର୍ତ୍ତା—1. A reciter or chanter of the hymns of the Sāma Beda.

୨ । ସାମବେଦଜ୍ଞ ବ୍ୟକ୍ତି—
2. A person versed in the Sāma Beda.

**ଛନ୍ଦୋଗ ପରିଶିଷ୍ଟ**—ସଂ. ବି.—କାତ୍ୟାୟନ କୃତ ସାମବେଦର ଗୋଭିଲ-
Chhandoga parisishta ସୂତ୍ରର ପରିଶିଷ୍ଟ—The title of the appendix to the Gobhila aphorisms of the Sāma Beda

**ଛନ୍ଦୋବଦ୍ଧ**—ସଂ. ବଣ. (୩ୟା ତତ୍, ଛନ୍ଦଃ + ବଦ୍ଧ)—ପଦ୍ୟ ବା ଛନ୍ଦରେ
Chhando-baddha ରଚିତ—Composed in rhymes or metre.

**ଛନ୍ଦୋଭଙ୍ଗ**—ସଂ. ବି.—(୬ଷ୍ଠୀ ତତ୍, ଛନ୍ଦଃ + ଭଙ୍ଗ)—ଯତିଭଙ୍ଗ ଦୋଷ;
Chhando-bhanga ମାତ୍ରା ବା ଅକ୍ଷରର ନ୍ୟୂନତା ବା ଆଧିକ୍ୟ ଦୋଷରୁ ଗୀତର ଅଶୁଦ୍ଧି – Breach of cadence or measure in poetry.

**ଛନ୍ନ**—ସଂ. ବଣ (ଛଦ୍ ଧାତୁ ଣିଚ୍ = ଢାଙ୍କିବା ଧାତୁ + କର୍ମ. ତ)—୧ । ଗୁପ୍ତ—
Chhanna 1. Concealed; secret

ନନ ଦେଖର ଛନ୍ନ କଲ, ନିଜରୂପ ପ୍ରକାଶିଲ । ଜଗନ୍ନାଥ. ଭାଗବତ ।

୨ । ଆଚ୍ଛାଦିତ—2. Covered.

୩ । ଲୁପ୍ତ—3. Disappeared

ସଂ. ବି—୧ । ଲୁଚିବାର ସ୍ଥାନ—1. Cover; hiding place.

୨ । ନିର୍ଜନ ସ୍ଥାନ—2. Solitary place; solitude; retreat.

୩ । ଗୁପ୍ତ ସ୍ଥାନ ( ହି. ଶବ୍ଦସାଗର )—
3. Secret place.

ଦେ. ବଣ (ସଂ ଉଚ୍ଛନ୍ନ)—ଉଚ୍ଛନ୍ନ; ଉଦ୍ବିଗ୍ନ; ଅତ୍ୟନ୍ତ ଚଞ୍ଚଳ—
Anxious; eager; very uneasy.

ଛନ୍ନ କରିବ ତା ଭଲ—ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଦେ. ବି—କିଂକର୍ତ୍ତବ୍ୟବିମୂଢ଼ତା—Bewilderment

ଦେଖିଲେ ଅତି ଅନାସ୍ଥା, ଛନ୍ନେ ନ ଦିଶେ ଛବି ରଥ—ଜଗନ୍ନାଥ ଭାଗବତ ।

**ଛନ୍ନଛନ୍ନ**—ଦେ. ବଣ—ଉଦ୍ବିଗ୍ନ—
Chhanna-chhanna Anxious.

ନୀଳକଣ୍ଠ ଘନଘନ ନାଦେ କଲ ଛନ୍ନଛନ୍ନ, ପୁଣି ରହେ କଲ ମନ ମନ—
ଭଞ୍ଜ. ପ୍ରେମସୁଧାନିଧି ।

**ଛନ୍ନଛିଦ୍ର**—ଗ୍ରାମ୍ୟ (ପ୍ରାଚୀନ ପଦ୍ୟ) ବଣ—ଶୋଭାହୀନ; ଅସୁନ୍ଦର—
Chhanna-chhidra Not beautiful; uncouth.

ଅପେ ଶୋଭା ପାଉ ଥାଉ ଅପେ ଛନ୍ନଛିଦ୍ର—ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

**ଛନ୍ନମତି**—ସଂ. ବଣ ( ବହୁବ୍ରୀହି; ଛନ୍ନ + ମତି )—୧ । ମତିଚ୍ଛନ୍ନ; ଲୁପ୍ତ-
Chhannamati ବୁଦ୍ଧି; ଯାହାର ବୁଦ୍ଧି ଅବସନ୍ନ ହୋଇଅଛି; କିଂକର୍ତ୍ତବ୍ୟବିମୂଢ଼— 1. Dumbfounded; bewildered.

ଛନକାରେ ସ୍ତବ୍ଧ ହୋଇ ହେଲେ ଛନ୍ନମତି,
ସର୍ବପ୍ରାଣୀ କ କବେ, କି ସ୍ଥଳେ ବହାସୃଷେ । ରାଧାନାଥ. ମହାଯାତ୍ରା ।

୨ । ଜଡ଼; ମୂର୍ଖ ( ହି. ଶବ୍ଦସାଗର )—
2. Stupid; dunce.

**ଛପ୍** (ଧାତୁ)—ସଂ.—ଆଘାତ କରିବା—
Chhap (root) To hurt (M W.)

**ଛପଛପକା**—ଦେ. ବଣ—ଛପଛପିକିଆ; ଚିତ୍ରିତ; ଛଉକା—
Chhapa-chhapakā Variegated with spots of different colours; speckled; motley.
ছাপছাপ; ছাবকা
रङ्गबिरङ्ग
(ଛପଛପକିଆ; ଛପଛପିକା; ଛପଛପିକିଆ—ଅନ୍ୟରୂପ)

**ଛପଛପ ହେବା**—ପ୍ରାଦେ (ଯାଜପୁର) କ୍ରି—ଘଟଘଟ ହେବା ( ଦେଖ )
Chhapa-chhapa hebā Ghata-ghata hebā (See)

**ଛପଟିଆ ମାରିବା**—ଦେ. କ୍ରି—୧ । ଝାମ୍ପ ମାରିବା—
Chhapatiā maribā 1. To pounce upon
ছোমারা ୨ । (ଲକ୍ଷଣାର୍ଥ) ଠକିବା; ପ୍ରତାରଣା କରିବା—
पंजामारना 2 (figurative) To cheat; to deceive.

**ଛପନ**—ଦେ. ବି (ସଂ. ଷଟ୍ପଞ୍ଚାଶତ୍—ପ୍ରା. ଛପ୍ପଣ)—ପଞ୍ଚାଶ ଅପେକ୍ଷା ଛଅ
Chhapana ଅଧିକ ସଂଖ୍ୟା—Fifty-six.

| ୧ | ଇ | ଉ | ୠ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଋପ୍ | ଋଥ | ଖ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଶ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଋଥ | ଡ଼ | ନ୍ତ |

ଛପାନ୍ନ; ଛଷ୍ପାନ୍ନ ବିଣ—ପଞ୍ଚାଶ ଅପେକ୍ଷା ଛଅ ଅଧିକ—Numbering fifty-six.
छप्पन

**ଛପନ କୋଟୀ ଜୀବ**—ଦେ. ବି—୧ । ୫୬୦୦୦୦୦୦୦ ସଂଖ୍ୟକ ଜନ୍ତୁ—
Chhapana koṭi jiba 1. 560 millions of animals.
୨ । ପୃଥିବୀର ଯାବତୀୟ ଜନ୍ତୁ—
2. All the animals in the creation.

**ଛପନ ଭୋଗ**—ଦେ. ବି—ଜଗନ୍ନାଥଙ୍କ ନିକଟରେ ଭୋଗ ହେବା ନାନା-
Chhapana bhoga ପ୍ରକାର ମିଷ୍ଟାନ୍ନ; ଜଗନ୍ନାଥଙ୍କର ପିଠା ଭୋଗ—
(ଛପନା ଭୋଗ—ଅନ୍ୟରୂପ) Many kinds of sweetmeats and cakes offered to Lord Jagannātha at Puri.

**ଛପନାକୋଟୀ ଜୀବ**—ଦେ. ବି—ଛପନକୋଟୀ ଜୀବ (ଦେଖ)—
Chhapanā-koṭi jiba Chhapanakoṭi jiba ( See )

**ଛପନାଶହେ**—ଦେ ବି ଓ ବିଣ—୧୫୬; ଏକଶହ ଛପନ—
Chapanāśahe The number 156.
( ଦ୍ର—ଛପନାଦୁଇଶ=୨୫୬ )

**ଛପର**—ଦେ. ବି (ସଂ ଛଦ ଧାତୁ; ସଂ ଗୃପ)—୧ । ଘରର ଚାଳ—
Chhapara 1. The thatch of a house; the roof of a thatched house.
ছপ্পর
छप्पर ୨ । ତୃଣର ଆଚ୍ଛାଦନ—2. A covering of grass.
୩ । ଛପର ହୋଇଥିବା ଘର—3. Thatched house.
୪ । ଶଗଡ଼ ଉପରେ ଆଚ୍ଛାଦିତ ଚାଟି—
4. Thatch of a cart.
ଦେ. ବିଣ—ଛପର ହୋଇଥିବା—Thatched.
(ଯଥା—ଛପରଘର; ଛପର ଗାଡ଼ି)

**ଛପର କରିବା**—ଦେ. କ୍ରି—ଘର ଛୁଆଣି କରିବା—
Chhapara kariba To thatch a house.
ছপ্পর ছাওয়া (ଛପର ଛାଇବା—ଅନ୍ୟରୂପ)
छप्पर छाना

**ଛପର ଫାଡ଼ିକରି ଦେବା**—ଦେ. କ୍ରି—( ଯେଉଁ ପରି ଘରମଧ୍ୟରେ
Chhapara phāṛdi-kari debā ବସିଥିବା ଲୋକଙ୍କୁ କେହି
ছপ্পর ফুড়ে দেওয়া ଚାଳକଣା କରି ଚାଳବାଟେ ଗଳାଇ କୌଣସି
छप्परफोड़कर देना ବସ୍ତୁ ପକାଏ ବା ଢାଳିଦିଏ,ସେହିପରି ଅନାୟାସରେ ବା ପରିଶ୍ରମ କରି ନ ଥିବା ବ୍ୟକ୍ତିକୁ ବହୁ ପରିମାଣରେ ବାଞ୍ଛିତ ବସ୍ତୁ ଦେବା—To give a person profusely what he wants without his having to strive for it
(ଯଥା—ମହାପ୍ରଭୁ ଯାହାକୁ ଦିଅନ୍ତି ତାକୁ ଛପର ଫାଡ଼ିକରି ଦିଅନ୍ତି—ହିନ୍ଦି ପ୍ରବଚନର ଅନୁବାଦ ପ୍ରବଚନ)—

**ଛପରବନ୍ଦି**—ଦେ. ବି - ୧ । ଗୃହର ଛାତକୁ ତୃଣାଦି ଦ୍ୱାରା ଆଚ୍ଛାଦନ—
Chhapara-bandi 1. Thatching of a house
ছপ্পরবন্দি ୨ । ଘରଛୁଆଣି କରିବା ମୂଲିଆ—
छप्परबन्द 2. Thatcher; a person who thatches a house.
(ଛପରବନ୍ଦ—ଅନ୍ୟରୂପ)
ବିଣ—ଛୁଆଣି କରାଯାଇଥିବା (ଗୃହ)—Thatched (house).

**ଛପର ବେଠି**—ପ୍ରାଦେ. (ଗଡ଼ଜାତ) ବି—ବିନା ମଜୁରିରେ ଅର୍ଥାତ୍
Chhapara bethi ବେଠିରେ ରାଜାଙ୍କ ଘର ଅନ୍ଦର ପ୍ରତି ବର୍ଷ ବେଠିଆ ପ୍ରଜାଙ୍କଦ୍ୱାରା ଛୁଆଣି—Impressed labour consisting of the tenants thatching the houses of a Rājā annually.

[ଦ୍ର—ଗଡ଼ଜାତର ପ୍ରଜାମାନେ ସାଧାରଣତଃ ମୋଗଲବନ୍ଦିର ପ୍ରଜାଙ୍କ ଅପେକ୍ଷା ରହିତ ଆଦି ଜମିପାଇଁ ଅଳ୍ପ ଖଜଣା ଦିଅନ୍ତି ଓ ଖଜଣା ପରିବର୍ତ୍ତେ ରାଜାଙ୍କର ନାନାଦି ବେଠି କରନ୍ତି, ଅର୍ଥାତ୍ ବିନା ପାରିଶ୍ରମିକରେ, ଓ ଅଧିକାଂଶ ସ୍ଥଳରେ ବିନା ଖୋରାକରେ ମଧ୍ୟ, ରାଜାଙ୍କର ନାନା କାର୍ଯ୍ୟ କରନ୍ତି । ତହିଁ ମଧ୍ୟରୁ ରାଜାଙ୍କର ବା ରାଜକର୍ମଚାରୀଙ୍କର ଘରମାନ ବାର୍ଷିକ ଛୁଆଣି କରିବା ଏକତମ । ପ୍ରତ୍ୟେକ ପ୍ରଜାର ଜମିର ପରିମାଣ, ଜାତି ଓ ବ୍ୟବସାୟ ଅନୁସାରେ ବେଠିର ପରିମାଣ ଓ ପ୍ରକାର ନିରୂପିତ ହୁଏ । ରାଜାଙ୍କ ନିଜଖୃଷ ଜମି ହଳକରିବା (ହଳ ବେଠି), ରାଜାଙ୍କ ବଗିଚା ବାଡ଼ ବୁଜିବା (ଖଣ୍ଡ ବେଠି), ଶିକାରବେଳେ ବଣରେ ଜନ୍ତୁଙ୍କୁ ଘୁରୁଡ଼ାଇ ଆଣିବା (ଆଡ଼ି ବେଠି), ସଡ଼କମାନ ତିଆରି କରିବା (ସଡ଼କ ବା ରାସ୍ତା ବେଠି ); ଏହିପରି ନାନାପ୍ରକାରର ବେଠି ଗଡ଼ଜାତମାନଙ୍କରେ ପ୍ରଚଳିତ । କେତେକ ସହୃଦୟ ରାଜା ଏ ପ୍ରଥା ବନ୍ଦ କରିବାକୁ ଚେଷ୍ଟା କରୁଥିଛନ୍ତି ]

**ଛପରା**—ଦେ. ବି—୧ । ଘରର ଚାଳ—
Chhaparā 1. Thatch of a house,
ছপ্পর ୨ । ଶଗଡ଼ ଉପରେ ଆଚ୍ଛାଦିତ ଚାଟି—
छपरा 2. Thatch of a cart.
ଦେ. ବିଣ—ପେଜୁଆ (ଭାତ)—(boiled rice) Having gruel still sticking to it.
(ଯଥା—ଆଜି ଭାତ ଛପରା ଲାଗୁଛି ।)

**ଛପା**—ଦେ. ବି. ( ଉଚ୍ଚ—ଡା. ଗୃପା ) -
Chhapā ୧ । ନଡ଼ିଆପତ୍ର ବା ବାଉଁଶ ପାତିଆର ଲମ୍ବା ଅସନ—
চটাই,চেটাই 1. A long mat made of bamboo-scantlings or cocoanut-leaves.
साथरी, चटाइ
ছিপা, চাপা ୨ । ( ସଂ. କ୍ଷିପ ଧାତୁ, ସଂ. କ୍ଷପଣ=ନାଶ ) ଲୁଚିବା, ଗୋପନ—2. Concealment; hiding.
छिपना
ছাপা ୩ । ( ସଂ. ଛପନ=ଛେଦିବା ) ଛାପିବା; ମୁଦ୍ରଣ—
छपाइ 3. Printing.
ছাপ ୪ । ମୋହର; ମୁଦ୍ରା—
छाप 4. Seal.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚଲ୍ଚିହ୍ନ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉଚ୍ଚାରିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍ବତ୍' ଦେଖିବେ ।

୫ । ମୁଦ୍ରାକାର ମୁଦ୍ରିତ ଧାତୁଖଣ୍ଡ—5. A piece of metal stamped with letters like a coin.

୬ । କୌଣସି ବସ୍ତୁ ଉପରେ ମୁଦ୍ରିତ ଚିହ୍ନ—6. A mark sealed on a thing.

୭ । ମୁଦ୍ରିତ ଚିହ୍ନଯୁକ୍ତ କାଗଜ; ଟିକଟ—7 A bit of paper stamped with a distinctive mark; ticket; stamp.

୮ । ମୁଦ୍ରିତ ଛବି—8. Printed picture

୯ । ଫଟୋ; ଆଲୋକଚିତ୍ର, ଫଟୋଗ୍ରାଫ୍ ଯନ୍ତ୍ରଦ୍ୱାରା ଉତ୍ପାଦିତ ଛବି—9. Photo.

ଦେ. ବିଣ.—୧ । ମୁଦ୍ରିତ—1 Printed.

ଛାପାନ (ଯଥା—ଛପା ବହି, ଛପା କାଗଜ ।)

छापा ୨ । ଗୁପ୍ତ; ଲୁକ୍କାୟିତ—2. Concealed; hidden.

চাপা ( ଯଥା—ଜନାକାଣ୍ଡ, ମଣିଷମାରୁ ବହୁକାଳ ଯାଏ ଛପା ରହେ

छिपा ନାହିଁ । )

ଯେତେକ ଯାତ୍ରା କର ଯେତେ ଘୋଡ଼ାଇ,
ନ ରହେ କିଛି ଛପା ବଧଟା ଠାଇଁ । ଉକ୍ତକାଶ୍ଚରଣ. ଗୀତଲହରୀ ।

୩ । ଅଜ୍ଞାତ—3. Unknown

ମୋତେ କିଛି ନାହିଁ ଛପା ସାର ଉତ୍କଳରେ—ଉକାଶ ଚରଣ. କଳ୍ପକଦଳୀ ।

୪ । ସାଧାରଣରେ ଅପ୍ରକାଶିତ—4. Unpublished.

**ଛପାଇ**—ଦେ. ବି (ସଂ. ଗୁପ୍)—୧ । ମୁଦ୍ରଣ—
Chhapāi 1. Printing.
ছাপাই ୨ । ମୁଦ୍ରଣର ପ୍ରକାର—2. Mode of printing.
छपाई ( ଯଥା—ଏ ପୁସ୍ତକଟିର ଛପାଇ ଖୁବ୍ ସୁନ୍ଦର ହୋଇଅଛି । ]
(ଛପେଇ—ଅନ୍ୟରୂପ) ୩ । ମୁଦ୍ରଣବ୍ୟୟ—3. Printing-charges.

**ଛପା(ପେ)ଇ ଖର୍ଚ୍ଚ**—ଦେ. ବି—ମୁଦ୍ରାଙ୍କନର ବ୍ୟୟ—
Chhapā(e)i kharchcha Printing-charges.
ছাপাইখরচ (ଛପାଇ ଖରଚ—(ଅନ୍ୟରୂପ)
छपाखर्च

**ଛପାଇବା**—ଦେ. କ୍ରି —୧ । ( ସଂ. ଚପନ ) ମୋହୋର ମାରିବା; ଛାପିବା—1. To stamp; to set a seal upon some thing.
Chhapāibā
ছাপা
छपाना ୨ । ( ଛାପିବାର ଣିଜନ୍ତ ରୂପ ) ଅନ୍ୟଦ୍ୱାରା ( ପୁସ୍ତକାଦି ) ଛାପିବା—2. To get ( a book or paper ) printed.
ছাপান
छपवाना ୩ । ଚପାଇ ଦେବା; କୌଣସି ବସ୍ତୁ ଉପରେ ଟିକଟ ବା କାଗଜ ମାରିଦେବା—3. To stick a paper or ticket on a thing.
ছাপান ୪ । (ଛପିବାର ସକର୍ମକ ରୂପ) ଲୁଚାଇବା—
छिपाना 4. To conceal a thing.

ଏଣୁ ଭୁମ୍ଭେ ତାହାଙ୍କୁ ଛପାଇଣ ଦେଲ—କୃଷ୍ଣସିଂହ. ମହାଭାରତ. ଅଦ ।

୫ । ଘୋଡ଼ାଇଦେବା—5 To cover up.

( ଛପେଇବା—ଅନ୍ୟରୂପ ) ତେଜରେ ସେହୁ ଚନ୍ଦ୍ର ସୂର୍ଯ୍ୟଙ୍କୁ ଛପାଇ—କୃଷ୍ଣସିଂହ. ମହାଭାରତ ବନ ।

**ଛପା କରିବା**—ଦେ. କ୍ରି—ଛାପିବା; ପୁସ୍ତକାଦି ମୁଦ୍ରଣ କରିବା—
Chhapā karibā To print.
ছাপা
छापना

**ଛପା କାଗଜ**—ଦେ. ବି—୧ । ଚପା କାଗଜ, ବ୍ଲଟିଙ୍ଗ୍; ଲେଖା କାଗଜରୁ କାଳି ଶୋଷିବା ନିମନ୍ତେ ବ୍ୟବହୃତ କାଗଜ—1. Blotting paper.
Chhapā kāgaja
ছাপা কাগজ
सोखता
ছাপা কাগজ ୨ । ମୁଦ୍ରିତ କାଗଜ—2. Printed paper.
छापा कागज ୩ । ସମ୍ବାଦପତ୍ର—3. Newspaper; gazette.

**ଛପାଖାନା**—ଦେ. ବି. ( ସଂ. ଚପନ+ଫା. ଖାନା )—ମୁଦ୍ରାଯନ୍ତ୍ର; ପ୍ରେସ୍; ଛାପାଖାନା—Printing press.
Chhapā-khānā
ছাপাখানা
छापाखाना

**ଛପାଚୋରି**—ଦେ. ବି. ( ଅଜ୍ଞାତ )—୧ । ଗୁପ୍ତକର୍ମ—
Chhapā-chori 1. Secret act.
লুকাচুরা ୨ । ଗୋପନ—2. Conceament
चुपाछिपा ଦେ. ବିଣ—୧ । ଗୁପ୍ତ—1. Secret.
( ଛପାଲୁଚ—ଅନ୍ୟରୂପ ) ୨ । ଲୁକ୍କାୟିତ—2. Concealed; hidden.

**ଛପାଛପି**—ଦେ. ବି—୧ । ମୁଦ୍ରଣ—
Chhapā-chhapi 1. Printing.
ছাপাছাপি ୨ । ଲୁଚାଇବା—2. Concealment; hiding.
छपाछपि ଦେ. ବିଣ—ମୁଦ୍ରିତ—1. Printed.
୨ । ଲୁକ୍କାୟିତ—2 Concealed.

ଦେ. କ୍ରି. ବିଣ—ଗୁପ୍ତଭାବରେ; ଲୁଚାଇକରି; ଗୁପ୍‌ଚୁପ୍; ଚୁପ୍‌ଗୁପ୍—Secretly.

**ଛପାମୁଦି**—ଦେ. ବି. ( ସଂ. ଚପନ+ମୁଦ୍ରିକା )—୧ । ନାମାଙ୍କିତ ମୁଦ୍ରିକା; ଯେଉଁ ମୁଦି ଉପରେ ମାଲିକର ନାମ ଲେଖା ହୋଇଥାଏ—1. Sealed ring; signet ring.
Chhapāmudi
সীল আঙ্গটী
छपहा; छाप
୨ । ଯେଉଁ ମୁଦିରେ ପଥର ବସା ନ ଯାଇ ଧାତୁଖଣ୍ଡ ବା ମୁଦ୍ରା ଥାଏ—2. A finger-ring having a metal plate or coin set on its top.

**ଛପା ରହିବା**—ଦେ. କ୍ରି—୧ । ଲୁଚି କରି ଅବସ୍ଥାନ କରିବା; ଗୁପ୍ତ ହୋଇ ରହିବା; ଲୋକମାନଙ୍କର ଅଜ୍ଞାତ ହୋଇ ରହିବା—To lie hid; to remain unknown; to lurk.
Chhapā rahibā
ছাপা থাকা
छिपा रहना

ପାପ ଛପା ରହେ ନାହିଁ—ଫକୀରମୋହନ, ଛମାଣ ଆଠଗୁଣ୍ଠ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ | ଓଅ | ଞ |
| ୨ | ଈ | ଊ | ରୁ | ଲ୍ର | ଏ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗାଁ୍ୟ | ଇଅ | ଔ | ନ୍ |

**ଛପାରେ ଉଠିବା**—ଦେ. କ୍ରି—୧ । କୌଣସି ବିଷୟ ମୁଦ୍ରିତ ହେବାଦ୍ୱାରା ପ୍ରକାଶିତ ହେବା—1 To be published by bing printed; to get into print.
Chhapāre uthibā
छापाय় উঠা
**छापमे उठाना**

୨ । ଆପଣାର ନାମ ବା କାର୍ଯ୍ୟକଳାପ ସମ୍ବାଦପତ୍ର ଆଦିରେ ମୁଦ୍ରିତ ହୋଇ ବିଖ୍ୟାତ ହେବା—
2. To become famous by one's name being printed in newspaper.
( ଯଥା—ଅସହଯୋଗ ଆନ୍ଦୋଳନର ନେତା ହେବାଦ୍ୱାରା ମୋ ନାଆଁଟା ଛପାରେ ଉଠିଗଲା । )
୩ । ଫଟୋଗ୍ରାଫ୍ ଯନ୍ତ୍ର ସାହାଯ୍ୟରେ ମୁଦ୍ରିତ ହେବା—
3. To be photographed.

**ଛପାଳି**—ଦେ. ବି—ମୁଦ୍ରାକର; ଛାପାଖାନାରେ ଯେଉଁ ବ୍ୟକ୍ତି ପୁସ୍ତକାଦିର ମୁଦ୍ରଣ କାର୍ଯ୍ୟ କରେ—Printer.
Chhapāli
**पवैया**

**ଛପା ହେବା**—ଦେ. କ୍ରି—୧ । (ଛାପିବାର କର୍ମବାଚ୍ୟ) ଛପାହେବା; ମୁଦ୍ରିତ ହେବା—1. (passive voice of Chhāpibā) To be printed.
Chhapā hebā
छापाहओया
**छपना; छापा याना**

ଛାପା ହওয়া ୨ । (ଛପିବାର କର୍ମବାଚ୍ୟ) ଲୁଗ୍ଚ ହେବା; ଗୋପିତ ହେବା—2. ( passive voice of Chhapibā) To be concealed.
**छिपा होना**
(ଛପା ପିବା—ଅନ୍ୟରୂପ)

**ଛପାଛପି**—ଦେ. କ୍ରି; ବିଣ. ( ଛପିବା କ୍ରିୟାର ଅସମାପିକାରୂପ, କ୍ରି. ବିଣ. ରୂପେ ବ୍ୟବହୃତ )—ଲୁକ୍‌ଚାୟି ଭାବରେ, ଲୁଚାଲୁଚିକା; ଲୁଚିକରି, ଗୁପ୍ତରୂପ୍; ଅନ୍ୟମାନଙ୍କ ଅଜ୍ଞାତରେ—Stealthily; without the knowledge of others.
Chhapāchhapi
লুকিয়ে লুকিয়ে
**छिपकर; छिपाछिपी**
( ଛପିଛୁପିକା—ଅନ୍ୟରୂପ )
( ଯଥା—ମୁଁ ଛପିଛପି ତାଙ୍କ କଥାବାର୍ତ୍ତା ଶୁଣି ଆସିଲି । )

**ଛପିବା**— ଦେ. କ୍ରି. ( ଅକର୍ମକ ) ( ସଂ. କ୍ଷିପ ଧାତୁ )—
Chhapibā ୧ । ଲୁଚିକରି ରହିବା—1. To lie concealed.
ছিপা; লুকা ୨ । ଲୁଚିବା—2. To hide, to lurk; to conceal one's self
**छिपना**
( ଛପାଇବା—ଣିଜନ୍ତ ) ୩ । ସାଧାରଣ ବା ଅନ୍ୟ ବ୍ୟକ୍ତିର ଦୃଷ୍ଟିରେ ନ ଆସିବା; ଦେଖା ନ ପଡ଼ିବା—
3. Not to come to the view of the public; not to be apparent.
ଛପିବ ର ଅନ୍ତ କ ସେ—କବିସୂର୍ଯ୍ୟ. କଳୋଶାବଜ୍ଞ୍ଭ ଛ-ଗୀତ ।
୪ । ( ଆଲୋକ ) ଲିଭିଯିବା; ନିର୍ବାପିତ—
4. ( light ) To be extinguished.
୫ । ( ଶବ୍ଦ ) ଉଚ୍ଚତର ଶବ୍ଦରେ ଲୀନ ହେବା; ବୁଡ଼ିଯିବା—5. ( a sound ) To sink in a louder sound.

ଅର୍ଜୁନ ଶଙ୍ଖ ଶବଦ ବ୍ୟାପି ଛନ୍ତୁପୁରେ
ଛପିଗଲା କୃଷ୍ଣଙ୍କ ଶଙ୍ଖ ଶବଦରେ—କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।
୬ । ଲୋପ ପାଇବା; ଲୁପ୍ତ ହେବା—6. To disappear; to become extinct; to be effaced.
୭ । ଆବୃତ ହେବା; ଘୋଡ଼ାଇ ହୋଇଯିବା—
7. To be overshadowed or covered.
( ଯଥା—ବାଦଲରେ ଚନ୍ଦ୍ର ଛପିଛନ୍ତି । )
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଯିବା କ୍ରିୟାର ସମାପିକାରୂପ ଲାଗେ । ]

**ଛପୋଇ**—ଦେ. ବି—ଛଅପୋଇ (ଦେଖ)
Chha-poi Chhaapoi (See)

**ଛଫୁଲିଆ**—ଦେ. ବିଣ— ଧଡ଼ିରେ ଛଅଧାଡ଼ି ଫୁଲ ବୁଣା ହୋଇଥିବା (ଶାଢ଼ୀ ବା ଲୁଗା)—(a cloth) Having six lines of floral work wrought on its border.
Chha-phuliā
ମୁଣ୍ଡରେ ମଇଁସିଆଁ ଛଫୁଲିଆ ଉଢ଼ଣୀ ବନ୍ଧା ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।
(ଛଅଫୁଲିଆ—ଅନ୍ୟରୂପ)

**ଛବି**—ସଂ. ବି. ( ଛେ ଧାତୁ=ଛେଦନ କରିବା+କରଣ. ଇ; ଯାହା ଦ୍ୱାରା ଅନ୍ଧକାରକୁ ଛେଦନ କରାଯାଏ )—
Chhabi
୧ । ଆଲୋକରଶ୍ମି—
1. A ray of light ( M. W. )
୨ । ସୌନ୍ଦର୍ଯ୍ୟ; ଶୋଭା—
2. Beauty; grace ( M. W )
୩ । ଦୀପ୍ତି—3. Splendour ( M. W. )
୪ । ଚମଡ଼ା; ଦେହର ଚମ—
4. Skin; cuticle ( M. W. )
୫ । ଚମର ବର୍ଣ୍ଣ—
5 Colour of the skin ( M. W. )
୬ । ରଙ୍ଗ; ବର୍ଣ୍ଣ—6 Colour ( M. W. )
ବୈଦେ. ବି. ( ଆ ଶବାହ୍; ଭୁଲ. ଆ. ତସ୍‌ୱୀର୍ )—
୧ । ପ୍ରତିମୂର୍ତ୍ତି—1. Figure; image.
୨ । ଅଙ୍କିତ ଚିତ୍ର—
2. Picture; drawn figure.
୩ । ପ୍ରତିକୃତି; ଫଟୋ; ପ୍ରତିରୂପ—
3. Likeness; photo.
୪ । ଚେହେରା; ରୂପ—4. Mien; appearance.
ଛବିର ଅବଳ ଦିଶେ । କବିସୂର୍ଯ୍ୟ. କଳୋଶାବଜ୍ଞ୍ଭ ଛ ଗୀତ ।
୫ । ପ୍ରତିବିମ୍ବ—5 Reflection.
ଦେ. ବି—ଛଇ ( ଦେଖ )
Chhai ( See )
[ ଦ୍ର—ଛବି ଶବ୍ଦର ଆଧୁନିକ ଅର୍ଥ (ଚିତ୍ର)=ଆରବୀ, ଶବାହ୍ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ସଦୃଶ ୧ ଚିହ୍ନିତ ଅକ୍ଷର ଓ ମା । ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପରବର୍ତ୍ତୀ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଙ୍କା' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଛବି ଅଙ୍କିବା**—ଦେ. କ୍ରି ( ଆ. ଶବୀହ୍ + ଅଙ୍କନ )—
Chhabi ānkibā — ଚିତ୍ର ଅଙ୍କିତ କରିବା ବା ଲେଖିବା—
ছবি অাঁকা, — To draw a picture; to sketch a picture.
**छवि आँकना**
(ଛବି କାଟିବା—ଅନ୍ୟରୂପ)

**ଛବି ଉଠାଇବା**—ଦେ. କ୍ରି—୧ । ଫଟୋଗ୍ରାଫ୍ ଦ୍ୱାରା ପ୍ରତିରୂପ ଉଠାଇବା-
Chhabi uṭhāibā — 1. To take a photo; to photograph.
ছবিতোলা
**छबिउतारना** — ୨ । କୌଣସି ଚିତ୍ର ଦେଖି ତାହାର ଅଦର୍ଶରେ ଚିତ୍ର ଅଙ୍କିତ କରିବା—
ଛବି ଉତାରିବା; ଛବି ଉଠେଇବା } ଅନ୍ୟରୂପ — 2. To draw or sketch a picture from a model

**ଛବି ଉଠିବା**—ଦେ. ବି—୧ । ବୈଜ୍ଞାନିକ ପ୍ରଣାଳୀରେ ଛାୟାଚିତ୍ର ଅଙ୍କିତ ହେବା—
Chhabi uṭhibā
ছবি উঠা — 1. Photographing; the production of a picture by photography.
**छवि उतरना**
ଛବି ଉଠା; ଛବି ଉତୁରା; ଛବି ଉତୁରିବା } ଅନ୍ୟରୂପ — ୨ । ଚିତ୍ରାଙ୍କନ—2. Drawing; sketching of a picture..

**ଛବିଲ**—ଦେ. ବି. ( ସଂ. ଛବି )—୧ । ଚିତ୍ରିତ—
Chhabiḻa — 1. Dyed; painted.
(ଛବିଲା—ସ୍ତ୍ରୀ) — ୨ । ଦୀପ୍ତିମୟ—2. Bright; radiant.
চটকদার — ୩ । ମନୋହର—
**छबीला** — 3. Charming; enchanting; handsome.
୪ । ସୁନ୍ଦର—4. Beautiful; graceful; gay.
୫ । ଶୋଭାମୟ; ନାନା ସୌନ୍ଦର୍ଯ୍ୟଯୁକ୍ତ—
5. Picturesque.
'ଛବିଲ ଲହଲେ ଘୋ ଛବି ଅତୁଳ । ରାଧାନାଥ. ଚିଲିକା ।
୬ । ଛଇଲ ( ଦେଖ )
6. Chhaiḻa ( See )
୭ । ଛଇଲା ( ଦେଖ )
7. Chhaiḻā (See)

**ଛବିଲା**—ଦେ. ବିଣ. ( ସଂ. ଛବି )—
Chhabilā — ୧ । ଚିତ୍ରିତ—1. Spotted.
ছাবকা — ୨ । ଚିତ୍ରକ—2 Multicoloured.
**छबीला** — ( ଯଥା—ଛବିଲା ଘୋଡ଼ା । )

**ଛବିଶ**—ଦେ. ବି ଓ ବିଣ ( ସଂ. ଷଡ୍‌ବିଂଶତି; ପ୍ରା. ଛବ୍ବୀଶା )—
Chhabiśa — ୨୬ ସଂଖ୍ୟା; କୋଡ଼ିଏ ଅପେକ୍ଷା ଛଅ ଅଧିକ ସଂଖ୍ୟା—
ছব্বিশ, ছাব্বিস — The number 26; twentysix.
**छबिस** — ବିଣ—ଷଡ୍‌ବିଂଶ ସଂଖ୍ୟକ—
(ଛବିଶି—ଅନ୍ୟରୂପ) — Numbering twentysix.

**ଛବିଶାଶହେ**—ଦେ. ବି ଓ ବିଣ. (ସଂ. ଷଡ୍‌ବିଂଶତ୍ୟୋତ୍ତରଶତ)—
Chhabiśā-śahe — ୧୨୬; ଏକ ଶତ ଛବିଶ—
One hundred and twentysix.
[ ଦ୍ର—ଛବିଶା ଦୁଇଶ=ଦୁଇଶ ଛବିଶ । ]

**ଛବିଶି**—ଦେ. ବି—ଛବିଶ ( ଦେଖ )
Chhabiśi — Chhabiśa ( See )

**ଛମ୍** (ଧାତୁ)—ସଂ—ଭକ୍ଷଣ କରିବା—
Chham (root) — To eat.

**ଛମଣ୍ଡ**—ସଂ. ବିଣ. ପୁଂ. ( ଛମ୍ ଧାତୁ + ସଂଜ୍ଞାର୍ଥ. ଅଣ୍ଡ )—
Chhamaṇḍa — ଅନାଥ; ପିତୃମାତୃହୀନ; ଛେଉଣ୍ଡ—
(ଛମଣ୍ଡୀ—ସ୍ତ୍ରୀ) — Orphan ( infant ), one who has lost either or both of the parents.

**ଛମାଖ**—ପ୍ରାଦେ. (ଗଞ୍ଜାମ) ବି—ଛକା; କଉଡ଼ି ଖେଳରେ ଛଅ କଉଡ଼ା-
Chhamākha — ଯାକ କଉଡ଼ି ଚିତ୍ ହୋଇ ମାଡ଼ିପଡ଼ିବା—
The six kauries falling with the ventral side down in a game of kauries (sea-shells).

**ଛମାସିଆ**—ଦେ. ବିଣ—୧ । ଯାହାର ବୟସ ଛଅ ମାସ; ଷଣ୍ମାସ ବୟସ୍କ—
Chha-māsiā — 1. Six months old; aged six months.
ছমাসিয়া — ୨ । ଛଅ ମାସ ସମ୍ବନ୍ଧୀୟ; ଷାଣ୍ମାସିକ—
**छमासी** — 2, Pertaining to six months.
୩ । ଛଅ ମାସ ଅନ୍ତରରେ ଘଟିବା—
3. Sixmonthly; half yearly.

**ଛୟ**—ବୈଦେ. ବିଣ. ପ୍ରାଦେ. (ସମ୍ବଲପୁର) (ହିନ୍ଦିରୁ ଅନୁକୃତ)—
Chha-y — ୬; ଛଅ—6; Six.

**ଛୟଲାଟ୍**—ଦେ. ବି ଓ ବିଣ—ଛଇଲ୍ ( ଦେଖ )
Chhayalāṭ — Chhail ( See )

**ଛୟାଅଶି**—ଦେ. ବି. ( ସଂଖ୍ୟାବାଚକ, ସଂ. ଷଡ଼ଶୀତି; ପା. ଛଳସୀତି, ପ୍ରା. ଛାସୀ )—ଅଶି ଅପେକ୍ଷା ସାତ ଅଧିକ ସଂଖ୍ୟା—
Chhayā-aśi
ছয়াসী — Eightysix.
**छियसी** — ବିଣ—ଅଶି ଅପେକ୍ଷା ସାତ ଅଧିକ ସଂଖ୍ୟକ—
(ଛୟାଶି—ଅନ୍ୟରୂପ) — Numbering 86.

**ଛୟାନବେ**—ଦେ. ବି.—(ସଂଖ୍ୟାବାଚକ; ସଂ. ଷଣ୍ଣବତି, ପ୍ରା. ଷଣ୍ଣବଇ)—
Chhayā-nabe — ନବେ ବା ନଉ ଅପେକ୍ଷା ଛଅ ଅଧିକ ସଂଖ୍ୟା—
ছিয়ানব্বই, ছানবে — Ninetysix.
**छियानबे** — ଦେ. ବିଣ.—ନବେ ଅପେକ୍ଷା ଛଅ ଅଧିକ—
Numbering ninetysix.
(ଛୟାଣେଇ; ଛୟାଣୋଇ; ଛୟାଲବେ; ଛୟାଁଲବେ; ଛୟାନବେ; (ଛୟାଲୋଇ, ଛୟାଁଲୋଇ—ଅନ୍ୟରୂପ)

**ଛୟାଳିଶ**—ଦେ. ବି.—( ସଂଖ୍ୟାବାଚକ; ସଂ. ଷଟ୍‌ଚତ୍ୱାରିଂଶତ୍; ପ୍ରା. ଛଚତ୍ତାଳୀସ)--ଚାଳିଶ ଅପେକ୍ଷା ଛଅ ଅଧିକ ସଂଖ୍ୟା—
Chhayāḻisa
ছচল্লিশ — Fortysix.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ' | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉ୍ଅ | ଋ |
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ୱ | ନ୍ନ |

**ଛିୟାଳିସ** ଦେ. ବଣ.—ଷ୍ଟଳିଶ ଅପେକ୍ଷା ଛଅ ଅଧିକ—
(ଛୟାଳିଶି—ଅନ୍ୟରୂପ) Numbering fortysix.

**ଛୟାଳିଶାଶହେ**—ଦେ. ବ.—ଏକଶତ ଛୟାଳିଶ—
Chhayā̱lisā-sahe One hundred and fortysix.
(ଦ୍ର—ଛୟାଳିଶାଦୁଇଶ=ଦୁଇ ଶତ ଛୟାଳିଶ ।)

**ଛୟାଶୀ**—ଦେ. ବ. ଓ ବଣ—ଛୟାଅଶି (ଦେଖ)
Chhayāsi Chhayā-asi (See)

**ଛରର୍**—ଦେ. ବ.—(ସଂ. କ୍ଷର୍ ଧାତୁ=ଇତସ୍ତତଃ ବିକ୍ଷିପ୍ତ ହେବା)—
Chhar-rā ବନ୍ଧୁକରେ ଭର୍ତ୍ତି କରାଯିବା ଗୋଡ଼ା ପରି ଅଳ୍ପ କ୍ଷୁଦ୍ର
ଛର୍ରା, ଛିଟା, ଛିଟେ ଗୁଳି—Small shot; pellet.
**ଛଟରା, ଛର୍ରା**
ଛରର୍;
ଛର୍ର୍

**ଛର** (ଇତ୍ୟାଦି)—ଗ୍ରା. (ଇତର) ବ.—(ସଂ. କ୍ଷୌର)—
Chhara (etc.) ଛଅର ଇତ୍ୟାଦି (ଦେଖ)
Cha-ara etc (See)

**ଛରା**—ଦେ ବ. (ସଂ. କ୍ଷର ଧାତୁ; କିମ୍ବା ସଂ. କ୍ଷିପ୍ତ. ପ୍ରା. ଛିତ୍ତ)—
Chharā ୧ । ଘୃଷ୍ଟ ଚନ୍ଦନାଦିର ଛିଟା—
ଛର୍ରା, ଛିଟା, ଛଡ଼ା 1. Particles of sprinkled sandal-paste.
**ଛୀଟା**
୨ । ଛିଟାଛିଟା ଜଳ ସିଞ୍ଚିବା; ଛେରା; ଛଡ଼ା—
2. Sprinkling of water.
(ଯଥା—ସକାଳୁ ମାଇପେ ଦୁଆରମୁହଁରେ ଓ ଅଗଣାରେ ଗୋବର-ପାଣିର ଛରା ଦିଅନ୍ତି ।)
ବିଶେଷରେ ପୂତ କରୁ କରେ ମିତ ମୋ ମାର୍ଗକୁ ସୁଧା ଛରାରେ ।
କବିସୂର୍ଯ୍ୟ. ସଙ୍ଗୀତ ।

ପ୍ରାଦେ. (ସମ୍ବଲପୁର) ବ. (ସଂ.କ୍ଷୁର)—୧ । ଖଟଖୁରା—
1. Posts of a bedstead.
୨ । (ସଂ. କ୍ଷୁର)—କ୍ଷୁର—2. Razor.

**ଛରା ଦେବା**—ଦେ. କ୍ରି.—(ସକାଳୁ ସ୍ତ୍ରୀଲୋକମାନେ ଅଗଣା ଓଳାଇ ) 
Chharā debā ଗୋବରପାଣି ଛିଞ୍ଚିବା—To sprinkle water
ଛଡ଼ାଦେଓ୍ୱା mixed with cowdung (on the courtyard).
**ଛିଡ଼କନା**

**ଛରାପଅଁରା**—ଦେ. ବ.—ଛେରା ପହଁରା (ଦେଖ)
Chharā paanrā Chherā pahanrā (See)
(ଛରାପଅରା, ଛରାପହଁରା; ଛରାପହରା—ଅନ୍ୟରୂପ)

**ଛରିବା**—ଦେ. (ପଦ୍ୟ) କ୍ରି. (ସଂ କ୍ଷର ଧାତୁ)—ନିଃସୃତ ହେବା, ଝରିବା—
Chharibā To flow down; to ooze.
**ଝରା**
**କ୍ଷରନା** ମୋ ଚକ୍ଷୁ ଛରିବ ନେତ୍ର । ପ୍ରତୀ ପଟ୍ଟନାୟକ, ପ୍ରେମଭକ୍ତି ବ୍ରହ୍ମଗୀତ ।

**ଛର୍ଦ୍ଦ୍** (ଧାତୁ)—ସଂ.—ବମନ କରିବା—
Chhardd (root) To vomit.
(ଛର୍ଦ୍—ଅନ୍ୟରୂପ)

**ଛର୍ଦ୍ଦନ**—ସଂ. ବ. (ଛର୍ଦ୍ଦ ଧାତୁ+ଭାବ. ଅନ)—୧ । ବମନ, ବାନ୍ତି;
Chharddana ଓକ୍କାର୍—1. Vomiting
(ଛର୍ଦନ—ଅନ୍ୟରୂପ) ୨ । ବମନୋପକ୍ରମ—2. Nausea.
୩ । ନିମ୍ବ ବୃକ୍ଷ (ପ୍ରକୃତିବାଦ)—3. The Neem tree.
୪ । ମଦନ ବୃକ୍ଷ (ଜ୍ଞାନେନ୍ଦ୍ର) (ଦେଖ)
4. Madana tree (See)

**ଛର୍ଦ୍ଦି**—ସଂ. ବ. (ଛର୍ଦ୍ଦ ଧାତୁ+ଭାବ. ଇ)—୧ । ଛର୍ଦ୍ଦନ (ଦେଖ)
Chharddi 1. Chharddana (See).
(ଛର୍ଦି—ଅନ୍ୟରୂପ) ୨ । ବାରମ୍ବାର ବମନ ହେବା ରୋଗବିଶେଷ—
2. A disease resulting in constant vomiting.
[ଦ୍ର—ଏଥିରେ ରୋଗୀ ମୁହଁରୁ ସର୍ବଦା ଲାଳ ବୁହେ ଓ ଅଇ ଉଠାଇ ବମନ କରେ । ରାଗ, ଲୁଣିଆ ଓ ତେଲିଆ ପଦାର୍ଥ ଅଧିକ ଖାଇଲେ ଏ ରୋଗ ଜନ୍ମେ । ଅତ୍ୟଧିକ ଶ୍ରମ, ଉଦ୍ବେଗ ଓ ଅଜୀର୍ଣ୍ଣରୁ ମଧ୍ୟ ଏ ରୋଗ ଜନ୍ମେ । ଏ ରୋଗରେ ଜ୍ୱର, କାସ, ଶ୍ୱାସ ଆଦି ମଧ୍ୟ ହୁଏ ।]

**ଛର୍ଦ୍ଦିଘ୍ନ**—ସଂ. ବଣ—(ଛର୍ଦ୍ଦି+ହନ୍ ଧାତୁ+କର୍ତ୍ତୃ. ଅ)—ଯେଉଁ ଔଷଧ
Chharddighna ବମନ ବନ୍ଦ କରାଏ—
(medicine) Preventive of vomiting.
ସଂ. ବ.—୧ । ନିମ୍ବ (ଦେଖ)
1. Nimba (See)
୨ । ମହାନିମ୍ବ (ଦେଖ)—2 Mahānimba (See).

**ଛର୍ଦ୍ଦୀ**—ସଂ. ବ. (ଛର୍ଦ୍ଦ ଧାତୁ+ଭାବ ଇସ୍. ୧ମା.୧ବ.)—ଛର୍ଦ୍ଦନ (ଦେଖ)
Chharddi Chharddana (See).

**ଛଲ୍କିବା**—ପ୍ରାଦେ. (ସମ୍ବଲପୁର) କ୍ରି.—(ଭୁଲ. ହି. ଛଲକ୍ନା)—
Chhalkibā ୧ । ଛଡ଼କିବା—1. To be splutterd.
୨ । ଉଚ୍ଛୁଳିବା—2. To overflow.
୩ । ଚହଲିବା—3. To move to and fro.
୪ । ଗୋଡ଼ ଆଦି ଭୂଇଁରେ ଖସଡ଼ି ଯିବା—
4. To slip (said of the legs).

**ଛଳ**—ସଂ. ବ. (ଛୋ ଧାତୁ=ଛେଦନ କରିବା+ଭାବ. ଅ)—
Chhala ୧ । କପଟତା—1. Hypocrisy; dissimulation.
୨ । ବଞ୍ଚନ; ଶଠତା; ପ୍ରତାରଣା—2. Deceit; fraud; stratagem; deception; wile.
୩ । ଗୃଭୁଗ୍—3. Trick; cunning
୪ । କୌଶଳ—4. Skill; cleverness; artifice.
୫ । ଆପତ୍ତି—5 Objection.
୬ । ଅଭିସନ୍ଧି—6. Hidden intention.
୭ । ମନୋଭିଳାଷ; ଅଭିପ୍ରାୟ; ଉଦ୍ଦେଶ୍ୟ—
7. Intention; aim.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃତ ୧ ଚଢ଼ିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗିଆ'ନ ପାଇଲେ 'ଅଙ୍ଗୀ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୮ । ମନକୁ ବାଧିଲା ଭଳି କଥା କହିବା; ବାକ୍ୟଦୂଷଣ-ବିଶେଷ; ଛୁଗୁଲିଆଇବା—8. Satire; sarcastic remarks.

୯ । ଉପଲକ୍ଷ; ପ୍ରସଙ୍ଗ; ସମ୍ପର୍କ—
9. Argument; connection; course.

ମନ୍ଦ ଅଗ୍ରଜ ବଶ ଏହି
ପ୍ରସ୍ତାବ ଛଳେ କହିଲଇଁ । ଜଗନ୍ନାଥ. ଭାଗବତ ।

୧୦ । ପ୍ରଯୁକ୍ତ ବାକ୍ୟର ଅର୍ଥାନ୍ତର କଳ୍ପନା; ବିପକ୍ଷାର୍ଥବୋଧ-
10. Giving the opposite meaning to a word by playing upon the words used by the speaker.

୧୧ । ବ୍ୟଙ୍ଗ ଭାବ; ବ୍ୟଙ୍ଗୋକ୍ତି—11. Satire.

୧୨ । ଶ୍ଳେଷବଚନ—12. Mockery; equivoke; pun.

୧୩ । ସ୍ଖଳନ—13. Slipping.

୧୪ । ବାହାନା; ବ୍ୟାଜ—14. Pretence; pretext.

ଧବଳ ଫେନ ଛଳେ ଜାହ୍ନବୀ ହସେ । ରାଧାନାଥ ।

୧୫ । ମାନ; ଅଭିମାନ—15. Silent displeasure; sullenness; taking offence.

୧୬ । ଅପମାନ—16. Insult.

ପିତାର ଯଜ୍ଞଶାଳେ ଯାଇଁ
ସ୍ୱାମୀର ଛଳେ କୋପ ବହି
ଦେବଙ୍କ ମଧ୍ୟେ ଯଜ୍ଞଶାଳେ
ଜୀବନ ଛାଡ଼େ ଯୋଗ ବଳେ । ଜଗନ୍ନାଥ. ଭାଗବତ ।

୧୭ । ପ୍ରତିହିଂସା—17. Vengeance.

ତା' ଛଳେ ସର୍ବ ଦିତର ଗଣ
ଭାରତ କଲେ ଘୋର ରଣ । ଜଗନ୍ନାଥ. ଭାଗବତ ।

୧୮ । ପରଦୁଃଖରେ ବେଦନାନୁଭବ—
18. Sympathy; commiseration.

କହିଁ ବୋଲୁଅଛ ସେବକକବଳ
କଣ୍ଠ ବେଦନ ନାହିଁ ମନେ ଛଳ । ଦୀନକୃଷ୍ଣ. ରସକଲ୍ଲୋଳ ।

୧୯ । (ନ୍ୟାୟଶାସ୍ତ୍ର) ବକ୍ତାର ଉଦ୍ଦିଷ୍ଟ ଅର୍ଥକୁ ଗ୍ରହଣ ନ କରି ବକ୍ତାର କଥିତ ବାକ୍ୟର ଅନ୍ୟ ଅର୍ଥ କଳ୍ପନାପୂର୍ବକ ବକ୍ତାର କଥନର ଖଣ୍ଡନ (ହି. ଶବ୍ଦସାଗର)—
19. (Logic) A refutation of the intended meaning of a speaker by playing upon the very words used by him.

[ ଦ୍ର—ଏହା ତିନିପ୍ରକାର—ବାକ୍‌ଛଳ, ସାମାନ୍ୟଛଳ ଓ ଉପଚାରଛଳ—ହି. ଶବ୍ଦସାଗର । ]

**ଛଳଛଳ**—ଦେ. ବି. (ସଂ. ଉଚ୍ଛଳନ)—୧ । ନେତ୍ରଜଳରେ ଭାସିବା; ଆଖିରୁ ବିଶେଷ ପରିମାଣରେ ଲୁହ ବୋହିବା—
Chhaḻa-chhaḻa
ছলছল 1. Profuse discharge of tear.

**ଜ଼ବାଲବ; ଡବଡବ** ଦେ. ବିଣ—ଲୋତକ ଜଳରେ ପୂର୍ଣ୍ଣ—
(eyes) Brimming with tears; brimful.

ଦେଖି ମୋ ନୟନ ଜଳ ଘନ ନେତ୍ର ଛଳଛଳ ।
ମଧୁସୂଦନ. ଛନ୍ଦମାଳା ।

**ଛଳ ଧରିବା**—ଦେ. କ୍ରି—୧ । କଥାର ଦୋଷ ଧରିବା—
Chhaḻa dharibā 1. To find fault (with).
ছল ধরা ୨ । ଛଳ ବହିବା (ଦେଖ)
छल करना 2. Chhaḻa bahibā (See)
(ଛଳ କରିବା—ଅନ୍ୟରୂପ)

ଏ ଅତିଥି ସହିତେ ଛଳକୁ ନ ଧର । ରାଧାନାଥ. ଦରବାର ।

**ଛଳଧର୍ମ**—ସଂ. ବି. (ମ. ପ. ଲୋ; ଛଳପୂର୍ଣ୍ଣଧର୍ମ)—କପଟ ଧର୍ମ; ଧର୍ମଧ୍ୱଜିତା--
Chhaḻa-dharma False piety.

ଶାସ୍ତ୍ରର ତତ୍ତ୍ୱ ନ ବୁଝଇ, ଯେ ଶାସ୍ତ୍ରବାକ୍ୟ ଭେଦ କରି
ବାହ୍ୟେ ଧର୍ମର ଧ୍ୱଜ ଧରି । ଛଳଧର୍ମ ଯେ ତାକୁ ବୋଲି ।
ଜଗନ୍ନାଥ. ଭାଗବତ ।

**ଛଳନ**—ସଂ. ବି. (ଛଳ ନାମ ଧାତୁ=ଛଳନା କରିବା+ଭାବ. ଅନ)—
Chhaḻana ଛଳନା (ଦେଖ)
Chhaḻanā (See)

**ଛଳନା**—ସଂ. ବି. ( ଛଳ ଧାତୁ+ଭାବ. ଅନ+ସ୍ତ୍ରୀ. ଆ )—
Chhaḻanā ୧ । ପ୍ରତାରଣା; ଶଠତା—1. Deceit; fraud.
୨ । ବାହାନା—2. Pretext.

**ଛଳ ପଶିବା**—ଦେ. ବି—ଛଳବାକ୍ୟ କୌଣସି ବ୍ୟକ୍ତିର ମନରେ ଦୁଃଖପ୍ରଦ ହେବା—The taking effect of a
Chhaḻa pasibā sarcastic remark; taking to heart a sarcastic remark.
(ଯଥା—ମୋ କଥା ଶୁଣି ତା ହୃଦୟରେ ଛଳ ପଶିଗଲା । )

**ଛଳ ପୂରାଇବା**—ଦେ. କ୍ରି—ଛଳ ବହିବା (ଦେଖ)
Chhaḻa pūrāibā Chhaḻa bahibā (See)
( ଯଥା—ସେ ମୋ କଥାରେ ଛଳ ପୂରାଇ ବସିଛି । )
( ଛଳ ପୂରେଇବା—ଅନ୍ୟରୂପ )

**ଛଳ ବଚନ**—ଦେ. ବି—ଛୁଗୁଲି କଥା; କୌଣସି ବ୍ୟକ୍ତି ପ୍ରତି ବ୍ୟବହୃତ
Chhaḻa bachana ବ୍ୟଙ୍ଗୋକ୍ତି—Sarcastic remarks;
(ଛଳବାଣୀ—ଅନ୍ୟରୂପ) innendo.

ଛଳ ବଚନକୁ ସତ ମଣି କରେ—ପ୍ରାଚୀନ ସଙ୍ଗୀତ ।

**ଛଳ ବଳ କୌଶଳ**—ଦେ. ବି—କାର୍ଯ୍ୟସିଦ୍ଧି କ୍ରମନ୍ତେ ଅନ୍ୟପ୍ରତି
Chhaḻa baḻa kausaḻa ପ୍ରଯୁଜ୍ୟ ସକଳ ପ୍ରକାର ଉପାୟ;
ছলবল কৌশল କପଟତା, ଶାରୀରିକ ବଳ ଓ ଫନ୍ଦି—
छलबल All available or conceivable means to be employed to gain one's object, viz. deceit, force and artifice.

ଛଳେ ବଳେ କୌଶଳେ, ଶତ୍ରୁକୁ ସାଧିବ ହେଲେ—।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ପ | ଉଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ଊ | ନ୍ |

**ଛଳ କହିବା**—ଦେ. କ୍ରି—କୌଣସି ବ୍ୟଙ୍ଗୋକ୍ତିକୁ ଆପଣା ଦେହକୁ ନେବା; ବ୍ୟଙ୍ଗୋକ୍ତିଦ୍ୱାରା ମର୍ମାହତ ହେବା—To take offence; to be offended by or to take to heart a sarcastic remark
Chhaḷa bahibā
ଛଲ ବହା
ଛଲ ଲେନା

**ଛଳବାହିମାଶ**—ସଂ. ବିଣ. ( ଛଳର ବାହିମା=ଛଳବାହିମା; ଛଳବାହିମାର ଈଶ ) — ଛଳସାଗର; କପଟରେ ପାରଦର୍ଶୀ—Full of wiles; adept at wiles.
Chhaḷa-bāhinīśa
ଛଳବାହିମାଶ ହେ ଶଠ ଏ ସାହସ ହେ—କବି ସୂର୍ଯ୍ୟ, ଚମ୍ପୂ, ଛ. ଗୀତ ।

**ଛଳାଇବା**—ଦେ. କ୍ରି—୧ । ଥଟ୍ଟା କରିବା; ଉପହାସ କରିବା—1. To deride; to sneer.
Chhaḷāibā
ଛଲାନ
ଛଲାନା
(ଛଳେଇବା—ଅନ୍ୟରୂପ)
ଏବେ କହନ୍ତି ପବନ ବନସ୍ପତି ଭ୍ରମର ବୋଲି ଛଳାଇବ—ଭଞ୍ଜ, ପ୍ରେମସୁଧାନିଧି ।
୨ । ମନକୁ ବାଧିଲା ଭଳି କଥା କହିବା—2. To make sarcastic remarks
୩ । ଶ୍ଳେଷରେ କହିବା—3. To satirise.
୪ । ପ୍ରତାରିତ କରିବା—4. To cheat.

**ଛଲାଇବା**—ପ୍ରାଦେ. ( ସମ୍ବଲପୁର ) କ୍ରି—
Chhalāibā ୧ । ( ଗଛରୁ ) ଛେଲି ଛଡ଼ାଇବା—1. To take out or scrape off the bark.
( ଛଲେଇବା—ଅନ୍ୟରୂପ )
୨ । ଛାଞ୍ଚିବା; ଛେଲିବା—2. To scrape off.

**ଛଳ** ( ନାମଧାତୁ )—ସଂ. ( ଛେ ଧାତୁ+ଣିଚ୍ )—ଆଚ୍ଛାଦନ କରିବା—To cover.
Chhaḷi ( root )

**ଛଳିତ**—ସଂ. ବି. ( ଛଳ ନାମଧାତୁ+ଭାବ. ତ )—ଛଳନା ( ଦେଖ ) Chhaḷanā ( See )
Chhaḷita
ସଂ. ବିଣ ( ଛଳ ଧାତୁ+କର୍ମ. ତ )—ପ୍ରତାରିତ—Cheated.

**ଛଳିତକ**—ସଂ. ବି—ନାଟକର ଏକ ଭେଦ—A class of drama.
Chhaḷitaka

**ଛଳିବା**—ଦେ. କ୍ରି ( ସଂ. ଛଳ )—
Chhaḷibā ୧ । ପ୍ରତାରଣା କରିବା; ଭଣ୍ଡାଇବା; ଠକିବା—1. To deceive; to cheat.
ଛଲା
ଛଲନା
ବଳି ବାମନ ରୂପ ଧରି, ଛଳିଲୁ ବଳୀ ଦଣ୍ଡଧାରୀ—ଭୂପତି, ପ୍ରେମପଞ୍ଚାମୃତ ।
୨ । ଶ୍ଳେଷରେ କହିବା—2. To speak sarcastically.
ଭଲ କଲେ ବୋଲି ଛଳେ ସୁନ୍ଦରୀ—ଭଞ୍ଜ, ପ୍ରେମସୁଧାନିଧି ।
୩ । ଆଚ୍ଛନ୍ନ କରିବା—3. To cover; to envelep.
ଛଳ ମନ ଭୃଙ୍ଗ ଗୁଣେ, ଛ ଦୁଇ ଦୁର୍ଦ୍ଦେଶ ଭଣେ—କବିସୂର୍ଯ୍ୟ, କଳାବତୀ, ଛ ଗୀତ ।

[ ଦ୍ର—କବିସୂର୍ଯ୍ୟଗ୍ରନ୍ଥାବଳୀର ପ୍ରକାଶକ ପଣ୍ଡିତ ଉଲମଣି ଦାଶ ଭାଷାକୋଷର ପାଣ୍ଡୁଲିପି ସମ୍ମାର୍ଜନ କରିବା ସମୟରେ 'ଛଳ' ଶବ୍ଦଟି 'ଛନ୍ଦ' ସ୍ଥାନରେ ମୁଦ୍ରାକର ପ୍ରମାଦରୁ ଛାପା ଭୁଲ ହୋଇଥିବା ବିଷୟ ମୋତେ ଜଣାଇଅଛନ୍ତି । ଅତଏବ ଛଳବାର ଏଠି ଶଦ୍ଧ ଅର୍ଥ 'ଛନ୍ଦିବାର' ଅର୍ଥ ଅଟେ । ]
୪ । ପ୍ରତିଯୋଗିତା କରିବା—4. To rival.
ତହିଁ କି କବି ଛଳ ଆପଣା ପାଟପ
ଦେଖାଇ ନୃତ୍ୟ କରି କରେ ଦମ୍ଭ ଲୋପ—କୃଷ୍ଣସିଂହ, ମହାଭାରତ, ବନ ।

**ଛଳୀ**—ସଂ. ବିଣ. ପୁଂ. ( ଛଳ+ଇନ୍; ୧ମା. ୧ବ. )—୧ । କପଟୀ—1. Hypocritical.
Chhaḷī
( ଛଳିନୀ – ସ୍ତ୍ରୀ ) ୨ । ପ୍ରତାରକ—2 Deceitful.

**ଛଳୁଆ**—ଦେ. ବିଣ. ପୁଂ. ( ସଂ. ଛଳୀ )—
Chhaḷuā ୧ । ଅଭିମାନୀ, ଯେ ସାମାନ୍ୟ କଥାରେ ଛଳ ବହେ—1. Prone to take offence at little things.
ଛଲିୟା
(ଛଳେଇ – ସ୍ତ୍ରୀ) ୨ । କପଟୀ—Hypocritical.
୩ । ପ୍ରତାରକ—3. Deceitful.

**ଛଳେ**—କ୍ରି. ବିଣ—ପ୍ରତିହିଂସା ନେବା ପାଇଁ—In order to take revenge
Chhaḷe
ଏଠାରେ ସୁଗ୍ରୀବଙ୍କ ସଙ୍ଗେ ହେଲା ମିତ
ତାଙ୍କ ଛଳେ କଲ ବାଳୀକ ଜୀବନ୍ତେ ହତ—କୃଷ୍ଣସିଂହ, ମହାଭାରତ, ବନ ।

**ଛଳେଇ କରି**—ଦେ. କ୍ରି. ବିଣ—ସ୍ପଷ୍ଟରୂପେ ପ୍ରକାଶ ନ କରି; ( କୌଣସି ବିଷୟକୁ ) କେବଳ ଇଙ୍ଗିତଦ୍ୱାରା ( କହିବା )—( to mention ) Indirectly; by insinuation or innuendos.
Chhaḷei kari

**ଛଲ୍ଲି**—ସଂ. ବି. ( ଛଦ=ଆବରଣ+ଲା ଧାତୁ=ଦାନ କରିବା+କର୍ତ୍ତୃ. ଇ; ଯାହା ବୃକ୍ଷର ଶରୀରକୁ ଆଚ୍ଛାଦନ କରେ )—
Chhalli
୧ । ଛାଲି; ଛେଲି; ବଲ୍କଳ—1. Bark of a tree.
୨ । ଲତା—2. A creeper.
୩ । ସନ୍ତାନ—3. Offspring.
୪ । ବନ୍ୟ ପୁଷ୍ପବିଶେଷ ( କ୍ଷୀରେନ୍ଦ୍ର )—4 Name of a wild flower.
୫ । ( ଛଳ+ଇ ) ଶଠ ବ୍ୟକ୍ତି—5. A cheat.

**ଛଲ୍ଲୀ**—ସଂ. ବି. ( ଛଦ+ଲା ଧାତୁ+କର୍ତ୍ତୃ. ଈ )—ଛଲ୍ଲି ( ଦେଖ ) Chhalli ( See )
Chhallī

**ଛଷଠାଶହେ**—ଦେ. ବି. ଓ ବିଣ. ( ସଂଖ୍ୟାବାଚକ, ସଂ. ଷଟ୍‌ଷଷ୍ଟ୍ୟୁତ୍ତର-ଶତ )—ଏକ ଶହ ଛଅଷଠି—166;
Chhashaṭhā-śahe
ଛଅଷଠାଶହେ—ଅନ୍ୟରୂପ)

**ଛଷଠି**—ବିଣ—ଛଅଷଠି ( ଦେଖ ) Chhaashaṭhi ( See )
Chhashaṭhi
( ଛଷଠି—ଅନ୍ୟରୂପ )

**ଛସ୍ତରାଶହେ**—ଦେ. ବି—ଛଅସ୍ତରାଶହେ ( ଦେଖ ) Chhaastarāśahe ( See )
Chhastarāśahe
( ଛସ୍ତୁରାଶହେ; ଛସ୍ତୋରାଶହେ; ଛଅସ୍ତରାଶହେ—ଅନ୍ୟରୂପ )

ସାଧାରଣ ଲୋକେ ଅପର ବୃଷ୍ଟାରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ କପଟେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଢ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅଁଖି ନ ପାଇଲେ 'ଆଖି' ଦେଖିବେ; 'ଅଳବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

**ଛସ୍ତରି**—ଦେ. ବି. ଓ ବିଣ—ଛଅସ୍ତରି ( ଦେଖ )
Chhastari Chhaastari ( See )
( ଛସ୍ତୁରି; ଛସ୍ତୋରି—ଅନ୍ୟରୂପ )

**ଛା**—ସଂ ବି—ଶାବକ, ପ୍ରାଣୀର ଛୁଆ—
Chhā Young one's of animals ( M. W. ).

**ଛାଅ**—ପ୍ରାଦେ. ( ବାଲେଶ୍ୱର, ମେଦିନୀପୁର ) ବି ( ତୁଳ. ବ. ଛା, ଛାଁ,
Chhāā ଛାଁଆଲ୍ ) - ଛା ( ଦେଖ )—Chhā ( See )

**ଛାଆଣ**—ଗ୍ରା. ବି—ଛାଆଣି ( ଦେଖ )
Chhā-āṇa Chhāāṇi ( See )

**ଛାଆଣି**—ଦେ. ବି. (ସଂ. ଛଦ ଧାତୁ ; ସଂ. ଛାଦନ )—
Chhā-āṇi ୧ । ଆଚ୍ଛାଦନ—1. Covering.
ছাওয়া, ছাওনি ୨ । ଘରର ଛପରବନ୍ଧ—
छान, छावनि 2. Thatching of a house
୩ । କୌଣସି ପଦାର୍ଥ ଉପରେ ଅନ୍ୟ ଧାତୁର ପତଳା ସ୍ତରର ଲେପନ--3. Overlaying of a layer of metal on some article.
୪ । ( ସଂ. ଚାଳନ; ଛାରଣ ) ଛାଙ୍କିବା; ଛାଣିବା—
4. Distilling; sifting.
( ଯଥା—କପଡ଼ାଛାଆଣି । )

**ଛାଆଣିଆଁ**—ଦେ. ବି. ( ସଂ ଛଦ ଧାତୁ )—ଯେଉଁମାନେ ଘର ଛପର
Chhā-āṇiāñ କରନ୍ତି; ଛାଉଣିଆଁ—Thatcher.
छानेवाला, छप्परबन्द

**ଛାଆଣି କରିବା**—ଦେ. କ୍ରି—ଛାଇବା ( ଦେଖ )
Chhā-āṇi kariba Chhāiba ( See )

**ଛାଆଳି**—ଦେ. ବି—ଛାଆଣିଆଁ ( ଦେଖ )
Chhā-āḷi Chhā-āṇiāñ ( See )

**ଛାଇ**—ଦେ. ବି. ( ସଂ. ଛାୟା )—
Chhāi ୧ । ଅନାତପ; ଖରାର ଅଭାବ—
ছাওয়া, ছাই 1. Shade; want of sun's rays.
छाँ, चाँह, छाँहो ୨ । ଛାୟା; ଆଲୋକ ବା ସୂର୍ଯ୍ୟ ବା ଚନ୍ଦ୍ରଙ୍କ ବିପରୀତ ଦିଗରେ ପଡ଼ିବା କୌଣସି ବସ୍ତୁର ପ୍ରତିରୂପ—
2 Shadow.

ଦମୟନ୍ତୀ ଚାହିଁଲେ ନଳଙ୍କର ରୂପ
ଶରୀରକୁ ଛାଇ ହୋଇଛି ଅନୁରୂପ । କୃଷ୍ଣସିଂହ. ମହାଭାରତ, ବନ ।

୩ । ( ଲକ୍ଷଣାର୍ଥ ) ଆଶ୍ରୟ; ବାହୁଚ୍ଛାୟା; ଶରଣ—
3. Shelter
( ଯଥା—ତା ଛାଇରେ ମୋ ଦିନ ଯାଉ । )
୪ । ପ୍ରତିବିମ୍ବ, ଜଳ ବା ଦର୍ପଣରେ ଦେଖାଯିବା କୌଣସି ବସ୍ତୁର ପ୍ରତିରୂପ—4. Reflection of a thing on water or mirror.
୫ । ସୂର୍ଯ୍ୟକିରଣ ପଡ଼ି ନ ଥିବା ସ୍ଥାନ—
5. A place where the sun's rays do not fall.
୬ । ଛାଆଣି; ଛାଉଣୀ—
6. Thatching; overlaying.

**ଛାଇଁବା**—ଦେ. କ୍ରି. ( ସଂ ଛଦ ଧାତୁ )—ଛାଇବା ( ଦେଖ )
Chhāiñbā Chhāibā ( See )

**ଛାଇକି ଛଅ ଘା ମାରିବା**—ଦେ କ୍ରି—୧ । ଅବାସ୍ତବ କଥାରେ ବୃଥା
Chhāiki chhaa-ghā māribā ଉତ୍ତେଜିତ ହେବା—
1. To be excited for nothing.
୨ । ପ୍ରକୃତ କାରଣ ବା ଉତ୍ତେଜନା ନ ଥାଇ କଳି କରିବା---
2 To quarrel without sufficient provocation.
[ ଦ୍ର—ଛାଇକି ଗୋଇଠା ମାରିବା, ଛାଇକି ନାଡ଼ ମାରିବା, ମଧ୍ୟ ଏହି ଅର୍ଥରେ ବ୍ୟବହୃତ ହୁଏ । ]

**ଛାଇ ଗଡ଼ିବା**—ଦେ. କ୍ରି ଓ ବିଣ—ଛାଇ ନେଉଟା ( ଦେଖ )
Chhāi gaṛḍibā Chhāi neuṭā ( See )

**ଛାଇ ଘୋଡ଼ା(ଡ଼େ)ଇବା**—ଦେ. ବି—୧ । ମେଘାବୃତ ଅବସ୍ଥା—
Chhāi ghoṛḍā(ṛḍe)ibā 1. Cloudy state.
୨ । ମେଘାବୃତ ଋତୁ—2. Cloudy weather.
( ଯଥା-- ଆଜି ସକାଳୁ ୧୨ଟାବେଳଯାକେ ଛାଇ ଘୋଡ଼େଇଛି । )

**ଛାଇ ଛାଇ**—ଦେ. ବି—୧ । ଛାୟାବାହୁଲ୍ୟ; ବହୁଛାୟାର ଚିହ୍ନ—
Chhāi chhāi 1. A number of shadows.
(ଛାଇଛାଇଆ—ଅନ୍ୟରୂପ) ୨ । ବହୁ ସମୟ ଛାୟାଯୁକ୍ତ ହେବା ଅବସ୍ଥା--
2. The state of being shadowy for a long time.
( ଯଥା—ମେଘ ଛାଇ ଛାଇ କରିଛି । )
ଦେ. ବିଣ—୧ । ଛାୟାବହୁଳ—1. Full of shadows
୨ । ଛାୟାମୟ—2. Shadowy.

**ଛାଇଛାଇ ହେବା**—ଦେ କ୍ରି—୧ । ଛତରଛାଡ଼ୁଳ ହେବା—
Chhāi-chhāi hebā 1. To be scattered about.
୨ । ( ତୁଳ. ବ. ଛାଇ=ଭସ୍ମ )—
ଛାରଖାର ହେବା; ଭସ୍ମରେ ପରିଣତ ହେବା—
2 To be reduced to ashes; to be ruined.
୩ । (ଧ୍ୱନ୍ୟନୁକରଣ) ଘୂରିବା; ଚକ୍ରାକାରରେ ଘୂର୍ଣ୍ଣିତ ହେବା—
3. To reel; to whirl

**ଛାଇତଳିଆ**—ଦେ. ବି—୧ । ଯେ ସର୍ବଦା ଛାଇ ତଳେ ଥାଏ, ଅର୍ଥାତ୍
Chhāi taḷiā ଯାହାଠାରେ ଖରା ଲାଗେ ନାହିଁ—
ছাওয়া 1. Living in the shade.
( ଯଥା—ଛାଇତଳିଆ ବେଭାରୀ, ଛାଇତଳିଆ ବଡ଼ଲୋକ । )
୨ । ଛାୟାଯୁକ୍ତ; ଛାୟାମୟ—2. Shady; shadowy

| ୧ | ଇ | ଉ | ର୍,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଫ଼ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗିଁ | ଇଅ | ଊ | ନ୍ତ |

**ଛାଇଦେବା**—ଦେ. କ୍ରି. (ସକର୍ମକ) (ସଂ.ଛଦ ଧାତୁ=ବେଷ୍ଟନ କରିବା)—
Chhāidebā ୧ । ବିସ୍ତାର କରିବା—
ছাওয়া 1. To diffuse; to spread.
**छितराना** ଯୁଧିଷ୍ଠିର ନୃପେ ବସୁ ନା ରାଜ୍ୟ ଦେଇ
ଚନ୍ଦ୍ର ପରି କୀର୍ତ୍ତି ଭବେ ଯଥ ଛାଇ । କୃଷ୍ଣସିଂହ. ମହାଭାରତ କର୍ଣ୍ଣ ।
୨ । ଗୃହଆଡ଼େ ଘେରିବା ବା ବେଢ଼ିବା—
2. To envelop; to encompass.

**ଛାଇ ନ ପଡ଼ିବା**—ଦେ. ବି—କୌଣସି ବ୍ୟକ୍ତିଠାରେ ଅନ୍ୟ ବ୍ୟକ୍ତିର
Chhāi na pardibā ସାମାନ୍ୟ ସମ୍ପର୍କ ମଧ୍ୟ ନ ରହିବା—
**छाँह न गीरना** The absence of the slightest connection between two persons.

**ଛାଇ ନ ମାଡ଼ିବା**—ଦେ. ବି (ଲକ୍ଷଣାର୍ଥ) —(କୌଣସି ବ୍ୟକ୍ତିର) ସଙ୍ଗେ
Chhāi na mārdibā ଲେଶ ମାତ୍ର ସମ୍ପର୍କ ନ ରଖିବା; କୌଣସି
ছাই ন মাড়ান ବ୍ୟକ୍ତିର ଦେହସ୍ପର୍ଶ ତ ଦୂରର କଥା,
**छाँह बचाना** ଉକ୍ତ ବ୍ୟକ୍ତିର ଦେହଚ୍ଛାୟାକୁ ସୁଦ୍ଧା ସ୍ପର୍ଶ
ନ କରିବା—(figurative) Not having even a little connection (with a person).
ସପକ୍ଷ ବା ଅନ୍ତୁତକାରୀ ଯେ ତାଙ୍କର
ନ ମାଡ଼ିବ ତାଙ୍କ ଛାଇଟି ନରବର । କୃଷ୍ଣସିଂହ. ମହାଭାରତ. ବନ ।

**ଛାଇନିଦ**—ଦେ. ବି.—(ସଂ. ଈଷତ୍+ନିଦ୍ରା)—ସଚେତ ନିଦ୍ରା; ସାମାନ୍ୟ
Chhāi-nida ନିଦ୍ରା; ତନ୍ଦ୍ରା; ନିଦ୍ରାର ପ୍ରଥମ ଆକର୍ଷଣରେ ଚେତନା-
সজাগ ঘুম ଚେତନ ଅବସ୍ଥା—Slight sleep; nap.
**झपकी** ତାଙ୍କୁ ଟିକିଏ ଛାଇନିଦ ଲାଗିଲେ ଦେଖନ୍ତି, ଆକାଶରେ ଏକ ଭୟଙ୍କର ମୂର୍ତ୍ତି ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

**ଛାଇନିଦ୍ରା**—ଦେ. ବି—ଛାଇନିଦ (ଦେଖ)
Chhāi-nidrā Chhāi-nida (See)
ଘୋର ବରଷାରେ ସେ ଛାଇନିଦାରେ
ମୋ ପ୍ରାଣ-ଜନନୀ ଯେବେ
ପିଠି ଆଉଁସିଣ ଗୀତ ଗାଉଥିଲେ
ମନେ ପଡ଼େ ତାହା ଏବେ । ନନ୍ଦକିଶୋର. ନିର୍ଝରିଣୀ ।

**ଛାଇନେଉଟା**—ଦେ. ବିଣ. (ସଂ. ଛାୟା+ନିବର୍ତ୍ତନ; ଯେଉଁ ସମୟରେ
Chhāi-neutā କୌଣସି ପଦାର୍ଥର ଛାୟା ପୂର୍ବାହ୍ଣ ପରି ପଶ୍ଚିମଦିଗରେ
**बाद दुपहर** ନ ପଡ଼ି ପୂର୍ବଦିଗକୁ ଲେଉଟେ)—ଯେଉଁ ସମୟରେ
ଛାଇନେଉଟିବା, ଛାଇଲେଉଟା, ଛାଇଲେଉଟିବା } ଅନ୍ୟରୂପ — ଅପରାହ୍ଣ ଆରମ୍ଭ ହୁଏ; ଦ୍ୱିପହରର ପରବର୍ତ୍ତୀ (ସମୟ)—
(time) Past midday; P.M.
(ଯଥା—ଛାଇନେଉଟା ବେଳ ହେଲାଣି, ତଥାପି ସେ ଖାଇବାକୁ ଆସିଲେ ନାହିଁ ।)
ଦେ, ବି—ଦ୍ୱିପ୍ରହର ଟପିଯିବା ଅବସ୍ଥା ବା ସମୟ—
The state of the passing by of the noon; the time when the sun has passed the meridian; P. M.

**ଛାଇ ପଡ଼ିବା**—ଦେ. ବି—୧ । ଛାୟାର ପତନ; କୌଣସି ବ୍ୟକ୍ତି ବା
Chhāi pardibā ପଦାର୍ଥ ଉପରେ ଅନ୍ୟ ବ୍ୟକ୍ତିର ବା ପଦାର୍ଥର
(ଛାଇ ବାଜିବା—ଅନ୍ୟରୂପ) ଛାୟା ପତିତ ହେବା—
1. The shadow of a person or thing touching or falling on another person or thing.
ଭମୁରେ ଛାଇଁ ନ ପଡ଼ୁ ବୋଲି ଛଡା ହୋଇ ମୁଁ ଛଡା ହେଲି ।
କବିସୂର୍ଯ୍ୟ. ସଙ୍ଗୀତ ।
୨ । ଛାୟାଯୁକ୍ତ ହେବା—2. Being shady.
୩ । (ଲକ୍ଷଣାର୍ଥ) ସମ୍ପର୍କଶୀଳ ହେବା; ଅନ୍ୟର ସଙ୍ଗେ ସାମାନ୍ୟ ସମ୍ପର୍କ ରହିବା—3. The state of there being any connection between two persons.
(ଯଥା—ମୋ ଛାଇ ପଡ଼ିଲେ ତା ଜାତି ଯିବ ।)
[ ଦ୍ର—ଦାକ୍ଷିଣାତ୍ୟରେ ବ୍ରାହ୍ମଣାଦି ଉଚ୍ଚଜାତୀୟ ବ୍ୟକ୍ତିଙ୍କୁ ଅସ୍ପୃଶ୍ୟ ଜାତୀୟ ବ୍ୟକ୍ତି ଛୁଇଁବାର ଦୂରେ ଥାଉ, ଯେବେ ଶେଷୋକ୍ତ ବକ୍ତିର ଆତପଜନିତ ଛାୟା ପ୍ରଥମୋକ୍ତ ବ୍ୟକ୍ତିର ଦେହକୁ ସ୍ପର୍ଶ କରେ, ତାହାହେଲେ ପ୍ରଥମୋକ୍ତ ବ୍ୟକ୍ତି ଅଶୁଦ୍ଧ ହୋଇଯିବାର ବିବେଚିତ ହୁଏ; କିନ୍ତୁ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତା ପ୍ରଭାବରୁ ଗାନ୍ଧୀଙ୍କ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଫଳରେ ଏ କୁସଂସ୍କାର କ୍ରମଶଃ ଶିଥିଳ ହେଉଅଛି । ]

**ଛାଇବା**—ଦେ. କ୍ରି. ( ସଂ. ଛଦ୍ ଧାତୁ=ବେଷ୍ଟନ କରିବା )—
Chhāibā ୧ । ଛାଉଣି କରିବା; ଛପରବନ୍ଧ କରିବା—
ছাওয়া 1 To thatch.
**छाना** ୨ । ଆଚ୍ଛାଦନ କରିବା—2. To cover.
ଛାଇଦେଲ ଶରେ ପାଣ୍ଡୁଙ୍କ ଅପତ୍ୟ । କୃଷ୍ଣସିଂହ. ମହାଭାରତ ବନ ।
୩ । ବିସ୍ତୃତ କରିବା—3. To spread.
ସୁଦୃଢ଼େ କୁଶ କାଶ ଛାଇ
ସେ ନଗରରେ ସୁଖେ ରହି । ଜଗନ୍ନାଥ. ଭାଗବତ ।
୪ । ଘେରିବା—4. To surround.
୫ । ବ୍ୟାପିବା—5. To be diffused; to pervade.

**ଛାଇବାଇ ଲେନ୍ଦେରା**—ଗ୍ରା. ବି. (ଛାଇ=ଦେହର ଛାୟା, ବାଇ=ବାଆ,
Chhāibāi lenderā ପବନ, ବାୟୁ; ଲେନ୍ଦେରା=ଆବର୍ଜନା)—
(ଛାଇବାଇ ଲେନ୍ଦେରା—ଅନ୍ୟରୂପ) ଏକ ବ୍ୟକ୍ତିର ଦେହରୁ ଅନ୍ୟ ବ୍ୟକ୍ତିର ଦେହକୁ ଖଣ୍ଡିଏ କାଠି ବା କୁଟା ଲାଗିଥିବା ଅବସ୍ଥା—
(ଯଥା—ସେ ପିଲାଟା ଏକୁଟିଆବାଡ଼ୁଆଟାଏ, ତାଠେଇଁ କାହାର ଛାଇବାଇ ଲେନ୍ଦେରା ଲାଗିବ ନାହିଁ ।)
୨ । ଏକ ବ୍ୟକ୍ତି ସଙ୍ଗେ ଅନ୍ୟ ବ୍ୟକ୍ତିର କୌଣସି ପ୍ରକାରର ଅଡ଼ୁଆ ବା ସମ୍ପର୍କ—2. Any connection whatsoever (distant or near).

**ଛାଇ ବାଜିବା**—ଦେ. ବି—ଛାଇ ପଡ଼ିବା (ଦେଖ)
Chhāi bājibā Chhāi pardibā (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ତେଣୁ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲଙ୍କୃତ' ନ ପାଇଲେ 'ଅଲଙ୍କୃତ' ଦେଖିବେ

**ଛାଇ ମଡ଼ୁଲିବା**—ଦେ. କ୍ରି—ଛାଇନେଉଟା (ଦେଖ)
Chhāi maṭulibā Chhāi-neuṭā (See)
(ଛାଇ ମଉଳିବା; ଛାଇ ମୁଉଳିବା—ଅନ୍ୟରୂପ)

**ଛାଇଯିବା**—ଦେ. କ୍ରି. (ଅକର୍ମକ) (ସଂ. ଛଦ ଧାତୁ)—
Chhāi-jibā ବ୍ୟାପିବା; ପରିବ୍ୟାପ୍ତ ହେବା—
ଛେୟେ ଯାଓୟା To spread round; to be diffused.
छाजाना

**ଛାଇରହିବା**—ଦେ. କ୍ରି—କେତେ ସମୟ ପର୍ଯ୍ୟନ୍ତ ଆଚ୍ଛନ୍ନ କରିବା—
Chhāirahibā To cover for long time.
ছেয়েথাকা ଛାଇରହିଛି ଯିବ ଅପସରି ପୁଣି ବଳାଶିବ ନବ ଭାବରେ।
छा रहना ଭ୍ରକାଶ. ଗୀତଲହରୀ।

**ଛାଇଲେଉଟା**—ଦେ. ବି. ଓ ବିଣ—ଛାଇନେଉଟା (ଦେଖ)
Chhāi-leuṭā Chhāi-neutā (See)
(ଛାଇଲେଉଟିବା—ଅନ୍ୟରୂପ)

**ଛାଇହେବା**—ଦେ. କ୍ରି—୧। ଛାଇଯିବା (ଦେଖ)
Chhāi-hebā 1. Chhāi-jibā (See)
୨। ଆଚ୍ଛାଦିତ ହେବା—2. To be covered.
କଳେବର ରେଣୁରେ ହୋଇଛି ଛାଇ। ଗୋବିନ୍ଦ ରଥ. ରସକଲ୍ଲୋଳ।

**ଛାଉଣି**—ଦେ. ବି. (ସଂ. ଛଦ ଧାତୁ; ସଂ. ଛାଦନୀ=ଛାଉଣି, ଆବରଣୀ)—
Chhāuṇi ୧। ଶିବିର; ତମ୍ବୁ; ଡେରା—
ছাউনী; ছাওনী 1. Camp; tent.
छावनी ୨। ସାମୟିକ ବା ଅସ୍ଥାୟୀ ସେନାନିବାସ—
ଛାଅଣି } ଅନ୍ୟରୂପ 2. Military camp,
ଛୁଆଁଣି } ଛଡ ଏହୁକ୍ଷଣି ଉଠାଇ ଛାଉଣୀ ଯିବ ରଙ୍ଗପୁର ଗଡ।
ରାଧାନାଥ. ପାର୍ବତୀ।
୩। ଆଚ୍ଛାଦନ—3. Covering.
(ଯଥା—ରୂପା ଉପରେ ସୁନା ଛାଉଣି ହୋଇଛି।)
୪। ଘରଛପରବନ୍ଧ; ଛାଅଣି; ଛୁଆଁଣି—4. Thatching.
୫। ଧାତୁର ପତଳା ପାତିଆ ବା ସ୍ତର ଦ୍ୱାରା ଆଚ୍ଛାଦନ—
5. Covering with a thin layer of metal; overlaying with a thin coating of metal.
(ଯଥା—ଏ ପଲଙ୍କ ବିଦ୍ରିଯାକ ରୂପା ଛାଉଣି ହୋଇଛି।)
୬। ଆନଦ୍ଧ ବାଦ୍ୟ (ଯଥା—ଢୋଲ, ମୃଦଙ୍ଗ)ର ମୁହଁ ଚମଡ଼ା ଦ୍ୱାରା ଆଚ୍ଛାଦନ—6. Binding of leather or hide on the mouth of a drum.
ବିଣ—୧। ଆଚ୍ଛାଦିତ—1. Covered.
ଅଛି ଶ୍ରେଷ୍ଠ ଗହପାଟେ, ଛାଉଣି ନାହିଁ ଲେମ କେଶେ।
ଜଗନ୍ନାଥ. ଭାଗବତ।
୨। ଛପରବନ୍ଧ ହୋଇଥିବା—2. Thatched.
୩। ଉପରେ ପତଳା ହୋଇ ମଡ଼ାଯାଇଥିବା—
3. Overlaid with a thin layer.
୪। ଚମଡ଼ା ଆବଦ୍ଧ ଥିବା ଆନଦ୍ଧ (ଢୋଲ, ମୃଦଙ୍ଗାଦି)—
4. (drum) Having the opening covered with hide or leather.

**ଛାଉଣିଆଁ**—ଦେ. ବି.- ଯେ ଘର ଛପରବନ୍ଧ କରେ—
Chhāuniāñ One who thatches; thatcher.
(ଛାଅଣିଆଁ; ଛୁଆଁଣିଆଁ—ଅନ୍ୟରୂପ)

**ଛାଉଲି**—ଦେ. ବି. (ସଂ. ଛଳ)—୧। କପଟ ବ୍ୟବହାର—
Chhāuli 1. Hypocricy.
छाल ଛାଉଳି। ମୋରେ ଛାଉଳି ଛଡ଼।
କବିସୂର୍ଯ୍ୟ: ରତ୍ନାକରଚଉତିଶା. ବ୍ର ଗୀତ।
୨। ପରିହାସ—2. Jest; joking.
୩। ଛାଇ; ରସିକତା—3. Witticism; gallantry.

**ଛାଉଲେଇ ବିଗୁଲେଇ ହେବା**—ପ୍ରାଦେ. (ନରସିଂହପୁର ଓ ଗଡ଼ଜାତ)
Chhāulei bigulei hebā କ୍ରି.—ଖତେଇ ହେବା—
To make faces.

**ଛାଏଁ**—ଦେ. ଅ. (ସଂ. ସ୍ୱୟଂ ବା ସ୍ୱେଚ୍ଛୟା)—୧। ନିଜେ—
Chhāeñ 1. One's self.
আপনি, আপনাআপনি ୨। ସ୍ୱତଃ; ମନକୁ; ସ୍ୱେଚ୍ଛାକ୍ରମେ—
खुद्, आपसेआप 2. Of one's own accord; voluntarily.
ପ୍ରଜାଏ ଅନ୍ୟୋଅନ୍ୟେ ହୋଇ,
ଆପଣା ଛାଏଁ ନାଶ ଯାଇ। ଜଗନ୍ନାଥ. ଭାଗବତ।
୩। ଅନ୍ୟ କାହାର ସାହାଯ୍ୟ ବିନା—
3. Without any other's help.
(ଛାଏଁ ଛାଏଁ—ଅନ୍ୟରୂପ) ୪। କାର୍ଯ୍ୟତଃ; ଫଳତଃ—
4. Spontaneously; automatically.
ପ୍ରାଦେ. (ସମ୍ବଲପୁର) ବି. (ସଂ. ଛାୟା)—ଛାୟା; ଛାଇ—
Shade; shadow.

**ଛାଏଁଡ଼**—ପ୍ରାଦେ. (ସମ୍ବଲପୁର) ବି.—୧। ଛାର୍ଡ଼ (ଦେଖ)
Chhāeñṛd 1. Chhārḍa (See)
୨। ଅନାବୃଷ୍ଟି; ମେଘ ଛାଡ଼ିଯିବା ଅବସ୍ଥା—
2. Want of rain, drought.

**ଛାଏଁଣି**—ଗ୍ରା. ବି.—୧। (ସଂ. ଛାଦନ)—ଛାଉଣି (ଦେଖ)
Chhāeñṇi 1. Chhāuṇi (See)
କାହା ଯେତେ କର୍ମ କରେ ଛାଏଁଣି। ପ୍ରାଚୀ ଗୁରୁଭକ୍ତିଗୀତା।

**ଛାଗ**—ସଂ. ବି. ପୁଂ—(ଛଗ୍ ଧାତୁ; ଛେଦନ କରିବା + କର୍ମ. ଅ; ଯାହାକୁ
Chhāga ଖାଦ୍ୟ ବା ବଳି ପାଇଁ ଛେଦନ କରାଯାଏ)—୧। ଅଜ;
(ଛାଗୀ—ସ୍ତ୍ରୀ) ଛେଳି—1. Goat; Capra.
ସଂ. ବିଣ. (ଛେଳିଙ୍କର ଅଗମ୍ୟାଗମ୍ୟବିଚାରହୀନ ପ୍ରବୃତ୍ତିରୁ)
ଅଗମ୍ୟାଗମନକାରୀ—Incestuous.

**ଛାଗଗୋତ୍ରିକ**—ସଂ. ବିଣ (ଛାଗମାନଙ୍କ ମଧ୍ୟରେ ଅଗମ୍ୟାଗମନ ପରିଦୃଷ୍ଟ
Chhāga-gotrika ହେଉଥିବାରୁ)—ଅଗମ୍ୟାଗମନବିଚାରହୀନ;
(ଛାଗତ୍ରତ୍ନିକ—ଅନ୍ୟରୂପ) ଛେଳିଗୋତ୍ରିଆ—
Incenstuous; goatish.

| ୧ | ଇ | ଉ | ଋ,ଝ୍ର | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଖ | ଜ | ଶ,ଷ | କ୍ଷ | ଇଯ୍ଯ | ଲ୍ୟ | ଘ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ଏ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ | ଯ | ସ | ଚ୍ୟ | ଇଅ | ଵ | ନ୍ନ |

**ଛାଗଣ**—ସ. ଚ. (ଛଗଣ=ଘସି+ସମ୍ବନ୍ଧେ ଅ)—ଘସିନିଆଁ—
Chhāgaṇa Fire of cowdung cakes; burning cakes of cowdung.
(ଛଗନ—ଅନ୍ୟରୂପ)

**ଛାଗପାଳକ**—ସ. ବିଣ.—୧ । ଛେଳି ରଖୁଆଳ; ଛେଳି ଜଗୁଆଳ—
Chhāga-pālaka 1. Goat-herd.
(ଛାଗରକ୍ଷକ—ଅନ୍ୟରୂପ) ୨ । ଛେଳି ପୋଷିବା ଯାହାର ଜୀବିକା—
2. One who brings up goats for a living.

**ଛାଗବାହନ**—ସ. ବି. (ବହୁବ୍ରୀହି, ଛାଗ+ବାହନ; ଅଗ୍ନିଙ୍କର ବାହନ ଛାଗ ଥିବାରୁ)—ଅଗ୍ନି; ଅଗ୍ନିଦେବ—
Chhāga-bāhana The God of Fire.

**ଛାଗମୁଖ**—ସ. ବିଣ. (ବହୁବ୍ରୀହି)—ଛାଗମୁହିଁ ପରି ମୁହଁ ଯାହାର—
Chhāga mukha Having a face like the goat.
ସ. ବି—୧ । କାର୍ତ୍ତିକେୟ—1 God Kārttikeya.
[ଦ୍ର—ଏହାଙ୍କର ଷଷ୍ଠ ମୁଖ ଛେଳିର ମୁଖ ପରି ।]
୨ । ଦକ୍ଷ ପ୍ରଜାପତି—2. Daksha Prajāpati, the father-in-law of Mahādeba.
୩ । କାର୍ତ୍ତିକେୟଙ୍କ ଅନୁଚରବିଶେଷ — 3 The goat-faced attendant of Kārttikeya.
୪ । (ଷଷ୍ଠୀ ତତ୍, କମ୍ପା ମ. ପ: ଶ୍ଳୋ. ଛାଗବକ୍ତ୍ର ମୁଖ)—କାର୍ତ୍ତିକେୟଙ୍କର ଛାଗବତ୍ ଷଷ୍ଠ ମୁଖ—
4. The 6th goatlike face of Kārttikeya.

**ଛାଗରଥ**—ସ. ବି. (ବହୁବ୍ରୀହି; ଛାଗ+ରଥ)—ଛାଗବାହନ; ଅଗ୍ନିଦେବ—The God of fire.
Chhāgaratha

**ଛାଗଲ (ଇତ୍ୟାଦି)**—ସ. ବି. ପୁଂ (ଛାଗ+ସ୍ୱାର୍ଥେ. ଲ)—
Chhāgala (etc) ୧ । ଛାଗ ଇତ୍ୟାଦି (ଦେଖ)
(ଛାଗଳୀ—ସ୍ତ୍ରୀ) 1 Chhāga etc (See)
୨ । କୁଆମଇତା (ହରେକୃଷ୍ଣ. ଦ୍ରବ୍ୟଗୁଣ) (ଦେଖ)
2. Kuāmaitā (See)
୩ । ଛେଳି ଚମଡ଼ାରେ ନିର୍ମିତ ବସ୍ତୁ (ହ୍. ଶବ୍ଦସାଗର)—
3. Any thing made of goatskin.

**ଛାଗଲକ**—ସ. ବି. ପୁଂ—୧ । ଛାଗଲ (ଦେଖ)
Chhāgalaka 1. Chhāgala (See)
(ଛାଗଲକା—ସ୍ତ୍ରୀ) ୨ । ମତ୍ସ୍ୟବିଶେଷ; ଭେକଟାମାଛ—
2. A kind of saltwater fish allied to the sheep headed fish.
[ଦ୍ର—ଏମାନେ ସମୁଦ୍ରରେ ରହନ୍ତି । ବର୍ଷା ସମୟରେ ନଦୀମୁହାଣବାଟେ ମଧୁର ପାଣିକୁ ଉଠି ଆସନ୍ତି ।]

**ଛାଗଲାଗ୍ରସ୍ତ**—ସ. ବିଣ. ପୁଂ—ଛାଗଗୋତ୍ରିକ (ଦେଖ)
Chhāgalāchāri Chhāgagotrika (See)
(ଛାଗାଗ୍ରସ୍ତ—ଅନ୍ୟରୂପ)

**ଛାଗଲାଦ୍ୟ ଘୃତ**—ସ. ବି—ମେଧାବୃଦ୍ଧିକର; ବାତୁଲତା ରୋଗନାଶକ; ଆୟୁର୍ବେଦୋକ୍ତ ଘୃତବିଶେଷ (ନପୁଂସକ (ଛାଗଲାଦ୍ୟଘୃତ—ଅନ୍ୟରୂପ) ଛେଳି ବା ଅଣ୍ଡିର ପଶୁରେ ଖାସୀର ମାଂସ ଏ ଦ୍ରବ୍ୟର ପ୍ରଧାନ ଉପକରଣ)—A medicinal ghee prepared under Ayurbedic precepts the chief ingredient of which in the flesh of a hermaphrodite or neutor goat.
Chhāgalādi ghruta

**ଛାଗଲାନ୍ତ୍ରିକା**—ସ. ବି. (ଛାଗଲ+ଅନ୍ତ୍ର+ଇକ+ଆ)—ବୃଦ୍ଧଦାରକ ଗଛ—A kind of medicinal tree.
Chhāgalāntrikā

**ଛାଗଲାସ୍ତ୍ରୀ**—ସ. ବି. (ଛାଗଲ+ଅସ୍ତ୍ର+ଇନ୍; ୧ମା. ୧ବ.)—ହେଟାବାଘ; ଗଧିଆ—A wolf; a hyena.
Chhāgalāstri

**ଛାଙ୍କ**—ଦେ. ବି—୧ । ପ୍ରଚୁର ଘିଅ ବା ତେଲରେ ସନ୍ତୁଳା; ସିଝିଲାବା; ଭଜିବା; ପୁଆଇବା, କଅଁଳ ଉପରେ ବଢ଼ିଥିବା ପ୍ରଚୁର ଘିଅ ବା ତେଲରେ ପିଠା ଆଦି ଛାଣିବା—1. Frying any thing in sufficient ghee or oil.
Chhāṅka
ଛାଁକ
**तलना; छानना**
୨ । ପ୍ରଚୁର ଘିଅରେ ବା ତେଲରେ ଭଜା ହୋଇଥିବା ଭଲ ତରକାରୀ—2. A first class curry prepared by frying the vegetable with ghee or oil.

**ଛାଙ୍କପିଠା**—ପ୍ରାଦେ. (ହିଂଦୁଳମ) ବି—ଘିଅପିଠା—
Chhāṅkāpiṭhā Pastry cake fried in ghee.

**ଛାଙ୍କିବା**—ଦେ. କି. (ସ. ଗୃଲ ଧାତୁ)—
Chhāṅkibā ୧ । ପରିବା ଆଦିକୁ ପ୍ରଚୁର ଘିଅରେ ଭଜିବା—
छँका 1 To fry vegetables in boiling ghee.
**तलना छनना** ୨ । ବସ୍ତ୍ରାଦିର ଛିଦ୍ରଦ୍ୱାରା ତରଳ ପଦାର୍ଥକୁ ଛାଣିବା—2. To strain a liquid through a porous substance; to filter.
ଛଙ୍କାଇବା } ଣିଜନ୍ତ
ଛଙ୍କେଇବା }
୩ । ଗୃଲୁଣୀରେ ଚଲାଇବା—3. To sift or refine through a sieve.
ଗଙ୍କ ସୂକ୍ଷ୍ମ ବସ୍ତ୍ରଭଳି ନ୍ୟାୟ ଛଙ୍କୁଣୀରେ—ଚନ୍ଦ୍ରାମଣି. ବଳମାଦଚ୍ୟ ।

**ଛାଙ୍କୁଣୀ**—ଦେ. ବି. ସ୍ତ୍ରୀ. (ସ. ଗୃଲନୀ)—ଗୃଲୁଣୀ—
Chhāṅkuṇi A strainer; a sieve.
छाकनी ଛଙ୍କି ସୂକ୍ଷ୍ମ ବସ୍ତ୍ରଭଳି ନ୍ୟାୟ ଛଙ୍କୁଣୀରେ—
**चलनी, छलनी** ଚନ୍ଦ୍ରାମଣି, ବଳମାଦଚ୍ୟ ।

**ଛାଗୃ**—ଗ୍ରା. ବିଣ—ଛଗୃ (ଦେଖ)
Chhāchā Chhachā (See)

**ଛାଚ**—ଦେ. ବି. (ସଂ ଶ୍ୱେତ ଶର୍କରା; ଏହାର ବର୍ଣ୍ଣ ଶ୍ୱେତ ଥିବାରୁ)—
Chhāchi ୧ । ସାଚ; ନବାତ; କନ—
छाँचि 1. White sugar.
**साञ्चा, शक्कर, खाँड** ୨ । (ସ. ଛଦ-ଧାତୁ) ଘର ଗୃଳର ଓଳ;

ଛାଁଚ, ଛାଏଁଚ ଘରର ତଳଧାର—2. The eaves of a thatch.
ବଲତୀ

ଗ୍ରା. ବି—ଛାତି—Breast.

ଛାଁଚି, ହା, ସାଚୀ ଦେ. ବିଣ. ( ସଂ. ଶ୍ୱେତ )—ଧଳା; ଶ୍ୱେତ—White.

**ଛାଚିକୋର**—ଦେ. ବି—କୋରା ନଡ଼ିଆ ଓ ନବାତରେ ତିଆରି ମିଷ୍ଟାନ୍ନ; Chhāchikorā ସାଚ କୋରା—A sweatmeat prepared from minced cocoanut and white sugar.

**ଛାଚିଖଇ**—ଦେ. ବି—ଚିନି ପାଗରେ ପ୍ରସ୍ତୁତ ହୋଇଥିବା ଉଖୁଡ଼ା—Chhāchikhai Fried paddy seasoned with white sugar syrup.

**ଛାଚିତଳ**—ଦେ. ବି—ଓଳି ତଳ; ଘରର ପ୍ରାନ୍ତ ଭାଗର ନିମ୍ନସ୍ଥ ଭୂମି—Chhāchitaḷa The ground below the eaves of a thatch.
ଛାଁଚତଲା
ବଲତୀ

**ଛାଚି ଧଡ଼ିଆ**—ଦେ. ବିଣ.—ଶୁକ୍ଳ ପାଟ ଧଡ଼ିବିଶିଷ୍ଟ ଲୁଗା—Chhāchi dhaṛḍiā ( cloth ) Having a white silken border.

**ଛାଚିଧଡ଼ି**—ଦେ. ବି—ଧଳା ଲୁଗାରେ ଥିବା ଧଳା ରେଶମ ଧଡ଼ି—Chhāchidhaṛḍi White silken border of a white cloth.

**ଛାଚିପାନ**—ଦେ. ବି—୧। ଏକ ପ୍ରକାର ସୁଗନ୍ଧ ପାନ; ସାଚପାନ—Chhāchipāna 1. A kind of sweet scented betel leaf.
ଛାଁଚିପାନ
**साँचीपान**

୨। ଉତ୍କୃଷ୍ଟ ପାନ, ଯେଉଁ ପୁରୁଣା ପାନ ପାଚି କରି ଶ୍ୱେତାଭ ହୋଇ ଥାଏ—2. Matured betel-leaf which has become bleached.

**ଛାଚୁଣି**—ପ୍ରାଦେ. (ମେଦିନୀପୁର) ବି—ଛାଞ୍ଚୁଣି; ଝାଡ଼ୁ—Chhāchuṇi Broom-stick.

**ଛାଞ୍ଚ**—ଦେ. ବି. ( ସଂ. ସଞ୍ଚ, ଏକତ୍ରୀକରଣ କର୍ମ୍ମ। ସ. ଚ୍ୟ=ଆଦର୍ଶ; Chhāñcha ସଂ. ନାମ. ସ. ଜ୍ଞାନ ଯୋଗେଶ୍ଚନ୍ଦ୍ର )—
ଛାଁଈଚ,ଛାଁଚ
**साँचा**

୧। ପ୍ରତିମା ଆଦି ତିଆରି କରିବା ନିମନ୍ତେ ଅଗ୍ନିତପ୍ତ ଧାତୁକୁ ଢାଳିବାର ନିର୍ଦ୍ଦିଷ୍ଟ ଆକାରର ପାତ୍ର—1. A casting mould; mould; cast.

ବଶ୍ୟକାନ୍ତ ସାର ବୋଲି ଅବା ମାର ଢାଳିଅଛି ପ୍ରେମ ଛାଞ୍ଚେ।
ରାଧାନାଥ. ଯଯାତି।

୨। କାଠ, ମାଟି ଓ ମହମ ଆଦିରେ ନିର୍ମିତ ଆଦର୍ଶ—2. Type; model.

୩। ( ସଂ. ସଞ୍ଚ ) ଅଲେଖା ତାଳ ପତ୍ର ପୋଥି; ପୋଥି ଲେଖା ହେବା ପାଇଁ କଟା ହୋଇ ସଜ୍ଜିତ ହୋଇଥିବା ତାଳପତ୍ରସମୂହ—3. Blank palm-leaves strung together and intended to be written upon unwritten palm-leaves made into one size and attached together ( in which books are to be written).

୪। ତଳେ ନାନାବିଧ ଚିତ୍ରବିଶିଷ୍ଟ ଛିଦ୍ର ଥିବା ମୁରୁଜର ଛାପା ବସାଇବାର ପାତ୍ର ( ଏହା ତାଳ ପତ୍ରରେ ବା ମାଟିରେ ନିର୍ମିତ ହୁଏ)—4. A frame with its buttom perforated to represent various figures, through which white powders fall on the ground and describe various figures, when the frame is stamped or drawn on the ground.

୫। ଇଟା ତିଆରି କରିବା ପାଇଁ ବ୍ୟବହୃତ ବାକ୍ସ ବା ଫର୍ମା—5. Brick-mould.

ପ୍ରାଦେ. ( ସିଂହଭୂମ ) ବି—ଘରର ଓଳି—The eaves of a thatch

ଗ୍ରା. ବି—ଚାପରା, ଥଟ୍ଟା—Jesting.

**ଛାଞ୍ଚି** (ଇତ୍ୟାଦି)—ଦେ. ବି ( ସଂ. ଛିଦ ଧାତୁ )—Chhāñchi (etc) ୧। ଛାଚି ଇତ୍ୟାଦି (ଦେଖ) 1. Chhāchi etc (See)

୨। ଛାଞ୍ଚ ୩ (ଦେଖ) 2. Chhāñcha 3 (See)

ବିଣ—ଛାଚି ଇତ୍ୟାଦି (ଦେଖ) Chhāchi etc (See)

**ଛାଞ୍ଚିକଖାରୁ**—ପ୍ରାଦେ. (ସିଂହଭୂମ) ବି. ( ଭୁଲ ବ. ଛାଚିକୁମଡ଼ା; ହି. Chhāñchi kakhāru ଶିଁଗୀକୁମଡ଼ା)—ପାଣିକଖାରୁ (ଦେଖ) Pāṇikakhāru (See)

**ଛାଞ୍ଚିବା**—ପ୍ରାଦେ. (ସମ୍ବଲପୁର) କ୍ରି. (ସଂ. ତକ୍ଷଣ)—ଚାଞ୍ଛିବା; ତାଛିବା—Chhāñchibā To scrape off.

**ଛାଞ୍ଚୁଆ**—ଦେ. ବି—ଯେଉଁମାନେ ଛାଞ୍ଚ ବା ଫର୍ମାରେ କାଦୁଅ ପକାଇ Chhāñchuā ଇଟା ତିଆରି କରନ୍ତି—Brick-layers.
ଛାଁଚୁଆ
**साचिया**

**ଛାଞ୍ଚୁଣି**—ଦେ. ବି. (ସଂ. ସମ୍ମାର୍ଜନୀ)—କୋମଳ ସମ୍ମାର୍ଜନୀ ବା ଝାଡ଼ୁ—Chhāñchuṇi A soft mop or broom.
ଝାଁଟା; ଖେଙ୍ରା
**सौंहनी**

ସେ ରୂପେ ଛାଞ୍ଚୁଣି ପଡ଼ିବ ଲୁଗ ଯେତେ।
କୃଷ୍ଣସିଂହ ମହାଭାରତ ସଭା।

**ଛାଟ**—ଦେ. ବି. ( ସଂ. କ୍ଷିପ୍ତ; ପ୍ରା. ଛିତ୍ତ; ସଂ. ଛଟା )—Chhāṭa ୧। ପବନ ଯୋଗୁଁ ବର୍ଷା ଜଳ ତିର୍ଯ୍ୟକ୍‌ଭାବରେ ପଡ଼ିବା; ବାୟୁଚାଳିତ ବୃଷ୍ଟିଧାରା—1. Slanting rain (due to wind).
ଛାଟ; ଛାଇଟ
**छिटा**
**छाट**
**छाड़; छिटकुनी**

ଘରବାରି ପାଣିଛାଟରେ ଓଦା ପଡ଼ଅଛି।
ରାଧାନାଥ, ଚଢ଼େଇ।

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଅ | ଉଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ | ଇଅ | ଞ୍ଜ | ନ୍ |

୨ । ଛୋଟ ସରୁ ଯଷ୍ଟି—
2. Slender stick; switch rod.

ମୋ ଭୁଣ୍ଡେ ସିନା ଥିଲେ ମାଟ
ତେବେ ତ ମୋତେ ଛାଟ ପିଟ । ଜଗନ୍ନାଥ. ଗଟଟଢ ।

୩ । ଚାବୁକ—3. Whip.

୪ । ଛାତ୍ରମାନଙ୍କୁ ଅବଧାନମାନେ ଯେଉଁ ସରୁଯଷ୍ଟିରେ ତାଡ଼ନ କରନ୍ତି—4. A staff used by teachers for caning pupils.

ଛାଟଲୁରେ ତାରୁ ଭୟ ନ କର
ଛନ୍ଦନ୍ତ ହୋଇ ବଦ୍ୟା ପଢିବାର—ବଳରାମଦାସ ।

୫ । ଚାବୁକ ବା ଛାଟଦ୍ୱାରା ପ୍ରହାର—
5. Whipping; a stroke with the whip.

ସେ ରଥେ ଘୋଡ଼ାଙ୍କ ଦେହରେ ଯାଇଁ ଛାଟ
ବାଜନ୍ତେ ଧାଇଁଲେ ସେ ହେଳ ଯୁଦ୍ଧବାଟ । କୃଷ୍ଣସିଂହ. ମହାଭାରତ. ବନ ।

୬ । ପଶୁତାଡ଼ନ ଯଷ୍ଟି—
6. A staff for driving cattle.

ছাঁটা ୭ । (ସଂ. ଛେଦନ) ଛାଣ୍ଟ; ଛଟା; ଭଙ୍ଗୀ; ପ୍ରକାର—
झोंटा 7. Mode.

୮ । ବାତରୋଗ ପ୍ରଭାବରୁ ଛାଟ ହୋଇ ମନୁଷ୍ୟ ଭୂମିରେ ପଡ଼ିଯିବା; ଅନ୍ଧାର ଛାଟ—8. A sudden fall on the ground on account of a fit.

**ଛାଟ ଛୁଟାଇବା**—ଦେ. କ୍ରି—୧ । ଛାଟଦ୍ୱାରା ପ୍ରହାର କରିବା—
Chhāṭa chhuṭāibā 1. To thrash with a cane.
(ଛାଟ ଛଟେଇବା—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) ବାଧାଦେବା; ବନ୍ଦ କରିବା—2. To put a stop to.

ଯେ ତୁମ୍ଭ ଦରଶନ ଚନ୍ଦ୍ରପଟ
ତା ସୁଖ ମୁଖେ ଛୁଟାଇଲ ଛାଟ । କବିସୂର୍ଯ୍ୟ—କବିତା ।

**ଛାଟଣା**—ଦେ. ବି—୧ । ହଠାତ୍ ଝିଙ୍କି ହେବାର ଆଘାତ—
Chhāṭaṇā 1. Jerk.
ছিটকান ୨ । ଛାଟଣି (ଦେଖ)
छिटकना 2. Chhāṭaṇi (See)
୩ । ଗୋରୁଙ୍କର ଚଟୁଆ ଫୁଲା ରୋଗ—
3. Black quarter (of cattle).

**ଛାଟଣି**—ଦେ. ବି.—୧ । ଛାଟ (ଦେଖ)
Chhāṭaṇi 1. Chhāṭa (See)
ছাট, সাট ୨ । 'ଐ' ଓ 'ଔ' ଅକ୍ଷରମାନଙ୍କ ମାତ୍ରାଜ୍ଞାପକ ଓ ବ୍ୟଞ୍ଜନ
छिटकनी ବର୍ଣ୍ଣର ମୁଣ୍ଡ ଉପରେ ଥିବା ଅଂଶ 'ୈ' 'ୌ' ଏହି ଚିହ୍ନ—
(ଛାଟଣି—ଅନ୍ୟରୂପ) 2. The whiplike portion of the 'ଐ' and 'ଔ'.

୩ । ଛାଟ ୩ (ଦେଖ)
3. Chhāṭa 3 (See)

ଅଶ୍ୱଙ୍କୁ ସାରଥି କଲେ ଛାଟଣି ପ୍ରହାର । ରାଧାନାଥ ।

**ଛାଟଦେବା**—ଦେ. କ୍ରି.—ସରୁ ଯଷ୍ଟି ଦ୍ୱାରା ପ୍ରହାର କରିବା—
Chhāṭa debā To whip with a slender twig or cane.
ছাটমারা
(ଛାଟ ପକାଇବା; ଛାଟ ମାରିବା—ଅନ୍ୟରୂପ)

**ଛାଟ ମାରିବା**—ଦେ. କ୍ରି.—୧ । ସରୁ ଯଷ୍ଟି ଦ୍ୱାରା ପ୍ରହାର କରିବା—
Chhāṭa māribā 1. To whip with a slender twig or cane.
୨ । ପବନ ପ୍ରଭାବରୁ ବର୍ଷାଜଳ ତିର୍ଯ୍ୟକ୍‌ଭାବରେ ଘର ବା ପିଣ୍ଡା ମଧ୍ୟକୁ ବରଷିବା—2. To rain slantingly or obliquely (due to wind).
ଦେ. ବି.—ଅନ୍ଧାର ଛାଟ ମାରିବା; ଅପସ୍ମାର ରୋଗ ଆକ୍ରମଣ କରିବା—Being attacked with a fit of epipepsy.

**ଛାଟି**—ପ୍ରାଦେ. (ସମ୍ବଲପୁର) ବି.—୧ । ବଡ଼ ଦଉଡ଼ି—
Chhāti 1 Big or thick rope.
୨ । କୂଅରୁ ପାଣି କାଢ଼ିବା ଦଉଡ଼ି—2. A rope used in drawing water from wells.

**ଛାଟିଆ**—ଦେ. ବି.—୧ । ଚୌକିଆ; ପାଇକ ( ଏମାନେ ପହରା ଦେବା
Chhāṭia ପାଇଁ ହାତରେ ବେତ ଧରି ଥିବାରୁ) —1. A watchman (who holds a stick.

କେ ବୋଇଲେ କାମ ବା ଛାଟିଆ ହୋଇଛ ।
ନୋହିଲେ ରୋମାଳୀ ମର୍କଟ ଛାଟ ଅଛ—କୃଷ୍ଣସିଂହ. ମହାଭାରତ ବନ ।

୨ । ଗ୍ରାମ ଚଉକିଦାର—2. Village-watchman

ଗାଁ ଛାଟିଆ ସକ୍ରିଆ ଜେନା ପାଣ୍ଡିଙ୍କୁ ଏତଲା ଦେବାକୁ ଧାଇଁଲା ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

୩ । ବେତ୍ରଧାରୀ ଶାନ୍ତିରକ୍ଷକ—3. A peon who maintains peace in a crowd by holding a stick.

୪ । ଅତି ଛୋଟ ଯଷ୍ଟି (ଛାଟ ଠାରୁ ସାନ)—
4. A very small whip.

ଦେ. ବିଣ.—ଯେ ଛାଟ ଧରି ଥାଏ—
One who holds a whip.

**ଛାଟିପିଟି**—ଦେ. ବିଣ.— ଛନ୍ନଛତ୍ର; ଅସ୍ତବ୍ୟସ୍ତ; ଛନ୍ଦଭଙ୍ଗ—
Chhāṭipiṭi Scattered; confused; pellmell.

ହଂସମାନେ ତା ଦେଖି ଭୟେ ଡେଣା ପିଟି,
ପଳାଇଲେ ଗିରି ଆଡରେ ଛାଟିପିଟି—କୃଷ୍ଣସିଂହ. ମହାଭାରତ. ବନ ।

ଦେ. କ୍ରି. ବିଣ.—ଇତସ୍ତତଃ—
Pell-mell; in a confused manner.

**ଛାଟିପିଟି ପଳାଇବା**—ଦେ. କ୍ରି.—୧ । ଭୟରେ ଛନ୍ନଛତ୍ର ହୋଇ
Chhāṭipiṭi paḻāibā ବାହାରି ଯିବା—1. To run away
(ଛାଟ ପିଟି ହୋଇ ପଳାଇବା—ଅନ୍ୟରୂପ) pell-mell in fright.

ଆଶ୍ରମ ଛାଡି ଛାଟ ପିଟି ପଳାଇଲେ—କୃଷ୍ଣସିଂହ. ମହାଭାରତ. ଅଦି ।

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚକ୍ରର ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ସଂଶ୍ଳିଷ୍ଟ ସ୍ଥାନରେ ୨ ବା ୧ ଚକ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷ' ନ ମିଳିଲେ 'କ୍‌ଷ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗା' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

୨ । ଅତି ଶୀଘ୍ର କୌଣସି ସ୍ଥାନ ତ୍ୟାଗ କରିବା—
2. To leave a place in hot haste.

**ଛାଟିପିଟି ହେବା**—ଦେ. କ୍ରି—୧ । କଷ୍ଟର ଆଧିକ୍ୟ ଯୋଗୁଁ ଭୂମିରେ Chhāṭipiṭi hebā ହାତ ଗୋଡ଼ ଇତସ୍ତତଃ କଚାଡ଼ିବା— 1. To struggle violently on the ground with the arms and legs.

୨ । ଛିନ୍ନ ଭିନ୍ନ ହେବା; ଅସ୍ତବ୍ୟସ୍ତ ହେବା—
2. To be routed; to become confused.
(ଯଥା—ସେମାନେ ଛାଟିପିଟି ହୋଇ ପଳାଇଲେ ।)

**ଛାଟିବା**—ଦେ. କ୍ରି.—(ସଂ. କ୍ଷିପ୍, ପ୍ରା. ଛଟ୍ଟ)—୧ । ଅଙ୍ଗାଦି ବିକ୍ଷେପ Chhāṭibā କରିବା—1. To throw about one's limbs.
ଛିଟକା ୨ । ଛାଟିଆଡ଼ ଦେବା; ନିକ୍ଷେପ କରିବା—
**छिड़कना** 2. To throw with a jerk.
(ଛଟାଇବା—ଣିଜନ୍ତ)

୩ । କାଦୁଅ ଭୂମିରେ ଶସ୍ୟ-ବୀଜ (ବିହନ) ଆଦି ବଳପୂର୍ବକ ବୁଣିବା—3. To jerk out seeds into a muddy field.

୪ । ବଳପୂର୍ବକ ଝିଙ୍କିବା—
4. To snatch away with a jerk.
ଖଣ୍ଡେ କାଟି ନେଲ ମାଦଳଜ ସକ୍ୟ
ଖଣ୍ଡେ ଛାଟିନେଲେ ଖଙ୍ଗ । ଲୁକାଙ୍ଗ. ଗୀତଲହରୀ ।

୫ । ବନଶୀ ବା ଦଉଡ଼ି ଆଦି ଦ୍ୱାରା ମାଛ ଆଦିକୁ ଉପରକୁ ଝିଙ୍କି ଆଣିବା—5. To bring up with a jerk.
କଶୋଗଙ୍କର ମନ ମୀନକୁ ଏ ବଚନ-ନିଷ ବଡ଼ୀଶ ଲଠି ଛାଟିଲ ରେ ।
କବିସୂର୍ଯ୍ୟ. ସଙ୍ଗୀତ ।

୬ । (କାନ୍ଥରେ ମାଟି) ଲେସିବା; ତିର୍ଯ୍ୟକ୍ ଭାବରେ କୌଣସି **छोपना** ବସ୍ତୁକୁ ( ଯଥା—କାଦୁଅ ବା ଗୋବର ) ଅନ୍ୟ ବସ୍ତୁର ( ଯଥା—କାନ୍ଥର ) ଦେହକୁ ଫୋପାଡ଼ିବା—
6. To throw mud etc obliquely.

छाँटा ୭ । ( ସଂ. ଛେଦନ; ଖଣ୍ଡନ ) ( ଗଛର ଡାଳକୁ ) ଅଗ ଅଡ଼ି **छाँटना** ସମାନ କରି କାଟିବା—
7. To prune ( the branches of a tree ).

୮ । ମୁଣ୍ଡର ବାଳ କଚୁଡ଼ିବା; ଛାଣ୍ଟିବା—
8. To crop ( the hair ).

**ଛାଟି ହୋଇ ପଡ଼ିବା**—ଦେ. କ୍ରି—ଜୋରରେ ସହିତ ଲୁଲାଇ ହୋଇ କଚାଡ଼ି Chhāṭi hoi paṛdibā ହୋଇ ପଡ଼ିବା—To be thrown ଛିଟକେପଡ଼େଯାଓୟା down or hurled to the **छिटककरगिरना** ground with a jerk.

**ଛାଟେ**—ଦେ. ବି—୧ । ଖଣ୍ଡିଏ ଛାଟ ବା ବେତ— Chhāṭe 1. A piece of whip.
(ଛାଟେକ—ଅନ୍ୟରୂପ) ୧ । ଛାଟରେ ଏକ ଥର ମାତ୍ର ପ୍ରହାର—
2. A cut with a whip.

ଗୃହ ଓଡ଼ାଙ୍କ ଧରିବାର ବେଳେ
ଓଟ୍ଟାଏ ଛାଟେ ପିଟି ଦେଲେ ଚଳେ । ଗଳାବନ୍ଧ. ସ୍ୱ ।

**ଛାଟେଇ**—ଦେ. ବି—ଓଡ଼ିଶାର ଚଷା ( ଶୂଦ୍ର ) ମାନଙ୍କର ବଂଶୋପାଧି-Chhāṭei ବିଶେଷ—A family-title amongst Oriya (ଛାଟୋଇ—ଅନ୍ୟରୂପ) cultivator.

**ଛାଟେଣି**—ଦେ. ବି—୧ । ହାତ ମୋଜା; ଦସ୍ତାନା; ହସ୍ତାବରଣ— Chhāṭeṇi 1. Gloves.
ଛାଟେଣିଙ୍କ ବେକ କରରେ ବାନ୍ଧିଲେ—କୃଷ୍ଣସିଂହ, ହୋଗରଥ ।

୨ । ଛୋଟ ଛାଟ ବା ଚାବୁକ—
2. Whip or small stick.

୩ । ଦୂରକୁ ଟେକା ବା ବାଂଟୁଳି ଫୋପାଡ଼ିବା ନିମନ୍ତେ ବ୍ୟବହୃତ ଦଉଡ଼ି, ଛାଟକଣି—3. Slings; a string with which pellets are hurled to a long distance.

୪ । ଏକପ୍ରକାର ସରୁ ଓ ଲମ୍ବ କଳା ସାପ; ପାଣିଛାଟା—
4. A species of slender and long serpent.

[ ଦ୍ର—ଏଜାତୀୟ ସାପମାନେ ଜୟପୁରର ନବରଙ୍ଗପୁର ନିକଟ ଇନ୍ଦ୍ରାବତୀ ନଦୀ ଓ କଳାହାଣ୍ଡିର ଓଲକଣା କୂଳରେ ବାସ କରି ରହନ୍ତି । ଏମାନେ ଲମ୍ବରେ ୩୦।୪୦ ହାତ ପର୍ଯ୍ୟନ୍ତ ବଢ଼ନ୍ତି ଓ ଆଙ୍ଗୁଠିପରି ସରୁ ହୁଅନ୍ତି । ୧୦।୧୨ ହାତ ଦୂରରୁ ଗୋରୁ ଓ ମନୁଷ୍ୟଙ୍କୁ ଲାଙ୍ଗୁଡ଼ ଛାଟି, ଝିଙ୍କିଆଣି ସେମାନଙ୍କ ନାକଉପରେ ୨ଟି ଶିଙ୍ଗ ପୂରାଇ ପଶି ମସ୍ତିଷ୍କରୁ ଦହି ଖାଇଯାଆନ୍ତି । ଏମାନଙ୍କ ମୁଣ୍ଡ କାଣିକଉଡ଼ି ପରି । ଏମାନେ ଜୀବଙ୍କୁ ପାଣିରେ ବୁଡ଼ାଇ ମାରନ୍ତି । ]

**ଛାଡ଼**—ଦେ. ବି. ( ସ୍ତୃ ଧାତୁ, ଣିଚ୍=ସାର ଧାତୁରୁ ସାରଣ=ଦୂରୀକରଣ, Chhāṛḍa ସଂ. ଯୋରଣ=ପରିତ୍ୟାଗ, ହି. ଶବ୍ଦସାଗର )— ଛାଡ଼, ହଡ଼ା, ଛାଡ଼ନ ୧ । ବିଚ୍ଛେଦ—1. Separation.
**छोड़ना** ୨ । ବର୍ଜନ; ତ୍ୟାଗ—
2. Giving up; relinquishment.
୩ । ଦୂରୀକରଣ—3. Abandonment.
୪ । ଖଲାସ; ମୁକ୍ତି—4. Release.
୫ । ଦେୟ ଆଦି ଦେବା ଦାୟିତ୍ୱରୁ ମୁକ୍ତି; ରଫାଦି, ମାଫ୍—
5. Remission.
୬ । ଆଦେଶପତ୍ର—6. Letter of authority; license.
୭ । ଜ୍ୱର ଆଦି ଦେହରୁ ଛାଡ଼ିଯିବା—
7. Remisson of a fever.
୮ । ମୁକ୍ତି ଦେବାର ପତ୍ର; ପାଉଣା ଆଦି ଦାୟିତ୍ୱ ସମ୍ବନ୍ଧୀୟ ମୁକ୍ତିପତ୍ର; ଫାରିକତି—8. Letter of remission or release; deed of full satisfaction
୯ । ଛାଡ଼ ଚିଠି—9. A pass for the free passage of an article.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ନ | ଊ | ର୍, ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ, ଷ | କ୍ଷ | ଂପୂ | ଡଅ | ଣ୍ଣ |
| ୨ | ଈ | ଉ | ରୁ | ଲୃ | ପ୍ତେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ତ |

୧୦ । କୌଣସି ବ୍ୟକ୍ତିକୁ କୌଣସି ରାଜ୍ୟର ସୀମା ଟପିବା ବା ଅନ୍ୟ ରାଜ୍ୟରେ ବିଚରଣ କରିବା ନିମନ୍ତେ ଦିଆଯିବା ଅନୁମତିପତ୍ର—10. Pass port.

୧୧ । ଭଟ୍ଟା; ପଡ଼ିଆ ଜୁଆର—11. Ebb-tide

୧୨ । ବିରତି; ବିରାମ—12. Cessation, stoppage.

୧୩ । ବିଶ୍ରାମ; ଫୁରୁସତ୍—13. Rest; respite.

୧୪ । ଅନ୍ତରାଳ; ବ୍ୟବଧାନ—
14. Interval; space between two things.

୧୫ । କାର୍ଯ୍ୟ ବନ୍ଦ—15 Cessation of work.

୧୬ । ତାଲିକା ଆଦିରେ ଅନ୍ତର୍ଭୁକ୍ତ ନ ହେବା—
16. Omission from a list.
( ଯଥା—ତାଙ୍କ ନାମ ତାଲିକାରୁ ଛାଡ଼ ହେଲା । )

**ଛାଡ଼ଖାଇ**—ଦେ. ବି—କାର୍ତ୍ତିକ ପୂର୍ଣ୍ଣିମାର ପର ଦିବସ—The day
Chhārdakhāi after the full-moon of Kārttika.
[ ଦ୍ର—ହବିଷ୍ୟାଳିମାନେ କାର୍ତ୍ତିକମାସଯାକ ବ୍ରତ କରିଥିବା ଯୋଗୁଁ ଯେଉଁ ଯେଉଁ ଖାଦ୍ୟ ଛାଡ଼ିଥାଆନ୍ତି, ତାହା 'ଛାଡ଼ଖାଇ' ଦିନ ଖାଆନ୍ତି । ]

**ଛାଡ଼ଖାଇ ବାଡ଼ି**—ଦେ ବି—କାର୍ତ୍ତିକ ଶେଷରେ ହେବା ହଇଜା;
Chhārdakhāi bārdi ଅସମୟରେ ହେବା ହଇଜା—
Cholera breaking out untimely.

**ଛାଡ଼ଚିଠି**—ଦେ. ବି—୧ । ଯେଉଁ ରାଜକୀୟ ଆଦେଶପତ୍ର ଦେଖାଇଲେ
Chhārdachithi ପ୍ରହରୀମାନେ ନିର୍ଦ୍ଦିଷ୍ଟ ସୀମାର ବାହାରକୁ ମନୁଷ୍ୟ
ଛାଡ଼ଚିଠି ବା କୌଣସି ନିଷିଦ୍ଧ ପଦାର୍ଥକୁ (ଯଥା—ଲୁଣ, ଅବକାରୀ
**ଛାଡଚିଠ୍ଠୀ** ଜିନିଷ ଇତ୍ୟାଦି ) ଯିବାକୁ ବାଧା ଦିଅନ୍ତି ନାହିଁ—
1 A pass; pass-port.
୨ । ରାଜାଙ୍କ ଅଟକ ଜଙ୍ଗଲରୁ କାଠ ଆଦି ଅବାଧରେ ଆଣିବା ପାଇଁ ଲୋକଙ୍କୁ ଦିଆଯିବା ଆଦେଶପତ୍ର—2. A pass or license given to a person to bring wood from reserved forests; a permit.

**ଛାଡ଼ ଜଙ୍ଗଲ**—ପ୍ରାଦେ. ( ଗଡ଼ଜାତ ) ବି—ଯେଉଁ ସରକାରୀ ବା ରାଜକୀୟ
Chhārda jangala ଜଙ୍ଗଲରୁ କାଠ ଆଦି ଆଣିବାକୁ ପ୍ରଜାମାନଙ୍କୁ
(ଅଟକ ଜଙ୍ଗଲ—ବିପରୀତ) ଅନୁମତି ଆଣିବାକୁ ପଡ଼େ ନାହିଁ—
The Government or state forest from which the subjects are free to bring wood.

**ଛାଡ଼ତକ**—ବୈଦେ. ବି—ଘୋଡ଼ାର ଏକାବେଳକେ ଚାରି ଗୋଡ଼ରେ
Chhārdataka ଦଉଡ଼ିବା—Running of a horse on all
**सरपट** fours; gallop.

**ଛାଡ଼ପଡ଼ିବା**—ଦେ. କ୍ରି.—ବାଦ୍ ଯିବା—
Chhārda pardibā To be remitted.

**ଛାଡ଼ପତ୍ର**—ଦେ. ବି. ( ସଂ. ବିସର୍ଜ୍ଜନ+ପତ୍ର )—
Chhārdapatra ୧ । ସ୍ୱାମୀ ସ୍ତ୍ରୀକୁ ପରିତ୍ୟାଗ କରି ବୈବାହିକ ବନ୍ଧନରୁ
ଛାଡ଼ପତ୍ର ଛେଦନ କରିବାର ସମ୍ବନ୍ଧସୂଚକ ପତ୍ର—
**तलाकनामा; छाड़चिट्ठि** 1. A husband's deed of divorce
(ଛାଡ଼ପତର—ଅନ୍ୟରୂପ) given to a discarded wife.
୨ । କୌଣସି ବ୍ୟକ୍ତି ବା ବସ୍ତୁକୁ ବାଟରେ ପ୍ରହରୀ ଅଟକାଇ ନ ରଖି ଛାଡ଼ି ଦେବାର ରାଜକୀୟ ଆଦେଶପତ୍ର—
2. A pass, pass-port.
୩ । କୌଣସି ସମ୍ପତ୍ତିରୁ ଦାବୀ ଓ ସ୍ୱତ୍ୱ ପରିତ୍ୟାଗସୂଚକ ଦଲିଲ—3. Deed of relinquishment or release.
୪ । ସମସ୍ତ ଦେୟ ପରିଶୋଧ ହୋଇଥିବାର ନିଦର୍ଶନପତ୍ର ବା ରସିଦ—4. A receipt of full satisfaction; a receipt in full.

**ଛାଡ଼ବଡ଼**—ଦେ ବି. ( ସହଚର )—୧ । ଖଜଣା ଆଦିର ମାଫ୍—
Chhārdabarda 1. Remission.
୨ । ବିସର୍ଜ୍ଜନ—2. Relinquishment ( Howells ).

**ଛାଡ଼ବାଡ଼**—ଦେ. ବି. ( ସହଚର ଶବ୍ଦ, ଧ୍ୱନ୍ୟନୁକାରୀ ନିରର୍ଥକ ଦ୍ୱିତୀୟ
Chhārdabārda ପଦ)—୧ । ଛଡ଼ାଛଡ଼ି; ପରସ୍ପରଙ୍କ ମଧ୍ୟରେ
(ଛାଡ଼ମାଡ଼—ଅନ୍ୟରୂପ) ବିଚ୍ଛେଦ—1. Mutual separation.

ବୁଢ଼ ଜଣଙ୍କର ନିମିତ୍ତେ ଛଡବାଡ଼ ଥାଏ ନାହିଁ ।
ଫକୀରମୋହନ. ଛମାଣଅଠଗୁଣ୍ଠ ।

୨ । ପରସ୍ପର ମଧ୍ୟରେ ସମ୍ପର୍କରାହିତ୍ୟ—
2. Cessation of mutual connection or intercourse.
( ଯଥା—ତାର ଆମର ଆଜକୁ କୋଡ଼ିଏ ବର୍ଷ ହେଲା ଖିଆପିଆ, ନିମନ୍ତ୍ରଣପତ୍ର, ତାକଗ୍ରହଣରେ ଛାଡ଼ବାଡ଼ ହୋଇ ଗଲାଣି ।)
ଦେ. ବିଣ—ପରସ୍ପରଠାରୁ ପୃଥକ ବା ବିଚ୍ଛିନ୍ନ—
Separated from each other.

**ଛାଡ଼ଯିବା**—ଦେ. କ୍ରି—(ଅକର୍ମକ) ପରିତ୍ୟକ୍ତ ହେବା—
Chhārdajibā To be given up
(ଛାଡ଼ ହେବା—ଅନ୍ୟରୂପ) ( ଯଥା—ଏବେ ସେ ଦୁଃଖ ପାଇ ଗଲେଣି କିନ୍ତୁ ବାପାଙ୍କ ଅମଳର ଚଙ୍ଗଚାଙ୍ଗ ଛାଡ଼ ଯାଇ ନାହିଁ । )

**ଛାଡ଼ି**—ଦେ. ଅ. (ଛାଡ଼ିବା କ୍ରିୟାର ଅସମାପିକାରୂପ ଅବ୍ୟୟରୂପେ ବ୍ୟବହୃତ)
Chhārdi ଛଡ଼ା; ବ୍ୟତୀତ—Except.
ଛେଡ଼େ
**छोड़कर**

**ଛାଡ଼ି ଆସିବା**—ଦେ. କ୍ରି—୧ । କୌଣସି ବସ୍ତୁ ବା ବ୍ୟକ୍ତିକୁ କୌଣସି
Chhārdi āsibā ସ୍ଥାନରେ ଭୁଲ କ୍ରମେ ପକାଇ ଦେଇ
ଛେଡ଼େଆସା ଚାଲି ଆସିବା—1. To come away
**छोड़आना** by leaving a person or thing some where by oversight.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ।। ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୨ । କୌଣସି ସ୍ଥାନକୁ ଆସୁଥିବା କୌଣସି ବ୍ୟକ୍ତି ସଙ୍ଗେ ସହଚର ରୂପେ ଆସିବା—2. To accompany a person coming to some place.
( ଯଥା—ଭାଇ ଭଉଣୀଙ୍କୁ ଶ୍ୱଶୁରଘରକୁ ଛାଡ଼ି ଆସିଥିଲା । )

୩ । ବାଟରେ କୌଣସି ସ୍ଥାନ ବା ବସ୍ତୁକୁ ଅତିକ୍ରମ କରି ଚାଲି ଆସିବା—3. To come by leaving some place on the road.
( ଯଥା—ଆମେ ୩ କୋଶ ହେଲା ଭୁବନେଶ୍ୱର ମନ୍ଦିର ଛାଡ଼ି ଆସିଲେଣି । )

**ଛାଡ଼କରି**—ଦେ. ଅ—୧ । ଅନର୍ଗଳ ଭାବରେ; ପର୍ଯ୍ୟାପ୍ତ ପରିମାଣରେ—
Chhārdikari 1. Abandontly.

ଏ ଅଞ୍ଚଳରେ ଦିନ ରାତି ଦିନ ହେଲା ମେଘ ଝପର ଝପର ଲାଗିଛି କିନ୍ତୁ ବର୍ଷା ଛାଡ଼ି କରି ହେଉ ନାହିଁ । ଗଡ଼ଜାତବାସିନୀ ୨୨।୭।୨୯ ।

୨ । କୋଷ୍ଠବଦ୍ଧ ନ ହୋଇ ତରଳ ଭାବରେ (ଝାଡ଼ା ହେବା)—2. ( passing of stools ) Copiously.
( ଯଥା—କୋଷ୍ଠ କାଠିନ୍ୟ ମୋର ଗୋଟିଏ ପ୍ରଧାନ ରୋଗ, ଜୁଲାପ ନ ଖାଇଲେ ମୋର ଛାଡ଼ି କରି ପୋଖରୀ ହୁଏ ନାହିଁ । )

୩ । ଛାଡ଼ି ( ଦେଖ )
3. Chhārdi ( See )

**ଛାଡ଼ିଛାଡ଼ି**—ଦେ. କ୍ରି. ବିଣ—୧ । ମଝିରେ କିଛି କିଛି ସମୟ ବ୍ୟବଧାନ ଥାଇ—1. With intermission; at short intervals.
Chhārdichhārdi
ଛେଡ଼େ ଛେଡ଼େ
छोड़छोड़कर
( ଯଥା—ଆଜି ଦିନଯାକ ଛାଡ଼ି ଛାଡ଼ି ବର୍ଷା ହେଉଛି । )

୨ । ଛାଡ଼କରି ୨ ( ଦେଖ )
2. Chhārdikari 2 ( See )
( ଯଥା—ଆଜି ଦିନକଯାକ ଛାଡ଼ ଛାଡ଼ ବର୍ଷା ହେଉଛି । )

**ଛାଡ଼ିଛାଡ଼ି ଯିବା**—ଦେ. କ୍ରି—୧ । କ୍ରମଶଃ ଅଦୃଶ୍ୟ ହେବା—
Chhārdichhārdi jibā 1. To begin to disapper.
ଛେଡ଼େ ଛେଡ଼େ ଯାଓୟା ( ଯଥା—ଗ୍ରହଣ ଚନ୍ଦ୍ରଙ୍କଠାରୁ ଛାଡ଼ି ଛାଡ଼ି ଯାଉଛି । )

୨ । କୌଣସି ପଦାର୍ଥରୁ ରଙ୍ଗ ବା ଆଚ୍ଛାଦନ ବା ଛାଲି ସ୍ଥାନେ ସ୍ଥାନେ ଉଠିଯିବା—
2. To scale of; to fade gradually.

**ଛାଡ଼ିଛୁଡ଼ି ଦେବା**—ଦେ. କ୍ରି. (ଛାଡ଼ିବା କ୍ରିୟାର ଅସମାପିକା ରୂପ ସଙ୍ଗେ ଧ୍ୱନ୍ୟନୁକାରୀ ନିରର୍ଥକ ଛୁଡ଼ିବା କ୍ରିୟାର ଯୋଜନା)—୧ । ଅବ୍ୟାହତି ଦେବା—
Chhārdichhurdi debā
ଛେଡ଼େଛୁଡ଼େ ଦେଓୟା
छोड़छाड़देना 1. To remit; to grant a receipt.

୨ । ସମ୍ପୂର୍ଣ୍ଣରୂପେ ତ୍ୟାଗ କରିବା—
2. To give up or abandon completely.

**ଛାଡ଼ିଣ**—ଦେ. (ପଦ୍ୟ) ଅ—ଛଡ଼ା; ବ୍ୟତୀତ—
Chhārdina Except; without.
ଛେଡ଼େ
छोड़कर

ସୁଦ୍ଧ ଛାଡ଼ିଣ ଯାହା ମାଗିବ ରାଜନ । କୃଷ୍ଣସିଂହ. ମହାଭାରତ ବନ ।

**ଛାଡ଼ିଦେବା**—ଦେ. କ୍ରି—୧ । ଛାଡ଼ିବା ୧. ୨ (ଦେଖ)
Chhārdidebā 1. Chhārdibā 1. 2 (See)
ଛେଡ଼େ ଦେଓୟା
छोड़ देना

ନ ବସି ଛାଡ଼ି ଦେଲା ତାର ନିଜ ଘର । କୃଷ୍ଣସିଂହ. ମହାଭାରତ. ବନ ।

୨ । କୌଣସି ବ୍ୟକ୍ତିକୁ ନେଇ କୌଣସି ବ୍ୟକ୍ତି ନିକଟରେ ବା କୌଣସି ସ୍ଥାନରେ ରଖିଦେଇ ଚାଲିଆସିବା—
2. To leave a person at some place or with some person.

୩ । ସ୍ଥାନାନ୍ତରକୁ ଗମନୋଦ୍ୟତ କୌଣସି ବ୍ୟକ୍ତିଙ୍କୁ ବାଟ ବଳାଇ ଦେବା—3. To see a person off.
(ଯଥା—ଛୁଟି ନେଇ ବିଲାତକୁ ଯାଉଥିବା ମାଜିଷ୍ଟ୍ରେଟଙ୍କୁ ଆମ୍ଭେମାନେ ଷ୍ଟେସନରେ ଛାଡ଼ି ଦେବାକୁ ଯାଇଥିଲୁଁ ।)

୪ । ଗୋରୁ ଛେଳିଆଦିଙ୍କୁ ରକ୍ଷକରୂପେ ଚରାଇବା—
4. To let cattle etc graze.
( ଯଥା—ଗୋରୁ ରଖୁଆଳ ଗୋରୁଙ୍କୁ ଛାଡ଼ିଦେଇ ଗଛ ଛାଇରେ ବସିଛି । )

**ଛାଡ଼ିପଳାଇବା**—ଦେ. କ୍ରି—ଛାଡ଼ିଯିବା ୧. ୨ (ଦେଖ)
Chhārdipalāibā Chhārdijibā 1. 2 (See)

ଭୀମ ପରାକ୍ରମ ଦେଖିଣ କୁରୁମାନେ
ଅଛି ଛାଡ଼ି ପଳାନ୍ତୁ ସୁଦ୍ଧ ଭୟ ମନେ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।

**ଛାଡ଼ିବା**—ଦେ. କ୍ରି. ( ସଂ. ଛର୍ଦ୍ଦ ଧାତୁ; ଭୁଲ—ପାଲ, ଛଡ୍ଡେଇ; ସଂ. ସାରଣ; ସଂ. ସର୍ଜ୍ଜନ; ସଂ. ଛୋରଣ=ପରିତ୍ୟାଗ)—
Chhārdibā
ଛାଡ଼ା
छोड़ना
୧ । (ସକର୍ମକ) ତ୍ୟାଗ କରିବା; ବର୍ଜନ କରିବା—1. To abandon; to give up.
(ଛଡ଼ାଇବା—ଣିଜନ୍ତ)
(ଯଥା—ଭିକନନ୍ଦନ କଷ୍ଟ ପାଇଁ ସେ କାଲି ପ୍ରାଣ ଛାଡ଼ିଲା ।)

୨ । (ସକର୍ମକ) (ଅମୁକ ସଙ୍ଗେ) ସମ୍ପର୍କ ତ୍ୟାଗ କରିବା; ସମ୍ବନ୍ଧ ତୁଟାଇବା—2. To cut off connection with; to cease to have to do with; to leave.
( ଯଥା—ମୁଁ ସଂସାର ଛାଡ଼ିଲିଣି । )

୩ । (ସକର୍ମକ) (ଅମୁକର) ସଙ୍ଗରୁ ବିଚ୍ଛିନ୍ନ ହେବା; ସଙ୍ଗଚ୍ୟୁତ ହେବା—3. To be separated from.
(ଯଥା—ମୁଁ ଗୃହମାସ ହେଲା ବାପ ମାଆଙ୍କୁ ଘରେ ଛାଡ଼ି ବିଦେଶ ଅଛି ।)

୪ । (ସକର୍ମକ) କୌଣସି କାର୍ଯ୍ୟରୁ ବିରତ ହେବା—
4. To cease to do a thing; to discontinue.
(ଯଥା—ମୁଁ ତୁମ ଡାକ ଶୁଣି ଭାତଖିଆ ଛାଡ଼ି ଉଠି ଆସିଲି ।)

| ୧ | ଇ | ଉ | ଋ,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଓଁ | ନ୍ଁ |

୫ । (ସକର୍ମକ) ପାଶରୁ ଅନ୍ତର ହେବା—
5. To go away from.
(ଯଥା—ଛଅମାସ ହେଲା ବନ୍ଧୁଙ୍କୁ ଛାଡ଼ି ମୋ ପ୍ରାଣ ଚଞ୍ଚଳ ହେଉଅଛି ।)

୬ । (ଅକର୍ମକ) ଫଳତଃ (ଅନ୍ୟଠାରୁ) ଭିନ୍ନ ବୋଲି ଜଣା ପଡ଼ିବା—6. To be found to differ from.
(ଯଥା—ଏ ସୁନା ମୁଦିରୁ ସେ ସୁନାମୁଦି ଗୁରୁତ୍ୱଗୁଣରେ ଛାଡ଼ୁଛି ।)

୭ । (ସକର୍ମକ) (କୌଣସି ଅଭ୍ୟାସ) ତ୍ୟାଗ କରିବା; ନିବୃତ୍ତ ହେବା—7. To give up (a habit).

୮ । (ସକର୍ମକ) (ଜୀବନର ବା ଅନ୍ୟ ଆଶା) ପରିତ୍ୟାଗ କରିବା—8. To give up (every hope of life or of any other matter).
(ଯଥା—ସବୁ ବଇଦମାନେ ସେ ମଲୁକୁ ଛାଡ଼ି ବସିଲେଣି ।)

୯ । (ସକର୍ମକ) ତତ୍ତ୍ୱାବଧାନରେ ରଖିବା, ଜଗିବା; କୌଣସି ଆଡ଼କୁ ଯିବାକୁ ଦେବା—9. To let (some thing) to proceed in a certain direction.

ଦଇବ ଦଇଛି ମଣିଷ ଗାଇ
ଯେଣିକି ଛଡଇ ତେଣିକି ଯାଇ । ଚଗ ।

୧୦ । କୌଣସି ସ୍ଥାନରେ କୌଣସି ଶିଶୁ ବା କୌଣସି ବସ୍ତୁକୁ ରଖିଦେଇ ସେ ସ୍ଥାନ ପରିତ୍ୟାଗ କରିବା; ରଖିଯିବା—
10. To leave a place after leaving ones relatives or things.
(ଯଥା—ସେ ଛଅଗୋଟି ଶିଶୁସନ୍ତାନ ଛାଡ଼ି ଇହଜଗତ ପରିତ୍ୟାଗ କଲେ ।)

୧୧ । କୌଣସି ସ୍ଥାନ ତ୍ୟାଗ କରି ସ୍ଥାନାନ୍ତରକୁ ଯିବା—
11. To go away from a place.
(ଯଥା—ମାଜିଷ୍ଟ୍ରେଟ୍ ସାହେବ ୬ ମାସ ପାଇଁ କଟକ ଛାଡ଼ିଲେ ।)

୧୨ । (ଦେହରୁ ଜ୍ୱରଆଦି ରୋଗ) ଓହ୍ଲାଇବା—
12. To leave (said of a disease).
(ଯଥା—ସନ୍ଧ୍ୟାବେଳେ ତାଙ୍କୁ ଜର ଛାଡ଼ିଗଲା)

୧୩ । ସ୍ଥାନାନ୍ତରକୁ ଯିବା ପାଇଁ ଅନୁକୂଳ କରିବା; ନିର୍ଦ୍ଦିଷ୍ଟ ସ୍ଥାନରୁ ପ୍ରସ୍ଥାନ କରିବା—
13. To start or depart from a place.
(ଯଥା—ଜାହାଜ ଘଣ୍ଟାଏ ପୂର୍ବରେ ବନ୍ଦର ଛାଡ଼ିଲା)

୧୪ । ନ ରୋକିବା; ଅସଂଯମନ; ଶିଥିଳ କରିବା—
14. To slacken control; not to restrain.
(ଯଥା—ଘୋଡ଼ସବାର ଘୋଡ଼ାକୁ ଛାଡ଼ିଦେବାରୁ ଘୋଡ଼ା ଖୁବ୍ ଜୋରରେ ଦଉଡ଼ୁଛି)

୧୫ । ଯୋଡ଼ ଖୋଲିଯିବା; ଫିଟିଯିବା; ଅବଦ୍ଧ ଶିଥିଳ ହେବା—
15. To give way.
(ଯଥା—ପୁରୁଣା ଡଙ୍ଗାର ତଳପଟା ଗୁଡ଼ିକ ଛାଡ଼ି ଗଲାଣି)

୧୬ । କୌଣସି ଖାଦ୍ୟ ନ ଖାଇବା—16. To give up taking any food; to discontinue taking (food).
(ଯଥା—ପିଲା ୬ ମାସ ହେଲା ମାଆ ଦୁଧ ଛାଡ଼ିଲାଣି; ମଲୁ ଦୁଇ ମାସ ହେଲା ଆହାର ଛାଡ଼ିଲାଣି ।)

୧୭ । ଯିବାକୁ ଅନୁମତି ଦେବା—
17. To let go; to permit to go out.
(ଯଥା—ପଣ୍ଡିତେ ମୋତେ ଖାଇବାପାଇଁ ଛାଡ଼ିଲେ ନାହିଁ ।)

୧୮ । (ସକର୍ମକ) ବ୍ରତଧାରଣପୂର୍ବକ କୌଣସି ନିର୍ଦ୍ଦିଷ୍ଟ ଖାଦ୍ୟବସ୍ତୁ ବର୍ଜନ କରିବା ବା ନ ଖାଇବା—18. To abstain from taking a particular food by observing a religious vow.

୧୯ । (ସକର୍ମକ) ବନ୍ଧନରୁ ଅବ୍ୟାହତି ଦେବା; ମୁକୁଳାଇ ଦେବା; ମୁକ୍ତି ଦେବା—19. To release from restraint.

ଅର୍ଜୁନ ବୋଇଲେ ଯୁଧିଷ୍ଠିର ବୋଲେ,
ଛାଡ଼ିଦିଅ ଏବେ ଏହାଙ୍କୁ ତୁମ୍ଭେ ଭଲେ । କୃଷ୍ଣସିଂହ. ମହାଭାରତ. ବନ ।

୨୦ । (ସକର୍ମକ) କ୍ଷମା ଦେବା; ମାର୍ଜନା କରିବା—
20. To pardon; to excuse.
(ଯଥା—ଏହି ଥରକ ତୋର ପ୍ରଥମ ଦୋଷ ମୁଁ ଛାଡ଼ି ଦେଲି; ଏଣିକି ଆଉ ଛାଡ଼ିବି ନାହିଁ ।)

୨୧ । (ସକର୍ମକ) (ପଥ) ଉନ୍ମୁକ୍ତ କରିବା; ମେଲା କରିବା;—
21. To open.
(ଯଥା—ମତେ ବାଟ ଛାଡ଼ିଦିଅ, ମୁଁ ଯିବି ।)

୨୨ । (ସକର୍ମକ) ରିଆତି ଦେବା; ଛାଡ଼ି ଦେବା—
22. To remit.
(ଯଥା—ମହାଜନ ଖାତକଙ୍କୁ ଅଧେ ସୁଧ ଛାଡ଼ି ଦେଲେ ।)

୨୩ । (ସକର୍ମକ) ହାତରେ ବା କୋଳରେ ନ ଧରିବା—
23. Not to take in one's arms.
(ଯଥା—ଶିଶୁକୁ ଛାଡ଼ିଦିଅ, ସେ ଆପଣା ମନକୁ ଚାଲୁ ।)

୨୪ । (ସକର୍ମକ) ଅସାମୀକୁ ମକଦମାରୁ ଖଲାସ ଦେବା, ଅବ୍ୟାହତି ଦେବା—2. To acquit (an accused).
(ଯଥା—ହାକମ ମୁଦାଲାକୁ ଛାଡ଼ିବାର ରାୟ ଦେଲେ ।)

୨୫ । (ସକର୍ମକ) ବିଞ୍ଚି ଦେବା; ଖେଳାଇବା—
25. To let loose; to strew.
(ଯଥା—ଚଢ଼ଲମାଛ କୋରଡ଼ରେ ଅଣ୍ଡା ଛାଡ଼ିଛି ।)

୨୬ । (ସକର୍ମକ) ଭ୍ରମକ୍ରମେ ବାଦ୍ ଦେବା ବା ତାଲିକାଭୁକ୍ତ ନ କରିବା—26. To omit from a list by oversight.
(ଯଥା—ନିମନ୍ତ୍ରଣ-ତାଲିକାରୁ ଜଣେ ପ୍ରଧାନ ବ୍ୟକ୍ତିଙ୍କ ନାମ ମୁଁ ଛାଡ଼ି ଯାଇଥିଲି ।)

୨୭ । (ସକର୍ମକ) ଗୋରୁ ଆଦି ନ ଜଗିବା—
27. Not to tend or watch cattle.
(ଯଥା—ଗଉଡ଼ ଗାଈଗୁଡ଼ାକ ଛାଡ଼ିଦେଇ ମୋ ବଗିଚା ଚରାଇ ଦେଲା ।)

୨୮ । (ସକର୍ମକ) (ଉପଦେଶ ଆଦି) ଗ୍ରହଣ ନ କରିବା; ହିସାବରେ ନ ଆଣିବା—28. Not to take into account; to leave out of consideration.
ପୂର୍ବରୁ ତ ହିତକଥାଟି ଦେଲ ଛାଡ଼ି । କୃଷ୍ଣସିଂହ. ମହାଭାରତ. ବନ ।

୨୯ । (ସକର୍ମକ) ମନେ ନ ପକାଇବା; ଭୁଲିଯିବା—
29. To forget.
(ଯଥା—ପୁତ୍ରଶୋକ ଛାଡ଼ି ନ ଦେଲେ ବୃଦ୍ଧ ଅଳ୍ପଦିନେ ମରିଯିବ ।)

୩୦ । (ସକର୍ମକ) ତଳକୁ ଲମ୍ବାଇ ଦେବା—
3. To unfurl; to let down.
ବାଳ ଛାଡ଼ିଦିଅ ଭୂଇଁରେ ପଡ଼ୁ, ଲକ୍ଷେ ଚମ୍ପାଫୁଲ ଝଡ଼ୁ—ଗୀତ ।

୩୧ । (ଅକର୍ମକ) ଗତି ବନ୍ଦ ହୋଇଯିବା, ନିଷ୍ପନ୍ଦ ହେବା—
31. To cease to beat.
ପ୍ରକୃତ ଦେହରୁ ଜୀବନନାଡ଼ିକା ସହସା ଗଲାକି ଛାଡ଼ି । ରାଧାନାଥ ପାର୍ବତୀ ।

୩୨ । (ସକର୍ମକ) ତରଳ ପଦାର୍ଥ ବୋହିଯିବାର ଉପାୟ କରିବା; ତରଳ ବସ୍ତୁକୁ ଗତିବିଶିଷ୍ଟ କରାଇବା—
32. To let a liquid flow.
(ଯଥା—ଖଲାସୀ ଲିକ୍ ଗୁଡ଼ିକ ଖୋଲି ପାଣି ଛାଡ଼ିଲା ।)

୩୩ । ( ସକର୍ମକ ) ଘୋଡ଼ଦଉଡ଼ରେ ଘୋଡ଼ାମାନଙ୍କୁ ଖୁବ୍ ଜୋରରେ ଦଉଡ଼ାଇବାକୁ ଆରମ୍ଭ କରିବା; ଦଉଡ଼ାଇବା—
33. To start a horse in a race.
(ଯଥା—ଆଜି ଘୋଡ଼ଦଉଡ଼ରେ ତିନି ଜଣ ଘୋଡ଼ା ଛାଡ଼ି ଥିଲେ, କିନ୍ତୁ ଅଧବାଟରେ ଜଣେ ହଟି ରହିଗଲା ।)

୩୪ । କୌଣସି ବ୍ୟକ୍ତିକୁ ସ୍ଥାନାନ୍ତରକୁ ସଙ୍ଗରେ ନେଇ ସେଠାରେ ତାଙ୍କୁ ରଖି ସେଠାରୁ ଏକାକୀ ଫେରି ଆସିବା; ସ୍ଥାନାନ୍ତରରେ ରଖି ଚାଲି ଆସିବା—34. To take a person to some place and come back alone after leaving him there.
(ଯଥା— ଲକ୍ଷ୍ମଣ ସୀତାଙ୍କୁ ବନରେ ଛାଡ଼ି ଆସିଲେ ।)

୩୫ । (ଅଙ୍ଗର ଗ୍ରନ୍ଥି ଆଦି) ଶିଥିଳ ହେବା—
35. To become slack.
(ଯଥା—ଅଫିମ ଖାଇବା ବେଳ ଗଡ଼ିଯିବାରୁ ତା ହାତ ଗୋଡ଼ ଛାଡ଼ି ଯାଉଛି ।)

୩୬ । ଲିଭିଯିବା; ଅଦୃଶ୍ୟ ହେବା—
36 To fade; to disapaper.
(ଯଥା—ଏ ଲୁଗାରୁ ଏ ପକ୍କା ରଙ୍ଗ ଛାଡ଼ିବ ନାହିଁ ।)

୩୭ । ନିକ୍ଷେପ କରିବା—
37. To throw some thing down.
(ଯଥା—ସେ ଦୁଷ୍ଟ ବାଳୁତ ମୋ ଉପରକୁ କୁଳୁକୁଳିଆ ପାଣି ଛାଡ଼ି ଦେଲା ।)

୩୮ । ବ୍ରତାଦି ଧାରଣପୂର୍ବକ ନଖବାଳ ଦାଢ଼ି ଆଦି ନ କାଟି ରଖିବା; ବଢ଼ାଇବା—38. To let the hair and nails etc grow (on account of the observance of some vow.)

୩୯ । କୌଣସି ବିଷୟର ଆଲୋଚନାରୁ କ୍ଷାନ୍ତ ହେବା—
39. To cease from discussing a matter.
(ଯଥା—ଧର୍ମକଥା ଛାଡ଼, ଘରକଥା ପକାଅ ।)

୪୦ । (ସକର୍ମକ) ନିର୍ଦ୍ଦିଷ୍ଟ ଦୂରତ୍ୱର ବ୍ୟବଧାନ ରଖିବା—
40. To leave out some space.
ଗୃହଗୁଣ୍ଡେ ଛାଡ଼ି ଭାଙ୍ଗିବ ଭଣ୍ଡା,
ତେବେ ସେ ଦେଖିବ କଦଳୀପେଣ୍ଡା ।। କୃଷିବଚନ ।

୪୧ । (ସକର୍ମକ) କୌଣସି ସ୍ଥାନରେ (ଯଥା ପୋଖରୀରେ) କୌଣସି ଜୀବକୁ ସ୍ଥାନାନ୍ତରରୁ ଆଣି ରଖିବା—
41. To let fry of fishes in a pond to breed.
( ଯଥା—ମୁଁ ଏବର୍ଷ ଆମ ପୋଖରୀରେ ହଜାରେ ଜାଆଁଳା ଛାଡ଼ିଛି । )

୪୨ । (ସକର୍ମକ) (ସଂ. ଛର୍ଦ୍ଦନ) ଉଦ୍‌ଗାରିବା (ତୁଳ. ହି. ଓଗଲନା=ବାନ୍ତି କରିବା)—42. To vomit.
ସର୍ପ ଗୋଡ଼ାଇ ନ ପାରିଲା
ଫୁତ୍କାରେ ଗରଳ ଛାଡ଼ିଲା । ଜଗନ୍ନାଥ. ଭାଗବତ ।

୪୩ । (ସକର୍ମକ) ନିଜ ମନରୁ ସନ୍ଦେହ ଆଦି ଦୂର କରିବା—
43. To remove (doubt) from one's mind.
( ଯଥା—ମନରୁ ପୁତ୍ରବିୟୋଗ ଦୁଃଖ ଛାଡ଼ । )

୪୪ । ( ସକର୍ମକ ) ଅମୁକ ସ୍ଥାନରେ ବା ଅମୁକଙ୍କ ନିକଟରେ ବା ଅମୁକଙ୍କ ତତ୍ତ୍ୱାବଧାନରେ କୌଣସି ବ୍ୟକ୍ତିକୁ ରଖିବା—
44. To leave with; to leave in the custody of.
( ଯଥା—ପିଲାଟି ଇଂରେଜୀ ପଢ଼ିବ ବୋଲି ତାକୁ ମୁଁ ମାସେ ହେଲା ହେଡ୍‌ମାଷ୍ଟରଙ୍କ ପାଖରେ ଛାଡ଼ିଛି । )
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଆସିବା, ଦେବା, ଯିବା, ପଳାଇବା କ୍ରିୟାମାନଙ୍କ ସମାପିକା ରୂପ ଲାଗେ । ]

୪୫ । (ସକର୍ମକ) ( ବାଣ ଆଦି ) ନିଜ ଦେହରୁ ଫୁଲିଙ୍ଗ ଆଦି ବିସ୍ତାରିବା—45 To let off sparks from ones' body.
( ଯଥା—ହାଉଇଟି ଆକାଶକୁ ଉଠିଯାଇ ନାନା ନକ୍ଷତ୍ର ଛାଡ଼ୁଛି । )

୪୬ । (ସକର୍ମକ) ମଧ୍ୟରେ ନିର୍ଦ୍ଦିଷ୍ଟ ସମୟ ଅତିବାହିତ କରିବା—
46. To let a fixed time expire
( ଯଥା—ଆଜିକୁ ତିନି ମାସ ଛାଡ଼ି ତୁମେ ମୋତେ ଦେଖା କଲେ ମୁଁ ତୁମକୁ କିଛି ସାହାଯ୍ୟ କରିବି । )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ଂ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଙ୍ଗ | ଞ୍ଜ | ଣ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଛଅ | ଞ | ନ |

୪୭ । ( ସକର୍ମକ ) ଅମୁକଠାରୁ ଭିନ୍ନ ହେବା; ଅମୁକ ସଙ୍ଗେ ମେଳ ନ ହେବା—47. To differ from.

(ଯଥା—ମୋ ଘଣ୍ଟା ରେଲ ଷ୍ଟେସନ ଘଣ୍ଟାରୁ ୫ ମିନିଟ ଛାଡ଼ୁଛି ।)

୪୮ । (ସକର୍ମକ) ବସ୍ତ୍ରାନ୍ତର ପରିଧାନ କରିବା ପାଇଁ ପିନ୍ଧିଥିବା ବସ୍ତ୍ରାଦିକୁ ତ୍ୟାଗ କରିବା; ପାଲଟିବା, ବଦଳିବା—48. To change one's cloth.

୪୯ । (ସକର୍ମକ) ଆପଣା ନିକଟରେ ଥିବା କୌଣସି ଦ୍ରବ୍ୟକୁ ବିକି ଦେବା—49. To sell away something in hand; to part with.

( ଯଥା—ଏ ଅଭାବ ସମୟରେ ଧାନଚିକ ନ ଛାଡ଼ିଲେ ପଛେ ପସ୍ତାଇବାକୁ ପଡ଼ିବ । )

୫୦ । (ସକର୍ମକ) ଗଣନା ନ କରିବା—50. Not to count; to leave out from calculation.

୫୧ । (ଅକର୍ମକ) ସ୍ଖଳିତ ହେବା; ଚ୍ୟୁତ ହେବା—51. To drop down; to fall down.

(ଯଥା—ତା ଦେହରୁ ହଳଦୀମଇଳାଟିକି ଭଲ ହୋଇ ଛାଡ଼ି ନାହିଁ; ଗଛରୁ ବକଳା ଛାଡ଼ିଲାଣି । )

**ଛାଡ଼ିଯିବା**—ଦେ. କ୍ରି—୧ । ( ସକର୍ମକ ) କୌଣସି ପଦାର୍ଥକୁ କୌଣସି ସ୍ଥାନରେ ତ୍ୟାଗ କରି ଚାଲିଯିବା, ଅର୍ଥାତ୍ ଉକ୍ତ ପଦାର୍ଥକୁ ସଙ୍ଗରେ ନ ନେବା—1. To leave a thing.
Chhāṛi jibā
ଛେଡ଼ଯାଓୟା
**छोड़याना**

୨ । (ସକର୍ମକ) ସଙ୍ଗ ତ୍ୟାଗ କରି ଅନ୍ୟତ୍ର ଚାଲିଯିବା—2. To go elsewhere leaving the company of some one.

ନେତ୍ରପଥେ ପଡ଼ିଗଲେ କି ସେ ଛାଡ଼ି—କବିସୂର୍ଯ୍ୟ, ଲୋପାମୁଦ୍ରା ଗୀତ ।

୩ । (ଅକର୍ମକ) କୌଣସି ବ୍ୟକ୍ତି ବା ବସ୍ତୁର ଦେହରେ ବୋଳା ହୋଇଥିବା ବା ସଂଲଗ୍ନ ଥିବା କୌଣସି ପଦାର୍ଥ ଚ୍ୟୁତ ହେବା; ଖସି ପଡ଼ିବା—3. To come off ( said of a thing attached to the body of another.

( ଯଥା—ପୁରୁଣା କବାଟରୁ ରଙ୍ଗ ଛାଡ଼ିଗଲା; ମୋ କପାଳରୁ ଚନ୍ଦନ ଛାଡ଼ିଗଲାଣି; ସାପଦେହରୁ କାତି ଛାଡ଼ିଗଲା; ଗଛରୁ ବକଳା ଛାଡ଼ିଗଲା । )

୪ । ( ଅକର୍ମକ ) ( ଅଭ୍ୟାସାଦି ) ପରିତ୍ୟକ୍ତ ହେବା—4. ( habits ) To be given up.

( ଯଥା—କଟକର ଡାକ୍ତର ଭଜମା ବାବୁଙ୍କର ଚିକିତ୍ସାରେ କେତେ ଲୋକଙ୍କ ଅଫିମ ଅଭ୍ୟାସ ଛାଡ଼ିଗଲାଣି ।

୫ । ( ଅକର୍ମକ ) ଲୁପ୍ତ ହେବା; ଲୋପ ପାଇବା—5. To cease; to be made to disappear.

( ଯଥା—ମୋ ସଙ୍ଗେ ଲଗାଉଛୁ, ତୋ ଗରବ ଛାଡ଼ିଯିବ । )

[ ଦ୍ର—ଛାଡ଼ିବାର ପ୍ରକୃତ ଅର୍ଥ ସଂ. ଛୋରଣ=ପରିତ୍ୟାଗ କରିବା—to leave; to give up. ସେଥିରୁ ଲକ୍ଷଣାର୍ଥ ସମ୍ପର୍କ ତ୍ୟାଗ କରିବା । ଭାଷାରେ ଅନ୍ୟାନ୍ୟ ପ୍ରୟୋଗଗୁଡ଼ିକ ଏହି ମୂଳ ଭାବକୁ ଅବଲମ୍ବନ କରି ନାନା ବିଶିଷ୍ଟ ଭାବରେ ବ୍ୟବହୃତ ହୁଏ । ]

**ଛାଡ଼ି ହେବା**—ଦେ. କ୍ରି—( କୌଣସି ଅଭ୍ୟାସ ) ସାଧ୍ୟମତେ ପରିତ୍ୟକ୍ତ ହେବା—To be capable of being given up.
Chhāṛi hebā
ଛେଡ଼େହଓୟା

(ଯଥା—୨୦ ବର୍ଷ ଅଭ୍ୟାସ ପରେ ଅଫିମ ଛାଡ଼ି ହେଲା ନାହିଁ । )

**ଛାଣି**—ପ୍ରାଦେ. ( ଗଞ୍ଜାମ ) ବି—ଛଣା ହେବାରେ ବ୍ୟବହୃତ ଯନ୍ତ୍ର—Filter.
Chhāṇi

**ଛାଣିବା**—ଦେ. କ୍ରି. ( ସଂ. ଶୃଲନ; ସଂ. ଶାତନ. କ୍ଷାଳନେନ୍ଦ୍ର )—
Chhāṇibā
ଛାଁକା
**छाना**

୧ । ଛାଙ୍କିବା, ବସ୍ତ୍ରଦ୍ୱାରା ତରଳ ପଦାର୍ଥ ବା ଚୂର୍ଣ୍ଣକୁ ଛାଙ୍କିବା—1. To strain a liquid or powder to filter.

ଛଣାଇବା } ଣିଜନ୍ତ
ଛଣେଇବା }

ମିଶିଗଲାଣି କ୍ଷୀରଦଧିରେ ଯେବେ କ୍ଷୀର ଛାଣି କେ ପାରୁ ବାର ପାରିବ ଗୋ—କବିସୂର୍ଯ୍ୟ, ସଙ୍ଗୀତ ।

୨ । ତରଳ ପଦାର୍ଥରେ ମିଶିଥିବା କଠିନ ପଦାର୍ଥକୁ ବସ୍ତ୍ର ବା ଚୂର୍ଣ୍ଣରେ ମିଶିଥିବା ଗୋଡ଼ଗୋଡ଼ିଆ ଅଂଶକୁ ଚାଲଣିଦ୍ୱାରା ଛାଙ୍କିବା—2. To sift the solid part from a liquid or the hard particles from a powder.

୩ । ଜଳ ମଧ୍ୟରେ ଥିବା ମାଛ ଆଦିକୁ ଲୁଗା ବା ଜାଲଦ୍ୱାରା ଛାଙ୍କି କରି ଆଣିବା—3. To bring out fishes etc from water by netting.

( ଯଥା—ପୋଖରୀରୁ ଜାଲରେ ବା ଖିଅରେ ମାଛ ଛାଣିବା । )

୪ । ( ଲକ୍ଷଣାର୍ଥ ) ନିଃଶେଷ କରିବା—4. ( figurative ) To exhaust.

ମାର ରଖିଛି ଶର ଶାଣି, ଭାର ତ ବହିବ ଅଛି ଜାଣି, ସାରକୁ ଦେବନିଯିବ ଛାଣି—କବିସୂର୍ଯ୍ୟ, ସଙ୍ଗୀତ ।

୫ । (ଲକ୍ଷଣାର୍ଥ) ସାରାଂଶ ବାଛି ନେବା—5. (figurative) To draw out the essential thing from a mass; to extract the essence.

ରସଜଳଧିରେ ଅବଗାହି ଧୀରେ ଭକ୍ତି ତ ସାର କି ଛାଣି—କବିସୂର୍ଯ୍ୟ, ସଙ୍ଗୀତ ।

୬ । ( ଲକ୍ଷଣାର୍ଥ ) ଧନ ଆଦି ବହୁ ପରିମାଣରେ ଅର୍ଜ୍ଜନ କରିବା—6. ( figurative ) To earn or get copiously.

( ଯଥା—ଓକିଲାତି କରି ଅମୁକ ବାବୁ ଖୁବ୍ ଟଙ୍କା ଛାଣୁଛନ୍ତି । )

[ ଦ୍ର—ଏହି କ୍ରିୟାର ଅସମାପିକାରୂପ ସଙ୍ଗେ ଆଣିବା, ଦେବା, ନେବା, ପକାଇବା କ୍ରିୟାର ସମାପିକାରୂପ ଯୁକ୍ତ ହୋଇ ମଧ୍ୟ ବ୍ୟବହୃତ ହୁଏ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚକ୍ରଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ରଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଇ' ନ ମିଳିଲେ 'ଗାଈ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଆଖି ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଛାଣ୍ଟ**—ଦେ. ବି. ( ସଂ ଛେଦନ; ତୁଳ. ଇଂ. କଟ୍=ଢଙ୍ଗ )—
Chhāṇṭ ୧ । ଛାଣ୍; ଛାଣ୍ଟ; ଢଙ୍ଗ—1. Fashion.
ଛାଁଟ ଚତୁଃ ଚକ୍ରଣ ଗଣ୍ଡ ଛାଣ୍ଟ ସବୁରେ—ଭୂକାଶି. ଗୀତାଲହରୀ ।
छाँट ୨ । ( ଲୁଗା କାମଦେବ ଲୁଗା ) ଛେଦନ କରିବା—
2. Cutting (a stuff in a fashion for a dress).
୩ । ପୋଷାକର ଢଙ୍ଗ—3. The cut of a dress.
୪ । ବାଳ କଟୁରିବା ଢଙ୍ଗ—
4. Fashion of cropping the hair

**ଛାଣ୍ଟକାଟ**—ଦେ ବି. ( ସଂ. ଛେଦନ ଓ କର୍ତ୍ତନ )—ପୋଷାକ ଆଦିର
Chhāṇṭakāṭa ଢଙ୍ଗ—Fashion and cut of a dress.
ଛାଁଟକାଟ
छाँटकाट

**ଛାଣ୍ଟି**—ପ୍ରାଦେ. (ସମ୍ବଲପୁର) ବି—ବଡ଼ ଏବଂ ଲମ୍ବ ଦଉଡ଼ି—
Chhāṇṭi Thick and long rope.

**ଛାଣ୍ଟିଛୁଣ୍ଟି**—ଦେ କ୍ରି. ବିଣ.—(ଛାଣ୍ଟିବା କ୍ରିୟାର ଅସମାପିକା ରୂପ ସଙ୍ଗେ
Chhāṇṭichhuṇṭi ଧ୍ୱନ୍ୟନୁକାରୀ ନିରର୍ଥକ ଛୁଣ୍ଟିବା କ୍ରିୟାର
ଛେଁଟେଛୁଁଟେ ଅସମାପିକାରୂପ କ୍ରି. ବିଣରୂପେ ବ୍ୟବହୃତ)—
छाँटछुँटकर ୧ । ବାରମ୍ବାର କାଟାକାଟି କରି—
1. After repeated cuttings or prunings.
(ଯଥା—ଆମ ମାଳି ଗଛଟିକୁ ଛାଣ୍ଟିଛୁଣ୍ଟି ଗୋଲ କରିଛି ।)
୨ । ନାନାପ୍ରକାରେ ବ୍ୟୟ ସଙ୍କୋଚ ପୂର୍ବକ—
2. After repeated retrenchments.
(ଯଥା—ମୁଁ ବିଭାଘର ଖରଚରୁ ଛାଣ୍ଟିଛୁଣ୍ଟି ଟ ୨୫୯ ରଖିଲି)
୩ । ନାନାଦିଗରୁ ଅଳ୍ପ ଅଳ୍ପ କରି ଗ୍ରହଣ କରି—
3. By taking bits from many sources.

**ଛାଣ୍ଟିବା**—ଦେ. କ୍ରି. ( ସଂ. ଛେଦନ; ସଂ. ଖଣ୍ଡନ )—
Chhāṇṭibā ୧ । କଇଁଚିରେ କାଟିବା; କଟୁରିବା—
ଛାଁଟା 1. To clip with scissors.
छाँटना ୨ । ଅଗ କାଟିବା—2. To clip the tops.
୩ । ପଦାର୍ଥସ୍ୱାମୀଠାରୁ କୌଣସି ପଦାର୍ଥର କେତେକ ଅଂଶ ଲୁଚାଇ କରି ରଖି ନେବା—3. To take away a part of some thing stealthily without the owner's knowledge.
୪ । ବ୍ୟୟସଙ୍କୋଚ କରିବା—
4. To retrench the expenditure.
୫ । କାଣ୍ଡିବା; ଚାଉଳ ଡାଲି ଆଦି କୁଟି କରି ତୁଷ ବାହାର କରିବା—5. To husk.
୬ । ପାଛୁଡ଼ିବା—6. To winnow.
୭ । ବହୁତ ବସ୍ତୁ ମଧ୍ୟରୁ ନିକମ୍ମା ବସ୍ତୁରୁ ପ୍ରୟୋଜନୀୟ ବସ୍ତୁକୁ ବାଛିବା—7. To separate the necessary portions from a large quantity of any thing.

**ଛାତ**—ଦେ. ବି. (ସଂ. ଛଦ)—ଶୃଙ୍ଗ; ଘରଉପରସ୍ଥ ଆଚ୍ଛାଦନ; କୋଠା-
Chhāta ଉପରର ଆଚ୍ଛାଦନ—Roof, thatch.
ଛାଦ; ଛାତ [ ଦ୍ର—ନଡ଼ାଆଦିଦ୍ୱାରା ଛପର ହୋଇଥିବା ଘରର ନୁହେଁ
छत ଗୋଡ଼ି ଆଦି ଦ୍ୱାରା ଗଠିତ କୋଠାର ଆଚ୍ଛାଦନକୁ ଛାତ ବୋଲାଯାଏ । ଆଜିକାଲି କଡ଼ି, ବରଗା, ଟାଇଲ ଓ ଗୋଡ଼ିଆଦି ନ ଦେଇ ଏକପ୍ରକାର ଶିଳଣକାମରେ ସିମେଣ୍ଟର ଛାତ ପଡ଼ୁଅଛି । ]
(ଛତା - ସ୍ତ୍ରୀ) ସଂ ବିଣ. ପୁଂ. (ଛୋ ଧାତୁ=ଛେଦନ କରିବା + କର୍ମ. କ୍ତ)—୧ । ଛିନ୍ନ—1. Cut off.
୨ । ଦୁର୍ବଳ—2. Weak.
୩ । କ୍ଷୀଣ—3. Emaciated; lean.

**ଛାତପିଟା**—ଦେ. ବି—କୋଠାର ଛାତକୁ ଗୋଡ଼ି ଚୂନ ଦେଇ କୋବାରେ
Chhātapiṭā ବାଡ଼େଇ ଟାଣ କରିବା—Solidifying of the
ଛାଦପିଟା roof with concrete and lime.
छतपीटना [ ଦ୍ର—କୋଠାର କାନ୍ଥ ଉପରେ ପ୍ରଥମେ କଡ଼ି ପଡ଼େ,
(ଛାତବାଡ଼ିଆ—ଅନ୍ୟରୂପ ) କଡ଼ି ଉପରେ ବରଗା ପଡ଼େ; ବରଗାରେ ଟାଇଲ ବିଛାଯାଏ; ଟାଇଲ ଉପରେ ଚୂନମିଶା ଗୋଡ଼ି ୩ ଠାରୁ ୬ ଇଞ୍ଚ ମୋଟରେ ବିଛାଯାଏ; ଏହି ଗୋଡ଼ିର ଆସ୍ତରଣକୁ ଖୁବ୍ ଟାଣୁଆ ଓ ଜଳଦ୍ୱାରା ଅଭେଦ୍ୟ କରିବା ପାଇଁ ଏହି ଗୋଡ଼ିକୁ କୋବାଦ୍ୱାରା ଏକାଧିକ ଦିନ ପିଟାଯାଏ । ]

**ଛାତି**—ଦେ. ବି. (ସଂ. ଛଦ ଧାତୁ ) ( ଛାଦିନ, ଛାଦୀ=ଆଚ୍ଛାଦନକାରୀ
Chhāti ଏହା ହୃଦୟକୁ ଆଚ୍ଛାଦନ କରେ)—୧ । କଣ୍ଠଦେଶ ଓ ପେଟ
ଛାତି; ବୁକ ମଧ୍ୟସ୍ଥ ଶରୀରର ସାମନା ପାଖ; ବକ୍ଷଦେଶ; ବକ୍ଷସ୍ଥଳ—
छाती 1 Breast; chest.
ଚମକତ ନାହିଁ ମୋ ଛାତ । କବିସୂର୍ଯ୍ୟ. କଳୋଗତମ୍ଭ. ଚ. ଗୀତ ।
୨ । ବୁକୁ; ହୃଦୟ—2. Bosom; heart.
୩ । ମନଃ; ଅନ୍ତଃକରଣ—3. Mind.
୪ । ସାହସ—4. Courage.
୫ । ସ୍ତ୍ରୀଲୋକଙ୍କର ସ୍ତନ—5. Woman's breast.
ଝଲାଅ କୁଞ୍ଜରକୁମ୍ଭପଲାକୃତ ଛାତରେ । କବିସୂର୍ଯ୍ୟ. ସଙ୍ଗୀତ ।
୬ । ଧୈର୍ଯ୍ୟ—6. Patience; forbearance.
୭ । କଷ୍ଟସହିଷ୍ଣୁତା—7. Endurance.
୮ । ଏକ ଛାତି ପରିମିତ ଉଚ୍ଚତା ବା ଗଭୀରତା—
8. Depth up to a man's breast; height upto a man's breast.

**ଛାତି ଉପରେ ଠିଆ ହେବା**—ଦେ. କ୍ରି. —୧ । କୌଣସି ବ୍ୟକ୍ତିର ଛାତିକୁ
Chhāti upare ṭhiā hebā ଖୁନ୍ଦି ତାକୁ ମାରି ପକାଇବା—
ବୁକେ ବାଁଶ ଦେଓୟା 1. To kill a person by standing on
छातिपर खड़ा हेना, छातिपर चढ़ना his breast.
(ଛାତିରେ ଚଢ଼ିବା } ଅନ୍ୟରୂପ ୨ । (ଲକ୍ଷଣାର୍ଥ) କୌଣସି
ଛାତିରେ ଠିଆ ହେବା } ବ୍ୟକ୍ତିକୁ କଲବଲ କରିବା ବା ଦୁଃଖ ଦେବା—2. ( fig ) To harass a person.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଅ | ଉଅ | ଢ |
| ୨ | ଈ | ଊ | ରୁ | ଲୁ | ଏ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଢ଼ | ନ୍ହ |

**ଛାତିଉପରେ ପାଣିହାଣ୍ଡି ବସିବା**—ଛାତିରେ ପଥର ଲଦା ହେବା (ଦେଖ)
Chhāti upare pāṇihāṇḍi basibā Chhātire pathara ladā hebā (See)
বুকে ভাতের হাণ্ডি নামা

**ଛାତିଉପରେ ବସିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତି ଉପରେ ବେଜାୟ ଅଧିକାର ପରିଚାଳନ କରିବା-
Chhāti upare basibā
**छातिपर बैठना** 1. To exercise too much power over another person
(ଛାତିରେ ବସିବା—ଅନ୍ୟରୂପ)
୨ । କୌଣସି ବ୍ୟକ୍ତିର ନିକଟରେ ଥାଇ ତାକୁ ଦୁଃଖ ଦେବା - 2. To harass a person by being near him.

**ଛାତିଏ**—ଦେ. ବିଣ.—୧ । ଛାତି ଯେତିକି ଉଚ୍ଚ ସେତିକି ଉଚ୍ଚତାଦ୍ୱାରା ପରିମିତ—1 Measured by the height of one's breast.
Chhātie
একছাতি
୨ । ଏକ ଛାତି ଗଭୀର—2. Breast-deep.
(ଯଥା—ଛାତିଏ ପାଣି ।)
୩ । ଏକଛାତି ଉଚ୍ଚ—3. Breast high.
(ଯଥା—ଛାତିଏ କାନ୍ଥ ।)
ଦେ. ବି—୧ । ଛାତିପର୍ଯ୍ୟନ୍ତ ବୁଡ଼ିଯିବା ଭଳି ଗଭୀରତା—1. Depth upto one's breast.
୨ । ଛାତିପରିମିତ ଉଚ୍ଚତା—2. Height equal to one's breast.

**ଛାତିକି ଛାତି ଦେଇ**—ଦେ. କ୍ରି. ବିଣ.—(ଆଲିଙ୍ଗନ କଲାବେଳେ ଦୁଇ ଜଣଙ୍କ ଛାତି ପରସ୍ପର ସଂଲଗ୍ନ ହେବାରୁ)—ସମ୍ପୂର୍ଣ୍ଣ ସହାନୁଭୂତି ବା ସହଯୋଗ ପୂର୍ବକ (କୌଣସି କାର୍ଯ୍ୟ କରିବା)—(to do something) With the fullest co-operation.
Chhātiki chhāti dei
ଛାତିକି ଛାତି ଯୋଡ଼ି } ଅନ୍ୟରୂପ
ଛାତିକି ଛାତି ଲଗା(ଗେ,ଇ) }

**ଛାତିକି ପଥର କରିବା**—ଦେ. କ୍ରି.—୧ । ସହିବା; ଧୈର୍ଯ୍ୟ ଧରିବା; ଦୁଃଖ ଆଦି ସହିବାପାଇଁ ହୃଦୟକୁ ଦୃଢ଼ କରିବା—To be ready to bear patiently; to screw up one's courage or patience to suffer.
Chhātiki pathara karibā
ছাতী পাথর করা
**छाति पथरका करना**
ଦେଖି ଗୃହଁ ଛାତିକି ମୁଁ କଲି ପଥର ।
ଉ.କା.ସ. ଗୀତଲହରୀ ।
୨ । ନିଷ୍ଠୁର କର୍ମ କରିବାପାଇଁ ବା ଦେଖିବାପାଇଁ ହୃଦୟକୁ କଠୋର ବା ନିଷ୍ଠୁର କରିବା; ନିଷ୍ଠୁରତା ଅଭ୍ୟାସ କରିବା—2. To make one's heart cruel (to do or see some cruel act); to be inured to do or see cruel acts unmoved.

**ଛାତିକି ମାରିବା**—ଦେ. କ୍ରି—ଛାତିରେ ମାରି ହେବା (ଦେଖ)
Chhātiki māribā Chhātire māri hebā (See)
ଦେ. ବି—ଛାତିରେ ବେଦନା ହେବା—Feeling pangs in the breast.

**ଛାତିକୁ କୁଣ୍ଢ ନ ପାଇବା**—ଦେ. ବି. (ଲକ୍ଷଣାର୍ଥ)—ମନ ମୋଟ ହେବା; ଗର୍ବିତ ହେବା—(fig) Arrogance; pride.
Chhātiku kuṇḍha na pāibā
(ଛାତିକୁ ଲଙ୍ଗଳ ଦଉଡ଼ା(ଡ଼ି) ନ ପାଇବା—ଅନ୍ୟରୂପ)
(ଯଥା—ତା ଛାତିକୁ ଏବେ କୁଣ୍ଢ ପାଉ ନାହିଁ ।)

**ଛାତି କୁଣ୍ଢେ ମୋଟ ହେବା**—ଦେ. କ୍ରି. (ଲକ୍ଷଣାର୍ଥ)—ଆନନ୍ଦ ବା ସାହସ ବା ଗର୍ବରେ ଛାତି ଫୁଲି ଉଠିବା; ଗର୍ବ ବା ଆନନ୍ଦରେ ସ୍ଫୀତ ହେବା—The swelling of the heart with joy, pride or courage.
Chhāti kuṇḍhemoṭahebā
বুক দশ হাত হওয়া
**छातीउमड़आना**
ଛାତି ବେକାଏ ମୋଟ ହେବା } ଅନ୍ୟରୂପ
ଛାତି ମୋଟ ହେବା }

**ଛାତି ଖାଇବା**—ଦେ.କ୍ରି—ଉଚ୍ଚରେ (ଏକ ଅନ୍ୟର) ଛାତି ପର୍ଯ୍ୟନ୍ତ ହେବା—To approach one's breast in tallness.
Chhāti khāibā

**ଛାତି ଠୁକିବା**—ଦେ. କ୍ରି—୧ । ଛାତିରେ କରତଳ ଆଘାତପୂର୍ବକ ପ୍ରକାଶ୍ୟ ପ୍ରତିଜ୍ଞା କରିବା—1. To publicly make a declaration by repeatedly striking the breast with the palm.
Chhāti ṭhunkibā
ছাতি ঠোকা
**छातीठोकना; छातिठुकना**
୨ । ନିଜର ଛାତିରେ କରତଳ ସ୍ଥାପନପୂର୍ବକ ଅନ୍ୟ ବ୍ୟକ୍ତିକୁ ଅଭୟ ବା ଦମ୍ଭ ବା ହିମତ ଦେବା—2. To give assurance of safety or protection or encouragement to a person.
୩ । ଛାତିରେ ମାରି ହେବା (ଦେଖ) 3. Chhātire māri hebā (See)
୪ । କୌଣସି କଠିନ କାର୍ଯ୍ୟ କରିବାପାଇଁ ପ୍ରତିଜ୍ଞା କରିବା ବା ହିମତ ବାନ୍ଧିବା—4. To take a resolve to do a difficult task; to make up one's mind to do some thing.

**ଛାତି ଜଳା(ଲେ)ଇବା**—ଦେ. କ୍ରି—୧ । କୌଣସି ବ୍ୟକ୍ତି ଈର୍ଷା କ୍ରୋଧ ବା ଶୋକରେ ସନ୍ତପ୍ତ ହେବାର କାରଣ ହେବା—1. To cause a person to be afflicted by envy, anger or grief.
Chhāti jaḻā(ḻe)ibā
বুকজ্বালান
**छातीजलाना**
୨ । କୌଣସି ବ୍ୟକ୍ତିକୁ ଚିଡ଼ାଇବା—2. To tease a person.

**ଛାତି ଜଳିବା**—ଦେ. ବି—୧ । ଅଜୀର୍ଣ୍ଣ ଯୋଗୁଁ ହୃଦୟ ମଧ୍ୟରେ ଦାହର ଅନୁଭୂତି—1. A burning sensation in the heart on account of indigestion.
Chhāti jaḻibā
বুকজ্বলা
**छातीजलना**
(ଛାତି ପୋଡ଼ିବା—ଅନ୍ୟରୂପ)
[ଦ୍ର—ଏହା ବସ୍ତୁତଃ ହୃଦୟର ଜ୍ୱାଳା ନୁହେ ଅନ୍ନନାଳୀର ଜ୍ୱାଳା ଅଟେ ।]

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ବୃଅ' ନ ମିଳିଲେ 'ବୃଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲଚ' ନ ପାଇଲେ 'ଅଲ୍‌ଚ' ଦେଖିବେ

୨ । ( ଲକ୍ଷଣାର୍ଥ ) ଈର୍ଷା ବା କ୍ରୋଧରେ ସନ୍ତପ୍ତ ହେବା —
2. ( figurative ) Being greatly affected by anger or envy.
୩ । ( ଲକ୍ଷଣାର୍ଥ ) ଶୋକଦ୍ୱାରା ବ୍ୟଥିତ ହେବା—
3 ( figurative ) To be greatly affected by grief.

**ଛାତି ଥଣ୍ଡା ହେବା**—ଦେ. ବି—୧ । ଉଦ୍‌ବେଗ ବା ଭୟର ଆଶଙ୍କା ଦୂର ହେବାରୁ ମନରେ ଶାନ୍ତି ହେବା—
Chhāti thaṇḍā hebā
ବୁକ୍ ଜুড়େ ଯାଓୟା
**छाति ठंडी होना,**
**छातिजुड़ना**
1. Peace of mind due to the removal of any anxiety or apprehension.
(ଛାତି ଥଣ୍ଡ ହେବା—ଅନ୍ୟରୂପ) ୨ । ମନର ପ୍ରଫୁଲ୍ଲତା ବା ପ୍ରସନ୍ନତା—
2. Being elated or delighted or pleased.

**ଛାତିଥର**— ଦେ ବି—୧ । ହୃତ୍‌ପିଣ୍ଡର ସ୍ପନ୍ଦନ—
Chhātithara 1. Heart throbbings.
(ଛାତି ଥରବା—ଅନ୍ୟରୂପ) ୨ । ଭୟ ବା ରୋଗାଦି ହେତୁରୁ ଛାତିରେ ଅନୁଭୂତ ହେବା କମ୍ପନ; ହୃତ୍‌କମ୍ପ—
2. Trembling or palpitation of the heart ( due to excessive fear or some disease ).

**ଛାତିଦକ**—ଦେ. ବି—୧ । ହୃଦୟରେ ଜନ୍ମିବା ଭୟ—
Chhātidaka 1. Mental fear.
(ଛାତିଦକା—ଅନ୍ୟରୂପ) ୨ । ଉଦ୍‌ବେଗ—2. Anxiety.

**ଛାତି ଦକଦକ ହେବା**—ଦେ. ବି—୧ । ହୃଦ୍‌ଯନ୍ତ୍ରର ପ୍ରତିକ୍ଷଣରେ ସ୍ପନ୍ଦନ-
Chhāti dakadaka hebā 1. Ordinary throbbing of the heart; heart-throbbing.
ବୁକ୍ গুরগুর করা,
ବୁକ୍ টিপটিপ করা
**छाति धकधक करना**
ଛାତି ଦୁକ୍‌ଦୁକ୍ ହେବା } ଅନ୍ୟରୂପ
ଛାତି ଦୁଲୁଦୁଲୁ ହେବା }
୨ । ଭୟରେ ବା ସନ୍ଦେହରେ ମନ ଉଦ୍‌ବିଗ୍ନ କରିବା; ହୃତ୍‌କମ୍ପ-1. Anxiety resulting from fear, suspence or apprehension.

**ଛାତି ଦମଦମ ହେବା**—ଦେ. ବି—ହଠାତ୍ ଉପସ୍ଥିତ ଭୟ ବା ଚିନ୍ତା ବା ଖୁବ୍ ଦଉଡ଼ିଯିବା ଯୋଗୁଁ ଛାତିର ଦୁକ୍‌ଦୁକ୍ ବା ଉପର୍ଯ୍ୟୁପରି ନାଚିବା—Violent throbbing or palpitation of the heart (due to sudden fear or anxiety or brisk runing.
Chhāti damadama hebā
ବୁକ ধড়পড় করা;
ବୁକେ ঢেকিরপাড়পড়া
**छाति धड़कना**
(ଛାତିଦମକ, ଛାତିଦମକା, ଛାତି ଦାଉଁଦାଉଁ, ଛାତି ଦୁରୁଦୁରୁ, ଛାତି ଦୁରୁଦୁରୁ, ଛାତି ଦୁଲଦୁଲ, ଛାତି ଦୁଲୁକିବା, ଛାତି ଦୁଲୁଦୁଲୁ, ଛାତି ଧଡ଼କ, ଛାତି ଧଡ଼୍କା, ଛାତି ଧଡ଼କିବା, ଛାତି ଧଡ଼ଧଡ଼, ଛାତି ଧଡ଼ପଡ଼, ଛାତି ଧଡ଼ଫଡ଼—ଅନ୍ୟରୂପ)
[ ଦ୍ର—ଛାତି ଦକଦକ ହେବା ଅପେକ୍ଷା ଛାତି ଦମଦମ ହେବା ପ୍ରବଳ । ]

**ଛାତିଦମ୍ଭ**—ଦେ. ବିଣ— ୧ । ସାହସୀ—1. Brave.
Chhātidambha ୨ । ନିର୍ଭୀକ—2. Fearless.
ବୁକବাঁধা ୩ । ଧୈର୍ଯ୍ୟଶୀଳ—3. Patience.
୪ । ସହନଶୀଳ—4. Forbearing.
ବି—୧ । ସାହସ—1. Courage.
୨ । ଧୈର୍ଯ୍ୟ—2. Patience; forbearance.
୩ । ନିର୍ଭୀକତା—3. Fearlessness.
୪ । କଷ୍ଟସହନଶୀଳତା—4 Endurance.

**ଛାତିଦରଜ**—ଦେ. ବି. ( ଓ. ଛାତି + ଫା. ଦର୍ଦ୍ ) -
Chhātidaraja ୧ । କମୋନିଆଁ; କାଶ, ଯକ୍ଷ୍ମା ଆଦି ଯୋଗୁଁ ବକ୍ଷସ୍ଥଳର ଭିତରେ ଅନୁଭୂତ ବେଦନା—
ବୁକେର ব্যথা
**छातीकी दर्द**
1. Pain inside the breast due to pneumonia cough, pthisis.
୨ । ଆଘାତ ଆଦି ଯୋଗୁଁ ବକ୍ଷସ୍ଥଳର ବାହାରେ ଜଣାଯିବା ଦରଜ ବା ବ୍ୟଥା—2. Pain on the breast due to some hurt to that part.

**ଛାତିଧରା**—ଦେ. ବି.—ଶରଦି ବା ରୋଗଯୋଗୁଁ ଛାତିରେ ଦରଜ ବା ବେଦନା ଅନୁଭବ—
Chhāti dharā
**छातिका दर्द** Pain in the chest.

**ଛାତି ଧରିବା**—ଦେ. ବି.—ଛାତିଧରା (ଦେଖ)
Chhāti dharibā Chhātidharā (See)
ଛାତିଧରা ଦେ. କ୍ରି —୧ । ଧୈର୍ଯ୍ୟ ଧରିବା—
1 To maintain one's patience.
(ଯଥା—ଏକମାତ୍ର ପୁଅ ମଲେ କିଏ ଛାତି ଧରି ରହି ପାରେ ।)
୨ । କୌଣସି ବିପଦ ବା ଦୁଃଖକୁ ସମ୍ଭାଳି ବଞ୍ଚି ରହିବା—
2. To live on by bearing the brunt of a danger or grief.

**ଛାତିପତାଇବା**—ଦେ. କ୍ରି.—୧ । ପ୍ରହାର ବା ଗୁଳି ଆଦି ବାଜିବାପାଇଁ ନିଜର ବକ୍ଷସ୍ଥଳକୁ ଦେଖାଇଦେବା—
Chhāti patāibā
ଛାତିପাতা 1. To lay one's breast bare for a stroke or bullet
**छाति पसारना**
(ଛାତିପତେଇବା—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) କୌଣସି ବିପଦ ସମ୍ଭାଳିବା ପାଇଁ ନିଜେ ପ୍ରସ୍ତୁତ ରହିବା—
2. (figurative) To keep one's self ready to meet the brunt of a danger.

साहस कुलान ଦେ. ବି.—(କୌଣସି କାର୍ଯ୍ୟ କରିବାକୁ) ସାହସୀ ହେବା—
**हियाव बाँधना** Having courage or daring enough
**ढइस बाँधना** to do something.
(ଯଥା—ଅନ୍ଧାର ରାତିରେ ଶ୍ମଶାନ କାଟେ ଯିବାକୁ ମୋ ଛାତି ପତାଉ ନାହିଁ ।)
୨ । ସାହସ ବାନ୍ଧିବା—
1. To have courage; to dare.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଇଅ | ଜ୍ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଏ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗ୍ୟ | ଇଅ | ଜ୍ଞ | ନ୍ତ |

**ଛାତି ପଥର କରିବା**—ଦେ. କ୍ରି—ଛାତିକି ପଥର କରିବା (ଦେଖ)
Chhāti pathara karibā Chhātiki pathara karibā (See)

ଛାତି ପଥର କରିଣ ସହୁ ସହୁ, ଆଗୋ ପ୍ରିୟସହୁ । ସଙ୍ଗୀତ ।

**ଛାତି ପଥର ପଡ଼ି ହେବା**—ଦେ. ବି—ବହୁତ କ୍ଳେଶ ବା କଷ୍ଟ ସହି ସହି
Chhāti pathara pari hebā ସହନଶୀଳ ହେବା—Being inured to great suffering.

ଏହା ଦେଖି ପଥର ପଡ଼ି ହେଲା ଛାତି
ଫାଟି ନ ଯିବ କହେ ବହୁ ମହାମତି । କୃଷ୍ଣସିଂହ, ମହାଭାରତ- ବସ୍ତ ।

**ଛାତିଫଟା**—ଦେ. ବିଣ—୧ । ହୃଦୟବିଦାରକ; ମର୍ମଭେଦୀ (ଦୁଃଖ)—
Chhātiphaṭā 1. Heart-rending.
ছাতিফাটা ୨ । ଦୁର୍ବହ (ବୋଝ)—
2. Unbearable (load or burden).

**ଛାତି ଫାଟିଯିବା**—ଦେ. କ୍ରି—୧ । ଧୈର୍ଯ୍ୟଚ୍ୟୁତ ହେବା—
Chhāti phāṭijibā 1. To lose one's patience.
ছাতিফাটা ୨ । ଦୁଃଖ ବା କଲିଜା ଫାଟି ପ୍ରାଣତ୍ୟାଗ କରିବା—
छातीफटना; छातीदरकना 2. To die by the bursting of one's heart.
୩ । ହୃଦୟ ବିଦୀର୍ଣ୍ଣ ହେବା—
3 Bursting of one's heart.
୪ । ଅତି ତୃଷ୍ଣାରେ ହୃଦୟରେ ବେଦନା ଅନୁଭୂତ ହେବା—
4. A painful feeling inside the breast due to a keen thrist

**ଛାତି ଫୁଲାଇ ଚାଲିବା**—ଦେ. କ୍ରି—ଗର୍ବରେ ଚାଲିବା—To strut .or pace with pride.
Chhāti phulāi chālibā
বুকফুলিয়ে চলা (ଯଥା—ଏବେ ସେ ସମ୍ପତ୍ତିଶାଳୀ ହେବାରୁ ଛାତି
छातिफुलाकर चलना ଫୁଲାଇ ଚାଲୁଛି । )

**ଛାତି ଫୁଲାଇବା**—ଦେ. କ୍ରି—ଆନନ୍ଦ ବା ଗର୍ବରେ ସ୍ଫୀତ ହେବା—
Chhāti phulāibā To swell with delight or pride.
বুকফুলানা ସଭାରେ ବସିଥାନ୍ତି ଛାତିକି ଫୁଲାଇ ।
छातिफुलाना; छातिनिकालना କୃଷ୍ଣସିଂହ, ମହାଭାରତ ସଭା ।
বুকফুলা ଦେ. ବି—ରୋଗ ଯୋଗୁଁ ଛାତି ଫୁଲିଯିବା—
छातिफुलना; छातिनिकलना Swelling up of the breast through disease

**ଛାତିରୁ ଅତଡ଼ା ଖସିବା**—ଦେ. କ୍ରି—କୌଣସି ଭୟ ବା ବିପଜ୍ଜନକ
Chhātiru atarḍā khasibā ବିଷୟ ହଠାତ୍ ଅବଗତ ହୋଇ
ଛାତିରୁ କାଅଁ ଖସିବା } ଅନ୍ୟରୂପ ମନରେ ବିଶେଷ ଉଦ୍‌ବେଗ ଜାତ
ଛାତିରେ ବାଡ଼ି ପଡ଼ିବା } ହେବା; ଛାତି ଧଡ଼କିବା—
Palpetation of the heart due to sudden fear or danger.

**ଛାତିରୁ ବୋଝ ଖସିବା**—ଦେ. ବି—କୌଣସି ଅତ୍ୟନ୍ତ ଉଦ୍‌ବେଗ ବା
Chhātiru bojha khasibā ଦାୟିତ୍ୱ ବା ଆଶଙ୍କାରୁ ମୁକ୍ତ ହେବା—
छातीसे पत्थर टलना To be freed from a great
ଛାତିରୁ ପଥର ଖସିବା } ଅନ୍ୟରୂପ anxiety or appre-
ଛାତିରୁ ପାଣି ଦାଣ୍ଡି ଓହ୍ଲାଇବା } hention or responsibility.

**ଛାତିରେ ଦକ ପଶିବା**—ଦେ. କ୍ରି—୧ । ହୃଦୟରେ ଭୟ ବା ଆଶଙ୍କା
Chhātire daka paśibā ଜାତ ହେବା—The mind being
(ଛାତିରେ ଦକାପଶିବା—ଅନ୍ୟରୂପ) over come with fear or apprehension.

**ଛାତିରେ ପକାଇବା**—ଦେ. କ୍ରି—୧ । ଶିଶୁକୁ ଛାତି ଉପରେ ଧରିବା—
Chhātire pakāibā 1. To carry or hold an
বুকে লওয়া infant on one's breast.
छातीपर डालना; ୨ । ( ଲକ୍ଷଣାର୍ଥ ) ଶିଶୁକୁ ଅତି ସ୍ନେହ ବା
छातीतले रखना; ଆଦରରେ ପାଳନ କରିବା—
छातियाना 2. (figurative) To bring up a child
(ଛାତିରେ ପକେଇବା—ଅନ୍ୟରୂପ) with love and affection.
୩ । କୌଣସି ବ୍ୟକ୍ତିକୁ ଅତି ପ୍ରିୟ କରିବା—
3 To treat a person as one's dear and beloved.
୪ । ଅତ୍ୟନ୍ତ ଆଦର କରି ସବୁବେଳେ ପାଖରେ ଥିବା ଓ ପାଖରୁ ଅନ୍ତର ନ କରିବା—4. Not to let a person leave ones company (on account of excessive fondness).

**ଛାତିରେ ପଥର ପକା(କେ)ଇବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) ଦୁଃଖ
Chhātire pathara pakā(ke)ibā ସହିବା; ଦୁଃଖ ବରଦାସ୍ତ
বুকে পাথর চাপা କରିବା—1. (figurative)
छातिपर पत्थरलादना To endure pain patiently.
(ଛାତିରେ ପଥର ଲଦିବା—ଅନ୍ୟରୂପ) ୨ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତି ଚିନ୍ତାନ୍ୱିତ ହେବାର କାରଣ ହେବା—
2. (figurative) To cause great anxiety to a person.

**ଛାତିରେ ପଥର ଲଦା ହେବା**—ଦେ. ବି—କୌଣସି ବିଶେଷ ଚିନ୍ତା ବା
Chhātire pathara ladāhebā ଉଦ୍‌ବେଗ ବା ଦାୟିତ୍ୱ ଆସି
বুকে পাথর চাপা হওয়া ମନୁଷ୍ୟକୁ ଘୋଟିବା—The devolving
छातीमे पत्थर रहना of a great responsibility or
ଛାତିରେ ବୋଝ ଲଦା ହେବା apprehension or anxiety.
(ଛାତିରେ ପାଣିଦାଣ୍ଡି (ପାହାଡ଼) ଲଦା ହେବା—ଅନ୍ୟରୂପ)

**ଛାତିରେ ପଥର ଲଦି ବସିବା**—ଦେ. କ୍ରି—ସର୍ବଦା ଭୟ ଓ ଆଶଙ୍କା-
Chhātire pathara ladi basibā ଯୁକ୍ତ ଅଥଚ ଦମ୍ଭ ଧରି ବସିବା—To wait patiently with a great anxity or calamity impending over you.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚର୍ଚ୍ଚିତ ଅକ୍ଷର ଓ ମାତ୍ରା ଏବଂ ୨ ଚର୍ଚ୍ଚିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚର୍ଚ୍ଚିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବିପରୀତ ୨ ବା ୧ ଚର୍ଚ୍ଚିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଦୁଧ' ନ ମିଳିଲେ 'ଦୂଧ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଗ୍ୟା' ନ ପାଇଲେ 'ଅର୍ଘ୍ୟା' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ୍‌' ଦେଖିବେ

**ଛାତିରେ ପଥର ଲଦିବା**—ଦେ. କ୍ରି.—୧ । ଅସହ୍ୟ ଦୁଃଖ ବା ବିପଦ ଯୋଗୁଁ ଅତି ଚିନ୍ତାନ୍ୱିତ ହେବା—
Chhātire pathara ladibā
ବୁକେ পাথর চাপা — To be very anxious in expectation of an empending calamity.
**छातिपर पत्थर लदना**

୨ । ଅନ୍ୟ ବ୍ୟକ୍ତିକୁ ବିଶେଷ ବିପନ୍ନ କରିବା— 2. To endanger a person.

୩ । ଅନ୍ୟ ବ୍ୟକ୍ତିକୁ ବିଶେଷ ଚିନ୍ତାନ୍ୱିତ କରିବା— 3. To cause great anxiety to a person.

**ଛାତିରେ ପାଣିହାଣ୍ଡି ବସିବା**—ଦେ. ବି—ଛାତିରେ ପଥର ଲଦିବା (ଦେଖ)
Chhātire pāṇihāṇḍi basibā — Chhātire pathara ladibā (See)

**ଛାତିରେ ବାଉଁଶ ପକାଇବା**—ଦେ. କ୍ରି.—କୌଣସି ବ୍ୟକ୍ତିକୁ ଦଣ୍ଡ ଦେବା ବା ମାରି ପକାଇବା ପାଇଁ ତା ଛାତି ଉପରେ ଗୋଟିଏ ବାଉଁଶ ପକାଇ ଅନେକ ଲୋକ ତାକୁ ବାଉଁଶର ଦୁଇ ମୁଣ୍ଡକୁ ମାଡ଼ି ବସିବା—To press a bamboo at the ends after pressing it on a person's breast (to turture or kill him)
Chhātire bāunśa pakāibā
বুকে বাঁশ চাপা
**छातीपर बाँस देना**

**ଛାତିରେ ବାଳ ଉଠିବା**—ଦେ. କ୍ରି.—ଛାତି ଉପରେ ଲୋମ ଉଠିବା— 1. To have hair on one's breast.
Chhātire bāḷa uṭhibā
বুকে চুল উঠা
**छातीपर बाल उटना** [ଦ୍ର—ବାଲ୍ୟକାଳ ଅତିକ୍ରମ କରି ଯୁବାବସ୍ଥାରେ ପଦାର୍ପଣ କଲେ ମନୁଷ୍ୟଙ୍କ ଛାତିରେ ବାଳ ଉଠେ । ]

୨ । ଯୁବାବସ୍ଥାରେ ପଦାର୍ପଣ କରିବା— 2. To attain one's youth.

୩ । ନିଜର ସାଂସାରିକ କର୍ମ ବୁଝିବାପାଇଁ ଉପଯୁକ୍ତ ହେବା— 3. To become fit for looking after one's own affairs.

୪ । ବିଶ୍ୱାସୀପଣ ପ୍ରକାଶ କରିବା—4. To show signs of one's trustworthiness.

[ଦ୍ର—ଯେଉଁ ବ୍ୟକ୍ତି ଯୁବାବସ୍ଥା ପ୍ରାପ୍ତ ହେବା ପରେ ତା ଛାତିରେ ବାଳ ଉଠେ ନାହିଁ ସେ ଅତି ଅବିଶ୍ୱାସୀ ବୋଲି ଲୌକିକ ଧାରଣା ଓ ଚଳଣି ଅଛି । ]

**ଛାତିରେ ମୁଣ୍ଡରେ ହେବା**—ଦେ. ବି.—(ସ୍ତ୍ରୀ ଭାଷା)—କନ୍ୟା ରଜସ୍ୱଳା ହେବାକୁ ତାର ସ୍ତନଦ୍ୱୟ ସ୍ଫୀତ ଓ ପୃଥୁଳ ହେବା—Swelling of the breast of a grown up girl.
Chhātire muṇḍare hebā
ছাতিউভরনা

**ଛାତିରେ ମାରି ହେବା**—ଦେ. କ୍ରି.—ଗଭୀର ଶୋକାବେଗରେ ବକ୍ଷସ୍ଥଳରେ କରତାଡ଼ନା କରିବା—To strike one's palms on the breast in a paroxysm of grief; to wring one's breast in the agoney of grief
Chhātire māri hebā
বুক চাপড়ানা
**छाती पीटना, छाती कूटना**
ଛାତିରେ ପିଟି ହେବା } ଅନ୍ୟରୂପ
ଛାତିରେ ବାଡ଼େଇ ହେବା }

**ଛାତିଲଗାଇବା**—ଦେ. କ୍ରି.—୧ । ଆଲିଙ୍ଗନ କରିବା— 1. To embrace.
Chhāti lagāibā
বুকলাগনা

୨ । ଛାତିଦ୍ୱାରା ବଳ ପ୍ରୟୋଗ କରିବା ବା ପେଲିବା— 2 To push by the breast.
**छातीसे लगाना**

ଛାତି ଲଗେଇବା } ଅନ୍ୟରୂପ
ଛାତିକି ଛାତି ଲଗା(ଗେ)ଇବା }

୩ । ପରସ୍ପର ଛାତି ଲଗାଇ ପରସ୍ପରକୁ ସାହାଯ୍ୟ କରିବା— 3. To mutually help one another by putting the chest into a work.

୩ । ଅତି ସ୍ନେହ ଯୋଗୁଁ କୌଣସି ବ୍ୟକ୍ତିକୁ ସବୁବେଳେ ଆପଣା ପାଖରୁ ଅନ୍ତର ହେବାକୁ ନ ଦେବା— 3. Not to let a person part your company ( as a result of excessive fondness ); always to keep a person on one's side.

**ଛାତିରେ ହାତ ଦେବା**—ଦେ. କ୍ରି—୧ । ଶପଥ କରିବାବେଳେ ବକ୍ଷସ୍ଥଳରେ କରତଳ ଲଗାଇବା— 1. To touch one's breast with the palm while taking oath.
Chhātire hāta debā
বুকে হাত দেওয়া
**छातीपर हात रखना**
(ଛାତିରେ ହାତ ମାରିବା—ଅନ୍ୟରୂପ)

୨ । ସ୍ତ୍ରୀଲୋକର ସ୍ତନକୁ କରଦ୍ୱାରା ଧାରଣ କରିବା— 2. To handle the breast of a woman.

**ଛାତି ସମ୍ଭାଳିବା**—ଦେ. କ୍ରି—ଛାତି ଧରିବା ୨ ( ଦେଖ )
Chhāti sambhāḷibā — Chhāti dharibā 2 (See)

**ଛାତ୍ର**—ସଂ. ବି. ପୁଂ. ( ଛତ୍ର=ଆବରଣ ଅର୍ଥାତ୍ ଗୁରୁଙ୍କ ଦୋଷାବରଣ +ଶୀଳାର୍ଥେ. ଅ; ଯେ ଗୁରୁଙ୍କ ଦୋଷାବରଣ କରେ)—
Chhātra
ଛାତ୍ରା } ସ୍ତ୍ରୀ
ଛାତ୍ରୀ }
୧ । ଶିକ୍ଷାର୍ଥୀ; ଶିଷ୍ୟ; ପଢ଼ୁଆ— 1. Disciple; pupil; scholar; student.

୨ । ମଧୁବିଶେଷ—2. A kind of hony.

୩ । ମଦ୍ୟବିଶେଷ—3. A kind of wine.

**ଛାତ୍ରଗଣ୍ଡ**—ସଂ. ବି. ( ଛାତ୍ର+ନିନ୍ଦାର୍ଥେ. ଗଣ୍ଡ )—ମୂର୍ଖ; ନିର୍ବୋଧ ଓ ଅମନୋଯୋଗୀ ପଢ଼ୁଆ ପିଲା—A pupil who is indifferent to his studies.
Chhātragaṇḍa

**ଛାତ୍ରବୃତ୍ତି**—ସଂ. ବି. ( ୬ଷ୍ଠୀ ତତ୍; ଛାତ୍ର+ବୃତ୍ତି )—ଛାତ୍ରର ଜୀବିକା— Studentship; students life.
Chhātrabrutti

ଦେ. ବି.—(ଆଧୁନିକ ପ୍ରୟୋଗ) ପଠନେଚ୍ଛୁ, ପରିଶ୍ରମୀ ଓ ପ୍ରତିଭାଶାଳୀ ଛାତ୍ରକୁ ବିଦ୍ୟାଶିକ୍ଷା କରିବାନିମନ୍ତେ ଦିଆଯିବା ନିର୍ଦ୍ଦିଷ୍ଟ ଧନ ସାହାଯ୍ୟ; ବୃତ୍ତି—Scholarship; stipend; regular allowance given to a student for continuing his studies.

**ଛାତ୍ରବୃତ୍ତି ପରୀକ୍ଷା**—ଦେ. ବି. ( ଆଧୁନିକ ପ୍ରୟୋଗ )—ବୃତ୍ତିପରୀକ୍ଷା; ଯେଉଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ସର୍ବୋତ୍କୃଷ୍ଟ ଛାତ୍ରକୁ କର୍ତ୍ତୃପକ୍ଷମାନେ ମାସିକ ଧନ ସାହାଯ୍ୟ କରନ୍ତି ବା ବୃତ୍ତି ଦିଅନ୍ତି; ବିଦ୍ୟାଳୟର ଶେଷ ପରୀକ୍ଷା—Scholarship examination; final examination of a school or class.
Chhātra brutti parikshā

| ୧ | ଇ | ଉ | ର୍,ର୍ହ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ୟ | ଜ | ଶ,ଷ | ଙ୍କ | ଇଯ଼ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଢ଼ | ନ୍ |

**ଛାତ୍ରାବାସ**—ସଂ. ବି. ( ୬ଷ୍ଠୀ ତତ୍; ଛାତ୍ର+ଆବାସ )—ଯେଉଁଠାରେ
Chhātrābāsa ଶିକ୍ଷାର୍ଥୀମାନେ ଏକତ୍ର ବାସ କରନ୍ତି; ବୋର୍ଡିଂ; ହଷ୍ଟେଲ୍—Hostel; a students boarding house

**ଛାଦ**—ସଂ. ବି. ( ଛଦ୍ ଧାତୁ+କରଣ. ଅ )—
Chhāda ୧ । ବସ୍ତ୍ରାବରଣ; ଆଚ୍ଛାଦନ—1. Covering.
୨ । ଘରର ଛାତ—2. Roof or thatch of a house.
୩ । ବୃକ୍ଷର ପତ୍ର—3. Leaf of a tree.
୪ । ଛାଲି; ବକଳା—4 Bark.
୫ । ଚମଡ଼ା—5. Skin; hide.

**ଛାଦକ**—ସଂ. ବିଣ. (ଛଦ୍ ଧାତୁ ଣିଚ୍=ଛାଦି ଧାତୁ+କର୍ତ୍ତୃ. ଅକ)—
Chhādaka ଆଚ୍ଛାଦନକାରୀ—
Covering; one who covers a thing.
ସଂ. ବି—ଘର ଛାଉଣିଆ; ଯେ ଘର ଛପର କରେ—
A thatcher.

**ଛାଦନ**—ସଂ. ବି. ( ଛାଦି ଧାତୁ+ଭାବ. ଅନ )—
Chhādana ୧ । ଆଚ୍ଛାଦନ; ଆବରଣ—
1. Covering enveloping.
୨ । ଘୋଡ଼ାଇବା—2. Concealing.
୩ । ଘର ଛାଉଣି କରିବା—
3. Thatching of the roof of a house.
୪ । (+କରଣ. ଅନ) ଛାତ—4. Roof or thatch.
୫ । ପତ୍ର—5. Leaf
୬ । ଛାଲି—6. Bark.
୭ । ଚମଡ଼ା—7. Skin
୮ । ଦେହାବରଣ ବସ୍ତ୍ର—
8. Dress; cloth; raiment; clothing.
୯ । ଓଢ଼ଣା—9. A veil.
୧୦ । ଘୋଡ଼ଣୀ; ଘଣ୍ଟାଟୋପ—13. A cover.

**ଛାଦିତ**—ସଂ. ବିଣ. ( ଛାଦି ଧାତୁ+କର୍ମ. ତ )—
Chhādita ୧ । ଆଚ୍ଛାଦିତ; ଆବୃତ—1. Covered.
୨ । ଲୁଚି ଯାଇଥିବା—2. Concealed.
୩ । ଓଢ଼ଣାରେ ଆବୃତ—3. Veiled.

**ଛାନି**—ଦେ. ବିଣ. ( ସଂ. ଛାଦ୍ ଧାତୁ )—ଚକ୍ଷୁର ଡୋଳା ଉପରେ ମାଡ଼ି
Chhāni ଯିବା ପତଳା ଚମଡ଼ା; ପରଳ; ଆଖି ଡୋଳାର ମାଛ-
ଛାନି କାତିଆ ରୋଗ; ମୋତିଆବିନ୍ଦୁ—1. Cataract
मोतियाबिन्द in the eye; a pearl in the eye.

**ଛାନିଆଁ**—ଦେ. ବି. ( ସଂ. ଛନ୍ନ )—
Chhāniāñ ୧ । ଛନକା; ହଠାତ୍ ଉପସ୍ଥିତ ଭୟ; ଶଙ୍କା—
ଚମକ 1. Sudden fear; fright; terror; alarm.
ছনক
୨ । ହଠାତ୍ ଉପସ୍ଥିତ ଭୟଯୋଗୁଁ ହୃଦୟରେ ହେବା ଆବେଗ; ଚମକ—
2. Shying produced by fright.
ଦେ. ବିଣ—୧ । ଭୀତ; ତ୍ରସ୍ତ—1. Frightened;
ଚମକେ alarmed; terror striken; struck dumb with terror.
୨ । ଡରୁଆ; ଭୀରୁ; ଭୟାଳୁ—2. Timid.

**ଛାନିଆଁ କରିବା**—ଦେ. କ୍ରି—ହଠାତ୍ ଭୟ ଜାତ କରିବା—
Chhāniāñ kariba To frightened; to terrify.
ଚମକାନ
ছনকানা
(ଛାନିଆଁ ଲଗାଇବା—ଅନ୍ୟରୂପ)

**ଛାନିଆଁ ପଶିବା**—ଦେ ବି—( ମନରେ ) ହଠାତ୍ ଭୟଜନିତ ଶୃଙ୍ଖଳ୍ୟ
Chhāniāñ pasiba ଉପସ୍ଥିତ ହେବା; ଚମକ—
Sudden fright.

**ଛାନିଆଁ ପୂରାଇବା**—ଦେ. କ୍ରି—୧ । ଛାନିଆଁ କରିବା ( ଦେଖ )
Chhāniāñ pūrāibā 1. Chhāniāñ karibā (See)
୨ । କାଳେ ଭୟତ୍ରସ୍ତ ହେବା—
2. To be alarmed.

**ଛାନ୍ଦ**—ଦେ. ବି (ସଂ. ଛନ୍ଦଃ)—୧ । ପଦ୍ୟର ରାଗିଣୀ—
Chhānda 1. Metre of a poem.
छन्द; छँद् ୨ । ଗୀତର ରାଗ—2. Musical air.
ছঁদ ୩ । ଏକ ରାଗିଣୀରେ ବନ୍ଧାଯାଇଥିବା ପଦ୍ୟ ବା ଗୀତ—
3. Poem composed in a particular metre.

**ଛାନ୍ଦବନ୍ଧି**—ଦେ. ବିଣ (ସଂ. ଛନ୍ଦୋବଦ୍ଧ)—ରାଗିଣୀରେ ରଚିତ—
Chhāndabandi Composed metrically; metrically.
(ଛାନ୍ଦବନ୍ଧ—ଅନ୍ୟରୂପ)

**ଛାନ୍ଦମାଳା**—ଦେ. ବି—ଓଡ଼ିଶାର ଭକ୍ତ କବି ମଧୁସୂଦନଙ୍କ ରଚିତ
Chhāndamālā ଲୋକପ୍ରିୟ ଶିଶୁପାଠ୍ୟ ପଦ୍ୟପୁସ୍ତକ—
Title of a book of small poems for young pupils by poet Madhusūdana.

**ଛାନ୍ଦସ**—ସଂ. ବି. ପୁଂ ( ଛନ୍ଦସ୍=ବେଦ+ଅଧ୍ୟୟନାର୍ଥେ. ଅ )—
Chhāndasa ୧ । ବେଦାଧ୍ୟାୟୀ ଛାତ୍ର—1. A student learning the Bedas.
୨ । ବେଦାଧ୍ୟାପକ—2. A teacher of the Bedas.
୩ । ବେଦବ୍ୟାଖ୍ୟାନଯୁକ୍ତ ଗ୍ରନ୍ଥ—
3. A commentary on the Bedas.
ସଂ. ବିଣ—୧ । ବୈଦିକ; ବେଦ ସମ୍ବନ୍ଧୀୟ—1. Relating to the Bedas; Vedic.
ଛାନ୍ଦସ୍ ବଳୀର ଅନୁଷ୍ଠାନ ଗୁରୁ—ସୁଧାନାଥ. ଦରବାର ।
୨ । ମୂର୍ଖ ( ହି. ଶବ୍ଦସାଗର )—2. Illiterate.

ସାଧାରଣ ଲୋକେ ଅପରି ପୃଷ୍ଠାରେ ହ୍ରସ୍ୱ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'ବୃଥ' ନ ମିଳିଲେ 'ବୃଥା' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଗ' ନ ପାଇଲେ 'ଅଲ୍‌ବଗ' ଦେଖିବେ ।

୩ । ବେଦଜ୍ଞ (ହି. ଶବ୍ଦସାଗର)—
3. Versed in the Vedas.

୪ । ଛନ୍ଦଃ ସମ୍ବନ୍ଧୀୟ—4. Relating to metre; metrical.

୫ । ବେଦୋକ୍ତ; ବେଦରେ ବର୍ଣ୍ଣିତ—
5. Described the Bedas.

**ଛାନ୍ଦସ ଜ୍ୟୋତିଃ**— ସଂ. ବି (ଛାନ୍ଦସ=ବେଦୋକ୍ତ+ଜ୍ୟୋତି=ତେଜଃ)
Chhāndasa Jyotiḥ ସୂର୍ଯ୍ୟ— The sun.

ଉତ୍ସବ ଚାଲିଛି ଉଦେ ଭୂମଣ୍ଡ ଯଣ
ସ୍ୱୀପିବେ ଯାବତ ଏ ଜ୍ୟୋତି ଛାନ୍ଦସ । ରାଧାନାଥ.

[ଦ୍ର—ସୂର୍ଯ୍ୟ ଅର୍ଥରେ ଏ ଶବ୍ଦର ପ୍ରୟୋଗ କୌଣସି ଅଭିଧାନରେ ଦେଖାଯାଏ ନାହିଁ, ସମ୍ଭବତଃ କବିବର ରାଧାନାଥ, ସୂର୍ଯ୍ୟ ବେଦରେ ଆଦିମ ଜ୍ୟୋତିରୂପେ ବର୍ଣ୍ଣିତ ହୋଇଥିବାରୁ ସୂର୍ଯ୍ୟଙ୍କୁ 'ଛାନ୍ଦସଜ୍ୟୋତି' ନାମରେ ଅଭିହିତ କରିଅଛନ୍ତି । ]

**ଛାନ୍ଦୋଗ୍ୟ**—ସଂ. ବି (ଛନ୍ଦସ୍=ବେଦସମ୍ବନ୍ଧୀୟ+ଗମ୍ ଧାତୁ+କର୍ତ୍ତୃ. ଅ)—
Chhāndogya ବେଦ ମଧ୍ୟରେ ଗାନଯୋଗ୍ୟ ଅଂଶ; ସାମବେଦର ଅଂଶବିଶେଷ—A part of the Sāma Beda which can be sung.

**ଛାପ୍**—ଦେ. ବି (ମୁସଲମାନ ବ୍ୟବହୃତ)—ବିବାହ ଉପଲକ୍ଷରେ କନ୍ୟା
Chhāp ପକ୍ଷରୁ ବରକୁ ଉପହାର ଦିଆଯିବା ରୁମାଲର ଚାରି କୋଣରେ ଗଣ୍ଠିପକେଇ ବନ୍ଧାଯାଇଥିବା ସୁନା ବା ରୂପାର ଚାରିଗୋଟି ମୁଦିଆ—Four rings tied to the four corners of a handkerchief present to the bride-groom by the brides party on the occasion of a marriage before the marriage ceremony is formally solemnised amongst the Mahomedans.

**ଛାପ୍‌କିବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ହାତରେ କୌଣସି ପଦାର୍ଥକୁ
Chhāpkibā ଚପିକରି ଧରିବା—To press a thing with ones palm.

**ଛାପ୍‌ବା**—ପ୍ରାଦେ ( ସମ୍ବଲପୁର ) କ୍ରି ( ସଂ. ଛାପି ଧାତୁ )—ବୋଳିବା;
Chhāpbā , ମର୍ଦ୍ଦାଇବା; ଲେପିବା—To smear over; to daub.

(ଯଥା—କଣ୍ଠା ଘାରେ କେଶର ଛାପ୍‌ବା—ସମ୍ବଲପୁରୀ ଭାଷା=କଣ୍ଠା ଘାରେ କେଶର ମର୍ଦ୍ଦାଇବା)

**ଛାପ**—ଦେ ବି (ସଂ. ଚପ୍ ଧାତୁ=ଚୂର୍ଣ୍ଣ କରିବା—ଯୋଗେଶଚନ୍ଦ୍ର; ସଂ. ଛପ୍
Chhāpa ଧାତୁ=ଖର୍ବକରିବା—ଜ୍ଞାନେନ୍ଦ୍ର)—୧ । ମୁଦ୍ରା; ଚିହ୍ନ—
ଛାପା 1. Print; mark; impression.
ଛାପ

ଛାପତିଳକ ମାଳା ଶୋଭେ
ନବଦ୍ଧି କାମ କ୍ରୋଧ ଲୋଭେ—ଭୂପତି ପ୍ରେମପଞ୍ଚାମୃତ ।

୨ । ହରିନାମାବଳମୁଦ୍ରିତ ଧାତୁଫଳକ; ଯହିଁରେ ଚନ୍ଦନ ବୋଳି ଦେହରେ ଛାପିଦେଲେ ହରିନାମ ଶରୀରରେ ଅଙ୍କିତ ହୋଇଯାଏ; ଛାପା; ଛପା; ହରିନାମମୁଦ୍ରା—
2. An engraved block with words containing the name of God which is impressed on the body.

ଅଙ୍ଗେ ବହନ୍ତି ଅନେକ ଛାପ,
କେହି ନ ଜାଣେ ଛାତର ପାପ । ଦୀନକୃଷ୍ଣ, ରସକଲ୍ଲୋଳ ।

୩ । ମୁଦ୍ରଣ—3 Stamping; printing.

୪ । ଛାପା ମାରିବା ମୋହର—
4. Seal; stamp; a dye.

୫ । (ବଣିଆ ଶବ୍ଦ) ମୁସଲମାନଙ୍କର ଏକ ପ୍ରକାର ହାତରେ ପିନ୍ଧିବା ମୁଦି - A kind of ring

୬ । (ସଂ. ଷ୍ଠୀବନ) ଛେପ; ଥୁକ—6. Spittle.

୭ । ଅକ୍ଷର ଲେଖା ହୋଇଥିବା ଧାତୁଫଳକ—7 An engraved block for printing on paper; calico.

**ଛାପଚିକଣ**—ଦେ. ବିଣ. (ସଂ. ଛବି ଓ ଚିକ୍କଣ)—୧ । ନାନା ବର୍ଣ୍ଣରେ
Chhāpachikaṇa ଚିତ୍ରିତ; ଚିତ୍ରବିଚିତ୍ର; ସବଳ ଓ ପରିଷ୍କୃତ
ରଂଗଢ଼ଂଗେ ପଚିଛଳ; ଛାପଛାପିକା; ଛଉଳିକା—
**ରଂଗ ବିରଂଗ** 1. Variegated; mottled.

ଛାପଚିକଣା, ଛାପଚିକଣିଆ, ଛାପଚିକଣିଆଁ } ଅନ୍ୟରୂପ

୨ । ମନୋହର; ଛଇଳ—
2. Beautifully; coloured.

୩ । ଛଇଲା—3. Dandy; fophish.

୪ । ଧୋବଧାଉଳିଆ; ଭଦ୍ର ପରିଚ୍ଛଦଧାରୀ—
4. Wearing gentleman's dress.

**ଛାପଛାପକା**—ଦେ. ବିଣ.—ବହୁବର୍ଣ୍ଣଚିତ୍ରିତ; ନାନା ବର୍ଣ୍ଣରେ ରଞ୍ଜିତ;
Chhāpachhāpakā ଛାପଛାପିକା—
ଛିମଛିମେ Mottled; variegated; spotted.
**ରଂଗ ବିରଂଗ**

ଛାପଛାପିକା, ଛାପଛାପିକିଆ } ଅନ୍ୟରୂପ

**ଛାପଦେବା**—ଦେ. କ୍ରି.—ଛାପା ମାରିବା (ଦେଖ)
Chhāpa debā Chhāpā māribā (See)
(ଛାପା ମାରିବା—ଅନ୍ୟରୂପ)

ଛାପ ଦେଇ ଲଘୁ ନ କର ହେଲେ,
ଛାତ ଥେକାଇ ଦେ ଚରଣୀକୁଳେ ।
କବିସୂର୍ଯ୍ୟ ବଳଦେବରଥ ।

**ଛାପମୁଦି**—ଦେ. ବି.— ଛାପା ମୁଦି (ଦେଖ)
Chhāpa mudi Chhāpā mudi (See)

**ଛାପର୍**—ପ୍ରାଦେ. (ସମ୍ବଲପୁର) ବି.—ମଇଁଷିଗାଧୁଆ ଛୋଟ ଜଳାଶୟ ବା
Chhāpar କୁଣ୍ଡ—A water reservoir for buffaloes to bathe.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଙ୍ଖ | ଢ଼ଅ | ଘ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ନଅ | ଡ଼ | ନ୍ତ |

ଛାପରା—ଦେ. ବଣ.—ଛୋପରା (ଦେଖ)
Chhāparā Chhoparā (See)

ଛାପଲ୍—ପ୍ରାଦେ. (ସମ୍ବଲପୁର) ବି.—ଛାପର (ଦେଖ)
Chhāpal Chhāpar (See)

ଛାପା—ଦେ. ବି. (ସଂ. ଛବି); ସଂ. ଚପନ; ହି. ଶବ୍ଦସାଗର)—୧ । ମାର୍କା; ମୁଦ୍ରାଙ୍କନ; ମୁଦ୍ରିତ ଚିହ୍ନ—
Chhāpā
ছাপ 1. Painted mark or spot.
छापा ୨ । ମୁଦ୍ରାକ୍ଷରବିନ୍ୟାସ; ମୁଦ୍ରଣ—
2. Printing; stamping
୩ । ମୁଦ୍ରା; ମୋହର—3. Seal; stamp; dye.
୪ । ମୁଦ୍ରା; ଚିହ୍ନ—4. Print-mark; impression.
୫ । ନାମାଙ୍କିତ ମୁଦ୍ରା ବା ଫଳକ—5. Engraved block for printing on body, paper or cloth.
୬ । କଳ ମୋହର—6. A coin.
୭ । ହରିନାମାଙ୍କିତ ତିଳକ—7 Figures made with sandal paste on the body representing the name of God.
ସର୍ବାଙ୍ଗରେ ଛାପା ଲଗାଇ ହରିନାମ ଶୁଣାଇବା
ସକାଶେ ଗ୍ରାମକୁ ବାହାରନ୍ତି । ଫକୀରମୋହନ—ଛମାଣଆଠଗୁଣ୍ଠ ।
ଦେ. ବିଣ—୧ । ମୁଦ୍ରିତ—1. Printed.
୨ । ଚିହ୍ନିତ—2. Stamped; impressed.
୩ । ମୋହରଦିଆ; ମୁଦ୍ରାଙ୍କିତ—3. Sealed.

ଛାପାଇବା—ଦେ. କ୍ରି. (ଛାପିବାର ଣିଜନ୍ତରୂପ)—ମୁଦ୍ରିତ କରାଇବା—
Chhāpāibā To get printed or published.
ছাপান
छपाना
(ଛପେଇବା)

ଛାପା କରିବା—ଦେ. କ୍ରି—ମୁଦ୍ରିତ କରିବା—
Chhāpā karibā To print.

ଛାପାକଳ—ଦେ. ବି—ମୁଦ୍ରାଯନ୍ତ୍ର—
Chhāpākaḷa Printing machine.
ছাপাকল
छापेका कल

ଛାପା କାଗଜ—ଦେ. ବି—୧ । ମୁଦ୍ରିତ କାଗଜ—
Chhāpā kāgaja 1. Printed paper.
ছাপা কাগজ ୨ । କାଳିଶୋଷିବା କାଗଜ—2. Blotting paper.
छापाहुआ कागज

ଛାପା ଖରଚ—ଦେ. ବି—ମୁଦ୍ରଣ ବ୍ୟୟ—
Chhāpā kharacha Printing charges.
ছাপাই খরচ
छपाईका खर्च

ଛାପାଖାନା—ଦେ. ବି—ପ୍ରେସ୍; ମୁଦ୍ରାଳୟ; ଯେଉଁ ସ୍ଥାନରେ ମୁଦ୍ରାଯନ୍ତ୍ରଦ୍ୱାରା ପୁସ୍ତକାଦି ମୁଦ୍ରିତ ହୁଏ—
Chhāpākhānā
ছাপাখানা Printing house. press.
छापाखाना

ଛାପା ମାରିବା—ଦେ. କ୍ରି —୧ । ମୋହରଦ୍ୱାରା ମୁଦ୍ରିତ କରିବା; ଛାପିବା—
Chhāpā māribā 1. To set a stamp or dye on.
ছাপা মারা ୨ । ଦାଗ ଦେବା—2 To mark.
छापा मारना ୩ । (ଲକ୍ଷଣାର୍ଥ) ଦୋଷାରୋପ କରିବା, କଳଙ୍କଯୁକ୍ତ
(ଛାପାଦେବା—ଅନ୍ୟରୂପ) କରିବା—3. ( figurative ) To stain one's character.

ଛାପାମୁଦି— ଦେ. ବି —ଛପାମୁଦି (ଦେଖ)
Chhāpāmudi Chhapāmudi (See)

ଛାପି—ଦେ ବି—ଦେହରୁ ଝାଳ ଆଦି ପୋଛିବା ଛୋଟ ଗାମୁଛା—
Chhāpi A small napkin to cleanse.

ଛାପିଛାପିକିଆ—ଦେ. ବି—ଛାପଛାପକା ( ଦେଖ )
Chhāpichhāpikiā Chhāpachhāpakā ( See )
(ଛାପିଛାପିକା—ଅନ୍ୟରୂପ) ଝିଲ୍ଲି ସଙ୍ଗେ ଜବ ଛାପିଛାପିକିଆ
ପ୍ରଦୋଷର ମହାଚ୍ଛାୟା । ରାଧାନାଥ—ଯଯାତି ।

ଛାପିଛାପି ଦେବା —ଦେ. କ୍ରି—କନା ବା ଛାପା କାଗଜରେ ବାରମ୍ବାର ଛାପିବା—To blot repeatedly
Chhāpichhāpi debā with blotting or rag

ଛାପି ଦେବା—ଦେ. କ୍ରି—ପୁସ୍ତକାଦିକୁ ମୁଦ୍ରିତ କରିବା—
Chhāpi debā To print a book.
ছাপে দেওয়া
छाप देना

ଛାପି ନେବା—ଦେ. କ୍ରି—ପୁସ୍ତକାଦିକୁ କୌଣସି ମୁଦ୍ରାଳୟ ବା ପ୍ରେସରେ ଛପାଇବା—To get a book printed at
Chhāpi nebā some press.
ছেপে লওয়া
छाप लेना

ଛାପିବା—ଦେ. କ୍ରି. (ସଂ. ଚପନ—ହି. ଶବ୍ଦସାଗର)—
Chhāpibā ୧ । ମୁଦ୍ରାଙ୍କନ କରିବା—1. To print.
ছাপা; ছাপান ୨ । ମୋହର ମାରିବା; ମୁଦ୍ରଣ କରିବା—
छापना 2. To cast a dye; to stamp; to impress.
୩ । ସଦ୍ୟ ଲେଖା କାଗଜରୁ କାଳିକୁ ଶୋଷିବା ନିମନ୍ତେ ଛାପା କାଗଜ ମାରିବା—3. To blot or to apply bloting paper on a newly written paper.
୪ । ଊଣ୍ଡି ଯାଇଥିବା ପାଣି, କାଳି, ତେଲ ଆଦିକୁ କନାଦ୍ୱାରା ଶୋଷାଇବା—4. To apply a rag to spilt liquid for soaking.
[ ଦ୍ର—ତେଲିଆ ତେଲ ପେଡ଼ିଲାବେଳେ ଘଣାରୁ ଏହିପରି ତେଲ ଛାପିଆଣି ଛାପା କନାକୁ ତେଲଘଡ଼ିରେ ଚପୁଡ଼ି ତେଲ ସଂଗ୍ରହ କରେ । ]

ସାଧାରଣ ଲୋକେ ଅପର ବୃତ୍ତାରେ ସନ୍ତତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ରୂପଲବ୍ଧ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଇ' ନ ମିଳିଲେ 'ଗାଈ' ଖୋଜିବେ, 'ଲୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଗିଁ ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

୫ । ଛପିବା; ଲୁଚିବା—
5. To be hidden; to hide one s self.
୬ । ମାର୍କା ଦେବା; ଚିହ୍ନ ଦେବା—
6. To impress; to imprint.
୭ । ଗାଧୋଇବା ପରେ ଦେହରୁ ଗାମୁଛାଦ୍ୱାରା ପାଣି ପୋଛିବା ।
7. To scour the wet body with a napkin after bath.
ସ୍ନାନାନ୍ତେ ପାଣି ଅଣି ଆଚ୍ଛାଦିଲେ
ଉଦଅଙ୍ଗେ ଦେହ ବସନେ ଛପି ଦେଲେ—କୃଷ୍ଣସିଂହ. ମହାଭାରତ. ଆଦ ।
୮ । ଗୃହ ଇତ୍ୟାଦି ଛୋଇଁବା ବା ମରାମତି କରିବା—
8. To thatch.
ଘଷା କୁଡ଼ଆକୁ ଛପୁଛନ୍ତି ଭଙ୍ଗା ବାଡ—ପ୍ରାଚୀ. ବ୍ରହ୍ମନାରୁପଣଗୀତା ।

**ଛାବଲ**—ଦେ. ବି—ଏକପ୍ରକାର ଖେଳ ( ଗୋପୀନାଥ ନନ୍ଦ )—
Chhābaḷa A kind of game or sports.

**ଛାମୁ**—ଦେ. ବି. ( ସଂ. ସମ୍ମୁଖ )—୧ । ସମ୍ମୁଖ—
Chhāmu 1. Front side.
ହୁଜୁର ୨ । ନୈକଟ୍ୟ—2. Nearness; proximity.
ହଜୁର ୩ । ( ଅନ୍ୟ ପୁରୁଷ ) ରାଜା ବା ସମ୍ମାନାର୍ହ ବ୍ୟକ୍ତିଙ୍କ ସମୀପ, ସାନ୍ନିଧ୍ୟ; ହଜୁର—
3. Royal presence or majesty.
( ଯଥା—ମୁଁ ଆଜି ରଜାଙ୍କ ଛାମୁକୁ ଯାଇଥିଲି । )
୪ । ଦେବତାଙ୍କ ସାନ୍ନିଧ୍ୟ ବା ସାମ୍ମୁଖ୍ୟ—
4. The vicinity of a deity.
( ଯଥା—କୋଠ ଭୋଗ ଦେବତାଙ୍କ ଛାମୁରେ ବଢ଼ା ହୁଏ । )
ଦେ. ବିଣ—୧ । ସମ୍ମୁଖରେ ଥିବା—
1. Situate in front.
( ଯଥା—ଛାମୁଦାନ୍ତ । )
୨ । ଯେଉଁ ସେବକ ରାଜା ବା ଦେବତାଙ୍କ ସମ୍ମୁଖରେ ସେବା କରେ—2. ( a servant ) Who renders service in the presence of a king or deity.
( ଯଥା—ଛାମୁ ଖୁଣ୍ଟିଆ; ଛାମୁ ମସାଲଚୀ । )
ଦେ. ଅ—୧ । ଶ୍ରୀ ମହାରାଜ !; ଭୋଦେବ !; ମହିମା !; ଶ୍ରୀହଜୁର—
1. An address to Royl Highness meaning Your Highness; Your Majesty !.
[ ଦ୍ର—ରାଜାଙ୍କୁ ଆପଣ ବୋଲି ନ କହି ଛାମୁ ସମ୍ବୋଧନ କରନ୍ତି । ଯଥା—ଛାମୁ ! କଣ ଆଜ୍ଞା କରୁଅଛନ୍ତି ? ]
୨ । ( ଶିଷ୍ୟ ଗୁରୁଙ୍କୁ କିମ୍ବା ପ୍ରଜା ରାଜାଙ୍କୁ ଉତ୍ତର କରିବାରେ ପ୍ରଯୋଜ୍ୟ ଅବ୍ୟୟ ) ଆଜ୍ଞା; ଅବଧାନ; ହଁ—
2. ( interjection used in response to a king or preceptor ) Yes ! Your Highness.

**ଛାମୁଆଁ**—ଦେ. ବିଣ—୧ । ସମ୍ମୁଖସ୍ଥ—
Chhāmuāṅ 1. Frontal.
୨ । ସମ୍ମୁଖ ବା ସନ୍ନିଧିରେ ଥିବା; ଛାମୁରେ ସର୍ବଦା ଉପସ୍ଥିତ ଥିବା; ସର୍ବଦା ଛାମୁଙ୍କ ଗହଣରେ ଥିବା—2 Living or always present near His Majesty.
ଦେ. ବି—୧ । ରାଜାଙ୍କ ପାର୍ଶ୍ୱଚର ଭୃତ୍ୟ; ଛାମୁଙ୍କ ଖାସ୍ ସେବାକାରୀ ଚାକର—
1. Personal servant of a Rājā.
ଆସନ୍ତ ପୂଜକଦଳ ଛାମୁଁ ନାନାମତେ
ପ୍ରଣାମ ଛାମୁଆ ପଣେ ··· ·· । ରଘୁନାଥ. ମହାଯାତ୍ରା ।
୨ । ରାଜାଙ୍କ ପାଖରେ ରହିବା ମୋସାହେବ—
2. A hanger-on on a king.
ଦେ. ବି. ସ୍ତ୍ରୀ—୧ । ରାଜାଙ୍କ ଶ୍ରୀଅଙ୍ଗଲଗା ଦାସୀ; ରାଜାଙ୍କ ଅଙ୍କବାହୁଡା ରକ୍ଷିତା ଦାସୀ; ଯେ ସର୍ବଦା ରାଜାଙ୍କ ଅଙ୍ଗ ସେବା କରେ—1. Personal maid servant or concubine of a Rāiā.

**ଛାମୁଆଁ ଦାନ୍ତ**—ଦେ. ବି. ( ସଂ. ସମ୍ମୁଖ + ଦନ୍ତ )—
Chhāmuāṅ dānta ଛାମୁଦାନ୍ତ ( ଦେଖ )
Chhāmudānta ( See )

**ଛାମୁକରଣ**—ଦେ. ବି—ରାଜା ବା ବଡ଼ଲୋକଙ୍କ ନିକଟରେ ସର୍ବଦା ଉପସ୍ଥିତ ଥିବା ଘରୋଇ ହିସାବପତ୍ର ରଖିବା କର୍ମଚାରୀ; ହଜୁର ବିରୋଇ—
Chhāmukaraṇa
1. A personal accounts clerk.
୨ । ରାଜା ବା ବଡ଼ଲୋକଙ୍କ ନିକଟରେ ଯେ କାଗଜ ପେସ୍ କରନ୍ତି; ପେସ୍କାର—2. A peskar; a clerk who puts up paper befor a Rājā or rich-man.

**ଛାମୁକରଣି**—ଦେ. ବି—ଛାମୁକରଣପଣିଆଁ ; ଛାମୁକରଣର କାମ—
Chhāmukaraṇi The duty of a Chhāmukaraṇa.

**ଛାମୁ କରିବା**—ଦେ. କ୍ରି—( ଅତି ମାନ୍ୟାର୍ଥେ ରାଜା ପ୍ରଭୃତିଙ୍କୁ ) ନମସ୍କାର କରିବା—To bow down ( to great man or king ).
Chhāmu karibā

**ଛାମୁଖୁଣ୍ଟିଆ ସେବକ**—ଦେ. ବି—ଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ସେବକ-ବିଶେଷ ।
Chhāmukhuṇṭiā sebaka
[ ଦ୍ର—ଏମାନେ ପ୍ରତ୍ୟହ ଫୁଲ, କରପଲ୍ଲବ ଇତ୍ୟାଦି ଆଣି ସରସରେ ସାଇତି ରଖନ୍ତି; ଅବକାଶବେଳକୁ ଫିହାରିମାନଙ୍କୁ ହକାରି ଆଣନ୍ତି ଏବଂ ଅଣସରଦ୍ୱାର ଜଗନ୍ତି । ଜଗବନ୍ଧୁ—ପ୍ରାଚୀନ ଉତ୍କଳ । ]

**ଛାମୁଗହଣ**—ଦେ. ବି. (ସଂ. ସମ୍ମୁଖ + ଗଣ)—ରାଜାଙ୍କ ସମଭିବ୍ୟାହାର—
Chhāmugahaṇa Company of or attendance on a king.
(ଛାମୁଙ୍କ ଗହଣ—ଅନ୍ୟରୂପ)
( ଯଥା—ଛାମୁ ଗହଣରେ ୧୦୦ ଲୋକ ଆସୁଅଛନ୍ତି । )

**ଛାମୁଚିଟାଉ**—ଦେ. ବି—୧ । ରାଜାଙ୍କ ଆଦେଶପତ୍ର; ଯେଉଁ ଆଦେଶପତ୍ର ସ୍ୱୟଂ ରାଜାଙ୍କ ଶ୍ରୀହସ୍ତାଙ୍କିତ ହୋଇ ପଠାଯାଏ—
Chhāmuchiṭāu
1. A letter emanating from the kings royal presence.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ତ | ଉଥ | ଘ |
| ୨ | ଈ | ଉ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ | ଇଥ | ଡ଼ | ନ୍ତୁ |

୨ । ସନନ୍ଦ—2. Charter.

**ଛାମୁଡ଼ିଆ**—ଦେ. ବି. ( ସଂ. ଛାୟାମଣ୍ଡପ )—
Chhāmurdiā ଛାଁଦଲା मंडप; बारहदरी
ଛାମୁଣ୍ଡା, ଛାମୁଣ୍ଡି, ଛାମୁଣ୍ଡିଆ } ଅନ୍ୟରୂପ
୧ । ବିବାହାଦି ଉତ୍ସବ ନିମନ୍ତେ କରାଯାଇଥିବା ଡାଳପତ୍ରାଦି ରଚିତ ଛାୟାଯୁକ୍ତ ଅସ୍ଥାୟୀ ମଣ୍ଡପ - 1. A temporary awning or shade made of branches and twigs put on a frame-work of bamboos; built on ceremonial occasions
[ ଦ୍ର—ଏହା ତଳେ ବିବାହ ବେଦୀ ହୁଏ ଏବଂ ଜାତିଭାଇମାନେ ବସି ଭୋଜନ କରନ୍ତି । ]
ବିଚିତ୍ର ବାଲି ବେଦି ନୁଆଁ, ମାଧବୀକୁଞ୍ଜ ଛାମୁଡ଼ିଆ—
ଭୂପତି. ପ୍ରେମପଞ୍ଚାମୃତ ।

୨ । ଜାତିଚ୍ୟୁତ ବା ପ୍ରାୟଶ୍ଚିତ୍ତୀ ହାଟୁଆ ଜାତିର ବ୍ୟକ୍ତି ଜାତିଭାଇଙ୍କୁ ଯେଉଁ ଛାୟାମଣ୍ଡପ ତଳେ ଖୁଆଏ—
2. A temporary shed raised by a person for feeding his caste men on occasion of expiation.

**ଛାମୁଣ୍ଡିଆ କରିବା**—ଦେ. କ୍ରି—୧ । ଛାୟାମଣ୍ଡପ ନିର୍ମାଣ କରାଇବା—
Chhāmundiā kariba 1. To raise a temporary shed
(ଛାମୁଣ୍ଡିଆ ବାନ୍ଧିବା—ଅନ୍ୟରୂପ) for ceremonial occasions.

୨ । ହାଟୁଆସମାଜର ପତିତ ବ୍ୟକ୍ତି ଜାତିରେ ପୁନର୍ଗୃହୀତ ହେବା ନିମନ୍ତେ ପ୍ରାୟଶ୍ଚିତ୍ତ କରି ଜାତିଭାଇଙ୍କୁ ଖୁଆଇବା—
2. To perform expiation and feed the cast-men in order to be admitted into the folds of one's society; ( said of a person of the Hāṭuā society excomunicated from society ).

[ ଦ୍ର—ହାଟୁଆ ଜାତି ମଧ୍ୟରେ କେହି ଜାତିଚ୍ୟୁତ ହେଲେ ସେ ଜାତିରେ ପୁନର୍ବାର ଗୃହୀତ ହେବା ନିମନ୍ତେ ପ୍ରାୟଶ୍ଚିତ୍ତ କରି ଜାତିଭାଇଙ୍କୁ ଖୁଆଇବା ନିମନ୍ତେ ଛାମୁଣ୍ଡିଆ କରେ । ]

**ଛାମୁଦାନ୍ତ**—ଦେ. ବି. ( ସଂ. ସମ୍ମୁଖ+ଦନ୍ତ )—ପାଟିର ସମ୍ମୁଖରେ
Chhāmudānta ଥିବା ଦାନ୍ତ; ଆଗଦାନ୍ତ—
सामनादाँत Front tooth; incisor ( teeth ).
ଚକ୍ଷୁର ଛାମୁଦାନ୍ତ ଦୁଇଗୋଟି ବାହାରି ହୋଇ × × ×
ପଦ୍ମଭୃଙ୍ଗ ପରି ଟେକ ରହିଥିବାରୁ ସେ ଶିଶୁବଦନା—
ଫକୀରମୋହନ, ଛମାଣଆଠଗୁଣ୍ଠ ।

**ଛାମୁଦାନ୍ତୁରା**—ଦେ. ବିଣ ପୁଂ—ଯେଉଁ ବ୍ୟକ୍ତିର ଛାମୁଦାନ୍ତମାନ ବଡ଼ ବଡ଼
Chhāmudānturā ହୋଇ ଆଗକୁ ଫୁଟି ବସିଥାଏ—(a person)
( ଛାମୁଦାନ୍ତୁରୀ—ସ୍ତ୍ରୀ ) Having the front teeth projecting beyond the lips.

**ଛାମୁଦିହୁଡ଼ି**—ଦେ. ବି—ରାଜା ବା ଦେବତାଙ୍କ ଆଗରେ ଧରାଯିବା
Chhāmudihurḍi ମସାଲ—Torch held before a
( ଛାମୁମସାଲ—ଅନ୍ୟରୂପ ) Raja or Diety.

**ଛାମୁଦିହୁଡ଼ିଆ**—ଦେ. ବି—ଯେଉଁ ବ୍ୟକ୍ତି ରାଜା ବା ଦେବତାଙ୍କ ଆଗେ
Chhāmudihurḍiā ଆଗେ ମସାଲ ଧରେ—One who
( ଛାମୁମସାଲ୍‌ଚୀ—ଅନ୍ୟରୂପ ) bears the torch before a Rājā or Deity.

**ଛାମୁଦୁଆର**—ଦେ. ବି. ( ସଂ. ସମ୍ମୁଖ+ଦ୍ୱାର )—ସଦର ଦରଜା—
Chhāmuduāra Sadar door; front door.

**ଛାମୁର**—ଦେ. ( ପଦ୍ୟ ) ଅ—ଆଗରେ—
Chhāmura In front.
ଅପରେ ଯେତେ ଉପଗୁରୁ, ସ୍ଥାପିତ ବସ୍ତୁର ଛାମୁର—
ଜଗନ୍ନାଥ. ଭାଗବତ ।

**ଛାମୁରୁ**—ଦେ. ଅ—୧ । ଶ୍ରୀହଜୁରରୁ—
Chhāmuru 1. From his royal highness.
୨ । ଆପଣଙ୍କଠାରୁ—2. From you.
୩ । ଆପଣଙ୍କ ନିକଟରୁ—3. From your side.
( ଯଥା—ଛାମୁରୁ ବିଦାୟ ହେଉଅଛି । )
ଧର୍ମିଙ୍କ ଛାମୁରୁ ପାର୍ଥ ସେନାଣ ମେଲାଣି—ରଘୁନାଥ. କବଡାବନ ।

**ଛାମୁରେ**—ଦେ. ଅ—୧ । ଶ୍ରୀ ହଜୁରରେ; ହଜୁରଙ୍କ ନିକଟରେ—
Chhāmure 1 At or near his Royal Highness; to His Royal Highness.
୨ । ଦେବତା ଆଦିଙ୍କ ସମ୍ମୁଖରେ; ନିକଟରେ ( ରଖାଯିବା ଭୋଗ ଆଦି)—2. In front or near the Diety.
( ଯଥା—ସକାଳ ଧୂପରେ ଏ ଭୋଗଟିକ ଛାମୁରେ ବସାଇ ଦେବ । )
୩ । ଆପଣଙ୍କ ନିକଟରେ—
3. To or at your Royal Highness.
( ଯଥା—ଛାମୁରେ ମୋର ନିବେଦନ ଏହି କି । )
୪ । ସମ୍ମୁଖରେ—4. In front
ସ୍ୱେଚ୍ଛାରେ ସନମାନ କରି
ଛାମୁରେ ଭଲ ବଣ୍ଡଧାରା । ଭୂପତି. ପ୍ରେମପଞ୍ଚାମୃତ ।
୫ । ନିକଟରେ—5. Before; near.
ଅବଶ୍ୟ ତା ଛାମୁରେ ମୁଁ ନିବେଦନ କରିବି । କବିସୂର୍ଯ୍ୟ. କଳୋଗିସ୍ତକର୍ଷ୍ଣ ।

**ଛାମୁରେ ହେବା**—ଦେ. କ୍ରି—ନିକଟରେ ବା ସମ୍ମୁଖରେ ଉପସ୍ଥିତ ହେବା-
Chhāmure hebā To reach the presence of.
ଅକାଶରେ ନ ଦେଖିଲେ, ଶରେ ପୀଡ଼ିତ ହୋଇଲେ
ଲେଉଟି ଚନ୍ଦ୍ରି ଅଇଲେ, ଛାମୁରେ ହେଲେ ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଛାମୁଲାଗି**—ପ୍ରାଦେ. ( ଗଡ଼ଜାତ ) ବିଣ—ରାଜାଙ୍କ ନିଜର ବ୍ୟବହୃତ ବା
Chhāmulāgi ବ୍ୟବହାର୍ଯ୍ୟ—Intended for the use of or used by a Raja.

**ଛାମୁହେବା**—ପ୍ରାଦେ. (ଗଞ୍ଜାମ) କ୍ରି—ନମସ୍କାର କରିବା; ପ୍ରଣାମ କରିବା—
Chhāmu hebā To bow down.

**ଛାୟା**—ସଂ. ବି. ( ଛୋ ଧାତୁ=ଛେଦନ ଅର୍ଥାତ୍ ଖରାକୁ ଛେଦନ କରିବା
Chhāyā +କର୍ତ୍ତୃ. ଯ+ଆ; ତୁଲ. ଫା. ସାୟା; ଗ୍ରୀକ୍—ସ୍କା)—

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୁ' ନ ପାଇଲେ 'ବଧୂ' ଦେଖିବେ; 'ଅଙ୍ଖୋ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୧ । ଛାଇ; ଅନାତପ; ଖରାର ଅଭାବ —
1. Shade; absence of sun's rays.

୨ । ଅନ୍ଧକାର—2. Darkness.

୩ । ପ୍ରତିବିମ୍ବ; ପାଣି ଓ ଦର୍ପଣର ସମ୍ମୁଖରେ ଥିବା ବସ୍ତୁର ବିପରୀତ ଦିଗରେ ଲକ୍ଷିତ ପ୍ରତିରୂପ —
3. Reflected image; reflection.

ଦର୍ପଣ ଯେନ ଯେଉଁ ହସ୍ତ
ଚାହିଁଲେ ଛାୟା ହୋଏ ଜାତ । ଜଗନ୍ନାଥ. ଭାଗବତ ।

୪ । ସୂର୍ଯ୍ୟ ବା ଚନ୍ଦ୍ର କିରଣ ବା ଆଲୋକ କୌଣସି ବସ୍ତୁ ଉପରେ ପଡ଼ିଲେ ସୂର୍ଯ୍ୟର ବିପରୀତ ଦିଗରେ ଯେଉଁ ଅନ୍ଧକାର ମୟ ବିମ୍ବ ଲକ୍ଷିତ ହୁଏ—
4. Shadow.

୫ । କୌଣସି ବସ୍ତୁର ପ୍ରତିରୂପ—5. Image of a thing.

୬ । ରୂପ; ସାଦୃଶ୍ୟ—7. Likeness; image.

୭ । କାନ୍ତି; ପ୍ରଭା; ଛଟା—
7. Brightness; lustre; gloss.

୮ । ସୌନ୍ଦର୍ଯ୍ୟ—8. Beauty.

୯ । ଅବସ୍ତୁ; ଅଶରୀରୀ ରୂପ—
9. Spectre; apparition.

୧୦ । ଆଶ୍ରୟ—10. Refuge; shelter.

୧୧ । ପାଳନ; ଶରଣ; ରକ୍ଷା—
11. Patronage; supporting; protection.

୧୨ । ସୂର୍ଯ୍ୟଦେବଙ୍କ ଦୁଇ ପତ୍ନୀ ମଧ୍ୟରୁ ଏକ—
12. One of the two wives of the Hindu Sun-God.

[ ଦ୍ର—ସୂର୍ଯ୍ୟଙ୍କର ଅନ୍ୟ ପତ୍ନୀର ନାମ ସଂଜ୍ଞା; ସଂଜ୍ଞା ବିଶ୍ୱକର୍ମାଙ୍କ କନ୍ୟା । ସୂର୍ଯ୍ୟଙ୍କ ଔରସରେ ଏହାଙ୍କ ଗର୍ଭରୁ ବୈବସ୍ୱତ ମନୁ, ଶ୍ରାଦ୍ଧଦେବ, ଯମ ଓ ଯମୁନା ଜନ୍ମିଥିଲେ । ସୂର୍ଯ୍ୟଦେବଙ୍କ ତେଜୋରାଶିକୁ ସଂଜ୍ଞା ସମ୍ଭାଳି ନ ପାରି ନିଜ ଦେହରୁ ନିଜର ପ୍ରତିରୂପ ଭଳି ଗୋଟିଏ କନ୍ୟା ଜାତ କଲେ । ସେ କନ୍ୟାର ନାମ ଛାୟା । ସଂଜ୍ଞା ସେହି କନ୍ୟାକୁ ସୂର୍ଯ୍ୟଙ୍କ ପାଖେ ଛାଡ଼ିଗଲେ ଏବଂ ଏ କଥା ସୂର୍ଯ୍ୟଙ୍କଠାରେ ପ୍ରକାଶ ନ କରିବାକୁ ଛାୟାଙ୍କୁ କହିଗଲେ ଓ ସ୍ୱୟଂ ଅଶ୍ୱିନୀ (ଘୋଡ଼ୀ) ରୂପଧାରଣ କରି ବନରେ ତପସ୍ୟା କଲେ । ସଂଜ୍ଞା ମଧ ସ୍ୱଗର୍ଭଜାତ ସନ୍ତାନମାନଙ୍କୁ ପାଳିବା ପାଇଁ ଛାୟାଙ୍କ ନିକଟରେ ଛାଡ଼ିଗଲେ । ସୂର୍ଯ୍ୟ ଛାୟାଙ୍କୁ ସଂଜ୍ଞା ବୋଲି ଜାଣି ପୂର୍ବପରି ତାଙ୍କ ସଙ୍ଗେ ବିବାହ କଲେ ଓ ଛାୟାଙ୍କ ଗର୍ଭରୁ ଶନୈଶ୍ଚର, ସାବର୍ଣ୍ଣିମନୁ ନାମରେ ଦୁଇ ପୁତ୍ର ଓ ତପତୀ ନାମରେ କନ୍ୟା ଜନ୍ମିଲେ । ଛାୟା ଆପଣା ପୁତ୍ରମାନଙ୍କୁ ସଂଜ୍ଞାଙ୍କ ପୁତ୍ରମାନଙ୍କ ଅପେକ୍ଷା ବେଶି ସ୍ନେହ କଲେ । ଏଥିରେ ଯମ କ୍ରୁଦ୍ଧ ହୋଇ ତାଙ୍କୁ ଗୋଇଠା ମାରିବାରୁ ସେ ଯମଙ୍କୁ ଅଭିଶାପ ଦେଲେ ଯେ ତୋ ଗୋଡ଼ ଛିଡ଼ିପଡ଼ୁ । ସୂର୍ଯ୍ୟ ଛାୟାଙ୍କୁ ସନ୍ତାନମାନଙ୍କ ପ୍ରତି ଏ ଭେଦ ଭାବର କାରଣ ପଚାରିବାରୁ ଛାୟା ପ୍ରଥମେ କିଛି ବତାଇଲେ ନାହିଁ । ପରେ ସୂର୍ଯ୍ୟ ସମାଧିଦ୍ୱାରା ସଂଜ୍ଞାଙ୍କ ରୂପ ପରିବର୍ତ୍ତନ ବିଷୟ ଜାଣିପାରି ବିଶ୍ୱକର୍ମାଙ୍କୁ ଯାଇ ପଚାରିବାରୁ ବିଶ୍ୱକର୍ମା କହିଲେ ଯେ ସଂଜ୍ଞା ତୁମ ତେଜ ସମ୍ଭାଳି ନ ପାରି ଅଶ୍ୱିନୀରୂପ ଧାରଣ କରି ତପସ୍ୟା କରୁଅଛି । ସୂର୍ଯ୍ୟ ଏହା ଅବଗତ ହୋଇ ନିଜର ତେଜରୁ କେତେକ ଅଂଶ କମାଇ ଦେଇ ସପ୍ତମାଶ୍ୱ ରୂପ ଧାରଣ କରି ଘୋଟକୀରୂପଧାରିଣୀ ସଂଜ୍ଞାଙ୍କ ନିକଟ ପହଞ୍ଚି ତାଙ୍କ ସଙ୍ଗେ ମିଳିତ ହେଲେ ଓ ତାଙ୍କ ଔରସରେ ସଂଜ୍ଞାଙ୍କଠାରୁ ଅଶ୍ୱିନୀକୁମାର ଦ୍ୱୟ ଜନ୍ମ ହେଲେ—ହି. ଶବ୍ଦସାଗର । ]

୧୩ । ମହାମାୟା; ଦୁର୍ଗା; କାତ୍ୟାୟନୀ—
13. Goddess Durgā.

୧୪ । ମାୟା—14. Illusion; delusion

୧୫ । ଉତ୍କୋଚ; ଲାଞ୍ଚ—15. Bribe.

୧୬ । ବିଷାଦ—16. Mental despondency or sorrow.

୧୭ । ପଂକ୍ତି; ଶ୍ରେଣୀ ( ଶବ୍ଦକଳ୍ପଦ୍ରୁମ )—
17 Class; row.

୧୮ । ଅନୁକରଣ; ନକଲ (ହି. ଶବ୍ଦସାଗର)—
18 Imitation copy.

୧୯ । ୧୭ ଗୁରୁ ଓ ୨୩ ଲଘୁବର୍ଣ୍ଣବିଶିଷ୍ଟ ଆର୍ଯ୍ୟାଛନ୍ଦର ଭେଦବିଶେଷ—19. Name of a sanscirt metre.

୨୦ । ରାଗିଣୀବିଶେଷ—2. Name of a musical air.

[ ଦ୍ର—ସଙ୍ଗୀତସାର ମତରେ ଏହା ହାମ୍ବୀର ଓ ଶୁଦ୍ଧନଟ ରାଗଦ୍ୱୟର ଯୋଗରେ ଉତ୍ପନ୍ନ, ଏଥିର ପଞ୍ଚମ ବାଦୀ, ଋଷଭ ସମ୍ବାଦୀ ଓ ଅବରୋହଣରେ ତୀବ୍ର ମଧ୍ୟମ ଲାଗେ । ସଙ୍ଗୀତ ଦାମୋଦର ମତରେ ଏହା ଓଡ଼ବ ଓ ଏଥିର ସାରଗାମା—ନିଧମଗସା ଅଟେ— ହି. ଶବ୍ଦସାଗର । ]

୨୧ । ଭୂତ ପ୍ରେତାଦିଙ୍କ ପ୍ରଭାବ—21. The influence of a spirit on person.

( ଯଥା— ନୂଆବୋହୂ ସନ୍ଧ୍ୟାବେଳେ ପାଣି ଆଣିବାକୁ ଗଲାବେଳେ ଏହା ଉପରେ କାହା ଛାୟା ପଡ଼ିଯିବାରୁ ଏ ଏପରି ବକୁଛି । )

ଦେ. ବି—ତଳେ ବସିବା ବ୍ୟକ୍ତିଙ୍କ ଉପରେ କାକର ବା ସୂର୍ଯ୍ୟକିରଣ ନ ପଡ଼ିବା ପାଇଁ ରଚିତ ଅସ୍ଥାୟୀ ଛାୟାମଣ୍ଡପ; ଛାମୁଣ୍ଡିଆ—A temporary shade or cover raised to protect the sitters from sun and dew.

( ଯଥା—ଅଗଣାରେ ଛାୟା ନ କରିଦେଲେ ଲୋକେ ଖରାବେଳେ ଏଠାରେ ବସି ପାରିବେ ନାହିଁ । )

**ଛାୟାଉପଚ୍ଛାୟା**—ସଂ. ବି—୧ । ( ବିଜ୍ଞାନପରିଭାଷା ) ସୂର୍ଯ୍ୟଙ୍କର Chhāyāupachchhāyā ଆଲୋକ କୌଣସି ବଡ଼ ବସ୍ତୁ ଉପରେ ପଡ଼ିଲେ ତଦ୍ୱାରା ଉତ୍ପନ୍ନ ହେବା ଗାଢ଼ ଅନ୍ଧକାରଯୁକ୍ତ ଛାୟା ଓ ଲଘୁ ଅନ୍ଧକାରଯୁକ୍ତ ଛାୟା—
1 Umbra and penumbra.

| ୧ | ଇ | ଉ | ଋ,ଌ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଡ଼ଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଥ | ଢ଼ | ଙ୍ଗ |

୨ । (କଡ଼ରିଆ ଭାଷା) କୌଣସି ପଦାର୍ଥର ଛାଇ ଓ ,, ତାହାର ପ୍ରତିବିମ୍ବ—2 Shadow and reflection of a thing.

[ ଦ୍ର—କୌଣସି ସମ୍ପତ୍ତି କବାଲା କରି ଦେବାବେଳେ ବିକ୍ରେତା ସମ୍ପାଦନ କରୁଥିବା କବାଲାରେ ଅନ୍ୟାନ୍ୟ ଶବ୍ଦର ମଧ୍ୟରେ ଲେଖାଯାଏ "ଆମ୍ଭେ ଏ ବୃକ୍ଷ ଓ ଏଥିରେ ଥିବା ଯୋଡା ନୋଡା ନିଧିନିକ୍ଷେପ ଛାୟା ଉପଛାୟା ଆଦି ସମସ୍ତ ପ୍ରକାର ସତ୍ତ୍ୱ ଉପସତ୍ତ୍ୱକୁ ମୁସ୍ତାଙ୍କ ହସ୍ତେ ବିକ୍ରୟ କଲୁଁ । ]

**ଛାୟାକ୍ରୀଡ଼ା**—ସଂ. ବି. ( ଅଧୁନିକପ୍ରୟୋଗ )—୧ । କୁହୁକ—
Chhāyākrirḍā 1. Magical show.
୨ । ବସ୍ତ୍ର ଉପରେ ଛାୟା ପକାଇ ଦେଖାଇବା ନାନାପ୍ରକାର ଅଦ୍ଭୁତ ଚିତ୍ର; ବାୟୋସ୍କୋପ୍—2. Magic lantern; cinamatograph; Bioscope.

**ଛାୟାଗଣିତ**—ସଂ. ବି—ଗୋଟିଏ ଶଙ୍କୁ ଯୋଗେ ଦିନ୍‌ର ଛାୟାଦ୍ୱାରା ବିଷୁବ-
Chhāyāganita ମଣ୍ଡଳର ଅବସ୍ଥିତି ନିର୍ଦ୍ଧାରଣପୂର୍ବକ ଗ୍ରହମାନଙ୍କ ଗତିଆଦି ନିର୍ଣ୍ଣୟ କରାଯିବା ଗଣିତ ଶାସ୍ତ୍ର—A branch of mathematics in which the monuments of the planets is ascertained by the shade cast on a dial.

**ଛାୟାଗ୍ରହ**—ସଂ. ବି. (ଛାୟା=ପ୍ରତିବିମ୍ବ+ଗ୍ରହ ଧାତୁ+କର୍ତ୍ତୃ. ଅ; ଯେ
Chhāyāgraha ବସ୍ତୁର ପ୍ରତିବିମ୍ବ ଗ୍ରହଣ କରେ)—ଦର୍ପଣ; ଆଇନା—Mirror.

**ଛାୟାଗ୍ରାହିଣୀ**—ସଂ. ବି. (ନାମ)—ହନୁମାନ ସୀତାଙ୍କୁ ଠାବ କରିବାକୁ
Chhāyāgrāhini ଯିବାବେଳେ ସମୁଦ୍ରକୁ ଡେଇଁ ଯିବାବେଳେ ସମୁଦ୍ର ଜଳରେ ପଡ଼ିବା ହନୁମାନ୍‌ର ଛାୟାକୁ ଧରି ହନୁମାନ୍‌କୁ ତଳକୁ ଟିଙ୍କି ଆଣିଥିବା ରାକ୍ଷସୀ—
Name of a demoness who by her supernatural powers was able to drag down Hanuman from the sky by catching his reflection on the sea when he was leaping over it on his mission to search Sitā.

**ଛାୟାଙ୍କ**—ସଂ. ବି. (ବହୁବ୍ରୀହି; ଛାୟା=ସୂର୍ଯ୍ୟଙ୍କ ପ୍ରତିବିମ୍ବ (ହୀରା) ଅଙ୍କ
Chhāyānka =ପ୍ରକାଶ ଯାହାର)—ଚନ୍ଦ୍ର—The moon.

**ଛାୟାଚିତ୍ର**—ସଂ. ବି. (ଅଧୁନିକ ପ୍ରୟୋଗ) (ସାମନାରେ ଥିବା ମନୁଷ୍ୟଆଦିର
Chhāyāchitra ଛାୟା, କଳର କାଚଫଳକ ଉପରେ ପଡ଼ି ଚିତ୍ର ରହିଥିବାରୁ) ଅଲୋକଜନିତ ଛବି ଉଠାଇବା; ଫଟୋଗ୍ରାଫୀ—Photography.

**ଛାୟାଚ୍ଛନ୍ନ**—ସଂ. ବିଣ. (ତୃତୀୟା ତତ୍; ଛାୟା+ଆଚ୍ଛନ୍ନ)—୧ । ଅନ୍ଧକାରାଚ୍ଛନ୍ନ-
Chhāyāchchhanna 1. Dark.
୨ । ବିଷାଦଗ୍ରସ୍ତ; ବିଷାଦମଗ୍ନ—
2. Despondent; sorrowful.

**ଛାୟାତନୟ**—ସଂ. ବି. (ଷଷ୍ଠୀ ତତ୍; ଛାୟା+ତନୟ)—ଶନି ଗ୍ରହ—
Chhāyātanaya The planet saturn.
(ଛାୟାସୁତ—ଅନ୍ୟରୂପ)

**ଛାୟାତରୁ**—ସଂ. ବି.—(ଛାୟା (ପ୍ରଧାନ) ତରୁ; ମ: ପ. ଲୋ କର୍ମଧା)—
Chhāyātaru ୧ । ଯେଉଁ ଗଛର ଛାୟା ବହୁଦୂରବ୍ୟାପୀ—
1. A shady tree.
୨ । ବଟଗଛ—
2. The banyan tree ( Ficus Indica.)
୩ । ନମେରୁ ବୃକ୍ଷ; ସୁରପୁନ୍ନାଗ—
3. Elæocarpus Ganitrus (tree).
୪ । ଛତିଆନା ଗଛ (ଦ୍ର. ଶବ୍ଦସାଗର )
4. Chhatiānā (See)

**ଛାୟାଦାନ**—ସଂ. ବି. (ଷଷ୍ଠୀ ତତ୍; ଛାୟା+ଦାନ)—୧ । ଗ୍ରହାରିଷ୍ଟ ଶାନ୍ତି
Chhāyādāna ପାଇଁ ଗୋଟିଏ ପାତ୍ରରେ ଘିଅ ବା ତେଲ ପୂର୍ଣ୍ଣ କରି ତହିଁରେ ଦାତାର ପ୍ରତିବିମ୍ବ ପ୍ରତିଫଳିତ କରାଇବା ପରେ ଦକ୍ଷିଣା ସହିତ ଉକ୍ତ ଘୃତ ବା ତୈଳପୂର୍ଣ୍ଣ ପାତ୍ରର ଦାନ—1. A gift consisting of giving away a pot filled in with ghee or oil to a Brāhmaṇa after having the doner's image reflected on it.
୨ । (ବୃକ୍ଷାଦି) ନିଜର ଛାୟାକୁ ପଥିକାଦିଙ୍କ ଉପକାରାର୍ଥ ସେମାନଙ୍କ ଉପରେ ପକାଇ ସେମାନଙ୍କୁ ଖରା ଆଦିରୁ ରକ୍ଷା କରିବା—2. ( a tree ) Affording its shade to protect a warfarer from the rags of the sun.
(ଯଥା—ମାର୍ଗରେ ଥିବା ପତ୍ରବହୁଳ ବୃକ୍ଷ ଛାୟା ଦାନପୂର୍ବକ ପଥିକ ମାନଙ୍କୁ ଉପକୃତ କରୁ ଅଛନ୍ତି ।]

**ଛାୟାଦେହ**—ସଂ. ବି.—ଭୂତାଦିର ଛାୟାମୟ ଅବସ୍ତୁ ଶରୀର—
Chhāyādeha Unsubstantial body or shadow of ghosts.
ଏବେ ସ୍ୱର୍ଗୀ ସେହି ମୃତ ଜନ୍ମାଇଛି ଏ ଛାୟା-ଦେହେ ପ୍ରକାଶ ।
ରାଧାନାଥ. ପାର୍ବତୀ ।

**ଛାୟାନଟ**—ସଂ. ବି.—ସଙ୍ଗୀତର ରାଗିଣୀବିଶେଷ—
Chhāyānaṭa Name of a musical air.
(ଛାୟାନଟ୍ଟ—ଅନ୍ୟରୂପ)
[ଦ୍ର—ଏହା କେଦାରନଟ, କଲ୍ୟାଣ ନଟ ଆଦି ୧୨ ରାଗର ଅନ୍ତର୍ଗତ ଅଟେ । ଏହା ଛାୟା ଓ ନଟ ରାଗର ଯୋଗରେ ଉତ୍ପନ୍ନ; ଏଥିର ଅବରୋହଣରେ ତୀବ୍ର ମଧ୍ୟମ ଲାଗେ । ଏଥିରେ ବାଦୀ ସ୍ୱର ସା ଓ ସମ୍ବାଦୀ ସ୍ୱର ଗା । ସଙ୍ଗୀତସାର ମତରେ ଏହା ସମ୍ପୂର୍ଣ୍ଣ ଜାତିର ରାଗ ଓ ଏଥିର ଗ୍ରହ, ନ୍ୟାସ ଓ ଅଂଶ ଆଦି ଧୈବତ ଅଟେ । ଏହା ସନ୍ଧ୍ୟା ୧ ଦଣ୍ଡ ଠାରୁ ୫ ଦଣ୍ଡ ମଧ୍ୟରେ ଗେୟ । ଏଥିର ସ୍ୱର-

ଲପି— ଧାସ ସାରେ ଗମା ପାଧାସା ନିଧା ପାମା ମା ମା ରେ ଧା ଧା ପାମା ସାମା ମା ମା ମାରେ ଧାପା ସାମା ମାରେ ସାରେ ସା ସା ସା" (ହି. ଶବ୍ଦସାଗର) ।]

**ଛାୟାପଟ**— ସଂ. ବି. (ବିଜ୍ଞାନପରିଭାଷା)—ଆଖିର କଳା ଡୋଳା ପଛରେ
Chhāyāpaṭa ଥିବା ଯେଉଁ ପଟ ଉପରେ ଦୃଷ୍ଟ ବସ୍ତୁର ଚିତ୍ର ପ୍ରତିଫଳିତ ହୁଏ—Retina.

**ଛାୟାପଥ**— ସଂ. ବି ( ମ. ପ. ଲୋ. କର୍ମଧାରୟ ସମାସ, ଛାୟାଯୁକ୍ତ ପଥ=
Chhāyāpatha ଛାୟା=ଦୀପ୍ତି+ପଥ)—୧ । ଶୋଭାଯୁକ୍ତ ପଥ; ରାତିରେ ଦେଖାଯିବା ନକ୍ଷତ୍ରପୁଞ୍ଜପୂର୍ଣ୍ଣ ପଥ ପରି ପ୍ରତୀୟମାନ ନଭୋମଣ୍ଡଳସ୍ଥ ଉଜ୍ଜ୍ୱଳ ଅଂଶବିଶେଷ; ସ୍ୱର୍ଗଗଙ୍ଗା—
The milkyway; a bright belt seen accross the sky in clear nights.
୨ । ଜ୍ୟୋତିଶ୍ଚକ୍ର ମଧ୍ୟବର୍ତ୍ତୀ ଅର୍ଦ୍ଧମଣ୍ଡଳାକାର ପ୍ରଦେଶବିଶେଷ—
2. A semicircular region in the zodical sphere.
୩ । ଜ୍ୟୋତିଶ୍ଚକ୍ର ମଧ୍ୟବର୍ତ୍ତୀ ମଣ୍ଡଳାକାର ନକ୍ଷତ୍ରଶ୍ରେଣୀ—
3. A galary of stars in the zodiacal circle.
୪ । ଆକାଶ ( ହି. ଶବ୍ଦସାଗର)—4. The sky.

**ଛାୟାପଦ**— ସଂ. ବି. (ବହୁବ୍ରୀହି; ଛାୟା+ପଦ; ଛାୟା ଯାହାର ପଦ ସ୍ୱରୂପ
Chhayāpada ଅଟେ)—ଖରା ପଡୁଥିବା ସ୍ଥାନରେ ୧୨ ଅଙ୍ଗୁଳ ଉଚ୍ଚ ଏକ ଶଙ୍କୁ ପୋତି ତହିଁର ଛାୟାଦ୍ୱାରା ଦିନର ସମୟ ନିରୂପଣ କରାଯିବା ପ୍ରାଚୀନକାଳର ଯନ୍ତ୍ରବିଶେଷ (ହି. ଶବ୍ଦସାଗର)—A sundial used in ancient India consisting of a pin as pan high.

**ଛାୟାପାଦ**— ସଂ. ବି—ସୂର୍ଯ୍ୟଙ୍କ ଛାୟାଦ୍ୱାରା ଦିବସର ସମୟ ନିରୂପଣ—
Chhāyāpāda Measurement of time by sun's shadow; measuring the time of the day by the sun-dial.

**ଛାୟା ପୁରୁଷ**— ସଂ. ବି—୧ । ନିଜ ଛାୟାର ଅନୁରୂପ ପ୍ରତିବିମ୍ବାତ୍ମକ
Chhāyā purusha ପୁରୁଷ—1. An image consisting of the shadow of one's self reflected on the sky.
[ ଦ୍ର—ଛାୟା ପୁରୁଷ ଦର୍ଶନ କରିବା ହଠଯୋଗର ଗୋଟିଏ ସାଧନ ଅଟେ । ସାଧକ କୌଣସି ଉନ୍ମୁକ୍ତ ସ୍ଥାନରେ ସୂର୍ଯ୍ୟଙ୍କ ଆଡ଼କୁ ପିଠି କରି ଠିଆ ହୋଇ ବିପରୀତଦିଗରେ ଭୂମିରେ ପଡ଼ିବା ନିଜର ଛାୟାକୁ ସ୍ଥିର ଦୃଷ୍ଟିରେ ଏକ ଧ୍ୟାନରେ କେତେକ ସମୟ ଚାହିଁ ରହିବା ପରେ ନିଜର ସମ୍ମୁଖସ୍ଥ ଶୂନ୍ୟ (ଆକାଶ) ଆଡ଼କୁ ଏକଦୃଷ୍ଟିରେ ଚାହିଁଲେ ଆକାଶରେ ନିଜର ଛାୟାର ପ୍ରତିରୂପ ଗୋଟିଏ ଛାୟାର ଆଭାସ ଦେଖାଯିବ—ଏହା କେତେକାଳ ସାଧନ ପରେ ସିଦ୍ଧ ହୁଏ । ଏହି ଛାୟାରୂପର ଆଭାସକୁ ଛାୟାପୁରୁଷ ବୋଲାଯାଏ । ଛାୟାପୁରୁଷ ଦେଖିପାରିବା ଲୋକର ୬ମାସ ମଧ୍ୟରେ ମୃତ୍ୟୁ ଘଟିବ ନାହିଁ । ଏ ସାଧକ ଆଗାମୀ ୬ ମାସର ଘଟଣା ଆଗରୁ ଜାଣିପାରେ । ଯେବେ ଛାୟାପୁରୁଷର ମୁଣ୍ଡ ନ ଦେଖାଯାଏ ତେବେ ଜାଣିବ ଯେ ୬ମାସ ମଧ୍ୟରେ ଦ୍ରଷ୍ଟାର ମୃତ୍ୟୁ ଘଟିବ; ଯେବେ ଗୋଡ଼ ଦେଖା ନ ଯିବ ତେବେ ଭାର୍ଯ୍ୟାର ମୃତ୍ୟୁ ଓ ହାତ ଦେଖା ନ ଗଲେ ଭାଇର ମୃତ୍ୟୁ ନିକଟବର୍ତ୍ତୀ ବୋଲି ଜାଣିବାକୁ ହେବ । ଏହିପରି ଭିନ୍ନ ଭିନ୍ନ ଅଙ୍ଗର ଅଦର୍ଶନରେ ଭିନ୍ନ ଭିନ୍ନ ଫଳ ତନ୍ତ୍ରରେ କଥିତ ଅଛି । ଯେବେ ଛାୟାପୁରୁଷର ବର୍ଣ୍ଣ ରକ୍ତାଭ ପ୍ରତିଭାତ ହୁଏ ତେବେ ଶୀଘ୍ର ଧନପ୍ରାପ୍ତି ହେବାର ସୂଚିତ ହୁଏ— ହି. ଶବ୍ଦସାଗର । ]
୨ । ଅଶରୀରୀମୂର୍ତ୍ତି—1. A sceptre.

**ଛାୟାବାଜି**— ଦେ. ବି. (ଆଧୁନିକ)—୧ । କୁହୁକ; ଇନ୍ଦ୍ରଜାଲ—
Chhāyābāji 1. Magic.
ছায়াবাজী ଚାହିଁ ଚାହିଁ ହେଲା ଛାୟାବାଜି ବତି
সায়াবাজী ରାତ୍ରିର କଳରି ହୃଦେ ପଶିଲି । ରାଧାନାଥ, ନନ୍ଦିକେଶ୍ୱରୀ ।
୨ । ବାୟୋସ୍କୋପ୍—2. Bioscope.

**ଛାୟା ବିପ୍ରତିପତ୍ତି**— ସଂ. ବି—ଆୟୁର୍ବେଦର ପ୍ରକରଣବିଶେଷ—
Chhāyā bipratipatti The title of a section of the Hindu Medical Science.
[ ଦ୍ର—ଏଥିରେ ରୋଗୀର କାନ୍ତି, ଆଭା ଓ ଚେଷ୍ଟାଆଦିର ପରିବର୍ତ୍ତନରୁ ରୋଗୀର ମୃତ୍ୟୁ ନିକଟବର୍ତ୍ତୀ ବା ରୋଗୀ ବଞ୍ଚିଯିବ ଏ ବିଷୟମାନ ଆଲୋଚିତ ହୋଇଅଛି—ହି. ଶବ୍ଦସାଗର । ]

**ଛାୟାବେଦୀ**— ସଂ ( ମଧ୍ୟପଦଲୋପୀ; ଛାୟାପ୍ରଦ ବେଦୀ )—ଛାମୁଣ୍ଡିଆ; ଛାୟା
Chhāyābedi ମଣ୍ଡପ—An awning made of branches put on a frame-work to protect a place from the rages of the sun.
ଦେଖିଲେ ଛାୟାବେଦୀ ମଧ୍ୟେ,
ବରହିଁ ଅଛି କନ୍ୟା ସଧେ । ଜଗନ୍ନାଥ, ଭାଗବତ ।

**ଛାୟାମଣ୍ଡପ**— ସଂ. ବି ( ମଧ୍ୟପଦଲୋପୀ. କର୍ମଧା; ଛାୟାପ୍ରଦ ମଣ୍ଡପ )—
Chhāyāmaṇḍapa ଛାମୁଣ୍ଡିଆ—A temporary awning or shade raised over a place.

**ଛାୟାମାନ**— ସଂ. ବି ( ଛାୟା+ମା ଧାତୁ=ମାପିବା+କର୍ତ୍ତୃ. ଅନ; ପ୍ରତି-
Chhāyāmāna ବିମ୍ବାନୁସାରେ ଯାହାକୁ ମପା ଯାଏ )— ଚନ୍ଦ୍ର—
The moon.

**ଛାୟାମିତ୍ର**— ସଂ. ବି (୬ଷ୍ଠୀ ତତ୍; ଛାୟା+ମିତ୍ର)—ଛତା; ଆତପତ୍ର
Chhāyāmitra (ହି. ଶବ୍ଦସାଗର)—Umbrella.

**ଛାୟାମୃଗ**— ସଂ. ବି (ମଧ୍ୟପଦଲୋପୀ; ଛାୟାକଳ୍ପିତ ମୃଗ)—୧ । ଚନ୍ଦ୍ରଙ୍କ-
Chhāyāmṛuga ଠାରେ ଦେଖାଯିବା ମୃଗ ତୁଲ୍ୟ ଛାୟା—
1. The shady portion in the surface of the moon looking like a deer.
୨ । ଅଶରୀରୀ ମୃଗ; ମାୟାମୃଗ—
2. The ghost or sceptre of a deer.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ୍ | ଜଅ | ଢ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ତ |

[ ଦ୍ର—ମାରୀଚ ଛାୟାମୃଗ ରୂପ ଧରି ରାମଚନ୍ଦ୍ରଙ୍କୁ ଭୁଲାଇ ନେଇ-ଯିବା ଅବସରରେ ରାବଣ ସୀତାଙ୍କୁ ହରଣ କଲା । ]

**ଛାୟାମୃଗଧର**—ସଂ. ବି (ଛାୟାମୃଗ+ଧୃ ଧାତୁ=ଧରିବା+କର୍ତ୍ତୃ. ଅ)—
Chhāyāmrugadhara ଚନ୍ଦ୍ର—The moon.

**ଛାୟାଯନ୍ତ୍ର**—ସଂ. ବି—ଖରାର ଛାଇଦ୍ୱାରା ସମୟ ନିରୂପଣ କରାଯିବା
Chhāyājantra ପ୍ରାଚୀନ ଭାରତରେ ବ୍ୟବହୃତ ଯନ୍ତ୍ରବିଶେଷ; ସୂର୍ଯ୍ୟଘଣ୍ଟା—The sundial of ancient India.

[ ଦ୍ର—ସୂର୍ଯ୍ୟସିଦ୍ଧାନ୍ତରେ ଏ ଯନ୍ତ୍ରରେ ଶଙ୍କୁ, ଧନୁ, ଚକ୍ର ଆଦି କେତେଗୁଡ଼ିଏ ଉପକରଣ ଏଥିରେ ବ୍ୟବହୃତ ହେବାର ଉପଦେଶ ଦିଆ ଯାଇଅଛି—ହି. ଶବ୍ଦସାଗର । ]

**ଛାୟାରମଣ**—ସଂ. ବି (୬ଷ୍ଠୀ ତତ୍; ଛାୟା+ରମଣ=ସ୍ୱାମୀ)—ସୂର୍ଯ୍ୟଦେବ—
Chhāyāramaṇa The sun-god.

**ଛାୟାରୂପ**—ସଂ. ବି—ଛାୟାପୁରୁଷ ( ଦେଖ )—
Chhāyārūpa Chhāyāpurusha ( See )

ଚଉଦ ବରଷ ଠାରେ ଛାୟା ରୂପ ଧାୟି—ପ୍ରାଚୀ. ଶ୍ରୀ ଗୁରୁଭକ୍ତିଗୀତା ।

**ଛାୟାସାଇଁ**—ଦେ. ବି (ସଂ. ଛାୟା+ସ୍ୱାମୀ) ସୂର୍ଯ୍ୟ—
Chhāyāsāin The sun.

ଅସିଲେ ଦେବତାଙ୍କ ଯେବେ ଛାୟାସାଇଁ—କୃଷ୍ଣସିଂ ହି. ମହାଭାରତ. ବନ ।

**ଛାୟେଁ**—ଦେ. ଅ (ସଂ. ସ୍ୱୟଂ)—୧ । ସ୍ୱୟଂ, ନିଜେ; ଆପେ—
Chhāyen 1. One's self.
ସ୍ୱয়ং; আপনাআপনি ୨ । ସ୍ୱେଚ୍ଛାକ୍ରମେ; ବିନା କାହାର ପ୍ରେରଣାରେ;
ସ୍ୱୟଂ ଆପେ ଆପେ—2. Of one's own accord; voluntairly

**ଛାୟେଁ ଛାୟେଁ**—ଦେ ଅ (ସ୍ୱୟଂ)—ଛାୟେଁ ( ଦେଖ )—
Chhāyen chhāyen Chhāyen ( See )
( ଯଥା—ତାଙ୍କୁ କେହି ଡାକିବା ଦରକାର ନାହିଁ, ସେ ଛାୟେଁ ଛାୟେଁ ଏଠାକୁ ଆସିବ । )

**ଛାୟେଣି**—ଦେ. ବି (ସଂ. ଛାୟା; କିମ୍ବା ସ୍ୱୟଂ)—ଆତ୍ମା—
Chhāyeṇi The soul.

କାୟା ଯେତେ କର୍ମ କରେ ଛାୟେଣି ଜାଣଇ—ଶ୍ରୀ ଗୁରୁଭକ୍ତିଗୀତା ।

**ଛାର**—ଦେ. ବିଣ (ସଂ. ଅସାର; କ୍ଷାର; ତୁଳ. ପାଲି ଛାର)—୧ । ଅଧମ,
Chhār ହୀନ; ନୀଚ—1. Vile; mean; ignoble.
ছার ମୋ ଛାର ପାମର ମୂଢ଼ ମତି—ପ୍ରାଚୀ.ରହସ୍ୟମଞ୍ଜରୀ ।
नाचीज, पोच ୨ । ଘୃଣ୍ୟ; ହେୟ—2. Abominable; dispicable; contemptible.
୩ । ମନ୍ଦ—3. Bad; low.
୪ । ଜ୍ଞାନହୀନ—4. Ignorant.
୫ । ମୂଲ୍ୟହୀନ—5. Of no value.
୬ । ତୁଚ୍ଛ; ନଗଣ୍ୟ; ଅଗଣନୀୟ—
6. Insignificant; inconsiderable.

ଆଉ ମୁଁ କେଉଁ କଥା ଛାରକୁ ଭଳିବି—କୃଷ୍ଣସିଂ ହି. ମହାଭାରତ. ସଭା ।

୭ । ଅତି ସାମାନ୍ୟ—7. Petty.
୮ । ଅତି ଅଳ୍ପ—8. Very little.
୯ । ଅଯୋଗ୍ୟ—9. Worthless.

[ ଦ୍ର—ଛାର ପୂର୍ବରେ ମୁଁ, ସେ, ତୁ, କେଉଁ, କି ଆଦି ଶବ୍ଦ ବ୍ୟବହୃତ ହୁଏ ଏବଂ ବିକଳ୍ପେ ମୋଛାର, ତାଛାର, ତୋଛାର, କାହା ଛାର ମଧ୍ୟ ପ୍ରୟୋଗ ହୁଏ; ଏଥିର ଅର୍ଥ ଛାର ମୁଁ, ଛାର ସେ, ଛାର ତୁ, ଛାର କିଏ । ଯଥା—ଆପଣଙ୍କ ଆଦେଶକୁ ଲଙ୍ଘିବାକୁ ମୁଁ ଛାର (ମୋ ଛାର) ସକ୍ଷମ ନୁହେ । ]

**ଛାର୍‌ଛିକରା**—ପ୍ରାଦେ (ଗଡ଼ଜାତ) ବିଣ—ଅତି ସାମାନ୍ୟ; ହୀନ; ନଗଣ୍ୟ—
Chhār chhikarā Insignificant.

**ଛାର୍‌ରି**—ପ୍ରାଦେ (ସମ୍ବଲପୁର) ବି (ସଂ. ଛୋଡ଼ଣ=ପରିତ୍ୟାଗ)—
Chhār-ri ୧ । ସ୍ୱାମୀଙ୍କର ସ୍ତ୍ରୀ ପରିତ୍ୟାଗ; ବିବାହବନ୍ଧନର ଛେଦନ ଲେଖ—1. Divorce.
୨ । ଅନଭ୍ୟାସ—2. Want of practice.
ବିଣ—୧ । ଅଭ୍ୟାସ ନ କରିବା ଯୋଗୁଁ ପରିତ୍ୟକ୍ତ ( କର୍ମ )—
1. (a thing) Of which the habit has been given up.
୨ । ଅନଭ୍ୟସ୍ତ—2. Unpracticed; not habituated; not used to.
୩ । ଅନଭ୍ୟାସ ଯୋଗୁଁ ବିସ୍ମୃତ କର୍ମ—
3. (any act) Forgotten for want of exercise.

**ଛାର୍‌ରିକାଗଜ**—ପ୍ରାଦେ (ସମ୍ବଲପୁର) ବି—ଛାଡ଼ପତ୍ର; ସ୍ୱାମୀ ସ୍ତ୍ରୀ ମଧ୍ୟରେ
Chhārrikāgaja ବିବାହବନ୍ଧନ ଛେଦନ ପରିସୂଚକ ଦଲିଲ; ତଲାକ୍‌ନାମା—A deed of divorce.

**ଛାରଖାର**—ଦେ. ବି (ସଂ. କ୍ଷାରରୁ ଛାର ଓ କ୍ଷାରରୁ ଖାର)—
Chhārakhāra ୧ । ସର୍ବନାଶ, ଧ୍ୱଂସ—
ছারখার Ruin; rack and ruin; devastation.
छारखार
ବିଣ—୧ । ଉଚ୍ଛନ୍ନ; ଉତ୍ସନ୍ନ; ଉଚ୍ଛିନ୍ନ; ବିନଷ୍ଟ, ଧ୍ୱଂସପ୍ରାପ୍ତ; ନାଲଖାର—1. Ruined; laid waste; devastated.
୨ । ଇତସ୍ତତ; ବିକ୍ଷିପ୍ତ—2. Scattered about.
୩ । ଭସ୍ମୀଭୂତ; ଭସ୍ମସାତ୍—
3. Reduced to ashes.

**ଛାରପୋକ**—ଦେ. ବି (ସଂ. ଉଦ୍‌ଦଂଶ; ସଂ. କ୍ଷାର ଓ କୀଟରୁ )—ଓଡ଼ଶ;
Chhārapoka ଗନ୍ଧକୀଟ; ମତକୁଣ; ଶଯ୍ୟାକୀଟ—
ছারপোকা Bed-bug; vermin.
खटमल, उड़िश
(ପାବନା—ଛାଇପୋକା)
(ସମ୍ବଲପୁର—ଓଡ଼ୁଶୋ; ଓଡ଼ଶ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ଉଚ୍ଚାରଣଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ବୂଅ' ଦେଖିବେ; 'ବଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଛାଲ୍‌କଟ୍‌କଟ୍‌**—ଦେ. ଅ—ଡୁଡୁଖେଳରେ ଆକ୍ରମଣକାରୀ ବାଳକ ଅନ୍ୟ ପକ୍ଷର ସୀମା ମଧ୍ୟକୁ ଯାଇ ଅପର ପକ୍ଷର କୌଣସି ବାଳକ ଦେହକୁ ଗୋଡ଼ଦ୍ୱାରା ଆଘାତ କରିବା ପୂର୍ବରୁ ଏକାନିଶ୍ୱାସରେ ବାରମ୍ବାର ଉଚ୍ଚାରଣ କରିବା ଶବ୍ଦ—The exclamation uttered by an aggressive boy in one breath while attacking the other side.
Chhālkitkit
(ଛାଳ କଡକଡ—ଅନ୍ୟରୂପ)

**ଛାଲ୍‌କଟି**—ଦେ. ବି—ଡୁଡୁଖେଳରେ ଆକ୍ରମଣକାରୀ ବାଳକ ଅନ୍ୟ ପକ୍ଷର ସୀମା ମଧ୍ୟକୁ ଯାଇ 'ଛାଲ୍‌କଟକଟ' ଉଚ୍ଚାରଣ କରୁ କରୁ ଅପର ପକ୍ଷର କୌଣସି ବାଳକକୁ ମାରିବା ଗୋଇଠା—A kick given by the aggressor-boy to a boy of the opposite party while going to the latter's limits.
Chhālkiti

**ଛାଲ୍‌ଟି**—ଦେ. ବି. ( ପୂର୍ବେ ଏହା ଛଣପଟର ଛାଲରୁ ତିଆରି )—
Chhālṭi — ୧ । ଛଣପଟର ସୂକ୍ଷ୍ମ ସୂତାରେ ବୁଣା ଏକପ୍ରକାର ସରୁ ଲୁଗା—1. Linen.
ছালটি
छालटी — ୨ । ଖଜୁରି ଛାଲ; ଖଜୁରି ଗଛର ମୂଳରେ ଥିବା ଟାଣୁଆ କଣ୍ଟାଯୁକ୍ତ ପତ୍ର—2. The hard pointed leaves of datepalm found just over its roots.

**ଛାଲ**—ଦେ. ବି. ( ସଂ. ଛଲ୍ଲୀ )—
Chhāḻa — ୧ । ଚର୍ମ; ଚମଡ଼ା—1. Skin; hide.
ছাল — ତେଲ ଖାଲେ ଲୋକ ଛାଲ ଚାଉଁ ଚାଉଁ ବାଜଇ । ଶିଶୁବେଦ ।
छालखाल — ୨ । ଚର୍ମ ଉପରର ପତଳା ଆଚ୍ଛାଦନ; ମଳଚର୍ମ—2. Fpidermis.
୩ । ଖୋଳପା; ଫଳର ଚୋପା—3. Rind or peel of a fruit.
୪ । ଗଛର ବଲ୍କଲ; ବକଳା—4. Bark of a tree.
୫ । ମୃଗ ଚର୍ମ—5. Deer skin; hide of a deer.
୬ । ବ୍ୟାଘ୍ର ଚର୍ମ—6. Hide of a tiger.
୭ । ଯେ କୌଣସି ପଶୁ ବା ଜୀବର ଚମ—7. The hide of any beast or animal.
୮ । ଛାଲି ୨ ( ଦେଖ )—8. Chhāli 2 ( See )

**ଛାଲ ଉଠିବା**—ଦେ. କ୍ରି—କୌଣସି ବସ୍ତୁ ଉପରୁ ଚୋପା ବା ବକଳ ଛାଡ଼ିଯିବା—Peeling off of the skin.
Chhāla uṭhibā
(ଛାଲ ଛାଡ଼ିବା—ଅନ୍ୟରୂପ)

**ଛାଲ ଉତାରିବା**—ଦେ. କ୍ରି—୧ । ଜୀବର ଦେହରୁ ଚମକୁ କାଢ଼ିବା—1. To flay an animal; to skin.
Chhāla utāribā
ছালতোলা — ୨ । ଗଛରୁ ବକଳ ଛଡ଼ାଇବା—2. To bark a tree; to peel of the bark off a tree.
छालउधेड़ना
୩ । ଚୋପା ଛଡ଼ାଇବା—3 To scrape or peel.
୪ । ବହୁତ ପ୍ରହାର କରିବା—4. To thrash a person very severely.

**ଛାଲକଣ୍ଟା**—ଦେ. ବି.—ଛାଲି ୨ (ଦେଖ)
Chhāla kanṭā — Chhāli 2 (See)

**ଛାଲକରଣ୍ଡି**—ପ୍ରାଦେ. (ଯାଜପୁର) ବି.—ଛେଳାକେରଣ୍ଡି (ଦେଖ)
Chhāla karāṇḍi — Chhelākerāṇḍi (See)

**ଛାଲି**—ଦେ. ବି. (ସଂ ଛଲ୍ଲୀ)—୧ । ଛେଲି; ବଲ୍କଲ—1. Bark of a tree.
Chhāli
ছালট — ୨ । ଖଜୁରି ଗଛର ମୂଳ ପାଖେ ଥିବା ଡାଳର ମୂଳରେ ଥିବା ପତ୍ରର ଟାଣୁଆ କଣ୍ଟା—2 Pointed hard thorns or spikes of date-leaves.
छाला
[ଦ୍ର—ଏ ଲମ୍ବ ଓ ମୁନିଆ କଣ୍ଟାକୁ ଲୋକେ ଯିବା ଆସିବା କରୁଥିବା ଧାନ କିଆରି ଓ ପୋଖରୀରେ ଓ ବାଟରେ ଲୋକଙ୍କ ଯିବା ଆସିବା ଓ ସେ ବାଟେ ବନ୍ଦ କରିବା ପାଇଁ କ୍ଷେତ୍ର ସ୍ୱାମୀ ପୋତି ଦିଅନ୍ତି । ]

**ଛାଲିଆ**—ଦେ. ବି. ( ସଂ. ଛଲ୍ଲୀରୁ )—ପତ୍ର ସହିତ ଖଜୁରି ଡାଳ ଗୁଡ଼ିଏ ଏକତ୍ର ବନ୍ଧା ଯାଇ କରା ଯାଇଥିବା ପିଞ୍ଛା ବା ଝାଡ଼ୁଣି—A broom made of date-palm branches tied together.
Chhāliā

**ଛାଲିବା**—ଦେ. କ୍ରି.—ଛାଲ ଉତାରିବା ( ଦେଖ )
Chhālibā — Chhāla utāribā ( See )
( ଛାଲେଇବା—ଅନ୍ୟରୂପ )

**ଛାଲେରା**—ଦେ. ବି—ସଲରା ( କୋଳି; କଣ୍ଟା ) ( ଦେଖ )
Chhālerā — Salarā ( plum and spike ) ( See )

**ଛି**—ସଂ. ଅ. ( ସଂ. ଧିକ୍ )—ଘୃଣା; ନିନ୍ଦା; ବାରଣ ଏବଂ ଲଜ୍ଜାସୂଚକ ଅବ୍ୟୟ; ଧିକ୍—Foe ! tut, tut ! shame.
Chhi
ছি — ଛି ଲୋ ଛତ୍ରୁ, ମେଘ ବରଷିଲେ କେତେ ଭୁ ମାଉ—ଓଡ଼ିଆ ପ୍ରବଚନ ।
छीछी
( ଛିଃ; ଛିଃ ଛିଃ; ଛିଆ; ଛିଇ; ଛି ଛି—ଅନ୍ୟରୂପ )

**ଛିଆ**—ଦେ. ଅ—ଛି ( ଦେଖ )
Chhiā — Chhi ( See )

**ଛିଆଁ**—ଦେ. ବି ( ସଂ. ଛିଦ୍ ଧାତୁ )—୧ । ଗୁଞ୍ଜିବା; ଦାଣି କରି ( ନଡ଼ିଆରୁ ) ଚୋପା ଛଡ଼ାଇବା; ଚୋପା ଛେଲିବା—1. Scraping or shoving off the rind ( of a cocoanut ) by cutting with a sharp instrument.
Chhiāṅ
চাঁছা
छीलना
ছাওয়া — ୨ । ( ସଂ. ଛାଦନ ) ଘର ଛପର; ଘର ଛପର କରିବା; ଛିଆଁଣି—2. Thatching of a house; to thatch a house.
छाजन; छान

| ୧ | ଇ | ଡ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | କ୍ଷ | ଇୟ | ଉଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଲ୍ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଢ଼ | ନ୍ତ |

ଦେ. ବିଣ—୧ । ଚଞ୍ଚା ହୋଇଥିବା; ଛେଲା ହୋଇଥିବା— 1. With the rind scraped off with a sharp instrument.

୨ । ଯେ ଛପର କରେ; ଘର ଛପରକାରୀ—2. Thatching.

**ଛୁଆଁଇବା**—ଦେ. କ୍ରି—୧ । ( ସଂ. ଛଦ୍ ଧାତୁ ) ଫଳ ଆଦି (ଯଥା—ନଡ଼ିଆ)ର ଶ୍ୱେପା କଟୁରିଦ୍ୱାରା ଛେଲିବା; ଛେଇଁବା - ଛାଓଣ୍ଟା
Chhiāṅibā 1 To scrape off the rind of a fruit by a sharp instrument
**ଛଜଣା; ଛାନା**

ଛୁଆଇବା, ଛୁଏଁଇବା, ଛେଇଁବା } ଅନ୍ୟରୂପ ୨ । ( ସଂ. ଛଦ୍ ଧାତୁ ) ( ଘର ) ଛପର କରିବା—2. To thatch ( a (house).

୩ । ଚଉକିର ତଳାରେ ବେତ ବୁଣିବା— 3. To bottom a chair

୪ । ଢୋଲ ଆଦିରେ ଚମଡ଼ା ଛୁଆଣି କରିବା— 4. To tie or bind the ends of a drum with leather

**ଛୁଆଣି**—ଗ୍ରା. ବି. ( ସଂ ଛାଦନ )—୧ । ଛପରବନ୍ଧ—
Chhiāṇi 1. Thatching
ଛାଓଣ୍ଟା ୨ । ଛାଆଣି ( ଦେଖ )
**ଛାନା** 2. Chhā-āṇi ( See )

ବିଣ—୧ । ଆବୃତ—1 Covered.

ମାଳକାନ୍ତମଣିର ଗଣ୍ଡ, ସୁନା ଛୁଆଣି ହାଟବାଣ୍ଡ ଶଙ୍ଖଶୁଭ୍ର— ମାଳକଣ୍ଠ ଦାସ. ପିଲାଙ୍କ ରାମାୟଣ ।

୨ । ଛପରବନ୍ଧ ହୋଇଥିବା—2. Thatched.

**ଛୁଆ ଲୋ**—ଦେ. ଅ—(ସ୍ତ୍ରୀଙ୍କଦ୍ୱାରା ବ୍ୟବହୃତ ଘୃଣାବ୍ୟଞ୍ଜକ ଅବ୍ୟୟ) ଛି—
Chhiā lo (Interjection indicating sh ame, used by females) Fie !

**ଛିଇ ଛା**—ଦେ. ବି—ଛି ଛା ( ଦେଖ )
Chhi-i chhā Chhi chhā (See)
( ଛିଇଛାଆ—ଅନ୍ୟରୂପ )

**ଛିଁଞ୍ଚିବା**—ପ୍ରାଦେ. ( ବାଣପୁର ) କ୍ରି. ( ସଂ. ସିଚ୍ ଧାତୁ )—
Chhiṅṭibā ଛିଞ୍ଚିବା ( ଦେଖ )—Chhiṅchibā ( See )

**ଛିକରା**—ପ୍ରାଦେ. ( ଗଡ଼ଜାତ ) ବି—ଛାର୍‌ଛିକରା ( ଦେଖ )
Chhikarā Chhār-chhikarā ( See )

**ଛି କରିବା**—ଦେ. କ୍ରି—ଘୃଣାରେ ତ୍ୟାଗ କରିବା; ଉପେକ୍ଷା କରିବା—
Chhi karibā To give up with disgust.
ଛିଃକରା ( ଯଥା—ବାପା ଗାଳି ଦେବା ଦିନଠାରୁ ମୁଁ ପାନକୁ ଛି କରିଛି । )
**ଛି କରନା**

**ଛିକାଇବା**—ଦେ. କ୍ରି. (ସଂ. ଶଙ୍କା)—କୌଣସି କାର୍ଯ୍ୟ କରିବାକୁ (କିଜର ମନ) ଦ୍ୱିଧା କରିବା; ମନ ଛକପକ ହେବା; କୁନ୍ଥକୁନ୍ଥ ହେବା—To hesitate.
Chhikāibā
**ହିଚକିଚାନା**
(**ଛିକେଇବା—ଅନ୍ୟରୂପ**) ମୋ ମନଟା ଛିକଉ ଥାଏ କଟକ ଯିବାକୁ ମନ ବଳୁ ନ ଥିଲା । ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଛିକାର**—ଦେ. ବି—୧ । (ସଂ. ଶୀତ୍କାର) ମୁଖରେ (ଜିହ୍ୱା ଓ ଦନ୍ତଦ୍ୱାରା ଉଚ୍ଚାରିତ) ଅବ୍ୟକ୍ତ ଇସ୍‌ଇସ୍ ଶବ୍ଦ ଉଚ୍ଚାରଣ; ଇସ୍-ଇସ୍ ଶବ୍ଦ—1 Hissing sound.
Chhi-kāra

୨ । (ସଂ. ଧିକ୍କାର)—ଧିକ୍କାର ବଚନ— 2. Contemptuous words.

ଦେ. ବିଣ—ତୁଚ୍ଛ; ଘୃଣାକର; ଧିକ୍କାରଯୁକ୍ତ— Scornful; contemning; contemptuous.
(ଯଥା—ମୁଁ ତୋର ଏତେ ଛିକାର ବଚନ ସହି ପାରିବି ନାହିଁ )

**ଛିକିବା**—ଦେ. କ୍ରି—ଛିଙ୍କିବା (ଦେଖ)
Chhikibā Chhiṅkibā (See)

ଛିକବ୍ରେ ସେ ଗର୍ଭ ପଡ଼ିଲା ଚଳେ ଯାଇ । କୃଷ୍ଣସିଂହ. ମହାଭାରତ ଶାନ୍ତି ।

**ଛିକ୍କ**—ଦେ. ବି. (ସଂ. ଛିକ୍କା)—ଛିଙ୍କ (ଦେଖ)
Chhikka Chhiṅka (See)

**ଛିକ୍କା**—ସଂ. ବି—୧ । (ଛିକ=ଅନୁକରଣ ଶବ୍ଦ+କୈ ଧାତୁ +ଅ+ସ୍ତ୍ରୀ ଆ)—ଛିଙ୍କ; ଛୁତ—1. Sneeze.
Chhikkā

୨ । ଶିକ୍ୟ; ସିକା (ହି ଶବ୍ଦସାଗର)— 2 A hanging rope-basket.

**ଛିକ୍କଣୀ**—ସଂ.ବି.(ଛିକ+କୈ ଧାତୁ+ଅନ+ଈ)—ସୋମରାଜ୍ୟାଦି ବର୍ଗର ବର୍ଷାୟୁଃ ଶାକବିଶେଷ, ବିଲରେ ଜନ୍ମିବା ଏକପ୍ରକାର ଲଟାଳିଆ ଗୁଳ୍ମ; ବିଲକାସ—A kind of creeping plant; Artemisa Sternutatoria; Centepeda Orbicularis.
Chhikkaṇī
ଅନ୍ୟ ସଂ. ନାମ— ଛିକ୍କନୀ; କ୍ଷବକ; ଛିକ୍କିକା; କ୍ଷବକୃତ୍; ଜାଶ୍ମା; ଘ୍ରାଣଦୁଃଖଦା; କ୍ରିମିନାଶା, ଉଗ୍ରା, ଉଗ୍ରଗନ୍ଧା ଓ. ଛିଙ୍କଣି, ଛିଙ୍କୁଣି, ବିଲନାସ ହାଁଚୁଟି; ହେଁଚେତୋ; ମେଚେତୋ; ନାକ୍‌ଛିକନି
**ନାକଛିକନି; ଉକ୍କାଶ, ଛିକନି**

[ ଦ୍ର—ଏହା ଶୀତଦିନେ ବିଲ ଓ ପଡ଼ିଆରେ ମାଡ଼େ । ଯେଉଁଠାରେ କିଛି ଦିନ ପାଣି ଜମା ହୋଇ ଶୁଖି ଯାଇଥାଏ ସେହି ସ୍ଥାନରେ ଏହା ଉଠେ । ପତ୍ର ଦନ୍ତୁର ଓ ଅଗ ଚଉଡ଼ା । ଏହାର ଫୁଲ ହଳଦିଆ ଓ ଭୂମି ପରି ଓ ଆକାରରେ ଚଣା ପରି; ଏ ଫୁଲକୁ ଦଳି କରି ଶୁଙ୍ଘିଲେ ଭାରି ଛିଙ୍କ ହୁଏ ।

ଏହା କଟୁରସ, ରୁଚିକର, ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, ଅଗ୍ନିବର୍ଦ୍ଧକ ଓ ପିତ୍ତଜନକ ଏବଂ ବାତରକ୍ତ, କୁଷ୍ଠ, କୃମି, ବାୟୁ ଓ କଫନାଶକ । ଏହା ଅଭାବରେ ବୈଦ୍ୟମାନେ ଔଷଧରେ ମରୁଆ ବା ମଏଣା ଫଳ ବ୍ୟବହାର କରନ୍ତି । ]

**ଛିକ୍କଣୀ**—ସଂ. ବି—ଛିକ୍କଣୀ (ଦେଖ)
Chhikkaṇi Chhikkaṇī (See)

**ଛିକ୍କର**—ସଂ. ବି. ( ଛିକ୍=ଅନୁକରଣ ଧ୍ୱନି+କୃ ଧାତୁ+କର୍ତ୍ତୃ. ଅ; ଏହା ଛିକ୍ ଛିକ୍ ଧ୍ୱନି କରୁ ଥିବାରୁ )—ଏକପ୍ରକାର ମୃଗ—A species of deer.
Chhikkara

[ଦ୍ର—ଏହା ହରିଣ ଅପେକ୍ଷା ଦ୍ରୁତଗାମୀ, ବୃହତ୍‌ସଂହିତା ମତରେ ମନୁଷ୍ୟ କୌଣସି ଶୁଭକର୍ମାର୍ଥ ଅନୁକୂଳ କରିବା ବେଳେ ଏ ମୃଗର ଡାହାଣ ପାଖେ ଗଲେ ଶୁଭ ହୁଏ—ହି. ଶବ୍ଦସାଗର । ]

ସାଧାରଣ ଲୋକେ ଅପଠ ପୃଷ୍ଠାରେ ମୂର୍ଦ୍ଧନ୍ୟ ଓ ଦନ୍ତ୍ୟ ଅକ୍ଷର ଓ ମାତ୍ରା ଏବଂ ୨ ଚନ୍ଦ୍ରବିନ୍ଦୁ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚନ୍ଦ୍ରବିନ୍ଦୁ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ଯାଇ ସମ୍ପର୍କିତ ଅଷ୍ଟର ବଦଳରେ ୨ ବା ୧ ଚନ୍ଦ୍ରବିନ୍ଦୁ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ରଥ' ନ ମିଳିଲେ 'କୃଥ' ଦେଖିବେ, 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

**ଛିକ୍କା**—ସଂ. ବି—୧ । (ଛିକ=ଅନୁକରଣ ଶବ୍ଦ+କୈ ଧାତୁ+ଭାବ
Chhikkā ଅ; ସ୍ତ୍ରୀ ଆ —ଛିଙ୍କ; କ୍ଷୁତ—1. Sneeze
୨ । ସିକ୍ୟ; ସିକା (ହି ଶବ୍ଦସାଗର)—
2. A hanging rope-basket

**ଛିକ୍କିକା**—ସଂ. ବି. (ଛିକ୍କା+ଇକ+ଆ)—ଛିକ୍କଣୀ (ଦେଖ)
Chhikkikā Chhikkaṇī (See)

**ଛିଗୁଲା**—ଦେ. ବି—୧ । ଶ୍ଳେଷ ବା ବ୍ୟଙ୍ଗଯୁକ୍ତ ଭର୍ତ୍ସନା—
Chhigulā 1. Ironical rebuke; gibe, jeer.
୨ । ଘୃଣାବ୍ୟଞ୍ଜକ ଦୁର୍ନାମ—
2. Contemptuous imputation; innuendo
ଦେ. ବି—୧ । ଶ୍ଳେଷ ବା ବ୍ୟଙ୍ଗଯୁକ୍ତ (ବଚନ)—
1. Ironical (words).
୨ । ଘୃଣାବ୍ୟଞ୍ଜକ—2. Indicating contempt.

**ଛିଗୁଲାଇବା**—ଦେ. କ୍ରି—୧ । ଉପହାସ ବା ବ୍ୟଙ୍ଗ କରି ଭର୍ତ୍ସନା
Chhigulāibā କରିବା—1. To administer ironical
**ଛିଗିମାନା** rebuke; to jeer.
(ଛିଗୁଲେଇବା—ଅନ୍ୟରୂପ) ୨ । ଛିଛି କରି କହିବା—
2. To address in contemptuous language.

**ଛିଙ୍କ**—ଦେ. ବି. (ସଂ. ଛିକ୍କା)—କ୍ଷୁତ; ନାସିକାରୁ ହଠାତ୍ ଜୋର ସହିତ
Chhiṅka ବାହାରିବା ଶବ୍ଦ—Sneeze.
ହାଁଚି
**ଛୀଁକ**
ଛିଙ୍କରୁ ଜାତ ହେବା ଯୋଗୁଁ କ୍ଷୁପ ନାମ
ବହୁ ହୋଇଲେ ପ୍ରଜାପତି ନରେଶ୍ୱରମ ।
କୃଷ୍ଣସିଂହ ମହାଭାରତ ଶାନ୍ତି ।

**ଛିଙ୍କଇ ପଡ଼ିଲା**—ଦେ. ଅ—ଛିଙ୍କିବା ଲୋକର ମଙ୍ଗଳ ହେଉ—
Chhiṅka-i paṛilā A sentence used on sneezing,
ହେଁଚିଛି ଅ indicating :- Let weal happen to
**ଶତଂଜୀବ** the sneezer.
ଛିଙ୍କ ପଡ଼ିଲା } ଅନ୍ୟରୂପ
ଛିଙ୍କେଇ ପଡ଼ିଲା }

[ ଦ୍ର—ନାକ ମଧ୍ୟର ଝିଲ୍ଲୀ କୌଣସି କାରଣରୁ ଉତ୍ତେଜିତ ହେଲେ, ଶର୍ଦ୍ଦି ହେଲେ ବା ନାସ ଶୁଙ୍ଘିଲେ ନାକ ଓ ପାଟିବାଟେ ଗୁଡ଼ିଏ ପବନ ଭିତରକୁ ଟାଣି ହୋଇଯାଇ ଉଚ୍ଚୈଃସ୍ୱର ଓ ବେଗ ସହିତ ତାହା ନାକ ଓ ପାଟିବାଟେ ବାହାରେ, ଏହାକୁ ଛିଙ୍କ କହନ୍ତି । ଛିଙ୍କ ସଙ୍ଗେ ବେଳେବେଳେ ଛେପ ଓ ଶ୍ଳେଷ୍ମା ମଧ୍ୟ ବାହାରି ପଡ଼େ । କୌଣସି କାର୍ଯ୍ୟ ଆରମ୍ଭ କଲାବେଳେ ଛିଙ୍କିବା ଅଶୁଭସୂଚକ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି ଓ ସେତେବେଳେ 'ଶତଂଜୀବ' 'ଚିରଂଜୀବ' ବୋଲି କହି ସେ ଅଶୁଭ ନିବାରଣ କରନ୍ତି । ଏ ବିଶ୍ୱାସ ପ୍ରାଚୀନ ଗ୍ରୀକ୍, ରୋମାନ୍ ଓ ଇହୁଦିମାନଙ୍କ ମଧ୍ୟରେ ଥିଲା । ପାଶ୍ଚାତ୍ୟମାନଙ୍କ ମଧ୍ୟରେ ମଧ୍ୟ ଅଦ୍ୟାବଧି ଏ ବିଶ୍ୱାସ ଅଛି; ସେମାନଙ୍କ ମଧ୍ୟରେ କେହି ଛିଙ୍କିଲେ ପାଖରେ ଥିବା ଲୋକେ କହନ୍ତି "ଈଶ୍ୱର ମଙ୍ଗଳ କରନ୍ତୁ"— ହି. ଶବ୍ଦସାଗର । ]

**ଛିଙ୍କଣୀ**—ଦେ. ବି. (ସଂ. ଛିକ୍କଣୀ)—ବିଲନାସ; ଛିକ୍କଣୀ (ଦେଖ)
Chhiṅkaṇī Chhikkaṇī (See)
ଛିଙ୍କିଣୀ } ଅନ୍ୟରୂପ
ଛିଙ୍କୁଣି }

**ଛିଙ୍କ ଦେଖାଇବା**—ଦେ. କ୍ରି—ଛିଙ୍କିବାର ଉପକ୍ରମ ହେବା—
Chhiṅka dekhāibā Having a tendency to sneeze.
ହାଁଚି ଆନା
**ଛୀଁକ ଆନା**
(ଛିଙ୍କମାଡ଼ିବା; ଛିଙ୍କ ଦେଖେଇବା; ଛିଙ୍କ ଆସିବା—ଅନ୍ୟରୂପ)

**ଛିଙ୍କ ପଡ଼ିବା**—ଦେ. କ୍ରି.—ଛିଙ୍କିବା—
Chhiṅka paṛibā Sneezing.

**ଛିଙ୍କା**—ଦେ. ବି.—(ସଂ. ଛିକ୍କା)—ଛିଙ୍କ (ଦେଖ)
Chhiṅkā 1. Chhiṅka (See)
**ଛୀଁକନା** ୨ । ଛିଙ୍କିବା କର୍ମ—2. Act of sneezing.

**ଛିଙ୍କାଇବା**—ଦେ. କ୍ରି.—ଛିଙ୍କିବାର ପ୍ରେରଣାର୍ଥକ ରୂପ) କୌଣସି ବ୍ୟକ୍ତିଙ୍କୁ
Chhiṅkāibā ନାସ ଶୁଙ୍ଘାଇ ବା ତା ନାକରେ ସୂକ୍ଷ୍ମ କାଠି ଆଦି
**ଛୀଁକାନା** ଭରିତ କରିବା ଦ୍ୱାରା ସେ ଛିଙ୍କିବାର ଉପାୟ କରିବା—
(ଛିଙ୍କେଇବା—ଅନ୍ୟରୂପ) (causative of Chhiṅkibā) To cause a person to sneeze.

**ଛିଙ୍କିବା**—ଦେ. କ୍ରି.—(ସଂ. ଛିକ୍କା)—ନାସିକା ମଧ୍ୟରୁ ବେଗ ଓ ଶବ୍ଦ ସହିତ
Chhiṅkibā ହଠାତ୍ ପବନ ବାହାର କରିବା—To sneeze.
ହାଁଚି ମରା [ ଦ୍ର—ବିଡ଼ାଲ ଛିଙ୍କିଲେ ଗୃହସ୍ୱାମୀ ଅମଙ୍ଗଳ ସୂଚନା କରେ;
**ଛୀଁକନା** ମନୁଷ୍ୟ ଛିଙ୍କିବା ମଧ୍ୟ ଅମଙ୍ଗଳକର; ଏଥିପାଇଁ କେହି ଛିଙ୍କିଲେ ସେଠାରେ ଉପସ୍ଥିତ ବୟୋବୃଦ୍ଧ ମନୁଷ୍ୟ ଉକ୍ତ ଅମଙ୍ଗଳ ଦୂର ହେବା ଆଶାରେ କହି ଥାଆନ୍ତି 'ଚିରଂଜୀବୀ ହୋ' । ]

**ଛିଙ୍ଗଲିବା**—ପ୍ରାଦେ. (ସମ୍ବଲପୁର) କ୍ରି.—୧ । ଗୁଲିବା; ଗଚ୍ଛକରିବା—
Chhiṅglibā 1 To move; to walk.
୨ । ଇତସ୍ତତଃ ଗଚ୍ଛ କରିବା—2. To move about.
(ଯଥା—ଏତେ ରାତିରେ ଛିଙ୍ଗ୍‌ଲିବା ମୁସ୍କିଲ୍ ।)
୩ । ବିସ୍ତୃତ ହେବା; ଖେଦି ଯିବା; ବ୍ୟାପିବା—3. To spread about; to be diffused throughout.
(ଛିଙ୍ଗ୍‌ଲି ଯିବା—ଅନ୍ୟରୂପ) (ଯଥା- ପାଣି କାହିଁ ଛିଙ୍ଗ୍‌ଲିଗଲାଣି)

**ଛିଚୁକୁଟା**—ପ୍ରାଦେ. (ଗଞ୍ଜାମ) ବି.—ଗାଳିମନ୍ଦ; ଫଜିତ—
Chhichu-kuṭā Rebukes; abuses.
(ଯଥା—ତାକୁ ମୋ ଧାର ଟଙ୍କା ମାଗି ଯିବାରୁ ସେ ମୋତେ ଅନେକ ଛିଚୁକୁଟା କରି କହିଲା ।)

**ଛିଚୁକୁନ୍ଦା**—ପ୍ରାଦେ. ( ଗଞ୍ଜାମ ) ବି.—ପରର ଦୋଷ ଦେଖାଇ ସୁଖୀ
Chhichukundā ହେବା—Feeling pleased or satisfied by pointing out another's fault.

| ୦ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ନ୍ତ୍ର | ନ୍ଥ | ଣ୍ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଁୟ | ଚଥ | ଢ଼ | ନ |

**ଛି ଛା**—ଦେ. ବି.—(ସଂ. ଧିକ୍କାର;)—୧ । ଧିକ୍କାର, ଘୃଣାବଚନ—
Chhi chhā 1. Condemnation; crying shame;
(ଛିଇଛାଆ—ଅନ୍ୟରୂପ) hurling defiance
ଦେ. ବିଣ.—୧ । ଧିକ୍କାରଯୁକ୍ତ (ବାକ୍ୟ)—
1. Condemnatory.
୨ । ଘୃଣ୍ୟ—2. Contemptible; abominable.

**ଛି ଛାକର**—ଦେ. ବି. ଓ ବିଣ.—ଛି ଛା (ଦେଖ)
Chhi chhākara Chhichhā (See)
(ଛି ଛାକର; ଛିଇଛାକର; ଛିଛିକର; ଛି ଛାକାର—ଅନ୍ୟରୂପ)

**ଛି ଛି**—ଦେ. ଅ.—ଛି (ଦେଖ)
Chhi chhi Chhi (See)
(ଛି ଛିଃ; ଛି ଇଛିଇ—ଅନ୍ୟରୂପ)

**ଛିଛି କରିବା**—ଦେ. କ୍ରି.—୧ । ଧିକ୍କାର କରିବା—1. To decry;
Chhichi karibā to cry down; to condemn; to cry shame; to hurl defiance at
୨ । (ଲକ୍ଷଣାର୍ଥ) ତୁଳନାରେ ବଳି ପଡ଼ିବା—
2 (figurative) To exceed in comparision

ଲଳିତାର ବୃନ୍ଦ ଲଳିତ ଅଧର ଉପମାକୁ କରେ ଛି ଛି । ରାଧାନାଥ- ପାର୍ବତୀ ।

**ଛିଛିରିବା**—ପ୍ରାଦେ. (ସମ୍ବଲପୁର) କ୍ରି.—ଛିଟ୍‌କିବା; ଦୂରକୁ କ୍ଷିପ୍ତ ହେବା;
Chhichhiribā ଛିଟ୍‌କିବା—To shoot out to a distance

**ଛିଜ୍**—ପ୍ରାଦେ. (ସମ୍ବଲପୁର) ବି. (ସଂ. ସୂଚୀ)—ଛୁଞ୍ଚି—
Chhij Needle.

**ଛିଜ୍‌ପତର**—ପ୍ରାଦେ. (ସମ୍ବଲପୁର) ବି.—ଛୁଞ୍ଚିପତର; ଖୁବ୍ ସରୁ ଚକୁଳି
Chhij-patara ପିଠା—A kind of thin pastry cake.
(ଛିଜ୍ ପତ୍ର—ଅନ୍ୟରୂପ)

**ଛିଞ୍ଚ**—ଦେ. ବି. (ସଂ. ସେଚନ)—ଜଳ ଆଦି ଅଳ୍ପଅଳ୍ପ ଛାଟିବା; ଜଳ-
Chhiñcha ସେଚନ—Sprinkling of water.
**ଛିଡ଼କାବ**

**ଛିଞ୍ଚକନା**—ଦେ. ବି. (ସଂ. ସେଚକ; ଏତଦ୍ୱାରା ଗୃହାଦିରେ ଜଳ ସେଚନ
Chhiñchakanā କରାଯାଏ)-ଘର ଲିପିବାର କନା; ଛୁଞ୍ଚକନା—
A rag to wash or besmear the floor and walls of a house with cowdung and water.

**ଛିଞ୍ଚଡ଼ା**—ଦେ. ବି. (ସଂ. ସିଚ ଧାତୁ)—୧ । (ବର୍ଷାଜଳ) ଛାଟିବା; ଛାଟ;
Chhiñchardā ବର୍ଷାବିନ୍ଦୁର ତିର୍ଯ୍ୟକ ପତନ—
ଛିଟା 1. Raining in a slanting manner.
ଛୀଂଟା ୨ । ଛିଞ୍ଚାଡ଼ିବା—
2. Sprinkling or splashing with water.
୩ । ମୃତ ଛେଳିମେଣ୍ଢାଙ୍କ ପେଟର ଅନ୍ତ୍ରାଦି (ଯାହା ପୋଷା କୁକୁରଙ୍କୁ ଖାଇବାକୁ ଦିଆଯାଏ)—3. The entrails of a sheep or goat killed (which is used to feed domestic dogs).
ବିଣ.—୧ । ସିକ୍ତ—1. Sprinkled; splashed
୨ । ଇତସ୍ତତଃ ବିକ୍ଷିପ୍ତ—2 Scattered; strewn

**ଛିଞ୍ଚ ଦେବା**—ଦେ କ୍ରି.—ମାଟିଘରର ତଳରେ ମାଟିଗୋବରପାଣି ଅଳ୍ପ
Chhiñcha-debā ଅଳ୍ପ ଛିଞ୍ଚି କନାରେ ଲିପିବା—To besmear
ଲୁପଡ଼ନା the earthen floor of a house with cow-dung and water with a rag.

**ଛିଞ୍ଚ ପତର**—ଦେ. ବି.—ଛିଞ୍ଚି ପତ୍ର (ଦେଖ)
Chhiñcha-patara Chhiñchi-patra (See)
(ଛିଞ୍ଚପତ୍ର—ଅନ୍ୟରୂପ)

**ଛିଞ୍ଚା**—ଦେ. ବି (ସଂ. ସେଚନ)—୧ । ଜଳସେଚନ—
Chhiñchā 1. Sprinkling with water
ଛିଟା ୨ । କୌଣସି କ୍ଷୁଦ୍ର ବସ୍ତୁକୁ ପତଳା କରି ବିଛାଇବା—
ଛୀଂଟନା 2. To lay small articles in thin layers one over the other
୩ । (ପାନବରଜୀଙ୍କ ଭାଷା) ପାନବରଜର ଛାତର ତଳେ ଓ ଉପରେ ଦିଆ ଯାଇଥିବା କାଣ୍ଡଶର—
3 Reeds put over reed-screens.
ଦେ. ବିଣ—୧ । ସିକ୍ତ—1. Sprinkled
୨ । ବୁଣା ନ ହୋଇଥିବା (ବନାତ); ଲୋମସବୁ ଉପର୍ଯ୍ୟୁପରି ଛିଞ୍ଚାହୋଇ ଚାପ ଦିଆଯିବାଦ୍ୱାରା ପ୍ରସ୍ତୁତ (ବନାତ)—
2. (broad-cloth) Not woven but prepared by pressing thin layers of wool together into a compact mass

**ଛିଞ୍ଚା ଅଉଁସା**—ଦେ. ବି (ସଂ. ସେଚନ+ଆମର୍ଷଣ; ସହଚର)—ମୂର୍ଚ୍ଛିତ ବା
Chhiñchā auñsā ସଂଜ୍ଞାବିହୀନ ବ୍ୟକ୍ତିଙ୍କୁ ଚେତା କରାଇବା
(ଛିଞ୍ଚା ଘଷା—ଅନ୍ୟରୂପ) ସକାଶେ କରାଯିବା ଜଳସେଚନ ଓ ଅଙ୍ଗ-ସମ୍ବାଳନ—Sprinkling of water on and rubbing of the limbs of a senseless person to restore him to senses.

**ଛିଞ୍ଚାଇବା**—ଦେ.କ୍ରି (ସଂ. ସିଚ ଧାତୁ ଣିଜନ୍ତ)—(ଛିଞ୍ଚିବାର ଣିଜନ୍ତରୂପ)—
Chhiñchāibā (Causative of Chhiñchibā)
ଛିଟାନ ଅନ୍ୟଦ୍ୱାରା ଜଳ ସେଚନ କରାଇବା—
ଛୀଂଟାନା To cause water etc to be sprinkled.
(ଛିଞ୍ଚେଇବା—ଅନ୍ୟରୂପ)

**ଛିଞ୍ଚାଛିଞ୍ଚି**—ଦେ. ବି—ବାରମ୍ବାର ପାଣି ଛିଞ୍ଚିବା କାମ—
Chhiñchā-chhiñchi Repeated sprinklings.

**ଛିଞ୍ଚାଡ଼ିବା**—ଦେ. କ୍ରି—୧ । ( ସଂ. ସଞ୍ଚାଳନ )—ଇତସ୍ତତଃ ସଞ୍ଚାଳନ
Chhiñchārdibā କରିବା; ଜୋରରେ ହଲାଇବା; ବଳପୂର୍ବକ
ଛିଟାନ ଛାଟିବା ( ଯଥା—ହାତଗୋଡ଼ )—
ଛିତରାନା 1. To throw or move on all sides (e. g. one's arms and legs).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୨ । ( ସଂ. କ୍ଷିପ୍ତ କରଣ. ପ୍ରା. ଛିତ୍ତକରଣ )
ଫିଙ୍ଗିବା; ଇତସ୍ତତଃ ବିକ୍ଷିପ୍ତ କରିବା—
2 To scatter about.

କୋଳରୁ ସାଆନ୍ତ୍କୁ ଛିଞ୍ଚାଇ ପକାଇଲ
ମୂଳ ଧରି ସମ୍ପଦ ଉପରେ ଥାଇଁଲ । କୃଷ୍ଣସିଂ. ମହାଭାରତ. ବନ ।

**ଛିଞ୍ଚା ପାଣି**—ପ୍ରାଦେ. (ସମ୍ବଲପୁର) ବି—ବର୍ଷାର ଛାଟ ବା ଛିଅଁଡ଼ା ପାଣି—
Chhiñchā pāṇi — Water falling from a slanting shower.

**ଛିଞ୍ଚାବିଞ୍ଚା**—ଦେ. ବି—ମୁମୂର୍ଷୁ ବା ମୂର୍ଚ୍ଛିତ ବ୍ୟକ୍ତିକୁ ସଚେତ କରିବା ଉଦ୍ଦେଶ୍ୟରେ ତା ଉପରେ ପାଣି ଛିଞ୍ଚିବା ଓ ତାକୁ ବିଞ୍ଚଣାରେ ବିଞ୍ଚିବା—
Chhiñchā-biñchā — Sprinkling water on and fanning a dying or senseless person.

**ଛିଞ୍ଚା ମାରିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଛିଞ୍ଚିବା—
Chhiñchā māribā — To sprinkle (water etc).

**ଛିଞ୍ଚି**—ଦେ. ବି—ଘରର ଶେଷରେ ଘରକୁ ବଳାଇ କରି କୁଆଣି କଟାଯିବା ଛଣର ଅଗ୍ରଭାଗ—
Chhiñchi — The tops of straw protruding from the ends of a thatch.

**ଛିଞ୍ଚିପତ୍ର**—ଦେ. ବି—କରେଇରେ ପିଠଉକୁ କେତେ ଥର ଘାସ ଦ୍ୱାରା ଉପର୍ଯ୍ୟୁପରି ଛିଞ୍ଚି ପ୍ରସ୍ତୁତ କରିବା ପତଳା ଚକୁଳି; ଛିଞ୍ଚିପତର—A kind of very fine pan-cake done over the frying pan by sprinkling layers of rice and paste other on a pan set over the fire.
Chhiñchi-patra
(ଛିଞ୍ଚିପତର—ଅନ୍ୟରୂପ)

**ଛିଞ୍ଚିବଟା**—ଦେ. ବି—ଛୁଞ୍ଚିଆବଟା ( ଦେଖ )
Chhiñchi-batā — Chhuñchiā-batā ( See )

**ଛିଞ୍ଚିବା**—ଦେ. କ୍ରି. ( ସଂ. ସିଚ୍ ଧାତୁ ; ସେଚନ )—
Chhiñchibā — ୧ । ଜଳାଦି ସେଚନ କରିବା—
ଛିଟାନା — 1. To sprinkle water etc.
**ଛିଂଟାନା, ଛିଡ଼କନା** — ୨ । ଅଳ୍ପ ପରିମାଣରେ ବର୍ଷା ହେବା—
2. To rain in driblets.
୩ । କୌଣସି କ୍ଷୁଦ୍ର ବସ୍ତୁକୁ ଅଳ୍ପଅଳ୍ପ କରି ସ୍ତରକୁ ସ୍ତର ବିଛାଇବା—3. To put thin layers of small articles one over another.

**ଛିଟ୍‌କା**—ଦେ. ବି—୧ । ଛିଞ୍ଚାଡ଼ିବା; ଇତସ୍ତତଃ ସଂଚଳନ—
Chhiṭ-kā — 1. Waving; moving to and fro.
ଛିଟକାନ — ୨ । ଛିଟା; ଛିଞ୍ଚା—2. Sprinkling about; scattering of small particles
**ଛିଟକନା**
୩ । ଛିଟ୍‌କା; ଛିଅଁଡ଼ା; ଛାଟ—
3. Slanting rainfall; splashing.
୪ । ବଥା; ବିନ୍ଧା—4. Aching.
୫ । ଆଖିର ଛଟକ—
5. Sidelong glance or look.
ଛିଁଚକା, ଛିଁଚକୋ — ଦେ. ବିଣ—କ୍ଷୁଦ୍ର—Small; petty.
**ଅଦ୍‌ନା** — ( ଯଥା—ଛିଟ୍‌କା ଚୋର । )

**ଛିଟକଇବା**—ଦେ. କ୍ରି. ( ସଂ. ଶ୍ଚଲନ )—
Chhit-kāibā — ୧ । ଦ୍ରବ ପଦାର୍ଥକୁ କ୍ଷୁଦ୍ରକ୍ଷୁଦ୍ର କଣାରେ ଛାଟିବା ବା ତିର୍ଯ୍ୟକ ଭାବରେ ବିଞ୍ଚିବା; ଛିଡ଼କାଇବା—
ଛିଟକାନ, ଛିଟନ
**ଛିଟକାନା** — 1. To sprinkle slantingly
(ଛିଟକାଇବା; ଛିଟ୍‌କେଇବା, ଛିଟକେଇବା—ଅନ୍ୟରୂପ)
୨ । ସିଟ୍‌କାଇବା ( ଦେଖ )
2. Siṭ-kāibā ( See )

**ଛିଟ୍‌କାଣିଅଁ**—ଦେ ବି—ଖୁଚୁରା; ବଳି ପଡ଼ିଥିବା ସାମାନ୍ୟ ଅଂଶ—
Chhiṭ-kāṇiāñ — Odds and ends; small remainders.
ଛିଟିଛାଟି
**ଫୁଟକର**
(ଛିଟକାଣିଅଁ—ଅନ୍ୟରୂପ)

**ଛିଟ୍‌କିଣି**—ଦେ. ବି—ଛିଟିକିଣି ( ଦେଖ )
Chhiṭ-kiṇi — Chhiṭikiṇi ( See )

**ଛିଟ୍‌କିବା**—ଦେ. କ୍ରି ( ସଂ. କ୍ଷିପ୍ତକରଣ; ପ୍ରା. ଛିତ୍ତକରଣ )—
Chhiṭ-kibā — ୧ । (ଅଗ୍ନି କଣା ବା ଦ୍ରବ ପଦାର୍ଥ) କ୍ଷୁଦ୍ର କଣାରେ ବିକ୍ଷିପ୍ତ ହେବା ( ଯଥା—ନିଆଁ ଛିଡ଼କିବା )—
ଛିଟକା
**ଛଟକନା** — 1. To splash up; to be sprinkled in small drops; to shoot off in sparks (said of fire).
(ଛିଟକିବା—ଅନ୍ୟରୂପ)
( ଯଥା—ତଳମ୍ଭ ଗାଡ଼ିର ଚକରୁ କାଦୁଅଧାଣି ଛିଟ୍‌କୁଛି । )
୨ । ମୁଣ୍ଡ ଆଦି ବିନ୍ଧିବା; ବଥାଇବା—2 To ache.

**ଛିଟ୍‌ଛାଟ**—ଦେ ବି—ଛିଟ୍‌କାଣିଆ ( ଦେଖ )
Chhiṭ-chhāṭ — Chhiṭ-kāṇiā ( See

**ଛିଟ୍‌ଛିଟ**—ଦେ. ବିଣ. (ସଂ. ଚର୍ଚ୍ଚିତ)—ଚିତ୍ରିତ; ଶବଳ; କର୍ବୁର—
Chhiṭ-chhiṭ — Spotted; variegated; multicoloured marked with small spots; motley.
**ରଙ୍ଗବିରଙ୍ଗ**
(ଛିଟଛିଟିଆ; ଛିଟ୍‌ଛିଟିକା; ଛିଟ୍‌ଛିଟକିଆ—ଅନ୍ୟରୂପ)

**ଛିଟ୍‌ନା**—ପ୍ରାଦେ. (ଗଡ଼ଜାତ, ସମ୍ବଲପୁର; ଭୁଲ. ଏହି ଅର୍ଥରେ ଛିଟ୍‌ନୀ)—
Chhiṭnā — ବାଉଁଶର ସରୁ କାଠିରେ ତିଆରି ହୋଇଥିବା ଛୋଟ ଟୋକେଇ—A small basket woven with slender bamboo-sticks.

**ଛିଟ**—ଦେ. ବି. ( ସଂ. ଚିତ୍ର )—
Chhiṭa — ୧ । ନାନାବର୍ଣ୍ଣର ଛିଟା ବା ଚିତ୍ରଯୁକ୍ତ ବସ୍ତ୍ର; ଚିତ୍ରିତ ବସ୍ତ୍ର—
ଛିଟ — Spotted cloth; chintz.
**ଛୀଂଟ** — ଦେ. ବିଣ—ଚର୍ଚ୍ଚିତ; ଶବଳିତ—
Multicoloured; spotted.

ଚନ୍ଦ୍ରବେ ଲକ୍ଷା ଲାଗି ହେଲା ଛିଟ । କବିସୂର୍ଯ୍ୟ. କବିତାକଲ୍ଲୋଳ ।

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ | ଡ଼ଥ | ଲ୍ଲ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଥ | ଢ଼ | ଳ୍ଲ |

**ଛିଟଛିଟା**—ଦେ. ବିଣ—ଛିଟ୍‌ଛିଟ୍ ( ଦେଖ )
Chhiṭa-chhiṭā   Chhiṭ-chhiṭ ( See )
(ଛିଟପକା—ଅନ୍ୟରୂପ)

**ଛିଟା**—ଦେ. ବି. ( ସଂ. କ୍ଷିପ୍ତ; ପ୍ରା. ଛିତ୍ତ )—
Chhiṭā   ୧ । କ୍ଷୁଦ୍ର ବିନ୍ଦୁ; କଣା; ଶୀକର—
ছিটা, ছিটে   1. Small drops; sparks.
छींटा
ଛିଟା ଉଠି ପଡୁଥିଲା କି ଅସି ତା ହୁମଣ୍ଡଳେ ଧରଣୀରେ ।
ରଘୁନାଥ. ସପାରଢ ।
୨ । ଛୋଟ ଦାଗ—2. Stain; spot.
୩ । ପରିମାଣବିଶେଷ—3. A specific measure.
୪ । ଛୋଟ ଗୁଳି; ବଟିକା; ଗୁଳା—
4. Small ball; bullet; pill; globule.
୫ । ମଦକ; ଗୁଳି—
5. Opium bullets for smoking.
୬ । (ପାନବରଜୀଙ୍କ ଭାଷା) ନୂଆ ବରଜରେ ପ୍ରଥମରେ ପୋତା ଯିବା ( ବେଷ୍ପା ହେବା ) ଲମ୍ବ ପାନ ଲତା—
6. A long betel-creeper planted in a betel-plantation.
ପ୍ରାଦେ. (ସମ୍ବଲପୁର) ବି—୧ । ଦୋଷ—1. Fault.
୨ । ନିନ୍ଦା—2. Blame.
ବିଣ—ମଳଯୁକ୍ତ; ମଳିନ—Dirty.
( ଯଥା—ସେଟେ ଛିଟା କନା ଅଛି ସବୁ ସଫା କରି ଅଣ । )

**ଛିଟାଇବା**—ଦେ. କି. ( ସଂ. କ୍ଷିପ୍ତ; ପ୍ରା. ଛିତ୍ତ )—
Chhiṭāibā   ବିନ୍ଦୁ ବିନ୍ଦୁ ପ୍ରକ୍ଷେପ କରିବା; ଛାଟି କରି ଛିଞ୍ଚିବା; କ୍ଷୁଦ୍ର
ছীটান   କ୍ଷୁଦ୍ର ବିନ୍ଦୁ ଛାଟିବା; ଝୋଟି ଦେବା--To sprinkle
छींटाना   with the fingers; to spatter
(ଛିଟାଦେବା; ଛିଟା ପକାଇବା, ଛିଟେଇବା—ଅନ୍ୟରୂପ)

**ଛିଟାଣ**—ଦେ. ବି—ପ୍ରୋକ୍ଷଣ; ବିନ୍ଦୁ ବିନ୍ଦୁ ନିକ୍ଷେପ—
Chhiṭāṇa   Sprinkling; splashing.
ছিটান
छिंटा

**ଛିଟା ଦେବା**—ଦେ. କି—ଛିଟାଇବା ( ଦେଖ )
Chhiṭā debā   Chhiṭāibā ( See )
ପ୍ରାଦେ. (ସମ୍ବଲପୁର) କି ୧ । ଦୋଷ ଦେବା—
1. To lay blame on; to find fault with.
୨ । ନିନ୍ଦା କରିବା—2. To speak ill of

**ଛିଟା ଲାଗିବା**—ଦେ. କି—ଦାଗଯୁକ୍ତ ହେବା; ବିନ୍ଦୁ ବିନ୍ଦୁ ଚିହ୍ନିତ ହେବା--
Chhiṭā lāgibā   To be spotted or stained with drops
ছিটা পড়া
छींटा गीरना
(ଛିଟାପଡ଼ିବା—ଅନ୍ୟରୂପ)

**ଛିଟିକା**—ଦେ. ବି—ଛିଟ୍‌କା ( ଦେଖ )
Chhiṭikā   Chhiṭ-kā ( See )

**ଛିଟିକାଇବା**—ଦେ. କି—ଛିଟ୍‌କାଇବା ( ଦେଖ )
Chhiṭikāibā   Chhiṭ-kāibā ( See )
( ଛିଟକେଇବା—ଅନ୍ୟରୂପ )

**ଛିଟିକା କନା**—ଦେ. ବି—ନୂଆ ହାଣ୍ଡି ଗଢ଼ିବା ବେଳେ କୁମ୍ଭାରମାନେ
Chhiṭikā kanā   ଯେଉଁ ଓଦା କନା ଦ୍ୱାରା କଞ୍ଚା ହାଣ୍ଡିରେ ପାଣି ଛାଟନ୍ତି—A piece of wet rag with which potters sprinkle water on wet earthen pots while preparing them.

**ଛିଟିକା ଚୋର**—ଦେ. ବି—ଯେଉଁ ଚୋର ଛୋଟଛୋଟ ଜିନିଷ ଚୋରି
Chhiṭikā chora   କରେ—A petty thief; a pilferer.
ছিচকা চোর
अदना चोर

**ଛିଟିକାଣିଆଁ**—ଦେ. ବି—ଛିଟ୍‌କାଣିଆ ( ଦେଖ )
Chhiṭikāṇiāñ   Chhiṭ-kāṇiā ( See )

**ଛିଟିକା ପିଲା**—ଦେ. ବି—ଅତି କ୍ଷୁଦ୍ର ଶିଶୁ—
Chhiṭikā pilā   An infant; a very young child; a baby; a tiny child; a suckling.

**ଛିଟିକି**—ପ୍ରାଦେ (ଗଞ୍ଜାମ) ବି—ଟୋକେଇ; ପାଛିଆ—
Chhiṭiki   A basket.

**ଛିଟିକିଣୀ**—ଦେ. ବି—୧ । ମୂଷାଯନ୍ତ୍ର; ମୂଷା ମାରିବା ବା ଧରିବା କଳ—
Chhiṭikiṇi   1. A mouse-trap; a trap-like contrivance for catching rats.
ছিটকিনি
सिटकनी; छटकना
[ ବି—ଏଥିରେ ଛିଙ୍କିଆ ଲାଗିଥାଏ; ଛିଙ୍କିଆ ତଳେ ଖାଦ୍ୟଦ୍ରବ୍ୟ ଝୁଲା ହୋଇଥାଏ; ମୂଷା ସେ ତଳରେ ପଶି ଖାଦ୍ୟ ଦ୍ରବ୍ୟକୁ ଝିଙ୍କି ଦେବା ମାତ୍ରେ ଛିଙ୍କିଅଟ ଖସି ଯିବାରୁ କଳମୁହଁର କବାଟ ବନ୍ଦ ହୋଇଯାଏ ଓ ମୂଷା ଜନ୍ତୁ କଳମଧ୍ୟରେ ରୁଦ୍ଧ ହୋଇ ରହେ । ]
ଛିଟକୁଣୀ, ଛିଟ୍‌କୁଣୀ } ଅନ୍ୟରୂପ
୨ । ଦୁର୍ଗପ୍ରାଚୀରମଧ୍ୟସ୍ଥ ତିର୍ଯ୍ୟକ୍ ଗଡ଼—
2. A fort constructed in a leaning position in the wall of a castle.
ଛିଟକିଣୀମାନ ପାଚେରୀ କେତିଣ ଶୋଭା
ଯେଉଁ ଦୁର୍ଗ ଦେଖିଲେ ସେ ସୁରଦେବ ଲୋଭା ।
ବିଶ୍ୱନାଥ ବଚିତ୍ରରାମାୟଣ ।
୩ । କାନ୍ଥରେ ତେରଛା ହୋଇ ପୋତା ହୋଇଥିବା କଣା—
3. A long-necked pot put in a slanting position in the wall to serve as a niche.
୪ । ଭୂଆଁ ବାଣର ମୁହଁ ବା ପେନ୍ଦ ଉପରେ ଅଗରୁ ଲଗା ଯାଇଥିବା ଜଳା କଉଡ଼ା—4. A copra-rope put inside a firework and used as a fuse to ignite it.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଦୂଅ' ନ ମିଳିଲେ 'ଦୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଂଶ' ନ ପାଇଲେ 'ଅଙ୍ଶ' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଲଂକାର' ଦେଖିବେ

[ ଦ୍ର—ବାଣରେ ନିଆଁ ଲଗାଇବା ସମୟରେ ଏହି ଛିଟ୍‌କଣିରେ ଗୁଣ୍ଡରସ ଦେଇ ସେହି ଗୁଣ୍ଡରସରେ ନିଆଁ ଧରାଇ ଦେଲେ, ସେ ନିଆଁ ଦଉଡ଼ି ଯାଇ ବାଣ ଦେହରେ ଲାଗିଯାଏ । ]

୫ । ଢେଲା ଫୋପାଡ଼ିବା ଦଉଡ଼ି; ଛନ୍ଦ—5. A sling.

୬ । ଛିଟ୍‌କଣି ଦ୍ୱାରା ଦୂରକୁ ଫୋପଡ଼ା ଯିବା ଢେଲା—
6. Clods thrown to a distance by means of a sling.

୭ । ଖିଲିଆ; କବାଟ ବା ଝରକାକୁ ବନ୍ଦ କରିବା ନିମନ୍ତେ ବିଆଯାଇ ଥିବା ଝିଲିକ ବା ଖୋଡ଼ା ବା ହୁକ—
7. A cleat; a trigger-like contrivance or hook used to fasten the shutters of doors and windows.

ପ୍ରାଦେ. (ସିଂହଭୂମ) ବି—କ୍ଷୁଦ୍ର ହୁଡ଼ୁକା—
A small bolt used in a door.

**ଛିଟିକି ପଡ଼ିବା**—ଦେ. କ୍ରି—ଛିଡ଼ିକିବା; ଦୁଇଗଡରେ ଦୂରକୁ ନିକ୍ଷିପ୍ତ ହେବା—To be spluttered about; to be thrown to a distance with force.
Chhiṭiki parḏibā
ଛିଟକେପଡ଼ା
**छिड़कना**

କାହୁଁ କି ମୀନ ଛିଟିକି ତେଣେ ଅସି ପଡ଼ିଗଲା ନଦୀ ଜଳରେ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଛିଟିକିବା**—ଦେ. କ୍ରି—ଛିଟ୍‌କିବା (ଦେଖ)
Chhiṭikibā Chhit-kibā (See)

**ଛିଟିରି ପିଟିରି**—ଦେ. ବିଣ—ଅତି କ୍ଷୁଦ୍ର ଓ ସାମାନ୍ୟ (ବହୁ)—
Chhiṭiri piṭiri Small and insignificant (many).
ছোটখাট
**फुटकर**

**ଛିଡ଼୍‌କା**—ଦେ. ବି. (ସଂ. କ୍ଷିପ୍ତ+କୃ ଧାତୁ; ପ୍ରା. ଛିଡ଼ି)—୧ । ଛିଟା—
Chhird-kā 1. Spurting; splashing.
ছিটা
୨ । ଛିଟା ହୋଇଥିବା ବିନ୍ଦୁ—
**छींटा** 2. Splashed spots.
(ଛିଡ଼କା—ଅନ୍ୟରୂପ)

**ଛିଡ଼୍‌କାଇବା**—ଦେ. କ୍ରି. ( ସଂ. କ୍ଷିପ୍ତକରଣ; ପ୍ରା. ଛଡ଼ରଣ )—
Chhird-kāibā ଛିଟା ପକାଇବା; ବିନ୍ଦୁ ବିନ୍ଦୁ ଛିଞ୍ଚିବା—
ছিটান To spurt or splash; to sprinkle obliquely in drops
**छिटकना; छिड़काना**
(ଛିଡ଼୍‌କେଇବା, ଛିଡ଼କାଇବା; ଛିଡ଼କେଇବା—ଅନ୍ୟରୂପ)

**ଛିଡ଼୍‌କିବା**—ଦେ. କ୍ରି—୧ । ବସ୍ତୁଦ୍ରବକୁ ବେଗ ସହିତ ଚମକିବା—
Chhird-kibā 1. To shoot forth to a distance.
ছিটকা ୨ । ଉର୍ଦ୍ଧ୍ୱଦିଗ୍‌ଭାବରେ ବିନ୍ଦୁ ବିନ୍ଦୁ ହୋଇ କ୍ଷିପ୍ତ ହେବା—
**छिटकना; छिड़कना** 2. To be splashed or spluttered
(ଛିଡ଼କିବା—ଅନ୍ୟରୂପ) [ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ
(ଛିଡ଼କାଇବା—ଣିଜନ୍ତ) ପଡ଼ିବା, ଯିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

**ଛିଡ଼୍‌ପୁଡ଼ି**—ପ୍ରାଦେ. (ଗଡ଼ଜାତ) ବି. (ସଂ. ଛିଦ୍ର)—
Chhirḏpurḏa ନାନା ଛିଦ୍ର କଥା ବା ଗୁପ୍ତ ଦୋଷ—
Numerous petty defects.

**ଛିଡ଼ା**—ଦେ. (ଶୂଦ୍ରଭାଷା) ବି. (ସଂ. ଖଡ୍‌ଗ=ସ୍ତମ୍ଭ)—
Chhirḏā ୧ । ଦଣ୍ଡାୟମାନ ହେବା—
খাড়া 1. Standing upright; being erect.
**ठाड़; खड़ा** ୨ । ସିଧାଭାବରେ ଠିଆ ହେବା—
2. Rising up perpendicularly.
୩ । ଦଣ୍ଡାୟମାନ ଅବସ୍ଥା—3. Standing position.
ଛିଡ଼ାରେ ଆଚମନ କଲନ୍ତି କାହିଁକି । କୃଷ୍ଣସିଂହ, ମହାଭାରତ. ଆଦି ।
ছেঁড়া ୪ । (ସଂ. ଛେଦନ) ଛିଣ୍ଡିବା, ଛିନ୍ନ ହେବା; ଛିଡ଼ିବା—
**टूटना** 4. Tearing; being torne.

ଦେ. (ଶୂଦ୍ରଭାଷା) ବିଣ—୧ । ଦଣ୍ଡାୟମାନ; ଠିଆ—
1. Standing upright; erect.
ଉଠିଲେ ଛିଡ଼ା ହୋଇ ନମସ୍କାର କରି । କୃଷ୍ଣସିଂହ. ମହାଭାରତ ବନ ।
୨ । ଲମ୍ବଭାବରେ ଉଚ୍ଚକୁ ଉଠିଥିବା—
2. Rising up perpendicularly.
ছেঁড়া ୩ । (ସଂ. ଛିନ୍ନ)—ଛିଣ୍ଡା;ଛିନ୍ନ—3. Torne into pieces.
**टूटा** ତପସ୍ୟା ନ ଥିଲେ କୁଶିରୁ ଛିଡ଼ା ବାସ
ଭିକ୍ଷା ନ ଯାଇ ପୂର୍ବେ ଗ୍ରାସ କରନ୍ତି । କୃଷ୍ଣସିଂହ ମହାଭାରତ ଶାନ୍ତି ।

୪ । ଭଗ୍ନ—4. Broken.
ଅଶ୍ୱତ୍ଥାମା ପକାଇ ଛିଡ଼ା ଧନୁଖଣ୍ଡ
ପୃଥି କରରେ ଧରି ମହତ କୋଦଣ୍ଡ । କୃଷ୍ଣସିଂହ. ମହାଭାରତ ଶଲ୍ୟ ।

ପ୍ରାଦେ. (ସମ୍ବଲପୁର) ବି—୧ । ଛିଣ୍ଡାକନା—1. Rag.
୨ । ସ୍ତ୍ରୀଲୋକମାନେ ମାରିବା କୌପୁନି—2. A long narrow strip of rag tugged down the privities.

**ଛିଡ଼ାଇବା**—ଦେ. କ୍ରି.—(ଛିଦ୍ ଧାତୁ. ଣିଚ୍ ଛେଦ୍ ଧାତୁ)—
Chhirḏāibā ୧ । ଛିଡ଼ିବାର ଣିଜନ୍ତ ରୂପ—
ছাঁড়ান 1. Causative of Chhirḏibā.
**छीनना** ୨ । ଛିନ୍ନ କରିବା; ଛିଣ୍ଡାଇବା—2. To cut asunder; to split up.
ଛିଡ଼େଇବା }
ଛିଣ୍ଡାଇବା } ଅନ୍ୟରୂପ
ଛିଣ୍ଡେଇବା }
୩ । ପୃଥକ୍ କରିବା—
3. To part asunder.
୪ । ଚିରିବା—4. To tear.
୫ । (ବିବାଦ) ତୁଟାଇବା; ନିଷ୍ପତ୍ତି କରିବା; ମୀମାଂସା କରିବା; ସମାଧାନ କରିବା—5. To settle; to solve (a dispute).
୬ । ଖଟା ଦେଇ ଦୁଧକୁ ପାଣି ଫଟାଇବା—
6. To curdle (milk).
୭ । ଭାଙ୍ଗିଦେବା—7. To break off.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ସ | ଉ୍ଥ | ଘ୍ନ |
| ୨ | ଈ | ଊ | ରୁ | ଲୁ | ଯ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଥ | ଞ୍ଜ | ନ୍ତ୍ର |

୮ । (ଫିଟ୍‌କିରି ବା କର୍ମଲାଫଳ ପକେଇ)—
ଗୋଳିଆ ପାଣିରୁ ମଇଳା ଅଂଶ ତଳକୁ ବସାଇବା—
8. To sublimate; to refine dirty water.

୯ । ଗଣିତ ସମସ୍ୟାକୁ ସମାଧାନ କରିବା—9. To work out or solve a mathematical problem.

୧୦ । କୌଣସି ପ୍ରସ୍ତାବକୁ ଅଗ୍ରାହ୍ୟ କରିବା —10 To break off or reject a proposal.

୧୧ । ବୃକ୍ଷରୁ ପତ୍ର, ଡାଳ, ଫଳ, ଫୁଲ ପୃଥକ କରିବା—
11. To pluck (fruits, flowers, leaves or branches from a tree)

୧୨ । ଅନ୍ୟ ବ୍ୟକ୍ତିର ଶରୀରକୁ ଘିଷାଡ଼ି ବା ଘୋଷାରି କ୍ଷତବିକ୍ଷତ କରିବା; ଛିଣ୍ଡାଇବା—13. To abrade; to cause abrasion of the skin by dragging a person on the ground or by scratching.

**ଛିଡ଼ା କରିବା**—ଦେ କ୍ରି. (ଶୁଦ୍ଧ ଭାଷା)—୧ । ଦଣ୍ଡାୟମାନ ହେବାର ବା
Chhirdā karibā — କୌଣସି ବ୍ୟକ୍ତି ଠିଆ ହୋଇ ରହିବାର
खाड़ा करा — ବ୍ୟବସ୍ଥା କରିବା—1. To cause to a person stand up.
**खड़ा करना**

(ଯଥା—ଗୁରୁ ଦୁଷ୍ଟ ଛାତ୍ରକୁ ୩ ଘଣ୍ଟା କାଳ ଖରାରେ ଛିଡ଼ା କଲେ ।)

୨ । (ଗୃହଆଦି) ନିର୍ମାଣ କରି ସମ୍ପୂର୍ଣ୍ଣ କରିବା—
2. To build up; to fabricate; to erect.

(ଯଥା—ମାସକ ମଧ୍ୟରେ ରାଜମାନେ ଗୋଟିଏ ଦେଉଳ ଛିଡ଼ା କଲେ ।)

୩ । (ବିବାଦ, ମକଦ୍ଦମା) ଘଟାଇବା, ସୃଷ୍ଟି କରିବା—
3. To cause to happen, to bring about; to create (a dispute).

(ଯଥା— ସେ ଭାଇ ଭାଇ ମଧ୍ୟରେ ଗୋଟିଏ ମକଦ୍ଦମା ଛିଡ଼ା କରି ଦେଲେ ।

୪ । ଟେରିବା; ଉଦ୍ଧ୍ୱ କରିବା—
4. To cause to stand erect; to prick up.

(ଯଥା—ଘଣ୍ଟାର ଧ୍ୱନି ଶୁଣି ଘୋଡ଼ା ତା କାନକୁ ଛିଡ଼ା କରିଛି ।)

[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା କ୍ରିୟାର ସମାପିକା ରୂପ ଲାଗେ । ]

**ଛିଡ଼ାଛିଡ଼ା**—ଦେ. ବିଣ.—୧ । ସ୍ଥାନେ ସ୍ଥାନେ ଠିଆ ହୋଇଥିବା—
Chhirdā-chhirdā 1. Standing here and standing
खाड़ाखाड़ा there; protruding perpendicularly at several places.

୨ । କାର୍ଯ୍ୟ କରିବାକୁ ଅନିଚ୍ଛୁକ—
2. Unwilling to work.

ଦେ. କ୍ରି. ବିଣ.—ଠିଆ ହୋଇ ଥିବା ଅବସ୍ଥାରେ—
While standing.

(ଯଥା—ସେ ଛିଡ଼ାଛିଡ଼ା ପାଣି ପିଇ ଦେଲା ।)

**ଛିଡ଼ାଛିଡ଼ି**—ଦେ. ବି.—ଛିଣ୍ଡାଛିଣ୍ଡି; ବାରମ୍ବାର ଛିଡ଼ିବା କର୍ମ—
Chhirdā-chhirdi Acts of breaking.

**ଛିଡ଼ା ହେବା**—ଦେ. (ଶୁଦ୍ଧ ଭାଷା) କ୍ରି.—୧ । ଦଣ୍ଡାୟମାନ ହେବା;
Chhirdā hebā ଠିଆ ହେବା—
खाड़ा लओया 2 To stand up.
**ठाड़ होना, खड़ा होना**

ଛିଡ଼ା ହୋଇ ଗଲେ ବ୍ରୀଡାବତୀ,
କ୍ରୀଡ଼ା କଲେ କି ରହିନ କେଉଁଠି—ଗୋଲକ, ଇନ୍ଦୁରେଖା ।

୨ । ଲମ୍ବଭାବରେ ତଳୁ ଉଠିବା—2. To rise up perpendicularly from the ground.

୩ । ଅବସ୍ଥାନ କରିବା—4. To stay; to abide.

ଅଧର୍ମ ତା ଠାରୁ ପଳାଏ ପାଇ ବ୍ରୀଡା,
ଧର୍ମ ତାହା ଦେହରେ ହୋଇଥାଏ ଛିଡା ।କୃଷ୍ଣସିଂହ. ମହାଭାରତ. ବନ ।

୪ । ଘଟିବା—4 To happen.

(ଯଥା—ତାଙ୍କ ମଧ୍ୟରେ ଗୋଟିଏ ବିବାଦ ଛିଡ଼ା ହେଲାଣି ।)

୫ । ନିର୍ମିତ ହେବା—To be built up.

(ଯଥା—୭ ଦିନ ମଧ୍ୟରେ ପଡ଼ିଆରେ ଗୋଟିଏ ଦେଉଳ ଛିଡ଼ା ହେଲା ।)

୬ । (ଲିଙ୍ଗ) ଟାଙ୍ଗାଇବା; ଉଦ୍ଧ୍ୱ ହେବା—
6, To stand erect.

(ଯଥା—ଏ ପିଲାଟିକୁ ମୂତ ମାଡ଼ିଲାଣି ବୋଲି ତା ଗୁଡ଼ଟି ଛିଡ଼ା ହୋଇଛି ।)

**ଛିଡ଼ିକୀତ**—ଦେ. ବିଣ. (ଅସାଧୁତାଦୋଷଦୁଷ୍ଟ ଶବ୍ଦ)—ଦୂରକୁ ନିକ୍ଷିପ୍ତ—
Chhirdikita Thrown to a distance; shooting out.

ବସନ୍ତି ଲୋଟକ ଧାରା ପାତେ, ଛିଡ଼ିକୀତ ଜଳକଣା ବ୍ୟାଜେ ।
ଚନ୍ଦ୍ରାମଣି, ବଳମାଦରଦ୍ୟ ।

**ଛିଡ଼ିକିବା**—ଦେ. କ୍ରି.—ଛିଡ଼୍‌କିବା (ଦେଖ)
Chhirdikibā Chhird-kibā (See)
(ଛିଡ଼ିକି ପଡ଼ିବା; ଛିଡ଼ିକି ଯିବା—ଅନ୍ୟରୂପ)

**ଛିଡ଼ିଛଡ଼ି**—ପ୍ରାଦେ (ସମ୍ବଲପୁର) ବି ଓ ବିଣ—ଛିଣ୍ଡାଳୀ—
Chhirdi-chhardi Adulteress.

**ଛିଡ଼ି ପଡ଼ିବା**—ଦେ. କ୍ରି (ସଂ. ଛିଦ୍ ଧାତୁ; ଛିନ୍ନ)—୧ । ସ୍ଥାନଭ୍ରଷ୍ଟ
Chhirdipardibā ହୋଇ ଉପରୁ ତଳକୁ ଖସିବା—
1. To drop down.

ଗଙ୍ଗଶିଉଳି ଫୁଲକଳି
ଗୋବିନ୍ଦ ହୃଦମାଳ ଯୋଡ଼ି
ସେଠାରେ ଛିଡ଼ି ପଡ଼ିଥିଲ
ସଲଜ୍ଜଲୋଚନା ପାଇଲ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

୨ । ସୂକ୍ଷ୍ମତର ହେବା—
2. To become more slender.

( ଯଥା—ଶରତ୍‌କାଳରେ ନଈଧାର ଛିଡ଼ି ପଡ଼ିଲାଣି । )

> ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଙ୍ଗୀ ନ ପାଇଲେ 'ଅଙ୍ଗି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୩ । ( ଲକ୍ଷଣାର୍ଥ ) ଗର୍ବ ବା ଅହଂକାରର ଆତିଶଯ୍ୟ ଦେଖାଇ ହେବା—3. ( figurative ) To exhibit too much pride.

( ଛିଣ୍ଡିପଡ଼ିବା—ଅନ୍ୟରୂପ )

(ଯଥା—ପୁଅ ବଡ଼ ଚାକିରି ପାଇବାରୁ ମାଆ ଗର୍ବରେ ଛିଡ଼ି ପଡ଼ୁଛି ।)

**ଛିଡ଼ିବା**— ଦେ. କ୍ରି (ସଂ. ଛିଦ୍ ଧାତୁ)—୧ । ଛିନ୍ନ ହେବା—1 To be cut off; to be cut asunder; to be split

Chhirdiba

ଛେଁଡ଼ା

ଛୁଟନା

(ଛିଣ୍ଡିବା—ଅନ୍ୟରୂପ)

ଛିଡ଼ାଇବା } ଣିଜନ୍ତ
ଛିଡ଼େଇବା }

କର ଉଦର ଶିର ଛିଡ଼ି,
ପଡ଼ିଲେ ମଲ୍ଲଗଣେ ମାଡ଼ି ।
ଜଗନ୍ନାଥ. ଭାଗବତ ।

୨ । ଚିର୍ ଯିବା—2. To be torne.

ପଥ ସଂକୀର୍ଣ୍ଣ କଣ୍ଟାବନ, ପଶନ୍ତେ ଛିଡ଼ଇ ବସନ । ଭୂପତି. ପ୍ରେମପଞ୍ଚାମୃତ ।

୩ । ବିଚ୍ଛିନ୍ନ ବା ପୃଥକ୍ ହେବା; ସ୍ଥାନଭ୍ରଷ୍ଟ ହେବା; ଗ୍ରଥନ-ଚ୍ୟୁତ ହେବା—3 To be separated from the proper place.

ଛିଡ଼ି ମୋତିମାଳ ଝଡ଼ଶେ କି ତନ୍ଥଳେ କି ସେ ବକପନ୍ତି ପରି । କବିସୂର୍ଯ୍ୟ, ସଙ୍ଗୀତ ।

୪ । ( ବିବାଦ, ମକଦ୍ଦମା, ହିସାବ ) ମୀମାଂସା ହେବା; ନିଷ୍ପତ୍ତି ହେବା; ତୁଟିଯିବା—4. To be settled.

( ଯଥା—ବର୍ଷେହେଲା ଚାଲୁଥିବା ମକଦ୍ଦମାଟି ଆଜି ଛିଡ଼ିଗଲା । )

୫ । ତଳକୁ ଖସି ପଡ଼ିବା— 5. To drop down.

( ଯଥା—ଆଜି ଦିପହର ଗରମରେ ସ୍ୱର୍ଗରୁ ନିଆଁ ଛିଡ଼ୁଛି । )

୬ । ଦୁଧ ଫାଟି ଯାଇ ଜଳୀୟ ଅଂଶ ଓ ଛେନା ପୃଥକ୍ ହେବା—6. To curdle (said of milk separated into water and cheese.

( ଯଥା—ଖଟା ପଡ଼ିବାରୁ ଦୁଧ ଛିଡ଼ିଗଲା । )

୭ । କମି ଯିବା—7. To become less; to abate; to decrease; to subside.

ସେମାନେ ପିଲାଝାଲକୁ ଦେଖି ଅସୂଅଚ୍ଛନ୍ତି,
ଏହି ଗଛ ବଢ଼ିବାକୁ କି ଛିଡ଼ିବାକୁ ନାହିଁ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।

୮ । ତୁଟିଯିବା; ଭାଙ୍ଗିଯିବା—8. To be broken off.

( ଯଥା—ତାଙ୍କର ଆମର ସମ୍ପର୍କ ଛିଡ଼ିଲା । )

୯ । ଗୋଳିଆ ପାଣିରୁ ମଇଳା ଅଂଶ ତଳକୁ ବସିଯିବା—9. To be sublimated; ( water ) to become refined by the dirt being collected at the bottom.

(ଯଥା—ନିର୍ମଳି ଘୋରି ପାଣିରେ ପକାଇବାରୁ ପାଣି ଛିଡ଼ିଗଲା ।)

୧୦ । ଲୁପ୍ତ ହେବା—10. To disappear.

ଘଷିତ ଅଙ୍ଗାରେ ଚୁମ୍ବିବ,
କି ଗୁଣ ଛିଡ଼ଇ ମୋହର । ଗ୍ରାଚୀ. ବ୍ରହ୍ମନନ୍ଦନଗୀତା ।

୧୧ । (ଗଣିତ) କୌଣସି ରାଶିକୁ କୌଣସି ରାଶିରେ ହରିଲେ ଭାଗଶେଷ କିଛି ନ ରହିବା—11. (mathematics) (any number) Not to leave any remainder after division.

( ଯଥା—୧୨କୁ ୩ରେ ହରିଲେ ଛିଡ଼ିଯାଏ । )

୧୨ । ନଖଦ୍ୱାରା ରାମ୍ପୁଡ଼ା ହୋଇ କିମ୍ବା ପଥରଆଦି ଉପରେ ଘୋଷାରି ହୋଇ ଶରୀର କ୍ଷତବିକ୍ଷତ ହେବା; ରକ୍ତାକ୍ତ ହେବା—12. To bleed by scratching or abrasion; to be abraded.

( ଯଥା—ପଥରରେ ଘୋଷାରି ହୋଇ ମୋ ହାତଟା ଛିଡ଼ି ଯାଇଛି । )

୧୩ । ସୂକ୍ଷ୍ମତର ହେବା—13. To become more slender; to become leaner.

୧୪ । (ନଈରୁ ପାଣି) କମିଯିବା—14. To become less; to diminish.

(ଯଥା—ନଈର ଧାର ଖରାଦିନେ ଛିଡ଼ି ଗଲା ।)

୧୫ । (ଗାଳିରେ ବ୍ୟବହୃତ) ମରିଯିବା; ବିଧ୍ୱସ୍ତ ହେବା—15. (used in abuse) To die,

୧୬ । ଶେଷ ହେବା; ସରିବା—16. To end; to terminate.

(ଯଥା—କେତେଦୂର ଯାଇ ଏ ରାସ୍ତାଟି ଛିଡ଼ିଛି ।)

୧୭ । ବିନଷ୍ଟ ହେବା—17. To be destroyed.

ଏ ଭାବେ ଭକ୍ତି ଯୋଗ ବଢ଼େ
କର୍ମ ବନ୍ଧନ ବେଗେ ଛିଡ଼େ । ଜଗନ୍ନାଥ. ଭାଗବତ ।

୧୮ । କ୍ଷୟିତ ହେବା; ଘୋରି ହେବା—18. To wear away by constant use.

(ଯଥା—ସବୁବେଳେ ଚନ୍ଦନ ଘୋରି ହେବାରୁ ଚନ୍ଦନପେଡ଼ି ଛିଡ଼ିଲାଣି ।)

୧୯ । ଘମାଘୋଟ ହୋଇ ଲାଗିବା—19. To be carried on with vigour.

(ଯଥା—ଭାଇ ମୋର ଆଜି ସକାଳେ ତାଙ୍କେ କଳି ଛିଡ଼ିଲା ।)

୨୦ । ମୀମାଂସିତ ହେବା—20. To be decided.

( ଯଥା— ପାଞ୍ଚ ଦିନ ହେଲା ଏ ନିଷ୍ପତ୍ତି ଛିଡ଼ିବାକୁ ନାହିଁ । )

୨୧ । ସ୍ଥିରୀକୃତ ହେବା—21. To be settled.

( ଯଥା—୩ ଘଣ୍ଟା ଧ୍ୱକମାଡ଼ ହେବା ପରେ ଏ ଜିନିଷର ଭାଉ ଛିଡ଼ିଲା । )

୨୨ । ବିବାଦୀ ହେବା—22. To be at loggerheads with.

( ଯଥା—ରାଜାଙ୍କ ସାଙ୍ଗେ ଛିଡ଼ି ପ୍ରଜା ଦଣ୍ଡେ ତିଷ୍ଠି ପାରିବ ନାହିଁ । )

[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ପଡ଼ିବା, ଯିବା କ୍ରିୟା ଯୁକ୍ତ ହୁଏ । ]

**ଛିଣ୍ଡଣ**—ଦେ. ବ—ଛିଣ୍ଡାଣ ୨ (ଦେଖ)
Chhiṇḍaṇa Chhiṇḍāṇa 2 (See)

**ଛିଣ୍ଡା**—ଦେ ବ. ( ସଂ. ଛିଦ ଧାତୁ )—
Chhiṇḍā ୧ । ଛିଡ଼ିବା—1. Tearing.
ছেনা, ছিনা ୨ । ଛିଣ୍ଡାଇବା —2. Plucking.
**टूट** ୩ । ନଖାଦିଜନିତ ଘଷଡ଼ଦାଗ—
3. Scratching marks
୪ । ନଈବଢ଼ି ଛାଡ଼ି ଗଲେ ନଦୀଶଯ୍ୟାରେ ଯେଉଁ ସ୍ଥାନମାନଙ୍କରେ ପାଣି ଜମି ରହି ଯାଏ—
4. Pools of water left in the river bed after the subsidence of flood.
୫ । ସ୍ରୋତସ୍ୱତୀର ଅଗଭୀର ଅଂଶ —
5. Shallow portion of a flowing river.
ବିଣ—୧ । ଛିନ୍ନ; ବିଦୀର୍ଣ୍ଣ; ଫଟା—1 Torne.
ছেঁড়া, ছিনা ( ଯଥା—ଛିଣ୍ଡା ଲୁଗା; ଛିଣ୍ଡା କନା । )
**चिथड़िआ** ୨ । କ୍ଷୀଣ; ଶୀର୍ଣ୍ଣ—2. Thin; slender.
୩ । ( ଅନ୍ୟ ଶବ୍ଦ ସଙ୍ଗେ ଲାଗେ, ଯଥା—ମରମଛିଣ୍ଡା କଥା )
ବିଦୀର୍ଣ୍ଣକାରୀ; ଭେଦକ—3. Piercing.

**ଛିଣ୍ଡାଇବା**—ଦେ. କ୍ରି. ( ସଂ. ଛିଦ ଧାତୁ ଣିଚ )—
Chhiṇḍāibā ୧ । ଛିଡ଼ାଇବା ( ଦେଖ )
ছেঁড়ান, ছিনান 1. Chhirḍāibā ( See )
**छिनवाना, छिनाना** ୨ । (ବିଗ୍ରହ) ସ୍ଥିର କରିବା; ମୀମାଂସା କରିବା-
(ଛିଣ୍ଡେଇବା—ଅନ୍ୟରୂପ) 2. To decide.
ଏହି ରୂପେ ସର୍ବ ବିଗ୍ରହ ଛିଣ୍ଡାଇଲେ
ସମୁଦ୍ରରେ ଘର ଯେ କରୁଣ ରହିଲେ । କୃଷ୍ଣସିଂହ. ମହାଭାରତ. ବନ ।
୩ । ସମ୍ପନ୍ନ କରିବା; ଶେଷ କରିବା—
3. To finish; to accomplish.
( ଯଥା—ମୁଁ ଏ କାର୍ଯ୍ୟଟା ଆଜ ଛିଣ୍ଡାଇ ଦେଲି । )
୪ । ଜବରଦସ୍ତି ଛଡ଼ାଇ ନେବା; ଜବରଦସ୍ତି କୌଣସି ବ୍ୟକ୍ତିକୁ ବେଦଖଲ କରିବା—
4. To snatch away; to forcibly dispossess.
ଖଣ୍ଡା ବଳେ କେତେ ଖଣ୍ଡାଇତଙ୍କର ଛିଣ୍ଡାଇ ନେଲେ ମୁଲକ ।
ବ୍ରଜନାଥ. ସମରତରଙ୍ଗ ।
୫ । ( ଗଣିତ ) ବଡ଼ ରାଶିକୁ ସାନ ରାଶି ଦ୍ୱାରା ହରଣ କରି କୌଣସି ଭାଗଶେଷ ନ ରଖିବା—
5. ( mathematics ) To leave no remainder after dividing a big number with a smaller one.

**ଛିଣ୍ଡା କନା**—ଦେ. ବ—(ସଂ ଛିନ୍ନ + କର୍ପଟ)—ଛିନ୍ନ ବସ୍ତ୍ର; କନ୍ଥା—
Chhiṇḍā kanā Rag; torn piece of cloth.
ছেঁড়া কানী
**चिथड़ा**

**ଛିଣ୍ଡାଗଣ୍ଡ**—ଦେ. ବ—୧ । ପ୍ରହେଳିକା; ବ୍ୟାସକୂଟ—
Chhiṇḍā-gaṇḍa 1. Riddle; enigma.
**हजी** ୨ । ମର୍ମଭେଦୀ ବ୍ୟଙ୍ଗୋକ୍ତି—
2. Satirical remarks; lampoon.
୩ । ଏକ ପ୍ରକାର ଶ୍ଳେଷାର୍ଥକ ପ୍ରହେଳିକା (ଯେଉଁ ପ୍ରହେଳିକାକୁ ଶୁଣିବା ମାତ୍ରେ ଅଶ୍ଳୀଳ ପରି ବୋଧ ହୁଏ କିନ୍ତୁ ପ୍ରକୃତରେ ତାହା ଅଶ୍ଳୀଳ ନୁହେଁ ବୋଲି ପରେ ଜଣାଯାଏ)—
3. Double entendre; a class of riddles which sound obscene at first sight but which have no obscene purport.
[ ଦ୍ର—ଉଦାହରଣ ଯଥା —
"ପାଡ଼ି ମଶୁଣି ଫିଟା କରୁ
ଯେଉଁ ପୁରୁଷର ଯେତକ ଇଚ୍ଛା ।"
ଏହାର ଅର୍ଥ—ଆସନ ପକାଅ ଓ ପୋଥିର ଡୋର ଫିଟାଇ ମନଇଚ୍ଛା ମୁତାବକ ପୋଥିକୁ ପଢ଼ । ]

**ଛିଣ୍ଡାଛିଣ୍ଡି**—ଦେ. ବ ଓ ବିଣ—ଅନ୍ୟୋନ୍ୟରେ ରାମ୍ପୁଡ଼ାରାମ୍ପୁଡ଼ି—
Chhiṇḍā-chhiṇḍi Mutual scratching.
ছিনাছিনি ଯୁଦ୍ଧ କଲେ ହୋଇଣ କାମୁଡ଼ାକାମୁଡ଼ି
**छिनाछिनि** ନଖମାନଙ୍କରେ ଯେ ହୋଇ ଛିଣ୍ଡାଛିଣ୍ଡି ।
କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।

**ଛିଣ୍ଡାଣ**—ଦେ. ବ. ( ସଂ. ଛେଦନ )—
Chhiṇḍāṇa ୧ । ଛେଦକରଣ; ଛେଦନ—
1. Cutting; splitting.
୨ । ମୃଦଙ୍ଗ, ଘୁମୁରା ବା ପଖଉଜକୁ ତାଳ ଧରି ବଜାଇବା ବେଳେ ଉକୁଟକୁ ଛିଣ୍ଡାଇବାର ସର୍ବଶେଷରେ ଉଚ୍ଚାରିତ ଶବ୍ଦ ବା ପଦ ବା ବାକ୍ୟ—2. The last syllable of a musical formula for playing on a drum.
୩ । ( ଗଣିତ ) ବଡ଼ ରାଶିକୁ ଛୋଟ ରାଶିରେ ଏପରି ହରଣ କରିବା ଯେଉଁପରି କିଛି ଭାଗଶେଷ ନ ରହିବ—
3 ( mathematics ) Division of a large number by a smaller one so as to leave no remainder.
ଦେ. ବିଣ. ( ଗଣିତ )—ସମବିଭାଜକ ( ସଂଖ୍ୟା )—
( mathematics ) Equally divisible ( number ).
( ଯଥା—ଛିଣ୍ଡାଣ ଅଙ୍କ । )

**ଛିଣ୍ଡାଳ**—ଦେ. ବ. ସ୍ତ୍ରୀ. ( ସଂ. ଛିନ୍ନା; ଭୁଲ; ପ୍ରା. ଛିନ୍ନାଳଯ୍ୟା=
Chhiṇḍāḷa ବେଶ୍ୟା )—ବ୍ୟଭିଚାରିଣୀ ସ୍ତ୍ରୀ; ପୁଂଶ୍ଚଳୀ;
ছিনাল, ছিনার, ছেনাল ଭ୍ରଷ୍ଟା ସ୍ତ୍ରୀ; ନଷ୍ଟଚରିତ୍ରା ସ୍ତ୍ରୀ—
**छिनाल; छिनार** Adulteress; harlot; coquette.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚକ୍ରର ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରର ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ତାହା ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଦେ. ବଣ. ( ସ୍ତ୍ରୀ )—ପରପୁରୁଷଗାମିନୀ; ନଷ୍ଟା— Dissolute (woman), coquettish.

**ଛିଣ୍ଡାଳି**—ଦେ. ବି—୧ । ବେଶ୍ୟାବୃତ୍ତି—
Chhiṇḍāḷi 1. Prostitution; harlotry.
ছিনালি ୨ । ସ୍ତ୍ରୀର ନଷ୍ଟଚରିତ୍ରତା; ପରପୁରୁଷଗମନ—
**छिनाला** 2. Adultery of a woman.
(ଛିଣ୍ଡାଳପଣ—ଅନ୍ୟରୂପ) ୩ । ପରପୁରୁଷ ପ୍ରତି ହାବଭାବ ପ୍ରକାଶ— 3. Coquetry.

**ଛିଣ୍ଡାଳୀ**—ଦେ. ବି. ସ୍ତ୍ରୀ— ଛିଣ୍ଡାଳ ( ଦେଖ )
Chhiṇḍāḷī Chhiṇḍāḷa ( See )

**ଛିଣ୍ଡାଳୀଛଟକ**—ଦେ. ବି— ଛିଣ୍ଡାଳୀର ଢଙ୍ଗ, ବ୍ୟବହାର ବା ଭଙ୍ଗୀ—
Chhiṇḍāḷī-chhataka The ways of a coquette (e.g.
ছিনালিছটক shamelessness, solicitations, refusal
**छिनाला** after encouragement given.
( ଛିଣ୍ଡାଳୀଛଟା—ଅନ୍ୟରୂପ )

**ଛିଣ୍ଡାଳିପଣ**—ଦେ. ବି—ଛିଣ୍ଡାଳି ( ଦେଖ )
Chhiṇḍāḷi-paṇa Chhiṇḍāḷi ( See )
ছিনালপনা
**छिनालपन**
( ଛିଣ୍ଡାଳିପଣିଆଁ—ଅନ୍ୟରୂପ )

**ଛିଣ୍ଡିବା**—ଦେ. କ୍ରି. ( ସଂ. ଛିଦ ଧାତୁ )—ଛିଡ଼ିବା ( ଦେଖ )
Chhiṇḍibā Chhiṛḍibā ( See )

**ଛିତ୍**—ଦେ. ଅ—ଛି—
Chhit (Interjection) Fie !.

**ଛିତକିଆ**—ପ୍ରାଦେ. ( ସମ୍ବଲପୁର ) ବଣ. ( ସଂ. ସୂତକ )—ଛୁତକିଆ;
Chhit-kiā ସୂତକାଶୌଚ—Impurity caused by a birth in the family or amongst one's agnates

**ଛିତ**—ସଂ. ବଣ. ( ଛୋ ଧାତୁ=ଛେଦନ କରିବା+କର୍ମ. ତ )—ଛିଣ୍ଣ;
Chhita ଛିନ୍ନ—Cut; broken.

**ଛିତି**—ଗ୍ରା. ବି. ( ସଂ. କ୍ଷିତି; କ୍ଷ ସ୍ଥାନରେ ଛ ପ୍ରୟୋଗ ପ୍ରାଚୀନ ସାହିତ୍ୟରେ
Chhiti ଓ ଛନ୍ଦରେ ବହୁଳ )—କ୍ଷିତି; ପୃଥ୍ୱୀ—The earth
**छिति** 'ଜମ୍ବୁ ଛିତି ବଡ ବସ୍ତାର ଅପାର
ତାହା ପିଠିରେ ଧଇଲୁ ବଜ୍ରଧର – ପ୍ରାଚୀ. ରସବାରିଧି ।

**ଛିତିବିତି**—କ୍ରି. ବଣ. ( ସଂ. ଛିନ୍ନ ଓ ଭିନ୍ନ, କିମ୍ବା କ୍ଷିପ୍ତ ଓ ବ୍ୟାପ୍ତ )—
Chhiti-biti ୧ । ଅସ୍ତବ୍ୟସ୍ତ—1. Confused
୨ । ଛନଛତ୍ର; ଇତସ୍ତତଃ ବିକ୍ଷିପ୍ତ—
2. Scattered here and there; routed.
୩ । କାଲୁବାଲୁ—3. Bothered.
ବି—୧ । ଏଣେତେଣେ ଭୁଣାଯିବା—
1. Being scattered or strewn.
୨ । ବିକ୍ଷେପ—2. Throwing.
୩ । କାଲୁବାଲୁ କରିବା—3. Botheration.

**ଛିତ୍ତ**—ସଂ. ବଣ. ( ଛିଦ୍ ଧାତୁ=ଛିନ୍ନ କରିବା+କର୍ମ. ତ )—ଛିନ୍ନ—
Chhitta Cut; broken.

**ଛିତ୍ତି**—ସଂ. ବି—୧ । ( ଛିଦ୍ ଧାତୁ+ଭାବ. ତି )—ଛେଦନ—
Chhitti 1. Cutting.
୨ । ( +କର୍ତ୍ତୃ. ତି )—କରଞ୍ଜ ବୃକ୍ଷ—
2. Pongamia Glabra (tree)

**ଛିତ୍ୱର**—ସଂ. ବଣ. (ଛିଦ୍ ଧାତୁ+କର୍ତ୍ତୃ. ବର; ସଂଜ୍ଞାର୍ଥେ )—୧ । ଧୂର୍ତ୍ତ—
Chhitwara 1. Cunning; roguish.
( ଛିଦ୍ୱର—ଅନ୍ୟରୂପ ) ୨ । ଶତ୍ରୁଭାପନ୍ନ—2 Inimical.
୩ । ଛେଦନକାରୀ—3 Cutting
ସଂ. ବି—ଶତ୍ରୁ—Enemy; adversary.

**ଛିଦ୍** ( ଧାତୁ )—ସ—୧ । ଛେଦନ କରିବା—
Chhid ( root ) . To cut.
୨ । ଭେଦ କରିବା—2. To pierce.
୩ । ଚିରିବା—3. To tear; to split.
୪ । ଭାଙ୍ଗିବା—4. To break.

**ଛିଦ୍‌କେଲ୍**—ପ୍ରାଦେ. ( ସମ୍ବଲପୁର ) ବି—କଳାବିନ୍ଦୁଯୁକ୍ତ ଈଷତ୍ ନାଲି
Chhid-kel କପୋତବିଶେଷ-The black spotted reddish dove; the Indian spotted dove; Streptolia Chinesis Suratensis

**ଛିଦକ**—ସଂ. ବି. ( ଛିଦ୍ ଧାତୁ+କର୍ତ୍ତୃ. ଅକ; ସଂଜ୍ଞାର୍ଥେ )—ବଜ୍ର—
Chhidaka Thunder.

**ଛିଦର**—ଗ୍ରା. ବି—ଛିଦ୍ର ( ଦେଖ )
Chhidara Chhidra ( See )

**ଛିଦି**—ସଂ. ବି. ( ଛିଦ୍ ଧାତୁ+ସଂଜ୍ଞାର୍ଥେ. ଇ )—୧ । କୁରାଢ଼ୀ—
Chhidi 1. Axe; hatchet.
୨ । ବଜ୍ର—2. Thunder.
ସଂ. ବଣ—ଛେଦନକାରୀ—Cutting.

**ଛିଦିର**—ସଂ. ବି. ( ଛିଦ୍ ଧାତୁ+କର୍ତ୍ତୃ. ଇର )—୧ । ଅଗ୍ନି—
Chhidira 1 Fire.
୨ । ରଜ୍ଜୁ—2. Rope.
୩ । ଖଡ୍‌ଗ—3. Sword.
୪ । କୁଠାର—4 Axe; hatchet.

**ଛିଦୁର**—ସଂ. ବଣ. ( ଛିଦ୍ ଧାତୁ+କର୍ମ. ଉର )—
Chhidura ୧ । ଛିନ୍ନ—1. Torne; cut down; cut off.
(ଛିଦୁରା—ସ୍ତ୍ରୀ)
୨ । ( +କର୍ତ୍ତୃ. ଉର ) ଛେଦକ—2. Tearing.
୩ । ପ୍ରତାରକ—3. Cheating; deceiving.
୪ । ଶତ୍ରୁଭାବାପନ୍ନ—4 Inimical.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇପ୍ସ | ତଅ | ଘ |
| ୨ | ଈ | ଊ | ରୁ | ଲୃ | ଯ୍ୱେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗିଁ୍ୟ | ଇଅ | ଞ | ନ୍ତ |

**ଛିଦ୍ୱର**—ସଂ. ବି ଓ ବିଣ. ( ଛିଦ୍ ଧାତୁ + କର୍ତ୍ତୃ. ସଜ୍ଞାର୍ଥେ ବର )—
Chhidwara ଛିତ୍ୱର ( ଦେଖ )
Chhitwara ( See )

**ଛିଦ୍ର୍** (ଧାତୁ)—ସଂ—ଭେଦ କରିବା—
Chhidr (root) To pierce.

**ଛିଦ୍ର**—ସଂ ବି. ( ଛିଦ୍ ଧାତୁ + କର୍ମ. ର )—
Chhidra ୧ । କଣା; ଗାତ—
1. Hole; aperture; gap; opening.
୨ । ଗହ୍ୱର; ବିବର—2. Pit; den; cave.
୩ । ଛୁଞ୍ଚିର କଣା—
3 The eye of a needle.
୪ । ଦୋଷ—4. Fault; weak point.
ଏ ଛିଦ୍ର ତାହାର ଜାଣି ଶତ୍ରୁମାନେ । କୃଷ୍ଣସିଂହ ମହାଭାରତ, ସଭା ।
୫ । ତ୍ରୁଟି—5 Defect; flaw.
ଛିଦ୍ର କରି ପୂଜିଲେ ଯେ ସାତ କୋଟି ପାପ । ପ୍ରାଚୀ, ଶ୍ରୀଗୁରୁଭକ୍ତି ଗୀତା ।
୬ । ଅପକର୍ଷ; ନ୍ୟୂନତା—
6. Inferiority; shortcoming.
୭ । ଅବକାଶ; ଅବସର—
7. Leisure; opportunity; fit occasion.
୮ । ବିପକ୍ଷର ତ୍ରୁଟି ବା ଅସାବଧାନତା ଯୋଗୁଁ ଘଟିବା ସୁଯୋଗ-
8. Opportunity arising from the slackness or negligence of one's opponent.
ଅଣୁ ମାନେ ଛିଦ୍ର ପାଇଲେ ଦ୍ରୋଣ ଗୁରୁ
କେବେ ବାନ୍ଧି ଯୁଧିଷ୍ଠିରଙ୍କୁ ନୋହୁ ଥିରୁ । କୃଷ୍ଣସିଂହ, ମହାଭାରତ, ଦ୍ରୋଣ ।
୯ । ( ଫଳିତ ଜ୍ୟୋତିଷ ) ଲଗ୍ନର ଅଷ୍ଟମ ସ୍ଥାନ—
9. ( astrology ) The eighth place from one's natal sign.
ଦେ. ବି. ( ସଂ. ଛିଦ୍ର ବା କ୍ଷୁଦ୍ର )—
୧ । ପରନିନ୍ଦା—1. Slander.
୨ । ଗୃହଚ୍ଛିଦ୍ର—2 Family-secrets.
୩ । ଅତି ସାମାନ୍ୟ ଦୋଷ—3. Minute fault or blemish; petty defect
୪ । ଗୁପ୍ତ ଦୋଷ—4. Secret fault.
୫ । ଘରଭଙ୍ଗା କଥା—
5. Petty matters which cause rapture or dissension among friends or relatives.
ଗ୍ରା. ବିଣ—୧ । ଛିଦ୍ରଯୁକ୍ତ—1. Having holes.
ଏ ଛିଦ୍ର କଳସଃ ପ୍ରାୟ
ନିତି ପତନ ଏହି କାୟ । ଜଗନ୍ନାଥ, ଭାଗବତ ।
୨ । ( ସଂ. କ୍ଷୁଦ୍ର ) କ୍ଷୁଦ୍ର; ଛୋଟ—
2. Small; petty.

**ଛିଦ୍ର ଉଣ୍ଡିବା**—ଦେ. କ୍ରି—ପରର ଦୋଷ ବା ତ୍ରୁଟି ଅନୁସନ୍ଧାନ କରିବା-
Chhidra undibā To be on the look-out for another's flaws.
(ଛିଦ୍ର ଖୋଜିବା—ଅନ୍ୟରୂପ)
ଛିଦ୍ର ଉଣ୍ଡିଣ ସେ ବେଗରେ
ଘେନେ ମିଳିଲେ ଅନ୍ଧକାରେ । ଜଗନ୍ନାଥ. ଭାଗବତ ।

**ଛିଦ୍ର କହିବା**—ଦେ. କ୍ରି—ପରର ଗୁପ୍ତ ଦୋଷ ପ୍ରକାଶ କରିବା—
Chhidra kahibā To publish another's secrets or private blemishes.

**ଛିଦ୍ର ପାଇବା**—ଦେ. କ୍ରି—କୌଣସି ବ୍ୟକ୍ତିର ତ୍ରୁଟି ବା ଦୋଷ
Chhidra pāibā ଦେଖିବାର ସୁବିଧା ପାଇବା—
To get an opportunity of finding out a person's draw-back or defect.
( ଯଥା—ସେ କିଛି ଛିଦ୍ର ପାଇଲେତ କଳଙ୍କ ଅଖା ଉଡ଼ାଇବ, ଖାଲିଟାରେ କିମିତି କଳ ଲଗେଇବ ? )

**ଛିଦ୍ରଭେଦ**—ସଂ. ବି. ( ୬ଷ୍ଠୀ ତତ୍; ଛିଦ୍ର + ଭେଦ )—
Chhidra-bheda ଦୋଷର ବୈଲକ୍ଷଣ୍ୟ—
Defect due to some fault.
ଛିଦ୍ରଭେଦ ଘେନିବାକୁ ମୋହର । କବିସୂର୍ଯ୍ୟ. ରତ୍ନାକରଚମ୍ପୂ ।

**ଛିଦ୍ର ଲୋଡ଼ିବା**—ଦେ. କ୍ରି—ଛିଦ୍ର ଉଣ୍ଡିବା ( ଦେଖ )
Chhidra lordibā Chhidra undibā ( See )
ବିଶ୍ୱାସଘାତକ ଏହୁ, ଛିଦ୍ର ଲୋଡ଼ିବାର
ନିତ୍ୟ ବ୍ରତ ଏହାଙ୍କର କଳଗ୍ରାକପଣେ । ରାଧାନାଥ. ମହାଯାତ୍ରା ।

**ଛିଦ୍ରାନ୍ୱେଷଣ**—ସଂ. ବି. ( ୬ଷ୍ଠୀ ତତ୍; ଛିଦ୍ର + ଅନ୍ୱେଷଣ )—
Chhidrānweshana ପରର ଦୋଷ ବା ତ୍ରୁଟି ଅନୁସନ୍ଧାନ କରିବା-
Fault-finding; being on the look-out for another's fault or defects; picking up holes in another's pocket.

**ଛିଦ୍ରାନ୍ୱେଷୀ**—ସଂ. ବିଣ. ପୁଂ. ( ଛିଦ୍ର + ଅନୁ + ଇଷ ଧାତୁ + କର୍ତ୍ତୃ. ଇନ୍; ୧ମା ୧ବ )—ପରଦୋଷଦର୍ଶୀ—
Chhidrānweshi Fault-finding.
(ଛିଦ୍ରାନ୍ୱେଷିଣୀ—ସ୍ତ୍ରୀ)

**ଛିଦ୍ରାଫଳ**—ସଂ. ବି—ମାଜୁଫଳ ( ଦେଖ ) ( ହି. ଶବ୍ଦସାଗର )
Chhidrā-phala Mājuphala (See )

**ଛିଦ୍ରିତ**—ସଂ. ବି ( ଛିଦ୍ର୍ ଧାତୁ = ଭେଦ କରିବା + କର୍ମ. ତ )—
Chhidrita ୧ । କଣା କରା ଯାଇଥିବା—
1. Perforated; pierced.
୨ । ଦୂଷିତ—
2 Corrupted; contaminated.

**ଛିଦ୍ରୋଦର**—ସଂ. ବି. ( ବହୁବ୍ରୀହି; ଛିଦ୍ର + ଉଦର )—
Chhidrodara କ୍ଷତୋଦର ନାମକ ରୋଗ (ହି. ଶବ୍ଦସାଗର)—
The bloody flux.

**ଛିନ୍‌କାନିଆଁ**—ପ୍ରାଦେ. (ଯାଜପୁର) ବିଣ. ( ସଂ. ଛିନ୍ନଭିନ୍ନ )—
Chhin-kāniān̄ ଅସ୍ତବ୍ୟସ୍ତ—At bay; cornered
( ଯଥା—ଅଭିମନ୍ୟୁଙ୍କୁ ସପ୍ତରଥୀ ଘେରି ଯାଇ ଛିନ୍‌କାନିଆ କରି ପକାଇଲେ । )

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଙ୍କା' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ ।

**ଛନ୍‌ଛତର୍**—ଗ୍ରା. ବିଣ. (ସଂ. ଛିନ୍ନ ଓ ଛତ୍ର)—୧ । ଇତସ୍ତତଃ ବିକ୍ଷିପ୍ତ— Chhin-chhatar 1. Scattered about; disorganised. ছিনভিন ୨ । ଛତ୍ରଭଙ୍ଗ ହୋଇଥିବା; ଇତସ୍ତତଃ ପଳାୟିତ— **चलबिचल; छितछतर** 2. Routed; confused; fleeing away in confusion.

(ଛିନ୍‌ଛତ୍ର; ଛିନ୍‌ଛତ୍ରି; ଛିନଛତର; ଛିନଛତ୍ର—ଅନ୍ୟରୂପ)

**ଛନ୍‌ଛୋଟ୍**—ଦେ. ବିଣ. (ସଂ. କ୍ଷୀଣ ବା ଶୀର୍ଣ୍ଣ+କ୍ଷୁଦ୍ର)— Chhin-chhot ୧ । (ଆକାରରେ ବା ପରିମାଣରେ) କ୍ଷୁଦ୍ର— ছোটখাট 1. Very small; minute. **छोटा, अदना** ୨ । ନଅଣ୍ଟିଆ; ନ୍ୟୂନ— 2. Insufficient; deficient.

ଛିନ୍‌ଛୋଟିଆ, ଛିନଛୋଟ, ଛିନଛୋଟିଆ—ଅନ୍ୟରୂପ ତହିଁ ଆଉ ବରଷକରୁ ପାଣି ହେଲା ଛନ୍‌ଛୋଟ୍ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

୩ । ହୀନ—3. Defective

୪ । ତୁଚ୍ଛ; ନଗଣ୍ୟ—4 Trivial; petty; trifling

ବି—୧ । କ୍ଷୁଦ୍ରତା—1. Smallness; pettiness.

୨ । ନଅଣ୍ଟ; ନ୍ୟୂନତା—2. Deficiency.

୩ । ଅଳ୍ପ ଅଳ୍ପ ପରିମାଣ— 3 Insufficient quantity; driblet.

**ଛନ୍‌ବିଛନ୍**—ପ୍ରାଦେ. (ବାଲେଶ୍ୱର) ବିଣ. (ସଂ. ଛିନ୍ନବିଚ୍ଛିନ୍ନ)— Chhin-bichhin ଛିନ୍ନବିଚ୍ଛିନ୍ନ (ଦେଖ) Chhinna-bichchhinna (See)

**ଛନ୍‌ଭିନ୍**—ଗ୍ରା. ବିଣ. (ସଂ. ଛିନ୍ନଭିନ୍ନ)—୧ । ଛିନ୍ନଭିନ୍ନ (ଦେଖ) Chhin-bhin 1. Chhinna-bhinna (See) ছিন্নভিন্ন ୨ । ଛନ୍‌ଛତର; ଖିନଭିନ— **अनबिन; छिन्नभिन्न** 2. Scattered about; routed (ଛନଭିନ—ଅନ୍ୟରୂପ) ୩ । ଛିନ୍ନବିଚ୍ଛିନ୍ନ— 3. Completely disorganised.

୪ । ପୂର୍ଣ୍ଣରୂପେ ଅନୁସନ୍ଧାନ ବା ଅନ୍ୱେଷଣ କରାଯାଇ ଥିବା— 4. Thoroughly investigated

୫ । ଭିନ୍ନ ଭିନ୍ନ କରି ବୁଝାଇ ଦିଆଯିବା— 5. Thoroughly explained.

**ଛନ୍‌ଭିନ୍ କରି ବୁଝା(ଝେ)ଇବା**—ଦେ. କ୍ରି. (ସଂ. ଛିନ୍ନଭିନ୍ନ)—କୌଣସି Chhin-bhin kari bujhā(e)ibā ବାକ୍ୟ ବା ପଦକୁ ବିଶଦଭାବରେ ବିଶ୍ଳେଷଣ କରି ଅର୍ଥ ଓ ତାତ୍ପର୍ଯ୍ୟ ଅନ୍ୟକୁ ବୁଝାଇଦେବା; ଭିନ୍ନ ଭିନ୍ନ କରି ବୁଝାଇବା—To annotate a passage; to explain a passage very exhaustively and clearly(by expounding its derivation, meaning and purport)

**ଛନା**—ପ୍ରାଦେ. (ଗଡ଼ଜାତ) ବିଣ—ନିର୍ଜନ— Chhinā Solitary.

**ଛନାଇବା**—ଦେ. କ୍ରି. (ସଂ. ଛିଦ୍ ଧାତୁଜ ଛିନ୍ନ)— Chhināibā ଛିଣ୍ଡାଇବା; ଛିନ୍ନ କରିବା— ছিনা To tear away; to tear off; to break **छिनाना** ବଜ୍ରଦଂଷ୍ଟ୍ରର ଗ୍ରୀବ ଛନାଇଣ ସୁଗ୍ରୀବ ଫିଙ୍ଗିଲା । (ଛନେଇବା—ଅନ୍ୟରୂପ) ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

**ଛନାଲ**—ପ୍ରାଦେ. (ଗଡ଼ଜାତ, ମେଦିନୀପୁର) ବି ଓ ବିଣ. ସ୍ତ୍ରୀ. (ସଂ. ଛିନ୍ନା, Chhināla ଭୁଲ. ବ. ଛିନାଲ୍)—ଛିଣ୍ଡାଲ (ଦେଖ) Chhindāla (See)

**ଛନାଲ୍**—ପ୍ରାଦେ. (ମେଦିନୀପୁର; ବାଲେଶ୍ୱର) ବି ଓ ବିଣ. ସ୍ତ୍ରୀ.(ସଂ. ଛିନ୍ନା; Chhināl ଭୁଲ. ବ. ଛିନାଲ)—ଛିଣ୍ଡାଲ (ଦେଖ) Chhindāla (See)

**ଛନାଲି**—ପ୍ରାଦେ. (ମେଦିନୀପୁର; ବାଲେଶ୍ୱର) ବି—୧ । ଛିଣ୍ଡାଲପଣିଆଁ— Chhināli 1. Coquettishness; jilting; coquetry. ছিনালী ୨ । ବେଧ; ସ୍ତ୍ରୀର ବ୍ୟଭିଚାର— **छिनाला** 2. Adultery (in the case of a woman). (ଛିନାଲି—ଅନ୍ୟରୂପ) ୩ । (ସ୍ତ୍ରୀ) ଛିଣ୍ଡାଲ (ଦେଖ) 3. Chhindāla (See)

**ଛନି ଆଣ୍‌ବା**—ପ୍ରାଦେ.(ସମ୍ବଲପୁର) କ୍ରି. ( ଭୁଲ. ହି ଛିନ୍ ଲେନା )— Chhini ānbā ୧ । ଉପରୁ ପିଙ୍ଗାଯିବା କୌଣସି ବସ୍ତୁକୁ ଶୂନ୍ୟେ (ଛିନନେବା—ଅନ୍ୟରୂପ) ଶୂନ୍ୟେ ଧରିନେବା— 1 To catch up a thing in the air.

୨ । ଜଣେ ଗାଉଥିବା ସଙ୍ଗୀତକୁ ଶୁଣିବା ସଙ୍ଗେସଙ୍ଗେ ଅବିକଳ ଗାଇବା—2. To sing a song at once after hearing it once sung.

୩ । କୌଣସି ବ୍ୟକ୍ତିର ବାକ୍ୟଭଙ୍ଗୀ ବା ବଚନଭଙ୍ଗୀକୁ ପୂର୍ଣ୍ଣରୂପେ ଅନୁକରଣ କରିବା— 3. To successfully imitate a person's mode of talking.

**ଛନ୍ଦ**—ପ୍ରାଦେ. (ବସ୍ତର) ବି—ଖଜୁରି (କୋଳି ଓ ଗଛ)— Chhind Date-palm (plum and tree).

**ଛନ୍ଦାଲି**—ପ୍ରାଦେ. (ସମ୍ବଲପୁର) ବି—୧ । ଖୁବ୍ ଲାଲରଙ୍ଗ; ଖୁନ୍‌ରଙ୍ଗ— Chhindāli 1. Deep red colour.

୨ । ସ୍ତ୍ରୀ (ଗାଳିରେ ବ୍ୟବହୃତ) ଛିଣ୍ଡାଲ (ଦେଖ) 2. (a term of abuse) Chhindāla (See)

**ଛନ୍ଦିବା**—ଦେ. କ୍ରି. (ସଂ. ଛିଦ୍ ଧାତୁ )—ଛିଣ୍ଡାଇବା— Chhindibā To cut off. ছিনা ସୁଶର୍ମାଙ୍କୁ ଅର୍ଜୁନ ଆଠକାଣ୍ଡ ଛନ୍ଦି **छीनना** ଶତ୍ରୁଞ୍ଜୟ ଭଳାର ଶିର ଦେଲେ ଛନ୍ଦ । କୃଷ୍ଣସିଂହ, ମହାଭାରତ. କର୍ଣ୍ଣ ।

**ଛିନ୍ନ**—ସଂ. ବିଣ. (ଛିଦ୍ ଧାତୁ+କର୍ମ. ତ)—୧ । କର୍ତ୍ତିତ— Chhinna 1. Cut asunder; broken. (ଛିନ୍ନା—ସ୍ତ୍ରୀ) ୨ । ବିଦୀର୍ଣ୍ଣ—2. Pierced through; rent.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଜ୍ଞ | ଇଯ୍ଯ | ଢ଼ଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଛଅ | ଢ଼ | ନ୍ |

୩ । ବିଚ୍ଛିନ୍ନ; ବିଭକ୍ତ, ପୃଥକ୍‌କୃତ—
3 Cut off; separated; severed.
୪ । ଚିରା; ଛିଣ୍ଡା; ଯାହା ଛିଣ୍ଡି ଯାଇଅଛି—4. Torn.
୫ । ଉତ୍ପାଟିତ - 5. Uprooted

**ଛିନ୍ନଗୋମୂତ୍ର ଛନ୍ଦ**—ଦେ. ବି—କାବ୍ୟାଲଙ୍କାରବିଶେଷ—
Chhinna-go-mūtra chhanda A kind of artistic poetic composition.
[ଦ୍ର—ଏଥିରେ ଗୋମୂତ୍ରଛନ୍ଦର ନିୟମ ଅନୁସାରେ ରଚନା କରି ଯାଇ ଥାଏ, କିନ୍ତୁ ଗୋଟିଏ ଅକ୍ଷର ଛାଡ଼ି ଅନ୍ୟ ଅକ୍ଷରର ମେଳ ରଖା ଯାଇ ଥାଏ । ଗୋମୂତ୍ରଛନ୍ଦରେ ୨ ଧାଡ଼ିରେ ଅକ୍ଷରରେ ଗୋମୂତ୍ର ନିୟମ ରକ୍ଷା କରି ଯାଏ, କିନ୍ତୁ ଛିନ୍ନଗୋମୂତ୍ରଛନ୍ଦରେ ଗୋଟିଏ ଧାଡ଼ିକୁ ଧରି ଗୋମୂତ୍ରଛନ୍ଦର ନିୟମ ପାଳିତ ହୋଇ ଥାଏ ଯଥା—

ରବି ତୋଷଦ ନଳିନ ରଥି ଗୃହକ ସୃଜନ (କ)
ଯଥ ଶିଖୀ ଘନେ ଇଥା ନବ ପ୍ରେମେ (ଖ)
ଆଦରେ ବାଳ ରତନ; (ଗ)
ଛବି ଦଷଦ ହାସ୍ୟକ ଭସି ଗୃହକ ଦେବନ (କ)
ବୃଥା ସଖୀ ମନେ ବ୍ୟଥା ଭବ କାମେ (ଖ)
ବଦରେ ଆଳ ଯତନ ।" (ଗ)
ଗୋଲକ. ଉନ୍ନ ଦେଖ।]

**ଛିନ୍ନଛତ୍ର**—ଦେ. ବିଣ.—ଛିନ୍‌ଛତର (ଦେଖ)
Chhinna-chhatra Chhin-chhatar (See)
ମାଳବରେ ଛିନ୍ନଛତ୍ର ହେବେ, ବେଗ ହୋଇ ସେ ସେ ପଳାଇବେ ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଛିନ୍ନଦ୍ୱୈଧ**—ସଂ. ବିଣ. ପୁଂ. (ଛିନ୍ନ ହୋଇ ଅଛି ଦ୍ୱୈଧ=ସଂଶୟ ଯାହାର
Chhinna-dwaidha —ବହୁବ୍ରୀହି)—ଛିନ୍ନସଂଶୟ; ନିଃସଂଶୟ—
Whose doubts have been cleared up; freed from doubt.

**ଛିନ୍ନନାସ**—ସଂ ବିଣ. ପୁଂ. (ଛିନ୍ନ+ନାସା; ବହୁବ୍ରୀହି)—ଯାହାର ନାକ
Chhinna-nāsa ଛିଣ୍ଡି ପଡ଼ି ଅଛି; ବିଗତନାସିକ; ଚ୍ଛିନ୍ନଣଖଣ୍ଡିଆ; ଗତ
ଛିନ୍ନନାସା } ସ୍ତ୍ରୀ
ଛିନ୍ନନାସୀ }
ନାସିକ; ଛିଣ୍ଡାନାକା—Having one's nose split off or cut; split-nosed.

**ଛିନ୍ନପତ୍ରୀ**—ସଂ. ବି. (ବହୁବ୍ରୀହି; ଛିନ୍ନ+ପତ୍ର+ଈ; ଯାହାର ପତ୍ର ଛିଣ୍ଡା)-
Chhinna-patrī ପାଠା; ଅକାନବିନ୍ଧୀଲତା (ହି. ଶବ୍ଦସାଗର)—
A creeper; Stephania Hernandifolia.

**ଛିନ୍ନପଦ**—ସଂ. ବିଣ. ପୁଂ (ବହୁବ୍ରୀହି; ଛିନ୍ନ+ପଦ—ଯାହାର ଗୋଡ଼ କଟି
Chhinna-pada ଯାଇଛି—Maimed in the legs; deprived of the legs.
ଛିନ୍ନପଦା } ସ୍ତ୍ରୀ.
ଛିନ୍ନପଦୀ }

**ଛିନ୍ନପୁଷ୍ପ** - ସଂ. ବି - ତିଳକ ବୃକ୍ଷ (ହି. ଶବ୍ଦସାଗର) (ଦେଖ)
Chhinna-pushpa Tilaka tree (See)

**ଛିନ୍ନବିଚ୍ଛିନ୍ନ**—ସଂ. ବିଣ (ଦ୍ୱନ୍ଦ୍ୱ)—ଛିନ୍ନଭିନ୍ନ (ଦେଖ)
Chhinna-bichchhinna Chhinna-bhinna (See)

**ଛିନ୍ନବେଶିକା**—ସଂ. ବି.—ପାଠା; ଅକାନବିନ୍ଧ (ହି. ଶବ୍ଦସାଗର) (ଦେଖ)
Chhinna-beśikā Akānabindhi creeper (See)

**ଛିନ୍ନବ୍ରଣ**--ସଂ. ବି —୧ । କଟାଘାଆ (ହି. ଶବ୍ଦସାଗର)—
Chhinna-braṇa 1. Cut-wound.
୨ । ଶସ୍ତ୍ରଘାତ ଉପରେ ହେବା ବ୍ରଣ—
2. A boil on a cut-wound.

**ଛିନ୍ନଭିନ୍ନ**—ସଂ. ବିଣ. (ଦ୍ୱନ୍ଦ୍ୱ; (ଛିନ୍ନ ଓ ଭିନ୍ନ)—୧ । ଇତସ୍ତତଃ ବିକ୍ଷିପ୍ତ;
Chhinna-bhinna ଛିନ୍ନଭିନ୍ନ; ଛିନ୍ନଛତ୍ର—1. Promiscuously scattered about; routed; dispersed.
ନ ପାଇ ସ୍ଥାନ କାହିଁ ଛିନ୍ନଭିନ୍ନ ହେଲେ ।
କୃଷ୍ଣସିଂହ. ମହାଭାରତ. ବନ ।
୨ । ଉତ୍ସନ୍ନ; ବିନଷ୍ଟ—2. Ruined; completely broken into parts.
୩ । ଚିକିଟିକି ବା ଖଣ୍ଡଖଣ୍ଡ ହୋଇଥିବା—
3. Torne to pieces.
୪ । ଲଣ୍ଡଭଣ୍ଡ—4. Confused.
୫ । ଯାହା ଉତ୍ତମରୂପେ ବିଶ୍ଳେଷିତ ହୋଇଅଛି—
5. Well analysed.

**ଛିନ୍ନମସ୍ତକ**—ସଂ. ବି. (କର୍ମଧା, ଛିନ୍ନ+ମସ୍ତକ)—କଟା ହୋଇ ଗଣ୍ଡିରୁ
Chhinna-mastaka ବିଚ୍ଛିନ୍ନ ହୋଇଥିବା ମୁଣ୍ଡ—
A head separated from the body.
ସଂ. ବିଣ. ପୁଂ (ବହୁବ୍ରୀହି)—କମୁଣ୍ଡ; ମସ୍ତକହୀନ—
(ଛିନ୍ନମସ୍ତକା—ସ୍ତ୍ରୀ) Decapitated

**ଛିନ୍ନମସ୍ତା**—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି, ଛିନ୍ନ + ମସ୍ତ=ମସ୍ତକ+ସ୍ତ୍ରୀ. ଆ)—
Chhinna-mastā ଯେଉଁ ସ୍ତ୍ରୀର ମୁଣ୍ଡ କଟା ହୋଇ ଅଛି; ମସ୍ତକହୀନା-
Decapitated; having her head cut off.
ସଂ. ବି. ସ୍ତ୍ରୀ—ତନ୍ତ୍ରୋକ୍ତ ଦଶ ମହାବିଦ୍ୟା ଅନ୍ତର୍ଗତ ୬ଷ୍ଠ ମହାବିଦ୍ୟା; ଦୁର୍ଗାଙ୍କର ରୁଦ୍ରଚଣ୍ଡିକା ବା ମସ୍ତକହୀନା ମୂର୍ତ୍ତି ।
[ଦ୍ର—ତନ୍ତ୍ର ଅନୁସାରେ ଏହାଙ୍କ ରୂପ—ଆପଣା ହାତରେ ଆପଣା ମୁଣ୍ଡ କାଟି ତାହାକୁ ବାମ ହସ୍ତରେ ଧରିଛନ୍ତି; କଟା ହୋଇଥିବା ବେକରୁ ଉଠୁଥିବା ରକ୍ତର ୯ର ସେହି କଟା ମୁଣ୍ଡର ପାଟିରେ ପଡ଼ୁଅଛି ଓ ସେ କଟା ମୁଣ୍ଡଟି ଉକ୍ତ ରକ୍ତଧାର ପାନ କରୁଅଛି । (ଦଶ ମହାବିଦ୍ୟା ଦେଖ)—
An incarnation (out of 10) of Goddess Durgā in her most wrathful or ferocious form, represented by a headless trunk held with the left hand, the blood issuing out of the neck of the trunk falling into the mouth of the decapitated head held in the hand of the Deity.

**ଛିନ୍ନରୁହ**—ସଂ. ବି.—୧ । ତିଳକ ବୃକ୍ଷ (ହି. ଶବ୍ଦସାଗର) (ଦେଖ)
Chhinna-ruha 1. Tilaka tree (See)

ସାଧାରଣ ଲୋକେ ଅପର ବ୍ୟକ୍ତିରେ ମୂର୍ଦ୍ଧନ୍ୟ ୧ ଉଚ୍ଚାରିତ ଅକ୍ଷର ଓ ମାତ୍ରା ଏବଂ ୨ ଉଚ୍ଚାରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଉଚ୍ଚାରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଉଚ୍ଚାରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଟାଇ' ନ ମିଳିଲେ 'ଟାଇଁ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବେଡ଼' ନ ପାଇଲେ 'ଅଲବେଡ଼' ଦେଖିବେ

୨ । ପୁନ୍ନାଗ (ହି. ଶବ୍ଦସାଗର) (ଦେଖ)
2. Punnāga tree (See)

**ଛିନ୍ନରୁହା**—ସଂ. ବି.—ଗୁଳଞ୍ଚ (ହି. ଶବ୍ଦସାଗର) (ଦେଖ)
Chhinna-ruhā Gulañcha creeper (See)

**ଛିନ୍ନଶ୍ୱାସ**—ସଂ. ବି—(ଏଥିରେ ସମୟେ ସମୟେ ଶ୍ୱାସଗତି ବନ୍ଦ ହେବା ପରି ଜଣା ଯାଉଥିବାରୁ)—ଶ୍ୱାସରୋଗ-ବିଶେଷ; ଧଇଁରୋଗ—Asthma.
Chhinna-śwāsa
[ ଦ୍ର—ଏଥିରେ ରୋଗୀର ପେଟ ଫୁଲେ, ଝାଳ ବହେ, ଶ୍ୱାସରୁଦ୍ଧ ହୁଏ, ଶରୀରର ବର୍ଣ୍ଣ ବଦଳି ଯାଏ—ହି. ଶବ୍ଦସାଗର । ]

**ଛିନ୍ନହସ୍ତ**—ସଂ. ଗୁଣ ପୁଂ. (ବହୁବ୍ରୀହି, ଛିନ୍ନ+ହସ୍ତ)—
Chhinna-hasta Maimed in the hands; deprived of the arms.
(ଛିନ୍ନହସ୍ତା—ସ୍ତ୍ରୀ)
ସଂ. ବି. (କର୍ମଧା)—ଦେହରୁ କଟା ଯାଇଥିବା ହାତ—
Hand chopped off from the body.

**ଛିନ୍ନା**—ସଂ. ବିଣ. ସ୍ତ୍ରୀ—(ଛିନ୍ନ+ସ୍ତ୍ରୀ. ଆ)—ଛିନ୍ନର ସ୍ତ୍ରୀଲିଙ୍ଗ—
Chhinnā Feminine of Chhinna
ସଂ. ବି. ସ୍ତ୍ରୀ—୧ । ବେଶ୍ୟା—1. Harlot; prostitute
୨ । ନଷ୍ଟା ବା ଭ୍ରଷ୍ଟା ସ୍ତ୍ରୀ; ଛିଣ୍ଡାଳ—
2. Strumpet; coquette; adulteress
୩ । ଗୁଡୁଚୀ; ଗୁଳୁଚ ଲତା; ଗୁଳୁଚ (ଦେଖ)
3. A medicinal creeper; Guluchi (See)

**ଛିନ୍ନାଇବା**—ଦେ କ୍ରି (ସଂ. ଛିଦ ଧାତୁ)—ଛିଣ୍ଡାଇବା; କାଟିଦେବା—
Chhinnāibā To cut off.
ଛିନାନ
ଛନାନା

ସେହି ଭ୍ରମର ଗ୍ରମର ଛିନାଇବ, ଉଣିସ ଉଭସେ—
ଉପେନ୍ଦ୍ରଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଛିନ୍ନାଳୀ**—ଦେ. ବି ( ସଂ. ଛିନ୍ନା+ଆଳୀ)— ସ୍ୱାମିନୀଙ୍କ ସେବାରୁ ଅନ୍ତରିତ ହେବା ସଖୀ—A maidservant who has been removed from the service of her mistress.
Chhinnali

କହୁଛ ଛିନ୍ନାଳୀ କାଳୀବାଳୀ ନବବାଳୀ,
ବାଳଣ ମୁଁ ବଧ ସେବା ପାଳ ପଳ ହେ । ଭଞ୍ଜ. ପ୍ରେମସୁଧାନିଧି ।

**ଛିପଲି**—ପ୍ରାଦେ (ସମ୍ବଲପୁର) ବି (ଭୁଲ. ହି. ଚପ୍ପଲ୍)—ଚପ୍ପଲ ଜୋତା; ଫିତାଲଗା ଚଟିଜୋତା—Slippers; leathern sandals.
Chhip li

**ଛିପ**—ପ୍ରାଦେ (ମେଦିନୀପୁର) ବି (ସଂ. ଷ୍ଠୀବ)— ଖଙ୍କାର; ଖେପ—
Chhipa Spittle with phlegm.

**ଛିରିକା**—ଗ୍ରା. ବି (ସଂ. ସାଦୃଶ୍ୟ)—୧ । ସାଦୃଶ୍ୟ—
Chhirikā 1. Similarity in appearance.
(ଯଥା—ଏ ପିଲାଟିଠେଇଁ ମାଆର ଛିରିକା ଅଛି । )
(ଛିର୍କା—ଅନ୍ୟରୂପ) ୨ । ଜୋରପୂର୍ବକ ଅଳ୍ପ ପରିମାଣରେ କୌଣସି ଦ୍ରବ ପଦାର୍ଥ ଶୀଘ୍ର ଛିଦ୍ରଦ୍ୱାରା କ୍ଷେପଣ କରିବା; ଚିରିକା—2. Emission of a small quantity of any liquid with force through a small hole
( ଯଥା— ବୃକ୍ଷ ଡାଳରେ ବସିଥିବା ପକ୍ଷୀର ଚିରିକା ଗଛ ତଳେ ଶୋଇଥିବା ପଥିକ ମୁହଁ ଉପରେ ପଡ଼ିଗଲା । )
୩ । ଛିଡ଼ିକା; ଛିଡ଼୍କା ( ଦେଖ )—
3. Spurting; splashing; Chhirḍ-kā (See)

**ଛିରିକାଇବା**—ଦେ. କ୍ରି—୧ । କ୍ରୁଦ୍ଧ ହୋଇ ଅନ୍ୟକୁ ଭୟ ଦେଖାଇବା—1. To frighten another person in rage.
Chhirikāibā
ଛିରିକେଇବା, ଛିର୍କାଇବା, ଛିର୍କେଇବା } ଅନ୍ୟରୂପ
୨ । ଛିଡ଼୍କାଇବା—2. To cause a thing to splash or spurt.

**ଛିରିକିବା**—ଦେ. କ୍ରି—୧ । ଛିଡ଼କିବା ( ଦେଖ )
Chhirikibā 1 To shoot out in sparks; to be spouted out; Chhirḍikibā (See)
ছিরকা
चिरकना
୨ । ବଳପୂର୍ବକ କ୍ଷିପ୍ତ ହୋଇ ଦୂରରେ ପଡ଼ିବା—
2. To drop at a distance by being thrown with force.
ଛିରିକାଇବା, ଛିରିକେଇବା } ଣିଜନ୍ତ
(ଛିର୍କିବା—ଅନ୍ୟରୂପ)
୩ । ଚିରିକିବା ( ଦେଖ )
3. Chirikibā ( See )

**ଛିଲ୍କା**—ଦେ. ବି. (ସଂ. ଛଲ୍ଲି; ଛଲ୍ଲିକା )—
Chhil-kā ୧ । ପତଳା ଚୋପା—1. Thin rind.
ছিলকা, ছিল্কা ୨ । ଚଞ୍ଚା ହୋଇଥିବା ଅଂଶ—
छिलका 2. Scrapings.
୩ । ଛେଲି; ବଲ୍କଲ—3. Bark of a tree.
୪ । ଅତି କ୍ଷୁଦ୍ର ପତଳା ଅଂଶ—
4. Small thin fragment.
୫ । ଛେଲି; ବେତ ବାଉଁଶର ପତଳା ଚୋପା; ପତଳା ବତା
5 Scantlings of bamboo or cane.
(ଛିଲିକା—ଅନ୍ୟରୂପ)

**ଛିଲ୍‌ପା**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଛଲ୍ଲୀ)—ଚେଲ୍ଲା କାଠ—
Chhil-pā Scrapings of wood.
(ଛିଲିପା—ଅନ୍ୟରୂପ)

**ଛିଲା**—ଦେ ବି. ( ସଂ. ଛଲ୍ଲୀ )—ଧନୁଗୁଣ; ମୌର୍ବୀ—
Chhilā Bowstring.
ছিলা
चिल्ला

**ଛିଲିକା**—ଦେ. ବି—ଛିଲ୍‌କା ( ଦେଖ )
Chhilikā Chhil-kā ( See )

**ଛୁ** ଦେ. ବି. (ହି) ( ସଂ. କ୍ଷିପ୍ର; ପ୍ରା. ଛୁଟ )—ପଲାୟନ; ଚମ୍ପଟ—
Chhu Fleeing away; running away; flight.
चम्पट
छू

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇପ୍ସ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଚଁୟ | ଇଥ | ଢ଼ | ନ୍ |

**ଛୁଅ**—ଦେ. ବି. ( ସଂ. ଛଳ; ସୂତ୍ର )—
Chhua ୧ । ଛଳନା; ବାହାନା; ଛଳ—
ଛୁତା, ଛୁତ 1 Pretext; excuse; feint; dodge.
**ଛଲ**
ହେବ ବୋଲି ଗଙ୍କା, ଦୁଷ୍ଟ ବାନ୍ଧନ୍ତି ଦୁରଗା,
ଛୁଅ ମିଳା ଚ ର, ନୃପ, ଏ ଶଂସାଧନା । ଚନ୍ଦ୍ରାମଣି ବଳ୍ଳମାଚଦ୍ୟ ।
୨ । କୌଶଳ; ଗୁରୁମ୍ପ—2. Secret; art.
କର୍ଣ୍ଣ ଚ ସୁର ଛୁଅ ଚରକ କାଣନ୍ତ
ପଳାଇଲେ ହେଲେ ବନ୍ଧଲେ ଶର ଅନ୍ଧ । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।
୩ । ଉପାୟ—
3. Expedient; means; device.
କୋଧରେ ହସାଇ ଅରମ୍ଭି ଛୁଅ । ଗୋପୀକୃଷ୍ଣ. ରସକଲ୍ଲୋଳ ।

**ଛୁଆ**—ଦେ. ବି. (ସଂ.ଶାବକ, ଶାବ; ପ୍ରା ଛାପୋ; ସଂ. ଛୁ-ଯୋଗେଶ୍ଚନ୍ଦ୍ର)—
Chhuā ୧ । ଜନ୍ତୁମାନଙ୍କ ପିଲା—
ଛା, ଛାଓୟାଲ 1. The young of an animal.
**ଛବନା, ଛାବା, ଛୌନା** ୨ । ମନୁଷ୍ୟଶିଶୁ—2. Infant; child.
ବିଣ—୧ । ଅଳ୍ପବୟସ୍କ—1. Very young.
୨ । ସାନ; କ୍ଷୁଦ୍ର — 2. Small; tiny.

**ଛୁଆଇବା**—ଦେ. କି. ( ସଂ. ଛଦ ଧାତୁ )— ଛୁଆଁଇବା ୧ ( ଦେଖ )
Chhuāibā Chhuñāibā 1 ( See )
ମନସିଜ ବେନି କୁମ୍ଭୀ ଉଥଇ
ପଦ୍ମାବଳରେ ଯଇଲେ ଛୁଆଇ । ଉପେନ୍ଦ୍ରଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଛୁଆଁ**—ଦେ; ବିଣ. ( ସଂ. ସ୍ପୃଶ ଧାତୁରୁ ସ୍ପୃଶ୍ୟ; ବିପରୀତ ଅସ୍ପୃଶ୍ୟ )—
Chhuāñ ୧ । ପାକାସ୍ପୃଶ୍ୟା; ଆର୍ତ୍ତବଯୁକ୍ତା; ଋତୁମତୀ ହୋଇଥିବା
ଛୋଏଁଁଚ (ସ୍ତ୍ରୀ)—1. Menstruated ( woman )
**ଛୁତିହା** in her menses
(ଅଛୁଆଁ—ବିପରୀତ) ୨ । ସ୍ପର୍ଶ କରିଥିବା—
2. Touching; coming in contact with.
୩ । ସ୍ପୃଷ୍ଟ—3. Touched ( by so and so ).
ଶୁଆଦଣ୍ଡଛୁଆଁ ସେବ କ୍ଷୀରରେ
ସ୍ୱାଦ କ ଥାଏ ଅଭ ? କବିସୂର୍ଯ୍ୟ. ସଙ୍ଗୀତ ।
୪ । ଦୂଷିତ ବ୍ୟକ୍ତି ବା ପଦାର୍ଥକୁ ସ୍ପର୍ଶ କରିଥିବା ଯୋଗୁଁ ଅଶୁଚ ବା ଦୂଷିତ—4. Made unclean or contaminated by the touch of an untouchable thing or person.
୫ । ଅସ୍ପୃଶ୍ୟ; ଅଶୁଚ—5. Untouchable; unclean.
(ସଂ. ଛଦ୍ ଧାତୁ)—୬ । ଛପରବନ୍ଧ ହୋଇଥିବା—
6. Thatched.
ଦେ. ବି—୧ । ଋତୁମତୀ ହେବା; ପାକାସ୍ପର୍ଶା ହେବା ଅବସ୍ଥା—
1. Menstruation; appearance of menses in a female.
୨ । ଛପରବନ୍ଧ; ଛୁଆଁଇବା; ଛୁଆଣି—
2 Thatching of a house.
୩ । ସ୍ପର୍ଶ କରିବା—3 Touching.

**ଛୁଆଁ ଅଛୁଆଁ**—ଦେ. ବିଣ. ( ସଂ. ସ୍ପୃଶ୍ୟ + ଅସ୍ପୃଶ୍ୟ, ବିପରୀତାର୍ଥ
Chhuāñ-achhuāñ ସହଚର )—ସ୍ପୃଶ୍ୟ ଓ ଅସ୍ପୃଶ୍ୟ ବ୍ୟକ୍ତି ବା ବସ୍ତୁ; ଯାହାକୁ ଛୁଇଁଲେ ମନୁଷ୍ୟ ଛୁଆଁ ହେବ ଓ ଯାହାକୁ ଛୁଇଁଲେ ମନୁଷ୍ୟ ଛୁଆଁ ହେବ ନାହିଁ—
Touchable and untouchable (person or thing)

**ଛୁଆଁଇବା**—ଦେ. କି—୧ । (ସଂ. ଛଦ ଧାତୁ)—ଛୁଆଣି କରିବା;
Chhuāñibā ଛାଇବା; ଛପରବନ୍ଧ କରିବା—To thach; to lay a cover over.
ଛାଓୟାନ ୨ । (ସଂ. ସ୍ପୃଶ ଧାତୁର ଣିଜନ୍ତ) ସ୍ପର୍ଶ କରାଇବା
**ଛାନା** (ଛୁଇଁବାର ଣିଜନ୍ତରୂପ,—2. To cause another
ଛୁୟାଁନ person to touch some thing.
**ଛୁଲାନା**
ମର୍ମ ପରଶ ରସ ଥାଉ
କେ ଦେହ ଛୁଆଁଇବ ଅଉ । ଭୂପତି—ପ୍ରେମପଞ୍ଚାମୃତ ।
୩ । (ସଂ. ଛଦ ଧାତୁ)—ସ୍ତର ଦ୍ୱାରା ଆଚ୍ଛାଦନ କରିବା: କୌଣସି ପଦାର୍ଥକୁ ଘୋଡ଼ାଇବା—3. To put a layer upon; to overspread
କାଂଶୁକ କୁସୁମ ପାଞ୍ଚ କରିବାର ରଙ୍ଗଂକୋଷରେ ଛୁଆଇଁ ।

**ଛୁଆଁଚ**—ପ୍ରାଦେ. (ସିଂହଭୂମ) ବି. (ଭୁଲ. ବ. ଛୋଯାଁଚ=ଅପବିତ୍ର
Chhuāñcha ସ୍ପର୍ଶଦୋଷ)—ଅଶୁଚତା—Uncleanliness.
ବିଣ—ଛୁଆଁ (ସ୍ତ୍ରୀ)—Menstruated (woman).

**ଛୁଆଁଚି**—ପ୍ରାଦେ (ବାଲେଶ୍ୱର ଓ ସମ୍ବଲପୁର) ବିଣ. (ସଂ. ଅଶୁଚ)—
Chhuāñchi ୧ । ଦୂଷିତ; ଅଶୁଚ—
1. Contaminated; impure; unclean.
୨ । ଅସ୍ପୃଶ୍ୟ—2. Untouchable.
ପ୍ରାଦେ. (ବାଲେଶ୍ୱର; ସମ୍ବଲପୁର) ବିଣ. ସ୍ତ୍ରୀ—ଛୁଆଁଚୀ (ଦେଖ)
Chhuāñchī (See.
ପ୍ରାଦେ (ବାଲେଶ୍ୱର; ସମ୍ବଲପୁର) ବି—୧ । ଅସ୍ପୃଶ୍ୟ ଅବସ୍ଥା—
1. Untouchable condition.
୨ । ଅଶୁଚତା—2. Untouchableness.
୩ । ସ୍ତ୍ରୀର ରଜସ୍ୱଳା ହେବା ଅବସ୍ଥା—
3 Menstruation of a woman.

**ଛୁଆଁଚୀ**—ପ୍ରାଦେ (ବାଲେଶ୍ୱର, ସମ୍ବଲପୁର) ବିଣ. ସ୍ତ୍ରୀ. (ସଂ. ଅଶୁଚ;
Chhuāñchī ଅସ୍ପୃଶ୍ୟ; ଭୁଲ. ବ. ଛୋୟାଁଚେ)—୧ । ଅଶୁଚ—
(ଛୁଆଁଛି—ଅନ୍ୟରୂପ) 1. Impure; untouchable; unclean.
୨ । ଅସ୍ପୃଶ୍ୟା; ଋତୁମତୀ—2. Menstruated.
ଦେ. ବି – ଋତୁମତୀ ହେବା —
Menstruation; appearance of menses.

**ଛୁଆଁଛୁଇଁ**—ଦେ. ବି. (ସଂ. ସ୍ପର୍ଶନ)—୧ । ଅନ୍ୟୋନ୍ୟ ଗାତ୍ରସ୍ପର୍ଶ କରିବା-
Chhuāñchhuiñ 1. Mutual contact or touch,
ଛୋୟାଁଛୁୟିଁ ୨ । ସ୍ପର୍ଶ କରିବା—2 Touching; contact.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଢ଼ତ ୧ ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

ଛୋଆଁଛୁଇଁ } ଅନ୍ୟରୂପ
ଛୋଆଁଛୋଇଁ }

୩ । ସ୍ପୃଶ୍ୟାସ୍ପୃଶ୍ୟ ବସ୍ତୁର ପ୍ରଭେଦ— 3. Distinction between the touchable and untouchable.

ଦେ. ବିଣ—ଅନ୍ୟୋନ୍ୟ ସଙ୍ଗେ ସ୍ପୃଷ୍ଟ—Mutually connected; touching one another.

**ଛୁଆଁଛୁତ୍**—ଦେ. ବି. (ସଂ. ଅସ୍ପୃଶ୍ୟ + ସ୍ପର୍ଶନ)—
Chhuañ-chut
ଛୁଆଁଛୁତ
छुआछुत

୧ । ଅସ୍ପୃଶ୍ୟ ବ୍ୟକ୍ତି ବା ବସ୍ତୁର ସ୍ପର୍ଶନ— 1. Touching an untouchable person or thing.

୨ । ଅସ୍ପୃଶ୍ୟସ୍ପର୍ଶନଜନିତ ଅଶୁଚିତା—2 Impurity resulting from touching an untouchable.

୩ । ସ୍ପୃଶ୍ୟାସ୍ପୃଶ୍ୟ ବିଚାର ବା ପ୍ରଭେଦ— 3. Distinction between the touchable and untouchable.

ଦେ. ବିଣ—୧ । ଅସ୍ପୃଶ୍ୟସ୍ପର୍ଶନଜନିତ— 1. Resulting from touching an untouchable.

୨ । ଅସ୍ପୃଶ୍ୟ ଓ ସ୍ପୃଶ୍ୟ 2. Untouchable and touchable (person or thing.)

**ଛୁଆଁରା**—ଦେ. ବି. (ସଂ. କ୍ଷୁଦ୍ର+ହାରକ; ଅ ଓ ପା. ନାମ—ଖୁର୍ମା)—
Chhuañrā
ছুআরা, ছোয়ারা
छुआरा, छुहारा
(ଛୁଆରା—ଅନ୍ୟରୂପ)

ଆରବଦେଶୀୟ ଶୁଖିଲା ଖଜୁରି କୋଳି; ଖୁର୍ମା; ଶୁଷ୍କ ଖର୍ଜ୍ଜୁର; ପିଣ୍ଡିଖଜୁରି—Dried Arabian dates; (Phoenix Dactylifera).

**ଛୁଆଁରୋଗ**—ଦେ. ବି.—ଯେଉଁ ରୋଗ କେବଳ ସ୍ପର୍ଶଦ୍ୱାରା ସଂକ୍ରମିତ ହୁଏ—Contagious disease.
Chhuañ roga
ছোয়াঁচে রোগ
छूतही रोग

[ ଦ୍ର—ରୋଗୀକୁ ଛୁଇଁଲେ ବା ରୋଗୀର ବ୍ୟବହୃତ ବସ୍ତ୍ରାଦି ଛୁଇଁଲେ ସୁସ୍ଥ ବ୍ୟକ୍ତିକୁ ଯେଉଁ ରୋଗ ଆକ୍ରମଣ କରେ ତାକୁ ଛୁଆଁ ରୋଗ ବୋଲାଯାଏ; ଯଥା—କୁଷ୍ଠ । ରୋଗୀକୁ ନ ଛୁଇଁଲେ ମଧ୍ୟ ଜଳ ଓ ବାୟୁଦ୍ୱାରା ଚାଳିତ ହୋଇ ଯେଉଁ ରୋଗ ସୁସ୍ଥ ବ୍ୟକ୍ତିକୁ ଆକ୍ରମଣ କରେ ତାକୁ ଉଆଁ ରୋଗ (infectious disease) ବୋଲାଯାଏ । ]

**ଛୁଆଁହେବା**—ଦେ: କ୍ରି.—(ସଂ: ଅସ୍ପୃଶ୍ୟା)—(ସ୍ତ୍ରୀ) ଋତୁମତୀ ହେବା; ରଜସ୍ୱଳା ହେବା—
Chhuañ hebā
ছোয়াঁচ হওয়া; নোঁঙরা হওয়া
छूनेका होना छूनेसे होना

To be menstruated; to be in her menses.

**ଛୁଆଁଳି**—ଦେ. ବିଣ.—ଯେଉଁ ମୂଲିଆ ଘର ଛପରବନ୍ଧ କରେ—
Chhuañli
ছাউনীওয়ালা
छानेवाला
(ଛୁଅଳି—ଅନ୍ୟରୂପ)

One who thatches a house

**ଛୁଆଚି**—ପ୍ରାଦେ. (ବାଲେଶ୍ୱର, ସମ୍ବଲପୁର) ବିଣ. ଓ ବି. (ସଂ. ଅଶୁଚି)—
Chhuāchi
(ଛୁଆଛି—ଅନ୍ୟରୂପ)

ଛୁଆଁଚି (ଦେଖ) Chhuañchi (See)

**ଛୁଆଣି**—ଦେ. ବି.—ଛାଆଣି (ଦେଖ)
Chhuāṇi — Chhā-āṇi (See)

**ଛୁଆଣିଆ**—ଦେ. ବିଣ.—ଛୁଆଁଳି (ଦେଖ)
Chhuāṇiā — Chhuañḷi (See)

**ଛୁଆଣି କରିବା**—ଦେ. କ୍ରି.—(ସଂ. ଛଦ୍ ଧାତୁ)—୧ । ଘର ଛପରବନ୍ଧ କରିବା—
Chhuāṇi karibā
ছাওয়া
छाना

1. To thatch a house.

୨ । କୌଣସି ପଦାର୍ଥ ଉପରେ ଅନ୍ୟ କୌଣସି ପଦାର୍ଥର ସ୍ତର ପକାଇବା—2. To overlay a thing with a thin layer of some other thing.

(ଯଥା—ହାଣ୍ଡିଦାନ୍ତରେ ସୁନା ଛୁଆଣି କରିବା; ତମ୍ବାଖଡ଼ୁରେ ସୁନା ଛୁଆଣି କରିବା ଇତ୍ୟାଦି ।)

୩ । ଢୋଲ ଆଦିର ମୁହଁରେ ଚମଡ଼ା ମଢ଼ାଇବା— 3. To lay hide or leather over a drum.

୪ । ଚଉକି ଆଦିର ଫାଙ୍କ ଜାଗାରେ ବେତ ଆଦି ବୁଣିବା— 5. To bottom (a chair.)

**ଛୁଆତି**—ପ୍ରାଦେ. (ସମ୍ବଲପୁର) ବିଣ.—ଛୁଆଁ; ଅପବିତ୍ର; ଅଶୁଚି—
Chhuātı — Menstruated; unclean; impure

**ଛୁଆଧରା ବାୟା**—ଦେ. (ଶିଶୁଭାଷା) ବି—ଯେ ଛୁଆଙ୍କୁ ଧରି ନିଏ—
Chhuādharā bāyā — (used to scare infants) One who takes away the infants

**ଛୁଆରା**—ବୈଦେ. ବି—ଛୁଆଁରା (ଦେଖ)
Chhuārā — Chhuañrā (See)

**ଛୁଆଳସିଂହ**—ଦେ. ବି.—ଉତ୍କଳର ରାଜପ୍ରଦତ୍ତ ଉପାଧିବିଶେଷ—
Chhuāḷa-simha — A title conferred by the Chiefs of Orissa

**ଛୁଆଳି**—ଦେ. ବିଣ.—ଛୁଆଁଳି (ଦେଖ)
Chhuāḷı — Chhuañḷı (See)

**ଛୁଆଲି**—ପ୍ରାଦେ (ସମ୍ବଲପୁର) ବି (ସଂ. ଶିଶୁ; ଶାବକ; ଛ)—ଶିଶୁ; ପିଲା—
Chhuāli — Infant; child.

**ଛୁଆଲିଦୁଖାନ୍**—ପ୍ରାଦେ (ସମ୍ବଲପୁର)—ପ୍ରସବ ବେଦନା; ଶୂଳ—
Chhuālı-dukhān — Labour-pain; labour of child birth; travail.

**ଛୁଆଳୀ**—ପ୍ରାଦେ. (ଗଡ଼ଜାତ) ବିଣ—ପ୍ରସୂତି; ଯେଉଁ ସ୍ତ୍ରୀ ଅଳ୍ପଦିନ ହେଲା ପିଲା ଜନ୍ମ କରିଛି; ପୋଖତୀ; ପିଲେଇତୀ—
Chhuāḷī — (a woman) Recentlay delevered of a chlid.

| ୧ | ଇ | ଈ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | କ୍ଷ | ଇଦ୍ର | ଙ୍ଗ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଡ଼ | ନ୍ |

ଛୁଇ—ପ୍ରାଦେ ( ସମ୍ବଲପୁର ) ବ (ଭୁଲ. ଏହି ଅର୍ଥରେ ହି. ଛୁହୀ; ସଂ. ଶ୍ୱେତ)—ଚୂନପରି ଏକପ୍ରକାର ଧଳା ମାଟି, ଛୁହି; ଖଉ ମାଟି—White earth
Chhui
(ଛୁଇମାଟି—ଅନ୍ୟରୂପ)

[ ଦ୍ର—ଲୋକେ ଏହି ମାଟିରେ ଗୃହଆଦି ଲିପନ୍ତି; ଘର ଚୂନ ଲିପିଲା ପରି ଦିଶେ; ଛୁଇ ଦୁଇପ୍ରକାର, ୧ । ଈଷତ୍ ମାଟିଆ; ୨ । ଖୁବ୍ ଧଳା; ଇଟା ପଥରଆଦି ଗାନ୍ଥିନ କରିବାରେ ଚୂନ ଯେପରି ଅଠାଭଳି ଧରେ ଏ ମାଟି ସେପରି ଧରେ ନାହିଁ । ]

(ବସ୍ତର) ବ—ଦୁଧଖଡ଼ି, ଚକ୍ ଖଡ଼ି —Chalk.

ଛୁଇଁ—ଦେ. ବ ( ସଂ ଶିମ୍ବ )—ଶଜନାଆଦି ବୃକ୍ଷର ସରୁ ଲମ୍ବ ଫଳ; ଲମ୍ବ ଓ ସରୁ ବୀଜକୋଷ—Long slender stalk-like fruit of certain plants; a legume; pod.
Chhuiñ
ଡା ଠା, ଖାଡା
फली; छीमी; ढूंडी; छिम्रि

ଛୁଇଁବା—ଦେ. କ୍ରି—୧ । ( ସଂ. ଛୁପ୍ ଧାତୁ; ଭୁଲ = ପାଲି. ଛୁପ୍ପ ) ସ୍ପର୍ଶ କରିବା—1. To touch; to come in contact with.
Chhuiñbā
ଛোঁয়া, ছুঁআ
छुना

ଦବାହ ନବାହେ କେ ଚରଣ ଛୁଇଁ ଉଦ୍ଧର କଲେ ସସବ—
ଉପେନ୍ଦ୍ରଭଞ୍ଜ, ବୈଦେହୀଶବିଳାସ ।

୨ । (ସଂ. ଛଦ ଧାତୁ) ଛପର କରିବା—2. To thatch.

ଛୁଇମାଟି—ପ୍ରାଦେ (ବସ୍ତର, ସମ୍ବଲପୁର) ବ ( ସଂ. ଶ୍ୱେତ ମୃତ୍ତିକା ) ଛୁଇ (ଦେଖ) —Chhui (See)
Chhui-māti

ଛୁକ୍ଲା—ପ୍ରା. ଦେ. (ସମ୍ବଲପୁର) ବ. (ସଂ. ଛଲ୍ଲୀ)—ଛାଲ; ଭକ୍—Bark of tree.
Chhuk-lā

ଛୁ କରିବା—ଦେ. କ୍ରି.—ଗୋପନରେ ପଳାଇବା—To flee away; to give the slip; to slip away unnoticed
Chhu karibā
চম্পট মারা
छू होना, छू बनना
(ଛୁ ଦେବା; ଛୁ ବଢାଇବା; ଛୁ ବଢେଇବା—ଅନ୍ୟରୂପ)

ଛୁଙ୍କ—ଦେ. ବ.—(ଧ୍ୱନ୍ୟନୁକାରୀ ଶବ୍ଦ)—୧ । ଛଅଣ ଆଦି ବଘାରିବା; ବଘାର—1. Frying or seasoning the already boiled curry with a little oil or ghee and spices
Chhuṅka
ছোঁক, ফোড়ন
छौंक

୨ । ଛଅଣ ଆଦି ଘିଅ ଓ ମସଲାଦ୍ୱାରା ବଘାରିବାର ବାସନା—2. The smell issuing during the operation of frying boiled curry with oil or ghee.

ଛୁଙ୍କ ଦେବା—ଦେ. କ୍ରି.—ଛୁଙ୍କିବା (ଦେଖ) Chhuṅkibā (See)
Chhuṅka debā

ଛୁଙ୍କିବା—ଦେ. କ୍ରି ( ଧ୍ୱନ୍ୟନୁକାରୀ ଶବ୍ଦ )—ଅଳ୍ପ ଘିଅ ବା ତେଲରେ ଲଙ୍କାମରିଚ ଓ ସୋରିଷ ଆଦି ଦାଣ୍ଡିଫୁଟାଇ ଫୁଟାଇ ତହିଁରେ ସିଦ୍ଧ ଛଅଣ ବା ପରିବାକୁ ବଘାରିବା—To season the already boiled curry with a little oil or ghee and spices singed in oil.
Chhuṅkibā
ছোঁকা
छौंकना

ଛୁଚି—ଗ୍ରା. ବିଣ. (ସଂ. ଶୁଚି)—ଶୁଚି—Pure; cleanly.
Chhuchi

ଗ୍ରା. ବି. (ସଂ ଶୌଚ)—ଶୌଚ—Cleanliness.

ଛୁଚିବାଇ—ଗ୍ରା. ବି. ( ସଂ. ଶୁଚି ବାୟୁ )—ଅତିରିକ୍ତରୂପେ ସର୍ବଦା ଶୁଚି ରହିବାର ଖିଆଲ ବା ଅଭ୍ୟାସ; ଅତ୍ୟଧିକ ଶୁଚିତା-ରକ୍ଷା—Excessive sentimentality in keeping away from untouchable things.
Chhuchi-bāi
ছুচিবাই

ଗ୍ରା. ବିଣ.—ଛୁଚିବାଇଆର ସ୍ତ୍ରୀଲିଙ୍ଗ—Feminine of Chhuchibāiā.

ଛୁଚିବାଇଆ—ଗ୍ରା. ବିଣ. ପୁଂ (ସଂ. ଶୁଚି+ବାତୁଳ)—ସର୍ବଦା ଶୁଚି ରହିବା ଓ ଅସ୍ପୃଶ୍ୟ ବ୍ୟକ୍ତି ବା ବସ୍ତୁକୁ ନ ଛୁଇଁବା ଯାହାର ଅଭ୍ୟାସ—Excessively sentimental in keeping away from untouchable or unclean things and persons.
Chhuchi-bāiā
ছুচিবেয়ে
(ଛୁଚିବାଇ—ସ୍ତ୍ରୀ)
(ଛୁଚିବାୟା—ଅନ୍ୟରୂପ)

ଛୁଚୁନ୍ଦରୀ—ଦେ. ବ. ଓ ବିଣ—ଛୁଛୁନ୍ଦରୀ (ଦେଖ) Chhuchhundarī (See)
Chhuchundarā
(ଛୁଚୁନ୍ଦୁରୀ, ଛୁଚୁନ୍ଦ୍ରା—ଅନ୍ୟରୂପ)

ଛୁଛା—ପ୍ରାଦେ. (ସମ୍ବଲପୁର) ବିଣ (ସଂ. ତୁଚ୍ଛ; ପ୍ରା. ଛୁଚ୍ଛ, ଭୁଲ. ଏହି ଅର୍ଥରେ ହି. ଛୁଁଛା)—୧ । ଛୁଚ୍ଛା; ଖାଲି; ରିକ୍ତ—1. Empty.
Chhuchhā
খালি
खाली

୨ । କେବଳ—2. Sole; single.
୩ । ଏକାକୀ—3. Alone; solitary.

କ୍ରି. ବିଣ.—କେବଳ—Only.

ଛୁ ଛା କରିବା—ଦେ. କ୍ରି—ଗୋପନରେ ପଳାୟନ କରିବା—To flee or slip away.
Chhu chhā karibā
[ଛୁ ଛା ଦେବା, ଛୁ ଛା ବଢା (ଢେ)ଇବା—ଅନ୍ୟରୂପ]

ଛୁଛାକେ—ପ୍ରା. ଦେ. ( ସମ୍ବଲପୁର ) କ୍ରି. ବିଣ—ବୃଥା; ଅକାରଣରେ; ଛୁଚ୍ଛାଟାରେ—In vain
Chhuchhāke
(ଛୁ ଛା ଲାଗି—ଅନ୍ୟରୂପ)

ଛୁଛୁ—ପ୍ରାଦେ. (ସମ୍ବଲପୁର) ବ. ( ସଂ. ଛୁଚ୍ଛୁନ୍ଦରୀ; ଭୁଲ. ହି. ଛୁଁଛ )—ଚୂଚୁନ୍ଦ୍ରା—Mole.
Chhuchhu

ଛୁଛୁନ୍ଦରା—ଦେ. ବ ଓ ବିଣ—ଛୁଛୁନ୍ଦରୀ (ଦେଖ) Chhuchhundarī (See)
Chhuchhundarā
ছুঁচা
छुँचा
(ଛୁଛୁନ୍ଦରୀ; ଛୁଛୁନ୍ଦୁରୀ; ଛୁଛୁନ୍ଦ୍ରୀ—ଅନ୍ୟରୂପ)

ଛୁଛୁନ୍ଦରୀ—ସଂ. ବ. (ଛୁଛୁ=ଅବ୍ୟକ୍ତ ଶବ୍ଦ+ଦ ଧାତୁ=ବିଦାରଣ କରିବା +କର୍ତ୍ତୃ. ଅ+ସ୍ତ୍ରୀ. ଈ)—୧ । ଚୂଚୁନ୍ଦ୍ରା; ଗନ୍ଧମୂଷିକ—1. Musk-shrew; mole; musk-rat; Crocudura Caerula.
Chhuchhundarī

ଦେ. ବିଣ—୧ । ନିର୍ଲଜ୍ଜ—1. Shameless.

୨ । ଶ୍ରେଷ୍ଠ (ଲୋକ); ନୀଚପ୍ରକୃତିକ (ଲୋକ)—
2. Low; mean (person).
୩ । ଲୋଭୀ; ପେଟୁ—3 Ravenous; always hankering after food from other.' tables.

**ଛୁଞ୍ଚ**—ଦେ. ବି - ୧ । (ପାନବରଜା ଭାଷା)—ପାନବରଜର ମୁଠାର ଖଣ୍ଟି ଉପରେ ପଡ଼ିଥିବା ଶେଣୀର ଉପରେ ପକାଯିବା ଲମ୍ବା ବାଉଁଶ—1 A big bomboo put on the wall-plate of a betel-plantation.
Chhuñcha

ଛୁତା; ଛେଁଚ ୨ । (ସଂ ସେଚନ) ସକାଳୁ ସ୍ତ୍ରୀଲୋକଙ୍କର ଘର ଓ ଅଗଣା ଲିପିବା କର୍ମ—2. The act of washing of the mud-floor of the house and the courtyard every morning by females of the house.

**ଛୁଞ୍ଚକନା**—ଦେ. ବି.—ଯେଉଁ କନାରେ ସ୍ତ୍ରୀଲୋକମାନେ ଘରତଳ ଓ ଅଗଣା ପ୍ରତିଦିନ ସକାଳେ ଲିପନ୍ତି—The piece of rag used by females for besmearing the mud-floor and courtyard.
Chhuñcha-kanā

**ଛୁଞ୍ଚ ଦେବା**—ଦେ. କ୍ରି—୧ । (ସଂ. ସେଚନ) ସକାଳୁ ଗୋବରପାଣିରେ ଅଗଣା ଆଦି ଲିପିବା—1. To wash the courtyard and floor of the house with cowdung-water every morning.
Chhuñcha debā
ଛୁତା ଦେଓୟା

୨ । ( ସଂ. ସୂଚନା ) ଉଲୁଗୁଣା ଦେବା; ଘଟିଥିବା କୌଣସି ଗୋଟିଏ କଥାକୁ ଦରକାର ବେଳେ ପୁନଃପୁନଃ କହିବା—
2. To allude to a past thing repeatedly.

ପ୍ରାଦେ. (ବାଲେଶ୍ୱର) କ୍ରି—୧ । ଖୁଞ୍ଚା ମାରିବା; ସ୍ଥାନେ ସ୍ଥାନେ ଚାଳରୁ ଛଣ ଉଲୁରି ଯାଇଥିବା ସ୍ଥାନରେ କୁଟା ଗୁଞ୍ଜିବା—
1. To put straw at places in the thatch where it has come out.

**ଛୁଞ୍ଚପତ୍ର**—ଦେ. ବି—୧ । ଛିଞ୍ଚିପତ୍ର (ଦେଖ)
Chhuñcha-patra 1. Chhiñchi-patra (See)
୨ । ଭାତଥାଳ ପାଖେ ଲୁଣଆଦି ବାଢ଼ିବା ନିମନ୍ତେ ନାନା କୌଶଳରେ କଟା ଯାଇଥିବା ଗୋଲ କଦଳୀପତ୍ରଖଣ୍ଡ—
2. A circular piece of plantain leaf cut into various artistic designs for serving salt near a plate of rice.
(ଛୁଞ୍ଚପତର—ଅନ୍ୟରୂପ)

**ଛୁଞ୍ଚପାଣି**—ଦେ. ବି—ପ୍ରତ୍ୟହ ସକାଳେ ଘର ଓ ଅଗଣାଆଦି ଲିପିବାରେ ବ୍ୟବହୃତ ଗୋବରପାଣି—Water mixed with cowdung used in washing the courtyard and mud-floor every morning.
Chhuñcha-pāṇi
ଛୁତାଜଲ; ଛେଁଚଜଲ

ଛୁଞ୍ଚପାଣି ହାତ ଧୋଇବାକୁ ବେଳ ନାହିଁ ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

**ଛୁଞ୍ଚହାଣ୍ଡି**—ଦେ. ବି.(ସଂ ସେଚନ + ହାଣ୍ଡିକା)—ନିତ୍ୟ ସକାଳେ ଘରଦ୍ୱାର ଲିପିବା ପାଇଁ ଯେଉଁ ହାଣ୍ଡିରେ ମାଟିଗୋବର-ମିଶା ପାଣି ଥାଏ—An earthen pot containing water mixed with cowdung for smearing the mud-floor and courtyard every morning.
Chhcuñha-hāṇḍi
ছুতহাঁড়ি; ছেঁচহাঁড়ি
ছড়াহাঁড়ি

**ଛୁଞ୍ଚି**—ଦେ. ବି. (ସଂ. ସୂଚୀ)—ଲୁଗା ସିଇଁବାର ସରୁ ମୁନିଆଁ କଣ୍ଟା—Needle
Chhuñchi
ছুঁচ
सुई

[ ଦ୍ର—ଏଥିର ଅଗପାଖ ମୁନିଆଁ ଓ ମୂଳପାଖରେ ସୂତା ଗଳାଇବା ପାଇଁ ଗୋଟିଏ କଣା ଥାଏ । ]

**ଛୁଞ୍ଚିଆ**—ଦେ. ବିଣ (ସଂ. ସୂଚ)—ଛୁଞ୍ଚିପରି ମୁନିଆଁ—
Chhuñchia Sharp-pointed; needle-pointed.
ଦେ. ବି – ୧ । ଅନେକଟିର ବା ଏକାଧିକ ନଳା ଥିବା ପୋଲର ଫୁକାରମାନଙ୍କର ମଝିରେ ଥିବା ଅଗଗୋଜିଆ ସ୍ତମ୍ଭର ମୁନିଆଁ ପ୍ରାନ୍ତ—1. The pointed ends of a pier or masonry-pillar of an anicut or bridge having more than one span.
୨ । ଛୁଞ୍ଚିଆ ବତା (ଦେଖ)
2 Chhuñchiā batā (See)

**ଛୁଞ୍ଚିଆ ବତା**—ଦେ. ବି—ଚାଳରୁ ଛଣ ଉଡ଼ି ନ ଯିବା ପାଇଁ ଚାଳ ଉପରେ ବନ୍ଧାଯିବା କ୍ଷୁଦ୍ର ବତା—
Chhuñchiā batā
Small scantlings of split bamboo attached to the thatch to keep the straw in position.

**ଛୁଞ୍ଚିଆ ବାନ୍ଧିବା**—ଦେ. କ୍ରି—ଛପର ଉପରେ ଛୁଞ୍ଚିଆବତା ଦଉଡ଼ିଦ୍ୱାରା ସଂଲଗ୍ନ କରିବା—To tie small pieces of split bamboo over a thatch.
Chhuñchiā bāndhibā
ଛୁଞ୍ଚିଆ ଦେବା,
ଛୁଞ୍ଚିଆ ଭିଡ଼ିବା } ଅନ୍ୟରୂପ
ଛୁଞ୍ଚିଆ ମାରିବା

**ଛୁଞ୍ଚିକନା**—ଦେ. ବି (ସଂ. ସେଚନ+କର୍ଣ୍ଣି)—ପ୍ରତିଦିନ ଘର ଓ ଅଗଣା ଲିପିବା ନିମିତ୍ତ ବ୍ୟବହୃତ ଛିଣ୍ଡା କନା; ମାଟିଗୋବର-ନେତା କନା—A rag used in smearing the mud-floor of a house and courtyard with mud and cowdung mixed with water.
Chhuñchi-kanā
নেতা

ଘର ଘରଣୀଏ ଛାଡ଼ି ଛୁଞ୍ଚିକନା ରନ୍ଧାବଡ଼ାକୁ ଉଦାସୀ ।
ଉକାସ. ଗୀତଲହରୀ ।

**ଛୁଞ୍ଚିଗଲା**—ଦେ. ବି.—(ଆଧୁନିକ ବ୍ୟବହାର)—ଫମ୍ପା ଛୁଞ୍ଚି ମଧ୍ୟରେ ଦ୍ରବ ଔଷଧ ଚଳାଇ ରୋଗୀର ଶରୀରକୁ ଫୋଡ଼ି ଉକ୍ତ ଔଷଧକୁ ଶିରାଦ୍ୱାରା ରୋଗୀର ରକ୍ତରେ ସଞ୍ଚାଳିତ କରିବା କ୍ରିୟା Injection; hypodermic injection.
Chhuñchi-galā
সূচ বিংধা
**सुई बिंधना**
(ଛୁଞ୍ଚି ଫୋଡ଼ା; ଛୁଞ୍ଚିମରା—ଅନ୍ୟରୂପ)

| ୧ | ଇ | ଉ | ର୍,ଋ | ୠ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଈର୍ଯ୍ୟ | ଋଥ | ଧ୍ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଏ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଥ | ଝ | ନ୍ଧ |

**ଛୁଞ୍ଚିପତ୍ର** —ଦେ. ବି—୧ । ଛିଞ୍ଚିପତ୍ର (ଦେଖ)
Chhuñchi-patra 1. Chhiñchi-patra (See)
(ଛୁଞ୍ଚିପତର—ଅନ୍ୟରୂପ) ୨ । ଛୁଞ୍ଚପତ୍ର (ଦେଖ)
2. Chhuñcha-patra (See)

**ଛୁଞ୍ଚିବାଇ**—ଦେ. ବି ଓ ବିଣ—ଛୁଚିବାଇ ( ଦେଖ )
Chhuñchi-bāi Chhuchi-bāi ( See )

**ଛୁଞ୍ଚିବାଇଆ**—ଦେ. ବିଣ. ପୁଂ—ଛୁଚିବାଇଆ ( ଦେଖ )
Chhuñchibā-iā Chhuchi-bāiā (See)
(ଛୁଞ୍ଚିବାଇ—ସ୍ତ୍ରୀ)
(ଛୁଞ୍ଚିବାଯ୍ଯା—ଅନ୍ୟରୂପ)

**ଛୁଞ୍ଚିମାଛି ପରଖ**—ଦେ. ବି—ଅତି ସୂକ୍ଷ୍ମ ପରୀକ୍ଷା; ପୁଙ୍ଖାନୁପୁଙ୍ଖ ପର୍ଯ୍ୟବେକ୍ଷଣ—
Chhuñchi-māchhi parakha Very close scrutiny; minute examination.
(ଛୁଞ୍ଚିମାଛି ପରୀକ୍ଷା—ଅନ୍ୟରୂପ)

**ଛୁଞ୍ଚି ମାରିବା**—ଦେ. ବି—ଦେହରେ ସୂଚିବେଧ ପରି ବେଦନା ଅନୁଭୂତି—
Chhuñchi māribā Pinpricks; sensation resembling that due to piercing the body with a needle.
ছুঁচ মারা
सुई मारना
( ଯଥା—ମୋ କଙ୍କାଳକୁ ଘଣ୍ଟାଏ ହେଲା ଛୁଞ୍ଚି ମାରି ଦେଉଛି । )

**ଛୁଞ୍ଚିମୁନିଆଁ** (ପକ୍ଷୀ)—ଦେ. ବି. (ସଂ. ଟୁଣ୍ଟୁକ; ଭୂକବାସ୍ୟ; ସୌଚିକ )—
Chhuñchi-muniāñ (bird) ଶାଖାଶ୍ରୟୀ କ୍ଷୁଦ୍ର ପକ୍ଷିବିଶେଷ—
টুনটুনী The Indian Tailor-bird; Orthomus Sutorius.
[ ଦ୍ର—ଏ ୨।୨ ଅଙ୍ଗୁଳ ଲମ୍ବା; ଏହାର ଡାକ 'ଟୁଇଇ, ଟୁଇଇ'; ଏହାର ଚଞ୍ଚୁ ଓ ମସ୍ତକ ସମାନ ପାର୍ଶ୍ୱ; ଚଞ୍ଚୁ ସରୁ ଓ ଦୀର୍ଘ—ଏମାନେ ଥଣ୍ଟରେ ଏକାଧିକ ପତ୍ରର ଧାରକୁ ସିଲେଇ କରି ବସା ନିର୍ମାଣ କରନ୍ତି । ]

**ଛୁଞ୍ଚିମୁହାଁ**—ଦେ. ବିଣ ପୁଂ ( ସଂ. ସୂଚ + ମୁଖ )—( ପୁରୁଷଙ୍କୁ ଦିଆଯିବା ଗାଳି) (a term of abuse applied to males)—ଯେଉଁ ବ୍ୟକ୍ତିର ମୁହଁ ବା ଓଠ ଗୋଲିଆ ହୋଇ ବାହାରି ଥାଏ—(a person) Having the lips protruding to a point.
Chhuñchi-muhāñ
(ଛୁଞ୍ଚିମୁହାଁ—ସ୍ତ୍ରୀ)
[ ଦ୍ର—ଏପରି ଲୋକ ରୂପ୍‌ସଇତାନ୍ ଓ କ୍ରୋଧୀ ହୁଅନ୍ତି । ]

**ଛୁଟ୍‌କୁରିଆ**—ଦେ. ବିଣ—ସାମାନ୍ୟ; ଛୋଟ—
Chhuṭ-kuriā Petty; small.
ছোটখাট × × × ଅତି ଶିବପୁର ବଜାରର ଛୁଟକୁରିଆ
फुटकर ବିକିଅ ସମସ୍ତ ଦୋକାନ ନମସ୍କିତ ହୋଇଗଲେ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଛୁଟ୍‌ଛୁଟ୍**—ଦେ. କ୍ରି. ବିଣ—୧ । ମୁହୂର୍ତ୍ତେ ମୁହୂର୍ତ୍ତେ; ଅନୁକ୍ଷଣ—
Chhuṭ-chhuṭ 1. Every moment; at very short intervals.
( ଯଥା— ସେ ଛୁଟ୍‌ଛୁଟ୍ ଗୋଡଉଛି ଦଉଡୁଛି । )
୨ । ଛଟପଟ ( ଦେଖ )
2. Chhaṭa-paṭa ( See )
( ଯଥା—ଖାଇବାକୁ ନ ପାଇଁ ପିଲା ଗୁଡ଼ିକ ଛୁଟ୍‌ଛୁଟ୍ ହୋଇ ମଲେ । ) (ଛୁଟ୍‌ପୁଟ୍, ଛୁଟୁଛୁଟୁ, ଛୁଟୁପୁଟୁ—ଅନ୍ୟରୂପ)
[ ଦ୍ର—'ଛଟଛଟ' ଅପେକ୍ଷା 'ଛୁଟ୍‌ଛୁଟ୍' କ୍ଷୁଦ୍ର ଭାବ୍ୟଞ୍ଜକ, ଛୁଟ୍‌ଛୁଟ୍ ଅପେକ୍ଷା ଛୁଟୁରୁଛୁଟୁ ରୁ ଅଧିକ କ୍ଷୁଦ୍ର ଭାବ୍ୟଞ୍ଜକ । ]

**ଛୁଟ୍** (ଧାତୁ)—ସଂ.—୧ । ବନ୍ଧନ କାଟିବା—
Chhuṭ (root) 1. To cut a bond.
୨ । କାଟି କରି ଅଲଗା କରିବା—2 To cut off.

**ଛୁଟଣ**—ଦେ. ବି (ସଂ. ଛୁଟ୍ ଧାତୁ=ବନ୍ଧନ କାଟିବା, ହି . ଶବ୍ଦସାଗର)—
Chhuṭaṇa ୧ । ବିରାମ; ବିରତି—
ছুট 1. Cessation; remission.
छुट, छुटना ୨ । ମୁକ୍ତି—2. Liberation
୩ । ଅବସର; ବିଶ୍ରାମ; ଫୁରୁସତ୍—
3. Rest; leisure.
( ଯଥା—ମତେ କାମରେ ଦଣ୍ଡେ ଛୁଟଣ ନାହିଁ । )

**ଛୁଟା**—ପ୍ରାଦେ. (ବାଲେଶ୍ୱର ଓ ସମ୍ବଲପୁର) ବିଣ. ପୁଂ ( ଖେଣ୍ଟ ସ୍ଥାନରେ ଛୁ ଉଚ୍ଚାରଣ )—ଖେଣ୍ଟା—Lame.
Chhuṭā

**ଛୁଟାଇବା**—ଦେ. କ୍ରି. ( ସଂ. ଛୁଟ୍ ଧାତୁ=ବନ୍ଧନ କାଟିବା )—
Chhuṭāibā (ଛୁଟିବାର ଣିଜନ୍ତ ରୂପ)—
ছুটান ( causative of Chhuṭibā ).
छुटाना, छुड़वाना ୧ । ମୁକ୍ତ କରିବା; ମୁକୁଳାଇବା—
(ଛୁଟେଇବା—ଅନ୍ୟରୂପ) 1. To liberate; to set free.
୨ । ଢିଲାଇବା; ଢିଲାକରିବା—
2. To loosen; to slacken
୩ । ( ଶସ୍ତ୍ରାଦି ଅନ୍ୟର ଦେହରେ ) ପ୍ରହାର କରିବା; ଅନ୍ୟକୁ ପ୍ରହାର କରିବା ପାଇଁ ଅସ୍ତ୍ରାଦିକୁ ଚଳାଇବା—
3. To strike with ( a weapon ).
ଅର୍ଜ୍ଜୁନ ଶସ୍ତ୍ର କାଢ଼ି ଦେହେ ଛୁଟାଇଲେ । କୃଷ୍ଣସିଂହ. ମହାଭାରତ. ଶଲ୍ୟ ।
୫ । ଦଉଡ଼ାଇବା—
5, To cause to run; to send one running.
( ଯଥା—ଶିକାରୀ ମୃଗ ପଛରେ କୁକୁରକୁ ଛୁଟାଇଛି । )
୬ । ସ୍ରୋତ ବୁହାଇବା; ଜଳୀୟ ବସ୍ତୁକୁ ବହାଇବା—
6. To cause (a liquid) to flow; to discharge ( a liquid ).

**ଛୁଟାଛୁଟି**—ଦେ ବି—୧ । ଇତସ୍ତତଃ ଦଉଡ଼ାଦଉଡ଼ି; ଦଉଡ଼ାଧପଡ଼—
Chhuṭā-chhuṭi 1. Running to and fro.
ছুটাছুটি ୨ । ତ୍ୱରା; ଲଣ୍ଡଭଣ୍ଡ—2. Hot-haste; bustle,
छुटाछुटि, हड़बड़ि hurry-scurry.
୩ । ଏକର ପଶ୍ଚାତ୍ ଅନ୍ୟର ଧାବନ—
3. Chasing one another.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଁଟ୍ୟା ନ ପାଇଲେ 'ଆଣ୍ଟା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

**ଛୁଟି**—ଦେ. ବି. ( ସଂ. ଛୁଟ୍‌ ଧାତୁ=ବନ୍ଧନ କାଟିବା; କାଟି କରି ଅଲଗା କରିବା—ହି. ଶବ୍ଦସାଗର )—
Chhuṭi
ଛୁଟୀ
**ଛୁଟକାରା, ଛୁଟ୍ଟୀ**

୧ । କାର୍ଯ୍ୟରୁ ପୂର୍ବସେଡ଼୍‌ ବା ଅବକାଶ ମିଳିବା ସମୟ— 2. Holiday; vacation.
( ଯଥା—ଗ୍ରୀଷ୍ମ ଛୁଟି, ବଡ଼ଦିନ ଛୁଟି, ପୂଜା ଛୁଟି । )
୨ । କାର୍ଯ୍ୟରୁ ସାମୟିକ ବିଦାୟ— 2. Temporary leave from duty.
୩ । ଅବସର—3. Leisure.
୪ । ଖଲାସ; ମୁକ୍ତି—4. Release; discharge.
୫ । କାର୍ଯ୍ୟରୁ ନିବୃତ୍ତି— 5. Cessation of work; stoppage of work.
୬ । ସ୍କୁଲ, କଲେଜ, କାରଖାନା ଆଦିର ସାମୟିକ କାର୍ଯ୍ୟବନ୍ଦ— 6. Temporary closing or dismissal of a school, court or workshop.
(ଯଥା—୪ଟା ବାଜିଲେ ଇସ୍କୁଲର ଛୁଟି ହୁଏ ।)
୭ । କୌଣସି କାର୍ଯ୍ୟ କରିବା ପାଇଁ କର୍ତ୍ତୃପକ୍ଷଙ୍କଠାରୁ ମିଳିବା ଅନୁମତି—7. Permission given by an authority.
୮ । କୌଣସି ଦାୟିତ୍ୱରୁ ମୁକ୍ତି—8. Release or discharge from a responsibility.

ଦେ. ବିଣ—୧ । ମୁକ୍ତ; ମୁକ୍ତିପ୍ରାପ୍ତ; ଖଲାସ ହୋଇଥିବା— 1. Released; liberated.
( ଯଥା—୫ ଘଣ୍ଟା ନୌକରୀ କରାଇ ଦେଲେ ତେଣିକି ମୁଁ ଛୁଟି । )

ପ୍ରାଦେ. (ସମ୍ବଲପୁର) ବି—ଛୁଇ (ଦେଖ) Chhui (See)

ପ୍ରାଦେ. (ବାଲେଶ୍ୱର ଓ ସମ୍ବଲପୁର; ଖେ ସ୍ଥାନରେ ଛୁ ଉଚ୍ଚାରଣ) ବିଣ. ସ୍ତ୍ରୀ—ଖୋଟୀ—Lame ( woman )
ବି. ସ୍ତ୍ରୀ—ଖଞ୍ଜ ସ୍ତ୍ରୀ—A lame woman.

**ଛୁଟିଦରମା**—ଦେ. ବି—କାର୍ଯ୍ୟରୁ ଅବସର ପାଇଥିବା ବ୍ୟକ୍ତିର ଅବସରକାଳର ବେତନ—The salary of a person for the period of his leave.
Chhuṭi-daramā
ଛୁଟିର୍‌ମାଇଁନା
**ଛୁଟ୍ଟୀକା ତନଖ୍ୱାହ**

**ଛୁଟିଦିନ**—ଦେ. ବି—ଅବସରବାସର; ଯେଉଁ ଦିନ ସ୍କୁଲ, କଲେଜ ବା କାରଖାନା ଆଦିର କାମ କୌଣସି ବିଶେଷ ଉପଲକ୍ଷରେ ବନ୍ଦ ଥାଏ—Holiday; vacation-time; recess.
Chhuṭi-dina
ଛୁଟିର ଦିନ
**ଛୁଟ୍ଟୀକା ରୋଜ**

**ଛୁଟି ଦେବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିଙ୍କୁ କାର୍ଯ୍ୟରୁ ସାମୟିକ ବା ନିର୍ଦ୍ଦିଷ୍ଟ କାଳପାଇଁ ଅବସର ଦେବା— 1. To grant leave
Chhuṭi debā
ଛୁଟି ଦେଓଯା
**ଛୁଟ୍ଟୀ ଦେନା**

୨ । (ବନ୍ଧନରୁ, ସ୍କୁଲରୁ, ମକଦ୍ଦମାରୁ, ଦାୟିତ୍ୱରୁ ) (ଛୁଟି କରିବା—ଅନ୍ୟରୂପ) କୌଣସି ବ୍ୟକ୍ତିଙ୍କୁ ଖଲାସ ଦେବା; ମୁକ୍ତି ଦେବା—2 To release; to discharge; to acquit.
୩ । ସ୍କୁଲ ବା କଚେରି ଆଦିର କାର୍ଯ୍ୟ ସ୍ଥଗିତ କରିବା ବା ଭାଙ୍ଗିବା—3. To dismiss a court or school.

**ଛୁଟି ପାଇବା**—ଦେ. କ୍ରି—୧ । କାର୍ଯ୍ୟରୁ ଅବସର ପ୍ରାପ୍ତ ହେବା— 1. To get leave.
Chhuṭi pāibā
ଛୁଟି ପାଓଯା
**ଛୁଟ୍ଟୀ ପାନା**

୨ । ଖଲାସ ହେବା—2. To be released, acquitted or discharged.

**ଛୁଟିବା**—ଦେ. କ୍ରି. ( ସଂ. ଛୁଟ୍‌ ଧାତୁ=ବନ୍ଧନ ଆଦି କାଟିବା ହି. ଶବ୍ଦସାଗର; ସଂ. କ୍ଷିପ୍ତ ପ୍ରା. ଛୁଟ—ଯୋଗେଶ ଚନ୍ଦ୍ର)—
Chhuṭibā
ଛୁଟା; ଛୋଟା
**ଛୁଟନା**
[ଛୁଟା(ଟେ)ଇବା—ଣିଜନ୍ତ]

୧ । ଜୋରରେ ଚାଲିବା; ଦଉଡ଼ିବା— 1. To run; to move with force.
୨ । ପଳାଇଯିବା— 2 To flee away; to escape.
୩ । (ତରଳପଦାର୍ଥ) କୌଣସି ସ୍ଥାନରୁ ବାହାରି ବେଗରେ ବହିବା—3 To flow out; to gush forth (said of a liquid).
(ଯଥା—ଭଙ୍ଗା କାଚ ବାଜିଯିବାରୁ ତା ଦେହରୁ ରକ୍ତ ଛୁଟୁଛି ।)
୪ । (ସମୟ) ଅତିବାହିତ ହେବା— 4. (the time) To run.
୫ । ବିନଷ୍ଟ ହେବା— 5. To be ruined or destroyed.
ଛୁଟିଲେ ସଃ ଭୋଗେ ବୋଲିବେ ମତା
ଛଟାଣ୍ଡି କାଟି ଘୋର ହୋଇବ ଲେଖା । ମନବୋଧ ଚଉତିଶା ।
୬ । ଲୋପ ପାଇବା; ବିଲୁପ୍ତ ହେବା— 6. To be lost; to disappear.
ଛୁଟି ଯାଉ କଚେଡନା, ଛଃପଃ ହେବ ସିନା—କବିସୂର୍ଯ୍ୟ, କଣୋପାଖ୍ୟାନ୍‌, ଛ ଗୀତ ।
୭ । ଫିଟିଯିବା; (ଗଣ୍ଠି ଆଦି) ଖୋଲିଯିବା— 7. (a knot) To get loose; to become slack
୮ । ( ଗୁଳି, ତୀର, ଉଲ୍କା ) ଖୁବ୍‌ଜୋରରେ ଗତିକରିବା— 8. (bullet, arrow, shooting star) To shoot forth.
୯ । ମୁକ୍ତଦ୍ୱାର ହେବା; ବାଧା ବା ବନ୍ଧନରହିତ ହେବାରୁ ତନ୍ମଧ୍ୟସ୍ଥ ପଦାର୍ଥ ବେଗ ସହିତ ବାହାରିବା— 9 To become loose or open.
(ଯଥା—ଆଜି କି ଭିନଦିନ ହେଲା ସେ ଶିଶୁର ଗାଣ୍ଡି ଛୁଟିଛି; କାଲି ସଞ୍ଜରୁ ସେ ବଥଟା ଛୁଟିଛି ।)

**ଛୁଟିମାଟି**—ପ୍ରାଦେ. (ସମ୍ବଲପୁର) ବି—ଛୁଇ (ଦେଖ) Chhui (See)
Chhuṭi-māṭi

**ଛୁଟି ମିଳିବା**—ଦେ. ବି—୧ । କାର୍ଯ୍ୟରୁ ସାମୟିକ ଅବସରପ୍ରାପ୍ତି— 1. Getting of leave.
Chhuṭi milibā
ଛୁଟି ମିଳା
**ଛୁଟ୍ଟୀ ମିଲନା**
(ଯଥା—ପୁଅ ବିଭାପାଇଁ ମୋତେ ୪ଦିନ ମାତ୍ର ଛୁଟି ମିଳିଲା ।)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଢ | ର୍‌,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ୟ | ଉଅ | ଛ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଂ୍ୟ | ଇଅ | ଞ୍ଚ | ନ୍ନ |

୨ । ଦାୟିତ୍ୱରୁ ମୁକ୍ତିଲାଭ—3. Being released or discharged from a responsibility.

୩ । କାର୍ଯ୍ୟରୁ ବିରତ ହେବା ପାଇଁ ଆଦେଶପ୍ରାପ୍ତି—3. Getting of permission to stop work.

୪ । ଫୁରସେତ୍ ବା ଅବକାଶ ପ୍ରାପ୍ତି—4. Getting of leisure.

୫ । ବନ୍ଧନ ବା କାରାବାସରୁ ମୁକ୍ତିଲାଭ—5. Release from confinement; being set free; liberation.

( ଛୁଟି ମିଳି ଯିବା—ଅନ୍ୟରୂପ )

**ଛୁଟିଯିବା**—ଦେ. କ୍ରି.—ଛୁଟିବା (ଦେଖ)
Chhuṭi-jibā — Chhuṭibā (See)
ছুটে যাওয়া
**छूट जाना**

**ଛୁଟି ହେବା**—ଦେ. କ୍ରି.—୧ । ( କୌଣସି ବ୍ୟକ୍ତି ) କାର୍ଯ୍ୟରୁ ଅବସର ଲାଭ କରିବା—1. ( a person ) To get leave.
Chhuṭi hebā
ছুটি হওয়া
**छुट्टि होना**
୨ । (କୌଣସି ବ୍ୟକ୍ତି) ବନ୍ଧନ ବା ଜେଲରୁ ମୁକ୍ତ ହେବା—2. To be set free or released from confinement.

୩ । ( କୌଣସି ସ୍କୁଲ, କଲେଜ, କାରଖାନାର କର୍ମ ) ସ୍ଥଗିତ ହେବା—3. (a school, office or workshop) To be closed or stopped.

୪ । (ଚାକିରି, ଅବଲମ୍ବନ) ରହିତ ହେବା—4. (any post or service or support) To cease; to stop.

(ଯଥା—୩ ମାସ ହେଲା ମୋର ସର୍ଦ୍ଦାରୀ ଛୁଟି ଯିବାରୁ ମୁଁ ବେକାର ହୋଇ ବସିଛି ।)

**ଛୁଟୁକା**—ଦେ. ବିଣ.—(ସଂ. କ୍ଷୁଦ୍ର)—୧ । କ୍ଷୁଦ୍ର; ଖୁଚୁରା; ଟିକି; ଟିକିଟିକି, ଲଘୁ; ଅତି ଛୋଟ—1. Minute; petty; very small.
Chhuṭukā
ছুটলা, ছোটখাট
**अदना, छोटा**
୨ । ଅନିର୍ଦ୍ଦିଷ୍ଟ—2 Uncertain
(ଛୁଟୁକିଆ—ଅନ୍ୟରୂପ)—୩ । ତୁଚ୍ଛ—3. Insignificant.

**ଛୁଟୁକୁରିଆ**—ଦେ. ବିଣ.—ଛୁଟ୍‌କୁରିଆ (ଦେଖ)
Chhuṭukuriā — Chhuṭ-kuriā (See)

**ଛୁଟୁଛୁଟୁ**—ଦେ. କ୍ରି. ବିଣ.—(ଧ୍ୱନ୍ୟନୁକାରୀ)—ଛୁଟ୍‌ଛୁଟ୍ (ଦେଖ)
Chhuṭu-chhuṭu — Chhuṭ-chhuṭ (See)
(ଛୁଟୁରୁଛୁଟୁରୁ—ଅନ୍ୟରୂପ) [ ଦ୍ର—ଛଟଛଟ ଅପେକ୍ଷା ଛୁଟୁଛୁଟୁ କ୍ଷୁଦ୍ର ଭାବବ୍ୟଞ୍ଜକ; ଯଥା;—ଘୋଡ଼ାଟା ଛଟଛଟ ହୋଇ ମରିଗଲା, ଶିଶୁ ଗୁଡ଼ିକ ଛୁଟୁଛୁଟୁ ହୋଇ ମରିଗଲେ । ]

**ଛୁଟୁପୁଟୁ**—ଦେ. କ୍ରି. ବିଣ—(ଧ୍ୱନ୍ୟନୁକରଣ)—ଛଟପଟ (ଦେଖ)
Chhuṭu-puṭu — Chhaṭapaṭa (See)
(ଛୁଟୁରୁପୁଟୁରୁ—ଅନ୍ୟରୂପ)

[ ଦ୍ର—ଛଟପଟ ଅପେକ୍ଷା ଛୁଟୁପୁଟୁ କ୍ଷୁଦ୍ର ଭାବବ୍ୟଞ୍ଜକ, ଛୁଟୁପୁଟୁ ଅପେକ୍ଷା ଛୁଟୁରୁପୁଟୁରୁ ଅଧିକ କ୍ଷୁଦ୍ର ଭାବବ୍ୟଞ୍ଜକ ]

**ଛୁଡ଼ିବା**—ପ୍ରାଦେ. (ଗଞ୍ଜାମ, ବାଲେଶ୍ୱର, ସମ୍ବଲପୁର) କ୍ରି. (ସଂ. ଛୁଟ୍ ଧାତୁ)—ଛୋଡ଼ିବା ( ଦେଖ )
Chhurḍibā — Chhorḍibā (See)

କେଉଁ ପାଇକର ବାହାର ଅଛି ଅସ୍ତ୍ର,
କବ ପଢ଼ିଛି ମରି ଛୁଡ଼ି ଦେଇ ବାଣ । କୃଷ୍ଣସିଂହ, ମହାଭାରତ, ଦ୍ରୋଣ ।

**ଛୁତ**—ଦେ. ବି. (ସଂ. ସ୍ୟନ୍ଦିତ=ସ୍ରବୁଥିବା)—ପ୍ରସ୍ରାବ—Urine.
Chhuta

ତେମୀ ସାବୁପଟାଳରେ ପାଣି (ଛୁତ) ଧରି ଗାଈଟିକୁ କ କହି ବେଁଦ୍ୟବୁଥାଇଲୁ ଥାଇଁସ । ଫକୀରମୋହନ, ଗଳ୍ପସ୍ୱଳ୍ପ ।

**ଛୁତକ**—ଦେ. ବି. (ସଂ. ସୂତକ)—୧ । ଛୁତକିଆ (ଦେଖ)—1. Chhutkiā (See)
Chhutaka
**छुतक**
୨ । ଛୁତା (ଦେଖ)—2. Chhuta (See)
(ମୃତକ—ବିପରୀତ)

ଦେ. ବିଣ. ( ସଂ. ସ୍ପୃଷ୍ଟ )—ଅଶୁଚିବ୍ୟକ୍ତିଦ୍ୱାରା ସ୍ପୃଷ୍ଟ ହେବାରୁ ଅଶୁଚି—Contaminated by the touch of an unclean person.

ଶୁଦ୍ଧ ଅନ୍ନ ନ ଭକ୍ଷି ଛୁତକ ଅନ୍ନମାନ,
ଉପାସନା ନଇବେଦ୍ୟ ନ କରିବ ଭିନ୍ନ । ପ୍ରାଚୀ, ଶ୍ରୀ ଗୁରୁଭକ୍ତି ଗୀତା ।

**ଛୁତ ଦେବା**—ପ୍ରାଦେ (ଯାଜପୁର) କ୍ରି—ଗାଈ ବା ବଳଦ ବିକ୍ରି କରିବା ବେଳେ, ବିକେତା କ୍ରେତାକୁ ଟିକିଏ ମାଟି-ଗୋବର ଓ କେତେଏ ଦୁବ ଘାସ ଦେବା—To hand over a bit of earth mixed with cowdung and a bunch of grass to the purchaser at the time of delivery of the head of cattle sold.
Chhuta debā

**ଛୁତ ପଡ଼ିବା**—ଦେ. ବି.—୧ । ପ୍ରସ୍ରାବ ସଙ୍ଗେ ସୂତା ପରି ଶୁକ୍ରପତନ ଲାଳ ପଡ଼ିବା; ପ୍ରମେହ ରୋଗ—1. Gonorrhoea in which threadlike mucus ( pus ) passes with the urine.
Chhuta parḍibā
୨ । ଛୁତପୋଡ଼ା (ଦେଖ)—2. Chhuta-porḍā (See)

**ଛୁତପୋଡ଼ା**—ଦେ. ବି.—ପ୍ରସ୍ରାବପୋଡ଼ା; ପ୍ରସ୍ରାବଦ୍ୱାରରେ ଯନ୍ତ୍ରଣା-ବୋଧ—A burning sensation in the urinary organs
Chhuta-porḍā
পেছাব জালা
**पासाब जलना**
(ଛୁତ ପୋଡ଼ିବା—ଅନ୍ୟରୂପ)

**ଛୁତା**—ଦେ. ବି. (ସଂ. ସୂତ୍ର)—ଛଳ; ବାହାନା—Pretence; excuse.
Chhutā
ছুতা
**छल**

ସାଧାରଣ ଲୋକେ ଅପର ପୃଷ୍ଠାରେ ସଚିତ ୧ ଢଙ୍ଗିର ଅକ୍ଷର ଓ ମାତ୍ରା ଏବଂ ୨ ଢଙ୍ଗିର ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଢଙ୍ଗିର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଢଙ୍ଗିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ।

**ଛୁତାର୍**—ପ୍ରାଦେ. (ମେଦିନୀପୁର) ବି. (ସଂ. ସୂତ୍ରଧର; ତୁଳ. ବଂ. ଛୁତାର)
Chhutāra ବଢ଼େଇ—Carpenter.

**ଛୁତି**—ଦେ. ବି. (ସଂ. ସ୍ପୃଶ ଧାତୁ)—୧। ସ୍ପର୍ଶଜନିତ ଅପବିତ୍ରତା; ସ୍ପର୍ଶ-
Chhuti ସଂକ୍ରାମକତା—1. Contamination or impurity
ছুত, ছুতুক caused by touch.
ଛୁତ (ଯଥା—ସେ ଛୁଆଁ ଛୁତି ନେଇ ଘରେ ପୂରିଛନ୍ତି।)
୨। କଳଙ୍କ; ଅପବାଦ—2. Stain; scandal.
୩। ଅଳିଆ; ଆବର୍ଜନା—3. Refuse matter.
୪। ଦାୟିତ୍ୱ—4. Responsibility.
୫। ସମ୍ପର୍କ—5. Connection.
(ଯଥା—ସେ କାଜମ ଶ୍ରାଦ୍ଧ ସବୁ ଛୁତି ଛଡ଼େଇ ଦେଇ ବସିଛନ୍ତି)
୬। ଛୁଇଁବା ଯୋଗୁଁ ରୋଗୀର ଦେହରୁ ଦେହାନ୍ତରକୁ ରୋଗବୀଜର ସଂକ୍ରମଣ—6. Communication of the virus of a disease by contagion; contagion.

**ଛୁତିଆ**—ପ୍ରାଦେ. (ବସ୍ତର) ବି. (ତୁଳ ହି. ଛୁତିହା=ଅଶୁଚି ବ୍ୟକ୍ତିର
Chhutiā ସ୍ପର୍ଶଜନିତ ଅଶୁଦ୍ଧ ପାତ୍ର; ଅସ୍ପୃଶ୍ୟ)—ଛୁଆଁ; ସ୍ପର୍ଶଜନିତ ଅଶୁଦ୍ଧି—Impurity due to touch; contamination by touch.
ବିଣ—୧। ଅସ୍ପୃଶ୍ୟ ବ୍ୟକ୍ତି ଛୁଇଁ ପକାଇବା ବା ଖାଇବା ଯୋଗୁଁ ଅଶୁଦ୍ଧ ହୋଇଥିବା (ପାତ୍ର)—1. (utensil) Contaminated by the touch of or by being used by an untouchable person.
୨। ଅସ୍ପୃଶ୍ୟ—2. Untouchable.

**ଛୁତିଆର୍**—ପ୍ରାଦେ. (ମେଦିନୀପୁର) ବି. (ତୁଳ ହି. ଛୁତିହର=ଅସ୍ପୃଶ୍ୟ-
Chhutiār ସ୍ପୃଷ୍ଟ ପାତ୍ର)—ଛୁତିଆ (ଦେଖ)
Chhutiā (See)

**ଛୁତିକା**—ଦେ. ବି—୧। (ସଂ. ସୂତକ)—ଛୁତିକିଆ (ଦେଖ)
Chhutikā 1. Chhutikiā (See)
୨। (ସଂ. ସୂତିକା)—ସୂତିକା (ଦେଖ)
2. Sūtikā (See)

**ଛୁତିକା ଜର**—ଗ୍ରା. ବି. (ସଂ. ସୂତିକାଜ୍ୱର)—ପ୍ରସବ ପରେ ପ୍ରସୂତିଙ୍କୁ
Chhutikā jara ଆକ୍ରମଣ କରିବା ମାରାତ୍ମକ ଜ୍ୱର—
সূতিকা জ্বর Puerperal fever; a very dangerous
जच्चा ज्वर kind of fever attacking women just after confinement.

**ଛୁତିକା ଝାଡ଼ା**—ଦେ. ବି. (ସଂ. ସୂତକ+ଝରଣ)—ସୂତିକା ଗ୍ରହଣୀ;
Chhutikā jhardā ପ୍ରସବର ଅବ୍ୟବହିତ ପରେ ବା ପୂର୍ବେ
সূতিকা বায়ু ପ୍ରସୂତିଙ୍କୁ ଧରିବା ଦୁଃସାଧ୍ୟ ଗ୍ରହଣୀ ରୋଗ—
जच्चा मोड़ा Dysentery attacking women before or after confinement

**ଛୁତିକିଆ**—ଦେ. ବି. (ସଂ. ସୂତକ)—୧। ସନ୍ତାନଜନ୍ମଯୋଗୁଁ ଜ୍ଞାତି-
Chhutikiā ମାନଙ୍କୁ ଲାଗିବା ଅଶୌଚ; ସୂତକାଶୌଚ; ଜନନାଶୌଚ—1. Uncleanness observed by the kinsmen on the birth of a child.
[ ଦ୍ର—ଶିଶୁଜନ୍ମର ୧୦ ଦିନ ପରେ ସୂତକଜନିତ ଅଶୌଚ ଦୂର ହୁଏ। ]
୨। ପରିବାରରେ ସନ୍ତାନଜନ୍ମ—
2 Birth of a child in the family.

**ଛୁତି ଛଡ଼ାଇବା**—ଦେ. କ୍ରି—ସମ୍ପର୍କ ବା ଦାୟିତ୍ୱ ଲୁଚାଇ କୌଣସି କାର୍ଯ୍ୟରୁ
Chhuti chhardaiba ସମ୍ପୂର୍ଣ୍ଣଭାବରେ ଅଲଗା ହେବା—
(ଛୁତି ଛଡ଼େଇବା—ଅନ୍ୟରୂପ) To cut off all connection; to disown responsibility.

**ଛୁତିରିକା**—ଗ୍ରା. (ଇତର) ବି—ଛୁତିକିଆ (ଦେଖ)
Chhutirikā Chhutikiā (See)
(ଛୁକିରିକା—ଅନ୍ୟରୂପ)

**ଛୁତୁକ**—ଗ୍ରା. ବି. (ସଂ ସୂତକ)—୧। ଜନ୍ମ—
Chhutuka 1. Birth of a child.
ନାହିଁ ତାଙ୍କର ଛୁତୁକ ମୃତ୍ୟୁକ। ଯାଜ୍ଞ. ପରଦେଶୀଗୀତା।
୨। ଜନନାଶୌଚ, ଛୁତିକିଆ (ଦେଖ)
2. Chhutikiā (See)
ଦେ. ବିଣ—ଶିଶୁଜନ୍ମ ସମ୍ବନ୍ଧୀୟ—
Pertaining to childbirth.

**ଛୁ ଦେବା**—ଦେ. କ୍ରି—ଛୁ କରିବା (ଦେଖ)
Chhu debā Chhu karibā (See)
[ଛୁ ବତା(ତେ)ଇବା—ଅନ୍ୟରୂପ]

**ଛୁନା**—ଦେ. ବିଣ. (ସଂ. କ୍ଷୁଣ୍ଣ)—ଦୁଃଖିତ; ଚକିତ—
Chhunā Anxious; sorry; distracted.

**ଛୁନୁଛୁନିଆଁ**—ଦେ. ବି—ସୁଣୁସୁଣିଆଁ (ଦେଖ)
Chhunu-chhuniāñ Sunu-suniāñ (See)

**ଛୁନ୍ଦାର୍**—ପ୍ରାଦେ. (ସମ୍ବଲପୁର) ବି. (ସଂ. ସମ୍ମୁଖ+ଦ୍ୱାର)—
Chhundār ଛାମୁ ଦୁଆର (ଦେଖ)
Chhāmu-duāra (See)

**ଛୁପ୍** (ଧାତୁ)—ସଂ—ସ୍ପର୍ଶ କରିବା—
Chhup (root) To touch.

**ଛୁପ**—ସଂ. ବି. (ଛୁପ୍ ଧାତୁ+ଭାବ. ଅ)—୧। ସ୍ପର୍ଶ—1. Touch.
Chhupa ୨। ଯୁଦ୍ଧ—2. Fight.
୩। ଚପଳତା—3. Haste
ছুপ ଦେ. ବି—୧। (ସଂ. କ୍ଷୁପ)—ବୁଦା—1. Bush.
छुप ୨। କ୍ଷୁଦ୍ର ଗଛ—2. Plant.
ଗ୍ରା. ବି—ଛେପ—Spittle

| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଙ୍ଘ | ଙଅ | ଙ୍ଗ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଜ | ନ୍ତ |

ଛୁ ବଟା(ଟେ)ଇବା—ଦେ. କ୍ରି—ଛୁ କରବା (ଦେଖ)
Chhu batā(e)ibā Chhu kariba (See)

ଛୁୟା—ପ୍ରାଦେ. (ମେଦନୀପୁର) ବି.—ଛୁଆଁ (ଦେଖ)
Chhuyā Chhuāñ (See)

ଛୁର୍ (ଧାତୁ)—ସଂ.—୧ । ଛେଦନ କରବା; କାଟିବା—
Chhur (root) 1. To cut.
୨ । ରଞ୍ଜିତ କରବା; ରଙ୍ଗାଇବା—
2. To paint; to besmear.

ଛୁର୍କି—ପ୍ରାଦେ. (ସମ୍ବଲପୁର) ବି. (ସଂ. ଛୁର)—ନୀଚଜାତୀୟା ସ୍ତ୍ରୀ-
Chhur-ki ମାନଙ୍କଦ୍ୱାରା ବ୍ୟବହୃତ କଟି କଟା ଦାଗ ଥିବା ପିତଳର ହାତଖଡ଼ୁ—A kind of brass bracelet worn by low-class females.
[ ଦ୍ର—ହାତର ମଣିବନ୍ଧ ପାଖରେ ପ୍ରଥମେ ମାଠି, ତା ଉପରକୁ ଛୁର୍କି, ତା ଉପରକୁ ଚନ୍ଦକଳା ପିନ୍ଧା ଯାଏ ।]

ଛୁର୍ଛୁର୍—ଦେ. କ୍ରି. ବିଣ—(ଧ୍ୱନ୍ୟନୁକରଣ)—ଚରୁଚରୁ; ଅଳ୍ପ ଅଳ୍ପ
Chhur-chhur ପରିମାଣରେ (ବହିବା)—In small quantities (said of liquids flowing down.)

ଛୁରା—ସଂ. ବି. (ସଂ. ଛୁର ଧାତୁ=ଛେଦନ କରବା+କରଣ. ଅ+ସ୍ତ୍ରୀ. ଆ
Chhurā ଜ୍ଞାନେନ୍ଦ୍ର)—୧ । ବଡ଼ ଛୁରି—
ଛୋରା 1. A large knife.
ଛୁପା ୨ । (+ସଙ୍ଜ୍ଞାର୍ଥେ. ଅ)—ଚୂର୍ଣ୍ଣ; ଚୂନା—2. Powder.
ଦେ. ବି.—୧ । ମୁନିଆଁ ଛୁରି; ଖ୍ଞ୍ଜର—1. Dagger.
୨ । (ଏହା ଛୁରି ପରି ଦେଖାଯିବାରୁ) ନଡ଼ିଆ ମଞ୍ଜିରୁ ପ୍ରାୟ ଏକ ଚକ୍ଷୁ ଲମ୍ବରେ ବାହାରି ଥିବା ଗଜା—
2. Cocoanut seedlings of which the sprouts are not more than 6 inches in length.
ପ୍ରାଦେ. (ସମ୍ବଲପୁର) ବି.—(ସଂ. ଛୁର; ଭୁଲ. ଏହି ଅର୍ଥରେ ହି. ଛୁରା)—ଖୁର—Razor.
ଦେ. ବିଣ. (ସଂ. ଛୁରା=ଚୂର୍ଣ୍ଣ)—ଚୂରା; ଚୂର୍ଣ୍ଣ ହୋଇଥିବା—
Powdered; pulverised (Howells).

ଛୁରା ମହୁରା—ଦେ. ବି. (ସହଚର ଶବ୍ଦ; ପ୍ରାଣହାରକ ୨ଟି ବସ୍ତୁ)—
Chhurā mahurā ଖ୍ଞ୍ଜର ବା ମୁନିଆଁ ଅସ୍ତ୍ର ଏବଂ ବିଷ—
1. Two means used for taking life, viz. dagger and poison.

ଛୁରି—ସଂ. ବି. (ଛୁର ଧାତୁ+କରଣ. ଇ)—୧ । କାଟିବାର କ୍ଷୁଦ୍ର ଅସ୍ତ୍ର;
Chhuri ଅସିପୁତ୍ରୀ—1. Knife.
୨ । (+କର୍ମ.ଇ) ବନ୍ଧ୍ୟା ଗୋରୁ—2 A barren cow.
ଦେ. ବି. (ଲକ୍ଷଣାର୍ଥ)—ଦାରୁଣ ଛୁରି ପରି ଯନ୍ତ୍ରଣାଦାୟକ—
A thing as painful as a sharp knife.
ଛୁରୀ କାହା କଟାକ୍ଷରେ, ଛୁରି ହେଲା କ ବକ୍ଷରେ ।
କବିସୂର୍ଯ୍ୟ—ଛାନ୍ଦୋମାଳା, ୫ ଗୀତ ।

ଛୁରିଅନା—ଦେ. ବି. (ସଂ. ସୁରପୁନ୍ନାଗ)—ପୁଷ୍ପବୃକ୍ଷବିଶେଷ—
Chhurianā A tree bearing fragrant, white and
ସୁଲତାନି ଚାଁପା long-stemmed flowers; Ochrocarpus
ସୁଲତାନା ଚଂପା Longifolius.
ଛୁରିଅନା କଦମ୍ବ ନାଗେଶ୍ୱର
ଚମ୍ପା ବଉଳ କେତକୀ ମନ୍ଦାର । ଜଗନ୍ନାଥ. ବଡ଼ଚଉରାମାୟଣ ।
[ ଦ୍ର—ଏହା ପୁନ୍ନାଗ ପରି ବଡ଼ ଡେଙ୍ଗା ଥିବା ସୁଗନ୍ଧ ଧଳା ଫୁଲ ଧାରଣ କରେ; ଏ ଗଛର ପତ୍ର ମୋଟା ଓ ଶାଖାର ପ୍ରତି ଗଣ୍ଠିରେ ୩ଟା ପତ୍ର ଥାଏ; ଏହାର ଫୁଲ ଡେଉରରେ ଫୁଟେ ଏବଂ ପ୍ରଥମେ ଦୁଇଖଣ୍ଡରେ ବିଭକ୍ତ ହୋଇଥାଏ । ଏ ଗଛ ସତ୍ୟବାଦୀ ଗୋପୀନାଥଙ୍କ ମନ୍ଦିର ନିକଟସ୍ଥ ବକୁଳବନରେ ପ୍ରଚୁର ପରିମାଣରେ ଅଛି । ସାଧାରଣତଃ ଏ ଗଛ ଭାରତର ପଶ୍ଚିମ ଉପକୂଳ, ମାନ୍ଦ୍ରାଜ ପ୍ରଦେଶ, ଓଡ଼ିଶା ଓ ଚଟ୍ଟଗ୍ରାମରେ ଜନ୍ମେ । ଏହାର ମଞ୍ଜକାଠ ରକ୍ତାଭ ଓ ଖୁବ ଟାଣୁଆ ।]

ଛୁରିଆ—ପ୍ରାଦେ. (ସମ୍ବଲପୁର) ବି—ଖରୁଡ଼ାଜାତିଙ୍କ ପରି ପିତ୍ତଳର
Chhuriā କାମ କରବା ଜାତିବିଶେଷ—
A caste of brass-makers; braziers.

ଛୁରିକ—ଦେ. ବି—ଛୁରିଅନା (ଦେଖ)
Chhurika Chhurianā (See)

ଛୁରିକା—ସଂ. ବି. (ଛୁର ଧାତୁ+କରଣ. ଅକ+ସ୍ତ୍ରୀ. ଆ)—ଛୁରି (ଦେଖ)
Chhurikā Chhuri (See)

ଛୁରିକାନିଆଁ—ଦେ. ବିଣ—ଛୁରିର ଫଳକ ପରି ଲମ୍ବ ଓ ପତଳା—
Chhuri-kāniāñ Long and thin like the blade of a knife.

ଛୁରି ଚଳା(ଲେ)ଇବା—ଦେ. କ୍ରି—୧ । ଛୁରିରେ କାଟିବା—
Chhuri chalā(le)ibā 1 To cut with a knife.
ଛୁରି ଦେଓୟା ୨ । (ଲକ୍ଷଣାର୍ଥ) ଅନିଷ୍ଟ କରବା—
ଛୁରି ମାରନା 2. Figurative to injure.
(ଛୁରି ଦେବା; ଛୁରି ମାରବା; ଛୁରି ଚଳାଇବା—ଅନ୍ୟରୂପ)

ଛୁରିତ—ସଂ. ବିଣ. (ଛୁର ଧାତୁ=ରଞ୍ଜିତ କରବା+କର୍ମ. ତ)—
Chhurita ୧ । ଲିପ୍ତ—1. Anointed; besmeared.
୨ । ଖଚିତ; ଜଡ଼ିତ—2. Inlaid.
୩ । ବ୍ୟାପ୍ତ—3. Pervaded; filled; occupied; spread over.
୪ । ଶୋଭିତ; ବିକଶିତ—4. Adorned; shining.
୫ । ଅଲଂକୃତ—5. Decorated.
୬ । ରଞ୍ଜିତ—6. Painted; coloured.
୭ । ଖୋଦାଇ କରା ଯାଇଥିବା (ହି ଶବ୍ଦସାଗର)—
7. Engraven.
ସଂ. ବି—୧ । ଲାସ୍ୟ ନାମକ ନୃତ୍ୟର ଏକ ଭେଦ—
1. A kind of amorous ball-dance.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

[ଦ୍ର—ଏ ନୃତ୍ୟ କଲାବେଳେ ନାୟକନାୟିକା ପରସ୍ପର ପ୍ରେମ-ପ୍ରଦର୍ଶନପୂର୍ବକ ପରସ୍ପରକୁ ଚୁମ୍ବନ କରୁଥାଆନ୍ତି—ହି. ଶବ୍ଦସାଗର ।]

୨ । ବିଜୁଳିର ଚମକ ( ହି ଶବ୍ଦସାଗର )—
2. Flash of lightening.

**ଛୁରିତକ**—ଦେ. ବି—୧ । ( ସଂ. ସ୍ବରସୂଚକ ) ଛୁରିଅନା ଗଛ;
Chhuritaka ଛୁରିଅନା ( ଦେଖ )—Chhuriana ( See )
ଛୁରିତକ ତରୁଣୀ ପୁଷ୍ପାଙ୍କୁର ସର୍ବାଙ୍ଗେ—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୨ । ( ସଂ. ଛୁରିତ=ହକାଶିତ ) ଉଚ୍ଚ ହାସ୍ୟ—
2. Loud laughter.
ଅପୂର୍ବ ଛୁରିତକହିଁ ଜନ୍ମ ହୋଇଲେ—ଉଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଛୁରି ଦେବା**—ଦେ. କ୍ରି—ଛୁରି ଚଲାଇବା ( ଦେଖ )
Chhuri deba Chhuri chalaiba ( See )
( ଛୁରି ମାରିବା—ଅନ୍ୟରୂପ )

**ଛୁରୀ**—ସଂ. ବି. ( ଛୁର୍ ଧାତୁ=ଛେଦନ କରିବା+କରଣ. ଈ )—
Chhuri ଛୁରି ( ଦେଖ )—Chhuri ( See )

**ଛୁରୀକା**—ସଂ ବି—ଛୁରିଅନା ( ଫୁଲ ) ( ଦେଖ )
Chhurika ( ହରେକୃଷ୍ଣ. ଦ୍ରବ୍ୟଗୁଣ )—
Chhuriana ( flower ) ( See )

**ଛୁଲିବା**—ପ୍ରାଦେ. ( ସମ୍ବଲପୁର ) କ୍ରି ( ସଂ. ଛଲ୍ଲୀ=ବକଲ )—
Chhuliba ୧ । ଛାଲ ଛଡ଼ାଇବା—
1 To take out the bark.
୨ । ଗୁଞ୍ଜିବା—2. To scrape off.

**ଛୁଲୀ**—ପ୍ରାଦେ. ( ମେଦିନୀପୁର ) ବି ( ସଂ. ଛଲ୍ଲୀ; ଭୂ. ଏହି ଅର୍ଥରେ
Chhuli ବ. ଛୁଲୀ )—ଛାଉ ( ଦେଖ )
Chhau ( See )

**ଛୁହି**—ପ୍ରାଦେ. ( ସମ୍ବଲପୁର ) ବି—ଛୁଇ ( ଦେଖ )
Chhuhi Chhui ( See )
( ଛୁହିମାଟି—ଅନ୍ୟରୂପ )

**ଛୁଟ** ( ଧାତୁ )—ସଂ—୧ । ବନ୍ଧନ କାଟି ଦେବା ( ହି. ଶବ୍ଦସାଗର )—
Chhuta (root) 1 To cut a bond.
୨ । କାଟି କରି ଅଲଗା କରିବା—
2. To cut asunder; to cut out.

**ଛେ**—ଦେ. ଅ—(ଅସୂୟାର୍ଥକ ଅବ୍ୟୟ) ଛି !—
Chhe ( interjection ) Fie !.
ପ୍ରାଦେ. ( ଭଞ୍ଜଭୂମି ) ବି—ଛଅ; ୬—The number 6
ପ୍ରାଦେ. (ସମ୍ବଲପୁର) ପ୍ରତ୍ୟୟ—ବର୍ତ୍ତମାନକାଳ ତୃତୀୟ ପୁରୁଷ ଏକ ବଚନର କ୍ରିୟାରେ ଲାଗେ—An affix or inflection to verbs in the present tense 3rd person singular.
( ଯଥା—ଯାଉଛେ=ଯାଉଛି, ଅଛେ=ଅଛି । )

**ଛେଇବା**—ଦେ. କ୍ରି—୧ । ( ସଂ. ଛିଦ୍ ଧାତୁ ) ଛେଦନ କରିବା;
Chheiba ... କାଟିବା—1. To cut.

ହେଁସାନ; ଛୁଲା; ଛୋଲା ୨ । ନଡ଼ିଆଆଦି ଫଳର ଉପରସ୍ଥ ଚୋପାକୁ
**छेदना** କଟୁରୀଦ୍ୱାରା ଛେଲିବା—2. To scrape or chop off the rind of a fruit ( e. g. cocoanut ) with a bill-hook.
( ଛେଇଁବା—ଅନ୍ୟରୂପ ) ୩ । ମୁଣ୍ଡ କାଟିବା—3. To behead.
ଛାଓୟା ୪ । ( ସଂ. ଛଦ୍ ଧାତୁ ) ଛାଆଣି କରିବା—
**छवाना** 4. To thatch.

**ଛେଉଣ୍ଡ**—ଦେ. ବିଣ. ପୁଂ. ଓ ସ୍ତ୍ରୀ. ( ସଂ. ଛେମଣ୍ଡ )—
Chheunda ୧ । ଜ୍ଞାତିକୁଟୁମ୍ବହୀନ ଏକାକୀ ପୁରୁଷ—1. A single
ছেঁওড় person who has no kinsman (M.W).
**छमंड; यतीम** ୨ । ପିତୃହୀନ ବା ମାତୃହୀନ ବା ଉଭୟହୀନ (ବାଳକ)—
2. Orphaned.
( ଛେଉଣ୍ଡା—ଅନ୍ୟରୂପ ) ଶୁଣାଅଛି, ୬ବର୍ଷ ବୟସରେ ସେ ଛେଉଣ୍ଡ ହୋଇ
( ଛେଉଣ୍ଡୀ—ସ୍ତ୍ରୀ ) ରହିଥିଲା—ଫକୀରମୋହନ. ଛମାଣ ଆଠଗୁଣ୍ଠ ।
ଦେ. ବି. (ପୁଂ ଓ ସ୍ତ୍ରୀ)—ପିତୃମାତୃହୀନ ବାଳକ ବା ବାଳିକା—
Orphan.

**ଛେଉଣ୍ଡୀ**—ଦେ. ବିଣ. ସ୍ତ୍ରୀ (ସଂ. ଛେମଣ୍ଡ)—ପିତୃମାତୃହୀନା (ବାଳିକା)—
Chheundi Orphaned (girl).
ଦେ. ବି. ସ୍ତ୍ରୀ—ପିତୃମାତୃହୀନା ବାଳିକା—An orphan girl.

**ଛେଃ**—ଦେ. ଅ—ଛେ (ଦେଖ)
Chheh Chhe (See)

**ଛେଁଚ୍‌କି**—ଦେ. ବି. (ବଙ୍ଗଳାରୁ ଅନୁକୃତ)—ସନ୍ତୁଳା; ପାଣିରେ ସିଝାଯାଇ
Chheñch-ki ଅଳ୍ପ ଘିଅ ବା ତେଲରେ ବଘାରି ହୋଇଥିବା ବ୍ୟଞ୍ଜନ—
ছেঁচকী Vegetable fried with a little ghee or oil after being boiled. (a curry).

**ଛେଁଚ୍‌ଡ଼ା**—ଦେ. ବି—୧ । ତରକାରୀ ପାଇଁ କଟା ହେବା ପରବାର
Chheñch-rda ଚୋପା ଓ ଅନ୍ତ ଏବଂ ମାଛର ଅନ୍ତ ଓ ଗାଲସି
ছেঁচড়া ଆଦିକୁ ବେଶି ତେଲରେ ସନ୍ତୁଳି ଯେଉଁ ତରକାରୀ କରାଯାଏ—1. A curry made from the leavings of kitchen—vegetables and refuse of fish, fried in a large quantity of oil.
**छिछड़ा** ୨ । (ସଂ. ତୁଚ୍ଛ)—ଛେଳିଆଦିଙ୍କ ଅନ୍ତ ଓ ପୁଚ୍ଛ ଆଦି ମନୁଷ୍ୟଙ୍କ ଖାଦ୍ୟାର୍ଥ ଅବ୍ୟବହାର୍ଯ୍ୟ ଅଂଶ—2 Entrails and refuse-parts of the meat of an animal.
[ଦ୍ର—ଏହାକୁ ଚାଉଳ ସଙ୍ଗେ ସିଝାଇ ପୋଷା କୁକୁରଆଦିଙ୍କ ଖାଇବାକୁ ଦିଆଯାଏ । ]
ଦେ. ବିଣ—ଛେଚଡ଼ା (ଦେଖ)
Chhecharda (See)

**ଛେଁଚଡ଼** (ଇତ୍ୟାଦି)—ଗ୍ରା. ବିଣ—ଛେଚଡ଼ ଇତ୍ୟାଦି (ଦେଖ)
Chheñcharda (etc) Chhecharda etc (See)
(ଛେଁଚେଡ଼—ଅନ୍ୟରୂପ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍,ର୍ହ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଢ |
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଢ଼ | ନ୍ |

**ଛେକ**—ସଂ. ବିଣ. ( ଛେ ଧାତୁ=ଛେଦନ କରିବା+କର୍ତ୍ତୃ. ଇକ; ନିପାତନ)—ପଣ୍ଡିତ; ବିଦଗ୍ଧ; ଚତୁର—
Chheka
Clever; shrewd; learned.

ସଂ. ବି. (+କର୍ମ. ଇକ)—୧ । ପାଳିତ ପଶୁପକ୍ଷୀ—
1. Domesticated birds and beasts.
୨ । ଅନୁପ୍ରାସବିଶେଷ—2. A kind of alliteration.
୩ । ମହୁମାଛି—3. Bee.

ଗ୍ରା. ବି—୧ । ଛକି; ଦାଗ; ଯୁକ୍ତ ଚିହ୍ନ—1. Cross-mark.
ଦେ. ବି—୨ । ଥର—2 Time of occurence.
ପ୍ରାଦେ. (ପୁରୀ)—ଖାଦ୍ୟାଦି ରନ୍ଧନର ଏକଥର ବା ଏକପାଗ—
The aggregate of food cooked at one stretch or for one meal

**ଛେକ ଉଠିବା**—ଦେ. କ୍ରି—ଥରେ ଖାଦ୍ୟରନ୍ଧନ କ୍ରିୟାର ସମାପ୍ତି—
Chheka uṭhibā Completion of cooking for one meal.
(ଛେକ ଉତୁରିବା—ଅନ୍ୟରୂପ)

**ଛେକକୁ ଛେକ**—ଦେ. ଅ—ଥରକୁଥର; ବାରଂବାର; ବହୁବାର—
Chhekaku chheka From time to time; several times; over and over; again and again.
(ଛେକଛେକ—ଅନ୍ୟରୂପ)

**ଛେକାନୁପ୍ରାସ**—ସଂ. ବି. ( ଛେକ+ଅନୁପ୍ରାସ )—
Chhekānuprāsa ଅନୁପ୍ରାସ ବା ଶବ୍ଦାଲଙ୍କାରବିଶେଷ—
A kind of rhetorical figure.
[ ଦ୍ର—ଏହି ଅନୁପ୍ରାସରେ ଏକଚରଣରେ କେତେକ ବ୍ୟବଧାନ ପରେ ଦୁଇ ବା ତଦଧିକ ବର୍ଣ୍ଣର ବାରମ୍ବାର ଆବୃତ୍ତି ହୋଇଥାଏ; ଉଦାହରଣ, ଯଥା—(କ) ନବ ପ୍ରମଦା ମଦାଳସୀ ଯୋଷାକୁ, ଜଳକେଳିରେ ମନାଇବି । ମୁଖ ଅଧିକ ଧିକ ଏ ସରସିଜ ଦେଖାଇ ତାକୁ ଚହ୍ଲାଇବି । ଚନ୍ଦ୍ରମା । ରହସ୍ୟେ ମନ ଘେନାଇବି । ଲୀଳା-ଅନ୍ତର ସଲିଳେ ଜରଜର ହେବା ଶୋଭାକୁ ଅନାଇବି ।
ଉପେନ୍ଦ୍ରଭଞ୍ଜ—ପ୍ରେମସୁଧାନିଧି । ]

**ଛେକାପହ୍ନୁ**—ସଂ. ବି. (ଛେକ+ଅପହ୍ନୁ)—କାବ୍ୟାଲଙ୍କାରବିଶେଷ—
Chhekāpahnu Name of rhetorical figure.
[ ଦ୍ର—ଏଥିରେ ଗୋଟିଏ ଅନୁମାନକୁ ଅଯଥାର୍ଥ ଉକ୍ତିଦ୍ୱାରା ଖଣ୍ଡନ କରାଯାଏ । ଯଥା—ନାୟିକାର ଓଠରେ କ୍ଷତଚିହ୍ନ ଦେଖି ଜଣେ ସଖୀ ଅନୁମାନ କରି କହିଲେ ଯେ ନାୟକ ଆସିଥିଲେ ପରା । କିନ୍ତୁ ଆଉ ଜଣେ ସଖୀ ଉତ୍ତର କଲେ ଶିଶିର ପବନ ବହିବାରୁ ଶୀତ ଯୋଗୁଁ ଓଠ ଫାଟିଛି । ]

**ଛେକିବା**—ଦେ. କ୍ରି—୧ । କଉଡ଼ି ବା ପଶାଖେଳାଳୀର ହାତମୁଠାରେ ଥିବା କଉଡ଼ି ବା ପଶାକାଠିକୁ ତଳେ ଗଡ଼ିଦେଲେ ସଂକଳ୍ପିତ ଦାନ ପଡ଼ିବ ଏହି ଉଦ୍ଦେଶ୍ୟରେ ମୁଠାମଧ୍ୟରେ ପଶାକାଠି ବା କଉଡ଼ିଗୁଡ଼ିକୁ ସଜ୍ଜିତ କରିବା—1. To manipulate the cawries ( conch-shells ) and dice while holding them inside the fist, in such a way that they will bring out the desired turn when thrown ( considered as unfair in the game of cawries or dice).
Chhekibā
[ ଦ୍ର—ଏ ରୀତି ପଶା ବା କଉଡ଼ି ଖେଳରେ ଅସଦୁପାୟ ରୂପେ ବିବେଚିତ ହୁଏ । ]
୨ । ଉଗାଳିବା—2. To obstruct a person from the front.
୩ । ଛକିବା; ଶତ୍ରୁକୁ ଆକ୍ରମଣ କରିବାକୁ ଗୋପନଭାବରେ ଜଗି ରହିବା—3. To be on the look-out for; the Enemy; to lie in ambush.
( ଯଥା—ଦେଖ, ସେ ତତେ ଛେକିଛି, କାହିଁ ଦେଖିଲେ ମସ୍ତ ଏକ ଗୁଠାଣ ଦେବ । )
୪ । ସୁବିଧା ଉଣ୍ଡିବା; ଓର ଉଣ୍ଡିବା—4. To seek an opportunity for accomplishing one's object.
( ଯଥା—ଯେତେ ଛେକିଲେ ହେଲେ କଅଣ ମୋତେ ଧରି ପାରିବୁ ? )
ପ୍ରାଦେ. (ସମ୍ବଲପୁର) କ୍ରି—ବିପକ୍ଷପକ୍ଷର ସାକ୍ଷୀକୁ କୂଟପ୍ରଶ୍ନ କରିବା; ଜେରା କରିବା—To cross-examine a witness.

**ଛେକେ**—ଦେ. ଅ—ଥରେ—Once.
Chheke ଦେ. ବିଣ—ସାରେ; ଏକସାର—One set of.
ପ୍ରାଦେ. (ଯାଜପୁର) ବିଣ—ଦଳେ; ଏକଦଳ—
One company or batch of.
(ଯଥା—ଛେକେ ବ୍ରାହ୍ମଣ ଆସିଥିଲେ । )

**ଛେକୋକ୍ତି**—ସଂ. ବି. (ଛେକ+ଉକ୍ତି)—ବକ୍ରୋକ୍ତି; ଛଳବଚନ—
Chhekokti A pun; sinuous speaking.
[ ଦ୍ର—ଏହା ଅର୍ଥାନ୍ତରଗର୍ଭିତ ହୁଏ, ଅର୍ଥାତ୍ ଏକ ପ୍ରକାଶିତ ଅର୍ଥ ଛଡ଼ା ବାକ୍ୟରେ ଆଉ ଗୋଟିଏ ଧ୍ୱନ୍ୟର୍ଥ ମଧ୍ୟ ସୂଚିତ ହୁଏ । ]

**ଛେଙ୍ଗା**—ପ୍ରାଦେ. (ସମ୍ବଲପୁର) ବି.—ସାନ ଗାତ—
Chheṅgā A small hole.

**ଛେଚ୍‌କି**—ପ୍ରାଦେ. (ମେଦିନୀପୁର) ବି.—ଛେଁଚ୍‌କି (ଦେଖ)
Chhech-ki Cheñch-ki (See)

**ଛେଚ୍‌ଡ଼ା**—ଦେ. ବି.—ଛେଁଚ୍‌ଡ଼ା (ଦେଖ)
Chhech-rdā Chheñch-rdā (See)
ବିଣ.—ଛେଚଡ଼ା (ଦେଖ)
Chhecharda (See)

**ଛେଚଡ଼ା**—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ. କ୍ଷୁଦ୍ର=କ୍ଷୁଦ୍ରଚିତ୍ତ; ଦୃଷ୍ଟି; ସଂ. ତୁଚ୍ଛ)—୧ । ନଷ୍ଟଚରିତ୍ର; ଲମ୍ପଟ—
Chhecharda
ছেঁচড়
1. Lascivious; lecherous.
ছিঁচকে ୨ । ଖେଡ଼େଡ଼ା; ଦୁଷ୍ଟ; ଖଳ—2. Wicked.

ସାଧାରଣ ଲୋକେ ଅପର ବ୍ୟକ୍ତିରେ ଦୃଢ଼ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଏହାଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲବଡ଼' ଦେଖିବେ

(ଛେଚଡ଼ୀ, ଛେଚେଡ଼ୀ—ସ୍ତ୍ରୀ) ୩ । ବଗୁଲିଆ—
(ଛେଚେଡ଼—ଅନ୍ୟରୂପ) 3 Profligate; wanton.
୪ । ପ୍ରତାରକ; ବଞ୍ଚକ—4 Cheating; fraudulent.
୫ । ଯେ ପରର ଦେୟ ନିର୍ଦ୍ଦିଷ୍ଟ କାଳରେ ବାରଂବାର ତଗିଦରେ ସୁଦ୍ଧା ଦିଏ ନାହିଁ—5. A person who is very loth to pay other's dues even after repeated demands,
୬ । ନୀଚପ୍ରକୃତିକ—6. Low; mean.
୭ । ବେହାୟା; ନିର୍ଲଜ୍ଜ—7. Shameless.

**ଛେଚଡ଼ା**—ଦେ. ବିଣ.—୧ । ଛେଚଡ଼ (ଦେଖ)
Chhecharda 1. Chhecharda (See)
ଛେଚେଡ଼ା / ଛେଚେଡ଼ା }—ଅନ୍ୟରୂପ ୨ । ମାଡ଼ ଖାଇଖାଇ ଗମ୍ଭୀର; ଛେଚା ବା କୁଟା ଖାଇବାରେ ଅଭ୍ୟସ୍ତ—
2. Impervious or insensible or habituated to sound beatings or thrashings
୩ । ବାରଂବାର ଛେଚା ହେବା ଯୋଗୁଁ ଯାହାର ଅଗ୍ରଭାଗ ଛନ୍ନଛତ୍ର ହୋଇ ଯାଇ ଥାଏ (ଯଥା; ଦାନ୍ତକାଠି, ଯଷ୍ଟି)—
3. With the head smashed into fibres as a result of constant pounding.

**ଛେଚଡ଼ାମି**—ଦେ. ବି.—୧ । ଖଳତା—
Chhechardāmgi 1. Wickedness.
छेँचड़ाम ୨ । ନଷ୍ଟଚରିତ୍ରତା—
**छिछोरपन** 2. Dissoluteness of character.
ଛେଚଡ଼ାପଣ / ଛେଚଡ଼ାପଣିଆ / ଛେଚେଡ଼ାମି / ଛେଚେଡ଼ାମି } ଅନ୍ୟରୂପ ୩ । ବଗୁଲିଆପଣ—
3. Profligacy; wantonness.
୪ । ପ୍ରତାରଣା—
4. Fraud; deceit.
୫ । ନୀଚ ବୃତ୍ତି; ନୀଚତା—5. Meanness; lowness.
୬ । ଦନ୍ତୁର (ଶସ୍ତ୍ରାଦି)—5. Blunted (weapon).

**ଛେଚଡ଼ିଆ**—ଦେ. ବିଣ. (ପୁଂ ଓ ସ୍ତ୍ରୀ)—ଛେଚଡ଼ (ଦେଖ)
Chhechardiā Chhecharda (See)
ଛେଚଡ଼ୀ / ଛେଚଡ଼େଇ }—ସ୍ତ୍ରୀ
(ଛେଚେଡ଼ିଆ, ଛେଚେଡ଼ିଆ—ଅନ୍ୟରୂପ)

**ଛେଚର**—ଗ୍ରା (ଇତର) ବିଣ—ଛେଚଡ଼ା (ଦେଖ)
Chhecharā Chhecharda (See)

**ଛେଚା**—ଦେ. ବି. (ସଂ. ଛିଦ୍ ଧାତୁ)—୧ । ଛେଚିବା; ଉପର୍ଯ୍ୟୁପରି ଆଘାତ ପୂର୍ବକ ପେଷଣ ବା କୁଟ୍ଟନ—
Chhechā
छेँचा 1. Crushing; bruising; pounding; smashing.
**कुचलना, मसलना**
୨ । (ଯଥା—ଆମ୍ବଛେଚା) ପେଷା ହୋଇଥିବା ପଦାର୍ଥ—
2. A pounded thing.
୩ । ମାଡ଼; ବିଶେଷ ପ୍ରହାର—3. A sound beating.
ଦେ. ବିଣ.—୧ । (ଯଥା, ଛେଚା କଖାରୁ) କୁଟା ଯାଇଥିବା; ପିଷ୍ଟ ଯାଇଥିବା—1. Pounded; bruised.
୨ । (ଯଥା; ଛେଚା ବରଷା) ପ୍ରଚୁର; ଧୂମ୍‌କୁଟ୍—
2. Incessant or heavy (shower).

**ଛେଚାଇବା**—ଦେ. କ୍ରି.—ଛେଚିବାର ଣିଜନ୍ତ ରୂପ—
Chhechāibā Causative of Chhechibā.
छेँचान
**कुचलाना**
(ଛେଚେଇବା, ଛେଚା ଦିଆଇବା—ଅନ୍ୟରୂପ)

**ଛେଚାକୁଟା**—ଦେ. ବି.—(ଏକାର୍ଥକ ସହଚର)—ଉପର୍ଯ୍ୟୁପରି ଛେଚିବା
Chhechā-kutā କର୍ମ—Act repeated beating or bruising.

**ଛେଚାଛେଚି**—ଦେ. ବି.—୧ । ପରସ୍ପର ପରସ୍ପରକୁ ଛେଚିବା ବା ପ୍ରହାର
Chhechā-chhechi କରିବା—1. Mutual beating; beating or pounding each other.
छेँचाछेँचि
**कुचलाकुचलि**
ଦଣ୍ଡରୁ ଦଣ୍ଡ ଦୁହେଁ ଛେଚାଛେଚି କଲେ ।
କୃଷ୍ଣସିଂହ ମହାଭାରତ. ସଭା ।
୨ । ବହୁ ପଦାର୍ଥକୁ ମିଳି ଆଦରେ ଛେଚିବା କର୍ମ—
2. Act of pounding many things.
ଦେ. ବିଣ.—ପରସ୍ପର ପରସ୍ପରଦ୍ୱାରା ପ୍ରହାରିତ—
Beat mutually.

**ଛେଚା ଦାଗ**—ଦେ. ବି.—ଛେଚିବା ବା ଆଘାତଜନିତ ଚିହ୍ନ—
Chhechā dāga A bruise.
छेँचादाग
**चोट**

**ଛେଚା ବରଷା**—ଦେ. ବି—ଛେଚିବା ପରି ମୁଷଳଧାରରେ ବର୍ଷା; ଧୂମ୍‌କାଣି—
Chhechā barashā An outpour of rain; raining cats and dogs.

**ଛେଚି କୁଟି ହେବା**—ଦେ. ବି—ଶରୀରର ଅଙ୍ଗମାନ ବିଶେଷ
Chhechi kuti hebā ବଥାଇବା—Aching in the limbs.
( ଯଥା—ଆଜି ସକାଳଠାରୁ ମୋ ଗୋଡ଼ହାତ ଛେଚି କୁଟି ହଉଛି, ବୋଧହୁଏ ସଞ୍ଜକୁ ଜର ହେବ । )
ଦେ. କ୍ରି—ବିଶେଷ ଆୟାସ ସହକାରେ ପରିଶ୍ରମ କରିବା—
To strive with one's utmost efforts; to make much physical exertion.
( ଯଥା—ମୁଁ ତା ପାଇଁ ଏତେ ଛେଚି କୁଟି ହଉଛି, କିନ୍ତୁ ତାର ଟିକିଏ ମୋ ପ୍ରତି ଦୟା ନାହିଁ । )

**ଛେଚି କୋଡ଼ି ହେବା**—ଦେ. କ୍ରି—ଦୁଃଖରେ ଅତ୍ୟନ୍ତ ବ୍ୟତିବ୍ୟସ୍ତ
Chhechi kordi hebā ଓ ଛଟପଟ ହେବା—
To be restless with pangs or grief.
ତୁମ୍ଭେ ଯେ ବସି ଛେଚି କୋଡ଼ି ହୋଇ ଶୋକ
କରୁଅଛ କେବେ ଖାଇ ନାହିଁ ଏ ବାଳକ—କୃଷ୍ଣସିଂହ. ମହାଭାରତ. ଶାନ୍ତି

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଯ୍ | ଉଥ | ଈ |
| ୨ | ଈ | ଊ | ରୁ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ୱ | ନ୍ |

**ଛେଚିବା**—ଦେ କ୍ରି. ( ସଂ. କୃଷ ଧାତୁ; କମ୍ବା ଛିଦ୍ ଧାତୁ )—
Chhechibā ୧ । କୁଟିବା; ମାଡ଼ିକରି ଉପର୍ଯ୍ୟୁପରି ଆଘାତ କରିବା;
छेँचा ଦଳିବା—1. To bruise; to smash.
**कुचलना; मसलना** ଭୂମେ ପଡ଼ପାଡ଼େ ଛେଚିଲେ ପିଠି ଧାଡ଼—
କୃଷ୍ଣସିଂ. ମହାଭାରତ. ସଭା ।
୨ । ଉପର୍ଯ୍ୟୁପରି ବିଶେଷ ପ୍ରହାର କରିବା—
2. To repeatedly deal a sound beating.
୩ । ବିଶେଷ ପରିମାଣରେ ବୃଷ୍ଟି କରିବା—
3. To rain cats and dogs.
୪ । ଭୂମିରେ ବାଡ଼େଇବା—
4 To strike on the ground.
କୁରୁଙ୍କର ତ୍ରିଶିଏ ହାତର ବାହୁଟି
ଛେଚି କରି କାକଦେ ଧୂଳିକି ସାଇଁଟି—କୃଷ୍ଣସିଂ. ମହାଭାରତ. ବନ ।
୫ । ଚୂନା କରିବା; ଟିକିଟିକି କରିବା—
5 To powder; to reduce to small bits.
ରଥ କରିବା ଖଣ୍ଡ ଖଣ୍ଡ, ଛେଚିବା ଅକ୍ରୂରର ମୁଣ୍ଡ—
ଜଗନ୍ନାଥ. ଭାଗବତ ।
[ ଦ୍ର—ଏହି କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ପକାଇବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ଛେଚି ହେବା**—ଦେ. କ୍ରି—୧ । ଉର୍ଦ୍ଧ୍ୱରୁ ପଡ଼ି ଯାଇ ଉଲେ ଶରୀର
Chhechi hebā ଛେଚି ହୋଇଯିବା—
1. To be bruised or smashed by a fall.
ଛେଚି ହୋଇବାକୁ ଲାଗି ହୁଏ ବୃଦ୍ଧି
ଛେଲି ମାରିହେବ ରହିଥାଇ ସିଦ୍ଧି—କବିସୂର୍ଯ୍ୟ. କବିତାକଲ୍ଲୋଳ ।
୨ । ଛେଚି କୁଟି ହେବା ( ଦେଖ )
2. Chhechi kuti hebā ( See )

**ଛେଚେଡ଼ା**—ଦେ. ବିଶ – ୧ । ଛେଚଡ଼ ( ଦେଖ )
Chhecherḍā 1. Chhecharḍa ( See )
ଛେଚେଡ଼ିଆ } ଅନ୍ୟରୂପ ୨ । ଛେଚଡ଼ା ( ଦେଖ )
ଛେଚେଡ଼ି } 2. Chhecharḍā ( See )

**ଛେଛରି**—ପ୍ରାଦେ. ( ସମ୍ବଲପୁର ) ବିଣ—ଚିରି; ଫଟା—
Chhechhari Torn; rent.
ଛେଛରି ଛିତା, ହାଟ୍‌କେ ନେଲେ ପଇସା ହେଲା—ରୀଗ ।
( ଅର୍ଥ—ଚିରି ଛିତା ହାଟକୁ ନେଲେ ତାହା ବିକିଲେ ପଇସା ମିଳିଲା । )

**ଛେ ଛେ**—ଦେ. ଅ—ଛି ( ଦେଖ )
Chhe chhe Chhi ( See )

**ଛେଡ଼ା ଘାସ**—ପ୍ରାଦେ. ( ଗଡ଼ଜାତ ) ବି—ଏକପ୍ରକାର ଘାସ—
Chherḍā ghāsa A kind of grass.
[ ଦ୍ର—ଏହା ଉଚ୍ଚରେ ପ୍ରାୟ ୧ ହାତ ହୁଏ, ଏହାର କାଣ୍ଡ ବାଉଁଶ କଣି ପରି ମୋଟ, ଏହା ପାଣିରେ ଓ ପାଣିକୂଳେ ଜନ୍ମେ । ତୁଳ. ହି. ଛେଡ଼ାର ଅର୍ଥ ଦଉଡ଼ି, ବୋଧହୁଏ ଏ ଘାସରୁ ଦଉଡ଼ି ବଳା ହେଉଥିବାରୁ ଏହି ନାମ । ]

**ଛେଡ଼ି**—ପ୍ରାଦେ. (ଛୋଟନାଗପୁର) ବି—ଛେଳି—
Chherḍi Goat.

**ଛେଣା**—ଦେ. ବି. ( ସଂ. ଛିଦ୍ ଧାତୁ )—
Chheṇā ୧ । ବାଟସିଦ୍ୱାରା ପଟା ପ୍ରଭୃତି ଖୁର୍ଦ୍ଦିବା—
1. Scraping a log of wood with the adze.
୨ । ଖଣିତି ପରି ଅସ୍ତ୍ରବିଶେଷ—2. An iron pick.

**ଛେଣି**—ଦେ. ବି (ସଂ. ଛିଦ୍ ଧାତୁ)—୧ । ପଥର ବା ଲୁହା କାଟିବା
Chheṇi ଉପଯୋଗୀ ଛୋଟ ଯନ୍ତ୍ର; ଟାଙ୍କି—1. A small
छेनी stout iron instrument for cutting
**छेनी** stone or iron; a drill.
୨ । ଷ୍ଟାମ୍ପ, କୋର୍ଟଫି ବା ଟିକଟ ଆଦିରେ ଛିଦ୍ର କରିବା ଅସ୍ତ୍ର—
2. An instrument to perforate stamps or courtfees; a punching instrument.

**ଛେଣି କରିବା**—ଦେ. କ୍ରି—୧ । ଷ୍ଟାମ୍ପ ଆଦିକୁ ଯନ୍ତ୍ରଦ୍ୱାରା ଛିଦ୍ର କରିବା;
Chheṇi karibā ପଞ୍ଚ୍ କରିବା—1. To perforate stamps
छेनि करा or courtfees.
**छेनी करना** ୨ । ଛେଣିରେ କାଟିବା—
2. To cut with a punch or drill.

**ଛେଣିବା**—ପ୍ରାଦେ. (ସିଂହଭୂମ) କ୍ରି. (ତୁଳ. ହି. ଛିନ୍‌ନା=ଜବରଦସ୍ତ
Chheṇibā ଛଡ଼ାଇ ନେବା)—ହାତ ପତାଇ ଉପରୁ ପଡ଼ିବା ଜିନିଷକୁ ଧରି ପକାଇବା—To catch hold of a thing (e. g. a ball) by holding out the
(ଛେଣି ନେବା—ଅନ୍ୟରୂପ) palm to catch it.
(ଯଥା—ଦୂରରୁ ଫିଙ୍ଗା ଯିବା ବଲ୍‌କୁ ଛେଣିବା ।)

**ଛେତ୍**—ଦେ. ଅ—ଛେ (ଦେଖ)
Chhet Chhe (See)

**ଛେତ୍‌ଖାନା**—ବୈଦେ. ବି. (ଫା. ସୀହତ୍‌ଖାନା—ଶୌଚାଳୟ)—
Chhet-khānā ପାଇଖାନା; ସହର ଆଦିରେ ମଳତ୍ୟାଗ କରିବା
सेत्खाना ପାଇଁ ନିର୍ଦ୍ଦିଷ୍ଟ ସ୍ଥାନ—Latrine; privy.
**सोहतखाना; पाखाना**

**ଛେତ୍ ପାକ୍ ଡୁ ଡୁ ଡୁ ଡୁ**—ଦେ. ଅ—ବାଳକମାନଙ୍କ 'ଡୁ ଡୁ' ଖେଳରେ
Chhet pak ḍu ḍu ḍu ḍu ଏକଦଳର ଗୋଟିଏ ବାଳକ
(ଛେତ୍‌ପାକ୍ ଡୁ ଡୁ ଡୁ ଡୁ—ଅନ୍ୟରୂପ) କ୍ରୀଡ଼ାଭୂମିମଧ୍ୟସ୍ଥ ଗାରକୁ ଡେଇଁ ଯାଇ ଏକନିଶ୍ୱାସରେ ଅନ୍ୟ ଦଳର ପିଲାଙ୍କୁ ସ୍ପର୍ଶ କରିବାକୁ ଚେଷ୍ଟା କରିବା ସମୟରେ ଏକ-ନିଶ୍ୱାସରେ ରହିଛି କି ପୁନର୍ବାର ନିଶ୍ୱାସ ନେଲା ଏହା ଅପରପକ୍ଷ ପରୀକ୍ଷା କରିବା ନିମନ୍ତେ ଉକ୍ତ ବାଳକ ମୁଖରେ ଉଚ୍ଚାରଣ କରିବା ଉଚ୍ଚ ସ୍ୱର—
The acclamation of the boy who crosses the middle line of the play-field and

tries to touch any boy of the opposite side in one breath in the 'Ḍu Ḍu' game.

**ଛେତ (ଇତ୍ୟାଦି)**—ଗ୍ରା. ବିଣ (ସଂ. ଶ୍ୱେତ)—ଶ୍ୱେତ ଇତ୍ୟାଦି (ଦେଖ)
Chheta (etc) — Śweta etc (See)

**ଛେତରା**—ଗ୍ରା. ବିଣ. (ସଂ. ଛତ୍ରାକ)—ଛତ୍ରଯୁକ୍ତ; ଝାମ୍ପୁଡ଼ା—
Chhetarā — Bushy; with head like mushroom; spreading.
ছাতরা
छितराहुआ
(ଛେତେରା; ଛେତ୍ରା—ଅନ୍ୟରୂପ)

**ଛେତା**—ଗ୍ରା. ବିଣ—ଶେତା (ଦେଖ)
Chhetā — Śetā (See)

**ଛେତ୍ତା**—ସଂ. ବିଣ. ପୁଂ. (ଛିଦ୍ ଧାତୁ+କର୍ତ୍ତୃ. ତୃ=ଛେତ୍ତୃ; ୧ମା. ୧ବ.)—ଛେଦକ; ଯେ ଛେଦନ କରେ—
Chhettā — Cutting.
(ଛେତ୍ତ୍ରୀ—ସ୍ତ୍ରୀ)

**ଛେତ୍ରୀ**—ଗ୍ରା. ବି. (ସଂ. କ୍ଷତ୍ରିୟ)—ରାଜପୁତ ଜାତି=
Chhetrī — The Rajput caste.
ছত্রী
छत्री

**ଛେଦ୍**—ପ୍ରାଦେ. (ସମ୍ବଲପୁର) ବି—ଅବସାନ—
Chhed — The end.

**ଛେଦ୍‌କା**—ପ୍ରାଦେ. (ସମ୍ବଲପୁର) ବିଣ—ଚଟକା; ଅଗଭୀର—
Chhed-kā — Flat; shallow.

**ଛେଦ୍‌ଲି ପିଲା**—ପ୍ରାଦେ. (ସମ୍ବଲପୁର) ବି—ମାଆବାପଙ୍କର କୋଡ଼ପୋଛା ପିଲା—The last or youngest offspring of the parents.
Chhedli pilā

**ଛେଦ**—ସଂ. ବି (ଛିଦ୍ ଧାତୁ+ଭାବ. ଅ)—୧ । ଛେଦନ; କାଟିବା—
Chheda — 1. Cutting
୨ । ଫାଟ—2. Fissure.
୩ । ଖଣ୍ଡନ; ବିରାମ—3. Remission.
୪ । କଟାଦାଗ—4. A cut.
୫ । ପରିଚ୍ଛେଦ; ଅଧ୍ୟାୟ—5. Chapter.
୬ । ବନ୍ଦ କରିବା; ବିରତି—
6. Stoppage; discontinuance; cessation.
୭ । ରଚନାରେ ଏକାଧିକ ବାକ୍ୟ ବା ପଦ ମଧ୍ୟରେ ବିରାମ—
7. A pause or a stop in a sentence; a period in a composition.
୮ । ଛିଦ୍ର; କଣା—8. A hole; perforation.
୯ । ଦୋଷ; ଦୂଷଣ; ଅଏବ୍ (ହି. ଶବ୍ଦସାଗର)—
9. Defect.
୧୦ । ନାଶ (ହି. ଶବ୍ଦସାଗର)
10. Ruin; destruction.
୧୧ । (+କର୍ମ. ଅ) କର୍ତ୍ତିତ ଅଂଶ; ଖଣ୍ଡ—
11. Piece; slice.
୧୨ । ଭାଗ—12. A part; section.
୧୩ । ପଥର କାଟିବା—13. Cutting of stone.
୧୫ । (+କର୍ତ୍ତୃ. ଅ) ଗଣିତରେ ଭାଜକ—
15. Divider in arithmetic
୧୬ । ଯେ ଛେଦନ କରେ; ଛେଦନକାରକ—16. Cutter.
୧୭ । ବିରାମ ଚିହ୍ନ, ପୂର୍ଣ୍ଣଚ୍ଛେଦ—16. Fullstop.
ଦେ. ବି.—ଦେବତାଙ୍କ ନିକଟରେ ପଶୁବଳି ଦେବା—
1. Decapitating a victim; animal sacrifice before a Deity.
୨ । ଦେବତାଙ୍କ ନିକଟରେ ବଳି ଦିଆ ଯିବା ପଶୁ—
2. An animal victim; a victim or animal sacrificed before a Deity.

**ଛେଦକ**—ସଂ. ବି. ପୁଂ—(ଛିଦ୍ ଧାତୁ+କର୍ତ୍ତୃ. ଅକ)—
Chhedaka — ୧ । ଯେ ଛେଦନ କରେ; ଛେଦନକାରକ—
(ଛେଦିକା—ସ୍ତ୍ରୀ) — 1. One who cuts; cutter.
୨ । (ଜ୍ୟାମିତି) ଯେଉଁ ରେଖା ଅନ୍ୟ ରେଖା ବା କ୍ଷେତ୍ରକୁ କାଟେ—2. (geometry) A line cutting another line or a figure.
୩ । (ଗଣିତ) ଭାଜକ—(mathematics) Divider.
ବିଣ—୧ । ବିନାଶକାରୀ—1. Destroying; destructive.
୨ । କର୍ତ୍ତନକାରୀ—2. Cutting.

**ଛେଦ କରିବା**—ଦେ. କ୍ରି.—ଛେଦିବା (ଦେଖ)
Chheda karibā — Chhedibā (See)

**ଛେଦକାର**—ଦେ. ବି.—୧ । ଯେଉଁ ବ୍ୟକ୍ତି (ଧୋବା ଆଦି) ଖଡ୍ଗ ବା କଟୁରିରେ ଠାକୁରାଣୀଙ୍କ ଆଗରେ ବୋଦା ହାଣେ—
Chheda-kāra — 1. A person who beheads a victim at an animal-sacrifice.
୨ । ପଥର କାଟିବା କାରିଗର—2. Stone-cutter.

**ଛେଦନ**—ସଂ. ବି. (ଛିଦ୍ ଧାତୁ+ଭାବ. ଅନ)—୧ । କର୍ତ୍ତନ—
Chhedana — 1. Cutting.
୨ । ଖଣ୍ଡ—2. Piece.
୩ । କାଟିବା ଅସ୍ତ୍ର—3. Cutting instrument.
୪ । ବିଭକ୍ତ କରଣ—4 Division.
୫ । ନାଶ; ଉଚ୍ଛେଦ—5. Cessation; destruction.
୬ । ଯେଉଁ ଔଷଧ କଫ ଆଦିକୁ ଗଳାରୁ ବାହାର କରିଦିଏ—
6. An expectorant medicine.

**ଛେଦନୀୟ**—ସ. ବିଣ. (ଛିଦ୍ ଧାତୁ+କର୍ମ. ଅନୀୟ)—ଛେଦ୍ୟ (ଦେଖ)
Chhedanīya — Chhedya (See)

**ଛେଦ ପକା(କେ)ଇବା**—ଦେ. କ୍ରି.—ଦେବତାଙ୍କ ଆଗରେ ପଶୁବଳି ଦେବା—To kill a victim before a Deity.
Chheda pakā(ke)ibā

| ୧ | ଇ | ଉ | ଋ,ଋ | ଈ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇସ୍ପ | ଉଅ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଔ | ନ୍ |

**ଛେଦ ପଡ଼ିବା**—ଦେ. କି.—( ଦେବତାଙ୍କ ନିକଟରେ କୌଣସି ପଶୁ )
Chheda paṛdibā ବଳିରୂପେ ହଣା ଯିବା; ବୋଦା ପଡ଼ିବା—
(a victim) To be sacrificed before a Deity.

**ଛେଦଭେଦ**— ଦେ. ବି. (ସଂ. ଛେଦ ଓ ଭେଦ; କ୍ଷମ୍ନା ଛନ୍ଦ ଓ ରେଦ)
Chheda-bheda ୧ । କପଟ ବା ଛଳ ବ୍ୟବହାର—
1. Knavery; deciet.
୨ । କୂଟନୀତି—2. Diplomacy.
୩ । ପରଚ୍ଛିଦ୍ର; ଗୁପ୍ତଦୋଷ—3. Secret blemishes.
୪ । ଗୁପ୍ତ ରହସ୍ୟ—4. Secret.
୫ । ସମଗ୍ର ତତ୍ତ୍ୱ—5. All the secrets.
କହ ମୋ ସୁତ ଛେଦଭେଦ
ପୃଚ୍ଛିଲୁ ଯେବଣ ସମ୍ବାଦ । ପ୍ରାଚୀ. ନଗୁଣମାହାତ୍ମ୍ୟ ।

**ଛେଦର୍**—ଦେ. ବି—୧ । (ସଂ. ଛିଦ୍ରର)-ଏକପ୍ରକାର ସୂତା; ଗଣ୍ଠିଆ ସୂତା;
Chhedarā ଦଶୀସୂତା—1. Knotty thread; coarse twist.
୨ । (ସଂ ଛିଦ୍ର) ଇତସ୍ତତଃ ହେବା; ଛିନ୍ନଛିନ୍ନ ହେବା—
2. Being scattered here and there.
୩ । (ସଂ. କ୍ଷୁଦ୍ର) କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ—3. Small bits.
ଦେ. ବିଣ—୧ । କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ ମିଶ୍ରିତ—
1. Mixed with small bits; coarse.
( ଯଥା—ଛେଦର ଗୁଡ଼ । )
୨ । ଗ୍ରନ୍ଥିଯୁକ୍ତ; ଗଣ୍ଠିଗଣ୍ଠିଆ—3. Knotty (thread).
(ଛେଦରୀ—ସ୍ତ୍ରୀ) ଗ୍ରା. ବିଣ. ପୁଂ—୧ । ଯେ ପରିବାର ମଧ୍ୟରେ କଳହ
ଜାତ କରାଏ—1. One who foments family-quarrels.
୨ । ହିଂସ୍ର—2. Revengeful; spiteful.
୩ । ଅତି କୃପଣ—3. Penurious.
୪ । ଯେ କ୍ଷୁଦ୍ର କ୍ଷୁଦ୍ର କଥାରେ ଛଳ କରେ; ଅତ୍ୟନ୍ତ
ଅଭିମାନୀ—4. Prone to take offence at small matters; unduly sentive.
୫ । ଅତି କୃପଣ—5 Very miserly.

**ଛେଦରିବା**— ଦେ. କି. (ସଂ. ଛିଦ୍ର)— ଇତସ୍ତତଃ ବିକ୍ଷିପ୍ତ ହେବା—
Chhedaribā To be scattered here and there;
ଛାତରା to be diffused.
ଛିତରାନା

**ଛେଦା**—ଦେ. ବି—୧ । ଧଡ଼ି ନ ଥିବା ପିନ୍ଧାଲୁଗା—1. A wearing
Chhedā cloth without coloured borders.
[ ଦ୍ର—ଏ ଲୁଗାକୁ ପିତୃହୀନ, ବୃଦ୍ଧ ଓ ବିଧବାମାନେ ପିନ୍ଧନ୍ତି ।]
୨ । ଗୁଡ଼ରେ ରହିଯିବା ସାନସାନ ଆଖୁଚୋପା—
2. Small bits of sugarcane left in the molasses.
୩ । କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ— 3 Clots; small bits
୪ । ଏକପ୍ରକାର ବସାଦହି (ଏହା ଉତ୍ତମରୂପେ ବସି ନ ଥାଏ
ଓ ଏଥିରେ ଖଣ୍ଡ ଖଣ୍ଡିଆ ଅଂଶମାନ ଭାସୁଥାଏ)—
4 A kind of clotted curd ( not well curdled ).
୫ । ହାଣିବା; କାଟିବା; ହାଣ; କାଟ—5 Cutting.
ପ୍ରାଦେ. (ଗଞ୍ଜାମ) ବି—ମାଠିଆ— An earthen pitcher.
ଦେ. ବିଣ—କର୍ତ୍ତିତ, କଟା ହୋଇଥିବା—Cut into pieces.
ବରଣ ପାଶେ ଥିଲା ଛେଦା ଶବ ଗହିଁଲା
ଏ ଛଲେ ପ୍ରଭୁ ଯୋଗି । ଉପେନ୍ଦ୍ର ଭଞ୍ଜ—ବୈଦେହୀଶବିଳାସ ।

**ଛେଦାଇବା**—ଦେ. କି. (ସଂ. ଛିଦ ଧାତୁ ଣିଚ ଛେଦି ଧାତୁ—
Chhhedāibā ଛେଦିବାର ଣିଜନ୍ତରୂପ—
ଛୋଦାନ Causative of Chhedibā.
ଛେଦ୍ୱାନା ସହସ୍ର ଗୁଣ ବୋଲା ଶକ୍ତିନ ଛେଦାଇ
ଭଞ୍ଜଲେ ଛ ସହସ୍ର ସେନ ନରସାଇଁ । କୃଷ୍ଣସିଂହ. ମହାଭାରତ. ଶଲ୍ୟ ।
(ଛେଦାଇବା—ଅନ୍ୟରୂପ)

**ଛେଦିତ**—ସଂ. ବିଣ. (ଛିଦ୍ ଧାତୁ ଣିଜନ୍ତ=ଛେଦି ଧାତୁ + କର୍ମ କ୍ତ)—
Chhedita ୧ । ଯାହା ଅନ୍ୟଦ୍ୱାରା ଛେଦନ କରାଯାଇ ଅଛି—
1. Cut.
୨ । ଏକାଧିକ ଭାଗରେ ବିଭକ୍ତ—
2. Divided into parts.
୩ । କାଟି କରି ବା ଛିଣ୍ଡାଇ ପୃଥକ୍ କରାଯାଇଥିବା—
3. Severed; separated.

**ଛେଦିବା**—ଦେ. କି. ( ସଂ. ଛିଦ୍ ଧାତୁ )—୧ । ଛେଦନ କରିବା;
Chhedibā କର୍ତ୍ତନ କରିବା; ହାଣିବା; କାଟିବା—
ଛେଦ୍ନା 1. To cut through.
ଛେଦ୍ନା ୨ । କାଟି କରି ଅଲଗା କରିବା—2. To cut off.
୩ । କୁଲାରେ ପାଛୁଡ଼ି କରି ଶସ୍ୟରୁ ଖୁଦ ବା କଣିଗୁଡ଼ିକ
ଅଲଗା କରିବା—3. To separate small particles from bigger grains by winnowing.
୪ । ଗଛର ଡାଳକୁ ସମାନସମାନ କରି କାଟିବା—
4. To prune
୫ । ଦୂର କରିବା; ନାଶ କରିବା—
5. To remove; to do away with.
ମାୟାରେ ହୋଇଣ ପ୍ରଭେଦ
ଜ୍ଞାନ ବିବେକ ତାହା ଛେଦ । ଜଗନ୍ନାଥ. ଭାଗବତ ।

**ଛେଦ୍ୟ**—ସଂ. ବିଣ. ( ଛିଦ୍ ଧାତୁ + କର୍ମ ଯ )—
Chhedya ୧ । ଯାହା ଛେଦନ କରାଯାଇ ପାରେ—
1. Capable of being cut.
୨ । ଯାହା ବିଚ୍ଛିନ୍ନ କରାଯାଇ ପାରେ—2. Separable.

**ଛେଦ୍ରିବା**—ଦେ କି—ଛେଦରିବା (ଦେଖ)—
Chhedribā Chhedaribā (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ-ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥ କୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କଅ' ନ ମିଳିଲେ 'କ୍ୱଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍ଖ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ

**ଛେନା**—ଦେ. ବି. (ସଂ. ସନ୍ତାନିକା=ଦୁଧସର, ସଂ. ଛିନ୍ନ; ସଂ. ନାମ ଆମିକ୍ଷା)—୧ । ଦଧି ଓ ଦୁଗ୍ଧରୁ ଅଗ୍ନିସଂଯୋଗରେ ବା ଅମ୍ଳରସଯୋଗେ ଯେଉଁ ଖାଦ୍ୟ ପିଣ୍ଡ ବାହାରେ; ଆମିକ୍ଷା; ପନୀର—1. Posset; cheese; curd
Chhenā
छाना; छेना
**छेना**

[ ଦ୍ର—ଦୁଧ ଛିଣ୍ଡିଗଲେ ଛେନା ହୁଏ, ଦହି ନିଆଁରେ ବସିଲେ ଛେନା ହୁଏ; ୧ମ କୁ ଦୁଧଛେନା ଓ ୨ୟକୁ ଦହିଛେନା କହନ୍ତି । ]

୨ । (ବିରକ୍ତିରେ ବ୍ୟବହୃତ ଶବ୍ଦ)—କିଛି ନାହିଁ—
2. (a term used in displeasure) Nothing.
(ଯଥା—ମୁଁ ପୁଅ ପିଛା ଶହଶହ ଖରଚ କଲି, ସେ ଛେନାଟା ପଢ଼ିଲା ।)

ପ୍ରାଦେ. (ସମ୍ବଲପୁର) ବି. (ତୁଳ. ଏହି ଅର୍ଥରେ ହି. छेना)—
୧ । ଘସି—1. Dry cowdung-cakes (used as fuel).
୨ । ପାଉଁଶ—2 Ashes.

**ଛେନାଗୁଡ଼**—ଦେ. ବି. (ଛେନା+ଗୁଡ଼)—୧ । ମିଷ୍ଟାନ୍ନରୂପେ ବ୍ୟବହୃତ ଛେନା ଓ ଗୁଡ଼—1. Cheese and sugar mixed together.
Chhenā-gurda

୨ । (କାନଫୋଡ଼ା ହେବା ବେଳେ ପିଲାର ହାତରେ ଛେନା ଗୁଡ଼ ଦେଇ ପିଲାଙ୍କୁ କହନ୍ତି "ଛେନାଗୁଡ଼ ଖା", ପିଲା ଛେନା ଗୁଡ଼ ଖାଇବାରେ ଲାଗିଥିଲା ବେଳେ ଭଣ୍ଡାରି ତା କାନକୁ ଛୁଞ୍ଚିରେ ଟୁକ୍ କିନା ଫୋଡ଼ି ଦିଏ; ଏଥିପାଇଁ ଲକ୍ଷଣାର୍ଥ) ପିଲାଙ୍କୁ ଭଣ୍ଡାଇଲା ପରି ଅଳ୍ପ ମୂଲ୍ୟର ଲୋଭନୀୟ ବସ୍ତୁ—
2. Any trifling bait.

୩ । (ଲକ୍ଷଣାର୍ଥ) ଅଳ୍ପ ମୂଲ୍ୟର ବସ୍ତୁ—
3. (figurative) Any trifle.

[ଦ୍ର—ଏହା ମଧ୍ୟ 'ଛେନା' ପରି 'କିଛି ନାହିଁ' ଅର୍ଥରେ ବିରକ୍ତିର ବ୍ୟବହୃତ ହୁଏ ।]

**ଛେନା ଛିଣ୍ଡାଇବା**—ଦେ. କ୍ରି.—ଗରମ ଦୁଧରେ ଖଟା ବା ଫିଟକିରି ମିଶାଇ କିମ୍ବା ଦହିକୁ ନିଆଁରେ ବସାଇ ସେଥିରୁ ଛେନା ପ୍ରସ୍ତୁତ କରିବା—To prepare cheese or curd or milk.
Chhenā chhindāibā
दूध या दहि काटा
**छेना बनाना**

ଛେନା ଛିଣ୍ଡେଇବା
ଛେନା ବସା (ସେ) ଇବା } ଅନ୍ୟରୂପ

[ଦ୍ର—ଦୁଧକୁ ଛିଣ୍ଡାଇ ଛେନା କରାଯାଏ; ଲୋକେ ଦୁଧକୁ ଛିଣ୍ଡାଇ ଛେନାରେ ପରିଣତ କରନ୍ତି, ଅଥଚ ଛେନା ଛିଣ୍ଡାଇବା କହନ୍ତି ।]

**ଛେନାପଣା**—ଦେ. ବି.—ଛେନା ଓ ନବାତଯୁକ୍ତ ପାନୀୟ—A drink made by dissolving sugar or molasses in water and putting bits of cheese in it.
Chhenā-panā

ଛେନାପଣା ସିନା ଖାଇଲେ ପାକ ହୋଏ,
କଷପଣା ଖାଇଲେ ନଜ ଲୋକ ଜୀଏଁ ।
କୃଷ୍ଣସିଂହ, ମହାଭାରତ, ଉଦ୍‌ଯୋଗ ।

**ଛେନାପାଣି**—ଦେ. ବି.—ଛେନା ଛିଣ୍ଡିଯିବା ପରେ ଦୁଧ ବା ଦହିରେ ରହିଯିବା ଜଳୀୟ ଅଂଶ—
Chhenā-pāni
**छेनाकापानी; छाछ** Whey.

**ଛେନାବଡ଼ା**—ଦେ. ବି.—(ସଂ. ଛିନ୍ନ + ବଟକ.—ଗୁଡ଼ରେ ପକ୍ୱ ଛେନାର ପିଠା; ମିଷ୍ଟାନ୍ନବିଶେଷ—
Chhenābardā
छेनाबड़ा Cheese-cake.

ଛେନାମଣ୍ଡା
ଛେନାମାଣ୍ଡିଅ } ଅନ୍ୟରୂପ

ପ୍ରାଦେ (ଗଡ଼ଜାତ) ବି.—ଘସି; ଶୁଷ୍କ ଗୋମୟ—
Dried cowdung-cakes.

**ଛେନାରୁ ଚୋପା ଛଡ଼ା(ଡ଼େ)ଇବା**—ଦେ. କ୍ରି. (ବ୍ୟଙ୍ଗ)—ବୃଥା ବା ନିଷ୍ଫଳ କଥାରେ ମାତିବା—
Chhenāru chopā chhardā(e)ibā
1. (ironical) To be engaged in a wild-goose chase.

୨ । ଅତିରିକ୍ତ ରୂପେ ଭିନ୍ନ ଭିନ୍ନ କରି ଆଲୋଚନା ବା ତର୍କ କରିବା—2. To use hair-splitting arguments.

**ଛେପ୍‌ଲା ନାକା**—ପ୍ରାଦେ. (ସମ୍ବଲପୁର) ବିଣ.—ଚେପ୍ଟାନାକା—
Chhep lānākā Flat-nosed; having a flat-nose.
(ଛେପ୍‌ଲାନାକୀ—ସ୍ତ୍ରୀ)

**ଛେପ୍‌ଲି**—ପ୍ରାଦେ. ( ସମ୍ବଲପୁର ) ବିଣ.—ଘୋରି ହୋଇ ଯାଇଥିବା (କଠଉ ବା ଜୋତା)—Worne out (sandals or slippers).
Chhep-li

**ଛେପ**—ଦେ. ବି. (ସଂ. ଷ୍ଠୀବ)—ଥୁକ; ନିଷ୍ଠୀବନ; ପାଟିରୁ ବାହାରିବା ଲାଳମୟ ବସ୍ତୁ—Saliva; spittle.
Chhepa
छेप, थथू
**थूक**

**ଛେପ ଖଙ୍କାର**—ଦେ ବି.—(ଅନୁକାର ଶବ୍ଦ) (ଛେପ+ଖଙ୍କାର)—(ଛେପ) ମୁଖରେ ପ୍ରସ୍ତୁତ ନିଷ୍ଠୀବନ ଓ (ଖଙ୍କାର) ଗଳାରୁ ନିଃସୃତ ଶ୍ଳେଷ୍ମା—
Chhepa khankāra
थूथू कफ
**थुक बलगम** Spittle and phlegm.

**ଛେପ ଢୋକିବା**—ଦେ. କ୍ରି.—୧ । ମୁଖନିଃସୃତ ଛେପକୁ ଗଳାଧଃକରଣ କରିବା—1 To swallow the spittle.
Chhepa dhokibā
**थूकार चाटना**

୨ । (ଲକ୍ଷଣାର୍ଥ) କହିଥିବା ସତ୍ୟ ପାଳନ ନ କରିବା—
2. (figurative) Not to carry out one's promise.
(ଯଥା—ସେ ନାମବଡ଼ା ରଜାଟାଏ ହୋଇ ସ୍ୱବା ପକାଇଲା ଛେପ ଢୋକିଲା)

**ଛେପ ପକା(କେ)ଇବା**—ଦେ. କ୍ରି.—ମୁହଁରୁ ଥୁକ ବାହାରକୁ ଫିଙ୍ଗିବା—
Chhepa pakā(e)ibā To spit.
छेप फेला
**थूकना**

[ଦ୍ର—କେହି ଅସ୍ପୃଶ୍ୟ ଜାତି ବା ଶୂଦ୍ର ଉଚ୍ଚଜାତୀୟ ବ୍ୟକ୍ତିର ଉପରେ ଛେପ ପକାଇଲେ ଯାହା ଉପରେ ଛେପ ପଡ଼େ ସେ ଅଜାତିଆ ବା ଅଶୁଦ୍ଧ ହୋଇ ଯାଏ । ]

| ୧ | ଲ | ଊ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇପ୍ସ | ଡ଼ଥ | ଞ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଛ | ନ୍ଥ |

**ଛେପିବା**—ପ୍ରାଦେ. (ଗଞ୍ଜାମ)—କ୍ରି.—ଛେପ ପକାଇବା—
Chhepiba̅ To spit.

**ଛେବଲ**—ଦେ. ବିଣ. (ସଂ. ଚପଲ)—୧ । ଚପଲ ସ୍ୱଭାବ—
Chhebala 1. Fickle-minded
ছাবলা; ছেবলা ୨ । ବାଲସ୍ୱଭାବ—
**চুলবুলা** 2. Chlidish; puerile.
୩ । ଚଗଲା (ଦେଖ)
3. Chagala̅ (See)

**ଛେମ**—ଗ୍ରା. ବି. (ସଂ. କ୍ଷମ)—୧ । ଅଧିକାର; କ୍ଷମତା—
Chhema 1. Power; authority,
୨ । ଯୋଗ୍ୟତା—2. Ability

**ଛେମଣ୍ଡ**—ସଂ. ବିଣ.– ପିତୃମାତୃହୀନ; ଅନାଥ—
Chhemanda Orphaned.

**ଛେର୍‌ଛେରା** ମଗା - ପ୍ରାଦେ (ସମ୍ବଲପୁର) ବି —ପୌଷପୂର୍ଣ୍ଣିମାରେ ଗଣ୍ଡ,
Chher-chhera̅ maga̅ ପାଣ, ଭୂୟାଁ ଆଦି ନୀଚ ଜାତୀୟ ଲୋକ ବଡ଼ ଘରମାନଙ୍କୁ ନଜର ପର୍ବ ଖରଚପାଇଁ ଧାନ ମାଗିଯିବା-
The act of approaching the rich people for doles of paddy on the Paush full-moon day by the low caste people.

**ଛେର୍‌ରା**—ପ୍ରାଦେ. (ଗଞ୍ଜାମ) ବି.—ଛରରା (ଦେଖ)
Chher-ra̅ Chharara̅ (See)

**ଛେରଅଣ୍ଟା**—ଦେ. ବି.—ଗୋରୁଙ୍କର ଶ୍ଲେଷ୍ମବଶେଷ—
Chhera-anta̅ Impaction of rumex of cattle.

**ଛେରକୁରା**—ଦେ. ବିଣ. ପୁଂ—ଛେରୁଆ (ଦେଖ)
Chherakura̅ Chherua̅ (See)
(ଛେରକୁରୀ—ସ୍ତ୍ରୀ)

**ଛେରା**—ଦେ. ବି.-( ସଂ. କ୍ଷର୍ ଧାତୁ; କିମ୍ବା ସଂ. ସୃଜ୍ ଧାତୁ )—
Chhera̅ ୧ । ତରଳ ମଳ—
ছেবানি 1. Loose stools; watery evacuation.
**छेरो** ୨ । ଭୂମିରେ ଯେଉଁ ସୁଗନ୍ଧ ଜଳ ଛିଞ୍ଚାଯାଏ—
ছড়া 2. Scented water sprinkled on the
**छिड़कना; छींटा** ground.

ଦ୍ରୋଣୀ ଲମ୍ବାଇ ଗୃହ ମଣ୍ଡେ
ଚନ୍ଦନ ଛେରା ସଜାଡ଼ାଣ୍ଡେ । ଜଗନ୍ନାଥ. ଭାଗବତ ।

ছর্‌রা ୩ । ଛରରା (ଦେଖ)
**छुटरा** 3. Chharara̅ (See)
୪ । ତରଳ ପୁରୀଷ ତ୍ୟାଗ—
4 Passing of loose stools.
୫ । ( ଗୋରୁ ଓ ମନୁଷ୍ୟଙ୍କର ) ତରଳ ପୁରୀଷତ୍ୟାଗ କରିବା
ରୋଗ—5. Diarrhoea; looseness of bowels.
ପାପୀ ଦେହରେ ଛେରା ରୋଗ । ଚଗ । ''

୬ । ଗୋରୁଙ୍କର ଛେରା ରୋଗ; ଠାକୁରାଣୀ ରୋଗ; ଗୋବସନ୍ତ—
6. Rinderpest.
ছেরা ଦେ. ବିଣ—୧ । ତରଳ ପୁରୀଷ ତ୍ୟାଗକାରୀ—
1. One who habitually passes loose stools.
୨ । ଛେରୁଆ (ଦେଖ)
2. Chherua̅ (See)
ପ୍ରାଦେ. (ସମ୍ବଲପୁର) ବି.—ଭୂମିରେ ଛିଞ୍ଚାଯିବା ଗୋବରପାଣି—
Cowdung and water sprinkled on the ground

**ଛେରାଇବା**—ଦେ କ୍ରି—୧ । ଛେରିବାର ଣିଜନ୍ତରୂପ—
Chheraiba̅ 1. Causative of Chheriba̅.
ছেরানো ୨ । ଅତ୍ୟନ୍ତ ଭୟଭୀତ କରାଇବା—
**छेराना** 2. To frighten a person.
(ଛେରେଇବା – ଅନ୍ୟରୂପ) [ଦ୍ର—ଏ କ୍ରିୟାର ଅସମାପିକା ରୂପସଙ୍ଗେ ଦେବା, ପକାଇବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ ।]

**ଛେରାଛେରି**—ଦେ. ବି—ବହୁ ପରିମାଣରେ ଛେରିବା—
Chhera̅chheri Profuse passing of watery stools.

**ଛେରା ଦେବା**--ପ୍ରାଦେ. (ସମ୍ବଲପୁର) କ୍ରି--ଭୂମିରେ ଗୋବର ପାଣି ଛିଞ୍ଚିବା--
Chhera̅ deba̅ To sprinkle water mixed with cowdung on the ground.

**ଛେରା ପହଁରା**—ଦେ. ବି. (ଅନୁକାର ଶବ୍ଦ) (ସଂ.କ୍ଷର ଧାତୁ ଓ ପରିମାର୍ଜନ)-
Chhera̅ pahanra̅ ପଥ ବା ଭୂମିରେ ଜଳ ସେଚନକରି ଓଳାଇବା-
ছড়াঝাঁটা Sprinkling water on and sweeping the ground.
**छींटना झाड़ना**
ଛେରାପଅଁରା, ଛେରାପହୁଁରା, ଛେରାପହରା } ଅନ୍ୟରୂପ [ ଦ୍ର—ଶ୍ରୀ ଜଗନ୍ନାଥ ମହାପ୍ରଭୁ ଗୁଣ୍ଡିଚା ସମୟରେ ରଥକୁ ପହଣ୍ଡିବଳେ କରିବା ସମୟରେ ପୁରୀରାଜା ଶ୍ରୀଜୀଉଙ୍କ ଆଗେଆଗେ ସୁଗନ୍ଧ ଜଳ ଛିଞ୍ଚିଛିଞ୍ଚି ଓ ସୁନା ଖଡ଼ିକାରେ ଓଳାଇ ଓଳାଇ ଅର୍ଥାତ୍ 'ଛେରା ପହଁରା' କରି କରି ଯାଉଥାଆନ୍ତି । ଏଥିଯୋଗୁଁ କାଞ୍ଚିର ରାଜା ପୁରୀର ମହାରାଜ ପୁରୁଷୋତ୍ତମ ଦେବଙ୍କୁ ଚଣ୍ଡାଳ ବୋଲି କହି ତାଙ୍କୁ ନିଜ କନ୍ୟା ପଦ୍ମାବତୀଙ୍କୁ ବିବାହ ଦେଲେ ନାହିଁ । ଏଥିଲାଗି ଜଗନ୍ନାଥ ମହାପ୍ରଭୁଙ୍କର ଅପମାନ ହେବାରୁ ନିଜେ ଜଗନ୍ନାଥ ଓ ବଳଭଦ୍ର ମନୁଷ୍ୟରୂପ ଧରି କଳା ଘୋଡ଼ା, ଧଳାଘୋଡ଼ାରେ ବସି ରାଜା ଓ ରଜାଙ୍କ ସୈନ୍ୟଙ୍କ ସଙ୍ଗେ ସଙ୍ଗେ ଯାଇଥିଲେ ଓ ପୁରୀ ରାଜା କାଞ୍ଚି ନଗରକୁ ଜୟ କରି କାଞ୍ଚି ଯେମାଙ୍କୁ ଆଣି ଶେଷରେ ବିବାହ କରିଥିଲେ । ]

**ଛେରା ହଗା**—ଦେ. ବି—ଅଜୀର୍ଣ୍ଣ ଯୋଗୁଁ ପତଳା ଜଳୀୟ ଝାଡ଼ା—
Chhera̅ haga̅ Liquid stools; diarrhoea.
ছেরাহাগা
**छेराझाड़ा**

**ଛେରି**—ଗ୍ରା. (ଇତର) ବି. ( ସଂ. ଛେଳିକା )—ଛେଳି; ଛାଗଳ—
Chheri — Goat.
ଛେଳୀ
छेरी
[ ଦ୍ର—ବାଉରି କଣ୍ଡରାଆଦି ଇତରଜନ-ବ୍ୟବହୃତ; 'ଳ' ସ୍ଥାନରେ 'ର' ଉଚ୍ଚାରଣ ଯୋଗୁଁ ଛେଳି=ଛେରି । ]

**ଛେରିବା**—ଦେ. କ୍ରି—୧ । (ସଂ. କ୍ଷର୍ ଧାତୁ) ତରଳ ମଳ ତ୍ୟାଗ କରିବା—
Chheribā — 1. To pass watery stools.
ধেড়ান, ছেরা
छेरना
୨ । (ଲକ୍ଷଣାର୍ଥ) ରୋଗ ବା ଭୟ ହେତୁ ତରଳ ପୁରୀଷ ତ୍ୟାଗ କରିବା—2. To pass stools through disease or fear.
[ ଦ୍ର—ଏହି କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ପକାଇବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

**ଛେରୁ**—ଦେ. ବିଣ. ପୁଂ ଓ ସ୍ତ୍ରୀ—ଛେରୁଆ ( ଦେଖ )
Chheru — Chheruā ( See )

**ଛେରୁଆ**—ଦେ. ବିଣ. ପୁଂ ଓ ସ୍ତ୍ରୀ—୧ । ଅତ୍ୟନ୍ତ ଭୀତ—
Chheruā — 1. Coward.
ଛେରେଇ, ଛେରେଈ } ଅନ୍ୟରୂପ
୨ । ଯେ ଭୟରେ ଛେର ପକାଏ—
2 One who passes loose stools through fear.
୩ । ଛେର ରୋଗାକ୍ରାନ୍ତ—
3. Suffering from loose stools.

**ଛେଲ୍**—ଗ୍ରାଦେ. (ସମ୍ବଲପୁର) ବି—ଛେଳି; ଅଜା—
Chhel — Goat.

**ଛେଳ**—ଦେ. ବି. ( ସଂ. ଶଲ୍ୟ )—
Chhela — ୧ । ଶର; ବାଣ; ଅସ୍ତ୍ରବିଶେଷ—
1. Arrow; a weapon of offence.

ମାର-ମାର ଛେଳ ତା ମଧ୍ୟେ ପୋତାଇଲା
ଅସିଲେ ବାଲ୍ୟ ରଜା ମାରିବ ସବଳ । କୃଷ୍ଣସିଂହ, ମହାଭାରତ, ବନ ।

୨ । ବରଛା—2. Spear.

ଛେଳ ପୋଞ୍ଜ ଫଳ ଉପରେ ହସ୍ତ ଦେଇ । କୃଷ୍ଣସିଂହ, ମହାଭାରତ, ଅଦି ।

୩ । ( ସଂ. ଛଲ୍ଲି ) ବାଉଁଶ ଇତ୍ୟାଦିଙ୍କର ପତଳା ଶୋଟେ ପାତିଆ—3 Thin small slices or strips of bamboo.
ছিলকা
छिलका

**ଛେଳା**—ଦେ. ବି. ( ସଂ. ଶଲ୍ୟ )—୧ । ଛେଳ ( ଦେଖ )
Chhelā — 1. Chhela ( See )
ছিলকা, ছোল
कतरन, छिलका
୨ । ( ସଂ. ଛଲ୍ଲି ) କାଠ ବା ବାଉଁଶର ଉପରୁ ପତଳା କରି ଛଡ଼ାଇବା ବା କାରସିରେ ଛାଞ୍ଚିଲେ ସେହି ପତଳା ଚାଇଥା ବାହାରେ—
2. Scraped thin slice of bamboo or wood
୩ । ଚାଞ୍ଛିବା—3. Scraping.

୪ । ଗୁଡ଼ର ପରିମାଣବିଶେଷ; ୧୦ ବିଶା—
4. A measure of molasses; 10 bisās.
୫ । କପାର ପରିମାଣବିଶେଷ; ୪୦ ବିଶା—
5. A measure of cotton; 40 bisās.
୬ । ଧାନର ପରିମାଣ ବିଶେଷ; ୪୦ ଗୌଣୀ—
6. A measure of paddy; 40 gaunis.
ଗ୍ରାଦେ. (ପୁରୀ) ବି—୧ । ପୁରୀ ଜିଲ୍ଲାରେ ନଡ଼ିଆଗଣତିରେ ସଂଖ୍ୟାବିଶେଷ; ୯ ପଣ ବା ୭୨୦ କଡ଼ା ନଡ଼ିଆ—
1. ( Puri district ) An aggregate of 720 cocoanuts.
୨ । (ବାଲେଶ୍ୱର) ବି—ବାଲେଶ୍ୱରୀ ଛଅସେରିଆ ଗଉଣୀରେ ୪୦ ଗଉଣୀ ( ଧାନ )=୨୪୦ ବାଲେଶ୍ୱରୀ ସେର= ବାଲେଶ୍ୱରୀ ୬ ମହଣ=କଟକୀ ୪୨ ମହଣ—
2. Six maunds of paddy.
୩ । ଥୋଡ଼ିବଳଦଙ୍କ ଉପରେ ଉପରେ ବୁହାଯିବା ପଲାଣ—
3. Pack-saddle.
୪ । ବିଲରୁ କଟା ହୋଇ ଖଳାକୁ ଅଣାଯିବା କଳେଇର ଗୋଛା, ଯାହା ବଳଦଙ୍କ ପିଠିରେ ବୁହାଯାଏ —
4. A pack of paddy sheaves carried on the back of bullocks from the fields.

**ଛେଳାଇବା**—ଦେ. କ୍ରି—୧ । ଛେଳିବା କ୍ରିୟାର ଣିଜନ୍ତ ରୂପ—
Chhelāibā — 1. Causative form of Chhelibā
(ଛେଳେଇବା—ଅନ୍ୟରୂପ) ୨ । ଛେଳିବା ( ଦେଖ )
2. Chhelibā ( See )

**ଛେଳା କେରଣ୍ଡି**—ଦେ. ବି. ( ସଂ. ମହାସଫର )—
Chhelā kerāndi — ବଡ଼ ବଡ଼ କେରଣ୍ଡି ମାଛ—A kind of sweet-water fish; Barlens Phutunes or Barlens Sarana.
ফুটনী, পুঁঠী, সরনাপুঁঠী
सौरी
(ଛେଳାକିରଣ୍ଡି—ଅନ୍ୟରୂପ)

**ଛେଳାଛେଳି**—ଦେ. ବି—ଛେଳିବା ବା ଚାଞ୍ଛିବା କର୍ମ—
Chhelāchheli — Act of scraping or mowing.
চাঁছাচাঁছি

**ଛେଳି**—ଦେ. ବି. (ସଂ. ଛାଗଳ; ପ୍ରାକୃତ ଛଲୀ; ସଂ. ଛେଲିକା=ଛାଗୀ; ଯୋଗେଶ୍ଚନ୍ଦ୍ର)—୧ । ଛାଗ—1. Goat.
Chheḷi
ছাগল
बकरा; बकरी
[ଦ୍ର—ପୁଂଲିଙ୍ଗରେ ଅଣ୍ଡିରା ଛେଳି ଓ ସ୍ତ୍ରୀଲିଙ୍ଗରେ ମାଈ ଛେଳି ବୋଲାଯାଏ ।]
୨ । (ଲକ୍ଷଣାର୍ଥ) ଭୟାଳୁ ଲୋକ—
2 (figurative) A coward.
( ଯଥା—ସେ ଏ କାମ କରିବାକୁ ଛେଳି=ସେ ଏ କାମ କରିବାକୁ ଡରୁଛି । )
[ଦ୍ର—ଛେଳିମାନେ ପାଣିରେ ପଶିବାକୁ ଡରନ୍ତି; ଏଥିପାଇଁ ପ୍ରବାଦ ଅଛି "ପାଣିକି ଛେଳି" ପରି ହେବା । ]

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ୍ | ଡଥ | ଯ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ତ |

**ଛେଲ୍**—ଦେ. ବି. (ସଂ. ଛଲ୍ଲି; ଛଲ୍ଲ)—୧ । ବୃକ୍ଷାଦିର ବକଳ—
Chheli 1. Bark of trees.
ଛାଲ ଛାଲାଟ ୨ । କାଠର ଉପରୁ ଚଞ୍ଚା ହୋଇଥିବା ପତଳା ଅଂଶ—
**छिलका; छाल** 2. A slice scraped from a piece of wood.
ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ଏହି ଅର୍ଥରେ ହି. ଛେଲି)—
ଛେଳି—Goat.

**ଛେଲଗୋତିଆ**—ଦେ. ବିଣ. (ସଂ. ଛେଲକା ଓ ଗୋତ୍ର)—
Chheligotriā ଛେଲମାନଙ୍କ ପରି ଗମ୍ୟାଗମ୍ୟ ବିଚାରଶୂନ୍ୟ—
Cohabiting with persons of prohibited degree of relationship; incestuous.

**ଛେଲପାଗୁଲିଆ**—ଦେ. ବି—ଏକପ୍ରକାର କ୍ଷୁଦ୍ର ଔଷଧି ଗୁଳ୍ମ—
Chhelipāguliā A kind of medicinal plant.

**ଛେଲିବା**—ଦେ. କ୍ରି. (ସଂ. ଛଲ୍ଲି =ତ୍ୱକ୍; ଛଲ)—୧ । ଗଞ୍ଛିବା—
Chhelibā 1. To scrape off.
ଛୁଲା; ଛୋଲା ୨ । ଉପରର ପତଳା ସ୍ତର ବା ବଲ୍କଲ କୌଣସି
**छिलना; चौलना** ଶସ୍ତ୍ରଦ୍ୱାରା ଉଠାଇବା—2. To scrape off the bark or outer layer.
୩ । ଭୂମି ଉପରୁ ଘାସକୁ ଚାଞ୍ଛିବା—
3. To mow the grass.

**ଛେଲ ମାହାରିଆ**—ପ୍ରାଦେ. (ଗଡ଼ଜାତ) ବି—ଛେଳ ଜଗୁଆଳ; ଛେଳ
Chheli māhāriā ରଖୁଆଳ—Goat-herd.

**ଛେଲୁଆ**—ଦେ. ବି. (ସଂ. ଛଲ୍ଲି)—୧ । ପାତ୍ରରୂପେ ବ୍ୟବହୃତ ମାଟି
Chheluā ହାଣ୍ଡିର ବଡ଼ ଭଙ୍ଗାଖଣ୍ଡ; ଖାପ୍ରି—1. A large
खापरी; खोलाम broken bit of earthern ware used as
**ठिकरा** a pot.
୨ । ବଡ଼ ଖପର—2. Big potsherd.
[ ଦ୍ର—ହାଣ୍ଡିକୁ ଭାଙ୍ଗିଲେ ତହିଁରୁ ଯେଉଁ ଅଂଶ ପାତ୍ରରୂପେ ବ୍ୟବହାର କରାଯାଇ ପାରେ ତାକୁ ଛେଲୁଆ କହନ୍ତି, ଟିକିଟିକି ଅଂଶକୁ ଖପର କହନ୍ତି । ]

**ଛେଲୁଆ ମାରିବା**—ଦେ. କ୍ରି—ଖଣ୍ଡେ ଛେଲୁଆ ବା ଖପରକୁ ତିର୍ଯ୍ୟକ୍
Chheluā māribā ଭାବରେ ଏପରି ପାଣି ଉପରକୁ ପକାଯାଏ
छिनिमिनि खेला; ଯେ, ତାହା ପାଣି ଉପରକୁ ସ୍ପର୍ଶ କରି ଡେଇଁ
खोलामकुचिमारा ଡେଇଁ କା ଖଣ୍ଡଦୂର ଗୁଲଯାଏ—
**छिछलिखेलना** To play at ducks and drakes with a potsherd.

**ଛୈ**—ଦେ. ବି—୧ । (ସଂ. ଛଦ) ଛଇ; ନୌକା ଗୁଡ଼ିଭର ଉପରର
Chhai ଆବରଣ; ନାହା, ଗାଡ଼ିଆଦିର ଉପରର ଢାଙ୍କ—
छै 1. The thatch or covering for a boat or cart.
୨ । (ସଂ. ଛବି) ଗୁରଆଡ଼େ ଖେଳେଇ ହୋଇଯିବା—
2. Diffusion.
୩ । (ସଂ. ଛବି) ଛବି; ଛଟକ; ବଲାସ-ଭଙ୍ଗୀ—
3. Spotiveness; foppishness.
୪ । ଥଟ୍ଟା—4. Jest; frolic.
୫ । ଛଳନା; ଖେପର—5. Pretence; trick.
୬ । ବାଲଙ୍ଗି; ଗୁଭର: ଗର୍ବ—6. Arrogance.
୭ । ରସିକତା—7. Gallantry; coquetry.
୮ । (ଇଟାଆଦିର) ସୁସଜ୍ଜିତ ଶ୍ରେଣୀବଦ୍ଧ ଗଦା—
8. Well-set stack (e. g. of brick).
[ ଦ୍ର—'ଛଇ' ଆଦ୍ୟରେ ଥିବା ଦେଶଜ ଶବ୍ଦମାନ 'ଛୈ' ଆଦ୍ୟଯୁକ୍ତ ହୋଇ ମଧ୍ୟ ଉଚ୍ଚାରିତ ହୁଏ ଓ ଲେଖାଯାଏ । ]

**ଛୈଛଡ଼୍**—ଦେ. ବିଣ—୧ । ଯେଉଁ ବ୍ୟକ୍ତି ବା ବୃକ୍ଷାଦି ହୃଷ୍ଟପୁଷ୍ଟ, ସୁନ୍ଦର,
Chhaichhard ସତେଜ ଓ ଡେଙ୍ଗା ହୋଇ ବଢ଼େ—
ଛୈଛଡ଼ି 1. Vigorously grown up; robust; vigorous.
ଛୈଛଡ଼ିଆ
ଛୈଛଡ଼ୁଆ } ଅନ୍ୟରୂପ ୨ । ବଳିଷ୍ଠ ଓ ହୃଷ୍ଟପୁଷ୍ଟ—
ଛୈଛଲ 2. Muscular and strong.
ଛୈଛଲିଆ

**ଛୈଲ୍**—ଦେ. ବିଣ—ଛଇଲ୍ (ଦେଖ)
Chhail Chhail (See)
(ଛୈଲାଟ୍—ଅନ୍ୟରୂପ)

**ଛୈଲ**—ଦେ. ବି ଓ ବିଣ—ଛଇଲ (ଦେଖ)
Chhaila Chhaila (See)

**ଛୈଲା**—ଦେ. ବିଣ. ସ୍ତ୍ରୀ—ଛଇଲା (ଦେଖ)
Chhailā Chhailā (See)

**ଛୈଲୀ**—ଦେ. ବିଣ. ସ୍ତ୍ରୀ—ଛଇଲା (ଦେଖ)
Chhaili Chhailā (See)

**ଛୋଇଁ**—ଦେ. ବି. (ସଂ. ଶିମ୍ବୀ)—ଶିମ୍ବ, ମୁଗ, ହରଡ଼, ସଜନା, ବରଗଡ଼
Chhoiñ ଆଦି ବୃକ୍ଷର ଲମ୍ବ ଖୋଷାଯୁକ୍ତ ଫଳ, ଛୁଇଁ—
छुँटी Long slender stalk like beans of
**छीमी** certain trees and plants; a pot or
(ଛୁଇଁ—ଅନ୍ୟରୂପ) legume.

**ଛୋଇଁବା**—ଦେ. କ୍ରି—୧ । ( ସଂ. ସ୍ପୃଶ୍ ଧାତୁ ; ସଂ. ଛୁପ ଧାତୁ )—
Chhoiñbā ସ୍ପର୍ଶ କରିବା—1. To touch.
छोँयाँ; छूँयाँ ୨ । (ସଂ ଛଦ ଧାତୁ)—ଛାଆଣି କରିବା; ଘର ଛପର
**छूना** କରିବା—2. To thatch.
ଛୁଇଁବା
ଛୁଆଁଇବା } ଅନ୍ୟରୂପ ୩ । ଛୁଇଁବାର ଣିଜନ୍ତରୂପ—
ଛୁଇଁବା 3. Causative form of Chhuiñbā.

**ଛୋଁକ**—ଦେ. ବି—ଛୁଙ୍କ (ଦେଖ)
Chhoñka Chhuñka See)

**ଛୋଁଦାର**—ପ୍ରାଦେ. (ସମ୍ବଲପୁର) ବି. (ସଂ. ସମ୍ମୁଖ + ଦ୍ୱାର)—
Chhoñdāra ଛାମୁଦୁଆର (ଦେଖ)
Chhāmuduāra (See)

| ସାଧାରଣ ଛୋକେ ଅପର ପୃଷ୍ଠାରେ ସଚତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଁଶୀ' ନ ପାଇଲେ 'ଅଞ୍ଚି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ । |
|---|

**ଛୋକର୍‌**—ଦେ. ବି. ପୁଂ (ହିନ୍ଦୀ ଓ ବଂ. ରୁ ଅନୁକୃତ) (ଫ. ଚୋକ= Chhokarā ଶିଶୁ)—୧ । ବାଳକ; ଟୋକା— (ଛୋକରୀ—ସ୍ତ୍ରୀ) 1 Boy; lad.

୨ । ଅପରିଣତବୟସ୍କ ଯୁବା—2. A youth.

୩ । ଚାକର ଟୋକା—3 Servant boy.

**ଛୋକାର**—ଦେ. ବି. ପୁଂ (ଫ. ଶକାର=ନାଟକରେ ରାଜାଙ୍କର ନୀଚ Chhokāra ଜାତୀୟ ଶାଳକ)—୧ । ବେଶ୍ୟାପୁତ୍ର; ଭଡ଼ୁଆ ଜାତି— (ଛୋକାରୁଣୀ—ସ୍ତ୍ରୀ) 1. A caste consisting of persons born of whores.
ଭାଡ଼ୁ
**भडुआ, भँडुवा**

[ ଦ୍ର—ଏମାନଙ୍କର ଗୋଟିଏ ସ୍ୱତନ୍ତ୍ର ଜାତି ଅଛି । ଏମାନେ ଗୃହସ୍ଥମାନଙ୍କ ଘର ବିବାହାଦି କରନ୍ତି, ଏମାନେ ନୃତ୍ୟକାରିଣୀ ବେଶ୍ୟାମାନଙ୍କ ସଙ୍ଗେ ବାଦ୍ୟ ଆଦି ବଜାନ୍ତି । ଆମ ଦେଶରେ କୌଣସି କୌଣସି ସ୍ଥଳେ ଏମାନେ ଢେଲଙ୍ଗି ବାଜା ବଜାନ୍ତି । ]

୨ । ନିର୍ଲଜ୍ଜ ବ୍ୟକ୍ତି; ଭଣ୍ଡ ଲୋକ— 2. A shameless person.

୩ । ପରପୁରୁଷ ନିକଟରେ ପର ସ୍ତ୍ରୀ ଜୁଟାଇବା ଲୋକ— 3. A pander; procurer; pimp a go-between.

୪ । ଅଶ୍ଳୀଳଭାଷାପ୍ରିୟ ବ୍ୟକ୍ତି— 4. A person who is fond of using obscene language

ଦେ. ବିଣ. ପୁଂ—୧ । ଯେ ପରପୁରୁଷମାନଙ୍କ ନିକଟରେ ପରସ୍ତ୍ରୀ ବା ନିଜ ସ୍ତ୍ରୀକୁ ଅସଦ୍ ସଂସର୍ଗ ନିମନ୍ତେ ଜୁଟାଏ— 1. Pandering; procurer.

୨ । ଇନ୍ଦ୍ରିୟପରାୟଣ— 2. Lascivious; lewd; licentious; sensual.

୩ । ଭଣ୍ଡ; ନିର୍ଲଜ୍ଜ; ବେହିୟା — 3. Shameless; indecent.

୪ । ଅତି ନୀଚ (ଲୋକ)—4. Low; vile, mean.

୫ । ଅଶ୍ଳୀଳ—5. Obscene. (ଯଥା—ଛୋକାର କଥା ।)

୬ । ଅଶ୍ଳୀଳଭାଷା ପ୍ରିୟ (ବ୍ୟକ୍ତି)— 6. Fond of obscene language.

୭ । ଅସଚ୍ଚରିତ୍ରା—7. Immoral; debanched.

୮ । ଲମ୍ପଟ—8. Addicted to adultery.

[ ଦ୍ର—ଦିନାଇ ଦାସଙ୍କର ଗୋଟିଏ ପ୍ରବଚନ (ଢଗ) ଅଛି, ଯଥା—"ଛୋକାରୁଣୀ ମାଇପଙ୍କ ଓଷା ସଖୀ ଗୋ ମନ୍ଦ ଏ" ଅର୍ଥାତ୍ ଅସଚ୍ଚରିତ୍ରା ସ୍ତ୍ରୀଲୋକର ଧର୍ମଭୟ ନାହିଁ; ଏପରି ସ୍ଥଳରେ ଉପବାସ ବ୍ରତାଦି ଅନୁଷ୍ଠାନ କରିବା ତା ପକ୍ଷରେ କେବଳ ଲୋକଦେଖାଣିଆ ଭଣ୍ଡାମି ମାତ୍ର । ]

**ଛୋକାରକଥା**—ଦେ. ବି.—ଅଶ୍ଳୀଳ କଥା— Chhokāra kathā Obscene language.

**ଛୋକାରିଆ**—ଦେ. ବିଣ. ପୁଂ—ଛୋକାର (ଦେଖ) Chhokāriā Chhokāra (See) (ଛୋକାରୁଣୀ—ସ୍ତ୍ରୀ)

**ଛୋଟ**—ଦେ. ବିଣ. (ସଂ. କ୍ଷୁଦ୍ର)—୧ । ବାଙ୍ଗର; ଆକାରରେ ହ୍ରସ୍ୱ; ସାନ; Chhoṭa ଙ୍ଖୁଜ—1. Small; dwarfish. (ବଡ଼—ବିପରୀତ)

୨ । କନିଷ୍ଠ (ଯଥା ଛୋଟ ଭାଇ)— ছোট 2. Younger.
**छोटा** ୩ । ବୟସରେ ସାନ; ଅଳ୍ପବୟସ୍କ—3. Young.

୪ । ଅପେକ୍ଷାକୃତ ଅଳ୍ପବୟସ୍କ— 4 Younger; junior.

୫ । ଅଧମ; ହୀନପ୍ରକୃତି; ନୀଚ—5. Low; mean.

୬ । ନୀଚଜାତୀୟ—6. Of low caste.

**ଛୋଟ ଅଦାଲତ**—ଦେ ବି.—କାଜ୍‌କୋଟ ଅଳ୍ପ ଦାବୀ ଥିବା ସହଜ Chhoṭa adālata ବିଚାର୍ଯ୍ୟ ମକଦ୍ଦମାମାନ ସରସରି ଅର୍ଥାତ୍ ছোট আদালত ସଂକ୍ଷେପରେ ବିଚାର କରିବା ନିମିତ୍ତ ଭାରତ ସରକାରଙ୍କ **छोटा अदालत काजकोट** ପ୍ରତିଷ୍ଠିତ ବିଚାରାଳୟ—Court of small causes in India.

**ଛୋଟ ଅଲାଇଚ**—ଦେ. ବି. (ସଂ. ନାମ କ୍ଷୁଦ୍ରୈଲା)—ଗୁଜରାଟୀ (ଦେଖ) Chhoṭa alāicha Gujarāti (See)
ছোট এলাচী
**छोटि ईलायची**

**ଛୋଟ ଓଶା**—ଦେ. ବି—ଏକ ପ୍ରକାର ଧାନ— Chhota osā A kind of paddy.

**ଛୋଟକଇଁ**—ଦେ. ବି.—ସାନ ସାନ ଧଳା କଇଁ ଫୁଲ— Chhoṭa kaiñ Small white Indian water-lily; ছোট সুন্দি Nymphla Lotus.

**ଛୋଟ କଥା**—ଦେ ବି.—୧ । ତୁଚ୍ଛ କଥା— Chhoṭa kathā 1. Insignificant words.

୨ । ଅତି ନଗଣ୍ୟ ବା ସାମାନ୍ୟ ବିଷୟ— 2. A very small matter.

**ଛୋଟଘର**—ଦେ. ବି.—୧ । କ୍ଷୁଦ୍ର ଆକୃତିବିଶିଷ୍ଟ ଗୃହ — Chhoṭa ghara 1. A small or snug house.

୨ । ନିକୃଷ୍ଟ ବଂଶ; ନୀଚକୁଳ— 2. Low caste; low family.

**ଛୋଟଚମ୍ପା**—ଦେ. ବି—ଏକପ୍ରକାର ସରୁ ଧାନ— Chhoṭa champā A species of fine paddy.

**ଛୋଟ ଠାକୁର**—ଦେ.ବି—୧ । ପୁରୀରେ ବିରାଜିତ ଶ୍ରୀଜଗନ୍ନାଥ ମହାପ୍ରଭୁ— Chhoṭa ṭhākura 1. The Deity Jagannath at Puri.

| ୧ | ଇ | ଓ | ଋ,ଋ | ୯ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇୟ୍ | ଉଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଡ଼ | ନ୍ |

୨ । ଶ୍ରୀକୃଷ୍ଣ ଅବତାରରେ ଶ୍ରୀକୃଷ୍ଣ—
2. A name of Śrikṛushṇa.

[ ଦ୍ର—ବଳଭଦ୍ର ଓ ଜଗନ୍ନାଥଙ୍କ ବୟସ ତୁଳନାରେ ବଳଭଦ୍ର ଜ୍ୟେଷ୍ଠ ଥିବାରୁ ତାଙ୍କୁ ପୁରୀରେ ସାଧାରଣ ଲୋକେ 'ବଡ଼ ଠାକୁର' ଓ ଜଗନ୍ନାଥଙ୍କୁ ଛୋଟ ଠାକୁର ବା ସାନ ଠାକୁର ବୋଲି ଡାକନ୍ତି । ]

ଛୋଟଣ—ଗ୍ରା. ବି.—୧ । ଛୁଟଣ; ବିଶ୍ରାମ; ଅବସର—
Chhoṭaṇa — 1. Remission, pause.
ছুট — ୨ । ବିଗ୍ରାମ; ବିରତି—
छुटना — 2. Cessation.

ଛୋଟଦିନ—ଦେ. ବି—୧ । ସୂର୍ଯ୍ୟଙ୍କର ଦକ୍ଷିଣାୟନ ଗତି ଯୋଗୁଁ ଯେଉଁ ସମୟରେ ଦିନମାନର ପରିମାଣ ଅଳ୍ପ ହୁଏ; ଶୀତକାଳର ଦିବସ -1. The smallest day in the year in December 22nd or 23rd.
Chhoṭadina
ছোটদিন
(ବଡ଼ଦିନ—ବିପରୀତ)

[ ଦ୍ର—ଡିସେମ୍ବର ମାସ ୨୨ ବା ୨୩ ତାରିଖ ଦିନଟି ବର୍ଷକଯାକରେ ସାନ ଓ ରାତିଟି ବଡ଼ ହୁଏ । ]

୨ । ଅପ୍ରେଲ ମାସର ଗୁଡ଼ଫ୍ରାଇଡେ ଓ ଇଷ୍ଟରଡେ ଯାହା କି ଖ୍ରୀଷ୍ଟିଆନ୍‌ମାନଙ୍କର ପର୍ବଦିନ—2. Good Friday and Easter day.

[ ଦ୍ର—ଲୋକେ ସାଧାରଣତଃ ଖ୍ରୀଷ୍ଟମସ୍‌କୁ ବଡ଼ଦିନ ଓ ଗୁଡ଼୍‌ଫ୍ରାଇଡ଼େକୁ ଛୋଟଦିନ କହିଥାନ୍ତି । ]

ଛୋଟନଜର—ଦେ ବି ( ସଂ. କ୍ଷୁଦ୍ର+ଫା. ନଜର )—ହୀନଦୃଷ୍ଟି; ଉଦାରତାହୀନ ଦୃଷ୍ଟି; କୃପଣତାମିଶ୍ରିତ ଦୃଷ୍ଟି—Illiberal views.
Chhoṭanajara
ছোটনজর
छोटानजर — ଦେ. ବଣ—୧ । ହୀନଚେତା (ବ୍ୟକ୍ତି)—
1. Mean minded.
ଛୋଟ ନଜରିଆ } ଅନ୍ୟରୂପ
ଛୋଟା ନଜରି }
୨ । କୃପଣ—2. Miserly.

ଛୋଟ ବଡ଼—ଦେ. ବଣ (ବିପରୀତାର୍ଥ ଶବ୍ଦଦ୍ୱୟ)—୧ । ସାନ ଓ ବଡ଼—
Chhoṭa barḍa — 1. Big and small.
ছোট বড় — ୨ । ଉଚ୍ଚ ଓ ନୀଚ—2. High and low.
छोटा बड़ा — ୩ । କିବା ବଡ଼ କିବା ସାନ—
3. Whether big or small.
ଦେ ବି (ବହୁବଚନ)—ସମସ୍ତେ; ସବୁ ବ୍ୟକ୍ତି—Every one big or small; every one high or low; all (persons).
( ଯଥା—ଛୋଟ ବଡ଼ଙ୍କ ମୁହଁରୁ ମୁଁ ଏହା ଶୁଣିଲି । )

ଛୋଟ ଭାଇ—ଦେ. ବି—କନିଷ୍ଠ ଭ୍ରାତା—
Chhoṭa bhāi — Younger brother.
ছোট ভাই
छोटा भाई

ଛୋଟ ମହୀପାଳ—ଦେ. ବି—ଏକପ୍ରକାର ସରୁ ଧାନ—
Chhoṭa mahipāla — A kind of fine paddy.

ଛୋଟ ମୁଖ—ଦେ. ବି—ଛୋଟ ଲୋକ ବା ନୀଚ ଲୋକର ମୁହଁ—
Chhoṭa mukha — The mouth of a low or insignificant person.
ছোট মুখ
छोटा मुहँ — ( ଯଥା—'ଛୋଟ ମୁହଁରେ ବଡ଼ କଥା, (ଛୋଟ ମୁହଁ—ଅନ୍ୟରୂପ) ଶୁଣିଲେ ଲୋକର ମନ ବ୍ୟଥା'—ଢଗ । )

ଛୋଟ ମୋଟ—ଦେ. ବଣ—(ସହଚର ଶବ୍ଦ)—୧ । ଛୋଟ ବଡ଼ (ଦେଖ)
Chhoṭa moṭa — 1. Chhoṭa barḍa.
ছোট মোট — ଦେ. ବଣ—୨ । ଅତି କ୍ଷୁଦ୍ର—
छोटा मोटा — 2 Tiny; very small.
୩ । ଚଳନୀୟ; ଚଳନ୍ତି—3. Tolerable.
( ଯଥା—ସେ ଛୋଟ ମୋଟରେ ଜଣେ ରାଜା । )

ଛୋଟ ଲଙ୍କାକାଲ—ପ୍ରାଦେ (ଗଞ୍ଜାମ) ବି—ବଳାତି ବାଇଗବା—
Chhoṭa lankākāla — A kind of Bāigabā (See)

ଛୋଟଲାଟ—ଦେ. ବି ( ହି. ଛୋଟା ଓ ଇଂ. ଲର୍ଡ )—ଇଂରେଜ ଅଧିକୃତ ଭାରତର ପ୍ରାଦେଶିକ ଶାସନକର୍ତ୍ତା—
Chhoṭalāṭa
ছোটলাট — Provincial Governor;
छोटालाट — Governor of a Province.
(ବଡ଼ଲାଟ - ବିପରୀତ)

ଛୋଟଲୋକ—ଦେ. ବି—୧ । ନୀଚାଶୟ ଲୋକ—
Chhoṭaloka — 1. Low or mean person.
ছোটলোক — ୨ । ଇତର ଲୋକ—
छोटाआदमी — 2. One low class person.
୩ । କୃପଣ—3. Miser.

ଛୋଟହାଜିରି—ଦେ. ବି—ଭାରତରେ ରହିବା ସାହେବ ଓ ସାହେବଙ୍କ ସାଙ୍ଗ ଅନୁକରଣକାରୀ ଭାରତୀୟମାନଙ୍କର ପ୍ରାତର୍ଭୋଜନ—Break-fast.
Chhoṭahājiri
ছোটাহাজরী
छोटीहाजिरी — [ ଦ୍ର—ଏଥିରେ ରୁଟୀ, ଟୋଷ୍ଟ୍ ବା ବିସ୍କୁଟ ଓ ଡିମ୍ବ ଆଦି ଖିଆଯାଏ । ]

ଛୋଟା—ଦେ. ବଣ. ପୁଂ—୧ । ଲେଙ୍ଗଡ଼ା; ଖଞ୍ଜ; ପାଦବିକଳ ହୋଇଥିବା
Chhoṭā — ( ବ୍ୟକ୍ତି )—1. Lame; cripple legged.
নেঙ্‌ড়া — ଦେ. ବି—ଲେଙ୍ଗଡ଼ା ଲୋକ—A lame man.
लंगड़ा — ଛୋଟା ଥାଇ ଲୁଚ୍ ପାହାଡ଼େ—ଢଗ ।
( ଛୋଟୀ—ସ୍ତ୍ରୀ )

ଛୋଟାଇବା—ଦେ. କ୍ରି. ( ଅକର୍ମକ )—
Chhoṭāibā — ୧ । ଲେଙ୍ଗଡ଼ା ହୋଇ ଚାଲିବା—
নেঙ্গচান — 1. To limp ( with a defetcive leg ).
लंगड़ाना — ୨ । ( ସକର୍ମକ ) କ୍ଷୁଦ୍ର କରିଦେବା; ଛୋଟ କରିଦେବା—2. To shorten; to lessen.
୩ । ( ସକର୍ମକ ) କୌଣସି ବ୍ୟକ୍ତିକୁ ଲେଙ୍ଗଡ଼ା କରିବା—
3. To maim an animal.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ରୁଅ' ନ ମିଳିଲେ 'ରୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍ବଡ଼' ଦେଖିବେ

**ଛୋଟା କରିବା**—ଦେ. କ୍ରି—କୌଣସି ଜୀବକୁ ଲେଙ୍ଗଡ଼ା କରିବା—
Chhoṭā kaibā — To maim an animal.

**ଛୋଟିଆ**—ଦେ ବି—୧ । ଛୋଟ; ସାନ; କ୍ଷୁଦ୍ର—
Chhoṭiā — 1. Small; petty,
ଛୋଟା — ପଦ୍ମରଣ ସମସ୍ତଙ୍କର ଏକ, ଛୋଟିଆ ମଇଳା ଚାଦରଟଃ—ତସ
ছোটা — ଖଣ୍ଡେ ଖଣ୍ଡେ ଲୁଗା—ଫକୀରମୋହନ. ଗଳ୍ପସ୍ୱଳ୍ପ ।
୨ । ଅଳ୍ପକାଳସ୍ଥାୟୀ—
2. Brief or short ( in duration ).

**ଛୋଟିଆ ମୋଟିଆ**—ଦେ. ବିଣ—ଛୋଟ ମୋଟ ( ଦେଖ )
Chhoṭiā moṭiā — Chhoṭa moṭa (See)

**ଛୋଟିକା**—ସଂ. ବି. ସ୍ତ୍ରୀ ( ଛୁଟ୍ ଧାତୁ=ଛେଦନ କରିବା+କର୍ତ୍ତୃ. ଅକ Chhoṭikā +ସ୍ତ୍ରୀ. ଆ )—ହାତର ଅଙ୍ଗୁଳିଦ୍ୱାରା କରାଯିବା ଧ୍ୱନି; ଅଙ୍ଗୁଠିଦ୍ୱାରା ଫୁଟିକା—A snapping sound made by the fingers.

**ଛୋଟୀ**—ସଂ. ବିଣ. ପୁଂ. ( ଛୋ ଧାତୁ=ଛେଦନ କରିବା+ଉଟ ବିପାଇନ Chhoṭī କିମ୍ବା ଛୁଟ୍ ଧାତୁ+ଇନ୍ )—ଧୀବର; କେଉଟ—
Fisherman.
ଦେ. ବିଣ. ସ୍ତ୍ରୀ—ଲେଙ୍ଗଡ଼ୀ ( ସ୍ତ୍ରୀ )—Lame ( woman ).
( ଛୋଟା—ସ୍ତ୍ରୀ ) ଦେ. ବି. ସ୍ତ୍ରୀ—ଲେଙ୍ଗଡ଼ୀ ସ୍ତ୍ରୀ—
A lame woman.

**ଛୋଟେଇବା**—ଦେ. କ୍ରି—ଛୋଟାଇବା (ଦେଖ)
Chhoṭeibā — Chhoṭāibā (See)

**ଛୋଡ଼୍ କଶି**—ଦେ. ବିଣ—ସୁନ୍ନତ କରାଯାଇଥିବା ( ବ୍ୟକ୍ତି ); ଯେଉଁ Chhoṛḍ kaśi ବ୍ୟକ୍ତିର (ଜନ୍ମତଃ କିମ୍ବା ଅସ୍ତ୍ରପ୍ରୟୋଗଦ୍ୱାରା) ଲିଙ୍ଗର (ଛୋଡ଼୍କଶିଆ—ଅନ୍ୟରୂପ) ଅଗ୍ରକୁ ଚର୍ମ ଆଚ୍ଛାଦନ କରି ନ ଥାଏ—(a person) Having no foreskin on the male organ (either since one's birth or by undergoing the ceremony of removal by operation).

[ ଦ୍ର—ହିନ୍ଦୁ ବ୍ରାହ୍ମଣମାନଙ୍କର ବେଦବିହିତ ସଂସ୍କାର (ଯଥା—କାନଫୋଡ଼ା, ବିଦ୍ୟାରମ୍ଭ, ଚୂଡ଼ାକର୍ମ, ବ୍ରତ, ବିବାହ) ପରି ସୁନ୍ନତ୍ ମୁସଲମାନମାନଙ୍କର ଗୋଟିଏ ପ୍ରଧାନ ସଂସ୍କାର ଓ ଏହା ବାଲ୍ୟକାଳରେ କରାଯାଇଥାଏ । ମୁସଲମାନଙ୍କ ମଧ୍ୟରେ ଜଣେ ଜଣେ ଏପରି ସୁଦକ୍ଷ ସୁନ୍ନତ-କାରୀ ଅଛନ୍ତି ଯେ ସେମାନେ ଅଧୁନିକ ବୈଜ୍ଞାନିକ ପ୍ରକ୍ରିୟା ନ ଜାଣି ଓ ବାଳକର ସଂଜ୍ଞାଲୋପ ନ କରି ସୁଦ୍ଧା କିମେଷକମଧ୍ୟରେ ବାଳକ ବା ଯୁବକର ଲିଙ୍ଗର ଅଗ୍ରାଚ୍ଛାଦକ ଚର୍ମକୁ କ୍ଷୁରଦ୍ୱାରା ଗୋଲ କରି କାଟି ଦିଅନ୍ତି ଓ ଏକ ସପ୍ତାହ ମଧ୍ୟରେ ସେ କ୍ଷତଟି ଭଲ ହୋଇ ଶୁଖିଯାଏ । ଏହା ମୁସଲମାନ୍‌ମାନଙ୍କ ଶାସ୍ତ୍ରବିହିତ କର୍ମ । ଏ ପ୍ରଥା ଥିବାରୁ ସେମାନଙ୍କ ମଧ୍ୟରେ ଚୁଚୁନ୍ଦ୍ରୋଗ ଅଦୌ ଦେଖାଯାଏ ନାହିଁ । ]

**ଛୋଡ଼ଙ୍ଗ**—ଗ୍ରା. ବି (ଅଶ୍ଳୀଳଭାବବ୍ୟଞ୍ଜକ) (ସୂଚିତ ବ୍ୟକ୍ତିଦ୍ୱାରା କୃତ)—Chhoṛḍaṅga ଚିଳିମାତ୍ର ଅନିଷ୍ଟ ବା ଉପକାର ବା ଦାନ ବା ଇଷ୍ଟ-Any little of either injury or benefit, gift or prosperity (to be rendered by the person referred to by the addressee)
(ଯଥା—ଭୁ ତାଙ୍କୁ ବରଷେ ହେଲା ଅନୁସରଣ କରୁଛୁ, ସେ ତୋତେ ଛୋଡ଼ଙ୍ଗ ଦେବ ।)

**ଛୋଡ଼ା** ଦେ. ବି. (ଅଶ୍ଳୀଳ) (ଭୁଲ=ସଂ. ଚୂଡ଼ା)—୧ । ବାଡ଼ୀ ଘୋଡ଼ା Chhoṛḍā ଭଳି ଅଣ୍ଡିରା ଜୀବର ଜନନେନ୍ଦ୍ରିୟ; ହସ୍ତୀ ଓ ଅଶ୍ୱାଦି ପୁଂଜୀବର ଜନନେନ୍ଦ୍ରିୟ—
1. Male organ specially big ones.
୨ । ଯେଉଁ ଲିଙ୍ଗର ଗୁଆ ଉପର ଚମଡ଼ା ନ ଥାଏ—
2. A penis having no foreskin.
ଦେ. ବିଣ—ଯେଉଁ ଲିଙ୍ଗର ଉପର ଚମଡ଼ାକୁ ତଳର ଆଡ଼କୁ ଟାଣି ନିଆଯାଇ ଗୁଆକୁ ବାହାର କରାଯାଇଥାଏ—
(a penis) Having the foreskin drawn in
(ଛୋଡ଼ୀ—ସ୍ତ୍ରୀ) ଦେ. ବିଣ. ପୁଂ—ନିର୍ଲଜ୍ଜ; ଭଣ୍ଡ; ଯେ ସବୁବେଳେ ଦାନ୍ତ ଦେଖାଇ ହସୁଥାଏ; ଲେଦେଡ଼ା—
Shameless; addicted to laughing loudly by grinning and loud laughter.

**ଛୋଡ଼ାକଶିଆ**—ଦେ. ବିଣ—ଛୋଡ଼୍କଶି (ଦେଖ)
Chhoṛḍākaśiā — Chhoṛḍkaśi (See)

**ଛୋଡ଼ାଦାନ୍ତିଆ**—ଦେ. ବିଣ. ପୁଂ. (ଅଶ୍ଳୀଳ)—ଯେଉଁ ବ୍ୟକ୍ତିର ଦାନ୍ତ Chhoṛḍādāntiā ଉପରେ ଓଷ୍ଠଦ୍ୱାରା ଆଚ୍ଛାଦିତ ନ ଥାଇ ସର୍ବଦା (ଛୋଡ଼ୀଦାନ୍ତେଇ—ସ୍ତ୍ରୀ) ବାହାରକୁ ଦେଖାଯାଉଥାଏ—
(a person) Having a prominent row of teeth.

**ଛୋଡ଼ିବା**—ଗ୍ରା. କ୍ରି. (ଅଶ୍ଳୀଳ ଓ ଇତର)—୧ । କୌଣସି ଅପ୍ରକାଶ୍ୟ Chhoṛḍibā ପଦାର୍ଥର ଉପରସ୍ଥ ଆବରଣକୁ ଖୋଲି ଦେବା; ଖୋଲିବା; ନିକୁଟିବା; ଲେଫେଡ଼ିବା—
1. To lay bare; to exhibit.
( ଯଥା—ଦାନ୍ତ ଛୋଡ଼ିବା=ଅତି ନିର୍ଲଜ୍ଜରୂପେ ଦାନ୍ତକୁ ଦେଖାଇ ହସିବା । )
୨ । (ଲିଙ୍ଗ ସମ୍ବନ୍ଧେ ଅଶ୍ଳୀଳାର୍ଥକ ବ୍ୟବହାର) ଜନନେନ୍ଦ୍ରିୟର ଗୁଆର ଆଚ୍ଛାଦକ ଚର୍ମକୁ ଲିଙ୍ଗର ମୂଳଆଡ଼କୁ ଟାଣି ନେବା—2. To draw in the foreskin of the penis
୩ । ( ଯୋନି ସମ୍ବନ୍ଧେ ଅଶ୍ଳୀଳାର୍ଥକ ବ୍ୟବହାର ) ଯୋନିର ଉଭୟ ପାର୍ଶ୍ୱସ୍ଥ ଚର୍ମକୁ ଅଡ଼େଇ ଦେଇ ଯୋନିମୁଖକୁ ମେଲି କରିବା—3. To open the mouth of the vulva by separating the skin on both sides.

| ୧ | ଇ | ଡ | ଋ,ଋ | ଌ | ଐ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ପ | ସ | ଙ୍ୟ | ଇଅ | ଦ୍ଧ | ନ୍ତ |

୪ । ( ଗାଳି ଓ ଅବଜ୍ଞାର୍ଥରେ ବ୍ୟବହୃତ ) କୌଣସି ବ୍ୟକ୍ତିର ସାମାନ୍ୟ ବା ବିଶେଷ କୌଣସି ପ୍ରକାର ଅନିଷ୍ଟ କରି ପାରିବା—4. To succeed in inflicting any injury on the person ( who uses the expression contemptuously in respect of another person with whom the former is in terms of enmity ).

[ ଦ୍ର—କୌଣସି ବ୍ୟକ୍ତିର ଅନିଷ୍ଟ କରିବାକୁ ଅନ୍ୟ ବ୍ୟକ୍ତି ଚାହିଁଲାବେଳେ ପ୍ରଥମ ବ୍ୟକ୍ତି ଚାହୁଁଥିବା ବ୍ୟକ୍ତିକୁ ବିଦ୍ରୂପ କରି କହିଥାଏ; ଯଥା—ତୁ ମୋର ଛୋଡ଼ି ପକାଇବୁ ପରା ? ଅର୍ଥାତ୍ ତୁ ମୋର କିଛିମାତ୍ର ଅନିଷ୍ଟ କରି ପାରିବୁ ନାହିଁ । ]

ଛୋପଡ଼ା—ଦେ. ବି. ଓ ବିଣ—ଛୋପରା ( ଦେଖ )
Chhoparḍā  Chhoparā ( See )

ଛୋପରା—ଦେ. ବି—୧ । ଖେଳ; କୌତୁକ—
Chhoparā  1. Tricks; practical joke.
୨ । ବାହାନା କରିବା; ଛଳ—
2. Trickery; feigning; pretence.
୩ । ଥଟ୍ଟା; ପରିହାସ—
3. Jesting; jokes; buffonry.

ଛୋପରା } ସ୍ତ୍ରୀ
ଛୋପରେଇ }
ଦେ. ବିଣ. ପୁଂ—୧ । ଯେ ଖେଳ କାଢ଼େ—
1. Given to cutting jokes or making jests.
୨ । ଯେ ବାହାନା କରେ—2. Pretending; feigning sickness on inability.

ଛୋପରା କାଢ଼ିବା—ଦେ. କ୍ରି—୧ । ଖେଳ କରିବା—
Chhoparā karḍhibā  1. To exhibit tricks to cut practical jokes.
ଛୋପରା ଦେଖାଇବା
ଛୋପରା ବାହାର କରିବା } ଅନ୍ୟରୂପ
ଛୋପରା ହେବା
୨ । ଛଳ ବା ବାହାନା କରିବା—2. To feign.

ଛୋବ—ଦେ. ବି· ( ସଂ. କ୍ଷୋଭ )—ମୂର୍ଚ୍ଛା—
Chhoba  Swoon; fainting; fit.

ଛୋବ ଯିବା—ଦେ. ( ହି. ଛୋବ ) କ୍ରି—ମୂର୍ଚ୍ଛା ଯିବା; ଚେତା ହରା-
Chhoba jibā  ଇବା; ମୂର୍ଚ୍ଛିତ ହେବା—To swoon; to faint.

ଛୁରା—ଦେ. ବି. ( ସଂ. କ୍ଷୁରିକାରୁ )—୧ । ବଡ଼ ଛୁରୀ—
Chhorā  1. A large knife; a dagger; a stilleto.
ଛୋରା  ୨ । ଅଗ୍ର ମୁନ ଥିବା ଭୁଷିବାର ଯନ୍ତ୍ର—2, A pointed
ଛୁରା  instrument for dealing thrusting wound.
୩ । ଗୋରୁଙ୍କର ଏକପ୍ରକାର ରୋଗ—3. Authrax.

ଛୋଲ୍‌ଦାରି—ବୈଦେ. ( ଇଂ. ସୋଲଜର=ସୈନିକ; ସୈନିକମାନେ
Chholdāri  ଏହାକୁ ବ୍ୟବହାର କରୁଥିବାରୁ )—ଗୋଟିଏ କମା
ଛୋଲଦାରୀ  ଜଣେ ମନୁଷ୍ୟର ବ୍ୟବହାରୋପଯୋଗୀ ବାଡ଼ ନଥିବା
ଛୋଲଦାରି  କ୍ଷୁଦ୍ର ତ୍ରିକୋଣ ତମ୍ବୁ ବା ରାଉଟୀ—A small tent sufficient to shelter one person.

ଛୋଲଙ୍ଗ—ଦେ. ବି. ( ସଂ. ମାତୁଲଙ୍ଗ )—ଟଭା; ମାତୁଲଙ୍ଗ; ବାତାପି
Chholaṅga  ଲେମ୍ବୁ; ଚୋପାବହଳିଆ ବଡ଼ଲେମ୍ବୁ—A kind of
ଛୋଲଙ୍ଗ  lemon with a tough and thick rind.
[ ଦ୍ର—ଏହାର ଚୋପାତଳେ ବଡ଼ ବଡ଼ ଦାନା ଦାନା ନାଲିଆ କୋଷା ଥାଏ, ପାଚିଲେ ସୁସ୍ୱାଦୁ ହୁଏ । ]

ଛୋଲା—ଦେ· ବି—୧ । ବୁଟ—1. Gram ( a grain; given to
Chholā  horses ); vetch; oats.
ଛୋଲା  ୨ । ଚଣା—2. The chickpea; Cicer Arietirum.
ଛୋଲା  ବିଣ—ଛାଲି ବା ଚୋପା କଢ଼ାଯାଇଥିବା—From which
ଛୋଲାହୁଆ  the rind has been removed or scraped; pared.

ଛ୍ୟା—ଦେ· ଅ. ( ହେୟ, ଅସୂୟା ଘୃଣାର୍ଥକ )—୧ । ଧିକ୍ !; ଛିଛି !—
Chhyā  1. ( interjection ) Fie !.
ଛ୍ୟା  ୨ । ଛି ( ଦେଖ )
ଛି  2. Chhi ( See )
( ଛ୍ୟା ଛ୍ୟା—ଅନ୍ୟରୂପ )

ଛ୍ୟୁତ—ସଂ. ବିଣ—ଅସ୍ପୃଶ୍ୟଲୋକ ଛୁଇଁବାଦ୍ୱାରା ଅପବିତ୍ରୀକୃତ—
Chhyūta  Contaminated by the touch of an untouchable person.

ଛ୍ୟୁତି—ସଂ. ବି—ଅସ୍ପୃଶ୍ୟ ଲୋକେ ଛୁଇଁ ଦେବାରୁ ଜନିତ ଅପବିତ୍ରତା—
Chhyūti  Contamination by the touch of an untouchable person.




ଜ—ବର୍ଗ୍ୟ ଜ; ବ୍ୟଞ୍ଜନ ବର୍ଣ୍ଣ ମାଳାର ଅଷ୍ଟମ ଓ ଚ ବର୍ଗର ତୃତୀୟ ବର୍ଣ୍ଣ ।
Ja  ଏହା ସ୍ୱଳ୍ପପ୍ରାଣ ଓ ଘୋଷବର୍ଣ୍ଣ । ଏହାର ଉଚ୍ଚାରଣସ୍ଥାନ ତାଳୁ ଏଥିପାଇଁ ଏହା ତାଲବ୍ୟବର୍ଣ୍ଣ । ଗ୍ରାମ୍ୟ ଓ କଥିତ ଭାଷାରେ ଅନ୍ତସ୍ଥ ଯ ଓ ବର୍ଗ୍ୟ ଜ ମଧ୍ୟରେ ପ୍ରଭେଦ ରକ୍ଷା କରାଯାଏ ନାହିଁ—The eighth consonant of the sanscrit and the oria alphabet corresponding to the sound of soft 'G' in 'Germ'.

ସଂ. ବି. (ଜି ଧାତୁ=ଜୟ କରିବା + କର୍ତ୍ତୃ. ଅ)—
୧ । ମୃତ୍ୟୁଞ୍ଜୟ; ଶିବ—1. God Śiba.

ସାଧାରଣ ଲେକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣଟିବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'ବୃଥ' ନ ମିଳିଲେ 'ବୃଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ, 'ଅକ୍ଷୋ' ନ ପାଇଲେ 'ଅକ୍ଷୋ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୨ । ବିଷ୍ଣୁ—2. Bishnu.

୩ । ପିତା ଓ ମାତା—3. Parents

୪ । ଉତ୍ପତ୍ତି—4. Birth; origin.

୫ । ତେଜଃ—5. Energy.

୬ । ବିଷ—6. Poison

୭ । ଭୋଗ—7. Enjoyment

୮ । ବେଗ—8. Force; velocity.

୯ । ଭୋଜନ—9 Eating; meal.

୧୦ । ପିଶାଚ—10. A malignant spirit.

୧୧ । ଛନ୍ଦଃଶାସ୍ତ୍ରୋକ୍ତ ୩ ଅକ୍ଷରବିଶିଷ୍ଟ ଗଣବିଶେଷ—11. An unit of 3 letters in prosody.

[ ଦ୍ର—ଏଥିର ଆଦ୍ୟ ଓ ଅନ୍ତ୍ୟବର୍ଣ୍ଣ ଲଘୁ ଓ ମଧ୍ୟବର୍ଣ୍ଣ ଗୁରୁ; ଯଥା— ରମେଶ, ମହେଶ, ସୁରେଶ । ]

ସଂ ପ୍ରତ୍ୟୟ ( ଜନ ଧାତୁ=ଜନ୍ମିବା+କର୍ତ୍ତୃ. ଅ; ଏହା ଅନ୍ୟ ବିଶେଷ୍ୟ ଶବ୍ଦରେ ଯୁକ୍ତ ହୁଏ ଯଥା—ଜର୍ମଜ, ଜଳଜ; ଅଣ୍ଡଜ )—ଅମୁକରୁ ଜାତ—(used in composition) Born from; produced in.

ଯ ଜୌ — ଦେ. ବି. (ସଂ. ଯବ; ପ୍ରା. ଜଅ)—୧ । ଯବଧାନ୍ୟ— 1. Barley.

୨ । ଏକ ଇଞ୍ଚର ଚତୁର୍ଥାଂଶ—2. A lineal measure; quarter of an inch.

୩ । (ସାଙ୍କେତିକ) ଜମିଦାର ବା ଜନୋବ—3. An abbreviation for Jamidar or Janob.

ଗ୍ରା. କ୍ରି. (ଯିବା କ୍ରିୟାର ଅନୁଜ୍ଞା—ଯାଅ)—(ତୁମ୍ଭେ) ଯାଅ—(you) Go.

**ଜଅ**—ଦେ. ବି. ( ସଂ. ଯବ )—ଯବଧାନ—
Ja-a Barley.
ଷ
**जौ**

**ଜଇ**—ଦେ. ବି—ଜୟକୃଷ୍ଣଙ୍କର ଡାକନାମ—
Jai A name for calling Jaikrushna.

**ଜଇଁ**—ଗ୍ରା. ବି. (ଇତର ବ୍ୟବହୃତ) (ସଂ. ଜାମାତା)—ଜଇଁ; ଜାମାତା—
Jaiñ Son-in-law.
জামাই
**जमाइ**

**ଜଇକୁଷ୍ଟଁ**—ଗ୍ରା. ବି. (ନାମ)—ଜୟକୃଷ୍ଣଙ୍କର ଡାକନାମ—
Jaikushtañ A name for calling Jayakrushna.
(ଜଇକୃଷ୍ଣ; ଜଇକୃଷ୍ଣ—ଅନ୍ୟରୂପ)

**ଜଇଜ ବାବା**—ପ୍ରାଦେ. (ଯାଜପୁର) ବି. ପୁଂ—ଜେଜେ ବାପା; ପିତାମହ—
Jaija bābā Paternal grand father.
(ଜଇଜ ମା—ସ୍ତ୍ରୀ)

**ଜଇତ୍ର**—ଦେ. ବି. (ପଦ୍ୟରେ ବ୍ୟବହୃତ)—ଜୈତ୍ର (ଦେଖ)
Jaitra Jaitra (See)

ଜଇତ୍ର ନାମ ରଥେ ବେଗି
ସୁଦ୍ଧବେ ଶୋହେ ରୂପଗୁଣି । ଜଗନ୍ନାଥ—ଭାଗବତ ।

**ଜଇନ**—ଦେ. ବି. (ସଂ. ଜୈନ)—ଜୈନ (ଦେଖ)
Jaina Jaina (See)

**ଜଇନ୍ତ୍ରା**—ଦେ.ବି. (ନାମ)—ଯାଜପୁର ସବ୍‌ଡିଭିଜନରେ ଥିବା ଏକ ଗ୍ରାମ—
Jaintrā Name of a village in Jajpur subdivision of the Cuttack district.

[ ଦ୍ର—ଏ ଗ୍ରାମର ପ୍ରାଣୀମାନେ ବିଶେଷ ଚୋରି ଓ ଡକାଇତି କରିବାରୁ ଜଇନ୍ତ୍ରାବାଲା କହିଲେ କଟକ ଜିଲ୍ଲାରେ ଡକାଇତ ବୋଲି ବୁଝାଯାଏ । ]

**ଜଇପୁର**—ଦେ. ବି. (ନାମ)—ଜୟପୁର (ଦେଖ)
Jaipura Jayapura (See)

**ଜଇବାତୃକ**—ଦେ. ବି. (ସଂ. ଜୈବାତୃକ)—ଚନ୍ଦ୍ର—
Jaibātruka The moon

ତତ୍ର ଚଳନ୍ତି ନକର ଜଇବାତୃକର
ଆଶାସ୍ପୀ ଯେମନ୍ତ ଜୀବନ୍ତୀବ । ଅଭିମନ୍ୟୁ—ବିଦଗ୍ଧଚିନ୍ତାମଣି ।

**ଜଇଲ**—ପ୍ରାଦେ. (ଗଞ୍ଜାମ) ବୈଦେଦେ ବି. ( ଇଂ. ଜେଲ୍‌ର ଅଶୁଦ୍ଧ ଉଚ୍ଚାରଣ )—ଜେଲ୍‌ଖାନା; କାରାଗାର—
Jaila Jail; prison.

**ଜଇସଣ୍ଡା**—ଦେ. ବି—ଅରଣ୍ୟ ଜାତ ତରୁବିଶେଷ—A wild tree
Jaisandā Litsala Sebifera (Haines).

**ଜଉ**—ଦେ. ବି. (ସଂ. ଜତୁ)—୧ । ଲାଖ; ଲାକ୍ଷା—
Jau 1. Shell lac; sealing lac.
ସଂ. ଅଲକ୍ତକ; ଯାବକ୍
জৌ; জউ
**लाह, चपरा**
ଚେ ଲକ୍କ
୨ । ଶିମ୍ବ ଲତା ଉପରେ ମାଡ଼ିବା ଏକପ୍ରକାର କଳାପୋକ—2 A kind of black insect attacking the bean creeper.

**ଜଉଆ**—ଦେ. ବି—ଧାନଗଛର ଡେମ୍ଫରେ ଜଉଭଳି ସ୍ତର ବସିଯିବା ରୋଗ-ବିଶେଷ—A disease affecting the stems of Paddy plants.
Jauā
(ଜଉଆମାରିବା—ଅନ୍ୟରୂପ,

**ଜଉକଣ୍ଠି**—ଦେ. ବି. (ସଂ. ଜତୁ+କଣ୍ଠଭୂଷଣ)—୧ । କଣ୍ଠରେ ମାଳା-ରୂପେ ପିନ୍ଧାଯିବା ଜଉରେ ତିଆରି ଏକପ୍ରକାର କଣ୍ଠି—
Jaukanthi 1 Coloured lac-beads used as a string of necklace.

[ ଦ୍ର—ଏହା ଖୋଦଳା ପରି ଲାଲ ଦେଖାଯାଏ ଓ କମ୍ ଦାମ ହେବାରୁ ଇତର ଲୋକେ ଏହା ବ୍ୟବହାର କରନ୍ତି । ]

୨ । ଜଉକଣ୍ଠିର ମାଳା—2. A string of shell-lac beads.

| ୧ | ଇ | ଉ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇପ୍ସ | ଡ଼ଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ | ଯ | ସ | ଙ୍ଗ | ଇଥ | ଢ଼ | ଦ୍ଧ |

ଜଉଗଡ଼—ଦେ. ବ—ଗଞ୍ଜାମ ଜିଲ୍ଲା ଅନ୍ତର୍ଗତ ଗୋଟିଏ ପ୍ରାଚୀନ ଦୁର୍ଗ—
Jaugarda Name of an ancient fort in Ganjam district.

[ ଦ୍ର—ଏ ଗଡ଼ ଗଞ୍ଜାମ ଜିଲ୍ଲା ପୁରୁଷୋତ୍ତମଠାରୁ ୩ ମାଇଲ ଦୂରରେ ଅବସ୍ଥିତ । ଏଠାରେ ଅଶୋକଙ୍କର ଶିଳାଲିପି ବିଦ୍ୟମାନ ଅଛି ।

"କେବଳ ଜଉରେ ଏ ଗଡ଼ର ପାଚେରି ତିଆର ହୋଇଥିବାରୁ ନାମ ଜଉଗଡ଼ ହୋଇଥିଲା । ଏହା କଳିଙ୍ଗର ରାଜଧାନୀ ଥିଲା—କୃପାସିନ୍ଧୁ. ଇତିହାସ । ]

ଜଉଘର—ଦେ ବ. (ସଂ. ଜତୁଗୃହ)—ପାଣ୍ଡବମାନଙ୍କୁ ପୋଡ଼ି ପକାଇବାକୁ
Jaughara କଳ୍ପନା କରି ଦୁର୍ଯ୍ୟୋଧନ ନିର୍ମାଣ କରାଇଥିବା ଜତୁଗୃହ A house made of inflammable materials smeared with lac by setting which on fire Durjyodhana intended to kill the Pāndabas.

ଜଉଘରା—ଦେ. ବ—ଜଉପୋକ ବା ଭ୍ରମର କରିଥିବା ବସା—
Jaugharā A nest of a kind of wasp, the materials of which resemble shell-lac.

ଜଉ ଟିଙ୍କ—ଦେ. ବ—ଏକ ପ୍ରକାର ଟିଙ୍କ—
Jau ṭinka A kind of lice.

ଜଉତିଷ—ଗ୍ରା. (ଇତର) ବ. ( ସଂ. ଜ୍ୟୋତିଷ )—
Jautisha ୧ । ଫଳିତ ଜ୍ୟୋତିଷଶାସ୍ତ୍ର—
ଜୋତିଷ 1. Astrology.

୨ । ଫଳିତ ଜ୍ୟୋତିଷ ଶାସ୍ତ୍ର ଅନୁଶୀଳନ କରିବା ଜାତି-ବିଶେଷ—2. A cast whose profession is astrology.

ଦେ. ବଣ—ଜ୍ୟୋତିଷଶାସ୍ତ୍ରବେତ୍ତା—Astrologer.

ଜଉତିଷ ନାୟକ—ଦେ. ବ. ( ସଂ. ଜ୍ୟୋତିଷ ଓ ନାୟକରୁ )—
Jautisha nāyaka ଖଣ୍ଡାୟତ ନାୟକ ଜାତି, ଏମାନେ ଜ୍ୟୋତିଷ (ଜଉତିଷ ନାହାକ—ଅନ୍ୟରୂପ) ଗଣନାଦ୍ୱାରା ଜୀବିକା ନିର୍ବାହ କରନ୍ତି—A sect of astrologers by caste.

ଜଉତୁକ—ଦେ. ବ. ( ସଂ. ଯୌତୁକ )—ଯୌତୁକ ( ଦେଖ )
Jautuka Jautuka ( See )

ଜଉପୋକ—ଦେ. ବ. ( ସଂ. ଜତୁ )—
Jaupoka ୧ । ଲାକ୍ଷାକୀଟ—1. Shell lac insects;
ଜଉପୋକା Tachardia Lacca.
ଲାକ୍ଷକା କୀଡ଼ା [ ଦ୍ର—ଏହି ପତଙ୍ଗ ପଳାଶ, ଅଶ୍ୱତ୍ଥ, କୁସୁମ, ଶାଳ, ବଦରୀ ପ୍ରଭୃତି ଗଛର ଡାଳରେ ରହି ସେଥିର ରସ ଖାଇ ବଞ୍ଚନ୍ତି । ଏମାନଙ୍କ ପେଟରୁ ଏକ ପ୍ରକାର ରକ୍ତବର୍ଣ୍ଣ କ୍ଷାର ବାହାରନ୍ତି ଓ ତାହା ଗଛର ଡାଳରେ ସେ ପୋକମାନେ ଲାଗି ହୋଇଯାନ୍ତି ଓ ପୋକ ମରି ଗଛରୁ ସେହି ଡାଳମାନ ଆଣି ତାକୁ ସିଝାଇଲେ ତହିଁରୁ ଲାଖ ବା ଜଉ ବାହାରେ । ]

୨ । ଏକ ପ୍ରକାର ଭ୍ରମର, ସେମାନେ ଜଉ ପରି ପଦାର୍ଥରେ ବସା ନିର୍ମାଣ କରନ୍ତି—2. A kind of insect building there nests with materials looking like lac.

ଜଉବିଦମାଳ—ଦେ. ବ—ଜଉରଞ୍ଜିତ ଗୋଲକମାନଙ୍କରେ ଗୁନ୍ଥା ହୋଇ
Jaubidamāla ଥିବା ହାର—A string of coloured lac-beads.

ଜଉମୁଦ—ଦେ. ବ. ( ସଂ. ଜତୁ ଓ ମୁଦ୍ରା )—ପତ୍ରାଦି ବନ୍ଦ କରି ତାହା
Jaumuda ଉପରେ ଲାଖ ଦିଆଯାଇ ତହିଁ ଉପରେ ବସାଯିବା
গালার মোহর ମୋହର—Sealing letters etc with lac;
लाक्षकामुहर wax seal.
(ଜଉମୋହର—ଅନ୍ୟରୂପ)

ଜଉଶାଳ—ଦେ. ବ. ( ସଂ. ଜତୁଶାଳା )—
Jausāla ୧ । ଜଉଘର ( ଦେଖ )
1. Jaughara ( See )

୨ । (ଲକ୍ଷଣାର୍ଥ) ଯେଉଁ ଘରେ ବିଶେଷ ଗ୍ରୀଷ୍ମ ଅନୁଭୂତ ହୁଏ
2. ( figurative ) A house in which much heat is felt.
( ଯଥା—ସେ ଘରଟା ଜଉଶାଳ ହୋଇଛି । )

୩ । ଚିତ୍ର ଉପରେ ଜଉର ପତଳା ସ୍ତର ବୋଳି ବୋଳି ତହିଁ ଉପରେ ଉଷ୍ମ ଚଟୁର ତାପ ଦେଖାଇ ତରଳ ଜଉ ସବୁଆଡ଼େ ବ୍ୟାପିଗଲେ ପରେ ଜଉକୁ ପୋଛି ଚିତ୍ରର ଝଲକ ବାହାର କରିବା—3. Annointing a painting with a layer of lac and bringing out its sheen by applying in direct heat to it by holding a hot laddle near it.

ଜଏ—ଗ୍ରା. ବ (ସଂ. ଜୟ)—ଜୟ (ଦେଖ)
Jae Jaya (See)

ଜଏଣ୍ଟ ମାଜିଷ୍ଟ୍ରେଟ—ବୈଦେ. ବ. (ଇଂ ଜଏଣ୍ଟ ମାଜିଷ୍ଟ୍ରେଟ)—ଇଂରାଜ-
Jaent mājishṭret ଶାସିତ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ସହକାରୀ
জএণ্ট মাজিষ্ট্রেট ମାଜିଷ୍ଟ୍ରେଟ—
ज्ञाइंट मेजेष्टर Joint Magistrate.

[ ଦ୍ର—ଇଂରାଜୀ ଜଏଣ୍ଟ (ସହଯୋଗୀ) ଶବ୍ଦ ପୂର୍ବରେ ଲାଗିଥିବା ଅନେକ ଶବ୍ଦ ଓଡ଼ିଆରେ ସମସ୍ତେ ସମୟେ ବ୍ୟବହୃତ ହେବାର ଦେଖାଯାଏ, ଯଥା—ଜଏଣ୍ଟ ଇନ୍‌ସପେକ୍ଟର, ଜଏଣ୍ଟ ଫାମିଲି, ଜଏଣ୍ଟ ଷ୍ଟକ୍ କମ୍ପାନୀ । ]

ଜଏଣ୍ଟଷ୍ଟକକମ୍ପାନୀ—ବୈଦେ. ବ. (ଇଂ)—ଯେଉଁ ବ୍ୟବସାୟ ସଙ୍ଗେ ବହୁ
Jaent stak kampāni ସଭ୍ୟକ ମେମ୍ବରମାନଙ୍କ ପ୍ରଦତ୍ତ ଧନ
জএণ্ট ষ্টাক্ কম্পানী (ସେୟାର)ମୂଳ ଧନରେ ଗଠିତ ଓ ଯହିଁର ଲୋକସାନ
ज्ञाइंट स्टाक कम्पानी (ଅଂଶ)ମାନ ସମସ୍ତ ଅଂଶୀଦାରମାନଙ୍କ ସମ୍ମତି ବିନା ହସ୍ତାନ୍ତରିତ କରାଯାଇ ପାରେ—A species of

ସାଧାରଣ ଲୋକେ ଅପର ପୃଷ୍ଠାରେ ଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଡ଼' ନ ମିଳିଲେ 'ଗାଡ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍ଗା ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

partnership causing generally of a large member of members having a capital divided or agreed to be divided into shares, the shares owned by any member being usually transferable without the consent of therest; Joint stock company.

**ଜଏନ୍ କରିବା**—ବୈଦେ. କ୍ରି.—(ଇଂ. Join)—୧ । ସଂଯୁକ୍ତ ହୋଇଥିବା କାର୍ଯ୍ୟରେ ଯୋଗ ଦେବା—
Jaen kariba
ଜଏନକବା
জাইন করনা
1. To join in a post.
୨ । ଦୁଇ ବସ୍ତୁକୁ ସଂଲଗ୍ନ ବା ସଂଯୁକ୍ତ କରିବା—
2. To join two things

**ଜଏନିଙ୍ଗ୍ ରିପୋର୍ଟ୍**—ବୈଦେ. ବି. (ଇଂ)—କୌଣସି କର୍ମଚାରୀ ନିଜ କର୍ମରେ ଯୋଗ ଦେଇ ଉପରସ୍ଥ ହାକିମଙ୍କୁ ଯୋଗଦେବା ବିଷୟରେ କରିବା ରିପୋର୍ଟ୍—
Jaening ripot
ଜଏନିଂ ରିପୋର୍ଟ
জাইনিঙ্গ রিপোর্ট
Joining report.

**ଜଏଲ୍**—ବୈଦେ. ପ୍ରାଦେ. (ଗଞ୍ଜାମ) ବି. (ଇଂ. ଜେଲ୍)—ଜେଲଖାନା—
Jael
Jail.

**ଜଏସନ୍**—ବୈଦେ. ବି (ଫା· ଜୋଶନ)—(ମୁସଲମାନ ସ୍ତ୍ରୀଲୋକମାନଙ୍କ ବ୍ୟବହୃତ) ବାଜୁବନ୍ଧ—
Jaesan
ଜୋସନ
জোষন
Armlet.

**ଜଂକ**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଜଳୌକା)—ଜୋକ—
Jamka
Leech.

**ଜଂଖ**—ଦେ. ବି. (ସଂ. ଯକ୍ଷ)—ଯଖ (ଦେଖ)
Jamkha
Jakha (See)

**ଜଂଜରଲା**—ପ୍ରାଦେ. (ସମ୍ବଲପୁର) ବି.—ଇକ୍ଷୁକାଣ୍ଡସ୍ଥ ଦୀର୍ଘ ପତ୍ର ଓ ଉଚ୍ଚ କାଣ୍ଡ ଫଳବାନ୍ ବୃକ୍ଷବିଶେଷ—A kind of reed like fruit bearing plant.
Jamjarla

**ଜକ୍**—ପ୍ରାଦେ. (ସମ୍ବଲପୁର) ବି. (ଜଳୌକା)—ଜୋକ—
Jak
Leech.

**ଜକ୍‌ରିବା**—ପ୍ରାଦେ. (ସମ୍ବଲପୁର) କ୍ରି.—୧ । ଚାହିଁ ରହିବା—
Jakriba
1. To wait eagerly.
୨ । ଜିଗର କରିବା—2. To insist
୩ । ଲାଗି ପଡ଼ି ଋଣ ବା ଆପଣା ପ୍ରାପ୍ୟ ଅନ୍ୟଠାରୁ ଅସୁଲ କରିବା—3. To realise one's dues from debtors with persevearance.

**ଜକଜକ୍**—ଦେ. ବିଣ. ଓ କ୍ରି. ବିଣ (ସଂ. ଚକ ଚକ)—୧ । ଚକଚକିଆ; ଉଜ୍ଜ୍ୱଳ—1. Dazzling; bright; shining brilliant; glittering.
Jakjak
ଜକ୍ ଜକ୍, ଜିକ୍ ଜିକ୍
ঝকাঝক্, ঝল্‌ঝল্
ରତନ କୋଷରେ ସେ ହେଉଛନ୍ତି ଜକ ଜକ ।
କୃଷ୍ଣସିଂ. ମହାଭାରତ. ଆଦ ।
୨ । ଚିକ୍କଣ; ତେଲାଳିଆ—2. Oily; smooth; glossy.

**ଜକ**—ଦେ. ବି—୧ । କୌଣସି ପଦାର୍ଥରେ ବା ଭୂମିରେ ଆର୍ଦ୍ରଭାବ; ସନ୍ତସନ୍ତିଆ ଅବସ୍ଥା—1. Presence of water in a thing or in the soil; moisture; humidity.
Jaka
ଜିକ୍
সীক
ନୂନ୍ୟ ଜଳ ବରଷୁଛି ନାହିଁ ଜକ ଓଦ । ପ୍ରାଚୀ. ବ୍ରହ୍ମନରୂପଣଗୀତା ।
୨ । (ସଂ. ଚାକଚକ୍ୟ) ଦୀପ୍ତି; ତେଜ; ଆଭା—
2. Brilliance; gloss.
ସୂର୍ଯ୍ୟ ପରି ଏ ଯୋଗକୁ ଗଡ଼ ଛନ୍ତି ଜକ । ପ୍ରାଚୀ. ବ୍ରହ୍ମନରୂପଣଗୀତା ।
୩ । (ସଂ. ଯକ୍ଷ) ରାତିରେ ଏଣେ ତେଣେ ଜକ ଜକ ହୋଇ ବୁଲି ବୁଲି କରୁଥିବା ସଜୀବ ପୋତା ଧନ—
ଜଁକ
জক
3. A luminious moving body said to be evolved from long hoarded or hidden gold or treasure and roving at the site at dead of night.

[ ଦ୍ର—ସାଧାରଣ ଲୋକେ ବିଶ୍ୱାସ କରନ୍ତି ଯେ, ସୁନା ଆଦି ଧନ ବହୁକାଳ ପୋତା ହୋଇ ରହିଲେ ତାହା ଜୀବ ପାଲଟିଯାଇ ଏଣେ ତେଣେ ବୁଲେ ଓ ତାକୁ ଓର ଦେଖି କେହି ତା ଉପରେ ହଳଦୀ ପାଣି ଢାଳିବାଦ୍ୱାରା ତାକୁ ମାରି ପକାଇଲେ, ସେ ଜୀବଟି ପୁଣି ସୁନା ପାଲଟି ଯାଏ ଏବଂ ଏ ସମସ୍ତ ସମୟରେ ମଧ୍ୟ ତାହା ଅଙ୍ଗ ଥିବା କୁଳଟିର ପଶିଯାଇ ସୁନା ପାଲଟିଯାଏ । ଏହି ପରି ସୁନା ସଂଗ୍ରହ କରି ଯେ ଲୋକ ତାକୁ ନିଜ ସ୍ୱାର୍ଥ ସାଧନରେ ଲଗାଏ ତାହାର କୁଳ ଧ୍ୱଂସ ହୋଇଯାଏ । ]

୪ । ଗୁପ୍ତ ସୁନା—4. Hidden gold or treasure.
ଦେ. ବି—୧ । କୃପଣ—1. Miserly; close fisted.
୨ । କୁବେରଙ୍କ ପରି ଧନୀ—
ଜଁକ
জক
1. Immensely rich like Kubera the God of Wealth.

**ଜକଜକିଆ**—ଦେ. ବିଣ—୧ । ଉଜ୍ଜ୍ୱଳ—
Jakajakia
ଜିକଜିକେ, ଜକଜକେ
ঝকাঝক, জগমগ, জগজগা
1. Shining; brillient.
୨ । ଚିକ୍କଣ; ତେଲାଳିଆ—2. Oily.
୨ । ଜକଲିଆ ( ଦେଖ )
2 Jakalia ( See )

**ଜକଡ଼ିବା**—ଗ୍ରା. କ୍ରି. ( ସଂ. ଯୁକ୍ତ କରଣ; ଶୃଙ୍ଖଳ )—
Jakardiba
ଜକଡ଼ନା
୧ । ଭିଜା ହୋଇଥିବା ପଦାର୍ଥ ସାନ୍ଦ୍ର ହେବା; କଠିନ ହେବା—1. To be tight.
୨ । ଜାବୁଡ଼ି କରି ଧରିବା—
2. To hold tightly.

**ଜକ ମାରିବା**—ଦେ. କ୍ରି—୧ । ବାହାରେ ବୁଲୁଥିବା 'ଜକ' ଉପରେ ହଳଦୀ ପାଣି ଆଦି ଅଜାଡ଼ି ଦେଇ ତାକୁ ପୁଣି ସୁନାରେ ପରିଣତ କରିବା—
Jaka mariba
ଜଁକମାରା
জকমারনা
1. To turn a living or moving rib of gold into actual gold by pouring turmeric water over it.

| ୯ | ଇ | ଓ | ର,ଋ | ୡ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇସ୍ଥ | ଉଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ଢ | ନ୍ |

୨ । ( ଲକ୍ଷଣାର୍ଥ ) ଗୁପ୍ତ ବା ପୋତା ଧନ ପାଇଯିବା—
2. ( figurative ) To get a buried hoard of wealth.

ବଡେଇ ଖାଇର ଗରବ ତେଣ
ବାଣ୍ଟ ଦୋକଡରେ ମାରଛ ଜକ—ଠଗ ।

**ଜକର୍‌—ପ୍ରାଦେ. (ଗଡ଼ଜାତ) ବି—ଝର—**
Jakarā A spring.

**ଜକଲା ମାତିବା—ପ୍ରାଦେ. (ଗଞ୍ଜାମ)** —ଆର୍ଦ୍ର କରିବା; ଓଦା ହେବା-
Jakalā mātibā Becoming wet.

ଭୂମିରୁ ପାଣି ବହୁ ମାତଇ ଜକଲା । କୃଷ୍ଣସିଂ. ମହାଭାରତ. ବନ ।

**ଜକଲିଆ—ପ୍ରାଦେ. (ଗଡ଼ଜାତ) ବିଣ—ସନ୍ତସନ୍ତିଆ (ଭୂମି)—**
Jakaliā Damp (land); moist.
(ଜକଲା—ଅନ୍ୟରୂପ)

**ଜକା—ଦେ. ବି—ଜାକିବା; କୌଣସି ପଦାର୍ଥକୁ ଅନ୍ୟ ବସ୍ତୁ ମଧ୍ୟରେ**
Jakā ଘୋଷାଇ କରି ରଖିବା—Putting of a thing concealed inside another thing.
( ଯଥା—ବନ୍ଧୁ ସମସ୍ତ ଯାଏ କଲରେ ପାନ ଜକା ହେଲେ ଦାନ୍ତ ପକ୍ଷରେ ଅନିଷ୍ଟକର । )
ବିଣ—୧ । ଯେ କୌଣସି ପଦାର୍ଥକୁ ଜାକି କରି ରଖେ—
1. (a person) Who put a thing concealed within another thing.
୨ । ( ସ୍ଥ. ଯକ୍ଷ ) କୃପଣ—
2. Miserly; close-fisted.
୩ । ଯେ ଧନ ଅଧିକ ସଞ୍ଚୟ କରି ରଖେ—3, Hoarding.
୪ । ଅନ୍ୟ ବସ୍ତୁ ମଧ୍ୟରେ ଲୁକ୍କାୟିତ—4. Concealed.
(ଯଥା—କୋଡ଼ଜକା ପିଲାଟାକୁ କାହିଁକି ଧରି ଅଣିଲୁ ଭଲା ?)
୫ । ଗୋପନରେ ସଞ୍ଚିତ (ଧନ)—
5. Secretly hoarded (wealth).

**ଜକାଇବା—ଦେ. କ୍ରି—୧ । ଜାକିବା କ୍ରିୟାର ଣିଜନ୍ତ ରୂପ—**
Jakāibā 1. Causative form of Jākibā.
(ଜକେଇବା—ଅନ୍ୟରୂପ) ୨ । (ଭୂମି) ଜଳାର୍ଦ୍ର ହେବା; ସନ୍ତାଇବା—
2. To become wet or sloppy.

**ଜକାଜକି—ଦେ. ବି—୧ । ଅଳ୍ପସ୍ଥାନରେ ବହୁଲୋକ ବା ଦ୍ରବ୍ୟ**
Jakājaki ଗଡ଼ାଗଡ଼ି ହୋଇ ରହିବା—1. Getting too close owing to inadequate space; being huddled up.
୨ । ପରସ୍ପର ଗାଢ଼ାଲିଙ୍ଗନ—2. Mutual embrace; hugging; pressing each other to the bosom.

'ଜମ୍ବୁନଦ ଅଧର ପର୍ଯ୍ୟୋଧର
ଜକାଜକି କରିଭୁଜ ଧୂରନ୍ଧର । କବିସୂର୍ଯ୍ୟ. କଳାକନ୍ଦେ ଲ ।

ବିଣ—୧ । ଠେଲାଠେଲି; ପେଲାପେଲି—1. Pressing upon one another; pushing each other into a small place, contracted into a small place.
୨ । ଖୁବ୍ ଭିଡ଼ ବା ଗହଳ ହୋଇଥିବା—2 Crowded.
୩ । ଘନ—3. Dense.

**ଜକାତ୍—ବୈଦେ. ବି. (ଅ)—୧ । ମୁସଲମାନଙ୍କ ବାର୍ଷିକ ଆୟରୁ**
Jakāt ହଜାରକେ ୨୫୯ ଟଙ୍କା ହିସାବରେ ଈଶ୍ୱରୋପାସନା ଓ
জকাৎ ଦାନ ପାଇଁ ଉତ୍ସର୍ଗୀକୃତ ଧନ—1. An amount of
जकात Rs 25/- per Rs 1000/- set apart out of a Mahomedan's annual income for the worship of God and for charity.
୨ । ଖଇରାତ୍; ଦାନ—2. Charity.

**ଜକି—ବୈଦେ. ବି. ( ଇଂ. ଜକ୍କି )—ଘୋଡ଼ା ମଣ କରିବା ସବାର;**
Jaki ଗୁରୁକ୍ ସବାର୍—Jockey.
জকী
जकी

**ଜକୁଟ—ସଂ. ବି—୧ । ମଲୟ ପର୍ବତ—**
Jakuta 1. The Malaya mountains.
୨ । କୁକୁର—2. Dog.
୩ । ବାଇଗଣ ଫୁଲ—3. The flower of brinjal plant.

**ଜକ୍କୀ—ଦେ. ବି—ଏକପ୍ରକାର ଶ୍ରେଷ୍ଠ ବୁଲ୍‌ବୁଲ୍ ପକ୍ଷୀ—**
Jakki A kind of small Bulbul bird.
जक्की [ ଦ୍ର—ଏମାନେ ସାଧାରଣ ବୁଲ୍‌ବୁଲ୍ ଅପେକ୍ଷା ଆକାରରେ ଶ୍ରେଷ୍ଠ । ଶୀତଦିନେ ଏମାନେ ଭାରତବର୍ଷର ସମତଳ ପ୍ରଦେଶ-ମାନଙ୍କରେ ଦେଖାଯାଆନ୍ତି ଓ ଗ୍ରୀଷ୍ମଦିନେ ହିମାଳୟ ଅଞ୍ଚଳକୁ ଚାଲିଯାଆନ୍ତି—ହି. ଶବ୍ଦସାଗର । ]

**ଜକ୍ଷ (ଧାତୁ)—ସଂ—୧ । ଭକ୍ଷଣ କରିବା—**
Jaksha (root) 1. To eat; to devour.
୨ । ହସିବା (ଯୋଗେଶ୍ଚନ୍ଦ୍ର)—2. To laugh.

**ଜକ୍ଷଣ—ସଂ. ବି. (ଜକ୍ଷ୍ ଧାତୁ + ଭାବ ଅନ)—ଭୋଜନ—**
Jakshana Act of eating

**ଜକ୍ଷ୍ମ—ସଂ. ବି. (ଜକ୍ଷ୍ ଧାତୁ + କର୍ତ୍ତୃ. ମ)—ଯକ୍ଷ୍ମା; ଯକ୍ଷ୍ମକାଶ ରୋଗ—**
Jakshma Consumption; phthisis.

**ଜକ୍ଷ୍ମା—ସଂ. ବି. ( ଜକ୍ଷ୍ ଧାତୁ + କର୍ତ୍ତୃ. ମନ୍; ୧ମା. ୧ବ. )—**
Jakshmā ଜକ୍ଷ୍ମ (ଦେଖ)
Jakshma (See)

**ଜଖ—ଦେ. ବି. (ସଂ. ଯକ୍ଷ)—ଜକ ୩, ୪ (ଦେଖ)**
Jakha Jaka 3, 4 (See)

> ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଜଖମ**—ବୈଦେ. ବି. ( ଫା. ଜଖ୍‌ମ୍ )—୧ । ଚୋଟ୍; ଆଘାତ—
Jakhama 1. Hurt.
ज़खम ୨ । କ୍ଷତ—2. Wound.
°ज़ख्म ୩ । ଘାଆ—3. Ulcer; Trauma.
୪ । ଶରୀରର ବେଦନା—4. Aching in the body.
୫ । ଆଘାତଜନିତ ଶରୀରର ଅଙ୍ଗପ୍ରତ୍ୟଙ୍ଗର ଦୋଷ —
5. Defect of a limb due to hurt.
୬ । ଆଘାତଚିହ୍ନ; ଦାଗ —
6. Mark of wound or hurt; scar.
୭ । ଦ୍ରବ୍ୟରେ ଥିବା ଦୋଷ—7. A defect in a thing
ବିଣ—୧ । ଆଘାତପ୍ରାପ୍ତ—1. Hurt; injured.

ଆଉ ଗୋଟାଏ ତାହାର ଉପରେ ପଡ଼ିଗଲେ ଦୁଇ ତାହାର ଜଖମ ହୋଇଯାଏ ।
ଫକୀରମୋହନ• ଗଳ୍ପସ୍ୱଳ୍ପ ।

୨ । ଆହତ; କ୍ଷତ — 2. Wounded.
୩ । ଭଗ୍ନ—3. Broken.
୪ । ଦୋଷଯୁକ୍ତ—4. Defective.

**ଜଖମା**— ଦେ. ବି. (ସଂ. ଜକ୍ଷ୍ମା)—୧ । ଯକ୍ଷ୍ମା (ଦେଖ)
Jakhamā 1. Jakshmā (See)
୨ । ଜଖମ ୫ (ଦେଖ)
2. Jakhama 5 (See)
ବୈଦେ. ବିଣ—ଜଖମି (ଦେଖ)
Jakhami (See)

**ଜଖମି**—ବୈଦେ. ବିଣ. ( ଫା. ଜଖ୍ମୀ ) ( କଟେଇଅଭିଷା )—
Jakhami ୧ । ଆହତ; ଘାଇଲା—1. Wounded; hurt.
୨ । ଭଗ୍ନ; ଭଙ୍ଗା (ପଦାର୍ଥ) —2. Broken (article).
ବି—ଆହତ ବ୍ୟକ୍ତି—Wounded person.

**ଜଖା**—ପ୍ରାଦେ. (ସମ୍ବଲପୁର) ବିଣ—୧ । ଅଡ଼ବାୟା—
Jakhā 1. Cracked; half-deranged
୨ । ( ସଂ. କ୍ଷୟ ) କୃପଣ; ଜକା—
2. Miserly; close-fisted.

**ଜଗ୍**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଜଗତ୍; ଭୁଲ ହି. ଜଗ୍)—
Jag ୧ । ଜଗତ୍; ପୃଥିବୀ—1. The world.
जग ବୈଦେ. ବି. (ଇଂ)—୨ । ଜଳପାତ୍ର; ଜଳଘଟି—
जग 2. Water jug.

**ଜଗ୍‌ଜଗା**— ଦେ. ବି. (ସଂ. ଶୁକଚକ୍ୟ)—ପିତଳଆଦିର ଅତି ସରୁ ଓ
Jagjagā ପାଳ ପାତିଆ; ପନ୍ନ—Spangle; bits of very thin
जकजका metal.
जगजगा [ ଦ୍ର—ଏଥିର ଲମ୍ବ ଓ ଗୋଲ ଟୁକୁରାମାନ କାଟି ତାଳଅ ଓ ଦେଖା ମେଢ଼ ଉପରେ ମଡ଼ାଯାଏ । ]

**ଜଗ**—ଗ୍ରା. (ପ୍ରାଚୀନ) ବି. ( ସଂ. ଜଗତ୍; ପ୍ରା. ଜଗ୍ଗ; ଜଗ )—
Jaga ୧ । ବ୍ରହ୍ମାଣ୍ଡ; ସଂସାର; ବିଶ୍ୱ—
जग 1. The world; the universe.
जग ବିଜଗ ମୋହନ୍ତି ଯେ ଅଟନ୍ତି ସର୍ବ ବାଳୀ ।
ଯାଚୀ• ରହସ୍ୟମଞ୍ଜରୀ ।
୨ । ଜଗନ୍ନାଥ, ଜଗବନ୍ଧୁଆଦି ନାମର ବ୍ୟକ୍ତିଙ୍କ ଡାକନାମ—
2. The name by which people named Jagabandhu, Jagannātha etc are called.
[ ଏହା ମଧ୍ୟ ଅନ୍ୟ ଶବ୍ଦ ସଙ୍ଗେ ଲାଗେ; ଯଥା—ଜଗବନ୍ଧୁ, ଜଗମୋହନ ଜଗପତି; ]

**ଜଗଚ୍ଚକ୍ଷୁଃ**— ସଂ. ବି. (ଷଷ୍ଠୀ ତତ୍; ଜଗତ୍ + ଚକ୍ଷୁଃ)—୧ । ସୂର୍ଯ୍ୟ —
Jagachchakshuḥ 1. The sun.
୨ । ଈଶ୍ୱର —2. God

**ଜଗଜନ**—ଗ୍ରା. (ପ୍ରାଚୀନ) ବି. (ସଂ. ଜଗଜ୍ଜନ)—ପୃଥିବୀର ସମସ୍ତ ଲୋକ—
Jagajana The inhabitants of the world.
जगजन
जगज्जन

**ଜଗଜିଣା**—ଗ୍ରା. (ପ୍ରାଚୀନ) ବିଣ. (ସଂ. ଜଗଜ୍ଜେତା)—ଯେ ଜଗତକୁ ଜୟ
Jagajiṇā କରି ପାରେ—One who can vanquish the whole world; victorious over the world.
ବି.—ଜଗତକୁ ଜୟ କରିବା—Vanquishing the whole world; victory over the whole world.

**ଜଗଜିତା**—ଗ୍ରା. ( ପ୍ରାଚୀନ ) ବିଣ ( ସଂ. ଜଗଜ୍ଜେତା )—
Jagajitā ଜଗଜିଣା ( ଦେଖ )
Jagajiṇā (See)

ସାଥିଙ୍କ ହିଁ ଅ ଜଗଜିତା,
ହୋଲେଇ ବଅନ୍ତି କାପ ମଲବିତ, ଦେଖେଇ ବଅନ୍ତି ବାହାରିତା—ଘଗ ।

ବି.—ଯେଉଁ ଲୋକ ଜଗତକୁ ଜିଣି ପାରେ—The man who can vanquish the whole creation.

**ଜଗଜୀବନ**—ଗ୍ରା. (ପ୍ରାଚୀନ) ବି. ( ସଂ. ଜଗଜ୍ଜୀବନ )—(ପୃଥିବୀର ପ୍ରାଣ
Jagajībana ସ୍ୱରୂପ) ଈଶ୍ୱର—(The life or pervading spirit of the universe.)

**ଜଗଜେଠି**—ଗ୍ରା. (ପ୍ରାଚୀନ)—(ସଂ. ଜଗଜ୍ଜ୍ୟେଷ୍ଠ)—୧ । ଜଗତର ସର୍ବ
Jagajethi ପ୍ରଧାନ ବ୍ୟକ୍ତି—1. The chief being in the world.
୨ । ବୀର—2 Hero.

**ଜଗଜ୍ଜନ**—ସଂ. ବି. (ଷଷ୍ଠୀ ତତ୍; ଜଗତ୍+ଜନ)—ଜଗତର ଲୋକେ—
Jagajjana The inhabitants of the whole world.

**ଜଗଜ୍ଜନନୀ**—ସଂ. ବି. ସ୍ତ୍ରୀ. (ଜଗତ୍ + ଜନନୀ—ଷଷ୍ଠୀ ତତ୍;)—ଜଗଦମ୍ବା;
Jagajjananī ପୃଥିବୀର ମାତାରୂପା ଦୁର୍ଗା; କାଳୀ—Goddess Kālī, the Mother of the Universe.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଙ୍ଗ୍ୟ | ତଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ | ନ୍ତ |

ଜଗଜ୍ଜୟୀ—ସଂ. ବିଣ. ପୁଂ (ଜଗତ୍+ଜୟୀ—ତ୍ରିଭୁବନ ଜୟକାରୀ; ବିଶ୍ୱ-
Jagajjayi ବିଜୟୀ—Conquering the whole world.

ଜଗଜ୍ଜିତା—ଦେ ବିଣ. ଓ ବି—ଜଗଜିତା ( ଦେଖ )
Jagajjitā Jagajitā (See)

ଜଗଜ୍ଜୀବନ—ସଂ. ବି ( ଜଗତ୍+ଜୀବନ ) ( ଷଷ୍ଠୀତତ୍; ଜଗତ୍+ଜୀବନ)
Jagajjībana ଜଗଜୀବନ ( ଦେଖ )
Jagajībana (See)

ଜଗଜ୍ଜେଠି—ଦେ. ବିଣ—ଜଗଜେଠି ( ଦେଖ )
Jagajjeṭhi Jagajeṭhi (See)

ଜଗଜ୍ଜେତା—ସଂ. ବି. ପୁଂ—(ଜଗତ୍+ଜେତା)—ଜଗଜିତା ( ଦେଖ )
Jagajjetā Jagajitā (See)

ଜଗଜ୍ଜ୍ୟେଷ୍ଠ—ସଂ. ବିଣ (ଜଗତ୍+ଜ୍ୟେଷ୍ଠ)——ଜଗଜେଠି (ଦେଖ)
Jagajjyeshṭha Jagajeṭhi (See)

ଜଗଝମ୍ପ—ଦେ ବି. ( ସଂ. ଜଗଝମ୍ପ=ଢାଲବିଶେଷ ) ଯୋଗେଶଚନ୍ଦ୍ର;
Jagajhampa ସଂ ଜଗଝମ୍ପ=ବାଦ୍ୟ ବିଶେଷ. ହି. ଶବ୍ଦସାଗର)—
জগঝম্প ମାଟିର ଏକମୁହାଁ ଆନଦ୍ଧ ବାଦ୍ୟ; ଏକ ପ୍ରକାର ବଡ଼ ଢୋଲ;
जगझम्प ପ୍ରାଚୀନ ରଣବାଦ୍ୟ—A large kettle-drum.

ଜଗଝମ୍ପା } —ଅନ୍ୟରୂପ
ଜଗଝାମ୍ପ }

ଜଗଝମ୍ପ, ଝରଝର, ଦାମାମା ଦୁନ୍ଦୁଭି ।
ରାଧାନାଥ- ମହାଯାତ୍ରା ।

ଜଗଡ଼ଝାମ୍ପ—ପ୍ରାଦେ. (ଯାଜପୁର) ବି.—ଜଗଝମ୍ପ (ଦେଖ)
Jagarḍajhāmpa Jagajhampa (See)

ଜଗଡ଼ମ୍ବୁର—ପ୍ରାଦେ. (ମେଦିନୀପୁର) ବି (ସଂ. ଯଜ୍ଞୋଡୁମ୍ବର)—ଜଡ଼ୁମ୍ବର
Jagarḍambur A species of fig tree.
(ଜଗଡ଼ୋମ୍ବୁର—ଅନ୍ୟରୂପ)

ଜଗଡ଼ା—ପ୍ରାଦେ (ସମ୍ବଲପୁର) ବି. (ସଂ. ଜଞ୍ଜାଳ)—ମଇଳା; ଆବର୍ଜନା—
Jagarḍā Sweepings; rubbish; refuse.
ପ୍ରକଟ ହୋଇଅଛନ୍ତି ଅସ୍ଥାନ ଜଗଡ଼ା—ପ୍ରାଚୀ. ବ୍ରହ୍ମଧାରୂପଣ ଗୀତା ।

ଜଗଡ଼ା କଚରା—ପ୍ରାଦେ. (ସମ୍ବଲପୁର) ବି.—ଜଗଡ଼ା (ଦେଖ)
Jagarḍā kacharā Jagarḍā (See)

ଜଗଣ—ସଂ. ବି.—ପିଙ୍ଗଳ ( ସଙ୍ଗୀତ ) ଶାସ୍ତ୍ର ଅନୁସାରେ ୩ ଅକ୍ଷରବିଶିଷ୍ଟ
Ja-gaṇa ଗଣବିଶେଷ—Name of an aggregate of 3 letters in Hindu musical composition.
[ ଦ୍ର—ଏଥିରେ ଆଦ୍ୟ ଓ ଅନ୍ତ୍ୟ ଅକ୍ଷର ଲଘୁ ଓ ମଧ୍ୟ ଅକ୍ଷର ଗୁରୁ
ଯଥା, ମହେଶ, ଦିନେଶ, ରମେଶ, ଗଣେଶ । ]

ଜଗଣା—ଦେ. ବିଣ. (ସଂ. ଜି ଧାତୁରୁ)—ଜୟଶାଳୀ; ଜୟୀ—
Jagaṇā Victorious.

ଜଗତ୍—ସଂ. ବି. (ଗମ୍ ଧାତୁ+କର୍ତ୍ତୃ. କ୍ୱିପ୍; ନିପାତନ; ଯେ ନିୟତ ଗତି
Jagat କରୁଛି—୧ । ବିଶ୍ୱ; ସଂସାର; ପୃଥିବୀ—
1 The world.
୨ । ବିଶ୍ୱ; ବ୍ରହ୍ମାଣ୍ଡ—2. The universe.
୩ । ସୃଷ୍ଟି—3. The creation.
୪ । ବାୟୁ (ହି. ଶବ୍ଦସାଗର)— 4. The air.
୫ । ମହାଦେବ (ହି. ଶବ୍ଦସାଗର)—5. God Śiba.
୬ । ଗୋପୀଚନ୍ଦନ (ହି. ଶବ୍ଦସାଗର)—
6. A species of sandal.

ପ୍ରାଦେ. (ଭୁଜଙ୍ଗ) ବି.—ଜାଲିଆ ବା କେଉଟମାନଙ୍କର ବଂଶୋପାଧି-
ବିଶେଷ—A title of family fishermen.

ସଂ. ବିଣ.—୧ । ଜଙ୍ଗମ; ଗତିଶୀଳ—1. Moving.
୨ । ଅସ୍ଥାୟୀ – 2, Temporary.

ଜଗତ୍କର୍ତ୍ତା—ସଂ. ବି—(ଉପପଦ ତତ୍ପୁରୁଷ ବା ୬ଷ୍ଠୀ ତତ୍; ଜଗତ୍+
Jagatkarttā କର୍ତ୍ତା)—ଜଗତର ପ୍ରଭୁ—
Creator or Lord of the Universe

ଜଗତ୍ପତି—ସଂ. ବି.—(୬ଷ୍ଠୀ ତତ୍ ବା ଉପପଦ ତତ୍ ପୁରୁଷ) ଜଗତ+
Jagatpati ପତି; ତୁଳ. ହି. ଜଗପତି)—ପରମେଶ୍ୱର—God.

ଜଗତ୍ପାତା—ସଂ. ବି. ( ୬ଷ୍ଠୀ ତତ୍ ବା ଉପପଦ ତତ୍ପୁରୁଷ; ଜଗତ୍+
Jagatpātā ପାତା )—ପରମେଶ୍ୱର—God.

ଜଗତ୍ପିତା—ସଂ. ବି. (୬ଷ୍ଠୀ ତତ୍; ଜଗତ୍+ପିତା )—ପରମେଶ୍ୱର—
Jagatpitā God.

ଜଗତ୍ପ୍ରାଣ—ସଂ. ବି. ( ୬ଷ୍ଠୀ ତତ୍; ଉପପଦ ତତ୍ପୁରୁଷ; ଜଗତ୍+
Jagatprāṇa ପ୍ରାଣ )—୧ । ପବନ—1. The air.
୨ । ପରମେଶ୍ୱର—2 God

ଜଗତ୍ସାକ୍ଷୀ—ସଂ. ବିଣ ( ଜଗତ୍+ସାକ୍ଷୀ; ୬ଷ୍ଠୀ ତତ୍; ଜଗତରେ ଯାହା
Jagatsākshī ହେଉଛି ତାହା ଯେ ଦେଖୁଛନ୍ତି )—ସର୍ବଦ୍ରଷ୍ଟା—
Omniscient.
ସଂ. ବି—୧ । ସୂର୍ଯ୍ୟ—1. The sun.
୨ । ପରମେଶ୍ୱର—2. God ( Apte ).

ଜଗତ୍ସଂସାର—ଦେ. ବି. ( ସହଚର ଏକାର୍ଥବୋଧକ ସଂସ୍କୃତ ଶବ୍ଦଦ୍ୱୟ
Jagatsamsāra ଜଗତ୍ ଓ ସଂସାର )—
জগৎসংসার ୧ । ସମଗ୍ର ପୃଥିବୀ; ସୃଷ୍ଟ ଜଗତ୍—
दुनिया 1, The universe; the creation.
୨ । ପୃଥିବୀର ସମସ୍ତ ଲୋକ—
2. All the world; people of the whole world.

ଜଗତ୍ସେତୁ—ସଂ. ବି. (୬ଷ୍ଠୀ ତତ୍; ଉପପଦସମାସ, ଜଗତ୍+ସେତୁ)—
Jagatsetu ପରମେଶ୍ୱର—The Supreme Being (Apte).

ଜଗତ୍ସ୍ରଷ୍ଟା—ସଂ. ବି. ( ଉପପଦ ତତ୍ପୁରୁଷ ବା ୬ଷ୍ଠୀ ତତ୍; ଜଗତ୍+
Jagatsrashṭā ସ୍ରଷ୍ଟା )—ପୃଥିବୀର ସୃଷ୍ଟିକର୍ତ୍ତା—
Creator of the universe.

ଜଗତ—ଦେ. ବି. ( ସଂ. ଜଗତ୍ )—୧ । ଜଗତ୍ ( ଦେଖ )
Jagata 1. Jagat ( See )
জগত ୨ । ଜଗଦ୍ବାସୀଲୋକ—2. People of the whole
जगत world; all the world.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାନା ଏବ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ଦପରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଆଖି' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ ।

ବ୍ରହ୍ମହତ୍ୟା କରିବା ପାଇଁ ସେ ମୂଳତ
ଭୂଅର ଏହି କଥା ଜାଣନ୍ତି ଜଗତ—କୃଷ୍ଣସିଂହ. ମହାଭାରତ. ବନ ।

**ଜଗତପାର**—ଦେ. ବିଣ. ( ସଂ. ଜଗତ୍+ପାର )—
Jagatapāra ୧ । ସଂସାର ବହିର୍ଭୂତ—
1. Outside the world.

ଜଗତପାର ସେ ଚରିତ
ଭୂଷେ ତା ବର୍ଣ୍ଣନେ ସମର୍ଥ—ଜଗନ୍ନାଥ, ଭାଗବତ ।

୨ । ଅସାଧାରଣ—2. Uncommon; extra ordinary.

**ଜଗତବେଢ଼**—ପ୍ରାଦେ. ( ଗଡ଼ଜାତ ) ବି—ବଣହାତୀମାନଙ୍କୁ ଖେଦା-
Jagataberdha ଖାତରେ ଧରିବା ପାଇଁ ଗୋଟିଏ ବଡ଼
ଜଗତ୍ରବେଢ଼ } ଅନ୍ୟରୂପ ସୀମାନିର୍ଦ୍ଦିଷ୍ଟ ଜଙ୍ଗଲର ଚାରିଆଡ଼େ
ଜଗତ୍ରୀବେଢ଼ ଜଗୁଆଳଙ୍କୁ ବେଢ଼ାଇ ଜଗୁଆଳମାନେ
କ୍ରମଶଃ ଖେଦାଆଡ଼କୁ ଅଗ୍ରସର ହେବାର ସ୍ଥିତି—
The practice af surrounding a big area of jungle with beaters and gradually tightening the circuit so as to bring the elephants into the Khedda ( enclosure ).

**ଜଗମୋହନ**—ଦେ. ବି. ( ନାମ )—'ପ୍ରହଲାଦ ଚରିତ' ନାମକ ଗ୍ରନ୍ଥର
Jagamohana ପ୍ରଣେତା—Name of the author of an Oria book Prahalāda Charita.

ଦେ. ବିଣ. ( ସଂ. ଜଗନ୍ମୋହନ )—ଜଗନ୍ମୋହନ ( ଦେଖ )
Jaganmohana ( See )

**ଜଗତସେଠ**—ଦେ. ବି. ( ସଂ. ଜଗତ୍+ଶ୍ରେଷ୍ଠ )—
Jagataseṭha ୧ । ଖୁବ ବଡ଼ ଧନୀ ମହାଜନ; ଧନାସେଠ—
1. A very big merchant.

୨ । ମୁର୍ଶିଦାବାଦବାସୀ ସୁଖ୍ୟାତ ଧନୀ ମହାଜନବଂଶର ରାଜ-ଦତ୍ତ ବଂଶୋପାଧି—2. Family-title of a family of big Indian merchants of Murshidābād.
[ ଦ୍ର—ଏହି ବଂଶର ଜଗତସେଠ ମହତାପ୍ ଚାନ୍ଦ ଲର୍ଡ କ୍ଲାଇବ୍‌ଙ୍କୁ ବହୁଧନ ସାହାଯ୍ୟ ଦେଇ ଭାରତରେ ଇଂରାଜ ସାମ୍ରାଜ୍ୟ ସ୍ଥାପିତ ହେବା ବିଷୟରେ ଇଂରାଜଙ୍କୁ ବିଶେଷ ସାହାଯ୍ୟ କରିଥିଲେ । ]

**ଜଗତି**—ଦେ. ବି. ( ସଂ. ଜଗତୀ )—୧ । ଜଗତୀ ( ଦେଖ )
Jagati 1. Jagatī ( See )

୨ । ପୋଖରୀ ମଝିରେ ଥିବା କ୍ରୀଡ଼ାମନ୍ଦିର ( କୋଠାଘର, ଅଟ୍ଟାଳିକା )—2. A playhouse built in the middle of a pond.

ନାବ ଘେନି ନାବକେ ଜଗତି ଉଠ । ସୀତାକୃଷ୍ଣ. ଜଗମୋହନ ।

୩ । ଉଚ୍ଚପୀଠ—3. A raised platform.
୪ । ପାଟରାଙ୍କ ବଂଶୋପାଧି ବିଶେଷ—4. A family-title of the Pāṭarā (cloth-dealer) caste.

**ଜଗତି ମେଢ଼**—ପ୍ରାଦେ. (ଗଡ଼ଜାତ) ବି—ଜଙ୍ଗଲ ମଧ୍ୟରେ ଗୋରୁଙ୍କୁ
Jagati merdha ଜନ୍ତୁପଦରେ ରାତ୍ରରେ ରଖିବା ପାଇଁ ବଡ଼ ଖୁଣ୍ଟମାନ ବେଢ଼ା ହୋଇ ଥିବା ସ୍ଥାନ, ଯହିଁ ମଧ୍ୟରେ ଖଣ୍ଡିଏ ମେଲାଘର ମଧ୍ୟ ଥାଏ—A place enclosed by big posts and having a shed in the middle to keep cattle safe in the night inside a jungly area.

**ଜଗତୀ**—ସଂ. ବି. ସ୍ତ୍ରୀ. ( ଜଗତ୍+ସ୍ତ୍ରୀ. ଈ )—
Jagatī ୧ । ସଂସାର; ପୃଥିବୀ; ଭୁବନ—
1. The earth; the world,

ଦଶକଣ୍ଠାରେ । ଦନା ତୋ ପ୍ରୀତି କେ ଗତ ଅଛ ଜଗତୀରେ ।
କବିସୂର୍ଯ୍ୟ. କଣୋଷାଚମ୍ପୂ ବ. ଗୀତ ।

୨ । ଜଗତର ଲୋକେ; ସଂସାରର ଲୋକେ; ମାନବଗଣ—
2. The whole world; mankind; the people (Apte).

୩ । ଦ୍ୱାଦଶାକ୍ଷର ବୈଦିକ ଛନ୍ଦୋବିଶେଷ—
3. A vedic metre of 12 letters.

ଅଷ୍ଟାବକ୍ର ବୋଇଲେ ବର୍ଷ ବାରମାସ
ଜଗତୀ ଛନ୍ଦେ ଅଛି ଅକ୍ଷର ଦ୍ୱାଦଶ । କୃଷ୍ଣସିଂହ. ମହାଭାରତ ବନ ।

ସଂ. ବି—୪ । ଗୋ; ଗାଈ—4. A cow (Apte).
୫ । ଘରତଳ ଜମି—
5. The site of a house (Apte).
୬ । ଜମ୍ବୁବୃକ୍ଷରୋପିତ କ୍ଷେତ୍ର—
6. A field planted with Jambu (Apte).

ଦେ. ବି—୧ । ବେଦୀ—1. Elevated platform

ଜଗତୀ ଉପରେ ଜଗତ ମୋହିନୀ
ବସି ହୋଇଥିଲେ ବେଶ । ରାଧାନାଥ. ଯଯାତି ।

୨ । ଜଳ —2. Water.

ବର୍ଣ୍ଣ କୁଙ୍କୁମ ଛଟ । ବ୍ୟାପିଗଲା ଜଗତୀରେ ଝଟ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

୩ । ବଡ଼ ଅଟ୍ଟାଳିକା—3. Palatial building.

ହୀରକ-ରଦ-ଗବାକ୍ଷ-ଶୋଭିତ
ସ୍ଫଟିକ-ଜଗତୀ ସୌଧ ମନୋହର ଅତି । ରାଧାନାଥ. ମହାଯାତ୍ରା ।

**ଜଗତୀତଳ**—ସଂ. ବି. (୬ଷ୍ଠୀ ତତ୍; ଜଗତୀ + ତଳ)—
Jagatī-tala ୧ । ଭୂତଳ; ଭୂପୃଷ୍ଠ—
1. The surface of the earth.
୨ । ଭୂମି—2. Earth (Apte).
୩ । ପୃଥିବୀ—3. The world (Apte).

**ଜଗତ୍ରୀ ବେଢ଼**—ପ୍ରାଦେ. (ଗଡ଼ଜାତ) ବି—୧ । ଜଗତ ବେଢ଼ (ଦେଖ)
Jagatrī berdha 1. Jagata berdha (See)
୨ । ଖେଦାରେ ହାତୀମାନେ ପଶି ଯିବାପରେ ଖେଦାର ଚାରି-ପାଖେ ଜଗୁଆଳମାନେ ଘେରିଯିବା—
2. The encompassing of the beaters round the Khedda ( enclosure ) after the elephants are driven into it.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ଼ | ଉଅ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଊ | ଋ |

ଜଗଦ—ସଂ. ବ—୧ । ପରଗୃହକ—1. An attendant (Apte).
Jagada ୨ । ଅଭିଭାବକ; ମୁରବି—
2 Guardian (Apte).
୩ । ପାଳକ; ରକ୍ଷକ (ହି. ଶବ୍ଦସାଗର)—3. Protector.

ଜଗଦନ୍ତକ—ସଂ. ପ (ଉପପଦ ତତ୍ପୁରୁଷ; ଜଗତ୍ + ଅନ୍ତକ) —ମୃତ୍ୟୁ—
Jagadantaka Death.

ଜଗଦମ୍ବା—ସଂ. ବ. ସ୍ତ୍ରୀ. ( ଜଗତ୍ + ଅମ୍ବା; ୬ଷ୍ଠୀ ତତ୍ )—
Jagadambā ଜଗଜ୍ଜନନୀ; ଦୁର୍ଗା; କାଳୀ—
(ଜଗଦମ୍ବିକା—ଅନ୍ୟରୂପ) Goddess Durgā, the mother of the universe.

ଜଗଦଳ—ଦେ. ବ. ( ସଂ. ଜଗଦଳନ )—୧ । ଅତିଶୟ ଭାରି ପଥର
Jagadaḷa (ଯାହା ନିଜର ଭାରରେ ଜଗତକୁ ଦଳନ କରିପାରେ)-
ଜଗଦଲ 1. A heavy stone.
(ଜଗଦଲ; ଜଗଦଳା - ଅନ୍ୟରୂପ) [ ଦ୍ର—ପୂର୍ବେ ଏ ପଥରକୁ ଲୋକଙ୍କ ଛାତିରେ ମଡ଼ାଇ ଲୋକଙ୍କୁ ଦଣ୍ଡ ଦିଆଯାଉଥିଲା । ]
୨ । ବାହୁର ଅଳଙ୍କାରବିଶେଷ —
2 A massive ornament for the arm.

ଜଗଦାଧାର—ସଂ. ବ. (ଜଗତ୍ + ଆଧାର = ଆଶ୍ରୟ; ୬ଷ୍ଠୀ ତତ୍)—
Jagadādhāra ୧ । ପରମେଶ୍ୱର—1. God.
୨ । କାଳ—2. Time (personified).
୩ । ବାୟୁ—3 Air.

ଜଗଦାନନ୍ଦ—ସଂ. ବ. (ଜଗତ୍ + ଆନନ୍ଦ, ୬ଷ୍ଠୀ ତତ୍; ରୂପକ)—
Jagadānanda ଭଗବାନଙ୍କର ନାମ—A name of God.
ଦେ. ବ—ଲୋକଙ୍କ ନାମ—
A name given to males.

ଜଗଦାନନ୍ଦକ ସ ବିଣ ପୁଂ. (ଜଗତ୍ + ଆନନ୍ଦ + କ; ବହୁବ୍ରୀହି)—
Jagadānandaka ଯେ ଜଗତର ସମସ୍ତଜୀବଙ୍କୁ ଆନନ୍ଦିତ କରେ—
(ଜଗଦାନନ୍ଦକର—ଅନ୍ୟରୂପ) Giving joy to the universe.

ଜଗଦାୟୁଃ—ସଂ. ବ. (ଜଗତ୍ + ଆୟୁଃ; ୬ଷ୍ଠୀ ତତ୍)—ବାୟୁ; ପବନ—
Jagadāyuḥ Air.

ଜଗଦାଶ୍ରୟ—ସଂ. ବ. (ଜଗତ୍ + ଆଶ୍ରୟ; ୬ଷ୍ଠୀ ତତ୍)—ପରମେଶ୍ୱର—
Jagadāśraya God.

ଜଗଦୀଶ—ସଂ. ବ. (ଜଗତ୍ + ଈଶ; ୬ଷ୍ଠୀ ତତ୍)—
Jagadīśa ୧ । ଭଗବାନ; ପରମେଶ୍ୱର—1. God,
जगदीश ୨ । ବିଷ୍ଣୁ—2. Bishṇu.
ଜଗଦୀଶ ଦେ. ବ—୧ । ପୁରୀର ଜଗନ୍ନାଥ ଦେବ —
1. The idol Jagannatha of Puri.
୨ । ଲୋକଙ୍କ ନାମ—2. A name given to males.

ଜଗଦୀଶ୍ୱର—ସଂ. ବ. ପୁଂ. (ଜଗତ୍ + ଈଶ୍ୱର; ୬ଷ୍ଠୀ ତତ୍)—ଭଗବାନ୍—
Jagadīśwara God.

ଜଗଦୀଶ୍ୱରୀ—ସଂ. ବ. ସ୍ତ୍ରୀ.—(୬ଷ୍ଠୀ ତତ୍; ଜଗତ୍ + ଈଶ୍ୱରୀ)—
Jagadīśwarī ୧ । ଭଗବତୀ; ଦୁର୍ଗା—1. Goddess Durgā.
୨ । ପୃଥିବୀର ଦେବତା—
2. The Goddess who is the mistress of the universe.

ଜଗଦେବ—ଦେ. ବ. (ସଂ. ଜଗଦେବ)—କ୍ଷତ୍ରିୟ ଓ ରାଜାମାନଙ୍କର
Jagadeba ବଂଶୋପାଧିବିଶେଷ—A family title of Rājās and Kshatriyas.

ଜଗଦ୍ଗୁରୁ—ସଂ. ବ.—(ଜଗତ୍ + ଗୁରୁ; ୬ଷ୍ଠୀ ତତ୍)—
Jagadguru ୧ । ପରମେଶ୍ୱର—1. God.
୨ । ମହାଦେବ; ଶିବ—2. Śiba.
୩ । ପରମାତ୍ମା—3. The universal soul
୪ । ନାରଦ ଋଷି—4. Sage Nārada.
୫ । ସମସ୍ତଙ୍କଦ୍ୱାରା ପୂଜିତ ଓ ପ୍ରତିଷ୍ଠିତ ବ୍ୟକ୍ତି—
5. A person who is universally respected and adored.
୬ । ଶଙ୍କରାଚାର୍ଯ୍ୟଙ୍କର ପ୍ରତିଷ୍ଠିତ ଭାରତର ୪ ଗୋଟି କେନ୍ଦ୍ରରେ ଥିବା ଚାରିଗୋଟି ମଠର ମହନ୍ତମାନଙ୍କର ଉପାଧି—
6. The title of the mohantas of the four maṭhas in 4 places of India started by Śaṅkarāchārjya.

ଜଗଦ୍ଗୌରୀ—ସଂ. ବ—( ଜଗତ୍ + ଗୌରୀ )—୧ । ଦୁର୍ଗା—
Jagadgaurī 1. Goddess Durgā.
୨ । ନାଗମାନଙ୍କ ଭଗିନୀ ଓ ଜରତ୍କାରୁ ଋଷିଙ୍କ ପତ୍ନୀ ମନସା ଦେବୀଙ୍କର ନାମାନ୍ତର (ହି. ଶବ୍ଦସାଗର )—
2. A name of the Deity Manasī.

ଜଗଦ୍ଦଳନ—ସଂ. ବି ( ଜଗତ୍ + ଦଳନ; ଉପପଦ ତତ୍ପୁରୁଷ )—ଯେ
Jagaddaḷana ଜଗତକୁ ଦଳନ ବା ଶାସନ କରେ—
The ruler or oppressor of the universe.

ଜଗଦ୍ଦୀପ—ସଂ. ବ. (ଜଗତ୍ + ଦୀପ; ୬ଷ୍ଠୀ ତତ୍)—୧ । ପରମେଶ୍ୱର—
Jagaddīpa (ହି. ଶବ୍ଦସାଗର)—1. God.
୨ । ଶିବ—2. God Śiba.

ଜଗଦ୍ଦେବ—ଦେ. ବ. ( ଜଗତ୍ + ଦେବ )—ଜଗଦେବ ( ଦେଖ )
Jagaddeba Jagadeba ( See )
ନରେଶ ମଣ୍ଡନ ଶ୍ରୀହରି ଚନ୍ଦନ ଜଗଦ୍ଦେବ ପ୍ରଭୁ ସେନ ।
କବିସୂର୍ଯ୍ୟ, କଳୋଗାର୍ଗଣ୍ଡ ।

ଜଗଦ୍ଧାତା—ସଂ. ବ ପୁଂ. (ଜଗତ୍ + ଧାତୃ, ୧ମା. ୧ବ. ଉପପଦ ସମାସ)—
Jagaddhātā ୧ । ଶିବ—1. God Śiba.
୨ । ବ୍ରହ୍ମା ( ହି. ଶବ୍ଦସାଗର )—
2. God Brahmā.
୩ । ବିଷ୍ଣୁ ( ହି. ଶବ୍ଦସାଗର )—
3. God Bishṇu.

ସାଧାରଣ ଲୋକେ ଅପର ପୃଷ୍ଠାରେ ସଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ ।

**ଜଗଦ୍ଧାତ୍ରୀ**—ସଂ. ବି. ( ଜଗତ୍ + ଧାତ୍ରୀ, ଉପପଦ ସମାସ )—
Jagaddhātri ୧ । ଦୁର୍ଗା; ଗୌରୀ; ଦୁର୍ଗାଙ୍କର ଅବତାରବିଶେଷ—
1. Goddess Durgā.
୨ । ସରସ୍ୱତୀ ( ହି. ଶବ୍ଦସାଗର )—
2. The Goddess of Learning.

**ଜଗଦ୍ଧାତ୍ରୀ ପୂଜା**—ସଂ. ବି—କାର୍ତ୍ତିକ ଶୁକ୍ଳପକ୍ଷ ନବମୀ ଦିନ କରାଯିବା
Jagaddhātrī pūjā ଦୁର୍ଗାଙ୍କର ପୂଜା—Worship of the Goddess Durgā on the 9th day of the bright fortnight of the month Kārtika.

**ଜଗଦ୍ବନ୍ଧୁ**—ସଂ. ବି. (ଜଗତ୍ + ବନ୍ଧୁ; ୬ଷ୍ଠୀ ତତ୍)—ପୁରୀର ଜଗନ୍ନାଥ
Jagadbandhu ମହାପ୍ରଭୁ—1. The Deity Jagannātha at Purī
୨ । ପରମେଶ୍ୱର; ନାରାୟଣ—2 God.
୩ । ଲୋକଙ୍କର ନାମ—
3. A name given to persons (males)

**ଜଗଦ୍ବାସୀ**—ସଂ. ବିଣ. ପୁଂ (ଜଗତ୍ + ବାସୀ; ଉପପଦ ତତ୍ପୁରୁଷ)—
Jagadbāsi ପୃଥିବୀରେ ବାସ କରୁଥିବା—
(ଜଗଦ୍ବାସିନୀ—ସ୍ତ୍ରୀ) Inhabiting the earth.
ଦେ. ବି.—ପୃଥିବୀରେ ବାସ କରୁଥିବା ଲୋକ—
The people of the world; mankind.

**ଜଗଦ୍ବିଖ୍ୟାତ**—ସଂ. ବିଣ. ପୁଂ ( ଜଗତ୍ + ବିଖ୍ୟାତ; ୭ମୀ ତତ୍ )—ବିଶ୍ୱ
Jagadbikhyāta ବିଶ୍ରୁତ; ଯାହାର ଯଶ ଜଗତ ଯାକ ବିସ୍ତୃତ
(ଜଗଦ୍ବିଖ୍ୟାତା—ସ୍ତ୍ରୀ) ହୋଇଅଛି—World-famed.

**ଜଗଦ୍ବ୍ୟାପକ**—ସଂ. ବିଣ. ପୁଂ (ଜଗତ୍ + ବ୍ୟାପକ; ଉପପଦ ତତ୍ପୁରୁଷ)
Jagadbyāpaka ଯାହା ପୃଥିବୀଯାକ ବ୍ୟାପି ଅଛି—
(ଜଗଦ୍ବ୍ୟାପିକା—ସ୍ତ୍ରୀ) World-pervading.

**ଜଗଦ୍ବ୍ୟାପୀ**—ସଂ. ବିଣ ପୁଂ (ଜଗତ୍ + ବ୍ୟାପୀ; ଉପପଦତତ୍)—
Jagadbyāpi ଜଗଦ୍ବ୍ୟାପକ (ଦେଖ)
(ଜଗଦ୍ବ୍ୟାପିନୀ—ସ୍ତ୍ରୀ) Jagadbyāpaka (See)

**ଜଗଦ୍ୟୋନି**—ସଂ. ବି. ପୁଂ (ଜଗତ୍ + ଯୋନି; ଉତ୍ପତ୍ତିସ୍ଥାନ, ୬ଷ୍ଠୀତତ୍)-
Jagadjoni ୧ । ଈଶ୍ୱର—1. God.
୨ । ବ୍ରହ୍ମା, ବିଷ୍ଣୁ, ଶିବ—2. The Hindu trinity.
ସ୍ତ୍ରୀ.—ପୃଥିବୀ—The earth.

**ଜଗଧାତ୍ରୀ**—ଗ୍ରା. ବି. (ସଂ. ଜଗଦ୍ଧାତ୍ରୀ)—ଜଗଦ୍ଧାତ୍ରୀ (ଦେଖ)
Jagadhātri Jagaddhātri (See)

**ଜଗନାଥ**—ଗ୍ରା. ( ସଂ. ଜଗନ୍ନାଥ )—ଜଗନ୍ନାଥ ( ଦେଖ )
Jaganātha Jagannātha ( See )

**ଜଗନାହା**—ଦେ. ବି. ( ସଂ. ଜଗନ୍ନାଥ )—ଜଗନ୍ନାହା ( ଦେଖ )
Jaganāhā Jagannāhā (See)

**ଜଗନ୍ନାଥ**—ସଂ. ବି. ( ୬ଷ୍ଠୀ ତତ୍; ଜଗତ୍ + ନାଥ )—
Jagannātha ୧ । ନାରାୟଣ; ଭଗବାନ; ପରମେଶ୍ୱର; ବିଷ୍ଣୁ—
1. God Bishṇu.
୨ । ଭାରତର ଏକତମ କ୍ଷେତ୍ର ଶ୍ରୀ ପୁରୁଷୋତ୍ତମରେ ବିରାଜିତ ବିଷ୍ଣୁ ପ୍ରତିମା—Name of world famed Hindu Deity of Purī; Jagannātha.

[ ଦ୍ର—ଏହା ଭାରତରେ ଚାରିଗୋଟି ପୁଣ୍ୟଧାମ ମଧ୍ୟରୁ ଏକତମ । ( ଯଥା—ଦକ୍ଷିଣରେ ରାମନାଥ, ପୂର୍ବରେ ଜଗନ୍ନାଥ, ପଶ୍ଚିମରେ ଦ୍ୱାରକାନାଥ ଓ ଉତ୍ତରରେ ବଦ୍ରୀନାଥ । ) ଜଗନ୍ନାଥ ଓଡ଼ିଶାର ପୁରୀଜିଲ୍ଲା ସମୁଦ୍ରକୂଳରେ ପୁରୀ ବା ପୁରୁଷୋତ୍ତମ ସହରରେ ଅବସ୍ଥିତ । ପୁରାଣ ମତରେ ଜଗନ୍ନାଥ ବିଷ୍ଣୁ ବା ଶ୍ରୀକୃଷ୍ଣଙ୍କର ଦାରୁବ୍ରହ୍ମ ରୂପ । ସ୍କନ୍ଦପୁରାଣରେ ବର୍ଣ୍ଣିତ ଅଛି ଯେ ବିଶ୍ୱାବସୁ ନାମକ ଜଣେ ଶବର ନୀଳାଚଳର ଅରଣ୍ୟ ମଧ୍ୟରେ ଦାରୁବ୍ରହ୍ମଙ୍କୁ ପୂଜା କରୁଥିଲା । ମାଳବର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ସ୍ୱପ୍ନାଦେଶ ହେବାରୁ ସେ ତାଙ୍କର ବ୍ରାହ୍ମଣମନ୍ତ୍ରୀ ବିଦ୍ୟାପତିଙ୍କୁ ପଠାଇ ଶବରର ସ୍ଥିତି ଠିକଣା କଲେ ଓ ଶବର ତାଙ୍କୁ ଦାରୁବ୍ରହ୍ମଙ୍କୁ ନ ଦେଖାଇବାରୁ ବିଦ୍ୟାପତି ଶବରର ଅବିବାହିତା ଯୁବତୀ କନ୍ୟା ସଙ୍ଗେ ପ୍ରଣୟ କରି ଦାରୁବ୍ରହ୍ମଙ୍କୁ ଦେଖି ସେଠାରୁ ଯାଇ ଇନ୍ଦ୍ରଦ୍ୟୁମ୍ନଙ୍କୁ ଘେନି ଆସିଲେ । କିନ୍ତୁ ଇନ୍ଦ୍ରଦ୍ୟୁମ୍ନଙ୍କୁ ଦାରୁବ୍ରହ୍ମ ଦେଖା ଦେଲେ ନାହିଁ । ବିଦ୍ୟାପତି ଉକ୍ତ ଶବର କନ୍ୟାକୁ ବିଭା ହେଲେ । ପରେ ବିନ୍ଧ୍ୟ ପ୍ରଯତ୍ନରେ ସ୍ୱପ୍ନାଦେଶରେ ଇନ୍ଦ୍ରଦ୍ୟୁମ୍ନ ଦାରୁବ୍ରହ୍ମଙ୍କୁ ସମୁଦ୍ରରେ ଭାସି ଆସୁଥିବାର ଦେଖି ତାଙ୍କୁ ଆଣି ସେଥିରୁ ମୂର୍ତ୍ତି ଗଢ଼ାଇ ତାଙ୍କ ପାଇଁ ମନ୍ଦିର ତୋଳାଇଲେ ଏବଂ ସେ ମନ୍ଦିର ପ୍ରତିଷ୍ଠା କରିବା ପାଇଁ ବ୍ରହ୍ମାଙ୍କୁ ଡାକିବାକୁ ସ୍ୱର୍ଗକୁ ଗଲେ । ସେ ଫେରୁ ଫେରୁ ବହୁଦିନ ଗତ ହେବାରୁ ଉଡ଼ା ବାଲିରେ ଦେଉଳଟି ପୋତି ହୋଇଗଲା ଓ ଗାଲମାଧବ ରାଜାଙ୍କ ଘୋଡ଼ାଟାପୁରେ ଦେଉଳର ନୀଳଚକ୍ରର ଅଗ୍ରଭାଗ ବାଜିବାରୁ ସେ ତାକୁ ଖୋଳାଇ ଦେଉଳ ବାହାର କଲେ ଓ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କୁ ଘେନି ଫେରିଲାବେଳକୁ ଗାଲମାଧବ ସେ ଦେଉଳକୁ ତିଆରିଛନ୍ତି ବୋଲି ଦାବି କଲେ । ପରେ ବ୍ରହ୍ମା ପ୍ରମାଣ ନେଇ ଇନ୍ଦ୍ରଦ୍ୟୁମ୍ନଙ୍କ ସାକ୍ଷୀ ସାବ୍ୟସ୍ତ କଲେ । ବିଶ୍ୱାବସୁ ଶବରର ବଂଶଧରମାନେ 'ଦଇତା' ଓ ବିଦ୍ୟାପତି ବଂଶଧରମାନେ 'ପଣ୍ଡା' ନାମରେ ଅଦ୍ୟାପି ଜଗନ୍ନାଥଙ୍କ ସେବକରୂପେ ଗଣ୍ୟ ।

ମତାନ୍ତରରେ ଜଗନ୍ନାଥଙ୍କୁ 'ବୌଦ୍ଧାବତାର' ବୋଲାଯାଏ ଓ ତାଙ୍କର ଗଠନ ପୁରାଣୋକ୍ତ କୌଣସି ଦେବଦେବୀଙ୍କ ବର୍ଣ୍ଣନା ଓ ଧ୍ୟାନର ଅନୁରୂପ ନ ହେବାରୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ସ୍ଥିର କରିଅଛନ୍ତି ଯେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ରୂପ ବୌଦ୍ଧମାନଙ୍କର ତ୍ରିପିଟକ ବୌଦ୍ଧ, ଧର୍ମ ଓ ସଙ୍ଘର ଚିହ୍ନ । ଜଗନ୍ନାଥଙ୍କୁ ବୌଦ୍ଧ ଅବତାରରୂପେ ସ୍ୱୀକାର କରି ଉତ୍କଳୀୟ ପ୍ରତିଭା ବୌଦ୍ଧ ଓ ବୈଷ୍ଣବଧର୍ମ ମତରେ ସମନ୍ୱୟ କରି ହିନ୍ଦୁଧର୍ମକୁ ସାର୍ବଜନୀନ ଧର୍ମରେ ପରିଣତ କରିଅଛି ଓ ଜଗନ୍ନାଥଙ୍କ ଭୋଗମହାପ୍ରସାଦ ସେବନରେ ଜାତିଭେଦ ରଖି ନାହିଁ । ଫଳତଃ ଖ୍ରୀଷ୍ଟପୂର୍ବ ୧ମ ଶତାବ୍ଦୀଠାରୁ ୨୦୦ ବର୍ଷ ମଧ୍ୟରେ ବୌଦ୍ଧଧର୍ମର ମହାଯାନ ଶାଖା ବୈଷ୍ଣବଧର୍ମଭାବ ସଙ୍ଗେ ମିଶି ଯାଇଥିଲା । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଂ | ଉଂ | ଷ୍ଣ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଭ | ନ୍ |

ନମ୍ବକାଠ ନିର୍ମିତ ଓ ଏ ମୂର୍ତ୍ତିମାନ ସାଧାରଣତଃ ପ୍ରତି ୧୨ ବର୍ଷରେ ଥରେ ବଦଳାଯାନ୍ତି । ଉକ୍ତ ଦାରୁମୂର୍ତ୍ତି ମଧ୍ୟରେ ସେଉଁ ବ୍ରହ୍ମପଦାର୍ଥ ସପ୍ତପ୍ରସ୍ତ ପାଟକନାରେ ଗୁଡ଼ାଥା ହୋଇ ରହିଥିବାର ଜନଶ୍ରୁତି ଅଛି ତାହା ବୁଦ୍ଧଦେବଙ୍କ ଦନ୍ତ ବୋଲି କେତେ ପଣ୍ଡିତ ମନେ କରନ୍ତି । ପୂର୍ବେ ଏଥିଯୋଗୁଁ ପୁରୀର ନାମ ଦନ୍ତପୁର ଥିଲା । ଜଗନ୍ନାଥଙ୍କ ରଥଯାତ୍ରା ବୌଦ୍ଧମାନଙ୍କ ଯାତ୍ରାର ଅନୁକରଣ ବୋଲି ପଣ୍ଡିତମାନେ କହନ୍ତି । ପୁରୀରୁ ବୁଦ୍ଧଙ୍କ ଦନ୍ତ ସିଂହଳକୁ ପଠାଯାଇ ଥିବା କଥା ମଧ୍ୟ କେହି କେହି କହନ୍ତି । ପରେ ଅନଙ୍ଗଭୀମଦେବ ଇନ୍ଦ୍ରଦ୍ୟୁମ୍ନଙ୍କ ଜୀର୍ଣ୍ଣ ଦେଉଳକୁ ଭାଙ୍ଗି ନୂଆ ଦେଉଳ କଲେ ଓ ପରବର୍ତ୍ତୀ ରାଜାମାନେ ତାହା ସଂସ୍କାର କଲେ । ଜଗନ୍ନାଥ ମନ୍ଦିରର ପ୍ରଥମ ରଚୟିତା—ରାଜା ଇନ୍ଦ୍ରଦ୍ୟୁମ୍ନ, ୨ୟ ରଚୟିତା—ରାଜା ଯଯାତିକେଶରୀ ଓ ୩ୟ ରଚୟିତା—ରାଜା ଅନଙ୍ଗଭୀମଦେବ । ]

ଦେ. ବି. ପୁଂ—୧ । ଲୋକଙ୍କୁ ଦିଆଯିବା ନାମ—
1. A name given to person ( males ).

୨ । (ନାମ) ରାଜା ଜୟସିଂହଙ୍କର ସଭାପଣ୍ଡିତ ଓ ଜ୍ୟୋତିଷୀ—
2. Name of a court Pandit of Rajā Jayasimha and an astronomer

[ ଦ୍ର—ଏ ୧୭ଶ ଶତାବ୍ଦୀର ଲୋକ । ଏ ଜଣେ ତୈଲଙ୍ଗୀ ବ୍ରାହ୍ମଣ । ରାଜା ଜୟସିଂହଙ୍କର ଆଦେଶକ୍ରମେ ଏ ଆରବୀ ସିଦ୍ଧାନ୍ତ ଜ୍ୟୋତିଷ ଗ୍ରନ୍ଥର ସଂସ୍କୃତ ଅନୁବାଦ କରିଥିଲେ । ଏ ଗ୍ରନ୍ଥର ନାମ ସିଦ୍ଧାନ୍ତ ସମ୍ରାଟ । ଏ ମଧ୍ୟ ଇଉକ୍ଲିଡଙ୍କ ରେଖା ଗଣିତ (ଜ୍ୟାମିତି)ର ଆରବୀ ଅନୁବାଦରୁ ସଂସ୍କୃତରେ ଅନୁବାଦ କରିଥିଲେ । ]

**ଜଗନ୍ନାଥ ଦାସ**—ଦେ. ବି. ( ନାମ )—୧ । ଏ 'ଓଡ଼ିଆ ଭାଗବତ'ର Jagannātha dāsa ରଚୟିତା ଓ ଜଣେ ପ୍ରଧାନ ବିଷ୍ଣୁଭକ୍ତ—
1. Name of the author of 'Ordiā Bhāgabata and a great devotee of Bishnu.

[ ଦ୍ର—ପୁରୀଜିଲ୍ଲା କପିଳେଶ୍ୱରପୁର ଗ୍ରାମରେ ଏହାଙ୍କର ଜନ୍ମ ଏବଂ ଏ ଜାତିରେ ବ୍ରାହ୍ମଣ ଓ ଶ୍ରୀ ଚୈତନ୍ୟଙ୍କର ସମସାମୟିକ । ଚୈତନ୍ୟ ଯେତେବେଳେ ସନ୍ନ୍ୟାସୀ ହୋଇ (ପ୍ରାୟ ୧୫୦୦ ଖ୍ରୀଷ୍ଟାବ୍ଦ) ପ୍ରଥମେ ପୁରୀକୁ ଆସିଥିଲେ ସେତେବେଳେ ଜଗନ୍ନାଥ ୧୯ ବର୍ଷର ଯୁବକ ମାତ୍ର । ଚୈତନ୍ୟ ଜଗନ୍ନାଥଙ୍କ ମନ୍ଦିରକୁ ଦର୍ଶନ କରିବାକୁ ଆସିଲାବେଳେ, ଜଗନ୍ନାଥ ଦାସ ମନ୍ଦିରବେଢ଼ାମଧ୍ୟସ୍ଥ କଳ୍ପବଟମୂଳେ ୧୦ମସ୍କନ୍ଧ ଓଡ଼ିଆ ଭାଗବତର ବ୍ରହ୍ମସ୍ତୁତି ଅଂଶ ପାଠ କରୁଥାଆନ୍ତି । ଚୈତନ୍ୟ ଏଥିରେ ମୁଗ୍ଧ ହୋଇ ପ୍ରତିଦିନ କିଛିକ୍ଷଣ ସେଠାରେ ବସି ଭାଗବତ ଶୁଣିବାକୁ ଲାଗିଲେ । ପୁରୀ ଓଡ଼ିଆ ମଠ ଜଗନ୍ନାଥ ଦାସଙ୍କ କର୍ତ୍ତୃକ ପ୍ରତିଷ୍ଠିତ । 'ପାଷଣ୍ଡଦଳନ' 'ଭାଗବତ' 'ମନଶିକ୍ଷା' ଓ 'ଜଗନ୍ନାଥକାରିକା' ଓଡ଼ିଆଗ୍ରନ୍ଥମାନ ଏହାଙ୍କଦ୍ୱାରା ରଚିତ—ଜଗବନ୍ଧୁ ପ୍ରାଚୀନଉତ୍କଳ । ]

୨ । (ନାମ) ପୁରୀ ପାପୁଡ଼ିଆ ମଠର ଭୂତପୂର୍ବ ମହନ୍ତ—
2. Late Mahante of the Papurdiāmatha of Puri.

[ ଦ୍ର—ଏ ପୁରୀଜିଲ୍ଲା ଅନ୍ତର୍ଗତ କୋରଙ୍ଗା (ଅନ୍ୟନାମ—ବିଜେରାମପୁର ) ଗ୍ରାମର ଜନୈକ ବ୍ରାହ୍ମଣ ସନ୍ତାନ ଥିଲେ । ଏ ଜମାଉତମାନଙ୍କର ନେତା ହୋଇ ଭାରତରେ ସର୍ବତ୍ର ସୁପରିଚିତ ଥିଲେ । ଏହାଙ୍କର ଭାରତର ସବୁ ଅଞ୍ଚଳରେ ଅନେକ ଗଣ୍ୟମାନ୍ୟ ଶିଷ୍ୟ ଥିଲେ । ଏ ୧୦ ବର୍ଷ ପୂର୍ବେ ଦେହତ୍ୟାଗ କଲେ । ]

**ଜଗନ୍ନାଥବଲ୍ଲଭ**—ଦେ. ବି—୧ । ପୁରୀର ଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ Jagannāthaballabha ଭୋଗ ଲାଗୁଥିବା ଏକପ୍ରକାର ମିଷ୍ଟାନ୍ନ—
1. A kind of sweetmeat offered to Lord Jagannātha at Puri.

୨ । ( ନାମ ) ପୁରୀର ଗୋଟିଏ ପ୍ରସିଦ୍ଧ ମଠ—
2. A religious institution (Maṭha) at Puri.

[ ଦ୍ର—ଏ ମଠ ସଂଲଗ୍ନ ବଗିଚାକୁ ଚନ୍ଦନଯାତ୍ରା ସମୟରେ ଜଗନ୍ନାଥଙ୍କ ବିଜେ ପ୍ରତିମା ମଦନମୋହନ ବିଜେ କରନ୍ତି । ଏହି ମଠର ସମ୍ମୁଖ ଓ ଏଥିରେ ପ୍ରତିଷ୍ଠିତ ଦେବତାମାନଙ୍କ ସେବା ଆଦି କଟକର ଜଜ ସାହେବଙ୍କ ନିଯୁକ୍ତ ଦେବତ୍ର କମିଟି ବୁଝାସୁଝା କରନ୍ତି । ]

**ଜଗନ୍ନାଥୀ**—ଦେ. ବି. (ବମ୍ବେ ସେନ୍ସସ ରିପୋର୍ଟ ୧୮୯୧ରେ ଲିଖିତ)—
Jagannāthī ବମ୍ବେ ପ୍ରେସିଡେନ୍ସିରେ ପ୍ରଚଳିତ ଓଡ଼ିଆ ଭାଷାର ନାମ—A name of the Oriya ( Ordiā ) language spoken in the Bombay Presidency.

**ଜଗନ୍ନାହା**—ଦେ. ବି.( ସଂ. ଜଗନ୍ନାଥ )—
Jagannāhā ଜଗନ୍ନାଥ; ନାରାୟଣ; ପରମେଶ୍ୱର; ବିଷ୍ଣୁ—
God; Bishnu.

**ଜଗନ୍ନିବାସ**—ସଂ. ବି. ( ଜଗତ୍ + ନିବାସ )—ପରମେଶ୍ୱର—
Jagannibāsa God.

ଦେ. ବି—ପୁରୀର ଜଗନ୍ନାଥ ମହାପ୍ରଭୁ—
The Deity Jagannātha of Purī.

**ଜଗନ୍ନିବାସୀ**—ସଂ. ବି. ( ୬ଷ୍ଠୀ ତତ୍, ଜଗତ୍ + ନିବାସ + ଇନ୍ )—
Jagannibāsī ଜଗଜ୍ଜନ; ଜଗଜନ ( ଦେଖ )
Jagajana ( See )

**ଜଗନ୍ନୁ**—ସଂ. ବି—୧ । ଅଗ୍ନି ( ହି. ଶବ୍ଦସାଗର )—
Jagannu 1. Fire.

୨ । ଜନ୍ତୁ ( ହି. ଶବ୍ଦସାଗର )—2. Animal.

**ଜଗନ୍ମୟ**—ସଂ. ବି. ପୁଂ. ( ଜଗତ୍ + ମୟ )—
Jaganmaya ବିଷ୍ଣୁ ( ହି. ଶବ୍ଦସାଗର )—Bishnu.

**ଜଗନ୍ମୟୀ**—ସଂ. ବି. ( ଜଗନ୍ମୟ + ଈ; ଇ )—
Jaganmayi ୧ । ଲକ୍ଷ୍ମୀ ( ହି. ଶବ୍ଦସାଗର )—
1. Goddess Lakshmi.

୨ । ବିଶ୍ୱବ୍ୟାପିନୀ ଶକ୍ତି—2. The Divine essence pervading the universe.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ଉପଯୁକ୍ତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ' ନ ମିଳିଲେ 'ଗାଡ଼' ଖୋଜିବେ; 'ବୃଥ' ନ ମିଳିଲେ 'ବୃଥା' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଂଧ' ନ ପାଇଲେ 'ଅନ୍ଧ' ଦେଖିବେ; 'ଅଲଂକାର' ନ ପାଇଲେ 'ଅଳଙ୍କାର' ଦେଖିବେ ।

**ଜଗନ୍ମାତା**—ସଂ. ବିଣ. ସ୍ତ୍ରୀ—ବିଶ୍ୱର ମାତୃ ସ୍ୱରୂପ—
Jaganmātā Occupying the portion of the mother of the universe.

ବି. ସ୍ତ୍ରୀ—୧ । ଦୁର୍ଗା—1. Goddess Durgā.

୨ । ଲକ୍ଷ୍ମୀ—2. Goddess Lakshmī.

**ଜଗନ୍ମୋହନ**—ସଂ. ବିଣ. ପୁଂ. ( ଜଗତ୍+ମୋହନ )—
Jaganmohana ଯେ ଜଗତକୁ ମୋହିତ କରେ—
(ଜଗନ୍ମୋହିନୀ—ସ୍ତ୍ରୀ) Enchanting the universe.

ସଂ. ବି. ପୁଂ—ଜଗଦ୍ବନ୍ଧୁ ( ଦେଖ )
Jagadbandhu ( See )

**ଜଗନ୍ମୋହନଲାଲ**—ଦେ. ବି. ( ନାମ )—'ଓଡ଼ିଶା ବିଜୟ' ଓ
Jaganmohanalāl 'ଭ୍ରମଭଞ୍ଜନ' ପ୍ରଭୃତି ଗ୍ରନ୍ଥର ରଚୟିତା—
( ଭାରତୀ—ଉତ୍କଳ ସାହିତ୍ୟ ଇତିହାସ )—
The author of the books 'Ordisā bijaya' and 'Bhramabhañjana' etc.

[ ଦ୍ର—ଏ ଚନ୍ଦ୍ରାଣୀ ଗ୍ରାମ କାୟସ୍ଥ ବଂଶଧର । ଏହାଙ୍କ ପୂର୍ବ ପୁରୁଷମାନେ ଓଡ଼ିଶାରେ କଟକ ଜିଲ୍ଲାରେ ଉପନିବେଶ କରି ରହିଥିଲେ । ]

**ଜଗପତି**—ଦେ. ବି. ( ସଂ. ଜଗତ୍ପତି )—ଜଗତ୍ପତି ( ଦେଖ )
Jagapati Jagatpati ( See )

**ଜଗବନ୍ଧୁ**—ଦେ. ବି. ( ସଂ. ଜଗଦ୍ବନ୍ଧୁ )—ଜଗବନ୍ଧୁ ( ଦେଖ )
Jagabandhu Jagabandhu ( See )

**ଜଗବନ୍ଧୁ ବିଦ୍ୟାଧର**—ଦେ. ବି. (ନାମ)—ଖୋରଧା ରାଜାଙ୍କ ଜଣେ
Jagabandhu bidyādhara ପ୍ରସିଦ୍ଧ ବକ୍ସି ବା ମନ୍ତ୍ରୀ, ତଥା ରୋଡ଼ଙ୍ଗ କିଲ୍ଲାର ପୁରୁଣା ଜମିଦାର ( ଜାଗିରଦାର )—

[ ଦ୍ର—ସେହି ସମୟର ପୁରୀ କଲେକ୍ଟରଙ୍କ ସିରସ୍ତାଦାର କୃଷ୍ଣସିଂହ (ଆଧୁନିକ ଲାଲା ବାବୁ ଷ୍ଟେଟର ମାଲିକଙ୍କ ପୂର୍ବପୁରୁଷ) ଏହାଙ୍କ କିଲ୍ଲାକୁ କପଟରେ ରାଜସ୍ୱ ନିଲାମରେ ଉଠାଇ ନିଜେ ଧରିବାରୁ ଜଗବନ୍ଧୁ ଏଥିରେ ଉତ୍ତ୍ୟକ୍ତ ହୋଇ କମିଶନରସାହେବଙ୍କ ନିକଟ ଅପିଲ କଲେ । ଅପିଲରେ କମିଶନର ସାହେବ ଏ ନିଲାମ ରଦ୍ଦ କରିବାକୁ ଅଦାଲତର ଆଶ୍ରୟ ନେବା ପାଇଁ ଜଗବନ୍ଧୁଙ୍କୁ ଆଦେଶ ଦେବାରୁ ନିଃସମ୍ବଳ ଜଗବନ୍ଧୁ ଦେବାନୀ ମକଦମା ଦାଏର ନ କରି ଘୁମୁସର ଅଞ୍ଚଳରୁ ଗୁପ୍ତଭାବେ କନ୍ଧ ସଂଗ୍ରହ କରି ଖୋରଧା ବିଦ୍ରୋହୀ ପାଇକମାନଙ୍କର ନେତା ହେଲେ ଓ ୧୮୧୭ ଖ୍ରୀଷ୍ଟାବ୍ଦରେ ପ୍ରକାଶ୍ୟରେ ବିଦ୍ରୋହ ଘୋଷଣା କରି ପ୍ରଥମେ ଖୋରଧା, ଲେମ୍ବେଇ, ରୋଡ଼ଙ୍ଗଆଦି ଦଖଲ କରି ଲୁଟପାଟ କଲେ; କିନ୍ତୁ ପରେ ପରାସ୍ତ ହୋଇ ଇଂରାଜଙ୍କଠାରେ ଆତ୍ମସମର୍ପଣ କଲେ ( ପାଇକ ବିଦ୍ରୋହ ତଳେ ନୋଟ ଦେଖ ) । ]

**ଜଗମୋହନ**—ଦେ. ବି. (ସଂ. ଜଗନ୍ମୋହନ)—୧ । ଶ୍ରୀକୃଷ୍ଣ—
Jagamohana 1. Śrikrushṇa.

କାହ୍ନୁ ରୂ ଏମନ୍ତ ଶଣିଲୁ
ଜଗମୋହନଙ୍କୁ ମୋହିଲୁ । ଭୂପତି—ପ୍ରେମପଞ୍ଚାମୃତ ।

୨ । ଭଗବାନ—2. God.

୩ । ଦେବ ପ୍ରତିମା ଯେଉଁ ମନ୍ଦିରରେ ବିଜେ କରନ୍ତି, ତାହାର ସଂଲଗ୍ନ କ୍ଷୁଦ୍ରତର ମନ୍ଦିର—
3. The smaller temple adjoining the main temple where the devotees congregate and dancing (during the worship of the Deity) takes place.

[ ଦ୍ର—ଭକ୍ତ ଓ ଦର୍ଶକମାନେ ସେଠାରେ ସମବେତ ହୁଅନ୍ତି ଏବଂ ଦେବତାଙ୍କ ପ୍ରୀତିଉତ୍ପାଦନ ଉଦ୍ଦେଶ୍ୟରେ ସେଠାରେ ବେଳେ ବେଳେ ନୃତ୍ୟଗୀତାଦି ହୁଏ । ]

୪ । ବ୍ୟକ୍ତିବିଶେଷଙ୍କ ନାମ—
4. A name given to male persons.

**ଜଗମୋହନିଆ**—ଦେ. ବି. (ସଂ. ଜଗନ୍ମୋହନ)—ଜଗମୋହନ (ଦେଖ)
Jagamohaniā Jagamohana (See).

ବଡ ଦେଉଳରେ ଜଗମୋହନିଆ
ଟେକ ଦେଇଅଛି ତାହାରେ । ଜଗନ୍ନାଥଙ୍କ ଜଣାଣ ପଦ ।

**ଜଗର**—ସଂ. ବି. (ଜାଗୃ ଧାତୁ+କର୍ତ୍ତୃ ଅ. ନିପାତନ)—
Jagara ୧ । କବଚ, ସାଞ୍ଜୁ—1 Coat of mail.

୨ । ପୁଷ୍ପୀ ନାମକ ସୁରା; ମଦ୍ୟବିଶେଷ—
2. A kind of wine; a sort of liquor.

୩ । ଗୋମୟ—3. Cowdung.

୪ । ମଦର କଲ୍କ—4. The dregs of wine.

୫ । ମଦନ ବୃକ୍ଷ—5. Madana (tree).

(ଜଗରା—ସ୍ତ୍ରୀ) ସଂ. ବିଣ. ପୁଂ—ଧୂର୍ତ୍ତ, ଚଲାଖ—
Cunning; clever.

**ଜଗର୍ନାଥ**—ଗ୍ରା. ବି. ( ଜଗନ୍ନାଥ ଶବ୍ଦର ଅଶୁଦ୍ଧ ଉଚ୍ଚାରଣ )—
Jagarnātha ଜଗନ୍ନାଥ (ଦେଖ)
ଜଗନ୍ନାଥ Jagannātha (See)

[ ଦ୍ର—ଜଗନ୍ନାଥ ଶବ୍ଦକୁ ଅଜ୍ଞ ଲୋକେ 'ଜଗର୍ନାଥ' ଉଚ୍ଚାରଣ କରନ୍ତି । ଏହି ଉଚ୍ଚାରଣ ପ୍ରଭାବରେ ଇଂରାଜୀରେ 'Juggernaut' (ଜଗ୍ଗର୍ନାଟ) ଶବ୍ଦର ବ୍ୟବହାର ଚଳିଅଛି । ]

**ଜଗଳ**—ସଂ. ବି ଓ ବିଣ. (ଗଲ୍ ଧାତୁ ଯଙ୍‌ଲୁଗନ୍ତ ଜଗଲ ଧାତୁ=ପୁନଃ
Jagala ପୁନଃ ଗଳିତ ହେବା+କର୍ତ୍ତୃ. ଅ)—ଜଗର (ଦେଖ)
(ଜଗଳା—ସ୍ତ୍ରୀ) Jagara (See)

**ଜଗଲ**—ପ୍ରା.ଦେ. (ସମ୍ବଲପୁର) ବି—ଚୁଙ୍ଗୁଡ଼ିଆ ଦଳ (ଦେଖ)
Jagala Chungurdiā daḷa (See)

**ଜଗହୁତ**—ଦେ. ବି. (ସଂ. ଜଗତ୍+ହୂତ=ଜଗତର ଲୋକଙ୍କ ଦ୍ୱାରା
Jagahuta ଆହୂତ ?)—ଜଗନ୍ନାଥ—God.

**ଜଗହୁଲା**—ଦେ. ବି—ଏକପ୍ରକାର ବଡ଼ ମସାଲ—
Jagahulā A big torch

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଓ | ଋ,ୠ | ଌ | ଏ | ଦସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇସ୍ତ | ଉଅ | ଝ |
| ୨ | ଈ | ଊ | ରୂ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ପ | ସ | ଗଁ୍ୟ | ଇଅ | ଢ଼ | ନୃ |

ଜଗା—ଦେ. ବି.—୧ । ଜଗିବା (ଦେଖ)
Jagā 1. Jagibā (See)
୨ । ଜଗନ୍ନାଥ ମହାପ୍ରଭୁ—2. The Deity Jagannātha.
ଶିବା ପଥର ଜଗା କାଠ, ଅଉ ହବୁ ଢାଅଁ କାମ ଛିଁ—ଭଗ ।
୩ । ଜଗନ୍ନାଥ, ଜଗବନ୍ଧୁ ନାମଧାରୀ ବ୍ୟକ୍ତିର ଅବଜ୍ଞାବୋଧକ ଡାକ ନାମ—3. A name for calling persons named Jagannātha etc
ଦେ. ବଣ—(ଅନ୍ୟ ବିଶେଷ୍ୟ ଶବ୍ଦ ସଙ୍ଗେ ଲାଗେ) ଯେ ଜଗେ; ଜଗିଆ (ଦେଖ)
Jagiā (See)
(ଯଥା—ଗୋରୁଜଗା, ରାତିଜଗା ଇତ୍ୟାଦି)

ଜଗାଇବା—ଦେ. କ୍ରି.—ଜଗିବାର ଣିଜନ୍ତ ରୂପ—
Jagāibā Causative form of Jagibā.
(ଜଗେଇବା—ଅନ୍ୟରୂପ)

ଜଗାଇମାଧାଇ—ଦେ. ବି—ଚୈତନ୍ୟ ଦେବଙ୍କ ସମସାମୟିକ ନବଦ୍ୱୀପ-
Jagāi mādhāi ବାସୀ ମହାପାପୀ ଓ ଦୁଷ୍ଟ ଦୁଇଭାଇ, ଯେଉଁ-
जगाइमाधाई ମାନେ ପରେ ଚୈତନ୍ୟଙ୍କ ଦୟାରୁ ମହାପ୍ରେମିକ ଭକ୍ତ ହୋଇଥିଲେ—Names of two brothers of Nabadwipa who were very cruel and sinful but were changed into very loving and pious devotees.

ଜଗାଜଗ—ଦେ. ବି.—କୌଣସି କାର୍ଯ୍ୟ ପ୍ରତି ବିଶେଷ ସାବଧାନତା ବା
Jagājag ସତର୍କତା ବା ହୁସିଆର—Utmost carefulness
छकाछक or caution; being on the guard; watchfulness.
ଦେ. ବଣ.—୧ । କୌଣସି ବିଷୟକୁ ବିଶେଷ ସତର୍କ ହୋଇ ଜଗିଥିବା ବା ଦୃଷ୍ଟି ରଖିଥିବା; ଛକାଛକ—1. Using great care or caution; very watchful; being on one's guard.
୨ । ପରସ୍ପର ପରସ୍ପର ପ୍ରତି ସତର୍କ ରହିଥିବା—2. Being on one's guard against each other

ଜଗାଜଗି—ଦେ. ବି. ଓ ବଣ—ଜଗାଜଗ (ଦେଖ)
Jagājagi Jagājag (See)

ଜଗାବଳିଆ—ଦେ. ବି.—ଜଗନ୍ନାଥ ଓ ବଳଭଦ୍ର—
Jagābaliā Lord Jagannātha and Balabhadra.
ଯାହାକୁ ରଖିବେ ଜଗାବଳିଆ,
ତାକୁ କି କରିବେ ବଡ଼ବଡ଼ିଆ—ଭଗ ।

ଜଗାରଖା—ଦେ. ବି. ( ସହଚର )—୧ । ସତର୍କତା ସହିତ କୌଣସି
Jagārakhā ବସ୍ତୁର ରକ୍ଷଣ ବା ତତ୍ପ୍ରତି ଦୃଷ୍ଟି ଦେବା—
देखाशुना 1. Keeping watch over a thing.
बचाव रखवारी ୨ । ସମ୍ପତ୍ତିର ରକ୍ଷଣାବେକ୍ଷଣ—
2. Preservation or management or supervision of a property.

ଜଗାଳ—ପ୍ରାଦେ. ବି. ( କଟକ )—ଜଗୁଆଳ ( ଦେଖ )
Jagāla Jaguāla (See)

ଜଗାଳି—ଦେ. ବଣ. ପୁଂ—୧ । ଜଗିଆ (ଦେଖ)
Jagāli 1. Jagiā (See)
ପ୍ରାଦେ. (ଗଞ୍ଜାମ) ବି.—୨ । ଦଣ୍ଡାସି; ଗ୍ରାମ ଚଉକିଦାର—
2. Village watchman caste.

ଜଗିଆ—ଦେ. ବଣ. ପୁଂ—୧ । ଯେ ଧନ ଆଦିକୁ କେବଳ ଜଗି ରଖେ—
Jagiā 1. One who simply guards a property.
(ଜଗେଇ—ସ୍ତ୍ରୀ) ଦେ. ବି.—ଜଗିବା—
बाखाल Watching.
रखवाली
ସୁଗ୍ରୀବ ଦାମ୍ ଦଧିମୁଖ ସେ ବନର ଜଗିଆରେ ଥିଲା ।
ବାଳକୃଷ୍ଣ ଦାଶ ପିଙ୍ଗଳ ରାମାୟଣ ।
୨ । ଜଗୁଆଳ; ପହରାବାଲା—
2. Guards-man; watch-man.
ମହୁମାନ୍ ସଙ୍ଗେ ନାମ ଜଗିଆ ସମ୍ଭବ । ସାଚୀ. ବନ୍ଧୁନନ୍ଦପଣ ଗୀତା ।

ଜଗିବସିବା—ଦେ. କ୍ରି.—୧ । ଅତି ସାବଧାନତାପୂର୍ବକ ଜଗିବା—
Jagibasibā 1. To keep a vigilant watch.
୨ । ଅହରହଃ ଅପେକ୍ଷା କରି ରହିବା—
2. To keep waiting day and night.

ଜଗିବା—ଦେ. ବି. (ସଂ. ଜାଗୃ ଧାତୁ=ଜାଗରଣ କରିବା)—
Jagibā ୧ । ପହରା ଦେବା—
राखा 1. To watch; to guard; to keep
जागना, रखवारीकरना watch over.
ଯହୁଁ ଜଗି ବସି ଯୋଗେ ଶାଳଗୋପେ ।
ରଧାନାଥ. ମହାଯାତ୍ରା ।
୨ । ଗୋ ମେଷାଦି ଚରିବା ସମୟରେ ତାଙ୍କ ପ୍ରତି ଦୃଷ୍ଟି ରଖିବା; ଚରାଇବା—2. To tend (cattle).
୩ । ଅପେକ୍ଷା କରି ରହିବା—3, To be in waiting; to keep waiting.
ଛ ମାସ ଜଗିଲି ସମ୍ଭାଘାଟ,
ଦିନେ ନ ପାଇଲି ଭେଟ—ଭଗ ।
୪ । କୌଣସି ପଦାର୍ଥକୁ ସାବଧାନତା ସହିତ ରକ୍ଷା କରିବା; ସମ୍ଭାଳିବା—4. To look to the safety or preservation of a thing with carefullness.
ମାନ କଲୁ ଲୋକର ବିଦ୍ୟା ନାଶ ଯାଏ
ଏଣୁ ତା ସର୍ବଦା ଜଗିବ କିଂଜଗସ୍ୱେ । କୃଷ୍ଣସିଂହ. ମହାଭାରତ. ବନ ।
୫ । ସତର୍କ ହେବା; ସାବଧାନ ହେବା; ହୁସିଆର ହେବା—
5. To be on the alert; to be caution; to be careful.
୬ । ରାତି ଅନିଦ୍ରା ହୋଇ ବସିବା ବା ରହିଁବା; ଜାଗିବା—
6. To watch through the night; to keep up the whole night.

ସାଧାରଣ ଲେଖେ ଅପର ପୃଷ୍ଠାରେ ସଠର ୧ ଚନ୍ଦ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଉ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଆଙ୍ଖି' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ ।

**ଜଗିରଖି**—ଦେ. କ୍ରି. ବିଣ. ( ଜଗିବା ଓ ରଖିବା କ୍ରିୟାର ଅସମାପିକା ରୂପଦ୍ୱୟ ସହଚରରୂପେ ବ୍ୟବହୃତ ହୁଏ )—
Jagirakhi
ଖୁବ ସାବଧାନତା ଓ ସଂଯମ ଅବଲମ୍ବନ ପୂର୍ବକ—
With utmost care or caution.
( ଯଥା—ଜଗି ରଖି ଖରଚ କଲେ ମନୁଷ୍ୟ କଙ୍ଗାଳ ହୁଏ ନାହିଁ । )

**ଜଗି ରହିବା**—ଦେ. କ୍ରି—ଜଗି ବସିବା ( ଦେଖ )
Jagi rahibā — Jagi basibā ( See )

**ଜଗୁ**—ଦେ. ବି—ଜଗ ( ଦେଖ )
Jagu — Jaga ( See )

**ଜଗୁଆ**—ଦେ ବିଣ—୧ । ଯେ ଜଗେ—
Jaguā — 1. (a person) Keeping on watch.
ରାଖାଲ
रखवाला
( ଯଥା—ଅଳ ଗାଈ ଜଗୁଆ ପିଲେ ଅସି ନାହାନ୍ତି କି ? )
୨ । ଜଗନ୍ନାଥ, ଜଗବନ୍ଧୁ ପ୍ରଭୃତିଙ୍କୁ ଡାକିବା ନାମ—
2. A name by which Jagannath or Jagabandhu is called.

**ଜଗୁଆଲ**—ଦେ. ବି—ଜଗୁଆଳି ( ଦେଖ )
Jaguāla — Jaguāli ( See )

**ଜଗୁଆଳି**—ଦେ. ବି—୧ । ପହରାବାଲା—
Jaguāli — 1. Guard; watchman.
ବାଖାଲ
रखवाला
ଗୋଡ ମୁଦ ଜଗୁଆଳି, କଥାଏ କି କଥା କହୁଥିଲା,
ସାଙ୍ଗେ ସାଙ୍ଗେ ଜଗୁଆଳି—ଠଗ ।
୨ । ଗୋରୁ ରଖୁଆଳି—
2. Herdsman; a keeper of cattle etc.
ପ୍ରାଦେ. ( ଗଞ୍ଜାମ ) ବି—ଗଞ୍ଜାମର ଶୂଦ୍ର ଜାତିବିଶେଷ—
A caste of Śūdras in the district of Ganjam.

**ଜଗୁଜୀବନ**—ଦେ. ବି. ( ସଂ. ଜଗଜ୍ଜୀବନ; ଜଗତର ପ୍ରାଣସ୍ୱରୂପ)—
Jagujībana — ପରମେଶ୍ୱର—God.
ଜଗୁଜୀବନ ଦାଶରଥି
ଜାନକୀ ଦେଖି ପ୍ରାଣପତି । କମଳଲୋଚନ ଚଉଦଶା ।

**ଜଗୁସାଇଁ**—ଦେ. ବି. ( ସଂ. ଜଗତ୍ + ସ୍ୱାମୀ )—ଜଗନ୍ନାଥ—
Jagusāiñ — The Deity Jagannātha.
ଗରୁଡ ପଛରେ ଥାଇ, ଦେଖି ନରେ ଜଗୁସାଇଁ
ନାଶ କର ମନତାପ, କହେ ପ୍ରତାପ ଯେ । ପ୍ରତାପ. ଶଶିଶେଣା ।

**ଜଗେଇ ମାଧେଇ**—ଦେ. ବି—ଜଗାଇ ମାଧାଇ ( ଦେଖ )
Jagei mādhei — Jagāi mādhāi ( See )

**ଜଗ୍ଧ**—ସଂ. ବିଣ. ( ଅଦ୍ ଧାତୁ ଖାଇବା + କର୍ମ. ତ; ନିପାତନସିଦ୍ଧ )—
Jagdha — ଭକ୍ଷିତ; ଭୁକ୍ତ—Eaten; devoured.
ସଂ. ବି. ( + ଭାବ. ତ )—ଭକ୍ଷଣ—Eating.

**ଜଗ୍ଧି**—ସଂ. ବି. ( ଅଦ୍ ଧାତୁ ଖାଇବା + ଭାବ. ତି; ନିପାତନସିଦ୍ଧ )—
Jagdhi — ୧ । ଭୋଜନ; ଭକ୍ଷଣ—1. Eating; meal.
୨ । କେତେ ଲୋକଙ୍କ ସଙ୍ଗେ ଏକତ୍ର ଖାଇବା; ସହଭୋଜନ ( ହି. ଶବ୍ଦସାଗର )—
2. Dining together; feast.

**ଜଗ୍ମି**—ସଂ. ବି—ବାୟୁ ( ହି ଶବ୍ଦସାଗର )—
Jagmi — Air.
ସଂ. ବିଣ—ଗତିଶୀଳ ( ହି. ଶବ୍ଦସାଗର )—Moving.

**ଜଘନ**—ସଂ. ବି. ( ହନ୍ ଧାତୁ ଯଙ୍ ଲୁଗନ୍ତ + କର୍ତ୍ତୃ. ଅନ )—
Jaghana — ୧ । ନିତମ୍ବ; ଫଣ୍ଡିଆ; ଅଣ୍ଟା ଉପରୁ କଟି ପର୍ଯ୍ୟନ୍ତ ଗୋଡ଼ର ପଛ ଭାଗ—1. The hinder part; buttocks; hip and loins.
୨ । ସ୍ତ୍ରୀକଟି; ପିଚ୍ଛି—
2. Pudenda; mons Veneris ( M. W. ).
୩ । ସେନାର ପଶ୍ଚାଦ୍‌ଭାଗ—
3. Rear guard; the reserve of an army.
୪ । କଟିର ତଳ ଦେହର ସାମନା ଅଂଶ; ତଳପେଟ (ହି. ଶବ୍ଦସାଗର)—4. Abdomen.

**ଜଘନକୂପ**—ସଂ. ବି. ( ଜଘନ + କୂପ )—ସୁନ୍ଦରୀସ୍ତ୍ରୀମାନଙ୍କର କଟିଦେଶର
Jaghanakūpa — ପଶ୍ଚାତ୍ ଭାଗରେ ଥିବା ଆବର୍ତ୍ତ ବା ଗର୍ତ୍ତଦ୍ୱୟ—(ଜଘନକୂପକ—ଅନ୍ୟରୂପ) The small cavities seen in the back of the loins of comely women.

**ଜଘନଚପଳା**—ସଂ. ବି. ସ୍ତ୍ରୀ. (ବହୁବ୍ରୀହି; ଜଘନ + ଚପଳ + ସ୍ତ୍ରୀ. ଆ)—
Jaghanachapalā — ୧ । ଅସତୀ; ନଷ୍ଟଚରିତ୍ରା; କୁଳଟା—
1 An unchaste woman; adulteress.
୨ । ନର୍ତ୍ତକୀ—2. A dancing girl.
୩ । କାମୁକୀ ସ୍ତ୍ରୀ. ( ହି. ଶବ୍ଦସାଗର )—
3. Lustful woman.
୪ । ସଂସ୍କୃତ ଆର୍ଯ୍ୟାଛନ୍ଦର ୧୬ ଭେଦ ମଧ୍ୟରୁ ଏକତମ (ହି. ଶବ୍ଦସାଗର )—4 One of the 16 varieties of the Sanscrit metre Āryā.
[ ଦ୍ର—ଏ ଛନ୍ଦର ପ୍ରଥମାର୍ଦ୍ଧ ଆର୍ଯ୍ୟାଛନ୍ଦର ପ୍ରଥମାର୍ଦ୍ଧ ପରି ଓ ଦ୍ୱିତୀୟାର୍ଦ୍ଧ ଚପଳା ଛନ୍ଦର ଦ୍ୱିତୀୟାର୍ଦ୍ଧ ପରି ରଚିତ । ]

**ଜଘନଫଳା**—ସଂ. ବି. (ଜଘନରେ ବା ଗଛର କାଣ୍ଡରେ ଫଳ ଧରିବାରୁ)—
Jaghanaphalā — ୧ । ଡିମିରି ( ଦେଖ )
1. Dimiri ( See )
୨ । କାକମାଚି ( ଦେଖ )
2. Kākamāchi ( See )

**ଜଘନ୍ୟ**—ସଂ. ବିଣ. ( ଜଘନ=କଟି + ସ୍ୱାର୍ଥେ. ଯ )—
Jaghanya — ୧ । ନୀଚ; ଅଧମ—1. Low; mean.
୨ । ଘୃଣ୍ୟ; ହେୟ—2. Hateful; despicable

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ, ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଘ |
| ୨ | ଈ | ଊ | ରୁ | ଲ୍ଲ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ବ | ନ୍ହ |

୩ । ଅନୁଚିତ—3. Improper.
୪ । ଗର୍ହିତ; ନିନ୍ଦନୀୟ—4. Blameworthy
୫ । ଚରମ; ଅନ୍ତିମ—5. Ultimate; last; final.
ବି—୧ । ଶୂଦ୍ର 1. The Śūdra caste.
୨ । ମେଢ୍ର; ପୁଂଲିଙ୍ଗ—2. Penis.
୩ । ମେଷ; ମେଣ୍ଢା—3. Ram; sheep.
୪ । ନୀଚ ଜାତି; ହୀନବର୍ଣ୍ଣ—4. Low caste.
୫ । ପିଠିର ଯେଉଁ ଅଂଶ ପିଚ୍ଛ ଉପରେ ଥାଏ—
5. The part of the back over the hips.
୬ । ରାଜାମାନଙ୍କ ଅନୁଚରବିଶେଷ—
6. A class of kings' attendants
[ଦ୍ର—ବୃହତ୍ ସଂହିତା ଅନୁସାରେ ଏ ଅନୁଚର ଧଳା, ମୋଟା-ବୁଦ୍ଧିଆ, ହସୁରା, କ୍ରୂର, କଦର୍ଯ୍ୟଶକ୍ତିଯୁକ୍ତ ହୋଇଥାଏ । ଏହାର କଣ୍ଠ ଅର୍ଦ୍ଧଚନ୍ଦ୍ରାକାର, ଶରୀରର ଗଣ୍ଠି ଦୃଢ଼, ଅଙ୍ଗୁଳ ମୋଟ । ଏହାର ଛାତି, ହାତ ଓ ଗୋଡ଼ରେ ଖଣ୍ଡା ଆଦିର ଚିହ୍ନ ଥାଏ—ହି. ଶବ୍ଦସାଗର ]
୭ । ଜଘନ୍ୟଭ (ଦେଖ)
7. Jaghanyabha (See)

**ଜଘନ୍ୟଜ**—ସଂ. ବି. ପୁଂ. (ଜଘନ୍ୟ+ଜନ୍+କର୍ତ୍ତୃ. ଅ)—
Jaghanyaja ୧ । ଶୂଦ୍ର—2. Śūdra.
୨ । ଅନ୍ତ୍ୟଜ (ହି ଶବ୍ଦସାଗର)—
2. A person of low caste.
ବିଣ. ପୁଂ—କନିଷ୍ଠ—Younger in age; junior.

**ଜଘନ୍ୟଭ**—ସଂ. ବି—ଦ୍ୱିତୀ ଆର୍ଦ୍ରା, ଅଶ୍ଳେଷା, ସ୍ୱାତି, ଜ୍ୟେଷ୍ଠା ଓ
Jaghanyabha ଶତଭିଷା ଏହି ଛଅ ନକ୍ଷତ୍ର (ହି. ଶବ୍ଦସାଗର)—
The 2nd, 6th, 9th, 15th, 18th and 24th asterisms

**ଜଘ୍ନି**—ସଂ. ବି. (ହନ ଧାତୁ+କର୍ତ୍ତୃ. ଇ)—
Jaghni ୧ । ବଧକାରୀ; ଘାତକ (ହି. ଶବ୍ଦସାଗର)—
1. An assassin.
୨ । (+କରଣ. ଇ)—ଯେଉଁ ଅସ୍ତ୍ରଦ୍ୱାରା ବଧ କରାଯାଏ (ହି. ଶବ୍ଦସାଗର)—2. The instrument with which killing is done.

**ଜଙ୍କ୍**—ବୈଦେ. ବି. (ଫା. ଜଙ୍ଗ୍)—
Jank ୧ । କଳଙ୍କି; ଜଙ୍ଗ—1. Rust.
୨ । (ଇଂ) ଏକ ପ୍ରକାର ଚଉଡ଼ା ଡଙ୍ଗା—
2. Junk; a kind of wide boat.
ପ୍ରାଦେ. (ସମ୍ବଲପୁର) ବି—ଜୋକ—Leech

**ଜଙ୍କ୍‌ସନ୍**—ବୈ. ବି. (ଇଂ)—ରେଲର ଏକାଧିକ ଲାଇନ୍ ଯେଉଁ
Janksan ଷ୍ଟେସନରେ ଯୋଗ ହୋଇଥାଏ—
Junction (Railway).
जंक्सन
जंसन

**ଜଙ୍ଖ**—ଗ୍ରା. ବିଣ. (ସଂ. ଯକ୍ଷ)—କୃପଣ—
Jankha Miserly; close fisted.
ଦେ. ବି—ଜଖ (ଦେଖ)
Jakha (See)

**ଜଙ୍ଖଲି**—ପ୍ରାଦେ. (ଗଞ୍ଜାମ) ବି—ଏକ ପ୍ରକାର ସାରୁ—
Jankhali A kind of taro.

**ଜଙ୍ଗ୍**—ବୈଦେ. ବି. (ନେପାଳୀ ଭାଷା; ଫା. ଜଙ୍ଗ୍+ଯୁଦ୍ଧ)—
Jang ୧ । ଯୁଦ୍ଧ—1. Fight; war; battle.
जङ्ग ୨ । (ଫା. ଜଙ୍ଗ୍) କଳଙ୍କି—2. Rust.
जङ्ग
(ଜଂଗ୍—ଅନ୍ୟରୂପ)

**ଜଙ୍ଗ୍ ବାହାଦୁର**—ପ୍ରାଦେ. (ନେପାଳୀ) ବି—
Jang bāhādura ନେପାଳର ପ୍ରଧାନ ମନ୍ତ୍ରୀଙ୍କ ଉପାଧି—
जङ्ग बाहादुर Title of the chief-minister of
जङ्ग बाहादुर Nepāla.

**ଜଙ୍ଗ୍ ଲାଗିବା**—ଦେ. କ୍ରି—ଧାତୁଦ୍ରବ୍ୟରେ କଳଙ୍କି ଧରିବା—
Jang lāgibā To rust.
जङ्गलागा
(ଜଙ୍ଗ୍ ଧରିବା—ଅନ୍ୟରୂପ)

**ଜଙ୍ଗମ**—ସଂ. ବିଣ. (ଯେ ତ ଲୁଗନ୍ତ ଗମ୍ ଧାତୁ+କର୍ତ୍ତୃ. ଅ; ଯେ ପୁନଃପୁନଃ
Jangama ବା ଅନବରତ ଗମନ କରେ)—
(ବିପରୀତ—ସ୍ଥାବର) ୧ । ଚଳନ୍ତି; ଗତି କରୁଥିବା—
जङ्गम 1. Moving.
(ଜଂଗମ—ଅନ୍ୟରୂପ) ଜଙ୍ଗମ ହେବାର ଜମ୍ନନ୍ଦସାର ଣିସ ଷ୍ଟୁଲର ସେ କ ପ୍ରକାର—କନ୍ଦର୍ପ. କଣୋଷ୍ଟ୍ରମ. ଜ-ଗୀତ ।
୨ । ଯାହାକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ କିଆଯାଇ ପାରେ; ଅସ୍ଥାବର—2. Movable.
୩ । ଅସ୍ଥାୟୀ; ଅଚିର—
3. Not permanent; non-abiding.
୪ । ପରିବର୍ତ୍ତନଶୀଳ—4. Changeable.
୫ । ବଦଳୁଥିବା—5. Changing
୬ । କିଛିକାଳସ୍ଥାୟୀ; ସାମୟିକ—6. Temporary.
ଦେ. ବି—ଦକ୍ଷିଣଭାରତର ଲିଙ୍ଗାଏତ୍ ନାମକ ଶୈବସମ୍ପ୍ରଦାୟର ଗୁରୁ—Spiritual preceptor of the Lingāet sect of Śiba worshipper in south-India.
[ଦ୍ର—ଏମାନେ ଦୁଇ ଶ୍ରେଣୀର—ବିରକ୍ତ ଓ ଗୃହସ୍ଥ । 'ବିରକ୍ତ'-ମାନେ ମୁଣ୍ଡରେ ଜଟା ରଖନ୍ତି ଓ କୌପୀନ ମାରନ୍ତି ଓ ଲିଙ୍ଗାଏତ୍-ମାନେ ବିରକ୍ତମାନଙ୍କୁ ବେଶି ମାନ୍ୟ କରନ୍ତି—ହି. ଶବ୍ଦସାଗର । ]
ପ୍ରାଦେ. (ଗଞ୍ଜାମ) ବି—ଶିବପୂଜକ ତେଲଙ୍ଗା ଜାତିବିଶେଷ—
A cast among the Telugus who worship Śiba.

**ଜଙ୍ଗମକୁଟୀ**—ସଂ. ବି. (ଜଙ୍ଗମ=ଗମନଶୀଳ + କୁଟୀ=ଗୃହ)—ଛତା—
Jaṅgamakuṭi An umbrella.
( ଜଂଗମକୁଟୀ—ଅନ୍ୟରୂପ )

**ଜଙ୍ଗମବିଷ**—ସଂ. ବି—ପ୍ରାଣୀମାନଙ୍କ ଦନ୍ତାଦି ଆଘାତଦ୍ୱାରା ଉତ୍ପନ୍ନ ବିଷ—
Jaṅgamabisha Poison proceeding from animals
( ସ୍ଥାବରବିଷ—ବିପରୀତ ) [ ଦ୍ର—ସୁଶ୍ରୁତରେ ୧୬ ପ୍ରକାର ଜଙ୍ଗମ ବିଷର ଉଲ୍ଲେଖ ଅଛି; ଦୃଷ୍ଟିଜନିତ, ନିଶ୍ୱାସଜନିତ, ଦନ୍ତଜନିତ, ନଖଜନିତ, ମୂତ୍ରଜନିତ, ପୁରୀଷଜନିତ, ଶୁକ୍ରଜନିତ, ଲାଳାଜନିତ, ଆର୍ତ୍ତବଜନିତ, ନାହୁଡ଼ଜନିତ, ମୁଖସନ୍ଦେଶଜନିତ, ଅସ୍ଥି, ପିତ୍ତ, ବିଶର୍ଦ୍ଧିତ, ଶୂକ ଓ ଶବ । ଭିନ୍ନ ଭିନ୍ନ ବିଷଧର ପ୍ରାଣୀମାନଙ୍କର ଭିନ୍ନ ଭିନ୍ନ ଅଙ୍ଗର ସଂସ୍ରବରେ ଆହତ ଜୀବ ଦେହକୁ ବିଷ ସଂକ୍ରମିତ ହୁଏ—ହି. ଶବ୍ଦସାଗର । ]

**ଜଙ୍ଗମଭୂତ**—ସଂ. ବି—ଜୈବ ପଦାର୍ଥ—Animal matter or animal
Jaṅgamabhūta substance.
( ଜଂଗମଭୂତ—ଅନ୍ୟରୂପ )

**ଜଙ୍ଗମୁ**—ପ୍ରାଦେ. ( ଗଞ୍ଜାମ ) ବି—ଜଙ୍ଗମ ( ଦେଖ )
Jaṅgamu Jaṅgama ( See )
( ଜଂଗମୁ—ଅନ୍ୟରୂପ )

**ଜଙ୍ଗଲ**—ସଂ. ବି. ( ଜଙ୍ଗମ + ଲା ଧାତୁ; ଗ୍ରହଣ କରିବା + କର୍ତ୍ତୃ. ଅ )—
Jaṅgala ୧ । ବଣ; ଅରଣ୍ୟ; ବନ ( ପ୍ରକୃତିବାଦ )—
1. Forest; jungle.
୨ । ମରୁଦେଶ; ଜଳଶୂନ୍ୟ ଭୂମି—
2. Desert; waterless country (M. W).
୩ । ( ଯଙ୍‌ ଲୁଗନ୍ତ ଗଲ ଧାତୁ + କର୍ତ୍ତୃ. ଅ ) ମାଂସ—
3. Flesh.

[ ଦ୍ର—ଏହି ସଂସ୍କୃତ ବିଶେଷ୍ୟ ଶବ୍ଦଟି ଇଂରେଜି ଭାଷାକୁ ନିଆଯାଇଅଛି । ]

ବିଣ—୧ । ନିର୍ଜନ (ପ୍ରକୃତିବାଦ)—1. Solitary, lonely.
୨ । ଶୁଷ୍କ—2. Arid; dry ( M. W ).
୩ । ଅନୁର୍ବର; ମରୁମୟ; ଯେଉଁଠାରେ ବୃକ୍ଷଲତାଦି ଜନ୍ମେ ନାହିଁ—3. Sterile ( M. W )

**ଜଙ୍ଗଲ**—ଦେ. ବି—୧ । ନିବିଡ଼ ଅରଣ୍ୟ—
Jaṅgala 1. Dense forest.
जङ्गल ୨ । ଅରମା; ଯେଉଁ ସ୍ଥାନରେ ଲତା ଗୁଳ୍ମାଦି ବଢ଼ିଥାଏ—
**जङ्गल** 2. A place overgrown with wild plants
( ଜଂଗଲ—ଅନ୍ୟରୂପ ) and creepers.

[ ଦ୍ର—ସଂସ୍କୃତ ଭାଷାରେ ଜଙ୍ଗଲ ଶବ୍ଦର ଅର୍ଥର 'ବନ' ବା 'ଅରଣ୍ୟ' ମାତ୍ର ଓଡ଼ିଆ ଭାଷାରେ 'ନିବିଡ଼ବନ' ଅର୍ଥରେ ଓ 'ଅରମା ସ୍ଥାନ' ଅର୍ଥରେ ଏହି ଶବ୍ଦ ପ୍ରଯୁକ୍ତ ହୁଏ । ]

**ଜଙ୍ଗଲବାଡ଼ି**—ଦେ. ବି—ଜଙ୍ଗଲ ସଫା କରି ଚାଷ କରାଯିବା ନୂଆବାଡ଼ି
Jaṅgalabāṛdi ଭୂମି—Land recently reclaimed from the jungala.
ଜଙ୍ଗଲବାରି, ଜଙ୍ଗଲବୁଢ଼ି, ଜଙ୍ଗଲବୁରି } ଅନ୍ୟରୂପ

**ଜଙ୍ଗଲାଟ୍**—ଦେ. ବିଣ—୧ । ଅରଣ୍ୟମୟ—
Jaṅgalāṭ 1 Overgrown with jungle.
जङ्गलाट ୨ । କୃଷିର ଅନୁପଯୁକ୍ତ ( ଭୂମି )—
**जङ्गलात** 2. Not fit for cultivation; not
(ଜଙ୍ଗଲାତ୍—ଅନ୍ୟରୂପ) arable ( land ).

**ଜଙ୍ଗଲି**—ଦେ. ବିଣ—୧ । ଅସଭ୍ୟ—
Jaṅgali 1. Uncivilised; untamed.
जङ्गली ୨ । ବନ୍ୟ—2. Wild; sylvan.
**जाङ्गलू, जङ्गली** ୩ । ଓଲୁ; ନିର୍ବୋଧ—
(ଜଙ୍ଗଲି—ଅନ୍ୟରୂପ) 3. Stupid; foolish; dunce.
୪ । ଜଙ୍ଗଲରେ ଜାତ ବା ପ୍ରାପ୍ତ—4. Available or growing on the forest; jungly.

[ ଦ୍ର—୧ । ଏ ଶବ୍ଦ ଇଂରାଜିରେ ମଧ୍ୟ ବ୍ୟବହୃତ ହୁଏ । ଏ ବୃକ୍ଷ ଭାରତବର୍ଷର ପଶ୍ଚିମଘାଟର ପାହାଡ଼, ବ୍ରହ୍ମଦେଶ ମାର୍ତ୍ତାବନ୍, ଟେନାସେରିମ୍ ଓ ସିଂହଳର ଅରଣ୍ୟରେ ଜନ୍ମେ । ଏ ଗଛରୁ ଏକ ପ୍ରକାର ଅଠା (ଗୋନ୍ଦ) ବାହାରେ । ଏ ଗଛ ଫଗୁଣ ମାସରେ ଫୁଲ ଧରେ । ଫୁଲରୁ କଡ଼ା ଦୁର୍ଗନ୍ଧ ବାହାରେ । ଏ ଗଛର ଫଳକୁ ସିଝାଇ ଏକ ପ୍ରକାର ତେଲ ବାହାର କରାଯାଏ । ଗରିବ ଲୋକେ ଦୁର୍ଭିକ୍ଷ ସମୟରେ ଏ ଫଳକୁ ଭାଜି କରି ଖାଆନ୍ତି । ପତ୍ର ଓ ଫଳ ଔଷଧରେ ଲାଗେ । ଏହାକୁ ପୁନ୍ ବା ପିନାରି କହନ୍ତି ।

୨ । ଆଉ ଏକ ପ୍ରକାର ହରଡ଼ା ଜାତୀୟ ବନ୍ୟ ଗଛକୁ ଜଙ୍ଗଲୀ ବାଦାମ କହନ୍ତି । ଏହା ଆଣ୍ଡାମାନ୍ ଓ ବ୍ରହ୍ମଦେଶରେ ଜନ୍ମେ—ଏ ଗଛରୁ ଅଠା (ଗୋନ୍ଦ) ଓ ଫଳରୁ ତେଲ ବାହାରେ । ଏହାର ପତ୍ର କଷାଲିଆ ଓ ଚମଡ଼ା କଷିବାରେ ବ୍ୟବହୃତ ହୁଏ । ଏ ମଞ୍ଜିର ଶସ ବାଦାମ ମଞ୍ଜି ପରି ଲୋକେ ଖାଆନ୍ତି ଓ ପିଲାଙ୍କୁ ଘିଅ ସହ ଦିଅନ୍ତି । ଏଥିର ଛାଲି, ପତ୍ର, ବୀଜ ଓ ତେଲ ଔଷଧରେ ଲାଗେ । ଏହାର ପତ୍ରକୁ ରେଶମ ପୋକ ମଧ୍ୟ ଖାଆନ୍ତି । ହି. ଶବ୍ଦସାଗର ]

**ଜଙ୍ଗଲିଆ**—ଦେ. ବିଣ—ଜଙ୍ଗଲି ( ଦେଖ )
Jaṅgaliā Jaṅgali ( See )
(ଜଂଗଲିଆ—ଅନ୍ୟରୂପ)

**ଜଙ୍ଗଲି ବାଦାମ**—ଦେ. ବି—ବନ୍ୟ ବୃକ୍ଷବିଶେଷ—
Jaṅgali bādāma L. (1) Sterculia faetida.
जङ्गली बादाम (2) Canarium commune
**जङ्गलीबादाम; नटबादाम** Eng. Java almond tree
ତେ ଗୁରାପୁବାଦାମ (Kirtikar).
ତା. ପିନାରି, କୁଡ୍ରୁପ୍ପୁଳୁ [ ଦ୍ର—ପଶ୍ଚିମ ଭାରତ, ଦାକ୍ଷିଣାତ୍ୟ, ବ୍ରହ୍ମଦେଶ ଓ ସିଂହଳରେ ଏ ବୃକ୍ଷ ଜନ୍ମେ । ଏ ଗଛ ମଧ୍ୟେ ମଧ୍ୟେ ପତ୍ର ଝଡ଼ା ହୁଏ । ଏହାର ପତ୍ର ଓ ମଞ୍ଜି ଔଷଧରେ ଲାଗେ । ]

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଓ୍ୱ | ଉଅ | ତ୍ର |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଙଅ | ଢ଼ | ନ୍ତ |

ଜଙ୍ଗାଲ—ଦେ. ବି. ( ସଂ. ଜାଙ୍ଗୁଲ; ଫା. ଜଂଗାର୍ )—
Jaṅgāl ୧ । କବାଟ ଆଦି ରଙ୍ଗ କରିବା ନିମନ୍ତେ ତୈଳ
ଜଙ୍ଗାଲ ମିଶ୍ରିତ ରଙ୍ଗ; ତାମ୍ରଘଟିତ ଘାସବର୍ଣ୍ଣ ରଙ୍ଗ—
जङ्गार 1. A paint mixed with oil; verdigris;
(ଜଂଗାଲ୍—ଅନ୍ୟରୂପ) a variety of blue vitriol used for painting.

[ ଦ୍ର—ଏହା ଗୋଟିଏ ବିଷ, ଏଥିରେ ତମ୍ବା, ଶଙ୍ଖୁଆ, ଗନ୍ଧକ ମିଶିଥାଏ । ତମ୍ବାଚୂର୍ଣ୍ଣକୁ ସିରକାରେ ୨୪ ଘଣ୍ଟା ରଖିଲେ ଏ ରଙ୍ଗ ହୁଏ । ]

୨ । ତୁତିଆ—2. Blue vitriol

ଜଙ୍ଗି—ବୈଦେ. ବିଣ. ( ଫା. ଜଙ୍ଗ୍=ଯୁଦ୍ଧ )—
Jaṅgi ୧ । ଯୁଦ୍ଧସମ୍ବନ୍ଧୀୟ—1. Pertaining to war.
ଜଂଗି ୨ । ସମରବିଭାଗୀୟ—2. Military.
जङ्ग ( ଯଥା—ଜଙ୍ଗି ଲାଟ୍ )
(ଜଂଗି—ଅନ୍ୟରୂପ) ୩ । ପରାକ୍ରମୀ; ମହାବଳ—
3 Very strong; indomitable.
ପ୍ରାଦେ. (ସମ୍ବଲପୁର) ବିଣ—ସୁଦୀର୍ଘ; ବୃହତ୍—
Big; large.
( ଯଥା—ଜଙ୍ଗି ରପୋର୍ଟ । )

ଜଙ୍ଗିପଲ୍ଟଣ୍—ଦେ. ବି—ଭାରତୀୟ ଇଂରାଜସେନା—
Jaṅgipalṭaṇ A battallion of English soldiers;
ଜଂଗୀ ପଲଟନ Indian army consisting of Europeans.
जंगी पलटन
(ଜଙ୍ଗୀ ପଲ୍ଟଣ୍—ଅନ୍ୟରୂପ)

ଜଙ୍ଗିଭାଲୁ—ପ୍ରାଦେ. (ଗଞ୍ଜାମ) ବି—ଗାଡ଼ଭାଲୁ (ଦେଖ)
Jaṅgibhālu Gārḍabhālu (See)
(ଜଙ୍ଗୀ ଭାଲୁ—ଅନ୍ୟରୂପ)

ଜଙ୍ଗିଲାଟ—ଦେ. ବି. ( ଫା. ଜଙ୍ଗ୍=ଯୁଦ୍ଧ )—
Jaṅgilāṭa ଭାରତୀୟ ସୈନ୍ୟଙ୍କର ପ୍ରଧାନ ସେନାପତି—
ଜଂଗୀଲାଟ Honourable, the commander-in-chief of the Indian army.
जंगीलाट
(ଜଙ୍ଗୀଲାଟ—ଅନ୍ୟରୂପ)

ଜଙ୍ଗି ହରିଡ଼ା—ଦେ. ବି. ( ସଂ. ଜାଙ୍ଗଲ ହରୀତକୀ )—
Jaṅgi harirḍā ଜଙ୍ଘି ହରିଡ଼ା (ଦେଖ)
ଜାଗୀ ହରୀତକୀ Jaṅghi harirḍā (See)
जंगी हड़
(ଜଙ୍ଗୀ ହରିଡ଼ା—ଅନ୍ୟରୂପ)

ଜଙ୍ଗୁଳ—ସଂ. ବି. (ଜଙ୍ଗୁ, ଗମନଶୀଳ+ଲୂ ଧାତୁ=ଛେଦନ କରିବା+
Jaṅguḷa କର୍ତ୍ତୃ. ଅ)—ବିଷ—Poison.
(ଜଂଗୁଳ—ଅନ୍ୟରୂପ)

ଜଙ୍ଘ—ଦେ. ବି. (ସଂ. ଜଙ୍ଘା)—ଜଙ୍ଘା (ଦେଖ)
Jaṅgha Jaṅghā (See)
ଜାଂଘ; ଜାଂଗ
जाँघ
(ଜଂଘ—ଅନ୍ୟରୂପ)

ଜଙ୍ଘ ଧରିବା—ଦେ. ବି—ଜଙ୍ଘରେ ବେଦନା ହେବା—
Jaṅgha dharibā Aching in the thigh.

ଜଙ୍ଘା—ସଂ. ବି. ( ଜନ୍ ଧାତୁ+ଅ+ଆ; ନିପାତନ )—୧ । ଅଣ୍ଟୁ
Jaṅghā ଉପରଠାରୁ ଅଣ୍ଟାପର୍ଯ୍ୟନ୍ତ ଗୋଡ଼ର ସମ୍ମୁଖ ଅଂଶ—
1. Thigh; the part about the loins (Apte).
ଗଳିଯିବା ରଙ୍ଗିରେ ଜଙ୍ଘ ଲୁଗା ଯେଉଁ
ମୃଣ୍ଡଯୋଡ଼ ରହେ ଜାନୁରେ ବ୍ୟାଜେ ବୁଡ଼ି ' କୃଷ୍ଣସିଂହ. ମହାଭାରତ. ବନ ।
୨ । ଗୋଡ଼ନଳୀ; କଲାଗଣ୍ଠି ଓ ଆଣ୍ଠୁର ମଧ୍ୟବର୍ତ୍ତୀ ଅଂଶ—
2. Shank; part of the leg from the ankle to the knee.
୩ । କଇଁଚିର ଯେଉଁ ଅଂଶରେ ଆଙ୍ଗୁଠି ଗଳାଯାଇ କଇଁଚିକୁ ବ୍ୟବହାର କରାଯାଏ (ହି. ଶବ୍ଦସାଗର)—
3. The eyes of a pair of scissors.
जंघार ଦେ. ବି—ଜଙ୍ଘରେ ଉଠିବା ଦୁଷ୍ଟବ୍ରଣ; ଜଙ୍ଘକୁ ରକ୍ତ ଗଡ଼ିବା ରୋଗ—A painful boil on the thigh.

ଜଙ୍ଘାକରିକ—ସଂ. ବି. (ଜଙ୍ଘା+କର=ଶୁଳ୍କ+ଗ୍ରହଣାର୍ଥେ ଇକ)—
Jaṅghākarika ୧ । ଧାବକ; ଯେ ଦ୍ରୁତବେଗରେ ଗମନ କରେ; ଧାଉଡ଼ିଆ ପାଇକ—1. A courier; a swift runner.
୨ । ମୃଗବିଶେଷ—2. A stag.

ଜଙ୍ଘାତ୍ରାଣ—ସଂ. ବି. ( ଜଂଘା+ତ୍ରୈ ଧାତୁ=ରକ୍ଷା କରିବା+କର୍ତ୍ତୃ.
Jaṅghātrāṇa ଅନ)—ଜଙ୍ଘକୁ ରକ୍ଷା କରିବାର କବଚ—
1 Cuish; an armour for the thighs.
୨ । ପେଣ୍ଟଲୁନ୍—2. Pantaloons; trousers.
୩ । ଜଙ୍ଘିଆ—3. Half-pant; shorts.

ଜଙ୍ଘାବଳ—ସଂ. ବି—ବେଗଗାମୀ ଦୂତ—
Jaṅghābaḷa A fleet messanger.
ଲଙ୍ଘାଏ ଦୁର୍ଗ ନୋହେ ଜଙ୍ଘାବଳ । କବିସୂର୍ଯ୍ୟ. କଳାକଳେବରାହାନ

ଜଙ୍ଘାବୃତ୍ତି—ସଂ. ବି—୧ । ଗୋଡ଼ରେ ଚାଲି ଯିବା ଆସିବାର ବ୍ୟବସାୟ—
Jaṅghābrutti 1. Pedestrianism.
୨ । ଦୌଡ଼ି କରି ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯିବାର ଚାକିରି—
2. The office of a courier or runner.

ଜଙ୍ଘାଳ—ସଂ. ବିଣ. (ଜଙ୍ଘା+ଅଳ)—୧ । ଦ୍ରୁତଗାମୀ—
Jaṅghāḷa 1. Fleet of foot; quick marching.
୨ । ଧାବକ—2. Running.
ବି—୧ । ହରିଣ—1. Antilope; deer; stag.

ସାଧାରଣ ଲୋକେ ଅପର ପୃଷ୍ଠାରେ ସଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଈ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; ଅଙ୍ଖି ନ ପାଇଲେ 'ଆଙ୍ଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୨ । ଧାଉଡ଼ିଆ ପାଇକ—
2. A runner; courier.

ଜଙ୍ଘାଲା—ଦେ. ବି—ପ୍ରାଚୀନ କାଳରେ ଭାରତବାସୀଙ୍କ ଦ୍ୱାରା ବ୍ୟବହୃତ
Janghāḻā   ଅର୍ଣ୍ଣବପୋତବିଶେଷ—A kind of ship used in ancient India

[ ଦ୍ର—ଭୋଜରାଜାଙ୍କ ପ୍ରଣୀତ 'ଯୁକ୍ତିକଳ୍ପତରୁ' ଗ୍ରନ୍ଥରେ ଏହାର ଉଲ୍ଲେଖ ଅଛି—ଜଗବନ୍ଧୁ ପ୍ରାଚୀନ ଉତ୍କଳ । ]

ଜଙ୍ଘାଶୂଳ—ସଂ ବି (ଜଙ୍ଘା+ଶୂଳ, ୬ଷ୍ଠୀ ତତ୍)—ଜଙ୍ଘବଥା—
Janghāśūḻa   Pain or aching in the thigh.

ଜଙ୍ଘି—ଦେ. ବି—୧ । ପାଜାମା—1. Trousers; drawyers
Janghi   ୨ । ଜଙ୍ଘ—2 Thigh.
জাংগীয়া   ଜଙ୍ଘିର ସେହିଠାରେ ଅଛି କେବଳ
जांघिया   ଜଂଘିର ଭଙ୍ଗିଦ୍ୟନ୍ତ୍ର ବଇଗଲେ । ବ୍ରଜନାଥ ସମରତରଙ୍ଗ ।
ବିଣ—ଦ୍ରୁତଗାମୀ—Fleet of foot; quick marching.
ପ୍ରାଦେ. (ସମ୍ବଲପୁର) ବିଣ—ସୁଦୀର୍ଘ; ବୃହତ୍—Big; large.

ଜଙ୍ଘି (ଇତ୍ୟାଦି)—ବୈଦେ. ବିଣ—ଜଙ୍ଗି ଇତ୍ୟାଦି (ଦେଖ)
Janghi (etc)   Jangi etc (See)

ଜଙ୍ଘିଆ—ଦେ. ବି—ଜଙ୍ଘଯାଏ ପିନ୍ଧାଯିବା ପାଇଜାମା—
Janghiā   Half pant; shorts.
জাংগীয়া
जांघिया

ଜଙ୍ଘିଲ—ସଂ. ବି. (ଜଙ୍ଘା+ଇଲ)—ଜଙ୍ଘାଲ (ଦେଖ)
Janghiḻa   Janghāḻa (See)

ଜଚ୍ଛା—ଦେ. ବି. (ସଂ. ଯାଚ୍ ଧାତୁ)—ଯାଚିବା କର୍ମ—
Jachā   The act of offering or promising to give some thing.
ବିଣ—ଯେଉଁ ପଦାର୍ଥକୁ କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତିକୁ ଦେବାକୁ ଯାଚିଥାଏ—(any thing) Offered or promised to be given by one person to another.

ଜଚ୍ଛାଇ—ଦେ. ବି—ଜାଚ୍ଛାଇ (ଦେଖ)
Jachāi   Jāchāi (See)
(ଜଚେଇ—ଅନ୍ୟରୂପ)

ଜଚ୍ଛାଇବା—ଦେ· କ୍ରି—୧ । ଯାଚିବା କ୍ରିୟାର ଣିଜନ୍ତରୂପ—
Jachāibā   1. Causative form of Jāchibā.
(ଜଚେଇବା—ଅନ୍ୟରୂପ)   ୨ । ବଜାରରେ କୌଣସି ଦ୍ରବ୍ୟର ଭାଉ ଏକାଧିକ ସ୍ଥାନରେ ବୁଝିବା—2. To know the market rate of anything in different places.

ଜଚ୍ଛାଜଚି—ଦେ. ବି—୧ । କୌଣସି ବସ୍ତୁକୁ ଅନେକବାର ଯାଚିବା କର୍ମ—
Jachājachi   1. Offering of an article several times.
୨ । ପରସ୍ପରକୁ ଯାଚିବା—2. Mutual offering.

ଜଛ—ଗ୍ରା. ବି. (ସଂ. ଯଶଃ)—ଯଶ (ଦେଖ)
Jachha   Jaśa (See)
(ଦଛ—ଅନ୍ୟରୂପ)

ଜଜ୍—ବୈଦେ. ବି (ଇଂ)—୧ । ବିଚାରପତି—1. Judge
Jaj   ୨ । ଜିଲ୍ଲାର ପ୍ରଧାନ ବିଚାରପତି—
জজ্   2. District judge; Sessions Judge
जज   ୩ । ହାଇକୋର୍ଟର ବିଚାରପତି—
3. High Court Judge.

[ ଦ୍ର—ଜଜ ଶବ୍ଦ ପୂର୍ବେ ଅନେକ ବୈଦେଶିକ ଶବ୍ଦଯୁକ୍ତ ବୈଦେଶିକ ଶବ୍ଦମାନ ଭାଷାରେ ମଧ୍ୟ ଚଳେ । ଯଥା—ସବ୍ ଜଜ୍, ସବଡିନେଟ୍ ଜଜ୍, ଚିଫ୍‌ଜଜ୍, ସେସନ୍ ଜଜ୍, ଡିଷ୍ଟ୍ରିକ୍ଟ ଜଜ୍ । ]

ଜଜ୍ କମିଶନ୍—ବୈଦେ. ବି (ଇଂ) (ସହଚର ଶବ୍ଦ)—ଜଜ୍ ଓ କମିଶନର—
Jaj kamiśan   Judge and Commissioner.
[ ଦ୍ର—ଏ ଶବ୍ଦ 'ବଡ଼ ବଡ଼ ରାଜକର୍ମଚାରୀ' ଅର୍ଥରେ ବ୍ୟବହୃତ । ]

ଜଜ୍ କଲଟର୍—ବୈଦେ. ବି. (ଇଂ) (ସହଚର ଶବ୍ଦ)—ଜଜ୍ ଓ କଲେକ୍ଟର—
Jaj kilatar   Judge and collector.

[ ଦ୍ର—ଏ ଶବ୍ଦ "ବଡ଼ ବଡ଼ ରାଜକର୍ମଚାରୀ" ଅର୍ଥରେ ବ୍ୟବହୃତ, ଯଥା—ତୁ କଅଣ 'ଜଜ୍ କଲଟର୍' କି ? ]

ଜଜ୍‌କୋର୍ଟ—ବୈଦେ ବି. (ଇଂ. ଜଜ୍‌କୋର୍ଟ)—ଜିଲ୍ଲା ବା ବିଭାଗର ପ୍ରଧାନ
Jajcot   ବିଚାରାଳୟ—Court of District and Sessions
জজকোর্ট   Judge; Judge Court.
जजकोर्ट

ଜଜ୍ କୋଟିଆ—ଦେ. ବିଣ—ଯେଉଁମାନେ ଜଜ୍‌କୋର୍ଟରେ ବ୍ୟବସାୟ
Jaj koṭiā   କରନ୍ତି—Practising in the court of
জজকোর্টের   District Judge; (e. g. pleaders; as
जजकोर्टका   distinguished from High Court Vakils).

ଜଜ୍‌ଗିରି—ଦେ. ବି—ଜଜ୍ ବା ବିଚାରପତିଙ୍କ କାର୍ଯ୍ୟ, ପଦ ବା ଚାକିରି—
Jajgiri   Judgeship; the office or duty of a judge.
জজগিরি
जजगिरि

ଜଜ୍‌ପଣ୍ଡିତ—ଦେ. ବି. (ଇଂ. ଜଜ୍+ସଂ. ପଣ୍ଡିତ)—ଇଂରାଜମାନେ
Jaj paṇḍita   ପ୍ରଥମେ ଭାରତବର୍ଷକୁ ଅଧିକାର କରିବା ସମୟରେ
জজপণ্ডিত   ଇଂରାଜ ବିଚାରପତି ବା ଜଜ୍‌ମାନଙ୍କୁ ହିନ୍ଦୁଶାସ୍ତ୍ର
जजपण्डित   ସମ୍ବନ୍ଧୀୟ ଜଟିଳ ପ୍ରଶ୍ନର ମୀମାଂସା ନିମନ୍ତେ ସାହାଯ୍ୟ ଓ ପରାମର୍ଶ ଦେବା ନିମନ୍ତେ ନିଯୁକ୍ତ ସଂସ୍କୃତ ସ୍ମୃତିଶାସ୍ତ୍ରଜ୍ଞ ପଣ୍ଡିତ—Paṇḍits formerly attached to the courts of Civil Judges to help the Judges with opinions and advice on questions of Hindu Law; Judge Pandit.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଯ୍ଁ | ଉଅ | ଯ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ଢ଼ | ନ୍ |

ଜଜ୍‌ମେଣ୍ଟ୍—ବୈଦେ ବି.(ଇଂ)—ବିଚାରପତିଙ୍କ ଶେଷ ବିଚାରଫଳ; ରାଏ-
Jajment Judgement; final decission of a Judge.
জজমেণ্ট
जजमेंट

ଜଜ୍‌ମୌଲବୀ—ଦେ. ବି. (ଇଂ. ଜଜ୍+ଫା. ମୌଲବୀ)—
Jajmaulabi ଇଂରାଜମାନେ ପ୍ରଥମେ ଭାରତରେ ରାଜ୍ୟସ୍ଥାପନ
জজমোলবী କରିବା ସମୟରେ ଜଜ୍‌ମାନଙ୍କୁ ମୁସଲମାନ ଶାସ୍ତ୍ର
जजमउलवी ସମ୍ବନ୍ଧୀୟ ଜଟିଳ ପ୍ରଶ୍ନର ମୀମାଂସା ନିମନ୍ତେ ପରାମର୍ଶ
ଦେବା କାରଣ ନିଯୁକ୍ତ ମୁସଲମାନଶାସ୍ତ୍ରଜ୍ଞ ମୌଲବୀ—
Judge-moulvy; a person versed in Mahomedan law attached formerly to the courts of civil judges to help them with advice on questions of Mahomedan Law.

ଜଜବଜ—ଦେ. ବି—ପ୍ରାଚୁର୍ଯ୍ୟ—
Jajabaja Abundance (Howells).
জজবজ ବିଣ—ପ୍ରଚୁର; ଯଥେଷ୍ଟ—
Enough; sufficient.

ଜଜମାନ—ଦେ. ବି—ଯଜମାନ (ଦେଖ)
Jajamāna Jajamāna (See)
যজমান
जिजमान

ଜଜାଙ୍ଗ—ଦେ. ବି. (ସଂ ଜଙ୍ଗିମା)—ଏକଜାତୀୟ ବନ୍ୟ ଗଛ—
Jajānga A kind of small wild tree with
জিঅল fragible boughs.
जिगिन [ ଦ୍ର—ଏହା ଅମ୍ରାତବର୍ଗର ବୃକ୍ଷ; ଅମ୍ବଡ଼ା ଗଛ ପରି ନାତି ଦୀର୍ଘତରୁ । ଏଥିର ଡାଳ ମସକା, ଏହାର ପତ୍ରକୁ ବାଟି ବାତ ଉପରେ ଲେପ ଦେଲେ ତାହା ଶୀଘ୍ର ପାଚି ଫାଟିଯାଏ । ପତ୍ର ପକ୍ଷାକାର, ପ୍ରତି ବର୍ଷ ପତ୍ରଝଡ଼ା ହୁଏ ଏହାକୁ 'ଦାନ୍ତକାଠି' କରିବ ନାହିଁ ବୋଲି ପୁରାତନ ପ୍ରବଚନ ଆମ ଦେଶରେ ଅଛି । ଯଥା—

'ଜାମ୍ ଜଜାଙ୍ଗ କପାଳଙ୍କୁ ସ୍ୱାର୍ଥ ନ କର ଦାନ୍ତକାଠି,
ଯେବେ କରିବ ବଳେ ତେବେ ପକାଇବ କଲେ'—ପ୍ରବଚନ

ଏ ଗଛର ଗଣ୍ଡିରୁ ସର୍ବଦା ଅଠା ବହୁଥାଏ । ପାଚିଲା ଜଜାଙ୍ଗ ଫଳରୁ ଏକ ପ୍ରକାର ନାଲି ରସ ବାହାରେ । ]

ଜଜାଙ୍ଗି—ପ୍ରାଦେ. (ଗଞ୍ଜାମ; ସମ୍ବଲପୁର) ବି—ଜଜାଙ୍ଗ (ଦେଖ)
Jajāngi Jajānga (See)

ଜଜାଲ—ଦେ. ବିଣ. ପୁଂ. (ସଂ. ଯୁଧ ଧାତୁରୁ; ଯୁଦ୍ଧପ୍ରିୟ; ଯୁଦ୍ଧଶୀଳ)—
Jajāla ୧ । କଳହପ୍ରିୟ—1. Quarrelsome.
(ଜଜାଲୀ—ସ୍ତ୍ରୀ) ୨ । ବଳୁଆ—2. Strong.
୩ । ମହାକାୟ—3. Gigantic.
୪ । ବୃହତ୍—4. Big.

[ ଦ୍ର—ଲୋକେ ଦୁଷ୍ଟା ଓ ମହାକାୟା ସ୍ତ୍ରୀମାନଙ୍କୁ ଏହି ବିଶେଷଣ ଦେଇଥାଆନ୍ତି । ]

ଦେ. ବି—୧ । ବନ୍ଧୁକବିଶେଷ—
1. A kind of matchlock gun.

ତୋପ କମାଣ ବିଶିଖ ଗୁଣ
ଜଜାଲ ଜମ୍ବୁର ନଳ ପ୍ରଚଣ୍ଡ । ଦୁକନାଥ. ସମରତରଙ୍ଗ ।

[ ଦ୍ର—ଏହା ତୋଡ଼ାଦାର ଓ ଏଥିର ନଳୀ ଲମ୍ବା, ଏହା ଭାରି ଓ ଏଥିର ଗୁଳି ବହୁ ଦୂରକୁ ଯାଏ । ]

୨ । ଏକ ପ୍ରକାର ତୋପ—
2. A kind of cannon.
[ ଦ୍ର—ଏଥିରେ ଗୋଡ଼ି ଓ ପଥର ଭରି କରାଯାଇ ମରା ଯାଉଥିଲା । ]

ଜଜି-ବାବା—ପ୍ରାଦେ. (ଯାଜପୁର) ବି—ଜଇଜି-ବାବା (ଦେଖ)
Jaji-bābā Jaija-bābā (See)

ଜଝାଲ—ଦେ. ବିଣ. ପୁଂ—ଜଜାଲ (ଦେଖ)
Jajhāla Jajāla (See)
(ଜଝାଲୀ—ସ୍ତ୍ରୀ)

ଜଞ୍ଜକା—ଦେ. ବି—ବନ୍ୟବୃକ୍ଷବିଶେଷ—
Janjakā Webera Corymbosa.

ଜଞ୍ଜପୂକ—ସଂ. ବିଣ. ପୁଂ. (ଜପ୍ ଧାତୁ—ଯଙ୍ ଲୁଗନ୍ତ+କର୍ତ୍ତୃ. ଊକ)—
Janjapūka ୧ । ଯେ ସର୍ବଦା ଜପ କରେ—
(ଜଞ୍ଜପୂକା—ସ୍ତ୍ରୀ) 1, Always engaged in counting beads.
୨ । ଗର୍ହିତ ଜପକାରୀ—2. Always counting beads for evil purposes.

ଜଞ୍ଜାଲ୍—ପ୍ରାଦେ. (ସମ୍ବଲପୁର) ବି. (ଳ ସ୍ଥାନରେ ଲ ଉଚ୍ଚାରଣ ଓ
Janjāl ଶେଷ ବର୍ଣ୍ଣ ହଲନ୍ତ)—ଜଞ୍ଜାଳ (ଦେଖ)
Janjāla (See)

ଜଞ୍ଜାଳ—ସଂ. ବି. (ଜନ୍ ଧାତୁ; ଯଙ୍ ଲୁଗନ୍ତ+କର୍ତ୍ତୃ. ଅ=ଜଞ୍ଜ+
Janjāla ପୂରଣାର୍ଥେ. ଅଳ; ଯେ ବାରମ୍ବାର ବା ଉପର୍ଯ୍ୟୁପରି ଜନ୍ମ
জংজাল ହୁଏ)—୧ । ଅଳଆ; ଆବର୍ଜନା—1. Rubbish;
जंजाल sweepings; refuse matters.
(ଜଂଜାଳ—ଅନ୍ୟରୂପ) ୨ । ଗୋଳମାଳ; ଜଟିଳତା; ଗଣ୍ଡଗୋଳ—
2 Disorder; confusion; complication.
୩ । ଝଞ୍ଜଟ—3. Trouble; botheration.

ଭୋଗେ ନ ଲାଗେ ତା ଜଞ୍ଜାଳ । ଭୂପତି—ପ୍ରେମପଞ୍ଚାମୃତ ।

୪ । କଳିକଜିଆ—4. Quarrels.
୫ । ସଙ୍କଟ; ବିପଦ; ଦୁର୍ଭାଗ୍ୟ—5. Misfortune.
୬ । ସଂସାରର ମାୟା; ବିଷୟମାୟା—
6. Worldly tie or complications.

ଦେହି ଜଞ୍ଜାଳ ପ୍ରାପ୍ତ ହେଲେ
ପଦାର୍ଥ ମାଗିବ ମୁଁ କେସେ । ଭୂପତି—ପ୍ରେମପଞ୍ଚାମୃତ ।

ସାଧାରଣ ଲେଖେ ଅପର ପୃଷ୍ଠାରେ ମୂଳର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'ବୃଥ' ନ ମିଳିଲେ 'ବୃଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ

୭ । ଅଳି; ଉପର୍ଯ୍ୟୁପରି ଜଗର କରି ପ୍ରାର୍ଥନା—
7. Importunity; repeated pressing request.
୮ । ଜଜାଲ (ଦେଖ)
8. Jajāla (See)

**ଜଞ୍ଜାଳ କରିବା**—ଦେ. କ୍ରି—୧ । ଉପର୍ଯ୍ୟୁପରି ଜଗର କରି ପ୍ରାର୍ଥନା କରିବା; ଅଳି କରିବା; ଧ୍ୱକମିକ କରିବା— Jañjāla kariba
1. To importune.
୨ । ହଇରାଣ କରିବା—2. To bother; to worry.

**ଜଞ୍ଜାଳ ଲଗାଇବା**—ଦେ. କ୍ରି—ଜଞ୍ଜାଳ କରିବା (ଦେଖ)
Jañjāla lagāibā Jañjāla karibā (See)
(ଜଞ୍ଜାଳ ଲଗେଇବା—ଅନ୍ୟରୂପ)

**ଜଞ୍ଜାଳିଆ**—ଦେ. ବିଣ. ପୁଂ—୧ । ଯେ ବିଶେଷ ଜଗର ଧରି ପ୍ରାର୍ଥନା କରେ; ଧୀଟ—1. Importunate; troublesome; unreasonably solicitous.
Jañjālia
ଜଞ୍ଜାଳିଆ; ଜଞ୍ଜାଳେ
**जंजालिया**
ପିଲାଗୁଡାକ ସବୁଦିନେ ଜଞ୍ଜାଳିଆ ସେମାନଙ୍କ କଥା କିଏ ଧରିବେ । ଫକୀରମୋହନ। ଛମାଣଆଠଗୁଣ୍ଠ ।

୨ । ଝଞ୍ଜଟିଆ; ଗୋଲମାଲରେ ଜଡ଼ିତ —
2. Complicated; confused
୩ । ସଂସାରିକ ବିଷୟରେ ଜଡ଼ିତ—
3. Beset with worldly complications.
୪ । ଯେ ଜଞ୍ଜାଳ ଜନ୍ମାଏ—
4. Creating botherations.
୫ । କଳହପ୍ରିୟ—5. Quarrelsome.
୬ । ଯେ ଗୋଲମାଲ ଲଗାଏ—
6. Creating complications.

**ଜଞ୍ଜାଲିଆ**—ପ୍ରାଦେ. (ସମ୍ବଲପୁର) ବିଣ—ଜଞ୍ଜାଳିଆ (ଦେଖ)
Jañjālia Jañjālia (See)

**ଜଞ୍ଜାଳୀ**—ଦେ. ବିଣ. ସ୍ତ୍ରୀ—୧ । ଯେଉଁ ସ୍ତ୍ରୀ ବିଶେଷ ଅଳି କରେ—
Jañjāḷi 1. Importunate (woman)
(ଜଞ୍ଜାଳେଇ—ଅନ୍ୟରୂପେ) ୨ । କଳହପ୍ରିୟା—
2. Quarrelsome (woman).
୩ । ଯେ ବିଶେଷ ଗୋଲମାଲ କରେ—
3. Troublesome (woman).

**ଜଞ୍ଜିର**—ଦେ. ବି. ( ଫା. ଜରନ୍ଜୀର; ଜଂଜୀର )—
Jañjira ୧ । ଶିକୁଳି; ଜଞ୍ଜିର; ଝଞ୍ଜିର—1. Chain.
ଜଞ୍ଜିର ୨ । କବାଟରେ ଲାଗିବା ଶିକୁଳି—2. Door-chain.
**जंजीर** ୩ । ଅଧିକନ ଜମି ମାପିବାର ଚେନ୍—
3. Surveying chain.
୪ । ସ୍ତ୍ରୀମାନଙ୍କ ଜୁଡ଼ାର ଚଉଁରିଭୁଣ୍ଡିରୁ ଓହଳିଥିବା ଶିକୁଳି; ଅଳଙ୍କାରବିଶେଷ—4. Chain hanging from the hairpin of a woman's coiffure
୫ । (କଚେରିଆ; ଲକ୍ଷଣାର୍ଥ) ପରବର୍ତ୍ତୀ ଦଲିଲ ପ୍ରଭୃତିରେ ପୂର୍ବବର୍ତ୍ତୀ କୌଣସି କାରବାରର ଉଲ୍ଲେଖ—
5. Mention or reference to a previous transaction in a subsequent document.
[ ଦ୍ର—ଜଣେ ଖାତକ ୧୯୦୦ ସାଲରେ ମହାଜନଠାରୁ ତମସୁକଦ୍ୱାରା ଟ ୧୦୦ଙ୍କା ନେଇଥିଲା । ତାହା ପରିଶୋଧ ନ କରି ପୁଣି ୧୯୦୩ ସାଲରେ ହାଣ୍ଡନୋଟ୍‌ଦ୍ୱାରା ଟ ୨୫ଙ୍କା ନେଲା । ଏପରି ସ୍ଥଳରେ ପରବର୍ତ୍ତୀ ହାଣ୍ଡନୋଟ୍ ଲେଖା ହେବାବେଳେ ପୂର୍ବବର୍ତ୍ତୀ ଅପରିଶୋଧିତ ଦେଣାର ଜଞ୍ଜିର ହାଣ୍ଡନୋଟରେ ଲେଖା ହେଲା । ]

**ଜଞ୍ଜିରକାଠି**—ଦେ ବି—ଗୋଞ୍ଜକାଠି; ମୁଣ୍ଡ ଖୋସାରେ ଗୁଞ୍ଜା ହେବା ନିମନ୍ତେ ଶିକୁଳି ଲାଗିଥିବା କାଠି—
Jañjirakāṭhi
A hairpin attached with jingling chains for being thrust into the chignon.

**ଜଞ୍ଜିର ଦେବା**—ଦେ. କ୍ରି.—କବାଟରେ ଶିକୁଳି ଦେବା; ଶିକୁଳିଲଗାଇ କବାଟ ବନ୍ଦ କରିବା—To enchain (a door); to chain up; to secure a door to the door post by fastening the door chain.
Jañjira debā
ଜଞ୍ଜିର ଦେଓ୍ୱା
**जंजीर लगाना**

**ଜଞ୍ଜିରପୋଲ**—ଦେ. ବି.—ଶିକୁଳିରେ ଝୁଲା ହୋଇ ଯେଉଁ ପୋଲ ବା ସେତୁ ନଦୀ ଆଦି ପାରି ହେବା ନିମନ୍ତେ ପ୍ରସ୍ତୁତ ହୋଇଥାଏ; ଝୁଲା ପୋଲ—Hanging bridge; suspended bridge; chain-bridge.
Jañjirapola
ଜଂଜୀରପୁଲ
**जंजीरपुल**

**ଜଞ୍ଜିରମାପ**—ଦେ. ବି.—ଚେନ୍‌ଦ୍ୱାରା ଭୂମିମାପ—
Janjira māpa Chain survey.
ଜଞ୍ଜୀରମାପ
**जंजीरसे नाप**
(ଜଞ୍ଜିର୍ ମାପ; ଜଞ୍ଜିର ମାପ – ଅନ୍ୟରୂପ)

**ଜଞ୍ଜିର ଲଗାଇବା**—ଦେ. କ୍ରି. – ଜଞ୍ଜିର ଦେବା (ଦେଖ)
Jañjira lagāibā Jañjira debā (See)
(ଜଞ୍ଜିର ଲଗେଇବା—ଅନ୍ୟରୂପ)

**ଜଞ୍ଜିରା**—ଦେ ବି.—୧ । ଜଞ୍ଜିର (ଦେଖ)
Jañjirā 1. Jañjira (See)
ଜଞ୍ଜିରା (ବଣିଆ ଶବ୍ଦ) ୨ । ସୁନା ବା ରୂପା ତାରକୁ ଗୋଲକାରେ
**जंजीरा** କାଢ଼ି ଉପରେ ଥରକୁଥର ଗୁଡ଼ାଇ କାଢ଼ିକୁ ବାହାର କରି ଶିଳ ଉପରେ ଶିଳପୁଆ ଗଡ଼ାଇ ଯେପରି ଗୁପି ହୁଅଯାଏ ସେହିପରି ଗୁପିଦେଲେ ଯେଉଁ ଜାଲି ତିଆରି ହୁଏ ତାହା—2. A kind of flagree work woven like a rope and then pressed flat.
୩ । ଶିକୁଳି ପରି ଛନ୍ଦା ହୋଇଥିବା ସିଲାଇ—
3. A kind of stitch resembling a chain.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଡ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ତୁ | ଭୃଅ | ଖ |
| ୨ | ଈ | ଊ | ୠ | ୡ | ସ୍ତେ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ଢ଼ | ନ୍ତ |

ଜଞ୍ଜିରି—(ଇତ୍ୟାଦି) ଦେ. ବି—ଜଞ୍ଜିର ଇତ୍ୟାଦି (ଦେଖ)
Jañjiri (etc) Jañjira etc (See)

ଜଟ୍ (ଧାତୁ)—ସ.—ଏକତ୍ର ହେବା—To come together; to be
Jaṭ (root) gathered together.

ଜଟ—ଦେ. ବି. (ସ. ଜଟା)—୧ । ସଂହତ କେଶଗୁଚ୍ଛ—
Jata 1. A tuft of hair tied together.
ଜଟ, ଜଁଟ ୨ । ଜଟା; ବାବାଜୀମାନଙ୍କର ସଂହତ କେଶ—
जटा 2. Matted locks of ascetics.
ଋଷି ତ ହେଲେ ଛଣାଇବେ ଜଟ—କବିସୂର୍ଯ୍ୟ. କବିତା ।
୩ । କୁକୁଡ଼ାର ମୁଣ୍ଡରେ ଥିବା କୋମଳ ଲୋମାବୃତ ପତଳା ମାଂସ—3. Cock's comb.
୪ । ବିନ୍ୟସ୍ତ କେଶର ଗଣ୍ଠି; ଜୁଡ଼ା—4. Chignon or knot of hair made up on the head,
୫ । ସଂହତ ପୁଷ୍ପ ବା କଢ଼—5 Matted tuft of flowers or blossoms.
(ଯଥା—ଗଞ୍ଜେଇଜଟ; ଭୁଲସୀଜଟ)
ପ୍ରାଦେ. (ବାଲେଶ୍ୱର) ବି.—୬ । ଧାନମେଣ୍ଢା—
6. Ears of paddy woren into a braid.

ଜଟଜଟିଆ—ଦେ. ବି.—୧ । ଏକପ୍ରକାର ତୃଣ; ଯାହାର ଜଟା ପରି
Jaṭajaṭiā ହୋଇଥିବା ମଞ୍ଜଗୁଡ଼ିକୁ ଏକତ୍ର କଲେ ତାହା
ସ. ନାମ— ଲାଗି ଯାଏ—1. A kind of grass
ଉଜ୍ଜଟା; with tufted twigs; Lyme grass.
ଉଜ୍ଜଟ ୨ । ବନ୍ୟ ଛଣପଟ (ଯବାଦ୍ଧି ବର୍ଗର ବନ୍ୟକ୍ଷୁପ)—
ବନଓକଡ଼ା 2. Urena Lobata (wild plant); Trium-
बनओकरा fetta Rhomboidea.
[ବି—ଏହାର ପତ୍ରର ଧାର କଣ୍ଟା କଣ୍ଟା, ପତ୍ରରେ କୋଣ ଅଛି, ତେଙ୍ଗା ଲୋମଶ; ଫୁଲ ଛୋଟ ଓ ନାଲି, ଫଳ ଗିର୍ଯ୍ୟନ୍ତ ଓ ଗୋଲ, ଏବଂ ଲୁଗାରେ ଲାଗି ଯାଏ ।]

ଜଟପକାଇବା—ଦେ. କ୍ରି—ମୁଣ୍ଡରେ କେଶସବୁ ଏକତ୍ର କରି ଜୁଡ଼ା
Jaṭapakāibā ବାନ୍ଧିବା—To make up the hairs of the head into a chignon.
(ଜଟପକେଇବା, ଜଟପାଡ଼ିବା, ଜଟପାରିବା, ଜଟବାନ୍ଧିବା—ଅନ୍ୟରୂପ)

ଜଟା—ସ. ବି. ସ୍ତ୍ରୀ. (ଜଟ୍ ଧାତୁ=ଏକତ୍ର ହେବା+କର୍ତ୍ତୃ. ଅ+ସ୍ତ୍ରୀ.
Jaṭā ଆ)—୧ । ବାବାଜୀଙ୍କର ସଂହତ କେଶ—
1. The matted lock of hair of an ascetic or devotee.
୨ । ଅଯତ୍ନବର୍ଦ୍ଧିତ ଗୁଚ୍ଛାକାର କେଶଦାମ—2. Clotted hair ( due to the hair being neglected.
୩ । ଅରଣା ମଇଁଷି, ଘୋଡ଼ା ଓ ସିଂହର ବେକ ଓ ମୁଣ୍ଡ ଉପରର ବାଳ—
3. The manes of a lion, horse or bison.
୪ । ଜଟ ପରି ହୋଇଥିବା ଫୁଲ ଓ କଢ଼—
4. Matted or tufted flower
( ଯଥା—ଗଞ୍ଜେଇଜଟା, ଭୁଲସୀଜଟା । )
୫ । ବରଗଛର ଅବରୋହ ବା ଓହଳ—
5. Aerial root of a banyan tree.
ବଡ଼ ବୋଲି ଜଟା ରୁନ୍ଧେ ମୁଁ ବଢ଼ନ୍ତ ସତ—ଭକ୍ତ. ବୈଦେହୀଶବିଳାସ ।
୬ । ଅଣ୍ଡିରା ତାଳଗଛରୁ ବାହାରିବା ଜଟାର ଫୁଲ—
6. Long stalks of flowers coming out from male palm trees.
୭ । ରକ୍ତଜଟା ଫୁଲ—
7. A kind of red tufted flower; cock's comb; the catkin of celosia crestata.
୮ । ଶଟୀ; ହଳଦୀଜାତୀୟ ଗୁଳ୍ମବିଶେଷ—
8. Zingiber zedoaria.
୯ । ବେଦପାଠବିଶେଷ —
9. A kind of chanting of the Vedic hymns.
୧୦ । କପିକଚ୍ଛୁ; ବାଇଡଙ୍କ—10. Cowhage.
୧୧ । ଶତମୂଳୀ; ଛତଉଷ୍ମ—
11. Asparagus Recemosus

ଜଟାଇବା—ଦେ. କ୍ରି—୧ । ଭଣ୍ଡିବା; ଅସଲ ବା ପ୍ରାର୍ଥିତ ବସ୍ତୁ ନ ଦେଇ
Jaṭāibā ଅନ୍ୟ ବସ୍ତୁ ଦେଇ ଭୁଲାଇବା—
ଜଟେଇବା } ଅନ୍ୟରୂପ 1. To deceive by giving
ଜଟାଜଟ କରିବା } some thing in lieu of the genine or wished for thing.
୨ । ପ୍ରତାରଣା କରିବା; ଠକାଇବା—
2. To cheat; to impose upon.
ସୁଲୁଚମାନେ ଧୂର୍ତ୍ତସ୍ମେ ମିଛ କହି
କେଉଁ ନାହାନ୍ତି ତ ଧନକୁ ସେ ଜଟାଇ—କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

ଜଟାଜଟି—ଦେ. ବି—ଭଣ୍ଡାଇବା କର୍ମ; ପ୍ରତାରଣା—
Jaṭājaṭi Cheating; deception.

ଜଟାଜାଲ—ସ. ବି. ( ୬ଷ୍ଠୀ ତତ୍; ଜଟା+ଜାଲ=ସମୂହ )—
Jaṭājāla ଜଟାସମୂହ—The matted hair collectively.

ଜଟାଜୁଟ—ସ. ବି. (୬ଷ୍ଠୀ ତତ୍; ଜଟା+ଜୁଟ=ସମୂହ)—ଜଟାସମୂହ—
Jaṭājūṭa The matted hair collectively
( ଜଟାପଟଳ—ଅନ୍ୟରୂପ )

ଜଟାଜ୍ୱାଳ—ସ. ବି. ( ବହୁବ୍ରୀହି; ଜଟା+ଜ୍ୱାଳା=ଅଗ୍ନିଶିଖା; ଯାହାର
Jaṭājwāla ଶିଖା ଜଟା ପରି )—
୧ । ପ୍ରଦୀପ—1. Lamp.
୨ । ମଶାଲ—2. Torch

ଜଟାଧର—ସ. ବିଣ. ପୁଂ. ( ଜଟା+ଧୃ ଧାତୁ+କର୍ତ୍ତୃ. ଅ )—ଯେ
Jaṭādhara ମୁଣ୍ଡରେ ଜଟା ଧାରଣ କରିଥାଏ—
Having matted locks on the head.
ବି—୧ । ମହାଦେବ—1. Siba.
୨ । ବୁଦ୍ଧବିଶେଷ—2. One of the Budha.

ସାଧାରଣ ଲୋକେ ଅପର ପୃଷ୍ଠାରେ ଲେଖିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ରୂଥ' ନ ମିଳିଲେ 'ରୂଥ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲଟର' ନ ପାଇଲେ 'ଅଲ୍ଟର' ଦେଖିବେ ।

୩ । କୋଷକାରବିଶେଷ—
3. Name of a sanskrit lexicographer.
୪ । ଦେଶବିଶେଷ—2. Name of a country.

**ଜଟାଧାରୀ**—ସଂ. ବିଣ. ପୁଂ. ( ଜଟା + ଧୃ ଧାତୁ + କର୍ତ୍ତୃ. ଇନ୍ )—
Jaṭādhāri ଯେ ମୁଣ୍ଡରେ ଜଟା ଧାରଣ କରିଥାଏ—
(ଜଟାଧାରିଣୀ—ସ୍ତ୍ରୀ) Having matted hairs on the head.

**ଜଟାବାଇଁଶୀ**—ଗ୍ରା. ବି. ( ସଂ. ଜଟାମାଂସୀ )—ଜଟାମାଂସୀ ( ଦେଖ )
Jaṭābāiṅsi Jaṭāmāmsi ( See )

**ଜଟାଭାର**—ସଂ. ବି. ( ଜଟା + ଭାର = ସମୂହ )—ଜଟାସମୂହ—
Jaṭābhāra The matted hair collectively

**ଜଟାମାଇଁସୀ**—ଗ୍ରା. ବି. ( ସଂ. ଜଟାମାଂସୀ )—ଜଟାମାଂସୀ ( ଦେଖ )
Jaṭāmāiṅsi Jaṭāmāmsi ( See )

**ଜଟାମାଂସୀ**—ସଂ. ବି.—(ଏହି ବୃକ୍ଷ ସଂହତ କେଶ ପରି ଦେଖାଯାଉଥିବାରୁ)
Jaṭāmāmsi —ସୁଗନ୍ଧ ଦ୍ରବ୍ୟବିଶେଷ—The many-spiked Amaranth; spikenard, an aromatic root used in scenting oils; Nardstachys jatamansi; valeriana jatamansi.

ସଂ. ପର୍ଯ୍ୟାୟ—ଜଟାମାଂସୀ ଜଳଦ; ବହ୍ନିନୀ, ପେଶୀ; ମାଂସୀ; କୃଷ୍ଣଜଟା, ଜଟୀ; କିରାତିନୀ; ଜଟିଳା; ଲୋମଶା; ତପସ୍ୱିନୀ; ମିଷିକା; ଭୂତଜଟା; ଜଟାବ୍ୟାସା; ପିଶିତା; ହିଂସ୍ରା; ମାଂସିନୀ, ଜଟାଳା; ନଳଦା, ମେଷୀ; ତାମସୀ; ଚକ୍ରବର୍ତ୍ତିନୀ; ମାତା; ଅମୃତଜଟା; ଜନନୀ; ଜଟାବତୀ; ମୃଗଭକ୍ଷା; ଜଡ଼ାମାଂସୀ; ମିସି ।
जटामांसी
**बालुचर, जटमलङ्ग,**
**जटामासी**

[ ଦ୍ର—ଏହା ହିମାଳୟର ଶାକଗୁଳ୍ମ ବିଶେଷର ଜଟାକାର ସୁଗନ୍ଧ ମୂଳ; ଏହା ଔଷଧରେ ଲାଗେ; ଆୟୁର୍ବେଦୋକ୍ତ ତୈଳକୁ ଏତଦ୍ୱାରା ସୁଗନ୍ଧିତ କରାଯାଏ—(ଯୋଗେଶ୍ଚନ୍ଦ୍ର) । ଏହି ବନସ୍ପତି ହିମାଳୟର ୧୭୦୦୦ ଫୁଟ ପର୍ଯ୍ୟନ୍ତ ଉଚ୍ଚତାରେ ଜନ୍ମେ, ଏହାର ଡାଳ ଏକ ବା ଦେଢ଼ ହାତ ଲମ୍ବ, କାଠି ପରି ଓ ଏଥିରେ ସାମନାସାମନି ଦେଢ଼ଠାରୁ ଦୁଇଅଙ୍ଗୁଳ ଲମ୍ବ ଓ ଅଧଠାରୁ ଏକଅଙ୍ଗୁଳ ଚଉଡ଼ା ପତ୍ର ଧରେ । ଏ ଗଛ ଲାଗି ଜଳବହୁଳ ପଥୁରିଆ ଜମି ଉପଯୁକ୍ତ । ବୈଦ୍ୟକ ମତରେ ଜଟାମାଂସୀ ବଳକାରକ ଉତ୍ତେଜକ, ବିଷଘ୍ନ । ଏହା ଉନ୍ମାଦ, କାଶ, ଶ୍ୱାସ, ହାରକ । ଏହା କେଶବୃଦ୍ଧିକର । ଏହି ଚେରରୁ ଏକପ୍ରକାର ସୁଗନ୍ଧ ତୈଳ ହୁଏ—ହି. ଶବ୍ଦସାଗର ।' ]

**ଜଟାୟୁ**—ସଂ. ବି. (ଜଟା; କେଶରାଶି ଉଦ୍ଧତ ଅପରିମିତ ଆୟୁ ଯାହାର; ବହୁବ୍ରୀହି)—୧ । ଗରୁଡ଼ବଂଶୀୟ ପ୍ରସିଦ୍ଧ ପୌରାଣିକ ଗୃଧ୍ର ପକ୍ଷୀ (ଏ ଅରୁଣଙ୍କ ପୁତ୍ର ଦଶରଥ ରାଜାଙ୍କ ମିତ୍ର ଥିଲେ । ସୀତାଙ୍କୁ ରାବଣ ଟେକିଇ ନେବା ସମୟରେ ଏ ରାବଣ ସଙ୍ଗେ ଯୁଦ୍ଧ କରି ଓ ପରାସ୍ତ ହୋଇ ସେହିଠାରେ ପଡ଼ି ରହିଥିଲେ ଏବଂ ରାମଚନ୍ଦ୍ରଙ୍କୁ ସୀତା ହରଣ ସମ୍ବାଦ ଦେବା ପରେ ପ୍ରାଣତ୍ୟାଗ କଲେ)—Name of a mythological bird who fought with Rābaṇa while he was stealing away Sitā and was mortally wounded. He breathed his last after communicating the news of abduction to Rāmachandra.
Jaṭāyu
୨ । ଗୁଗ୍ଗୁଳ (ହି. ଶବ୍ଦସାଗର)—2. Bdellium.

**ଜଟାଳ**—ସଂ. ବିଣ. (ଜଟା + ଅସ୍ତ୍ୟର୍ଥରେ ଲ)—ଜଟାଯୁକ୍ତ; ଜଟାଧାରୀ—
Jaṭāla Having matted hair.
ବି—୧ । ବ୍ରହ୍ମଚାରୀ—1. An ascetic.
୨ । ବରଗଛ—2 Banyan tree.
୩ । ସିଂହ—3. Lion.
୪ । କଚୂର (ହି. ଶବ୍ଦସାଗର) ଶଠୀ—4 Zeodaria.
୫ । ଗୁଗ୍ଗୁଳ—5. Indian bdellium ( used as incense )

**ଜଟାଳା**—ସଂ. ବି—ଜଟାମାଂସୀ (ଦେଖ)
Jaṭālā Jaṭāmāmsi (See)

**ଜଟାସୁର**—ସଂ. ବି. (ଜଟା + ଅସୁର)—ଭୀମଙ୍କଦ୍ୱାରା ହତ ଅସୁରବିଶେଷ-
Jaṭāsura A demon killed by Bhima.
ଏରୂପେ ଭୀମ ନେଲେ ଜଟାସୁର ପ୍ରାଣ । କୃଷ୍ଣସିଂହ. ମହାଭାରତ. ବନ ।
[ ଦ୍ର—ଏ ଦ୍ରୌପଦୀଙ୍କ ରୂପରେ ମୋହିତ ହୋଇ ବ୍ରାହ୍ମଣ ବେଶ-ଧାରଣ କରି ପାଣ୍ଡବମାନଙ୍କ ସଙ୍ଗେ ରହିଥିଲା—ଦିନେ ଭୀମଙ୍କ ଅନୁପସ୍ଥିତିରେ ଏ ଦ୍ରୌପଦୀ, ଯୁଧିଷ୍ଠିର, ନକୁଳ ଓ ସହଦେବଙ୍କୁ ହରଣ କରି ପଳାଉଥିଲା । ବାଟରେ ଭୀମ ଦେଖି ତାକୁ ହତ କଲେ । ]

**ଜଟି**—ସଂ. ବି. (ଜଟ୍ ଧାତୁ + ଇ)—୧ । ଜଟା—
Jaṭi 1. Clotted hair; matted hair
(ଜଟୀ—ଅନ୍ୟରୂପ) ୨ । ଅଶ୍ୱତ୍ଥବୃକ୍ଷ—
2. The religious fig tree.
୩ । ସମୂହ—3. Mass; multitude.
୪ । ଜଟାମାଂସୀ (ଦେଖ)
4. Jaṭāmamsi (See)
ପ୍ରାଦେ. (ସିଂହଭୂମ) ବି—ଚୁଟି; ଶିଖା; ଚୂଳିକ—
Tuft of hair.

**ଜଟିଆ**—ଦେ. ବିଣ. ପୁଂ—(ସଂ. ଜଟିଲ)—୧ । ଜଟାଧାରୀ—
Jaṭiā 1. Having matted locks; wearing matted hair.
ଜଟୀ, ଜଟେଈ } —ସ୍ତ୍ରୀ
୨ । ଗୋଳମାଳିଆ; ଜଟିଳ—2. Knotty.
जटिया, जटे
**जटाबाला**
୩ । ପୁରୀ ଜିଲ୍ଲାର ଚିଲିକାହ୍ରଦସ୍ଥ ପର୍ବତବିଶେଷ—
3. A hill near the chilkā lake in Puri district.
ସୁଶ୍ୟାମଳ ଗୁଳ୍ମଜଟିଳ ଜଟିଆ-
ଗିରି ଶିରେ ଯାଏ ହୋଇଥିବ ଠିଆ—ରାଧାନାଥ. ଚିଲିକା ।
୪ । ମହାଦେବ—4. God Siba.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ସ | ଜ | ଶ,ଷ | କ୍ଷ | ଙ୍ଘ | ଞ୍ଝ | ଣ୍ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୃ | ଏ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗ୍ୟ | ଙ୍ଘ | ଞ୍ଜ | ନ୍ |

**ଜଟିବା**—ଦେ. କ୍ରି.—୧ । ଭଣ୍ଡିବା—
Jaṭiba 1 To deceive; to impose upon.
(ଜଟ ହେବା—ଅନ୍ୟରୂପ) ୨ । ଠକିବା—2. To cheat.

ସାକ୍ଷାତ ଦେଖିଲେ ହେଲେ ଲୋକେ, ସମସ୍ତଙ୍କୁ ଜଟ ହୁଏ ବଚନେ
କବିସୂର୍ଯ୍ୟ, ସଙ୍ଗୀତ ।

**ଜଟିଳ**—ସଂ. ବିଣ. ପୁଂ (ଜଟା+ଅସ୍ତି ଅର୍ଥରେ ଇଲ)—୧ । ଜଟାଧାରୀ—
Jaṭiḻa 1 Having matted locks.
(ଜଟିଳା—ସ୍ତ୍ରୀ) ୨ । ଜଟାଯୁକ୍ତ—2. Matted; entangled.
୩ । ଦୁର୍ବୋଧ; ଗୋଳମାଳିଆ—3. Complex; complicated; hard to understand; intricate.

ବୋଇଲା ଭବଣ ଜାଣିଲି ଜଟିଳ ହୋଇଛି ପ୍ରଶ୍ନରେ ଚହୁଁ—ବୈଦେହୀଶବିଳାସ ।

୪ । ଗଣ୍ଠିଗଣ୍ଠିଆ—4 Knotty.
ସଂ. ବି. ପୁଂ—୧ । ସନ୍ନ୍ୟାସୀ, ବ୍ରହ୍ମଚାରୀ—1. An ascetic.
୨ । ମହାଦେବ—2 Siba.
୩ । ସିଂହ—3 Lion.
୪ । ବଟବୃକ୍ଷ—4. Banyan tree.
୫ । ଏକଜାତୀୟ ଅଶ୍ୱତ୍ଥ ଗଛ; ପ୍ଲକ୍ଷ ବୃକ୍ଷ—
5. The woved-leafed; fig tree.
୬ । ଜଟାମାଂସୀ (ଦେଖ)
6. Jaṭāmaṁsi (See)

**ଜଟିଳା**—ସଂ. ବି. ସ୍ତ୍ରୀ—୧ । ରାଧିକାଙ୍କ ଶାଶୁ; ରାଧିକାଙ୍କ ନଣନ୍ଦ କୁଟିଳାଙ୍କ
Jaṭiḻā ମାତା—1. Mother-in law of Rādhikā; the mother of Kuṭiḻā who was the sister-in-law of Rādhikā.
୨ । ଜଟାମାଂସୀ - 2. Nadostachys Jatamansi; valerian Jatamausi.
୩ । ବ୍ରହ୍ମଚାରିଣୀ—3. A famale recluse.
୪ । ପିପ୍ପଳୀ (ହ୍ମ. ଶବ୍ଦସାଗର)—4. Black peper.
୫ । ବଚ (ହ୍ମ. ଶବ୍ଦସାଗର)—5 Liquorice.
୬ । ଦମନକ; ଦଅଣା ଗୁଳ୍ମ—
6. A kind of sweet scented shrub.
୭ । ଗୌତମବଂଶୀୟା, ଋଷିକନ୍ୟାବିଶେଷ (ହ୍ମ. ଶବ୍ଦସାଗର)
7. Name of a girl born in the family of sage Gautama.

**ଜଟି**—ସଂ. ବି:—ଜଟାମାଂସୀ (ଦେଖ)
Jaṭi 1. Jaṭāmāṁsi (See)
୨ । ଜଟିଳ (ଦେଖ)
2. Jaṭiḻa (See)
୩ । ଜଟ (ଦେଖ)
3. Jaṭi (See)

**ଜଟୁଲ**—ସଂ. ବି. (ଜଟ୍ ଧାତୁ+କର୍ତ୍ତୃ. ଉଲ)—ଜନ୍ମରୁ ମନୁଷ୍ୟ ଦେହରେ
Jaṭuḻa ସ୍ଥାନେ ସ୍ଥାନେ ଦେଖାଯିବା (ପ୍ରାୟ ଲୋମଯୁକ୍ତ) ଧଳା, ନାଲି ବା କଳା ଚିହ୍ନ; କଳାଜାଇମଣ୍ଡା—A freckle; mole in the body (generally hairy).

**ଜଠ**—ଦେ. ବି (ପ୍ରାଚୀନ ପଦ୍ୟ) (ସଂ. ଜଠର)—୧ । ଉଦର—
Jaṭha 1. Belly.
୨ । ଜଠର; ଗର୍ଭ—2. Womb.

ବୋଇଲେ ଆମ୍ଭେମାନେ କାହାର ଶୁଣିଛୁ,
କଦାପେ କହ ପୁତ୍ର ଜନ୍ମିବେ ଆମ୍ଭ ଜଠୁଁ—ପୀତାମ୍ବର. ନୃସିଂହପୁରାଣ ।

**ଜଠର**—ସଂ. ବି (ଜନ୍ ଧାତୁ, ଭକ୍ଷଣ କରିବା+କରଣ ଅର, ନ ସ୍ଥାନରେ
Jaṭhara ଠ ଆଦେଶ; କିମ୍ବା ଜନ୍ ଧାତୁ, ଜନ୍ମକରିବା+ଅଧିକରଣ ଅର)—୧ । ପେଟ; ଉଦର—1. Belly.
୨ । ଜରାୟୁ; ଗର୍ଭ—2. Womb.
୩ । ଅନ୍ତଃସ୍ଥଳ—3. Interior.
୪ । ଗର୍ତ୍ତ—4. Cavity; den.
୫ । ଶରୀର; ଦେହ (ହ୍ମ. ଶବ୍ଦସାଗର)—5. Body.
୬ । ମରକତମଣିର ଦୋଷବିଶେଷ (ହ୍ମ. ଶବ୍ଦସାଗର)—
6. A defect in emerald.
୭ । ସ୍ପର୍ଶତୋଳ୍ଳ ଉଦର ଫୁଲିବା ରୋଗବିଶେଷ—
7 A disease consisting of a swollen belly.
୮ । ଭାଗବତୋକ୍ତ ପର୍ବତବିଶେଷ—
8. Name of a mythological mountain.
[ ଦ୍ର—ଏହା ମେରୁର ପୂର୍ବରେ; ଏହାର ଦୈର୍ଘ୍ୟ ୧୯ ହଜାର ଯୋଜନ; ଚୌଡ଼ା ୨ ହଜାର ଯୋଜନ ଓ ଉଚ୍ଚତା ୨ ହଜାର ଯୋଜନ; ଏହା ନୀଳ ପର୍ବତଠାରୁ ନିଷଧ ଗିରି ପର୍ଯ୍ୟନ୍ତ ବିସ୍ତୃତ—ହ୍ମ. ଶବ୍ଦସାଗର । ]
୯ । ବୃହତ୍ସଂହିତା ଓ ମହାଭାରତୋକ୍ତ ଦେଶବିଶେଷ—
9. Name of a mythological country.
[ ଦ୍ର—ଏହା କୁକୁର ଦେଶର ନିକଟରେ; ଏହା ଅଶ୍ଳେଷା, ମଘା ଓ ପୂର୍ବଫାଲ୍ଗୁନୀ ନକ୍ଷତ୍ରମାନଙ୍କ ଅଧିକାରଭୁକ୍ତ—ହ୍ମ. ଶବ୍ଦସାଗର । ]
୧୦ । ଉତ୍ସଙ୍ଗ; କୋଡ଼—10. Bosom (Apte).
ସଂ. ବିଣ (+କର୍ତ୍ତୃ. ଅର)—୧ । କଠିନ—1. Hard.
୨ । କର୍କଶ—2. Rough.
୩ । ବୃଦ୍ଧ—3. Old; decrepit.

**ଜଠରଜ୍ୱାଳା**—ସଂ. ବି ( ଜଠର+ଜ୍ୱାଳା, ୬ଷ୍ଠୀ ବା ୭ମୀ ତତ୍ )—
Jaṭharajwāḻā ବିଶେଷ କ୍ଷୁଧାର ଉଦ୍ରେକ, କ୍ଷୁଧାଜନିତ ଯନ୍ତ୍ରଣା; ପେଟ ପୋଡ଼ିବା—A burning pain in the stomach due to hunger.

**ଜଠରତା**— ସଂ ବି ( ଜଠର=କର୍କଶ+ଭାବ. ତା )—
Jaṭharatā ୧ । କର୍କଶତା; କାର୍କଶ୍ୟ—1 Roughness.
୨ । କାଠିନ୍ୟ; କଠିନତା—2. Hardness.

**ଜଠରଯନ୍ତ୍ରଣା**—ସଂ. ବି (ଜଠର+ଯନ୍ତ୍ରଣା, ୬ଷ୍ଠୀ ବା ୭ମୀ ତତ୍)—
Jaṭharajantraṇā ୧ । ଭ୍ରୂଣ ଜନନୀଗର୍ଭରେ ଥିବା ସମୟରେ (ଜଠରଯାତନା—ଅନ୍ୟରୂପ) ସ୍ୱୟଂ ଯେଉଁ କଷ୍ଟଭୋଗ କରୁଥିବାର କଳ୍ପନା କରାଯାଏ—1. The pain said to be endured by a child while confined in the womb.
୨ । ମାତାଙ୍କର ଗର୍ଭଧାରଣ କ୍ଳେଶ ଓ ପ୍ରସବ ବେଦନା—
2. The mother's pangs during pregnancy and child-birth
୩ । କ୍ଷୁଧା—3. Hunger.
୪ । ଜଠରଜ୍ୱାଳା (ଦେଖ)
4. Jaṭharajwālā (See).

**ଜଠରାଗ୍ନି**—ସଂ. ବି ( ଜଠର+ଅଗ୍ନି, ୬ଷ୍ଠୀ ତତ୍ )—
Jaṭharāgni ୧ । ଖାଦ୍ୟଦ୍ରବ୍ୟକୁ ପରିପାକ କରିବାର ଶକ୍ତି; ଭୁକ୍ତ ଦ୍ରବ୍ୟକୁ ଜୀର୍ଣ୍ଣ କରିବା ନିମନ୍ତେ ଉଦରରେ ଜାତ ରସ—
1. The digestive fire of the belly; the gastric juice; the gastric heat.
୨ । କ୍ଷୁଧା—2. Hunger.

**ଜଠରାନଳ**—ସଂ. ବି. ( ଜଠର+ଅନଳ; ୬ଷ୍ଠୀ ତତ୍ )—
Jaṭharānaḷa ଜଠରାଗ୍ନି ( ଦେଖ )
Jaṭharāgni ( See )

**ଜଠରାମୟ**—ସଂ. ବି. ( ଜଠର+ଆମୟ; ୬ଷ୍ଠୀ ତତ୍ )—
Jaṭharāmaya ୧ । ଜଳୋଦର ରୋଗ—1. Dropsy.
୨ । ଅତିସାର ରୋଗ ( ହି· ଶବ୍ଦସାଗର )—
2. Dysentery.

**ଜଠ୍ରା**—ଗ୍ରା ବି. ( ସଂ. ଜଠର )—ଜଠର ( ଦେଖ )
Jaṭhra Jaṭhara ( See )

**ଜଠଳ**—ସଂ. ବି. ( ଜନ ଧାତୁ+ଅଧିକରଣ ଅର; ର ସ୍ଥାନରେ ଳ )—
Jathaḷa ମନୁଷ୍ୟର ଉଦରାକୃତି ବୈଦିକ ଯୁଗରେ ବ୍ୟବହୃତ ଜଳପାତ୍ରବିଶେଷ ( ହି. ଶବ୍ଦସାଗର )—A kind of water vessel shaped like the humen belly used in the vedic age.

**ଜଡ଼୍**—ପ୍ରାଦେ. ( ସମ୍ବଲପୁର ) ବି. ( ମୂଳ. ହି. ଜଡ଼୍ )—
Jaṛd ୧ । ମୂଳ—1. Root.
୨ । ମୂଳକାରଣ—2. Root cause; origin.

**ଜଡଜି**—ପ୍ରାଦେ. ( ଗଞ୍ଜାମ ) ବି. ( ଗଞ୍ଜାମବାସୀମାନେ ଇଂ gudge ଶବ୍ଦର ଲୁପ୍ତ ଡ ( d ) ଅକ୍ଷରକୁ ପ୍ରକାଶ କରି ଏହିପରି ଉଚ୍ଚାରଣ କରିଥାନ୍ତି; ତୁଳ=ବଜେଟ୍ budget ର ଗଞ୍ଜାମୀ ଉଚ୍ଚାରଣ ବଡ୍‌ଜେଟ୍ )—ଜଜ୍; ଜିଲ୍ଲାର ପ୍ରଧାନ ବିଚାରପତି—Judge; District Judge.
Jaḍaji

**ଜଡ଼**—ସଂ. ବିଣ. ( ଜଲ୍ ଧାତୁ=ଜମା କରିବା ଆଚ୍ଛାଦନ କରିବା + କର୍ତ୍ତୃ. ଅ; ଲ ସ୍ଥାନରେ ଡ )—
Jaṛḍa
୧ । ଶୀତଳ—1. Frigid; cold.
୨ । ଜମାଟ - 2. Frozen.
୩ । ବୁଦ୍ଧିହୀନ; ମନ୍ଦବୁଦ୍ଧି; ମୂର୍ଖ—
3. Stupid, idiotic.
୪ । ଅଚେତନ; ନିର୍ଜୀବ—
4. Lifeless, inanimate.
୫ । ନିସ୍ପନ୍ଦ—5. Motionless.
୬ । ଅଳସୁଆ; ନିଶ୍ଚେଷ୍ଟ; ନିରୁଦ୍ୟମ—6. Inert, idle.
୭ । ଅଜ୍ଞ—7. Ignorant.
୮ । ଏକାଠିତ; ଠୁଳ କରାଯାଇଥିବା—
8 Heaped together; collected.
୯ । ମୂକ—9. Dumb.
୧୦ । ସ୍ଫୂର୍ତ୍ତିହୀନ—10 Inactive.
୧୧ । ଆଚ୍ଛନ୍ନ—11. Covered.
୧୨ । ମୋହିତ—12. Fascinated; infatuated.
୧୩ । ଅନ୍ଧ— 13. Blind.
୧୪ । ବଧିର ( ହି. ଶବ୍ଦସାଗର )—14. Deaf.
୧୫ । ବେଦପାଠରେ ଅସମର୍ଥ ( ହି. ଶବ୍ଦସାଗର )—
15. Unable or incompetent to study the Bedas.
୧୬ । ସ୍ତବ୍ଧ ( ହି. ଶବ୍ଦସାଗର )—16. Still.

ଦେ. ବିଣ—ଅସଲ—Genuine; original.
ଅଲୋ ମଞ୍ଜୁଷା, ଜଡ ପଇସା—ପ୍ରବଚନ ।

ସଂ. ବି—୧ । ଜଳ—1. Water.
୨ । ସୀମା—2. Boundary.
୩ । ସୀସା—3. Lead (metal).
୪ । ନିର୍ବୁଦ୍ଧି ବା ପାଗଳ ଲୋକ—4. An idiot.
୫ । ନିର୍ଜୀବ ପଦାର୍ଥ— 5. Inanimate substance.

ଦେ. ବି—୧ । ଜାଡ଼; ଶୀତ—1. Cold.
ଅଙ୍ଗେ ଅଙ୍ଗେ ଜଡ ପୁଣି ଗଲା ଯେ ପ୍ରବର୍ତ୍ତି ।
ଉପେନ୍ଦ୍ର ଭଞ୍ଜ—କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୨ । ଶୀତଋତୁ—2. The winter season.
ବସନ୍ତେ ସେ ଜଡ଼ ଶଙ୍କା ଘାତ ଭୃଙ୍ଗ ବିକାଶନ୍ତି ଘନ
ଜଳଜ ମଳନ ଅସ୍ୟ । ଉପେନ୍ଦ୍ର ଭଞ୍ଜ—ବୈଦେହୀଶବିଳାସ ।
୩ । ଅସଲ ବା ପ୍ରଧାନ ବସ୍ତୁ—
3. Chief or most valuable thing.
(ଯଥା—ଅଲୋ ମଞ୍ଜୁଷା; ଜଡ଼ ପଇସା—ପ୍ରବଚନ ।)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଈ | ଊ | ଋ,ୠ | ଌ | ଐ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଅ୍ | ଉଅ | ଢ଼ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟଁ | ଇଅ | ଢ଼ | ନ୍ତ |

जड़ ; जर् ; बुनिआद ୪ । (ସଂ ଜଟା)—ଚେର, ମୂଳ—
4. Root.
୫ । ନିଅଁ—5 Foundation.
୬ । ପ୍ରଧାନ କାରଣ; ମୌଳିକ କାରଣ—6. Root cause.

**ଜଡ଼ଉ**—ଦେ. ବିଣ. (ସଂ. ଜଟ ଧାତୁ)—ଜଡ଼ଉତ (ଦେଖ)
Jar̤d̤au Jar̤d̤auta (See)

**ଜଡ଼ଉତ**—ଦେ. ବିଣ. (ସଂ. ଜଟ ଧାତୁ)—ହୀରାଦିଖଚିତ—
Jar̤d̤auta Set or overlaid with precious
जड़ाऊ; जड़ोया stones ( said of ornaments and
जड़ाऊ apparel )
ଦେ. ବି.—ମଣିରତ୍ନାଦି ଖଚିତ ସ୍ୱର୍ଣ୍ଣାଳଙ୍କାର; କୁନ୍ଦନ କାମ—
Gold ornament set with gems.

**ଜଡ଼କ୍**—ପ୍ରାଦେ. (ଉତ୍ତରଭାଷା) ବିଣ.—ଯେତେ—
Jar̤d̤ak As much; as large.

**ଜଡ଼କ୍‌ଦାଇଁ**—ପ୍ରାଦେ. (ଉତ୍ତର ଭାଷା)—ଅବ୍ୟୟ; ଯେଉଁକ୍ଷଣି—
Jar̤d̤ak dāiṅ As soon as.

**ଜଡ଼କର**—ସଂ. ବି. (ବହୁବ୍ରୀହି; ଜଡ଼=ଶୀତଳ ଅଟେ କର=କିରଣ
Jar̤d̤akara ଯାହାର)—ଚନ୍ଦ୍ର—The moon.
ବଦନରେ ଜଡକର ପ୍ରଶଂସା । ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।

**ଜଡ଼କ୍ରିୟ**—ସଂ. ବିଣ. ପୁଂ (ବହୁବ୍ରୀହି; ଜଡ଼+କ୍ରିୟା)—ଦୀର୍ଘସୂତ୍ରୀ; କାର୍ଯ୍ୟ
Jar̤d̤akriya କରିବାରେ ଅଳସୁଆ—Dilatory; idle.
(ଜଡ଼କ୍ରିୟା—ସ୍ତ୍ରୀ)

**ଜଡ଼ଜଗତ୍**—ସଂ. ବି. (ଜଡ଼+ଜଗତ୍)—ପ୍ରାକୃତିକ ଜଗତ, ଚୈତନ୍ୟ-
Jar̤d̤ajagat ହୀନ ସ୍ଥାବର ଜଗତ—The Nature; the inanimate world; the material world.

**ଜଡ଼ତା**—ସଂ. ବି. (ଜଡ଼+ଭାବାର୍ଥେ ତ)—୧ । ଶୈଥିଲ୍ୟ—
Jar̤d̤atā 1. Numbness; rigidness.
(ଜଡ଼ତ୍ୱ—ଅନ୍ୟରୂପ) ୨ । ଦେହ କାଳ ମାରିଯିବା—
2 Insensibility
୩ । ଶୈତ୍ୟ—3. Frigidity; coldness.
୪ । ମୂର୍ଖତା—4 Stupidity; idiocy.
୫ । ଅସ୍ପଷ୍ଟତା—5. Indistinctness.
୭ । ଆଲସ୍ୟ—7. Idleness.
୮ । ଅକର୍ମଣ୍ୟତା; ଅପଟୁତା—8. Decrepitude.
୯ । ଜଡ଼ ପଦାର୍ଥର ଏକ ସ୍ଥାନରେ ରହିବାର ଗୁଣ; ଯେଉଁ ଗୁଣ ଯୋଗୁଁ ଜଡ଼ ପଦାର୍ଥ ଆପଣାମନକୁ ଚଳି ପାରେ ନାହିଁ କିମ୍ବା ରହି ପାରେ ନାହିଁ—9. Inertia.
୧୦ । ଅଚେତନତା—10. Lifelessness.
୧୧ । ସାହିତ୍ୟ ଦର୍ପଣ ମତରେ ସଂଗ୍ରହଭାବ ବିଶେଷ—
11. One of the conditions of a person affected with sentiments.

[ ଦ୍ର—ଦୁଃଖ, ଭୟ, ମୋହ ଆଦି ଜନିତ ଚିନ୍ତାରୁ ମନୁଷ୍ୟର ଯେଉଁ କିଂକର୍ତ୍ତବ୍ୟବିମୂଢ଼ତା ହୁଏ ତାକୁ ଜଡ଼ତା ବୋଲାଯାଏ ।]
୧୨ । ସ୍ତବ୍ଧତା; ଅଚଳତା—12. Stillness; inertness.
୧୩ । (ବୈଶେଷିକ ଦର୍ଶନ) ପରମାଣୁମାନଙ୍କର ଗୁଣବିଶେଷ; ସ୍ଥିତି ଓ ଗତିର ଇଚ୍ଛାର ଅଭାବ (ହି. ଶବ୍ଦସାଗର)—
13. (Baiśeshika philosophy) An attribute of molecules; want of any will to move and stay.

**ଜଡ଼ପଦାର୍ଥ**—ସଂ. ବି. (କର୍ମଧା; ଜଡ଼+ପଦାର୍ଥ)—ଅଚେତନ ବା ନିର୍ଜୀବ
Jar̤d̤apadārtha ବସ୍ତୁ—Inanimate thing.

**ଜଡ଼ପିଣ୍ଡ**—ସଂ. ବି. (କର୍ମଧା; ଜଡ଼+ପିଣ୍ଡ)—ସ୍ଥୂଳ ଜଡ଼ବସ୍ତୁ—
Jar̤d̤apiṇd̤a A solid and inactive object.

**ଜଡ଼ପ୍ରକୃତି**—ସଂ. ବି.—୧ । ଜଡ଼ ଜଗତ, ନିର୍ଜୀବ ଜଗତ୍—
Jar̤d̤aprakr̤uti Nature, the material world.
୨ । ଅଳସ ପ୍ରକୃତି—2. Idle nature.

**ଜଡ଼ବର**—ଦେ. ବି.—ବୃକ୍ଷବିଶେଷ—
Jar̤d̤abara A kind of tree (Howells).

**ଜଡ଼ବାଦ**—ସଂ ବି. ( ଆଧୁନିକ ଦର୍ଶନପରିଭାଷା )—ପ୍ରାକୃତ ଦର୍ଶନ;
Jar̤d̤abāda ଯେଉଁ ମତବାଦରେ ଆତ୍ମାର ସ୍ୱତନ୍ତ୍ର ଅସ୍ତିତ୍ୱ ସ୍ୱୀକାର କରାଯାଏ ନାହିଁ; ଦେହାତ୍ମବାଦ—
(modern philosophy) Materialism.

**ଜଡ଼ବାଦୀ**—ସଂ. ବିଣ.—(ଜଡ଼+ବଦ୍ ଧାତୁ+ଇନ୍; ୧ମା. ୧ବ.)—
Jar̤d̤abādī ଯେ ଜଡ଼ବାଦମତ ପୋଷଣ କରେ—One who holds the theory of materialism.
ଦେ. ବି.—ଜଡ଼ବାଦମତ ପୋଷଣ କରୁଥିବା ଲୋକ—
A person holding the theory of materialism.

**ଜଡ଼ଭରତ**—ଦେ. ବି.—ଅନଭିଜ୍ଞ ବା ମୂର୍ଖ ଲୋକ—
Jar̤d̤abharata 1. An idiot.
জড়ভরত ୨ । ଜଡ଼ଭାବାପନ୍ନ ନିର୍ବୋଧ ବ୍ୟକ୍ତି—
जड़भरत 2. A stupid and idle person.
(ଜଡ଼ଭରଥ—ଅନ୍ୟ ନାମ) ୩ । ନିର୍ବାକ୍ ବ୍ୟକ୍ତି—
3. A dumb person.
୪ । ପୁରାଣବର୍ଣ୍ଣିତ ବ୍ରହ୍ମବାଦୀ କ୍ଷତ୍ରିୟ ଜନୈକ ମହାପୁରୁଷ—
4. Name of a Brāhmaṇa mentioned in the Purāṇas.

[ ଦ୍ର—ଏ ଅଙ୍ଗିରସଗୋତ୍ରୀ ବ୍ରାହ୍ମଣ । ସର୍ବଦା ଜଡ଼ବତ୍ ରହୁଥିଲେ । ଭାଗବତରେ ଲେଖାଅଛି ଯେ, ରାଜା ଭରତ ବାନପ୍ରସ୍ଥ ଅବଲମ୍ବନ କରିବା ସମୟରେ ଗୋଟିଏ ହରିଣ ପୋଷିଥିଲେ । ସେ ହରିଣ ପ୍ରତି ତାଙ୍କର ଏପରି ମାୟା ଜନ୍ମିଥିଲା ଯେ, ରାଜାଙ୍କ ଦେହରୁ ପ୍ରାଣବାୟୁ ବାହାରିଲାବେଳେ ସେ ଭଗବଚ୍ଚିନ୍ତା ନ କରି ସେହି

| ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୁଥ ନ ମିଳିଲେ 'କୁଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଆଙ୍ଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ । |
|---|

ହରିଣର ଚିନ୍ତାରେ ମଗ୍ନ ଥିଲେ । ଅତଏବ ମୃତ୍ୟୁ ପରେ ପରେ ସେ ହରିଣଯୋନିରେ ପୁନର୍ଜନ୍ମ ଲାଭ କଲେ । କିନ୍ତୁ ତାଙ୍କ ପୁଣ୍ୟ ପ୍ରଭାବରୁ ତାଙ୍କର ପୂର୍ବଜନ୍ମର ଜ୍ଞାନ ହେଲା ଓ ସେ ସେହି ପୂଣ୍ୟ ହରିଣ ଶରୀର ତ୍ୟାଗ କରି ବ୍ରାହ୍ମଣକୁଳରେ ଜନ୍ମ ଗ୍ରହଣ କଲେ । ପୂର୍ବଜନ୍ମର ଅନୁଭବରୁ ସେ ସଂସାରବାସନାରୁ ମୁକ୍ତ ରହିବା ପାଇଁ ସର୍ବଦା ଜଡ଼ବତ୍ ରହୁଥିଲେ । ଏଥିପାଇଁ ଲୋକେ ତାଙ୍କୁ ସର୍ବଦା ଜଡଭରତ ନାମରେ ଡାକିଲେ । ହି. ଶବ୍ଦସାଗର । ]

**ଜଡ଼ଭରତଙ୍କ ଗାଦି**—ଦେ. ବି.—କେଦାରେଶ୍ୱର ନିକଟବର୍ତ୍ତୀ ଗୋଟିଏ ତୀର୍ଥ—Name of a sacred place said to be the hermitage of Jardabharata.
Jarda bharatanka gādi

[ ଦ୍ର—ହିମାଳୟର ସାନୁଦେଶରେ ଅବସ୍ଥିତ କେଦାରନାଥ ତୀର୍ଥର ନିକଟବର୍ତ୍ତୀ ବ୍ରହ୍ମକୁଣ୍ଡ ନାମକ ପୁଷ୍କରିଣୀର କୂଳରେ ଗୋଟିଏ ପ୍ରାଚୀନ କୁଟୀର ଜଡ଼ଭରତଙ୍କ ଗାଦି ନାମରେ ପରିଚିତ—
ଦୁର୍ଗାନାଥ ଘୋଷ—ସ୍ୱାମୀ ରାମାନନ୍ଦ । ]

**ଜଡ଼ ମାରିବା**—ଦେ. କ୍ରି—କୌଣସି ବିଷୟର ମୂଳୋତ୍ପାଟନ କରିବା; ସମୂଳେ ବିନାଶ କରିବା—To uproot a thing; to strike at the root of a thing; to eradicate a thing.
Jarda māribā
(ଜଡ଼ରୁମାରିବା—ଅନ୍ୟରୂପ)
जड़सेमारना

**ଜଡ଼ରୁ**—ଦେ. କ୍ରି. ବିଣ—୧ । ଆରମ୍ଭରୁ—1. From the beginning.
Jardaru
जड़से
( ଯଥା—ଏ କଥା ତ ଜଡ଼ରୁ ବିଗିଡ଼ିଛି, ବର୍ତ୍ତମାନ ସୁଧାରିଲେ କ'ଣ ହେବ ? )
୨ । ଆଦୌ; ଜମାରୁ—2. At all.
( ଯଥା—ମୁଁ ଏକଥା ଜଡ଼ରୁ ଜାଣେ ନାହିଁ । )
୩ । ମୂଳରୁ; ଚେରରୁ—3. From the root.
( ଯଥା—ଏ ଗଛକୁ ଜଡ଼ରୁ ନ ମାରିଲେ ପୁଣି କୁଆଁ ହେବ । )

**ଜଡ଼ସଡ଼**—ଦେ. ବିଣ. (ସଂ. ଜଡ଼; ବଂ.ରୁ ଅନୁକୃତ)—
Jardasarda
জড়সড়
हक्काबक्का
୧ । ଲଜ୍ଜା ବା ଭୟରେ ମ୍ରିୟମାଣ; କିଂକର୍ତ୍ତବ୍ୟବିମୂଢ଼—1. Dumbfoundered through fear or shame
(ଯଥା—ସେ ଲଜ୍ଜାରେ ଜଡ଼ସଡ଼ ହୋଇଗଲା ।)
୨ । ଲଜ୍ଜା ବା ଭୟରେ ସଙ୍କୁଚିତ—2. Shrink into a small compass as through fear (Ganguly. Students' Dictionary).

**ଜଡ଼ା**—ଦେ. ବି—୧ । (ସଂ. ଏରଣ୍ଡ; ଉମ୍ବୁକ)—ଏରଣ୍ଡ; ଗବ—1. Castor seed plant; Ricinus Communis.
Jardā
রেড়ী
रेंडी
ଜଡ଼ା ବୃକ୍ଷ ହୋଇଯାଇ ଅଗର ଚନ୍ଦନ ।
ପ୍ରାଚୀ—ବୃନ୍ଦାବନରୂପଣଗୀତା ।
ଜଡ଼া
जड़ना
୨ । (ସଂ. ଜଡିତ) ସଂଲଗ୍ନ ହେବା; ଆସକ୍ତ ହେବା; ଜଡ଼ିବା; ସଂଯୋଗ—2. Attachment; clinging to.

ପ୍ରାଦେ. (ଗଞ୍ଜାମ) ବି—ଜଡ଼ାତେଲ—Castor oil.
ବାଇଗଙ୍କ ପତ୍ରରେ ଜଡ଼ା ଲଗାଇ ତଦ୍ୱାରା ଆଚ୍ଛାଦନ କଲେ ବ୍ରଣ ଶୁଷ୍କ ହୁଏ ।
ଦ୍ରବ୍ୟଗୁଣକଳ୍ପଦ୍ରୁମ ।
ପ୍ରାଦେ. (ସିଂହଭୂମ) ବି—ପପୟା (ଦେଖ) Papayā (See)
ଦେ. ବିଣ—୧ । (ସଂ. ଜଡ଼ିତ) ରତ୍ନାଦିରେ ଜଡ଼ିତ—1 Set or inlaid with gems.
୨ । (ସଂ. ଜଡ଼) ମୂକ—2. Dumb.

**ଜଡ଼ାଇବା**—ଦେ. କ୍ରି. (ସଂ ଜଟ ଧାତୁର ଣିଜନ୍ତ ରୂପ)—
Jardāibā
জড়ান
जड़ाना; जड़वाना
(ଜଡ଼େଇବା—ଅନ୍ୟରୂପ)
୧ । ଜଡ଼ିବାର ଣିଜନ୍ତ ରୂପ; ସଂଲଗ୍ନ କରାଇବା—1. Causative form of Jardibā; to cause to cling to
କୃଷ୍ଣଙ୍କୁ ରତନ ପଲଙ୍କ ଛଡ଼ାଇ ଜଡ଼ାଇ ସର୍ପ ଶୟନେ ।
ଉପେନ୍ଦ୍ରଭଞ୍ଜ- ବୈଦେହୀଶବିଳାସ ।
୨ । ଖଚିତ କରିବା—2. To set or inlay with gems.
୩ । ଭ୍ରମରୂପେ ବେଷ୍ଟନ କରିବା; ଗୁରିପାଖେ ଗୁଡ଼େଇବା—3. To wrap or wind round.
ପୀତା ଓଢ଼ଣୀକୁ ଉଡ଼ାଇ ଅଙ୍ଗକୁ ଜଡ଼ାଇ ନ ଥିବ ବନରେ ।
କବିସୂର୍ଯ୍ୟ- ସଙ୍ଗୀତକଲ୍ଲୋଳିନୀ ।
୪ । ଜାବୁଡ଼ି କରି ଧରିବା—4. To cling to.
୫ । କୌଣସି ଦୋଷରେ ଅନ୍ୟ ବ୍ୟକ୍ତିକୁ ଜଡ଼ିତ ବା ଲିପ୍ତ କରିବା—5. To implicate.

**ଜଡ଼ାଉ**—ଦେ. ବିଣ—ଜଡ଼ଉତ (ଦେଖ) Jardauta (See)
Jardāu

**ଜଡ଼ାଜଡ଼ି**—ଦେ. ବି—୧ । ପରସ୍ପର ସହିତ ସଂଯୋଗ—1 Attachment
Jardājardi
জড়াজড়ি
घालमेल
୨ । ଅନ୍ୟୋନ୍ୟରେ ଆଲିଙ୍ଗନ—2. Mutual embrace.
ବିଣ—୧ । ସଂଯୁକ୍ତ—1. Attached; clinging.
୨ । ପରସ୍ପର ଆଲିଙ୍ଗିତ—2. Inter locked.

**ଜଡ଼ାତେଲ**—ଦେ ବି—ଏରଣ୍ଡତୈଳ; ଗବମଞ୍ଜିରୁ ବାହାର କରାଯିବା ତେଲ—Caster oil.
Jardātela
বেড়ীতেল
रेंड़ीतेल
[ ଦ୍ର—ଜଡ଼ା ଅର୍ଥାତ୍ ଗବମଞ୍ଜିକୁ ପେଡ଼ି କରି ବା ସିଝାଇ କରି ତେଲ ମରାଯାଏ, ସିଝାଇ କରି ବାହାର କରାଯିବା ତେଲକୁ ରନ୍ଧା ଜଡ଼ାତେଲ କହନ୍ତି । ]

**ଜଡ଼ାତେଲ ମେଣ୍ଢାବାଳ**—ଦେ. ପ୍ରବଚନ—ଅଭେଦ୍ୟ ବା ଘନିଷ୍ଠ ପ୍ରଣୟରେ ଆବଦ୍ଧ—Very closely or intimately associated.
Jardātela mendhābāla

[ ଦ୍ର—ଘନିଷ୍ଠ ଅଭେଦ୍ୟ ପ୍ରୀତି ସ୍ଥଳେ ଏହା କୁହାଯାଏ । ଯଥା—ସେ ଦୁହେଁ 'ଜଡ଼ାତେଲ ମେଣ୍ଢାବାଳ' ହୋଇଅଛନ୍ତି । ଯେହେତୁ ମେଣ୍ଢାବାଳରେ ଜଡ଼ାତେଲ ମିଶାଇଲେ ତାହା ସହଜରେ ପରସ୍ପର ଭିନ୍ନ ହୁଏ ନାହିଁ । ]

| ୧ | ଇ | ଊ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଂ | ଉଂ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଳୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଔ | ନ୍ |

**ଜଡ଼ାମୂରୁଖ**—ଗ୍ରା. ବଣ—ଜଡ଼ାମୂର୍ଖ ( ଦେଖ )
Jardāmurukha Jardāmūrkha ( See )

ଗୁରୁ ଯାଙ୍କୁ ସୁଦୟା ଲେ କରୁଥାଇ ମାତ
ଜଡାମୂରୁଖ ହେଲେ ହୁଅଇ ପଣ୍ଡିତ ସେ—ଗୋବିନ୍ଦଙ୍କ ବନ୍ଦନା ଗୀତ ।

**ଜଡ଼ାମୂର୍ଖ**—ଦେ. ବଣ—ଘୋରମୂର୍ଖ; ଗଜମୂର୍ଖ; ନିବାମୂର୍ଖ; ନିରକ୍ଷର—
Jardāmūrkha Totally illiterate
गजमूर्ख
अनपढ़

**ଜଡ଼ି** ଦେ. ବି. (ସଂ. ଜଟା)—୧ । ଔଷଧରୂପେ ବ୍ୟବହୃତ ଚେରମୂଳ—
Jardi 1. Medicinal roots.
जड़ी ୨ । ବଟବୃକ୍ଷ—2. Banyan tree
ପ୍ରାଦେ. ( ସିଂହଭୂମ ) ବି—ଅଶ୍ୱତ୍ଥ ଗଛ—
The pipal tree; the holy fig tree.

**ଜଡ଼ିତ**—ଦେ. ବଣ. ( ସଂ. ଜଡ୍ ଧାତୁଜ. )—୧ । ଖଚିତ —
Jardita 1. Set; studded; inlaid or overlaid with gems.
জড়িত
जड़ित ୨ । ବେଷ୍ଟିତ—2. Covered; surrounded.
୩ । ଆସକ୍ତ; ସଂଲଗ୍ନ; ସଂଯୁକ୍ତ—
3. Attached; clinging; intimately connected.
୪ । ମିଶ୍ରିତ—4. Implicated, mixed
ବହୁଲେ ବି ସରସୀ କାଳନୀ ଜଡ଼ିତ— ଉପେ. ବୈଦେହୀଶବିଳାସ ।
୫ । ଲିପ୍ତ—5. Besmeared.

**ଜଡ଼ିପଡ଼ିବା**—ଦେ. କ୍ରି—ସଂଲଗ୍ନ ହେବା—
Jardipardibā To cling
ମଧୁଲୋଭେ ମାଛି ଯେସନେ ଜଡ଼ି ପଡ଼ନ୍ତି—ପ୍ରାଚୀ. ରହସ୍ୟମଞ୍ଜରୀ ।

**ଜଡ଼ିବା**—ଦେ. କ୍ରି. ( ସଂ. ଜଡ୍ ଧାତୁ=ଏକତ୍ର ହେବା )—
Jardibā ୧ । ମିଶିବା; ସଂଲଗ୍ନ ହେବା; ଲାଗିରହିବା—
জড়া 1. To be attached to; to mix with; to stick to.
जड़ना
ଗୃହ ଭୂଗିରେ ଅଶ୍ୱାସେ ଜରଟା ବହୁବିଦାସୀମାନଙ୍କ ଅଙ୍କସ୍ଥଳେ ଜଡ଼ିଲ ରେ — କବିସୂର୍ଯ୍ୟ. ସଙ୍ଗୀତ ।

ଜଡ଼ାଇବା } ଣିଜନ୍ତ
ଜଡ଼େଇବା }
୨ । ଜାବୁଡ଼ି କରି ଧରିବା—
2. To cling to
ସମସ୍ତେ ବେଢି ଧରି ଜଡ଼ି
ଗୁଡ଼ଙ୍କୁ ଯେସନେ ପିମ୍ପୁଡ଼ି—ଭୂପତି. ପ୍ରେମପଞ୍ଚାମୃତ ।
୩ । ଲିପ୍ତ ହେବା; ଆସକ୍ତ ହେବା—
3. To be addicted to.
ଯେ ହରିଭାବେ ଥାନ୍ତି ଜଡ଼ି
ତାଙ୍କ ଭାବକ ଦୂରେ ଏଡ଼ି—ଜଗନ୍ନାଥ. ଭାଗବତ ।
୪ । କାରୁକାର୍ଯ୍ୟରେ ମଣ୍ଡିତ କରିବା; ଖଚିତ କରିବା—
4. To inlay or set with gems etc.
୫ । ଆଲିଙ୍ଗନ କରିବା—5. To embrace.
ଭିଲ ସଖୀ ଦେହେ ସ୍ନେହେ ଜଡ଼ାଇ ।—କବିସୂର୍ଯ୍ୟ—ସଙ୍ଗୀତ ।

୬ । ଏକତ୍ରିତ ହେବା; ଗୋଠା ହେବା, ସଂହତ ହେବା—
6. To cohere; to stick together.
ବସ୍ତ୍ର ଯେସନ ଲୁହ ପଡ଼ି
ଭୂମିରେ ଯେସନ ରେଣୁ ଜଡ଼ି । ଜଗନ୍ନାଥ. ଭାଗବତ ।
ପ୍ରାଦେ. (ସମ୍ବଲପୁର) କ୍ରି—ଝାଳଣାଦ୍ୱାରା ସୁନା ବା ଧାତୁର ଏକ ଖଣ୍ଡ ଅନ୍ୟ ଖଣ୍ଡ ସଙ୍ଗେ ସଂଶ୍ଳିଷ୍ଟ ହେବା; ଝାଳ ହେବା—
(one bit of metal) To be soldered to (another bit).

**ଜଡ଼ିବୁଟି**—ଦେ. ବି. (ସଂ. ଜଟ+ବଟିକା) (ସହଚର)—
Jardibuti ଭୂଟିକା ଔଷଧ; ମୂଳମୂଳିକା; ଔଷଧାର୍ଥ ବ୍ୟବହୃତ ଚେର
জড়িবুটি ମୂଳାଦି—Medicinal herbs; drugs.
जड़ीबुटी

**ଜଡ଼ିମା**—ସଂ. ବି. ( ଜଡ଼+ଭାବାର୍ଥେ ଇମନ୍; ୧ମା. ୧ବ )—
Jardimā ୧ । ଜଡ଼ତା (ଦେଖ)
1. Jardatā (See)
୨ । କାର୍ଯ୍ୟକାରଣ ବ୍ୟତୀତ ବାକ୍ୟର ଅନ୍ୟଥାଭାବ—
2. The change of a word without cause.

**ଜଡ଼ିମୁଣି**—ଦେ. ବି—କେଳାମାନେ ଯେଉଁ ମୁଣିରେ ସର୍ପଦଂଶର
Jardimuni ପ୍ରତିଷେଧକ ଗଦ ଓ ଚେରମୂଳ ରଖିଥାଆନ୍ତି—
Wallet of snake-charmers containing medicinal drugs against snake bite.

**ଜଡ଼ିମୂଳି**—ଦେ. ବି. (ସଂ. ଜଟା+ମୂଳ)—ଜଡ଼ିବୁଟି (ଦେଖ)
Jardimūli Jardibuti (See)

**ଜଡ଼ୀକୃତ**—ସଂ. ବଣ. ( ଜଡ଼+ଅଭୂତ ତଦ୍ଭାବେ ଚ୍ୱି (ଈ)+କୃତ;
Jardīkruta ଯେଉଁ ଅଜଡ଼ ବସ୍ତୁ ବା ବ୍ୟକ୍ତିକୁ ଜଡ଼ କରାଯାଇ (ଜଡ଼ୀକରଣ—ବି) ଅଛି )—୧ । ନିଶ୍ଚେଷ୍ଟୀକୃତ; ନିଶ୍ଚେଷ୍ଟୀକୃତ—
1. Rendered unsensible; benumbed; stupefied.
୨ । ଯାହାକୁ ଘନ କରାଯାଇଅଛି—
2. Condensed; solidified.
୩ । ଏକତ୍ରୀକୃତ; ପୁଞ୍ଜୀକୃତ—3. Heaped up; gathered together into a compact mass.

**ଜଡ଼ୀଭୂତ**—ସଂ. ବଣ. ( ଜଡ଼+ଅଭୂତତଦ୍ଭାବେ ଚ୍ୱି (ଈ)+ଭୂତ;
Jardībhūta ଯେଉଁ ଅଜଡ଼ ବସ୍ତୁ ବା ବ୍ୟକ୍ତି ଜଡ଼ ହୋଇଅଛି)—
୧ । ନିଷ୍ପନ୍ଦୀଭୂତ; ଯାହା ନିଷ୍ପନ୍ଦ ହୋଇଅଛି—
1. Become rigid; parlysed; benumbed; stunned; stupefied.
୨ । ଯେ ହତବୁଦ୍ଧି ହୋଇଅଛି; କିଂକର୍ତ୍ତବ୍ୟବିମୂଢ଼—
2. Bewildered; dumbfounded.
୩ । ନିଶ୍ଚେଷ୍ଟ—3. Inert; become inactive.
୪ । ନିରୁତ୍ସାହ—4. Discouraged; disheartened.
୫ । ଅଭିଭୂତ; ଆକ୍ରାନ୍ତ—5. Overpowered.
୬ । ମଗ୍ନ; ଜଡ଼ିତ—6. Immersed; implicated.

ସାଧାରଣ ଲୋକେ ଅପର ପୃଷ୍ଠାର ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ

୭ । ବେଷ୍ଟିତ; ସମାଚ୍ଛନ୍ନ—
7. Encompassed; covered.
୮ । ଘନୀଭୂତ; ଜମାଟ ହୋଇଥିବା—8. Frozen.
[ ଦ୍ର—'ଜଡ଼ୀକୃତ' ଶବ୍ଦ କର୍ମବାଚ୍ୟରେ ନିଷ୍ପନ୍ନ ହୁଏ, ତେଣୁ ତାହାର ଅର୍ଥ ପୂର୍ବେ ଜଡ଼ ହୋଇ ନ ଥିବା ଓ ବର୍ତ୍ତମାନ ଜଡ଼ କରାଯାଇଥିବା କୌଣସି ବସ୍ତୁ ବା ବ୍ୟକ୍ତି ମାତ୍ର 'ଜଡ଼ୀଭୂତ' ଶବ୍ଦ କର୍ତ୍ତୃବାଚ୍ୟରେ ନିଷ୍ପନ୍ନ, ଏହାର ଅର୍ଥ ପୂର୍ବେ ଜଡ଼ ହୋଇ ନ ଥିବା ଓ ବର୍ତ୍ତମାନ ସ୍ୱୟଂ ଜଡ଼ ହୋଇଯିବା କୌଣସି ବ୍ୟକ୍ତି ବା ବସ୍ତୁ ଅଭୂତ ତଦ୍ଭାବ ଅର୍ଥରେ ଯେଉଁ ଶବ୍ଦମାନଙ୍କ ଶେଷରେ 'କୃତ' ଓ 'ଭୂତ' ପ୍ରୟୋଗ ହୋଇଥାଏ, ସର୍ବତ୍ର ଏହି ଭଳି ଅର୍ଥ ବୁଝିବାକୁ ହେବ । ]

**ଜଡ଼ୁର**—ଗ୍ରା. ବି—ଜଟୁଲ (ଦେଖ)
Jardura Jatula (See)
(ଜଡ଼ୁଲ—ଅନ୍ୟରୂପ)

**ଜଡ଼ୋପାସକ**—ସଂ.ବିଣ.ପୁଂ. (ଜଡ଼ + ଉପାସକ; ଉପପଦ ତତ୍ପୁରୁଷ)—
Jardopāsaka ଜଡ଼ ପ୍ରକୃତିକୁ ଯେ ପୂଜା କରେ—
(ଜଡ଼ୋପାସିକା—ସ୍ତ୍ରୀ) Worshipper of Nature.

**ଜଡ଼ୋପାସନା**—ସଂ. ବି. (ଜଡ଼+ଉପାସନା; ୬ଷ୍ଠୀ ତତ୍)—
Jardopāsanā ପ୍ରକୃତିପୂଜା—Nature worship.

**ଜଡ଼ୌ**—ଦେ. ବି ଓ ବିଣ—ଜଡ଼ଉତ (ଦେଖ)
Jardau Jardauta (See)
(ଜଡ଼ୌତ—ଅନ୍ୟରୂପ)

**ଜଣ**—ଦେ. ବି. (ସଂ. ଜନ)—ବ୍ୟକ୍ତି; ମନୁଷ୍ୟ—
Jana Person; individual.
जना (ଯଥା— ସେ ଜଣକୁ ଡକାଅଣା ଦେଲେ ।)
आदमी

**ଜଣକ** – ଦେ. ବି. (ସଂ. ଜନୈକ)—ଏକଜଣ ମାତ୍ର—
Janaka Only one person.
जनेक
आदमीठा

**ଜଣକିଆ**—ଦେ. ବିଣ—ଜଣିକିଆ (ଦେଖ)
Janakiā Janikiā (See)
(ଯଥା— ଜଣକିଆ ମଶାରି ।)

**ଜଣକେ**—ଦେ. ଅ—୧ । ଜଣେ ଜଣେ; ପ୍ରତ୍ୟେକେ—
Janake 1. Each.
फि जनाके ୨ । ଜଣପିଛା ଜଣପ୍ରତି—
फि आदमीको 2. To each; for each.
ଜଣକେ ବର ଦେଲେ ଯୋଡ଼ାଏ ଯୋଡ଼ାଏ ।
କୃଷ୍ଣସିଂ. ମହାଭାରତ ବନ ।

**ଜଣକେତେ**—ଦେ. (ସର୍ବନାମ)—୧ । କେତେକ (ବ୍ୟକ୍ତି)—
Janakéte 1. Some (persons).
जनकतेक ଜଣ କେତେ ସହଦସ୍ୟ, ସମର୍ଥ, ସହାୟ ସଙ୍ଗ କାମ ସଖା ।
केतना आदम. ଫିଥିବ ଦିନ—ବର୍ଣ୍ଣନଗାଥା ।

୨ । ଅଳ୍ପସଂଖ୍ୟକ ବ୍ୟକ୍ତି—2. A few persons
(ଯଥା—ମୁଁ ବେଶୀ କିଛି ବନ୍ଦୋବସ୍ତ କରୁ ନାହିଁ; ଯାହା କରୁଛି ତହିଁରେ ଜଣକେତେଙ୍କ ବ୍ୟବସ୍ଥା ଚଳି ପାରେ ।)

**ଜଣଜଣ**—ଦେ. (ସର୍ବନାମ) – ୧ । ପ୍ରତ୍ୟେକ ବ୍ୟକ୍ତି—
Janajana 1. Every person; every individual each.
एकएकजना (ଯଥା—୫ ଜଣକୁ ୧୦ ଟଙ୍କା ଦିଆଗଲେ ଜଣଜଣକୁ
फिआदमी କେତେ ଦିଆଯିବ ?)
୨ । ଜଣକ ପରେ ଜଣେ – 2. One after another
(ଯଥା—ପରୀକ୍ଷାର ଫଳ ଅନୁସାରେ ଜଣ ଜଣ ହୋଇ କ୍ଲାସ ଉଠିଲେ ।)
୩ । ପ୍ରତ୍ୟେକ ବ୍ୟକ୍ତି ପୃଥକ୍ଭାବରେ—3 Individually.
(ଯଥା—ଜଣ ଜଣ ହୋଇ ଗ୍ରାମରୁ ବନ୍ଧୁ ଲୋକେ ଆସି ଜମା ହୋଇଗଲେ । )
୪ । ଥରକେ ଜଣେ—4. One at a time.
(ଯଥା—ଦେଖ, ଜଣ ଜଣ ହୋଇ ତା ସଙ୍ଗେ ଲଢ଼ାଇ କର ଏକାବେଳକେ ଜଣକୁ ୫ ଜଣ ଆକ୍ରମଣ କଲେ କିପରି ଚଳିବ ? ).

**ଜଣଜଣକେ**—ଦେ. ସର୍ବନାମ—୧ । ପ୍ରତ୍ୟେକେ—
Janajanake 1. Each (himself or herself .
एकएक (ଯଥା—ସେ ଜଣଜଣକେ ଗୋଟିଏ ଗୋଟିଏ ରାଜା, ତାଙ୍କୁ
फिआदमी କଣ ଇଚ୍ଛି ସିମିତି ଡରୁଛୁ କି ?
୨ । ଜଣ ଜଣ (ଦେଖ)
2. Janajana (See).
ଦେ. ଅ—୧ । ଜଣ ଜଣ କରି; ଥରକେ ଜଣେ ହୋଇ—
1. One person at a time.
(ଜଣଜଣ କରି—ଅନ୍ୟରୂପ) (ଯଥା—ସେ ଜଣଜଣକେ ମହା ଧୁମ୍ ଲଗାଇଲେ—ବୁଝେଇ ବୁଝେଇ ଥକିଗଲି—କେତେ କାହାକୁ ବୁଝାଇବି ? )
୨ । ଜଣପିଛା; ପ୍ରତ୍ୟେକ ବ୍ୟକ୍ତିଙ୍କୁ—
2 For each; to each.
( ଯଥା— ଜଣଜଣକେ ଅଧ ସେର ଲେଖାଏ ଚାଉଳ ଦେଉଛୁ; ଅଣ୍ଟିବ ନାହିଁ ? )
୩ । ଅନ୍ୟୋନ୍ୟରେ—3 Mutually.
(ଯଥା —ଜଣଜଣକେ ପେଲପେଲି ହୋଇ ଏବେ ସମସ୍ତେ ନଈରେ ପଡ଼ି ବୁଡ଼ିଲେଣି—ମୁଁ ବା କାହାକୁ ସମ୍ଭାଳିବି ? )

**ଜଣପଣ**— ଦେ. ବି (ସଂ. ଜନ)— ୧ । ଯୋଗ୍ୟତା—
Janapana 1. Ability.
୨ । ମନୁଷ୍ୟର ସ୍ୱାତନ୍ତ୍ର୍ୟ—2. Individuality.

**ଜଣପିଛା**—ଦେ. ଅ—ପ୍ରତ୍ୟେକ ବ୍ୟକ୍ତିଙ୍କ ଅଂଶରେ—
Janapichhā In the share of each person.
(ଯଥା—୨ ଜଣଙ୍କୁ ଟ ୨୦୧ ଦେଲେ ଜଣପିଛା କେତେ ପଡ଼ିଲା ?)

| ୧ | ଈ | ଓ | ର,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଯ୍ | ଉ୍ଅ | ୟ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ଯ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଥ | ଝ | ନ୍ |

**ଜଣା**—ଦେ. ବିଣ (ସଂସ୍କୃତ. ଜ୍ଞା ଧାତୁ=ପ୍ରାକୃତ ଜାଣ ଧାତୁ)—
Jaṇā ୧ । ବିଦିତ; ଜ୍ଞାତ—1. Known.
जाना ବାଳୁ ବାଳଣା ଜଣା ସୁଗ୍ରୀବେ ରଣାଙ୍ଗଣାନ୍ତ ହୋଇ ଅଜଣା ।
**मालूम** ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।
୨ । ସୁବିଦିତ—2. Well known.
୩ । ପରିଚିତ—3. Acquainted with.
जानान ଦେ. ବି—୧ । ଜ୍ଞାନ—1 Knowledge.
**जान्** ୨ । ଇନ୍ଦ୍ରିୟଦ୍ୱାରା ବୋଧ—2 Perception.
୩ । ପରିଚୟ—3. Acquaintance.
୪ । ବିଜ୍ଞାପନ; ଏତଲା—4 Information.

**ଜଣାଇବା**—ଦେ. କ୍ରି ( ସଂ. ଜ୍ଞା ଧାତୁ ଣିଚ୍, ଜ୍ଞାପି ଧାତୁ; ଜାଣିବାର ଣିଜନ୍ତରୂପ )—୧ । ଜ୍ଞାପନକରିବା—
Jaṇāibā 1. To notify; to inform.
जानान
**आगा करना; जनाना** ୨ । ଦେବତା ବା ରାଜା ଆଦିଙ୍କ ନିକଟରେ ନିବେଦନ କରିବା—
( ଜଣେଇବା—ଅନ୍ୟରୂପ )
2. To represent to a superior or Deity.
୩ । ପ୍ରାର୍ଥନା କରିବା—3. To pray; to solicit.
[ଦ୍ର ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

**ଜଣା କରିବା**—ପ୍ରାଦେ (ଗଡ଼ଜାତ; ଗଞ୍ଜାମ) କ୍ରି—ଜଣାଇବା (ଦେଖ)
Jaṇā karibā Jaṇāibā (See)
ପ୍ରଣମି ବିନୟେ ଜଣାକଲେ ଏ ଗିରିଙ୍କୁ—ତୁଳସୀ. ବନ୍ଧମ ସମାପ୍ତ. ଅବ ।

**ଜଣାଜଣି**—ଦେ. ବିଣ—୧ । ସାଧାରଣରେ ଜ୍ଞାତ—
Jaṇājaṇi 1. Known commonly.
जानाजानि ୨ । ପରସ୍ପର ଚିହ୍ନାଚିହ୍ନି—
2. Mutually recognising.
ଏହି କାଳରେ ବାଲୁ ପୁଅ ସଖା ମିଳି
ଜଣାଜଣି ନୋହି କଥାଇ ଜୋକେ ଗାଡ଼—କୃଷ୍ଣସିଂହ. ମହାଭାରତ ସ୍ୱର୍ଗ ।
ଦେ. ବି—୧ । ପରସ୍ପର ଚିହ୍ନାଚିହ୍ନି ହେବା—
1. Mutual recognition.
୨ । ରାଜାଆଦିଙ୍କୁ କୌଣସି ବିଷୟର ଜ୍ଞାପନ—
2. Information given to an authority.

**ଜଣାଣ**—ଦେ. ବି. (ସଂ. ଜ୍ଞାପନ)—୧ । ଦେବତା ବା ରାଜାଆଦିଙ୍କ ନିକଟରେ ସ୍ତୁତି—1 Prayer.
Jaṇāṇa
आर्जि ବାର୍ତ୍ତା ଯା ଲେଖିଛି ଅଜ୍ଞାପତ୍ର ନୋହେ
**अरज, जनाब** ଜଣାଣ ସେ ଦେଇଥିବ । ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।
୨ । ପ୍ରାର୍ଥନା; ନିବେଦନ—2. Supplication.

**ଜଣାଣ କରିବା**—ଦେ. କ୍ରି—ଦେବତା ବା ରାଜା ଆଦିଙ୍କୁ କୌଣସି ବିଷୟ ଜଣାଇବା—To represent a matter to a king or Deity.
Jaṇāṇa karibā
आर्जि करा
**अरज करना** ଜଣାଣ ଜାର ମା ବିଭୁଚରଣେ । ମଧୁସୂଦନ ।

**ଜଣାନନ୍ଦ**—ଦେ. ବି. (ପ୍ରାଚୀନ) (ସଂ. ଜ୍ଞାନାନନ୍ଦ)—୧ । ପରମାତ୍ମା—
Jaṇānanda 1 The Divine Essence.
୨ । ଜୀବାତ୍ମା—2. The animal soul.
୩ । ଜ୍ଞାନଲାଭଦ୍ୱାରା ଆନନ୍ଦ ଲାଭ କରିବା ପୁରୁଷ—
3 A person who attains pleasure in securing knowledge.
ଠୂଳରୂପୀ ବସ୍ତୁ କି ଦାଇବ ଜଣାନନ୍ଦ । ପ୍ରାଚୀ. ବ୍ରହ୍ମନନ୍ଦପଣଗୀତା ।

**ଜଣାବଇ**—ଦେ. କ୍ରି. ( ପ୍ରାଚୀନ ) [ ଜଣାଇବା କ୍ରିୟାର ବର୍ତ୍ତମାନକାଳ ଅନ୍ୟ ପୁରୁଷ ଅମାନ୍ୟାର୍ଥକ ଏକବଚନ (ସେ) କର୍ତ୍ତା ସଙ୍ଗେ ଯୁକ୍ତ]—ବିକଳ୍ପରୂପ (ସେ) ଜଣାଏ; (ସେ) ଜ୍ଞାପନ କରେ—
Jaṇābai
(he or she) Intimates
ସଦଳା ସଖୀ ଜଣାବଇ ତା ନିଦେଶରେ । ପ୍ରାଚୀ ରସବାରିଧି ।

**ଜଣାବନ୍ତି**—ଦେ. କ୍ରି. (ପ୍ରାଚୀନ)—[ଜଣାଇବା କ୍ରିୟାର ବର୍ତ୍ତମାନକାଳ ତୃତୀୟପୁରୁଷ ବହୁବଚନ (ସେମାନେ) କର୍ତ୍ତା ସଙ୍ଗେ ଅନ୍ୱିତ]-(ବିକଳ୍ପରୂପ)-(ସେମାନେ) ଜଣାନ୍ତି; ଜ୍ଞାପନ କରନ୍ତି—(they) Intimate.
Jaṇābanti
କର ଯୋଡ଼ି ଜଣାବନ୍ତି ଘନଚନ୍ଦ୍ର ଦାସ । ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।

**ଜଣାମଣା**—ଦେ. ବି. (ସଂ. ଜ୍ଞାପନ+ମନନ)—ଜଣାଣ (ଦେଖ)
Jaṇā-maṇā Jaṇāṇa (See)

**ଜଣାଶୁଣା**—ଦେ. ବି. (ସଂ. ଜ୍ଞା ଧାତୁ ଓ ଶ୍ରୁ ଧାତୁ)—୧ । ଘନିଷ୍ଠତା—
Jaṇāśuṇā 1. Intimacy.
जानाशुना ୨ । ଘନିଷ୍ଠ ପରିଚୟ—
**जानपहचान** 2. Intimate acquaintance.
ଦେ. ବିଣ—୧ । ସୁପରିଚିତ—1. Well acquainted.
୨ । ସୁପରିଜ୍ଞାତ; ପ୍ରସିଦ୍ଧ—2. Well known; famous.
ବୁଡ଼ିଆ ହାଟରେ ପଡ଼ି ହେଲି ମୁଁ କଣା
ଜଣାଶୁଣା କାଠଘାଠ ସବୁ ଅଜଣା । ଭିକାରୀ. ଗୀତିଲହରୀ ।

**ଜଣିଆଁ**—ଦେ. ବିଣ. (ସଂ. ଜନ) (ଅନ୍ୟ ସଂଖ୍ୟାବାଚକ ଶବ୍ଦ ପରେ ଯୁକ୍ତ ଯଥା—ଚିକାଜଣିଆଁ ମଶାଣି; ଦି ଜଣିଆଁ ଖଟ)—ପୂର୍ବନିର୍ଦ୍ଦିଷ୍ଟସଂଖ୍ୟକ ବ୍ୟକ୍ତିଙ୍କ ବ୍ୟବହାରୋପଯୋଗୀ ବା ତାଙ୍କ ପାଇଁ ଅଭିପ୍ରେତ—(in compound) Intended or sufficient for so many persons.
Janiāñ
जनेर
**आदमीको**

**ଜଣିକିଆ**—ଦେ ବିଣ. (ସଂ. ଜନୈକ)—ଏକଜଣର ଯୋଗ୍ୟ; ଏକଜଣର ବ୍ୟବହାର୍ଯ୍ୟ—Fit for one person; sufficient for the needs of one person; single.
Janikiā
(ଯଥା—ଜଣିକିଆ ଖଟ; ଜଣିକିଆ ମଶାଣି ।)

**ଜଣେ**—ଦେ. ସର୍ବନାମ (ସଂ. ଜନୈକ)—୧ । ଜନୈକ; ଏକଜଣ ମାତ୍ର—
Jaṇe 1. Only one person
जनेक ୨ । ଗଣ୍ୟମାନ୍ୟବ୍ୟକ୍ତି; ପ୍ରଧାନ ବ୍ୟକ୍ତି—
**एक** 2. Chief person; a person of importance.
(ଯଥା—ତୁ ଆପଣାକୁ ଜଣେ ବୋଲି ଭାବିଲୁଣି)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚଢ଼ି ଅକ୍ଷର ଓ ମାନା ଏବଂ ୨ ଚିହ୍ନିତ ଅକ୍ଷର ଓ ମାଶା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପରିବର୍ତ୍ତେ ୨ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଂଖା'ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଳ୍‌ବଡ଼' ଦେଖିବେ

ଜଣେଜଣ—ଦେ. ଅ.—ପ୍ରତ୍ୟେକଙ୍କୁ; ଜଣଜଣ କରି—
Jane-jana To each.

ବିକେ ବେଲେ ବନ୍ଧୁବାନ ସ୍ୱ ଅଳଙ୍କାର ଧନ
ସନ୍ତୋଷ କରାଇ ଜଣେ ଜଣ । ଜଗନ୍ନାଥ. ବଡ଼ଶ୍ୱରସାମୁଣ ।

ଜଣେଜଣେ—ଦେ ଅ—୧ । ପ୍ରତ୍ୟେକ ବ୍ୟକ୍ତି; ବ୍ୟକ୍ତିଗତ ଭାବରେ; ଜଣ ଜଣ କରି—1. Individually.
Jane-jane

( ଯଥା—ଜଣେ ଜଣେ ହୋଇ ପାଞ୍ଚ କଥା କହିଲେ ମୁଁ ତାହାଙ୍କ ନାଶ୍ଚୁର । )

୨ । ଜଣଙ୍କ ପରେ ଜଣେ—
2. One after the other.

( ଯଥା—ଜଣେ ଜଣେ ହୋଇ ହାତ ପଠାଅ, ନୋହିଲେ କାହାରିକୁ କୋଷ୍ ଦେବ ନାହିଁ । )

ଜତ୍‌କତ୍—ପ୍ରାଦେ. (ସମ୍ବଲପୁର) କି. ବଣ. ( ସ. ଯତ୍ର ଓ କୁତ୍ର )—
Jat-kat ଏଣେ ତେଣେ; ଯହିଁ ତହିଁ; ଯାହିଁ ତାହିଁ—
Here and there; anywhere.

( ଯଥା—ସେ ଜତ୍‌କତ୍ ବୁଲୁଛି କାହିଁ ଯେ । )

ଜତ୍‌ନି ପ୍ରାଦେ. (ସମ୍ବଲପୁର) ବ—ଖଳି ( ଦେଖ )
Jat-ni Khali ( See )

ଜତୁ—ସ. ବ. ( ଜନ୍ ଧାତୁ + କର୍ତ୍ତୃ. ଉ; ନ ସ୍ଥାନରେ ତ ଆଦେଶ )—
Jatu ୧ । ଲାଖ; ଜଉ—1. Lac; shell-lac.
୨ । ଅଲକ୍ତ; ଅଲତା; ଯାବକ—2. Red dye or pigment for painting the feet of females.

ଜତୁକ—ସ. ବ. ( ଜତୁ + ସଜ୍ଞାର୍ଥେ. କ )—
Jatuka ୧ । ହେଙ୍ଗୁ—1. Asafoetida.
୨ । ଲାକ୍ଷା—2. Lac.
୩ । କୌଣସି କୌଣସି ବ୍ୟକ୍ତିଙ୍କ ଶରୀରରେ ଜନ୍ମକାଳରୁ ଦେଖାଯିବା ଜାଇମଦା; ଜଡ଼ୁଲ—
3. A mole on the body; nævus.

ଜତୁକା—ସ. ବ—ଗୃହଚଟକା; ଚର୍ମଣି ଚଢ଼େଇ—
Jatukā House-bat; the smaller bat.

ଜତୁନୀ—ସ. ବ—ଜତୁକା ( ଦେଖ )
Jatuni Jatukā ( See )

ଜତୁମଣି—ସ. ବ—ଦେହରେ ଦେଖାଯିବା କଳା ବା ନାଲି ଜାଇମଦା—
Jatumaṇi A mole on the body; nævus.

ଜତୁରସ—ସ. ବ—ଅଲତା— Red dye for painting the feet of females.
Jaturasa

ଜତ୍ରୁ—ସ. ବ. ( ଜନ୍ ଧାତୁ + କର୍ତ୍ତୃ ସଜ୍ଞାର୍ଥେ. ରୁ )—
Jatru ସ୍କନ୍ଧସନ୍ଧି ହାଡ଼; କଣ୍ଠାସ୍ଥି—
The clavicle; collar-bone,

ଜଥା—ବୈଦେ. ବ. ( ତେଲୁଗୁ. ଜଥା ) —୧ । ପିନ୍ଧିବା ଲୁଗା—
Jathā 1. A single cloth for wearing.

୨ । ପିନ୍ଧା ଓ ପାଛୁଡ଼ା ଏକତ୍ର ଲାଗି ବୁଣା ହୋଇଥିବା ଲୁଗା; ଜୋଡ଼ି; ଏକତ୍ର ବୁଣା ହୋଇଥିବା ଲୁଗାଗୁଡ଼ିକର ଜୋଡ଼ି-
2. A pair of wearing cloths ( lower and upper ) woven in one length.

ଜଦା—ଦେ. ବ—ଜଦିବା କାର୍ଯ୍ୟ; ତୁଳନା କରିବା—
Jadā The act of comparing two things with each other.

ଜଦାଇବା—ଦେ. କି—ଜଦିବା କ୍ରିୟାର ପ୍ରୟୋଜକ ରୂପ—
Jadāibā Causative of Jadibā.
(ଜଦେଇବା—ଅନ୍ୟରୂପ)

ଜଦାଜଦି—ଦେ. ବ—ପରସ୍ପର ତୁଳନା କରିବା କର୍ମ—
Jadājadi Mutual comparison.
ବଣ.—ପରସ୍ପର ତୁଳନା କରୁଥିବା—
Comparing with each other.

ଜଦିବା—ଦେ. କି—୧ । ତୁଳନା କରିବା—
Jadibā 1. To compare; to countercheck.
ତୁଳା ୨ । ଦୁଇଟି ବସ୍ତୁକୁ ବାଛିବା—2 To compare the dimeusions of two things.
**ତୁଳନା**

ଜନ୍ (ଧାତୁ) - ସ—ଜନ୍ମିବା; ଜାତ ହେବା—
Jan (root) To be born or produced.
(ଜନ ଧାତୁ—ଣିଜନ୍ତ ରୂପ)

ଜନ୍—ପ୍ରାଦେ. (ସମ୍ବଲପୁର) ବ—ଚନ୍ଦ୍ର; ଜହ୍ନ
Jan The moon.

ଜନ୍‌ନା—ବୈଦେ. ବ. ସ୍ତ୍ରୀ—ଜନାନା ( ଦେଖ )
Jan-nā Janānā (See)

ଜନ୍ ବିମ୍ସ—ବୈଦେ. ବ (ନାମ) (ଇଂ)—ଏକାଧିକ ଭାରତୀୟ ଭାଷାରେ
Jan bims ସୁପଣ୍ଡିତ ଓ ହିନ୍ଦୀ, ପଞ୍ଜାବୀ, ମହାରାଷ୍ଟ୍ରୀ, ଗୁଜରାଟୀ, ସିନ୍ଧୀ ଓ ବଙ୍ଗଳା ଭାଷାମାନଙ୍କ ତୁଳନାମୂଳକ ବ୍ୟାକରଣ ଓ ଭାରତୀୟ ଭାଷାତତ୍ତ୍ୱବିଦ୍ୟାର ବିଷୟକ ଗ୍ରନ୍ଥର ଲେଖକ ସ୍ୱର୍ଗୀୟ ଇଂରାଜ ମହାଶୟ—Name of the late author of modern outlines of Indian philology and Comparative grammar of modern Indian languages ( viz. Hindi, Panjabi, Sindhi, Gujarati, Marhattee, Bengalee and Oria).

[ ଦ୍ର—ଏ କେତେ କାଳ କଟକର କଲେକ୍ଟର ଓ ଓଡ଼ିଶାର କମିସନର୍ କର୍ମ କରିଥିଲେ । ]

ଜନ୍‌ହ—ଦେ. ବ. ( ସ. ଜ୍ୟୋତ୍ସ୍ନା. ପ୍ରାକୃତ. ଜୋନାଇ )—
Jan-ha ଚନ୍ଦ୍ର—The moon.

ଦେଖ ଜ୍ୟୋତିତ କାନନ, ଶରଦ ପୂର୍ଣ୍ଣିମାର ଜହ୍ନ । ଭୂପତି, ପ୍ରେମପଞ୍ଚାମୃତ ।

ଜନ—ସ. ବ. ( ଜନ୍ ଧାତୁ + କର୍ତ୍ତୃ. ଅ )—
Jana ୧ । ମନୁଷ୍ୟ; ଲୋକ; ବ୍ୟକ୍ତି—1. Person; man.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଯ୍ୟ | ଡଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲ୍ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ |

୨ । ଯେ ଦୈନିକ ମଜୁରି ନେଇ ଅନ୍ୟର କର୍ମ କରେ—
2. Day-labourer.

୩ । ଭୁବନ—
3. The world; the terrestrial globe.

୪ । ଜନଲୋକ—4. One of the terrestrial worlds according to Hindu mythologies.

[ ଦ୍ର—ହିନ୍ଦୁଶାସ୍ତ୍ରୋକ୍ତ ସପ୍ତଭୁବନ ମଧ୍ୟରୁ ଏହା ମହଃଲୋକର ପରବର୍ତ୍ତୀ ଓ ତପଃଲୋକର ପୂର୍ବବର୍ତ୍ତୀ ଭୁବନ ଅଟେ । ଏଥିରେ ବ୍ରହ୍ମାଙ୍କ ମାନସ ପୁତ୍ର ଓ ଊର୍ଦ୍ଧ୍ୱରେତା ଋଷିମାନେ ବାସ କରନ୍ତି—ଜ୍ଞାନେନ୍ଦ୍ର ]

୫ । ଅସୁର ( ଜ୍ଞାନେନ୍ଦ୍ର )—4. Demon.

୬ । ଇତର ଲୋକ—6. One of the people.

ଗ୍ରା. ବି. ( ସଂ. ଜ୍ୟୋତ୍ସ୍ନା ) ଜହ୍ନ; ଜନମାମୁ ( ଦେଖ )
The moon; Janamāmu ( See )

**ଜନକ୍**—ପ୍ରାଦେ. (ସମ୍ବଲପୁର) ବିଣ (ସଂ ଜ୍ୟୋତ୍ସ୍ନାମୟ)—ଜ୍ୟୋତ୍ସ୍ନାମୟ—
Janak Moon-lit.

**ଜନକ୍‌ରାଏତ୍**—ପ୍ରାଦେ. ( ସମ୍ବଲପୁର) ବି.—ଜହ୍ନରାତି; ଶୁକ୍ଳପକ୍ଷ ରାତି—
Janak-rāet n-lit night

**ଜନକ**—ସଂ. ବି. ପୁଂ. (ଜନ୍ ଧାତୁ ଣିଚ ଜନି ଧାତୁ=ଜନ୍ମ କରିବା+ କର୍ତ୍ତୃ. ଅକ)—୧ । ପିତା—1. Father.
Janaka
(ଜନକା—ସ୍ତ୍ରୀ) ୨ । (ନାମ) ବିଦେହ ବା ମିଥିଳାର ରାଜା; ସୀତାଙ୍କ ପାଳକ ପିତା—2. King Janaka, the foster-father of Sitā.

[ ଦ୍ର—ନିମିରାଜାଙ୍କର ମୃତ ଶରୀରକୁ ଦେବଙ୍କ ବ୍ରାହ୍ମଣମାନେ କୁଶରେ ମନ୍ଥନ କଲେ; ତହିଁରୁ ଜନକ ଜାତ ହେଲେ । ଭାଗବତ—୧୦ମ ସ୍କନ୍ଧ । ]

୩ । (ପ୍ରଜାମାନଙ୍କର ପିତାତୁଲ୍ୟ ଥିବାରୁ)—ରାଜା—
3. King (the father of his subjects).

ସଂ. ବିଣ. ପୁଂ. (ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ ହୁଏ ଯଥା—ଦୁଃଖ-ଜନକ, ଆନନ୍ଦଜନକ)—୧ । ଜନ୍ମଦାତା—
1. Begetting; producing.

୨ । ଉତ୍ପାଦକ; ଯାହା ଘଟାଏ—2. Causing.

**ଜନକଜନନୀ**—ସଂ. ବି. (ଜନକ+ଜନନୀ; ଦ୍ୱନ୍ଦ୍ୱ ସମାସ)—ପିତାମାତା—
Janaka-janani Parents; father and mother.

**ଜନକ ତନୟା**—ସଂ. ବି. ସ୍ତ୍ରୀ. (ଜନକ+ତନୟା; ୬ଷ୍ଠୀ ତତ୍)—
Janaka-tanayā ବୈଦେହୀ; ସୀତା—Sitā, the foster-daughter of Janaka.

(ଜନକକନ୍ୟା; ଜନକନନ୍ଦିନୀ; ଜନକସୁତା—ଅନ୍ୟରୂପ)

**ଜନକତ୍ୱ**—ସଂ ବି. ( ଜନକ+ଭାବାର୍ଥେ ତ୍ୱ )—
Janakatwa ୧ । ଉତ୍ପାଦକତା; କାରଣତା—
1. The state of being the producer or cause.

୨ । ପିତୃତ୍ୱ; ସନ୍ତାନର ମାତାଙ୍କ ସ୍ୱାମିତ୍ୱ—
2. Father-hood of a child.

୩ । ଉତ୍ପାଦନ ଶକ୍ତି—3. Productiveness.

**ଜନକ ଦେଈ**—ଗ୍ରା. ବି. ସ୍ତ୍ରୀ. (ସଂ. ଜନକ ଓ ଦେଖ)—
Janaka dei ଜାନକୀ; ସୀତା - Sitā.

**ଜନକପୁର**—ସଂ ବି—ମିଥିଳାର ପ୍ରାଚୀନ ରାଜଧାନୀ; ଜନକରାଜାଙ୍କ
Janaka-pura ରାଜଧାନୀ—The capital of king Janaka.

[ ଦ୍ର—ଏହା ନେପାଳର ତରାଇ ପ୍ରଦେଶରେ ଅବସ୍ଥିତ ବୋଲି ପଣ୍ଡିତମାନେ ଅନୁମାନ କରନ୍ତି । ]

ଦେ. ବି—ପୁରୀ ଗୁଣ୍ଡିଚା ମନ୍ଦିରର ଅନ୍ୟନାମ—
A name of the Gundichā-temple of Puri.

[ ଦ୍ର—ଏଠାରେ ପ୍ରଥମେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତିନି ମୂର୍ତ୍ତି ନିର୍ମିତ ହୋଇଥିଲେ ।
ଜଗବନ୍ଧୁ—ପ୍ରାଚୀନ ଉତ୍କଳ । ]

**ଜନକାରି**—ସଂ. ବି. ( ଜନ+କୃ ଧାତୁ=ବିକ୍ଷେପ କରିବା+କର୍ମ
Janakāri ଇନ୍; ୧ମା. ୧ବ)—ଅଲତା ବା ଅଲତାରଞ୍ଜିତ ତୁଳା—
Thin pads of cotton impregnated with lac or red dye.

**ଜନକାତ୍ମଜା**—ସଂ. ବି. ସ୍ତ୍ରୀ. ( ଜନକ+ଆତ୍ମଜା; ୬ଷ୍ଠୀ ତତ୍ )—
Janakātmajā ଜନକତନୟା (ଦେଖ)
Janaka-tanayā (See)

**ଜନଗଣନା**—ସଂ. ବି. (ଆଧୁନିକ ବ୍ୟବହାର )—ରାଜ୍ୟର ଲୋକଗଣତି;
Jana-gananā ସେନ୍ସସ୍—Census.

**ଜନଙ୍ଗମ**—ସଂ. ବି. (ଜନ=ଇତର ଲୋକ+ଗମ୍ ଧାତୁ+କର୍ତ୍ତୃ. ଅ)—
Janangama ଚଣ୍ଡାଳ—A man of the lowest caste amongst the Hindus.

**ଜନଚକ୍ଷୁଃ**—ସଂ. ବି. (ଜନ+ଚକ୍ଷୁଃ; ୬ଷ୍ଠୀ ତତ୍; ଏ ସଂସାରର ଲୋକ
Jana-chakshuh ମାନଙ୍କ ଚକ୍ଷୁଃସ୍ୱରୂପ ପ୍ରକାଶକ ଥିବାରୁ)—
ସୂର୍ଯ୍ୟ—The sun.

**ଜନଚର୍ଚ୍ଚା**—ସଂ. ବି. (ମ. ପ. ଲୋ; ଜନମାନଙ୍କର ମଧ୍ୟରେ ପ୍ରଚଳିତ
Jana-charchhā ଚର୍ଚ୍ଚା)—୧ । ଜନପ୍ରବାଦ (ଦେଖ)
1. Jana-prabāda (See)

**ଜନତା**—ସଂ.ବି. (ଜନ+ସମୂହାର୍ଥେ ତା)—୧ । ବହୁଲୋକଙ୍କ ସମାଗମ;
Janatā ଗହଳି—Crowd; a multitude or gathering of people.

୨ । ମନୁଷ୍ୟତା—2. Manliness.

୩ । ଉତ୍ପାଦନ—3. Production.

୪ । ପୃଥିବୀର ମାନବସକଳ—4. Mankind.

**ଜନତ୍ରା**—ସଂ. ବି. (ଜନ+ତ୍ରୈ ଧାତୁ=ରକ୍ଷା କରିବା+କର୍ତ୍ତୃ. କ୍ୱିପ୍;
Janatrā ଯାହା ଲୋକଙ୍କୁ ରୌଦ୍ରାଦିରୁ ରକ୍ଷା କରେ)—
ଛତା (ହି. ଶବ୍ଦସାଗର)—Umbrella.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ ।

**ଜନଦେବ**—ସଂ. ବି. (୬ଷ୍ଠୀ ତତ୍; ଜନ+ଦେବ)—
Jana-deba ୧ । ରାଜା; ନରପତି (ହି. ଶବ୍ଦସାଗର)—1. King.
୨ । (ନାମ) ମହାଭାରତୋକ୍ତ ମିଥିଲାର ଜଣେ ଜନକବଂଶୀୟ ରାଜା—
2. Name of a king of Mithilā.
[ ଦ୍ର—ଏ ରାଜା ମହର୍ଷି ପଞ୍ଚଶିଖଙ୍କ ଉପଦେଶ ଗ୍ରହଣ କରି ମୋକ୍ଷ ପ୍ରାପ୍ତ ହୋଇଥିଲେ—ହି. ଶବ୍ଦସାଗର । ]

**ଜନଧା**—ସଂ. ବି. ( ଜନ+ଧା ଧାତୁ+କର୍ତ୍ତୃ. କ୍ୱିପ୍ )—
Janadhā ଅଗ୍ନି; ନିଆଁ (ହି. ଶବ୍ଦସାଗର)—Fire.

**ଜନନ**—ସଂ. ବି. (ଜନ୍ ଧାତୁ ଣିଜନ୍ତ ଜନି ଧାତୁ=ଜନ୍ମାଇବା+ଭାବ. ଅନ)—୧ । ଉତ୍ପତ୍ତି; ଜନ୍ମ—
Janana
(ବିପରୀତ—ମରଣ) 1. Birth; production.
ଭଗ୍ୟ ଏ ଜନ ଅଛି. ଜନନରୁ ସଖି, ଜାଣରେ ।
କବିସୂର୍ଯ୍ୟ. କଶୋରଚନ୍ଦ୍ରା ଭ ଗୀତ ।
୨ । (+କର୍ତ୍ତୃ. ଅନ) ପିତା; ଜନକ - 2. Father.
୩ । ଦ୍ୱିଜାତିଙ୍କର ଜାତକର୍ମରୂପ ସଂସ୍କାର—
3. A rite observed by the twice-born castes amongst the Hindus at a child's birth.
୪ । ଉତ୍ପାଦକ—4. Producer.
୫ । (+ଅଧିକରଣ ଅନ) ଗୋତ୍ର; ବଂଶ—
5. Family; race; lineage.
୬ । ସର୍ବପିତା ପରମେଶ୍ୱର—6. God.
୭ । ଜନ୍ମ କରିବା—7. Giving birth.

**ଜନନବିପର୍ଯ୍ୟୟ**—ସଂ. ବି. (ଆଧୁନିକ; ଜୀବବିଜ୍ଞାନ ପରିଭାଷା)—
Janana-biparjyaya ୧ । ପୁରୁଷପରମ୍ପରା—
1. Successive generations.
୨ । ଉତ୍ପତ୍ତିକ୍ରମର ବୈପରୀତ୍ୟ—2. Inversion of the order of generation or production.

**ଜନନା**—ବୈଦେ. ବି—ଜନାନା (ଦେଖ)
Jananā Janānā (See)

**ଜନନାଶୌଚ**—ସଂ. ବି. (ମ. ପ. ଲୋ ଜନନ+ଅଶୌଚ ଜନନ-
Jananāśaucha ଜନିତ ଅଶୌଚ)—ଛୁତିକଅ; ସୂତକାଶୌଚ—
(ବିପରୀତ—ମରଣାଶୌଚ) The uncleanness (for the first 10 days) observed by the kinsmen of a new-born infant.

**ଜନନି**—ସଂ. ବି. (ଜନ ଧାତୁ+ଭାବ ଅନି) ୧ । ଉତ୍ପତ୍ତି; ଜନ୍ମ—
Janani 1. Birth.
୨ । (+ଅଧିକରଣ. ଅନି) ବଂଶ—2. Race; family.
୩ । ଗନ୍ଧଦ୍ରବ୍ୟବିଶେଷ—3 A kind of scent.

**ଜନନୀ**—ସଂ ବି. ସ୍ତ୍ରୀ (ଜନ ଧାତୁ+କର୍ତ୍ତୃ ଅନ+ସ୍ତ୍ରୀ. ଈ)—
Janani ୧ । ଗର୍ଭଧାରିଣୀ; ମାତା—1. Mother.
୨ । ଦୟା—2. Mercy; kindness.
୩ । ଯୂଥିକା; ଯୂଈଫୁଲ—3. Jasmine.
୪ । ମଞ୍ଜିଷ୍ଠା—4. Indian madder.
୫ । ଚେମେଣ୍ଡୀ—5. House-bat.
ସଂ ବିଣ. ସ୍ତ୍ରୀ—ଉତ୍ପାଦିକା—Producing.

**ଜନନୀୟ**—ସଂ. ବିଣ—୧ । (ଜନ ଧାତୁ+କର୍ମ ଅନୀୟ)—ଜନ୍ମ ହେବାର
Jananiya ଯୋଗ୍ୟ—1. Fit to be born or produced.
୨ । (ଜନ ଧାତୁ+କର୍ମ ଅନୀୟ ) ଜନ୍ମ କରିବାର ଯୋଗ୍ୟ—
2 Fit to be given birth to.

**ଜନପଦ**—ସଂ. ବି. (୬ଷ୍ଠୀ ତତ୍; ଜନ+ପଦ=ସ୍ଥାନ)—୧ । ଦେଶ;
Jana-pada ଲୋକାଳୟ—1. An inhabited country; a district; a country; region.
୨ । ଲୋକ; ଜାତି; କୌଣସି ଦେଶର ଅଧିବାସୀଗଣ—
2. Nation; people.
୩ । ଲୋକସମାଜ—3 A community.

**ଜନପାଦ**—ସଂ. ବି. (ଜନପଦ+ସ୍ୱାର୍ଥେ. ଅ )—ଜନପଦ (ଦେଖ)
Jana pāda Janapada (See)

**ଜନପ୍ରଜା**—ଦେ. ବି. (ସହଚର ଶବ୍ଦ; ଜନ+ପ୍ରଜା)—ରାଜାଙ୍କ ପ୍ରଜାବର୍ଗ—
Jana-prajā The subjects of a king.
ଅନନ୍ଦ ମନ ଜନପ୍ରଜା
ଧ୍ରୁବ ସପତ ଦ୍ୱୀପେ ରାଜା । ଜଗନ୍ନାଥ. ଭାଗବତ ।

**ଜନପ୍ରବାଦ**—ସଂ. ବି· (ମ. ପ. ଲୋ; ଜନମାନଙ୍କ ମଧ୍ୟରେ ପ୍ରଚଳିତ
Jana prabāda ପ୍ରବାଦ)—୧ । ଲୋକପ୍ରବାଦ; ଗୁଜବ;
(ଜନବାଦ—ଅନ୍ୟରୂପ) ଜନଶ୍ରୁତି—1. Rumour; a popular report.
୨ । କିମ୍ବଦନ୍ତୀ—2. Tradition.
୩ । ଲୋକନିନ୍ଦା; ଲୋକାପବାଦ—
3. Public scandal.

**ଜନପ୍ରବାହ**—ସଂ. ବି. (୬ଷ୍ଠୀ ତତ୍; ଜନ+ପ୍ରବାହ)—୧ । ବହୁଲୋକ
Jana-prabāha ଯିବା ଆସିବା କରୁଥିବା ଯୋଗୁଁ ଭିଡ଼—
1. A crowded rush of people.

**ଜନପ୍ରାଣୀ**—ଦେ. ବି. (ସହଚର ଶବ୍ଦ; ଜନ+ପ୍ରାଣୀ)—ମନୁଷ୍ୟ କିମ୍ବା
Jana-prāṇi ଅନ୍ୟ ଜୀବ—Any living being; man or animal.
ଜନପ୍ରାଣୀ ପାଖରେ ନାହିଁ । ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଜନପ୍ରିୟ**—ସଂ. ବିଣ. ( ବହୁବ୍ରୀହି, ଜନ+ପ୍ରିୟ)—୧ । ଲୋକବତ୍ସଳ—
Jana-priya 1. Philanthropic; loving the people.
୨ । ଲୋକପ୍ରିୟ; ସାଧାରଣଙ୍କର ପ୍ରୀତିଭାଜନ—
(ଜନବଲ୍ଲଭ—ଅନ୍ୟରୂପ) 2. Popular; beloved by the people.
ସଂ. ବି.—୧ । ଧନିଆକୁ; ଧନିଆଁ—
1. Coriander seed (Apte).

| ୯ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଫ୍ | ଡ଼ଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଡ଼ | ଳ୍ହ |

୨ । ଶିବ; ମହାଦେବ—
2. An epithet of God Śiba (Apte).

ଜନବରୀ—ଗ୍ରା. ବୈଦେ. ବି. (ଇଂ ଜାନୁଆରି)—ଜନୋଶ୍ରି; ଜାନୁଏରି ମାସ—The month of January.
Janabari
ଜାନୁଆରୀ
जनवरी

ଜନବଲ୍ଲଭ—ସଂ. ବିଣ (୬ଷ୍ଠୀ ତତ୍; ବହୁବ୍ରୀହି; ଜନ+ବଲ୍ଲଭ)—ଜନପ୍ରିୟ (ଦେଖ) Janapriya (See)
Jana-ballabha
ବି.—ଶ୍ୱେତ ରୋହିତକ (ହି. ଶବ୍ଦସାଗର)—
The white variety of Rohitaka tree.

ଜନବହୁଳ—ସଂ. ବିଣ. (ବହୁବ୍ରୀହି; ଜନ+ବହୁଳ)—ଜନାକୀର୍ଣ୍ଣ; ବହୁଲୋକପୂର୍ଣ୍ଣ—Populous.
Jana-bahula

ଜନବାଦ—ସଂ. ବି. (୬ଷ୍ଠୀ ତତ୍; ଜନ+ବାଦ)—ଜନପ୍ରବାଦ (ଦେଖ) Jana-prabāda (See)
Jana bāda
(ଜନେବାଦ—ଅନ୍ୟରୂପ)

ଜନବାସ—ସଂ. ବି. (୬ଷ୍ଠୀ ତତ୍; ଜନ+ବାସ)—୧ । ଲୋକବସତି—
Janabāsa 1. A place of human residence.
୨ । ସର୍ବସାଧାରଣଙ୍କ ଆଶ୍ରୟସ୍ଥାନ—2. A place of public resort; a public rest-house.
୩ । ସଭା; ସମାଜ—3 An assembly; a meeting.

ଜନଭା—ପ୍ରାଦେ. (ଗଞ୍ଜାମ) ବି.—ଦେଶର ଲୋକଗଣନା; ସେନ୍ସସ୍—
Janabhā Census.

ଜନଭୂୟିଷ୍ଠ—ସଂ. ବିଣ.—(ବହୁବ୍ରୀହି; ଜନ+ଭୂୟିଷ୍ଠ=ପ୍ରଚୁର; ଯେଉଁଠାରେ)—ଜନବହୁଳ (ଦେଖ)
Jana-bhūyishṭha
Jana-bahula (See)

ଜନମ (ଇତ୍ୟାଦ)—ଗ୍ରା. ଓ ପଦ୍ୟ. ବି. (ସଂ. ଜନ୍ମ)—
Janama (etc) ଜନ୍ମ ଇତ୍ୟାଦ (ଦେଖ)
जनम Janma etc (See)
जनम

ଜନମଅନ୍ଧ—ଗ୍ରା. ବିଣ.—ଜନ୍ମାନ୍ଧ (ଦେଖ)
Janama-andha Janmāndha (See)
(ଜନମରୁ ଅନ୍ଧ—ଅନ୍ୟରୂପ)

ଜନମକାଳ—ଦେ. ବି (ସଂ. ଜନ୍ମକାଳ)—ମନୁଷ୍ୟ ଭୂମିଷ୍ଠ ହେବା ସମୟ—
Janama-kāla Time of one's birth.
'ମୋ ନାଥ ଟି ବାପା ଦେଇଥିଲେ ଜନମକାଳେ, ଅନ୍ନପ୍ରାଶନେ, କାଇଁ କଳନ, ଖୋପିତକନ, ମହଭାପାନ—ଗ୍ରାମ୍ୟଗୀତ ।

ଜନମଥାନ—ଗ୍ରା. ବି (ସଂ. ଜନ୍ମସ୍ଥାନ)—ଜନ୍ମଭୂମି (ଦେଖ)
Janama-thāna Janmā-bhūmi (See).

ଜନମଦୁଧ—ଗ୍ରା. ବି (ସଂ. ଜନ୍ମ+ଦୁଗ୍ଧ)—ନବଜାତ ଶିଶୁର ସ୍ତନରୁ ବାହାରବା ଲସା—A milky secretion pinched out of the teats of a new-born baby.
Janama-dudha

[ ଦ୍ର—ଜାଣିଲାଶୁଣିଲା ସ୍ତ୍ରୀଲୋକମାନେ ନବଜାତ ଶିଶୁର ଦୁଧକୁ ଚପିଦଅନ୍ତି ଓ ସେଥିରୁ ଟିକଏ ଲସା ବାହାରପଡ଼େ । ଯେଉଁ ଶିଶୁର ଏପରି କଲା ଯାଇ ନ ଥାଏ ତା ଦୁଧ ବାଲ୍ୟକାଳରୁ ଫୁଲୁକା ଦେଖାଯାଏ ।]

ଜନମନୁଷ୍ୟ—ଦେ. ବି (ଏକାର୍ଥକ ସହଚର ଶବ୍ଦ; ସଂ. ଜନ+ମନୁଷ୍ୟ)—
Jana-manushya ୧ । କୌଣସି ଲୋକ; ଜଣେ ସୁଦ୍ଧା ଲୋକ—
जनमानुष 1. Even one person; a single individual.
(ଯଥା—ଏ ଜଙ୍ଗଲ ଅରଣ୍ୟରେ ଜନ ମନୁଷ୍ୟ ନାହାନ୍ତି ।)
୨ । ସମସ୍ତ ମନୁଷ୍ୟଜାତି; ସମସ୍ତ ଲୋକ—
2 Mankind; all people.

ଜନମନୋହର—ସଂ. ବିଣ (ଉପପଦ ତତ୍ପୁରୁଷ; ଜନ+ମନୋହର)—ମନୁଷ୍ୟମାନଙ୍କ ଚିତ୍ତାକର୍ଷକ)—
Jana-manohara Attractive to men.

ଜନମପାଣି—ଦେ. ବି (ସଂ. ଜନ୍ମ+ପାନୀୟ)—ନବଜାତ ଶିଶୁର ପ୍ରଥମ ସ୍ନାନ—The first bath of an infant.
Janama-pāni

ଜନମବାଉଳା—ଦେ. ବିଣ (ସଂ. ଜନ୍ମ+ବାତୁଳ)—ଜନ୍ମରୁ ନିର୍ବୋଧ; ଯେଉଁ ଲୋକର ବୁଦ୍ଧିଶକ୍ତି ନ ଥାଏ—
Janamabāulā
जनमबाउला A born idiot.

ଜନମଭରି—ଦେ. ଅ—୧ । ଆଜନ୍ମ—
Janama-bhari 1. Since birth.
जनमभर ୨ । ଜୀବନକାଳ ମଧ୍ୟରେ—
जनमभर 2. Throughout life.
୩ । ମନୁଷ୍ୟ ଯେତେ ଦିନ ବଞ୍ଚିଥିବ ସେପର୍ଯ୍ୟନ୍ତ—
3. For one's life.

ଜନମର୍ଯ୍ୟାଦା—ସଂ. ବି (ମ. ପ. ଲୋ; ଜନ+ମର୍ଯ୍ୟାଦା; ଜନାଚରିତ ମର୍ଯ୍ୟାଦା)—ଲୌକିକ ଆଚାର—
Jana-marjyādā Popular custom; established usage.

ଜନମଭୂଇଁ—ଦେ. ବି (ସଂ. ଜନ୍ମଭୂମି)—ଜନ୍ମଭୂମି (ଦେଖ)
Janama-bhuiṅ Janma-bhūmi (See).
जनमधरती

ଜନମରକ—ସଂ. ବି (ଜନ+ମରକ)—ମହାମାରୀ (ହି. ଶବ୍ଦସାଗର)—
Jana-maraka The plague.

ଜନମାଇବା—ଦେ. କ୍ରି (ଗ୍ରାମ୍ୟ ପଦ୍ୟ) (ସଂ. ଜନ୍ମ; ଜନମିବାର ଣିଜନ୍ତ-ରୂପ)—ଜନ୍ମାଇବା (ଦେଖ)
Janamāibā Janmāibā (See)
जनमान
जनमाना 'ହେମଂ ବରବାଙ୍କଣେ ଜନମାଇ ମୋର ମନେ ଘୋର ବ୍ୟଥା । କବିସୂର୍ଯ୍ୟ, ସଙ୍ଗୀତ
(ଜନମେଇବା—ଅନ୍ୟରୂପ)

ଜନମାନବ—ଦେ. ବି (ସଂ. ଜନ+ମାନବ)—ଜନମନୁଷ୍ୟ (ଦେଖ)
Jana-mānaba Jana-manushya (See).

ଜନମାମୁ—ଦେ. ବି—ଜହ୍ନମାମୁ (ଦେଖ)
Jana-māmu Jahna-māmu (See).

| ସାଧାରଣ ଲୋକେ ଅପର ପୃଷ୍ଠାରେ ଘଟିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; ଅର୍ଗଳା ନ ପାଇଲେ 'ଅର୍ଗ୍ଗଳା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ । |
|---|

**ଜନମିବା**—କ୍ରି. ଓ ପଦ୍ୟ (ସଂ. ଜନ୍ମ)—୧ । ଜାତହେବା; ଜନ୍ମଗ୍ରହଣ କରିବା—1. To be born
Janamibā

ଜନମା ବଶିଷ୍ଠ ଗଉମୀ ତାଙ୍କ ଗର୍ଭରୁ ଜନମିଲେ—କୃଷ୍ଣସିଂହ. ମହାଭାରତ ଆଦି ।

ଜନମନା ୨ । (ପ୍ରାଚୀନ ପଦ୍ୟ)—ଜନ୍ମ କରିବା—
2. To give birth to.

ଗାନ୍ଧାରୀ ତ ମାଂସପିଣ୍ଡ ଜନମିଲେ—କୃଷ୍ଣସିଂହ ମହାଭାରତ. ଆଦି ।

୩ । ଦେଖାଯିବା—3. To appear; to be seen.
୪ । ଘଟିବା—4. To happen
୫ । ଆରମ୍ଭ ହେବା—5. To begin.

**ଜନମେଜୟ**—ସଂ. ବି. (ନାମ) (ଜନମ୍+ଏଜ ଧାତୁ=କମ୍ପିତ କରିବା +କର୍ତ୍ତୃ. ଅ: ଯେ ଅସୁରଙ୍କୁ ବିନାଶ କରିଥିଲେ)—
Janamejaya
୧ । ବିଷ୍ଣୁ—1. Bishnu.
୨ । ପରୀକ୍ଷିତ ରାଜାଙ୍କ ପୁତ୍ର—2. The son of Parikhita, king of Hastinā.

[ଦ୍ର—ଏ ଅର୍ଜ୍ଜୁନପୁତ୍ର ଅଭିମନ୍ୟୁଙ୍କ ନାତି ଥିଲେ । ଏ ବୈଶମ୍ପାୟନଙ୍କ ଠାରୁ ମହାଭାରତ ଶ୍ରବଣ କରିଥିଲେ । ପରୀକ୍ଷିତ ତକ୍ଷକ ନାଗର ଦଂଶନରେ ମରି ଥିବାରୁ ସର୍ପମାନଙ୍କର ବିନାଶ ପାଇଁ ଏ ସର୍ପଯଜ୍ଞ ଅନୁଷ୍ଠାନ କରିଥିଲେ । ସେହି ସର୍ପଯଜ୍ଞରେ ସବୁଆଡ଼ୁ ସର୍ପମାନେ ଆସି ହୋମାଗ୍ନିରେ ପୋଡ଼ି ମଲେ, କିନ୍ତୁ ତକ୍ଷକ ଅସ୍ତିକ ଋଷିଙ୍କର ଶରଣାପନ୍ନ ହେବାରୁ ଅସ୍ତିକ ଜନମେଜୟଙ୍କୁ ପ୍ରବର୍ତ୍ତାଇ ସର୍ପଯଜ୍ଞ ବନ୍ଦ କରାଇ ଥିଲେ ଓ ତକ୍ଷକ ରକ୍ଷା ପାଇଲେ ।]

ଦେ. ବି.—ଓଡ଼ିଶାର କେଶରୀ ବଂଶର ପ୍ରଥମ ରାଜା—
Janmejaya, a king of the Keśari dynasty of Orissa.

[ଦ୍ର—ଏ ଖ୍ରୀଷ୍ଟାବ୍ଦ ୫୨୦ରୁ ୫୫୨ ପର୍ଯ୍ୟନ୍ତ ଉତ୍କଳରେ ରାଜତ୍ୱ କରିଥିଲେ । କୌଣସି କୌଣସି ଐତିହାସିକଙ୍କ ମତରେ ଏହାଙ୍କ ରାଜତ୍ୱକାଳ ଖ୍ରୀଷ୍ଟାବ୍ଦ ୪୭୨ରୁ ୪୭୪ ପର୍ଯ୍ୟନ୍ତ । କଟକ ନିକଟରେ ମହାନଦୀ ଓ କାଠଯୋଡ଼ି ନଦୀ ମଧ୍ୟରେ ଏ ଚଉଦୁଆର ନଗର ସ୍ଥାପନ କରି ସେହିଠାରେ ରାଜଧାନୀ କରିଥିଲେ । କୃପାସିନ୍ଧୁ. ଇତିହାସ ।]

**ଜନୟିତା**—ସଂ. ବି. ପୁଂ—(ଜନ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ.)—
Janayitā ଜନକ; ପିତା—Father.
(ଜନୟିତ୍ରୀ—ସ୍ତ୍ରୀ) ସଂ. ବିଣ—ଉତ୍ପାଦକ; ଉତ୍ପାଦନକାରୀ—
Producing.

**ଜନରଞ୍ଜନ**—ସଂ. ବିଣ. (ଉପପଦ ତତ୍ପୁରୁଷ; ଜନ+ରଞ୍ଜନ)—
Jana-rañjana ସର୍ବସାଧାରଣଙ୍କ ମନୋରଞ୍ଜନକାରୀ—
Courting popularity; applauded by the people.

ଜରଞ୍ଜନ ସେ ଜନରଞ୍ଜନ ରଥ ପୁନ ରାଜନ ସୁତ ଲଭି ମଣ୍ଡି ସେ ।
ଉପେ. ବୈଦେହୀଶବିଳାସ ।

ବି. (୬ଷ୍ଠୀ ତତ୍)—ଲୋକସାଧାରଣଙ୍କ ଚିତ୍ତହରଣ—
Pleasing the populace.

**ଜନରବ**—ସଂ. ବି.—୧ । ଜନପ୍ରବାଦ (ଦେଖ)
Jana-raba Jana-prabāda (See)
୨ । ବହୁ ଲୋକଙ୍କ କୋଳାହଳ; ଗୋଳମାଳ; ଗୋଳ-ଗାଳ—2. Noise arising out of a crowd; hubbub.

**ଜନରଲ୍ (ଇତ୍ୟାଦି)**—ବୈଦେ. ବି.—ଜେନରଲ୍ ଇତ୍ୟାଦି (ଦେଖ)
Janaral (etc) Jenaral etc (See)
জেনেরল
জনৱে

**ଜନଲୋକ**—ସଂ. ବି.—ହିନ୍ଦୁପୁରାଣ ମତରେ ସପ୍ତଭୁବନ ମଧ୍ୟରୁ ପଞ୍ଚମ ଭୁବନ—One of the 7 worlds according to the Hindu mythologies.
Jana-loka
(ଦ୍ର—ସପ୍ତଲୋକ ଯଥା; ଭୂଃ, ଭୁବଃ, ସ୍ୱଃ, ମହଃ, ଜନଃ, ତପଃ, ଓ ସତ୍ୟ)

**ଜନଶୂନ୍ୟ**—ସଂ. ବିଣ. (୩ୟା ତତ୍; ଜନ+ଶୂନ୍ୟ)—ନିର୍ଜନ—
Jana-śūnya Lonely; solitary

**ଜନଶ୍ରୁତ**—ସଂ. ବିଣ (୩ୟା ବା ୭ମୀ ତତ୍; ଜନ+ଶ୍ରୁତ)—ପ୍ରସିଦ୍ଧ;
Janaśruta ବିଖ୍ୟାତ—Famous; famed; well-known.

**ଜନଶ୍ରୁତି**—ସଂ. ବି. (୬ଷ୍ଠୀ ତତ୍; ଜନ+ଶ୍ରୁତି)—
Jana-śruti ଜନପ୍ରବାଦ (ଦେଖ)
Jana-prabāda (See)

**ଜନସ୍ଥାନ**—ସଂ. ବି.—ଦଣ୍ଡକାରଣ୍ୟର ଅଂଶବିଶେଷ—
Jana-sthāna Name of a part of the forest Dandaka.

[ଦ୍ର—ଏହି ସ୍ଥାନରେ ରାମଚନ୍ଦ୍ର ଓ ଲକ୍ଷ୍ମଣଙ୍କର ପ୍ରଥମେ ରାକ୍ଷସମାନଙ୍କ ସଙ୍ଗେ ଭେଟ ଓ ବିଗ୍ରହ ହୋଇଥିଲା ।]

**ଜନସଂଘ**—ସଂ. ବି. (୬ଷ୍ଠୀ ତତ୍; ଜନ+ସଂଘ)—ଲୋକଗହଳ; ଭିଡ଼—
Jana-saṁgha Crowd of people.

**ଜନସଂବାଧ**—ସଂ. ବିଣ (୬ଷ୍ଠୀ ତତ୍; ଜନ+ସଂବାଧ)—
Jana-saṁbādha ଲୋକଙ୍କ ଭିଡ଼ ହୋଇଥିବା (ସ୍ଥାନ)—
Densely crowded with people (Apte).

**ଜନସମାଜ**—ସଂ. ବି. (୬ଷ୍ଠୀ ତତ୍; ଜନ+ସମାଜ)—୧ । ଲୋକସମାଜ—
Jana-samāja 1. The human society.
୨ । ସମସ୍ତ ଲୋକ; ସମଗ୍ର ମନୁଷ୍ୟଜାତି—
2. All men; mankind.
୩ । ସର୍ବସାଧାରଣ—3. The public.

**ଜନସାଧାରଣ**—ସଂ. ବି. (୬ଷ୍ଠୀ ତତ୍; ଜନ+ସାଧାରଣ)—
Jana-sādhāraṇa ୧ । ସାଧାରଣ ବ୍ୟକ୍ତି—
1. Ordinary man.
୨ । ସର୍ବସାଧାରଣ; ଆବାଳବୃଦ୍ଧବନିତା ସମସ୍ତେ—
2. The public.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ଯ | ଉଅ | ଖ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଡ଼ | ନ୍ |

**ଜନସୁମାର**—ଦେ. ବି. (ସଂ. ଜନ ଓ ଫା. ସୁମାର୍=ଗଣନା)—
Jana-sumāra ଲୋକସୁମାର; ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ରାଜ୍ୟର ଲୋକ-
जानसुमार ସଂଖ୍ୟା ନିର୍ଦ୍ଧାରଣାର୍ଥ ଲୋକଗଣନା—Census.
(ଜନସୁମାରି—ଅନ୍ୟରୂପ)

**ଜନସ୍ଥାନ**—ସଂ. ବି (ନାମ)—୧ । ଦଣ୍ଡକାରଣ୍ୟର ମଧ୍ୟବର୍ତ୍ତୀ ସ୍ଥାନ
Jana-sthāna ବିଶେଷ—1. A region in the middle of the Daṇḍaka forest.

ଦୂଷଣ ତ୍ରିଶିର ଖର ଅଧିଷ୍ଠିତ
ଜନସ୍ଥାନ ଯାର ଥିଲ ସନ୍ଧି ହିତ । ସୀତାନାଥ. ଚଉତିଶା ।

୨ । ଲୋକାଳୟ; ଜନପଦ—2. Inhabited country.
୩ । ଉପନିବେଶ—3. A settlement; colony.

**ଜନସ୍ରୋତ**—ଦେ. ବି. (୬ଷ୍ଠୀ ତତ୍; ଜନ+ସ୍ରୋତଃ)—
Jana-srota ଜନପ୍ରବାହ (ଦେଖ)
জনস্রোত Jana-prabāha (See)
जनस्रोत

**ଜନସ୍ରୋତଃ**—ସଂ. ବି. (୬ଷ୍ଠୀ ତତ୍; ଜନ+ସ୍ରୋତଃ)—
Jana-srotaḥ ଜନପ୍ରବାହ (ଦେଖ)
Jana-prabāha (See)

**ଜନା**—ବୈଦେ. ବି. (ଫା. ଜିନା)—୧ । ସ୍ତ୍ରୀର ଇଚ୍ଛାବିରୋଧରେ ବଳ-
Janā ପୂର୍ବକ ପୁରୁଷର ରମଣ—1. Rape.
जना ୨ । ପରସ୍ତ୍ରୀରମଣ—2. Adultery.
ସଂ. ବି—୧ । ଉତ୍ପତ୍ତି; ଜନ୍ମ (ହି ଶବ୍ଦସାଗର)—
1. Birth; production.
୨ । (ନାମ) ମାହିଷ୍ମତୀର ରାଜା ନୀଳଧ୍ୱଜଙ୍କ ସ୍ତ୍ରୀ—
2 Name of the queen of king Nīḷadhwaja.
[ ଦ୍ର—ଅଶ୍ୱମେଧ ଯାଗ ପୂର୍ବରୁ ପାଣ୍ଡବମାନଙ୍କ ଦ୍ୱାରା ଉନ୍ମୁକ୍ତ ଯଜ୍ଞାଶ୍ୱକୁ ଏହାଙ୍କ ଗର୍ଭଜାତ କୁମାର ପ୍ରବୀର ଧରିରଖିଲେ । ଏଥିପାଇଁ ପାଣ୍ଡବମାନଙ୍କ ସଙ୍ଗେ ପ୍ରବୀର ଯୁଦ୍ଧ କଲେ । ଏ ପ୍ରବୀରଙ୍କୁ ବିଶେଷ ସହାୟତା ଓ ଉତ୍ସାହ ଦେଇଥିଲେ । ଶେଷରେ ପ୍ରବୀର ଯୁଦ୍ଧରେ ହତ ହେବାରୁ ଏ ସ୍ୱୟଂ ପାଣ୍ଡବମାନଙ୍କ ସଙ୍ଗେ ଯୁଦ୍ଧ କଲେ । ପାଣ୍ଡବମାନଙ୍କୁ ଏହାଙ୍କ ହସ୍ତରୁ ରକ୍ଷା କରିବା ପାଇଁ ଶ୍ରୀକୃଷ୍ଣ ବ୍ରତୀ ହୋଇଥିଲେ । ]

**ଜନାକାର୍**—ବୈଦେ. ବି. (ଫା. ଜିନାକାର୍)—ପରସ୍ତ୍ରୀଗମନକାରୀ—
Janākār An adulterer.
जिनाकार

**ଜନାକାରୀ**—ବୈଦେ. ବି. (ଫା. ଜିନାକାରୀ)—ବ୍ୟଭିଚାର; ପରସ୍ତ୍ରୀଗମନ;
Janākāri ପରସ୍ତ୍ରୀହରଣ; ଅବୈଧ ସ୍ତ୍ରୀସମ୍ଭୋଗ—
जिनाकारी Adultery; illegitimate sexual conjunction; conjunction with another's wife.

**ଜନାକୀର୍ଣ୍ଣ**—ସଂ. ବିଣ. (୩ୟା ତତ୍; ଜନ+ଅକୀର୍ଣ୍ଣ)—ଜନବହୁଳ—
Janākirṇṇa Crowded; populous.

**ଜନାଚାର**—ସଂ. ବି. (୬ଷ୍ଠୀ ତତ୍; ଜନ+ଆଚାର)—
Janāchāra ଲୋକାଚାର; ସମାଜପ୍ରଚଳିତ ବ୍ୟବହାର—
Popular usage.

**ଜନାଜା**—ବୈଦେ. ବି. (ଆ)—ଟୋଟକେଇ; ଯେଉଁ ଖଟ ବା ସିନ୍ଦୁକରେ
Janājā ମୃତ୍ୟୁଦେହକୁ ପୋତିବା ବା ପୋଡ଼ିବା ପାଇଁ ବୋହି ନିଅନ୍ତି;
जनाजा କଫନ୍—A bedstead or coffin to carry the dead body for its ultimate disposal.

**ଜନାଜାତ**—ଦେ. ବିଣ. ( ସଂ. ଜନ+ଜାତ=ସମୂହ )—
Janājāta ୧ । ପ୍ରତ୍ୟେକ ବ୍ୟକ୍ତି ବା ବିଷୟକୁ ଭିନ୍ନଭିନ୍ନ କରି
জনাজাত ଚର୍ଚ୍ଚା କରୁଥିବା—1. Specifying each person;
जनाजात dealing with different persons, subjects or items, seriatim or individually.
କ୍ରି. ବିଣ—ପ୍ରତି ଜଣକୁ ଏକ ହିସାବରେ—
Individually; to each man a piece.
(ଜନାଜାତି—ଅନ୍ୟରୂପ) ବି—ଜିଆରିଜା; ପ୍ରତିଜଣ ବା ବିଷୟର ପୃଥକ ଚର୍ଚ୍ଚା ହୋଇଥିବା ହିସାବ—
Detailed or classified account dealing with each person.

**ଜନାଜାତି**—ଦେ. ବିଣ. କ୍ରି. ବିଣ ଓ ବି—ଜନାଜାତ (ଦେଖ)
Janājāti Janājāta (See)

**ଜନାଜାତି ଭଉଁରିଆ**—ଦେ. ବି—ଯେଉଁ ଭଉଁରିଆରେ ପ୍ରତ୍ୟେକ ଜମା
Janājāti bhauñriā ଜମିର ମାପ ଲେଖାଥାଏ—
A field-book containing the measurement of each plot of land.

**ଜନାଜାତି ହିସାବ**—ଦେ. ବି—ଯେଉଁ ହିସାବରେ ପ୍ରତ୍ୟେକ ବ୍ୟକ୍ତିର
Janājāti hisāba ବିବରଣ ଲେଖାଥାଏ—An account
জনাজাত হেসাব showing the detail of
जनाजात हिसाब each person.

**ଜନାନା**—ବୈଦେ. ବି. (ଫା)—୧ । ସ୍ତ୍ରୀ ଲୋକ—1. A female.
Janānā ୨ । ଅନ୍ତଃପୁର—2. Seraglio; the zenana; harem.
জেনানা
जनाना ୩ । ସ୍ତ୍ରୀମାନଙ୍କ ଅବରୋଧ ପ୍ରଥା—
3. The zenana-system.
୪ । ନାମର୍ଦ୍ଦ; ନପୁଂସକ; ହେଞ୍ଜେଡ଼ା—4. An eunuch.
୫ । ମାଇଚିଆ; ଯେଉଁ ବ୍ୟକ୍ତିର ଚଙ୍ଗଢାଙ୍ଗ ଓ ଚାଲିଚଳଣ ସ୍ତ୍ରୀମାନଙ୍କ ପରି—5. A male having the characteristics of or behaving like a woman.
ବିଣ.—୧ । ସ୍ତ୍ରୀ ସମ୍ବନ୍ଧୀୟ—1. Pertaining to women.

ଗୋଟିଏ ବାଳକ ବିଦ୍ୟାଳୟ ଓ ଜନାନା ସ୍କୁଲ ବସିବାର ବନ୍ଦୋବସ୍ତ ହେଲା ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

[ ଦ୍ର—ଏହି ଶବ୍ଦ ପାରସୀରୁ ଇଂରାଜୀ ଭାଷାକୁ ମଧ୍ୟ ଯାଇଅଛି ।]

ସାଧାରଣ ଲେଖେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତିନାହିଁ । ଅତଏବ ୧ ଚିହ୍ନିତ ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣଟିବା ମାତ୍ରାଯୁକ୍ତ ହେ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ହୃଅ' ନ ମିଳି ଲ 'ହୃଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗେ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ ଦେଖିବେ

୨ । ଡରୁଆ — 2. Cowardly.

୩ । ସ୍ତ୍ରୀସୁଲଭ — 3. Feminine.

୪ । ସ୍ତ୍ରୀମାନଙ୍କ ବ୍ୟବହାର୍ଯ୍ୟ; ସ୍ତ୍ରୀମାନଙ୍କ ପାଇଁ ଅଭିପ୍ରେତ — 4. Intended for women.

**ଜନାନାମହଲ୍**—ବୈଦେ ବି. (ଫା. ଜନାନା+ମହଲ୍)—୧ । ଅନ୍ତଃପୁର— Janānā-mahala 1. Harem.
জেনানা মহল ୨ । ଗୃହର ଯେଉଁ ଅଂଶରେ ସ୍ତ୍ରୀଲୋକମାନେ
**जनानामहल; जनानखाना** ଚଳପ୍ରଚଳ ହୁଅନ୍ତି—2. The part of the house used exclusively by the women of the family.

**ଜନାନ୍ତ**—ସଂ. ବି. (୬ଷ୍ଠୀ ତତ୍; ଜନ=ଜନପଦ+ଅନ୍ତ)—
Janānta ୧ । ଜନପଦ ବା ଲୋକବସତିରୁ ବହୁଦୂରସ୍ଥ ସ୍ଥାନ— 1 An out-of-the-way place; a country remote from the haunts of men.

୨ । ଦେଶ; ପ୍ରଦେଶ; ବିଭାଗ; ଜିଲ୍ଲା— 2. Country; province; division; district.

୩ । ଯମ (ହି. ଶବ୍ଦସାଗର)— 3. The Hindu God of death.

୪ । ସୀମାବର୍ଦ୍ଧିତ ପ୍ରଦେଶ ବା ଅଞ୍ଚଳ — 4. A tract of country with fixed boundaries.

୫ । ନିର୍ଜନ ପ୍ରଦେଶ; ଯେଉଁ ଅଞ୍ଚଳରେ ଲୋକେ ବାସ କରନ୍ତି ନାହିଁ—5. An uninhabited tract.

୬ । ବ୍ୟକ୍ତିଗତ ନୈକଟ୍ୟ— 6. Personal proximity (Apte).

ସଂ. ବିଣ.— ମନୁଷ୍ୟମାନଙ୍କର ନାଶକର (ହି. ଶବ୍ଦସାଗର)— Destructive of human beings; destroying men.

**ଜନାନ୍ତିକ**—ସଂ. ବି. (ଜନ+ଅନ୍ତିକ=ସମୀପ)—୧ । ଅନ୍ୟ ଉପସ୍ଥିତ
Janāntika ଲୋକଙ୍କ ସାକ୍ଷାତରେ ଅଥଚ ଅନୁଚ୍ଚ ସ୍ୱରରେ ପରସ୍ପର କାନରେ କଥା କହିବା ବା ଅଭିପ୍ରାୟ ପ୍ରକାଶ କରିବା— 1. A whispering aside; a speaking aside to another in the presence of others.

୨ । ଉପସ୍ଥିତ ଅନ୍ୟ ବ୍ୟକ୍ତିମାନଙ୍କ ଅବୋଧ ଦୁଇ ଜଣଙ୍କ ମଧ୍ୟରେ ସଙ୍କେତ ଦ୍ୱାରା ଭାବବିନିମୟ— 2. A secret communication in the presence of others by means of signs.

**ଜନାନ୍ତିକେ**—ସଂ. କ୍ରି. ବିଣ—(ନାଟକୀୟ ଭାଷା)—(ନାଟକ ଅଭିନୟ
Janāntike ସମୟରେ ରଙ୍ଗମଞ୍ଚରେ) ଅନ୍ୟ ଅଭିନେତାଗଣଙ୍କ ଉପସ୍ଥିତିରେ ଅଥଚ ସେମାନେ ଯେପରି ଶୁଣି ନ ପାରିବେ ସେହିପରି (ବାକ୍ୟ ପ୍ରକାଶ କରିବା)— (a term used in dramas for the direction of the actors) Aside (on the stage).
[ଦ୍ର—ଅଭିନେତୃଗଣଙ୍କୁ ରଙ୍ଗମଞ୍ଚରେ 'ଜନାନ୍ତିକ' କରିବାପାଇଁ ନାଟକରେ ଜନାନ୍ତିକ ବାକ୍ୟମାନଙ୍କ ପୂର୍ବେ ବନ୍ଧନୀମଧ୍ୟରେ ଏହି ଶବ୍ଦ ଗ୍ରନ୍ଥକାର ଲେଖନ୍ତି ।]

**ଜନାପବାଦ**—ସଂ. ବି. (ମ. ପ. ଲୋ; ଜନ+ଅପବାଦ; ଜନମାନଙ୍କ
Janāpabāda ମଧ୍ୟରେ ପ୍ରଚଳିତ ଅପବାଦ)—ଲୋକନିନ୍ଦା; କଳଙ୍କ; ଲୋକଲଜ୍ଜା—Ill repute; evil name; public scandal.

**ଜନାବ୍**—ସଂ. ବି. (ଜନ+ଅବ୍ ଧାତୁ ରକ୍ଷା କରିବା+କର୍ତ୍ତି. କ୍ୱିପ୍)—
Janāb ଲୋକପାଳକ—Protecting men.
জনাব ବୈଦେ. ଅ. (ଆ) ପ୍ରତିଷ୍ଠିତ ବ୍ୟକ୍ତିଙ୍କ ପ୍ରତି ମାନ୍ୟାର୍ଥକ
**जनाब** ସମ୍ବୋଧନ; ତୁଲ. ସଂ. ଜନାବ୍=ଲୋକପାଳକ) – ହଜୁର ! ଶ୍ରୀହଜୁର !; ମାନନୀୟ ମହାଶୟ !—(a term of address to a high personage) Your honour ! your worship !
ବିଣ.— ମହାଶୟ; ମାନନୀୟ—Respectable; honourable. (ଯଥା—ଜନାବ୍ ମୌଲବୀ ସାହେବ୍)

**ଜନାବଅଲ୍ଲୀ**—ବୈଦେ. ଅ, (ଆ)—ଜନାବ୍ (ଦେଖ)
Janāb-alli Janāb (See)
জনাবআলী
**जनाबआली**

**ଜନାର୍**—ଦେ. ବି. (ସଂ. ଯବନାଲ; ଯାବନାଲ)—ଜୁଆର; ଭୁଟ୍ଟା; ବାଜରା
Janār ମକ୍କା—A species of Indian corn; Zea Meys;
জনার maize; Indian corn.
**जुन्हरी, ज्वार**
[ଦ୍ର—ଏହି ଗଛ ଆଖୁଗଛ ପରି । ଏହାର ଆଦିବାସ ଦକ୍ଷିଣ-ଆମେରିକା । ଏହି ଶସ୍ୟର ଛତୁଆ ବହାସମାନେ ଖାଆନ୍ତି ।]
ପ୍ରାଦେ. (ସମ୍ବଲପୁର)—ଆହାର; ଭୋଜନ —Eating; meal.

**ଜନାର୍ କରିବା**—ପ୍ରାଦେ. (ସମ୍ବଲପୁର) କ୍ରି.—ଆହାର କରିବା; ଖାଇବା—
Janār karibā To eat; to take one's meals.

**ଜନାର୍ଦ୍ଦନ**—ସଂ. ବି. (ଜନ=ଅସୁର+ଅର୍ଦ୍ଦ ଧାତୁ ଣିଚ୍; ଅର୍ଦ୍ଦି ଧାତୁ
Janārddana ପୀଡ଼ନ କରିବା+କର୍ତ୍ତି. ଅନ)—୧ । ଅସୁର-ନିସୂଦନ; ବିଷ୍ଣୁ; ଶ୍ରୀକୃଷ୍ଣ—1. Bishnu.
[ଦ୍ର —ଶାସ୍ତ୍ରରେ 'ଭୋଜନେଷୁ ଜନାର୍ଦ୍ଦନଂ' ଅର୍ଥାତ୍ ଭୋଜନ-କାଳରେ ଜନାର୍ଦ୍ଦନଙ୍କୁ ସ୍ମରଣ କରିବାର ଉପଦେଶ ଅଛି ।]
୨ । ଶାଳଗ୍ରାମ ଶିଳାବିଶେଷ— 2. Name of a class of Sālagrāma-pebble.
ବିଣ.—ଲୋକପୀଡ଼କ—Oppressive.

| ୧ | ଇ | ଓ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଉଥ | ଙ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଙ୍ଗ | ନ୍ |

ଦେ. ବି. ପୁଂ—ଲୋକଙ୍କ ନାମ—
A name given to males.
[ଦ୍ର—ଜନାର୍ଦ୍ଦନର ଡାକନାମ ଦନେଇ ବା ଦନାଇ ।]

**ଜନାର୍ଦ୍ଦନ ଦାସ**—ଦେ. ବି. (ନାମ)—ଜନୈକ ଉତ୍କଳୀୟ ପ୍ରାଚୀନ କବି·
Janārddana dāsa Name of an Oria poet.
[ଦ୍ର—ଏ ସାଧାରଣତଃ ଦନେଇ ଦାସ ବୋଲି ପରିଚିତ । ଗୃହଶାଳୀ-ପାଠର 'ଗୋପୀଭୂଷା' ଏହାଙ୍କ ଦ୍ୱାରା ରଚିତ; ଭାରଣୀ. ଉତ୍କଳ ସାହିତ୍ୟ ଇତିହାସ । ଏହାଙ୍କ ରଚିତ ଚଉପଦୀମାନ ଦନେଇ ଦାସଙ୍କ ପଦ୍ଦଳ ନାମରେ ଉତ୍କଳରେ ସର୍ବତ୍ର ପ୍ରସିଦ୍ଧ ।]

**ଜନାଶନ**—ସଂ. ବି. ( ଜନ+ଅଶନ )—
Janāśana ୧ । (ବହୁବ୍ରୀହି) ମେଣ୍ଢା ( ହି. ଶବ୍ଦସାଗର )—
1. The ram.
୨ । ( ୬ଷ୍ଠୀ ତତ୍ ) ମନୁଷ୍ୟମାନଙ୍କ ଭୋଜନ କର୍ମ ( ହି ଶବ୍ଦସାଗର)—2 The act of eating by men; dining.
୩ । ନରମାଂସଭକ୍ଷକ—3. A cannibal.
ସଂ. ବିଣ—ମନୁଷ୍ୟଭୋଜୀ—
Eating human beings; cannibal.

**ଜନାଶ୍ରୟ**—ସଂ. ବି. ( ୬ଷ୍ଠୀ ତତ୍; ଜନ+ଆଶ୍ରୟ )—
Janāśraya ୧ । ନାରାୟଣ; ବିଷ୍ଣୁ—1. Bishṇu.
୨ । ଲୋକାଳୟ—2. Human habitation.
୩ । ପଥିକମାନଙ୍କ ବିଶ୍ରାମଗୃହ; ପାନ୍ଥଶାଳା; ଧର୍ମଶାଳା;—
3. Caravanserai; a public rest-house.
୪ । ଅସ୍ଥାୟୀ ଆଶ୍ରୟସ୍ଥାନ ବା ମଣ୍ଡପ; ଛାମୁଣ୍ଡିଆ—
4. A temporary shed or awning; a pavilion erected for a special occasion.
୫ । ବାସ ସ୍ଥାନ—5. Residence; dwelling place.

**ଜନି (ଧାତୁ)**—ସଂ—ଜନ ଧାତୁର ଣିଜନ୍ତ—
Jani (root)
୧ । ଜନ୍ମାଇବା; ଜାତ କରିବା—
1. To give birth to.
୨ । ଉତ୍ପନ୍ନ କରିବା—2. To produce.
୩ । ସୃଷ୍ଟି କରିବା—3. To create.

**ଜନି**—ସଂ. ବି. ସ୍ତ୍ରୀ. ( ଜନ୍ ଧାତୁ+ଭାବ. ଇ )—
Jani ୧ । ଉତ୍ପତ୍ତି; ଜନ୍ମ—1. Birth; creation.
(ଜନି, ଜନକା—ଅନ୍ୟରୂପ) ଶଙ୍ଖ ଏ କୃପା ସେନ, ସ୍ୱାର୍ଥ ଜୁଥିଲା ଜନ । କବିସଯ୍ୟ. କଶୋଲ୍ଲଷଣ୍ଣ. ଭ ଗୀତ ।
୨ । ( +ଅଧିକରଣ. ଇ ) ନାରୀ; ସ୍ତ୍ରୀ—
2. Woman; a female.
୩ । ମାତା—3. Mother.
୪ । ପୁତ୍ରବଧୂ; ସ୍ନୁଷା—5. Daughter-in-law.
[ଦ୍ର—ସାଧାରଣପ୍ରଚଳିତ 'ସଜନୀ' ଶବ୍ଦ ସ୍ୱଜନର ଅପଭ୍ରଂଶ । 'ସ୍ୱଜନୀ' 'ସ୍ୱଜନର' ସ୍ତ୍ରୀଲିଙ୍ଗ । ଏହାର ଅର୍ଥ ଆତ୍ମୀୟା ।]

ସ୍ତ୍ରୀ. ବି. ( ସଂ. ଜ୍ୟୋତ୍ସ୍ନୀ )—ଜହ୍ନି ନାମକ ଲତାଫଳ—
A kind of kitchen-vegetable; Luffa Acutangula.
ଦେ. ବିଣ—ଜାତ—Born; produced.
ବଧି ପ୍ରଭୁ ଅଧିକ ଉଜନା ହେଲେ ଜନ । ଭଞ୍ଜ. ବୈଦେହୀଶବିଳାସ ।

**ଜନିକା**—ସଂ. ବି. ସ୍ତ୍ରୀ. ( ଜନକ+ସ୍ତ୍ରୀ. ଆ )—
Janikā ୧ । ମାତା—1. Mother.
(ଜନକ—ପୁଂ) ୨ । ସ୍ନୁଷା; ପୁତ୍ରବଧୂ -2. Daughter-in-law.
ବିଣ· ସ୍ତ୍ରୀ—ଉତ୍ପାଦିକା—Producing.

**ଜନିତ**—ସଂ. ବିଣ. ( ଜନ ଧାତୁ ଣିଚ ଜନି ଧାତୁ=ଜନ୍ମାଇବା+କର୍ମ.ତ;
Janita ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ସମସ୍ତପଦରେ
(ଜନିତା—ସ୍ତ୍ରୀ) ବ୍ୟବହୃତ ହୁଏ, ଯଥା —ଦୁଃଖଜନିତ )—
୧ । (ଅମୁକଠାରୁ) ଜାତ—1. Born of.
( ଯଥା—ବିମାତୃଜନିତ ସନ୍ତାନ । )
୨ । ( ଅମୁକରୁ ) ଉତ୍ପନ୍ନ—2. Produced from.
( ଯଥା—ରୌଦ୍ରଜନିତ ଉତ୍ତାପ । )
୩ । (ଅମୁକ) ଦ୍ୱାରା ସୃଷ୍ଟ—3 Created by.
( ଯଥା—ଈଶ୍ୱରଜନିତ ଜୀବ । )
୪ । (ଅମୁକ କାରଣରୁ) ଘଟିଥିବା—
4. Due to; happened on account of.
( ଯଥା—ପ୍ରହାରଜନିତ ଅପମାନ । )
୫ । ( +କର୍ତ୍ତୃ. ତ ) ଉତ୍ପାଦନକାରୀ—
5 Giving birth to (Apte)

**ଜନିତା**—ସଂ. ବି. ପୁଂ. ( ଜନ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ. )—
Janitā ଜନକ; ପିତା—Father.
(ଜନିତ୍ରୀ—ସ୍ତ୍ରୀ) ସଂ. ବିଣ. ସ୍ତ୍ରୀ. (ଜନିତ+ସ୍ତ୍ରୀ. ଆ)--ଜନିତର ସ୍ତ୍ରୀଲିଙ୍ଗ-
Feminine of Janita.
ଦେ. ବିଣ. ( ସଂ. ଜନିତ )—ଜାତ—Born; produced.
ଦେବ ଉପବନେ ହୋଇ ଜନିତା । କବିସୂର୍ଯ୍ୟ ସଙ୍ଗୀତ ।

**ଜନିତା କରିବା**—ଦେ. କ୍ରି—ପ୍ରକାଶ କରିବା; କହିବା—
Janitā kariba To give out; to speak out.
ବନଚାରଣ ଜନିତା କରେ ପୁଣ ପୁଣ ଯେ । ଭଞ୍ଜ. ବୈଦେହୀଶବିଳାସ ।

**ଜନିତ୍ୱ**—ସଂ. ବି. ପୁଂ. ( ଜନ ଧାତୁ+କର୍ତ୍ତୃ ତ୍ୱ )—ପିତା—
Janitwa Father (Apte).
(ଜନିତ୍ୱା—ସ୍ତ୍ରୀ)

**ଜନିତ୍ରୀ**—ସଂ.ବି. ସ୍ତ୍ରୀ. (ଜନ ଧାତୁ ଣିଚ ଜନି ଧାତୁ+କର୍ତ୍ତୃ. ତୃ+ସ୍ତ୍ରୀ.ଈ)
Janitri ୧ । ମାତା - 1. Mother.
୨ । ଜନି (ଦେଖ)—2. Jani (See)

**ଜନିମା**—ସଂ. ବି. ( ଜନ୍ ଧାତୁ+ଭାବ. ଇମନ୍; ୧ମା. ୧ବ. )—
Janimā ୧ । ଜନ୍ମ; ଉତ୍ପାଦନ—
1. Birth; production (Apte).

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାନା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବତ' - ପାଇଲେ 'ଅଲ୍‌ବତ୍' ଦେଖିବେ ।

୨ । (କର୍ତ୍ତୃ. ଇମନ୍) ସନ୍ତାନ—2. Offspring (Apte).
୩ । ବଂଶଧର—3. Descendant (Apte).
୪ । ସୃଷ୍ଟ ଜୀବ—4. Creature; being (Apte)
୫ । ଲିଙ୍ଗ; ସ୍ତ୍ରୀପୁରୁଷର ପ୍ରଭେଦଜ୍ଞାପକ ଚିହ୍ନ—
5. Gender; sex (Apte).
୬ । ଶ୍ରେଣୀ—6. Genus; kind (Apte).

**ଜନୀ**—ସଂ. ବି. ସ୍ତ୍ରୀ. ( ଜନ୍ ଧାତୁ+ଈ )—ଜନି ( ଦେଖ )
Janī — Jani ( See )

**ଜନୀନ**—ସଂ. ବିଣ. (ଜନ+ହିତାର୍ଥେ ଈନ; ଯଥା—ବିଶ୍ୱଜନୀନ=ଜଗତର
Janīna ମଙ୍ଗଳକର )—୧ । ଲୋକହିତକର; ସର୍ବସାଧାରଣଙ୍କ ହିତକର—1. Tending to public benefit; beneficial to the people.
୨ । ପ୍ରୟୋଜନାନୁଯାୟୀ—
2. Sufficient for one's needs or necessity.

**ଜନୁ**—ସଂ. ବି. ସ୍ତ୍ରୀ. ( ଜନ ଧାତୁ+ଭାବ. ଉ )—
Janu — ୧ । ଉତ୍ପତ୍ତି; ଜନ୍ମ—1. Birth; nativity.
(ଜନୂ—ଅନ୍ୟରୂପ) ୨ । ସୃଷ୍ଟି; ସର୍ଜନ—
2. Creation; production (Apte)
୩ । ଜୀବନ; ସ୍ଥିତି—3. Life; existence (Apte).
୪ । ଜନ୍ମସ୍ଥାନ—4 Birth-place (Apte).
୫ । ସୃଷ୍ଟ ଜୀବ—5. Creature; being (Apte).
୬ । ଶ୍ରେଣୀ; ଜାତି—6. Genus; kind (Apte .

**ଜନୁଆରି**—ବୈଦେ. ବି. (ଇଂ. ଜାନୁଆରୀ)—ଇଂରାଜୀ ପ୍ରଥମ ମାସ—
Januāri — The month of January.
জানুয়ারী
जनवरी

**ଜନେ**—ଦେ. ସର୍ବନାମ—(ସଂ. ଜନୈକ)—ଏକଜଣ; ଜଣେ—
Jane — An individual; a certain.
জন — ବେଦ ଅଧ୍ୟୟନ କରିବା ବଂଶ ଜନେ
जन — ତପସ୍ୟା କଲେ ଯାଇଁ ହିମାଳୟ ବନେ । କୃଷ୍ଣସିଂ. ମହାଭାରତ ଶାନ୍ତି ।
ବି. (ବହୁବଚନ)—ଲୋକମାନେ; ଜନମାନେ—
Men; people; persons.

**ଜନୋରି**—ବୈଦେ. ବି. (ଇ. ଜାନୁଆରୀ)—ଇଂରାଜି ପ୍ରଥମ ମାସ—
Janorī — The month of January.
জানুয়ারী
जनवरि

**ଜନ୍ତ**—ଦେ. ବି. (ସଂ. ଯମ ଧାତୁ; ଯନ୍ତ୍ର)—୧ । କ୍ଷେତ୍ରକୁ ଜଳ ଯୋଗାଇବା
Janta ପାଇଁ ତାଳ ବା ନଡ଼ିଆ ଗଛର ଭିତର ପାଖ କୋରି
(ଯନ୍ତ—ଅନ୍ୟରୂପ) ଏକଫାଳଦ୍ୱାରା ଖାଲରୁ ଉପରକୁ ପାଣି ଉଠାଇବାର ଯନ୍ତ୍ରବିଶେଷ—1. A contrivance made of a hollowed trunk of palm or cocoanut and turning it up and down on a pivot for lifting water for irrigating fields.

[ ଦ୍ର—ଗୋଟିଏ ନଡ଼ିଆ ବା ତାଳଗଛର ମୂଳଗଣ୍ଡିକୁ ଫାଳ କରି ତହିଁ ଭିତରୁ ଅନ୍ତଃସାର କାଢ଼ି ତହିଁର ମୂଳପାଖର ମୋଟା ମୁଣ୍ଡକୁ ଖଣ୍ଡିଏ ପଟାଦ୍ୱାରା ମୁଦ ଦିଆଯାଏ, ଏହି ଭାବରେ ଏ ଯନ୍ତ୍ର ତିଆରି ହୁଏ । ]

୨ । କାକରା ପିଠାଆଦି ତିଆରି କରିବା ନିମନ୍ତେ ସିଦ୍ଧ ହୋଇଥିବା ଖଳି—2. Dough (boiled flour) for cakes
୩ । କାକରା, ଆରିଷା ଆଦି ପିଠା ତିଆରି ହେବା ପାଇଁ ଦଳା ହୋଇଥିବା ଖଳି—3. Kneaded dough for cakes.
୪ । ଜନ୍ତା ( ଦେଖ )
4. Jantā ( See )

**ଜନ୍ତର**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଯନ୍ତ୍ର)—ଦେବପୂଜାର୍ଥ ଭୂମିରେ
Jantar କଟାଯିବା ମଣ୍ଡଳ (ଏହା ଉପରେ ନୈବେଦ୍ୟାଦି
(ଯନ୍ତର—ଅନ୍ୟରୂପ) ରଖାଯାଏ)—Figures drawn on the ground for placing offerings before a Deity during worship.

**ଜନ୍ତର କାଟିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଦେବପୂଜା ଉପଲକ୍ଷରେ
Jantar kāṭibā ମୁରୁଜଆଦିଦ୍ୱାରା ଭୂମିରେ ମଣ୍ଡଳାକାର କ୍ଷେତ୍ରମାନ ଅଙ୍କିବା—To draw figures on the ground for placing offerings on them.

**ଜନ୍ତର** (ଇତ୍ୟାଦି)—ଗ୍ରା. ବି. (ସଂ. ଯନ୍ତ୍ର)—ଯନ୍ତ୍ର ଇତ୍ୟାଦି (ଦେଖ)
Jantara (etc) — Jantra etc (See)

**ଜନ୍ତା**—ଦେ. ବି. (ସଂ. ଯନ୍ତ୍ର; ଯମ ଧାତୁ=ନିୟନ୍ତ୍ରିତ କରିବା, ଦମନ
Jantā କରିବା; ଯନ୍ତୃ=ନିୟାମକ, ଚାଳକ)—୧ । କମାରର ଭାତି;
জাঁতা ନିଆଁକୁ ପବନ ଯୋଗାଇବାର ମୁଣା—
जंतो, जंता — 1. Smith's bellows.
(ଯନ୍ତା—ଅନ୍ୟରୂପ) ୨ । ସୁନାରୂପାର ସରୁ ତାର ଟାଣିବା ନିମନ୍ତେ ବଣିଆଙ୍କ ବ୍ୟବହୃତ ଛିଦ୍ରଯୁକ୍ତ ଚଉଡ଼ା ଇସ୍ପାତଖଣ୍ଡ—
2. A plate of steel with holes to draw out fine wires of gold and silver.
୩ । ବାଘ ଓ ମୂଷାଆଦିଙ୍କୁ ଧରିବା ପାଇଁ କାଠର ପେଡ଼ା ବା ଯନ୍ତ୍ର—3. Trapan; a trap-house (furnished with a trap door) for catching tigers, mice etc.

ବାଳୁକଣା କୁତ୍ରାକରେ, ଭିନ୍ନ ଭିନ୍ନ ଶବଦ କଲା ସମ୍ପର୍କ ସନ୍ଧାରେ ।
ଚୁଡୁଖେଳ, ଶିଶୁଗୀତ ।

| ୧ | ଇ | ଉ | ଋ, ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ, ଷ | ଙ୍କ | ଙ୍ଗ | ଞ୍ଚ | ଞ୍ଜ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଜ | ନ୍ |

୪ । କାଷ୍ଠଖଣ୍ଡକୁ ତେରଛ ରଖି ତାହା କରତିବା ନିମନ୍ତେ ବଢ଼େଇ ବା କରତିମାନେ ଯେଉଁ ତ୍ରିକୋଣାକାର କାଠର ଘର ବ୍ୟବହାର କରନ୍ତି—
4. A triangular frame to support a log of of wood for sawing it.

୫ । ଜନ୍ତିବା, ପିଠାର ଖଳ ନିମନ୍ତେ ନିଆଁ ଉପରେ ଜଳମିଶ୍ରିତ ଶସ୍ୟଚୂନା ବସାଇ ତାହାକୁ ଚଟୁ ଦ୍ୱାରା ଦଳିବା—
5. Kneading of dough over the fire by stirring it with a ladle.

ପ୍ରାଦେ. ( ସମ୍ବଲପୁର ଓ ମେଦିନୀପୁର ) ବି—
ପେଷଣ ଯନ୍ତ୍ର; ଚକି—Mill-stone

ଜନ୍ତାଇବା—ଦେ. କ୍ରି—ଜନ୍ତିବାର ଣିଜନ୍ତ ରୂପ—
Jantāibā The causative of Jantibā.
( ଜନ୍ତେଇବା—ଅନ୍ୟରୂପ)

ଜନ୍ତାଜନ୍ତ—ଦେ. ବି—ବହୁଲୋକଙ୍କ ଘନ ସମାବେଶ; ଭିଡ଼—
Jantājanta Dense crowd; huddling together.
जँताजँाति ଦେ. ବିଣ—ଘନ ଭାବରେ ଏକ ସ୍ଥାନରେ ସନ୍ନିବିଷ୍ଟ
भीड़ ହୋଇଥିବା ବହୁ ବସ୍ତୁ ବା ମନୁଷ୍ୟ—
Huddled together; compressed together thronging; crowded
( ଯଥା—ରଥଯାତ୍ରାରେ ସହସ୍ର ସହସ୍ର ଯାତ୍ରୀ ବଡ଼ଦାଣ୍ଡରେ ଜନ୍ତାଜନ୍ତ ହୁଅନ୍ତି । )

ଜନ୍ତାଜନ୍ତି—ଦେ. ବି—୧ । ବହୁ ଲୋକଙ୍କ ଦେହ ପରସ୍ପର ଲଗାଲଗି; ଠେଲାଠେଲି—1. Huddling together,
Jantājanti mutual pressing; pushing each other in a narrow space
ଜଳଜନ୍ତୁ ସାଧୁ ପଇଟ୍ୟ ଜନ୍ତାଜନ୍ତି
ବେଢିଣ ଥାଇଁଛନ୍ତି ସଙ୍ଗେ ପନ୍ତି ପନ୍ତି । କୃଷ୍ଣସିଂହ. ମହାଭାରତ. ବନ ।
୨ । ବହୁ ଲୋକଙ୍କ ଦଳାଦଳି ବା ଭିଡ଼—
2. A huddling crowd; a pressing crowd.
୩ । ଜନ୍ତିବାର ଦଳିବା କର୍ମ, ଚକଟାଚକଟ—
3. Thorough kneading.
ବିଣ—ଲୋକ ଭିଡ଼ ଦ୍ୱାରା ପେଷି ହୋଇଥିବା; ପରସ୍ପର ନିବିଡ଼-ସଂଲଗ୍ନ—Huddled together; pressing each other.
ଏହି କାଳେ ହାତୀ ପର୍ବଏ ମେଘ ପନ୍ତି
ଆକାଶରେ ରହିବେ ହୋଇ ଜନ୍ତା ଜନ୍ତି । କୃଷ୍ଣସିଂହ. ମହାଭାରତ. ବନ ।

ଜନ୍ତାଳ—ଦେ. ବି—ଗ୍ରାମର ଲୋକଙ୍କଠାରୁ ଧନ ଓ ଖାଦ୍ୟଦ୍ରବ୍ୟ
Jantāla ଭେଦା କରି ଗ୍ରାମଦେବତାଙ୍କ ନିକଟରେ ଅନ୍ନ-ବ୍ୟଞ୍ଜନାଦି ରାନ୍ଧି ଯେଉଁ ଭୋଜି କରାଯାଏ—
A feast or picnic of villagers, consisting of food cooked and offered to the village-Deity, done by raising subscription from the villagers in money and kind.

ଜନ୍ତିବା—ଦେ. କ୍ରି—୧ । କାକରା ଆଦି ପିଠାର ଖଳ ତିଆରି କରିବା
Jantibā ପାଇଁ ଗୁଣ୍ଡଚୂନା ଆଦିକୁ ପାଣିରେ ସିଝା କରି
दला ନିଆଁ ଉପରେ ସିଝା ହେଉଥିବା ଅବସ୍ଥାରେ
गुँधना, सौंदना, ଚଟୁ ଦ୍ୱାରା ଉକ୍ତ ପିଣ୍ଡକୁ ଗୋଳିବା; ଘାଣ୍ଟିବା—
जंताना 1. To knead flour and water over fire to make dough for cakes.
୨ । ଅଳ୍ପ ସ୍ଥାନରେ ଘନ ଭାବରେ ଲଗାଲଗି କରି ଗୋଟିକ ଉପରେ ଗୋଟିଏ କରି ବହୁ ବସ୍ତୁକୁ ରଖିବା—
2. To huddle many things together within a small space.
୩ । ପେଷିବା—3. To pound.
୪ । ଦଳିବା—4. To compress.
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା ଓ ପକାଇବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

ଜନ୍ତି ହେବା—ଦେ. କ୍ରି—୧ । ଚୂର୍ଣ୍ଣ ହେବା; ବିନଷ୍ଟ ହେବା—
Janti hebā 1. To be destroyed or powdered.
୨ । ଅଳ୍ପ ସ୍ଥାନରେ ସଙ୍କୁଚିତ ହେବା; ଖୁନ୍ଦାଖାନ୍ଦି ହେବା; ଗାଢ଼ ସନ୍ନିବିଷ୍ଟ ହେବା—2. To be huddled up in a small space; to be crowded together; to contract into a small compass.
ବହୁତ ଜଳଜନ୍ତୁ ଜନ୍ତି ହୋଇଛନ୍ତି । କୃଷ୍ଣସିଂହ. ମହାଭାରତ. ଅଦି ।
୩ । ଦଳିତ ହେବା—3 To be compressed.
୪ । ହଇରାଣ ହେବା—
4. To be extremely troubled.
୫ । ଅତ୍ୟାଚାରିତ ହେବା—5. To be oppressed.
୬ । ଚକଟା ହେବା—6. To be kneaded.

ଜନ୍ତୁ—ସଂ. ବି. ( ଜନ ଧାତୁ + କର୍ତ୍ତୃ. ତୁ )—
Jantu ୧ । ଜନ୍ମଶୀଳ ଜୀବ; ପ୍ରାଣୀ—1. Living being;
जन्तु animal; creature; ( literally that
जानवर which is born ).
୨ । କୃମି—2. Worm; maggot.
ଦେ. ବି—୧ । ଜାନୋଆର; ପଶୁ—1. Beast; brute.
( ଯଥା—'ସେ ମନୁଷ୍ୟ ନୁହେଁ ଜନ୍ତୁଟିଏ' ଅର୍ଥାତ୍ ପଶୁ ପରି ନିର୍ବୋଧ । )
୨ । (ଶୁଭବାଚକ) ଖରଜନ୍ତୁ; ଲମ୍ବ ଜନ୍ତୁ; ସର୍ପ—
2. (euphemism) Serpent.
୩ । ବନ୍ୟ ଜନ୍ତୁ; ଶ୍ୱାପଦ ଜନ୍ତୁ—
3. Beast of prey; wild beast.
୪ । ମନୁଷ୍ୟ, ବ୍ୟକ୍ତି—
4. Person; individual; fellow.
( ଯଥା—'ଅମୁକ ଲୋକ କଅଣ ସାମାନ୍ୟ ଜନ୍ତୁଟିଏ ?' )

୫ । (ଲକ୍ଷଣାର୍ଥ) ଅତି ବୃହଦାକାର ପଦାର୍ଥ—
5. ( figurative ) A big thing.
[ ଦ୍ର—ବୃହଦାକାର ପଦାର୍ଥକୁ 'ଜନ୍ତୁ' ବୋଲି କଥା ପ୍ରସଙ୍ଗରେ ବୋଲଯାଏ, ଯେପରି କି ଛୋଟ ଘର ମଧ୍ୟରେ ଅତି ବଡ଼ ସିନ୍ଦୁକଟାଏ ରଖିବାକୁ ଗଲେ ଲୋକେ କହନ୍ତି ଏ ଘର ଏଡ଼େ ଜନ୍ତୁକୁ କାହିଁ ସମ୍ଭାଳବ ? ]
୬ । ମହାଭାରତୋକ୍ତ ସୋମକ ରାଜାଙ୍କ ପୁତ୍ର—
6 The son of king Somaka.
[ ଦ୍ର—ଏ ପୁତ୍ର ପରବର୍ତ୍ତିରେ ଚରବୀ ଆହୁତି ଦେଇ ହୋମ କରବାରୁ ଶତ ପୁତ୍ର ଲାଭ କରଥିଲେ—ହ୍ନ. ଶବ୍ଦସାଗର । ]
ସେ ପୁଅଟର ନାମ ଜନ୍ତୁ ବୋଲି ଦେଲେ—କୃଷ୍ଣସିଂହ. ମହାଭାରତ. ବନ ।

**ଜନ୍ତୁକମ୍ବୁ**—ସଂ. ବି—ଜୀବନ୍ତ ଶଙ୍ଖ—
Jantukambu A living conch

**ଜନ୍ତୁକା**—ସଂ. ବି ( ଜନ୍ତୁ+ଜାତାର୍ଥ. କ+ଆ )—ଲାଖ; ଲାକ୍ଷା (ହ୍ନ. ଶବ୍ଦସାଗର)—Shell lac
Jantukā

**ଜନ୍ତୁ କଲାଇବା**—ଦେ. କ୍ରି—ଶିକାର ସମୟରେ ହାତୀ ଆଦି ବନ୍ୟଜନ୍ତୁଙ୍କୁ ଖେଦା ମଧ୍ୟକୁ ଘଉଡ଼ାଇବା—
Jantu kilāibā
( ଜନ୍ତୁ କଲେଇବା—ଅନ୍ୟରୂପ ) To drive wild beasts (e. g. elephants) to an enclosure.

**ଜନ୍ତୁଘ୍ନ**—ସଂ. ବିଣ (ଜନ୍ତୁ + ହନ୍ ଧାତୁ କର୍ତ୍ତୃ. ଅ)—୧ । ଜୀବନାଶକ—
Jantughna 1. Destructive of life; fatal.
(ଜନ୍ତୁଘ୍ନୀ—ସ୍ତ୍ରୀ) ୨ । ଯାହା କୀଟାଦି ଜୀବ ନାଶ କରେ—
2. Insecticide; germicide; vermifuge.
ବି—୧ । ବିଡ଼ଙ୍ଗ; ବାଇବିଡ଼ଙ୍ଗ—1. Embellia.
[ ଦ୍ର—ଏହାର ଫଳ ଗୋଲମରଚ ପରି । ]
୨ । ହେଙ୍ଗୁ—2. Asafœtida.
୩ । ଏକପ୍ରକାର ଲେମ୍ବୁ ( ପ୍ରକୃତିବାଦ )—
3. A kind of lemon.

**ଜନ୍ତୁଜନ୍ତା**—ଦେ. ବି (ଜନ୍ତୁ+ନିରର୍ଥକ ଦ୍ୱିତୀୟ ସହଚର)—
Jantujuntā ୧ । ନାନାବିଧ ବନ୍ୟ ଜନ୍ତୁ—
ଜନ୍ତୁଟନ୍ତ 1. Many wild beasts (generally).
(ଜନ୍ତୁଜନ୍ତା—ଅନ୍ୟରୂପ) ୨ । ସରୀସୃପ; ସାପ, ବିଛା ଆଦି—
2. Reptiles.

**ଜନ୍ତୁଣି**—ପ୍ରାଦେ. (ଗଞ୍ଜାମ) ବି—ଖଳି (ଦେଖ)
Jantuṇi Khaḷi (See)

**ଜନ୍ତୁନାଥ**—ସଂ. ବି. (୬ଷ୍ଠୀ ତତ୍; ଜନ୍ତୁ+ନାଥ)—ଯମ—
Jantunātha Jama; the Hindu God of death.
କାମକୁ ଅନୁସରି ଯେତେ ଲୋକ ଅର୍ଥ
ଇଚ୍ଛାଧୀ ତାକୁ ସେବନ୍ତି ଜନ୍ତୁନାଥ—କୃଷ୍ଣସିଂହ. ମହାଭାରତ. ଉଦ୍‌ଯୋଗ ।

**ଜନ୍ତୁନାଶକ**—ସଂ. ବିଣ ( ଉପପଦ ତତ୍; ଜନ୍ତୁ+ନାଶକ )—
Jantunāśaka ଜନ୍ତୁଘ୍ନ (ଦେଖ)
Jantughna (See).

ସଂ. ବି—ହେଙ୍ଗୁ (ହ୍ନ. ଶବ୍ଦସାଗର)—Asafœtida.

**ଜନ୍ତୁପତି**—ସଂ. ବି—୧ । ଯମ—
Jantupati 1. The God of death.
୨ । ଚିତ୍ରଗୁପ୍ତ; ଯମଙ୍କ ପାଞ୍ଜିଆ—
2. The record-keeper of the God of death.
ଏ କଥା ଅଛି ଜନ୍ତୁପତି
ପାଞ୍ଜିରେ ଲେଖିବେ ଘଟତ—ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

**ଜନ୍ତୁଫଳ**—ସଂ. ବି (ବହୁବ୍ରୀହି; ଜନ୍ତୁ+ଫଳ; ଯେଉଁ ଫଳ ମଧ୍ୟରେ କୀଟ ଜନ୍ମନ୍ତି)—ଉଡ଼ୁମ୍ବର; ଯଜ୍ଞଡୁମ୍ବିର; ଡୁମ୍ବିର ଗଛ ଓ ଫଳ—The fig; Ficus Carica; the glomerous fig tree and its fruit.
Jantuphaḷa

**ଜନ୍ତୁମାରୀ**—ସଂ. ବି (ଜନ୍ତୁ+ମୃ ଧାତୁ ଣିଚ୍ ମାରି ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ.
Jantumārī (ହ୍ନ—କାଗେଜିଲେମ୍ବୁ—Lime fruit.

**ଜନ୍ତୁରାଜ**—ସଂ. ବି (ଜନ୍ତୁ+ରାଜା; ୬ଷ୍ଠୀ ତତ୍)—ଜନ୍ତୁରାଣ (ଦେଖ)
Janturāja Janturāṇa (See).

**ଜନ୍ତୁରାଣ**—ଦେ. ବି (ସଂ. ଜନ୍ତୁରାଜ)—ଯମ—
Janturāṇa The God of death.
ଦଣ୍ଡେ କମିଷେ ଥିଲେ ପ୍ରାଣ
ନ ନେଇ ପାରେ ଜନ୍ତୁରାଣ—ଜଗନ୍ନାଥ. ଭାଗବତ ।

**ଜନ୍ତୁରାୟ**—ଦେ ବି (ସଂ. ଜନ୍ତୁରାଜ)—ଯମ—
Janturāya The God of death
ସୋମକ ବୋଇଲେ ମୁଁ ଯିବି ମୋ ଗୁରୁଙ୍କୁ,
ନ ସିବ ଜନ୍ତୁରାୟେ ଜାଣ ହେ ସ୍ୱର୍ଗକୁ । କୃଷ୍ଣସିଂହ. ମହାଭାରତ ବନ ।

**ଜନ୍ତୁସାଇଁ**—ଦେ. ବି ( ସଂ. ଜନ୍ତୁ+ସ୍ୱାମୀ)—ଯମ—
Jantusāiṅ The God of death.
ଯେ ଧର୍ମରାଜ ଜନ୍ତୁସାଇଁ, ସେ ସଞ୍ଜମିନ ପୁରେ ଥାଇ—ଜଗନ୍ନାଥ. ଭାଗବତ ।

**ଜଣ୍ଡା**—ଦେ. ବି—ପିମ୍ପୁଡ଼ି ଜାତୀୟ ବଡ଼ କଳା ପୋକ—
Jaṇḍā A kind of big black ant; the black pismire or emmet.
କାନଜିଁଆ, ଜିଆଁ ପିମ୍ପୁଡ଼ା
ଚିଁଆ, ଚୁଁଆ, ଚୁଅଁଣୀ [ ଦ୍ର—ଏମାନେ ପିମ୍ପୁଡ଼ି ଠାରୁ ବଡ଼ ଓ ଅଧଇଞ୍ଚ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ଏମାନେ ଗୁଡ଼ ଓ ମିଷ୍ଟାନ୍ନ ପ୍ରଭୃତିରେ ଲାଗନ୍ତି । ସଣ୍ଢୁଆସି ପରି ଦୁଇଟି ବଡ଼ ଦାନ୍ତ ଏମାନଙ୍କ ମୁହଁରୁ ବାହାରି ଥାଏ । ଏମାନଙ୍କ କାମୁଡ଼ା ପିମ୍ପୁଡ଼ି କାମୁଡ଼ା ଠାରୁ ବେଶି ଯନ୍ତ୍ରଣାଦାୟକ । ଏମାନେ ଗଛର ବକଳ ତଳେ ଓ ଭୂମିରେ ଗର୍ତ୍ତ କରି ରହନ୍ତି । ନାନା ଶ୍ରେଣୀର ଜଣ୍ଡା ଅଛନ୍ତି ଯଥା—ଧୂଳିଆ ଜଣ୍ଡା, କାଠ ଜଣ୍ଡା, ଗୁଡ଼ିଆ ଜଣ୍ଡା, ଢେଙ୍ଗା ଜଣ୍ଡା, ବୁଢ଼ା ଜଣ୍ଡା ଓ ଉଡ଼ସ୍ତ ଜଣ୍ଡା ଇତ୍ୟାଦି । ଉଇ ପିମ୍ପୁଡ଼ିଙ୍କ ପରି ବର୍ଷାଦିନରେ ଏମାନଙ୍କର ପକ୍ଷୀ ଜନ୍ମେ ଓ ସେତେବେଳେ ସେମାନେ ଉଡ଼ି ପାରନ୍ତି । ଏମାନେ ଗୋଟିକ ପଛେ ଗୋଟିଏ ଏକ ବାଟରେ ଧାର ଲାଗିବାର ଦେଖାଯାଏ । ଧୂଳିଆ ଜଣ୍ଡାଙ୍କ କାମୁଡ଼ାରେ ସବୁ ଜଣ୍ଡାଙ୍କ ଅପେକ୍ଷା ବେଶି ଯନ୍ତ୍ରଣା ହୁଏ । ]

| ୧ | ଇ | ଉ | ଋ,ଋୃ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଏ | ଡ଼ଅ | ଲ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ର୍ଗ୍ୟ | ଡ଼ଅ | ଙ୍କ | ୩ |

**ଜଡାଖାଇ**—ଦେ. ବି ( ସଂ ପିଣ୍ଡାର, ପିଣ୍ଡାଲ) —ଏରଣ୍ଡାଦି ବର୍ଗର ଏକ-
Jandā-khāi ପ୍ରକାର ବନ୍ୟ ତରୁ—A kind of wild tree; Trewia Nudiflora; Premnum Tomentosa (Haines).
পিটলী, পাঙ্গোলী
**तुरि, नरफल्**
[ ଦ୍ର—ଏହା ଜଳ ନିକଟରେ ଜନ୍ମେ । ଏହାର ବକ୍କଲ ତଳେ ଜଡାମାନେ ବିଶେଷ ପରିମାଣରେ ରହନ୍ତି; ଏହାର ଫଳ ଛୋଟ ଛୋଟ ମାର୍ବଲ୍ ଭଳି ଓ ଅଖାଦ୍ୟ । ବସନ୍ତ କାଳରେ ଏ ଗଛ ପତ୍ର-ଝଡ଼ା ଦିଏ । ପତ୍ର ନ କଅଁଳୁଣୁ ଗଛ ଫୁଲ ଧରେ । ପତ୍ର ପାନପତ୍ର ଆକୃତିବିଶିଷ୍ଟ; ଏ ଗଛର କାଠ ନରମ । ଅଣ୍ଡିରିଗଛ ମାଈଗଛ ଠାରୁ ପୃଥକ । ଏହା ଫଳର ରସକୁ ବାଲିଜଡାଖିଆ ଘାଆରେ ଲଗାଇଲେ ଘାଆ ଶୁଖିଯାଏ । ]

**ଜଡାପିମ୍ପୁଡ଼ି**—ଦେ. ବି. (ସହଚର ଶବ୍ଦ)—ଜଡା ଓ ପିମ୍ପୁଡ଼ି—
Jandā-pimpurdi Ants and big black ants.

**ଜଡାମାରି**—ପ୍ରାଦେ (ଗଞ୍ଜାମ ଓ ଗଡ଼ଜାତ) ବି—ଜଡାଖାଇ (ଦେଖ)
Jandāmāri Jandākhāi (See)

**ଜନ୍ନା** (ଇତ୍ୟାଦି)—ଗ୍ରା. ବି—ଜହ୍ନ ଇତ୍ୟାଦି (ଦେଖ)
Janna (etc) Jahna etc (See)

**ଜନ୍ମ**—ସଂ. ବି. (ଜନ୍ ଧାତୁ+ଭାବ. ମନ୍= ଜନ୍ମନ୍. ୧ମା. ୧ବ)—
Janma ୧ । ଉତ୍ପତ୍ତି; ଆବିର୍ଭାବ—
1. Production; first appearance; origin.
୨ । ମାତୃଗର୍ଭରୁ ଉତ୍ପତ୍ତି—2 Birth.
୩ । ଜୀବନ—3. Life.
୪ । ( + ଅଧିକରଣ ମନ୍ ) ସଂସାର; ଜୀବଲୋକ—
4 The created beings; the animal world.

**ଜନ୍ମଅଷ୍ଟମୀ**—ଗ୍ରା. ବି—ଜନ୍ମାଷ୍ଟମୀ (ଦେଖ)
Janma-ashtami Janmāshtami (See)
ଭାଦ୍ରବ ମାସରେ ଜନ୍ମଅଷ୍ଟମୀ ସେ ଦିନ । ପ୍ରାଚୀ. ଶ୍ରୀଗୁରୁଭକ୍ତି ଗୀତା ।

**ଜନ୍ମ କରିବା**—ଦେ. କ୍ରି—ଗର୍ଭରୁ ଉତ୍ପାଦନ କରିବା; ପ୍ରସବ କରିବା—
Janma karibā The produce; to bring forth; to beget; to bear (a child).
জন্ম দেওয়া
**पैदा करना**

**ଜନ୍ମକୋଷ୍ଠା**—ଗ୍ରା. ବି. (ସଂ. ଜନ୍ମକୋଷ୍ଠୀ)—ଜନ୍ମକୋଷ୍ଠୀ (ଦେଖ)
Janma-koshthā Janma-koshthi (See)

**ଜନ୍ମକୋଷ୍ଠୀ**—ସଂ. ବି. (୬ଷ୍ଠୀ ତତ୍; ଜନ୍ମନ୍+କୋଷ୍ଠୀ)—
Janma-koshthi ଜନ୍ମପତ୍ରିକା; ଜାତକ—
Horoscope.

**ଜନ୍ମଗତ**—ସଂ. ବିଣ. (୨ୟା ତତ୍; ଜନ୍ମ+ଗତ)—୧ । ଯାହା ଜନ୍ମ ସମ୍ପର୍କରୁ କୌଣସି ଜୀବ ବା ବ୍ୟକ୍ତିଠାରେ ଥାଏ—
Janma-gata 1. Inherited from birth.
୨ । ବଂଶାନୁଗତ—2. Hereditary.

**ଜନ୍ମଗତ ଅଧିକାର**—ସଂ. ବି—ଯେଉଁ ଅଧିକାର ମନୁଷ୍ୟ ଜନ୍ମିବା ମାତ୍ରେ
Janma-gata adhikāra ଲାଭକରେ—Birth-right.

**ଜନ୍ମଗ୍ରହ**—ସଂ. ବି. (୬ଷ୍ଠୀ ତତ୍, ଜନ୍ମ+ଗ୍ରହ)—ଜନ୍ମଗ୍ରହଣ (ଦେଖ)
Janma-graha Janmagrahana (See)

**ଜନ୍ମଗ୍ରହଣ**—ସଂ. ବି (୬ଷ୍ଠୀ ତତ୍; ଜନ୍ମ+ଗ୍ରହଣ)—
Janma-grahana ଅଭ୍ୟୁଦୟ; ଆବିର୍ଭାବ; ଉତ୍ପତ୍ତି—
Being born.

**ଜନ୍ମଗ୍ରହଣ କରିବା**—ଦେ. କ୍ରି—ଭୂମିଷ୍ଠ ହେବା; ମାତୃଗର୍ଭରୁ ପୃଥିବୀକୁ
Janma-grahana karibā ଆସିବା—To be born.
জন্মগ্রহণ করা
**जनम लेना**

**ଜନ୍ମଜନ୍ମ**—ସଂ. ବି—ଜନ୍ମଜନ୍ମାନ୍ତର (ଦେଖ)
Janma-janma Janmajanmāntara (See)

**ଜନ୍ମଜନ୍ମାନ୍ତର**—ସଂ. ବି. (ଦ୍ୱନ୍ଦ୍ୱ; ଜନ୍ମ+ଜନ୍ମାନ୍ତର)—୧ । କୌଣସି ଜୀବର
Janmajanmāntara ଏକ ଜନ୍ମ ଓ ତାହାର ପରବର୍ତ୍ତୀ ଅନ୍ୟ ଜନ୍ମମାନ; ପ୍ରତିଜନ୍ମ—1 Successive births of the same individual.
୨ । ଅନନ୍ତକାଳ—2. Eternity.

**ଜନ୍ମଜନ୍ମାନ୍ତରୀଣ**—ସଂ. ବିଣ—( ଜନ୍ମଜନ୍ମାନ୍ତର+ଈନ୍ )—ପ୍ରତି ଜନ୍ମରେ
Janma-janmāntarina ଘଟୁଥିବା—Happening in successive births.

**ଜନ୍ମତିଥି**—ସଂ. ବି. (୬ଷ୍ଠୀ ତତ୍; ଜନ୍ମନ୍+ତିଥି)—ଯେଉଁ ତିଥିରେ
Janma-tithi କୌଣସି ବ୍ୟକ୍ତି ଜନ୍ମଗ୍ରହଣ କରିଥାଏ—
The lunar day of one's birth; birth-day.

**ଜନ୍ମତଃ**—ଦେ ଅ. (ଜନ୍ମ+୫ମୀ ବିଭକ୍ତିର ପ୍ରତ୍ୟୟ ତସ୍ )—
Janmatah ୧ । ଜନ୍ମସମ୍ପର୍କରୁ; ଆଜନ୍ମ—
1. From one's birth; since one's birth.
(ଯଥା—ସେ ଜନ୍ମତଃ ଅନ୍ଧ ।)
୨ । ଜନ୍ମଦ୍ୱାରା; ଜାତିରେ—2. By birth; by caste
(ଯଥା—ସେ ଜନ୍ମତଃ ଶୂଦ୍ର ।)

**ଜନ୍ମଦ**—ସଂ. ବି. ପୁଂ. (ଜନ୍ମନ୍+ଦା ଧାତୁ+କର୍ତ୍ତୃ. ଅ)—ପିତା—
Janmada Father.
(ଜନ୍ମଦା—ସ୍ତ୍ରୀ) ବିଣ. ପୁଂ—ଉତ୍ପାଦନକାରୀ- Producing.

**ଜନ୍ମଦାତା**—ସଂ. ବି. ପୁଂ—ଜନ୍ମଦ (ଦେଖ)
Janma-dātā Janmada (See)
(ଜନ୍ମଦାତ୍ରୀ—ସ୍ତ୍ରୀ )

**ଜନ୍ମଦିନ**—ସଂ. ବି. (୬ଷ୍ଠୀ ତତ୍; ଜନ୍ମନ୍+ଦିନ)—୧ । ଯେଉଁ ଦିବସରେ
Janma-dina ଜୀବ ଜନ୍ମଗ୍ରହଣ କରିଥାଏ—1. The solar day on which a man was born.
ଜନ୍ମ ଦେଇ ଜନ୍ମଦିନେ ମାତା ମୋତେ ଗଢ଼ିଗଲେ ଲୋକାନ୍ତର ।
ରାଧାନାଥ. ପାର୍ବତୀ ।
୨ । ବ୍ୟକ୍ତିର ଜୀବନକାଳ ମଧ୍ୟରେ ପ୍ରତିବର୍ଷ ପଡ଼ିବା ଜନ୍ମଦିନ; ସ୍ମାରକଦିନ; ବାର୍ଷିକ ଜନ୍ମଦିନ—
2. One's annual birth-day.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷରଙ୍କ ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'ଋଷ' ନ ମିଳିଲେ 'ଋଷ' ଦେଖିବେ; 'ବନ୍ଧି' ନ ପାଇଲେ 'ବନ୍ଧୀ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ଟର' ଦେଖିବେ ।

**ଜନ୍ମଦୁଃଖୀ**—ଦେ. ବି. ପୁଂ—ଜନ୍ମକାଳରୁ ଯନ୍ତ୍ରଣା ଅନୁଭବ କରୁଥିବା (ବ୍ୟକ୍ତି); ଆଜନ୍ମ ଦୁଃଖଭୋଗକାରୀ—
Janma-duḥkhī
(ଜନ୍ମଦୁଃଖିନୀ—ସ୍ତ୍ରୀ) (a person) Doomed to life-long suffering; miserable since birth.

**ଜନ୍ମ ଦେବା**—ଦେ. କ୍ରି—ଜନ୍ମ କରିବା (ଦେଖ)
Janma-debā Janma karibā (See)
জন্ম দেওয়া
पैदा करना

**ଜନ୍ମନକ୍ଷତ୍ର**—ସଂ. ବି. (ଜନ୍ମନ୍+ନକ୍ଷତ୍ର)—ଯେଉଁ ନକ୍ଷତ୍ରରେ କୌଣସି ବ୍ୟକ୍ତି ଜନ୍ମଗ୍ରହଣ କରିଥାଏ—
Janma-nakshatra
The asterism or astrological constellation which was in the ascendant when an individual was born; one's natal star.

**ଜନ୍ମନିୟନ୍ତ୍ରଣ**—ସଂ. ବି. (ଆଧୁନିକ ପ୍ରୟୋଗ)—କୃତ୍ରିମ ଉପାୟରେ ସ୍ତ୍ରୀ ଗର୍ଭବତୀ ନ ହେବାର ଉପାୟ ଅବଲମ୍ବନ -
Janma-niyantraṇa
Birth-control.

**ଜନ୍ମପତ୍ର**—ସଂ. ବି. (ଜନ୍ମନ୍+ପତ୍ର)—୧ । ଜନ୍ମପତ୍ରିକା (ଦେଖ)
Janma-patra 1. Janma-patrikā (See)
୨ । ଜୀବନଚରିତ (ହି. ଶବ୍ଦସାଗର)—2. Biography.
୩ । କୌଣସି ବସ୍ତୁର ଆଦିରୁ ଅନ୍ତ ପର୍ଯ୍ୟନ୍ତ ବିସ୍ତୃତ ବିବରଣ (ହି. ଶବ୍ଦସାଗର)—3. A detailed description of a thing from the beginning to the end.

**ଜନ୍ମପତ୍ରିକା**—ସଂ. ବି. (୬ଷ୍ଠୀ ତତ୍; ଜନ୍ମନ୍+ପତ୍ରିକା)—
Janma-patrikā ଜାତକ; କୋଷ୍ଠୀ—Horoscope.
(ଜନ୍ମପତ୍ର; ଜନ୍ମପତ୍ରୀ—ଅନ୍ୟରୂପ)

**ଜନ୍ମପରିଗ୍ରହ**—ସଂ. ବି.—(୬ଷ୍ଠୀ ତତ୍; ଜନ୍ମନ୍+ପରିଗ୍ରହ)—
Janma-parigraha ଜନ୍ମଗ୍ରହଣ (ଦେଖ)
Janma-grahaṇa (See)

**ଜନ୍ମପ୍ରତିଷ୍ଠା**—ସଂ ବି.—(ଜନ୍ମନ୍+ପ୍ରତି+ସ୍ଥାଧାତୁ+ଅ+ଆ)—ମାତା;
Janma-pratishṭhā ମାଆ (ହି. ଶବ୍ଦସାଗର)—1. Mother.
୨ । ଜନ୍ମସ୍ଥାନ (ହି ଶବ୍ଦସାଗର)—2. Birth-place.

**ଜନ୍ମଫଳ**—ସଂ. ବି. (ବହୁବ୍ରୀହି; ଜନ୍ମ+ଫଳ; ଏହାର ଫୁଲ ଦେଖାଯାଏ ନାହିଁ ବୋଲି)—ଉମ୍ବିର ଗଛ ଓ ତାହାର ଫଳ; ଉଡ଼ୁମ୍ବର ଗଛ ଓ ତାହାର ଫଳ—
Janma-phaḷa
The fig tree and its fruit.

**ଜନ୍ମବିଧବା**—ସଂ. ବି—ବାଳବିଧବା; ଅକ୍ଷତଯୋନି ବିଧବା (ହି. ଶବ୍ଦସାଗର)—A child-widow.
Janma-bidhabā

**ଜନ୍ମବୃତ୍ତାନ୍ତ**—ସଂ. ବି. (୬ଷ୍ଠୀ ତତ୍; ଜନ୍ମନ୍+ବୃତ୍ତାନ୍ତ)—ଉତ୍ପତ୍ତିର ବିବରଣ-
Janma-bruttānta Particulars of one's origin or birth.

**ଜନ୍ମଭ**—ସଂ. ବି.—(ଜନ୍ମ+ଭା ଧାତୁ+କର୍ତ୍ତୃ. ଅ)—୧ । ଜନ୍ମ ସମୟର ଲଗ୍ନ—1. The lagna or ascendant zodiacal sign at the time of one's birth.
Janmabha
୨ । ଜନ୍ମ ରାଶି (ଦେଖ)
2 Janma-rāsi (See)
୩ । ଜନ୍ମନକ୍ଷତ୍ରର ସଜାତୀୟ ନକ୍ଷତ୍ର—3 An asterism of the same class as one's natal asterism.

**ଜନ୍ମଭରି**—ଦେ. କ୍ରି. ବିଣ—ଜନ୍ମକାଳ ମଧ୍ୟରେ—
Janma-bhari For life; through one's lifetime.
জন্মভর
जनमभर

**ଜନ୍ମଭୂମି**—ସଂ. ବି.—(୬ଷ୍ଠୀ ତତ୍; ଜନ୍ମନ୍+ଭୂମି) ୧ । କୌଣସି ବ୍ୟକ୍ତି ଯେଉଁଠାରେ ଜନ୍ମଗ୍ରହଣ କରି ଥାଏ—
Janma-bhūmi
One's birth-place.
୨ । ସ୍ୱଦେଶ; ମାତୃଭୂମି; ଯେଉଁ ଦେଶରେ କୌଣସି ବ୍ୟକ୍ତି ଜନ୍ମଗ୍ରହଣ କରି ଥାଏ—One's native country; mother-land.

**ଜନ୍ମମରଣ**—ସଂ. ବି. (ବିପରୀତାର୍ଥ ସହଚର ଶବ୍ଦ; ଜନ୍ମ+ମରଣ)—
Janma-maraṇa ଜନ୍ମମୃତ୍ୟୁ (ଦେଖ)
Janma-mṛutyu (See)
ଜନ୍ମ ମରଣବରଷା, ଯା ନ ଜାଣେ ପୁରୁଷା । ଉଗ ।

**ଜନ୍ମମାଟି**—ଦେ. ବି.—ଜନ୍ମଭୂମି (ଦେଖ)
Janma-māṭi Janmabhūmi (See)
जनमधरती

**ଜନ୍ମମୃତ୍ୟୁ**—ସଂ. ବି.—(ବିପରୀତାର୍ଥ ସହଚର ଶବ୍ଦ)—ଜନ୍ମ ଓ ମୃତ୍ୟୁ—
Janma-mṛutyu Birth and death.

**ଜନ୍ମମୃତ୍ୟୁ ବହି**—ଦେ. ବି.—ଯେଉଁ ସରକାରୀ ପୁସ୍ତକ ବା ରେଜିଷ୍ଟରରେ ନିର୍ଦ୍ଦିଷ୍ଟ ରାଜକୀୟ ଇଲାକା ମାନଙ୍କରେ ଜନ୍ମ ହେବା ଓ ମରିବା ବ୍ୟକ୍ତିଙ୍କ ବିବରଣ ଲିପିବଦ୍ଧ ହୋଇ ରହେ—Birth and death register.
Janma-mṛutyubahi
জন্মমৃত্যু বই
जनममृत्युका रेजिष्टरी
(ଜନ୍ମମୃତ୍ୟୁ ରେଜିଷ୍ଟର—ଅନ୍ୟରୂପ)
[ଦ୍ର—ଏ ବହିକୁ ଗ୍ରାମର ଚୌକିଦାର ପୂରଣ କରି ପ୍ରତି ସାପ୍ତାହିକ ପାଳରେ ଥାନାର ଭାରପ୍ରାପ୍ତ କର୍ମଚାରୀଙ୍କୁ ଉକ୍ତ ବିବରଣମାନ ଜଣାଏ ।]

**ଜନ୍ମରାଶି**—(ଜ୍ୟୋତିଷ) ବ୍ୟକ୍ତିର ଜନ୍ମକାଳରେ ଯେଉଁ ରାଶିରେ ଚନ୍ଦ୍ର ଉଦିତ ହୋଇ ଥାଏ (ହି. ଶବ୍ଦସାଗର)—
Janma-rāśi
(Astrology) The sign of the zodiac in which the moon rises at the time of a person's birth.

**ଜନ୍ମଲଗ୍ନ**—ସଂ. ବି.—(ଜ୍ୟୋତିଷ)—ମନୁଷ୍ୟ ଜନ୍ମଗ୍ରହଣ କରିବା ସମୟରେ ଯେଉଁ ରାଶିର ଉଦୟ ହୋଇଥାଏ—
Janma-lagna
(Astrology) The zodiacal sign which is in the ascendant at the moment when a person is born.

| ୧ | ଇ | ଉ | ର୍,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଉଷ୍ମ | ତ୍ଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚଁ୍ୟ | ଇଅ | କ୍ତ | ନ |

ଜନ୍ମ ଲଭିବା—ଦେ. କ୍ରି—ଜନମିବା ( ଦେଖ )
Janma labhibā Janamibā ( See )

ଜନ୍ମଲାଭ—ସଂ. ବି· ( ୬ଷ୍ଠୀ ତତ୍; ଜନ୍ମ+ଲାଭ )—
Janma-lābha ଜନ୍ମଗ୍ରହଣ ( ଦେଖ )
Janma-grahaṇa ( See )

ଜନ୍ମସ୍ଥାନ—ସଂ. ବି—୧ । ଜନ୍ମଭୂମି ( ଦେଖ )
Janma-sthāna 1. Janmabhūmi (See)
୨ । ମାତୃଗର୍ଭ ( ହି. ଶବ୍ଦସାଗର )—
2. The mother's womb
୩ । କୁଣ୍ଡଳୀର ଯେଉଁ ସ୍ଥାନରେ ମନୁଷ୍ୟର ଜନ୍ମସମୟର ଗ୍ରହ-ଅବସ୍ଥାନ କରେ—3. The position occupied by a person's natal planet in the horoscope

ଜନ୍ମ ହେବା—ଦେ. କ୍ରି—ଜନମିବା ( ଦେଖ )
Janma hebā Janamibā ( See )

ଜନ୍ମାଇବା—ଦେ. କ୍ରି—୧ । ଜନ୍ମିବାର ଣିଜନ୍ତ ରୂପ—
Janmāibā 1. The causative form of Janmibā.
जन्माना ୨ । ଜାତ କରିବା—2. To produce.
जन्माना ୩ । ଘଟାଇବା—3. To cause to happen.
(ଜନ୍ମେଇବା—ଅନ୍ୟରୂପ) ୪ । ଉଦ୍ଗତ କରାଇବା—
4. To cause to rise.

ଜନ୍ମାଧିପ—ସଂ. ବି. ( ୬ଷ୍ଠୀ ତତ୍: ଜନ୍ମନ୍+ଅଧିପ )—
Janmādhipa । ଶିବ; ମହାଦେବ ( ହି. ଶବ୍ଦସାଗର )—
1. God Śiba.
୨ । ଜନ୍ମ ରାଶିର ଅଧିଷ୍ଠାତୃଦେବ—
2. The presiding Deity of one's natal sign.
୩ । ଜନ୍ମଲଗ୍ନର ସ୍ୱାମୀ—3 The presiding Deity of one's natal Lagna.

ଜନ୍ମାନ୍ତର—ସଂ. ବି. ( କର୍ମଧାରୟ; ଅନ୍ୟ+ଜନ୍ମ )—
Janmāntara ୧ । ଅନ୍ୟ ଜନ୍ମ; ପୂର୍ବବର୍ତ୍ତୀ ବା ପରବର୍ତ୍ତୀ ଜନ୍ମ—
1. One's next birth or previous birth.
୨ । ପରଲୋକ—2. The next world; existence after one's death.

ଜନ୍ମାନ୍ତରବାଦ—ସଂ. ବି—ମୃତ୍ୟୁ ପରେ ଜୀବର ଏ ସଂସାରରେ ପୁନର୍ବାର
Janmāntara-bāda ଜନ୍ମ ହେବା ବିଷୟକ ବିଶ୍ୱାସ ବା ମତ—
The doctrine or theory of transmigration.

ଜନ୍ମାନ୍ତରୀଣ—ସଂ. ବିଣ. ( ଜନ୍ମାନ୍ତର+ସ୍ୱାର୍ଥେ. ଈନ )—
Janmāntarīṇa ୧ । ଅନ୍ୟ ଜନ୍ମରେ ଘଟିବା—
(ଜନ୍ମାନ୍ତରୀୟ—ଅନ୍ୟରୂପ) 1. Happening in another birth.
୨ । ଜନ୍ମାନ୍ତର ସମ୍ବନ୍ଧୀୟ; ପରଲୋକ ବା ପୂର୍ବଜନ୍ମ ସମ୍ବନ୍ଧୀୟ—
2. Pertaining to one's past or future birth.

ଜନ୍ମାନ୍ଧ—ସଂ. ବିଣ ( ୫ମୀ ତତ୍; ଜନ୍ମ+ଅନ୍ଧ )—
Janmāndha ଆଜନ୍ମ ଅନ୍ଧ; ଯେ ଅନ୍ଧ ହୋଇ ଜନ୍ମି ଥାଏ—
(ଜନ୍ମାନ୍ଧା—ସ୍ତ୍ରୀ) One born-blind.

ଜନ୍ମାବଚ୍ଛିନ୍ନ—ସଂ. ବିଣ. ( ୫ମୀ ତତ୍; ଜନ୍ମ+ଅବଚ୍ଛିନ୍ନ )—
Janmābachchhinna ଜନ୍ମ ହେବାଠାରୁ ବରାବର ଘଟୁଥିବା; ଜୀବନବ୍ୟାପୀ— Lifelong.
ସଂ. ବି—ଯାବଜ୍ଜୀବନ ସମୟ; ଯେଉଁ ଲୋକ ଯେତେ ଦିନ ବଞ୍ଚିଥାଏ ସେହି କାଳ—One's life-time; the period of one's existence.

ଜନ୍ମାବଧି—ଦେ. କ୍ରି. ବିଣ. ( ଜନ୍ମ+ଅବଧି )—
Janmābadhi ଜଣକର ଜନ୍ମ ହେବା ଦିନରୁ; ଆଜନ୍ମ—
Since birth; from a person's birth.

ଜନ୍ମାଷ୍ଟମୀ—ସଂ. ବି. ( ୬ଷ୍ଠୀ ତତ୍; ଜନ୍ମ+ଅଷ୍ଟମୀ )—
Janmāshṭamī ଭାଦ୍ର କୃଷ୍ଣାଷ୍ଟମୀ; ଶ୍ରୀକୃଷ୍ଣଙ୍କ ଜନ୍ମତିଥି—
The birth-day of Śrīkṛushṇa; the 8th day of the dark fort night of the lunar month of Bhādra.
[ ଦ୍ର—ଭାଦ୍ର କୃଷ୍ଣାଷ୍ଟମୀ ଅର୍ଦ୍ଧରାତ୍ରି ସମୟରେ ଶ୍ରୀକୃଷ୍ଣଙ୍କର ଜନ୍ମୋତ୍ସବ ହିନ୍ଦୁଜଗତରେ ପାଳିତ ହୁଏ । କିନ୍ତୁ ବିଷ୍ଣୁପୁରାଣରେ ଶ୍ରୀକୃଷ୍ଣଙ୍କ ଜନ୍ମ ଶ୍ରାବଣ ମାସ କୃଷ୍ଣ ଅଷ୍ଟମୀରେ ହୋଇଥିବା ଉଲ୍ଲେଖ ଅଛି । ମୁଖ୍ୟ ଚାନ୍ଦ୍ର ମାସ ଓ ଗୌଣ ଚାନ୍ଦ୍ର ମାସ ଗଣନା ଏ ପ୍ରଭେଦର କାରଣ ଥିବାର ଜଣାଯାଏ । ହି. ଶବ୍ଦସାଗର । ]

ଜନ୍ମିତ—ଦେ. ବିଣ ( ସଂ. ଜାତ )—
Janmita ଔରସ; ଯାହାକୁ ଜନ୍ମ କରାଯାଇ ଅଛି—Begotten;
जन्मित which has been given birth to.
जन्मित् ( ଯଥା—ଜନ୍ମିତ ପୁତ୍ରଠାରୁ ପୋଷ୍ୟ ପୁତ୍ର ସ୍ଥାନ ଅଟେ । )

ଜନ୍ମିବା—ଦେ. କ୍ରି—୧ । ଭୂମିଷ୍ଠ ହେବା—
Janmibā 1. To be born.
जन्मा ଶାକ୍ୟସିଂହ ଶିଷ୍ୟାଗ୍ରଣୀ ନୃପ ଶିରୋମଣି
जन्मना ଜନ୍ମିଲେ ଅଶୋକ ନାମେ ନୃପ ମହାତେଜା ।
(ଜନ୍ମାଇବା—ଣିଜନ୍ତ) ରାଧାନାଥ. ମହାଯାତ୍ରା ।
୨ । ଜାତ ହେବା; ଉତ୍ପନ୍ନ ହେବା—
2, To be produced; to come to being.
୩ । (ବୃକ୍ଷ ଆଦି) ଉଠିବା—3. (a planet) To grow.
୪ । ଉଦୟ ହେବା—4. To rise.
୫ । ଦେଖାଯିବା; ଆବିର୍ଭୂତ ହେବା—4. To appear.

ଜନ୍ମୀ—ସଂ. ବି. ପୁଂ( ଜନ୍ମ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ. )—
Janmī ଜୀବ; ଜନ୍ତୁ; ପ୍ରାଣୀ—Animal.

ଜନ୍ମେଜୟ—ସଂ ବି—୧ । ଜନମେଜୟ ( ଦେଖ )
Janmejaya 1. Janamejaya ( See )
୨ । ବିଷ୍ଣୁ ( ହି. ଶବ୍ଦସାଗର )—2. Bishṇu.

ସାଧାରଣ ଲୋକେ ଅପର ଦୃଷ୍ଟାରେ ୨ ଚିହ୍ନ ୧ ଚିହ୍ନିତ ଅକ୍ଷରେ ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ, 'ଅଗିଁଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଳଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ।

୩। ପ୍ରସିଦ୍ଧ ନାଗବିଶେଷ ( ହି. ଶବ୍ଦସାଗର )—
3. Name of a mythological serpent.

**ଜନ୍ମୋତ୍ସବ**—ସଂ. ବି. ( ମ. ପ. ଲୋ; ଜନ୍ମ+ଉତ୍ସବ )—
Janmotsaba ୧। କୌଣସି ସନ୍ତାନର ଜନ୍ମହେବା ଉପଲକ୍ଷେ ଅନୁଷ୍ଠିତ ଉତ୍ସବ—1. Festivities observed on the occasion of the birth of a child.
୨। କୌଣସି ବ୍ୟକ୍ତିର ଜନ୍ମଦିନର ସ୍ମରଣାର୍ଥ ଅନୁଷ୍ଠିତ ଉତ୍ସବ—2. Festival observed to commemorate the birth-day of a person.
୩। ଜନ୍ମାଷ୍ଟମୀ ଉତ୍ସବ—3. The festival observed on Śrīkṛushṇa's birth-day.

**ଜନ୍ୟ**—ସଂ. ବିଣ. ୧। ( ଜନ ଧାତୁ+କର୍ତ୍ତୃ. ଯ )—
Janya ଜାୟମାନ; ଯେ ଜନ୍ମ ଗ୍ରହଣ କରେ—1. Born.
(ଜନ୍ୟା—ସ୍ତ୍ରୀ) ୨। (ଜନ ଧାତୁ+କର୍ମ ଯ) ଯାହାକୁ ଜନ୍ମ କରାଯାଏ; ଉତ୍ପାଦିତ—2 Created; begotten.
୩। (ଜନ ଧାତୁ+କର୍ତ୍ତୃ. ଯ ) ଯେ ଜନ୍ମ କରେ; ଉତ୍ପାଦକ—3. Begetter.
୪। (ଜନ+ଯ) ଜନହିତକର—4. Tending to the public good.
୫। ( ଜନ+ଯ ) ଜନ ସମ୍ବନ୍ଧୀୟ; ବ୍ୟକ୍ତିଗତ—5. Human; personal; individual.
୬। ଦେଶ ସମ୍ବନ୍ଧୀୟ—6. Relating to a country.
୭। ରାଷ୍ଟ୍ରୀୟ—7. Relating to the state.
୮। ଜାତୀୟ—8. National.
ବି—୧। ହଟ୍ଟ; ହାଟ—1. Market.
୨। ନିନ୍ଦା; ପରିବାଦ—2. Censure; blame.
୩। ବିବାଦ—3. Quarrel.
୪। ଜନ୍ମକାଳୀନ କୁଲକ୍ଷଣ—4. Bad omen observed at the time of one's birth.
୫। ଯୁଦ୍ଧ—5. Fight.
୬। ପ୍ରୀତି—6. Love.
୭। ବରର ବୟସ୍ୟ ବା ସଖା; ମାର୍କଣ୍ଡ଼ୀ—7. The friend or companion of a bride-groom.
୮। ପିତା—8. Father.
୯। (ଜନୀ+ଯ) ନବୋଢ଼ାର ଜ୍ଞାତି ବା ଭୃତ୍ୟ (ପ୍ରକୃତିବାଦ)—1. Kinsman or servant of a newly married bride.
୧୦। ଜନସାଧାରଣ ( ହି. ଶବ୍ଦସାଗର )—10. The general public.
୧୧। କିମ୍ବଦନ୍ତୀ—11. Rumour; report.
୧୨। ବର ( ହି ଶବ୍ଦସାଗର )—12. Bridegroom.
୧୩। ବରଯାତ୍ରୀ ( ହି. ଶବ୍ଦସାଗର )—13. The marriage-party accompanying a bridegroom.
୧୪। ଜାମାତା; ଜୁଆଁଇଁ ( ହି. ଶବ୍ଦସାଗର )—14. Son-in-law.
୧୫। ପୁତ୍ର ( ହି. ଶବ୍ଦସାଗର )—15. Son.
୧୬। ମହାଦେବ ( ହି ଶବ୍ଦସାଗର )—16. God Śiba.
୧୭। ଦେହ, ଶରୀର ( ହି. ଶବ୍ଦସାଗର )—17. Body.

**ଜନ୍ୟା**—ସଂ. ବିଣ. ସ୍ତ୍ରୀ ( ଜନ୍ୟ+ଆ )—ଜନ୍ୟର ସ୍ତ୍ରୀଲିଙ୍ଗ—
Janyā Feminine of Janya.
ବି. ସ୍ତ୍ରୀ. ( ଜନ୍ ଧାତୁ+ଯ+ସ୍ତ୍ରୀ ଆ )—
୧। ଆନନ୍ଦ—1. Gladness; joy.
୨। ମାତା; ଜନନୀ—2 Mother.
୩। ବଧୂର ସହଚରୀ ( ହି. ଶବ୍ଦସାଗର )—3. A friend or companion of a daughter-in-law or bride.
୪। ମାତୃସଖୀ - 4. The female attendant or friend of one's mother.
୫। ପ୍ରୀତି; ସ୍ନେହ—5. Love; affection.
୬। ବଧୂ ( ହି. ଶବ୍ଦସାଗର )—6 Daughter-in-law.

**ଜନ୍ୟୁ**—ସଂ. ବି. ( ଜନ ଧାତୁ+କର୍ତ୍ତୃ ଯୁ )—
Janyu ୧। ଅଗ୍ନି—1 Fire.
୨। ପ୍ରାଣୀ; ଜୀବ—2. Animal.
୩। ( +ଭାବ. ଯୁ ) ଜନ୍ମ; ଉତ୍ପତ୍ତି—3. Birth; production.
୪। ( ଜନ ଧାତୁ ଣିଚ ଜନି ଧାତୁ+କର୍ତ୍ତୃ. ଯୁ )—ବିଧାତା; ବ୍ରହ୍ମା—4. Brahmā, the Creator.

**ଜହ୍ନ**—ଦେ. ବି. ( ସଂ. ଜ୍ୟୋତ୍ସ୍ନା )—୧। ଚନ୍ଦ୍ର—
Janha 1. The moon.
जोन्ह ୨। ଚନ୍ଦ୍ରକିରଣ; ଜ୍ୟୋତ୍ସ୍ନା—2. Moonlight.

**ଜହ୍ନା**—ଦେ. ବି. (ସଂ. ଜାବନାଲ)—୧। ମକା—
Janhā 1. Indian corn.
जनार ୨। ବାଜରା; ଭୁଟ୍ଟା—2. Maize.
जोहार

**ଜପ୍ (ଧାତୁ)**—ସ—ମାନସ ପାଠ କରିବା; ମନେ ମନେ ପଢ଼ିବା—
Jap (root) To read something in one's mind.

**ଜପ**—ସଂ. ବି. (ଜପ୍ ଧାତୁ+ଭାବ. ଅ)—୧। ମନେ ମନେ ପୁନଃପୁନଃ
Japa ପାଠ—1. Muttering
... ଜପକୁ ବଳେ ପଢ଼ାଇଲେ ହାତ ଦେଇ। କୃଷ୍ଣସିଂହ. ମହାଭାରତ ବନ।

| ‹ | ଇ | ଓ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍ଷ | ଋଷ୍ଣ | ଋଥ | ଋ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୂ | ଲୃ | ଙ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଋଥ | ଢ଼ | ନୃ |

୨ । ମନ୍ତ୍ରାଦିର ଅର୍ଥପୂର୍ବକ ପୁନଃପୁନଃ ଉଚ୍ଚାରଣ ବା ଆବୃତ୍ତି—
2. Repetition of prayers or incantations.

୩ । ପୁନଃ ପୁନଃ ଆବୃତ୍ତିପୂର୍ବକ ବେଦାଧ୍ୟୟନ; ସ୍ୱାଧ୍ୟାୟ—
3 Recitation of the Bedas.

୪ । ଚୁପ୍ ଚୁପ୍ କରି କହିବା—4. Whispering.

୫ । ଜପମାଳା ସାହାଯ୍ୟରେ ଇଷ୍ଟମନ୍ତ୍ରକୁ ପୁନଃ ପୁନଃ ଆବୃତ୍ତି କରିବା—5 Telling of beads by reciting particular formulas silently.

[ ଦ୍ର—ପୁରାଣରେ ଜପ ୩ ପ୍ରକାର ଉଲ୍ଲେଖ ଅଛି—ମାନସ, ଉପାଂଶୁ ଓ ବାଚକ; କେହି କେହି ଜିହ୍ୱାଜପ ନାମରେ ୪ର୍ଥ ପ୍ରକାର ଜପ ଉଲ୍ଲେଖ କରିଅଛନ୍ତି । ମନେମନେ ମନ୍ତ୍ରର ଅର୍ଥ ମନନ କରି ଧୀରେଧୀରେ ଉକ୍ତ ମନ୍ତ୍ରକୁ ସ୍ମରଣ କରିବା ମାନସଜପ; ଓଠ ଓ ଜିଭ ହଲାଇ କ୍ଷୀଣସ୍ୱରରେ ଉଚ୍ଚାରଣ କରିବା ଉପାଂଶୁଜପ, ଓଠ ନ ହଲି କେବଳ ଜିଭ ହଲିଲେ ଜିହ୍ୱାଜପ ଓ ମନ୍ତ୍ରର ବର୍ଣ୍ଣମାନଙ୍କର ସ୍ପଷ୍ଟ ଉଚ୍ଚାରଣକୁ ବାଚକ ଜପ ବୋଲଯାଏ । ଜପ କରିବା ସମୟରେ ମନ୍ତ୍ରର ସଂଖ୍ୟା ପ୍ରତି ଧ୍ୟାନ ରଖିବାକୁ ପଡ଼େ, ଏଥିପାଇଁ ମାଳାର ଆବଶ୍ୟକତା ହୁଏ—ହି. ଶବ୍ଦସାଗର । ]

**ଜପ କରିବା**—ଦେ. କ୍ରି. (ସଂ. ଜପ୍ ଧାତୁ)—୧ । ମନେ ମନେ ମନ୍ତ୍ରାଦି ପୁନଃ ପୁନଃ ଆବୃତ୍ତି କରିବା; ଜପିବା—
Japa kariba
**जपा; जपकरना**
**जपना, जप करना**
1. To repeatedly mutter esoteric formulas silently.

୨ । ଜପମାଳା ସାହାଯ୍ୟରେ ସଂଖ୍ୟା ଗଣନା କରି ମନ୍ତ୍ରାଦି ପୁନଃ ପୁନଃ ଜପିବା; ମାଳି ଗଡ଼ାଇବା—2. To tell the beads by muttering certain formulas

କେହି ଅବା ଜପମାଳା ଜପେ ଅବିରତେ । ରାଧାନାଥ. ମହାଯାତ୍ରା ।

୩ । କୌଣସି କଥାକୁ ମନେ ମନେ ସର୍ବଦା ସ୍ମରଣ କରିବା—
3. To constantly remember a thing.

୪ । ଘୋଷିହେବା—4. To go on recapitulating or repeatedly uttering a thing.

**ଜପଜୀ**—ଦେ. ବି—ଶିଖମାନଙ୍କର ଧର୍ମଗ୍ରନ୍ଥବିଶେଷ—
Japaji
**जपजी**
A religious book of the Sikhs.
[ ଦ୍ର—ଏହାକୁ ନିତ୍ୟପାଠ କରିବା ଶିଖମାନଙ୍କର ମୁଖ୍ୟ ଧର୍ମରୂପେ ବିବେଚିତ । ]

**ଜପଟି ଧରିବା**—ଦେ. କ୍ରି. (ସଂ. ଗୃପ)—ଜାପି ଧରିବା; ଜାବୁଡ଼ି କରି ଧରିବା; ଖୁବ୍ ଜୋରରେ ଜାକି ଧରିବା; ଚପି ଧରିବା—To hold tightly or with pressure; to press.
Japati dhariba
ଚେପେ ଧରା
**चिपटना**

**ଜପଟିବା**—ଦେ. କ୍ରି. (ସଂ. ଗୃପ)—ଜପଟି ଧରିବା (ଦେଖ)
Japatiba
Japati dhariba (See)

**ଜପତ୍**—ବୈଦେ. ପ୍ରାଦେ. (ସମ୍ବଲପୁର) ବି—ଜପ୍ତ (ଦେଖ)
Japat
Japt (See)

**ଜପତପ**—ଦେ. ବି. ( ସଂ. ଜପ ଓ ତପଃ; ଦ୍ୱନ୍ଦ୍ୱ )—ମନ୍ତ୍ରଜପ ଓ ତପସ୍ୟା—Telling of beads and practising of religious austerities.
Japa tapa
জপতপ
**जपतप**

**ଜପନ**—ସଂ. ବି. (ଜପ୍ ଧାତୁ + ଭାବ. ଅନ)—୧ । ଜପିବା—
Japana
Muttering of mantras with beads.

୨ । (+କର୍ତ୍ତୃ. ଅନ)—ଜପକାରୀ ବ୍ୟକ୍ତି—
2. Mutterer of mantras.

**ଜପମାଳ**—ଦେ. ବି. (ସଂ. ଜପମାଳା)—୧ । ଜପମାଳା—
Japa-māla
জপামালা
**जपमाला**
1. A string of beads for muttering esoteric formulas.

୨ । (ଲକ୍ଷଣାର୍ଥ) ଜପମାଳା ପରି ସବୁବେଳେ ସ୍ମରଣୀୟ ବିଷୟ ବା ପ୍ରିୟତମ ବସ୍ତୁ ବା ବ୍ୟକ୍ତି—
2. (figurative) A dearly cherished matter, thing or person.
ଅନ୍ୟରୂପ: ଜପମାଳ, ଜପାମାଳା, ଜପାମାଳ

**ଜପମାଳା**—ସଂ. ବି. (୬ଷ୍ଠୀ ତତ୍; ଜପ + ମାଳା)—ଯେଉଁ ମାଳର ଗୁଣ୍ଡିକା ଗଣନା କରି ଇଷ୍ଟମନ୍ତ୍ରାଦି ଜପ କରାଯାଏ—
Japa-mālā
A rosary for counting the number of repetitions while repeatedly muttering a sacred formula.

କେହି ଅବା ଜପମାଳା ଜପେ ଅବିରତ । ରାଧାନାଥ. ମହାଯାତ୍ରା ।

**ଜପଯଜ୍ଞ**—ସଂ. ବି. ( ରୂପକ କର୍ମଧା ଜପ + ଯଜ୍ଞ )—୧ । ଜପରୂପ ଯଜ୍ଞ; ଜପ—1. Telling of beads considered equivalent to Vedic sacrifice.
Japa jajña

୨ । (ଦ୍ୱନ୍ଦ୍ୱ) ଜପ ଓ ଯଜ୍ଞ —2. Counting of beads and performance of Vedic sacrifices.

**ଜପହୋମ**—ସଂ. ବି. (ଜପ + ହୋମ, ରୂପକ କର୍ମଧା ଓ ଦ୍ୱନ୍ଦ୍ୱ)—
Japa-homa
ଜପଯଜ୍ଞ (ଦେଖ)
Japa-jajña (See)

**ଜପା**—ସଂ. ବି. ସ୍ତ୍ରୀ. (ଜପ୍ ଧାତୁ + କରଣ ଅ + ସ୍ତ୍ରୀ. ଆ)—
Japā
ମନ୍ଦାର ଗଛ ଓ ଫୁଲ; ଜବା—
The red Chinarose and its tree.

ଜପା ଦେ. ବି—୧ । ଜପ କରିବା—1. To muttering of mantras by counting the beads.
**जपना**

୨ । ସବୁବେଳେ ଭାବିବା—
2. Constantly thinking over a mattter.

ଦେ. ବିଣ.—୧ । ଜପ କରା ଯାଇଥିଲା (ମନ୍ତ୍ର)—
1. (holy formula) Counted on the beads.

୨ । ଯାହା ସାହାଯ୍ୟରେ ଜପ କରା ଯାଏ ( ଯଥା; ଜପା ମାଳା)
2. (rosary) With the help of which a holy formula is recited.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜପାଇବା**—ଦେ. କ୍ରି.—(ଜପିବାର ଣିଜନ୍ତରୂପ)—
Japāibā (The causative form of Japibā).
ଜପାନ ଅନ୍ୟ ଦ୍ୱାରା ଜପ କରାଇବା—
**जपाना** To cause another person to tell the beads.
(ଜେପେଇବା—ଅନ୍ୟରୂପ) ବେଗେ ସୃଷ୍ଟିକାଳ ହେବାକୁ ମୋ ଶିବ ଶିବମନ୍ତ୍ରର ଜପାଇବ । ଭକ୍ତ. ପ୍ରେମସୁଧାନିଧି.

**ଜପାଜପି**—ଦେ. ବି.—ନାନା ପ୍ରକାରର ମନ୍ତ୍ର ଜପ—
Japā japi Muttering of various incantations.
ଜପାଜପି
**जपाजपी**

**ଜପାମାଳ**—ଦେ. ବି.—ଜପମାଳା (ଦେଖ)
Japā-māḻa Japamāḻā (See)

**ଜପାମାଳା**—ଦେ. ବି—ଜପମାଳା (ଦେଖ)
Japā-māḻā Japamāḻā (See)
ଜପାମାଳା ରୂ ମୋ ସ୍ୱନବାସ୍,
ଯେତେବେଳେ ନକୁଳୁଛ ଅସ୍ । କବିସୂର୍ଯ୍ୟ. ସଙ୍ଗୀତ ।

**ଜପାମାଳି**—ଦେ ବି—ଜପମାଳା (ଦେଖ)
Japāmāḻi Japamāḻa (See)

**ଜପିତ**—ସଂ. ବିଣ. (ଜପ୍ ଧାତୁ+କର୍ମ ତ)—ଯାହା ଜପ କରାଯାଇ ଅଛି—
Japita That which has been muttered.

**ଜପ୍ତ**—ବୈଦେ. ବିଣ. (ଆ. ଜବ୍‌ତ, ଜପ୍‌ତ)—୧ । ଅଟକ ରଖାଯିବା, କ୍ରୋକ କରାଯାଇଥିବା (କୌଣସି ପଦାର୍ଥ)—
Japt
जब्त I. Kept under attachment or seizure; restrained; attached
**जपत**
୨ । ରାଜା ବା ସରକାରଙ୍କ ଦ୍ୱାରା ଅଧିକୃତ—
2. Taken possession of; seized by the king or Government.
୩ । ବାଜ୍ୟାପ୍ତ—3. Resumed.
୪ । ନିୟମରେ ଅମଳ—4. Regulated.
୫ । ଶାସିତ—5. Ruled; controlled; checked.
୬ । ଅପମାନିତ—6. Humbled; dishonoured; crestfallen.
୭ । ପରାଜିତ—7. Vanquished.
୮ । ଦଣ୍ଡିତ—8. Punished; taught a lesson.
୯ । ତାକିଦ୍ କରାଯାଇଥିବା—9. Warned.
୧୦ । କ୍ରୋକ୍ ସମ୍ବନ୍ଧୀୟ—
10. Relating to attachment.
ବି. (ଆ. ଜପ୍ତ)—୧ । କ୍ରୋକ୍—1. Attachment.
୨ । ସମ୍ପତ୍ତିକୁ ଅଟକାଇ ରଖିବା—
2. Taking a property under custody.
୩ । ରାଜା ବା ସରକାରଙ୍କ ଦ୍ୱାରା ଅପରାଧୀର ସମ୍ପତ୍ତି ଅଟକ—
3. Attachment of the property of an offending person by the king or by Government.

**ଜପ୍ତମାଫି**—ବୈଦେ. ପ୍ରାଦେ. (ସମ୍ବଲପୁର) ବି. (ଫା)—ଖଲାସ ରାଜବାଜ୍ୟାପ୍ତ ଜମି—Resumed revenue-free land.
Japta-māphi

**ଜପ୍ତି**—ବୈଦେ. ବି. (ଆ ଜବ୍‌ତୀ)—ଜପ୍ତ (ଦେଖ)
Japti Japt (See)
जबद
**जप्ती**

**ଜପ୍ତି ଅଫିସର୍**—ବୈଦେ. ବି. (ଆ. ଜପ୍ତୀ+ଇଂ. ଅଫିସର୍)—
Japti aphisar ବାଜ୍ୟାପ୍ତି ସମ୍ପତ୍ତିର ହିସାବ ରଖିବା ପାଇଁ ନିଯୁକ୍ତ
जबती अफिसर କର୍ମଚାରୀ—An officer deputed to
**जप्ती अफिसर** keep the account of attached properties.

**ଜପ୍ୟ**—ସଂ ବିଣ. (ଜପ୍ ଧାତୁ+କର୍ମ ଯ)—ଜପଯୋଗ୍ୟ; ଧ୍ୟେୟ—
Japya Fit to be recited or muttered with the help of a rosary.
ସଂ. ବି—ଜପ କରାଯାଇଥିବା ମନ୍ତ୍ର—
Muttered formula (Apte).

**ଜବ୍ (ଧାତୁ)**—ସଂ—ବେଗରେ ଚଳିବା—
Jab (root) To move swiftly.

**ଜବ୍**—ପ୍ରାଦେ (ସମ୍ବଲପୁର) ଅ. (ସଂ. ଯାବତ୍; ପ୍ରା. ଯାବ, ଜାବ;
Jab ତୁଳ. ସଂ. ଯଦା; ଯଦି; ଯଦ୍ୟପି)—୧ । ଯେବେ; ଯେଉଁ ସମୟରେ—1. When.
୨ । ଯଦି—2. If
[ ଦ୍ର—ଗୋପୀନାଥ ନନ୍ଦେ ଲାବଣ୍ୟବତୀରୁ 'ଜାନ ଜବାପେକ୍ଷୀ ପରଦର୍ପଣୀରେ' ଉଦାହରଣ ଦେଇ ଜବ୍ ଶବ୍ଦର ଓଡ଼ିଆରେ "ଯେବେ" ଅର୍ଥର ବ୍ୟବହାରକୁ ସମର୍ଥନ କରି ଅଛନ୍ତି ଓ ଲାବଣ୍ୟବତୀର ଲୋକନାଥ ଦାସଙ୍କ କୃତ ଟୀକାରେ ଏହି ଅର୍ଥ ସମର୍ଥିତ ହୋଇଅଛି । କିନ୍ତୁ ଓଡ଼ିଆ ଭାଷାରେ ଏହି ଶବ୍ଦର ହିନ୍ଦୀ ଅର୍ଥରେ ବ୍ୟବହାର 'ଜବ୍‌ତକ୍' ଶବ୍ଦ ଛଡ଼ା ପ୍ରଚଳିତ ଥିବାର ଦୃଷ୍ଟ ଯାଉନାହିଁ । କେବଳ ସମ୍ବଲପୁରରେ ହିନ୍ଦୀ ପ୍ରଭାବରୁ କୌଣସି କୌଣସି ସ୍ଥାନରେ ଏହି ଶବ୍ଦ ଓଡ଼ିଆଙ୍କ ମୁହଁରେ ଶୁଣାଯାଏ ] ।
ଦେ. ବି—ଲୁଣରକା ଘାସ କାଟିବା ଅସ୍ତ୍ର (ଗୋପୀନାଥ ନନ୍ଦ)—
An instrument for cutting the grass used as fuel in the manufacture of salt.

**ଜବ୍‌ତକ୍**—ଦେ. (ସଂ. ଯାବତ୍+ଫା. ତକ୍)—
Jab-tak ଯେତେଦିନ ପର୍ଯ୍ୟନ୍ତ—
यतक्षण Till which time; till when.
**जबतक**
(ଜବ୍‌ତଲକ୍—ଅନ୍ୟରୂପ)

**ଜବ୍‌ଦ ମାରିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଜାଣିଶୁଣି ଚୁପ୍ ରହିବା—
Jab-da māribā To keep silent about a matter which one knows.
(ଜବ ମାରିବା—ଅନ୍ୟରୂପ)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇପ୍ସ | ଡଅ | ଢ |
| ୨ | ଈ | ଊ | ରୁ | ଳୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ |

**ଜବ**—ସଂ. ବି. ( ଜୁ ଧାତୁ=ବେଗେ ଗମନ କରିବା + ଭାବ. ଅ, କିମ୍ବା ଜବ୍ ଧାତୁ + ଭାବ. ଅ )—
Jaba
ବେଗ—Velocity, speed
ସଂ. ବିଣ. ( + କର୍ତ୍ତୃ. ଅ )—ବେଗବାନ୍—Speedy; swift.

**ଜବଖାର**—ଦେ. ବି. ( ସଂ. ଯବକ୍ଷାର )—ଯବକ୍ଷାର ( ଦେଖ )
Jaba-khāra — Jabakshāra ( See )

**ଜବତ୍**—ବୈଦେ. ବିଣ. ( ଫା. ଜପ୍ତ୍, ଜବ୍ତ୍=ଅଧିକାର କରଣ; କୋରଖ କରିବା )—
Jabat
জবদ, জব্দ
जप्त, जब्त
୧ । ସ୍ୱାଧିକୃତ, ସ୍ୱାଧିକାରରେ ଆନୀତ; କବ୍ଜାଯୁକ୍ତ—1. Brought under one's control or power.
୨ । ଅଧିକୃତ—2. Occupied
୩ । ଦଳିତ; ପରାଜିତ—3. Defeated; crushed; subdued.
୪ । ଜପ୍ତ୍ ( ଦେଖ )—4. Japt ( See )
ବି—୧ । ଆୟତ୍ତକୁ ବା ଅଧିକାରକୁ ଆଣିବା—1. Taking possession of a thing.
୨ । ଜପ୍ତ୍ ( ଦେଖ )—2. Japt ( See )

**ଜବତ୍ କରିବା**—ଦେ. କ୍ରି—୧ । କୌଣସି ସମ୍ପତ୍ତିକୁ କୋରଖ କରିବା—
Jabat karibā
জব্দ করা
जब्त करना
1. To confiscate or attach a property.
୨ । କୌଣସି ବ୍ୟକ୍ତିକୁ ଦଣ୍ଡ ଦେଇ ସାଧ କରିବା—2. To teach a person a lesson; to crush a person.

କିନ୍ତୁ ସେ ତାହା ଖାତର ନ କରି ରାବଣକୁ ଅଗେ ଜବତ୍ କଲେ ।
ନୀଳକଣ୍ଠ ଦାସ. ପିଲାଙ୍କ ରାମାୟଣ ।

**ଜବତି**—ଦେ. ବିଣ. ( ଫା. ଜପ୍ତି; ଜବ୍ତୀ )—
Jabati
জব্বী
जप्ती, जब्ती
୧ । ଜବତ୍ ସମ୍ବନ୍ଧୀୟ—1. Relating to attachment.
( ଯଥା—ଜବତି ପରଓ୍ୱାନା । )—
୨ । ଜବତ କରାଯାଇଥିବା; ଅଧିକୃତ—2. Taken possession of.
( ଯଥା—ଜବତି ମାଲ । )

**ଜବନ**—ସଂ.ବି. (ଜୁ ଧାତୁ + ଭାବ.ଅନ; ବା. ଜବ୍ ଧାତୁ + ଭାବ.ଅନ)—
Jabana
୧ । ବେଗ—1. Velocity; speed; swiftness.
ସୁମନ୍ତ୍ର ଶିଷ୍ୟ କହିଲେ ମନ୍ଦ ବଳରୁ
ଜବନରେ କେହୁଁ କ୍ଷମା କେଉ ବନକୁ । ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୨ । ଗତି—2. Motion.
୩ । ( + କର୍ତ୍ତୃ. ଅନ ) ବେଗବାନ୍ ଅଶ୍ୱ—3 Fleet horse
୪ । ମୃଗବିଶେଷ—4. A species of deer.
୫ । ଯବନ (ପ୍ରକୃତିବାଦ) ( ଦେଖ )—5 Jabana ( See )
ସଂ. ବିଣ—ବେଗଗାମୀ—Swift; fleet.

**ଜବନିକା**—ସଂ. ବି. ( ଜୁ ଧାତୁ=ଯାଇବା + କରଣ ଅନ + ସ୍ତ୍ରୀ. ଈ + ସ୍ୱାର୍ଥେ.କ + ଆ )—୧ । ରଙ୍ଗାଳୟର ପରଦା; ତିରସ୍କରିଣୀ; କନାତ ବାଡ଼—1. Screen; curtain; drop-scene.
Jabanikā
( ଯବନିକା—ଅନ୍ୟରୂପ )
୨ । ଯବନ-ସ୍ତ୍ରୀ; ପଠାଣୀ—2. A Pathan female; a Mahomedan woman.

**ଜବନିକାପତନ**—ସଂ. ବି—୧ । ରଙ୍ଗମଞ୍ଚରେ ଅଭିନୟ ଶେଷରେ ପରଦା ପଡ଼ିବା—1. The fall of the curtain or dropscene on the stage.
Jabanikā-patana
୨ । (ଅଭିନୟାଦିର) ସମାପ୍ତି—2. Conclusion or finish ( as of a play ).

**ଜବନେ**—ଦେ. କ୍ରି. ବିଣ—ବେଗରେ—
Jabane — Swiftly.
ପବନେ ଚଳେକ ଜବନେ ଜବନେ ଇନ୍ଦିବର ଭୃଙ୍ଗମେଳା ।
ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଜବର୍**—ବୈଦେ. ବିଣ. (ଫା. ଜବ୍ର୍)—୧ । ବଳିଷ୍ଠ; ଦୃଢ଼—
Jabar — 1. Strong.
জবর
ज़बर
୨ । କ୍ଷମତାଶାଳୀ—2. Powerful.
୩ । ପ୍ରକାଣ୍ଡ—3. Large; stupenduous.
୪ । ଅଧିକ—4. Excessive.
୫ । ଖୁବ୍; ଅତ୍ୟନ୍ତ—5. Much, very.
୬ । ଭାରି; ଗୁରୁ—6. Heavy.
୭ । ଉତ୍କୃଷ୍ଟ—7. Superior.
୮ । ଚକଚକିଆ; ଆଡ଼ମ୍ବରପୂର୍ଣ୍ଣ—8. Splendid; grand.

**ଜବର୍ ଗୁଜବ୍**—ବୈଦେ. ବି. (ଫା)—ଭାରି ଚାଣୁଅ ଜନରବ—
Jabar gujab — Strong rumour.
( ଯଥା—ବଜାରରେ ଜବର୍ ଗୁଜବ୍ ଉଠିଛି ଯେ ବିଭାଗୀୟ କମିଶନରଙ୍କ ତଦନ୍ତର ଫଳ ଅମୁକଙ୍କ ଅପ୍ରୀତିକର ହୋଇଅଛି । )

**ଜବର୍ଜଂଘ**—ବୈଦେ. ବିଣ. ପୁଂ. (ଫା)—୧ । ଅସୁନ୍ଦର ଭାବରେ ଗୁଡ଼ାଏ ଲୁଗାପଟା ଦେହରେ ଗୁଡ଼ାଇ ହୋଇଥିବା (ବ୍ୟକ୍ତି)—1. Slovenly dressed.
Jabar-jamgha
জবড়জঙ্গ
जबड़जंग
୨ । ବଳିଷ୍ଠ ପଦ ଓ ଜଙ୍ଘବିଶିଷ୍ଟ—2. Strong-legged; having sinewy legs and thighs.
(ଜବରଜଙ୍ଘୀ—ସ୍ତ୍ରୀ)
(ଜବରଜଙ୍ଗ୍—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ, 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

ଜବର୍‌ଦସ୍ତ୍—ବୈଦେ. ବିଣ. ( ଫା. ଜବ୍‌ର୍‌ଦସ୍ତ୍ )—
Jabar-dast ୧ । ବଳବାନ୍; ବଳୁଆ; କ୍ଷମତାଶାଳୀ—
জবরদস্ত 1. Powerful; strong.
जबरदस्त ୨ । ଅଟଳ; ଦୃଢ଼—2. Firm.
୩ । ଜୁଲମ୍‌ବାଜ୍—3. Oppressive.
୪ । ବଳପ୍ରୟୋଗକାରୀ—4 Using force
୫ । ଦୁର୍ଦ୍ଦମନୀୟ—5. Invincible.

ଜବର୍‌ଦସ୍ତି—ବୈଦେ. ବି. (ଫା)—୧ । ଜୁଲମ, ପୀଡ଼ନ; ଅତ୍ୟାଚାର—
Jabar-dasti 1. Oppression.
জবরদস্তী ୨ । ଜୋର୍ ବା ବଳପ୍ରୟୋଗ—2. Use of force.
जबरदस्ती ୩ । ବାଧ୍ୟ କରିବା—3. Compulsion.
୪ । ଅନ୍ୟାୟ—4. Injustice.

ଜବର୍‌ଦାର୍—ବୈଦେ. ବିଣ. (ଫା)—ଜବର୍‌ଦସ୍ତ୍ (ଦେଖ)
Jabar-dār Jabar-dast (See)

ଜବର୍‌ଦାରୀ—ବୈଦେ. ବି. (ଫା)—ଜବର୍‌ଦସ୍ତି (ଦେଖ)
Jabar-dārī Jabardasti (See)

ଜବର୍ ଦୁର୍ଦ୍ଦାନ୍ତ—ଦେ. ବିଣ. (ଫା ଓ ସଂ)—ଜବର୍‌ଦସ୍ତି (ଦେଖ)
Jabar durddānta Jabardast (See)

ଜବରଅଠା ସିହା—ଦେ. ବି—(ଜମିଦାରୀ ଓ ମହାଜନୀ ସିରସ୍ତାରେ)
Jabara-athā siha ଯେଉଁ ହିସାବ ବହି ବା ସିହାରେ ଦୈନିକ ସମସ୍ତ ଆୟ ଚଢ଼ି ଥାଏ ଓ ପ୍ରତ୍ୟେକ ହିସାବର ବିବରଣ ଲେଖାଯାଇ ଥାଏ—A consolidated account-book of daily receipts in zamindari and mohājani business

ଜବରଜାଇ—ଦେ. ଅ—ଜବରଦାରି (ଦେଖ)
Jabara-jāi Jabaradāri (See)

ଜବରଦାରି—ଦେ. ଅ—ସବାରି ବେହେରାଙ୍କର ଏକପ୍ରକାର ଡାକ—
Jabaradāri A halloo of Palki-bearers.

ଜବରବୁକୁ—ଦେ. ବିଣ—୧ । ଖୁବ୍ ହିମତ୍ କଲାବାଲା—
Jabara-buku 1. Daring.
୨ । ସାହସୀ—2. Courageous.

ଜବରାନ୍—ବୈଦେ. କ୍ରି. ବିଣ (ଫା. ଜବ୍‌ରନ୍)—ବଳପୂର୍ବକ—
Jabarān Forcibly; by using force.
জব্রান্ ବିଣ—୧ । ଅତ୍ୟାଚାରୀ—1. Oppressive.
जबरन ୨ । ଅବୈଧ ବଳପ୍ରୟୋଗକାରୀ—
2. Using unlawful force.

ଜବରାନ୍ କରିବା—ଦେ. କ୍ରି—୧ । ବଳପ୍ରୟୋଗ କରିବା—
Jabarān karibā 1. To use force.
୨ । କୌଣସି କାର୍ଯ୍ୟ କରିବାକୁ ବାଧ୍ୟ କରିବା—
2. To force one to do a thing,
୩ । ଅତ୍ୟାଚାର କରିବା—3. To oppress.

ଜବରାନି (ଇତ୍ୟାଦି)—ବୈଦେ. କ୍ରି. ବିଣ. ( ଫା. ଜବ୍‌ରନ୍ )—
Jabarāni (etc) ଜବରାନ୍ ଇତ୍ୟାଦି ( ଦେଖ )
Jabarān etc. ( See )
ବି—ଜବର୍‌ଦସ୍ତି ( ଦେଖ )
Jabar-dasti ( See )

ଜବରାନି ଚୋରି—ବୈଦେ. ବି. ( ଫା ଓ ସଂ ) (କଟକିଆ ଭାଷା)—
Jabarāni chori ୧ । ବଳପ୍ରୟୋଗପୂର୍ବକ କରାଯିବା ଚୋରି-
1. Robbery.
୨ । ( ବହୁ ଲୋକଙ୍କ ଦ୍ୱାରା ) ଡକାଏତି—
2. Dacoity.

ଜବସ—ସଂ. ବି ( ଜୁ ଧାତୁ=ଶୀଘ୍ର ଜନ୍ମିବା+କର୍ତ୍ତୃ. ଅସ )
Jabasa ଘାସ; ତୃଣ—Grass.

ଜବା—ସଂ ସ୍ତ୍ରୀ. ( ଜପ୍ ଧାତୁ+କରଣ. ଅ+ସ୍ତ୍ରୀ. ଆ )—
Jabā ନାଲି ଓ ଧଳା ମନ୍ଦାର ଫୁଲ—
The ( red and white ) China rose;
Hibicus Rosa Sinensis.
ବୈଦେ. ବି. ( ଫା. ଜୁବ୍‌ବା; ଅ. ଜବହ୍=ଗଳା କାଟିବା )—
জুবা ୧ । ଜନ୍ତୁର କଣ୍ଠ କାଟିବା ସମୟରେ ମୁସଲମାନ୍‌ମାନଙ୍କର
जबह ପଢ଼ିବା ମନ୍ତ୍ର—1 The Quaoranic text
(ଜବା—ଅନ୍ୟରୂପ) muttered while cutting the throat of animals by the Mahomedans.
୨ । କୌଣସି ଜନ୍ତୁର ଗଳା କାଟି ପ୍ରାଣ ନେବା—
2. Killing an animal by cutting the throat.

ଜବାଇ—ବୈଦେ. ବି. ( ଅ. ଜବହ୍; ଜବୀହା )—
Jabāi ମୁସଲମାନ୍‌ମାନଙ୍କ ଦ୍ୱାରା କୋରାନର ନିର୍ଦ୍ଦିଷ୍ଟ ମନ୍ତ୍ର ପାଠ-
জবাই ପୂର୍ବକ ଈଶ୍ୱରଙ୍କ ନାମ ଉଚ୍ଚାରଣ କରୁ କରୁ ପଶୁପକ୍ଷୀ
जबह ଆଦିଙ୍କର କଣ୍ଠଚ୍ଛେଦନ; କୋରାନ୍ ମତେ ପଶୁଚ୍ଛେଦନ; ହଲାଲ୍; ହଲାଲ୍—Cutting the throat of animals by Mahomedans while uttering a certain Quoranic text.

ଜବାଇ କରିବା—ଦେ. କ୍ରି. ( ଅ ଜବହ୍ )—
Jabāi karibā ୧ । ହଲାଲ୍ କରିବା—1. To cut the
জবাইকরা throat of an animal as an offer-
जबह करना ing to God ( by Mahomedans ).
୨ । ହତ୍ୟା କରିବା—2. To kill.

ଜବାଧିକ—ସଂ. ବି. ( କର୍ମ୍ମ ତତ୍; ଜବ+ଅଧିକ )—
Jabādhika ବେଗବାନ୍ ଘୋଟକ—A steed; a swift horse.
ସଂ. ବିଣ. ( ବହୁବ୍ରୀହି )—ଅତିଶୀଘ୍ର; ବେଗବାନ୍—
Swift; fleet.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍ଖ | ଙ୍ଘ | ଛ୍ | ଝ |
| ୨ | ଈ | ଊ | ଋ | ଲୃ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଙ୍ଥ | ଞ୍ଚ | ନ୍ |

ଜବାନ୍—ବୈଦେ. ବି. ( ଫା )—୧ । ଜିହ୍ୱା; ଜିଭ—
Jabān 1. The tongue
জবান্ ୨ । ଭାଷା; ବୋଲି—2 Language.
**जबान** ୩ । ବାକ୍ୟ; ଉକ୍ତି—3. Word; speech.
୪ । ପ୍ରତିଜ୍ଞା; ପ୍ରତିଶ୍ରୁତି—4. Promise
୫ । ବୀର ପୁରୁଷ—5 Hero.
୬ । ମନୁଷ୍ୟ; ପୁରୁଷ—6. Man, male.
ବୈଦେ. ବିଣ. ( ଫା; ତୁଳ. ସ ଯୌବନ; ପ୍ରା. ଜୌବ୍ବାନ )—
୧ । ଯୁବକ—1. Young.
୨ । ବଳିଷ୍ଠ—2. Strong
୩ । ବୀର—3. Heroic; valiant.

ଜବାନ୍ ଦରାଜ୍—ବୈଦେ. ବିଣ. ( ଫା )—୧ । ଯେ ଧୃଷ୍ଟଭାବପୂର୍ବକ
Jabān darāj ଅନୁଚିତ କଥା କହେ; ମୁହଁବାଲିଙ୍ଗି କରିବା
জবান্দরাজ লୋକ—1. Bragging; boastful.
**जबानदराज** ୨ । ଧୃଷ୍ଟ; ଅବିନୀତ—2. Impudent.
(ଜବାନ୍‌ଦରାଜୀ—ବି)

ଜବାନ୍ ଦେବା—ଦେ. କ୍ରି. ( ଫା. ଜବାନ୍ )—
Jabān debā ନିଶ୍ଚିତ କଥା କହିବା; ସ୍ଥିର ଜବାବ ଦେବା;
জবান দেওয়া ମୌଖିକ ଅଙ୍ଗୀକାର କରିବା—To give one's
**जबान देना** word; to make an oral promise.

ଜବାନ୍‌ବନ୍ଦି—ବୈଦେ. ବି. ( ଫା. ଜବାନ୍‌ବନ୍ଦୀ )—୧ । କୌଣସି
Jabān-bandi ଅଦାଲତ ବା ହାକିମଙ୍କ ଦ୍ୱାରା ଲିପିବଦ୍ଧ ପକ୍ଷର ବା ସାକ୍ଷୀର ଇଜହାର; ଲିପିବଦ୍ଧ ସାକ୍ଷ୍ୟ; ଲିପିବଦ୍ଧ ସାକ୍ଷୀର ଉକ୍ତି—1. Deposition or oral evidence given before a court or officer and recorded by him; written deposition.
୨ । ସାକ୍ଷୀ ବା ପକ୍ଷର କଥିତ ପ୍ରମାଣ—
2. Oral evidence.

ଜବାନ୍‌ବନ୍ଦି କରିବା—ଦେ. କ୍ରି—ସାକ୍ଷ୍ୟ ଦେବା—
Jabān-bandi karibā To give one's evidence; to depose
জবানবন্দী করা
**इजहार देना**
(ଜବାନ୍‌ବନ୍ଦି ଦେବା—ଅନ୍ୟରୂପ)

ଜବାନ୍‌ବନ୍ଦି ଗ୍ରହଣ କରିବା—ଦେ. କ୍ରି—ସାକ୍ଷୀ ବା ପକ୍ଷର ଇଜହାର
Jabān-bandi grahaṇa karibā ଲିପିବଦ୍ଧ କରିବା—
জবানবন্দী গ্রহণকরা To take down the deposition of a witness.
**जबानबन्दी लेना**
(ଜବାନ୍ ବନ୍ଦି ନେବା—ଅନ୍ୟରୂପ)

ଜବାନି—ବୈଦେ. ବି. (ଫା. ଜବାନ୍)—୧ । ଉକ୍ତି; କଥା—
Jabāni 1. Word of mouth; speech.
জবানি ୨ । କଥିତ ଭାଷା—2. Language.
**जबानी** ୩ । ମୌଖିକ ସାକ୍ଷ୍ୟ -3. Oral evidence.
୪ । ମୌଖିକ ବର୍ଣ୍ଣନା—4. Oral description.
୫ । ଯୁବାକାଳ—5. Youth; time of youth.
জবানি ବିଣ. (ଫା. ଜବାନୀ)—୧ । ମୌଖିକ—1. Oral.
**जबानी** ୨ । କଥିତ—2. Spoken; uttered.
କ୍ରି. ବିଣ—୧ । ମୌଖିକରୂପେ—
1 Orally; in words of mouth.
୨ । ଅନ୍ୟ ବ୍ୟକ୍ତିର ମୁଖରୁ ଶୁଣି—
2. From word of mouth.

ଜବାବ୍—ବୈଦେ. ବି. (ଅ)—୧ । ବାକ୍ୟ—1. Word; speech.
Jabāb ୨ । ଉତ୍ତର—2. Reply; response; answer.
জবাব ୩ । ପ୍ରତ୍ୟୁତ୍ତର—3. Rejoinder.
**जबाब** ୪ । ଭୃତ୍ୟାଦିଙ୍କର ପ୍ରଭୁଙ୍କୁ ଅବଜ୍ଞାସୂଚକ ଉତ୍ତର—
4. Insubordinate reply given to a master or superior.
୫ । ପତ୍ରର ଉତ୍ତର—5. Reply to a letter.
୬ । ମକଦ୍ଦମାରେ ପ୍ରତିବାଦୀ ବା ମୁଦାଲ୍ଲ ଦାଖଲ କରିବା ଉତ୍ତର ବା ବର୍ଣ୍ଣନାପତ୍ର—6. Written statement filed by a defendant or accused in a court.
[ଦ୍ର—ପୂର୍ବେ ଆମ ଦେଶରେ ମୁସଲମାନ୍ ରାଜତ୍ୱ ସମୟରେ ଯେଉଁ ମକଦମାମାନ କଚେରୀରେ ହେଉଥିଲା ସେଥିରେ ବାଦୀ ଓ ପ୍ରତିବାଦୀଙ୍କ ପକ୍ଷରୁ ଏକାଧିକ ଜବାବ୍ ଦାଖଲ ହେଉଥିଲା । ପ୍ରତିବାଦୀର ପ୍ରଥମ ବର୍ଣ୍ଣନାପତ୍ର=ଜବାବ୍—Reply to the plaint; ଦ୍ୱିତୀୟ ଜବାବ୍=ରଦ୍‌ଜବାବ୍—Counter-reply, ତୃତୀୟ ଜବାବ୍=ଜଦ୍‌ଜବାବ—Rejoinder. ଶେଷ ଜବାବ୍=ହଦ୍‌ଜବାବ୍—Final rejoinder, last word of the defendent ]
୭ । ଶେଷ ଉତ୍ତର—7. Final reply.
୮ । କୈଫିୟତ୍—
8. Explanation called for officially.
୯ । ଅଙ୍ଗୀକାର—9. Promise.
୧୦ । ଚାକରକୁ ଚାକିରିରୁ ଶେଷ ବିଦାୟ ଦେବା—
10. Discharge or dismissal of a servant from service.
ସଞ୍ଜବେଳେ ଭେଟ ସାହେବାରୁ ତାକୁ କାରବାରରୁ ଜବାବ୍ ଦେଲେ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।
୧୧ । ଚାକିରିରୁ ଇସ୍ତଫା ଦେବା—
11. Resignation from service.
୧୨ । ମେଳ; ଏକବସ୍ତୁ ସଙ୍ଗେ ଯୋଡ଼ ଖାଇବାପାଇଁ ପ୍ରସ୍ତୁତ ଅନ୍ୟ ବସ୍ତୁ—12. Counterfoil; counterpart; a thing made in order to tally with or fit into another thing.

ସାଧାରଣ ଲୋକେ ଅନେକ ସ୍ଥଳରେ ଦୃଢ଼ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଂା' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ ଦେଖିବେ'

**ଜବାବ୍ କରିବା**—ଦେ. କ୍ରି—୧ । ପ୍ରତିବଚନ କହିବା—
Jabāb karibā 1. To respond.
জবাব করা ୨ । ଅଙ୍ଗୀକାର କରିବା—2. To promise.
**जबाब करना** ୩ । ସମୟର ସୀମା ନିର୍ଦ୍ଧାରଣ କରିବା—
3. To fix a time-limit
୪ । ଚୁକ୍ତି କରିବା—4 To contract; to undertake to do a thing.

**ଜବାବ୍‌ଦାର୍**—ପ୍ରାଦେ. ବୈଦେ. (ସମ୍ବଲପୁର) ବିଣ—ଦାୟୀ—Responsible.
Jabāb-dār ବି—ଦାୟିତ୍ୱ—Responsibility.

**ଜବାବ୍‌ଦେଇ**—ବୈଦେ. ବି (ଫା ଜବାବ୍ ଦେହ୍)—
Jabāb-dei ଜବାବ୍‌ଦେହି (ଦେଖ)
Jabāb-dehi (See)

**ଜବାବ୍ ଦେବା**—ଦେ. କ୍ରି—୧ । ଶବ୍ଦ କରିବା—
Jabāb debā 1. To make or produce a sound.
জবাব দেওয়া ୨ । ଉତ୍ତର ଦେବା—
**जबाब देना** 2 To respond; to give a reply.
୩ । ଭୃତ୍ୟକୁ ବରଖାସ୍ତ କରିବା—
3. To dismiss a servant.
୪ । ପ୍ରଭୁ ବା ଗୁରୁଜନମାନଙ୍କୁ ଅବଜ୍ଞାସୂଚକ ଉତ୍ତର ଦେବା; ଠେଁସିବା—4 To give insubordinate answers to a superior.
୫ । ଚାକିରିରୁ ଇସ୍ତଫା ଦେବା—
5. To resign a post or service.
୬ । ମକଦ୍ଦମାରେ (ପ୍ରତିବାଦୀ ବା ମୁଦାଲ୍ଲା) ନିଜର ବକ୍ତବ୍ୟ ବା ଉତ୍ତର ଦାଖଲ କରିବା—6. To file a written statement in a case.

**ଜବାବ୍‌ଦେହି**—ବୈଦେ. ବି. (ଫା. ଜବାବଦେହ୍ = ଉତ୍ତରଦାୟକ;
Jabāb-dehi ଜବାବ୍‌ଦେହୀ = ଉତ୍ତରଦାୟିତ୍ୱ)—୧ । ଦାୟିତ୍ୱ—
জবাবদিহি 1. Responsibility; liability.
**जबाबदेही** ୨ । କୈଫିୟତ—2 Explanation.
জবাবদিহ ବିଣ.—୧ । ଗୁରୁତର; ଦାୟିତ୍ୱପୂର୍ଣ୍ଣ—
**जबाबदेह** 1. Full of responsibility; grave.
୨ । ଯାହା ଉପରେ ଦାୟିତ୍ୱ ଥାଏ—2. Responsible.
୩ । କୈଫିୟତ ଦେବାର ଉପଯୁକ୍ତ—3. Requiring explanation; fit to be explained.

**ଜବାବ୍‌ଭ୍ରଷ୍ଟ**—ଦେ. ବିଣ. (ଫା. ଜବାବ୍ ଓ ସ. ଭ୍ରଷ୍ଟ)—ଯେ ଆପଣାର
Jabāb-bhrashta ଜବାବ ବା ପ୍ରତିଶ୍ରୁତି ରକ୍ଷା ନ କରେ—
(ଜବାବଭ୍ରଷ୍ଟା—ଅନ୍ୟରୂପ) False to one's promise or words.

**ଜବାବ୍ ସୁଆଲ୍**—ବୈଦେ. ବି. (ଫା. ଜବାବ୍ ଓ ସଆଲ୍)—୧ । ସୱାଲ୍
Jabāb suāl ଜବାବ; ଉତ୍ତର ପ୍ରତ୍ୟୁତ୍ତର; ପ୍ରଶ୍ନୋତ୍ତର—
জবাবসবাল 1. Question and answer.
**जबाब सवाल** ୨ । ମକଦ୍ଦମାର ପ୍ରମାଣ ଗୃହୀତ ହେବା ପରେ ଉଭୟ ପକ୍ଷର ଓକିଲଙ୍କର କୋର୍ଟ ଆଗରେ ବାଦାନୁବାଦ; ବାଦନା—
2. Argument by pleaders after close of the evidence of both parties in a case.
୩ । ବାଦପ୍ରତିବାଦ—3. Argument and counter-argument.

**ଜବାବି କାରଡ୍**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ ହି. ଏହି ଶବ୍ଦ ଏହି
Jabābi kārard ଅର୍ଥରେ)—ଯେଉଁ ପୋଷ୍ଟକାର୍ଡ଼ ସଙ୍ଗେ ପତ୍ର ପାଇବା ବ୍ୟକ୍ତିର ଉତ୍ତର ଦେବା ପାଇଁ ଆଉ ଗୋଟିଏ କାର୍ଡ଼ ଲାଗି ଥାଏ—Reply-card.

**ଜବାବି ତାର୍**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ହି. ଏହି ଶବ୍ଦ ଏହି
Jabābi tār ଅର୍ଥରେ)—ଯେଉଁ ଟେଲିଗ୍ରାମ୍‌ରେ ଉତ୍ତର ପାଇଁ ପ୍ରେରକ ଖରଚ ଦାଖଲ କରିଥାଏ—Reply-paid telegram.

**ଜବାରି**—ବୈଦେ. ବି. (ଫା. ଅ. ଜବାର୍ = ନିକଟବର୍ତ୍ତୀ ପ୍ରଦେଶ)—
Jabāri ସିତାର ଯନ୍ତ୍ରର ଲାଉର ପେଟପାଖ ଉପରେ ଥିବା ପୀଢ଼ା ବା
জবারী ଚଉକା ଉପରେ ତାରକୁ କୌଶଳରେ ବସାଇବା—
**जबारी** Mode of regulating the contact of the string of a guitar with the central support.
[ଦ୍ର—ଏପରି ବସାଇବା ଦ୍ୱାରା ଉକ୍ତ ତାର ସେ ଚଉକାର ଦେହରେ ନାମ ମାତ୍ର ଲାଗିଥାଏ । ସିତାରରେ ଜବାରି ନ ହେଲେ ସେ ତାରରୁ ମଧୁର ସ୍ୱର ଶୁଣା ଯାଏ ନାହିଁ । ]

**ଜବାହାରି**—ବୈଦେ. ବି. (ଅ. ଜହର; ଜଓହର; ଫା. ଗଓହର; ଭୁଲ.
Jabāhāri ସ. ଗହ୍ୱର)—ଜହରତ୍ (ଦେଖ)
Jaharāt (See)

**ଜବାହିର୍**—ବୈଦେ. ବି. (ଅ. ଜହର୍; ଜଓହର୍; ଫା. ଗଓହର୍; ଭୁଲ.
Jabāhir ସ. ଗହ୍ୱର)—ଜହରତ୍ (ଦେଖ)
Jaharāt (See)

**ଜବୀ**—ସ. ବିଣ. ପୁଂ (ଜବ ଧାତୁ + ଇନ୍; ୧ମା. ୧ବ.)—ବେଗବାନ୍;
Jabī ଦ୍ରୁତଗାମୀ—Swift.
(ଜବିନୀ—ସ୍ତ୍ରୀ) ବି.—୧ । ଘୋଡ଼ା—1. Horse.
୨ । ଓଟ—2 Camel.

**ଜବେ**—ଦେ. କ୍ରି. ବିଣ—(ସ. ଜବ = ବେଗ)—ବେଗରେ; ଶୀଘ୍ର—
Jabe Quickly.
ଏଥୁ ଅନ୍ତେ ତେବେ ପବନ ପରି ଜବେ । କୃଷ୍ଣସିଂହ. ମହାଭାରତ. ବନ ।
ବୈଦେ. ବି. (ଅ)—ଜବାଇ (ଦେଖ)
(ଜବ୍ବେ—ଅନ୍ୟରୂପ) Jabāi (See)

**ଜବେଇ**—ବୈଦେ. ବି. (ଅ. ଜବହ୍; ଜବାହା)—ଜବାଇ (ଦେଖ)
Jabei Jabāi (See)

**ଜବେ କରିବା**—ଦେ. କ୍ରି.—ଜବାଇ କରିବା (ଦେଖ)
Jabe karibā Jabāi karibā (See)
(ଜବ୍ବେ କରିବା—ଅନ୍ୟରୂପ)

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇ | ଋ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଞ୍ଚ | ନ |

ଜବ୍ — ବୈଦେ. ବିଣ. ଓ ବି. (ଫା) — ଜବତ୍ (ଦେଖ)
Jabt Jabat (See)

ଜବ୍ତି — ବୈଦେ. ବିଣ. (ଫା) — ଜବତି (ଦେଖ)
Jabti Jabati (See)

ଜବ୍ଦ (ଇତ୍ୟାଦି) — ବୈଦେ. ବିଣ. ଓ ବି (ଫା) — ଜବତ୍ ଇତ୍ୟାଦି (ଦେଖ)
Jabda (etc) Jabat etc (See)

ଜବ୍ଦ ହେବା — ଦେ. କ୍ରି. — ୧ । ପରାଜିତ ହେବା —
Jabda heba 1. To be vanquished.
जब्द हओया ୨ । ଦଣ୍ଡ ପାଇ ଶିକ୍ଷା ଲାଭ କରିବା —
जबत होना 2. To be taught a lesson.
୩ । (ସମ୍ପତ୍ତି) କ୍ରୋକ ହେବା —
3. (property) To be attached.
୪ । ଶାସିତ ହେବା; ଆୟତ୍ତ ହେବା — 4. To be restrained or checked; to be brought under control.
୫ । ଗିରଫ୍ଦାର୍ କରାଯିବା — 5. To be arrested.
୬ । ପୁଲିସଙ୍କ ଦ୍ୱାରା ଅଟକ ରଖାଯିବା —
6. To be detained by the police.

ଜମ୍ (ଧାତୁ) — ସଂ. — ୧ । ଭକ୍ଷଣ କରିବା —
Jam (root) 1. To eat; to devour.
୨ । ମୈଥୁନ କରିବା — 2. To cohabit.

ଜମ୍କିବା — ପ୍ରାଦେ. (ସମ୍ବଲପୁର) କ୍ରି. — ୧ । ଜୀଇଁବା —
Jamkiba 1. To live,
୨ । ଜମିବା — 2. To be gathered up; to conglomerate.
୩ । ପୂର୍ବାପେକ୍ଷା ଧନୀ ବା ବିଭବଶାଳୀ ହେବା —
3. To become richer or more affluent than before.

ଜମ୍ ଧରିବା — ଦେ.କ୍ରି. (ଇଂ.ଜାମ୍ = ଦୁଇ ପଦାର୍ଥ ଚିପି ହୋଇ ଲାଗିଯିବା)-
Jam dhariba ଜଙ୍ଗ ବା କଳଙ୍କି ଲାଗି ଦୁଇଟି ପଦାର୍ଥ ଦୃଢ଼ଭାବରେ
जाम खाओया ପରସ୍ପର ସହିତ ସଂଲଗ୍ନ ହୋଇଯିବା —
जाम खाना (two things) To be jammed together.
(ଜମ୍ ଖାଇବା — ଅନ୍ୟରୂପ) on account of rust.

ଜମ୍ରୁଖ୍ — ପ୍ରାଦେ. (ସମ୍ବଲପୁର) ବି. ( ଭୁଲ. ହି. ଜମରୁଦ୍ ) —
Jamrukh ପିଜୁଳି — Guava.

ଜମଉତ (ଇତ୍ୟାଦି) — ଦେ. ବି — ଜମାଉତ ଇତ୍ୟାଦି (ଦେଖ)
Jamauta (etc) Jamāuta etc. ( See )

ଜମକ — ଦେ. ବି ( ସଂ. ଯମକ ) —
Jamaka ୧ । ପଦ୍ୟରେ ଆଦ୍ୟ ବା ପ୍ରାନ୍ତ ବା ମଧ୍ୟସ୍ଥ ଅକ୍ଷରମାନଙ୍କ
जमक ମେଳ — 1. Alliteration in poetry
जमक

୨ । (ସଂ. ଚମତ୍କାର) ଜାକ୍ଜମକ୍; ଘନଘଟା; ଆଡ଼ମ୍ବର —
2. Pomp; show; parade;
୩ । ଔଜ୍ଜ୍ୱଲ୍ୟ; ଚକଚକ୍ୟ —
3. Splendour; brightness; sheen.
୪ । ଶ୍ରୀବୃଦ୍ଧି — 4. Prosperity; affluence.
୫ । ଯାହାଦ୍ୱାରେ ବହୁ ଦର୍ଶକ ଉତ୍ସାହିତ ହୋଇ ସମବେତ ହେବା ବା ରୁଣ୍ଡ ହେବା; ଭିଡ଼ —
5. Many people collecting to see a dance or show; crowd.
୬ । ଯାତ୍ରାଦିର ଯେଉଁ ଅବସ୍ଥାରେ ବହୁ ଲୋକ ଯାହା ଦେଖିବା ପାଇଁ ଆକୃଷ୍ଟ ହୋଇ ରୁଣ୍ଡ ହୁଅନ୍ତି —
6. That stage of a show or dance when it is at its height and when people crowd in large numbers being attracted by it; height of a show or display.
୭ । ଦଳ; ଗୋଷ୍ଠୀ — 7. Crowd; party.
୮ । ଏକତା — 8. Unity.
୯ । ସମବେତ ହେବା ଅବସ୍ଥା —
9. State of being gathered together.
ବିଣ — ୧ । ଗହଳିଆ — 1. Crowded.
୨ । ଆଡ଼ମ୍ବରପୂର୍ଣ୍ଣ —
2. Full of splendour or show.
୩ । ବହୁଲୋକଙ୍କୁ ଏକ ସ୍ଥାନକୁ ଆକର୍ଷଣ କରିବାର ଉପଯୁକ୍ତ-
3. Fit for attracting a big crowd to see it.

ଜମକ ଉଠାଇବା — ଦେ. କ୍ରି — ଜମକ ଜମାଇବା ( ଦେଖ )
Jamaka uṭhāibā Jamaka jamāibā ( See )
(ଜମକ ଉଠେଇବା-ଅନ୍ୟରୂପ)

ଜମକ ଉଠିବା — ଦେ. ବି — ଯାତ୍ରାଦିରେ ବହୁ ଲୋକଙ୍କୁ ଆକର୍ଷଣ କରି
Jamaka uṭhibā ରୁଣ୍ଡ କରାଇବାର ଅବସ୍ଥା —
जमक उठी Being at its height ( said of a
जमक उठना show, performance or parade when the biggest possible crowd is gathered to see it ).
( ଯଥା — ଆଜି ରାତିରେ ବ୍ରଜବାସୀ ଯାତ୍ରାରେ ବାଲ୍ମୀକି ସୁଗ୍ରୀବ ବାହାରିଲେ ଭାରି ଜମକ ଉଠିବ । )

ଜମକ ଜମାଇବା — ଦେ. କ୍ରି — କୌଣସି ଆଡ଼ମ୍ବରପୂର୍ଣ୍ଣ କାର୍ଯ୍ୟ ବା ବସ୍ତୁ
Jamaka jamāibā ଦେଖାଇ ବହୁଲୋକଙ୍କୁ ଆକର୍ଷଣ କରିବା —
जमक जमान To attract a big crowd to a place by
जमक जमाना a pompous show display or
(ଜମକ ଜମେଇବା — ଅନ୍ୟରୂପ) parade; to parade a showy thing

ସାଧାରଣ ଲୋକେ ଅପଠ ପୃଷ୍ଠାରେ ଦିଆଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—
'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କ୍ରୁଥ' ନ ମିଳିଲେ 'କୃଥ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧା' ନ ପାଇଲେ 'ଅର୍ଦ୍ଧା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଧନଆଁ ଜମକ ଜମେଇଲା
ଚାଉଁଳ ନାକରେ ସାଉଁଳ ଗୁଣା, ମାତ୍ରିତ ପକେଇଲା—ତଙ୍କ ।

**ଜମକ ଜମିବା**—ଦେ. ବି—ଜମକ ଉଠିବା ( ଦେଖ )
Jamaka jamibā — Jamaka uṭhibā ( See )

**ଜମକା(କେ)ଇବା**—ଦେ. କ୍ରି—ଆଡ଼ମ୍ବର ଦେଖାଇବା—
Jamakā(e)ibā To make a show; to parade.

**ଜମକି ଉଠିବା**—ଦେ. କ୍ରି—ଆଡ଼ମ୍ବର ବା କୋଳାହଳପୂର୍ଣ୍ଣ ହେବା—
Jamaki uṭhibā To become full of grandeur and crowded

ବପଦ ପଡ଼ିଲେ ଡାକ୍ତର ଅଉ ଓକିଲଙ୍କ ଦୁଆର ପର ଠାକୁରାଣୀଙ୍କ ଅସ୍ଥାନ ଜମକି ଉଠେ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ଜମଜ**—ସ. ବି—ଯମଜ ( ଦେଖ )
Jamaja — J̄amaja ( See )

**ଜମଜମାଣି**—ପ୍ରାଦେ. ( ଗଞ୍ଜାମ ) ବି. ( କଉଡ଼ି ହାତରେ ଧରି ପକାଇବା
Jama-jamāṇi ସମୟରେ ଜମ୍ ଜମ୍ ଶବ୍ଦ ହେବାରୁ )—
୧ । ଏକ ପ୍ରକାର କଉଡ଼ିଖେଳ—
1. A kind of indoor game with small sea-shells.
୨ । ଏକ ପ୍ରକାର ଦେଶୀ ଖେଳ—
2. A kind of outdoor country-game.

**ଜମଝାଳ**—ଦେ.ବି—ବିଶେଷ ପରିଶ୍ରମ ବା ହଠାତ୍ ଉପସ୍ଥିତ ଭୟ ଯୋଗୁଁ
Jama-jhāḻa ସମସ୍ତ ଶରୀରରୁ ବହିବା ଝାଳ; ଆପାଦମସ୍ତକ ବୋହି ଯିବା ଝାଳ—Profuse sweating over the whole body due to excessive exertion or fear

**ଜମଦଗ୍ନି**—ସ. ବି. (ନାମ)—(ଜମ ଧାତୁ+ଶତୃ=ଜମତ୍=ଭକ୍ଷଣକାରୀ
Jamadagni +ଅଗ୍ନି; ଯେ ଅଗ୍ନି ପରି ତ୍ୟାଗୀ ଅର୍ଥାତ୍ ଅଗ୍ନିଶର୍ମୀ ଥିଲେ )—ପରଶୁରାମଙ୍କ ପିତା; ଋଷିବିଶେଷ—
Name of a sage, father of Paraśurāma.

ଜମଦଗ୍ନି ବୋଇଲେ ଅଗ୍ନି ପରି ମୁହିଁ
ହେବାରୁ ଜମଦଗ୍ନି ନାମ ଅଛି ବହି । କୃଷ୍ଣସିଂହ. ମହାଭାରତ. ଅନୁଶାସନ ।

[ ଦ୍ର—ଏ ଭୃଗୁଋଷିଙ୍କ ବଂଶଧର । ଏହାଙ୍କର ପିତାଙ୍କ ନାମ ଋଚୀକ ଓ ମାତାଙ୍କ ନାମ ସତ୍ୟବତୀ । ଏହାଙ୍କ ଭାର୍ଯ୍ୟାଙ୍କ ନାମ ରେଣୁକା । ରେଣୁକାଙ୍କ ଗର୍ଭରେ ଏହାଙ୍କର ପାଞ୍ଚ ଗୋଟି ପୁତ୍ର ଜନ୍ମିଥିଲେ; ସେମାନଙ୍କ ମଧ୍ୟରେ ପରଶୁରାମ କନିଷ୍ଠ । ଜମଦଗ୍ନି ସମସ୍ତ ବେଦରେ ପାରଙ୍ଗମ ଥିଲେ । ଦିନେ ରେଣୁକା ସ୍ନାନକୁ ଯାଇ ସେଠାରେ ଗୋଟିଏ ଗନ୍ଧର୍ବଦମ୍ପତିଙ୍କୁ ଦେଖିବାରୁ ତାଙ୍କ ମନ କାମାସକ୍ତ ହେଲା ଓ ସେଥିଯୋଗୁଁ ରେଣୁକାଙ୍କର ପ୍ରଭା ମଳିନ ଦିଶିବାରୁ ଜମଦଗ୍ନି ତପୋବଳରେ ସ୍ତ୍ରୀଙ୍କର ଏହି ପାପଚିନ୍ତା ଜାଣି ପାରି ତାଙ୍କ ହାଣି ପକାଇବାକୁ ପୁତ୍ରମାନଙ୍କୁ ଆଦେଶ ଦେଲେ । ଅନ୍ୟ ଚାରିପୁତ୍ର ଏହା କରିବାକୁ କୁଣ୍ଠିତ ହେବାରୁ ପରଶୁରାମ ପିତାଙ୍କ ଆଜ୍ଞା ପାଳନ କଲେ । ଏଥିରେ ଜମଦଗ୍ନି ପରଶୁରାମଙ୍କ ପ୍ରତି ସନ୍ତୁଷ୍ଟ ହୋଇ ବର ମାଗିବାକୁ କହିବାରୁ ପରଶୁରାମ ସ୍ୱୀୟ ଜନନୀଙ୍କ ପୁନରୁଜ୍ଜୀବନ ପ୍ରାର୍ଥନା କଲେ ଓ ତଦନୁସାରେ ରେଣୁକା ପୁନର୍ଜ୍ଜୀବିତା ହେଲେ । ହୈହୟ ରାଜା କାର୍ତ୍ତବୀର୍ଯ୍ୟ ଏହାଙ୍କ ଆଶ୍ରମକୁ ଯାଇ ଏହାଙ୍କ କାମଧେନୁକୁ ହରଣ କରିବାରୁ ଜମଦଗ୍ନି କାର୍ତ୍ତବୀର୍ଯ୍ୟଙ୍କର ସହସ୍ର ହସ୍ତ ଛେଦନ କଲେ । କାର୍ତ୍ତବୀର୍ଯ୍ୟଙ୍କ ପୁତ୍ର ଏ ସମ୍ବାଦ ପାଇ ଜମଦଗ୍ନିଙ୍କ ଆଶ୍ରମକୁ ଯାଇ ଜମଦଗ୍ନିଙ୍କୁ ହତ୍ୟା କଲେ । ]

**ଜମଦାଢ଼**—ଦେ. ବି—ଯମଦାଢ଼ ( ଦେଖ )
Jamadāṛdha — J̄amadāṛdha ( See )

**ଜମନ**—ସଂ. ବି. ( ଜମ ଧାତୁ+ଭାବ ଅନ )—୧ । ଭକ୍ଷଣ—
Jamana 1. Eating
୨ । ମୈଥୁନ ( ହି. ଶବ୍ଦସାଗର )—
2 Coition; sexual intercourse.

**ଜମରିଳ**—ପ୍ରାଦେ. ( ଗଞ୍ଜାମ ) ବି—ଜମଝାଳ ( ଦେଖ )
Jamariḻa — Jamajhāḻa ( See )

**ଜମା**—ବୈଦେ ବି. ( ଆ. ଜମା=ସଂହତ; ଏକତ୍ରୀକୃତ )—
Jamā ୧ । ସଂହତି; ସମଷ୍ଟି—1. Collection.
জমা ୨ । ଏକତ୍ରୀକୃତ ବସ୍ତୁ; ସ୍ତୂପ—
जमा 2. Heap; accumulation.
( ଜମ୍ମା—ଅନ୍ୟରୂପ ) ୩ । ପୁଞ୍ଜି; ସ୍ତୂପୀକୃତ ବା ସଞ୍ଚିତ ଧନ—
3. Hoard of riches.
୪ । ପାଣ୍ଠି; ମୂଳଧନ—4. Capital of a business.
୫ । ମୋଟ ପ୍ରାପ୍ତି; ଆୟ—5. Total income; gross raceipt.

ଜମା ଅନୁସାରେ ବ୍ୟୟ ଲାଗି ଦାୟୀ
ହେବ, ଏହା ଦିନେ ମନେ କଲ ନାହିଁ—ରାଧାନାଥ. ଦରବାର ।

୬ । ଅନ୍ୟ ଲୋକ ନିକଟରେ ଧନାଦିର ନ୍ୟାସ ବା ଉପାର୍ଜନ—
6. Deposit of money.
୭ । ଜମିର ବାର୍ଷିକ ଖଜଣା ବା ରାଜସ୍ୱ—
7. Annual rent or revenue of a property.
୮ । ଆୟ; ପ୍ରାପ୍ତ ପଦାର୍ଥ ବା ଧାନ—
8. Income; receipt.
୯ । ଜମିବା, ଏକଥ ଠୁଳ ହେବା—
9. Being collecting together; being heaped up accumulating; gathering together.
୧୦ । ତରଳ ପଦାର୍ଥ ବସିଯିବା; ଘନୀଭବ—
10. Coagulating; freezing.
ବିଣ—୧ । ସ୍ତୂପୀକୃତ; ପୁଞ୍ଜୀକୃତ—1. Heaped; collected; gathered together; accumulated.
୨ । ନ୍ୟସ୍ତ; ସଞ୍ଚିତ—2. Deposited.
୩ । ସଞ୍ଚିତ—3. Hoarded.
୪ । ହିସାବର ଜମାଘରେ ଲେଖାଥିବା—
4. Entered on the credit side of an account.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ରୃ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ର୍ଙ୍କ | ଇଏ | ଉଅ | ଈ |
| ୨ | ଈ | ଊ | ରୂ | ଲୂ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ଊ | ନ୍ତ |

ଅ—ଆଦୌ; ନିକଟ ହେଲେ; ଅତି ଅଳ୍ପ ମଧ୍ୟ—
At all, at the least.

ନନ୍ଦନନ୍ଦନ ପ୍ରେମା, ପ୍ରେମାରେ ନୁହେ ଜମା, ନନ୍ଦସ୍ତ୍ରୀଙ୍କେ ସେବେ ଗତ ସ୍ୱ
କବିସୂର୍ଯ୍ୟ. ବଳଦେବ ରଥ. ଜ-ଗୀତ ।

ପ୍ରାଦେ.(ସମ୍ବଲପୁର) ଅ—ମାନେ;(ଏହା ଶବ୍ଦର ପୂର୍ବରେ ଓ ପରେ ସମୂହ ଅର୍ଥରେ ବ୍ୟବହୃତ ହୁଏ)—A suffix indicating the plural number.
( ଯଥା—ବାବୁଜମା, ଗାଈଜମା, ଜମାଗାଈ ଇତ୍ୟାଦି । )

ଜମାଇବା—ଦେ. କ୍ରି. ( ଆ. ଜମା=ସମୁହ; ଆ. ଜମାନା; ଜମିବାର ପ୍ରଯୋଜକରୂପ )—
Jamāibā
ଜମାନା
जमाना
(ଜମେଇବା—ଅନ୍ୟରୂପ)
୧ । ଜମା କରିବା, ଏକତ୍ର କରିବା—1. To collect or heap together; to accumulate.
୨ । ବହୁ ଲୋକଙ୍କୁ ଠୁଳ କରିବା—2. To cause to gather in a crowd; to bring together many people
୩ । ସଞ୍ଚୟ କରିବା—3 To hoard; to store up.
( ଯଥା—ଧନ ଜମାଇବା । )
୪ । ତରଳ ପଦାର୍ଥକୁ ଘନ ବା ଗାଢ଼ କରିବା; ଜମାଟ କରାଇବା—4. To congeal; to cause a liquid to coagulate or freeze.
୫ । ଦୃଢ଼ସଲଗ୍ନ କରିବା; ଦୃଢ଼ରୂପେ ସ୍ଥାପନ କରିବା—5. To settle firmly; to cause to be steadily or firmly rooted or established; to establish a thing firmly; to secure tightly; to attach firmly.
( ଯଥା—ଆସନ ଜମାଇ କରି ଘୋଡ଼ା ପିଠିରେ ବସିବା । )
୬ । ଗାଢ଼ାଲିଙ୍ଗନ କରିବା—6. To embrace.
ବାହୁକାନ୍ତି ଗୀବଦୁନେ ଅଙ୍କେ ଜମାରେ—କବିସୂର୍ଯ୍ୟ. ସଙ୍ଗୀତ ।
୭ । କାଠ ପଟା ଆଦିର ସର୍ବାବୟବରେ ଭାର ଚାପି ତାକୁ ସମଭୂଲ କରିବା; ନୂଆ ଭୁଲା ପୂରା ଯାଇଥିବା ଶେଯ ବା ଗଦି ଉପରେ ପଥର ଆଦି ରଖି ତାକୁ ବସାଇବା—7. To cause wooden plank etc to set firmly or uniformly by applying pressure at every point.
୮ । ଯାତ୍ରାନାଟ ଆଦିକୁ ବହୁଲୋକ ଆକୃଷ୍ଟ ହେବା ପ୍ରକାରେ ଲୋକଚିତ୍ତାକର୍ଷକ ସୁଢଙ୍ଗ ଆଦି କାଢ଼ିବା; ଜୁମାଇବା—8. To take proper means to attract a big crowd to a show or performance (by exhibiting popular performances ).

ପ୍ରାଦେ. (ସମ୍ବଲପୁର) କ୍ରି. (ଭୂଲ. ଏହି ଅର୍ଥରେ ହି. ଜମାନା)—ଦହି ଜମାଇବା; ଦୁଧରେ ମହି ପକାଇ ବସାଦହି କରିବା—To make curd by mixing sour whey with milk; to curdle milk.

ଜମା ଉଆସିଲ୍ ବାକି—ବୈଦେ ବି. (ଫା)—ଜମିଦାରର କେଉଁ ପ୍ରଜାଠାରୁ କେତେ ଖଜଣା ପ୍ରାପ୍ୟ ଓ ତାହାଠାରୁ ବର୍ଷକ ମଧ୍ୟରେ କେତେ ଖଜଣା ଅଦାୟ ହୋଇଅଛି ଓ ତାହାଠାରେ କେତେ ଖଜଣା ବାକି ଅଛି ଏହା ଯେଉଁ ତାଲିକା ବା କାଗଜରୁ ଦେଖାଯାଏ—A statement or paper showing the annual rent, realisation and outstanding balance due from each royat to the Zamindar.
Jamā uāsil bāki
জমা ওয়াসিল বাকি
जमा वासिल बाकी

ଜମାଉତ—ବୈଦେ. ବି. ( ଆ ଜମାଅତ୍=ମିଳନ ସଭା )—
Jamāut
जमयेत
जमात
୧ । ବହୁ ଲୋକଙ୍କ ମିଳନ—1 Assembly; a gathering.
୨ । ତୀର୍ଥପର୍ଯ୍ୟଟକ ହିନ୍ଦୁ ବୈରାଗୀ ଦଳବିଶେଷ—2. A company of Hindu ascetics travelling through India to different centres of pilgrimage.
ଜମାତ୍, ଜମାଏତ୍, ଜମାଓତ୍, ଜମାୟତ୍ } ଅନ୍ୟରୂପ
[ ଦ୍ର—ଗୋଟିଏ ଗୋଟିଏ ଜମାଉତ୍ ଦଳରେ ୧୦ ଠାରୁ ୧୦୦୦ ପର୍ଯ୍ୟନ୍ତ ବାବାଜୀ ଥାଆନ୍ତି । ଜମାଉତମାନେ କୌଣସି ସ୍ଥାନକୁ ଗଲେ ସେମାନଙ୍କ ଆଗମନକୁ ଜମାଉତଙ୍କ ଚଢ଼ାଉ ବା ଆକ୍ରମଣ ବୋଲାଯାଏ । ପ୍ରତି ଦଳରେ ଜଣେ ଜଣେ ମହନ୍ତ ବା ଦଳପତି ଥାଆନ୍ତି । ଏମାନଙ୍କ ସଙ୍ଗରେ ଗାଈ, ଘୋଡ଼ା, ଓଟ, ହାତୀ, ଠାକୁର, ଛତି, କାହାଳୀ ଆଦି ସବୁ ସାଜସଜ୍ଜା ଥାଏ । ଏମାନେ ଏକ ତୀର୍ଥସ୍ଥାନରୁ ଅନ୍ୟ ତୀର୍ଥସ୍ଥାନକୁ ଯିବା ବେଳେ ବାଟରେ ଯେଉଁଠାରେ ଡେରା କରନ୍ତି ସେଠାର ସ୍ଥାନୀୟ ଲୋକେ ଭକ୍ତିରେ ବା ଭୟରେ ଏମାନଙ୍କୁ ଖାଦ୍ୟ ( ଅନ୍ନ, ରୁଟି, ଡାଲି, ଘିଅ, ଦୁଧ, ଗଞ୍ଜେଇ ଆଦି ) ଯୋଗାନ୍ତି । ]

ଜମାଉତ୍‌ବସ୍ତ୍—ବୈଦେ. ବି. ( ଆ. ଜମାଅତ୍‌ବସ୍ତ୍ )—
Jamāut-bast
अवैध जमायेत
जमात, जमातबस्त
୧ । ଅବୈଧ ଜନତା; ବେ-ଆଇନ ଜନତା—1. Unlawful assembly.
ଜମାତ୍‌ବସ୍ତ୍, ଜମାଏତ୍‌ବସ୍ତ୍, ଜମାୟତ୍‌ବସ୍ତ୍, ଜମାଓତ୍‌ବସ୍ତ୍ } ଅନ୍ୟରୂପ
[ ଦ୍ର—ଆଇନ ଅନୁସାରେ ୫ ଜଣରୁ ବେଶି ଲୋକ କୌଣସି ବେଆଇନ କାର୍ଯ୍ୟ ବା ଅପରାଧ କରିବା ଉଦ୍ଦେଶ୍ୟରେ ଏକତ୍ର ସମବେତ ହେଲେ ତାହାକୁ ଜମାଉତ୍‌ବସ୍ତ୍ ବୋଲାଯାଏ । ଭାରତୀୟ ଦଣ୍ଡବିଧି ଆଇନର ୧୪୧ ଦଫାରେ ଏଥିର ସଂଜ୍ଞା ଓ ତହିଁର ଦଣ୍ଡ ବିଧାନ ୧୪୩ ଦଫାରେ ଅଛି । ]
ବିଣ—ଅବୈଧ ଉଦ୍ଦେଶ୍ୟରେ ଏକତ୍ର ସମବେତ ( ପାଞ୍ଚ, ୨, ତଦୂର୍ଦ୍ଧ୍ୱ ସଂଖ୍ୟକ ବ୍ୟକ୍ତି )—( five or more persons ) Assembled together for some unlawful purpose.

ସାଧାରଣ ଲୋକେ ଅପର ପୃଷ୍ଠାରେ ସଚିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚହ୍ନିର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, କୁଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

ଜମାଏ—ପ୍ରାଦେ (ବସ୍ତୁର) ସର୍ବନାମ—ସକଳ; ସମସ୍ତେ—
Jamāe All.

ଜମା କରିବା—ଦେ. କି. (ଆ ଜମା=ଏକତ୍ରୀକୃତ)—
Jamā karibā ୧। ଏକତ୍ର କରିବା; ଠୁଳ କରିବା—
জমা করা 1 To collect together; to heap up.
जमा करना ଆଉଁଳିବା ନବ ତମାଳ ରମା, ଝିଙ୍କି ଅଣି ଅଙ୍ଗେ କଲଣ ଜମା।
କବିସୂର୍ଯ୍ୟ କଣୋଗୁତମ୍, ୫ ଗୀତ।
୨। ସଞ୍ଚୟ କରିବା—1. To hoard up
୩। ଗଚ୍ଛିତ ରଖିବା—
3. To deposit or put in trust.
୪। ବହୁ ଲୋକଙ୍କୁ ଏକତ୍ର ଠୁଳ କରାଇବା—
4. To cause a multitude to assemble.
ପ୍ରାଦେ. (ସମ୍ବଲପୁର) କି—ଦହି ମୋହିଁବା—
To churn curd.

ଜମା ଖର୍ଚ୍ଚ—ବୈଦେ. ବି. (ଆ. ଜମା+ଖର୍ଚ୍ଚ ବିପରୀତ ସହଚର ଶବ୍ଦ)—
Jamā kharcha ୧। ଆୟ ଓ ବ୍ୟୟ—
জমাখরচ 1. Income and expense.
जमाखर्च ୨। ଆୟବ୍ୟୟର ହିସାବ—2 Statement or account of receipts and disbursements.
୩। ହିସାବବହିର ଯେଉଁ ଦୁଇ (ବାମ ଓ ଡାହାଣ) ପାଖରେ ଯଥାକ୍ରମେ ଆୟ ଓ ବ୍ୟୟର ବିବରଣମାନ ଲେଖାଯାଏ—
3. The debit and credit sides of an account-book.
୪। ଦୈନିକ ଜମାର ଓ ଖରଚର ହିସାବ ଲିପିବଦ୍ଧ ହୋଇଥିବା ପୁସ୍ତକ; ଖାତା—4 Daily cash-book or ledger.
୫। (ଗଣିତ) ବ୍ୟବକଳନ; ବିୟୋଗ—
5. (Arithmetic) Subtraction; arithmetical rules of subtraction.
(ଜମା ଖର୍ଚ୍ଚ, ଜମା ଖରଚ—ଅନ୍ୟରୂପ)

ଜମାଘର—ଦେ. ବି. (ଆ. ଜମା+ସଂ. ଗୃହ)—
Jamāghara ହିସାବଖାତାର ବାମ ପାଖ; ଖାତାର ଯେଉଁ
জমাঘর ପାଖରେ ଜମା ବା ଆୟର ବିବରଣ ଲେଖାଯାଏ—
जमाकाघर. The credit side of an account.

ଜମାଜମି—ଦେ. ବି—୧। ଠୁଳ କରିବା କର୍ମ—
Jamājami 1. Act of accumulating or hoarding.
জমাজমি ୨। (ସହଚର ଶବ୍ଦ) ଜମିର ଖଜଣା ଓ ଜମି—
जमाजमी 4. Rent and land.

ଜମାଟ—ବୈଦେ. ବିଣ. (ଆ. ଜମାଅତ୍)—
Jamāt ୧। ସଂଗୃହୀତ; ଏକତ୍ର ସଞ୍ଚିତ—1. Collected;
জমাট gathered together.
जमाव, जमावट ୨। ସ୍ତୂପୀକୃତ—2. Heaped up.
୩। ଶୀତ ଯୋଗୁଁ ବସି ଯାଇଥିବା (ତରଳ ବସ୍ତୁ); ପିଣ୍ଡୀକୃତ—
3. Frozen; congealed; condensed.
୪। ଚାରି ଆଡ଼େ ବ୍ୟାପ୍ତ—
4. Spread on all sides; diffused.
୫। ଆଡ଼ମ୍ବରପୂର୍ଣ୍ଣ—5. Showy.
୬। ଅବିଚ୍ଛିନ୍ନ; ଅନାହତ—6. Continuous.
ବି—୧। ଭିଡ଼—1. Dense crowd.
୨। ବ୍ରଣାଦି ଉପରେ ଔଷଧର ପ୍ରଲେପ, ପୁଲ୍‌ଟିସ୍—
2. Ointment or poultice applied over boils or affected parts.
୩। ଘନୀଭାବ—3 Coagulation.

ଜମାଟ୍ ବାନ୍ଧିବା—ଦେ. କି—(ଜଳାଦି ଦ୍ରବ ଦ୍ରବ୍ୟ) ବରଫ ରୂପେ
Jamāt bāndhibā ଘନ ହୋଇ ବସିଯିବା—To coagulate.
জমাট বান্ধা
जमावट बाँधना

ଜମାଡ଼ (ଇତ୍ୟାଦି)—ଜମାଉଡ଼ି ଇତ୍ୟାଦି (ଦେଖ)
Jamāt (etc. Jamāut etc. (See)

ଜମାଦାର—ବୈଦେ. ବି. (ଫା ଭୁଲ. ଆ ଜମା=ଲୋକସମୂହ+ଫା. ଦାର୍=ଅଧିକାରୀ)—୧। ୩୦ ଜଣ ଭାରତୀୟ ସିପାହିଙ୍କ
Jamādāra
জমাদার ଉପରିସ୍ଥ ସୀପାହୀ; ସୁବେଦାରଙ୍କ ନିମ୍ନସ୍ଥ କର୍ମଚାରୀ—
जमादार 1. Captain of 30 Indian sepoys; a jemadar.
୨। ହେଡ୍ କନଷ୍ଟବଲ୍—2. Head constable.
୩। ପିଅଦାମାନଙ୍କ ମଧ୍ୟରେ ସରଦାର—
3 The chief peon; head-peon
କେତେ ଜମାଦାର ସେବାରେ ଥାଙ୍କର ଠାବେ ଠାବେ ବସା କଲେ।
ବ୍ରଜନାଥ- ସମରତରଙ୍ଗ।
୪। କୁଲିମାନଙ୍କ ସରଦାର—
4. Headman amongst a batch of coolies.
୫। ଏକ ଶ୍ରେଣୀର ମଧ୍ୟସତ୍ତ୍ୱାଧିକାରୀ ବା ମକଦମ—
5. The holder of a tenure of rented land.
[ଦ୍ର—ଏ ଫାରସୀ ଶବ୍ଦ ଇଂରାଜୀରେ ମଧ୍ୟ ବ୍ୟବହୃତ]

ଜମାଦାରି—ବୈଦେ. ବି. (ଫା) (ଏ ଫାରସୀ ଶବ୍ଦ ଇଂରାଜୀରେ ମଧ୍ୟ
Jamādāri ବ୍ୟବହୃତ)—୧। ଜମାଦାରର କାର୍ଯ୍ୟ—
জমাদারী 1. The duties of a Jamādāra.
जमादारी ୨। ଜମାଦାରର ପଦ—
2. The post of a Jamādāra.

ଜମାଧାର୍ଯ୍ୟ ଯୋଗ୍ୟ—ଦେ. ବିଣ. (ଆ.ଜମା+ସଂ. ଧାର୍ଯ୍ୟ+ଯୋଗ୍ୟ;
Jamādhārjya jogya ସେଟ୍ଲମେଣ୍ଟ-ପ୍ରଚଳିତ ଶବ୍ଦ)—ଯେଉଁ ଜମି
জমাধার্য্য যোগ্য ପାଇଁ ପ୍ରଜା ଜମିଦାରଙ୍କୁ କିଛି ଖଜଣା ଦେଉ ନ
जमाधार्य योग्य ଥାଏ ଅଥଚ ଯାହା ଖଜଣାର ଯୋଗ୍ୟ—(rayati land) Liable or fit to be assessed to rent, but not paying any rent.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଖ | ଜ | ଶ,ଷ | କ୍ଷ | ଇଯ୍ଯ | ଉଃ | ଘ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଊ | ନ୍ନ |

ଜମାନ୍‌ଗୁର—ପ୍ରାଦେ. (ସମ୍ବଲପୁର) ବି.--(ଆ ଜମା=ଘନୀଭୂତ+ସଂ.ଗୁଡ଼)
Jamān-gur ପାଣିଆଁ ଗୁଡ଼—Watery molasses.

ଜମାନତ୍‌—ବୈଦେ. ପ୍ରାଦେ. (ସମ୍ବଲପୁର, କଟକୀଆ ଭାଷା) ବି. (ଫା.
Jamanat ଜମାନତ୍‌)—ଜାମିନ୍ (ଦେଖ)
जमानत् Jāmin (See)
**जमानत**

ଜମାନତ୍‌ନାମା—ବୈଦେ. ପ୍ରାଦେ (ସମ୍ବଲପୁର)—ବି (ଫା
Jamānat-nāmā ଜମାନତ୍‌ନାମେହ୍)—ଜାମିନ୍‌ନାମା (ଦେଖ)
Jāmin-nāmā (See)

ଜମାନବିସ୍—ବୈଦେ. ବି. (ଫା)—ଜମିଦାର ସିରସ୍ତାରେ ପ୍ରଜାମାନଙ୍କ
Jamā-nabis ଜମିଜମାର ହିସାବ ଲେଖିବା ପାଇଁ ନିଯୁକ୍ତ କର୍ମଚାରୀ—
जमानविस् A Zamindari clerk who keeps accounts
**जमानविस** of the royats' holdings and rents.

ଜମାନାହିଁ—ଦେ. ଅ.—ଜମାରୁ ନାହିଁ (ଦେଖ)
Jamā-nāhin Jamāru nāhin (See)

ଜମାନା—ବୈଦେ. ବି. (ଫା)—୧। ସମୟ; କାଳ—
Jamāna 1 Time; period.
जमाना ୨। ଅମଳ, ରାଜତ୍ବ ବା ପ୍ରଭୁତ୍ବ କାଳ—
**जमाना** 2. Regime; time of predominance.

ଜମାନାସ୍ତି—ଦେ. ଅ (ଫା. ଜମା ଓ ସଂ. ନାସ୍ତି; ଜମାଖରଚ ଲେଖାରେ
Jamā-nāsti ବ୍ୟବହୃତ ଗୋଟିଏ ବାକ୍ୟ)-ଯେଉଁଠାରେ 'ଜମା' ବା
जमानास्ति ଆୟ ଘରେ କିଛି ନାହିଁ—There is nothing on
**जमा नदारद्** the credit or income side of the accounts

ଜମାପୁଞ୍ଜି—ଦେ. ବି. (ଅ. ଜମା+ସଂ. ପୁଞ୍ଜ; ସଞ୍ଚୟ)—
Jamāpunji ୧। ଧନ ସମ୍ପତ୍ତି—1. Riches.
जमापूँजि ୨। ମନୁଷ୍ୟର ସମସ୍ତ ସଞ୍ଚିତ ଧନ—
**जमाजथा** 2. All the savings or hoard of a person.

ଜମାବନ୍ଦି—ବୈଦେ. ବି. (ଫା.)—୧। ପ୍ରଜାର ଜମିଜମାର ହିସାବ—
Jamābandi 1. Rent-roll.
जमाबन्दि ୨। ଜମି ଉପରେ ଖଜଣା ନିର୍ଣ୍ଣୟ କରିବା—
**जमाबंदी** 2. The fixing or assessment of rent on a holding.

ଜମାବୃଦ୍ଧି—ଦେ. ବି. (ଅ. ଜମା+ସଂ. ବୃଦ୍ଧି)—କୌଣସି ଜମି ନିମନ୍ତେ
Jamā bruddhi ପ୍ରଜା ଦେଉଥିବା ଖଜଣାର ବୃଦ୍ଧି—
जमावृद्धि Enhancement of rent
**जमावृद्धि**

ଜମାୟତ୍—(ଇତ୍ୟାଦି)—ଜମାଉତ୍ (ଇତ୍ୟାଦି) (ଦେଖ)
Jamāyat etc. Jamāut etc. (See)

ଜମାରୁ—ଦେ. ଅ.—ଆଦୌ; ମୂଳରୁ; ମୁଣ୍ଡରୁ; ଅତି ଅଳ୍ପ ହେଲେ ମଧ୍ୟ
Jamāru At all; at the least; from the beginning.
আদতে, আদৌ
**बिलकुल**

[ ଦ୍ର—ଏହା 'ନାହିଁ' ଅର୍ଥକ କ୍ରିୟା ସଙ୍ଗେ ପ୍ରାୟ ବାକ୍ୟରେ ବ୍ୟବହୃତ ହୁଏ, ଯଥା—'ମୁଁ ଜମାରୁ ଏ କଥା ଜାଣେ ନାହିଁ।' 'ମୁଁ ଆଜି ଜମାରୁ ଖାଇ ନାହିଁ।' 'ମୁଁ ଜମାରୁ କଟକ ଯାଇ ନାହିଁ' 'ମୋଠାରେ ଜମାରୁ ଅଧଲାଟିଏ ନାହିଁ।' ]

ଜମାରୁ ନାହିଁ—ଦେ. ଅ.—ଆଦୌ ନାହିଁ; କେବେ ନୁହେଁ; କଦାପି
Jamāru nāhin ନୁହେଁ—Not at all; never.
আদতে নাই
**बिलकुल नहि**
(ଜମାରୁ ନୁହେଁ, ଜମାରୁ ନା—ଅନ୍ୟରୂପ)

ଜମାଶୂନ୍ୟ—ଦେ. ଅ. (ଫା. ଜମା ଓ ସଂ. ଶୂନ୍ୟ)—ଜମାନାସ୍ତି (ଦେଖ)
Jamāsūnya Jamā-nāsti (See)
জমাশূন্য (ଜମାଶୂନ୍—ଅପଭ୍ରଂଶ)
**जमानदारद्**

ଜମା ହେବା—ଦେ. କ୍ରି.—(ଅ. ଜମା)—ଏକତ୍ର ହେବା—
Jamā hebā To be gathered; to be assembled.
জমা হওয়া କେତେ ମୁନି, ଋଷି, ବ୍ରାହ୍ମଣ, ରାଜା ଆସି ଜମା ହେଲେ।
**जमा होना** ଖାଲକଣ୍ଠ ଦାସ, 'ପିଲଙ୍କ ରାମାୟଣ'

ଜମି—ବୈଦେ. ବି. (ଫା. ଜମୀନ୍)—୧। ଭୂମି; ଭୂଭାଗ—
Jami 1. Land; earth.
୨। ଭୂସମ୍ପତ୍ତି—2. Landed property.

[ ଦ୍ର—ଜମିଦାରଙ୍କ ଅଧୀନ ଜମି ସ୍ବତ୍ବ ଓ ଉର୍ବରତାଭେଦରେ ନାନା ଶ୍ରେଣୀରେ ବିଭକ୍ତ। ମୋଗଲ ରାଜତ୍ବରେ ଏହି ସବୁ ଶ୍ରେଣୀ ବିଭାଗର ସୃଷ୍ଟି; ତେଣୁ ଭୂମିସଂକ୍ରାନ୍ତ ଯାବତୀୟ ଶବ୍ଦ ଆରବୀଭାଷାମୂଳକ। ଜମିଦାରଙ୍କ ଅଧୀନ ଜମିର ଏହି କେତେଗୋଟି ସାଧାରଣ ବିଭାଗ ପ୍ରାୟଶଃ ଦେଖାଯାଏ—ଜିରାଏତି ବା ଆବାଦ ଜମି; ପଡ଼ିଆ ବା ଅନାବାଦ ଜମି। ଅଉଲ୍, ଦୋୟମ୍, ସୋୟମ୍, ଚହାରମ୍। ଖମାର, ନିଜଚାଷ, ନିଯଯୋତ୍। ଖଞ୍ଜାବାଡ଼ି, ଖଞ୍ଜାକାଟ, ଚାକରାନ୍, ଜାଗିର, ସେବାଏତି ଯାଗିର, ଦେବୋତ୍ତର, ବ୍ରହ୍ମୋତ୍ତର, ପିରୋତ୍ତର, ଫକୀରାନ୍, ମଦଦ୍‌ମାଶ। ଖରିଦା ଜମାବନ୍ଦି, ଲାଖରାଜ-ବାହେଲ, ଲାଖରାଜ ବାଯ୍ୟାପ୍ତି, କାମିଲ ବାଯାପ୍ତି, ଠିକି, ଅଧାଜମା। ଇରତି, ଚନ୍ଦନା ବା ପରବାଡ଼ି। ତଉଫିର୍, ନୟାବାଦ, ଉଠିବାଟୀ। ମାହାଲ ବା ମାଲ୍। ଗୋଚର, ସର୍ବସାଧାରଣ। ପାହି, ଥାନି। ମଧ୍ୟସ୍ବତ୍ବ, ହାସିଲ ବା ଦଖଲି। ବିରାଦଷୀ। କଳାଜମି, ଦୋରସା, ମଟାଳ, ବାଲିଆ, ଖାଲ, ଢିପ, ଠେଙ୍ଗ, ଖାଲ, ପାଟ, ଜଳପାଟ, ଝିଲ। ଶାରଦ, ମାଣ୍ଡିକୋଲଥ, ହରମହଶୁଲ, ଦୋଫସଲି, ବଗାଏତ୍, ବଲୁଚର, ପଡ଼ୁ। ]

୩। କ୍ଷେତ; କ୍ଷେତ୍ର—3. Cultivated land; field; plot of land.

୪। ପ୍ରଜା ବା ରଇତଙ୍କ ଅଧିକୃତ ଯୋତ—
4. Tenant's holding.

୫। ଧରା; ପୃଥିବୀ—5. The earth.

୬। ସ୍ଥାନ—6. Place; a space of land.

୭ । ମାଟି; ମୃତ୍ତିକା—7. Soil.

**ଜମିଆସିବା**—ଦେ. କ୍ରି—(ଜମିବା କ୍ରିୟାର ଅସମାପିକା ରୂପସଙ୍ଗେ Jami-āsibā ଆସିବା କ୍ରିୟାର ସମାପିକା ରୂପ ଯୁକ୍ତ)—ଜମିବାକୁ জমেআসা ଆରମ୍ଭ କରିବା; ଘନୀଭୂତ ହେବାକୁ ଆରମ୍ଭ କରିବା— **जमआना** To begin to congeal or freeze.

**ଜମାଏତ୍ ଉଲେମା**—ବୈଦେ. ବି. (ଆ)—ସଭା; ସମ୍ମିଳନୀ— Jamiet-ulemā Association.

**ଜମିଜମା**—ବୈଦେ. ବି. (ସହଚର ଶବ୍ଦ; ଆ. ଜମି + ଜମା)— Jami-jamā ୧ । ରୟତ ଅଧିକୃତ ଜମି ଓ ତହିଁପାଇଁ ଜମିଦାରଙ୍କୁ জমিজমা ଦେୟ ଖଜଣା—1. Royat's holding and **जमीन् जमा** its rent

୨ । ରୟତି ବୃତ୍ତି—2. Rent-paying or rayati land.

**ଜମିଦାର**—ଦେ. ବି. (ଫା. ଜମିନ୍‌ଦାର୍)—ଭୂସ୍ୱାମୀ; କ୍ଷେତ୍ରସ୍ୱାମୀ; ଭୂମିର Jamidāra ମାଲିକ; ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ଆପଣା জমিদার ନିର୍ଦ୍ଦିଷ୍ଟ ପାରିଶ୍ରମିକ ବା ମାଲିକାନା କାଟି ନେଇ ବାକି **जमींदार** ରାଜସ୍ୱ ବା ସଦରଜମା ସରକାରରେ ଦାଖଲ କରିବା ବ୍ୟକ୍ତି— ଛେ. ଦାମିନ୍ଦାରୁ Zamindar; land-lord; proprietor of land recognised by the Government.

ଜମିଦାରଣୀ } ସ୍ତ୍ରୀ
ଜମିଦାରଆଣୀ }

[ ଦ୍ର—ବଙ୍ଗ, ବିହାର, ଓଡ଼ିଶାର ଜମିଦାର ମାନେ ପୂର୍ବେ ମୋଗଲ ରାଜତ୍ୱ ସମୟରେ ପ୍ରଜାମାନଙ୍କଠାରୁ ସମ୍ରାଟଙ୍କୁ ଦେୟ ରାଜସ୍ୱ ଆଦାୟ କରି ରାଜକୋଷରେ ଦାଖଲ କରୁଥିଲେ ଓ ସେମାନେ ରାଜାଙ୍କର ଭୃତ୍ୟ ମାତ୍ର ଥିଲେ । କ୍ରମଶଃ ଏ ଗୃହକର ପୁରୁଷାନୁକ୍ରମେ ବଂଶାନୁଗତ ହେଲା । ଇଂରେଜମାନେ ଏ ଅଞ୍ଚଳ ଅଧିକାର କରିବା ପରେ ରାଜସ୍ୱ ବନ୍ଦୋବସ୍ତ କରିବା ସମୟରେ ଜମିଦାରମାନଙ୍କୁ ଜମିର ମାଲିକ ବା ସ୍ୱତ୍ୱାଧିକାରୀ ବୋଲି ପ୍ରଥମେ ଘୋଷଣାକଲେ ଓ ସେମାନଙ୍କ ପ୍ରାପ୍ୟ 'ମାଲିକାନା' ହିସାବ କରି ରାଜସ୍ୱ-ଜମାରୁ ତାହା କାଟି ଦେଇ ବାକି ଯାହା ସରକାରଙ୍କୁ ଦେୟ ହେଲା ତାହା ସଦରଜମା ବା ମାଲଗୁଜାରି ନାମରେ ଉକ୍ତ ଜମିଦାର ଉପରେ ବନ୍ଦୋବସ୍ତ କଲେ । ଇଂରେଜ ସରକାର ପରେ ବଙ୍ଗ ଓ ବିହାରରେ ଏହି ଜମାକୁ ଚିରସ୍ଥାୟୀ କଲେ, କିନ୍ତୁ ଓଡ଼ିଶାର ଜମିଦାର-ମାନଙ୍କ ସଦରଜମା ପରବର୍ତ୍ତୀ 'ବନ୍ଦୋବସ୍ତ' ମାନଙ୍କରେ କ୍ରମେ ବଢ଼ୁଅଛି । ] (ଜମିଦାରନ୍—ବହୁବଚନ)

**ଜମିଦାର ଦିଆକ**—ଦେ. ବଣ—ଜମିଦାରଙ୍କ ଦ୍ୱାରା କିଷର ବା ଯାଗିରି- Jamidāra diāka ରୂପେ ଦିଆଯାଇ ଥିବା— (ଜମିଦାର ଦିଆକେ—ଅନ୍ୟରୂପ) (land) given by the Zamindar to rent-free holders or servants.

**ଜମିଦାରପୁଅ**—ଦେ. ବି—ଜମିଦାର ବଂଶ ଜାତ ବ୍ୟକ୍ତି— Jamidāra-pua A person born of a Zamindar family.

ତମିରେ କୁଟଇ ଗୋଲ ମରିଚ, ପୁଅରେ ମାପଇ ଘିଅ
ମନେ ବିଚାରି ମୂଲଅ ଦିଅ, ଭୁ କୋଉ ଜମିଦାରଙ୍କ ଝିଅ ? —ଚଗ ।

**ଜମିଦାରବଚ୍ଚା**—ବୈଦେ. ବି—ଜମିଦାରପୁଅ (ଦେଖ) Jamidāra-bachchā Jamidāra-pua (See)

[ ଦ୍ର—ସାଧାରଣତଃ ଓଡ଼ିଆଭାଷୀ ଲୋକେ କ୍ରୋଧ, ଦମ୍ଭ, ଅପମାନ, ଅପରାଜ୍ୟ ପ୍ରକାଶ ଓ ଉରସ୍ୱାର ଅବ କଲାବେଳେ ବହୁସ୍ଥାନୀ ଶବ୍ଦ ଓ ବାକ୍ୟମାନ ପ୍ରାୟଶଃ ସେମାନଙ୍କ ମୁହଁରୁ ବାହାରି ପଡ଼େ, ଏତଦ୍ଦ୍ୱାରା କଥିତ ବିଷୟ ଉପରେ emphasis (ଜୋର୍) ଦିଆଯାଏ । ]

**ଜମିଦାରୀ**—ବୈଦେ. ବି. ( ଫା. ଜମିନ୍‌ଦାରୀ ) — Jamidāri ୧ । ଜମିଦାରଙ୍କ ଅଧିକୃତ ସମ୍ପତ୍ତି— জমিদারী 1. Zamindary; estate; landed pro- **जमिनदारी** perty paying revenue o Government.

୨ । ଜମିଦାରଙ୍କ ସ୍ୱତ୍ୱ ବା ଅବସ୍ଥା— 2. The state of being a Zamindar.

ଣ. ବି—ଜମିଦାରୀ ସମ୍ବନ୍ଧୀୟ— Pertaining to a Zamindary.

**ଜମିନ୍**—ବୈଦେ. ବି. ( ଫା. ଜମିନ୍ )—ପୃଥିବୀ— Jamin The earth

জমিন ପ୍ରାଦେ. ( ସମ୍ବଲପୁର ) ବି—ଜମି—
**जमिन** Land; landed property.

**ଜମିନ୍ ଅସ୍ମାନ୍**—ବୈଦେ. ବି. ( ଫା. ଜମିନ୍ + ଅସ୍ମାନ୍ )— Jamin asmān ମର୍ତ୍ତ୍ୟ ଓ ସ୍ୱର୍ଗ; ପୃଥିବୀ ଓ ଆକାଶ— জমিন আস্মান্ The earth and the sky; earth and **जमिन आस्मान** (ଜମିନ୍ ଅସ୍ମାନ୍—ଅନ୍ୟରୂପ) heaven.

**ଜମିନ୍ ଅସ୍ମାନ୍ ଫରକ୍**—ବୈଦେ. ବି. (ଫା)—ଦୁଇଟି ପଦାର୍ଥ ମଧ୍ୟରେ Jamin asmān pharak ସ୍ୱର୍ଗ ମର୍ତ୍ତ୍ୟର ପ୍ରଭେଦ— জমিন্ আস্মান্ প্রভেদ A very great difference **जमीन आस्मान फर्क** between two things. (ଜମିନ୍ ଅସ୍ମାନ୍ ତଫାତ୍; ଜମିନ ଅସ୍ମାନ ପ୍ରଭେଦ—ଅନ୍ୟରୂପ)

**ଜମିନ୍ ଆସ୍ମାନ୍** (ଇତ୍ୟାଦି)—ଜମିନ୍ ଅସ୍ମାନ୍ ଇତ୍ୟାଦି ( ଦେଖ ) Jamin āsmān (etc) Jamin asmān etc. ( See )

**ଜମିନି**—ଗ୍ରା. ବୈଦେ. ବି. (ଫା.—ଜମିନ୍ ( ଦେଖ ) Jamini Jamin ( See )

**ଜମିନ୍ଦାର୍**—ପ୍ରାଦେ. (ସମ୍ବଲପୁର) ବି. ପୁଂ. (ଭୁଲ. ହି. ଜମୀନ୍‌ଦାର୍)— Jamindār ଜମିଦାର ( ଦେଖ ) (ଜମିନ୍ଦାରେନ୍—ସ୍ତ୍ରୀ) Jamidāra ( See )

**ଜମିବା**—ଦେ. କ୍ରି. ( ଆ. ଜମନା )— Jamibā ୧ । ଠୁଳ ହେବା; ଏକତ୍ର ହେବା— জমা 1. To be collected together.
**जमना**

ନିବାସେ ଲୁଚିଲା ନବୀନ ମଞ୍ଜୁଷ ପରି ଜମି ମୋତି ଉପରେ ।
ବିଦଗ୍ଧ ଚି°. ସଙ୍ଗୀତ ୪

| ୧ | ଇ | ଓ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଞ୍ଚ | ଡ୍ଥ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଥ | ଡ଼ | ଢ଼ |

୨ । (ଧନ) ଗଚ୍ଛିତ ହେବା; ଜମା ହେବା—
2. (riches) To be hoarded up

୩ । ବୃଦ୍ଧି ପାଇବା—3. To be increased.

୪ । (ଜଳୀୟ ବସ୍ତୁ) ଘନ ବସ୍ତୁରେ ପରିଣତ ହେବା; ଘନୀଭୂତ ହେବା—4 To solidify; to become thick; to congeal ( said of liquids ).

( ଯଥା—ପାଣି ଜମି ବରଫ ହୁଏ । )

୫ । ସ୍ତର ବାନ୍ଧିବା ବା ସ୍ତର ଭାବରେ ବସିଯିବା—
5. To be deposited in layers.

( ଯଥା—ନଈର ପଙ୍କ ଜମିଲା । )

୬ । ସ୍ଥିର ବା ନିଶ୍ଚଳ ହେବା—6. To be still.

ରହିଲୁ କି ଘର ଜୋଉଠେ ଜମି ଅଳ, ଭୃକେ ଉଡ଼ ହେବା ନାହେ ।
କବିସୂର୍ଯ୍ୟ, ସଙ୍ଗୀତ ।

୭ । ମଜ୍ଜିଯିବା; ଲଗ୍ନ ହୋଇ ଯିବା—
7. To be engrosed.

ମନ ଜମି ଯା, ସଖିକୁ ଜେମା ପ୍ରାଣ ଧନେ । କବିସୂର୍ଯ୍ୟ, ସଙ୍ଗୀତ ।

୮ । (ଲକ୍ଷଣାର୍ଥ) ଜମାଟ ଧରିବା; ଘମାଘୋଟ ହେବା—
8. ( figurative ) To thicken.

ଅତ ଅଭୂତ ହବେ ଜମେ ସମର । ମଧୁସୂଦନ- ଭରତଗମନଚରିତ ।

୯ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ବୈଷୟିକ ଅବସ୍ଥା ଭାଗ୍ୟବଶାଳୀ ହେବା—9. ( figurative ) To become affluent in circumstances.

( ଯଥା—ପୁଅ ବଡ଼ ଚାକିରି କରିବାରୁ ତାଙ୍କ ଘରଟ ବର୍ତ୍ତମାନ ଖୁବ୍ ଜମିଲାଣି । )

[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଯିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ଅସମାପିକା ରୂପ ସଙ୍ଗେ ଆସିବା କ୍ରିୟାର ସମାପିକା ରୂପ ଯୋଗ ହେଲେ ଏଥିର ଅର୍ଥ—ଜମିବାକୁ ଆରମ୍ଭ କରିବା । ]

**ଜମିବାଡ଼ି**—ଦେ. ବି. (ସହଚର ଶବ୍ଦ; ଆ. ଜମନ୍+ ସ. ବାଟିକା)—
Jamibārdi
ଜମିବାଡ଼ି
**जमीनबाड़ि**
ଜମିଭୂମି, ଜମିଜୋତ } ଅନ୍ୟରୂପ

୧ । ଭୂସମ୍ପତ୍ତି — 1. Landed property (generally).
୨ । ସବୁ ଶ୍ରେଣୀର ଭୂସମ୍ପତ୍ତି— 3. Immoveable property of all descriptions.

**ଜମି ରହିବା**—ଦେ. କ୍ରି. ( ଆ ଜମନା=ଠୂଲ ହେବା )—
Jami rahibā
ଜମେଯାଓଥ୍ୟା
**जमरहना**
(ଜମିଯିବା—ଅନ୍ୟରୂପ)

୧ । ଲାଗି ରହିବା; ଦୃଢ଼ ରୂପେ ଆସକ୍ତ ହେବା—
1. To be engrossed with; to be bent on; to dote upon.

ଜମି ରହେ ମନ ତା ଉଙ୍କରେ କାହିଁ ନ ମିଳଇ ପରକାଶ ଗୋ ।
କବିସୂର୍ଯ୍ୟ, ସଙ୍ଗୀତ ।

**ଜମିଲ**—ଦେ. ବି—ବଡ଼ ଓ ଠାଣୁଆଁ ଗୁଳ୍ମବିଶେଷ—
Jamila Homonia Riparia.

[ ଦ୍ର—ଏହା ନଦୀଗର୍ଭର କଙ୍କରମୟ ପ୍ରଦେଶମାନଙ୍କରେ ଜାତ ହୁଏ । ]

**ଜମିଲା ଦହି**—ପ୍ରାଦେ. (ସମ୍ବଲପୁର) ବି—ଘୋଳ ଦହି—
Jamilā dahi Butter-milk; whey; churned curd.

**ଜମୁରା**—ବୈଦେ. ବି—ଜମ୍ବୁରା ( ଦେଖ ),
Jamurā Jamburā ( See )

**ଜମେଟ୍ରୀ**—ଗ୍ରା. ବୈଦେ. ବି. ( ଇଂ. ଜିଓମେଟ୍ରୀ )—
Jametri କ୍ଷେତ୍ରତତ୍ତ୍ୱ; ଜ୍ୟାମିତି—Geometry.
ଜମେଁଟ୍ରୀ
**जमेट्री**

**ଜମ୍ପତି**—ସ. ବି. ( ଦ୍ୱନ୍ଦ୍ୱ ସମାସ; ଜାୟା+ପତି; ନିପାତନସିଦ୍ଧ )—
Jampati ଦମ୍ପତି; ସ୍ୱାମୀ ଓ ସ୍ତ୍ରୀ; ପତିପତ୍ନୀ—
(ଜାୟାପତି, ଦମ୍ପତି—ଅନ୍ୟରୂପ) A married couple; husband and wife.

**ଜମ୍ବ**—ସ. ବି. ( ଜମ୍ ଧାତୁ+କର୍ତ୍ତୃ. ସଂଜ୍ଞାର୍ଥେ. ବ )—
Jamba ପଙ୍କ; କାଦୁଅ—Mud; mire.

**ଜମ୍ବାଳ**—ସ. ବି. ( ଜମ୍ ଧାତୁ=ଭକ୍ଷଣ କରିବା+ସଂଜ୍ଞାର୍ଥେ କର୍ତ୍ତୃ ବାଳ;
Jambāla ଯେ ଲୋକଙ୍କ ଗୋଡ଼କୁ ବା ବସ୍ତୁମାନଙ୍କୁ ଗିଳି ପକାଏ)—

୧ । କାଦୁଅ; ପଙ୍କ—1. Clay; mud; mire.

ଜମ୍ବାଳ ଲାଗିଲା ବୋଲି ବରଜିଲ ବିମ୍ବାଧର ମରକତ । କବିସୂର୍ଯ୍ୟ, ସଙ୍ଗୀତ ।

୨ । ଶୈବାଳ—2. Moss.

୩ । କେତକୀ ବୃକ୍ଷ—
3. Screw-pine; Pandanus Odoratissimus.

୪ । ( ଲକ୍ଷଣାର୍ଥ ) ଜଞ୍ଜାଳ—
4. ( figurative ) Complications.

**ଜମ୍ବାଳିନୀ**—ସ. ବି. ( ଜମ୍ବାଳ=ପଙ୍କ ବା ଶୈବାଳ+ଅସ୍ତି ଅର୍ଥରେ
Jambālini ଇନ୍+ଈ )—ନଦୀ—River.

**ଜମ୍ବିର**—ସ. ବି. ( ଜମ୍ ଧାତୁ+କର୍ମ ଇର )—
Jambira ଏକ ପ୍ରକାର ଲେମ୍ବୁ; ଟାଭା—ଃ
ସ ଦନ୍ତହର୍ଷଣ, ମୁଖଶୋଧୀ Citron; a kind of lemon;
ଗୌଡ଼ା ଲେମ୍ବୁ Citrus Medica.
**जामिर**
ତେ. କମ୍ଭ

**ଜମ୍ବିଲ**—ଦେ. ବି. ( ସ. ଜମ୍ବିର )—ଜମ୍ବିର ( ଦେଖ )
Jambila Jambira ( See )
(ଜମ୍ବିଲି—ଅନ୍ୟରୂପ)

**ଜମ୍ବୀର**—ସ. ବି. ( ଜମ୍ ଧାତୁ+କର୍ମ. ଈର )—ଜମ୍ବିର ( ଦେଖ )
Jambira Jambira ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କା' ନ ପାଇଲେ 'ଆଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

**ଜମ୍ବୁ**—ସଂ. ବି. ( ଜମ୍ ଧାତୁ + କର୍ତ୍ତୃ. ଉ )—
Jambu ୧ । ଜାମୁ ଗଛ ଓ କୋଳି—
(ଜମ୍ବୂ—ଅନ୍ୟରୂପ) 1 Blackberry and its tree.
[ ଦ୍ର—ଏହା ତିନି ପ୍ରକାର, ଯଥା – ୧. ରାଜଜମ୍ବୁ, ୨. କାକଜମ୍ବୁ ଓ ୩. ଭୂମିଜମ୍ବୁ—ହରେକୃଷ୍ଣ. ଦ୍ରବ୍ୟଗୁଣ । ]
୨ । ଗୋଲାପଜାମୁ —1. Rose-apple.
୩ । (ପୁରାଣ ମତରେ) ମେରୁପର୍ବତକୁ ବେଷ୍ଟନ କରିଥିବା ପୃଥିବୀ; ସପ୍ତଦ୍ୱୀପରୁ ଏକତମ, ଭାରତବର୍ଷ—
3, India (considered and described as one of the 7 mythological islands composing the earth
୪ । ବରୁଣ—4. The sea-God.
୫ । ସ୍ୱର୍ଗସ୍ଥ ସ୍ୱର୍ଣ୍ଣପ୍ରସୂ ପୌରାଣିକ ନଦୀବିଶେଷ –
5. Name of a mythological river producing gold.
୬ । ସୁମେରୁ ପର୍ବତରୁ ଉତ୍ପନ୍ନ ନଦୀବିଶେଷ —
6. The name of a river of ancient India.
ଦେ. ବି — ୧ । କାଶ୍ମୀର ରାଜ୍ୟର ଦେଶବିଶେଷ—
1. A part of the state of Kāsmīra in N. W. India.
୨ । ( ସଂ. ଜାମ୍ବବ ) ଭାଲୁ—2. The bear.
୩ । କଟକ ଜିଲ୍ଲାରେ ମହାନଦୀ ଯେଉଁଠାରେ ସମୁଦ୍ରରେ ପଡ଼ିଅଛି—3. The delta of the Mahānadī river near the False-point harbour.
୪ । (ସ୍ତ୍ରୀ) ଜାମ୍ବବତୀର ଡାକ ନାମ—
4. Name for calling Jāmbabatī.

**ଜମ୍ବୁକ**—ସଂ. ବି. ( ଜମ୍ ଧାତୁ + କର୍ତ୍ତୃ. ଉକ )—
Jambuka ୧ । ଶୃଗାଳ; ବିଲୁଆ—1. Jackal.
(ଜମ୍ବୂକ —ଅନ୍ୟରୂପ) ୨ । ଧୂର୍ତ୍ତ ବ୍ୟକ୍ତି—
2. A cunning and deceitful person.
୩ । ନୀଚ ବ୍ୟକ୍ତି—3. A mean or low person.
୪ । ବରୁଣ — 4. The Deity of water.
୫ । (ଜମ୍ବୁ+ସ୍ୱାର୍ଥେ. କ ) ଗୋଲାପଜାମୁ ଗଛ ଓ ଫଳ—
5, The rose-berry and its tree.
୬ । କାର୍ତ୍ତିକେୟଙ୍କ ଅନୁଚରବିଶେଷ—
6. Name of an attendant of Kārttikeya.

**ଜମ୍ବୁଖଣ୍ଡ**— ସଂ. ବି – ଜମ୍ବୁଦ୍ୱୀପ ( ଦେଖ )
Jambu-khanda Jambu-dwīpa (See)

**ଜମ୍ବୁଜମ୍ବାଳ**—ସଂ. ବି. ( ୬ଷ୍ଠୀତତ୍; ଜମ୍ବୁ = ନଦୀବିଶେଷ + ଜମ୍ବାଳ = ପଙ୍କ )—ସୁନା—Gold.
Jambu-jambāla

ଜମ୍ବୁଜମ୍ବାଳ-ପିଣ୍ଡୁଳା ପରେ ତାଳ ଉଚ୍ଚ ଗାଲମଣି କାଚ—
ଉତ୍ତ. କୋଟିବ୍ରହ୍ମାଣ୍ଡସୁନ୍ଦରୀ

[ ଦ୍ର—ସୁବର୍ଣ୍ଣ ଜମ୍ବୁନଦରୁ ଉତ୍ପନ୍ନ ହୁଏ ବୋଲି ତାହାକୁ ଜାମ୍ବୁନଦ ବୋଲାଯାଏ । ]

**ଜମ୍ବୁଜଳ**—ଦେ. ବି—ଜାମୁ ଗଛରୁ ଖସି ପଡ଼ୁଥିବା ବର୍ଷାଜଳ—
Jambu-jala Rain-water dropping down from a black-berry tree

ସରୋବର ତଟେ ତମାଳ ତଳ
ପାଉଶେ ଜମ୍ବୁଜଳ ପଡ଼େ ଘନ—ପ୍ରାଚୀ ଲିଶୁଣଙ୍କର ଉଷାଭିଳାଷ ।

**ଜମ୍ବୁଦୀପା**—ଦେ. ବି — ଏକପ୍ରକାର ସରୁ ଧାନ—
Jambu-dīpā A species of fine paddy.

**ଜମ୍ବୁଦ୍ୱୀପ**—ସଂ ବି—ହିନ୍ଦୁପୁରାଣମତରେ ପୃଥିବୀର ୭ ଦ୍ୱୀପରୁ ଏକତମ ଦ୍ୱୀପ—India of the ancient Hindus considered and described as one of the seven islands of the earth
Jambu-dwīpa

[ ଦ୍ର—କାହାର କାହାର ମତରେ ସମଗ୍ର ଆସିଆ ମହାଦେଶ ଜମ୍ବୁଦ୍ୱୀପର ଅନ୍ତର୍ଗତ । ଆଜି ପର୍ଯ୍ୟନ୍ତ ହିନ୍ଦୁମାନଙ୍କର ନିତ୍ୟନୈମିତ୍ତିକ ଧର୍ମାନୁଷ୍ଠାନର ସଙ୍କଳ୍ପରେ 'ଜମ୍ବୁଦ୍ୱୀପ' ଶବ୍ଦ ଚଳୁଅଛି ଓ ପ୍ରଚଳିତ କଥାରେ "ମଧ୍ୟ ଜମ୍ବୁଦ୍ୱୀପରେ ଏପରି ଜିନିଷ ନାହିଁ" ବାକ୍ୟ ବ୍ୟବହୃତ ହେଉଅଛି । ପ୍ରାଚୀନ ହିନ୍ଦୁ ପୁରାଣ ଲେଖକମାନଙ୍କ ମତରେ ପୃଥିବୀ ତିନିକୋଣିଆ, ତହିଁରେ ୭ ଗୋଟି ଦ୍ୱୀପ, ତହିଁ ମଧ୍ୟରୁ ଗୋଟିଏ ଜମ୍ବୁଦ୍ୱୀପ । ନୀଳପର୍ବତର ଦକ୍ଷିଣ ଓ ନିଷଧ ପର୍ବତର ଉତ୍ତରରେ ଅବସ୍ଥିତ ସୁଦର୍ଶନ ନାମକ ଜମ୍ବୁ ବୃକ୍ଷରୁ ଏ ଦ୍ୱୀପର ନାମକରଣ ହୋଇଥିଲା । ଭାରତବର୍ଷ ଏହି ଜମ୍ବୁଦ୍ୱୀପର ଗୋଟିଏ ବର୍ଷ ବା ଖଣ୍ଡ ଥିବାର କଥିତ ଅଛି । ଜମ୍ବୁଦ୍ୱୀପ ପରି ୭ ଗୋଟି ଦ୍ୱୀପ ମେରୁ ପର୍ବତର ଚାରି ପାଖରେ ଅବସ୍ଥିତ । ]

**ଜମ୍ବୁନଦ**—ସଂ. ବି—ପୁରାଣମତେ ସ୍ୱର୍ଗର ୭ଗୋଟି ନଦୀ ମଧ୍ୟରୁ ଏକତମ—
Jambu-nada One of the 7 heavenly rivers,
[ ଦ୍ର—ଏଥିରୁ ସୁନା ଜାତ ହୋଇଥିବାରୁ ସୁନାକୁ ଜାମ୍ବୁନଦ ବୋଲାଯାଏ । ]
ଦେ. ବି. ( ସଂ. ଜାମ୍ବୁନଦ )—ସୁବର୍ଣ୍ଣ; ସୁନା—Gold.

**ଜମ୍ବୁନଦ ଗୋରୀ**—ଦେ. ଗୁଣ. ସ୍ତ୍ରୀ. ( ସଂ. ଜାମ୍ବୁନଦ ଗୌରୀ )—ସୁବର୍ଣ୍ଣ ପରି କାନ୍ତିବିଶିଷ୍ଟା ( ସ୍ତ୍ରୀ )—(a woman) Having a golden complexion.
Jambunada gorī

କମ୍ବୁକଣ୍ଠୀ ଜମ୍ବୁନଦଗୋରୀ—ପ୍ରାଚୀନ ସଙ୍ଗୀତ ।

**ଜମ୍ବୁନଦସାର**—ସଂ. ବି. (୬ଷ୍ଠୀ ତତ୍; ଜମ୍ବୁନଦ + ସାର)—ସ୍ୱର୍ଣ୍ଣ; ସୁନା —
Jambunada-sāra Gold.

ଜଙ୍ଗମ ହେବାର, ଜମ୍ବୁନଦସାର ଶିବ ସ୍ଫୁରିଲା ସେ କି ପ୍ରକାର—
କବିସୂର୍ଯ୍ୟ, କଣ୍ଣୋସରଣ୍ଟ, କ ଗୀତ ।

**ଜମ୍ବୁ ନଦୀ**—ସଂ ବି—ଜମ୍ବୁନଦ ( ଦେଖ )
Jambu nadī Jambu-nada ( See )

**ଜମ୍ବୁବତୀ** – ଦେ. ବି. ସ୍ତ୍ରୀ. ( ସଂ. ଜାମ୍ବବତୀ )—
Jambu-batī ସ୍ତ୍ରୀଙ୍କୁ ଦିଆଯିବା ନାମ—
A name given to females.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଂ | ଓଅ | ଋ |
| ୨ | ଈ | ଉ | ରୁ | ଲ୍ | ଯ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଔ | ନ୍ତୁ |

ଜମ୍ବୁମାର୍ଗ—ସଂ. ବି—ପୁଷ୍କରସ୍ଥ ତୀର୍ଥବିଶେଷ—
Jambu-mārga Name of a sacred place in Pushkara

ପୁଷ୍କରରେ ରହି ଯେ ଜମ୍ବୁମାର୍ଗ ତୀର୍ଥ
ସେବା କରେ ତାର ସୁଲଭ ହୋଏ ସାର୍ଥ। କୃଷ୍ଣସିଂହ. ମହାଭାରତ. ବନ।

ଜମ୍ବୁମୁହାଁ—ଦେ. ବିଣ ପୁଂ. ( ସଂ. ଜମ୍ବୁ+ମୁଖ )—
Jambu-muhāṅ ଭାଲୁ ପରି ଯାହାର ମୁହଁ ବା ଓଠ ଟୋଙ୍କିଆ—
(ଜମ୍ବୁମୁହାଁ—ସ୍ତ୍ରୀ) Having a pointed mouth (like a bear .

ଜମ୍ବୁରା—ବୈଦେ. ବି. ( ଫା. ଜମ୍ବୁରକ୍ )—
Jamburā ୧। ଘୋଡ଼ା ଓ ଓଟ ଉପରେ ବାହିତ କ୍ଷୁଦ୍ର ତୋପ—
**जमुरा** 1. A kind of small cannon carried on a horse or camel

କର୍ଣ୍ଣିବଳକୁ ଥାଏ କଲା ଫଣି, ଏମନ୍ତ ପଣ ବେଳେ ବେଳେ ମଣି
ଅଚେତ ଯୋଡ଼ନ୍ତି ଜମ୍ବୁରା ନଳୀ, ଯୁବା ଧୈର୍ଯ୍ୟ ମୃଗ ନେବାକୁ ଚାଳି।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି।

୨। ଜମ୍ଭୁରା ( ଦେଖ )
2 Jambhurā ( See )

ଜମ୍ବୁଲ—ସଂ. ବି. ( ଜମ୍ବୁ+ଲା ଧାତୁ+କର୍ତ୍ତୃ. ଅ )—
Jambuḷa ୧। ଜମ୍ବିର ଲେମ୍ବୁ—1. Citron.
(ଜମ୍ବୂଲ—ଅନ୍ୟରୂପ) ୨। ବିବାହ କାଳରେ ସ୍ତ୍ରୀମାନେ ବରକନ୍ୟାଙ୍କ ପ୍ରତି ଯେଉଁ ପରିହାସବାକ୍ୟ ପ୍ରୟୋଗ କରନ୍ତି—
2. Jest or jesting compliments addressed to the bride and bride-groom by their friends and female relatives (Apte).

ଜମ୍ବୂ—ସଂ. ବି—ଜମ୍ବୁ ( ଦେଖ )
Jambū Jambu ( See )

ଜମ୍ବୂକ—ସଂ. ବି. ( ଜମ୍ବ୍ ଧାତୁ+ଊକ )—ଜମ୍ବୁକ ( ଦେଖ )
Jambūka Jambuka ( See )

ଜମ୍ଭ୍ (ଧାତୁ)—ସଂ—୧। ନଷ୍ଟ କରିବା—
Jambh (root) 1. To destroy.
୨। ଖାଇବା—2. To eat
୩। ରମଣ କରିବା—3. To cohabit.
୪। ମେଲା ହେବା—4. To expand.
୫। ହାଇ ମାରିବା—5. To yawn.

ଜମ୍ଭ—ସଂ. ବି. ( ଜମ୍ଭ ଧାତୁ=ନଷ୍ଟ କରିବା+କର୍ତ୍ତୃ. ଅ )—
Jambha ୧। ମହାପରାକ୍ରମୀ ଦୈତ୍ୟବିଶେଷ—
1. Name of a demon.
[ ଦ୍ର—ଏ ମହାସୁରର ପିତା। ଏହାକୁ ଇନ୍ଦ୍ର ବଧ କରିଥିଲେ, ତେଣୁ ଇନ୍ଦ୍ରଙ୍କୁ ଜମ୍ଭାରି ବୋଲାଯାଏ। ]
୨। ଜମ୍ବିର ଫଳ; ଲେମ୍ବୁ—2. Lemon; citron.
୩। ତୂଣ - 3. Quiver for arrows.
୪। ଦାନ୍ତପାଟି—4. The jaws.
୫। ( +କର୍ମ. ଅ ) ଭକ୍ଷ୍ୟ ବସ୍ତୁ—5 Food; eatables.
୬। ଅଂଶ; ଭାଗ—6. Part; portion.
୭। ଦମ୍ଭ—7. Pride.
୮। ଟୀକା; ବ୍ୟାଖ୍ୟା—
8. Interpretation; explanation.
୯। ( +ଭାବ. ଅ ) ଭକ୍ଷଣ—9. Eating.
୧୦। (+କରଣ. ଅ) ଦନ୍ତ—10. Tooth.
୧୧। ( +କରଣ. ଅ ) ହନୁ; ଗଣ୍ଡ ଦେଶର ଉପରି ଭାଗ—
11. The upper part of the cheeks.

ଜମ୍ଭକ—ସଂ. ବିଣ. ପୁଂ ( ଜମ୍ଭ ଧାତୁ+କର୍ତ୍ତୃ. ଅକ )—
Jambhaka ୧। ଭୋକ୍ତା; ଖାଦକ—1. Eater; eating.
(ଜାମ୍ଭିକା—ସ୍ତ୍ରୀ) ୨। ବ୍ୟାଖ୍ୟାକାରୀ
2. Explaining; interpreting.
୩। ପ୍ରସ୍ଫୁଟିତ ହୋଇଥିବା; ମେଲି ଯାଇଥିବା—
3 Expanded; opened up
୪। ମୈଥୁନକାରୀ—4. One who copulates or cohabits; cohabiting.
୫। ଯେ ହାଇ ମାରେ—
5. One who yawns; yawning.
ବି. ( ଜମ୍ଭ+ସ୍ୱାର୍ଥେ. କ ) ଜମ୍ବିର ଲେମ୍ବୁ—Citron.

ଜମ୍ଭକା—ସଂ. ବି. ସ୍ତ୍ରୀ. ( ଜମ୍ଭ ଧାତୁ+ଭାବ. ଅକ+ସ୍ତ୍ରୀ. ଆ )—
Jambhakā ହାଇ; ଜୃମ୍ଭା—A yawn; gaping.

ଜମ୍ଭନ—ସଂ. ବି. ( ଜମ୍ଭ ଧାତୁ=ସ୍ତ୍ରୀସଙ୍ଗ କରିବା+ଭାବ. ଅନ )—
Jambhana ରମଣ—Coition; sexual intercourse; copulation.

ଜମ୍ଭଭେଦନ—ସଂ. ବି. ( ଜମ୍ଭ+ଭିଦ୍ ଧାତୁ=ଭେଦ କରିବା+କର୍ତ୍ତୃ. ଅନ )—ଜମ୍ଭଭେଦୀ ( ଦେଖ )
Jambha-bhedana Jambha-bhedī (See)

ଜମ୍ଭଭେଦୀ—ସଂ. ବି. ( ଜମ୍ଭ+ଭିଦ୍ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ; ଜମ୍ଭାସୁରକୁ ବଜ୍ରଦ୍ୱାରା ନାଶ କରିଥିବାରୁ )—
Jambha-bhedī
୧। ଇନ୍ଦ୍ର—1. God Indra.
୨। ବଜ୍ର—2. Thunderbolt.

ଜମ୍ଭରିପୁ—ସଂ. ବି. ( ୬ଷ୍ଠୀ ତତ୍; ଜମ୍ଭ+ରିପୁ )—
Jambha-ripu ଜମ୍ଭଭେଦୀ(ଦେଖ)—Jambha-bhedī (See)

ଜମ୍ଭଲ—ସଂ. ବି. ପୁଂ. ( ଜମ୍ଭ+ସ୍ୱାର୍ଥେ. ଲ )—୧। ଜମ୍ବୀର ଲେମ୍ବୁ—
Jambhaḷa 1. Citron.

ଜମ୍ଭଲା—ସଂ. ବି. ସ୍ତ୍ରୀ. ( ଜମ୍ଭଲ+ସ୍ତ୍ରୀ. ଆ )—
Jambhaḷā ଗୋଦାବରୀତୀରବାସିନୀ ପୁରାଣୋକ୍ତା ରାକ୍ଷସୀବିଶେଷ—
Name of a demoness supposed to reside on the banks of the Godaveri river ( in South India ).

ସାଧାରଣ ଲୋକେ ଅପତ ପୃଷ୍ଠାରେ ଦୃତର ୧ ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଖିଁ'ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ;

[ ଦ୍ର—ଜ୍ୟୋତିଷତତ୍ତ୍ୱ ଗ୍ରନ୍ଥରେ ଲେଖା ଅଛି ଯେ ସମୁଦ୍ରର ଉତ୍ତର ତୀରରେ ବାସ କରୁଥିବା ଜମ୍ଭଳା ନାମକ ରାକ୍ଷସୀଙ୍କ ନାମକୁ ମନ୍ତ୍ର ବୋଲି ସ୍ମରଣ କଲେ ଗର୍ଭିଣୀ ପ୍ରସବବେଦନାରୁ ମୁକ୍ତ ହୋଇ ସୁପ୍ରସବ କରେ । ଯଥା—
ଅସ୍ତି ଗୋଦାବରୀତୀରେ ଜମ୍ଭଳା ନାମ ରାକ୍ଷସୀ
ତସ୍ୟା ସ୍ମରଣମାତ୍ରେଣ ବିଶଲ୍ୟା ଗର୍ଭିଣୀ ଭବେତ୍ । ]

**ଜମ୍ଭୀ**—ସଂ. ବି. ସ୍ତ୍ରୀ (ଜମ୍ଭ ଧାତୁ + ଅ + ସ୍ତ୍ରୀ. ଈ)—ଜମ୍ଭକା (ଦେଖ)
Jambhi — Jambhakā (See)

**ଜମ୍ଭାଏଲ୍ ଦାଁତ**—ପ୍ରାଦେ. (ସମ୍ବଲପୁର) ବି—କଲଦାନ୍ତ—
Jambhāel dānt — The grinders (teeth).

**ଜମ୍ଭାରାତି**—ସଂ. ବି. (୬ଷ୍ଠୀ ତତ୍; ଜମ୍ଭ + ଅରାତି)—୧ । ଇନ୍ଦ୍ର—
Jambhārāti — 1. God Indra.
୨ । ବଜ୍ର—2. Thunderbolt.
୩ । ଅଗ୍ନି—3. Fire.

**ଜମ୍ଭାରାତି ମଣି**—ସଂ. ବି.—ଇନ୍ଦ୍ରନୀଲମଣି—
Jambhārāti mani — An excellent sort of sapphire.
ଜମ୍ଭାରାତିମଣି ବିଗ୍ରହକୁ ଭଣବାର ପୁରେ ହେଲ ମୋ ନୟନ ।
କବିସୂର୍ଯ୍ୟ. ଲଳିତଲୋଚନ୍ତେ. କ. ଗୀତ ।

**ଜମ୍ଭାରି**—ସଂ. ବି.—(୬ଷ୍ଠୀ ତତ୍; ଜମ୍ଭ + ଅରି)—ଜମ୍ଭାରାତି (ଦେଖ)
Jambhāri — Jambhārāti (See)

**ଜମ୍ଭାସୁର**—ସଂ. ବି. (ନାମ)—ଜମ୍ଭ ୧ (ଦେଖ)
Jambhāsura — Jambha (See)

**ଜମ୍ଭିଲ**—ପ୍ରାଦେ. (ଗଞ୍ଜାମ) ବି.—ଜମ୍ବିର (ଦେଖ)
Jambhila — Jambira (See)

**ଜମ୍ଭୀ**—ସଂ. ବି.—ଜମ୍ବିର (ଦେଖ)
Jambhi — Jambira (See)

**ଜମ୍ଭୀର**—ସଂ ବି.—ଜମ୍ବିର (ଦେଖ)
Jambhira — Jambira (See)

**ଜମ୍ଭୁରା**—ବୈଦେ. (ଫା. ଜଂବୁର୍)—୧ । ଦୃଢ଼ ସଣ୍ଡୁଆସୀ ବା ଚିମୁଟା—
Jambhurā — 1. Strong pincers; pliers (instrument for catching a thing tightly).
ଜଂବୂରା
ਜੰਬੂਰ — ୨ । ପ୍ରତିମା ଉପରେ ମଡ଼ାଯିବା ଏକପିଠି ତମ୍ବାଳିଆ ଓ ଅନ୍ୟ ପିଠି ଧଳା ପିତଳର ପତଳା ପାତିଆ—
2. Very thin foils of brass (with one side copper-coloured and the other tinned, used to adorn painted images).
୩ । ଏକପ୍ରକାର ବନ୍ଧୁକ—3. A kind of gun.

**ଜୟ**—ସଂ. ବି.—(ଜି ଧାତୁ = ଜୟ କରିବା + ଭାବ. ଅ)—
Jaya — ୧ । ଶତ୍ରୁ ଦମନ—1. Victory; conquest; triumph.
(ପରାଜୟ—ବିପରୀତ) ୨ । ଦେଶ ବା ମନୁଷ୍ୟର ବଶୀକରଣ—
2. Bringing a person or country to subjection; subjugation.
୩ । କୃତକାର୍ଯ୍ୟତା; ସଫଳତା—3. Success.
୪ । ବିଷ୍ଣୁଙ୍କ ପାର୍ଷଦର ବା ଦ୍ୱାରୀ—4. Name of an attendant or door-keeper of Bishṇu.

[ଦ୍ର—ଜୟ ବିଜୟ ବିଷ୍ଣୁଙ୍କ ସମ୍ମୁଖଦ୍ୱାରର ଦୁଇ ପାଖର ଦ୍ୱାରରକ୍ଷକ, ସେଥିପାଇଁ ଜଗନ୍ନାଥଙ୍କ ସମ୍ମୁଖଦ୍ୱାରକୁ ଜୟବିଜୟ ଦ୍ୱାର ବୋଲି ଯାଏ । ]

୫ । ଇନ୍ଦ୍ରପୁତ୍ର; ଜୟନ୍ତ—5 Jayanta, son of Indra.
୬ । ବିରାଟ ରାଜସଭାରେ ଯୁଧିଷ୍ଠିରଙ୍କର ଛଦ୍ମନାମ—
6 The name assumed by Judhisṭhira while living incognito in the court of Birāṭa.
୭ । ପୁରାଣ ଇତିହାସାଦି ଶାସ୍ତ୍ର -
7. Mythology and history.
୮ । ବିଷ୍ଣୁ—8. Bishṇu.
ଦେ. ଅ.—ଜୟ ଜୟ (ଦେଖ)
Jaya jaya (See)

**ଜୟକାଣ୍ଡ**—ଦେ. ବି.—(ସଂ. ନାମ ନଖବ୍ରଣ )—ହାତର ଅଙ୍ଗୁଠିରେ
Jayakāṇḍa — ବାହାରିବା ଦୁଷ୍ଟବ୍ରଣବିଶେଷ; ନାରଗୁଣ୍ଡି—
ଆଁଗୁଲହାଡ଼ା — A very painful boil on the joint of one
ছিল কা, ছিতৌরী, ঘিন — of the fingers of the hand; whitlow; Paronychia Felon

**ଜୟଜୟ**—ଦେ. ବି.—ଅମୁକଙ୍କର ଜୟ ହେଉ, ଇତ୍ୟାକାର ଘୋଷଣା—
Jayajaya — Rejoicing in the name of a person, huzza; glorification in the name of a
জয় জয়
जय जय — certain person or Deity; exclamation of gratitude and adoration.
ଦେ. ଅ.—(ଆନନ୍ଦ ଓ ସ୍ୱାଗତସୂଚକ ଧ୍ୱନି)—ଅମୁକଙ୍କର ଜୟ ହେଉ—Hail ! Victory to thee !

**ଜୟଜୟକାର**—ଦେ. ବି.—ଜୟ ଜୟ (ଦେଖ)
Jaya-jaya-kāra — Jaya jaya (See)

**ଜୟଜୟନ୍ତୀ**—ସଂ. ବି. ସ୍ତ୍ରୀ—ସଙ୍ଗୀତର ରାଗିଣୀବିଶେଷ—
Jaya-jayanti — Name of a musical air.

**ଜୟଡିଣ୍ଡିମ**—ସଂ. ବି. (ମ, ପ. ଲୋ. ଜୟ ଘୋଷଣାକାରୀ ଡିଣ୍ଡିମ; ଜୟ + ଡିଣ୍ଡିମ)—ଯେଉଁ ବାଦ୍ୟ ବା ଢୋଲ ବଜାଇ ଜୟ-ଘୋଷଣା କରାଯାଏ; ନଡ଼ଗାଡ଼ା; ବିଜୟଘୋଷ—
Jaya-dindima — A large drum beaten to announce victory.

**ଜୟଢକ୍କା**—ସଂ. ବି.—(ମ. ପ. ଲୋ ଜୟ + ଢକ୍କା)—ଜୟଡିଣ୍ଡିମ (ଦେଖ)
Jaya-dhakkā — Jayadindima (See)
(ଜୟଢକା—ଅନ୍ୟରୂପ)

| ୧ | ଇ | ଉ | ଋ,ଝ୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଂ | ଊ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଡ଼ | ନ୍ |

ଜୟତ୍ସେନ—ସଂ. ବି.—ବିରାଟଭବନରେ ନକୁଳଙ୍କର ଛଦ୍ମ ନାମ—
Jayatsena The name assumed by Nakula in Birāṭa's court.

ଜୟତାଳ—ସଂ. ବି.—ସଙ୍ଗୀତର ତାଳର ୬୦ ମୁଖ୍ୟ ଭେଦରୁ ଏକ—
Jayatāla One of 60 modes or beats in Hindu music.

ଜୟତଶ୍ରୀ—ସଂ. ବି.—ଦୀପକ ରାଗର ଭାର୍ଯ୍ୟା ରାଗିଣୀବିଶେଷ—
Jayati-śri One of the secondary tunes in Hindu music.

ଜୟତି—ସଂ. ବି.—ଶ୍ରୀରାଗର ଏକ ରାଗିଣୀ—
Jayati One of the secondary tunes in Hindu music.
[ ଦ୍ର—ଏହା ସମ୍ପୂର୍ଣ୍ଣ ଜାତିର ରାଗିଣୀ ଓ ଏଥିରେ ସବୁ ଶୁଦ୍ଧ ସ୍ୱର ଲାଗେ—ହି. ଶବ୍ଦସାଗର ।]

ଜୟଦୁନ୍ଦୁଭି—ସଂ. ବି. (ଜୟ+ଦୁନ୍ଦୁଭି)—ଜୟଡିଣ୍ଡିମ (ଦେଖ)
Jaya-dundubhi Jaya-diṇḍima (See)

ଜୟଦୁର୍ଗା—ସଂ. ବି. ସ୍ତ୍ରୀ—ମଙ୍ଗଳଚଣ୍ଡୀ; ଦୁର୍ଗାଙ୍କର ମୂର୍ତ୍ତିଭେଦ—
Jaya-durgā Goddess Durgā.

ଜୟଦେବ—ଦେ. ବି. (ନାମ)—'ଗୀତଗୋବିନ୍ଦ' ନାମକ ସଂସ୍କୃତ ଗୀତକାବ୍ୟ ରଚୟିତା—The famous poet of the Sanskrit lyrical ballad Gītagobinda.
Jaya-deba

[ ଦ୍ର—ଏ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର କେନ୍ଦୁବିଲ୍ୱ ଗ୍ରାମବାସୀ କବି । ଏହାଙ୍କ ପିତାଙ୍କର ନାମ ଭୋଜଦେବ, ମାତାଙ୍କ ନାମ ବାମାଦେବୀ । ଏ ବଙ୍ଗର ରାଜା ଲକ୍ଷ୍ମଣ ସେନଙ୍କ ସଭାପଣ୍ଡିତ ଥିଲେ । ମାତ୍ର କେହି କେହି କହନ୍ତି—"ଏ ଏକାଦଶ ଶତାବ୍ଦୀର କବି ଓ ଉତ୍କଳରାଜାଙ୍କ ସଭାକବି ଥିଲେ । ଏହାଙ୍କ ରଚିତ 'ଗୀତଗୋବିନ୍ଦ'ର ନିତ୍ୟପାଠ ପୁରୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନୀତି ମଧ୍ୟରେ ଗୋଟିଏ ପ୍ରଧାନ ନୀତି । ଜୟଦେବ ପୁରୀବାସୀ ଥିଲେ" (ଜଗବନ୍ଧୁ- ପ୍ରାଚୀନ ଉତ୍କଳ)
ଆଜପର୍ଯ୍ୟନ୍ତ ବଙ୍ଗୀୟମାନେ ଜୟଦେବଙ୍କୁ ବୀରଭୂମ ଜିଲ୍ଲାର କେନ୍ଦୁବିଲ୍ୱ ଗ୍ରାମବାସୀ ବୋଲି ପ୍ରମାଣ କରୁଥିଲେ । କିନ୍ତୁ ଜୟଦେବ ଯେ ଉତ୍କଳର କେନ୍ଦୁଲୀ ଶାସନରେ ଜନ୍ମଗ୍ରହଣ କରିଥିଲେ ଭକ୍ତମାଳା ଗ୍ରନ୍ଥର ନିମ୍ନୋଦ୍ଧୃତ ଶ୍ଳୋକରୁ ତାହା ସ୍ପଷ୍ଟରୂପେ ପ୍ରମାଣିତ ହୁଏ ।

ଜଗନ୍ନାଥପୁରୀପ୍ରାନ୍ତେ ଦେଶେ ଚୈବୋତ୍କଳାଭିଧେ
କେନ୍ଦୁବିଲ୍ୱ ଇତିଖ୍ୟାତଃ ଗ୍ରାମୋ ବ୍ରାହ୍ମଣସଂକୁଳଃ ।
ତତ୍ରୋତ୍କଳୋ ଦ୍ୱିଜୋ ଜାତୋ ଜୟଦେବ ଇତିଶ୍ରୁତଃ
ବିଦ୍ୟାଭ୍ୟାସରତଃ ଶାନ୍ତଃ ପୁରୁଷୋତ୍ତମପୂଜକଃ । ଭକ୍ତମାଳା ଗ୍ରନ୍ଥ । ]

ଜୟଦ୍ବଳ—ସଂ. ବି—ବିରାଟଭବନରେ ସହଦେବଙ୍କ ଛଦ୍ମ ନାମ—
Jayadbala The assumed name of Sahadeba in the court of Birāṭa.

ଜୟଦ୍ରଥ—ସଂ. ବି. (ବହୁବ୍ରୀହି, ଜି ଧାତୁ+ଶତୃ-ଜୟତ୍;—ଜୟଶୀଳ+ରଥ)—ମହାଭାରତବର୍ଣ୍ଣିତ ସିନ୍ଧୁ ବା ସୌବୀରଦେଶର ରାଜା ଓ ଦୁର୍ଯ୍ୟୋଧନଙ୍କ ଭଉଣୀ; ଦୁଃଶଳାଙ୍କ ସ୍ୱାମୀ—
Jayadratha A warrior of the Mahābhārata, brother-in-law of Durjyodhana who was killed in the Great War.

[ ଦ୍ର—ପାଣ୍ଡବମାନେ ଅଜ୍ଞାତବନବାସ କରୁଥିବା ବେଳେ ଏ ଦ୍ରୌପଦୀଙ୍କ ଅତିଥି ହୋଇ ଆତିଥ୍ୟ ଗ୍ରହଣ କରି ସାରି ପାଣ୍ଡବମାନଙ୍କ ଅନୁପସ୍ଥିତିରେ ଦ୍ରୌପଦୀଙ୍କୁ ହରଣ କରି ଘେନି ପଳାଇଲେ । ପାଣ୍ଡବମାନେ ଫେରି ଆସି ଏହାଙ୍କ ଅନୁଧାବନ କରି ଦ୍ରୌପଦୀଙ୍କୁ ଉଦ୍ଧାର କଲେ ଓ ଏହାଙ୍କୁ ଅପମାନ ଦେଇ ଛାଡ଼ି ଦେଲେ । ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁଙ୍କୁ ବଧ କରିବା ବିଷୟରେ ଏ ବିଶେଷ ଉଦ୍‌ଯୋଗ କରିଥିବାରୁ ଅର୍ଜୁନଙ୍କ ହାତରେ ଯୁଦ୍ଧକ୍ଷେତ୍ରରେ ଏ ପ୍ରାଣ ହରାଇଥିଲେ । ]

ଜୟଧ୍ୱଜ—ସଂ.ବି. (ମ. ପ. ଲୋ; ଜୟ+ଧ୍ୱଜ)—ଜୟପତାକା (ଦେଖ)
Jaya-dhwaja Jaya-patākā (See)

ଜୟ-ଧ୍ୱନି—ସଂ. ବି. ( ୬ଷ୍ଠୀ ତତ୍; ଜୟ+ଧ୍ୱନି )—
Jaya-dhwani ୧ । ଜୟ ଜୟ ଶବ୍ଦ, ଜେଜେକାର—
1. Exclamations of rejoicing.
୨ । ବିଜୟୋଲ୍ଲାସସୂଚକ ରବ—
2. Shout or cry of victory.
୩ । ଯୁଦ୍ଧକୁ ଯିବା ସମୟରେ ସୈନ୍ୟମାନଙ୍କର ଉତ୍ସାହସୂଚକ ଜୟଶବ୍ଦ—3. War-cry.

ଜୟନ୍ତ—ସଂ. ବି. (ନାମ) (ଜି ଧାତୁ+କର୍ତ୍ତୃ. ଅନ୍ତ)—୧ । ଇନ୍ଦ୍ରପୁତ୍ର—
Jayanta 1. Son of Indra.
୨ । ବିରାଟଭବନରେ ଭୀମଙ୍କ ଛଦ୍ମ ନାମ—
2. The name assumed by Bhima in the court of Birāṭa.
୩ । ଦଶରଥଙ୍କ ମନ୍ତ୍ରୀ—
3. A minister of Daśaratha.
୪ । ଚନ୍ଦ୍ର—4. The moon.
୫ । ସଙ୍ଗୀତର ରାଗିଣୀବିଶେଷ—
5. Name of a musical air.
୬ । ଶିବ (ପ୍ରକୃତିବାଦ)—6. Siba.

ଜୟନ୍ତିକା—ସଂ. ବି. ସ୍ତ୍ରୀ. (ଜୟନ୍ତୀ+କ+ସ୍ତ୍ରୀ. ଆ)—ହଳଦୀ—
Jayantikā Turmeric.

ଜୟନ୍ତୀ—ସଂ. ବି. ସ୍ତ୍ରୀ—୧ । ଇନ୍ଦ୍ରଙ୍କ କନ୍ୟା—
Jayanti 1. Daughter of Indra.
୨ । ଦୁର୍ଗା—2. Goddess Durgā.
୩ । ଅଷ୍ଟନାୟିକାଙ୍କ ମଧ୍ୟରୁ ଚତୁର୍ଥ ନାୟିକା—
3. One of 8 classes of heroines mentioned in the Hindu Śāstras.
ସଂ. ଜୟା; କେଶରୁହା, ବିଷମୋହପ୍ରଶମନୀ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗଢ଼' ନ ମିଳିଲେ 'ଗାଢ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଗିଁା ନ ପାଇଲେ 'ଆଙ୍ଗା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଜୈନ୍ତୀ ୪ । ବୃକ୍ଷବିଶେଷ—4. Name of a tree; Abutilon
जहि Avicennal; Seda Abutilon; Indian Mallow;
ତେ ସୋମନ୍ତ୍ରୀ American Jute (Kirtikar).

[ ଦ୍ର—ଏ ଗଛ ଉତ୍ତରପଶ୍ଚିମ ପ୍ରଦେଶ, ସିନ୍ଧୁ, କାଶ୍ମୀର, ବଙ୍ଗ ପ୍ରଭୃତିରେ ଜନ୍ମେ । ଏଥିର ଫୁଲର ପାଖୁଡ଼ା ହଳଦିଆ; ମଞ୍ଜି, ପତ୍ର ଓ ମୂଳ ଔଷଧରେ ଲାଗେ । ଜୟନ୍ତୀଗଛର ପତ୍ରରୁ ରସ ବାହାର କରି ମୁଣ୍ଡରେ ଲଗାଇଲେ ସ୍ତ୍ରୀମାନଙ୍କର ପିତ୍ତ ଶାନ୍ତ ହୁଏ ଓ ମୁଣ୍ଡବ୍ୟଥା ଭଲ ହୁଏ । ]

୫ । (ଫଳିତ ଜ୍ୟୋତିଷ) ଶ୍ରାବଣ କୃଷ୍ଣ ଅଷ୍ଟମୀ ଅର୍ଦ୍ଧରାତ୍ରର କଳାମାତ୍ର ଅଧଃ ବା ଊର୍ଦ୍ଧ୍ୱରେ ରୋହିଣୀ ନକ୍ଷତ୍ରଯୁକ୍ତ ହେଲେ ଯେଉଁ ଶୁଭଯୋଗ ହୁଏ—5. (astrology) An auspicious combination of stars happening in the dark fortnight of Śrābaṇa.

୬ । ପତାକା—6. A flag.

୭ । ହିନ୍ଦୁମାନଙ୍କର ବର୍ଷକ ମଧ୍ୟରେ ୬ଦିନ କରାଯିବା ବ୍ରତ (ଉପବାସ)—7. The vow observed by the Hindus on 6 days in the year.

[ ଦ୍ର—ଶିବରାତ୍ରି, ଜନ୍ମାଷ୍ଟମୀ, ନୃସିଂହଜନ୍ମ, ବାମନଜନ୍ମ, ରାମନବମୀ ଓ ମହାଷ୍ଟମୀ ଏମାନଙ୍କୁ ଷଡ଼ଜୟନ୍ତୀ ବୋଲାଯାଏ । ]

**ଜୟନ୍ତୀ କ୍ଷେତ୍ର**—ଦେ. ବି. ( ନାମ )—ଆଧୁନିକ ମୁଖଲିଙ୍ଗର ପୁରାତନ ନାମ—The ancient name of (mordern) Mukhalinga.
Jayanti-kshetra

**ଜୟନ୍ତୀତୀର୍ଥ**—ସଂ. ବି.—ହିନ୍ଦୁମାନଙ୍କର ତୀର୍ଥବିଶେଷ—
Jayanti-tirtha Name of a sacred place of the Hindus.

**ଜୟନ୍ତୀପୁର**—ସଂ. ବି. (ନାମ)—ପ୍ରାଚୀନ କଳିଙ୍ଗର ଏକ ବିଖ୍ୟାତ ନଗର-
Jayanti-pura A famous town of ancient Kalinga.

**ଜୟପତକା**—ଗ୍ରା. ବି. ( ସଂ. ଜୟପତାକା )—
Jaya-patakā ଜୟପତାକା ( ଦେଖ )
Jaya-patākā ( See )

**ଜୟପତାକା**—ସଂ. ବି, ( ମ. ପ. ଲୋ; ଜୟ ସୂଚକ ପତାକା )—
Jaya-patākā ବିଜୟ ସୂଚକ ନିଶାଣ—Flag notifying or announcing victory.

**ଜୟପତ୍ର**—ସଂ. ବି— ୧ । ନିଜର ପରାଜୟ ସ୍ୱୀକାର କରି ପରାଜିତ ବ୍ୟକ୍ତି ବିଜେତାଙ୍କୁ ଯେଉଁ ନିଦର୍ଶନପତ୍ର ଲେଖି ଦିଏ ( ହି. ଶବ୍ଦସାଗର )—
Jaya patra
(ଜୟଲେଖ—ଅନ୍ୟରୂପ)
1. A document executed by the defeated party in favour of the victor admitting his defeat.

୨ । (ହିନ୍ଦୁ ସ୍ମୃତି) ମକଦ୍ଦମାର ରାୟ; ଫଇସଲା—
2. ( Hindu law ) A decree.

**ଜୟପତ୍ରୀ**—ସଂ. ବି—ଜାଇତ୍ରୀ ( ହି. ଶବ୍ଦସାଗର )—
Jaya-patri Mace (spice).

**ଜୟପାଳ**—ସଂ. ବି—୧ । କନକା; ସିଜୁ ଗଛ ଶ୍ରେଣୀର କ୍ଷୁଦ୍ର ବୃକ୍ଷ (ଏହା ମଞ୍ଜିରୁ ପ୍ରସିଦ୍ଧ ରେଚକ ତେଲ ବାହାରେ)—
Jayapala
ସଂସ୍କୃତ ପର୍ଯ୍ୟାୟ—
ଜୟପାଳ, ଜୈପାଳ, ଜାରକ,
ରେଚକ, ତିନ୍ତିଡ଼ୀଫଳ,
ଦନ୍ତୀବୀଜ, ମଳଦ୍ରାବୀ,
ବୀଜରେଚନ, କୁମ୍ଭୀବୀଜ,
କୁମ୍ଭିନୀବୀଜ, ଘଣ୍ଟାବୀଜ,
ଘଣ୍ଟିକାବୀଜ, କୁମ୍ଭାଖ୍ୟବୀଜ,
ଶୋଧନୀବୀଜ, ଚକ୍ରଦନ୍ତୀବୀଜ,
ଦନ୍ତୀଫଳ
जयपाल
**जमालगोटा**

1. Name of a tree: Croton; Figlium ( from which croton oil, a strong purgative is extracted ).

[ ଦ୍ର—ଏ ଗଛ ସମୁଦ୍ରର ସମତଳଠାରୁ ୩୦୦୦ ଫୁଟ୍ ପର୍ଯ୍ୟନ୍ତ ଉଚ୍ଚ ସ୍ଥାନରେ ପର୍ବତ ଭୂମିରେ ଜନ୍ମେ । ଏଗଛ ଜନ୍ମିବାର ୨ୟ ବର୍ଷରେ ଫଳ ଧରେ । ଏଥିର ଫଳ ଛୋଟ ଅଳାଇଚ ଆକାରର, ତହିଁ ମଧ୍ୟରେ ଧଳା ଶସ ଥାଏ । ଏହି ଫଳରେ ତୈଳାଂଶ ବେଶି; ଏ ଫଳ ( Croton seed ) ଖାଇଲେ ଖୁବ ଝାଡ଼ା ହୁଏ । ଏହି ଫଳରୁ ନିଷ୍କାସିତ ତେଲ ( Croton oil ) ଦେହରେ ଲଗାଇଲେ ଫୋଟକା ହୁଏ । ଏ ତେଲ ଔଷଧରେ ବ୍ୟବହୃତ ହୁଏ ଓ ଏଥିର ପିଡ଼ିଆକୁ ଗୃହାବଗିଚାର ମାଟିରେ ସାର ଦେଲେ ଗଛରେ ଉଇ ଓ ଅନ୍ୟ ପୋକ ଧରନ୍ତି ନାହିଁ । ସେଥିପାଇଁ କାଫୀ ( Coffee ) ଗୁଳ୍ମ ନିକଟରେ ଲୋକେ ଏ ଗଛକୁ ଲଗାନ୍ତି । ବୈଦ୍ୟକ ଅନୁସାରେ ଏ ବୀଜ କଟୁରସ, ଉଷ୍ଣବୀର୍ଯ୍ୟ, ତୀକ୍ଷ୍ଣ, ଉଗ୍ର ବିରେଚକ, ଅଗ୍ନିବର୍ଦ୍ଧକ, ବମନବେଗକାରକ ଏବଂ କୃମି, କଫ, ବାୟୁ ଓ ଉଦରରୋଗର ଉପଶମକାରକ । ]

୨ । ବ୍ରହ୍ମା—2. Brahmā.

୩ । ବିଷ୍ଣୁ—3. Bishṇu.

୪ । ରାଜା ( ହି. ଶବ୍ଦସାଗର )—4. King.

**ଜୟପୁର**—ଦେ. ବି. (ନାମ)—୧ । ରାଜପୁତାନା ଅନ୍ତର୍ଗତ ରାଜ୍ୟବିଶେଷ-
Jaya-pura 1. A state in Rājputānā ( N. W, India ).

[ ଦ୍ର—ଏହି ରାଜ୍ୟ ଅମ୍ବରରାଜ ଜୟସିଂହଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇଥିଲା ଓ ଏହା ଶ୍ୱେତମର୍ମରର ପ୍ରସ୍ତର ନିମିତ୍ତ ପ୍ରସିଦ୍ଧ । ]

୨ । ଭିଶାଖାପଟଣା ଜିଲ୍ଲା ଅନ୍ତର୍ଗତ ଜମିଦାରୀ-ରାଜ୍ୟବିଶେଷ (ସାଧାରଣତଃ ଏହାକୁ ଝାଡ଼ ଜୟପୁର ବୋଲାଯାଏ)—
2. An estate in the Vizagapatam district of the Madras Presidency.

[ ଦ୍ର—ଏହାର ରାଜଧାନୀ ଜୟପୁର । ପ୍ରାଚୀନ କାଳରେ ଜୟପୁର ଗଡ଼ଠାରୁ ୨୦।୨୨ ମାଇଲ ଦୂରରେ ଅବସ୍ଥିତ ନନ୍ଦପୁର

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ରୃ,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇସ୍ତ | ଉଅ | ଞ |
| ୨ | ଈ | ଊ | ଋ | ଲୃ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ |

ଏହାର ରାଜଧାନୀ ଥିଲା । ଜୟପୁର ମହାରାଜଙ୍କର ଗୋଟିଏ ଉପାଧି 'ନନ୍ଦପୁର ଭୂପତି' ଓ ଅପରଟି 'ଝାଡ଼ଖଣ୍ଡ ବାଦସା' । ଜୟପୁରରେ ପୂର୍ବେ ଖ୍ରୀଷ୍ଟୀୟ ୬ଷ୍ଠ ଓ ୭ମ ଶତାବ୍ଦୀରେ ଶବର ରାଜା ଥିଲେ । ବର୍ତ୍ତମାନ ଜୟପୁରର କୋଠପାଡ଼ ନାମକ ସ୍ଥାନର ଭୂଗର୍ଭରୁ ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀର ରୋମ ସମ୍ରାଟ Augustus Cæser ( ଅଗଷ୍ଟସ କାଇଜର୍ ) ଓ ପୋପ୍ Maximus Pims ଙ୍କ ଅମଳର ରୌପ୍ୟ ମୁଦ୍ରା ମିଳିଅଛି । ବର୍ତ୍ତମାନ ଜୟପୁର ରାଜବଂଶର ପ୍ରତିଷ୍ଠାତା ବିନାୟକ ଦେବ ନନ୍ଦପୁରର ଶେଷ ରାଜାଙ୍କର ଏକମାତ୍ର କନ୍ୟାକୁ ବିବାହ କରି ୧୪୪୩ ଖ୍ରୀଷ୍ଟାବ୍ଦରେ ନନ୍ଦପୁର ସିଂହାସନ ଆରୋହଣ କରିଥିଲେ; ତାହାଙ୍କ ପୂର୍ବେ ଶିଳାବଂଶର ବିଶ୍ୱରାଜ ନନ୍ଦପୁରର ରାଜା ଥିଲେ । ଶିଳାବଂଶୋଦ୍ଭବ ମତ୍ସ୍ୟବଂଶ ସଙ୍ଗେ କଳିଙ୍ଗର ଗଙ୍ଗବଂଶର ବୈବାହିକ ସମ୍ବନ୍ଧ ଥିଲା । ଜୟପୁର ରାଜ୍ୟରେ ଅନେକ ଜୈନ କୀର୍ତ୍ତି ଅଛି । ଜୟପୁରର ଅଧିବାସୀ ପ୍ରଧାନ ଜାତି 'ପୋରଜା' (ସଂ. ପ୍ରଜା) ଓ 'ଗାଦବା' ଓଡ଼ିଆଭାଷୀ । ଜୟପୁର ପ୍ରାଚୀନ କଳିଙ୍ଗର ଗୋଟିଏ ଅଂଶ ଥିଲା ।]

**ଜୟବନ୍ତ**—ଦେ. ବଣ (ସଂ. ଜୟବତ୍)—ଜୟଶୀଳ (ଦେଖ)
Jaya-banta Jayasila (See)

**ଜୟବିଜୟ**—ସଂ. ବ—ବିଷ୍ଣୁଙ୍କ ଦ୍ୱାରରକ୍ଷକଦ୍ୱୟ—
Jaya-bijaya Name of the two attendants or doorkeepers of Bishnu.

ପ୍ରତିହାରୀ ଜୟ ବିଜୟ ତତ୍ତ୍ୱ ଦେଲେ ସରଣୀ ।—ରାଧାନାଥ. ଚନ୍ଦ୍ରଭାଗା ।

[ଦ୍ର—ଜୟ ଓ ବିଜୟ ସନକାଦି ଋଷିମାନଙ୍କୁ ହରିଦର୍ଶନରେ ବାଧା ଦେଇଥିଲେ, ଋଷିଙ୍କ ଶାପରେ ଏମାନେ ସତ୍ୟଯୁଗରେ ହିରଣ୍ୟାକ୍ଷ ଓ ହିରଣ୍ୟ କଶିପୁ (ମତାନ୍ତରରେ ମୁର ଓ ଦାରୁଣ), ତ୍ରେତାଯୁଗରେ ରାବଣ ଓ କୁମ୍ଭକର୍ଣ୍ଣ ଏବଂ ଦ୍ୱାପରଯୁଗରେ ଶିଶୁପାଳ ଓ ଦନ୍ତବକ୍ତ୍ର (ମତାନ୍ତରରେ ଶିଶୁପାଳ ଓ ଶଲ୍ୟ) ରୂପେ ଜାତ ହୋଇ ନାରାୟଣଙ୍କ ଦ୍ୱାରା ନିଧନପ୍ରାପ୍ତ ହୋଇଥିଲେ]

**ଜୟବିଜୟଦ୍ୱାର**—ଦେ. ବ—ବିଷ୍ଣୁମନ୍ଦିର ଓ ବିଶେଷତଃ ଜଗନ୍ନାଥଙ୍କ
Jaya-bijaya-dwāra ମନ୍ଦିରର ଗୁମ୍ଫାଦୁଆର ( ଏଠାରେ ଜୟ ଓ ବିଜୟ ଦ୍ୱାରୀ ଦୁହିଙ୍କ ମୂର୍ତ୍ତି ଥିବାରୁ)—The name of the door to the inner temple of Bishnu.

**ଜୟମଙ୍ଗଳ**—ସଂ. ବ—୧ । ରାଜାଙ୍କ ହାତୀ; ପାଟହାତୀ—
Jaya-mangala 1. The elephant ridden by a king.
୨ । ଆୟୁର୍ବେଦୋକ୍ତ ପ୍ରସିଦ୍ଧ ଜ୍ୱରନାଶକ ରସ ବା ବଟିକା—
2. A well-known febrifuge-pill prescribed in the Hindu medical science
୩ । ହିନ୍ଦୁ ସଙ୍ଗୀତର ୬୦ ଟି ତାଳ ମଧ୍ୟରୁ ଏକ—
3. One of the 60 musical measures in Hindu music.

**ଜୟମଳ**—ଦେ. ବ. (ସଂ. ଜୟମାଳା)—ଜୟମାଳା (ଦେଖ)
Jaya-māla Jayamālā (See)

**ଜୟମାଳା**—ସଂ. ବ (ମ. ପ. ଲୋ. ଜୟ+ମାଳା)—
Jaya-mālā ୧ । ବିଜୟ ଚିହ୍ନ ସ୍ୱରୂପ ବିଜୟୀଙ୍କର ପିନ୍ଧିବାମାଳା—
1. A garland worn by the victor after victory.
୨ । କନ୍ୟା ସ୍ୱୟଂବର ବେଳେ ବରର ବେକରେ ଯେଉଁ ମାଳା ପକାଇଦିଏ; ବରଣମାଳା—2. A garland which is put on the neck of the husband selected by the bridegroom at a gathering of suiters.

**ଜୟଯଜ୍ଞ**—ସଂ. ବ—ଅଶ୍ୱମେଧ ଯଜ୍ଞ (ହି. ଶବ୍ଦସାଗର)—
Jaya-jajña The vedic horse-sacrifice.

**ଜୟଲକ୍ଷ୍ମୀ**—ସଂ.ବି.ସ୍ତ୍ରୀ (ରୂପକ କର୍ମଧାରୟ ବା ଷଷ୍ଠୀ ତତ୍; ଜୟ+ଲକ୍ଷ୍ମୀ)—
Jaya-lakshmi ବିଜୟଲକ୍ଷ୍ମୀ; ଜୟର ଅଧିଷ୍ଠାତ୍ରୀ ଦେବୀ—
The Goddess of victory and glory.

**ଜୟଶଙ୍ଖ**—ସଂ. ବ—( ମ. ପ. ଲୋ; ଜୟ ସୂଚକ ଶଙ୍ଖ )—ଯେଉଁ ଶଙ୍ଖ
Jaya-sankha ବଜାଇ ଜେତାଙ୍କ ବିଜୟ ଘୋଷଣା କରାଯାଏ—
The conch blown to announce victory.

**ଜୟଶିଙ୍ଗା**—ଦେ. ବ (ସଂ. ଜୟଶୃଙ୍ଗ)—ଜୟଶୃଙ୍ଗ (ଦେଖ)
Jaya-singā Jaya-srunga (See)
(ଜୟଶିଂଘା—ଅନ୍ୟରୂପ)

**ଜୟଶିରୀ**—ଗ୍ରା. (ପଦ୍ୟ) ବ—(ସଂ. ଜୟଶ୍ରୀ )—ଜୟଲକ୍ଷ୍ମୀ (ଦେଖ)
Jaya-siri Jaya-lakshmi (See)

ସେମାନଙ୍କ ପ୍ରାଣ କଷ୍ଟରେ ଛାଡ଼େ ହରି,
ଅର୍ଜୁନ ଯୁଦ୍ଧରେ ପାଇଲେ ଜୟଶିରୀ ।—କୃଷ୍ଣସିଂହ ମହାଭାରତ. ଆଦି ।

**ଜୟଶୀଳ**—ସଂ. ବଣ—(ଜୟ+ଶୀଳ)—ଜୟଯୁକ୍ତ; ଜୟୀ; ଯେ ସର୍ବଦା ଜୟ
Jayasila ଲାଭକରେ—Victorious.

**ଜୟଶୃଙ୍ଗ**—ସଂ. ବ. ( ମ. ପ. ଲୋ; ଜୟ+ଶୃଙ୍ଗ )—ଯେଉଁ ଶିଂଘା
Jaya-srunga ବଜାଇ ଜେତାଙ୍କର, ଜୟଲାଭ ବିଷୟ ଘୋଷଣା କରାଯାଏ—A trumpet or horn blown to announce the victory of a victor.

**ଜୟଶ୍ରୀ**—ସଂ. ବ. ସ୍ତ୍ରୀ. ( ରୂପକ କର୍ମଧା. ବା ଷଷ୍ଠୀ ତତ୍; ଜୟ+ଶ୍ରୀ )—
Jaya-sri ୧ । ଜୟଲକ୍ଷ୍ମୀ ( ଦେଖ )
1. Jaya-lakshmi ( See )
୨ । ସଙ୍ଗୀତର ତାଳବିଶେଷ—
2. Name of musical measure.
୩ । ସନ୍ଧ୍ୟାକାଳରେ ଗେୟ ସମ୍ପୂର୍ଣ୍ଣ ଜାତିର ରାଗବିଶେଷ—
3. Name of a musical air.

**ଜୟସିଂହ**—ଦେ. ବ. ( ନାମ )—ଗଞ୍ଜାମ ଜିଲ୍ଲା ଧରାକୋଟ ରାଜ୍ୟର
Jaya-simha ଜନୈକ ସ୍ୱର୍ଗୀୟ ପଣ୍ଡିତ ରାଜା—Name of a learned king of Dharākota in Ganjam district.

[ଦ୍ର—ଏ ଜଣେ ସଂସ୍କୃତଜ୍ଞ ପଣ୍ଡିତ ଓ କବି ଥିଲେ । 'ମହାଭାରତ', 'କ୍ଷେତ୍ରମହାତ୍ମ୍ୟ' ଓ 'ଭଗବଦ୍‌ଗୀତା' ଏହାଙ୍କ ରଚିତ ଗ୍ରନ୍ଥ । ଏ

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅବ୍ୟୟ' ନ ପାଇଲେ 'ଅବ୍ୟୟ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ବିଖ୍ୟାତ କବି କୃଷ୍ଣସିଂହଙ୍କ ଜ୍ୟେଷ୍ଠଭ୍ରାତା ଥିଲେ—ଭାରଣୀ. ଉତ୍କଳ ସାହିତ୍ୟର ଇତିହାସ । ]

**ଜୟସ୍ତମ୍ଭ**—ସଂ. ବି. ( ମ. ପ. ଲୋ; ଜୟସୂଚକ ସ୍ତମ୍ଭ; ଜୟ+ସ୍ତମ୍ଭ )—
Jaya-stambha କୌଣସି ବିଜୟଲାଭର ସ୍ମାରକରୂପେ ନିର୍ମିତ କରାଯିବା ସ୍ତମ୍ଭ— Monumental pillar; a pillar set up to commemorate a victory.

**ଜୟା**—ସଂ. ବି. ସ୍ତ୍ରୀ. ( ଜି ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ )—
Jayā ୧ । ପାର୍ବତୀ; ଦୁର୍ଗା—1. Goddess Durgā.
୨ । ପାର୍ବତୀଙ୍କ ସଖୀ—
2. A companion of Pārbatī.
୩ । ହରିଡ଼ା—3. Myrobalan.
୪ । ଜୟନ୍ତୀ ୪ ( ଦେଖ )
4. Jayantī 4 ( See )
୫ । ସିଦ୍ଧି; ଭାଙ୍ଗ; ବିଜୟା; ଗଞ୍ଜେଇ—
5. Indian hemp; ganja.
୬ । ତୃତୀୟା, ଅଷ୍ଟମୀ ଓ ତ୍ରୟୋଦଶୀ ତିଥି—
6. The 3rd, 8th and 13th day of the lunar fortnignt.
୭ । ପତାକା ବିଶେଷ—7. A kind of flag.
୮ । ନୀଳ ଦୁବ—
8. A species of grass (blue in colour).
୯ । ଦୁର୍ଗାଙ୍କର ଏକ ସହଚରୀ ( ହି. ଶବ୍ଦସାଗର )—
9. Name of a companion of Durgā.
୧୦ । ମାଘ ଶୁକ୍ଳ ଏକାଦଶୀ ( ହି. ଶବ୍ଦସାଗର )—
10 The 11th day of the light fortnight of the month of Māgha.
୧୧ । ତନ୍ତ୍ରୀଯୁକ୍ତ ପ୍ରାଚୀନ ବାଦ୍ୟବିଶେଷ ( ହି. ଶବ୍ଦସାଗର )—
11. A kind of stringed musical instrument used in ancient India.
୧୨ । ମନ୍ଦାର ଫୁଲ ( ହି. ଶବ୍ଦସାଗର )—
12. The China-rose.
୧୩ । ଶମୀବୃକ୍ଷ ( ହି. ଶବ୍ଦସାଗର )—
13. The Śamī tree.
ଦେ. ବି. ପୁଂ—ଜୟକୃଷ୍ଣର ଅନାଦରାର୍ଥକ ଡାକନାମ—
A name for calling Jayakṛushṇa.

**ଜୟାପୀଡ଼**—ସଂ. ବି. (ନାମ)—ଖ୍ରୀଷ୍ଟୀୟ ୮ମ ଶତାବ୍ଦୀର କାଶ୍ମୀରର ଏକ ରାଜା—Name of a king of Kashmere of the 8th century A. D.
Jayāpirḍa
[ ଦ୍ର—ଏ ଦିଗ୍ବିଜୟ କରିବାକୁ ରାଜଧାନୀରୁ ବାହାରି ଥିଲେ; ବାଟରେ ସୈନ୍ୟମାନେ ଏହାଙ୍କୁ ଛାଡ଼ି ପଳାଇ ଗଲେ । ଏ ଆଉ ରାଜ୍ୟକୁ ନ ଫେରି ପ୍ରୟାଗକୁ ଆସିଲେ ଓ ସେଠାରେ ଏଗାର ହଜାର ଏକ ଶହ ଏଗାର ଘୋଡ଼ା ଦାନ କଲେ । ହି. ଶବ୍ଦସାଗର ]

**ଜୟିଷ୍ଣୁ**—ସଂ. ବିଣ. (ଜି ଧାତୁ+କର୍ତ୍ତୃ. ଇଷ୍ଣୁ )—ଜୟଶୀଳ—
Jayishṇu Always victorious.

**ଜୟୀ**—ସଂ. ବିଣ. ପୁଂ. ( ଜି ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )—
Jayī ଜୟଶୀଳ; ଯେ ଜୟଲାଭ କରିଅଛି; ବିଜୟୀ—
(ଜୟିନୀ—ସ୍ତ୍ରୀ) Victorious; triumphant.
ବି. ପୁଂ—ଜେତା—Conqueror; victor.

**ଜଯ୍ୟ**—ସଂ. ବିଣ. ପୁଂ. ( ଜି ଧାତୁ+କର୍ମ. ଯ )—
Jajya ଯାହାକୁ ଜୟ କରାଯାଇ ପାରେ—Conquerable;
(ଜଯ୍ୟା—ସ୍ତ୍ରୀ) which can be subjugated.

**ଜର୍‌କସି**—ବୈଦେ. ବି. (ଫା)—ଜରକାମ; ଜରି ବୁଣା ହୋଇଥିବା କାରୁକାର୍ଯ୍ୟ—Lace-work.
Jar kasi
जरकसी ବିଣ.—ଯେଉଁ ଲୁଗା ଆଦି ଉପରେ ଜରିର କାରୁକାର୍ଯ୍ୟ କରା ଯାଇ ଥାଏ—(cloth) Wrought with lace.
**जरकस, जरकसो**

**ଜର୍‌କା**—ପ୍ରାଦେ. (ସମ୍ବଲପୁର) ବିଣ—ଜଲକା; ଯାହାର ଆଖି ଥାଏ ମାତ୍ର ସେ ସ୍ପଷ୍ଟରୂପେ ଦେଖି ନ ପାରେ—
Jar-kā
(ଜର୍‌କୀ—ସ୍ତ୍ରୀ) Blear-eyed; dim-sighted.

**ଜର୍‌କିବା**—ପ୍ରାଦେ. (ସମ୍ବଲପୁର) କ୍ରି.—ଜଲକା ହେବା—
Jar-kibā To become dim-sighted.

**ଜର୍‌ଡ଼ା**—ପ୍ରାଦେ. (ସମ୍ବଲପୁର) ବି.—ଜରଡ଼ା (ଦେଖ)
Jar-ḍā Jarar̤ḍā (See)

**ଜର୍‌ଡିଗ୍ରୀ**—ବୈଦେ. ବି. (ଆ. ଜର୍+ଇଂ. ଡିକ୍ରୀ)—(କଚେରିଆ ଶବ୍ଦ)—
Jar-ḍigrī ଦାବି ଓ ଖର୍ଚ୍ଚ ସହିତ ଡିଗ୍ରୀ ହୋଇଥିବା ଟଙ୍କା—
जरडिग्री Decretal amount
**जरडिगरी**
(ଜର୍‌ଡିକ୍ରୀ; ଜରଡିଗିରି—ଅନ୍ୟରୂପ)

**ଜର୍‌ଦା**—ବୈଦେ. ବି. (ଫା)—୧ । (ମୁସଲମାନଙ୍କର ଖାଦ୍ୟ) ସୁବାସିତ ହଳଦିଆ ଭାତ—1. A kind of rice boiled with turmeric.
Jar-dā
[ଦ୍ର—ପ୍ରଥମେ ଚାଉଳରେ ହଳଦୀ ମିଶାଇ ତାକୁ ସିଝାଇ ପେଜ ଗାଳି ସେଥିରେ ଘିଅ, ମିଠା ଓ ମସଲା ଗୋଳାଇ ଏହା ତିଆରି କରା ଯାଏ । )
୨ । ପାନ ସଙ୍ଗେ ଖାଇବା ପାଇଁ ସୁଗନ୍ଧିତ ତମାଖୁ ଗୁଣ୍ଡା;
जरदा ସୁର୍ତ୍ତି—2. A kind of sweet-scented tobacco-preparation chewed with betel.
**जरदा**
୩ । ହଳଦିଆ ଘୋଡ଼ା—3. Yellow-skinned horse.
୪ । ଏକ ପ୍ରକାର ହଳଦିଆ ଛିଟ—
4. A kind of yellow chintz.

**ଜର୍‌ଦାବୀ**—ବୈଦେ. ବି (ଫା)—ମକଦମାରେ ପ୍ରତିବାଦୀ ଉପରେ ବାଦୀ ଦାବି କରିଥିବା ଧନର ପରିମାଣ—
Jar-dābi
जरदावी The amount of claim in a suit.
**जरदाबी**

| ୦ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ୟ | ଥ | ଖ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ | ଇଅ | ଡ଼ | ନ୍ |

ଜର୍‌ଦାଲୁ—ବୈଦେ. ବ (ଫା)—ଜରଦାଲୁ (ଦେଖ)
Jar-dālu Jaradālu (See)

ଜର୍‌ଦୀ—ବୈଦେ. ବ (ଫା)—୧ । ହଳଦିଆ ବର୍ଣ୍ଣ—
Jar-di 1. Yellow colour.
ଜରଦୀ ୨ । ଅଣ୍ଡା ମଧ୍ୟସ୍ଥ ହଳଦିଆ ଅଂଶ—
जर्दी 2. The yellow portion inside an egg.
ବିଣ.—ହଳଦିଆ—Yellow.

ଜର୍‌ବାର୍—ଗ୍ରା. ବୈଦେ. ବିଣ. (ଅ. ଜେର୍‌ବାର୍)—କ୍ଷତିଗ୍ରସ୍ତ—
Jar-bār Sustaining loss; put to loss.

ଜର୍‌ସମନ୍—ବୈଦେ. ବ. (ଫା) (କଚେରୀଅଭାଷା—ବିକ୍ରୀତ ସମ୍ପତ୍ତିର
Jar-saman ମୂଲ୍ୟ—Sale-price; the consideration or
ଜରସମନ value of a property sold.
जरसमन

ଜର—ସଂ. ବିଣ. (ଜୄ ଧାତୁ+କର୍ତ୍ତୃ. ଅ)—୧ । ବୃଦ୍ଧ—1. Old.
Jara ୨ । ଜରାଜୀର୍ଣ୍ଣ—2. Decrepit; infirm
ବ—୧ । (+ଭାବ ଅ)—ଜୀର୍ଣ୍ଣ ହେବା—
1 Wearing out; wasting.
୨ । ବିନାଶ—2. Destruction.
ଜ୍ୱର ଦେ. ବ. (ସଂ. ଜ୍ୱର)—ଜ୍ୱରରୋଗ—Fever.
बुखार [ଦ୍ର—ପ୍ରକାରଭେଦରେ ଜରମାନଙ୍କର ଭିନ୍ନଭିନ୍ନ ନାମ ହୋଇଥାଏ । ଯଥା—ବାତଜର, କମ୍ପଜର, ଠେଙ୍ଗାଜର, କଳାଜର, ପାଳିଜର, ମେ(ମା)ଲେରିଆଜର ବା ପିଳେହିଜର, ଅନ୍ତ୍ରିକଜର,ଏନ୍ଫ୍ଲୁଆ ବା ଏକୋଇ ଜର, ସାନ୍ନିପାତିକ ଜର ବା ବିକାର; ଟାଇଫଏଡ୍ ବା ବାଇସିଦିନିଆଁ ଜର, ଶରଦଜର ବା କଫଜର, ଗରମଜର ବା ପିତ୍ତଜର, ଭୂୟିଁଜର; ବିଷମ ବା ସହାଗ୍ରମ ଜର, ଦ୍ୱ୍ୟାହିକ, ତ୍ର୍ୟାହିକ, ଚାତୁର୍ଥିକଜର, ଜୀର୍ଣ୍ଣଜର ବା ପୁରାତନଜର, ସନ୍ତତ ବା ଏକଜର, ଅଘୋରଜର, ଅଭିନ୍ୟାସଜର, ବଲେଶ୍ୱରୀଜର, ଉଆଁ ବା ଫଳ୍ଗାମକଜର, ଶୂଳଜର, ଭୂତଜର ଓ କାମଜର । ଜରର ପ୍ରଧାନ ଲକ୍ଷଣ ଦେହରେ ତାତ ବା ଉଷ୍ଣତା ଓ ଶୈତ୍ୟାନୁଭୂତି । ]

ଜରଅଂଶିଆ—ଗ୍ରା ବିଣ. (ସଂ. ଜ୍ୱର ଓ ଅଂଶ)—ସାମାନ୍ୟରେ ଜ୍ୱରାକ୍ରାନ୍ତ—
Jara-ãsiā Slightly feverish.
ଜର ଜର
(ଜରଅଁଶିଆ; ଜରଅଂଶୁଆ; ଜରଅଁଶୁଆ—ଅନ୍ୟରୂପ)

ଜର ଆସିବା—ଦେ ବ.—(କୌଣସି ବ୍ୟକ୍ତିର) ଜ୍ୱର ଆକ୍ରମଣ କରିବା—
Jara āsibā Having an attack of fever.
जर आसा
बुखार आना

ଜରଉ—ଦେ. ବ (ନାମ)—ଗଞ୍ଜାମର ବଡ଼ଗଡ଼ ଗ୍ରାମ୍ୟର ନଦୀ (ଏଥିରେ
Jarau ଗାଧୋଇଲେ ବିଦେଶୀ ଲୋକଙ୍କୁ ଜର ହୁଏ)—
Name of river in Ganjam the water of which is reputed to be full of malarial germs.

ଜରଉହା—ଦେ.ବି—କମ୍ପଜର ଓ ପାଳିଜରରେ ସମୟସମୟରେ ନାକପୁଡ଼ା
Jara-uhā ଭିତରେ ବାହାରୁଥିବା ଫୋଟକା—A blister-like eruption found inside the nostrils in the case of certain kinds of tertian fever and ague.

ଜର ଓହ୍ଲାଇବା—ଦେ. ବ—ଜର ଛାଡ଼ିବା (ଦେଖ)
Jara ohlāibā Jara chhārdibā See)
जर नाबा
बुखार उतरनो

ଜର କରିବା—ଦେ.ବ.—୧ । (କୌଣସି ବ୍ୟକ୍ତି) ଜ୍ୱରରେ ପୀଡ଼ିତ ହେବା—
Jara karibā Suffering from fever; being down
जर करा with fever.
बुखार होना ୨ । ଜର ଆସିବା (ଦେଖ)- 2 Jara āsibā (See)

ଜର ଖଇ ଫୁଟିବା—ଦେ ବ. (ଅଲ୍ପ)—ରୋଗୀର ଶରୀରରେ ଜ୍ୱରର
Jara khai phutibā ତାପ ଅତ୍ୟଧିକ ହେବା—Having a high temperature during fever.
(ଜରରେ ଖଇଫୁଟିବା; ଦେହରେ ଖଇଫୁଟିବା—ଅନ୍ୟରୂପ)

ଜର ଛାଡ଼ିବା—ଦେ. ବି—୧ । ଜରର ପ୍ରକୋପ ବା ତାପ କମିଯିବା—
Jara chhārdibā 1. The abatement of high
जर छाड़ा temperature in a person
बुखार उतरना suffering from fever
(ଜର ଛାଡ଼ିଯିବା—ଅନ୍ୟରୂପ) ଜର ଅଟଇ ଧାନକୁଟା ବେଳକୁ
ଜର ଛାଡ଼ଇ ଭାତ ଫୁଟା ବେଳକୁ । ଢଗ ।

ଜରଜର—ଦେ. (ପଦ୍ୟ) ବିଣ. (ସଂ. ଜର୍ଜର)—୧ । ଅଭିଭୂତ; ଆକ୍ରାନ୍ତ;
Jara-jara ଜର୍ଜରିତ; ସନ୍ତପ୍ତ—1.Attacked; overwhelmed
ଜରଜର (with grief, anger, cold etc).
जरजर ଜରଜର ନବାକ୍ଷଣ ଶୀତେ । ସ୍ୱଧାକାଥ. ମହାଯାତ୍ରା ।
୨ । ଲିପ୍ତ; ସରସର (ତେଲଆଦି ଦେହରୁ ବୋହି ପଡ଼ୁଥିବା ପ୍ରକାରେ ବୋଳି ହୋଇ ଥିବା)—1. Suffused; anointed with too much oil etc; with too much oil or water over the body; smeared with.
ଅତି କୋମଳ ଦେହ ମୋର
ଦେଖ ଏ ଘାଳେ ଜରଜର । ଭୂପତି. ପ୍ରେମପଞ୍ଚାମୃତ ।
୩ । ଜରାଗ୍ରସ୍ତ—3 Very old; decrepit.
ଏ ଅଟ ବୃଦ୍ଧ ଜରଜର
ବାଡେ କମ୍ପଇ ତା ଶରୀର । ଜଗନ୍ନାଥ. ଭାଗବତ ।
ବି—ଜ୍ୱର ହେଲାପରି ବୋଧ ହେବା—Feverishness.

ଜରଜାତକ—ଦେ. ବିଣ. (ସଂ. ଜାତକୋତକ)—ଜରଜାତକା (ଦେଖ)
Jarajātaka Jarajātakā (See)

ଜରଜାତକା—ଦେ. ବିଣ. (ସଂ. ଜାରଜାତକ)—୧ । ଜାରଜ; ବେଧପିଲା;
Jara-jātakā ବେଜନ୍ମା; ବିବାହବନ୍ଧନରେ ଆବଦ୍ଧ ନ ଥିବା

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧ' ନ ପାଇଲେ 'ବନ୍ଧ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ପୁରୁଷ ଓ ସ୍ତ୍ରୀଙ୍କଠାରୁ ଯେଉଁ ସନ୍ତାନ ଜନ୍ମେ; ରକ୍ଷିତା ସ୍ତ୍ରୀର ଗର୍ଭଜାତ ସନ୍ତାନ—1. Illegitimate; bastard; born of illegal connection.

**ଜରଠ**—ସଂ. ବିଣ. (ଜୃ ଧାତୁ = ଜୀର୍ଣ୍ଣହେବା + କର୍ତ୍ତୃ. ଅଠ)—
Jaratha
(ଜରଠା—ସ୍ତ୍ରୀ)
୧ । କଠିନ—1 Hard.
୨ । କର୍କଶ —2. Rough.
୩ । କଠୋର; ନିଷ୍ଠୁର—3. Hard-hearted; cruel; harsh.
୪ । ବୃଦ୍ଧ—4. Old; decrepit
୫ । ସୁପରିପକ୍ୱ—5. Full grown; well-ripened.
୬ । ଜୀର୍ଣ୍ଣ—6. Wasted, debilitated.
୭ । ପାଚିଲା—7. Ripe
୮ । ପାଣ୍ଡୁବର୍ଣ୍ଣ; ପାଣ୍ଡୁ—8. Grey-coloured.
ବି—୧ । ଜରା; ବୃଦ୍ଧାବସ୍ଥା—1. Old age.
୨ । ପାଣ୍ଡୁରାଜା—2. The king Pāṇḍu.

**ଜରଡ଼ା**—ପ୍ରାଦେ. ବି. (ସମ୍ବଲପୁର)—ଜରାଡ଼ ବା ଜଙ୍ଘାମାଛ—
Jararḍā A kind of fresh-water-fish.

**ଜରଣ**—ସଂ. ବିଣ (ଜୃ ଧାତୁ + କର୍ତ୍ତୃ. ଅନ)—୧ । ବୃଦ୍ଧ—
Jaraṇa 1. Old.
୨ । କ୍ଷୟପ୍ରାପ୍ତ; ଜୀର୍ଣ୍ଣ—2. Decayed.
୩ । ଜୀର୍ଣ୍ଣଶକ୍ତିବର୍ଦ୍ଧକ—3. Promoting digestion.
ବି.—୧ । ପ୍ରଶଂସା—1. Praise.
୨ । ଜୀରା—2. Cumin seed.
୩ । ବାର୍ଦ୍ଧକ୍ୟ—3. Old age.
୪ । ହେଙ୍ଗୁ—4 Asafœtida.
୫ । ସୌବର୍ଚ୍ଚଲ; ସଚଳ ଲବଣ—5. A kind of salt.
୬ । କାସମର୍ଦ୍ଦ; କାସିନ୍ଦ ଗୁଳ୍ମ—6. Cassia Tora (tree).
୭ । ୧୦ ପ୍ରକାର ଗ୍ରହଣ ମଧ୍ୟରୁ ଏକ (ଯହିଁରେ ପଶ୍ଚିମଦିଗରୁ ମୋକ୍ଷ ହେବା ଆରମ୍ଭ ହୁଏ (ହି. ଶବ୍ଦସାଗର)—7. An eclipse which begins to clear up from the western side of the orb.

**ଜରଣଦ୍ରୁମ**—ସଂ. ବି.—୧। ସାହାଡ଼ାଗଛ (ଦେଖ)
Jaraṇa-druma 1. Sāhārḍā tree (See)
୨ । ସାଗୁଆନ ଗଛ (ହି. ଶବ୍ଦସାଗର)—2. Teak (tree).

**ଜରଣା**—ସଂ. ବି. (ଜୃ ଧାତୁ + କର୍ତ୍ତୃ. ଅନ + ଆ)—୧ । କଳାଜୀରା—
Jaraṇā 1. Black cumin seed.
୨ । ବୃଦ୍ଧାବସ୍ଥା—2. Old age.
୩ । ସ୍ତୁତି; ପ୍ରଶଂସା—3. Praise; encomium.
୪ । ମୋକ୍ଷ; ମୁକ୍ତି—4. Final deliverance; redemption.

**ଜରତ୍**—ସଂ. ବିଣ. ପୁଂ [(ଜୃ ଧାତୁ + ଶତୃ (ଅତ୍)]—୧ । ଜରାଗ୍ରସ୍ତ; ଅତି
Jarat
(ଜରତୀ—ସ୍ତ୍ରୀ)
ବୃଦ୍ଧ; ଜରାଜୀର୍ଣ୍ଣ (ପୁରୁଷ ଓ ସ୍ତ୍ରୀ)—(ଏ ଶବ୍ଦ କେବଳ ସଂସ୍କୃତ ଭାଷାରେ ଚଳେ ମାତ୍ର ଏହାର ସ୍ତ୍ରୀଲିଙ୍ଗ ଜରତୀ ଶବ୍ଦ ଓଡ଼ିଆରେ ମଧ୍ୟ ଚଳେ)—1. Very old; decrepit; worne out; decayed; disabled; infirm (said of male or female)
୨ । ପୁରୁଣା; ପୁରାତନ—2 Ancient; old.
୩ । ପକ୍ୱ—3 Ripe.

**ଜରତ୍କାରୁ**—ସଂ. ବି. (ନାମ)—(ଜରତ୍ = ଜରାଗ୍ରସ୍ତ; ଜୀର୍ଣ୍ଣ + କାରୁ = 
Jarat-kāru
ଦାରୁଣ; ଯେ ଦାରୁଣ ତପସ୍ୟାଦ୍ୱାରା ଆପଣାର ଶରୀରକୁ ଜୀର୍ଣ୍ଣ କରିଥିଲେ)—୧ । ସ୍ୱନାମଖ୍ୟାତ ଋଷିବିଶେଷ—1. Name of a famous saint.

[ଦ୍ର—ଏହାଙ୍କର ସ୍ତ୍ରୀ ବାସୁକିଙ୍କ ଭଗିନୀ ମନସା ଦେବୀ । ଏହାଙ୍କ ସ୍ତ୍ରୀଙ୍କ ଉପରେ ଏ କ୍ରୁଦ୍ଧ ହୋଇ ତାଙ୍କୁ ଅନ୍ତଃସତ୍ତ୍ୱା ଅବସ୍ଥାରେ ପରିତ୍ୟାଗ କରି ଚାଲି ଗଲେ । ଆସ୍ତିକ ମୁନି ଏହାଙ୍କ ପୁତ୍ର । ଏହି ଆସ୍ତିକ ତକ୍ଷକ ନାଗଙ୍କୁ ଜନମେଜୟଙ୍କ ସର୍ପଯଜ୍ଞରୁ ରକ୍ଷା କରିଥିଲେ । ]

୨ । ଜରତ୍କାରୁ ଋଷିଙ୍କ ପତ୍ନୀ, ମନସା ଦେବୀ (ହି. ଶବ୍ଦସାଗର) 2. The wife of Sage Jaratkāru.

**ଜରତ୍କାରୁପତ୍ନୀ**—ସଂ. ବି. ସ୍ତ୍ରୀ—ମନସାଦେବୀ; ବାସୁକିଙ୍କ ଭଗିନୀ (ସିଜୁ
Jarat-kāru-patnī
ବା ନାଗଫେଣୀଅଙ୍କୁ ଏହାଙ୍କ ପ୍ରତିକୃତିରୂପେ ଲୋକେ ପୂଜା କରନ୍ତି)—The snake-Goddess Manasā (represented by a cactus plant planted in the precincts of a Hindu's house.)

**ଜରତ**—ଦେ. ବିଣ.—(ସଂ. ଜରତ୍)—ପକ୍ୱ; ପାଚିଲା—
Jarata Ripe.

ଦରଜ୍ଞାନ ରଙ୍ଗ ଜରକର ଜରତ ବସ୍ତ୍ର ଅକୃତ ବହେ ଦେହେ ସେ ।
ଉଷ୍ଟ. ବୈଦେହୀଶବିଳାସ ।

**ଜରତା**—ଦେ. ବି. ସ୍ତ୍ରୀ. ( ସଂ. ଜରତୀ )—ଓଡ଼ିଆ ଭକ୍ତିଗ୍ରନ୍ଥ ବର୍ଣ୍ଣିତ
Jaratā
ଗୋଟିଏ ବୃଦ୍ଧା ବେଶ୍ୟାର ନାମ—Name of an old prostitute found in Oria mythologies.

[ ଦ୍ର—ବେଶ୍ୟାବୃତ୍ତି କରୁଥିଲେହେଁ ଏ ବୃଦ୍ଧକାଳରେ ଏକାନ୍ତ ଭକ୍ତି ଓ ଭଜନାଦିଦ୍ୱାରା ମୋକ୍ଷଲାଭ କରିଥିଲା । ]

**ଜରତୀ**—ସଂ. ବିଣ. ସ୍ତ୍ରୀ ( ଜରତ୍ + ସ୍ତ୍ରୀ. ଈ )—ବୁଢ଼ୀ; ଅତି ବୃଦ୍ଧା;
Jaratī
ଜରାଗ୍ରସ୍ତା—Very old (woman).
ବି. ସ୍ତ୍ରୀ—ବୁଢ଼ୀ ସ୍ତ୍ରୀ; ବୁଢ଼ୀ ମାଙ୍କୁଡ଼ୀ ( ବ୍ୟଙ୍ଗ ବା କୁତ୍ସାର୍ଥକ )—An old woman; a hag.

ଭୁଷା କରେଁ ମୁଁ ଧାତାକୁ, କାହିଁକି ସରଜ ତାକୁ,
ତରୁଣୀ ରଖିଲ ଜରତୀରେ—ବ୍ରଜସୂର୍ଯ୍ୟ. ଜଗୋବାଳମ୍ଭ. କ. ଗୀତ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଇୟ୍ | ଉଅ | ଖ |
| ୨ | ଈ | ଊ | ରୁ | ଲୃ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ |

ଜରଦ୍‌ଗବ—ସଂ. ବି. ପୁଂ ( କର୍ମଧାରୟ; ଜରତ୍ = ବୃଦ୍ଧ + ଗୋ )—
Jarad-gaba ୧ । ବୁଢ଼ା ବା ବଡ଼ୁଆ ଷଣ୍ଢ—1 An old bull.
(ଜରଦ୍‌ଗବୀ—ସ୍ତ୍ରୀ) ୨ । (ଲକ୍ଷଣାର୍ଥ) ଅତି ବୁଢ଼ା ଓ ଅକର୍ମା ମନୁଷ୍ୟ—
(ଜରଦ୍ଗବ—ଅନ୍ୟରୂପ) 2. ( figurative ) An old and decrepit man.
୩ । ( ନାମ ) ( ବହୁବ୍ରୀହି; ଜରତ୍ = ଜୀର୍ଣ୍ଣ + ଗୋ = ଇନ୍ଦ୍ରିୟ ଯାହାର) —ହିତୋପଦେଶବର୍ଣ୍ଣିତ ବୃଦ୍ଧ ଗୃଧ୍ର—3 Name of an old vulture whose story is told in the Hitopadeśa
୪ । (ବୃହତ୍ ସଂହିତା) ବିଶାଖା, ଅନୁରାଧା ଓ ଜ୍ୟେଷ୍ଠା ନକ୍ଷତ୍ରଯୁକ୍ତ ଚନ୍ଦ୍ରମାଙ୍କ ବୀଥୀ—4. The moons path through the 16th, 17th and 18th asterisms.

ଜରଦା—ବୈଦେ. ବିଣ (ଫା ଜର୍‌ଦା)—ପୀତ; ହଳଦିଆ—
Jarada Yellow-coloured.
(ଜର୍‌ଦା, ଜର୍ଦ୍ଦା—ଅନ୍ୟରୂପ) ବି—୧ । ଜାଫ୍ରାନ୍ କେଶର ମିଶିଥିବା ହେତୁ ପୀତବର୍ଣ୍ଣ ମିଠା ପଲାଉ ବା ଖେଚୁଡ଼ି—1. Rice and meat cooked together and seasoned with saffron.
୨ । (ଫା. ଜର୍‌ଦା) ପାନ ସଙ୍ଗେ ଖିଆଯିବା ସୁଗନ୍ଧ ମସଲାଯୁକ୍ତ ତମାଖୁ ପତ୍ରର ଚୂର୍ଣ୍ଣ—2 Scented tobacco-powder chewed with betel
୩ । ହଳଦିଆ ପଠା—3. Yellow silk-cloth.

ଜରଦ୍ୱିଷ—ସଂ. ବି—ଜଳ (ହି. ଶବ୍ଦସାଗର)—
Jaradwisha Water.

ଜରଦାଲୁ—ବୈଦେ.ବି (ଅ. ଜର୍‌ଦାଲୁ)—ଏକପ୍ରକାର କାବୁଲି ଖାଦ୍ୟ
Jaradālu ଫଳ; ଖୁବାନି; ଖୋବାନୀ—A sort of Kabuli
खोबानी fruit; the apricot, Prunus Armeniaca.
खोवानी, जरदालु

ଜରନାଶନ—ଦେ. ବି (ସଂ. ଜ୍ୱର + ନାଶନ)—ଉଚ୍ଚ ବୃକ୍ଷବିଶେଷ—
Jara-nāśana Eucalyptus; Acacia Auriculae Formis (Haines).
जरनाशन
यूकेलिपटस [ ଦ୍ର—ଏହାର ପତ୍ର ଲେମ୍ବୁପତ୍ର ପରି ବାସେ । ଏହା ଅଷ୍ଟ୍ରେଲିଆ ଓ ଗ୍ରୀନଲାଣ୍ଡରୁ ଆସି ଭାରତର କ୍ଷେତ୍ର,କିଆରି ଓ ବଗିଚାରେ ଲଗା ହୋଇଅଛି । ଫୁଲଗୁଡ଼ିକ ଶ୍ୱେତ ଏବଂ ଫୁଲର ପାଖୁଡ଼ା ଧଳା ଓ ଠାଣୁଆ । ଏ ପତ୍ରରୁ ଯେଉଁ ତେଲ ବାହାରେ ତାହା ଜ୍ୱର ଓ ସଂକ୍ରାମକ ରୋଗର ବିସ୍ତାରବାରକ । ଏ ଗଛରୁ ଝୁଣା ପରି ଏକ ପ୍ରକାର ନିର୍ଯ୍ୟାସ ବହେ । ]

ଜରପାମ୍ପଡ଼ା—ଦେ. ବି—ଘରପୋଡ଼ିଆ (ଦେଖ)
Jara-pāmparḍā Gharaporḍiā (See)

ଜରବାଉଳା—ଦେ. ବି (ସଂ. ଜ୍ୱର + ବାତୁଲ)—୧ । ପ୍ରବଳ ଜ୍ୱରଜନିତ
Jra-bāulā ପ୍ରଳାପ ବା ବାତୁଳଗ୍ରସ୍ତ ଅବସ୍ଥା—1. Delirium
(ଜରବାଉଳୀ—ସ୍ତ୍ରୀ) appearing during high fever.
୨ । ଜ୍ୱରଜନିତ ବାତୁଳତା ବା ସ୍ମରଣ ଶକ୍ତିର ହ୍ରାସ—
2. Forgetfulness or loss of memory during a fit of high fever
( ଯଥା—ଜରବାଉଳାରେ ତାଙ୍କୁଆ କାମୁଡ଼ିବା ନ୍ୟାୟ । )
ବିଣ ପୁଂ—ଜ୍ୱର ହେତୁ ଯେ ବାତୁଳଗ୍ରସ୍ତ ହୁଏ—Delirious owing to an attack of high fever.

ଜରଶଣ୍ଡା—ଦେ. ବି—ଜ୍ୱର ରୋଗଗ୍ରସ୍ତ ବ୍ୟକ୍ତିର ଓଠ ଉପରେ ଫଳିଯିବା
Jaraśanḍā କ୍ଷୁଦ୍ରକ୍ଷୁଦ୍ର ବ୍ରଣ—Small eruptions coming
जबटोटो, जरठँटो out around the mouth and lips
(ଜରଶଣ୍ଢା—ଅନ୍ୟରୂପ) after an attack of fever; cold sore; miliarca; miliary eruptions.

ଜରଶଶା—ପ୍ରାଦେ (ମେଦିନୀପୁର) ବି—ଜରଶଣ୍ଡା (ଦେଖ)
Jaraśaśā Jaraśanḍā (See)

ଜରା—ସଂ ବି. ସ୍ତ୍ରୀ. ( ଜୃ ଧାତୁ + ଭାବ. ଅ + ସ୍ତ୍ରୀ. ଆ )—
Jarā ୧ । ବାର୍ଦ୍ଧକ୍ୟ; ବୃଦ୍ଧାବସ୍ଥା—1. Old age.
୨ । ଅତି ବୃଦ୍ଧାବସ୍ଥା—
2 Extreme old age; decrepitude.
୩ । ରାକ୍ଷସୀବିଶେଷ—
3. The name of a demoness

[ ଦ୍ର—ଜନ୍ମରୁ ଦୁଇଫାଳ ହୋଇଥିବା ଶିଶୁ ଜରାସନ୍ଧଙ୍କୁ ଏ ଯୋଡ଼ିଥିଲା । ଜରା ରାକ୍ଷସୀଦ୍ୱାରା ଯୋଡ଼ା ହୋଇଥିବାରୁ ଜରାସନ୍ଧର ନାମକରଣ ହେଲା । ଏ ମଗଧ ଦେଶର ଗୃହଦେବୀ ଥିଲା—
ହି. ଶବ୍ଦସାଗର । ]
୪ । ଷଷ୍ଠୀ ଦେବୀ; ଷଠୀ ଦୁଇଶେଇଁ—4. The Goddess presiding over the well-being of infants.
୫ । ପୁରାଣ ଅନୁସାରେ କାଳର ଏକ କନ୍ୟାର ନାମ; ବିଖସା ( ହି ଶବ୍ଦସାଗର )—5. Name of a mythological daughter of Kāla.
୬ । କ୍ଷୀରକୋଳି ଗଛ ( ହି. ଶବ୍ଦସାଗର ) ( ଦେଖ )
6 Kshīrakoḷi tree (See)
ସଂ. ବି. ପୁଂ (ନାମ)—ଭଗବତୋକ୍ତ ବ୍ୟାଧ; ଜରାଶବର (ଦେଖ)
Jarā śabara (See)
ଦେ. ବି. ( ସଂ. ଜୃ ଧାତୁ )—୧ । ଜରିବା; ଜୀର୍ଣ୍ଣ ହେବା; ପରିପାକ ହେବା—1. Digestion of food.
୨ । ତୈଳାଦିରୁ ମିଶ୍ରିତ ଜଳୀୟାଂଶ ଅଗ୍ନି ଉତ୍ତାପରେ ଦୂର ହେବା—2. Disappearance of the water from oil or ghee by heat.
୩ । ମିଶା ଯିବା ଲୁଣ ଆଦି କୌଣସି ବସ୍ତୁରେ ଉତ୍ତମରୂପେ ମିଶିଯିବା—3. Absorption of salt by a substance

ସାଧାରଣ ଲୋକେ ଅପର ପୃଷ୍ଠାରେ ଦେଖ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'ଭୂଅଁ' ନ ମିଳିଲେ 'ଭୁଅଁ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଜରିଆ** ଦେ. ବି—୧ । କାଥିଁ ଉପରେ ଫୁଟାଯାଇ ପାଣି ମରି ଥିବା (ତୈଳାଦି)—1 (oil) From which water has been dried out by heating.
୨ । ଜାରିତ—2. Purified.
(ଯଥା—ଜରି ଶୋରା, ଜରି ଲୁଣ ।)

**ଜରାଇବା**—ଦେ. କ୍ରି. (ସଂ. ଜୃ ଧାତୁ)—
Jarāibā ୧ । ଲୁଣକୁ ପଶିବା କିମ୍ବା ଫଳ ମଧ୍ୟରେ ଭେଦାଇବା—
ଜରାନ 1. To cause salt to be absorbed into
**ଜରାନା** any fruit or substance.
(ଜରେଇବା—ଅନ୍ୟରୂପ) ୨ । ଉତ୍ତାପପ୍ରୟୋଗଦ୍ୱାରା ତେଲ ଓ ଘିଅ ଆଦିରୁ ମିଶ୍ରିତ ଜଳକୁ ଲୋପ କରାଇବା—
2. To cause oil or ghee to give up the water adulterated in it by applying heat.

**ଜରାଗ୍ରସ୍ତ**—ସଂ. **ବିଣ.** (ତୃତୀୟା ତତ୍; ଜରା+ଗ୍ରସ୍ତ)—ବାର୍ଦ୍ଧକ୍ୟ-
Jarā-grasta ପ୍ରପୀଡ଼ିତ—Stricken by years; seized with old age or infirmity.

**ଜରାଜୀର୍ଣ୍ଣ**—ସଂ. ବିଣ. ପୁଂ. (ତୃତୀୟା ତତ୍; ଜରା+ଜୀର୍ଣ୍ଣ)—ଅତି
Jarā-jīrṇṇa ବାର୍ଦ୍ଧକ୍ୟ ହେତୁ ଶୀର୍ଣ୍ଣଶୀର୍ଣ୍ଣ—
Debilitated through old age; decrepit.

**ଜରାଡ଼ି**—ଦେ. ବି—ଜହ୍ଲା (ଦେଖ)
Jarāṛdi Jahlā (See)

**ଜରାତୁର**—ସଂ. ବିଣ. ପୁଂ. (୭ମୀ ତତ୍; ଜରା+ଆତୁର)—ବୃଦ୍ଧାବସ୍ଥା
Jarātura ଯୋଗୁଁ ଅତି ଦୁର୍ବଳ—Decrepit; infirm
(ଜରାତୁରା—ସ୍ତ୍ରୀ) on account of old age.

**ଜରାଦ**—ସଂ. ବି—ଝିଣ୍ଟିକା (ହି. ଶବ୍ଦସାଗର)—
Jarāda Grasshopper.

**ଜରାବସ୍ଥା**—ସଂ. ବି (ଜରା+ଅବସ୍ଥା)—ଅତି ବୃଦ୍ଧ ଅବସ୍ଥା—
Jarābasthā Extreme old age.

**ଜରାଭୀରୁ**—ସଂ. ବି(୫ମୀ ତତ୍; ଜରା+ଭୀରୁ)—କାମ—
Jarā-bhīru Cupid.

ବନେ ଜରାଭୀରୁ ଭୀରୁ ସମା ରମାଇରୁ ଉରୁ
ଧରି ବକେ ବୃକ୍ଷି କରୁ କରୁ—ଭଞ୍ଜ ପ୍ରେମସୁଧାନିଧି ।

ସଂ. ବିଣ—ବାର୍ଦ୍ଧକ୍ୟ ହେତୁ ଭୀତ; ଯେ ବୃଦ୍ଧାହେବାକୁ ଡରେ—
Afraid of old age.

**ଜରାୟୁ**—ସଂ. ବି. (ଜରା+ଇ ଧାତୁ=ପ୍ରାପ୍ତ ହେବା+କର୍ତ୍ତୃ.ଉ)—
Jarāyu ୧ । ଗର୍ଭାଶୟ—1. Womb; uterus.
୨ । ଜଟାୟୁ ପକ୍ଷୀ—2. Name of a mythological vulture of great prowess.
୩ । ଭ୍ରୂଣ; ଗର୍ଭସ୍ଥ ଶିଶୁ—3. Embreyo.
୪ । ଅଗ୍ନିଜାର ବୃକ୍ଷ (ଦେଖ)
4. Agnijāra tree (See)
୫ । କାର୍ତ୍ତିକେୟଙ୍କ ଅନୁଚରବିଶେଷ—5. Name of an attendant of Kārttikeya.
୬ । ଯୋନି (ହି. ଶବ୍ଦସାଗର)—6 Female organ.

**ଜରାୟୁଜ**—ସଂ. ବିଣ. (ଜରାୟୁ+ଜନ୍ ଧାତୁ+କର୍ତ୍ତୃ. ଅ)—
Jarāyuja ଯେଉଁ ଜୀବମାନେ ମାତୃଗର୍ଭସ୍ଥ ଜରାୟୁ ମଧ୍ୟ ଦେଇ ଜନ୍ମ ଗ୍ରହଣ କରନ୍ତି—Born from the womb; viviparous
[ଦ୍ର—ଜନ୍ମ ପ୍ରଣାଳୀଭେଦରେ ପ୍ରାଣୀମାନେ ଜରାୟୁଜ, ସ୍ୱେଦଜ ଓ ଅଣ୍ଡଜ ବୋଲି ଯାଆନ୍ତି । ମନୁଷ୍ୟ ପଶୁ ଆଦି ଜରାୟୁଜ, କୀଟ ଆଦି ସ୍ୱେଦଜ ଓ ପକ୍ଷୀ ଆଦି ଅଣ୍ଡଜ, ମାତ୍ର ବାଦୁଡ଼ି ଜରାୟୁଜ ଶ୍ରେଣୀର ଅନ୍ତର୍ଗତ ।]

**ଜରାଳି**—ଦେ. ବି—ଜହ୍ଲା (ଦେଖ)
Jarāli Jahlā (See)

**ଜରାସନ୍ଧ**—ସଂ ବି.(ନାମ)(ଜରା ନାମକ ରାକ୍ଷସୀ ଦ୍ୱାରା ସନ୍ଧ=ଯୋଜିତ; ଏ
Jarāsandha ଜନ୍ମ ହେଲା ବେଳେ ଦୁଇ ମାତାଙ୍କ ଗର୍ଭରୁ ଦୁଇଫାଳ ହୋଇ ଜନ୍ମ ହୋଇଥିଲେ, ଜରା ନାମକ ରାକ୍ଷସୀ ଏହାଙ୍କୁ ଯୋଡ଼ି ଦେବାରୁ ଏ ବଞ୍ଚି ପୂର୍ଣ୍ଣପୃଷ୍ଠା ପ୍ରାପ୍ତ ହୋଇଥିଲେ)—ମଗଧ ଦେଶର ରାଜା; ଚନ୍ଦ୍ର ବଂଶୀୟ ରାଜା ବୃହଦ୍ରଥଙ୍କ ପୁତ୍ର—
A king of Magadha; the son of Bṛuhadratha, killed by Bhīma.
(ଜରାକୁମାର, ଜରାପୁଷ୍ଟ, ଜରାସୁଣି, ଜରାସୁତ—ଅନ୍ୟରୂପ)

ଦନ୍ତ ବକ୍ରଟ ମହାମନ୍ଦ
କାଳଦମନ ଜରାସନ୍ଧ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

[ଦ୍ର—କଂସ ଏହାଙ୍କ ଜାମାତା ଥିଲେ । କୃଷ୍ଣ କଂସଙ୍କୁ ବଧ କରି ଅଛନ୍ତି, ଏହା ଶୁଣି ଏ ସୈନ୍ୟ ସାମନ୍ତ ସହ ୧୮ ଥର ମଥୁରା ଆକ୍ରମଣ କରି ପରାସ୍ତ ହୋଇ ପଳାଇ ଯାଇଥିଲେ । ଏ ବହୁ ସହସ୍ର ରାଜାଙ୍କୁ ଧରି ଆଣି ବନ୍ଦି କରି ରଖିଥିଲେ । ଯୁଧିଷ୍ଠିର ରାଜସୂୟ ଯଜ୍ଞ କଲାବେଳେ ରାଜାମାନଙ୍କୁ ମୁକୁଳାଇ ଦେବାକୁ ଏହାଙ୍କୁ ଅନୁରୋଧ କରିବାରୁ ଏ ଅସ୍ୱୀକାର କଲେ । ଏଥିରେ ଭୀମ ତାହାଙ୍କୁ ଦ୍ୱନ୍ଦ୍ୱ ଯୁଦ୍ଧ କରିବାକୁ ଆହ୍ୱାନ କରିବାରୁ ଏ ଭୟରେ ଯାଇ ଆପଣା ରାଜଧାନୀ ଗିରିବ୍ରଜସ୍ଥ ଆପଣାର ଅନ୍ତଃପୁର ମଧ୍ୟରେ ଲୁଚି ରହିଲେ । ଏହାଙ୍କ ସିଂହଦ୍ୱାରରେ ଗୋଟିଏ ଗଧ ବନ୍ଧା ଥାଏ । କୌଣସି ଶତ୍ରୁ ଆସିଲେ ସେ ଗଧ ବୋବାଳି ଛାଡ଼ି ଜରାସନ୍ଧଙ୍କୁ ଶତ୍ରୁର ଆଗମନ ଜଣାଇ ଦିଏ ଓ ଶତ୍ରୁମାନେ ତାଙ୍କୁ ମାରି ନ ପାରି ଫେରି ଯାଆନ୍ତି । ଶ୍ରୀକୃଷ୍ଣ ଏହା ଜାଣି ଅର୍ଜୁନ ଓ ଭୀମଙ୍କ ସଙ୍ଗରେ ଛଦ୍ମବେଶରେ ଯାଇ ସେ ଗଧକୁ ପ୍ରାର୍ଥନା କରି ତା ମୁହଁରେ ଗୋଟିଏ ଶଙ୍ଖ ପୂରାଇ ଦେଲେ (ଏଣୁ କଥିତ ଅଛି ଯେ କାମ ପଡ଼ିଲା ବେଳେ ପ୍ରଭୁ ଗଧ ପାଦ ଧରିଥିଲେ) । ଭୀମଙ୍କ ଆଗମନ ସମୟରେ ଗଧ ରଡ଼ି କରିବାରୁ ତାହା ଗଧ ରଡ଼ି ପରି ନ ଶୁଭି ଶଙ୍ଖଧ୍ୱନି ପରି ଶୁଭିଲା ଓ ଜରାସନ୍ଧ ସତର୍କ ହୋଇ ନ ପାରି ଅନ୍ତଃପୁରରୁ ବାହାରି ଆସିଲେ ଓ ଭୀମ ଦ୍ୱନ୍ଦ୍ୱ ଯୁଦ୍ଧରେ ତାହାଙ୍କୁ ବଧ କଲେ ।]

| ୧ | ଇ | ଉ | ଋ,ଋ | ଌ | ଏ | ବସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ | ଦୃଷ୍ଟ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ପ | ସ | ଟ୍ୟ | ଋଅ | ଢ଼ | ନ୍ |

**ଜରା ଶବର**—ସଂ. ବ—ଭାଗବତୋକ୍ତ ବ୍ୟାଧର ନାମ—
Jarā śabara Name of a hunter mentioned in the Bhāgabata.

[ ଦ୍ର—ଏହାର ବାଣ ଶ୍ରୀକୃଷ୍ଣଙ୍କ ପାଦରେ ବାଜିବାରୁ ଶ୍ରୀକୃଷ୍ଣ ନର ଦେହ ତ୍ୟାଗ କଲେ । ଶ୍ରୀକୃଷ୍ଣ ଅରଣ୍ୟରେ ଏକ ଅଶ୍ୱ ଉପରେ ଅନ୍ୟ ଗୋଡ଼ର ପାଦକୁ ରଖି ନିଦ୍ରା ଯାଇ ଥିଲେ । ଶ୍ରୀକୃଷ୍ଣଙ୍କର ଚେକା ହୋଇଥିବା ପାଦାଗ୍ରକୁ ଜରା ମୃଗର କର୍ଣ୍ଣ ଭ୍ରମରେ ଶର ମାରିଥିଲା । ]

**ଜରି**—ବୈଦେ ବ. (ଅ. ଜର୍=ସୁନା.—ସୁନ୍ନା ଓ ରୁପ୍ନା ଦୃଢ଼ା; ବସ୍ତ୍ରାଦିରେ କାରୁକାର୍ଯ୍ୟ କରାଯିବା ନିମନ୍ତେ ପ୍ରସ୍ତୁତ ସୁନା ଓ ରୂପାର ବା ପିତ୍ତଳର ଅତି ସୂକ୍ଷ୍ମ ତାର—
Jari
ଜରି
**ज़री; जरी; गोटा** Gold and silver lace.

ଦେ. ବ—୧ । ଜରି ଗଛ (ଦେଖ)
1. Jari gachha (See)

୨ । ( ସଂ. ଦରୀ )—ଗିରିଗହ୍ୱର; ଗୁମ୍ଫା—
2. Mountain-cave.

୩ । (ସଂ. ଜଲୀ)—ନଈବଢ଼ି ଶୁଖିଗଲେ ନଦୀ କୂଳବର୍ତ୍ତୀ ଯେଉଁ ଯେଉଁ ଗଭୀର ସ୍ଥାନରେ ନଈପାଣି ରହିଯାଇ ଥାଏ—3. Deep channels or pools full of standing water left on the banks of a river after the subsidence of flood.

**ଜରିଆ**—ବୈଦେ. ଅ. (ଫା. ଜରିଏ)—ଦ୍ୱାରା; ବାଟେ—
Jariā Through; by; by way of.
ଜରିଆ ( ଯଥା—ଲାଟସାହେବଙ୍କ ନିକଟକୁ କୌଣସି ଆବେଦନ
**ज़रिया** ପତ୍ର ପଠାଇବାକୁ ହେଲେ ତାହା ସ୍ଥାନୀୟ ହାକିମମାନଙ୍କ ଜରିଆରେ ପଠାଇବାକୁ ହୁଏ ।)

ଜରିଦାର ଦେ. ବିଣ—ଜରିଦାର; ଜରିଯୁକ୍ତ—Furnished with
**ज़रदार** golden lace; interwoven with lace.

**ଜରିଆରେ**—ବୈଦେ. ଅ - ଜରିଆ (ଦେଖ)
Jariāre Jariā (See)

**ଜରିକସି**—ବୈଦେ. ବ. ( ଫା. ଜରକସି; ଭୁଲ ଫା. ଜାରକସି )—
Jarikasi ଲୁଗାଆଦିରେ ବୁଣାଯାଇ ଥିବା ଜରିକାମ—
ଜରିକସି Gold and silver embroidery; gold and
**ज़रकसि** silver lace-work; stuff or cloth interwoven with golden and silver lace.

**ଜରି ଗଛ**—ଦେ. ବ—ବରଜାତୀୟ ଏକପ୍ରକାର ବନ୍ୟ ଗଛ; ଏହା ପୁରୁଣା
Jari gachha ଭଙ୍ଗାକୋଠା ଓ ଦେଉଳମାନଙ୍କ ପଥର ଓ ଇଟା
ସଂ. ପ୍ଲକ୍ଷ; ପର୍କଟୀ ସନ୍ଧିମାନଙ୍କରେ ଉଠି ଚେରଦ୍ୱାରା କୋଠା ପ୍ରଭୃତିକୁ
ଗୃହଦର୍ଶନ; ଫଟାଇ ଦିଏ । ଏହାର ଚେର ବସ୍ତୁଦ୍ୱୟକୁ ଭେଦିବାରୁ
ଗର୍ଦଭାଣ୍ଡ ଏହା ସହଜରେ କୋଠା ପ୍ରଭୃତିରୁ ନିର୍ମୂଳ କରାଯାଇ
ପାକୁଡ଼ ପାରେ ନାହିଁ—A banyan-like wild tree
**पाखर** found growing on the crevices of
ତେ. ଜୁବ୍ବି stones and bricks of old dilapidated buildings and sending its roots deep down into the crevices and widening them and causing the structure to totter; Fecus Retusa.

[ ଦ୍ର—ପକ୍ଷୀ ଓ କୁଆମାନେ ଏହାର ଫଳକୁ ଖାଇ କୋଠା ପ୍ରଭୃତି ଉପରେ ବସି ମଳତ୍ୟାଗ କରନ୍ତି । ଉକ୍ତ ମଳରୁ ମଞ୍ଜି ବହିଯାଇ ଗଛ ଉଠେ । ]

**ଜରି ଗୁଳ୍ମ**—ଦେ. ବ.—ସାନ ଜରି ଗଛ (ଦେଖ)
Jari gulma Small jari gachha (See)

ଜରିଗୁଳ୍ମାକାର୍ଣ୍ଣ ଜାଉ ସୌଧ ଖଣ୍ଡ । ସ୍ୱଧାମାଥ. ଜଗାଢ଼ ।

**ଜରିତ**—ଗ୍ରା ବିଣ. (ପ୍ରାଚୀନ ପଦ୍ୟ)—ଜର୍ଜରିତ—
Jarita Overwhelmed.

ଏମନ୍ତ ମଦନେ ଖେଦଭର ଚନ୍ଦ୍ର ଜରିତ ଶ୍ରୀ ଗୋପୀନାଥ । ପ୍ରାଚୀ. ରସବ ଖଣ୍ଡ ।

**ଜରିଦାର**—ଦେ. ବିଣ.—ଜରିଯୁକ୍ତ (ବସ୍ତ୍ରାଦି)—
Jari-dār (cloth etc) Having lace;
ଜରିଦାର embroidered with lace.
**जरिदार**

**ଜରିଧଡ଼ି**—ଦେ. ବ.—ଜରିରେ ନିର୍ମିତ ବା ବୁଣା ଲୁଗାର ଧଡ଼ି—
Jari-dhardi Lace-border of cloth.
ଜରିପାଡ଼ ବିଣ.—ଯାହାର ଧଡ଼ିରେ ଜରି ଲାଗିଥାଏ—
**ज़रीकोनारी** Having lace-work in its border.

**ଜରିପ୍** (ଇତ୍ୟାଦି)—ଜରିବ୍ ଇତ୍ୟାଦି (ଦେଖ)
Jarip (etc) Jarib etc (See)

**ଜରିପଞ୍ଜର**—ଦେ. ବ. ଫା. (ଜର୍‌+ସ. ପିଞ୍ଜର)—ସୁନାଲି ବା ରୂପାଲି କାମ
Jari-pañjara ହୋଇଥିବା ସ୍ୱଚ୍ଛ କାଚର ପ୍ରଦୀପ ବା ପାପାଧାର—
ଜରିପଞ୍ଜରା } —ଅନ୍ୟରୂପ Lantern; crystal-glass-
ଜରିପଞ୍ଜୁରା } lamp; glazed lampstand with gilt work.

**ଜରିପାଗ**—ଦେ. ବ—ଯେଉଁ ପାଗ ବା ପଗଡ଼ିରେ ଜରି କାମ ହୋଇ
Jari-pāga ଥାଏ—A turban wrought with
ଜରୀପାଗଡ଼ୀ lace.
**ज़ैसका पगीया**

**ଜରିବ୍**—ବୈଦେ. ବ. ( ଅ. ଜରାବ୍=ଜମି ମାପିବା )—୧ । ନିର୍ଦ୍ଦିଷ୍ଟ
Jarib ପରିମାଣବିଶିଷ୍ଟ ଦଣ୍ଡ ବା ଶିକୁଳିଦ୍ୱାରା ଜମିର ମାପ—
ଜରୀବ 1. Cadastral survey.
**जरीब** ୨ । ଶିକୁଳିଦ୍ୱାରା ଜମି ମାପ—2 Chain-survey.

୩ । ଚେନ୍; ଜମି ମାପିବାର ଶିକୁଳି—
3. Measuring or surveying chain.

୪ । ୧୦୦ ଲିଙ୍କ୍ ବା ୬୬ ଫୁଟ ପରିମିତ ଭୂମି ମାପିବାର ଚେନ୍—Gunter's chain.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଢ଼ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଖା' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ;

୫ । ଏକ ଚେନ୍ ପରିମିତ ଦୈର୍ଘ୍ୟ—5. A length of one chain (66 feet or 100 links).

[ ଦ୍ର—ଜରିବ ବା ଚେନରେ ୧୦୦ ଖଣ୍ଡି ଲୁହାକାଡ଼ି ଥାଏ ଓ ଉକ୍ତ କାଡ଼ିମାନ ଗୋଟିଏ ଲେଖାଏଁ ମୁଦିଆ ଦ୍ୱାରା ପରସ୍ପର ସଙ୍ଗେ ଯୋଡ଼ା ହୋଇଥାଏ । ଏ ଲୁହା କାଡ଼ିମାନଙ୍କୁ ଲିଙ୍କ୍ ବା କଡ଼ି ବୋଲାଯାଏ । ]

**ଜରିବ୍ ଅମୀନ**—ବୈଦେ. ବି. (ଆ)—ଯେଉଁ ଅମୀନ ଭୂମି ମାପ କରେ—
Jarib amina — Surveyor.
জরিব আমীন
जरिब अमीन

**ଜରିବ୍ ଜମାବନ୍ଦି**—ବୈଦେ. ବି. (ଆ)—ଜରିବ୍ ବନ୍ଦୋବସ୍ତ (ଦେଖ)
Jarib jamābandi — Jarib bandobasta (See)
জরীব জমাবন্দি
जरीब जमाबन्दि

**ଜରିବ୍‌କସ୍**—ବୈଦେ. ବି—(ଆ)—ଜମି ମାପ ବେଳେ ଯେଉଁ ଲୋକ ଶିକୁଳିକୁ ଟାଣେ; ଚେନ୍‌ମାନ୍—
Jarib-kas — A chainman.
জরীবকস
जरीबकस

**ଜରିବ୍ ବନ୍ଦୋବସ୍ତ**—ବୈଦେ. ବି. (ଆ)—ଭୂମିକୁ ମାପ କରି ଭୂମି ଉପରେ ରାଜସ୍ୱ ବନ୍ଦୋବସ୍ତ ବା ସ୍ଥିର କରିବାର ପ୍ରକ୍ରିୟା—Cadastral survey and settlement of rent.
Jarib bandobasta

**ଜରିବ୍ ଭଉଁରିଆ**—ଦେ. ବି—ଚେନ୍ ଦ୍ୱାରା ମାପ କରାଯାଇଥିବା ପ୍ରତ୍ୟେକ କ୍ଷେତ୍ରର ବିବରଣ ( ଯଥା—ଦୈର୍ଘ୍ୟ, ପ୍ରସ୍ଥ, ଦଗ, ଅବସ୍ଥିତି ଓ କ୍ଷେତ୍ରଫଳ) ଯେଉଁ କାଗଜରେ ଲେଖାଥାଏ; ମଡ଼ାଣ ଭଉଁରିଆ—Field-book of cadastral survey.
Jarib bhauñriā

**ଜରିବ୍ କଡ଼ିମାପ**—ଦେ. ବି—ଚେନ୍‌ର କଡ଼ି ଅନୁସାରେ ଜମିର ମାପ—
Jarib kardimāpa — Measurement of land according to the system of chain and links.
জরিবমাপ
जरीबनाप

[ ଦ୍ର—ବାବୁ ରାଧାକୃଷ୍ଣ ବସୁ କଡ଼ିମାପରେ ଜମିର କ୍ଷେତ୍ରଫଳ ମାଣ ଓ ଗୁଣ୍ଠରେ ସ୍ଥିର କରିବାର ଏକ ନୂତନ ସୂତ୍ର ପଦ୍ୟରେ ରଚନା କରିଅଛନ୍ତି; ଯଥା —
ଜରିବକୁ କଡ଼ି ମାଗ ଆଠ ଗଣ୍ଡା, କଡ଼ି କଡ଼ି ଚଉ ଆଠ
ଜରିବେ ଜରିବେ ଅଢ଼ାଇ ଗୁଣ୍ଠକୁ, ମନେ ହେଉ କର ଗୁଣ୍ଠେ,
ଶତେକ କଡ଼ରେ ଜରିବ କୁଅଇ, ପଚଶ ଉଣ୍ଡିରେ କଡ଼ା
ବସୁ ରାଧାକୃଷ୍ଣ, ସୂତ୍ରରେ ଭଣିଲେ, ଗୁଣୀଙ୍କୁ ଏକାଳେ ଲୋଡ଼ା । ]

**ଜରିବସ୍ତ୍ର**—ଦେ. ବି—ମୁହଁରେ ଓ ଧଡ଼ରେ ଜରି ଲାଗିଥିବା ଲୁଗା—
Jari-bastra — A cloth wrought with lace.
জরীকাপড়
जरीकपड़ा
ବାଧାସୁ ଲୋମଜ କଉଶେୟ ଜରିବସ୍ତ୍ର ।—ରାଧାନାଥ ।

**ଜରିବା**—ଦେ. କ୍ରି. ( ଘ ଜୃ ଧାତୁ )—୧ । ( କୌଣସି ପଦାର୍ଥର ମଧ୍ୟରେ ଜଳ ଲବଣ ଆଦି ) ଉତ୍ତମରୂପେ ଭେଦି ଯିବା; ଜଡ଼ିତ ହେବା; ମିଳି ମିଶି ଯିବା—1. To be absorbed ( said of water, oil salt etc ).
Jaribā
জরা
जरना

୨ । ଅଗ୍ନି ଉତ୍ତାପରେ (ଘୃତ ତୈଳାଦି) ନିର୍ଜଳ ହେବା—
2. ( oil or ghee ) To become freed from water by application of heat.

୩ । ( ଲକ୍ଷଣାର୍ଥ ) ଜୀର୍ଣ୍ଣ ଶୀର୍ଣ୍ଣ ହେବା —
3. ( figurative ) To be worne out.
ଗଳି ଉଳି ଅସ୍ଥି ଜରି ଘୋର ବ୍ୟାଧିଁ ପରି
ତା କୂଳ ନଶଇବାକେ ଯାଉ ଦେହ ଜରି—ମଧୁସୂଦନ. ବର୍ଷଗାଥା ।

୪ । ( ଖାଦ୍ୟ ) ଜୀର୍ଣ୍ଣ ହେବା—
4. ( food ) To be digested.

ପ୍ରାଦେ. ( ସମ୍ବଲପୁର ) କ୍ରି—( ଗୋମେଷାଦି ) ଚରିବା—
( cattle ) To graze.

**ଜରିବାନା** ( ଇତ୍ୟାଦି )—ବୈଦେ.ବି.—ଜରିମାନା ଇତ୍ୟାଦି ( ଦେଖ )
Jaribānā ( etc ) — Jarimānā etc ( See )

**ଜରିବୁଟା**—ବୈଦେ. ବି (ଫା)—ଲୁଗାଆଦିରେ ଜରିଦ୍ୱାରା ବୁଣା ଯାଇଥିବା ନକ୍ଷତ୍ରାକାର ବିନ୍ଦୁ ଓ ବର୍ତ୍ତୁଳ ଚକ୍ରମାନ—Starlike points of lace woven on cloth; spangles.
Jari-butā
জরিবুটা
जरीबुटा
ଜରିବୁଟା କଞ୍ଚ କସିବା ପଛ
କୁସୁମା ଦ୍ରବେ ଯାଇଅଛ ଜଡ଼—କବିସୂର୍ଯ୍ୟ. ଚନ୍ଦ୍ରକଳା ।

**ଜରିବୁଟି**—ପ୍ରାଦେ. ( ସମ୍ବଲପୁର ) ବି—ଜଡ଼ିବୁଟି ( ଦେଖ )
Jari-buti — Jardi-buti ( See )

**ଜରିମା**—ସ. ବି. ( ଜସ୍+ଇମନ୍; ୧ମା. ୧ବ. )—ବୃଦ୍ଧାବସ୍ଥା—
Jarimā — Old age.

**ଜରିମାନ୍**—ବୈଦେ. ବି ( ଆ. ଦରମାନ୍; ଦରମିଆନ୍ )—ହଲପ—
Jarimān — Taking oath by touching some sacred thing.

**ଜରିମାନ୍ ଦେବା**—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ସତ୍ୟ କହିବା ନିମନ୍ତେ ହଲପ ଛୁଆଁଇବା—To administer special oath to a person.
Jarimān debā

**ଜରିମାନା**—ବୈଦେ. (ଆ. ଜୁରମାନା)—ଗୁଣାଗାରି; ଅର୍ଥଦଣ୍ଡ; ଡଣ୍ଡ—
Jarimānā — Fine.
জরিমানা
जरिमाना; जुरमाना
ମାଲିଏ ମରନ୍ତି ଜରିମାନା ଦେଇ—ରାଧାନାଥ. ଦରବାର ।

**ଜରିମାନା କରିବା**—ଦେ. ବି—ଅର୍ଥ ଦଣ୍ଡରେ ଦଣ୍ଡିତ କରିବା; ଡଣ୍ଡିବା—
Jarimānā karibā — To mulct; to impose a fine; to pass a sentence of fine.
জরিমানা করা
जुरमाना करना
ଉଠୁଥାଅ ଝାଙ୍କ, କରି ଜରିମାନା
ଧନେ ପୂରାଇବା ଲାଗି ମାଲଖାନା—ରାଧାନାଥ. ଦରବାର.

| ୧ | ଇ | ଉ | ର,ରି | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଚ୍ଛ୍ୟ | ତଥ | ଛ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଚଥ | ଙ୍ଗ | ନ୍ |

ଜରିମୁହଁ—ଦେ. ବି—ଜରି ବୁଣା ହୋଇଥିବା ଲୁଗାର ମୁହଁ ବା ପ୍ରାନ୍ତ—
Jari-muhañ The end of a cloth having lace in it.
जरीमुहुंडा

ଜରିମୁହାଁ—ଦେ. ବିଣ—ଯେଉଁ ଲୁଗାର ମୁହଁ ବା ପ୍ରାନ୍ତରେ ଜରି ବୁଣା
Jari-muhāñ ହୋଇ ଥାଏ—(cloth) Having the ends embroidered with gold or silver thread.

ଜରିମୁହୁଣ୍ଡା—ଦେ. ବିଣ—ଜରିମୁହାଁ ( ଦେଖ )
Jari-muhuṇḍā Jarimuhāñ ( See )
ଦେ. ବି—ଜରିମୁହଁ ( ଦେଖ )
Jarimuhañ ( See)

ଜରୀ—ସଂ. ବିଣ. ପୁଂ. ( ଜର୍ + ଅସ୍ତ୍ୟ ଅର୍ଥରେ. ଇନ୍; ୧ମା. ୧ବ )—
Jarī ୧ । ଜରାଯୁକ୍ତ—1. Old.
(ଜରିଣୀ—ସ୍ତ୍ରୀ) ୨ । ଜୀର୍ଣ୍ଣ—2. Decrepit.
ବୈଦେ. ବି. (ଆ. ଜର୍=ସୁନା )—ସୁନା ରୁପାର ସରୁ ସୂତା—
Golden or silver lace; very fine threads of gold and silver.

ଜରୁଆ—ଦେ. ବିଣ. ପୁଂ. (ସଂ. ଜ୍ୱର)—୧ । ଜ୍ୱର ରୋଗାକ୍ରାନ୍ତ—
Jaruā 1. Suffering from fever; fevered.
जरूआ ୨ । ଯେ ବହୁକାଳ ଜ୍ୱର ଭୋଗୁ ଥାଏ—
ଜରେଇ } ସ୍ତ୍ରୀ. 2. Suffering from chronic fever.
ଜରେଈ }

ଜରୁଥ—ସଂ. ବି—ମାଂସ ( ଦ୍ର. ଶବ୍ଦସାଗର )—
Jarutha Flesh.
ସଂ. ବିଣ.ପୁଂ.—କଟୁଭାଷୀ ( ଦ୍ର. ଶବ୍ଦସାଗର )—
(ଜରୁଥା—ସ୍ତ୍ରୀ) Harsh-speaking.

ଜରୁର୍—ବୈଦେ. ଅ. (ଫା)—୧ । ଅତି ଶୀଘ୍ର; ଶୀଘ୍ର; ଅନତି ବିଳମ୍ବେ-
Jarur 1 Very soon; shortly; at once.
जरूर ୨ । ନିଶ୍ଚୟ—2 Certainly; without fail.
جرور ବିଣ—ଜରୁରି ( ଦେଖ )
Jaruri ( See )

ଜରୁରତ୍—ବୈଦେ. ବି. (ଫା)—ଅତ୍ୟନ୍ତ ଆବଶ୍ୟକ ହେବା; ଆଶୁ
Jarurat ପ୍ରୟୋଜନ—Urgency; dire necessity.
जरूरत
جرورت
(ଜରୁରତ୍—ଅନ୍ୟରୂପ)

ଜରୁରି—ବୈଦେ. ବିଣ. (ଫା)—୧ । ଅନତିବିଳମ୍ବେ କର୍ତ୍ତବ୍ୟ—
Jarury 1. Very urgent.
जरूरी ୨ । ଯାହା ନ ହେଲେ ନ ଚଳେ; ଅତ୍ୟନ୍ତ ଆବଶ୍ୟକ;
جروری ଏକାନ୍ତ ପ୍ରୟୋଜନୀୟ—2. Absolutely necessary; indispensable; very important.
୩ । ଅନିବାର୍ଯ୍ୟ—3. Unavoidable.

ବି—ଜରୁରତ୍ ( ଦେଖ )
Jarurat ( See )

ଜରୋର୍—ବୈଦେ. ବିଣ. ( ଅ ଜରୁର୍ )—ଜରୁର୍ ( ଦେଖ )
Jaror Jarur ( See )
ବଡ ଗୁମାସ୍ତା ମନେ ଜରୋର୍ ପଠାଇ ଦେଲେ ।
ଭକ୍ତାଶ୍ର. ସାଂସାରିକ ଚିତ୍ର ।
ବିଣ—ଜରୁରି ( ଦେଖ )
Jaruri ( See )

ଜରୋରତ୍—ବୈଦେ. ବି. (ଅ—ଜରୁରତ୍ ( ଦେଖ )
Jarorat Jaruri ( See )

ଜରୋରି—ବୈଦେ. ବିଣ. (ଅ)—ଜରୁରି ( ଦେଖ )
Jarori Jarurat ( See )

ଜରୋଲ୍—ଦେ. ବି—ଏକ ପ୍ରକାର ଜଙ୍ଗଲୀ ଗଛ—
Jarol Jarrole tree (a wild tree).
जरोल [ ଦ୍ର—ଏହାର କାଠ ଖୁବ ମଜଭୁତ୍ । ଏ କାଠରେ
जरोल କଡ଼ି, ଖୁଣ୍ଟ, ଗାଡ଼ିର ଚକ ଆଦି ହୁଏ । ଏ ଗଛ ସିଲ୍‌ହଟ୍, କଛାଡ଼, ଚଟ୍ଟଗ୍ରାମ ଓ ଉତ୍ତର ମାଲଗିରିରେ ହୁଏ । ]

ଜର୍ଜ୍—ବୈଦେ. ବି. ( ନାମ ) ପୁଂ. (ଇଂ)—ଇଂରାଜ ପୁରୁଷ ବ୍ୟକ୍ତିଙ୍କ
Jarj ନାମବିଶେଷ—An English personal name.
(ଜର୍ଜ୍ଜ—ଅନ୍ୟରୂପ)

ଜର୍ଜ୍ ଦି ଫିଫ୍‌ଥ୍—ବୈଦେ. ବି. (ନାମ) ଇଂ.—ବର୍ତ୍ତମାନ ଇଂଲଣ୍ଡର ରାଜା
Jarj di phiphth ଓ ଭାରତ ସମ୍ରାଟ; ପଞ୍ଚମଜର୍ଜ; ଜର୍ଜ ନାମଧାରୀ ଇଂଲଣ୍ଡର ୫ମ ରାଜା—George V; King of England and the Emperor of India.
[ଦ୍ର—ଇଂଲଣ୍ଡର ସିଂହାସନକୁ ଅଧିକାର କରିଥିବା ଜର୍ଜ୍ ନାମଧାରୀ ରାଜାଙ୍କ ମଧ୍ୟରେ ଏ ପଞ୍ଚମ ଅଟନ୍ତି । ]

ଜର୍ଜର—ସଂ. ବିଣ. (ଜୃ ଧାତୁ + କର୍ତ୍ତୃ. ଅ; ନିପାତନ, ଦ୍ୱିତ୍ୱ)—
Jarjara ୧ । ଅଭିଭୂତ; ଆକ୍ରାନ୍ତ—
(ଜର୍ଜ୍ଜର—ଅନ୍ୟରୂପ) 1. Attacked; overwhelmed.
୨ । ଜରଜର; ସର୍ବାଂଶରେ ବ୍ୟାପ୍ତ—
2. Suffused; spread over the whole.
୩ । ବଳଶୀର୍ଣ୍ଣ—3. Debilitated.
୪ । ବିନଷ୍ଟ; କ୍ଷୟପ୍ରାପ୍ତ; ଜୀର୍ଣ୍ଣ; ଫଟା; ଖଣ୍ଡିତ—
4 Decayed; cracked; worne out; tattered; torne.
୫ । ଚୂର୍ଣ୍ଣିତ—5. Shattered; powdered.
୬ । ଶିଥିଳ; ଶ୍ଲଥ—6. Relaxed; slackened.
୭ । ବୁଢ଼ା; ଜରାଗ୍ରସ୍ତ—7. Decrepit; very old.
୮ । ପୂର୍ଣ୍ଣରୂପେ ପକ୍ୱ (ପତ୍ର)—8. Very ripe (leaf).

ଜର୍ଜର ତମାଳ ଦଳ ପରି ହେଉ ସହୁ ଗୋ ।
କବିସୂର୍ଯ୍ୟ. ରତ୍ନାକର ଚମ୍ପୂ. ଜ. ଗୀତ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ନା-। ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଋଥ' ନ ମିଳିଲେ 'ରୁଥ' ଦେଖିବେ, 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଂକା' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲଙ୍ଗେ' ନ ପାଇଲେ 'ଅଲଂଗେ' ଦେଖିବେ ।

ବି.—୧ । ଶୈଳଜ; ଶିଳାଜତୁ — 1. Bitumen; benzoin
୨ । ଇନ୍ଦ୍ରଧ୍ୱଜ—2. A flag consecrated to Indra.
୩ । ଗୈରିକ; ଗେରୁ—3. Red ochre.

**ଜର୍ଜରିକ**—ସଂ. ବିଣ. (ଜର୍ଜର + ଇକ) = ୧ । ଜୀର୍ଣ୍ଣ; ଶୀର୍ଣ୍ଣ—
Jarjarika 1. Worne out; decayed.
(ଜର୍ଜ୍ଜରିକ—ଅନ୍ୟରୂପ) ୨ । ଜରାଗ୍ରସ୍ତ—2. Struck or debilitated with old age.
୩ । ପୁରାତନ ଓ ବହୁ ଛିଦ୍ରଯୁକ୍ତ—3. Perforated with holes and worne out (through age).

**ଜର୍ଜରିତ**—ସଂ. ବିଣ ଓ ବି. (ଜୃ ଧାତୁ + କର୍ମ ତ; ଣିଜନ୍ତ, ଦ୍ୱିତ୍ୱ)—
Jarjarita ଜର୍ଜର (ଦେଖ)—Jarjara (See)
(ଜର୍ଜ୍ଜରିତ—ଅନ୍ୟରୂପ)

**ଜର୍ଡ଼ା**—ପ୍ରାଦେ. (ସମ୍ବଲପୁର) ବି—ଜହ୍ଲା (ଦେଖ)
Jarrdā Jahlā (See)

**ଜର୍ଣ୍ଣ**—ସଂ. ବି—୧ । ଚନ୍ଦ୍ରମା (ହି. ଶବ୍ଦସାଗର)—1. Moon.
Jarṇṇa ୨ । ବୃକ୍ଷ (ହି. ଶବ୍ଦସାଗର)—2. Tree

**ଜର୍ଣ୍ଣିଲ୍**—ବୈଦେ. ବି—୧ । (ଇଂ. ଜେନେରଲ୍)—ସୈନ୍ୟାଧ୍ୟକ୍ଷ—
Jarṇṇal 1. A general or commander of an army.
जर्णल
**जनरल; जरनल** ୨ । (ଇଂ. ଜର୍ନାଲ୍) ସାମୟିକ ସମ୍ବାଦପତ୍ର—
(ଜର୍ନାଲ୍—ଅନ୍ୟରୂପ) 2. Journal.

**ଜର୍ଣ୍ଣିଲ୍ କର୍ଣ୍ଣିଲ୍**—ବୈଦେ. (ସହଚର)—ବି. (ଇଂ. ଜେନେରଲ୍ ଓ କର୍ଣ୍ଣେନେଲ୍)—ପଲ୍‌ଟଣଙ୍କ ଉପରସ୍ଥ ଅଧ୍ୟକ୍ଷ—
Jarṇṇal karṇṇal The general and colonel of an army.
जर्नल कर्नल
**जनरल करनल**
(ଜର୍ନଲ୍ କର୍ନଲ୍—ଅନ୍ୟରୂପ)

**ଜର୍ଣ୍ଣିଲ ଅର୍ଡ଼ର୍**—ବୈଦେ. ବି. (ଇଂ. ଜେନେରଲ୍ + ଅର୍ଡର୍)—
Jarṇṇali arḍar ଜର୍ଣ୍ଣିଲ ହୁକୁମ (ଦେଖ)
जर्नल आड़र Jarṇṇali hukuma (See)
**जनरली आर्डर**

**ଜର୍ଣ୍ଣିଲ ହୁକୁମ**—ବୈଦେ. ବି. (ଇଂ. ଜେନରଲ୍ ଓ ଫା. ହୁକ୍‌ମ୍)—
Jarṇṇali hukuma ଯେଉଁ ହୁକୁମର ଅପିଲ ଶୁଣିବାକୁ ଉପରେ
जर्नलि हुकुम କେହି ନ ଥାଏ; ନାଚକ୍ ହୁକୁମ; ଯେଉଁ
**जनरली हुक्म** ଆଦେଶକୁ ଅବଶ୍ୟ ପାଳନ କରିବାକୁ ହେବ; ଅଲଙ୍ଘ୍ୟ ଆଦେଶ—An order under the martial law; an order which must be obeyed at any cost (like an order issued to the soldiers by the commander.
[ ଦ୍ର—ଇଂରାଜମାନେ ପ୍ରଥମେ ଓଡ଼ିଶାକୁ ଅଧିକାର କରିବା ସମୟରେ ରେଲ ଅବଦ ସୁବିଧା ନ ଥିଲା, ତେଣୁ ପଲ୍‌ଟଣମାନେ ଗୃହି କରି ସ୍ଥଳପଥ ବାଟେ ଦେଶର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଉଥିଲେ । ପଲ୍‌ଟଣମାନେ ଜର୍ଣ୍ଣିଲ କର୍ଣ୍ଣିଲଙ୍କ ହୁକୁମରେ ଗୃହିତ ହେଉଥିବାର ଦେଖି ସେହି କାଳରୁ ଏହି ଶବ୍ଦ ପ୍ରଚଳିତ ହୋଇଅଛି । ଜର୍ଣ୍ଣିଲ ଓ କର୍ଣ୍ଣିଲ ସାହେବଙ୍କ ହୁକୁମ ଅଲଙ୍ଘ୍ୟ ଓ ଅବଶ୍ୟ ପାଳନୀୟ ଓ ପ୍ରତିକାରର ଅସାଧ୍ୟ ଥିବାର ସାଧାରଣ ଲୋକେ ଅନୁଭବ ଦ୍ୱାରା ଦେଖୁଥିଲେ । ]

**ଜର୍ତ୍ତ**—ସଂ. ବି—୧ । ହାତୀ (ହି. ଶବ୍ଦସାଗର)—
Jartta 1 Elephant.
୨ । ଯୋନି (ହି ଶବ୍ଦସାଗର)—
2. The female organ of generation.

**ଜର୍ଦ୍ଦା**—ବୈଦେ ବି—ଜରଦା (ଦେଖ)
Jardā Jaradā ( See )

**ଜର୍ଦ୍ଦାଲୁ**—ବୈଦେ. ବି. (ଫା)—ଏକପ୍ରକାର କାବୁଲୀ ମିଷ୍ଟ ଓ ଶୁଷ୍କଫଳ—
Jardālu A kind of sweet dry fruit brought from Kabul.
[ ଦ୍ର—ଏହାର ଉପର ଚୋପା ସୁସ୍ୱାଦୁ ଓ ମିଷ୍ଟ । ଏହା ଭିତରର ଖାଗୁଆ ମଞ୍ଜିକୁ ଭାଙ୍ଗିଦେଲେ ତହିଁ ମଧ୍ୟରୁ ବାଦାମ ପରି ସୁଖାଦ୍ୟ ଶସ ବାହାରେ । ]

**ଜର୍‌କଶି କାମ**—ଦେ. ବି. (ବଣିଆ ଶବ୍ଦ) (ଫା. ଜର୍‌କଶି + ସଂ. କର୍ମ)—
Jar-kaṣi kāma ଜରି ପରି ପତଳା ସୁନା ବା ରୂପାର ତାରକଶି-କାମ—Very thin filagree work of gold and silver.

**ଜର୍ମ୍**—ବୈଦେ. ବି (ଇଂ)—ରୋଗ ବୀଜ; କୀଟାଣୁ—
Jar-m Germ.

**ଜର୍ମନ୍ (ଇତ୍ୟାଦି)**—ବୈଦେ. ବିଣ—ଜର୍ମାନ୍ (ଦେଖ)
Jarman (etc) Jarmān ( See )

**ଜର୍ମାନ୍**—ବୈଦେ. ବିଣ. (ଇଂ. ଜର୍‌ମାନ୍)—
Jarmān ଜର୍ମାନ୍ ଦେଶୀୟ ବା ଜାତୀୟ—German.

**ଜର୍ମାନୀ**—ବୈଦେ. ବି. ନାମ (ଇଂ)—ଇଉରୋପର ରାଜ୍ୟବିଶେଷ—
Jarmāni Germany.
[ ଦ୍ର—ପୂର୍ବେ ଏ ରାଜ୍ୟ ଆସିଆ, ଆଫ୍ରିକା ଓ ଆମେରିକାରେ ଅନେକ ସ୍ଥାନ ଅଧିକାର କରି ସାମ୍ରାଜ୍ୟ ବିସ୍ତାର କରିଥିଲା ଓ ଏ ରାଜ୍ୟର ସମ୍ରାଟଙ୍କୁ କାଇଜର ବୋଲି ଯାଉଥିଲା । ବିଗତ ମହାସମର (୧୯୧୪—୧୯୧୮) ଜର୍ମାନୀ ଦ୍ୱାରା ସୂତ୍ରପାତ ହେଲା ଓ ଶେଷରେ ଜର୍ମାନୀ ପରାସ୍ତ ହୋଇ ସନ୍ଧି କଲା । ବର୍ତ୍ତମାନ ଏହା ସାଧାରଣ ତନ୍ତ୍ର ପ୍ରଣାଳୀରେ ଶାସିତ । ]

**ଜଲ୍ (ଧାତୁ)**—ସଂ—ଆଚ୍ଛାଦନ କରିବା—
Jal (root) To cover.

**ଜଲ୍‌କା**—ପ୍ରାଦେ (ସମ୍ବଲପୁର) ବିଣ—ଜଲକା; ଯାହାର ଦୃଷ୍ଟିଶକ୍ତି ଅସ୍ପଷ୍ଟ ହୋଇଅଛି—Blear-eyed; dim-sighted.
Jal-kā
(ଜଲ୍‌କୀ—ସ୍ତ୍ରୀ)

| ୧ | ଇ | ଊ | ର,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | କ୍ଷ | ଇଅ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ପ୍ତ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଢ଼ | ନ୍ |

ଜଲ୍‌କା କରିବା—ପ୍ରାଦେ. (ସମ୍ବଲପୁର) କ୍ରି—ଗୁଣି ବା ମନ୍ତ୍ରଯନ୍ତ୍ର ଦ୍ୱାରା
Jal-kā karibā କୌଣସି ବ୍ୟକ୍ତିକୁ ବଶ କରିବା—To bring a person under control by employing magical charms.

ଜଲ୍‌କିବା—ପ୍ରାଦେ. (ସମ୍ବଲପୁର) କ୍ରି—ଜର୍‌କିବା ( ଦେଖ )
Jal-kibā Jar-kibā ( See )

ଜଲ୍‌ଜଲୁଆ—ପ୍ରାଦେ. ( ସମ୍ବଲପୁର ) ବିଣ—ଅସ୍ପଷ୍ଟ ଭାବରେ ଦେଖାଯିବା;
Jal-jaluā ଝାଲ୍‌ଝାଲୁଆ—Dimly or indistinctly seen.

ଜଲ୍‌ବା—ପ୍ରାଦେ (ସମ୍ବଲପୁର) କ୍ରି (ସଂ. ଜ୍ୱଲ ଧାତୁ) – ୧ । ଜଳିବା—
Jal-bā 1. To burn.
୨ । ପୋଡ଼ାଜଳା କରିବା, (ହସ୍ତ ପଦାଦି) ଦାହଯନ୍ତ୍ରଣା ଅନୁଭବ କରିବା—2. To have a burning sensation

ଜଲ୍‌ବି—ଦେ. ବି—ଜିଲବି ( ଦେଖ )—
Jal-bi Jilibi ( See )

ଜଳ—ସଂ. ବି ( ଜଲ୍ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ ଅ )—
Jala ୧ । ପାଣି; ବାରି; ଉଦକ—1 Water.
୨ । ତରଳ ପଦାର୍ଥ—2 Liquid.

[ ଦ୍ର—ସାଧୁଭାଷା ବ୍ୟବହାରପ୍ରିୟ ଲୋକେ ପାଣି ନ କହି ଜଳ, ଭାତ ନ କହି ଜଳପାନ କହନ୍ତି । ତୀର୍ଥଜଳକୁ ସାଧାରଣତଃ ପାଣି ବୋଲି ନ କହି ଲୋକେ "ଗଙ୍ଗାଜଳ" "ଗୋଦାବରୀ ଜଳ" ବୋଲି କହନ୍ତି । ତୀର୍ଥଜଳ ପରସ୍ପର ମୁହଁକୁ ଦିଆଦେଇ ହୋଇ ଦୁଇ ଜଣ 'ଜଳ' ବସନ୍ତି, ଅର୍ଥାତ୍ ବନ୍ଧୁତା ବାନ୍ଧନ୍ତି, ଓ ପରସ୍ପର 'ଜଳ' ବୋଲି ଡକାଡକି ହୁଅନ୍ତି । ]

୩ । ଉଶୀର; ବେଣାଚେର (ହି. ଶବ୍ଦସାଗର)—
3. The fragrant root of Benā grass.
୪ । ପୂର୍ବାଷାଢ଼ା ନକ୍ଷତ୍ର (ହି. ଶବ୍ଦସାଗର)—
4. The 20th asterism.
୫ । ( ଫଳିତଜ୍ୟୋତିଷ ) ଜନ୍ମକୁଣ୍ଡଳୀର ଚତୁର୍ଥ ସ୍ଥାନ ( ହି. ଶବ୍ଦସାଗର )—5. (astrology) The 4th compartment in a person's horoscope.
୬ । ସୁଗନ୍ଧ ବାଲା ( ହି. ଶବ୍ଦସାଗର )—
6. Name of a herb.
ସଂ. ବିଣ—୧ । ଜଡ଼—1 Inext.
୨ । ଶୀତଳ—2. Cold.

ଜଳଉଦରୀ—ଗ୍ରା. ବି—ଜଳୋଦରୀ ରୋଗ—
Jala-udari Dropsy.
ଜଲଉଦରୀ
जलंदर
(ଜଳଉଦ୍, ଜଳରୁଦ୍ରି—ଅନ୍ୟରୂପ)

ଜଳକଣା—ସଂ. ବି (୬ଷ୍ଠୀ ତତ୍; ଜଳ+କଣା)—ପାଣିର ଅତି ଛୋଟ
Jala-kanā ଛୋଟ ବିନ୍ଦୁ—Small or minute particles of water.

ଜଳକଣ୍ଟକ—ସଂ. ବି ( ୬ଷ୍ଠୀ ତତ୍; ଜଳ+କଣ୍ଟକ )—
Jala-kantaka ୧ । ସିଙ୍ଘଡ଼ା—1. The water-chestnut.
୨ । କୁମ୍ଭୀର—2 Crocodile; alligator.
୩ । କୁମ୍ଭୀ ( ହି. ଶବ୍ଦସାଗର )—
3 An aquatic plant.

ଜଳକପି—ସଂ. ବି ( ୬ଷ୍ଠୀ ତତ୍; ଜଳ+କପି )—
Jala-kapi ଶିଶୁମାର (ହି. ଶବ୍ଦସାଗର)—Porpoise.

ଜଳକର—ସଂ. ବି ( ମ. ପ. ଲୋ; ଜଳ+କର=ଶୁଳ୍କ; ସଂ. ଶବ୍ଦ କିନ୍ତୁ
Jala-kara ଆଧୁନିକ ପ୍ରୟୋଗ)—୧ । କ୍ଷେତ୍ରରେ ଜଳ ମଡ଼ାଇବା
ଜଲକର ପାଇଁ ଜଳସ୍ୱାମୀକୁ କ୍ଷେତ୍ରସ୍ୱାମୀ ଯେଉଁ ଖଜଣା ଦିଏ—
जलकर 1 Rent paid by the owner of a field to the owner of water with which the field is irrigated; water-rate.
୨ । ଜମିଦାରଙ୍କ ନଦୀ, ପୋଖରୀ, ଜୋଡ଼ ଇତ୍ୟାଦିର ଜଳକୁ ପ୍ରଜାମାନେ କ୍ଷେତରେ ମଡ଼ାଇବାପାଇଁ ଜମିଦାରଙ୍କୁ ଦେବା କର; ଜଳସେଚନ ଦ୍ୱାରା ଜମିଦାରଙ୍କର ହେବା ଆୟ—
2. Income derived from rivers, tanks etc. by the Zamindar.
୩ । ସରକାରୀ ନାଳରୁ ପାଣି ମାଡ଼ିବା ଜମିର ମାଲିକଙ୍କଠାରୁ ସରକାର ଆଦାୟକରିବା କର—3. Canal-revenue.
ସଂ. ବିଣ ( ଜଳ+କୃ ଧାତୁ+କର୍ତ୍ତୃ. ଅ )—ଯହିଁରୁ ଜଳ ବାହାରେ—Producing water.

ଜଳକରଙ୍କ—ସଂ. ବି (୬ଷ୍ଠୀ ତତ୍; ଜଳ+କରଙ୍କ)—୧ । ପଦ୍ମ—
Jala-karanka 1. Lotus.
୨ । ଶଙ୍ଖ—2. Conch.
୩ । ମେଘ—3. Cloud.
୪ । ନଡ଼ିଆ—4. Cocoanut.

ଜଳକଷ୍ଟ—ସଂ. ବି (ମ. ପ. ଲୋ; ଜଳ+କଷ୍ଟ)—ପ୍ରୟୋଜନୀୟ ଜଳ ନ
Jala-kashta ମିଳିବାରୁ ଲୋକମାନେ ଯେଉଁ ଦୁଃଖ ଭୋଗ କରନ୍ତି—
Water-famine; scarcity of water.

ଜଳକା—ଦେ. ବି.—(ସଂ. ଝଲ. ଧାତୁ)—୧ । ଦୃଷ୍ଟିଶକ୍ତି କମିଯିବା
Jālakā ରୋଗ—1. Short-sightedness; dim-sightedness.
(ଜଳକୀ—ସ୍ତ୍ରୀ)
ଯେ ଝାପସା ଦେଖେ ବିଣ· ପୁଂ—୧ । ଯେ ସ୍ପଷ୍ଟ ଦେଖି ପାରେ ନାହିଁ
चुंधा 1. Blear-eyed; blear-sighted; dim-sighted.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ; 'ଅଲଢେ' ନ ପାଇଲେ 'ଅଲ୍ଢେ' ଦେଖିବେ

ଚମକେ ଜଳକା ପ୍ରାପ୍ତ ସକାଳ ସମ୍ମୁଖେ, ଜଲ୍‌କା ବେଗେ ଅସି ।

ରାଧାନାଥ, ମହାଯାତ୍ରା ।

୨ । ଯେଉଁ ଦର୍ପଣରୁ ପ୍ରତିଫଳନ୍-ଶକ୍ତି କମି ଯାଇଅଛି—
2 A looking glass which has lost its reflecting power.

**ଜଳକା କରିବା**—ଦେ. କ୍ରି.—( ଲକ୍ଷଣାର୍ଥ ) ଆଖି ଆଗରେ କୌଣସି
Jalakā karibā ବ୍ୟକ୍ତିଙ୍କୁ ଠକାଇବା—( figurative ) To
[ଜଳକା ବାନା(ନେ)ଇବା—ଅନ୍ୟରୂପ] cheat a person
**चुंधा बनाना** before his very eyes.

**ଜଳକାକ**—ସଂ. ବି. (୬ଷ୍ଠୀ ତତ୍; ଜଳ+କାକ)— ୧ । ପାଣିକୁଆ—
Jala-kāka 1. A web-footed black aquatic bird; Pelecanus Fusicolis.

୨ । ଦାତ୍ୟୁହ; ଡାହୁକ (ହି. ଶବ୍ଦସାଗର)—
2 Moorhen (bird).

**ଜଳକିରାଟ**—ସଂ. ବି.—ଗ୍ରାହ; କୁମ୍ଭୀର (ହି. ଶବ୍ଦସାଗର)—
Jala-kirāta Alligator.

**ଜଳକୁନ୍ତଳ** - ସଂ. ବି. (୬ଷ୍ଠୀ ତତ୍; ଜଳ+କୁନ୍ତଳ)— ଶୈବାଳ; ଶିଉଳି--
Jala-kuntala Moss

**ଜଳକେଳି**—ସଂ. ବି. (୭ମୀ ତତ୍; ଜଳ+କେଳି)—
Jala-keli ଜଳକ୍ରୀଡ଼ା (ଦେଖ)
Jala-kridā (See)

**ଜଳକେତୁ**—ସଂ. ବି.—ପଶ୍ଚିମାକାଶରେ ଦେଖା ଯିବା ଏକପ୍ରକାର ପୁଚ୍ଛ-
Jala-ketu ଯୁକ୍ତ ତାରକା—A comet rising in the western sky.

[ଦ୍ର—ଏହାର ଶିଖା ପଶ୍ଚିମ ଆଡ଼କୁ ଥାଏ ଓ ମୂଳ ମୋଟ; ଏହା ଦେଖିବାକୁ ସ୍ୱଚ୍ଛ; ଫଳିତ ଜ୍ୟୋତିଷ ମତରେ ଏହା ଉଦୟ ହେଲେ ଦେଶରେ ୯ ମାସ ପର୍ଯ୍ୟନ୍ତ ସୁଭିକ୍ଷ ହୁଏ । ହି. ଶବ୍ଦସାଗର ।]

**ଜଳକେଶ**—ସଂ. ବି. (୬ଷ୍ଠୀ ତତ୍, ଜଳ+କେଶ)—
Jala-kesa ଜଳକୁନ୍ତଳ (ଦେଖ)
Jala-kuntala (See)

**ଜଳକୋଷ**—ସଂ. ବି.—(ମ. ପ. ଲୋ; ଜଳପୂର୍ଣ୍ଣ କୋଷ)—ଅଣ୍ଡକୋଷର
Jala-kosha ଜଳବୃଦ୍ଧି ରୋଗ; କୁରୁଣ୍ଡ—Hydrocele.

**ଜଳକ୍ରିୟା**—ସଂ.ବି.(ମ.ପ.ଲୋ; ଜଳସାଧ କ୍ରିୟା)—ପିତୃଗଣଙ୍କ ଉଦ୍ଦେଶ୍ୟରେ
Jala-kriyā ଜଳସାଧ ତର୍ପଣ ରୂପ କାର୍ଯ୍ୟ; ଜଳତର୍ପଣ—
Oblation of water to the manes.

ତାହାଙ୍କ ଜଳକ୍ରିୟା କରିବାକୁ ନୃପ,
ମନ୍ତ୍ରୀଙ୍କି ଆଜ୍ଞା ଦେଇ କରଗଲେ ତପ ।

କୃଷ୍ଣସିଂହ, ମହାଭାରତ, ବନ ।

**ଜଳକ୍ରୀଡ଼ା**—ସଂ. ବି. (୭ମୀ ତତ୍; ଜଳ+କ୍ରୀଡ଼ା)—ଜଳବିହାର; ପାଣିରେ
Jalakridā ସନ୍ତରଣ, ନୌକାଚାଳନ ଆଦି ନାନାପ୍ରକାର
କୌତୁକ—Water-sports; sporting in water.

**ଜଳ ଖାଇବା**—ଦେ. କ୍ରି.—୧ । ପାଣି ପିଇବା—
Jala khāibā 1. To drink water.
जल खाना [ଦ୍ର—ଜଳକୁ ଖାଆନ୍ତି ନାହିଁ, ପିଅନ୍ତି । କିନ୍ତୁ ଏପରି
**जल खाना** ପ୍ରୟୋଗ କଟକ ଓ ବାଲେଶ୍ୱରରେ ଦେଖାଯାଏ ।]

୨ । ସାମାନ୍ୟ ଲଘୁଖାଦ୍ୟ ଖାଇ ପାଣି ପିଇବା—
2. To lunch.

**ଜଳଖିଆ**—ଦେ. ବି —(ଶୋଷ କଲେ ସାମାନ୍ୟ କିଛିଏ ଲଘୁ ଖାଦ୍ୟ ଖାଇ
Jala-khiā ତା ଉପରେ ଜଳପାନ କରିବାର ବିଧି ଥିବାରୁ)—
জলখাবার ଶୁଷ୍କ ଲଘୁ ଖାଦ୍ୟ ବା ମିଷ୍ଟାନ୍ନ—Tiffen; lunch;
**जलखावा** light refreshment.

ରାମଚନ୍ଦ୍ର ଦେଖିଲେ ରକ୍ଷସ କେତେ ଗୁଡ଼ାଏ ବାଘ, ହରିଣ, ହାତୀ, ଅଗରେ ରଖି ଗୋଟା ଗୋଟା କରି ଜଳଖିଆ କରୁଚ । ଫାଳକଣ୍ଟ, ପିଲାଙ୍କ ରାମାୟଣ ।

**ଜଳଗଣ୍ଡୁଷ**—ସଂ. ବି ( ୬ଷ୍ଠୀ ତତ୍; ଜଳ+ଗଣ୍ଡୁଷ )—
Jala-gandusha ଗଣ୍ଡୁଷ ବା ପୋଷପୂର୍ଣ୍ଣ ଜଳ—
A handful of water.

**ଜଳଗର୍ଭ**—ସଂ. ବିଣ. ପୁଂ. (ବହୁବ୍ରୀହି; ଜଳ+ଗର୍ଭ)—ଜଳପୂର୍ଣ୍ଣ—
Jala-garbha Full of water; having water in it.
(ଜଳଗର୍ଭା—ସ୍ତ୍ରୀ) ଦେ. ବି. (ନାମ)—ବୁଦ୍ଧଦେବଙ୍କ ପ୍ରଧାନ ଶିଷ୍ୟ
ଆନନ୍ଦଙ୍କର ପୂର୍ବଜନ୍ମର ନାମ—The name of the Buddha's chief disciple Ānanda in his previous existence.

**ଜଳଘଟ**—ସଂ. ବି. ( ମ. ପ. ଲୋ; ଜଳ+ଘଟ )—
Jala-ghata ୧ । ଜଳପୂର୍ଣ୍ଣ ମାଠିଆ—
(ଜଳକୁମ୍ଭ—ଅନ୍ୟରୂପ) 1. A pitcher filled with water.

୨ । ଯେଉଁ ମାଠିଆରେ ପାଣି ଅଣାଯାଏ—
2. A water-pitcher.

**ଜଳଘଟିକା**—ସଂ. ବି. (ମ. ପ. ଲୋ; ଜଳ+ଘଟିକା)—
Jala-ghatikā ଜଳଦ୍ୱାରା କଳ୍ପିତ ସମୟସୂଚକ ଯନ୍ତ୍ର—
(ଜଳଘଣ୍ଟା—ଅନ୍ୟରୂପ) Water-clock.

[ ଦ୍ର—ଏ ଦେଶରେ ପୂର୍ବେ ଗୋଟିଏ ଛିଦ୍ର ଥିବା ପାତ୍ରକୁ ଜଳରେ ଭସାଇ ଦେଉଥିଲେ, ଛିଦ୍ରବାଟେ ପାଣି ପଶିପଶି କେତେକ କାଳ ପରେ ଉକ୍ତ ପାତ୍ର ବୁଡ଼ି ଯାଉଥିଲା । ଉକ୍ତ ସମୟକୁ ଲକ୍ଷ୍ୟ କରି ପାତ୍ରରେ ଚିହ୍ନ ଦେଇ ଉକ୍ତ ଚିହ୍ନରୁ ଲୋକେ ସମୟ ଜାଣୁଥିଲେ । କାଉଟନ୍ ଯେଉଁ ଜଳଘଟିକା ପ୍ରଥମେ ନିର୍ମାଣ କରିଥିଲେ ତହିଁର ଶଙ୍କୁଦଣ୍ଡ ଉଦ୍ଧୃପରସ୍ଥ ଜଳପାତ୍ରରୁ ପଡ଼ୁଥିବା ଜଳବିନ୍ଦୁର ଆଘାତରେ ଗୁଡ଼ିତ ହେଉଥିଲା । ]

**ଜଳଘଡ଼ି**—ଦେ ବି (ସଂ. ଜଳଘଟୀ)—ଜଳଘଟିକା (ଦେଖ)
Jala-ghardi Jala-ghatikā (See)
জলঘড়ী
**जलघड़ी**
(ଜଳଘଣ୍ଟା—ଅନ୍ୟରୂପ)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଅ | ଉଅ | ଘ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ | ନ୍ତ |

ଜଳଘାଟ—ଦେ. ବି. (ଜଳ+ଘଟ)—୧। ଜଳାଶୟାଦିର ଯେଉଁଠାକୁ ଲୋକେ ଗାଧୋଇବାକୁ ବା ପାଣି ଅଣିବାକୁ ଯାଆନ୍ତି—
Jaḻa-ghāṭa
जलघाट
**पानीकाघाट**
1. The place frequented by people who go to bathe in or fetch water from a river or tank.

ଜଳଙ୍ଗ—ଦେ. ବି—ଏକପ୍ରକାର କାତି ନ ଥିବା ସୁସ୍ୱାଦ୍ୟ ବଡ଼ ମାଛ—
Jaḻaṅga A kind of big fish without scale
[ ଦ୍ର—ଏ ମାଛର ଆକାର ବାଲିଅମାଛ ପରି ଓ ଏହା ମଧୁର ପାଣିରେ ରହେ; ଲମ୍ବରେ ଏହା ୧୨ ହାତ ପର୍ଯ୍ୟନ୍ତ ବଢ଼େ । ]
ସଂ. ବି—ମହାକାଳ ଲତା (ହି. ଶବ୍ଦସାଗର)—
Name of a creeper.

ଜଳଚର୍—ପ୍ରାଦେ (ସମ୍ବଲପୁର) ବି—ଗଡ଼ିଆ, ପୋଖରୀ, କୂପାଦି ଥିବା ଜମି—
Jaḻachar Lands consisting of wells, tanks and reserviors of water.

ଜଳଚର—ସଂ. ବିଣ. ପୁଂ. (ଉପପଦ ତତ୍ପୁରୁଷ; ଜଳ+ଚର୍ ଧାତୁ+ କର୍ତ୍ତୃ. ଅ)—ଯେଉଁ ପ୍ରାଣୀ ଜଳରେ ବିଚରଣ କରେ-
Jaḻa-chara Aquatic (animal); living in water.
[ ଦ୍ର—ଯେଉଁମାନେ ସ୍ଥଳରେ ବିଚରଣ କରନ୍ତି, ସେମାନେ ସ୍ଥଳଚର; ଯେଉଁମାନେ ଜଳ ଓ ସ୍ଥଳ ଉଭୟରେ ବିଚରଣ କରନ୍ତି, ସେମାନେ ଉଭୟଚର । ]
ବି—ଜଳଜନ୍ତୁ—Aquatic animals (birds and fishes).

ଜଳଚାରୀ—ସଂ. ବିଣ. ପୁଂ. (ଉପପଦ ତତ୍ପୁରୁଷ; ଜଳ+ଚର ଧାତୁ+ କର୍ତ୍ତୃ. ଇନ୍, ୧ମା. ୧ବ.)—ଜଳଚର (ଦେଖ)
Jaḻa-chārī Jaḻa-chara (See)

ଜଳଚିକିତ୍ସା—ସଂ. ବି. (ଆଧୁନିକ ପ୍ରୟୋଗ) (୬ଷ୍ଠୀ ତତ୍; ଜଳ+ ଚିକିତ୍ସା)—ଭିନ୍ନ ଭିନ୍ନ ରୋଗଗ୍ରସ୍ତ ରୋଗୀଙ୍କୁ ଜଳର ବିଭିନ୍ନ ବ୍ୟବହାରଦ୍ୱାରା ନୀରୋଗ କରିବାର ପ୍ରଣାଳୀ—
Jaḻa-chikitsā Hydropathic treatment of diseases.
[ଦ୍ର—ପ୍ରକୃତ ପକ୍ଷେ ପଞ୍ଚମହାଭୂତ (ଅର୍ଥାତ୍, କ୍ଷିତି, ଅପ୍, ତେଜଃ, ମରୁତ୍, ବ୍ୟୋମ) ସାହାଯ୍ୟରେ ଏହି ଚିକିତ୍ସା କରାଯାଏ ଅର୍ଥାତ୍ ରୋଗୀ ପ୍ରତି ମାଟି, ପାଣି, ଖରା, ବାୟୁ ଓ ମେଲାରେ ବିଚରଣ କରିବା ଆଦି ପ୍ରୟୋଗ କରାଯାଏ; କିନ୍ତୁ ଏ ପ୍ରଣାଳୀରେ ଜଳର ବହୁଳ ବ୍ୟବହାର କରାଯାଉ ଥିବାରୁ ଏହାକୁ ଜଳଚିକିତ୍ସା ନାମ ଦିଆଯାଇ ଅଛି । ]

ଜଳଛତ୍ର—ଦେ. ବି. ( ସଂ. ଜଳ ସତ୍ର )—
Jaḻa-chhatra
जलसत्र
**जलछत्र**
ତୃଷାର୍ତ୍ତ ପଥିକମାନଙ୍କୁ ଜଳ ବା ଅନ୍ୟ ପାନୀୟ ଯୋଗାଇବା ନିମନ୍ତେ ସ୍ଥାପିତ ଛତ୍ର; ଜଳସତ୍ର—
A temporary shed where water ( with or without refreshments ) is gratuitously given to thirsty passers by.

ଜଳଛବି—ଦେ. ବି—ଜଳ ସାହାଯ୍ୟରେ ଯେଉଁ ଚିତ୍ରକୁ ଖଣ୍ଡିଏ କାଗଜରୁ ଅନ୍ୟ କାଗଜ ଉପରକୁ ଉଠାଇ ନିଆଯାଏ—
Jaḻa-chhabi
जलछवि
**जलछबि**
Transfer-pictures; pictures which can be transferred by applying water.
(ଜଳଛପା—ଅନ୍ୟରୂପ)

ଜଳଜ—ସଂ. ବି. ( ଜଳ+ଜନ୍ ଧାତୁ+କର୍ତ୍ତୃ. ଅ )—
Jaḻaja ୧। ପଦ୍ମ—1. Lotus.
୨। ଶଙ୍ଖ—2. Conch-shell.
୩। ଶୈବାଳ ( ହି. ଶବ୍ଦସାଗର )—3. Moss,
୪। ଅମ୍ଳବେତସ ( ହି. ଶବ୍ଦସାଗର )—
4. A kind of pot-herb,
୫। ମୋତି ( ହି. ଶବ୍ଦସାଗର )—5. Pearl
୬। କୋଚିଲା ଗଛ ( ହି. ଶବ୍ଦସାଗର )—
6 Nux Vomica tree.
ସଂ. ବିଣ—ଜଳରୁ ଜାତ—
Sprung from water; aqatic.

ଜଳଜନ୍ତୁ—ସଂ. ବି. ( ୬ଷ୍ଠୀ ତତ୍; ଜଳ+ଜନ୍ତୁ )—
Jaḻa-jantu ୧। ଜଳଚର ଜୀବ; ଜଳ ମଧ୍ୟରେ ବାସ କରୁଥିବା (ଜଳଜୀବ—ଅନ୍ୟରୂପ) ଜନ୍ତୁ—1. Aquatic animal.
୨। ମାଛ—2. Fish.

ଜଳଜପା—ଦେ. ବି. ୧। ( ସଂ. ଜଳ+ଜପ )—
Jaḻajapā ପାଣି ଭିତରେ ରହି ମନ୍ତ୍ର ଜପିବା—
1. Recitation of a mystic formula while sitting in water.
୨। ( ସଂ. ଜଳଜ=ପଦ୍ମ+ପାଦ ) ପଦ୍ମପାଦ—
2. Lotus-foot; gracefull foot compared to lotus.

କେତେ କେତେ ଜନ୍ମେ ଧନ ମୁଁ ଜଳଜପାରେ
ଲେଖିଛି ଅଳତା ଚନ୍ଦ ଚୋ ଜଳଜପାରେ । କବିସୂର୍ଯ୍ୟ ସଙ୍ଗୀତ ।

ଜଳଜମି—ଦେ. ବି—ଯେଉଁ ଜମିରେ ବର୍ଷା ଦିନରେ ଜଳ ଜମି ରହିବାରୁ
Jaḻa-jami ଭଲ ଧାନ ଫସଲ ହୁଏ—
Good paddy-growing land.
ପ୍ରାଦେ. ( ବାଲେଶ୍ୱର ) ବି—ଅତି ନିକୃଷ୍ଟ ଧାନ-ଜମି ( ଏଥିରେ ଖୁବ୍ ଛୋଟ ଧାନ ହୁଏ )—An inferior quality of paddy-growing land.
ପ୍ରାଦେ. ( ସମ୍ବଲପୁର ) ବି—ଜଳଚର୍ ( ଦେଖ )
Jaḻachar ( See )

ଜଳଜଳ—ସଂ. ବିଣ. ( ସଂ. ଜଳ )—୧। ଜଳପୂର୍ଣ୍ଣ; ପାଣିସରସର—
Jaḻa-jaḻa 1. Watery; overflowing with water; from which water is dropping.

ସାଧାରଣ ଲୋକେ ଅପର ପୃଷ୍ଠାରେ ସଚରାଚର ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । 'ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ଅପର ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଇ' ନ ମିଳିଲେ 'ଗାଈ' ଖୋଜିବେ, କୂଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଗିଆ ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

୨ । ( ସଂ. ଜାଜ୍ୱଲ୍ୟ ) ଉପରେ ଜଳ ବୋଳା ହେଲା ଭଳି ଉଜ୍ଜ୍ୱଳ ଦେଖାଯିବା; ଚକଚକିଆ—
2. Glittering; sparkling; shinning; lustrous; glaring; glowing.

୩ । ଅନିମେଷ ( ଦୃଷ୍ଟି )—3. Without closing the eyelids; staring ( look ).

୪ । ଜଳବହୁଳ ( ଯଥା—ଆଖୁ )—4 Filled or brimming with water (e. g. sugarcane).

୫ । ( ସଂ. ଜର୍ଜର ) ତେଲିଆ; ମସୃଣ—
5. Oily; smooth.

୬ । ବହୁ ଛିଦ୍ରଯୁକ୍ତ ( ଯଥା—ହାଣ୍ଡି )—
6. Having many pores; porous.

କ୍ରି. ବିଣ—ଏକ ଦୃଷ୍ଟିରେ; ଅନିମେଷ ନୟନରେ ( ଚାହିଁ ରହିବା ); ଭକ ଭକ ହୋଇ—Staringly.

ବୁଲି ଆଖିଦେଶରେ ଲଗାଇ କଜ୍ଜଳ,
ଚାହିଁଛି ସବୁରି ମୁଖକୁ ଜଳଜଳ । କୃଷ୍ଣସିଂହ. ମହାଭାରତ. ଅନୁଶାସନ ।

ଦେ. ବି ( ସଂ. ଜଳବହୁଳ )—ମାଛ ଆଦି ରନ୍ଧା ହୋଇଥିବା (ଫଳଫଳ—ବିପରୀତ) ତରକାରୀର ଜଳୀୟ ଅଂଶ—The watery portion or soup of a curry.

ଗୁ ଖାଇଥା ଫଳ ଫଳ, ମତେ ଦଉଥା ଜଳ ଜଳ—ଢଗ ।

**ଜଳଜଳ ଚାହିଁବା**—ଦେ. କ୍ରି—ଏକ ଦୃଷ୍ଟିରେ ଚାହିଁ ରହିବା; ଭକ ଭକ ହୋଇ ଚାହିଁ ରହିବା—To stare, to look on with a vacant stare.
Ja̲laja̲la chāhiñbā
ताकान
**ताकना**

ଅଶଖ୍ ତା ଖାଇ ମୁହଁକୁ ଜଳଜଳ,
ଚାହିଁଲେ ଭୂଲାଇ ଭଲକୁ ବୁଲି କଳ । କୃଷ୍ଣସିଂହ. ମହାଭାରତ. ଅଶ୍ୱମେଧ ।

**ଜଳଜଳ କରି ଚାହିଁବା**—ଦେ. କ୍ରି—ଜଳଜଳ ଚାହିଁବା (ଦେଖ)
Ja̲laja̲la-kari chāhiñbā Ja̲laja̲la chāhiñbā (See)

ଜଳଜଳୀ ମାଣିକା । ଜଳଜଳ କରି ଅନେଇଥାଏ
ନରହରି ପାଣିକୁ—ଢଗ ।

**ଜଳଜଳା**—ଦେ. ବିଣ—୧ । ବହୁ ଜଳା ବା ଛିଦ୍ରଯୁକ୍ତ (ଯଥା ହାଣ୍ଡି)—
Ja̲laja̲lā 1. Perforated; having many holes or pores.

ଜଳଜଳୀ } ସ୍ତ୍ରୀ
ଜଳଜଳେଇ }
୨ । (ପୁଂ) ଅଲଜ୍ଜୁକ; ବେହିୟା; ନିର୍ଲଜ୍ଜ—
2. Shameless; bare-faced.

୩ । ଯେ ଭକଭକ ହୋଇ ଚାହିଁ ରହେ—
3. Staring vacantly.

**ଜଳଜଳା ମାଣିକା**—ଗ୍ରା. ବି. ସ୍ତ୍ରୀ (ଗାଳି)—୧ । ନିର୍ଲଜ୍ଜା ସ୍ତ୍ରୀ—
Ja̲laja̲lā māṇiki 1. Shameless woman.
(ଜଳଜଳୀ ମାଣିକା—ଅନ୍ୟରୂପ) ୨ । ଓଲମୀ ସ୍ତ୍ରୀ—
2. An idiotic woman.

ଜଳଜଳା ମାଣିକା । ଜଳଜଳ କରି ଅନେଇଥାଏ ନରହରି ପାଣିକୁ—ଢଗ ।

**ଜଳଜଳାମୁହାଁ**—ଦେ. ବିଣ. ପୁଂ (ଗାଳି) ଅତି ନିର୍ଲଜ୍ଜ—
Ja̲laja̲lā-muhāñ ( a term of abuse ) Very shameless.
ଜଳଜଳାମୁହିଁ } ସ୍ତ୍ରୀ
ଜଳଜଳୀମୁହିଁ }

**ଜଳଜଳା ହାଣ୍ଡି**—ଦେ. ବି. ( ସଂ. ବର୍ଜିତ ଓ ହାଣ୍ଡିକା )—
Ja̲laja̲lā hāṇḍi ୧ । ଅଶୌଚ ପରେ ଯେଉଁ ହାଣ୍ଡିକୁ ପାକଶାଳାରୁ ଫୋପାଡ଼ି ଦିଆ ଯାଇଥାଏ; ବାଇଜୀହାଣ୍ଡି; ପରିତ୍ୟକ୍ତ ହାଣ୍ଡି—1. Earthen cooking pots thrown away from the cook-room ( on the occasion of purificatory ceremonies ); discarded cooking pots.
बाइजीहाँड़ि

୨ । ( ଲକ୍ଷଣାର୍ଥ ) ନିର୍ଲଜ୍ଜ ଓ ଅତି ଘୃଣ୍ୟ ବ୍ୟକ୍ତି—
2. ( figurative ) A shameless and mean person.

୩ । ବହୁ ଛିଦ୍ର ଯୁକ୍ତ ହାଣ୍ଡି—
3 A porous earthen pot.

**ଜଳଜଳିଆ**—ଦେ. ବିଣ. ପୁଂ—୧ । ଜଳକା ( ଦେଖ )
Ja̲laja̲liā 1. Ja̲lakā ( See )
(ଜଳଜଳେଇ—ସ୍ତ୍ରୀ) ୨ । ଯେଉଁ ହାଣ୍ଡିରେ ଛିଦ୍ର ଥାଏ—
(ଜଳଜଳୁଆ—ଅନ୍ୟରୂପ) 2. Having holes ( said of an earthen pot ).

୩ । ପାଣ୍ଡୁ, ଶୋଥ, ଜ୍ୱର ଆଦି ଯୋଗୁଁ ଫୁଲୁକା ଦିଶୁଥିବା ( ଆଖି, ମୁହଁ, ଗାଲ )—3. (eyes, face, cheeks) Swollen through fever or dropsy.

**ଜଳଜାନ**—ଦେ. ବି. ( ଆଧୁନିକ ଜଡ଼ବିଜ୍ଞାନ ପରିଭାଷା )—
Ja̲la-jāna ହାଇଡ୍ରୋଜେନ୍—Hydrogen
जलदान
**जलजनक**
(ଜଳଜନ—ଅନ୍ୟରୂପ)

**ଜଳଟୁଙ୍ଗି**—ଦେ. ବି—ତଡ଼ାଗମଧ୍ୟସ୍ଥ କ୍ରୀଡ଼ାଗୃହ—
Ja̲la-ṭungi A pleasure-house built in the middle of a tank.

**ଜଳଡିମ୍ବ**—ସଂ. ବି. ( ୬ଷ୍ଠୀ ତତ୍; ଜଳ+ଡିମ୍ବ=କ୍ଷୁଦ୍ର ପ୍ରାଣୀ )—
Ja̲la ḍimba ୧ । ଶାମୁକା; ଶମ୍ବୁକ—1. Oyster.
୨ । ଗେଣ୍ଡା—2 Snail.

**ଜଳଡୁଗି**—ପ୍ରାଦେ. ବି. (କଟକ)—ଜଳଡୁବି ( ଦେଖ )
Ja̲la-ḍugi Ja̲la-ḍubi ( See )

**ଜଳଡୁବି**—ଦେ. ବି—ମନୁଷ୍ୟର ଆକସ୍ମିକ ଭାବରେ ଜଳରେ ମଗ୍ନ ହୋଇ ମରିବା—Death by a drowing; a watery death.
Ja̲la-ḍubi
जलडूबि
**जलडुबी**

× × ଆଉ ଗ୍ରେଉ, ସାପକାମୁଡ଼ା, ଜଳଡୁବି ମାମଲା ପଡ଼ିଲେ ପୋଲିସରେ ଏତଲାର ଗର୍ଜ ହେଉଛି । ଫକୀରମୋହନ, ଛମାଣଆଠଗୁଣ୍ଠ ।

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଅ | ଉଅ | ଊ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୃ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଡ଼ | ନ୍ |

**ଜଳତରଙ୍ଗ**—ସ. ବ. ( ୬ଷ୍ଠୀ ତତ୍; ଜଳ+ତରଙ୍ଗ )—
Jaḻa-taraṅga ପାଣିର ଢେଉ—Wave of water.

ଦେ. ବ—ଏକ ପ୍ରକାର ବାଦ୍ୟ [ ୭ ଗୋଟି ଧାତୁ ବା କାଚ ବା ଚକ୍ରବାସନ ଗିନାରେ ଭିନ୍ନ ଭିନ୍ନ ପରିମାଣରେ ଜଳ ରଖି ଦୁଇ ଖଣ୍ଡି କାଠି ଦ୍ୱାରା ଉକ୍ତ ଗିନାମାନଙ୍କ ଧାରକୁ କୌଶଳ କ୍ରମେ ବଜାଇବା ଦ୍ୱାରା ସଙ୍ଗୀତର ସାରେଗାମା ପାଧାନି (ସପ୍ତକ) ସ୍ୱର ଉଦ୍ଭାବନ କରାଯାଏ ]—
ଜଳତରଙ୍ଗ
ଜଲତରଙ୍ଗ
A musical instrument consisting of a set of chinaware, glass or metal cups filled with water and tuned to produce the different notes of the musical scale by sriking the rims with two thin sticks; Zylophone

ଜଳତରଙ୍ଗ ମୋତଙ୍ଗ ଧର । ଅଭିମନ୍ୟୁ. ବଦଗ୍ଧଚନ୍ତାମଣି ।

[ ଦ୍ର—କାଠର ଭିନ୍ନ ଭିନ୍ନ ଖଣ୍ଡମାନ କାଷ୍ଠ ତାକୁ ସାରେଗାମାପାଧାନି ସ୍ୱରଗ୍ରାମ ଅନୁସାରେ ଖଞ୍ଜି ତାହାକୁ ୨ ଖଣ୍ଡ କାଠି ଦ୍ୱାରା ଆଘାତ କରିବା ଯନ୍ତ୍ରକୁ କାଷ୍ଠତରଙ୍ଗ (Zylophone) ବୋଲାଯାଏ, ଏହିପରି ଲୌହତରଙ୍ଗ ବାଜା ମଧ୍ୟ ପ୍ରସ୍ତୁତ କରାଯାଏ । ]

୨ । ପାଣିର ଢେଉ ଆକାରରେ ପ୍ରସ୍ତୁତ ହାତର ଚୁଡ଼ି ବା ଗୋଡ଼ର ମଲ—2. Bangles or anklets apshed like undulating waves.

**ଜଳତର୍ପଣ**—ସ. ବ. ( ୪ର୍ଥୀ ତତ୍; ଜଳ+ତର୍ପଣ )—
Jaḻa-tarpaṇa ପିତୃଲୋକଙ୍କ ଉଦ୍ଦେଶ୍ୟରେ ଅଞ୍ଜଳି ଦ୍ୱାରା ମନ୍ତ୍ରୋଚ୍ଚାରଣ ପୂର୍ବକ ଜଳଦାନ—Libation of water offered to the manes of one's ancestors.

**ଜଳତ୍ରାସ**—ସ. ବ. ( ୫ମୀ ତତ୍; ଜଳ+ତ୍ରାସ )—
Jaḻa-trāsa ୧ । ପାଣି ଦେଖିଲେ ଡରିବା—
1 Terror at the sight of water.
୨ । ଜଳାତଙ୍କ ରୋଗ—2. Hydrophobia.
[ ଦ୍ର—ଏ ରୋଗଗ୍ରସ୍ତ ପ୍ରାଣୀ ପାଣି ଦେଖିଲେ ଡରେ । ]

**ଜଳଦ**—ସ. ବ. ( ଜଳ+ଦା ଧାତୁ+କର୍ତ୍ତୃ. ଅ; ଯାହା ସଂସାରକୁ ଜଳ
Jaḻada ଦିଏ )—୧ । ମେଘ—1. Cloud.
୨ । ମୁସ୍ତକ; ମୁଥା ( ଏହାର ରସ ବୈଦ୍ୟଶାସ୍ତ୍ରରେ ଅନୁପାନ ରୂପେ ବ୍ୟବହୃତ ହୁଏ ବୋଲି )—2. A fragrant bulbuous root of grass ( often used as a vehicle in Indian medicines ).
୩ । କର୍ପୂର ( ହି. ଶବ୍ଦସାଗର )—3. Camphor.
ବିଣ.—ଜଳଦାନକାରୀ—Giving water.

**ଜଳଦକାଳ**—ସ. ବ. (୬ଷ୍ଠୀ ତତ୍; ଜଳଦ+କାଳ)—ବର୍ଷାଋତୁ
Jaḻada-kāḻa (ହି. ଶବ୍ଦସାଗର)—The rainy season.

**ଜଳଦଗମ୍ଭୀର**—ସ. ବ. (ଉପମିତ କର୍ମଧା; ଜଳଦ+ଗମ୍ଭୀର)—ମେଘ
Jaḻada-gambhīra ଗର୍ଜ୍ଜନ ପରି ଗମ୍ଭୀର (ଯଥା; ସ୍ୱର, ଶବ୍ଦ)—
Deep and grave (rumbling); like the rumbling of clouds (voice, sound.)

**ଜଳଦାଗମ**—ସ. ବ. (୬ଷ୍ଠୀ ତତ୍; ଜଳଦ+ଆଗମ;—୧ । ଆକାଶରେ
Jaḻadāgama ମେଘୋଦୟ—1. The appearance of rain-clouds in the sky.
୨ । ବର୍ଷା ଋତୁ—1. The rains; the rainy season.
୩ । ବର୍ଷାଋତୁର ଆରମ୍ଭ—
3. The advent of the rainy season.

**ଜଳଦାନ**—ସ. ବ. (୬ଷ୍ଠୀ ତତ୍; ଜଳ+ଦାନ)—୧ । ଅନ୍ୟ ବ୍ୟକ୍ତିକୁ
Jaḻa-dāna ପିଇବାକୁ ଜଳ ଦେବା—1. Giving of water to another to drink.
୨ । ଜଳତର୍ପଣ—
2. Libation of water to one's deceased ancestors.

ପିତୃଦେବତାଙ୍କ ସେ ଜଳଦାନ ଦେଲେ । କୃଷ୍ଣସିଂହ. ମହାଭାରତ ବନ ।

୩ । ବ୍ରାହ୍ମଣଙ୍କୁ କୌଣସି ଦ୍ରବ୍ୟ ଦାନ କରିବା ପୂର୍ବରୁ ବ୍ରାହ୍ମଣ ହାତକୁ ଟିକିଏ ଜଳ ଦେବା—3. The ceremony of giving a little water to the hands of a Brāhmaṇa before handing over a gift.

**ଜଳଦି**—ବୈଦେ. କି. ବିଣ (ଫା. ଜଲ୍‌ଦୀ)—ଅତି ଶୀଘ୍ର—
Jaladi Very quickly or swiftly; very soon.
শীগির ଚଢ଼ି ଦୁଇ ଘର ଜଳଦି ଜଳଦି ଅଶ୍ରମକୁ ଫେରି ଆସିଲେ ।
जल्द ଗୋଲକଣ୍ଡ, ଓଡ଼ିଆ ରାମାୟଣ ।

**ଜଳଦୀକ୍ଷା**—ସ. ବ. (ଆଧୁନିକ ବ୍ୟବହାର; ବାଇବଲ୍)—ଖ୍ରୀଷ୍ଟାନ୍ ଧର୍ମରେ
Jaḻa-dīkshā ଦୀକ୍ଷିତ ହେବା ବ୍ୟକ୍ତିର ପାଣିରେ ବୁଡ଼ିବା ରୂପ କର୍ମ;
ଡୁବନ—Baptism.

**ଜଳଦୀକ୍ଷା ଗୁରୁ**—ସ. ବ. (ଆଧୁନିକ ପ୍ରୟୋଗ; ବାଇବ୍ଲ)—ଜଳରେ
Jaḻadīkshā guru 'ଡୁବନ' ଦ୍ୱାରା ଖ୍ରୀଷ୍ଟାନ୍ ଧର୍ମରେ ଦୀକ୍ଷିତ କରାଇବା ପୁରୋହିତ—Baptist; baptiser.

**ଜଳଦୀକ୍ଷିତ**—ସ. ବିଣ. (ଆଧୁନିକ ପ୍ରୟୋଗ; ବାଇବ୍ଲ)—ଡୁବନ କର୍ମଦ୍ୱାରା
Jaḻa-dīkshita ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ—Baptised.

**ଜଳଦେବ**—ସ. ବ. (ମ. ପ. ଲୋ; ଜଳ+ଦେବ)—୧ । ବରୁଣ—
Jaḻa-deba 1. Baruṇa; the Deity presiding over water.
(ଜଳଦେବତା—ଅନ୍ୟରୂପ)
୨ । ଜଳର ଅଧିଷ୍ଠାତ୍ରୀ ଦେବତା—
2. A water-nymph; a naiad.

**ଜଳଦୋଷ**—ସ. ବ.(୬ଷ୍ଠୀ ତତ୍; ଜଳ+ଦୋଷ)—୧ । ଶରୀରାଭ୍ୟନ୍ତରସ୍ଥ
Jaḻa-dosha ଦୂଷିତ ଜଳର ବୃଦ୍ଧି; ଜଳୋଦର ରୋଗ—
1. Dropsy.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୨ । ବିଶୁଦ୍ଧ ପାନୀୟ ଜଳର ଅଭାବ ପରିଲକ୍ଷିତ ହେବା ସ୍ଥାନର ଦୋଷ—1. Defect of a locality consisting of want of pure drinking water.

୩ । ଅଣ୍ଡକୋଷରେ ଦୂଷିତ ଜଳରବୃଦ୍ଧି; କୁରୁଣ୍ଡ—
3. Accummulation of water or serum in the testicles; hydrocele

[ଦ୍ର—ଗୋଟିଏ ଅଣ୍ଡକୋଷରେ ଜଳବୃଦ୍ଧି ହେଲେ ଏକଶିରା ଓ ଦୁଇଟି ଯାକ କୋଷରେ ହେଲେ କୁରୁଣ୍ଡ କୁହାଯାଏ ।]

**ଜଳଦ୍ରୋଣୀ**—ସଂ. ବି.—( ୬ଷ୍ଠୀ ତତ୍; ଜଳ+ଦ୍ରୋଣୀ )—ସେଚନାର୍ଥ
Ja̲la-droṇi ସେଚନାର୍ଥ ପାଣି ଉଠାଇ ଫୋପାଡ଼ିବାର ଯନ୍ତ୍ର; ଜଳସେଚନୀ; ସେଣା; ସୋଡ଼ୁଅ—A contrivance or bucket for lifting and throwing water for irrigation purposes.

**ଜଳଧର**—ସଂ. ବିଣ. (ଜଳ+ଧୃ ଧାତୁ+କର୍ତ୍ତୃ. ଅ)—ଜଳଧାରଣକାରୀ
Ja̲ladhara Holding or containing water.

ସଂ. ବି.—୧ । ମେଘ—1. Cloud.

୨ । ସମୁଦ୍ର—2. The ocean.

୩ । ମୁଥା—3. Bulbuous grass-root.

୪ । ତିନିଶ ବୃକ୍ଷ (ଦେଖ)—
4. Tiniśa (tree) (See)

ଦେ. ବି. ପୁଂ.—୧ । ଲୋକଙ୍କ ନାମ—
1. A name given to males.

୨ । ପାଣି ବୁହାଳ—2. A water-carrier.

ଜଳଧର କହେ ହଳଧରକୁ ଚକ୍ରଧର କାହିଁ ମଲେ ?
ସ୍ୱର୍ଗରୁ ପଡ଼ିଲେ ପକ୍ଷୀପ୍ରାଣ ମାର ବନବାସ ଗଲେ । ପ୍ରହେଳିକା ।

**ଜଳଧାରୀ**—ସଂ. ବି.—ପଥର ବା ଧାତୁର ପାତ୍ରୀ ଯହିଁ ମଧ୍ୟରେ ଶିବଲିଙ୍ଗ
Ja̲la-dhāri ସ୍ଥାପିତ କରାଯାଏ (ହି. ଶବ୍ଦସାଗର)—A plate or slab of stone or metal on which an image of Śiba is placed for worship.

**ଜଳଧାମା**—ଦେ. ବିଣ.—(ପ୍ରାଚୀନ ପଦ୍ୟ)—ଜଳଜାତ—
Ja̲la-dhāmā Growing in the water.

ବୃକ୍ଷର ନାମରେ ଉମା ବେନି ଫୁଲ ଜଳଧାମା
ବାମା ନେତ୍ରଛିତ ଲତା ମୃଖ କାଡ, ଠିକ ମଣ୍ଡ୍ରପତ ନାମା ।
ଭଞ୍ଜ ବୈଦେହୀଶବିଳାସ ।

**ଜଳଧାରା**—ସଂ. ବି.—(୬ଷ୍ଠୀ ତତ୍; ଜଳ+ଧାରା)—୧ । ଜଳର
Ja̲la-dhārā ପ୍ରବାହ—1. Current or stream of water.

୨ । ଅବିଶ୍ରାମ ଭାବରେ ତଳକୁ ପଡ଼ୁଥିବା ପାଣିର ଧାର—
2. Continuous dropping of water.

୩ । ବୃଷ୍ଟିଧାରା; ଅସାର—3. A shower of rain.

୪ । ଏକପ୍ରକାର ତପସ୍ୟା, ଯହିଁରେ ତପସ୍ୟା କରିବା ଲୋକ ଉପରେ ଅନ୍ୟ ଲୋକମାନେ ଅବିରତ ପାଣିର ଧାରା ଛାଡ଼ୁ ଥାଆନ୍ତି (ହି. ଶବ୍ଦସାଗର) —4. A kind of penance in which water is constantly poured over the practiser.

**ଜଳଧି**—ସଂ. ବି.—( ଜଳ+ଧା ଧାତୁ+ଅଧିକରଣ. ଇ )—୧ । ବାରିଧି;
Ja̲ladhi ସାଗର; ସମୁଦ୍ର—1. The sea; the ocean.

୨ । ଶତଲକ୍ଷ କୋଟି ସଂଖ୍ୟା—
2. One hundred of trillion (number)

**ଜଳଧିଗା**—ସଂ. ବି. (ଜଳଧି+ଗମ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—
Ja̲ladhigā ୧ । ଲକ୍ଷ୍ମୀ—1. The Goddess of wealth.

୨ । ନଦୀ—2. River.

**ଜଳଧିଜ**—ସଂ. ବିଣ (ଜଳଧି+ଜନ୍ ଧାତୁ+କର୍ତ୍ତୃ. ଅ)—
Ja̲ladhija ସମୁଦ୍ରୋଦ୍ଭବ—Born of the ocean

ବି—ଚନ୍ଦ୍ର—The moon.

[ ଦ୍ର—କ୍ଷୀରସମୁଦ୍ରମନ୍ଥନରୁ ଏ ବାହାରିଥିଲେ । ]

**ଜଳଧିଜା**—ସଂ. ବି. ସ୍ତ୍ରୀ. (ଜଳଧି+ଜନ୍ ଧାତୁ+ଅ+ସ୍ତ୍ରୀ. ଆ)—
Ja̲ladhijā ମହାଲକ୍ଷ୍ମୀ (କ୍ଷୀରସମୁଦ୍ରମନ୍ଥନରୁ ଏ ବାହାରିଥିବାରୁ ଓ ଜଳଦେବ ବରୁଣଙ୍କ ପାଳିତା କନ୍ୟା ଥିବାରୁ )—The Goddess of wealth.
(ଜଳଧିତନୟା, ଜଳଧିସୁତା—ଅନ୍ୟରୂପ)

**ଜଳନକୁଳ**—ସଂ. ବି. (୬ଷ୍ଠୀ ତତ୍; ଜଳ+ନକୁଳ)—ଓଧ—
Ja̲la-nakula Otter.

**ଜଳନାଳ**—ଦେ. ବି. (ସଂ. ଜଳନାଳୀ)—ଜଳନାଳୀ (ଦେଖ)
Ja̲la nāla Ja̲lanāli (See)

ନାଳା
ନହର

**ଜଳନାଳୀ**—ସଂ. ବି.(୬ଷ୍ଠୀ ତତ୍; ଜଳ+ନାଳୀ)—୧ । ପାଣିନାଳ; କୁଲ୍ୟା-
Ja̲la-nāli 1. Water-course; canal.

୨ । ନର୍ଦ୍ଦମା; ପାଣିମାଦାରୀ—
2. Water-channel; drain.

**ଜଳନିଧି**—ସଂ. ବି. (ଜଳ+ନି+ଧା ଧାତୁ+ଅଧିକରଣ ଇ)—
Ja̲la-nidhi ୧ । ଜଳଧି (ଦେଖ)
1. Ja̲ladhi (See)

୨ । ଚାରିସଂଖ୍ୟା—2. The number four.

**ଜଳନିର୍ଗମ**—ସଂ. ବି. (୬ଷ୍ଠୀ ତତ୍; ଜଳ+ନିର୍ଗମ)—
Ja̲la-nirgama ୧ । କୌଣସି ସ୍ଥାନରୁ ଜଳ ବୋହିଯିବା—
(ଜଳନିର୍ଗମନ—ଅନ୍ୟରୂପ) 1. The flowing out of water from a place.

୨ । (ବହୁବ୍ରୀହି) ପାଣିମାଦାରୀ—2. Drain for water.

**ଜଳନୀଳିକା**—ସଂ. ବି. (ମ. ପ. ଲୋ; ଜଳ+ନୀଳିକା)—
Ja̲la-nilikā ପାଣି ଉପରେ ପଡ଼ିବା ଶିଉଳ; ନେଳୀ—
(ଜଳନୀଳୀ—ଅନ୍ୟରୂପ) Green moss formed on the surface of water.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଡ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଈପ୍ସୃ | ତ୍ଥ | ଝ |
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଂ୍ୟ | ଇଥ | ଞ୍ଝ | ନ୍ଦ |

ଜଳନ୍ତ— ଗ୍ରା. ବିଣ. (ସଂ. ଜ୍ୱଳତ୍)—ଜ୍ୱଳନ୍ତ (ଦେଖ)
Jaḻanta Jwaḻanta (See)

ଜଳନ୍ତର—ଦେ. ବି. (ନାମ)—ଗଞ୍ଜାମର ଗୋଟିଏ ପ୍ରାଚୀନ ରାଜ୍ୟ—
Jaḻantara Name of an ancient estate in Ganjam.

[ ଦ୍ର—ଏ ରାଜ୍ୟର ରାଜା କବିସୂର୍ଯ୍ୟଙ୍କର ପୃଷ୍ଠପୋଷକ ଥିଲେ । କବିସୂର୍ଯ୍ୟ ତାଙ୍କ କିଶୋରଚନ୍ଦ୍ରାନନ୍ଦ ଚମ୍ପୂର ଗୀତମାନ ରାଜା ବାଲୁକେଶଦେବଙ୍କ ନାମରେ ଭଣିତା କରିଥିଲେ । ]

ଜଳନ୍ତା—ଦେ. ବି. (ସଂ. ଜ୍ୱଳତ୍)—୧ । ଜଳୁଥିବା—
Jaḻantā 1. Burning.

ଜଳନ୍ତା ଅଙ୍ଗାର ତେଜରେ ପ୍ରକାଶିତ । କୃଷ୍ଣସିଂହ. ମହାଭାରତ ଆଦି ।

ଜଲନ୍ତ
ज्वलात,ज्वलती

୨ । ଯହିଁରେ ଜଳନ୍ତ ନିଆଁ ଥାଏ—2 Having fire burning in it; containing blazing fire.

(ଯଥା—ଜଳନ୍ତା ଚୁଲି ।)

ଜଳନ୍ତା ନିଆଁ ରେ କୁଟା ପକା(କେ)ଇବା—ଦେ. କ୍ରିୟା (ଲକ୍ଷଣାର୍ଥ)—
Jaḻantā niāñre kuṭā pakā(ke)ibā କ୍ରୋଧ, ବିପତ୍ତି ବା ବିରକ୍ତିବେଳେ ଉତ୍ତେଜିତ କରିବା ବା ସେସବୁ ବଢ଼ାଇବା ଭଳି କୌଣସି କାର୍ଯ୍ୟ କରିବା ( ତୁଳନା କର—"କଟା ଘାଆରେ ଚୂନ ମାରିବା" )—
To add fuel to the fire.

ଜଳନ୍ଧର—ସଂ. ବି. (ଜଳଂ=ଜଳକୁ+ଧୃ ଧାତୁ+କର୍ତ୍ତୃ. ଅ)
Jaḻandhara ୧ । ଅସୁରବିଶେଷ—1. Name of a Demon.

[ ଦ୍ର—ଏ ଶିବଙ୍କ କୋପାଗ୍ନିରୁ ସମୁଦ୍ରରେ ଜନ୍ମିଥିଲା । ଏ ଜନ୍ମ ହେଲାକ୍ଷଣି ଏପରି କାନ୍ଦିଲା ଯେ ତହିଁରେ ଦେବତାମାନେ ବ୍ୟଥିତ ହୋଇ ସମୁଦ୍ରକୁ ପଚାରିବାରୁ ଏ ମୋ ପୁତ୍ର ବୋଲି ସମୁଦ୍ର କହି ଏହାକୁ ପାଳିବାକୁ ବ୍ରହ୍ମାଙ୍କୁ ଅନୁରୋଧ କରିବାରୁ ବ୍ରହ୍ମା ଏହାକୁ କୋଳରେ ନେଲେ; ଏ ବ୍ରହ୍ମାଙ୍କ ଦାଢ଼ୀକୁ ଜୋରରେ ଟାଣିବାରୁ ବ୍ରହ୍ମାଙ୍କ ଆଖିରୁ ପାଣି ଗଡ଼ିଲା । ଏଥି ପାଇଁ ଏହାର ନାମ ଜଳନ୍ଧର ହେଲା । ଏ ବଡ଼ ହୋଇ ଅମରାବତୀ ଅଧିକାର କରିବାରୁ ଇନ୍ଦ୍ରଙ୍କପକ୍ଷରୁ ଶିବ ଏହା ସଙ୍ଗେ ଯୁଦ୍ଧ କଲେ । ସ୍ୱାମୀକୁ ରକ୍ଷା କରିବା ପାଇଁ ଏହାର ସ୍ତ୍ରୀ ବୃନ୍ଦା (କାଳନେମିର କନ୍ୟା) ବ୍ରହ୍ମାଙ୍କ ପୂଜା କଲା ଓ ଏଥିଯୋଗୁଁ ଶିବ ତାକୁ ପରାସ୍ତ କରିପାରିଲେ ନାହିଁ । ବିଷ୍ଣୁ କପଟ କରି ବୃନ୍ଦା ନିକଟକୁ ଯିବାରୁ ବୃନ୍ଦା ତାଙ୍କୁ ଦେଖି ପୂଜା ବନ୍ଦ କଲା ଓ ଇତ୍ୟବସରରେ ଜଳନ୍ଧର ଯୁଦ୍ଧରେ ପ୍ରାଣ ହରାଇଲା । ବୃନ୍ଦା ଏହା ସଙ୍ଗେ ସହମରଣ ଲଭିଲା ଓ ପରଜନ୍ମରେ ତୁଳସୀ ରୂପ ଧାରଣ କରି ସର୍ବତ୍ର ପୂଜା ପାଉଅଛି । ହ୍ର. ଶବ୍ଦସାଗର । ]

୨ । ପର୍ବତ—2. Mountain.

୩ । ଉତ୍ତରପଶ୍ଚିମ ଭାରତର ତୀର୍ଥବିଶେଷ—
3. Name of a holy place of pilgrimage in N. W. India.

୪ । ପଞ୍ଜାବ ପ୍ରଦେଶସ୍ଥ ନଗରବିଶେଷ—
4. Jalandar; a town in the Panjab.

ଜଳପ—ଗ୍ରା. (ପଦ୍ୟ) ବି. (ସଂ. ଜଳ୍ପ ଧାତୁ)—ଜଳପନ (ଦେଖ)
Jaḻapa Jaḻapana (See)

ମୋହର ବୃଦ୍ଧି ଅଇଲେ ହେ ଅଳପ
କି ରୂପରେ ରାଇଙ୍କ କରିବି ଜଳପ । କୃଷ୍ଣସିଂହ. ମହାଭାରତ. ସଭା ।

ଜଳପଞ୍ଜରୀ—ଦେ. ବି. (ସଂ. ଜାଲ+ପଞ୍ଜରୀ)—ଝରକା; ଜାଲିକବାଟ—
Jaḻa-pañjarī Window; latticed window.

ଜଳପତି—ସଂ. ବି. (୬ଷ୍ଠୀ ତତ୍, ଜଳ+ପତି)—୧ । ବରୁଣ—
Jaḻa-pati 1. Sea-god

୨ । ସମୁଦ୍ର—2. The ocean.

ଜଳପଥ—ସଂ. ବି. ( ୬ଷ୍ଠୀ ତତ୍; ଜଳ+ପଥ )—
Jaḻa-patha ୧ । ପାଣି ବୋହିଯିବା ବାଟ—
1 An outlet for water

୨ । ( ୭ମୀ ତତ୍; ) ନଦୀ ଓ ସମୁଦ୍ର ଆଦି; ଯେଉଁ ବାଟେ ନୌକା ଦ୍ୱାରା ଲୋକେ ଯିବା ଆସିବା କରନ୍ତି—
2. Water used as passage.

ଜଳପନ—ଗ୍ରା. (ପଦ୍ୟ) ବି. ( ସଂ. ଜଳ୍ପନ )—କଥନ; ଜଳ୍ପନ—
Jaḻapana Speaking; talking.

ଜଳପା—ଗ୍ରା. (ପଦ୍ୟ) ବି. ( ସଂ. ଜଳ୍ପନ )—କଥା; ବଚନ—
Jaḻapā Words

ଜଳନ୍ତର ପୁରନ୍ଦର ଶୁଣି ଜଳପାରେ
ରସିକଙ୍କ ରସିକା ରସ ଲୁବ୍ଧହେଲ ପାରେ । କବିସୂର୍ଯ୍ୟ. ସଙ୍ଗୀତ ।

ଜଳପାଇ—ଦେ. ବି—୧ । ବଇପୋଲ ନାମକ ଗଛ ଓ ତହିଁର ଆମ୍ଳଭୂ ପରି କ୍ଷୁଦ୍ର ଅମ୍ଳ ଫଳ—1. The wild
Jaḻa-pāi olive tree and its fruit; Elæocarpus Serratus.
জলপাই
जलपाइ

[ ଦ୍ର—ଏହା ରୁଦ୍ରାକ୍ଷ ଜାତୀୟ ଗଛ । ହିମାଳୟରେ ଓ ଦାକ୍ଷିଣାତ୍ୟର ଅରଣ୍ୟରେ ଜନ୍ମେ । ଏଥିର କଞ୍ଚା ଫଳ ଆଚାର ଓ ଚଟଣୀ ରୂପେ ବ୍ୟବହୃତ ହୁଏ ଓ ପାଚିଲା ଫଳ ଖିଆଯାଏ । ]

୨ । ଜୁଆର ପାଣି ପଶୁଥିବା ସମୁଦ୍ରୋପକୂଳସ୍ଥ ନିମ୍ନଭୂମି—
2. Low water-logged land along the sea-coast.

[ ଦ୍ର—ମେଦିନୀପୁର ଓ ବାଲେଶ୍ୱର ଅଞ୍ଚଳରେ ଏପରି ଭୂମି ଦେଖାଯାଏ । ଅଧିକାଂଶ ସମୟରେ ଏହା ଜଳରେ ପୂର୍ଣ୍ଣ ଥାଏ । ]

୩ । ଜଳାଭୂମି; ଜୋଡ଼ୀ ଭୂମି—3. Marshy land.

ଜଳପାତିଆ—ଦେ. ବି—ଏକ ପ୍ରକାର ସ୍ୱରକାରୀ ପକ୍ଷୀ—
Jaḻa-pātiā A kind of singing bird.

ଜଳପାତ୍ର—ସଂ. ବି. ( ୬ଷ୍ଠୀ ତତ୍; ଜଳ+ପାତ୍ର )—
Jaḻa-pātra ୧ । ପାଣି ରଖିବା ପାତ୍ର—
1. Water-vessel.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଲୁଅ' ନ ମିଳିଲେ 'ଲୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୨ । ଯେଉଁ ପାତ୍ରରୁ ପାଣି ପିଆଯାଏ— 2. Drinking vessel.

**ଜଳପାନ**—ସଂ. ବି (୬ଷ୍ଠୀ ତତ୍; ଜଳ+ପାନ)—ପାଣି ପିଇବା— Ja<u>l</u>a-pāna Drinking of water.

ଦେ. ବି—୧ । ପାଣି ପିଇବା ପୂର୍ବରୁ ଖିଆଯିବା ଲଘୁ ଖାଦ୍ୟ; ଜଳଖିଆ—1. Light refreshment; luncheon; breakfast; tiffen
জলখাবার
जल पान

୨ । ମିଷ୍ଟାନ୍ନ—2. Sweetmeat.

କୌଣସି ସେବକଙ୍କଠାରୁ ବ୍ରାହ୍ମଣ ଜଳପାନ ମାଗି ବସିଲେ
ସାଥରେ ଚଳିଅଛନ୍ତି ପାଞ୍ଚ ସାତ ପୁଞ୍ଜା ବୁଢ଼ା ଧର
ପଇଲୁ ଯୋଗାଇ ଦଅନ୍ତୁ ଫକୀରମୋହନ- ଭ୍ରମଣଅଠଗଡ଼ ।

**ଜଳପାନି**—ପ୍ରାଦେ. ବି (ବାଲେଶ୍ୱର) (ଭୁଲ. ବ୍. ଏହି ଅର୍ଥରେ ଜଳପାଣି) Ja<u>l</u>a-pāni ଛାତ୍ରଙ୍କୁ ମିଳୁଥିବା ମାସିକ ଅର୍ଥ ସାହାଯ୍ୟ; ଛାତ୍ରବୃତ୍ତି— Stipend; scholarship.

**ଜଳପାହି**—ଦେ. ବି—ଜଳପାଇ ( ଦେଖ ) Ja<u>l</u>a-pāhi Ja<u>l</u>apāi ( See )

**ଜଳପିଚକା**—ଦେ. ବି—ସୁଗନ୍ଧ ଜଳ ପୂର୍ଣ୍ଣ କରି ଉତ୍ସବାଦିରେ ନିମନ୍ତ୍ରିତ ଲୋକଙ୍କ ଉପରକୁ ମାରିବା ପିଚକାରୀ— Syringe used for spraying scented water over guests.
Ja<u>l</u>a-pichikā
पानीकि पिचकारी

**ଜଳପିପ୍ପଳୀ**—ସଂ. ବି—କଚରଙ୍ଗା ( ଦେଖ ) Ja<u>l</u>a-pippa<u>l</u>i Kacharaṅgā ( See ) (ଜଳପିପ୍ପଳିକା—ଅନ୍ୟରୂପ)

**ଜଳପିବା**—କ୍ରି (ପଦ୍ୟ) କ୍ରି (ସଂ. ଜଳ୍ପ)—୧ । ଗପିବା— Ja<u>l</u>apibā 1. To talk.
জল্পনা
୨ । ପ୍ରଳାପ କରିବା; ବୃଥାରେ ଗପିବା— 2. To talk in vain; to rave.
जल्पना

ଜଳସ୍ଥଳୁ ବଳସ୍ଥଳୁ ଏବେ ଭଲରେ କର ଭାବରେ—କବିସୂର୍ଯ୍ୟ ସଙ୍ଗୀତ ।

**ଜଳପିମ୍ପି**—ଦେ. ବି—ଜଳଫିମ୍ପି ( ଦେଖ ) Ja<u>l</u>a-pimpi Ja<u>l</u>a-phimpi ( See )

**ଜଳପ୍ରଣାଳୀ**—ସଂ ବି—ଜଳନାଳୀ ( ଦେଖ ) Ja<u>l</u>a-praṇā<u>l</u>i Ja<u>l</u>a-nā<u>l</u>i ( See )

**ଜଳପ୍ରଦାନ**—ସଂ. ବି. ( ୬ଷ୍ଠୀ ତତ୍; ଜଳ+ପ୍ରଦାନ )— Ja<u>l</u>a-pradāna ଜଳଦାନ (ଦେଖ) Ja<u>l</u>adāna (See)

**ଜଳପ୍ରପା**—ସଂ. ବି. (୬ଷ୍ଠୀ ତତ୍; ଜଳ+ପ୍ରପା=ଶାଳା)— Ja<u>l</u>a-prapā ଜଳଦାନଗୃହ; ଜଳଛତ୍ର—A place where water is freely distributed to the thirsty.

**ଜଳପ୍ରପାତ**—ସଂ. ବି. ( ୬ଷ୍ଠୀ ତତ୍; ଜଳ+ପ୍ରପାତ )— Ja<u>l</u>a-prapāta ୧ । ଉଚ୍ଚସ୍ଥାନରୁ ଜଳର ପତନ— 1. Falling down of water from a high place.

୨ । ପର୍ବତ ଉପରୁ ଗଡ଼ୁଥିବା ଝରଣା— 2 Waterfall; a cascade

**ଜଳପ୍ରବାହ**—ସଂ. ବି. (୬ଷ୍ଠୀ ତତ୍; ଜଳ+ପ୍ରବାହ)—ଜଳର ସ୍ରୋତ— Ja<u>l</u>a-prabāha Current of water.

**ଜଳପ୍ରାୟ**—ସଂ. ବି. (ବହୁବ୍ରୀହି; ଜଳ+ପ୍ରାୟ=ପ୍ରଚୁର)— Ja<u>l</u>a-prāya ଜଳମୟସ୍ଥାନ; ଜଳାଭୂମି— Marshy place; swamp.

ବିଣ—ଜଳବହୁଳ; ଜଳପୂର୍ଣ୍ଣ—Water logged; overflowing with water.

**ଜଳପ୍ରିୟ**—ସଂ. ବିଣ. (ବହୁବ୍ରୀହି; ଜଳ+ପ୍ରିୟ)—ଯେ ଜଳକୁ ସୁଖପାଏ— Ja<u>l</u>a-priya Fond of water.

ବି—୧ । ଚାତକ ପକ୍ଷୀ—1. A species of swallow.

୨ । ମତ୍ସ୍ୟ—2. Fish.

**ଜଳପ୍ଳାବନ**—ସଂ. ବି. (୬ଷ୍ଠୀ ତତ୍; ଜଳ+ପ୍ଳାବନ)—୧ । ବନ୍ୟା; ବଢ଼ି— Ja<u>l</u>a-p<u>l</u>ābana 1. Inundation; flood.

୨ । ଜଳ ମାଡ଼ି ଦେଶ ବୁଡ଼ିଯିବା—2. Deluge.

**ଜଳପ୍ଳାବିତ**—ସଂ. ବିଣ. ( ତୃତୀୟା ତତ୍, ଜଳ+ପ୍ଳାବିତ )— Ja<u>l</u>a-p<u>l</u>ābita ଜଳରେ ମଗ୍ନ; ଜଳରେ ଆଚ୍ଛନ୍ନ (ଦେଶ)— (a place) Inundated or overspread with flood; deluged.

**ଜଳଫିମ୍ପି**—ଦେ. ବି—ଦଳଫିମ୍ପି; ଜାତୁକଜାତୀୟ କୁଳେଚର ବର୍ଗର ୧୦।୧୨ ଅଙ୍ଗୁଳ ଦୀର୍ଘ ଓ ଡେଙ୍ଗା ଗୋଡ଼ ଥିବା ପକ୍ଷିବିଶେଷ; ଜଳକୁକ୍କୁଟ— A small bird living near water; The Jacana or Sora; Mitopidus Indicus ( with long spreading toes ); the Pheasant Jacana; Hydrophasianus Chirurgus; the Surgeon bird.
Ja<u>l</u>a-phimpi
জলপিপি;
मुरगाबी

[ ଦ୍ର—ଏମାନେ ପୋଖରୀର ପାଣିକୂଳରେ ଥାଆନ୍ତି ଓ ଦଳ ଉପରେ ଡେଙ୍ଗା ଗୋଡ଼ରେ ଖୁବ୍ ଦଉଡ଼ି ପାରନ୍ତି । ଗୋଡ଼ର ଚଉଦ୍ଦ ପାଦରେ ଲମ୍ବ ଲମ୍ବ ୪ ଗୋଟି ନଖ । ଏମାନେ ପିଁ ପିଁ ଶବ୍ଦ କରନ୍ତି; ମୁଣ୍ଡ ଓ ପିଠି କଳା ଓ ଛାତି ଓ ପେଟ ଧଳା; ଥଣ୍ଟ ଲମ୍ବ ଓ ଥଣ୍ଟର ଅଗ ବଙ୍କା; ଡେଣା ଛୋଟ, ଲାଞ୍ଜ ଛୋଟ ଓ ଖଲସା ]

**ଜଳବଜା**—ଦେ. ବିଣ—୧ । ଜଳସ୍ପୃଷ୍ଟ— Ja<u>l</u>a-bajā 1. Touched with water.

ଜଳବଜା ପବନେ ଦେଲେ ଦେହ ଚୋପି । କୃଷ୍ଣସିଂହ- ମହାଭାରତ ବନ ।

୨ । ଜଳସିକ୍ତ—2. Sprinkled with water.

**ଜଳବରଣ୍ଟ**—ସଂ. ବି—ଢାଡ଼ିଫୁଟ୍ଟ; ପାଣିବସନ୍ତ— Ja<u>l</u>a-baraṇṭa Chicken-pox.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଦ୍ଭ | ଉଅ | ଉ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଅ | ୱ | ନ୍ |

ଜଳବଲ୍କଳ—ସଂ. ବି. (୬ଷ୍ଠୀ ତତ୍, ଜଳ+ବଲ୍କଳ)—
Ja<u>l</u>a-ba<u>l</u>ka<u>l</u>a ଦଳ; ବୋଉଷାଞ୍ଚି—Aquatic weeds floating over the surface of water; Salvinia Cucullata.

ଜଳବଲ୍ଲୀ—ସଂ. ବି. ( ୬ଷ୍ଠୀ ତତ୍; ଜଳ+ବଲ୍ଲୀ )—
Ja<u>l</u>a-ballī ଶୃଙ୍ଗାଟକ ବା ଶିଙ୍ଘଡ଼ା ଲତା—
The Water-chestnut creeper.

ଜଳବସ୍ତି—ସଂ. ବି—ନାଭି ବୁଡ଼ିବା ଭଳି ପାଣିରେ ବସି ଗୋଡ଼ର ଦୁଇ
Ja<u>l</u>a-basti ବୁଢ଼ା ଆଙ୍ଗୁଠି ଭୂମିରେ ଲଗାଇ ଶୂନ୍ୟରେ ଅବସ୍ଥିତ; ଦୁଇ ଗୁଲ୍ଫ ଉପରେ ଗୁହ୍ୟକୁ ଆକୁଞ୍ଚନ ପ୍ରସାରଣ କରିବା (ଏହାକୁ ଉତ୍କଟାସନ ମଧ୍ୟ ବୋଲାଯାଏ)—
An exercise consisting of sitting in water while expanding and contracting the anus.

ଜଳବାୟସ—ସଂ. ବି. ( ୬ଷ୍ଠୀ ତତ୍; ଜଳ+ବାୟସ )—
Ja<u>l</u>a-bāyasa ପାଣିକୁଆ ପକ୍ଷୀ—A black webfooted
कौड़िल्ला aquatic bird; the Cormorant.

ଜଳବାୟୁ—ସଂ. ବି. ( ଆଧୁନିକ ବ୍ୟବହାର; ଜଳ+ବାୟୁ )—
Ja<u>l</u>a-bāyu କୌଣସି ସ୍ଥାନର ଜଳ ଓ ବାୟୁର ବିଶେଷତ୍ୱ; (ଏହା
ଜଳବାୟୁ, ଜଳହାଓ୍ୱା ଉପରେ ଅଧିବାସୀଙ୍କର ସ୍ୱାସ୍ଥ୍ୟ ନିର୍ଭର କରେ)-
आबहावया Climate; the special incidents of the water and air of a locality.

ଜଳବାୟୁ ପରିବର୍ତ୍ତନ—ସଂ. ବି. ( ଆଧୁନିକ ବ୍ୟବହାର )—
Ja<u>l</u>abāyu paribarttana ଏକ ସ୍ଥାନର ଜଳବାୟୁ ଦ୍ୱାରା ଶରୀରର ସ୍ୱାସ୍ଥ୍ୟ ନଷ୍ଟ ହେଲେ ସ୍ୱାସ୍ଥ୍ୟପରିବର୍ତ୍ତନ ପାଇଁ ଉକ୍ତ ସ୍ଥାନରୁ ଅନ୍ୟ ସ୍ଥାନକୁ ବାସପରିବର୍ତ୍ତନ—
Change of climate; change of residence for the improvement of one's health.

ଜଳବାହ—ସଂ. ବିଣ. ( ଉପପଦ ତତ୍ପୁରୁଷ; ଜଳ+ବହ ଧାତୁ+କର୍ତ୍ତୃ.
Ja<u>l</u>a-bāha ଅ )—ପାଣି ବୁହାଳି; ଯେ ଏକ ସ୍ଥାନରୁ ଅନ୍ୟ
(ଜଳବାହକ—ଅନ୍ୟରୂପ) ସ୍ଥାନକୁ ପାଣି ବହେ—
Water-carrier.
ବି—ମେଘ—Cloud.

ଜଳବି—ଦେ. ବି—ଜିଲବି ( ଦେଖ )
Jalabi Jilibi ( See )

ଜଳବିନ୍ଦୁ—ସଂ. ବି. ( ୬ଷ୍ଠୀ ତତ୍; ଜଳ+ବିନ୍ଦୁ )—
Ja<u>l</u>a-bindu ୧। ପାଣିର ଟୋପା—1. Drop of water.
୨। ପାଣିର ଶୀକର—2. Fine drops of water; sprays of water.

ଜଳବିପ୍ରୁଷ—ଦେ. ବି. ( ସଂ. ଜଳ+ବିପ୍ରୁଷ୍=ଜଳବିନ୍ଦୁ )—
Ja<u>l</u>a-biprusha ଜଳବିନ୍ଦୁ—Drop of water.

ବିମଳଜଳ ସାଲୋପ୍ରିଳେ ଜଳ
ବିପ୍ରୁଷ ବି ପତ୍ରବାରେ ଚଳଚଳ । ଉଷ୍ଟ. ବୈଦେହୀଶବିଳାସ ।

ଜଳବିମ୍ବ—ସ ଉ. ( ୬ଷ୍ଠୀ ତତ୍; ଜଳ+ବିମ୍ବ )—ପାଣିଫୋଟକା—
Ja<u>l</u>a-bimba A bubble of water.

ଜଳବିଷୁବ—ସ. ବି—ତୁଳା ସଂକ୍ରାନ୍ତି—
Ja<u>l</u>a-bishuba The crossing of the sun over the boundary line between the Virgo and the Libra

ଜଳବୁଦ୍ବୁଦ—ସ. ବି. ( ୬ଷ୍ଠୀ ତତ୍; ଜଳ+ବୁଦ୍ବୁଦ )—
Ja<u>l</u>a-budbuda ଜଳବିମ୍ବ ( ଦେଖ )
Ja<u>l</u>a-bimba ( See )

ଜଳବୃଦ୍ଧି—ସ. ବି. ( ୬ଷ୍ଠୀ ତତ୍; ଜଳ+ବୃଦ୍ଧି )—
Ja<u>l</u>a-bruddhi ଜଳଦୋଷ ୧,୩ ( ଦେଖ )
Ja<u>l</u>a-dosha 1, 3 ( See )

ଜଳବୃଶ୍ଚିକ—ସ. ବି. ( ୬ଷ୍ଠୀ ତତ୍; ଜଳ+ବୃଶ୍ଚିକ )—
Ja<u>l</u>a-bruschika ଚିଙ୍ଗୁଡ଼ି ମାଛ; ବଗ୍ଗମାଳଆ ଚିଙ୍ଗୁଡ଼ି—
Prawn.

ଜଳବେଣୀ—ସ. ବି. ( ୬ଷ୍ଠୀ ତତ୍; ଜଳ+ବେଣୀ )
Ja<u>l</u>a-benī ଜଳର ଧାର; ଜଳସ୍ରୋତ—A current or continuous flow of water.

ଜଳବେତସ—ସ. ବି—ନଈପାଳଙ୍ଗ ଶୁକ୍ଲ; ପାଣିପାଳଙ୍ଗ; ପାଣି-
Ja<u>l</u>a-betasa ବେଶୁଳିଆ—A wild variety of Rumex
ସଂ. ନଦୀକୂଳପ୍ରିୟ, Vesircarius (growing on river-
ପରିବ୍ୟାଧ, ନିକୁଞ୍ଜକ banks ).
(ଜଳଵାନୀର—ଅନ୍ୟନାମ)
[ ଦ୍ର—ଏହା ପାଳଙ୍ଗ ଜାତୀୟ ଶାକଗୁଳ୍ମ; ନଈ କୂଳରେ ଜନ୍ମେ । ଏହା ଶୁଖିଲା ରୂପେ ପାଚନରେ ବ୍ୟବହୃତ ହୁଏ । ]

ଜଳବ୍ୟଥ—ସ. ବି—କଉ ମାଛ ( ଦ୍ର. ଶବ୍ଦସାଗର )—
Ja<u>l</u>a-byatha The Anabis fish.
(ଜଳବ୍ୟଧ—ଅନ୍ୟରୂପ)

ଜଳବ୍ୟାଳ—ସ. ବି—ପାଣିଧଣ୍ଡ ସାପ ( ଦ୍ର. ଶବ୍ଦସାଗର )—
Ja<u>l</u>a-byāla Water-serpent.

ଜଳବ୍ରାହ୍ମୀ—ସ. ବି. ସ୍ତ୍ରୀ.—ହିଡ଼ିମିଚ୍ଛ ଶାଗ (ଏହା ପାଣି କୂଳରେ ଜନ୍ମେ)-
Ja<u>l</u>a-brahmī An aquatic plant used as kichen-vegetable and medicine.

ଜଳଭୃତ୍—ସ. ବି. (ଜଳ+ଭୃ ଧାତୁ=ଧାରଣ କରିବା+କର୍ତ୍ତୃ. କ୍ୱିପ୍)—
Ja<u>l</u>abhrut ୧। ମେଘ—1. Cloud.
୨। କର୍ପୂରବିଶେଷ—2. A kind of camphor.
୩। ଜଳପାତ୍ର—4. A water-vessel.
ସ: ବିଣ.—ଯେ ଜଳକୁ ଧାରଣ କରେ—
Holding or containing water.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରୁତ ୧ ଯଙ୍କିତ ଅକ୍ଷର ଓ ମାତ୍ରା ଏବଂ ୨ ଅଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଯଙ୍କିତ କୌଣସି ବ ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଅଙ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'କ୍ଷ' ନ ମିଳିଲେ 'କ୍ଷ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍ ବଢ଼' ଦେଖିବେ ।

**ଜଳମଗ୍ନ**—ସଂ. ବିଣ. (୭ମୀ ତତ୍; ଜଳ+ମଗ୍ନ)—୧ । ପାଣିରେ ବୁଡ଼ିଯାଇଥିବା—1. Immersed or sunk in water
Jaḻa-magna
୨ । ପାଣି ଉପରେ ବୁଡ଼ି ରହିଥିବା—2. Lying below the surface of water.

**ଜଳମଧୂକ**—ସଂ ବି.—ଜଳାଶୟ ନିକଟରେ ଜନ୍ମିବା ଏକପ୍ରକାର ମହୁଆ ଗଛ—A kind of Mahuā tree growing near water.
Jaḻa-madhūka
ସଂ. ନାମ—ଦୀର୍ଘପତ୍ରକ, ହ୍ରସ୍ୱପୁଷ୍ପକ, ସ୍ୱାଦୁ, ଗୌଳିକା, ମଧୂଳିକା, କ୍ଷୌଦ୍ରପ୍ରିୟ, ପତଙ୍ଗ, କାରେଷ୍ଟ, ଗୌରିକାକ୍ଷ, ମାଂଗଲ୍ୟ, ମଧୁପୁଷ୍ପ
ଜଳମହୁଆ
**ଜଳମହୁଆ**
[ ଦ୍ର—ଏ ବୃକ୍ଷ ଦକ୍ଷିଣଭାରତର କୋଙ୍କଣ ଅଞ୍ଚଳରେ ଜନ୍ମେ । ଏହାର ପତ୍ର ମହୁଆ ପତ୍ର ଠାରୁ ବଡ଼ ଓ ଫୁଲ ସାନ । ବୈଦ୍ୟଶାସ୍ତ୍ର ମତରେ ଏହା ଶୀତଳ, ବ୍ରଣନାଶକ, ବଳବୀର୍ଯ୍ୟବର୍ଦ୍ଧକ, ରସାୟନ ଓ ବମନ ନିବାରକ,—ହି. ଶବ୍ଦସାଗର ।]

**ଜଳମନ୍ଦିର**—ସଂ ବି. (୭ମୀ ତତ୍; ଜଳ+ମନ୍ଦିର)—ଗ୍ରୀଷ୍ମ କାଳରେ ଶାନ୍ତି ଓ ଶୀତଳତା ଲାଭ ନିମନ୍ତେ ନିର୍ମିତ ହୋଇଥିବା ଚତୁର୍ଦ୍ଦିଗରେ ଜଳବେଷ୍ଟିତ ଗୃହ ବା ମଣ୍ଡପ—A summer-house surrounded by water.
Jaḻa-mandira

**ଜଳମୟ**—ସଂ. ବିଣ.—(ଜଳ+ପ୍ରାଚୁର୍ଯ୍ୟାର୍ଥେ. ମୟ)—ଜଳପୂର୍ଣ୍ଣ; ଜଳପ୍ଲାବିତ—Overflowing with or full of water; watery.
Jaḻamaya

**ଜଳମଳ**—ସଂ. ବି. (୬ଷ୍ଠୀ ତତ୍; ଜଳ+ମଳ)—ଫେଣ—Foam.
Jaḻa-mala

**ଜଳମସି**—ସଂ. ବି. (୬ଷ୍ଠୀ ତତ୍; ଜଳ+ମସି)—୧ । ମେଘ—1. Cloud.
Jaḻa-masi
୨ । ଏକ ପ୍ରକାର କର୍ପୂର—2. A kind of camphor.

**ଜଳମାତୃକା**—ସଂ. ବି. (ମ. ପ. ଲୋ; ଜଳ+ମାତୃକା)—ଜଳରେ ବାସ କରୁଥିବା ୭ଟି ଦେବୀ—A class of female Deities supposed to live in water.
Jaḻa-mātṛukā
[ ଦ୍ର—ଏମାନଙ୍କ ନାମ ମତ୍ସୀ, କୂର୍ମୀ, ବାରାହୀ, ଦର୍ଦୁରୀ, ମକରୀ, ଜଳୂକା ଓ ତନ୍ତୁକା—ହି. ଶବ୍ଦସାଗର ।]

**ଜଳମାନୁଷ**—ସଂ. ବି. (ମ. ପ. ଲୋ; ଜଳ+ମାନୁଷ)—ଏକ କଳ୍ପିତ ଜଳଜନ୍ତୁ, ଯାହା ଦେହର ନାଭି ଠାରୁ ଉପରଭାଗ ମନୁଷ୍ୟ ପରି ଓ ତଳ ଅଂଶ ମାଛ ପରି (ହି. ଶବ୍ଦସାଗର)—A nymph said to have the upper half of the body resembling human limbs and the lower half resembling a fish; water-nymph.
Jaḻa-manusha
(ଜଳମାନୁଷୀ—ସ୍ତ୍ରୀ)

**ଜଳମାର୍ଗ**—ସଂ. ବି.—୧ । (୬ଷ୍ଠୀ ତତ୍; ଜଳମାର୍ଗ)—ଜଳ ବୋହିଯିବା ବାଟ; ପାଣିବାହାରିଯିବାର ନଳା—1. Water-course; water-channel or drain.
Jaḻa-mārga
୨ । (୭ମୀ ତତ୍) ଜଳପଥ; ସମୁଦ୍ର ଓ ନଦୀଆଦିଦ୍ୱାରା ଯିବା ଆସିବା ପଥ—2. Passage by water; voyage.

**ଜଳମାର୍ଜାର**—ସଂ ବି. (୬ଷ୍ଠୀ ତତ୍; ଜଳ+ମାର୍ଜାର)—ଓଧ—Otter.
Jaḻa-mārjāra

**ଜଳମୁକ୍**—ସଂ. ବି. (ଜଳ+ମୁଚ ଧାତୁ=ତ୍ୟାଗ କରିବା+କର୍ତ୍ତୃ. କ୍ୱିପ୍, ଜଳମୁଚ୍ ଶବ୍ଦ ୧ମା. ୧ବ.)—ମେଘ—Cloud.
Jaḻamuk
ସଂ. ବିଣ—ଜଳମୋଚନକାରୀ—Emitting water.

**ଜଳମୂର୍ତ୍ତି**—ସଂ. ବି. (ବହୁବ୍ରୀହି; ଜଳ+ମୂର୍ତ୍ତି; ମହାଦେବଙ୍କର ଆଠ ମୂର୍ତ୍ତି ମଧ୍ୟରୁ ଗୋଟିଏ ଜଳମୟୀ ମୂର୍ତ୍ତି ଥିବାରୁ)—ମହାଦେବ; ଶିବ—Śiba.
Jaḻa-mūrtti

**ଜଳମୂର୍ତ୍ତିକା**—ସଂ. ବି—କରକା; ଭୁଆପଥର—Hail-stone.
Jaḻa-mūrttikā

**ଜଳଯନ୍ତ୍ର**—ସଂ. ବି (୬ଷ୍ଠୀ ତତ୍; ଜଳ+ଯନ୍ତ୍ର)—
Jaḻajuntra
୧ । ପାଣି ଉଠାଇବା ଯନ୍ତ୍ର—1. A machine for lifting water.
୨ । ପାଣିଦ୍ୱାରା ଚାଳିତ ଯନ୍ତ୍ର—2. Water-engine; water-mill.
୩ । ଜଳଘଡ଼ି; ଜଳଦ୍ୱାରା ନିୟନ୍ତ୍ରିତ ଘଡ଼ି—3. Water-clock; a clepsydra.
୪ । ଜଳ ଛାଣିବାର ଯନ୍ତ୍ର—4. A filter.
୫ । ପିଚକାରୀ—5. Syringe

ବହଇ ଦକ୍ଷିଣ ପବନ
ଛାଡ଼ିଲେ ଜଳଯନ୍ତ୍ରମାନ—ଭୂପତି, ପ୍ରେମପଞ୍ଚାମୃତ ।

୬ । ଜଳଦ୍ୱାରା ଚାଳିତ ପାଣିର ଫୁଆର—6. Mechanically contrived jets or springs of water.

ଦେ. ବି—ଖଟ ବା ସିନ୍ଦୁକ ଇତ୍ୟାଦି ଉପରକୁ ପିମ୍ପୁଡ଼ି ଓ ଜନ୍ତା ଉଠି ନ ପାରିବେ ଏଥିପାଇଁ ସେହିର ଗୋଡ଼ ତଳେ ଦିଆ ଯାଇଥିବା ଜଳପୂର୍ଣ୍ଣ ପଥରକୁଣ୍ଡୀ—Stone saucers full of water on which the posts of bedsteads and safes etc are put to prevent ants from infesting them.
ଜଳଯନ୍ତ୍ର
**ଜଳଯନ୍ତାର୍**

**ଜଳଯନ୍ତ୍ର ଗୃହ**—ସଂ. ବି—୧ । ଜଳଦୁର୍ଗ—1. A pleasure-house in the midst of water.
Jaḻa-jantra gṛuha
୨ । ଜଳର ଫୁଆରାଯୁକ୍ତ ଗୃହ—2. A house with dancing jets of water in it for summer use.
୩ । ଚାରିପାଖେ ଜଳ ବେଢ଼ିଥିବା ଆରାମ ଗୃହ—3. A house surrounded with water.
[ ଦ୍ର—ଖରାଦିନେ ଏ ଘରେ ରହିଲେ ଥଣ୍ଡା ଲାଗେ । ]

**ଜଳଯନ୍ତ୍ରପୁର**—ସଂ. ବି—ଜଳଯନ୍ତ୍ର ଗୃହ (ଦେଖ)
Jaḻa-jantra-pura
Jaḻa-jantra gṛuha (See)
(ଜଳଯନ୍ତ୍ରମନ୍ଦିର—ଅନ୍ୟରୂପ)

ଜଳଯନ୍ତ୍ରପୁରେ ସମା ସଙ୍ଗତରେ ବସି
ହେଉଥାଇ ବନ—ଭଞ୍ଜ. ପ୍ରେମସୁଧାନିଧି ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇପ୍ | ଢ଼ିଅ | ଋ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ |

**ଜଳଯାତ୍ରା**—ସଂ. ବି. (ଜଳ+ଯାତ୍ରା)—
Jala-jātrā ୧ । (୭ମୀ ତତ୍;) ଜଳପଥରେ ଗମନ—1. A voyage.
୨ । (୪ର୍ଥୀ ତତ୍) ଜଳ ଆଣିବା ପାଇଁ ଯିବା—
2. Going to fetch water.
୩ । ଅଭିଷେକ ଆଦି ପାଇଁ ତୀର୍ଥରୁ ପବିତ୍ର ଜଳ ଆଣିବା ପାଇଁ ଗମନ—3. Starting for bringing water from certain sacred centres for the purpose of installation-bath.
୪ । ବୈଷ୍ଣବମାନଙ୍କର ଜ୍ୟୈଷ୍ଠ ପୂର୍ଣ୍ଣିମା ଦିନ ଅନୁଷ୍ଠିତ ଉତ୍ସବ—4. A festival observed amongst the Baishnabas on the full-moon of Jyaistha.
[ ଦ୍ର—ଏହିଦିନ ବିଷ୍ଣୁ ମୂର୍ତ୍ତିଙ୍କୁ ଶୀତଳ ଜଳରେ ସ୍ନାନ କରାଯାଏ । ]
୫ । ଦେବଉତ୍ଥାପନ (କାର୍ତ୍ତିକ ଶୁକ୍ଳ) ଏକାଦଶୀର ପରବର୍ତ୍ତୀ ଚତୁର୍ଦ୍ଦଶୀ ଦିନ ରାଜପୁତାନାରେ ଅନୁଷ୍ଠିତ ଉତ୍ସବବିଶେଷ—5 A festival observed in Rājaputānā on the 14th day of Kārtika (light half).
[ ଦ୍ର—ଏହିଦିନ ଉଦୟପୁରର ରାଣା ସରଦାରମାନଙ୍କ ସହିତ ଖୁବ୍ ସମାରୋହରେ କୌଣସି ହ୍ରଦ ନିକଟକୁ ଯାଇ ସେଠାରେ ଜଳଦେବତାଙ୍କ ପୂଜା କରନ୍ତି । ହି. ଶବ୍ଦସାଗର ]

**ଜଳଯାତ୍ରୀ**—ସଂ. ବି. (ଜଳଯାତ୍ରା+ଇନ୍; ୧ମା. ୧ବ.)—ଜଳପଥରେ
Jala-jātri ଗମନକାରୀ ବ୍ୟକ୍ତି—A voyager.

**ଜଳଯାନ**—ସଂ. ବି (୬ଷ୍ଠୀ ତତ୍; ଜଳ+ଯାନ)—ଜଳପଥରେ ଯିବା
Jala-jāna ଆସିବା ପାଇଁ ବ୍ୟବହୃତ ନୌକା ଆଦି—
Boat; vessel; a ship.

**ଜଳଯୋଗ**—ସଂ. ବି. (ଆଧୁନିକ ପ୍ରୟୋଗ) —ଜଳଖିଆ—
Jala-joga Light refreshment; luncheon; tiffen.

**ଜଳରଙ୍କ**—ସଂ. ବି. (ବହୁବ୍ରୀହି; ଜଳ+ରଙ୍କ)—ବଗ—
Jala-raṅka The Ardea Nivea, an aquatic bird

**ଜଳରଙ୍କୁ**—ସଂ. ବି. (ଜଳ+ରଙ୍କୁ)—ଦାତ୍ୟୂହ ବା ଡାହୁକ ପକ୍ଷୀ—
Jala-raṅku An aquatic bird; Tringa Geonsis; the water-hen.

**ଜଳରଣ୍ଡ**—ସଂ. ବି—୧ । ପାଣିଭଉଁରୀ (ହି. ଶବ୍ଦସାଗର)
Jala-raṇḍa 1. Eddy; whirlpool.
୨ । ଜଳକଣା—2. Particles of water.
୩ । ସାପ (ହି ଶବ୍ଦସାଗର)—3. Serpent.

**ଜଳରଥ**—ସଂ. ବି. (୬ଷ୍ଠୀ ତତ୍; ଜଳ+ରଥ)—ନୌକା—
Jala-ratha Boat.
ମଉକତ ଜଳରଥ ପତନ
ମଧ୍ୟ ସନ୍ତରି ଉହ୍ଲଳ ଚଳନ—ଭକ୍ତ. ପ୍ରେମସୁଧାନିଧି ।

**ଜଳରସ**—ସଂ. ବି. (ବହୁବ୍ରୀହି; ଜଳ ଅଟେ ରସ=ସାର ଭାଗ
Jala-rasa ଯହିଁରେ)—ଲବଣ—Salt.

**ଜଳରୁଦ୍ରି**—ଗ୍ରା. ବି. (ସଂ. ଜଳୋଦର)—ଉଦରୀ ରୋଗ—
Jala-rudri Dropsy.
ଜଳରୁଦର
ଜଳରୁଦ୍ରର } ଅନ୍ୟରୂପ

**ଜଳରୁହ**—ସଂ. ବି. (ଉପପଦ ତତ୍ପୁରୁଷ; ଜଳ+ରୁହ ଧାତୁ+କର୍ତ୍ତୃ.
Jala-ruha ଅ)—ଜଳଜ; ପଦ୍ମ—Lotus.
ବିଣ—ଜଳଜାତ—Produced from water; growing on water.

**ଜଳରୋଦରି**—ଗ୍ରା. ବି—ଜଳରୁଦ୍ରି (ଦେଖ)
Jala-rodari Jalarudri (See)
ଜଳରୋଦର
ଜଳରୋଦୁର } ଅନ୍ୟରୂପ

**ଜଳଲତା**—ସଂ. ବି. (ଉପମିତ କର୍ମଧାରୟ; ଜଳ+ଲତା)—
Jala-latā ଢେଉ—Wave; billow.

**ଜଳଲଗୀ**—ଦେ. ବି. (ସଂ. ଜଳ+ଲଗ୍ ଧାତୁ)—
Jala-lāgi ଦେବବିଗ୍ରହଙ୍କ ଉପରେ ପାଣି ଢାଳିବା—
Pouring out of water on the image of a Deity.
ଦେ. ବିଣ—ଯେଉଁ ବିଗ୍ରହ ଉପରେ ପାଣି ଢଳା ଯାଉଥାଏ—
(image) On which water in being poured out.

**ଜଳଶାୟୀ**—ସଂ. ବିଣ. (ଜଳ+ଶୀ ଧାତୁ+ଇନ୍; ୧ମା. ୧ବ. ଯେ ଜଳ
Jala-śāyi ଉପରେ ଶୁଏ)—ଜଳ ଉପରେ ଶୟନ କରିଥିବା—
(ଜଳଶାୟିନୀ—ସ୍ତ୍ରୀ) Lying on water.
ବି—ପ୍ରଳୟଜଳ ଉପରେ ଶାୟିତ ବିଷ୍ଣୁ—
Bishṇu floating on the surface of the Universal Deluge.
ଦେ. ବି—ଶିବଲିଙ୍ଗ ବା ଅନ୍ୟ ଦେବବିଗ୍ରହଙ୍କୁ ପାଣିରେ ବୁଡ଼ାଇ ରଖିବା—Keeping the image of a Deity immersed in water; dipping of an image in water.
ଦେ. ବିଣ—ପାଣିରେ ବୁଡ଼ାଇ ରଖାଯାଇ ଥିବା (ଦେବବିଗ୍ରହ)—
(an image) Kept immersed or dipped n water.

**ଜଳଶୀକର**—ସଂ. ବି. (୬ଷ୍ଠୀ ତତ୍; ଜଳ+ଶୀକର)—
jala-śikara ପାଣିର କ୍ଷୁଦ୍ର କଣା—
Particles or sprays of water.

**ଜଳଶୁକ୍ତି**—ସଂ. ବି. (୬ଷ୍ଠୀ ତତ୍; ଜଳ+ଶୁକ୍ତି)—ଶାମୁକା—
Jala-śukti Oyster.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

ଜଳଶୂକ—ସଂ. ବି—ଶୈବାଳ—
Jal̲a-śuka Moss.

ଜଳଶୂକର—ସଂ. ବି. (୭ମୀ ତତ୍; ଜଳ+ଶୂକର)—କୁମ୍ଭୀର—
Jal̲a-śūkara Alligator.

ଜଳସତ୍ର—ସଂ. ବି. ( ୬ଷ୍ଠୀ ତତ୍; ଜଳ+ସତ୍ର )—ପାଣିଛତ୍ର;
Jal̲a-satra ଯେଉଁଠାରେ ତୃଷାର୍ତ୍ତ ବ୍ୟକ୍ତିମାନଙ୍କୁ ଜଳ ବିତରଣ କରାଯାଏ—A place for distributing water free to the thirsty.

ଜଳସର୍ପିଣୀ—ସଂ. ବି. ( ଜଳ+ସୃପ ଧାତୁ+କର୍ତ୍ତୃ. ଇନ୍; ସ୍ତ୍ରୀ. ଈ )—
Jal̲a-sarpiṇi ଜୋକ—Leech.

ଜଳସା—ବୈଦେ. ବି. ( ଆ. ଜଲ୍‌ସା )—
Jalasā ୧ । ମହୋତ୍ସବ—1. A big festival; festivity.
জলসা
जलसा ୨ । ମଜଲିସ୍; ମହୋତ୍ସବ—2. A big feast.
୩ । ସମ୍ମିଳନୀ—3. A big gathering.
୪ । ମଜଲିସ୍—4 A show.

ଜଳସାଇ—ଦେ. ବି ଓ ବିଣ. ( ସ. ଜଳଶାୟୀ )—
Jal̲a-sāi ଜଳଶାୟୀ ( ଦେଖ )
Jal̲aśāyī ( See )

ଜଳସାତ୍—ଦେ. ବିଣ. ( ଜଳ+ପରିଣତ ଅର୍ଥରେ ସାତ୍ )—
Jal̲a-sāt ୧ । ଜଳରେ ନିକ୍ଷିପ୍ତ—
1. Thrown into water.
୨ । ଜଳରେ ପରିଣତ—
2. Turned into water; liquified.

ଜଳସାତ—ଦେ. ବିଣ. ( ସଂ. ଜଳସାତ୍ )—ଜଳସାତ୍ ( ଦେଖ )
Jal̲a-sāta Jal̲asāt ( See )

ଶୋଭନା-ହସ୍ତିନା-ରୌପ୍ୟ ରସନା-ଜାହ୍ନବୀ—
ଜଳେ ଯଜ୍ଞାନଳ ତହିଁ କଲେ ଜଳସାତ । ରାଧାନାଥ. ମହାଯାତ୍ରା ।

ଜଳସିଂହ—ସଂ. ବି. ପୁଂ. ( ଆଧୁନିକ ବ୍ୟବହାର )—
Jal̲a-siṁha ଭିମି ଜାତୀୟ ଜଳଜୀବବିଶେଷ—
(ଜଳସିଂହୀ—ସ୍ତ୍ରୀ) Sea-lion.
[ ଦ୍ର—ଏମାନେ ଆକାରରେ ୧୫ ହାତ ପର୍ଯ୍ୟନ୍ତ ବଢ଼ନ୍ତି । ଏମାନଙ୍କ ଦେହସାରା ହଳଦିଆ ମିଶା କଳା ଲୋମରେ ପୂର୍ଣ୍ଣ ଓ ବେକ ଉପରେ ସିଂହର କେଶର ପରି ଲମ୍ବ ବାଳ ଥାଏ; ଏମାନେ ଶାନ୍ତ-ପ୍ରକୃତିକ, କିନ୍ତୁ ଆକ୍ରମଣକାରୀ ପ୍ରତି ବିଶେଷ ବଳ ପ୍ରକାଶ କରନ୍ତି । ଏମାନେ ଦଳବଦ୍ଧ ହୋଇ ଆମେରିକା ଓ ଆସିଆ ନିକଟସ୍ଥ ପ୍ରଶାନ୍ତ ମହାସାଗରରେ ଦେଖା ଯାଆନ୍ତି । ହି. ଶବ୍ଦସାଗର । ]

ଜଳସିକ୍ତ—ସଂ. ବିଣ. ( ତୃତୀୟା ତତ୍; ଜଳ+ସିକ୍ତ )—
Jal̲a-sikta ୧ । ପାଣି ଛିଞ୍ଚା ହୋଇଥିବା; ଯାହା ଉପରେ ପାଣି ଛିଞ୍ଚା ହୋଇଅଛି—1. Sprinkled with water.
୨ । ଆର୍ଦ୍ର—2. Moistened; wet

ଜଳସେଇ—ଗ୍ରା. ବି ଓ ବିଣ. ( ସଂ. ଜଳଶାୟୀ )—
Jal̲a-sei ଜଳଶାୟୀ ( ଦେଖ )
Jal̲a-śāyī ( See )

ଜଳସେକ—ସଂ. ବି. ( ୩ୟା ତତ୍; ଜଳ+ସେକ )—
Jal̲a-seka ୧ । ପାଣି ଛିଞ୍ଚିବା—1. Sprinkling of water.
୨ । କନାକୁ ଗରମ ପାଣିରେ ବୁଡ଼ାଇ ଚିପୁଡ଼ି ତହିଁରୁ ବାମ୍ଫ ବାହାରୁଥିବା ଅବସ୍ଥାରେ ତଦ୍ୱାରା ଶରୀରକୁ ସେକିବା—
2. Fomentation with hot water; wet fomentation.

ଜଳସ୍ତମ୍ଭ—ସଂ. ବି. ( ୬ଷ୍ଠୀ ତତ୍; ଜଳ+ସ୍ତମ୍ଭ )—
Jal̲a-stambha ନଦୀ ଓ ସମୁଦ୍ରର ଗର୍ଭରୁ ଉଠି ବା କମ୍ପା ତହିଁରେ ମେଘରୁ ପତିତ ପ୍ରକାଣ୍ଡ ସ୍ତମ୍ଭାକାର ଜଳରାଶି ( ଏହା ଗୋଟିଏ ପ୍ରକୃତ ନୈସର୍ଗିକ ଘଟଣା )—
A water-spout; a moving column of water ( a natural phenomenon).

ଜଳସ୍ପର୍ଶ—ସଂ. ବି. (୬ଷ୍ଠୀ ତତ୍; ଜଳ+ସ୍ପର୍ଶ)—୧ । ପାଣିକୁ ସ୍ପର୍ଶକରିବା
Jal̲asparśa ବା ଛୁଇଁବା—1. Touching of water.
୨ । ପାଣି ପିଇବା—2. Drinking of water.
( ଯଥା—ମୁଁ ତାଙ୍କ ଘରେ ଖାଇବା କଥା ଦୂରେ ଥାଉ, ସେ ଗ୍ରାମରେ ଜଳସ୍ପର୍ଶ କି କରିବି ନାହିଁ ।)

জলস্পর্শ ଦେ. ବିଣ. (ସଂ. ଜଳ+ସ୍ପୃଶ୍ୟ) ଯେଉଁ ଉଚ୍ଚଶ୍ରେଣୀର
जलस्पर्श ଶୂଦ୍ରଜାତିର ସ୍ପୃଷ୍ଟ ଜଳ ବ୍ରାହ୍ମଣାଦି ଉଚ୍ଚଜାତି ବ୍ୟବହାର କରନ୍ତି; ପାଣିଛୁଆଁ (ଉଚ୍ଚ ଶୂଦ୍ର ଜାତି)—
(a Śūdra of high caste) The water touched by whom can be used by Brahmans and other high caste people.

ଜଳସ୍ରୋତଃ—ସଂ. ବି. (୬ଷ୍ଠୀ ତତ୍; ଜଳ+ସ୍ରୋତସ୍)—
Jal̲a-srotaḥ ଜଳପ୍ରବାହ (ଦେଖ)
Jal̲a-prabāha ( See)

ଜଳହସ୍ତୀ—ସଂ. ବି—ହସ୍ତୀସଦୃଶ କ୍ଷୁଦ୍ରାକୃତିନେତ୍ରବିଶିଷ୍ଟ ଜଳଜନ୍ତୁବିଶେଷ—
Jal̲a hastī A sea elephant; the hippopotamus.
(ଜଳହସ୍ତିନୀ—ସ୍ତ୍ରୀ) [ ଦ୍ର—ଏମାନେ ସୀଲ୍‌ଜାତୀୟ ଓ ସ୍ତନ୍ୟପାୟୀ । ଏମାନେ ଲମ୍ବରେ ୧୫ ହାତ ପର୍ଯ୍ୟନ୍ତ ଓ ଉଚ୍ଚରେ ୩ ହାତ ପର୍ଯ୍ୟନ୍ତ ବଢ଼ନ୍ତି; ଏମାନଙ୍କ ଚମଡ଼ା କଳା, ମୋଟ, ମସୃଣ ଓ ଲୋମହୀନ; ମୁହଁ ଉପର ପାଖେ ୧୬ ଓ ତଳପାଖେ ୧୪ ଦାନ୍ତ ଥାଏ । ଏମାନେ ଦକ୍ଷିଣ ମହାସାଗର, ଭୂମଧ୍ୟସାଗର ଓ ନୀଳନଦରେ ଦେଖା ଯାଆନ୍ତି । ୧୫।୨୦ ମାଈଙ୍କ ଦଳରେ ଗୋଟିଏ ଅଣ୍ଡିରା ଜଳହସ୍ତୀ ଥାଏ । ଅଣ୍ଡିରା ଜଳହସ୍ତୀର ଉପର ଓଠ ହାତିଶୁଣ୍ଢ ପରି ଅଧଫୁଟେ ଆଗକୁ ବାହାରି ଥାଏ । ଏମାନେ ସମୁଦ୍ରର ଉଦ୍ଭିଜ୍ଜାଦି ଖାଆନ୍ତି । ଏହାର ମାଂସ କଳା ଓ ବହୁତ ଚର୍ବିମିଶା ଥିବାରୁ ଅଖାଦ୍ୟ ।

| ୧ | ଚ | ଡ | ର,ର୍‌ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଧ୍‌ | ଋଈ | ଔ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ର୍ଧ୍ୟ | ଇଥ | ଢ଼ | ନ୍‌ |

ଏହାର ଚର୍ବିରେ ମହମବତୀ ତିଆରି ହୁଏ । ପାଳଲେ ଏ ପୋଷ-ମାନିବାର ଦେଖା ଅଛି—ହି. ଶବ୍ଦସାଗର । ]

ଜଳହାସ—ସଂ. ବି. (୬ଷ୍ଠୀ ତତ୍‌; ଜଳ+ହାସ)—ଫେଣ—
Jala-hāsa Foam.

ଜଳା—ଦେ. ବିଣ. (ସଂ. ଜଳାଶୟ)—ଜଳମୟ—Watery; water-
Jalā logged; swampy; marshy (land).
জলা (ଯଥା—ଜଳା ଭୂଇଁ)

दलदल ,,ଦେ. ବି. (ସଂ. ଜାଲ)—୧ । ଛିଦ୍ର; ରନ୍ଧ୍ର—
1. Hole; loop-hole.

ଜଳାକବାଟର ଯେ ଜଳାରେ ପଶୀର
ବୋଳଲେ ବହିବାକୁ ଶୀତଳ ସମୀର । କୃଷ୍ଣସିଂହ. ମହାଭାରତ. ବନ ।

জ্বালা ୨ । (ସଂ. ଜ୍ୱାଳା) ଦେହ ଜଳାପୋଡ଼ା କରିବା —
जलन 2. Burning sensation; inflammation.

ଜଳା—ଦେ. ବି—ଜହ୍ଲା (ଦେଖ)
Jalā Jahlā (See)

ଜଳା(ଳେ)ଇବା—ଦେ. କ୍ରି. (ସଂ. ଜ୍ୱଲ୍ ଧାତୁ)—
Jalā(e)ibā ୧ । ପ୍ରଜ୍ୱଳିତ କରିବା, ନିଆଁ ଲଗାଇବା—
জ্বালান; জালান 1. To light up; to set fire to; to
जालना; जहाना kindle up.
(ଯଥା—ଦୀପ ଜଳାଇବା, ଚୂଲି ଜଳାଇବା ।)
୨ । ଅଗ୍ନିକୁ ତେଜିବା—2. To blaze a fire.
୩ । (ଲକ୍ଷଣାର୍ଥ) ଜ୍ୱାଳା ଦେବା; ବିରକ୍ତ କରିବା—
3. (figurative) To torment; to vex; to cause pain.
୪ । ପୋଡ଼ି ଦେବା—4. To burn up; to cremate.
(ଯଥା—ଶବ ଜଳାଇବା ।)

ଜଳାକବାଟ—ଦେ. ବି. (ସଂ. ଜାଲକବାଟକା)—ଝରକା; ଗବାକ୍ଷ —
Jalā-kabāṭa Window; latticed window.
ঝরকা; ঝরোকা
जाली; झरोखा

ଜଳାକବାଟି—ଦେ. ବି. (ସଂ. ଜାଲକବାଟିକା)—ଜଳାକବାଟ (ଦେଖ)
Jalā-kabāṭi Jalā-kabāṭa (See)

ତା ଦେଖି ବାତୁଳଭଳି ମୂର୍ଚ୍ଛି
ଜଳାକବାଟ ବାଟେ ଗଲି । ଜଗନ୍ନାଥ. ଭାଗବତ ।

ଜଳାକା—ସଂ. ବି. ସ୍ତ୍ରୀ. (ଜଳ+ଅକ୍ ଧାତୁ=ଗମନ କରିବା+କର୍ତ୍ତୃ. ଅ+
Jalākā ସ୍ତ୍ରୀ. ଆ)—ଜଳୌକା; ଜୋକ—Leech.

ଜଳାଖୁ—ସଂ. ବି. (୬ଷ୍ଠୀ ତତ୍‌; ଜଳ+ଆଖୁ=ବିରାଡ଼ି)—
Jalākhu ଜଳମାର୍ଜାର; ଓଧ—Otter.

ଜଳାଗବାକ୍ଷ—ଦେ. ବି. (ସଂ. ଜାଲ+ଗବାକ୍ଷ)—ଜଳାକବାଟ (ଦେଖ)
Jalā-gabāksha Jalā-kabāṭa (See)

କୁଳବଧୂମାନେ ଜଳାଗବାକ୍ଷରେ ଗଲି । ଶିଶୁଶଙ୍କର ଉଷାଅଭିଳାଷ ।

ଜଳାଙ୍କ—ସଂ. ବି. (ଆଧୁନିକ ବ୍ୟବହାର; ଭୂଗୋଳପରିଭାଷା )—
Jalāṅka ଯେଉଁ ଅଞ୍ଚଳରୁ ବର୍ଷାପାଣି ଗଡ଼ି ଆସି କୌଣସି ନଦୀରେ ପଡ଼େ—Water-shed.

ଜଳାଞ୍ଜଳି—ସଂ. ବି. (୬ଷ୍ଠୀ ତତ୍‌, ଜଳ+ଅଞ୍ଜଳି)—
Jalāñjali ୧ । ପାଣିର ଅଞ୍ଜୁଳା; ଅଞ୍ଜଳିପରିମିତ ଜଳ—
1. A foldful of water; as much water as can be contained in the cupped palms of both the hands.
୨ । ଜଳତର୍ପଣ ସମୟରେ ପିତୃଲୋକଙ୍କ ଉଦ୍ଦେଶ୍ୟରେ ଅର୍ପିତ ଜଳ—2. Libations of handfuls of water offered to the manes.
୩ । ଶବଦାହ ପରେ ମୃତ ବ୍ୟକ୍ତିର ପ୍ରେତ ଉଦ୍ଦେଶ୍ୟରେ ଦିଆଯିବା ପାଣିର ଅଞ୍ଜୁଳା—3. Handful of water offered to the departed soul of a person during his obsequal rites.
୪ । (ଲକ୍ଷଣାର୍ଥ) (ଯେଉଁ ମୃତବ୍ୟକ୍ତି ଉଦ୍ଦେଶ୍ୟରେ ଜଳାଞ୍ଜଳି ଦିଆଯାଏ ତା ସଙ୍ଗେ ଜଳାଞ୍ଜଳିଦାତା ସଂବନ୍ଧ ତ୍ୟାଗ କରିଥିବା ଦୃଷ୍ଟିରେ) କୌଣସି ବିଷୟ ସଙ୍ଗେ ସମ୍ବନ୍ଧ ତ୍ୟାଗ—
4. Cutting off all connection with any thing.
(ଯଥା—ସେ ଟୋକାଟା ପଢ଼ାପଢ଼ିକୁ ଜଳାଞ୍ଜଳି ଦେଲାଣି ।)

ଜଳାଞ୍ଜଳି ଦେବା—ଦେ. କ୍ରି.—୧ । ପାଣିର ଅଞ୍ଜୁଳା ଦେଇ ତର୍ପଣ
Jalāñjali debā କରିବା—1. To cut off libations of
জলাংজলি দেওয়া water to the manes by handfuls.
୨ । (ଲକ୍ଷଣାର୍ଥ)—ସମ୍ବନ୍ଧ ପରିତ୍ୟାଗ କରିବା—
2. (figurative) To give up all connection with; to wash one's hands free of a
जलांजलि देना matter; to abandon any work.
(ଯଥା:—ନନ୍-କୋ-ଅପରେସନରେ ମାତିବା ଦିନରୁ ମୁଁ ପଢ଼ାରେ ଜଳାଞ୍ଜଳି ଦେଲିଣି ।)
୩ । (ଲକ୍ଷଣାର୍ଥ) ବିଦାୟ ଗ୍ରହଣ କରିବା—3. (figurative) To bid goodbye or farewell to.

ଜଳାତଙ୍କ—ସଂ. ବି. (ବହୁବ୍ରୀହି; ଜଳରେ ଆତଙ୍କ, ଯହିଁରେ ଅର୍ଥାତ୍ ଯେଉଁ
Jalātaṅka ରୋଗରେ ଜଳ ଦେଖିଲେ ଆତଙ୍କ ହୁଏ)—ରୋଗ-ବିଶେଷ—Hydrophobia.
[ଦ୍ର—ପାଗଳା ବିଲୁଆ ବା କୁକୁର କାମୁଡ଼ିଲେ ମନୁଷ୍ୟର ଏ ରୋଗ ହୁଏ । ରୋଗୀ ପାଣି ଦେଖିଲାକ୍ଷଣି ଡରେ ।]

ଜଳାତନ—ଦେ. ବିଣ. (ସଂ. ଜ୍ୱାଳା; ବଙ୍ଗଳାରୁ ଅନୁକୃତ)—୧ । ଅତିଶୟ
Jalātana ବିରକ୍ତ—1. Much worried; bothered.
জ্বালাতন ୨ । ଅତିଶୟ କଷ୍ଟପ୍ରାପ୍ତ—2. Distressed.
तङ्ग

ସାଧାରଣ ଲୋକେ ଅପର ପୃଷ୍ଠାରେ ସହିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୃଥ ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୂ' ଦେଖିବେ; ଅର୍ଗ୍ୟା ନ ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜଳାତି**—ଦେ. ବି. (ସଂ. ଜଳାତ୍ୟୟ)—ଶରତ୍‌କାଳ—
Jalāti — Autumn; end of the rains.

ବାଳା ଜଳାତିଳଗିଲା ନୂଆଭରଣ କୋମଳା ଜଳାଡନମିଳାଡବସ୍ଥଳା ।
ବଳବଧ୍ୟିଂ ସଙ୍ଗୀତ ।

**ଜଳାତ୍ୟୟ**—ସଂ. ବି.—(ବହୁବ୍ରୀହି; ଜଳ+ଅତ୍ୟୟ)—୧ । ଶରତ୍‌କାଳ—
Jalātyaya — 1. Autumn.

୨ । ଜଳନିଃସରଣ—
2. The flowing or coming out of water.

**ଜଳାଧାର**—ସଂ. ବି. (୬ଷ୍ଠୀ ତତ୍; ଜଳ+ଆଧାର)—୧ । ଜଳପାତ୍ର—
Jalādhāra — 1. A vessel or receptacle of water.

୨ । ଜଳାଶୟ; ପୋଖରୀ—
2. Tank; reservoir of water; pond.

୩ । ସମୁଦ୍ର—3. The sea.

ସଂ. ବିଣ.—(ବହୁବ୍ରୀହି)—ଜଳସ୍ଥିତ—
Situated in water.

**ଜଳାଧିପ**—ସଂ. ବି. (୬ଷ୍ଠୀ ତତ୍; ଜଳ+ଅଧିପ)—୧ । ବରୁଣ—
Jalādhipa — 1. The water-god; Baruṇa.
(ଜଳାଧିପତି; ଜଳାଧୀଶ—ଅନ୍ୟରୂପ) ୨ । ସମୁଦ୍ର—
2. The ocean.

**ଜଳାନ୍ନବ**—ଗ୍ରା. ବି. ଓ ବିଣ.—(ସଂ. ଜଳ ଓ ଅର୍ଣ୍ଣବ)—
Jalānnaba — ଜଳାର୍ଣ୍ଣବ (ଦେଖ)
Jalārṇṇaba (See)

**ଜଳାପୋଡ଼ା**—ଦେ. ବି.— (ସଂ ଜ୍ୱାଳା ଓ ପ୍ରଦାହ)—ଶରୀରର ପ୍ରଦାହ—
Jalā-porḍā — Burning sensation in the body; inflammation; smarting pain.
ଜ୍ୱଲାପୁଡ଼ା
ଜଲନ, ଦାହ

**ଜଳାବର୍ତ୍ତ**—ସଂ ବି. (୬ଷ୍ଠୀ ତତ୍; ଜଳ+ଆବର୍ତ୍ତ)—ଜଳର ଭଉଁରୀ—
Jalābartta — Whirlpool; eddy.

**ଜଳାର୍ଣ୍ଣବ**—ସଂ. ବି. (୬ଷ୍ଠୀ ତତ୍; ଜଳ+ଅର୍ଣ୍ଣବ)—୧ । ସମୁଦ୍ର—
Jalārṇṇaba — 1. The sea.

୨ । ବର୍ଷାକାଳ—2. The rainy season.

ଦେ. ବି.—(ବର୍ଷା ବା ବଢ଼ି ଯୋଗୁଁ ସମୁଦ୍ର ପରି) ସବୁ ଆଡ଼େ ପାଣି ମୋଡ଼ିଯିବା ଅବସ୍ଥା—2. Water pervading the whole country; the state of a country being flooded with water.

ବିଣ.—ପାଣିରେ ଛଇଲଛଟ; ଜଳମୟ—(a country) With water spreading through the length and breadth (of it).

**ଜଳାର୍ଥୀ**—ସଂ. ବିଣ. ପୁଂ. (ଉପପଦ ତତ୍; ଜଳ+ଅର୍ଥିନ; ୧ମା. ୧ବ.)
Jalārthī — ଜଳ ପାଇଁ ଅପେକ୍ଷିତ—
(ଜଳାର୍ଥିନୀ—ସ୍ତ୍ରୀ) Waiting for water.

**ଜଳାର୍ଦ୍ର**—ସଂ. ବିଣ. (୭ମୀ ତତ୍; ଜଳ+ଆର୍ଦ୍ର)—ଜଳସିକ୍ତ; ଓଦା—
Jalārdra — Wet; moistened.

**ଜଳାଶୟ**—ସଂ. ବି. (୬ଷ୍ଠୀ ତତ୍; ଜଳ+ଆଶୟ)—୧ । ହ୍ରଦ; ତଡ଼ାଗ;
Jalāśaya — ପୋଖରୀ—1. A reservoir of water; lake; pond.

୨ । ବରୁଣ ଦେବ—2. An epithet of Baruṇa.

୩ । ବିଷ୍ଣୁ—3 An epithet of Bishṇu.

**ଜଳିଆ**—ଦେ ବିଣ.—(ସଂ. ଜଳୀୟ)—୧ । ଜଳପୂର୍ଣ୍ଣ—
Jaliā — 1 Full of water; watery.

୨ । ପାଣିଆଁ; ଜଳ ପରି ପତଳା—2. Fluid; liquid.

ବି. ପୁଂ—ଜଳଧରର ଅନାଦରାର୍ଥ ଡାକ ନାମ—A name by which a person named Jaladhara is vulgarly called.

**ଜଳିଉଠିବା**—ଦେ. କ୍ରି.—୧ । (ପ୍ରଜ୍ୱଳିତ ଅଗ୍ନିର) ଶିଖା ଉପରକୁ ଉଠିବା-
Jali-uṭhibā — 1. The blazing of a fire.
ଜଲେଉଠୀ ଦେ. କ୍ରି.—ଅଗ୍ନିମୟ ହେବା—
ଜଲାଓଠନା — To break out into fire.
(ଯଥା—ସାମାନ୍ୟ ଉତ୍ତାପ ପାଇଲେ ଫସ୍‌ଫରସ୍ ଜଳି ଉଠେ ।)

**ଜଳିବା**—ଦେ. କ୍ରି. (ସଂ. ଜ୍ୱଳ ଧାତୁ)—୧ । ପ୍ରଦୀପ୍ତ ହେବା; ଅଗ୍ନି-
Jalibā — ଯୁକ୍ତ ହେବା; ପ୍ରଜ୍ୱଳିତ ହେବା—
ଜଲ୍ନା — To be kindled; to burn.
ଜଲନା — ଜଳନ୍ତ ପଦ୍ମ ରାଗ ଯାପେ
(ଲିଭିବା—ବିପରୀତ) ବଢନ୍ତ ତନ୍ଦ ତ କ୍ରାଡପେ । ଜଗନ୍ନାଥ. ଭାଗବତ ।

୨ । ଜାଜ୍ୱଲ୍ୟମାନ ହେବା; ଦାଉଦାଉ ହେବା—
2. To glitter; to shine; to be dazzling.

କୋଧାନଳେ ଜଳେ ଚକ୍ଷୁ ଭୀଷଣ ଆକାର । ମଧୁସୂଦନ. କାଳସମାସୁଣ ।
ସୂର୍ଯ୍ୟ ଚନ୍ଦ୍ର, ନକ୍ଷତ୍ର ରଜନୀ ଦ୍ୱାରେ
ଜଳନ୍ତ ସକଳ କୁଳଙ୍କ ନାଶରେ । କୃଷ୍ଣସିଂହ. ମହାଭାରତ. ଭୀଷ୍ମ ।

ଜଲ୍ନା — ୩ । ଜଳାପୋଡ଼ା କରିବା; (ଶରୀର) ପ୍ରଦାହ କରିବା—
ଜଲନା, ଦୀପନା — 3. To feel burning sensation in the body; to feel inflammation or burning pain.
ଜଳାଇବା } ଣିଜନ୍ତରୂପ
ଜଳେଇବା }

କର୍କୋଟକ ନାଗ ସୁଣିତ ଗେବାଇଛ
ଏଣୁ ଅବୟବ ଯାକ ମୋର ଜଳୁଛି । କୃଷ୍ଣସିଂହ. ମହାଭାରତ ବନ ।

(ଲିଭିଲିବା—ବିପରୀତ) ୪ । ଶିଖାଯୁକ୍ତ ହେବା—
4. To blaze, to burn with a flame.

୫ । ପ୍ରଚଣ୍ଡ ହେବା—5. To become furious.

ଏଣୁ ଅତି କୋଧରେ ଜଳିଲେ ସେ ଯତି । କୃଷ୍ଣସିଂହ. ମହାଭାରତ ବନ ।

୬ । ପୋଡ଼ିଯିବା; ଦଗ୍ଧ ହେବା—6. To be burnt.

୭ । (ଲକ୍ଷଣାର୍ଥ) ଈର୍ଷାରେ ଦଗ୍ଧ ହେବା ବା କ୍ଲିଷ୍ଟ ହେବା—
7. (figurative) To be afflicted with envy.

[ ଦ୍ର—ଜଳିବା କ୍ରିୟାର ଅସମାପିକାରୂପ ସଙ୍ଗେ ଉଠିବା, ଯିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ ।]

| ୧ | ଇ | ଉ | ଋ,ଌ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇୟ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଔ | ଢ଼ |

ଜଲିବା—ପ୍ରାଦେ. (ସମ୍ବଲପୁର) କ୍ରି—ଜଳିବା (ଦେଖ)
Jaliba Jaliba (See)

ଜଲିଯିବା—ଦେ. କ୍ରି—୧ । ପୋଡ଼ିଯିବା; ଜଳକର ଭସ୍ମ ହୋଇଯିବା—
Jali-jiba 1. To be burnt to ashes.
জলেযাওয়া ଜବତ ସବୁ ଲୋକଙ୍କର ଗଲ୍ପ ଜଳ
जलजाना ଦେଖି ସହଦେବ ବସିଲେ ମନେ ଜଳ ।
କୃଷ୍ଣସିଂହ- ମହାଭାରତ- ବନ ।
୨ । (ଲକ୍ଷଣାର୍ଥ) କ୍ଳିଷ୍ଟ ହେବା—
2. (figurative) To be afflicted.

ଜଲିଲ୍—ଦେ. ଵିଣ—ଜ୍ୱଳନ୍ତ; ଜଳୁଥିବା; ପୋଡ଼ି ଯାଇଥିବା—
Jalila Burning; burnt.
জলন্ত ଯେତୁ ଜୀବଦାଦା ଜଳଲ ପୁରୁଷେ ଏକଥା ନୋହେଉ ।
जलता हुआ ଭକ୍ତ- କୋଷ୍ଠକୁଷ୍ଣାଶ୍ରୟୁଦଗ ।

ଜଲୀ—ଦେ. ବି. (ସଂ. ଜଲ)—୧ । ପରଖା; ଗଡ଼ଖାଇ—
Jali 1. Moat.
খাই ହରଣବଗ ନଦୀ ବେଲା ଛଳ ଖୋଲ
खाई ସେନାର ଗୁରୁପଥ ଯାକ କଲେ ଜଲୀ ।
କୃଷ୍ଣସିଂହ- ମହାଭାରତ- ଉଦୋଗ ।
୨ । ଜଳପାଟ; ଜଳାଭୂମି; ଜୋଡ଼—2. Fen; bog.
ଏ ଅବ ଗହନ ପାଦପେ ଗହଳ ଥିଲା ସେ ସ୍ଥଳୀ
ସଙ୍ଗେଜାଳଂଭୂଭ ଠାବେ ଠାବେ ଥିଲା ସଜଳ ଜଳୀ । ରାଧାନାଥ ।

ଜଲୁଆ—ଦେ ଵିଣ. (ସଂ. ଜଲୀୟ)—୧ । ପାଣିଚିଆ; ପାଣିପର—
Jalua 1. Watery.
୨ । ଜଳାର୍ଦ୍ର—2. Wet; moistened with water.
୩ । (ସଂ. ଜ୍ୱାଳା) ଯାହାଦ୍ୱାରା ପୋଡ଼ାଜଳା ହୁଏ—
3. Producing inflammation or burning pain.

ଜଲୁକ—ସଂ. ବି. (ଜଲ୍ ଧାତୁ=ରକ୍ତମୋଚନ କରିବା + ସଂଜ୍ଞାର୍ଥେ. ଉକ; Jaluka ସ ସ୍ଥାନରେ ଲ)—ଜୋକ—Leech.

ଜଲୁଖୋଗା—ଦେ. ବି. (ନାମ)—ହିମାଳୟର ଗୋଟିଏ ଗିରି ସଙ୍କଟ—
Jalukhoga Name of a pass of the Himalayas.
[ ଦ୍ର—ସ୍ୱାମୀ ସ୍ୱମାନନ୍ଦ ନାମକ ବଙ୍ଗଳା ଗ୍ରନ୍ଥ ୨୨୨ପୃଷ୍ଠା । ]

ଜଲୂକା—ସଂ. ବି. (ଜଲ୍ ଧାତୁ + ସଂଜ୍ଞାର୍ଥେ ଉକ)—
Jaluka ଜୋକ—Leech.

ଜଲେଇ ପୋଡ଼େଇ ମାରିବା—ଦେ. କ୍ରି—ଜାଳି ପୋଡ଼ି ମାରିବା (ଦେଖ)
Jalei pordei mariba Jali pordi mariba (See)

ଜଲେଚର—ସଂ. ବି. (ଅଲୁକ୍ ସମାସ; ଜଲେ+ଚର ଧାତୁ+କର୍ତ୍ତୃ. ଅ)—
Jale-chara ଜଳଚର (ଦେଖ)
Jala-chara (See)

ଜଲେନ୍ଧନ—ସଂ. ବି. (ଜଲ + ଇନ୍ଧନ; ବହୁବ୍ରୀହି)—ବଡ଼ବାନଳ—
Jalendhana Submarine fire.

ଜଲେଶ—ସଂ. ବି. (୬ଷ୍ଠୀ ତତ୍; ଜଲ+ଈଶ)—୧ । ବରୁଣ—
Jalesa 2. The sea-god.
୨ । ସମୁଦ୍ର—2. Ocean.

ଜଲେଶୟ—ସଂ. ବି. (ଅଲୁକ୍ ସମାସ; ଜଲେ + ଶୀ ଧାତୁ + କର୍ତ୍ତୃ. ଅ)—
Jale-saya ୧ । ବିଷ୍ଣୁ—1. Bishnu.
୨ । ମତ୍ସ୍ୟ—2. Fish.
୩ । ସମୁଦ୍ର—3. The ocean.
ସଂ. ଵିଣ—ଜଳସ୍ଥିତ—Situated in water.

ଜଲେଶ୍ୱର—ସଂ. ବି—ଜଲେଶ (ଦେଖ)
Jaleswara Jalesa (See)
ଦେ. ବି—ବାଲେଶ୍ୱର ଜିଲ୍ଲାର ଗୋଟିଏ ଥାନା ଓ ଗ୍ରାମ—
Name of a police station and village in Balasore district.

ଜଲୋଚ୍ଛ୍ୱାସ—ସଂ. ବି. (୬ଷ୍ଠୀ ତତ୍; ଜଲ + ଉଚ୍ଛ୍ୱାସ)—୧ । ଜୁଆର—
Jalochchhwasa 1. Flow-tide.
୨ । ଢେଉ—2. Wave.

ଜଲୋଦର—ସଂ. ବି. (ବହୁବ୍ରୀହି; ଜଲ + ଉଦର)—ଜଲୋଦରୀ (ଦେଖ)
Jalodara Jalodari (See)

ଜଲୋଦରୀ—ଦେ. ବି. (ସଂ. ଜଲୋଦର)—ଉଦରୀ ରୋଗ; ଉଦରର
Jalodari ଜଳବୃଦ୍ଧି ରୋଗ—Dropsy.
জলোদরী
जलन्दर, जिलन्दर

ଜଲୌକା—ସଂ. ବି. (ବହୁବ୍ରୀହି; ଜଲ + ଓକସ୍ = ବାସସ୍ଥାନ)—ଜୋକ—
Jalauka Leech.

ଜଲ୍ପ୍ (ଧାତୁ)—ସଂ.—ଗପିବା—
Jalp (root) To talk.

ଜଲ୍ପ—ସଂ. ବି. (ଜଲ୍ପ ଧାତୁ + ଭାବ. ଅ)—୧ । ଗପିବା; କଥନ—
Jalpa 1. Talking.
୨ । ପରମତ ଖଣ୍ଡନପୂର୍ବକ ସ୍ୱମତ ସ୍ଥାପନ—2. Assertion of one's view-point by meeting that of another person.
୨ । ଗପ; ଉକ୍ତି—2. Talk; speech.
କେବେହେଁ ଅସାଧୁକୁ ନ କରିବ ଜଳ୍ପ । କୃଷ୍ଣସିଂହ- ମହାଭାରତ- ବନ ।
୩ । ବହୁଭାଷଣ; ବାଗ୍‌ଲତା; ଅନେକ ବକିବା ବା ଗପିବା—
3 Chattering; partling.
୪ । ବୃଥା ଭାଷଣ—4. Gossiping; idle talk.
୫ । ପ୍ରଗଲ୍‌ଭତା—5. Talkativeness; wrangling.
[ ଦ୍ର—ଏହାର ପଦ୍ୟରେ ବ୍ୟବହୃତ ଅକାର ଜଳପ, ଜଳପନ ଓ ଜଳପନା । ]

ଜଲ୍ପକ—ସଂ. ଵିଣ.ପୁଂ. (ଜଲ୍ପ ଧାତୁ + କର୍ତ୍ତୃ. ଅକ)—ବାଚାଳ; ବହୁଭାଷୀ—
Jalpaka Chattering; prattling; garrulous.
(ଜଲ୍ପିକା—ସ୍ତ୍ରୀ)

ଜଲ୍ପନ—ସଂ. ବି. (ଜଲ୍ପ ଧାତୁ + ଭାବ. ଅନ)—ଜଲ୍ପ (ଦେଖ)
Jalpana Jalpa (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍ଗିଆ' ନ ପାଇଲେ 'ଅଙ୍ଗୀ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଜଳ୍ପନା**—ସଂ. ବି. (ଜଳ୍ପ ଧାତୁ + ଭାବ. ଅନ. + ଆ)—ଜଳ୍ପ (ଦେଖ)
Jalpanā Jalpa (See)

**ଜଳ୍ପନା କଳ୍ପନା**- ସଂ. ବି. (ସହଚରର ଶବ୍ଦ)—କୌଣସି କାର୍ଯ୍ୟ କରିବା ନିମନ୍ତେ ମୁହଁରେ ପ୍ରକାଶ କରିବା ଓ ମନରେ କଳ୍ପନା ବା ଚିନ୍ତା କରିବା—Talking and contemplation of a matter.
Jalpanā kalpanā

[ଦ୍ର—ଅଭିହିତ ଓ ବାକ୍ୟରେ ପ୍ରକାଶିତ କୌଣସି ବିଷୟ କାର୍ଯ୍ୟତଃ ନ କଲେ 'ଉକ୍ତ ବିଷୟଟି କେବଳ ଜଳ୍ପନା କଳ୍ପନାରେ ଶେଷ ହେଲା' ବୋଲି ଯାଇ ଥାଏ ।

ଏ ଶବ୍ଦର ସାଧାରଣ ବ୍ୟବହାର କଳ୍ପନା-ଜଳ୍ପନା । କାରଣ, ସବୁ କାର୍ଯ୍ୟକୁ ପ୍ରଥମେ ମନ ମଧ୍ୟରେ କଳ୍ପନା କରାଯାଏ ଓ ପରେ ତାହା ମୁଖରେ ପ୍ରକାଶ କରି ଯାଇ ଥାଏ ଓ ସବୁ ଶେଷରେ ତାହା କାର୍ଯ୍ୟରେ ପରିଣତ କରି ଯାଇ ଥାଏ ।]

**ଜଳ୍ପାକ**—ସଂ. ବି. (ଜଳ୍ପ ଧାତୁ + କର୍ତ୍ତୃ. ଆକ)—ଜଳ୍ପକ (ଦେଖ)
Jalpāka Jalpaka (See)
(ଜଳ୍ପାକୀ—ସ୍ତ୍ରୀ)

**ଜଳ୍ପିତ**—ସଂ. ବିଣ. (ଜଳ୍ପ ଧାତୁ + କର୍ମ. ତ)—୧ । ଗପ କରି ଯାଇ ଥିବା (ବିଷୟ)—1 Talked of (matter).
Jalpita
୨ । କଥିତ; ପ୍ରସ୍ତାବିତ—3. Spoken of; proposed
ସଂ. ବି (+ଭାବ. ତ)—ଜଳ୍ପ (ଦେଖ)
Jalpa (See)

**ଜଳ୍ପିବା**—ଦେ. (ପଦ୍ୟ) କ୍ରି.—(ସଂ. ଜଳ୍ପ ଧାତୁ)—ବୃଥା ଗଳ୍ପ କରିବା—
Jalpibā To be engaged in idle talk.
जल्पना
ଅସନ୍ତ ପୂଜକ ଦଳ ଜଳ୍ପି ନାନା ମତେ । ରାଧାନାଥ, ମହାଯାତ୍ରା ।
जल्पना

**ଜଲ୍ଲା**—ଦେ. ବିଣ.—(ସଂ. ଉଜ୍ଜ୍ୱଳ)—ଉଜ୍ଜ୍ୱଳ—
Jallā Bright.
जिल्ला
ଜଲ୍ଲା ଦରପଣ ବର୍ଣ୍ଣ ବିଶୁଦ୍ଧ ପ୍ରକଟ—ପ୍ରାଚୀ. ବ୍ରହ୍ମନିରୂପଣଗୀତା ।
जिल्ला
ଜହ୍ଲା (ଦେଖ)
Jahlā (See)

**ଜଲ୍ଲାଦ୍**—ବୈଦେ. ବି. (ଫା)—ଯେଉଁ ରାଜଭୃତ୍ୟ ରାଜାଦେଶରେ ମୃତ୍ୟୁଦଣ୍ଡରେ ଦଣ୍ଡିତ ଅପରାଧୀର ମୁଣ୍ଡ କାଟେ—
Jallād
जल्लाद A public executioner.
जल्लाद
(ଜଲ୍ଲାଦ—ଅନ୍ୟରୂପ)

**ଜହ୍ଲା**—ଦେ. ବି—ଏକ ପ୍ରକାର ସାନ ରୂପାପାତିଆ ପରି ପତଳା ମାଛ; ଶଙ୍କାରଖାଇ ମାଛ—A kind of small fresh-water-fish.
Jahlā

[ଦ୍ର—ଏମାନଙ୍କ ଦେହରେ ଶ୍ରେଷ୍ଠ କାତି ଅଛି, ଦେହ ଚେପ୍ଟା, ପିଠି ନେଳିଆ । ଏମାନେ ପାଣି ଭିତରେ ବିଚରଣ କରି କଡ଼ ଲେଉଟାଇବା ବେଳେ ରୂପା ପାତିଆ ପରି ଦେଖା ଯାଆନ୍ତି । ଏମାନେ ଲମ୍ବରେ ୮।୧୦ ଇଞ୍ଚ ପର୍ଯ୍ୟନ୍ତ ବଢ଼ନ୍ତି । ]

**ଜଶମ୍**—ବୈଦେ. ବି. ( ଫା. ଜୌସନ୍=ପୋଖରାଜ ପଥର; ବୋଧ ହୁଏ ପୂର୍ବେ ଅଳଙ୍କାରରେ ପୋଖରାଜ ପଥର ବସୁଥିଲା )—ସ୍ତ୍ରୀମାନଙ୍କର ବାହୁରେ ପିନ୍ଧିବା ଅଳଙ୍କାରବିଶେଷ; ଅନନ୍ତକଡ଼ା—An ornament for the arm; armlet.
Jaśam
जशम
जशेम

**ଜସ୍** (ଧାତୁ)—ସଂ—୧ । ବଧ କରିବା—
Jas (root) 1. To kill.
୨ । ଆଘାତ କରିବା—2. To strike.
୩ । ଅପମାନ କରିବା—3. To insult.

**ଜସୁରି**—ସଂ. ବି. ( ଜସ୍ ଧାତୁ + କର୍ତ୍ତୃ. ଉରି )—ବଜ୍ର; ଚଡ଼ଚଡ଼ି—
Jasuri Thunderbolt.

**ଜସ୍ତା**—ଦେ. ବି. ( ସଂ. ଯଶଦ୍ )—
Jastā ଦସ୍ତା; ରୂପା ପରି ଧଳା ଧାତୁବିଶେଷ—
दस्ता Zinc; pewter.
जस्ता [ ଦ୍ର—୫ ଭାଗ ରାଙ୍ଗ ଓ ଏକ ଭାଗ ସୀସା ମିଶ୍ରିତ କରି ଏହା ପ୍ରସ୍ତୁତ ହୁଏ । ତମ୍ବା ସଙ୍ଗେ ଦସ୍ତା ମିଶାଇଲେ କଂସା ଓ ପିତଳ ହୁଏ । ]

**ଜହ**—ପ୍ରାଦେ. ବିଣ. (ସମ୍ବଲପୁର) ( ସଂ. ଯଥେଷ୍ଟ )—
Jaha ପ୍ରଚୁର; ଯଥେଷ୍ଟ—Sufficient.

**ଜହକ**—ସଂ. ବିଣ. ପୁଂ. (ହା ଧାତୁ=ତ୍ୟାଗ କରିବା+କର୍ତ୍ତୃ. ଅକ)—
Jahaka ପରିତ୍ୟାଗକାରୀ—Forsaking; deserting.
ବିଣ—୧ । ସମୟ; କାଳ—1. Time.
୨ । ବାଳକ—2 A boy.
୩ । ( + କର୍ମ. ଅକ ) ସାପକାତି—
3. The slough of a snake.

**ଜହନ**—ଗ୍ରା. ବି. (ପ୍ରାଚୀନ ପଦ୍ୟ) ( ସଂ. ଜଘନ )—ଅଣ୍ଟା; କଟି—
Jahana Waist.
ଜହନେ ସଜକ କଲେ କାଞ୍ଚଦାମ ମାଳେ । ପ୍ରାଚୀ ରସବାରିଧି ।

**ଜହର**—ବୈଦେ. ବି. ( ଫା. ଜହର୍; ତୁଳ. ସଂ. ଗରଳ )—
Jahara ୧ । ବିଷ; ଗରଳ—1. Poison
जहर ୨ । ପ୍ରାଣନାଶକ ବିଷ—1. Fatal poison.
जहर
ଘଟନା ଶରୀରରେ ଅବଶ୍ୟଭ ଜହରେ ତୋ ଯେନ ଅମୃତାଗ ହୋଇଲୁରେ ।
କବିସୂର୍ଯ୍ୟ. ବଳୋଗାବାଣ୍ଟ. ସ ଗୀତ ।
୩ । (ଫା. ଜହ୍ୱର୍) ବହୁ ମୂଲ୍ୟ ଚକଚକିଆ କ୍ଷୁଦ୍ର ପ୍ରସ୍ତରଖଣ୍ଡ; ରତ୍ନ; ମଣି—3. Gem; precious stone.

ଦେ. ବି—ରାଜପୁତାନାର ସ୍ତ୍ରୀମାନେ ନିଜନିଜର ସ୍ୱାମୀଙ୍କ ମୃତ୍ୟୁ ପରେ ଯେଉଁ ଅଗ୍ନିକୁଣ୍ଡରେ ପଶି ନିଜର ସତୀତ୍ୱ ରକ୍ଷା କରୁଥିଲେ—Self-immolation' by Rajput women by throwing themselves into

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଚ୍ଛ | ଙ୍ଗ | ଋ,ଋ | ଌ | ଏ | ଦ୍ରସ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଗ୍ନ,ଷ | ଙ୍କ | ଙ୍ଗ | ଚ୍ଛ | ଞ୍ଜ |
| ୨ | ଛ | ଉ | ରୁ | ଲୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଗ୍ୟ | ଚ୍ଛ | ଞ୍ଚ | ନ୍ଦ |

blazing fire to save themselves from outrage by Mahomedan conquerers.

ପ୍ରାଦେ. (ଗଞ୍ଜାମ; ସମ୍ବଲପୁର) ବିଣ—ଯଥେଷ୍ଟ; ପର୍ଯ୍ୟାପ୍ତ—Sufficient; enough.

**ଜହର ଅନଳ**—ଦେ. ବି—(ପ୍ରାଣନାଶାର୍ଥ ବ୍ୟବହୃତ ଦୁଇ ବସ୍ତୁ ) ବିଷ ଓ
Jahara anaḷa ଅଗ୍ନି—Poison and fire (used for committing suicide).

**ଜହର ଖାଇଲା ପରି ହେବା**—ଦେ. କ୍ରି—ଅତ୍ୟନ୍ତ ବ୍ୟାକୁଳିତ ହେବା—
Jahara khāilā pari hebā To writhe in agony.

**ଜହର ଚଢ଼ା(ଢ଼େ)ଇବା**—ଦେ. କ୍ରି—ଜହର ଦେବା ( ଦେଖ )
Jhara chaṛhā(e)ibā Jahara debā ( See )
জহর চঢ়ান
**जहर चढ़ाना**

**ଜହରଜାଳା**—ଦେ. ବି. (ଫା. ଜହର + ସଂ. ଜ୍ୱାଳା)—ବିଷପାନ କରିଥିବା
Jahara-jāḷā ବ୍ୟକ୍ତିର ଅନୁଭୂତ କଷ୍ଟ—The pangs felt by a poisoned person.

**ଜହରତ**—ବୈଦେ. ବି. ( ଆ. ଜଓହର୍ )—ମଣିମୁକ୍ତାଦି ନାନାଜାତୀୟ
Jaharati ବହୁମୂଲ୍ୟ ପ୍ରସ୍ତର—Jewellery.
জহুরাৎ ବିଣ—ମଣିମୁକ୍ତାଦିସମ୍ବନ୍ଧୀୟ—
**जहुआर; जवाहिर** Pertaining to jewellery.

**ଜହର ଦେବା**—ଦେ. କ୍ରି—କୌଣସି ବ୍ୟକ୍ତିପ୍ରତି ଔଷଧ ବା ଖାଦ୍ୟାଦି
Jahara debā ସହିତ ବିଷ ପ୍ରୟୋଗ କରିବା—
জহর দেওয়া To administer poison to another person ( with food or medicine)
**जहर देना**

**ଜହରପଟି**—ବୈଦେ. ବି. (ଫା)—ବିଷ ମଡ଼ା ହୋଇଥିବା କାଗଜ ବ
Jahara-paṭi କନାଖଣ୍ଡ—A poultice besmeared with poison.
জহরপটী
**जहरपट्टी**

**ଜହରବ୍ରତ**—ଦେ. ବି—ରାଜପୁତ ରମଣୀମାନଙ୍କର ସତୀତ୍ୱ ରକ୍ଷା କରିବା
Jahara-brata ନିମନ୍ତେ ଅଗ୍ନିକୁଣ୍ଡରେ ପଡ଼ି ବା ବିଷପାନଦ୍ୱାରା
জহরব্রত ଜୀବନ ହରାଇବାରୂପ ବ୍ରତ—The vow of Rājaput
**जहरव्रत** females for keeping their chastity unsullied from forcible attacks by throwing themselves into fire or taking poison.

**ଜହରମହୁରା**—ଦେ. ବି—ଜାରମହୁରା ( ଦେଖ )
Jahara-mahurā Jāra-mahurā ( See)

**ଜହରାତ୍**—ବୈଦେ. ବି. ( ଆ. ଜହର; ଜଓହର; ଜବାହିର୍ (ଫା) ଗଓହର; ଭୁଲ. ଫ. ଗହ୍ୱର )—
Jaharāt
জহুরাৎ ୧ । ଖଣିଜ ବହୁମୂଲ୍ୟ ପ୍ରସ୍ତର; ବହୁମୂଲ୍ୟ ମଣିମୁକ୍ତାଦି—
**जवाहीर; जवाहीरात** 1. Jewels; gems.
୨ । ମଣିମୁକ୍ତାଖଚିତ ଅଳଙ୍କାର—
2. Jewellery; ornaments set with gems.

**ଜହରି**—ବୈଦେ. ବିଣ. ( ଫା. ଜଓହରୀ )—
Jahari ୧ । ଜହର ପରି କଟୁ ବା ଅଭୁଗ୍ର—
জহরী 1. Very irritating like poison.
**जउहरी** ( ଯଥା—ଜହରି ଲଙ୍କାମରିଚ । )
(ଜହରିଆ—ଅନ୍ୟରୂପ) ୨ । ବିଷବ୍ୟବସାୟୀ—
2. A dealer in poison.
୩ । ଯେ ଅନ୍ୟ ବ୍ୟକ୍ତିକୁ ବିଷ ପ୍ରୟୋଗ କରେ—
3. Administering poison to another person.
୪ । ବହୁମୂଲ୍ୟ ମଣିରତ୍ନାଦିର ବ୍ୟବସାୟୀ—
4. Dealing in jewellery.
୫ । ଜବରଦସ୍ତିଆ; ଜବ୍ବସ୍ତ—5 Using force.
ବୈଦେ. ବି—ମଣିରତ୍ନ ବ୍ୟବସାୟୀ ବ୍ୟକ୍ତି—A jeweller.

**ଜହରି ଚମ୍ପା**—ଦେ ବି. ( ଆଧୁନିକ ପ୍ରୟୋଗ )—ଚମ୍ପକାଦି ବର୍ଗର
Jahari champā ଶ୍ୱେତ ପୁଷ୍ପବିଶେଷ—Magnolia.
জহুরীচাঁপা [ ଦ୍ର—ସନ୍ଧ୍ୟାବେଳେ ପତ୍ର ଗହଳରେ ଲୁଚି ଫୁଟିଥିବା
**जहरीचंपा** ଏ ଫୁଲର ଗନ୍ଧ ବହୁଦୂର ଛଡ଼େଟେ । ଫୁଲ ଧଳା ଓ ପାଖୁଡ଼ା ମୋଟା । ]

**ଜହରି ଲଙ୍କାମରିଚ**—ଦେ. ବି—ଭାରି ରାଗୁଆ ଧାନୁଆଁ ଲଙ୍କାମରିଚ—
Jahari laṅkāmaricha A kind of very pungent and fiery tiny long pepper.

**ଜହଲ୍**—ପ୍ରାଦେ. ( ସମ୍ବଲପୁର ) ବି. ( ଭୁଲ. ଇଂ. ଜେଲ୍ )—ପୁଲିସ୍-
Jahal ଦ୍ୱାରା ମାଜିଷ୍ଟ୍ରେଟ୍‌ଙ୍କ ନିକଟକୁ ଅଭିଯୁକ୍ତ ଆସାମୀର ଚାଲାଣ—
Being sent up by the police ( said of an accused ) to the magistrate.

**ଜହାଁପନା**—ବୈଦେ. ଅ. (ଆ. ଜହାଁପନା = ପୃଥିବୀପତି)—
Jahānpanā ( ରାଜା ଓ ବଡ଼ଲୋକମାନଙ୍କୁ ସମ୍ବୋଧନ ) ଶ୍ରୀମୁ
জাহাঁপনা ମହିମା ! ହଜୁର !—Oh Lord ! your honor
**जहाँपना**

**ଜହୁରତି**—ବୈଦେ. ବି. ( ଆ. ଜହରତ )—ଜହରତି ( ଦେଖ )
Jahurati Jaharati ( See )

**ଜହୁରା**—ବୈଦେ. ବି. ( ଆ )—ଜହରାତ୍ ( ଦେଖ )
Jahurā Jaharāt ( See )

**ଜହୁରାତ୍**—ବୈଦେ. ବି. ( ଆ )—ଜହରାତ୍ ( ଦେଖ )
Jahurāt Jaharāt ( See )

**ଜହୁରାତି**—ବୈଦେ. ବି. ( ଆ )—ଜହରତି ( ଦେଖ )
Jahurāti Jaharati ( See )

**ଜହୁରି**—ବୈଦେ. ବି. ( ଫା. ଜଓହରୀ )—
Jahuri ୧ । ଯେ ବହୁମୂଲ୍ୟ ମଣିରତ୍ନାଦିର ବ୍ୟବସାୟ କରେ—
জহুরী 1. Jeweller; a dealer in precious stones.
**जौहरी** ୨ । ଯେ ମଣିମୁକ୍ତାଦିପରୀକ୍ଷା କରି ମୂଲ୍ୟ ନିରୂପଣ

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ, 'ବନ୍ଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଟିଆ' ନ ପାଇଲେ 'ଅଜ୍ଞା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

କରି ପାରେ—2. One who can test jewellery and gems and assign their proper value.

**ଜହ୍ନ**—ଦେ. ବି. ( ସଂ. ଜ୍ୟୋତ୍ସ୍ନା )—୧ । ଚନ୍ଦ୍ରମା; ଚନ୍ଦ୍ର—
Jahna 1. The moon.
चान्द ହେ ଜହ୍ନ । ତନ୍ତ୍ରେ ଭୁହ ମୋ ମିଳନ ସେନ—ପ୍ରାଚୀ. ରସବାରିଧି ।
**ଜ୍ଞାନୀୟା** [ ଦ୍ର—ଜହ୍ନ ମଧ୍ୟରେ ଲକ୍ଷିତ 'କଳଙ୍କ'କୁ ହିନ୍ଦୁମାନେ ମୃଗ ବା ଶଶକ ବୋଲି କଳ୍ପନା କରିଥିଲେ । ଏ ଦେଶର ସ୍ତ୍ରୀଲୋକମାନେ ଏହି କଳଙ୍କ ଦେଖାଇ ଶିଶୁମାନଙ୍କୁ କହନ୍ତି ଯେ ବ୍ରାହ୍ମଣୀ-ବୁଢ଼ୀଟିଏ ବସି ଅରଟରେ ସୂତା କାଟୁଛି । ]
୨ । ଜ୍ୟୋତ୍ସ୍ନା; ଚନ୍ଦ୍ରକିରଣ—2. Moonlight.
୩ । ସ୍ତ୍ରୀଲୋକମାନଙ୍କୁ ଦିଆ ଯିବା ନାମ—
3. A name given to females.

**ଜହ୍ନଆଲୁଅ**—ଦେ. ବି. ( ସଂ. ଜ୍ୟୋତ୍ସ୍ନା+ଆଲୋକ )—ଚନ୍ଦ୍ରକିରଣ;
Jahna-ālua ଜ୍ୟୋତ୍ସ୍ନା—Moonlight.
[ ଦ୍ର—ଶୁଭ୍ର ଜ୍ୟୋତ୍ସ୍ନାକୁ ଲୋକେ ଅନ୍ୟାନ୍ୟ ଶୁଭ୍ର ବା ତୋଫା ବା ହାଲଦିଆ ବସ୍ତୁ ସଙ୍ଗେ ତୁଳନା କରନ୍ତି; ଯଥା— ରଣ ବା ରଣୀ ଫୁଲ ପରି, ଜହ୍ନିଫୁଲ ଭଳି, ପିଠଉ ଭଳି ଜହ୍ନ ପଡ଼ୁଛି । କବିମାନେ ଚନ୍ଦ୍ରକିରଣକୁ ଅମୃତ, ଦଧି ଇତ୍ୟାଦି କଳ୍ପନା କରିଅଛନ୍ତି । ଶରତ୍‌କାଳରେ ଆକାଶ ନିର୍ମେଘ ଓ ନିର୍ମଳ ଥିବାରୁ ସେ ସମୟରେ ଚନ୍ଦ୍ରକିରଣ ବିଶେଷ ଶୁଭ୍ର ଦେଖାଯାଏ । ]

**ଜହ୍ନ ଉଇଁବା**—ଦେ. ବି—ଚନ୍ଦ୍ରୋଦୟ—
Jahna uiṅbā The rising of the moon.
चान्द उँठा
**चाँद उठना, चाँद निकलना**
( ଜହ୍ନ ଉଠିବା—ଅନ୍ୟରୂପ )

**ଜହ୍ନ କାନ୍ଥି ଲାଗିବା**—ଦେ. କ୍ରି—ଚନ୍ଦ୍ର ଅସ୍ତାଚଳୋନ୍ମୁଖ ହୋଇ ମଳିନ
Jahna kānthi lāgibā ପଡ଼ିବା ( କିନ୍ତୁ ପ୍ରକୃତରେ ଅସ୍ତ ହୋଇ ନ ଥିବା )—The moon about to set

**ଜହ୍ନପକ୍ଷ**—ଦେ. ବି. ( ସଂ. ଜ୍ୟୋତ୍ସ୍ନା ଓ ପକ୍ଷ )—ଶୁକ୍ଳପକ୍ଷ; ଅମାବାସ୍ୟା
Jahna-paksha ପରଦିନଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ୧୫ ଦିନ—
चान्दपक्ष The bright fortnight of the lunar
**चाँदनीपक्ष** month.

**ଜହ୍ନପଖ**—ଗ୍ରା. ବି. ( ସଂ. ଜ୍ୟୋତ୍ସ୍ନା ଓ ପକ୍ଷ )—
Jahna-pakha ଜହ୍ନପକ୍ଷ ( ଦେଖ )
Jahna-paksha ( See )

**ଜହ୍ନ ପଡ଼ିବା**—ଦେ. ବି—୧ । ଚନ୍ଦ୍ର ଆକାଶରେ ଦେଖାଯିବା—
Jahna pardibā 1. The appearance of the moon
चान्द पड़ा in the sky.
**चाँदनी खिलना** ୨ । ଚନ୍ଦ୍ର କିରଣ ପୃଥିବୀରେ ପଡ଼ିବା—
2. The shinning of the moon on the face of the earth.

**ଜହ୍ନ ବୁଡ଼ିବା**—ଦେ. ବି—ଚନ୍ଦ୍ରାସ୍ତ ହେବା—
Jahna burdibā The setting of the moon
चाँद डुबा
**चाँद डुबना**

**ଜହ୍ନ ବୁଢ଼ା ହୋଇ ଯିବା**—ଦେ. କ୍ରି—ଚନ୍ଦ ବୁଢ଼ା ହୋଇ ଯିବା (ଦେଖ)
Jahna burdhā hoi jibā Chānda burdhā hoi jibā (See)

**ଜହ୍ନମାମୁ**—ଦେ. କ୍ରି ( ଶିଶୁରଞ୍ଜନ ଭାଷା ) ଚନ୍ଦ୍ର—
Jahna-māmu The moon ( personified as the
चाँदमामा maternal uncle of infants ).
**चंदामामा** [ ଦ୍ର—ଶିଶୁମାନଙ୍କୁ ମାତାମାନେ ଚନ୍ଦ୍ର ଦେଖାଇବା ସମୟରେ ଚନ୍ଦ୍ରଙ୍କୁ 'ଜହ୍ନମାମୁଁ' ବୋଲି କହି ଥାଆନ୍ତି; ଅତଏବ ଜହ୍ନ ସବୁ ଶିଶୁଙ୍କର ମାମୁ ଅଟନ୍ତି । ଏହାର କାରଣ 'ଲକ୍ଷ୍ମୀ' ସମସ୍ତଙ୍କର 'ମାଆ' । ଲକ୍ଷ୍ମୀ ଓ ଚନ୍ଦ୍ର ସମୁଦ୍ରରୁ ଜାତ । ଚନ୍ଦ୍ର ଲକ୍ଷ୍ମୀଙ୍କ ଭାଇ ଓ ସମସ୍ତଙ୍କର ମାମୁ । ଶିଶୁଗୀତମାନଙ୍କରେ 'ଜହ୍ନମାମୁ'କୁ ଅବଲମ୍ବନ କରି ଅନେକ ପଦ୍ୟ ରଚିତ ହୋଇଅଛି । କୌଣସି ବ୍ୟକ୍ତି ପିତା, ପୁତ୍ରାଦି ସମସ୍ତଙ୍କ ସଙ୍ଗେ ବନ୍ଧୁତା ଦେଖାଇବାକୁ ଗଲେ ଲୋକେ କହନ୍ତି 'ଅମୁକ ଲୋକ ସେ ଘରେ ଜହ୍ନମାମୁ ହୋଇଛି' । ]

**ଜହ୍ନରାତି**—ଦେ. ବି. (ସଂ. ଜ୍ୟୋତ୍ସ୍ନା+ରାତ୍ରି) ଶୁକ୍ଳପକ୍ଷ ରାତି; ଯେଉଁ
Jahna-rāti ରାତିରେ ଚନ୍ଦ୍ର କିରଣ ପଡ଼ି ଥାଏ—
चान्दनीरात Moon litnight.
**चाँन्दनीरात**

**ଜହ୍ନା**—ଦେ. ବି. ( ସଂ. ଯବନାଳ; ଯାବନାଳ )—
Jahnā ୧ । ଶସ୍ୟବିଶେଷ —1. A kind of corn.
जनाव ୨ । ଭୁଟ୍ଟା; ଜନାର; ବାଜରା—2. Maize.
**जोन्हार** ୩ । ଫୁଟୁଫୁଟିକା ବା ଅମରପୋଇ ଗୁଳ୍ମ—
(ଜହ୍ନାର—ଅନ୍ୟରୂପ) 3. A kind of wild plant.
ପ୍ରାଦେ. (ସମ୍ବଲପୁର) ବି—ମକା—Indian corn.

**ଜହ୍ନି**—ଦେ. ବି. ( ସଂ. ଜ୍ୟୋତ୍ସ୍ନୀ )—
Jahni ତରକାରୀ ରୂପେ ବ୍ୟବହୃତ ଏକ ପ୍ରକାର ଲତା ଫଳ—
ସଂ ଝିଙ୍ଗି, ଝିଙ୍ଗାକ, କୃତବେଧନ—A cucurbitacious creeper
बिंङ्गा, तरुई, धुन्धुल and its fruit used as a kitchen-
**झिङ्गा, झिङ्गुलि, तुरइ** vegetable; Luffa Acutangula.
ତେ. ବୀରକାୟା
[ ଦ୍ର—ଏହା ବର୍ଷାଦିନରେ ଫଳେ । ଏ ଫଳର ପିଠିରେ ୧୦ ଗୋଟି ଶିରା । ସନ୍ଧ୍ୟାବେଳେ ଏହାର ଫୁଲ ଫୁଟେ, ଫୁଲ ଶୁଭ୍ର ହାଲଦିଆ । ଫଳଗୁଡ଼ିକ ପ୍ରାୟ ଏକ ହାତରୁ ଲମ୍ବ ହୁଏ । ଏହାର ମଞ୍ଜି ଅତ୍ୟନ୍ତ କୃଷ୍ଣ ବର୍ଣ୍ଣ । ଏକ ପ୍ରକାର ଜହ୍ନି ଗୋଟଗୋଟକିଆ ହୋଇ ଫଳ ଧରେ । ଏହାକୁ ବଡ଼ ଜହ୍ନି କହନ୍ତି । ଅନ୍ୟ ଜାତୀୟ ଜହ୍ନି ପେଣ୍ଡି ପେଣ୍ଡି ହୋଇ ଫଳ ଧରେ । ଏହାକୁ ପେଣ୍ଡି ଜହ୍ନି କହନ୍ତି । ଜହ୍ନିକୁ ଗଞ୍ଜାମରେ ସ୍ଥାନେ ସ୍ଥାନେ 'ତୋରଡ଼ା' ବୋଲି କହନ୍ତି । ]

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଏ | ଓଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୃ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଔ | ନ୍ |

ଜହ୍ନିଓଷା—ଦେ. ବି—ଅବିବାହିତା ବାଳିକାମାନେ କରୁଥିବା ଏକ ପ୍ରକାର
Jahni-oshā ଉପବାସ—A vow observed by unmarried girls.

[ ଦ୍ର—ଏହି ଓଷା ଭାଦ୍ର ପୂର୍ଣ୍ଣିମାଠାରୁ ଆଶ୍ୱିନ ପୂର୍ଣ୍ଣିମା ( କୁମାର ପୂର୍ଣ୍ଣିମା ) ଯାଏ ପାଳନୀୟ ହୁଏ । ଏଥିରେ ବାଳିକାମାନେ ସନ୍ଧ୍ୟା ବେଳେ ଗୁଡ଼ିଏ ଜହ୍ନି ଫୁଲ ତୋଳି ଆଣି ତିନି ଗୋଟି ମଣ୍ଡଳ କାଟି ଗୋଟି ଜହ୍ନି ପତ୍ରରେ ଫୁଲଗୁଡ଼ିକ ରଖି ନିଜନିଜର ଭାଇ ବାପଙ୍କ ମଙ୍ଗଳକାମନାରେ ତାକୁ ଚୂଲି ଉପରକୁ ଫୋପାଡ଼ନ୍ତି । ]

ଜହ୍ନିଖାଇ—ଦେ. ବି. ସ୍ତ୍ରୀ—ଗାଳିବିଶେଷ—
Jahni-khāi A term of abuse.

ପ୍ରାଦେ. ( ପୁରୀ ) ବି—ଦେବୀପକ୍ଷରେ ସାଇଯାତ୍ରାରେ ବାହାରିବା ଏକ ଦେବୀପ୍ରତିମା ( ଏ ଦଶହରା ଦିନ ପାଣିରେ ପଡ଼ନ୍ତି)—Name of the image of a Goddess which is constructed and brought out in a procession in the town of Puri during the Durgā-Pūjā.

ଜହ୍ନିପୋକ—ପ୍ରାଦେ. ( କଟକ ) ବି. ( ଏମାନଙ୍କ ଦେହରୁ ବାହାରିବା
Jahni-poka ଜ୍ୟୋତିଃ ଜହ୍ନି ଫୁଲ ପରି ସ୍ନିଗ୍ଧ ଓ ଶୁଭ୍ର ଥିବାରୁ ଭୁଲ ବଂ. ଜୋନାକି ପୋକା)—
୧ । ଜୁଳୁଜୁଳିଆ ପୋକ—1. Glow-worm.
୨ । ଜହ୍ନି ଗଛରେ ଲାଗି ନଷ୍ଟ କରିବା ଏକପ୍ରକାର ପୋକ—
2. A kind of insect attacking the 'Jahni' creeper.

ଜହ୍ନିଫୁଲ—ଦେ. ବି—ଜହ୍ନି ଲତାର ଶୁଭ୍ର ହରିଦ୍ୱର୍ଣ୍ଣ ଫୁଲ—
Jahni-phula The bright yellow flower of the 'Jahni' creeper.
ତୁରାଇକା ଫୁଲ

[ ଦ୍ର—ପିଲାମାନେ ସନ୍ଧ୍ୟା ବେଳେ ଗୁଡ଼ିଏ ଜହ୍ନିଫୁଲ ତୋଳି ସେ ଫୁଲତକ ଧରି ପ୍ରତିବେଶୀମାନଙ୍କ ଦ୍ୱାର ଦ୍ୱାର ବୁଲି 'ଜହ୍ନିଫୁଲ ଠୋଓଠୋ ! ତୁଟୁଆ ପୂଷା କହି ଯାଇଛି ଗୁଣ୍ଡୁଳି ମୁଠିଏ ରଖିଥା' ଏହି ଗୀତ ବୋଲି ମୁଠିଏ ମୁଠିଏ ଗୁଣ୍ଡୁଳି ସଂଗ୍ରହ କରି ସେଗୁଡ଼ିକର ବିନିମୟରେ ଭୂଜା କିଣନ୍ତି ଓ 'ଜହ୍ନି ଜହ୍ନି ଅଞ୍ଜୁଳି, ବାଡି ପଡ଼େ ତିନି ଅଞ୍ଜୁଳି' ଇତ୍ୟାଦି ଗୀତ ବୋଲି ଅଞ୍ଜଳୀରେ ସଂଗୃହୀତ ଜହ୍ନି ଫୁଲକୁ ଚୁଲିକୁ ପକାନ୍ତି ।

ଶୁଭ୍ର ଚନ୍ଦ୍ରକିରଣକୁ ମଧ୍ୟ ଜହ୍ନି ଫୁଲ ସଙ୍ଗେ ତୁଳନା କରାଯାଏ । ଯଥା—ଜହ୍ନିଫୁଲ ପରି ଜହ୍ନ ପଡ଼ିଛି । ]

ଜହ୍ନିଫୁଲ ଗୀତ—ଦେ. ବି—ଜହ୍ନିଫୁଲ ଓଷା କରିଥିବା ବାଳିକାମାନଙ୍କର
Jahni-phula gita ଗୀତ—The songs sung by girls observing the jahni-oshā vow.

ଭେଦୁଅମାସର ଜହ୍ନିଫୁଲ ଗୀତ ଖୁଦୁ-ଲୁଣି-ଓଷା-ମେଳ ।
ନନ୍ଦକିଶୋର. ନିର୍ଝରିଣୀ ।

[ ଦ୍ର—ବାଳମାନେ ନିମ୍ନଲିଖିତ ଗୀତ ଗାଇ ଜହ୍ନିଫୁଲ ଚୁଲିକୁ ପକାନ୍ତି, ଯଥା—ଜହ୍ନି ଜହ୍ନି ଅଞ୍ଜୁଳି, ବାଡିପଡ଼େ ତିନି ଅଞ୍ଜୁଳି,
ଦୋଳିରେ ଯାଏ, ଦୋଳିରେ ଆସେ,
ଠେକା ପିଢ଼ା ଖଣ୍ଡେ ମାଡ଼ି ବସେ,
ମୋ ବୋପା ମୋ କୋଡ଼ରେ ବସେ,
ନାଉଣୀବୋପା ଭୂଇଁ ପରଶେ—ଇତ୍ୟାଦି । ]

ଜହ୍ନିଫୁଲ ପରି ଆୟୁଷ ପାଇବା—ଦେ. କ୍ରି ( ବ୍ୟଙ୍ଗୋକ୍ତି ) (ଅଶୀ-
Jahniphula-pari āyusha pāibā ବାଚନ)—ଅଳ୍ପାୟୁ ହେବା—To be short-lived.

ଜହ୍ନି ଫୁଲ ପରି ଆୟୁଷ ପା
ସଞ୍ଜେ ଫୁଟି ସକାଳେ ଯା—ଢଗ ।

[ ଦ୍ର—ଜହ୍ନିଫୁଲ ସନ୍ଧ୍ୟାବେଳେ ବଡ଼ ତୋଫା ହୋଇ ଫୁଟେ ଓ ସକାଳୁ ମଉଳି ପଡ଼େ । ଏଥିପାଇଁ ଅଳ୍ପାୟୁରେ ଏହି ଢଗ ବୋଲା ଯାଏ । ]

ଜହ୍ନିମଞ୍ଜି ପରି ଗୋରା—ଦେ ବିଣ. (ବ୍ୟଙ୍ଗୋକ୍ତି)—ଜହ୍ନିଫଳର ମଞ୍ଜିପରି
Jahni-mañji pari gorā ଘୋର କୃଷ୍ଣବର୍ଣ୍ଣ ଚର୍ମବିଶିଷ୍ଟ—(ironical) Having a very dark complexion of the body.

ଜହ୍ନୁ—ସଂ. ବି. (ହା ଧାତୁ=ତ୍ୟାଗ କରିବା+କର୍ତ୍ତୃ. ନୁ ; ଯେ ଧର୍ମପାଇଁ
Jahnu ସଂସାର ତ୍ୟାଗ କରିଥିଲେ)—୧ । ସୁହୋତ୍ରଙ୍କ ପୁତ୍ର ରାଜର୍ଷି-ବିଶେଷ—1. The name of a sage-king.

[ ଦ୍ର—ତପସ୍ୟାବଳରେ ଭଗୀରଥ ଗଙ୍ଗାଙ୍କୁ ସ୍ୱର୍ଗରୁ ପୃଥିବୀକୁ ଆଣିବା ବେଳେ ଗଙ୍ଗାନଦୀ ଜହ୍ନୁ ରାଜାଙ୍କ ଯଜ୍ଞଭୂମିକୁ ପ୍ଲାବିତ କରିବାରୁ ଜହ୍ନୁ କ୍ରୁଦ୍ଧ ହୋଇ ଗଙ୍ଗାଙ୍କୁ ପିଇଦେଲେ । ପରେ ଭଗୀରଥ ତପସ୍ୟାଦ୍ୱାରା ଏହାଙ୍କୁ ସନ୍ତୁଷ୍ଟ କରିବାରୁ ଏ ଏହାଙ୍କ ଜାନୁ (ମତାନ୍ତରରେ କାନ) ବାଟେ ଗଙ୍ଗାଙ୍କୁ ବାହାର କଲେ; ଗଙ୍ଗା ବହିଯାଇ ସମୁଦ୍ରରେ ପଡ଼ିଲେ ଓ ସଗର ରାଜାଙ୍କ ପୁତ୍ରମାନଙ୍କୁ ଉଦ୍ଧାର କଲେ । ଜହ୍ନୁଙ୍କଠାରୁ ଗଙ୍ଗାନଦୀ ବାହାରିଥିବାରୁ ଗଙ୍ଗାଙ୍କର ଗୋଟିଏ ନାମ ଜାହ୍ନବୀ । ]

ଜହ୍ନୁଆଶ୍ରମ—ଦେ. ବି—ପ୍ରୟାଗ ତୀର୍ଥ; ଗଙ୍ଗାଯମୁନାର ସଙ୍ଗମସ୍ଥଳ—
Jahnu-āsrama Prayāga or Allahabad.

ଜହ୍ନୁକନ୍ୟା—ସଂ. ବି. ସ୍ତ୍ରୀ. (ଷଷ୍ଠୀ ତତ୍; ଜହ୍ନୁ+କନ୍ୟା)—ଗଙ୍ଗାନଦୀ—
Jahnu-kanyā The Ganges.
(ଜହ୍ନୁତନୟା, ଜହ୍ନୁସୁତା—ଅନ୍ୟରୂପ) [ ଦ୍ର—ପୁରାଣରେ ବର୍ଣ୍ଣିତ ହୋଇଅଛି ଯେ ଭଗୀରଥ ଗଙ୍ଗାଙ୍କୁ ଆଣୁଥିବା ସମୟରେ ଗଙ୍ଗା-ପ୍ରବାହରେ ତପୋବନ ପ୍ଲାବିତ ହେବାର ଦେଖି ରାଜର୍ଷି ଜହ୍ନୁ ଗଙ୍ଗାଙ୍କୁ ପିଇ ଦେଲେ । ପରେ ଭଗୀରଥ ଜହ୍ନୁ ଋଷିଙ୍କୁ ସ୍ତବରେ ତୁଷ୍ଟ କରିବାରୁ ମୁନି ଆପଣାର ଜାନୁଦେଶ ବିଦାରଣ କରି ଗଙ୍ଗାଙ୍କୁ ବାହାର କରି ଛାଡ଼ି ଦେଲେ । ସେହି କାରଣରୁ ଗଙ୍ଗାଙ୍କୁ ଜହ୍ନୁ ମୁନିଙ୍କ କନ୍ୟା (ଜାହ୍ନବୀ) ବୋଲି ବୋଲାଯାଏ । ]

ଜହ୍ନୁ ସପ୍ତମୀ—ସଂ. ବି—ବୈଶାଖ ଶୁକ୍ଳ ସପ୍ତମୀ—The 7th day of
Jahnu saptamī the bright fortnight of the month of Baisākha.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଇଅ' ନ ମିଳିଲେ 'କୃଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ନୀ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ ଦେଖିବେ

[ ଦ୍ର—ଏ ଦିନ ଜହ୍ନୁମୁନି ଗଙ୍ଗାଙ୍କୁ ପାନ କରିଥିଲେ । ]

ଜହ୍ଲା—ଦେ. ବି—ଜରାଳ ବା ଜରାଡ଼ ମାଛ; ଖଙ୍କାରଖାଇ ମାଛ; ରୂପା-
Jahlā ପାତିଆ ମାଛ—A kind of small fresh-water-fish.
[ ଦ୍ର—ଏମାନଙ୍କ ଦେହରେ ଶ୍ୱେତ କାତି ଥାଏ । ଦେହ ଚେପ୍ଟା, ପିଠି ନେଳିଆ । ଏମାନେ ପାଣିଉପରେ ଖେଳ କରି ଲେଉଟାଇବା ବେଳେ ରୂପା ପାତିଆ ପରି ଦେଖା ଯାଆନ୍ତି । ଏମାନଙ୍କ ମଧ୍ୟରୁ ଶ୍ରେଷ୍ଠ ଗୁଡ଼ିକୁ ଜରାଡ଼ ଓ ବଡ଼ ଗୁଡ଼ିକୁ ଜହ୍ଲା କୁହାଯାଏ । ]

ଜହ୍ଲାଦ—ବୈଦେ. ବି. (ଫା. ଜଲ୍ଲାଦ୍)—ଜଲ୍ଲାଦ (ଦେଖ)
Jahlāda Jallāda (See)

ଜା—ସଂ. ବି. ସ୍ତ୍ରୀ—୧ । ମାତା; ମାଆ (ହି. ଶବ୍ଦସାଗର)—
Jā 1. Mother.
୨ । ସାନଜାଆ; ସ୍ୱାମୀଙ୍କ ସାନଭାଇର ସ୍ତ୍ରୀ (ହି. ଶବ୍ଦସାଗର)
2. The wife of one's husband's younger brother.

ଜା (ଇତ୍ୟାଦି)—ଯା ଇତ୍ୟାଦି (ଦେଖ)
Jā (etc) Jā etc (See)

ଜାଆ—ଦେ. ବି—ଯାଆ (ଦେଖ)
Jā-ā Jā-ā (See)

ଜାଆଲ—ଦେ. ବି—ଜାଲ (ଦେଖ)
Jā-ālā Jālā (See)
(ଜାହାଲ—ଅନ୍ୟରୂପ)

ଜାଆଁଲ(ଳା) (ଇତ୍ୟାଦି)—ଯାଆଁଳ ଇତ୍ୟାଦି (ଦେଖ)
Jā-āṅla(ā) etc Jā-āṅla etc (See)

ଜାଆଁବାଳ—ଦେ. ବି. (ସଂ. ଯାମଲ)—ଯାଆଁବାଳ (ଦେଖ)
Jā-āṅbāla Jā-āṅbāla (See)

ଜାଇ—ଦେ. ବି. (ସଂ ଜାତି)—୧ । ଧଳା ବାସନାଯୁକ୍ତ ଏକପାଖୁଡ଼ିଆ
Jāi ଫୁଲବିଶେଷ; ଜାଇଫୁଲ—1. One-pettalled jasmine;
ଜାତି; ଚାମେଲି Jasminum Grandiflorum.
**चाम्बेलि; चम्बेलि** ଜାଇ ଫିଙ୍ଗିଦେଇ ଭୋଳ ଭବନ୍ତି । କବିସୂର୍ଯ୍ୟ- ସଙ୍ଗୀତ ।
୨ । କଞ୍ଚାମୁଗ ରଗଡ଼ା ହୋଇ ଚୋପା କଢ଼ା ହୋଇଥିବା ଡାଲି—2. Split moong-pulse cleared of its chaff
[ ଦ୍ର—ବିବାହ ଆଦି ମଙ୍ଗଳକାର୍ଯ୍ୟରେ ଆମନ୍ତ୍ରିତ ଶତଶତ ଲୋକଙ୍କ ପାଇଁ ମୁଗ ଭାଜି ତାକୁ ଡାଲି ତିଆରି ନ କରି କଞ୍ଚାମୁଗ ଯାକ ରଗଡ଼ି ପକାଇ ସେଥିରେ ହଳଦି ପାଣି ଓ ସାମାନ୍ୟରେ ଘିଅ ଗୋଳାଇ କାଣ୍ଡି ଦେଲେ ଅତି ସୁନ୍ଦର ମୁଗଡାଲି ହୁଏ । ଏହାକୁ ଜାଇ କହନ୍ତି । ଗୋଟିଏ ଶୁଭଦିନ ଦେଖି ଜାଇ ରଗଡ଼ାଆରମ୍ଭ କରାଯାଏ । ଏ କାର୍ଯ୍ୟକୁ ଜାଇବାଇରଗଡ଼ା ବା ଜାଇରଗଡ଼ା କହନ୍ତି । ]
ଆଚୀଁଳ ୩ । ଦେହରେ ଦେଖାଯିବା କଳା ଦାଗ; କଳାଜାଇ ମନ୍ଦା—
**तिल** 3 A mole in the body.

୪ । ଜାଇକାଠି (ଦେଖ)
4. Jāi-kāṭhi (See)

ଜାଇଁଲ—ଗ୍ରା. (ଇତର) କ୍ରି.—ଜାଣିଲ କ୍ରିୟାର ଇତରବ୍ୟବହୃତ ରୂପ—
Jāiṅla Slang form of the verb (you) have known.

ଜାଇକାଠି—ଦେ. ବି.—ଗଞ୍ଜାମରେ ମିଳୁଥିବା ଏକ ପ୍ରକାର ତୃଣ । [ ଏହାର
Jāi-kāṭhi ପଟି ଦ୍ୱାରା ପାରଳାଖେମଣ୍ଡି ଅଞ୍ଚଳରେ ପଟି, ଝୁଡ଼ି, ଝାଙ୍କଣା, ବାଗ୍ ଆଦି ବୁଣା ଯାଏ ]—A kind of reed with the strips of which various wicker-works are woven in Parlakhemidi in Madras.

ଜାଇଗି(ର)ରି—ବୈଦେ. ବି. (ଫା)—ଜାଗିର (ଦେଖ)
Jāigi(r)ri Jāgiri (See)

ଜାଇଣ୍ଟ୍—ବୈଦେ ପ୍ରାଦେ. (ଗଞ୍ଜାମ) ବିଣ—(କଚେରିଆ; ଇଂ. ଜଏଣ୍ଟ୍)—
Jāiṇṭ ଇଜମାଲି—Joint.

ଜାଇଣ୍ଟ୍ ମାଜିଷ୍ଟ୍ରେଟ—ବୈଦେ. ପ୍ରାଦେ (ଗଞ୍ଜାମ) ବି. (ଇଂ)—(କଚେରିଆ
Jāiṇṭ mājishṭreṭ ଭାଷା; ଇଂ. ଜଏଣ୍ଟ୍ ମାଜିଷ୍ଟ୍ରେଟ୍)—
ଜଏଣ୍ଟ୍ ମାଜିଷ୍ଟ୍ରେଟ୍ (ଦେଖ)
Jaeṇṭ mājishṭreṭ (See)

ଜାଇତ୍ରୀ—ଦେ. ବି.—(ସଂ. ଜାତିପତ୍ରୀ)—ଜାତିଫଳ ବା ଜାଇଫଳର
Jaitrī ଚୋପା ଉପରେ ଜାଲପରି ମାଡ଼ିଥିବା ଏକ ପ୍ରକାର ପତଳା ସୁଗନ୍ଧିଯୁକ୍ତ ମସଲା—Myristica Fragrans; mace (a kind of spice); Kino; Muristica Malabarica (Kirtikar).
ଅନ୍ୟ ସଂ. ନାମ; ମଲନାଶିନୀ
ତେ. ଜାଜିଏତ୍ରି; ଯାପତ୍ରୀ
জৈত্রী
**जवित्री, जावित्री**
[ ଦ୍ର—ମଲକ୍କା ଦ୍ୱୀପପୁଞ୍ଜ ଓ ଦକ୍ଷିଣଭାରତର ଶୀତଳ ସ୍ଥାନମାନଙ୍କରେ ଏ ବୃକ୍ଷ ଜନ୍ମେ । ]

ଜାଇଦା(ଦ୍)ଦ୍—ବୈଦେ. ବି. (ଫା. ଜାୟଦାଦ୍=ସମ୍ପତ୍ତି)—
Jāidā(t)d ଜାଏଦାଦ୍ (ଦେଖ)
Jāedād (See)

ଜାଇପତ୍ରୀ—ଦେ ବି. (ସଂ. ଜାତିପତ୍ରୀ)—ଜାଇତ୍ରୀ (ଦେଖ)
Jāi-patrī Jāitrī (See)

ଜାଇଫଳ—ଦେ. ବି. (ସଂ.ଜାତିଫଳ)—ମଲକ୍କା ଦ୍ୱୀପ ଓ ଦକ୍ଷିଣ ଭାରତର
Jāi-phala ବୃକ୍ଷବିଶେଷର ମସଲା ଫଳବିଶେଷ—Nutmeg; Muristica Fragrans; Muristica Moschata.
ସଂ ସୁରପ୍ରିୟ, ମାଲତୀଫଳ
ତେ. ଜାଜି
জায়ফল
**जायफल**
[ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହାର ମାଦକ ଓ ଧାରକ ଗୁଣ ଅଛି । ଏହାକୁ ଘୋରି ଚନ୍ଦା ଯାଗାରେ ଲଗାଇଲେ ସେଠାରେ କେଶ ଉଠେ । ଏହାକୁ ଘୋରି ପାଣିରେ ମିଶାଇ ଲୋକେ ବାସପାଣି ତିଆରି କରନ୍ତି । ପାନ ଓ ଭାଙ୍ଗରେ ଏହା ମସଲାରୂପେ ବ୍ୟବହୃତ ହୁଏ । ଜାଇଫଳର ଏକ

| ୧ | ଇ | ଉ | ଋ,ଌ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ପ | ଋଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଏ୍ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଡ଼ | ନ୍ |

ଚରୁଡ଼ା ବିନ୍ଦୁ ( ଲକ୍ଷ୍ମଣୀ ସଙ୍ଗେ ବାଟ ) ଏହାକୁ ଏକ ପାନ କରି ଦିନ ମଧ୍ୟରେ ଏହିମାତ୍ରାରେ ୩ ପାନ ଖାଇଲେ ୩ ଦିନ ମଧ୍ୟରେ ଭୟାନକ ରକ୍ତାମାଶୟ ( କାଳରକ୍ତ ଝାଡ଼ା ) ଭଲ ହୁଏ । ଶିଶୁମାନଙ୍କ ପକ୍ଷେ ଏ ମାତ୍ରାର ଅର୍ଦ୍ଧେକ ଦିଆଯାଏ ।]

**ଜାଇଫୁଲ**—ଦେ. ବି.—ଜାଇ (୧) (ଦେଖ)
Jāi-phula                Jāi (1) (See)

**ଜାଇବଡ଼ି**—ଦେ. ବି. (ସହରର ଶବ୍ଦ)—ବିବାହାଦିରେ ବ୍ୟବହୃତ ହେବା
Jāi-bardi ପାଇଁ ପ୍ରସ୍ତୁତ ଜାଇ ଓ ବଡ଼ି—Split moong and balls of moong or brihi paste prepared for feeding guests in social festivals.

ଯାହା ଯେ ଯାହାର କଲେ ଅଯୋଜନ,
ଶୁଖାଇଲେ ଜାଇବଡ଼ି     ଭିକାରି. ସାଥୁକୁଆ ବାହା ।

**ଜାଇ ବାଇରଗଡ଼ା**—ଦେ. ବି—ବିଭବିବାହାଦି ପର୍ବରୁ ଗୋଟିଏ
Jāi-bāi-ragardā ଶୁଭଦିନ ଦେଖି ଉକ୍ତ ଉତ୍ସବ ନିମନ୍ତେ ପ୍ରୟୋଜନୀୟ 'ଜାଇ' ପାଇଁ ପ୍ରଥମେ ମୁଗରୁ ଚକିରେ ରଗଡ଼ିବା କର୍ମ—The first ceremonial grinding of moong (pulse) on an auspicious day to prepare dal for some familyfeast e. g. (marriage, investiture).

**ଜାଇମନ୍ଦା**—ଦେ. ବି.—କୌଣସି କୌଣସି ମନୁଷ୍ୟଙ୍କ ଦେହର ଜନ୍ମ-
Jāi-mandā କାଳରୁ ଦେଖା ଯିବା ଭଳ ଚିହ୍ନ; କଳାଜାଇ ମନ୍ଦା—
अँचील    A mole on the body (of some persons).
तिल

**ଜାଇରଗଡ଼ା**—ଦେ. ବି.—ଜାଇବାଇରଗଡ଼ା ( ଦେଖ )
Jāi-ragardā          Jāi-bāi-ragardā (See)

**ଜାଉ**—ଦେ. ବି.—(ସଂ. ଯବାଗୁ)—୧ । ମାଣ୍ଡିଆ, ଯବ, ଖୁଦ ଓ ଗୁଣ୍ଡିଲ
Jāu ଆଦିର ଚୂନାରେ ପାଣି ଦେଇ ସିଦ୍ଧ କରି ପ୍ରସ୍ତୁତ କରିବା ପାଣି-
माँड़ ପାଣିଆଁ ଓ ବହଳିଆ ଖାଦ୍ୟ; ଝିରସା—1. Gruel; pap;
लपसी, माँड़ gruel prepared from powderd rice and other grains boiled in water.
୨ । ଅନ୍ନ ମଣ୍ଡ—2. Paste prepared from boiled rice.
୩ । ଛଅଗୁଣ ଜଳରେ ଉତ୍ତମରୂପେ ସିଦ୍ଧ କରାଯିବା ଗୁଣ୍ଡିଲ—
3 Rice well boiled with 6 times its quantity of water.

ଜାଉ ଖାଇବ କି ମାଛ କୁଣ୍ଡେଇବ—ଢଗ ।

[ଦ୍ର—ଏକ ସମୟରେ ଦୁଇଟି ଅନବାର୍ଯ୍ୟ କାର୍ଯ୍ୟ କରିବାକୁ ହେଲେ ଏ ଢଗ ବୋଲାଯାଏ ।]

**ଜାଉଆ**—ଦେ. ବିଣ.—ଜାଉ ପରି ତରଳ ଓ କଅଁଳ; ଲକେଇ—
Jāuā                Gruel-like.

ଜାଉ ଜାଉ } —ଅନ୍ୟରୂପ   [ଦ୍ର—ଭାତ ଅଧିକ କଅଁଳ ହୋଇ
ଜାଉ ଜାଉଆ }              ଗଲେ ଜାଉଆ ହୋଇ ଯାଏ ]

**ଜାଉଁଳି** (ଇତ୍ୟାଦି)—ଯାଉଁଳି ଇତ୍ୟାଦି (ଦେଖ)
Jāunli (etc)          Jāunli etc (See)

**ଜାଉପାଣି**—ଦେ. ବି.—ଅତି ପାଣିଆ ଜାଉ—
Jāu-pāni             Watery gruel.

**ଜାଉଳି** (ଇତ୍ୟାଦି)—ଜାଉଁଳି ଇତ୍ୟାଦି (ଦେଖ)
Jāuli (etc)           Jāunli etc (See)

**ଜାଏତ୍**—ପ୍ରାଦେ.—( ସମ୍ବଲପୁର ) ବି. ( ତୁଳ. ନଏଦ୍=ନଦୀ; ସ୍ୱଏତ୍
Jāet              =ସ୍ୱେତ, ପାଏନ୍=ପାଣି)—ଜାତି—Caste.

**ଜାଏଦାଦ୍**—ବୈଦେ. ବି. (ଫା ଜାୟଦଦ୍=ସମ୍ପତ୍ତି)—୧ । ଜମିବାଡ଼ି;
Jāedād ଭୂସମ୍ପତ୍ତି—1. Immovable property.
जाएदाद ୨ । ବିଷୟସମ୍ପତ୍ତି; ସ୍ଥାବର ଓ ଅସ୍ଥାବର ସମ୍ପତ୍ତି—
जायदद् 2. Property (movable and immovable).

**ଜାଂଘିକ**—ସଂ. ବିଣ. ( ଜଂଘା+ଜୀବିକା ଅର୍ଥରେ. ଇକ )—ଜଂଘାଜୀବୀ;
Jāmghika          ଦ୍ରୁତଗାମୀ—Swift-going; fleet.
ବି.—୧ । ଧାଇଁ ବା ସମ୍ବାଦବାହକ—
1. A courier; messenger.
୨ । ଉଷ୍ଟ୍ର—2. A camel.

**ଜାଁକ୍**—ଦେ. ବି.—୧ । ଗର୍ବ; ମୁହଁବାଇଙ୍ଗି—
Jānk          1. Vaunting; vain boast.
झाँक ୨ । ଗର୍ବ—2. Pride.
झोंग

ପିନ୍ଧି ନୂଆ ଚକଚକିଆ ପୋଷାକ,
ଥୋକାଏ ବନ୍ଧୁ ମନେ ବଡ଼ ଜାଁକ ।   ରାଧାନାଥ. ଦରବାର ।

**ଜାଁକ୍‌ଜମକ**—ଦେ ବି. (ସଂ. ଗୁକଚକ୍ୟ)—୧ । ଗୁକଚକ୍ୟ—
Jānk-jamaka                1. Glitter.
झाँकझमक, झाँकाल, जमकाल ୨ । ଆଡ଼ମ୍ବର; ସମାରୋହ—
चमकदमक, आबताब   2. Pomp; pride; splendour.
ବିଣ.—୧ । ଆଡ଼ମ୍ବରପୂର୍ଣ୍ଣ—1. Showy; grand.
୨ । ଚକଚକିଆ; ଉଜ୍ଜ୍ୱଳ—Bright; glittering.

**ଜାଁକଡ଼** ( ଇତ୍ୟାଦି )—ଜାକଡ଼୍ ଇତ୍ୟାଦି (ଦେଖ)
Jānkard (etc)          Jākard etc (See)

**ଜାକ**—ଦେ. ବିଣ. (ସଂ. ଯନ୍ତ୍ରକ)—୧ । ସଂକୀର୍ଣ୍ଣ—
Jāka                1. Narrow.
तंग ଚେପ୍ସା—2. Tight.
୩ । ଭିଡ଼; ଘନସମାବିଷ୍ଟ—3. Crowded.
୪ । ସଙ୍କୁଚିତ—4. Contracted; straitened.
ବି.—ଭିଡ଼; ଗହଳ—Crowd.

**ଜାକଜମକ**—ଦେ. ବି. ଓ ବିଣ.—ଜାଁକ୍‌ଜମକ (ଦେଖ)
Jāka-jamaka          Jānk-jamaka (See)

**ଜାକଟ୍**—ବୈଦେ. ବି. (ଇଂ. ଜାକେଟ୍)—ଜାକେଟ (ଦେଖ)
Jākat               Jāket (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଷ୍ଟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଁଧା' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ୍' ଦେଖିବେ

ବୈଦେ. ବି. (ହି)—ଜାକଡ଼୍ (ଦେଖ)
Jākard (See)

**ଜାକଟ୍ ବହି**—ଦେ. ବି.—ଜାକଡ଼୍ ବହି (ଦେଖ)
Jākaṭ bahi Jākard bahi (See)

**ଜାକଡ଼୍**—ବୈଦେ. ବି. (ହି.)—୧ । କ୍ରେତା ବିକ୍ରେତା ଠାରୁ ପରୀକ୍ଷାର୍ଥ
Jākard ଗ୍ରହଣ କରିବା ପଣ୍ୟ ଦ୍ରବ୍ୟର ମୂଲ୍ୟ ବିକ୍ରେତା ନିକଟରେ
ଜାଁକଡ଼ ଜମା ରଖିବା ଓ ପସନ୍ଦ ନ ହେଲେ ଦ୍ରବ୍ୟ ଫେରାଇ ଦେଇ ମୂଲ୍ୟ
**जाँकड़** ଫେରି ପାଇବାର ଅଙ୍ଗୀକାର ବା ଚୁକ୍ତି—1. An agreement to take a commodity on inspection from a shopkeeper on depositing its price, the price to be returned if the thing is not approved; a conditional sale; a purchase on trust.
୨ । ପରୀକ୍ଷାର୍ଥ ବା ଦେଖିବା ପାଇଁ ପଣ୍ୟ ଦ୍ରବ୍ୟ (ଲୁଗା, ଅଲଙ୍କାର) ନିର୍ଦ୍ଦିଷ୍ଟ ଦିନ ସକାଶେ ନେବାର ରୀତି—
2. The system of taking things on inspection.

**ଜାକଡ଼୍ ଖାତା**—ଦେ. ବି.—ଜାକଡ଼୍ ବହି (ଦେଖ)
Jākard khātā Jākard bahi (See)

**ଜାକଡ଼୍ ବହି**—ଦେ. ବି.—ଯେଉଁ ପୁସ୍ତକରେ ପରୀକ୍ଷାର୍ଥ ଦିଆଯିବା
Jākard bahi ପଦାର୍ଥର ତାଲିକା ଓ ବିବରଣ ଲିପିବଦ୍ଧ ହୁଏ—
ଜାଁକଡ଼ବହି An account-book containing parti-
**जाँकड़ बही** culars of things sent to purchasers on inspection.

**ଜାକସାର**—ଦେ. ବିଣ.—୧ । ଅତ୍ୟନ୍ତ ସଂକୀର୍ଣ୍ଣ—
Jākasāra 1. Very narrow.
(ଫରୁକତ—ବିପରୀତ) (ଯଥା—ଜାକସାର ଘର)
**तंग** ୨ । (ପୋଷାକ ଆଦି) ଯାହା ଦେହକୁ ଖୁବ୍ କସି ହୁଏ; କସା-
(ଢିଲା; ଗଲଗଲିଆ—ବିପରୀତ) କସ୍—2. Tight.
(ଜାକସାରିଆ—ଅନ୍ୟରୂପ)

**ଜାକସିରି**—ଦେ. ବି.—ଶିଶୁମାନଙ୍କର ଅତିସାର ରୋଗ—
Jākasiri Infantile dysentery.

**ଜାକିଜାକି ହେବା**—ଦେ. କ୍ରି.—କୌଣସି କାର୍ଯ୍ୟ କରିବାକୁ ପଶ୍ଚାତ୍‌ପଦ
Jāki-jāki hebā ହେବା ବା କୁଣ୍ଠିତ ହେବା—To srink
**झिटकना** from doing a thing.

**ଜାକିଜୁକି ହେବା**—ଦେ. କ୍ରି—୧ । ଦେହକୁ ସଙ୍କୁଚିତ କରିବା—
Jāki-juki hebā 1. To contract one's limbs.
**सिकोड़ना** ୨ । ବ୍ୟୟ କରିବାକୁ କୁଣ୍ଠିତ ହେବା—
2. To be close-fisted; to shrink from spending money.

**ଜାକିଟ୍**—ବୈଦେ. ବି. (ଇଂ. ଜାକେଟ୍)—ଜାକେଟ୍ (ଦେଖ)
Jākiṭ Jākeṭ (See)

**ଜାକିଧରିବା**—ଦେ. କ୍ରି.—ଦୃଢ଼ଭାବରେ କୁଣ୍ଢାଇ ଧରିବା—
Jāki-dharibā To embrace closely; to hold tightly.

ଚକିତ ଶିଶୁକୁ ହସ୍ତେ ଧରିଲେ ଜାକି, ଆକଟେ ତା ମାଆ କୋଳେ ସ୍ତନଦାନେ ରତା
ରାଧାନାଥ, ମହାଯାତ୍ରା ।

**ଜାକିବା**—ଦେ. କ୍ରି. ( ସଂ. ଯନ୍ତ୍ର; ଯନ୍ତ୍ରୀକୃତ )—
Jākibā ୧ । କୌଣସି ବସ୍ତୁକୁ ଲୁଚାଇ କରି ରଖିବା—
(ଜକାଇବା—ଶିଳନ୍ତ) 1. To keep a thing concealed
ଜାଁକା (e. g. in the mouth, in the armpit or
**जकड़ना** waist-cloth).
୨ । କାଲରେ ଗୁଆଆଦି ପୂରାଇବା—2. To keep a thing inside the mouth below the cheeks.
୩ । ଟାଇଟ୍ କରିବା—3. To tighten.
୪ । ଧରି ରଖିବା; ଛାଡ଼ି ନ ଦେବା; ଉଡ଼ି ଧରିବା—
4. To tenaciously hold a thing; not to give up a thing.
୫ । ଦୁଇଆଡ଼ୁ ଚାପିବା—
5. To press from both sides.
୬ । ଘୁଞ୍ଚୁ କରିବା; ସଙ୍କୁଚିତ କରିବା—6. To contract.
୭ । ଧନକୁ ସଞ୍ଚୟକରି ରଖିବା—7. To store riches.
୮ । ବ୍ୟୟ କରିବାକୁ କୁଣ୍ଠିତ ହେବା—8. To be close-fisted or miserly; to be niggardly.
୯ । କୌଣସି ପଦାର୍ଥକୁ କାଖରେ ରଖି ବହିବା—
9. To carry a thing in the armpit.

ନାଁ ମାହାନ୍ତି, ଗାଁ ମାହାନ୍ତି, ମାହାନ୍ତିଙ୍କ ସଙ୍ଗେ ଥାଇ ମାହାନ୍ତି,
ପାଞ୍ଜି ପତର ଜାକି ମାହାନ୍ତି—ଢଗ ।

୧୦ । ଦୃଢ଼ରୂପେ ଆଲିଙ୍ଗନ କରିବା—
10. To embrac closely.
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ନେବା, ଆଣିବା, ଧରିବା, ରଖିବା କ୍ରିୟାର ସମାପିକା ରୂପଯୁକ୍ତ ହୁଏ । ]
୧୧ । ସଙ୍କୁଚିତ କରିବା—11. To contract.

**ଜାକି ରଖିବା**—ଦେ. କ୍ରି—୧ । ଦୃଢ଼ରୂପେ ଧରି ରଖିବା; ଛାଡ଼ି ନ
Jāki rakhibā ଦେବା—1. To hold on a thing very tightly.

ହଜାର ହଜାର ଯାର ପ୍ରଣୟବତୀ ବଜାର ତହିଁ କେହି
ରଖିଥିବ ଜାକି—କବିସୂର୍ଯ୍ୟ, ସଙ୍ଗୀତ ।

୨ । ଲୋଭପରବଶ ହୋଇ ଧନ ପ୍ରଭୃତି ସଞ୍ଚୟ କରିବା—
2. To avariciously save money and other things.

ଲୁବ୍ଧଲୋକ ଧନକୁ ଜାକି ରଖିଥାନ୍ତି
ଅକାର୍ଯ୍ୟରେ ଅପାତ୍ର ଲୋକରେ ଦିଅନ୍ତି—କୃଷ୍ଣସିଂହ, ମହାଭାରତ, ଶାନ୍ତି ।

**ଜାକି ହେବା**—ଦେ. କ୍ରି—୧ । ( ଲୁଗା ଆଦି ) ଦେହକୁ କସାକସ୍
Jāki hebā ହେବା; କସ୍ ହେବା—1. To sit tight on
**कस होना** the body ( said of a dress. )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ଁ | ଉଅ | ଞ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ, ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | | ଖ୍ୟ | ଯ | ସ | ଗଁ୍ୟ | ଇଅ | ଙ୍ଗ | ନ୍ |

**ଝୁସ୍ତ ହାନା** ୨ । ବହୁ ଲୋକ ଏକ ସ୍ଥାନରେ ଠେଁସାଠେଁସି ହୋଇ ରହିବା—2 To press against one another painfully; to huddle; to be huddled together.

ଜାକୁଅ—ଦେ. ବିଣ—୧ । ଜାକସାର ( ଦେଖ )
Jākuā 1. Jākasāra ( See )
ଜାଟକେଣି, ଜାଟକୋଇ } ସ୍ତ୍ରୀ ୨ । (ପୁଂ) ଯେ ଜାକେ —One who contracts; one who conceals a thing.
୩ । କୃପଣ—3. Miserly.

ଜାକେଟ୍—ବୈଦେ. ବି ( ଇଂ )—୧ । ସ୍ତ୍ରୀମାନଙ୍କ ଅଧା କୁର୍ତ୍ତା—
Jāket 1. Jacket; lady's waist-coat.
जाकेट ୨ । ପୁରୁଷମାନଙ୍କ ଅଧା କୁର୍ତ୍ତା—
**ज़ाकेट** 2. Waist-coat of males.

ଜାଗତିଆର୍—ଦେ. ବିଣ. ( ସଂ. ଜାଗରିତ )—
Jāgatiār ୧ । ସାବଧାନ ବା ସତର୍କ; ଚେତାଳ—
जागन्त 1. Cautious; careful; watchful.
**चौकस** ୨ । ଉନ୍ନିଦ୍ର; ଅନିଦ୍ରିତ—3. Wakeful.
( ଜାଗତିଆର—ବି )

ଜାଗର—ସଂ. ବି ( ଜାଗୃ ଧାତୁ=ନିଦ ଭାଙ୍ଗିବା; ଚେଇଁବା; ନିଦରୁ ଉଠିବା+ଭାବ. ଅ )—
Jāgara
୧ । ଚେଇଁବା; ଅନିଦ୍ରା; ଜାଗରଣ—1. Wakefulness.
ସର ସିନ୍ଧୁ ରଜନୀ ଜାଗରେ—କବିସୂର୍ଯ୍ୟ. ସଙ୍ଗୀତ ।
୨ । ନିଦରୁ ଉଠିବା; ନିଦ୍ରାଭଙ୍ଗ—
2. Waking from sleep.
୩ । ସତର୍କତା—3. Watchfulness; vigilance.
୪ । ମନର ଯେଉଁ ଅବସ୍ଥାରେ ମନୋବୃତ୍ତିମାନ ଜାଗ୍ରତ ଥାଏ—4. The state of mind in which one is vigilant.
୫ । ପାଗୁଳ—5. The cud.
୬ । କବଚ ( ହି. ଶବ୍ଦସାଗର )—6. Coat of mail.
जागन्त ଦେ. ବିଣ—ଉନ୍ନିଦ୍ର—
**चौकस** Vigilant; watchful.
जागरणी ଦେ. ବି. ( ସଂ. ଜାଗରଣ )—୧ । ଶିବରାତ୍ରୀ ଉତ୍ସବ ବା ଯାତ୍ରା; ଫାଲ୍‌ଗୁନ କୃଷ୍ଣ ଚତୁର୍ଦ୍ଦଶୀ—
1. The festival of Śibarātri.
୨ । ଯେଉଁ ପ୍ରଦୀପ ଦେବତାଙ୍କ ମନ୍ଦିରରେ ଦିବାନିଶି ଜଳୁଥାଏ—2. Lamp kept burning day and night before a Deity.
ଦେଉଳ ଭିତରେ ଯହିଁ ଜାଗର ଦେଇ ଯେ—ଉତ୍କ. ଲାବଣ୍ୟବତୀ ।
। ଯେଉଁ ଦୀପ ଶିବରାତ୍ରି ଦିନ ଅର୍ଦ୍ଧରାତ୍ରରେ ଶିବମନ୍ଦିରର ଚୂଡ଼ାକୁ ଉଠାଯାଏ—3. The lamp or light which is lifted to the top of the temple of God Śiba on the Śibarātri night.

ଜାଗରକ—ସଂ. ବିଣ. ( ଜାଗୃ ଧାତୁ+କର୍ତ୍ତୃ. ଅକ )—ନିଦ୍ରାରହିତ—
Jāgaraka Wakeful.

ଜାଗରଜାତ—ଗ୍ରା. ବି—ଜାଗରଯାତ୍ରା ( ଦେଖ )
Jāgara-jāta Jāgarajātrā ( See )
(ଜାଗର ଜାତର୍—ଅନ୍ୟରୂପ)

ଜାଗରଯାତ୍ରା—ଦେ. ବି—ଶିବରାତ୍ରି ବ୍ରତ; ଜାଗର ଅମାବାସ୍ୟା ରାତ୍ରିରେ ଦୀପଜଳା ଉତ୍ସବ
Jāgara-jātrā —The festival of lighting lamps on the night of Jāgara amābāsyā.
[ ଦ୍ର—ଏ ରାତିଯାକ ଜାଗରଣ କର୍ତ୍ତବ୍ୟ; ଅର୍ଦ୍ଧରାତ୍ରରେ ଜଣେ ଲୋକ ମହାଦେବଙ୍କ ମନ୍ଦିରର ଚୂଡ଼ାକୁ 'ମହାଦୀପ' ନେଇ ଉଠି ସେଠାରେ ଉକ୍ତ ଦୀପକୁ ସ୍ଥାପନ କରେ । ]

ଜାଗର ଜାଳିବା—ଦେ. କ୍ରି—ରାତିଯାକ ଦେବତାଙ୍କ ନିକଟରେ କିମ୍ବା ଶିବରାତ୍ରିର ରାତିରେ ମହାଦେବଙ୍କ ନିକଟରେ ଦୀପ ଜାଳି ନିଜେ ଉଜାଗର ହୋଇ ଜଗି ବସିବା—
Jāgara jāḷibā To keep a vigil throughout the night by setting up a lighted lamp before a Deity.
[ ଦ୍ର—କେହି କେହି ଅପୁତ୍ରକ ପିତାମାତା ପୂର୍ବରୁ ମନାସି ଥାଆନ୍ତି ଯେ ତାଙ୍କର ପୁଅ ହେଲେ ସେମାନେ ପୁଅର ମୁଣ୍ଡ ଉପରେ ଶିବରାତ୍ରି ଦିନ ଜାଗର ଜାଳିବେ । ତଦନୁସାରେ ପୁଅଟିଏ ହୋଇ ବଢ଼ିଗଲେ ଉକ୍ତ ପୁଅକୁ ଶିବମନ୍ଦିରକୁ ନେଇ ସେଠାରେ ଶିବରାତ୍ରିର ରାତିରେ ତା ମୁଣ୍ଡ ଉପରେ ଠେକା ବାନ୍ଧି ମାଟିପିଣ୍ଡୁଳା ରଖି ତା ଉପରେ ଘୃତପୂର୍ଣ୍ଣ ଦୀପ ରାତିଯାକ ଜାଳନ୍ତି । ]

ଜାଗରଣ—ସଂ. ବି. ( ଜାଗୃ ଧାତୁ+ଭାବ. ଅନ )—୧ । ଅନିଦ୍ରା; ଚେଇଁବା—1. Watchfulness; sleeplessness; vigil.
Jāgaraṇa
୨ । ନିଦ୍ରାଭଙ୍ଗ—2. Awaking from sleep
୩ । ସତର୍କତା—3. Vigilance.
୪ । ( ଲକ୍ଷଣାର୍ଥ ) ଅଭ୍ୟୁଦୟାକାଙ୍କ୍ଷା; ନିଜର ଉନ୍ନତିର ଚେଷ୍ଟା—
4. ( figurative ) Awakening; a desire or exertion for one's improvement.

ଜାଗରଣ କରିବା—ଦେ. କ୍ରି—ରାତିଯାକ ଚେଇଁବା—To keep up
Jāgaraṇa karibā at night; to sit up late at night.

ଜାଗରତ—ଗ୍ରା. ( ପଦ୍ୟ ) ବିଣ. ( ସଂ. ଜାଗ୍ରତ )—ସତର୍କ—
Jāgarata Cautious.
ଅହେ ଯୁଧିଷ୍ଠିର କ୍ଷୁଧାରେ ହେଲେ ଅର୍ତ୍ତି
ଖାଇବାରେ ହୋଇଥିବ ଜାଗରତ—କୃଷ୍ଣସିଂହ, ମହାଭାରତ, ଅନୁଶାସନ ।

ଜାଗର ଦୀପ—ଦେ. ବି—ଦେବତାଙ୍କ ନିକଟରେ ରାତିଯାକ ଜଳାଯିବା ଦୀପ—
Jāgara dīpa A lamp kept lighted throughout the night before a Deity.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ' ନ ମିଳିଲେ 'ଗାଢ' ଖୋଜିବେ, 'କୃଥ' ନ ମିଳିଲେ 'କୃଅ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜାଗରିଣ**—ସଂ. ବଣ. ପୁଂ ( ଜାଗୃ ଧାତୁ+ଇନ )—
Jāgariṇa ଜାଗରିତ ( ଦେଖ )
Jāgarita ( See )

**ଜାଗରିତ**—ସଂ. ବଣ. ( ଜାଗୃ ଧାତୁ+କର୍ତ୍ତୃ. ତ )—
Jāgarita ୧ । ବିନିଦ୍ର; ଯେ ଶୋଇ ନାହିଁ—
1. Sleepless; wakeful.
୨ । ଉନ୍ନିଦ୍ର; ଯାହାର ନିଦ୍ରା ଭଙ୍ଗ ହୋଇଅଛି—
2. Awakened from sleep.
୩ । ସାବଧାନ—3. Vigilant; watchful.
ସଂ. ବି. ( +ଭାବ. ତ )—
୧ । ଜାଗରଣ—1. Sleeplessness.
୨ । ସାଂଖ୍ୟ ଓ ବେଦାନ୍ତ ମତରେ ମନର ଯେଉଁ ଅବସ୍ଥାରେ ଇନ୍ଦ୍ରିୟ ଦ୍ୱାରା ସବୁ ପ୍ରକାର ବ୍ୟବହାର ଓ କାର୍ଯ୍ୟର ଅନୁଭବ ହୁଏ ( ହି. ଶବ୍ଦସାଗର )—
3. ( Sāṁkhya and Bedānta philosophy ) The state of mind in which one is conscious of all matters through the senses.

**ଜାଗରିତ ହେବା**—ଦେ. କ୍ରି—ନିଦରୁ ଉଠିବା—
Jāgarita hebā To awake; to rise from sleep.
জাগরিত হওয়া
**जागरित होना**

**ଜାଗରିତା**—ସଂ. ବଣ. ( ଜାଗୃ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ )—
Jāgaritā ଯେ କୌଣସି ବ୍ୟକ୍ତିକୁ ନିଦରୁ ଉଠାଏ—
One who awakens another from sleep.

**ଜାଗରୁକ**—ସଂ. ବଣ. ପୁଂ ( ଜାଗୃ ଧାତୁ+କର୍ତ୍ତୃ. ଉକ )—
Jāgaruka ୧ । ଜାଗରଣଶୀଳ—1. Wakeful.
(ଜାଗରୁକା—ସ୍ତ୍ରୀ) ୨ । ସତର୍କ; ସାବଧାନ—
2. Watchful; vigilant.
୩ । ହୁସିଆର—3. Careful
୪ । ଉନିଦ୍ର—4. Awake.
ସଂ. ବି—ଚୈତନ୍ୟ ( ହି. ଶବ୍ଦସାଗର )—Consciousness

**ଜାଗରୂକ**—ସଂ. ବଣ. ( ଜାଗୃ ଧାତୁ+ଊକ )—
Jāgarūka ୧ । ଜାଗରଣଶୀଳ—1. Wakeful.
୨ । ସତର୍କ; ସାବଧାନ—2. Watchful.
ଥରକେ ଯେବେ ଲୋକ ନ ହେଲ ଜାଗରୂକ (୨)
କହିବା କେତେ ତୁହା ତୁହାକୁ ଗୋ । କବିସୂର୍ଯ୍ୟ. ସଙ୍ଗୀତ ।

**ଜାଗର୍ତ୍ତ**—ଗ୍ରା. ବଣ. ( ସଂ. ଜାଗ୍ରତ୍ ) — ଜାଗ୍ରତ ( ଦେଖ )
Jāgarta Jāgrata ( See )
ପ୍ରାଦେ. (ଗଞ୍ଜାମ) ବଣ—୧ । ହୁସିଆର; ସାବଧାନ—
1. Vigilant; watchful.

୨ । କୌଣସି ଘଟନାର ଅପେକ୍ଷାରେ ପ୍ରସ୍ତୁତ ହୋଇ ରହିଥିବା—
2. Prepared; in order.
୩ । ସୁବିନ୍ୟସ୍ତ—3. Shipshape; well arranged.

**ଜାଗର୍ତ୍ତି**—ସଂ. ବି. ( ଜାଗୃ ଧାତୁ+ଭାବ ତି )—
Jāgartti ୧ । ଜାଗରଣ—1 Awaking; wakefulness.
୨ । ଅପ୍ରମାଦ—2. Freedom from defect or blunder.

**ଜାଗର୍ଯ୍ୟା**—ସଂ. ବି. ( ଜାଗୃ ଧାତୁ+ଭାବ. ଯ+ଆ )—
Jāgarjyā ୧ । ନିଦ୍ରାରୁ ଉଠିବା; ନିଦ୍ରାଭଙ୍ଗ—
1. Waking up from sleep.
୨ । ବିନିଦ୍ରତା—2. Wakefulness.
୩ । ସାବଧାନତା—3. Watchfulness; vigilance.

**ଜାଗା**—ବୈଦେ. ବି. ( ଫା. ଜାୟଗାହ୍ )—
Jāgā ୧ । ସ୍ଥାନ—1. Space; place.
জায়গা ୨ । ବସ୍ତୁ ରଖିବାର ପାତ୍ର—
**जगह, जागा** 2. Receptacle; vessel.
୩ । ଜାଗାଘର ( ଦେଖ )
3 Jāgā-ghara ( See )

**ଜାଗାଘର**—ଦେ. ବି—୧ । ଆଖଡ଼ା ଘର; ସଙ୍ଗୀତ ବା ମଲ୍ଲବିଦ୍ୟା ଅଭ୍ୟାସ କରିବାର ସ୍ଥାନ—1. Gymnasium; a
Jāgā-ghara
place where rehearsales in music and athletic exercises take place.
୨ । ଯେଉଁ ସ୍ଥାନରେ ଗ୍ରାମବାସୀମାନେ ସନ୍ଧ୍ୟା ବେଳେ ବଇଠକ ଓ ଆମୋଦପ୍ରମୋଦ କରନ୍ତି—
2. Village club-house; an evening club
[ ଦ୍ର—ଜାଗାଘରମାନଙ୍କରେ ସନ୍ଧ୍ୟାବେଳେ ଜାଗାସାଙ୍ଗମାନେ ସଙ୍ଗୀତ ଓ ବାଦ୍ୟାଦିର ଚର୍ଚ୍ଚା କରନ୍ତି, ଭାଙ୍ଗ ଓ ଗୁଡ଼ାଖିଆ ଆଦି କରନ୍ତି ଓ ସମୟେ ସମୟେ ଭୋଜି ମଧ୍ୟ କରନ୍ତି । ]

**ଜାଗାଜାଗା**—ବୈଦେ. କ୍ରି. ବଣ—ଜାଗେଜାଗେ ( ଦେଖ )
Jāgā-jāgā Jāge-jāge ( See )

**ଜାଗାପିଲା**—ଦେ. ବି—ଆଖଡ଼ା ଘରେ ନାଟ, ଗୀତ, କୁସ୍ତି ଆଦି ଶିଖୁଥିବା ଦଳର ଯୁବକଗଣ—Young men belonging to a party practising music and athletic feats at the gymnasium.
Jāgā-pilā

**ଜାଗା ବର୍ ଜାଗା**—ବୈଦେ. କ୍ରି. ବଣ. ( ଫା. ଜାୟଗାହ୍ ବର୍ ଜାୟଗାହ୍ )—
Jāgā bar jāgā
জায়গা বর জায়গা ୧ । ପ୍ରତ୍ୟେକ ସ୍ଥାନରେ—
**जागह बर जगह** 1. In every place.
୨ । ସବୁ ଠାରେ—2. At all places
୨ । ଭିନ୍ନ ଭିନ୍ନ ସ୍ଥାନମାନଙ୍କରେ—
2. At different places.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | କ୍ଷ | ଇଫ୍ | ଡ଼ଃ | ୱ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଂ | ଇଥ | ଡ଼ | ନ୍ |

**ଜାଗାସାଙ୍ଗ**—ଦେ. ବି—ଏକ ଜାଗାଘରେ ଯେଉଁମାନେ ଏକତ୍ର
Jāgā-sāṅga ଆମୋଦାଦ କରନ୍ତି—Members of a
(ଜାଗାସାଙ୍ଗୀ—ଅନ୍ୟରୂପ) village-club.

**ଜାଗିବା**—ଦେ. କ୍ରି. ( ସଂ. ଜାଗୃ ଧାତୁ )—
Jāgibā ୧ । ଚେଇଁବା; ନିଦ୍ରାରହିତ ହେବା—
(ଜଗେଇବା—ଣିଜନ୍ତ) 1. To keep awake; to watch up.
ଜାଗା ୨ । ନିଦରୁ ଉଠିବା—
ଜାଗନା 2. To rise from up sleep; to wake up.
ଜାଗି କାହିଁକୁ ଯିବେ କାହିଁ ସ୍ୱରେ । ସ୍ୱଧାନାଥ. ମେଘଦୂତ ।
୩ । ସତର୍କ ରହିବା—3 To be on the alert.
୪ । ନିଜର ଉନ୍ନତି କରିବାକୁ ଚେଷ୍ଟା କରିବା—
4. To exert for self-improvement.
ସେ ଜାତି ଜାଗିଲେ ଜଗତେ ତାହାଙ୍କୁ କାହିଁ କସ କେତେ ମାନ ।
ଦ୍ୱିକାସ. ଗୀତିଲହରୀ ।
୫ । (ଲକ୍ଷଣାର୍ଥ) ଆଳସ୍ୟ ବା ଜଡ଼ତା ବା ନିରୁତ୍ସାହ ପରିତ୍ୟାଗ ପୂର୍ବକ ଉଦ୍ୟମ କରିବା ବା ଚଞ୍ଚଳ ହେବା—
5. To throw off idleness and be active.
୬ । (ଅଗ୍ନି) ଜଳି ଉଠିବା—
6. (fire) To burn; to blaze up.
୭ । (ସକର୍ମକ) ନିଆଁ ଯେପରି ଲିଭି ନ ଯାଏ ସେପରି କରି ନିଆଁକୁ ଜଳାଇ ରଖିବା—7. To keep a fire burning.
୮ । ସତେଜ ହେବା—8. To brighten up.
୯ । ସମୃଦ୍ଧ ହେବା—9. To prosper.

**ଜାଗିର (ଇତ୍ୟାଦି)**—ବୈଦେ. ବି—ଜାଗିରି ଇତ୍ୟାଦି (ଦେଖ)
Jāgir etc Jāgiri etc (See)

**ଜାଗିରି**—ବୈଦେ ବି. (ଫା. ଜାଗୀର୍; ଜା=ଜମି; ଗୀର=ଗ୍ରହଣ)—
Jāgiri ୧ । ନିର୍ଦ୍ଦିଷ୍ଟ କାର୍ଯ୍ୟ କରିବା ପାଇଁ ଭୂମ୍ୟଧିକାରୀ ବା
ଜାୟଗୀର ଭୂପତିଙ୍କଠାରୁ କାର୍ଯ୍ୟକାରୀ ବ୍ୟକ୍ତି ପାଇଥିବା ନିଷ୍କର
ଜାଗୀର ଭୂମି ବା ଗ୍ରାମ; ପେନ୍ସନ୍ ବା ପୁରସ୍କାର ସ୍ୱରୂପ ରାଜାଙ୍କଠାରୁ ପ୍ରାପ୍ତ ଭୂଖଣ୍ଡ—Land or village granted rent-free by the land-lord or king for services rendered; grant of land as pension or reward.
୨ । ବେତନ ପରିବର୍ତ୍ତେ ଭୃତ୍ୟକୁ ପ୍ରଦତ୍ତ ଭୂମି—
2 Service-tenure; land granted rent-free to a servant in lieu of service; Jaighir.
( ଯଥା—ବଡ଼େଇ ଜାଗିରି, କମାର ଜାଗିରି, ମାଳି ଜାଗିରି, ମଶାଲଚୀ ଜାଗିରି, ସରବରାହକାରୀ ଜାଗିରି, ସେବକ ଜାଗିରି ଇତ୍ୟାଦି ଜାଗିରି । )
[ ଦ୍ର—ଏ ଶବ୍ଦ ଇଂରାଜୀଭାଷାରେ ମଧ୍ୟ ଚଳନ୍ତି । ]

**ଜାଗିରିଖିଆ**—ଦେ. ବିଣ. (ଫା. ଜାଗୀର୍+ସଂ. ଖାଦ ଧାତୁ)—
Jāgiri-khiā ଯେଉଁ ଭୃତ୍ୟ ଜାଗିରି ଭୋଗ କରେ—
Holding or enjoying service-tenure

**ଜାଗିରିଦାର୍**—ବୈଦେ. ବି. ( ଫା. ଜାଗୀରଦାର୍ )—ଜାଗିରି ଭୋଗ
Jāgiri-dār କରିବା ବ୍ୟକ୍ତି—Holder of Jaighir or
ଜାୟଗୀରଦାର service-tenure.
ଜାଗୀରଦାର
[ ଦ୍ର—ଇଂରାଜମାନେ ମାନ୍ଦ୍ରାଜଆଡ଼ୁ ପ୍ରଥମେ ଆସି ଓଡ଼ିଶା ଅଧିକାର କରିବା ସମୟରେ ଓଡ଼ିଶାର ଦ୍ୱାର ସ୍ୱରୂପ ଚିଲିକା ହ୍ରଦର ମୁହାଣ ବାଟେ ସେମାନଙ୍କ ଫଉଜ ଆସିଥିଲେ । ସେହି ସମୟରେ ସେମାନଙ୍କୁ ସହାୟତା କରିଥିବାରୁ ଫତେ ମହମ୍ମଦ୍ ନାମକ ବ୍ୟକ୍ତିଙ୍କୁ ଇଂରାଜ ସରକାର ପାରିକୁଦ, ମାଲୁଦ, ଅଲାରୀ, ବଜ୍ରକୋଟ ପ୍ରଭୃତିଗ୍ରାମମାନ ଜାଗିରିସ୍ୱରୂପ ଚିରକାଳ ପାଇଁ ନିଷ୍କରରୂପେ ଦେଲେ । ଫତେ ମହମ୍ମଦ ଓ ତାଙ୍କ ବଂଶଧରମାନ ଅଦ୍ୟାବଧି ଜାଗିରିଦାର୍ ବୋଲି ପରିଚିତ । ]

**ଜାଗୁଡ଼**—ସଂ. ବି. (ଯଙ୍ ଲୁଗନ୍ତ ଗୁଡ଼୍ ଧାତୁ=ବେଷ୍ଟନ କରିବା, ପେଷଣ
Jāguṛa କରିବା+କର୍ତ୍ତୃ. ଅ)—୧ । କୁଙ୍କୁମ (ଦେଖ)
1. Kuṅkuma (See)
୨ । ପ୍ରାଚୀନ ଦେଶବିଶେଷ (ହି. ଶବ୍ଦସାଗର)—
2. Name of an ancient country.

**ଜାଗୁଳାଇ**—ଦେ. ବି. ସ୍ତ୍ରୀ. ( ସଂ. ଜାଗ୍ରତ୍ ଗୌରୀ )—
Jāguḷāi ୧ । ଗ୍ରାମଦେବୀ ବା ଯୋଗିନୀବିଶେଷ—
(ଜାଗୁଳେଇ—ଅନ୍ୟରୂପ) 1. Name of a village-Goddess.
୨ । ଶ୍ରାବଣମାସ କୃଷ୍ଣପଞ୍ଚମୀ ରାତ୍ରିରେ ଗ୍ରାମର ଦ୍ୱାରେ ଦ୍ୱାରେ ପିଠାଭୋଗ ପାଇବା ଦେବୀବିଶେଷ—2. A village-Goddess worshipped by the offering of cakes at every door of the village on the night of the 5th day of the bright fortnight of Srābaṇa.
ଜାଗୁଳାଇ । ମା ଜାଗୁଳାଇ । ସବୁଦିନଙ୍କର ମାଆ
ବରତ ଭୁଜ ଖାଇନୁ ଯେବେ ମୋ ବୁଆରକୁ ଥା ।
ଜାଗୁଳାଇ ପଞ୍ଚମୀ. ଶିଶୁଗୀତ ।

**ଜାଗୁଳାଇ ପଞ୍ଚମୀ**—ଦେ. ବି. ( ସଂ. ଜାଗ୍ରତ୍ଗୌରୀ ପଞ୍ଚମୀ )—
Jāguḷāi pañchami ଜାଗ୍ରତ୍ଗୌରୀ ପଞ୍ଚମୀ; ଶ୍ରାବଣ ଶୁକ୍ଳ-
(ଜାଗୁଳେଇପଞ୍ଚମୀ—ଅନ୍ୟରୂପ) ପଞ୍ଚମୀ—The 5th day of the bright fortnight of Srābaṇa.
[ ଦ୍ର—ଏ ଦିନ ରାତ୍ରିରେ ଗ୍ରାମର ଭଣ୍ଡାରୀ ଗୋଟିଏ ମାଟିର ଜାଗୁଳାଇ ମୂର୍ତ୍ତି ନିର୍ମାଣ କରି ଗ୍ରାମର ଦ୍ୱାରେ ଦ୍ୱାରେ ନେଇ ବୁଲାଏ ଓ ଗୃହସ୍ଥମାନଙ୍କ ଦ୍ୱାରରେ ଉକ୍ତ ଠାକୁରାଣୀଙ୍କୁ ଉକୁଳ ପୂଜା ଦିଆଯିବା ପରେ ଉକ୍ତ ପ୍ରତିମାକୁ ନେଇ ପାଣିରେ ପକାଇ ଦିଏ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ସପ୍ତମ ୧ ଚକ୍ଷ୍ୱ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷ୍ୱ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚକ୍ଷ୍ୱ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚକ୍ଷ୍ୱ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'କୁଥ' ନ ମିଳିଲେ 'କୁଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅକ୍ଷି ନ ପାଇଲେ 'ଆକ୍ଷି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**ଜାଗୁଲି**—ଦେ. ବି—ବସାଦହି ବସାଇବା ନିମିତ୍ତ ନିର୍ମିତ ତଉଡ଼ାମୁହାଁ
Jāguli କ୍ଷୁଦ୍ର ମାଟିପାତ୍ର; ପଗୁଲି—A small pan for coagulating milk into curd.

**ଜାଗୁଲେଇ** ( ଇତ୍ୟାଦି )—**ଜାଗୁଲାଇ** ଇତ୍ୟାଦି ( ଦେଖ )
Jāgulei ( etc ) Jāgulāi etc ( See )

**ଜାଗୃ** ( ଧାତୁ )—ସଂ—ନିଦ୍ରାରୁ ଉଠିବା—
Jāgṛu ( root ) To wake up from sleep.

**ଜାଗେ ଜାଗେ**—ବୈଦେ. କ୍ରି. ବିଣ—ସ୍ଥାନେ ସ୍ଥାନେ, ଭିନ୍ନ ଭିନ୍ନ
Jāge jāge ସ୍ଥାନରେ—At different places.
ଜାୟଗାୟ ଜାୟଗାୟ
जगह गह

**ଜାଗ୍ରତ୍**—ସଂ. ବିଣ. [ଜାଗୃ ଧାତୁ+କର୍ତ୍ତ୍ରି. ଅତ୍ ( ଶତୃ )]—
Jāgrat ୧ । ଜାଗରଣଶୀଳ—1. Wakeful.
୨ । ନିଦ୍ରାହୀନ—2. Sleepless.
ବି—ଜାଗରଣ ଅବସ୍ଥା—Wakefulness.

**ଜାଗ୍ରତ**—ଦେ. ବିଣ. ପୁଂ (ସଂ. ଜାଗୃ ଧାତୁ+କର୍ତ୍ତ୍ରି ତ) —
Jāgrata ୧ । ଜାଗରଣଶୀଳ—1. Wakeful; watchful.
( ଜାଗ୍ରତ—ବିପରୀତ ) ୨ । ସାବଧାନ; ସତର୍କ—
(ଜାଗ୍ରତା—ସ୍ତ୍ରୀ) 2. Vigilant; careful.
୩ । ଜାଗରୁକ; ଯେ ଚେଇଁଛି—
3. Awake; not asleep.
୪ । ଯେଉଁ ଅବସ୍ଥାରେ ଜୀବ ସବୁ ବିଷୟ ଜାଣି ପାରେ—
4. Conscious; sentient.
ବି—ଚେଇଁବା; ନିଦ୍ରାହୀନତା—Sleeplessness.
ଜାଗ୍ରତ ସ୍ୱପ୍ନ ସଜନ,-ବେନି ଯେ କଲେ ଶୟନ
କଳ ଇଚ୍ଛବେଗେ ସ୍ୱଜା ନନ୍ଦ ସ୍ୱର୍ଗିଲା—ପ୍ରାଚୀ. କଳତରୁ।

**ଜାଗ୍ରତି**—ସଂ. ବି. ( ଜାଗୃ ଧାତୁ+ଭାବ. ତି )—ଜାଗରଣ—
Jāgrati Wakefulness.

**ଜାଗ୍ରଦବସ୍ଥା**—ସଂ ବି. ( ଜାଗ୍ରତ୍+ଅବସ୍ଥା )—ଚେଇଁବା ଅବସ୍ଥା—
Jāgradabasthā The state of being watchful or wakeful.

**ଜାଘନୀ**—ସଂ. ବି. ସ୍ତ୍ରୀ. ( ଜଘନ+ଅ+ସ୍ତ୍ରୀ. ଈ. )—
Jāghani ୧ । ଊରୁଦେଶ; ଜଙ୍ଘ—1. The front thigh; lap.
୨ । ଲାଙ୍ଗୁଡ଼; ପୁଚ୍ଛ—2. Tail.

**ଜାଙ୍ଗଲ**—ସଂ. ବି. ( ଜଙ୍ଗଲ+ଅ )—୧ । ହରିଣାଦି ବନ୍ୟପଶୁ—
Jāṅgaḷa 1. Wild beasts.
୨ । ଜଳହୀନ ଦେଶ—2. Waterless country.
[ ଦ୍ର—ଯେଉଁ ଦେଶରେ ବର୍ଷାର ପରିମାଣ ଅତି କମ୍, ଖରା ଓ ଗରମ ଅତି ବେଶି, ବହୁତ ଗଛ ଓ ଘାସ ଅଧିକ ନ ଥାଏ ଏବଂ କଣ୍ଟା ଗୁଳ୍ମ ଅଧିକ ଥାଏ ଓ ହରିଣ ଆଦି ପଶୁ ରହନ୍ତି ତାକୁ ଜାଙ୍ଗଲ ବୋଲାଯାଏ—ହି. ଶବ୍ଦସାଗର । ]
୩ । ଲବଙ୍ଗଲତା ନାମକ ବିଷବୃକ୍ଷ—
3. Gloriosa Superba; Methonica Superba ( M. W. ); Hyodrolea Zeylancia (Kirtikar).
ଯୋଗ ଯୋଗ ଜାଙ୍ଗଳ, ଗରଳ ଭୁଲେ ଉଦ୍ଧା ପରିଲୁ ରେ—
କବିସୂର୍ଯ୍ୟ, କଣୋସହିଁ, ସ-ଗୀତ।
୪ । ତିତ୍ତିର ପକ୍ଷୀ ( ହି. ଶବ୍ଦସାଗର )—
4. Partridge ( bird ).
୫ । ମାଂସ—5. Flesh; meat.
୬ । ଜାଙ୍ଗଲ ଦେଶରେ ମିଳୁଥିବା ହରିଣ ଆଦି ଜନ୍ତୁ ( ହି. ଶବ୍ଦସାଗର )—6. Animals found in waterless tracts.
[ ଦ୍ର—ଏମାନଙ୍କ ମାଂସ ମଧୁର, ରୁକ୍ଷ, ଲଘୁ, ପାଚକ, ରୁଚିକାରକ ଓ ଶୀତଳ । ଏହା ଶ୍ଳୀପଦ, ପ୍ରମେହ, ଗଣ୍ଡମାଳା ଆଦି ରୋଗୀର ଖାଦ୍ୟ—ହି. ଶବ୍ଦସାଗର । ]
ବିଣ—୧ । ବନ୍ୟ; ବନଚର—1. Wild.
୨ । ବନଜାତ—2. Growing wild.
୩ । ଅସଭ୍ୟ—3. Uncivilised.
୪ । ଅରଣ୍ୟମୟ—4. Full of forests.
୫ । ଜଙ୍ଗଲସମ୍ବନ୍ଧୀୟ—5 Relating to forests.

**ଜାଙ୍ଗଲ**—ପ୍ରାଦେ. ( ସମ୍ବଲପୁର ) ବି—ଦେହ—
Jāṅgala Body.
ଦେ. ବିଣ.— ଜଙ୍ଗଲି; ବନ୍ୟ—Wild; jungly.
ଉଡ଼ିଯିବ ହଂସରେ, ହୋଇ ଯୁବାସ୍ୱର, ଗମିଲେ ଜାଙ୍ଗଲ ବାଟେ—
ନନ୍ଦକିଶୋର, ଶମଶ୍ରୀ।

**ଜାଙ୍ଗଳି**—ସଂ. ବିଣ. ଓ ବି—ଜାଙ୍ଗଳିକ ( ଦେଖ )
Jāṅgaḷi Jāṅgaḷika ( See )

**ଜାଙ୍ଗଳିକ**—ସଂ. ବିଣ. ( ଜଙ୍ଗଲ+ସ୍ୱାର୍ଥେ. ଇକ )—ଜଙ୍ଗଲବାସୀ—
Jāṅgaḷika Inhabiting the forest; wild.
ବି—୧ । ସାପୁଆ; ଯେ ସାପ ଧରେ—
1. Snake-catcher; snake-charmer.
୨ । ବିଷବୈଦ୍ୟ—2. A doctor of snake-poisoning; a person who cures snake-bites.

**ଜାଙ୍ଗଳୀ**—ସଂ. ବି. ( ଜାଙ୍ଗଲ+ଈ )—ବାଇଡଙ୍କ; କପିକଚ୍ଛୁ; ( ହି. ଶବ୍ଦସାଗର )—Cowhage.
Jāṅgaḷi

**ଜାଙ୍ଗି**—ଦେ. ବି—ଜଙ୍ଘି ହରିଡ଼ା ( ଦେଖ )
Jāṅgi Jaṅghi harirḍā ( See )

**ଜାଙ୍ଗି ହରିଡ଼ା**—ଦେ. ବି—ଜଙ୍ଘି ହରିଡ଼ା ( ଦେଖ )
Jāṅgi harirḍā Jaṅghi harirḍā ( See )

**ଜାଙ୍ଗୁଲ**—ସଂ. ବି. ( ଜଙ୍ଗୁଲ+ଅ )—୧ । ବିଷ—
Jāṅgula 1. Poison.
( ଜାଙ୍ଗୁଲ—ଅନ୍ୟରୂପ ) ୨ । ତରଡ଼ା ( ଦେଖ )
2. Tararḍā ( See )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଈପ୍ସୃ | ଋଅ | ଞ୍ଚ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଞ | ନ୍ତୃ |

ଜାଙ୍ଗୁଳା—ଦେ. ବି. ସ୍ତ୍ରୀ. ( ସଂ ଜାଗ୍ରଦ୍‌ଗୌରୀ )—
Jāngulā ଜାଗୁଳାଈ ( ଦେଖ )
Jāgulāi ( See )

ଜାଙ୍ଗୁଳିକ—ସଂ. ବି. ( ଜାଙ୍ଗୁଳ+ଜ୍ଞାତାର୍ଥେ ଇକ )—
Jāngulika ୧ । ବିଷବୈଦ୍ୟ—
1 One who cures poisoning.
ଜାଙ୍ଗୁଳିକ } ଅନ୍ୟରୂପ
ଜାଙ୍ଗୁଳ
୨ । ସାପୁଆ —2. Snake-charmer; snake-catcher.
୩ । ବିଷ ବ୍ୟବସାୟୀ—
3. A dealer in poison.

ଜାଙ୍ଗୁଳିକା—ଦେ. ବି—ଜାଗୁଳାଈ ( ଦେଖ )
Jāngulikā Jāgulei ( See )

ଜାଙ୍ଗୁଳୀ—ସଂ. ବି—ସାପ ବିଷ ଝାଡ଼ିବା ବିଦ୍ୟା—
Jānguli The art of curing snake-bite.

ଜାଙ୍ଘି ହରିଡ଼ା—ଦେ. ବି—ଜଙ୍ଘି ହରିଡ଼ା ( ଦେଖ )
Jānghi harirdā Janghi harirdā ( See )

ଜାଚ୍ଚିଇ—ବୈଦେ. କ୍ରି. ( ସଂ. ଯାଚନ )—
Jāchāi ୧ । କୌଣସି ପଣ୍ୟ ଦ୍ରବ୍ୟକୁ ପରୀକ୍ଷା କରି ତହିଁର
ଜାଚାଇ ପ୍ରକୃତ ମୂଲ୍ୟ ଓ ଯୋଗ୍ୟତା ସ୍ଥିର କରିବା—
**जाँच** 1. Appraisment; examination; testing the purity and value of a thing.
୨ । ପରଖ; ପରୀକ୍ଷା—2. Test.

ଜାଜୁଲ୍‌ମାନ୍—ପ୍ରାଦେ. (ସମ୍ବଲପୁର) ବିଣ. (ସଂ. ଜାଜ୍ୱଲ୍ୟମାନ)—
Jājul-mān ୧ । ଜାଜ୍ୱଲ୍ୟମାନ ( ଦେଖ )
1. Jājjwalyamāna ( See )
୨ । ଅଗ୍ନିଶର୍ମା; କ୍ରୋଧରେ ପ୍ରଜ୍ୱଳିତ—
2. Burning with rage.

ଜାଜୁଲ୍ୟ—ଗ୍ରା. ବିଣ. (ପ୍ରାଚୀନ ପଦ୍ୟ) (ସଂ. ଜାଜ୍ୱଲ୍ୟମାନ)—
Jājulya ୧ । ଜାଜ୍ୱଲ୍ୟମାନ ( ଦେଖ )
1. Jājjwalyamāna ( See )
ଜାଜୁଲ୍ୟ ତେଜ ତାହାଙ୍କର
ତେଣୁ ବୋଲଇ ଜ୍ୟୋତିପୁର । ପ୍ରାଚୀ. ନର୍ଗୁଣ ମାହାତ୍ମ୍ୟ ।

ଜାଜୁଲ୍ୟତା—ଗ୍ରା. ବି. ( ଅପପ୍ରୟୋଗ )—ଉଜ୍ଜ୍ୱଳତା—
Jājulyatā Brightness.
ଯେ ତହିଁ ପାଇବ ଦେଖ ଜାଜୁଲ୍ୟତାମଏ । ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

ଜାଜୁଲ୍ୟମାନ—ଗ୍ରା. ବିଣ. ( ସଂ. ଜାଜ୍ୱଲ୍ୟମାନ )—
Jājulyamāna ଜାଜ୍ୱଲ୍ୟମାନ ( ଦେଖ )
Jājjwalyamāna ( See )

ଜାଜ୍ୱଲ୍ୟମାନ—ସଂ. ବିଣ. (ଯଙନ୍ତ ଜ୍ୱଲ=ଜାଜ୍ୱଲ ଧାତୁ=ଅତ୍ୟନ୍ତ ଦୀପ୍ତି
Jājwatyamāna ପାଇବା+କର୍ତ୍ତୃ. ଆନ )—
୧ । ଦେଦୀପ୍ୟମାନ; ବିଶେଷ ଭାବରେ ଦୀପ୍ତି ପାଉଥିବା; ଅତି ଉଜ୍ଜ୍ୱଳ—1 Dazzling; shining.
୨ । ଅତି ଜ୍ୱଳନ୍ତ—
2. Blazing; refulgent; splendid.

ଜାଞ୍ଚ୍—ବୈଦେ. ବି. ( ସଂ ଯାଚନ; ସେଟଲ୍‌ମେଣ୍ଟ୍‌ରେ ବ୍ୟବହୃତ )—
Jānch ୧ । ଭୂମିମାପ କାର୍ଯ୍ୟ ଠିକ୍ ରୂପେ ହୋଇ ଅଛି କି ନାହିଁ
জাঁচ ଏହା ପରୀକ୍ଷା କରିବା; ପ୍ରତାଳ—
**जाँच** 1. Check whether a land or plot has been properly measured.
୨ । ତନ୍ନ ତନ୍ନ କରି ଦୋଷଗୁଣ ନିରୂପଣ କରିବା—
2. Minute examination of the defects and bright points of a matter.

ଜାଞ୍ଜିବାର୍—ଦେ. ବି. (ନାମ)—ଇଂରାଜ ସାମ୍ରାଜ୍ୟର ଅଧୀନ ଜଣେ ଆରବୀ
Jānjibār ରାଜାଙ୍କ ଶାସିତ ପୂର୍ବଆଫ୍ରିକାର ରାଜ୍ୟବିଶେଷ—
জাংজিবার An Arab State in East Africa under
**जंजीबर** the protection and suzerainity of
(ଜାଞ୍ଜିବର—ଅନ୍ୟରୂପ) Great Britain

[ ଦ୍ର—ଏ ରାଜ୍ୟର ରାଜାଙ୍କୁ ସୁଲ୍‌ତାନ୍ ବୋଲାଯାଏ । ଏହାର ଉପକୂଳକୁ କେନିଆ ବୋଲାଯାଏ । କେନିଆରେ ଇଂରେଜମାନେ ଉପନିବେଶ କରି ଅଛନ୍ତି । ଏହି ରାଜ୍ୟରେ ଓ କେନିଆରେ ବହୁ ବର୍ଷରୁ ଓ ବହୁ ପୁରୁଷରୁ ବହୁ ସହସ୍ର ଭାରତବାସୀ ବାସ କରି ଅଛନ୍ତି । ]

ଜାଠ—ଦେ. ବିଣ—କୃପଣ—
Jāṭha Miserly; close-fisted.
जाठ ବି—୧ । କାନ୍ଧ—1. Shoulder.
**जाठ** ୨ । ପଞ୍ଜାବ, ରାଜପୁତାନା ଓ ସିନ୍ଧୁ ପ୍ରଭୃତି ସ୍ଥାନର କ୍ଷତ୍ରିୟଜାତିବିଶେଷ—The Jaths, a caste of Kshatriyas of the Punjāb, Rājaputānā and Sindh.

[ ଦ୍ର—ଏମାନେ ଯଦୁବଂଶୀୟ କ୍ଷତ୍ରିୟ ବୋଲି ଆପଣାକୁ ପରିଚୟ ଦିଅନ୍ତି । ଏମାନେ ବହୁ ସଂଖ୍ୟାରେ ଭାରତୀୟ ସୈନ୍ୟବିଭାଗରେ ପ୍ରବେଶ କରି ଅଛନ୍ତି । ସଂଯୁକ୍ତ ପ୍ରଦେଶରେ ଓ ଉତ୍ତରଭାରତରେ ଏହି ଜାତି କୃଷକ ବା କିଷାନ୍ ନାମରେ ଅଭିହିତ । ]
୩ । ଦଳ—3. Batch.
୪ । ବିଲାତର ରକ୍ଷଣଶୀଳ ନାମକ ରାଜନୈତିକ ଦଳ—
4. The Conservative party in English politics.

ଜାଠର—ସଂ. ବିଣ. ( ଜଠର+ଅ )—ଜଠର ବା ଗର୍ଭ ସମ୍ବନ୍ଧୀୟ—
Jāṭhara Pertaining to the belly.
(ଜାଠରୀ—ସ୍ତ୍ରୀ) ବି—ଜଠରାଗ୍ନି; କ୍ଷୁଧା—Digestive fire or energy; hunger.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଧୁ' ନ ପାଇଲେ 'ବଧୂ' ଦେଖିବେ, 'ଅଙ୍ଗ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ

ଜାଡ଼—ଦେ. ବି. ( ସଂ. ଜାଡ୍ୟ )—
Jārdā ୧ । ହିମ; ଶୈତ୍ୟ; ଥଣ୍ଡା—1. Cold
शीत
जाड़ा
ଘୋର ଜାଡ ମାଢ ପଡଇ କହିଁ କହିଁ ମଗ୍ଣରେ ।
ମଧୁସୂଦନ. ଛନ୍ଦମାଳା ।
୨ । ଶୀତକାଳ—2. Winter.
୩ । ଦେହକୁ ଶୀତ କରିବା—3. Feeling of cold.
ବିଣ—୧ । ଜଡ଼ ( ଦେଖ )
1 Jarda ( See )
୨ । ମୂକ—2. Dumb.
ଜାଡ କାଲି ପ୍ରାପ୍ତେ ହୋଇ ବସିଅଛ । ପ୍ରାଚୀ. ରହସ୍ୟମଞ୍ଜରୀ ।

ଜାଡ଼ କରିବା—ଦେ. ବି—ଶୀତ କରିବା—
Jārdā karibā Feeling of cold.
शीत लागा
जाड़ा लगना

ଜାଡ଼ଦିନ—ଦେ. ବି—ଶୀତ ଋତୁ—
Jārdā-dina Winter.
शीतकाल
जाड़ाकादिन

ଜାଡ଼ଲୁଗା—ଦେ. ବି—ଶୀତ ଲୁଗା; ଶୀତବସ୍ତ୍ର—
Jārdā-lugā Winter-cloth.
गरमकापड़
जाड़ाका कपड़ा

ଜାଡ଼ା—ଦେ. ବିଣ. ପୁଂ. ( ସଂ. ଜଡ଼ )—ଜଡ଼; ମୂକ—
Jārdā Dumb.
(ଜାଡ଼ୀ—ସ୍ତ୍ରୀ) ପ୍ରାଦେ. ( ବସ୍ତର ) ବି—ଜଡ଼ା, ଗବ—
Castor-oil-seed.

ଜାଡ଼ି—ଦେ. ବି. (ସଂ. ଜାଡ୍ୟ)—ଶୀତ; ଥଣ୍ଡା—
Jārdi Cold.

ଜାଡ଼ିବା—ଦେ. କ୍ରି.—(ସଂ. ଜଡ଼; ଜାଡ୍ୟ)—୧ । ଅତ୍ୟନ୍ତ ଥଣ୍ଡା ହେତୁ
Jārdibā (ପାଟି) ଶବ୍ଦ ମାରିଯିବା—1. (the mouth) To lose
ठीठाहओया the power of articulate speech owing to extreme cold.
୨ । ଅତ୍ୟନ୍ତ ଶୀତ ହେତୁ ଶରୀର ଅବଶ ହୋଇ ଯିବା; କୋଲ ମାରିବା—2. (the body) To become benumbed with extreme cold.
୩ । ଜମି ଯିବା; ଜମାଟ ବାନ୍ଧିବା—
3. To become frozen.
୪ । ଜଡ଼ପ୍ରାପ୍ତ ହେବା—
5 To become inert or dull.
୫ । ଅତିଶୟ ଶୀତଳ ହେବା—
5. To become very cold.
ଲୁଣ୍ଠିତ ପଡ଼ଇ ଗୋ ଜାଡ଼ଇ ବସୁନରୀ । ପ୍ରାଚୀ. ରହସ୍ୟମଞ୍ଜରୀ ।

ଜାଡ଼ୀ—ଦେ. ବିଣ. ସ୍ତ୍ରୀ—(ସଂ ଜଡ଼)—୧ । ମୂକା (ସ୍ତ୍ରୀ)—
Jārdi 1. Dumb (female).
କହୁଥିଲ ବୋଲୁଛ ଜନମରୁ ଜାଡୀ, ପୁଣି ସେ ଚେପଟାନାକୀ ।
ଭକ୍ତକାଶୀ. ସାଥିଭୁଆ ବାହା ।
ବି.—(ସଂ. ଜାଡ୍ୟ) ଜଡ଼ତା—Numbness
ବାହୁଲ ଜାଡୀ ଶୁକ କଣ୍ଠେ ରହୁଲ ନାହିଁ କହିବାର ଅରଣ୍ଟି ସେ ।
ଭଞ୍ଜ. ବୈଦେହୀଶବିଳାସ ।

ଜାଡ଼ୁଆ—ଦେ. ବିଣ. ପୁଂ. (ସଂ. ଜଡ଼)—ସ୍ପଷ୍ଟ ଉଚ୍ଚାରଣଶକ୍ତି ରହିତ;
Jārduā ଜଡ଼; ମୂକ—Dumb; incapable of making articulate speech.
ଜାଡ଼େଇ } —ସ୍ତ୍ରୀ
ଜାଡ଼ୋଇ }

ଜାଡ଼ୁଆ ଗୋସାଇଁ—ଦେ. ବି.—( ବ୍ୟକ୍ତିରୂପେ କଳ୍ପିତ ) ଶୀତ—
Jārduā gosāin̐ Cold (personified).
(ଜାଡ଼ୁଆ ଗୋସେଇଁ—ଅନ୍ୟରୂପ) ଏକେଇ ଗଲ୍ । ଉହୁଁ ଜାଡୁଆ ଗୋସାଇଁ ପରସନ୍ । ଚଗ ।

ଜାଡ଼ୁଆଲି—ଦେ. ବି—ଶୀତବସ୍ତ୍ର—
Jārduāli Winter-clothes.
ବିଣ.—ଶୀତକାଳୀନ—Pertaining to winter; wintry

ଜାଡ଼େଇବା—ଦେ କ୍ରି.—ଜାଡ଼ିବା (ଦେଖ)
Jārdeibā Jārdibā (See)

ଜାଡ୍ୟ—ସଂ. ବି (ଜଡ଼+ଭାବ. ଯ)—୧ । ଜଡ଼ତା; ନିର୍ଜୀବଭାବ—
Jādya 1. Inertness; dullness.
୨ । ଜଡ଼ବୁଦ୍ଧି; ମୂର୍ଖତା—2 Stupidity.
୩ । ଥଣ୍ଡା; ଶୀତ—3. Cold.
୪ । ଶୀତବୋଧ—4. Feeling of cold.
୫ । ଶୈଥିଲ୍ୟ; ଆଳସ୍ୟ—5. Idleness; laxity.
୬ । ସ୍ତମ୍ଭିଭାବ—6. Stupefaction.

ଜାଡ୍ୟାପହ—ସଂ. ବିଣ. ପୁଂ (ଜାଡ୍ୟ+ଅପ+ହନ ଧାତୁ+କର୍ତ୍ତୃ. ଅ)
Jādyāpaha ଯେ ବା ଯାହା ଜଡ଼ତା ନାଶ କରେ—That
(ଜାଡ୍ୟାପହା—ସ୍ତ୍ରୀ) which or he who cures a man's dullness.

ଜାଣ—ଦେ. ବି (ସଂ. ଜାଲ)—ଚିଲ୍କା ବା ସମୁଦ୍ର ଉପକୂଳସ୍ଥ ଜଳରେ
Jāṇa ମାଛ ଧରିବା ପାଇଁ ନିରୂପିତ ସ୍ଥାନ—Fishery-grounds in the Chilka lake or the sea-shore.

ଜାଣକାର—ଦେ.ବି.—(ସଂ. ଜ୍ଞାତା)—୧ । ବିଜ୍ଞ—
Jāṇakāra 1 Wise.
जानकार ୨ । ଚତୁର—2. Clever.
୩ । ବହୁଦର୍ଶୀ—3. Experienced.

ଜାଣତ—ଗ୍ରାମ୍ୟ. ବିଣ. (ସଂ. ଜ୍ଞାନତ୍)—୧ । ଜ୍ଞାନର ବିଷୟୀଭୂତ—
Jāṇata 1. Within one's knowledge or cognizance.
जानत ୨ । ଯେ ଜାଣି ଥାଏ ବା ଅନୁଭବ କରି ଥାଏ; ଯେ ଜାଣଇ;
जान ବିଜ୍ଞ—2. Experienced; knowing;
(ଜାଣନ୍ତ—ଅନ୍ୟରୂପ) cognizant.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୯ | ଇ | ଓ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଯ୍ୟ | ଉଅ | ଘ |
| ୨ | ଈ | ଊ | ଋ | ଌ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗିଁ୍ୟ | ଇଅ | ଜ୍ଞ | ନ୍ସ |

ବି.—ଜ୍ଞାନ—Knowledge.

**ଜାଣତ ପକ୍ଷେ**—ଗ୍ରା. କ୍ରି. ବିଣ—ଜାଣତରେ (ଦେଖ)
Jāṇata pakshe — Jāṇatare (See)
(ଯଥା—ମୁଁ ଜାଣତ ପକ୍ଷେ ଦୋଷୀ ନୁହେଁ ।)

**ଜାଣତରେ**—ଗ୍ରା. କ୍ରି. ବିଣ. (ସଂ. ଜ୍ଞାନତଃ)—ଜ୍ଞାତସାରରେ; ଜାଣୁଜାଣୁ;
Jāṇatare — ଜ୍ଞାନତଃ—Knowingly; consciously; to one's knowledge.
जानतपक्षे, जानते जानते
**जानते जानते, जानमे** (ଯଥା—ମୁଁ ଦେଖୁ ପାଇଲି ଧନ ଠାରୁ ମୋ ଜାଣତରେ କିଛି ଅପରାଧ କରି ନାହିଁ ।)

**ଜାଣନ୍ତ** (ଇତ୍ୟାଦି)—ଜାଣତ ଇତ୍ୟାଦି (ଦେଖ)
Jāṇanta (etc) — Jāṇata etc (See)

**ଜାଣନ୍ତା**—ଦେ. ବିଣ.—୧ । (ସଂ. ଜ୍ଞାତ) ଜ୍ଞାତ—
Jāṇantā — 1. Known.
୨ । (ସଂ. ଜ୍ଞାତା) ଯେ ଜାଣେ—
1. One who knows; knowing.

**ଜାଣନ୍ତା ପ୍ରମାଣେ**—ଦେ. କ୍ରି. ବିଣ—ଜାଣତରେ (ଦେଖ)
Jāṇantā pramāṇe — Jāṇatare (See)
ଜାଣନ୍ତା ପ୍ରମାଣେ, ଜଗତେ କାହାର,
ଦୋଷ କେବେ ମୁହିଁ କରି ନାହିଁତ । ନନ୍ଦକିଶୋର. କୃଷ୍ଣକୁମାରୀ ।

**ଜାଣବାହାଣ**—ଦେ. ବି.—ଜାଣମାନଙ୍କରେ ମାଛ ଧରିବା ପାଇଁ ଜାଲ
Jāṇa-bāhāṇa ପକାଇବା—Casting nets in the fishery-grounds.

**ଜାଣି**—ଦେ. (ପଦ୍ୟ) ଅ.—୧ । ତୁଲ୍ୟ; ପରି—
Jāṇi — 1. Like.
जेने — କନକ କୋମଳ ବାହୁଲତାର ତା ଠାଣି,
**जानो** — ଶିରସ ମାଳାରେ କୋକନଦ ଫୁଲ୍ଲ ଜାଣି । ଶିଶୁଶଙ୍କର ଉଷାଅଭିଳାଷ ।
୨ । ଫଳତଃ; ଫଳରେ—2. As a matter of fact.
ଏହି ଲୋକଙ୍କ ଜାଣିତା ଦୁଃଖ ହୁଏଛି । କୁନ୍ତଳାକୁମାରୀ. ନଅଭୁଣୀ ।

**ଜାଣିଘେନିବା**—ପ୍ରାଦେ. (ଗଞ୍ଜାମ) କ୍ରି.—ଜାଣିବା—
Jāṇi-ghenibā — To know.

**ଜାଣିଚତୁର**—ଦେ. ବିଣ. ପୁଂ—ଜାଣିସିଆଣ। (ଦେଖ)
Jāṇi-chatura — Jāṇi-siāṇā (See)
(ଜାଣିଚତୁର୍—ଅନ୍ୟରୂପ)
(ଜାଣିଚତୁରୀ; ଜାଣିଚତୁରେଣି—ସ୍ତ୍ରୀ)

**ଜାଣିବା**—ଦେ. କ୍ରି. (ସଂ. ଜ୍ଞା ଧାତୁ)—୧ । ଚିହ୍ନିବା—
Jāṇibā — 1. To recognise; to be acquainted with.
जाना — ଏକା ହୋଇ ବାଟକୁ ନ ଜାଣି ସେ ବନେ ।
**जानना** — କୃଷ୍ଣସିଂହ. ମହାଭାରତ ବନ ।
ଜଣାଇବା } ଣିଜନ୍ତ — ୨ । ଜ୍ଞାତ ହେବା; ଅବଗତ ହେବା—
ଜଣେଇବା } — 1. To know.
୩ । ସଂସାର ସମ୍ବନ୍ଧେ ଅଭିଜ୍ଞ ହେବା—3. To have worldly wisdom or experience.
୪ । ଅନୁଭବ କରିବା—
4. To experience; to perceive.
୫ । ବୁଝିବା; ହୃଦୟଙ୍ଗମ କରିବା—5. To understand.
ଶୋଣିତ ନଗରୀ ଜାଣ ଦପକ ପ୍ରଗ୍ରଭେ । ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୬ । ବାରିବା; ଏକାଧିକ ବସ୍ତୁର ପ୍ରଭେଦ ହୃଦୟଙ୍ଗମ କରିବା—6 To distinguish.
ରାତ୍ର ଦିବସ ନ ଜାଣିଲି ।
ତା ରୂପ ଧ୍ୟାନେ ହନଗଲି । ଜଗନ୍ନାଥ. ଭାଗବତ ।
[ ଦ୍ର—ଶୁଣିବା ଶବ୍ଦ ଏହାର ସହଚର ରୂପେ ବ୍ୟବହୃତ ହୁଏ; ଜାଣିବା କ୍ରିୟାର ଅସମାପିକା ରୂପ ସଙ୍ଗେ ନେବା, ପକାଇବା, ଯିବା, ଆସିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]
ଦେ. ବିଣ—୧ । ଯେସବୁ ବିଷୟ ଜାଣିଥାଏ; ଅଭିଜ୍ଞ—
1. Knowing; experienced.
(ଯଥା—ସେ ଜଣେ ଜାଣିବା ଶୁଣିବା ଲୋକ ହୋଇ ଅଧର୍ମ କଲେ ।)
जानवार — ୨ । ଚତୁର—2. Clever.
**जानकार** — ୩ । ବୁଦ୍ଧିମାନ୍—3. Intelligent.
୪ । ବିଜ୍ଞ; ଜ୍ଞାନୀ—4. Wise.
ଜାଣିମା ମନ୍ତ୍ରୀ ଯେବେ ନୃପ ପାଖେ ଥାଏ
ମହତ ସମ୍ପତ୍ତି ସେ ପ୍ରାପତ କରଏ ।

**ଜାଣିବାପଣ**—ଦେ. ବି—ବୁଝିବା ଶକ୍ତି; ଅଭିଜ୍ଞତା; ଜ୍ଞାନୀପଣ; ବିଜ୍ଞତା—
Jāṇibā-paṇa — Wisdom; prudence.
ପାଣ୍ଡବମାନଙ୍କ ଜାଣିବାପଣ ଯେତେ
ଜଣାପଡ଼ୁଗଲା ସବୁ ମଣୁଛି ମୁହିଁ ଚିତ୍ତେ । କୃଷ୍ଣସିଂହ. ମହାଭାରତ. ସଭା ।

**ଜାଣିବାବନ୍ତ**—ଦେ. ବିଣ. (ପଦ୍ୟ)—ବିଜ୍ଞ; ଅଭିଜ୍ଞ—
Jāṇibā-banta — Wise; experienced.
ବ୍ରାହ୍ମଣଙ୍କର ଧନ ଅଣିବାକୁ ମନ
ନ କରିବ ଜାଣିବାବନ୍ତ ହେଲେ ଜନ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।

**ଜାଣିବାର**—ଦେ. ବିଣ—ଜାଣିବା (ଦେଖ)
Jāṇibāra — Jāṇibā (See)
जानवार (ଯଥା—ତୁ ଜାଣିବାର ପିଲା ହୋଇ ଏପରି ଅବୁଝା
**जानता** ହେଉଛୁ ।)

**ଜାଣିବାର ଶୁଣିବାର**—ଦେ. ବିଣ—ଜାଣିବା (ଦେଖ)
Jāṇibāra śuṇibāra — Jāṇibā (See)

**ଜାଣିବା ଶୁଣିବା**—ଦେ. କ୍ରି—୧ । ଉତ୍ତମରୂପେ ବୁଝି ଜାଣିବା—
Jāṇibā śuṇibā — 1. To know very well.
जानाशुना — ୨ । ଉତ୍ତମରୂପେ ପରିଚିତ ହେବା—2 To be
**जानना शुनना** — intimately or well acquainted with.

**ଜାଣିବା ଶୁଣିବା ଲୋକ**—ଦେ. ବି—୧ । ବିଜ୍ଞ ବ୍ୟକ୍ତି—
Jāṇibā śuṇibā loka — 1. A wise man.
जानवार शुनवार लोक — ୨ । ବିଦ୍ୱାନ୍—2. Learned man.
୩ । ଅନୁଭବୀ ବ୍ୟକ୍ତି—3. A man of experience.
ଜାଣିବା ଶୁଣିବା ଲୋକମାନେ କହିଲେ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଜାଣିମା**—ଗ୍ରା. (ପ୍ରାଚୀନ) କ୍ରି ଓ ବିଣ—ଜାଣିବା (ଦେଖ)
Jāṇimā Jāṇibā (See)
ଯାଗ ବଦଳ୍ୟା ଜାଣିମା ବ୍ରିଜମାନଙ୍କରେ । କୃଷ୍ଣସିଂହ. ମହାଭାରତ. ଆଦି ।

**ଜାଣିମାର**—ଗ୍ରା. ବିଣ—ଜାଣିବା (ଦେଖ)
Jāṇimāra Jāṇibā (See)
ଯୁଧିଷ୍ଠିର ରାଜା ଅଟନ୍ତି ଜାଣିମାର । କୃଷ୍ଣସିଂହ. ମହାଭାରତ ସଭା ।

**ଜାଣିସିଆଣା**—ଦେ. ବିଣ. ପୁଂ—ଅତି ଚତୁର; ଧୂର୍ତ୍ତ—
Jāṇi-siāṇā Very cunning; shrewd.
সেয়ানপাগল
(ଜାଣିସିଆଣୀ—ସ୍ତ୍ରୀ)

**ଜାଣିଶୁଣି**—ଦେ. କ୍ରି. ବିଣ—ଉତ୍ତମରୂପେ ଅବଗତ ହୋଇ; ବୁଝିସୁଝି—
Jāṇi-śuṇi Knowing full well; with eyes wide open; intimately.
জেনেশুনে
जानसुनकर
ଧିକ ଧିକ । ଅହା ଜାଣିଶୁଣି ନରେ;
ଶାସ୍ତ୍ରବନ୍ତ ଭଲ ଅସତ୍ୟ ନଶ୍ୱରେ । ରାଧାନାଥ. ଦରବାର ।

**ଜାଣୁଜାଣୁ**—ଦେ. କ୍ରି. ବିଣ—ଜାଣିଶୁଣି (ଦେଖ)
Jāṇu-jāṇu Jāṇi-śuṇi (See)
(ଯଥା—ଜାଣୁ ଜାଣୁ ନିଆଁରେ ହାତ ଦେଲ ।)

**ଜାଣୁମଣି**—ଦେ. ବି—ବିବେକିତା—Conscientiousness.
Jāṇu-maṇi ବିଣ. ସ୍ତ୍ରୀ ଓ ପୁଂ—୧ । ଚତୁର—1. Clever.
जानमनि
ଭଲ ଜାଣୁମଣି ଯୁବତୀ ରଚନ ପକ୍ୱିଲୁ ଦେଇ ମୋତେ ।
ଭକ୍ତ. ପ୍ରେମସୁଧାନିଧି ।
୨ । ବିବେକୀ; ବିଜ୍ଞଶ୍ରେଷ୍ଠ—2. Very wise.

**ଜାତ**—ସଂ. ବିଣ. (ଜନ୍. ଧାତୁ=ଜନ୍ମ ହେବା+କର୍ତ୍ତୃ. ତ)—
Jāta ୧ । ଭୂମିଷ୍ଠ, ଉତ୍ପନ୍ନ; ଯାହା ଜନ୍ମିଅଛି—
1. Born; produced; grown.
୨ । ପ୍ରସୂତ—2. Begotten.
୩ । ସ୍ଫୁଟ; ବ୍ୟକ୍ତ; ପ୍ରକଟିତ—
3. Published; manifest.
୪ । ପ୍ରଶସ୍ତ—4. Broad.
୫ । କାରଣଦ୍ୱାରା କାର୍ଯ୍ୟରୂପେ ଘଟିଥିବା—
5. Caused as a result; resulting from.
୭ । ଘଟିଥିବା—7. Occasioned; happened.
୮ । ନ୍ୟସ୍ତ; ଭୁକ୍ତ—8. Included; diposited.
୯ । ନବଜାତ; ଶିଶୁ—9. Newly born.
ବି. (+ଭାବ. ତ)—୧ । ଶ୍ରେଣୀ; ଜାତି—
1. Kind; variety; class; species; caste.
୨ । ସମୂହ—2 Collection; multitide.
କାମ ମୁର୍ଚ୍ଛିଜାତ ପାଳିବା ଚହ୍ନ ଅର୍ଥେ ରଖିଲେ ପ୍ରଭୁ ।
ଯାଳକୃଷ୍ଣ. ରସକଲ୍ଲୋଳ ।
୩ । ବ୍ୟକ୍ତି; ପ୍ରକଟନ—
3. Publication; manifestation.
୪ । ଜନ୍ମ; ଉତ୍ପତ୍ତି—4. Production; growth; birth.
ଦେ. ବି (ସଂ. ଯାତ୍ରା)—ଯାତ (ଦେଖ)—
Jāta ( See )

**ଜାତକ**—ସଂ. ବି ( ଜାତ=ଜନ୍ମ+ସମ୍ବନ୍ଧାର୍ଥେ. କ )—୧ । ଜନ୍ମକୋଷ୍ଠୀ; ଜନ୍ମପତ୍ରିକା—1. Horoscope.
Jātaka
୨ । ଜାତ ଶିଶୁର ଶୁଭାଶୁଭଜ୍ଞାପକ ଗ୍ରନ୍ଥ—2. A book dealing with astrological calculations of a child's nativity.
୩ । ବୁଦ୍ଧାବତାର ପୂର୍ବେ ବୁଦ୍ଧଦେବଙ୍କ ୫୫୦ ଥର ପୃଥିବୀରେ ଜନ୍ମଗ୍ରହଣ କରିଥିବାର ବୃତ୍ତାନ୍ତ ସନ୍ନିବେଶିତ ଗ୍ରନ୍ଥବିଶେଷ; ବୌଦ୍ଧମାନଙ୍କ ଧର୍ମଗ୍ରନ୍ଥବିଶେଷ—
3. The title of a book of the Buddhists describing the 550 previous births of the Buddha.
୪ । ଜାତକର୍ମ; (ହିନ୍ଦୁମାନଙ୍କର) ସନ୍ତାନ ଜନ୍ମ ହେବା ସମୟରେ ପିତାଙ୍କର ଅନୁଷ୍ଠେୟ ସଂସ୍କାର କର୍ମ—4. Purificatory rites and ceremonials performed by the Hindu father on the birth of a child.
୫ । ନବଜାତ ସନ୍ତାନ—5. A new-born child.
୬ । ଭିକ୍ଷୁ—6. A man of the twice-born caste in the last stage of his existence.
ବିଣ—ଉତ୍ପନ୍ନ—Produced; born.
ଦେ. ବି (ପ୍ରାଚୀନ ପଦ୍ୟ)—ଜାତକାରୀ—One who gives birth.
ଆପେ ଜନମି ଜାତକ ଆପଣେ ମରଣ—ପ୍ରାଚୀ. ବ୍ରହ୍ମଜ୍ଞାନରୂପଣଗୀତା ।

**ଜାତକ କର୍ମ**—ଦେ. ବି (ସଂ. ଜାତ କର୍ମ)—ଜାତ କର୍ମ (ଦେଖ)
Jātaka karma Jāta karma ( See )
ଶୁଭତ ଶଙ୍ଖନାଦ ଭେରୀ,
ଶୁରେ ଜାତକ କର୍ମ କରି । ଜଗନ୍ନାଥ. ଭାଗବତ ।

**ଜାତକ ଦେଖିବା**—ଦେ. କ୍ରି—ଫଳିତ ଜ୍ୟୋତିଷ ଶାସ୍ତ୍ରାନୁସାରେ ଗଣନା କରି ମନୁଷ୍ୟଜୀବନର ଶୁଭାଶୁଭ ନିର୍ଦ୍ଦେଶ କରିବାର୍ଥେ ଉକ୍ତ ବ୍ୟକ୍ତିର ଜନ୍ମ-କୋଷ୍ଠୀ ପରୀକ୍ଷା କରିବା—
Jātaka dekhibā
To examine a person's horoscope.

**ଜାତକପତ୍ର**—ଦେ. ବି. ( ସଂସ୍କୃତ ଶବ୍ଦ )—ଜାତକ ଆଦି—
Jātaka-patra Horoscope etc.
ঠিকুজিপত্র
ତୁ ମୁଁ ହରିହେଁ ବର କନିଆଁ, ଜାତକ ପତ୍ରରେ ଅଛି—ତଙ୍କ ।
( ଜାତକପତର—ଅନ୍ୟରୂପ )

**ଜାତକ ବୁଝିବା**—ଦେ. କ୍ରି—ଜାତକ ଦେଖିବା ( ଦେଖ )
Jātaka bujhibā Jātaka dekhibā ( See )
ঠিকুজি বুঝা
जन्मकुण्डली बुझना

**ଜାତକ ମିଳିବା**—ଦେ. ବି—ଜାତକ ମେଳ ହେବା ( ଦେଖ )
Jataka milibā Jātaka meḷa hebā ( See )

| ୧ | ଇ | ଉ | ଋ,ଊ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଔ | ନ୍ମ |

**ଜାତକ ମେଳ ହେବା**—ଦେ. ବି—ପ୍ରସ୍ତାବିତ ବରକନ୍ୟାଙ୍କର ଜାତ-
Jātaka meḷa hebā କରେ ଥିବା ଗ୍ରହଲଗ୍ନାଦି ପରସ୍ପରଙ୍କ ମିଳନ
ଠିକୁଜିମିଳା ପ୍ରତି ଅନୁକୂଳ ଥିବା ଦେଖାଯିବା—
जन्मपत्री मिलना The tallying of the horoscopes
( ଜାତକ ଅମେଳ ହେବା—ବିପରୀତ ) of the bride and bridegroom elect which is favourable to their union.

**ଜାତକରେ ନାହିଁ**—ଦେ. ( ବାକ୍ୟ )—( ଅମୁକ ବିଷୟ ) ( ଅମୁକର )
Jātakare nāhiṅ ପ୍ରକୃତିବିରୁଦ୍ଧ ଅଟେ—(such and such
କୋଷ୍ଠୀତେନାହିଁ a thing ) Is against the nature ( of a person ).
( ଯଥା—ଖୋସାମତ କରିବା ମୋ ଜାତକରେ ନାହିଁ । )

**ଜାତକର୍ମ**—ସଂ. ବି ( ୬ଷ୍ଠୀ ତତ୍; ଜାତ=ଜନ୍ମ+କର୍ମ )—ହିନ୍ଦୁମାନଙ୍କର
Jāta-karma ଦଶକର୍ମ ମଧ୍ୟରୁ ଗୋଟିଏ ସଂସ୍କାର; ସନ୍ତାନ ଜନ୍ମ ହେବା ସମୟରେ ହିନ୍ଦୁ ପିତାଙ୍କ ଅନୁଷ୍ଠେୟ ସଂସ୍କାର-ବିଶେଷ—Purificatory rite performed by the Hindu father at the birth of a child.

**ଜାତକ ସୁଝିବା**—ଦେ. ବି—ଜାତକ ମେଳ ହେବା ( ଦେଖ )
Jātaka sujhibā Jātaka meḷa hebā ( See )
( ଜାତକ ନ ସୁଝିବା—ବିପରୀତ )
( ଜାତକ ସୁଝେଇବା—ଅନ୍ୟରୂପ )

**ଜାତକସ୍ଥାଣୀ**—ଦେ. ବିଣ—ନିଜର ଜନ୍ମସ୍ଥାନନିବାସୀ—One who
Jātaka-sthāṇi does not leave his birth-place.
ଜାତକସ୍ଥାଣୀ ଯେବେ ଅଛ ଉଦସୀ—ଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଜାତକୋପ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଜାତ+କୋପ )—
Jāta-kopa ଜାତକ୍ରୋଧ ( ଦେଖ )
( ଜାତକୋପା—ସ୍ତ୍ରୀ ) Jāta-krodha ( See )

**ଜାତକ୍ରିୟା**—ସଂ. ବି. ( ଜାତ+କ୍ରିୟା )—ଜାତକର୍ମ ( ଦେଖ )
Jāta-kriyā Jāta-karma ( See)

**ଜାତକ୍ରୋଧ**—ସଂ. ବିଣ. ପୁଂ. ( ବହୁବ୍ରୀହି, ଜାତ+କ୍ରୋଧ )—ମହା-
Jāta-krodha କୁପିତ; ଅତ୍ୟନ୍ତ ରୁଷ୍ଟ; କ୍ରୋଧାନ୍ଧ—Blinded
(ଜାତକ୍ରୋଧା—ସ୍ତ୍ରୀ) whith anger; angry.

**ଜାତକ୍ଲମ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଜାତ+କ୍ଲମ )—ଯାହାର କ୍ଲାନ୍ତି
Jāta-klama ଜନ୍ମିଅଛି; ପରିଶ୍ରାନ୍ତ; ଅତ୍ୟନ୍ତ କ୍ଲାନ୍ତ—
( ଜାତକ୍ଲମା—ସ୍ତ୍ରୀ ) Fatigued; tired.

**ଜାତଚକ୍ଷୁ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଜାତ+ଚକ୍ଷୁ )—ଯାହାର ଆଖି
Jāta-chakshu ଫିଟିଅଛି; ( ଯଥା—ବିରାଡ଼ିଛୁଆ; କୁକୁରଛୁଆ )—
( a puppy or kitten ) Having its eye-lids opened.

**ଜାତଦନ୍ତ**—ସଂ ବିଣ. ପୁଂ. ( ବହୁବ୍ରୀହି; ଜାତ+ଦନ୍ତ )—( ଶିଶୁ )
Jāta-danta ଯାହାର ଦାନ୍ତ ଉଠିଅଛି—(an infant) Whose teeth have come out; teething.

**ଜାତପକ୍ଷ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଜାତ+ପକ୍ଷ )—( ପକ୍ଷିଶାବକ )
Jāta-paksha ଯାହାର ପକ୍ଷ ଗଜୁରିଅଛି—( a young bird )
(ଅଜାତପକ୍ଷ—ବିପରୀତ) Whose wings have grown up; fledged.

**ଜାତପୁତ୍ର**—ସଂ. ବିଣ. ( ବହୁବ୍ରୀହି; ଜାତ+ପୁତ୍ର )—
Jāta-putra ଯାହାର ପୁତ୍ର ଜନ୍ମିଅଛି; ପୁତ୍ରବାନ୍—
(ଜାତପୁତ୍ରା—ସ୍ତ୍ରୀ) One who has a son born unto him.

**ଜାତବେଦ**—ଦେ. ବି. ( ସଂ ଜାତବେଦାଃ )—
Jāta-beda ୧ । ଅଗ୍ନି—1. Fire; the fire-god.
ବକ୍ଷୋଜେ ଯା ନଖ କ୍ଷତ ଜାତବେଦକଣଜାତ
ଦିଶିଲା ମଣି ଥାଉେ ଅଞ୍ଚଳରେ । ଭଞ୍ଜ, ବୈଦେହୀଶବିଳାସ ।
୨ । ଜଠରାଗ୍ନି—
2. The digestive fire inside the body.
ଦେ. ବି—ଶ୍ରୀକୃଷ୍ଣ—Śrikṛushṇa.
ଜାତବେଦ ଜାତବେଦ ଗର୍ବେ ସହର । ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି ।

**ଜାତବେଦାଃ**—ସଂ. ବି. ( ବହୁବ୍ରୀହି; ଜାତ=ଉତ୍ପନ୍ନ+ବେଦ; ଜାତ-
Jāta-bedāḥ ବେଦସ୍ ଶବ୍ଦ; ୧ମା. ୧ବ)—ଜାତବେଦ ( ଦେଖ )
Jāta-beda ( See)

**ଜାତବ୍ୟବହାର**—ସଂ.ବିଣ.ପୁଂ.(ବହୁବ୍ରୀହି; ଜାତ=ପ୍ରାପ୍ତ+ବ୍ୟବହାର)-
Jāta-byabahāra (ହିନ୍ଦୁ ସ୍ମୃତି) ବୟଃପ୍ରାପ୍ତ; ସାବାଳକ; ପ୍ରାପ୍ତ-
(ଜାତବ୍ୟବହାରା—ସ୍ତ୍ରୀ ) ବୟସ୍କ—( Hindu law ) One who has attained his majority.

**ଜାତମାତ୍ର**—ସଂ. ବିଣ. ( ଜାତ+କ୍ରିୟାକାଲାର୍ଥେ. ମାତ୍ର )—
Jāta-mātra ଯେ ଏହିକ୍ଷଣି ଜନ୍ମ ହୋଇଅଛି—
Born just now.
କ୍ରି. ବିଣ—ଜନ୍ମିବା ମାତ୍ରକେ; ଜନ୍ମ ଲଭିବାକ୍ଷଣି—
Immediately on being born; just after birth.

**ଜାତରୂପ**—ସଂ. ବି. ( ବହୁବ୍ରୀହି; ଜାତ=ଉତ୍ପନ୍ନ+ରୂପ=ଆକୃତି
Jāta-rūpa ଯାହାର )—ସ୍ୱର୍ଣ୍ଣ; ସୁନା—Gold.
ବନ୍ଧୁପାଶ ଅବ ଜାତରୂପ ଘର କଳଙ୍କି ଆସିଲି ପର ।
ଭଞ୍ଜ, ବୈଦେହୀଶବିଳାସ ।
ବିଣ—୧ । ସ୍ୱର୍ଣ୍ଣନିର୍ମିତ—1 Golden.
୨ । ସୁନ୍ଦର—2. Beautiful.
୩ । ଗୃହୀତରୂପ; ଯେ ମୂର୍ତ୍ତି ଧାରଣ କରିଅଛି—
3. Embodied; corporeal.

**ଜାତଶ୍ରମ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଜାତ+ଶ୍ରମ )—
Jāta-śrama ପରିଶ୍ରାନ୍ତ; ଜାତକ୍ଲମ—Fatigued.
(ଜାତଶ୍ରମା—ସ୍ତ୍ରୀ)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୁ' ନ ପାଇଲେ 'ବଧୂ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ ।

**ଜାତସ୍ପୃହ**—ସଂ. ବିଣ ପୁଂ. ( ବହୁବ୍ରୀହି; ଜାତ+ସ୍ପୃହା )—
Jāta-spṛuha ଯାହାର ସ୍ପୃହା ଜନ୍ମିଅଛି—Interested.
(ଜାତସ୍ପୃହା—ସ୍ତ୍ରୀ)

**ଜାତାଙ୍କୁର**—ସଂ. ବିଣ. (ବହୁବ୍ରୀହି; ଜାତ+ଅଙ୍କୁର )—
Jātāṅkura ଯାହାର ଗଜା ହୋଇଅଛି—Sprouted.

**ଜାତାନ୍ଧ**—ସଂ. ବିଣ. ପୁଂ ( ବହୁବ୍ରୀହି; ଜାତ+ଅନ୍ଧ )—
Jātāndha ଜନ୍ମାନ୍ଧ—Born blind
(ଜାତାନ୍ଧା—ସ୍ତ୍ରୀ)

**ଜାତାପତ୍ୟା**—ସଂ. ବିଣ. ସ୍ତ୍ରୀ. ( ବହୁବ୍ରୀହି )—ଯେଉଁ ସ୍ତ୍ରୀର ସନ୍ତାନ
Jātāpatyā ଜନ୍ମିଅଛି—(a woman) Who has given birth to a child.

**ଜାତାଶୌଚ**—ସଂ. ବି. ( ମ. ପ. ଲୋ; ଜାତ=ଜନ୍ମ+ଅଶୌଚ )—
Jātāśaucha ଶିଶୁ ଜନ୍ମ ହେଲେ କୁଟୁମ୍ବମାନଙ୍କୁ ଲାଗିବା ଅଶୌଚ;
(ମୃତାଶୌଚ—ବିପରୀତ) ଛୁଡିକିଅ; ସୂତକାଶୌଚ—
Uncleanness affecting the kinsmen on the birth of a child ( extending over a period of 10 days ).

**ଜାତି**—ସଂ. ବି. ( ଜନ୍ ଧାତୁ=ଉତ୍ପନ୍ନ ହେବା+ଭାବ. ତି )—
Jāti ୧ । ଗୁଣ; ଧର୍ମ; ଆକୃତି ଆଦିର ସମାନତା ଯୋଗୁଁ କରାଯିବା ବିଭାଗ; କୋଟି; ପ୍ରକାରଭେଦ—
1. Species; genus.

[ ଦ୍ର—ଏକ ଗୁଣବିଶିଷ୍ଟ ଏକାଧିକ ବ୍ୟକ୍ତି ବା ଜୀବ ବା ବସ୍ତୁର ସମଷ୍ଟି ବା ସମାଜକୁ ଜାତି ବୋଲାଯାଏ । ]

୨ । ଶାଖା; ସୃଷ୍ଟି ବିଭାଗ; ଶ୍ରେଣୀ—2. Class.

୩ । (ଅଧିକରଣ. ତି) ଗୋତ୍ର; ବଂଶ—3. Family; clan).

୪ । (+କର୍ତ୍ତୃ. ତି) (ଗୁଣକର୍ମ ବିଭାଗଜ) ବ୍ରାହ୍ମଣାଦି ଚତୁର୍ବର୍ଣ୍ଣ—
4. One of the four original castes of the Hindus.

[ ଦ୍ର—ହିନ୍ଦୁମାନଙ୍କ ମଧ୍ୟରେ ପ୍ରଥମେ ଗୁଣକର୍ମବିଭାଗ ଅନୁସାରେ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ଏହି ଚାରିଜାତି ବା ବର୍ଣ୍ଣର ସୃଷ୍ଟି ହୋଇଥିଲା ବୋଲି ଶାସ୍ତ୍ରରେ ଲେଖାଅଛି । କିନ୍ତୁ କାଳକ୍ରମେ ଏ ଜାତିବିଭାଗ ଜନ୍ମଗତ ହୋଇ ପଡ଼ିଅଛି । ଏହି ୪ବର୍ଣ୍ଣ ମଧ୍ୟରେ ସାମାଜିକ ରୀତିନୀତିର ପାର୍ଥକ୍ୟ ଅନୁସାରେ ଭିନ୍ନଭିନ୍ନ ସମାଜର ସୂତ୍ରପାତ ହେଲା । କଥାବାର୍ତ୍ତାରେ ଆମ୍ଭେମାନେ ଏକ ଧର୍ମାବଲମ୍ବୀ, (ହିନ୍ଦୁ, ଖ୍ରୀଷ୍ଟାନ, ମୁସଲମାନ), ଏକ ଦେଶବାସୀ (ଓଡ଼ିଆ, ବଙ୍ଗାଳୀ), ଏକ ସମାଜଭୁକ୍ତ (ହିନ୍ଦୁଙ୍କ ମଧ୍ୟରେ ଗଉଡ଼, କମାର, ତେଲି; ମୁସଲମାନଙ୍କ ମଧ୍ୟରେ ସିଆ, ସୁନ୍ନୀ; ଖ୍ରୀଷ୍ଟାନଙ୍କ ମଧ୍ୟରେ ପ୍ରୋଟେଷ୍ଟାଣ୍ଟ, ରୋମାନ୍‌କାଥଲିକ୍)ମାନଙ୍କୁ ସେହି ସେହି ଜାତିର ଲୋକ ବୋଲି କହୁଥାଉଁ । ଫଳତଃ ଏକ ଧର୍ମରେ, ଏକ ଗୁଣରେ, ଏକ ଦେଶରେ, ଏକ ବ୍ୟବସାୟରେ, ଏକ ବ୍ୟବହାରରେ, ଏକ ଧର୍ମବିଶ୍ୱାସରେ ଏକାଧିକ ବ୍ୟକ୍ତି ବା ଜୀବ ବା ବସ୍ତୁଙ୍କ ମଧ୍ୟରେ ସାମଞ୍ଜସ୍ୟ ଦେଖା ହେଲେ ତାଙ୍କୁ ଆମ୍ଭେମାନେ ଏକ ଜାତିର ବୋଲି ଗ୍ରହଣ କରୁଁ । ]

୫ । କୁଳ; ମନୁଷ୍ୟ ଯେଉଁ କୁଳରେ ଜନ୍ମ ଲଭିଥାଏ—
5. Class to which a person belongs by birth.
(ଯଥା—ସେ ଜାତିରେ ହିନ୍ଦୁଥିଲେ, ପରେ ଖ୍ରୀଷ୍ଟିଆନ୍ ହେଲେ ।)

୬ । ଜୀବାଦିଙ୍କ ଶ୍ରେଣୀ; ବର୍ଗ—
6. Class or species of animals.
(ଯଥା—ଗୋଜାତି; ଅଶ୍ୱଜାତି ।)

୭ । ଜାତିଗତ ବା ସାମାଜିକ ଶାଖା; ପାଟକ—
7. Society; social sub-caste; caste-guild.
ବାର ଜାତି ତେର ଗୋଲା, ବଇଷମ ହେଲେ ସବୁ ଗଲା । ତଗ ।

୮ । ଏକ ଦେଶବାସୀ ବ୍ୟକ୍ତିଗଣ—8. Nation; nationality; persons who belong to one country.
(ଯଥା—ଓଡ଼ିଆ ଜାତି; ବଙ୍ଗାଳି ଜାତି ।)

୯ । ବିଭିନ୍ନ ଧର୍ମାବଲମ୍ବୀ ବ୍ୟକ୍ତିଙ୍କ ସମଷ୍ଟି—9. Group of persons professing a particular religion.
(ଯଥା—ହିନ୍ଦୁ ଜାତି; ମୁସଲମାନ ଜାତି ।)

୧୦ । ନାରୀଧର୍ମ; ସତୀତ୍ୱ—10. Chastity.

୧୧ । ମାଳତୀଫୁଲ—11. Māḷatī flower.

୧୨ । ଜାଇ ଫୁଲ—12. Jāi flower.

୧୩ । ଲୌକିକ ଛନ୍ଦର ଦୁଇ ବିଭାଗରୁ ଏକତର (ଯଥା—ଆର୍ଯ୍ୟା)—13. One of the 2 classes of popular Sanskrit metres.

୧୪ । ଏକଜାତୀୟ ଯାବତୀୟ ପଦାର୍ଥର ଅସାଧାରଣ ଧର୍ମ (ଯେଉଁ ଧର୍ମ ସେହି ଜାତୀୟ ପଦାର୍ଥରେ ଥାଏ, ତଭିନ୍ନ ଜାତିରେ ଲକ୍ଷିତ ହୁଏ ନାହିଁ । ଯଥା—ବ୍ରାହ୍ମଣତ୍ୱ)—
(ଯଥା—ପଠାଣ ଘରେ ଖାଇବାରୁ ମଧୁମିଶ୍ରଙ୍କ ଜାତି ଗଲା ।)

୧୫ । (+ଅଧିକରଣ ତି)—ଚୁଲ୍ଲୀ—15. Oven.

୧୬ । ଆମଳକୀ (ହି. ଶବ୍ଦସାଗର)—
16. Embellic myrobalan.

୧୭ । ଜାଇଫଳ (ହି. ଶବ୍ଦସାଗର)—17. Nutmeg.

୧୮ । ଜାଇତ୍ରୀ (ହି. ଶବ୍ଦସାଗର)—18. Mace (spice).

**ଜାତ** ଦେ. ବି—ପ୍ରକାର—Kind; sort.

**ଜାତ** ଦେ. ବିଣ—ଜାତିଆ; ଉତ୍କୃଷ୍ଟ—Excellent.
ଜାତ କୁତୁହଳ ବାଗାଯୁନ ବନ୍ଦ ଅନାଇ ମୁଁ ଗୁଲୁଥିଲି ମନମନ ।
କବିସୂର୍ଯ୍ୟ, କଣୋସାଚମ୍ପୁ, କ ଗୀତ ।

**ଜାତି ଅଟକ ହେବା**—ଦେ. କ୍ରି—ଅକ୍ରିୟା ଆଦି କରିବାହେତୁ ସମାଜଚ୍ୟୁତ
Jāti aṭaka hebā ହେବା—To be excommunicated.
জাতথেকে যাওয়া
जातसे बाहर होना
(ଜାତିରୁ ଅଟକହେବା; ଜାତିରୁ ବାସନ୍ଦ ହେବା—ଅନ୍ୟରୂପ)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ୱ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଵ | ନ୍ |

**ଜାତିଆ**—ଦେ. ବିଣ. (ସଂ. ଜାତୀୟ)—୧ । ଜାତୀୟ—
Jātiā 1 Belonging to a class or nation
জাতেব ୨ । କୁଳୀନ; ଉଚ୍ଚବଂଶୀୟ—
জাতকা 2. Of noble birth; noble; of high family,
(ଅଜାତିଆ—ବିପରୀତ) well-born.
୩ । ରାଜାମାନଙ୍କ ବଂଶରେ କ୍ଷତ୍ରିୟକୁଳର ବିବାହିତା ସ୍ତ୍ରୀଙ୍କ ଗର୍ଭରୁ ଜାତ (ସନ୍ତାନ—3. Born of a married wife of Kshatriya caste.
୪ । ଉତ୍କୃଷ୍ଟ; ଉତ୍ତମଜାତୀୟ—4. Excellent.
ପ୍ରାଦେ. (ଗଡ଼ଜାତ) ବିଣ.—ଯେ ଅସ୍ପୃଶ୍ୟ ଜାତିର ଲୋକଙ୍କୁ ଛୁଇଁ ନ ଥିବାରୁ ପବିତ୍ର ଅଛି—One who has remained pure for not having touched an untouchable person.

**ଜାତିଆ ଅନ୍ତର**—ଦେ. ବି.—ରାଜା ଆଦିଙ୍କର ରକ୍ଷିତା କ୍ଷତ୍ରିୟକନ୍ୟା-
Jātiā antara ଗର୍ଭରୁ ଜାତ ସନ୍ତାନ—A son born of a Kshatriya girl (with whom marriage has not been performed.)

**ଜାତିଆଣ**—ଦେ. ବିଣ.—ଜାତି ବା ସମାଜ ସମ୍ବନ୍ଧୀୟ; ଜାତୀୟ—
Jātiāṇa Pertaining to a particular society.
ଚନ୍ଦ୍ରମାନଙ୍କ ଜାତିଆଣ ଝଗଡ଼ାରେ ମହାରଣ ଘଟିବାର ହୋଇଅଛି ।
ଫକୀରମୋହନ, ଛମାଣଆଠଗୁଣ୍ଠ ।

**ଜାତିଆଣ କାମ**—ଦେ. ବି.—ଜାତିକାମ; ଜାତିର କାର୍ଯ୍ୟ; ହାଟୁଆମାନଙ୍କର
Jātiāṇa kāma ସାମାଜିକ ବୈଠକ ବା ଭୋଜି—Social function; caste-feast or meeting.

**ଜାତିଆଣ ଭାତ**—ଦେ. ବି.—ଜାତିଭାତ (ଦେଖ)
Jātiāṇa bhāta Jāti-bhāta (See)

**ଜାତିଆଣ ସଭା**—ଦେ. ବି.—ଏକ ଜାତି ବା ପାଠକର ଅନ୍ତର୍ଭୁକ୍ତ
Jātiāṇa sabhā ବ୍ୟକ୍ତିମାନଙ୍କର ସମାଜଗତ ବିଷୟର ବିଚାର ନିମନ୍ତେ ଜାତିର ନେତାମାନଙ୍କ ବଇଠକ—
A gathering of representative castemen for considering questions arising inside a particular caste-guild or society.

**ଜାତିକର**—ଦେ. ବିଣ.—ଜାତିଆ; ଉତ୍କୃଷ୍ଟଜାତୀୟ—
Jātikara Of excellent class.
ଜାତିକରଜା ସୁକେଶୀ, ଜାତିକର ଦ୍ରବ୍ୟ ସାରକ ସୁଦନ୍ତୀ ।
କବିସୂର୍ଯ୍ୟ, ଭୁଞ୍ଜାଗୀତ ।

**ଜାତିକର୍ମ**—ଦେ. ବି.—ଜାତିଗତ ବ୍ୟବସାୟ; ଜାତି ବା ପାଠକବିଶେଷର
Jāti-karma ନିର୍ଦ୍ଦିଷ୍ଟ କର୍ମ—Acts proper for the people of a particular caste.
[ ଦ୍ର—ହିନ୍ଦୁ ସମାଜରେ ଭିନ୍ନଭିନ୍ନ ଜାତି ନିମନ୍ତେ ଭିନ୍ନଭିନ୍ନ କାର୍ଯ୍ୟ ନିରୂପିତ ହୋଇଅଛି ଯଥା—ଭଣ୍ଡାରିଙ୍କର କ୍ଷୌର କର୍ମ, ଚଷାଙ୍କର କୃଷିକର୍ମ ଇତ୍ୟାଦି । ]

**ଜାତିକା**—ଗ୍ରା. ବିଣ. (ସଂ. ଜାତୀୟ)—୧ । ଜାତୀୟ; ଶ୍ରେଣୀୟ—
Jātikā 1. Belonging to a class or sort.
বকমের ୨ । ପ୍ରକାରର—
জাতকা, বকমকা 2. Of a kind.
(ଯଥା—ଏକଜାତିକା ଲୋକ । )

**ଜାତିକାମ**—ଦେ. ବି.—ହାଟୁଆମାନଙ୍କର ଅପଣାଅପଣା ପାଠକର
Jāti-kāma ସାମାଜିକ ବଇଠକ ବା ଭୋଜି—Caste-feast or meeting.

**ଜାତିକିଆ**—ଗ୍ରା. ବିଣ—ଜାତିକା (ଦେଖ)
Jātikiā Jātikā (See)

**ଜାତିକିଜାତି**—ଦେ. ବିଣ.—୧ । ଭିନ୍ନଭିନ୍ନ ଜାତିର ବା ପ୍ରକାରର—
Jāti-ki-jāti Of different so
୨ । ନାନାଜାତୀୟ - 2 Of various castes.
ଦେ. ବି.—୧ । ଭିନ୍ନଭିନ୍ନ ଜାତିମାନେ—2. Various castes.
୨ । ଅନେକ ପ୍ରକାର—2. Various sorts.

**ଜାତିକୁଳ**—ଦେ. ବି. ( ସଦ୍‌ଭବ; ସଂ. ଜାତି+କୁଳ )—
Jāti-kula ୧ । ବଂଶ—1. Family.
জাতিকুল ୨ । ବଂଶମର୍ଯ୍ୟାଦା—
জাতিকুল 2. Glory of a family.

**ଜାତିକୋଷ**—ସଂ. ବି—ଜାଇଫଳ—
Jāti-kosha Nutmeg.
(ଜାତିକୋଶ—ଅନ୍ୟରୂପ)

**ଜାତିକୋଷୀ**—ସଂ. ବି—ଜାଇତ୍ରୀ—
Jāti-koshi Mace ( spice ).
(ଜାତିକୋଶୀ—ଅନ୍ୟରୂପ)

**ଜାତି ଖୋଇବା**—ଦେ. କ୍ରି. ( ସଂ. ଜାତି+ଖାଦ୍ ଧାତୁ )—
Jāti khoibā ୧ । ଜାତିଭାଇମାନଙ୍କୁ ପଂକ୍ତିଭୋଜନ ଦେବା—
(ଜାତି ଖୁଆଇବା—ଅନ୍ୟରୂପ) 1. To give a caste-dinner.
୨ । ( ସଂ. ଜାତି+କ୍ଷେପଣ; ପ୍ରା. ଖେବଣ; ତୁଳ. ହି. ଖୋନା=ହରାଇବା )—ଜାତି ହରାଇବା ( ଦେଖ )
2. Jāti harāibā ( See )

**ଜାତିଚ୍ୟୁତ**—ସଂ. ବିଣ. ( ୫ମୀ ତତ୍; ଜାତି+ଚ୍ୟୁତ )—
Jāti-chyuta ଜାତି ହରାଇଥିବା; ଅଭକ୍ଷ୍ୟ ଆଦି ହେତୁ ସମାଜରୁ
(ଜାତିଚ୍ୟୁତି—ବିଶେଷ୍ୟ) ପତିତ; ସମାଜରୁ ବହିଷ୍କୃତ; ଜାତିଭ୍ରଷ୍ଟ—
Deprived of the privileges of one's caste or society; having fallen from or lost one's caste; excommunicated.

**ଜାତିଚ୍ୟୁତି**—ସଂ. ବି. ( ୫ମୀ ତତ୍; ଜାତି+ଚ୍ୟୁତି )—
Jāti-chyuti ଜାତିନାଶ; ଅକାର୍ଯ୍ୟ ଆଦି ହେତୁ ନିଜର ଜାତି ହରାଇବା; ଜାତିଧ୍ୱଂସ—Loss of one's caste; excommunication.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ପଙ୍‌କ୍ତି ଅକ୍ଷର ଓ ମାତ୍ରା ଏବଂ ୨ ପଙ୍‌କ୍ତି ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ପଙ୍‌କ୍ତିର କୌଣସି ବ ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ପଙ୍‌କ୍ତିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜାତିଜାତି**—ଦେ. ବିଣ—୧ । ଭିନ୍ନ ଭିନ୍ନ ଜାତିର ବା ପ୍ରକାରର—
Jāti-jāti 1. Of different sorts
ନାନାଜାତେର ୨ । ନାନାଜାତୀୟ 2. Of various sorts.
(ଜାତିକଜାତି, ଜାତିଜାତିଆ, ଜାତିଜାତିକଆ—ଅନ୍ୟରୂପ)

**ଜାତିଜ୍ଞାପକ**—ସଂ. ବିଣ. ( ଉପପଦ ତତ୍; ଜାତି + ଜ୍ଞାପକ )—
Jāti-jñāpaka ଜାତିବାଚକ ( ଦେଖ )
Jāti-bāchaka ( See )

**ଜାତିତତ୍ତ୍ୱ**—ସଂ. ବି. (ଆଧୁନିକ ପ୍ରୟୋଗ) (୬ଷ୍ଠୀ ତତ୍; ଜାତି + ତତ୍ତ୍ୱ)—
Jāti-tattwa ମାନବ ଜାତିର ମୂଳ ବିଭାଗ ଓ ପରସ୍ପର ସମ୍ବନ୍ଧ
(ଜାତିବିଜ୍ଞାନ—ଅନ୍ୟରୂପ) ବିଷୟକ ବିଜ୍ଞାନ; ମାନବବିଜ୍ଞାନ—
Ethnology.

**ଜାତି ଦେବା**—ଦେ. କ୍ରି—ଜାତି ହରାଇବା ( ଦେଖ )
Jāti debā Jāti harāibā ( See )

**ଜାତିଧର୍ମ**—ସଂ. ବି. ( ମ. ପ ଲୋ, ଜାତି+ଧର୍ମ )—
Jāti-dharma ୧ । ଜାତିଗତ ଧର୍ମ; ଭିନ୍ନ ଭିନ୍ନ ଜାତିର ଆଚରଣୀୟ ବ୍ୟବସାୟ; ଜାତିଗତ ପେଷା—1. The duties of a member of a particularl caste or society.
୨ । ( ୬ଷ୍ଠୀ ତତ୍ ) ବିଭିନ୍ନ ଶ୍ରେଣୀର ଜୀବର କ୍ରିୟା ବା ଗୁଣ—
2. The generic property or attribute of a particular class of beings.
୩ । ( ଦ୍ୱନ୍ଦ୍ୱ ) ଜାତି ଓ ଧର୍ମ—
3. One's caste and religion

**ଜାତିଧର୍ମ ନିର୍ବିଶେଷରେ**—ଦେ. କ୍ରି. ବିଣ—ଜାତି ବା ଧର୍ମ ବିଷୟରେ
Jāti-dharma nirbiseshare ପ୍ରଭେଦ ବିଚାର ନ କରି—
जाति धर्म्म निर्विशेषे Without distinction of caste or creed.
( ଯଥା—ମହାପୁରୁଷମାନେ ଜାତିଧର୍ମ ନିର୍ବିଶେଷରେ ପରର ଉପକାର କରି ଥାଆନ୍ତି । )

**ଜାତିଧ୍ୱଂସ**—ସଂ. ବି. ( ୬ଷ୍ଠୀ ତତ୍; ଜାତି+ଧ୍ୱଂସ )—
Jāti-dhwamsa ଜାତିଚ୍ୟୁତି ( ଦେଖ )
Jāti-chyuti ( See)

**ଜାତିନାଶ**—ସଂ. ବି. ( ୬ଷ୍ଠୀ ତତ୍; ଜାତି+ନାଶ )—
Jāti-nāsa ଜାତିଚ୍ୟୁତି ( ଦେଖ )
Jāti-chyuti ( See)

**ଜାତି ନେବା**—ଦେ. କ୍ରି—୨ । କୌଣସି ଲୋକର ସାମାଜିକ ବର୍ଣ୍ଣିଷ୍ଠତା
Jāti-nebā ନଷ୍ଟ କରାଇବା; କୌଣସି ବ୍ୟକ୍ତିକୁ ଅପବିତ୍ର କରାଇ
जात लेना बା ଅଖାଦ୍ୟ ଖୁଆଇ ତାହାକୁ ଜାତିଭ୍ରଷ୍ଟ କରାଇବା—
जात लेना 1. To make a person unclean by making him do or eat prohibited things.

୨ । କୁଳସ୍ତ୍ରୀର ସତୀତ୍ୱ ନାଶ କରିବା—
2. To commit adultery with a woman of family.

ପିନ୍ଧିଥିଲା ପାଟ ସାରୀ, ଜାତି ନବ ବୋଲି ପଠାଣଟୋକା ଦୁଆରେ ବସିଲା ମାଡ଼ି—ଭଗ ।

**ଜାତିପତି**—ଗ୍ରା. ବି. ( ଅନର୍ଥକ ଦ୍ୱିତୀୟ ସହଚର )—
Jāti-pati ୧ । ଜାତିକୁଳ ( ଦେଖ )
जातिपाँति 1 Jāti-kula ( See)
୨ । ଜାତି ଓ ସମାଜ—2 Caste and society.

**ଜାତିପତି ହରା(ରେ)ଇବା**—ଦେ. କ୍ରି—ଜାତି ହରାଇବା ( ଦେଖ )
Jāti-pati harā(e)ibā Jāti harāibā ( See )

**ଜାତିପତ୍ର**—ସଂ. ବି—ଜାଇତ୍ରୀ—Mace; the thin peel surround-
Jāti-patra ing the nutmeg ( a spice ).
ଜାତିପତ୍ରୀ
ଜାତିପର୍ଣ୍ଣୀ } ଅନ୍ୟରୂପ

**ଜାତିପଦ୍ମିନୀ**—ଦେ. ବିଣ. ସ୍ତ୍ରୀ—ପଦ୍ମିନୀଜାତୀୟା ( ସ୍ତ୍ରୀ )—
Jāti-padmini ( woman ) Belonging to the Padmini class.

ବଳେ ତୋଳୁଁ ଜାତି ଜାତିପଦ୍ମିନୀ ସୁନ୍ଦରୀଙ୍କୁ ଗତି ମୁଁ କୁହୁକେ ମାତି ମାତି ।
ଭକ୍ତ. ପ୍ରେମସୁଧାନିଧି ।

**ଜାତିପନ୍ତି**—ଗ୍ରା. ବି. (ଅନର୍ଥକ ଦ୍ୱିତୀୟ ସହଚର)—ଜାତିପତି (ଦେଖ)
Jāti-panti Jāti-pati (See)

**ଜାତିପାଟକ**—ଦେ. ବି.—୧ । ହିନ୍ଦୁଆ ଜାତିର ସମସ୍ତ ଲୋକ—
Jāti-pāṭaka 1 All the members of a Hindu caste-guild.
୨ । ଶୂଦ୍ର ଜାତିର ଭିନ୍ନ ଭିନ୍ନ ଶାଖା (ସଂଖ୍ୟାରେ ୩୬ ଗୋଷ୍ଠି)
2. The 36 sub-sects or sub-castes or caste-guilds amongst the Śūdras.

**ଜାତିପାତ**—ସଂ. ବି. (୬ଷ୍ଠୀ ତତ୍, ଜାତି + ପାତ)—ଅକାର୍ଯ୍ୟ ଆଚରଣ ଦ୍ୱାରା
Jāti-pāta ନିଜର ଜାତି ହରାଇବା—Loss of one's caste.

**ଜାତିପୁଅ**—ଦେ. ବି.—ଜାତିଭାଇ (ଦେଖ)
Jati-pua Jāti-bhāi (See)

**ଜାତିଫଳ**—ସଂ. ବି.—ଜାଇଫଳ—
Jāti-phala Nutmeg.
( ଅନ୍ୟ ସଂ. ନାମ—କୋଷକ, ସୁମନଫଳ, କୋଶ, ଜାତିଶସ୍ୟ, ଶାଲୁକ, ମାଲତୀଫଳ, ପଦ୍ମସାର, ମଜ୍ଜସାର, ଜାତିସାର, ପୁଷ୍ଟ । )

**ଜାତିବାଚକ**—ସଂ. ବିଣ. ( ଜାତି+ବାଚକ )—ଯାହାଦ୍ୱାରା କୌଣସି
Jāti-bāchaka ବ୍ୟକ୍ତି ବା ପଦାର୍ଥର ଶ୍ରେଣୀ ବା ଜାତି ବୁଝାଯାଏ; ଗଣସମ୍ବନ୍ଧୀୟ—Indicating the species or class to which a certain person or thing belongs; generic; expressing a class.

**ଜାତିବାସନ୍ଦ ହେବା**—ଦେ. କ୍ରି.—ଜାତିରୁ ଅଟକ ହେବା (ଦେଖ)
Jāti-bāsanda hebā To be excommunicated
(ଜାତିବାଉନ୍ଦ ହେବା—ଅନ୍ୟରୂପ) from one's society.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଘ୍ | ଉଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ |

ଜାତିବାଟାଳ—ଦେ. ବ.—ଜାତିଚ୍ୟୁତି; ଜାତିଭ୍ରଷ୍ଟ ହେବା—
Jāti-bitāla Excommunication from a society or caste.
ଦେ. ବିଣ.—ଜାତିବାଟାଳିଆ (ଦେଖ)
Jāti-bitālia (See)

ଜାତିବାଟାଳିଆ—ଦେ. ବିଣ. ପୁଂ. ଓ ସ୍ତ୍ରୀ—ଜାତିଚ୍ୟୁତ; ଜାତିଭ୍ରଷ୍ଟ—
Jāti-bitālia Excommunicated from a society.
(ଜାତିବାଟାଳି—ସ୍ତ୍ରୀ)

ଜାତିବୈର—ସଂ. ବ. (୬ଷ୍ଠୀ ତତ୍, ଜାତି + ବୈର)—ସ୍ୱାଭାବିକ ଶତ୍ରୁତା
Jāti-baira (ଯଥା—ଅହିନକୁଳ ମଧ୍ୟରେ)—Natural hostility; racial animosity or antagonism.

ଜାତିବୋଧକ—ସଂ. ବି. (ଉପପଦ ତତ୍; ଜାତି + ବୋଧକ)—
Jāti-bodhaka ଜାତିବାଚକ (ଦେଖ)
Jāti-bāchaka (See)

ଜାତିବ୍ରାହ୍ମଣ—ସଂ. ବ. (ବ୍ୟଙ୍ଗାର୍ଥକ) (ଜୁଗୁପ୍ସା ତତ୍; ଜାତି=ଜନ୍ମ+
Jāti-brāhmaṇa ବ୍ରାହ୍ମଣ)—ଯେଉଁ ବ୍ରାହ୍ମଣ ବ୍ରାହ୍ମଣୋଚିତ ଆଚାର ପାଳେ ନାହିଁ, କିନ୍ତୁ ବ୍ରାହ୍ମଣକୁଳରେ ଜାତ ବୋଲି ବ୍ରାହ୍ମଣରୂପେ ପରିଚିତ ହୁଏ—A Brāhmaṇa by birth only but not observing the rules and duties of his caste; a Brahman in name only.

ଜାତିଭାଇ—ଦେ. ବ.—୧ । ଏକଜାତୀୟ ଲୋକ; ସ୍ୱଜାତିଭୁକ୍ତ ବ୍ୟକ୍ତି—
Jāti-bhāi 1. People belonging to the same caste or society.
জাতভাই
जाति बिरादर ୨ । ବାନ୍ଧୁଆମାନଙ୍କର ଏକକୁଳ ବା ପାଟକର ବ୍ୟକ୍ତି—
2. A member of the same social caste guild.

ଜାତିଭାତ—ଦେ. ବ.—ଏକଜାତି, ସମାଜ ବା ଗୋଷ୍ଠୀର ବ୍ୟକ୍ତିମାନଙ୍କର
Jāti-bhāta ଏକତ୍ର ଭୋଜନ ବା ଭୋଜି—Caste-feast.
କେହି ଗରିବ ଜାତିଭାତ ନେଇ ନ ପାରିଲେ ପଞ୍ଚଗୋସାଇଁ କଷ୍ଟ ମାନ୍ୟ ନେଇ ତାହାକୁ ଉଠାଇ ନଥିବେ । ଫକୀରମୋହନ- ଛମାଣ ଅଠଗୁଣ୍ଠ ।

ଜାତିଭୁକ୍ତ ହେବା—ଦେ. କ୍ରି—(ନବାଗତ ବା ପତିତ ବ୍ୟକ୍ତି) ନିର୍ଦ୍ଦିଷ୍ଟ
Jātibhukta hebā ସମାଜରେ ଗୃହୀତ ହେବା—To be
जातिभुक्तहओवा admitted into the folds of a particular society or caste-guild.

ଜାତିଭୋଜି—ଦେ. ବ.—ଜାତିଭାତ (ଦେଖ)
Jāti-bhoji Jāti-bhāta (See)

ଜାତିଭ୍ରଂଶ—ସଂ. ବ. (୫ମୀ ତତ୍, ଜାତି + ଭ୍ରଂଶ)—ଜାତିଚ୍ୟୁତି;
Jāti-bhraṁśa ଜାତିନାଶ—Loss of one's social status

ଜାତିଭ୍ରଂଶକର—ସଂ. ବିଣ—ଯାହା ଲୋକକୁ ଜାତିଭ୍ରଷ୍ଟ କରେ—
Jāti-bhraṁśa-kara Causing a person to lose his caste.
[ଦ୍ର—ମନୁସଂହିତା ଅନୁସାରେ ବ୍ରାହ୍ମଣପୀଡ଼ନ, ମଦ୍ୟପାନ, ଅଖାଦ୍ୟଭୋଜନ, କପଟ ବ୍ୟବହାର, ପୁରୁଷମୈଥୁନ ଆଦି ପାପ ଜାତିଭ୍ରଂଶକର ପାପ ଅଟେ । ଅଜ୍ଞାନକୃତ ପାପ ପାଇଁ ପ୍ରାଜାପତ୍ୟ ଓ ଜ୍ଞାନକୃତ ପାପପାଇଁ ସାନ୍ତପନ ପ୍ରାୟଶ୍ଚିତ୍ତ କରିବା ବ୍ୟବସ୍ଥା ଅଛି ।]

ଜାତିଭ୍ରଷ୍ଟ—ସଂ ବିଣ. (୫ମୀ ତତ୍, ଜାତି + ଭ୍ରଷ୍ଟ)—
Jāti-bhrashṭa ଜାତିଚ୍ୟୁତ (ଦେଖ)
Jātichyuta (See)

ଜାତି ମରା(ରେ)ଇବା—ଦେ. କ୍ରି.—(ଜାତି ମାରିବାର ଣିଜନ୍ତ)—
Jāti marā(e)ibā ଜାତି ହରାଇବା (ଦେଖ)
জাতখোয়ান Jāti harāibā (See)
जातखोना

ଜାତିମହତ୍ତ୍ୱ—ସଂ. ବ (ଜାତିର ମହତ୍ତ୍ୱ)—ଜାତୀୟ ଗୌରବ—
Jāti-mahatwa National honour.
ଦେ. ବ. (ସହଚର)—ଜାତି ଓ ମର୍ଯ୍ୟାଦା—
Caste and respect.

ଜାତିମହନ୍ତ—ଦେ. ବ—ସାମାଜିକ ଉପଜାତି ବା ପାଟକର ନେତା—
Jāti–mahanta Headman of a caste-guild.

ଜାତି ମାରିବା—ଦେ. କ୍ରି—ଜାତି ନେବା (ଦେଖ)
Jāti māribā Jāti nebā (See)
জাত মারা
जात मारना

ଜାତି ଯିବା—ଦେ. ବ—ଅକ୍ରିୟା ବା ଅଖାଦ୍ୟଦ୍ୱାରା କୌଣସି ବ୍ୟକ୍ତିର
Jāti jibā ଜାତି ଧ୍ୱଂସ ହେବା—Loss of one's caste.
জাত যাওয়া
जात जाना

ଜାତିରୁ ଯିବା—ଦେ. କ୍ରି—ଜାତିଚ୍ୟୁତ ହେବା—
Jātiru jibā To be excommunicated.
জাতথেকে যাওয়া
जातसे जाना

ଜାତିରେ—ଦେ. କ୍ରି. ବି°—ଜାତି ହିସାବରେ; ଜାତି ଗଣନାରେ; ଜାତି
Jātire ବିଷୟରେ; ଜନ୍ମତଃ—By caste; by birth.
(ଯଥା—ସେ ଜାତିରେ ତନ୍ତୀ ।)

ଜାତିରେ ଚଳିବା—ଦେ. କ୍ରି—ଜାତିରେ ମିଶିବା; (ନବାଗତ ବା ପତିତ
Jātire chaḷibā ବ୍ୟକ୍ତି) ନିର୍ଦ୍ଦିଷ୍ଟ ସମାଜରେ ଗୃହୀତ ହେବା—
জাতে চলা To be admitted into the folds of a
जातमे चलना particular society or caste.
(ଜାତିରେ ମିଶିବା—ଅନ୍ୟରୂପ)

ଜାତିରେ ଯିବା—ଦେ. କ୍ରି—୧ । ଜାତିରେ ଚଳିବା (ଦେଖ)
Jātire jibā 1. Jātire chaḷibā (See)
୨ । ଜାତି ହେବା (ଦେଖ)
2. Jāti hebā (See)

ଜାତିଷ୍ଟ—ଦେ. ବିଣ. (ସଂ. ଜାତି ଓ ଇଷ୍ଟ)—୧ । ଉଚ୍ଚଜାତୀୟ—
Jātishṭa 1. Of a high caste; respectable.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନିତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ, 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗ୍ନି' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ।

୨। ଏକଜାତି ବା ସମାଜଭୁକ୍ତ (ବ୍ୟକ୍ତି)—
2. Of the same caste or society.
ଦେ. ବି—ଜାତି ବା ସମାଜର ନେତା —Head of a caste; headman of a caste-guild.

**ଜାତିଶସ୍ୟ**—ସଂ. ବି—ଜାଇଫଳ—
Jāti-śasya Nutmeg.

**ଜାତିସଙ୍କର**—ସଂ. ବି (୬ଷ୍ଠୀ ତତ୍; ଜାତି + ସଙ୍କର)—ବର୍ଣ୍ଣସଙ୍କର;
Jāti-sankara ଭିନ୍ନଭିନ୍ନଜାତିର ପିତା ଓ ମାତାଙ୍କ ଔରସ ଜାତ—A hybrid; admixture of bloods of different castes.

**ଜାତିସର୍ଦ୍ଦାର**—ଦେ. ବି (ସଂ. ଜାତି+ଫା. ସର୍ଦ୍ଦାର)—ସାମାଜିକ
Jāti-sarddāra ଉପଜାତିର ନେତା; ଜାତିମହନ୍ତ—
(ଜାତିସରଦାର—ଅନ୍ୟରୂପ) Headman of a caste-guild.

**ଜାତିସାର**—ସଂ. ବି—ଜାଇଫଳ (ଦେଖ)
Jāti-sāra Jāi-phala (See)
(ଜାତିସୃତ—ଅନ୍ୟରୂପ)

**ଜାତି ସାରିବା**—ଦେ. କ୍ରି—୧। ଜାତିନେବା (ଦେଖ)
Jāti sāribā 1. Jātinebā (See)
୨। ଜାତିହରାଇବା (ଦେଖ)
2. Jāti harāibā (See)

**ଜାତିସ୍ୱଭାବ**—ସଂ. ବି. (୬ଷ୍ଠୀ ତତ୍; ଜାତି + ସ୍ୱଭାବ)—
Jātiswabhāba ୧। ଜାତିଧର୍ମ; ଏକଜାତୀୟ ଜୀବମାନଙ୍କ ପ୍ରକୃତିର ବିଶିଷ୍ଟତା—1. Racial character; the characteristic of a species.
୨। ଆକୃତି ଓ ଗୁଣବର୍ଣ୍ଣନାତ୍ମକ ଅଲଙ୍କାରବିଶେଷ (ବ୍ରି. ଶବ୍ଦସାଗର)—2. A figure of speech in Rhetoric.

**ଜାତିସ୍ମର**—ସଂ. ବିଣ. ପୁଂ. (ଜାତି=ପୂର୍ବଜନ୍ମ+ସ୍ମୃ ଧାତୁ+କର୍ତ୍ତ୍ରି. ଅ)—
Jāti-smara ଯାହାର ପୂର୍ବଜନ୍ମ ସ୍ମରଣ ଥାଏ; ପୂର୍ବଜନ୍ମରେ କେଉଁଠାରେ କେଉଁ ଜାତିରେ ଜନ୍ମଗ୍ରହଣ କରିଥିଲା ଏହା ଯେ ସ୍ମରଣ ରଖିଥାଏ—Remembering the particulars of one's previous birth

ପୂର୍ବ କଳ୍ପର ଏ ବଗର, କରୁଣେ ହେଲ ଜାତିସ୍ମର।
ଜଗନ୍ନାଥ. ଭାଗବତ।

ସଂ. ବି—ତୀର୍ଥବିଶେଷ—
Name of a place of pilgrimage.

**ଜାତି ହରା(ରେ)ଇବା**—ଦେ. କ୍ରି—୧। ଅକ୍ରିୟାଆଦିଦ୍ୱାରା ଅପଣାର
Jāti harā(re)ibā ଜାତି ନଷ୍ଟ କରିବା—1. To break the rules of one's caste; to lose one's caste by doing prohibited acts.
जात खोआना
जात खोआना
(ଜାତି ହାରିବା—ଅନ୍ୟରୂପ)

୨। ଜାତ୍ୟନ୍ତର ଗ୍ରହଣ କରିବା; ଆପଣା ଜାତିରୁ ଯାଇ ଅନ୍ୟ ଜାତିରେ ବା ଧର୍ମରେ ପଶିବା—2. To give up one's original caste, society or religion and take to another.

**ଜାତି ହାରିବା**—ଦେ. କ୍ରି—ଜାତି ହରାଇବା (ଦେଖ)
Jāti hāribā Jāti harāibā (See)

**ଜାତିହୀନ**—ସଂ. ବିଣ. (୬ଷ୍ଠୀ ତତ୍; ଜାତି + ହୀନ)—
Jāti-hīna ୧। ଜାତିଚ୍ୟୁତ; ସମାଜଭ୍ରଷ୍ଟ—
1. Excommunicated.
୨। ନୀଚ ଜାତିର—2. Of low caste.

**ଜାତି ହେବା**—ଦେ. କ୍ରି—ପ୍ରାୟଶ୍ଚିତ୍ତ ବା ଦଣ୍ଡଭୋଗ ପରେ (ପତିତବ୍ୟକ୍ତି)
Jāti hebā ପୁନର୍ବାର ଆପଣା ସମାଜରେ ପ୍ରବେଶ କରିବା—
जाते उठी To be admitted to one's caste or society
जात होना after performing prescribed expiation or undergoing the prescribed punishment.

**ଜାତୀ**—ସଂ. ବି. (ଜାତି + ଈ)—୧। ଜାଇଫୁଲ—
Jātī 1 Jasminum Grandiflorum.
୨। ଜାଇଫଳ ଗଛ—2 Nutmeg tree.
୩। ମାଳତୀ ଫୁଲ—3. Mālatī flower.
୪। ଅଁଳା—4. Embellic myrobalan.

**ଜାତୀପତ୍ର**—ସଂ. ବି—ଜାତିପତ୍ର (ଦେଖ)
Jātī-patra Jāti-patra (See)
(ଜାତୀପତ୍ରୀ—ଅନ୍ୟରୂପ)

**ଜାତୀଫଳ**—ସଂ. ବି—ଜାଇଫଳ—
Jātī-phala Nutmeg.
(ଜାତୀପୂଗ, ଜାତୀକୋଶ, ଜାତୀକୋଷ—ଅନ୍ୟରୂପ)

**ଜାତୀୟ**—ସଂ. ବିଣ. (ଜାତି + ଭବାର୍ଥେ ଈୟ)—୧। ଜାତିସମ୍ବନ୍ଧୀୟ—
Jātīya 1. National.
୨। ଶ୍ରେଣୀର; ପ୍ରକାରର—2. Of a certain kind; belonging to a particular class.
୩। ବର୍ଣ୍ଣ ସମ୍ବନ୍ଧୀୟ—3 Tribal.
୪। କୌଣସି ବିଶିଷ୍ଟ ଜାତିର ସାଧାରଣ—
4. Common to or pertaining to a particular nation.

**ଜାତୀୟ ଅନୁଷ୍ଠାନ**—ସଂ. ବି. (ଆଧୁନିକ ପ୍ରୟୋଗ)—ଏକଜାତୀୟ ସମସ୍ତ
Jātīya anusthāna ବ୍ୟକ୍ତିଙ୍କର ମଙ୍ଗଳକର ସାଧାରଣ କାର୍ଯ୍ୟ—A natioanl institution; institution beneficial to all the members of a society

| ୧ | ଇ | ଊ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଗ୍ | ଉଃ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଙ୍ୟ | ଇଅ | ଓ | ନ୍ |

**ଜାତୀୟ କାର୍ଯ୍ୟ**—ଦେ. ବି—ଜାତୀୟ ଅନୁଷ୍ଠାନ (ଦେଖ)
Jātiya kārjya Jātiya anusthāna (See)

**ଜାତୀୟ ପାଣ୍ଠି**—ଦେ. ବି—ଜାତିବିଶେଷର ସାଧାରଣ ହିତକର କାର୍ଯ୍ୟରେ
Jātiya pānthi ବ୍ୟୟିତ ହେବା ନିମନ୍ତେ ସେହି ଜାତିର ବ୍ୟକ୍ତିମାନଙ୍କ ସମବେତ ଉଦ୍ୟମରେ ସଂଗୃହୀତ ଧନରାଶି—A national fund; the coffers of a nation.

**ଜାତୀୟ ଫଣ୍ଡ**—ଦେ. ବି—ଜାତୀୟ ପାଣ୍ଠି (ଦେଖ)
Jātiya phand Jātiya pānthi (See)

**ଜାତୀୟ ବିଦ୍ୟାଳୟ**—ଦେ. ବି—ଆଧୁନିକ ଭାରତରେ ପ୍ରତିଷ୍ଠିତ ପ୍ରାଚ୍ୟ
Jātiya bidyālaya ସଭ୍ୟତାଭିତ୍ତି ଶିକ୍ଷା ଦିଆଯିବା ବିଦ୍ୟାଳୟ; ଜାତିବିଶେଷର ଆକାଂକ୍ଷାପୂରଣ ନିମନ୍ତେ ପ୍ରତିଷ୍ଠିତ ବିଦ୍ୟାଳୟ—National school.

**ଜାତୀୟ ବିଧାନ**—ସଂ. ବି—ଜାତୀୟ ବିଧି (ଦେଖ)
Jātiya bidhāna Jātiya bidhi (See)

**ଜାତୀୟ ବିଧି**—ସଂ. ବି—୧ । ଅନ୍ତର୍ଜାତୀୟ ନିୟମ—
Jātiya bidhi 1 International Law.
୨ । ଜାତିବିଶେଷର ବିଶିଷ୍ଟ ବିଧି—2 The rules for the guidance of all the members of a particular community or nation.

**ଜାତୀୟ ସ୍ୱଭାବ**—ସଂ. ବି—ଏକଜାତୀୟ ବ୍ୟକ୍ତି ବା ଜୀବଙ୍କର ବିଶିଷ୍ଟ
Jātiya swabhāba ପ୍ରକୃତି—National traits or characteristics; caste-ways.

**ଜାତୀଲତା**—ସଂ. ବି. (ଜାତୀ+ଲତା)—ଜାଇଫଳ ଗଛ—
Jātī-latā The nutmeg tree.

**ଜାତୀଶ୍ୱର**—ସଂ. ବି. (୬ଷ୍ଠୀତତ୍; ଜାତି+ଈଶ୍ୱର)—
Jātīswara ୧ । ଜାତି-ଶ୍ରେଷ୍ଠ ବ୍ୟକ୍ତି—
1. A man of high caste.
୨ । ଜାତିର ପ୍ରଭୁ ବା ମୁଖ୍ୟବ୍ୟକ୍ତି—2. The headman of a particular caste.
୩ । ବ୍ରାହ୍ମଣ—3. A Brāhmana.

**ଜାତୁ**—ସଂ. ଅ. (ଜୈ ଧାତୁ=କ୍ଷୀଣ ହେବା+କର୍ତ୍ତୃ. ତୁ)—
Jātu ୧ । (ସମ୍ଭାବନାସୂଚକ) କଦାଚିତ୍—
1. Ever; at any time.
୨ । (ନିଷେଧାର୍ଥକ) ନାହିଁ—2. No.
୩ । (ନିନ୍ଦାସୂଚକ) ଛି—3. (interjection indicating blame) Fie!

**ଜାତୁକର୍ଣ୍ଣ**—ସଂ. ବି. ପୁଂ—ମୁନିବିଶେଷ—
Jātu-karnna Name of a sage.
(ଜାତୂକର୍ଣ୍ଣ—ଅନ୍ୟରୂପ) [ଦ୍ର—ଏ ଗୋଟିଏ ଉପସ୍ମୃତି ରଚନା କରିଥିଲେ । ହରିବଂଶ ଅନୁସାରେ ଅଷ୍ଟାବିଂଶ ଦ୍ୱାପରଯୁଗରେ ଏହାଙ୍କର ଜନ୍ମ ହୋଇଥିଲା (ହି. ଶବ୍ଦସାଗର) । ]

**ଜାତୁକର୍ଣ୍ଣୀ**—ସଂ. ବି. ସ୍ତ୍ରୀ—୧ । କବି ଭବଭୂତିଙ୍କ ମାତା—
Jātu-karnnī Name of the mother of the Sanskrit poet Bhababhūti.
୨ । କବି ଭବଭୂତିଙ୍କ ପିତା (ହି. ଶବ୍ଦସାଗର)—
2. Name of the father of Bhababhūti.

**ଜାତୁଜ**—ସଂ. ବି. (ଜାତୁ=କଦାଚିତ୍+ଜନ୍ ଧାତୁ+ଅ)—
Jātuja ଗର୍ଭବତୀ ସ୍ତ୍ରୀର ଇଚ୍ଛା; ଦୋହଦ (ହି. ଶବ୍ଦସାଗର)—
The longing of a pregnant woman

**ଜାତୁଧାନ**—ସଂ. ବି. (ବହୁବ୍ରୀହି; ଜାତୁ=କଦାଚିତ୍+ଧାନ=ସଦ୍-
Jātu-dhāna ବିଧାନ, ଯେ କଦାଚିତ୍ ସଦ୍‌ବିଧାନ ଅନୁସରଣ କରେ ଅର୍ଥାତ୍ ଯେ ସଦ୍‌ବିଧାନ ଅନୁସରଣ କରେ ନାହିଁ)—
ରାକ୍ଷସ; ଅସୁର—Demon; evil spirit; a goblin; Rākshasa.

**ଜାତୁମାତୁ**—ଗ୍ରା. (ପ୍ରାଚୀନପଦ୍ୟ) ବି—ଜାତିକୁଳ (ଦେଖ)
Jātu mātu Jāti-kula (See)
କସ ଜାତୁମାତୁ ଘାର କସ ଅବଅନ୍ତ । ପ୍ରାଚୀ. ବୃନ୍ଦାବନଭୂଷଣଗୀତା ।

**ଜାତୁଷ**—ସଂ. ବିଣ. (ଜତୁ+ବିକାର ଅର୍ଥରେ. ଅ; 'ଷ' ଆଗମ)—
Jātusha ଜତୁନିର୍ମିତ—Made of lac.

**ଜାତୂ**—ସଂ. ବି—ବଜ୍ର (ହି. ଶବ୍ଦସାଗର)—
Jātū Thunder.

**ଜାତେଷ୍ଟି**—ସଂ. ବି (୬ଷ୍ଠୀ ତତ୍; ଜାତ+ଇଷ୍ଟି=ଯାଗ)—ଜାତ-
Jāteshti କର୍ମ ସଂସ୍କାର; ସନ୍ତାନ ଜନ୍ମ ହେଲେ ପିତାଙ୍କ ଅନୁଷ୍ଠେୟ ଯାଗାଦି କର୍ମ—Rites and ceremonies performed by the father on the birth of a son.

**ଜାତୋକ୍ଷ**—ସଂ. ବି—ବାଛୁରି ଅବସ୍ଥାରୁ ଧରା ଯାଇଥିବା ବଳଦ (ହି.
Jātoksha ଶବ୍ଦସାଗର)—Bullock which was castrated while it was a calf.

**ଜାତ୍ୟ**—ସଂ. ବିଣ. (ଜାତି+ସାଧୁ ଅର୍ଥରେ. ଯ)—
Jātya ୧ । ସୁଜାତ; କୁଳୀନ—
1. Of noble birth; well-born.
୨ । ଆନନ୍ଦଜନକ—2. Pleasing.
୩ । ପ୍ରଧାନ; ଶ୍ରେଷ୍ଠ—3 Chief; principal
୪ । ସୁନ୍ଦର—4. Beautiful.
୫ । ସମକୋଣୀ (କ୍ଷେତ୍ର)—
5. Rectangular; right-angled (figure).
(ଯଥା—ଜାତ୍ୟବାହୁ, ଜାତ୍ୟଚତୁର୍ଭୁଜ ।)

**ଜାତ୍ୟଂଶ**-ଦେ. ବି. (ସଂ. ଜାତି+ଅଂଶ)—୧ । ବ୍ୟକ୍ତିବିଶେଷରେ
Jātyamśa କୁଳ ବା ଜାତିସମ୍ବନ୍ଧୀୟ ଅବସ୍ଥିତି—
1. Position according to a person's caste.
(ଯଥା—ସେ ଆପଣଙ୍କଠାରୁ ଜାତ୍ୟଂଶରେ ସ୍ଥାନ ନୁହନ୍ତି ମାତ୍ର କର୍ମରେ ।)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୨ । ବଂଶ; କୁଳ; ଗୋତ୍ର—2. Family.

୩ । ଉପଜାତି; ଜାତିମଧ୍ୟସ୍ଥ ବିଭାଗ—3. Sub-caste.

**ଜାତ୍ୟ ଚତୁର୍ଭୁଜ**— ସଂ. ବି—ଯେଉଁ ଚତୁର୍ଭୁଜର କୋଣମାନ ସମକୋଣ—
Jātya chaturbhuja Rectangle; square.

**ଜାତ୍ୟ ତ୍ରିଭୁଜ**—ସଂ. ବି.—ସମକୋଣୀ ତ୍ରିଭୁଜ—
Jātya tribhuja Right-angled triangle

**ଜାତ୍ୟନ୍ତର** - ସଂ. ବି (କର୍ମଧାରୟ; ଅନ୍ୟ+ଜାତି; 'ଅନ୍ୟ' ଶବ୍ଦ ସ୍ଥାନରେ
Jātyantara 'ଅନ୍ତର' ଆଦେଶ ହୁଏ ।)—ଅନ୍ୟ ଜାତି—
A different caste.

**ଜାତ୍ୟନ୍ତରଗ୍ରହଣ**—ସଂ. ବି. (ଆଧୁନିକ)—ନିଜର ଜାତି, ସମାଜ ବା ଧର୍ମ
Jātyantara-grahaṇa ଛାଡ଼ି ଅନ୍ୟ ଜାତି ବା ଧର୍ମ ଗ୍ରହଣ
କରିବା—Assuming a religion or caste
other than one's own.

**ଜାତ୍ୟନ୍ଧ**—ସଂ. ବିଣ. ପୁଂ. (୫ମୀ ତତ୍; ଜାତି=ଜନ୍ମ+ଅନ୍ଧ)—
Jātyandha ଜନ୍ମାନ୍ଧ; ଜନ୍ମ ସମୟରୁ ଅନ୍ଧ—
(ଜାତ୍ୟନ୍ଧା—ସ୍ତ୍ରୀ) Born blind.

**ଜାତ୍ୟଭିମାନ**—ସଂ. ବି. (୬ଷ୍ଠୀ ତତ୍; ଜାତି+ଅଭିମାନ)—
Jātyabhimāna ୧ । ଉଚ୍ଚ ଜାତିରେ ଜନ୍ମ ହେବା ହେତୁ
ଅହଙ୍କାର; କୌଳୀନ୍ୟଗର୍ବ—1. Pride of high
birth; pride of caste.

୨ । ନିଜର ଜାତି ପ୍ରତି ସ୍ନେହ—2. Attachment to
one's own nation.

**ଜାତ୍ୟାସନ**—ସଂ. ବି.—ତାନ୍ତ୍ରିକମାନଙ୍କର ଆସନବିଶେଷ—
Jātyāsana A posture practised in tantric exercise.

[ ଦ୍ର—ଏଥିରେ ସାଧକ ହାତ ଓ ଗୋଡ଼କୁ ଭୂମିରେ ଲଗାଇ
ଗତି କରେ । ଏ ଆସନରେ ସିଦ୍ଧିଲାଭ କରିବା ବ୍ୟକ୍ତି ପୂର୍ବଜନ୍ମର
ବିଷୟମାନ ଜାଣି ପାରେ । ହି ଶବ୍ଦସାଗର ।]

**ଜାଦା**—ବୈଦେ. ବି. ପୁଂ (ଫା.—ପୁତ୍ର—
Jādā Son.
(ଜାଦୀ—ସ୍ତ୍ରୀ) [ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ;
ଜାଦା ଯଥା—ହାରାମଜାଦା, ହାରାମଜାଦୀ, ସାହାଜାଦା, ସାହାଜାଦୀ,
**जादा** ନବାବ୍‌ଜାଦା, ସାହେବଜାଦା ଇତ୍ୟାଦି । ]

**ଜାଦୁ**—ଦେ. ବି. (ସଂ. ଦଦ୍ରୁ)—ଦାଦୁ (ଦେଖ)
Jādu Dādu (See)
ଦାଦ ବୈଦେ. ବି. (ଫା; ଭୁଲ. ପ୍ରାଚୀନ ସଂ. ଜାତୁ, ଜାତୁ ବିଦ୍ୟା—
**दाद** ଯୋଗେଶଚନ୍ଦ୍ର)—୧ । କୁହୁକ; ଭେଲ୍କି; ମାୟା, ଇନ୍ଦ୍ରଜାଲ;
ଜାଦୁ ଭୌତିକ ବିଦ୍ୟା—1. Magic; sorcery.
**जादू** ୨ । ବଶୀକରଣ ଆଦି ତାନ୍ତ୍ରିକ ବିଦ୍ୟା—2. Mystic
charm or enchantment.

**ଜାଦୁଆ**—ଦେ. ବିଣ. ପୁଂ.—ଦାଦୁଆ (ଦେଖ)
Jāduā Dāduā (See)
(ଜାଦେଇ, ଜାଦୋଇ—ସ୍ତ୍ରୀ)

**ଜାଦୁକର**—ବୈଦେ. ବି. (ଫା. ଜାଦୁଗର୍)—ଐନ୍ଦ୍ରଜାଲିକ; କୁହୁକୀ—
Jādukara Magician; sorcerer; a diviner.
जादूकर କବା ଏହା ଜାଦୁକର ଜାଦୁକ୍ରିୟା । ଋକାସ. ରତ୍ନମାଳୀ ।
**जादुगर**

**ଜାଦୁକରି**—ବୈଦେ. ବି. (ଫା. ଜାଦୁଗରୀ)—ଭେଲ୍‌କିବାଜି; କୁହୁକ—
Jādukari Magic; sorcery.
जादूकरि
**जादुगरि**

**ଜାଦୁ କରିବା**—ଦେ. କ୍ରି.—୧ । କୁହୁକ କରିବା—
Jādu karibā 1 To employ charm.
जादू करना ୨ । ମନ୍ତ୍ରାଦି ପ୍ରୟୋଗ କରି ବଶ କରିବା—
**जादू करना** 2. To enchant.

**ଜାଦୁଖାଇ**—ଦେ. ବି.—ଦାଦୁଖାଇ (ଦେଖ)
Jādu-khāi Dādu-khāi (See)

**ଜାଦୁଗର**—ବୈଦେ ବି. (ଫା)—ଜାଦୁକର (ଦେଖ)
Jādugara Jādukara (See)

**ଜାଦୁଗରି**—ବୈଦେ. ବି. (ଫା)—ଜାଦୁକରି (ଦେଖ)
Jādugari Jādukari (See)
(ଜାଦୁଗିରି —ଅନ୍ୟରୂପ)

**ଜାଦୁଘର**—ଦେ. ବି. ( ଫ. ଜାଦୁ+ସଂ. ଗୃହ; ଯେଉଁ ଘରର ଅଦ୍ଭୁତ
Jādu-ghara ପଦାର୍ଥସମୂହ ଦର୍ଶକର ମନକୁ ମୁଗ୍ଧ କରେ )—
जादूघर ପ୍ରାକୃତିକ ଓ ଶିଳ୍ପବିଜ୍ଞାନ ଜାତ ପଦାର୍ଥସମୂହ ସଂଗୃହୀତ
**अजायबघर; जादुघर** ହୋଇ ରଖା ଯାଇଥିବା ସ୍ଥାନ; କୌତୁକା-
ଗାର—Museum.

[ ଦ୍ର —ଆଧୁନିକ ବଡ଼ବଡ଼ ନଗରମାନଙ୍କରେ ବିଚିତ୍ର ବସ୍ତୁ-
ବହୁଳ ଜାଦୁଘରମାନ ଅଛି । ଭାରତବର୍ଷରେ କଲିକତାର ଜାଦୁଘର
ପ୍ରଧାନ । ]

**ଜାଦୁବିଦ୍ୟା**—ଦେ. ବି. ( ଫା. ଜାଦୁ+ସଂ. ବିଦ୍ୟା )—୧ । ଭେଲ୍‌କିବାଜି—
Jādu-bidyā 1. Magic; sorcery.
जादूविद्या ୨ । ବଶୀକରଣ ବିଦ୍ୟା—
**जादुविद्या** 2. Charm; enchantment.

**ଜାଦୁମଲମ**—ଦେ. ବି—ଦାଦୁମଲମ ( ଦେଖ )
Jādu-malama Dādu-malama ( See)

**ଜାଦୁରା**—ଦେ. ବିଣ. ପୁଂ—ଦାଦୁରା ( ଦେଖ )
Jādurā Dādurā ( See )
( ଜାଦୁରୀ—ସ୍ତ୍ରୀ )

**ଜାନ୍**—ବୈଦେ. ବି. ( ଫା; ଭୁଲ. ସଂ. ଜୀବନ ) ୧ । ଜୀବନ—
Jān 1. Life.
जान ୨ । ପ୍ରାଣବାୟୁ; ଦମ୍—2. Breath of life.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଉ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଟ | ଶ,ଷ | କ୍ଷ | ଇଯ୍ | ଋଅ | ଞ |
| ୨ | ଋ | ଊ | ରୁ | ଲୁ | ଟ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଡ଼ | ନ୍ତ |

**जान** ୩ । ଆତ୍ମା--3. Soul.
୪ । କୌଣସି ରାଗର ପ୍ରଧାନ ସ୍ୱର—
4. The chief tune of a musical air.
ପ୍ରାଦେ. ( ସମ୍ବଲପୁର ) ବି—ଦହି କରିବା ପାଇଁ ଦୁଧରେ ପକାଇବା ମହି—The small quantity of curd put into milk in order to turn it into curd.

ଜାନ୍ ଖାଇବା—ଦେ. କ୍ରି—୧ । ଅତି ବିରକ୍ତ ବା ବ୍ୟତିବ୍ୟସ୍ତ କରିବା—
Jān khāibā 1. To tease or bother much.
जान खाओना ୨ । ବାରଂବାର ଜିଦ କରିବା—
**जान खाना** 2. To importune.

ଜାନ୍ ଦେବା—ଦେ. କ୍ରି—୧ । କୌଣସି କାର୍ଯ୍ୟରେ ଜୀବନ ସମର୍ପଣ
Jān debā କରିବା—1. To dedicate or offer one's life
जान देओना to a work.
**जान देना** ୨ । ପ୍ରାଣତ୍ୟାଗ କରିବା—
2. To die; to give up one's life.

ଜାନ୍ ନେବା—ଦେ. କ୍ରି—୧ । ପ୍ରାଣରେ ମାରିବା—
Jān nebā 1. To kill.
जान लओना ୨ । ଜାନ୍ ଖାଇବା ( ଦେଖ )
**जान लेना** 2. Jān khāibā ( See )

ଜାନ୍‌ବା—ପ୍ରାଦେ. ( ସମ୍ବଲପୁର ) କ୍ରି. ( ସଂ. ଜ୍ଞା ଧାତୁ )—ଜାଣିବା—
Jān-bā To know.
ବିଣ—୧ । ଜାଣିବାର; ବିଜ୍ଞ; ଜ୍ଞାନୀ—
Wise; intelligent.

ଜାନ୍‌ବାର - ପ୍ରାଦେ. ( ସମ୍ବଲପୁର ) ବିଣ—ଜାନ୍‌ବା ( ଦେଖ )
Jān-bār Jānbā ( See )

ଜାନ୍ ବିତା(ତେ)ଇବା—ଦେ. କ୍ରି. (ଫା. ଜାନ୍+ସଂ. ବ୍ୟତୀତ୍ୟ)—ଜୀବନ
Jān bitā,te)ibā କଟାଇବା—To pass or spend one's
जान बिताना life.
**जान बिताना**

ଜାନ୍‌ଲା—ବୈଦେ. ବି. (ପାର୍ତ୍ତୁଗୀଜ୍. ଜାନେଲ୍ଲା; ଲୁଲ. ସଂ. ଜାଲାନ୍ତର)—
Jānlā ଝରକା; ଗବାକ୍ଷ—Window.
जानला
**झरोका**

ଜାନକୀ—ସଂ ବି. ସ୍ତ୍ରୀ. ( ଜନକ+ଅପତ୍ୟାର୍ଥରେ ଅ+ସ୍ତ୍ରୀ. ଈ )—
Jānakī ସୀତା; ଜନକନନ୍ଦିନୀ—Sitā, the foster daughter of Janaka.

ଜାନକୀନାଥ—ସଂ. ବି. (୬ଷ୍ଠୀ ତତ୍; ଜାନକୀ+ନାଥ)—ରାମଚନ୍ଦ୍ର—
Jānakī-nāthā A name of Rāmachandra.
(ଜାନକୀଜୀବନ; ଜାନକୀରମଣ—ଅନ୍ୟରୂପ)

ଜାନତ୍—ଦେ. ବିଣ (ସଂ. ଜ୍ଞାତ)—ଜ୍ଞାତ; ସୁପରିଚିତ—
Jānat Well-known.
जानत्

ଜାନପଦ—ସଂ. ବିଣ. (ଜନପଦ+ସମ୍ବନ୍ଧାର୍ଥରେ ବା ଭବାର୍ଥରେ ଅ)—
Jānapada ୧ । ଜନପଦ ସମ୍ବନ୍ଧୀୟ—1. Rural.
୨ । ଜନପଦଜାତ; ଗ୍ରାମ୍ୟ—2. Rustic.
୩ । ନଗର ସମ୍ବନ୍ଧୀୟ—3. Pertaining to a city.
ସଂ. ବି. (+ସ୍ୱାର୍ଥେ ଅ)—୧ । ଜନପଦ; ଗ୍ରାମ; ଦେଶ—
1. Country; inhabited tract of country.
୨ । ନାଗରିକ—2. Citizen.
୩ । ଦେଶୁଆଲୋକ; ମଫସଲବାସିନ୍ଦା—
3. Country-people; a rustic.
୪ । କର; ମାଲଗୁଜାରୀ (ହି. ଶବ୍ଦସାଗର)—
4. Revenue; rent.
୫ । (ହିନ୍ଦୁ ସ୍ମୃତି) ପ୍ରଜାବର୍ଗଙ୍କ ମଧ୍ୟରେ ପରସ୍ପର ବ୍ୟବହାର ସମ୍ବନ୍ଧରେ ଲେଖାଯିବା ଦଲିଲର ଏକ ଶ୍ରେଣୀ (ହି. ଶବ୍ଦସାଗର)—5. (Hindu Law) A class of documents written in respect of the mutual dealings between the subjects.

[ ଦ୍ର—ଏହା ଦୁଇ ପ୍ରକାର, ଯାହା ପକ୍ଷମାନେ ନିଜ ହାତରେ ଲେଖନ୍ତି ସେଥିରେ ସାକ୍ଷୀ ପଡ଼ିବା ଦରକାର ହୁଏ ନାହିଁ, ଯାହା ନବିସିନ୍ଦା ଲେଖିଥାଏ ସେଥିରେ ସାକ୍ଷୀ ପଡ଼ନ୍ତି । ]

ଦେ. ବି—ଉତ୍କଳର ସ୍ୱାଧୀନ ରାଜାଙ୍କ ଅମଳରେ ଗ୍ରାମଶାସନ ପାଇଁ ଗଠିତ ଗ୍ରାମପଞ୍ଚ ବା ସଭା—
Village-panchayet fomed during the rule of the independent kings of Orissa.

ଜାନପଦୀ—ସଂ. ବି. ସ୍ତ୍ରୀ. ( ଜନପଦ+ଅ+ସ୍ତ୍ରୀ. ଈ )—
Jānapadī ୧ । ବୃତ୍ତି (ହି. ଶବ୍ଦସାଗର)—1. Occupation.
୨ । ଅପ୍ସରାବିଶେଷ—
2. Name of a heavenly nymph.

[ ଦ୍ର—ଏହାଙ୍କୁ ଇନ୍ଦ୍ର ଶରଦ୍ୱାନ୍ ଋଷିଙ୍କ ତପସ୍ୟା ଭଙ୍ଗ କରିବାକୁ ପଠାଇଥିଲେ; ମହର୍ଷି ମୋହିତ ହୋଇ ତାଙ୍କର ଶୁକ୍ରପାତ ହେଲା । ସେହି ଶୁକ୍ରରୁ କୃପ ଓ କୃପୀ ଜନ୍ମିଲେ (ହି. ଶବ୍ଦସାଗର) । ]

ଜାନବେ—ବୈଦେ. ଅ. (ଫା. ଜାନବ୍) (କଚେରୀଅ ଭାଷା) (କୌଣସି
Jānabe ବ୍ୟକ୍ତି) ତରଫରୁ (ପ୍ରତିନିଧିରୂପେ ସ୍ୱାକ୍ଷର କରିବା);
तरफ ପକ୍ଷରୁ; ଅନ୍ୟର ପ୍ରତିନିଧି ସ୍ୱରୂପ—On behalf of (a
**जानीब, तरफ** person); as a representative of.

[ ଦ୍ର—ଏଥିର ସାଙ୍କେତିକ ଚିହ୍ନ 'ଜା' କିମ୍ବା 'ଜ୍ନା' । କେହି ବ୍ୟକ୍ତି ଅନ୍ୟଲୋକ ପକ୍ଷରୁ ଦଲିଲଆଦିରେ ଦସ୍ତଖତ କଲେ ସ୍ୱାକ୍ଷରକାରୀ ପ୍ରତିନିଧି ଅସଲବ୍ୟକ୍ତିର ନାମ ପୂର୍ବରେ ଏହି ସାଙ୍କେତିକ ଚିହ୍ନ ବ୍ୟବହାର କରିଥାଏ; ଯଥା—ଲୋକନାଥ ମିଶ୍ର (ସ୍ୱାକ୍ଷରକାରୀ) 'ଜ୍ନା' ହରିହରମିଶ୍ର (ଅସଲବ୍ୟକ୍ତି) ]

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କ୍ଷଅ' ନ ମିଳିଲେ 'କ୍ଷ୍ୟ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ, 'ଅନ୍ୟ' ନ ପାଇଲେ 'ଅନ୍ନ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଜାନା**—ପ୍ରାଦେ. ( ମେଦନୀପୁର ) ବି. ( ତୁଳ. ଓଡ଼ିଆ, ଜେନା )—
Jānā ଶୂଦ୍ରମାନଙ୍କର ବଂଶୋପାଧିବିଶେଷ— Family-title of a class of Sudras.

**ଜାନାନା**—ବୈଦେ. ବି ଓ ବିଣ. (ଫା.)—ଜନାନା (ଦେଖ )
Jānānā Janānā ( See )

**ଜାନାଲା**—ବୈଦେ. (ପର୍ତ୍ତୁ.)—ଜାନ୍‌ଲା ( ଦେଖ )
Jānālā Jān-lā ( See )

**ଜାନି**—ସଂ. ବିଣ. ( ବହୁବ୍ରୀହି ସମାସରେ 'ଜାୟା' ଶବ୍ଦ ସ୍ଥାନରେ 'ଜାନି'
Jāni ଆଦେଶ ହୁଏ )—ସ୍ତ୍ରୀ; ଭାର୍ଯ୍ୟା ( ହି ଶବ୍ଦସାଗର )— Wife.
( ଯଥା—ଯୁବଜାନି, ସୀତାଜାନି, ରୂକାବଦ୍ଧବସ୍ତ୍ରଜାନି । )
[ ଦ୍ର—ଏହା ସ୍ତ୍ରୀବାଚକ ଶବ୍ଦ ସଙ୍ଗେ ସମାସ ହୁଏ । ]

**ଜାନୁ**—ସଂ. ବି. ( ଜନ ଧାତୁ=(ଗଡ଼) ଜନ୍ମାଇବା+କର୍ତ୍ତୃ ଉ )—
Jānu ଊରୁସନ୍ଧି; ଆଣ୍ଠୁ—The knee.
ଦେ. ବି. (ପ୍ରାଚୀନ ପଦ୍ୟ) (ଫା. ଜାନୁ=ଜଙ୍ଘ; ହି. ଶବ୍ଦସାଗର)—
ଜଙ୍ଘ—Thigh.
ଆଣ୍ଠୁରୁ ଲଙ୍ଗପଡ଼ୁ ଯାଏ
ଜାନୁ ଏ ବେନି ଭାଳ ହୁଏ । ପ୍ରାଚୀ. ପୂର୍ଣ୍ଣଚନ୍ଦ୍ର ଚନ୍ଦ୍ରୋଦୟ ।

**ଜାନୁଅର**—ବୈଦେ. ବି. (ଫା)—ଜାନୁଆର ( ଦେଖ )
Jānuar Jānuār ( See )

**ଜାନୁଆର**—ବୈଦେ. ବି. ( ଫା. ଜାନ୍‌ବର=ଜୀବନ୍ତ )—
Jānuār ୧ । ଜୀବ; ଜନ୍ତୁ; ପ୍ରାଣୀ—1. Animal.
ଜାନୋୟାର ୨ । ପଶୁ— 2. Beast; brute.
जानवर ୩ । ପଶୁବତ୍ ମୂର୍ଖ ଓ ବୁଦ୍ଧିହୀନ ବ୍ୟକ୍ତି— 3. A poor thing; a stupid person.
ନିଶା ଖାଇଲେସେ ଅଦ୍ଭୁମି ଜାନୁଆର ହୋ ଯାଇ ହେ ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

**ଜାନୁଆରି**—ବୈଦେ. ବି. (ଇଂ) -ଇଂରାଜୀ ବର୍ଷର ପ୍ରଥମ ମାସ—
Jānuāri January.
जानुयारी,
जनवरी
(ଜାନୁଏରି, ଜାନୁୟାରି, ଜନୋରି—ଅନ୍ୟରୂପ)

**ଜାନୁଗତି**—ସଂ. ବି. ( ଙ୍ଗ୍ୟ ତତ୍; ଜାନୁ+ଗତି )—
Jānu-gati ଆଣ୍ଠେଇବା; ଆଣ୍ଠୁରେ ଭର ଦେଇ ଚଳିବା; ହାମୁଡ଼େଇବା; ଘୋଡ଼ମେଇବା--Crawling; moving by the knees.

**ଜାନୁଘଣ୍ଟ**—ଦେ. ବି. (ନାମ)—ସତ୍ୟଯୁଗର ରାଜଚକ୍ରବର୍ତ୍ତିବିଶେଷ—
Jānu-ghanṭa Name of an ancient king of the golden age of Hindu mythology.
[ ଦ୍ର—ସତ୍ୟଯୁଗରେ ୭ ଜଣ ଚକ୍ରବର୍ତ୍ତୀ ରାଜତ୍ୱ କରୁଥିଲେ, ଯଥା—ବଳି, ବେଣ, ମାନ୍ଧାତା, ପୁରୁରବାଃ, ଜାନୁଘଣ୍ଟ ଓ ପରଶୁରାମ । ଉକ୍ତ ଜାନୁଘଣ୍ଟ ଜାନୁରେ ଘଣ୍ଟା ବାନ୍ଧୁଥିଲେ । ମାଦଳାପାଞ୍ଜିରେ ଏହାଙ୍କର ନାମୋଲ୍ଲେଖ ଅଛି । କିନ୍ତୁ ହସ୍ତଲିଖିତ ଗ୍ରନ୍ଥମାନଙ୍କରେ ଜାନୁଘଣ୍ଟ ପରବର୍ତ୍ତିରେ ଧୁନ୍ଧୁମାର ନାମ ଉଲ୍ଲେଖ ଅଛି ଓ ପରଶୁରାମଙ୍କ ପରବର୍ତ୍ତିରେ କାର୍ତ୍ତବୀର୍ଯ୍ୟଙ୍କ ନାମ ଲେଖାଅଛି । ]

**ଜାନୁଜଂଘ**—ଦେ. ବି. ( ସହଚର )—ଗୋଡ଼ର ଆଣ୍ଠୁଠାରୁ ପିଚ୍ଛ ପର୍ଯ୍ୟନ୍ତ
Jānu-jamgha ଅଂଶ—The part of the leg between the knee and the buttock.

**ଜାନୁପାଣି**—ସଂ. ବି.—ଘୋଡ଼ମେଇ ଚାଲିବା; ଆଣ୍ଠେଇ ଚାଲିବା
Jānu-pāṇi (ହି. ଶବ୍ଦସାଗର)—Crawling.

**ଜାନୁ-ଯଉବନ**—ଦେ. ବି. (ସଂ. ଜାନୁ ଯୌବନ)—(ଯୁବତୀର) ଜାନୁ ଓ
Jānu-jaubana ଅନ୍ୟ ଅବୟବମାନଙ୍କରେ ଯୌବନ ଯୋଗୁଁ ବିକଶିତ ଲକ୍ଷଣାଦି—Robust thigh and other indications of youth of a woman.
ଲୁଣ୍ଠୁଣ୍ଠୁ ହୋଇ ଗାଧୋଇ ପାଧୋଇ କରନ୍ତୁ ଆସୁଛି ଗୋସା
ଜାନୁ ଯଉବନ ସବୁ ଦିଶୁଅଛି ସରୁ ଲୁଗା ପନ୍ଥି କଲ—ଉକ୍ତ ।

**ଜାନେଲା**—ବୈଦେ. ବି ( ପର୍ତ୍ତୁ )—ଜାନ୍‌ଲା ( ଦେଖ )
Jānelā Jān-lā ( See )

**ଜାପ**—ସଂ. ବି. ( ଜପ୍ ଧାତୁ+ଭାବ. ଅ )—
Jāpa ୧ । ଜପ; ମନ୍ତ୍ର ଜପିବା—1. Muttering of prayer or esoteric formulas with the help of a bead.
୨ । ( +କର୍ତ୍ତୃ ଅ ) ମନ୍ତ୍ରଜପକାରୀ ବ୍ୟକ୍ତି—
2. A mutterer of mantras.
ଦେ. ବି. ( ସଂ. ଗ୍ରହ )—୧ । ହାତ, ହାତ ବା ଦାନ୍ତ ଦ୍ୱାରା
जापटा କୌଣସି ବସ୍ତୁକୁ ଧରିଥିବା ଅବସ୍ଥାରେ ଉକ୍ତ ବ୍ୟକ୍ତି ଅଜ୍ଞାନ
दाब, जकड़ ହୋଇଗଲେ ହାତର ମୁଠା ବା ଦାନ୍ତ ପ୍ରଭୃତି ନ ଫିଟିବା; ଶାଙ୍କୁଳ; ଜାବ—1. The jamming of the hand or arms or fist round a thing held or clenched tightly, due to the holder becoming unconscious; tightened grip of the arms or fingers.
୨ । ରୋଗ ଯୋଗୁଁ ଦାନ୍ତର ଶାଙ୍କୁଳ ପଡ଼ିଯିବା—
2. Lock-jaw.

**ଜାପକ**—ସଂ. ବିଣ. ପୁଂ. ( ଜପ୍ ଧାତୁ+କର୍ତ୍ତୃ. ଅକ )—
Jāpaka ଯେ ଜପ କରେ—Counting on the beads;
(ଜାପିକା—ସ୍ତ୍ରୀ) given to incessant muttering of prayers.

**ଜାପଟ**—ପ୍ରାଦେ. ବି. (କଟକ)—ଗଦା ହୋଇଥିବା ଧାନ ଉପରେ ଦିଆ
Jāpaṭa ଯିବା ମୁଦ୍ରା ବା ମୁଦ—Seal or mark affixed to a heap of paddy-grains.

| ୧ | ଇ | ଉ | ଋ,ର | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଅ | ଡ଼ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ଡ଼ |

ଜାପଟି ଧରିବା—ଦେ. କ୍ରି—ଦୃଢ଼ଭାବରେ ଧରିବା—
Jāpaṭi dharibā To grasp or embrace tightly; to hold fast.
চেপে ধরা
**जकड़ना**

ଜାପଟିବା—ଦେ. କ୍ରି—ଜାବୁଡ଼ିବା; ଦୃଢ଼ଭାବରେ ଧରିବା—
Jāpaṭibā To hold tightly.
চাপা
**जकड़ना**

ଜାପନ—ସଂ. ବି. ( ଜପ୍ ଧାତୁ ଣିଚ=ଜାପି ଧାତୁ+ଭାବ. ଅନ )—
Jāpana ୧ । ମନା କରିବା; ନାମଞ୍ଜୁର କରିବା—
1. Rejection; declining.
୨ । ପ୍ରତ୍ୟାଖ୍ୟାନ—2. Disavowal.
୩ । ନିବର୍ତ୍ତନ—3. Turning back; cessation.
୪ । ନିଷ୍ପାଦନ—4. Finishing; accomplishment; completion.

ଜାପାନ୍ - ବୈଦେ ବି. (ନାମ) (ଇଂ)—ଚୀନ ଓ ରୁଷିଆର ପୂର୍ବରେ
Jāpān ପ୍ରଶାନ୍ତ ମହାସାଗରରେ ଥିବା ଦ୍ୱୀପପୁଞ୍ଜ ସମ୍ବଳିତ ରାଜ୍ୟ—
জাপান Japan.
**जापान** [ ଦ୍ର—ଏ ଦ୍ୱୀପର ଅଧିବାସୀମାନେ ଗତ ୧୦୦ ବର୍ଷ ମଧ୍ୟରେ ଆଧୁନିକ ଜଗତରେ ଗୋଟିଏ ପରାକ୍ରମଶାଳୀ ସଭ୍ୟ ଜାତି ବୋଲି ଗଣ୍ୟ ହୋଇଅଛନ୍ତି । କ୍ୟୁସ୍ୟୁ, ସିକୋକୁ, ହୋଣ୍ଡୋ ଓ ୟେଜୋ ଏହି ଚାରି ଗୋଟି ଦ୍ୱୀପ ଯଥାକ୍ରମେ ଦକ୍ଷିଣରୁ ଉତ୍ତରକୁ ବିସ୍ତୃତ ହୋଇ ଜାପାନ ଦ୍ୱୀପପୁଞ୍ଜ ସୃଷ୍ଟି କରିଅଛି । ଏହାର ରାଜଧାନୀ ଟୋକିଓ । ଜାପାନୀ ଭାଷାରେ ଏ ଦ୍ୱୀପପୁଞ୍ଜର ନାମ ନିପନ୍ । ଏହାର ଅଧିବାସୀମାନେ ବୌଦ୍ଧ । ]

ଜାପାନ୍ ପାଲିଶ୍—ବୈଦେ. ବି. ( ଇଂ. ଜାପାନ୍+ପଲିସ୍ )—
Jāpān pāliś ଏକ ପ୍ରକାର କଳା ରଙ୍ଗର ବାର୍ଣ୍ଣିସ୍—
জাপান পালিস Japan varnish.
**जापान पालिस**
(ଜାପାନ୍ ବାର୍ଣ୍ଣିସ୍—ଅନ୍ୟରୂପ)

ଜାପାନୀ—ଦେ. ବିଣ—୧ । ଜପାନ ଦେଶୀୟ—
Jāpānī 1. Produced in or belonging to Japan; Japanese.
জাপানী
**जापानी** ୨ । ଜାପାନରେ ବାସ କରୁଥିବା ( ବ୍ୟକ୍ତି )—
2. Inhabiting Japan.
ଦେ. ବି—ଜାପାନର ଅଧିବାସୀ ବ୍ୟକ୍ତି—A Jap or Japanese.

ଜାପିବା—ଦେ. କ୍ରି. ( ସଂ. ଚୃପ )—ଚିପିବା; ଚାପିବା—
Jāpibā To press; to squeeze.
চাপা
**चिपटना**

ଜାଫ୍‌ରାନ୍—ବୈଦେ. ବି. (ଅ)—ଜାଫରାନ୍ ( ଦେଖ )
Jāf-rān Jāfarān ( See )
(ଜାଫ୍‌ରାନ୍ କେଶର—ଅନ୍ୟରୂପ)

ଜାଫ୍‌ରାନୀ—ବୈଦେ. ବିଣ. (ଅ)—ଜାଫ୍‌ରାନ୍‌ର ରଙ୍ଗଯୁକ୍ତ; ନାଲିମିଶା
Jāf-rānī ହଳଦିଆ—Saffron-coloured.

ଜାଫ୍‌ରି—ବୈଦେ. ବି. ( ଉର୍ଦ୍ଦୁ. ଜାଫ୍ରୀ )—
Jāph-ri କାଠ, ବେତ ବା ବାଉଁଶ ପାତିଆରେ ବୁଣା ହୋଇଥିବା
জাফরী ଚତୁଷ୍କୋଣିଆ ସଛିଦ୍ର ଜାଲି—Lattice-work of
**झंझरी, जाली** wood cane or bamboo.

ଜାଫ୍‌ରି ବାଡ଼—ଦେ. ବି—ଜାଫ୍‌ରି ନିର୍ମିତ ବାଡ଼—
Jāf-ri bārda Latticed fencing.
জাফরীবেড়া
**जाफरी**

ଜାଫରାଲି (ଇତ୍ୟାଦି)—ବୈଦେ ବି. ( ଉର୍ଦ୍ଦୁ )—
Jafar li (etc) ଜାଫ୍‌ରି ଇତ୍ୟାଦି ( ଦେଖ )
Jāfri etc. ( See )

ଜାଫରାନ୍—ବୈଦେ. ବି. ( ଅ. ଜାଫ୍‌ରାନ୍; ତୁଳ. ଇଟାଲୀୟ
Jāfarān ଜାଫ୍ରେରାନୋ )—କୁଙ୍କୁମ; ପାରସ୍ୟ ଓ କାଶ୍ମୀର
জাফ্রান দେଶୀୟ ଶାକବିଶେଷରେ ପୁଷ୍ପ ମଧ୍ୟସ୍ଥ ଗର୍ଭକେଶର—
**केशर, जाफ्रान** , Saffron; Crocus Sativus.
[ ଦ୍ର—ଏହା କାଶ୍ମୀରଜାତ ବାର୍ଷିକ ଶାକ ଗୁଳ୍ମ । ଏହା ପ୍ରଥମେ ଦକ୍ଷିଣ-ଇଉରୋପରୁ ଆନୀତ ହୋଇଥିଲା । ଏଥିର ପୁଷ୍ପକେଶର ଖାଦ୍ୟରେ ମସଲା ରୂପେ ଓ ଔଷଧରେ ମଧ୍ୟ ବ୍ୟବହୃତ ହୁଏ । ଏଥିର ବର୍ଣ୍ଣ ନାଲିମିଶା ହଳଦିଆ । ]

ଜାଫରାନ୍ କେଶର—ଦେ. ବି—ଜାଫରାନ୍ ( ଦେଖ )
Jāfarān kesara Jāfrān ( See)

ଜାଫ୍ରେଲି (ଇତ୍ୟାଦି)—ବୈଦେ ବି. (ଉର୍ଦ୍ଦୁ)—
Jāphreli (etc.) ଜାଫ୍‌ରି ଇତ୍ୟାଦି (ଦେଖ)
Jāph-ri etc. (See)

ଜାବ—ଦେ. ବି.—ଜାପ (ଦେଖ)
Jāba Jāpa (See)

ଜାବଟ—ଦେ. ବି. (ନାମ)—ବୃନ୍ଦାବନ ନିକଟସ୍ଥ ଗ୍ରାମବିଶେଷ—
Jābaṭa Name of a village near Brundābana in the district of Muttra.
ଅବନ୍ତୀ, ଗୋକୁଳ ଜାବଟରେ,
ରହି କନ୍ୟାପ୍ରାୟେ ଗୋକୁଳ ସମ୍ପଦେ ବୃଦ୍ଧି କଲୁତରୁ ଛଳରେ ।
ଅଭିମନ୍ୟୁ- ବିଦଗ୍ଧ ଚିନ୍ତାମଣି ।
[ଦ୍ର—ଏଠାରେ ରାଧିକାଙ୍କର ପିତା ରାଜା ବୃଷଭାନୁଙ୍କ ବାସସ୍ଥାନ ଥିଲା । ]

ଜାବଡ଼—ଦେ. ବିଣ. ( ଫା. ଜବର୍)—୧ । ଦୃଢ଼—
Jābarḍa 1. Tight.
୨ । ଘନ—2. Dense.
ଦେ. ବି.—(ସଂ. ଜବ) ଦ୍ରୁତବେଗ—
Swift motion or velocity.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅସ୍ୟା' ନ ପାଇଲେ 'ଅକ୍ଷ୍ଣ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ର' ଦେଖିବେ

ଜାବଡ଼ା—ଦେ. ବି. (ସଂ. ଚପେଟ)—୧ । ଗୁମ୍ପୁଡ଼ା—
Jābardā 1. Slap.
जाबड़ा ୨ । ଦୃଢ଼ଭାବରେ ଧରିବା—
चपत 2. Holding tightly.

ଜାବଡ଼ି ଧରିବା—ଦେ. କ୍ରି.—ଖୁବ୍ ଚିପି କରି ଧରିବା—
Jābardi dhariba To hold with a firm grip.
चेपेधरबा
जकड़ना

ଜାବତା—ବୈଦେ. ବି. (ଫା. ଜାବିତା, ଜାପ୍ତା=ଆଇନ୍, ନିୟମ)—
Jābatā ୧ । ରାଜବିଧି; ଆଇନ୍; ନିୟମ—
जाबेता 1. Law; rule.
आबता ୨ । କାଇଦା; ଦୃଢ଼ ନିୟମ—
2. Strict rule.
୩ । ନିୟମାଧୀନତା—3. Discipline.
୪ । ଆୟତ୍ତ; ଅଧିକାର—
4. Control; mastery; restraint.
ଦେ. ବିଣ.—୧ । ଆଇନସଙ୍ଗତ; ଆଇନର ରୀତି ଅନୁଯାୟୀ—
1. Legal; according to legal formalities
୨ । ରୀତିମତ—2. Regular.
ପ୍ରାଦେ. (ଗଞ୍ଜାମ) ବି. (କଚେରୀ)—ତାଲିକା—
List; schedule.

ଜାବତା କରିବା—ଦେ. କ୍ରି.—୧ । କାଇଦା କରିବା—
Jābatā kariba 1. To lay down hard and fast rules.
୨ । ଶାସନ କରିବା; ଗାଳି ଦେବା—
2. To censure; to pass strictures.

ଜାବତା ନକଲ—ବୈଦେ. ବି.—(ଅ.) (ଅଦାଲତଙ୍କ ନିୟମାନୁସାରେ
Jābatā nakala ପ୍ରସ୍ତୁତ ନକଲ)—ଅଦାଲତଙ୍କ ସ୍ୱାକ୍ଷରିତ ବା
जाबेता नकल ମୋହରମାରି ପ୍ରତିଲିପି; ସହିମୋହର ନକଲ—
जाबता नकल Certified copy of a document.

ଜାବଦା—ପ୍ରାଦେ. (ସିଂହଭୂମ) ବିଣ—(ପାଣି) ଯାହା ପିଇଲେ ଖାଦ୍ୟ
Jābadā ଜୀର୍ଣ୍ଣ ହୁଏ ନାହିଁ; ଯାହା ଖାଦ୍ୟ ଜୀର୍ଣ୍ଣ କରିବାରେ ସାହାଯ୍ୟ କରେ ନାହିଁ—(water) Which is not favourable to digestion.

ଜାବ ପଡ଼ିବା—ଦେ. ବି.—କ୍ରୋଧ ବା ବାତାଦି ବେଗ ଯୋଗୁଁ ମୁଠାଇ
Jāba pardiba ଧରିଥିବା ବସ୍ତୁରୁ ଧରିବା ବ୍ୟକ୍ତିର ମୁଠା ନ ଫିଟିବା ଅବସ୍ଥା—Lock-jaw.

ଜାବା—ଦେ. ବି. (ନାମ)—ଜାଭା (ଦେଖ)
Jābā Jāvā (See)

ଜାବାଲ—ସଂ. ବି. (ଅଜ+ପାଲ; ନିପାତନ)—୧ । ଛେଳି ରଖୁଆଳ—
Jābāla 1. A goat-herd.
୨ । ଜାବାଲି (ଦେଖ)
2. Jābāli (See)
୩ । (ଜବାଲା+ଅପତ୍ୟାର୍ଥ. ଅ)—ଋଷିବିଶେଷ—
3 Name of a sage.
[ ଦ୍ର—ଏ ଜବାଲାନାମ୍ନୀ ଋଷିପତ୍ନୀଙ୍କ ପୁତ୍ର ଥିଲେ । ଛାନ୍ଦୋଗ୍ୟ ଉପନିଷଦରେ ଲେଖାଅଛି ଯେ ଏ ଋଷିମାନଙ୍କଠାରୁ ବେଦଶିକ୍ଷା କରିବାକୁ ଯିବା ସମୟରେ ଋଷିମାନେ ତାଙ୍କୁ ତାଙ୍କ ପିତାଙ୍କ ନାମ ପଚାରିଲେ; ଏ ତାହା ଜାଣି ନ ଥିବାରୁ ଯାଇ ମାତାଙ୍କୁ ପଚାରିଲେ । ମାତା କହିଲେ ମୁଁ ଯୌବନରେ ବହୁପୁରୁଷ ସଙ୍ଗମ କରିଥିଲି; ତୁମ୍ଭେ କାହାର ଔରସ ମୁଁ କହିପାରିବି ନାହିଁ । ଏ ଫେରିଯାଇ ଋଷିଙ୍କୁ ସେହି କଥା କହିଲେ । ଋଷି ଏହାଙ୍କ ସତ୍ୟବାଦିତାରେ ସନ୍ତୁଷ୍ଟ ହୋଇ ଏହାଙ୍କ ଉପନୟନ କର୍ମ କଲେ । ଏହାଙ୍କର ଅନ୍ୟନାମ ସତ୍ୟକାମ—(ହି. ଶବ୍ଦସାଗର) । ]

ଜାବାଲି—ସଂ. ବି. ପୁଂ (ନାମ)—୧ । ଋଷିବିଶେଷ—
Jābāli 1. Name of a sage.
[ ଦ୍ର—ଜାବାଲି କଶ୍ୟପବଂଶୀୟ ଥିଲେ । ଏ ଦଶରଥଙ୍କ ଗୁରୁ ଓ ଜଣେ ମନ୍ତ୍ରୀ ଥିଲେ । ରାମଚନ୍ଦ୍ରଙ୍କ ବନବାସ ସମୟରେ ଏ ଚିତ୍ରକୂଟକୁ ଯାଇ ବନରୁ ପ୍ରତ୍ୟାଗମନ କରିବାକୁ ରାମଚନ୍ଦ୍ରଙ୍କୁ ବୁଝାଇଲେ, କିନ୍ତୁ ଅକୃତକାର୍ଯ୍ୟ ହେଲେ । ଏହାଙ୍କ ଗୁଫ ଦେଶରେ ଗୁହାଦି ମଠର ଆଶ୍ରମ ଦେଖାଯାଏ—ହି. ଶବ୍ଦସାଗର । ]
୨ । ସ୍ମୃତିକାର ଋଷିବିଶେଷ—2. Name of the author of a treatise on Hindu law.
୩ । ଛାଗୋପଜୀବୀ; ଛାଗବ୍ୟବସାୟୀ; ଜାବାଲ—
3 A person who rears goats for a living.

ଜାବିତା (ଇତ୍ୟାଦି)—ବୈଦେ. ବି. ( ଫା. ଜାବ୍ତା )—
Jābitā (etc) ଜାବତା ଇତ୍ୟାଦି (ଦେଖ)
Jābatā etc. (See)

ଜାବିତା ମାଫିକେ—ଦେ. କ୍ରି. ବିଣ—ଠିକଣା ମୁତାବକ; ଉଚିତମତେ—
Jābitā māphike Duly; properly.

ଜାବୁଡ଼ା—ଦେ. ବି—ଜାବଡ଼ା (ଦେଖ)
Jāburdā Jābardā (See)

ଜାବୁଡ଼ା ଜାବୁଡ଼ି—ଦେ. ବି—ଦୃଢ଼ଭାବରେ ପରସ୍ପର ଧରାଧରି ହେବା—
Jāburdā jāburdi Mutual tight embracing.
जापटा जापटि

ଜାବୁଡ଼ି ଧରିବା—ଦେ. କ୍ରି—ଜାବୁଡ଼ିବା (ଦେଖ)
Jāburdi dhariba Jāburdiba (See)

ଜାବୁଡ଼ିବା—ଦେ. କ୍ରି—ଦୃଢ଼ଭାବରେ ଧରିବା—To grasp or embrace tightly; to hold fast.
Jāburdiba
जापटान
जकड़ना

| ୧ | ଇ | ଡ଼ | ର୍,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇୟ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ. | ସ | ଗଁ୍ୟ | ଇଅ | ଞ | ନ୍ |

ଜାବେଡା (ଇତ୍ୟାଦି)—ବୈଦେ. ବି. (ଫା)—ଜାବଡା ଇତ୍ୟାଦି (ଦେଖ)
Jābetā (etc) Jābatā etc, (See)
(ଜାବେଦା—ଅନ୍ୟରୂପ)

ଜାବୋଡ଼ା—ଦେ. ବି—ଜାବଡ଼ା (ଦେଖ)
Jāborḍā Jābarḍā (See)

ଜାବୋଡ଼ିବା—ଦେ କ୍ରି—ଜାବୁଡ଼ିବା (ଦେଖ)
Jāborḍibā Jāburḍibā (See)

ଜାମ୍—ବୈଦେ. ବି. (କାଠିଆବାଡ଼)—ପଶ୍ଚିମଭାରତ ଓ କାଠିଆବାଡ଼ ଅଞ୍ଚଳର ରାଜାମାନଙ୍କ ଉପାଧିବିଶେଷ; ନବନଗରର ରାଜାଙ୍କ ଉପାଧି; ଜାମ୍ ସାହେବ୍—1. The title of some Ruling chiefs in W. India.
Jām

ଜାମ ୨ । (ଇଂ) (କଳଙ୍କି ଖାଇ) ଦୁଇଟି ବସ୍ତୁ ପରସ୍ପର ସହିତ ଦୃଢ଼ଭାବରେ ଲାଗିଯିବା—2. Jamming or tightly fitting to each other.
জাম
जाम

୩ । ଗୁଡ଼ମିଶ୍ରିତ ଚଟଣୀ; ମୁରବା—3. Jam.
(ଯଥା—ଆମ୍ବଆଦି ଫଳକୁ ଚକୁଡ଼ା ଚକୁଡ଼ା କରି ଚିନି ପାଗ କରି ତନପାଗରେ ଏହାକୁ ସିଝାଇ ଜାମ୍ ପ୍ରସ୍ତୁତ ହୁଏ । ]

୪ । (ରେଲବେ କାର୍ଯ୍ୟ କରୁଥିବା କୁଲିଙ୍କ ବ୍ୟବହୃତ)—ସ୍ଲିପର ଉପରେ ଯେଉଁ ଲମ୍ବ ଲୁହା କଡ଼ି ଆବଦ୍ଧ ଥାଏ ଓ ଯାହା ଉପରେ ରେଲଗାଡ଼ିର ଚକ ଚଲେ—
4. Iron railway-plates.

ଜାମ୍ ଖାଇବା—ଦେ. କ୍ରି—ଦୁଇଟି ପଦାର୍ଥ ପରସ୍ପର ସହିତ ଦୃଢ଼ଭାବରେ ଲାଗିଯିବା—To become jammed together.
Jām khāibā
জাম খাওয়া
जाम खाना

ଜାମ୍‌ଚି—ଦେ. ବି—ଜାମୋଚ୍ (ଦେଖ)
Jām-chi Jāmoch [Haines] (See)

ଜାମ୍‌ଦାନ୍—ବୈଦେ ବି. (ଫା)—ଜାମ୍‌ଦାନୀ (ଦେଖ)
Jām-dān Jām-dānī (See)

ଜାମ୍‌ଦାନୀ—ବୈଦେ. ବି. (ଫା. ଜାମହ୍‌ଦାନୀ)—୧ । ବୁଣାହେବା ବେଳୁ ସୂକ୍ଷ୍ମ ସୂକ୍ଷ୍ମ ରଙ୍ଗ ଓ କାରୁକାର୍ଯ୍ୟ ଥିବା ସୂତା ଲୁଗା—1. Figured net-cloth.
Jām-dānī
জামদানী
जामदानी

୨ । ତନ୍ତରେ ବୁଣା ହେବା ବେଳେ ଫୁଲ ପଡ଼ିଥିବା ଲୁଗା—2. A stuff of exquisite flower-work on netting; figured cloth.

ଜାମ୍‌ରୁଲ୍—ବୈଦେ. ବି. ( ଇଂ. ଜାମ୍ବୋଲାନା; ଭୁଲ. ସଂ. ଜମ୍ବୁ )—ଜମ୍ବୁଆଦି ବର୍ଗର ଉଦ୍ୟାନଜାତ ଫଳତରୁବିଶେଷ—Eugenia Alba.
Jām-rul
জামরুল
जमरुद

[ ଦ୍ର—ଏ ଗଛ ପ୍ରଥମେ ମାଲକ୍କାଂପରୁ ଭାରତକୁ ଆଣାଯାଇ ଥିଲା । ଏହା ବର୍ଷା ଋତୁରେ ଫଳ ଧରେ; ଫଳ ଧଳା ଓ ମସୃଣ । ଏହାକୁ ଖିଆଇଲେ ଏଥିରୁ ସୁସ୍ୱାଦୁ ରସ ବାହାରେ । ]
(ଜାମ୍‌ରୋଲ୍—ଅନ୍ୟରୂପ)

ଜାମ୍‌ସେଦ୍‌ଜୀ ଟାଟା—ଦେ. ବି. (ନାମ.—ବମ୍ବେ ଅଞ୍ଚଳର ଜଗଦ୍‌ବିଖ୍ୟାତ ସ୍ୱର୍ଗୀୟ ପାର୍ସୀ ବଣିକ—Sir Jāmsedjee Tata; the late Parsi capitalist of Bombay.
Jāmsed-jī ṭāṭā
জামসেদজী তাতা
मसेठजी टाटा

[ ଦ୍ର—ଏ ସିଂହଭୂମ ଅନ୍ତର୍ଗତ କାଲମାଟିନାମକ ନଗରରେ ପ୍ରତିଷ୍ଠିତ ଲୌହକାରଖାନାର ସ୍ୱତ୍ୱାଧିକାରୀ ଓ ପ୍ରତିଷ୍ଠାତା । ତାଙ୍କ ନାମାନୁସାରେ ଏହି ନଗରର ନାମ ଜାମସେଦ୍‌ପୁର ବା ଟାଟା-ନଗର ହୋଇଅଛି । ]

ଜାମ—ପ୍ରାଦେ.—୧ । (ଘୁମୁସର ଅଞ୍ଚଳ) ବି.—ପିଜୁଳି ଗଛ ଓ ଫଳ—1. Guava.
Jāma

୨ । (ଗଞ୍ଜାମ ଓ ସିଂହଭୂମ ଭୁଲ. ବ. ଜାମ୍; ହି. ଜାମୁନ୍)—ବି.—ଜାମୁ (ଦେଖ)
2. Jāmu (See)

ଜାମଦଗ୍ନେୟ—ସଂ. ବି. ପୁଂ (ଜମଦଗ୍ନି+ଅପତ୍ୟାର୍ଥରେ ଏୟ)—(ଜମଦଗ୍ନିଙ୍କ ପୁତ୍ର) ପରଶୁରାମ-Paraśurāma, the son of Jamadagni.
Jāmadagneya

ଜାମଦଗ୍ନ୍ୟ—ସଂ. ବି. ପୁଂ. (ଜମଦଗ୍ନି+ଅପତ୍ୟାର୍ଥରେ ଯ)—ଜାମଦଗ୍ନେୟ (ଦେଖ)
Jāmadagnya Jāmadagneya (See)

ଜାମଳ—ସଂ. ବି—ତନ୍ତ୍ରବିଶେଷ—A class of Tantra or esoteric treatise.
Jāmaḷa
(ଯଥା—ରୁଦ୍ରଜାମଳ ।)

ଜାମା—ସଂ. ବି. (ଜମ୍ ଧାତୁ=ଖାଇବା+କର୍ତ୍ତୃ. ଅ+ସ୍ତ୍ରୀ. ଆ)—୧ । କନ୍ୟା; ଝିଅ—1. Daughter.
Jāmā

୨ । ପୁତ୍ରବଧୂ; ବୋହୂ—
2. A daughter in-law.

ଜାମା ବୈଦେ. ବି. (ଫା. ଜାମା=ବସ୍ତ୍ର; ଆଣ୍ଠୁପର୍ଯ୍ୟନ୍ତ ଲମ୍ବା କୁର୍ତ୍ତା ବା ଚପ୍‌କନ)—କୁର୍ତ୍ତା ବା ଅଙ୍ଗା—Coat; frock.
জামা
जामा

ସତ ଦିନ ଜାମା ଦେହରେ ନ ଥିଲେ ପାଖରେ ନ ରୁହ କହି ।
ଉକାଳ୍ୟ ଗାଥାଗ୍ରନ୍ଥ ବାହା ।

ଜାମାତା—ସଂ. ବି. ପୁଂ (ଜାୟା=ସ୍ତ୍ରୀ+ମା ଧାତୁ=ଗ୍ରହଣ କରିବା+କର୍ତ୍ତୃ ତୃ; ୧ମା. ୧ବ)—୧ । ଜୁଆଇଁ; କନ୍ୟାର ସ୍ୱାମୀ—1. Son-in-law.
Jāmātā

୨ । ସ୍ୱାମୀ—2. Husband

୩ । ସୂର୍ଯ୍ୟମୁଖୀ ଫୁଲ—3. Sunflower. (Apte).

୪ । ପ୍ରଭୁ; ସ୍ୱାମିନ୍—4. Lord; master (Apte).

୫ । (ଜ=ସୂର୍ଯ୍ୟ+ଅ+ମା ଧାତୁ=ମାପିବା+କରଣେ. ତୃ) ସୂର୍ଯ୍ୟର ପରିଧି—5. The orb or circumference of the sun.

ଜାମାତୃକ—ସଂ. ବି. ପୁଂ (ଜାମାତ+କ)—ଜାମାତା (ଦେଖ)
Jāmātṛuka Jāmātā (See)

**ଜାମାନମା**—ଦେ. ବ. (ସହଚର, ଫା. ଜାମା+ଅନର୍ଥକ ୨ୟ ସହଚର
Jāmā-nimā ନମା)—କୁରୁତା ଓ ପାଇଜାମା; କୋଟ୍ ପାଣ୍ଟ୍—
Coat and pant.

ପଣ୍ଡିତବା ଜାମାନମାଗୁଡ଼ିକ, ଗୁପ୍ତ ଅଙ୍ଗ ଢାଙ୍କିଲେ ଝଲକ ।
କବିସୂର୍ଯ୍ୟ ବଳଦେବ ।

**ଜାମାଜୋଡ଼**—ଦେ. ବ.—(ଫା. ଜାମା ଓ ସଂ. ଯୁଗ୍ମ)—୧ । କୁର୍ତ୍ତି ଓ
Jāmā-jorda ଜୋତା—1. Coat and shoes.
ଜାମାଜୋଡ଼ା ୨ । ମନୁଷ୍ୟ ପିନ୍ଧିବା କୁରୁତା (ଜାମା) ଓ ଲୁଗା ଗୁଦର
**जामाजोड़ा** (ଜୋଡ଼)—2. Coat and pair of cloths
(ଜାମାଜୋଡ଼ା—ଅନ୍ୟରୂପ) put on by a person.
୩ । ପୋଷାକ—3. Dress.
୪ । ପୋଷାକକ୍ଷାଣ ସଜ୍ଜା—4. Equipment.
ହୋମରାଚୋମରା ଦେ. ବଣ —କୁର୍ତ୍ତି ଓ ଜୋତାଦ୍ୱାରା ସୁସଜ୍ଜିତ;
ଲମ୍ୱଶାଟପଟ୍ଟାବୃତ—Dressed from top to toe; dressed from head to foot.

**ଜାମାରୁ**—ବୈଦେ. ବ (ଦେଶି.?)—ସାଧା କିମ୍ବା ସରୁଧଡ଼ିଆ ପିନ୍ଧା ଲୁଗା—
Jāmāru Wearing cloth with small or no border.

**ଜାମାରୁ ଜୋଡ଼**—ଦେ. ବ.—ସାଧା କିମ୍ବା ସରୁଧଡ଼ିଆ ଲୁଗା ଓ ଗୁଦର—
Jāmāru jorda A pair of cloths with small or no border.

**ଜାମି**—ସଂ. ବ. ସ୍ତ୍ରୀ. (ଜନ୍ ଧାତୁ=ଉତ୍ପନ୍ନ ହେବା+କର୍ତ୍ତୃ. ମି)—
Jāmi ୧ । ଭଗିନୀ; ଭଉଣୀ—1. Sister.
(ଜାମୀ—ଅନ୍ୟରୂପ) ୨ । ଦୁହିତା; ଝିଅ; କନ୍ୟା—
2. Daughter.
୩ । ପୁତ୍ରବଧୂ; ବୋହୂ— 3. Daughter-in-law.
୪ । କୁଳବଧୂ; କୁଳକାମିନୀ—4. A respectable and virtuous lady; house-wife.
୫ । ପତିବ୍ରତା ସ୍ତ୍ରୀ—5. A chaste woman.
୬ । ଆପଣାର ଗୋତ୍ରୀସ୍ଥା ବା ସମ୍ବନ୍ଧଯୁକ୍ତା ସ୍ତ୍ରୀ—
6. A woman related to one's self.

[ଦ୍ର—ସମ୍ଭବତଃ ଓଡ଼ିଶାର ରାଜପରିବାରମାନଙ୍କରେ କନ୍ୟାବାଚକ 'ଜେମା' ଶବ୍ଦ ଏହି ଶବ୍ଦର ଅପଭ୍ରଂଶ । ]

ପ୍ରାଦେ. (ଗଞ୍ଜାମ)—ବ.—ପିଜୁଳି; ଗୁଆଁଳିଆ—Guava.

**ଜାମିତ୍ର**—ସଂ. ବ. (ଜାମି=ସ୍ତ୍ରୀ+ତ୍ରୈ ଧାତୁ=ତ୍ରାଣ କରିବା+କର୍ତ୍ତୃ. ଅ;
Jāmitra ଏହି ଅର୍ଥରେ ଗ୍ରୀକ୍. ଡାଇଆମେଟ୍ରନ)—(ଫଳିତ
(ଯାମିତ୍ର—ଅନ୍ୟରୂପ) ଜ୍ୟୋତିଷ) ଲଗ୍ନର ସପ୍ତମ ସ୍ଥାନ—
(astrology) The 7th. house from one's natal sign.

[ଦ୍ର—ମତାନ୍ତରେ ଏହି ଶବ୍ଦ 'ଜାୟାମିତ୍ର' ଶବ୍ଦରୁ ନିଷ୍ପନ୍ନ, କାରଣ ଲଗ୍ନର ୭ମ ସ୍ଥାନ ସ୍ତ୍ରୀର ଭାଗ୍ୟସୂଚକ କରେ । ]

**ଜାମିତ୍ରବେଧ**—ସଂ. ବ.—(ଫଳିତ ଜ୍ୟୋତିଷ) ପାପଗ୍ରହର ୭ମ ସ୍ଥାନରେ
Jāmitra-bedha ଚନ୍ଦ୍ରଙ୍କ ଅବସ୍ଥିତି ରୂପ ଅଶୁଭ ଯୋଗ—
(ଯାମିତ୍ରବେଧ—ଅନ୍ୟରୂପ) (astrology) The conjuction of the planet moon with the 7th. house of an inauspicious planet.

[ଦ୍ର—ଏ ଯୋଗରେ ବିବାହାଦି ଶୁଭକର୍ମ ନିଷିଦ୍ଧ; ଯେଉଁ ସମୟରେ ନକ୍ଷତ୍ରର ରାଶିଠାରୁ ୭ମ ରାଶିରେ ସୂର୍ଯ୍ୟ, ଶନି ବା ମଙ୍ଗଳ ଥାଆନ୍ତି ସେହି ସମୟରେ ଜାମିତ୍ରବେଧ ହୁଏ । କେତେକ ପଣ୍ଡିତଙ୍କ ମତରେ ଚନ୍ଦ୍ରର ୭ମ ସ୍ଥାନରେ ପାପ ଗ୍ରହ ଥିଲେ ଜାମିତ୍ରବେଧ ହୁଏ । କିନ୍ତୁ ଯେବେ ଚନ୍ଦ୍ର ଆପଣା ମୂଳତ୍ରିକୋଣରେ ବା କ୍ଷେତ୍ରରେ ବା ଶୁଭଗ୍ରହର କ୍ଷେତ୍ରରେ ଥାଆନ୍ତି କିମ୍ବା ପୂର୍ଣ୍ଣଚନ୍ଦ୍ର ଆପଣା କ୍ଷେତ୍ରରେ ବା ଶୁଭଗ୍ରହର କ୍ଷେତ୍ରରେ ଥାଆନ୍ତି ତେବେ ଜାମିତ୍ରବେଧରେ ଦୋଷ ହୁଏ ନାହିଁ । ବ୍ର. ଶବ୍ଦସାଗର ]

**ଜାମିନ୍**—ବୈଦେ. ବ. (ଅ)—୧ । ପର ପାଇଁ ଦାୟିତ୍ୱ ଗ୍ରହଣ କରିବା
Jāmin ବ୍ୟକ୍ତି; ପ୍ରତିଭୂ—1 A surety; bail.
जामिन ୨ । ପ୍ରତିଭୂତ୍ୱ; ପରର ଋଣ ଆଦି ନିମନ୍ତେ ଦାୟିତ୍ୱ —
**ज़ामिन** 2. Surety-ship.
୩ । ମୁଚଲିକା; ଅନ୍ୟର କାର୍ଯ୍ୟ ସକାଶେ ଦାୟୀ ହେବାର ଅଙ୍ଗୀକାର ପତ୍ର ବା ନିଦର୍ଶନ ପତ୍ର—
3. Surety-bond.
୪ । ପରର କର୍ମ ପାଇଁ ଦାୟୀ ରହିବା ନିମନ୍ତେ କୌଣସି ବ୍ୟକ୍ତି ନିଜର ଯେଉଁ ସମ୍ପତ୍ତିକୁ ଆବଦ୍ଧ ରଖେ ବା ଯେଉଁ ଅର୍ଥଦଣ୍ଡ ଦେବାକୁ ଅଙ୍ଗୀକାର କରେ—
4. Security in cash or property.

[ଦ୍ର—ଅଭିଯୁକ୍ତ ବ୍ୟକ୍ତି ନିର୍ଦ୍ଧାରିତ ତାରିଖରେ ଅଦାଲତରେ ହାଜର ହେବ (ହାଜର ଜାମିନ୍); କୌଣସି ବ୍ୟକ୍ତି ଭବିଷ୍ୟତରେ ଶାନ୍ତିଭଙ୍ଗ ନ କରିବ (ଫାଇଲ୍ ଜାମିନ୍) ଏଥିପାଇଁ ଅନ୍ୟ ଜଣେ ଲୋକ (ଜାମିନ୍‌ଦାର) କର୍ତ୍ତୃପକ୍ଷଙ୍କୁ ଗୋଟିଏ ଅଙ୍ଗୀକାରପତ୍ର (ଜାମିନ୍‌ନାମା) ଲେଖି ଦିଏ ଓ ଯେବେ ନିର୍ଦ୍ଧାରିତ କାର୍ଯ୍ୟମାନ ନିର୍ଦ୍ଧାରିତ ସମୟରେ କରା ନ ଯିବ ତେବେ ତାହାଁର କ୍ଷତିପୂରଣ କରିବା ପାଇଁ ଜାମିନ୍‌ଦାର ବ୍ୟକ୍ତିଗତଭାବରେ ଦାୟୀ ହୁଏ (ଖାଉର୍ ଜାମିନ୍) କିମ୍ବା ନିଜର ସମ୍ପତ୍ତିକୁ ଆବଦ୍ଧ ରଖେ (ସମ୍ପତ୍ତି ଜାମିନ୍), କିମ୍ବା ନଗଦ ଟଙ୍କା ଉପାଜତ୍ କରେ (ନଗଦ ଜାମିନ୍) । ]

୫ । ଦୁଇ ଖଣ୍ଡ ଅଟାଣିଆ ବା ପୃଥକ୍ ବସ୍ତୁକୁ ଟାଣ କରିବା ପାଇଁ ତାହାଁ ତଳେ ଜୋଡ଼ାଯିବା କାଠ ବା ଧାତୁର ଖଣ୍ଡ—
5. A bit of wood or metal put under two separate or weak bits.
୬ । ଆଶ୍ରୟ; ଠେଅ—6. Prop; support.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇପ୍ସ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ୱ | ନ୍ |

**ଜାମିନ୍ ଜବତ୍**—ବୈଦେ. ବି. ( ଆ ଜାମିନ୍ ଓ ଫା. ଜପ୍ତ )—(ଯେଉଁ Jāmin jabat କାର୍ଯ୍ୟ ପାଇଁ ଜାମିନ୍‌ଦାର୍ ନିଜର ସମ୍ପତ୍ତିକୁ ଜାମିନଜବତ୍ ଆବଦ୍ଧ ରଖିଥାଏ ଉକ୍ତ) କାର୍ଯ୍ୟ ସାଧିତ ନ ହେଲେ **ଜମିନଜଫତ** ଜାମିନ୍ ଦିଆ ଯାଇଥିବା ଧନ ବା ସମ୍ପତ୍ତିର କୋରଣ—Forfeiture of surety bond.

**ଜାମିନ୍‌ଦାର୍**—ବୈଦେ. ବି. ( ଆ. ଜାମିନ୍ ଓ ଫା. ଦାର୍ )—ପ୍ରତିଭୂ; Jāmin-dār ଯେ ଅନ୍ୟର ଋଣ ଆଦି ଦାୟିତ୍ୱ ସକାଶେ ନିଜେ ଜାମିନଦାବ ଦାୟୀ ରହେ—Surety. **ଜମିନଦାର**

**ଜାମିନ୍‌ଦାରି**—ବୈଦେ. ବି. ( ଫା )—ପ୍ରତିଭୂତ୍ୱ— Jāmin-dāri Suretyship. ଜାମିନଦାବୀ **जामिनदारी**

**ଜାମିନ୍ ଦେବା**—ଦେ. କ୍ରି—୧ । ଆପଣାର କାର୍ଯ୍ୟ ପାଇଁ ଦାୟୀ ହୋଇ Jāmin debā ଜାମିନ୍‌ନାମା ( ଅଙ୍ଗୀକାରପତ୍ର ) ଲେଖି ଦେବା ଜାମିନ ଦେଓୟା ନିମନ୍ତେ ଅନ୍ୟ ବ୍ୟକ୍ତିଙ୍କୁ ଉପସ୍ଥିତ କରାଇବା— **जामिन देना** 1. To furnish a security or surety.

୨ । ଜାମିନ୍ ହେବା ( ଦେଖ )
2 Jāmin hebā ( See )

**ଜାମିନ୍ ନାମା**—ବୈଦେ. ବି. ( ଅ )—ମୁଚୁଲିକା; ପ୍ରତିଭୂର ସମ୍ବନ୍ଧିତ Jāmin-nāmā ଅଙ୍ଗୀକାରପତ୍ର—Surety bond. ଜାମିନନାମା **जामिननामा**

**ଜାମିନ୍ ନେବା**—ଦେ. କ୍ରି—ଉପସ୍ଥିତ ଅସାମୀର ଭବିଷ୍ୟତ କାର୍ଯ୍ୟ ବା Jāmin nebā ଦାୟିତ୍ୱ ନିମନ୍ତେ ଉପଯୁକ୍ତ ଓ ଯଥେଷ୍ଟ ଜାମିନ୍ ଜାମୀନ ଲଓୟା ଗ୍ରହଣ କରିବା—To accept surety or bail **जामिन लेना** for a person or accused.

**ଜାମିନ୍ ଭତ୍ତା**—ଦେ. ବି—ଜାମିନ୍‌ଦାର୍ ପର ପାଇଁ ଆପଣା ଉପରେ Jāmin bhatā ଯେଉଁ ଦାୟିତ୍ୱ ଗ୍ରହଣ କରିଥାଏ ସେଥିପାଇଁ ଜାମିଭତ୍ତା ପରଠାରୁ ପାଇବା ପୁରସ୍କାର— **जामिनभत्ता** Allowance to a surety.

(ଜାମିନ୍‌ଭତ୍ତା—ଅନ୍ୟରୂପ)

**ଜାମିନ୍ ହେବା**—ଦେ. କ୍ରି—ଅନ୍ୟର କାର୍ଯ୍ୟ ପାଇଁ ଦାୟୀ ରହିବାର Jāmin hebā ଅଙ୍ଗୀକାର କରିବା—To stand surety for ଜାମିନ ହଓୟା another person. **जामिन होना**

ଗଛରେ ଚଢ଼ିଛି ମରିବା ପାଇଁ
ଜାମିନ ହୋଇଛି ଦେବା ପାଇଁ—ଢଗ ।

**ଜାମିନି (ଇତ୍ୟାଦି)**—ସ୍ତ୍ରୀ. ବୈଦେ. ବି. (ଅ)—ଜାମିନ୍ ଇତ୍ୟାଦି (ଦେଖ) Jamini (etc) Jāmin etc. ( See ) ଜାମିନି ବୈଦେ. ବିଣ—ଜାମିନ୍ ସମ୍ବନ୍ଧୀୟ— **जामिनि** Relating to security.

**ଜାମୁ**—ଦେ. ବି. (ସଂ. ଜମ୍ବୁ)—୧ । ଫଳତରୁବିଶେଷ— Jāmu 1. Eugenia Jambolina; Blackberry. ସଂ. ଜଂବା, ମୋଦମଞ୍ଜରୀ, ଜଂବୁଲ, ଜମ୍ବୁ, ରାଜଫଳା, ମହାସ୍କଂଧା, ରାଜାର୍ହା, ରାଜଫଳା, ରାଜଜମ୍ବୁ, ସୁରଭିପତ୍ରା, ନୀଳଫଳା, ଶୁକପ୍ରିୟା, ଶ୍ୟାମଳା ଜାମ;କାଲାଜାମ **जामन;जाम;जामुन** ତେ. ନେରୁଡ଼ [ ଦ୍ର—ଏହା ଉଦ୍ୟାନଜାତ ନାତିଦୀର୍ଘ ତରୁ । ଏହା ଗ୍ରୀଷ୍ମପ୍ରଧାନ ଦେଶରେ ଜନ୍ମେ ଓ ପତ୍ରଝଡ଼ା ହୁଏ ନାହିଁ— ଏଥିର ଫଳ ପାଚିଲେ ଘୋର ବାଇଁଗଣୀ କୃଷ୍ଣବର୍ଣ୍ଣ ହୁଏ । ପାଚିଲା କୋଳର ଶସ ନାଲି । ପାଚିଲା ଫଳ ଖାଇବାକୁ ଖଟା, ମିଠା ଓ କଷାକଷି ଲାଗେ ଓ ଜୀର୍ଣ୍ଣକର । ଏ ଗଛର କାଠ ଖୁବ ଶକ୍ତ ଓ ପାଣିରେ ରହିଲେ ଶୀଘ୍ର ସଢ଼ିଯାଏ ନାହିଁ । ଜାମୁକାଠର ମଞ୍ଜ ପାଣ୍ଡୁର୍ । ପାଚିଲା ଜାମୁକୋଳର ରସରୁ ଜୀର୍ଣ୍ଣକାରକ ସିରକା ତିଆରି ହୁଏ । ଗୋଆରେ ଏ ରସରୁ ମଦ ତିଆରି ହୁଏ । କୋଳର ମଞ୍ଜି ବହୁମୂତ୍ର ରୋଗରେ ଉପକାରୀ । ବୌଦ୍ଧମାନେ ଯାମୁ ଗଛକୁ ପବିତ୍ର ଜ୍ଞାନ କରନ୍ତି । ବୈଦ୍ୟକ ମତରେ ଏ ଫଳ ସଗ୍ରାହୀ, ରୁକ୍ଷ ଓ ପିତ୍ତ ଏବଂ ଦାହ ଦୂର କରେ । ବଣ ଜାମୁ ଅପେକ୍ଷା ଉଦ୍ୟାନଜାତ ଜାମୁ କୋଳ ବେଶି ବୃହତ୍‌କର ଓ ବଡ଼ । ]

୨ । ( ସଂ. ନାଦେୟୀ, କାକଜମ୍ବୁ, ଭୂଜମ୍ବୁ ) ବଣଜାମୁ; କାକଜମ୍ବୁ—2. Ardisa Humilis.

[ ଦ୍ର—ଏହାର ଗଛ ଜାମୁଗଛ ପରି ଡେଙ୍ଗା କିନ୍ତୁ ଫଳ ଅପେକ୍ଷାକୃତ ଛୋଟ । ]

ସଂ. ହ୍ରସ୍ୱଫଳା, ଭୃଙ୍ଗବଲ୍ଲଭା, ୩ । ଭୂଇଁଜାମୁ—1. A small-ପିକଭକ୍ଷା fruited variety of Blackberry.

[ ଦ୍ର—ଏହା ଜାମୁଜାତୀୟ ଗୁଳ୍ମ; କିନ୍ତୁ ଫଳ ଅତି ଛୋଟ, କଷେଇକୋଳ ପରି । ]

୪ । ଗୋଲାପଜାମୁ—4. Rose-apple; roseberry.

[ ଦ୍ର—ଏହାର ଫଳ ବଡ଼ ବଡ଼, ଗୋଲ ଓ ପୀତବର୍ଣ୍ଣ । ପାଚିଲା ଫଳ ଈଷତ୍ ମିଠା ଲାଗେ । ]

**ଜାମୁକି**—ଦେ. ବି—୧ । ବାଣୁଆମାନେ ବନ୍ଧୁକର ପାର୍ଶ୍ୱସ୍ଥ ରନ୍ଧ୍ରରେ Jāmuki ନିଆଁ ଲଗାଇବା ପାଇଁ ଯେଉଁ ଦଉଡ଼ିରେ ନିଆଁ **जामगी** ରଖିଥାଆନ୍ତି; ଶଳିତା; ପଲିତା—1. A cord lighted with fire to ignite a match-lock; match of a gun.

ବାରତ ଗୁଡ଼ ଗୁଳା ଘର ଘର
ଲକ୍ଷକ ଜାମୁକି ନିଆଁ ପଥର—ବ୍ରଜନାଥ. ସମରତରଙ୍ଗ ।

୨ । ଝାଆଁରା ( ଦେଖ )
2. Jhā-ānrā ( See )

**ଜାମୁକି ନଳି**—ଦେ. ବି—ଯେଉଁ ବନ୍ଧୁକର ପାର୍ଶ୍ୱସ୍ଥ ଛିଦ୍ରରେ ଶଳିତା Jāmuki nali (ଅଗ୍ନିଶଳାକା) ଦ୍ୱାରା ଅଗ୍ନି ପ୍ରୟୋଗ କରାଯାଏ— **जामगीबंदुक** Match-lock ( gun )

( ଜାମୁକିବନ୍ଧୁକ—ଅନ୍ୟରୂପ )

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷଥ' ନ ମିଳିଲେ 'କ୍ୱଥ' ଦେଖିବେ, 'ବଧ' ନ ପାଇଲେ 'ବନ୍ଧ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜାମୁଡାଳ**—ଦେ. ବି—ଜାମୁଗଛର ନାଲି କଅଁଳ ପତ୍ର ଓ ଶିଖାଯୁକ୍ତ ସାନ ଡାଳ—
Jāmu-ḍāḻi — A small branch of Jāmu tree with red tender shoots and leaves attached to it.
[ ଦ୍ର—ଏହାକୁ ପିଲାମାନେ ଓ ଅନାର୍ଯ୍ୟ ବନ୍ୟ ପୁରୁଷମାନେ ମୁଣ୍ଡର ପାଗ ଉପରେ ଓ ସ୍ତ୍ରୀମାନେ ଜୁଡ଼ାରେ ଖୋସନ୍ତି । ]

**ଜାମୁଡାଳ ନାଚ**—ଦେ. ବି—ଆଦିମ ଅଧିବାସୀଙ୍କ ମଧ୍ୟରେ ପ୍ରଚଳିତ ନୃତ୍ୟବିଶେଷ—
Jāmu-ḍāḻi nācha — A kind of dancing performed by aborigines.
ଶଅରୁଣୀଙ୍କର ଜାମୁଡାଳ ନାଚ, କେଳାର ହାରୁଡା ଖେଳ—
ନନ୍ଦକିଶୋର. ନାଁଵରଣୀ ।
[ ଦ୍ର—ଏଥିରେ ନାଚୁଣୀମାନେ ଜାମୁଡାଳ ହାତରେ ଧରି ବା ଜୁଡ଼ାରେ ଖୋସି ନାଚ କରନ୍ତି । ]

**ଜାମୁରଧି**—ପ୍ରାଦେ. ( ସମ୍ବଲପୁର ) ବି—କ୍ଷୁଦ୍ର ବୃକ୍ଷବିଶେଷ—
Jāmur-dhi — Caseoria Graveolens.
**ଚିଲ୍ଲା**

**ଜାମୁଲ**—ପ୍ରାଦେ. ( ଅନୁଗୁଳ ) ବି—କାଠମର୍ଦ୍ଦମର୍ଦ୍ଦି ( ଦେଖ )
Jāmula — Kāṭha-mardmardi ( See ) ( Haines )

**ଜାମେୟ**—ସଂ. ବି. ପୁଂ. ( ଜାମି=ଭଗ୍ନୀ+ଅପତ୍ୟାର୍ଥରେ ଏୟ )—
Jāmeya — ଭଣଜା—Sister's son.
( ଜାମେୟୀ—ସ୍ତ୍ରୀ )

**ଜାମେୱାର୍**—ବୈଦେ. ବି. ( ଫା )—ସର୍ବାଙ୍ଗରେ ଫୁଲକାମ ବୁଣା ହୋଇଥିବା ଏକପ୍ରକାର ଶାଲ—
Jāmewār — A shawl with flowers woven over it.
ଜାମେୱାର
**जमेवार**

**ଜାମୋଚ୍**—ଦେ. ବି—ଗୁଳ୍ମବିଶେଷ—
Jāmoch — Rhabeda Lycioides.
[ ଦ୍ର—ଏହା ୨ ଫୁଟଠାରୁ ୪ ଫୁଟ ଉଚ୍ଚ ହୁଏ । ଏହାର ଡାଳ ଭାରି ଟେମଡ଼ା; ଫୁଲ ନାଲିଆ ଓ କୋଳ ନାରଙ୍ଗିବର୍ଣ୍ଣ । ଏହାର ବକଳାର ଭଳୁରେ ଦଉଡ଼ି ହୁଏ । ଏହା ନଦୀର କଙ୍କରମୟ ଗର୍ଭରେ ଜନ୍ମେ । ]

**ଜାମ୍ବ**—ଗ୍ରା. ବି—ଜାମୁ ( ଦେଖ )
Jāmba — Jāmu ( See )
ଜାମ
**जाम्ब**

**ଜାମ୍ବବ**—ସଂ. ବି. ( ଜମ୍ବୁ+ଫଳାର୍ଥେ. ଅ )—୧ । ଜାମକୋଳ—
Jāmbaba — 1. Black-berry.
୨ । ଜାମ୍ବୁନଦ; ସୁନା—2. Gold.
୩ । ରାମାୟଣବର୍ଣ୍ଣିତ ଭାଲୁମାନଙ୍କ ରାଜା; ଜାମ୍ବବାନ୍—
3. Jāmbabān, the king of bears ( mentioned in the Rāmāyaṇa ).
୪ । ଜାମୁକୋଳରୁ ପ୍ରସ୍ତୁତ ମଦ—
4. Spirit distilled from backberries.

**ଜାମ୍ବବତୀ**—ସଂ. ବି—୧ । ( ନାମ ) ( ଜାମ୍ବବତ୍+ଅପତ୍ୟାର୍ଥରେ. ଅ+ସ୍ତ୍ରୀ. ଈ )—ଶ୍ରୀକୃଷ୍ଣଙ୍କର ରାଣୀବିଶେଷ—
Jāmba-batī — 1. Name of a queen of Śrikṛushṇa.
[ ଦ୍ର—ଶ୍ରୀକୃଷ୍ଣ ସ୍ୟମନ୍ତକ ମଣି ପାଇଁ ଏହାଙ୍କ ପିତା ଜାମ୍ବବାନ୍‌ଙ୍କ ସଙ୍ଗେ ଯୁଦ୍ଧ କରି ତାହାଙ୍କୁ ପରାସ୍ତ କରିବାରୁ ଜାମ୍ବବାନ୍ ସ୍ୟମନ୍ତକ ମଣି ସହିତ ଆପଣା କନ୍ୟା ଜାମ୍ବବତୀଙ୍କୁ ଶ୍ରୀକୃଷ୍ଣଙ୍କ ହସ୍ତରେ ଅର୍ପଣ କଲେ । ଜାମ୍ବବତୀଙ୍କ ଗର୍ଭରୁ 'ଶାମ୍ବ' ଜନ୍ମିଥିଲେ । ]
୨ । ନାଗଦମନୀ ( ଦେଖ ) ( ହି. ଶବ୍ଦସାଗର )
2. Nāga-damanī ( See )

**ଜାମ୍ବବନ୍ତ**—ଦେ. ବି—ଜାମ୍ବବାନ୍ ( ଦେଖ )
Jāmba-banta — Jāmbabān ( See )
ସୁବଳକ ଅଙ୍ଗଦ ଭୁଲେ ହନୁମନ୍ତ
ନଳ ନୀଳ ସୁଷେଣ ତାର ଜାମ୍ବବନ୍ତ—କୃଷ୍ଣସିଂହ. ମହାଭାରତ. ବନ ।

**ଜାମ୍ବବାନ୍**—ସଂ. ବି. ପୁଂ. ( ଜମ୍ବା+ବତ୍; ଜାମ୍ବବତ୍; ୧ମା. ୧ବ; ଯାହାର ଶରୀରର ବର୍ଣ୍ଣ ଜାମୁ ପରି କଳା; ଜମ୍ବା ଜମ୍ବ=ଜାମୁଅ+ବତ୍; M. W. )—
Jāmba-bān
୧ । ଋକ୍ଷରାଜ; ରାମାୟଣ ବର୍ଣ୍ଣିତ ଭଲ୍ଲୁକରାଜ—1. The king of bears ( mentioned in the Rāmāyaṇa ).
[ ଦ୍ର—ଏ ବ୍ରହ୍ମାଙ୍କ ପୁତ୍ର ଓ ସୁଗ୍ରୀବଙ୍କ ମନ୍ତ୍ରୀ ଥିଲେ । ଏ ବୈଦ୍ୟଶାସ୍ତ୍ରରେ ବିଚକ୍ଷଣ ଥିଲେ । ହନୁମାନ୍ ଗନ୍ଧମାଦନ ପର୍ବତକୁ ଲଙ୍କାକୁ ବୋହି ଆଣିବାରୁ ଏ ସେଥିରୁ ଅମୃତମହୌଷଧି ବାଛି ଲକ୍ଷ୍ମଣଙ୍କୁ ଦେଇ ତାହାଙ୍କୁ ଶକ୍ତିଭେଦରୁ ବଞ୍ଚାଇଥିଲେ । ]
୨ । ଶ୍ରୀକୃଷ୍ଣଙ୍କ ଶ୍ୱଶୁର; ଜାମ୍ବବତୀଙ୍କ ପିତା—
2. Father-in-law of Śrikṛushṇa.
[ ଦ୍ର—ତ୍ରେତା ଯୁଗର ରାମାୟଣବର୍ଣ୍ଣିତ ଜାମ୍ବବାନ୍ ଓ ଦ୍ୱାପର ଯୁଗର ଶ୍ରୀକୃଷ୍ଣଙ୍କ ଶ୍ୱଶୁର ଜାମ୍ବବାନ୍ ଏକ ଥିବାର ପୁରାଣାଦିରେ ଅଛି । ଏ ସତ୍ୟ ଯୁଗରେ ବାମନାବତାର ବିଷ୍ଣୁଙ୍କ ପରିକ୍ରମା କରିଥିବାର ମଧ୍ୟ ଲେଖାଅଛି । ହି. ଶବ୍ଦସାଗର ]

**ଜାମ୍ବବି**—ସଂ. ବି—ବଜ୍ର ( ହି. ଶବ୍ଦସାଗର )—
Jāmbabi — Thunder.

**ଜାମ୍ବବୌଷ୍ଠ**—ସଂ. ବି—ବ୍ରଣାଦିର ଚିକିତ୍ସାର୍ଥ ବ୍ୟବହୃତ ପ୍ରାଚୀନ ଭାରତର କ୍ଷୁଦ୍ର ଅସ୍ତ୍ର ବିଶେଷ ( ହି. ଶବ୍ଦସାଗର )—
Jāmbabaushṭha
(ଜାମ୍ବୋଷ୍ଠ—ଅନ୍ୟରୂପ) A kind of small surgical instrument used to operate boils in ancient India.

**ଜାମ୍ବୁ**—ପ୍ରାଦେ. (ସମ୍ବଲପୁର) ବି—ଗୁଆଜଳି; ପିଜୁଳି—
Jāmbu — Guava.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ | ଉଅ | ଞ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ୠ | ନ୍ |

**ଜାମ୍ବିଳ**—ସଂ. ବି—ଆଣ୍ଠୁଗଣ୍ଠିର ଚକି ହାଡ଼ ( ହି ଶବ୍ଦସାଗର )—
Jāmbiḻa The round bone capping the knee-joint.

**ଜାମ୍ବୁନଦ**—ସଂ. ବିଣ. ( ଜମ୍ବୁନଦୀ=ସୁମେରୁ ପର୍ବତୋତ୍ପନ୍ନ ନଦୀବିଶେଷ
Jāmbu-nada +ଭବାର୍ଥେ. ଅ )—ଜମ୍ବୁ ନଦୀରୁ ଉତ୍ପନ୍ନ—
Got from the river Jambu.
ସଂ. ବି—୧ । ସ୍ୱର୍ଣ୍ଣ; ସୁନା—1. Gold.
୨ । ଧୁତୁରା ଗଛ ଓ ଫୁଲ—2. The thorn-apple plant and its flower.

**ଜାମ୍ବୁବାନ୍**—ସଂ. ବି. ( ଜମ୍ବୁ+ବତ୍; ୧ମା. ୧ବ )—
Jāmbu-bān ଜାମ୍ବବାନ୍ ( ଦେଖ )
(ଜାମ୍ବୁବାନ୍—ଅନ୍ୟରୂପ) Jāmbabān ( See )

**ଜାମ୍ବୁମାଳୀ**—ସଂ. ବି. (ନାମ)—ହନୁମାନ୍ ରାବଣର ଅଶୋକ ବନକୁ
Jāmbu-māḻi ଭଜାଉବା ସମୟରେ ହନୁମାନ୍ ଦ୍ୱାରା ହତ ପ୍ରହସ୍ତ
ନାମକ ଅସୁରର ପୁତ୍ର—Name of the son of demon Prahasta killed by Hanumān.

**ଜାମ୍ବେବ**—ଗ୍ରା ବି—ଜାମ୍ବବାନ୍; ଋକ୍ଷରାଜ—
Jāmbeba Jambubān, the mythological king of bears.

**ଜାୟ୍**—ବୈଦେ. ବି. ( ଫା. ଜାୟ୍=ସ୍ଥାନ; ଆ. ଜାୟଜ୍=ଉଚିତ;
Jāy ଔଜବ୍ )—୧ । ବିବରଣ; ହିସାବ—1. Account
जाय़ ୨ । ହିସାବର ବିବରଣ ବା ତାଲିକା; ତପସିଲ—
जाय 2. List
୩ । ହିସାବ କରାଯିବା କୌଣସି ବିଷୟରେ ସ୍ମାରକ ଚିହ୍ନ; √-
3 Tick mark.
୪ । ଲିଖିତ ବିସ୍ତୃତ ବିବରଣ—4. Detailed account.
(ବିପରୀତ—ବେଜାୟ୍) ବିଣ· ( ଆ. ଜାୟଜ୍=ଉଚିତ )—
जाय़ ୧ । ଉତ୍ତମ—1 Good.
जायज ୨ । ନ୍ୟାଯ୍ୟାନୁଗତ—2. Legal; lawful.
୩ । ଉଚିତ—3. Proper.

**ଜାୟକ**—ସଂ. ବି—ପୀତ ଚନ୍ଦନ ( ହି. ଶବ୍ଦସାଗର )—
Jayaka Yellow Sandal-wood.

**ଜାୟଗା**—ବୈଦେ. ବି. ( ଫା. ଜାୟଗାହ୍; ଜାୟ୍=ସ୍ଥାନ; ଗାହ୍=ସ୍ଥାନ; ସହଚର ଶବ୍ଦଦ୍ୱୟ )—
Jāyagā
जायगा ୧ । ସ୍ଥାନ—1. Place.
जगह ୨ । ଜମି; ଭୂମି—2. Land.
୩ । ପରିସର; ଫାଙ୍କ—3. Space; room.,
୪ । ସୁଯୋଗ; ସୁବିଧା—4. Opportunity.
୫ । ପାତ୍ର; ଆଧାର—5. Reservoir, container.
୬ । ଆଶ୍ରୟସ୍ଥଳ—6. Place of refuge.
୭ । ଖାଇ ବସିବା ନିମନ୍ତେ ପରିଷ୍କୃତ ସ୍ଥାନ—
7. A place made clean and ready for taking meal on it.
୮ । ଆବାସ ସ୍ଥଳ; ବସା—
8. Residence; lodgings.

**ଜାୟଗିର୍** (ଇତ୍ୟାଦି)—ବୈଦେ. ବି. (ଫା)—ଜାଗିର୍ ଇତ୍ୟାଦି (ଦେଖ)
Jāyagir (etc) Jāgiri etc. ( See )

**ଜାୟଜାତ୍**—ବୈଦେ. ବି. ( ଫା. ଜାୟଦାଦ୍ )—
Jāyajāt ୧ । ସମ୍ପତ୍ତି—1. Property.
জায়দাদ ୨ । ଭୂସମ୍ପତ୍ତି—2. Landed property.
जायदाद्
ଜାୟଦାତ୍ } ଅନ୍ୟରୂପ
ଜାୟଦାଦ୍ }

**ଜାୟତ୍ରୀ**—ଦେ ବି—ଜାଇତ୍ରୀ ( ଦେଖ )
Jāyatri Jāyitri ( See )

**ଜାୟଦା**—ବୈଦେ. ବିଣ. (ଆ)—ଜିଆଦା ( ଦେଖ )
Jāyadā Jiādā ( See )

**ଜାୟଦାଦ୍**—ବୈଦେ. ବି. (ଫା)—ଜାୟଜାତ୍ ( ଦେଖ )
Jāyadād Jāyajāt ( See )

**ଜାୟନମାଜ୍**—ବୈଦେ. ବି. ( ଫା. ଜାୟ୍=ସ୍ଥାନ+ନମାଜ୍=
Jāya-namāj ମୁସଲମାନଙ୍କ ସ୍ତବ)—ଯେଉଁ ଛୋଟ ଆସନରେ ବସି
জায়নমাজ ମୁସଲମାନ୍ମାନେ ନମାଜ ପଢ଼ନ୍ତି—
जायनमाज Prayer-mat of Mahomedans.

**ଜାୟବେଜାୟ୍**—ବୈଦେ. ବିଣ. (ଆ. ଜାୟଜ୍ ଓ ବେଜାୟଜ୍; ବିପରୀତାର୍ଥ
Jāya-bejāya ସହଚର )—୧ । ନ୍ୟାଯ୍ୟ ଓ ଅନ୍ୟାଯ୍ୟ—
জায়বেজায় 1. Right and wrong.
जाबेजा ୨ । ଉତ୍ତମ ଓ ମଧ୍ୟମ—2. Good and bad.
୩ । ବକ୍ତବ୍ୟ ଏବଂ ଅବକ୍ତବ୍ୟ—
3. Speakable and unspeakable.
୪ । ଉଚିତ ଓ ଅନୁଚିତ—
4. Proper and improper.
ବି—ଉଚିତ ଓ ଅନୁଚିତ କର୍ମ—
Proper and improper acts

**ଜାୟମାନ**—ସଂ. ବି. ପୁଂ. (ଜନ ଧାତୁ+କର୍ତ୍ତୃ. ଆନ)—ଉତ୍ପଦ୍ୟମାନ;
Jāyamāna ଯାହା ଜାତ ହେଉଅଛି—In the act of
(ଜାୟମାନା—ସ୍ତ୍ରୀ) being produced.

**ଜାୟା**—ସଂ. ବି. ସ୍ତ୍ରୀ. ( ଜନ୍ ଧାତୁ+ଅଧିକରଣ. ଯ+ସ୍ତ୍ରୀ. ଆ; ଯାହା-
Jāyā ଠାରେ ମନୁଷ୍ୟ ଅପତ୍ୟରୂପେ ଜନ୍ମେ )—
୧ । ବିବାହିତା ସ୍ତ୍ରୀ; ଭାର୍ଯ୍ୟା; ପତ୍ନୀ—1. Wife.
[ ଦ୍ର—ବହୁବ୍ରୀହି ସମାସରେ 'ଜାୟା' ଶବ୍ଦ 'ଜାନି' ଆକାର ଧାରଣ କରେ; ଯଥା—ଯୁବଜାନି, ବାମାର୍ଦ୍ଧଜାନି । ]
[ ଦ୍ର—ଆର୍ଯ୍ୟ ଧର୍ମଶାସ୍ତ୍ରମାନଙ୍କରେ ବର୍ଣ୍ଣିତ ଅଛି ଯେ ପତି ସ୍ୱୟଂ ଭାର୍ଯ୍ୟାଗର୍ଭରେ ପ୍ରବେଶ କରି ପୁତ୍ରରୂପେ ଜନ୍ମଗ୍ରହଣ କରେ । ତେଣୁ ଭାର୍ଯ୍ୟାକୁ ଜାୟା କୁହାଯାଏ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଳବତ' ନ ପାଇଲେ 'ଅଲବତ୍ତ' ଦେଖିବେ।

୨ । ଜନ୍ମଲଗ୍ନର ୭ମ ସ୍ଥାନ—2. The 7th place from the Lagna of one's birth.

**ଜାୟାଘ୍ନ**—ସଂ. ବି—ଫଳିତ ଜ୍ୟୋତିଷୋକ୍ତ ଜନ୍ମକୁଣ୍ଡଳୀର ଯୋଗବିଶେଷ—
Jāyāghna Name of an astrological conjuction in the horoscope of a person.

[ ଦ୍ର—ଜାତକରେ ଲଗ୍ନର ୭ମ ସ୍ଥାନରେ ମଙ୍ଗଳ ବା ରାହୁ ଥିଲେ ଏ ଯୋଗ ହୁଏ । ଯେଉଁ ପୁରୁଷର ଏପରି ଘଟେ ତାହାର ସ୍ତ୍ରୀ ବହୁଦିନ ବଞ୍ଚେ ନାହିଁ । ]

ବିଣ—ଯେଉଁ ବ୍ୟକ୍ତିର ଜାତକରେ ଉପରୋକ୍ତ ଯୋଗ ଥାଏ—(a person) Who has got the above conjunction in his horoscope.

**ଜାୟାଜୀବ**—ସଂ. ବି. ପୁଂ. (ବହୁବ୍ରୀହି; ଜାୟା+ଆଜୀବ; ଯେଉଁ ଲୋକ
Jāyājiba ସ୍ତ୍ରୀଦ୍ୱାରା ଜୀବିକାନିର୍ବାହ କରେ)—୧ । ବେଶ୍ୟାପତି; ଭଡ଼ୁଆ—1. A man who hires out his wife; a cuckold.
ଜାୟାନୁଜୀବୀ, ଜାୟାଜୀବୀ } ଅନ୍ୟରୂପ

୨ । ନଟ—2. An actor; a dancer.

ନ ଭୋ ସାହସ ଜାୟାଜୀବ ପ୍ରାଜ୍ଞେ
କବା ଏହାଠାରେ ଏତେ ଗର୍ବ ଯେ । ଶ୍ରୀକୃଷ୍ଣ. ରସକଲ୍ଲୋଳ ।

୩ । ବକପକ୍ଷୀ—3. The heron

[ ଦ୍ର—ପ୍ରବାଦ ଅଛି ଯେ ବଗୁଲୀ ଡିମ୍ବ ପ୍ରସବ କଲାପରେ ବଗ ଉକ୍ତ ଡିମ୍ବକୁ ଉଷୁମାଏ; ବଗୁଲୀ ଚରିବାକୁ ଯାଏ ଓ ବଗକୁ ଆଣି ଆହାର ଯୋଗାଏ । ]

**ଜାୟାତ୍ୱ**—ସଂ. ବି. (ଜାୟା+ଭାବ. ତ୍ୱ)—ଭାର୍ଯ୍ୟାତ୍ୱ—
Jāyātwa Wifehood.

**ଜାୟାପତି**—ସଂ. ବି. ( ଦ୍ୱନ୍ଦ୍ୱ; ଜାୟା+ପତି )—
Jāyā-pati ପତି ଓ ପତ୍ନୀ; ସ୍ୱାମୀସ୍ତ୍ରୀ; ଦମ୍ପତି—
Married couple; man and wife; husband and wife.

ବଲ୍ଲିକା ପାଦପ ଜଗତ ସ୍ୱରୂପ ଦିଶାଇଛନ୍ତି ଜାୟାପତି ସେ ।
ଉପେନ୍ଦ୍ର. ବୈଦେହୀଶବିଳାସ ।

[ ଦ୍ର—ସମାସରେ ଜାୟା ଓ ପତି ଏହି ଦୁଇ ଶବ୍ଦ ନପାତନରେ 'ଦମ୍ପତି' ଓ 'ଜମ୍ପତି' ଏହି ଦୁଇ ଆକାର ମଧ୍ୟ ଧାରଣ କରେ । ]

**ଜାୟିଗିର୍ (ଇତ୍ୟାଦି)**—ବୈଦେ. ବି. (ଫା)—ଜାଗିର ଇତ୍ୟାଦି (ଦେଖ)
Jāyigiri (etc) Jāgiri etc (See)
(ଜାୟିଗିର—ଅନ୍ୟରୂପ)

**ଜାୟିତ୍ରି**—ଗ୍ରା. ବି—ଜାୟିତ୍ରୀ (ଦେଖ)
Jayitiri Jāyitri (See)

**ଜାୟିତ୍ରୀ**—ଦେ. ବି. (ସଂ. ଜାତିପତ୍ରୀ)—ସୁଗନ୍ଧ ମସଲାବିଶେଷ—
Jāyitri Mace (a spice).
ଜାୟତ୍ରୀ
**जावित्री**

[ ଦ୍ର—ଜାୟିତ୍ରୀ ଜାଇଫଳର ଶସଉପରେ ଥିବା ଛାଲ । ଜାଇଫଳ ଗଛ ଉଚ୍ଚରେ ୩୦।୪୦ ହାତ ବଢ଼େ; ଏହା ମଲକା, ଜାବା, ବୋର୍ଣ୍ଣିଓ ଆଦିଦ୍ୱୀପରେ ଜନ୍ମେ । ଦକ୍ଷିଣଭାରତର ମାଲଗିରି ପାହାଡ଼ର କେତେକ ଅଂଶରେ ଏ ଗଛର କୃଷି କରା ଯାଉଅଛି । ଚଟକା ମଞ୍ଜିରୁ ଏ ଗଛ ଉତ୍ପାଦନ କରାଯାଏ । ଛୋଟ ଗଛମାନଙ୍କୁ ଖରାତେଜରୁ ରକ୍ଷା କରିବାକୁ ପଡ଼େ ଓ ଗ୍ରୀଷ୍ମଦିନେ ଏହାର ମୂଳରେ ପାଣି ଦେଇ ଗଛଗୁଡ଼ିକୁ ବଞ୍ଚାଇବାକୁ ହୁଏ । ମଞ୍ଜିରୁ ପ୍ରଥମେ ଚାରା ଉଠାଇ ଗଛ ୧୪ ବା ୨ ହାତ ଉଚ୍ଚ ହେଲେ ଗଛକୁ ୧୫।୨୦ ହାତ ଛଡ଼ାଛଡ଼ି କରି ପୋତିବାକୁ ହୁଏ । ସାନ ଗଛ ମୂଳରେ ପାଣି ରହିଲେ ବା ଘାସଆଦି ଉଠିଲେ ଗଛ ମରିଯାଏ । ଅଣ୍ଡିରା ଓ ମାଈ ଗଛ ପୃଥକ୍ । ୮।୧୦ଟି ମାଈଗଛ ପରେ ଗୋଟିଏ ଅଣ୍ଡିରା ଗଛ ରୋଇବାକୁ ହୁଏ, ଯେପରିକି ଅଣ୍ଡିରାଗଛରେ ପବନ ଲାଗି ମାଈଗଛରେ ବାଜିବ । ଅଣ୍ଡିରାଗଛର ଫୁଲରୁ ପରାଗ ଉଡ଼ି ମାଈଗଛର ଫୁଲରେ ପଡ଼ିଲେ ଫଳ ଧରେ । ଗଛ ଲଗାଇବାର ୭ ବର୍ଷରେ ଫଳ ଫଳେ । ଲଗେଲାଗେ ୧୫ ବର୍ଷ ଏ ଗଛ ଫଳେ ଓ ପ୍ରତି ବର୍ଷ ଫଳର ସଂଖ୍ୟା ବଢ଼େ । ଗୋଟିଏ ଉତ୍କୃଷ୍ଟ ଗଛରେ ବର୍ଷକେ ୨ ହଜାର ଫଳ ଫଳେ । ପାଚିଲା ଫଳ ସ୍ୱତରେ ଗଛରୁ ମଳକୁ ଝଡ଼ିପଡ଼େ । ଫଳ ଉପରେ ନାଲିମିଶା ହଳଦିଆ ପତଳା ଛାଲିକା ଥାଏ । ତାକୁ ଫଳରୁ ଛଡ଼ାଇ ନେଇ ଶୁଖାଇଲେ ତାହା ଜାୟିତ୍ରୀ ହୁଏ । ଏହି ପତଳା ଛାଲିକା କାଢ଼ି ନେଲା ପରେ ଫଳ ଉପରେ ଗୋଟିଏ ଟାଣୁଆ ଖୋପା ବା ଖୋଲ ରହେ, ସେ ଖୋଲକୁ ଭାଙ୍ଗିଦେଲେ ତହିଁ ମଧ୍ୟର ଶସ ଜାଇଫଳ । ଏହାକୁ ଛାଇରେ ଶୁଖା ଯାଏ ଓ ଏହା ବଜାରରେ ଜାଇଫଳରୂପେ ବିକା ଯାଏ । ଜାଇଫଳରୁ ଏକପ୍ରକାର ସୁଗନ୍ଧ ତେଲ ଓ ଅର୍କ ବାହାରେ । ଜାୟିତ୍ରୀ ଓ ଜାୟିଫଳ ମସଲାରୂପେ ଓ ଔଷଧରେ ବ୍ୟବହୃତ ହୁଏ । ବୈଦ୍ୟଶାସ୍ତ୍ର ମତରେ ଏହା ସଂଗ୍ରାହକ, କେଶବର୍ଦ୍ଧକ, ଶୀତଳ ଓ ରୁଚକ । ]

**ଜାୟିଫଳ**—ଦେ. ବି.—(ସଂ. ଜାତିଫଳ)—ଜାଇଫଳ (ଦେଖ)
Jayi-phala Jai-phala (See)
ଜାଏଫଳ
**जायफर, जायफल**

**ଜାୟୀ**—ସଂ. ବିଣ. ପୁଂ (ଜି ଧାତୁ+ଇନ୍; ୧ମା. ୧ବ)—ଜୟୀ; ଜୟଯୁକ୍ତ—
Jāyi Victorious.
(ଜାୟିନୀ—ସ୍ତ୍ରୀ)

ସଂ. ବି.—ସଙ୍ଗୀତର ଘୋଷା—
The burden of a song.

**ଜାୟୁ**—ସଂ ବି. (ଜି ଧାତୁ+କର୍ତ୍ତୃ. ଉ)—୧ । ବୈଦ୍ୟ—
Jāyu 1. Physician.

୨ । ଔଷଧ—2. Medicine.

ସଂ. ବିଣ.—ଜେତା—Victorious.

**ଜାର୍**—ବୈଦେ. ବି. ପୁଂ. (ଇଂ. ଜାର୍, ଲାଟିନ୍ କାଇଜାର୍)—ରୁଷିଆ
Jār ସାମ୍ରାଜ୍ୟ ରାଜତନ୍ତ୍ରାଧୀନ ଥିବା ସମୟରେ ତହିଁର ସମ୍ରାଟଙ୍କ ଉପାଧି;
The late Czar of the Russian empire.
ଜାର
**जार**
(ଜାରିନା—ସ୍ତ୍ରୀ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇସ୍ପ | ଉଅ | ଉ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ପ | ସ | ଙ୍ଁ | ଇଅ | ଡ଼ | ନ୍ |

ଜାର୍କରେଇ ପାର୍କରେଇ—ଗ୍ରା. ବିଣ ସ୍ତ୍ରୀ (ସ୍ତ୍ରୀମାନଙ୍କ ଭାଷା)—
Jār-karei pār-karei ଯେ ଅନ୍ୟକୁ ବିପଦରେ ପକାଇ ପୁଣି ତାକୁ ବିପଦରୁ ପାର କରାଇ ନିଜର ବାହାଦୁରି ଦେଖାଇ ହୁଏ; ଯେ ଡାହାଣୀ ହୋଇ ଲାଗେ ଓ ଗୁଣିଆଁ ହୋଇ ଛାଡ଼େ—(a woman) Who can cause some one to be accused and at the same time can save her out of the difficulty.

ଜାର—ସଂ. ବି. ପୁଂ (ଜୃ ଧାତୁ=ଜୀର୍ଣ୍ଣ କରିବା+କର୍ତ୍ତୃ ଅ; ଯେ ଦାମ୍ପତ୍ୟ
Jāra ପ୍ରଣୟକୁ ଜୀବ ପରି ଜୀର୍ଣ୍ଣ କରେ)—ପରପୁରୁଷ; ଉପପତି; ଗୁପ୍ତ ପତି; ବ୍ୟଭିଚାରୀ ବ୍ୟକ୍ତି—An illicit lover; a gallant; a secret lover of a married
(ଜାରିଣୀ—ସ୍ତ୍ରୀ) woman; a paramour; adulterer.

ଜାରକ—ସଂ. ବିଣ. (ଜୃ ଧାତୁ+କର୍ତ୍ତୃ ଅକ)—ଯାହା ଜୀର୍ଣ୍ଣ କରେ;
Jāraka ଜୀର୍ଣ୍ଣକାରକ; ପରିପାଚକ; ହଜମୀ—Promoting digestion; digestive.

ସଂ. ବି.—ଜୀର୍ଣ୍ଣକାରକ ଔଷଧ; ହଜମୀ ଗୁଳି—
Digestive preparation.

ଜାରକ କାଗଜି—ଦେ. ବି.—ଜୁଆଣୀ ମିଶାଇ ଲେମ୍ବୁର ରସଦ୍ୱାରା ଜାରଣ
Jāraka kāgajī କରି ପ୍ରସ୍ତୁତ କରାଯାଇ ଥିବା ଲେମ୍ବୁ ବା କାଗଜିର
( ଜାରକ ଲେମ୍ବୁ—ଅନ୍ୟରୂପ ) ଆଚାର—Pickled lime and aniseed used as a digestive preparation.

ଜାରକର୍ମ—ସଂ. ବି. (ଷଷ୍ଠୀ ତତ୍; ଜାର+କର୍ମନ୍)—ବ୍ୟଭିଚାର; ପରସ୍ତ୍ରୀ-
Jāra-karma ଗମନ—Adultery.

ଜାରଜ—ସଂ. ବି. ପୁଂ (ଜାର=ଉପପତି+ଜନ ଧାତୁ+କର୍ତ୍ତୃ. ଅ;
Jāraja ଯେ ପରପୁରୁଷ ଔରସରେ ଜନ୍ମେ)—ବେଜନ୍ମା, ବେଧଫଳ—
(ଜାରଜା—ସ୍ତ୍ରୀ) Illegitimate son.

ସଂ. ବିଣ. ପୁଂ.—କ୍ଷେତ୍ରଜ (ସନ୍ତାନ)—
Illegitimate; adulterine; bastard.

[ ଦ୍ର—ହିନ୍ଦୁସ୍ମୃତି ଅନୁସାରେ ଜାରଜଙ୍କୁ ୨ ଶ୍ରେଣୀରେ ବିଭକ୍ତ କରାଯାଇ ଅଛି । ବିବାହିତ ପତିଙ୍କ ଜୀବନକାଳରେ ପରପୁରୁଷ ଔରସ ସନ୍ତାନକୁ କୁଣ୍ଡ ଓ ବିଧବା ଗର୍ଭରେ ପରପୁରୁଷ ଔରସ ସନ୍ତାନକୁ ଗୋଳକ ବୋଲାଯାଏ । ଜାରଜପୁତ୍ର କୌଣସି ଧର୍ମକାର୍ଯ୍ୟ ସାଧନ ବା ପିଣ୍ଡଦାନରେ ଅଧିକାରୀ ନୁହେ । ]

ଜାରଜଯୋଗ—ସଂ. ବି.—ଫଳିତ ଜ୍ୟୋତିଷ ମତରେ ଜାତକରେ ଘଟିବା
Jāraja-joga ଗ୍ରହସ୍ଥିତିଯୁକ୍ତ ଯୋଗବିଶେଷ—Name of a kind of astrological conjunction of planets in a person's horoscope.

[ ଦ୍ର—ଜାତକରେ ଯଦି ଲଗ୍ନ ବା ଚନ୍ଦ୍ର ଉପରେ ବୃହସ୍ପତିଙ୍କ ଦୃଷ୍ଟି ପଡ଼ି ନ ଥାଏ ବା ସୂର୍ଯ୍ୟଙ୍କ ସହିତ ଚନ୍ଦ୍ର ଯୁକ୍ତ ହୋଇ ନ ଥାଏ କିମ୍ବା ସୂର୍ଯ୍ୟଙ୍କ ସହିତ ପାପଯୁକ୍ତ ଚନ୍ଦ୍ରମା ଯୁକ୍ତ ହୋଇ ଥାଏ, ତେବେ ଉକ୍ତ ବ୍ୟକ୍ତିର ଜାରଜ ଯୋଗ ହେବାର ଅନୁମିତ ହୁଏ । ଦ୍ୱିତୀୟ, ସପ୍ତମୀ ଓ ଦ୍ୱାଦଶୀ ତିଥିରେ ଓ ରବିବାର, ଶନିବାର ବା ମଙ୍ଗଳବାର ଦିନ ଯଦି କୃତ୍ତିକା, ମୃଗଶିରା, ପୁନର୍ବସୁ, ଉତ୍ତରାଷାଢ଼ା, ଧନିଷ୍ଠା ବା ପୂର୍ବଭାଦ୍ରପଦ ନକ୍ଷତ୍ର ପଡ଼େ ତେବେ ଏହାକୁ ଜାରଜ ଯୋଗ ବୋଲି ଯାଏ ଏ ଯୋଗରେ ଜନ୍ମିବା ବାଳକ ମାତାଙ୍କ ବିବାହିତ ସ୍ୱାମୀଙ୍କ ଔରସ ନ ଥିବାର ଜ୍ୟୋତିଷୀମାନେ ଅନୁମାନ କରନ୍ତି—ହି. ଶବ୍ଦସାଗର ।]

ଜାରଜାତ—ସଂ. ବିଣ. ପୁଂ. (୫ମୀ ତତ୍; ଜାର+ଜାତ)—ଜାରଜ—
Jāra-jāta Bastard
(ଜାରଜାତା—ସ୍ତ୍ରୀ) ସଂ. ବି. ପୁଂ—ଜାରଜ ସନ୍ତାନ; ବେଧଫଳ—
A bastard.

ଜାରଜାତକ—ସଂ ବି. ଓ ବିଣ—ଜାରଜାତ (ଦେଖ)
Jāra-jātaka Jārajāta (See)
(ଜାରଜାତକା—ସ୍ତ୍ରୀ)

ଜାରଜାତକା—ଦେ. ବି. ଓ ବିଣ—(ସଂ. ଜାରଜାତକ)—
Jāra-jātakā ଜାରଜ (ଦେଖ)
(ଜାରଜାତକା—ସ୍ତ୍ରୀ) Jāraja (See)

ଜାରଣ—ସଂ. ବି. ( ଜୃ ଧାତୁ ଣିଚ୍; ଜାର ଧାତୁ+ଭାବ. ଅନ ) —
Jārana ୧ । କ୍ଷୟକରଣ—1 Causing decay.
୨ । ଘନ ପଦାର୍ଥ ତରଳ ପଦାର୍ଥରେ ମିଳାଇ ଯିବା—
2. Being dissolved.
୩ । ପରିପାକ କରଣ; ପାଣିରେ ମିଳାଇଦେବା—
3. Act of dissolving a thing in a liquid.
୪ । ଜୀର୍ଣ୍ଣକରଣ—4. Digesting.
୫ । ଧାତୁଦ୍ରବ୍ୟାଦିର ମାରଣ ବା ଶୋଧନ—
5. The process of oxidising metals for medicinal purposes.
୬ । ଔଷଧାର୍ଥ ପାରା ଧାତୁର ଏକାଦଶ ସଂସ୍କାର—
6. The eleventh process of refining quicksilver.
୭ । ଭସ୍ମକରଣ—7. Oxidation; reduction to ashes

ସଂ. ବିଣ. ( +କର୍ତ୍ତୃ. ଅନ )—ଜୀର୍ଣ୍ଣକାରକ—Digestive.

ଜାରଣ ମାରଣ—ଦେ ବି. ( ସଂ. ଜାରଣ+ସଂ. ମାରଣ; ଏକାର୍ଥକ
Jārana mārana ସହଚର )—୧ । ଧାତୁଦ୍ରବ୍ୟାଦିର ଶୋଧନ—
জারণ মারণ 1. Process of oxidising or refining
**जारण मारण** metals for medicinal purposes.

[ ଦ୍ର—ସ୍ୱର୍ଣ୍ଣ, ରୌପ୍ୟ, ପାରା ଆଦି ଧାତୁକୁ ଆୟୁର୍ବେଦୋକ୍ତ ବୈଜ୍ଞାନିକ ପ୍ରକ୍ରିୟାଦ୍ୱାରା ଜାରଣ ବା ଶୋଧନ କଲେ ତାହା ଔଷଧ-ରୂପେ ମନୁଷ୍ୟର ନାନାଭାବରେ ଉପକାର କରେ; କିନ୍ତୁ ଶୋଧିତ ନ ହୋଇ ବ୍ୟବହୃତ ହେଲେ ମନୁଷ୍ୟଶରୀରରେ ନାନା ଅପକାର

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୃଷ' ନ ମିଳିଲେ 'କୃଶ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ

ଘଟାଏ । ବୈଜ୍ଞାନିକ ପ୍ରକ୍ରିୟାରେ ଜାରିତ ଧାତୁକୁ ଭସ୍ମ ବୋଲି ଯାଏ । ]

୨ । ( ଲକ୍ଷଣାର୍ଥ ) କୌଣସି ବ୍ୟକ୍ତିକୁ ଅଯତ୍ତ କରିବା ସକାଶେ ନରମ ଗରମ, ସତ୍ ଅସତ୍ ସବୁ ପ୍ରକାର ଉପାୟ—

2. All conceivable means (fair or foul) of bringing a person under control.

**ଜାରମହୁରା**—ଦେ. ବି ( ଫା. ଜହର୍ ଓ ଫ. ମହୁର୍ )—ଜାଲମହୁରା;
Jāra-mahurā ସର୍ପଦଂଶାଦିକ ଚରଢ଼ ଜାଙ୍ଗୀୟ ପକ୍ଷୀଙ୍କ ପେଟରୁ
जहर मोहरा ବାହାରିବା କୋଚିଲାମଞ୍ଜି ପରି ଦେଖା ଯାଉ-
ଗୁ. ସାପମହୁରା ଥିବା ଏକପ୍ରକାର କଳା ଓ ହଳଦିଆ ବର୍ଣ୍ଣର
ଫା. ପାଦଜହର ପଥରୁଆ ଜିନସ—A calcinous formation and pebble-like substance got from the intestines of flamingo and some ruminant birds and supposed to be an antidote against snake-poison.

[ ଦ୍ର—ଏହା କଳା ଓ ଚକଚକ ଦେଖାଯାଏ । ସାପକାମୁଡ଼ା କ୍ଷତ ଜାଗାରେ ଏହାକୁ ଲଗାଇ ଦେଲେ ଏ ଦଷ୍ଟ ବ୍ୟକ୍ତିର ଦେହରୁ ସାପ ବିଷ ଶୋଷି ନିଏ ଓ ବିଷ ଦେହରୁ ନ ଯିବା ପର୍ଯ୍ୟନ୍ତ ଏହା କ୍ଷତ ସ୍ଥାନରେ ଲାଗିରହେ । କେଳାମାନେ ଏହା ସଂଗ୍ରହ କରି ଲୋକଙ୍କୁ ଦିଅନ୍ତି । ପାଗୁଳି କରିବା କେତେକ ଜୀବ ( ଯଥା— ଛେଳି, ମୃଗ ଓ ଆମେରିକାର ଲାମା)ଙ୍କର ଅନ୍ତ୍ରକୁଳାରୁ ମଧ ଜାରମହୁରା ବାହାରେ । ]

**ଜାରା**—ଗ୍ରା. ବି. ପୁଂ. ( ସଂ. ଜାର )—ଜାର; ଉପପତ୍ନୀ—
Jārā A gallant; paramour.

ଜାରପୁରୁଷ ପ୍ରେମତରେ, ନଣ ଦିବସ ଅବରତେ—
ଭୂପତି. ପ୍ରେମପଞ୍ଚାମୃତ ।

ଗ୍ରା. ବି. ସ୍ତ୍ରୀ. (ସଂ. 'ଜାର'ର ସ୍ତ୍ରୀଲିଙ୍ଗ)—ଉପପତ୍ନୀ; ରକ୍ଷିତା ସ୍ତ୍ରୀ— Concubine.

ଜୁଅଇଁ ଜାରପତି ଭଜା ଭଣ୍ଡା ଅପଣା କର କେ ଜାଣେ—
ଭୂପତି. ଚଉତିଶା ।

ଜେରା ଗ୍ରା. ବୈଦେ. ବି—୧ । ( ଫା. ଜର୍ହ୍ ) ଜେର୍, ସାକ୍ଷୀକୁ
जिरह ବିପକ୍ଷ ପକ୍ଷ ଓକିଲଙ୍କର ପଚାରିବା କୂଟ ପ୍ରଶ୍ନ—
1. Cross examination.

ଜାରା ୨ । ( ଇଂ. ଜାରୁଵୁଡ୍ ) ଅଷ୍ଟ୍ରେଲିଆ ଦ୍ୱୀପର ବୃକ୍ଷବିଶେଷର
जारा ଖୁବ୍ ଟାଣ କାଠ—
2. Jārā wood; the hard wood of an Australian tree; Eucalyptus Rostrata.

[ ଦ୍ର—ଏ କାଠ କଲିକତାରେ ବିକି ହୁଏ, ଏଥିରେ ଗାଡ଼ି ଓ ଘରର ଉପକରଣମାନ ତିଆରି ହୁଏ । ]

**ଜାରା କରିବା**—ଗ୍ରା. କ୍ରି—ଜେର୍ କରିବା; ଅପର ପକ୍ଷର ସାକ୍ଷୀଙ୍କୁ କୂଟ
Jārā karibā ପ୍ରଶ୍ନ ପଚାରିବା—To cross-examine or
जेरा करा cross-question a witness in court.
जिरह करना

**ଜାରାଶବର**—ଦେ. ବି. ( ନାମ ) (ସଂ ଜରା)—ଯେଉଁ ଶବରର ବାଣ
Jārā-śabara ଶ୍ରୀକୃଷ୍ଣଙ୍କ ପାଦରେ ବାଜିବାରୁ ତାହାଙ୍କର ମୃତ୍ୟୁ ଘଟିଥିଲା—Name of a fowler who unwittingly caused the death of Śrīkṛushṇa by aiming an arrow and hitting his toe, mistaking it for a deer.

**ଜାରାସନ୍ଧ**—ଗ୍ରା. ବି—ଜରାସନ୍ଧ ( ଦେଖ )
Jārāsandha Jarāsandha ( See )

**ଜାରି**—ବୈଦେ. ବି. ( ଆ. ଜାରୀ=ପ୍ରଚଳିତ )
Jāri ୧ । ଆରମ୍ଭ; ସୂତ୍ରପାତ; ପ୍ରବର୍ତ୍ତନ—
जारि 1. Setting a thing on foot.
जारि ୨ । ପ୍ରଚାର—2. Circulation; promulgation.
୩ । ଅଧିକାର—3. Authority; control.
୪ । ପ୍ରୟୋଗ—4. Issuing; application.
୫ । କାର୍ଯ୍ୟରେ ପରିଣତି—5. Carrying into action.
୬ । ଶାସନ—6. Rule, regime.
୭ । ବ୍ୟବହାର; ପ୍ରଚଳନ—7. Use; currency.
( ଯଥା—ଏ ନୂଆ ନିୟମର ଜାରି ୩ ବର୍ଷ ହେଲା ହୋଇଅଛି । )
୮ । ପ୍ରଭାବ—8. Influence.
( ଯଥା—ଆଜି କାଲି ରଥଙ୍କର ଆଠଗଡ଼ରେ ଭାରି ଜାରି । )
୯ । କାର୍ଯ୍ୟ—9. Action
୧୦ । ବଳାତ୍କାର—10. Employing force.
୧୧ । ଜାହିର; ଆତ୍ମପ୍ରଶଂସା—
11. Self-aggrandisement.
୧୨ । ତେଜ—12. Power; vigour; activity.
ଆଜି ପୂର୍ବୋକ୍ତ ଉତ୍କାଏତ ଖଣ୍ଡରେ ଘଟା ଜାରି । ଫକୀରମୋହନ. ଗଳ୍ପସ୍ୱଳ୍ପ ।
୧୩ । କଡ଼ାକଡ଼ି ନିୟମର ପ୍ରଚାର—
13. Promulgation of strict rules.
୧୪ । ପ୍ରବାହ—14. Current; flow.
୧୫ । ମହରମ ପର୍ବରେ ମୁସଲମାନ ସ୍ତ୍ରୀଲୋକେ ତାଜିଆ ଆଗରେ ଗାଇବା ଏକ ପ୍ରକାର ଗୀତ—
15. A kind of song sung by Mahomedan females during the Mohorrum.
୧୬ । ଆଡ଼ମ୍ବର—16. Pomp; display
୧୭ । କଠୋର ନିୟମାଧୀନତା—17. Discipline.
ବିଣ—୧ । ପ୍ରଚଳିତ—1. Current; in vogue.
୨ । ପ୍ରତିଷ୍ଠିତ—2. Established.
୩ । ପ୍ରବର୍ତ୍ତିତ—
3. Put in force; inaugurated.
୪ । ଜାହିର; ପ୍ରଚାରିତ—4. Promulgated; published.

ତାଙ୍କ ମହିମା କଥା ପୃଥିବୀ ଯାକ ଜାରି । ଫକୀରମୋହନ. ଗଳ୍ପସ୍ୱଳ୍ପ ।

| ୯ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଟ | ଶ,ଷ | କ୍ଷ | ଇୟ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଵ | ନ୍ତ |

୫ । ( ଅ. ଜାହର୍ ) ଶାସିତ—5. Controlled; ruled.
୬ । ପ୍ରବାହିତ—
6. Flowing; running ( in current ).
( ଯଥା—ଲକ୍ଷ୍ମୀ ଲୋକର ବହୁତ ଖୁନ୍ ଜାରି ଅଛି । )

ଜାରି କରିବା—ଦେ. କ୍ରି—୧ । କାର୍ଯ୍ୟରେ ପରିଣତ କରିବା—
Jāri karibā 1. To put into a force; to carry
জারি করা a thing into action.
**जारि करना** (ଯଥା—ପିଅଦା ଆସି ଉତ୍ତିକୁ ଜାରି କରିଦେଇଗଲା ।)
୨ । ପ୍ରଚାର କରିବା—2 To serve.
( ଯଥା—ପିଅଦା ନୋଟିସ ଜାରି କରିବାକୁ ଯାଇଅଛି । )
୩ । ପ୍ରବର୍ତ୍ତନ କରିବା—3. To inagurate.
୪ । କଡ଼ାକଡ଼ି ନିୟମ ପ୍ରଚାର କରିବା—
4. To promulgate hard and fast rules.
୫ । ପ୍ରତିଷ୍ଠିତ କରିବା—5 To establish.
ଭୂମି ପରେ କରେ ପ୍ରବୃପଣ ଜାରି । ରାଧାନାଥ. ଦରବାର ।
୬ । ଜବତ୍ କରିବା; ଦଣ୍ଡ ଆଦି ଦେଇ ଆୟତ୍ତ କରିବା—
6. To teach a lesson by punishing.

ଜାରି କାଢ଼ିବା—ଦେ. କ୍ରି—ଆପଣାର ପରାକ୍ରମ ସାଧାରଣଙ୍କ ଆଗେ
Jāri kārdhibā ପ୍ରକାଶ କରିବା—To show one's might or power in public.

ଜାରିଣୀ—ସଂ. ବି. ସ୍ତ୍ରୀ. ( ଜାର+ଇନ୍+ସ୍ତ୍ରୀ. ଈ )—କୁଳଟା ସ୍ତ୍ରୀ—
Jārini An adulteress.

ଜାରିତ—ସଂ. ବିଣ. ( ଜୃ ଧାତୁ ଣିଚ୍+କର୍ମ. ତ )—
Jārita ଶୋଧିତ; ମାରିତ; ଆୟୁର୍ବେଦୋକ୍ତ ବିଧିରେ ଭସ୍ମୀକୃତ ( ଧାତ୍ୱାଦି )—Refined; oxidised.

ଜାରି ଦେଖା (ଖୋ)ଇବା—ଦେ. କ୍ରି—ଜାରିକାଢ଼ିବା ( ଦେଖ )
Jāri dekhā(khe)ibā Jāri kārdhibā ( See )

ଜାରିବା—ଦେ. କ୍ରି ( ସଂ. ଜୃ ଧାତୁ )—
Jāribā ୧ । ଜାରଣ କରିବା; ଧାତୁଦ୍ରବ୍ୟାଦି ଶୋଧନ କରିବା—
জাবা 1. To reduce or purify metals for medi-
**जारना** cinal purposes.
୨ । ଧାତୁ ଆଦି ଭସ୍ମ କରିବା—2. To reduce to ashes; to oxidise; to calcine.
୩ । ତେଲ ଆଦିକୁ ଉତ୍ତାପରେ ଜଳଶୂନ୍ୟ କରିବା—
3. To heat oil etc. over fire so as to cause the water dissolved in it to evaporate.
୪ । ଜୀର୍ଣ୍ଣ କରିବା—4. To digest.
୫ । ଘନ ପଦାର୍ଥକୁ ପାଣିରେ ମିଳାଇବା—
5. To dissolve.
୬ । ନିସ୍ତେଜ କରିବା—6. To make powerless.
ମାର ସୁକୁମାରୀ ନ ପୁଣ କନ୍ଧାର ଜାରି ଯେଉଁତ ଏହା ସୁମର ମର ।
ଉପେ. ପ୍ରେମସୁଧାନିଧି ।

୭ । (ଲକ୍ଷଣାର୍ଥ) ଉପଯୁକ୍ତ ଶାସ୍ତି ଦେବା; ଜବତ୍ କରିବା—
7. To teach a lesson by punishing.
ହରିଲେ ସକଳ ମନ; ଜାରିଲେ ଗାରିମା ଜନ ।
ଗ୍ରାଚୀ. ରହସ୍ୟମଞ୍ଜରୀ ।

ଜାରି ବାହାର କରିବା—ଦେ. କ୍ରି—ଜାରି କାଢ଼ିବା (ଦେଖ)
Jāri bāhāra karibā Jāri kārdhibā (See)

ଜାରୁଲ୍—ଦେ. ବି—ଆସାମ, ଚଟ୍ଟଗ୍ରାମ ଓ ବ୍ରହ୍ମଦେଶରେ ଜାତ ପ୍ରସିଦ୍ଧ
Jārul କାଠଗଛ—A kind of timber tree; Toon
জারুল wood; Larger Stroemina Flosreginae.
**जेर** [ ଦ୍ର—ଏହା ଧାତକ୍ୟାଦି ବର୍ଗର ପୁଷ୍ପତରୁବିଶେଷ; ଏହାର ଫୁଲ ବଡ଼ବଡ଼ ଓ ପ୍ରାୟ ୩ ଅଙ୍ଗୁଳ ଚଉଡ଼ା । ଏ କାଠ କଲିକତାରେ ମିଳେ । ଏହା ବଡ଼ ଟାଣ । ଏଥିରେ ଚଉକି, ଅଲମାରି, ମେଜ ଇତ୍ୟାଦି ଗୃହୋପକରଣ, କଡ଼ିକାଠ ଓ ବରଗା ହୁଏ । ]

ଜାଲ୍—ବୈଦେ. ବି. ( ଆ. ଜଅଲ୍; ଜାଲ୍ )—୧ । କପଟଲେଖନ
Jāl କୃତ୍ରିମଲେଖା—1. Forged writing; forgery.
জাল ୨ । କପଟତା—2. Deception.
**जाल** ବିଣ—୧ । କୃତ୍ରିମ—1 Forged; counterfeit.
୨ । କପଟୀ—2. Deceptive.

ଜାଲ୍ ଅପରାଧ—ଦେ. ବି—ଜାଲ୍ କରିବା ଯୋଗୁଁ ହେବା ଅପରାଧ—
Jāl aparādha The offence of forgery.

ଜାଲ୍ କରିବା—ଦେ. କ୍ରି—୧ । କୃତ୍ରିମ ଲେଖା ଲେଖିବା—
Jāl karibā 1. To forge; to forge a writing
জাল করা or document.
**जाल करना** (ଯଥା—ତୁମ୍ଭେ ତାଙ୍କ ଦସ୍ତଖତ ଜାଲ୍ କରିବ କି ?)
୨ । ଅସଦୁଦ୍ଦେଶ୍ୟରେ ଅସଲ ପଦାର୍ଥର ଅବିକଳ ନକଲ ପ୍ରସ୍ତୁତ କରିବା—2. To counterfeit a genuine thing; to imitate culpably.
[ ଦ୍ର—ଜାଲ୍ କରିବା ଆଇନ ଅନୁସାରେ ଗୁରୁତର ଅପରାଧ ଅଟେ । ]

ଜାଲ୍‌କାରିଆ—ଗ୍ରା. ବିଣ—ଯେ କପଟଲେଖା ଲେଖେ; ଜାଲିଆ—
Jālkāriā Forging.
**जालिया**

ଜାଲଜାଲୁଆ—ଦେ. ବିଣ. (ସଂ. ଜାଲ=ଜାଲ)—
Jāl jāliā ୧ । ଜାଲପରି ଦିଶୁଥିବା; ଝିଲଝିଲ—
জালীদার 1. Looking like a net; netlike; netted.
**जालीदार** ୨ । ଜାଲୁଜାଲୁଆ; ଅସ୍ପଷ୍ଟ ଦେଖାଯିବା—
(ଜାଲଜାଲୁଆ—ଅନ୍ୟରୂପ) 2 Seen indistinctly.
୩ । ସ୍ପଷ୍ଟରୂପେ ଦେଖିପାରୁ ନ ଥିବା ( ଚକ୍ଷୁ )—
3. Dim-sighted (eye).
୪ । ଉପରେ ଜାଲପରି ସରୁ ଆବରଣ ଥିବା—
4. Filmy; reticulated.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅଗିଁଆ ନ ପାଇଲେ 'ଆଙ୍ଗିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୫ । ଜାଲମୟ; ଛନ୍ଦଣିମନ୍ଦଣି—
5. Knotty, complicated; twisted with one another; overtangled

ଜାଲ୍ ଜାଲିଆତି—ଦେ. ବି—୧ । ଜାଲ୍; ଜାଲ୍‌କର୍ମ—
Jāl jāliāti 1. Forgery.
୨ । ଠକାମି; ପ୍ରତାରଣା—1. Cheating; fraud.

ଜାଲ୍‌ଜାଲୁଆ—ଦେ. ବିଣ—ଜାଲ୍‌ଜାଲିଆ (ଦେଖ)
Jāl-jāluā Jāl-jālia (See)

ଜାଲ୍ ଟଙ୍କା—ଦେ. ବି—ମେକିଟଙ୍କା; ନିକୃଷ୍ଟ ଧାତୁରେ ପ୍ରସ୍ତୁତ ମୁଦ୍ରା—
Jāl ṭankā Counterfeit coin.
जाल टाका
जाल रुपया

ଜାଲ୍ ଦଲିଲ୍—ବୈଦେ. ବି. (ଆ. ଜଅଲ୍ ଓ ଫା. ଦଲୀଲ୍)—
Jāl dalil ଅସଲ କାଗଜର ନକଲି ପ୍ରତିଲିପି—
जाल दलील Forged document.
जाल दलील
(ଜାଲ୍‌ଦସ୍ତାବିଜ୍—ଅନ୍ୟରୂପ)

ଜାଲ୍ ଦସ୍ତଖତ—ବୈଦେ ବି (ଆ. ଜଅଲ୍ ଓ ଫା ଦସ୍ତଖତ୍)—
Jāl dastakhata କୃତ୍ରିମ ସ୍ୱାକ୍ଷର; କୌଣସି ବ୍ୟକ୍ତିଦ୍ୱାରା କପଟ-
जाल दस्तखत ଭାବରେ ଲିଖିତ ବା ସ୍ୱାକ୍ଷରିତ ଅନ୍ୟର ନାମ
जाल दस्तखत Forged signature.

ଜାଲ୍ ଦସ୍ତାବିଜ—ବୈଦେ. ବି. (ଆ. ଜାଲ୍ ଓ ଫା. ଦସ୍ତଆବେଜ୍)—
Jāl dastābija ଜାଲ୍‌ଦଲିଲ—Forged document.

ଜାଲ୍ ଧରିବା—ଦେ. କ୍ରି—ଦଲିଲ୍ଆଦିର କୃତ୍ରିମତା ଅବଧାରଣ କରିବା—
Jāl dharibā To detect a forgery.
जाल धवा
जाल पकड़ना

ଜାଲ୍ ନୋଟ୍—ବୈଦେ. ବି. (ଆ. ଜଅଲ୍ ଓ ଇଂ. ନୋଟ୍)—
Jāl-noṭ କୃତ୍ରିମ କାଗଜ-ମୁଦ୍ରା—Forged note.
जाल नोट
जाल नोट

ଜାଲ୍‌ଫିସାଦ୍—ବୈଦେ. ବି. (ଆ. ଜଅଲ୍+ଫସାଦ) (ସନ୍ଧିତର)—
Jāl-phisād କପଟ ଲେଖା ଓ ପ୍ରତାରଣା—
जाल फसाद Forgery and deception.
जालफसाद

ଜାଲ୍‌ଫିସାଦି—ଦେ. ବି—ଜାଲ୍‌ଫିସାଦ୍ (ଦେଖ)
Jāl-phisādi Jālphisād (See)
जालफेसादी ବୈଦେ. ବିଣ—ଯେ କୃତ୍ରିମ ଲେଖା ଲେଖେ ଓ
जालफसादी ପ୍ରତାରଣା କରେ—Forging and deceptive.

ଜାଲ୍‌ଫିସାଦିଆ—ବୈଦେ. ବିଣ—ଜାଲ୍ ଫିସାଦି (ଦେଖ)
Jal-phisādiā Jāl-phisādi (See)

ଜାଲ୍ ମନୁଷ୍ୟ—ଦେ. ବି—ଯେଉଁଲୋକ ଆପଣାକୁ ଅନ୍ୟବ୍ୟକ୍ତି ବୋଲି
Jāl manushya ଛଳନା କରେ—An imposter.
जाल मानुष
जाल आदमी

ଜାଲ୍ ମୁଦ୍ରା—ଦେ. ବି—ମେକିଟଙ୍କା; ନିକୃଷ୍ଟ ଧାତୁରେ ପ୍ରସ୍ତୁତ ମୁଦ୍ରା—
Jāl mudrā Countrefeit coin; base coin.

ଜାଲ୍‌ସାଜ୍—ବୈଦେ. ବିଣ. (ଆ. ଜଅଲ୍+ଫା. ସାଜ୍)—ଜାଲିଆ;
Jāl-sāj ପ୍ରତାରକ—Forging; imposting; cheating.
जालसाज
जालसाज

ଜାଲ୍‌ସାଜି—ବୈଦେ ବି. (ଆ ଜାଲ୍+ଫା. ସାଜୀ)—
Jāl-sāji ୧ । ଜାଲ୍‌କର୍ମ—1. Forgery.
जालसाजि ୨ । ଠକାମି; ପ୍ରତାରଣା—2. Deception.
जालसाजी

ଜାଲ୍ ସାଜିଆ—ବୈଦେ. ବିଣ.—(ଫା. ଜାଲ ସାଜ୍)—ଜାଲିଆ—
Jāl sājiā Forging.

ଜାଲ୍‌ସାଦ୍—ବୈଦେ. ବିଣ. (ଫା. ଜାଲ୍‌ସାଜ୍)—ଜାଲ୍ ସାଜ୍ (ଦେଖ)
Jāl-sād Jālsāj (See)

ଜାଲ୍ ସାଦି—ଗ୍ରା. ବୈଦେ. ବି. (ଫା. ଜାଲ୍ ସାଜୀ)—ଜାଲ୍ ସାଜି (ଦେଖ)
Jāl-sādi Jāl-sāji (See)

ଜାଲ—ସଂ. ବି. (ଜଲ୍ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ଅ)—
Jāla ୧ । ଜୀବଜନ୍ତୁ (ଯଥା—ମାଛ, ପକ୍ଷୀ ଆଦି) ଧରିବା ନିମନ୍ତେ ପ୍ରସ୍ତୁତ ଦଉଡ଼ି, ସୂତା ବା ଲୌହର ତାର ନିର୍ମିତ ଯନ୍ତ୍ରବିଶେଷ; ଫାନ୍ଦ;ଜାଲ—1. Net; snare.
୨ । ଆଖିର ତାରା ଉପରେ ପଡ଼ିଲ ମାଉଡ଼ିବା ରୋଗ—
2. A disease of the eye in which the pupils are overspread with a net-like overgrowth.
୩ । ଲୂତାତନ୍ତୁ; ବୁଢ଼ିଆଣୀ ସୂତାର ଗୋଲାକାର ଫାନ୍ଦ—
3. Spider's web.
୪ । ରଥାଦିର ଆବରଣ ବା ଜାଲି ପଡ଼ିଥିବା ଘୋଟପ—
4. Netted covering or hood for cars etc.
୫ । ଗବାକ୍ଷ ବା କ୍ଷୁଦ୍ର ଜାଲିଥିବା ଝରକା—
5. Latticed window.
୬ । କଳିକା; କୋରକ; କଢ଼ି—6. Bud; blossom.
୭ । ସରୁ ଜାଲିକାମ—7. Lattice work.
୮ । ସମୂହ—8. Multitude; collection; assemblage.
୯ । ଭେଳିକବାଜି; ଇନ୍ଦ୍ରଜାଲ; ଭେଲ୍କି—
9 Magic; jugglery.
୧୦ । ମିଥ୍ୟା; ପ୍ରବଞ୍ଚନା; ପ୍ରତାରଣା; ଛଳ; କପଟ—
10. Deception; falsehood.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଡ଼ଥ | ଢ଼ |
| ୨ | ଈ | ଊ | ଋୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ନ |

୧୧ । ଦମ୍ଭ; ଗର୍ବ—11. Pride; arrogance.

୧୨ । ଅନ୍ୟକୁ ବିପଦରେ ପକାଇବା ପାଇଁ କଳ୍ପିତ କପଟ ଉପାୟ ବା କୌଶଳ—12. Stratagem or artifice to involve a person in trouble.

୧୩ । ଅଭିମାନ; (ହି. ଶବ୍ଦସାଗର)—13. Sullen displeasure.

୧୪ । କ୍ଷାର; ଗଛ ଆଦିକୁ ଜଳାଇ ସେଥିରୁ ବାହାର କରିବା ପାଉଁଶ (ହି. ଶବ୍ଦସାଗର)—14. Ashes of vegetables.

୧୫ । କଦମ୍ବଗଛ (ହି. ଶବ୍ଦସାଗର)—15. Nuclea Kadamba (tree)

୧୬ । ଏକପ୍ରକାର ତୋପ (ହି. ଶବ୍ଦସାଗର)—16. A kind of cannon.

ଦେ. ବି. (ସଂ. ଜ୍ୱଲ ଧାତୁ)—୧ । ଜାଳେଣୀ କାଠ; ଇନ୍ଧନ—1. Fuel; fire-wood.

୨ । ଅଗ୍ନିର ତାପ ବା ତେଜ—2 Heat of fire.

୩ । କୌଣସି ପଦାର୍ଥକୁ ତତାଇବା ପାଇଁ ଜାଳ ଜାଳିବା—3. Lighting of fuel to heat something.

ଅଗ୍ନି ଜାଳନ୍ତେ ଅଗ୍ନିକି ସରେଣୀ,
ଅନେକ ଜାଳେ ନ ତାତଇ ପାଣି । ପ୍ରଭାପ. ଶଶିସେଣା ।

୪ । ପୋଡ଼; ପୋଡ଼ିବା କ୍ରିୟା—4. Act of burning.

ବସୁବ ସ୍ୱର୍ଣ୍ଣ ପିତ୍ତଳ ମିଶିଛ ତେବେ ତା ଜାଳ ପ୍ରଭେଦରେ କଲେ ଶତ୍ରୁଘ୍ନ ।
ଉଞ୍ଜ. ବୈଦେହୀଶବିଳାସ ।

୫ । ତାପ—5. Heat.

ଦେନ୍ତ ଘନକାଳ ଦ୍ୱାଳ ମଣି ବର୍ଦ୍ଧ ନ୍ୱାଳ ଜାଳ ।
ଉଞ୍ଜ. ପ୍ରେମସୁଧାନିଧି ।

**ଜାଲ**—ଦେ. ବି. (ସଂ. ଜାଲ)—୧ । ଜୀବଜନ୍ତୁ ଆଦି ଧରିବା ନିମନ୍ତେ ପ୍ରସ୍ତୁତ ସୂତ୍ରାଦି ନିର୍ମିତ ଯନ୍ତ୍ର; ଫାନ୍ଦ—1. Snare.
Jāla
जाल
জাল

୨ । ଫାସ—2. Noose.

୩ । ବୁଢ଼ିଆଣୀ ସୂତା—3. Cobweb; spider's web.

୪ । ମାଛ ଧରିବାର କ୍ଷୁଦ୍ର କ୍ଷୁଦ୍ର ଛିଦ୍ରଯୁକ୍ତ ଯନ୍ତ୍ର—4. Net.

[ ଦ୍ର—ଏହା ଅନେକ ପ୍ରକାରର; ଯଥା—ଖୁଅଜାଲ, ଖେପା ଜାଲ, ପେଲଣା ଜାଲ, କାଠି ବା ଖାଉ ଜାଲ, ଗଣ୍ଠି ଜାଲ ବା ଚୂନା ଜାଲ, ଉଡ଼ ବା ବଡ଼ ଜାଲ ଓ ଜାଲ ପୋଲୁହ ଇତ୍ୟାଦି । ]

ବୈଦେ. ବି ଓ ବିଂ. ( ଅ. ଜଅଲ )—ଜାଲ୍ ( ଦେଖ ) Jāl ( See )

**ଜାଲକ**—ସଂ. ବି. (ଜାଲ+ସ୍ୱାର୍ଥରେ କ)—୧ । କ୍ଷୁଦ୍ର ଜାଲ—1. Small net.
Jālaka

୨ । ଫୁଲର କଢ଼ି; କୋରକ; କଳକା—2. Bud; blossom.

୩ । କୁଲାୟ; ପକ୍ଷୀର ବସା—3. Bird's nest.

୪ । ଫୁଲ ବା କଢ଼ିର ପେନ୍ଥା—4. A bunch of flowers or blossoms.

୫ । ତାରକସି କାମ—5. Filigree.

୬ । ଗବାକ୍ଷ—6. Latticed window.

୭ । କାରୁକାର୍ଯ୍ୟଯୁକ୍ତ ଭୂଷଣ—7 An ornament with filigree work.

୮ । କାକୁଡ଼ି, ବୋଇତକଖାରୁ, ପାଣିକଖାରୁ, ଭେଣ୍ଡି, ଜହ୍ନି ଇତ୍ୟାଦି ଫଳମାନଙ୍କର ପ୍ରଥମ ଅବସ୍ଥା ବା କଷି—8. Young edible fruit (e. g. cucumber, pumpkin etc).

୯ । ଗର୍ବ; ଦମ୍ଭ—9. Pride, arrogance.

୧୦ । କ୍ଷୁଦ୍ର ପଦାର୍ଥର ସମୂହ ବା ସମଷ୍ଟି—10. A collection or multitude of small things.

୧୧ । କଦଳୀ (ହି. ଶବ୍ଦସାଗର)—11. Plantain.

**ଜାଳ କରିବା**—ଦେ. କ୍ରି—୧ । ଜାଳେଣୀ କାଠ ସଂଗ୍ରହ କରିବା—1. To gather twigs etc. for fuel.
Jāla karibā

୨ । ଅନ୍ୟ ବ୍ୟବହାର ପାଇଁ ଅଭିପ୍ରେତ କାଠକୁ ଜାଳିବା କାଠରେ ପରିଣତ କରିବା—2. To turn wood intended for other use to fuel.

**ଜାଲକାରକ**—ସଂ. ବି ( ଜାଲ+କୃ ଧାତୁ+କର୍ତ୍ତୃ. ଅକ )—ବୁଢ଼ିଆଣୀ; ମାକଡ଼ସା—Spider.
Jāla-kāraka

**ଜାଲକିନୀ**—ସଂ. ବି (ଜାଲକ+ଇନ୍+ସ୍ତ୍ରୀ. ଈ)—ମାଈ ମେଣ୍ଢା; ମେଣ୍ଢୀ (ହି. ଶବ୍ଦସାଗର)—A she-ram; ewe.
Jālakini

**ଜାଲକୀ**—ସଂ. ବି ( ଜାଲକ+ଜୀବକାର୍ଥେ ଇନ୍; ୧ମା. ୧ବ )—ଶସ୍ତ୍ର ବ୍ୟବସାୟଦ୍ୱାରା ଜୀବିକାନିର୍ବାହକାରୀ ବ୍ୟକ୍ତି ( ହି. ଶବ୍ଦସାଗର)—A person who earns his livelihood by dealing with weapons.
Jālaki

**ଜାଲକୀଟ**—ସଂ. ବି ( ମ. ପ. ଲୋ.; ଜାଲ+କୀଟ )—୧ । ବୁଢ଼ିଆଣୀ, ମାକଡ଼ସା; ଊର୍ଣ୍ଣନାଭ—1. Spider.
Jāla-kiṭa

୨ । ବୁଢିଆଣୀର ଜାଲରେ ପଡ଼ିବା କୀଟ (ହି. ଶବ୍ଦସାଗର)—2. An insect which becomes entangled in a spider's web.

**ଜାଲଗଣ୍ଠି**—ଦେ. ବି—୧ । ବର୍ଷାୟୁ ତୃଣବିଶେଷ—1. A long creeping grass, Panicum Javanicum.
Jāla ganṭhi
जालगाँठि
জালকাগাঁট

[ ଦ୍ର—ଏହା ଗୁଆଁପର ଏକପ୍ରକାର ଘାସ; ଲଟେଇ ଲଟେଇ ମାଡ଼େ ଓ ଦେଢ଼ ବା ଦୁଇ ହାତ ଲମ୍ବ ହୁଏ ।]

୨ । ଜାଲର ଘରମାନଙ୍କ କୋଣରେ ପଡ଼ିଥିବା ଗଣ୍ଠି—2. Knots at the corners of the squares of a net.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଯାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅର୍ଗ୍ୟା' ନ ପାଇଲେ 'ଅର୍ଗ୍ଯା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଦେ. ବିଣ—ଜାଲ୍‌ଜାଲିଆ ( ଦେଖ ) Jāl-jālīā ( See )

**ଜାଲଗର୍ଦ୍ଦଭ**—ସଂ. ବି—ଚର୍ମରୋଗବିଶେଷ; ବିସର୍ପ ରୋଗ— Jāla-gardabha Cutaneous erysipelas. [ ଦ୍ର—ଏଥିରେ ଦେହର ସ୍ଥାନବିଶେଷ ଫୁଲିଯାଏ ଓ ପୀଡ଼ା କରେ ଓ ଜର ହୁଏ । ]

**ଜାଲଘର**—ଦେ. ବି—ଜାଲର ଫାଙ୍କମାନ— Jāla-gharā The spaces made in a net.

**ଜାଲଜୀବୀ**—ସଂ. ବି ( ଜାଲ + ଜୀବ୍ ଧାତୁ + ଇନ୍; ୧ମା. ୧ବ.; ଯେ Jāla-jībi ଜାଲ ସାହାଯ୍ୟରେ ଜୀବିକା ନିର୍ବାହ କରେ)—କେଉଟ; ଜାଲୁଆ—Fisherman.

**ଜାଲଟିବାଡ଼ି**—ଦେ. ବି—ଯେଉଁ ଦଣ୍ଡରେ ସୂତା ଛନ୍ଦା ହୋଇ ଛନ୍ଦା Jālati-bārdi ହୋଇଥିବା ସୂତାର ଫାସରୁ ଜାଲ ବୁଣିବାକୁ ଆରମ୍ଭ କରାଯାଏ—The staff which forms the base for knitting nets.

**ଜାଲଣୀକାଠ**—ଦେ. ବି ( ସଂ. ଜ୍ୱଳନ ) ଇନ୍ଧନ; ଜାଳିବାରେ ବ୍ୟବହୃତ Jālanikātha କାଷ୍ଠ—Fuel. जालनी काठ **জলাবনী**

**ଜାଲତି**—ଦେ. ବି (ସଂ. ଜାଲ)—୧ । ଛୋଟ ଜାଲ— Jālati 1. Small net. जाली ୨ । ବାଦୁଡ଼ିଆଦିଙ୍କ ଆକ୍ରମଣରୁ ଗଛର ଫଳକୁ ରକ୍ଷା କରିବା **জালী** ନିମନ୍ତେ ଗଛ ବା ଫଳ ଉପରେ ଘେରା ହେବା ଜାଲ— 2. Net-work put over trees or fruits to protect them from depredations of bats.
୩ । ଆମ୍ବ ଆଦି ଫଳ ତୋଳିବା ନିମନ୍ତେ ଅଙ୍କୁଡ଼ି ଅଗରେ ବନ୍ଧା ହୋଇଥିବା ଜାଲର ପାଚିଆ; ଖୁଣ୍ଟୁଣୀ ଜାଲ— 3. A net-work basket or pouch attached to the top of a pole to pluck fruits (which fall into it instead of falling on the ground from high).
୪ । କୁକୁର, ଗୋରୁ ଆଦିଙ୍କ ମୁହଁରେ ବନ୍ଧା ହେବା ଜାଲି- କାମର ପାଚିଆ; ବାଆଁରା; ଗୋମେଷାଦି ପଶୁଙ୍କ ଭୁଣ୍ଡୀ; ପଶୁମାନଙ୍କ ମୁହଁ ଓ ନାକ ଢାଙ୍କିବା ଜାଲ— 4. Netted muzzle tied to the mouth of dogs or cattle to prevent them from using their mouth.

**ଜାଲ ଦେବା**—ଦେ. କ୍ରି—ଚୁଲିରେ ନିଆଁ ଜାଳିବା ନିମନ୍ତେ ଜାଳଣୀକାଠ Jāla debā ପୂରାଇବା—To supply fuel to a fire in the oven.

**ଜାଲ ପକା(କେ)ଇବା**—ଦେ. କ୍ରି—୧ । ମାଛ ଧରିବାପାଇଁ ପୋଖରୀ Jāla pakā(ke)ibā ଆଦି ଜଳାଶୟରେ ଜାଲ ବିସ୍ତାର କରିବା— जाल फेंका 1. To cast nets for fishing. **জাল ডালনা** ୨ । (ଲକ୍ଷଣାର୍ଥ) ଅନିଶ୍ଚିତ ବସ୍ତୁ ମିଳିବା ଉଦ୍ଦେଶ୍ୟରେ ଉଦ୍ୟମ କରିବା—2. (figurative) To try to secure an uncertain thing.

**ଜାଲପାଦ**—ସଂ. ବି (ବହୁବ୍ରୀହି; ଜାଲ + ପାଦ)—୧ । ହଂସ— Jāla-pāda 1. Swan;
୨ । ହଂସପାଦର ଅଙ୍ଗୁଳି ପରି ଯୁକ୍ତାଙ୍ଗୁଳି ଜୀବ; ଲିପ୍ତପଦ ଜୀବ—2 Web-footed birds and animals.
୩ । ଶରାଳି ପକ୍ଷୀ ( ପ୍ରକୃତିବାଦ )— 3. A kind of gander.
୪ । ( ନାମ ) ଜାବାଲ ଋଷିଙ୍କର ଏକ ଶିଷ୍ୟ— 4. The name of a disciple of sage Jābāli.
ସଂ. ବିଣ—ଯାହାର ପାଦର ଆଙ୍ଗୁଠିଯାକ ପରସ୍ପର ସହିତ ଲାଗି ରହିଥାଏ ( ଯିବ୍ଦୁଯୋଟକ, ଯିଲ୍ ପ୍ରଭୃତି ଜୀବ ); ହଂସପାଦିଆ—Web-footed.

**ଜାଲପାହି**—ପ୍ରାଦେ ( ବାଲେଶ୍ୱର ) ବି. ( ସଂ. ଜଳ; ଭୁଲ Jāla-pāhi ବ. ଜଲପାଇ )—ସମୁଦ୍ରନିକଟସ୍ଥ ଜଳମଗ୍ନ ନୀଚ ଭୂମି—Low marshy land on the sea-coast

**ଜାଲପୋଢ଼ୁଅ**—ଦେ. ବି. ( ସଂ. ଜାଲ + ପ୍ଲବ )— Jāla-pordhuā ମାଛ ଧରିବାପାଇଁ ବ୍ୟବହୃତ ପୋଳୁହ ଆକୃତିରେ जालपोलो ଖଞ୍ଜା ହୋଇଥିବା ୫ଖଣ୍ଡ ଡାଙ୍ଗରେ ଆବୃତ ଜାଲ— A contrivance consisting of a circular net controlled by five sticks converging at the top.
ଜାଲପୋଢ଼ୁହ, ଜାଲପୋଲୁହ, ଜାଲପୋଳୁହ, ଜାଲପୋଲ୍ହୁ } ଅନ୍ୟରୂପ

**ଜାଲପ୍ରାୟା**—ସଂ. ବି. ( ଜାଲ + ପ୍ରାୟ + ଆ )—କବଚ; ସାଞ୍ଜୁ— Jāla-prāyā Coat of mail.

**ଜାଲଫାନ୍ଦ**—ଦେ. ବି—ଜାଲର ଘର— Jāla phānda The circular or square spaces in (ଜାଲଫାଶ—ଅନ୍ୟରୂପ) a net.

**ଜାଲଫାଶ**–ଦେ. ବି—୧ । ଜାଲଫାନ୍ଦ ( ଦେଖ ) Jāla-phāsa 1. Jāla-phānda ( See ) जालफाँश ୨ । ଯେଉଁ ଜାଲରେ ଫାଶ ଲାଗିଥାଏ, ଅର୍ଥାତ୍ **জালফাঁস** ଯାହାର ଦଉଡ଼ାକୁ ଭିଡ଼ ଦେଲେ ସଙ୍କୁଚିତ ହୋଇଥାଏ—2. Noosed net.

**ଜାଲବ**—ସଂ. ବି. (ନାମ)—ବଲକଲ ଦୈତ୍ୟର ପୁତ୍ର ଦୈତ୍ୟବିଶେଷ Jālaba ( ଏହାକୁ ବଳଦେବ ବଧ କରିଥିଲେ; ହି. ଶବ୍ଦସାଗର)— Name of ad emon killed by Baladeba.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଥ | ଘ |
| --- | --- | --- | --- | --- | --- | --- | --- | --- | --- | --- | --- | --- | --- | --- |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ବ୍ | ନ୍ନ |

ଜାଲବର୍ବୁରକ—ସଂ. ବି—କ୍ଷୁଦ୍ର ଶାଖାଯୁକ୍ତ ଏକପ୍ରକାର ବବୁର ଗଛ—
Jāḷa-barbburaka A kind of Acacia tree with small branches.

ଜାଲ ବସା(ସେ)ଇବା—ଦେ. କ୍ରି—ଜୀବଜନ୍ତୁଙ୍କୁ ଧରିବା ପାଇଁ ଫାନ୍ଦ
Jāla basā(se)ibā ପକାଇବା—To lay a snare for
जाल पाता catching animals.
**जाल फैलाना**
[ଜାଲ ପାଢିବା, ଜାଲ ମେଲ୍ଲ(ଲେ)ଇବା—ଅନ୍ୟରୂପ]

ଜାଲବାଡ଼—ଦେ. ବି—୧ । ଜାଲିବାଡ଼ ( ଦେଖ )
Jāla-bārda 1. Jāli-bārda ( See )
୨ । ମାଛ ଜେଉଁ ପଳାଇ ଯିବେ ନାହିଁ ବୋଲି ଭୁଇ ଜଳାଶୟର ସୀମାରେ ବନ୍ଧାଯିବା ଜାଲର ବାଡ଼—1. A wall of nets set up at a boundary to prevent fishes from escaping.

ଜାଲ ବାହାଣ—ଦେ ବି. ( ସଂ. ଜାଲ ଓ ବାହନ )—
Jāla bāhāṇa ମାଛ ଧରିବାପାଇଁ ଜାଲକୁ ମେଲ ମେଲ ଅଗ୍ରସର ହେବା—Spreading, laying or letting off nets for fishing.

ଜାଲ ବାହାଣ କରିବା—ଦେ. କ୍ରି—ଜାଲ ବୋହିବା; ଜାଲକୁ ପାଣିରେ
Jāla bāhāṇa karibā ମେଲ ମେଲ ଅଗ୍ରସର ହେବା—
To go on spreading out nets for fishing.

ଜାଲ ବୁଣିବା—ଦେ. କ୍ରି. ( ସଂ ଜାଲ+ବୟନ )—
Jāla buṇibā ସୂତାଦି ଦ୍ୱାରା ଜାଲ ପ୍ରସ୍ତୁତ କରିବା—
जाल बोना To weave or knit a net.
**जाल बुनना**

ଜାଲ ବୁହାଇବା—ଦେ. କ୍ରି—ଜାଲ ବାହାଣ କରିବା—
Jāla buhāibā To go on spreading out or laying nets for fishing.
( ଜାଲ ବୋହିବା—ଅନ୍ୟରୂପ )

ଜାଲମ (ଇତ୍ୟାଦି)—ବୈଦେ. ବି. ( ଆ. ଜାଲିମ୍ )—
Jālama (etc) ଜାଲିମ୍ ଇତ୍ୟାଦି ( ଦେଖ )
Jālim etc. ( See )

ଜାଲମହୁରା—ଦେ. ବି—ଜାରମହୁରା ( ଦେଖ )
Jāla-mahurā Jāra-mahurā ( See )

ଜାଲମୁଣା—ଦେ. ବି—ଜାଲ କର୍ମିତ ଥଳି; ଗାଞ୍ଜିଆ—
Jāla-muṇā Net-purse; net pouch; a wallet
जालथले made of net-work.
**जालका थैला**

ଜାଲ ମେଲ(ଲେ)ଇବା—ଦେ. କ୍ରି—୧ । ଏକତ୍ର ସଙ୍ଗୃହୀତ ଜାଲକୁ ମାଛ
Jāla melā(le)ibā ଧରିବା ପାଇଁ ପାଣିରେ ଖେଳେଇବା—
1. To spread out nets for fishing.
୨ । ଜାଲ ପକାଇବା—2. Jāla pakāibā (See)

ଜାଲା—ଦେ. ବି. ( ସଂ. ଜ୍ୱାଳା )—୧ । ଜୁଲୁମ୍; ନିର୍ଯାତନ—
Jāḷā 1. Oppression.
जाला ନର ଶରୀର କର ବ୍ୟାଧିର ଘର
**ज्वाला** ଯାହା ଜାଳାରେ ସଦା ଜଳେ ଅନ୍ତର । ଚନ୍ଦ୍ରଶେଖର, ନିଷ୍ଠାବଣୀ ।
୨ । ତାପ—2. Heat.
୩ । ଜଳା ପୋଡ଼ା—
3. Burning sensation; inflammation.
ବିଷ ଜାଳାରେ ହେଲେ ହର
ଚନ୍ଦ୍ରଶେଖର ଗଙ୍ଗାଧର । ଭୂପତି, ପ୍ରେମପଞ୍ଚାମୃତ ।
୪ । ଦାଉ; ବାଧା—
4. Painful sensation; pang.
ବନ ଦେଖି ପୀଡ଼ିଲା ମଦନ ଶର ଜାଳା । ଶିଶୁଶଙ୍କର, ଉଷାଅଭିଳାଷ ।

ଜାଲା—ଦେ. ବି. ( ସଂ. ଅଳଞ୍ଜର, ଭୁଲ. ଫା. ଜାର୍ଗା, ଇଂ. ଜାର୍)—
Jālā ୧ । ବଡ଼ ଗର୍ରା ବା ମାଠିଆ; ପାଣି ରଖିବାର ବଡ଼ କଳସୀ—
जाला 1. Large jar.
**ज्ञाला** ୨ । ଦୀର୍ଘାକାର ସ୍ଥୂଳୋଦର ମୃତ୍ପାତ୍ର—
2. A big earthen vessel.
୩ । ମାଟିର କୁଣ୍ଡ; ବଡ଼ ନନ୍ଦିଆ—3. Large crator.
୪ । ( ସଂ. ଜ୍ୱଲ ଧାତୁ ) ଅଗ୍ନି—4. Fire.
ଜାଳ ପ୍ରାୟେ ବିଶ୍ୱଅଛି ନୋହେ ଜାଳ ଭେଳେ । ପ୍ରାଚୀ. ବ୍ରହ୍ମନିରୂପଣ ଗୀତା ।

ଜାଲାକ୍ଷ—ସଂ. ବି. ( ବହୁବ୍ରୀହି; ଜାଲ+ଅକ୍ଷି )—
Jāḷāksha ଗବାକ୍ଷ; ଝରକା ( ହି. ଶବ୍ଦସାଗର )—
Latticed window.

ଜାଲାତନ୍—ଦେ. ବିଣ. ( ବଙ୍ଗଳାରୁ ଅନୁକୃତ; ସଂ. ଜ୍ୱାଳା. ଭୁଲ. ଆ.
Jāḷātan ଜାଲ୍ମିତନ=ଦେଶରୁ ନିର୍ବାସିତ )—
जालातन् ଜ୍ୱାଳାରେ ଅସ୍ଥିର; ପୀଡ଼ିତ; ସନ୍ତାପପ୍ରପୀଡ଼ିତ—
(ଜାଲ୍ଲାତନ୍—ଅନ୍ୟରୂପ) Oppressed.

ଜାଲି—ଦେ. ବି. ( ସଂ. ଜାଲ )—୧ । ଜାଲ ପରି ପତଳା ଆବରଣ—
Jāli 1. Film.
जाली ୨ । ଜାଲ ପରି ଛିଦ୍ରବିଶିଷ୍ଟ ପଦାର୍ଥ ବା ଭୂଷଣ—
**जाली** 2. A thing or ornament of network; lattice-work.
୩ । ବହୁ କ୍ଷୁଦ୍ର ଛିଦ୍ରବିଶିଷ୍ଟ ଜାଲ—
3. A net with small holes.
୪ । ସୁନା ରୂପା ଆଦି ଧାତୁର ତାରକସି କାମ—
4. Filigree work.
୫ । ଦୋଷ—5. Fault; blemish.
୬ । ଦୁଃଖ; ବାଧା—6. Pang; bothoraton.
୭ । ଝରକା; ଜାଲିକବାଟ—7. Latticed window.
ଜାଲିଟି ନିକଟେ ଅନାଇ ଦେଲିଟି କାଇଁ ଟିକିଏ ସେ ଗୁଲିଟିକ—
କବିସୂର୍ଯ୍ୟ, ସଙ୍ଗୀତ ।

ପ୍ରାଦେ. ( ସମ୍ବଲପୁର; ଗଡ଼ଜାତ ) ବି—ଘରର ଛଣକୁ ରକ୍ଷା କରିବା ପାଇଁ ଉପରେ ଦିଆ ଯାଇଥିବା ତାଟି—A latticed mat spread over the straw-thatch of a house.

**ଜାଲଥର୍‌**—ବୈଦେ. ବିଣ. (ଫା. ଜାଲିସ୍ତର୍) —ଜାଲିଆ ୨ । (ଦେଖ)
Jāliat — Jāliā 2. ( See )

**ଜାଲଥତି**—ଦେ. ବି. ( ଫା. ଜାଲ୍‌ସ୍ତ୍ର୍ ) —ଜାଲିଆତି ( ଦେଖ )
Jāliati — Jāliāti ( See )

**ଜାଲିଆ**—ଦେ. ବି—୧ । ( ସଂ. ଜାଲିକ ) ଜାଲୁଆ; କେଉଟ; ଯେ ଜାଲଦ୍ୱାରା ମାଛ ଧରି ଜୀବିକା ନିର୍ବାହ କରେ—1. Fisherman ( using nets ).
Jāliā
ଜଲେ; জালিয়া
**जालिया**
୨ । ( ଅ. ଜାଲ୍ ) ଜାଲ କରିବା ବ୍ୟକ୍ତି—2. Forger.
জালিয়াৎ ଦେ' ବିଣ—୧ । ଯେ ଜାଲ୍ କରେ; ଜାଲ୍‌କାରୀ—1. Forging.
**जालिया**
୨ । ଶଠ; ଠକ—2. Cheating; deceptive.
୩ । କପଟୀ—3. Hypocritical.

**ଜାଲଆଡ଼ୁ**—ବୈଦେ. ବିଣ. ( ଫା. ଜାଲ୍‌ସ୍ତ୍ର୍ )—ଜାଲିଆ ୨ । (ଦେଖ )
Jāliāt — Jāliā 2. ( See )

**ଜାଲିଆତି**—ଦେ. ବି. ( ଫା. ଜାଲିସୃଜି )—୧ । ଜାଲ୍‌କର୍ମ—1. Forgery.
Jāliāti
୨। ଠକାମି; ଶଠତା; ପ୍ରବଞ୍ଚନା—2 Cheating; deception.
୩ । କପଟତା; ପ୍ରବଞ୍ଚନା—3. Hypocrisy.

**ଜାଲିକ**—ସଂ. ବି. ( ଜାଲ + ଜୀବିକା ଅର୍ଥରେ ଇକ )—
Jālika ୧ । ଜାଲଜୀବୀ—1. One who ekes out his livelihood with a net or a snare.
୨ । କେଉଟ; ଧୀବର—2. Fisherman.
୩ । ବ୍ୟାଧ; ଜାଲ ବା ଫାଶଦ୍ୱାରା ପଶୁପକ୍ଷୀଙ୍କୁ ଯେ ଧରେ—3. A fowler; a person who catches animals with snares; a huntsman.
୪ । ଯେ ଜାଲ ବୁଣେ—4. Weaver of nets.
୫ । ମାକଡ଼ସା—5. Spider.
୬ । ଜୋକ—6. Leech.
୭ । ମାକଡ଼—7. Monkey.
୮ । ପ୍ରବଞ୍ଚକ—8. A cheat; a rogue.
୯ । ଯେ କୁହୁକ ଦେଖାଏ; ବାଜିଗର; ଇନ୍ଦ୍ରଜାଲିକ—9. A juggler; conjurer.
୧୦ । ଝରକା; ଜାଲିକବାଟ—10. Latticed window.
୧୧ । ପ୍ରଦେଶର ଶାସନକର୍ତ୍ତା—11. A provincial governor.
୧୨ । କଦଳୀ—12 Plantain.
(ଜାଲିକ—ଅନ୍ୟରୂପ) ୧୩ । ଶିକୁଳିରେ ନିର୍ମିତ ସାଞ୍ଜୁ—13. A chain-armour.
୧୪ । ପଶମରେ ତିଆରି ଜାଲବାଲା ଓଢ଼ଣା—14. A woollen net used as veil.
ଦେ. ବି—ଉଦ୍ଦୀପକ— Inciting.

ଯେସନ ଭୁଲକେ ଭାବ ଜାଲକେ (କାମଭାବ ଉଦ୍ଦୀପନାର୍ଥ) ଭାବେ ଅଙ୍ଗକେ ଲିହ
—ଭକ୍ତ. ପ୍ରେମସୁଧାନିଧି ।

**ଜାଲି କବାଟ**—ଦେ. ବି. (ସଂ. ଜାଲ ଓ କପାଟ)—
Jāli kabāta ଜାଲିକାମ ହୋଇଥିବା କବାଟ—A door of network; a latticed door.
जाली कपाट
**जाली दरवाजा**

**ଜାଲିକା**—ସଂ ବି. ସ୍ତ୍ରୀ. (ଜାଲିକ = ସ୍ତ୍ରୀ. ଆ)—୧ । ମୁହଁ ଘୋଡ଼ାଇବାର ଜାଲ୍‌ଜାଲୁଆ ଢାଙ୍କୁଣୀ; କ୍ଷୁଦ୍ର କ୍ଷୁଦ୍ର ଛିଦ୍ରଯୁକ୍ତ ମୁଖାବରଣ ବା ଓଢ଼ଣୀ—1. A veil or mask of net-work for the face.
Jālikā
(ଜାଲିକା—ଅନ୍ୟରୂପ)
୨ । ବିଧବା - 2. Widow.
୩ । ଜୋକ—3. A leech.
୪ । ତାରର ବର୍ମ; ତାରରେ ପ୍ରସ୍ତୁତ ସାଞ୍ଜୁ—4. An armour of network.
୫ । ପାଶ; ଫାନ୍ଦ (ହି. ଶବ୍ଦସାଗର)—5. Snare.
୬ । ମାକଡ଼ସା; ବୁଢିଆଣୀ (ହି. ଶବ୍ଦସାଗର)—6. Spider.
୭ । ଲୁହା—(ହି. ଶବ୍ଦସାଗର) 7. Iron.

**ଜାଲିକାମ**—ଦେ· ବି.—(ଧାତୁ ଆଦିର) ତାରକସି କାମ—Filigree work.
Jāli-kāma
जालीकाज
**जालीकाम**

**ଜାଲିଚଟୁ**—ଦେ. ବି. ( ସଂ. ଜାଲ ବା ଜର୍ଜରିକ ଓ ଦର୍ବି )—
Jāli-chatu ଛିଦ୍ରଯୁକ୍ତ କରଚୁଲି; ଯାହା ଉପରେ ବସିଥିବା ଘିଅଆଦି ଝାଁଝରୀ; ঝাঁঝরী; ঝাঁচা ତରଳ ବସ୍ତୁ ପ୍ରଭୃତିରୁ ପିଠା ଇତ୍ୟାଦି ଛାଣିଆଣିବା
**पौना, झरना** ସକାଶେ ବ୍ୟବହୃତ ଛିଦ୍ରଯୁକ୍ତ ଚଉଡ଼ାମୁହାଁ ଚଟୁ ବା ଅଣକ—A ladle with numerous small holes to lift cakes etc from the frying pan; a perforated iron ladle for straining cakes from boiling ghee.

ବସନ୍ତମୁଖୀଙ୍କ ଉପମା ଶତ୍ରୁ
କାମ କାକଗ ଛକା ଜାଲଚଟୁ । ଯଦୁମଣି. ରହସ୍ୟବଚନ ।

[ଦ୍ର—ଏହାର ଛିଦ୍ର ବାଟେ ପିଠା ଆଦିରୁ ଘିଅ ବୋହି ପଡ଼େ; ଏହା ଉପରେ ପିଠଉ ବା ବେସନ ରଖି ଏହାକୁ ଘିଅ କରେଇ ଉପରେ ଝାଡ଼ିଲେ ଲଡୁଦାନା, ବୁନ୍ଦିଆ ଆଦି ମିଷ୍ଟାନ୍ନ ପ୍ରସ୍ତୁତ ହୁଏ ।]

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ | ଉଅ | ଙ୍ଗ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଡ଼ | ନ୍ |

**ଜାଲିଜାଲିଆ**—ଦେ. ବଣ.—ଜାଲ୍‌ଜାଲିଆ (ଦେଖ)
Jāli-jālia — Jāl-jālia (See)
(ଜାଲୁଜାଲୁଆ—ଅନ୍ୟରୂପ)

**ଜାଲିଣି**—ଦେ. ବ. (ସଂ. ଜ୍ୱଲ ଧାତୁ;ଜ୍ୱଲନ)—୧ । ନିଆଁ ଜାଳିବା ପାଇଁ
Jāliṇi ବ୍ୟବହୃତ କାଠ; ଚୂଲିରେ ଜଳା ହେବା କାଠ, ଇନ୍ଧନ—
ଜାଲନୀକାଠ 1. Fuel.
**जलावन** ମିଞ୍ଚି ମିଞ୍ଚି ଅଗ୍ନି ନ ଥିବୋଟ୍ଟିବ ସଜାଉଥିଲା ଜାଳଣି ।
ନନ୍ଦକିଶୋର ଚାର୍ଯ୍ଯଣୀ ।
୨ । ଯେଉଁ ପଦାର୍ଥରେ ସହଜରେ ନିଆଁ ଲାଗେ ଓ ଯାହା ଚୂଲ୍ଲିରେ ପ୍ରଥମେ ନିଆଁ ଧରାଇବା ପାଇଁ ବ୍ୟବହୃତ ହୁଏ—2. An inflammable substance with
(ଜାଳନ,ଜାଲେଣି—ଅନ୍ୟରୂପ) which a fire is first lighted.

**ଜାଲିଣି କାଠ**—ଦେ. ବ.—ଜାଲିଣି ୧ (ଦେଖ)
Jāliṇi kāṭha — Jāliṇi 1. (See)

**ଜାଲିନଥ**—ଦେ. ବ —ସ୍ତ୍ରୀମାନଙ୍କର ନାସିକାର ବାମ ପୁଡ଼ାରେ ପିନ୍ଧା
Jāli-natha ଯିବା ଜାଲିଜାଲିମଣିଷ୍ଟ ଚକ୍ରାକାର ମୁଦ୍ରାକାରୁଲ୍ୟ
ଜାଲୀନଥ ଅଳଙ୍କାରବିଶେଷ; ଦକ୍ଷିଣୀ ନୋଥ—A nose-ring
**जालीनथ** of filigree work
(ଜାଲିନୋଥ, ଜାଲିନ୍ଥୋ—ଅନ୍ୟରୂପ)

**ଜାଲିନି କାଠ**—ଦେ. ବ.—(ସଂ. ଜ୍ୱଲନ + କାଷ୍ଠ)—ନିଆଁ ଜାଳିବା ପାଇଁ
Jālini kāṭha ବ୍ୟବହୃତ କାଠ—Fuel.
ଜାଲନୀକାଠ
**जलावनी**

**ଜାଲିଣୀ**—ସଂ. ବ. (ଜାଲ୍ ଧାତୁ + ଇନ୍ + ସ୍ତ୍ରୀ. ଈ)—୧ । ଚିତ୍ରଦ୍ୱାରା
Jāliṇi ସଜ୍ଜିତ କୋଠରୀ—1. A room furnished with pictures.
୨ । କୋଷାତକୀ ଫଳ; ତରଭୁଜା—
2. A kind of wild melon.
[ଦ୍ର—ଏହାକୁ ପାଣିରେ ସିଝାଇ ଦେଲେ ଏହାର ଶ୍ରେଷ୍ଠା ସଢ଼ି ଯାଇ ଶ୍ରେଷ୍ଠାର ତଳେ ଥିବା ଜାଲିଜାଲିଆ ଆବରଣ ରହିଯାଏ ଓ ତାକୁ ଗାଧୋଇଲା ବେଳେ ଦେହରେ ଘଷିଲେ ଦେହରୁ ମଇଳା ଛାଡ଼ି ଯାଏ ।]
୩ । ପ୍ରମେହପୀଡ଼ିକା; ପ୍ରମେହ ରୋଗରେ ଦେହରେ ବାହାରିବା ବ୍ରଣ—3. Postules or boils or eruptions on the body of gonorrhoeal patients.
୪ । ଚିତ୍ରଶାଳା; ଚିତ୍ରକରଙ୍କ ଚିତ୍ରଶାଳା—
4. A painter's studio.

**ଜାଲିପଟିଆମ**—ଦେ. ବ.—ସ୍ତ୍ରୀମାନଙ୍କର କାନର ଜାଲିକାମ କାମର
Jālipaṭiāma ଅଳଙ୍କାରବିଶେଷ; ସଞ୍ଚଳ୍ପ କାପ—A kind of filigree-work earring worn by females.
ସୁନା ମଞ୍ଜି କଢ଼ୀ ଫୁଲ ଜାଲିପଟିଆମ,
ବାଳାର କରନ୍ତ ଶ୍ରବଣକୁ ମନୋରମ ସେ । ଭକ୍ତ. ରାଧାବଣ୍ଧନଗୀ ।

**ଜାଲିପୋଡ଼ି ମାରିବା**—ଦେ. କ୍ରି.—ବହୁତ ଜ୍ୱାଳାତନ ଦେଇ ବ୍ୟତିବ୍ୟସ୍ତ
Jāli-porḍi māribā କରି ପକାଇବା; ବହୁତ ଦୁଃଖ ଦେବା—
ଜେଲେପୁଡ଼େ ମାରା To torture ( a person) by causing
**जला जला कर मारना** pains and troubles to him.
[ଜଳା(ଳେ)ଇ ପୋଡ଼ା(ଡ଼େ)ଇ ମାରିବା—ଅନ୍ୟରୂପ]

**ଜାଲିବା**—ଦେ. କ୍ରି. (ସଂ. ଜ୍ୱଲ ଧାତୁ)—(ଜଳିବାର ଣିଜନ୍ତରୂପ)—
Jālibā ୧ । ଜଳାଇବା; ଅଗ୍ନି ଲଗାଇବା—
ଜାଲାନ 1. To light fire; to ignite.
**जराना, जलाना**
ଜଳାଇବା } ଣିଜନ୍ତରୂପ
ଜଲେଇବା }
ସେ ନବୀନା ବନେ ଅଗ୍ନିକି ଜାଳିବାକୁ
ଗଲେ ଏକା ହୋଇ ହୋମର ଘରକୁ—
କୃଷ୍ଣସିଂହ. ମହାଭାରତ. ସଭା ।
୨ । ଦହନ କରିବା; ପୋଡ଼ିବା—2. To burn.
୩ । ଉତ୍ତପ୍ତ କରିବା—3. To heat.

**ଜାଲିବାଡ଼**—ଦେ. ବ—ଜାଲି ପରି ଛନ୍ଦା ହୋଇ ଘେରା ହୋଇଥିବା
Jāli-bārḍa ବାଡ଼; ଜାଲିବାଡ଼—Network fencing; a
ଜାଲୀବାଡ଼ା fence of wire-netting; fretted fencing
**जालीका आड़** or partition.

**ଜାଲିବୋଟ**—ବୈଦେ. ବ. ( ଇଂ. ଜଲିବୋଟ୍ )—କ୍ଷୁଦ୍ର ସଉଖୀନ୍
Jāli-boṭa ଡଙ୍ଗା—Jolly boat;
ଜଲିବୋଟ a small pleasure-boat.
**जालिबोट**

**ଜାଲମ୍**—ବୈଦେ. ବ. ( ଆ. ଜାଲମ୍=ଅତ୍ୟାଚାରୀ; ଭୁଲ. ସଂ. ଜାଲ
Jālim =ଖଳଲୋକ )—
ଜାଲିମୀ ୧ । ରାଗ; କ୍ରୋଧ—1. Anger.
**जालिमी** ୨ । ଜୁଲମ୍; ଅତ୍ୟାଚାର —2. Oppression.
୩ । ହାକିମି; ହୁକୁମତ—
3. Show of authority.
୪ । ଗର୍ବ; ଦମ୍ଭ—4. Arrogance.
୫ । ( ମନ୍ଦାର୍ଥ ) ସ୍ୱଭାବ; ଚାଲିଚଳନ; ଢଙ୍ଗ —
5. Manners; conduct.
( ଯଥା—ସବୁରି ଜାଲିମ୍ । )
୬ । ପରାକ୍ରମ—6. Might.

ଜାଲିମ ବୈଦେ. ବ. ( ଆ. )—୧ । ଅତ୍ୟାଚାରୀ; ଜୁଲମ୍‌ବାଜ୍—
**जालिम** 1. Oppressive.
୨ । ଅନ୍ୟାୟ କର୍ମକାରୀ—2. Unjust.
୩ । ପ୍ରବଳ ପ୍ରତାପୀ; ପରାକ୍ରମଶାଳୀ—
3. Mighty; powerful.

**ଜାଲମ୍ କାଢ଼ିବା**—ଦେ. କ୍ରି—୧ । ହାକିମି ଦେଖାଇବା—
Jālim kārḍhibā 1. To show off one's authority.
ଜାଲମି ଦେଖାନ ୨ । ଗର୍ବ ଦେଖାଇବା —
**जालिमी दिखाना** 2. To show arrogance.

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

**ଜାଲିମ୍ ଦେଖା(ଖୋ)ଇବା**—ଦେ. କ୍ରି—ଜାଲିମ୍ କାଢ଼ିବା ( ଦେଖ )
Jālim dekhā(khe)ibā Jālim kārdhibā ( See)

**ଜାଲିମ୍‌ବାଜ୍**—ବୈଦେ. ବଣ. ( ଫା. ଜାଲିମ୍ )—
Jālim-bāj ୧ । ଅତ୍ୟାଚାରୀ; ଜୁଲମ୍‌ବାଜ୍—1. Oppressive.
ଜାଲିମ ୨ । ଭାରି କଡ଼ାମିଜାଜିଆ ( ବ୍ୟକ୍ତି )—
**जालिम** 2. Of high temper.
୩ । ଗର୍ବୀ—3 Arrogant.
୪ । ପ୍ରଭୁତ୍ୱ ପ୍ରିୟ; ହୁକୁମଦିଆ—
4. Fond of showing off one's authority.

**ଜାଲିମି (ଇତ୍ୟାଦି)**—ସ୍ତ୍ରୀ. ବୈଦେ. ବି. ଓ ବଣ (ଫା)—
Jālimi (etc) ଜାଲିମ୍ ଇତ୍ୟାଦି (ଦେଖ)—Jālim etc ( See )

**ଜାଳୁଆ**—ଦେ. ବି—ଯେଉଁ ବ୍ୟକ୍ତି ଜାଳଣୀକାଠ ଆଣି ଯୋଗାଏ —
Jāluā One who supplies or brings fuel ( to a family ).

**ଜାଲୁଜାଲୁଆ**—ଦେ. ବଣ —ଜାଲ୍‌ଜାଲିଆ ( ଦେଖ )
Jālu-jāluā Jāl-jāliā ( See )

**ଜାଲେଣି**—ଦେ. ବି—ଜାଲଣି ( ଦେଖ )
Jāleni Jālani ( See)

**ଜାଲ୍ମ**—ସଂ. ବି. ( ଜଲ୍ ଧାତୁ =ଆଚ୍ଛାଦନ କରିବା + କର୍ତ୍ତୃ. ମ )—
Jālma ୧ । ଖଳ ବ୍ୟକ୍ତି—
1. A wicked person; miscreant.
୨ । ନୀଚ ବ୍ୟକ୍ତି—2. A mean-minded person.
୩ । ପତିତ ବ୍ୟକ୍ତି—3. A degraded person.
୪ । ଇତର ଲୋକ —4. A low-born person.
( ଜାଲ୍ମୀ—ସ୍ତ୍ରୀ ) ସଂ. ବଣ. ପୁଂ—୧ । ଅବିବେଚକ—
1. Inconsiderate.
୨ । ହିଂସ୍ର—2 Revengeful.
୩ । ମୂର୍ଖ—3. Illiterate; boorish.
୪ । କଡ଼ା; କଠୋର—4. Severe; harsh.
୫ । ଜଡ଼; ଆଳସ୍ୟପରାୟଣ—5. Idle; lazy.
୬ । ନିଷ୍ଠୁର; କ୍ରୂର; ନିର୍ଦ୍ଦୟ—6. Cruel.
୭ । ପାମର; ନୀଚ; ଦୁରାତ୍ମା—
7. Lowly; wicked; mean-minded.
( ଯଥା—ଯେଉଁ ବ୍ୟକ୍ତି ମିତ୍ର, ଗୁରୁ ବା ବ୍ରାହ୍ମଣଙ୍କ ସଙ୍ଗେ ଦ୍ୱେଷ କରେ ତାକୁ ଜାଲ୍ମ ବୋଲାଯାଏ । ]
୮ । ଘୃଣିତ—8. Despised.
୯ । ଯେଉଁ ବ୍ୟକ୍ତି ଉତ୍ତମରୂପେ ପଢ଼ି ବା ବୋଲି ନ ପାରେ—
9. Reading or reciting badly ( Apte).
୧୦ । ନୀଚଜାତି—10. Low-born.
୧୧ । ସମାଜରୁ ପତିତ—
11. Degraded from society.

**ଜାଲ୍ମକ**—ସଂ. ବି. ଓ ବଣ. ( ଜାଲ୍ମ+ସ୍ୱାର୍ଥେ. କ )—ଜାଲ୍ମ ( ଦେଖ )
Jālmaka Jālma ( See )

**ଜାଲ୍ୟ**—ସଂ. ବି. ( ଜଲ+ଯ, ଏହାଙ୍କର ଜଳମୟୀ ମୂର୍ତ୍ତି ଥିବାରୁ )—
Jālya ଶିବ; ମହାଦେବ ( ହି. ଶବ୍ଦସାଗର )—Lord Śiba.

**ଜାସାମ**—ପ୍ରାଦେ. ( ବସ୍ତର ) ବି—ମନ୍ଦାର—
Jāsāma China rose.

**ଜାସୁସ୍**—ବୈଦେ. ବି. ( ଆ )—ଗୁପ୍ତଭାବରେ ଅପରାଧୀର ପତ୍ତା ଲଗାଇବା ବ୍ୟକ୍ତି; ଗୁପ୍ତଚର; ଭେଦୁଆ—
Jāsus A spy; an informer.
ଜାସୁ
**जासूस, जासूस**

**ଜାସ୍ତ୍**—ବୈଦେ. ବି. ( ଆ. ଯାସ୍ତ୍ )—ହେପାଜତ, ଯତ୍ନ—
Jāst Care.
**जास्त**
**जास्ति**

**ଜାସ୍ତି**—ବୈଦେ. ବି. ( ଆ. ଯାସ୍‌ଦ୍‌ତୀ = ଆଧିକ୍ୟ )—ଆଧିକ୍ୟ—
Jāsti Excess; increase; addition
ଯାସ୍ତି ବଣ — ୧ । ଅତ୍ୟଧିକ—1. Too much; excessive.
**यास्ति** ୨ । ଅଧିକତର—2. More than.

**ଜାସ୍ପତି**—ସଂ. ବି. ପୁଂ. ( ୬ଷ୍ଠୀ ତତ୍; ଜାୟା + ପତି; ନିପାତନ )—
Jāspati ଜାମାତା; ଜୁଆଇଁ ( ହି. ଶବ୍ଦସାଗର )—
Son-in-law.

**ଜାହକ**—ସଂ. ବି. (ହା ଧାତୁ = ତ୍ୟାଗ କରିବା + କର୍ତ୍ତୃ. ଅକ; ନିପାତନ)-
Jāhaka ୧ । ଓଧ—1. Polecat; otter.
୨ । ଜୋକ—2. Leech.
୩ । ଖଟ—3. A bed-stead.
୪ । ଶଯ୍ୟା; ବିଛଣା—4. Bed; bedding
୫ । ବିରାଡ଼ି ( ପ୍ରକ୍ଷିପ୍ତବାଦ )—5. Cat.
୬ । ବିଳେଶୟ ଜୀବ ( ପ୍ରକ୍ଷିପ୍ତବାଦ )—
6. An animal which lives by burrowing den.
୭ । ଏଣ୍ଡୁଅ ( ହି. ଶବ୍ଦସାଗର )—
7. Chameleon; lizard.
୮ । ଗେଣ୍ଡା ( ହି. ଶବ୍ଦସାଗର )—8. Snail.

**ଜାହାଁଜାହାଁ**—ଦେ. ଅ. ( ସଂ. ଯତ୍ର; ପ୍ରା. ଜହ; ଦ୍ୱିରୁକ୍ତି )—
Jāhāṅ-jāhāṅ ୧ । ଯେଉଁ ଯେଉଁ ସ୍ଥାନମାନଙ୍କୁ—
ଜାହଁଜାହାଁ 1. To which places.
**जहाँजहाँ** ୨ । ଯେଉଁ ଯେଉଁ ସ୍ଥାନମାନଙ୍କରେ—
2. At which places.
୩ । ସବୁ ସ୍ଥାନରେ—
3. At all places whatever.

| ୧ | ଇ | ଉ | ର୍‌,ର୍ଥ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ସ | ନ୍ଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନସ୍ଵାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଝ | ନ |

ଜାହାଁତାହାଁ—ଦେ. ଅ. ( ସଂ. ଯତ୍ର+ ତତ୍ର; ପ୍ରା· ଜହ+ତହ )—
Jahāñ-tahāñ ୧ । ଯେଉଁଠାରେ ଇଚ୍ଛା ସେଠାରେ; ସବୁଠାରେ-
ଜାହାଁତାହାଁ 1. At all places.
**जहाँतहाँ** ୨ । ପ୍ରତ୍ୟେକ ସ୍ଥାନରେ—
2. At every place.

ଜାହାଁପନା—ବୈଦେ. ବି. ( ଫା. ଜହାଁପନାହ୍ =ଜଗଦାଶ୍ରୟ; ଜହାଁ=
Jahāñ-panā ପୃଥିବୀ+ପନାହ୍ =ରକ୍ଷକ )—
ଜାହାଁପନା ପୃଥିବୀପତି; ଜଗଦାଶ୍ରୟ; ପ୍ରଭୁ—Lord of the world.
**जहाँपना** ଅ. ( ବାଦସାହା ପ୍ରଭୃତିଙ୍କୁ ନିମ୍ନତର ବ୍ୟକ୍ତିମାନଙ୍କର
(ଜାହାଁପାନା—ଅନ୍ୟରୂପ) ସମ୍ବୋଧନ )—ଜାହାଁ ! ହଜୁର !—
My Lord ! Your Highness.

ଜାହାଁବାଜ୍—ବୈଦେ. ବିଣ. ( ଫା. ଜହାନ୍=ପୃଥିବୀ+ ଦର୍ଶକ ଅର୍ଥରେ
Jahāñ-bāj ଫାରସୀ ବାଜ୍ ପ୍ରତ୍ୟୟ, କିମ୍ବା ଅ. ଜେହନ୍=
ଜାହାଁବାଜ ବୁଦ୍ଧି+ଅଧିକାଂଶ ଅର୍ଥରେ ବାଜ୍ ପ୍ରତ୍ୟୟ;
**जहाँदीद** ଭୁଲ. ଫା. ଜହାଁଦୀଦ୍=ଅନୁଭବୀ )—
୧ । ବହୁଦର୍ଶୀ; ଅନୁଭବୀ—1 Experienced
୨ । ତୀକ୍ଷ୍ଣବୁଦ୍ଧି—2. Sharp-witted.
୩ । କୂଟବୁଦ୍ଧି—
3. Crafty; of crooked policy.
୪ । ଖେଚେଡ଼ା; ଦୁଷ୍ଟ—4. Wicked; wanton.
୫ । ଦୁର୍ଦ୍ଦମନୀୟ—
5. Difficult to control; unmanageable.

ଜାହାଁଲ—ଦେ. ବି—ଜାଲ ( ଦେଖ )
Jahāñla Jāla ( See )

ଜାହାଙ୍ଗୀର—ବୈଦେ. ବି. ( ନାମ )—ମୋଗଲ ସମ୍ରାଟ; ଅକବର
Jahāngir ବାଦସାହାଙ୍କ ପୁତ୍ର—
ଜାହାଙ୍ଗୀର Jehangir; the Moghal Emperor; son
**जहाँगीर** of Akbar.
[ ଦ୍ର—ଏ ଅକବରଙ୍କ ମୃତ୍ୟୁ ପରେ ୧୬୦୫ ଖ୍ରୀଷ୍ଟାବ୍ଦରେ ସମ୍ରାଟ ହେଲେ ଓ ୧୬୨୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏ ଅକବରଙ୍କ ଅମଳରେ ଜୟପୁରର ହିନ୍ଦୁ ରାଜାଙ୍କ କନ୍ୟା ଯୋଧବାଈଙ୍କୁ ବିବାହ କରିଥିଲେ ଓ ପରେ ସେର ଆଫଗାନ୍ ନାମକ ସେନାପତିଙ୍କୁ ମରାଇ ତାଙ୍କ ସ୍ତ୍ରୀ ନୂରଜାହାନ୍‌ଙ୍କୁ ବିବାହ କଲେ । ଏହାଙ୍କ ଅମଳରେ ଇଂଲଣ୍ଡର ରାଜା ୧ମ ଜେମ୍ସ୍‌ଙ୍କଠାରୁ ରାଜଦୂତ ଆସିଥିଲେ । ଏହାଙ୍କ ନିକଟରୁ ବୃନ୍ଦାବନର ଗୋବିନ୍ଦଜୀଙ୍କ ମନ୍ଦିର ନିର୍ମିତ ହୋଇଥିଲା । ହି. ଶବ୍ଦସାଗର ]

ଜାହାଜ—ବୈଦେ. ବି. ( ଅ. ଜହାଜ )—
Jahāja ବୋଇତ; ପୋତ; ସମୁଦ୍ରଗାମୀ ବଡ଼ ନୌକା—
ଜାହାଜ Ship; a sea-going vessel.
**जहाज** [ ଦ୍ର—ପ୍ରାଚୀନ ଉତ୍କଳରେ ତାମ୍ରଲିପ୍ତ ମୁହାଣ, ଚନ୍ଦ୍ରଭାଗା ଓ ତମଲୁକ୍ ଏବଂ ଅଳ୍ପକାଳ ପୂର୍ବେ ବାଲେଶ୍ୱର ନଗର ବହୁବାଣିଜ୍ୟର ପ୍ରଧାନ କେନ୍ଦ୍ରମାନ ଥିଲା ଓ ଓଡ଼ିଆମାନେ ଜାହାଜ ଚଳାଇ ଯାବା, ବାଲିଆଦି ଦ୍ୱୀପ ଓ ଆଫ୍ରିକାର ଉପକୂଳକୁ ବାଣିଜ୍ୟ ସକାଶେ ଯାଉଥିଲେ । ଇଂରେଜମାନେ ପ୍ରଥମେ ଭାରତକୁ ଆସିବା ସମୟରେ ବାଲେଶ୍ୱର ଗୋଟିଏ ବନ୍ଦର ଥିଲା ଏବଂ ସେମାନେ ବାଲେଶ୍ୱର ନିକଟସ୍ଥ ପିପିଲିରେ ବାଣିଜ୍ୟ କୋଠି ସ୍ଥାପନ କରିଥିଲେ । ଫରାସୀମାନେ ମଧ୍ୟ ଫରାସିଡାଙ୍ଗାରେ ବାଣିଜ୍ୟକୋଠି କରିଥିଲେ । ମାତ୍ର କାଳକ୍ରମେ ବଲଙ୍ଗ ନଦୀର ମୁହାଣ ପୋତି ହୋଇ ଯିବାରୁ ବାଲେଶ୍ୱର ବନ୍ଦର ବନ୍ଦ ହୋଇଗଲା ।

ଉତ୍କଳର କାହାଣୀମାନଙ୍କରେ ସାଧବ ଓ ମହାଜନମାନେ ଜାହାଜ ବା ବୋଇତରେ ଚଢ଼ି ସମୁଦ୍ରପାରସ୍ଥ ଦୂର ଦେଶକୁ ବାଣିଜ୍ୟ କରିବା ସକାଶେ ଯାଉଥିବା କଥା ବର୍ଣ୍ଣିତ ଅଛି । ଭୁବନେଶ୍ୱର ଗ୍ରାମର ପ୍ରାନ୍ତରେ ଥିବା କପାଳିନୀ ଠାକୁରାଣୀଙ୍କର ଦେଉଳକୁ ଲୋକେ ବୋଇତାଳ ଦେଉଳ ବୋଲି କହନ୍ତି, କାରଣ ଏହା ତିନି ଗୋଟି ମାସ୍ତୁଲ ଥିବା ଜାହାଜର ଆକୃତିରେ ନିର୍ମିତ । ବୋଇତକଣାରୁ ଓଡ଼ିଶାରେ ପୂର୍ବେ ନ ଥିଲା । ଏହା ବିଦେଶରୁ ବୋଇତରେ ଏଦେଶକୁ ଆମଦାନି ହୋଇ ଆସିଥିବାରୁ ଏହାକୁ ବୋଇତକଣାରୁ ବା ବୋଇତାଳୁ ବୋଲାଯାଏ । କାର୍ତ୍ତିକମାସର ଦୀପାବଳୀ ( ଦେବାଲି ) ଅମାବାସ୍ୟାର ରାତ୍ରି ନ ପାହୁଣୁ ଓଡ଼ିଶାର ହିନ୍ଦୁ ଗୃହିଣୀମାନେ ଅଗଣାରେ ବୋଇତର ଚିତ୍ର ଅଙ୍କନ କରି ତହିଁ ଉପରେ ଘରର ବାକ୍ସ, ସିନ୍ଦୁକ, ପେଡ଼ି, ପେଟରା ଆଦି ରଖି ଲକ୍ଷ୍ମୀପୂଜା କରନ୍ତି । ବୋଧହୁଏ ପୂର୍ବେ ଏହି ସମୟରେ ଉତ୍କଳର ସାଧବ ( ମହାଜନ ) ମାନେ ବାଣିଜ୍ୟାର୍ଥ ବୋଇତରେ ବିଦେଶଯାତ୍ରା କରୁଥିଲେ । ରଜସଂକ୍ରାନ୍ତିର ତୃତୀୟ ଦିନ ମଧ୍ୟ ସ୍ତ୍ରୀଲୋକମାନେ ଅଗଣାରେ ବୋଇତର ଚିତ୍ର ଅଙ୍କନ କରି ପୂଜା କରନ୍ତି । ସମ୍ଭବତଃ ସେ ସମୟରେ ବୋଇତ ବିଦେଶରୁ ବାହୁଡ଼ି ଆସୁଥିଲା । କାହାଣୀରେ ଅଛି ଯେ ବୋଇତ ଅନୁକୂଳ କରି ଗଲା ବେଳେ ଏବଂ ବାହୁଡ଼ି ଆସିବା ସମୟରେ ମଧ୍ୟ ସାଧବଘରର ସଧବା ସ୍ତ୍ରୀମାନେ ଯାଇ ତାହାକୁ ବନ୍ଦାଉଥିଲେ ।

ପୂର୍ବେ ଓଡ଼ିଆମାନେ ଯେଉଁ ବୋଇତ ବ୍ୟବହାର କରୁଥିଲେ ତାହା ବାଷ୍ପୀୟ ପୋତ ନୁହେ । ତାହା ପାଲ ଓ କାତକେରୁଆଳ ଦ୍ୱାରା ଚାଳିତ ହେଉଥିଲା । ପ୍ରବାଦ ଅଛି ଯେ ଦରିଆ ମଝିରେ ଜାହାଜ ନ ଚଳିଲେ ସେ ଜାହାଜରେ କୌଣସି ମାତୃବଳିଙ୍କ କାର୍ଯ୍ୟ ହେବା ଯୋଗୁଁ ଦେବତା କୁପିତ ହୋଇଥିବା ଆଶଙ୍କା କରି ଜାହାଜର ଅଧକ୍ଷ ଦେବତାଙ୍କୁ ଭୋଗ ଯାଚୁଥିଲେ ଏବଂ ଅପରାଧୀକୁ ସମୁଦ୍ରକୁ ନିକ୍ଷେପ କରୁଥିଲେ ବା ବଳି ଦେଉଥିଲେ ।

ଜାହାଜିଆମାନେ ଦିଗନିରୂପଣ କରିବାକୁ କମ୍ପାସ୍ ବ୍ୟବହାର କରୁଥିଲେ । ଜାହାଜିଆ ଭାଷାରେ ଦିଗ ବିଦିଗମାନଙ୍କର ନାମ ଯଥା—ଗାହି=ଉତ୍ତର, ସୋଇଲ=ଦକ୍ଷିଣ, ଉଦର=ପୂର୍ବ, ପିଛିଡ଼=ପଶ୍ଚିମ, ଗାହିମଉଲେଇ=ଉ. ପୂ., ବେଗଶିୟା ପିଛିଡ=ଉ. ପ., ଦକ୍ଷିଣ ପିଛିଡ଼=ଦ. ପ., ଦକ୍ଷିଣଉଦର=ଦ. ପୂ., ଘୋଷ=ଊର୍ଦ୍ଧ୍ୱ, ଦମନ୍=ତଳ, ଉଚା=ଡାହାଣ ଓ ଡାବୁ=ବାମ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଙ୍କର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ, 'ବଧ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗୋ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

ଜାହାଜକୁ ପବନରେ ଚଳାଇବା ପାଇଁ ବ୍ୟବହୃତ ପାଲମାନଙ୍କର ଭିନ୍ନ ଭିନ୍ନ ନାମ ଥିଲା, ଯଥା—ଗାଉ=ମାସ୍ତୁଲରେ ବନ୍ଧାଯିବା ପ୍ରଧାନ ପାଲ୍, ଟବର=ମାସ୍ତୁଲ ଆଗପାଖରେ ବନ୍ଧାଯିବା ପାଲ, ଓ ଜାଉ= ମାସ୍ତୁଲରେ ସଂଲଗ୍ନ ଲଗିରେ ଲଟକା ହେବା ପାଲ ।

ଜାହାଜର ଭିନ୍ନ ଭିନ୍ନ ଅଙ୍ଗର ନାମ ଯଥା—ଶୁକାନ୍ଦ, ମାସ୍ତୁଲ ବା ଦିଗବାରଣ ଖୁଣ୍ଟି, ପାଲ ବା ସେଡ଼, ପାଗଡ଼, ବାହୁଟିଆ, କାତ, କେରୁଆଲ, ମଙ୍ଗ ଓ ଲଙ୍ଗର ।

ଜାହାଜର କର୍ମଚାରୀମାନଙ୍କର ଉପାଧି ଯଥା—ତଣ୍ଡେଲ, ଶୁକାଣୀ, ଖଲାସୀ ଓ ବୋଇତିଆଲ ।

ପ୍ରକାରଭେଦରେ ଜାହାଜର ନାମ—ପାଲଟଣା ଜାହାଜ, କଳ ଜାହାଜ ବା ଧୂଆଁକଳ ଜାହାଜ, ଯୁଦ୍ଧଜାହାଜ ବା ମନୁଆରି ଜାହାଜ, ସଉଦାଗରୀ ଜାହାଜ ଓ ଟର୍ପିଡୋ ବା ବୁଡ଼ା ଜାହାଜ । ]

**ଜାହାଜପଡ଼ିଆ**—ଦେ. ବି. (ନାମ)—ଚିଲିକାର ମାଲୁଦ ନିକଟରେ ଥିବା ଗୋଟିଏ ଅଗ୍ଭଚ ସ୍ଥାନ ଓ ତନ୍ନିକଟବର୍ତ୍ତୀ ପ୍ରକାଣ୍ଡ ପଡ଼ିଆ—Name of a high land including a vast field near by near Malud on the Chilka lake in Puri district.
Jāhāja-pardiā

[ଦ୍ର—ଓଡ଼ିଶାର ସ୍ୱାଧୀନ ରାଜାଙ୍କ ଅମଳରେ ଜାହାଜ ସମୁଦ୍ରରୁ ଆସି ଏହିଠାରେ ଲାଗୁଥିଲା । ]

**ଜାହାଜାତି**—ଦେ. ବିଣ.—ଜାହାଜ ସମ୍ବନ୍ଧୀୟ—
Jāhājāti Relating to a ship; nautical.
जाहाजाति
**जहाजी**

ଶୁଣାଶୁଣିରେ ଜାହାଜାତି କାରବାର ବାଲେଶ୍ୱରରୁ ଉଠି ଯିବ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଜାହାଜି**—ଦେ. ବି ଓ ବିଣ.—ଜାହାଜିଆ (ଦେଖ)
Jāhāji Jāhājiā (See)

**ଜାହାଜିଆ**—ବୈଦେ. ବି. (ଅ)—୧ । ପୋତାଧ୍ୟକ୍ଷ; କାପ୍ତାନ—
Jāhājiā 1. Captain of a ship.
जाहाजी ୨ । ନାବିକ; ନୌକର୍ମଚାରୀ—
**जहाजी** 2. A sailor; a mariner.
୩ । ବୋଇତିଆଲ; ଜାହାଜଦ୍ୱାରା ବାଣିଜ୍ୟ କରିବା ବ୍ୟକ୍ତି— 3. A person who trades with the help of a ship; an export merchant.

ବାଲେଶ୍ୱରରେ ଅନେକଗୁଡ଼ିଏ ଜାହାଜିଆ ମହାଜନ ଥିଲେ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଦେ. ବିଣ.—୧ । ଜାହାଜ ସମ୍ବନ୍ଧୀୟ— 1. Pertaining to a ship.
୨ । ନୌସମ୍ବନ୍ଧୀୟ—2. Nautical.
୩ । ଜାହାଜରେ ସମୁଦ୍ରପାରସ୍ଥ ବିଦେଶରୁ ଆନୀତ; ବିଦେଶୀ ( ଯଥା ଜାହାଜୀ ଗୁଆ )—3 Imported from a foreign transmarine country.

**ଜାହାଜୀ ଗୁଆ**—ଦେ. ବି. ( ଅ. ଜହାଜୀ+ଫ. ଗୁବାକ )—ଏକପ୍ରକାର ବଡ଼ା ଗୁଆ—A species of big areca nut.
Jāhāji guā
जाहाजीसुपारी
**जाहाजीसुपारी**

**ଜାହାନମ୍**—ବୈଦେ. ବି. (ଅ. ଜହନ୍ନମ=କୋରାଣବର୍ଣ୍ଣିତ ନରକ)—
Jāhānam ନରକ—The hell of the Mahomedan Scripture.
जाहान्नम
**जहन्नम**
(ଜାହାନ୍ନମ—ଅନ୍ୟରୂପ)

**ଜାହାନମ୍‌କୁ ଯିବା**—ଦେ. କ୍ରି.—ଦୁଶ୍ଚରିତ୍ରାଦି ହେତୁ ବିନାଶର ପଥରେ ଅଗ୍ରସର ହେବା—To go to the dogs; to go hell.
Jāhānamku jibā
তাহান্নমে যাওয়া
**जहन्नममे जाना**

**ଜାହାନିଆଁ**—ବୈଦେ. ବି. (ଅ) (ନାମ)—ଜନୈକ ମୁସଲମାନ ପରିବ୍ରାଜକ ମହାପୁରୁଷ—Name of a Mahomedan traveller-saint.
Jāhāniāñ

[ଦ୍ର—ପୁରୀ ଜିଲ୍ଲା କାକଟପୁର ନିକଟସ୍ଥ ସମୁଦ୍ରକୂଳରେ ଏହାଙ୍କର ଗାଦି ଅଛି । ସହକାର—୧୨ଶ ସଂଖ୍ୟା—ରାଧାଚରଣପଣ୍ଡା ।]

**ଜାହାର**—ଗ୍ରା. ବି.—ଯାଆଁଳ (ଦେଖ)
Jāhāra Jāāñla (See)

**ଜାହାଳ**—ଦେ. ବି.—ଜାଳ (ଦେଖ)
Jāhāla Jāla (See)

**ଜାହିର୍**—ବୈଦେ. ବି. (ଅ. ଜାହିର୍=ବ୍ୟକ୍ତ; ପ୍ରକାଶିତ)—
Jāhir ୧ । ପ୍ରକାଶ—1. Display; manifestation.
জাহের, যাহির ୨ । ପ୍ରଚାର—2. Publication.
**जाहिर** ବିଣ.—୧ । ବାହ୍ୟ—1. External.
୨ । ବ୍ୟକ୍ତ—2. Apparent.
୩ । ନିକେ ନିକେ ପ୍ରକଟିତ ବା ପ୍ରକାଶିତ— 3. Manifest; evident.
୪ । ପ୍ରକାଶ୍ୟ—4. Public.
୫ । ସର୍ବତ୍ର ପ୍ରକାଶିତ; ପ୍ରକଟିତ— 5. Made public; published.
୬ । ଉନ୍ମୁକ୍ତ; ଫୁଟ—6. Open.
୭ । ବିଦିତ—7. Known.
୮ । ଦଣ୍ଡପାଇବା ଦ୍ୱାରା ଉପଶାନ୍ତ; ଶାସିତ; ବଶୀକୃତ— 8. Brought under control by means of punishment.

**ଜାହିର୍ କରିବା**—ଦେ. କ୍ରି—୧ । ସାଧାରଣରେ ପ୍ରକାଶ କରିବା; ରଟନା କରିବା—1. To publish or proclaim openly; to disclose
Jāhir karibā
জাহেরকরা
**जाहीर करना** (ଯଥା—ବିଦ୍ୟା ଜାହିର୍ କରିବା ।)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଞ୍ଜ | ଇଅ | ଂ | ଲ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଁ୍ୟ | ଇଅ | ଢ଼ | ନ୍ |

୨ । ଦେଖାଇବା—2. To show; to display.

(ଯଥା—କରାମତ ଜାହିର କରିବା) ।

୩ । ଦଣ୍ଡଆଦି ଦେଇ କୌଣସି ବ୍ୟକ୍ତି ବା ଜନ୍ତୁକୁ ବଶୀଭୂତ କରିବା ବା ଶାସନ କରିବା—3. To bring a person or animal under control by punishment; to teach a person a lesson.

ଜାହିରା—ବୈଦେ. ବି ଓ ବିଣ. (ଆ. ଜାହିରା=ପ୍ରକାଶ୍ୟରୂପେ)—
Jāhirā ଜାହିର (ଦେଖ)
Jāhir (See)

ପ୍ରାଦେ. (ସିଂହଭୂମ) ବି—ଦେବସ୍ଥଳୀର ବୃକ୍ଷାବଳି—
Trees growing in the precincts of a temple

ଜାହିରାତ୍—ବୈଦେ. ବି. (ଆ)—ସର୍ବସାଧାରଣଙ୍କ ନିମନ୍ତେ ଦିଆଯିବା
Jāhirāt ବିଜ୍ଞାପନ; ଜାହିରାତ୍ ନାମା—Public notice.

ବିଣ. (ଆ. ଜାହିର)—ପ୍ରକାଶିତ—Published.

ଜାହିରାତ୍‌ନାମା—ବୈଦେ. ବି (ଆ)—ଜାହିରାତ୍ (ଦେଖ)
Jāhirāt-nāmā Jāhirāt (See)

ଜାହିରି—ଗ୍ରା. ବୈଦେ. ବି ଓ ବିଣ. (ଆ)—ଜାହିର (ଦେଖ)
Jāhiri Jāhir (See)

ଜାହେର୍—ବୈଦେ. ବି ଓ ବିଣ. (ଆ. ଜାହିର୍)—ଜାହିର (ଦେଖ)
Jāher Jāhir (See)

ଠାକୁରଙ୍କ କରାମତ ନେକନାମି ଦୁନିଆରେ ଜାହେର ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ଜାହ୍ନବୀ—ସଂ. ବି. ସ୍ତ୍ରୀ. (ଜହ୍ନୁ=ମୁନିବିଶେଷ+ଅପତ୍ୟାର୍ଥରେ ଅ+ସ୍ତ୍ରୀ.
Jāhnabi ଈ)—ଗଙ୍ଗା; ଭାଗୀରଥୀ—The river Ganges.

[ ଦ୍ର—ଜହ୍ନୁମୁନିଙ୍କ ଜଂଘରୁ ଗଙ୍ଗା ବାହାରି ଥିବା କଥା ପୁରାଣରେ ବର୍ଣ୍ଣିତ ଅଛି । 'ଜହ୍ନୁ' ଶଢେ ନୋଟ୍ ଦେଖ । ]

ଜି (ଧାତୁ)—ସଂ—୧ । ଜିଣିବା; ଜୟ କରିବା—
Ji (root) 1. To overcome; to win; to conquer.

(ଜାପି—ଣିଜନ୍ତରୂପ) ୨ । ଅନ୍ୟକୁ ଯୁଦ୍ଧାଦିରେ ପରାଜିତ କରିବା—
2. To defeat; to vanquish; to subdue.

୩ । ବଶ କରିବା; ନିୟନ୍ତ୍ରିତ କରିବା—3. To curb; to restrain; to bring under control.

୪ । ଅପରାଧୀକୁ ଦୋଷୀ ସାବ୍ୟସ୍ତ କରି ଦଣ୍ଡାଦେଶ ଦେବା—
4. To convict an accused.

୫ । ଅନ୍ୟକୁ ବଳିଯିବା—
5. To surpass; to excel.

ଜି—ସଂ. ବି. ( ଜି ଧାତୁ+କର୍ତ୍ତୃ. କ୍ୱିପ୍ )—ପିଶାଚ—
Ji Demon (Apte).

ଦେ. ବି—୧ । (କଚେରିଆ) 'ଜିଲ୍ଲା'ର ସାଙ୍କେତିକ ଚିହ୍ନ 'ଜି'—
1. The conventional sign of 'Jillā'.

୨ । ଜୀ ( ଦେଖ )
2, Jī ( See )

ଜିଅଗ୍ରାଫି—ବୈଦେ. ବି. (ଇଂ. ଜିଓଗ୍ରାଫୀ)—ଭୂଗୋଳବିଦ୍ୟା—
Jiagrāphi Geography.

ଜିଅମେଟ୍ରି—ବୈଦେ. ବି. (ଇଂ. ଜିଓମେଟ୍ରୀ)—ଜ୍ୟାମିତି—
Jiametri Geometry.

ଜିଅର୍‌ବାର୍—ଗ୍ରା. ବୈଦେ. ବି. ( ଫା. ଜେର୍‌ବାର୍=କ୍ଷତିଗ୍ରସ୍ତ )—
Jiar-bār ୧ । (ଧନର) ଅପବ୍ୟୟ; ବୃଥାବ୍ୟୟ—
জেরবার 1. Waste of money.
जेरबार ୨ । କ୍ଷତି—2. Loss.

ବିଣ—୧ । ଅପବ୍ୟୟିତ—1. Waste.

୨ । ଧନର ଅପବ୍ୟୟ କରିବା ଅବସ୍ଥାରେ ପଡ଼ିଥିବା (ବ୍ୟକ୍ତି), ବ୍ୟୟଗ୍ରସ୍ତ—2. ( a person ) Put to wasteful expense.

୩ । କ୍ଷତିଗ୍ରସ୍ତ—
3. Sustaining loss; put to loss.

ଜିଅର୍‌ବାରି—ଗ୍ରା. ବୈଦେ. ବି. (ଫା. ଜେର୍‌ବାରୀ)—୧ । କ୍ଷତି—
Jiar-bārī 1. Loss.

୨ । ଅପବ୍ୟୟ—2. Waste.

୩ । ଅପବ୍ୟୟ ବା କ୍ଷତିଗ୍ରସ୍ତ ହେବା ଅବସ୍ଥା—
3 State of being put to loss or waste.

ଜିଅଳ—ଦେ. ବି. (ସଂ. ଜିଙ୍ଗିନୀ; ଜିଙ୍ଗଣୀ)—୧ । କାଣିମୁଲା ଗଛ—
Jiaḷa 1. A kind of tree exuding gum; Odina Wodier.

ସଂ. ନାମ—ଜିଂଗଣୀ;
ଜିଂଗିନୀ; ଝିଂଗିନୀ;
ଝିଂଗୀ; ସୁନିର୍ଯ୍ୟାସା
ପ୍ରମୋଦିନୀ; ଯାଚିଂଶା;
କୃଷ୍ଣଶାଲ୍ମଲୀ
জিওল্
जिंगन
(ଜିଓଲ—ଅନ୍ୟନାମ)

[ ଦ୍ର—ଏ ଗଛ ପାହାଡ଼ ଓ ହିମାଳୟ ତରାଇର ଜଙ୍ଗଲରେ ହୁଏ । ଏ ଗଛ ଆମ୍ରାଦି ବର୍ଗର । ଏହାର ପତ୍ର ମହୁଲଗଛର ପତ୍ରପରି ଓ ଡାଳର ୨ ପାଖରେ ଯୋଡ଼ା ଯୋଡ଼ା ପତ୍ର ଧରେ । ପ୍ରତିବର୍ଷ ଏ ଗଛ ପତ୍ରଝଡ଼ାଏ, ଏହାର ଫୁଲ ଧଳା ଓ ଫଳ ବରକୋଳି ପରି । ବୈଦ୍ୟଙ୍କ ମତରେ ଏହା କଷା, ସ୍ୱାଦିଷ୍ଠ ଓ ଗରମ ଅଟେ, ଏହା ବ୍ରଣ, ଅତିସାର, ବାତ ଓ ହୃଦ୍‌ରୋଗରେ ଉପକାରୀ ଓ ମୁଖର ଦୁର୍ଗନ୍ଧ ଦୂର କରେ । ଏ ଗଛରୁ ଅଜସ୍ର ଅଠା ବୁହେ । ]

୨ । ମାଗୁରଆଦି ମାଛ—
2. Fish of the Māgura species.

୩ । ଲଙ୍ଗଳମୁଣ୍ଡାର ମଝି ଢିର ଉପରେ ମରାଯାଇଥିବା ଯୋକଅ ବା କୁହୁଣ୍ଡୀ (ଯାହା ତଳେ ଲଙ୍ଗଳଲୁହା ପଶେ)—
3. Iron staple through which the plough-share is thrust into the plough.

୪ । ପ୍ରାଦେ. (ଯାଜପୁର) ବି—ବନ୍ଦସିକଣ୍ଠାରେ ଗୁଣ୍ଡା ହେବା

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଘରିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଢ଼' ନ ମିଳିଲେ 'ଗାଢ଼' ଖୋଜିବେ, ଭୂଅ ନ ମିଳିଲେ 'ଭୂଅ' ଦେଖିବେ; 'ବିଧି' ନ ପାଇଲେ 'ବନ୍ଧି' ଦେଖିବେ; ଅଗିଁଆ ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଜୀଅନ୍ତା ମାଛଅଦି—4. Living ait stuck to the angler's hook.

**ଜିଅଲ** (ଇତ୍ୟାଦି)—ବୈଦେ. ବି. (ଇଂ. ଜେଲ୍)—
Jiala (etc) ଜେଲ୍ ଇତ୍ୟାଦି (ଦେଖ) Jel etc (See)

**ଜିଅଲଜି**—ଦେ. ବି. (ଇଂ. ଜିଓଲଜି)—ଭୂତତ୍ତ୍ୱ ବିଦ୍ୟା—
Jialaji Geology.

**ଜିଆ**—ଦେ. ବି.—(ସଂ. ନାମ କଞ୍ଚୁକ, ମସ୍ତାଲତା, ଗଣ୍ଡପଦ; ଭୂଲ. ସଂ.
Jia ଜ୍ୟା=ଧନୁର ଦଉଡ଼ି)—
କେଁଚୁଆ, କେଁଚୋ ୧ । କେଞ୍ଚୁଆ; ମସ୍ତାଲତା ନାମକ କୀଟ—
केचवा, केचुआ Earth-worm.
[ ଦ୍ର—ଏମାନେ ଅସ୍ଥିହୀନ କ୍ଷୁଦ୍ର ସର୍ପାକୃତି; ବର୍ଷାଦିନେ ଭୂମିରେ ବହୁତ ଦେଖାଯାନ୍ତି । ଏମାନେ ଭୂମିତଳେ ମାଟି ଗାଳନ୍ତି । ଏମାନଙ୍କୁ ପୋଡ଼ି ବା ଭାଜି ଚୂର୍ଣ୍ଣ କରି ଖାଇଲେ ସାନ୍ନିପାତିକ ତୃଷା ବନ୍ଦ ହୁଏ । ]
୨ । ମନୁଷ୍ୟ ପେଟରୁ ମଳ ସଙ୍ଗେ ବାହାରିବା ବଡ଼ କୃମି—
2. Tape-worm.
ପ୍ରାଦେ—୧ । ( ବାଲେଶ୍ୱର ) ବି—ଗଡ଼ିଶା (ମାଛ) ( ଦେଖ )
1. Gardisa ( fish ) ( See )
୨ । ( ମେଦିନୀପୁର ) ବି—ରଟା ( ମାଛ ) ( ଦେଖ )
2. Rata ( fish ) ( See )
୩ । ଶିଶୁ—3. Infant.

**ଜିଆଁ**—ପ୍ରାଦେ. ( ସମ୍ବଲପୁର ) ବି. ( ସଂ. ଜୀବ )—
Jian ୧ । ସନ୍ତାନ; ପିଲା—1. Child.
୨ । ବାଳକ—2. Boy.

**ଜିଆଁଣିଆଁ**—ଦେ. ବିଣ—ଜଳର କ୍ରମବୃଦ୍ଧି ଦେଖି ଯେଉଁ ନଦୀରେ
Jianian ବନ୍ୟା ଆସିବାର ସମ୍ଭାବନା କରାଯାଏ—( river ) Showing prievious indications of a forthcoming flood.
( ଯଥା—ନଈ ଜିଆଁଣିଆଁ ହେଲାଣି । )

**ଜିଆଗଲା**—ଦେ. ବିଣ — ଜିଆ ଭୂମିତଳ ଭେଦ କରି ଗାଳଥିବା
Jia-gala ( ମାଟି )—( earth ) Ploughed up by
केंचुआखोंड़ा earth worms.
( ଜିଆତଡ଼ା—ଅନ୍ୟତମ )

**ଜିଆତଡ଼ା**—ଦେ. ବିଣ—ଜିଆଗଲା ( ଦେଖ )
Jia-tarda Jia-gala ( See )

**ଜିଆଦ**—ଦେ. ବି —କ୍ଷୁଦ୍ର ମୃଗବିଶେଷ—
Jiada A species of small deer.

**ଜିଆଦା**—ବୈଦେ. ବି. ( ଫା. ଜ୍ୟାଦତ୍=ଆଧିକ୍ୟ; ଅଧିକ; ବହୁତ )—
Jiada ୧ । ଆଧିକ୍ୟ; ଅଧିକତା—1. Excess.
जियादा ୨ । ବଳି ପଡ଼ିବା ଅଂଶ ବା ପଦାର୍ଥ—2. Surplus.
ज़ियादती
ज़ियादा; जियादा ବିଣ. ( ଫ. ଜ୍ୟାଦା=ଅଧିକ; ବହୁତ )—
୧ । ପ୍ରଚୁର—1. More than enough
୨ । ଅତ୍ୟଧିକ; ଅଧିକା—2 Excessive.
୩ । ଅଧିକ; ବହୁତ—3. Much; many; great.

**ଜିଆନାଡ଼**—ଦେ. ବି—ଜିଆ ( ଦେଖ )
Jia-narda Jia ( See )

**ଜିଆପୁତା**—ପ୍ରାଦେ. ( ମେଦିନୀପୁର ) ବି—ପୁତ୍ରଂଜୀବ ( ଦେଖ )
Jia-puta Putramjiba ( See )

**ଜିଆ ମାରିବା**—ଦେ. ବି—ଗୋରୁଙ୍କ ଆଖିରୁ ପାଣି ବୋହିବା ରୋଗ—
Jia mariba A cattle-disease causing watery discharge from the eyes.
[ ଦ୍ର—ମନୁଷ୍ୟ ଲୁଣି ପାଣି କୁଳୁକୁଳିଆ କରି ଗୋରୁ ଆଖିକୁ ଛାଡ଼ିଲେ ଏ ରୋଗ ଭଲ ହୁଏ । ]

**ଜିଆଲ୍**—ପ୍ରାଦେ. ( ସମ୍ବଲପୁର ) ବିଣ—ଉପରୁ ସହଜରେ ପାଣି ଶୁଖି
Jial ନ ଯିବା ( କ୍ଷେତ ବା କିଆରି )—( a field ) From which water is not soaked up easily.

**ଜିଉ**—ପ୍ରାଦେ. ( ମେଦିନୀପୁର ) ବି. ( ସଂ. ଦ୍ୟୂତ )—ବିବାହ ସମୟରେ
Jiu ବରକନ୍ୟାଙ୍କର କଉଡ଼ି ଖେଳ; ଜୁଆ ଖେଳ—
The game of cowries ( sea-shells ) played by the bride and the bridegroom during marriage.
ବୈଦେ. ବି. ( ହିବ୍ରୁ )—ୟୀହୁଦି ( ଦେଖ )
Jihudi ( See )
ଦେ. ବି. ( ସଂ. ଜୀବ )—ଜୀ ( ଦେଖ )—Ji ( See )

**ଜିଉଁତିଆ**—ପ୍ରାଦେ. ( ସମ୍ବଲପୁର ) ବି—ଜିଉନ୍ତିଆ ( ଦେଖ )
Jiuntia Jiuntia ( See )

**ଜିଉଦି**—ବୈଦେ. ବି. ( ହିବ୍ରୁ )—ୟୀହୁଦି ( ଦେଖ )
Jiudi Jihudi ( See )

**ଜିଉନା**—ପ୍ରାଦେ. ( ଜାଜପୁର ) ବି. ( ସଂ. ଜୀବନ )—ଧନ; ଅର୍ଥ—
Jiuna Money.

**ଜିଉନ୍ତିଆ**—ପ୍ରାଦେ. (ସମ୍ବଲପୁର) ବି. ( ସଂ. ଜୀତାଷ୍ଟମୀ ବା ଜୀମୂତାଷ୍ଟମୀ;
Jiuntia ଭୂଲ. ଏହି ଅର୍ଥରେ ହିନ୍ଦି ଏହି ଶବ୍ଦ)—
ଜୀତାଷ୍ଟମୀ; ଆଶ୍ୱିନ କୃଷ୍ଣାଷ୍ଟମୀ ବ୍ରତ—
A religious vow observed on the 8th of the dark fortnight of Aswina.
। ଆଶ୍ୱିନ ଶୁକ୍ଳ ସପ୍ତମୀ ଦିନ ( ଭାଇଜିଉନ୍ତିଆ ) ଓ ଭାଦ୍ର ଶୁକ୍ଳ ଷଷ୍ଠୀ ଦିନ ( ପୁଅଜିଉନ୍ତିଆ ) ସ୍ତ୍ରୀ ଲୋକମାନେ କରିବା ବ୍ରତ—2. A religious vow observed by women having brothers on the 7th day of the light fortnight of Aswina and by those having sons on the 6th day of the light fortnight of Bhadra.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ନ | ଶ,ଷ | ଙ୍କ | ଇସ୍ପ | ଉଅ | ଋ |
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ |

[ ଦ୍ର—ପୁଅଜିଉନ୍ତିଆ ପାଳିବା ସ୍ତ୍ରୀମାନେ ଏହି ବ୍ରତରେ ବେକରେ ଗୋଟିଏ ଗଣ୍ଠିଦିଆ ସୂତା ( ରକ୍ଷା କବଚ ) ପିନ୍ଧନ୍ତି, ଭାଦ୍ର ଶୁକ୍ଳ ଷଷ୍ଠୀରେ ଓଡ଼ିଶାରେ ସ୍ତ୍ରୀ ଲୋକମାନେ ଓଷା କରନ୍ତି । ]

୩ । ଉକ୍ତ ବ୍ରତ ପାଳନ କରିବା ସ୍ତ୍ରୀମାନେ ବେକରେ ଯେଉଁ ରକ୍ଷାକବଚ ପିନ୍ଧନ୍ତି—2 The sacred string worn round the neck by matrous observing the above vow.

ଜିଉଲ—ଦେ. ବି—୧ । ମାଗୁର ଆଦି ମାଛ—
Jiula — 1. Species of fish comprising the
জিওলী, জিওল — Māgura kind; fishes of the miscellaneous species.

୨ । ଜିଅଳ ଗଛ; କାଣି ମୂଳାଗଛ—
2. Odina Wodier ( tree ).

ଜିଉଲି—ଦେ. ବି — ଜିଉଲ ( ଦେଖ )
Jiuli — Jiula ( See )

ଜିଓଗ୍ରାଫି—ବୈଦେ. ବି. (ଇଂ)— ଭୂଗୋଳ ବିଦ୍ୟା—
Jiogrāphy — Geography.
জিওগ্রাফী
**जिओग्राफी**

ଜିଓମେଟ୍ରି—ବୈଦେ. ବି (ଇଂ)— ଜ୍ୟାମିତି —
Jiometri — Geometry.
:জিওমেটী
**जिओमेट्री**

ଜିଓଲ—ଦେ. ବି—ଜିଉଲ ( ଦେଖ )
Jiola — Jiula ( See )

ଜିଓଲଜି—ବୈଦେ. ବି. ( ଇଂ )— ଭୂତତ୍ତ୍ୱ ବିଦ୍ୟା—
Jiolaji — Geology.
জিওলজী
**जिओलजी**

ଜିକ୍‌ଜିକ୍—ଦେ. ବି. ( ସଂ. ଶୁକ୍ଳଚକ୍ୟ )—
Jik-jik — ଶୁକ୍ଳଚକ୍ୟ—Brilliance.
চিকচিক — ଦେ. ବିଣ—ଝକଝକ; ଚକ୍‌ଚକ୍—
**जगमग** — Shining; brilliance.
ଦେ. କ୍ରି. ବିଣ—ଚକଚକ ହୋଇ—Brilliantly.

ଜିକ—ଦେ. ବି — ଜିକ; ଶୁକ୍ଳଚକ୍ୟ—
Jika — Brilliance.
চিকচিকানি
**जगमगाहट**

ଜିକର – ବୈଦେ. ବି. ( ପା. ଜିକ୍‌ର—ଚର୍ଚ୍ଚା )—
Jikar — ୧ । ସୂଚନା—1. Indication.
.জিকর — ୨ । ପ୍ରସଙ୍ଗ—2. Reference.

**জিকর** ( ଯଥା—ଆର ପୃଷ୍ଠାର ଆରମ୍ଭରେ ଏ ପୃଷ୍ଠାର ଜିକର ଲେଖାଯିବ । )
ପ୍ରାଦେ ( ସମ୍ବଲପୁର ) ବି—ଜିଗର ( ଦେଖ )
Jigara ( See )

ଜିକିଜିକି—ଦେ. ବିଣ ଓ କ୍ରି. ବିଣ— ଜିକ୍‌ଜିକ୍ ( ଦେଖ )
Jiki-jiki — Jikjik ( See )

ଜିଗମିଷା—ସଂ. ବି. ( ଗମ୍ ଧାତୁ=ଯିବା+ଇଚ୍ଛା ଅର୍ଥରେ ସନ୍=ଜିଗମିଷ ଧାତୁ+ଭାବ ଅ+ଆ )—ଗମନେଚ୍ଛା; ଗମନ କରିବାର ଇଚ୍ଛା—Intention of going.
Jigamishā

ଜିଗମିଷିତ—ସଂ. ବିଣ. (ଜିଗମିଷ ଧାତୁ=ଗମନ କରିବାକୁ ଇଚ୍ଛା+କର୍ତ୍ତୃ ତ କିମ୍ବା ଜିଗମିଷା+ସଞ୍ଜାତାର୍ଥେ. ଇତ )— ଜିଗମିଷୁ (ଦେଖ)
Jigamishita — Jigamishu (See)

ଜିଗମିଷୁ—ସଂ. ବିଣ. (ଗମ୍ ଧାତୁ+ଇଚ୍ଛା ଅର୍ଥରେ ସନ୍+କର୍ତ୍ତୃ. ଉ)
Jigamishu — ଗମନେଚ୍ଛୁ; ଯିବାପାଇଁ ଇଚ୍ଛୁକ—Intent or bent upon going.

ଜିଗର—ବୈଦେ. ବି.—୧ । ପା. ଜିଗର୍=କଲିଜା; ମନ)—
Jigara — ନିର୍ବନ୍ଧାତିଶଯ୍ୟ—1. Importunity.
জিগর, জিগির — ୨ । ବାରମ୍ବାର ଅନୁରୋଧ—2. Repeated request or insistence.
**जगर**
୩ । ଯିଦ; ଜିଦ—3. Zid.
ନକାଣି ଉମସୁକନ୍ତା ସକାଶେ ଏତେ ଜିଗର କାହିଁକି ?
ଉକାଶଚରଣ. ସସାରଚନ୍ଦ୍ର ।
୪ । ବିଶେଷଭାବରେ ଉଲ୍ଲେଖ—4. Specific mention; mentioning a thing by giving stress on it.
୫ । ଜିକର (ଦେଖ)
5. Jikar (See)

ଜିଗର କରିବା—ଦେ. କ୍ରି.—୧ । ବାରମ୍ବାର ପ୍ରାର୍ଥନା, ଅନୁରୋଧ ବା ଅଳି କରିବା; କୌଣସି କଥା ପାଇଁ ଯିଦ୍ କରିବା—1. To insist on a thing; to importune.
Jigara karibā
জিগর করা, জিগরলগান
**जिगर करना**
୨ । ବାରମ୍ବାର କଥା କହି ବିରକ୍ତ କରିବା—
2. To tease by incessant taking.

ଜିଗରଦସ୍ତ—ବୈଦେ. ବିଣ. (ପା)— ଜିଗରଦାର (ଦେଖ) —
Jigara-dast — Jigara-dār (See)

ଜିଗରଦସ୍ତି—ଦେ. ବି.—ଜିଗରଦାରି (ଦେଖ)
Jigara-dasti — Jigara-dāri (See)

ଜିଗରଦାର—ବୈଦେ. ବିଣ. (ପା. ଜିଗର୍‌ଦାର୍)—୧ । ଯିଦଖୋର; ଏକ ଗୁଆଁ, ଏକଜିଦିଆ—
Jigara-dār — 1. Headstrong; perverse; importunate; pertinacious.
জিগরদার; জিগরবাজ
**जगरदार**

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଢ଼ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ସଙ୍କେତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କୋଷରେ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲଙ୍ଗ' ନ ପାଇଲେ 'ଅଲଙ୍କାର' ଦେଖିବେ

୨ । ବରଲ୍ଲକାର୍ଯ୍ୟ—2. Teasing.

ଜିଗରଦାର୍—ଦେ. ବି. (ଫା ଜିଗର୍‌ଦାର)—ଏକଜିଦିଆ ଖୋଇ—
Jigara-dāri Headstrong nature.
জিগরদারী
जिगरदारी

ଜିଗରବାଜ୍—ବିଦେ. ବଣ. (ଫା. ଜିଗର୍‌ବାଜ୍)—ଜିଗର୍‌ଦାର (ଦେଖ)
Jigara-bāj Jigar-dār (See)
জিগরবাজ
जिगरबाज

ଜିଗରବାଜି—ଦେ. ବ—ଜିଗରଦାର୍ (ଦେଖ)
Jigarabāji Jigaradāri (See)
জিগরবাজি
जिगरबाजी

ଜିଗର ଲଗା(ଗେ)ଇବା—ଦେ. କ୍ରି—ଜିଗର କରିବା (ଦେଖ)
Jigara lagā(e)ibā Jigara karibā (See)

ଜିଗରିଆ—ଦେ. ବଣ—ଜିଗରଦାର୍ (ଦେଖ)
Jigariā Jigara-dār (See)

ଜିଗିର୍ (ଇତ୍ୟାଦି)—ବିଦେ. ବ. (ଫା.)—ଜିଗର ଇତ୍ୟାଦି (ଦେଖ)
Jigir (etc) Jigara etc (See)

ଜିଗୀଷା—ସଂ. ବ. ସ୍ତ୍ରୀ (ଜି ଧାତୁ=ଜିଣିବା+ଇଚ୍ଛା ଅର୍ଥରେ ସନ୍ ଜିଗୀଷ୍ ଧାତୁ+ଭାବ. ଅ+ସ୍ତ୍ରୀ.ଆ)—
Jigishā
୧ । ଜୟ କରିବାର ଇଚ୍ଛା; ଜୟାଭିଳାଷ—
1. Wish to conquer; desire for conquering or excelling.
୨ । ଯୁଦ୍ଧପ୍ରିୟତା—2. Martial spirit; military ardour
୩ । ଉଦ୍ୟମ—3. Special effort; emulation.
୪ । ଉତ୍କର୍ଷ; ପ୍ରକର୍ଷ—4. Excellence.
୫ । ଉଚ୍ଚାଭିଳାଷ—5. Ambition.
୬ । ପ୍ରତିଦ୍ୱନ୍ଦ୍ୱିତା—6. Rivalry.

ଜିଗୀଷିତ—ସଂ. ବଣ. (ଜିଗୀଷା+ସଞ୍ଜାତ ଅର୍ଥରେ ଇତ)—
Jigishita ଜିଗୀଷୁ (ଦେଖ)
Jigishu (See)

ଜିଗୀଷୁ—ସଂ. ବଣ. (ଜି-ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ. ଉ)—
Jigishu ୧ । ଜୟୋତ୍ସୁକ; ଜୟ କରିବାର ଇଚ୍ଛାଯୁକ୍ତ—
1. Striving to conquer; desirous of conquering.
୨ । ଉଦ୍ୟମୀ; ଉଦ୍ୟମଶୀଳ—
2. Energetic; resourceful.
୩ । ଜୟିତ ବା ଉତ୍କର୍ଷଲାଭପାଇଁ ଇଚ୍ଛୁକ—
3. Having desire to excel; emulating.
୪ । ଉଚ୍ଚାଭିଳାଷୀ—4. Ambitious.

୫ । ଯୁଦ୍ଧପ୍ରିୟ—5. Martial.

ଜିଘତ୍ସା—ସଂ. ବ. ସ୍ତ୍ରୀ. (ଅଦ୍ ଧାତୁ+ଖାଇବା+ଇଚ୍ଛାର୍ଥରେ ସନ୍= ଜିଘତ୍ସ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ,—୧ । ଭୋଜନେଚ୍ଛା—
Jighatsā
1. Wish or desire for eating.
୨ । କ୍ଷୁଧା 2. Hunger; appetite.
୩ । ଚେଷ୍ଟା—3. Striving for.

ଜିଘତ୍ସିତ—ସଂ. ବଣ. (ଜିଘତ୍ସା+ସଞ୍ଜାତାର୍ଥେ ଇତ)—
Jighatsita ୧ । ବୁଭୁକ୍ଷୁ; ଭୋଜନେଚ୍ଛୁ—
1. Desirous of eating.
୨ । କ୍ଷୁଧିତ—2. Hungry

ଜିଘତ୍ସୁ—ସଂ. ବଣ. (ଅଦ୍ ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ. ଉ)—
Jighatsu ଜିଘତ୍ସିତ (ଦେଖ)
Jighatsita (See)

ଜିଘାଂସ—ଦେ. ବ. (ପଦ୍ୟ) (ସଂ. ଜିଘାଂସା)—ଜିଘାଂସା (ଦେଖ)
Jighāmsa Jighāmsā (See)
ନିର୍ଲୋଭୀ ସେ ପରମହଂସ
ତାହାଙ୍କୁ ନ କର ଜିଘାଂସ । ଜଗନ୍ନାଥ. ଭାଗବତ ।

ଜିଘାଂସା—ସଂ ବ. ସ୍ତ୍ରୀ. (ହନ୍ ଧାତୁ=ବଧ କରିବା+ଇଚ୍ଛାଅର୍ଥରେ ସନ୍
Jighāmsā =ଜିଘାଂସ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ)—
୧ । ହନନେଚ୍ଛା; ବଧ କରିବାର ଇଚ୍ଛା—
1. A desire to kill or injure.
୨ । ବଧ କରିବାର ଚେଷ୍ଟା—2. Endeavour to kill.
୩ । ଶତ୍ରୁତା—3. Enmity.
୪ । ପ୍ରତିହିଂସା—4. Malice; revenge; rancour.

ଜିଘାଂସାବୃତ୍ତି—ସଂ. ବ (ଜିଘାଂସା+ବୃତ୍ତି)—ଜୀବହତ୍ୟା କାର୍ଯ୍ୟ;ଜୀବହିଂସା-ଇ
Jighāmsā-brutti Killing animals; habitual desire to take life or kill animals.

ଜିଘାଂସିତ—ସଂ. ବଣ. (ଜିଘାଂସା+ସଞ୍ଜାତ ଅର୍ଥରେ ଇତ)—
Jighāmsita ଜିଘାଂସୁ (ଦେଖ)
(ଜିଘାଂସିତା—ସ୍ତ୍ରୀ) Jighāmsu (See)
୨ । (ଜିଘାଂସ୍ ଧାତୁ+କର୍ମ. ତ)—ଯାହାକୁ ମାରି ପକାଇବାକୁ ଅନ୍ୟ ଲୋକ ଚେଷ୍ଟା ବା ଇଚ୍ଛା କରୁଥାଏ—
2. Sought to be killed or injured.

ଜିଘାଂସିବା—ଦେ. କ୍ରି. (ସଂ. ଜିଘାଂସା=ଶତ୍ରୁତା; ପ୍ରତିହିଂସା)—
Jighāmsibā ୧ । ଛିଙ୍ଗାସିବା; ତାଚ୍ଛଲ୍ୟପୂର୍ବକ ଗାଳିଦେବା—
तुच्छतािच्छल्य करना 1. To rebuke; to taunt.
नक बढ़ाना
୨ । ଘୃଣାପ୍ରକାଶପୂର୍ବକ ଗାଳିଦେବା—
2. To rebuke with contempt.
୩ । ବାରମ୍ବାର ଗାଳିଦେବା—
3. To rebuke repeatedly.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ˎ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଙ୍ଯ | ଉଅ | ଞ |
| ୨ | ଈ | ଉ | ରୁ | ଲୁ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଝ | ନ୍ମ |

୪ । ଉପହାସ କରିବା—
4. To sneer at; to deride.

ଜିଘାଂସୁ—ସଂ. ବିଣ (ହନ୍ ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ. ଉ)—
Jighāmsu ୧ । ହନନେଚ୍ଛୁ—1. Desirous of killing.
୨ । ହିଂସାପରାୟଣ—2. Malicious; revengeful.

ଜିଘୃକ୍ଷା—ସଂ. ବିଣ (ଗ୍ରହ ଧାତୁ=ଗ୍ରହଣ କରିବା+ଇଚ୍ଛାର୍ଥରେ ସନ୍=
Jighrukshā ଜିଘୃକ୍ଷ୍ ଧାତୁ+ଭାବ. ଅ+ସ୍ତ୍ରୀ ଆ)—
୧ । ଗ୍ରହଣ କରିବାର ଇଚ୍ଛା—
1. A desire for taking.
୨ । ଲୋଭ—2 Greediness; avarice.

ଜିଘୃକ୍ଷିତ—ସଂ. ବିଣ (ଗ୍ରହ ଧାତୁ+ଇଚ୍ଛାର୍ଥରେ ସନ୍=ଜିଘୃକ୍ଷ ଧାତୁ+
Jighrukshita କର୍ତ୍ତୃ. ତ; ଅଥବା ଜିଘୃକ୍ଷା+ସଞ୍ଜାତାର୍ଥେ. ଇତ)—
ଗ୍ରହଣେଚ୍ଛୁ—Desirous of taking (something); avaricious.

ଜିଘୃକ୍ଷୁ—ସଂ. ବିଣ (ଗ୍ରହ ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ. ଉ)—
Jighrukshu ଜିଘୃକ୍ଷିତ (ଦେଖ)
Jighrukshita (See).

ଜିଘ୍ନସେନୀ—ଗ୍ରା. ବି. ସ୍ତ୍ରୀ (ସଂ. ଯାଜ୍ଞସେନୀ)—ଦ୍ରୌପଦୀ—
Jighna-seni Draupadī; the wife of the 5 Pāndaba-brothers.

ଜିଘ୍ର—ସଂ. ବିଣ. ପୁଂ (ଘ୍ରା ଧାତୁ=ଗନ୍ଧ ଗ୍ରହଣକରିବା+କର୍ତ୍ତୃ. ଅ)—
Jighra ୧ । ଘ୍ରାଣକାରୀ—1. Smelling.
(ଜିଘ୍ରା—ସ୍ତ୍ରୀ) ୨ । ସନ୍ଦେହକାରୀ—2. Suspecting.
୩ । ଅନୁମାନକାରୀ—3. Guessing; conjecturing.

ଜିଘ୍ରିବା—ଦେ. କ୍ରି. (ସଂ. ଜିଘ୍ର)—ବାସିବା—To smell.
Jighribā
ଦେଖା ନୃଶ ଜିଘ୍ରଇ ଅଧର—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ଜିଙ୍କ୍—ବୈଦେ. ବି (ଇଂ. ଜିଙ୍କ୍, Zinc.)—
Jink ଦସ୍ତା ଧାତୁ—Zinc.
ज़िंक [ ଦ୍ର- ଇଂରାଜିର 'Z' ଜ୍ଜେଡ୍ ଅକ୍ଷରର ଉଚ୍ଚାରଣର ସମାନ
जिङ्क ଉଚ୍ଚାରଣ ଯୁକ୍ତ ଅକ୍ଷର ଓଡ଼ିଆ ବା ସଂସ୍କୃତରେ ନ ଥିବାରୁ Z ଅକ୍ଷରକୁ ଓଡ଼ିଆରେ 'ଜ' ଅକ୍ଷର ଲେଖି ଚଳାଇବାକୁ ହୁଏ । ]

ଜିଙ୍ଗଣୀ—ସଂ. ବି.—ଜିଅଳ ୧ (ଦେଖ)
Jingani Jiala (See)
(ଜିଙ୍ଗିନୀ—ଅନ୍ୟରୂପ)

ଜିଙ୍ଗୀ—ସଂ. ବି. ସ୍ତ୍ରୀ (ଜିଙ୍ଗ=ଗମନ; ଜି ଧାତୁ=ଜୟକରିବା+କର୍ତ୍ତୃ. ଇ;
Jingi ଯେ ସମସ୍ତ ତରୁଲତାଙ୍କୁ ଜୟ କରେ)—
ମଞ୍ଜିଷ୍ଠା (ଦେଖ)
Manjishthā (See)

ଜିଜିଆ—ବୈଦେ. ବି (ଫା. ଜିଜ୍ୟା)—ମୁସଲମାନ୍ ସମ୍ରାଟଙ୍କ ଅମଳରେ
Jijiā ଭାରତବର୍ଷରେ ଅମୁସଲମାନ ପ୍ରଜାଙ୍କଠାରୁ ଆଦାୟ କରାଯିବା
जिजिया କର ବା ଟିକସ—A poll-tax or capitation-tax
जिज़िया levied from non-Mahomedans or infidels by the Mahomedan emperors of India.
[ଦ୍ର—ମୋଗଲ ସମ୍ରାଟ ଆକବର ଏହି ପ୍ରଥା ଉଠାଇ ଦେଇଥିଲେ, ମାତ୍ର ଆଉରଙ୍ଗଜେବ ପୁଣି ଏହା ଚଳାଇ ହିନ୍ଦୁମାନଙ୍କର ଅପ୍ରିୟ ହୋଇଥିଲେ । ]

ଜିଜୀବିଷା—ସଂ. ବି. ସ୍ତ୍ରୀ. ( ଜୀବ୍ ଧାତୁ=ବଞ୍ଚିବା+ଇଚ୍ଛାର୍ଥରେ ସନ୍
Jijibishā =ଜିଜୀବିଷ୍‌ଧାତୁ+ଭାବ. ଅ+ଆ)—
୧ । ଜୀଇଁ ରହିବାର ଇଚ୍ଛା—
1. A desire for living.
୨ । ଜୀବନ ପ୍ରତି ମାୟା—2. Love of life.

ଜିଜୀବିଷୁ—ସଂ ବିଣ. ( ଜୀବ୍ ଧାତୁ+ଇଚ୍ଛାର୍ଥରେ. ସନ୍+କର୍ତ୍ତୃ. ଉ )—
Jijibishu ୧ । ବଞ୍ଚି ରହିବାକୁ ଇଚ୍ଛୁକ—1 Desirous of living.
୨ । ଦୀର୍ଘଜୀବନକାମୀ—2 Desiring a long life.

ଜିଜ୍ଞାସ୍ ( ଧାତୁ )—ସଂ. ( ଜ୍ଞା ଧାତୁ+ଇଚ୍ଛାର୍ଥରେ. ସନ୍ )—
Jijnās ( root ) ୧ । ଜାଣିବାକୁ ଇଚ୍ଛା କରିବା—
1. To wish to know.
୨ । ଅନୁସନ୍ଧାନ କରିବାକୁ ଇଚ୍ଛା କରିବା—
2. To wish to enquire.

ଜିଜ୍ଞାସକ—ସଂ. ବିଣ. ପୁଂ. ( ଜ୍ଞା ଧାତୁ+ଇଚ୍ଛାର୍ଥରେ. ସନ୍+କର୍ତ୍ତୃ.
Jijnāsaka ଅକ )—୧ । ଯେ କୌଣସି ବିଷୟ ଜାଣିବାକୁ
(ଜିଜ୍ଞାସିକା—ସ୍ତ୍ରୀ) ଇଚ୍ଛୁକ ହୋଇ ପ୍ରଶ୍ନ କରେ—
1. Desirous of knowing anything; inquisitive.
୨ । ପ୍ରଶ୍ନକାରୀ—
2. One who questions; interrogating.

ଜିଜ୍ଞାସନ—ସଂ. ବି. ( ଜ୍ଞା ଧାତୁ+ଇଚ୍ଛାର୍ଥରେ. ସନ୍+ଭାବ. ଅନ )—
Jijnāsana ୧ । ପ୍ରଶ୍ନକରଣ—1. Questioning.
୨ । ଅନୁସନ୍ଧାନ—2. Enquiry; investigation.

ଜିଜ୍ଞାସନୀୟ—ସଂ. ବିଣ. ( ଜିଜ୍ଞାସ୍ ଧାତୁ+କର୍ମ. ଅନୀୟ )—
Jijnāsaniya ଜିଜ୍ଞାସ୍ୟ ( ଦେଖ )—Jijnāsya ( See )

ଜିଜ୍ଞାସମାନ—ସଂ. ବିଣ. ପୁଂ. [ ଜ୍ଞା ଧାତୁ+ଇଚ୍ଛାର୍ଥରେ. ସନ୍+କର୍ତ୍ତୃ.
Jijnāsamāna ଅନ (ଶାନଚ)]—
( ଜିଜ୍ଞାସମାନା—ସ୍ତ୍ରୀ ) ୧ । ଜିଜ୍ଞାସୁ; ଯେ ପ୍ରଶ୍ନ କରୁଅଛି—
1. Questioning or enquiring about.
୨ । ଅନୁସନ୍ଧିତ୍ସୁ—2. Inquisitive.

ଜିଜ୍ଞାସା—ସଂ. ବି. ସ୍ତ୍ରୀ. ( ଜ୍ଞା ଧାତୁ=ଜାଣିବା+ଇଚ୍ଛାର୍ଥରେ. ସନ୍
Jijnāsā +ଭାବ. ଅ+ଆ )—

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତୀୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପରିବର୍ତ୍ତେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗ୍ୟାନ' ନ ପାଇଲେ 'ଅଜ୍ଞା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍ଵବତ୍' ଦେଖିବେ

ଜିଜ୍ଞାସିତ } ବିଣ
ଜିଜ୍ଞାସ୍ୟ
ଜିଜ୍ଞାସମାସ୍ତ
୧ । ଜାଣିବାର ଇଚ୍ଛା—
1. A desire for knowledge.
୨ । ଅନୁସନ୍ଧାନ—
2. Search; investigation.
୩ । ପ୍ରଶ୍ନ—3. Question; query.
୪ । ପରୀକ୍ଷା; ପରୀକ୍ଷା—
4. Test; examination.
୫ । ଅନୁସନ୍ଧାନ କରିବାର ଇଚ୍ଛା—
5. Inquisitiveness.
୬ । କୌତୂହଳ—6. Curiosity.

**ଜିଜ୍ଞାସା କରିବା**—ଦେ. କ୍ରି—୧ । ପ୍ରଶ୍ନ କରିବା; ପଚାରିବା—
Jijnāsā karibā 1. To ask; to question.
জিজ্ঞাসা করা ୨ । ଅନୁସନ୍ଧାନ କରିବା—
**जिज्ञासा करना** 2. To investigate; to enquire.

**ଜିଜ୍ଞାସାବାଦ**—ସଂ. ବି. ( ଜିଜ୍ଞାସା+ବଦ୍ ଧାତୁ+ଭାବ. ଅ )—ଜିଜ୍ଞାସା
Jijnāsā-bāda ଓ ବାର୍ତ୍ତା; ସମ୍ବାଦ ଦାନ ଓ ଗ୍ରହଣ; ଆଳାପ—
Exchange of news; question and answer; series of interrogatories and replies.

**ଜିଜ୍ଞାସାର୍ହ**—ସଂ. ବିଣ. ( ଉପପଦ ତତ୍, ଜିଜ୍ଞାସା+ଅର୍ହ )—
Jijnāsārha ୧ । ଜିଜ୍ଞାସାର ଯୋଗ୍ୟ (ବିଷୟ)—1. (matter) Worth asking about or enquiring after.
୨ । ପ୍ରଶ୍ନ କରିବାର ଉପଯୁକ୍ତ (ବ୍ୟକ୍ତି)—
2. (person) Fit to be questioned or asked

**ଜିଜ୍ଞାସିତ**—ସଂ. ବିଣ. ( ଜ୍ଞା ଧାତୁ+ଇଚ୍ଛାର୍ଥରେ. ସନ୍=ଜିଜ୍ଞାସ୍ ଧାତୁ +କର୍ମ. ତ )—
Jijnāsita
୧ । ଯାହାକୁ ପ୍ରଶ୍ନ କରାଯାଏ—
1. ( a person ) Questioned; asked.
୨ । ଯେଉଁ ବିଷୟରେ ପ୍ରଶ୍ନ କରାଯାଏ—2. ( a matter ) Enquired after; sought after.

**ଜିଜ୍ଞାସିବା**—ଦେ. (ପଦ୍ୟ) କ୍ରି. ( ସଂ. ଜିଜ୍ଞାସ୍ ଧାତୁ )—ଜିଜ୍ଞାସା କରିବା;
Jijnāsibā ଅନୁସନ୍ଧାନ କରିବା—To enquire.
জিজ্ঞাসা ପଳ ଜିଜ୍ଞାସିଲେ ନୃପ ସ୍ୱପ୍ନବନ୍ତ ଦୁଃଖେ ଉବାଚ—
**जिज्ञासना** ରଘୁନାଥ, ନଳଦେବସ୍ତ ।

**ଜିଜ୍ଞାସୁ**—ସଂ. ବିଣ. ( ଜ୍ଞା ଧାତୁ+ଇଚ୍ଛାର୍ଥରେ ସନ୍+କର୍ତ୍ତୃ. ଉ )
Jijnāsu ୧ । ଜିଜ୍ଞାସାକାରୀ; ପ୍ରଶ୍ନକାରୀ—
1. Inquisitive; enquiring.
୨ । ଜାଣିବାକୁ ଇଚ୍ଛୁକ ବା ଅଭିଳାଷୀ—
2. Desirous of knowing; wishing to know.
୩ । ମୁମୁକ୍ଷୁ; ଆତ୍ମମୁକ୍ତି କାମନାରେ ତତ୍ତ୍ୱଜିଜ୍ଞାସୁ—
3. Desirous of getting absolution; inquisitive after the truth of salvation.

**ଜିଜ୍ଞାସ୍ୟ**—ସଂ. ବିଣ. ( ଜ୍ଞା ଧାତୁ+ଇଚ୍ଛାର୍ଥରେ ସନ୍=ଜିଜ୍ଞାସ୍ ଧାତୁ +କର୍ମ ଯ )—
Jijnāsya
୧ । ଜିଜ୍ଞାସାର ବିଷୟୀଭୂତ—
1. Subject of question.
୨ । ପ୍ରଶ୍ନର ଯୋଗ୍ୟ; ଅନୁସନ୍ଧେୟ—
2. Fit to be questioned or enquired into; worthy of investigation.
୩ । ଯେଉଁ ବ୍ୟକ୍ତିକୁ ପଚାରିବା ଉଚିତ—
3. ( person ) Fit who asked questions.

**ଜିଜ୍ଞାସ୍ୟମାନ**—ସଂ.ବିଣ.ପୁଂ. (ଜ୍ଞା ଧାତୁ+ଇଚ୍ଛାର୍ଥରେ ସନ୍+କର୍ମ.ଆନ)-
Jijnāsyamāna ୧ । ଯାହା ସମ୍ବନ୍ଧରେ ପ୍ରଶ୍ନ ବା ଅନୁସନ୍ଧାନ କରା
(ଜିଜ୍ଞାସ୍ୟମାନା—ସ୍ତ୍ରୀ) ଯାଉଅଛି—1. Subject of enquiry.
୨ । ଯେଉଁ ବିଷୟରେ ଅନୁସନ୍ଧାନ ଚାଲୁଅଛି—
2. The subject-matter under enquiry; which is being enquired about.

**ଜିଞ୍ଜର୍ ବିଅର୍**—ବୈଦେ. ବି. (ଇଂ)—ଅଦାରସ ମିଶିଥିବା ପାନୀୟବିଶେଷ-
Jinjar biar Ginger beer.
জিংজর বিয়ার
**जिंजर बियार**

**ଜିଞ୍ଜରେଡ୍**—ବୈଦେ. ବି. (ଇଂ)—ଅଦାରସ ମିଶା ପାନୀୟବିଶେଷ—
Jinjared Gingerade.
জিংজরেড়
**जिंजरेड्**
(ଜିଞ୍ଜରେଟ୍—ଅନ୍ୟରୂପ)

**ଜିଞ୍ଜିର** (ଇତ୍ୟାଦି)—ବୈଦେ. ବି. (ଫା)—ଜଞ୍ଜିର ଇତ୍ୟାଦି ( ଦେଖ )
Jinjira (etc) Janjira etc. ( See )

**ଜିଞ୍ଜିରା** (ଇତ୍ୟାଦି)—ବୈଦେ. ବି. (ଫା)—ଜଞ୍ଜିର ଇତ୍ୟାଦି ( ଦେଖ )
Jinjirā (etc) Janjira etc. ( See )

**ଜିଞ୍ଜିରି** (ଇତ୍ୟାଦି)—ବୈଦେ. ବି. (ଫା)—ଜଞ୍ଜିର ଇତ୍ୟାଦି ( ଦେଖ )
Jinjiri (etc) Janjira etc. ( See )

**ଜିଡ଼**—ଦେ. ବି. ( ସଂ. ଜଟୀ )—ପ୍ଲକ୍ଷ ବୃକ୍ଷ; ବଟ ଜାତୀୟ ବୃକ୍ଷବିଶେଷ—
Jirda The waved leafed fig tree.
পাকুড়
**पाकर**

**ଜିଡ଼ା**—ପ୍ରାଦେ. (କଟକ) ବିଣ—ଛିଡ଼ା; ଦଣ୍ଡାୟମାନ—
Jirdā Standing.

**ଜିଣ**—ଦେ. ବି ( ସଂ. ଜି ଧାତୁ; ପ୍ରା. ଜିଣ ଧାତୁ=ଜୟ କରିବା; ସ ଜିତ )—ଜୟଲାଭ—Victory.
Jina
জিত ( ଯଥା—ସାର ପୁରୁଷର ଜୀବନରେ ହାର ଜିଣ ସଦା-
**जीत** ସର୍ବଦା ଲାଗି ରହିଛି । )
(ହାର — ଦ୍ରଷ୍ଟବ୍ୟ)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇସ୍ତ | ଢ଼ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ |

**ଜଣନ୍ତା**—ଗ୍ରା. ବିଣ. ( ସଂ. ଜେତା )—
Jinantā — ଜେତା; ଯେ ଜୟଲାଭ କରେ—
ଜେତା — Winning, victorious
**जीतनेवाला**
ତୁହ୍ମା କହୁଥିଲେ ମୋତେ ଜଣନ୍ତା କୋହିବେ ତୋତେ
ଯୁବତୀ ସକାଶୁଁ ମୃତ୍ୟୁ ହେବ ତୋହର ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଜିଣା**—ଦେ. ବି. ( ଜି ଧାତୁ; ପ୍ରା. ଜିଣ ଧାତୁ )—
Jiṇā — ୧ । ଯୁଦ୍ଧରେ ଜୟ—1. Victory.
ଜିତା, ଜେତା — ୨ । ଖେଳରେ ଜୟଲାଭ—
**जीतना, जीत** — 2. Winning in a game.
(ଉପସର୍ଗ—ହାର) — ୩ । ଜୟଲାଭର ଫଳରେ କୌଣସି ବସ୍ତୁର ପ୍ରାପ୍ତି—
3. Aquisition of a thing by conquest.

ଦେ. ବିଣ—୧ । ଜୟକାରୀ; ଜୟୀ—
1. Victorious; winning.
ଅହାଗଣ ଗୁଣରେ ତାଙ୍କୁ ସେ ଜିଣା । କୃଷ୍ଣସିଂହ. ମହାଭାରତ. ବନ ।
୨ । ଜୟଲବ୍ଧ; ଯେଉଁ ପଦାର୍ଥକୁ ଅନ୍ୟଠାରୁ ଜୟ କରି ଅଣାଯାଇ ଥାଏ—2. Got as a result of conquest.
୩ । ଜିତ; ଯାହାକୁ ଜୟ କରାଯାଇ ଥାଏ—
3 Won; conquered.
୪ । ପରାଜିତ—4. Vanquished.
୫ । ଶ୍ରେଷ୍ଠ—5. Chief; prominent.
ତୁହ୍ମା ଶୁଭ ନାରଦ ଋଷିଙ୍କରେ ଜିଣା । କୃଷ୍ଣସିଂହ. ମହାଭାରତ. ବନ ।

**ଜିଣା(ଣେ)ଇବା**—ଦେ. କ୍ରି (ସଂ. ଜି ଧାତୁ; ଜିଣିବା କ୍ରିୟାର ଣିଜନ୍ତ ରୂପ)—
Jiṇā(ṇe)ibā — ୧ । କୌଣସି ବ୍ୟକ୍ତିକୁ ଜୟୀ କରାଇବା—
ଜିତାନ, ଜେତାନ — 1. To cause a person to gain victory.
**जीतवाना**
୨ । କୌଣସି ବ୍ୟକ୍ତିକୁ ଜୟୀ ହେବାର ଉପାୟ ବା ସୁବିଧା କରିଦେବା—2. To put a person in the way of conquering.

**ଜିଣା କରିବା**—ଦେ. କ୍ରି. (ପଦ୍ୟ)—ଜିଣିବା ( ଦେଖ )
Jiṇā karibā — Jiṇibā ( See )
ଯେଉଁମାନେ କରେ ଅସ୍ତ୍ର ଧରି ବାଣ
ଗାଉଛନ୍ତି କୋକିଳର ସ୍ୱର ବୈରି ଜିଣା । କୃଷ୍ଣସିଂହ. ମହାଭାରତ. ବନ ।

**ଜିଣାଜିଣି**—ଦେ. ବି. ( ସଂ. ଜି ଧାତୁ )—
Jiṇājiṇi — ୧ । ବହୁବାର ଜିତିବା ବା ଜୟଲାଭ—
ଜିତାଜିତି — 1. Repeated victories.
୨ । ଦୁଇ ପକ୍ଷ ଯୁଦ୍ଧ କଲା ବେଳେ କେବେ ଥରେ ଏକ ପକ୍ଷ ଜିତିବା ଓ କେବେ ଥରେ ଅପର ପକ୍ଷ ଜିତିବା—
2. Alternate victories and defeats.
୩ । ଜୟଲାଭ; ଜିତିବା—3 Victory.

**ଜିଣାଣ**—ଗ୍ରା. ବି. (ପଦ୍ୟ) ( ସଂ. ଜି ଧାତୁ )—ଜୟ; ଜୟଲାଭ—
Jiṇāṇa — Victory.

**ଜିଣା ପଟ**—ଦେ. ବି. ( ସଂ. ଜୟ ଓ ପକ୍ଷ )—
Jiṇā paṭa — ୧ । ଯୁଦ୍ଧ କରୁଥିବା ବା ଖେଳୁଥିବା ଦୁଇ ବିପକ୍ଷ ଦଳ ମଧ୍ୟରୁ ଜେତା ପକ୍ଷର ଜୟ କରିବାର ସୁଯୋଗ;
ଜେତା ପକ୍ଷ
**जितना पक्ष**
ଜିତାପଟ—1. Good luck of the party which wins in a game or a fight.
୨ । ଯୁଦ୍ଧ ବା ଖେଳରେ ଜୟ ଲାଭ କରିବା ପକ୍ଷ—
2. Winning party in a game or a fight.

**ଜିଣିବା**—ଦେ. କ୍ରି. ( ସଂ. ଜି ଧାତୁ; ପ୍ରା. ଜିଣ ଧାତୁ )—
Jiṇibā — ୧ । ( ଶତ୍ରୁକୁ ) ଜୟ କରିବା—1. To conquer; to vanquish an enemy.
ଜିତା
**जीतना** — ୨ । ( ବିପକ୍ଷ ବ୍ୟକ୍ତି ବା ଦଳକୁ ) ପରାସ୍ତ କରିବା—
2. To beat one's adversary.
୩ । ଜିତିବା; ଜୟ ଲାଭ ଦ୍ୱାରା ପାଇବା—3. To win something as a result of victory or conquest.
୪ । ଅତିକ୍ରମ କରିବା; ଲଙ୍ଘନ କରିବା; ପାରି ହେବା—
4. To overcome; to cross; to pass over (e.g. a sea, a danger.)
୫ । ବଳିବା;ଅପେକ୍ଷାକୃତ ଅଧିକ ହେବା; ଉତ୍କୃଷ୍ଟତର ହେବା—
5. To exceed; to excel.
ପ୍ରଫୁଲ୍ଲ କମଳ ଜିଣି ସୁନ୍ଦର ବଦନ । ମଧୁସୂଦନ. ବାଳରାମାୟଣ ।

**ଜିତ୍**—ସଂ. ବିଣ. (ଜି ଧାତୁ + କର୍ତ୍ତୃ. କ୍ୱିପ୍)—ଯେ ଜୟ କରି ଥାଏ—
Jit — Victorious, one who has vanquished another.
[ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ; ଯଥା—ଶତ୍ରୁଜିତ୍, ଇନ୍ଦ୍ରଜିତ୍, କୃଷ୍ଣଜିତ୍;
ଜିତ — ଦେ. ବି.—ଜୟ; ଜୟଲାଭ—Victory; winning.
**जीत** — [ଯଥା—ହାରିଜିତ୍ କାହାରିକୁ ଛାଡ଼ି ନାହିଁ ।]
(ହାରି—ବିପରୀତ)

**ଜିତ**—ସଂ. ବିଣ. (ଜି ଧାତୁ + କର୍ମ. ତ)—୧ । ପରାଜିତ; ଯାହାକୁ ଅନ୍ୟ
Jita — ବ୍ୟକ୍ତି ଜିତିଛି—1. Vanquished; conquered; subdued.
୨ । ଜୟଲବ୍ଧ—2. Won; acquired by conquest.
ଦ୍ରୁପଦ ଝିଅ ଜିତ ହୋଇବେ କେସନେ । କୃଷ୍ଣସିଂହ. ମହାଭାରତ. ସଭା ।
୩ । ସ୍ୱାୟତ୍ତୀକୃତ—3. Brought under full control.

**ଜିତକାଶି**—ସଂ. ବି.—ମୁଠା କରି ଯାଇଥିବା କରତଳ—
Jitakāśi — The doubled fist (M. W.)

**ଜିତକାଶୀ**—ସଂ. ବିଣ.—(ଜିତ+କାଶ୍ ଧାତୁ = ଦୀପ୍ତି ପାଇବା + ଇନ୍;
Jita-kāśī — ୧ମା. ୧ବ.)—୧ । ଜୟଶୀଳ; ବିଜୟୀ—
1. Victorious.
ଜିତକାଶୀ ହେବାରୁ ଭୀମ ମହାମଲ୍ଲ,
ଗରଜନ୍ତ ବହୁଅଛନ୍ତି ଶୁଣ ଇନ୍ଦ୍ର । କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।
୨ । ଗର୍ବିତ—2. Proud.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ନାଡ଼' ନ ମିଳିଲେ 'ଣାଡ଼' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅର୍ଦ୍ଧା' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

**ଜିତକ୍ରୋଧ**—ସଂ. ବିଣ. ପୁଂ (ବହୁବ୍ରୀହି; ଜିତ+କ୍ରୋଧ)—ଯେ କ୍ରୋଧ ବା ରାଗକୁ ସଂଯତ କରିଅଛି; ଶାନ୍ତପ୍ରକୃତିକ; ସହିଷ୍ଣୁ; କ୍ଷମାଶୀଳ—
Jitakrodha — One who has subdued one's anger; one who succeeds in checking an outburst of passionate anger; patient; forbearing; of a forgiving disposition.
(ଜିତକ୍ରୋଧା—ସ୍ତ୍ରୀ)

**ଜିତମନ୍ୟୁ**—ସଂ. ବିଣ.—ଜିତକ୍ରୋଧ (ଦେଖ)
Jita-manyu — Jita-krodha (See)

**ଜିତଶତ୍ରୁ**—ସଂ ବିଣ. (ବହୁବ୍ରୀହି; ଜିତ+ଶତ୍ରୁ)—ଶତ୍ରୁଜୟକାରୀ—
Jita-satru — One who has vanquished one's foes.

**ଜିତା**—ସଂ. ବିଣ. ସ୍ତ୍ରୀ (ଜି ଧାତୁ+କର୍ମ. ତ+ସ୍ତ୍ରୀ. ଆ)—ଯେଉଁ ସ୍ତ୍ରୀକୁ ପରାଜୟ କରି ଯାଇ ଅଛି; ପରାଜିତା—
Jitā
ଜେତା
जीता — Vanquished (female).

ଦେ. ବିଣ. (ସଂ. ଜେତା)—ଜୟୀ; ଜୟଯୁକ୍ତ—
Victorious; winning.

ଗୋବିନ୍ଦ ରଥର ସେ ଜିତା, ଲଭୁଛେ ଗୋପପୁର ଯାତ୍ରା ।
ଜଗନ୍ନାଥ. ଭାଗବତ ।

ଜିତ
जीत — ଦେ. ବି—ଜୟ, ଜିଣା—
Victory.

**ଜିତାଇ**—ଗ୍ରା. (ପ୍ରାଚୀନ ପଦ୍ୟ) ବି.—ଜୟ; ଜିଣା—
Jitāi — Victory.
ଜିତ
जीत

ଓଲଟ ପାଦ ଅସନ ଯାହାର,
ଯାତ୍ରା ମେଥିକ ଜିତାଇ ତାହାର । ପ୍ରାଚୀ. ପଦରେ ଗୀତ ।

**ଜିତା ତେ।ଇବା**—ଦେ. କ୍ରି.—'ଜିତିବା'ର ଣିଜନ୍ତ ରୂପ—
Jitā(te)ibā — ଜିଣାଇବା (ଦେଖ)
Jināibā (See)

**ଜିତାକ୍ଷର**—ସଂ. ବିଣ. ପୁଂ(ବହୁବ୍ରୀହି;ଜିତ+ଅକ୍ଷର)—ପଠନରେ ସୁପଟୁ—
Jitākshara — Skilled or expert in reading.
(ଜିତାକ୍ଷରା—ସ୍ତ୍ରୀ)

**ଜିତାତ୍ମତ୍ୱ**—ସଂ. ବି. (ଜିତାତ୍ମନ୍+ଭାବ. ତ୍ୱ)—ଜିତେନ୍ଦ୍ରିୟତା—
Jitātmatwa — Self-control.

**ଜିତାତ୍ମା**—ସଂ. ବିଣ. ପୁଂ. (ବହୁବ୍ରୀହି, ଜିତ+ଅତ୍ମନ୍)—ଯେ ମନକୁ ଜୟ କରି ଅଛି; ଜିତେନ୍ଦ୍ରିୟ; ସଂଯତେନ୍ଦ୍ରିୟ—
Jitātmā — Of subdued passions; self-controlling; stoical.

**ଜିତା ପଟ**—ଦେ. ବି.—ଜିଣା ପଟ (ଦେଖ) ।
Jitā pata — Jinā pata (See)

**ଜିତାପଣ**—ଦେ. ବି.—ଜୟଶୀଳତା—
Jitā-pana — Victoriousness.

କନ୍ଦର୍ପ ଦର୍ପହର ଦର୍ପଣ ଝଳ ଯାର ସୁନ୍ଦର ଜିତାପଣ ରନ୍ତ ।
ବଳଦେବ. ବତ୍ସହରଣଯୋଗ ।

**ଜିତାମିତ୍ର**—ସଂ. ବିଣ. ପୁଂ. (ବହୁବ୍ରୀହି; ଜିତ+ଅମିତ୍ର)—
Jitāmitra — ୧ । ଜିତଶତ୍ରୁ; ଯେ ଶତ୍ରୁଙ୍କୁ ପରାଜୟ କରିଅଛି—
(ଜିତାମିତ୍ରା—ସ୍ତ୍ରୀ) One who has subdued his enemies.
୨ । ବିଷ୍ଣୁ—2. The God Bishnu.

**ଜିତାରି**—ସଂ. ବିଣ. ପୁଂ—ଜିତାମିତ୍ର (ଦେଖ)
Jitāri — Jitāmitra (See)
ସଂ. ବି.—ବୁଦ୍ଧଦେବଙ୍କର ଏକ ନାମ (ହି. ଶବ୍ଦସାଗର)
A name of the Buddha

**ଜିତାଷ୍ଟମୀ**—ସଂ. ବି. ସ୍ତ୍ରୀ—ଆଶ୍ୱିନମାସର କୃଷ୍ଣପକ୍ଷର ଅଷ୍ଟମୀ; ଜୀମୂତାଷ୍ଟମୀ; ଦୁତିବାହନ ପୂଜା—
Jitāshtamī — The 8th day of the dark fortnight of the month of Āswina.

[ ଦ୍ର—ଏ ଦିନ ଶରତ୍‌କାଳୀନ ଦୁର୍ଗୋତ୍ସବ ଆରମ୍ଭ ହୁଏ; ଦୁତିବାହନ ବା ଜୀମୂତବାହନ ପୂଜା ମଧ୍ୟ ହୁଏ । ଏହାର ଅନ୍ୟ ନାମ ମୂଳାଷ୍ଟମୀ । ଏଦିନ ପୁତ୍ରବତୀ କାମିନୀମାନେ ସନ୍ତାନଙ୍କ ମଙ୍ଗଳ କାମନାରେ ଗଳାରେ ସୂତ୍ରି ବାନ୍ଧନ୍ତି । ]

**ଜିତାହବ**—ସଂ. ବିଣ. (ବହୁବ୍ରୀହି; ଜିତ+ଆହବ)—ଯୁଦ୍ଧରେ ଜୟୀ—
Jitāhaba — Victorious in war.

**ଜିତାହାର**—ସଂ. ବିଣ. ପୁଂ. (ବହୁବ୍ରୀହି; ଜିତ+ଆହାର)—
Jitāhāra — ୧ । ଖାଦ୍ୟବିଷୟରେ ମିତାଚାରୀ; ସଂଯତାହାରୀ—
(ଜିତାହାରା—ସ୍ତ୍ରୀ) 1. Abstinent; abstemious.
୨ । ଯେ କ୍ଷୁଧାକୁ ଜୟ କରିଅଛି—
2. Of subdued appetite.

**ଜିତି**—ସଂ. ବି. (ଜି ଧାତୁ+ଭାବ. ତି)—ବିଜୟ; ଜୟଲାଭ—
Jiti — Victory.

**ଜିତିବା**—ଦେ. କ୍ରି. ( ସଂ. ଜି ଧାତୁ )—
Jitibā — ୧ । ଜିଣିବା; ଜୟଲାଭ କରିବା—
ଜିତା
जितना — 1. To win; to gain victory.

ଯୁଦ୍ଧ ଯେ ଜିତନ୍ତ ହୁଅନ୍ତେ
ଭବତ ରୋଦେ ତବେ ହେବେ । ଜଗନ୍ନାଥ. ଭାଗବତ ।

୨ । ପରାସ୍ତ କରିବା—
2. To conquer; to overcome.
୩ । ଟପିବା; ବଳିଯିବା; ଅତିକ୍ରମ କରିବା—
3 To surpass; to exceed.
(ଯଥା—ଭାରତରେ ବର୍ତ୍ତମାନ ଅଇନ୍ ଅନୁଯାୟୀ ବାଳିକା ୧୨ ବର୍ଷକୁ ଜିତିଲେ ସହବାସ ପାଇଁ ସମ୍ମତି ଦେଇ ପାରେ—ଉତ୍କଳସେବକ ।)
୪ । ଅମୁକଠାରୁ ଉତ୍କୃଷ୍ଟ ହେବା—4. To excel.

**ଜିତୁମ**—ସଂ. ବି. (ଗ୍ରୀକ୍ ଭାଷା; ମୂଳ. ସଂ. ଯୁଗ୍ମ) (ଜ୍ୟୋତିଷ)—
Jituma — ମିଥୁନରାଶି—The Gemini (a sign of the zodiac) (Apte).

[ ଦ୍ର—ଜ୍ୟୋତିଷର ଅନେକ ଗୁଡ଼ିଏ ଶବ୍ଦ ଗ୍ରୀକ୍‌ଭାଷାରୁ ସଂସ୍କୃତକୁ ଆସିଅଛି । ]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ି | ଓ | ର୍,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ସ | ଃଅ | ଣ୍ଣ |
| ୨ | ଈ | ଊ | ଋ | ଌ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଙ୍କ | ନ୍ତ |

**ଜିତେନ୍ଦ୍ରିୟ**—ସଂ. ବିଣ. ପୁଂ. (ବହୁବ୍ରୀହି; ଜିତ+ଇନ୍ଦ୍ରିୟ)—
Jitendriya ଯେ କାମକ୍ରୋଧାଦିରିପୁମାନଙ୍କୁ ବଶୀଭୂତ କରିଅଛି—
(ଜିତେନ୍ଦ୍ରିୟା—ସ୍ତ୍ରୀ) Continent; self-controlling; of
ଜିତେନ୍ଦ୍ରିୟତା } subdued passions; one who has his
ଜିତେନ୍ଦ୍ରିୟତ୍ୱ } ବି passions under control; stoical.
[ ଦ୍ର—ଯେଉଁ ବ୍ୟକ୍ତିର କୌଣସି ବିଷୟ ଦେଖିଲେ, ଶୁଣିଲେ, ଖାଇଲେ, ଛୁଇଁଲେ ବା ଶୁଙ୍ଘିଲେ ହର୍ଷ ବା ବିଷାଦ ହୁଏ ନାହିଁ, ମନୁସଂହିତା ଅନୁସାରେ ତାଙ୍କୁ ଜିତେନ୍ଦ୍ରିୟ ବୋଲାଯାଏ । ]
ସଂ. ବି—ବ୍ରହ୍ମଚାରୀ; ତପସ୍ୱୀ—An ascetic.

**ଜିତ୍ତମ**—ସଂ. ବି—୧ । ଜିତୁମ (ଦେଖ)
Jittama 1. Jituma (See)
୨ । ଜୟଶୀଳ (ପ୍ରକୃତିବାଦ)—Victorious.

**ଜିତ୍ୱର**—ସଂ. ବି. (ଜି ଧାତୁ+ଶୀଳାର୍ଥରେ ବର; ତ ଆଗମ)—
Jitwara ଜୟଶୀଳ; ବିଜୟୀ—Victorious.
(ଜିତ୍ୱରୀ; ଜିତ୍ୱରୀ—ସ୍ତ୍ରୀ)

**ଜିତ୍ୱରୀ**—ସଂ. ବି. ସ୍ତ୍ରୀ. (ଜିତ୍ୱର+ସ୍ତ୍ରୀ. ଈ)—ବାରାଣସୀ; କାଶୀ—
Jitwarī Benares.
ସଂ. ବିଣ. ସ୍ତ୍ରୀ—ଜିତ୍ୱରର ସ୍ତ୍ରୀଲିଙ୍ଗ—
Feminine of Jitwara

**ଜିତ୍ମ**—ସଂ. ବି—ଜିତୁମ (ଦେଖ)
Jitma Jituma (See)

**ଜିତ୍ୟ**—ସଂ. ବିଣ. (ଜି ଧାତୁ+କର୍ମ. ଯ)—ଜେୟ; ଜୟଯୋଗ୍ୟ—
Jitya Conquerable; fit to be subdued.
ସଂ. ବି—ବଡ଼ ଲଙ୍ଗଳ (ହି ଶବ୍ଦସାଗର)—
A big plough.

**ଜିତ୍ୟା**—ସଂ. ବି. ସ୍ତ୍ରୀ (ଜିତ୍ୟ+ସ୍ତ୍ରୀ. ଆ)—
Jityā ୧ । ଲଙ୍ଗଳର ଫାଳ; ଲଙ୍ଗଳଲୁହା—
1. Plough-share.
୨ । ହେଙ୍ଗୁ (ହି· ଶବ୍ଦସାଗର)—2. Asafœtida.

**ଜିଦ୍**—ବୈଦେ. ବି. (ଆ)—୧ । ଝୋଁକ୍; ଜିଗର—
Jid 1. Zid; obstinacy.
জেদ ୨ । ନିର୍ବନ୍ଧ; ହଠ—2 Importunity; pertinacity.
**जिद्; हठ** ୩ । ଆଗ୍ରହାତିଶଯ୍ୟ—3. Insistence.
୪ । ଖେଳରେ ରଖାଯିବା ବାଜି; ଜିଦି—
4. Wager in a game of hazards.
[ ଦ୍ର—ଏ ଶବ୍ଦ ଇଂରାଜିଭାଷାରେ ମଧ୍ୟ ଚଳୁଅଛି । ]

**ଜିଦ୍ କରିବା**—ଦେ. କ୍ରି—କୌଣସି ବିଷୟ ପାଇଁ ଜିଗର କରିବା; ହଠ
Jid karibā କରିବା—To importune; to insist on a
জেদকরা thing,
**जिद् पकड़ना; जिदियाना**
(ଜିଦ୍ ଧରିବା—ଅନ୍ୟରୂପ)

**ଜିଦ୍‌ଖୋର୍**—ବୈଦେ· ବିଣ. (ଫା)—ଏକଗୁଆଁ; ଜିଗରିଆ; ଯେ ଆପଣ
Jid-khor କଥା ବଜାୟ ରଖିବା ପାଇଁ ଅନ୍ୟର ଉପଦେଶ ବା
জেদখোর; জেদ্‌বাজ ଯୁକ୍ତିକୁ ମାନେ ନାହିଁ—Headstrong;
**जिद्खोर; जिद्बाज** perverse; importunate; pertinacious.
(ଜିଦେଇ, ଜିଦ୍‌ଖୋରଣୀ—ସ୍ତ୍ରୀ)
(ଜିଦ୍‌ଖୋରୀ—ବି)

**ଜିଦ୍‌ଖୋରିଆ**—ଦେ. ବିଣ. ( ଫା. ଜିଦ୍‌ଖୋର୍ )—
Jid-khoriā ଜିଦ୍‌ଖୋର୍ (ଦେଖ)
Jid-khor (See)

**ଜିଦ୍‌ଦାର୍**—ବୈଦେ. ବିଣ. (ଫା)—ଜିଦ୍‌ଖୋର୍ (ଦେଖ)
Jid-dār Jid-khor (See)
(ଜିଦ୍‌ଦାରୀ—ବି)

**ଜିଦ୍‌ବାଜ୍**—ବୈଦେ. ବିଣ. (ଫା)—ଜିଦ୍‌ଖୋର୍ (ଦେଖ)
Jid-bāj Jid-khor (See)

**ଜିଦ୍ ମାରିବା**—ଦେ. କ୍ରି—ଜିଦି ମାରିବା (ଦେଖ)
Jid māribā Jidi māribā (See)

**ଜିଦାଜିଦ୍**—ଦେ. ବି ଓ ବିଣ—ଜିଦାଜିଦି (ଦେଖ)
Jidājid Jidājidi (See)

**ଜିଦାଜିଦି**—ଦେ. ବି—୧ । ଦୁଇଜଣ ବ୍ୟକ୍ତିଙ୍କର ପରସ୍ପର କଥା ରକ୍ଷା
Jidājidi କରିବା ପାଇଁ ଜିଦି ମରାମରି ହେବା—
জেদাজেদি 1. Betting; hazarding for each other's
**हाड़ाहोड़ी** proposition (e. g. in gambling); mutual staking.
୨ । ପ୍ରତିଯୋଗିତା—
2. Rivalry; emulation.
ଦେ. ବିଣ—୧ । ପ୍ରତିଯୋଗୀ—1. Emulating.
୨ । ଜିଦି ମରାମରି ହେବା ବ୍ୟକ୍ତି—
2. Betting; staking mutually.

**ଜିଦି (ଇତ୍ୟାଦି)**—ବୈଦେ. ବି—ଜିଦ୍ ଇତ୍ୟାଦି ( ଦେଖ )
Jidi (etc) Jid etc. ( See )

**ଜିଦିଆ**—ଦେ. ବିଣ. (ଫା. ଜିଦ୍ଦୀ)—ଜିଦ୍‌ଖୋର (ଦେଖ)
Jidiā Jid-khor (See)
জেদ্দী
**जिद्दि**

**ଜିଦି ମରାମରି**—ଦେ. ବି ଓ ବିଣ—ଜିଦାଜିଦି (ଦେଖ)
Jidi marāmari Jidājidi (See)
୨ । ପରସ୍ପର ପ୍ରତି ଆସ୍ପର୍ଦ୍ଧା ପ୍ରଦର୍ଶନପୂର୍ବକ ପ୍ରତିଯୋଗିତା କରିବା—2. Emulating.

**ଜିଦିସ**—ଦେ. ବି· ( ଫା. ଜୀନ୍‌ପୋଶ୍ )—
Jidisa ଘୋଡ଼ାର ସାଜବିଶେଷ; ଜିନ ଉପରେ ପକାଯିବା
**जीनपोष** ଆସ୍ତରଣ—A kind of saddle; a covering for the saddle.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଟିଂ'ନ ପାଇଲେ 'ଆଣ୍ଟି' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ୍' ଦେଖିବେ ।

ସାଜିଲେ ସର୍ବ ସଓ୍ୱାର ଜିନ ଜିଦସ ଲାଲ ମେଖ ଦଉଡ଼ ଗୁରୁଦମା କରୁଥିଲ ।
ବ୍ରଜନାଥ- ସମରତରଙ୍ଗ ।

**ଜିନ୍**— ବୈଦେ. ବି. ( ଫା. ଜୀନ୍ )—
Jin ୧ । ଘୋଡ଼ା ପିଠିରେ ବସିବା ପାଇଁ ପକାଇବା ଚମଁସନ;
ଜିନ ଅଶ୍ୱ ପୃଷ୍ଠର ଚମଁସନ—1. Saddle.
जीन
୨ । ( ଆ. ଜୀନ୍ ) ଭୂତ—2. Spirit; ghost.
୩ । ପ୍ରେତ; ଦୈତ୍ୟ—3 Demon; goblin
୪ । ( ଇଂ. Jean, ଯୀନ) ମୋଟା ଓ ଘନବୁଣା ସୂତା ଲୁଗା-
4. A thick woven cotton cloth; twilled cotton cloth.
[ ଦ୍ର—ଏହି ଲୁଗା ବୁଣିବା ପାଇଁ ୪୮ ଟା ବଅସୂତା ଓ ଝାଁପ ଆବଶ୍ୟକ । ]

**ଜିନ୍ ଉଦ୍ଧାରଣ**—ଦେ. ବି—ମୁସଲମାନ ରାଜାଙ୍କ ଅମଳରେ ପ୍ରଦତ୍ତ
Jin uddhāraṇa ନିଷ୍କର ଭୂବୃତ୍ତିବିଶେଷ—
A class of revenue-free tenure created during the Mahomedan rule.
[ ଦ୍ର—ସମ୍ଭବତଃ ରାଜପରିବାରରେ କାହାକୁ ଲାଗିଥିବା ଜିନ ବା ଭୂତକୁ ଛଡ଼ାଇଥିବା ଯୋଗୁଁ ଗୁଣିଆକୁ ପୁରସ୍କାର ସ୍ୱରୂପ ଏ ଜମି ଦିଆ ଯାଇଥିଲା । ]

**ଜିନ୍‌କର୍**—ବୈଦେ. ବି. ( ଫା. ଜୀନ୍‌ଗର୍ )—ଜିନ୍‌ଗର୍ ( ଦେଖ )
Jin-kar Jin-gar ( See )

**ଜିନ୍‌ଗର୍**—ବୈଦେ. ବି. ( ଫା. ଜୀନ୍‌ଗର୍ )—
Jin-gar ଘୋଡ଼ାର ଜିନ୍ ତିଆରି କରିବା ଜାତିବିଶେଷ—
A caste which manufactures saddlery from leather.

**ଜିନ୍‌ଦିଗ୍** (ଇତ୍ୟାଦି)—ବୈଦେ. ବି ( ଫା. ଜିନ୍‌ଦ୍‌ଗୀ )—
Jin-dig (etc) ଜିନ୍‌ଦ୍‌ଗୀ ଇତ୍ୟାଦି ( ଦେଖ )
Jind-gi etc. ( See )

ହଜୁରଙ୍କ ଖାନା ପର୍ଯ୍ୟନ୍ତ ସେ ଜନେ ଖାଉଛି
ଜିନ୍‌ଦିଗ୍ ଭରି ସେ ଇଅଦ କରୁଥିବ । ଫକୀରମୋହନ- ଛ ମାଣ ଅଠଗୁଣ୍ଠ ।

**ଜିନ୍‌ପୋଶ୍**—ବୈଦେ. ବି. ( ଫା )—ଘୋଡ଼ାର ଜିନ ଉପରେ ପକାଯିବା
Jin-posh ଆସ୍ତରଣ—Saddle-cloth; a covering for
ଜିନପୋଷ the saddle.
जीनपोश

**ଜିନ୍‌ବାଡ଼ି**—ଦେ. ବି—କାଠରେ ଛିଦ୍ର କରିବା ପାଇଁ ବ୍ୟବହୃତ ଉଅଁରକୁ
Jin-bārḍi ବୁଲାଇବା ସକାଶେ ଦଉଡ଼ି ଲାଗିଥିବା ଯଷ୍ଟି; କମାଣି—
ଜିନବାଡ଼ି A bow attached with a string to bore holes into wood with the gimlet.

**ଜିନ୍‌ସବାର୍**—ବୈଦେ. ବିଣ. ( ଫା. ଜୀନ୍+ସଓ୍ୱାର୍=ଆରୋହୀ )—
Jin-sabār ଘୋଡ଼ା ପିଠିରେ ଜିନ୍ ପକାଇ ଘୋଡ଼ା ଚଢ଼ିବା
ଜିନସବାର ( ବ୍ୟକ୍ତି )—( a person ) Riding on a
जीनसवार saddled horse.
ଜିନ୍‌ସଓ୍ୱାର, ଜିନ୍‌ସଉଆର } ଅନ୍ୟରୂପ

**ଜିନ୍‌ସବାରୀ**—ବୈଦେ. ବିଣ. (ଫା. ଜୀନ୍+ସଓ୍ୱାର୍=ଯାନାରୋହଣ)—
Jin-sabāri ଚଢ଼ିବାର ଯୋଗ୍ୟ ( ଘୋଡ଼ା ); ( ଅର୍ଥାତ୍
ଜିନସବାରୀ ଯେଉଁ ଘୋଡ଼ା ଉପରେ ମନୁଷ୍ୟ ଚଢ଼ନ୍ତି
जीनसवारी ଏବଂ ଯେ ବଗିରେ ଲାଗେ ନାହିଁ )—
ଜିନ୍‌ସଓ୍ୱାରୀ, ଜିନ୍‌ସଉଆରୀ } ଅନ୍ୟରୂପ ( a horse ) Used for riding only; going in the saddle only.
ବି—ଘୋଡ଼ା ଉପରେ ଜିନ୍ ପକାଇ ଚଢ଼ିବା—.
Riding on a saddled horse.

**ଜିନ**—ସଂ. ବି. ( ଜି ଧାତୁ = ଜୟ କରିବା; ଉଣାଦି ପ୍ରଭାବରେ ଜଗତ ଜୟ
Jina କରିବା + କର୍ତ୍ତୃ. ନ)—
୧ । ବୁଦ୍ଧଦେବ—1. Buddha.
୨ । ବିଷ୍ଣୁ—2. Bishṇu.
୩ । ବୌଦ୍ଧମତ ପ୍ରଚାରକ ମୁନି –
3. A Buddhist missionary.
୪ । ଅର୍ହତ; ବୌଦ୍ଧ ବା ଜୈନ ଋଷି—
4. A Buddhist or Jaina saint.
ସଂ. ବିଣ—୧ । ଜୟଶୀଳ—
1. Victorious; triumphant.
୨ । ଅତି ବୃଦ୍ଧ—2. Very old.

**ଜିନତ୍**—ବୈଦେ. ବି. ( ଫା )—ଶୋଭା; ସୌନ୍ଦର୍ଯ୍ୟ—
Jinat Beauty; grace.
शोभा
जनत

**ଜିନା**—ପ୍ରାଦେ. ( ସିଂହଭୂମ ) ଅ. ( ଫା ଜିନ୍ଦା = ଜୀବିତ; ଭୁଲ ହି.
Jinā ଜିନ୍ଦା )—
୧ । ଜୀଇଁ ଥାଉଁ ଥାଉଁ—1. While living.
୨ । ଜୀବିତକାଳ ମଧ୍ୟରେ—
2. During one's lifetime.

**ଜିନାକାରୀ**—ବୈଦେ. ବି. ପୁଂ. ( ଫା. ଜୀନା = ବ୍ୟଭିଚାର )—ପରସ୍ତ୍ରୀ-
Jinākāri ଗମନ; ବ୍ୟଭିଚାର—Adultery.
ଜିନାକାରୀ
जीनाकारी
( ଜିନାଖୋରି; ଜିନାକାରି—ଅନ୍ୟରୂପ )

**ଜିନିଆ**—ବୈଦେ. ବି. ( ଇଂ ଜିନିଆ; Jinnia )—ବିଦେଶୀ ପୁଷ୍ପ-
Jiniā ଶାକବିଶେଷ – Zinnia Elegans.
ଜିନିୟା [ ଦ୍ର—ଏଗଛ ବର୍ଷେ ମାତ୍ର ବଞ୍ଚି ରହେ । ଏହାର ଫୁଲ
जिनिया ଗୁଲ୍ମ ବା ଗେଣ୍ଡୁ ଫୁଲ ପରି । ଆଧୁନିକ ସଉଖୀନ୍‌ମାନଙ୍କ ଉଦ୍ୟାନରେ ଏହା ଦେଖାଯାଏ । ]

**ଜିନିକି** ( ଇତ୍ୟାଦି )—ବୈଦେ. ବି. ( ଫା. ଜିନ୍‌ଦ୍‌ଗୀ )—
Jiniki ( etc ) ଜିନ୍ଦ୍‌କି ଇତ୍ୟାଦି ( ଦେଖ )
( ଜିନଗି—ଅନ୍ୟରୂପ ) Jind-ki etc ( See )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଞ୍ଚ | ଇୟ | ଉଅ | ଣ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ | ଯ | ସ | ଚ୍ୟ | ଇଅ | ଊ | ନ୍ |

**ଜିନପୋକ**—ପ୍ରାଦେ. ( ମେଦନୀପୁର ) ବି. ( ତୁଳ. ବଂ. ଜୋନାକି )—
Jini-poka
ଖଦ୍ୟୋତ; ଜୁଳୁଜୁଳିଆ ପୋକ—Fire-fly.

**ଜିନିସ**—ବୈଦେ. ବି. ( ଫା. ଜିନ୍‌ସ୍; ଜିଂସ୍ )—ବସ୍ତୁ; ଦ୍ରବ୍ୟ; ପଦାର୍ଥ; ଚଳନ—Thing; article.
Jinisa
জিনিস
**जिनिस, जिंस**

**ଜିନିସପତ୍ର**—ଦେ. ବି. ( ବହୁବଚନ; ଫା. ଜିନ୍‌ସ୍+ଅନର୍ଥକ ସହଚର ପତ୍ର; ତୁଳନୀୟ; କାଗଜପତ୍ର )—
Jinisa-patra
জিনিসপত্র
**माल, चीजबस्त**
୧ । ଦ୍ରବ୍ୟନିଚୟ—1. Goods; things.
୨ । ପଣ୍ୟଦ୍ରବ୍ୟସମୂହ—2. Merchandise.
( ଜିନସ ପତର—ଅନ୍ୟରୂପ )
୩ । ପର୍ଯ୍ୟଟକ ବା ଯାତ୍ରୀଙ୍କ ସଙ୍ଗେ ଥିବା ପଦାର୍ଥସମୂହ—3. Articles and luggages; traveller's baggage.
୪ । ଘରର ଉପକରଣସମୂହ; ଘରଚରଣୀ ବସ୍ତୁନିଚୟ—4. Furniture of a house; house-hold articles.

**ଜିନିସପାତି**—ଦେ. ବି—ଜିନିସପତ୍ର ( ଦେଖ )
Jinisa-pāti
Jinisapatra ( See )

**ଜିନିସାତ୍**—ବୈଦେ. ବି. ( ବହୁବଚନ ) ( ଫା. ଜିନ୍‌ସାତ୍ )—
Jinisāt
ଜିନିସପତ୍ର ( ଦେଖ )—Jinisapatra ( See )

ବିଲାତ ଜିନିସାତ୍ ସହିତ ନୂତ ନାମଧେୟ ପଦାର୍ଥବିଶେଷ
ଏ ଦେଶକୁ ନୂଆ ଆମଦାନି ହୋଇଅଛି—ଫକୀରମୋହନ, ଛମାଣ ଆଠଗୁଣ୍ଠ

**ଜିନ୍ଦକି (ଇତ୍ୟାଦି)**—ବୈଦେ. ବି (ଫା)—ଜିନ୍ଦଗି ଇତ୍ୟାଦି (ଦେଖ)
Jind-ki (etc)
Jind-gi etc (See).

**ଜିନ୍ଦଗି**—ବୈଦେ. ବି. (ଫା. ଜିନ୍ଦ୍‌ଗୀ)—୧ । ଜୀବନ—1. Life.
Jind-gi
जीवन; जीन्दगि
**जिंदगी**
୨ । ଜୀବିତକାଳ—1. Lifetime.
(ଜିନ୍ଦ୍‌କି, ଜିନ୍ଦକି, ଜିନ୍ଦିଗି—ଅନ୍ୟରୂପ)

**ଜିନ୍ଦଗିଭର୍**—ବୈଦେ. ଅ.(ଫା. ଜିନ୍ଦ୍‌ଗୀଭର୍)—୧ । ଜୀବିତକାଳ ମଧ୍ୟରେ—1. During the lifetime.
Jindgi-bhar
জিন্দগিভর
**जिन्दगीभर**
୨ । ଜୀବିତଥିବା ପର୍ଯ୍ୟନ୍ତ—2. As long as one lives; throughout one's life; for life.

**ଜିନ୍ଦଗିଭରି**—ବୈଦେ. ଅ. (ଫା)—ଜିନ୍ଦ୍‌କିଭର (ଦେଖ)
Jindgi-bhari
Jindki-bhar (See)

**ଜିନ୍ଦିକ୍ (ଇତ୍ୟାଦି)**—ବୈଦେ. ବି. (ଫା. ଜିନ୍ଦ୍‌ଗୀ)—
Jindik (etc)
ଜିନ୍ଦଗି ଇତ୍ୟାଦି (ଦେଖ)
(ଜିନ୍ଦିକ, ଜିନ୍ଦଗ୍, ଜିନ୍ଦିଗି—ଅନ୍ୟରୂପ) Jind-gi etc (See)

**ଜିବ (ଇତ୍ୟାଦି)**—ଗ୍ରା. ବି (ସଂ. ଜିହ୍ୱା)—ଜିଭ ଇତ୍ୟାଦି (ଦେଖ)
Jiba (etc)
Jibha etc (See)

**ଜିବାଜିବ**—ସଂ. ବି—ଚକୋର ପକ୍ଷୀ (ଦ୍ର. ଶବ୍ଦସାଗର) (ଦେଖ)
Jibājiba
Chakora bird (See)

**ଜିବି**—ଦେ. ବି—ଜିଭ (ଦେଖ)
Jibi
Jibhi (See)

**ଜିବିଆ**—ଦେ. ବି. (ସଂ. ଜିହ୍ୱା)—ଜିହ୍ୱା ଆକୃତିର ଗଜା ବା ମିଷ୍ଟାନ୍ନ ବିଶେଷ—A kind of sweetmeat ( consisting of thin strips) fried in ghee.
Jibiā
জিবাগজা
**जीभा**

**ଜିବେଇ**—ଦେ. ବି—ଜିବିଆ (ଦେଖ)
Jibei
Jibiā (See)

**ଜିବ୍ରା**—ବୈଦେ. ବି. (ଅଫ୍ରିକା ଦେଶଭାଷାରୁ ଆଗତ ଶବ୍ଦ; ଇଂ. ଜେବ୍ରା)—
Jibrā
ଘୋଟକ ଓ ଗର୍ଦ୍ଦଭଆକୃତିବିଶିଷ୍ଟ ବନ୍ୟଜନ୍ତୁବିଶେଷ—The Zebra.
জেব্রা
**जीब्रा**
[ ଦ୍ର—ଏହା ଆଫ୍ରିକାରେ ଦେଖାଯାଏ । ଏହାର ଦୁଇଦିଆ ଦେହରେ କଳା ଡୋରି ବା ପଟା ପଡ଼ିଥାଏ । ଏହା ଗୋଟିଏ ଦ୍ରୁତଗାମୀ ପଶୁ । ]

**ଜିଭ୍**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଜିହ୍ୱା)—ଜିଭ—
Jibh
The tongue.

**ଜିଭ୍‌କୁରା**—ପ୍ରାଦେ. (ସମ୍ବଲପୁର) ବି—ଜିଭଛେଲା (ଦେଖ)
Jibh-kurā
Jibha-chhelā (See)

**ଜିଭ**—ଦେ. ବି. (ସଂ. ଜିହ୍ୱା)—୧ । ଜିହ୍ୱା—1. The tongue.
Jibha
୨ । କଲମ ଓ ନିବ୍ ଆଦିର ଜିହ୍ୱାଆକାରର ଅଗ୍ରଭାଗ—2 Tongue-like tip of a nib or pen.
ସଂ. ପର୍ଯ୍ୟାୟ—
ଜିହ୍ୱା; ରସଜ୍ଞା; ରସନା; ରସାଳ; ରସିକା;
ସ୍ୱାଦୁସ୍ରବା; ରସଲା; ରସ୍‌ନିକା; ଲଲନା
জিব; জিভ
**जीभ**

**ଜିଭଅଗରେ ଥିବା**—ଦେ. କ୍ରି. ୧ । (କୌଣସି ବିଷୟ ବା ଗ୍ରନ୍ଥ )—
Jibha-agare thibā
**जिह्वाग्रहीना**
କୌଣସି ବ୍ୟକ୍ତିର ଉତ୍ତମରୂପେ କଣ୍ଠସ୍ଥ ହୋଇଥିବା—1. (a matter) To have been fully mastered or committed to memory (so as to be recited whenever required); to be at the tip of one's tongue.
(ଯଥା—ସେ ବହିଟାଯାକ ମୋ ଜିଭ ଅଗରେ ଅଛି ।)
୨ । (କୌଣସି ବିଷୟ ବା ନାମ)—ଖୁବ ଜଣା ଥାଇ ଯୁଦ୍ଧା କଥା ପଡ଼ିଲା ବେଳେ ସ୍ମୃତିପଥରେ ନ ପଡ଼ିବା ବା ନ ପଇଟିବା—2. (a matter or a name) To be very familiar to a person but which he is unable to recall when it is required to be mentioned.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ' ଦେଖିବେ।

(ଯଥା — ଅମୁକ ଲୋକର ନାମ ମୋ ଜିଭ ଅଗରେ ଅଛି, କିନ୍ତୁ ବର୍ତ୍ତମାନ ପଡ଼ୁନାହିଁ ।)

**ଜିଭ କାଢ଼ିବା** — ଦେ. କ୍ରି—୧ । ମୁଖଗହ୍ୱରରୁ ଜିହ୍ୱାକୁ ବାହାରକୁ ବାହାର କରିବା—1. To draw out one's tongue.
Jibha kāṟḏhibā
ଜିଭ କାଢ଼୍ନା
**जीभ निकालना**
୨ । (ଲକ୍ଷଣାର୍ଥ) ଅଚେତ ହେବା—2. (figurative) To become senseless.

**ଜିଭ କାମୁଡ଼ିବା** — ଦେ. କ୍ରି—୧ । ଅଜାଣତରେ ଜିଭର ଅଗକୁ ଦାନ୍ତରେ କ୍ଷତ କରିବା—1. To bite the tip of the tongue unintentionally with the teeth.
Jibha kāmuṟḏibā
দাঁতে; জিবকাটা
**दाँतसे जीभकाटना**
୨ । ଲଜ୍ଜା ବା ବସ୍ମୟରେ କିଂକର୍ତ୍ତବ୍ୟବିମୂଢ଼ ବା ମ୍ରିୟମାଣ ହେବା—2. To bite one's tongue as a sign of shame or astonishment.

**ଜିଭ ଚିରିବା** — ଦେ. କ୍ରି—ଦାନ୍ତକାଠିର ଫାଳ ବା ବାଉଁଶ ବା ଧାତୁର ପତଳା ପାତଦ୍ୱାରା ଜିଭରୁ ଛଡ଼ଆ ଚାଞ୍ଛି ସଫା କରିବା—To scrape off dirt from the tongue while brushing the teeth.
Jibha chiribā
জিব ছোলা
**जीभछीलना**

**ଜିଭଛେଲା** — ଦେ. ବି—୧ । ଯେଉଁ ସରୁ ଧାତୁର ପାତଦ୍ୱାରା ଦାନ୍ତ ଘଷିବା ସମୟରେ ଜିଭରୁ ଛଡ଼ଆ ଚାଞ୍ଛି ବାହାର କରାଯାଏ—1. Tongue-scraper.
Jibha-chhelā
জিবছোলা
**जीभ छीला; जीभी**
୨ । ଦାନ୍ତକାଠିର ଫାଳ ବା ସରୁ ପାତଆ ବା ଜିଭ (ଜିଭଚିର୍—ଅନ୍ୟରୂପ) ଛେଲାଦ୍ୱାରା ଜିଭରୁ ଛଡ଼ଆ ସଫା କରିବା କର୍ମ—2. Scraping off of the dirt from the tongue.

**ଜିଭ ଛେଲିବା** — ଦେ. କ୍ରି—ଜିଭ ଚିରିବା (ଦେଖ)
Jibha chhelibā — Jibha chiribā (See)

**ଜିଭନାଲଗ୍** — ଗ୍ରା. ବି. (ସ. ଜିହ୍ୱାଲାଳସା)— ଖାଦ୍ୟପ୍ରତି ଲାଳସା; ସ୍ୱାଦଲୋଲୁପତା—Hankering after dainties.
Jibha-nālachā
জিভলালচ
**जीबलालच; चटोरपन**
ଗ୍ରା. ବିଣ. ପୁଂ. (ସ. ଜିହ୍ୱଲ)— ଜିଭଲାଲଚେ ଖାଦ୍ୟ ପ୍ରତି ଅତିରିକ୍ତ ଲାଳସାଯୁକ୍ତ; ସ୍ୱାଦଲୋଲୁପ—
**चटोरा; ३जमला** Hankering after dainties or particular articles of food.
(ଜିଭନାଲସ୍—ଅନ୍ୟରୂପ)

**ଜିଭନାଲଚଆ** — ଦେ. ବିଣ. ପୁଂ—ଜିଭନାଲଗ୍ (ଦେଖ)
Jibha-nālachiā — Jibha-nālachā (See)
(ଜିଭନାଲଚଆ—ଅନ୍ୟରୂପ)
(ଜିଭନାଲଚେଇ; ଜିଭନାଲଚେଇ—ସ୍ତ୍ରୀ)

**ଜିଭରେ ଘା** — ଦେ. ବି.—(ଲକ୍ଷଣାର୍ଥ) ୧ । କଥା କହି ନ ପାରିବା—1. Inability to speak or use the tongue.
Jibhare ghā
**जिभे घा**

ଦୁଇଟିଆ ବେଲଟ୍ ଜଳରେ ଘା, ଶିର ପ୍ରତ ବେଲଟ୍ ପୁଅର ମା—ଠଗ ।

୨ । ଜିହ୍ୱାରେ ହୋଇଥିବା କ୍ଷତ; ଭୁଣ୍ଡଘା—
2. Sores on the tongue.

**ଜିଭରେ ହାଡ଼ ହେବା** — ଦେ. ବି.— ମିଥ୍ୟା କଥା କହିବା ପାଇଁ ସାହସ ହେବା—Having the courage to tell a lie.
Jibhare hāṟḏa hebā
(ଯଥା—ମତେ ମିଥ୍ୟାବାଦୀ ବୋଲି କହିବାକୁ କାହା ଜିଭରେ ହାଡ଼ ହେଲାଣି ?)

**ଜିଭ ଲଡ଼ବଡ଼** — ଦେ. ବି.—ପେଟୁପଣ—Gluttony.
Jibha laṟḏabaṟḏa
লালচা
**चटोरपन**

**ଜିଭ ଲଡ଼ବଡ଼ ହେବା** — ଦେ. ବି—୧ । କୌଣସି ଗୋପନୀୟ ବିଷୟ ପ୍ରକାଶ କରିବା ନିମନ୍ତେ ଅଥୟ ହେବା—1. Being impatient to divulge or speak out a secret or a forbidden thing.
Jibha laṟḏabaṟḏa hebā
জিব চোকান
**जिभ हीलना**
୨ । କୌଣସି ପଦାର୍ଥ ଖାଇବା ନିମନ୍ତେ ଅତ୍ୟନ୍ତ ଲୋଲୁପ ବା ଲାଳାୟିତ ହେବା—2. Hankering after a dainty food.

**ଜିଭ ଲଡ଼ବଡ଼ିଆ** - ଦେ. ବି. ପୁଂ. ଓ ସ୍ତ୍ରୀ—ପେଟୁପଣ—Gluttony.
Jibha laṟḏabaṟḏiā
**चटोरपन**
(ଜିଭ ଲୁଲୁବୁଲିଆ - ଅନ୍ୟରୂପ) ଦେ ବିଣ.—ଖାଦ୍ୟ ପ୍ରତି ଲୋଲୁପ ବା ଲାଳାୟିତ—Hankering after dainty food; gluttonous.
লালচে
**चटोरा**
(ଜିଭ ଲଡ଼ବଡ଼ୀ, ଜିଭ ଲଡ଼ବଡ଼େଇ—ସ୍ତ୍ରୀଲିଙ୍ଗ)

**ଜିଭ ଲଡ଼ବଡ଼ିଆ ଖୋଇ** — ଦେ. ବି.—ଅତିରିକ୍ତ ଭୋଜନଲାଳସା; ଆହାରଲୋଲୁପତା—Gluttony.
Jibha laṟḏabaṟḏiā khoi
লালচা
**चटोरपन**

**ଜିଭ ଲହକା** — ଦେ. ବିଣ. (ସ. ଲୋଲଜିହ୍ୱ)—ଯାହାର ଜିଭ ସର୍ବଦା ପଦାରେ ଝୁଲୁ ଥାଏ—Having the tongue thrust forward beyond the mouth.
Jibha lahakā

**ଜିଭ ଲହଲହ କରିବା** — ଦେ. କ୍ରି.—୧ । ପଦାକୁ କାଢ଼ି ଜିଭକୁ ଇତସ୍ତତଃ ଚାଳନ କରିବା—1. To wag the tongue.
Jibha lahalaha karibā
জিভ দোলান
**जीभ बढ़ाना**

**ଜିଭଲାଲଗ୍** — ଦେ. ବି. ଓ ବିଣ—ଜିଭନାଲଗ୍ (ଦେଖ)
Jibha-lālachā — Jibha-nālachā (See)
(ଜିଭଲାଲସା; ଜିଭଲାଲଗ୍—ଅନ୍ୟରୂପ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇଯ୍ | ଡ଼ | ଙ୍ଗ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚଁ୍ୟ | ଇଅ | ଡ଼ | ନ୍ |

ଜିଭଲାଳଚଅ—ଦେ. ବିଣ. ପୁଂ—ଜିଭନାଳଚଅ (ଦେଖ)
Jibha-lāḻachiā Jibha-nāḻachiā (See)
(ଜିଭ ଲାଳଚଅ—ଅନ୍ୟରୂପ)
ଜିଭ ଲାଳଚେଇ } ସ୍ତ୍ରୀ
ଜିଭ ଲାଳଚେଇ

ଜିଭ ଲୁଡ଼ୁବୁଡ଼ିଆ—ଦେ. ବିଣ. ପୁଂ. ଓ ସ୍ତ୍ରୀ—
Jibha luṛduburḍiā ଜିଭ ଲଡ଼ବଡ଼ିଆ (ଦେଖ.
Jibha laṛdabarḍiā (See)
ଜିଭ ଲୁଡ଼ବୁଡ଼ୀ } ସ୍ତ୍ରୀ
ଜିଭ ଲଡ଼ବଡ଼େଇ

ଜିଭ ଲୁଡ଼ୁବୁଡ଼ୁ—ଦେ. ବି—ଖାଦ୍ୟ ପ୍ରତି ଆସକ୍ତି; ପେଟ୍ପଣ—
Jibha luṛduburḍu Gluttony.

ଜିଭ ଲେଉଟିବା—ଦେ କ୍ରି—୧ । ଶବ୍ଦ ଉଚ୍ଚାରଣ କରି ପାରିବା—
Jibha leuṭibā 1. To be able to pronounce a word.
जीभ खुला ( ଯଥା—ଇଂରେଜି ଶବ୍ଦମାନ ଉଚ୍ଚାରଣ କରିବାକୁ
जीभ खोलना ସେ ପିଲାର ଜିଭ ଲେଉଟୁ ନାହିଁ । )
୨ । କହି ପାରିବା—
2. To be able to speak out.
ନାହିଁ କରିବାକୁ କି ଜିଭ ଲେଉଟିବ ?—କୃଷ୍ଣସିଂହ. ମହାଭାରତ. ବନ ।

ଜିଭ ସିଲା(ଲେ)ଇ କରିବା—ଦେ. କ୍ରି—୧ । କୌଣସି ବିଷୟ ପ୍ରକାଶ ନ
Jibha silā (le) i karibā କରି ଚୁପ୍ ରହିବା—1. To keep
जिभ सेलाई करा silent over a thing.
जीभ बंद करना ୨ । କୌଣସି ବ୍ୟକ୍ତିକୁ କୌଣସି କଥା ପ୍ରକାଶ
କରିବାକୁ ଅନୁମତି ନ ଦେବା—2. Not to allow a
person to speak out a thing

ଜିଭ ହୁଡ଼ିବା—ଦେ. କ୍ରି—ଅକଥ୍ୟ କଥା କହିବା—To speak or
Jibha hurḍibā utter a thing which should not
जिभ कबना be uttered.

ଜିଭା—ପ୍ରାଦେ. ( ସିଂହଭୂମ ) ବି—ଶଗଡ଼ଦଣ୍ଡାରେ ଲାଗିଥିବା ଅଟ
Jibhā ସାହା ( ଫଳ )—The cross-bar at the front or
pointed end of a bullock-cart

ଜିଭି—ଦେ. ବି—ଜିଭଛେଲା—
Jibhi 1. Tongue-scraper.
जीभी ୨ । ଜିଭ ଆକାରର ଗଜା—2. A kind of sweet-
जीभी meat shaped like the tongue.

ଜିମ୍ ( ଧାତୁ )—ସ—ଖାଇବା; ଭୋଜନ କରିବା—
Jim ( root ) To eat.

ଜିମ୍ଖାଡ଼ି—ଦେ. ବି—ଜିମିଖାଡ଼ି ( ଦେଖ )
Jim-khārḍi Jimikhārḍi ( See )

ଜିମ୍ଖାନା—ବୈଦେ. ବି. ( ଇଂ ଜିମ୍ ଓ ଫା. ଖାନା )—ସାଧାରଣଙ୍କର
Jim-khānā କୁସ୍ତି କସରତ ଓ ଖେଳ କରିବାର ସୁବିଧାଜନକ
जीमखाना ସ୍ଥାନ; ଯାଗାଘର—Gymkhana.
जामखाना

ଜିମ୍ନାଷ୍ଟିକ୍—ବୈଦେ. ବି. ( ଇଂ. ଜାମନାଷ୍ଟିକ୍ସ )—
Jim-nāshṭik ୧ । ବିଶିଷ୍ଟ ଅଙ୍ଗଭଙ୍ଗୀବିଶିଷ୍ଟ କାଷ୍ଠାଦି ନିର୍ମିତ ଯନ୍ତ୍ରାଦି
जिमनाष्टिक ସାହାଯ୍ୟରେ କରାଯିବା ବ୍ୟାୟାମ—
जिमनाष्टिक 1. Physical exercise.
୨ । କୌଶଳପୂର୍ଣ୍ଣ ମଲ୍ଲବିଦ୍ୟା—2. Gymnastics.

ଜିମା—ବୈଦେ. ବି. ( ଆ. ଜିମ୍ମା=ଦାୟିତ୍ୱପୂର୍ଣ୍ଣ ପ୍ରତିଜ୍ଞା )—
Jimā ୧ । ନ୍ୟାସ; ସୁରକ୍ଷା—
जिम्मा 1. Custody; charge; care; trust.
जिम्मा ୨ । ଅଯତ୍ତ; ଅଧିକାର—2. Control.
( ଜିମ୍ମା—ଅନ୍ୟରୂପ) ୩ । ଦାୟିତ୍ୱ; ଜବାବ୍‌ଦେହି—
3. Responsibility.
୪ । କାର୍ଯ୍ୟର ଭାର—4. Charge of some matter.
ଅ—ମାରଫତେ—Through; per (as in 'per bearer').

ଜିମା କରିବା—ଦେ. କ୍ରି—କୌଣସି ବସ୍ତୁକୁ କୌଣସି ବ୍ୟକ୍ତି ନିକଟରେ
Jimā karibā ନ୍ୟସ୍ତ କରିବା—To commit a thing to
जिम्मा करा; जिम्मा देओया the custody of a person.
जिम्मा करना

ଜିମାଣି—ଦେ. ବି—ଜିମିଖାଡ଼ି ( ଦେଖ )
Jimāṇi Jimikhārḍi ( See )

ଜିମାଦାର—ବୈଦେ. ବିଣ. ଓ ବି ( ଫା. ଜିମ୍ମାଦାର; ଜିମ୍ମାବାର )—
Jimā-dāra ୧ । ସୁରକ୍ଷଣକର୍ତ୍ତା; ଯାହା ନିକଟରେ କୌଣସି
जिम्मादार ବସ୍ତୁ ଗଚ୍ଛିତ ଥାଏ—1. Trustee; custodian.
जिम्मेदार, जिम्मादार ୨ । କୌଣସି ବିଷୟ ପାଇଁ ଦାୟୀ—
2. Responsible for any matter.

ଜିମା ଦେବା—ଦେ. କ୍ରି—ଜିମା କରିବା ( ଦେଖ )
Jimā debā Jimā karibā ( See )

ଜିମାନାମା—ବୈଦେ. ବି. ( ଫା. ଜିମ୍ମାନାମେହ୍ )—କୌଣସି ବସ୍ତୁକୁ
Jimā-nāmā କୌଣସି ବ୍ୟକ୍ତି ନିକଟରେ ଗଚ୍ଛିତ ରଖିବାର
जिम्मानामा ନିଦର୍ଶନଲିପି—Trust deed; a deed indi-
जिम्मानामा cating receipt of a thing entrusted to
a person.

ଜିମା ନେବା—ଦେ. କ୍ରି—୧ । କୌଣସି ପଦାର୍ଥକୁ ଆପଣା ଅଧିକାର ବା
Jimā nebā ଦାୟିତ୍ୱରେ ରଖିବାକୁ ନେବା—
जिम्मा लओया 1. To take a thing into one's custody
जिम्मा लेना or charge.
୨ । କୌଣସି ବିଷୟର ଦାୟିତ୍ୱ ଗ୍ରହଣ କରିବା—
2 To take upon one's self the responsibi-
lity for a matter.

ଜିମା ରଖିବା—ଦେ. କ୍ରି—କୌଣସି ପଦାର୍ଥକୁ କୌଣସି ବ୍ୟକ୍ତି ନିକଟରେ
Jimā rakhibā କିଛିକାଳ ପାଇଁ ନ୍ୟସ୍ତ ରଖିବା—
जिम्मा राखा; जिम्माय राखा To keep a thing in the custody
जिमा देना or charge of a person.

ସାଧାରଣ ଲୋକେ ଅପର ପୃଷ୍ଠାରେ ସତତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ କିମ୍ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷାକୋଷଗ୍ରନ୍ଥରେ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଜମିଆଁ**—ବୈଦେ. ବ. ( ଅ )—ମୁସଲମାନ ରାଜାମାନଙ୍କ ଅମଳରେ
Jimiāṅ ଅମୁସଲମାନଙ୍କଠାରୁ ଆଦାୟ ହେଉଥିବା ଜିଜିଆ ପରି ଏକପ୍ରକାର ଶୁଳ୍କ —A poll-tax levied from non-mahomedans.

**ଜିମିଖାଡ଼ି**—ଦେ. ବ—ଚୋଡ଼ୀ ଜାତୀୟ କ୍ଷୁଦ୍ର ମତ୍ସ୍ୟବିଶେଷ; ଜିମେଇ—
Jimikhārḍi A kind of small fresh-water-fish.
[ ଦ୍ର—ଏମାନେ ମଧୁର ପାଣିରେ ରହନ୍ତି । ଏମାନଙ୍କ ଦେହ ୪।୫ ଅଙ୍ଗୁଳ ଲମ୍ବ, ଦେହରେ ଛୋଟ ଛୋଟ କାତି ଥାଏ ଓ ଦୁଇ କଡ଼ ପାଖେ ଦୁଇଟି ଲମ୍ବ ନୀଳ ବା କଳା ଡୋର ( ରେଖା ) ଥାଏ । ]

**ଜିମେଇ**—ଦେ. ବ—ଜିମିଖାଡ଼ି ( ଦେଖ )
Jimei Jimikhārḍi ( See )
( ଜମେଇଖାଡ଼ି—ଅନ୍ୟରୂପ )

**ଜିର୍‌ଗା**—ବୈଦେ. ବ. ( ଅ. ଜାରଗାହ୍ )—ମୁସଲମାନଙ୍କ ଜାତୀୟ ବା
Jir-gā ରାଜନୈତିକ ସମ୍ମିଳନୀ—A social or political
जिरगा conference of the Mahomedans inhabi-
जिरगा ting the N. W. Frontier provinces of India.
[ ଦ୍ର—କାବୁଲ ଓ ଭାରତର ଉତ୍ତର ପଶ୍ଚିମ ସୀମାନ୍ତବାସୀ ଆଫ୍ରିଦୀ ଆଦି ଜାତିମାନେ ଜିର୍‌ଗା ବସାଇ ରାଜନୈତିକ ସମସ୍ୟାମାନ ଆଲୋଚନା କରନ୍ତି । ]

**ଜିରନ୍ଦାଜ୍**—ବୈଦେ. ବି. ( ଫା. ଜିରନ୍‌ଦାଜ୍ )—ହୁକା ବସାଯିବା
Jirandāj ବୈଠକର ମୁହଁରେ ଯେଉଁ ଚିତ୍ରିତ ବସ୍ତ୍ରଖଣ୍ଡ ଘୋଡ଼ାଇ
जिरन्दाज ଦିଆଯାଏ—An ornamental cover for the
जिरनदाज hooka-stand.

**ଜିରା** ( ଇତ୍ୟାଦି )—ଦେ. ବି. (ସଂ. ଜୀରକ)—ଜୀରା ଇତ୍ୟାଦି (ଦେଖ)
Jirā ( etc ) Jīrā etc ( See )

**ଜିରାଇତ୍**—ପ୍ରାଦେ. ( ଗଞ୍ଜାମ ଓ ସମ୍ବଲପୁର ) ବୈଦେ. ବି ( ଅ. ଜରାଅତ୍
Jirā-it =କୃଷିକର୍ମ; ତୁଳ. ହି. ଏହି ଅର୍ଥରେ ଜିରାୟତ୍ )—
୧ । କିଛି ସମୟ ପାଇଁ ଚାଷ କରିବା ନିମନ୍ତେ ରଇତକୁ ଦିଆ ଯାଇଥିବା ଜମିଦାରଙ୍କ ନିଜଚାଷ ଜମି—
1. Zirayet land; zamindar's private land leased out temporarily to a royat.
୨ । ଚାଷଜମି; ଅବାଦ ହୋଇଥିବା ଜମି—
2. Arable land.

**ଜିରାଇତି**—ପ୍ରାଦେ. ( ଗଞ୍ଜାମ ଓ ସମ୍ବଲପୁର ) ବି—ଜିରାଇତ୍ ( ଦେଖ )
Jirā-iti Jirā-it ( See )

**ଜିରାଫ୍**—ବୈଦେ. ବ. ( ଅ. ଜରାଫ୍‌ରୁ ସ୍ପେନଦେଶୀୟ ଭାଷାରେ ବ୍ୟବହୃତ ଶବ୍ଦ ଜାରାଫାରୁ ଇଂ. ଜିରାଫ୍; Giraffe)—ଦୀର୍ଘାକାର
Jirāph
जिराफ चତୁଷ୍ପଦବିଶେଷ—The Giraffe.
जिराफा [ ଦ୍ର—ଏହା ଆଫ୍ରିକାଦେଶୀୟ ଚତୁଷ୍ପଦ । ଓଟର ବେକ ଓ ଗୋଡ଼ ଅପେକ୍ଷା ଏହାର ବେକ ଓ ଗୋଡ଼ ଲମ୍ବ । ଏହାର ପଛ ଗୋଡ଼ ଆଗ ଗୋଡ଼ର ପ୍ରାୟ ଦେଢ଼ଗୁଣ ଲମ୍ବ । ଏହାର ଦୁଇଟି ଶିଙ୍ଗ ଅଛି; ଏହାର ପଦ, ପୁଚ୍ଛ, ଗଳା, କର୍ଣ୍ଣ ଓ ଜିହ୍ୱା ଦୀର୍ଘ । ଏହାର ଆଖି ମୁହଁ ଉପରକୁ ପଦାକୁ ବାହାରି ଥାଏ । ଏ ମୁହଁକୁ ନ ବୁଲାଇ କେବଳ ଆଖିକୁ ପଛଆଡ଼କୁ ଫେରାଇ ଚାହିଁ ପାରେ । ଏ ପାଟିରୁ ଜିଭକୁ ୧୭ଇଞ୍ଚ ପର୍ଯ୍ୟନ୍ତ ବାହାରକୁ କାଢ଼ି ପାରେ । ଏ ମରୁପ୍ରଦେଶରେ ବିଚରଣ କରେ ଓ ଏହାର ଲମ୍ବ ବେକ ଯୋଗୁଁ ଏ ସେହି ପ୍ରଦେଶରେ ଜନ୍ମିବା ଛୋଟା ଡାଳ, ଖଜୁରୀ ଓ କଣ୍ଟା ଗଛରୁ ପତ୍ର ଆଦି ମୁହଁ ଦ୍ୱାରା ଛିଣ୍ଡାଇ ଆଣି ଖାଏ । ଏହାର ଦେହ ଚକ୍ରମୃଗ ପରି ଧୂସର ହଳଦିଆ ଲୋମରେ ଆବୃତ ଓ ତହିଁରେ ଛିଟିଛିଟି ଧଳା ଦାଗମାନ ଥାଏ । ଏମାନେ ଦଳ ବାନ୍ଧି ରହନ୍ତି । ଏହା ଗୋଡ଼ରେ ଖୁରା ଅଛି । ]

**ଜିରାୟତ୍**—ପ୍ରାଦେ. ( ଗଞ୍ଜାମ ଓ ସମ୍ବଲପୁର ) ବ—
Jirā-yat ଜିରାଇତ୍ ( ଦେଖ )
Jirā-it ( See )

**ଜିରାୟତି**—ପ୍ରାଦେ ( ଗଞ୍ଜାମ ଓ ସମ୍ବଲପୁର ) ବ—
Jirā-yati ଜିରାଇତ୍ ( ଦେଖ )
Jirā-it ( See )

**ଜିରାଳି**—ପ୍ରାଦେ. ( ଗଡ଼ଜାତ ) ବ—ମହୁରାଳି (ମାଛ) ( ଦେଖ )
Jirāḷi Mahurāḷi (fish) ( See )

**ଜିରେଇତି**—ସ୍ତ୍ରୀ. ପ୍ରାଦେ. ( ଗଞ୍ଜାମ ଓ ସମ୍ବଲପୁର ) ବ—
Jire-iti ଜିରାଇତ୍ ( ଦେଖ )
Jirā-it ( See )

**ଜିରେଇବା**—ପ୍ରାଦେ. ( ଯାଜପୁର ) କ୍ରି. ( ତୁଳ. ବ. ଜିରାନ )—
Jireibā ଖାଇ ସାରି ଟିକିଏ ବିଶ୍ରାମ ନେବା—
To rest a while after meals.

**ଜିରେଇ ଶିଆଳି**—ଦେ. ବ. ( ସଂ. ଜୀରକ+ଶାଳି; ଏହା ଜୀରା ପରି
Jirei śiāḷi ଛୋଟ ଥିବାରୁ )—ଏକପ୍ରକାର ସରୁ ଶାରଦ ଧାନ—
जिरिया A kind of fine winter-paddy.

**ଜିରେଫ୍**—ବୈଦେ. ବ. (ଇଂ)—ଜିରାଫ୍ ( ଦେଖ )
Jiref Jirāf ( See )

**ଜିଲ୍**—ଦେ. ବ. ( ସ. ଝିଲ୍ଲୀ; ତୁଳ. ଫା. ଜୀର୍ )—
Jil ୧ । ବେହେଲାରୁ ବାହାରୁଥିବା ୪ ଗୋଟି ସ୍ୱର ମଧ୍ୟରୁ ଏକତମ;
जिल କେଁକେଁଆ ସ୍ୱର—1. Shrill note of the
जील violin.
୨ । ବେହେଲାର ତୀବ୍ର ସ୍ୱରବିଶିଷ୍ଟ ତାର ବା ତନ୍ତ୍ରୀ—
2. The treble string of a violin.
[ ଦ୍ର—ବେହେଲାର ୪ଗୋଟି ତାରରୁ ୪ଗୋଟି ସ୍ୱର ବାହାରେ, ଯଥା— ଜିଲ୍ ବା ପଞ୍ଚମ, ସୁର, ମଧ୍ୟମ ଓ ଖାଦ; ଖାଦ ସବୁଠାରୁ ଉଚ୍ଚ ଓ ଜିଲ୍ ସବୁଠାରୁ ତୀକ୍ଷ୍ଣ । ]

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଅ | ଉଅ | ଝ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଂ | ଇଅ | ୱ | ନ୍ତ |

୩ । ତବଲା ବା ପଖୋଜର ବାମ ପାଖରୁ ଉଠିବା ସ୍ୱର—
3. The sound produced by the left hand side of a drum.
ବୈଦେ. ବ. ( ଅ. ଜିଲ୍ଲା )—ଔଜ୍ଜ୍ୱଲ୍ୟ—Brightness.

ଜିଲ୍‌କଜ୍—ବୈଦେ. ବ (ଫା)—ମୁସଲମାନ ମାସବିଶେଷ—
Jil-kaj Name of a Mahomedan month.
জিলকজ [ ଦ୍ର—ଏହା ସଫାଲର ପରବର୍ତ୍ତୀ ଓ ଜିଲ୍‌ହେଜ୍‌ର
जिलकज पୂର୍ବବର୍ତ୍ତୀ ମାସ । ]

ଜିଲ୍‌ପି—ଦେ. ବ—ଜିଲିବି ( ଦେଖ )
Jil-pi Jilibi ( See )

ଜିଲ୍‌ଫା—ବୈଦେ. ବ. (ଅ)—ରାଗିଣୀବିଶେଷ—
Jil-phā Name of a musical air.

ଜିଲ୍‌ବି—ଦେ. ବ—ଜିଲିବି ( ଦେଖ )
Jil-bi Jilibi ( See )

ଜିଲ୍‌ହେଜ୍—ବୈଦେ. ବ. (ଫା)—ମୁସଲମାନ ମାସବିଶେଷ; ମହରମର
Jil-hej ପୂର୍ବ ମାସ—Name of a Mahomedan month.
জিলহেজ
जीलहेज

ଜିଲତ୍—ବୈଦେ. ବ. ( ଅ. ଜିଲ୍ଲତ୍ )—
Jilat ୧ । ଲଜ୍ଜା—1. Shame.
জিলত ୨ । ଅପମାନ; ବେଇଜ୍ଜତି—2. Insult.
जिल्लत ୩ । ଅନାଦର—3. Disrespect; disregard.
୪ । ଦୁର୍ଦ୍ଦଶା; ଦୁର୍ଗତି—4. Misery.
( ଯଥା—ଜିଲତ୍ ଦେବା, ଜିଲତ୍ ପାଇବା, ଜିଲତ୍‌ରେ ପଡ଼ିବା । )

ଜିଲତ୍ ଉଠା(ଠେ)ଇବା—ଦେ. କ୍ରି. ( ଅ. ଜିଲ୍ଲତ୍ )—
Jilat uthā(the)ibā ୧ । ଅପମାନିତ ହେବା—
জিলত উঠান 1. To be insulted.
जिल्लत उठाना ୨ । ଲଜ୍ଜିତ ହେବା—
2. To be put to shame.

ଜିଲଦ୍—ବୈଦେ. ବ. ( ଅ. ଜିଲ୍ଦ୍=ଚମଡ଼ା )—
Jilad ୧ । ବହିର ମଲାଟ ଉପରେ ବନ୍ଧା ହେବା ଚମଡ଼ା—
জিলদ 1. Parchment or leather put on the
जिल्द stiff cover of a book.
୨ । ପୁସ୍ତକର ଖଣ୍ଡ—
2. Volume of a book; copy of a book.
୩ । ଚମଡ଼ା—3. Leather.

ଜିଲଦ୍‌ବନ୍ଦ୍—ବୈଦେ. ବ. ( ଅ. ଜିଲ୍ଦ୍‌ବନ୍ଦ୍ )—
Jilad-band ଯେଉଁ ବ୍ୟକ୍ତି ବହି ବାନ୍ଧେ—Book-binder.
জিলদবন্দ
जिल्दबन्द

ଜିଲଦ୍‌ବନ୍ଦୀ—ବୈଦେ. ବ. ( ଅ. ଜିଲ୍‌ବନ୍ଦୀ )—ବହିକୁ ସିଲାଇ କରି
Jiladbandī ଚମଡ଼ା ଆଦି ଦ୍ୱାରା ବାନ୍ଧିବା କର୍ମ—
জিলদবন্দী Book-binding.
जिल्दबन्दी

ଜିଲଦ୍ ବାନ୍ଧିବା—ପୁସ୍ତକ ସିଲାଇ କରି ଉପରେ ମୋଟା କାଗଜ ଓ
Jilad bāndhibā ଚମଡ଼ା ଦେଇ ବାନ୍ଧିବା—
জিলদ বান্ধা To bind a book.
जिल्द बाँधना

ଜିଲା—ବୈଦେ. ବ. ( ଅ. ଜିଲ୍ଲା, ଭୁଲ. ସ. ଔଜ୍ଜ୍ୱଲ୍ୟ )—
Jilā ୧ । ଆଭା; ଜ୍ୟୋତିଷ; ଔଜ୍ଜ୍ୱଲ୍ୟ—
জিলা 1. Brightness; blaze.
जिल्ला ୨ । ସ୍ନିଗ୍ଧତା; ଚିକ୍କଣତା—2. Smoothness.
জেলা ୩ । ( ଅ. ଜିଲ୍ଲା ) ପ୍ରଦେଶର ଶାସନବିଭାଗ—
जिल्ला 3. An administrative district.
(ଜିଲ୍ଲା—ଅନ୍ୟରୂପ) [ ଦ୍ର— ଇଂରେଜ ଶାସିତ ଭାରତ ବର୍ଷ ଭିନ୍ନଭିନ୍ନ ପ୍ରଦେଶ (Province) ରେ ବିଭକ୍ତ । ପ୍ରତ୍ୟେକ ପ୍ରଦେଶ ଭିନ୍ନ ଭିନ୍ନ ବିଭାଗ (Division) ଓ ପ୍ରତ୍ୟେକ ବିଭାଗ କେତେକ ଜିଲ୍ଲା (District) ର ସମଷ୍ଟି । ପ୍ରତି ଜିଲ୍ଲା ଜଣେ ଜଣେ ଶାସକଙ୍କର ଅଧୀନ । ପ୍ରତ୍ୟେକ ଜିଲ୍ଲା ଦୁଇ ବା ତତୋଽଧିକ ଉପଜିଲ୍ଲା ବା ମହକୁମା (Sub-division) ଓ ପ୍ରତ୍ୟେକ ମହକୁମା କେତେଗୁଡ଼ିଏ ଥାନାର ସମଷ୍ଟି ।

ଜିଲ୍ଲାର ସାଙ୍କେତିକ ଚିହ୍ନ 'ଜି' । ]
ପ୍ରାଦେ. (ପୁରୀ ଜିଲ୍ଲାର ଖୋରଧା ଓ ଗଡ଼ଜାତ) ବ.—କିଲ୍ଲାର ଶାସନୀୟ ବିଭାଗବିଶେଷ—Subdivision of a Killā.
[ଯଥା—ଖୋରଧା କିଲ୍ଲାର ବାଣପୁର, ଖୁଣ୍ଟୁଣି, ରାମେଶ୍ୱର, ବଳଭଦ୍ରପୁର, ଡାପଙ୍ଗ, ମାଣିକଗୋଡ଼ା, ଲୁଣପଲ୍ଲା, ପାଞ୍ଚଗଡ଼ ଓ ଦାଣ୍ଡିମାଳ, ଏବଂ ନୟାଗଡ଼ କିଲ୍ଲାର କାନ୍ଦମାଳ ଗୋଟିଏ ଗୋଟିଏ ଜିଲା । ]
ବୈଦେ. ବିଣ. (ଅ. ଜିଲା=ଦୀପ୍ତି)—୧ । ଚିକ୍କଣ—
1. Smooth.
୨ । ପାଲିସ୍ କରା ଯାଇଥିବା—2. Polished.
୩ । ଚକଚକିଆ—3. Shining; brilliant.

ଜିଲାଓଆରି—ବୈଦେ. ବିଣ. (ଫା. ଜିଲ୍ଲାୱାର୍)—୧ । ଗୋଟିଏ ଗୋଟିଏ
Jilā-uāri ଜିଲାର ଧାରାବାହିକରୂପେ ଚର୍ଚ୍ଚା କରା ଯାଇଥିବାରୂପେ—
জেলাওয়ারি 1. Dealing with each the district in detail.
୨ । ପ୍ରତି ଜିଲା; ଏକ ଜିଲା ପରେ ଅନ୍ୟ ଜିଲା—
(ଜିଲ୍ଲାୱାର—ଅନ୍ୟରୂପ) 2. District by district.

ଜିଲା କଲେକ୍‌ଟର୍—ବୈଦେ. ବ. (ଅ. ଜିଲା ଓ ଇଂ. କଲେକ୍ଟର୍)—ଜିଲ୍ଲାର
Jilā kalektar ରାଜସ୍ୱ ଆଦାୟ ବିଷୟର ଭାରପ୍ରାପ୍ତ ସର୍ବୋଚ୍ଚ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ଷ୍ଟି ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷ୍ଟି ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷ୍ଟି କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ଷ୍ଟି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଡ଼' ନ ମିଳିଲେ 'ଗାଢ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**জেলা কলেক্টর** ରାଜକର୍ମଚାରୀ—
**जिला किलटर** District Collector.
ଜିଲା କଲଟର } ଅନ୍ୟରୂପ
ଜିଲା କଲେକ୍ଟର

**ଜିଲା ଜଜ୍**—ବୈଦେ. ବି. (ଆ. ଜିଲା ଓ ଇଂ. ଜଜ୍)—ଜିଲାର ଦେବାନ
Jilā jaj ଅଦାଲତର ବିଚାରର ଉଚ୍ଚତମ ରାଜକର୍ମଚାରୀ—
**জেলাজজ** District Judge.
**जिलाजज**

**ଜିଲାଦାର୍**—ବୈଦେ. ବି. (ଫା)—୧ । କେନାଲ୍ ରେଭେନ୍ୟୁ ବା ସରକାରୀ
Jilā-dār ଜଳକର ଅସୁଲ କର୍ମଚାରୀ; ତହସିଲଦାରଙ୍କ ଉପରସ୍ଥ
**জিলাদার** କର୍ମଚାରୀ—1. Ziladar; the superior officer
**जिलादार; जिलेदार** above the Tahasildar or collecting officer of canal revenue.
(ଜିଲ୍ଲାଦାର୍—ଅନ୍ୟରୂପ)
(ଜିଲାଦାରୀ—ଜିଲାଦାରର କର୍ମ ବା ଚାକିରି)
୨ । ସରବରାହକାର; ଜମିଦାରଙ୍କ ପକ୍ଷରୁ ମଫସଲର ଖଜଣା ଅସୁଲ କରିବାର ଭାରପ୍ରାପ୍ତ ତହସିଲଦାରମାନଙ୍କ ଉପରସ୍ଥ କର୍ମଚାରୀ—2. The superior officer above a Zamindar's rent-collector.
ବିଣ. (ଫା)—୧ । ଦୀପ୍ତିମାନ୍; ଚକଚକିଆ—1. Shining.
୨ । ମସୃଣ ଓ ଚିକ୍କଣ—2. Smooth; oily.

**ଜିଲାପି (ବି)**—ଦେ. ବି—ଜିଲିବି (ଦେଖ)
Jilāpi (bi) Jilibi (See)

**ଜିଲାବୋର୍ଡ୍**—ବୈଦେ. ବି. (ଆ. ଜିଲା ଓ ଇ. ବୋର୍ଡ)—ଜିଲାର
Jilā-bord ସ୍ୱାସ୍ଥ୍ୟ, ଶିକ୍ଷା, ରାସ୍ତା ଆଦି କେତେକ ବିଷୟ ବୁଝିବା
**জেলাবোর্ড** ନିକାଶେ ସରକାରଙ୍କ ମନୋନୀତ ଓ ବେ-ସରକାରୀ ଲୋକ
**जिलाबोर्ड** ପ୍ରତିନିଧି ମେମ୍ବରମାନଙ୍କଦ୍ୱାରା ଗଠିତ କମିଟୀ—
(ଜିଲାବୋର୍ଡ—ଅନ୍ୟରୂପ) District Board

**ଜିଲା ମାଜିଷ୍ଟ୍ରେଟ୍**—ବୈଦେ. ବି. (ଆ. ଜିଲା ଓ ଇ. ମାଜିଷ୍ଟ୍ରେଟ୍)—
Jilā mājishtret ଜିଲାର ଫଉଜଦାରୀ ମକଦ୍ଦମା ଓ ଶାନ୍ତିରକ୍ଷା
**জেলা মাজিষ্ট্রেট** ଆଦିର ଭାରପ୍ରାପ୍ତ ଉଚ୍ଚତମ ରାଜକର୍ମଚାରୀ—
**जिला मेजेष्टर** District Magistrate
ଜିଲା ମାଜିଷ୍ଟର } —ଅନ୍ୟରୂପ
ଜିଲା ମେଜେଷ୍ଟର

**ଜିଲା ସୁପରିଣ୍ଟେଣ୍ଡେଣ୍ଟ୍**—ବୈଦେ. (ଆ. ଜିଲା ଓ ଇଂ ସୁପରିଣ୍ଟେଣ୍ଡେଣ୍ଟ)
Jilā suparintendent ପୁଲିସବିଭାଗର ସର୍ବୋଚ୍ଚ ରାଜକର୍ମଚାରୀ—
**জেলা সুপারিন্টেণ্ডেণ্ট** District Superintendent of Police.
**जिला सुपरिंटंट**

**ଜିଲା ହାକିମ**—ବୈଦେ. ବି. (ଆ. ଜିଲା ହାକିମ)—ଜିଲାର ସ୍ୱତନ୍ତ୍ର
Jilā hākima ବିଭାଗର ସର୍ବୋଚ୍ଚ ରାଜକର୍ମଚାରୀ—The
**জেলা হাকিম** highest officer in a district in a particular department.
**जिला हाकीम**

**ଜିଲି**—ଦେ. ବି.—ଜିଲିବି (ଦେଖ)
Jili Jilibi (See)

**ଜିଲିକି**—ଦେ. ବି.—ଜୁଲୁକି (ଦେଖ)
Jiliki Juluki (See)

**ଜିଲିପି**—ଦେ. ବି.—ଜିଲିବି (ଦେଖ)
Jilipi Jilibi (See)

**ଜିଲିବି**—ଦେ. ବି. (ସଂ. କୁଣ୍ଡଳି=କୁଣ୍ଡଳ; କିମ୍ବା ଝିଲ୍ଲୀ=ପତଳା ପାଉଁଆ;
Jilibi ତୁଳ. ହି. ଜିଲବ୍=ପିଠଉକୁ ଫେଣାଇବା)—କୁଣ୍ଡଳାକୃତି
**জিলেবী** ଘୃତପକ୍ୱ ମିଷ୍ଟାନ୍ନବିଶେଷ—
**जिलेबि; जिलाबी** A kind of spiral sweetmeat.
(ସଂ. ନାମ—କୁଣ୍ଡଳୀ) [ବି—ବିରି ବଟା ହୋଇ ଫେଣିଆ ହେବା ପରେ ପିଠଉକୁ ଗୋଟିଏ ଛିଦ୍ରଯୁକ୍ତ ଖଡ଼େଇ ବା କନାଦ୍ୱାରା କୁଣ୍ଡଳାକାର କରି ଫୁଟିଲା ତେଲ ବା ଘିଅରେ ଛାଡ଼ି ଦିଆଯାଏ । ତାହା ଘିଅ ବା ତେଲରେ ସିଦ୍ଧ ହୋଇ କୁଣ୍ଡଳାକାର ଫମ୍ପା ଖଣ୍ଡରେ ପରିଣତ ହୁଏ । ଗରମ ଥାଉଁ ଥାଉଁ ଉକ୍ତ ଫମ୍ପା ଜିନିଷକୁ ଚିନି ବା ଗୁଡ଼ର ଶିରା ମଧ୍ୟରେ ପକାଇ ଦେଲେ ତହିଁ ମଧ୍ୟରେ ଶିରା ପୂର୍ଣ୍ଣ ହୋଇ ଯାଏ; ତାକୁ ଜିଲିବି କହନ୍ତି । ଯେଉଁ ପିଷ୍ଟକ ଶିରାରେ ବୁଡ଼ୁ ନ ଥାଏ ନାହିଁ ତାକୁ ଝିଲି କହନ୍ତି ।]

**ଜିଲ୍ଲା (ଇତ୍ୟାଦି)**—ବୈଦେ. ବି. (ଆ)—ଜିଲା ଇତ୍ୟାଦି (ଦେଖ)
Jillā (etc) Jilā etc (See)

**ଜିଲ୍ଲେ**—ଦେ. ବିଣ—ଅମୁକ ଜିଲା ମଧ୍ୟସ୍ଥ—
Jille Situated in such and such a district.
(ଯଥା—ମୌଜେ ସିଦ୍ଧେଶ୍ୱରପୁର, ଜିଲ୍ଲେ କଟକ ।)

**ଜିଶୁ (ଇତ୍ୟାଦି)**—ବୈଦେ.ବି. (ହେବ୍ରୁ ଓ ଇଂ)—ଯୀଶୁ ଇତ୍ୟାଦି (ଦେଖ)
Jiśu (etc) Jīśu etc (See)

**ଜିଷ୍ (ଧାତୁ)**—ସଂ—ଛିଞ୍ଚିବା—
Jish (root) To sprinkle.

**ଜିଷ୍ଣୁ**—ସଂ. ବିଣ. ( ଜି ଧାତୁ+ଶୀଳାର୍ଥରେ କର୍ତ୍ତ୍ରି. ଷ୍ଣୁ )—
Jishṇu ଜୟଶୀଳ; ବିଜୟୀ—Victorious; triumphant.
ସଂ. ବି. (ଯେ ସମସ୍ତଙ୍କୁ ଜୟ କରଅଛନ୍ତି)—୧ । ବିଷ୍ଣୁ—1. Visnu.
୨ । ଶ୍ରୀକୃଷ୍ଣ—2. Srikrushna.
୩ । ଇନ୍ଦ୍ର—3. God Indra.
୪ । ସୂର୍ଯ୍ୟ—4. The sun.
୫ । ଅର୍ଜୁନ—5. Arjuna; one of the Pāṇdab-brothers
୬ । ବସୁ ( ଦେବତା )—6. The Basu class of Deities.
୭ । ବସ୍ତୁ (ହି. ଶବ୍ଦସାଗର)—7. Thing; article

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ହ୍ର | ଝ | ଏ | ଦସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇପ୍ସ | ଉଅ | ଣ |
| ୨ | ଈ | ଊ | ରୁ | ଲ୍ଲ | ଯ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଙ୍ଗ | ନ୍ |

ଜି ହଜୁର !—ଦେ. ଅ. (ଫ. ଜିଉ+ଆ. ହୁଜୁର) (ସମ୍ମାନସୂଚକ
Ji hajur ! ବ୍ୟକ୍ତିଙ୍କୁ ଜବାବ ଦେବାରେ ବ୍ୟବହୃତ)—
ଜୀହଜୁର ! ହଁ,ମହାଶୟ :—Yes,Your Honor ! yes,Your
जीहुजूर ! Highness (a term used in responding to one's superior).

[ ଦ୍ର—ରାଜା ଓ ହାକିମମାନଙ୍କୁ ନିମ୍ନବ୍ୟକ୍ତିମାନେ ଡାକର ଉତ୍ତର ଦେବାବେଳେ, କୌଣସି ବିଷୟରେ ସମ୍ମତି ଜ୍ଞାପନ କରିବା ବେଳେ ଏ ଶବ୍ଦଦ୍ୱୟ ବ୍ୟବହାର କରନ୍ତି ; ଉର୍ଦ୍ଦୁ ଜୀ ଶବ୍ଦ ଫ. ଜିତ୍ =ଜୀବୀ କିମ୍ବା ଫ. ଜୀବର ଅପଭ୍ରଂଶ ଓ ଅ. ହୁଜୁର ଶବ୍ଦ ଓଡ଼ିଆ 'ଛାମୁ' ଶବ୍ଦ ପରି ବଡ଼ଲୋକଙ୍କ ସାମୀପ୍ୟ ବା ସାନ୍ନିଧ୍ୟବାଚକ; ଜି ହଜୁର ଏହି ପଦର ଅର୍ଥ ହଁ, ମହାଶୟ ! ]

ଜିହଲ (ଇତ୍ୟାଦି)—ଗ୍ରା. ନୈଦେ. ବି. (ଇଂ)—
Jihal (etc) ଜେଲ୍ ଇତ୍ୟାଦି (ଦେଖ)
Jel etc (See)

ଜିହଲା— ଦେ. ବି—ଜିଅଲ (ଦେଖ)
Jihala Jiala (See)

ଜିହାଦ୍—ବୈଦେ. ବି. (ଅ. ଜିହାଦ୍)—୧ । ଧର୍ମରକ୍ଷା ବା ଧର୍ମପ୍ରଚାର
Jihād ନିମନ୍ତେ ଭିନ୍ନ ଧର୍ମାବଲମ୍ବୀଙ୍କ ସହିତ ମୁସଲମାନଙ୍କର ଯୁଦ୍ଧ—
ଜିହାଦ 1. A religious crusade against the infidel
जिहाद् by the Mahomedans.
୨ । ନିଜର ଧର୍ମରକ୍ଷାର୍ଥ ଯୁଦ୍ଧ—2. A war for the preservation of one's religion.

ଜିହାନ—ସଂ. ବିଣ. ପୁଂ (ହା ଧାତୁ=ଯିବା+କର୍ତ୍ତୃ. ଆନ)—
Jihāna ୧ । ଯାଉଥିବା—1. Going.
(ଜିହାନା—ସ୍ତ୍ରୀ) ୨ । ପ୍ରାପ୍ତ ହେଉଥିବା—2. Obtaining.

ଜିହାନକ—ସଂ. ବି. (ଜିହାନ+କ)—ସୃଷ୍ଟିର ବିନାଶ; ପ୍ରଳୟ—
Jihānaka Destruction or dissolution of the world.

ଜିହାସା—ସଂ. ବି. (ହା ଧାତୁ=ତ୍ୟାଗ କରିବା+ଇଚ୍ଛାର୍ଥେ ସନ୍=ଜିହାସ
Jihāsā ଧାତୁ+ଭାବ ଅ+ଆ)—୧ । ତ୍ୟାଗ କରିବାର ଇଚ୍ଛା—
1. Desire to give up or avoid something.
୨ । ଘୃଣା—2. Aversion; repugnance.

ଜିହାସୁ—ସଂ. ବି. (ହା ଧାତୁ=ତ୍ୟାଗ କରିବା+ଇଚ୍ଛାର୍ଥେ ସନ୍=
Jihāsu ଜିହାସ ଧାତୁ+କର୍ତ୍ତୃ. ଉ)—୧ । ତ୍ୟାଗ କରିବାକୁ ଇଚ୍ଛୁକ—2. Desirous of giving up or avoiding something.

ଜିହୀର୍ଷା—ସଂ. ବି. ସ୍ତ୍ରୀ. (ହୃ ଧାତୁ=ହରଣ କରିବା+ଇଚ୍ଛାର୍ଥରେ ସନ୍
Jihīrshā =ଜିହୀର୍ଷ ଧାତୁ+ଭାବ. ଅ+ଆ)—୧ । ହରଣ କରିବାର ବା ଚୋରି କରିବାର ଇଚ୍ଛା ବା ଅଭିଳାଷ—
1. A desire to steal or commit theft; stealing propensity.
୨ । ମନୁଷ୍ୟ ଚୋରାଇ ନେବାର ଇଚ୍ଛା—
2. An intention to kidnap or abduct.
୩ । କୌଣସି ପଦାର୍ଥ କାଢ଼ିନେବାର ଇଚ୍ଛା—
3. Desire for seizing or snatching a thing.

ଜିହୀର୍ଷୁ—ସଂ. ବିଣ. (ହୃ ଧାତୁ+ଇଚ୍ଛାର୍ଥରେ ସନ୍=ଜିହୀର୍ଷ ଧାତୁ+କର୍ତ୍ତୃ.
Jihīrshu ଉ)—ହରଣେଚ୍ଛୁ, ହରଣ କରିବାକୁ ଅଭିଳାଷୀ—
Desirous of stealing; wishing to seize or take.

ଜିହ୍ୱ—ସଂ ବି. ପୁଂ. ( ଲିହ୍ ଧାତୁ=ଆସ୍ୱାଦନ କରିବା+କରଣେ ବ;
Jihwa ନିପାତନ)—୧ । ଜିଭ; ରସନା; ରସନେନ୍ଦ୍ରିୟ;
(ଜିହ୍ୱା—ସ୍ତ୍ରୀ) ଆସ୍ୱାଦନେନ୍ଦ୍ରିୟ—1. The tongue; the organ of taste.

[ ଦ୍ର—'ହ୍ୱ'ର ଉଚ୍ଚାରଣ କ୍ରମେ କ୍ରମେ 'ଭ'ରେ ପରିଣତ ହୋଇ ପ୍ରାକୃତରେ 'ଜିଭ' ହୋଇଅଛି । ]

୨ । ଅଗ୍ନିର ଶିଖା—
2. The tongue or flame of fire.
୩ । ବାକ୍ୟ—3. Sentence.
୪ । ତଗରମୂଳ—4. The root of Tagara plant.

ଜିହ୍ୱକ—ସଂ. ବି. (ଜିହ୍ୱ+ସଂଜ୍ଞାର୍ଥେ କ)—ଏକପ୍ରକାର ସନ୍ନିପାତରୋଗ—
Jihwaka A kind of collapse or typhus.

[ ଦ୍ର—ଏଥିରେ ରୋଗୀର ଜିଭ କଣ୍ଟକମୟ ହୁଏ, ରୋଗୀ ସ୍ପଷ୍ଟ କଥା କହି ପାରେ ନାହିଁ ଏବଂ ରୋଗୀର ଜିଭ ଥରେ । ଏଥିରେ ରୋଗୀକୁ ଶ୍ୱାସକାସ ଆଦି ମଧ୍ୟ ଧରେ । ଏ ରୋଗର ଅବଧି ୧୬ଦିନ; ଏ ରୋଗାକ୍ରାନ୍ତ ରୋଗୀ କାଲ କିମ୍ବା ମୁଙ୍ଗା ହୋଇଯାଏ—ହି. ଶବ୍ଦସାଗର । ]

ଜିହ୍ୱଲ—ସଂ. ବିଣ. ପୁଂ. (ଜିହ୍ୱ+ଲା ଧାତୁ+କର୍ତ୍ତୃ. ଅ)—
Jihwala ୧ । ପେଟୁ; ଉଦରମ୍ଭରି—
(ଜିହ୍ୱଲା—ସ୍ତ୍ରୀ) 1. Voracious (M. W.)
୨ । ଜିଭ ଲାଳଚଆ; ଜିଭ ଲଡ଼ବଡ଼ିଆ—
2. Having excessive hankering after dainty dishes.

ଜିହ୍ୱା—ସଂ. ବି. ସ୍ତ୍ରୀ (ଜିହ୍ୱ+ଆ)—ଜିହ୍ୱ (ଦେଖ)
Jihwā Jihwa (See)

[ଦ୍ର—ଏହା ଜିହ୍ୱ ଶବ୍ଦର ସ୍ତ୍ରୀଲିଙ୍ଗରେ ଆକାର । ]

ଜିହ୍ୱାଉଲ୍କା—ଦେ. ବି (ସଂ. ଜିହ୍ୱା+ଉଲ୍କା)—ଅଗ୍ନି ତୁଲ୍ୟ ଜିହ୍ୱା; ଉଲ୍କା
Jihwā-ulkā ସଦୃଶ ଜିହ୍ୱା—Tongue resembling a shooting star.

ବୁଲଇ ଜିହ୍ୱାଉଲ୍କା ଦେଖାଇ ଉଚ୍ଚ ଲଙ୍କା ଜଳାଇ ଗଲେ ବ୍ୟାପି ସେ ।
[ ଉପେ. ବୈଦେହୀଶବିଳାସ ]

ଜିହ୍ୱାଗ୍ର—ସଂ. ବି (୬ଷ୍ଠୀ ତତ୍; ଜିହ୍ୱା+ଅଗ୍ର)—ଜିଭର ଅଗ—
Jihwāgra The tip of the tongue.

**ଜିହ୍ୱାଗ୍ରବର୍ତ୍ତୀ**—ସଂ. ବଣ (୬ଷ୍ଠୀ ତତ୍; ଜିହ୍ୱା+ଅଗ୍ରବର୍ତ୍ତୀ)—
Jihwāgra-barttī ୧ । ଯାହା ( କଥା ପ୍ରଭୃତି ) ମନୁଷ୍ୟର ଜିଭ ଅଗରେ ଥାଏ—1. Well mastered (subject); committed to memory.
୨ । ଯେଉଁ କଥାକୁ ମନୁଷ୍ୟ ବଗୁରବାମାତ୍ରେ କହିପାରେ—2. Ready to be uttered or expressed in words.

**ଜିହ୍ୱାନିର୍ଲେଖନ**—ସଂ ବ (୬ଷ୍ଠୀ ତତ୍; ଜିହ୍ୱା+ନିର୍ଲେଖନ)—
Jihwā-nirlekhana ୧ । ଜିଭ ଛେଲିବା; ଜିଭରୁ ଛିଡ଼ଆ କାଢ଼ିବା ନିମନ୍ତେ ପାତିଆ ଆଦି ଦ୍ୱାରା ଜିଭକୁ ଘଷିବା—1. Scraping of the tongue for cleansing it.
୨ । ଜିଭଛେଲା ପାତିଆ—2. Tongue-scraper.

**ଜିହ୍ୱାପ**—ସଂ. ବଣ (ଜିହ୍ୱା+ପା ଧାତୁ =ପିଇବା+କର୍ତ୍ତୃ. ଅ )—
Jihwāpa ଯେ ଜିଭ ଦ୍ୱାରା ପାଣି ପିଏ—Drinking water by the tongue only.
ସଂ. ବ—୧ । କୁକ୍କୁର—1. Dog.
୨ । ବାଘ—2 Tiger.
୩ । ବିରାଡ଼ି—3. Cat
୪ । ଭାଲୁ—4 Bear.
[ଦ୍ର—ବିରାଡ଼ି କୁକ୍କୁର ଆଦି ଜନ୍ତୁମାନେ ପାଣିରେ ମୁହଁ ଲଗାଇ କରି ପାଣି ପିଅନ୍ତି ନାହିଁ; ଏମାନେ ଚୁକୁ ଚୁକୁ କରି ଜିଭଦ୍ୱାରା ପାଣି ପିଅନ୍ତି । ଏମାନଙ୍କ ଜିଭ ଚାମଚର କାର୍ଯ୍ୟ କରେ ।]

**ଜିହ୍ୱାମଳ**—ସଂ. ବି. (୬ଷ୍ଠୀ ତତ୍; ଜିହ୍ୱା+ମଳ)—ଜିଭର ଛିଡ଼ଆ—
Jihwā-mala The fur of the tongue.

**ଜିହ୍ୱାମୂଳ**—ସଂ. ବି. (୬ଷ୍ଠୀ ତତ୍; ଜିହ୍ୱା+ମୂଳ)—କଣ୍ଠର ଯେଉଁ
Jihwā-mūla ଅଂଶରୁ ଜିହ୍ୱା ବାହାରି ଥାଏ—The root of the tongue.

**ଜିହ୍ୱାମୂଳୀୟ**—ସଂ. ବଣ ( ଜିହ୍ୱାମୂଳ+ଭବାର୍ଥେ. ଈୟ )—ଜିହ୍ୱାମୂଳରୁ
Jihwā-mūlīya ଉଚ୍ଚାରିତ—Guttural.
ସଂ. ବ (ବ୍ୟାକରଣ)—ଜିହ୍ୱାମୂଳରୁ ଉଚ୍ଚାରିତ ବା ଉଚ୍ଚାର୍ଯ୍ୟ ବର୍ଣ୍ଣ—(grammar) Letters or alphabets uttered from the root of the tongue; the gutturals.
[ ଦ୍ର—କ, ଖ, ଗ, ଘ, ଙ, ର ଏବଂ ଃ ଏମାନେ ଜିହ୍ୱାମୂଳୀୟ ବର୍ଣ୍ଣ ।]

**ଜିହ୍ୱାରଦ**—ସଂ.ବ (ବହୁବ୍ରୀହି, ଜିହ୍ୱା+ରଦ; ଯାହାର ଜିହ୍ୱା ରଦ ବା ଦନ୍ତର
Jihwā-rada . କାର୍ଯ୍ୟ କରେ )—ପକ୍ଷୀ—Bird.

**ଜିହ୍ୱାଳ**—ଦେ. ବଣ (ସଂ. ଜିହ୍ୱାଲ=ପେଟୁ) ଜିହ୍ୱା ବା ଜିଭ ଥିବା; ଜିହ୍ୱା-
Jihwāla ଯୁକ୍ତ—Having tongues; tongued.
ଅଙ୍ଗ-ଜିହ୍ୱାଳମୂଳା ବାହାରର ଭରସ ମେଳର ଅଙ୍ଗେ—
ରଘୁନାଥ. ଯଯାତି ।

**ଜିହ୍ୱାଲାଳସା**—ସଂ.ବ ( ୬ଷ୍ଠୀ ତତ୍; ଜିହ୍ୱା+ଲାଳସା )—ଜିଭଲାଳଚା;
Jihwā-lālasā ରୁଚିକର ଖାଦ୍ୟ ପ୍ରତି ଅତିରିକ୍ତ ବାସନା—Hankering after dainties.

**ଜିହ୍ୱାଲିହ୍**—ସଂ. ବ ( ଜିହ୍ୱା+ଲିହ୍ ଧାତୁ=ଚାଟିବା+କର୍ତ୍ତୃ. କ୍ୱିପ୍ )—
Jihwālih ୧ । କୁକ୍କୁର—1. Dog.
୨ । ବିରାଡ଼ି—2. Cat

**ଜିହ୍ୱାସୁଖ**—ସଂ. ବି (୬ଷ୍ଠୀ ତତ୍; ଜିହ୍ୱା+ସୁଖ) ରୁଚିକର ଖାଦ୍ୟ ଖାଇବା
Jihwā-sukha ଯୋଗୁଁ ଲାଭ ସୁଖ—Pleasure of the palate; pleasure derived from taking dainty food.

**ଜିହ୍ୱାଶଲ୍ୟ**—ସଂ. ବି—ଖଦିର (ହି. ଶବ୍ଦସାଗର)—
Jihwā-śalya Catechu.

**ଜିହ୍ୱାସ୍ତମ୍ଭ**—ସଂ. ବି ( ୬ଷ୍ଠୀ ତତ୍; ଜିହ୍ୱା+ସ୍ତମ୍ଭ )—ଜିଭର ପକ୍ଷାଘାତ
Jihwā-stambha ରୋଗ—Paralysis of the tongue.
[ ଦ୍ର—ଏ ରୋଗରେ ମନୁଷ୍ୟର ଜିଭ ଅବଶ ଓ ଅକର୍ମଣ୍ୟ ହେବାରୁ ମନୁଷ୍ୟ କଥା କହିପାରେ ନାହିଁ । ]

**ଜିହ୍ୱାସ୍ୱାଦ**—ସଂ. ବ (୬ଷ୍ଠୀ ତତ୍; ଜିହ୍ୱା+ଆସ୍ୱାଦ)—ଚାଟିବା; ଲେହନ—
Jihwāswāda Licking (with the tongue),
(ଜିହ୍ୱାସ୍ୱାଦନ—ଅନ୍ୟରୂପ)

**ଜିହ୍ୱିକା**—ସଂ. ବ ( ଜିହ୍ୱ+ଇକ+ଆ )—୧ । ଜିଭରୁ ଛିଡ଼ଆ ଛାଞ୍ଚିବା-
Jihwikā କର୍ମ ( ହି. ଶବ୍ଦସାଗର)—1. The act of scraping off the furs from the tongue.
୨ । ଜିଭ ଛେଲା; ଜିଭ ଛେଲିବାପାଇଁ ବ୍ୟବହୃତ ଧାତୁର ପତଳା ପାତିଆ—2 Tongue-scraper.

**ଜିହ୍ୱୋଲ୍ଲେଖନ**—ସଂ. ବ (୬ଷ୍ଠୀ ତତ୍; ଜିହ୍ୱା+ଉଲ୍ଲେଖନ)—
Jihwollekhana ଜିହ୍ୱାନିର୍ଲେଖନ (ଦେଖ) Jihwā-nirlekhana (See).

**ଜିହ୍ମ**—ସଂ. ବଣ (ହା ଧାତୁ=ଗତିକରିବା; ତ୍ୟାଗକରିବା+କର୍ତ୍ତୃ. ମ;
Jihma ନିପାତନ; ଯାହା ଋଜୁତା ବା ସରଳତା ତ୍ୟାଗ କରିଅଛି )
୧ । ଗାଲୁ—1. Sloping.
୨ । ବଙ୍କା; ବକ୍ର—2. Tortuous; curved; awry
୩ । କୁଟିଳ—3. Crooked; oblique.
୪ । ଖଳ—4 Wicked; morally crooked.
୫ । କପଟୀ; ଛଳପୂର୍ଣ୍ଣ—5. Deceitful
୬ । ଜଡ଼—6. Lazy; slothful; inert
୭ । ମିଥ୍ୟାବାଦୀ—7. False; lying.
୮ । କୃପଣ—8. Miserly.
୯ । ଅପ୍ରସନ୍ନ—9. Dissatisfied; discontented.
୧୦ । ଅଧାର୍ମିକ—10 Irreligious
୧୧ । ମ୍ଳାନ—11. Poorly.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଈ | ଋ,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇସ୍ତ | ଭୃଅ | ସ୍ର |
| ୨ | ଈ | ଉ | ଋ | ଌ | ସ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଙ୍ୟ | ଇଅ | ଝ | ଟ୍ |

୧୨ । ମନ୍ଦଗତିକନଶିଷ୍ଟ—12. Slowly moving.

ସଂ. ବି—୧ । ମିଥ୍ୟା; ମିଛ—1. Falsehood.

୨ । ଖଳତା—2. Wickedness.

୩ । ଅସତ୍‌ପଣ—3. Dishonesty.

୪ । (ବଙ୍କ ହୋଇ ବଢ଼ିବାରୁ) ତଗର (ଗଛ) (ଦେଖ)
4. Tagara (tree) (See).

**ଜିହ୍ମଗ**—ସଂ. ବିଣ. ପୁଂ (ଜିହ୍ମ+ଗମ୍ ଧାତୁ+କର୍ତ୍ତୃ. ଅ)—୧ । ଯେ ବଙ୍କ
Jihmaga ଗତି କରେ; ବକ୍ରଗାମୀ—1. Moving tortuously or obliquely; having a tortuous movement.
(ଜିହ୍ମଗା—ସ୍ତ୍ରୀ)

୨ । ମନ୍ଦ ଗତିକାରୀ—2. Moving slowly.

ସଂ. ବି.—୧ । ସର୍ପ—1 Snake.

୨ । ଶର—2. Arrow.

**ଜିହ୍ମଗତି**—ସଂ. ବି. ଓ ବିଣ—(କର୍ମଧା ଓ ବହୁବ୍ରୀହି; ଜିହ୍ମ+ଗତି)—
Jihma-gati ଜିହ୍ମଗ (ଦେଖ)
Jihmaga (See)

**ଜିହ୍ମଗାମୀ**—ସଂ. ବି. ଓ ବିଣ. ପୁଂ (ଜିହ୍ମ+ଗମ୍ ଧାତୁ+କର୍ତ୍ତୃ. ଇନ୍;
Jihma-gāmī ୧ମା. ୧ବ)—ଜିହ୍ମଗ (ଦେଖ)
(ଜିହ୍ମଗାମିନୀ—ସ୍ତ୍ରୀ) Jihmaga (See)

**ଜୀ**—ଦେ. ବି. (ସଂ. ଜୀବ)—୧ । ଜୀବନ; ପ୍ରାଣ—
Jī 1. Life.
ଜୀ, ଜୀଉ ୨ । ମନ; ହୃଦୟ—
जी, जीउ 2. Mind; heart.

୩ । ଆକାଂକ୍ଷା—3. Desire; wish.

୪ । (ସ୍ନେହ; ଭକ୍ତି ଓ ବାତ୍ସଲ୍ୟସୂଚକ ପ୍ରୟୋଗ) ଭକ୍ତି, ସ୍ନେହ ବା ବାତ୍ସଲ୍ୟର ପାତ୍ର; ଶ୍ରୀମାନ୍; ମହାଶୟ—4. A person worthy of love, affection or respect.

[ଦ୍ର—ଭକ୍ତି ବା ସମାଦରାର୍ଥରେ—ବାବାଜୀ, ଠାକୁରଜୀ ଶ୍ରୀକୃଷ୍ଣଜୀ; ପୁତ୍ର ବା ଶିଷ୍ୟ ଆଦିଙ୍କ ପ୍ରତି ବାତ୍ସଲ୍ୟ ଅର୍ଥରେ—ବାବୁଜୀ, ବାଲକଦାସ ଜୀ; ସ୍ନେହାର୍ଥରେ—ବାଈଜୀ, ସାନୁଜୀ ।]

[ଦ୍ର—ନାମ ପରେ ସମ୍ମାନର ନିଦର୍ଶନରୂପେ 'ଜୀ' ଯୁକ୍ତ ହେବା ସମ୍ବନ୍ଧରେ ଅବଧାନକାରୀ ଜିଲ୍‌ସନ ସାହେବ ଲେଖିଅଛନ୍ତି ।]

ଦେ. ଅ.—(ସମ୍ବୋଧନାର୍ଥ)—ଭୃତ୍ୟ ପ୍ରଭୁଙ୍କୁ ଉତ୍ତର ପ୍ରଦାନ କରିବାରେ ବ୍ୟବହୃତ ଭକ୍ତିସୂଚକ ସମ୍ବୋଧନ—ହଁ, ମହାଶୟ !—(Interjection) Yes sir ! here sir !

[ଦ୍ର—ହିନ୍ଦୀ ଭାଷାରେ ଏହି ଶବ୍ଦର ଅବ୍ୟୟସୂଚକ ବ୍ୟବହାରର ବିଶେଷ ପ୍ରଚଳନ ଦେଖାଯାଏ । ]

**ଜୀଅନ୍ତ**—ଦେ. ବିଣ.—ଜୀଅନ୍ତା (ଦେଖ)
Jīanta Jīantā (See)

**ଜୀଅନ୍ତା**—ଦେ. ବିଣ. (ସଂ. ଜୀବତ୍)—ଜୀଇଁଥିବା—
Jīantā Living.
ज्यान्त (ଯଥା—ଜୀଅନ୍ତା ଗଛଟି କାଟିବାକୁ କାହା ହାତ ଯିବ ?)
**जीन्दा; जीताजागता**
(ମନ୍ତ୍ର—ବିପର୍ଯ୍ୟୟ)

**ଜୀଆଇବା**—ଦେ. କ୍ରି. (ସଂ. ଜୀବ୍ ଧାତୁ; ଜୀଇଁବାର ଣିଜନ୍ତରୂପ)—
Jīāibā ୧ । ବଞ୍ଚାଇବା; ଜୀବିତ କରିବା—
जीयान 1. To give life; to cause to live.
**जिलाना** ୨ । ମୃତ ପ୍ରାଣୀକୁ ପୁନରୁଜ୍ଜୀବିତ କରିବା—
2. To revive; to bring to life a dead animal.

୩ । ନିର୍ଜୀବ ବସ୍ତୁକୁ ଜୀବଦାନ କରିବା—
3. To animate a dead thing.

୪ । ଶୁଖି ଯାଇଥିବା ବୃକ୍ଷାଦିକୁ ଜଳଦାନ ଓ ଯତ୍ନଦ୍ୱାରା ସଜୀବ ବା ସତେଜ କରିବା—4. To bring a withered plant to life.

୫ । ଜୀବନରେ ରଖିବା; ଜୀବିତ ପ୍ରାଣୀର ପ୍ରାଣ ନାଶ ନ କରି ତାକୁ ବଞ୍ଚାଇ ରଖିବା ବା ରକ୍ଷା କରିବା—
5. To preserve the life of a living being; to prevent the death of a living being.

୬ । କୌଣସି ଜୀବକୁ ପୋଷିବା; ରଖିବା; ପାଳିବା—
6. To maintain or domesticate an animal.

୭ । ଔଷଧାଦି ପ୍ରୟୋଗଦ୍ୱାରା ରୋଗୀକୁ ଜୀବିତ ରଖିବା—
7. To keep a patient alive by medical appliances.

**ଜୀଅଁ**—ଦେ. ବିଣ. ( ସଂ. ଜୀବିତ )—ସଜୀବ; ଜୀବିତ—
Jīan̐ Living; animate.
ज्यान्त
**जीताजागता**

**ଜୀଆଁ**—ଦେ. ବି—ଜୀଇଁବା; ବଞ୍ଚିବା—
जीयाँ Living.
**जीना**

**ଜୀଆଁଇବା**—ଦେ. କ୍ରି—ଜୀଆଇବା ( ଦେଖ )
Jīān̐ibā Jīā-ibā ( See )
( ଜିଆଁଇଁବା; ଜିଇଁଇବା—ଅନ୍ୟରୂପ )

**ଜୀଆଁଇ ରଖିବା**—ଦେ. କ୍ରି—ମାଛ ଆଦି ପାଳି ଜୀଅନ୍ତା ରଖିବା—
Jīān̐i rakhibā To keep an animal alive.
( ଯଥା—ଦରକାରବେଳେ ମାଛ ଧରି ଖିବା ପାଇଁ ଲୋକେ ବଡ଼ ଡଉଡ଼ବାରେ ଗୁଡ଼ଏ ମାଛ ଜିଆଁଇ ରଖନ୍ତି । )

**ଜୀଇ ଉଠିବା**—ଦେ. କ୍ରି—( ମୃତ ବ୍ୟକ୍ତି ବା ବସ୍ତୁ ) ସଜୀବ ହେବା—
Jī-i uṭhibā To revive; to be restored to life.
जीअ उठा ମୃତ୍ୟୁସ୍ପର୍ଶ ବିଷ କର୍ଣ୍ଣରେ କହିଲେ
**जी उठना** ଜୀଇ ଉଠିଲା କୁମରମଣି, ସେ କୁମର—ପ୍ରୀତୀ, ପ୍ରଭାବ ଶଶିସେଣା ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରାମାନଙ୍କରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ତାଇ' ନ ମିଳିଲେ 'ତାଇ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ, 'ବନ୍ଧ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍‌ବଡ୍' ଦେଖିବେ ।

ଜୀଇଁ ଉଠିବା—ଦେ. କ୍ରି—ଜୀଇ ଉଠିବା ( ଦେଖ )
Jī-iñ uthibā — Jīi uthibā ( See )

ଜୀଇଁବା—ଦେ. କ୍ରି —ଜୀଇବା ( ଦେଖ )
Jī-iñbā — Jī-ibā ( See )

ଜୀଇଁ ରହିବା—ଦେ. କ୍ରି—ବଞ୍ଚି ରହିବା; ଜୀବିତ ଥିବା—
Jī-iñ rahibā To live; to go on living; to be alive.
বেঁচে থাকা
जीते रहना

ଜୀଇବା—ଦେ. କ୍ରି. ( ସଂ. ଜୀବ୍ ଧାତୁ )—
Jī-ibā ୧ । ବଞ୍ଚି ରହିବା; ନ ମରିବା; ସଜୀବ ରହିବା—
জীআ 1. To keep one's self alive; not to die;
जीना to live.
୨ । ( ଲକ୍ଷଣାର୍ଥ ) ଖାଦ୍ୟ ପରିପାକ ନ ହୋଇ ରହିବା—
2. (figurative) To remain undigested.
[ ଦ୍ର—ଏହି ଶବ୍ଦର ଅସମାପିକା ରୂପ ସଙ୍ଗେ ଉଠିବା, ଯିବା ଓ ରହିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

ଜୀଉ—ଦେ. ବି—ଜୀ ( ଦେଖ )
Jīu — Jī ( See )

ଜୀଉ ଅଣିବା—ପ୍ରାଦେ. (ସମ୍ବଲପୁର) ବି. ( ସଂ. ଜୀବନ )—
Jīu āṇibā ମୃତ ବ୍ୟକ୍ତିର ଆତ୍ମା ପରଲୋକରେ କିପରି ଚଳୁଅଛି ତାହା ଜାଣିବା ପାଇଁ ଅବଲମ୍ବିତ ପ୍ରଥାବିଶେଷ—
A custom to ascertain, by the use of charms, the condition of the spirit of a dead person after death.
[ ଦ୍ର—ଏହି ପ୍ରଥା ଅନାର୍ଯ୍ୟ 'ଗଣ୍ଡ' ଜାତି ମଧ୍ୟରେ ପ୍ରଚଳିତ । ମୃତ ବ୍ୟକ୍ତିର ପୁତ୍ର, କନ୍ୟା ବା ସ୍ୱଜନମାନେ ଦଶାହ ଶୁଦ୍ଧିରେ ଗୋଟିଏ ପରିଷ୍କୃତ ନିର୍ଜନ ପ୍ରକୋଷ୍ଠରେ ସ୍ୱର୍ଗୀୟ ବ୍ୟକ୍ତିର ଆତ୍ମାକୁ ପୂଜା କରିବା ପରେ ଗୋଟିଏ କଦଳୀ ପତ୍ରରେ ମଇଦା ବା ଅଟା ବିଛାଇ ତହିଁ ଉପରେ ଗୋଟିଏ ହାଣ୍ଡି ଓଲଟାଇ ଦିଅନ୍ତି ଏବଂ ପ୍ରାର୍ଥନା କରନ୍ତି, "ହେ ସ୍ୱର୍ଗତ ପିତଃ ! ତୁମେ କିପରି ଅଛ ଦୟା କରି ଜଣାଅ !" ଏପରି କହି ସମସ୍ତେ ସେ ଘର ବନ୍ଦ କରି ଦେଇ ଚାଲି ଅସନ୍ତି । ଏହି ସମୟରେ ସ୍ତ୍ରୀଲୋକମାନେ କଂସାଟିଏ ଧରି ଘରୁ ବାହାର କଂସା ବଜାଇ ବଜାଇ ଗୀତ ବୋଲନ୍ତି, "ହେ ଜୀବନ ପୁରୁଷ ! କାହିଁ ଅଛ କହେ କର !" ଏହା ବୋଲି ବୋଲି ସେମାନେ ଶ୍ମଶାନ ଆଡ଼କୁ ଯାଆନ୍ତି ଏବଂ ଖଣ୍ଡେ ଦୂର ଯାଇ ଫେରି ଆସି ବନ୍ଦ ହୋଇଥିବା ଘରକୁ ଫିଟାଇ ସେ ହାଣ୍ଡିଟିକୁ ଉଠାଇ ମଇଦାରେ କି ଚିହ୍ନ ପଡ଼ିଛି ତାହା ଦେଖନ୍ତି । ସେ ଚିହ୍ନରୁ ସ୍ୱର୍ଗତ ଆତ୍ମାର ଅବସ୍ଥାର ସଙ୍କେତ ବୁଝାଯାଏ । ତହିଁରେ ଗୋରୁ, ହାତୀ ଆଦି ଜନ୍ତୁଙ୍କ ପାଦଚିହ୍ନର ସାଦୃଶ୍ୟ ଥିଲେ ଆତ୍ମା କୁଶଳରେ ଅଛି ଏବଂ ଦାସ ଜାତି ଅବକ୍ତ ପାଦଚିହ୍ନର ସାମଞ୍ଜସ୍ୟ ଲକ୍ଷିତ ହେଲେ ଆତ୍ମା କଷ୍ଟ ପାଉଛି ବୋଲି ବୁଝାଯାଏ । ଏହା ଦେଖାଯାଇ ଅଛି ଯେ ଅପମୃତ୍ୟୁରେ ମରିଥିବା ବ୍ୟକ୍ତି ପାଇଁ ସଙ୍କେତିତ ମଇଦାରେ ବିରାଡ଼ିର ପାଦଚିହ୍ନ ( ଖୋଜ ) ପଡ଼ିଥାଏ । ଓଡ଼ିଶାରେ ଅନ୍ୟ କେତେକ ଅଞ୍ଚଳରେ ମଧ୍ୟ ହାଣ୍ଡି ତଳେ ବାଲିରେ ଏହିପରି ସାଙ୍କେତିକ ଚିହ୍ନ ଖୋଜିବା ପ୍ରଥା ଚଳେ । ]

ଜୀଉଛି—ଦେ. ବି. ( ସଂ. ଜୀବିତବତ୍ସା )—
Jīuchhi ଗ୍ରାମ ଦେବତା ବା ଯୋଗିନୀ ବିଶେଷ—
Name of a village-Goddess.

ଜୀଉଣି ପନ୍ଥା—ପ୍ରାଦେ. (ଗଡ଼ଜାତ) ବି. ( ସଂ. ଜୀବନ + ପନ୍ଥା )—
Jīuṇi panthā ଜୀବିକା; ଜୀବନୋପାୟ—
Livelihood.

ଜୀତ—ସଂ. ବିଣ—ଜୀନ ( ଦେଖ )
Jīta — Jīna ( See )

ଜୀତକାମୀ—ଦେ. ବିଣ. ( ସଂ. ଜିତକାମୀ )—ଜୟାଭିଳାଷୀ—
Jītakāmī Desirous of gaining victory
ପାଣ୍ଡବେ ଅର୍ଥ ଜୀତକାମୀ ହୋଇଥିଲେ
ଶଲ୍ୟଙ୍କର ଦେହକୁ କାଟକ କରିଲେ । କୃଷ୍ଣସିଂହ. ମହାଭାରତ. ଶଲ୍ୟ ।

ଜୀତ ଗଛ—ଦେ. ବି—ବାଦାମ ଗଛ—
Jīta gachha Olive tree.
जैतुनका झाड़ [ ଦ୍ର—ଏହି ଶବ୍ଦ ବାଇବଲ୍ ଓଲ୍ଡଟେଷ୍ଟାମେଣ୍ଟର ଓଡ଼ିଆ ଅନୁବାଦରେ ବ୍ୟବହୃତ; ଭୁଲ. ହି. ଜୈତୁନ୍ । ]

ଜୀନ—ସଂ. ବିଣ. ( ଜ୍ୟା ଧାତୁ = ବୃଦ୍ଧି ପାଇବା + କର୍ତ୍ତୃ. ତ )—
Jīna ୧ । ଜୀର୍ଣ୍ଣ—1. Worne out; delapidated.
୨ । ବୃଦ୍ଧ; ସ୍ଥବିର; ପ୍ରାଚୀନ—2. Old; ancient.

ଜୀବ୍ (ଧାତୁ)—ସଂ.—ବଞ୍ଚିବା—
Jīb (root) To live.

ଜୀବ୍‌ବା—ପ୍ରାଦେ. (ଭଞ୍ଜ ଭାଷା) କ୍ରି - ଜୀଇବା; ବଞ୍ଚିବା—
Jīb-bā To live; to be alive.

ଜୀବ—ସଂ. ବି ( ଜୀବ୍ ଧାତୁ + କର୍ତ୍ତୃ. ଅ )—୧ । ଜନ୍ତୁ; ପ୍ରାଣୀ; ଚେତନ
Jība ପଦାର୍ଥ; ଦେହୀ—1. Living being; animal; a being; creature; sentient being.
୨ । ପ୍ରାଣବାୟୁ—2. The breath of life.
୩ । (+ ଭାବ. ଅ) ଜୀବନ; ପ୍ରାଣ—
3. Life; existence.
୪ । ବୈଦିକ ମରୁତ୍ ଦେବତାମାନଙ୍କ ମଧ୍ୟରୁ ଏକତମ—
4. One of the vedic wind-Deities.
୫ । ଜୀବାତ୍ମା—5. Animal soul; the soul.
ଜୀବ ପରମ ବ୍ରହ୍ମ ଅଂଶ,
ଏ ଭବ ମୁକ୍ତିରେ ପ୍ରବେଶ । ଜଗନ୍ନାଥ. ଭାଗବତ ।
୬ । ଜୀବନୀଶକ୍ତି—6. Vitality.
୭ । ଚୈତନ୍ୟ—7. Sense; sensation.
୮ । ପ୍ରବୃତ୍ତି; ଇଚ୍ଛା—8 Desire; inclination.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଡ଼ | ଢ଼ | ଣ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଡ | ଢ | ନ୍ |

୯ । ପେଶା; ଜୀବନୋପାୟ; ଜୀବିକା; ବୃତ୍ତି —
9. Livelihood; profession

୧୦ । (ଜ୍ୟୋତିଷ) ପୁଷ୍ୟାନକ୍ଷତ୍ର—
10. The 8th lunar mansion (constellation).

୧୧ । ଜୀବଦ୍ଦଶା; ଜୀବନକାଳ; ଆୟୁ—
11. Lifetime; term of life.

୧୨ । ବିଷ୍ଣୁ—12. A name of Bishṇu.

୧୩ । ବୃହସ୍ପତି (ଗ୍ରହ)—13. Jupiter (planet).

୧୪ । (ଜ୍ୟୋତିଷ) ବୃହସ୍ପତିଙ୍କ ଦଶାରେ ୩ୟ ଅନ୍ତର୍ଦ୍ଦଶା—
14. (astrology) The 3rd lustrum in the cycle of Jupiter (Apte).

୧୫ । (ନ୍ୟାୟ) କାର୍ଯ୍ୟକାରଣ ସମ୍ବନ୍ଧ—
15. (logic) The association of cause and effect (Apte).

ସଂ. ବିଣ—ଜୀବନ୍ତ—Alive.
(ଯଥା—ଜୀବପଶୁ=ଜୀବନ୍ତପଶୁ ।)

ସଂ. କ୍ରି (ସଂ. ଜୀବ୍‌ ଧାତୁର ଲୋଟ୍‌ ୨ୟ ପୁରୁଷ ଏକବଚନ)—
ବଞ୍ଚିରହ; ଜୀଅଁ; ଜୀଇଁଥାଅ—
Live; may you live long.
(ଯଥା—ଚିରଂଜୀବ; ଶତାୟୁଂଜୀବ ।)
[ଦ୍ର—କୌଣସି ବ୍ୟକ୍ତି ବିଶେଷତଃ ବାଳକ ବା ବାଳିକା ଛିଙ୍କିଲେ-ପାଖରେ ଥିବା ଅନ୍ୟ ବ୍ୟକ୍ତି ଛିଙ୍କିବା ଲୋକର ଅମଙ୍ଗଳ ହେବ ବୋଲି ଆଶଙ୍କା କରି ସେହି ଭାବୀ ଅମଙ୍ଗଳ ନିବାରଣାର୍ଥ ଆଶୀର୍ବାଦସୂଚକ 'ଜୀବ', 'ଶତାୟୁଂଜୀବ' ଓ 'ଚିରଂଜୀବ' ଆଦି ବାକ୍ୟ ଉଚ୍ଚାରଣ କରନ୍ତି ।]

**ଜୀବଂଜୀବ**—ସଂ. ବି ( ଜୀବ=ଜୀବନକାଳ+ଜୀବ୍‌ ଧାତୁ=ବଞ୍ଚିବା+କର୍ତ୍ତୃ. ଅ)—ଯେ ଦୀର୍ଘକାଳ ବଞ୍ଚେ, ଚକୋରପକ୍ଷୀ—
Jībamjība
The Himalayan patridge; Francoline patridge.

**ଜୀବକ**—ସଂ. ବି. ପୁଂ (ଜୀବ ଧାତୁ=ବଞ୍ଚାଇବା+କର୍ତ୍ତୃ. ଅକ )—
Jībaka
୧ । ଦୁଷ୍ପ୍ରାପ୍ୟ ଔଷଧବିଶେଷ—
1. Name of a very rare medicinal root.
ସଂ. ପର୍ଯ୍ୟାୟ—ଜୀବକ, ବଳଦ, ଚିରଜୀବ, କୂର୍ଚ୍ଚଶୀର୍ଷ, ମଧୁରକ, ଶୃଙ୍ଗ, ହ୍ରସ୍ୱାଙ୍ଗ, ଜୀବନ, ଦୀର୍ଘାୟୁ, ପ୍ରାଣଦ, ଭୃଙ୍ଗାହ୍ୱ, ଚିରଂଜୀବୀ, ମଙ୍ଗଳ୍ୟ, ଆୟୁଷ୍ମାନ୍ ।
[ଦ୍ର—ଏହା ଆୟୁର୍ବେଦୋକ୍ତ ଅଷ୍ଟ-ବର୍ଗ ମଧ୍ୟରୁ ଗୋଟିଏ ଔଷଧ; ଏହି ଗୁଳ୍ମ ହିମାଦ୍ରି ଶିଖରରେ ଜନ୍ମେ ବୋଲି ବୈଦ୍ୟ-ଶାସ୍ତ୍ରରେ ଲେଖା ଅଛି । ଏହାର କନ୍ଦ ରସୁଣ ପରି ଓ ସାରହୀନ; ପତ୍ର ସୂକ୍ଷ୍ମ ଓ ଏହାର ଅଗ୍ରଭାଗ କୂର୍ଚ୍ଚକ ବା ଭୁଜଙ୍ଗା ପରି । ଏହା ବର୍ତ୍ତମାନ ଦୁଷ୍ପ୍ରାପ୍ୟ । ଏହାର ଅଭାବରେ ବୈଦ୍ୟମାନେ ଗୁଳୁଚି ବ୍ୟବହାର କରନ୍ତି । ବୈଦ୍ୟଙ୍କ ମତରେ ଏହା ମଧୁର, ବଳକାରକ, ଶୀତବୀର୍ଯ୍ୟ, କଫ ଓ ଶୁକ୍ରବର୍ଦ୍ଧକ । ଏହା ପିତ୍ତ, ଦାହ, ରକ୍ତଦୁଷ୍ଟି, କୃଶତା ଓ କ୍ଷୟ ରୋଗରେ ପ୍ରଧାନ ଔଷଧ; ଋଷଭକ ନାମକ ଦୁଷ୍ପ୍ରାପ୍ୟ ଔଷଧ ମଧ୍ୟ ଏହି ଜାତୀୟ ଗୁଳ୍ମ । କିନ୍ତୁ ଦୁହିଙ୍କ ମଧ୍ୟରେ ପ୍ରଭେଦ ଏହି କି ଋଷଭକର କନ୍ଦ ଗୋରୁ ଶିଙ୍ଘ ଆକୃତିର ଓ ଜୀବକ କନ୍ଦର ଆକୃତି ଝାଡ଼ୁ ପରି—ଦ୍ର. ଶବ୍ଦସାଗର ।]

୨ । ('ଜୀବ' ଅର୍ଥାତ୍ 'ବଞ୍ଚି ରହ' ବୋଲି ଯେଉଁ ବ୍ୟକ୍ତି ଅନ୍ୟକୁ ଆଶୀର୍ବାଦ କରନ୍ତି ) ଆଶୀର୍ବାଦକାରୀ ବ୍ୟକ୍ତି—
2. One who utters benediction on another.

୩ । ବୁଦ୍ଧଦେବଙ୍କ ଚିକିତ୍ସକ ଓ ଆତ୍ରେୟ ମୁନିଙ୍କ ଶିଷ୍ୟ—
3. Name of the physician of the Buddha and disciple of sage Ātreya.

୪ । ଭିକ୍ଷୁକ—4. A beggar; mendicant.

୫ । ଦୀର୍ଘଜୀବୀ ବ୍ୟକ୍ତି—
5. A long-lived person.

୬ । ବୃଦ୍ଧିଜୀବୀ; ସୁଧଖୋର—6. A usurer

୭ । ସାପୁଆ—7. A snake charmer; snake-catcher.

୮ । ( +କର୍ମ. ଅକ ) ସେବକ; ଚାକର; ଭୃତ୍ୟ; ଦାସ—
8. Slave; servant; attendant.

୯ । ପ୍ରାଣୀ—9. Animal

୧୦ । ପୀତ ଶାଳବୃକ୍ଷ ( ଦ୍ର. ଶବ୍ଦସାଗର )—
10. A kind of timber-tree.

ସଂ. ବିଣ—ଦୀର୍ଘଜୀବୀ—Long-lived

**ଜୀବକଣା**—ସଂ. ବି. ( ଆଧୁନିକ ପ୍ରୟୋଗ; ବିଜ୍ଞାନପରିଭାଷା )—ରକ୍ତରେ ଥିବା ଜୀବାଣୁ—Blood corpuscles.
Jība-kaṇā

**ଜୀବକୁଳ**—ସଂ. ବି—ଜୀବଲୋକ ( ଦେଖ )
Jība-kuḷa
Jība-loka ( See)

**ଜୀବଗୃହ**—ସଂ. ( ୬ଷ୍ଠୀ ତତ୍; ଜୀବ+ଗୃହ; ଜୀବର ବାସସ୍ଥାନ )—
Jība-gṛuha
ଦେହ; ଶରୀର—( the abode of the soul ) The body.

**ଜୀବଘନ**—ସଂ. ବି—ବ୍ରହ୍ମ—
Jība-ghana
Brahmā ( Apte).

**ଜୀବ ଛାଡ଼ିବା**—ଦେ. କ୍ରି—ମରିବା; ଜୀବନୀଶକ୍ତି ଲୋପ ହେବା—
Jība chhāḍibā
To die.
ଜୀବଛାଡ଼ା
ଦେ. ବି.—ମରଣ ଘଟିବା—
**जी छोड़ना**
Dying.

**ଜୀବଜ**—ସଂ. ବିଣ. ପୁଂ. ( ଜୀବ+ଜନ ଧାତୁ+କର୍ତ୍ତୃ. ଅ )—
Jībaja
ଜୀଅନ୍ତା ଜନ୍ମିଥିବା ( ଶିଶୁ )—
( ଜୀବଜା—ସ୍ତ୍ରୀ )
( a child ) Born alive.

**ଜୀବଜଗତ୍**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ଜଗତ୍ )—
Jība-jagat
ଜୀବଲୋକ ( ଦେଖ )—Jībaloka ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'କୃଥ' ନ ମିଳିଲେ 'କଥ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜୀବଜନ୍ତୁ**—ଦେ. ବି. ( ସଂ. ଜୀବ+ଜନ୍ତୁ; ଏକାର୍ଥକ ସହଚର )—
Jība-jantu ୧ । ବିବିଧ ଜୀବ; ପ୍ରାଣିସମୂହ; ନାନାଜନ୍ତୁ—
जीवजन्त 1. Animals; various creatures.
जीवजन्तु ୨ । ସାଧାରଣ ପ୍ରାଣୀ—
2. A general term for animals.

**ଜୀବଜୀବ**—ସଂ. ବି— ଜୀବଞ୍ଜୀବ ( ଦେଖ )
Jība-jība Jībaṁjība ( See )

**ଜୀବଜୀବକ**— ସଂ. ବି. ( ଜୀବଜୀବ=ଚକୋର+ସ୍ୱାର୍ଥରେ କ )—
Jība-jībaka ଜୀବଞ୍ଜୀବ ( ଦେଖ )—Jībaṁjība ( See )

**ଜୀବଞ୍ଜୀବ**—ସଂ. ବି— ଜୀବଂଜୀବ ( ଦେଖ )
Jībañjība Jībaṁjība ( See )

**ଜୀବତ୍**— ସଂ. ବିଣ. (ଜୀବ୍ ଧାତୁ+କର୍ତ୍ତୃ. ଅତ୍)—ବଞ୍ଚିଥିବା; ଜୀଅନ୍ତା—
Jībat Living; alive.
[ଦ୍ର—ଏହାର ସ୍ୱତନ୍ତ୍ର ବ୍ୟବହାର ନାହିଁ ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ । ଯଥା— ଜୀବତ୍‌ପିତୃକ, ଜୀବନ୍ମାତୃକ, ଜୀବତ୍‌ସ୍ୱାମିକା । ]

**ଜୀବତ୍‌ପତି**—ସଂ. ବିଣ. ସ୍ତ୍ରୀ. ( ବହୁବ୍ରୀହି; ଜୀବତ୍ +ପତି )—ସଧବା;
Jībat-pati ଅହ୍ୟ—Having one's husband living.

**ଜୀବତ୍‌ପତିକା**— ସଂ. ବିଣ. ସ୍ତ୍ରୀ. ( ଜୀବତ୍+ପତି+ସ୍ତ୍ରୀ. ଆ ) –
Jībat-patikā ଜୀବତ୍‌ପତି ( ଦେଖ )
Jībat-pati ( See )

**ଜୀବତ୍‌ପତ୍ନୀ**—ସଂ. ବିଣ. ସ୍ତ୍ରୀ. ( ଜୀବତ୍+ପତି+ସ୍ତ୍ରୀ. ଈ )
Jībat patnī ଜୀବତ୍‌ପତି ( ଦେଖ )
Jībat-pati ( See )

**ଜୀବତ୍‌ପତ୍ନୀକ**—ସଂ. ବିଣ. ପୁଂ. ( ବହୁବ୍ରୀହି; ଜୀବତ୍+ପତ୍ନୀ;
Jībat-patnīka କ ଆଗମ )—ଯାହାର ସ୍ତ୍ରୀ ଜୀବିତା—
Having the wife still living.

**ଜୀବତ୍‌ପିତୃକ**—ସଂ. ବିଣ. ପୁଂ. (ବହୁବ୍ରୀହି; ଜୀବତ୍+ପିତୃ; କ ଆଗମ)—
Jībat-pitṛuka ଯାହାଙ୍କର ପିତା ବିଦ୍ୟମାନ ଅଛନ୍ତି—Having
( ଜୀବତ୍‌ପିତୃକା—ସ୍ତ୍ରୀ ) one's father still living.
[ ଦ୍ର—ଜୀବତ୍‌ପିତୃକ ବ୍ୟକ୍ତିଙ୍କ ପକ୍ଷରେ ଅମାସ୍ନାନ, ଗୟାଶ୍ରାଦ୍ଧ, ଦକ୍ଷିଣମୁଖ ଭୋଜନ, ଶ୍ମଶ୍ରୁ ମୁଣ୍ଡନ ନିଷିଦ୍ଧ । ନବଦ୍ୱୀପ ଜୀବତ୍‌ପିତୃକ ବ୍ରାହ୍ମଣ ବୃଦ୍ଧିଶ୍ରାଦ୍ଧ ଛଡ଼ା ଅନ୍ୟ ଶ୍ରାଦ୍ଧ କରିବାର ଅଧିକାରୀ ନୁହନ୍ତି । ସାଗ୍ନିକ ଜୀବତ୍‌ପିତୃକ ବ୍ରାହ୍ମଣ ସବୁ ଶ୍ରାଦ୍ଧ କରି ପାରିବେ—
ହି. ଶବ୍ଦସାଗର । ]

**ଜୀବତ୍‌ମାନ**—ଗ୍ରା. ବିଣ. ( କଟକିଆ ଭାଷା )—ଜୀବିତ; ବିଦ୍ୟମାନ—
Jībat-māna Living
( ଜୀବତମାନ—ଅନ୍ୟରୂପ )

**ଜୀବତତ୍ତ୍ୱ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ତତ୍ତ୍ୱ )—
Jība-tattwa ପ୍ରାଣିବିଜ୍ଞାନ; ପ୍ରାଣିତତ୍ତ୍ୱ ବିଦ୍ୟା—
Zoology; biology.

**ଜୀବତି**—ଗ୍ରା. ( ପଦ୍ୟ ) ବି (ସଂ. ଜୀବତ)—ଜୀବନ—
Jībati Life.
ଝୁରି ଝୁରି ତନୁ ଝଡ଼ି ଯାଉଅଛି କେବଳ ରହିଛି ଜୀବତି—
ପ୍ରାଚୀ ରହସ୍ୟମଞ୍ଜରୀ ।
ସଂ. କ୍ରି. ( ସଂ. ଜୀବ୍ ଧାତୁ ବର୍ତ୍ତମାନକାଳ ସଂ. ପ୍ରଥମ ପୁରୁଷ ଏକବଚନ )—( ସେ ) ବଞ୍ଚେ; ଜୀବିତ ରହେ—
( he ) Lives.
ତୋ ମୁଖ ଉଡ଼ ସୁମରି ଜୀବତି ସଖୀୟେ—ପ୍ରାଚୀ. ରସବାରିଧି ।

**ଜୀବତୋକା**— ସଂ. ବିଣ. ସ୍ତ୍ରୀ. ( ବହୁବ୍ରୀହି, ଜୀବ=ଜୀବିତ+ତୋକ=
Jība-tokā ଅପତ୍ୟ+ସ୍ତ୍ରୀ. ଆ )—
ଯେଉଁ ସ୍ତ୍ରୀର ସନ୍ତାନମାନେ ଜୀବିତ ଅଛନ୍ତି—
A woman whose children are living.

**ଜୀବତ୍ତୋକା**—ସଂ, ବିଣ. ସ୍ତ୍ରୀ. ( ବହୁବ୍ରୀହି; ଜୀବତ୍+ତୋକ+ଆ )—
Jībattokā ଜୀବତୋକା ( ଦେଖ )
Jība-tokā ( See )

**ଜୀବତ୍ୟାଗ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ତ୍ୟାଗ )—ମୃତ୍ୟୁ—
Jība-tyāga Death.

**ଜୀବଥ**—ସଂ. ବିଣ. ପୁଂ. ( ଜୀବ ଧାତୁ+କର୍ତ୍ତୃ. ଅଥ )—
Jībatha ୧ । ବହୁକାଳଜୀବୀ, ଦୀର୍ଘଜୀବୀ—
(ଜୀବଥା—ସ୍ତ୍ରୀ) 1. Long-lived.
୨ । ଧାର୍ମିକ—2 Pious; virtuous.
ସଂ. ବି—୧ । ଜୀବନ—1. Life.
୨ । କଚ୍ଛପ—2. Tortoise.
୩ । ମୟୂର—3. Peacock.
୪ । ମେଘ— 4. Cloud.
୫ । ଧର୍ମ; ପୁଣ୍ୟ—Piety.

**ଜୀବଦ**—ସଂ ବିଣ. ପୁଂ. ( ଜୀବ+ଦା ଧାତୁ+କର୍ତ୍ତୃ. ଅ )—
Jībada ଯେ ପ୍ରାଣ ଦାନ କରେ ବା ଜୀବ ବଞ୍ଚାଏ; ଜୀବ-
(ଜୀବଦା—ସ୍ତ୍ରୀ) ଦାତା; ପ୍ରାଣଦାତା—One who breathes life into another; one who saves another; life-giver; preserver of life; vivifier.
ସଂ. ବି—୧ । ବୈଦ୍ୟ; ଚିକିତ୍ସକ—1. A physician.
୨ । ଜୀବକ ନାମକ ଗୁଳ୍ମ ( ହି. ଶବ୍ଦସାଗର )—
2. A rare medicinal plant.
୩ । ଜୀବନ୍ତୀ ( ହି. ଶବ୍ଦସାଗର ) ( ଦେଖ )
3. Jībantī ( See )
୪ । ( ଜୀବ+ଦୋ ଧାତୁ ଛେଦନ କରିବା+କର୍ତ୍ତୃ. ଅ )—
ଶତ୍ରୁ— 4. Enemy.

**ଜୀବଦାତା**—ସଂ. ବି. ପୁଂ. (ଜୀବ+ଦା ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—
Jībadātā ଜୀବଦ ( ଦେଖ )
(ଜୀବଦାତ୍ରୀ—ସ୍ତ୍ରୀ) Jībada ( See )

| ୧ | ଇ | ଓ | ରୃ,ର୍ତ୍ତ | ୯ | ୨ | ହ୍ରସ୍ୱ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ॰ | ୍ୟ | ୍ଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଲୃ | ଙ୍କ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଃ | ଯ | ସ | ଚ୍ୟ | ଥ | ଈ | ନ୍ |

**ଜୀବଦାନ**—ସ. ବି. ( ୬ଷ୍ଠୀ ତତ୍; ଜୀବ+ଦାନ )—
Jība-dāna ୧ । ଜୀବନନ୍ୟାସ ( ଦେଖ )
1. Jība-nyāsa ( See )
୨ । ପ୍ରାଣୀକୁ ମୃତ୍ୟୁ ମୁଖରୁ ରକ୍ଷା କରିବା—
2. Saving a being from death.

**ଜୀବଦ୍ଦଶା**—ସ. ବି. ( ଜୀବତ୍+ଦଶା )—
Jībaddaśā ୧ । ପୃଥିବୀରେ ଜୀଇଁ ରହିବା ଅବସ୍ଥା; ଜୀବନ—
1. Life; mortal existence.
୨ । ଅମଳ; ଜୀବତକାଳ—2. Life-time.
୩ । ଜୀବିତାବସ୍ଥା—3 State of existence.

**ଜୀବଧନ**—ସ. ବି. ( ରୂପକ କର୍ମଧା; ଜୀବ=ଜୀବିତ ପ୍ରାଣୀ+ଧନ )—
Jība-dhana ୧ । ଧନ ବା ସମ୍ପତ୍ତିରୂପେ କୌଣସି ବ୍ୟକ୍ତିର ଥିବା ଗୋମେଷାଦି ପ୍ରାଣୀ—1. Livestock; wealth consisting of living animals.
୨ । ( ୬ଷ୍ଠୀ ତତ୍ ) ପ୍ରାଣଧନ; ଅପଣା ପ୍ରାଣର ସଙ୍ଗାଳ; ପ୍ରିୟତମ ବ୍ୟକ୍ତି—2. One's dearest person.
ଜୀବନେ ଅଛୁ ବୋଲା ତୋ ଜୀବଧନ । ରାଧାନାଥ. ନେପତ୍ତୂତ ।

**ଜୀବଧବ**—ସ. ବି ( ୬ଷ୍ଠୀ ତତ୍; ଜୀବ+ଧବ )—
Jībadhaba ୧ । ସ୍ୱାମୀ—1. Husband.
୨ । ଜନ୍ମୁରାଣ; ଯମ—
2. The God of death.
କେ ପୁଣି ବେଗେ ଯିବ ଜୀବଧବେ (୧) କହିବ
ଜୀବଧବ (୨) ନେଉଛି ଜୀବ । ଭଞ୍ଜ. ଲାବଣ୍ୟବତୀ ।

**ଜୀବଧବପୁର**—ସ. ବି. ( ୬ଷ୍ଠୀ ତତ୍, ଜୀବଧବ+ପୁର )—
Jība-dhaba-pura ୧ । ଯମପୁର—1. The abode of death.
୨ । ମୃତ୍ୟୁ—2. Death.

**ଜୀବଧାତ୍ରୀ**—ସ. ବି. ( ଜୀବ+ଧା ଧାତୁ+ଅଧିକରଣ. ଅନ+ସ୍ତ୍ରୀ. ଈ; ଯାହା ଜୀବଗଣଙ୍କୁ ଧାରଣ କରେ )—
Jība-dhāni
ପୃଥିବୀ—The earth.

**ଜୀବଧାରୀ**—ସ. ବି. ( ଜୀବ+ଧୃ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ )—
Jība-dhārī ପ୍ରାଣୀ—Animal; living being.

**ଜୀବନ**—ସ. ବି. ( ଜୀବ୍ ଧାତୁ+ଭାବ. ଅନ )—
Jībana ୧ । ପ୍ରାଣ—1. Life.
୨ । ଜୀବିତ ହେବା ଅବସ୍ଥା; ପ୍ରାଣଧାରଣ—
2. Existence.
୩ । ପେଶା; ବୃତ୍ତି; ଜୀବିକା; ଜୀବନୋପାୟ—
3. Livelihood; means of subsistence.
୪ । ପ୍ରାଣୀ—4. Animal.
୫ । (+କରଣ. ଅନ) ଜଳ—5. Water.
୬ । ପ୍ରାଣବାୟୁ—
6. The vital airs; life's breath.
୭ । ପ୍ରାଣର ସଙ୍ଗାଳ; ଜୀବଧନ; ପ୍ରିୟତମ ବ୍ୟକ୍ତି—
7. One's dearest person; beloved person, one 'dearest dear'.
ମୋ ଜୀବନ କାହିଁ ହଜାଇଲି
କାହିଁ ଅଣି ଦିଅ ଅଛି କୋଳ । ଜଗନ୍ନାଥ. ସଙ୍ଗୀତ
୮ । ସଦ୍ୟଜାତ ନବନୀ ବା ଘିଅ—
8. Fresh butter or ghee.
୯ । ଜୀବାତ୍ମା—
9. The vital energy; the living soul.
୧୦ । ବାୟୁ; ସମୀରଣ—10. The air; wind.
୧୧ । ( ଜୀବ ଧାତୁ+କର୍ତ୍ତୃ. ଅନ ) ପୁତ୍ର—11. Son.
୧୨ । ପରମେଶ୍ୱର—
12. God; the Supreme Being
୧୩ । ଜୀବକ ( ଦେଖ )
13. Jībaka ( See )
୧୪ । ମଜ୍ଜା—14 Marrow of the bones; pith; sap.
୧୫ । ହୈୟଙ୍ଗବୀନ; ଗତ କାଲର ଦୁଧରୁ ପ୍ରସ୍ତୁତ ଲହୁଣୀ—
15. Butter made from yesterday's milk.
୧୬ । (+ଅଧିକରଣ ଅନ)—ଜୀବିତକାଳ; ଜନ୍ମ ଓ ମୃତ୍ୟୁର ମଧ୍ୟସ୍ଥ ସମୟ (ହି. ଶବ୍ଦସାଗର)—16. Life-time.
ଦେବଙ୍କୁ ଜୀବନ ଅଧେ ଦେଇ ଶିବା କାନ୍ତ କପାଳର ବଦଳରେ ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।
୧୭ । ( +କରଣ ଅନ )—ଜୀବିତ ରହିବା ବସ୍ତୁ; ଯେଉଁ ପଦାର୍ଥ ଯୋଗୁଁ ଜଣକର ପ୍ରାଣ ରହୁଛି (ହି. ଶବ୍ଦସାଗର)—17. A thing essential for one's existence.
(ଯଥା—ମାଆ ଦୁଧହିଁ ବର୍ତ୍ତମାନ ଏ ଶିଶୁଟିର ଏକମାତ୍ର ଜୀବନ ହୋଇଛି ।)
୧୮ । ପୁତ୍ର (ହି. ଶବ୍ଦସାଗର)—18. Son.
୧୯ । ଗଙ୍ଗା ନଦୀ (ହି. ଶବ୍ଦସାଗର)—
19. The river Ganges.
ସ. ବିଣ—୧ । ପୋଷଣକାରୀ; ପୋଷଣକର୍ତ୍ତା—
1. One who maintains another.
୨ । ଜୀବଦାତା; ଉଜ୍ଜୀବକ—2 Preserver of one's life; life-giving; enlivening.
୩ । ଜୀବାଧିଷ୍ଠାତା—3. Pervading the life.
[ ଦ୍ର—ବାତ୍ସଲ୍ୟରେ ପୁତ୍ର ବା ଶିଷ୍ୟଆଦିଙ୍କୁ 'ବାବାଜୀ, ବାବାଜୀଉ ବାବାଜୀବନ' ଇତ୍ୟାଦି ସମ୍ବୋଧନ କରାଯାଏ । ]

**ଜୀବନ ଉତ୍ସର୍ଗ କରିବା**—ଦେ. କ୍ରି—କୌଣସି କାର୍ଯ୍ୟ ବା ବ୍ୟକ୍ତି କମନ୍ତେ ଅପଣାର ପ୍ରାଣକୁ ପାଣି ଛଡ଼ାଇବା—
Jībana utsarga karibā
जीवन उत्सर्ग करना
जीवन उत्सग करना
To sacrifice one's life for some object or person, to dedicate one's life.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତୀୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଁା' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଡ ନ ପାଇଲେ 'ଅଲ୍‌ବଡ଼ ଦେଖିବେ'

**ଜୀବନ ଉପରେ ପଡ଼ିବା**—ଦେ. ବି—ପ୍ରାଣାନ୍ତକ ସଙ୍କଟାପନ୍ନ ହେବା
Jībana upare pardibā ଅବସ୍ଥା—1. The state of a
প্রাণেরদায় হওয়া person being in danger of
**जीको पड़ना** his life.
୨ । ଅତି ଗୁରୁତର ମନୋଦୁଃଖ ବା କଷ୍ଟ ଅବସ୍ଥା—
2, The state of extreme anguish or pain.

**ଜୀବନକ**—ସଂ. ବି. (ଜୀବନ+ସ୍ୱାର୍ଥରେ କ; ଯାହା ପ୍ରାଣରକ୍ଷା କରେ)—
Jībanaka ଖାଦ୍ୟ; ଅନ୍ନ—Food.

**ଜୀବନ ଘେନିବା**—ଦେ. କ୍ରି—ହତ୍ୟା କରିବା; ପ୍ରାଣ ନେବା—
Jībana ghenibā To kill; to take one's life.
জীবন লওয়া ବୋଇଲେ ତୋ ଜୀବନ ଘେନିବି ମୁଁ ଅଜ ।
**जीव लेना** କୃଷ୍ଣସିଂହ, ମହାଭାରତ ବନ ।

**ଜୀବନଚରିତ**—ସଂ. ବି. (୬ଷ୍ଠୀ ତତ୍; ଜୀବନ+ଚରିତ)—
Jībana-charita ୧ । କୌଣସି ବ୍ୟକ୍ତିର ଜୀବିତକାଳରେ ଘଟିବା ବିଷୟମାନଙ୍କ ବିବରଣ ବା ବର୍ଣ୍ଣନା—2. Description of the events of the life of a person.
୨ । କୌଣସି ବ୍ୟକ୍ତିଙ୍କର ଜୀବିତ କାଳର ଘଟନାର ବିବରଣ-ସମ୍ବଳିତ ଗ୍ରନ୍ଥ—2, Biography; a book describing the life and acts of a person.

**ଜୀବନ ଛାଡ଼ିବା**—ଦେ. କ୍ରି ଓ ବି—ଜୀବ ଛାଡ଼ିବା (ଦେଖ)—
Jībana chhārdibā Jība chhārdibā (See)
জীব ছাড়া
**जीव छोड़ना**

**ଜୀବନଜ**—ସଂ. ବି. (୫ମୀ ତତ୍; ଜୀବନ+ଜନ୍ ଧାତୁ+କର୍ତ୍ତୃ. ଅ)—
Jībanaja ପଦ୍ମ; ଜଳଜ—Lotus.
ଜୀବନଜବଦନାକୁ ଜୀବନ ଯତନେ ବିକି ଦେଇଅଛି ।
କବିସୂର୍ଯ୍ୟ—ତୃଷ୍ଣାଗୀତ ।

**ଜୀବନତରଙ୍ଗ**—ସଂ. ବି. (୬ଷ୍ଠୀ ତତ୍; ଜୀବନ+ତରଙ୍ଗ)—
Jībana-taraṅga ୧ । ଜଳତରଙ୍ଗ—1. Wave of water.
୨ । (ରୂପକ କର୍ମଧା) ତରଙ୍ଗପରି ଦୋଲାୟମାନ ପ୍ରାଣ—
2. The wave of life.

**ଜୀବନଦ**—ସଂ. ବିଣ. ପୁଂ. (ଜୀବନ+ଦା ଧାତୁ+କର୍ତ୍ତୃ. ଅ)—
Jībanada ୧ । ଜୀବନ ଦାତା; ଯେ ପ୍ରାଣ ଦିଏ—
(ଜୀବନଦା—ସ୍ତ୍ରୀ) 1. Life-giving.
୨ । ଜଳଦାତା—2. Giving water.
୩ । ବର୍ଷା କରୁଥିବା; ବର୍ଷୁଥିବା—3. Raining.
ଜୀବନଦ ନୀଳ ଜଳଜ ଯୁଗଳ । କବିସୂର୍ଯ୍ୟ. କଣୋପଲକଳ୍ପ. ଜ. ଗୀତ ।

**ଜୀବନ ଦେବା**—ଦେ. କ୍ରି—ମରିବା; ଅନ୍ୟବ୍ୟକ୍ତି ପାଇଁ ପ୍ରାଣ ହାରିବା—
Jībana debā To die (for another).
প্রাণ দেওয়া
**जीव देना**

**ଜୀବନଧନ**—ସଂ. ବି. (ରୂପକ. କର୍ମଧା, ଜୀବନ+ଧନ)—
Jībana-dhana ଜୀବଧନ (ଦେଖ)
Jība-dhana (See)

**ଜୀବନ ଧରିବା**—ଦେ. କ୍ରି—ବଞ୍ଚିବା—To live.
Jībana dharibā ଚକ୍ଷୁବିହୀନେ ଘୋରବନେ
জীবন ধরা ଜୀବନ ଧରିବେ କେସନେ । ଜଗନ୍ନାଥ. ଭାଗବତ ।
**जीवधारण करना**

**ଜୀବନଧର୍ମ**—ସଂ. ବି. (୬ଷ୍ଠୀ ତତ୍; ଜୀବନ+ଧର୍ମ)—
Jībana-dharma ଜୀଅନ୍ତା ପ୍ରାଣୀର ସ୍ୱାଭାବିକ କର୍ମ—
The natural acts of a living being.

**ଜୀବନଧାରଣ**—ସଂ. ବି. (୬ଷ୍ଠୀ ତତ୍, ଜୀବନ+ଧାରଣ)—
Jībana-dhārana ପ୍ରାଣଧାରଣ; ବଞ୍ଚିରହିବା—
Living; existence; being alive.

**ଜୀବନ ନେବା**—ଦେ. କ୍ରି—୧ । ମାରି ପକାଇବା; ବଧ କରିବା—
Jībana nebā 1. To kill.
প্রাণ লওয়া ୨ । ପ୍ରାଣାନ୍ତକ କଷ୍ଟ ଦେବା—
**जीव लेना** 2. To give extreme pain.

**ଜୀବନ ପଶିବା**—ଦେ. କ୍ରି—ଦେହରେ ପ୍ରାଣବାୟୁ ସଞ୍ଚରିବା—
Jībana paśibā The dawning of the vital spark
প্রাণ ঢুকা in the body.
**जी पड़ना**

**ଜୀବନ ବାହାରିଯିବା**—ଦେ. କ୍ରି—ଜୀବନ ଯିବା (ଦେଖ)
Jībana bāhāri-jībā Jībana jībā (See)

**ଜୀବନ ବିକିବା**—ଦେ. କ୍ରି.—ନିଜର ପ୍ରାଣକୁ (ଅନ୍ୟ ବ୍ୟକ୍ତି ଠାରେ)
Jībana bikibā ସମର୍ପଣ କରିବା; ଦାସତ୍ୱ ସ୍ୱୀକାର କରିବା—
জীব বেঁচা To dedicate one's life to another.
**जी बँचना**
ଜୀବନବଦନାକୁ ଜୀବନ ଯତନେ ବିକି ଦେଇଅଛି ।
କବିସୂର୍ଯ୍ୟ. ତୃଷ୍ଣା ଗୀତ ।

**ଜୀବନବୃତ**—ଦେ. ବି. (ସଂ. ଜୀବନ+ବୃତ୍ତି)—୧ । ଜୀବିକା—
Jībana-bruta 1. Livelihood.
୨ । ପେଶା—2. Profession.

**ଜୀବନବୃତ୍ତ**—ସଂ. ବି. (୬ଷ୍ଠୀ ତତ୍; ଜୀବନ+ବୃତ୍ତ)—ଜୀବନଚରିତ; ଜୀବନୀ—Biography.
Jībana-brutta
(ଜୀବନବୃତ୍ତାନ୍ତ—ଅନ୍ୟରୂପ)

**ଜୀବନବୃତ୍ତି**—ସଂ. ବି. (୬ଷ୍ଠୀ ତତ୍; ଜୀବନ+ବୃତ୍ତି)—୧ । ଜୀବିକା—
Jībana-brutti 1. Livelihood.
୨ । ପେଶା—2. Profession.

**ଜୀବନମରଣ**—ସଂ. ବି. (ବିପରୀତାର୍ଥ ସହଚର)—ଜୀଇଁବା ଓ ମରିବା—
Jībana-marana Life and death; living and dying.

| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ଼ | ଉଅ | ୟ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଓ | ନ୍ହ |

**ଜୀବନମରଣ ସମସ୍ୟା**—ସଂ. ବି. (ଅଧୁନାତନ ପ୍ରୟୋଗ; ଦ୍ୱନ୍ଦ୍ୱ ଓ ୬ଷ୍ଠୀ ତତ୍; Jībana-maraṇa samasyā ଜୀବନ+ମରଣ+ସମସ୍ୟା)—ଜୀବନ ରହିବ କି ଯିବ ଏହିପରି ସଙ୍କଟ—The question of life and death.

**ଜୀବନମୁକ୍ତ**—ଦେ. (ପଦ୍ୟ) ବିଣ.—ଜୀବନ୍ମୁକ୍ତ (ଦେଖ) Jībana-mukta Jībanmukta (See)

ବ୍ରହ୍ମାଣ୍ଡେ ଜୀବନମୁକ୍ତ ଅଛଇ କେ ସବେ?
ଭକ୍ତ. ବୈଦେହୀଶବିଳାସ ।

**ଜୀବନମୂର୍ଚ୍ଛା**—ଦେ. ବି. (ସଂ. ଜୀବନ ଓ ମୂର୍ଚ୍ଛା)—ଜୀବନତ୍ୟାଗ; ପ୍ରାଣ Jībana-mūrchchhā ଛାଡ଼ିବା—Giving up one's life.
जीवनमूर्छ्ा ଦେ. ବିଣ.—ଯେଉଁ କାର୍ଯ୍ୟରେ ଜୀବନସଙ୍କଟ ଥାଏ; ଯହିଁରେ ପ୍ରାଣ ସଙ୍କଟାପନ୍ନ ହୁଏ—(work) Endangering life; causing danger to one's life.

**ଜୀବନମୃତ**—ଦେ. ବିଣ.—ଜୀବନ୍ମୃତ (ଦେଖ) Jībana-mṛuta Jībanmṛuta (See)

ଶଙ୍କେ ଏହାର ଚେତ ହର,
ଜୀବନମୃତ ପ୍ରାପ୍ତ କର । ଜଗନ୍ନାଥ. ଭାଗବତ ।

**ଜୀବନ ଯିବା**—ଦେ. କ୍ରି.—୧ । ମରିବା—
Jībana jībā 1. Dying.
जीव जाना ୨ । ପ୍ରାଣାନ୍ତକ କଲବଲ ହେବା—
जी छूटना 2. Being extremely tormented.
୩ । ମୁମୂର୍ଷୁ ଅବସ୍ଥା—
3. Dying condition; ebbing of life.

**ଜୀବନଯୋନି**—ସଂ. ବି. ( ୬ଷ୍ଠୀ ତତ୍; ଜୀବନ+ଯୋନି=ଉତ୍ପତ୍ତି )—Jībana-joni ଦେହରେ ପ୍ରାଣସଞ୍ଚାରର କାରଣ; ସଞ୍ଜୀବନ ଯନ୍ତ୍ର—The cause of existence.

**ଜୀବନଶଙ୍ଖାଳି**—ଦେ. ବି.—ଜୀବଧନ; ପ୍ରିୟତମ ବ୍ୟକ୍ତି—
Jībana-śaṅkhāḷi One's dearest person.

**ଜୀବନଷ୍ଟି**—ଦେ. ବି.—୧ । ମୃତ୍ୟୁ—
Jība-nashṭi 1. Death; extinction.
୨ । ପ୍ରାଣିକ୍ଷୟ—2. Death of animals.

**ଜୀବନସଙ୍ଗୀ**—ସଂ. ବିଣ. ପୁଂ (୬ଷ୍ଠୀ ତତ୍; ଜୀବନ+ସଙ୍ଗୀ)—
Jībana-saṅgī ୧ । ସ୍ୱାମୀ—1. Husband.
(ଜୀବନ ସଙ୍ଗିନୀ—ସ୍ତ୍ରୀ) ୨ । ପ୍ରିୟତମ ବ୍ୟକ୍ତି—
2. One's dearest person.

**ଜୀବନ ହାରିବା**—ଦେ. କ୍ରି.—ମରିବା; ପ୍ରାଣ ବିସର୍ଜନ କରିବା—
Jībana hāribā To die,
প্রাণ হারা
जी छोड़ना

**ଜୀବନା**—ସଂ. ବି.—(ଜୀବ୍ ଧାତୁ+କରଣ ଅନ+ଆ)—
Jībanā ୧ । ମହୌଷଧ (ହି. ଶବ୍ଦସାଗର)—1. Medicine.
୨ । ଜୀବନ୍ତୀ ଲତା (ହି. ଶବ୍ଦସାଗର)—
Jībantī creeper (See)

**ଜୀବନାନ୍ତ**—ସଂ. ବି. (୬ଷ୍ଠୀ ତତ୍; ଜୀବନ+ଅନ୍ତ)—୧ । ମୃତ୍ୟୁ—
Jībanānta 1. Death; the end of life.
୨ । ଜୀବିତକାଳର ଶେଷ—
2. End of one's lifetime.

**ଜୀବନାବଧି**—ଦେ. କ୍ରି. ବିଣ.—(ଜୀବନ+ଅବଧି)—୧ । ଜନ୍ମ Jībanābadhi ସମୟରୁ; ଜନ୍ମାବଧି—
জন্মাবধি 1 From birth.
୩ । ମରଣ ପର୍ଯ୍ୟନ୍ତ—3. Till death.

**ଜୀବନାବାସ**—ସଂ. ବି.—୧ । (ବହୁବ୍ରୀହି; ଜୀବନ=ଜଳ+ଆବାସ)—
Jībanābāsa ବରୁଣ ଦେବତା—1. Baruna; the God of water
୨ । (୬ଷ୍ଠୀ ତତ୍; ଜୀବନ=ପ୍ରାଣ+ଆବାସ )—ଦେହ; ଶରୀର—2. The body.
ସଂ. ବିଣ. (ବହୁବ୍ରୀହି)—ଜଳରେ ବାସକାରୀ—
Living in water.

**ଜୀବନାଶ**—ସଂ. ବିଣ. ( ଜୀବନ+ଅଶ୍ ଧାତୁ=ଭକ୍ଷଣ କରିବା+କର୍ତ୍ତୃ. Jībanāśa ଅ )—ସାଂଘାତିକ; ପ୍ରାଣନାଶକ; ପ୍ରାଣଘାତୀ—Destructive of life; fatal; mortal.
ସଂ. ବି. (ଜୀବ+ନାଶ) ମୃତ୍ୟୁ; ପ୍ରାଣନାଶ—Death.

**ଜୀବନାଶା**—ସଂ. ବି. (୬ଷ୍ଠୀ ତତ୍; ଜୀବନ+ଆଶା)—ବଞ୍ଚିବାର ଆଶା—
Jībanāśā Hope of life.

ଜୀବନାଶା ଚଳେ ଯାଉଅଛୁ କଳ ପାରୁ ନାହିଁ ମୁଁ ମୋ ହୃଦନ୍ତର ।
କବିସୂର୍ଯ୍ୟ କଣୋଗପଚମ୍ପୂ କ ଗୀତ ।

**ଜୀବନିକା**—ସଂ. ବି.—( ଜୀବନ+କ+ଆ )—ହରିଡ଼ା; ହରିତକୀ
Jībanikā (ପ୍ରକୃତିବାଦ)—Myrobalan.

**ଜୀବନିକାୟ**—ସଂ. ବି.—(ଜୀବ=ଜୀବନ+ନିକାୟ=ବାସସ୍ଥାନ—
Jība-nikāya ଜୀବିତ ପ୍ରାଣୀ—Living being.

**ଜୀବନୀ**—ସଂ. ବିଣ. (ଜୀବ ଧାତୁ+କରଣ ଅନ+ସ୍ତ୍ରୀ. ଈ)—ଯାହାଦ୍ୱାରା Jībanī ଆୟୁ ବୃଦ୍ଧି ହୁଏ)—୧ । ଆୟୁର୍ବିକାରକ—
1. Producing longevity.
୨ । ପ୍ରାଣଦା—2. Life-giving; vital.
୩ । ଯାହା ଜୀବନ ଦାନ କରେ—3. Reviving life.
( ଯଥା—ଜୀବନୀ ଶକ୍ତି । )
ସଂ. ବି—୧ । ଜୀବନ୍ତୀ ବୃକ୍ଷ (ଦେଖ)—1. Jībantī (See)
୨ । ମହାମେଦା ( ଦେଖ )—
2. Mahāmedā ( See )
୩ । ମେଦା ( ଦେଖ )—
3. Medā ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଢ଼' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଗ୍ନି ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୪ । କାଙ୍କୋଳ ( ଦେଖ )— 4. Kāṅkolā ( See )

जीवनी ଦେ. ବି—୧ । କୌଣସି ବ୍ୟକ୍ତିଙ୍କ ଜୀବନଚରିତ—
**जीवनी** 1. Biography.

୨ । ଜୀବିକା—2. Livelihood; that by which one lives

**ଜୀବନୀୟ**—ସଂ. ବିଣ—( ଜୀବନ+ପ୍ରୟୋଜନାର୍ଥେ. ଈୟ )—୧ । ଯାହା
Jībanīya ପ୍ରାଣଧାରଣ ନିମନ୍ତେ ପ୍ରୟୋଜନୀୟ—1. Necessary for life.

୨ । ଆୟୁର୍ବୃଦ୍ଧିକର—2. Conducive to longevity.

ସଂ. ବି—୧ । ଆୟୁଷର ଉପାୟ—1. A thing conducing longevity.

୨ । ପ୍ରାଣଧାରଣାର୍ଥ ଆବଶ୍ୟକୀୟ ପଦାର୍ଥଚୟ—
2. Necessaries of life.

( ଯଥା—ଖାଦ୍ୟ ସାମଗ୍ରୀ । )

**ଜୀବନୀୟଗଣ**—ସଂ. ବି—ବୈଦ୍ୟଶାସ୍ତ୍ର ଅନୁସାରେ କେତେଗୋଟି ବଳ-
Jībanīya-gaṇa କାରକ ମହୌଷଧ—A group of
(ଜୀବନୀୟବର୍ଗ—ଅନ୍ୟରୂପ) strength-giving herbs.
( ଯଥା—ଜୀବନ୍ତୀ, କାକୋଲୀ, ମେଦା, ମୁଦ୍ଗପର୍ଣ୍ଣୀ, ମାଷପର୍ଣ୍ଣୀ, ଜୀବକ, ବୃଷଭକ ଓ ମଧୁକ; ମତାନ୍ତରରେ ଜୀବକ, ବୃଷଭକ, ମେଦା, ମହାମେଦା, କାକୋଲୀ, କ୍ଷୀରକାକୋଲୀ, ଋଦ୍ଧି ଓ ବୃଦ୍ଧି । ଜୀବନୀୟଗଣଙ୍କୁ ଅଷ୍ଟବର୍ଗ ମଧ୍ୟ ବୋଲାଯାଏ । )

**ଜୀବନୀୟା**—ସଂ. ବି. ସ୍ତ୍ରୀ (ଜୀବନ+ଈୟ+ସ୍ତ୍ରୀ. ଆ)—ଜୀବନ୍ତୀ (ଦେଖ)
Jībanīyā Jībantī ( See )

**ଜୀବନୀଶକ୍ତି**—ସଂ. ବି—୧ । ଯେଉଁ ଶକ୍ତିଦ୍ୱାରା ଜୀବମାନେ ବଞ୍ଚି ରହନ୍ତି—
Jībanīśakti 1. Vitality.

୨ । ପ୍ରାଣ—2. Spark of life.

**ଜୀବନୋପାୟ**—ସଂ. ବି (୬ଷ୍ଠୀ ତତ୍; ଜୀବନ+ଉପାୟ)—ଜୀବିକା—
Jībanopāya Livelihood; subsistence; means of support.

**ଜୀବନୌଷଧ**—ସଂ. ବି ( ୬ଷ୍ଠୀ ତତ୍; ଜୀବନ+ଔଷଧ )—ଯେଉଁ
Jībanaushadha ଔଷଧଦ୍ୱାରା ମୃତ ପ୍ରାଣୀ ଜୀଏଁ—A medicine which revives the dead.

**ଜୀବନ୍ତ**—ଦେ. ବିଣ (ସଂ. ଜୀବତ୍)—୧ । ଜୀଇଁଥିବା; ଜୀଅନ୍ତା—
Jībanta 1. Living; existing.
जिवन्त, जिआन्त, জ্যান্ত ୨ । ବଞ୍ଚିଥିବା; ସଜୀବ—2. Alive.
**जीताजागता** କ୍ରି. ବିଂ—ସଜୀବ ଅବସ୍ଥାରେ—While still alive.

ଶିଶୁ ସଙ୍ଗେ, ମା ଗୋ । ଏହି ରୂପେ ମୋର ଜୀବନ୍ତେ ହେଲା ସମାଧି—
ରଘୁନାଥ. ପାର୍ବତୀ ।

**ଜୀବନ୍ତା**—ଦେ. ବିଣ—ଜୀବନ୍ତ ( ଦେଖ )
Jībantā Jībanta ( See )

**ଜୀବନ୍ତି**—ସଂ. କ୍ରି ( ପ୍ରାଚୀନ ପଦ୍ୟ; ସଂ. ଜୀବ୍ ଧାତୁ ନିତ୍ୟବର୍ତ୍ତମାନ କାଳ
Jībanti ୧ମ ପୁରୁଷର ବହୁବଚନ କ୍ରିୟା)—(ସେମାନେ) ଜୀବନ ଧାରଣ କରନ୍ତି, ବା ଜୀଅଁନ୍ତି—(they) Do live or exist.

ଦେବଙ୍କ ଆୟୁଷ ପ୍ରମାଣେ ଜୀବନ୍ତି ତହିଁ ପ୍ରାଣୀମାନେ—ଜଗନ୍ନାଥ. ଭଗବତ ।

**ଜୀବନ୍ତିକା**—ସଂ. ବି. ସ୍ତ୍ରୀ—( ଜୀବନ୍ତୀ+କ+ସ୍ତ୍ରୀ. ଆ )—୧ । ନିର୍ମୂଳୀ;
Jībantikā ମଲ୍ଲଙ୍ଗ—1 Orchid; a parasitic plant; mistletoe.

୨ । ହରିତକୀ; ହରିଡ଼ା—2. Myrobalan.

୩ । ଗୁଳୁଚି—3. Menispermum Glabrum; a climbing plant (much esteemed for its medicinal properties).

**ଜୀବନ୍ତୀ**—ସଂ. ବି—୧ । ଶାକଲତାବିଶେଷ—
Jībantī 1. A kind of creeping herb; Celtis Orientalis.
ସଂ. ପର୍ଯ୍ୟାୟ—ଜୀବନ୍ତୀ, ଜୀବବର୍ଦ୍ଧିନୀ, ସ୍ୱାଦୁ, ଜୀବନୀ, ଜୀବା, ଜୀବନୀୟା, ଶଶଶିମ୍ବିକା, ଶାକଶ୍ରେଷ୍ଠା, ମଧୁସ୍ରବା, ପାକଶ୍ରେଷ୍ଠା, ପୟସ୍ୱିନୀ
[ ଦ୍ର—ଏହାର ପତ୍ର ଔଷଧରେ ଲାଗେ; ଏଥିର ଡାଙ୍ଗରୁ ଦୁଧପରି ରସ ବାହାରେ । ଫଳ ପେନ୍ଥା ପେନ୍ଥା ହୁଏ । ଏହା ୩ ପ୍ରକାର, ବୃହଜ୍ଜୀବନ୍ତୀ, ପୀତଜୀବନ୍ତୀ ଓ ତିକ୍ତଜୀବନ୍ତୀ । ଏହା ରକ୍ତପିତ୍ତ, ବାତ, କ୍ଷୟ, ଦାହ, ଜ୍ୱର ଓ ତ୍ରିଦୋଷ ନାଶ କରେ, ବୀର୍ଯ୍ୟ ବୃଦ୍ଧି କରେ, ଚକ୍ଷୁର ହିତ କରେ, ଭୂତ ବିଦ୍ରାବଣ କରେ, ରସ ବନ୍ଧନ କରେ, ସ୍ୱରଶୁଦ୍ଧି ଓ ବଳବୃଦ୍ଧି କରେ, ପ୍ରମେହ, ଚକ୍ଷୁ ଓ ପାଦର ଜ୍ୱାଳା, କୃମି ଓ କୁଷ୍ଠ ନିବାରଣ କରେ; ଏଥିର ମୂଳ ଓ ପତ୍ରର ବିଭିନ୍ନ ପ୍ରୟୋଗଦ୍ୱାରା ବହୁମୂତ୍ର, ମେହ, କାସ, ଶ୍ୱାସ, ଶୁକ୍ର-ଦୌର୍ବଲ୍ୟ, ରାତ୍ରାନ୍ଧତା, ବିଷ-ଦୋଷ ଓ ମୁଖରୋଗ ଆରୋଗ୍ୟ ହୁଏ ।

୨ । ଏକପ୍ରକାର ଲତା ( ଏଥିର ଫୁଲରେ ମକରନ୍ଦ ଥାଏ ) (ହି. ଶବ୍ଦସାଗର)—2. A kind of creeper with flowers containing honey.

୩ । ଗୁଜରାଟ ଅଞ୍ଚଳରେ ଜାତ ଏକପ୍ରକାର ହଳଦିଆ ହରିଡ଼ା—
3. A kind of yellow myrobalan found in Gujerat.

୪ । ଜୀବନ୍ତିକା ( ଦେଖ )—
4. Jībantikā ( See )

**ଜୀବନ୍ମୁକ୍ତ**—ସଂ. ବିଣ. ପୁଂ. (ଜୀବତ୍+ମୁକ୍ତ; କର୍ମଧା)—ଜୀବଦଶାରେ
Jībanmukta ମୋକ୍ଷପ୍ରାପ୍ତ; ଅଭୁକ୍ତଭୁକ୍ତ; ସଂସାରରେ ଥାଇ ମଧ୍ୟ
(ଜୀବନ୍ମୁକ୍ତା—ସ୍ତ୍ରୀ) ନିର୍ବିକାର ଓ ନିର୍ଲିପ୍ତ—Liberated while
(ଜୀବନ୍ମୁକ୍ତି—ବି) still living; (a person) who has been assured of salvation while yet alive.

[ ଦ୍ର—ବେଦାନ୍ତସାର ମତରେ ଯେଉଁ ବ୍ୟକ୍ତି ଅଖଣ୍ଡ ଚୈତନ୍ୟ-ସ୍ୱରୂପ ବ୍ରହ୍ମଙ୍କ ଜ୍ଞାନଦ୍ୱାରା ଅଜ୍ଞାନ ନାଶ କରି ଆତ୍ମରୂପ ଅଖଣ୍ଡ ବ୍ରହ୍ମଙ୍କ

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଥ | ଙ୍କ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଙ୍ଖ | ନ୍ତ |

ସାକ୍ଷାତ୍କାର କରିଅଛି ଓ ଯେ ଅଜ୍ଞାନ ଏବଂ ଅଜ୍ଞାନର କାର୍ଯ୍ୟ ପାପ, ପୁଣ୍ୟ ଏବଂ ସଂଶୟ, ଭ୍ରମଆଦିର ବନ୍ଧନରୁ ମୁକ୍ତ ହୋଇଅଛି ସେ ଜୀବନ୍ମୁକ୍ତ । ହି. ଶବ୍ଦସାଗର । ]

**ଜୀବନ୍ମୁକ୍ତି**—ସଂ. ବି. (ଜୀବତ୍+ମୁକ୍ତି; ୭ମୀ ତତ୍)—ତତ୍ତ୍ୱଜ୍ଞାନ ହେତୁରୁ Jibanmukti ଜୀବଦଶାରେ ସଂସାରର ମାୟାବନ୍ଧନରୁ ପରିତ୍ରାଣ-ଲାଭ; ସଂସାରରେ ଥାଇ ନିର୍ବିକାର ଓ ନିର୍ଲିପ୍ତ ଭାବ; ସଂସାରର ମାୟାପାଶ ଛେଦନ— 1. Freedom from the bonds of the world or wordly ties.

୨ । ତପସ୍ୟାଦିଦ୍ୱାରା ମୃତ୍ୟୁ ପରେ ସଂସାରରେ ପୁନର୍ଜନ୍ମ ଲଭିବା ବିଷୟରେ ନିଷ୍କୃତି—2. Freedom from future birth earned by austerities while yet living.

**ଜୀବନ୍ମୃତ**—ସଂ. ବିଣ. ପୁଂ (ଜୀବତ୍+ମୃତ; ଜୀବିତାବସ୍ଥାରେ ମୃତ)— Jibanmruta ଜୀବଦଶାରେ ମୃତତୁଲ୍ୟ; ଯେ ପ୍ରାଣ ଥାଉ ଥାଉଁ (ଜୀବନ୍ମୃତା—ସ୍ତ୍ରୀ) ମରିବା ପରି ଥାଏ; କଷ୍ଟ କରି ମରିବା ପ୍ରାୟ; ଜୀଇଁ ଥାଉଁ ଥାଉଁ ମରିବା ପରି; ମଲା ପରି; ମୃତ-ପ୍ରାୟ—Dead in spite of life; dead while living; dead as its were; half-dead.

ଜନ୍ମି ହୋଇ ଅଛେ ତହୁଁ ହେଲୁଁ ଜୀବନ୍ମୃତ ।
ରାଧାନାଥ. ମହାଯାତ୍ରା ।

[ବି—ଯେଉଁ ବ୍ୟକ୍ତି ଆପଣାର କର୍ତ୍ତବ୍ୟବିମୁଖ ଓ ଅକର୍ମଣ୍ୟ, ଯେ ଅତି ଦୁଃଖରେ ନିଜର ଭରଣପୋଷଣ ଓ ଜୀବନଯାପନ କରେ ଓ ଯେଉଁ ବ୍ୟକ୍ତି ଅତିଥିସତ୍କାର ନ କରେ ହିନ୍ଦୁ ଧର୍ମଶାସ୍ତ୍ର ଅନୁସାରେ ସେ ଜୀବନ୍ମୃତ । ହି. ଶବ୍ଦସାଗର ।]

**ଜୀବନ୍ମୃତ୍ୟୁ**—ସଂ. ବି.—୧ । ଜୀବଦଶାରେ ମୃତ୍ୟୁତୁଲ୍ୟ ଅବସ୍ଥା— Jibanmrutyu 1. Living death

୨ । ଅତି ଯନ୍ତ୍ରଣାମୟ ଜୀବନ—
2. A life full of misery.

**ଜୀବନ୍ୟାସ**—ସଂ. ବି. (୬ଷ୍ଠୀ ତତ୍ ଜୀବ+ନ୍ୟାସ)— ୧ । ଦେହରେ Jiba-nyāsa ପ୍ରାଣ ପ୍ରତିଷ୍ଠା—1. Revival of life.

୨ । ମୃତ ବା ନିର୍ଜୀବ ଦେହରେ ପ୍ରାଣ ଦେବା—
2. Breathing of life into the dead or inanimate.

ନିର୍ଜୀବ କାଷ୍ଠ ଟିଚୁଲି ଜୀବନ୍ୟାସ ହେବ,
ନିଃଶବ୍ଦ ଶବ୍ଦ ଭେଦିଲେ ବଚନ କହିବ । ପ୍ରାଚୀ; ଚୁତ୍ତୁନରୂପଣ ଗୀତା ।

୩ । ମଲାଜୀବକୁ ବଞ୍ଚାଇବା—
3. Restoration to life.

୪ । ଦେବତା ଆଦିଙ୍କ ପ୍ରତିମାରେ ମନ୍ତ୍ରାଦିଦ୍ୱାରା କାଳ୍ପନିକ ପ୍ରାଣ ପ୍ରତିଷ୍ଠିତ କରାଇବା—4. Giving of life to an idol; animating an image by means of mantras.

୫ । ପ୍ରାଣପ୍ରତିଷ୍ଠାର ମନ୍ତ୍ର—5. The esoteric formulas used in consecrating an image.

**ଜୀବ ପଡ଼ିବା**—ପ୍ରାଦେ. (ଉତ୍ତରଗଞ୍ଜାମ) କ୍ରି.—ଜୀଇଁବା— Jiba pardbā To live.

**ଜୀବପତି**—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି; ଜୀବ=ଜୀବିତ ଅଟେ ପତି Jiba-pati ଯାହାର)—ଅବିଧବା; ଜୀବିତଭର୍ତ୍ତୃକା; ଯେଉଁ ସ୍ତ୍ରୀର ସ୍ୱାମୀ ବଞ୍ଚି ଅଛି—(a woman) Whose husband is still living.

ସଂ. ବି. ପୁଂ. (୬ଷ୍ଠୀ ତତ୍; ଜୀବ+ପତି)—ଧର୍ମରାଜ; ଯମ— The God of death.

**ଜୀବପତ୍ନୀ**—ସଂ. ବିଣ. ସ୍ତ୍ରୀ. (ଜୀବ+ପତ୍ନୀ)—ଜୀବପତି (ଦେଖ) Jiba-patni Jibapati (See)

**ଜୀବପ୍ରିୟା**—ସଂ. ବି. (୬ଷ୍ଠୀ ତତ୍; ଜୀବ+ପ୍ରିୟ+ଆ)—ହରିଡ଼ା Jiba-priyā (ହି. ଶବ୍ଦସାଗର)—Myrobalan.

**ଜୀବବଧ**—ସଂ ବି. (୬ଷ୍ଠୀ ତତ୍; ଜୀବ+ବଧ)—୧ । ପ୍ରାଣିହତ୍ୟା; Jiba-badha ପ୍ରାଣୀକୁ ମାରି ପକାଇବା—1. Taking of life; killing of animals.

୨ । ପ୍ରାଣିହତ୍ୟାଜନିତ ପାପ ବା ଅପରାଧ—
2. The sin or offence of killing an animal.

**ଜୀବବନ୍ଧୁ**—ସଂ. ବି. (୬ଷ୍ଠୀ ତତ୍; ଜୀବ+ବନ୍ଧୁ)—୧ । ପ୍ରାଣବନ୍ଧୁ; Jiba-bandhu ଜୀବନସଙ୍ଗୀ—1. Life-mate; one's dearest person.

ଜୀବବନ୍ଧୁ ବୋଲୁ ବୋଲୁ ଜୀବ
ଜୀବଧବ ପୁରକୁ କି ଯିବ—ଭଞ୍ଜ. ପ୍ରେମସୁଧାନିଧି ।

୨ । ବନ୍ଧୁକ; ବଧୁଲି ଫୁଲ (ଦେଖ)
2. Badhuli (See)

**ଜୀବବଳି**—ସଂ. ବି. (୬ଷ୍ଠୀ ତତ୍; ଜୀବ+ବଳି)—ଯଜ୍ଞାର୍ଥ ବା ଦେବତା Jiba-bali ଆଦିଙ୍କ ଉଦ୍ଦେଶ୍ୟରେ ଗୋମେଷାଦି ଜୀବଙ୍କର ହତ୍ୟା— Animal-sacrifice.

**ଜୀବବଲ୍ଲୀ**—ସଂ. ବି—କ୍ଷୀରକକ୍କୋଳ (ହି. ଶବ୍ଦସାଗର) (ଦେଖ) Jiba-balli Kshira-kakkola (See)

**ଜୀବବସ୍ତୁ**—ସଂ. ବି. (୬ଷ୍ଠୀ ତତ୍; ଜୀବ+ବସ୍ତୁ; ଅଧୁନିକ ବ୍ୟବହାର)— Jiba-bastu ଜୀବର ସୂକ୍ଷ୍ମ ଅବସ୍ଥାର ରୂପ—Protoplasm.

**ଜୀବବାଣୀବିଦ**—ଦେ. ବିଣ. (ସଂ. ଜୀବବାଣୀବିଦ୍)—ଯେ ସକଳ Jiba-bāni-bida ପ୍ରକାର ପ୍ରାଣୀମାନଙ୍କ ଭାଷା ଜାଣନ୍ତି— (a person) Able to understand the meaning of the language of all animals.

ସପ୍ତମେ ସବଂଜୀବ ପ୍ରାଣୀ—ବିଦ ଅଛନ୍ତି ବେଣୁପାଣି—
ପ୍ରାଚୀ, ପୂର୍ଣ୍ଣତମଚନ୍ଦ୍ରୋଦୟ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ

**ଜୀବବାନ୍**—ସଂ. ବିଣ. ପୁଂ. (ଜୀବ+ଅସ୍ତି ଅର୍ଥରେ ବତ୍; ୧ମା. ୧ବ)—
Jiba-bān ସଜୀବ—Living; alive.
( ଜୀବବତୀ—ସ୍ତ୍ରୀ )

**ଜୀବବୃତ୍ତି**—ସଂ. ବି. ୧ । ( ଜୀବର ବୃତ୍ତି; ୬ଷ୍ଠୀ ତତ୍)—
Jiba-brutti ଜୀବ ଦେହରେ ଥିବା ସ୍ୱାଭାବିକ ଗୁଣମାନ—
1. The natural attributes of living being
୨ । (ଜୀବ ପାଳନରୂପ ବୃତ୍ତି; କର୍ମଧା) ଗୋମେଷାଦି ପଶୁ ଓ ପକ୍ଷିପାଳନ ବ୍ୟବସାୟ—2. Profession of rearing and selling animals ( e. g. beasts, birds ); animal breeding.

**ଜୀବମନ୍ଦିର**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ମନ୍ଦିର; ଯେଉଁ ମନ୍ଦିରରେ
Jiba-mandira ପ୍ରାଣ ଅବସ୍ଥାନ କରେ ); ଦେହ—The body; (the receptacle of the soul ).

**ଜୀବମାତୃକା**—ସଂ. ବି. ସ୍ତ୍ରୀ. ( ୬ଷ୍ଠୀ ତତ୍; ଜୀବ+ମାତୃକା )—
Jiba-mātrukā ଜୀବର ମଙ୍ଗଳସାଧିକା ସପ୍ତମାତୃକାବିଶେଷ—
A class of seven female Deities protecting the lives of living beings.
[ ଦ୍ର—ଏମାନଙ୍କ ନାମ କୁମାରୀ, ଧନଦା, ନନ୍ଦା, ବିମଳା, ମଙ୍ଗଳା, ବଳା ଓ ପଦ୍ମା; ଏମାନେ ସପ୍ତମାତୃକା । ]

**ଜୀବ ଯିବା**—ଦେ. ବି—୧ । ପ୍ରାଣତ୍ୟାଗ—
Jiba jiba 1. Death.
ପ୍ରାଣ ଯାଓଯା ୨ । ମୁମୂର୍ଷୁ ଅବସ୍ଥା; ପ୍ରାଣବାୟୁ ବହିର୍ଗତ ହେବା
ଜୀ ଛୁଟନା ଅବସ୍ଥା—2. Dying condition.

**ଜୀବର କାରଣ**—ଦେ. ବି—୧ । ଜୀବ ବା ପ୍ରାଣୀର ମୋକ୍ଷ ବା ମୁକ୍ତି—
Jibara kārana 1. Salvation of a living being;
(ଜୀବର କାରେଣୀ—ଅନ୍ୟରୂପ) liberation of soul.
୨ । ଜୀବର ମୋକ୍ଷଦାତା—
2. Saviour of life; redeemer.

**ଜୀବରକ୍ତ**—ସଂ. ବି—ଗର୍ଭଧାରଣର ଉପଯୁକ୍ତ ସ୍ତ୍ରୀ-ରଜଃ (ହି. ଶବ୍ଦସାଗର)—
Jiba-rakta Menstrual blood which is capable of fecundation.

**ଜୀବର ଧନ**—ଗ୍ରା. ବି—ଜୀବଧନ ( ଦେଖ )
Jibara dhana Jibadhana ( See )

**ଜୀବଲୋକ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ଲୋକ )—
Jiba-loka ୧ । ପୃଥିବୀର ସୃଷ୍ଟ ପ୍ରାଣିସମୂହ—1. All the created beings; the animal world.
୨ । ସଂସାର; ମର୍ତ୍ତ୍ୟଲୋକ—2. The created world ( consisting of living beings ); the animated nature.
୩ । ଜୀବଯୋନି; ସଂସାରରେ ଜୀବ ରୂପେ ଜନ୍ମ—
3. Animal existence in the world.

୪ । ସମୁଦାୟ ମନୁଷ୍ୟ ଜାତି—4. Mankind.

**ଜୀବଶାକ**—ସଂ. ବି—ସୁନୁସୁନିଆ ଶାଗ ( ହି. ଶବ୍ଦସାଗର )—
Jiba-śāka A kind of aqatic pot-herb.

**ଜୀବଶୂନ୍ୟ**—ସଂ. ବିଣ. ( ୩ୟା ତତ୍; ଜୀବ+ଶୂନ୍ୟ )—
Jiba-śūnya ୧ । ପ୍ରାଣହୀନ, ମୃତ—1. Dead; lifeless.
୨ । ଜଡ଼; ନିର୍ଜୀବ—2. Inanimate.
୩ । ଜୀବଜନ୍ତୁଶୂନ୍ୟ; ପ୍ରାଣିହୀନ—
3. Devoid of living beings; having no living creature on or in it.

**ଜୀବସଂକ୍ରମଣ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ସଂକ୍ରମଣ)—ଜୀବର ଏକ
Jiba-samkramana ଶରୀରରୁ ଶରୀରାନ୍ତରକୁ ଗମନ; ଜନ୍ମାନ୍ତରପରିଗ୍ରହ—Metemphsychosis; transmigration.

**ଜୀବସଙ୍ଗୀ**—ଦେ. ବି. ( ସଂ. ଜୀବ+ସଙ୍ଗୀ )—
Jiba-sangi ୧ । ଆଜୀବନ ସଙ୍ଗୀ; ଜୀବନସଙ୍ଗୀ—
1. Lifelong companion.
୨ । ପ୍ରାଣପ୍ରିୟତମ ସଙ୍ଗୀ; ପ୍ରାଣବନ୍ଧୁ—
2. Dearest companion.
ଉଡ଼ଙ୍ଗୀ ଗୁଡ଼ି, ଉଚ୍ଛୃଙ୍ଖଳ ଭୃଙ୍ଗୀ ଭ୍ରମର, ଜୀବସଙ୍ଗୀ—
କବିସୂର୍ଯ୍ୟ. କଳୋଶ୍ୱର ଗୀତ ।

**ଜୀବସାଧନ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ସାଧନ )—
Jiba-sādhana ଧାନ୍ୟ; ଧାନ ( ହି. ଶବ୍ଦସାଗର )—
Paddy.

**ଜୀବସୁତା**—ସଂ. ବିଣ. ସ୍ତ୍ରୀ. ( ବହୁବ୍ରୀହି; ଜୀବ+ସୁତ+ସ୍ତ୍ରୀ. ଆ )—
Jiba-sutā ଯେଉଁ ସ୍ତ୍ରୀର ପୁତ୍ର ବଞ୍ଚିଅଛି; ଜୀବତ୍ତୋକା—
(ଜୀବସୂ—ଅନ୍ୟରୂପ) ( a woman ) Having her son or sons still living.

**ଜୀବସୋଦର**—ଦେ. ବି—ପ୍ରାଣସଖା—
Jiba-sodara Lifelong companion.
ନିଷ୍ପ୍ରଭ ସୁରୁଷ ଦରହାସିନୀ କୃଶର ଦରଶୋଷୀ ସେ ଜୀବସୋଦର ପ୍ରେମପ୍ରବର ।
ଭକ୍ତ. ପ୍ରେମସୁଧାନିଧି ।

**ଜୀବସ୍ଥାନ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ସ୍ଥାନ )—
Jiba-sthāna ୧ । ଶରୀରର ମର୍ମସ୍ଥାନ—
1. A vital part of the body.
୨ । ହୃଦୟ—2. The heart.

**ଜୀବହତ୍ୟା**—ସଂ. ବି. ( ୬ଷ୍ଠୀ ତତ୍, ଜୀବ+ହତ୍ୟା )—
Jiba-hatyā ଜୀବବଧ ( ଦେଖ )
Jiba-badha ( See )

**ଜୀବହିଂସା**—ସଂ. ବି. ( ୬ଷ୍ଠୀ ତତ୍, ଜୀବ+ହିଂସା )—
Jibahimsā ୧ । ଜୀବ ବଧ ( ଦେଖ )
1. Jiba badha ( See )
୨ । ପ୍ରାଣୀମାନଙ୍କ ପ୍ରତି ନିଷ୍ଠୁର ବ୍ୟବହାର—
2. Cruelty to animals.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ଓ |
| ୨ | ଈ | ଊ | ରୁ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ | ଇଅ | ୱ | ନ୍ |

**ଜୀବହୀନ**—ସଂ. ବିଣ. ( ୩ୟା ତତ୍; ଜୀବ+ହୀନ )—
Jība-hīna ୧ । ପ୍ରାଣହୀନ—1. Lifeless; inanimate
୨ । ମୃତ—2. Dead.
୩ । ପ୍ରାଣିହୀନ—
3. Destitute of animated beings.
ସଂ. ବି—ଷଡ଼କ୍ଷର ମନ୍ତ୍ରବିଶେଷ ( ପ୍ରକୃତିବାଦ )—
Name of on esoteric formula of six syllables.

**ଜୀବା**—ସଂ. ବି—୧ । ଧନୁର ଜ୍ୟା ( ହି. ଶବ୍ଦସାଗର )—
Jībā 1. Bow-string.
୨ । ( ଜ୍ୟାମିତି ) ବୃତ୍ତର ଦୁଇ ମୁଣ୍ଡକୁ ଯୋଗ କରିବା ରେଖା ( ହି. ଶବ୍ଦସାଗର )—2. ( geometry ) Chord.
୩ । ଜୀବନ୍ତୀ ( ହି. ଶବ୍ଦସାଗର ) ( ଦେଖ )
3. Jībantī ( See )
୪ । ବଚ ( ହି. ଶବ୍ଦସାଗର )—
4. Liquorice root.
୫ । ଜୀବନ ( ହି. ଶବ୍ଦସାଗର )—5 Life
୬ । ଜୀବନୋପାୟ ( ହି. ଶବ୍ଦସାଗର )—
6. Livelihood.

**ଜୀବାଣୁ**—ସଂ. ବି. ( ବିଜ୍ଞାନପରିଭାଷା; ଆଧୁନିକ ବ୍ୟବହାର; ୬ଷ୍ଠୀ ତତ୍;
Jībāṇu ଜୀବ+ଅଣୁ )—ରୋଗ-ବୀଜ; କ୍ଷୁଦ୍ରତମ ଜୀବର ସାଙ୍ଗଂଶ—Germ.

**ଜୀବାତୁ**—ସଂ. ବି. ( ଜୀବ୍ ଧାତୁ+ଉଣ. ଆତୁ );—୧ । ଜୀବନ—
Jībātu 1. Life.
ଜଙ୍ଗମ ହେବାର ଜମ୍ବୁଳଦସାର ଜଗତେ ଜୀବାତୁ ପର ହସ୍ତୁ—
କବିସୂର୍ଯ୍ୟ, କବିତା।
୨ । ଜୀବିକା—3. Livelihood.
୩ । ( +କରଣ. ଆତୁ ) ଜୀବନୌଷଧ—
3. Medicine which restores or revives life.
୪ । ଅନ୍ନ—4. Food.

**ଜୀବାତ୍ମା**—ସଂ. ବି. ( ଜୀବ+ଆତ୍ମନ୍ )—
Jībātmā ୧ । ପ୍ରାଣୀର ଅଭ୍ୟନ୍ତରସ୍ଥ ଆତ୍ମା—
(ପରମାତ୍ମା—ବିପରୀତ) 1. Individual soul; animal soul ( as distingwished from Supreme Soul).
୨ । ମନୁଷ୍ୟର ଆତ୍ମା—2. Human soul
୩ । ପ୍ରାଣପୁରୁଷ—
3. The inner soul; the sentient soul.
୪ । ଦେହୀ—4. Animal; living being.
୫ । ଶରୀରସ୍ଥ ଚୈତନ୍ୟ; ଦେହର ଆଭ୍ୟନ୍ତରିକ ସ୍ୱଚ୍ଛ ପଦାର୍ଥ ଯହିଁରେ ପରମାତ୍ମା ବା ଈଶ୍ୱର ପ୍ରତିବିମ୍ବିତ ହୁଅନ୍ତି—
5. The inner conciousness; the vital principle in the body.
୬ । ପ୍ରାଣ—6. Life.
[ ଦ୍ର—ଜୀବାତ୍ମା ଦେହସ୍ଥ ଚୈତନ୍ୟ ଅଟେ; ଏହା ପ୍ରତ୍ୟେକ ପ୍ରାଣୀର ଦେହରେ ଆବଦ୍ଧ । ପରମାତ୍ମା ବା ଈଶ୍ୱରଙ୍କ ସତ୍ତା ବିଶ୍ୱବ୍ୟାପୀ ଚୈତନ୍ୟ ଅଟେ । ଈଶ୍ୱର ପରମାତ୍ମା ଅଟନ୍ତି ।
ପ୍ରାଣୀର ଶରୀରରେ ପରମାତ୍ମାଙ୍କ ପ୍ରତିବିମ୍ବିତ ପଦାର୍ଥ ଜୀବାତ୍ମା ଅଟେ । ଜୀବାତ୍ମା ପରମାତ୍ମାରୁ ବାହାରି ପ୍ରାଣିଦେହରେ ଥାଏ । ପ୍ରାଣୀ ମୃତ ହେଲେ ସେହି ପ୍ରାଣମଧ୍ୟସ୍ଥ ଜୀବାତ୍ମା ପରମାତ୍ମାରେ ଲୀନ ହୁଏ । ]

**ଜୀବାଧାନ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ଆଧାନ )—
Jībādhāna ୧ । ପ୍ରାଣରକ୍ଷା—
1. Preservation or saving of life.
୨ । ପ୍ରାଣଧାରଣ—
2. Living; animated existence.

**ଜୀବାଧାର**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ଆଧାର )—
Jībādhāra ୧ । ଜଗତ୍; ବିଶ୍ୱବ୍ରହ୍ମାଣ୍ଡ ( ଯେଉଁଠାରେ ଜୀବମାନେ ରହନ୍ତି; ଯାହା ପ୍ରାଣୀମାନଙ୍କ ଆଶ୍ରୟ); ଜୀବଜଗତ୍—
1. The universe; the animal world; the world.
୨ । ଶରୀର; ଦେହ—2. The body.
୩ । ହୃତ୍‌ପିଣ୍ଡ—3. The heart.

**ଜୀବାନ୍ତକ**—ସଂ. ବି. ପୁଂ. ( ୬ଷ୍ଠୀ ତତ୍; ଜୀବ+ଅନ୍ତକ )—
Jībāntaka ୧ । ବ୍ୟାଧ—1. Fowler; hunter.
୨ । ପ୍ରାଣଘାତୀ ବ୍ୟକ୍ତି—
2. Murderer; killer; slayer.
୩ । ପ୍ରାଣଘାତୀ ଅସ୍ତ୍ର—3. Fatal weapon.
ସଂ. ବିଣ—ପ୍ରାଣଘାତୀ; ପ୍ରାଣାନ୍ତକର—Mortal; fatal; causing death; slaying.

**ଜୀବାବଶେଷ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ+ଅବଶେଷ; ପ୍ରାଣିବିଜ୍ଞାନ-
Jībābaśesha ପରିଭାଷା; ଆଧୁନିକ ପ୍ରୟୋଗ )—
୧ । ଭୂଗର୍ଭରୁ ପ୍ରାପ୍ତ ବହୁକାଳ ପୂର୍ବେ ମୃତ ପ୍ରାଣୀର ଦେହାବଶେଷ; ପ୍ରସ୍ତରୀଭୂତ ବହୁକାଳ ପୂର୍ବର ଜୀବଦେହ—
1. Fossil; fossilized remains of animals.
୨ । ଜୀବନ ମାତ୍ର ଅବଶିଷ୍ଟ ରହିବା ଅବସ୍ଥା—
2. Remnant of life only in a body.
୩ । ପ୍ରାଣୀର ଆସନ୍ନମୃତ୍ୟୁ ଓ ଶେଷ ଅବସ୍ଥା ( ଯେଉଁ ଅବସ୍ଥାରେ ପ୍ରାଣୀର କେବଳ ମାତ୍ର ନିଶ୍ୱାସ ବାୟୁ ବହୁଥାଏ )—3. Last stage of life ( when life only remains in the body.

**ଜୀବିକା**—ସଂ. ବି. ସ୍ତ୍ରୀ. ( ଜୀବ ଧାତୁ+କରଣ. ଅକ+ସ୍ତ୍ରୀ. ଆ. ଯେଉଁ
Jībikā ଉପାୟଦ୍ୱାରା ମନୁଷ୍ୟ ପ୍ରାଣ ଧାରଣ କରେ ବା ବଞ୍ଚେ)—

ସାଧାରଣ ଲୋକେ ଅପର ପୃଷ୍ଠାରେ ୨,ଠେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରାଙ୍କ ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଂଖୀ' ନ ପାଇଲେ 'ଆଖି' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ ।

୧ । ବୃତ୍ତି; ଜୀବନୋପାୟ; ପେଶା (ଯଥା—କୃଷିବାଣିଜ୍ୟାଦି)—
1. Livelihood; profession; living.
୨ । ଜୀବନ—2. Life
୩ । ଜୀବନ୍ତୀ (ଦେଖ)—
3. Jibanti (See)

**ଜୀବିକା କରିବା**—ଦେ. କ୍ରି—କୌଣସି କର୍ମକୁ ଜୀବନର ଏକମାତ୍ର ବ୍ରତ ବା କର୍ମ ପରି ଅବଲମ୍ବନ କରିବା; ପେଶା କରିବା—To be habituated to a thing as if it was one's profession.
Jibikā karibā
जीविका करना
**जीविका करना**
ବସୁମତୀ ଭୂଷିତ ଭଲ ଭଲ, ପଦ୍ମହାସ କି ଜୀବିକା କଲ—
ଉପେନ୍ଦ୍ର. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଜୀବିକାନିର୍ବାହ**—ସଂ. ବି. ( ୬ଷ୍ଠୀ ତତ୍, ଜୀବିକା + ନିର୍ବାହ )—
Jibikā-nirbāha କୌଣସି ଉପାୟଦ୍ୱାରା ପେଟ ପୋଷିବା—
Earning one's livelihood; maintenance.

**ଜୀବିତ**—ସଂ. ବି. ( ଜୀବ ଧାତୁ + ଭାବେ. ତ )— ୧ । ଜୀବନ—
Jibita 1. Life.
ଭ୍ରମୁ ବୋଇଲେ ଏ ଅଛଇ କାହୁ ସତ
ଇନ୍ଦ୍ର ନ ପାରନ୍ତି ନେଇ ମୋହୋର ଜୀବିତ—କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।
୨ । ଆୟୁ; ଜୀବଦ୍ଦଶା; ଜୀବନକାଳ—
2. Lifetime; age.
(ଜୀବିତା—ସ୍ତ୍ରୀ) ସଂ. ବିଣ. ପୁଂ—୧ । ଯେ ବଞ୍ଚିଅଛି; ଯେ ପ୍ରାଣଧାରଣ କରିଅଛି—1. Living; existent; having life.
୨ । ଜୀବନ୍ତ; ସଜୀବ; ଜୀଅନ୍ତା—
2. Animate; alive.

**ଜୀବିତକାଳ**—ସଂ. ବି. ( ୬ଷ୍ଠୀ ତତ୍; ଜୀବିତ—କାଳ )—
Jibita-kāla ଜୀବଦ୍ଦଶା; ବଞ୍ଚିଥିବା ସମୟ; ଅମଳ—
Life-time; period or duration of one's life.

**ଜୀବିତପ୍ରୟୋଜନ**—ସଂ. ବି. ( ୬ଷ୍ଠୀ ତତ୍; ଜୀବିତ + ପ୍ରୟୋଜନ )—
Jibita-prayojana ୧ । ଜୀବିକା—
1. Living; livelihood.
୨ । ଜୀବ ବଞ୍ଚିବାର ଅତି ଆବଶ୍ୟକ ବସ୍ତୁନିଚୟ—
2. The necessaries of life.

**ଜୀବିତବାନ୍**—ସଂ. ବିଣ. ପୁଂ. ( ଜୀବିତ + ବତ୍; ୧ମା. ୧ବ )—
Jibita-bān ବଞ୍ଚିଥିବା—Living; alive.
(ଜୀବିତବତୀ—ସ୍ତ୍ରୀ)

**ଜୀବିତେଶ**—ସଂ. ବି. ( ୬ଷ୍ଠୀ ତତ୍; ଜୀବିତ + ଈଶ )—
Jibitesa ୧ । ଜୀବନର ପ୍ରଭୁ; ପ୍ରାଣର ଈଶ୍ୱର ବା ମାଲିକ—
(ଜୀବିତେଶ୍ୱର—ଅନ୍ୟରୂପ) 1. The lord of one's life.
୨ । ଜଗନ୍ନାଥ; ଈଶ୍ୱର; ପରମେଶ୍ୱର—
2. God; the Lord of the universe.
୩ । ପ୍ରାଣେଶ୍ୱର; ସ୍ୱାମୀ—3. Husband.
୪ । ପ୍ରିୟତମ ବ୍ୟକ୍ତି—
4. One's dearest person.

**ଜୀବିବା**—ଦେ. କ୍ରି. (ପଦ୍ୟ)— ଜୀଇଁବା; ବଞ୍ଚିବା—
Jibibā To live.
ଯୋଗ ଅଭ୍ୟାସେ ଯୋଗିଜନେ
ଜୀବେ ଜୀବନ୍ତ ଯୋଗ ଧ୍ୟାନେ । ଜଗନ୍ନାଥ, ଭାଗବତ ।

**ଜୀବୀ**—ସଂ. ବିଣ. ପୁଂ. ( ଜୀବ ଧାତୁ + ଇନ୍, ୧ମା. ୧ବ; ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ, ଯଥା—ଦୀର୍ଘଜୀବୀ, ଚିରଂଜୀବୀ )—
Jibi
(ଜୀବିନୀ—ସ୍ତ୍ରୀ) ୧ । ଯେ ଜୀଏଁ; ଜୀବନଧାରୀ—
1. One who lives, living
୨ । ଯେ କୌଣସି ଜୀବିକା ଦ୍ୱାରା ପ୍ରାଣ ଧାରଣ କରେ—
2. Living on; depending upon something for one's livelihood.
( ଯଥା—ମୃଗୟାଜୀବୀ, ପଣ୍ୟଜୀବୀ । )

**ଜୀବେଶ**—ସଂ. ବି. ( ୬ଷ୍ଠୀ ତତ୍; ଜୀବ + ଈଶ )—
Jibesa ୧ । ସ୍ୱାମୀ—1. Husband.
୨ । ଯମ—2. The God of death.
ଯାର ନାହିଁ ଜୀବେଶ ତାର ଜୀବ ଜୀବେଶ ଦେଶରେ ପ୍ରବେଶ କରିବ ।
ଉପେନ୍ଦ୍ର. ଲାବଣ୍ୟବତୀ ।

**ଜୀବେଶ୍ୱର**—ସଂ. ବି—ଜୀବେଶ ( ଦେଖ )
Jibeswara Jibesa ( See )
(ଜୀବେଶ୍ୱରୀ—ସ୍ତ୍ରୀ) ସଂ. ବି. ସ୍ତ୍ରୀ. (୬ଷ୍ଠୀ ତତ୍; ଜୀବ + ଈଶ୍ୱରୀ)—
ପ୍ରାଣପ୍ରିୟା ସ୍ତ୍ରୀ—One's beloved or dearest woman.
ଋଣୀ ହୋଇଥିଲି ମୁଁ ଜୀବେଶ୍ୱରୀଠାରେ କରିଥିଲି ନିୟମ ।
ଉପେନ୍ଦ୍ର. ପ୍ରେମସୁଧାନିଧି ।

**ଜୀବୋପାଧି**—ସଂ. ବି. ( ୬ଷ୍ଠୀ ତତ୍; ଜୀବ + ଉପାଧି )—
Jibopādhi ପ୍ରାଣୀର ଅବଶ୍ୟଂଭାବୀ ଅବସ୍ଥାତ୍ରୟ; ସ୍ୱପ୍ନ, ସୁଷୁପ୍ତି ଓ ଜାଗ୍ରତ ଅବସ୍ଥା—The necessary conditions of animal life; e.g. dream, sleep and waking.

**ଜୀବ୍ରିଅଲ୍**—ଦେ. ବି. (ନାମ) ( ବାଇବଲ୍ )—
Jibrial ବାଇବଲ୍‌ରେ ଲିଖିତ ଦେବଦୂତ—
Gibrial; the name of an angel mentioned in the Bible.

**ଜୀଭମଲ୍**—ପ୍ରାଦେ. (ସମ୍ବଲପୁର) ବି. ( ସଂ. ଜିହ୍ୱା + ମଳ )—
Jibha-mal ଜିହ୍ୱା ଉପରେ ଜମିଥିବା ଛତଅ—
The dirts over ( one's ) tongue; furs on the tongue.

**ଜୀମୂତ**—ସଂ. ବି. ( ଜୀ—ଜୀବନ, ଜଳ + ମୂ ଧାତୁ ବନ୍ଧନ କରିବା, ଧାରଣ କରିବା + କର୍ତ୍ତୃ. ତ, ଯେ ଜଳ ଧାରଣ କରେ)—
Jimūta
୧ । ମେଘ—1. Cloud.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଂ଼ | ଋଅ | ଷ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଋଅ | ଛ | ନ୍ |

୨ । ପର୍ବତ—2 Mountain.

୩ । ଇନ୍ଦ୍ର—3. God Indra.

**ଜୀମୂତକୂଟ**—ସଂ. ବ. ( ୬ଷ୍ଠୀ ତତ୍; ଜୀମୂତ+କୂଟ )—
Jīmūta-kūṭa କ୍ଷୁଦ୍ର ପର୍ବତ; ପାହାଡ଼—A hill.

**ଜୀମୂତକେତୁ**—ସଂ. ବ. (ବହୁବ୍ରୀହି; ଜୀମୂତ, ମେଘ ହୋଇଅଛି କେତୁ= ଧ୍ୱଜ ଯାହାର )—
Jīmūta-ketu
( ନାମ ) ହିମାଳୟସ୍ଥ ବିଦ୍ୟାଧରଗଣଙ୍କ ରାଜା—
The king of the Bidyādharas ( aerial beings said to inhabit the Himalayas).

**ଜୀମୂତବାହନ**—ସଂ. ବ. (ବହୁବ୍ରୀହି, ଜୀମୂତ ଅଟେ ବାହନ ଯାହାର)—
Jimūta-bāhana ୧ । ଇନ୍ଦ୍ର—1. Indra; the God of clouds.

୨ । ( ନାମ ) ବଙ୍ଗଦେଶପ୍ରଚଳିତ ବ୍ୟବସ୍ଥାଶାସ୍ତ୍ର ବା ସ୍ମୃତି ଦାୟଭାଗର ଗ୍ରନ୍ଥକର୍ତ୍ତାଙ୍କ ନାମ—
2. Name of the author of the Dāyabhāga, a digest of Hindu Law governing the Bengal school.

୩ । ଜୀମୂତକେତୁ ( ଦେଖ )
3 Jīmūta-ketu ( See )

**ଜୀର**—ସଂ. ବ ( ଜୃ ଧାତୁ=ଜୀର୍ଣ୍ଣ କରିବା+କର୍ତ୍ତୃ. ଅ, କିମ୍ବା ଜୁ ଧାତୁ= ବେଗେ ଯିବା+ର; ଉ ସ୍ଥାନରେ ଈ )—ଜୀରକ (ଦେଖ)
Jīra
Jīraka ( See )

**ଜୀରକ**—ସଂ. ବ. (ଜୃ, ଧାତୁ=ଜୀର୍ଣ୍ଣ କରିବା+କର୍ତ୍ତୃ ଅକ; କିମ୍ବା ଜୀର +ସ୍ୱାର୍ଥେ. କ; ଯାହା ଖାଦ୍ୟ ଦ୍ରବ୍ୟକୁ ଜୀର୍ଣ୍ଣ ବା ପରିପାକ
Jīraka
ସଂ. ନାମ—ଜୀରକ, ଅଜାଜୀ, କଣ୍ୱ)—୧ । ଜୀରା—Cuminseed;
କଣା, ଜୀର୍ଣ୍ଣ, ଜୀର, ଦୀପ୍ୟ, Cuminum Cyminum.
ଜୀରଣ, ଅଜାଜିକା, ବହ୍ନିଶିଖ,
ମାଗଧ, ଦୀପକ
ଫା. ଜୀରହ୍
ଲା. ଜୀରମ୍
ତେ. ଜିଲ୍ଲକର୍ରା
ଜୀରା, ଜୀରେ
जीरा

[ ଦ୍ର—ଜୀରା ଧନ୍ୟାଦି ବର୍ଗର ଶାକ ଗୁଳ୍ମ । ଏହା ଆକାରରେ ପାନମହୁରି ପରି କଣ୍ଟୁ ଛୋଟ । ଏ ଗୁଳ୍ମର ପତ୍ର ଦୁବ ପରି ସରୁ । ବଙ୍ଗଦେଶ ଓ ଆସାମ ଛଡ଼ା ଭାରତର ସର୍ବତ୍ର ଏହାର କୃଷି ହୁଏ । ମିଶରଦେଶ ଓ ଭୂମଧ୍ୟସାଗର ଉପକୂଳସ୍ଥ ମାଲ୍ଟା ଆଦି ଦ୍ୱୀପରେ ଏ ଗୁଳ୍ମ ସ୍ୱଭାବତଃ ଉଠେ । ମାଲ୍ଟାର ଜୀରା (European caraway) ଖୁବ୍ ସୁଗନ୍ଧଯୁକ୍ତ । ଜୀରା ୨ ପ୍ରକାରର; ଧଳା ବା ସାଧାରଣ ଜୀରା ଓ କୃଷ୍ଣଜୀରକ; ସାଧାରଣ ଜୀରା ମରିଚ ସଙ୍ଗେ ବଟା ହୋଇ ତିଅଣରେ ମିଶାଯାଏ, ଏବଂ ଘିଅରେ ଫୁଟା ଯାଇ ଏଥିରେ ତିଅଣ ବଘାର ଯାଏ । ଜୀରା ମଧ୍ୟ ଔଷଧରେ ବ୍ୟବହୃତ ହୁଏ । ଭାବପ୍ରକାଶରେ ଏହାର ନାମ ଜୀରକ, ଦୀର୍ଘଜୀରକ । ବୈଦ୍ୟକ ମତରେ ଏହା କଟୁ, ଉଷ୍ଣ ଓ ଦୀପକ ଏବଂ ଅତିସାର, ଗ୍ରହଣୀ, କୃମି, କଫ ଓ ବାତପ୍ରଶମକ । ଯାହାକୁ ସାଧାରଣତଃ କଳାଜୀରା ବୋଲାଯାଏ ତାହା ତ୍ରିକୋଣ ଉଗ୍ର ସୁଗନ୍ଧ ଶାଳବିଶେଷ (Nigella Sativa; black cumin) । କୃଷ୍ଣବର୍ଣ୍ଣ (Carum Bulbacastanum) ପାନମହୁରି ପରି କଳାଜୀରା, ସାଧାରଣ ଜୀରା ଜାତୀୟ (Black Caraway) ଏହା ଆଫଗାନିସ୍ଥାନ, କାଶ୍ମୀର ଆଦିରେ ଜନ୍ମେ ଓ ସେଠାରୁ ଏ ଦେଶକୁ ଆସେ ।]

୨ । ଖଡ୍ଗ—2. Sword.

୩ । ଅଣୁ ଧାନ୍ୟ—3. Tiny grains.

୪ । ଫୁଲର କେଶର (ହି. ଶବ୍ଦସାଗର)—
4. The filaments of flower

**ଜୀରକାଦି ମୋଦକ**—ସ. ବ.—ବୈଦ୍ୟଶାସ୍ତ୍ରକଥିତ ଜୀରା ଆଦି ଉପାଦାନରେ ପ୍ରସ୍ତୁତ ମୋଦକବିଶେଷ—
Jīrakādi modaka
A medicinal preparation of which the chief ingredient is cumin seed·

**ଜୀରା**—ଦେ. ବ. (ସଂ. ଜୀରକ)—ଜୀରକ (ଦେଖ)
Jīrā Jīraka (See)
जीरे, जीरा
जीरा

**ଜୀରାମରିଚ**—ଦେ. ବ. (ସହଚର) (ସଂ. ଜୀର+ମରିଚ)—ଏକତ୍ର ବଟା ହୋଇ କିମ୍ବା ଗୁଣ୍ଡ ହୋଇ ତିଅଣକୁ ସୁଗନ୍ଧ ଓ ସୁସ୍ୱାଦୁବିଶିଷ୍ଟ କରିବା ପାଇଁ ବ୍ୟବହୃତ ଜୀରା ଓ ମରିଚ—Cumin seed and black pepper (used together as sauce for curry).
Jīrā-maricha

[ ଦ୍ର—ଜୀରାମରିଚ ୩ ପ୍ରକାରରେ ପ୍ରୟୋଗ କରାଯାଏ । ଯଥା—(୧) ବଟା, (୨) ଗୁଣ୍ଡ, (୩) ପାଣି ବା ବଟା ହୋଇ ପାଣି ସଙ୍ଗେ ଗୋଳିଆ ।]

**ଜୀରାରୁ ଶିରା କାଢ଼ିବା**—ଦେ. କ୍ରି.—କୌଣସି କଥାରୁ ଅତି ସାମାନ୍ୟ କଥା ବାହାର କରି ତାକୁ ବଡ଼ କଥା ବୋଲି ଗଣନା କରିବା—
Jīrāru sirā kāṛhibā
जीरह काढ़ना
To make a mountain of a molehill.

**ଜୀର୍ଣ୍ଣ**—ସଂ.ବଣ.ପୁଂ—(ଜୃ ଧାତୁ=ପରିପାକ ବା ଜୀର୍ଣ୍ଣ ହେବା+କର୍ତ୍ତୃ.ତ)
Jīrṇṇa ୧ । କ୍ଷୟପ୍ରାପ୍ତ—1. Worn out; decayed; wasted; dilapidated.
(ଜୀର୍ଣ୍ଣା—ସ୍ତ୍ରୀ)

୨ । ଶୀର୍ଣ୍ଣ—2. Reduced; emaciated.

୩ । କ୍ଷୀଣ—3. Weakened; debilitated.

୪ । ଜାରିତ—4. Refined; oxidised.

୫ । ଜର୍ଜରିତ—5 Overcome; overpowered

୬ । ଗଳିତ—6. Shrivelled; torn,

୭ । ଅତି ପୁରାତନ—7. Very old.

୮ । ଯାହା ହଜମ ବା ପରିପାକ ହୋଇଅଛି—
8. Digested.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ରଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚକ୍ରର ବିପରୀତ ୨ ବା ୧ ଚକ୍ରଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୯ । ଅକର୍ମଣ୍ୟ; ଅକାମିକା—
9. Worthless; useless; decrepit.
୧୦ । (+କର୍ମ. ତ)—ପରିପକ୍ୱ -10. Ripened
୧୧ । ପୁରୁଣା ହେବାରୁ ଚିରା; ପୋରିହା—
11. Tattered; old and torn.

**ଜୀର୍ଣ୍ଣ କରିବା**—ଦେ. କ୍ରି. (ସଂ. ଜୃ ଧାତୁ)—୧ । ହଜମ କରିବା—
Jirnna kariba 1. To digest ( food ).
ଜୀର୍ଣ କାର ୨ । (ଲକ୍ଷଣାର୍ଥ) ଖରଚ କରିବା—
जीरण करना 2. (figurative) To spend.
(ଲକ୍ଷଣାର୍ଥ) ଆତ୍ମସାତ କରିବା—
3. (figurative) To appropriate to one's use.

**ଜୀର୍ଣ୍ଣଘର**—ଦେ. ବି—ରୋମନ୍ଥକାରୀ ଜନ୍ତୁମାନଙ୍କର ପ୍ରଥମପେଟ (ଯହିଁରେ
Jirnna-ghara ଭୁକ୍ତ ଦ୍ରବ୍ୟମାନ ପ୍ରଥମେ ରହେ ଓ ରୋମନ୍ଥ ପରେ ଯହିଁରୁ ବାହାର ଉଦରକୁ ଯାଏ)—The first stomach or pouch of ruminating animals.

**ଜୀର୍ଣ୍ଣଜୀରକାଦିମୋଦକ**—ସଂ. ବି—ଜୀରାଆଦି ଉପାଦାନରେ ପ୍ରସ୍ତୁତ
Jirnna-jirakadi-modaka ଅଜୀର୍ଣ୍ଣ ରୋଗର ଔଷଧବିଶେଷ - A medicine prepared with cumin seed and other ingredients and used for curing indigestion.

**ଜୀର୍ଣ୍ଣଜ୍ୱର**—ସଂ. ବି. (କର୍ମଧା; ଜୀର୍ଣ୍ଣ+ଜ୍ୱର)—ପୁରାତନ ଜର; ଯେଉଁ ଜର
Jirnna-jwara ବହୁଦିନ ଶରୀରରେ ରହେ—
Chronic fever

**ଜୀର୍ଣ୍ଣତା**—ସଂ. ବି. (ଜୀର୍ଣ୍ଣ+ଭାବାର୍ଥେ. ତା)—୧ । ପରିପାକ—
Jirnnata 1. Digestion.
(ଜୀର୍ଣ୍ଣତ୍ୱ—ଅନ୍ୟରୂପ) ୨ । ପୁରାତନ ହେବା ଯୋଗୁ ବସ୍ତୁର କ୍ଷୟପ୍ରାପ୍ତ ଅବସ୍ଥା—2. The state of being torn up or worn out.
୩ । ଜରା; ବାର୍ଦ୍ଧକ୍ୟ (ହି. ଶବ୍ଦସାଗର)—3. Old age.

**ଜୀର୍ଣ୍ଣଦାରୁ**—ସଂ. ବି—ବୃଦ୍ଧଦାରକ (ଦେଖ)
Jirnna-daru Bruddha-daraka (See)

**ଜୀର୍ଣ୍ଣଦେହ**—ସଂ. ବିଣ. ପୁଂ. (ବହୁବ୍ରୀହି; ଜୀର୍ଣ୍ଣ+ଦେହ)—
Jirnna-deha ୧ । ଯାହାର ଶରୀର ଜରା ବା ରୋଗାଦିଦ୍ୱାରା
(ଜୀର୍ଣ୍ଣଦେହା—ସ୍ତ୍ରୀ) କ୍ଷୟପ୍ରାପ୍ତ ହୋଇଅଛି; ଜରାଗ୍ରସ୍ତଦେହ; ଶୀର୍ଣ୍ଣଶରୀର—1 Worn out; dibilitated.
୨ । କ୍ଷୀଣକଳେବର—2. Of weakened constitution or impaired health; emaciated.
ସଂ. ବି. (କର୍ମଧା)—୧ । ଶୀର୍ଣ୍ଣ ଶରୀର—
1. Emaciated body and limbs.
୨ । ଭଗ୍ନ ସ୍ୱାସ୍ଥ୍ୟ—2. Impaired health.

**ଜୀର୍ଣ୍ଣପତ୍ର**—ସଂ. ବି. (ବହୁବ୍ରୀହି; ଜୀର୍ଣ୍ଣ+ପତ୍ର)—ପଟ୍ଟିକା ଲୋଧ୍ର (ଦେଖ)
Jirnna-patra Pattika-lodhra (See)

**ଜୀର୍ଣ୍ଣପର୍ଣ୍ଣ**—ସଂ. ବିଣ. (ବହୁବ୍ରୀହି)—ଯେଉଁ ଗଛର ପତ୍ର ପୁରୁଣା ହୋଇ-
Jirnna-parnna ଅଛି ବା ଯହିଁରୁ ପତ୍ର ସବୁ ଝଡ଼ି ପଡ଼ିଅଛି—
( a tree ) With leaves ripened and dropped down.
ସଂ. ବି—୧ । (କର୍ମଧା)—ପାଚିଲା ବା ଶୁଖିଲା ପତ୍ର—
1. Dry leaves.
୨ । (ବହୁବ୍ରୀହି)—କଦମ୍ବ ଗଛ—
2. The Kadamba tree; Nauclea Cadamba.

**ଜୀର୍ଣ୍ଣବଜ୍ର**—ସଂ. ବି—ବୈକ୍ରାନ୍ତମଣି (ହି. ଶବ୍ଦସାଗର)—
Jirnna-bajra A kind of gem.

**ଜୀର୍ଣ୍ଣବଟିକା**—ସଂ. ବି. (ଜୀର୍ଣ୍ଣକାରୀ ବଟିକା; ମ. ପ. ଲୋ)—
Jirnna-batika ଖାଦ୍ୟର ଜୀର୍ଣ୍ଣକାରକ ବଟି—
Digestive pill.

**ଜୀର୍ଣ୍ଣବସ୍ତ୍ର**—ସଂ. ବି. (କର୍ମଧା; ଜୀର୍ଣ୍ଣ+ବସ୍ତ୍ର)—ପୁରୁଣା ଚିରାଲୁଗା; ଦରିବା;
Jirnna-bastra କନ୍ଥଡ଼ା—Tattered raiment; threadbare clothes.
(ଜୀର୍ଣ୍ଣବସ୍ତ୍ରା—ସ୍ତ୍ରୀ) ସଂ. ବିଣ. ପୁଂ (ବହୁବ୍ରୀହି)—ଯାହାର ଲୁଗା ଚିରା ଓ ପୁରୁଣା—Having threadbare or tattered clothes.

**ଜୀର୍ଣ୍ଣବାଟିକା**—ସଂ. ବି. (କର୍ମଧା; ଜୀର୍ଣ୍ଣ+ବାଟିକା)—
Jirnna-batika ପୁରୁଣା ଓ ଭଙ୍ଗାଘର; ପୁରୁଣା ଓ ଖଣ୍ଡିଆଘର—
Ruined mansion.

**ଜୀର୍ଣ୍ଣଶୀର୍ଣ୍ଣ**—ସଂ. ବିଣ. (ସମାର୍ଥ ବାଚକ ଅନୁଚରଶବ୍ଦଦ୍ୱୟ, ଜୀର୍ଣ୍ଣ ଓ ଶୀର୍ଣ୍ଣ)—
Jirnna-sirnna ପୁରୁଣା; ପୁରୁଣା ଓ କ୍ଷୟପ୍ରାପ୍ତ—
Worn out and emaciated.

**ଜୀର୍ଣ୍ଣଶୂଳ**—ସଂ. ବି—ଖାଦ୍ୟ ଦ୍ରବ୍ୟ ପରିପାକ ହେବା ସମୟରେ ପେଟକୁ
Jirnna-sula ମାରିବା ରୋଗ; ପରିଣାମ ଶୂଳ—A kind of colic which appears when the food is being digested in the stomach.

**ଜୀର୍ଣ୍ଣସଂସ୍କାର**—ସଂ. ବି. (୬ଷ୍ଠୀ ତତ୍, ଜୀର୍ଣ୍ଣ+ସଂସ୍କାର)—ପୁରୁଣା ଓ ଭଙ୍ଗା
Jirnna-samskara ବସ୍ତୁର ମରାମତି; ପୁନର୍ନବୀକରଣ—
Repair of old things; renovation.

**ଜୀର୍ଣ୍ଣସଂସ୍କୃତ**—ସଂ. ବିଣ—ପୁନର୍ନବୀକୃତ—
Jirnna-samskruta Repaired; renovated.

**ଜୀର୍ଣ୍ଣା**—ସଂ. ବିଣ. ସ୍ତ୍ରୀ (ଜୀର୍ଣ୍ଣ+ସ୍ତ୍ରୀ ଆ)—୧ । ପୁରାତନୀ—
Jirnna 1. Old (female)
୨ । ଶୀର୍ଣ୍ଣା—2. Worn out.
୩ । ବୃଦ୍ଧା (ସ୍ତ୍ରୀ)—3. Old (woman).
ସଂ. ବି—୧ । ସ୍ଥୂଳଜୀରକ; ମୋଟା ଜୀରା—
1. A kind of thick cumin seed.

| ୧ | ଇ | ଉ | ଋ,ଋ | ଌ | ଏ | ହ୍ରସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୃ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ୱ | ବ୍ |

୨ । କଳାଜୀର (ହି. ଶବ୍ଦସାଗର)—
2. Black cumin seed.

**ଜୀର୍ଣ୍ଣାସ୍ଥି ମୃତ୍ତିକା**—ସଂ. ବି—ଯେଉଁ ମାଟିରେ ହାଡ଼ଗୁଣ୍ଡା ମିଶି ସଢ଼ିଥାଏ—
Jirṇṇāsthi-mruttikā Soil in which bone has been made to putrefy.

[ଦ୍ର—ଶବ୍ଦାର୍ଥଚନ୍ଦ୍ରାମଣି ନାମକ ଗ୍ରନ୍ଥରେ ଏ ମୃତ୍ତିକା ତିଆର କରିବାର ବିଧି ଲେଖାଅଛି । ଯେଉଁ ମାଟିରୁ ଶିଳାଜତୁ ବାହାରେ ସେଠାରେ ଗୋଟିଏ ଗହ୍ୱର ଗାତ ଖୋଳି ସେ ଗାତରେ ଶୁଷ୍କ ହାଡ଼ ପୂରାଇ ତହିଁ ଉପରେ ସାଜିକ୍ଷାର, ଲୁଣ ଓ ଗନ୍ଧକ ୬ମାସ ଯାକେ ଢାଳିବ । ୩ବର୍ଷରେ ସେ ହାଡ଼ଆଦି ମିଳାଇଯାଇ ମାଟି ସଙ୍ଗେ ମିଶିଯିବ । ସେହି ମାଟିରେ ବାସନ ତିଆରି କରି ସେ ବାସନରେ ଖାଇଲେ ଉପକାର ହୁଏ—ହି. ଶବ୍ଦସାଗର । ]

**ଜୀର୍ଣ୍ଣି**—ସଂ. ବି. (ଜୃ ଧାତୁ+ଭାବ. ତି)—୧ । ବାର୍ଦ୍ଧକ୍ୟ—
Jirṇṇi 1. Old age.

୨ । ଜୀର୍ଣ୍ଣାବସ୍ଥା—
2. Infirmity; worn out condition.

୩ । କ୍ଷୟ—3. Decay.

୪ । ପରିପାକ—4. Digestion.

**ଜୀର୍ଣ୍ଣୋଦ୍ଧାର**—ସଂ. ବି. (ଜୀର୍ଣ୍ଣ+ଉଦ୍ଧାର, ୬ଷ୍ଠୀ ତତ୍)—ଜୀର୍ଣ୍ଣସଂସ୍କାର;
Jirṇṇoddhāra ପୁରୁଣା ଜିନିଷର ମରାମତି—
Repair of old things.

**ଜୀର୍ଣ୍ଣୋଦ୍ଧୃତ**—ସଂ. ବି.—ମରାମତି କରା ଯାଇଥିବା—
Jirṇṇoddhruta Repaired.

**ଜୁ**—ଦେ. ବି.—(ଫା.ଜୁ; ଭୂଲ ସଂ. ଯୋଗ)—ଶକ୍ତି; କ୍ଷମତା—
Ju 1. Power.
ଜୁ ୨ । ସାମର୍ଥ୍ୟ—
ଜୂ 2. Ability

ଦେ. ଅ. (ସଂ. ଯୁଜ ଧାତୁ)—ସଗଡ଼ଆଦିଳଦଙ୍କୁ ଯୁଆଳିରେ କାନ୍ଧ ଦେବାପାଇଁ ଗାଡ଼ୁଆନ୍‌ର ଉଚ୍ଚାରିତ ଶବ୍ଦ—
An interjection used to bullocks to put their shoulders to the yoke.

**ଜୁଅ**—ଦେ ବି. (ସଂ. ଦ୍ୟୂତ, ପ୍ରା. ଜୂଅ)—୧ । ଦ୍ୟୂତକ୍ରୀଡ଼ା; ପଣରଖି
Jua ଖେଳିବା; ବାଜି ରଖି ଖେଳିବା ଖେଳ; ଜୁଆ ଖେଳ—
ଜୁୟା 1. Gambling.
ଜୁଆ

କେଉଁ ରୂପେ ପାଣ୍ଡବେ ଜୁଅରେ ହାରିଲେ ।
କୃଷ୍ଣସିଂ. ମହାଭାରତ. ଆଦି ।

[ ଦ୍ର—ଧନ ବାଜୀ ରଖି କଉଡ଼ି, ପଶା, ତାସ୍, ଆଦି ଦ୍ୱାରା ଯେଉଁ ଖେଳ ହୁଏ ତାହାକୁ ଜୁଅ ବା ଜୁଆ ଖେଳ ବୋଲାଯାଏ । ହାରିବା ଲୋକ ଜିଣିବା ଲୋକକୁ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ଦେବ ଏହି ପଣ ରଖି ଜୁଆ ଖେଳାଯାଏ । ଫଳତଃ ଯେଉଁ ଅନିଶ୍ଚିତଫଳ କାର୍ଯ୍ୟରେ ପଣ ରଖାଯାଏ ତାହାହିଁ ଜୁଆ । ଆଜିକାଲି ପଣ ରଖି କରା ଯାଉଥିବା ଘୋଡ଼ଦୌଡ଼ ମଧ୍ୟ ଏକ ପ୍ରକାର ଜୁଆ ଖେଳ । ]

୨ । ନବବିବାହିତ ବରକନ୍ୟାଙ୍କର ସାତମଙ୍ଗଳା ମଧ୍ୟରେ ଖେଳିବା କଉଡ଼ିଖେଳ—
2. A ceremonial game of cowries played by the bride and bridegroom during the first seven days of marriage.

**ଜୁଅ କଉଡ଼ି**—ଦେ. ବି. ( ସଂ. ଦ୍ୟୂତ+କପର୍ଦ୍ଦିକ )—ବିବାହରେ ୭ଦିନ
Jua kauṛdi ଯାଏ ବର କନ୍ୟା ଯେଉଁ କଉଡ଼ିରେ ଖେଳନ୍ତି—
The sea-shells with which the bride and bridegroom play during marriage.

**ଜୁଅ ଶକଟା**—ଦେ. ବି—ଜୁଆ ଶକଟା ( ଦେଖ )
Jua śakaṭā Juā śakaṭā ( See )

**ଜୁଆ**—ଦେ. ବି—୧ । ଆମ୍ବ ଆଦି କଞ୍ଚା ଫଳକୁ ଲୁଣ, ମସଲା ଓ ତେଲ
Juā ଆଦି ଦେଇ ଆଚାର କରିବା—
1. Seasoning of mango and other raw fruits with salt, spices and oil; pickling.

୨ । ( ସଂ. ଦ୍ୟୂତ; ପ୍ରା. ଜୂଅ ) ଜୁଅ ( ଦେଖ )
2. Jua ( See )

ଦେ. ବିଣ—ଲୁଣ, ମସଲା ଓ ତେଲ ଆଦିଦ୍ୱାରା ପାଗ କରାଯାଇଥିବା ( ଆମ୍ବ ଆଦି )—Seasoned or prepared ( pickle ). pickled ( fruit ).

ପ୍ରାଦେ—୧ । (ସମ୍ବଲପୁର; ସିଂହଭୂମ ) ବି. ( ସଂ. ଯୁଗ ) (ତୁଳ. ଏହି ଅର୍ଥରେ ହି. ଜୂଆ ) ଶଗଡ଼ ବା ହଳର ଯୁଆଳି—
Yoke.

୨ । ( ଯାଜପୁର ) ବି—ଦୁଧକୁ ଦହିଆକୁ ବସାଦହି କରିବା ପାଇଁ ଦେଲେ ତହିଁରେ ମିଶା ଯିବା ଖଟା ବସ୍ତୁ; ମହି—2. Sour thing added to milk to turn it into curd.

**ଜୁଆଇଁ**—ଦେ. ବି. ( ସଂ. ଜାମାତୃ )—୧ । ( କୌଣସି ବ୍ୟକ୍ତିର )
Juāiṅ କନ୍ୟାର ସ୍ୱାମୀ—1. Husband of ( one's )
ଜାମାଇ daughter; son-in-law.
दामाद; जमाइ

ଦୁର୍ଯୋଧନ ବୋଇଲେ ତୁମ୍ଭ ଜୁଆଇଁ କି—
କୃଷ୍ଣସିଂ. ମହାଭାରତ. ସଭା ।

୨ । ନବବିବାହିତ ବର—2. Bridegroom.

୩ । ( ଲକ୍ଷଣାର୍ଥ ) ଜାମାତା ଶଶୁର ଘରେ ପାଇବା ଆଦର ପରି ଆଦର ପାଉଥିବା ବ୍ୟକ୍ତି—3. (figurative) A person who gets a son-in-law's treatment and hospitality at some place.

**ଜୁଆଇଁ ଡା(ଡ଼)କରା**—ଦେ. ବି—ଜୁଆଇଁ ନିମନ୍ତ୍ରଣ (ଦେଖ)
Juāiṅ ḍā(ṛa)karā Juāiṅ nimantraṇa ( See )

**ଜୁଆଇଁ ନିମନ୍ତ୍ରଣ**—ଦେ. ବି—୧ । ଶଶୁରଙ୍କ ଗୃହକୁ ଉତ୍ସବାଦି ଉପ-
Juāiñ nimantraṇa ଲକ୍ଷରେ ଜାମାତାଙ୍କୁ ନିମନ୍ତ୍ରଣ କରାଯିବା—
जामाई निमन्त्रण 1. Formal invitation of a son-in-law
**जामाइका दावत** to the house of the bride's father.

[ ଦ୍ର—ବିବାହର ଏକବର୍ଷ ମଧ୍ୟରେ ପଡ଼ୁଥିବା ଗୁରୁତ୍ୱପୂର୍ଣ୍ଣ ପୂର୍ଣ୍ଣିମା, ଯଥା—ପୁଷ୍ୟପୂର୍ଣ୍ଣିମା, ଗହ୍ମାପୂର୍ଣ୍ଣିମା, ଦୋଳପୂର୍ଣ୍ଣିମା ଓ ସ୍ନାନପୂର୍ଣ୍ଣିମା (ମତାନ୍ତରେ କୁମାରପୂର୍ଣ୍ଣିମା ) କୁ ଶଶୁରଘରକୁ ଜୋଇଁ ଡାକରା ହୋଇଯିବାର ପ୍ରଥା ଓଡ଼ିଶାରେ ଚଳେ । ]

୨ । ବିବାହ କରିବା ପାଇଁ ଶଶୁରଙ୍କ ଘରଠାକୁ ସଦାଜବ ଯିବା ସକାଶେ ବିବାହ ପୂର୍ବେ ଶଶୁରଙ୍କ ନିକଟରୁ ଭାବୀ ଜାମାତାଙ୍କ ନିକଟକୁ ବସ୍ତ୍ର, ମହାପ୍ରସାଦ, ନାରିକେଳ ଓ ସମ୍ବନ୍ଧ ଲେଖା ସହ ପଠାଯିବା ନିମନ୍ତ୍ରଣ—
2 Formal invitation sent to the bridegroom (accompanied with new cloth and formal letter) to attend his marriage ceremony at the father-in-law's house.

**ଜୁଆଇଁ ବିଦାକି**—ଦେ. ବି. ( ସଂ. ଜାମାତା + ବିଦାୟ )—୧ । ଉତ୍ସବା-
Juāiñ bidāki ଦିରେ ନିମନ୍ତ୍ରିତ ହୋଇ ଆସିଥିବା ଜାମାତାଙ୍କୁ ବିଦାୟକାଳୀନ ଦିଆ ଯିବା ଉପହାର, ବସ୍ତ୍ର ଓ ଅର୍ଥାଦି—
1. Money and cloths presented to a son-in-law when he takes leave after attending the father-in-law's house on invitation.

୨ । ବିବାହ ପରେ ଜାମାତାଙ୍କ ସଙ୍ଗେ କନ୍ୟା ଜାମାତାଙ୍କ ଘରକୁ 'ବାହୁଡ଼ା ବରକନ୍ୟା' ହୋଇ ଯିବାବେଳେ ତାଙ୍କ ସଙ୍ଗେ ଦିଆଯିବା ଯୌତୁକ ବା ଉପହାର-ସମ୍ଭାର—
2. Presents accompanying a newly married couple while starting for the bridegroom's home.

**ଜୁଆଇଁ ବେଭାର**—ଦେ. ବି. (ସଂ. ଜାମାତା + ବ୍ୟବହାର)—ଜାମାତାଙ୍କ
Juāiñ bebhāra ଗୃହକୁ ଶଶୁରଗୃହରୁ ଉତ୍ସବାଦି ଉପଲକ୍ଷରେ ପ୍ରେରିତ ଉପଢୌକନ—Presents sent to a son-in-law on special occasions.

**ଜୁଆଇଁ ଭୋଜନ**—ଦେ. ବି. ( ଜାମାତା + ଭୋଜନ )—
Juāiñ bhojana ୧ । ଜାମାତାଙ୍କୁ ଶଶୁରାଳୟରେ ଦିଆଯିବା
जामाई भोजन ପରିପୂର୍ଣ୍ଣ ଭୋଜନ—1. Entertainment like
**जमाइ भोजन** that given to a son-in-law in the house of his father-in-law.

୨ । କିଛି କାର୍ଯ୍ୟ ନ କରି ( ଶଶୁର ଘରେ ଜୋଇଁ ଭୋଜନ ପାଇବା ପରି ) ଅନ୍ୟ ବ୍ୟକ୍ତିର ଗୃହରେ ମିଳିବା ଭୋଜନ—2. Getting food at another's house without doing any work ( like a son-in-law at the house of his father-in-law ).

**ଜୁଆଇଁ ମର୍ଯ୍ୟାଦା**—ଦେ. ବି. ( ସଂ. ଜାମାତା + ମର୍ଯ୍ୟାଦା )—
Juāiñ marjyādā ୧ । ଜୁଆଇଙ୍କୁ ଶଶୁରଘରେ ପ୍ରଦର୍ଶିତ ସମ୍ମାନ—
1. Honour shown to a son-in-law at the father-in-law's house.

୨ । ଶଶୁରଗୃହର ଉତ୍ସବାଦି ଉପଲକ୍ଷରେ କିମ୍ବା ପର୍ବୋପଲକ୍ଷରେ କିମ୍ବା ଶଶୁର ଘରକୁ ନିମନ୍ତ୍ରିତ ହୋଇ ଆସିଥିବା ଜାମାତାଙ୍କୁ ଉପହାର ଦିଆଯିବା ଲୁଗା—
2. Cloth presented to a son-in-law on occasions of special festivals when he attends the father-in-law's house on special invitation.

**ଜୁଆଇବା**—ଦେ. କ୍ରି—୧ । ତେଲ ବା ଘିଅ ଆଦି ରଖିବା ଦ୍ୱାରା ହାଣ୍ଡି
Juāibā ଘଡ଼ି ଆଦି ମୃତ୍‌ପାତ୍ରକୁ ସଜ୍ଜ କରିବା—
1. To season earthen pots by keeping oil, ghee etc. in them.

୨ । ଅମ୍ବିଲ, ଆଗୁର ଓ ତେନ୍ତୁଳି ଆଦିରେ ମସଲା ଓ ତେଲ ଆଦି ଦେଇ ମୁଖରୋଚକ କରିବା—2. To season pickles with spice, oil etc.

ପ୍ରାଦେ. (ଗଞ୍ଜାମ) କ୍ରି—କଟୁରି ବେଣ୍ଟ ଆଦିର ମୂଳରେ କଣା କରି ସେ କଣାରେ ଜଉ ଦେଇ ଖଣ୍ଡାର ମୂଳକୁ ବସାଇ ଦେବା—To set the butt-end of the blade of a knife or bill-hook into the wooden handle.

**ଜୁଆଁଇଁ(ଇତ୍ୟାଦି)**—ଦେ. ବି—ଜୁଆଇଁ ଇତ୍ୟାଦି (ଦେଖ)
Juāñiñ (etc) Juāiñ etc (See)

**ଜୁଆଁଣିଆ ଘାସ**—ଦେ. ବି. ( ନାମ )—
Juāñiā ghāsa ଏକ ପ୍ରକାର ମୋଟ ଓ କରଡ଼ା ଘାସ—
A kind of coarse and tough grass

ବୁଢ଼ା ବଳଦକୁ ଜୁଆଁଣିଅ ଘାସ
ଖାଇ କି ନ ଖାଇ ମେଲ ଦେଇ ଆସ । ଡଗ ।

[ ଦ୍ର—ଏହା ପାଣି ପାଖରେ ଓ ସନ୍ତସନ୍ତିଆ ଜାଗାରେ ଉଠେ । ଏଥିରେ ଜୁଆଁଣି ପରି ଫଳ ହୁଏ । ]

**ଜୁଆଁଳା**—ପ୍ରାଦେ. (ସମ୍ବଲପୁର) ବି. ( ସଂ. ଯାମଳ; ଯମଳ )—
Juāñlā ଯାଆଁଳା; ଯମଜ—
Twin; born together.

**ଜୁଆଁଳା ଜିଆଁ**—ପ୍ରାଦେ. ( ସମ୍ବଲପୁର ) ବି—
Juāñlā jiāñ ଯମଜ ସନ୍ତାନ; ଯାଆଁଳା ପିଲା—Twins.

**ଜୁଆଖିଲ**—ପ୍ରାଦେ. (ସମ୍ବଲପୁର ଓ ସିଂହଭୂମ) ବି. (ସଂ. ଯୁଗକୀଳକ)—
Juā-khila ଶଗଡ଼ର ବାଙ୍କୁଲି—The pins attached to the ends of a yoke.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଇୟ | ଉଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଔ | ନ୍ |

**ଜୁଆଖେଳା**—ଦେ. ବି. ( ସଂ. ଦ୍ୟୂତ ଓ ଖେଳ )—ଦ୍ୟୂତକ୍ରୀଡ଼ା—
Juā-kheḷā Play at gambling; gambling.
(ଜୁଆଖେଳ—ଅନ୍ୟରୂପ) ଭୂମିର ଶୁଣି କରୁ ଜୁଆ ଖେଳା ଘଡ଼ ।
জুআখেলা କୃଷ୍ଣସିଂହ, ମହାଭାରତ, ବନ ।
जुआखेल

**ଜୁଆଙ୍ଗ**—ଦେ. ବି—୧ । ପତ୍ରଶବର; ପାଉଆ; ଓଡ଼ିଶାର ଆଦିମ ଅଧିବାସୀବିଶେଷ; ଓଡ଼ିଶା ଗଡ଼ଜାତର ପାର୍ବତ୍ୟ ଜାତିବିଶେଷ—1. A wild tribe inhabiting the forests of the Orissa States.
Juāṅga
জুয়াঙ্গ
जुयाङ्ग

[ ଦ୍ର—ପିଆରିମୋହନଙ୍କ ଓଡ଼ିଶାର ଇତିହାସରେ ଓଡ଼ିଶାର ଆଦିମ ଅଧିବାସୀମାନଙ୍କୁ ୩ ଶ୍ରେଣୀରେ ବିଭକ୍ତ କରାଯାଇ ଅଛି ।
୧—ଯେଉଁମାନେ ଭାରତର ଉତ୍ତରପୂର୍ବ କୋଣ ବାଟେ ଭାରତକୁ ଆସିଥିଲେ, ଯଥା—କୋଲ ବା କୋଲ୍ଲ, ମୁଣ୍ଡା କୋଲ, ଖାରଆ, ପୁରାଣ, ଭୂମିଜ ବା ଭୂୟାଁ ଓ ସାନ୍ତାଳ ପ୍ରଭୃତି ।
୨ । ଯେଉଁମାନେ ଭାରତର ଉତ୍ତରପଶ୍ଚିମ କୋଣ ବାଟେ ଆସିଥିଲେ, ଯଥା—କନ୍ଧ, ଗଣ୍ଡ, ଝୋରାଗଣ୍ଡ, ଧାରୁଆଗଣ୍ଡ, ସାଓରା, ଜୁଆଙ୍ଗ, ଚାପ୍ପ ବା ଚଇଁଲା, ପାଉଆ, ପତରଶବର, ମାଳଶବର, ସଉରା ଓ ଧାଂଗ ପ୍ରଭୃତି ।
୩—ଯେଉଁମାନେ ହିନ୍ଦୁ ସମାଜର ଅସ୍ପୃଶ୍ୟ ଓ ସେବକ ରୂପେ ହିନ୍ଦୁମାନଙ୍କ ଆଶ୍ରୟ ଧରି ରହିଲେ । କଣ୍ଡରା, କନ୍ଦଲ, ଖଇରା, ଘୁସୁରିଆ, ଚମାର, ଡମ, ପାଣ, କାଉର, ବାଖୁଡ଼ି, ଶିଆଳ, ଭୂୟାଁ ଓ ହାଡ଼ି ବା ମେହେନ୍ତର ।
ଜୁଆଙ୍ଗମାନଙ୍କ ମଧ୍ୟରେ ଅବଧି ସ୍ତ୍ରୀମାନେ କେବଳ ପତ୍ର ପିନ୍ଧି ଲଜ୍ଜା ନିବାରଣ କରିବା ପ୍ରଥା ଢେଙ୍କାନାଳ, କେନ୍ଦୁଝର ଓ ହିନ୍ଦୋଳରେ ଦେଖାଯାଏ । ]
୨ । ମୁଣ୍ଡା ଜାତି ବା ଜୁଆଙ୍ଗ ଜାତିର ଭାଷା—
2. Languages of the Juāṅgas or Muṇḍās.

**ଜୁଆଚୋର**—ଦେ. ବି. (ଗାଳି) ( ସଂ. ଦ୍ୟୂତ+ଚୌର )—
Juā-chora ୧ । ଜୁଆ ଖେଳାଳି—1. Gambler.
জুয়াচোর, জুচ্চোর ୨ । ଜୁଆ ଖେଳରେ ଯେ ଠକାଏ—
जुआचोर 2. A person who swindles by gambling.
ଦେ. ବିଣ—ପ୍ରତାରକ; ଧପାବାଜ; ଠକ—
Cheating; fraudulent; deceitful.

**ଜୁଆଚୋରି**—ଦେ. ବି—ପ୍ରବଞ୍ଚନା; ଶଠତା; ପ୍ରତାରଣା—
Juā-chori Swindling; cheating.
জুয়াচুরি,জুচ্চুরি
जुआचोरि

**ଜୁଆଣ**—ଗ୍ରା. ବିଣ ଓ ବି—ଜୁଆନ୍ ( ଦେଖ )
Juāṇa Juān ( See )

**ଜୁଆଣ ପାଣି**—ପ୍ରାଦେ. (କଟକ) ବି—ମନ୍ତ୍ରପୂତ ଜଳ; ଫଳପାଣି—
Juāṇa pāṇi Consecrated water sprinkled over fruit-trees with a view to make them very fruitful.

**ଜୁଆଣିଆ**—ଦେ. ବି—୧। ବଣ ଜୁଆଣୀ;ଶସ୍ୟକ୍ଷେତ୍ରରେ ହେବା ତୃଣବିଶେଷ-
Juāṇiā 1. A kind of weed growing in cornfields.
୨ । ଜୁଆଁଣିଆ ଘାସ (ଦେଖ)
2. Juāṅṇiā ghāsa (See)

**ଜୁଆଣୀ**—ଦେ· ବି. ( ସଂ. ଯବାନୀ; ଯମାନୀ )—
Juāṇi ସୁଗନ୍ଧ ମସଲାବିଶେଷ; ଧାନ୍ୟାଦି ବର୍ଗର କୃଷି-ଜାତ ଶାକବିଶେଷର ଫଳ—A kind of seed used as condiment; caraway seed; Carum Copticum Ajowan.
ସଂ. ଦୀପନୀ, ବାତାରି, ଶୂଳହନ୍ତ୍ରୀ, ଯବାନୀ, ଯମାନୀ
জোয়ান্
अजवान, अजवाइन,
अजोआन [ ଦ୍ର—ଏଥିରୁ ତୈଳ ଓ ଅର୍କ ଉଠାଯାଇ ପାରେ, ଏହା ଔଷଧରେ ବ୍ୟବହୃତ ହୁଏ । ଏହା ଖୁବ୍ ଜୀର୍ଣ୍ଣକର ।]
ତେ. ଓମମୁ

**ଜୁଆଣୀ ଅରକ**—ଦେ. ବି—ଜୁଆଣୀରୁ ବୈଜ୍ଞାନିକ ପ୍ରକ୍ରିୟାରେ ପ୍ରସ୍ତୁତ
Juāṇi araka ନିର୍ଯ୍ୟାସ—Essence destilled from caraway seeds.
জোয়ান আরক
अजवाइन का अरक

**ଜୁଆଦ**—ଦେ. ବି—ମୃଗବିଶେଷ—
Juāda A kind of deer.

**ଜୁଆନ୍**—ଦେ. ବିଣ.—(ସଂ. ଯୁବା; ଯୌବନ; ଫା. ଜବାନ୍ )—
Juān ୧ । ଯୁବା; ଯୁବକ—1. Young.
জোয়ান্ ୨ । ପରିଣତବୟସ୍କ—
जवान 2. Adult.
ବି—୧ । ଯୁବକ—1. Young person.
୨ । ଯୁବକ ଓ ବଳିଷ୍ଠ ବ୍ୟକ୍ତି—2. Young and strong person.

**ଜୁଆନ୍ ବୟସ**—ଦେ. ବି. (ସଂ. ଯୁବା ଓ ବୟସ)—ଯୌବନ—
Juān bayasa Youth.
জোয়ান্ বয়স
जवानि

**ଜୁଆନ୍ ମର୍ଦ୍ଦ**—ଦେ. ବି.—ବଳିଷ୍ଠ ଯୁବା ପୁରୁଷ; ସୁନ୍ଦର ହୃଷ୍ଟପୁଷ୍ଟ
Juān mardda ଯୁବକ—A strong and stout youth.
জোয়ান্ মর্দ
जवान मरद
(ଜୁଆନ୍ ମରଦ—ଅନ୍ୟରୂପ)

**ଜୁଆନ୍‌ଜବର୍**— ଦେ. ବିଣ. (ଜାହାଜିଆ ଭାଷା)—ଯୁବା ଓ ବଳିଷ୍ଠ—
Juān-jabar Young and strong.
জোয়ান জবর 'ଚଣ୍ଡେଲ—ଜୁଆନଜବର; ଖଲସି—ଏଁ, ଯାଁ ।
जवानजबर ଫକୀରମୋହନ. ଗଳ୍ପସ୍ୱଳ୍ପ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଂଧ' ନ ପାଇଲେ 'ବନ୍ଧ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜୁଆନି**—ଗ୍ରା. ବିଣ ଓ ବି.—ଜୁଆନ୍ (ଦେଖ)
Juāni — Juān (See)

**ଜୁଆନିଆ**—ଦେ. ବି.—ଜୁଆଣିଆ (ଦେଖ)
Juānia — Juāṇia (See)
(ଜୁଆନିଆଁ—ଅନ୍ୟରୂପ)

**ଜୁଆର**—ଦେ. ବି. (ସଂ. ଜଳବାର)—୧ । ସମୁଦ୍ରର ଜଳବୃଦ୍ଧି ବା ଜଳସ୍ଫୀତି; ସମୁଦ୍ରର ଜଳୋଚ୍ଛ୍ୱାସ—
Juāra
ଜୋୟାର, জুয়ার — 1. Flowtide; floodtide.
ज्वार
୨ । ସମୁଦ୍ରର ଜଳସ୍ଫୀତି ଯୋଗୁଁ ନଦୀର ଉଜାଣି ପ୍ରବାହ-(ଭଟ୍ଟା—ବିପରୀତ) ବୃଦ୍ଧି—2. Flowtide entering a river.
୩ । ପାଣି ବଢ଼ି—3. Flood or flow of water.
[ଦ୍ର—ସମୁଦ୍ରର ଜଳ ତିଥି ଅନୁସାରେ ନିର୍ଦ୍ଦିଷ୍ଟ ସମୟରେ ଫୁଲି ଉଠେ ଓ ବସି ପଡ଼େ । ପୂର୍ଣ୍ଣିମା ଓ ଅମାବାସ୍ୟାର ପୂର୍ଣ୍ଣ ଜୁଆରକୁ ଉଠିଆ ଜୁଆର (Flowtide) ଓ ପକ୍ଷର ମଝିର (ସପ୍ତମୀ ଓ ଅଷ୍ଟମୀର) ସାମାନ୍ୟ ଜୁଆରକୁ ପଡ଼ିଆଜୁଆର (Ebbtide) କୁହାଯାଏ । ପଣ୍ଡିତମାନେ ସ୍ଥିର କରି ଅଛନ୍ତି ଯେ ଚନ୍ଦ୍ରଙ୍କ ହ୍ରାସବୃଦ୍ଧି ସଙ୍ଗେ ସମୁଦ୍ରର ଜୁଆରର ସମ୍ପର୍କ ଅଛି, ଏମନ୍ତ କି, ଜଳଶରୀର ମଧ୍ୟ ସମ୍ପର୍କ ଅଛି । ମନୁଷ୍ୟ ଦେହରେ ଥିବା ଜଳ ବା ରସ ମଧ୍ୟ ଚନ୍ଦ୍ରଙ୍କ ହ୍ରାସବୃଦ୍ଧିଦ୍ୱାରା ନିୟନ୍ତ୍ରିତ ହୁଏ ଓ ଅମାବାସ୍ୟା, ପୂର୍ଣ୍ଣିମା ଆଦିରେ ମନୁଷ୍ୟ ଦେହରେ ରସାଧିକ୍ୟ ହୋଇ ବାତଜ୍ୱର ଓ ଋତୁଗଡ଼ା ଆଦି ହୁଏ; ଏଥିପାଇଁ ହିନ୍ଦୁମାନେ ଉପବାସପାଳନର ବ୍ୟବସ୍ଥା କରିଥିବାର ଅନୁମିତ ହୁଏ ।]
୪ । (ସଂ. ଯାବାନଳ) ଜାଜସ୍ଥ ଶସ୍ୟ; ଭୁଟ୍ଟା; ଧାନ୍ୟାଦି ବର୍ଗର ଜୋୟାର, জুয়ার କୃଷିଜାତ ଶସ୍ୟବିଶେଷ—4. Indian or great millet; Sorghum Vulgare.
ज्वार
[ଦ୍ର—ଏ ଗଛ ଆଖୁ ଗଛ ପରି ବଢ଼େ, ଏଥିର ନଡ଼ା ଶକ୍ତ ଓ ସିଧା; ପେଣ୍ଡା ପେଣ୍ଡା ହୋଇ ଅଗରେ କେଣ୍ଡାମାନ ଧରେ । ଭାରତର ଉତ୍ତର-ପଶ୍ଚିମ ପ୍ରଦେଶମାନଙ୍କରେ, ପଞ୍ଜାବ, ବୋମ୍ବାଇ ଓ ମାନ୍ଦ୍ରାଜ ଅଞ୍ଚଳରେ ଏହାର ଚାଷ ହୁଏ । ଏହା ସେ ଅଞ୍ଚଳରେ ମନୁଷ୍ୟମାନଙ୍କର ଗୋଟିଏ ପ୍ରଧାନ ଖାଦ୍ୟ । ଏହା ବର୍ଷା ଓ ଶୀତ ଋତୁରେ ଫଳେ ।]
୫ । (ସଂ. ଦ୍ୟୂତ) ଜୁଆରି; ଜୁଆ ଖେଳାଳି—
5. Gamester; gambler.

**ଜୁଆରଭଟା(ଟ୍ଟା)**—ଦେ. ବି. (ବିପରୀତ ସହଚର)—ସମୁଦ୍ରର ସ୍ଫୀତି ଓ ସ୍ଫୀତିର ହ୍ରାସ—
Juāra-bhaṭā(ṭṭā)
জোয়ারভাটা — Flow and ebb of the sea
ज्वारभाटा
ଖେଳାଇ ଜୀବନ ଜଳଧିରେ ସୁଖ ଦୁଃଖର ଜୁଆରଭଟ୍ଟା ।
ରାଧାନାଥ: ଯଯାତି ।

**ଜୁଆରା**—ଦେ. ବି.—ଜୁଆର ୪ (ଦେଖ)
Juārā — Juāra 4. (See)
ପ୍ରାଦେ. (ସିଂହଭୂମ) ବି.—ମକ୍କା, ମକା—Maize; Indian corn; Tea Mays. (Haines)

**ଜୁଆରିଆ**—ଦେ. ବିଣ.—ଜୁଆରି (ଦେଖ)
Juāriā — Juārī (See)

**ଜୁଆରିବା**—ଦେ. କ୍ରି.—(ମାଛସାହାଣ) ମହା ଧରି ନଈ ମୁହାଣକୁ ଅସିବା—
Juāribā (shoals of fish) To proceed to the mouth of a river.

**ଜୁଆରି**—ଦେ. ବି. (ସଂ. ଦ୍ୟୂତକରି)—ଜୁଆଖେଳାଳୀ; ଦ୍ୟୂତକାର—
Juārī — Gambler; gamester.
জুয়ারী
जुआरी
ସୁଂଶୁଳୀ ନାମ ନଗର ରକ୍ଷକ ଜନ, ପରଦ୍ରବ୍ୟ ଛିଦ୍ରେ ସେ ଜୁଆରିର ଅଙ୍ଗ ।
କୃଷ୍ଣସିଂହ. ମହାଭାରତ. ଶାନ୍ତି ।
ଦେ. ବିଣ.—୧ । ଦ୍ୟୂତକ୍ରୀଡ଼ାରତ—
1. Addicted to gambling
୨ । ଯେଉଁ ନଦୀ ଉଜାଣକୁ ଜୁଆର ପାଣି ମାଡ଼େ—
2. Tidal; (river) visited by flowtide.

**ଜୁଆଳକଣ୍ଟିଆ**—ଦେ. ବିଣ.—ଯେଉଁ ବଳଦ ଜୁଆଳରୁ ଫିଟିଲେ ଆଉ ଧରା ଦିଏ ନାହିଁ—(a bullock) Which runs away after it is unyoked.
Juāḷakaṇṭiā

**ଜୁଆଳି**—ଦେ. ବି. (ସଂ. ଯୁଗ)—୧ । ରଥ, ଲଙ୍ଗଳ ଓ ଶଗଡ଼ର ଯେଉଁ ଦଣ୍ଡ ବଳଦ ବା ଘୋଡ଼ାଙ୍କ କାନ୍ଧରେ ରହେ—
Juāḷi
জুআল, জুয়াল, জোয়াল — 1 Yoke of a cart or plough.
जुआ; जूहड़
ଉତ୍ତର ମଧ୍ୟ ସେହି ଶଙ୍କରକୁ ଚାଲେ, ଧରି ଘୋଡ଼ା ଜୁଆଳି ଥୁମି ଗଲେ କ୍ଷଣେ ।
କୃଷ୍ଣସିଂହ. ମହାଭାରତ ବନପର୍ବ ।
[ଦ୍ର—ଶଗଡ଼ର ଜୁଆଳିର ଦୁଇ ମୁଣ୍ଡରେ କଣା ହୋଇ ଯେଉଁ ହୁଗୁଳା କାଠ ଖିଲ ଦୁଇଖଣ୍ଡି ସେ କଣାରେ ଗଳା ଯାଇ ବଳଦଙ୍କ କାନ୍ଧକୁ ଅଟକା ଯାଏ ତାକୁ ବାଙ୍ଗୁଲ କହନ୍ତି ।
ଲଙ୍ଗଳର ଜୁଆଳର ଦୁଇ ମୁଣ୍ଡରେ ତଳଆଡ଼ୁ ଯେଉଁ ଖିଲ ଦୁଇ ଖଣ୍ଡ ସ୍ଥାୟୀରୂପେ ସଂଯୁକ୍ତ ହୋଇଥାଏ ଓ ଯହିଁରେ ଖାଞ୍ଜିଯୋଗ ଗଳାଯାଇ ବଳଦଙ୍କ ବେକ ବନ୍ଧା ହୁଏ ତାକୁ 'ଶୋଉଲ' 'ଶଅଳ' ଓ ଯାଜପୁର ଅଞ୍ଚଳରେ 'ଶଇଲ' (ସଂ. ଶଲ୍ୟ) ଏବଂ ଗଞ୍ଜାମରେ 'ଜୁଆଳକଲା' ବୋଲାଯାଏ ।
ଜୁଆଳ ମଝିରେ ଲଙ୍ଗଳର ଈଶକୁ ଅଟକାଇବା ପାଇଁ ଥିବା ଫାଶଦିଆ ଛୋଟ ଦଉଡ଼ିକୁ 'ଆନ୍ଧ' ବା 'ଆନ୍ଧ ଜୋତ' ବୋଲା ଯାଏ ଓ ଯେଉଁ ବଡ଼ ଦଉଡ଼ାରେ ଈଶ ଜୁଆଳ ସଙ୍ଗେ ଭିଡ଼ା ହୋଇ ବନ୍ଧା ଯାଏ ତାକୁ ଲଙ୍ଗଳ ଦଉଡ଼ା କହନ୍ତି ।]
୨ । (ଲକ୍ଷଣାର୍ଥ) ମନୁଷ୍ୟର କୌଣସି ବନ୍ଧନ—
2. (figurative) Any tie with which a person is bound down.

**ଜୁଆଳି ଖିଲା**—ପ୍ରାଦେ. (ଗଞ୍ଜାମ) ବି. (ସଂ. ଯୁଗ ଓ କୀଲକରୁ)—ଜୁଆଳର ଦୁଇ ମୁଣ୍ଡରେ ବଳଦଙ୍କୁ ଅଟକାଇବା ପାଇଁ ମରା ଯାଇଥିବା ଖିଲ—The pins put to the ends of a yoke.
Juāḷi-kilā

| ୧ | ଇ | ଉ | ର,ଋ | ଓ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଏ | ଋଥ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଢ଼ | ṛ |

**ଜୁଆଳ ପଡ଼ିବା** (ବେକରେ)—ଦେ. ବ. ( ଲକ୍ଷଣାର୍ଥ )—୧ । ମନୁଷ୍ୟ
Juāli pardibā କୌଣସି ବନ୍ଧନରେ ବା ଗୁରୁତର କାର୍ଯ୍ୟରେ
(ଜୁଆଳ ବନ୍ଧା ହେବା—ଅନ୍ୟରୂପ) ନିଯୋଜିତ ହେବା—
1. (figuraive) Being yoked to some difficult task or duty.
( ଯଥା—ବେଶ୍, ବର୍ତ୍ତମାନ ତା ବେକରେ ଜୁଆଳ ପଡ଼ିଲା; ଏଣିକି ଏହାଙ୍କୁ ନ କର ସେ ଯାଉଛି କେଣେ ? )
୨ । ବିବାହ ବନ୍ଧନରେ ଆବଦ୍ଧ ହେବା—
2. Being bound with marriage bond.
୩ । କୌଣସି ସାଂସାରିକ ବା ପାରିବାରିକ ବନ୍ଧନରେ ଆବଦ୍ଧ ହେବା—3. Being yoked to worldly ties or family-responsibilities.
(ଯଥା—ବାପା ମରିବାରୁ ଏଥର ତା ବେକରେ ଜୁଆଳ ପଡ଼ିଲାଣି, ସେ ଘରଦ୍ୱାର କଥା ନ ବୁଝି ଆଉ ଯାଉଛି କେତେକେ ? )

**ଜୁଆ ଶକଟା**—ଦେ. ବି. ( ସହଚର )—ଜୁଆ ଖେଳ ଓ ଶକଟା ବା
Juā śakatā ଗଞ୍ଜପା—Gambling and another hazard-play at cards.

ଜୁଆ ଶକଟା ପାଗ ରଙ୍ଗ
ପଶା କ୍ୟାସୁବଲ ବେଶ୍ୟା ସଙ୍ଗ
ଏ ଛଅଉଷରେ ମାତେ ଯିଏ
ଖେକେ ମଇ ଖାକର ଖାଏ—ଡଗ ।

**ଜୁଇ**—ଦେ. ବି. ( ସଂ. ଯୂଥି; ଯୂଥିକ )—୧ । ଯୂଇ ( ଦେଖ )
Ju-i 1. Jūi ( See )
ଜୁଈ, ଜୁଈଁ ୨ । ( ସଂ. ଜ୍ୟୋତି ) ନିଆଁ—2. Fire.
ଜୁହି ୩ । ଶବଦାହ ନିମନ୍ତେ ପ୍ରସ୍ତୁତ ଅଗ୍ନି; ଚିତାଗ୍ନି—
3. Fire for burning a dead body; cremation-fire.
୪ । ଯେଉଁ ଗର୍ତ୍ତରେ ଶବଦାହ ନିମିତ୍ତ ଚିତା ପ୍ରସ୍ତୁତ ହୁଏ—
4. The pit over which funeral pile is set up.
୫ । ଏକପ୍ରକାର ଛୋଟ ପକ୍ଷୀ—5. A kind of small bird.
୬ । ( ସଂ. ଜୀବକ ) ଛୋଟ ଔଷଧବୃକ୍ଷବିଶେଷ—
6. A medicinal plant.

**ଜୁଇଁ**—ପ୍ରାଦେ. ( ବାଲେଶ୍ୱର ) ବି. ( ସଂ. ଜାମାତା ) (ଜୋ ସ୍ଥାନରେ
Juiñ ଜୁ ଉଚ୍ଚାରଣ )—ଜୋଇଁ; ଜାମାତା—Son-in-law.

**ଜୁଇଗାଡ଼**—ଗ୍ରା. ବି—ଯେଉଁ ଗାତରେ ଚିତାଗ୍ନି ଜଳେ—The hole
Jui-gārda dug in the ground over which fire is lighted to burn dead bodies.

**ଜୁଇଗାତ**—ଦେ. ବି—ଜୁଇଗାଡ଼ ( ଦେଖ )
Jui-gāta Jui-gārda ( See )

**ଜୁଇନ୍**—ପ୍ରାଦେ. ( ସମ୍ବଲପୁର ) ବି. ( ସଂ. ଜ୍ୟୋତି )—ନିଆଁ; ଅଗ୍ନି—
Juin Fire.

**ଜୁଇବା**—ଦେ. କ୍ରି—ଜୁଆଇବା ( ଦେଖ )
Juibā Juā-ibā ( See )

**ଜୁଉଲି**—ଦେ. ବି—ଜୋଅଲ; ଜଅଲ; ଜୋହଲ; ଲଙ୍ଗଳମୁଣ୍ଡାରେ
Ju-uli ଲଙ୍ଗଳ-ଲୁହା ବନ୍ଧିବା ପାଇଁ ଖୋଲା ହୋଇଥିବା ଘର ଉପରେ ମରା ଯାଇଥିବା '⊓' ଏହି ଆକାରର ଲୁହାର କିଲ—Nail hooked at both ends and thrust into the blade of the plough over the groove into which the plough-iron in thrust.

**ଜୁଏଇବା**—ଦେ. କ୍ରି—ଜୁଆଇବା ( ଦେଖ )
Jue-ibā Juā-ibā ( See )

**ଜୁଏଲ୍**—ବୈଦେ. ବି. ( ଇଂ. ଜ୍ୟୁଏଲ୍ )—୧ । ମଣିମୁକ୍ତାଦି ପଥର—
Juel 1. Jewel.
জুয়েল ୨ । ପକେଟ ଘଡ଼ି ବା ହାତଘଡ଼ିର ଚକମାନଙ୍କ ଅକ୍ଷ ଘୂରିବା
ज्युयेल ପାଇଁ ଅକ୍ଷର ଦୁଇ ମୁଣ୍ଡରେ ଥିବା କ୍ଷୁଦ୍ର ପ୍ରସ୍ତରଖଣ୍ଡ—
2. Jewel of a watch.

**ଜୁଏଲର୍**—ବୈଦେ. ବି. ( ଇଂ. ଜ୍ୟୁଏଲର୍ )—ଜହୁରୀ; ମଣିମୁକ୍ତା ଓ
Juelar ଅଲଙ୍କାର ବ୍ୟବସାୟୀ—A jeweller.
জুয়েলার
ज्युयेलर

**ଜୁକ୍‌ଜୁକ୍**—ଦେ. ଅ—୧ । ସାମାନ୍ୟ ଆଲୋକ ସହିତ ଜକ୍‌ଜକ୍ ଦେଖା
Juk juk ଯିବା—1. Twinkling of small bright things.
ঝিকঝিক
झिलमिल; जुगजुग ୨ । ଅଳ୍ପ ଅଳ୍ପ ହୋଇ ଅଗ୍ନି ଜଳିବା—
( ଜୁକୁଜୁକୁ—ଅନ୍ୟରୂପ ) 2. Flickering of fire.

**ଜୁକ**—ପ୍ରାଦେ. ( ବାଲେଶ୍ୱର ) ବି—(ଜୋ ସ୍ଥାନରେ ଜୁ ଉଚ୍ଚାରଣ)
Juka ଜୋକ—Leech.

**ଜୁକୁଜୁକିଆ**—ଦେ. ବିଣ—ଅଳ୍ପ ସାମାନ୍ୟ ପାଣି ଥିବା (ମାଟି ବା ଭିଅଣ)—
Juku-jukiā Slightly watery; moist.
ভিজা
गीला
(ଜୁକୁଜୁକିଆ—ଅନ୍ୟରୂପ)

**ଜୁଖ୍**—ପ୍ରାଦେ. ( ସମ୍ବଲପୁର ) ବି. ( ସଂ. ଯୁଜ୍ ଧାତୁ = ଯୁକ୍ତ ହେବା; କିମ୍ବା
Jukh ସଂ. ଜୁଷ ଧାତୁ = ପରିତର୍କଣ, ଅନ୍ୱେଷ; ଭୁଲ. ଏହି ଅର୍ଥରେ ବଂ. ଜୁଖ୍; ଜୁଁଖ୍; ହି. ଜୋଖ୍ )—
୧ । ତଉଲ—1. Weighment.
୨ । ଓଜନ—2. Weight.

**ଜୁଖିବା**—ପ୍ରାଦେ. (ସମ୍ବଲପୁର) କ୍ରି. ( ସଂ. ଯୁଜ ଧାତୁ; କିମ୍ବା ଜୁଷ ଧାତୁ
Jukh-bā ଭୁଲ. ଏହି ଅର୍ଥରେ ବ. ଜୁଖା; ଜୁଁଖା ଓ ହି.
(ଜଖିବା—ଅନ୍ୟରୂପ) ଜୋଖ୍‌ନା )—ତଉଲିବା; ତୁଳିବା; ଓଜନ କରିବା—To weigh.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଜୁଖା—ପ୍ରାଦେ. (ଆଠମଲ୍ଲିକ) ବି—ଜାଉ—
Jukhā — Gruel.

ଜୁଗ୍‌ବା—ପ୍ରାଦେ. (ସମ୍ବଲପୁର) କ୍ରି—ଜଗିବା ( ଦେଖ )
Jug-bā — Jagibā ( See )

ଜୁଗାଜୋଗ—ପ୍ରାଦେ (ବାଲେଶ୍ୱର) ବି. (ସଂ. ଯୋଗ+ଅଯୋଗ)—
Jugājoga — ଯୋଗାଯୋଗ ( ଦେଖ ) Jogājoga ( See )

ଜୁଗାଲି—ପ୍ରାଦେ. (ସମ୍ବଲପୁର) ବି—ଜଗୁଆଳ; ଜଗିଆ—
Jugāli — Watchman; guard.

ଜୁଗିବା—ପ୍ରାଦେ (ସମ୍ବଲପୁର) କ୍ରି—ଜଗିବା ( ଦେଖ )
Jugibā — Jagibā ( See )

ଜୁଗୁଆ—ପ୍ରାଦେ. (ସମ୍ବଲପୁର) ବି—ଜୁଗାଲି ( ଦେଖ )
Juguā — Jugāli ( See )

ଜୁଗୁପ୍ସକ—ସଂ. ବିଣ. ପୁଂ (ଗୁପ୍ ଧାତୁ ନିନ୍ଦାକରିବା + ସ୍ୱାର୍ଥେ ସନ୍ + ଅକ)—
Jugupsaka (ଜୁଗୁପ୍ସିକା—ସ୍ତ୍ରୀ)
୧ । ନିନ୍ଦାକାରୀ; କୁତ୍ସାକାରୀ— 1. Speaking evil of another; blaspheming.
୨ । ଘୃଣାକାରୀ—2. Detesting.

ଜୁଗୁପ୍ସନ—ସଂ ବି. ( ଗୁପ୍ ଧାତୁ ନିନ୍ଦା କରିବା + ସ୍ୱାର୍ଥେ ସନ୍ + ଭାବ. ଅନ )—
Jugupsana
୧ । କୁତ୍ସା; ନିନ୍ଦା—1. Blaming; speaking evil of another; blaspheming.
୨ । ଘୃଣାକରିବା—2. Hating.
୩ । ଅପବାଦ—3. Defamation.

ଜୁଗୁପ୍ସା—ସଂ. ବି. (ଗୁପ୍ ଧାତୁ ନିନ୍ଦା କରିବା + ସ୍ୱାର୍ଥେ ସନ୍ + ଭାବେ ଅ + ଆ )—ଜୁଗୁପ୍ସନ ( ଦେଖ )
Jugupsā — Jugupsana ( See )

ଜୁଗୁପ୍ସିତ—ସଂ. ବିଣ. (ଗୁପ୍ ଧାତୁ ନିନ୍ଦା କରିବା + ସ୍ୱାର୍ଥେ ସନ୍ + କର୍ମ. ତ)—
Jugupsita
୧ । ନିନ୍ଦିତ—1. Slandered.
୨ । ଯାହାକୁ ଅପବାଦ ଦିଆଯାଇ ଥାଏ—2. Defamed.
୩ । ଘୃଣିତ—3. Hated.

ଜୁଗୁଲି—ପ୍ରାଦେ. (ଅଳ) ବି—ଜୁଉଲି ( ଦେଖ )
Juguli — Ju-uli ( See )

ଜୁଗୋପିଷା—ସଂ. ବି. ( ଗୁପ୍ ଧାତୁ = ଗୋପନ କରିବା + ଇଚ୍ଛାର୍ଥେ ସନ୍ + ଭାବ. ଅ + ଆ )—
Jugophishā (ଜୁଗୋପିଷୁ—ବିଣ)
ଗୋପନ କରିବାର ଇଚ୍ଛା— A desire to conceal.

ଜୁଜ୍—ବୈଦେ. ବି. ( ଫା. ଜୁଜ୍ ) (ଛାପାଖାନାରେ ବ୍ୟବହୃତ ଶବ୍ଦ)—
Juj
जुज्
ज़ुज
ଫରମା; ୪, ୮, ୧୨ ବା ୧୬ ପୃଷ୍ଠାରେ ଭଙ୍ଗା ହୋଇଥିବା କାଗଜର ଫର୍ଦ୍ଦ—( a term used by printers ) Form; one sheet of paper folded into 4, 8, 12 or 16 pages.

ଜୁଜ୍‌ବନ୍ଦି—ବୈଦେ. ବି. (ଫା) (ଛାପାଖାନାରେ ବ୍ୟବହୃତ ଶବ୍ଦ)—
Juj-bandi
जुजबन्दि
ज़ुजबन्दी
ଏକ ଫରଦ କାଗଜ ୪, ୮, ୧୨ ବା ୧୬ ପୃଷ୍ଠାରେ ଭଙ୍ଗା ହୋଇ ଏହିପରି ଅନେକଗୁଡ଼ିଏ ଫରମାର ଏକତ୍ର ସିଲେଇ—( a term used by printers ) Bound in forms of 4, 8, 12 or 16 pages

ଜୁଜେଷ୍ଟି—ଗ୍ରା. ବି. (ନାମ) ( ସଂ. ଯୁଧିଷ୍ଠିର )—ଯୁଧିଷ୍ଠିର ( ଦେଖ )
Jujeshti
जुजेष्टी
ज़ुजेठल
(ଯୁଜେଷ୍ଟି, ଯୁଧେଷ୍ଟି—ଅନ୍ୟରୂପ)
Judhishṭhira (See)

ଜୁଜୁ—ଦେ. ବି. ( ସଂ. ଜୁଃ = ପିଶାଚୀ )—
Juju
जूजू
୧ । (ଶିଶୁଭାଷା) କଳ୍ପିତ ଭୟସଞ୍ଚାରକ ମୂର୍ତ୍ତି; କୋକମିନା— 1. Imaginary scarecrow; bugbear.
୨ । ଭୂତପ୍ରେତାଦି—2. Ghosts.
୩ । ଭୀତି ସଞ୍ଚାରକ ରୂପ— 3. A frightful figure.

ଜୁଜ୍ଝ—ଗ୍ରା. ବି ( ସଂ. ଯୁଦ୍ଧ; ପ୍ରା ଯୁଜ୍ଝ )—ଯୁଦ୍ଧ—
Jujjha
जुझा
ज़ुज्झ
(ଜୁଝ, ଜୁଝ୍ୟ—ଅନ୍ୟରୂପ)
War; fight.

ଜୁଜ୍ଝା(ଜ୍ଝେ)ଇବା—ଗ୍ରା. କ୍ରି. (ସଂ. ଯୁଦ୍ଧ)—
Jujjhā(jhe)ibā
जुझान
ज़ुझाना, ज़ुझवाना
୧ । ଅନ୍ୟକୁ ଯୁଦ୍ଧରେ ପ୍ରବର୍ତ୍ତାଇବା— 1. To instigate a person to fight.
୨ । ଜଣଙ୍କ ମଧ୍ୟରେ ଯୁଦ୍ଧ ଲଗାଇ ଦେବା— 2. To cause a fight between two persons.

ଜୁଜ୍ଝିବା—ଗ୍ରା. କ୍ରି. ( ସଂ. ଯୁଦ୍ଧ )—ଯୁଦ୍ଧ କରିବା—
Jujjhibā
जुझा
ज़ुझना
(ଜୁଝିବା—ଅନ୍ୟରୂପ)
To fight.

ଜୁଟ୍ (ଧାତୁ)—ସଂ—ଏକତ୍ର ହେବା; ମିଳିତ ହେବା; ଯୁକ୍ତ ହେବା—
Juṭ (root) — To be united or gathered up; to be combined.

ଜୁଟ୍—ସଂ. ବି. ( ସଂ. ଯୁକ୍ତ ପ୍ରା. ଜୁତ୍ତ; ସଂ. ଜୁଟ ଧାତୁ )—
Juṭ
जुट, जोट
ज़ुट
୧ । ଏକତ୍ର ହେବା ଅବସ୍ଥା—The state of being united.
୨ । ସଙ୍ଗତ—2. Union; collection.
୩ । ସମ୍ମିଳନ—3. Meeting together.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଅ | ଉ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ସ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ଞ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗଁ୍ୟ | ଋଅ | ଡ଼ | ନ |

୪ । ସଙ୍ଗମ—4. Copulation

୫ । ଜୋଡ଼ା; ଯୁଗ—5. Couple; pair.

୬ । ଦଳ; ମଣ୍ଡଳୀ—6. Company; batch; herd.

জুট ବୈଦେ. ବି. (ଇଂ)—ଝୋଟ—Jute; flax.

जुट ଦେ. ବିଣ.—୧ । ସମ୍ମିଳିତ—1. Gathered together; united; combined.

জুট, জোট

जुट ୨ । ଦଳବଦ୍ଧ—2. Herded; formed into a party.

ଜୁଟ୍ ଖାଇବା—ଦେ. କ୍ରି. ( ସଂ. ଜୁଟ୍ ଧାତୁ )—୧ । ପରସ୍ପର ମିଳିତ ହେବା—1. To meet together, to be united together

Jut khaibā

জুট খাওয়া; জুট লাগা

जुट खाना ୨ । ପରସ୍ପର ସଙ୍ଗମ କରିବା; ଜୋଡ଼ ପଡ଼ିବା—2 To copulate; to couple.

ଜୁଟ୍ ଲାଗିବା } ଅନ୍ୟରୂପ
ଜୁଟ୍ ହେବା }

୩ । ପରସ୍ପର ସର୍ବତୋଭାବରେ ମେଳ ହେବା; ଅନ୍ୟୋନ୍ୟରେ ସର୍ବତୋଭାବେ ମେଳ ଖାଇବା—3. To coincide with each other; to tally exactly with each other.

ଜୁଟ୍ ଖୁଆଇବା—ଦେ. କ୍ରି—'ଜୁଟ୍ ଖାଇବା'ର ଣିଜନ୍ତ ରୂପ—Causative form of 'Juṭ khāiba'.

Jut khuāibā

জুট খাওআন

जुट खिलाना

(ଜୁଟ୍ ଖୋଇବା—ଅନ୍ୟରୂପ)

ଜୁଟ୍ ଫ୍ଲାନେଲ୍—ବୈଦେ. ବି. (ଇଂ. ଜୁଟ୍ ଫ୍ଲାନେଲ୍ )—ଝୋଟରେ ବୁଣା ଅଥଚ ପଶମ ପରି ଦେଖାଯାଉ ଥିବା ଏକପ୍ରକାର ବସ୍ତ୍ର—Jute flannel.

Juṭ phlānel

জুট ফ্লানেল

जुट फुलालयन

(ଜୁଟ୍ଫ୍ଲାନୟନ୍; ଜୁଟ୍ଫ୍ଲାଲେନ୍—ଅନ୍ୟରୂପ)

ଜୁଟ୍ ବାନ୍ଧିବା—ଦେ. କ୍ରି. (ସଂ. ଜୁଟ୍ ଧାତୁ; ସଂ. ଯୁକ୍ତ; ପ୍ରା. ଜୁତ୍ତ; ସଂ. ଜୁଡ଼୍ ଧାତୁ=ବାନ୍ଧିବା)—୧ । ମେଳ ହେବା—1. To form an union.

Juṭ bāndhibā

জুট বাঁধা

जुट बाँधना ୨ । (ବହୁବ୍ୟକ୍ତି) କୌଣସି ଉଦ୍ଦେଶ୍ୟରେ ଦଳ ବାନ୍ଧିବା—2. (many persons) To combine together for any particular purpose.

୩ । ଗୋଟିଏ ଘନସନ୍ନିବେଶରେ ମିଳିତ ହେବା (ଯେପରି ବାଲି ଗୋଡ଼ି ଓ ସିମେଣ୍ଟକୁ ପାଣିରେ ଗୋଳେଇ ଏକାଠେଇ ଜମେଇ ଦେଲେ କଠିନ ପ୍ରସ୍ତର ପରି ଗୋଟିଏ ଅଭିନ୍ନ ଜିନିଷ ହୋଇଯାଏ)—3. To form into a compact mass.

ଜୁଟ୍ ଲଗା(ଗେ)ଇବା—ଦେ. କ୍ରି—'ଜୁଟ୍ ଲାଗିବା'ର ଣିଜନ୍ତରୂପ—Causative form of 'Juṭ lāgibā'.

Juṭ lagā(ge)ibā

ଜୁଟ୍ ଲାଗିବା—ଦେ. କ୍ରି—ଜୁଟ୍ ଖାଇବା (ଦେଖ)

Juṭ lāgibā Juṭ khāibā (See).

ଜୁଟ୍ ହେବା—ଦେ. କ୍ରି. (ସଂ. ଯୁକ୍ତ; ପ୍ରା. ଜୁତ୍ତ; ସଂ. ଜୁଟ୍ ଧାତୁ)—

Jut hebā ୧ । ଏକତ୍ର ହେବା—1. To come together.

জুট হওআ ୨ । ଦଳବଦ୍ଧ ହେବା—2. To flock together; to form into a union.

जुट होना

୩ । ପରସ୍ପର ମିଳିତ ହେବା; ସମ୍ମିଳିତ ହେବା—3. To meet each other.

୪ । ସଂଯୁକ୍ତ ହେବା—4 To be joined together.

ଜୁଟକ—ସଂ. ବି. ପୁଂ. (ଜୁଟ୍ ଧାତୁ=ଏକତ୍ର ହେବା+କର୍ତ୍ତୃ. ଅକ)—

Juṭaka ୧ । ମସ୍ତକର କେଶର ଶିଖା; ଜଟ—

(ଜୁଟିକା—ସ୍ତ୍ରୀ) 1. A tuft of hair on the head

୨ । ଗୋଛ—2 Cluster.

୩ । ଏକପ୍ରକାର କର୍ପୂର—3. A kind of camphor.

ଦେ. ବିଣ—ଯେ ଜାର ପୁରୁଷ ନିକଟରେ ଉପପତ୍ନୀ ଆଣି ପହଞ୍ଚାଏ; ଭାଡ଼ୁଆ—A pander; procurer; a bawd; a go-between.

ଜୁଟା—ଦେ. ବି. (ସଂ. ଜୁଟ୍ ଧାତୁ)—୧ । ଜୁଟାଇବା କାର୍ଯ୍ୟ—

Jutā 1. The act of bringing about a meeting or gathering.

জুটা ୨ । ଭାଡ଼ୁଆକାମ; ଜାର ପୁରୁଷ ପାଖେ ପରସ୍ତ୍ରୀ ଭେଟାଇବା କାମ—2. The act of pandering.

जुटाना

(ଜୁଟେଇ—ସ୍ତ୍ରୀ) ଦେ. ବିଣ. ପୁଂ—୧ । ଯେ ଜାର ପୁରୁଷ ନିକଟରେ ବିଟପୀ ସ୍ତ୍ରୀକୁ ଭେଟାଏ—1. Pandering.

জোটা

जुटानेवाला ୨ । ଯେ ବରକନ୍ୟା ଜୁଟାଏ—2. Acting as a negotiator in a marriage.

ପ୍ରାଦେ. (ସମ୍ବଲପୁର) ବି. (ସଂ. ଉଚ୍ଛିଷ୍ଟ; ସଂ. ଜୁଷ୍ଟ ପ୍ରା. ଜୁଠ; ଭୁଲ ଏହି ଅର୍ଥରେ ହି. ଜୁଠା)—ଉଚ୍ଛିଷ୍ଟ; ଅଇଁଠା—Orts; remains of one's partaken food; what is left after meals in the plate; leavings of the table.

ବିଣ—ଅଇଁଠା ହୋଇଥିବା; ଅନ୍ୟ ବ୍ୟକ୍ତିର ଭୁକ୍ତାବଶିଷ୍ଟ; ଅଂଶତଃ ଭୁକ୍ତ—Left after meals; partly eaten.

ଜୁଟା(ଟେ)ଇବା—ଦେ. କ୍ରି. ( ସଂ. ଜୁଟ ଧାତୁ ଣିଜନ୍ତ)—

Juṭā(te)ibā ୧ । ଏକତ୍ର କରିବା; ସଂଗ୍ରହ କରିବା—

জুটানা; জোটান 1. To collect; to gather.

जुटाना, जुटवाना (ଯଥା—ପୁସ୍ତକାଗାରରେ ସେ ଗୁଡ଼ିଏ ବାଛି ପୁସ୍ତକ ଆଣି ଜୁଟାଇଛି ।)

୨ । ଏକାଧିକ ବ୍ୟକ୍ତିଙ୍କୁ ଏକସ୍ଥାନରେ ଏକତ୍ର କରାଇବା—2. To cause many persons to gather.

(ଯଥା—ଅଜି ସଭାରେ ସେ ୨୦୦ ଲୋକ ଆଣି ଜୁଟାଇଛି ।)

୩ । ପ୍ରଣୟାର୍ଥୀ ପୁରୁଷ ଓ ସ୍ତ୍ରୀଙ୍କ ମଧ୍ୟରେ ମିଳନ ଘଟାଇବା—2. To bring about love-interview between lovers.

(ଯଥା—ଦୂତୀ ରାଧିକାଙ୍କୁ ଶ୍ରୀକୃଷ୍ଣଙ୍କ ପାଖେ ଜୁଟାଇଲେ ।)

୪ । ଦୁଇଜଣଙ୍କର ମିଳନ ଘଟାଇବା—1. To bring about a meeting between two persons

(ଯଥା—ଶତ୍ରୁ ଦୁଇଙ୍କୁ ସେ ଆଣି ଜୁଟାଇ ଦେଲେ ।)

୫ । କୌଶଳ ବା ଯୋଗାଡ଼ଯନ୍ତ୍ରଦ୍ୱାରା କୌଣସି ବସ୍ତୁକୁ ଅଭିପ୍ରେତ ସ୍ଥାନରେ ପହଞ୍ଚାଇବା—5. To succeed in bringing any thing to a place by skill or stratagem; to procure.

(ଯଥା—ଏ ଭୋଜପାଇଁ ମୁଁ ଗୃହା କରି ୫୦ଟଙ୍କା ଜୁଟାଇଛି ।)

୬ । ବିବାହସମ୍ପର୍କରେ ବରକନ୍ୟା ଯୋଗାଇ ଦେବା—6. To negotiate for and bring about a marriage; to act as a match-maker,

(ଯଥା—ଏ କନ୍ୟାଟି ପାଇଁ ଗୋଟିଏ ବରପାତ୍ର ଜୁଟେଇ ପାରିବ କି ?)

୭ । ସ୍ତ୍ରୀ ପୁରୁଷଙ୍କ ସଙ୍ଗମ କରାଇବା—7. To cause a male and a female to couple or copulate.

(ଯଥା—ଏ କାଠିଆବାଡ଼ ଘୋଡ଼ୀସଙ୍ଗେ ଗୋଟିଏ ଆରବୀ ଘୋଡ଼ା ଜୁଟାଇବାକୁ ହେବ ।)

**ଜୁଟାଜୁଟି**—ଦେ. ବି. (ସହଚର)—'ଜୁଟାଇବା' ସକାଶ
Jutājuti — କର୍ମମାନ (ଦେଖ)
জুটাজুটি, জোটপাট — Many acts of jutaibā (See)
जुटाजुटि

**ଜୁଟିକା**—ସଂ. ବି. (ଜୁଟ୍ ଧାତୁ+କର୍ମ. ଅକ+ସ୍ତ୍ରୀ. ଆ)—
Jutikā ୧ । ଚୁଟି; ଶିଖା (ହି. ଶବ୍ଦସାଗର)—1. Tuft of hair.

୨ । ଗୋଛ (ହି. ଶବ୍ଦସାଗର)—2. Bunch.

୩ । ଏକପ୍ରକାର କର୍ପୂର (ହି. ଶବ୍ଦସାଗର)—3. A kind of camphor.

**ଜୁଟିବା**—ଦେ. କି. (ସଂ. ଜୁଟ୍ ଧାତୁ)—୧ । ମିଳିତ ହେବା—
Jutibā — 1. To meet.
জুটা, জোটা — ୨ । ଏକତ୍ର ହେବା—2. To be gathered or
जुटना जुटना — collected together.

୩ । ପ୍ରାପ୍ତହେବା; ମିଳିବା; ହାତକୁ ଆସିବା—3 To be got or had or attained; to come to hand.

(ଯଥା—ମୋତେ ଅଜି ମୁଠିଏ ଅନ୍ନ ଜୁଟିଲା ନାହିଁ ।)

୪ । କୌଣସି ସ୍ଥାନରେ ବା ବ୍ୟକ୍ତି ନିକଟରେ ଆସି ଉପସ୍ଥିତ ହେବା; ଭେଟିବା—4. To arrive at a place or reach near a person.

(ଯଥା—ତୁମ୍ଭେମାନେ ଯାଉଥାଅ, ମୁଁ ପଛରୁ ଯାଇ କଟକ ଠାରେ ଜୁଟି ଯିବି ଯେ ।)

**ଜୁଠା**—ପ୍ରାଦେ. (ସମ୍ବଲପୁର) ବି. ଓ ବିଣ—(ସଂ. ଜୁଷ୍ଟ, ପ୍ରା. ଜୁଟ୍‌ଠ)—
Juthā — ଜୁଟା (ଦେଖ)
Jutā (See)

**ଜୁଡ଼୍** (ଧାତୁ)—ସଂ.—ବନ୍ଧନ କରିବା—
Jurd (root) — To bind up.

**ଜୁଡ଼୍**—ପ୍ରାଦେ. ବି. (ସମ୍ବଲପୁର)—(ତୁଳ. ହି. ଜୁଡ଼୍=ଥଣ୍ଡା, ଶୀତଳ;
Jurd ସଂ. ଜଡ଼; ତୁଳ. ଓ ଜାଡ଼)—ଶର୍ଦ୍ଦି—Cold.

ପ୍ରାଦେ. ବିଣ.—୧ । ନରମ—1. Soft.

୨ । ଶରଦିଆ—2 Suffering from cold.

୩ । ଥଣ୍ଡା; ଶୀତଳ—3. Cold.

**ଜୁଡ଼ୁଖର୍**—ପ୍ରାଦେ. (ସମ୍ବଲପୁର)—ବି. ( ବିପରୀତାର୍ଥ ସହଚର; ସଂ. ଜଡ଼
Jurd-khar +ଖର)—ଶରଦି ଗରମି ରୋଗ—Apoplexy.

ବିଣ.—୧ । ଶରଦ ଓ ଗରମ—1. Cool and warm.

୨ । ନରମ ଓ ଟାଣ—2. Soft and hard.

**ଜୁଡ଼ୁବୁଡ଼୍**—ଦେ. ଅ.—ତେଲ ବା ଜଳାଦିଦ୍ୱାରା ଅତ୍ୟନ୍ତ ଆର୍ଦ୍ର;
Jurd-burd (ଯେପରି କି ଦେହରୁ ତେଲ ବା ପାଣି ବୋହି ପଡ଼ୁଥାଏ); (ତେଲ ବା ପାଣି) ସରସର—With water or oil dripping from the body.

(ଯଥା—ତା ହଦହଯାକ ପାଣିରେ ଜୁଡ଼ୁବୁଡ଼୍ ହୋଇଛି; ସେ ଜୁଡ଼ୁବୁଡ଼୍ କରି ତେଲ ଲଗେଇଛି ।)

**ଜୁଡ଼୍**—ପ୍ରାଦେ. (ସମ୍ବଲପୁର) ବି.—(ସଂ. ଜଡ଼, ତୁଳ. ଏହି ଅର୍ଥରେ
Jurda ହି. ଜୁଡ଼୍)—ଶରଦି—Cold.

(ଯଥା—ମୋତେ ଜଡ଼ ଧରିଛି ।)

**ଜୁଡ଼୍ ଧରିବା**—ପ୍ରାଦେ. (ସମ୍ବଲପୁର) କି.—ଶରଦ ଧରିବା—
Jurda dharibā — Catching of cold

**ଜୁଡ଼ା**—ଦେ. ବି. (ସଂ. ଜୁଡ଼୍ ଧାତୁ=ବନ୍ଧନ କରିବା; ସଂ. ଜୁଟ=
Jurdā ଜଟାର ଗ୍ରନ୍ଥି)—ସ୍ତ୍ରୀଲୋକମାନଙ୍କର ଏକତ୍ର ବନ୍ଧା ହୋଇ
খোঁপা ଥିବା ମୁଣ୍ଡର କେଶ; ଖୋପା; ଖୋଷା—Chignon;
जुड़ा artistically tied knot of hair on the head; braided and made up hair.

[ଦ୍ର—ନାନା ଦେଶରେ ଓ ନାନା ସମାଜରେ ସ୍ତ୍ରୀଲୋକମାନେ ନାନା ପ୍ରକାରେ ଓ ନାନା କୌଶଳରେ ମଣ୍ଡର ବାଳକୁ ଜୁଡ଼ା ବାନ୍ଧନ୍ତି । କେହି କପାଳ ଉପରେ, କେହି ମୁଣ୍ଡ ପଛରେ, କେହି ବେଣୀ ପକାଇ, କେହି ଲମ୍ବ କରି, କେହି ଗୋଲ କରି, କେହି ଟେଭି ଫାଲ ପରି, କେହି ବେଲ ଆଦି ବଣିଷ୍ଟ ଫଳ ପରି, କେହି ସିଧା କରି ବା ବଙ୍କା କରି, କେହି ବେକରେ ବା ମୁଣ୍ଡର ଏକ ପାଖରେ,

| ୯ | ଘ | ଉ | ଋ,ୠ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ୍,ଷ | କ୍ଷ | ଇପ୍ସ | ଉଅ | ଞ୍ଚ |
|---|---|---|---|---|---|---|---|---|---|---|---|---|---|---|
| ୬ | ଢ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ | ଯ | ସ | ଗଂ | ଋଅ | ଞ | ନ୍ତ |

ଜୁଡ଼ା ବାନ୍ଧନ୍ତି । ଜୁଡ଼ାର ଭିନ୍ନ ଭିନ୍ନ ନାମ ମଧ୍ୟ ଅଛି । ଯଥା—ଲେଟଣୀ ଜୁଡ଼ା, ଦଳିଣୀ ବା ଖୋଷା ଜୁଡ଼ା, ଭେଙ୍ଗା ଜୁଡ଼ା, ବଙ୍ଗାଳିଆ ଜୁଡ଼ା, ମନା ଜୁଡ଼ା, ଗଣ୍ଠି ଜୁଡ଼ା, ଫାଶ ଗଣ୍ଠି, ଟେଙ୍ଗା, ଚୁଦାସବଗଣ୍ଠି ଇତ୍ୟାଦି ।]

ଜୁଡ଼ା ପକା(କେ)ଇବା—ଦେ. କ୍ରି.—ମୁଣ୍ଡ କେଶକୁ ସଙ୍କୁଚିତ କରି ଗଣ୍ଠି ବାନ୍ଧିବା—To dress up the hair of the head into a chignon.
Jurdā pakā(ke)ibā
খোঁপা বাঁধা
जूड़ा बाँधना

ଜୁଡ଼ାପାଡ଼ିବା—ଦେ. କ୍ରି.—ଜୁଡ଼ା ପକାଇବା (ଦେଖ)
Jurdā pārdibā    Jurdā pakāibā (See)
(ଜଡ଼ା ପାଡ଼ିବା—ଅନ୍ୟରୂପ)

ଜୁଡ଼ା ବାନ୍ଧିବା—ଦେ. କ୍ରି.—ଜୁଡ଼ା ପକାଇବା (ଦେଖ)
Jurdā bāndhibā    Jurdā pakāibā (See)

ଜୁଡ଼ା ଭାଙ୍ଗିବା—ଦେ. କ୍ରି—ବନ୍ଧା ହୋଇଥିବା ଜୁଡ଼ାର ବନ୍ଧନ ମୁକ୍ତ କରିବା—To loosen a chignon.
Jurdā bhāngibā
খোঁপা ভাঁগা    ଅଇଲେ ଶଗଡ଼ିଆ ପଇଲେ ଭେଣ୍ଡାକୁଳେ, ବାନ୍ଧିଲା ଜୁଡ଼ାକୁ
जूड़ा तोड़ना    ଭାଙ୍ଗିବୁ ନାହିଁ—ଶଗଡ଼ିଆ ଗୀତ ।

ଜୁଡ଼ି - ପ୍ରାଦେ. ( ବାଲେଶ୍ୱର, ମେଦିନୀପୁର ) ( ସ. ଯୁଗ୍ମ; ଭୁଲ. ଏହି ଅର୍ଥରେ ବଙ୍ଗଳା ଏହି ଶବ୍ଦ )—
Jurdi
୧ । ସମଧର୍ମୀ ସହଚର—1. Companion.
୨ । ଏକ ସଙ୍ଗେ ଗାଡ଼ିରେ ଲାଗିବା ଦୁଇଟି ଘୋଡ଼ା—2. A pair of horses yoked to a coach.
୩ । ଯୁଗ—3. A pair; a couple.
୪ । ଦୁଇଟି ଘୋଡ଼ା ଟାଣିବା ଗାଡ଼ି—4. A coach drawn by two horses.
୫ । ଯୁଗ୍ମବସ୍ତୁ ବା ଜୀବ ମଧ୍ୟରୁ ଜଣେ—5. One of a pair or couple of things or animals.

ଜୁରୀ ବୈଦେ. ବି. ( ଇଂ. ଜୁରୀ)—ଜୁରି (ଦେଖ)
जुरी    Juri (See)

ପ୍ରାଦେ. ( ସମ୍ବଲପୁର ) ବି. ଓ ବିଣ—୧ । ଜୁଡ଼୍ (ଦେଖ )
1. Jurd ( See )
୨ । ( ଭୁଲ. ଏହି ଅର୍ଥରେ ହି. ଏହି ଶବ୍ଦ ) କମ୍ପଜ୍ୱର—2. Ague.

ଜଡ଼ିଖର—ପ୍ରାଦେ. ( ସମ୍ବଲପୁର ) ବି. ଓ ବିଣ—ଜୁଡ଼୍‌ଖର ( ଦେଖ )
Jurdi khar    Jurd-khar ( See )

ଜୁଡ଼ିଗାଡ଼ି—ପ୍ରାଦେ. ବି. ( ବାଲେଶ୍ୱର; ଭୁଲ. ଏହି ଅର୍ଥରେ ବଙ୍ଗଳା ଏହି ଶବ୍ଦ)—ଜୋଡ଼ାଏ ଘୋଡ଼ା ଲାଗିଥିବା ଗାଡ଼ି—A carriage dawn by a pair of horses.
Jurdi gārdi

ଜୁଡ଼ି ଡାକରା—ଦେ. ବି—ଜଜଙ୍କ ସଙ୍ଗେ ବସି ଦଉରା ମକଦ୍ଦମା ବିଚାର କରିବା ପାଇଁ ଜୁରୀଙ୍କୁ ନିମନ୍ତ୍ରଣ—Summons to a person to attend the court of sessions as a juror.
Jurdi dākarā
জুরী সমন.
जुरीसमन

ଜୁଡ଼ିଦାର୍—ପ୍ରାଦେ. ( ବାଲେଶ୍ୱର) ବି—ଗାଡ଼ିରେ ଏକ ସଙ୍ଗେ ଲାଗିବା ଜୋଡ଼ାଏ ଘୋଡ଼ାରୁ ଗୋଟିଏ—One of a pair (of horses for a carriage ).
Jurdidār
জুড়ীদার
जुड़ीदार    ଦେ ବିଣ—ଯେଉଁ ଗାଡ଼ିରେ ଜୋଡ଼ାଏ ଘୋଡ଼ା ଲାଗିଥାଆନ୍ତି—( a carriage ) Drawn by a pair of horses.

'ଜୁଡ଼ିବା—ପ୍ରାଦେ. ( ବାଲେଶ୍ୱର; ମେଦିନୀପୁର ) କ୍ରି. ( ସ ଜୁଡ଼ ଧାତୁ; ଭୁ ବଂ. ଏହି ଅର୍ଥରେ ଏହି ଶବ୍ଦ )—
Jurdibā
ଜୋଡ଼ିବା ( ଦେଖ )—Jordibā ( See )

ଜୁଡ଼ିରେ ବସିବା—ଦେ କ୍ରି—ଦଉରା ମକଦ୍ଦମା ବିଚାର ସମୟରେ ଜଜଙ୍କ ନିକଟ ଜୁରିରୂପେ ନିମନ୍ତ୍ରିତ ହୋଇ ଯାଇ ବସିବା—To sit on a jury.
Jurdire basibā
জুড়িতে বসা
जुरीमें बैठना [ ବ୍ର—ମଫସଲରେ ଏହା ସମ୍ମାନସୂଚକ । ]

ଜୁଡ଼ି ସମନ—ବୈଦେ. ବି. ( ଇଂ. ଜୁରି+ସମନ୍ )—
Jurdi samana    ଜୁଡ଼ି ଡାକରା ( ଦେଖ )
Jurdi dākarā ( See )

ଜୁଡ଼ିସିଅଲ୍—ବୈଦେ. ବିଣ. ( ଇଂ )—ବିଚାରବିଭାଗୀୟ; ନ୍ୟାୟବିଚାର ସମ୍ବନ୍ଧୀୟ—Judicial.
Judisial
জুডিসিআল ( ଯଥା—ମଧ୍ୟପ୍ରଦେଶ ବା ଅଯୋଧ୍ୟା ବା ସିନ୍ଧ ପ୍ରଦେଶର
जुडिशल ଜୁଡ଼ିସିଅଲ୍ କମିସନର୍—Judicial Commisioner.)

ଜୁଡ଼ି ହାଙ୍କା(ଙ୍କେ)ଇବା—ପ୍ରାଦେ. ( ମେଦିନୀପୁର, ବାଲେଶ୍ୱର ) କ୍ରି—
Jurdi hankā(nke)ibā    ୧ । ଗାଡ଼ିରେ ଯୋଗ ହୋଇଥିବା ଦୁଇଟି ଘୋଡ଼ାଙ୍କୁ ନିୟନ୍ତ୍ରିତ କରି ଗାଡ଼ି ଚଳାଇବା—1. To drive a pair of horses attached to a carriage; to drive a coach and a pair.
জুড়ি হাঁকন
जुड़ी हाँकना
( ଜୁଡ଼ି ହାଙ୍କିବା—ଅନ୍ୟରୂପ)
୨ । ଜୋଡ଼ିଏ ଘୋଡ଼ା ଲାଗିଥିବା ଗାଡ଼ିରେ ଚଢ଼ି ବୁଲିବା—2. To use a coach driven by a pair of horses.
[ ବ୍ର—ସେ ଜୋଡ଼ି ହାଙ୍କାଇଲେଣି—ସେ ଖୁବ୍ ବଡ଼ଲୋକ ହେଲେଣି । ]

ଜୁଡ଼ିବୁଡ଼ିଆ—ଦେ. ଅ—ଜୁଡ଼୍‌ବୁଡ଼୍ ( ଦେଖ )
Jurduburdiā    Jurd-burd ( See )

ଜୁଡ଼ୁବୁଡ଼ୁ—ଦେ. ଅ—ଜୁଡ଼୍‌ବୁଡ଼୍ ( ଦେଖ )
Jurduburdu    Jurd-burd ( See )

ଜଡ଼େନ୍—ପ୍ରାଦେ. (ସମ୍ବଲପୁର ) ବିଣ—ପରସ୍ପର ସହିତ ଯୁକ୍ତ ହୋଇଥିବା ବା ଖଞ୍ଜା ହୋଇଥିବା ( ଦୁଇ ବସ୍ତୁ )—(two things) Joinede togther, joined to each other.
Jurden

ଜୁଣ—ଦେ. ବି. ( ସ. ଯୋଜନ )—୧ । ଶୁଦ୍ଧକୋଶ; ଯୋଜନ—1. Distance of 4 kros or 8 miles.
Juna
योजन

ଅନ୍ୟ ସଂ ନାମ—ଉଲୂକ; ଉଲପ ୨ । ( ସଂ. ଜୂର୍ଣ୍ଣି )—ଘର ଛୁଆଣି
ଖଡ଼ି କରିବ ଓ ମୁନ୍ଦୁରା ବୁଣିବା କାମରେ
ତ୍ରୁନ ବ୍ୟବହୃତ ତୃଣବିଶେଷ; ଶର—
A kind of rush; a reed used for thatching and matting; Saccharum Fuscum.

ଜୁଣ ମସିଣା—ଦେ. ବି—ଜୁଣ ତୃଣରେ ବୁଣା ହୋଇଥିବା ଚଟେଇ—
Juṇa masiṇā A small mat made of Juṇa reeds.
ଖଡ଼ିର ମାଁଦୁର
उलूकी चटाई

ଜୁଣ ମୁନ୍ଦୁରା—ଦେ. ବି—ଜୁଣ ତୃଣରେ ବୁଣା ହୋଇଥିବା ଏକପ୍ରକାର
Juṇa mundurā ମୋଟା ଓ ବଡ଼ ମସିଣା—A thick and big mat made of Juṇa reeds

ଜୁତ୍—ଦେ. ବି. ( ସଂ. ଯୁତ=ମିଶ୍ରଣ; ସଂ. ଯୁକ୍ତି )—
Jut ୧ । ଉତ୍କୃଷ୍ଟ ଧାତୁ ସହିତ ନିକୃଷ୍ଟ ଧାତୁର ମିଶ୍ରଣ—1. Alloy.
ଜୁৎ ୨ । ( ସଂ. ଦ୍ୟୁତି ) ସ୍ୱାସ୍ଥ୍ୟ—
खोट 2. Health.
ଜুৎ; ଜুতি ୩ । ଶରୀରର ସୌନ୍ଦର୍ଯ୍ୟ—3. Beauty; elegance.
जोति ୪ । ଶୋଭା; ଗଠଣ—4 Symmetry; grace.
୫ । ( ସଂ. ଜ୍ୟୋତିଃ ) ତେଜ—5 Brightness.
୬ । ସୁବିଧା—6. Convenience.
( ଜୁତ୍‌ଜାତ୍—ଅନ୍ୟରୂପ ) ବିଣ. (ସଂ. ଦ୍ୟୁତି)—ସୁନ୍ଦର; ଦ୍ରବ୍ୟ—
Beautiful; worthy of appreciation.

ଜୁତ୍‌ବା—ପ୍ରାଦେ ( ସମ୍ବଲପୁର ) କ୍ରି. ( ତୁଳ. ଏହି ଅର୍ଥରେ ହି.
Jutbā ଜୁତ୍‌ନା )—ଚଷିବା—
To plough up ( a land ).

ଜୁତ—ଦେ. ବି. ( ସଂ. ଦ୍ୟୂତ; ପ୍ରା. ଜୁଅ )—୧ । ଜୁଆ ଖେଳ—
Juta 1. Gambling.
ଜুয়া ୨ । ( ସଂ. ଯୁକ୍ ବା ଯୋକ୍ତ୍ର ପ୍ରା. ଜୋତ୍ତ )—
जुआ ଶଗଡ଼ ବା ଲଙ୍ଗଳକୁ ଯୁଆଳି ମଝିରେ ବାନ୍ଧିବାପାଇଁ ବ୍ୟବହୃତ ରଜ୍ଜୁ; ଜୋତ; ଯୁଗବନ୍ଧନ ରଜ୍ଜୁ—
জোত 2. Rope for tying the shaft of the cart or
जोत plough to the middle of the yoke.

ଜୋତା—ଦେ. ବି. ( ସଂ. ଯୁକ୍ତ; ପ୍ରା. ଜୁତ୍ତ; ତୁଳ. ସଂ. ପାଦଜ; ସଂ.
Jutā ଯୋକ୍ତ୍ର=ଚମ ଦଉଡ଼ି )—
ସଂ. ନାମ—ଉପାନହ, ପାଦତ୍ର ୧ । ଚର୍ମ ପାଦୁକା; ଜୋତା—
ପାଦତ୍ରାଣ 1. Shoes; slippers.
জুতা, জুতো ୨ । ଜୋତା ଦ୍ୱାରା ମାଡ଼—
जूता, जूती, जोड़ा 2. Shoe-beating.
ପ୍ରାଚୀନ ଓଡ଼ିଆ—ପାଣ୍ଡୋଇ [ ଦ୍ର—ସଂ. ଯୋକ୍ତ୍ର ଅର୍ଥ ବାନ୍ଧିବା
ପ୍ରାଚୀନ ବଂ—ପାନଇ ଚମଦଉଡ଼ା, ଏଥିରୁ ଜୋତା ବା
ମ. ଜୋଡା ଜୋତା ଶବ୍ଦର ଉତ୍ପତ୍ତି ହୋଇଥିବ ।
ଆଗେ ଜୋତାକୁ ଚମ ଦଉଡ଼ିରେ ଗୋଡ଼ରେ ବାନ୍ଧୁଥିଲେ ।

ଜୋତା ଅନେକ ପ୍ରକାରର ଅଛି । ଯଥା—ଚଢ଼ଉ, ବୁଟ୍, ଚଟି, ମରହଟ୍ଟୀ, ପମ୍ପସୁ, ଡର୍ବୀ ଇତ୍ୟାଦି; ଜୋତାର ଉପକରଣ ଅନୁସାରେ ନାମ, ଯଥା—ରବର ଜୋତା, କନା ଜୋତା, କାନ୍‌ଭସ୍ ଜୋତା, ଶମ୍ବର, ଉଲ୍, କାର୍ପେଟ୍ ଇତ୍ୟାଦି । ରଙ୍ଗ ଓ ଚମଡ଼ା ଅନୁସାରେ ନାମ ଯଥା—ବାର୍ଣ୍ଣିସ୍, ବାଦାମି, କଳା ଇତ୍ୟାଦି । ଜୋତାର ତଳ ଅଂଶକୁ 'ତଳା', ଗୋଇଠି ଉପରେ ପଛ ଆଡ଼କୁ ଥିବା ଅଂଶକୁ 'ଏଡ଼ୀ ବା ଏଣ୍ଡୀ' ଓ ଜୋତାର ଅଗକୁ 'ଠୋକର' ଏବଂ ଗୋଡ଼ ଉପରେ ଜୋତାର ଯେଉଁ ଚମଡ଼ା ଥାଏ ତାକୁ ଉପର-ଚମଡ଼ା ବା ଉପରପଟ୍ଟୀ କହନ୍ତି; ଭାରତରେ ପ୍ରାଚୀନ କାଳରୁ ଜୋତାର ବ୍ୟବହାର ଅଛି ; ମହାଭାରତ ଅନୁଶାସନ ପର୍ବରେ ଗୋଟିଏ ଉପାଖ୍ୟାନ ଅଛି ଯେ ସୂର୍ଯ୍ୟଦେବ ଜମଦଗ୍ନି ଋଷିଙ୍କୁ ଖରାରୁ ଶରୀରକୁ ରକ୍ଷା କରିବା ପାଇଁ ଜୋଡ଼ାଏ ଜୋତା ଓ ଖଣ୍ଡିଏ ଛତା ଦେଇଥିଲେ ( ହି. ଶବ୍ଦସାଗର ) । ଓଡ଼ିଶାର ମନ୍ଦିରମାନଙ୍କର ଖୋଦିତ ପ୍ରସ୍ତର ମାନଙ୍କରେ ଜୋତା ପିନ୍ଧିଥିବା ଲୋକଙ୍କ ଚିତ୍ର ଦେଖାଯାଏ; ଉତ୍କଳର ବ୍ରାହ୍ମଣବାଳକ ଉପନୟନ ପରେ ବ୍ରହ୍ମଚାରୀ ବେଶରେ ଭିକ୍ଷିଆଣି କରିଯିବା ବେଳେ ମରହଟ୍ଟୀ ଜୋତା ମାଡ଼ନ୍ତି ଓ ତାଳପତ୍ର ଛତା ଧରନ୍ତି । ]

୩ । ଶଗଡ଼ ବା ଲଙ୍ଗଳ ଦଉଡ଼ା—
3. Rope for tying the shaft of the cart or plough to the yoke.

ପ୍ରାଦେ. ( ସମ୍ବଲପୁର ) ବି—ଜୋତ ଦଉଡ଼ି; ଯୁଆଳି ସଙ୍ଗେ ବଳଦ ବେକକୁ ଯେଉଁ ଦଉଡ଼ିରେ ବନ୍ଧାଯାଏ—
Rope for tying the bullock's neck to the yoke.

ଜୋତା ଉଠା(ଠେ)ଇବା—ଦେ. କ୍ରି—ଜୋତା ଉଠାଇବା ( ଦେଖ )
Jutā uṭhā(ṭhe)ibā Jotā uṭhāibā ( See )

ଜୋତାଏଡ଼ି(ଣ୍ଡୀ)—ଦେ. ବି—ଜୋତାର ତଳଭାଗର ଯେଉଁ ଅଂଶ ଗୋଇଠି
Jutā-erḍi(ṇḍi) ତଳେ ଥାଏ—The heel of a shoe.
জুতোর এড়ী
जूताका एड़ी

ଜୋତା କସିବା—ଦେ. କ୍ରି—ଜୋତାରେ ପ୍ରହାର କରିବା—
Jutā kasibā To strike or beat with the shoes;
জুতান to drub with the shoes.
जुतिआना

ଜୋତା ଖାଇବା—ଦେ. କ୍ରି—ଜୋତାରେ ପ୍ରହାର ଖାଇବା—
Jutā khāibā To be beaten with the shoes; to get
জুতা খাওয়া a sound shoe-beating.
जूता खाना

ଜୋତାଖିଆ—ଦେ. ବିଣ—୧ । (ଗାଳି ବିଶେଷ) ନିର୍ଲଜ୍ଜ—
Jutā-khiā 1. (a term of abuse) Shameless
জুতাখোর ୨ । ଜୋତା ମାଡ଼ ଖାଇବାର ଉପଯୁକ୍ତ—
जुताखोर 2. Fit to be punished by drubbing with shoes.

| ୧ | ଇ | ଉ | ର,ର୍ | ଞ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଏ | ଏଅ | ଖ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ସ୍ପୃ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ଐ | ନ୍ |

ଜୁତା ଚଢ଼ା(ଢେ)ଇବା—ଦେ. କ୍ରି—୧ । ଜୁତା ଦେବା ( ଦେଖ )
Jutā chardhā(rdhe)ibā 1. Jutā debā (See)
ଜୁତା ଚଢ଼ାନ ୨ । ଜୁତା ପିନ୍ଧିବା—2. To put on shoes.
ଜୁତି ଢାନା

ଜୁତା ଚଢ଼ିବା—ଦେ. କ୍ରି—ଜୁତା ଦ୍ୱାରା ପ୍ରହାର ହେବା—
Jutā chardhibā Being beaten with shoes.
ଜୁତା ଚଢା
ଜୁତା ବୈଠନା

ଜୁତା ଚାଟିବା—ଦେ. କ୍ରି—( ଲକ୍ଷଣାର୍ଥ ) ପାଦଲେହନ କରିବା;
Jutā chātibā ଖୋସାମଦ୍ କରିବା—
ଜୁତୋ ଚାଟା ( figurative ) To flatter.
ଜୁତା ଚାଟନା

ଜୁତା ଦେବା—ଦେ. କ୍ରି—୧ । ଜୁତାରେ ପ୍ରହାର କରିବା—
Jutā debā 1. To strike or beat with the shoes.
ଜୁତା ଦେଓଯା
ଜୁତା ଦେନା ୨ । ( ଲକ୍ଷଣାର୍ଥ ) ମୁହଁତୋଡ଼ ଜବାବ ଦେଇ ଅପମାନିତ କରିବା—3. ( figurative ) To insult a person by speaking to his face.

ଜୁତାପାହାର—ଦେ. ବି—ଜୁତାଦ୍ୱାରା ଆଘାତ—
Jutā-pāhāra Shoe-beating.
ଜୁତୋର ମାର
ଜୁତୋଁକୀ ମାର, ଜୁତୀକାରୀ

ଜୁତାଫିତା—ଦେ. ବି—ଜୁତାରେ ବନ୍ଧା ହେବା ଫିତା—
Jutā-phitā Shoe-tape.

ଜୁତାବରଦାର—ଦେ. ବିଣ—ଜୁତାବୁହା ( ଦେଖ )
Jutā-bar-dār Jutā-buhā ( See )

ଜୁତା ବସିବା—ଦେ. କ୍ରି—ଜୁତା ଚଢ଼ିବା ( ଦେଖ )
Jutā basibā Jutā chardhibā ( See )

ଜୁତାବୁହା—ଦେ. ବିଣ—ପାଦୁକା-ବାହକ; ପ୍ରଭୁଙ୍କ ଜୁତାକୁ ବହନ କରିବା (ଭୃତ୍ୟ)—Shoe-bearer; (a servant) carrying the shoes of the master.
Jutā-buhā
ଜୁତାବରଦାର
ଜୁତିବରଦାର

ଜୁତାମାଡ଼—ଦେ. ବି—ଜୁତାପାହାର (ଦେଖ)
Jutā-mārda Jutā-pāhāra (See)

ଜୁତାମାଡ଼ଖିଆ—ଦେ. ବିଣ—ଜୁତାଖିଆ (ଦେଖ)
Jutā mārda-khiā Jutā-khiā (See)

ଜୁତା ମାରିବା—ଦେ. କ୍ରି—ଜୁତା ଦେବା (ଦେଖ)
Jutā māribā Jutā debā (See)

ଜୁତା ଲଗା(ଗେ)ଇବା—ଦେ. କ୍ରି—ଜୁତା ଦେବା (ଦେଖ)
Jutā lagā(ge)ibā Jutā debā (See)

ଜୁତାମିଶା ଗୋଇଠା—ଦେ. ବି—ଜୁତାପିନ୍ଧା ଗୋଡ଼ଦ୍ୱାରା ଗୋଇଠା—
Jutā-misā goithā A kick with shoes on.

ଜୁତି—ସ. ବି—ବେଗ (ହି. ଶବ୍ଦସାଗର)—Speed; velocity.
Juti ଦେ. ବି. ( ସ. ଜ୍ୟୋତିଃ; ଦ୍ୟୁତି )—
ଜ୍ୟୋତିଃ; ଦୀପ୍ତି; ତେଜଃ—Brightness, splendour; brilliance.

ଜୁତିଅ—ଗ୍ରା. ବି. (ସ. ଦ୍ୱିତୀୟ)—ଦୁତିଅ; ଶୂଦ୍ରମାନଙ୍କ ମଧ୍ୟରେ ବିଧବା-ବିବାହ ପ୍ରଥା—The custom of widow-marriage amongst the Śūdras.
Jutia

ଜୁତ୍ର—ଦେ. ବିଣ. ( ସ. ଯୁକ୍ତ )—୧ । ସୁନ୍ଦର—
Jutra .. Fine.

ଦେଖ ଦେଖ ସଖି ପଙ୍କଜ ପତ୍ର
ଧରଣୀର ପରେ କେଉଁ ଜୁତ୍ର । ଉପେନ୍ଦ୍ରଭଞ୍ଜ. ଲାବଣ୍ୟବତୀ ।

୨ । ରୁଚିକର—2. Tasteful.
୩ । ସୁବିଧାଜନକ—3. Convenient.
ଦେ. ବି—ଜୋତ୍ର (ଦେଖ)
Jotra (See)

ଜୁତ୍ରହୀନ—ଦେ. ବିଣ—ଜୋତ୍ରହୀନ (ଦେଖ)
Jutra-hīna Jotra-hīna (See)

ଜୁଦା—ବୈଦେ. ବିଣ. (ଫା. ଜୁଦାହ୍)—୧ । ପୃଥକ୍; ଭିନ୍ନ, ସ୍ୱତନ୍ତ୍ର—
Judā 1. Separate; different.
ଜুদা ୨ । ପୃଥକାନ୍ନବାସ—
ଜୁଦା 2. Separated in mess and lodging.

ଜୁନ୍—ବୈଦେ. ବି. (ଇଂ)—ଇଂରାଜି ଗଣନାରେ ଷଷ୍ଠ ମାସ—
Jun Month of June.
ଜୁନ [ ଦ୍ର—ଏହି ମାସ ପ୍ରାୟଶଃ ଜ୍ୟୈଷ୍ଠ ମାସର ଶେଷ ୧୫ ଦିନ ଓ
ଜୁନ ଆଷାଢ଼ମାସର ପ୍ରଥମ ୧୫ ଦିନରେ ପଡ଼େ । ]

ଜୁନା—ପ୍ରାଦେ. (ସମ୍ବଲପୁର ଓ କଳାହାଣ୍ଡି) ବିଣ. (ସ. ଜୀର୍ଣ୍ଣ)—
Junā ୧ । ଜୀର୍ଣ୍ଣ ଓ ପୁରୁଣା—1. Old and worn out.

ରଥ ଯାଉଥିବେ ରଥ ଦେଖି ଯିମି
ଜୁନା ଦୁଗ ହଲଦିଆ । ସମ୍ବଲପୁରୀ ଗୀତ ।

୨ । ଅତି ପୁରୁଣା—2. Very old.
ବି—ରାଜପୁତ ରାଜାମାନଙ୍କର ଭୁକ୍ତାବଶେଷ—
The remains of the partaken food of Rajput kings; the leavings of the table of kings.
[ ଦ୍ର—ରାଜାମାନେ ସାମନ୍ତ ରାଜାମାନଙ୍କୁ ଏହି ଜୁନା ଦେଇ ସମ୍ମାନିତ କରନ୍ତି । ]

ଜୁନାଗଡ଼—ଦେ. ବି. (ନାମ)—ଗୁଜରାଟର ରାଜ୍ୟ ଓ ନଗରବିଶେଷ—
Junā-garda Name of a State and city in Gujerat.
ଜুনাগড় [ ଦ୍ର—ଏହା କାଟିଆବାଡ଼ ମଧ୍ୟସ୍ଥିତ ଜୁନାଗଡ଼
ଜୁନାଗଢ଼ ନାମକ କରଦ ରାଜ୍ୟର ରାଜଧାନୀ । ଗିର୍ଣ୍ଣାର ଓ ଦାତାର ନାମକ ଦୁଇ ପର୍ବତର ଅଧିତ୍ୟକାରେ ଉକ୍ତ ନଗର ସ୍ଥାପିତ ହୋଇଅଛି । ଏହା ପ୍ରାଚୀନ ଓ ନୂତନ ଦୁଇ ଭାଗରେ ବିଭକ୍ତ । ପ୍ରାଚୀନ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, ଆଁଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଦୁର୍ଗ ନଗରର ଅଲ୍ପଦୂରରେ ଅବସ୍ଥିତ । ଏଠାରେ ବୌଦ୍ଧ ଓ ଜୈନ ଯୁଗରେ ଖୋଦିତ ଅନେକ ଗୁହା ଅଛି ଓ ଗୋଟିଏ ମସଜିଦ୍ ମଧ୍ୟ ଅଛି । ନୂତନ ନଗର ବର୍ତ୍ତମାନ ମସ୍ତଫାବାଦ୍ ନାମରେ ଅଭିହିତ—ମଦନମୋହନ—ତୀର୍ଥଦର୍ଶନ । ]

**ଜୁନାମାନ୍**—ପ୍ରାଦେ. (ସିଂହଭୂମ) ବି—ଗୁନାମାଛ—
Junā-mān Very small fish.

**ଜୁନିଅର୍**—ବୈଦେ. ବିଣ. ( ଇଂ. ଜୁନିଅର୍ )—
Juniar ୧ । ବୟସ ବା କାର୍ଯ୍ୟକାଳ ଦୃଷ୍ଟିରେ ଛୋଟ—
ଜୁନିଅର 1. Junior in age or service.
**जुनियर**
(ସିନିଅର୍—ବିପରୀତ)

**ଜୁବନ୍ଧ**—ପ୍ରାଦେ. (ଗଞ୍ଜାମ) ବି—ବିଲର ପରିମାଣ ବା କ୍ଷେତ୍ରଫଳ—
Jubandha The area of a field.

**ଜୁବା**—ଦେ. ବି—ଜୁବ୍ବା (ଦେଖ)
Jubā Jubbā (See)

**ଜୁବାନ୍**—ଦେ. ବି ଓ ବିଣ—ଜୁଆନ୍ (ଦେଖ)
Jubān Juān (See)

**ଜୁବିଲି**—ବୈଦେ. ବି. (ଦେବଭୂଷାକୁ ଆସିଛି; ଇଂ. ଜୁବିଲି)—
Jubili ରାଜାଆଦିଙ୍କ ରାଜତ୍ୱ କରିବାର ୫୦ ବର୍ଷ ପୂର୍ଣ୍ଣ ହେଲେ
ଜୁବିଲି ଯେଉଁ ଉତ୍ସବ କରାଯାଏ—Jubilee.
**जुबलि**

**ଜୁବ୍ବା**—ବୈଦେ. ବି. (ଆ. ଜୁବ୍ବା)—କାନ୍ଧରୁ ଆଣ୍ଠୁପର୍ଯ୍ୟନ୍ତ ଲମ୍ବିବା ଖୋଲ
Jubbā ମେଲା କୁର୍ତ୍ତା—A long vest or jacket.
ଜୁବ୍ବା
**जुब्बा**

**ଜୁଭେନାଇଲ୍ ଅଫେଣ୍ଡର୍**—ବୈଦେ. ବି. (ଇଂ)—ଅଦାଲତରେ ଦଣ୍ଡ-
Jubhenāil aphendar ପ୍ରାପ୍ତ ଅପରାଧୀ ଯୁବକ ବା ବାଳକ—
Juvenile offender.

**ଜୁମ୍**—ଦେ. ବି. ( ସଂ. ଯମକ; ମୂଳ—ଆ. ଜମା )—
Jum ୧ । ଯାତ୍ରାଆଦିରେ ବହୁ ଜନସମାଗମ—
ଜୁମ୍ 1. The gathering of a large crowd attracted
**जुमना** by a show or performance.
୨ । ନିଶାର ଗାଢ଼ତା; ନିଶାର ମାଦକ ଜମିବା ଅବସ୍ଥା—
2. The state of intoxication reaching its pitch or climax.
୩ । ଆହ୍ଲାଦ; ଆନନ୍ଦ; ମଉଜ—
3. Amusement; glee.

**ଜୁମକ୍**—ଦେ. ବି (ସଂ. ଯମକ)—ଜୁମ୍ ( ଦେଖ )—
Jumak Jum ( See )

**ଜୁମକ୍ ନିଶା**—ଦେ. ବି—୧ । ଗାଢ଼ତା ନିଶା—1. The climax
Jumak nisā or pitch of intoxication.
୨ । ମଉଜିଆ ନିଶା—2. A state of delightful stupor while intoxicated.

**ଜୁମର**—ଦେ. ବି (ନାମ)—ସଂସ୍କୃତ ବ୍ୟାକରଣ ଗ୍ରନ୍ଥବିଶେଷ—
Jumara Name of a grammatical work in Sanskrit read as a primer.

ଅମର ଜୁମର ନଠେଇ ଘୋଷ, ଆଉ ସବୁ ପାଠ ଗଲରେ ଖୋସ—ପ୍ରବଚନ ।

[ ଦ୍ର—ଏହାର ଅନ୍ୟ ନାମ 'ସଂକ୍ଷିପ୍ତସାର'; ଜୁମରନନ୍ଦୀ ଏହି ଗ୍ରନ୍ଥର ବୃତ୍ତି ରଚନା କରିଥିଲେ ବୋଲି, ଏହାକୁ ଜୁମର ବ୍ୟାକରଣ ମଧ୍ୟ କହନ୍ତି । ]

**ଜୁମଲା**—ବୈଦେ. ବି (ଆ. ଜୁମ୍‌ଲା)—ମୋଟ, ସମଷ୍ଟି—
Jumalā Total.
ଜୁମଲା
**जुमला**

**ଜୁମା**—ବୈଦେ. ବି (ଆ. ଜୁମାହ୍)—(ମୁସଲମାନଙ୍କ) ଶୁକ୍ରବାର—
Jumā Friday (according to the Mahomedans).
ଜୁମା
**जुमा**
(ଜୁମ୍ମା—ଅନ୍ୟରୂପ)

**ଜୁମା(ମେ)ଇବା**—ଦେ କ୍ରି (ଆ. ଜମା)—ଜମା କରିବା ( ଦେଖ )
Jumā(me)ibā Jamā karibā ( See )
ଜମାନ
**जुमान**

**ଜୁମାନମାଜ୍**—ବୈଦେ. ବି ( ଆ. ଜୁମାହ୍+ନମାଜ୍ )—ଶୁକ୍ରବାର ଦିନ
Jumā-nimāj ମୁସଲମାନଙ୍କର ପାଠ କରିବା ସ୍ତବ—Friday-
ଜୁମାନମାଜ prayer of the Mahomedans.
**जुमानमाज**
(ଜୁମ୍ମାନମାଜ୍—ଅନ୍ୟରୂପ)

**ଜୁମାମସଜିଦ୍**—ବୈଦେ. ବି (ଆ)—ଯେଉଁ ଭଜନାଳୟରେ ମୁସଲମାନ-
Jumā-masajid ମାନେ ଶୁକ୍ରବାର ଦିନ ସମବେତ ହୋଇ ନମାଜ୍ ପଢ଼ନ୍ତି ବା ଭଜନ କରନ୍ତି—The mosque where Mahomedans assemble for Friday-prayer.

(ଜୁମ୍ମାମସଜିଦ୍—ଅନ୍ୟରୂପ) [ ଦ୍ର—ଏହା ଆଗ୍ରାର ସୁନାମପ୍ରସିଦ୍ଧ ମସଜିଦ । କଟକ ନଗରର ବାଲୁବଜାରରେ ମୁସଲମାନ ବାଦଶାହା ଆରଙ୍ଗଜେବଙ୍କ ଅମଳରେ ନିର୍ମିତ ମସଜିଦ୍‌କୁ ମଧ୍ୟ ଜୁମାମସଜିଦ୍ ବୋଲାଯାଏ । ଶୁକ୍ରବାର ମୁସଲମାନଙ୍କ ଭଜନର ପ୍ରଶସ୍ତ ଦିନ । ]

**ଜୁମିବା**—ଦେ. କ୍ରି (ଆ. ଜମା )—୧ । କୌଣସି ଘଟନାକ୍ରମେ ବହୁଲୋକ
Jumibā ଏକତ୍ର ହେବା—1. Gathering of a crowd
ଜୁମା on a certain occasion.
**जुमना; जुमकना** ( ଯଥା—ଯାତ୍ରା ଜୁମିଛି=ଭଲ ଯାତ୍ରା ହେବାରୁ ବହୁଲୋକେ ଆକୃଷ୍ଟ ହୋଇ ତାହା ଦେଖିବାକୁ ଏକତ୍ର ହୋଇଛନ୍ତି । ସେହିପରି ନାଚ ଜୁମିଛି ଏବଂ ଗାଇଣା ବାଜଣା ଜୁମିଛି ଇତ୍ୟାଦି ବ୍ୟବହୃତ ହୁଏ । )

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯୃ | ଉଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ |

୨ । (ନିଶା) ଜମକ୍ ହେବା; ଗାଢ଼ ହେବା —
2. (intoxication) To reach its pitch.

ଜୁମି ରହିବା—ଦେ. କ୍ରି (ଆ. ଜମା)—ଏକ ସ୍ଥାନରେ ଦୃଢ଼ରୂପେ ଫଳଗ୍ନ ହୋଇ ଜମି ରହିବା—To accumulate firmly at a place; to be heaped up at a place.
Jumi rahibā
जमे याओया
जम जाना

ଜୁମିଲା—ବୈଦେ. ଅ (ଆ. ଜୁମ୍ଲା=ମୋଟ)—ବାବଦକୁ—Towards the account of; in part payment of.
Jumilā
জুমিলা
जुमला [ ଦ୍ର—ମୋର ଟ ୧୦ଙ୍କା ପାଉଣା ବାବଦକୁ ଯେବେ ଟ୨ଙ୍କା ପାଏଁ ଦେବେ ଉକ୍ତ ୧୦ଙ୍କା ଜୁମିଲାକୁ ମୁଁ ଟ୨ଙ୍କା ପାଇଲି ବୋଲାଯିବ; ଏହାର ସାଙ୍କେତିକ ଚିହ୍ନ । ଜୁ । ବା । ଯୁ । ]

ଜୁମେରାତ୍—ବୈଦେ ବି. (ଆ)—(ମୁସଲମାନଙ୍କର) ଗୁରୁବାର—Thursday (according to Mahomedans.)
Jumerāt
জমেবাৎ
जुमेरात

ଜୁର୍—ପ୍ରାଦେ. (ସମ୍ବଲପୁର) ବି.—ଜୋଡ଼; ଜଳମୟ ସ୍ଥାନ—Marsh; marshy land.
Jur

ଜୁର—ଦେ. ବି. (ଫା. ଜୁଲ୍ମ=ଅତ୍ୟାଚାର; ଜୁର୍ମ=ଅପରାଧ କିମ୍ବା ସଂ. ଜ ଧାତୁ=ଜୀର୍ଣ୍ଣ ହେବା)—୧ । ବଳାତ୍କାର ହରଣ—
Jura
1. Snatching; forcible taking away.
୨ । ଲୁଣ୍ଠ—2. Looting; plundering.
ଅସୁର ସୁରଙ୍କ ରମ୍ୟ ଦ୍ରବ୍ୟରଙ୍କ ପଣ ଶୁଣି ବିନ୍ଧୁର ଜୁରରେ ।
କବିସୂର୍ଯ୍ୟ, ସଙ୍ଗୀତ ।
୩ । ଅପବ୍ୟୟ—3. Waste; squandering.
୪ । ବିନାଶ; ଅସ୍ତବ୍ୟସ୍ତତା—
4. Depredation; destruction; devastation.
୫ । ଇତସ୍ତତଃ କରିବା; ଓଲଟପାଲଟ କରିବା—
5. Topsyturvification.
ଦେ. ବିଣ.—୧ । ବଳାତ୍କାର ଅପହୃତ—
1. Snatched away; forcibly taken.
୨ । ଲୁଣ୍ଠିତ—2. Looted; plundered.
ବହୁତ ଫଷାଇ ଧନ କରି ନେଲା ଜୁର,
ଭକ୍ତ. ବୈଦେଶ୍ୱିଶବିଳାସ ।
୩ । ଅପବ୍ୟୟିତ—3. Wasted; squandered.
୪ । ବିନଷ୍ଟ; ଅସ୍ତବ୍ୟସ୍ତ; ଛିନ୍ନଭିନ୍ନ—
4. Destroyed; devastated.
ଅଥସୁ କରନ୍ତୁ କୃଷକେ ଶସ୍ୟ କରିଣ ଜୁର ।
ମଧୁସୂଦନ. ଛନ୍ଦମାଳା ।
୫ । ଓଲଟ ପାଲଟ—
5. Topsyturvy; turned upside down.

ଜୁର କରା(ରେ)ଇବା—ଦେ. କ୍ରି.—ଜୁର କରିବାର ଣିଜନ୍ତ ରୂପ—
Jura karā(re)ibā Causative form of Jura karibā.
ଦୃ ରଥକୁ ମଡାଇଣ ଜର କରାଇବା । ପ୍ରାଚୀ. ନଳଚରିତ ।

ଜୁର କରିବା—ଦେ. କ୍ରି.—୧ । ବଳାତ୍କାର ହରଣ କରିବା—
Jura karibā 1. To snatch away forcibly.
୨ । ଲୁଟିବା; ଲୁଟ କରିବା—
2. To loot; to plunder.
ରତ୍ନ ରତ୍ନଭଣ୍ଡାରକୁ ଜୁର ନାହିଁ ବାଳା ।
ଉପେନ୍ଦ୍ରଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୩ । ବିନାଶ କରିବା; ଛିନ୍ନଭିନ୍ନ କରିବା—
3. To commit depredation; to devastate.
୧ । ( ଲକ୍ଷଣାର୍ଥ ) ଜିଣିବା—1. (figurative) To win.
୨ । ବଳି ପଡ଼ିବା—2. To exceed.

ଜୁରମାର—ଦେ. ବି.—୧ । ଲୁଟମାର; ଇତସ୍ତତଃ ବିକ୍ଷେପ—
Jura-māra 1. Depredation; devastation.
୨ । ଲୁଟପାଟ—2. Plundering.
୩ । ବିନାଶ; ଚୂରମାର—3. Destruction
ବିଣ.—୧ । ବିନଷ୍ଟ—1. Devastated; destroyed.
୨ । ଲୁଣ୍ଠିତ—2. Looted.

ଜୁରି—ବୈଦେ. ବି. (ଇଂ)—ଅଦାଲତରେ ଜଜଙ୍କ ସହିତ ଦଉରା ମକଦ୍ଦମା ବିଚାର କରିବା କାର୍ଯ୍ୟରେ ସହାୟତା କରିବା ନିମନ୍ତେ ବସିବା ବ୍ୟକ୍ତିଗଣ—Jury.
Juri
জুরি
जुरी
[ଦ୍ର— ସେସନ୍ ଜଜଙ୍କ ସଙ୍ଗେ ସାଧାରଣଙ୍କ ପ୍ରତିନିଧି ସ୍ୱରୂପ ତୁଇ ଜଣରୁ ବାର ଜଣ ପର୍ଯ୍ୟନ୍ତ ଜୁରି ବସନ୍ତି ।]

ଜୁରିଆ—ଦେ. ବି.—ଯେ ଜୁର କରେ; ଲୁଟଅରା—Dacoit; looter.
Juriā
लुटियारा
लुटेरा

ଜୁରିବା—ଦେ. କ୍ରି.—ଜୁର କରିବା (ଦେଖ)
Juribā Jura karibā (See)

ଜରୁ—ପ୍ରାଦେ. (ବସ୍ତର) ବି.—ଜୋକ—Leech.
Juru

ଜୁର୍ମ—ବୈଦେ. ବି.— (ଫା)—ଅପରାଧ—Offence.
Jurm
জর্ম
जुर्म

ଜୁର୍ମାନା—ବୈଦେ. ବି. (ଫା)—ଜୋରିମାନା; ଅର୍ଥଦଣ୍ଡ—Fine.
Jurmānā
জরিমানা
जुरमाना

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଢ଼ଡ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ ଦେଖିବେ।

ଜୁର୍ଲା—ପ୍ରାଦେ. (ବସ୍ତର) ବି.—ଅସରପା—
Jurlā Cockroach.

ଜୁଳ୍‌ଜୁଳ୍—ଦେ. ଅ.—(ସଂ. ଉଜ୍ଜ୍ୱଳ କିମ୍ବା ଜ୍ୱଳଜ୍ୱଳ)—
Jul-jul ୧ । ମିଟି ମିଟି କରି—
জলজল, জ্বলজ্বল 2. In a peeping manner.
୨ । ମୃଦୁ ଦୃଷ୍ଟି କରି—2. With a sweet glance.
୩ । ସ୍ନିଗ୍ଧଭାବରେ ଅଖି ପିଛୁଡ଼ି (ଦୃଷ୍ଟି କରିବା)—
3. With repeated sweet glances.
୪ । ସ୍ନିଗ୍ଧଭାବରେ (ଆଲୋକ ଦେବା); ଜୁକ୍ ଜୁକ୍—
4. In a twinkling manner.
[ଦ୍ର—ଏ ଶବ୍ଦ କ୍ଷୁଦ୍ର ବସ୍ତୁର ଦୀପ୍ତିପ୍ରକାଶ ସୂଚନା କରେ । ଯଥା— କଅଁଳା ପିଲାଟି ଦୀପ ଆଡ଼କୁ ଜୁଳୁଜୁଳୁ କରି ଚାହିଁଛି । ପକ୍ଷୀ ଛୁଆଟି ବାଡ଼ରେ ଜୁଳ୍‌ଜୁଳ୍ କରି ଚାହିଁଛି । ଜଳଜଳ କରି ଚାହିଁବାରେ ସ୍ନିଗ୍ଧତା ଭାବ ନାହିଁ ।
ଜଳଜଳ କରି ଚାହିଁବା=ମଟମଟ କରି ଚାହିଁବା
ଜୁଳୁଜୁଳୁ କରି ଚାହିଁବା=ମିଟିମିଟି କରି ଚାହିଁବା ।]

ଜୁଳ୍‌ଜୁଳା ପୋକ—ଦେ. ବି.—ଜୁଳୁଜୁଳା ପୋକ (ଦେଖ)
Jul-julā poka Julujulā poka (See)

ଜୁଲ୍‌ପି—ଦେ. ବି - (ଫା. ଜୁଲ୍‌ଫି; ସଂ. ନାମ କାକପକ୍ଷ)—
Jul-pi ୧ । କପାଳ ପାଖରୁ ଇତସ୍ତତଃ କର୍ଣ୍ଣମୂଳ ପର୍ଯ୍ୟନ୍ତ ଲମ୍ବି ଥିବା
জুল্ফি କ୍ଷୁଦ୍ର କୁଞ୍ଚିତ ବା ବକ୍ରାଗ୍ର କେଶଗୁଚ୍ଛ—1. Curling lock
जुल्फ of hair hanging down the sides of the temples of the head.
୨ । ଆଖିକୋଣ ଓ କାନ ମଧ୍ୟରେ ଲମ୍ବି ଥିବା ସଯତ୍ନରକ୍ଷିତ କେଶଗୁଚ୍ଛ ବା କଲ୍ଲି—2. Curled rings of hair hanging between the ends of the eyes and the ears.
୩ । ଗାଲମୁଞ୍ଛ—3. Whiskers.
୪ । ବବୁର ବାଳ—4. Bobbed hair.

ଜୁଲ୍‌ପିକଟା—ଦେ. ବି.—୧ । କେଶ ବିନ୍ୟାସ କରିବା ସମୟରେ କାନ
Jul-pi-kaṭā ଓ ଚକ୍ଷୁ କୋଣ ମଧ୍ୟରେ କେତେଏ ଲେଖାଏଁ ବାଳ
জুলফি কাটা বା କଲ୍ଲି ଛାଡ଼ିବା—1. To have a curl or
जुल्फ काटना ringlet of hair hanging down the sides between the eye and the ear.
୨ । ଗାଲମୁଞ୍ଛ—2. Whiskers.
জুলফিকাটা ବିଣ.—କଲ୍ଲି ଲମ୍ବାଯାଇ ବିନ୍ୟସ୍ତ ହୋଇଥିବା
जुल्फवाला କେଶଯୁକ୍ତ--With a curl or ringlet of hair descending in front of the ear.

ଜୁଳ—ଦେ. ବି.—ଜୁଳୁକି (ଦେଖ)
Jula Juluki (See)

ଜୁଳକି—ଦେ. ବି—ଜୁଳୁକି (ଦେଖ)
Julaki Juluki (See).

ଜୁଲମ୍—ବୈଦେ. ବି ( ଅ. ଜୁଲ୍‌ମ୍ )—
Julam ୧ । ଉତ୍ପୀଡ଼ନ; ଅତ୍ୟାଚାର—
জুলম 1. Oppression; high-handedness.
जुलम ମଙ୍ଗରାଜ କାହାରି ଉପରେ ଜୁଲମ କଲେ ସେ ଯଦି ସାଆନ୍ତାଣୀଙ୍କ କାନରେ ଦୁଃଖ କଥାଟା ଶୁଣାଇ ପାରିଲା—ତେବେ ତ ବସ୍ ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।
୨ । ବଳାତ୍କାର; ବଳପ୍ରୟୋଗ—
2. Use of criminal force.
୩ । ଉତ୍ପୀଡ଼ନଜନିତ କଷ୍ଟ—
3. Hardship due to oppression.
୪ । ନିଷ୍ଠୁରତା—4 Cruelty.
୫ । ଅନ୍ୟାୟ—5. Injustice.
ଦେ. ବିଣ—ଅତିରିକ୍ତ; ବେଜାୟ—Excessive.
(ଯଥା—ଆମ ଉପରେ ଏ ବନ୍ଦୋବସ୍ତରେ ବହୁତ ଜୁଲମ୍ ଖଜଣା ଧାର୍ଯ୍ୟହେଲା ।)

ଜୁଲମ୍ କରିବା—ଦେ. କ୍ରି.—ଅତ୍ୟାଚାର କରିବା—
Julam karibā To oppress; to take violent measures.

ଜୁଲମ୍‌ଦାର୍—ବୈଦେ. ବିଣ. (ଫା)—ଉତ୍ପୀଡ଼କ; ଅତ୍ୟାଚାରୀ—
Julam-dār Oppressive; tyrannous; high-handed.

ଜୁଲମ୍‌ବାଜ୍—ବୈଦେ. ବି (ଫା)—ଜୁଲମ୍‌ଦାର୍ (ଦେଖ)
Julam-bāj Julam-dār (See).

ଜୁଲମାନା—ଗ୍ରା. ବୈଦେ. ବି (ଅ. ଜୁର୍‌ମାନା)—ଜୋରିମାନା; ଅର୍ଥଦଣ୍ଡ—
Julamānā Fine.

ଜୁଳା—ଦେ. ବି (ପ୍ରାଚୀନ)—(ସଂ. ଜ୍ୱାଳା)—୧ । ଜ୍ୱାଳା—
Julā 1. Distress; pangs.
୨ । ଚକ୍ଷୁର ତାରା—2. The pupil of the eye.
୩ । ତେଜ; ଦୀପ୍ତି—3. Brightness.
ବେନି ନେତ୍ରରେ କଜ୍ଜଳ ଜୁଳା ଝଟକିତା—ପ୍ରାଚୀ. ବ୍ରହ୍ମନରୂପଣଗୀତା ।

ଜୁଲା—ବୈଦେ. ବି (ଫା. ଜୌଲହ୍)—ମୁସଲମାନ ତନ୍ତୀ—
Julā Mahomedan weaver.
ଜୋଲଅଣି } ସ୍ତ୍ରୀ
ଜୁଲାଅଣି }
[ଦ୍ର—କଟକ ସହରରେ ଜୁଲାସାହି ବୋଲି ବର୍ତ୍ତମାନ ଗୋଟିଏ ଗଳି ଅଛି । ]
জোলা
जुलाहा
(ଜୁଲ୍ଲା, ଜୋଲ, ଜୋଲ୍ଲା—ଅନ୍ୟରୂପ)

ଜୁଲାଇ—ବୈଦେ. ବି (ଇଂ)—ଇଂରାଜୀ ଗଣନାରେ ୭ମ ମାସ—
Julāi Month of July.
জুলাই ( ଦ୍ର—ଏହା ଓଡ଼ିଆ ଅଷାଢ଼-ଶ୍ରାବଣ )
जुलाइ

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଳ | ଇୟ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଗ୍ୟ | ସ | ଳ୍ୟ | ଇଅ | ୱ | ନ୍ |

ଜୁଲାପ୍—ବୈଦେ. ବ (ଆ. ଜୁଲ୍ଲାବ୍; ଫା. ଜୁଲାବ୍; ପର୍ତ୍ତୁ. ଜଲାପା )—
Julāp ୧ । ଭେଦା; ମଳଭେଦକ ଔଷଧ; ବରେଚକ ଔଷଧ; ଯେଉଁ
জুলাপ; জোলাপ ଔଷଧ ଖାଇଲେ ଝାଡ଼ା ହୁଏ—
जुलाब 1. Purgative; a purge; a cathartic.
(ଜୁଲ୍ଲାପ୍, ଜୁଲାବ୍, ଜୁଲ୍ଲାବ୍—ଅନ୍ୟରୂପ)
[ ଦ୍ର—ଫା. ଜୁଲାବ୍ = ଗୋଲାପପାଣି; ଏହା ସାରକ ବା ମଳଭେଦକ ବୋଲି ଏହି ଅର୍ଥରେ ବ୍ୟବହୃତ । ଏଥିର ଅପଭ୍ରଂଶରେ ଆରବୀ ଓ ଉର୍ଦ୍ଦୁରେ ଜୁଲାବ୍ ଓ ଜଲ୍ଲାବ୍ ବ୍ୟବହୃତ ହୁଏ । ତୁଳ. ପର୍ତ୍ତୁଗିଜ୍. ଜଲାପା ( Jalapa = ଆମେରିକାର ଜଲାପା ନାମକ ଗଛର ମୂଳଜାତ ମଳଭେଦକ ଔଷଧ । ]
୨ । କଲମ୍ବୀ ଆଦି ବର୍ଗର ଲତାବିଶେଷ—
2. Ipomoea Purga; Jalap.
[ ଦ୍ର—ଏହାର ଆଦ୍ୟ ବାସ ଦକ୍ଷିଣ ଆମେରିକାର ମେକ୍ସିକୋ ଦେଶ; ଏହା ଏ ଦେଶକୁ ଅଣା ହୋଇ ନୀଲଗିରି ଓ ମହୀଶୂର ପାହାଡ଼ରେ ରୋପିତ ହେଉଅଛି । ଏହାର ମୂଳ ଜଲାପ ( Jalap ) ନାମରେ ଖ୍ୟାତ ଓ ବରେଚକ । ଆମ ଦେଶୀ ଜୁଲାପ ଗଛକୁ ଭଦ୍ରୁଡ଼ୀ କହନ୍ତି । ]

ଜୁଲାପ୍ ଦେବା—ଦେ. କ୍ରି—ଝାଡ଼ା କରାଇବା ପାଇଁ କୌଣସି ବ୍ୟକ୍ତିକୁ
Julāp debā ବରେଚକ ଔଷଧ ପ୍ରୟୋଗ କରିବା—To administer purgative to a person.
জোলাপ দেওয়া
जुलाब देना

ଜୁଲାପ୍ ଧରିବା—ଦେ. କ୍ରି—ଝାଡ଼ାଔଷଧର ଗୁଣ ପ୍ରକାଶ ହୋଇ ଝାଡ଼ା
Julāp dharibā ହେବା—Purging due to a dose of
জোলাপ ধরা purgative; the taking effect of a purgative dose.

ଜୁଲାପ୍ ନେବା—ଦେ. କ୍ରି—ଝାଡ଼ା କରାଇବା ପାଇଁ ଔଷଧ ଖାଇବା—
Julāp nebā To take a purgative.
জোলাপ লওয়া
जुलाब लेना

ଜୁଲି—ଦେ. ବି. ( ସଂ. ଚୁଲ୍ଲୀ; ନୟନଜୁଲି ବା ନୟନଜୋଳ
Juli ଶବ୍ଦରେ ବ୍ୟବହୃତ )—
ଜୁଲୀ ୧ । ପାଣି ଯିବାର ସରୁ ନାଳ ବା ମାହାଳ—
1. A narrow trench or shallow channel for flow of water.

ଜୁଲିକ—ଦେ. ବି—ଜୁଲୁକି ( ଦେଖ )
Juliki Juluki ( See )

ଜୁଲିପି—ବୈଦେ. ବି. (ଫା)—ଜୁଲ୍‌ପି ( ଦେଖ )
Julipi Jul-pi ( See )
(ଜୁଲ୍‌ଫି—ଅନ୍ୟରୂପ)

ଜୁଲୁ—ବୈଦେ. ବି. ( ନାମ )—ଆଫ୍ରିକାର ଦକ୍ଷିଣାଂଶବାସୀ ବଳିଷ୍ଠ
Julu କୃଷ୍ଣାଙ୍ଗ ଜାତିବିଶେଷ—The Zulus.
ଜୁଲୁ [ ଦ୍ର—ଏମାନଙ୍କ ଦେଶକୁ ଜୁଲୁଲାଣ୍ଡ (Zululand)
जुलु କୋହାଯାଏ । ]

ଜୁଲୁକି—ଦେ. ବି—୧ । କବାଟରେ କଳଣୀକୁ ଅଟକାଇବାର ଲୁହା ବା
Juluki କାଠର ଅଙ୍କୁଡ଼ି; ଛିଟକିଣୀ; ଚିକିଆ; ଝୁଡ଼ୁକା—
হাঁসকল 1. A wooden or iron hook to hold
कुलाबा; जमुरका the shutter-bar of a door; bolt of a door.
୨ । ଗାଈକୁ ଦୁହିଁବାକେଳେ ତାହାର ଆଗ ବା ପଛ ଗୋଡ଼କୁ ବାନ୍ଧିବା ଦଉଡ଼ି; ଛନ୍ଦଣୀ—2. A string used to tie up the two fore or hind legs of a cow while she is milked.

ଜୁଲୁକି କବାଟ—ଦେ. ବି—ଜଲାକବାଟ ( ଦେଖ )—
Juluki-kabāṭa Jalā-kabāṭa ( See)
ନବଗ୍ରହ ହୋଇଛନ୍ତି ଜୁଲୁକି କବାଟ—ପ୍ରାଚୀ, ବ୍ରହ୍ମନବ୍ରତଗୀତା ।

ଜୁଲୁଜୁଲା ପୋକ—ଦେ. ବି (ସଂ. ଜ୍ୱଲ ଧାତୁ; ସଂ. ଜ୍ୟୋତିରିଙ୍ଗଣ)
Julujulā poka ଯେଉଁ ପୋକ ରାତିରେ ଜୁଳୁଜୁଳୁ କରେ;
জুলীপোকা; জুনীপোক ଖଦ୍ୟୋତ; ଜ୍ୟୋତିରିଙ୍ଗଣ—Firefly
जुगनू [ ଦ୍ର—ବର୍ଣ୍ଣଭେଦରେ ଜୁଳୁଜୁଳାପୋକ
(ଜୁଳୁଜୁଳିଆପୋକ—ଅନ୍ୟରୂପ) ତିନିପ୍ରକାର; ଯଥା—ଧଳା ହଳଦିଆ ଓ ପାଣ୍ଡୁରଙ୍ଗ । ]

ଜୁଲୁଜୁଲୁ—ଦେ. ଅ—ଜୁଲ୍‌ଜୁଲ୍ ( ଦେଖ )—
Julujulu Juljul ( See )

ଜୁଲୁପି—ବୈଦେ. ବି (ଫା)—ଜୁଲ୍‌ପି ( ଦେଖ )
Julupi Jul-pi ( See)
(ଜୁଲୁଫି—ଅନ୍ୟରୂପ)

ଜୁଲୁମ୍ (ଇତ୍ୟାଦି)—ବୈଦେ. ବି (ଆ)—ଜୁଲମ୍ ଇତ୍ୟାଦି ( ଦେଖ )—
Julum (etc) Julam etc ( See )

ଜୁଲୁସ୍—ବୈଦେ. ବି (ଆ.)—୧ । ସିଂହାସନାରୋହଣ—
Julus 1. Installation.
জুলুস ୨ । ଉତ୍ସବାଦି ଉପଲକ୍ଷେ ସମାରୋହ—
जुलूस 2. Grand display on the occasion of a rejoicing.
୩ । ଜାକଜମକ—3. Grandeur, show.
୪ । ଶୋଭାଯାତ୍ରା—4. Procession.

ଜୁଲ୍ଲା—ଦେ. ବି—ଜୁଲା ( ଦେଖ )—
Jullā Julā ( See )

ଜୁଷ୍ (ଧାତୁ)—ସଂ—ସେବା କରିବା—
Jush (root) To serve; to attend.

ଜୁଷ୍—ସଂ. ବି. (ଜୁଷ ଧାତୁ = ସେବା କରିବା + କର୍ତ୍ତୃ. କ୍ୱିପ୍)—
Jush ୧ । ସେବକ—1. Attendant, servant.
୨ । ସହାୟ—2. Helper.
୩ । ପ୍ରଣୟୀ—3. Lover.
୪ । ପୂଜକ—4. Worshipper

ସାଧାରଣ ଲୋକେ ଅପଢ ପୃଷ୍ଠାରେ ପ୍ରଥମ ୧ ଚକ୍ଷୁ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷୁ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷୁର କୌଣସି ବ ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚକ୍ଷୁର ବଦଳରେ ୨ ବା ୧ ଚକ୍ଷୁର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଦେ. ବି. (ସଂ. ଜୂଷ)—ସୁରୁଆ; ଡାଲି, ମାଂସ ଆଦି ସିଦ୍ଧ ହୋଇ ଥିବା ପାଣି; ଝୋଳ—Broth; soup.
ଜୁସ୍
ଜୁସ

**ଜୁଷ୍ଟ**—ସଂ. ବିଣ. (ଜୁଷ୍ ଧାତୁ + କର୍ମ ତ)—୧ । ପୂଜିତ—
Jushta 1. Worshipped.
୨ । ସେବିତ—2. Followed; served; attended to.
୩ । ଉତ୍ସୃଷ୍ଟ—3. Dedicated.
୪ । ସନ୍ତୁଷ୍ଟ—4 Gratified; pleased.
୫ । ଉପକୃତ—5 Benefitted.
୬ । ଉଚ୍ଛିଷ୍ଟ—6. Left in the plate after meals.

**ଜୁଷ୍ୟ**—ସଂ. ବିଣ (ଜୁଷ୍ ଧାତୁ + କର୍ମ. ଯ)—୧ ସେବ୍ୟ—
Jushya 1. Fit to be served.
୨ । ପୂଜ୍ୟ; ଉପାସ୍ୟ—2. Fit to be worshipped.

**ଜୁହା**—ପ୍ରାଦେ. (ସିଂହଭୂମ) ବି—ଜୁଆ (ଦେଖ)
Juhā Juā (See)

**ଜୁହାଁ**—ପ୍ରାଦେ. (ଲଉଠା) ବି. (ସଂ. ଯୂକା; ଭୁଲ. ଏହି ଅର୍ଥରେ ହି. ଜୁଁ) ଉକୁଣି—Louse.
Juhān

**ଜୁହାଡ଼ି**—ପ୍ରାଦେ. (ସିଂହଭୂମ) ବି—ଜୁଆଡ଼ି; ଦ୍ୟୂତାସକ୍ତ ବ୍ୟକ୍ତି—
Juhārdi Gambler.

**ଜୁହାର**—ଦେ. ବି.—(ସଂ. ଅବହାର=ଯୁଦ୍ଧାଦିର ସାମୟିକ ବିରାମ;
Juhāra ହି. ଶବ୍ଦସାଗର)—୧ । ଦଣ୍ଡବତ; ନମସ୍କାର; ଅଭିବାଦନ—
ଜୁହାର; ଜୋହାର 1. Salutation; a bow.
ଜୁହାର ୨ । ରାଜା ଆଦିଙ୍କୁ ଯୋଡ଼ହାତରେ ସାଷ୍ଟାଙ୍ଗ ନମସ୍କାର—
2. Obeisance to a high personage with folded palms.
୩ । ଭୟରେ କୌଣସି ଦୁଷ୍ଟ ବ୍ୟକ୍ତିଙ୍କୁ ନମସ୍କାରପୂର୍ବକ ତାହାଠାରୁ ଦୂରରେ ଅବସ୍ଥାନ—3. Keeping away from a wicked person, with folded hands, at a safe distance, through fear.
ଓଷ୍ଟେ ଯଥା ସ୍ୱଦେହାର ଥାଇଁ ଅମରେ ନହାରକର କରନ୍ତି ଆହାର; ତାଙ୍କୁ ଜୁହାର ।
ଉପେନ୍ଦ୍ର ଭଞ୍ଜ. ପ୍ରେମସୁଧାନିଧି ।
ଅ—(ନମସ୍କାର କଲାବେଳେ ଉଚ୍ଚାରିତ ଶବ୍ଦ)—ମହାଶୟ, ନମସ୍କାର ! (Interj) Good morning ! Good day !

**ଜୁହାର କରିବା**—ଦେ. କି—୧ । ନମସ୍କାର କରିବା—
Juhāra karibā 1. To bow down; to salute.
ଜୁହାର କରା ୨ । ମାନ୍ୟ କରିବା—
ହାର କରନା 2. To show respect.
(ଜୁହାର ଦେବା—ଅନ୍ୟରୂପ) ୩ । ହାତ ଯୋଡ଼ି ମିନତି କରିବା—
3. To pray or beseech with folded hands.
୪ । କୌଣସି ବ୍ୟକ୍ତି ବା ବସ୍ତୁକୁ ଭୟ ନମସ୍କାରପୂର୍ବକ ଦୂରରୁ ଛାଡ଼ି ହୋଇ ରହିବା—
4. To keep oneself at a safe distance from a person or thing with folded hands, through fear.
୫ । ହାର ମାନିବା; ଶକ୍ତି ରହିବା—
5. To submit; to yield; to admit defeat.
( ଯଥା—ଜୁହାର କରୁଛି ଭାଇ ! ମୁଁ କି ଏଥିକି ଭାଜନ ? ମତେ ଆଉ ଏବେ ଝମେଲାରେ ପକାନା । )

**ଜୁହାରିବା**—ଦେ. କି—୧ । ଜୁହାର କରିବା (ଦେଖ)—
Juhāribā 1 Juhāra karibā (See).
ଧରଣୀ ନନ୍ଦନର କଳ ରବ ଶର ପୁଣି ତାଙ୍କୁ ନ ଜୁହାରିବାର
କବିସୂର୍ଯ୍ୟ, ରତ୍ନାକର ଜନ୍ମ ।
୨ । ଭୟରେ କୌଣସି ବସ୍ତୁ ବା ବ୍ୟକ୍ତି(ଙ୍କୁ ନମସ୍କାର କରି ତା) ଠାରୁ ଦୂରରେ ରହିବା—2. To keep away from a person or thing through fear.
ମୁଁ ହାରିଲି ହେଉ ଏତିକି ଗୋ
ଜୁହାରିଲି ଶ୍ୟାମ ପ୍ରୀତିକି ଗୋ—ପ୍ରାଚୀନ ସଙ୍ଗୀତ

**ଜୁହାଳ**—ପ୍ରାଦେ. (କଳାହାଣ୍ଡି) ବି.—ଶଗଡ଼ର ଜୁଆଳି—
Juhāla The yoke of a cart.

**ଜୁହୁ**—ସଂ. ବି (ହୁ ଧାତୁ=ହୋମ କରିବା + କରଣ କ୍ୱିପ୍)—
Juhu ଯଜ୍ଞୀୟ କାଷ୍ଠପାତ୍ରବିଶେଷ—A kind of wooden
(ଜୁହୂ—ଅନ୍ୟରୂପ) vessel used in vedic sacrifice.

**ଜୁହ୍ନା**—ପ୍ରାଦେ. (ସମ୍ବଲପୁର). ବିଣ - ଜୁନା (ଦେଖ)—
Juhnā Junā (See).

**ଜୂ**—ବୈ. ବି (ଫା. ଜୂ)—ଜୁ (ଦେଖ)—Ju (See).
Jū ସଂ. ବି (ଜୁ ଧାତୁ=ବେଗରେ ଗମନ କରିବା)—
୧ । (+ ଅଧିକରଣ. କ୍ୱିପ୍)—ଆକାଶ—1. The sky.
୨ । (+ କର୍ତ୍ତୃ କ୍ୱିପ୍)—ସରସ୍ୱତୀ—2. The Goddess of learning.
୩ । ପିଶାଚୀ—3. Demoness.
୪ । (+ ଭାବ. କ୍ୱିପ୍) ଶୀଘ୍ର ଗମନ—4. Swift movement.

**ଜୂଟ୍** (ଧାତୁ)—ସଂ.—ଏକତ୍ର ହେବା; ଜମା ହେବା—To be massed
Jut (root) together; to be heaped up.

**ଜୂଟ**—ସଂ. ବି (ଜୂଟ୍ ଧାତୁ ଏକତ୍ର ହେବା + କର୍ତ୍ତୃ ଅ)—୧ । ଜଟା—
Jūta 1 Matted locks of hair grown by ascetics.
୨ । ସମୂହ—2. Cluster; collection.
(ଯଥା—ଜଟାଜୂଟ ।)
୩ । ଗୁଣ୍ଡି; ଗଦା—3. Mass; heap.
୪ । ବନ୍ଧନ—4. Tying up.

**ଜୂଟକ**—ସଂ. ବି ( ଜୂଟ୍ ଧାତୁ ଏକତ୍ର ହେବା + କର୍ତ୍ତୃ. ଅକ )—
Jūtaka ଜୂଟ (ଦେଖ).
Jūta (See).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ପ | ଉଅ | ଘ |
| ୨ | ଈ | ଊ | ୠ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଘ | ଇଅ | ଢ଼ | ଚ |

ଜୂତ—ଦେ. ବି (ସଂ. ଦ୍ୟୂତ) —୧ ଜୁଆଖେଳ—
Jūta 1. Gambling.

ଜୁତ ଯୁତ କଲେ ମନ କନ୍ୟା ପୁରୁଷ—ଭଞ୍ଜ. ପ୍ରେମସୁଧାନିଧି ।

୨ । ପଶାଖେଳ—2. Play at dice.

ଜୁତରେ ଅଜ୍ଞାନ ରଜା ହୋଇଲେ କାଣ—ପ୍ରାଚୀ, ନଳଚରିତ ।

ଜୂତି—ସଂ ବି. ( ଜୁ ଧାତୁ+ଭାବ. ତି )—୧ । ଗତି—
Jūti 1. Motion.

୨ । ବେଗ—2. Velocity; swiftness.

ଜୂର—ଦେ ବି. ଓ ବିଣ—ଜୁର ( ଦେଖ )
Jūra Jura ( See )

ଜୀବନ ହରିବ ତାହାର, ସର୍ବ ସମ୍ପଦ କରି ଜୂର—
ଜଗନ୍ନାଥ. ଭାଗବତ ।

ଜୂରିବା—ଦେ. କ୍ରି—ଜୁର କରିବା ( ଦେଖ )
Jūribā Jura karibā ( See )

ନର୍ତ୍ତକୀ । ଲମ୍ବ ଜୂର ମୁନିଙ୍କର—ଭଣ୍ଡ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ଜୂର୍ଣ୍ଣ—ସଂ. ବି—ଜୁଣ ( ଦେଖ )
Jūrṇṇa Juṇa ( See )

ଜୂଷ୍ ( ଧାତୁ )—ସଂ—ବଧ କରିବା—
Jūsh ( root ) To kill.

ଜୂଷ—ସଂ. ବି. ( ଜୂଷ୍ ଧାତୁ=ବଧ କରିବା+ସଂଜ୍ଞାର୍ଥ. ଅ )—କ୍ୱାଥ; ଅଣ; ଝୋଳ; ଡାଲି ଆଦିର ଅଣ—Broth; soup.
Jūsha

ଜୃନ୍ଭ୍ ( ଧାତୁ )—ସଂ.—ହାଇ ମାରିବା—
Jṛun-bh (root) To yawn.

ଜୃମ୍ଭ୍ ( ଧାତୁ )—ସଂ—ଜୃନ୍ଭ୍ ( ଦେଖ )
Jṛumbh ( root ) Jṛun-bh ( See )

ଜୃମ୍ଭ—ସଂ. ବି. (ଜୃନ୍ଭ୍ ଧାତୁ+ଭାବ. ଅ )—୧ । ହାଇ—
Jṛumbha 1. A yawn.
( ଜୃଂଭ—ଅନ୍ୟରୂପ ) ୨ । ହାଇ ମାରିବା—
2. Yawning; gaping.

୨ । ଆଁ କରିବା; ମୁଖ ବ୍ୟାଦନ—
3 Gaping of the mouth.

୪ । ବ୍ୟାଦାନ, ବିକାଶ—
4. Opening; being widened; expansion.

୫ । ସ୍ଫୁରଣ; ପ୍ରକାଶ—5 Manifestation.

୬ । ଆଳସ୍ୟ—6. Idleness.

୭ । ଆଳସ୍ୟରୁ ଉତ୍ପନ୍ନ ଜଡ଼ତା—
7. Inertness due to idleness

ଜୃମ୍ଭକ—ସଂ. ବିଣ. ( ଜୃନ୍ଭ୍ ଧାତୁ+କର୍ତ୍ତୃ. ଅକ )—
Jṛumbhaka ୧ । ଯେ ସର୍ବଦା ହାଇ ମାରେ—
( ଜୃଂଭକ—ଅନ୍ୟରୂପ ) 1. Gaping; yawning.
( ଜମ୍ଭିକା—ସ୍ତ୍ରୀ ) ୨ । ନିଦ୍ରାକାରକ—
2. Soporific; producing or causing sleep.

୩ । ଆଳସ୍ୟକର—
3. Conducing to idleness.

ବି—ଦକ୍ଷପ୍ରଜାପତିଙ୍କ କନ୍ୟାଦ୍ୱୟଙ୍କ ଗର୍ଭରେ କୃଶାଶ୍ୱ ମହର୍ଷିଙ୍କ ଔରସଜାତ ଶତପୁତ୍ର (ଏମାନେ ଅସ୍ତ୍ରରୂପରେ ରାମାୟଣରେ ବର୍ଣ୍ଣିତ )—The hundred sons of sage Kṛuśāśwa born of the two daughters of Daksha, personifying weapons ( mentioned in the Rāmāyaṇa ).

[ ଦ୍ର—ଏ ଅସ୍ତ୍ରମାନଙ୍କୁ ନିକ୍ଷେପ କଲେ ଶତ୍ରୁମାନେ ନିଦ୍ରାରେ ଅଚେତନ ହୁଅନ୍ତି । ]

ଜୃମ୍ଭକାସ୍ତ୍ର—ସଂ· ବି. ( ଜୃମ୍ଭକ+ଅସ୍ତ୍ର )—୧ । କୃଶାଶ୍ୱ ମୁନିଙ୍କ ଶତ ପୁତ୍ର ଅଧିଷ୍ଠିତ ଅସ୍ତ୍ର—
Jṛumbhakāstra
1. The weapons presided over by the hundred sons of Kṛuśāśwa.

[ ଦ୍ର—ରାମଚନ୍ଦ୍ର ତାଡ଼କା ଆଦି ରାକ୍ଷସଙ୍କୁ ବଧ କରିବା ସମୟରେ ବିଶ୍ୱାମିତ୍ର ପ୍ରସନ୍ନ ହୋଇ ପ୍ରୟୋଗମନ୍ତ୍ର ସହିତ ଏ ଅସ୍ତ୍ରମାନଙ୍କୁ ରାମଚନ୍ଦ୍ରଙ୍କୁ ପ୍ରଦାନ କରିଥିଲେ । ଘୋର ତପସ୍ୟା ବଳରେ ବିଶ୍ୱାମିତ୍ର ଏ ଅସ୍ତ୍ରମାନଙ୍କୁ ଅଗ୍ନିଙ୍କଠାରୁ ପାଇଥିଲେ—ହି· ଶବ୍ଦସାଗର । ]

୨ । ଯେଉଁ ଅସ୍ତ୍ର ଜୃମ୍ଭଣ କରାଏ; ଯେଉଁ ଅସ୍ତ୍ରରେ ଆହତ ଯୋଦ୍ଧୃଗଣ ନିଦ୍ରାରେ ଅବସନ୍ନ ହୋଇ ହାଇ ମାରନ୍ତି—2. The weapon which induces sleep on persons whom it strikes.

ଜୃମ୍ଭଣ—ସଂ. ବି. ( ଜୃନ୍ଭ୍ ଧାତୁ+ଭାବ. ଅନ )—୧ । ହାଇ ମାରିବା—
Jṛumbhaṇa 1. Act of gaping or yawning.
( ଜୃଂଭଣ—ଅନ୍ୟରୂପ ) ୨ । ହାଇ—2. A yawn.

୩ । ପ୍ରକାଶ—3 Expansion; manifestation.

୪ । ପ୍ରସ୍ଫୁଟନ—4. Opening.

୫ । ଜଡ଼ତା; ଆଳସ୍ୟ—5. Idleness.

୬ । ଅବସାଦ; ନିଦ୍ରା—6. Sleep.

୭ । ମୁଖବ୍ୟାଦାନ—
7. Opening the mouth wide; gaping.

ଜୃମ୍ଭତ୍—ସଂ. ବିଣ. ପୁଂ. ( ଜୃନ୍ଭ୍ ଧାତୁ+କର୍ତ୍ତୃ. ଅତ୍ )—
Jṛumbat ୧ । ବିକାଶପ୍ରାପ୍ତ; ପ୍ରସ୍ଫୁଟିତ; ପ୍ରକାଶମାନ—
( ଜୃଂଭତ୍—ଅନ୍ୟରୂପ ) 1. Opened; manifest.
( ଜୃମ୍ଭନ୍ତୀ—ସ୍ତ୍ରୀ ) ୨ । ହାଇ ମାରୁଥିବା—2. Yawning.

ଜୃମ୍ଭମାଣ—ସଂ. ବିଣ. ପୁଂ. ( ଜୃନ୍ଭ୍ ଧାତୁ+କର୍ତ୍ତୃ. ଅନ )—
Jṛumbha-māṇa ୧ । ଯେ ହାଇ ମାରୁଅଛି—1. Yawning.
( ଜୃଂଭମାଣ—ଅନ୍ୟରୂପ ) ୨ । ପ୍ରକାଶମାନ—2. Manifest.
( ଜୃମ୍ଭମାଣା—ସ୍ତ୍ରୀ ) ୩ । ଯେ ପାଟି ମେଲା କରିଅଛି; ଆଁ କରିଥିବା—
3. Gaping.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ନିରୂପଣ କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଆଗ୍ୟା' ନ ପାଇଲେ 'ଆଜ୍ଞା' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ,

**ଜୃମ୍ଭା**—ସଂ ବି. ( ଜୃମ୍ଭ୍ ଧାତୁ + ଭାବ. ଅ + ଆ )—ଜୃମ୍ଭ ( ଦେଖ )
Jṛumbhā — Jṛumbha ( See )

**ଜୃମ୍ଭିକା**—ସଂ. ବି. ସ୍ତ୍ରୀ. ( ଜୃମ୍ଭ + ସ୍ୱାର୍ଥେ. କ + ସ୍ତ୍ରୀ. ଆ )—୧ । ହାଇ—
Jṛumbhikā — 1. A yawn.
୨ । ଆଳସ୍ୟ—2. Idleness.
୩ । ରୋଗବିଶେଷ—3. Name of a disease.
[ ଦ୍ର—ଏ ରୋଗରେ ରୋଗୀ ଅଳସ ହୁଏ ଓ ଘନଘନ ହାଇ ମାରେ; ହାଇକୁ ଅବରୋଧ କରିବାରୁ ଏ ରୋଗ ଜନ୍ମେ— ହି. ଶବ୍ଦସାଗର । ]

**ଜୃମ୍ଭିତ**—ସଂ. ବିଣ. ( ଜୃମ୍ଭ୍ ଧାତୁ + କର୍ତ୍ତୃ. ତ )—
Jṛumbhita
( ଜୃଂଭିତ—ଅନ୍ୟରୂପ )
( ଜୃମ୍ଭିତା—ସ୍ତ୍ରୀ )
୧ । ବିସ୍ତାରିତ; ବିକାଶପ୍ରାପ୍ତ— 1 Expanded; opened.
୨ । ହାଇ ମାରୁଥିବା— 2. Gaping; yawning.
୩ । ମୁହଁ ଆଁ କରିବା— 3. With mouth wide agape.
୪ । ଚେଷ୍ଟିତ ( ହି. ଶବ୍ଦସାଗର )—4, Exerting.
ସଂ. ବି. ( + ଭାବ. ତ )—୧ । ରମ୍ଭା ( ହି. ଶବ୍ଦସାଗର ) – 1. Plantain.
୨ । ସ୍ଫୋଟନ ( ହି. ଶବ୍ଦସାଗର )—2. Cracking.
୩ । ସ୍ତ୍ରୀମାନଙ୍କର ଇଚ୍ଛା ବା ଇଚ୍ଛା ( ହି. ଶବ୍ଦସାଗର ) — 3. The desire or longing of females

**ଜେ**—ଦେ. ଅ. (ସଂ. ଜୟ )—(ଧନ୍ୟବାଦ, ଅଭିବାଦନ, ସମ୍ମାନ ପ୍ରଦର୍ଶନ, କୃତଜ୍ଞତା ଜ୍ଞାପନାର୍ଥ ବ୍ୟବହୃତ—(Interjection used in thanksgiving, making obeisance, showing respect and gratitude )
Je
জয়
जय; जै
୧ । ଆପଣଙ୍କର ( ବା ଅମୁକଙ୍କର ) ଜୟ ହେଉ— 1. Glory to Thee in the highest !.
୨ । ନମସ୍କାର ମହାଶୟ !— 2. Obeisance to Thee !.
୩ । ଆପଣଙ୍କୁ ଧନ୍ୟବାଦ—3. Thanks to Thee !.

**ଜେଇଁ ଜାଇଁ ରଖିବା**—ଦେ. କ୍ରି. ( ସଂ. ଜୀବନ )—ନାନା ଉପାୟ ଅବଲମ୍ବନପୂର୍ବକ କୌଣସି ପ୍ରାଣୀ ବା ବୃକ୍ଷ ଆଦିକୁ ସଜୀବ ରଖିବା—
Jeiñ jāiñ rakhibā
বাঁচিয়ে রাখা
जीलाकर रखना
To keep a plant or animal alive anyhow.

**ଜେଇଁବା**—ଗ୍ରା. କ୍ରି. ( ସ. ଜୀବ ଧାତୁ )—୧ । ଜୀଇଁବା—
Jeiñbā — 1. To live.
জিয়া
जिलाना
୨ । ଜୀଆଁଇବା— 1. To cause to live.

**ଜେଉଟ**—ଦେ. ବି (ସଂ. ଡହୁ)—ଅଳ୍ପ ଅମ୍ଳ ସ୍ୱାଦୁଯୁକ୍ତ ଫଳ ଓ ତାହାର ବୃକ୍ଷ ବିଶେଷ—A tree bearing sourish edible fruits like mangosteen; the monkey jack; Artocarpus Lacooch Anthochynus' Pictorius; Stalagmites Pictoria (Fallon).
Jeuṭa
ସଂ. ଲକୁଚ; କ୍ଷୁଦ୍ରପନସ; ନିକୁଚ; ଲକୁଚ; ଡହୁ; ଡହୂ; ଐରାବତ; ଅମ୍ଳକ; ନକୁଚ; କଷାୟୀ; ଦୃଢ଼ବଲ୍କଲ; କଷାୟୀ; ଶାଲ; ଶୂର, ସ୍ଥୂଳସ୍କନ୍ଧ
ମ. ବଟାରଫଳ, କ୍ଷୁଦ୍ରଫଣସ
ଗୁ. ଲକୁଚ
(ଜେଉଠ—ଅନ୍ୟରୂପ)
মাঁদার; ডেঁফল, ডেলো- মান্দার, মাদার; ডহুয়া
डाहो, बड़हल, धावा, बड़हर

ଆମ୍ବ ପନସ ପୁନ୍ନାଗ ଜେଉଟ,
ବେଲ ବରୁଣ କପିଥ ପ୍ରକଟ ।
ବିଶ୍ୱନାଥ. ବିଚିତ୍ର ରାମାୟଣ

[ ଦ୍ର—ଏହା ଉଦ୍ୟାନତରୁବିଶେଷ, ପତ୍ରମାନ ଡିମ୍ବିରପତ୍ର ଭଳି, କିନ୍ତୁ ଅପେକ୍ଷାକୃତ ଶ୍ରେଷ୍ଠ ଓ ଗୋଲାକାର; ଫଳମାନ ଅଳ୍ପ ଆକାରର ଓ ବନ୍ଧୁ ସ୍ଥାନରେ କୁଞ୍ଚିତ ଓ କୁଞ୍ଚିତ; ପାଚିଲେ ହଳଦିଆ ହୁଏ; ବର୍ଷା ସମୟରେ ଫଳେ । ଫଳ ଈଷତ୍ ଅମ୍ଳରସବିଶିଷ୍ଟ । ବୈଦ୍ୟଶାସ୍ତ୍ର ମତରେ ଅପକ୍ୱ ଫଳ ଉଷ୍ଣବୀର୍ଯ୍ୟ, ଗୁରୁ, ବିଷ୍ଟମ୍ଭକାରକ, ତ୍ରିଦୋଷଜନକ, ରକ୍ତକାରକ, ଶୁକ୍ରଘ୍ନ, ଅଗ୍ନିନାଶକ ଓ ଚକ୍ଷୁର ହିତକର । ପାଚିଲା ଫଳ ବାୟୁ, ପିତ୍ତ, କଫ, ଅଗ୍ନି ଓ ବିଷ୍ଟମ୍ଭକର, ରୁଚିକର ଓ ଶୁକ୍ରଜନକ । ]

**ଜେଏର୍‌ବାଆର୍**—ବୈଦେ. ବିଣ (ଫା. ଜେର୍‌ବାର୍)—ଜେର୍‌ବାର୍ (ଦେଖ)
Je-er-bā-ār — Jer-bār (See).
(ଜେଏର୍‌ବାର୍—ଅନ୍ୟରୂପ)

**ଜେଗା (ଇତ୍ୟାଦି)**—ଗ୍ରା. ବି—ଜାଗା ଇତ୍ୟାଦି (ଦେଖ)
Jegā (etc) — Jāgā etc (See).
ଯେବେ ସେ ଜେଗାରୁ ଫିଟିଲ ଗାଇ—ପ୍ରାଚୀ, ପରଚେଗୀତା ।

**ଜେଜି**—ଦେ. ବି. ପୁଂ ଓ ସ୍ତ୍ରୀ (ସଂ. ଜ୍ୟେଷ୍ଠ)—୧ । ପିତାମହ—
Jeji — 1. Grandfather.
୨ । ପିତାମହୀ—2. Grandmother.

**ଜେଜି ବାପା**—ଦେ. ବି. ପୁଂ (ସଂ.ଜ୍ୟେଷ୍ଠ,—ପିତାମହ; ଗୋସାଇଁ ବାପା—
Jeji bāpā — Grandfather.
বড় দাদা; ঠাকুর দাদা
दादा

**ଜେଜି ମା**—ଦେ. ବି. ସ୍ତ୍ରୀ—ପିତାମହୀ; ବୁଢ଼ୀମାଆ—
Jeji mā — Grandmother.
দীদীমা
दादी
(ଜେଜିମାଆ—ଅନ୍ୟରୂପ)

**ଜେଜୀ**—ଦେ. ବି. ସ୍ତ୍ରୀ—ପିତାମହୀ; ବୁଢ଼ୀମାଆ—
Jeji — Grandmother.
দীদীমা
दादी
× × × ଘର ଭିତରକୁ ଯାଇ ମାକୁ ଆଉ ଜେଜୀକୁ × × × ଖବର ଦେଲା ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇପ୍ଟ | ଉଅ | ଊ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଞ | ନ୍ |

ଜେଜେ—ଦେ ଅ—ଜେ (ଦେଖ)
Jeje Je (See)
ଦେ. ବି—୧ । ପିତାମହ—1. Grandfather.
୨ । ଦେବତା—2. Deity.
୩ । ମାନ୍ୟ ବ୍ୟକ୍ତି—3. Honoured, respected or revered person.
ଦେ. ବିଣ—ମାନାର୍ହ; ପୂଜାର୍ହ—
Honourable; respectable.

ଜେଜେ କରିବା—ଦେ. କ୍ରି—ନମସ୍କାର ବା ପ୍ରଣାମ କରିବା—
Jeje karibā To bow down; to salute.

ଜେଜେକାର—ଦେ. ବି. ( ସଂ. ଜୟଜୟକାର )—
Jeje-kāra ଧନ୍ୟବାଦାର୍ଥକ ସ୍ତୁତିଗାନ; ଜୟ ଜୟ ଧ୍ୱନି—
ଜୟଜୟକାର Songs of praise; hallelujahs.
जैजैकार

ଜେଜେ ନାନୀ—ଦେ. ବି. ସ୍ତ୍ରୀ—୧ । ଜ୍ୟେଷ୍ଠା ଭଗିନୀ—
Jeje nānī 1. Elder sister.
দীদী ୨ । ପିଉସୀ; ପିତାଙ୍କର ଭଉଣୀ—
जीजी 2. Aunt; sister of one's father

ଜେଜେ ବା—ପ୍ରାଦେ. (ବାଲେଶ୍ୱର) ବି—ଜେଜେ ବାପା—
Jeje bā Grandfather.

ଜେଜେ ବାପା—ଦେ. ବି—ଜେଜି ବାପା ( ଦେଖ )—
Jeje bāpā Jeji bāpā ( See )

ଜେଜେ ଭାଇ—ଦେ. ବି. ( ସଂ. ଜ୍ୟେଷ୍ଠ ଭ୍ରାତା )—
Jeje bhāi ଜ୍ୟେଷ୍ଠ ଭାଇ—
বড়দাদা The eldest brother.
बड़दादा

ଜେଜେ ଭାଇନା—ଦେ. ବି. ( ବ୍ରାହ୍ମଣଙ୍କ ବ୍ୟବହୃତ ଶବ୍ଦ )—
Jeje bhāinā ଜେଜେ ଭାଇ ( ଦେଖ )
ଜେଜେ ଭାଇନନା, ଜେଜେ ଭାଇନା } ଅନ୍ୟରୂପ ; Jejebhāi ( See )

ଜେଜେ ମା—ଦେ ବି—ଜେଜି ମା ( ଦେଖ )
Jeje mā Jeji mā ( See )
(ଜେଜେ ମାଆ—ଅନ୍ୟରୂପ)

ଜେଟି—ବୈଦେ ବି (ଇଂ. ଜେଟ୍ଟୀ)—ଜାହାଜ ବା ବୋଟରୁ କୂଳକୁ ମାଲ
Jeṭi ବା ମନୁଷ୍ୟ ଉତାରିବା ପାଇଁ କରାଯିବା ମଞ୍ଚା—Jetty.
জেটি
जेटी
(ଜେଟ୍ଟି—ଅନ୍ୟରୂପ)

ଜେଠପା—ଗ୍ରା. (ଇତର) ବି. (ସଂ.ଜ୍ୟେଷ୍ଠତାତ, ଶୂଦ୍ରମାନଙ୍କ ବ୍ୟବହୃତ)-
Jeṭhapā ଜ୍ୟେଷ୍ଠତାତ—Father's elder brother.
জেঠা

ଜେଠ ଶଶୁର—ଗ୍ରା. ବି. ପୁଂ ( ସଂ. ଜ୍ୟେଷ୍ଠ + ଶ୍ୱଶୁର )—
Jetha śaśura ସ୍ୱାମୀ ବା ସ୍ତ୍ରୀଙ୍କ ଜ୍ୟେଷ୍ଠତାତ—
জেঠশশুর Father-in-law's elder brother

ଜେଠ ଶାଶୁ—ଗ୍ରା. ବି. ସ୍ତ୍ରୀ. ( ସଂ ଜ୍ୟେଷ୍ଠ + ଶ୍ୱଶ୍ରୂ )—
Jetha śāśu ଜେଠେଇ ଶାଶୁ; ଶାଶୁଙ୍କର ବଡ଼ଜାଆ—
জেঠশাশু Elder sister-in-law of mother-in-law; the wife of the elder brother of one's father-in-law.

ଜେଠା—ଗ୍ରା ବି. (ସଂ. ଜ୍ୟେଷ୍ଠତାତ)—ପିତାଙ୍କ ଜ୍ୟେଷ୍ଠ ଭାଇ; ଜ୍ୟେଷ୍ଠ
Jeṭhā ତାତ; ଦଦେଇ; ଜ୍ୟେଷ୍ଠ ପିତୃବ୍ୟ—Father's
জেঠতুতা, জেঠা elder brother; elder paternal uncle.
ଦେ. ବିଣ. (ବି)—୧ । ଫାଙ୍କଲ—1. Braggart.
୨ । ପ୍ରଗଲ୍ଭ—2. Talkative.

ଜେଠାଇ—ଦେ. ବି ( ସଂ. ଜ୍ୟେଷ୍ଠ + ଆର୍ଯିକା )—
Jeṭhāi ଜ୍ୟେଷ୍ଠ ପିତୃବ୍ୟ ପତ୍ନୀ—Elder aunt; wife
জেঠাই of one's elder paternal uncle.
(ଜେଠେଇ—ଅନ୍ୟରୂପ)

ଜେଠାଇ ମା—ଦେ. ବି. ( ସଂ. ଜ୍ୟେଷ୍ଠା+ମାତା )—
Jeṭhāi mā ୧ । ଜେଠାଇ ( ଦେଖ )
ଜେଠାଇ ମାଆ, ଜେଠେଇ ମା } ଅନ୍ୟରୂପ 1. Jeṭhāi ( See )
୨ । ପିତାଙ୍କର ଜେଠାଇ—
2. Wife of the elder paternal uncle of one's father.

ଜେଠା ପୁଅ—ଗ୍ରା. ବି—ପିତାଙ୍କ ଜ୍ୟେଷ୍ଠ ଭ୍ରାତାଙ୍କ ପୁତ୍ର; ଦଦେଇଙ୍କ ପୁଅ—
Jeṭhā pua One's elder cousin-brother, elder
জেঠতুতো ভাই paternal uncle's son.

ଜେଠୀ—ଗ୍ରା. ବି. ( ସଂ. ଜ୍ୟେଷ୍ଠ )—
Jeṭhī ୧ । ବଣିଆମାନଙ୍କ ବଂଶଗତ ଉପାଧି ବିଶେଷ—
1. A family-title of goldsmiths.
୨ । ସ୍ତ୍ରୀଙ୍କ ବଡ଼ ଭଉଣୀ; ଦେଢ଼ଶାଶୁ—
2. Wife's elder sister.

ଜେଠେଇ—ଦେ. ବି. ସ୍ତ୍ରୀ—ଜେଠାଇ ( ଦେଖ )
Jeṭhei Jeṭhāi ( See )

ଜେଠେଇ ମା—ଦେ. ବି· ସ୍ତ୍ରୀ—ଜେଠାଇ ମା ( ଦେଖ )—
Jeṭhei mā Jeṭhāi mā ( See )
(ଜେଠେଇ ମାଆ—ଅନ୍ୟରୂପ)

ଜେଡ ଶାଶୁ—ଗ୍ରା. ବି. ସ୍ତ୍ରୀ—ଜେଠୀ ୨ ( ଦେଖ )
Jerda śāśu Jeṭhī 2 ( See )

ଜେଡ଼ଶୁର—ଗ୍ରା. ବି ପୁଂ. ( ସଂ. ଜ୍ୟେଷ୍ଠ+ଶ୍ୱଶୁର )—
Jerdaśura ସ୍ୱାମୀଙ୍କ ବଡ଼ ଭାଇ—The elder brother of
ভাসুর, জেঠ one's husband.
जेठ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଣ୍ଟା' ନ ପାଇଲେ 'ଅଣ୍ଟା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜେଡ଼ୁତା**—ଗ୍ରା. ବି. ( ସଂ. ଜ୍ୟେଷ୍ଠଭ୍ରାତ )—ଜେଠା ( ଦେଖ )
Jerḍutā — Jeṭhā ( See )

**ଜେଡ଼ୁତା ପୁଅ**—ଗ୍ରା. ବି—ଜେଠା ପୁଅ ( ଦେଖ )
Jerḍutā pua — Jeṭhā pua ( See )

**ଜେଡ଼ୁତାଶ୍ୱଶୁର**—ଗ୍ରା. ବି. ( ଜ୍ୟେଷ୍ଠ ଓ ଶ୍ୱଶୁର )—
Jerḍutāśura — ଶ୍ୱଶୁରଙ୍କ ବଡ଼ ଭାଇ—
Elder brother of one's father-in-law

**ଜେଡ଼ୁଶୁର**—ଗ୍ରା. ବି—ଜେଡ଼ଶୁର ( ଦେଖ )
Jerḍuśura — Jerḍaśura ( See )

**ଜେଣ୍ଡ୍ ଆଭେସ୍ତା**—ବୈଦେ. ବି. ( ପ୍ରାଚୀନ ଇରାନ୍ ଦେଶୀୟ ଭାଷା)—
Jenḍ ābhestā — ପାରସୀମାନଙ୍କ ଧର୍ମଗ୍ରନ୍ଥ—The Scripture of the Parsees written in the ancient Eranian language.
জেন্দাভেস্তা
जैन्दाबेस्ता
(ଜେଣ୍ଡାଭେଷ୍ଟା, ଜେଣ୍ଡାଭେସ୍ତା, ଜେନ୍ଦାଭେସ୍ତା—ଅନ୍ୟରୂପ)

**ଜେତବ୍ୟ**—ସଂ. ବିଣ. ( ଜି ଧାତୁ=ଜୟ କରିବା+କର୍ମ. ତବ୍ୟ )—
Jetabya — ଜେୟ; ଜୟଯୋଗ୍ୟ—To be conquered; conquerable; vincible.

**ଜେତା**—ସଂ. ବିଣ. ପୁଂ. (ଜି ଧାତୁ=ଜୟ କରିବା+କର୍ତ୍ତୃ ତୃ. ୧ମା. ୧ବ)-
Jetā — ୧ । ଯେ ଜୟ କରିଥାଏ—1. Conquering.
୨ । ଜୟ ଯୁକ୍ତ; ଜୟଶୀଳ—2. Victorious.
ସଂ. ବି—୧ । ବିଷ୍ଣୁ ( ବୃ. ଶବ୍ଦସାଗର )—
1. A name of Bishṇu.
୨ । ଜୟଲାଭ କରିଥିବା ବ୍ୟକ୍ତି—
2. Conqueror; victor.

**ଜେନରଲ୍**—ବୈଦେ. ବି. (ଇଂ. ଜେନେରାଲ୍)—ପଲ୍ଟଣଙ୍କ ସେନାପତି—
Jenaral — Commander; general of an army.
জেনেরাল
जनरल
ବିଣ—ସାଧାରଣ—General.

**ଜେନରଲ୍ ନମ୍ବର୍**—ବୈଦେ. ବି. ( ଇଂ. ଜେନେରାଲ୍=ସାଧାରଣ+ନମ୍ବର୍=ସଂଖ୍ୟା )—
Jeneral nambar
ଲାଖରାଜ ବାହେଲ ସମ୍ପତ୍ତିର ସାଧାରଣ ନମ୍ବର—
The general number given to every revenue-free estate in Orissa.
[ ଦ୍ର—ଇଂରାଜମାନେ ଓଡ଼ିଶା ଅଧିକାର କରି ପ୍ରଥମ ରାଜସ୍ୱ ବନ୍ଦୋବସ୍ତ କରିବା ସମ୍ପର୍କରେ ଯେଉଁ ବ୍ୟକ୍ତିମାନେ ତାଙ୍କ ଦଖଲି ଜମିକୁ ରାଜସ୍ୱ ନ ଦେଇ ଦଖଲ କରିବାର ଦାବି କଲେ ଉକ୍ତ ଜମିମାନଙ୍କର ୧୮୪୨-୪୭ ସାଲରେ ଗୋଟିଏ ତାଲିକା କରି ଉକ୍ତ ଦାବିଦାର ବ୍ୟକ୍ତିମାନଙ୍କୁ ସେମାନଙ୍କର ସନନ୍ଦ ତଲବ କଲେ ଓ ଏପରି ଜମିର ତାଲିକା କରି ପ୍ରତ୍ୟେକ ଜମିର ଗୋଟିଏ ଲେଖାଏଁ କ୍ରମସଂଖ୍ୟା ଦେଇ ତହିଁ ପାଇଁ ଗୋଟିଏ ଗୋଟିଏ ମକଦ୍ଦମା ଦାଏର କଲେ । ସେହି ମକଦ୍ଦମାର କ୍ରମସଂଖ୍ୟା ( ଜେନେରାଲ୍ ନମ୍ବର୍ ) ଅନୁସାରେ ସନନ୍ଦମାନ ପରୀକ୍ଷା କରି ଓ ଦାବିଦାରମାନଙ୍କଠାରୁ ପ୍ରମାଣ ନେଇ ଯେଉଁ ସମ୍ପତ୍ତିମାନଙ୍କ ସମ୍ବନ୍ଧେ ସନ୍ତୋଷଜନକ ପ୍ରମାଣ ପାଇଲେ ସେମାନଙ୍କୁ ଲାଖେରାଜ ବାହେଲ ( Confirmed Lakheraj ) କଲେ ଓ ଉକ୍ତ ମକଦ୍ଦମାର ନମ୍ବର ଅନୁସାରେ ତଦବଧି ଉକ୍ତ ସମ୍ପତ୍ତିମାନ ଚିହ୍ନିତ ହୋଇ ଆସୁଅଛି । ଯେଉଁ ଜମିମାନଙ୍କ ସମ୍ବନ୍ଧେ ସନ୍ତୋଷଜନକ ପ୍ରମାଣ ନ ପାଇଲେ ସେମାନ ବାଜ୍ୟାପ୍ତ ( Resumed lakheraj ) କଲେ ଓ ତହିଁରେ ଖଜଣା ଧାର୍ଯ୍ୟ କରି ସେଥିରେ ଗୋଟିଏ ଲେଖାଏଁ ବିଶିଷ୍ଟ ନମ୍ବର ( Special number ) ଇସ୍ପିସଲ ନମ୍ବର ଦେଲେ । ]

**ଜେନା**—ଦେ. ବି. (ସଂ. ଜି ଧାତୁରୁ )—୧ । ରାଜପୁତ୍ର—
Jenā — 1. Prince.
ଏହିରୂପେ ଭୂମିର ଦୁଃଶାସନ ଜେନା—କୃଷ୍ଣସିଂହ. ମହାଭାରତ. ବନ ।
୨ । କ୍ଷତ୍ରିୟମାନଙ୍କ ରକ୍ଷିତା ସ୍ତ୍ରୀର ଗର୍ଭଜାତ ସନ୍ତାନମାନଙ୍କ ଉପାଧି—2. The title of illegitimate sons of Kshatriyas.
୩ । ଶୂଦ୍ର ଓ ଖଣ୍ଡାଏତମାନଙ୍କର ଉପାଧି—
3. A family-title of Khanḍāetas and Śūdras.
[ ଦ୍ର—ମେଦିନୀପୁରରେ ଏହି ଉପାଧିଧାରୀ ଓଡ଼ିଆମାନେ ଏ ଉପାଧିକୁ 'ଜାନା' ଆକାରରେ ପରିଣତ କରିଅଛନ୍ତି । ]
୪ । ପାଣମାନଙ୍କର ବଂଶୋପାଧି—
4 Family-title of Pāṇas (an untouchable caste).

**ଜେନାବଳୀ**—ଦେ. ବି. ସ୍ତ୍ରୀ—ଗ୍ରାମଦେବୀବିଶେଷ—
Jenābaḷi — Name of a village-Goddess.

**ଜେନାମଣି**—ଦେ. ବି—୧ । ରାଜପୁତ୍ର—
Jenāmaṇi — 1. A prince.
୨ । ଯୁବରାଜ—2. The heir-apparent to the throne
ଅରିକୁଳଙ୍କୁ ଦୁଃଶାସନ ଜେନାମଣି
ଭୂମିରେ ଅଗୁଳ ବନ୍ଧିଲେ ଶରଶ୍ରେଣୀ—କୃଷ୍ଣସିଂହ, ମହାଭାରତ, ଭୀଷ୍ମ ।

**ଜେପ୍‌ଲିନ୍**—ବୈଦେ. ବି. ( ଜର୍ମାନ୍ ନାମ ଜେପେଲିନ୍ )—ବାୟୁ ଅପେକ୍ଷା ହାଲୁକା ଗ୍ୟାସଦ୍ୱାରା ପୂର୍ଣ୍ଣ ଗୋଟିଏ ବଡ଼ବମ୍ବାରେ ଝୁଲି ଯାଇ ପରିଚାଳିତ ଏକପ୍ରକାର ଉଡ଼ାଜାହାଜ—Zeppelin; air-ship
Jep–lin
জেপেলীন
जेप्लीन
( ଜେପେଲିନ୍—ଅନ୍ୟରୂପ ) [ ଦ୍ର—ଜର୍ମାନଦେଶୀ କାଉଣ୍ଟ୍ ଜେପେଲିନ୍ ନାମକ ଜଣେ ବ୍ୟକ୍ତି ଏହାର ଆବିଷ୍କାରକ ଥିଲେ । ସିଗା ଆକାରର ଗୋଟିଏ ବଡ଼ ବମ୍ବା ମଧ୍ୟରେ ବାୟୁ ଅପେକ୍ଷା ହାଲୁକା ବାଷ୍ପ ( ଯଥା, ହାଇଡ୍ରୋଜେନ୍ ) ପୁରାଇ ତହିଁ ତଳେ ଆରୋହୀଙ୍କୁ ବହନ କରିବା ଯାନ ବନ୍ଧା ଯାଏ ଓ ବାୟୁ ଅପେକ୍ଷା ଏହା ହାଲୁକା ଥିବାରୁ ଶୂନ୍ୟକୁ ଉଠେ ଏବଂ ମଟର ଯନ୍ତ୍ରଦ୍ୱାରା ଚାଳିତ ହୁଏ । ସବୁ ପ୍ରକାର ଆକାଶଯାନ ଅପେକ୍ଷା ଏହା ବଡ଼ । ]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ˙ | ଇ | ଊ | ର୍‌,ର୍ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଁ | ଊଁ | ଞ |
| ୵ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଥ | ଢ଼ | ନ୍‌ |

ଜେବ୍—ବୈଦେ. ବି. (ଆ. ଜେବ୍ ) ପ୍ରାଦେ. (ସମ୍ବଲପୁର ଓ ସିଂହଭୂମ)—
Jeb କୁର୍ତ୍ତାର ପକେଟ୍—Pocket of a coat
ଜେବ
जेब

ଜେବ୍‌ଘଡ଼ି—ବୈଦେ. ବି—ପକେଟରେ ରଖିବା ଛୋଟ ଘଡ଼ି—
Jeb-ghardi Watch; pocket-watch.
ଜେବଘଡ଼ି
जेबघड़ी

ଜେ'ବା—ପ୍ରାଦେ. ( ବାଲେଶ୍ୱର ) ବି. ପୁଂ.—ଜେଜେବାପା—
Je'bā Grandfather.

ଜେବ୍ରା—ବୈଦେ. ବି. ( ଇଂ. )—ଜିବ୍ରା ( ଦେଖ )
Jebrā Jibrā ( See )

ଜେମନ—ସଂ. ବି. ( ଜିମ୍ ଧାତୁ=ଭକ୍ଷଣ କରିବା+ଭାବ. ଅନ )—
Jemana ଭୋଜନ; ଖାଇବା—Eating.

ଜେମନାଳୟ—ସଂ. ବି. ( ଜେମନ+ଆଳୟ;୬ଷ୍ଠୀ ତତ୍ )—ଖାଦ୍ୟାଗାର;
Jemanālaya ହୋଟେଲ୍—Hotel; restaurant; dining room.

ଜେମା—ଦେ. ବି. ସ୍ତ୍ରୀ. ( ସଂ. ଜାମା=କନ୍ୟା )—୧ । ରାଜପୁତ୍ରୀ—
Jemā 1 Princess; a king's daughter.
ଜୟ କାଞ୍ଚୀଜେମା ବିଶ୍ୱମନୋରମା—ରାଧାନାଥ, ଚିଲିକା ।
୨ । ସ୍ତ୍ରୀମାନଙ୍କ ନାମ—
2. A name given to females.

ଜେ'ମା—ପ୍ରାଦେ. ( ବାଲେଶ୍ୱର ) ବି ସ୍ତ୍ରୀ—ଜେଜେ ମାଆ—
Je'mā Grandmother.

ଜେମା ଦେଈ—ଦେ. ବି. ସ୍ତ୍ରୀ—ଜେମା ( ଦେଖ )
Jemā dei Jemā ( See
ବୋଲଇ ଶୁଣିମା ଶଶିସେଣା ଜେମାଦେଈ—ପ୍ରାଚୀ. ପ୍ରଭାପ, ଶଶିସେଣା ।

ଜେମାମଣି—ଦେ. ବି—ରାଜାଙ୍କ କନ୍ୟାଙ୍କ ପ୍ରତି ସ୍ନେହ ସମ୍ବୋଧନ—
Jemā-mani Name by which a princess is fondly addressed.

ଜେମି—ଦେ. ବି—'ଜେମା'ର ଗେହ୍ଲା ଡାକ ନାମ—A name by
Jemi which 'Jemā' is fondly called.

ଜେମିଖାଡ଼ି—ଦେ. ବି—ଜିମିଖାଡ଼ି ( ଦେଖ )
Jemi-khārdi Jimi-khārdi ( See )

ଜେୟ—ସଂ. ବିଣ. ( ଜି ଧାତୁ=ଜୟ କରିବା+କର୍ମ. ଯ )—ଜୟ
Jeya କରିବାର ଯୋଗ୍ୟ—Conquerable; fit to be conquered.

ଜେର୍—ବୈଦେ.ବି ( ଫା. ଜେର୍=ନିମ୍ନ; ଏହି ଅର୍ଥରୁ, ନିମ୍ନରେ ଲେଖା
Jer ଥିବା ହିସାବ )—ଏହି ପୃଷ୍ଠା ବା ସ୍ତମ୍ଭର ଶେଷରେ ସମଷ୍ଟି
ଜେର କରାଯାଇ ଲେଖା ଥିବା ହିସାବ—Account totalled
जेर and written at the foot of a page or column.

ଜେର୍‌କଡ଼ି—ବୈଦେ. ବି. ( ଫା )—ଘୋଡ଼ାର ଲଗାମର ଓଠ ତଳ
Jer-kardi ଅଂଶରୁ ପେଟ ତଳକୁ ଯାଇଥିବା ଚର୍ମବନ୍ଧ (ଜେର୍‌ବନ୍ଦ୍)
ଜେବକଡ଼ି ରେ ସଲଗ୍ନ ମୁଦ୍ରିଥ—A ring in a strip of
जेरकड़ी leather joining the horse's face with the breast-plate.

ଜେର୍ ଗଡ଼ା(ଡ଼େ)ଇବା—ଦେ. କ୍ରି—ହିସାବ ଖାତାର ପୂର୍ବପୃଷ୍ଠାର
Jer gardā(rde)ibā ସବାତଳରେ ମୋଟ ହୋଇଥିବା ସଂଖ୍ୟାକୁ
ଜେର ଗଡ଼ାନ ଅପର ପୃଷ୍ଠାର ଅଗ୍ରକୁ ଆଣି ଲେଖିବା—To carry
जेर गड़ाना over an account or figure from the foot of the last page to the top of the next page.

ଜେର୍ ଟାଣିବା—ଦେ. କ୍ରି—ଜେର୍ ଗଡ଼ାଇବା ( ଦେଖ )
Jer tānibā Jer gardaibā ( See )
ଜେର ଟାନା

ଜେର୍‌ବନ୍ଦ୍—ବୈଦେ. ବି ( ଫା )—ଘୋଡ଼ା ମୁହଁରୁ ପେଟ ତଳକୁ ଯାଇ
Jer-band ଥିବା ଚର୍ମବନ୍ଧ—A strip of leather joining
ଜେରବନ୍ଦ the horses face to the breast-plate.
जेरबन्द

ଜେର୍‌ବାର୍—ବୈଦେ. ବିଣ. (ଫା. ଜେର୍‌ବାର୍)—୧ । ଭାରାକ୍ରାନ୍ତ—
Jer-bār 1. Loaded; burdened.
ଜେରବାବ ୨ । ନିଃଶେଷିତ—2. Exhausted.
जेरबार ୩ । ଋଣଭାରଗ୍ରସ୍ତ—3. Indebted.
(ଜେର୍‌ବାରି—ବି) ୪ । ବୃଥା ବ୍ୟୟ ବା ଅପବ୍ୟୟଗ୍ରସ୍ତ—
4. Obliged to waste money; put to waste or squandering.
୫ । ଜର୍ଜରିତ; ଆକ୍ରାନ୍ତ; ବିପନ୍ନ—5. Overwhelmed.
୬ । ହଇରାଣ—6. Troubled; afflicted.
୭ । କ୍ଷତିଗ୍ରସ୍ତ—7. Put to loss or damage.
୮ । ବିପନ୍ନ; ବିପଦ୍‌ଗ୍ରସ୍ତ—8. Endangered.
[ ଦ୍ର—ବାଧ୍ୟ ହୋଇ ଅପବ୍ୟୟଗ୍ରସ୍ତ ହେବା ଅର୍ଥରେ ଏ ଶବ୍ଦ ବ୍ୟବହୃତ ହୁଏ । ]
ବି (ଫା. ଜେର୍‌ବାରି)—୧ । ଅପବ୍ୟୟ—1. Waste.
୨ । ବୃଥା ବ୍ୟୟ—2. Useless expense.
୩ । କ୍ଷତି—3. Loss.

ଜେର୍‌ବାର୍ କରା(ରେ)ଇବା—ଦେ. କ୍ରି—ଅନ୍ୟବ୍ୟକ୍ତିକୁ ଅପବ୍ୟୟରେ
Jer-bār karā(re)ibā ପକାଇବା—To cause waste of
ଜେରବାର କରାନ a person's money.
जेरबार करना

ଜେର୍‌ବାର୍ କରିବା—ଦେ.କ୍ରି—ଅନ୍ୟ ବ୍ୟକ୍ତିକୁ ଅପବ୍ୟୟରେ ପକାଇବା—
Jer-bār karibā To cause waste of a person's money; to put a person to improper expense.

ସାଧାରଣ ଲୋକେ ଅପର ପୃଷ୍ଠାରେ ସଚିତ୍ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ଅପରସ୍ଥ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

ଜେର୍‌ବାର୍‌ରେ ପକା(କେ)ଇବା—ଦେ. କ୍ରି—ଅନ୍ୟ ବ୍ୟକ୍ତିକୁ ଅପବ୍ୟୟରେ ପକାଇବା—To cause waste of a person's money.
Jer-bār-re pakā(ke)ibā
জেরবাবে ফেলা
जेरबारमें फेँकना

ଜେର୍‌ବାର୍ ହେବା—ଦେ. କ୍ରି—ବାଧ୍ୟ ହୋଇ ଅପବ୍ୟୟଗ୍ରସ୍ତ ହେବା—To be obliged to waste money.
Jer-bār hebā
জেরবার হওয়া
जेरबार होना

ଜେର୍‌ବାରି—ବୈଦେ. ବିଣ—ଯେ ଅନ୍ୟ ବ୍ୟକ୍ତିକୁ ଅପବ୍ୟୟଗ୍ରସ୍ତ କରାଏ—Causing another person to waste money.
Jer-bāri
জেরবারী
जेरबारी ବୈଦେ. ବି—ବାଧ୍ୟ ହୋଇ ଅପବ୍ୟୟ କରିବା ଅବସ୍ଥା—The state of being obliged to incur loss and expense.

ଜେର୍‌ବାରିଆ—ବୈଦେ. ବିଣ—ଜେର୍‌ବାରି ( ଦେଖ ) Jer-bāri ( See )
Jer-bāriā

ଜେରା—ବୈଦେ. ବି. ( ଅ. ଜିରହ୍ )—ବିଚାରାଳୟରେ ଉପସ୍ଥିତ ସାକ୍ଷୀଙ୍କୁ ଅପର ପକ୍ଷର କୂଟପ୍ରଶ୍ନ ଦ୍ୱାରା କରାଯିବା ପରୀକ୍ଷା—Cross-examination.
Jerā
জেরা
जिरह, जिरा

ଗୋଟାଏ ଗୋଟାଏ କଥା ଲୁଗୁଥିଲା,
ହେଲେ, ବୁଢ଼ୀ ଜେରାରେ ପଡ଼ିଗଲା । ଫକୀରମୋହନ, ଗଳ୍ପସ୍ୱଳ୍ପ ।

ଜେରା କରିବା—ଦେ. କ୍ରି—ଅପର ପକ୍ଷରେ ସାକ୍ଷୀଙ୍କୁ କୂଟପ୍ରଶ୍ନ କରିବା—To cross-examine or cross-question a witness in court.
Jerā karibā
জেরা করা
जिरह करना

ଜେରାରେ ପଡ଼ିଯିବା—ଦେ. କ୍ରି—ବିପକ୍ଷ ପକ୍ଷର କୂଟପ୍ରଶ୍ନର ଉତ୍ତର ଦେବାକୁ ଯାଇ ଘାବରେଇ ଯିବା—To be cornered in cross-examination.
Jerāre paṛi-jibā
জেরায় পড়েযাওয়া
जिरहमें घबराना

ଜେରୁଜାଲମ୍—ବୈଦେ. ବି. (ହେବ୍ରୁ. ନାମ. ଜେରୁସାଲେମ୍)—ଯିଶୁଖ୍ରୀଷ୍ଟ ଯେଉଁ ନଗରରେ ଜନ୍ମିଥିଲେ; ଅସିଆ ମହାଦେଶସ୍ଥ ଭୂଖଣ୍ଡର ଗୋଟିଏ ନଗର; ଯୀଶୁଖ୍ରୀଷ୍ଟଙ୍କ ଜନ୍ମସ୍ଥାନ—Jerusalem; the birth-place of Jesus Christ.
Jerujālam
জেরুসালম
जेरुसालम
ଜେରଜାଲେମ୍ } ଅନ୍ୟରୂପ
ଜେରୁସାଲେମ୍ }

ଜେଲ—ବୈଦେ. ବି. (ଇଂ)—୧ । କାରାଗାର—1. Prison.
Jel
জেল ୨ । କଏଦ ଦଣ୍ଡ—2. Imprisonment.
जेल ୩ । କଏଦ ଦଣ୍ଡର ଆଜ୍ଞା—3. Order of imprisonment.

ଜେଲ୍ ୱାର୍ଡର୍—ବୈଦେ. ବି. ( ଇଂ. ଜେଲ୍+ୱାର୍ଡର୍ )—ଜେଲ୍‌ଖାନାରେ କଇଦଙ୍କୁ ଜଗିବା ସିପାହୀ—Jail-warder.
Jel uārdar
জেল ওয়ার্ডর
जेल उवार्डर
ଜେଲ୍‌ଉଆର୍ଡର୍ } ଅନ୍ୟରୂପ
ଜେଲ୍‌ୱାଡ଼ର୍ }

ଜେଲ୍ ଖଟିବା—ଦେ. କ୍ରି—କାରାଦଣ୍ଡ ଭୋଗ କରିବା—To undergo a sentence of imprisonment.
Jel khaṭibā
জেল খাটা
जेल काटना
ଜେଲ୍ ଖାଟିବା } ଅନ୍ୟରୂପ
ଜେଲ୍ ଭୋଗିବା }

ଜେଲ୍ ଖଲାସ୍—ବୈଦେ. ବି. ( ଇଂ. ଜେଲ୍; ହି. ଖଲାସ୍=ମୁକ୍ତ )—କାରାମୁକ୍ତି—Release from imprisonment.
Jel khalās
জেল খলাস ବୈଦେ. ବିଣ—କାରାମୁକ୍ତ—Released from imprisonment.
जेल खलासि

ଜେଲ ଖଲସି—ବୈଦେ. ବି ଓ ବିଣ—ଜେଲ୍ ଖଲାସ୍ ( ଦେଖ ) Jel khalās ( See )
Jel khalāsi

ଜେଲଖାନା—ବୈଦେ. ବି. (ଇଂ. ଜେଲ୍+ଫା. ଖାନା )—ଜେଲ୍ ( ଦେଖ ) Jel ( See )
Jel-khānā
জেলখানা
जेलखाना

ଜେଲ୍ ଦଣ୍ଡ—ଦେ. ବି—କାରାଦଣ୍ଡ; କଏଦଦଣ୍ଡ; କାରାବାସ ଦଣ୍ଡ—The punishment of imprisonment.
Jel daṇḍa
জেলদণ্ড
जेल

ଜେଲ୍ ଦାରୋଗା—ବୈଦେ. ବି. ( ଇଂ. ଜେଲ୍+ଫା. ଦରୋଗା )—ଜେଲ୍‌ଖାନାରେ କଏଦୀମାନଙ୍କ ତତ୍ତ୍ୱାବଧାରକ କର୍ମଚାରୀ—Jail-superintendent.
Jel dārogā
জেল দারোগা
जल दरोगा
(ଜେଲ୍‌ଦାରୁଗା—ଅନ୍ୟରୂପ)

ଜେଲ୍ ଦେବା—ଦେ. କ୍ରି—୧ । ଅସାମୀଙ୍କୁ କାରାଦଣ୍ଡ ଭୋଗ କରିବାକୁ ପଠାଇବା—1 To send a person to jail.
Jel debā
জেল দেওয়া ୨ । କାରାଦଣ୍ଡ ଆଦେଶ ଦେବା—2. To pass a sentence of imprisonment.
जेल देना

ଜେଲ୍ ପାଇବା—ଦେ. କ୍ରି—୧ । କାରାଦଣ୍ଡରେ ଦଣ୍ଡିତ ହେବା—1. To be sentenced to imprisonment.
Jel pāibā
জেল পাওয়া ୨ । କାରାଦଣ୍ଡ ଭୋଗ କରିବା—
जेल पाना 2. To undergo a sentence of imprisonment.
(ଜେଲଯିବା—ଅନ୍ୟରୂପ)

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ଼ | ଭ୍ରଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ଁ୍ୟ | ଇଅ | ୭ | ନ୍ତ |

ଜେଲ ବାବୁ—ବୈଦେ. ବ. (ଇଂ. ଜେଲ୍+ବ. ବାବୁ)—
Jel bābu ଜେଲ୍‌ଖାନାର ପ୍ରଧାନ କର୍ମଚାରୀ ବା ଅଧ୍ୟକ୍ଷ—
জেল বাবু Jailer.
**जेलका अफसर**

ଜେଲ ସୁପରିଣ୍ଟେଣ୍ଡେଣ୍ଟ—ବୈଦେ. ବ. (ଇଂ)—ଜେଲ୍‌ଖାନାର ପ୍ରଧାନ
Jel suparintendent ତତ୍ତ୍ୱାବଧାରକ—Jail superintendent.
জেল সুপরিণ্টেণ্ডেণ্ট
**जेल सुपरिटेंडट**

ଜେଲ୍ ହୁକୁମ୍—ବୈଦେ. ବ. (ଇଂ. ଜେଲ୍+ଫା. ହୁକ୍‌ମ୍)—
Jel hukum କଇଦ ଦଣ୍ଡ ପାଇବାର ଆଦେଶ ବା ସଜା—
জেল হুকুম A sentence or conviction of imprisonment.
**जेल हुक्म**

ଜେଲର୍—ବୈଦେ. ବ. (ଇଂ)—ଜେଲଖାନାର ପ୍ରଧାନ କର୍ମଚାରୀ ବା
Jelar ଅଧ୍ୟକ୍ଷ—Jailer
জেলার
**जेलर**

ଜେଲାଟିନ୍—ବୈଦେ. ବ. (ଇଂ ଜେଲାଟିନ୍)—ଜୀବଜନ୍ତୁ ଓ ବିଶେଷତଃ
Jelātin ମାଛଙ୍କ ହାଡ଼, କାତ ଓ ଚମଡ଼ାକୁ ସିଝାଇ ପ୍ରସ୍ତୁତ କରବା
জেলাটিন ଏକପ୍ରକାର ସ୍ୱଚ୍ଛ ଓ ଚକଚକିଆ ଅଠା—
**जेलाटिन** Gelatin.
(ଜେଲେଟିନ୍—ଅନ୍ୟରୂପ)

[ଦ୍ର—ଏହାକୁ ପାଣିରେ ବତୁରାଇ ଉଷୁମ କଲେ ଏହା କାଉଆ ଓ ଅଠାଳିଆ ହୁଏ, ଏବଂ ଶୁଖି ଗଲେ ଟାଣୁଆ ହୁଏ । ଏଥିରେ ନାନା ଖେଳନା ଓ ଛଡ଼ା ଆଦର ବେଶ ତିଆରି ହୁଏ ଓ ଏହା ଫଟୋଗ୍ରାଫ୍ କାର୍ଯ୍ୟରେ ବ୍ୟବହୃତ ହୁଏ । ]

ଜେଷ୍ଠ (ଇତ୍ୟାଦ)—ଦେ. ବଣ.—(ସଂ. ଜ୍ୟେଷ୍ଠ)—ଜ୍ୟେଷ୍ଠ ଇତ୍ୟାଦ
Jeshta (etc) (ଦେଖ) Jyeshṭha etc (See)
ଜେଷ୍ଟ ଦେ. ବ.—(ସଂ. ଜୈ୍ୟଷ୍ଠ)—ଜୈ୍ୟଷ୍ଠ (ଦେଖ)
**जेष्ठ** Jyaishṭha (See)
(ଜେଷ୍ଟ—ଅନ୍ୟରୂପ)

ଜେ ହୁକୁମ୍—ଦେ. ଅବ୍ୟୟ ଓ ବଣ.—ଜୋ ହୁକୁମ୍ (ଦେଖ)
Je hukum Jo hukum (See)

ଜୈଗିଷବ୍ୟ—ସଂ. ବ.—(ନାମ) ମହାଭାରତୋକ୍ତ ଯୋଗଶାସ୍ତ୍ରବେତ୍ତା
Jaigishabya ଅଭୂତକର୍ମା ଋଷିବିଶେଷ—
Name of a sage

[ଦ୍ର—ଅସିତ ଦେବଳ ନାମକ ଜଣେ ଋଷି ଆଦତ୍ୟ ତୀର୍ଥରେ ବାସ କରୁଥିଲେ । ସେଠାରେ ଏ ଋଷି ଆସି ପଦଃଶ କେତେ ଦନ ଯୋଗସାଧନ କରବାପରେ ସିଦ୍ଧି ଲାଭ କଲେ । "ଏହାଙ୍କ ଯୋଗସିଦ୍ଧିର ମାହାତ୍ମ୍ୟ ପରୀକ୍ଷାଦ୍ୱାରା ଦେଖି ଅସିତ ଦେବଳ ଏହାଙ୍କ ଶିଷ୍ୟତ୍ୱ ଗ୍ରହଣ କର ଯୋଗସିଦ୍ଧି ଲାଭ କଲେ । (ବ୍ର. ଶବ୍ଦସାଗର ।]

ଜୈତ୍ର—ସଂ. ବଣ. ପୁ. (ଜି ଧାତୁ=ଜୟ କରବା+ଶୀଳାର୍ଥେ ତ୍ର)—
Jaitra ୧ । ଜୟଶୀଳ—1. Victorious; triumphant.
(ଜୈତ୍ରୀ—ସ୍ତ୍ରୀ) ୨ । ଜୟକାରକ—Securing or bringing about victory.
ସଂ. ବ.—୧ । ପାରଦ—1. Mercury.
୨ । ଔଷଧ—2. Medicine; drug.
୩ । ରଥବଶେଷ—3. A kind of car.

ଜୈତ୍ରମଣି—ସଂ. ବ. (କର୍ମଧା; ଜୈତ୍ର+ମଣି)—ଜୟକ୍ଷମ ମଣି;
Jaitra-maṇi ଜୟକାରକ ମଣି; ଯେଉଁ ମଣିକୁ ପିନ୍ଧବା ଲୋକ କଷ୍ଟେ ଶତ୍ରୁକୁ ଜୟ କରେ—A gem said to possess the quality of securing victory to the wearer.

ଶତ୍ରୁ ଦର୍ପହାସ୍ଥ ଏହୁ ଜୈତ୍ରମଣି,
ଶିରୋମଣିରୂପେ ପିନ୍ଧିଲୁ ଜୁମଣି । ରଘୁନାଥ· କଳାବେଣ୍ଣସ ।

ଜୈତ୍ରୀ—ସଂ. ବ. ସ୍ତ୍ରୀ. (ଜୈତ୍ର+ସ୍ତ୍ରୀ)—ଜୟନ୍ତୀ (ବୃକ୍ଷ) (ଦେଖ)
Jaitri Jayanti (tree) (See)

ଜୈନ—ସଂ. ବି. (ଜିନ+ଜ୍ଞାନାର୍ଥେ ଅ)—୧ । ଜିନ ମତାବଲମ୍ବୀ ବ୍ୟକ୍ତି
Jaina 1. A Jaina; a person professing the Jaina faith (a faith akin to Buddhism.)
**जौन**
**जैन**
୨ । ଜିନଙ୍କ ପ୍ରବର୍ତ୍ତିତ ଧର୍ମ—2. A religion or faith promulgated by saint Jina.
ସଂ. ବଣ—ଜିନ ମୁନିଙ୍କ ସମ୍ବନ୍ଧୀୟ—
Relating to sage Jina.

ଜୈନ ଧର୍ମ—ସଂ. ବ.—ଜିନ ବା ଋଷଭଙ୍କ କର୍ତ୍ତୃକ ପ୍ରବର୍ତ୍ତିତ ଧର୍ମ—
Jaina dharma The Jaina religion (akin to Buddhism.)

[ଦ୍ର—ଏହା ବୌଦ୍ଧଧର୍ମର ରୂପାନ୍ତର ବା ସମ୍ପ୍ରଦାୟବିଶେଷ ବୋଲି କେହି କେହି ଅନୁମାନ କରନ୍ତି । ଜୈନମାନେ ୩ ଶାଖାରେ ବିଭକ୍ତ; ଯଥା—ଦିଗମ୍ବର, ଶ୍ୱେତାମ୍ବର ଓ ସ୍ଥାନକବାସୀ । ଜୈନ ଧର୍ମଗ୍ରନ୍ଥ କଳ୍ପସୂତ୍ର ଓ ଆଗମ ଏହି ଦୁଇ ପ୍ରଧାନ ଭାଗରେ ବିଭକ୍ତ । ଏମାନଙ୍କର ପୂଜ୍ୟ ଦେବତା ତିଆ ଉଲଗ୍ନ ମୂର୍ତ୍ତି । ଅହିଂସା ଓ ଜୀବରେ ଦୟା ଏ ଧର୍ମର ପ୍ରଧାନ ଶିକ୍ଷା; ଜୈନଧର୍ମ ବହୁ ପ୍ରାଚୀନ ଧର୍ମ ଥିବାର ଅନୁମିତ ହୁଏ । ବୁଦ୍ଧଦେବଙ୍କ ଜନ୍ମ ପୂର୍ବରୁ ଯେଉଁ ପର ୨୪ ଟି ବୁଦ୍ଧାବତାର ହୋଇଥିଲେ ସେହି ଜୈନମାନଙ୍କ ଅନ୍ତିମ ତୀର୍ଥଙ୍କର ମହାବୀରଙ୍କ (ଯେ ଖ୍ରୀ. ପୂ. ୫୨୭ ରେ ନିର୍ବାଣପ୍ରାପ୍ତ ହୋଇଥିଲେ, ତାଙ୍କ) ପୂର୍ବରୁ ୨୪ଜଣ ତୀର୍ଥଙ୍କର ପୃଥିବୀରେ ଅବତୀର୍ଣ୍ଣ ହୋଇଥିଲେ । ଜୈନମାନେ ସେମାନଙ୍କ ଧର୍ମଶାସ୍ତ୍ରକୁ ଆଗମ ଓ ପୁରାଣ ଆଦରେ ବିଭକ୍ତ କରଅଛନ୍ତି । ଉଦୟଗିରି ଓ ଜୁନାଗଡ଼ର ଶିଳାଲିପିମାନଙ୍କରୁ ପାଶ୍ଚାତ୍ୟ ପଣ୍ଡିତମାନେ ଅନୁମାନ କରନ୍ତି ଯେ ବୌଦ୍ଧଧର୍ମ ପୂର୍ବରୁ ଜୈନଧର୍ମ ଭାରତବର୍ଷରେ ଚଳୁଥିଲା । ଜୈନମାନେ ଈଶ୍ୱରଙ୍କୁ ସୃଷ୍ଟି କର୍ତ୍ତା ବୋଲି ମାନନ୍ତି ନାହିଁ । ଏମାନେ ଜିନ ବା ଅର୍ହନ୍ତଙ୍କୁ ଈଶ୍ୱର ବୋଲି ମାନନ୍ତି,

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚକ୍ଷ୍ଟଭ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷ୍ଟଭ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷ୍ଟଭ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚକ୍ଷ୍ଟଭ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଁଖୀ ନ ପାଇଲେ 'ଆଖି' ଦେଖିବେ; 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ତାଙ୍କୁ ଉପାସନା କରନ୍ତି ଓ ତାଙ୍କପାଇଁ ମନ୍ଦିର ତିଆରି କରନ୍ତି । ଋଷଭ ଜୈନମାନଙ୍କର ପ୍ରଥମ ତୀର୍ଥଙ୍କର । ଏହାଙ୍କୁ ହିନ୍ଦୁମାନେ ଭଗବାନଙ୍କ ୨୪ ଅବତାରରୁ ଏକ ବୋଲି ସ୍ୱୀକାର କରନ୍ତି । ମହାବୀର ତୀର୍ଥଙ୍କରମାନଙ୍କ ଉପଦେଶମାନ ସଙ୍କଳନ କରି ଜୈନ ଧର୍ମଗ୍ରନ୍ଥ ରଚନା କରିଥିଲେ । ଦିଗମ୍ବରମାନେ ଉଲଗ୍ନ ତୀର୍ଥଙ୍କରଙ୍କ ମୂର୍ତ୍ତି ପୂଜା କରନ୍ତି, ଶ୍ୱେତାମ୍ବରମାନେ କୌପୀନ ପରିହିତ ମୂର୍ତ୍ତି ପୂଜା କରନ୍ତି । ଜୀବ ଆପଣା କର୍ମ ଅନୁସାରେ ସୁଖ ଦୁଃଖ ଭୋଗ କଲେ ବୋଲି ଜୈନମାନଙ୍କ ମତ । ହି ଶବ୍ଦସାଗର ]

**ଜୈମି**—ଦେ. ବି. (ସଂ. ଜୈନ)—ଜୈନ ମତାବଲମ୍ବୀ—
Jaini A follower of the Jaina faith.
जैन
जैनी

**ଜୈପାଲ**—ସଂ. ବି.—କନକା (ଦେଖ)
Jaipāla Kanakā (See)

**ଜୈବାତୃକ**—ସଂ. ବି. (ଜୀବ୍ ଧାତୁ=ବଞ୍ଚିବା + କରଣ ଅତୃକ୍)—
Jaibātruka ୧ । ଚନ୍ଦ୍ର—1. Moon.
୨ । ପୁତ୍ର—2. Son.
୩ । କର୍ପୂର—3. Camphor.
୪ । ଔଷଧ—4 Medicine
ସଂ. ବି.—୧ । (କର୍ତ୍ତୃ-ଅତୃକ୍) ଦୀର୍ଘାୟୁ—1. Long-lived
୨ । କୃଶ—2 Thin; lean.

**ଜୈମିନି**—ସଂ. ବି. (ନାମ)— ପୂର୍ବମୀମାଂସା ନାମକ ଦର୍ଶନଶାସ୍ତ୍ରର ପ୍ରଣେତା
Jaimini ଋଷି—The name of a sage, the founder of the Pūrba-mimāmsā school of Hindu philosophy.

[ ଦ୍ର—ଏ ବ୍ୟାସଦେବଙ୍କର ୪ ମୁଖ୍ୟ ଶିଷ୍ୟମାନଙ୍କ ମଧ୍ୟରୁ ଏକ । ଏ ଭାରତସଂହିତା ନାମକ ଗ୍ରନ୍ଥ ରଚନା କରିଥିବାର କଥିତ ଅଛି । ତହିଁର କେବଳ ଅଶ୍ୱମେଧ ପର୍ବ ମିଳିଅଛି । ବଜ୍ରପାତ କାଳରେ ଏହାଙ୍କ ନାମ ସ୍ମରଣ କରିବା ବ୍ୟକ୍ତି ଉପରେ ବଜ୍ର ପଡ଼େ ନାହିଁ । ବଜ୍ରବାରକ ଋଷି ୫ ଜଣ—ଜୈମିନି, ସୁମନ୍ତ, ବୈଶମ୍ପାୟନ, ପୁଲସ୍ତ୍ୟ, ପୁଲହ । ]

**ଜୈମିନି ଦର୍ଶନ**—ସଂ. ବି—ଜୈମିନି ଋଷିକୃତ ବେଦର ପୂର୍ବମୀମାଂସା
Jaimini darśana ନାମକ ଦର୍ଶନ; ଶ୍ରୀ ଉତ୍ତର ଉତ୍ତରବେଧକ ଦର୍ଶନ ଶାସ୍ତ୍ର — The Pūrba-mimāmsā philosophy of sage Jaimini.

**ଜୈମିନି ଭାରତ**—ସଂ. ବି. (ଜୈମିନି + ଭାରତ; ୬ଷ୍ଠୀ ତତ୍)—
Jaimini bhārata ଜୈମିନି ମୁନିଙ୍କ ପ୍ରଣୀତ ମହାଭାରତ ଗ୍ରନ୍ଥ —
ଜୈମିନିଭାରତସଂହିତା } ଅନ୍ୟରୂପ The Mahābhārata
ଜୈମିନିମହାଭାରତ } written by sage Jaimini.
[ ଦ୍ର—ଏହି ଗ୍ରନ୍ଥର ଅଶ୍ୱମେଧ ପର୍ବମାତ୍ର ମିଳିଅଛି । ]

**ଜୈଲ** (ଇତ୍ୟାଦି)—ଗ୍ରା. ପ୍ରାଦେ. (ଗଞ୍ଜାମ) ବୈଦେ. ବି. (ଇଂ. ଜେଲ୍)—
Jaila (etc) ଜେଲ୍ ଇତ୍ୟାଦି (ଦେଖ)
Jel etc (See)

**ଜୋ**—ବୈଦେ. ବି. (ଫା ଜୂ)—୧ । ଜୁ (ଦେଖ)
Jo 1. Ju (See)
ଦେ. ବି. (ସଂ. ଯୋଗ) ଖାଳବପନାଦିର ପ୍ରକୃତ ସୁଯୋଗ—
1 Fit time for sowing seed and doing other agricultural operations.
୨ । ଜୋଓକାଠି; ତନ୍ତୁବାୟକର୍ତ୍ତୃକ ବ୍ୟବହୃତ ଯଷ୍ଟିଦଣ୍ଡବିଶେଷ, ଯଦ୍ୱାରା ଟାଣୀ ଓ ଭରଣୀ ସୂତାକୁ ଟାଣି ରଖାଯାଏ—3 The rods which a weaver uses for holding the warp and the woof during weaving.
୩ । ଅବସର; ସୁବିଧା—4. Opportunity.

**ଜୋଅଲ**—ଦେ. ବି—ଜୁଉଳି (ଦେଖ)
Joala Juuli (See)
(ଜୋଆଲ—ଅନ୍ୟରୂପ)

**ଜୋଆଲି**—ଦେ. ବି—ଜୁଆଳି (ଦେଖ)
Joāli Juāli (See)

**ଜୋଇ**—ପ୍ରାଦେ—୧ । (ଯାଜପୁର) ବି—ଜୁଇଗାଡ଼; ଚିତାଗର୍ତ୍ତ—
Joi The pit on which the cremation-pile is put.
୨ । (ସମ୍ବଲପୁର) ବି. (ସଂ ଜ୍ୟୋତି)—ଜୋଏ (ଦେଖ)
2 Joe (See)

**ଜୋଇଁ** (ଇତ୍ୟାଦି)—ଦେ. ବି. (ସଂ. ଜାମାତା)—
Joiñ (etc) ଜୁଆଇଁ ଇତ୍ୟାଦି (ଦେଖ)
जमाई Juāiñ etc (See)
जमाइ

**ଜୋଇଡେବି**—ପ୍ରାଦେ. (ସମ୍ବଲପୁର) ବି (ସଂ. ଜ୍ୟୋତି + ଫା. ଡିବା)—
Joi-debi ଦିଆସିଲି—Match-box.

**ଜୋଇବା**—ଦେ. ବି—ଜୁଆଇବା (ଦେଖ)
Joibā Juāibā (See)

**ଜୋଏ**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଜ୍ୟୋତି)—
Joe ୧ । ଅଗ୍ନି; ନିଆଁ—1. Fire.
୨ । ଆଲୋକ—2. Light.

**ଜୋଏଡେବି**—ଦେ. ବି—ଦିଆସିଲି—
Joe debi Match-box.

**ଜୋଏବା**—ପ୍ରାଦେ. (ସମ୍ବଲପୁର)—ନିଆଁ ଲଗାଇବା; ଚୁଲି ଲଗାଇବା—
Joebā To kindle the fire.

**ଜୋଏଲ୍**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଯୋଗ)—ଇତର ଜନ୍ତୁ-
Joel ମିଥୁନଙ୍କ ସଙ୍ଗମ; ଜୋଡ଼—Crossing of 2 animals.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଅ | ଉଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଥ | ଞ | ନ |

ଜୋଏଲ୍ ଯିବା—ପ୍ରାଦେ. (ସମ୍ବଲପୁର) କ୍ରି.—(ଇତର ଜନ୍ତୁମିଥୁନ)
Joel jibā ସଙ୍ଗମ କରିବା; ଜୋଡ଼ ପଡ଼ିବା—
To breed or cross (said of animals).

ଜୋଏଲୁଠା—ପ୍ରାଦେ. (ସମ୍ବଲପୁର) ବି—ଅଳ୍ପଚକ; କୁମ୍ଭାରଚକ—
Joe-luthā Potter's wheel.

ଜୋଓକାଠି—ଦେ. ବି—ଜୋକାଠି (ଦେଖ)
Jo-okāṭhi Jo-kāṭhi (See)

ଜୋକ—ଦେ· ବି. (ସଂ: ଜଳୌକା)—ରକ୍ତଶୋଷକ ଜଳଚର ପଦହୀନ
Joka କୀଟବିଶେଷ—Leech.
ଜୋକ ଜୋଁକ [ ଦ୍ର—ସାଧାରଣତଃ ଜୋକ ଲମ୍ବରେ ୨ ଇଞ୍ଚ ପର୍ଯ୍ୟନ୍ତ ବଢ଼ନ୍ତି; ଏମାନଙ୍କ ମୁହଁରେ ଗୋଟିଏ ଶୋଷଣଯନ୍ତ୍ର ଅଛି । ଏମାନେ ପ୍ରାଣିଦେହରେ ଲାଗିଗଲେ ସେହି ଯନ୍ତ୍ରଦ୍ୱାରା ଶରୀରସ୍ଥ ରକ୍ତକୁ ଶୋଷି ଗଡ଼ ପର ଫୁଲି ଯାଆନ୍ତି । ଏମାନେ ଦେହରେ ଥରେ ଲାଗିଲେ ରକ୍ତ ଶୋଷି ସନ୍ତୁଷ୍ଟ ନ ହେବା ପର୍ଯ୍ୟନ୍ତ ଦେହରୁ ଛାଡ଼ନ୍ତି ନାହିଁ; କିନ୍ତୁ ଏମାନେ ଶୋଷୁଥିବା ସ୍ଥାନରେ ଚୂଆ ଲୁଣ ଲଗାଇଦେଲେ ଏମାନେ ସେ ସ୍ଥାନରୁ ଖସିପଡ଼ନ୍ତି । ଏମାନେ ଜୋଡ଼, ଦଳୁଆ ପୋଖରୀ, ଧାନ ବିଲ ପ୍ରଭୃତିରେ ଥାଆନ୍ତି । ସେଠାରେ କୌଣସି ଲୋକ ପାଦରେ ପଶିଲେ ତା ଦେହରେ ଲାଗିଯାଇ ରକ୍ତ ଶୋଷନ୍ତି । ନିର୍ବିଷ ଓ ସବିଷ ଭେଦରେ ଜୋକ ୧୨ ପ୍ରକାର । ସାଧାରଣତଃ ସାନ ଜୋକଙ୍କୁ ଗାଈଆ ଓ ବଡ଼ ଜୋକଙ୍କୁ ମଇଁଷିଆ ଜୋକ ବୋଲାଯାଏ । ଯେବେ କୌଣସି ଲୋକ କୌଣସି ବ୍ୟକ୍ତିର ଅର୍ଥ ଶୋଷଣ କରେ ଓ ତାହାର ସର୍ବନାଶ ନ ହେବା ପର୍ଯ୍ୟନ୍ତ ତାକୁ ଛାଡ଼ି କରି ଯାଏ ନାହିଁ ସେସ୍ଥଳରେ ଲୋକେ କହନ୍ତି 'ପ୍ରଥମ ବ୍ୟକ୍ତି ୨ୟ ବ୍ୟକ୍ତିଙ୍କ ଠାରେ ଜୋକପରି ଲାଗିଛି' । ସମୁଦ୍ରରେ ଏକପ୍ରକାର ଜୋକ ଅଛନ୍ତି । ସେମାନେ ୨୪ ଫୁଟ ପର୍ଯ୍ୟନ୍ତ ଲମ୍ବରେ ବଢ଼ନ୍ତି; ଦ୍ର· ଶବ୍ଦସାଗର ।]

ଜୋକା—ଦେ. ବି.—୧ । ଶର୍ଦ୍ଦିହେତୁ ଦାନ୍ତମୂଳରେ ହେବା ଫୁଲା;
Jokā ଜୋକଆ—1. Swelling of the gums.
ଜୋଁକୀ ୨ । ଦୁଇଅଡ଼େ ବଙ୍କାଗ୍ର ଏକପ୍ରକାର କଣ୍ଟା—
2. A nail hooked at both ends (to hold two planks or slabs tightly when both ends are driven into them.)

ଜୋ କାଠି—ଦେ. ବି.—(ସଂ. ଯୁଜ ଧାତୁ+କାଷ୍ଠ)—ଯେଉଁ କାଠିଦ୍ୱାରା 'ଲୁଗା ବୁଣା ହେଉଥିବା ସମୟରେ ଭରଣୀ ସୂତାର ଶେଷ
Jo kāṭhi ମୁଣ୍ଡକୁ ଟାଣୀ ସହିତ ଟାଣିକରି ରଖା ଯାଏ—
Rod used in holding the warp-threads with the ends of the woof during weaving.

ଜୋକିଆ—ଦେ. ବି.—୧ । ଜୋକା (ଦେଖ)
Jokiā 1. Jokā (See)

୨ । ଓଲୁଆ (ଦେଖ)
2. Oluā (See)

ଜୋଖ—ଦେ. ବି.—୧ । (ସଂ. ଜୁଷ ଧାତୁ=ତର୍କଣା କରିବା)—ତୁଳନା;
Jokha ଉପମା—1. Comparison.
ଜୁଖ, ଜୁଁଖ; ଜୋଖ ୨ । ଓଜନ; ତଉଲ—
जोख 2. Weighment.
[ଦ୍ର—ଏହା ମାପ ଓ ଲେଖ ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ ହୁଏ; ଲେଖଜୋଖ, ମାପଜୋଖ ।]
ଜୋଡ଼ (ସଂ. ଯୁଜ ଧାତୁ) ସନ୍ଧି ସ୍ଥଳ; ଦୁଇଟି ପଦାର୍ଥ ଯୋଗ ହୋଇ
जोड़ ଥିବା ସ୍ଥାନ—Joint; a place where two things are joined together.
୪ । (ସଂ. ଯକ୍ଷ) ଜକ ୩,୪ (ଦେଖ)
4 Jaka 3 and 4 (See)
ଦେ. ବିଣ.—୧ । (ସଂ. ଯୋଗ୍ୟ) ତୁଲ୍ୟ; ସଦୃଶ—
1. Similar.
୨ । (ସଂ. ଯୁକ୍ତ; ପ୍ରା. ଜୁକ୍କ)—ଅନ୍ୟବସ୍ତୁ ସଙ୍ଗେ ଜୋଖା ହୋଇଥିବା —2. Joined to another thing.

ଜୋଖମ୍—ଦେ. ବି. ( ସଂ. ଯୋଗ; ସଂ. ଧୁଷ ଧାତୁ=କ୍ଲେଶନ,
Jokham ଯୋଗେଷ୍ଟନ୍ତ)—୧ । ଦାୟିତ୍ୱ—
ଜୋଖମ 1. Responsibility.
जोखम, जोखिम ୨ । ଅନିଷ୍ଟ—2. Injury.
୩ । କ୍ଲେଶ; କଷ୍ଟ; ଦୁଃଖ—3 Hardship.

ଜୋଖମ୍‌ଦାର୍—ଦେ. ବିଣ.—୧ । ଯାହା ଉପରେ କୌଣସି ଦାୟିତ୍ୱ
Jokham-dār ଥାଏ; ଦାୟୀ (ବ୍ୟକ୍ତି)—
ଜୋଖମଦାର 1. Responsible (person).
जोखमदार ୨ । ଦାୟିତ୍ୱପୂର୍ଣ୍ଣ (କାର୍ଯ୍ୟ)—
2. (work) Entailing a grave responsibility.
୩ । ଯେ ବହୁ କଷ୍ଟ ସହେ—3. Undergoing much trouble or hardship.

ଜୋଖମୁହଁ—ଦେ. ବି.—ଜୋଡ଼ ମୁହଁ—The place or joint
Jokha-muhaṅ where a thing is joined with
ଜୋଡ଼ another.
जोड़

ଜୋଖା—ଦେ. ବି. (ସଂ. ଜୁଷ ଧାତୁ=ଆଶ୍ରୟ; ଉପଯୋଗ; ପରିତର୍କଣ)
Jokhā ୧ । ମୋଟାମୋଟି ପରିମାଣ; ମୋଟାମୋଟି ମାପ—
ଜୋକା, ଜୋଖା, ଜୋଁଖା, ଜୁଖା 1. Rough measurement;
जोखाई estimate.
୨ । ହିସାବ ମିଳାଇବା—
2. Squaring up of an account.
୩ । (ସଂ. ଯୁଜ ଧାତୁ) ଗୋଟିଏ ପଦାର୍ଥରେ ଅନ୍ୟ ପଦାର୍ଥ ଯୋଗ କରିବା—3. Adding or joining a thing to or with another.

ସାଧାରଣ ଲୋକେ ଅପର ବୃତ୍ତାରେ ଦୃତନ ୧ ଚଇ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଗଧା' ନ ପାଇଲେ 'ଅର୍ଦ୍ଧା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ।

୪ । ତୁଳନ; ତୁଳନାକରଣ—4. Comparison.

୫ । ଜୋଡ଼; ମେଳ—5. Coincidence; tallying.

୬ । ଜୋକା (ଦେଖ)
6 Jokā (See)

୭ । (ସଂ. ଯକ୍ଷ)—ଜକ ୩,୪ (ଦେଖ)
7 Jaka 3,4 (See).

ଦେ. ବିଣ—୧ । ତୁଲ୍ୟ; ସଦୃଶ—1. Similar; equal.

୨ । (ସଂ. ଯୁଜ ଧାତୁ)—ଅନ୍ୟ ବସ୍ତୁରେ ଯୋଗ କରାଯାଇଥିବା—
2. Added to another thing.

୩ । ସଂଯୁକ୍ତ—3. United; joined together.

୪ । ଦୂରସମ୍ପର୍କୀୟ—4. Distantly related.

(ଯଥା—ସେ ମୋର ଲେଖା ଜୋଖା ବନ୍ଧୁ ଅଛନ୍ତି । )

**ଜୋଖା(ଖେ)ଇବା**—ଦେ. କି—ଜୋଖିବା କିୟାର ଣିଜନ୍ତ ରୂପ—
Jokhā(khe)ibā Causative form of the verb Jokhibā.
ଜুখান; জোকান
**जोखाना** ଜୋଡ଼ାଇବା—To cause to join.

**ଜୋଖାଜୋଖି**—ଦେ. ବି (ସହଚର)—ଜୋଡ଼ିବା କାର୍ଯ୍ୟାଦ—
Jokhā-jokhi Acts of joining.
জোকাজোকি
**जोखाजोखी**

**ଜୋଖାମୁହିଁ**—ଦେ. ବି—ଜୋଖମୁହିଁ (ଦେଖ)
Jokhā-muhañ Jokha-muhañ (See).

**ଜୋଖିଆ**—ଦେ. ବି—ଜୋକା (ଦେଖ)
Jokhiā Jokā (See).

**ଜୋଖିବା**—ଦେ. କି (ସଂ. ଜୁଷ ଧାତୁ=ତର୍କଣା କରିବା; ଅନୁମାନ କରିବା)—୧ । ଗଣନାକରିବା; ହିସାବ ମିଳାଇବା—
Jokhibā 1. To square up an account.
জুখা; জোকা
**जोखना**
୨ । ମୋଟାମୋଟି ପରିମାଣ କରିବା—
2. To make a rough or tentative estimate or account.

୩ । ଉପମାଦେବା; ସ୍ଥୂଳତଃ ତୁଳନା କରିବା—
3. To compare roughly.

୪ । ( ସଂ. ଯୁଜ ଧାତୁ; ଯୋଜନ ) ଜୋଡ଼ିବା—
4. To unite.

୫ । କୌଣସି ବସ୍ତୁକୁ ଅନ୍ୟ ବସ୍ତୁରେ ଯୋଗ କରିବା—
5. To join a thing to another.

**ଜୋଗଣ**—ଦେ. ବି, (ସଂ. ଯୋଜନ; ତୁଳ; ସଂ. ଜେମନ=ଭୋଜନ)—
Jogaṇa ରାଜାଙ୍କର ଭୋଜନ; ମଣୋହି—
Name given to the meal of a Rājā.

ବିଣ—ରାଜାଙ୍କ ଭୋଜନର ସାମଗ୍ରୀ ରୂପେ ବ୍ୟବହୃତ—
Used as a material for a king's food.

( ଯଥା—ଜୋଗଣ ଓଷର=ରାଜାଙ୍କ ପିଇବା ଦୁଧ । )

[ ଦ୍ର—ରାଜାମାନଙ୍କ ବ୍ୟବହୃତ ପଦାର୍ଥ, ଅଙ୍ଗପ୍ରତ୍ୟଙ୍ଗ ଓ ଦୈନିକ କାର୍ଯ୍ୟ ଆଦିକୁ ସାଧାରଣ ନାମରେ ନ ଡାକି ଲୋକେ ସମ୍ମାନସୂଚକ ଭିନ୍ନ ନାମରେ ଡାକନ୍ତି । ଯଥା—ଗଣ୍ଡି (=ମୁଣ୍ଡ); ଶ୍ରୀଅଙ୍ଗ (=ଦେହ); ଛାମୁ (=ଆପଣ); କାଠିଲାଗି (=ଦାନ୍ତଘଷା) ମୁଣୋହି; ଜୋଗଣ (=ଭୋଜନ); ପହଡ଼ (=ନିଦ୍ରା); ଶୁଲେଇ (=ଘୋଡ଼ା ଫେରିବା); ବନ୍ଧଆ (=ପାନ); ଓଷର (=ଦୁଧ); ପକ୍ଷଅର ( =କ୍ଷୌର ); ଶ୍ରୀହସ୍ତ (=ହାତ ); ଶ୍ରୀମୁଖ (=ମୁହଁ); ଶୀତଳ ମୁଣୋହି (ଜଳଖିଆ) ]

**ଜୋଗଣ ବଢ଼ିବା**—ଦେ. ବି—୧ । ରାଜାଙ୍କର ଭୋଜନକ୍ରିୟାର ସମାପ୍ତି—
Jogaṇa bardhibā 1. The finish of a Rājā's meal
୨ । ରାଜାଙ୍କର ଭୋଜନକ୍ରିୟା—
2. A Rājā's dinner.

**ଜୋଗଣଲାଗି**—ଦେ. ବିଣ ( ରାଜାଙ୍କ ପ୍ରତି ବ୍ୟବହୃତ ଶବ୍ଦ )—
Jogaṇa-lāgi ଭୋଜନରେ ବ୍ୟାପୃତ—
Engaged in taking food.
( ଯଥା—ଛାମୁ ବର୍ତ୍ତମାନ ଜୋଗଣଲାଗି ହୋଇଛନ୍ତି । )

**ଜୋଗଣାହାରି**—ଦେ. ବି—୧ । ରାଜାଙ୍କ ପାଚକ—
Jogaṇāhāri 1. Rājā's cook.
୨ । ଜଗନ୍ନାଥ ମହାପ୍ରଭୁଙ୍କ ସେବକବିଶେଷ; ଯେଉଁ ବ୍ୟକ୍ତି ସୁଆର ବା ପାଚକମାନଙ୍କୁ କାଠ, ପରିବା, ବାଠି, ମସଲା ଆଦି ଯୋଗାଏ—2. A class of sebakas of the Deity Jagannath of Puri who supply cooking materials to the cooks.

**ଜୋଗଣିଆ**—ଦେ. ବି—ଜୋଗଣାହାରି ( ଦେଖ )
Jogaṇiā Jogaṇāhāri ( See )

**ଜୋଗଣିବା**—ଦେ. କି—(ସଂ. ଯୋଜନ) ୧ । ରାଜାଙ୍କର ଜୋଗଣ ସାମଗ୍ରୀ
Jogaṇibā ସଂଗ୍ରହ ବା ପ୍ରସ୍ତୁତ କରିବା—1. To gather together or keep ready the victuals of a Rājā.
୨ । ପାଚକ ନିକଟରେ କାଠ, ପରିବା ଓ ବାଠି, ମସଲା, ଗୁଡ଼ିଳ ଓ ଡାଲି ଯୋଗାଇବା—To supply articles to the cook in the kitchen

**ଜୋଗସାଜସ**—ଦେ. ବି. (ସଂ. ଯୋଗ+ଫା. ସାଜସ୍=ମେଳ; କଦର୍ଥ ଶବ୍ଦ)—ଏକମେଳ; ଶଙ୍କା (ମନ୍ଦ ଅର୍ଥରେ)—
Joga-sājasa Collusion.
যোগসাজস
**सट्टीपट्टी, जोगसाजिस** ବିଣ—ମେଳ ବାନ୍ଧି କରାଯିବା (କର୍ମ)—
Collusive (etc).
ଜୋଗସାଜସୀ } ଅନ୍ୟରୂପ
ଜୋଗସାଜସ୍ }

**ଜୋଗା**—ଦେ. ବିଣ. ( ସଂ. ଯୋଗ୍ୟ )—
Jogā ୧ । ପାରଙ୍ଗମ; ଯୋଗ୍ୟ; ଉପଯୁକ୍ତ (ବ୍ୟକ୍ତି)—

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ | ଉଅ | ଞ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ୱ | ନ୍ |

ଜୋଗ 1. Able; fit ( person )
जोगा ୨ । ଗୁଣବାନ୍; ଗୁଣୀ—2. Qualified; talented.
୩ । ବିଦ୍ୱାନ୍—3. Learned.

ଜୋଗା(ଗେ)ଇବା—ଦେ. କ୍ରି—ଯୋଗାଇବା ( ଦେଖ )
Jogā(ge)ibā Jogāibā ( See )

ଜୋଗାଡ଼—ଦେ. ବି. ( ସଂ. ଯୋଗ; ଯୋଜନ )—
Jogārda ୧ । କୌଣସି ବିଷୟର ଆୟୋଜନ; ଉପାଦାନସଂଗ୍ରହ;
জোগাড় ଉଦ୍‌ଯୋଗ—1. Preparation; arrangement.
प्रबंध ୨ । କର୍ମ ନିର୍ବାହର ଉପାୟ ଓ ଉପକରଣ ସଂଗ୍ରହ—
2 Collection of means and materials for a work.
୩ । କନ୍ୟା ଶାଶୁଘରକୁ ଯିବା ସମୟରେ ବାପଘରୁ ତା ସଙ୍ଗେ ପଠାଯିବା ସାମଗ୍ରୀସମୂହ—3. Various articles despatched with a daughter when she is sent to her husband's family for the first time after attaining puberty.
୪ । ଉଚିତ ବନ୍ଦୋବସ୍ତ—4. Fit or proper management or arrangement.
୫ । ଚେଷ୍ଟା—5. Effort; endeavour.
୬ । ଦେବତା ଓ ରାଜା ଆଦିଙ୍କ ଖାଦ୍ୟ ନିମନ୍ତେ ପ୍ରସ୍ତୁତ ବିବିଧ ଉପକରଣ ବା ସଜ୍ଜା—6 A collection of eatables for Rājās or Deities.
୭ । ଉପାୟ—7. Device; means.
୮ । ରାଜାଙ୍କୁ ଉପହାର ଦିଆଯିବା ପ୍ରସ୍ତୁତ ମିଷ୍ଟାନ୍ନ ବା ମହାପ୍ରସାଦର ସଜ୍ଜା—8. A collection of dainty foods presented to a Rājā.

ଜୋଗାଡ଼ କରିବା—ଦେ. କ୍ରି—୧ । ଉପକରଣ ସଂଗ୍ରହ କରିବା—
Jogārda karibā 1. To collect materials.
জোগাড়করা ୨ । କୌଣସି କାର୍ଯ୍ୟସାଧନର ଉପାୟମାନ କରିବା—
प्रबन्धकरना 2. To pursue the means to attain an object.
୩ । ବନ୍ଦୋବସ୍ତ କରିବା—3. To arrange.
୪ । ଉଦ୍ୟମ ବା ଚେଷ୍ଟା କରିବା—
4. To endeavour.

ଜୋଗାଡ଼ ଜନ୍ତର—ଗ୍ରା. ବି. ( ସହଚର ଶବ୍ଦ; ସଂ. ଯୋଜନ+ଯନ୍ତ୍ର)—
Jogārda jantara ୧ । କୌଣସି କାର୍ଯ୍ୟ ନିମନ୍ତେ ପ୍ରୟୋଜନୀୟ
জোগাড়যন্ত্র ସମସ୍ତ ଉପାୟ ଓ ଉପକରଣ—1. All conceivable
प्रबंध means and materials necessary for the attainment of some aim.
୨ । ବନ୍ଦୋବସ୍ତ; ବ୍ୟବସ୍ଥା—2. Arrangement.
୩ । ଉଦ୍ୟମ; ଚେଷ୍ଟା—3. Effort; endeavour.

ଜୋଗାଡ଼ ଯନ୍ତ୍ର—ଦେ. ବି. (ସହଚର)—ଯୋଗାଡ଼ ଜନ୍ତର ( ଦେଖ )
Jogārda jantra Jogārda jantara ( See )

ଜୋଗାଡ଼ିଆ—ଦେ. ବିଣ—୧ । ଉଦ୍ୟମୀ; ଅଧ୍ୟବସାୟୀ—
Jogārdiā 1. Persevering.
যোগাড়ে ୨ । ଯେ କୌଣସି କାର୍ଯ୍ୟ ନିମନ୍ତେ ଉପଯୁକ୍ତ ଉପାୟ
यागाड़िया ଅବଲମ୍ବନ କରେ; ଉଦ୍‌ଯୋଗୀ—
2. One who takes proper steps for some object to be attained.
୩ । କୌଶଳୀ—3. Skilful.
ବି—ଯେଉଁ ମୂଲିଆ କାରିଗରର ହାତପାଖକୁ ମାଲମସଲା ଯୋଗାଇ ଦିଏ; ସୁଆଁ ଦିଆ—A labourer who supplies materials to the mason.

ଜୋଗାଡ଼ିବା—ଦେ. କ୍ରି—୧ । କୌଣସି କାର୍ଯ୍ୟ ପାଇଁ ସମସ୍ତ ଉପକରଣ
Jogārdibā ପ୍ରସ୍ତୁତ କରି ରଖିବା—
যোগাড়করা 1. To keep every material ready.
୨ । ଯୋଗାଡ଼ କରିବା; ବ୍ୟବସ୍ଥା କରିବା—
2. To make arrangements.
୩ । ରନ୍ଧନ ଆରମ୍ଭ କରିବା ପୂର୍ବରୁ ପ୍ରୟୋଜନୀୟ ଯାବତୀୟ ରନ୍ଧନସାମଗ୍ରୀ କଟା ବଟା ଇତ୍ୟାଦି କରି ପ୍ରସ୍ତୁତ କରି ରଖିବା—3. To dress for cooking; to keep all the materials ready for cooking.
୪ । ତରକାରି ଆଦି ନିମନ୍ତେ ଯଥାଯଥ ଉପକରଣ ପାକହାଣ୍ଡିରେ ଏକତ୍ର ଅଜାଡ଼ିବା—4. To pour the different necessary ingredients into the cooking pot.

ଜୋଗାଜୋଗ—ଦେ. ବି. (କଥିତ ଭାଷା; ସଂ. ଯୋଗ+ବିପରୀତାର୍ଥକ
Jogājoga କିମ୍ବା ଏକାର୍ଥକ ସହଚରରୂପେ ବ୍ୟବହୃତ ଅପୟୋଗ)—
জোগাজোগ ୧ । ଏକଯୋଗ—1. Conjunction.
मेलमाल ୨ । ଏକମେଳ; ଜୋଗସାଜସ—2. Collusion
୩ । ସୁଯୋଗ; ସୁବିଧା—3 Opportunity.

ଜୋଛନା—ଦେ. ବି. ( ସଂ. ଜ୍ୟୋତ୍ସ୍ନା; ପ୍ରା. ଜୋଣ୍ହା ) ( ପଦ୍ୟ )—
Jochhanā ଚନ୍ଦ୍ରକିରଣ—Moon-light.
জোছনা [ଦ୍ର—ସଂସ୍କୃତ ଶବ୍ଦସ୍ଥ ସ୍ତ ର ଦେଶଜ ଭାଷାରେ ଛ ଉଚ୍ଚାରଣ
जुन्हैया ଅନ୍ୟାନ୍ୟ ସ୍ଥଳରେ ମଧ୍ୟ ଦେଖାଯାଏ; ଯଥା—ବତ୍ସା=ବଛା, ମତ୍ସ୍ୟ=ମାଛ; ଚିକିତ୍ସା=ଚିକିଛା ।]

ଜୋଟ୍—ଦେ. ବି (ସଂ. ଜୁଟ ଧାତୁ; ସଂ. ଯୋଟକ)—ଜୁଟ୍ (ଦେଖ)
Jot Jut (See).
জোট
जोट

ଜୋଟ୍ ଖାଇବା—ଦେ. କ୍ରି (ସଂ. ଯୋଟକ; ସଂ. ଜୁଟ ଧାତୁ)—
Jot khāibā ୧ । ବିଭିନ୍ନ ପଦାର୍ଥ ଏକତ୍ର ଘନଭାବରେ ମିଳିଯିବା;

ସାଧାରଣ ଲୋକେ ଅପଠ ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷଅ' ନ ମିଳିଲେ 'କ୍ଷଅ' ଦେଖିବେ; 'ବଧ' ନ ପାଇଲେ 'ବନ୍ଧ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବର' ନ ପାଇଲେ 'ଅଲ୍‌ବର' ଦେଖିବେ ।

ଜୋଟ ଖାଓୟା — ଅଭିନ୍ନଭାବରେ ମିଳିତ ହେବା—
**जोट खाना** 1. To be intimately mixed together; to exactly tally with each other.

ଜୋଟ ପଡ଼ିବା, ଜୋଟ୍ ଲାଗିବା } ଅନ୍ୟରୂପ — ୨ । ସ୍ତ୍ରୀ ପୁରୁଷ ସଙ୍ଗମ ଦ୍ୱାରା ସମ୍ମିଳିତ ହେବା—2. To be joined together in the act of copulation; to cohabit.

(ଜୋଟ୍ ଖୁଆଇବା; ଜୋଟ୍ ଶୋଇବା—ଣିଜନ୍ତ ରୂପ)

୩ । ବିପରୀତ ଦିଗରୁ ଆସି ପରସ୍ପର ଦାଣ୍ଡାଦାଣ୍ଡି ହେବା—3. To meet each other by coming from opposite directions.

୪ । (ଦୁଇ ଜଣଙ୍କ ମତ) ଏକ ହେବା—4. (the opinions of two persons) To agree with each other.

**ଜୋଟ୍ ହେବା**—ଦେ. କ୍ରି—ଜୁଟ୍ ହେବା (ଦେଖ)—
Jot heba — Jut heba (See)

**ଜୋଟ**—ସଂ. ବି (ସଂ. ଜୁଟ୍ ଧାତୁ=ଏକତ୍ର ହେବା+ଅ)—୧ । ଏକତ୍ର
Jota — ସଂଯୋଗ; ସମ୍ମିଳନ—1. Union; combination; conjunction.
ଜୋଟ
**जोट** ୨ । ସଂହତି—2. Cohesion.
୩ । ସଙ୍ଗମ—3. General union.
୪ । ଦଳ—4. Flock.

**ଜୋଟ କରା(ରେ)ଇବା**—ଦେ. କ୍ରି (ସଂ. ଜୁଟ ଧାତୁ=ମିଳିତ ହେବା)—
Jota karā(re)ibā — ୧ । ଗବାଦି ପଶୁଯୁଗଳଙ୍କୁ ଏକତ୍ର କରାଇ
ଯୋଟାନ, ଜୁଟାନ — ସଙ୍ଗମ କରାଇବା—1. To bring about the
**जुटाना, जुटवाना** — pairing or matching between a male and a female animal.

ଜୋଟ ଖୁଆଇବା, ଜୋଟ ଖୋଇବା, ଜୋଟ ପକାଇବା, ଜୋଟ ଲଗାଇବା } ଅନ୍ୟରୂପ

୨ । ଦୁଇ ବସ୍ତୁକୁ ମିଳାଇବା—2. To match two things.

**ଜୋଟ ଖୋଇବା**—ଦେ. କ୍ରି—ଜୋଟ କରାଇବା (ଦେଖ)—
Jota khoibā — Jota karāibā (See)
ଜୋଟ ଖାଓୟାନ
**जोट खिलाना**
(ଜୋଟ ଖୁଆଇବା—ଅନ୍ୟରୂପ)

**ଜୋଟଜାଟ**—ଦେ. ବି—୧ । ଯୋଗାଡ଼ଯନ୍ତ୍ର—
Jota-jāta — 1. Bringing together of different materials.
ଜୋଟଜାଟ
**जोटजाट**
୨ । ମିଳାମିଶା; ପରସ୍ପର ସମ୍ମିଳନ—
2. Conglomeration.
୩ । ବହୁ ପଦାର୍ଥକୁ ଏକତ୍ର ସଂଗ୍ରହ କରଣ—
3. Bringing together of many things; collection.

୪ । ଜୁଟାଜୁଟି; ପ୍ରେମିକ ପ୍ରେମିକାଙ୍କ ମିଳନ ଘଟାଇବା—
4. The causing of lovers to meet; bringing about a meeting between lovers.

୫ । ଟଙ୍କା ବଦଳରେ ପରସ୍ତ୍ରୀ ଜୁଟାଇବା—
5. Pandering.

(ଜୋଟାଜୋଟ—ଅନ୍ୟରୂପ)

**ଜୋଟଣ**—ଦେ. ବି (ସଂ. ଜୁଟଧାତୁ; କିମ୍ବା, ସଂ. ଯୋଜନ)—୧ । ମିଳନ;
Jotaṇa — ଜୁଟିବା—1. Union; coming together.
ଜୋଟନ — ୨ । ଯୋଡିବା; ସଂଯୋଜନା—2 Yoking.
**जुटना** — ୩ । ଜୁଟାଇବା କର୍ମ—3. Bringing about a union.

**ଜୋଟଣା**—ଦେ. ବି—ଜୋଟଣ (ଦେଖ)—Jotaṇa (See)
Jotaṇā

**ଜୋଟ-ପାଟ**—ଦେ. ବି—ଜୋଟଜାଟ (ଦେଖ)—Jotajāta (See).
Jota-pāta

**ଜୋଟ ବାନ୍ଧିବା**—ଦେ. କ୍ରି—୧ । (ବହୁ ପଦାର୍ଥ ବା ଜୀବ) ଏକତ୍ର ହେବା—
Jota bāndhibā 1. To collect into a crowd or mass.
ଜୋଟବାଁଧା — ୨ । (ଦୁଇ ଜୀବ) ସଙ୍ଗମାର୍ଥ ଏକତ୍ର ହେବା—
**जोड़बाँधना** — 2. To form into a couple; to pair.
୩ । ଘନୀଭୂତ ହେବା—3. To conglomerate.

**ଜୋଟା**—ଦେ. ବି (ସଂ. ଜୁଟଧାତୁ)—ମିଳନ; ସଂଯୋଗ; ଜୁଟିବା—
Jotā — Union; meeting.
ଜୁଟା, ଜୋଟ — ବିଣ—ସଂଯୁକ୍ତ; ମିଳିତ; ସଂଘଟିତ—United.
ଦେ. ବିଣ. ପୁଂ—ଜୁଟା (ଦେଖ)
Jutā (See)
(ଜୋଟେଇ—ସ୍ତ୍ରୀ)

**ଜୋଟା(ଟେ)ଇବା**—ଦେ. କ୍ରି—ଜୁଟାଇବା (ଦେଖ)—
Jotā(te)ibā — Jutaibā (See)

**ଜୋଟାଜୋଟି**—ଦେ. ବି. (ସଂ. ଯୋଜନ)—ଜୁଟାଜୁଟି (ଦେଖ)
Jotā-joti — Jutā-juti (See)
ଜୋଟାଜୋଟି
**जोटाजोटि**

**ଜୋଟି**—ଦେ ବି—ଝୋଟି (ଦେଖ)—Jhoti (See)
Joti

**ଜୋଟିଙ୍ଗ**—ସଂ. ବି—ଶିବ; ମହାଦେବ (ହି. ଶବ୍ଦସାଗର) (ଭୁଲ. ସଂ.
Jotinga — ଜ୍ୟୋତିର୍ଲିଙ୍ଗ)—Lord Siba.

**ଜୋଟିବା**—ଦେ. କ୍ରି—ଜୁଟିବା (ଦେଖ)
Jotibā — Jutibā (See)

**ଜୋଠାଣି**—ପ୍ରାଦେ. (ବସ୍ତର) ବି (ଭୁଲ.ହି. ଏହି ଅର୍ଥରେ ଜେଠାଣୀ)—
Jothāni — ବଡ଼ ଯାଆ—Elder sister-in-law; the wife of the elder brother of one's husband.

**ଜୋଡ଼ଣି**—ପ୍ରାଦେ. (ସମ୍ବଲପୁର) ବିଣ—ପରସ୍ପର ଜୋଡ଼ା ହୋଇଥିବା—
Jord-ṇi — Joined together.
(ଜୋଡ଼ନ୍ର ଅନ୍ୟରୂପ) ବି—ଦୁଇ ବସ୍ତୁର ପରସ୍ପର ଜୋଡ଼ା ହୋଇଥିବା

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ୍ଘ | ଙ୍କ | ଶ,ଷ | ଙ୍କ | ଇପ୍ | ଡ଼ଅ | ଢ |
| ୨ | ଈ | ଊ | ରୁ | ଲୁ | ଏ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଘ | ଘ | ସ | ଙ୍ଗ | ଇଅ | ଢ଼ | ନ୍ |

ଅବସ୍ଥା—The state of two things being joined together.

ଜୋଡ଼—ଦେ. ବି (ସଂ. ଜୁଡ଼୍ ଧାତୁ=ବନ୍ଧନ କରିବା)—୧ । ମିଳନ;
Jorda ସମ୍ମିଳନ—1. Mixing together; union.
ଜୋଡ଼ ୨ । ଯୋଡ଼ା; ଯୁଗ୍ମ; ଯୁଗଳ—
जोड़ 2. A pair.
୩ । ଏକତ୍ରାବସ୍ଥିତ ପୁରୁଷ ଓ ସ୍ତ୍ରୀ; ଦମ୍ପତି—3. Couple.
[ଦ୍ର—ବିଶେଷତଃ ମନୁଷ୍ୟେତରପ୍ରାଣୀ ଦମ୍ପତି ପ୍ରତି ଏହା ପ୍ରଯୁଜ୍ୟ]
୪ । ଇତର ଜନ୍ତୁମିଥୁନଙ୍କ ସଙ୍ଗମ—4. Cohabitation or crossing of animals.
୫ । ଏକତ୍ର ବ୍ୟବହୃତ ଧୋତି ଚଦର; ଅଧୋବାସ ଓ ଉତ୍ତରୀୟ—
5. A pair of cloths (upper and lower).
ଜୋଡ଼ଟିଏ ଲୁଗାଗଲା ବାଦ୍ ଶାଢ଼ିଥା ତାକୁ ଓଳିଏ ଯାଏ ଚଉଡିଆ ।
ଫକୀରମୋହନ- ଛମାଣଅଠଗୁଣ୍ଠ ।
୬ । (ଗଣିତ) ଯୋଗ; ବହୁ ସଂଖ୍ୟାର ମିଶ୍ରଣ—
6. (mathematics) Addition
୭ । ଦୁଇଟି ପୃଥକ୍ ପଦାର୍ଥ ବା ଅଂଶକୁ ଏକତ୍ର ଯୋଗକରିବା —
7. Uniting or joining together of two separate things or parts.
୮ । ଦୁଇଟି ପଦାର୍ଥ ବା ଅଂଶଯୁକ୍ତ ହେବା ସ୍ଥାନ—
8. A joint; the place where two things are joined together; juncture.
୯ । (ଗାଉଁଲି ଭାଷା—ଜୋର); ବହୁଦୂରବିସ୍ତୃତ ଜଳାଶୟ—
ଜୋଳ Ditch; a long narrow stretch of water.
ଦ୍ଵଳଦ୍ଵଳ
ପ୍ରାଦେ. (ପୁରୀ)—୧ । ପାଣିଚ ନଡ଼ିଆ ଓ ଝୁନୁଡ଼ି ନଡ଼ିଆର ପରିମାଣ ବିଶେଷ—1. An aggregate or unit of 720 or 864 cocoanuts.
[ଦ୍ର—ପାଣିଚ ନଡ଼ିଆ ୧ ଜୋଡ଼=କା ୦ ୯/ (ନଅପଣ ୭୨୦ କଡ଼ା); ଝୁନୁଡ଼ିନଡ଼ିଆ ୧ ଜୋଡ଼=କା ୦୧୮/ ୧୬ ଗଣ୍ଡା (ଏଗାର ପଣ ୧୬ ଗଣ୍ଡା=୮୬୪ କଡ଼ା) । ]
୨ । ( ସମ୍ବଲପୁର ) ବି—କ୍ଷୁଦ୍ର ନଦୀ—
2. Streamlet.
( ବିଜୋଡ଼—ବିପରୀତ ) ଦେ. ବିଣ—ସମସଂଖ୍ୟକ ( ସଂଖ୍ୟା )—
Even ( number ).

ଜୋଡ଼ ଖାଇବା—ଦେ.କ୍ରି—୧ । (ଦୁଇ ବସ୍ତୁ) ଏକତ୍ର ସଂଯୁକ୍ତ ବା ସମ୍ମିଳିତ
Jorda khāibā ହେବା—1. To unite closely; to mix
ଜୋଡ଼ ଖାଓଆ together.
जोड़ा खाना ୨ । (ସ୍ତ୍ରୀ ପୁରୁଷ) ସଙ୍ଗମ କରିବା—
(ଜୋଡ଼ା ଖୁଆଇବା—ଣିଜନ୍ତ) 2. To copulate; to couple.
୩ । (ଇତର ପ୍ରାଣିମିଥୁନ) ହଳୁଆ ପଡ଼ିବା—
3. To pair.

ଜୋଡ଼ ଛଡ଼ା(ଡ଼େ)ଇବା—ଦେ. କ୍ରି—ଦୁଇଟି ସଂଯୁକ୍ତ ବସ୍ତୁ ବା ଜୀବଙ୍କୁ
Jorda chhardā(rde)ibā ପୃଥକ୍ କରାଇବା—
ଜୋଡ଼ ଭାଁଗା To separate two closely united things
जोड़ा छुड़ाना or a couple.

ଜୋଡ଼ତୋଡ଼—ଦେ. ବି. ( ସହଚର )—
Jorda-torda ୧ । ଜୋଡ଼ିବା ଓ ଭାଙ୍ଗିବା କ୍ରିୟା—
ଜୋଡ଼ତାଡ଼ 1. Act of joining together and
जोड़तोड़ breaking up.
୨ । ଭାଙ୍ଗିବା ଓ ଜୋଡ଼ିବା ଆଦି କ୍ରିୟାଦ୍ୱାରା କୌଣସି କାର୍ଯ୍ୟର ସମାଧାନ—2. Accomplishing a thing by all sorts of means ( e. g. breaking and joining ).
୩ । ଆୟୋଜନ—3. Arrangement.
( ଯଥା—ମୁଁ ଜୋଡ଼ତୋଡ଼ କରି ୧୦ ଟଙ୍କା ସଜାଡ଼ି କଲିଣି )
୪ । ଛଳ; କପଟ—4. Deceit.

ଜୋଡ଼ନାଶି—ଦେ. ବି—ଜୋଡ଼ଲାଞ୍ଜି ( ଦେଖ )
Jorda-nāsi Jorda-lānji ( See )

ଜୋଡ଼ ପଡ଼ିବା—ଦେ. କ୍ରି—ଜୋଡ଼ ଖାଇବା ( ଦେଖ )
Jorda pardibā Jorda khāibā ( See )

ଜୋଡ଼ ଫିଟା(ଟେ)ଇବା—ଦେ କ୍ରି—ଜୋଡ଼ ଛଡ଼ାଇବା ( ଦେଖ )
Jorda phitā(te)ibā Jorda chhardāibā ( See )

ଜୋଡ଼ ଫିଟିବା—ଦେ. ବି—ଦୁଇଟି ବସ୍ତୁ ବା ଜୀବ ଛଡ଼ାଛଡ଼ି ହୋଇ
Jorda phitibā ଯିବା—The dissolution or separation of a couple or a pair of things or animals.

ଜୋଡ଼ ବାନ୍ଧିବା—ଦେ. କ୍ରି—୧ । ଜୀବ ବା ବସ୍ତୁଙ୍କୁ ଜୋଡ଼ାଜୋଡ଼ା
Jorda bāndhibā କରିବା—1 To arrange things or
ଜୋଡ଼ ବାଁଧା animals in pairs.
जोड़ा बाँधना ୨ । (ଦୁଇଜଣ) ଏକଜ ସମ୍ମିଳିତ ହେବା—
2. ( two persons ) To unite; to join together; to combine.
( ଯଥା—ସେମାନେ ବର୍ତ୍ତମାନ ବେଶ ଜୋଡ଼ ବାନ୍ଧିଲେଣି, ଆଉ ତାଙ୍କ ମଧ୍ୟରେ ଖଟଖଟ କିଛି ଲାଗୁ ନାହିଁ । )

ଜୋଡ଼ ବିଜୋଡ଼—ଦେ. ବିଣ. ( ବିପରୀତାର୍ଥକ ଶବ୍ଦ ଦ୍ୱନ୍ଦ୍ୱ )—
Jorda bijorda ୧ । ଜୋଡ଼ାଜୋଡ଼ା ହୋଇ ନ ଥିବା; ଏକ
ଜୋଡ଼ ବିଜୋଡ଼ ଜୋଡ଼ାର ଗୋଟିଏ ବସ୍ତୁ ଅନ୍ୟ ଜୋଡ଼ାର ବସ୍ତୁ
जोड़बेजोड़ ସଙ୍ଗେ ରଖା ଯାଇଥିବା—1. Not arranged in pairs; not symmetrically arranged.
୨ । ସମ ଓ ଅସମ ( ବସ୍ତୁ )—
2. Odd and even ( things ).
୩ । ଅସମ—3. Incongruous; dissimilar; unsymmetrical.

ସାଧାରଣ ଲେକେ ଅପର ପୃଷ୍ଠାରେ ସଚର ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରଖି ନାହାନ୍ତି । ଅତଏବ ୧ ବା ୨ ଚହ୍ନିତ କୌଣସ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୁଅ' ନ ମିଳିଲେ 'ଦ୍ଵୁଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ଜୋଡ଼ ବେଳ—ଦେ ବ—୧ । ( ପଶୁ ଆଦିଙ୍କର ) ସଙ୍ଗମ ଋତୁ—
Jorda bela 1. Pairing time; season for pairing (of animalas).
( ଜୋଡ଼ ବେଳା—ଅନ୍ୟରୂପ )
୨ । ସ୍ତ୍ରୀ ପୁରୁଷଙ୍କର ମୈଥୁନସମୟ—
2. The time of copulation.

ଜୋଡ଼ ଭଙ୍ଗା(ଙ୍ଗେ)ଇବା—ଦେ. କ୍ରି—ଜୋଡ଼ ଛଡ଼ାଇବା ( ଦେଖ )
Jorda bhangā(nge)ibā Jorda chhardāibā ( See )

ଜୋଡ଼ ଭାଙ୍ଗିବା—ଦେ. କ୍ରି—ଜୋଡ଼ ଫିଟିବା ( ଦେଖ )
Jorda bhāngibā Jorda phitibā ( See )
ଦେ. କ୍ରି—ଜୋଡ଼ ଛଡ଼ାଇବା ( ଦେଖ )
Jorda chhardāibā ( See )

ଜୋଡ଼ ମୁହଁ—ଦେ. ବ—ଜୋଡ଼ା ହୋଇଥିବା ଦୁଇଟି ବସ୍ତୁର ସମ୍ମିଳନ ସ୍ଥାନ—The joining point of two things; juncture.
Jorda muhañ
জোড়মুখ
जोड़ा

ଜୋଡ଼ ଲଗିବା—ଦେ. କ୍ରି—ଜୋଡ଼ ଖାଇବା ( ଦେଖ )
Jorda lāgibā Jorda khāibā ( See )
[ଜୋଡ଼ ଲଗା(ଗେ)ଇବା—ଣିଜନ୍ତରୂପ ]

ଜୋଡ଼ ଲଞ୍ଜି—ଦେ ବ—ବନ୍ଧୁରର ବସ୍ତୃତ ଜଳାଶୟର ଏକପ୍ରାନ୍ତ—
Jorda lānji One end of a ditch or fen.
(ଜୋଡ଼ ଲଞ୍ଜି—ଅନ୍ୟରୂପ)

ଜୋଡ଼ହସ୍ତ—ଦେ. ବ. ( ସଂ. ଯୁକ୍ତହସ୍ତ )—ପ୍ରାର୍ଥନା କରିବା ଉପଲକ୍ଷରେ ଦୁଇ ହାତର ଅଞ୍ଜଳିବନ୍ଧନ; ହାତ ଜୋଡ଼ିବା; ଅଞ୍ଜଳିବନ୍ଧନ—Folding together of the palms of both hands (in supplication)
Jordahasta
জোড়হস্ত
जोड़हाथ
( ଜୋଡ଼ହାତ—ଅନ୍ୟରୂପ ) ବିଣ—ଦୁଇ ହାତ ଜୋଡ଼ିଥିବା; କୃତାଞ୍ଜଳି—With palms folded.

ଜୋଡ଼ା—ଦେ. ବ. ( ସଂ. ଜୁଡ଼ ଧାତୁ = ବନ୍ଧନ କରିବା )—
Jordā ୧ । ଯୁଗ୍ମ; ଯୁଗଳ; ଦୁଇଟି ସମଭାବାପନ୍ନ ବସ୍ତୁ ବା ଜୀବ—
1. A couple; a pair.
जोड़ा
୨ । ସ୍ତ୍ରୀପୁରୁଷ; ଦମ୍ପତି—
2. A couple of animals; husband and wife, man and woman.
୩ । ଦୁଇଟି ପୃଥକ୍ ବସ୍ତୁ ବା ଅଂଶକୁ ସଂଯୁକ୍ତ କରିବା; ଜୋଡ଼ିବା—3. Joining together of two things or parts.
୪ । ଏକ ହଳ; ଯାନାଦିରେ ବାମ ଓ ଦକ୍ଷିଣରେ ଲାଗିବା ପଶୁ—4. A pair of animals for vehichles.
୫ । ଡାହାଣ ଓ ବାମ ଅଙ୍ଗରେ ବ୍ୟବହାର୍ଯ୍ୟ ବସ୍ତୁଦ୍ୱୟ ( ଜୋତା ଓ ଅଳଙ୍କାର ପ୍ରଭୃତି )—
5. A pair ( of shoes, ornaments etc ) to suit the right and left limbs.
୬ । ଏକ ବସ୍ତୁ ସଦୃଶ ଅନ୍ୟ ବସ୍ତୁ—
6. One of a pair; a complement; a thing which will suit another.
୭ । ଅଧୋବାସ ଓ ଉତ୍ତରୀୟ ବସ୍ତ୍ର—
7. A pair of cloths ( upper and lower garments) put or arranged together.
୮ । ଯମଜ—8 Twins.
ବିଣ—୧ । ଏକତ୍ର ଯୁକ୍ତ ହୋଇଥିବା—
1. United; joined.
୨ । ଜାଉଁଳ—2. Arranged in a pair.
୩ । ଯମଜ—3. Born twins.
୪ । ଝଳା ହୋଇ ସଂଯୁକ୍ତ ହୋଇଥିବା—
4. Soldered together.
୫ । ଦୁଇ ସଂଖ୍ୟକ—
5. A couple; numbering two.
କେତେବେଳେ ଜୋଡ଼ା ଘରକାରେ ଘର
କେତେବେଳେ ଚୂଲ ଫୁଙ୍କି ଫୁଙ୍କି ମର—ଉଶ ।

ଜୋଡ଼ାଇ—ଦେ. ବ. ( ସଂ. ଯୋଜନ )—
Jordāi ଗାନ୍ଥନି; ମାଟି ବା ଚୂନ ଦ୍ୱାରା ଇଟା ବା ପଥର ବସାଇବା—Masonry-work.
জোড়াই
जोड़वाई
ବିଣ—ଗାନ୍ଥନି କରି ଯାଇଥିବା—
Consisting of masonry work.

ଜୋଡ଼ା(ଡ଼େ)ଇବା—ଦେ. କ୍ରି. ( ସଂ. ଯୁଜ ଧାତୁ; ସଂ. ଜୁଡ଼ ଧାତୁ )—
Jordā(rde)ibā ୧ । ଅନ୍ୟ ଦ୍ୱାରା ଜୋଡ଼ିବା କ୍ରିୟା କରାଇବା—
জোড়ান 1. To cause to join.
जोड़वाना ୨ । ଦୁଇ ଜନ୍ତୁଙ୍କୁ ଏକତ୍ର ସଙ୍ଗମ କରାଇବା—
2. To cause two animals to pair.
୩ । ଜୋଡ଼ାଜୋଡ଼ା କରି ସଜ୍ଜିତ କରିବା—
3. To arrange in pairs.
୪ । ଜୋଡ଼ିବା—4. To join together.

ଜୋଡ଼ାଏ—(ଅନାଦରାର୍ଥକ)—ଦେ. ବ ଓ ବିଣ—୧ । ଦୁଇଟା—
Jordāe 1. Two; a pair.
এক জোড়া ୨ । ଦୁଇଟା ମାତ୍ର—2. Two only.
एक जोड़

ଜୋଡ଼ାକ—(ଅନାଦରାର୍ଥକ)—ଦେ. ବିଣ ଓ ବ—ଜୋଡ଼ାଏ (ଦେଖ)
Jordāka Jordāe ( See )
জুটো
दोनो

ଜୋଡ଼ାକମ—ଦେ. ବ—ଜୋଡ଼ି ନାଗରା ( ଦେଖ )
Jordā-kama Jordi nāgarā ( See )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | ଙ୍କ | ଉସ୍ମ | ଡ଼ଥ | ଢ଼ |
| ୨ | ଈ | ଊ | ରୁ | ଲୃ | ସ୍ପୃ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଉଥ | ଡ଼ | ନ୍ |

ଜୋଡ଼ାକୁ ଜୋଡ଼ା—ଦେ. କ୍ରି. ବିଣ—ଜୋଡ଼ା ଜୋଡ଼ା ( ଦେଖ )
Jordāku jordā Jordā jordā ( See )

ଜୋଡ଼ା ଛଡ଼ା(ଡ଼େ)ଇବା—ଦେ. କ୍ରି—
Jordā chhardā(rde)ibā (etc) ଜୋଡ଼ ଛଡ଼ାଇବା (ଦେଖ)
Jorda chhardaibā ( See )

ଜୋଡ଼ା-ଜୋଡ଼ା—ଦେ. କ୍ରି. ବିଣ—ଦୁଇଟି ଲେଖାଏଁ ହୋଇ ସଙ୍ଗ
Jordā-jordā ହୋଇଥିବା—In couples; arranged into
জোড়াজোড়া or formed into pairs.
जोड़ाजोड़ा

ଜୋଡ଼ା ଜୋଡ଼ି—ଦେ. ବି—୧ । ଦୁଇଟି ଭଗ୍ନ ଅଂଶ ବା ପଦାର୍ଥକୁ ଏକତ୍ର
Jordā jordi କରିବା—1. Joining together of two
জোড়াজুড়ি things or parts.
जोड़जाड़ ୨ । ପୃଥକ୍ ପୃଥକ୍ ବହୁ ବସ୍ତୁ ବା ଉପକରଣର ଏକତ୍ରୀକରଣ—2. Bringing together or collecting of different materials or ingredients.
୩ । ଭଗ୍ନ ବା ଛିନ୍ନ ବା ଚିରା ପଦାର୍ଥକୁ ମରାମତି କରିବା—
3. Repairing or patching up of broken or torn things.
ଦେ. ବିଣ—ମରାମତି କରାଯାଇ ଥିବା; ନାନାଖଣ୍ଡ ଏକତ୍ର କରାଯାଇ ଥିବା—Joined together ( many bits ); repaired.

ଜୋଡ଼ା ଦିହୁଡ଼ି—ଦେ. ବି—ଜୋଡ଼ା ମଶାଲ ( ଦେଖ )
Jordā dihurdi Jordā masāla ( See )

ଜୋଡ଼ା ଫିଟିବା—ଦେ. କ୍ରି—ଜୋଡ଼ ଫିଟିବା ( ଦେଖ )
Jordā phitibā Jorda phitibā ( See )

ଜୋଡ଼ା ବେତ—ଦେ. ବି—ଜୋଡ଼ି ବେତ ( ଦେଖ )
Jerdā beta Jordi beta ( See )

ଜୋଡ଼ା ଭାରିଯା—ଦେ. ବି—ଏକ ପୁରୁଷର ଥିବା ଦୁଇଟି ସ୍ତ୍ରୀ—
Jordā bhārijā Two wives possessed by a man at a time.
ଡାକେ ନାହିଁ ବି, ହାକେ ନାହିଁ, କଥା ର ନାହିଁ କାହାକୁ
ଜୋଡ଼ାଭାରିଯାରେ କି ଲଜ୍ଜା ଅଛି, ପଚାର ଯା ଗୋ ମାଆକୁ—ଢଗ ।

ଜୋଡ଼ା ମଶାଲ—ଦେ. ବି—୧ । ରାଜା ଆଦିଙ୍କ ଗମନରେ ବାମ ଓ
Jordā masāla ଦକ୍ଷିଣ ପାଖରେ ଜଳା ଯାଉଥିବା ମଶାଲ ବା
জোড়া মশাল ଦିହୁଡ଼ି—1. Two torches lighted on both (right and left ) sides of a Raja or a Deity in procession.
୨ । ଦୁଇ ଶାଖା ଥିବା ମଶାଲ—
2 Two torches attached to one handle.

ଜୋଡ଼ା ମହୁରି—ଦେ. ବି—ଜୋଡ଼ି ମହୁରି ( ଦେଖ )
Jordā mahuri Jordi mahuri ( See )

ଜୋଡ଼ା ମୁହାଁ—ଦେ. ବି—ଜୋଡ଼ ମୁହାଁ ( ଦେଖ )
Jordā muhāñ Jorda muhāñ ( See )

ଜୋଡ଼ା ଶଙ୍ଖ—ଦେ. ବି—ଜଣକ ଦ୍ୱାରା ଏକତ୍ର ନାଦିତ ଶଙ୍ଖଯୁଗ୍ମ—
Jordā śaṅkha A pair of conches simultaneously sounded by one person.

ଜୋଡ଼ି—ଦେ. ବି. ( ସଂ. ଯୁଗ୍ମ; ଯୁଗଳ, ସଂ. ଜୁଡ଼ ଧାତୁ )—
Jordi ୧ । ଯୁଗ୍ମ—1. A couple.
জুড়ি, জোড়ি ୨ । ଦ୍ୱୟ—2. A pair; two.
जोड़ि ୩ । (ଆଦରାର୍ଥକ) ଦୁଇଟି ପଦାର୍ଥ—4. Two things.
୪ । ବଗିଗାଡ଼ିରେ ଲାଗିବା ଦୁଇଟି ଘୋଡ଼ା—
4. A pair of horses for a carriage.
୫ । ଘୋଡ଼ା ଆଦି ଏକ ସମୟରେ ଦୁଇ ପଛଗୋଡ଼ରେ ମାରିବା ନାଡ—5. Kick with two hind legs of a beast; double kick of a beast.
জোলি; জুলি ୬ । (ଗ୍ରାମ୍ୟଭାଷା ଜୋର) —ଲମ୍ବ ଅଥଚ କମ ଚଉଡ଼ା
दलदल ଜଳାଶୟ—6. A long and narrow expanse of water.
[ ଦ୍ର—ଜୋଡ଼ ଅପେକ୍ଷା ଜୋଡ଼ି ଆକାରରେ କ୍ଷୁଦ୍ରତର ।]
जूड़ी ବୈଦେ. ବି. (ଇଂ. ଜୁରି)—ଜୁରି; ଜଡ଼ି—7. Jury.
जोड़ी ପ୍ରାଦେ. (ଗଡ଼ଜାତ) ବି—୧ । ଚଶମା—
1. Spectacles.
୨ । ଜୋତା—2. A pair of shoes.
ଦେ. ବିଣ—ଯୁଗ୍ମଭାବରେ ସ୍ଥିତ ବା ସଜ୍ଜିତ; ଜାଉଁଳ; ଯୁଗ୍ମ—
Double; arranged in pairs.

ଜୋଡ଼ିଏ—ଦେ. ବିଣ ଓ ବି. (ଆଦର ବା ସ୍ନେହାର୍ଥକ)—
Jordie ଜୋଡ଼ାଏ (ଦେଖ)
একজোড়া Jordāe (See)
एकजोड़ा

ଜୋଡ଼ିକ—ଦେ. ବିଣ ଓ ବି. (ଆଦର ବା ସ୍ନେହାର୍ଥକ)—
Jordika ଜୋଡ଼ାଏ (ଦେଖ)
জুটি Jordāe (See)
दोठो ଖୋଜା ମଲକ ! ଶଙ୍ଖାଳ କରିଛୁ ଥୁଅ ଜୋଡ଼ିକ—ଢଗ ।

ଜୋଡ଼ିକବାଟ—ଦେ. ବି. ( ସଂ. ଯୁଗଳ + କପାଟ )—
Jordi-kabāta ଦୁଇଟି ଫାଳଥିବା କବାଟ—
জোড়াকপাট A door with two folds or flaps.

ଜୋଡ଼ିକି(କୁ)ଜୋଡ଼ି—ଦେ. କ୍ରି. ବିଣ—୧ । ଯୁଗ୍ମ ଯୁଗ୍ମ ହୋଇ—
Jordiki(ku)-jordi 1. In pairs; arranged in couples.
জোড়াজোড়া ୨ । ଏକ ଜୋଡ଼ା ପରେ ଅନ୍ୟ ଜୋଡ଼ାଏ—
जोड़ाजोड़ा 2. One pair after another.

ଜୋଡ଼ିଗାଡ଼ି—ଦେ. ବି—ଯେଉଁ ଗାଡ଼ିରେ ଦୁଇଟି ଘୋଡ଼ା ଲାଗନ୍ତି—
Jordi-gārdi A carriage drawn by a pair of horses.
জুড়ি গাড়ি
जोड़ि गाड़ि

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଡ଼' ନ ମିଳିଲେ 'ଗାଡ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜୋଡ଼ଘୋଡ଼ା**—ଦେ. ବି—(ସଂ. ଯୁଗଳ+ଘୋଟକ)—
Jorḍi-ghorḍā ଜୋଡ଼ିଗାଡ଼ିରେ ଲାଗିବା ଅଶ୍ୱଯୁଗଳ—
জুড়িঘোড়া A pair of horses for a carriage.
जोड़िघोड़ा

**ଜୋଡ଼ି ଚଲା(ଲେ)ଇବା**—ଦେ. କ୍ରି—୧ । ଜୋଡ଼ିଗାଡ଼ିରେ ଭ୍ରମଣ
Jorḍi chalā(le)ibā କରିବା—1. To take a drive in
জুড়ি চালান a carriage and pair.
जोड़ि हाँकना ୨ । ଜୋଡ଼ି ଗାଡ଼ିରେ ଲାଗିଥିବା ଅଶ୍ୱଯୁଗଳଙ୍କ ବାଗ
[ଜୋଡ଼ିଚଲା(ଲେ)ଇବା—ଅନ୍ୟରୂପ] ବା ଲଗାମକୁ ଧରି ଗାଡ଼ି ଚଳାଇବା—2. To drive a coach and pair (one's self).

**ଜୋଡ଼ିଜାଡ଼ି ଦେବା**—ଦେ. କ୍ରି—ଭାଙ୍ଗିଯାଇଥିବା ଅନେକ ସ୍ଥାନ ବା
Jorḍi-jārḍi debā ପଦାର୍ଥକୁ ଜୋଡ଼ିବା—
জোড়েজুড়ে দেওয়া To unite many broken parts or
जोड़जाड़ देना things.

**ଜୋଡ଼ି ଜୋଡ଼ି**—ଦେ. କ୍ରି. ବିଣ—ଜୋଡ଼ିକି ଜୋଡ଼ି (ଦେଖ)
Jorḍi jorḍi Jorḍiki jorrḍi (See)

**ଜୋଡ଼ି(ଡେ)ଡଉଁରିଆ**—ଦେ. ବି. ( ବର୍ଣ୍ଣିଆଶବ୍ଦ )—ପାଖକୁ ପାଖ ଝଳା
Jorḍi-(ḍe)ḍa-uṅriā ଯାଇଥିବା ରୂପାର ଯୋଡ଼ା ଡଉଁରିଆ—
A pair of amulets soldered together.

**ଜୋଡ଼ି ଥୋଇଲି**—ଦେ. ବି—ଜୋଡ଼ି ପୋଇଲି (ଦେଖ)
Jorḍi thoilī Jorḍi poilī (See)

**ଜୋଡ଼ି ନାଗରା**—ଦେ. ବି—ଏକ ସମୟରେ ଜଣେ ବାଦକର ଦୁଇହାତ-
Jorḍi nāgarā ଦ୍ୱାରା ବାଦିତ ହାଣ୍ଡି ଆକୃତିର ଆନଦ୍ଧ ବାଦ୍ୟଦ୍ୱୟ—
A musical instrument consisting of two cup-shaped drums sounded simultaneously by both the hands of the drummer

**ଜୋଡ଼ି ପୋଇଲି**—ଦେ. ବି—ପ୍ରଭୁ ବା ଠାକୁରାଣୀଙ୍କ ସେବାରେ ଖଟିବା
Jorḍi poilī ଦାସୀଦ୍ୱୟ—A couple of maid servants serving a master or mistress.

**ଜୋଡ଼ିବା**—ଦେ. କ୍ରି. (ସଂ. ଜୁଡ୍ ଧାତୁ=ବନ୍ଧନ କରିବା)—୧ । ଦୁଇଟି
Jorḍibā ପଦାର୍ଥ ବା ଅଂଶକୁ ଏକତ୍ର ସଂଯୁକ୍ତ କରିବା—
জোড়া 1. To unite; to join together two things
जोड़ना or parts.
୨ । ଏକାଧିକ ସଂଖ୍ୟାକୁ ମିଶାଇବା—
1. To add up numbers.
୩ । ହିସାବ ମିଳାଇବା—
3. To square up an account.
୪ । ଗୀତ ବା ପଦ୍ୟାଦି ରଚନା କରିବା—
4. To compose a song or poem.
୫ । ପୃଥକବସ୍ଥିତ ଉପାଦାନମାନଙ୍କୁ ଏକତ୍ର ସଂଗ୍ରହ କରିବା—
5. To bring together various materials.
୬ । ଭାଙ୍ଗି ଯାଇଥିବା ପଦାର୍ଥର ଅଂଶକୁ ଅଠା ଆଦି ଦ୍ୱାରା ସଂଯୋଜିତ କରିବା ବା ଝାଳିବା—6. To join or solder together two broken parts.

**ଜୋଡ଼ି ବିଚାର**—ଦେ. ବି.—ଜୁରୀଙ୍କଦ୍ୱାରା ବିଚାରିତ ମକଦମାର ବିଚାର—
Jorḍi bichāra A trial by jury.
জুরি বিচার
जुड़ि बिचार

**ଜୋଡ଼ି ବେତ**—ଦେ. ବି.—ଜାଉଁଳି ବେତ; ଦଣ୍ଡିତ ବ୍ୟକ୍ତିଙ୍କୁ ପ୍ରହାର
Jorḍi beta କରିବା ନିମନ୍ତେ ଏକତ୍ର ବନ୍ଧା ହୋଇଥିବା ଦୁଇଟି
জোড়া বেত ବେତ—Two canes tied together for the
जोड़िबेत purpose of caning convicted persons.

**ଜୋଡ଼ି ମହୁରି**—ଦେ. ବି.—ଜୋଡ଼ା ମହୁରି; ଜଣେ ଲୋକ ଏକ
Jorḍi mahuri ସମୟରେ ଏକତ୍ର ବଜାଇବା ଦୁଇଟି ମହୁରି ବା କାହାଳୀ—A double-trumpet blown by one person simultaneously.

**ଜୋଡ଼ି ମସାଲ**—ଦେ. ବି.—ଜୋଡ଼ା ମସାଲ (ଦେଖ)
Jorḍi masāla Jorḍā masāla (See)

**ଜୋଡ଼ି ମାରିବା**—ଦେ. କ୍ରି.—(ଘୋଡ଼ା ଆଦି ପଶୁ) ଦୁଇ ପଛଗୋଡ଼ରେ
Jorḍi māribā ଏକ ସମୟରେ ନାତ ମାରିବା—To kick
दुलात्ति मारना with the two hind legs simultaneously.

**ଜୋଡ଼ିରେ ବସିବା**—ଦେ. କ୍ରି.—୧ । ମକଦମା ବିଚାର କରିବା ପାଇଁ
Jorḍire basibā ଜଜଙ୍କ ସଙ୍ଗେ ଜୁରୀରୂପେ ବିଚାରାସନରେ ବସିବା—
জুরিতে বসা To sit on the jury; to sit as a juror.
जुड़िमे बैठना ୨ । ଦୁଇଟି ଘୋଡ଼ା ଯୋଗ ହେବା ଗାଡ଼ିରେ ବସିବା—
To take a drive in a coach and pair.

**ଜୋଡ଼ି ଶଙ୍ଖ**—ଦେ. ବି.—ଜୋଡ଼ା ଶଙ୍ଖ (ଦେଖ)
Jorḍi śaṅkha Jorḍā saṅkha (See)

**ଜୋଡ଼ି ଶାଲ**—ଦେ. ବି.—ଏକତ୍ର ବ୍ୟବହୃତ ଦୁଇଟି ଶାଲ, ଦୋଶାଲ—
Jorḍi śāla A pair of shawls used together.
দোশালা
दुसाला

**ଜୋଡ଼ି ହାଙ୍କା(ଙ୍କେ)ଇବା**—ଦେ. କ୍ରି.—ଜୋଡ଼ି ଚଲାଇବା (ଦେଖ)
Jorḍi haṅkā(ṅke)ibā Jorḍi chalāibā (See)

**ଜୋଡ଼ି ହାଙ୍କିବା**—ଦେ. କ୍ରି.—ଜୋଡ଼ି ଚଲାଇବା (ଦେଖ)
Jorḍi hāṅkibā Jorḍi chalāibā (See)

**ଜୋତ**—ଦେ. ବି. ( ସଂ. ଯୋକ୍ତ୍ର; ଯୋତ୍ର )—୧ । ଯୁଗବନ୍ଧନରଜ୍ଜୁ; ହଳ
Jota ବା ଶଗଡ଼ର ଜୁଆଳକୁ ଯଥାକ୍ରମେ ଈଶ ବା ଦଣ୍ଡା ସଙ୍ଗେ
जोत ବାନ୍ଧିବା ଦଉଡ଼ି—1. Rope for tying the yoke to the shaft of a plough or cart.

| ୧ | ଇ | ଉ | ଋ,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଋଥ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଋ | ନ୍ତ |

୨ । ଧାନ କଲେଇ ଅଣ୍ଡ ବାନ୍ଧ ବିଲରୁ ବୋହି ଆଣିବା ପାଇଁ ବ୍ୟବହୃତ ଦଉଡ଼ି—2. Rope used to tie up and carry the sheaves of corn harvested from the field.

জোত ବୈଦେ. ବି. (ଫା. ଜୋତ୍)—୧ । କର୍ଷଣଯୋଗ୍ୟ ଭୂମି—
जोत 1. Arable land; a land fit for tillage.
୨ । ଜମିଦାରଙ୍କ ଅଧୀନରେ ପ୍ରଜା ଦଖଲ କରୁଥିବା ଜମି; ପ୍ରଜାସ୍ୱତ୍ୱ ବିଶିଷ୍ଟ ଜମି; ରଇତି ଜମି—2. A tenure or holding of a tenant

**ଜୋତ ଆବାଦ କରିବା**—ଦେ. କ୍ରି.—୧ । ଭୂମି ଚାଷ କରିବା—
Jota ābāda karibā 1. To cultivate arable land.
জোত আবাদ করা ୨ । ରଇତି ସ୍ୱତ୍ୱରେ (ପ୍ରଜା) କର୍ଷଣ କରିବା;
जोतना ରଇତରୂପେ ଜମି ଚାଷ କରିବା—2. To cultivate a holding as a tenant.

**ଜୋତ ଦଉଡ଼ି**—ଦେ. ବି.—ଜୋତ (ଦେଖ)
Jota daurdi Jota (See)
(ଜୋତଦଉଡ଼ି—ଅନ୍ୟରୂପ)

**ଜୋତଦାର**—ବୈଦେ. ( ଫା. ଜୋତ୍‌ଦାର୍ )—
Jotadār ପ୍ରଜାସ୍ୱତ୍ୱଯୁକ୍ତ ଜମିର ଅଧିକାରୀ—
জোতদার A tenure-holder; tenant; raiyat.
जोतदार

**ଜୋତର**—ଗ୍ରା. ବି—ଜୋତ୍ର ( ଦେଖ )
Jotara Jotra ( See )

**ଜୋତା (ଇତ୍ୟାଦି)**—ଦେ.ବି—୧ । ଜୁତା (ଇତ୍ୟାଦି) ( ଦେଖ )
Jotā (etc) 1. Jutā (etc) ( See )
জুতা ୨ । ଯୋଚ୍ଚ ( ଦେଖ )
जूता 2. Jochā ( See )

**ଜୋତା(ତେ)ଇବା**—ଦେ. କ୍ରି. ( ସଂ. ଯୋଜନ )—
Jotā(te)ibā ୧ । ଜୋତିବା କ୍ରିୟାର ପ୍ରଯୋଜକ ରୂପ—
জুতান্ 1. Causative form of Jotibā.
जोतवाना ୨ । ଜୋତାରେ ପ୍ରହାର କରିବା—
2. To beat with shoes.

**ଜୋତା ଉଠା(ଠେ)ଇବା**—ଦେ. କ୍ରି—୧ । ଜୋତାରେ ମାଡ଼ ଦେବାକୁ
Jotā uthā(the)ibā ଉଦ୍ୟତ ହେବା; ଜୋତା ଦ୍ୱାରା ଅପରକୁ
জুতা উঠানো ଆଘାତ କରିବାକୁ ଉଦ୍ୟତ ହେବା—1. To be
जूती उठाना ready to give a shoe-beating.
୨ । ଅପରର ପିନ୍ଧିବା ଜୋତାକୁ ଉଠାଇବା ରୂପ ନୀଚ ଭୃତ୍ୟକର୍ମ କରିବା—2. To do another's menial works, such as removing his shoes.

**ଜୋତା ପଡ଼ିଯିବା**—ଦେ. କ୍ରି.—( ଛୁରୀଛି ବା କଟୁରି ଆଦିର ଧାର )
Jotā pardi-jibā କାଠ, ପଥର ବା ଲୁହାରେ ବାଜି ଦନ୍ତୁରି ବା ଛେଚଡ଼ା ହୋଇଯିବା-(the blade of a weapon) To become blunted by coming in contact with wood, stone, iron or such other hard things.

**ଜୋତା ମାରିବା**—ଦେ. କ୍ରି—ଜୋତାରେ ପିଟିବା—
Jotā māribā To give a shoe-beating.
জুতা মারা, জুতান
जुता मारना, जुतियाना

**ଜୋତି**—ଗ୍ରାମ୍ୟ. ବି ( ସଂ. ଜ୍ୟୋତିଃ )—ଜ୍ୟୋତି ( ଦେଖ )
Joti Jyoti ( See )
জোতি
जोति

**ଜୋତିବା**—ଦେ. କ୍ରି. ( ସଂ. ଯୋଜନ )—ଯୋଚିବା ( ଦେଖ )
Jotibā Jochibā ( See )
জোতা ପ୍ରାଦେ. ( ସମ୍ବଲପୁର, ଅଠମଲ୍ଲିକ ) କ୍ରି. ( ଭୁଲ. ଏହି
जोतना ଅର୍ଥରେ ହି. ଜୋତ୍‌ନା )—ଚାଷ କରିବା—
To cultivate the land; to till the land.

**ଜୋତିଷ**—ଦେ. ବି. ( ସଂ. ଜ୍ୟୋତିଷ )—୧ । ଜ୍ୟୋତିଷ ( ଦେଖ )
Jotisha 1. Jyotisha ( See )
জোতিষ ୨ । ( ସଂ. ଜ୍ୟୋତିଷୀ ) ଜ୍ୟୋତିଷୀ ( ଦେଖ )
जोतिष 2. Jyotishī ( See )

**ଜୋତିଷ ନାୟ(ହା)କ**—ଦେ. ବି—ଜଉତିଷ ନାୟକ ( ଦେଖ )
Jotisha nāya(hā)ka Jautisha nāyaka ( See )

**ଜୋତ୍ର**—ବୈଦେ. ବି. ( ଫା. ଜୋତ୍ )—
Jotra ୧ । ରଇତି ସ୍ୱତ୍ୱ—
জোত 1. Tenure; tenant's holding.
जोत ୨ । ଭୂସମ୍ପତ୍ତି—2. Landed property.
୩ । ସମ୍ପତ୍ତି—3. Property.
୪ । ସଙ୍ଗତି; ସ୍ୱଚ୍ଛଳ—4. Well-to-do condition.
୫ । ବ୍ୟବସାୟର ପୁଞ୍ଜି; ପାଣ୍ଠି—5. Capital; stock.
୬ । ଉପାୟ—6. Means.
୭ । ସୁବିଧା; ସୁଯୋଗ—
7. Favourable opportunity.

**ଜୋତ୍ରସମ୍ପନ୍ନ**—ଦେ. ବିଣ—ସଙ୍ଗତିସମ୍ପନ୍ନ; ସମ୍ପତ୍ତିଶାଳୀ—
Jotra-sampanna Well-to-do; affluent.

**ଜୋତ୍ରବିହୀନ**—ଦେ.ବିଣ—୧ । ସମ୍ପତ୍ତିହୀନ; ଅତ୍ୟନ୍ତ ଗରିବ; ସଙ୍ଗତିହୀନ-
Jotra-bihīna 1. Very poor; indigent; having no property or assets.
୨ । ଯେଉଁ ବ୍ୟକ୍ତିର ଦେଣା ପରିଶୋଧ କରିବା ସକାଶେ ସମ୍ପତ୍ତି ଅଣ୍ଟେ ନାହିଁ; ଦେବାଳିଆ—2. Insolvent.

**ଜୋବରା**—ଦେ. ବିଣ—୧ । ମଇଳା; ମଳଯୁକ୍ତ; ଅପରିଚ୍ଛନ୍ନ—
Jobarā 1. Dirty.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଶାଢ଼ି' ନ ମିଳିଲେ 'ଶାଢ଼ି' ଖୋଜିବେ; 'କୁଆ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଅଙ୍କି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

(ଜୋବସ୍ତ—ସ୍ତ୍ରୀ) ୨ । ଅଳଆ ଯୁକ୍ତ— 2. Full of filth or rubbish.
୩ । ଅପରିଷ୍କୃତ—3. Uncleansed.
୪ । ବିବର୍ଣ୍ଣ—4. Pale.
ଦେ. ବି—ମହାନଦୀର କୂଳରେ ଅବସ୍ଥିତ କଟକର ଉପକଣ୍ଠସ୍ଥ ଗ୍ରାମ ବା ନଗରାଂଶ—A part on the outskirts of the town of Cuttack on the bank of Mahānadī.
[ ଦ୍ର—ଏହିଠାରେ ଇଂରାଜ ଗଭର୍ଣ୍ଣମେଣ୍ଟ ଗୋଟିଏ ପଥର ବନ୍ଧ ( Anicut ) ଦ୍ୱାରା ମହାନଦୀର ପାଣିକୁ ଅଟକାଇ ରଖି ତହିଁରୁ ଗୋଟିଏ କେନାଲ୍ ବାହାର କରାଇ କଟକ ଜିଲ୍ଲାର କୃଷିକ୍ଷେତ୍ରରେ ଜଳସେଚନ ଓ ନୌଯାତ୍ରାଦିର ସୁବିଧା କରାଇ ଅଛନ୍ତି ।]

**ଜୋଯଖ୍**—ବୈଦେ. ବି. (ଆ)—ନରକ (ମୁସଲମାନମାନଙ୍କର)—
Jojakh — Hell ( of Mahomedans ).
জাহান্নম
जहन्नम

**ଜୋର୍**—ବୈଦେ. ବି. ( ଫା. ଜୋର୍ )—
Jor ୧ । ବଳ; ବେଗ—1. Force; velocity.
জোর ୨ । ଜବରଦସ୍ତି; ବଳପ୍ରୟୋଗ—2. Use of force.
जोर ୩ । ପରାକ୍ରମ; ଶକ୍ତି; କ୍ଷମତା— 3. Strength; power; might.
୪ । ଅଧିକାର—4. Authority.
୫ । ଜିଗର—5. Obstinacy; insistence.
୬ । କଥା ଉପରେ ଦେବା ଗୁରୁତ୍ୱ—6. Emphasis.
୭ । ଉଚ୍ଚାରଣର ସ୍ୱରୁତ୍ୱ—7. Stress.
ବୈଦେ. ବିଣ—୧ । ଉଚ୍ଚ ସ୍ୱର ଯୁକ୍ତ—1. Loud.
୨ । ( ମୂଲ୍ୟରେ ) ଅତ୍ୟଧିକ— 2. Excessive; dear ( in price ).
୩ । କଡ଼ା (ହୁକୁମ)—3. Strict (order).

**ଜୋର୍ ଜବରଦସ୍ତି**—ବୈଦେ. ବି. ((ସହଚର ଶବ୍ଦ)—
Jor jabar-dasti ଜୋର୍‌ଜୁଲମ୍ (ଦେଖ)
জোর জবরদস্তি Jor-julam (See)

**ଜୋର୍‌ଜାରି**—ବୈଦେ. ବି. (ଫା)—ଜୋର୍‌ଜୁଲମ୍ (ଦେଖ)
Jor-jāri Jorjulam (See)
জোরজারী
जोरजारी

**ଜୋର୍‌ଜୁଲମ୍**—ବୈଦେ. ବି. (ଫା) (ସହଚରଶବ୍ଦ)—
Jor-julam ୧ । ବଳାତ୍କାର; ବଳଜୋର୍; ବଳପ୍ରକାଶ—
জোরজুলুম 1. Show of force; compulsion;coercion.
जोरजुलम ୨ । ଜିଗର—2. Insistence.
(ଜୋର୍‌ଜୁଲୁମ୍—ଅନ୍ୟରୂପ) ୩ । ବଳପ୍ରୟୋଗ— 3. Use of force.
୪ । ଉତ୍ପୀଡ଼ନ—4. Oppression; tyranny.

**ଜୋର୍‌ଦାର୍**—ବୈଦେ. ବିଣ. (ଫା)—୧ । ଶକ୍ତିଶାଳୀ; ପରାକ୍ରମଶାଳୀ—
Jor-dār 1. Powerful; mighty.
জোরদার; জোরাল ୨ । ବଳବାନ୍—2. Strong.
जोरदार; जोरावर

**ଜୋର୍‌ଦାରି**—ବୈଦେ. ବି—ବଳୁଆ ପଣିଆଁ—
Jordāri The condition of being strong.
জোরদারী
जोरदारी

**ଜୋର୍‌ଦାରିଆ**—ଦେ. ବିଣ. (ଫା.ଜୋର୍‌ଦାର୍ + ଓଡ଼ିଆ ପ୍ରତ୍ୟୟ ଇଆ)—
Jordāriā ଜୋର୍‌ଦାର୍ (ଦେଖ)
Jor-dār (See)

**ଜୋର୍‌ସୋର୍**—ବୈଦେ. କ୍ରି. ବିଣ. (ଫା. ଜୋର୍‌ଶୋର୍=ଅତ୍ୟଧିକ ଜୋର୍)—ଅତି କ୍ଷିପ୍ରଭାବରେ—Rapidly.
Jor-sor
জোরসোর
जोरसोरसे

**ଜୋର**—ଗ୍ରାମ୍ୟ (ଇତର) ବି—ଜୋଡ଼; ବିସ୍ତୃତ ଜଳାଶୟ; ନୟନଜୋଡ଼—
Jora A long expanse of water; ditch.
জোল ବି—୧ । ଛୋଟ ପାଣିନାଳ—
दलदल 1. A small water-channel.
୨ । ଛୋଟ ନଈ—2. Streamlet.
ବୈଦେ. ବି ଓ ବିଣ. (ଫା. ଜୋର୍)—ଜୋର୍ (ଦେଖ) Jor (See)

**ଜୋର କରିବା**—ଦେ. କ୍ରି—୧ । ବଳପ୍ରୟୋଗ କରିବା—
Jora kariba 1. To use force.
জোর করা ୨ । ବଳପୂର୍ବକ ବାଧ୍ୟ କରିବା—
जोर करना 2. To compel by use of force.
୩ । ବଳପ୍ରୟୋଗ ଲୋଡ଼ିବା— 3 To require use of force.
୪ । ବିଶେଷ ପ୍ରଯତ୍ନ କରିବା—4. To strive hard.

**ଜୋର ଦେବା**—ଦେ. କ୍ରି—୧ । କୌଣସି ଅଙ୍ଗ ବା ଦ୍ରବ୍ୟ ଉପରେ)—
Jora deba ଆପଣାର ଭାରକୁ ନ୍ୟସ୍ତ କରିବା—1. To rest one's weight on (a thing or a limb).
জোরদেওয়া
जोरदेना (ଯଥା—ଦେଖ୍, କାଦୁଆ ଭୂଇଁରେ ଗଛ କାଟିବେଳେ ବାଡ଼ି ଉପରେ ଖୁବ୍ ଜୋର ଦେଇ ଚାଲୁଥିବୁ ।)
୨ । (କହିଲାବେଳେ କୌଣସି କଥା ବା ବିଷୟ ଉପରେ)—ଗୁରୁତ୍ୱ ଦେବା—2. To put emphasis (on a particular word or subject.
(ଯଥା—କହିଲାବେଳେ ଅମୁକ ବିଷୟ ଉପରେ ଟିକିଏ ଜୋର ଦେଇ ନ କହିଲେ ତାର ଗୁରୁତ୍ୱ କ ବୁଝା ପଡ଼ିବ ନାହିଁ ।)

**ଜୋର ପାଇବା**—ଦେ. ବି—୧ । ସମଧିକ ବଳଲାଭ କରିବା—
Jora paiba 1. Gaining of sufficient strength.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଡ଼ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଅ | ଲ୍ଲ |
| ୨ | ଈ | ଉ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଓ | ନ୍ନ |

জোর পাওআ (ଯଥା— ୬ ମାସ ଜରରେ ପଡ଼ି ବର୍ତ୍ତମାନ ଗୃହବାକୁ
**जोर पाना** ମୋର ଜୋର ପାଉ ନାହିଁ ।)

୨ । କାହାର କୌଣସି କାର୍ଯ୍ୟ-ସାଧନୋପଯୋଗୀ ବଳ ବା ଦାବୀ ଥିବାର ଅନୁମାନ ହେବା—2. Having a claim of right in respect of a certain person or matter; considering oneself able to do a thing.

(ଯଥା—ତାକୁ ଏଠାକୁ ଡାକି ଆଣିବାକୁ ମୋର ଜୋର ପାଉଛି; ତାଙ୍କୁ ଏ ଗୃହର ଖଣ୍ଡକ ପାଇଁ ଅନୁରୋଧ କରିବାକୁ ମୋର ଜୋର ପାଉଛି ।)

ଜୋରାବର୍—ବୈଦେ. ବିଣ. (ଫା)—ଜୋର୍‌ଦାର୍ (ଦେଖ)
Jorābar    Jor-dār (See)

ଜୋରାବରି—ବୈଦେ. ବି. (ଫା)—ଜୋର୍‌ଦାରି (ଦେଖ)
Jorābari    Jor-dārı (See)

ଜୋରିଆ—ପ୍ରାଦେ. (ସମ୍ବଲପୁର) ବି—ଅନାର୍ଯ୍ୟ ଶବର ଜାତିର ଗୋଟିଏ
Joriā    ଶାଖା—A branch of the Śabara caste.
[ ଦ୍ର—ଶବର ଜାତିର ଅପର ଶାଖା 'ଝୁଣ୍ଟିଆ' । ]

ଜୋରିଜାରି—ବୈଦେ ବି. (ଫା)—ଜୋର୍‌ଜୁଲମ୍ (ଦେଖ)
Jorijāri    Jor-julam (See)

ଜୋରିବାନା—ପ୍ରାଦେ. (ସମ୍ବଲପୁର) ବି—ଜୋରିମାନା (ଦେଖ)
Joribānā    Jorimānā (See)

ଜୋରିମାନା—ବୈଦେ. ବି. (ଅ. ଜୁରମାନା)—ଅର୍ଥଦଣ୍ଡ—
Jorimānā    Fine; penalty.
জুরিমানা
**जुरमाना**

ଜୋରୁ—ଦେ. ବି. (ହି. ଜୋଡ଼ା=ଯୁଗ୍ମରୁ ଉର୍ଦ୍ଦୁ; ମୁସଲମାନୀଭାଷା)—
Joru    ଭାର୍ଯ୍ୟା—Wife.
জোরু
**जोरू**

ଜୋରୁବେଟୀ—ଦେ. ବି. (ଉର୍ଦ୍ଦୁ; ସହଚର ଶବ୍ଦ)—ସ୍ତ୍ରୀ ଓ କନ୍ୟା—
Joru-beṭi    Wife and daughter.

ଜୋରେଇବା—ଦେ. କ୍ରି— ୧ । ବଳୁଆ ହେବା—
Joreibā    1. To become strong.
୨ । କ୍ଷମତାବାନ୍ ହେବା—2. To become powerful.

ଜୋଲା—ବୈଦେ. ବି. (ଫା. ଜୋଲ୍‌ହା, ଜୁଲହ୍)—ମୁସଲମାନ୍ ତନ୍ତୁବାୟୁ
Jolā    ଜାତି—A Mahomedan weaver.
জোলা [ ଦ୍ର—କଟକ ସହରରେ 'ଜୋଲାସାହି' ନାମରେ ଗୋଟିଏ
**जोलहा** ବସ୍ତି ଅଛି ।]
( ଜୋଲ୍ହା, ଜୋଲ୍ଲା—ଅନ୍ୟରୂପ)

ଜୋଲା(ଲେ)ଇବା—ଦେ. କ୍ରି. (ସଂ. ଜଳ)—(କୌଣସି ସ୍ଥାନ) ଜଳାର୍ଦ୍ର
Jolā(le)ibā ହୋଇ ସନ୍ତସନ୍ତିଆ ହେବା; ଜଳଯୁକ୍ତ ହେବା—
জোলান (a place) To be saturated with water; to
(ଜୋଲେଇବା—ଅନ୍ୟରୂପ) be impregnated with water.

ଜୋଲାପ୍ (ଇତ୍ୟାଦି)—ବୈଦେ. ବି. (ଅ. ଜୁଲାବ୍; ପର୍ତ୍ତୁ. ଜଲାପା)—
Jolāp (etc)
(ଜୋଲାବ୍—ଅନ୍ୟରୂପ)    ଜୁଲାପ୍ ଇତ୍ୟାଦି (ଦେଖ)
Julāp etc. (See)

ଜୋଲି—ଦେ. ବି.—୧ । ଲଙ୍ଗଳର ଫାଳଖିଲା ବା ଠିଣ୍ଟିଲା—
Joḻi 1. The wooden pin which sets the ploughblade tight to the beam of the plough.
୨ । ଜୁଉଳି (ଦେଖ)
2. Ju-uḻi (See)

ଜୋଲିକି—ଦେ. ବି.—ଜୁଲୁକି (ଦେଖ)
Joḻıki    Juḻuki (See)

ଜୋଷ—ସଂ. ବି.—(ଜୁଷ୍ ଧାତୁ=ତୃପ୍ତ କରିବା; ତୃପ୍ତ ହେବା + ଭାବ. ଅ)
Josha    ୧ । ସ୍ୱଚ୍ଛନ୍ଦତା; ସୁଖ—1. Happiness; ease; enjoyment.
୨ । ସନ୍ତୋଷ—2. Contentment.
୩ । ସ୍ତୁତି; ପ୍ରଶଂସା—3. Praise.
୪ । ମୌନ—4. Silence.
୫ । ଲଂଘନ; ଉପବାସ—5. Fasting.

ଜୋଷଣ—ସଂ. ବି. (ଜୁଷ୍ ଧାତୁ=ତୃପ୍ତ ହେବା; ତୃପ୍ତ କରିବା+ଭାବ.
Joshaṇa    ଅନ)—ଜୋଷ (ଦେଖ)
Josha (See)

ଜୋଷମ୍—ସଂ.ଅ. (ଜୁଷ୍ ଧାତୁ+କରଣ ଅମ୍)—ତୁଷ୍ଣୀଭାବରେ;ମୌନଭାବରେ,
Josham    ଚୁପ୍ ହୋଇ—1. Silently.
୨। ସୁଖ ସ୍ୱଚ୍ଛନ୍ଦରେ —2. With ease.
୩ । ସଂପୂର୍ଣ୍ଣରୂପେ—3. Completely.

ଜୋଷା—ସଂ. ବି. ସ୍ତ୍ରୀ.—(ଜୁଷ୍ ଧାତୁ=ତୃପ୍ତ କରିବା+କର୍ତ୍ତୃ. ଅ+ସ୍ତ୍ରୀ.
Joshā    ଆ.)—ନାରୀ;ସ୍ତ୍ରୀ—Woman; a female.

ଜୋଷିତ୍—ସଂ. ବି. ସ୍ତ୍ରୀ (ଜୁଷ୍ ଧାତୁ=ତୃପ୍ତି କରିବା+କର୍ତ୍ତୃ. ଇତ୍)—
Joshita    ଜୋଷା (ଦେଖ)
Joshā (See)

ଜୋଷିତା—ସଂ. ବି. ସ୍ତ୍ରୀ. (ଜୁଷ୍ ଧାତୁ=ତୃପ୍ତି କରିବା+କର୍ତ୍ତୃ. ଇତ୍+ସ୍ତ୍ରୀ;
Joshitā    ଆ)—ଜୋଷା (ଦେଖ)
Joshā (See)

ଜୋହଲ—ଦେ. ବି.—ଜୋଲି (ଦେଖ)
Johaḻa    Joḻi (See)

ଜୋହାର (ଇତ୍ୟାଦି)—ଦେ. ବି.—ଜୁହାର ଇତ୍ୟାଦି (ଦେଖ)
Johāra (etc)    Juhāra etc (See)

ଜୋହାରିବା—ଦେ. ବି.—ଜୁହାର କରିବା (ଦେଖ)
Johāribā    Juhāra karibā (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃତ ୧ ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇ ଯଥାକ୍ରମେ ତାହାଁର ବିପରୀତ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅଁ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଗୋ' ନ ପାଇଲେ 'ଅଙ୍କୋ' ଦେଖିବେ; 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ଜୋହୁକୁମ୍**—ବୈଦେ. ଅ.—ଆପଣ ଯାହା କହିଲେ ତାହା ମୋର
Jo hukum ଶିରୋଧାର୍ଯ୍ୟ; ଆଜ୍ଞା ହଁ !
ଜୋ ହୁକୁମ A phrase meaning 'As you please'.
**जो हुकम**
ବୈଦେ. ବଣ.—ଯେ ଉପରସ୍ଥ ବ୍ୟକ୍ତିଙ୍କ ମନ ରକ୍ଷା କରିବା ପାଇଁ ସବୁ କାର୍ଯ୍ୟରେ ଓ କଥାରେ ହାଁ ହାଁ କରେ, ଅର୍ଥାତ୍ ତାଙ୍କର ଅନ୍ୟାଯ୍ୟ କଥାକୁ ମଧ୍ୟ ସମର୍ଥନ କରେ—A toad-eater; a fawning sycophant.

**ଜୋହ୍ଲା**—ବୈଦେ. ବି. (ଫା. ଜୋଲ୍‌ହା, ଜୁଲ୍‌ହା)—ଜୋଲା (ଦେଖ)
Johlā Jolā (See)

**ଜୋହ୍ଲା(ହ୍ଲେ)ଇବା**—ଦେ. କ୍ରି.—ଜୋଲାଇବା (ଦେଖ)
Johlā (hle)ibā Jolāibā (See)

**ଜୌ** (ଇତ୍ୟାଦି)—ଦେ. ବି. (ସଂ. ଜତୁ)—ଜଉ (ଇତ୍ୟାଦି) (ଦେଖ)
Jau (etc) Jau (etc) (See)

**ଜୌଜୁତ୍ସୁ**—ବୈଦେ. ବି. (ଯାପାନୀ)—ଜ୍ୟୁଜୁତ୍ସୁ (ଦେଖ)
Jaujutsu Jyujutsu (See)

**ଜୌତିଷ**—ଗ୍ରା. ବି.—(ସଂ. ଜ୍ୟୋତିଷ)—ଜଉତିଷ (ଦେଖ)
Jautisha Jautisha (See)

**ଜ୍ଞ**—ସଂ. ବଣ. ପୁଂ. (ଜ୍ଞା ଧାତୁ=ଜାଣିବା+କର୍ତ୍ତୃ. ଅ)—୧ । ଜ୍ଞାନୀ—
Jña 1. Having extensive knowledge; wise.
(ଜ୍ଞା—ସ୍ତ୍ରୀ) ୨ । ମନୀଷୀ; ପଣ୍ଡିତ—2. Learned.
[ ଏହି ଶବ୍ଦର ପ୍ରାୟ ସ୍ୱତନ୍ତ୍ର ପ୍ରୟୋଗ ନାହିଁ; ଉପସର୍ଗ ବା ଉପପଦ ପରେ ଏହାର ପ୍ରୟୋଗ ହୁଏ; ଯଥା—ବିଜ୍ଞ, ସୁଜ୍ଞ, ମିତଜ୍ଞ, ଶାସ୍ତ୍ରଜ୍ଞ ଇତ୍ୟାଦି । ]
୩ । ଦେଶକାଳଜ୍ଞ—
3. Conversant with the country and time.
୪ । ଅଭିଜ୍ଞ; ଅନୁଭବୀ—4. Experienced.
ସଂ. ବି.—୧ । ଜ୍ଞାନୀ ବ୍ୟକ୍ତି; ପଣ୍ଡିତ—
1. Philosopher; wise man.
୨ । ବ୍ରହ୍ମା—2. Brahmā.
୩ । ଚନ୍ଦ୍ର—3. The moon.
୪ । ମଙ୍ଗଳ ଗ୍ରହ—4. The planet Mars.
୫ । ବୁଧ ଗ୍ରହ—5. The planet Mercury.

**ଜ୍ଞପିତ**—ସଂ. ବଣ. ( ଜ୍ଞା ଧାତୁ=ଜାଣିବା; ଣିଚ (ଇ)=ଜ୍ଞପ୍ ଧାତୁ+
Jñapita କର୍ମ. ତ)—୧ । ବିଜ୍ଞପିତ; ଜଣାଇ ଦିଆ ଯାଇଥିବା (ବିଷୟ)—1. Notified; intimated
୨ । ପ୍ରକାଶିତ—2. Revealed; published.
୩ । ଶାଣିତ—3. Sharpened; whetted.
୪ । ପ୍ରକଟିତ; ଦୃଷ୍ଟ; ଦୃଷ୍ଟିକୁ ଆଗତ—4. Discovered; brought into view; seen.
୫ । ଶିକ୍ଷା ଦିଆ ଯାଇଥିବା—
5. Taught; expounded.
୬ । ଯାହାଙ୍କୁ ଜଣାଇ ଦିଆ ଯାଇ ଥାଏ—
6. (a person) who has been informed.

**ଜ୍ଞପ୍ତ**—ସଂ. ବଣ. (ଜ୍ଞା ଧାତୁ ଣିଚ=ଜଣାଇବା+କର୍ମ. ତ)—
Jñapta ଜ୍ଞପିତ (ଦେଖ)—Jñapita (See)

**ଜ୍ଞପ୍ତି**—ସଂ. ବି (ଜ୍ଞା ଧାତୁ, ଣିଚ୍+ଭାବ. ତି)—୧ । ଜ୍ଞାନ—
Jñapti 1. Knowledge.
୨ । ବୋଧ; ବୁଦ୍ଧି—
2. Perception; sense; understanding.
୩ । ଜାଣିବା—3. Knowing.
୪ । ବିଜ୍ଞାପନ—4. Notification; notice.

**ଜ୍ଞା** (ଧାତୁ)—ସଂ—୧ । ଜାଣିବା—
Jñā 1. To know.
୨ । ବୋଧକରିବା; ଇନ୍ଦ୍ରିୟ ଦ୍ୱାରା ଅନୁଭବ କରିବା—
2. To perceive by the senses.
୩ । ବୁଝିବା—3. To understand; to realise.

**ଜ୍ଞାତ**—ସଂ. ବଣ (ଜ୍ଞା ଧାତୁ+କର୍ମ. ତ)—୧ । ବିଦିତ—
Jñāta 1. Known; learnt
୨ । ପରିଚିତ—2. Acquainted with; aware of.
୩ । ଅବଗତ; ଜଣାଇ ଦିଆ ଯାଇଥିବା—
3. Informed.
୪ । କୌଣସି ବିଷୟ ଉତ୍ତମରୂପେ ଜାଣିଥିବା (ବ୍ୟକ୍ତି)—
4. Skilled; one who knows a matter well; well versed in any matter.

**ଜ୍ଞାତବ**—ଦେ. ବି (କଟେଇଅ)—ଖବର; ସନ୍ଦେଶ—
Jñātaba Information.
ବଣ. (ସଂ.ଜ୍ଞାତ) ୧ । ଜ୍ଞାତ (ବିଷୟ)—1. Known (thing).
୨ । ଅବଗତ (ବ୍ୟକ୍ତି)—2. Informed ( person ); knowing.

**ଜ୍ଞାତବ୍ୟ**—ସଂ. ବଣ ( ଜ୍ଞା ଧାତୁ+କର୍ମ. ତବ୍ୟ )—
Jñātabya ୧ । ଜ୍ଞେୟ; ଜାଣିବାର ଯୋଗ୍ୟ—
1. Knowable; capable of being known; fit to be known.
ଦେ. ବି—ଯାହା ଜାଣିବାର ବିଷୟ ବା ଯୋଗ୍ୟ—
A thing worth knowing.

**ଜ୍ଞାତଯୌବନା**—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ଜ୍ଞାତ+ଯୌବନ+ଅ)—
Jñāta jaubana ହିନ୍ଦୁଶାସ୍ତ୍ରରେ ବର୍ଣ୍ଣିତ ନାୟିକାଭେଦ; ଯେଉଁ ନାୟିକା ଆପଣାର ଯୌବନ ବିଷୟ ଜାଣିଅଛି—
A class of heroines in the Hindu love-plots; a lady who is conscious of having attained youth.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇପ୍ସ | ଉଥ | ଊ |
| ୨ | ଈ | ଊ | ରୁ | ଲୁ | ଯ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଥ | ଞ | ନ୍ |

[ଦ୍ର—ଏ ନାୟିକା ୨ ଶ୍ରେଣୀର; ନବୋଢ଼ା ଓ ବିଶ୍ରବ୍ଧନବୋଢା—
ହି. ଶବ୍ଦସାଗର । ]

**ଜ୍ଞାତସାର**—ସଂ. ବି (୬ଷ୍ଠୀ ତତ୍; ଜ୍ଞାତ+ସାର)—ଜ୍ଞାନର ସୀମା—
Jnāta-sāra — Range of knowledge; ken.
ସଂ ବିଣ (ବହୁବ୍ରୀହି)—ବିବେକୀ; ଜ୍ଞାନୀ—
Learned; considerate.

ତତବଥ ମୃଷା ବୁଝେ ତ ଜ୍ଞାତସାର
ମୃଷା ବୋଇଲ ହେ ତୁମ୍ଭେ ତ ବଳଆର—କୃଷ୍ଣସିଂହ. ମହାଭାରତ. ଶାନ୍ତି ।

**ଜ୍ଞାତସାରକୁ ଆସିବା**—ଦେ. କ୍ରି—ଜଣାଯିବା—
Jnāta-sāraku āsibā — To come to one's knowledge or notice.
ज्ञातसारे आसा
**ज्ञाननेमे आना**
(ଜ୍ଞାତସାରରେ ଆସିବା—ଅନ୍ୟରୂପ)

**ଜ୍ଞାତସାରରେ**—ଦେ. କ୍ରି. ବିଣ—ଜାଣିକରି; ଜାଣିଶୁଣି; ଜ୍ଞାନଗୋଚରରେ
Jnāta-sāra-re — Knowingly; wittingly.
ज्ञातसारे
**जाननेमे**

**ଜ୍ଞାତସିଦ୍ଧାନ୍ତ**—ସଂ. ବିଣ. ପୁଂ ( ଜ୍ଞାତ ହୋଇଅଛି ସିଦ୍ଧାନ୍ତ ଯାହାଦ୍ୱାରା—ବହୁବ୍ରୀହି)—୧ । ଶାସ୍ତ୍ରଜ୍ଞାନଯୁକ୍ତ—
Jnāta-siddhānta — 1. Versed in the scriptures.
୨ । ବୈଜ୍ଞାନିକ; ବିଜ୍ଞାନବେତ୍ତା; ତାତ୍ତ୍ୱିକ—
2 Acquainted with any science.

**ଜ୍ଞାତା**—ସଂ. ବିଣ. ପୁଂ (ଜ୍ଞା ଧାତୁ+କର୍ତ୍ତୃ. ତୃ, ୧ମା. ୧ବ)—
Jnātā — ୧ । ଜ୍ଞାନବାନ୍; ଯେ କୌଣସି ବିଷୟ ଜାଣିଥାଏ ବା ବୁଝିଥାଏ—1. Knowing or understanding a thing.
( ଜ୍ଞାତ୍ରୀ— ସ୍ତ୍ରୀ )
୨ । ଜ୍ଞାନୀ—2. Learned; wise; sagacious.

**ଜ୍ଞାତାର୍ଥ**—ସଂ. ବିଣ. ପୁଂ ( ଜ୍ଞାତ ହୋଇଅଛି ଅର୍ଥ ଯାହାଦ୍ୱାରା ବା ଯାହାର; ବହୁବ୍ରୀହି)—୧ । ଯେ କୌଣସି ବିଷୟର ଅର୍ଥ ବା ମର୍ମ ବୁଝିଅଛି—1. Knowing or understanding the meaning or purport of a thing.
Jnātārtha
(ଜ୍ଞାତୀ—ସ୍ତ୍ରୀ)
୨ । ଯାହାର ଅର୍ଥ ଜଣାଯାଇଅଛି—2. Of which the meaning or purport is known.

**ଜ୍ଞାତି**—ସଂ. ବି. ( ଜ୍ଞା ଧାତୁ+କର୍ତ୍ତୃ ବା କର୍ମ ତି )—୧ । ଦାୟାଦ; ଉତ୍ତରାଧିକାରୀ—1. Heir.
Jnāti
୨ । ସ୍ୱଜନ; ସପିଣ୍ଡ; ସଗୋତ୍ର—2. Relative; kinsman; a collateral relation; agnate.

ବାହାରୁଛନ୍ତି ଏବେ ଜ୍ଞାତିଙ୍କି ସଂହାରି ।
କୃଷ୍ଣସିଂହ, ମହାଭାରତ ଉଦ୍ଯୋଗ ।

**ଜ୍ଞାତି କୁଟୁମ୍ବ**—ଦେ. ବି.—(ଏକାର୍ଥବୋଧକ ସହଚର ଶବ୍ଦ ଦ୍ୱୟ; ସଂ. ଜ୍ଞାତି+କୁଟୁମ୍ବ)—୧ । ଭାଇଅ; ସଗୋତ୍ର—
Jnāti kutumba — 1. Collateral relations.
ज्ञाति कुटुंब
୨ । ଆପଣା ପରିବାରଭୁକ୍ତ ଓ ବହିର୍ଭୂତ ସ୍ୱଜନବର୍ଗ—
2. Relations and kinsmen; kins of all descriptions; kith and kin.

**ଜ୍ଞାତି ଗୋଷ୍ଠୀ**—ଦେ. ବି. (ସଂ. ଜ୍ଞାତି+ଗୋଷ୍ଠୀ)—
Jnāti goshthi — ଜ୍ଞାତି କୁଟୁମ୍ବ (ଦେଖ)
Jnāti kutumba (See)

**ଜ୍ଞାତିତା**—ସଂ. ବି. (ଜ୍ଞାତି+ଭାବେ. ତା)—୧ । ଜ୍ଞାତିର ଧର୍ମ ବା ବ୍ୟବହାର; ସ୍ୱଜନତା; ସଗୋତ୍ରତା—
Jnātitā
(ଜ୍ଞାତିତ୍ୱ—ଅନ୍ୟରୂପ) Kinship; relationship.
୨ । ଜ୍ଞାତିର ଅନିଷ୍ଟ ଚେଷ୍ଟା; ଜ୍ଞାତି ପ୍ରତି ଅନିଷ୍ଟ ପ୍ରଦର୍ଶନ—
2. Thinking or doing injury to a kinsman.

**ଜ୍ଞାତିତ୍ୱ ସାଧିବା**—ଦେ. କ୍ରି.—ଭଗାରିଙ୍କ ପରି ଅନିଷ୍ଟ ସାଧନ କରିବା—
Jnātitwa sādhibā — To do or hatch mischief as a jealous kinsman.

**ଜ୍ଞାତିବନ୍ଧୁ**—ସଂ. ବି. ( ବିପରୀତାର୍ଥକ ସହଚର ଶବ୍ଦଦ୍ୱୟ )—ରକ୍ତସମ୍ପର୍କୀୟ
Jnāti-bandhu — ଭାଇଆ ଓ ବିବାହ ସମ୍ପର୍କୀୟ ବାନ୍ଧବ; ସଗୋତ୍ର ଓ ଅସଗୋତ୍ର ଆତ୍ମୀୟ; ସଗୋତ୍ର ଓ ଅସଗୋତ୍ର ସପିଣ୍ଡ ବ୍ୟକ୍ତିଗଣ—Kinsmen (by birth) and relations (by marriage.)

[ଦ୍ର—ହିନ୍ଦୁ ବ୍ୟବସ୍ଥାଶାସ୍ତ୍ର ( ସ୍ମୃତି ) ଅନୁସାରେ ମୃତବ୍ୟକ୍ତିଙ୍କୁ ଯେଉଁମାନେ ପିଣ୍ଡ ଦେଇ ତାହାର ତ୍ୟକ୍ତ ସମ୍ପତ୍ତିରେ ଉତ୍ତରାଧିକାରୀ ହୋଇପାରିବେ ସେମାନେ ସପିଣ୍ଡ ଓ ୨ ଶ୍ରେଣୀରେ ବିଭକ୍ତ ଯଥା—
୧ । ସଗୋତ୍ର— ଅର୍ଥାତ୍ ଯେଉଁମାନେ ଆପଣା ଗୋତ୍ରରେ ଜନ୍ମ ହୋଇ ଅଛନ୍ତି; ଯଥା—ପୁଅ, ନାତି, ପୁରୁଷ, କଣ୍ଟକରି ଇତ୍ୟାଦି ଏମାନେ ଜ୍ଞାତି ।
୨ । ଅସଗୋତ୍ର—ଅର୍ଥାତ୍ ଯେଉଁମାନେ ବିବାହ ସମ୍ପର୍କରେ ଆପଣାର ଆତ୍ମୀୟ, ଯଥା—ଝିଅର ପୁଅ, ଝିଅର ନାତି ଇତ୍ୟାଦି, ଏମାନେ ବନ୍ଧୁ । ]

**ଜ୍ଞାତିବିରୋଧ**—ସଂ. ବି. (ଜ୍ଞାତି+ବିରୋଧ, ୭ମୀ ତତ୍)—ଭାଇଆଳି କଳି;
Jnāti-birodha — ଜ୍ଞାତିମାନଙ୍କ ମଧ୍ୟରେ ଘଟିବା ବିବାଦ—
Quarrel amongst kinsmen.

**ଜ୍ଞାତିଭାଇ**—ଦେ. ବି. (ସଂ. ଜ୍ଞାତି+ଭ୍ରାତୃ)—୧ । ଜ୍ଞାତି କୁଟୁମ୍ବ—
Jnāti-bhāi — 1. Kinsmen.
ज्ञाति भाई
୨ । ବହୁ ପୁରୁଷ ଛଡ଼ା ଭାଇଲେଖା ବ୍ୟକ୍ତି—
2. An agnatic cousin; a cousin many degrees removed; a distant cousin.

**ଜ୍ଞାତିଭେଦ**—ସଂ. ବି. (ଜ୍ଞାତି+ଭେଦ; ୭ମୀ ତତ୍)—
Jnāti-bheda — ଜ୍ଞାତିବିରୋଧ (ଦେଖ)—
Jnāti birodha (See)

ସାଧାରଣ ଲୋକେ ଅପଠ ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ; ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଉ' ନ ମିଳିଲେ 'ଗାଈ' ଖୋଜିବେ, 'କୃଥ' ନ ମିଳିଲେ 'କୃଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧା' ନ ପାଇଲେ 'ଅର୍ଦ୍ଧା' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ଜ୍ଞାତିଶତ୍ରୁ**—ସଂ. ବି. (ଦ୍ୱନ୍ଦ୍ୱ; ଜ୍ଞାତି+ଶତ୍ରୁ)—ଯେଉଁ ଲୋକ ଆପଣାର ଜ୍ଞାତି
Jn̄āti-śatru ଅଥଚ ଶତ୍ରୁ; ଭଗାରି—
Jealous kinsman.

**ଜ୍ଞାତେୟ**—ସଂ. ବି. (ଜ୍ଞାତି+ଭାବେ ଏୟ)—ଜ୍ଞାତିତ୍ୱ—
Jn̄āteya Kinship; relationship.

**ଜ୍ଞାନ**—ସଂ. ବି (ଜ୍ଞା. ଧାତୁ+ଭାବ. ଅନ)—୧ । ଜାଣିବା—
Jn̄āna 1. Knowing.
୨ । ବୋଧ; ବୁଦ୍ଧି—
2. Knowledge; an idea; understanding.
୩ । ପ୍ରତୀତି; ଇନ୍ଦ୍ରିୟ ଦ୍ୱାରା ଅନୁଭୂତି—3. Perception.
୪ । ତତ୍ତ୍ୱଜ୍ଞାନ; ପରମାର୍ଥଜ୍ଞାନ—
4. Wisdom; true knowledge; religious or philosophical or scientific knowledge.
୫ । ଚୈତନ୍ୟ; ସଂଜ୍ଞା; ଚେତା—5. Consciousness.
୬ । ହିତାହିତ ବିଚାର ବୁଦ୍ଧି—6. Perception of what is right and what is wrong.
୭ । ଭଲ ମନ୍ଦ ବାଛିବାର ବୋଧ ଶକ୍ତି; ହୋସ୍; ବୋଧଶକ୍ତି—
7. Discretion.
ଦେ. ବି—୧ । ବାଳିକାର ଯୌବନପ୍ରାପ୍ତି—
1. Physical maturity of a girl.
( ଯଥା—ସେ ବାଳିକାଟି ଜ୍ଞାନ ପାଇଲାଣି । )
୨ । ବୟଃପ୍ରାପ୍ତ ହେବା ଅବସ୍ଥା; ସାବାଲଗୀ—2. Majority.
୩ । ଖିଆଲ; ସ୍ମରଣ—3. Remembrance.
( ଯଥା—ମୋର ଏ କଥାରେ ଜ୍ଞାନ ନ ଥିଲା । )
[ ଦ୍ର—'ଜ୍ଞାନ'କୁ କବି ଓ ପଣ୍ଡିତମାନେ ସୂର୍ଯ୍ୟ, ଚନ୍ଦ୍ର, ଚକ୍ଷୁର ଅଞ୍ଜନ, ଖଡ୍ଗ, ଅଗ୍ନି, ସମୁଦ୍ର ଆଦି ସଙ୍ଗେ ତୁଳନା କରି ଅଛନ୍ତି । ଏଥିଯୋଗୁଁ ଜ୍ଞାନାଗ୍ନି, ଜ୍ଞାନାର୍ଣ୍ଣବ, ଜ୍ଞାନୋଦୟ, ଜ୍ଞାନୋଷ୍ଟ, ଜ୍ଞାନାଞ୍ଜନ, ଜ୍ଞାନେନ୍ଦୁ ଇତ୍ୟାଦି ପଦ ସ୍ଥଳବିଶେଷରେ ବ୍ୟବହୃତ ହୋଇ ଥାଏ ।
'ଜ୍ଞାନ' ଶବ୍ଦ ଉଚ୍ଚାରଣ କରିବା ସମୟେ 'ଜ୍ଞ'ର ଅନୁନାସିକ ଉଚ୍ଚାରଣ ପ୍ରକଟିତ ନ ହୋଇ ସାଧାରଣତଃ 'ଗ୍ୟାନ' ବୋଲି ଉଚ୍ଚାରିତ ହୁଏ । ]

**ଜ୍ଞାନ କରିବା**—ଦେ· କ୍ରି—୧ । ବିଚାର କରିବା—
Jn̄āna karibā 1. To consider.
ज्ञान करना ୨ । ଖାତିର କରିବା; ସମ୍ମାନ କରିବା; ଗଜର କରିବା—
2. To regard, to look up with respect.
୩ । ଭ୍ରୂକ୍ଷେପ କରିବା—3. To care; to have regard for.
୪ । ଚେତିବା; ସାବଧାନ ହେବା—
4. To take care; to eware.
୫ । ସ୍ମରଣ କରିବା—5. To remember.

**ଜ୍ଞାନକାଣ୍ଡ**—ସଂ. ବି. (୬ଷ୍ଠୀ ତତ୍; ଜ୍ଞାନ+କାଣ୍ଡ=ଅଧ୍ୟାୟ, ପ୍ରକରଣ)—
Jn̄āna-kāṇḍa ପ୍ରତ୍ୟେକ ବେଦର ତତ୍ତ୍ୱଜ୍ଞାନ ବର୍ଣ୍ଣନାତ୍ମକ ଅଂଶ—
(କର୍ମକାଣ୍ଡ—ବିପରୀତ) The philosophical portion of each of the Bedas.

**ଜ୍ଞାନକୃତ**—ସଂ. ବିଣ. ( ୩ୟା ତତ୍; ଜ୍ଞାନ+କୃତ )—
Jn̄āna-kṛuta ଜାଣି ଶୁଣି କରା ଯାଇଥିବା—
(ଅଜ୍ଞାନକୃତ—ବିପରୀତ) Done or committed wilfully.

**ଜ୍ଞାନକୃତ ନରହତ୍ୟା**—ସଂ. ବି—ଜାଣି ଶୁଣି ମନୁଷ୍ୟ ମାରିବାର ( ହତ୍ୟା
Jn̄āna-kṛuta narahatyā କରିବାର) ଉଦ୍ଦେଶ୍ୟରେ ମାରିବା—
Culpable homicide.
[ ଦ୍ର—ଏହି ଅପରାଧର ବର୍ଣ୍ଣନା ଓ ସଂଜ୍ଞା ଭାରତୀୟ ଦଣ୍ଡବିଧି ଆଇନର ୨୯୯ ଓ ୩୦୦ ଦଫାରେ ଦିଆଯାଇ ଅଛି । ]

**ଜ୍ଞାନକୃତ ପାପ**—ସଂ. ବି. ( କର୍ମଧା; ଜ୍ଞାନକୃତ+ପାପ )—
Jn̄āna-kṛuta pāpa ଯେଉଁ ପାପକୁ ପୂର୍ବରୁ ପାପ ବୋଲି ଜାଣି ଶୁଣି ମନୁଷ୍ୟ ଆଚରଣ କରିଥାଏ—
Sinful acts of commission.

**ଜ୍ଞାନଗମ୍ୟ**—ସଂ. ବିଣ. ( ୩ୟା ତତ୍; ଜ୍ଞାନ+ଗମ୍ୟ )—
Jn̄āna-gamya ୧ । ବୋଧଗମ୍ୟ; ଜ୍ଞେୟ—
1. Knowable; capable of being known or understood.
୨ । ଯାହା ବୁଝାଯାଇ ପାରେ—2. Comprehensible.

**ଜ୍ଞାନଗୋଚର**—ସଂ. ବିଣ. ( ୩ୟା ତତ୍; ଜ୍ଞାନ+ଗୋଚର )—
Jn̄āna-gochara ଜ୍ଞାନଗମ୍ୟ (ଦେଖ)
Jn̄āna-gamya ( see)

**ଜ୍ଞାନଚକ୍ଷୁଃ**—ସଂ. ବି. ( ଜ୍ଞାନ+ଚକ୍ଷୁଃ; ଜ୍ଞାନ ରୂପକ ଚକ୍ଷୁ=ରୂପକ
Jn̄āna-chakshuḥ କର୍ମଧା )—ବୋଧଶକ୍ତି ( ଯାହାକୁ ମନୁଷ୍ୟର ଚକ୍ଷୁ ସଙ୍ଗେ ତୁଳନା କରାଯାଇ ଥାଏ )—
Mind's eye; inner perception; the eye of intelligence.
ସଂ. ବିଣ. (ବହୁବ୍ରୀହି)—ବେଦଜ୍ଞାନରୂପ ନେତ୍ରବିଶିଷ୍ଟ (ବ୍ୟକ୍ତି)—
A person who is versed in the Bedas.

**ଜ୍ଞାନତଃ**—ସଂ. କ୍ରି. ବିଣ (ଜ୍ଞାନ+ତସ୍)—ଜାଣି ଶୁଣି—
Jn̄ānataḥ Knowingly; wittingly; wilfully; with eyes wide open.

**ଜ୍ଞାନତତ୍ତ୍ୱ**—ସଂ. ବି (ଜ୍ଞାନ+ତତ୍ତ୍ୱ, ୬ଷ୍ଠୀ ତତ୍)—ଆଧ୍ୟାତ୍ମିକ ଜ୍ଞାନ—
Jn̄āna-tattwa True knowledge; philosophical or higher knowledge

**ଜ୍ଞାନଦ**—ସଂ. ବିଣ. ପୁଂ. ( ଜ୍ଞାନ+ଦା ଧାତୁ+କର୍ତ୍ତୃ. ଅ )—
Jn̄ānada ଯାହା ମନୁଷ୍ୟକୁ ଜ୍ଞାନ ବା ବୋଧଶକ୍ତି ଦିଏ—
(ଜ୍ଞାନଦା—ସ୍ତ୍ରୀ) Imparting knowledge; communicating ideas.

| ୯ | ଛ | ଡ | ର,ଝ | ଞ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ତ | ନୃଅ | ଋ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ·ଋ | ନ୍ |

**ଜ୍ଞାନଦର୍ପଣ**—ସଂ. ବି (ଜ୍ଞାନ+ଦର୍ପଣ; ରୂପକ କର୍ମଧା)—
Jñāna-darpaṇa ଜ୍ଞାନରୂପ ଆରସୀ—Wisdom (compared to a mirror).

**ଜ୍ଞାନଦାସ**—ଦେ. ବି (ବ୍ୟଙ୍ଗୋକ୍ତି)—ବେତ୍ରାଦ୍; (ଯାହାର ପ୍ରହାର ଦ୍ୱାରା Jñāna-dāsa ବାଳକ ବା ଶିଷ୍ୟ ବା ଅପରାଧୀର ଚୈତନ୍ୟ ଉଦୟ ଜ୍ଞାନଦାস ହୁଏ); ଚାଉଳ ଦାସ—Thrashing cane (ironically).

( ଯଥା—ପିଲାମାନେ ପାଠରେ ମନ ଦେଉ ନାହାନ୍ତି, ଜ୍ଞାନଦାସେ ବାହାରିଲେ ସମସ୍ତେ ପାଠରେ ଲାଗିଯିବେ=ଅର୍ଥାତ୍ ବେତ ବାହାରିଲେ ସମସ୍ତେ ଭୟରେ ପଢ଼ିବସିବେ । )

**ଜ୍ଞାନଦୂଷଣ**—ଦେ. ବିଣ—ଦୁଷ୍ଟବୁଦ୍ଧି—
Jñāna-dūshaṇa Wicked.

ଜ୍ଞାନ-ଦୂଷଣ କାମ ଶୋଷଣ ଦେବା କଷଣ ସବୁ—ଉପେନ୍ଦ୍ର ଭଞ୍ଜ. ପ୍ରେମସୁଧାନିଧି ।

**ଜ୍ଞାନ ପାଇବା**—ଦେ. କ୍ରି—୧ । (ବାଳିକା) ପ୍ରଥମେ ଋତୁମତୀ ହେବା—
Jñāna pāibā 1. (a girl) To have the menses for ଜ୍ଞାନ পাওআ the first time; to attain maturity.
୨ । ଅନୁଭବଦ୍ୱାରା ଅଭିଜ୍ଞତା ଲାଭ କରିବା—
2. To learn a thing by experience.
୩ । (ବାଳକ ବାଳିକା) ବୟଃପ୍ରାପ୍ତ ବା ସାବାଳକ ହେବା—
3. To attain majority.
୪ । ( ବାଳକ ବାଳିକା ) ହିତାହିତ ବୁଝିବାଉଳି ହେବା; ହୋସ୍ ପାଇବା—4. To attain the age discretion.
୫ । ଶିକ୍ଷାକରିବା; ଜ୍ଞାନଲାଭ କରିବା—
5. To acquire knowledge.

**ଜ୍ଞାନପୂର୍ବକ**—ସଂ. କ୍ରି. ବିଣ ( ବହୁବ୍ରୀହି; ଜ୍ଞାନ+ପୂର୍ବ+କ )—
Jñāna-pūrbaka ଜ୍ଞାନତଃ (ଦେଖ)
Jñānataḥ (See).

**ଜ୍ଞାନବନ୍ତ**—ଦେ. ବିଣ (ସଂ. ଜ୍ଞାନବତ୍)—ଜ୍ଞାନବାନ୍ (ଦେଖ)
Jñāna-banta Jñānabān (See).

**ଜ୍ଞାନବନ୍ତା**—ଦେ. (ପଦ୍ୟ) ବିଣ (ସଂ. ଜ୍ଞାନବତ୍)—ଜ୍ଞାନବାନ୍ (ଦେଖ)
Jñānabantā Jñānabān (See).

ଏହୁ ସକାଶରୁଷ୍ଟ କୁମାରଙ୍କ ଠାରୁ
ବୋଲୁଛନ୍ତି ସ୍ୱନ୍ଦେ ସେ ଅତି ଜ୍ଞାନବନ୍ତା—କୃଷ୍ଣସିଂହ, ମହାଭାରତ. ବନ ।

**ଜ୍ଞାନବାନ୍**—ସଂ. ବିଣ. ପୁଂ (ଜ୍ଞାନ+ଅସ୍ତି ଅର୍ଥରେ ବତୁ; ୧ମା. ୧ବ)—
Jñānabān ୧ । ଜ୍ଞାନୀ—1. Wise.
୨ ଶାସ୍ତ୍ରଜ୍ଞ; ପଣ୍ଡିତ—2. Learned.
୩ । ତତ୍ତ୍ୱବୁଦ୍ଧିସମ୍ପନ୍ନ—
(ଜ୍ଞାନବତୀ—ସ୍ତ୍ରୀ) 3. Intelligent; knowing.

**ଜ୍ଞାନବିଛୁ**—ପ୍ରାଦେ (ସମ୍ବଲପୁର) ବି—ଅଜ୍ଞାବିଛୁ (ଦେଖ)
Jñāna-bichhu Ājñā-bichhu (See).

**ଜ୍ଞାନବିପର୍ଯ୍ୟୟ**—ସଂ. ବି (ଜ୍ଞାନ+ବିପର୍ଯ୍ୟୟ=୬ଷ୍ଠୀ ତତ୍)—ବୁଦ୍ଧିଭ୍ରଂଶ—
Jñāna-biparjyaya Subversion of knowledge; overthrow of understanding.

**ଜ୍ଞାନବିରୁଦ୍ଧ**—ସଂ. ବିଣ ( ଜ୍ଞାନ=ବୁଦ୍ଧି+ବିରୁଦ୍ଧ; ୬ଷ୍ଠୀ ତତ୍ )—
Jñāna-biruddha ନିଜର ବିଶ୍ୱାସ ବା ଜାଣିବା କଥାର ବିପରୀତ—
Opposed to one's knowledge or belief.

**ଜ୍ଞାନବୀଜ**—ସଂ. ବି ( ଜ୍ଞାନ ରୂପକ ବୀଜ, ରୂପକ କର୍ମଧା )—
Jñāna-bija ଜ୍ଞାନରୂପ ମଞ୍ଜି; ଶିଷ୍ୟ ଜ୍ଞାନଲାଭ କରିବା ନିମନ୍ତେ ଗୁରୁଙ୍କଦ୍ୱାରା ଦିଆଯିବା ପ୍ରଥମ ଶିକ୍ଷା—
The seeds of knowledge; rudiments of knowledge.

**ଜ୍ଞାନବୁଡ଼ା**—ଦେ. ବିଣ—୧ । ଯେ ଜ୍ଞାନ ବା ବିବେକ ଲୁପ୍ତ କରେ—
Jñāna-burḍā 1. Causing one to lose balance of mind.
୨ । ଯେ ବିମୁଗ୍ଧ କରେ—2. Captivating.
ଯେ ଗୋପ ଯୁବାଙ୍କର ଜ୍ଞାନବୁଡ଼ା—ଉପେନ୍ଦ୍ର ଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଜ୍ଞାନ ବୁଡ଼ା(ଡ଼େ)ଇବା**—ଦେ. କ୍ରି—୧ । ବିବେକ ବା ଧୈର୍ଯ୍ୟକୁ ଲୋପ
Jñāna-burḍā(rḍe)ibā କରିବା—1. To cause one to lose patience or balance of mind.
୨ । ବିମୁଗ୍ଧ କରିବା—2. To captivate.
ଭୋଳା ଜ୍ଞାନ ବୁଡ଼ାଇବ, ଶିଳୀମୁଖ ବଳିବା ଗୋପକୁ ଛଡ଼ାଇବ ।
ଉପେନ୍ଦ୍ର ଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଜ୍ଞାନ ବୁଡ଼ିବା**—ଦେ. କ୍ରି—୧ । ଅଜ୍ଞାନ ହେବା; ଚେତା ବୁଡ଼ିବା—
Jñāna-burḍibā 1. Becoming senseless.
(ଜ୍ଞାନ ବୁଡ଼ିଯିବା—ଅନ୍ୟରୂପ) ୨ । ବୁଦ୍ଧି ହଜି ଯିବା—
2. Losing balance of mind or mental equilibrium.

**ଜ୍ଞାନଭ୍ରଂଶ**—ସଂ. ବି (ଜ୍ଞାନ+ଭ୍ରଂଶ, ୬ଷ୍ଠୀ ତତ୍)—ଜ୍ଞାନଲୋପ—
Jñāna-bhraṁśa Cessation of balance of mind.
ଦେ. ବିଣ—ଜ୍ଞାନଭ୍ରଷ୍ଟ (ଦେଖ)
Jñāna-bhrashṭa (See)
ବୋଲେ ମୁଁ ନୋହେ ଜ୍ଞାନଭ୍ରଂଶ,
କେମନ୍ତେ ଦେଲ ନର ମାଂସ । ଜଗନ୍ନାଥ, ଭାଗବତ ।

**ଜ୍ଞାନଭ୍ରଷ୍ଟ**—ସଂ. ବିଣ. ପୁଂ (ବହୁବ୍ରୀହି)—୧ । ଯାହାର ଜ୍ଞାନଭ୍ରଂଶ ଘଟିଅଛି—
Jñāna-bhrashṭa 1. One who has lost balance of mind.
(ଜ୍ଞାନଭ୍ରଷ୍ଟା—ସ୍ତ୍ରୀ)
୨ । ପାଗଳ; ବାଉଳ—2. Mad.
୩ । ହିତାହିତ ବିବେଚନାଶୂନ୍ୟ—
3. Devoid of discrimination.

**ଜ୍ଞାନମଞ୍ଜି**—ଦେ. ବି (ବ୍ୟଙ୍ଗ; ଯାହା ପେଟରେ ପଡ଼ିଲେ ମନୁଷ୍ୟର ଚେତନା
Jñāna-mañji ଲାଭ ହୁଏ )—ଚାଉଳ, ଗୁହୁଳ, ଧାନ ଜ୍ଞାନବীচি ଇତ୍ୟାଦି ଖାଦ୍ୟ ଶସ୍ୟ—
Food-grains, such as rice, paddy etc.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚକ୍ରଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ୨ ବା ୧ ଚକ୍ରଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଜ୍ଞାନମିଶ୍ରା ଭକ୍ତି**—ସଂ. ଦେ. ବି—(ଭକ୍ତି ତଳେ ନୋଟ (ଦେଖ)
Jnana-misra bhakti See notes under Bhakti.)
ଯେଉଁ ଭକ୍ତି ଲାଭ କରିବା ପାଇଁ ତତ୍ତ୍ୱଜ୍ଞାନର ସାଧନ କରା ଯାଏ—
Devotion to be attained by the pursuit of pure knowledge.

**ଜ୍ଞାନଯୋଗ**—ସଂ. ବି (ଜ୍ଞାନ+ଯୋଗ; ରୂପକ କର୍ମଧା)—୧ । ଅଧ୍ୟାତ୍ମ-
Jnana-joga ଜ୍ଞାନ ଲାଭ କରିବାର ଶାସ୍ତ୍ରନିର୍ଦ୍ଦିଷ୍ଟ ପ୍ରଣାଳୀ ବା ମାର୍ଗ—1. Contemplative devotion; the way to salvation through the attainment of higher knowledge.
୨ । (୭ମୀ ତତ୍) ଜ୍ଞାନ ସଙ୍ଗେ ସମ୍ବନ୍ଧ—
2. Connection with wisdom.

**ଜ୍ଞାନରାଜ**—ସଂ. ବି (ନାମ)—'ସିଦ୍ଧାନ୍ତସୁନ୍ଦର' ନାମକ ଜ୍ୟୋତିଷ ଗ୍ରନ୍ଥର
Jnana-raja ପ୍ରଣେତା—The name of the author of the Sanscrit astrological book 'Siddhanta Sundara.'
[ ଦ୍ର—ଏହାଙ୍କ ବଂଶ ଦୈବଜ୍ଞ; ଗୋଦାବରୀ ଓ ବିଦର୍ଭନଦୀ ଦ୍ୱୟର ସଙ୍ଗମ ସ୍ଥଳରେ ଏହାଙ୍କର ବାସସ୍ଥାନ ଥିଲା । ]

**ଜ୍ଞାନସାଧନ**—ସଂ. ବି (ଜ୍ଞାନ+ସାଧନ, ୬ଷ୍ଠୀ ତତ୍)—୧ । ଜ୍ଞାନଲାଭ—
Jnana-sadhana 1. Attainment of knowledge.
୨ । ଜ୍ଞାନ-ଲାଭରେ ସହାୟ—
2. A help for the attainment of knowledge.
୩ । ଇନ୍ଦ୍ରିୟ—3. The senses.
ସଂ. ବିଣ—ଯେ ଜ୍ଞାନଲାଭ କରିବାରେ ସହାୟକ—Helpful towards the acquisition of knowledge.

**ଜ୍ଞାନ ହେବା**—ଦେ. କ୍ରି—୧ । ଜଣାଯିବା—
Jnana heba 1 Seeming; appearing.
ଜ୍ଞାନ ହଓଆ ୨ । ଚୈତନ୍ୟ ଉଦୟ ହେବା—
ग्यान होना 2. Becoming conscious.
୩ । (ବାଳକ ବାଳିକାଙ୍କ) ବୟଃପ୍ରାପ୍ତ ହେବା; ପ୍ରଥମ ଯୌବନରେ ପଦାର୍ପଣ କରିବା—
3. Attainment of the age of discretion or maturity; stepping into adolescence.

**ଜ୍ଞାନାଞ୍ଜନ**—ସଂ. ବି (ଜ୍ଞାନ+ଅଞ୍ଜନ, ରୂପକ କର୍ମଧା)—ଅଜ୍ଞାନ ଅନ୍ଧ
Jnananjana ଦିବ୍ୟ ଦୃଷ୍ଟିକୁ ଉଜ୍ଜ୍ୱଳକାରୀ ଜ୍ଞାନ—
The salve of knowledge.
[ ଦ୍ର—ଚକ୍ଷୁର ଦୃଷ୍ଟି ଉଜ୍ଜ୍ୱଳତର କରିବା ନିମନ୍ତେ ଲୋକେ ଚକ୍ଷୁରେ ଅଞ୍ଜନ ଦେଇନ୍ତି । ସେହିପରି ଜ୍ଞାନ ମନୁଷ୍ୟର ମନରୂପ ଚକ୍ଷୁ ବା ଦିବ୍ୟ ଦୃଷ୍ଟିକୁ ଉଜ୍ଜ୍ୱଳ କରେ ବୋଲି ଜ୍ଞାନକୁ ଅଞ୍ଜନ ସଙ୍ଗେ ତୁଳନା କରାଯାଏ । ]

**ଜ୍ଞାନାଞ୍ଜନଶଲାକା**—ସଂ. ବି. ସ୍ତ୍ରୀ (ଜ୍ଞାନ+ଅଞ୍ଜନ+ଶଲାକା, ରୂପକ ଓ
Jnananjana-salaka ୬ଷ୍ଠୀ ତତ୍)—ଶିଷ୍ୟକୁ ଗୁରୁ ଦେଇଥିବା ଶିକ୍ଷା—A preceptor's spiritual teaching imparted to the pupil; a pencil used by the preceptor for applying the salve of knowledge to the mind's eye of the pupil (allegorical sense).
[ ଦ୍ର—ଜ୍ଞାନରୂପ ଅଞ୍ଜନକୁ ଶିଷ୍ୟର ଦିବ୍ୟଚକ୍ଷୁରେ ଦେଇ ଶିଷ୍ୟର ଜ୍ଞାନଚକ୍ଷୁର ଦୃଷ୍ଟିକୁ ଉଜ୍ଜ୍ୱଳ କରିବା ନିମନ୍ତେ ଗୁରୁ ଶିଷ୍ୟକୁ ଯେଉଁ ଶିକ୍ଷା ପ୍ରଦାନ କରନ୍ତି ତାହାକୁ ଶାସ୍ତ୍ରକାରମାନେ ଆଖିରେ କଜ୍ଜ୍ୱଳ ଲଗାଇବା କାଠି ସଙ୍ଗେ ତୁଳନା କରି ଲେଖି ଅଛନ୍ତି ଯେ ଅଜ୍ଞାନତିମିରାନ୍ଧ ଶିଷ୍ୟର ଦିବ୍ୟ ଚକ୍ଷୁକୁ ଗୁରୁ ଜ୍ଞାନାଞ୍ଜନ-ଶଲାକାଦ୍ୱାରା ଉନ୍ମୀଳିତ କରନ୍ତି । ]

**ଜ୍ଞାନାପନ୍ନ**—ସଂ. ବିଣ (ଜ୍ଞାନ+ଆପନ୍ନ, ୨ୟା ତତ୍)—୧ । ଜ୍ଞାନପ୍ରାପ୍ତ;
Jnanapanna ଜ୍ଞାନୀ—1. Learned; wise.
(ଜ୍ଞାନାପନ୍ନା—ସ୍ତ୍ରୀ) ୨ । ଯେ ଜାଣେ—2 Knowing

**ଜ୍ଞାନୀ**—ସଂ. ବିଣ. ପୁଂ. (ଜ୍ଞାନିନ୍ ଶବ୍ଦ; ଜ୍ଞାନ+ଅସ୍ତି ଅର୍ଥେ. ଇନ୍; ୧ମା. ୧ବ.)—୧ । ବିଜ୍ଞ—1. Wise.
Jnani
(ଜ୍ଞାନିନୀ—ସ୍ତ୍ରୀ) ୨ । ପଣ୍ଡିତ; ଶାସ୍ତ୍ରଜ୍ଞ—2 Learned.
୩ । ବିଚକ୍ଷଣ—3. Skilful.
୪ । ବୋଧ ସମ୍ପନ୍ନ; ବୁଦ୍ଧିମାନ୍—4. Intelligent.
ସଂ. ବି. ପୁଂ—୧ । ଆତ୍ମତତ୍ତ୍ୱଜ୍ଞ ବ୍ୟକ୍ତି—1. A sage.
୨ । ଦୈବଜ୍ଞ—
2 A fore-teller; a fortune-teller.

**ଜ୍ଞାନେନ୍ଦ୍ରିୟ**—ସଂ. ବି. (୬ଷ୍ଠୀ ତତ୍; ଜ୍ଞାନ+ଇନ୍ଦ୍ରିୟ)—
Jnanendriya (ହିନ୍ଦୁ ଶାସ୍ତ୍ରାନୁସାରେ) ବାହ୍ୟବସ୍ତୁକୁ ଜାଣି ପାରିବା
(କର୍ମେନ୍ଦ୍ରିୟ—ବିପରୀତ) ନିମନ୍ତେ ଶରୀରର ଇନ୍ଦ୍ରିୟ ସକଳ; ଶରୀରସ୍ଥ ପଞ୍ଚେନ୍ଦ୍ରିୟ (ଯଥା—ଚକ୍ଷୁ, କର୍ଣ୍ଣ, ନାସିକା ଜିହ୍ୱା ଓ ତ୍ୱକ୍)—The organs or perception or sensation, (numbering 5 according to Hindu philosophy, viz. 1, The Eye or the organ of sight; 2 The Ear or the organ of hearing; 3. The Nose or the organ of smelling; 4. The Tongue or the organ or taste; 5. The Skin or the organ of touch.)

**ଜ୍ଞାନୋଦୟ**—ସଂ. ବି. (୬ଷ୍ଠୀ ତତ୍; ଜ୍ଞାନ+ଉଦୟ)—
Jnanodaya ୧ । ମନୁଷ୍ୟ ମନରେ ଜ୍ଞାନ ବା ବୋଧରୂପ ସୂର୍ଯ୍ୟଙ୍କର ଆବିର୍ଭାବ—1. The rise or dawn of knowledge in the human mind.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଜ୍ଞ | ଇଯ଼ | ଉଅ | ଛ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଯ୍ୟ | ଯ | ସ | ଗ୍ୟଁ | ଇଅ | ଊ | କ୍ଷ |

୨ । ମନୁଷ୍ୟ ଜନ୍ମ ହେବା ପରେ ସର୍ବପ୍ରଥମେ ନିଜର ଜଗତରେ ଅସ୍ତିତ୍ୱ ବିଷୟର ଉପଲବ୍ଧି—2. One's first consciousness of one's existence in the world as a responsible being.

**ଜ୍ଞାନ୍ତି**—ଗ୍ରା. ବି. ( ସଂ. ଜ୍ଞାତି )—ଜ୍ଞାତି ( ଦେଖ )
Jnānti — Jnāti See )

**ଜ୍ଞାପକ**—ସଂ. ବିଣ. ପୁଂ. ( ଜ୍ଞା ଧାତୁ; ଣିଚ୍+କର୍ତ୍ତୃ. ଅକ )—
Jnāpaka ୧ । ସୂଚକ; ଯେ ( ପଦାର୍ଥ ବା ମନୁଷ୍ୟ ) କୌଣସି ବିଷୟ ଜଣାଇ ଦିଏ—1. Indicating; notifying; informing; making known.
[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ । ଯଥା—ସମୟଜ୍ଞାପକ, ଅନିଷ୍ଟଜ୍ଞାପକ । ]
୨ । ଯେ ଅଜ୍ଞାନକୁ ଜ୍ଞାନ ଦିଏ—
2. Imparting knowledge.
ସଂ. ବି—୧ । ଏତଲା ଦେଲାବାଲା ବ୍ୟକ୍ତି—
1 Informant; reporter.
୨ । ଶିକ୍ଷକ—2. Teacher; instructor.

**ଜ୍ଞାପନ**—ସଂ. ବି. ( ଜ୍ଞା ଧାତୁ; ଣିଚ+ଭାବ. ଅନ )—
Jnāpana ୧ । ଜଣାଇବା; ବିଦିତ କରାଇବା—
1. Act of announcing; notifying; making a thing known.
୨ । ଆବେଦନ—2. Application.
୩ । ଏତଲା ଦେବା—
3. Giving information; reporting.
୪ । ଶିକ୍ଷା ଦେବା—
4. Instructing; teaching.

**ଜ୍ଞାପନୀୟ**—ସଂ. ବିଣ. (ଜ୍ଞା ଧାତୁ; ଣିଚ+କର୍ମ ଅନୀୟ)—
Jnāpaniya ଜଣାଇବାର ଯୋଗ୍ୟ—Worth notifying or announcing; fit to be announced.

**ଜ୍ଞାପୟିତା**—ସଂ. ବିଣ. ପୁଂ. (ଜ୍ଞା ଧାତୁ; ଣିଚ+କର୍ତ୍ତୃ. ତୃ. ୧ମା.୧ବ.)—
Jnāpayitā ଯେ ଜଣାଇ ଦିଏ—Informant; one who
(ଜ୍ଞାପୟିତ୍ରୀ—ସ୍ତ୍ରୀ) brings a thing to the notice of another.

**ଜ୍ଞାପି** (ଧାତୁ)—ସଂ. (ଜ୍ଞା ଧାତୁ+ଣିଚ)—୧ । ଜଣାଇବା—
Jnāpi (root). 1. To cause to know.
୨ । ଏତଲା ଦେବା—
2. To inform; to bring to the notice of.

**ଜ୍ଞାପିତ**—ସଂ. ବିଣ. (ଜ୍ଞା ଧାତୁ; ଣିଚ+କର୍ମ ତ)—
Jnāpitā ଜଣାଇ ଦିଆଯାଇଥିବା—
Made known; published; announced.

**ଜ୍ଞେୟ**—ସଂ. ବିଣ. (ଜ୍ଞା ଧାତୁ+କର୍ମ. ଯ)—ଜ୍ଞାତବ୍ୟ (ଦେଖ)
Jneya — Jnātabya (See)

**ଜ୍ୱର୍** (ଧାତୁ)—ସଂ—ସନ୍ତପ୍ତ ହେବା—
Jwar (root) To be heated.

**ଜ୍ୱର**—ସଂ. ବି (ଜ୍ୱର୍ ଧାତୁ+କରଣ. ଅ)—୧ । ଗାତ୍ରଦାହ, ଗାତ୍ରତାପ-
Jwara ଯୁକ୍ତରୋଗ—1. Fever; burning sensation in the body.
୨ । ମନୋଦୁଃଖ—2. Grief.
୩ । ପୀଡ଼ା—3. Pain; trouble.
ଦେ. ବିଣ—ଅତ୍ୟାଚାରୀ—Oppressive; tyrannous.
ହିରଣ୍ୟ କଶିପୁ ଅସୁର, ତ୍ରୈଲୋକ୍ୟ ମଣ୍ଡେ ଅତି ଜ୍ୱର ।
ଜଗନ୍ନାଥ. ଭାଗବତ ।

**ଜ୍ୱରଘ୍ନ**—ସଂ. ବିଣ. (ଜ୍ୱର+ହନ ଧାତୁ+କର୍ତ୍ତୃ. ଅ)—ଯାହା ଜ୍ୱରକୁ
Jwara-ghna ଆରୋଗ୍ୟ କରେ; ଜ୍ୱରନାଶକ (ଔଷଧ)—
Febrifuge; dispelling or curing fever; antifebrile.

**ଜ୍ୱରନାଶନ**—ସଂ. ବିଣ. (ଜ୍ୱର+ନାଶନ)—ଜ୍ୱରଘ୍ନ (ଦେଖ)
Jwara-nāśana — Jwaraghna (See)
ଦେ. ବି—ଅଷ୍ଟ୍ରେଲିଆରୁ ଆନୀତ ବୃକ୍ଷବିଶେଷ—
The Eucalyptus tree.
[ ଦ୍ର—ଏଥିର ପତ୍ର ତେଜପତ୍ର ପରି ଓ ଏହା ଲେମ୍ବୁଗଛ ପରି ବାହାରିବା ରସ ପରି ଗନ୍ଧଯୁକ୍ତ । ଏହି ପତ୍ରରୁ ତେଲ ଓ ଅର୍କ ପ୍ରସ୍ତୁତ ହୁଏ । ଏ ବୃକ୍ଷ ଯେଉଁ ଅଞ୍ଚଳରେ ଲଗାଯାଏ, ସେଠାରେ ମାଲେରିଆ ଜ୍ୱର କମିଯାଏ । ଏହା ଅଷ୍ଟ୍ରେଲିଆରେ ପରୀକ୍ଷା କରାଯାଇ ଅଛି । ଏ ଗଛର ଗଣ୍ଡିରୁ ଏକପ୍ରକାର ଝୁଣା ପରି ଅଠା ବାହାରେ, ସେ ଅଠାକୁ ଶୁଖାଇ ଧୂପ ଓ ବାର୍ଣ୍ଣିସ୍ କରାଯାଏ । ଏ ଗଛରୁ ପ୍ରତିବର୍ଷ ମନକୁ ଛାଲ ଛାଡ଼େ । ]

**ଜ୍ୱରପ୍ରକୋପ**—ସଂ. ବି. (ଜ୍ୱର+ପ୍ରକୋପ; ୬ଷ୍ଠୀ ତତ୍)—
Jwara-prakopa ଜ୍ୱରର ତେଜ ବା ଦାଉ—
The rage or paroxysm of fever.

**ଜ୍ୱରବୋଧ**—ସଂ. ବି. (ଜ୍ୱର+ବୋଧ)—୧ । ଜ୍ୱର ଅନୁଭବ—
Jwara-bodha 1. Feeling of fever.
୨ । ଜ୍ୱର ଦେଖାଇବା ଅବସ୍ଥା—2. Feverishness.

**ଜ୍ୱରଭାବ**—ସଂ. ବି. (ଜ୍ୱର+ଭାବ; ୬ଷ୍ଠୀ ତତ୍)—ଜ୍ୱର ଦେଖାଇବା
Jwara-bhāba ଅବସ୍ଥା—Feverishness.

**ଜ୍ୱରହନ୍ତା**—ସଂ. ବିଣ. (ଜ୍ୱର+ହନ୍ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)—
Jwara-hantā ଜ୍ୱରଘ୍ନ (ଦେଖ)
(ଜ୍ୱରହନ୍ତ୍ରୀ—ସ୍ତ୍ରୀ) Jwaraghna (See)

**ଜ୍ୱରହନ୍ତ୍ରୀ**—ସଂ. ବି. ( ଜ୍ୱର+ହନ୍ ଧାତୁ+କର୍ତ୍ତୃ. ତୃ+ସ୍ତ୍ରୀ ଈ; ୬ଷ୍ଠୀ
Jwara-hantrī ତତ୍)—ମଞ୍ଜିଷ୍ଠା—
The Indian madder; Rubia Manjistha.

ସାଧାରଣ ଲୋକେ ଅପର ପୃଷ୍ଠାରେ ସଙ୍କେତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ଜ୍ୱରାକ୍ରାନ୍ତ—ସଂ. ବିଣ. ପୁଂ. (ଜ୍ୱର+ଆକ୍ରାନ୍ତ; ୩ୟା ତତ୍)—
Jwarākrānta ଜ୍ୱରପ୍ରପୀଡ଼ିତ—Attacked with fever; suffering from fever.
(ଜ୍ୱରାକ୍ରାନ୍ତା—ସ୍ତ୍ରୀ)

ଜ୍ୱରାଗ୍ନି—ସଂ. ବି. (ଜ୍ୱର+ଅଗ୍ନି; ରୂପକ)—ଜ୍ୱରଜନିତ ତାପ—
Jwarāgni Feverish heat.

ଜ୍ୱରାଙ୍କୁଶ—ସଂ. ବିଣ. (୬ଷ୍ଠୀ ତତ୍; ଜ୍ୱର+ଅଙ୍କୁଶ)—ଜ୍ୱରଘ୍ନ (ଦେଖ)
Jwarāṅkuśa Jwaraghna (See)

ଜ୍ୱରାତିସାର—ସଂ. ବି. (ଜ୍ୱର+ଅତିସାର ମ. ପ. ଲୋ)—
Jwarātisāra ଜ୍ୱରସଙ୍ଗେ ହେବା ପତଳା ଝାଡ଼ା ବା ଗ୍ରହଣୀ—
Dysentery with fever.
[ ଦ୍ର—ଜୀର୍ଣ୍ଣଜ୍ୱରରେ ଏହା ଗୋଟିଏ ଉପଦ୍ରବ ।]

ଜ୍ୱରାନ୍ତକ—ସଂ. ବିଣ. (ଜ୍ୱର+ଅନ୍ତକ, ୬ଷ୍ଠୀ ତତ୍)—ଜ୍ୱରଘ୍ନ (ଦେଖ)
Jwarāntaka Jwaraghna (See)

ଜ୍ୱରାପହା—ସଂ. ବିଣ. (ଜ୍ୱର+ଅପହା=ନାଶକ)—
Jwarāpahā ଜ୍ୱରଘ୍ନ (ଦେଖ)
Jwaraghna (See)

ଜ୍ୱରାରି—ସଂ. ବିଣ. ( ଜ୍ୱର+ଅରି; ୬ଷ୍ଠୀ ତତ୍ )—ଜ୍ୱରଘ୍ନ (ଦେଖ)
Jwarāri Jwaraghna (See)

ଜ୍ୱରାଶନି—ସଂ. ବିଣ. ( ଜ୍ୱର+ଅଶନି; ୬ଷ୍ଠୀ ତତ୍ )—ଜ୍ୱରଘ୍ନ (ଦେଖ)
Jwarāśani Jwaraghna (See)

ଜ୍ୱରିତ—ସଂ. ବିଣ. ପୁଂ. (ଜ୍ୱର+ସଞ୍ଜାତାର୍ଥେ ଇତ)—ଜ୍ୱରାକ୍ରାନ୍ତ; ଜ୍ୱର-
Jwarita ଯୁକ୍ତ—Feverish; attacked with or suffering from fever.
(ଜ୍ୱରିତା—ସ୍ତ୍ରୀ)

ଜ୍ୱରୀ—ସଂ. ବିଣ. ପୁଂ. (ଜ୍ୱର+ଅସ୍ତି ଅର୍ଥେ. ଇନ୍; ୧ମା, ୧ବ)—ଜ୍ୱରାକ୍ରାନ୍ତ—
Jwarī Attacked with or suffering from fever.
(ଜ୍ୱରିଣୀ—ସ୍ତ୍ରୀ)

ଜ୍ୱଲ୍ (ଧାତୁ)—ସଂ—ଦୀପ୍ତ ହେବା—
Jwal (root) To illumine; to blaze up.

ଜ୍ୱଲଜ୍ଜ୍ୱଲ—ସଂ. ବିଣ. (ଜ୍ୱଳତ୍+ଜ୍ୱଳ)—ପ୍ରଦୀପ୍ତ—
Jwalajjwala Blazing.
ସଂ. କ୍ରି. ବିଣ—ପ୍ରଚଣ୍ଡ ତେଜରେ—Blazingly.

ଜ୍ୱଳତ୍—ସଂ. ବିଣ. [ଜ୍ୱଲ୍ ଧାତୁ+କର୍ତ୍ତୃ. ଅତ୍ (ଶତୃ)]—ଜଳୁଥିବା—
Jwalat Blazing; burning.
[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ; ଯଥା—ଜ୍ୱଲଦଗ୍ନି, ଜ୍ୱଲଦଙ୍ଗାର ।]

ଜ୍ୱଳନ—ସଂ. ବି. (ଜ୍ୱଲ୍ ଧାତୁ+ଭାବ. ଅନ)—
Jwalana ୧ । ଦୀପନ; ନିଆଁ ଲଗାଇବା—1. Burning.
୨ । ଜ୍ୱାଳା—2. Blaze.
୩ । ଜଳିବା—3. Flaming.
୪ । ଦାଉଦାଉ ହେବା—4. Shining; glittering.
୫ । ଦୀପ୍ତି—5. Lustre; glitter.
୬ । ଅଗ୍ନିଶିଖା—6 A flame of fire.
୭ । (+କର୍ତ୍ତୃ. ଅନ)=ଅଗ୍ନି—Fire
୮ । (+ଭାବ. ଅନ) ପୋଡ଼ାଜଳା; ଦାହ—8. Burning sensation; inflammation.
୯ । (+କର୍ତ୍ତୃ. ଅନ) ଧଳାଚିତା ଗଛ—
9. Leadwort (plant).
ସଂ. ବିଣ. (+କର୍ତ୍ତୃ. ଅନ) ଜଳୁଥିବା—
Blazing; burning.

ଜ୍ୱଳନ୍ତ—ଦେ. ବିଣ. (ସଂ. ଜ୍ୱଳତ୍)—୧ । ଜଳୁଥିବା; ପ୍ରଦୀପ୍ତ—
Jwalanta 1. Burning; blazing.
জ্বলন্ত ୨ । ଜାଜ୍ୱଲ୍ୟମାନ—
जलता हुआ 2. Shining; dazzling; bright; brilliant.

ଜ୍ୱଳନ୍ତ ଅଙ୍ଗାର—ଦେ. ବି. (ସଂ. ଜ୍ୱଳତ୍+ଅଙ୍ଗାର)—ଜଳୁଥିବା ଅଙ୍ଗାର-
Jwalanta aṅgāra Live coal; burning coal or charcoal.
জ্বলন্ত অঙ্গার

ଜ୍ୱଳନ୍ତ ନିଦର୍ଶନ—ଦେ. ବି.—୧ । ନିଃସନ୍ଦେହ ପ୍ରମାଣ—
Jwalanta nidarśana 1 Clear evidence.
জ্বলন্ত নিদর্শন ୨ । ଜାଜ୍ୱଲ୍ୟମାନ ଉଦାହରଣ—2. A bright or brilliant or dazzling example.
[ଦ୍ର—ଏହିପରି ଜ୍ୱଳନ୍ତ ପ୍ରତିଭା, ଜ୍ୱଳନ୍ତ ତେଜ ଆଦି ବ୍ୟବହୃତ ହୁଏ ।]

ଜ୍ୱଳନ୍ତ ପ୍ରମାଣ—ଦେ. ବି.—ଜ୍ୱଳନ୍ତ ନିଦର୍ଶନ (ଦେଖ)
Jwalanta pramāṇa Jwalanta nidarśana (See)
জ্বলন্ত প্রমাণ

ଜ୍ୱଳନ୍ତା—ଦେ. ବିଣ. ( ବ. ଜ୍ୱଳତ୍ )—ପ୍ରଦୀପ୍ତ; ଜଳୁଥିବା—
Jwalantā Burning; blazing.
জ্বলন্ত ଜ୍ୱଳନ୍ତା ଅଗ୍ନି ଯା ବଦନ, ନୟନ ଗୋଲକ ଗଗନ ।
जलता हुआ ଜଗନ୍ନାଥ. ଭାଗବତ ।

ଜ୍ୱଳିତ—ସଂ. ବିଣ.—(ଜ୍ୱଲ ଧାତୁ+କର୍ତ୍ତୃ. ତ)—୧ । ଯାହା ଜଳୁଅଛି
Jwalita ବା ଜଳି ଉଠି ଅଛି—1. Burning.
୨ । ଦଗ୍ଧ—2. Burnt.
୩ । ଦୀପ୍ତ; ଉଜ୍ଜ୍ୱଳ—
3. Bright; dazzling; kindled.
୪ । ଆଲୋକିତ—4. Illuminated.
ସଂ. ବି. (+ଭାବ. ତ) ଜ୍ୱଳନ; ଜଳିବା—Burning.

ଜ୍ୱଳିବା—ଦେ. କ୍ରି. ( ସଂ. ଜ୍ୱଲ ଧାତୁ )—ଜଳିବା; ଦୀପ୍ତ ହେବା—
Jwalibā To burn; to blaze.
জ্বলা ଜ୍ୱଳି କରିବ ତାକୁ ତ୍ରାସେ କାତର ।
जरना, जलना ରାଧାନାଥ ମେଘଦୂତ ।

ଜ୍ୱାଳ—ସଂ. ବି. (ଜ୍ୱଲ୍ ଧାତୁ+କର୍ତ୍ତୃ. ଅ)—ଜ୍ୱାଳା (ଦେଖ)
Jwāla Jwālā (See)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ଣ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ୱ | ନ୍ |

ଜ୍ୱାଳା—ସଂ. ବି.—(ଜ୍ୱଲ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—
Jwāḻā ୧ । ଅଗ୍ନିଶିଖା—1. A flame.

ଶର ଜ୍ୱାଳାଙ୍କରେ ଭୂମ୍ବର ସୈନ୍ୟ ତୃଣ—
ବନକୁ ପୋଡ଼ି ଦେଲେ ଅର୍ଜୁନ ଜାଣ । କୃଷ୍ଣସିଂହ. ମହାଭାରତ. ଦ୍ରୋଣ

୨ । ପ୍ରଚଣ୍ଡ ବା ଉଜ୍ଜ୍ୱଳ ଆଲୋକ—
2. Illumination; bright light.

୩ । ଶରୀରର ପ୍ରଦାହ ବା ଜଳାପୋଡ଼ା—
3. Inflammation; burning sensation.

୪ । ଦେହରେ ନିଆଁ ଲୁଗା ମାଡ଼ିବାଦ୍ୱାରା ଯେଉଁ କଷ୍ଟ ଅନୁଭୂତ ହୁଏ; ନିଆଁରେ ପୋଡ଼ି ହେବା ଦ୍ୱାରା ଅନୁଭୂତ କଷ୍ଟ—4. Burning pain.

୫ । ଦୁଃଖ—5. Misery.

୬ । କଷ୍ଟ; କ୍ଲେଶ—6. Trouble; pain; pangs.

୭ । ତୀବ୍ରତା—7. Virulence.

୮ । ଦାହ; ନିର୍ଯାତନ; ଅତ୍ୟାଚାର—
8. Oppression; torment; torture.

[ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ବିଭିନ୍ନ ପ୍ରକାର କଷ୍ଟାନୁଭୂତି ପ୍ରକାଶ କରେ; ଯଥା—ପେଟର ଜ୍ୱାଳା; ସଂସାରର ଜ୍ୱାଳା; ପିଲାଙ୍କ ଜ୍ୱାଳା, ମୁରବୀଙ୍କ ଜ୍ୱାଳା । ]

୯ । ପୋଡ଼ା ଭାତ; ଦଗ୍ଧାନ୍ନ—9. Burnt rice.

ଦେ. ବି.—(ଯୋଗୀ ବା ବାୟୁସାଧକମାନଙ୍କର ବ୍ୟବହୃତ ଶବ୍ଦ)—
ମୁଖ—Mouth.

ଜ୍ୱାଳଣ କାଠ—ପ୍ରାଦେ. ( ସିଂହଭୂମ ) ବି—ଜାଳେଣି କାଠ—
Jwāḻaṇa kāṭha Fuel.
(ଜ୍ୱାଳନ୍ କାଠ—ଅନ୍ୟରୂପ)

ଜ୍ୱାଳାତନ—ଦେ. ବିଣ. ( ବଂ ରୁ ଅନୁକୃତ )—ଜାଳାତନ ( ଦେଖ )
Jwāḻātana Jāḻātana ( See )

ଜ୍ୱାଳାବକ୍ତ୍ର—ସଂ. ବି. ( ଜ୍ୱାଳା+ବକ୍ତ୍ର; ବହୁବ୍ରୀହି; ହଳାହଳ ବିଷପାନ
Jwāḻābaktra ହେତୁରୁ ଏହାଙ୍କ କଣ୍ଠ ସର୍ବଦା ଜଳୁ ଥିବାରୁ )—
୧ । ଶିବ; ମହାଦେବ—1. An epithet of Śiba.
୨ । ବ୍ରହ୍ମା—2. Brahmā.

ଜ୍ୱାଳାମୁଖୀ—ସଂ. ବି (ଜ୍ୱାଳା+ମୁଖ+ଇନ୍)—୧ । ଚୀନିକ ଭୁରସ୍ଥର ହିନ୍ଦୁ
Jwāḻā-mukhī ତୀର୍ଥ ବିଶେଷ (ଯେଉଁଠାରେ ଭଗବତୀଙ୍କ ଜିହ୍ୱା ପତିତ ହୋଇଥିବାର ବିଷୟ ପୁରାଣରେ ଲେଖା ଅଛି )—
1. The name of a famous holy place in Chinese Tartary whither the Hindus go on pilgrimage.

୨ । ଆଗ୍ନେୟଗିରି—2. A volcano; a place where subterranean fire breaks out.

୩ । ପଞ୍ଜାବର ଉତ୍ତରରେ ହିମାଳୟ ପର୍ବତର ନିମ୍ନ ଦେଶରେ ଅବସ୍ଥିତ ଅଗ୍ନି ଉଦ୍ଗୀରଣ କରୁଥିବା ହିନ୍ଦୁ ତୀର୍ଥ ବିଶେଷ—
3. Name of a holy place of Hindu pilgrimage at the foot of the Himalayas.

ଜ୍ୱାଳାଯନ୍ତ୍ରଣା—ସଂ. ବି (ଜ୍ୱାଳା ଓ ଯନ୍ତ୍ରଣା; ଏକାର୍ଥବୋଧକ ସମ୍ମତର)—
Jwāḻa-jantraṇā ବିଶେଷ ଯନ୍ତ୍ରଣା—Pangs; torture.

ଜ୍ୱାଳିତ—ସଂ. ବିଣ. (ଜ୍ୱଲ ଧାତୁ ଣିଚ୍=ଜ୍ୱାଳଧାତୁ+କର୍ମ ତ)—
Jwāḻita ୧ । ଜଳାଯାଇଥିବା; ଦାହିତ—1. Burnt.
୨ । ଦୀପିତ—2. Kindled; lighted.
୩ । ସନ୍ତାପିତ; କ୍ଲେଶିତ—3 Afflicted; troubled.

ଜ୍ୱାଳିନୀ—ସଂ. ବି. ସ୍ତ୍ରୀ (ଜ୍ୱାଳନ୍+ସ୍ତ୍ରୀ ଈ)—ଦୁର୍ଗା; ପାର୍ବତୀ—
Jwāḻini The Goddess Durgā

ଜ୍ୱାଳୀ—ସଂ. ବି. ପୁଂ (ଜ୍ୱାଳା+ଇନ୍, ୧ମା ୧ବ)—ଜ୍ୱାଳାବକ୍ତ୍ର; ଶିବ—
Jwāḻi Śiba.

ଜ୍ୟା (ଧାତୁ)—ସଂ.—ଜୀର୍ଣ୍ଣ ହେବା—To be worn out;
Jyā (root) to wear away.

ଜ୍ୟା—ସଂ. ବି. ସ୍ତ୍ରୀ (ଜ୍ୟା ଧାତୁ+କର୍ତ୍ତୃ କ୍ୱିପ୍; ଯାହା କ୍ରମଶଃ ଜୀର୍ଣ୍ଣ ବା
Jyā କ୍ଷୟ ହୁଏ)—୧ । ଧନୁର ଗୁଣ—1. Bow-string.
୨ । ପୃଥିବୀ—2. The earth.

କାହିଁତ ଜ୍ୟା ଜାମାତା ମୁଁ ବୈତ୍ୟାରି ବୋଲଇ
କଥ କବନ୍ଧ କରିଛ ଯିବୁ ଆଜ କାହିଁ ? ଉପେନ୍ଦ୍ର ଭଞ୍ଜ. ବୈଦେହୀଶ ବିଳାସ ।

୩ । ମାତା—3. Mother.

୪ । ( ଜ୍ୟାମିତି ) ବୃତ୍ତର ପ୍ରାନ୍ତଦ୍ୱୟକୁ ଯୋଗ କରିଥିବା ସରଳରେଖା—
4. ( geometry ) The chord of an arc.

ଦେ ବି—ଜିଆ; ଜିଆକାଡ଼; ମହୀଲତା—Earth-worm.

ଜ୍ୟାବାଳୀ—ଦେ. ବି. ( ଜ୍ୟାରୂପ ବାଳୀ ବା ସ୍ତ୍ରୀ; ରୂପକ)—
Jyābaḻi ୧ । ଭୂଦେବୀ—1. The earth personified.
୨ । ( ସଂ. ଜାବାଳ ) ଜାବାଳୀ ( ଦେଖ )
2 Jābāḻi ( See )

(୧,୨) ବନବାସୀବର ସଙ୍ଗ ଲୋକତ
ବରାହ ମୂର୍ତ୍ତିକ ଜ୍ୟାବଳୀ ଯୁକ୍ତ । ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

ଜ୍ୟାମିତି—ସଂ. ବି. ( ଜ୍ୟା=ପୃଥିବୀ, ବୃତ୍ତଖଣ୍ଡର ଗୁଣରେଖା+ମା
Jyāmiti ଧାତୁ+ଭାବ. ତି )—କ୍ଷେତ୍ରତତ୍ତ୍ୱ ବା ରେଖାଗଣିତ—
Geometry.

[ ଦ୍ର—ସଂସ୍କୃତ ଧାତୁପ୍ରତ୍ୟୟ ଅନୁସାରେ ଜ୍ୟାମିତି ଶବ୍ଦର ଅର୍ଥ କ୍ଷେତ୍ରତତ୍ତ୍ୱ ( Geometry ) ନ ହୋଇ କ୍ଷେତ୍ରପରିମାଣ ( Mensuration ) ବା ତ୍ରିକୋଣମିତି ( Trigonometry ) ହେବ । ଅତଏବ ଏ ଶବ୍ଦ ଇଂରାଜି ଜିଓମେଟ୍ରୀରୁ ( Geometry ) ଉତ୍ପନ୍ନ ବୋଲି ଅନୁମିତ ହୁଏ । ]

ଜ୍ୟାୟାନ୍—ସଂ. ବିଣ. ପୁଂ. ( ପ୍ରଶଂସ୍ୟ ବା ବୃଦ୍ଧ+ଅତି ଅର୍ଥରେ. ଈୟସ;
Jyāyān ନିପାତନ; ୧ମା. ୧ବ)—
(ଜ୍ୟାୟସୀ—ସ୍ତ୍ରୀ) ୧ । ଦୁଇ ଜଣଙ୍କ ମଧ୍ୟରେ ବଡ଼; ବୟସରେ ବଡ଼—
(କନୀୟାନ—ବିପରୀତ) 1. Elder; older.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୂଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୨ । ବର୍ଷୀୟାନ୍; ଅତି ବୃଦ୍ଧ; ପୁରାତନ—
2. Very old or aged; ancient

୩ । ପ୍ରଶଂସାର୍ହ; ପ୍ରଶଂସନୀୟ—
3. Commendable; praiseworthy.

୪ । ସର୍ବପ୍ରଥମ—4. First.

୫ । ଅଗ୍ରଜ—5. Eldest.

୬ । ପୋଢ଼ୁଅ; ପ୍ରଥମ ଜାତ—6. First-born.

୭ । ଯେ ବୟସରେ ବଡ଼—7. Elderly.

୮ । ସର୍ବୋତ୍ତମ—8. Best.

୯ । ଉତ୍କୃଷ୍ଟତର—9. Higher; superior.

୧୦ । ଗୁରୁତର—10. Greater.

**ଜ୍ୟାରୋପ**—ସ. ବି. ( ଜ୍ୟା+ଆରୋପ; ୬ଷ୍ଠୀ ତତ୍ ) —ଧନୁରେ ଗୁଣ
Jyāropa ଚଢ଼ାଇବା—Stringing of a bow.

**ଜ୍ୟାରୋପଣ**—ସ. ବି. ( ଜ୍ୟା+ଆରୋପଣ; ୬ଷ୍ଠୀ ତତ୍ )—ଧନୁରେ
Jyāropaṇa ଗୁଣ ଚଢ଼ାଇବା—Stringing of a bow.

**ଜ୍ୟୁଜୁତ୍ସୁ**—ବୈଦେ. ( ଯାପାନୀ ) ବି. ( ମୂଳ. ସ. ଯୁଯୁତ୍ସୁ=ଯୁଦ୍ଧ
Jyujutsu କରିବାକୁ ଇଚ୍ଛୁକ )—ଯାପାନ ଦେଶ ପ୍ରଚଳିତ ଆକ୍ରମଣାର୍ଥ ଓ ଆତ୍ମରକ୍ଷାର୍ଥ ପ୍ରଯୁଜ୍ୟ ଅଙ୍ଗଚାଳନ—
Japaneese gymnastics used for attack and defence.

**ଜ୍ୟେଷ୍ଠ**—ସ. ବିଣ. ପୁଂ. ( ପ୍ରଶସ୍ୟ ବା ବୃଦ୍ଧ+ଅତି ଅର୍ଥରେ ଇଷ୍ଠ;
Jyeshtha ଜ୍ୟାଦେଶ )—ବୃଦ୍ଧତମ; ଅତି ବୃଦ୍ଧ—Oldest.
( ଜ୍ୟେଷ୍ଠା—ସ୍ତ୍ରୀ )
( କନିଷ୍ଠ—ବିପରୀତ )

**ଜ୍ୟେଷ୍ଠତାତ**—ସ ବି. ପୁଂ. ( ଜ୍ୟେଷ୍ଠ+ତାତ; କର୍ମଧା )—ବଡ଼ବାପ;
Jyeshṭha-tāta ଦେଠା; ଦେଢ଼ୁଭା—Father's elder brother; elder paternal uncle.

**ଜ୍ୟେଷ୍ଠବର୍ଣ୍ଣ**—ସ ବି. ( ଜ୍ୟେଷ୍ଠ+ବର୍ଣ୍ଣ; କର୍ମଧା )—ହିନ୍ଦୁମାନଙ୍କର
Jyeshṭha-barṇṇa ଚତୁର୍ବର୍ଣ୍ଣ ମଧ୍ୟରେ ଉତ୍କୃଷ୍ଟ ବର୍ଣ୍ଣ ବା ଜାତି; ବ୍ରାହ୍ମଣଜାତି—The Brāhmaṇa caste amongst the Hindus.

**ଜ୍ୟେଷ୍ଠଶ୍ୱଶ୍ରୂ**—ସ. ବି. ସ୍ତ୍ରୀ. ( ଜ୍ୟେଷ୍ଠା+ଶ୍ୱଶ୍ରୂ; କର୍ମଧା )—ଦେଢ଼ଶାଶୁ;
Jyeshṭā-śwaśrū ପତ୍ନୀର ବଡ଼ ଭଉଣୀ—Wife's elder sister.

**ଜ୍ୟେଷ୍ଠା**—ସ ବି. ସ୍ତ୍ରୀ. ( ଜ୍ୟେଷ୍ଠ+ଆ )—
Jyeshṭhā ୧ । ହିନ୍ଦୁ ଜ୍ୟୋତିଷୋକ୍ତ ୨୭ ଗୋଟି ନକ୍ଷତ୍ର ମଧ୍ୟରୁ ଅଷ୍ଟାଦଶ ନକ୍ଷତ୍ର ( ନକ୍ଷତ୍ର ତଳେ ନୋଟ ଦେଖ )—
1. Scorpion's body or back; the name of the 18th star of Hindu astronomy; the 18th lunar mansion (Hindu astronomy).

୨ । ଗୃହଗୋଧିକା; ଝିଟିପିଟି—
2. The common house-lizard.

୩ । ହାତର ମଝି ଅଙ୍ଗୁଠି—
3. The middle fingurr of the hand.

୪ । ଗଙ୍ଗାନଦୀ—4. The river Gaṅgā.

୫ । ଅଲକ୍ଷ୍ମୀ; ଲକ୍ଷ୍ମୀଙ୍କ ବଡ଼ ଭଉଣୀ—5 The Goddess of misfortune; the elder sister of Laksmi.

୬ । ପ୍ରଥମବିବାହିତା ସ୍ତ୍ରୀ ( ମନୁ. ୯।୧୨୨ )—
6. The eldest wife ( M. W ).

୭ । ସ୍ତ୍ରୀମାନଙ୍କ ମଧ୍ୟରୁ ଯେଉଁ ସ୍ତ୍ରୀକୁ ସ୍ୱାମୀ ବେଶି ଦେଖି ପାରନ୍ତି; ସୁଭଗା ସ୍ତ୍ରୀ—7. A preferred wife ( M W ); the most favourite wife.

୮ । ବାର୍ହସ୍ପତ୍ୟ ଦ୍ୱାଦଶ ବର୍ଷମାନଙ୍କର ଅଷ୍ଟମ ବର୍ଷ—
8. The 18th year in the Jupiter's cycle of years ( M. W ).

୯ । ତନ୍ତ୍ରୀବିଶେଷ; ତାରଯୁକ୍ତ ବାଦ୍ୟ ଯନ୍ତ୍ରବିଶେଷ—
9. A kind of stringed musical instrument ( M. W ).

ସ. ବିଣ. ସ୍ତ୍ରୀ—ଜ୍ୟେଷ୍ଠର ସ୍ତ୍ରୀଲିଙ୍ଗ—
Feminine of Jyeshṭha.

**ଜ୍ୟେଷ୍ଠାଂଶ** ଦେ. ବି. ( ସ. ଜ୍ୟେଷ୍ଠାଂଶ )—୧ ଜ୍ୟେଷ୍ଠାଂଶ; ହିନ୍ଦୁ
**जेयष्ठांश** ସ୍ମୃତି ଅନୁସାରେ ଜ୍ୟେଷ୍ଠ ପୁତ୍ର ଅନ୍ୟ ପୁତ୍ରମାନଙ୍କ ଅପେକ୍ଷା ପୈତୃକ ସମ୍ପତ୍ତିରୁ ପାଇବା ଅଧିକ ଭାଗ—
1. A largest share in the paternal property which devolves on the eldest brother during partition; the property in excess claimed by the eldest brother according to the Hindu law out of the paternal property during partition.

୨ । ଜ୍ୟେଷ୍ଠ ପୁତ୍ର ସମସ୍ତ ପୈତୃକ ସମ୍ପତ୍ତିରେ ଅଧିକାରୀ ହେବା ପ୍ରଥା, ଯଦ୍ଦ୍ୱାରା ଅନ୍ୟ ପୁତ୍ରମାନେ କେବଳ ଖୋରାକ-ପୋଷାକ ପାଆନ୍ତି—2. Primogeniture.

**ଜ୍ୟେଷ୍ଠାଂଶ**—ସ. ବି. ( ଜ୍ୟେଷ୍ଠ+ଅଂଶ; କର୍ମଧା; କିମ୍ବା ୬ଷ୍ଠୀ ତତ୍ )—
Jyeshṭhāṁśa ହିନ୍ଦୁଶାସ୍ତ୍ର ଅନୁସାରେ ପୈତୃକ ସମ୍ପତ୍ତିରୁ ବଡ଼ ଭାଇ ସାନଭାଇମାନଙ୍କଠାରୁ ପାଇବା ଅଧିକ ଅଂଶ—
The extra share of the paternal property which devolves on the eldest brother in excess of the regular shares of other brothers in partition ( Hindu law ).

**ଜ୍ୟେଷ୍ଠାମ୍ବୁ**—ସ. ବି. ( ଜ୍ୟେଷ୍ଠ+ଅମ୍ବୁ )—ଚାଉଳଧୁଆ ପାଣି—Water
Jyeshṭhāmbu obtained after washing rice. (before cooking).

**ଜ୍ୟେଷ୍ଠାଶ୍ରମ**—ସ. ବି. ( ଜ୍ୟେଷ୍ଠ+ଆଶ୍ରମ; କର୍ମଧା )—ଗୃହସ୍ଥାଶ୍ରମ—
Jyeshṭhāśrama The status of a householder.

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଋ୍ୟ | ଐ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ୠ | ୃ |

**ଜ୍ୟେଷ୍ଠାଶ୍ରମୀ**—ସଂ. ବି. (ଜ୍ୟେଷ୍ଠ+ଅଶ୍ରମ+ଇନ୍; ୧ମା. ୧ବ.)—ଗୃହସ୍ଥ; ଗୃହୀ—A house-holder.
Jyeshthāśrami

[ ଦ୍ର—ହିନ୍ଦୁମାନଙ୍କର ଅନ୍ୟାନ୍ୟ ଆଶ୍ରମସ୍ଥ ବ୍ୟକ୍ତିମାନଙ୍କୁ ଗୃହସ୍ଥାଶ୍ରମୀ ବ୍ୟକ୍ତିମାନେ ପୋଷିବାରୁ ଗୃହସ୍ଥାଶ୍ରମ ଅନ୍ୟ ସବୁ ଆଶ୍ରମ ଅପେକ୍ଷା ଉତ୍କୃଷ୍ଟ ବା ଜ୍ୟେଷ୍ଠ ବୋଲି ଶାସ୍ତ୍ର ନିର୍ଦ୍ଦେଶ କରିଅଛି । ]

**ଜ୍ୟେଷ୍ଠିମଧୁ**—ଦେ. ବି—(ସଂ. ଯଷ୍ଟିମଧୁ) ଜାଠିମଧୁ (ଦେଖ)
Jyeshṭhi-madhu Jāṭhimadhu ( See )

**ଜ୍ୟେଷ୍ଠୀ**—ସଂ. ବି. ସ୍ତ୍ରୀ. (ଜ୍ୟେଷ୍ଠ+ସ୍ତ୍ରୀ. ଈ)—ଝିଟିପିଟି; ଗୃହଗୋଧିକା—
Jyeshṭhī The common house-lizard.

**ଜୈ୍ୟଷ୍ଠ**—ସଂ.ବି. (ଜ୍ୟେଷ୍ଠା + ତଦ୍‌ଯୁକ୍ତ ମାସାର୍ଥେ.ଅ ) —ଜ୍ୟେଷ୍ଠାନକ୍ଷତ୍ର-
Jyaishṭha ଯୁକ୍ତ ପୂର୍ଣ୍ଣିମାବିଶିଷ୍ଟ ଚାନ୍ଦ୍ରମାନ ମାସ; ବୈଶାଖର ପରବର୍ତ୍ତୀ ମାସ—The lunar month folowing the month of Baiśākha ( May-June ).

**ଜୈ୍ୟଷ୍ଠୀ**—ସଂ. ବି. ସ୍ତ୍ରୀ. ( ଜ୍ୟେଷ୍ଠା +ଯୁକ୍ତାର୍ଥେ. ଅ +ସ୍ତ୍ରୀ. ଈ. )—
Jyaishṭhī ଜ୍ୟେଷ୍ଠାନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା; ଜୈ୍ୟଷ୍ଠପୂର୍ଣ୍ଣିମା; ଦେବସ୍ନାନ ପୂର୍ଣ୍ଣିମା—The full-moon day of the month Jyaishṭha.

**ଜୈ୍ୟଷ୍ଠ୍ୟ**—ସଂ. ବି. ( ଜ୍ୟେଷ୍ଠ + ଭାବେ. ଯ )—ଜ୍ୟେଷ୍ଠତ୍ୱ; ଶ୍ରେଷ୍ଠତ୍ୱ—
Jyaishṭhya State of being eldest or best.

**ଜ୍ୟୋତି**—ଦେ. ବି. ( ସଂ. ଜ୍ୟୋତିସ୍ )—୧ । ଜ୍ୟୋତିଃ ( ଦେଖ )
Jyoti 1. Jyotiḥ ( See )

୨ । ( ଯୋଗସାଧକଙ୍କ ବ୍ୟବହୃତ ପରିଭାଷା )—
ଚକ୍ଷୁ—2. Eye.

[ ଦ୍ର—ଉର୍ମି, ଧୂର୍ମି, ଜ୍ୱାଳା ( ଦେଖ ) । ]

**ଜ୍ୟୋତିଃ**—ସଂ.ବି. ସ୍ତ୍ରୀ. ( ଜ୍ୟୋତିସ୍ ଶବ୍ଦ ) ( ଦ୍ୟୁତ ଧାତୁ=ଦୀପ୍ତି ପାଇବା + କର୍ତ୍ତୃ. ଇସ୍; ନିପାତନ )—
Jyotiḥ

୧ । ଆଲୋକ—1. Light.
୨ । ତେଜଃ—2. Lustre; glare.
୩ । ଗ୍ରହନକ୍ଷତ୍ରାଦି—
3. Luminous bodies; luminaries
୪ । ନକ୍ଷତ୍ର—4. Star.
୫ । ଆଖିର ପିତୁଳା —
5. The pupil of the eye.
୬ । ଚୈତନ୍ୟ—6. Consciousness.
୭ । ଆତ୍ମା—7. Soul.
୮ । ଜ୍ୟୋତିଃଶାସ୍ତ୍ର—8. Astronomy; astrology.
୯ । ଅଗ୍ନି – 9. Fire.
୧୦ । ସୂର୍ଯ୍ୟ—10. The sun.
୧୧ । ପୁତ୍ର—11. Son
୧୨ । ଶିଖା—12. Flame.
୧୩ । ଦୀପ୍ତି; ଜ୍ୱାଳା—
13 Splendour; brilliance.
୧୪ । ମେଥି—14. Fenugreek;Trigonella Foenum Graekum.

**ଜ୍ୟୋତିଃଶାସ୍ତ୍ର**—ସଂ. ବି. ( ଜ୍ୟୋତିଃ + ଶାସ୍ତ୍ର )— ୧ । ଜ୍ୟୋତିଷ ଶାସ୍ତ୍ର;
Jyctiḥ-śāstra ଗ୍ରହ ନକ୍ଷତ୍ରାଦିବିଷୟକ ବିଜ୍ଞାନ—
1. The science of stars and planets.
୨ । ଗଣିତ ଜ୍ୟୋତିଷ; ଯେଉଁ ଶାସ୍ତ୍ରଦ୍ୱାରା ଗ୍ରହନକ୍ଷତ୍ରମାନଙ୍କର ସ୍ଥିତି,ଗତି, ସଞ୍ଚାର,ଗ୍ରହଣ,କକ୍ଷ ଇତ୍ୟାଦି ନିର୍ଣ୍ଣୀତ ହୁଏ—
2 Astronomy.
୩ । ଫଳିତ ଜ୍ୟୋତିଷ; ଯଦ୍ଦ୍ୱାରା ଗ୍ରହନକ୍ଷତ୍ରଙ୍କ ଗତିବିଧି ଆଦି ମନୁଷ୍ୟମାନଙ୍କ ଜୀବନ ଉପରେ ଫଳାଇବା ପ୍ରଭାବ ଜଣା ଯାଏ—3. Astrology.

[ ଦ୍ର—ଜ୍ୟୋତିଃଶାସ୍ତ୍ରର ୩ ଗୋଟି ଶାଖା ଅଛି, ଯଥା—
୧ । ଗଣିତ ବା ତନ୍ତ୍ର—( ଏଥିରେ ଗ୍ରହନକ୍ଷତ୍ରଙ୍କ ଗତି, ସ୍ଥିତି ଆଲୋଚିତ ହୋଇଥାଏ ।
୨ । ହୋରା ବା ଅଙ୍ଗବିନିଶ୍ଚୟ—( ଏଥିରେ ଜନ୍ମ, ଯାତ୍ରା ଓ ବିବାହାଦି ବିବେଚିତ ହୁଏ ।)
୩ । ସଂହିତା । ]

**ଜ୍ୟୋତିପୁର**—ଦେ. ବି (ସଂ. ଜ୍ୟୋତିର୍ମୟପୁର)—ପରଂବ୍ରହ୍ମର ବାସସ୍ଥାନ—
Jyoti-pura The imaginary abode of the Brahma.

ଏତେ ପୃଥିବୀ ତଳେ ହିତ, ଜ୍ୟୋତିପୁରକୁ ଲଭା ମାତ୍ର—
ପ୍ରାଚୀ, ନିର୍ଗୁଣମାହାତ୍ମ୍ୟ ।

**ଜ୍ୟୋତିମଣ୍ଡଳ**—ଦେ. ବି (ସଂ. ଜ୍ୟୋତିର୍ମଣ୍ଡଳ)—ଜ୍ୟୋତିର୍ମଣ୍ଡଳ; ବ୍ରହ୍ମର
Jyoti-maṇḍaḻa କଳ୍ପିତ ଜ୍ୟୋତିର୍ମୟ ପୁର—
The imaginary abode of the Brahma.

ସେ ଜ୍ୟୋତିମଣ୍ଡଳ ବାରତା, କହିଲେ ନ ସରେ ଦେବତା—
ପ୍ରାଚୀ, ନିର୍ଗୁଣମାହାତ୍ମ୍ୟ ।

**ଜ୍ୟୋତିମୟ**—ଦେ. ବିଣ (ସଂ. ଜ୍ୟୋତିର୍ମୟ)—ଜ୍ୟୋତିର୍ମୟ ( ଦେଖ )
Jyoti-maya Jyotirmaya ( See ).

ବ୍ରହ୍ମା ନିକଟେ ହୋଇ ଛିଡ଼ା, ବିକଶି ଜ୍ୟୋତିମୟ ପ୍ରଭା —
ପ୍ରାଚୀ, ନିର୍ଗୁଣମାହାତ୍ମ୍ୟ ।

**ଜ୍ୟୋତିର୍ବିଜ୍ଞାନ**—ସଂ. ବି.—ଜ୍ୟୋତିଃଶାସ୍ତ୍ର (ଦେଖ)
Jyotirbijñana Jyotiḥ-śāstra (See)

**ଜ୍ୟୋତିର୍ବିଦ୍**—ସଂ. ବିଣ. ପୁଂ. ( ଜ୍ୟୋତିଃ+ବିଦ୍ ଧାତୁ + କର୍ତ୍ତୃ. କ୍ୱିପ୍.
Jyotirbid ୧ମା. ୧ବ. )—ଜ୍ୟୋତିଷ ଶାସ୍ତ୍ରଜ୍ଞ; ଦୈବଜ୍ଞ—
Astronomer; astrologer.

**ଜ୍ୟୋତିର୍ବିଦ୍ୟା**—ସଂ. ବି. ( ଜ୍ୟୋତିଃ + ବିଦ୍ୟା )—ଜ୍ୟୋତିଃଶାସ୍ତ୍ର (ଦେଖ).
Jyotirbidyā Jyotiḥ-śāstra ( See)

**ଜ୍ୟୋତିର୍ବେତ୍ତା**—ସଂ. ବିଣ. ପୁଂ. ( ଜ୍ୟୋତିଃ + ବିଦ୍ ଧାତୁ + କର୍ତ୍ତୃ. ତୃନ୍.
Jyotirbettā ୧ମା. ୧ବ.)--ଜ୍ୟୋତିର୍ବିଦ୍ (ଦେଖ)
Jyotirbid (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଆଙ୍ଖି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଜ୍ୟୋତିରିଙ୍ଗ**—ସଂ. ବି. (ଜ୍ୟୋତିଃ + ଇନଗ୍ ଧାତୁ = ଗମନ କରିବା + କର୍ତ୍ତୃ. ଅ)—ଖଦ୍ୟୋତ; ଜୁଳୁଜୁଳିଆ ପୋକ—
Jyotiriṅga
Glow-worm; fire-fly.

**ଜ୍ୟୋତିରିଙ୍ଗଣ**—ସଂ. ବି. (ଜ୍ୟୋତିଃ+ଇନଗ୍ ଧାତୁ=ଗମନ କରିବା + କର୍ତ୍ତୃ. ଅନ)—ଖଦ୍ୟୋତ; ଜୁଳୁଜୁଳିଆ ପୋକ—
Jyotiriṅgaṇa
Fire-fly; glow-worm.

**ଜ୍ୟୋତିର୍ମଣ୍ଡଳ**—ସଂ. ବି. (ଜ୍ୟୋତିଃ+ମଣ୍ଡଳ; ୬ଷ୍ଠୀ ତତ୍)—
Jyotirmmaṇḍala
୧ । ଗ୍ରହ ନକ୍ଷତ୍ରାଦିଙ୍କ ସଞ୍ଚାରସ୍ଥଳ; ଆକାଶମଣ୍ଡଳ—1. The stellar regions; the celestial sphere.
(ଜ୍ୟୋତିର୍ମଣ୍ଡଳ—ଅନ୍ୟରୂପ)
୨ । ଯାବତୀୟ ଜ୍ୟୋତିର୍ମୟ ପଦାର୍ଥର ସମଷ୍ଟି—
2. The aggregate of all luminous things.

**ଜ୍ୟୋତିର୍ମୟ**—ସଂ. ବିଣ. ପୁଂ. (ଜ୍ୟୋତିଃ + ପ୍ରାଚୁର୍ଯ୍ୟାର୍ଥ ମୟ)—
Jyotirmmaya
୧ । ଦୀପ୍ତିଶାଳୀ—
(ଜ୍ୟୋତିର୍ମୟୀ—ସ୍ତ୍ରୀ) 1. Lustrous; very bright.
(ଜ୍ୟୋତିର୍ମୟ—ଅନ୍ୟରୂପ) ୨ । ଜ୍ୟୋତିଃପୂର୍ଣ୍ଣ—2. Full of light.

**ଜ୍ୟୋତିର୍ଲିଙ୍ଗ**—ସଂ. ବି. (ନାମ)—ଶିବଲିଙ୍ଗ ବିଶେଷ—
Jyotirliṅga
Name of a Siba-linga.
[ଦ୍ର—ଶିବପୁରାଣମତେ ସୋମେଶ୍ୱର, କେଦାରନାଥ ପ୍ରଭୃତି ଦ୍ୱାଦଶ ଜ୍ୟୋତିର୍ଲିଙ୍ଗ ଭାରତର ବିଭିନ୍ନ ଅଞ୍ଚଳରେ ପ୍ରତିଷ୍ଠିତ । ଏ ସ୍ଥାନମାନ ଗୋଟିଏ ଗୋଟିଏ ତୀର୍ଥସ୍ଥାନ । ମଦନମୋହନ ତୀର୍ଥଦର୍ଶନ ୧ମ ଭାଗ । ]

**ଜ୍ୟୋତିଶ୍ଚକ୍ର**—ସଂ. ବି. (ଜ୍ୟୋତିଃ+ଚକ୍ର; ୬ଷ୍ଠୀ ତତ୍)—
Jyotiśchakra
୧ । ଚନ୍ଦ୍ରସୂର୍ଯ୍ୟାଦି ସହ ନକ୍ଷତ୍ରସମୂହ—
1. The heavenly bodies.
୨ । ଜ୍ୟୋତିଷ ଶାସ୍ତ୍ରୋକ୍ତ ରାଶି ଚକ୍ର—2. (Astrology) The zodiac; the circle bearing the 12 zodiacal signs; the sidereal heavens.

**ଜ୍ୟୋତିଷ**—ସଂ. ବି. (ଜ୍ୟୋତିଃ+ସମ୍ବନ୍ଧାର୍ଥେ. ଅ)—
Jyotisha
ଜ୍ୟୋତିଃଶାସ୍ତ୍ର (ଦେଖ)
Jyotiḥśāstra (See)
ଦେ. ବି.—ଜ୍ୟୋତିଷ ନାୟକ (ଦେଖ)
Jyotisha-nāyaka (See)

**ଜ୍ୟୋତିଷଚକ୍ର**—ସଂ. ବି. (ଜ୍ୟୋତିଷ+ଚକ୍ର, ୬ଷ୍ଠୀ ତତ୍)—
Jyotisha-chakra
ରବିମାର୍ଗ ଯେଉଁ ଦ୍ୱାଦଶରାଶି ମଧ୍ୟ ଦେଇ ଯାଇଅଛି, ରାଶିଚକ୍ର—The zodiac.

**ଜ୍ୟୋତିଷ ନାୟକ**—ଦେ. ବି. — ଜ୍ୟୋତିଃଶାସ୍ତ୍ରବ୍ୟବସାୟୀ ଓଡ଼ିଆ
Jyotisha nāyaka
ନାୟକ ଜାତି—A caste of astrologers in Orissa.

**ଜ୍ୟୋତିଷ ବେଧଶାଳା**—ସଂ. ବି.—(ଜ୍ୟୋତିଷ+ବେଧ+ଶାଳା)—
Jyotisha bedhaśālā
ଜ୍ୟୋତିଷଜ୍ଞାନ ପର୍ଯ୍ୟାଲୋଚନ ମନ୍ଦିର; ମାନମନ୍ଦିର—Observatory.

**ଜ୍ୟୋତିଷିକ**—ସଂ. ବିଣ. ପୁଂ. ( ଜ୍ୟୋତିଷ୍+ଜ୍ଞାତାର୍ଥେ, ଇକ )—
Jyotishika
୧ । ଜ୍ୟୋତିର୍ବେତ୍ତା—Versed in the science of stars and planets.
୨ । ଜ୍ୟୋତିଷ ସମ୍ବନ୍ଧୀୟ—
2. Relating to astronomy or astrology.

**ଜ୍ୟୋତିଷୀ**—ସଂ. ବିଣ. ପୁଂ. (ଜ୍ୟୋତିଷ+ଜ୍ଞାତାର୍ଥେ ଇନ୍; ୧ମା.୧ବ.)-
Jyotishī
ଜ୍ୟୋତିର୍ବେତ୍ତା—Versed in the science of stars and planets; astronomer; astrologer.
[ ଦ୍ର—ଆମ୍ଭମାନଙ୍କ ଦେଶରେ ଗୋଟିଏ ବିଶିଷ୍ଟ ଜାତି ( ଜ୍ୟୋତିଷ ନାୟକ ) ଫଳିତ ଜ୍ୟୋତିଷ ବିଦ୍ୟାକୁ ବଂଶପରମ୍ପରାକ୍ରମେ ଆଲୋଚନା କରନ୍ତି । ]

**ଜ୍ୟୋତିଷ୍କର**—ସଂ. ବି. (ଜ୍ୟୋତିଃ+କୃ ଧାତୁ+କର୍ତ୍ତୃ. ଅ)—
Jyotishkara
୧ । ଗ୍ରହନକ୍ଷତ୍ରାଦି ଜ୍ୟୋତିର୍ମୟ ପଦାର୍ଥ—
A planet; a star; a luminary.
୨ । ଚିତ୍ରକ ବୃକ୍ଷ ( ଦେଖ )
3. Chitraka ( See )
୩ । ଗଣିକାରିକା ବୃକ୍ଷ ( ଦେଖ )
3. Gaṇikārikā ( See )
୪ । ମେଥିକା ଶାକ—
4. The seed of fenugreek.
୫ । ମେରୁ ଶୃଙ୍ଗ ବିଶେଷ—
5. Name of a peak of the Meru mountain.

**ଜ୍ୟୋତିଷ୍ଟୋମ**—ସଂ. ବି. (ବହୁବ୍ରୀହି; ଜ୍ୟୋତିଃ + ସ୍ତୋମ = ସ୍ତୁତି; ଯେଉଁ ଯାଗରେ ଗ୍ରହନକ୍ଷତ୍ରାଦିଙ୍କ ସ୍ତବ କରାଯାଏ )—
Jyotishṭoma
ଯଜ୍ଞ ବିଶେଷ—Name of a vedic sacrifice.
[ ଦ୍ର—ଏଥିର ୧୬ ଜଣ ଋତ୍ୱିକ ଆବଶ୍ୟକ ଓ ୧୧୨୪ ଗାଈ ଦକ୍ଷିଣା ଦିଆଯାଏ । ]

**ଜ୍ୟୋତିଷ୍ପଥ**—ସଂ. ବି. ( ୬ଷ୍ଠୀ ତତ୍; ଜ୍ୟୋତିଃ + ପଥ )—ଆକାଶ—
Jyotishpatha
The sky; the stellar heavens.

**ଜ୍ୟୋତିଷ୍ମନ୍ତ**—ଦେ. ବି. ( ସଂ. ଜ୍ୟୋତିଷ୍ମତ୍ )—
Jyotishmanta
ଜ୍ୟୋତିଷ୍ମାନ୍ ( ଦେଖ )
Jyotishmān ( See )

**ଜ୍ୟୋତିଷ୍ମତୀ**—ସଂ. ବି. ସ୍ତ୍ରୀ. ( ଜ୍ୟୋତିଷ୍ମତ୍+ସ୍ତ୍ରୀ. ଈ )—
Jyotishmatī
୧ । ରାତ୍ରିରେ ଆଲୋକ ବିକାରଣକାରୀ ବନ୍ୟ ଲତା ବିଶେଷ; ଫୁଟ୍‌ଫୁଟିକା ଗୁଳ୍ମ—A luminous wild plant; Cardiospermum Helicacabum. Ballon vine; winter cherry ( Kirtikar) Staff tree.
ଲତାଫଟକୀ
**मालकाङ्गनी, काङ्गनी**
ମ. କାଙ୍ଗୋନୀ, ଭୋଗେ,
ତେ. କାଙ୍ଗ୍ୟୋନୀ, ଡଭୁଲୁ
ସ୍ତ୍ରୁ ମାଲକାଙ୍ଗିଣ

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଷ୍ୟ | ଯ | ସ | ଗଁ୍ୟ | ଇଥ | ଢ଼ | ନୃ |

ଫା କାଲ [ଦ୍ର—ବୈଦ୍ୟକ ମତରେ ଏହା
ସଂ. ନାମ—କଟେଖି, ଜ୍ୟୋତିଷ୍ମା କଟୁ, ତିକ୍ତ ରସ, ବାୟୁ ଓ କଫ-
କଙ୍ଗୁନୀ, ପାରାବତ ପଦୀ, ପଣ୍ୟା, ନାଶକ, ରୁକ୍ଷ, ବମନକାରକ, ଦାହ-
ଲତା, ଲୁକନୀ ପ୍ରଦ, ଅଗ୍ନିବର୍ଦ୍ଧକ ଓ ମେଧାପ୍ରଦ ।]

୨ । ରାତ୍ରି—2. Night.

୩ । ଚିତ୍ରବୃତ୍ତ ବିଶେଷ—

3. Name of a pictorial composition.

ସଂ. ବିଣ. ସ୍ତ୍ରୀ—ଜ୍ୟୋତିଷ୍ମାନ୍‌ର ସ୍ତ୍ରୀଲିଙ୍ଗ—
Feminine of jyotishmān.

**ଜ୍ୟୋତିଷ୍ମାନ୍**—ସଂ. ବିଣ. ପୁଂ. ( ଜ୍ୟୋତିଷ୍ମତ୍ ଶବ୍ଦ; ଜ୍ୟୋତିସ୍ + ଅସ୍ତି ଅର୍ଥରେ ମତ୍; ୧ମା. ୧ବ )—
Jyotishmān
(ଜ୍ୟୋତିଷ୍ମତୀ—ସ୍ତ୍ରୀ) ୧ । ଉଜ୍ଜ୍ୱଳ; ଜ୍ୟୋତିର୍ବିଶିଷ୍ଟ—
1. Bright; luminous; shining.

୨ । ରାତ୍ରିରେ ଆଲୋକ ବିକୀରଣକାରୀ—
2. Phosphorescent; glowing.

ସଂ. ବି—୧ । ସୂର୍ଯ୍ୟ—1. The sun.

୨ । କୁଶଦ୍ୱୀପର ଜନୈକ ରାଜା—2. Name of a king of the mythological Kuśa island.

**ଜ୍ୟୋତ୍ସ୍ନା**—ସଂ. ବି. ସ୍ତ୍ରୀ. (ଜ୍ୟୋତିସ୍ + ଅସ୍ତି ଅର୍ଥରେ ନ + ସ୍ତ୍ରୀ. ଆ)—
Jyotsnā ୧ । ଚନ୍ଦ୍ର କିରଣ; ଚନ୍ଦ୍ରିକା; ଚନ୍ଦ୍ରାଲୋକ—
1. Moonbeam.

୨ । କାନ୍ତି; ଝଟକ—2. Lustre.

୩ । ଶୋଭା—3. Grace.

**ଜ୍ୟୋତ୍ସ୍ନାପକ୍ଷ**—ସଂ. ବି. ( ବହୁବ୍ରୀହି; ଜ୍ୟୋତ୍ସ୍ନା + ପକ୍ଷ )—
Jyotsnā-paksha ଶୁକ୍ଳ ପକ୍ଷ; ଆଲୁଅ ପକ୍ଷ—
The bright fortnight of the month ending with the full moon.

**ଜ୍ୟୋତ୍ସ୍ନାପ୍ରିୟ**—ସଂ. ବି. ( ବହୁବ୍ରୀହି, ଜ୍ୟୋତ୍ସ୍ନା + ପ୍ରିୟ )—
Jyotsnā-priya ଚକୋର ପକ୍ଷୀ—The Himalayan Partridge; Pedrix Rufa.

**ଜ୍ୟୋତ୍ସ୍ନାବୃକ୍ଷ**—ସଂ. ବି. ( ୬ଷ୍ଠୀ ତତ୍; ଜ୍ୟୋତ୍ସ୍ନା + ବୃକ୍ଷ )—
Jyotsnā-bṛuksha ଦୀପରୁଖା; ପିଲସୁଜ—
A standing lamp; lamp-stand.

**ଜ୍ୟୋତ୍ସ୍ନାମୟ**—ସଂ. ବିଣ. (ଜ୍ୟୋତ୍ସ୍ନା + ପ୍ରାଚୁର୍ଯ୍ୟାର୍ଥେ, ମୟ)—
Jyotsnā-maya ଚନ୍ଦ୍ର କିରଣ ଦ୍ୱାରା ଆଲୋକିତ—
(ଜ୍ୟୋତ୍ସ୍ନାମୟୀ—ସ୍ତ୍ରୀ) Moonlit.

**ଜ୍ୟୋତ୍ସ୍ନା ରଜନୀ**—ଦେ. ବି. (ମ. ପ. ଲୋ; ଜ୍ୟୋତ୍ସ୍ନାଯୁକ୍ତରଜନୀ)—
Jyotsnā rajani ଶୁକ୍ଳପକ୍ଷ ରାତ୍ର—Moonlit night.

**ଜ୍ୟୋତ୍ସ୍ନା ରାତ୍ରି**—ଦେ. ବି. ( ଜ୍ୟୋତ୍ସ୍ନାଯୁକ୍ତ ରାତ୍ରି; ମ. ପ. ଲୋ )—
Jyot-snā rātri ଶୁକ୍ଳପକ୍ଷର ରାତ୍ର—Moonlit night.

**ଜ୍ୟୋତ୍ସ୍ନୀ**—ସଂ. ବି. ସ୍ତ୍ରୀ. ( ଜ୍ୟୋତ୍ସ୍ନା + ସ୍ତ୍ରୀ. ଈ )—
Jyot-snī ୧ । ଜ୍ୟୋତ୍ସ୍ନାମୟୀ ରାତ୍ରୀ—1. Moonlit night.

୨ । ଜହ୍ନି—2. A cocurbitacious plant and its fruit; Luffa Acutangula.

୩ । ରେଣୁକା ନାମକ ଗନ୍ଧ ଦ୍ରବ୍ୟ—
3. A sort of perfumed drug.

**ଜ୍ୟୌତ୍ସ୍ନ**—ସଂ. ବିଣ. (ଜ୍ୟୋତ୍ସ୍ନା + ଅ )—୧ । ଦୀପ୍ତ—
Jyaut-sna 1. Illuminated.

୨ । ଜ୍ୟୋତ୍ସ୍ନାଯୁକ୍ତ—
2. Moonlit; bright with moon-light.

**ଜ୍ୟୌତ୍ସ୍ନିକା**—ସଂ. ବି. ସ୍ତ୍ରୀ—(ଜ୍ୟୋତ୍ସ୍ନା + ଇକ + ଆ )—ଶୁକ୍ଳରାତ୍ର—
Jyaut-snikā Moonlit night.

**ଜ୍ୟୌତିଷ**—ସଂ. ବି. ( ଜ୍ୟୋତିଷ + ସ୍ୱାର୍ଥେ. ଅ )—
Jyautisha ଜ୍ୟୋତିଃଶାସ୍ତ୍ର ( ଦେଖ )
Jyotiḥ-śāstra ( See)

**ଜ୍ୟୌତିଷିକ**—ସଂ. ବିଣ. ( ଜ୍ୟୋତିଷ + ତଦ୍‌ଜ୍ଞାନାର୍ଥେ, ଇକ )—
Jyautishika ୧ । ଜ୍ୟୋତିଷ ଶାସ୍ତ୍ରସମ୍ବନ୍ଧୀୟ—
1. Pertaining to astronomy or astrology

୨ । ଜ୍ୟୋତିର୍ବେତ୍ତା—
2. Versed in astronomy or astrology.

ସଂ. ବି.—ଜ୍ୟୋତିର୍ବେତ୍ତା ବ୍ୟକ୍ତି—
Astronomer or Astrologer.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଶ୍ରେଣୀର ଅକ୍ଷର ଓ ମାତ୍ରା ଏବଂ ୨ ଶ୍ରେଣୀର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଶ୍ରେଣୀର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଶ୍ରେଣୀର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ

# ଝ

**ଝ**—ନବମ ବ୍ୟଞ୍ଜନବର୍ଣ୍ଣ; ଚ ବର୍ଗର ଚତୁର୍ଥ ବର୍ଣ୍ଣ, ଏହାର ଉଚ୍ଚାରଣ ସ୍ଥାନ ତାଳୁ—The 9th consonant represented by the sound Jh (palatal).
Jha

**ଝ**—ସଂ. ବି. ( ଝଟ୍ ଧାତୁ=ଏକତ୍ର କରିବା+କର୍ତ୍ତୃ. ଅ )—
Jha
୧ । ଝଞ୍ଜାବାତ—1. Hurricane; tornado
୨ । ଜଳବର୍ଷଣ—2. Heavy rain; outpour.
୩ । ଧ୍ୱନି—3. A sound.
୪ । ବୃହସ୍ପତି; ସୁରଗୁରୁ—
4. Bruhaspati, the preceptor of the Gods.
୫ । ଇନ୍ଦ୍ର—5. Indra.
୬ । ଦୈତ୍ୟରାଜ—6. A king of demons.
ସଂ. ବିଣ—୧ । ନିଦ୍ରିତ—1. Asleep; sleeping.
୨ । ନଷ୍ଟ—2. Spoiled.

**ଝଅଁ ଝଅଁ**—ଦେ. ଅ. ( ଧ୍ୱନ୍ୟନୁକରଣ )—ଝାଇଁ ଝାଇଁ ( ଦେଖ )
Jha-añ-jha-añ — Jhaiñ-jhañ ( See )

**ଝଅକମାରି**—ଦେ. ବି—ଝକମାରି ( ଦେଖ )
Jha-aka-mări — Jhaka-mări ( See )

**ଝଅକ ମାରିବା**—ଦେ. କ୍ରି—ଝକ ମାରିବା ( ଦେଖ )
Jha-aka măribă — Jhaka măribă (See)

**ଝଁଝଁ**—ଦେ. ଅ. (ଧ୍ୱନ୍ୟନୁକରଣ)—ଝାଇଁ ଝାଇଁ ( ଦେଖ )
Jhañ-jhañ — Jhaiñ-jhaiñ (See)

**ଝକ୍‌ଝକ୍**—ଦେ. ବି (ସଂ. ଚକଧାତୁ=ଦୀପ୍ତି)—୧ । ଦୀପ୍ତି; କାନ୍ତି; ଝଟକ—
Jhak-jhak — 1. Glitter; glare.
ঝকঝক
झकझक
୨ । (ଧ୍ୱନ୍ୟନୁକରଣ) ଝଗଡ଼ା; ସର୍ବଦା କଳହ—
2. Constant loud quarrelling; bickering.
୩ । ଦରଦାମ ବିଷୟରେ ଉପର୍ଯ୍ୟୁପରି ଓଜର ଆପତ୍ତି—
3. Higgling and haggling.
ଦେ. ବିଣ—୧ । ଦୀପ୍ତିଶାଳୀ; ଝଟକୁଥିବା; ଜକଜକ—
1. Sparkling; glittering; shining; glaring.
୨ । କଳହପ୍ରିୟ; ସର୍ବଦା କଳହ କରୁଥିବା—
2. Quarrelsome; wrangling.
୩ । ବାରମ୍ବାର କଥା କହୁଥିବା; ବାଚାଳ—
3. Garrulous; talkative.
୪ । ଯେ ପଣ୍ୟାଦି ଦ୍ରବ୍ୟର ମୂଲ୍ୟ ଅବସରେ ବହୁତ ଓଜର ଆପତ୍ତି କରେ—4. Higgling and haggling.
ଦେ. କ୍ରି. ବିଣ—ଜକଜକ ହୋଇ—
In a glittering manner; brightly.
ଚୋଳେ ଝକଝକ ପୃଷ୍ଠେ ଫଳକ ବନ୍ଧିଣ—ରାଧାନାଥ. ଦେଶୀଦାହାର ।

**ଝକ୍‌ଝକିଆ**—ଦେ. ବିଣ. ପୁଂ—୧ । କଳହପ୍ରିୟ—
Jhaka-jhakiă — 4. Wrangling; quarrelsome.
ঝগড়াটে
୨ । ଯେ ଦରଦାମରେ ବହୁତ ଓଜର ଆପତ୍ତି କରେ,
झकझकिया — 2. Higgling and haggling.

**ଝକଝକୀ**, **ଝକଝକେଇ** } ସ୍ତ୍ରୀ. ଦେ. ବିଣ (ସଂ. ଚକଧାତୁ)—ଝଟକୁଥିବା—
Glittering.

**ଝକଝକିବା**—ଦେ. (ପଦ୍ୟ) କ୍ରି. (ସଂ. ଚକଧାତୁ)—
Jhaka-jhakibă — ଝଟକିବା; ଜକଜକ ଦିଶିବା—
To glitter; to shine.
ଝକଝକେ ଅସ୍ତ୍ର ପ୍ରଦୋଷ କିରଣେ । ରାଧାନାଥ. ନନ୍ଦିକେଶ୍ୱରୀ ।

**ଝକ**—ଦେ. ବି—କାନ୍ତି; ଦୀପ୍ତି; ଚମକ; ଝଟକ—
Jhaka — Glitter, glare.
ঝাক
झकझकाहट
ହେବାରୁ ବ୍ୟାପିଲା ଝକ ପ୍ରଭାକରେ ଲୁଚିବା ଭଲଲା ମନ ।
ଉପେନ୍ଦ୍ର. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

**ଝକଦେହା**—ଦେ. (ପଦ୍ୟ) ବିଣ. ସ୍ତ୍ରୀ—ଉଜ୍ଜ୍ୱଳ ଦେହକାନ୍ତିବିଶିଷ୍ଟ—
Jhaka-dehă — Having a bright body.
ହାଟକ ଗୁଡ଼ ଜିଣିବାକୁ ଯାହା
ଦୃଢ଼ କରୁଅଛ ସେ ଝକଦେହା । କବିସୂର୍ଯ୍ୟ. ଚନ୍ଦ୍ରକଳା ।

**ଝକମକ**—ଦେ. ବି—ଦୀପ୍ତିଶାଳୀ; ଜାଜ୍ୱଲ୍ୟମାନ—
Jhaka-maka — Glittering; glaring; shining.
ঝকমক
झकाझक
କଉଁରୁର ସମ କରେ ଝକମକ
ପ୍ରଭା ବଦନକେ ଚନ୍ଦ୍ରମା ପଦକ । ରାଧାନାଥ, ନନ୍ଦିକେଶ୍ୱରୀ ।

**ଝକମକି**—ଦେ. ବି. (ସଂ. ଚକ ଧାତୁ=ଦୀପ୍ତି+ମନ୍ ଚ ଧାତୁ=ଦୀପ୍ତି)—
Jhakamaki
চকমকী
चकमक
୧ । ଅଗ୍ନିସ୍ଫୁଲିଙ୍ଗ ଉତ୍ପାଦକ ପ୍ରସ୍ତର ଖଣ୍ଡ; ଚକମକି- ( ଯହିଁରେ ଲୁହା ବା ଦାଉଆ ପଥର ଆଘାତ କଲେ ନିଆଁ ଝଡ଼େ )—
1. Flint-stone; fire-stone.
[ ଦ୍ର—ଦିଆସିଲିର ଏ ଦେଶରେ ପ୍ରଚଳନ ନ ଥିବା ସମୟରେ ଲୋକେ ଝକମକି ସାହାଯ୍ୟରେ ଅଗ୍ନିସ୍ଫୁଲିଙ୍ଗ ଝାଡ଼ି, ତାକୁ ଶୋଲ ଉପରେ ପକାଇ ନିଆଁକୁ ଧରୁଥିଲେ । ]
୨ । ଝକମକି ପଥର ଓ ତହିଁରୁ ନିଆଁ ବାହାର କରିବା ପାଇଁ ବ୍ୟବହୃତ ଅନ୍ୟ ପଥର ବା ଲୁହା—
2. Flint and steel.
চকমকী বংধুক
चकमाकी बंदुक
୩ । ଚକମକି ବନ୍ଧୁକ; ଯେଉଁ ବନ୍ଧୁକ ମଧ୍ୟସ୍ଥ ବାରୁଦରେ ନିଆଁ ଲଗାଇବା ପାଇଁ ଶଳିତା ଦରକାର ହୁଏ ନାହିଁ, ଘୋଡ଼ାକୁ ଟିପିଲେ ନିଆଁ ବାହାରି ବାରୁଦରେ ଲାଗେ—
3. Flint-lock; a gun or pistol having a flint fixed on the hammer which, on striking the steel, ignites the priming.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଯ୍ | ଊଅ | ଝ |
| ୧ | ଈ | ଉ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଯ୍ୟ | ଯ | ସ | ଙ୍ଗ | ଇଅ | ଞ | ନ୍ |

୪ । ଦୀପ୍ତି—4. Glare; glitter; lustre.

ଝକମକିଆ—ଦେ. ବିଣ—ଜାଜ୍ୱଲ୍ୟମାନ; କାନ୍ତିବିଶିଷ୍ଟ—
Jhakamakiā Shining; glittering; burnished.
ঝকমকে
ঝকাঝক

ଝକମକି ଝାଡ଼ିବା—ଦେ. କ୍ରି—ଝକମକି ମାରିବା ( ଦେଖ )
Jhakamaki jhār̤ibā Jhakamaki māribā (See)

ଝକମକି ନଳୀ—ଦେ. ବି—ଝକମକି (୩) ( ଦେଖ )
Jhakamaki nal̤i Jhakamaki (3) ( See )
(ଝକମକି ବନ୍ଧୁକ—ଅନ୍ୟରୂପ)

ଝକମକି ପଥର—ଦେ. ବି— ଝକମକି (୧) ( ଦେଖ )
Jhakamaki pathara Jhakamaki (1) ( See )

ଝକମକି ମାରିବା—ଦେ. କ୍ରି—ଝକମକି ପଥରରେ ଲୁହା ଆଘାତ କରି
Jhakamaki māribā ତହିଁରୁ ଅଗ୍ନିସ୍ଫୁଲିଙ୍ଗ ନିର୍ଗତ କରାଇବା—
चकमकी झाड़ना To strike out fire from flint.
चकमक मारना

ଝକମକି ମୁଣି —ଦେ. ବି—ଯେଉଁ ମୁଣିରେ ଝକମକି ପଥର ଓ ତହିଁରୁ
Jhakamaki mun̤i ନିଆଁ ଝାଡ଼ିବାପାଇଁ ଖଣ୍ଡିଏ ଲୁହା ବା ଦାଢ଼ୁଆ ପଥର ଓ ଝୁଣ୍ଟିବା ନିଆଁକୁ ଧରିବା ପାଇଁ ଶୋଲଛି ଥାଏ—A small bag containing flints, steel and tinder; tinder-bag.
[ ଦ୍ର—ପୂର୍ବେ ପିକାଖିଆ ଲୋକେ ସବୁବେଳେ ଝକମକି ମୁଣି ସାଙ୍ଗରେ ରଖୁଥିଲେ । ]

ଝକମାରି—ଦେ. ବି—୧ । ଭୁଲ୍; ଦୋଷ; ନିଜକୃତ ଅପରାଧ—
Jhaka-māri 1. Mistake; fault; shortcoming.
झकमारी ୨ । ଅବିବେଚନାର କାର୍ଯ୍ୟ—
नादानी, लाचारी 2. A thoughtless act; levity of conduct.
୩ । ନିର୍ବୋଧତା; ବେକୁବି—3. Foolishness; folly.
୪ । ଅନୁତାପ—4. Regret; repentance.
୫ । ନାଚାରି; ଉପାୟାନ୍ତର ନ ଥିବା ଅବସ୍ଥା—
5. Utter helplessness.
୬ । ନିଜକୃତ ଦୋଷ ବା ତ୍ରୁଟିର ସ୍ୱୀକାର—
6. Admission of one's fault or mistake.
ଦେ. ବିଣ—ତ୍ରୁଟିଯୁକ୍ତ; ଅବିବେଚକ; ବିଚାରଶୂନ୍ୟ (କର୍ମ) —
Faulty; foolish ( act ); thoughtless; nonsensical.

ଝକ ମାରିବା—ଦେ. କ୍ରି—୧ । ବେକୁବି କାର୍ଯ୍ୟ କରିବା—
Jhaka māribā 1. To do a foolish thing; to commit a folly.
झक मारा
खेद मारना; झख मारना ୨ । ସମୟ ବୃଥା ନଷ୍ଟ କରିବା—
2. To waste time.
୩ । ନିଜର ବେକୁବି ବା ତ୍ରୁଟି ସ୍ୱୀକାର କରିବା—
3. To admit one's folly or fault.
ଝକମାରି ଏ ସକଳ କରିବେ ନର । ରହସ୍ୟ. ଗୀତଲହରୀ ।
୪ । ନିଜକୃତ ଦୋଷ ବା ଅପରାଧ ନିମନ୍ତେ ଅନୁତାପ କରିବା —
4. To repent for one's folly or fault.
୫ । ନିଜର କାର୍ଯ୍ୟ ବା କଥାକୁ ପ୍ରତ୍ୟାଖ୍ୟାନ କରିବା—
5. To retract one's acts or words.
୬ । ନିଜର କର୍ମ ଯୋଗୁଁ କଷ୍ଟ ବା ଦୁଃଖ ଭୋଗ କରିବା—
6. To suffer for one's own action; to get into trouble; to get into an awkward predicament.
ଝକମାରିଲା, ନଡ଼ିଆ ଗଛରେ ମୁଣ୍ଡମାରିଲା,
ଗୁଣ୍ଡଜାର ପାଣି ପେଟେ ପିଇଲା । ଶିଶୁବଚନ ।

ଝକାଝକ୍—ଦେ. ବି (ସଂ. ଝଷ ଧାତୁ=ନାଶନ; ଯୋଗେଷ୍ଟନ୍ତ)—
Jhakājhak ୧ । ଟଣାଟଣି; ଝିଙ୍କାଝିଙ୍କି—
झकाझकि 1. Mutual pulling; tugging.
झकझोर ୨ । ଠେଲାଠେଲି ପୂର୍ବକ ବିବାଦ; ଝଗଡ଼ାଝାଟି—
2. Affray; brawl.
୩ । ଅନ୍ୟୋନ୍ୟରେ କଳକଳିଆ ବା ଉଚ୍ଚୈଃସ୍ୱରରେ ବିବାଦ—
3. Wrangling; mutual quarrelling; loud recrimination between two persons.
୪ । ପଣ୍ୟଦ୍ରବ୍ୟର ଦାମ ସମ୍ବନ୍ଧେ ବାଦ ପ୍ରତିବାଦ—
4. Higgling and haggling.
୫ । ବିବାଦ—5. Dispute; altercation.
ଦେ. ବିଣ.—ଝଙ୍କାଝଙ୍କ୍ (ଦେଖ)
Jhaṅkājhank (See)
ପ୍ରାଦେ. (ସମ୍ବଲପୁର) ବିଣ (ଭୁଲ.ଏହି ଅର୍ଥରେ ହି.ଏହି ଶବ୍ଦ)—
ଚକ୍‌ଚକ୍—Glittering.

ଝକାଝକ୍ କଳି—ଦେ. ବି—ଝଙ୍କାଝଙ୍କ୍ ଟକରାଳ (ଦେଖ)
Jhakājhak kal̤i Jhaṅkājhaṅk takarāl̤a (See)

ଝକାଝକି—ଦେ. ବି—ଝକାଝକ୍ (ଦେଖ)
Jhakājhaki Jhakājhak (See)
ପ୍ରାଦେ. (ସମ୍ବଲପୁର) ବିଣ—ଜାକଜମକ ପୂର୍ଣ୍ଣ; ଆଡ଼ମ୍ବରମୟ—
Very grand.
(ଯଥା—ଏବର୍ଷ ପଖାଳରେ ସ୍କୁଲର ଫଳ ଖୁବ୍ ଝକାଝକ ।)

ଝକି—ଦେ. ବିଣ ଓ ବି—ଝକ୍କି (ଦେଖ)
Jhaki Jhakki (See)

ଝକ୍କି—ଦେ. ବି. (ସଂ. ଧୃଷ ଧାତୁ=କ୍ଲେଶନ, ସନ୍ଦୀପନ)—
Jhakki ୧ । ଝୁଙ୍କି; ଗୁରୁ ଦାୟିତ୍ୱ—
झुंकि 1. Grave responsibility.
झोंकि ୨ । କଷ୍ଟ; ଦୁଃଖ; କ୍ଲେଶ —
2 Botheration; trouble.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଆଖି' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

୩ । ଝୁଙ୍କ; ଜିଗର; ଜିଦ୍—
3. Pertinacity, waywardness.
୪ । ଖିଆଲ—4. Whim; caprice.

ବିଣ—୧ । ଜିଗରବାଜ୍; ଏକଜିଦିଆ—
1. Wayward; pertinacious.
୫ । ଅବ୍ୟବସ୍ଥିତଚିତ୍ତ—
5. Whimsical; capricious.

**ଝଗଡ଼**—ପ୍ରାଦେ. (ଗଡ଼ଜାତ) ବି—ରାଜାଙ୍କର ସ୍ନାନଘାଟ—
Jhagarda — Bath of kings.

ଦେ. ବି—୧ । କୃଷ୍ଣଚୂଡ଼ା ଗଛ—
1. The Gold-mohur tree.
[ ଦ୍ର—ଏହାର ଫୁଲ ତୋଫା ନାଲି ଓ ପେନ୍ଥିପେନ୍ଥି । ]
୨ । ଝଗଡ଼ା (ଦେଖ)
2. Jhagardā (See)
୩ । ଜଞ୍ଜାଳ—3. Complications.

ଦେ. ବିଣ—୧ । ଜଞ୍ଜାଳଗ୍ରସ୍ତ—1. Complicated.
ଏଣୁ କରି ଉଦେ ସନ୍ଧ୍ୟା ବୈଷ୍ଣବର ବୃତ
ନ ପାରନ୍ତି ଗୃହସ୍ଥକନେ ବିଷୟ ଝଗଡ । ପ୍ରାଚୀ. ଶ୍ରୀ ଗୁରୁଭକ୍ତିଗୀତା ।
୨ । ଭ୍ରାନ୍ତିପୂର୍ଣ୍ଣ—2. Full of mistakes or errors.
ଝଗଡ ବାଟେ ପଡିଲେ ମୂର୍ଖେ ହେବେ ଭ୍ରମି । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**(ଝ)ଗଡ଼ଝାଟି**—ଦେ. ବି ଓ ବିଣ—ଝଗଡ଼ାଝାଟିଆ (ଦେଖ)
Jhagarda-jhāti — Jhagardā-jhātiā (See)
(ଝଗଡ଼ଝାଟିଆ—ଅନ୍ୟରୂପ)

**ଝଗଡ଼ଦାର୍**—ଦେ. ବି—ଝଗଡ଼ିଆ (ଦେଖ)
Jhagardadār — Jhagardiā (See)

**ଝଗଡ଼ା**—ଦେ. ବି. (ତା. ଜଗଡ଼ମ୍; ତୁଲ. ସଂ. ଝଟିକା)—୧ । କଳହ—
Jhagardā — 1. Quarrel.
ঝগড়া
झगड़ा
ଝଗଡା ସାରଣ କୃଷ୍ଣ ମଥୁରା ରହିଲ ।
ବଳରାମ ଦାସ. କୋଇଲି ।
୨ । ଝକାଝକ୍ (ଦେଖ)
2. Jhakājhak (See)
୩ । ଜଞ୍ଜାଳ—3. Complications; entanglements.

ଦେ. ବି—ଝଗଡ଼ (ଦେଖ)
Jhagarda (See)

**ଝଗଡ଼ାଝାଁଡ଼ି**—ପ୍ରାଦେ. (ସମ୍ବଲପୁର) ବି—ଝଗଡ଼ାଝାଟି (ଦେଖ)
Jhagardā-jhāṅrdi — Jhagardā-jhāti (See)

**ଝଗଡ଼ାଝାଟି**—ଦେ. ବି. (ତା. ଜଗ୍‌ଡ଼ମ୍, ତୁଲ. ସଂ. ଝଟିକା)—
Jhagardā-jhāti — ବାଗ୍‌ଯୁଦ୍ଧ; କଳିକଜିଆ—
ঝগড়াঝাটি — Altercation; wrangling.

**ଝଗଡ଼ାଝାଟିଆ**—ଦେ. ବିଣ. ପୁଂ ଓ ସ୍ତ୍ରୀ—କଳିହୁଡ଼ା—
Jhagardā-jhātiā — Quarrelsome.
(ଝଗଡ଼ାଝାଟେଇ—ସ୍ତ୍ରୀ) ଦେ. ବି—ଝଗଡ଼ା; କଳିକଜିଆ—
Altercation; wrangling.

**ଝଗଡ଼ିଆ**—ଦେ. ବିଣ—କଳିହୁଡ଼ା; କଳହପ୍ରିୟ—
Jhagardiā — Quarrelsome; wrangling.
ঝগড়াটিয়া; ঝগড়াটে
झगड़ालू

**ଝଗଡ଼ିବା**—ଦେ. କ୍ରି—୧ । କଳି କରିବା—1. To quarrel.
Jhagardibā — ୨ । ବକିବା—2 To talk too much.
ঝগড়া করা — ୩ । ଅଳି କରିବା—3. To importune.
झगड़ना — ୪ । ଲଢ଼ିବା—4. To fight.

**ଝଗଡ଼ି ହେବା**—ଦେ କ୍ରି.—୧ । କଳିକଜିଆ ବା ବହୁ ବାଦବିବାଦ କରିବା; ବାଗ୍‌ଯୁଦ୍ଧ କରିବା—
Jhagardi hebā — 1. To wrangle.
୨ । ଅକାରଣ ବକି ହେବା; ବକବାଦ କରିବା—2. To go on talking uselessly; to be garrulous.
୩ । ବୃଥା ଧନ୍ଦାଳି ହେବା; ବୃଥାରେ କୌଣସି କାର୍ଯ୍ୟ ବା ସଂସାରବନ୍ଧନରେ ଆସକ୍ତ ହୋଇ ଘାଣ୍ଟି ହେବା—
3. To bother one's self unnecessarily; to impose botheration on one's self by being immersed in wordly affairs or in any matter for nothing.
ଝଗଡି ମାତ୍ର ହେଲି ହେ ଶ୍ୟାମ । କବିସୂର୍ଯ୍ୟ. କଶୋଗଚନ୍ଦ୍ର, ୯. ଗୀତ ।

**ଝଗର୍**—ପ୍ରାଦେ. (ସମ୍ବଲପୁର) ବି.—୧ । ଝଗଡ଼ା; କଳି—
Jhagar — 1. Quarrel.
୨ । ଗାଳି—2. Abuse.

**ଝଗର୍‌ଦାର୍**—ପ୍ରାଦେ. (ସମ୍ବଲପୁର) ବିଣ.—ଝଗଡ଼ିଆ (ଦେଖ)
Jhagar-dār — Jhagardiā (See)

**ଝଙ୍କ୍ ଝଙ୍କ୍**—ଦେ. ଅ.—(ଧ୍ୱନ୍ୟନୁକରଣ)—ବତାସ ବା ପବନ ବହିବାର ଶବ୍ଦ—
Jhank-jhank — The sound of blowing wind.

**ଝଙ୍କ**—ଦେ. ଅ. (ଧ୍ୱନ୍ୟନୁକରଣ; ସଂ. ଝଙ୍କାର; ଝଣତ୍କାର)—କଙ୍କଣ ଆଦି ବାଜିବାର ଶବ୍ଦ; ଝମ ଝମ; ଝଣ ଝଣ—
Jhanka
ঝনঝন — The jingling sound of ornaments to which
झनकार — small bells are attached.
କଟି କିଙ୍କିଣୀ, ଘଣ୍ଟି ଠଣ ରଣ, କଙ୍କଣ ଝଙ୍କ ବାଜେ—ପ୍ରାଚୀ. ନଳଚରିତ ।

**ଝଙ୍କା**—ଦେ. ବି.—୧ । ବଡ଼ ଅଗଭୀର ଟୋକେଇ—
Jhanka — 1. A big and shallow basket.
ঝাঁকা — ୨ ପ୍ରାଚୁର୍ଯ୍ୟ—
झांका — 2. Excess; exuberance.
୩ । ବଡ଼ ବଡ଼ ପେନ୍ଥା (ଫଳ ଆଦିର)—
3. Large bunches.

ଦେ. ବିଣ.—ଝଙ୍କାଳିଆ (ଦେଖ)
Jhankāliā (See)

**ଝଙ୍କା(ଙ୍କେ)ଇବା**—ଦେ. କ୍ରି.—(ସଂ. ଧକ୍ ଧାତୁ=ନାଶନ)—
Jhankā(nke)ibā — ୧ । ଝାଙ୍କିବା; ଦୋହଲାଇବା—

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୯ | ଇ | ଉ | ଋ,ୠ | ଝ | ବ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇୟ | ଉଅ | ଢ |
| ୬ | ଈ | ଊ | ରୁ | ଲୁ | ଯ୍ୱ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଢ଼ | ନ୍ |

ଝାଙ୍କବାନ୍; ଝାଁକା 1. To shake down or jerk.
ଝଟକାନା ୨ । ଶସ୍ୟାଦି କ୍ଷୁଦ୍ର ପଦାର୍ଥ ଥିବା ପାତ୍ର ବା ଅଖାକୁ ଦୋହଲାଇବା—2. To shake a bag or basket (as of grains), so as to cause the contents to lie closer or occupy less space inside it.

୩ । (ଗଛ ଲତା) ପତ୍ର ଓ ଶାଖାବହୁଳତା ଦ୍ୱାରା ବଢ଼ିଉଠି ଲାଭ କରିବା—3. ( a tree or creeper ) To spread out its leaves and branches.

ଝଙ୍କାଝଙ୍କ—ଦେ. ବି.—ଝଙ୍କାଝକ୍ (ଦେଖ)
Jhaṅkājhaṅk Jhakājhak (See)
ହରାଭରା; ଝାଂଖାଡ଼ ଦେ. ବିଣ.—୧ । ବହୁଳ; ପ୍ରଚୁର—
1. Extensive; exuberant.
୨ । ପେନ୍ଥା ପେନ୍ଥା ଫଳ ଆଦିରେ ପୂର୍ଣ୍ଣ (ବୃକ୍ଷାଦି)—
2. (trees) Laden with bunches of fruits and flowers.
ଦେ. କ୍ରି. ବିଣ.—୧ । ବଡ଼ ବଡ଼ ଟୋକାଇ ପୂର୍ଣ୍ଣ କରି—
1. In large basketfuls.
୨ । ପ୍ରଚୁର ପରିମାଣରେ—2. In sufficient quantities; exuberently.
୩ । ଟଣା ଓଟରା ହୋଇ—
3. Accompanied with pulling and pushing.
୪ । ଉଭୟ ପକ୍ଷରୁ ଖୁବ୍ ବଳ ପ୍ରୟୋଗ ପୂର୍ବକ—
4. Very vigorously on both sides.
(ଯଥା—ସେ ଦୁହେଁ ଝଙ୍କାଝଙ୍କ ଲଢ଼ିଲେ । )

ଝଙ୍କାଝଙ୍କ ତକରାଳ—ଦେ. ବି.—ଦୁଇଜଣଙ୍କ ମଧ୍ୟରେ ଖୁବ୍ ବାଦ ବିବାଦ
Jhaṅkājhaṅk takarāḷa ସହିତ କଳି କଜିଆ—Quarrel
ଝାକାଝାକ ତକରାର accompanied with much wrangling or recrimination.
ଝକୋ, ଝକଝକ
ଝଙ୍କାଝଙ୍କ କଜିଆ } —ଅନ୍ୟରୂପ
ଝଙ୍କାଝଙ୍କ କଳି

ଝଙ୍କାଝଙ୍କା—ଦେ. ବିଣ.—୧ । ଝଙ୍କାଝଙ୍କ (ଦେଖ)
Jhaṅkā-jhaṅkā 1. Jhaṅkājhaṅk (See)
ଝାଙ୍କାଝାଙ୍କା ୨ । ଝଙ୍କାଳିଆ (ଦେଖ)
ଝାଁକା ଝାଁକା 2. Jhaṅkāḷiā (See
ଦେ. ବି.—୧ । ଅନେକ ପେନ୍ଥା—1. Many bunches.
୨ । ଅନେକ ବଡ଼ ଟୋକେଇ—
2. Many big baskets.

ଝଙ୍କାଝଙ୍କି—ଦେ. ବି—ଝଙ୍କାଝକ୍ (ଦେଖ)
Jhaṅkā-jhaṅki Jhakājhak (See)

ଝଙ୍କାଝୋର୍—ଦେ. ବିଣ.—୦ । ନିଶାରେ ବେହୋଶ—
Jhaṅkājhor 1. Dead drunk; senseless through
ଚୂର intoxication.
ଚୂର ୨ । ଝଙ୍କାଝଙ୍କ (ଦେଖ)
2. Jhaṅkājhaṅk (See)
ଦେ. କ୍ରି: ବିଣ—ଝଙ୍କାଝଙ୍କ (ଦେଖ)
Jhaṅkājhaṅk (See)

ଝଙ୍କା ମାରିବା—ଦେ. କ୍ରି—( ଗଛ ଆଦି ) ଝାମ୍ପୁଲା ହୋଇ ବଢ଼ିବା—
Jhaṅkā māribā ( trees ) To grow bushy or with
ଝାଁପୁଡ଼ାନ spreading top.
ଝାଁଖାଡ଼ନା

ଝଙ୍କାର—ସଂ. ବି. ( ଝମ୍=ଅନୁକରଣ ଶବ୍ଦ+କୃ ଧାତୁ + ଭାବ ଅ )—
Jhaṅkāra ୧ । ଝମ୍ଝମ୍ ଶବ୍ଦ; ଝଣଝଣ ଶବ୍ଦ—
1. Jingling sound; clanging.
ବନ୍ଧ୍ୟାବଧୂଙ୍କର ଚମ୍ପକ ଅଙ୍ଗୁଳି କମ୍ପନେ ମଧୁ ଝଙ୍କାର—
ରାଧାନାଥ, ପାର୍ବତୀ ।
୨ । ଗୁଞ୍ଜନ; ଭ୍ରମରାଦିଙ୍କ ଗୁଣୁଗୁଣୁ ଶବ୍ଦ—
2. Humming sound; buzzing of bees.
ମଧୁପ ଝଙ୍କାର କରେ ଯେ କାଳେ,
ମଲ୍ଲିକାଳିଙ୍ଗ ମୋହ ସେହି କାଳେ—ଗୋଲୋକ, ଇନ୍ଦୁରେଖା ।
୩ । ପବନର ବେଗଦ୍ୱାରା ବୃକ୍ଷାଦିର ପତ୍ର ଓ ଶାଖା ସଞ୍ଚାଳିତ ହେବାର ଶବ୍ଦ; ସାଇଁ ସାଇଁ—3. Rustling sound produced by wind blowing on the leaves and branches of trees.
୪ । ବୀଣାଦି ଯନ୍ତ୍ରର କ୍ୱଣ—4. The twanging sound of a harp or other stringed instrument.
୫ । ଶିଞ୍ଜନ; ଧନୁର ଟଙ୍କାର—
5. Twanging of a bow.
୬ । କ୍ରୋଧ, ବିରକ୍ତି, ଅସନ୍ତୋଷ ପ୍ରଭୃତି ବ୍ୟଞ୍ଜକ ତର୍ଜନଗର୍ଜନ—
6. Chafing and roaring through anger or displeasure.
୭ । କୋଳାହଳ; ଗୋଳମାଳ—
7 Bustle; hubbub.
.ଝାଙ୍କରାନି ଦେ. ବି—ପବନର ବେଗ ବା ଦମ୍ପା—
ଝକୋର Gust or blast of wind.

ଝଙ୍କାରିଣୀ—ସଂ. ବି. ( ଝଙ୍କାର+ଇନ୍+ସ୍ତ୍ରୀ ଈ )—ଗଙ୍ଗାନଦୀ—
Jhaṅkāriṇi The river Ganges.

ଝଙ୍କାରିବା—ଦେ. କ୍ରି—୧ । ଶବ୍ଦାୟିତ କରିବା—
Jhaṅkāribā 1. To cause to echo; to cause
ଝଙ୍କାରା to resound.
ଝଙ୍କାରନା ଆକାଶ ଝଙ୍କାରଇ ଏଣୁ ତା ଗୀତ ।
ରାଧାନାଥ, ମେଘଦୂତ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଷ୍ଟ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ।

୨ । ଝଁଣ ଝଁଣ ଶବ୍ଦ କରିବା—2 To hum; to buzz; to produce a buzzing sound.

**ଝଙ୍କାଳିଆ**—ଦେ. ବିଣ—୧ । ଝାମ୍ପୁଲା; ଛତା ପରି ବିସ୍ତୃତ—
Jhankāḷiā 1. Spreading umbrella.
ଝାଁକଡା
झंखाड़
ଝଙ୍କାଳିଆ-ଗଛୁ ଛଡ଼ି-ମଞ୍ଜୁକୁଞ୍ଜେ । ରଥାନାଥ ସମାଜ ।
୨ । ବିସ୍ତୃତାଗ୍ର—2. Spreading at the top.
୩ । ବୁଦାଳିଆ—3. Bushy.

**ଝଙ୍କି**—ଦେ ବି. ( ସଂ. ଧୃଷ୍ଟ ଧାତୁ=କ୍ଲେଶନ )—ଏକଜିଦ୍; ଜିଗର;
Jhanki ଝଙ୍କି—Pertinacity; obstinacy.
ଝୋଁକ
हठ
ଏକଗୁଏଁ ଦେ. ବିଣ—ଏକଗୁଆଁ; ଏକଜିଦିଆ; ଯେ ବ୍ୟକ୍ତି
हठी ଅପଣାର କଥାକୁ ବଜାୟ ରଖିବାକୁ କୌଣସି ଯୁକ୍ତିତର୍କ ମାନେ ନାହିଁ—Headstrong; pertinacious; obstinate.

**ଝଙ୍କିବା**—ଦେ, କ୍ରି. ( ଧ୍ୱନ୍ୟନୁକରଣ; ସଂ. ଝଙ୍କାର )—ଝାଇଁ ଝାଇଁ
Jhankibā ଶବ୍ଦ କରିବା—To make a jingling sound.
ଝେଁ ଝଙ୍କ ଝଙ୍କ ଝଙ୍କ ଝଙ୍କାର ଝାଙ୍କେ—ଗ୍ରାଚୀ, ରହସ୍ୟମଞ୍ଜରୀ ।

**ଝଙ୍କୃତ**—ସ. ବିଣ. ( ଝମ୍+କୃ ଧାତୁ+କର୍ମ. ତ )—
Jhankṛuta ୧ । ଝଣଝଣ ଶବ୍ଦଦ୍ୱାରା ନିନାଦିତ—
1. Resounding with jingling sound; reverberating.
୨ । ଗୁଞ୍ଜିତ—2. Buzzing.
୩ । ଶିଞ୍ଜିତ—3. Jingling.
୪ । ନିକ୍ୱଣିତ—4. Twanging.

**ଝଙ୍କୃତି**—ସ. ବି—ଝଙ୍କାର ( ଦେଖ )
Jhankṛuti Jhankāra ( See )

**ଝଜକା**—ଦେ. ବି. ( ସଂ. ଭୟବିହ୍ୱଳ; ତୁଳ. ସଂ. ଦ୍ୱିଧା; ଜଂଜାଳ )—
Jhajakā ୧ । ଭୟଜନିତ କିଂକର୍ତ୍ତବ୍ୟବିମୂଢ଼ତା; ଛନକା; ଛନିଆ;
ଝାବରା ହଠାତ୍ ଭୟ ଯୋଗୁଁ ଅବାକାକା ହେବା—
घबरा, झंझट 1. The state of being dumbfounded; alarm; sudden fright.
୨ । ଧନ୍ଦାଳ ହେବା ଅବସ୍ଥା, ଧନ୍ଦିକା—
2. Perplexity due to being in a dilemma.
୩ । ଆନଦ୍ଧ ବାଦ୍ୟାଦିର ଅନୁଚ୍ଚ ଶବ୍ଦ—
3. Low muffling sound of drums.
ଦେ. ବିଣ—୧ । ଛନିଆ, ଭୟବିହ୍ୱଳ—1. Alarmed.
୨ । କିଂକର୍ତ୍ତବ୍ୟବିମୂଢ଼—
2. Bewilderd; perplexed
୩ । କାର୍ଯ୍ୟ ବ୍ୟସ୍ତ—3. Verybusy.

**ଝଜକିବା**—ଦେ. କ୍ରି—ଝଜକି ହେବା ( ଦେଖ )
Jhajakibā Jhajaki hebā ( See )

**ଝଜକି ହେବା**—ଦେ କ୍ରି. ( ସଂ. ଦ୍ୱିଧା )—
Jhajaki hebā ୧ । ଭୟରେ କିଂକର୍ତ୍ତବ୍ୟବିମୂଢ଼ ହେବା; ଛନିଆ
ଘାବଡାନ ହେବା—1. To be dumbfounded with fear;
घबराना to be frightened or alarmed.
୨ । ଧନ୍ଦି ହେବା; ଧନ୍ଦକି ହେବା—2. To be perplexed; to be between the horns of a dilemma.
୩ । (ଆନଦ୍ଧ ବାଦ୍ୟାଦି) ଅନୁଚ୍ଚ ଶବ୍ଦ କରିବା—
3 To produce a low muffling sound.

**ଝଜା**—ଗ୍ରା. ବି. ( ସଂ. ଧ୍ୱଜା )—
Jhajā ରଥ ବା ମନ୍ଦିର ଉପରେ ଉଡୁଥିବା ପତାକା—
ଧଜା Pennon; flag ( flying over a temple
झंडी or car ).

**ଝଜି**—ପ୍ରାଦେ. ( ଗଞ୍ଜାମ ) ବି—ସାନ ଗାମୁଛା; ତଉଲିଆ; ଝାଡ଼ଣ—
Jhaji A small towel; a duster.

**ଝଞ୍ଜ(ଝ)କା**—ଦେ. ବି—ଝଜକା ( ଦେଖ )
Jhañja(jha)kā Jhajkā ( See )

**ଝଞ୍ଜକା ଧରିବା**—ଦେ. ବି—ଧନ୍ଦକାରେ ପଡ଼ିବା ଅବସ୍ଥା; କିଂକର୍ତ୍ତବ୍ୟ-
Jhañjakā dharibā ବିମୂଢ଼ତା—Being in perplexity; being between the horns of a dilemma.

**ଝଞ୍ଜ(ଝ)କିବା**—ଦେ. କ୍ରି—ଝଜକି ହେବା ( ଦେଖ )
Jhañja(jha)kibā Jhajaki hebā ( See )

**ଝଞ୍ଜ(ଝ)ଟ**—ଦେ. ବି. ( ସ. ଝଞ୍ଜା; ଜଞ୍ଜାଳ )—
Jhañja(jha)ṭa ୧ । ଗୋଳମାଳ; ଅଡୁଆ—1. Disturbance;
ঝঞ্জাট (ଝଞ୍ଝଟ—ଅନ୍ୟରୂପ) odo; complication.
झंझट ୨ । ଆନ୍ଦୋଳନ—2. Commotion; agitation.
୩ । କଷ୍ଟ—4. Difficulty; trouble,
୪ । ବିରକ୍ତି, ମାନସିକ ବ୍ୟସ୍ତତା—4. Perplexity; mental trouble; vexation.
୫ । ଲେଦେସ; ଜଞ୍ଜାଳ—
5 Complicated state of affairs.
୬ । କାର୍ଯ୍ୟବ୍ୟସ୍ତତା; କାର୍ଯ୍ୟାତିଶଯ୍ୟ—
6. Pressure of work.
୭ । କ୍ଲେଶ—7. Trouble.
୮ । ଧନ୍ଦକା; ଦ୍ୱିଧାଭାବଜନିତ ଅବସ୍ଥା; ଉଭୟ ସଙ୍କଟ—
8. Dilemma.
୯ । କିଂକର୍ତ୍ତବ୍ୟବିମୂଢ଼ତା—9. Perplexity.

**ଝଞ୍ଜ(ଝ)ଟିଆ**—ଦେ. ବିଣ. ( ସଂ. ଝଞ୍ଜା; ଜଞ୍ଜାଳ )—
Jhañja(ñjha)ṭia ୧ । ଧନ୍ଦାମୟ—1. Perplexing.
ঝঞ্জাট ୨ । ଅତି ବ୍ୟସ୍ତ —
झंझटिया 2. Disturbed; troubled.
୩ । ଅଡୁଆ; ଗୋଳମାଳିଆ—3 Complicated

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇପ୍ସ | ଉଅ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଔ | ନ୍ତ |

୪ । ବିରକ୍ତିଜନକ—4. Troublesome.

୫ । ଦୁସ୍ତର—5 Beset with difficulties.

୬ । କଷ୍ଟସାଧ୍ୟ ( କର୍ମ )—
6. Hard ( task or work ).

ଝଞ୍ଜ(ଝ)ନା—ସଂ. ବି. (ଝମ୍ + ଝନ୍, ଧ୍ୱନ୍ୟନୁକରଣ ଧ୍ୱନି + ଅ + ସ୍ତ୍ରୀ. ଆ)—
Jhañj(jha anā ୧ । ବିଜୁଳି, ବିଦ୍ୟୁତ୍—1. Lightning.

୨ । ବଜ୍ର—Thunder.

୩ । ବଜ୍ରପାତ ଧ୍ୱନି—3. Sound of thunder.

ଝଞ୍ଜ(ଝ)ନି—ଦେ. ଅ. ( ଧ୍ୱନ୍ୟନୁକରଣ ) ( ସଂ. ଝଣତ୍କାର )—
Jhañja jha)ni ୧ । ଧାତବ ଅସ୍ତ୍ରାଦିର ପରସ୍ପର ସଂଘର୍ଷଣଜନିତ ଶବ୍ଦ,
ଝଞ୍ଜଟେ ଝଣତ୍କାର—1. Clanging metallic sound
ঝনঝন (e. g. of metallic weapons striking each other; of a sword being suddenly and swiftly taken out from the scabbard
(ଝଞ୍ଝନି—ଅନ୍ୟରୂପ)

ଅସ୍ତ୍ରର ଝଞ୍ଜନି । ମଧୁସୂଦନ ।

୨ । ବଜ୍ରଧ୍ୱନି—2. Thundering sound.

ଝଞ୍ଜା(ଝା)—ସଂ.ବି. (ଝମ୍, ଅନୁକରଣ ଶବ୍ଦ + ଜନ୍ ଧାତୁ + ଅ + ସ୍ତ୍ରୀ.ଆ)—
Jhañj(jhā)ā ୧ । ବତାସ; ଝଡ଼; ଝଡ଼; ତୋଫାନ—
1. Storm; tempest; tornado.
ଝଂଝା } ଅନ୍ୟରୂପ
ଝଂଝା }

ପରସ୍ପରେ ଦୁଇ ସେନାଏ ଯାଉ। ପାଇ
ଝଞ୍ଜାବିଜୁଳି ଲଡିବା ପ୍ରୟୋଗ ଗଲେ ହୋଇ ।
କୃଷ୍ଣସିଂହ, ମହାଭାରତ, ଶଲ୍ୟ ।

୨ । ଝଡ଼ି ବରଷା; ଝଡ଼ ସହିତ ବର୍ଷା—
2. Rain accompanied by tempest; stormy rain

୩ । ଘୋର ବୃଷ୍ଟି—3. Heavy rain.

୪ । ବାତ୍ୟାର ଗର୍ଜନ—
4. Roaring sound of wind.

୫ । ଝଙ୍କାର ଧ୍ୱନି—5. Clanging sound; sharp clanking sound.

୬ । ତୃପ୍ତି—6. Contentment.

୭ । ଝାଞ୍ଜ ( ହି. ଶବ୍ଦସାଗର )—7 Cymbals.

୮ । ଝେଠ ଝେଠ ହୋଇ ପଡୁଥିବା ସରୁ ବର୍ଷା ( ହି. ଶବ୍ଦସାଗର )—
8. Dripping shower.

ଝଞ୍ଜା(ଝା)ନିଳ—ସଂ. ବି. (ମ. ପ. ଲୋ; ଝଞ୍ଜା + ଅନିଳ)—
Jhañjā(jhā)nila ଝଞ୍ଜାପବନ (ଦେଖ)
Jhañjā-pabana (See)

ଝଞ୍ଜା(ଝା)ପବନ—ସଂ. ବି. (ମ. ପ. ଲୋ; ଝଞ୍ଜାଯୁକ୍ତ ପବନ)—
Jhañjā(jhā)-pabana ୧ । ଝଡ଼; ତୋଫାନ—
1. Tempest; storm; hurricane.
ଝଞ୍ଜାବାତ } ଅନ୍ୟରୂପ
ଝଞ୍ଜାବାୟୁ }
୨ । ବର୍ଷା ସହିତ ବତାସ—
2. Tempest accompanied with rain.

୩ । ଘୂର୍ଣ୍ଣିଅଭୂତ; ଘୂର୍ଣ୍ଣିବାୟୁ—
3. A tornado; typhoon.

୪ । ଗର୍ଜନଯୁକ୍ତ ପବନ—4. Roaring wind.

ବହୁଲି ଝଞ୍ଜାପବନ କୃଷାନୁବିତାଶ । ପ୍ରାଚୀ. ରହସ୍ୟମଞ୍ଜରୀ ।

ଝଞ୍ଜା(ଝା ବର୍ତ୍ତ—ସଂ. ବି. (ମ. ପ. ଲୋ; ଝଞ୍ଜା + ଅବର୍ତ୍ତ)—
Jhañjā(jhā)bartta ଘୂର୍ଣ୍ଣିଅଭୂତ; ଘୂର୍ଣ୍ଣିବାୟୁ—
Whirlwind; tornado.

ଝଞ୍ଜା(ଞ୍ଜା)ରିବା—ଦେ. କ୍ରି. (ଧ୍ୱନ୍ୟନୁକରଣ)—୧ । ଦେଖାଇବା ନିମିତ୍ତ
Jhañjā(jhā)ribā ଅସ୍ଫାଳନ ପୂର୍ବକ ଅସ୍ତ୍ରଆଦି ସଂଚାଳନ କରିବା—
1. To clang a weapon (e.g a sword) for display; to brandish a weapon.

ଅଣ୍ଟୁରେ ମାର କରେ ଝଞ୍ଜାରଣ ଫଗ । କୃଷ୍ଣସିଂହ. ମହାଭାରତ. ଆଦି ।

୨ । ନିଜର ଉତ୍କର୍ଷ ପ୍ରକାଶ କରିବା— 2. To display one's valour or excellence or might.

୩ । (ସଂ. ଜର୍ଜରି) ଝିଞ୍ଜାରିବା; (ପୋକମାନେ) ଲୁଗା ଆଦିକୁ ଟିକିଟିକି କରି ଭକ୍ଷିବା; କୁଟିକୁଟା କରିବା—
3. To reduce into shreds ( as worms eating into fabrics).

ଝଞ୍ଜା(ଝା)ଳ—ଦେ. ବି. (ସଂ. ଝଞ୍ଜା)—ଧାତବ ବାଦ୍ୟ ବିଶେଷ, ଝାଞ୍ଜ—
Jhañjā(jhā)la Metallic cymbals.

ସଜାଇ ବାଦ୍ୟ ଘଣ୍ଟାଟିକ
ତାଳ ଝଞ୍ଜାଳ ଯେ ତାହେକ । ଯଶୋବନ୍ତ. ପ୍ରେମଭକ୍ତି ଗୀତା ।

ଝଞ୍ଜିର (ଇତ୍ୟାଦି)—ବୈଦେ. ବି. (ଫା. ଜଞ୍ଜୀର)—
Jhanjira (etc) ଜଞ୍ଜିର ଇତ୍ୟାଦି (ଦେଖ)
(ଝଞ୍ଜିର୍; ଝଞ୍ଜିର—ଅନ୍ୟରୂପ) Jañjira etc (See)

ଝଞ୍ଝା (ଇତ୍ୟାଦି)—ସଂ—ଝଞ୍ଜା ଇତ୍ୟାଦି (ଦେଖ)
Jhañjha (etc) Jhañjā etc (See)

ଝଟ୍ (ଧାତୁ)—ସଂ—୧ । ଓଳାଇବା—1 To sweep; to cleanse.
Jhaṭ (root) ୨ । ଗଦା କରିବା; ଜମା କରିବା—
2. To heap up.

୩ । ଅଡୁଆଅଡ଼ୁଆ ହେବା—
3 To become complicated (Apte).

୪ । ଜଟାଯୁକ୍ତ ହେବା—4. To become matted or clotted together (as hair) (Apte).

ଝଟ୍—ଦେ. କ୍ରି. ବିଣ. (ସଂ. ଝଟିତି)—୧ । ଅତିଶୀଘ୍ର; ତତ୍‌କ୍ଷଣାତ୍—
Jhaṭ 1. Very soon; quickly; immediately; at once.
ঝট্
ঝট ୨ । ସତ୍ୱର—2. Hastily; speedily

୩ । ଅତି ଦ୍ରୁତଗତିରେ—
3. With speed; with lightning speed.

ଦେ. ବି—୧ । ବେଗଗତି—1. Quick-motion.

୨ । ତ୍ୱରା—2. Haste.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ-ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅଁଧ' ନ ପାଇଲେ 'ଅନ୍ଧ' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ

**ଝଟ୍‌କରି**—ଦେ. କ୍ରି. ବିଣ—ଝଟ୍ (ଦେଖ)
Jhat-kari — Jhat (See)
ଝଟ୍‌କରି ଅବା ଲଭଇ ବୟସ୍କ ଅଟକ ରହଇ ପାଣିରେ ।
କବିସୂର୍ଯ୍ୟ, ସଙ୍ଗୀତ ।
ଝଟ୍‌କିନା, ଝଟ୍‌କିନି, ଝଟ୍‌ଦିସ୍, ଝଟ୍‌ଧିନ୍ } ଅନ୍ୟରୂପ

**ଝଟ୍ ଝଟ୍**—ଦେ. ବି—୧ । ଦୀପ୍ତି; ଝଟକ—
Jhat-jhat — 1. Splendour; glitter.
ঝকঝক ୨ । ଉଷା; ଭୋର୍; ଅନ୍ଧାରୁଆ ସକାଳ; ଫସର ଫାଟିବା
झकझक ବେଳ—2. Early morning; dawn.
ভোরবেলা ଦେ. ବିଣ—ଉଜ୍ଜ୍ୱଳ; ଦୀପ୍ତିମାନ୍; ଜାଜ୍ୱଲ୍ୟମାନ—
झुटपुटा, झुखमुख Shining; bright; burnished; glittering.
ତେଜଥାଏ ରକ୍ତଜ୍ୟୋତିରେ ଝଟ ଝଟ । କୃଷ୍ଣସିଂ. ମହାଭାରତ. ସଭା ।
ঝটপট ଦେ. କ୍ରି. ବିଣ—ଅତିଶୀଘ୍ର, ତୁରନ୍ତ; ଝଟପଟ—
झटपट Quickly; immediately; at once; in no time; in a trice.

**ଝଟ୍‌ଝଟି**—ଦେ. ବି—ଉଷା; ଭୋର୍; ଅନ୍ଧାରୁଆ ସକାଳ—
Jhat-jhati — Early morning.
ভোরবেলা
झुखमुख
(ଝଟପଟ—ଅନ୍ୟରୂପ)

**ଝଟ୍‌ଝଟିଆ**—ଦେ. ବିଣ—୧ । ତ୍ୱରାଯୁକ୍ତ; ତରବରିଆ—
Jhat-jhatiā — 1. Hasty; speedy.
(ଝଟ୍‌ପଟିଆ—ଅନ୍ୟରୂପ) ୨ । ତ୍ୱରିତ—2. Quick.
୩ । ଦୀପ୍ତିମାନ୍—3 Shining; bright.
ଦେ. ବି—ବଡ଼ଭୋର୍—Early morning.

**ଝଟ୍‌ପଟ୍**—ଦେ. ବି—ଝଟ୍‌ଝଟ୍ (ଦେଖ)
Jhat-pat — Jhat-jhat (See)
ঝটপট ଦେ. କ୍ରି. ବିଣ—ଝଟ୍‌ଝଟ୍ (ଦେଖ)
झटपट Jhat-jhat (See)
ଯାହା ବୋଲିବାର ପରସ୍ପର କରି
ଝଟ୍‌ପଟ୍ କହି ପକାଇଁ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ଝଟ୍‌ପଟିଆ**—ଦେ. ବିଣ—୧ । ଝଟ୍‌ଝଟିଆ (ଦେଖ)
Jhat-patiā — 1. Jhat-jhatiā (See)
୨ । ତ୍ୱରିତ—2. Quick.
(ଯଥା—ଝଟ୍‌ପଟିଆ କାମ ।)

**ଝଟ୍‌ପରା**—ଦେ. କ୍ରି. ବିଣ—ଅତିଶୀଘ୍ର; ସତ୍ୱର—
Jhat-parā — At once; immediately.

**ଝଟ୍‌ପୋଶି**—ପ୍ରାଦେ. (କେନ୍ଦ୍ରାପଡ଼ା) ବିଣ—ଝଟ୍‌ଝଟିଆ (ଦେଖ)
Jhat-posi — Jhat-jhatiā (See)

**ଝଟକ**—ଦେ. ବି (ସଂ. ଚୂକଚକ୍ୟ)—ଦୀପ୍ତି; କାନ୍ତି; ତେଜ—
Jhataka — Glitter.
চটক ବର୍ଣ୍ଣ ଝଟକ ବଳୁକରେ ନାହିଁ—ଭଞ୍ଜ. ବୈଦେହୀଶବିଳାସ ।
झकझक ଦେ. ବିଣ—ଝଟିକ ଆଭାଯୁକ୍ତ—Glittering.
ବଦନ ମୋ ଚନ୍ଦ୍ର ପରି ଭାଉଛି;
ବୃହସ୍ପତି ଶୁକ୍ର ପରି ଝଟକ—ଭଞ୍ଜ, ବୈଦେହୀଶବିଳାସ ।
ଦେ. କ୍ରି. ବିଣ—ଅତିଶୀଘ୍ର—Quickly.
ଯା କହିଲ ଝଟକେ ନେଇଗୋଟିଏ
ହେବ ଉଦକେ ମୋର ହେ କାମତରୁ—ଗୋପୀନାଥ. ମେଘଦୂତ ।

**ଝଟକା**—ଦେ. ବି (ଧ୍ୱନ୍ୟନୁକରଣ)—୧ । ପବନ ବା ବାୟୁର ଗୋଟିଏ ଦମ୍ପା ବା ଝୋଡ଼ି—1. A puff of wind; a squall.
Jhatakā
ঝটকা
झकोरा; झोंका ୨ । ଲାଙ୍ଗୁଡ଼ିଆଦିଦ୍ୱାରା କ୍ଷିପ୍ର ଆଘାତ—
2 A sudden blow as of a tail or a whip
୩ । ଦମ୍ପାଯୁକ୍ତ ଆଘାତ—
3. A smart sweep; a whisk; a quib.
୪ । ଝିଙ୍କା—4 Jerk.
ପ୍ରାଦେ (ଗଞ୍ଜାମ) ବି—ଏକ ଘୋଡ଼ାଯୁକ୍ତ ଦୁଇଚକିଆ ଶଗଡ଼; ଏକ୍କା ଗାଡ଼ି—A gig; one-horse-rickshaw.
[ ଦ୍ର—ଏହିପ୍ରକାର ଗାଡ଼ିକୁ ହିନ୍ଦୀରେ ଇକ୍କା ବା ଏକ୍କା ବୋଲାଯାଏ । ]

**ଝଟକା(କେ)ଇବା**—ଦେ. କ୍ରି (ସଂ. ଝଟିତି)—୧ । ଝଟକାମାରିବା; ଲାଙ୍ଗୁଡ଼ିଆଦିଦ୍ୱାରା ଜୋରରେ ହଠାତ୍ ଆଘାତ କରିବା—1. To flap or whisk (as the tail or wing.
Jhatakā(ke)ibā
ঝটকান
झटकाना
୨ । (ଝଟକିବାର ଣିଜନ୍ତରୂପ)—ଆଭାଯୁକ୍ତ ବା ଚକ୍‌ଚକ୍ କରାଇବା—2. To burnish; to impart glow to a thing.

**ଝଟକିନା**—ଦେ. କ୍ରି. ବିଣ—ଝଟ୍ (ଦେଖ)
Jhata-kinā — Jhat (See).
(ଝଟକିନି, ଝଟକରି—ଅନ୍ୟରୂପ)

**ଝଟକିବା**—ଦେ. କ୍ରି—୧ । ଶୋଭା ପାଇବା; ଚକ୍‌ଚକ୍ ହେବା; ଜାଜ୍ୱଲ୍ୟମାନ ହେବା—
Jhatakibā
চমকা 1. To shine; to glitter.
झटकना ଝଳ ପାଖା ନ ଝଟକେ ନାହିଁ କ—କବିସୂର୍ଯ୍ୟ କଳୋଗଚନ୍ଦ୍ର ଗୀତ ।
୨ । ସାଧାରଣରେ ଭଲରୂପେ ପ୍ରକାଶିତ ହେବା; ଖ୍ୟାତ ହେବା; ପ୍ରସିଦ୍ଧ ହେବା—2. To be well-known in public.
(ଯଥା—ଦେଶତମାମ୍ ତାଙ୍କ କୀର୍ତ୍ତି ଭାରି ଝଟକୁଛି ।)

**ଝଟଝଟ**—ଦେ. ବିଣ—ଚକଚକିଆ—
Jhata-jhata — Glittering; shining;
ঝকমক ଝଟଝଟ ହେଉଥାଏ ଭୂଷା ଶିରୀ—କବିସୂର୍ଯ୍ୟ, କଳଣା ।
झकमक

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ଂ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଘ |
| ୬ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ |

**ଝଟତି** — ଦେ. କ୍ରି. ବିଣ (ସଂ. ଝଟିତି) — ୧ । ହଠାତ୍ —
Jhaṭati — 1. Suddenly.
ঝটপট — ୨ । ଅତିଶୀଘ୍ର —
झटपट — 2 Immediately; quickly,

ପୁଣି ଧୃତରାଷ୍ଟ୍ର ପୋଏ ପାଶରେ ଅଛନ୍ତି
କର୍ଣ୍ଣ ହାତେ କି ହୋଇ ନ ପାରେ ଝଟତି — କୃଷ୍ଣସିଂହ, ମହାଭାରତ. କର୍ଣ୍ଣ ।

**ଝଟତିରେ** — ଦେ. କ୍ରି. ବିଣ — ଝଟତି (ଦେଖ)
Jhaṭatire — Jhatati (See)

ପ୍ରେମ ଲକ୍ଷଣୀ କପଟୀ ପରିପାଟି ରଚି ଝଟତିରେ ପୁଣି ଗଢ କଲେ ପୁରକୁ ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଝଟତ୍ରୀ** — ଦେ. ବି — ଝଟନେତ୍ରୀ (ଦେଖ)
Jhaṭatrī — Jhaṭa-netrī (See)

**ଝଟନେତ୍ରୀ** — ଦେ. ବି. ସ୍ତ୍ରୀ — ଗ୍ରାମଦେବୀଙ୍କ ନାମବିଶେଷ —
Jhaṭanetrī — Name of one of the village Goddesses.
(ଝଟତ୍ରୀ, ଝଟବରୀ — ଅନ୍ୟରୂପ)

**ଝଟବରୀ** — ଦେ. ବି. ସ୍ତ୍ରୀ — ଗ୍ରାମଦେବୀଙ୍କ ନାମବିଶେଷ —
Jhaṭabarī — Name of one of the popular village goddesses.

**ଝଟମଟ** — ଦେ. ବିଣ. — ଦୀପ୍ତିମନ୍ତ; ଝକମକ; ଜକଜକ —
Jhaṭa-maṭa — Glittering.
ঝকমক
झकमक

ଅର୍ଜୁନଙ୍କ କବଚ ମଣି ଝଟମଟ ହୋଇ ଦିଶୁଅଛି ଯୁଦ୍ଧ ଭୂମି ବାଟ ।
କୃଷ୍ଣସିଂହ, ମହାଭାରତ. କର୍ଣ୍ଣ ।

**ଝଟା** — ଦେ. ବି. — ୧ । ବୃକ୍ଷ ଗୁଳ୍ମାଦିର ସଂଗୃହୀତ ସରୁସରୁ ଶାଖାଗୁଚ୍ଛ;
Jhaṭā — ଝାଟି — 1. Twigs and small branches of creepers and trees; brushwood; wattle
झाडी
୨ । ଝୋଟି; ଚୂରୁଳ ଆଦିରେ ଲେଖିବା ଚିତା —
2. Drawing on floor or wall with white powder or lime-water.
ପ୍ରାଦେ. (ଗଞ୍ଜାମ ଓ ଗଡ଼ଜାତ) ବି. — ଶିମ୍ବ — Bean.

ଅରେ ବହୁଟା ! ଝଟାଲଟା ତଳେ ନ କର ହଟ !
ଯଦୁମଣି. ରହସ୍ୟବଚନ ।

ପ୍ରାଦେ. (ମେଦନୀପୁର) ବି. — (ଭୁଲ ବ. ଝାଁଟା) — ଝାଡ଼ୁ; ପଛୁଁରି — Broom-stick.
ପ୍ରାଦେ. (ସିଂହଭୂମ) — ବି. — ଝାଟିମାଟି କାନ୍ଥରେ ଦିଆ ଯିବା ଝାଟି ବା ଡାଳିଆ -- Twigs put as the inner frame in a mud-and-wattle wall

**ଝଟାଝଟ୍** — ଦେ. କ୍ରି. ବିଣ — ଝଟ୍‌ଝଟ୍ (ଦେଖ)
Jhaṭā-jhaṭ — Jhaṭ-jhaṭ (See)

**ଝଟାଝଟି** — ଦେ. ବି. — (ବହୁବଚନ) ଅନେକଗୁଡ଼ାଏ ଝଟା —
Jhaṭā-jhaṭi — A collection of twigs.

**ଝଟାପଟ୍** — ଦେ. କ୍ରି. ବିଣ — ଝଟ୍‌ଝଟ୍ (ଦେଖ)
Jhaṭā-pat — Jhaṭ-jhaṭ (See)

**ଝଟାତ୍** — ଦେ. କ୍ରି. ବିଣ. — (ସଂ. ଝଟିତି ବା ହଠାତ୍) — ଝଟ୍; ହଠାତ୍ —
Jhaṭāt — Suddenly.

**ଝଟାତ୍‌କିନା** — ଦେ. କ୍ରି. ବିଣ — ଝଟାତ୍ (ଦେଖ)
Jhaṭāt-kinā — Jhatāt (See)
ଝଟାତ୍‌କିନା
ଝଟାତ୍ କରି
ଝଟାତ୍ ଦିନ୍

**ଝଟାପଟା** — ଦେ. ବି. — ୧ । ମାଡ଼ ମରାମରି ବା ଧରାପରା; ଦୁଇ ଜଣଙ୍କର ଧରାଧରି ହୋଇ କଳି; ଧଡ଼ାପଡ଼ା —
Jhaṭā-paṭā
ঝগড়াঝাটী — 1. Quarrel accompanied with mutual tangling together; falling upon each other; affray.
झगड़ा
୨ । କଳିକଜିଆ — 2. Quarrelling; strife.
ଦେ. ବିଣ. — ୧ । ପରସ୍ପରରେ ଧରାଧରି ବା ମରାମରି —
1. Grappling or struggling with each other.
୨ । ପରସ୍ପର ଲାଗିଥିବା (କଳି) — 2. Wrangling.
୩ । ଯାହା କୌଣସି ବସ୍ତୁରେ ଲାଗିଲେ ଛାଡ଼େ ନାହିଁ —
3. Clinging; adhesive.
୪ । ଗୁଡ଼େଇ ଭୁଡ଼େଇ ହୋଇ ଲାଗି ରହିଥିବା —
4. Entangled in a confused manner; complicatedly entwined.
ଦେ. କ୍ରି. ବିଣ. — ଗୁଡ଼େଇ ଭୁଡ଼େଇ ହୋଇ ସଂଲଗ୍ନ ହେବା ପ୍ରକାରେ — Intricately; entwining each other; in an entangled manner.

କାନକୋଳି କଣ୍ଟା, ଯହିଁରେ ଲାଗିବ ଝଟାପଟା । କାହାଣୀର ଲଥା ।

**ଝଟାପଟି** — ଦେ. ବି. — ଝଟାପଟା (ଦେଖ)
Jhaṭāpaṭi — Jhaṭāpaṭā (See)

**ଝଟାଳ** — ଦେ. ବିଣ. — (ସଂ. ଜଟିଳ; ସଂ. ଝଟ ଧାତୁ) — ୧ । ଅଡ଼ୁଆ-ଛଡ଼ୁଆ — 1. Complicated; entangled.
Jhaṭāḻa
୨ । ଝାଟିପୂର୍ଣ୍ଣ — 2. Entwined with twigs.
୩ । ଶାଖାଯୁକ୍ତ ଶୃଙ୍ଗବିଶିଷ୍ଟ —
3. Having branching horns.
(ଯଥା — ଝଟାଳ ମିରିଗ ।)
୪ । ବହୁଶାଖାଯୁକ୍ତ — 4. Having many branches.

**ଝଟାଳିଆ** — ଦେ. ବିଣ. — ଝଟାଳ (ଦେଖ)
Jhaṭāḻiā — Jhaṭāḻa (See)

ବିଚରନ୍ତି ମୃଗଯୂଥ, ଶୋଭେ କାହା 'ଟିରେ ଲଗ୍ନ ଝଟାଳିଆ ଶୃଙ୍ଗ ।
ଚିନ୍ତାମଣି. ବିକ୍ରମାଦିତ୍ୟ ।

**ଝଟିକା** — ଦେ. ବି. (ଝଟ ଧାତୁ = ସଂଘର୍ଷ କରିବା) — ଝଡ଼; ତୋଫାନ; ବତ୍ୟାର — Tempest; high wind; storm; hurricane; cyclone.
Jhaṭikā
ঝড়
झक्कड़

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତିର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଆଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଝଟିତ**—ଦେ. (ପଦ୍ୟ) କ୍ରି. ବିଣ.—(ସ. 'ଝଟିତି')—ଅତିଶୀଘ୍ର—
Jhatita — At once; in no time; immediately.
ବନ୍ଧୁ କଣ୍ଟରର ଗ୍ରହ୍ଣ ପୂରିଲେ ଝଟିତ ।
ଉପେନ୍ଦ୍ର ବୈଦେହୀଶ ବିଳାସ ।

**ଝଟିତର**—ଗ୍ରା. କ୍ରି. ବିଣ.—ଝଟିତ (ଦେଖ)
Jhatitara — Jhatiat (See)
ତାହା ଅଶିବ ମନକୁ ଝଟିତର—ଉପେନ୍ଦ୍ର, ବୈଦେହୀଶବିଳାସ ।

**ଝଟିତି**—ସ. କ୍ରି. ବିଣ. (ଝଟ ଧାତୁ=ଗଦା ହେବା+କର୍ତ୍ତୃ. ଇତି)—
Jhatiti ୧ । ଅତି ଶୀଘ୍ର—
1. Immediately; in no time; sharp.
୨ । ଦ୍ରୁତବେଗରେ—2. Quickly.
ଝଟିତି ଆକାଶରେ ଉଡ଼ି ଘୋଡ଼ା ଗଲେ—କୃଷ୍ଣସିଂହ, ମହାଭାରତ, ଅଦି ।

**ଝଟୁଆ**—ପ୍ରାଦେ. (ସିଂହଭୂମ) ବି. (ଭୁଲ. ସଙ୍କ୍ରାମ. ଝଟା)—ଶିମ୍ବ—
Jhatua — Bean.

**ଝଡ଼ଝଡ଼**—ଦେ ଅ. (ଧ୍ୱନ୍ୟନୁକରଣ; ସ. ଝର)—କାନ୍ଥରୁ
Jhard-jhard ଶୁଖିଲା ମାଟି ଝଡ଼ି ପଡ଼ିବା ଶବ୍ଦ; ଖଳଖଳ ଧ୍ୱନି,
ঝরঝর ଗଛରୁ ଶୁଖିଲା ପତ୍ର ଝଡ଼ି ପଡ଼ିବାର ଶବ୍ଦ—
झड़झड़ Rustling sound of falling leaves or crumbling earth falling down from a wall.

**ଝଡ଼**—ଦେ. ବି. (ସ. ଝଟ ଧାତୁ=ଗଦା କରିବା)—
Jharda ୧ । ବାତ୍ୟା; ତୋଫାନ; ଝଞ୍ଜାବାତ—
ঝড় 1. Highwind; storm; tempest.
झड़ी ୨ । ଅବିଶ୍ରାନ୍ତ ବୃଷ୍ଟି ସହ ପ୍ରବଳ ବାତ୍ୟା—
2. Continuous wind and rain.

**ଝଡ଼ଙ୍ଗା**—ଦେ. ବି—ଚିଲିକାର ଏକପ୍ରକାର ଲୁଣି ମାଛ—A kind of
Jhardanga salt-water-fish found in the lake Chilkā.

**ଝଡ଼ଝାଟି**—ଦେ. ବି—ଝଡ଼ ତୋଫାନ (ଦେଖ)
Jharda-jhāti — Jharda tophāna (See)

**ଝଡ଼ ତୋଫାନ**—ଦେ. ବି—ବାତ୍ୟା ଓ ବୃଷ୍ଟି—
Jharda tophāna Wind and rain; rain and storm.
ঝড়ঝাটী
झड़बतास, झक्कड़

**ଝଡ଼ତି ପଡ଼ତି**—ଦେ. ବି—ପଣ୍ୟ ଦ୍ରବ୍ୟ ଓ ଶସ୍ୟାଦି ସ୍ଥାନାନ୍ତର କରାଯିବା
Jhardati pardati ଯୋଗୁଁ ସେଥିରୁ ଯାହା ତଳେ ଝଡ଼ି ପଡ଼ି
ঝাড়তি পড়তি ଲୋକସାନ୍ ହୋଇଯାଏ—Wastage of loose articles (e. g. grain) in transit.

**ଝଡ଼ ବତାସ**—ଦେ. ବି—ଝଡ଼ ତୋଫାନ (ଦେଖ)
Jharda batāsa — Jharda tophāna (See)

**ଝଡ଼ ବୃଷ୍ଟି**—ଦେ. ବି—ଝଡ଼ ତୋଫାନ (ଦେଖ)
Jharda brushti — Jharda tophāna (See)

**ଝଡ଼ା**—ଦେ. ବି. (ସଂ. ଝଟ ଧାତୁ=ଗଦା କରିବା, ଓଲାଇବା; ଝାଟ
Jhardā =ସମ୍ମାର୍ଜନ)—
ঝাড়া ୧ । ଦେହ ଝାଡ଼ିଝୁଡ଼ି ହେବା—1. Shaking off lethargy
झटका from the limbs by whisking.
୨ । ଝଡ଼ିବା—
2. Shedding; falling (e. g. off leaves).
୩ । ଲୁଗା ଆଦିରୁ ଧୂଳି ଝାଡ଼ିବା—
3. To beat or shake off the dust from clothes etc.
୪ । ଝାଡ଼ିବା; ଝାଡ଼ୁଣୀ ଦ୍ୱାରା ପରିଷ୍କାର କରିବା; ସମ୍ମାର୍ଜ୍ଜନ କରିବା—
4. Sweeping; cleansing with broomstick.
୫ । ମନୁଷ୍ୟର ଦେହର ସଞ୍ଚାଳନ—
5. Shaking of one's limbs.
୬ । ମନ୍ତ୍ରାଦି ଦ୍ୱାରା ମନୁଷ୍ୟଠାରୁ ଭୂତପ୍ରେତାଦି ବା ରୋଗ ଛଡ଼ାଇବା; ମନ୍ତ୍ରାଦି ଦ୍ୱାରା ମାର୍ଜ୍ଜନ—
6. Exorcism; dispelling of evil spirits or sickness from a person by conjuration.
୭ । ଏକ ପ୍ରକାର ପିଠା ବା ମିଷ୍ଟାନ୍ନ—
7. A kind of cake or sweetmeat.
୮ । ଝରା; ଫୁଲତୋଡ଼ା—8. Nosegay; bouquet.
ନମିଳ କପୋଳେ ରଞ୍ଜିଲେ ଅଳକା
ବନ ଫୁଲକରି ଝଡ଼ା ଗୋ । ପ୍ରାଚୀ, ରହସ୍ୟମଞ୍ଜରୀ ।
୯ । ତୀବ୍ର ଗାଳି; ଗାଳମନ୍ଦ; ସୋଧା; ସୋଧନ—
9. A shower of rebuke.
୧୦ । ସମାର୍ଜ୍ଜିତ ଅଳିଆ—10. Refuse; sweepings.
୧୧ । ପରିଷ୍କାରକରଣ; ଆବର୍ଜନାର ଦୂରୀକରଣ—
11. Clearance.
୧୨ । ଗଛରୁ ଝଡ଼ିବା ଫଳ ପୁଷ୍ପ ଆଦି—
12. Fruits etc. fallen down from trees.
୧୩ । ଝଣ୍ଡା; ପତାକା—
13. Flagstaff (Howells).
୧୪ । ନଡ଼ିଆ ଗଛରୁ ବର୍ଷକେ ଥରେ ବାହୁଙ୍ଗା ଝାଡ଼ିବା କର୍ମ—
14. Act of clearing dry branches etc. from cocoanut trees.
୧୫ । (କଚେରୀଆ ଭାଷା) କୌଣସି ଘର ତଲାସି କରିବାକୁ ଯିବା ସରକାରୀ କର୍ମଚାରୀ ଓ ସାକ୍ଷୀମାନେ ଘର ଭିତରକୁ ପଶିବା ପୂର୍ବରୁ ସେମାନଙ୍କ ଲୁଗାପଟା ଭିତରେ କୌଣସି ଜିନିଷ ଲୁଚାଇ ରଖି ନାହାନ୍ତି, ଏହା ପ୍ରମାଣିତ କରିବା ପାଇଁ ନିଜନିଜର ଲୁଗାପଟାକୁ ଲେଉଟାଇ ପାଉଟି କରି ଦେଖାଇବା କର୍ମ—
15. Submitting one's self to a careful search before beginning a house-search.
୧୬ । ବାଳୁଙ୍ଗା ଧାନ, ଯଦ୍ୱାରା ଗଛ ଧାନକ୍ଷେତରେ ଧାନ ଗଛ ସଙ୍ଗେ ଉଠିଥାଏ—16. Paddy of self-grown plants which come out in a paddy field.

| ୧ | ଇ | ଉ | ଋ,ଋ | ଌ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟ | ଉଆ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ |

ଦେ. ବଣ—ଯାହା ଝଡ଼ି ପଡ଼ିଥାଏ—That which has dropped to the ground.

୧୬ । (କଚେରୀଆ ଭାଷା)—ସନ୍ଦେହ ବ୍ୟକ୍ତି ବା ଜେଲଖାନାକୁ ନିଆ ଯାଉଥିବା ବନ୍ଦୀ ଅପଣା ଲୁଗାପଟା ମଧ୍ୟରେ କିଛି ଜିନିଷ ଲୁଚାଇ ରଖି ନାହିଁ, ଏହା ଦେଖିବା ପାଇଁ ସେ ବ୍ୟକ୍ତିର ଲୁଗାପଟା ଝଡ଼ାଝଡ଼ି କରି ଦେଖିବା; ଦେହ ତଲାସୀ—16. Search a convict's clothes and person before he is admitted into jail to see if he has not secreted any thing.

୧୭ । ତଳକୁ ଝଡ଼ି ପଡ଼ିଥିବା ପଦାର୍ଥ ବା ଅଂଶ—17. Droppings; things which have dropped down.

ଦ. ବଣ.—୧ । ସମାର୍ଜ୍ଜିତ—1. Well swept.

୨ । ଗଛରୁ ଝଡ଼ିଥିବା—2. Shed or dropped from trees.

(ଯଥା—ଅକାଳ ଝଡ଼ା ଫଳ ।)

୩ । ଯହିଁରୁ ମାଛ କଣ୍ଟା ଆଦି କଢ଼ା ହୋଇଥାଏ—3. (curry) From which coarse matters and bones have been taken out.

(ଯଥା, ଝଡ଼ା ମହୁର ।)

ପ୍ରାଦେ. (ଗଡ଼ଜାତ) ବି.—ଝୁଗ୍ର; ଆଦିମ ଜାତିବିଶେଷ—A race of aborigines.

**ଝଡ଼ା(ଡ଼େ)ଇବା**—ଦେ. କ୍ରି.—୧ । ଝାଡ଼ିବାର ଣିଜନ୍ତରୂପ—
Jhardā (rde)ibā 1. Causative of Jhardibā.
ଝରାନ, ଝଡ଼ାନ ଝଡାଇଲ ଇନ୍ଧନ ପଡିଥିବା ଧୂଳ ।
झटकारना, झड़वाना କୃଷ୍ଣସିଂ ହ. ମହାଭାରତ, ବନ ।

୨ । ଝଡ଼ିବାର ଣିଜନ୍ତ ରୂପ—2. Causative of Jhardibā.

ପୂଣା ସୁବେଡାଣ ଭକ୍ଷଣ କରୁଥିଲେ,
ମୁଠି ଧାଡ଼େ ତାଙ୍କ ଦାନ୍ତକୁ ଝଡାଇଲେ ।
କୃଷ୍ଣସିଂ ହ. ମହାଭାରତ, ଦ୍ରୋଣ ।

**ଝଡ଼ା(ଡ଼େ)ଇ ହେବା**—ଦେ. କି.—(ମନ୍ଦ ଅର୍ଥରେ ବ୍ୟବହୃତ)—
Jhardā(rde)i hebā ୧ । ଭୁକ୍ତ ଖାଦ୍ୟାଦିର ଜୀର୍ଣ୍ଣ ହେବା ଉଦ୍ଦେଶ୍ୟରେ ବ୍ୟାୟାମାଦି କରିବା—1. To engage in brisk exercise with a view to digest one's food.

[ ଦ୍ର—କୌଣସି କର୍ମମା ପରିଶ୍ରମୀ ଲୋକକୁ କୌଣସି ବୃଥା ପରିଶ୍ରମ କରିବାର ଦେଖିଲେ ଲୋକେ ଥଟ୍ଟାରେ କହି ଥାଆନ୍ତି 'ତାର ତ କିଛି କାମ ନାହିଁ,'ସେ ଭାତ ଝଡ଼େଇ ହଉଛି' । ]

୨ । ମତ୍ତ ହେବା; ମସ୍ତ ହେବା—2. To be excited; to be maddened.

**ଝଡ଼ାଝଡ଼**—ଦେ. ଅ. (ସଂ. ଝଟିତି)—୧ । ଝଟିତି; ତତ୍‌କ୍ଷଣାତ୍—
Jhardā-jhard 1. At once; immediately.
ঝাড়াঝাড়
२ । ଲଗେଲଗେ—
झड़ाझड़ 2. Continuously.

୩ । ଏକର ପରେ ଅନ୍ୟ—3. One after the other.

**ଝଡ଼ାଝଡ଼ି**—ଦେ. ବି.—୧ । ଅନେକ ଥର ଝାଡ଼ିବା କର୍ମ—
Jhardā-jhardi 1. Repeated jerkings.
ঝাড়াঝাড়ি
୨ । ପରସ୍ପର ଦେହରୁ ଧୂଳି ଝାଡ଼ିବା କର୍ମ—
झाड़बुहार 2. Cleaning each other's body of dust.

୩ । ବନ୍ଧୁବାର ଘରର ତଳ, କାନ୍ଥ ଓ ଚାଳ ଓ ଘରେ ଥିବା ଜିନିସପତ୍ରକୁ ଝାଡ଼ିବା ବା ଝାଡ଼ୁ ଦ୍ୱାରା ସାଫ କରିବା—3. Repeated cleansing of the floor, walls and articles of a house.

୪ । ଜିନିସପତ୍ର ପାତ୍ର ବା ଅଖାରୁ ନେଇ ଯିବା ପରେ ଉହିଁରେ ବାକି ରହିଯିବା ଛୋଟ ଖଣ୍ଡ ଓ ଟୁଳ—4. Refuse matter left in a bag or pot after it is emptied.

୫ । ଝାଡ଼ଫୁଙ୍କ (ଦେଖ) 5. Jhārdа-phunka (See)

**ଝଡ଼ାଝପଟ**—ଦେ. ବି—ଝପଟ (ଦେଖ)—
Jhardā-jhapata Jhapata (See)

**ଝଡ଼ା ତଦାରଖି**—ଦେ. ବି (କଚେରୀଆ)(ସଂ. ଝଟ ଧାତୁ+ଫା. ତଦାରଖ)
Jhardā tadārakhi କୌଣସି ବ୍ୟକ୍ତିର ସର୍ବାଙ୍ଗ ତଲାସୀ କରିବା;
ঝাড়া କୌଣସି ଲୋକର ଅଙ୍ଗପ୍ରତ୍ୟଙ୍ଗ ଓ
झाड़ा ଲୁଗାପଟାକୁ ଝାଡ଼ି ସେ କିଛି କଥା ଲୁଚାଇ ରଖିଥିବା ସମ୍ବନ୍ଧେ ସନ୍ଦେହ ଦୂର କରିବା ପାଇଁ
ଝଡ଼ା ତଲାସୀ } ଅନ୍ୟରୂପ ପରିଦର୍ଶନ—Thorough search of
ଝଡ଼ା ତଦାରଖ } the body and clothes of a person.

**ଝଡ଼ା ଦେବା**—ଦେ. କ୍ରି—୧ । (କଚେରୀଆ) (ଖାନତଲାସୀ ପାଇଁ ଘରେ
Jhardā debā ପଶିବା ବ୍ୟକ୍ତି) ଘରେ ପଶିବା ପୂର୍ବରୁ ସର୍ବସମକ୍ଷରେ
ঝাড়া দেওয়া ଆପଣା ଦେହ ଓ ପୋଷାକକୁ ଉତ୍ତମରୂପେ ଝାଡ଼ିବା—
झाड़ा देना 1. To clearly show to the people present that the officer about to enter a house for house-search has secreted nothing in his body or clothes.

୨ । (କୁକୁର ବା ବାଘଆଦି ହିଂସ୍ର ଜନ୍ତୁ) କୌଣସି ଶିକାର (ଯଥା ଛେଳି, ପକ୍ଷୀ)କୁ ବେକ ପାଖରୁ ପାଟିରେ ଧରି ଖୁବ୍ ଜୋରରେ ଏକାଧିକ ଥର ଶୂନ୍ୟରେ ସଞ୍ଚାଳନ କରିବା—2. (a beast of prey) To give repeated jerkings to its victim by holding it between the jaws.

[ ଦ୍ର—ଏପରି ଝଡ଼ା ଦେବା ଦ୍ୱାରା ଆକ୍ରାନ୍ତ ଜୀବ ମୃତ କିମ୍ବା ଅର୍ଦ୍ଧପ୍ରାଣ ହୋଇଯାଏ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଆଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

**ଝଡ଼ା ପୋଛା**—ଦେ. ବି—କୌଣସି ସ୍ଥାନ ଓଳାଇ ଓ ପୋଛି ସଫା କରିବା
Jhar̤ā pochhā — କର୍ମ—Cleansing a place by sweeping.
ঝাড়াপুছা
झाड़फोंछ

**ଝଡ଼ା ଫୁଙ୍କା**—ଦେ. ବି—ଝାଡ଼ ଫୁଙ୍କ ( ଦେଖ )
Jhar̤ā phuṅkā — Jhār̤a phunṅka ( See )

**ଝଡ଼ା ବେଶର**—ଦେ. ବି—ଯିଁଥା ମାଛରୁ କଣ୍ଟାସବୁ ବାହାର କରିଯାଇ ତହିଁରେ ବଟା ସୋରିଷ ଦିଆଯାଇ ହୋଇଥିବା
Jhar̤ā besara
( ଝଡ଼ା ବେଶର—ଅନ୍ୟରୂପ ) ଏକପ୍ରକାର ବ୍ୟଞ୍ଜନ—A curry prepared from fish after the bones are taken out and it is mixed with rye-paste.

**ଝଡ଼ା ମହୁର**—ଦେ. ବି—ଯେଉଁ ମହୁର ତିଆରିରୁ ମାଛକଣ୍ଟା କଢ଼ା ହୋଇଥାଏ—A stew or hotchpotch
Jhar̤ā mahura
( ଝଡ଼ା ମୋହର—ଅନ୍ୟରୂପ ) ( curry ) from which the bones of the fish have been carefully removed before it is served to guests

ଝଡା ମହୁରେ କଲ ଖଡା ରନ୍ଧନ
କାମୁଡା ଘୋଡା ମୁଖେ ଦେଲ ଚୁମ୍ବନ—ଯଦୁମଣି. ରହସ୍ୟବଚନ ।

[ ଦ୍ର—ମାଛ ଓ ପରିବା ଏକତ୍ର ଘଣ୍ଟା ହୋଇ ମହୁର ତିଆରି ହୁଏ ଓ କେବଳ ମାଛରେ ବଟା ସୋରିଷ ମିଶାଯାଇ ବେଶର ତିଆରି ହୁଏ । ଖାଇବା ସମୟରେ ଖାଇବା ବ୍ୟକ୍ତି ଉକ୍ତ ମହୁର ବା ବେଶରରୁ ମାଛ କଣ୍ଟାକୁ କାଢ଼ି ଖାଇବା କଷ୍ଟ ଓ ଅସୁବିଧାଜନକ ହୁଏ, ଏଥିପାଇଁ ଆଗରୁ ରନ୍ଧା ହେବା ମାଛରୁ କଣ୍ଟାଗୁଡ଼ିକ ଝାଡ଼ି ଦେଇଥିଲେ ଖାଇବା ଲୋକ ଉକ୍ତ ଝଡ଼ା ମହୁର ବା ବେଶରକୁ ଆନନ୍ଦସହକାରେ ଖାଏ । ]

**ଝଡ଼ି**—ଦେ. ବି—ଝଡ଼ ( ଦେଖ )
Jhar̤i — Jhar̤a ( See )

କମାନେ କଭ ମାସ କଶା ଝଡ଼ି—କବିସୂର୍ଯ୍ୟ, ସଙ୍ଗୀତ ।

ପ୍ରାଦେ. ( ଗଡ଼ଜାତ ) ବି—ତାସା—A drum.

ଧସା ଜାଗସ ନଉବତ ଝଡ଼ି
ଢେଲଙ୍ଗି ବାଜା ଗୁଙ୍ଗୁ ଗୁଡ଼ୁ ଗୁଡ଼ି—ବ୍ରଜନାଥ, ସମରତରଙ୍ଗ ।

**ଝଡ଼ିଆ**—ଦେ. ବିଣ—୧ । ଝଡ଼ଯୁକ୍ତ ( ପାଗ )—
Jhar̤iā 1. Tempestuous; windy ( weather).
ঝড়ো ୨ । ଝଡ଼ ଯୋଗୁଁ ଗଛରୁ ଝଡ଼ି ପଡ଼ିଥିବା ( ଫଳ )—
2. Wind-fallen ( fruits).

**ଝଡ଼ିଆ ପାଗ**—ଦେ. ବି—ଝଡ଼ଯୁକ୍ତ ଋତୁ—
Jhar̤iā pāga — Cloudy weather.

**ଝଡ଼ିଆ ପୋକ**—ଦେ. ବି—ପକ୍ଷ ଲାଗିଥିବା ଉଇ ବା ପିମ୍ପୁଡ଼ି—
Jhar̤iā poka — Winged ants.
বাদলা পোকা

[ ଦ୍ର—ପିମ୍ପୁଡ଼ି, ଜନା ଓ ଉଇ ଇତ୍ୟାଦି ବୁଢ଼ା ହେଲେ ସେମାନଙ୍କଠାରେ ପକ୍ଷ ଲାଗେ ଓ ସେମାନେ ହୁଙ୍କା ବା ଗାତରୁ ବାହାରି ଉଡ଼ନ୍ତି । କିଛିକ୍ଷଣ ଉଡ଼ିବା ପରେ ପକ୍ଷ ଛାଡ଼ି ପଡ଼ିବାରୁ ସେମାନେ ତଳେ ଖସି ପଡ଼ନ୍ତି ଓ ବେଙ୍ଗ, କୁଆ ଓ ବଣି ଆଦି ତାଙ୍କୁ ଖୁଣ୍ଟି କରି ଖାଇ ଯାଆନ୍ତି । ଏଥିପାଇଁ ପ୍ରବାଦ ଅଛି 'ପିମ୍ପୁଡ଼ିଠେଇଁ ପକ୍ଷି ଲାଗେ ମରିବା ପାଇଁ ।' ଶୁଣା ଅଛି ଯେ, ପ୍ରଶାନ୍ତ ମହାସାଗରରେ ଦ୍ୱୀପପୁଞ୍ଜ ଓ ଚୀନ ଦେଶବାସୀ କେତେକ ଲୋକ ମୁଢ଼ି ଆଦି ସଙ୍ଗେ ଝଡ଼ିଆ ପୋକ ଖାଇବାକୁ ସୁଖ ପାଆନ୍ତି । ଝଡ଼ିଆ ପୋକ ଉଡ଼ିବାର ଦେଖା ଗଲେ ଶୀଘ୍ର ବିଶେଷ ଝଡ଼ ବା ବୃଷ୍ଟି ହେବ ବୋଲି ଲୋକେ ଅନୁମାନ କରନ୍ତି । ]

**ଝଡ଼ି ପଡ଼ିବା**—ଦେ, କ୍ରି—ସ୍ୱସ୍ଥାନରୁ ଚ୍ୟୁତ ହୋଇ ତଳକୁ ଖସି ପଡ଼ିବା—To fall down; to drop down.
Jhar̤i par̤ibā
ঝরে পড়া
गिर पड़ना

ସେ ଦୁହିଙ୍କ ଦେହ ଘର୍ଷଣେ ଅନଳ
ଜାତ ହୋଇ ଝଡ଼ି ପଡ଼ଇ ମଣ୍ଡଳ—କୃଷ୍ଣସିଂହ. ମହାଭାରତ. ବନ ।

**ଝଡ଼ିପୋକ**—ଦେ. ବି—ଝଡ଼ିଆ ପୋକ ( ଦେଖ )
Jhar̤i-poka — Jhar̤iā poka ( See )

**ଝଡ଼ିବରଷା**—ଦେ. ବି. ( ସହଚର )—ତୋଫାନ ଓ ମେଘବର୍ଷା—
Jhar̤i-barashā — Tempest accompanied with rain.
ঝড়বৃষ্টি
झड़ी

**ଝଡ଼ିବା**—ଦେ. କ୍ରି. (ସଂ. ଝଟଧାତୁ)—୧ । ବୃକ୍ଷାଦିରୁ (ପତ୍ରାଦି ବା ଫଳ) ସ୍ୱସ୍ଥାନଚ୍ୟୁତ ହୋଇ ଭୂତଳରେ ପଡ଼ିବା; ଖସି ପଡ଼ିବା—
Jhar̤ibā
ঝরা — 1. To drop down from its proper place
झड़ना — (e.g. leaves and fruits from the tree.)
ଝଡ଼ା(ଡ଼େ)ଇବା—ଣିଜନ୍ତରୂପ

କମ୍ପାୟଣ ଝଡ଼ିଲା ପତ୍ରମାନ ଖାଇ
ତପରେ ଶୀର୍ଣ୍ଣ କରି ଦେଲା ନିଜ ଦେହୀ—କୃଷ୍ଣସିଂହ. ମହାଭାରତ. ବନ ।

୨ । ସ୍ଖଳିତ ହେବା—2. To be dislocated; to be discharged.

୩ । କୃଶ ହେବା; କ୍ଷୀଣ ହେବା—
3. To become weak, emaciated or lean.
( ଯଥା—ଦୁଇଦିନରେ ଜ୍ୱରରେ ସେ ଖୁବ୍ ଝଡ଼ି ଗଲାଣି । )

୪ । ( ଅନ୍ନ ଆଦି ) ପେଟରେ ଜୀର୍ଣ୍ଣ ହେବା—
4. To be digested.

୫ । ( ଲକ୍ଷଣାର୍ଥ ) ବହୁଧା ପ୍ରକାଶିତ ହେବା; ଝରିବା—
5. To appear profusely; to be emitted profusely.

ସ୍ମିତ ସୁଧାବିନ୍ଦୁ ଝଡ଼ୁ ଥାଇ—କବିସୂର୍ଯ୍ୟ, ସଙ୍ଗୀତ ।

୬ । ଭାଙ୍ଗିଯାଇ ତଳେ ପଡ଼ିବା—
6. To break and fall down.

ବୃକ୍ଷମାନେ କରିଣ ମଡମଡ ରଡ଼ି
ସେ ଚିରି ଶୃଙ୍ଗରୁ ପଡ଼ିଲେ ତଳେ ଝଡ଼ି । କୃଷ୍ଣସିଂହ. ମହାଭାରତ. ବନ ।

୭ । ଲୁପ୍ତ ହେବା—7. To disappear.

ହେଲେ ଦିବ୍ୟ ବାସ, ଝଡ଼ିଲା ସେ ତ୍ରାସ, ମୃଦୁ ହେଲା ଛଦସ୍ଥଳୀ ।
ବିଶ୍ୱନାଥ. ବିଚିତ୍ର ରାମାୟଣ ।

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ଼ | ଉଅ | ଛ |
| ୨ | ଈ | ଊ | ରୁ | ଲୁ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗଁ୍ୟ | ଇଅ | ୱ | ନ୍ତୁ |

୮ । (ଆକ୍ରାନ୍ତ ବ୍ୟକ୍ତିର ଦେହରୁ ମନ୍ତ୍ରାଦି ଦ୍ୱାରା ଭୂତ, ପ୍ରେତ, ବିଷ ଓ ରୋଗାଦି) ଛାଡ଼ିବା—8. (Evil spirit disease or poison) To be expelled from the body by the application of charms

ଉକ୍ତେ ନିଶି ପ୍ରୀତ ବିଷ ନ ଝଡ଼ିଲ
ଗ୍ରୀତ ବୈରାଗ୍ୟ ମନ୍ତ୍ରରେ । ନନ୍ଦକିଶୋର, ଶର୍ମିଷ୍ଠା ।

୯ । ( ଲକ୍ଷଣାର୍ଥ ) କ୍ଷୟ ହେବା; କମିବା—
9. (figurative) To lessen; to diminish.

ଝଡ଼ିବ ବଳ କୋମଳ ଗାତରୁ । କବିସୂର୍ଯ୍ୟ, ସଙ୍ଗୀତ ।

୧୦ । ( ପୁରୁଷ ପକ୍ଷରେ ) ମୈଥୁନ ପରେ ବୀର୍ଯ୍ୟପାତ କରିବା—
10. To have one's semen discharged after copulation ( said of males ).

୧୧ । ( ସ୍ତ୍ରୀ ପକ୍ଷରେ ) ମୈଥୁନ କାଳରେ ଅତ୍ୟଧିକ ରୂପେ ଉତ୍ତେଜିତ ହେବା—11. To have orgasm during copulation ( said of females ).

[ ଦ୍ର—ଏଥିର ଅସମାପିକା ରୂପ ସଙ୍ଗେ ପଡ଼ିବା ଓ ଯିବା କ୍ରିୟା ଯୁକ୍ତ ହୁଏ । ]

**ଝଡ଼ି ଲଗାଣ**—ଦେ. ବି—ତୋଫାନ ସହିତ ବହୁଦିନବ୍ୟାପୀ ଅନବରତ
Jhardi lagāna ବର୍ଷା—Continuous rain and storm
ଝାଡ଼ ବୃଷ୍ଟି lasting for days.
**ड़ी लगाना**

**ଝଣ୍**—ଦେ. ଅ. ( ଧ୍ୱନ୍ୟନୁକରଣ; ସଂ. ଝନତ୍, ଝଣତ୍ )—
Jhan ଝଣ ଝଣ ( ଦେଖ )
Jhana jhana ( See )

**ଝଣଝଣ**—ଦେ. ଅ. ( ଧ୍ୱନ୍ୟନୁକରଣ; ସଂ. ଝନତ୍, ଝଣତ୍ )—
Jhana-jhana ୧ । ଶିମ୍ବ ଜାତୀୟ ଛୁଇଁ ଶୁଖି ଗଲେ ତା ଉପରେ
ଝନ, ଝାଁ ଥିବା ମଞ୍ଜିର ବାଜିବା ଶବ୍ଦ—
**झनझन, झनक** 1. Rattling sound ( heard in dry pods of flax or bean ).

୨ । ଧାତୁଖଣ୍ଡାଦିର ପରସ୍ପର ଆଘାତପ୍ରତିଘାତର ଶବ୍ଦ; ଟାଣ ଭୂମିରେ ବା ପଥରରେ ଟଙ୍କା ବା ଧାତୁଖଣ୍ଡ ବାଜିବାର ଶବ୍ଦ; ଝଣତ୍କାର—
2. Metallic clang; bang; ringing sound.

ଝଣଝଣ / ଝଣଝଣା / ଝଣଝଣି } ଅନ୍ୟରୂପ [ ଦ୍ର—ଝୁଣ ଝୁଣ=ଅଳଙ୍କାରାଦିର ମୃଦୁ-ମଧୁର ଶବ୍ଦ, ଝଣ ଝଣ ଅପେକ୍ଷା ଅନୁଚ୍ଚ । ]

୩ । ଝଣଝଣ ଶବ୍ଦ ପୂର୍ବକ ( ନଗଦ ବନ୍ଧୁ ଟଙ୍କା ଗଣିବା )—
3. ( to count cash ) With clanging sound.
( ଯଥା—ସେ ବର୍ତ୍ତମାନ ଖୁବ ବଡ଼ଲୋକ ହେଲାଣି, ପାଞ୍ଚ ହଜାର ଟଙ୍କା ଝଣଝଣ ଗଣି ଦେବ । )

**ଝଣଝଣାୟମାନ**—ସଂ. ବିଣ—ଝଣଝଣ ଶବ୍ଦକାରୀ (କ୍ଷୀରୋଦେନ୍ଦ୍ର)
Jhana-jhanāyamāna Tinkling.

**ଝଣଝଣି**—ଦେ. ଅ. ( ଧ୍ୱନ୍ୟନୁକରଣ )—ଝଣଝଣ ( ଦେଖ )
Jhana-jhani Jhana-jhana ( See )

**ଝଣଝଣିଆଁ**—ଦେ. ବିଣ. ( ସଂ. ଧନ୍ ବା ଧଣ୍ ଧାତୁ, ଶବ୍ଦ କରିବା )—
Jhana-jhaniān ୧ । ଝଣଝଣ ଶବ୍ଦକାରୀ—1. Making or producing a clanking sound.

୨ । ଶୁଷ୍କ; ଶୁଖିଲା—2. Dried.

[ ଦ୍ର—ଛଇପଟ ଛୁଇଁ ଉପରେ ମଞ୍ଜି ଶୁଖି ଝଣଝଣ ହୋଇ ବାଜିବାରୁ ଛୁଇଁ ଝଣଝଣିଆ ହୋଇଯିବାର ବୁଝାଯାଏ । ]

**ଝଣ ଝାଣ**—ଦେ. ଅ (ଧ୍ୱନ୍ୟନୁକରଣ)—ଝଣ ଝଣ ( ଦେଖ )—
Jhana-jhāna Jhana-jhana ( See )

**ଝଣତ୍କାର**—ସଂ. ବି ( ଝନତ୍=ଧ୍ୱନ୍ୟର୍ଥକ+କାର )—କଙ୍କଣାଦିର
Jhanatkāra ଝଣଝଣ ଶବ୍ଦ—Clanking sound; tinkling or rattling sound.

**ଝଣତା**—ଦେ. ବିଣ—ଧଣତା; ବିସ୍ୱାଦ—
Jhanatā Unsavoury; unseasoned.

[ ଦ୍ର—ଉତ୍ତପ୍ତ ଭାତ ଗରମ ଥାଉଁ ଥାଉଁ ଉହିଁରେ ପାଣି ମିଶାଇ ଦେଲେ ଯେଉଁ ପଖାଳ ହୁଏ, ତାହାକୁ ଝଣତା ପଖାଳ କହନ୍ତି; ତାହା ବିସ୍ୱାଦ ଲାଗେ । ]

**ଝଣାଝଣ୍**—ଦେ. ଅ (ଧ୍ୱନ୍ୟନୁକରଣ)—ଝଣଝଣ ( ଦେଖ )—
Jhanā-jhan Jhana-jhana ( See )

**ଝଣାତ୍**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଝଣଝଣ ( ଦେଖ )
Jhanāt 1. Jhana-jhana ( See )

୨ । ଝଣାତ୍‌କିନା ( ଦେଖ )—
2. Jhanāt-kinā ( See )

**ଝଣାତ୍ କିନା**—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଧାତୁଜାତୀୟ ଶବ୍ଦ; କଂସା ବା
Jhanāt kinā ବାସନ ଆଦି ଭୂମିରେ ପଡ଼ିବା ଶବ୍ଦ— 1. The
ଝନାତ୍ clank of metallic things falling or striking
**झनकरके** a hard substance.

ଝଣାତ୍‌କର / ଝଣାତ୍‌କନ / ଝଣାତ୍‌କରି } ଅନ୍ୟରୂପ

[ ଦ୍ର—ଦୁଇଟି ଧାତୁ ଖଣ୍ଡ ଥରେ ପଡ଼ିଗଲେ ଯେଉଁ ଶବ୍ଦ ଥରେ ମାତ୍ର ଶୁଣାଯାଏ, ତାକୁ ଝଣାତ୍ କହନ୍ତି ।]

୨ । ହଠାତ୍‌କିନା; ହଠାତ୍—2. Suddenly.

**ଝଣେ**—ପ୍ରାଦେ. (ଗଡ଼ଜାତ) ବିଣ ଓ ବି.—ଜଣେ—
Jhane One (person).

**ଝଣ୍ଟା**—ପ୍ରାଦେ (ଗଡ଼ଜାତ) ବି—ଶିମ୍ବ—
Jhantā Bean.

**ଝଣ୍ଟା(ଣ୍ଟେ)ଇବା**—ଦେ. କ୍ରି—ଝାଣ୍ଟେଇବା ( ଦେଖ )—
Jhant(te)ibā Jhānteibā ( See )

**ଝଣ୍ଟି**—ଦେ. ବି (ସଂ. ଜଟା)—ମୁଣ୍ଡରେ ଥିବା ଛୋଟ କେଶଗୁଚ୍ଛ ବା ଚୁଟି—
Jhanti Little tuft of hair on the head.

**ଝଣ୍ଟିଆ**—ଦେ. ବି ( ଝଣିଆ ଶବ୍ଦ )—ଗୋଡ଼ ଆଙ୍ଗୁଠିରେ ପିନ୍ଧିବା ରୂପା
Jhantia ମୁଦି ବିଶେଷ—A tinkling silver ring for the toes.

| |
|---|
| ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ନି' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଳବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ । |

ଝଣ୍ଟିକା—ଦେ. ବି—ବୃହତ୍ ଗୁଳ୍ମ ବିଶେଷ—
Jhanṭikā Causjera Pheedii (Haines).

ଝଣ୍ଡା—ଦେ. ବି—(ସଂ. ଜୟନ୍ତ; ସଂ. ଦଣ୍ଡ)—୧ । ମାଳା; ଧଣ୍ଡା—
Jhanḍā 1. Garland.
୨ । ପତାକାଯୁକ୍ତ ଦଣ୍ଡ—2. Flagstaff.
ঝাণ্ডা ଯୋଉବାସିଙ୍କର ଦୁଇତ ବାରକ ମଙ୍ଗଳ ଝଣ୍ଡାରୂପେ
झंडा ଚମକଇ ଯହିଁ ଉଗ୍ରଚଣ୍ଡୀ ଖେଳାଇ ଖଣ୍ଡା । ରାଧାନାଥ. ଉଷା ।
୩ । ପତାକା—3. Flag.

ଝଣ୍ଡି—ଦେ. ବି (ସଂ. ଦଣ୍ଡ; ଜୟନ୍ତ)—୧ । ପତାକା—
Jhanḍi 1. Flag.
ঝাণ্ডি ୨ । ପତାକାଯୁକ୍ତ ଦଣ୍ଡ—
झंडी 2. Flagstaff.
୩ । ଚେନ୍ ସର୍ଭେ ବା ଲେଭ୍‌ଲିଙ୍ଗ୍ ଯନ୍ତ୍ର ବା କମ୍ପାସ୍ ସାହାଯ୍ୟରେ ଭୂମି ମାପିବା ସମୟରେ ସମ୍ମୁଖସ୍ଥ ଶଙ୍କୁ ବା ଷ୍ଟେସନ ଉପରେ ଠିଆ ଭାବରେ ଧରାଯିବା ପତାକାଦଣ୍ଡ—3. A flagstaff held on the next station during surveying with the chain or compass or level.

ଝନ୍‌କାର—ପ୍ରାଦେ. (ଯାଜପୁର) ବି—୧ । ଘୋଘୋ; ଘୋଓ ଘାଅ—
Jhan-kārā 1. Ado; bustle; hubbub; uproar.
୨ । ଆଡ଼ମ୍ବର—2. Grand display.

ଝନ୍‌ଝଟ—ଦେ. ବି. (ସଂ. ଜଂଜାଳ)—ଅସୁବିଧା; ହଇରାଣ—
Jhanjhaṭa Trouble.
ঝংঝাট (ଯଥା. ମୁଁ ବଡ଼ ଝନ୍‌ଝଟରେ ପଡ଼ିଛି ।
झंझट

ଝନ୍‌ଝନ୍—ଦେ. ଅ ଓ ବି (ଧ୍ୱନ୍ୟନୁକରଣ)—୧ । ଝଣ୍ ଝଣ୍ ଶବ୍ଦ—
Jhan-jhan (ଯଥା ଲୁହା ଶିକୁଳିର ଶୃଙ୍ଖଳ ଜନିତ ଶବ୍ଦ)—
ঝনঝন 1. A bang; a clap; metallic clank.
नक
ପଡ଼ିଲେ କବଚ ଗାତ୍ରେ ବଜାଇ ଝନ୍ ଝନ । ରାଧାନାଥ. ବେଣୀସଂହାର ।
୨ । ଶୁଷ୍କ ଦ୍ରବ୍ୟାଦିର ପରସ୍ପର ଘାତପ୍ରତିଘାତ ଶବ୍ଦ—(ଯଥା—ବାଉଁଶନଳ ମଧ୍ୟରେ ଗୁଡ଼ିଏ ଶୁଖିଲା ମଞ୍ଜି ପୂରାଇ ହଲାଇବାର ଶବ୍ଦ)—2. The sound of many hard and dry things striking each other (as seeds in a dry pod).

ଝନ୍‌ଝନା—ଦେ. ଅ.—ଝନ୍ ଝନ୍ (ଦେଖ)
Jhan-jhanā Jhan-jhan (See)

ଝନ୍‌ଝନି—ଦେ. ଅ ଓ ବି.—ଝନ୍‌ଝନ୍ (ଦେଖ)
Jhan-jhani Jhan-jhan (See)
ଗମ୍ଭୀର ସମର ବାଦ୍ୟ, ଅସ୍ତ୍ରର ଝନ୍‌ଝନି । ରାଧାନାଥ. ବେଣୀସଂହାର ।

ଝନକା—ଦେ. ବି—ଘୋଡ଼ା ଓ ଗୋରୁମାନଙ୍କର ଏକପ୍ରକାର ରୋଗ—
Jhanakā A disease attacking cattle and horses;
ঝনকা rheumatism of the legs.
झनक वात [ଦ୍ର—ଏ ରୋଗରେ ଗୋରୁ ଓ ଘୋଡ଼ାଙ୍କର ଗୋଡ଼ ଲଟିଲ୍ଟିଠି ହୋଇଯାଏ] ।

ଝନତ୍କାର—ସଂ. ବି.—ଝଣତ୍କାର (ଦେଖ)
Jhanat-kāra Jhaṇat-kāra (See)

ଝନନ—ଦେ. ଅ.—(ଧ୍ୱନ୍ୟନୁକରଣ) ଝନ୍ ଝନ୍ (ଦେଖ)
Jhanana Jhan-jhan (See)

ଝପ୍—ଦେ. କ୍ରି. ବିଣ (ସଂ. ଝଟିତି; ଜବ; କ୍ଷିପ୍ର; ଭୁଲ ସଂ. ଝମ୍ପ)—
Jhap ୧ । ଅତିଶୀଘ୍ର; ତୁରନ୍ତ; ଝଟ୍; ହଠାତ୍; କ୍ଷଣମାତ୍ର ବିଳମ୍ବ
ঝপ্,ঝপ্‌করে,ঝপাঝপ ନ କରି;ଝଟିତି—1. Speedily; hastily;
झप immediately; quickly; briskly; at once; in a whit.
୨ । ଝପ୍ ଝପ୍ (ଦେଖ)
2. Jhap-jhap (See)
୩ । ପାଣିରେ କାଠ ଆଦି ପଡ଼ିବା ଶବ୍ଦ—
3. Splashing sound; swish.

ଝପ୍ କରି—ଦେ. କ୍ରି. ବିଣ—ଝପ୍ (ଦେଖ)
Jhap-kari Jhap (See)
[ଝପ୍‌କଲା, ଝପ୍‌କନି, ଝପ୍‌କରି, ଝପ୍‌ଦସ୍, ଝପ୍‌ଧସ୍—ଅନ୍ୟରୂପ]

ଝପ୍ ଝପ୍—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ମେଘ ବର୍ଷିବାର ଶବ୍ଦ—
Jhap-jhap 1. Pattering sound; splashing sound;
ঝপঝপ (as of rain).
झपझप ୨ । ପାଣିରେ କୁଦି ପଡ଼ିବାର ପଦଶବ୍ଦ—
(ଝପର ଝପର-ଅନ୍ୟରୂପ) 2. splashing sound of person springing into water.
୩ । ଝପର ଝପର (ଦେଖ)
3. Jhapara jhapara (See)

ଝପ୍‌ଝାପ୍—ଦେ. ଅ.—ଝପ୍ ଝପ୍ (ଦେଖ)
Jhap-jhāp Jhap-jhap (See)
ଦେ. କ୍ରି. ବିଣ. ଝପ୍ (ଦେଖ)
Jhap (See)

ଝପକ୍—ଦେ. ବି.(ସଂ. ପଲକ)—ପଲକମାତ୍ର ସମୟ; ମୁହୂର୍ତ୍ତମାତ୍ର ସମୟ—
Jhapak Twinkling; a moment.
পলক
झपक

ଝପଟ୍‌ସିଂହ—ଦେ. ବି.—(କ୍ଷତ୍ରିୟଙ୍କର) ରାଜଦତ୍ତ ଉପାଧି ବିଶେଷ—
Jhapaṭ-simha A title conferred (on Kshatriyas) by kings.

ଝପଟ୍—ଦେ. ବି (ସଂ. ଝମ୍ପ; ଭୁଲ ଇଂ. ଜମ୍ପ)—୧ । ଦଉଡ଼; ଧାଇଁବା—
Jhapaṭ 1. Race; running.
দৌড়, ঝাপ্ ୨ । କୁଦା ମାରି ଦୌଡ଼ିବା—
झपट 2. Scampering; running on all fours.
ବାଙ୍କା ଝପଟକୁ ଗଜ ଚଟକୁ ସ୍ଥାନ କୋଳୁ ଯନ୍ତିଘର । ଉପେନ୍ଦ୍ର-ବୈଦେହୀଶ-ବିଳାସ ।

| ୧ | ଇ | ଉ | ଋ,ଝ୍ | ଌ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଣ | ଜ | ଶ,ଷ | କ୍ଷ | ଇପ୍ସ | ଉଅ | ଦ୍ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ | ଇଅ | ଞ | ନ୍ |

**ଝପଟା**—ଦେ. ବି—ଝପଟ (ଦେଖ)—
Jhapaṭā Jhapaṭa (See)

**ଝପଟା(ଟେ)ଇବା**—ଦେ. କ୍ରି—(ଝପଟିବାର ଣିଜନ୍ତ ରୂପ; Causative
Jhapaṭā(te)ibā of Jhapaṭiba)—ଦଉଡ଼େଇବା—
দৌড়ান To cause to run.
**झपटाना** ପରନ୍ତପ ପୁଣ୍ଣ ବେଳେ ଝପଟାଇ ଅଶ୍ୱବର—ଗ୍ରାମ୍ୟନାଥ, ମହାଯାତ୍ରା

**ଝପଟାଝପଟି**—ଦେ. ବି—୧ । ବହୁଲୋକ ବା ଜନ୍ତୁ ଦଉଡ଼ିବା—
Jhapaṭā-jhapaṭi 1. General running of many persons or animals.
দৌড়াদৌড়ি ୨ । ଗୋଡ଼ାଗୋଡ଼ି; ପରସ୍ପରକୁ ଗୋଡ଼ାଇବା—
**झपटाझपटि** 2. Running after one another.

**ଝପଟିବା**—ଦେ. କ୍ରି. (ସଂ. ଝମ୍ପ)—୧ । ଦ୍ରୁତଗତିରେ ଦଉଡ଼ିବା; ଧାବିତ
Jhapaṭibā ହେବା—1. To run swiftly.
ঝাপটা, দৌড়া, ঝাপা ଜାଣି ସେ ସିବାର ସମ୍ମୁଖା ସାଠ
**झपटना, डपटना** ଦେଖିବାକୁ ତାକୁ ଆଗେ ଝପଟ—କବିସୂର୍ଯ୍ୟ ବଳଦା ।
୨ । ଲମ୍ଫସହ ଦଉଡ଼ିବା—
2. To run with big leaps; to scamper.

**ଝପରଝପର**--ଦେ. ଅ(ଧ୍ୱନ୍ୟନୁକରଣ)--ସାନ ଟୋପାରେ ଅବିଶ୍ରାନ୍ତ ବର୍ଷିବା--
Jhapara-jhapara Raining in small continuous drops.
ঝাপরঝাপর
**टपरटपर** [ ଦ୍ର—ବଡ଼ ଟୋପାରେ ବର୍ଷାକୁ ଟପରଟପର ବା ଟପ ଟପ କହନ୍ତି । ]

**ଝପାଝପ୍**—ଦେ. କ୍ରି. ବିଣ—ଝପ୍ ( ଦେଖ )—
Jhapājhap Jhap ( See )
ঝাপাঝাপ ଦେ. ଅ—ଝପ୍‌ଝପ୍ ( ଦେଖ )—
**झपाझप** Jhap-jhap ( See )

**ଝବା**—ଦେ. ବି—୧ । ଛୋଟ ମାଟିଆ ବା କଳସୀ—
Jhabā 1. Small pitcher or jar.
ঘড়া ୨ । କ୍ଷେତ୍ରରେ ଧାନ ବା ଅନ୍ୟ ଶସ୍ୟ ଗଛମାନ ଏକ
**झाबली; झकड़ी** ଏକ ସ୍ଥାନରେ ବହଳ ହୋଇ ଓ ଏକ ଏକ ସ୍ଥାନରେ ପତଳା ହୋଇ ଉଠିଥିବା ଅବସ୍ଥା—2. The state of paddy or other corn plants growing thickly at one place and thinly at other places in a field.
ଦେ. ବିଣ—ଏକ ଅଂଶରେ ବହଳଆ ଓ ଏକ ଅଂଶରେ ପତଳା ହୋଇ ଧାନ ବା ଅନ୍ୟ ଶସ୍ୟ ଗଛ ଉଠିଥିବା ଅବସ୍ଥାଯୁକ୍ତ ( କ୍ଷେତ୍ର )—( corn field ) With plants growing up very irregularly.
( ଯଥା—ଏ ବର୍ଷ ମୋ ମୁଗକ୍ଷେତରେ ପୋକ ଲାଗି ଝବା ହୋଇଗଲା । )
ପ୍ରାଦେ. ( ସମ୍ବଲପୁର ) ବି—ସ୍ତ୍ରୀଲୋକମାନଙ୍କର ଅଳକା ପର କପାଳରେ କେଶ ଉପରେ ପିନ୍ଧିବା ରୂପାର ଅଳଙ୍କାରବିଶେଷ—A silver ornament worn by females on the head over the hair.

**ଝମ୍ ( ଧାତୁ )**—ସଂ—ଭକ୍ଷଣ କରିବା—
Jham ( root ) To eat.

**ଝମ୍**—ଦେ. ଅ. ( ଧ୍ୱନ୍ୟନୁକରଣ )—୧ । ବର୍ଷାର ଝଙ୍କାର ଶବ୍ଦ—
Jham 1 Pattering sound of rain.
ঝম ঝম ୨ । ଧାତୁମୟ ପଦାର୍ଥଦ୍ୱୟ ପରସ୍ପର ବାଜିବାର ଶବ୍ଦ—
**झमझम** 2. Metallic clank.
ଝମଝମ ଝମଝମ ଝୁଣ୍ଟିଆ ବାଜେ
ସା ଯବା ଗଛରେ ଗୋହସା ଦାଣ୍ଡେ—ଫକୀରମୋହନ, କ୍ଷମାଣ ଆଠଗୁଣ୍ଠ ।
୩ । କୂଅର ପାଣିରେ କୌଣସି ଜିନିସ ଖସି ପଡ଼ିବାର ଶବ୍ଦ—
3. Rustling sound of water striking a thing falling into a well.
( ଯଥା—ସ୍ୱଚ୍ଛଅଧରେ କୂଅରେ ଶୁଭିଲା ଝମ୍ )
୪ । ଅଳଙ୍କାରର ଶବ୍ଦ—
4 Tinkling sound of ornaments.
ଦେ. ବିଣ—ବିଶେଷ ପରିମାଣରେ ( ବୃଷ୍ଟି )—
(raining) Cats and dogs; copious (shower).

**ଝମକ**—ଦେ. ବି. ( ସଂ. ଧ୍ମା ଧାତୁ )—୧ । ଧମକ—
Jhamaka 1. Threatening.
ধমক ୨ । କ୍ଷମତା—2. Might.
**धमक; झमक** ୩ । ଶୁକଚକ୍ୟ; ଝଟକ—3. Splendour; glitter.
୪ । ଆଭା; ତେଜ—4. Brightness.
୫ । କ୍ରୋଧଜନିତ ଆବେଗ—
5. Agitation through anger.
୬ । ଝମଝମ ଶବ୍ଦ—
6. Clanking sound; tinkling sound.
ତାଙ୍କର ପାଦୁକ ନୂପୁର ଝମକରେ
ସିଦ୍ଧ କି କାମଦେବ ଚମକ ବୃକ୍ଷରେ—କୃଷ୍ଣସିଂହ. ମହାଭାରତ, ଶାନ୍ତି ।

**ଝମକ ଝମକ**—ଦେ. ଅ. ( ଧ୍ୱନ୍ୟନୁକରଣ )—ଝାଞ୍ଜ ମୃଦଙ୍ଗାଦି ବାଦ୍ୟ
Jhamaka jhamaka ବାଜିବାର ଶବ୍ଦ—
Clank of cymbals and drums.
ଝମକ ଝମକ ତାଳ ଝମକେ—ପ୍ରାଚୀ, ରହସ୍ୟମଞ୍ଜରୀ ।

**ଝମକ ଝୁଣ୍ଟିଆ**—ଦେ. ବି—ଗୋଡ଼ ଅଙ୍ଗୁଠିରେ ପିନ୍ଧା ଯିବା ଝୁଣ୍ଟିଆର
Jhamaka jhunṭiā ଅଳଙ୍କାରବିଶେଷ—Tinkling rings for the toes.

**ଝମକା**—ଦେ. ବି—ଝମକ ( ଦେଖ )
Jhamakā Jhamaka ( See )

**ଝମକା(କେ)ଇବା**—ଦେ. କ୍ରି. ( ଝମକିବାର ଣିଜନ୍ତରୂପ )—
Jhamakā(ke)ibā ୧ । ଧମକାଇବା—1. To threaten.
ঝমকান ୨ । ଝମଝମ ଶବ୍ଦ କରିବା—
**झमकाना** 2. To make a jingling or clanking sound.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧୋ' ନ ପାଇଲେ 'ଅଦ୍ଧା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ପାଦ ଧୂଳି ଝାଡିବା ଛଳେ
ନୂପୁର ଝମକାଇ ଭଲେ—ଭୂପତି, ପ୍ରେମପଞ୍ଚାମୃତ ।

୩ । କୌଣସି ତେଜୋମୟ ପଦାର୍ଥ (ଅସ୍ତ୍ରାଦି)କୁ ଦେଖାଇବା—
3. To display a glittering thing.

ଖାପୁଁ କାଢି ଝମକାଇଲେ କରେ ଖଣ୍ଡା—କୃଷ୍ଣସିଂହ. ମହାଭାରତ. ବନ ।

୪ । ଇତଃସ୍ତତଃ ଚାଳିତ କରିବା—
To wave; to move to and fro.

ଇନ୍ଦ୍ର ତାହା ଦେଖି ବଜ୍ରକୁ ଝମକାଇ
ଫିଙ୍ଗିଲେ କୁମାରଙ୍କ ଦେହକୁ ଦେଖାଇ—କୃଷ୍ଣସିଂହ. ମହାଭାରତ. ବନ ।

**ଝମକିବା**—ଦେ. କ୍ରି. (ସଂ. ଧ୍ମା ଧାତୁ)—୧ । ଦାଉଦାଉ ହେବା; ଦୀପ୍ତି ପାଇବା—1. To shine; to glitter.
Jhamakibā
ঝমকা
झमकना

ବଜ୍ରୁଳି ଝମକେ ଗୋ ଚମକି ଉଠେ ହୃଦ ।
ପ୍ରାଚୀ, ରହସ୍ୟମଞ୍ଜରୀ ।

୨ । (ଧ୍ୱନ୍ୟନୁକରଣ) ଝମ ଝମ ଶବ୍ଦ କରିବା—
2 To make a clanking sound.

ବିଷାଦ ଅସହନ ନଣେ ହସ୍ତ ଭରଣ ଶଙ୍କାର ଝମକ କୃପାଣ ସେ ।
ଭଞ୍ଜ, ବୈଦେହୀଶବିଳାସ ।

୩ । (ଅନ୍ଧ ବା କଣା) ସାବଧାନ ହୋଇ ଯାତାୟତ କରିବା—
3. To feel one's way ( in the dark as a blind man ).

ଅନ୍ଧାର ଘରେ କଣା (କାଣୀ) ଝମକେ
ଯାହା ପାଉଥାଏ ଅନ୍ଧାରେ ଯାକେ—ଢଗ ।

**ଝମଝମ**—ଦେ. ଅ—୧ । ଝମ୍ ( ଦେଖ )
Jhama-jhama 1. Jham ( See )
୨ । ଝିମି ଝିମି ( ଦେଖ )
2. Jhimi jhimi ( See )

ଶରୀର ଝମ ଝମ ହୃଦୟ ଦମ ଦମ । ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି ।

**ଝମର ଝମର**—ଦେ. ଅ. ( ଧ୍ୱନ୍ୟନୁକରଣ )—ଘୁଙ୍ଗୁର ଆଦି ଅଳଙ୍କାର ଚାଳନଜନିତ ଉଚ୍ଚ ଶବ୍ଦ—High tinkling sound of ornaments.
Jhamara jhamara
ঝমরঝমর
झमझम

[ ଦ୍ର—ଝୁମୁରୁ ଝୁମୁର ବା ଝୁମୁଝୁମୁ ଅଳଙ୍କାରର ଅନୁଚ୍ଚ ମଧୁର ଧ୍ୱନି ଓ ଝମର ଝମର ଅପେକ୍ଷା କ୍ଷୀଣତର । ]

**ଝମା**—ଦେ. ବ—ଝାମା ( ଦେଖ )
Jhamā Jhāmā ( See )

**ଝମାଝମ୍**—ଦେ. ଅ. ( ଧ୍ୱନ୍ୟନୁକରଣ )—ଧମାଧମ ( ଦେଖ )
Jhamā-jham Dhamā-dham ( See )

**ଝମ୍ପ**—ସ. ବ. ( ଝମ୍=ଅନୁକରଣ ଶବ୍ଦ+ପା ଧାତୁ+ଭାବ. ଅ; ତୁଳ, ଇଂ. ଜମ୍ପ୍ )—ଲମ୍ଫ; କୁଦା; ଡିଆଁ—
Jhampa
A jump; a spring; a plunge; a leap.

**ଝମ୍ପ** (ଧାତୁ)—( ଝମ୍ପ ଶବ୍ଦରୁ ଉତ୍ପନ୍ନ ଯୌଗିକ ଧାତୁ )—
Jhampa (root) ୧ । କୁଦିବା—
1. To jump; to leap.

୨ । ଶିକାରକୁ ଝାମ୍ପିବା; ଶିକାର ଉପରେ କୁଦି କରି ପଡ଼ିବା—
2. To pounce up on a prey.

**ଝମ୍ପନ୍**—ଦେ. ବ—ଝାମ୍ପାନ୍ ( ଦେଖ )
Jhampan Jhāmpān ( See )

**ଝମ୍ପନ**—ସ. ବ. ( ଝମ୍ପ ଧାତୁ+ଭାବ. ଅନ )—
Jhampana ୧ । କୁଦିବା—1. Jumping; leaping.
୨ । ଶିକାରକୁ ଆକ୍ରମଣ କରି ମାଡ଼ିବସିବା—
2. Pouncing on a prey.

**ଝମ୍ପଲମ୍ପ କରିବା**—ଦେ. କ୍ରି. ( ସ. ଝମ୍ପ, ଲମ୍ଫ )—
Jhampa-lampha karibā ୧ । ଲମ୍ଫଝମ୍ପ କରିବା; ଡେଇଁବା କୁଦିବା—1 To leap and jump.
লম্ফঝম্পকরা
झँपना
୨ । ମୁହଁ ହାତ ହଲାଇ ଆସ୍ଫାଳନ କରିବା—
2. To brag and bluster with motions.

**ଝମ୍ପା**—ସ. ବ—୧ । ଝମ୍ପ ( ଦେଖ )
Jhampā 1. Jhampa ( See )
୨ । ଝାମ୍ପିବା; ଜବରଦସ୍ତି ଛଡ଼ାଇ ନେବା; ବଳପୂର୍ବକ ଅପହରଣ—2. Kidnapping; snatching away; forcible taking away.

ଶୋଭଣ ସାରି ସିଦ୍ଧ ମଠାଲଙ୍ଗନ ଜ୍ଞାନ ଝମ୍ପା ରୂପକହିଁ ।
ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

ଦେ. ବ. ଝୁମ୍ପା ( ଦେଖ )
Jhumpā ( See )

**ଝମ୍ପାକ**—ସ. ବ. ( ଝମ୍ପ+ଅକ ଧାତୁ=ଗମନ କରିବା+କର୍ତ୍ତୃ. ଅ; ଯେ କୁଦେ)—ବାନର; କପି; ମାଙ୍କଡ଼—
Jhampāka
Monkey; baboon.

**ଝମ୍ପା ଝାଲର**—ଦେ. ବ. (ସହଚର; ସ. ଝମ୍ପ+ଝଲ୍ଲରୀ)—ପାଟଫୁଲ ପରି ପେନ୍ଥା ପେନ୍ଥା ଓ କେସ୍‌କେସ୍ ହୋଇ ତଳକୁ ଓହୋଳ ଥିବା ବସ୍ତ୍ରାଦିର ଅଳଙ୍କାର—Tassels and strings (used as ornament).
Jhampā jhālara
ঝাঁপাঝালর
झब्बाझालर

**ଝମ୍ପା ଝାଲରିଆ**—ଦେ. ବଣ.—୧ । ଯହିଁରେ ଫୁଲ ଓ ଝାଲର ଲାଗିଥାଏ—1. Furnished with tassels and strings.
Jhampā jhāliriā
ঝাম্পা ঝালরিআ
झब्बा झलरवाला
୨ । ଯାହା ପେନ୍ଥାପେନ୍ଥା ଓ କେସ୍‌କେସ୍ ହୋଇ ତଳକୁ ଲମ୍ବି ଥାଏ—2. Hanging down in tassels and strings.

ଝମ୍ପାଝାଲରିଆ ଅଳକ ଝଳକ ଶୋଭିଲାର କେଶବେଶେ ।
କବିସୂର୍ଯ୍ୟ. ସଙ୍ଗୀତ ।

**ଝମ୍ପାଣ**—ପ୍ରାଦେ. (ପୁରୀ) ବ.—ଗର୍ଜଣା ସଂକ୍ରାନ୍ତି ଦିନ ଗୁଣିଆଁ ବା ସର୍ପବୈଦ୍ୟମାନେ ବିଷଧର ସାପମାନଙ୍କୁ ଧରି ମନ୍ତ୍ରବଳରେ ସେମାନଙ୍କୁ ବେକରେ ଗୁଡ଼ାଇ ଓ ଖେଳାଇ ନିଜର ମନ୍ତ୍ରଶକ୍ତି ଦେଖାଇବା କ୍ରିୟା—The act of snake-charmers exhibiting their power by
Jhampāṇa

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍,ର୍ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ;ଷ | ଙ୍କ | ଇଯ଼ | ଡ଼ଅ | ଢ଼ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ର୍ଯ୍ୟ | ଇଅ | ଢ଼ | ନ୍ |

catching snakes and making them play on the Garbhaṇā saṅkrānti day.

**ଝମ୍ପାନ୍**—ଦେ. ବି. (ସଂ. ଝମ୍ପ)—ପାହାଡ଼ିଆ ଉଚ୍ଚାବଚ ସ୍ଥାନରେ ବ୍ୟବହୃତ ଏକ ପ୍ରକାର ଖଟୁଲି—Jhampan; sedan chair borne on bamboo poles by 4 bearers.
Jhampan
झाँम्पान
**झाम्पान**

[ବି.—ଗୋଟିଏ ଖଟୁଲି ବା ଖଟିଆର ୨ ମୁଣ୍ଡରେ ୨ଟି ବଡ଼ ବାଉଁଶ ବନ୍ଧା ହୋଇ ଥାଏ । ଉକ୍ତ ୨ଟି ବଡ଼ ବାଉଁଶର ୨ ମୁଣ୍ଡରେ ଦଉଡ଼ି ଲାଗି ଥାଇ ୨ ଖଣ୍ଡ ସାନ ବାଉଁଶରେ ତାହା ଝୁଲେ, ଏବଂ ଉକ୍ତ ଦୁଇ ସାନ ବାଉଁଶକୁ ଦୁଇ ଆଡ଼ୁ ୨ ଜଣ ଲେଖାଏଁ ୪ ଜଣ ବାହକ କାନ୍ଧରେ ବୁହନ୍ତି । ଏହା ପାର୍ବତ୍ୟ ଅଞ୍ଚଳରେ ଉଚ୍ଚ ନୀଚ ସ୍ଥାନରେ ଯିବା ଆସିବା କରିବା ପାଇଁ ବଡ଼ଲୋକେ ବ୍ୟବହାର କରନ୍ତି ।]

**ଝମ୍ପାରୁ**—ସଂ. ବି.—( ଝମ୍ପ + ରୁ ଧାତୁ=ଗମନ କରିବା+କର୍ତ୍ତୃ ଉ; ଯେ ଝମ୍ପ ସହିତ ଗମନ କରେ)—ଝମ୍ପାକ (ଦେଖ)
Jhampāru
Jhampāka (See)

**ଝମ୍ପାଶୀ**—ସଂ. ବି. (ଝମ୍ପ + ଅଶ ଧାତୁ ଭକ୍ଷଣ କରିବା + ଇନ୍; ୧ମା. ୧ବ. ଯେ ମାଛକୁ ଝାମ୍ପ କରି ଖାଏ)—ମାଛରଙ୍କା ପକ୍ଷୀ—The king-fisher (bird)
Jhampāśī

**ଝମ୍ପୀ**—ସଂ. ବି. (ଝମ୍ପ+ଇନ୍; ୧ମା ୧ବ.)—ବାନର; ମାଙ୍କଡ଼—Monkey; ape.
Jhampī

**ଝର୍‌ଝମ୍ପା**—ଦେ ବି.—ଜଙ୍ଗଲ ମଧ୍ୟମାକାର ବୃକ୍ଷବିଶେଷ—A moderate-sized wild tree; Actinodaphne Augustifolia (Haines).
Jhar-jhampā

**ଝର**—ସଂ. ବି. (ଝୃ ଧାତୁ=ତଳକୁ ପଡ଼ିବା+କରଣ. ଅ)—
Jhara ୧ । ନିର୍ଝର; ଝରଣା—1. Natural spring; water-fall.
୨ । ପର୍ବତ ଉପରୁ ତଳକୁ ବହୁଥିବା ଜଳପ୍ରବାହ—2. Hill-spring; cascade.
୩ । ଭୂଗର୍ଭସ୍ଥ ଜଳପ୍ରବାହ ଯାହା ମାଟି ଭେଦ କରି ଉଠେ; ଫୁଆରା—3. Fountain; spring of under-ground water.
୪ । ଭୂଗର୍ଭୋତ୍ଥିତ ଅବିରଳ ଜଳପ୍ରବାହ—4. Inexhaustible spring of under-ground water.
୫ । ସମୂହ (ହି. ଶବ୍ଦସାଗର)—5. Multitude; collection.
୬ ବେଗ (ହି. ଶବ୍ଦସାଗର)—6. Velocity.
୭ । ଲଗାଣ; ଅବିରତ ଧାରାରେ ବୃଷ୍ଟି (ହି ଶବ୍ଦସାଗର)—7. Continuous shower of rain.
୮ । କୌଣସି ବସ୍ତୁର ଅବିରତ ପତନ (ହି. ଶବ୍ଦସାଗର) 8. Continuous shower of any thing.
୯ । ଆଞ୍ଚ; ତାପ; ଜ୍ୱାଳା (ହି. ଶବ୍ଦସାଗର)—9. Heat.
୧୦ । ତୋଲପ ଘଡ଼ରର କଳ—(ହି. ଶବ୍ଦସାଗର) 10. The inner mechanism of a padlock.

**ଝରକଲମ**—ଦେ. ବି. (ଇଂ.ରୁ ଅନୁବାଦ; ଆଧୁନିକ ବ୍ୟବହାର)—ଯେଉଁ କଲମରେ ଆଗରୁ ସ୍ୟାହି ପଶି ଥାଏ ଓ ସେହି ସ୍ୟାହି ଲେଖିଲାବେଳେ କଲମମୁନିକୁ ଝରି ଆସେ—Fountain pen.
Jhara-kalama
झरकलम

**ଝରକା**—ଦେ. ବି. (ସଂ. ଜାଳକ)—୧ । ଖିଡ଼ିକି; ଜଳାକବାଟି; ଗବାକ୍ଷ—1. Latticed window.
Jharakā
झरका ୨ । ଜାନାଲା; ପଞ୍ଜର—2. Window; shutter.
**झरोखा** ପ୍ରାଦେ. (ସମ୍ବଲପୁର) ବି—ବାଉଳି ୨ (ଦେଖ) Bāuḷi 2 (See)

**ଝରଝର**—ଦେ. ଅ. ( ଧ୍ୱନ୍ୟନୁକରଣ )—ପାଣିଧାର ତଳକୁ ବହିବାର ଶବ୍ଦ; ଝରଣାର ଜଳପତନ ଶବ୍ଦ—Sound of water flowing down (e.g. a spring).
Jhara-jhara
झरझर
**झरझर**

ସର୍ବଦା ଶବଦ ଶୁଭଇ ଝରଝର
ତାହା ଶୁଣି ବରଷା ହୋଇଲେ କାତର । କୃଷ୍ଣସିଂହ. ମହାଭାରତ, ବନ ।

ଦେ. ବିଣ—ବିଶେଷ ପରିମାଣରେ ପଡ଼ୁଥିବା (ଜଳୀୟପଦାର୍ଥ)—Falling in copious torrents (liquid).

ଘନେ ଵୃଚୁକର କରକାଭୂଷଣେ ବରଷିରଷା ମୋ ଉଚ୍ଚ ବୃଷ୍ଟି ଝରଝର ।
ଉପେ. ପ୍ରେମସୁଧାନିଧି ।

ଦେ. କ୍ରି . ବିଣ—ଝରିବା । ପ୍ରକାରେ; ଅବିରତ ପ୍ରବାହରେ—In copious torrents (said of liquid flowing down); copiously.

ଝରଝର ଲୋତକଧାରା ନୟନୁ
ଝରି ଚାଲିଲା ବକ୍ଷ ଭରିଗଲା ଧନୁ । ମଧୁସୂଦନ. ସୀତାବନବାସ ।

**ଝରଝରା** – ଦେ. ବି—ଝର୍ଝରୀ (ଦେଖ)
Jharajharā Jharjharā (See)

ଜଗଝମ୍ପ, ଝରଝରା, ଦାମାମା, ଦୁନ୍ଦୁଭି । ରାଧାନାଥ. ମହାଯାତ୍ରା ।

**ଝରଣ**—ଦେ. ବି—ଝରଣା (ଦେଖ)
Jharaṇa Jharaṇā (See)

ସେ ଶୃଙ୍ଗମାନଙ୍କରୁ ଆହାର ଝରଣ
ଶବଦରେ ପୁରାଉଛନ୍ତି ସେ ଶ୍ରବଣ । କୃଷ୍ଣସିଂହ. ମହାଭାରତ, ବନ ।

**ଝରଣା**—ଦେ. ବି. (ସଂ. ଝର)—୧ । ନିର୍ଝର—1. Spring; cascade.
Jharaṇā
झरण ୨ । (କେଉଁଠାରୁ ଧାନ; ଗଛରୁ ପତ୍ର) ଝଡ଼ିବା; ଭୂମିରେ ଖସି ପଡ଼ିବା—2. Dropping down; falling down.
**झरन**
୩ । ପାଣିଆଦି ଝରିବା କର୍ମ—3. Oozing; trickling down (of liquid).

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ; 'ଅଳଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ

**ଝରନ୍**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ହି. ଝରନ୍)—
Jharan  ଝରଣା ୧ (ଦେଖ)
Jharanā 1 (See)

**ଝରନା**—ପ୍ରାଦେ. (ସମ୍ବଲପୁର) ବି—ଝରଣା ୧ (ଦେଖ)
Jharanā  Jharanā 1 (See)

**ଝରପୂଯା**—ଦେ. ବିଣ. (ସଂ. ଝର+ପୂୟ)—ଯେଉଁ ବ୍ରଣ ବା ଘାଆରୁ
Jhara-pūjā  ପୂଯ ବହିବା ବନ୍ଦ ହୁଏ ନାହିଁ; ନାଡ଼ୀବ୍ରଣଯୁକ୍ତ
ନାଲୀଘା  (କ୍ଷତ)—(a sore) Having sinus.
ନାସୁର  ଦେ. ବି—ନାଡ଼ୀବ୍ରଣ—Sinus.

**ଝରା**—ଦେ. ବି. (ଆ. ଜର; ତୁଲ ଫ. ଧାରା)—
Jharā  ୧ । ପୁଷ୍ପର ଲମ୍ବମାନ ଗୁଚ୍ଛ ବା ଫେନ୍ତା—
ଝାଲର  1. A hanging bunch of flowers.
ଝଝା  ୨ । ମୁଣ୍ଡରେ ପିନ୍ଧାଯିବା ଫୁଲ ଗଭା; ଫୁଲଗୁନ୍ଥା ଚୋଡ଼ା—
2. A hanging nosegay worn on the hair.

ଝମ୍ପାଝାଲିଆ ଅଳକ ଝଳକ ଶୋଭିଲାର ବେଶବେଶେ
ଝରା ଗଞ୍ଜି ବନ୍ଧ ଓଷ୍ଠେ ଶତ ବ୍ରହ୍ମ ଉଦକ ନଦୀରେ ହରଷେ ।
କବିସୂର୍ଯ୍ୟ, ସଙ୍ଗୀତ ।

୩ । ଟୋପିଆଦିରୁ ଏକପାଖରେ ଓହୋଳିଥିବା ଜରି ବା ରେଶମ ଡୋରର ଝୁମ୍ପା ବା ଗୁଚ୍ଛ—3. Tassels hanging down from a cap.

୪ । ଜୁଡ଼ାର ଅଳଙ୍କାର ବିଶେଷ; ଝରା କାଠିରୁ ଓହୋଳ ଥିବା ଘୁଙ୍ଗୁର ଲଗା ଝଞ୍ଜିରମାଳ—4. Chain-tassels hanging from a lady's hairpin.

ମସ୍ତକ ମଣ୍ଡନ ଝରାରେ । କବିସୂର୍ଯ୍ୟ, ସଙ୍ଗୀତ ।

୫ । ଝରାଗୁଡ଼ (ଦେଖ)
5. Jharā-gurda (See)

୬ । (ଲକ୍ଷଣାର୍ଥ; ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁକ୍ତ)—ଭୂଷଣ ସ୍ୱରୂପ; ଉତ୍କୃଷ୍ଟ ବ୍ୟକ୍ତି—6. (figurative) Ornament.

ଧର୍ମଧୁରୀଧରଗୁରୁ ରାଜୀ ଚରଣେ ଚୋ ବନା
ପଣ୍ଡିତବ କାହିଁ ହେବ ନିକାରେ ଧର୍ମ ଝରା । କବିସୂର୍ଯ୍ୟ, ସଙ୍ଗୀତ

୭ । (ଗ୍ରାମ୍ୟ ଓ ଇତର; ଡ଼ ସ୍ଥାନରେ ର ଉଚ୍ଚାରଣ)—ଝଡ଼ା; ଗଛରୁ ଝଡ଼ି ପଡ଼ିଥିବା ଧାନ ବା ଫଳ ଆଦି—
7. Grains or fruits which have dropped from plants and trees.

ଦେ. ବିଣ.—୧ । ଝରି ଥିବା—
1. Which has dripped or oozed.
୨ । (ଇତର ଓ ଗ୍ରାମ୍ୟ)—ଝଡ଼ି ପଡ଼ିଥିବା—
2. Which has fallen down or dropped.

ପ୍ରାଦେ. (ଗଡ଼ଜାତ)—ବି.—ରାଜାଙ୍କ ଅବିବାହିତା ବା ରକ୍ଷିତା ଦାସୀ; ରାଜାଙ୍କ ବିଶେଷ ସ୍ନେହ ଓ ଅନୁଗ୍ରହ ପାତ୍ରୀ ଦାସୀ—
A favourite concubine of a Rājā.

[ଦ୍ର—ଗଡ଼ଜାତରେ ରାଜାଙ୍କର ପ୍ରଥମ ବିବାହିତା ସ୍ତ୍ରୀଙ୍କୁ ପାଟମହାଦେଈ ବା ପାଟରାଣୀ, ଅନ୍ୟ ବିବାହିତା ସ୍ତ୍ରୀମାନଙ୍କୁ ମହାଦେଈ ବା ରାଣୀ, ନାମମାତ୍ର ଅର୍ଥାତ୍ ଗାନ୍ଧର୍ବ ମତରେ ବିବାହିତା ଦାସୀଙ୍କୁ ଫୁଲଦେଈ ବା ଫୁଲବିବାହୀ ବା ଫୁଲବେଈ ଆଦି କହନ୍ତି । ରାଜା ଯେଉଁ ଦାସୀଙ୍କୁ ଫୁଲଝରାଟିଏ ଉପହାର ଦେଇ ଅନୁଗୃହୀତା ରକ୍ଷିତା ରୂପେ ବରଣ କରିଥାଆନ୍ତି, ତାଙ୍କୁ ଝରା କହନ୍ତି ।]

ପ୍ରାଦେ. (ସମ୍ବଲପୁର) ବି.—୧ । ବାଳୁଙ୍ଗା ଧାନ—
1 Paddy growing without culture.
୨ । ଶୂଦ୍ର ଜାତିବିଶେଷ ( ଏମାନେ ନଈବାଲିରୁ ଚଲାଇ ସେଥିରୁ ସୁନାର ଅତି କ୍ଷୁଦ୍ର କଣାମାନ ଝାଡ଼ନ୍ତି—
2. A caste of Sudras ( whose occupation is to get gold-dust from the river-bed by sifting and washing the sands. )

ପ୍ରାଦେ. ( ସିଂହଭୂମ ) ବି—ଜଙ୍ଗଲ ମାଛ—
A kind of fish

**ଝରା(ରେ)ଇବା**—ଦେ. କ୍ରି (ସଂ କ୍ଷରଧାତୁ ଣିଜନ୍ତ )—ଝରିବାର ଣିଜନ୍ତ.
Jharā(re)ibā  ରୂପ—Causative of Jharibā.
ଝରାନ  ୧ । କ୍ଷରିତ କରାଇବା—
ଝରୱାନା  1. To distill; to cause to ooze.
୨ । ଗୁଡ଼ାଇବା; ( ଅଶ୍ରୁ ) ଗଡ଼ାଇବା—
2. To let fall; to drop down ( tears ).

ଝରଝର ନୟନୁ ଅଶ୍ରୁ ଝରାନ୍ତି । ନନ୍ଦକିଶୋର, ଶର୍ମିଷ୍ଠା ।

୩ । (ଦୃଷ୍ଟି) ନିକ୍ଷେପ କରିବା—2. To cast (glance).

ଅପାଳ ବୃତ୍ତଜଳ ଝରା ସୁଦରଡେ । କବିସୂର୍ଯ୍ୟ, ସଙ୍ଗୀତ ।

**ଝରାକାଠି**—ଦେ. ବି—ଝୁମ୍ପା ଓହୋଳ ଥିବା ଗୋଜକାଠି; ସ୍ତ୍ରୀମାନଙ୍କ
Jharā-kāthi  ଜୁଡ଼ାର ଅଳଙ୍କାର କାଠି ବିଶେଷ—
A hairpin with a bunch of pendant chains ( worn on the chignon ).

[ଦ୍ର—ଏହା ସୁନା, ରୁପା ବା କାଉଁଦାନ୍ତର ସରୁ କାଠି; ଏଥିର ଅଗରେ ଗୁଡ଼ାଏ ଝୁମ୍ପାଲଗା ଶିକୁଳି ଓହୋଳ ଥାଏ ଓ ଏହା ଜୁଡ଼ାରେ ଗୁଞ୍ଜାଯାଏ । ମୁଣ୍ଡ ହଲାଇଲେ ବେଳେ ଏ ଝରାଗୁଡ଼ିକ ରୁଣୁଝୁଣୁ ଶବ୍ଦ କରେ ।]

**ଝରାଗୁଡ଼**—ଦେ. ବି. ( ସଂ. କ୍ଷରିତ+ଗୁଡ଼ )—
Jharā-gurda  ପାଣିଆ ଗୁଡ଼; କନ୍ଦ ଭିଆର କଲା ବେଳେ ଗୁଡ଼ରୁ
ଝରାଗୁଡ଼  ଝରିଥିବା ପାଣିଆ ଗୁଡ଼—Treacle; molasses,
ରାବ

**ଝରାଝର**—ଦେ· କ୍ରି. ବିଣ—ଝରଝର ( ଦେଖ )
Jharājhar  Jharajhara ( See )

**ଝରାଝୋର**—ପ୍ରାଦେ.(ସମ୍ବଲପୁର) ଅ. (ହି.ଝର୍ଝରି; ତୁଲ.ହି. ଝରାଝର)—
Jharājhor  ଅନର୍ଗଳ; ସର୍ବଦା—
Always; unintermittently.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇ୍ୟ | ଉ୍ଅ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଔ | ନ୍ତ |

**ଝରି**—ଦେ. ବି. ( ସଂ. ଝରି; ସଂ. ଧାର )—
Jhari ୧ । ସରୁ ମୁହଁ ଓ ଲମ୍ବ ବେକ ଥିବା ଜଳପାତ୍ର; ଝାରୀ ଗୋରେଇ—1. A narrow-necked
झारी water-jug.

ଭୃଙ୍ଗିକ ସୁନା ଝରି ମଧ୍ୟେ ଜଳ ଭରି
ଅର୍ଘ୍ୟ ସଙ୍ଗେ ଗୋଡ ଧୋଇଲେ ପ୍ରୀତି ଭରି ।
କୃଷ୍ଣସିଂହ, ମହାଭାରତ, ଅନୁଶାସନ ।

୨ । ନଳ ଲାଗିଥିବା ପାତ୍ର; ଗଡୁ—
2. A spouted jug.
ରଙ୍କ ପାଇଛି ଝରି, ପାଣି ପିଇପିଇ ମରୁ—ଢଗ ।

୩ । ପନିର ବା ଗୋଲାପଜଳ ଛିଞ୍ଚିବାର ଛିଦ୍ରଯୁକ୍ତ ପାତ୍ର; ଗୋଲାପପାସ୍—3. A pot with perforated mouth for sprinkling scents on guests.

୪ । କୌଣସି ପଦାର୍ଥରୁ ଝରିବା ଜଳୀୟ ପଦାର୍ଥ—
4. Any watery substance which drops from anything.
ଚନ୍ଦ୍ରରୁ ଉପୁଜି ସୁଧା ଝରି, ତା ବୃଷ୍ଟିରେ ମୃତେ ଉଠନ୍ତି ।
କବିସୂର୍ଯ୍ୟ, କଳାରସବମ୍ଭୁ ଚ ଗୀତ ।

୫ । ଯନ୍ତ୍ର ବା ରନ୍ଦା ସାହାଯ୍ୟରେ କାଠ ଆଦିରେ କଟାଯିବା
झुरी ଲମ୍ବ ସରୁ ନାଳୀ—5. Narrow grooves made in wood-work.

୬ । ଏକ ପ୍ରକାର ଟାଣୁଆ ଘାସ—6. *Eihinoitoa*
झरुआ Colona ( A kind of stiff grass ).
[ ଦ୍ର—ଏହା ସରୁ ଓ ସିଧା, ଜଳସିକ୍ତ ସ୍ଥାନରେ ବଢ଼େ । ]

୭ । କୋଲପ ମଧ୍ୟରେ ଥିବା କଳ ବା ଯୋଡ଼ା ( ଯାହାକୁ କୁଞ୍ଚି ଦ୍ୱାରା ଆଗକୁ ବା ପଛକୁ ଘସାଇ ଦେଲେ କୋଲପ ବନ୍ଦ ହୁଏ ବା ଖୋଲି ଯାଏ )—7. The lever of
झड़ी a padlock.

୮ । (ଗ୍ରା. ଇତର ବ୍ୟବହୃତ; ଡ଼ ସ୍ଥାନରେ ର ଉଚ୍ଚାରଣ)—
ଝଡ଼ ( ଦେଖ )
8. Jharda ( See )

**ଝରିଆ**—ଦେ. ବି—ମଧ୍ୟପ୍ରଦେଶରେ କଥିତ ଏକପ୍ରକାର ଓଡ଼ିଆ ଭାଷା—
Jhariā A form of the Oriya language spoken in the Central Provinces.

ଗ୍ରା. (ଇତର) ବିଣ—ଝଡ଼ିଆ (ଦେଖ)
Jhardiā (See)

ପ୍ରାଦେ. (ସମ୍ବଲପୁର) ବି—୧ । ଝଡ଼; ତୋଫାନ—
1. Tempest.

୨ । ତୋଫାନମିଶା ବର୍ଷା—2. Rain with wind.

**ଝରିଆ ପାଗ**—ଗ୍ରା. (ଇତର) ବି—ଝଡ଼ିଆ ପାଗ (ଦେଖ )
Jhariā pāga Jhardiā pāga (See)

**ଝରିଆ ପୋକ**—ଗ୍ରା. (ଇତର) ବି—ଝଡ଼ିଆ ପୋକ (ଦେଖ)
Jhariā poka Jhardiā poka (See)

**ଝରିଆର**—ପ୍ରାଦେ. (ସମ୍ବଲପୁର) ବି—ଲଗାଣ; ଅନବରତ ୩।୪ ଦିନ
Jhariāra ପର୍ଯ୍ୟନ୍ତ ହେବା ଝଡ଼ି ଓ ବର୍ଷା—Continuous rain and wind for 3 or 4 days.

**ଝରିଝମ୍ପା**—ଦେ. ବି—ଘର ଛାତତଳେ କେଉଁ କେଉଁ ହୋଇ ଝୁଲୁଥିବା
Jhari-jhampā ଚକଚକିଆ ଝୁମ୍ପା—Bunches of dazzling tassels hanging under the roof of a house as decoration.
ଶୋଭନ୍ତ ସ୍ତମ୍ଭେ ହୋଇଛନ୍ତି ଝରିଝମ୍ପା । ପ୍ରାଚୀ. ବୃନ୍ଦାବନଭୂଷଣଗୀତା ।

**ଝରି ପୋକ**—ଗ୍ରା. (ଇତର) ବି—ଝଡ଼ିଆ ପୋକ (ଦେଖ)
Jhari-poka Jhardiā-poka (See)

**ଝରିବା**—ଦେ. କ୍ରି (ସଂ. ଝର; ସଂ କ୍ଷର ଧାତୁ)—
Jharibā ୧ । (ଜଳୀୟ ପଦାର୍ଥ) କ୍ଷରିବା; ଧାରରେ ବହିବା;
झरना ଗଳିବା—1. To flow down continuously; to
झरना fall down by drops; to drip.
କି ଅବା ପଶିଲେ ହୃଦରେ
ନୟନୁ ଅଶ୍ରୁ ଛାଡ଼ି ନ ଝରେ । ଜଗନ୍ନାଥ—ଭାଗବତ ।

୨ । ସ୍ରବିବା; ସୂକ୍ଷ୍ମଧାରରେ ବହିବା—2. To ooze.
ବିନ୍ଦୁ ବିନ୍ଦୁ ଝାଳ ଝରିବ ଇନ୍ଦୁମୁଖରୁ ଶ୍ରମେ ।
ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୩ । (ପାତ୍ର) ଛିଦ୍ରଯୁକ୍ତ ହେଲେ ତହିଁରୁ ପାଣି ବହିବା—
3. To leak.
(ଯଥା—ଏ ଗରାଟା ଝରିଲାଣି ।)

୪ । (ଗ୍ରାମ୍ୟ; ଇତର; ପଦ୍ୟ) ଝଡ଼ିବା ୧ (ଦେଖ)
4. Jhardibā 1 (See)
ଗାଉବେ ପଡ଼ଇ ଝରି । କବିକିଶୋର. ଶର୍ମିଷ୍ଠା ।

**ଝରି ରନ୍ଦା**—ଦେ. ବି—ଯେଉଁ ରନ୍ଦା ସାହାଯ୍ୟରେ କାଠରେ ଲମ୍ବ ଓ
Jhari randā ସରୁ ନାଳୀ ଖୋଲାଯାଏ—
Ploughplane of carpenters.

**ଝରୋଖା(ଗା)**—ପ୍ରାଦେ. (ବସ୍ତର) ବି. (ଭୁଲ. ହି. ଝରୋଖା)—
Jharokhā(gā) ଝରକା—Window.

**ଝର୍କା**—ଦେ. ବି—ଝରକା (ଦେଖ)
Jharkā Jharakā (See)

**ଝର୍ଝ** (ଧାତୁ)—ସଂ—ଶବ୍ଦ କରିବା—
Jharjha (root) To make a sound.

**ଝର୍ଝର**—ସଂ. ବି. (ଝର୍ଝ ଧାତୁ=ଶବ୍ଦ କରିବା+କର୍ତ୍ତୃ. ଅର)—
Jharjhara ୧ । କଳିଯୁଗ—1 The Kali or Iron age.

୨ । ନଦୀବିଶେଷ—2. Name of a river.

୩ । ଝରଣାରୁ ପାଣି ତଳେ ପଡ଼ିବାର ଶବ୍ଦ; ଉଚ୍ଚରୁ ତଳକୁ ଜଳ ବେଗରେ ପଡ଼ିବାର ଶବ୍ଦ—3. Sound of falling water; pattering sound.
ଗିରି ଗହ୍ୱରରେ ଝରଇ ନିର୍ଝର
ଝର୍ଝର ଶୁଭଇ ଘନ । କବିକିଶୋର. ନର୍ମଦା ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ୍ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଗିଁଆ ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୪ । ବାଦ୍ୟଯନ୍ତ୍ରବିଶେଷ; ତାସା—4. A kind of kettle-drum (which is struck with small twigs and makes a pattering sound.

୫ । ଝାଞ୍ଜ—5. Thin and wide cymbals.

ହସ୍ତ ବଳୟ ପଦ କଟକର
ସ୍ୱନ ପ୍ରସର ମର୍ଦ୍ଦଳ ଝର୍ଝର । ଭଞ୍ଜ. ପ୍ରେମସୁଧାନିଧି ।

୬ । ବେତ୍ରନିର୍ମିତ ଦଣ୍ଡବିଶେଷ (ଜ୍ଞାନେନ୍ଦ୍ର)—
6. A kind of stick or staff of cane.

୭ । ଜାଲିଚଟୁ—7. A sieve-like ladle.

୮ । ହିରଣ୍ୟାକ୍ଷ ଅସୁରର ଏକ ପୁତ୍ରର ନାମ—
8. Name of a son of demon Hiraṇyākshа.

୯ । ଗୋଡ଼ରେ ପିନ୍ଧାଯିବା ଗହଣାବିଶେଷ ( ହି. ଶବ୍ଦସାଗର)
9. A kind of ornament for the leg.

**ଝର୍ଝରକ**—ସଂ. ବି. (ଝର୍ଝର+ସ୍ୱାର୍ଥେ. କ) —କଳିଯୁଗ—
Jharjharaka The Kali age; the Iron age.

**ଝର୍ଝରା**—ସଂ. ବି. ସ୍ତ୍ରୀ. (ଝର୍ଝର+ସ୍ତ୍ରୀ. ଆ)—ବେଶ୍ୟା—
Jharjharā A prostitute.

**ଝର୍ଝରାବତୀ**—ସଂ. ବି. (ଝର୍ଝର+ବତ୍+ସ୍ତ୍ରୀ. ଈ)—୧ ଗଙ୍ଗାନଦୀ
Jharjharā-batī (ହି. ଶବ୍ଦସାଗର)—
1. The river Ganges.

୨ । କୁରୁବକ (ହି. ଶବ୍ଦସାଗର) (ଦେଖ)
Kurubaka (See)

ସଂ. ବିଣ.—ଝଙ୍କାରିଣୀ (ଜ୍ଞାନେନ୍ଦ୍ର)—
Making a pattering sound.

**ଝର୍ଝରିକା**—ସଂ. ବି. (ଝର୍ଝରୀ+କ+ଆ)—ତାରାଦେବୀ (ହି. ଶବ୍ଦସାଗର)—
Jharjharikā The Goddess Tārā.

**ଝର୍ଝରୀ**—ସଂ. ବି. ପୁଂ. (ଝର୍ଝର+ଇନ୍; ୧ମା. ୧ବ.)—ଶିବ
Jharjharī (ହି. ଶବ୍ଦସାଗର)—God Siba.

ସଂ. ବି. ସ୍ତ୍ରୀ—( ଝର୍ଝର+ସ୍ତ୍ରୀ. ଈ )—୧ । ଚଟକା ନାଗରା; ତାସା—1. A kind of flat shallow kettle-drum.

[ଦ୍ର—ଏହା ସଲମ ସର ଓ ବଜାଇଲା ବେଳେ ଏହାକୁ ଦୁଇଟି କାଠିରେ ଅଘାତ କରା ଯାଏ ।]

୨ । ଏକ ପ୍ରକାର ମନ୍ଦିରା; ଛୋଟ ଝାଞ୍ଜ—
2 A kind of small cymbals.

୩ । ବେଶ୍ୟା (ଜ୍ଞାନେନ୍ଦ୍ର)—3. Prostitute.

**ଝର୍ଝରୀକ**—ସଂ. ବି. (ଝର୍ଝରୀ+କ)—୧ । ଦେଶ (ହି. ଶବ୍ଦସାଗର)—
Jharjharīka 1. Country.

୨ । ଶରୀର—2. Body.

୩ । ଚିତ୍ର—3. A painting; picture.

**ଝଲ୍** (ଧାତୁ)—ସଂ.—ଉଜ୍ଜ୍ୱଳ ହେବା; ଦୀପ୍ତି ପାଇବା; (ଜ୍ଞାନେନ୍ଦ୍ର)
Jhal (root). To dazzle; to glitter.

**ଝଲକ**—ଦେ. ବି ( ସଂ. ଜ୍ୱଲକ; ସଂ. ଝିଲ୍ଲିକା=ଦୀପ୍ତି; ହି. ଶବ୍ଦସାଗର )
Jhalaka ୧ । ଆଲୋକର ଚମକ ବା କ୍ଷଣସ୍ଥାୟୀ ସତ୍ତା—
ଝଲକ 1. Flash of light.

ଝଲକ, ଝିଲକ ୨ । ତେଜଃ; ଦୀପ୍ତି—
2 Lustre; glamour; radiance.

୩ । ସୌନ୍ଦର୍ଯ୍ୟ; କାନ୍ତି—3. Grace; beauty.

ତହୁଁ ପାଗରେ ସୁନା ଚୁଡର ଝଲକ ।
କୃଷ୍ଣସିଂହ. ମହାଭାରତ. ବନ ।

୪ । ଅଗ୍ନିଶିଖା—4 Flame of fire.

୫ । (ସଂ ଝଲ୍ଲକ) କଂସାଳ ବାଦ୍ୟ—5. A musical instrument of bellmetal.

୬ । ନୋଲକ; ଫାସିଅରେ ଝୁଲୁଥିବା ଗୋଲ ରତ୍ନ ବା ଧାତୁ ଗୋଲକ—6. A pendant gem.

୭ । କର୍ଣ୍ଣାଲଙ୍କାରବିଶେଷ—7 A earring.

ଶ୍ରବଣେ ଉର ମୋ ଝଲକ ଚକ ଫେରଇ ମୁକୁତା ବନ୍ଧ ।
ପ୍ରାଚୀ. ରହସ୍ୟମଞ୍ଜରୀ ।

୮ । ଅନ୍ଦୋଳନ—8. Agitation.

୯ । ଆଲୋକତରଙ୍ଗ—9. A wave of light.

୧୦ । ପ୍ରତିବିମ୍ବ—10 Reflected image.

୧୧ । ତରଙ୍ଗ; ଢେଉ—11. Wave.

ଦେ. ବିଣ.—୧ । ପ୍ରତିବିମ୍ବିତ—1. Reflected.

୨ । ଦୀପ୍ତ—2. Lighted; illuminated.

୩ । ଝଟକୁଥିବା; ଉଜ୍ଜ୍ୱଳ—
3. Bright; dazzling.

ପାଟପଟଳୀ ମଣ୍ଡି ଫେସା, ବକ୍ଷେ ଝଲକ ଚନ୍ଦ୍ରଭାସ ।
ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।

**ଝଲକ ଦଣ୍ଡି**—ଦେ. ବି.—ନାକଦଣ୍ଡି ଫୋଡ଼ା ହୋଇ ତହିଁରେ ପିନ୍ଧା ଯିବା
Jhalaka dandi ଏକ ପ୍ରକାର ଦଣ୍ଡି; ଯେଉଁ ଦଣ୍ଡିରେ ନୋଲକ ଝୁଲୁଥାଏ—A kind of nose-ring with a pendant.

**ଝଲକ ମାଳୀ**—ଦେ. ବି. (ଛୋଟ ଛୋଟ ସୁନାର ପତ୍ରମାନ ଏଥିରେ ଝୁଲୁ
Jhalaka-mālī ଥିବାରୁ)—ଅଳକା—An ornament with pendants worn over the fore-head.

କପୋଳେ ଝଲକମାଳୀ ଝଲକେ ।
ଦୀନକୃଷ୍ଣ. ରସକଲ୍ଲୋଳ ।

**ଝଲକ ଲଡ଼ୁ**—ଦେ. ବି—( ଶିଶୁଗୀତ) ମିଷ୍ଟାନ୍ନବିଶେଷ—
Jhalaka lardu (Nursery song) A kind of sweetmeat.

ଝଲକଲଡୁ ପାଥକେ ପାଣ୍, ପୁଅ ବୋଇଲା କଉଡ଼ ଆଣ୍
ମାଅ ବୋଇଲା କଉଡ଼ ନାହିଁ, ଝଲକଲଡୁ ପାଇବ କାହିଁ । ଶିଶୁଗୀତ ।

**ଝଲକହୀନ**—ଦେ. ବିଣ—ତେଜୋହୀନ; ଦୀପ୍ତିଶୂନ୍ୟ—
Jhalaka-hīna Lustreless.

ବହିଲେ ଲକ୍ଷଣ ଯେତେ ଭାନୁ ଉଦିତେ ଶଦୋଧାରେ ଝଲକହୀନ ସେ ସେହିମତ—
ଭଞ୍ଜ. ବୈଦେହୀଶବିଳାସ ।

| ୧ | ଇ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଫ୍ଟ | ଜ୍ଞ | ଘ୍ନ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଥ | ଜ୍ଞ | ନ୍‌ |

**ଝଲକା**—ଦେ. ବି (ସଂ. ଝଲ୍ଲିକା=ଦୀପ୍ତି)—୧ । ତରଙ୍ଗ; ଆଘାତ ଦ୍ୱାରା ଉପରକୁ ଉଠି ଆସିବା ଊର୍ମିପ୍ରବାହ; ତରଙ୍ଗାକାର ପ୍ରବାହ—1. A gush; a violent flowing up or rising of water or liquid; flapping or rushing of a wave of liquid.
Jhalakā
ঝলকা
झलका
( ଯଥା—ଝଲକାଏ ପାଣି, ରକ୍ତ, ବାନ୍ତି ଇତ୍ୟାଦି । )
୨ । କର୍ଣ୍ଣଭୂଷଣବିଶେଷ—2. A kind of earring.
କଣ୍ଠୁଥିଲା ସର ଝଲକାଝଲକ ଧାରକାବଳ ଝଳ ଦଳ—
ଉଲ୍ଲ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୩ । (ଗ୍ରାମ୍ୟ, ଇତର) ଝରକା; ବାତାୟନ—3. Window.
୪ । ଝଲକ ଦଣ୍ଡି ( ଦେଖ )—4. Jhalaka daṇḍi ( See )

**ଝଲକା(କେ)ଇବା**—ଦେ. କ୍ରି—( ସଂ. ଝଲ୍ଲିକା=ଦୀପ୍ତି; ଝଲକିବାର ଣିଜନ୍ତ ରୂପ—Causative of Jhalakibā)
Jhalakā (ke)ibā
ঝলকান
झलकाना
୧ । ଦୀପ୍ତିମନ୍ତ କରାଇବା—1. To cause to shine.
୨ । ଜଳପାତ୍ରକୁ ଦୋହୋଲାଇ ତହିଁରେ ଥିବା ଜଳୀୟ ବସ୍ତୁକୁ ଆନ୍ଦୋଳିତ କରିବା—3 To shake a pot containing liquid so as to produce waves in it.

**ଝଲକାଏ**—ଦେ. ବିଣ—ଜଳୀୟ ପଦାର୍ଥର ଏକ ଊର୍ମି ବା ଢେଉ ପରିମିତ; ମନାଏ—A splash; gushing wave or shower; one gush of ( flowing liquid).
Jhalakāe
একঝলকা
( ଯଥା—ଝଲକାଏ ବାନ୍ତି; ଭଙ୍ଗାରେ ଝଲକାଏ ପାଣି ପଶିଗଲା ।)

**ଝଲକିବା**—ଦେ. କ୍ରି (ସଂ. ଚଲ ଧାତୁ)—୧ । ଦୋହୋଲିବା; ହଲିବା; ଝୁଲିବା—1. To dangle, to hang to and fro.
Jhalakibā
ঝলকা
झलकना, छिलकना
୨ । ଜଳଆଦି ପାତ୍ରରେ ଚହଲିବା; ଆନ୍ଦୋଳିତ ହେବା—2. To shake; to be agitated (said of liquid in a pot).
୩ । (ସଂ. ଝଲ୍ଲକ) ଝଟକିବା; ଦୀପ୍ତି ପାଇବା—3. To glow; to dazzle.
ତହିଁ ଆଉ ଯାହା ଝଲକୁଥିଲା ଗୁଣା,
କରୁଥିଲା ଯୁବାଜନଙ୍କ ବୁଦ୍ଧି ବଣା । କୃଷ୍ଣସିଂହ. ମହାଭାରତ. ଆଦିପର୍ବ ।
୪ । ପାତ୍ରରେ ଜଳଆଦି ଚହଲିକରି ଉଛୁଳିବା; ଉଚ୍ଛୁଳ ପଡ଼ିବା; ଚହଲିବା—4. To be spilt (said of a liquid running out of a pot by shaking or horizontal agitation).
ଝଲକଇ ଝାଳ ବ୍ୟାଜେ ସୁଧାଝର—କବିସୂର୍ଯ୍ୟ. କବିତା ।
୫ । ଉଦ୍ବିଗ୍ନ ହେବା; (ମନରେ) ଅସ୍ଥିର ବା ଚଞ୍ଚଳ ହେବା—5. To be mentally agitated or perturbed.
ଝଲକିଗଲ କୃଷ୍ଣ ଅକାରଣେ—କବିସୂର୍ଯ୍ୟ, ଯଶୋଦାବିଚମ୍ପୂ. ୯ ଗୀତ ।
୬ । ଇତସ୍ତତଃ ହେବା—6. To waver.
୭ । ବିଲସିତ ହେବା; ସ୍ପଷ୍ଟରୂପେ ପ୍ରକାଶିତ ହେବା—7. To be clearly manifest.
ପିନ୍ଧିଥିବା ଜାମା ଜମାଗୁଡ଼ିକ,
ଗୁପତ ଅଙ୍ଗ ଦିଶିଲେ ଝଲକ । କବିସୂର୍ଯ୍ୟ, ସଙ୍ଗୀତ ।

**ଝଲକ୍କା**—ସଂ. ବି (ଝଲ୍ ଧାତୁ+ଅକ୍କ+ଆ)—୧ । ଶିଖା (ହେମଚନ୍ଦ୍ର)—1. Flame.
Jhalakkā
୨ । ଜ୍ୱାଲା; ଅର୍ଚ୍ଚିଃ (ହେମଚନ୍ଦ୍ର)—2. Blaze.

**ଝଲଜ୍ଝଳ**—ସଂ. ବି—୧ । ପାଣି ଟୋପା ଟୋପା ହୋଇ ପଡ଼ିବାର ଶବ୍ଦ—1. The sound of falling drops (Apte).
Jhaḷajjhaḷa
୨ । ହାତୀ କାନ ବାଡ଼େଇବାର ଶବ୍ଦ—2. The sound of flapping of an elephant's ears (Apte).

**ଝଲଝଲ**—ଦେ. ଅ—୧ । (ସଂ. ଜ୍ୱଲ; ସଂ. ଝଲ୍ଲକୀ) ଦୀପ୍ତିଯୁକ୍ତ—1. Radiant; dazzling.
Jhalajhala
ঝলঝল
झलझल
ସବୁ ବିଗମାନଙ୍କେ ଭଉ ଜୁଳୁଜୁଳା,
ଝଲଝଲ ହୋଇ ଦିଶିଲେ ଭେଳା ଭେଳା । କୃଷ୍ଣସିଂହ. ମହାଭାରତ ଆଦି ।
(ଝଲ୍‌ଝଲ୍ଲା—ଅନ୍ୟରୂପ)
୨ । (ସଂ. ଜାଲ) ଅତ୍ୟନ୍ତ ପତଳା ହେତୁ ଯାହାର ଏପାଖ ସେପାଖ ସ୍ପଷ୍ଟ ଦେଖାଯାଉଥାଏ; ଜାଲଜାଲୁଆ ( ଲୁଗା )—2. Thin and transparent ( cloth ); net-like.
୩ । (ସଂ. ଚଞ୍ଚଳ) ଦୋହୋଲୁଥିବା—3. Dangling.

**ଝଲଝଳିଆ**—ଦେ. ବି—୧ । ହସ୍ତୀର କର୍ଣ୍ଣ (ନନ୍ଦେ)—1. The ear of the elephant.
Jhaḷajhaḷiā
୨ । ଆସ୍ଫାଳନ (ନନ୍ଦେ)—2. Blustering.
ଦେ. ବିଣ—୧ । ପତଳା; ସରୁ—1. Of delicate texture.
୨ । ଜାଲଜାଲୁଆ—2. Net-like.

**ଝଲଝଲିଆ**—ଦେ. ବିଣ—୧ । ଦୀପ୍ତିଯୁକ୍ତ—1. Radiant; glowing.
Jhalajhaliā
ঝলঝলা, ঝলঝলিআ
झलझला
୨ । ଝୁଲୁଥିବା—2. Dangling; loosely hanging.
୩ । ଖୁବ୍ ପତଳା ଜାଲଜାଲୁଆ ଲୁଗା—3 Very thin cloth, net-like in texture.

**ଝଲମ**—ଦେ. ବି—ଦେଉଳର ପୀଢ଼ ବା ଗୃହର ଯେଉଁ ଅଂଶ କାନ୍ଥ ଉପରୁ ବାହାରକୁ ବଳି ପଡ଼ିଥାଏ—A cornice or projection of the outer roof beyond the walls of a temple.
Jhalama
কানুস
कन्नस

**ଝଲମଲ**—ଦେ. ବିଣ (ସଂ. ଝଲ୍ଲକ୍କା=ଅଗ୍ନି+ମଳନ)—୧ । ଚିକ୍କଣ—1. Smooth.
Jhalamala
ঝলমল
झलमला
୨ । ଦୀପ୍ତି ଦ୍ୱାରା ତରଙ୍ଗାୟିତ—2. Glistening, shining with waves of light.

ସାଧାରଣ ଲୋକେ ଅପର ପୃଷ୍ଠାରେ ସହିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ଉପସ୍ଥିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ଦୃଢ଼' ନ ମିଳିଲେ 'ଦୃଢ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

୩ । ଦୀପ୍ତିଶାଳୀ; ଜକଜକ—3. Shining; radiant.

୪ । ଅସ୍ଥିର ଦ୍ୟୁତିସହ ଝଟକୁଥିବା—
4. Glittering; twinkling.

୫ । ସୁନ୍ଦର—
5. Graceful.

ଅତୁଲ୍ୟ ଅମୂଲ୍ୟ ଝଲ ଝଲମଲ ଗଣ୍ଡକୁ ମୋ ଗଣ୍ଡେ ଘଷି ରେ।
କବିସୂର୍ଯ୍ୟ. ସଙ୍ଗୀତ।

୬ । ଟିକିଏ ପତଳା—6. Very thin in texture.

୭ । ଜାଲିଜାଲିଆ—
7. Net-like in texture.

ଦେ. ବି—ସୂତାର ଏକପ୍ରକାର ପତଳା କନା—
A very thin fabric of cotton.

**ଝଲମଲିଆ**—ଦେ. ବିଣ—ଝଲମଲ (ଦେଖ)
Jhalamaliā Jhalamala (See).

**ଝଲର**—ଦେ. ବିଣ ( ସଂ. ଜାଲ )—ଜାଲିଜାଲିଆ; ଯେଉଁ ଲୁଗା ଜାଲ
Jhalarā ପରି ବହୁ ଛିଦ୍ରବିଶିଷ୍ଟ ଓ ପତଳା—
ঝলমল Thin and netlike in texture
**झिलमिला; झिल्लड़** (fabric).

**ଝଲସା(ସେ)ଇବା**—ଦେ. କ୍ରି. ( ଝଲସିବାର ଣିଜନ୍ତରୂପ )—
Jhalasā(se)ibā ୧ । ଈଷତ୍ ଦଗ୍ଧ କରିବା—
ঝলসান 1. To scorch; to singe.
**झुलसाना** ୨ । (ଆଖିକୁ) ଆଲୋକାଧିକ ଦ୍ୱାରା ପୀଡ଼ାଯୁକ୍ତ କରିବା—
2. To dazzle (the eyes) with excessive light.

**ଝଲସିବା**—ଦେ. କ୍ରି (ସଂ. ଝଲ ଧାତୁ; ଜ୍ୱଲ ଧାତୁ; ସଂ. ଝଲା = ଆଲୋକ-
Jhalasibā ତରଙ୍ଗ)—୧ । (ଆଖି) ଉତ୍ତାପ ବା ଆଲୋକର
ঝলসা ଆଧିକ୍ୟ ଯୋଗୁଁ ପୀଡ଼ାଯୁକ୍ତ ହେବା ଓ ବନ୍ଦ ହୋଇଯିବା—
**झुलसना** 1. (the eyes) To be dazed.

୨ । ଜକଜକ ହେବା; ଝଟକିବା—
2. To shine; to glitter.

...ଶର ଉଦ୍ଧୃତନ୍ତୁ, ଝଲସି ଉଠଇ, ତଳ ନାହିଁରେ ବର୍ଷୁ।
ନନ୍ଦକିଶୋର. ନାହିଁରଣୀ।

୩ । କ୍ଷଣେ ଉଜ୍ଜ୍ୱଳ ଓ କ୍ଷଣେ ପ୍ରଶାନ୍ତ ହୋଇ ଝଟକିବା—
3. To twinkle; to sparkle.

୪ । ତାପର ଆଧିକ୍ୟରେ ଅର୍ଦ୍ଧଦଗ୍ଧ ହେବା—
4. To be scorched; to be singed.

[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଉଠିବା, ପଡ଼ିବା, ଯିବା କ୍ରିୟାର ସମାପିକା ରୂପ ମଧ୍ୟ ଯୁକ୍ତ ହୁଏ । ]

**ଝଲା**—ସଂ. ବି ( ଝଲ ଧାତୁ + ଆ )—୧ । ଆତପର ଊର୍ମି; ରଶ୍ମିର
Jhalā ତରଙ୍ଗ ( ମେଦିନୀ )—1. A wave of sun's rays.

୨ । କନ୍ୟା; ଝିଅ—2. Daughter (Apte).

୩ । ବାଳିକା—3. A girl (Apte).

୪ । ଝିଙ୍କାରି—4. A cricket (Apte).

୫ । ଖରା—5. Sunshine (Apte).

୬ । ଝଟକୁଥିବା ଆଲୋକ—
6. Glittering light ( Apte ).

୭ । ଆଭା; ଚାକଚକ୍ୟ—
7. Splendour ( Apte )

ঝালা ଦେ. ବି (ସଂ. ଜ୍ୱାଳ, ଜ୍ୱଳନାକର ଓ. ଉଝାଳିବା, ଉଝଲା)
**झालना** ଝାଳିବାକର୍ମ; ଦୁଇଖଣ୍ଡ ଧାତୁକୁ ଅନ୍ୟ ଧାତୁ ଦ୍ରବ ଦ୍ୱାରା ସଂଯୁକ୍ତ କରି ମିଶାଇବା —Soldering of two pieces of metal.

ଦେ. ବିଣ—ପରସ୍ପର ସଂଯୁକ୍ତ ହୋଇ ମିଶା ଯାଇଥିବା
(ଧାତୁଖଣ୍ଡ ଦ୍ୱୟ)—Soldered.

**ଝଲାଇ**—ଦେ. ବି—ଝଲେଇ (ଦେଖ)
Jhalāi Jhalei (See).

**ଝଲା(ଲେ)ଇବା**—ଦେ. କ୍ରି—୧ । ଝଲିବାର ଣିଜନ୍ତରୂପ—
Jhalā(le)ibā 1. Causative of Jhalibā.
ঝালান ୨ । ଝାଳିବାର ଣିଜନ୍ତରୂପ—
**झलाना; झलवाना** 2. Causative of Jhālibā.

୩ । ପୂର୍ବ ସ୍ମୃତିକୁ ଜ୍ୱଳନ୍ତଭାବରେ ପ୍ରତିଭାତ କରାଇବା—
3. To bring something vividly to one's recollection.

ସେ ସବୁ ଛବି ଫ୍ରାନ୍ସର ଅତୀତ ଗୌରବକୁ ଝଲାଉଛି।
ଉତ୍କଳ ସାହିତ୍ୟ ୩୨।୪।

୪ । ସଲଗ୍ନ କରାଇବା; ମିଶାଇବା—
4. To cause to stick or adhere.

ଝଲାଅ କୁଙ୍କୁମକସ୍ତୁରୀଲାକୃତ ଛାତିରେ—କବିସୂର୍ଯ୍ୟ. ସଙ୍ଗୀତ।

**ଝଲାଳି**—ଦେ. ବିଣ—ଝାଳାଝାଳି ବ୍ୟବସାୟ କରିବା ଲୋକ; ଯେ
Jhalāli ଅଳଙ୍କାରାଦି ଝାଳେ—One who solders.
**झलहाबा** ସଂ ବି—ଗୁଆ—The areca nut ( Apte ),

**ଝଲି**—ଦେ. ବି (ସଂ. ଜ୍ୱଲ ଧାତୁ; ସଂ. ଝଲା)—୧ । ଦୀପ୍ତି—
Jhali 1. Glamour.
ঝলক କମ୍ପୁଥିଲା ପଦ୍ମ ଝଲକା ଝଲକ ଧାରକାବଳୀର ଝଲି।
**झलकनि** ଭକ୍ତ. କୋଚ୍ଛବ୍ରହ୍ମାଣ୍ଡସୁନ୍ଦରୀ।

୨ । ଚିକ୍କଣତା—2. Gloss; smoothness.

୩ । ଶୋଭା; କାନ୍ତି—3. Beauty; grace.

ଲପନର ଝଲି; ବଦ କବିତ୍ୱ ପ୍ରସାର ଅର୍ଗଳ ।
ଖାଲମଣି, ଚନ୍ଦ୍ରାତରଙ୍ଗିଣୀ।

୪ । ଆଲୋକତରଙ୍ଗ—4. Wave of light.

ଦେ. ବିଣ—୧ । ଦୀପ୍ତ; ଦୀପ୍ତିମାନ୍; ଚୋପା; ଜକଜକ କରୁଥିବା—
1. Radiant; glittering; bright; shining dazzling.

ଝଲି ପାଖାଳୀ ଝଟକେ ନାହିଁକି—କବିସୂର୍ଯ୍ୟ. କଶୋସରକ୍କ, ୯. ଗୀତ।

| ୧ | ଇ | ଉ | ର୍,ଋ | ଝ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇୟ | ଉଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଡ଼ | ନ୍ |

୨ । ଚିକ୍କଣ—2. Glossy; smooth.

ଚୁମ୍ବାଇ ଚୁମ୍ବି ମୋ ଅଧର ବଦନେ ପାନ୍ତି ନେବକଞ୍ଜ ଖୋସି
ଅତୁଲ୍ୟ ଅମୂଲ୍ୟ ଝଳ ଝଳମଳ ଗଣ୍ଡକୁ ମୋ ଘଷେ ଘଷି ।
କବିସୂର୍ଯ୍ୟ, ସଙ୍ଗୀତ ।

ଦେ. କ୍ରିଣର ବିଣ —ତୋଫା—Dazzlingly.

ଅରେ ଝଳ ଗୋସ, ଝୁଲ କାଳ୍ପ ଭଙ୍ଗ ହେଲେ ମୋହ ପଡ଼ ।
କବିସୂର୍ଯ୍ୟ, କବିତା ।

**ଝଳିବା**—ଦେ. କ୍ରି ( ସ. ଚଳ୍ ଧାତୁ, ଜ୍ୱଳ ଧାତୁ )—
Jhaḷibā ୧ । ଚିକ୍କଣ ହେବା—1. To be glossy.
ঝলকা, ঝলা ୨ । ଶୋଭା ପାଇବା—2. To be beautiful.
झलकना ଗୁରୁ ଦେମାଳ ଝଳ କର ସଭ । ଉକ୍ତ. ପ୍ରେମସୁଧାନିଧି ।

୩ । ଝକଝକ ହେବା; ଚକ୍‌ଚକ୍ କରିବା; କାନ୍ତି ପ୍ରକାଶ କରିବା; ଝଟ୍‌କିବା—3 To glitter, to glisten.

କାହିଁ ଚଳିବାର ଖେଳଦୀଡ଼ କରେ
କଳ୍ପ ପଗଦ୍ୱେ ଝଳେ ସୌରକରେ । ଭ୍ରଧାନାଥ, ନନ୍ଦକେଶୁରୀ ।

୪ । ପ୍ରବେଶ କରିବା—4. To enter into.

ଗଞ୍ଜାଇକ କର୍ଣ୍ଣ ଲଗି ଢାର ପୁଣି ଉଞ୍ଚାଇଲ ମନେ ଝଳ ।
କବିସୂର୍ଯ୍ୟ, ବଗୋପଗଡମ୍ଭ ଗ. ଗୀତ ।

୫ । ( ଦୁଇ ପଦାର୍ଥ ) ଏକତ୍ର ଅବିଭକ୍ତ ଭାବରେ ମିଶିବା; ସଂଲଗ୍ନ ହେବା; ଜଡ଼ିଯିବା—5. To be inextricably mixed together; to stick to.

କାହା କୁରୁସ କୁରୁଳୀ, କପୋଳେ ଯାଇଛ ଝଳ ।
ଗୋପୀକୃଷ୍ଣ, ରସକଲ୍ଲୋଳ ।

୬ । ଧାତୁଖଣ୍ଡଦ୍ୱୟ ଏକତ୍ର ସଂଯୁକ୍ତ ହେବା; ଝଳାହେବା—6. To be soldered to each other.

୭ । ଝରିବା; ବୋହିବା; ଝରିବା—7. To drop down; to fall down by drops; to drip.

କନସ୍ଥଳ-ପଙ୍କେ ଜ୍ୟୋତ୍ସ୍ନା ପଡେ ଝଳ । ଭ୍ରଧାନାଥ, ନନ୍ଦକେଶୁରୀ ।

୮ । ପ୍ରଭାସିତ ହେବା—9. To become manifest.

ଝଳ ଉଠୁ ସ୍ତଦେ ସ୍ତଦେ ,ବସ୍ତୁପ୍ରୀତି ଆଧାର । ଭିକାରୀ. ଗୀତଲହରୀ ।

**ଝଳୁ**—ପ୍ରାଦେ. (ସମ୍ବଲପୁର) ବି—ଏକ ସଙ୍ଗେ ୩ରୁ ଅଧିକ ହାଣ୍ଡି ବସିବା ପାଇଁ ପଖା ଥିବା ଚୁଲି—An oven on which
Jhaḷu more than 3 pots can be set at a time.

**ଝଳେଇ**—ଦେ. ବି—ଭଙ୍ଗା ଅଳଙ୍କାର ବା ବାସନକୁ ଝାଳିବା ମଜୁରି—
Jhaḷei Wages or cost for soldering an ornament or utensil.
ঝালাই
झलाइ

**ଝଲ୍ଲ**—ଦେ. ବି—୧ । ବ୍ରାତ୍ୟ (ସଂସ୍କାରହୀନ) କ୍ଷତ୍ରିୟ ଓ ସବର୍ଣ୍ଣା ସ୍ତ୍ରୀ ଔରସ
Jhalla ବର୍ଣ୍ଣସଙ୍କର ଜାତି ( ହ୍ର. ଶବ୍ଦସାଗର )—
1. A degraded caste amongst the Hindus.

୨ । ଭଣ୍ଡ; ବିଦୂଷକ ( ହ୍ର. ଶବ୍ଦସାଗର )—
2. A jester; buffoon.

୩ । ପଟହ ବାଦ୍ୟ ( ହ୍ର. ଶବ୍ଦସାଗର )—
3. A kind of drum.

୪ । ଜ୍ୱାଳା; ତେଜ ( ହ୍ର. ଶବ୍ଦସାଗର )—
4. Blaze; inflammation; glare.

୫ । ଯେଉଁ ବ୍ୟକ୍ତି ବାଡ଼ ଧରି ଲଢ଼େଇ କରେ—
5. A prize-fighter ( Apte ).

**ଝଲ୍ଲକ**—ସ. ବି. ( ଝଲ୍ଲ=ଅନୁକରଣ ଧ୍ୱନି+କୈ ଧାତୁ=ଶବ୍ଦ କରିବା +
Jhallaka କର୍ତ୍ତି. ଅ )—କଂସାର କରତାଳ, ଗିନି—
(ଝଲ୍ଲକ୍କ, ଝଲ୍ଲକୀ—ଅନ୍ୟରୂପ) Bell-metal cymbals.

**ଝଲ୍ଲକଣ୍ଠ**—ସ. ବି. ( ବହୁବ୍ରୀହି; ଝଲ୍ଲ=ଦୀପ୍ତି ଅଛି କଣ୍ଠରେ ଯାହାର )—
Jhalla-kanṭha ପାରା ( ହ୍ର. ଶବ୍ଦସାଗର)—Pigeon.

**ଝଲ୍ଲରୀ**—ସ. ବି. ସ୍ତ୍ରୀ. ( ଝଲ୍ଲ=ଅନୁକରଣ ଧ୍ୱନି + ରା ଧାତୁ ଗ୍ରହଣ କରିବା
Jhallarī + କର୍ତ୍ତି. ଅ; ସ୍ତ୍ରୀ. ଈ)—
ଝାଲରୀ } ଅନ୍ୟରୂପ ୧ । ବାଦ୍ୟବିଶେଷ; ନାଗରା—1. A kind of drum.
ଝଲ୍ଲିରୀ }

୨ । କୁଡୁକା—2. Bolt of a door.

୩ । କ୍ଳେଦ—3 Liquid filth; moisture (Apte).

୪ । ଶୁଦ୍ଧତା—4. Purity.

୫ । ଝାଞ୍ଜ ( ହ୍ର. ଶବ୍ଦସାଗର )—
5. Bellmetal cymbals.

୬ । ସ୍ୱେଦ ( ହ୍ର. ଶବ୍ଦସାଗର )—
6. Sweat; perspiration.

୭ । ମୁଦ୍‌ଗାକାର କେଶଗୁଚ୍ଛ—
7. A lock of hair; a curl.

**ଝଲ୍ଲିକା**—ସ. ବି. ( ଝଲ୍ଲ+ସ୍ୱାର୍ଥେ. କ+ଆ )—
Jhallikā ୧ । ଜ୍ୱାଳା; ଦୀପ୍ତି ( ହ୍ର. ଶବ୍ଦସାଗର )—
1. Blaze; glare.

୨ । ଗାତ୍ରମାର୍ଜନୀ; ଗାମୁଛା—2. Towel; napkin.

୩ । ଗାମୁଛାରେ ଦେହ ପୋଛିଲେ ଦେହରୁ ବାହାରିବା ମଳ ( ହ୍ର. ଶବ୍ଦସାଗର )—3. Dirt coming out of the body when rubbed with a towel.

୪ । ସୂର୍ଯ୍ୟ କିରଣର ତେଜ—
4. The blaze of sun's rays.

**ଝଷ୍** (ଧାତୁ)—ପ—୧ । ବଧ କରିବା—
Jhash (root) 1. To kill

୨ । ନେବା—2. To take (Apte).

୩ । ପିନ୍ଧିବା—3. To put on; to wear (Apte).

**ଝଷ**—ସ. ବି. ( ଝଷ୍ ଧାତୁ+କର୍ମ. ଅ )—
Jhasha ୧ । ମାଛ; ମତ୍ସ୍ୟ—1. Fish.

ଝଷମାନେ ଭହିଁରେ ହୋଇଣ ଅଛନ୍ତି । କୃଷ୍ଣସିଂହ, ମହାଭାରତ, ଅଦି ।

୨ । ଗ୍ରୀଷ୍ମ; ତାପ—2. Heat; warmth.

ସାଧାରଣ ଲୋକେ ଅପର ପୃଷ୍ଠାରେ ଲିଖିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୩ । ବନ—3. Forest.
୪ । ଜ୍ୟୋତିଷୋକ୍ତ ମୀନ ରାଶି—4. The zodiacal sign of Piscus.
୫ । ଜ୍ୟୋତିଷୋକ୍ତ ମକର ରାଶି—5. The zodiacal sign of Capricornus (Apte).
୬ । ମରୁଭୂମି—6. A desert (Apte).
୭ । ଭୟଙ୍କର ଅରଣ୍ୟ—7. A dreary forest (Apte).
୮ । ମକର; ମଗର ( ହି. ଶବ୍ଦସାଗର )—
8. The seal; a marine animal.

**ଝଷକେତନ**—ସଂ. ବି—( ବହୁବ୍ରୀହି; ଝଷ+କେତନ; ଏହାଙ୍କର ପତାକାରେ ମାଛର ରୂପ ଅଙ୍କିତ ଥିବାରୁ )—
Jhasha-ketana
ଝଷକେତୁ, ଝଷାଙ୍କ, ଝଷାଙ୍କ } ଅନ୍ୟରୂପ
କନ୍ଦର୍ପ; ମଦନ; କାମଦେବ—The God Cupid (of the Hindus).
ଝଷକେତନର ଏ ବସ ଦାଉ—ଗୋଲୋକ, ଇନ୍ଦୁରେଖା ।

**ଝଷଧ୍ୱଜ**—ସଂ. ବି—ଝଷକେତନ (ଦେଖ)
Jhasha-dhwaja Jhasha-ketana (See)
ଝଷଧ୍ୱଜ ପୀଡ଼ା ଖାଣ୍ଡି ଭାବରୁ । କବିସୂର୍ଯ୍ୟ, କଣୋସ ରାମ୍ଭ, ୫. ଗୀତ ।

**ଝଷନିକେତ**—ସଂ. ବି. (୬ଷ୍ଠୀ ତତ୍; ଝଷ+ନିକେତ)—୧ । ଜଳାଶୟ—
Jhashaniketa 1. Tank; pond.

**ଝଷଶ୍ରେଷ୍ଠ**—ସଂ. ବି (୭ମୀ ତତ୍; ଝଷ+ଶ୍ରେଷ୍ଠ)—ରୋହି ମାଛ—
Jhasha-śreshṭha The Labio Rohita fish.
(ଅନ୍ୟ ସ. ନାମ—ରକ୍ତୋଦର, ରକ୍ତମୁଖ, ରକ୍ତବସ୍ତ, ରକ୍ତପକ୍ଷତି, କୃଷ୍ଣପକ୍ଷ, ରୋହିତ—ଦ୍ରବ୍ୟଗୁଣ)

**ଝଷା**—ସଂ. ବି. ( ଝଷ ଧାତୁ+କର୍ମ. ଅ+ଆ)—
Jhashā ନାଗବଲା (ହି. ଶବ୍ଦସାଗର) (ଦେଖ)
Nāgabaḻā (See)

**ଝଷୋଦରୀ**—ସଂ. ବି. ସ୍ତ୍ରୀ. (ନାମ)—ମତ୍ସ୍ୟଗନ୍ଧା; ବ୍ୟାସଦେବଙ୍କ ମାତା—
Jhashodarī An epithet or name of sage Byāsa's mother.

**ଝସା(ସେ)ଇ ପଶିବା**—ଦେ. କି (ସଂ. ଧର୍ଷଣ+ପ୍ରବେଶ)—
Jhasā(se)i pasibā ୧ । କୌଣସି ସ୍ଥାନରେ ବଳପୂର୍ବକ ପ୍ରବେଶ କରିବା—1. To enter a place forcibly.
**ଘୁସ୍ ଯେ ଢୁକ୍ନା**
**ଘଁସନା, ଝିକନା**
(ଝସି ପଶିବା—ଅନ୍ୟରୂପ) ସମୁଦ୍ର ବଳେ ଯାଇ ପଶିଲେ ଝସାଇ ।
କୃଷ୍ଣସିଂହ, ମହାଭାରତ ବନ ।
୨ । ବହୁଲୋକଙ୍କୁ ଠେଲି ପେଲି କୌଣସି ସ୍ଥାନକୁ ଯିବା—
2. To force one's way to a place.
ଶାଲ୍ୱ ସୈନ୍ୟ ଭିତରେ ଝସାଇ ପଶିଲେ । କୃଷ୍ଣସିଂହ, ମହାଭାରତ ବନ ।
୩ । ଦ୍ରୁତଗତିରେ କୌଣସି ସ୍ଥାନକୁ ଯିବା—
3. To go to a place swiftly.
ସେ ଜଳ ଭିତରେ ପଶିଗ ଝସାଇ । କୃଷ୍ଣସିଂହ, ମହାଭାରତ ଅଦି ।
୪ । ଝସିବା (ଦେଖ)
4. Jhasibā (See)

**ଝସା(ସେ)ଇବା**—ଦେ. କି. (ସଂ. ଧର୍ଷଣ; ଧ୍ୱଂସ)—ବଳପ୍ରୟୋଗ କରିବା—
Jhasā(se)ibā To use force.
[ ଦ୍ର—କେବଳ ଝସାଇ ପଶିବା ଓ ଝସାଇ ଆସିବା ଶବ୍ଦରେ ଏ କ୍ରିୟାର ଅସମାପିକାରୂପର ବ୍ୟବହାର ଦେଖାଯାଏ । ]

**ଝାଆଁ ଝାଆଁ**—ଦେ. ଅ—ଝାଇଁ ଝାଇଁ (ଦେଖ)
Jhā-āñ jhā-āñ Jhāiñ jhāiñ (See)

**ଝାଆଁରା**—ଦେ. ବି. (ସଂ. ଝାବୁକ)—ନଦୀଗର୍ଭସ୍ଥ ବାଲି ଓ ପଥରସନ୍ଧିରେ
Jhā-āñrā ଉଠିବା ଏକପ୍ରକାର କ୍ଷୁପ ବା ବୁଦାଳିଆ ଗୁଳ୍ମ—
A kind of bushy plant growing in riverbeds and the crevices of stones.
[ ଦ୍ର—ଏହା ଲମ୍ବରେ ୧।୨ ହାତ ବଢ଼େ ଓ ଏହାର ଡାଳଗୁଡ଼ିକୁ ଚାଷ ଲୋକେ ଲଇ କରନ୍ତି । କଟକ ନିକଟ ନରାଜ ପଥରବନ୍ଧ ତଳେ ଓ ମହାନଦୀର ପ୍ରସ୍ତରଶଯ୍ୟା ଓ ବୃଷମମାନଙ୍କ ପଥର ସନ୍ଧିରେ ଏ ଗଛ ଅନେକ ଉଠେ । ]

**ଝାଇ**—ଦେ. କ୍ରି— ଗୁଡ଼ରେ ପାଗ କରିବା—
Jhāi To prepare syrup by over-heating molasses.

**ଝାଇଁ**—ଦେ. ବି. (ସଂ. ଧ୍ମା ଧାତୁ=ଅଗ୍ନି ସଂଯୋଗ କରିବା)—
Jhāiñ ୧ । ତୀବ୍ର ଗ୍ରୀଷ୍ମ; ଗରମି—1. Excessive heat.
୨ । ଗ୍ରୀଷ୍ମକାଳ—2. Summer.
ଦେ. ଅ—୧ । ଝାଇଁଝାଇଁ; ଝୋଲମାରିବା—
**ଝାଁ** 1. Fainting; faint; swoon.
**ଝାଁଯଁ** ୨ । ଉପର୍ଯ୍ୟୁପରି ଧାତୁ ଆଦିର ଆଘାତ ଜନିତ ଶବ୍ଦ (ଯଥା; ଦୁଇ ଧାତୁପାତ୍ର ବାଜିବା, ଘଣ୍ଟା ବାଜିବା, ହାଣ୍ଡିରେ ଚାଉଳ ଭାଜିବା)—
2. Tinkling; clanking sound.
ଗୁରୁଳ ଗୁରୁଳ ଝାଇଁ—କେଳା ଗୀତ ।
୩ । ଉତ୍ତପ୍ତ—3. Heated; warm.
୪ । ଅତ୍ୟଧିକରୂପେ ଭଜା ହୋଇଥିବା—
4. Roasted over much.
୫ । ତାପାଧିକ୍ୟରେ ପୋଡ଼ି ଯାଇଥିବା—
5. Burnt; calcined.
୬ । ଗ୍ରୀଷ୍ମକାଳରେ ଉତ୍ପନ୍ନ (ଯଥା—ଝାଇଁମୁଗ)—
6. Produced or harvested in summer.
ପ୍ରାଦେ. (ସମ୍ବଲପୁର) କି. ବିଣ—ଝାଏଁ (ଦେଖ)
Jhāeñ (See)
ପ୍ରାଦେ. (ଗଡ଼ଜାତ) ବି— ଝାଇଁମୀନ (ଦେଖ)
Jhāiñ-mina (See)

**ଝାଇଁକରି**—ଦେ. କି. ବିଣ. (ସଂ. ଝଟିତି; ଜମ୍ପା ଧ୍ୱନ୍ୟନୁକରଣ)—
Jhāiñ kari ଝଟ୍—Very soon; immediately; at once.
**ଝାଁକରେ**
**ଝଟପଟ**

| ୧ | ଇ | ଜ୍ | ର୍,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ତ | ଉଅ | ଲ୍ଲ |
|---|---|---|---|---|---|---|---|---|---|---|---|---|---|---|
| ' | ଈ | ଊ | ରୁ | ଲ୍ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ତୁ |

ଝାଇଁକନା
ଝାଇକବ
ଝାଇଡର } ଅନ୍ୟରୂପ
ଝାଇଁଦସ୍
ଝାଇଁଧସ୍

**ଝାଇଁକ ଝାଇଁ**—ଦେ. ଅ—ଘଣ୍ଟାକୁ ପିଟିବାର ତାଲ ବା ଉକ୍ତି—
Jhaiñki jhaiñ Part of the rhythmic formula pronounced while beating a gong.
[ଦ୍ର—ଝାଇଁକ ଝାଇଁ, ଝାଇଁକ କଝାଇଁ ଝାଇଁକ ଝାଇଁ; ଝାଇଁ-ଝାଇଁକର ଝାଇଁକ ଝାଇଁ—ଏହା ଘଣ୍ଟ ପିଟିବାର ପୂର୍ଣ୍ଣ ଉକ୍ତି ଅଟେ ।]

**ଝାଇଁଝାଇଁ**—ଦେ. ଅ. (ଧ୍ୱନ୍ୟନୁକରଣ ବା ସଂ. ଝଙ୍କାର)—
Jhaiñ-jhaiñ ୧ । ଉପର୍ଯ୍ୟୁପରି ଝାଣ ପଦାର୍ଥଦ୍ୱୟର ଆଘାତଜନିତ ଝାଈଝାଈଁ ଶବ୍ଦ—1 Sound of repeated tinkling or झायँझायँ clanking; repeated clanging sound.
(ଯଥା—ଘଣ୍ଟ ବାଜିବାର, ଶୃଙ୍ଖଳ ଭାଙ୍ଗିବାର, ଝାଞ୍ଜବାଜିବାର ଶବ୍ଦ ।)
୨ । ଝିଙ୍କାରିମାନଙ୍କର ରାବିବା ଶବ୍ଦ—
2. The chirping of crickets.
ଝାଇଁ ଝାଇଁ ସ୍ୱନେ ଡାକେ ଝିଙ୍କାରୀ ।
ସୀମାନ୍ତରେ ଦାବାନଳ ସଞ୍ଚରି । ଗୋଲୋକ. ଇନ୍ଦୁରେଖା ।
୩ । ନିଶା ଗର୍ଜିବାର ଶବ୍ଦ—3. The deep distant sound observed at dead of night.
ସୁଗଭୀର ନିଶିଥିନୀ ଝାଇଁ ଝାଇଁ ରବେ ।
ରାଧାନାଥ. ଶ୍ମଶାନ ଦୃଶ୍ୟ ।
୪ । ଝିମି ଝିମି; ଝୋଲା ମାରିବାର ଅନୁଭୂତି—
4. Tingling sensation; a sensation of fainting.
(ଯଥା—ମୋ ଦେହ ଝାଇଁ ଝାଇଁ ହଉଛି ।)
୫ । ଭାଁ ଭାଁ; କାନରେ ଉପର୍ଯ୍ୟୁପରି ଗର୍ଜନାଦି ବାଜିବା ଅନୁଭୂତି—5. A feeling of tinkling inside the ear.
(ଯଥା—କାନ ଝାଇଁ ଝାଇଁ ହେଲା ।)

**ଝାଇଁ ଝାଇଁ ହେବା**—ଦେ. କ୍ରି.—(ଧ୍ୱନ୍ୟନୁକରଣ; ବା ଝଙ୍କାର)—
Jhaiñ jhaiñ heba ୧ । ଶରୀରର କୌଣସି ଅଙ୍ଗ ବହୁକାଳ ଝାଈଝାଈଁ କରା ଏକ ଅବସ୍ଥାରେ ରହି ଅବଶ ହୋଇ ଥିବା ଅବସ୍ଥାରେ ତାହାକୁ ସ୍ଥାନଭ୍ରଷ୍ଟ କରିବା ସମୟରେ ଝିମି- झनझन होना ଝିମି ଅନୁରୂପ ଅନୁଭୂତି; ଝିମିଝିମି ହେବା—
1. Tingling sensation due to moving a limb already benumbed by being kept in one fixed position for a long time.
୨ । କାନମୂଳରେ ଜୋରରେ ଗୋଇଠା ବାଜିଲେ କିମ୍ବା ଦେହର କୌଣସି ଗଣ୍ଠିରେ ହଠାତ୍ ଠୋକର ଲାଗିଲେ ମସ୍ତିଷ୍କରେ ଯେଉଁ ଝିମି ଝିମି ଅନୁଭୂତ ହୁଏ—
2. A tingling or twanging sensation felt in the brain when the root of the ear or any other limb-joint is suddenly struck with force.
୩ । କାନର ଛିଦ୍ରରେ ବହୁକାଳ ତେଲ ନ ପକାଇଲେ କାନ ମଧ୍ୟରେ ଯେଉଁ ଝିମି ଝିମି ଅନୁଭୂତ ହୁଏ—3. A sensation of reverberating felt inside the ear when oil is not put into the ear-hole for a long time.
୪ । ଘଣ୍ଟା ବା ଝାଞ୍ଜର ଘୋରତର ଶବ୍ଦ ବହୁକାଳ ପର୍ଯ୍ୟନ୍ତ ଶୁଣିଲେ କାନ ଭିତରେ ଜଣାଯିବା ଏକ ପ୍ରକାର ଅପ୍ରୀତିକର ଭାଁ ଭାଁ ଅନୁଭୂତି—4. Unpleasant sensation felt in the ear produced by hearing a continuous shrill sound for long time.
୫ । ହାଣ୍ଡିରେ ଚାଉଳ ବା ମୁଗ ଆଦି ଭାଜିବା ସମୟର ରଜାଉଜ ଖଡ଼ିକାଦ୍ୱାରା ଉକ୍ତ ଚାଉଳ ଆଦିକୁ ଲେଉଟା ପାଉଟା କରିବା ବା ଖରଡ଼ିବା ସମୟରେ ହେବା ଶବ୍ଦ—
5. Metallic sound produced while stirring rice etc with the frying stick in a pot over the fire.
୬ । ଫଟା ଘଣ୍ଟ ବା ଝାଞ୍ଜ ବାଜିବାର ବହୁକାଳସ୍ଥାୟୀ ଶବ୍ଦ ବା ଧ୍ୱନି—6. A long lingering tingling sound produced with the cymbals or by striking a broken gong; long din of metallic instruments.
୭ । ଖରା ଦ୍ୱାରା ଶସ୍ୟ ଆଦି (ଯଥା—ମୁଗ) ଉତ୍ତମରୂପେ ଶୁଖି ଯିବା—7. Grains completely drying through heat.
(ଯଥା—ଗମର ମୁଗ ଡାଲି ବୈଶାଖ ମାସ ଖରାରେ ଝାଇଁଝାଇଁ ହୋଇ ଶୁଖି ଗଲାଣି ।)
[ଦ୍ର—ଝିମଝିମ ଶବ୍ଦ—ଅଳ୍ପକାଳସ୍ଥାୟୀ,
ଝାଇଁଝାଇଁ ଶବ୍ଦ—ଅଧିକକାଳ ସ୍ଥାୟୀ ଓ ଉଚ୍ଚତର ।]

**ଝାଇଁପଖାଳ**—ଦେ. ବି.—(ସଂ. ଧ୍ମା ଧାତୁ; + ପ୍ରକ୍ଷାଳତାନ୍ନ)—ଗରମ
Jhaiñ pakhala ପଖାଳ; ତତଲ ଭାତ ତାତି ଥିବା ଅବସ୍ଥାରେ ତହିଁରେ ପାଣି ଦେଲେ ଯେଉଁ ପଖାଳ ହୁଏ; ଗୁଇଁପଖାଳ; ଟଟକା ସଜ ପଖାଳ—Boiled rice soaked with water while still warm.

**ଝାଇଁପାଣି**—ଦେ. ବି.—(ସଂ. ଧ୍ମା ଧାତୁ + ପାନୀୟ)—ଯେଉଁ ପାଣିକୁ
Jhaiñ-pani ଅଗ୍ନି ଉତ୍ତାପରେ ଗରମ ନ କରି ତହିଁ ମଧ୍ୟରେ ତାତିଲା ଲୁହା ଖଣ୍ଡିକା ଆଦି ମାଡ଼ି ଗରମ କରାଯାଏ—
Water made warm by immersing a red-hot iron in it.
[ଦ୍ର—ଏହା ରୋଗୀର ପାନୀୟ ।]

ସାଧାରଣ ଲୋକେ ଅପର ପୃଷ୍ଠାରେ ଦଉର ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥାକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବଢ' ନ ପାଇଲେ 'ଅଲ୍ପବଢ଼' ଦେଖିବେ

**ଝାଇଁ ମାରିବା**—ଦେ. ବି.—୧ । ବହୁକାଳ ଏକ ଅବସ୍ଥାରେ ଅବସ୍ଥାନ Jhāiñ māribā କରିବା ଯୋଗୁଁ ଅବଶ ହୋଇ ଥିବା ଶରୀରର କୌଣସି ଅଙ୍ଗକୁ ସ୍ଥାନାନ୍ତର କଲେ ବା ଘଷିଲେ ଯେଉଁ ଝିମି ଝିମି ଅନୁଭୂତ ହୁଏ—1. Tingling sensation felt while moving a benumbed limb.

୨ । ଝୋଲା ମାରିବା—2. Swooning; feeling of physical drooping; fainting.

**ଝାଇଁ ମୀନ**—ପ୍ରାଦେ. (ଗଡ଼ଜାତ) —ବି.—ଅତି ଛୋଟ ମାଛ—
Jhāiñ mīna Very small fish; fry

**ଝାଇଁ ମୁଗ**—ଦେ. ବି.—ଗ୍ରୀଷ୍ମକାଳରେ ଅମଳ ହେବା ଏକ ପ୍ରକାର ମୁଗ; Jhāiñ muga ଧଳା ମୁଗ—A greenish white variety हालिमुग of moong (cereal) harvested in **हरी मुग** summer; Phaseplus Typica.
(ଯଥା—ଏହାର ବର୍ଣ୍ଣ ଈଷତ୍ ହରିତ୍ ବା ଶାବଳା ।)

**ଝାଉ**—ଦେ. ବି.—ଝାଉଁ (ଦେଖ)
Jhāu Jhāuñ (See)

**ଝାଉଁ**—ଦେ. ବି [ ସଂ. ଝାବକ (Kirtikar); ତୁଲ. ଝାବୁକ=ଅନ୍ୟ Jhāuñ ପ୍ରକାର ଗଛ ]—୧ । ସରୁ ତାର ଭଳି ପତ୍ରବିଶିଷ୍ଟ ଗଛ; ସଂ. ନାମ—ଝାବକ, ପିଚୁକ, ବିଲାତି ଝାଉଁ—1. Casuarina ଅଫଲ, ବହୁଗ୍ରନ୍ଥି Muricata; Casuarina बिलाति झाम; झाम; झाउ Equisetifolia; tamarisk **झाउ; जङ्गलि झाउँ** (Kirtikar).
ତେ. ଇରୁସାରୁମାନୁ [ ଦ୍ର—ଏହା ଅଷ୍ଟ୍ରେଲିୟାରୁ ଆଣୀତ ଗଛ, ଉଚ୍ଚରେ ୪୦।୫୦ ହାତ ବଢ଼େ । ଏହାର ଡାଳଗୁଡ଼ିକ ଲମ୍ବ ଓ ସରୁ ତାରପରି; ଫଳ ଛୋଟ ଓ କଣ୍ଟାଳିଆ; ଏହା ସମୁଦ୍ରକୂଳରେ ଓ ବାଲିରେ ବେଶି ଜନ୍ମେ; ପବନରେ ଏହାର ପତ୍ରଗୁଡ଼ିକ ଝାଇଁ-ଝାଇଁ ବା ସାଇଁ ସାଇଁ ଶବ୍ଦ କରେ । ୧୦ ବର୍ଷରେ ଏଥିର ଗଣ୍ଡିରୁ ଭଲ ଟାଣୁଆ କଡ଼ୀ ଓ ଜାଳିବାର ଉପଯୋଗୀ ଶକ୍ତ କାଠ ମିଳେ; ଏହାର ଫଳ ଗୋଖୁରା ଫଳପରି ଓ ଫୁଲ ଗୋଲାପୀ ରଙ୍ଗର; ଏହାର କାଠ ଗଣ୍ଠିଗଣ୍ଠିଆ; ଏହାର ଡାଳ ଖୁବ୍ ଚେମଡ଼ା ।

୨ । ( ସଂ. ଝାବୁକ ) ଧଳା ଘୋଡ଼ାଲୁଣ୍ଡିଆ; ଏକଜାତୀୟ ବନ୍ୟ बनझाउ କ୍ଷୁପ ବା ଗୁଳ୍ମ—Tamarix Gallica.
[ ଦ୍ର—ଏହା ଉଚ୍ଚରେ ୪।୫ ହାତ ବଢ଼େ, ନଦୀକୂଳରେ ଓ ବାଲିଚରରେ ଏକତ୍ର ବହୁତ ଗଛ ଜନ୍ମେ; ଡାଳ ବା ଦଣ୍ଡଗୁଡ଼ିକ ବଡ଼ ଝାଉଁଗଛର ଡାଳପରି ଡାଳମାନ ପବନରେ ଝାଇଁ ଝାଇଁ ବା ସାଇଁ ସାଇଁ ଶବ୍ଦ କରେ । ଫଳ ଛକୋଣିଆ ଓ ଛୋଟ । ଏହାର ଗଣ୍ଡି ବା ଦଣ୍ଡ ଗଢ଼ୀର ରକ୍ତବର୍ଣ୍ଣ । ଏହା ଘୋଡ଼ାଲୁଣ୍ଡିପରି ସରୁ ଚେମଡ଼ା ହୋଇଥିବାରୁ ଏହାକୁ 'ଘୋଡ଼ାଲୁଣ୍ଡିଆ' ମଧ୍ୟ କହନ୍ତି । ]

୩ । ନାଲି ଘୋଡ଼ାଲୁଣ୍ଡିଆ; ନାଲିଝାଉଁ—
लालझाउ 3. Tamaria Dioica.

[ ଦ୍ର—ଏହାର ପତ୍ରର ଖୋଲ ଅଛି । ମାଛ ଓ ଅଣ୍ଡିରି ଗଛ ସ୍ୱଳ୍ପ । ]

**ଝାଉଁ କରି**—ଦେ. ଅ—ଝାଉଁକିନି ( ଦେଖ )—
Jhāuñ kari Jhāuñkini ( See )
ଝାଉଁକରି, ଝାଉଁକିନା, ଝାଉଁ କିନି, ଝାଉଁଦିସ୍—ଅନ୍ୟରୂପ)

**ଝାଉଁ-ଝାଉଁ**—ଦେ. ଅ (ଧ୍ୱନ୍ୟନୁକରଣ)—ଝାଞ୍ଜ ଓ ଘଣ୍ଟାଆଦିର ଝଣଝଣ Jhāuñ-jhāuñ ଶବ୍ଦ—High sound of repeated tinkझाइँझाइँ ling of cymbals and gongs.

**ଝାଉଁ ନଡ଼ିଆ**—ପ୍ରାଦେ. (ମେଦିନୀପୁର) ବି—ଶୁଖୁଆ—
Jhāuñ nardiā Dry cocoanut.

**ଝାଉଁଲା**—ଦେ. ବି—(ସଂ. ଶ୍ୟାମଲ)—୧ । ନେତ୍ରରୋଗବିଶେଷ—
Jhāuñlā 1. A disease of the eye.
झान [ ଦ୍ର—ଏଥିରେ ଆଖି ଉପରେ ଆଖିପତା ଘୋଡ଼ାଇ **झाँवर** ହୋଇ ପଡ଼େ । ]

୨ । ଝାଉଁଲିଯିବା; ମଉଳିଯିବା—2. Withering.
ଦେ. ବିଣ—ମଉଳି ଯାଇଥିବା—Withered.

**ଝାଉଁଲା(ଲେ)ଇବା**—ଦେ. କ୍ରି—ଝାଉଁଲିବାର ଣିଜନ୍ତ ରୂପ—
Jhāuñlā(le)ibā Causative of Jhāuñlibā.
झान खाओआन ମଉଳାଇବା; ଶୁଖାଇବା—To cause to wither.
**झवराना** ଝାଉଁଲାଇ ତା ମୁଖସାରସ ଛଣେ—ଗୋଲୋକ. ଇନ୍ଦୁରେଖା ।

**ଝାଉଁଲିବା**—ଦେ. କ୍ରି ( ସଂ. ଶ୍ୟାମଲ, ହିନ୍ଦୀ ସଂ. ଧ୍ମା ଧାତୁ=ଅଗ୍ନି-Jhāuñlibā ସଂଯୋଜନ)—୧ । ବୃକ୍ଷଆଦି ଖରାରେ ବା ଶୁଖିକରି झान खाओआ ନିସ୍ତେଜ ହେବା ବା ମଉଳିବା—1. To droop; **झवरना** to wither (said of plants).
ଝାଉଁଲିବ ନବ ତମାଳରମା—କବିସୂର୍ଯ୍ୟ. କଶୋଗ୍ନି ଚମ୍ପୂ. ୯ ଗୀତ ।

୨ । ନିସ୍ତେଜ ହେବା—
2. To wane; to fade; to languish.
ବାସି ଫୁଲ ଯାଉଛ ମଉଳି,
ବଣାଦେ କ ପଡୁଛ ଝାଉଁଳି । ନନ୍ଦକିଶୋର. ନିର୍ଝରିଣୀ ।

୩ । (ମୁହଁ) ଲଜ୍ଜା ବା ଭୟରେ ଶୁଖି ଯିବା—
3. (the face) To become pale or wan through fear or shame.
ମୃଦୁ ଶ୍ୟାମଳ ଗୋରା, ଝାଉଁଳ ଗଲେ ପରା, ହରପରଶରଜ୍ୱର ଭୂଷାରେ ।
କବିସୂର୍ଯ୍ୟ ସଙ୍ଗୀତ ।

୪ । ଲଜ୍ଜାରେ (ମୁଣ୍ଡ) ତଳକୁ ପୋତି ହେବା—
4. To droop; to be crestfallen.
ଦେ. ବିଣ.—ମଉଳି ଥିବା; ନିସ୍ତେଜ ହୋଇଥିବା—
Turned pale; withered.
ଖର ଖୁର ଝାଉଁଳିବା ଶ୍ରୀଅଙ୍ଗ ପାଇଲୁ ରୋ
କବିସୂର୍ଯ୍ୟ କଶୋଗ୍ନିଚମ୍ପୂ. ଖ. ଗୀତ ।

**ଝାଏଁ**—ପ୍ରାଦେ. (ସମ୍ବଲପୁର) ବି.—ଝୋଲା ମାରିବା—
Jhāeñ Feeling of drooping; swooning.
ପ୍ରାଦେ (ସମ୍ବଲପୁର) କ୍ରି. ବିଣ (ସଂ. ଝଟିତି)—ଝଟିତି; ଝଟ୍—
Soon; very soon.

| ୧ | ଇ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଋପ୍ତ | ତ୍ଥ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଋଥ | ଞ୍ଜ | ନ୍ |

ଝାଏଁ କରି—ପ୍ରାଦେ. (ସମ୍ବଲପୁର) କ୍ରି. ବିଣ.—ଝଟ୍‌କରି; ତତ୍‌କ୍ଷଣେ—
Jhāeñ kari Very soon; immediately; at once.
(ଝାଏଁ କଲା—ଅନ୍ୟରୂପ)

ଝାଏଁଜ୍—ପ୍ରାଦେ. (ସମ୍ବଲପୁର) ବି.—(ସଂ. ଝର୍ଝରୀ)—୧ । ଝାଞ୍ଜ—
Jhāeñj 1. Cymbals.
୨ । (ସଂ. ଧ୍ମା ଧାତୁ=ଅଗ୍ନି ସଂଯୋଜନ) ଝାଞ୍ଜି; ଖରା—
2. The blaze of sun's rays.
୩ । ତାତି—3. Warmth; heat.
୪ । ଅଂଶୁ; କିରଣ—4. Ray.
୫ । ଅଗ୍ନି ବା ଖରାର ତେଜ—
5. Warmth or glare of sun's rays or fire.
[ଦ୍ର—ତୁଳନା କର ସମ୍ବଲପୁରୀ—ନଏର୍=ନଈ; ବାଏର୍=ବାଇ, ଖଏନ୍=ଖଣି, ପାଏନ୍=ପାଣି ।]

ଝାଏଁନେ—ପ୍ରାଦେ. (ସମ୍ବଲପୁର) କ୍ରି. ବିଣ. (ସଂ. ଝଟିତି)—ଝଟ୍; ଶୀଘ୍ର,
Jhāeñ ne ଅତି ଚଞ୍ଚଳ—Very soon; swiftly; at once.
(ଝାଏ ନେ—ଅନ୍ୟରୂପ)

ଝାଏଁ ମାରିବା—ପ୍ରାଦେ. (ସମ୍ବଲପୁର) ବି.—ଝୋଲ୍ଲମାରିବା—
Jhāeñ māribā Swooning; physical drooping down.

ଝାଁ ଝାଁ—ଦେ. ଅ.—ଝାଇଁ ଝାଇଁ (ଦେଖ)
Jhāñ-jhāñ Jhāiñ jhāiñ (See)
ତାର ପବନରେ ଦେହରେ ଝାଁ ଝାଁ ବାଜୁ ଥିଲ ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

ଝାଁଟି—ପ୍ରାଦେ. (ସମ୍ବଲପୁର) ବି.—ଛୋଟ ଛୋଟ ଡାଳ; ଗଛର ଶୁଖିଲା
Jhāñṭi ଛୋଟ ଡାଳ ଆଦି; ଝାଟି—A collection of twigs and small branches.

ଝାଁଙ୍କ—ଦେ. ବି.—(ସଂ. ଝଙ୍କାର)—୧ । ମତ୍ତତା; କଳି ବା
Jhāṅka କ୍ରୋଧର ବେଗ—1. A fit of madness or rage or quarrelling; paroxysm.
ଝୋଙ୍କ
झोक (ଯଥା—ମୁଁ ତାଙ୍କ ସଙ୍ଗେ ଝାଙ୍କେ କଳି କଲି ।)
ଝାଁକା ୨ । (ସଂ. ଜାଲକ) ଝାଙ୍କା ବା ବଡ଼ ଟୋକେଇ—
झाका 2. A large basket.
ଝାଁକ ୩ । (ସଂ. ଯୂଥ) କ୍ଷୁଦ୍ର ଜୀବମାନଙ୍କର ପଙ୍କ୍ତି ବା ଦଳ ବା
झुंड ସମୂହ—3. A multitude or swarm of small animals; a crowd.
ଝାକୀ
झाँका ୪ । ଢାଲ—4. Shield.
୫ । ଘୂର୍ଣ୍ଣନ—5. Whirling.
୬ । ଝିଙ୍କା—6 Jerk; vigorous pull; tug.

ଝାଙ୍କ ଛଡ଼ା(ଡ଼େ)ଇବା—ଦେ କ୍ରି.—୧ । କୌଣସି ବ୍ୟକ୍ତିଙ୍କୁ ଅତିରିକ୍ତ
Jhāṅka chhardā(rde)ibā ପରିଶ୍ରମ କରାଇ ଅଥାନ୍ତ
[ଝାଙ୍କ ଛଡ଼ା (ଣ୍ଡେଇବା)—ଅନ୍ୟରୂପ] କରାଇବା—1. To pester; to bother; to overpower a person with labour.
୨ । କଳି ଆଦିର ବେଗ ଉଠାଇବା—
2. To have a paroxysm (of quarrel etc.)

ଝାଙ୍କ ଛିଡ଼ିଯିବା—ଦେ. ବି.—ଦୁଇଜଣଙ୍କ ମଧ୍ୟରେ କଳି ବା ବାଗ୍‌-
Jhāṅka chhirdi jibā ଯୁଦ୍ଧର ବେଗ ଉଠି ନବର୍ତ୍ତିବା ବା
ଝାଙ୍କ ଛାଡ଼ିବା } —ଅନ୍ୟରୂପ ଉଭୟେ କ୍ଲାନ୍ତ ହେବା—
ଝାଙ୍କ ଛାଡ଼ି ଯିବା Being tired after a
ଝାଙ୍କ ଛୁଡ଼ିବା fit of quarreling.
(ଯଥା—ତାର ମୋର କଳିରେ ଝାଙ୍କ ଛିଡ଼ି ଗଲା ।)

ଝାଙ୍କଡ଼ା—ଦେ. ବିଣ (ସଂ. ଝାଟ)—ଛତରା; ଅଗ୍ରଭାଗ ବିସ୍ତୃତ; ଝାମ୍ପୁଡ଼ା—
Jhāṅkarḍā Bushy; shaggy; spreading,
ঝাঁকড়া
झंखाड़; झाँकर

ଝାଙ୍କ ବାନ୍ଧିବା—ଦେ. କ୍ରି—ଦଳଭୁକ୍ତ ହୋଇ ରହିବା, ପଙ୍କ୍ତି ବାନ୍ଧିବା—
Jhāṅka bāndhibā To swarm into a crowd; to flock together.
ঝাঁক বাঁধা
झुंडमे रहना

ଝାଙ୍କର୍—ପ୍ରାଦେ (ସମ୍ବଲପୁର) ବି—୧ । ଅନାର୍ଯ୍ୟ ଜାତିବିଶେଷ—
Jhāṅkar 1. A non-Ariyan caste in Sambalpur.
[ ଦ୍ର—ଏମାନେ ଗ୍ରାମଦେବତାଙ୍କ ପୂଜାକାରୀ କାମ କରନ୍ତି ଓ ଗ୍ରାମ ଚଉକିଦାର କାର୍ଯ୍ୟ କରନ୍ତି । ]
୨ । ଗ୍ରାମର ଚଉକିଦାର—2. Village-watchman.
[ ଦ୍ର—ଏମାନଙ୍କୁ ଦିଆ ଯାଇଥିବା ଜାଗିରିକୁ ଝାଙ୍କର ଜାଗିର ବୋଲାଯାଏ । ]

ଝାଙ୍କରା—ଦେ. ବିଣ—ଝାଙ୍କଡ଼ା (ଦେଖ)
Jhāṅkarā Jhāṅkarḍā (See).

ଝାଙ୍କିବା—ଦେ. କ୍ରି (ସଂ. ଅଧ୍ୟକ୍ଷ; ପ୍ରା. ଅଜ୍ଝକ=ଆଖିର ସମ୍ମୁଖରେ)—
Jhāṅkibā ୧ । ଲୁଚିକରି ଚାହିଁବା ଓ
ঝাঁকা ଚାହିଁକରି ଲୁଚିବା—1. To look from a covert.
झाँकना
ଝାଙ୍କି ନୟନକୁ ଦେଇ ଅୟନକୁ ଗତିବନ୍ତ ପୁଣପୁଣି ।
ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।
୨ । ଝାଙ୍କି ମାରିବା; ଭୁଙ୍କି କରି କୌଣସି ଉଚ୍ଚ ସ୍ଥାନର ଅନ୍ତରାଳରୁ ମୁଣ୍ଡ ଟେକି ଚାହିଁବା—
2. To peep across a high barrier.
ଠାବେ ଠାବେ ଅକ୍ରୁଣ୍ଣ ସ୍ୱର୍ଣ୍ଣକାନ୍ତ
ଶିର ତୋଳ ଶୈଳଶିଙ୍ଗ ଝାଙ୍କୁଥାନ୍ତ—ରାଧାନାଥ. ଚିଲିକା ।
୩ । (ସଂ. ଝମ୍ପ) ଇତସ୍ତତଃ ବା ତଳକୁ ଟାଣିବା; ଆକର୍ଷଣ କରିବା; ଜୋରରେ ଝିଙ୍କିବା; ବେଗରେ କମ୍ପିତ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷ୍ୟ' ନ ମିଳିଲେ 'କ୍ଷ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଣ୍ଣୋ' ନ ପାଇଲେ 'ଅର୍ଣ୍ଣ' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

ଟାଣିବା—3. To pull down; to tug; to draw with force; to jerk.

ଝାଙ୍କିନେଇ ମନ-ମଣିକି ଯା ସ୍ତନ-ସମ୍ପୁଟରେ ରଖାଇଲୁ । —କବିସୂର୍ଯ୍ୟ. ସଙ୍ଗୀତ ।

୪ । (ନିଦ୍ରା ଓ ନିଶା ଆଦି) ଆକ୍ରମଣ କରି ଅବନତ କରିବା; ଢୁଳାଇବା; ଅଚେତନ କରିବା—4. To cause one to totter; to overpower one (said of sleep or intoxication).

୬ । ଘୂରାଇବା—6. To whirl.

୭ । ଝାମ୍ପିବା—7. To swoop (Howells).

୮ । ଦୋହୋଲାଇବା; ଜୋରରେ ହଲାଇବା—8. To give a violent shaking.

**ଝାଙ୍କି ମାରିବା**—ଦେ. କ୍ରି—୧ । ଲୁଚିକରି ବାରଂବାର ଚାହିଁବା—
Jhānki māribā — 1. To peep stealthily.
ଉଁକି ମାରା
झाँक मारना
୨ । ଉଚ୍ଚ ପଦାର୍ଥଟି ଅନ୍ତରାଳରୁ ଚାହିଁବା—To peep over a high barrier.

**ଝାଙ୍କି ହେବା**—ଦେ. କ୍ରି—୧ । ଟାଣିହେବା; ତଳକୁ ଖସି ଆସିବା—
Jhānki hebā — 1. To be pulled or drawn downwards.

ତେଣୁ ଝାଙ୍କି ହୋଇ ଯେ ବରଷିଲା ଘନ—କୃଷ୍ଣସିଂହ ମହାଭାରତ. ବନ ।

୨ । ଘୂର୍ଣ୍ଣିତ ହେବା; (ମୁଣ୍ଡ) ବୁଲାଇ ହେବା—2. To reel.

(ଯଥା—ମୋ ମୁଣ୍ଡଟା ଝାଙ୍କି ହେଉଛି ।)

**ଝାଙ୍କୁଲା**—ପ୍ରାଦେ (ଯାଜପୁର) ବିଣ—ଝାମ୍ପୁଲା—
Jhānkulā — Bushy; spreading.

**ଝାଙ୍କେ**—ଦେ. ଅ—ଏକ ଝାଙ୍କ; ଏକ ବର୍ଷା; ବୁନ୍ଦେ; ଝୁଙ୍କେ—
Jhānke — One shower or paroxysm (e.g. of rebuke, or thrashing); a fit.

(ଯଥା—ମୁଁ ତାଙ୍କ ସଙ୍ଗେ ଝାଙ୍କେ କଳି କଲି ।)

**ଝାଙ୍କେ ଝାଙ୍କେ**—ଦେ. ଅ—ଦଳଦଳ ହୋଇ—
Jhānke jhānke — In numbers; in crowds.
ঝাঙ্কঝাঙ্ক

ଗଜ ତୁରଗ ଶାଳା ପାଖେ,
ବସନ୍ତି ମୃଗ ଝାଙ୍କେ ଝାଙ୍କେ । ଜଗନ୍ନାଥ. ଭାଗବତ ।

**ଝାଙ୍ଗଡ଼**—ପ୍ରାଦେ. (ସମ୍ବଲପୁର) ବି. ପୁଂ (ସଂ. ଜାଙ୍ଗଲିକ)—ଧାଙ୍ଗଡ଼;
Jhāngarda — ଟୋକା—Young chap.
(ଝାଙ୍ଗଡ଼ା—ଅନ୍ୟରୂପ)
(ଝାଙ୍ଗଡ଼ୀ—ସ୍ତ୍ରୀ)

**ଝାଞ୍ଜ**—ଦେ. ବି (ସଂ. ଝର୍ଝର)—କଂସାମିଶା ପିତଳର ବୃହଦାକାର ଓ ପତଳା କରତାଳ—Thin and wide cymbals of brass mixed with bell-metal.
Jhānja
ঝাংঝর
झाँझ
[ଦ୍ର—ଏହା ଦେବାଳୟାଦିରେ ମୃଦଙ୍ଗ ବାଦ୍ୟ ସଙ୍ଗେ ଓ ସଂକୀର୍ତ୍ତନରେ ବଜାଯାଏ ।]

**ଝାଞ୍ଜ ପେଲିବା**—ଦେ. କ୍ରି—ଝାଞ୍ଜ ବଜାଇବା—
Jhānja pelibā — To strike or sound cymbals.
(ଝାଞ୍ଜ ପିଟିବା—ଅନ୍ୟରୂପ) ଅରୁଣ ପର୍ଵେ ତନ୍ତ ପେଲୁଅଛି ଝାଞ୍ଜ—ପ୍ରାଚୀ. ବ୍ରହ୍ମନରୂପଣଗୀତା ।

**ଝାଞ୍ଜରି**—ଦେ. ବି (ସଂ. ଝର୍ଝର)—ଲୁହାର ବା ପିତଳର ବହୁ ଛିଦ୍ର ବା ଜାଲିବିଶିଷ୍ଟ ଚଲୁଣୀ—A metal strainer.
Jhānjari
ঝাঁঝরি
झांझरी

**ଝାଞ୍ଜରି ପକା(କେ)ଇବା**—ଦେ. କ୍ରି—ଝାଞ୍ଜରିବା (ଦେଖ)
Jhānjari pakā(ke)ibā — Jhānjaribā (See)

**ଝାଞ୍ଜରିବା**—ଦେ. କ୍ରି (ସଂ. ଜର୍ଜର)—କୌଣସି ପଦାର୍ଥକୁ (ପୋକଆଦି ଖାଇ) ବହୁ ଛିଦ୍ରଯୁକ୍ତ କରିବା—To bore innumberable holes into a thing (e. g. insects eating into a book or wood).
Jhānjaribā

**ଝାଞ୍ଜି**—ଦେ. ବି [ସଂ. ଝ୍ରୈ ଧାତୁ (ଅଗ୍ନି ସଂଯୋଗ) କିମ୍ବା ଜର୍ଜର]—
Jhānji — ୧ । ଗରମ; ଉତ୍ତାପ; ତାତି; ସନ୍ତାପ—1. Heat; excessive heat.
ঝাঁঝ
झाँझ

ଝଞ୍ଜିକ ପୀଡ଼ା ଝାଞ୍ଜି ତାହରୁ—କବିସୂର୍ଯ୍ୟ, କଳୋବଚନ୍ଦ୍ର. ୫. ଗୀତ ।

୨ । (ସଂ. ଜର୍ଜର=ଶୈବାଳ) ବୋଉଝାଞ୍ଜି ନାମକ ଭାସମାନ ଦଳଉଦ୍ଭେଦ—2. A kind of aquatic broad-and-thick-leaved plant floating on water.
ঝাঁজী
[ଦ୍ର—ଏଥିର ପତ୍ର ଗୋଲ, ଗୋଲାପଫୁଲର ପାଖୁଡ଼ାପରି; ତେଉ ସରୁସରୁ, ଫୁଲ ନାହିଁ; ଏହା ପବନଦ୍ୱାରା ଜଳାଶୟର ଏପାଖ ସେପାଖକୁ ଉଡ଼ି ହୋଇ ଯାଇ ଭାସୁଥାଏ ।]

୩ । ଆତାପତାପିତ ବାୟୁ; ଉଷ୍ଣ ବାୟୁ; ଲୁ; ତାତି—3. Hot waves of air; heat-waves.

(ଯଥା—ବୈଶାଖମାସ ଦୁଇପହରବେଳେ ଖୁବ୍ ଝାଞ୍ଜି ପିଟୁଛି ।)

ଦେ. ବିଣ—୧ । ଅସହ୍ୟ ତାପଯୁକ୍ତ—1. Unbearably hot.
୨ । ଉତ୍ତପ୍ତ—2. Heated.

**ଝାଞ୍ଜି ତାତି**—ଦେ. ବି—ଅସହ୍ୟ ଉତ୍ତାପ—
Jhānji tāti — Intolerable heat.

**ଝାଞ୍ଜି ପିଟିବା**—ଦେ. ବି—ଉତ୍ତପ୍ତ ବାୟୁ ବେଗରେ ବହିବା—
Jhānji pitibā — Blowing of hot blasts of air.
ଝାଞ୍ଜି ବୋହିବା, ଝାଞ୍ଜି ମାରିବା } ଅନ୍ୟରୂପ
[ଦ୍ର—ଗ୍ରୀଷ୍ମକାଳ ଦ୍ୱିପ୍ରହର ସମୟରେ ଝାଞ୍ଜି ପିଟେ ।]

**ଝାଞ୍ଜି ମୃଗ**—ଦେ. ବି—ଝାଇଁ ମୃଗ (ଦେଖ)
Jhānji muga — Jhāin-muga (See)

**ଝାଞ୍ଜିରି**—ଦେ. ବି (ସଂ. ଝର୍ଝର)—ପାଣିନଳା ମୁହଁରେ ଦିଆଯିବା ଲୁହାର ଜାଲି—A latticed frame given at the mouth of water-pipes.
Jhānjiri
ঝাঁঝরী
झांझरी

| ୧ | ଈ | ଊ | ୠ,ୠ | ଌ | ଐ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇୟ | ଢ଼ଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ |

**ଝାଞ୍ଜିର ମଙ୍ଗଳା**—ଦେ. ବି. ସ୍ତ୍ରୀ—ଗ୍ରାମଦେବତା ବା ଯୋଗିନୀବିଶେଷ—
Jhañjiri maṅgaḻā Name of a village-Goddess.

**ଝାଟ**—ସଂ.ବି—(ସଂ. ଝଟଧାତୁ=ସଂହତ ହେବା+କର୍ତ୍ତୃ.ଅ) ୧ । ନିକୁଞ୍ଜ—
Jhāṭa 1. Grove.
୨ । ଗୁଳ୍ମ; କ୍ଷୁଦ୍ର ବୃକ୍ଷ—2. Small tree; plant.
୩ । ବୁଦା—3. Bush.
୪ । ମାର୍ଜନା; ଓଳାଇବା—4. Sweeping with a broom.
ଦେ. ବି—ପ୍ରହାରାର୍ଥ ବ୍ୟବହୃତ ପତ୍ର ଓ ଶାଖାବିହୀନ ଛୋଟ ଡାଳ; ଛାଟ; ଛାଟିଆ—1. A small leafless and branchless twig used for thrashing.

**ଝାଟପାଟ**—ଦେ. ବି. (ସଂ. ଝାଟ+ନିରର୍ଥକ ସହଚର)—ଝାଡ଼ୁରେ
Jhāṭa-pāṭa ଓଳାଇବା; ଝାଡ଼ିବା—Sweeping with a
ঝাঁট, ঝাঁটি mop or brush.
झाड़पोंछ

**ଝାଟା**—ସଂ.ବି. (ଝଟଧାତୁ=ଗଦା ହେବା, ଣିଜନ୍ତ ଝାଟଧାତୁ=ଗଦା କରିବା
Jhāṭā +କରଣ ଅ)—୧ । ସମ୍ମାର୍ଜନୀ (ଶବ୍ଦକଳ୍ପଦ୍ରୁମ)—
1. Broom; sweeping mop.
୨ । ଯୂଈ (ଦେଖ)
2. Jūi (See)
୩ । ଭୂଇଁ ଅଁଳା (ଦେଖ)
3. Bhūiñ-a-añḻā (See)

**ଝାଟି**—ଦେ. ବି. (ସଂ.ଝାଟ)—୧ । ବୃକ୍ଷର ସରୁ ସରୁ ଶାଖାମାନଙ୍କ ଗୁଚ୍ଛ—
Jhāṭi 1. A custer of twigs of a tree or plant;
ফাকড়া, কঞ্চি wattle.
टहनी ୨ । ଅଡ଼ୁଆଛଡ଼ୁଆ ଲତା ଓ ଗୁଳ୍ମ—
2. Tangled twigs and creepers.
୩ । ଛାଟ—3. Twigs; brush-wood.
୪ । ବାଉଁଶ କଣି—4. The twigs of bamboo.
୫ । ହରଡ଼ ଆଦି ଗଛର ସରୁଦଣ୍ଡ—
5. Thin stems of plants.

**ଝାଟିଆ**—ଦେ. ବି.—ଝାଟି (ଦେଖ)
Jhāṭiā Jhāṭi (See)
ଦେ. ବିଣ—୧ । ଝାଟିପୂର୍ଣ୍ଣ—1. Full of twigs.
୨ । ଅଡ଼ୁଆ ଛଡ଼ୁଆ—2. Complicated; tangled.

**ଝାଟିକା**—ସ. ବି.—ଯୂଈ (ଦେଖ) (Apte)
Jhāṭikā Jūi (See)
ଝାଟୀ } ଅନ୍ୟରୂପ
ଝଟୀକା }

**ଝାଟି ଚମ୍ପା**—ପ୍ରାଦେ (ଗଡ଼ଜାତ) ବି—ଏକ ପ୍ରକାର ବଡ଼ ଗଛ—
Jhāṭi champā A kind of big wild tree.

[ ଦ୍ର—ଏହା ଉଚ୍ଚରେ ୮।୧୦ ହାତ ପର୍ଯ୍ୟନ୍ତ ବଢ଼େ; ପତ୍ର ଆମ୍ବ ପତ୍ର ପରି । ପତ୍ରକୁ ଚୂନ ମରିଚ ସଙ୍ଗେ ବାଟିଲେ ନାଲିନାଲିଆ ହୁଏ । ତାକୁ ଘାଆରେ ଲଗାଇଲେ ଘାଆ ଶୁଖିଯାଏ ।]

**ଝାଟିମାଟି**—ଦେ. ବି.—ଝାଟିଦ୍ୱାରା ବାଡ଼ ଦେଇ ତା ଉପରେ ମାଟି ଲିପି
Jhāṭi-māṭi କାନ୍ଥ ତିଆରି କରିବା ପ୍ରଣାଳୀ—
ঝিটাবেড়া; ছিটাবেড়া Mud-and-wattle; clay besmeared over twigs twined together for raising a wall.

**ଝାଟିମାଟି କାନ୍ଥ**—ଦେ. ବି—ଝାଟିମାଟି ପ୍ରକ୍ରିୟାରେ କରାଯାଇଥିବା
Jhāṭi-māṭi kāntha ଘରର କାନ୍ଥ—Wall raised by
ঝিটাবেড়াবদেবাল putting clay over twigs, mud-and-wattle wall.

**ଝାଟିମାଟି ସଡ଼କ**—ଦେ. ବି—ବାଲି ବା କାଦୁଅ ଉପରେ ଗୁଡ଼ାଏ ଝାଟି
Jhāṭimāṭi saṛḏaka ଦେଇ ତା ଉପରେ ମାଟି ବିଛାଇ କରାଯିବା
ঝিটাবেড়ারবাস্তা ସଡ଼କ—A fair-weather road made by spreading earth on twigs laid over sand or mud.

[ ଦ୍ର—ଏ ସଡ଼କରେ ଘୋଡ଼ା ବଳଦଆଦିଙ୍କ ଗୋଡ଼ ବା ଗାଡ଼ିର ଚକ ବାଲିରେ ବା କାଦୁଅରେ ଭିତରକୁ ପଶିଯାଏ ନାହିଁ, ଏଥି ପାଇଁ ଗମନାଗମନର ସୁବିଧା ହୁଏ । ]

**ଝାଟୁଆ**—ଦେ. ବି. ( ସଂ. ଝାଟ=ମାର୍ଜନା )—
Jhāṭuā ୧ । ଝାଡ଼ୁଣୀ—1. Sweeping mop.
ঝাটা ୨ । ଝାଡ଼ୁଣୀ ଦ୍ୱାରା ଓଳିଆ ହୋଇଥିବା ଅଳିଆ ବା
झाड़न ଆବର୍ଜନା—2. Sweepings.
(ଝାଟୁଈ—ସ୍ତ୍ରୀ) ଦେ. ବିଣ. ପୁଂ. ( ସଂ. ଦୁଷ୍ଟ—
୧ । ଧୂର୍ତ୍ତ ( ବ୍ୟକ୍ତି )—1. Pertinacious.
୨ । ଯେ ଅଡ଼ୁଆ ଲଗାଏ—
2. Creating complications.

**ଝାଟୁଆ(ଏ)ଇବା**—ଦେ. କ୍ରି (ସଂ. ଝାଟ)—ଆବର୍ଜନା ସବୁ ଓଳାଇବା—
Jhāṭuā(e)ibā To sweep; to brush.
ঝাড়া ଘରଯାକ ସବୁ ସେ ଝାଟୁଆଇ ରହି ।
झाड़ना କୃଷ୍ଣସିଂହ, ମହାଭାରତ, ବନ ।

**ଝାଟୁଆ ଗଦା**—ଦେ. ବି—ଅଳିଆ ଗଦା; ଯେଉଁ ଗଦାରେ ଅଳିଆମାନ
Jhāṭuā gadā ଜମାକରା ଯାଏ—Refuse-heap; a heap of sweepings and refuse matter.

**ଝାଟେଇବା**—ଦେ. କ୍ରି. ( ସଂ. ଝାଟ )—ଝାଟୁଆଇବା ( ଦେଖ )
Jhāṭeibā Jhāṭuāibā ( See )
(ଝାଟୋଇବା—ଅନ୍ୟରୂପ)

**ଝାଡ଼ କୁନ୍ଦୁରି**—ଦେ. ବି—ମଟକା (୧) ( ଦେଖ )
Jhāṛḏa kunduri Maṭakā (1) ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାର' ନ ମିଳିଲେ 'ଗାର' ଖୋଜିବେ; 'କୁଥ' ନ ମିଳିଲେ 'କୁଥ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଗ୍ୟା' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

**ଝାଡ଼**—ଦେ. ବି. (ସଂ. ଝାଟ=କ୍ଷୁଦ୍ର ବୃକ୍ଷ; ଝଟ ଧାତୁ=ସଂଘାତକରଣ)—
Jhārḍa ୧ । ଅରଣ୍ୟ; ବଣ; ଜଙ୍ଗଲ—1. Forest.
ঝাড়
झाड़

ଝାଡ ହସାରେ ମନ ହସାଇ ପଶୁ । ମନବୋଧ. ଚଉତିଶା ।

୨ । ବୁଦା—2. Shrub; bush.
୩ । କାନ୍ଦି; ଗୁଚ୍ଛ—3. Tuft; cluster; bunch.
୪ । ( ଏହା ବୁଦାର ଆକୃତିବିଶିଷ୍ଟ ଦେଖାଯିବାରୁ ) ବହୁ-ଶାଖାଯୁକ୍ତ ପ୍ରଦୀପମଣ୍ଡିତ କାଚର ଆଲୋକାଧାର; ବହୁ-ଶାଖାଯୁକ୍ତ କାଚର ଦୀପବୃକ୍ଷ—
4. A cluster of glass lamps; chandeliers candelebra.

ଝୁଲୁଛି ମାଣିକ୍ୟ ହାଣ୍ଡି, ମାଣିକ୍ୟର ଝାଡ
ଥୋପା ଥୋପା ଗଜମୁକ୍ତା ଗୁନ୍ଥିଛି ଭିତରେ । ଚିନ୍ତାମଣି, ବଜ୍ରନାଭବଧ ।

ପ୍ରାଦେ. (ସମ୍ବଲପୁର) ବି—ସୁନା ତାର ବା ରୂପା ତାରରେ ନିର୍ମିତ ଶାଖାପତ୍ରଯୁକ୍ତ ବୃକ୍ଷାକୃତିବିଶିଷ୍ଟ ଅତରଦାନ୍—
Attardan of gold or silver filagree work in the shape of a tree.

**ଝାଡ଼ଖଣ୍ଡ**—ଦେ. ବି. ( ସଂ. ଝାଟ+ଖଣ୍ଡ )—
Jhārḍa-khanḍa ୧ । ଜଙ୍ଗଲ ମୁଲକ; ବଣୁଆ ରାଜ୍ୟ ବା ଦେଶ; ଯେଉଁ ରାଜ୍ୟ ଜଙ୍ଗଲରେ ପୂର୍ଣ୍ଣ; ଆରଣ୍ୟ ଅଞ୍ଚଳ; ଗଡ଼ଜାତ—1. Wild tract of country; hill-state; a country full of forests.
ঝাড়খণ্ড
झाड़खण्ड

ଝାଡଖଣ୍ଡ ରସା ବାଦସା ଉଣେ । କବିସୂର୍ଯ୍ୟ. କଳୋସ ଚମ୍ପୂ ୟ. ଗୀତ ।

୨ । ମଧ୍ୟପ୍ରଦେଶର ଛତିଶଗଡ଼ ଆଦି ଅରଣ୍ୟମୟ ଅଞ୍ଚଳ—
2. The wild tract of the Central Province.
୩ । ବୈଦ୍ୟନାଥ ଧାମ (କ୍ଷେତ୍ରନାମ) ( ଦେଖ )
3. Baidyanātha dhāma ( See )

[ଦ୍ର—ବୈଦ୍ୟନାଥ ଧାମଠାରୁ ଗଞ୍ଜାମ ପର୍ଯ୍ୟନ୍ତ ଯେଉଁ ପାହାଡ଼ ଓ ଜଙ୍ଗଲ ଶ୍ରେଣୀ ଲାଗିଛି ତହିଁର ଭିନ୍ନ ଭିନ୍ନ ଅଂଶ ଝାଡ଼ଖଣ୍ଡ ନାମରେ ଅଭିହିତ ହେବାର ପ୍ରାଚୀନ ଓଡ଼ିଆ ଗ୍ରନ୍ଥମାନଙ୍କରେ ଦେଖାଯାଏ । ମୁସଲମାନ୍‌ମାନଙ୍କ ରଚିତ ଭାରତ ଇତିହାସମାନଙ୍କରେ ଛତିଶଗଡ଼ ଓ ଗଣ୍ଡୱାନା ଅଞ୍ଚଳର ଭୂଭାଗଂଶ ଝାଡ଼ଖଣ୍ଡ ନାମରେ ଅଭିହିତ (ଦ୍ର. ଶବ୍ଦସାଗର) । ବଙ୍ଗୀୟ ବୈଷ୍ଣବ ସାହିତ୍ୟରେ ବୈଦ୍ୟନାଥଧାମ ଓ ସ୍ଥଳବିଶେଷରେ ଓଡ଼ିଶାର ଗଡ଼ଜାତ ଓ ଛତିଶଗଡ଼ ଓ ମଧ୍ୟ-ପ୍ରଦେଶର ଅରଣ୍ୟମୟ ଅଞ୍ଚଳକୁ ଝାଡ଼ଖଣ୍ଡ ନାମରେ ଅଭିହିତ କରାଯାଇଅଛି ]

**ଝାଡ଼ଖଣ୍ଡ ବାଦସା**—ଦେ. ବି.—(ସଂ. ଝାଟ+ଖଣ୍ଡ+ଫା. ପାଦ୍‌ଶାହ୍)
Jhārḍa-khanḍa bādasā ଝାଡ଼ଖଣ୍ଡ ବା ଆରଣ୍ୟ ପ୍ରଦେଶର ରାଜା—The king of the wild tracts of Central India.
ঝাড়খণ্ড বাদসাহা
झाड़खंड बादसाहा
(ଝାଡ଼ଖଣ୍ଡ ପାଇଗ; ଝାଡ଼ିଖଣ୍ଡ ପାତସା—ଅନ୍ୟରୂପ)

**ଝାଡ଼ଖଣ୍ଡି**—ଦେ. ବି—ଝାଡ଼ଖଣ୍ଡ ( ଦେଖ )
Jhārḍa-khanḍi Jhārḍa-khanḍa ( See )

**ଝାଡ଼ ଗିଲସ**—ଦେ. ବି (ସଂ. ଝାଟ+ଇଂ. ଗ୍ଲାସ୍ )—ଝାଡ଼ ୪ (ଦେଖ)
Jhārḍa gilāsa Jhārḍa 4 ( See )
ঝাড়গেলাস
झाड़गिलास

**ଝାଡ଼ ଗୁରୁଡ଼ି**—ଦେ. ବି—ଜଙ୍ଗଲରେ ମନକୁ ଉଠିଥିବା ଆମ୍ବଗଛମାନଙ୍କରେ ଯେଉଁ ଗୁରୁଡ଼ି ବା ଛୋଟଛୋଟ ଆମ୍ବ ଫଳେ; ବନ୍ୟ ଆମ୍ରବୃକ୍ଷଜାତ କ୍ଷୁଦ୍ର ଫଳ—Small mangoes from trees growing wild in forest.
Jhārḍa-gururḍi
ଝାଡ଼ଗୁରୁଡ଼ି, ଝାଡ଼ଗିରଡ଼ି, ଝାଡ଼ଗେରଡ଼ି } ଅନ୍ୟରୂପ

**ଝାଡ଼ ଜୟପୁର**—ଦେ. ବି. ( ନାମ )—ଦାକ୍ଷିଣାତ୍ୟର ବିଶାଖାପଟଣା ଜିଲ୍ଲା ଅନ୍ତର୍ଗତ ଉତ୍କଳୀୟ ଜମିଦାରୀ ରାଜ୍ୟ—The Jeypur estate in the disrict of Vizagapatam.
Jhārḍa jayapura
(ଝାଡ଼ି ଜୟପୁର—ଅନ୍ୟରୂପ)

[ ଦ୍ର—ରାଜପୁତନା ଅଞ୍ଚଳର ଗଡ଼ଜାତ 'ଜୟପୁର'ଠାରୁ ବିଶାଖା-ପଟଣା ଜିଲ୍ଲାର ଜୟପୁର ରାଜ୍ୟକୁ ଚିହ୍ନାଇବା ପାଇଁ ଶେଷୋକ୍ତ ରାଜ୍ୟକୁ ଝାଡ଼ଜୟପୁର ନାମରେ ଡକାଯାଏ । ଏହା ମାନ୍ଦ୍ରାଜ ପ୍ରଦେଶର ଅଧୀନ ଥିଲେ ମଧ୍ୟ ଏଥିର ଅଧିକାଂଶ ଲୋକ ଓଡ଼ିଆ ଓ ଏଥିର ରାଜା ଓଡ଼ିଆ । ନୂତନ ଓଡ଼ିଶା ପ୍ରଦେଶର ସୀମା-ନିରୂପକ କମିସନ୍ ଏହାକୁ ଓଡ଼ିଆ ଅଞ୍ଚଳରୂପେ ଗଣ୍ୟ କରିଅଛନ୍ତି ।]

**ଝାଡ଼ଝୁଡ଼**—ଦେ. ବି—୧ । କୌଣସି ପାତ୍ରରୁ କୌଣସି ପଦାର୍ଥ ସମ୍ପୂର୍ଣ୍ଣ ରୂପେ ନିଃଶେଷିତ ହୋଇଥିବା ଅବସ୍ଥା—
Jhārḍa jhurḍa 1. The condition of a pot being emptied of all the contents.
ঝাড়াঝুড়ি
झाड़बुहार

୨ । ଝାଡ଼ ଫୁଙ୍କ ( ଦେଖ )
2. Jhārḍa phunka ( See )
୩ । କୌଣସି ସ୍ଥାନ ଉତ୍ତମରୂପେ ସମ୍ମାର୍ଜନ ବା ପରିଷ୍କାର କରିବା; ଝଡ଼ାଝଡ଼ି—
3. Sweeping a place clean.
ଦେ. ବିଣ—ସମ୍ପୂର୍ଣ୍ଣରୂପେ ନିଃଶେଷିତ ( ଦ୍ରବ୍ୟ ବା ଆଧାର )—
(a pot) Emptied completely.
ଦେ. କ୍ରି. ବିଣ—୧ । ସମ୍ପୂର୍ଣ୍ଣରୂପେ ନିଃଶେଷିତ କରି—
1. Emptying completely.
୨ । ସମ୍ପୂର୍ଣ୍ଣରୂପେ ଧୂଳି ଓ ଅଳିଆ ଆଦି ପରିଷ୍କାର କରି—
2. By cleansing and dusting thoroughly.

**ଝାଡ଼ଣ**—ଦେ. ବି. ( ସଂ. ଝଟ ଧାତୁ=ଗଦା ହେବା )—
Jhārḍana ୧ । ଯାହାଦ୍ୱାରା ଘର ବା ଘରର ଉପକରଣମାନଙ୍କରୁ ଧୂଳି ଝାଡ଼ନ୍ତି; ପୋଛା; ସମ୍ମାର୍ଜନୀ—1. A duster.
ঝাড়ন
झाड़न ୨ । ଝାଡ଼ିବା କର୍ମ; ଝଡ଼ା—
2. Act of shaking off; dusting or cleansing.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଏ | ଉଅ | ଊ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ତ୍ |

ঝালঝাড়া ୩ । ଗାଳି ବୃଷ୍ଟି; ସୋଧନ—
3. A shower of rebukes or abuses.

ଝାଡ଼ଣି— ଦେ. ବି—ଝାଡ଼ଣ ୧ ଓ ୩ ( ଦେଖ )
Jhārdani Jhārdana 1 & 3 ( See )
( ଝାଡ଼ିଣି; ଝାଡ଼େଣି—ଅନ୍ୟରୂପ )

ଝାଡ଼ନ— ଦେ. ବି—ଝାଡ଼ଣ ( ଦେଖ )
Jhārdana Jhārdana ( See )

ଝାଡ଼ ପା(ଫା)ନ( ନୁ )ସ—ଦେ. ବି. ( ସ. ଝାଟ+ପା. ଫାନୁସ୍ )—
Jhārda pā(phā)na(nu)sa ୧ । ରେଶମୀ ଓ ମଜଲିସରେ
ঝাড়ফানস ସଜା ଯିବା କାଚର ଅନେକ ସ୍ତମ୍ଭମାନ—
झाड़फानूस 1 Chandeliars and chinese lanterns.
୨ । ଏକପ୍ରକାର ବାଣ ବା ଆତସବାଜି ଯାହା ଜଳା ଗଲେ ଝାଡ଼ ପରି ଦେଖାଯାଏ—
2 A kind of firework which exhibits chandeliar-figures when set on fire.

ଝାଡ଼ପୁଡ଼—ଗ୍ରା. ବି— ଝାଡ଼ଝୁଡ଼ ( ଦେଖ )
Jhārda-purda Jhārda-jhurda ( See )

ଝାଡ଼ ଫୁଙ୍କ—ଦେ. ବି. ( ସହଚର; ଝାଟ=ସମ୍ମାର୍ଜନ+ଫୁତ୍କାର )—
Jhārda phunka ରୋଗ ବା ଭୂତାଦି ଅପସାରଣାର୍ଥ ମନ୍ତ୍ର ଉଚ୍ଚାରଣ
ঝাড়ফুঙ্ক କରି ରୋଗାକ୍ରାନ୍ତ ବା ଭୂତାକ୍ରାନ୍ତ ବ୍ୟକ୍ତିର ଅଙ୍ଗରେ
झाड़फूंक ଆଙ୍ଗୁଠି ଚଳାଇବା ( ଝାଡ଼ିବା ) ଓ ଅଙ୍ଗମାନଙ୍କରେ ଫୁତ୍କାର ଦେବା (ଫୁଙ୍କିବା)—Moving the fingers and blowing whiffs on the body of a person attacked with fever or evil spirits; exorcising, making passes over the body of a person possessed of evil spirit or suffering from some disease.

ଝାଡ଼ବାଈ—ଦେ. ବି. ସ୍ତ୍ରୀ—ଗ୍ରାମଦେବତାବିଶେଷ—
Jhārda-bāi Name of a village-Goddess.

ଝାଡ଼ବାସିନୀ – ଦେ. ବି. ସ୍ତ୍ରୀ—ଗ୍ରାମଦେବତାବିଶେଷ—
Jhārda-bāsini Name of a village-Goddess.

ଝାଡ଼ ମାଲି—ପ୍ରାଦେ. ( ଗଞ୍ଜାମ ) ବି—ଡାଆଣୀ ଓ ଭୂତ ଆଦି ଛଡ଼ାଇବା
Jhārda-māli ପାଇଁ ବ୍ୟବହୃତ ମନ୍ତ୍ରଯନ୍ତ୍ରସମ୍ବଳିତ ଗୁଣିବିଦ୍ୟା—
Charms and esoteric formulae used by exorcists.

ଝାଡ଼ା—ଦେ. ବି. ( ସ. ଝଟ ଧାତୁ=ଚୂର୍ଣ୍ଣୀ କରଣ; ଏ ଶବ୍ଦ ହିନ୍ଦୀରେ
Jhārdā ବ୍ୟବହୃତ )—
বাহ্যে; বাহ্যি ୧ । ମଳ; ଗୁହ; ବିଷ୍ଠା—1. Ordure.
झाड़ा ୨ । ଅଧିକ ମଳ ନିଃସରଣ; ଅତିସାର ବା ଓଲାଉଠା ରୋଗ—2. Diarrhoea; dysentery; cholera.
୩ । ମଳତ୍ୟାଗ; ହଗଣା; ହଗିବା—3. Act of easing oneself; discharge from the bowels.

୪ । ସିତାରର ସବୁ ତାରମାନ ଏକସଙ୍ଗେ ବାଜିବା—
4. The simultaneous vibration of all the strings of a guitar.
୫ । ଝଡ଼ା ( ଦେଖ )
5. Jhardā ( See )

ଝାଡ଼ାକଇ—ଦେ. ବି. ( ସ. ଝଟ ଧାତୁ+ଆ. କେ )—ଓଲାଉଠା ରୋଗ;
Jhārdā-kai ବିସୂଚିକା—Cholera.
ওলাওঠা; ভেদবমি [ ଦ୍ର—ଏହି ରୋଗରେ ବିଶେଷ ଝାଡ଼ା ଓ କଇ
हैजा ( ବାନ୍ତି ) ହୁଏ; ଶେଷରେ ଶୀଘ୍ର ଶରୀର ତଳେ ଓ ମନୁଷ୍ୟ ମରି ଯାଏ । ଏହା ଗୋଟିଏ ସଂକ୍ରାମକ ଓ ମାରାତ୍ମକ ରୋଗ । ଜୀବାଣୁମାନଙ୍କଦ୍ୱାରା ( Bacilli ) ଏହି ରୋଗ ଜାତ ହୁଏ ବୋଲି ଆଧୁନିକ ଯୁଗର ପାରଦର୍ଶୀ ଚିକିତ୍ସକମାନେ ନିର୍ଣ୍ଣୟ କରିଅଛନ୍ତି । ଭାରତରେ ପ୍ରାଚୀନକାଳରେ ଏ ରୋଗ ନ ଥିଲା । ଷୋଡ଼ଶ ଶତାବ୍ଦୀରେ ଏହା ପ୍ରଥମେ ପଞ୍ଜାବରେ ଇଂରାଜଙ୍କ ସୈନ୍ୟଙ୍କ ମଧ୍ୟରେ ଦେଖାଗଲା । ]

ଝାଡ଼ାକଇଆ—ଦେ. ବିଣ. ପୁଂ—୧ । ଓଲାଉଠା ରୋଗାକ୍ରାନ୍ତ—
Jhārdā-kaiā 1. Attacked with cholera.
( ଯଥା—ଝାଡ଼ାକଇଆ ମଲୁ । )
୨ । (ଗାଳି ବା ଅଭିଶାପରେ ବ୍ୟବହୃତ ) ଯେ ଓଲାଉଠାରେ ମରିବ—2. ( a curse ) Beest thou attacked with cholera.

ଝାଡ଼ା କବଜ—ଦେ. ବି. (ହି. ଝାଡ଼ା+ଆ. କବ୍ଜିୟତ୍ )—
Jhārdā kabaja କୋଷ୍ଠବଦ୍ଧ ହେବା —
বাহ্যিকবজ Constipation; costiveness.
कबजियत
(ଝାଡ଼ା କବଜା; ଝାଡ଼ା କବଜିବା—ଅନ୍ୟରୂପ)

ଝାଡ଼ା କରା(ରେ)ଇବା—ଦେ. କ୍ରି—ଔଷଧାଦି ପ୍ରୟୋଗ ଦ୍ୱାରା କୋଷ୍ଠଶୁଦ୍ଧି
Jhārdā karā(re)ibā କରାଇବା—To cause looseness
বাহ্যিকরান of bowels by a dose of purgative
झाड़ा करवाना medicine or appliance.

ଝାଡ଼ା ତଲବ—ଦେ. ବି. ( ହି. ଝାଡ଼ା+ଆ. ତଲବ )—
Jhārdā talaba ପୋଶସ୍ଥ ମାଡ଼ିବା; ମଳତ୍ୟାଗ କରିବା ନିମନ୍ତେ
বাহ্যেপাওয়া ବେଗ ଦେଖାଇବା; ମଳୋତ୍ସର୍ଗର ବେଗ; ଗୁରୁ-
झाड़ा तलब ଶଙ୍କା—A tendency of easing one's self.
[ଝାଡ଼ା ଦେଖା(ଖେ)ଇବା, ଝାଡ଼ା ମାଡ଼ିବା—ଅନ୍ୟରୂପ]

ଝାଡ଼ା ଦେବା—ଦେ. କ୍ରି (କଟେଇଆ)—ଝଡ଼ା ଦେବା ( ଦେଖ )
Jhārdā debā Jhardā debā ( See )
ঝাড়া দেওয়া
झाड़ा देना

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୃଥ ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଗ୍ନି ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

ଝାଡ଼ା ପରିଷ୍କାର—ଦେ. ବି—କୋଷ୍ଠ ପରିଷ୍କାର; କୋଷ୍ଠଶୁଦ୍ଧି—
Jhārḍā parishkāra — Easy evacuation of the bowels.
ବାହ୍ୟିସାଫ
झाड़ासाफ

ଝାଡ଼ା ଫେରିବା—ଦେ. କ୍ରି—ମଳତ୍ୟାଗ କରିବା; ମଳୋତ୍ସର୍ଗ କରିବା; ଯୋଖସ୍ଥପାଣି ବସିବା—
Jhārḍā pheribā — To ease oneself; to defecate.
ବାହ୍ୟି ফেৰা
झाड़ा फिरना
[ଝାଡ଼ା ଫେରା(ରେ)ଇବା—ଣିଜନ୍ତ]

ଝାଡ଼ା ବନ୍ଦ—ଦେ. ବି. (ହି. ଝାଡ଼ା + ଫା. ବନ୍ଦ)—
Jhārḍā banda
୧ । ଝାଡ଼ା କବଜ (ଦେଖ)
1. Jhārḍā kabaja ( See )
ବାହ୍ୟିବন্ধ
झाड़ाबन्द
୨ । ଆଦୌ ମଳୋତ୍ସର୍ଗ ନ ହେବା—
2. Stoppage of the action of bowels.

ଝାଡ଼ାବାଛ—ପ୍ରାଦେ. (ସିଂହଭୂମ) ବି—ଏକପ୍ରକାର ଧାନ—
Jhārḍābāchha — A species of paddy.

ଝାଡ଼ାବାନ୍ତି—ଦେ. ବି—ଝାଡ଼ାକଇ ( ଦେଖ )
Jhārḍā-bānti — Jhārḍā-kai ( See )

ଝାଡ଼ାବାନ୍ତିଆ—ଦେ. ବିଣ. ପୁଂ—ଝାଡ଼ାକଇଆ ( ଦେଖ )
Jhārḍā-bāntiā — Jhārḍā-kaiā ( See )

ଝାଡ଼ା ମାଡ଼ିବା—ଦେ. ବି—ଝାଡ଼ା ତଳବ ( ଦେଖ )
Jhārḍā mārḍibā — Jhārḍā talaba ( See )

ଝାଡ଼ା ସଫା—ଦେ. ବି. ( ହି. ଝାଡ଼ା + ଫା. ସାଫ୍ )—
Jhārḍā saphā — ଝାଡ଼ା ପରିଷ୍କାର ( ଦେଖ ) Jhārḍā parishkāra ( See )
(ଝାଡ଼ାସାଫ୍—ଅନ୍ୟରୂପ)

ଝାଡ଼ା ହେବା—ଦେ. ବି—୧ । ମଳୋତ୍ସର୍ଗ—
Jhārḍā hebā — 1. Motion of bowels.
ବাহ্যে হওয়া
झाड़ा होना
୨ । ଅତ୍ୟଧିକ ମଳନିଃସରଣ ଦ୍ୱାରା ଅକ୍ରାନ୍ତ ହେବା—
2. Excessive passing of stools; dysentery or diarrhoea; looseness of bowels.

ଝାଡ଼ି—ଦେ. ବି—କ୍ଷୁଦ୍ର ବନ; ଛୋଟ ଜଙ୍ଗଲ; ଯେଉଁ ବନରେ ଛୋଟ ଛୋଟ ବୃକ୍ଷମାନ ଥାଏ—
Jhārḍi — Bushy or small forest; the woods; a forest full of bushes and small trees.
झाड़ी

ଝାଡ଼ିଗୁରୁଡ଼ି—ଦେ. ବି—ଝାଡ଼ାଗୁରୁଡ଼ି ( ଦେଖ )
Jhārḍi-gururḍi — Jhārḍa-gururḍi (See)

ଝାଡ଼ିଚମ୍ପା—ଦେ. ବି—ଝାଟିଚମ୍ପା ( ଦେଖ )
Jhārḍi-champā — Jhāṭi-champā (See)

ଝାଡ଼ିଝୁଡ଼ି—ଦେ. କି. ବିଣ. ( ଝାଡ଼ିବା କ୍ରିୟାର ଅସମାପିକା ରୂପ ସଙ୍ଗେ ଧ୍ୱନ୍ୟନୁକାରୀ ଝୁଡ଼ିବା କ୍ରିୟାର ଅସମାପିକା ରୂପ ଯୁକ୍ତ ହୋଇ କି, ବିଣ ରୂପେ ବ୍ୟବହୃତ )—
Jhārḍijhurḍi
ঝেড়েঝুড়ে
झाड़झूड़कर
୧ । ଉତ୍ତମରୂପେ ପରିଷ୍କାରପୂର୍ବକ; ଉତ୍ତମରୂପେ ଓଲଅପୋଛା କରି—
(ଝାଡ଼ିଝୁଡ଼ିକରି—ଅନ୍ୟରୂପ)
1. After cleansing thoroughly; after a thorough sweeping.
( ଯଥା—ଘରଟିକୁ ଝାଡ଼ିଝୁଡ଼ି ସଫା କରିଦିଅ । )
୨ । ନିଃଶେଷ କରି; କିଛି ମାତ୍ର ବାକି ନ ରଖି—
2. Exhaustively; without leaving out any thing in it.
( ଯଥା—ବାକ୍ସକୁ ଝାଡ଼ିଝୁଡ଼ି ଦେଖିଲି ଯେ ସେଥିରେ ଗୋଟିଏ ଅଣା ପଇସା ପଡ଼ିନାହିଁ । )
୩ । ଦେହରେ ବା ଗୃହାଦିରେ ଟିକିଏ ମାତ୍ର ମଳ ବା ଧୂଳି ନଛାଡ଼ି—
3. Without leaving a speck of dust or dirt ( in the body or house or place ).
୪ । କୌଣସି ବ୍ୟକ୍ତି ନିକଟରେ କପର୍ଦ୍ଦକ ମାତ୍ର ବା ସମ୍ବଳ ମାତ୍ର ନ ଛାଡ଼ି—4. Without leaving a single penny or article with a person
( ଯଥା—ଡକାଇତମାନେ ତା ଘରୁ ସବୁ ଝାଡ଼ିଝୁଡ଼ି ଲୁଟି କରି ନେଲେ । )
୫ । ଦେହରେ ରୋଗର ସାମାନ୍ୟ ଚିହ୍ନ ମାତ୍ର ନ ଛାଡ଼ି—
5. Without leaving an atom of disease in the body of a person
( ଯଥା—ବୈଦ୍ୟ ରୋଗୀ ଦେହରୁ ଜ୍ୱରକୁ ଝାଡ଼ିଝୁଡ଼ି ନେଇଗଲେ । )

ଝାଡ଼ିଝୁଡ଼ି ଦେବା—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଦେହର ସବୁ ଅଙ୍ଗରୁ ଧୂଳି ଝାଡ଼ି ବା ମଇଳା ଆଦି ଗାମୁଛା ବା ଝାଡ଼ଣ ଦ୍ୱାରା ସଫା କରିବା—
Jhārḍijhurḍi debā
ঝেড়েঝুড়ে দেওয়া
झाड़झूड़ करदेना
1. To cleanse the body of a person of all dust and dirt with a cloth or duster.
୨ । କୌଣସି ଗୃହ ବା ସ୍ଥାନର ସବୁ ଅଂଶକୁ ଓଳାଇ କରି ସୁପରିଷ୍କୃତ କରିବା—2. To thoroughly sweep a place or house clean.
୩ । କୌଣସି ବ୍ୟକ୍ତିକୁ ନିଃସମ୍ବଳ କରିଦେବା; କୌଣସି ବ୍ୟକ୍ତିଠାରୁ ସମସ୍ତ ଧନ ନିଃଶେଷିତ କରିବା—
3. To make a person pennyless.
୪ । ଶୂନ୍ୟ କରିଦେବା; ଖାଲି କରିଦେବା—
4. To empty; to exhaust.
୫ । ରୋଗୀ ବା ଭୂତାବିଷ୍ଟ ବ୍ୟକ୍ତିର ସର୍ବାଙ୍ଗରୁ ମନ୍ତ୍ରପାଠ ପୂର୍ବକ ଏକାଧିକଥର ଝାଡ଼ିବା—10. To repeatedly make passes and blow air through the mouth on the body of a patient during exorcism.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଂ | ଉଅ | ଓ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଜ୍ଞ | ନ୍ |

**ଝାଡ଼ଝୁଡ଼ ହେବା**—ଦେ. କ୍ରି—୧ । ଆପଣା ଦେହ ଓ ଅଙ୍ଗପ୍ରତ୍ୟଙ୍ଗଙ୍କୁ
Jhārdijhurdi hebā ହଲାଇ ଦେହରୁ ଧୂଳିଆଦି ଖସାଇ ଦେବା—
ঝাড়া 1. To shake off the dust from one's body.
ঋাড়না ୨ । ଆପଣା ପିନ୍ଧିବା ଲୁଗାପଟାକୁ ଜୋରରେ ହଲାଇ ତହିଁରେ ଲାଗିଥିବା ଅଳିଆ ଓ ଧୂଳିଆଦି ଦୂର କରିବା—
2. To shake off the dust or dirt off one's cloth.

୩ । ଦେହରେ ଲାଗିଥିବା ଧୂଳି ଓ ମଇଳାକୁ ହାତ କିମ୍ବା ଗାମୁଛାଦ୍ୱାରା ଶରୀରରେ ଆଘାତ କରି ପୋଛିବା—
3. To shake off dust from one's body with the hand or a duster.

ଏ ଅନ୍ତରେ ସାତ୍ୟକି ହୋଇ ଝାଡ଼ଝୁଡ଼ି
ଉଠି ଆସି କରି ଧଇଲେ ଖଣ୍ଡା ଢାଲ । କୃଷ୍ଣସିଂହ, ମହାଭାରତ, ଦ୍ରୋଣ ।

**ଝାଡ଼ିଣି**—ଦେ. ବି—ଝାଡ଼ଣ (ଦେଖ)
Jhārdini Jhārdana (See)

**ଝାଡ଼ିବା**—ଦେ. କ୍ରି. (ସଂ. ଝଟ୍ ଧାତୁ—ସଂଶୀକରଣ; ଝାଡ଼ିବାର ଣିଜନ୍ତ-
Jhārdibā ରୂପ)—୧ । କୌଣସି ସ୍ଥାନ ବା ବସ୍ତୁକୁ ସମ୍ମାର୍ଜନୀ-
ঝাড়া ଦ୍ୱାରା ପରିଷ୍କାର କରିବା; ଓଳାଇବା—
ঋাড়না 1. To cleanse a place or thing of dirt; to sweep a place clean.

୨ । କୌଣସି ପଦାର୍ଥରୁ (ଯଥା—ଗଛଡ଼ାଳରୁ) ତହିଁର କୌଣସି ଅଂଶ (ଯଥା—ଫଳ)କୁ ପୃଥକ୍ କରିବା ଉଦ୍ଦେଶ୍ୟରେ ଉକ୍ତ ପଦାର୍ଥକୁ କମ୍ପାଇବା—
2. To lustily shake a thing (e. g. a branch) to separate a part (e. g. the fruits) from it.

୩ । କୁଲାରେ ଶସ୍ୟାଦି ପାଛୁଡ଼ିବା—
3. To winnow corn etc

ତଣ୍ଡୁଳ ଆଶେ ତୁଷ କୁଟି
ଝାଡ଼ି ଯେସନେ ପ୍ରାଣୀ ଫୁଟି । ଜଗନ୍ନାଥ, ଭାଗବତ ।

୪ । କରତଳଦ୍ୱାରା, ଲୁଗାଦ୍ୱାରା ବା ଝାଡ଼ଣଦ୍ୱାରା କୌଣସି ବ୍ୟକ୍ତିର ଦେହରେ ବା କୌଣସି ପଦାର୍ଥରେ ଲାଗିଥିବା ଧୂଳିକୁ ଦୂର କରିବା—4. To free the body of a person or thing of dust by using a duster or cloth or the palm.

୫ । କୌଣସି ପଦାର୍ଥରେ ଲାଗିଥିବା ଧୂଳି ବା ମଇଳା ବା ଅନ୍ୟବସ୍ତୁ ଯେଉଁପରି ଝଡ଼ିପଡ଼ିବ ବା ଉଡ଼ିଯିବ ସେହିପରି ଉକ୍ତ ପଦାର୍ଥକୁ ଜୋରରେ ହଲାଇବା—5. To shake a thing lustily and with jerks so as the dirt or dust clinging to it will fall down or fly away.

ଏହା ଦେଖି କୃଷ୍ଣ ବାହୁକୁ ଦେଲେ ଝାଡ଼ି
ପଡ଼ିଲେ ଯଣ୍ଡପ୍ରଦକମାନେ ତଳେ ଝଡ଼ି । କୃଷ୍ଣସିଂହ, ମହାଭାରତ, କର୍ଣ୍ଣ ।

୬ । ଭୂତପ୍ରେତାଦି ବା ରୋଗ ବା ସର୍ପବିଷ ଦୂରୀକରଣାର୍ଥ ମନ୍ତ୍ର ପଢ଼ି କୌଣସି ବ୍ୟକ୍ତିର ଅଙ୍ଗରେ ହାତ ବୁଲାଇବା—
6 To exorcise; to expel spirits or disease or venom from the body by moving the fingers or making passes on it while chanting charms.

ବଡେହ ପ୍ରେତ ଝାଡ଼ିବାକୁ ଅନ୍ତର-ଗରୁଁ ତୋ ବାଣୀ ମନ୍ତ୍ରର ।
ଭଞ୍ଜ, ବୈଦେହୀଶବିଳାସ ।

୭ । ନଡ଼ିଆଗଛରୁ ବର୍ଷକେ ଥରେ ଶୁଖିଲା ବାହୁଙ୍ଗା, ଚଅଁର, ଖୋସାଆଦିକୁ ହାଣି ସଫା କରିବା—6. To cleanse cocoanut trees of dry branches and sheaths etc (once in a year).
[ଝାଡ଼ା(ଡ଼େ)ଇବା—ଣିଜନ୍ତରୂପ]

୮ । (ବାଘ, ବିରାଡ଼ି ଓ କୁକୁରଆଦି ହିଂସ୍ରଜନ୍ତୁ) ଶିକାରକୁ ମୁହଁରେ ଧରି ଜୋର୍ ପୂର୍ବକ ଇତସ୍ତତଃ ଛିଞ୍ଚାଡ଼ିବା—
8. To give a rude shaking to a prey (said of tigers, cats and dogs).

ହରିଣ ଶିଶୁକୁ ପଥେ ହର୍ଯ୍ୟକ୍ଷ ଯେପରି
ହାବୋଡ଼ି, କାମୋଡ଼ି ଦନ୍ତେ କ୍ଷୀଣ ପ୍ରାଣ ତାରି ଦିଏ ଝାଡ଼ି ।
ରାଧାନାଥ, ମହାଯାତ୍ରା ।

୯ । କୁବାକ୍ୟଦ୍ୱାରା ଗାଳି ଦେବା—
9. To abuse or give vent to one's rage.
(ଯଥା—ତାକୁ ବୁଢ଼ୀ ଝାଡ଼ି ଦେଲା ।)

୧୦ । ବଳ ଝଡ଼ାଇବା; ଶରୀରର ବଳ ବା ମାଂସ ହରଣ କରିବା; ବଳହୀନ-ବା ଶକ୍ତିହୀନ କରିବା—
10 To take away strength or flesh from the body; to emaciate.
(ଯଥା—୮ଦିନ ଜ୍ୱର ତାକୁ ଏକଦମ୍ ଝାଡ଼ିଦେଲା ।)

୧୧ । (ଗଛରୁ ଫଳପୁଷ୍ପାଦି) ଛିଣ୍ଡାଇ ପକାଇବା—
11. To pluck (flowers or fruits from a tree).
ବୃକ୍ଷ ଉପାଡ଼ି ସେ ଫଳ ଝାଡ଼ିଲା ମୁଗର । ଭଞ୍ଜ, ବୈଦେହୀଶବିଳାସ ।

୧୨ । ଜୋର୍ କରି ଇତସ୍ତତଃ ସଞ୍ଚାଳିତ କରିବା—
12 To wave with force; to shake lustily to and fro.

ଅର୍ଜୁନଙ୍କୁ ହାଣିବା ବୋଲନ୍ତେ ପାଇକ
ଯାକ ଖଣ୍ଡା ଝାଡ଼ିଲେ ଲହୁଁ ଛଡ଼ ଦକ । କୃଷ୍ଣସିଂହ, ମହାଭାରତ ଦ୍ରୋଣ ।

୧୩ । ଘରଛୁଆଣି ବେଳେ ଚାଳରୁ ନଡ଼ା ଉଲାରି ଚାଳକୁ ପରିଷ୍କାର କରିବା—13. To clear away the old thatch of a thatched house when it is annually dismantled for rethaching.

୧୪ । (ଲୋତକ) ଗଡ଼ାଇବା; ବୁହାଇବା; ଝଡ଼ାଇବା—
14. To let fall; to let flow (e.g. tear).

ଏହା କହି ନୟନ ଯୁଗୁଁ ଅଶ୍ରୁ ଝାଡ଼ି,
ପଡ଼ିଲେ ଭୂମି ତଳେ ହୋଇଣ ଅଜାଡ଼ି । କୃଷ୍ଣସିଂହ, ମହାଭାରତ, କର୍ଣ୍ଣ ।

୧୫ । ଖସାଇବା; ସ୍ଥାନ ଚ୍ୟୁତ କରିବା—
15. To dislodge; to dislocate.

ମୁଷ୍ଟି ପ୍ରହାର ବାମ କରେ,
ଦନ୍ତ ଝାଡ଼ିଲେ ବେଗଭରେ । ଜଗନ୍ନାଥ. ଭାଗବତ ।

୧୬ । ନିଜର ସର୍ବାଙ୍ଗକୁ ଜୋରରେ କମ୍ପାଇବା; ନିଜର ଦେହକୁ ଇତସ୍ତତଃ ହଲାଇବା—16. To shake one's body lustily.

( ଯଥା—ଘୋଡ଼ା ଦୁଷ୍ଟାମି କରି ଦେହକୁ ଝାଡ଼ିଦେଲାରୁ ଆରୋହୀ ତା ପିଠିରୁ ଖସି ପଡ଼ିଲେ । )

୧୭ । କମ୍ପାଇବା—17. To shake.

ଶ୍ରବଣ ଏହା ଶୁଣି ଝାଡ଼ି ମୃଣାଳୀ,
ବୋଇଲା ଭୋର ଭ୍ରମ ଅଟେ ବଳୀ । କୃଷ୍ଣସିଂହ. ମହାଭାରତ. ବନ ।

୧୮ । ନିଜର ଅଙ୍ଗବିଶେଷ ( ଯଥା—ହାତ, ଗୋଡ଼, କାନ, ଡେଣା )କୁ ଜୋରରେ କମ୍ପାଇବା—18. To shake a particular limb of one's body.

କେବେ ଅବା ସ୍ୱପ୍ନେ ଝାଡ଼ୁଅଛି ଡେଣା ବିହଙ୍ଗ ସ୍ୱନୀଡ଼ଶାୟୀ—ରାଧାନାଥ. ପାର୍ବତୀ ।

୧୯ । ନଡ଼ାକେଣ୍ଡାରେ ଲାଗିଥିବା ଶସ୍ୟ ଖସି ପଡ଼ିବା ପାଇଁ ଶସ୍ୟର କେଣ୍ଡାକୁ ବା ବିଡ଼ାକୁ ତଳେ ବା ପଟାଉପରେ ବାଡ଼େଇବା ବା ଛାଟିବା—19. To thresh out corn from the blade or sheaf.

୨୦ । ନିର୍ଧନ ବା ଅର୍ଥଶୂନ୍ୟ କରିବା; ସମସ୍ତ ଧନ ନିଃଶେଷିତ କରିବା—20. To make a man pennyless; to exhaust a person of all his money.

( ଯଥା—ଏ ବର୍ଷ ପୁଅ ବିଭାଘର ମୋତେ ଝାଡ଼ିଦେଲା । )

୨୧ । ଖାଲି କରିବା; ଖାଙ୍କା କରିବା—
21. To make empty; to exhaust.

( ଯଥା—ଲୋକଙ୍କୁ ଦାନ କରି କରି ସେ ତା ଭଣ୍ଡାର ଝାଡ଼ିଦେଲା । )

[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ପକାଇବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

ଝାଡ଼ୁ—ଦେ. ବି [ସଂ. ଝଟ ଧାତୁ=ଓଳାଇବା; ତୁଳ. ଫା. ଜାରୁ= ଝାଡ଼ୁଣୀ (ଜ୍ଞାନେନ୍ଦ୍ର )]—ସମ୍ମାର୍ଜନୀ; ଝାଡ଼ୁଣୀ; ବଢ଼ିଣା; ପର୍ଦ୍ଦିଗ୍ମୁତ୍ରା—Broom; sweeping mop; broomstick.
Jhārdu
ଝାଡୁ, ଝାଁଟା
झाड़ू

ଝାଡ଼ୁଆ—ଦେ. ବିଣ—୧ । ବଣୁଆ; ଜଙ୍ଗଲବାସୀ—
Jhārduā 1. Living in the jungle; wild.
ଝାଡୁଆ କେ ବୋଲେ ସେ ଅସୁରୁଚି, କଲେ ଝାଡ଼ୁଆଙ୍କ କଥ—
झाड़ुवार ବ୍ରଜନାଥ. ସମରତରଙ୍ଗ ।

୨ । ଆରଣ୍ୟକ—2. Belonging or relating to forests; jungly.

ଦେ. ବି—ଝାଡ଼ୁଆ ବ୍ରାହ୍ମଣ ( ଦେଖ )—
Jhārduā brāhmaṇa (See)

ଝାଡ଼ୁଆ ନାଆ(ହା)—ଦେ. ବି—ସରୁଆ ନୌକାବିଶେଷ—
Jhārduā nā-ā(hā) A kind of narrow country-boat.

ଝାଡ଼ୁଆନାଆ ଆଗ ମଙ୍ଗ ଶତା ହୋଇଅଛି—ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଝାଡ଼ୁଆ ବ୍ରାହ୍ମଣ—ଦେ. ବି—୧ । ସମ୍ବଲପୁରବାସୀ ଆରଣ୍ୟକ ବ୍ରାହ୍ମଣ—
Jhārduā brāhmaṇa 1. A class of Brāhmans of Sambalpur (orginal inhabitants of the place).

[ଦ୍ର—ଝାଡ଼ୁଆ ବ୍ରାହ୍ମଣମାନେ ସମ୍ବଲପୁରର ଆଦିମ ନିବାସୀ; ଓଡ଼ିଆ ବ୍ରାହ୍ମଣମାନେ ସମ୍ବଲପୁରକୁ ଆସିବା ପୂର୍ବରୁ ଏମାନେ ଆସି ସମ୍ବଲପୁରରେ ସ୍ଥାୟୀ ଅଧିବାସୀ ହୋଇଥିଲେ । କେହି କେହି କହନ୍ତି ଯଯାତିକେଶରୀ କାନ୍ୟକୁବ୍ଜରୁ ଯେଉଁ ବ୍ରାହ୍ମଣଙ୍କୁ ଅଣାଇ ଥିଲେ ଏମାନେ ସେମାନଙ୍କ ବଂଶଧର । କଥିତ ଅଛି ଯେ ଏମାନେ ପ୍ରଥମେ ଓଡ଼ିଶାରୁ ଆସି ସମ୍ବଲପୁର ଅଞ୍ଚଳରେ ବସତି କରିଥିଲେ, ପରେ ଯେଉଁ ବ୍ରାହ୍ମଣମାନେ ଓଡ଼ିଶାରୁ ଆସିଲେ ସେମାନେ ଆପଣାକୁ ଓଡ଼ିଆ ଓ ପୂର୍ବାଗତ ବ୍ରାହ୍ମଣମାନଙ୍କୁ ଝାଡ଼ୁଆ ନାମ ଦେଲେ ।

ମତାନ୍ତରରେ ଝାଡ଼ୁଆ ବ୍ରାହ୍ମଣମାନେ ରାଜପୁତ ରାଜାମାନଙ୍କ ସଙ୍ଗେ ଉତ୍ତର-ଭାରତରୁ ସମ୍ବଲପୁରକୁ ଆସିଥିଲେ । ସମ୍ବଲପୁର ଅଞ୍ଚଳ ପୂର୍ବେ ଜଙ୍ଗଲ ଥିବାରୁ ଏହି ଜଙ୍ଗଲ ବା ଝାଡ଼ ଶବ୍ଦ ଅନୁସାରେ ଏ ବ୍ରାହ୍ମଣମାନଙ୍କୁ 'ଝାଡ଼ୁଆ' ବୋଲାଯାଏ । ଏମାନଙ୍କ ସଙ୍ଗେ ଦାକ୍ଷିଣ ବା ଓଡ଼ିଆ ବ୍ରାହ୍ମଣମାନେ ସାମାଜିକ ଭାବରେ ମିଶନ୍ତି ନାହିଁ । ]

୨ । ସମ୍ବଲପୁର ଅଧିବାସୀ ଗଉଡ଼ ଓ କରଣମାନଙ୍କ ଶ୍ରେଣୀ-ବିଶେଷ—2. Sub-castes of cowherds and Karaṇas of Sambalpur.

ଝାଡ଼ୁ କରିବା—ଦେ. କ୍ରି.—ସମ୍ମାର୍ଜନୀଦ୍ୱାରା ଗୃହାଦି ଓଳାଇବା—
Jhārdu karibā To sweep a place clean with a broomstick.
ଝାଡୁ ଦେଓୟା
झाड़ू देना

ଝାଡ଼ୁକସ୍—ଦେ. ବି. (ହି. ଝାଡ଼ୁ+ଫା. ପ୍ରତ୍ୟୟ କସ୍)—
Jhārdu-kas ଝାଡ଼ୁବରଦାର (ଦେଖ)
Jhārdu bar-dār (See)

ଝାଡ଼ୁ ଖାଇବା—ଦେ. କ୍ରି.—ଝାଡ଼ୁଦ୍ୱାରା ପ୍ରହାରିତ ହେବା—
Jhārdu khāibā To get a thrashing with broomstick.
ଝାଡୁ ଖାଓୟା
झाड़ू खाना

ଝାଡ଼ୁଖିଆ—ଦେ. ବିଣ. ପୁଂ.—୧ । ଯେ ଝାଡ଼ୁରେ ମାଡ଼ ଖାଏ—
Jhārdu-khiā 1. Getting a thrashing with broom-stick.
ଝାଟା ଖେଗୋ
झाड़ू खोर

୨ । (ଗାଳି) ଯାହାକୁ ସ୍ତ୍ରୀଲୋକ ଝାଡ଼ୁ ମାରେ—
(ଝାଡ଼ୁଖାଇ—ସ୍ତ୍ରୀ) 2. (a term of abuse), One who is
(ଝାଡ଼ୁଖୋର—ଅନ୍ୟରୂପ) beaten with a broomstick by a woman.

| ୲ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇୟ | ଉଅ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଗ | ଇଅ | ଭ | ଟ୍ର |

ଝାଡ଼ୁଝୁଡ଼ୁ—ଦେ. ବି. ଣ ଓ କ୍ରି. ଣ—ଝାଡ଼ଝୁଡ଼ ( ଦେଖ )
Jhārdu-jhurdu Jhārda-jhurda ( See )

ଝାଡ଼ୁ ଟୋକେଇ—ଦେ. ବି. ( ସହରର ଶବ୍ଦ )—
Jhārdu tokei ମେହେନ୍ତର ଓ ମେହେନ୍ତରାଣୀମାନଙ୍କର ରାସ୍ତା-ଘାଟ ଓ ପାଇଖାନା ସଫା କରିବାର ଦୁଇଟି ଆବଶ୍ୟକ ଉପକରଣ, ବଢ଼ିଣା ଓ ଟୋକେଇ—Broom and basket used by sweepers ( in cleansing roads and latrines ).

ଝାଡ଼ୁଣୀ—ପ୍ରାଦେ. (ସମ୍ବଲପୁର) ବି.—ଝାଡ଼ୁ; ବଢ଼ିଣା; ପହଁରା—
Jhārduṇi Broom-stick
(ଝାଡ଼ୁନି—ଅନ୍ୟରୂପ)

ଝାଡ଼ୁଦୁମା—ଦେ. ବିଣ. (ହି. ଝାଡ଼ୁ+ଫା. ଦୁମ୍=ଲାଙ୍ଗୁଡ଼)—ଯେଉଁ
Jhārdu-dumā ହାତୀର ଲାଙ୍ଗୁଡ଼ ଝାଡ଼ୁ ପରି ଅଗ୍ରବିସ୍ତୃତ (ଏପରି
ଝାଡୁଦୁମା ହାତୀ ଅଶୁଭ ବୋଲି ବିବେଚିତ )—( elephant)
झाड़ू दुमा Having the end of the tail spreading out like a broom-stick.

ଝାଡ଼ୁ ଦେବା—ଦେ. କ୍ରି—୧ । କୌଣସି ସ୍ଥାନକୁ ଝାଡ଼ୁଦ୍ୱାରା ଓଳାଇବା-
Jhārdu debā 1. To sweep a place clean with a broom.
ঝাঁটা দেওআ झाड़ू देना
(ଝାଡ଼ୁ ମାରିବା—ଅନ୍ୟରୂପ)— ୨ । କୌଣସି ବ୍ୟକ୍ତିକୁ ଝାଡ଼ୁଦ୍ୱାରା ପ୍ରହାର କରିବା—2. To beat with a broom-stick.

ଝାଡ଼ୁପୁଡ଼ୁ—ଦେ. ବିଣ.—ଝାଡ଼ଝୁଡ଼ (ଦେଖ)
Jhārdu-purdu Jhārda-jhurda (See)

ଝାଡ଼ୁବରଦାର—ଦେ ବି.—(ହି. ଝାଡ଼ୁ+ଫା. ପ୍ରତ୍ୟୟ ବରଦାର୍=
Jhārdu-bardār ବାହକ)—ରାସ୍ତା ଘାଟ ଆଦି ପରିଷ୍କାର କରିବା
ঝাড়ু বরদার ଯେଉଁ ଲୋକର ବୃତ୍ତି ଅଟେ; ମେହେନ୍ତର—
झाड़ू बरदार A sweeper by profession.
(ଝାଡ଼ୁଦାର—ଅନ୍ୟରୂପ)

ଝାଡ଼ୁ ମାରିବା—ଦେ. କ୍ରି.—୧ । ଝାଡ଼ୁ ଦେବା (ଦେଖ)
Jhārdu māribā Jhārdu debā (See)
ঝাড়ুমারা ୨ । ଅତି ଅପମାନ କରିବା—
झाड़ू मारना 2. To grossly insult a person.

ଝାଡ଼ୁମାଲି—ପ୍ରାଦେ. (ଗଡ଼ଜାତ) ବି.—ଝାଡ଼ୁ ବରଦାର (ଦେଖ)
Jhārdu-māli Jhārdu-bardār (See)

ଝାଡ଼ୁ ମୁଠା—ଦେ. ବି.—(ହି. ଝାଡ଼ୁ+ସ. ମୁଷ୍ଟି)—ସମ୍ମାର୍ଜ୍ଜନୀ ପାଇଁ
Jhārdu muthā ଏକତ୍ର ବନ୍ଧା ହୋଇଥିବା ଖଡ଼ିକା ବା ଖଜୁରି-
(ଝାଡ଼ୁମୁଠି—ଅନ୍ୟରୂପ) ପତ୍ରାଦିର ଗୁଚ୍ଛ; ଝାଡ଼ୁଣୀ ମୁଠା— Broom-stick.

ଝାଡ଼େଶ୍ୱରୀ—ଦେ. ବି.—ଦେବୀବିଶେଷ—
Jhārdeśwari Name of a village-Goddess.

ଝାଣ୍ଟା – ପ୍ରାଦେ. (ମେଦିନୀପୁର) ବି.—(ଭୁଲ. ବ. ଝାଁଟା)—ଝାଡ଼ୁ—
Jhāntā Broom-stick.

ଝାଣ୍ଟିବା—ଦେ. କ୍ରି.—ଘର ବା କୌଣସି ସ୍ଥାନକୁ ଝାଡ଼ୁଦ୍ୱାରା ପରିଷ୍କାର
Jhāntibā କରିବା—To sweep a place or house clean.
ঝাঁটা
झड़वाना

ଝାଣ୍ଟେଇବା—ପ୍ରାଦେ. (ମେଦିନୀପୁର) କ୍ରି.—୧ । ଝାଣ୍ଟିବା (ଦେଖ)
Jhānteibā 1. Jhāntibā (See)
ঝাঁটান ୨ । ଝାଣ୍ଟିବାର ଣିଜନ୍ତରୂପ—
झड़वाना 2. Causative of Jhāntibā.

ଝାଟି—ଦେ. କ୍ରି. ବିଣ.—(ସ. ଝଟିତି)—ଝଟ୍‌କିନା; ଝଟିତି; ଅତିଶୀଘ୍ର-
Jhāti At once; sharp; very soon; quickly, speedily.
ঝাট
झट

ଘଗ୍ୟ ଏବେକ କନ୍ଯ ଲୋଚକ ଭାବ ସେଲେକ ଚନ୍ଦ୍ର,
ବାସେ ପୋଛିବ ସେକ ମୂର୍ଚ୍ଛିବ ଏକ ପୁଚ୍ଛିବ ଝାଟ ।
ଭକ୍ତ. ପ୍ରେମସୁଧାନିଧି ।

ଝାଟିକା—ଦେ. କ୍ରି. ବିଣ. ( ସ. ଝଟିତି )—ଝାଟି ( ଦେଖ )
Jhātikā Jhāti ( See )
( ଝାଟିକାର—ଅନ୍ୟରୂପ )

ଝାଟିକାରେ—ଦେ. କ୍ରି. ବିଣ—ଝାଟିକା ( ଦେଖ )
Jhātikāre Jhātikā ( See )

ଝୁଣ୍ଟି କାମେ ଭ୍ରମ ହେଲେ ଯେ, ଝାଟିକାରେ ଗୃହ କଲେ ସେ—
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ଝାନ୍‌ସି—ଦେ. ବି. ( ନାମ )—ରାଜପୁତାନା ଅନ୍ତର୍ଗତ ଗୋଟିଏ ବଡ଼
Jhān-si ସହର—Jhānsi; a town in Rājaputanā.
ঝাংসী [ ଦ୍ର—ଅରଚ୍ଛ ରାଜ୍ୟର ରାଜା ବୀରସିଂହଙ୍କଦ୍ୱାରା ଏଠାରେ
झांसी ଏକ ପ୍ରସିଦ୍ଧ ଦୁର୍ଗ ନିର୍ମିତ ହୋଇଥିଲା । ଝାନ୍‌ସି ରାଣୀ ଲକ୍ଷ୍ମୀବାଈ ଉକ୍ତ ଦୁର୍ଗ ରକ୍ଷା ପାଇଁ ଇଂରେଜଙ୍କ ସହିତ ଘୋର ଯୁଦ୍ଧ କରିଥିବା ବିଷୟ ଇତିହାସ ପ୍ରସିଦ୍ଧ—ମଦନମୋହନ. ତୀର୍ଥଦର୍ଶକ. ୪ର୍ଥ । ]

ଝାପଟା—ଦେ. ବି.—୧ । ( ସ. ଝମ୍ପ ) ବେଗରେ କୌଣସି ତରଳ
Jhāptā ପଦାର୍ଥ ( ଯଥା; ଜଳ ) ଅନ୍ୟ କଠିନ ପଦାର୍ଥ ଉପରେ
ঝাপটা ଜୋରରେ କରିବା ଆଘାତ ବା ଛାଟ୍‌ଦିଆ—
झपाटा 1. Forceful throwing of a liquid ( e. g. a handful of water ) over a solid thing (e. g. on the face of a fainting person ).
( ଯଥା—ବର୍ଷାର ଝାପଟା । )
୨ । ( ସ. ଚପେଟ୍ ) ଝଡ଼ ବା ପବନର ଏକ ପ୍ରବଳ ଧକ୍କା—
2. A gush of blowing wind or tempest.
ঝাপটা ୩ । ( ସ. ଯୁଗ୍ମ; ପ୍ରା. ଝୁମ୍ପ ) ମୁଣ୍ଡରେ ଲଗାଇବା ସୁନାର
झूमर ଝୁଣ୍ଟି ର ଓ ଝୁମ୍ପାଲଗା ଅଳଙ୍କାରବିଶେଷ—
3. A kind of pendant for the hair.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅଙ୍ଗିଆ' ନ ପାଇଲେ 'ଆଙ୍ଗିଆ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

[ ଦ୍ର—ଏହା ସୁନା ବା ରୂପାର ଗୁଡ଼ିଏ ଝୁମ୍ପା ଲଗା ଜଞ୍ଜିର ଲଟକି ଥିବା ଚଟକା ଅଳଙ୍କାର । କପାଳର ଏକପାଖରେ ବାଳ ଉପରେ ଏହାକୁ ଅଙ୍କୁଶିଦ୍ୱାରା ଲଗା ଯାଏ ଓ ଝୁମ୍ପା ଲଗା ଜଞ୍ଜିରମାନ କପାଳଆଡ଼ୁ କାନ ଉପରକୁ ଝୁଲୁଥାଏ । ସଂଯୁକ୍ତ ପ୍ରଦେଶର ସ୍ତ୍ରୀମାନେ ମୁଣ୍ଡର ଡାହାଣ ପାଖରେ ଏହାକୁ ପିନ୍ଧନ୍ତି, ପଞ୍ଜାବର ସ୍ତ୍ରୀମାନେ ମୁଣ୍ଡର ଦୁଇ ପାଖରେ ଦୁଇଟି ଝାପ୍ଟା ପିନ୍ଧନ୍ତି । ]

**ଝାପ୍ଟା ମାରିବା**—ଦେ. କ୍ରି—୧ । (ବର୍ଷା ଜଳ ଆଦି) ଜୋରରେ ଛାଟିଆଡ଼ା ମାରିବା; ଛାଟିବା—1. (rain water) To strike slantingly against something; to dash.
Jhāp-ṭā māribā
ঝাপটা মারা
ਝਪਾਟਾ ਮਾਰਨਾ

୨ । (ଝଡ଼ ବା ପବନର ଦ୍ୱାରା) ଥରେ ଆଘାତ କରିବା— 2. (wind) To strike violently with a gush.

୩ । (ପାଣି) ଛାଟି ଦେବା— 3. To dash (water) against a thing to splash.

**ଝାପ୍‌ସା**—ଦେ. ବିଣ. ( ସଂ. ଅସ୍ପଷ୍ଟ; ଧୂମସାର )—
Jhāp-sā ୧ । ଅସ୍ପଷ୍ଟଭାବରେ ଦେଖାଯିବା (ବସ୍ତୁ)—
ঝাপসা 1. Seen indistinctly; dimly seen.
ਧੁੰਧਲਾ ୨ । ଅସ୍ପଷ୍ଟଭାବରେ ଦେଖି ପାରିବା; ଜାଲଜାଲୁଆ (ଦୃଷ୍ଟି)— 2. Filmy; blurred ( eye-sight ).

ଦେ. ବି—୧ । ଚାଳିଶା; ୪୦ ବର୍ଷ ଟପିବା ବ୍ୟକ୍ତିଙ୍କର ଅକ୍ଷର ଆଦି ସଫା ପଢ଼ି ନ ପାରିବା ଅବସ୍ଥା—1. Dimness of eyesight after the age of 40 years.

୨ । ଚକ୍ଷୁର ରୋଗବିଶେଷ; ଯେଉଁ ରୋଗରେ ଆଖି ଉପରେ ପତଳା ଆବରଣ ମାଡ଼ି ଯିବାରୁ ରୋଗୀକୁ ପଦାର୍ଥ ସବୁ କୁହୁଡ଼ି ମାଡ଼ିଥିବା ଭଳି ଅସ୍ପଷ୍ଟ ଦେଖା ଯାଏ; ଜଳକା ଧରିବା ରୋଗ—2. Glaucoma; an eyedisease causing dimness of vision.

**ଝାପ୍‌ସା ଝାପ୍‌ସା**—ଦେ. କ୍ରି. ବିଣ—ଅସ୍ପଷ୍ଟଭାବରେ ଦେଖିବା ପ୍ରକାରେ- (to see ) Dimly; indistinctly.
Jhāp-sā jhāp-sā
ঝাপসা ঝাপসা
ਧੁੰਧਲਾ ਧੁੰਧਲਾ

**ଝାପଡ଼ା**—ପ୍ରାଦେ. ( ସମ୍ବଲପୁର ) ବି—କୁଙ୍କୁମ ଗଛ—
Jhāpaṛā Garcina Purpurea ( tree ).
[ ଦ୍ର—ଏହା ୧୦।୧୨ ହାତ ଉଚ୍ଚର ଗଛ, ପତ୍ର ପାନ ପରି । ଏହି ଗଛର ଫଳକୁ ଛେଚି ପାଣିରେ ଗୋଳି ଲୁଗାକୁ ଗୋଲାପୀ ( ହଳଦିଆ ମିଶା ନାଲି ) ରଙ୍ଗ କରନ୍ତି; କୁଙ୍କୁମ '୨' ଦେଖ ) । ]

**ଝାପି**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ଏହି ଅର୍ଥରେ ହି. ଝାଂପୀ)—
Jhāpi ପେଟରା (ଦେଖ) Peṭarā (See)

**ଝାବକ**—ସ. ବି—ଝାଉଁ (ଦେଖ)
Jhābaka Jhāuñ (See)

**ଝାବରା**—ପ୍ରାଦେ. (ଗଡ଼ଜାତ) ବି—ଅଗାଡ଼ି—
Jhābarā Chaff or empty paddy.

**ଝାବୁ**—ସଂ. ବି. (ଝା=ଅନୁକାର ଧ୍ୱନି+ବା ଧାତୁ=ଗମନ କରିବା+ କର୍ତ୍ତୃ. ଉ; ଯାହାର ଶାଖା ପବନରେ ଦୋହୋଲି ଝାଁଝାଁ (ଝାବୁ—ଅନ୍ୟରୂପ) ଶବ୍ଦ କରେ)—ଝାଉଁ (ଦେଖ)
Jhābu
Jhāuñ (See)

**ଝାବୁକ**—ସଂ. ବି. (ଝାବୁ+ସ୍ୱାର୍ଥେ କ)—ଝାଉଁ (ଦେଖ)
Jhābuka Jhāuñ (See)

**ଝାମ**—ଦେ. ବି.( ସଂ. ଧ୍ମା ଧାତୁ=ଅଗ୍ନି ସଂଯୋଗ କରିବା )—୧ । ମଥା-ଭ୍ରମ—1. Feeling of giddiness.
Jhāma

୨ । ମୂର୍ଚ୍ଛା; ଝୋଲ୍‌ମାରିବା—2. Fainting, swoon.

ବାଇକସୁନ୍ଦରୀ ବେଶମେ ବିଜୟତ୍ନଭୁମେ ଦେଖି ପଡ଼ିବେ ପର ଝାମେ ସେ ।
ଉପେ. ବୈଦେହୀଶବିଳାସ ।

୩ । ଅଗ୍ନିର ତାତି—3. Heat or blaze of fire.

୪ । ଅଗ୍ନିପାଣ୍ଡ; ଅପରାଧୀର ଜଳନ୍ତା କାଠିଁଆ ଉପରେ ଚାଲିବା ରୂପ ପରୀକ୍ଷା—4. The test through which accused persons were made to pass, in ancient times viz. of walking over burning charcoal to free themselves from false accusations.

ବକଳ୍ପ ଥିଲେ ବେଦ ଅନଳେ ହାସ
ବଦନ୍ତି ଜନେ ଝାମ ଲାଗନ୍ତେ ଦୋଷ ସେ । ଉପେ. ବୈଦେହୀଶବିଳାସ ।

୫ । ଗାଡ଼ିର ଚକର ପରିଧିରେ ବେଢ଼ିଥିବା ଲୌହବଳୟ— 5. The outer ring of iron round the rim of a wheel.

୬ । ପଣାସଂକ୍ରାନ୍ତିରେ ଯେଉଁ ଦହକ କାଠିଁଆରେ ପାଟୁଆମାନେ ଚାଲନ୍ତି; ପଣାସଂକ୍ରାନ୍ତିରେ ବ୍ରତଧାରୀମାନେ ଯେଉଁ କାଠିଁଆରେ ଚାଲନ୍ତି—6. The blazing fire over which devotees walk bare-footed on the Chaitra saṁkrānti; heap of fire lit up on Panāsaṁkrānti for walking upon it.

୭ । (ସଂ. କ୍ଷାମ)—କ୍ଷୀଣ; ଦୁର୍ବଳ—7. Lean; weak.

ଭେଦନ୍ତି ପ୍ରବଳ ହୁଅ କନ୍ଦି ହୁଏ ଝାମ । ଶିଶୁଶଙ୍କର. ଉଷାଭିଳାଷ ।

ଦେ. ବିଣ—ମୂର୍ଚ୍ଛିତ—Fainted; swooned.

**ଝାମକ**—ସଂ. ବି. (ଝମ୍ ଧାତୁ=ଭକ୍ଷଣ କରିବା+କର୍ତ୍ତୃ. ଅକ)—
Jhāmaka ଝାମା; ଅତିଦଗ୍ଧ ଇଷ୍ଟକ— Overburnt brick; vitrified brick.

**ଝାମ ଖେଳ**—ଦେ. ବି—ଚୈତ୍ର ସଂକ୍ରାନ୍ତିରେ ପାଟୁଆମାନଙ୍କର କାଠିଁଆ ଉପରେ ଚାଲିବା ଉତ୍ସବ—The festival or feat of devotees walking over live coal on Chaitra saṁkrānti day.
Jhāma khela

କେ ବୋଇଲେ ଭଲ ଏହାର ନାଶା ଗୁଣ
କାମ ଝାମଖେଳ କର୍ଅନ୍ତି କରେ ଭଣା । କୃଷ୍ଣସିଂ. ମହାଭାରତ ବନ ।

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ଝ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ |

**ଝାମ ମାରିବା**—ଦେ. ବି—୧ । ମଥାଭ୍ରମ—
Jhāma māribā 1. Giddiness of the brain.
୨ । ଝୋଲ ମାରିବା—2. Fainting; swooning; a fit of fainting.

**ଝାମ ଯିବା**—ଦେ. କ୍ରି—ମୂର୍ଚ୍ଛିତ ହେବା—
Jhāma jibā To have a fit; to swoon.
ମନୋରମ ଚରମ ଦେଶ ଡେରିଛ ଝାମ ଯିବେ ବାମ୍ଭିକେ ଦେଖିକରି ।
ଉପ୍ଭ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ଝାମ ହେବା**—ଦେ. କ୍ରି—ଝାମ ଯିବା (ଦେଖ)
Jhāma hebā Jhāma jibā (See)
ହନୁ ମୁଖୁଁ ଶୁଣି ରାମ କ୍ଷଣ ହାରି ହେଲେ ଝାମ
ଧନୁଶର ପକାଇ ଭୂମିର । ବଘୁନାଥ. ବଳଭଦ୍ରମାପୂଣ ।

**ଝାମା**—ଦେ ବି. (ସଂ. ଝାମକ)—୧ । ଅଗ୍ନିରଲ୍ଲ ଦାହରେ ପିଣ୍ଡୀଭୂତ ଇଷ୍ଟକ
Jhāmā ଖଣ୍ଡ; ପୋଡ଼ିଯାଇ ଉଡ଼ୁରି ପଡ଼ିଥିବା ଇଟା—
ঝামা 1. Vitrified brick, over-burnt brick.
**झाँवा** ୨ । ଝାମ (ଦେଖ)
2. Jhāma (See)

**ଝାମି**—ପ୍ରାଦେ. (ବାଲେଶ୍ୱର) ବି—ଗୁଆଳଥ; ପିଜୁଳି—
Jhāmi Guava.

**ଝାମୁ**—ଦେ. ବି—୧ । ଝାମ (ଦେଖ)
Jhāmu 1. Jhāma (See)
୨ । ଝାଉଁ (ଦେଖ)—2. Jhāuñ (See)
୩ । ଝାମୁଯାତ (ଦେଖ)—3. Jhāmujata (See)

**ଝାମୁଆ(ଆଁ)**—ଦେ. ବି—ଯେଉଁ ବ୍ରତଧାରୀ ବ୍ୟକ୍ତିମାନେ ଜଳନ୍ତାଙ୍ଗାରର
Jhāmuā(āñ) ଗାତରେ ପଣାସଂକ୍ରାନ୍ତି ଦିନ ଚାଲନ୍ତି—The devotees who walk over blazing charcoal on the Chaitra samkrānti day.

**ଝାମୁ ଓଷା**—ଦେ. ବି—ଝାମୁଯାତ ସମୟରେ କୌଣସି କୌଣସି ବ୍ୟକ୍ତି
Jhāmu oshā ମହାଦେବଙ୍କ ଉଦ୍ଦେଶ୍ୟରେ ପାଳନ କରିବା ବ୍ରତ—
The religious vow observed on the Chaitria Samkrānt.

**ଝାମୁ ଗୀତ**—ଦେ. ବି—ଝାମୁ ଯାତ ସମୟରେ ପାଟୁଆମାନେ ନାଚନାଚ
Jhāmu gita ଯେଉଁ ଗୀତ ବୋଲନ୍ତି—Songs sung by the persons who observe the Jhāmu-oshā vow.

**ଝାମୁ ନାଟ**—ଦେ. ବି—ଝାମୁ ଯାତ ସମୟରେ ପାଟୁଆମାନେ ଗୀତ ବୋଲି
Jhāmu nāṭa ଯେଉଁ ନୃତ୍ୟ କରନ୍ତି—Dancing done by the persons who observe the Jhāmu-oshā vow.

**ଝାମୁ ପରବ**—ଗ୍ରା. ବି—ଝାମୁ ଯାତ (ଦେଖ)
Jhāmu paraba Jhāmu jata (See)
(ଝାମୁପର୍ବ—ଅନ୍ୟରୂପ)

**ଝାମୁ ଯାତ**—ଦେ. ବି—ପଟୁଆଯାତ; ପଣାସଂକ୍ରାନ୍ତିରେ ବ୍ରତଧାରୀ ପାଟୁଆ-
Jhāmu jāta ମାନଙ୍କର ନିଆଁରେ ଚାଲିବା ଓ ବାଦ୍ୟ ସହିତ ଗୀତ ବୋଲି ନାଚିବା ପର୍ବ—The festival of fire-walking, dancing accompanied with music performed by some devotees on Chaitra samkrānti.

[ଦ୍ର—ପଣା ସଂକ୍ରାନ୍ତି ଦିନ ସାତହାତ ଗାତ ଭୂଇଁରେ ଖୋଳା ହୋଇ ସେଥିରେ ନିଆଁ ଦହକୁ ଥାଏ । ଅନ୍ୟ ଗୋଟିଏ ଗାତରେ ଦୁଧ ଓ ପାଣି ପୂର୍ଣ୍ଣ ଥାଏ । ବ୍ରତଧାରୀ ବ୍ୟକ୍ତି ଦୁଧପାଣି ଥିବା ଗାତରେ ଗୋଡ଼ ବୁଡ଼ାଇ ସାରି ତାପରେ ନିଆଁ ଜଳୁଥିବା ୭ହାତ ଗାତରେ ଏକାଦିକ୍ରମେ ଗୋଡ଼ ଦେଇ ଦେଇ ଚାଲି ଯାଏ ଓ ତାହା ଗୋଡ଼ରେ ଫୋଟକା ହୁଏ ନାହିଁ । କଟକଜିଲ୍ଲାର ବାଙ୍କି ଓ କେତେକ ଗଡ଼ଜାତରେ ଏ ଯାତ ହୁଏ । ସେ ଦିନ ଓ ତା ପରେ କେତେ ଦିନ ପର୍ଯ୍ୟନ୍ତ ବ୍ରତଧାରୀମାନେ ବେଶ ପିନ୍ଧି ଗ୍ରାମ ଗ୍ରାମ ବୁଲି ବାଦ୍ୟ ସହ ନାଚନ୍ତି ଓ ଗୀତ ଗାଆନ୍ତି । ]

**ଝାମ୍ପ**—ଦେ ବି. (ସଂ. ଝମ୍ପ)—୧ । କୁଦା; ଲମ୍ଫ—
Jhāmpa 1. Spring; jump; leap.
ঝাঁপ ୨ । ପୋଲୁହ (ଦେଖ)
**फलाँग** 2. Poluha (See)
ঝাপটা ୩ । ପକ୍ଷୀମାନେ ଗୋଡ଼ର ନଖଦ୍ୱାରା ଶିକାର ଉପରେ
**झपट** କରିବା ଆକ୍ରମଣ; ଛପ—3. Pounce; swoop.
ঝাঁখাড় ୪ । ଚଉରି ଗଛ; ଝାଙ୍କା ଗଛ; ଝାମ୍ପୁଡ଼ାଗଛ—
**झाँकड़ा** 4. A tree with spreading or bushy top.
টোকা ୫ । (ସଂ. ଝମ୍ପଟ) ମୁଣ୍ଡରେ ପିନ୍ଧିବା ତାଳପତ୍ରର ବେଣ୍ଟ ନ ଥିବା
**टोप** ଛତାବିଶେଷ; ଟୋପର—5. A wide-brimmed
ঝাঁপী hat of palm-leaf for the head.
**झाँपी** ୬ । ଘୋଡ଼ଣୀଯୁକ୍ତ ବଡ଼ ଟୋକେଇ—
6. A big baskets with a lid.
ପ୍ରାଦେ. (ଯାଜପୁର)—ବି—ଯେଉଁ ତାଟର ପିଠିପାଖରେ ବଡ଼ି ଯାଇଁ ବଟା ହୋଇଥିବା ବିରି ପିଣ୍ଡୀଭୂତ ହୋଇ ସ୍ଥାପିତ ହୁଏ—
A wicker-work tray on the back of which balls of Phaseolus paste are put for being dred up into Barḍi.

**ଝାମ୍ପଡ଼ା**—ଦେ. ବିଣ. (ସଂ. ପିଧାନ=ଆଚ୍ଛାଦନ)—୧ । ଛତରି; ଛତାକାର
Jhāmparḍā ଅଗ୍ରଭାଗଯୁକ୍ତ—1. Overspreading; with
ঝাঁপুড়া; ঝাঁপুড়া a spreading top; bushy.
ঝাঁপাল, ঝোঁকড়া, ঝাকড়া ୨ । ଝାମ୍ପୁଡ଼ାମୁଣ୍ଡା (ଦେଖ)
**झबरा, झबरीला** 2. Jhāmpurḍā-munḍā (See)
୩ । ଇତସ୍ତତଃ ମୁକୁଳା ହୋଇଥିବା (ଅଳ୍ପ ଲମ୍ବ ବାଳ)
3. Tangled; shaggy (short hair).
୪ । ଯେ (ହିଂସ୍ର ପଶୁ ପକ୍ଷୀ) ଶିକାରକୁ ଚପ ମାରେ; ଶିକାରୀ—
4. Preying, pouncing (bird or beast).
(ଝାମ୍ପୁଡ଼ା—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

ଝାମ୍ପଡ଼ାମୁଣ୍ଡା—ଦେ. ବଣ. ପୁଂ.—ଝାମ୍ପୁଡ଼ାମୁଣ୍ଡା (ଦେଖ)
Jhāmpardā-mundā Jhāmpurdā-mundā (See)
(ଝାମ୍ପଡ଼ୀମୁଣ୍ଡୀ—ସ୍ତ୍ରୀ)

ଝାମ୍ପଡ଼ୀ—ଦେ. ବଣ. ସ୍ତ୍ରୀ.—ଝାମ୍ପୁଡ଼ୀ ମୁଣ୍ଡୀ (ଦେଖ)
Jhāmpardi Jhāmpurdi mundi (See)
(ଝାମ୍ପୁଡ଼ୀ—ଅନ୍ୟରୂପ)

ଝାମ୍ପ ମାରିବା—ଦେ.କ୍ରି.—୧ । (ହିଂସ୍ର ପଶୁପକ୍ଷୀମାନେ) ନଖଦ୍ୱାରା ଆକର୍ଷଣ କରି କୌଣସି ପଦାର୍ଥକୁ ନେଇଯିବା—
Jhāmpa māribā
ঝাপটা মারা 1. To snatch away a thing by pouncing
झपटना (said of birds and beasts of prey.)
୨ । ଶିକାର ଉପରେ ବଳପୂର୍ବକ ଆକ୍ରମଣ କରି ପଡ଼ିବା ହେବା-
2. To swoop upon a prey-

ଝାମ୍ପର(ଇତ୍ୟାଦି)—ଗ୍ରା. (ଇତର) ବଣ.—ଝାମ୍ପଡ଼ା ଇତ୍ୟାଦି (ଦେଖ)
Jhāmparā (etc) Jhāmpardā etc (See)
(ଝାମ୍ପୁରା—ଅନ୍ୟରୂପ)
ପ୍ରାଦେ. (ଗଞ୍ଜାମ) ବି.—ଛୋଟ ଜଳାଶୟ—
A small tank.

ଝାମ୍ପରି—ଗ୍ରା. ବଣ. ସ୍ତ୍ରୀ—ଝାମ୍ପୁଡ଼ୀମୁଣ୍ଡୀ (ଦେଖ)
Jhāmpari Jhāmpurdi-mundi (See)
(ଝାମ୍ପୁରି—ଅନ୍ୟରୂପ)

ଝାମ୍ପଲା—ଦେ. ବିଣ. ପୁଂ—୧ । ଝାମ୍ପୁଲା (ଦେଖ)
Jhāmpalā 1. Jhāmpulā (See)
୨ । ଝାମ୍ପୁଲାଶିଂଘା (ଦେଖ)
2. Jhāmpulā-simghā (See)

ଝାମ୍ପଲାଶିଂଘା—ଦେ. ବଣ—ଝାମ୍ପୁଲା ଶିଂଘା (ଦେଖ)
Jhāmpalā-simghā Jhāmpulā-simghā (See).

ଝାମ୍ପାନ—ଦେ. ବି (ସଂ. ଝମ୍ପ+ଯାନ)—ଝମ୍ପାନ୍ (ଦେଖ)
Jhāmpān Jhampan (See).
[ ଦ୍ର—ଏହା ଖଟ ଚଳାଇବା ଢଙ୍ଗ ଆକାରରେ ବାଉଁଶ ଓ ରଜ୍ଜୁରେ ଗୁନ୍ଥା ହୋଇ ପ୍ରସ୍ତୁତ ହୋଇଥାଏ । ଏହାର ଲମ୍ବା ଓ ଚୌଡ଼ା ଅଢ଼େଇ ଫୁଟ ଏବଂ ଉଚ୍ଚତା ଅର୍ଦ୍ଧ ଫୁଟ; ହରଦ୍ୱାର ହୃଷୀକେଶ ପ୍ରଭୃତି ଅଞ୍ଚଳରେ ଏହା ମନୁଷ୍ୟବାହ୍ୟ ଯାନରୂପେ ବ୍ୟବହୃତ ହୁଏ— ମଦନମୋହନ ତୀର୍ଥଦର୍ଶନ ୪ର୍ଥ ।]

ଝାମ୍ପି—ଦେ, ବି (ସଂ. ସପୁଟ)—୧ । ମୁଣ୍ଡରେ ପିନ୍ଧାଯିବା ତାଳପତ୍ରର ଟୋପି; ଝାମ୍ପ—1. A wide-brimmed-hat made of palm-leaf.
Jhāmpi
টোকা
टोप
କେହି ଝାମ୍ପି ଟାଏ ମୁଣ୍ଡେଇ ହାତରେ ଦଉଡ଼ି ଖଣ୍ଡେ ଧରି × × ×
ବାଡ଼ିଟାଏ କାଖରେ ପକାଇ ଘାସ କାଟିବାକୁ ବାହାରିଅଛି—
ଫକୀରମୋହନ. ଛମାଣଆଠଗୁଣ୍ଠ ।
[ଦ୍ର—ଏହା ସାହେବଙ୍କ ଟୋପି ବା ପଲମ ପରି ଓ ଖୁବ୍ ଚଉଡ଼ା ବଡ଼ ଫନଯୁକ୍ତ ଓ ଏହାକୁ ମୁଣ୍ଡରେ ପିନ୍ଧିଲେ ମୁଣ୍ଡ ଖରା ଓ ବର୍ଷାରୁ ରକ୍ଷା ପାଏ; ଅଥଚ ଦୁଇ ହାତ ସ୍ୱାଧୀନ ରହିବାରୁ ହାତରେ ଆବଶ୍ୟକ କର୍ମ କରାଯାଇ ପାରେ । ]
ঝাঁপী ୨ । ଆବରଣଯୁକ୍ତ ବଡ଼ ଟୋକେଇ--
झाँपी 2. A big basket with a lid.
ପ୍ରାଦେ (ସମ୍ବଲପୁର) ବି—(ଭୁଲ ଏହି ଅର୍ଥରେ ହି.ଏହି ଶବ୍ଦ)—
୧ । ପେଡ଼ି—1. A covered basket; work-basket.
୨ । ପେଟରା—2. A cane-box with a lid.

ଝାମ୍ପି ପଡ଼ିବା—ଦେ. କ୍ରି—ଝାମ୍ପମାରିବା ୨ (ଦେଖ)
Jhāmpi pardibā Jhāmp māribā 2. (See).

ଝାମ୍ପିବା—ଦେ. କ୍ରି (ସଂ ଝମ୍ପ)—୧ । ଝାମ୍ପ ମାରିବା (ଦେଖ)
Jhāmpibā Jhāmpa māribā (See)
ছোঁ মারা; ঝাপটা মারা ଲାଳ ବହଗଙ୍କୁ ଝାମ୍ପଇ ଗୀ ଖୋଜି ଦନ୍ତ ଚପଲ ସନ୍ଧାଣ ।
झपटना, पंझामारना କବିସୂର୍ଯ୍ୟ. ସଙ୍ଗୀତ ।

ଝାମ୍ପୁଡ଼ା—ଦେ. ବଣ—ଝାମ୍ପଡ଼ା (ଦେଖ)
Jhāmpurdā Jhāmpardā (See).

ଝାମ୍ପୁଡ଼ା ଚିଲ—ଦେ. ବି (ସଂ. ଝମ୍ପ+ଚିଲ୍ଲ)—ଯେଉଁ ଚିଲ ଝାମ୍ପମାରି କୌଣସି ପଦାର୍ଥ (ଯଥା ମାଛ)କୁ ନେଇଯାଏ—
Jhāmpurdā chila
A pouncing kite.

ଝାମ୍ପୁଡ଼ାମୁଣ୍ଡା—ଦେ.ବଣ. ପୁଂ—୧ । ଯାହାର ମୁଣ୍ଡରେ ଛୋଟ ଛୋଟ କେଶ ଅଲୁଲାୟିତ ଓ ଅଡ଼ୁଆ ହୋଇଥାଏ—
Jhāmpurdā-mundā
( ଝାମ୍ପୁଡ଼ୀମୁଣ୍ଡୀ—ସ୍ତ୍ରୀ ) 1. Having dishevelled
ঝাকড়াচুলো or tangled short hair.
୨ । ଯାହାର ମୁଣ୍ଡର ବାଳ ଝାମ୍ପୁଡ଼ା ହୋଇଥାଏ—
2. Having a bushy head of hair.

ଝାମ୍ପୁଡ଼ୀ—ଦେ. ବଣ, ସ୍ତ୍ରୀ—ଝାମ୍ପୁଡ଼ୀମୁଣ୍ଡୀ (ଦେଖ)
Jhāmpurdi Jhāmpurdi-mundi (See).

ଝାମ୍ପୁଡ଼ୀମୁଣ୍ଡୀ—ଦେ. ବଣ. ସ୍ତ୍ରୀ—ଝାମ୍ପୁଡ଼ାମୁଣ୍ଡାର ସ୍ତ୍ରୀଲିଙ୍ଗ—
Jhāmpurdi-mundi Feminne of Jhāmpurdā-mundā..

ଝାମ୍ପୁରା—ଗ୍ରା (ଇତର) ବଣ ପୁଂ—ଝାମ୍ପଡ଼ା (ଦେଖ)
Jhāmpurā Jhāmpardā (See).
(ଝାମ୍ପୁରୀ—ସ୍ତ୍ରୀ)

ଝାମ୍ପୁରା ଚିଲ—ଗ୍ରା. (ଇତର) ବି—ଝାମ୍ପୁଡ଼ା ଚିଲ (ଦେଖ)
Jhāmpurā chila Jhāmpurdā chila (See).

ଝାମ୍ପୁରା ମୁଣ୍ଡା—ଗ୍ରା (ଇତର) ବଣ. ପୁଂ—ଝାମ୍ପୁଡ଼ାମୁଣ୍ଡା (ଦେଖ)
Jhāmpurā-mundā Jhāmpurdā-mundā (See).
(ଝାମ୍ପୁରୀମୁଣ୍ଡୀ—ସ୍ତ୍ରୀ)

ଝାମ୍ପୁରୀ—ଦେ. ବଣ. ସ୍ତ୍ରୀ—ଝାମ୍ପୁଡ଼ୀମୁଣ୍ଡୀ ( ଦେଖ )
Jhāmpuri Jhāmpurdimundi ( See )

ଝାମ୍ପୁଲା (ଇତ୍ୟାଦି)—ଦେ. ବଣ—ଝାମ୍ପଡ଼ା ଇତ୍ୟାଦି ( ଦେଖ )
Jhāmpulā (etc) Jhampardā etc ( See )
ঝাঁকড়া ଜାଣ ନ ଜାଣ୍ ଝାମ୍ପୁଲା ଥଣ୍, ଗାଡ଼ଥଶିଂଗା ସବୁଠୁ ଟାଣ୍—କୃଷିବଚନ ।

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଣ | ଡ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଉପ | ଡ଼ଥ | ଞ |
| ୨ | ଢ | ଉ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ପ | ସ | ଟଂପ | ଥ | ଢ଼ | ନ |

ଝାମ୍ପୁଲଶିଂଘା—ଦେ. ବଣ. ପୁଂ. ଓ ସ୍ତ୍ରୀ—ଯେଉଁ ଗାଈ ବା ବଳଦର
Jhāmpulā-simghā ଶିଙ୍ଗଦ୍ୱୟ ଦୁଇଆଡ଼େ ବିପରୀତ ଦିଗରେ ବାହାରକୁ ବାହାରିଥାଏ—(cow or bullock) Having horns growing away from each other; with horns diverging away from each other.

ଝାର—ପ୍ରାଦେ. (ସମ୍ବଲପୁର) ବି (ସଂ. ଝାଟ=କ୍ଷୁଦ୍ର ବୃକ୍ଷ; ତୁଳ. ଏହି
Jhār ଅର୍ଥରେ ହି. ଏହି ଶବ୍ଦ)—ଝାଡ଼; ଜଙ୍ଗଲ—Forest.
[ ଦ୍ର—ଏହି ଶବ୍ଦରୁ ଝାରସୁଗୁଡ଼ା, ଝାରକଟା ଆଦି ସ୍ଥାନର ନାମ ହୋଇଅଛି । ]

ଝାରଖଣ୍ଡ—ପ୍ରାଦେ (ସମ୍ବଲପୁର) ବି—ଝାଡ଼ଖଣ୍ଡ (ଦେଖ)
Jhār-khand Jhārda-khanda (See)

ଝାରବିଲେଇ—ପ୍ରାଦେ (ସମ୍ବଲପୁର) ବି—ବଣବୁଆ; କଟାସ—
Jhār-bilei Wild cat.

ଝାରା—ପ୍ରାଦେ (କଳାହାଣ୍ଡି) ବି—ଘାସ—
Jhāra Grass.

ଝାରା—ପ୍ରାଦେ (ବସ୍ତର) ବି—ଜାଲିଚାଟୁ—
Jhārā A perforated ladle.

ଝାରି—ପ୍ରାଦେ (ମେଦିନୀପୁର) ବି (ତୁଳ. ଏହି ଅର୍ଥରେ ବ. ଓ ହି. ଏହି
Jhāri ଶବ୍ଦ)—ଝରି; ଗଡ଼ୁ; ଗାଲ—Water-pot.

ଝାରିବା—ଦେ. କ୍ରି—(ତୁଳ. ଏହି ଅର୍ଥରେ ହି. ଝାଡ଼ନା)—
Jhāribā ୧ । ଝାଡ଼ିବା (ଦେଖ)—
1. Jhārdibā (See)
୨ । ଝରାଇବା; ଗଡ଼ାଇବା—2. To let fall; to drop.
ନୟାନନ୍ଦୀ ଅଶ୍ରୁବିନ୍ଦୁ ଝାର କେଉଁ-ଅଙ୍ଗେ—ନନ୍ଦକିଶୋର, ସୀତାବନବାସ ।
ପ୍ରାଦେ. (ସମ୍ବଲପୁର) କ୍ରି—ବାଲିରେ ମିଶିଥିବା ସୁନାରେଣୁକୁ ପାଛୁଡ଼ି ବାହାର କରିବା—To cause the gold dusts to separate from sand by winnowing or seiving.
[ ଦ୍ର—ସମ୍ବଲପୁର ଅଞ୍ଚଳରେ ଯେଉଁ ଜାତି ବାଲିରୁ ସୁନା ଝାରନ୍ତି ତାଙ୍କୁ ଝରା ବୋଲଯାଏ । ]

ଝାଲ୍—ପ୍ରାଦେ (ମେଦିନୀପୁର) ବି—(ସଂ. ଜ୍ୱାଳା, ତୁଳ. ଏହି ଅର୍ଥରେ
Jhāl ବ. ଏହି ଶବ୍ଦ) ରାଗ—Pungent taste.
ପ୍ରାଦେ. (ମେଦିନୀପୁର) ବିଣ—ରାଗୁଆ—Pungent.
ପ୍ରାଦେ (ସମ୍ବଲପୁର) ବି—ଝାଳ (ଦେଖ)—
Jhāla (See)

ଝାଳ—ଦେ. ବି (ସଂ. ଜଳ; ଝର;ଧାରା)—୧ । ସ୍ୱେଦ; ଘର୍ମ—
Jhāla 1. Sweat; perspiration.
ଘାମ ତାଙ୍କାଝାଳେ ପୂର୍ଣ୍ଣ କଲେ ସେ ଦେହକୁ—
ପସୀନା କୃଷ୍ଣସିଂହ, ମହାଭାରତ, ସଭା ।

[ ଦ୍ର—ଝାଳ କେବଳ ସ୍ତନ୍ୟପାୟୀ ଜୀବଙ୍କଠାରୁ ବହେ । ରାସାୟନିକ ବିଶ୍ଳେଷଣ ଦ୍ୱାରା ଦେଖା ଯାଇଅଛି ଯେ ଝାଳର ଉପାଦାନ ପ୍ରାୟ ପ୍ରସ୍ରାବର ଉପାଦାନ ପରି । ଝାଳରେ କ୍ଷାର, ଚର୍ବୀ ଓ ପ୍ରୋଟୀନ (ଶରୀର ଧାତୁ) ଥାଏ । ଏହା ଲୋମକୂପରୁ ନିର୍ଗତ ହୁଏ । ଗ୍ରୀଷ୍ମାଧିକ୍ୟରେ, ଅଧିକ ପରିଶ୍ରମରେ ବା ବ୍ୟାୟାମରେ, ଲଜ୍ଜା, କ୍ରୋଧ ଓ ଭୟ ଆଦି ଗଭୀର ଆବେଗରେ କିମ୍ବା ଅତ୍ୟଧିକ ଜଳପାନ କଲେ ଅଧିକ ଝାଳ ବୁହେ । ଏହା ଛଡ଼ା ରୋଗ ଯୋଗୁଁ ପ୍ରସ୍ରାବର ପରିମାଣ କମ ହୋଇଗଲେ ଝାଳର ପରିମାଣ କମ ହୁଏ । ସୁସ୍ଥ ବ୍ୟକ୍ତିର ଶରୀରରୁ ବହିବା ଝାଳରେ ଗନ୍ଧ ନ ଥାଏ, କିନ୍ତୁ ରୋଗୀର ଦେହର ଝାଳ ଦୁର୍ଗନ୍ଧ ହୁଏ । ହି. ଶବ୍ଦସାଗର । ]

ଝାଳ, ଝାଇଳ, ଝାଲି ୨ । (ସଂ. ଉଦ୍ଧାର; ପ୍ରା. ଉଜ୍ଝାଲ) ଦୁଇଟି
ଝାଳନା ଭିନ୍ନ ଧାତୁଖଣ୍ଡକୁ ଗଳିତ ଧାତୁ ଦ୍ୱାରା ଯୋଡ଼ିବା; ଝାଳିବା—2. Soldering.
ପ୍ରାଦେ. (ମେଦିନୀପୁର) ବି (ତୁଳ. ବ. ଝାଲ୍=ରାଗ; କଟୁ ସ୍ୱାଦ)—ଲଙ୍କାମରିଚ—Chillies.

ଝାଳ ଗମ୍‌ଗମ୍—ଦେ. ବିଣ—ଝାଳରେ ବୁଡ଼ି ଯାଇଥିବା; ଘର୍ମାକ୍ତ—
Jhāla gam-gam Profusely perspiring.
ଘାମଦରଦବ; ପସୀନେସେ तर
(ଝାଳ ସରସର; ଝାଳ ଜରଜର—ଅନ୍ୟରୂପ)

ଝାଳ ପାଟିଆ—ଦେ. ବି—ଧାତୁଖଣ୍ଡମାନଙ୍କୁ ଅଗ୍ନି ଉତ୍ତାପରେ ତରଳ
Jhāla pātiā ଧାତୁଦ୍ୱାରା ସଂଯୋଗ କରିବା ନିମନ୍ତେ ବ୍ୟବହୃତ
ଝାଳ ଧାତୁର ପତ୍ର—Thin bits of metal used
टाँक for soldering.

ଝାଳପୋଛା ଧନ—ଦେ. ବି—ଝାଳବୁହା କଉଡ଼ି (ଦେଖ)
Jhāla-pochhā dhana Jhāla-buhā kaurdi (See)

ଝାଳ ବ(ବୋ)ହିବା—ଦେ ବି—ସ୍ୱେଦ ନିର୍ଗମନ—Perspiration.
Jhāla ba(bo)hibā
ଘାମ ଦେଓୟା पसीना आना
(ଝାଳଦେବା—ଅନ୍ୟରୂପ)

ଝାଳବୁହା—ଦେ. ବିଣ—୧ । କଠୋର ପରିଶ୍ରମଦ୍ୱାରା ଉପାର୍ଜିତ—
Jhāla-buhā 1. Hard-earned; earned by the sweat
पसीनासे कमाहुआ of the brow.
(ଯଥା—ଝାଳବୁହା କଉଡ଼ି ।)
୨ । ଯେଉଁ କାର୍ଯ୍ୟ ବା ପରିଶ୍ରମ କଲେ ଶରୀରରୁ ଶ୍ରମଝାଳ ବହେ—2. (work or labour) Which causes
(ଯଥା—ଝାଳବୁହା ମିହନତ) one to perspire.

ଝାଳବୁହା କଉଡ଼ି—ଦେ. ବି—କଠୋର ପରିଶ୍ରମଦ୍ୱାରା ଉପାର୍ଜିତ ଧନ—
Jhāla-buhā kaurdi Money earned by hard labour.
ରକ୍ତଉଠା ପୟସା
गाढे पसीनेकि कमाइ
(ଝାଳବୁହା ଧନ—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ଆଉ ଯଥାକ୍ରମେ ଚିହ୍ନିତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ ।

**ଝାଲର**—ଦେ. ବି. ( ସଂ. ଜାଲ; ଭୁଲ. ସଂ. ଝଲ୍ଲା=ଚୋକେଇ; ସଂ. ଝଲ୍ଲରୀ : ଶ୍ଳ. ଶବ୍ଦସାଗର )—୧ । ତରଙ୍ଗ ବା ଜାଲ ଆକାରର ଯେଉଁ କାରୁକାର୍ଯ୍ୟବିଶିଷ୍ଟ ବସ୍ତ୍ରଖଣ୍ଡ ବା ସୂତୁଲିମାନ ମଶାରି ଓ ଗୃହ୍ଯ ଆଦିର ଧଡ଼ିରୁ ଲମ୍ବିତ ଥାଏ—
Jhālara
ঝালর
झालर
1. Ornamental or network fringe of cloth; hanging fringe; frilled edging.

ଚନ୍ଦ୍ରାତପ ତଳେ ଝୁଲଇ ମଣ୍ଡଳ
ଝାଲର ପରାଏ ତହିଁ ସଙ୍ଗେ ଫୁଲ—ସ୍ୱଧାନାଥ, ଚିଲିକା ।

୨ । ମୟୂର ଚନ୍ଦ୍ରିକା—
2. Tail-feather of a peacock.

ପ୍ରାଦେ. ( ସିଂହଭୂମ ) ବି—ଏକପ୍ରକାର ଧାନ—
A species of paddy.

**ଝାଲରଦାର୍**—ଦେ. ବି ( ସଂ ଝଲ୍ଲରୀ+ଫା. ପ୍ରତ୍ୟୟ.ଦାର୍ )—ଯେଉଁ ଥିରେ ଝାଲର ଓ ଦୋଲ ଥାଏ—
Jhālara-dār
ঝালরদার
झालरदार
Having hanging fringes or frills.

**ଝାଲରି**—ଦେ. ବି—୧ । ଝାଲର ( ଦେଖ )
Jhālari
1. Jhālara ( See )

୨ । କବାଟ, ସବାର ପ୍ରଭୃତିରେ ଏକତ୍ର ସଂଯୋଜିତ ଝରକା ପରି ପରସ୍ପର ଅସଂଲଗ୍ନ କାଷ୍ଠଖଣ୍ଡମାନ; ଝିଲ୍‌ମିଲ୍—
2. Venetian blind.

**ଝାଲରିଆ**—ଦେ. ବିଣ. ( ସଂ. ଜାଲ )—୧ । ଜାଲିଜାଲିଆ—
Jhālariā
1. Reticulated; netty.

୨ । ଝାଲରଯୁକ୍ତ; ଝାଲରଦାର—
2. Having hanging fringes; frilled.

୩ । ମୟୂରଚନ୍ଦ୍ରିକାଯୁକ୍ତ—3 Decorated with the tail-feathers of the peacock.

କମନୀୟ କେକୀ ଝାଲରିଆ ମେଦ କ ଜଗଜୀବନସୃଜାନନ୍ଦ ଲୋ—
କବିସୂର୍ଯ୍ୟ, ସଙ୍ଗୀତ ।

**ଝାଲା**—ଦେ. ବି—ଗୁଜରାଟ ଓ ମାଳବାଡ଼ ଅଞ୍ଚଳ ଅଧିବାସୀ ରାଜପୁତ ଜାତିବିଶେଷ—A sect of Rājaputas inhabiting Gujerat and Mālwa
Jhālā

**ଝାଲି**—ଦେ. ବି. ( ସଂ. ଜାଲ )—
Jhāli
୧ । ପୁଚ୍ଛ; ଲାଞ୍ଜ; ଲଙ୍ଗୁଡ଼—
1. The tail of an animal.

୨ । ଆଚାର—2. Pickle; fruit-preserve.

୩ । ଝାଲର—3. Ornamental network or fringe of cloth or strings.

୪ । କାନ ଭିତରର ସୂକ୍ଷ୍ମ ଚର୍ମ—
4. Membrane inside the ear.

**ଝାଲି**—ସଂ. ବି—ଦ୍ରଷ୍ଟା ଆମ୍ବ ଚକୁଡ଼ା ଚକୁଡ଼ା କଟା ହୋଇ ସେଥିରେ ଦେଶର, ଲୁଣ ଓ ହେଙ୍ଗୁ ମିଶା ଯାଇ କଥିଁରେ ସନ୍ତୁଳା ହୋଇ ପ୍ରସ୍ତୁତ କରାଯିବା ଅଚାର (ଭୁବପ୍ରକାଶ)—A kind of raw-mango-pickle fried with mustard, salt and asafoetida.
Jhāli

**ଝାଳିବା**—ଦେ. କ୍ରି. ( ସଂ. ଝଲ ବା ଜ୍ୱଲ ଧାତୁ; ସଂ. ଉଦ୍‌ଗାର )—
Jhāḷibā
ঝালা
झालना
୧ । ଧାତୁକର୍ମିତ ପାତ୍ର ଓ ଅଲଙ୍କାରାଦିର ଅଂଶମାନଙ୍କୁ ଗଳିତ ଧାତୁଦ୍ୱାରା ସଂଯୋଜନ କରିବା ବା ଯୋଡ଼ିବା—
1. To solder the different parts of a metal-pot or ornament.

୨ । ସଂଲଗ୍ନ କରିବା—2. To attach.

ଝାଳ ଦେଲୁ ନାହିଁ ଝଳ ଗୃହମଧ୍ୟେ ଗଣ୍ଡରୁ ମୋ ଗଣ୍ଡେ ଥରେ—
କବିସୂର୍ଯ୍ୟ, ସଙ୍ଗୀତ ।

୩ । ଅଲଙ୍କାରାଦି ଧାତୁ ପଦାର୍ଥକୁ ଘଷି ମାଜି ଉଜ୍ଜ୍ୱଳ କରିବା—
3. To brighten or burnish ornaments or other metalic things.

୪ । ଉଝାଳିବା; କୁଅ ପୋଖରୀ ଆଦିର ପଙ୍କୋଦ୍ଧାର କରିବା—
4. To clear out silt from the bottom of an old well or tank.

୫ । ଭଙ୍ଗା ବାସନ ବା ଅଲଙ୍କାର ଉପରେ ଧାତୁର ପାତିଆ ଦେଇ ମରାମତ କରିବା—To mend a broken or damaged utensil or ornament.

**ଝାଳୁଆ**—ଦେ. ବିଣ—୧ । ସ୍ୱେଦଯୁକ୍ତ; ଘର୍ମାକ୍ତ—
Jhāḷuā
ঘামুয়া, ঘেমো
पसीनेदार
1. Perspiring.

୨ । ଯହିଁରୁ ସର୍ବଦା କ୍ଷୁଦ୍ର ଜଳକଣାମାନ ବାହେ—
2. Giving out moisture.

ଝାଳେଇ } ସ୍ତ୍ରୀ—
ଝାଳୋଇ }
୩ । ପୁଂ—ଯେଉଁ ବ୍ୟକ୍ତି ଦେହରୁ ସର୍ବଦା ଝାଳ ବହୁଥାଏ—
3. (a person) Who perspires profusely.

ପ୍ରାଦେ (ମେଦିନୀପୁର) ବିଣ (ଭୁଲ. ଏହି ଅର୍ଥରେ ବଂ. ଝାଲୁୟା)—ରାଗୁଆ; ରାଗ—Pungent.

**ଝାଳେଇବା**—ଦେ.କ୍ରି—୧ । (ଅଙ୍ଗରୁ) ସ୍ୱେଦସ୍ରାବହେବା; ସ୍ୱେଦ ମୋଚନ କରିବା; (ଅଙ୍ଗ) ଘର୍ମାକ୍ତ ହେବା—
Jhāḷeibā
ঘামা
पसीजना
(ଝାଳେ;ଇବା—ଅନ୍ୟରୂପ)
1. To perspire; to sweat.

୨ । (କୌଣସି ବସ୍ତୁର ଦେହଯାକ) କ୍ଷୁଦ୍ର କ୍ଷୁଦ୍ର ଜଳକଣାରେ ଆଚ୍ଛନ୍ନ ହେବା—2. To be covered over with minute particles of water; to give out moisture.

୩ । ବାଷ୍ପଅଣିଦ୍ୱାରା ବା କୃତ୍ରିମ ଉପାୟରେ ମନୁଷ୍ୟର ଦେହରୁ ସ୍ୱେଦୋଦ୍‌ଗମ କରାଇବା—3. To bring about perspiration by means of vapour-bath or medicine.

| ୧ | ଇ | ଉ | ର,ୠ | ଌ | ଏ | ହ୍ରସ୍ୱାନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଚ୍ଛ | ଜ୍ଞ | ଦ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଲୃ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ | ଯ | ସ | ଚ୍ୟ | ଇଅ | ଡ଼ | ନ୍ |

**ଝାଲେ(ଲି)ରି**—ଦେ. ବ—ଝାଲର ( ଦେଖ )
Jhāle(li)ri   Jhālara ( See )
(ଝାଲେରଅ-ବଣ)

**ଝାସ**—ଦେ. ବ. (ସଂ. ଝଷ ଧାତୁ=ବଧ କରିବା, ସଂ. ଝମ୍ପ; ସଂ. ଧ୍ୱଂସ)-
Jhāsa  ୧ । କୌଣସି ସତ୍ୟର ପରୀକ୍ଷା ବା ପ୍ରାଣତ୍ୟାଗ ନିମନ୍ତେ
ଝାଁପ  ଜଳ ବା ଅଗ୍ନିକୁ ଡେଇଁବା—
ଝଁପ  1. Jumping into fire or water for ordeal or suicide.

ବଦଳିଥିଲେ ଦେବ ଅନଳେ ଝାସ । ଉଛ. ବୈଦେହୀଶବିଳାସ ।

୨ । ( ସଂ. ଧର୍ଷଣ ) ଅଗ୍ନି ବା ସୂର୍ଯ୍ୟଙ୍କର ତେଜ; ତାଢ଼ି; ତାପ; ଧାସ—2. Glare; blaze of the sun or fire.

ମାପବନ ପବନ ନବ ନଶିଶ ଧନଞ୍ଜୟ ଝାସରୁ କରେ କତ୍ନ କେଳ ।
କବିସୂର୍ଯ୍ୟ. ବଳଗୋପୀ ଚମ୍ପୂ. ଗୀତ ।

**ଝାସ ଦେବା**—ଦେ. ବ. ( ସଂ. ଝଷ ଧାତୁ )—ଝାସିବା ( ଦେଖ )
Jhāsa debā   Jhāsibā ( See )
ଝାଁପ ଦେଓୟା  ଜାଣୁ ଜାଣୁ କଳତ୍ରା ଅନଳରେ ଝାସ
ଝଁପ ଦେନା  ଦେବାକୁ କରଅଛ ବଷମ ସାହସ । କୃଷ୍ଣସିଂହ. ମହାଭାରତ, ଉଦ୍ୟୋଗ ।

**ଝାସି ପଶିବା**—ଦେ.କ୍ରି—ଝସାଇ ପଶିବା; ବଳାତ୍କାରରେ ପ୍ରବେଶ କରିବା-
Jhāsi pasibā  To forcibly enter a place.
ଘୁଷେ ଢୁକା  ବଷ୍ଣ ପାଳିଛ ହ୍ରଦ କୂଳେ
ଧଁସନା, ଝିଲନା  ଝାସି ପଶିଲେ ଶୀଘ୍ର ଜଳେ । ଜଗନ୍ନାଥ, ଭାଗବତ ।

**ଝାସିବା**—ଦେ. କ୍ରି. ( ସଂ. ଝଷ ଧାତୁ=ବଧ କରିବା; ସଂ. ଝମ୍ପ; ସଂ.
Jhāsibā  ଘୃଷ ଧାତୁ=ପ୍ରତିଦ୍ବନ୍ଦ୍ବିତା କରିବା )—
ଘୁଷା, ଢୁକ  ୧ । ପ୍ରାଣତ୍ୟାଗ ବା ଆତ୍ମହତ୍ୟା ନିମନ୍ତେ ଅଗ୍ନିକୁ ବା
ଝିଲନା, ଧଁସନା  ଜଳକୁ ଡେଇଁ ପଡ଼ିବା—1. To plunge into fire or water to commit suicide.

୨ । ପରଜନ୍ମରେ ଅଭିପ୍ସିତ ଫଳଲାଭର ସଂକଳ୍ପ କରି ଜୀବନ ଉତ୍ସର୍ଗ କରିବା ନିମିତ୍ତ କୌଣସି ମହାତୀର୍ଥରେ ଜଳକୁ ଡେଇଁ ପଡ଼ିବା—

2. To jump into the water of a sacred tank with the belief or resolve to attain one's aim in the next bitrh.

ବରତ କ କରି ନାହିଁ ଝାସିଥିଲ ଅଜଣାରେ ପୂର୍ବରୁ ।
ଉଛ, ବୈଦେହୀଶବିଳାସ ।

୩ । କୌଣସି ଉଦ୍ଦିଷ୍ଟ ମହତ୍ ଫଳ ପ୍ରାପ୍ତ୍ୟର୍ଥ ନିଜର ପ୍ରାଣକୁ ଉତ୍ସର୍ଗ କରି ପ୍ରାଣତ୍ୟାଗ କରିବା—

3. To sacrifice one's life for same noble aim.

ରଣେ ଝାସନ୍ତି ଯେଉଁ ବୀର
ସମରେ ତ୍ୟଜନ୍ତି ଶରୀର । ଜଗନ୍ନାଥ, ଭାଗବତ ।

୪ । ହଠାତ୍ ଆକ୍ରମଣ କରିବା—
4. To attack suddenly.

୫ । ଡେଇଁ ପଡ଼ିବା; ଲମ୍ଫ ଦେବା—
5. To jump into.

ଜଳରେ ପଡନ୍ତେ ଝାସି, ଧଇଲେ ଦାସୀ ଯେ । ପ୍ରତାପ, ଶଶିଶେଣା । ୪

୬ । ଦ୍ରୁତଗତିରେ ପ୍ରବେଶ କରିବା—
6. To enter swiftly.

ସଙ୍କୁଚେଣ ଠିକ ଝାଡେ ଝାସ । ପ୍ରାଚୀ. ରହସ୍ୟମଞ୍ଜରୀ ।

୭ । କୌଣସି ଜୀବ ବା ଶିକାର ଉପରକୁ ଲୁଦ୍ଦିବା—
7. To swoop upon a prey.

**ଝି**—ଦେ. ବ. ସ୍ତ୍ରୀ. ( ସଂ. ଦୁହିତା; ପ୍ରା.ଧୀଆ; ପା. ଧୀତା; ସଂ. ଜାମି=
Jhi  କନ୍ୟା; ଇଣ୍ଡୋୟୁରୋପୀୟ ଆର୍ଯ୍ୟଭାଷା ଜ୍ମି, Zi)—
ଝି  କନ୍ୟା; ଝିଅ—Daughter.
ଝୀ  ବୋଲନ୍ତି ) ଲୁହୁଣୀ ସର ଝି । ଠିକ୍କିଆମାନ
ଦେଖିଲକ୍ଷଣି (ବୋଲନ୍ତି) ଏଇଆମାନ କ ?—ତଗ ।

ପ୍ରାଦେ. ୧ । (ମେଦିନୀପୁର) ବ. (ଭୁଲ. ଏହି ଅର୍ଥରେ ବ. ଏହି ଶବ୍ଦ )—ଦାସୀ—1. Maid servant.

୨ । ( ସିଂହଭୂମ ) ବ—ପିଉସୀ—
2. Father's sister.

୩ । (ଗଡଜାତ) ଅ. ( ଯୋଖସ୍ତ ଓ ନଈକୁ ମଇଁଷିମାନଙ୍କୁ ଗାଧୋଇବାକୁ ନେଇଥିବା ଜଗୁଆଳର ଡାକ ) ପାଣିରେ ସମୁଦାୟ ଶରୀର ବୁଡ଼ାଇ ଭଳ ଶୋଇ ପଡ଼୍—
3. A word used by the driver buffaloes requiring them to lie down in the water while having a bath.

**ଝିଅ**—ଦେ.ବ.ସ୍ତ୍ରୀ.(ସଂ.ଦୁହିତା; ପ୍ରା.ଧୀଆ; ଧୀଦା; ସଂ.ଜାମି; ପ୍ରାଚୀନ ବଙ୍ଗଳା
Jhia  ଝିୟ; ପାଲି ଧୀ, ଧି, ଧୀତା )—
ଝୀ  ୧ । କନ୍ୟା—1. Daughter.
ଝୀଆ  ଝିଅକୁ ମାର ବୋହୂକୁ ଶିଖାଇବା ନ୍ୟାୟ. ତଗ ।
(ପୁଅ—ବିପରୀତ)  ୨ । ବାଳିକା—2. Girl.

ଶରଣ ରକ୍ଷାଳ  ଦୁଃଖୀ ଝିଅକୁ ମା
ରଖ ଶ୍ରୀଚରଣ ତଳେ  ରଘୁନାଥ, ପାଙ୍ଗତୀ ।

୩ । କନ୍ୟାସ୍ଥାନୀୟା ବାଳିକା—3. A girl whom a person treats as his daughter.

[ ଦ୍ର—ସାଧାରଣତଃ ଆପଣାଠାରୁ ବୟସରେ ଖୁବ୍ ସାନ ଅପରିଚିତା ସ୍ତ୍ରୀଲୋକ ବା ବାଳିକାକୁ ବାଟରେ ଭେଟିଲେ ତାକୁ କିଛି କଥା କହିବାର ଆବଶ୍ୟକ ହେଲେ ତାକୁ ଅଲୋ ଝିଅ ! ବୋଲି ସମ୍ବୋଧନ କରାଯାଏ; ଆପଣାର ସମାନବୟସ୍କା ସ୍ତ୍ରୀଲୋକକୁ ଭଉଣୀ ! ଓ ଆପଣାଠାରୁ ବୟସରେ ବଡ଼ ସ୍ତ୍ରୀଲୋକକୁ ମାଉସୀ ! ବୋଲି ସମ୍ବୋଧନ କରାଯାଏ । ଉକ୍ତ ସ୍ତ୍ରୀଲୋକ ସଙ୍ଗେ ଖୁବ୍ ଆଳାପ-ପରିଚୟ ଥିଲେ ଆପଣାଠାରୁ ବୟସରେ ସାନ ସ୍ତ୍ରୀ ଲୋକକୁ ମାଆ ବାଇ ! ସମ୍ବୋଧନ କରାଯାଏ ଓ ବୟସରେ ବଡ଼ ସ୍ତ୍ରୀଲୋକକୁ ମାଆ ବା ମାଉସୀ ! ବୋଲି ସମ୍ବୋଧନ କରାଯାଏ । ଏହିପରି ଆପଣାଠାରୁ ଅଳ୍ପବୟସ୍କ ଅପରିଚିତ ପୁରୁଷ ଲୋକକୁ ଆରେ ପୁଅ !, ସମ-ବୟସ୍କକୁ ଭାଇ ! ଓ ଊର୍ଦ୍ଧ୍ୱବୟସ୍କକୁ ମଉସା ! ବୋଲି ସମ୍ବୋଧନ କରାଯାଏ ଏବଂ ପରିଚିତ ଅଳ୍ପବୟସ୍କ ପୁରୁଷକୁ ବାପ ! ବାପା ! ବାବା

ସାଧାରଣ ଲୋକେ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅଁ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

ଓ ବେଶି ବୟସର ପୁରୁଷଙ୍କୁ ବାବା ! ମଉଷା ! ବୋଲି ସମ୍ବୋଧନ କରାଯାଏ । ]

୩ । ଅମୁକ ବଂଶ ଜାତା ବା ଅମୁକ ଜାତୀୟା ସ୍ତ୍ରୀ—

3. A woman born of a particular caste or family.

( ଯଥା— ସେ ଗଉଡ଼ ଘର ଝିଅ । )

**ଝିଅ ଝିଆଣି** -ଦେ. ବି (ବହୁବଚନ)—୧ । କୌଣସି ପରିବାରର କନ୍ୟା Jhia jhiāṇi ଓ କନ୍ୟାସ୍ଥାନୀୟା ବାଳିକାଗଣ;ଝିଅ ଓ ଝିଅସ୍ଥାନୀୟା ଅର୍ଥ— ঝিউড়ী, ঝিঅড়ী 1 Daughters and girls of the status **घियानी** of a daughter in a family.

ଝିଅ ଝିଆଣିଆ, ଝିଅ ଝିଆଣିଆ, ଝିଅ ଝିଉଣିଆଁ, ଝିଅ ଝିଆଣି, ଝିଅ ଝିଆଣିଆ — ଅନ୍ୟରୂପ

୨ । ପିତୃଗୃହରେ ସ୍ଥିତା ବା ପିତୃଗୃହକୁ ଆଗତା ବିବାହିତା କନ୍ୟାଗଣ—

2. Daughters while staying in their fathers' houses.

**ଝିଅ ପୁଅ**—ଦେ. ବି (ବିପରୀତ ଲିଙ୍ଗ ସହଚର; ସଂ. ଦୁହିତା+ପୁତ୍ର)— Jhia pua କନ୍ୟା ଓ ପୁତ୍ର; ସନ୍ତାନ ସନ୍ତତି— ঝীপুত Children (both female and male). **बेटाबेटी**

**ଝିଅ ବିଆଣ**—ଦେ. ବି—କନ୍ୟା ପ୍ରସବ କରିବା— Jhia biāṇa Giving birth to daughters.

**ଝିଅ ବିଆଣୀ**—ଦେ.ବିଣ. ସ୍ତ୍ରୀ (ସ୍ତ୍ରୀଲୋକମାନଙ୍କର ସ୍ତ୍ରୀଲୋକମାନଙ୍କ ପ୍ରତି Jhia biāṇi ଗାଳି )—ଯେଉଁ ସ୍ତ୍ରୀଲୋକ କେବଳ ( ଝିଅବେଣ୍ଡି—ଅନ୍ୟରୂପ ) କନ୍ୟା ପ୍ରସବ କରେ— ঝীরমা ( a term of abuse ) (A woman )— Bearing female children only.

**ଝିଅ ବୋହୂ**—ଦେ. ବି ( ସହଚର; ସଂ. ଦୁହିତା + ବଧୂ )— Jhia bohu ୧ । କନ୍ୟା ଓ ପୁତ୍ରବଧୂ— ঝীবউ 1. Daughter and daughter-in-law. **बेटीबौ** ୨ । ପରିବାରରେ ଜାତା ଓ ବିବାହ ଦ୍ୱାରା ପରିବାରକୁ ଆଗତା ଯୁବତୀ ସ୍ତ୍ରୀଗଣ— Young female members in a family.

(ଯଥା—ଭୂସ୍ୱାମୀମାନଙ୍କ ଜୁଲମରେ ଏ ଗ୍ରାମରେ ଝିଅବୋହୂ ଯେଉଁ ଚଳିବା କଷ୍ଟକର ହେଲାଣି । )

**ଝିଅ ମା**—ପ୍ରାଦେ (ଗଞ୍ଜାମ) ବି ( ସଂ. ଦୁହିତା + ମାତା )—ରାଣୀଙ୍କ Jhia mā ଝିଅକୁ ପାଳିଥିବା ଅନ୍ତଃପୁରସ୍ଥ ଧାଈ— The nurse of a female child of a Rāṇi.

**ଝିଅର ମା**—ଦେ. ବି. ସ୍ତ୍ରୀ—କେବଳ ଦୁହିତା ପ୍ରସବକାରୀ ସ୍ତ୍ରୀ— Jhiara mā A woman giving birth to daughters only. (ଝିଅର ମାଅ—ଅନ୍ୟରୂପ)

**ଝିଆଣିଆ(ଆଁ)**—ଦେ. ବି—ପରିବାରସ୍ଥ କନ୍ୟାସ୍ଥାନୀୟା ସ୍ତ୍ରୀଗଣ Jhiāṇiā (ଆଁ) (ଯଥା—ଝିଅସ୍ତ୍ରୀ,ଭଉଣୀ)—Women of the ঝিউড়ী status or position of the daughter **घिआनी** in the family.

ଦେ. ବିଣ—୧ । କନ୍ୟାସମ୍ବନ୍ଧୀୟ—

1. Relating to a daughter.

( ଝିଆଣୀ, ଝିଆଣୀଆ—ଅନ୍ୟରୂପ ) ୨ । କନ୍ୟାର ବ୍ୟବହାର-ଯୋଗ୍ୟ—2. Fit to be used by the daughters; fit to be given to a daughter.

୩ । କନ୍ୟା ଘରକୁ ପଠାଯିବାର ଉପଯୁକ୍ତ ବା ଅଳ୍ପ ମୂଲ୍ୟର (ବେଭାର)ଅର୍ଥ—3 (present) Economical or appropriate to be sent to the married daughter's house.

(ଯଥା—ଝିଆଣିଆ ବେଭାର ପାଇଁ ଅଳ୍ପଦାମର ଲୁଗା କିଣାଯିବ । )

**ଝିଆରୀ**—ଦେ. ବି. ସ୍ତ୍ରୀ ( ସଂ. ଦୁହିତୃ)—ଭାତୃଷ୍ପୁତ୍ରୀ; ବଡ଼ ବା ସାନ Jhiāri ଭାଇର କନ୍ୟା—Niece; brother's daughter. ভাইঝী [ଦ୍ର—ପ୍ରାଚୀନ ବଙ୍ଗଳାରେ ଝିଆରୀ ଶବ୍ଦ ଝିଅ **भतीजी** ଅର୍ଥରେ ବ୍ୟବହୃତ ହୋଇଥିବାର ଦେଖାଯାଏ । ]

**ଝିଆରୀ ଜୋଇଁ**—ଦେ. ବି. ପୁଂ ( ସଂ. ଭ୍ରାତୃ ଜାମାତା )— Jhiāri join ଝିଆରୀର ସ୍ୱାମୀ—Niece's husband; ভাইজামাই nephew-in-law

**ଝିଇ**—ପ୍ରାଦେ (ମେଦିନୀପୁର ଓ ବାଲେଶ୍ୱର; ସିଂହଭୂମ ଓ ଗଡ଼ଜାତ)— Jhi i ଝି (ଦେଖ) Jhi (See).

**ଝିଇ ପକା(କେ)ଇବା**—ପ୍ରାଦେ (ଗଞ୍ଜାମ ଓ ଗଡ଼ଜାତ) କ୍ରି—ପୋଡ଼ୁହ Jhi-i pakā(ke)ibā ବା ଅଣ୍ଡିରା ମଇଁଷିଙ୍କ ଜଗୁଆଳ ପିଲାମାନେ ପୋଡ଼ୁହର ଲାଙ୍ଗୁଡ଼ରେ ହାତ ମାରି "ଝି!ଝି! ଭଲର ଝି" ଡାକ ଡାକିବା ଦ୍ୱାରା ପୋଡ଼ୁହମାନଙ୍କୁ ଗାଧୋଇବା ପାଇଁ ପାଣିରେ ଶୁଆଇବା—(the buffalo-herds) To get the buffaloes to lie down in water during a bath by uttering a call.

**ଝିଁ ଝିଁ**—ଦେ. ଅ (ଧ୍ୱନ୍ୟନୁକରଣ)—ଝିଙ୍କାରି ରବ— Jhiñ Jhiñ The chirping of crickets. ঝিঁ ঝিঁ କାହିଁ ଝରେ ଝର, ଝର୍ଝରେ ଝିଙ୍କାରି, କାହିଁ ରବେ ଝିଁ ଝିଁ ସ୍ୱରେ । **चिंचिं झीं झीं** ରାଧାନାଥ. ଉଷଣୀ।

**ଝିକର**—ପ୍ରାଦେ ( ଗଞ୍ଜାମ) ବି—ଝିଙ୍କର (ଦେଖ) Jhikara Jhiṅkara (See).

**ଝିକା**—ପ୍ରାଦେ. (ଗଞ୍ଜାମ) ବି—ସବଳରେ ଆକର୍ଷଣ; ଝିଙ୍କା— Jhikā A tight pull; a jerk; tug,

**ଝିକା ଝିକି**—ପ୍ରାଦେ. (ଗଞ୍ଜାମ) ବି-ଝିଙ୍କା ଝିଙ୍କି (ଦେଖ) Jhikā jhiki Jhiṅkā jhiṅki (See)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଲ୍ୟ | ଡ଼ଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଢ଼ | ନ୍ଦ |

ଝିଙ୍କିବା—ପ୍ରାଦେ. (ଗଞ୍ଜାମ) କ୍ରି (ସଂ. ଝଷ ଧାତୁ=ସଂସ୍ଥାପନ, କ୍ଷେପଣ)—
Jhikiba ଝିଙ୍କିବା; ସବଳରେ ଆକର୍ଷଣ କରିବା; ଝାଙ୍କିବା—
[ଝିଙ୍କା(କେ)ଇବା—ଣିଜନ୍ତରୂପ] To draw tightly; to pull with a jerk; to tug.

ଝିଙ୍କ—ଦେ. ବି ( ସାନ୍ତାଳୀ ଭାଷା )—୧ । ମୂଷାଜାତୀୟ କ୍ଷୁଦ୍ର ବନ୍ୟ
Jhinka ଚତୁଷ୍ପଦ ଜନ୍ତୁବିଶେଷ—
ସଂ. ଶ୍ୱାବିଦ, ଶଲ୍ୟ, ଶଲ୍ଲକୀ, ଶଲ୍ୟମୃଗ
ଶଜାରୁ; ସେଜାରୁ
1. Hedgehog; the Porcupine; Hystrix Cristata; Hystrix Bengalensis.
**से, साही, खार पुश्त**
[ ଦ୍ର—ଏମାନେ ବନରେ ଭୂଇଁରେ
ମ. ସାଲ, ସାଲଦର ଗାତ କରି ରହନ୍ତି ଓ ସ୍ୱଭାବରେ ବାହାରନ୍ତି । ଏମାନଙ୍କ ଦେହରେ ୧ ଫୁଟ ଲମ୍ବ ଗୁଡ଼ିଏ ମୁନିଆଁ କାଠି ଥାଏ ଓ ଶତ୍ରୁ ଆକ୍ରମଣ କଲେ ଏମାନେ ଆତ୍ମରକ୍ଷା ନିମନ୍ତେ ଦେହ ଝାଡ଼ି ଦେଲେ ଏ ମୁନିଆଁ କାଠିଗୁଡ଼ିକ ଶତ୍ରୁଆଡ଼କୁ ଭୁଶି ହୋଇ ଯାଏ ଓ ଶତ୍ରୁଦେହରେ ବିଦ୍ଧ ହୁଏ । ଏମାନେ ଉଦ୍ଭିଦ ଓ ଫଳ ଖାଇ ବଞ୍ଚନ୍ତି । ବୈଦ୍ୟଶାସ୍ତ୍ର ମତରେ ଏହାର ମାଂସ ଗୁରୁ, ସ୍ନିଗ୍ଧ, ଉଷ୍ଣ ଓ ଅଗ୍ନିଦୀପକ । ଏହା ଆମରୋଗ, ଅଜୀର୍ଣ୍ଣ, ଶ୍ୱାସ, କାସ, ସନ୍ନିପାତ ହରଣ କରେ । ଏହାର ଅନ୍ତସ୍ଥଳୀ ଶୁଖାଇ ଚୂର୍ଣ୍ଣ କରି ସୁରାକା ବାଡରେ ଓ ଶୂଳରୋଗରେ ପ୍ରୟୋଗ କରାଯାଏ । ଏହାର ପିତ୍ତ ସେବନ, ଲେପନ ଓ ଅଞ୍ଜନ ରୂପରେ ବ୍ୟବହାର କଲେ ବୃଶ୍ଚିକ ବିଷ, ମୂଷିକ ବିଷ ଓ ସର୍ପ ବିଷ ଖଣ୍ଡିତ ହୁଏ—ବ୍ରଜବନ୍ଧୁ. ଦ୍ରବ୍ୟଗୁଣ କଳ୍ପଦ୍ରୁମ ।

ପ୍ରକୃତରେ ଝିଙ୍କ ଗୋଟିଏ ଚତୁଷ୍ପଦ ଜୀବ । କେହି କେହି ଭ୍ରମରେ ଝିଙ୍କ ପକ୍ଷୀ ବୋଲି କହନ୍ତି । କିନ୍ତୁ ଏହା ପକ୍ଷୀ ନୁହେଁ, କାରଣ କୌଣସି ପକ୍ଷୀରେ ଝିଙ୍କ କାଠି ପରି କାଠି ଥିବାର ଦେଖାଯାଏ ନାହିଁ । ଯଥା—

ସେନା ଉପରେ କାଣ୍ଡମାନ ବସେ
ଝିଙ୍କ ପକ୍ଷୀ ପ୍ରାୟେ ଶରୀର ଦିଶେ—ବିଶ୍ୱନାଥ. ବିଚିତ୍ରରାମାୟଣ ।

ଦେହରେ ଝିଙ୍କ କାଠି ଭଳି ଗୁଡ଼ିଏ କାଠି ଥିବା ଓ ପକ୍ଷହୀନ ପକ୍ଷୀ ( Apterrx ) ନିଉଜିଲାଣ୍ଡରେ ଦେଖାଯାଏ । ଏ ପକ୍ଷୀ କୁକୁଡ଼ାଜାତୀୟ; କିନ୍ତୁ ଏମାନେ ଝିଙ୍କ ପରି କାଠିକୁ ବାହାରକୁ ଫିଙ୍ଗି ପାରନ୍ତି ନାହିଁ । ]

ଝିଙ୍କକାଠି—ଦେ. ବି—ଝିଙ୍କ ଜୀବଙ୍କ ଦେହର କାଠି—The erectile
Jhinka-kathi spine or quill of a porcupine.

ଝିଙ୍କ କାଠି ଖଞ୍ଜି ବାନ୍ଧି କେଶପାଶ
କର୍ଣ୍ଣେ ଶୋଭନ୍ତି ଶୋଭେ ଶତଫାଶ—ଚାରୁଣି, ଋଷିକୁଲ୍ୟା ।

[ ଦ୍ର—ଏ କାଠିମାନ ଲମ୍ବରେ ଏକ ମୁଠିଏ ପର୍ଯ୍ୟନ୍ତ ହୁଏ । ଏଥିରେ କଳା ଓ ଧଳା ପଟ୍ଟ ଥାଏ । ଏ କାଠିମାନ ପୋଥିର ଡୋରକୁ ଅଟକାଇବା ନିମନ୍ତେ ଓ ସ୍ତ୍ରୀମାନଙ୍କ ଜୁଡ଼ାରେ ଗୋଞ୍ଜି-କାଠିରୂପେ ବ୍ୟବହୃତ ହୁଏ । ]

ଝିଙ୍କର—ଦେ. ବି. ( ସଂ. କର୍କର )—୧ । ଭଙ୍ଗା ହାଣ୍ଡିର ଖପରା—
Jhinkara 1. Bits of broken earthen pots; potsherd.
ଝିଁକୁର ୨ । ହାଣ୍ଡିର ଭଙ୍ଗା ଧାର—
**ठिकरा** 2. Broken bits of the edge of earthen pots.
୩ । ଖପରଲି ବା ଘର ଛପର କରିବାର ଖପରା—
3. Earthen tiles for thatching houses with.
୪ । ଝିଙ୍କ ଜନ୍ତୁ—4. Porcupine.

ଝିଙ୍କର ଖେଳ—ଦେ. ବି—ଖପରାଡିଆଁ ( ଦେଖ )
Jhinkara khela Khapara-dian ( See )

ଝିଙ୍କର ଘର—ଦେ. ବି—ଖପରଲି ଘର—
Jhinkara ghara A house thatched with earthen
ଖପରଲି **खपरैल** tiles.

ଝିଙ୍କର ଛୁ(ଛୁ)ଆଣି ଘର—ଦେ ବି—ଝିଙ୍କର ଘର ( ଦେଖ )
Jhinkara-chhi(chhu)ani ghara Jhinkara ghara (See)

ଝିଙ୍କର ଜାଲ—ଦେ. ବି—ମଝିରେ ମଝିରେ ଝିଙ୍କର ବନ୍ଧା ହୋଇଥିବା
Jhinkara jala ଜାଲ ବା ଦଉଡ଼ି—A rope in
(ଝିଙ୍କ ଦଉଡ଼ା(ଡ଼ି)—ଅନ୍ୟରୂପ) which potsherds are tied at intervals and which is dragged along the bottom of shallow muddy pools to dislodge the fishes from the bottom.

[ ଦ୍ର—ଏ ଜାଲକୁ ପଙ୍କପାଣିରେ ଦୁଇଜଣ ଲୋକ ଦୁଇ ମୁଣ୍ଡରୁ ଧରି ଟାଣନ୍ତି ଓ ସେ ଜାଲ ପଛେ ପଛେ ପୋଲୁହ ଧରିଥିବା ବ୍ୟକ୍ତିମାନେ ମାଛକୁ ଅନିଶା କରି କରି ଚାଲନ୍ତି ଓ ଝିଙ୍କରଦ୍ୱାରା ଚାଳିତ ହୋଇ ମାଛ ଜଳାଶୟର ତଳକୁ ଛାଡ଼ି ଉପରକୁ ଉଠିବାର ଦେଖା ଗଲେ ପୋଲୁହାମାନେ ମାଛକୁ ପୋଲୁହରେ ମାଡ଼ି ବସନ୍ତି । ]

ଝିଙ୍କରଡିଆଁ—ଦେ. ବି—ଖପରାଡିଆଁ ( ଦେଖ )
Jhinkara-dian Khaparadian ( See )
ଦେ. ବିଣ—୧ । (କାଳେ ଅଇଁଠାହାଣ୍ଡିର ଖପରାକୁ ଗୋଡ଼ରେ ମାଡ଼ିଲେ ଅଶୁଚି ହେବ ଏହି ଭୟରେ ବାଟ ଚାଲିଲା ବେଳେ ବାଟରେ ପଡ଼ିଥିବା ଖପରାମାନଙ୍କୁ ଡେଇଁ ଡେଇଁ ଯିବା ଲୋକ ) ଅତିରିକ୍ତ ନିଷ୍ଠାପର—
1. Over-rigid in observing rules of outward purity.
୨ । ଅତି ଚଞ୍ଚଳ—2. Very peevish.

ଝିଙ୍କର ଦଉଡ଼ା(ଡ଼ି)—ଦେ ବି—ଝିଙ୍କର ଜାଲ ( ଦେଖ )
Jhinkara daurda (rdi) Jhinkara jala ( See )

ଝିଙ୍କରିଆ—ଦେ. ବିଣ. ( ସଂ. କର୍କରମୟ )—ଖପରାପୂର୍ଣ୍ଣ—
Jhinkaria Full of small potsherds.

ଝିଙ୍କା—ଦେ. ବି. (ସଂ. ଝଷ ଧାତୁ—ସଂସ୍ଥାପନ କରିବା କିମ୍ବା ଧ୍ମା ଧାତୁ)—
Jhinka ୧ । ଚୁଲିର ଉପର ପରିଧିରେ ଥିବା ଗୋବ ବା ଶୃଙ୍ଗ
ଝିଁକ ବା ମୃତ୍ପିଣ୍ଡ; ଚୁଲିର ଶିଂଘ—
1. Knobs or clods of earth placed on the upper circumference of an oven.

ସାଧାରଣ ନିୟମ ଅପର ପୃଷ୍ଠାରେ ମୁଦ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଉ' ନ ମିଳିଲେ 'ଗାଈ' ଖୋଜିବେ; 'କ୍ଷୁଅ' ନ ମିଳିଲେ 'କ୍ଷଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

[ ଦ୍ର—ଚୁଲରେ ସାଧାରଣତଃ ତିନି ଗୋଟି ଝିଙ୍କା ଥାଏ । ଏମାନଙ୍କ ମୁଣ୍ଡ ଉପରେ ଚୁଲିରେ ହାଣ୍ଡି ବସେ; ଚୁଲିରେ ଝିଙ୍କା ଉପରେ ହାଣ୍ଡି ବସିଥିବାବେଳେ ଚୁଲିର ଉପର ମୁହଁର ପରିଧି ଓ ହାଣ୍ଡିର ତଳ ମଧ୍ୟରେ ଯେଉଁ ବ୍ୟବଧାନ ରହେ ସେହି ବାଟେ ଚୁଲିରୁ ଧୂଆଁ ବାହାରି ଯାଏ । ]

୨ । ସ୍ତ୍ରୀମାନଙ୍କ ମୁଣ୍ଡର ଅଳଙ୍କାରବିଶେଷ; ଗୋଜକାଠି—
2. A kind of hairpin.

ঝিঁকা; ঝিকা ୩ । ( ସଂ. ଧୃକ୍ଷ ଧାତୁ=ଆକର୍ଷଣ କରିବା; କ୍ଲେଶ
झटका; झोंका ଦେବା ) ଓଟରା ବା ସବଳେ ଆକର୍ଷଣ; ହଠାତ୍ ସବେଗରେ ଆକର୍ଷଣ—
3. Tug; pulling with jerks

ଏମନ୍ତେ ହେଲେ ସଭ ମଧ୍ୟେ ବାଲ ଝିଙ୍କା—କୃଷ୍ଣସିଂହ, ମହାଭାରତ, ଉଦ୍ୟୋଗ ।

ଦେ. ବିଣ—୧ । ଓଟରା ହେବା—
1. Pulled with a jerk.
୨ । ଊଣା—2. Lighter; less.

**ଝିଙ୍କା(ଙ୍କେ)ଇବା**—ଦେ. କ୍ରି—ଝିଙ୍କିବାର ଣିଜନ୍ତରୂପ—
Jhiṅkā(ṅke)ibā Causative of Jhiṅkibā.
ঝিংকান; झोंकवाना

**ଝିଙ୍କା ଓଟରା**—ଦେ. ବି. ( ଏକାର୍ଥକ ସହଚର )—
Jhiṅkā oṭarā ୧ । ଝିଙ୍କାଝିଙ୍କି ( ଦେଖ )
টানাঝিকা 1. Jhiṅkā-jhiṅki ( See )
झोंकाझटका; झकझोर ୨ । ବନ୍ଧୁବାର ଝିଙ୍କିବା କର୍ମ—
2. Act of pulling and drawing with jerks; tugging.

**ଝିଙ୍କାଝିଙ୍କି**—ଦେ. ବି—୧ । ଅନ୍ୟୋନ୍ୟରେ ଓଟାରିବା କର୍ମ—
Jhiṅkājhiṅki 1. Mutual pulling.
ঝিকাঝিকি; खींचाखींचि ୨ । ଠେଲା ଓଟରା—
2. Pushing and tugging.

ସେ କଠିନ ଝିଙ୍କାଝିଙ୍କିରୁ ନସ୍ତାର
ଲଭ ଲଗି ଅଗ୍ରୁଁ ହୁଅ ହୁସିଆର । ରଘୁନାଥ, ଦରବାର ।

ଦେ. ବିଣ—ଅନ୍ୟୋନ୍ୟରେ ଓଟରା ଓଟରା ହୋଇଥିବା; ପରସ୍ପର ଦ୍ୱାରା ଆକର୍ଷିତ—Mutually pulled; pulled by each other.

**ଝିଙ୍କା ମାରିବା**—ଦେ. କ୍ରି—କୌଣସି ପଦାର୍ଥ (ଯଥା—ରଜ୍ଜୁ ବା ଡଙ୍ଗାର
Jhiṅkā māribā ଅନ୍ତୁଳା) କୁ ବଳପୂର୍ବକ ଆକର୍ଷଣ କରିବା—
ঝিকা মারা To pull with a jerk; to tug.
झटका मारना

**ଝିଙ୍କାରି**—( ସଂ. ଝିଙ୍ଗୀ; ଝିଲ୍ଲୀ; ଝିଁ ଝିଁ ଧ୍ୱନ୍ୟନୁକରଣରୁ )—ଝିଲ୍ଲୀ—
Jhiṅkāri Grasshopper; the cricket.
ঝিঝি [ ଦ୍ର—ଏହା ଏକ ପ୍ରକାର ଝିଣ୍ଟିକା ବା ପତଙ୍ଗ ।
झिंगुर ଏମାନେ ବଣରେ ଓ ନିର୍ଜନ ସ୍ଥାନରେ ରାତିରେ ଓ ଗ୍ରୀଷ୍ମକାଳ ଦ୍ୱିପ୍ରହରୀ ସମୟରେ ତୀବ୍ର ଝିଁ ଝିଁ ଶବ୍ଦ କରନ୍ତି; ଓ ଶତ ଶତ ଝିଙ୍କାରୀଙ୍କ ଶବ୍ଦ ମିଶି ଏକ ଗମ୍ଭୀର ଓ ତୀବ୍ର ଧ୍ୱନି ଜାତ କରେ ।]

ଝାଇଁ ଝାଇଁ ସ୍ୱନେ ଡାକେ ଝିଙ୍କାରୀ । ଗୋଲୋକ, ଇନ୍ଦୁରେଖା ।

**ଝିଙ୍କିବା**—ଦେ. କ୍ରି. ( ସଂ. ଧୃକ୍ଷ ଧାତୁ=କ୍ଲେଶନ, ସନ୍ଦୀପନ )—
Jhiṅkibā ୧ । ବଳପୂର୍ବକ ଆକର୍ଷଣ କରିବା; ଓଟାରିବା;
ঝিকা ଝାଙ୍କିବା—1. To drag; to pull with a
झकझोरना, झोंकना jerk; to haul.

ସଭ ମଧ୍ୟେ ଝିଙ୍କିଲ ମୋ ବସନ । କୃଷ୍ଣସିଂହ, ମହାଭାରତ ସଭା ।

୨ । ରଜ୍ଜୁ ଆଦିକୁ ଟାଣିବା—
2. To pull a rope; to tug.
୩ । ବଳପୂର୍ବକ ଆକର୍ଷଣ କରିବା—
3. To attract with force.

କେଉଁ ଯୁବତୀଙ୍କ ନେତ୍ର ନାହିଁ ଝିଙ୍କି ତା ନୟନ ଫାନ୍ଦ । କବିସୂର୍ଯ୍ୟ, ସଙ୍ଗୀତ ।

୪ । ଊଣା କରିବା—
4 To lessen; to diminish.
୫ । ପ୍ରହାର କରିବାପାଇଁ ଅସ୍ତ୍ରାଦିକୁ ବଳପୂର୍ବକ ଟାଣି ଆଣିବା-
5. To draw out a weapon.

କାଢ ଝିଙ୍କି ପଢେ ଭିତରେ ପ୍ରହାର । କବିସୂର୍ଯ୍ୟ, ସଙ୍ଗୀତ ।

୬ । ( ଲକ୍ଷଣାର୍ଥ ) ଏକତ୍ର ସଂଗ୍ରହ କରିବାପାଇଁ ବଳପୂର୍ବକ ଓଟାରିବା—6. ( figurative ) To pull down with force in order to gather.

ଝିଙ୍କି ଆଣି ଅଙ୍ଗେ କଲିଣି ଜମା । କବିସୂର୍ଯ୍ୟ, କଶୋଘାଚମ୍ପୁ, ୯. ଗୀତ ।

**ଝିଙ୍ଗା**—ପ୍ରାଦେ. ( ସିଂହଭୂମ ) ବି ( ସଂ. ଝିଙ୍ଗାକ; ତୁଲ. ବ. ଏହି
Jhiṅgā ଅର୍ଥରେ ଏହି ଶବ୍ଦ ଓ ହି. ଝିଂଗ୍ )—ଜହ୍ନି ( ଦେଖ )
Jahni ( See )

**ଝିଙ୍ଗାସ**—ଦେ ବି. ( ସଂ. ଧୃକ୍ଷ ଧାତୁ ; ବା ଧିକ୍କାର )—
Jhiṅgāsa କୌଣସି ବ୍ୟକ୍ତିର ମନକୁ ବଧେଇ କରି କହିବା କଥା;
झिड़की ଭର୍ତ୍ସନା; କଟୁବଚନ, ରୁକ୍ଷବଚନ; ଧିକ୍କାର ବଚନ—
Admonition; reproof.

**ଝିଙ୍ଗାସିବା**—ଦେ. କ୍ରି—କଟୁବାକ୍ୟ କହିବା; ଭର୍ତ୍ସନା କରିବା—
Jhiṅgāsibā To admonish; to call names.
झिड़कना, झिड़झिड़ाना

**ଝିଙ୍ଗିଡ଼ି**—ଦେ. ଅ. ( ଧ୍ୱନ୍ୟନୁକରଣ )—
Jhiṅgirḍi ଡୁବୁରୁ ଆଦି ବାଦ୍ୟର ଧ୍ୱନ୍ୟନୁକରଣବିଶେଷ—
The sound of small drums.

ଥେଁକ୍ ଥେଁକ୍ ଥେଇ ଥେଇ ଡୁବୁରୁ ବାଜେ
ଝିଙ୍ଗିଡ଼ି ଝିଡ଼ି ଗିଡ଼ି ଥେଇ ଥେଇ ସାଜେ । ପ୍ରାଚୀ, ରହସ୍ୟମଞ୍ଜରୀ ।

**ଝିଙ୍ଗିଣୀ**—ସଂ. ବି—୧ । ଏକ ପ୍ରକାର କାକୁଡ଼ି—
Jhiṅgini 1. A sort of cucumber (Apte).
୨ । ମଶାଲ—
2. A torch; a firebrand ( Apte ).
୩ । ଏକପ୍ରକାର ବନ୍ୟ ଗଛ—3. A wild tree.

| ୧ | ଦ | ଊ | ର,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଗ,ଷ | ଙ୍କ | ଇସୃ | ଉଅ | ଭ |
|---|---|---|---|---|---|---|---|---|---|---|---|---|---|---|
| ୵ | ଈ | ଉ | ରୁ | ଲ୍ଲ | ସ୍ଟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଷ୍ୟ | ଯ | ସ | ଗିଂ | ଇଅ | ଢ଼ | ନ୍ |

[ ଦ୍ର—ଅନ୍ୟ ସ. ନାମ ଝିଙ୍ଗୀ, ପ୍ରମୋଦନୀ, ସୁବର୍ଣ୍ଣପାଲା; ଏ ଗଛ ଖୁବ୍ ବଡ଼ ହୁଏ; ଫୁଲ ଧଳା, ଫଳ ବରକୋଳ ପରି । ଏହାର ପତ୍ର ମହୁଲ ଗଛର ପତ୍ର ପରି ଶାଖାର ଦୁଇପାଖରେ ଲାଗିଥାଏ—
ହି. ଶବ୍ଦସାଗର । ]

**ଝିଜର୍**—ପ୍ରାଦେ. ( ମେଦିନୀପୁର ) ବି—
Jhijari ସୁନା ବା ରୂପାରେ ତିଆର ହୋଇଥିବା ଅଣ୍ଟା ଶିକୁଳି—
(ଝିଜରି—ଅନ୍ୟରୂପ) A gold or silver chain worn on the waist.

**ଝିଞ୍ଜ(ଞ୍ଝ)ଟ**—ଦେ. ବି—୧ । ସଙ୍ଗୀତର ରାଗିଣୀବିଶେଷ—
Jhiñja(ñjha)ṭa 1. Name of a musical air.
ଝିଁଝଟ [ ଦ୍ର—ଏହା ସମ୍ପୂର୍ଣ୍ଣ ଜାତିର ରାଗିଣୀ । ଏଥିରେ ସବୁ
ଝିଂଝୋଟୀ ଶୁଦ୍ଧ ସ୍ୱର ଲାଗେ, ଏହା ଦିନର ଚତୁର୍ଥ ପ୍ରହରରେ
(ଝିଞ୍ଝଟ—ଅନ୍ୟରୂପ) ଗେୟ—ହି. ଶବ୍ଦସାଗର । ]
୨ । ( ସ. ଝଞ୍ଝା ବାତ; ଜଞ୍ଜାଳ )—ଝଞ୍ଜଟ ( ଦେଖ )
3. Jhañjaṭa ( See )

**ଝିଞ୍ଜଟ ଲଗା(ଗେ)ଇବା**—ଦେ. କ୍ରି—୧ । ଅଡୁଆ ଲଗାଇବା; ନାନା
Jhiñjata lagā(ge)ibā ଗୋଲମାଲଥିବା କାର୍ଯ୍ୟ କରିବା—
ଝାଂଝଟ ଲାଗାନ 1. To complicate matters.
ଝଂଝଟ ଲଗାନା ୨ । ଅତ୍ୟନ୍ତ ବିରକ୍ତ କରି ବାରଂବାର ପ୍ରାର୍ଥନା କରିବା—2. To importune; to solicit or press repeatedly and unreasonably.
୩ । ବିରକ୍ତ କରିବା—3. To tease; to vex.

**ଝିଞ୍ଜ(ଞ୍ଜି ଟିଆ**—ଦେ. ବିଣ. ପୁଂ ଓ ସ୍ତ୍ରୀ. ( ସ. ଜଞ୍ଜାଳ )—
Jhiñja(ñji ṭiā ୧ । ଜଞ୍ଜାଳଥିବା; ଗୋଲମାଲଥିବା, ଅଡୁଆ ଓଡୁଆ—
ଝାଂଝଟେ 1. Complicated; entangled.
ଝଂଝଟିୟା ୨ । ଯେଉଁ ଲୋକ ଅନ୍ୟ ଲୋକ ସଙ୍ଗେ ଗୋଲମାଲ ବା ଅଡୁଆ ଲଗାଏ; ଯେଉଁ ଲୋକ ଉପର୍ଯ୍ୟୁପରି ପ୍ରାର୍ଥନା ଦ୍ୱାରା ପ୍ରାର୍ଥିତ ବ୍ୟକ୍ତି ମନରେ ବିରକ୍ତି ଜାତ କରାଏ—2. Teasing; importunate; vexatious, troublesome.
ଝିଞ୍ଜଟେଇ } ସ୍ତ୍ରୀ
ଝିଞ୍ଜଟୀ }
(ଝିଞ୍ଝଟିଆ—ଅନ୍ୟରୂପ)

**ଝିଞ୍ଜ(ଞ୍ଜି)ର** (ଇତ୍ୟାଦି)—ଦେ. ବି—ଜଞ୍ଜିର ଇତ୍ୟାଦି ( ଦେଖ )
Jhiñja(ñji)ra (etc) Jañjira etc. ( See )

**ଝିଞ୍ଜ(ଞ୍ଜି)ରା ପୋଲ**—ଦେ. ବି—ଜଞ୍ଜିର ପୋଲ ( ଦେଖ )
Jhiñja(ñji)rā pola Jañjira pola ( See )

**ଝିଞ୍ଜା(ଞ୍ଜି)ଟ**—ଦେ. ବି—ଝଞ୍ଜଟ ( ଦେଖ )
Jhiñjā(ñji)ṭa Jhañjaṭa ( See )
(ଝଞ୍ଜାଟ—ଅନ୍ୟରୂପ)

**ଝିଞ୍ଜା(ଞ୍ଜି)ଟିଆ**—ଦେ. ବିଣ—ଝିଞ୍ଜଟିଆ ( ଦେଖ )
Jhiñjā(ñji)ṭiā Jhiñjaṭiā ( See )
(ଝଞ୍ଝାଟିଆ—ଅନ୍ୟରୂପ)

**ଝିଞ୍ଜାରି**—ଦେ. ବି—ବସ୍ତ୍ର ଓ ପୁସ୍ତକାଦିକୁ ଛିଦ୍ରକରି କାଟିବା ପୋକ—
Jhiñjāri Canker; the silver-moth.
ଘୁଣ ଘୁନ

**ଝିଞ୍ଜାରିବା**—ଦେ. କ୍ରି. (ସ. ଜର୍ଜର; ଜ୍ର ଧାତୁ=ଜୀର୍ଣ୍ଣ କରିବା)—
Jhiñjāribā ବିଦାରିବା; ବହୁ ଛିଦ୍ର କରିବା; ଜୀର୍ଣ୍ଣ ବା ସାରହୀନ
ଝାଁଝରାନ କରିବା; ଉଇ ନଷ୍ଟ କରିବା—To canker;
ଝଂଝୋଡ଼ନା, ଘୁନନା to bore holes into a thing; to perforate.
[ ଦ୍ର—ଜୀର୍ଣ୍ଣ କାଠ ବା ଲୁଗା ବା ପୁସ୍ତକକୁ ପୋକ ଝିଞ୍ଜାରି ପକାନ୍ତି । ]

**ଝିଞ୍ଜିର(ରା)** (ଇତ୍ୟାଦି)—ଦେ. ବି—ଜଞ୍ଜିର ଇତ୍ୟାଦି (ଦେଖ)
Jhiñjira(rā) (etc) Jañjira etc (See)

**ଝିଞ୍ଜିରି** (ଇତ୍ୟାଦି)—ଦେ. ବି—ଜଞ୍ଜିର ଇତ୍ୟାଦି (ଦେଖ)
Jhiñjiri (etc) Jañjira etc (See)

**ଝିଞ୍ଜି(ଞ୍ଝି)ମ**—ସ. ବି—ଦାବାନଳଦଗ୍ଧ ବନ—
Jhiñji(ñjhi)ma A forest on fire (Apte).

**ଝିଞ୍ଜୀ(ଞ୍ଝୀ)**—ସ. ବି—ଝିଙ୍କାରି—
Jhiñjī(ñjhī) A cricket (Apte).

**ଝିଟ୍‌କା**—ଦେ. ବି—ହଠାତ୍ କ୍ଷଣକାଳ ଝିଙ୍କିବା—
Jhiṭ-kā Sudden jerk.
ଝାଂକା ପ୍ରାଦେ. (ଗଞ୍ଜାମ) ବି—ଆହାର ଦେଇ ପକ୍ଷୀମାନଙ୍କୁ
ଝଟକା ମାରିବାରେ ବ୍ୟବହୃତ ସ୍ପ୍ରିଙ୍ଗ୍ ବା କମାଣୀ ଯୁକ୍ତ କାଠର ଯନ୍ତ୍ରବିଶେଷ—A contrivance with a spring used as a trap to kill birds by decoying them with baits.

**ଝିଟ୍‌କା ମାରିବା**—ଦେ. କ୍ରି—କୌଣସି ରଜ୍ଜୁକୁ (ଯଥା—ଘୋଡ଼ାର
Jhit-kā māribā ବାଗ, ନାହାଟାଣିବା ଦଉଡ଼ି) ହଠାତ୍ କ୍ଷଣକାଳ
ଝାଁକିମାରା ପାଇଁ ବଳପୂର୍ବକ ଝିଙ୍କି ଦେଇ ପୁନର୍ବାର
ଝଟକାରନା ଶିଥିଳ କରିଦେବା—To jerk; to give a quickly and suddenly arrested push or pull.

**ଝିଟ୍‌ପିଟ୍**—ଦେ. ବି—ଝିଟିପିଟି (ଦେଖ)
Jhiṭ-piṭ Jhiṭipiṭi (See)

**ଝିଟ**—ଦେ. ବିଣ. ପୁଂ ଓ ସ୍ତ୍ରୀ. (ସ. ଧୃଷ୍ଟ)—୧ । ଚେମରଚଟୁ; ଧିଠ;
Jhiṭa ଧୃଷ୍ଟ; ଜିଗରିଆ—1. Importunate; pertinacious.
ଢୀଟ ୨ । ବେହିଆ; ନିର୍ଲଜ୍ଜ—
ଢୀଠ 2. Shameless; immodest.
ଝିଟେଇ } ସ୍ତ୍ରୀ ମାଉକନିଆଙ୍କ ସାଙ୍ଗରେ ସବୁବେଳେ ଉଜସପ ହେବାରୁ ସେ ଭାରି
ଝିଟୋଇ } ଝିଟ ହୋଇ ଯାଇଛି । ଫକୀରମୋହନ. ଗଳ୍ପସ୍ୱଳ୍ପ ।
୩ । ଅଶ୍ଳୀଳ—3. Indecent.

**ଝିଟପଣ**—ଦେ. ବି. (ସ. ଧୃଷ୍ଟତା)—୧ । ନିର୍ଲଜ୍ଜତା—
Jhiṭa-paṇa 1. Shameless-ness
ଢୀଟାମୀ ୨ । ଅଶ୍ଳୀଳତା—2. Indecency.
ଢୀଠାଇ ୩ । ଧୃଷ୍ଟତା—3. Impertinence.
୪ । ଚେମରଚଟୁପଣ—4. Pertinacity; importunity.
(ଝିଟପଣିଆ—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ଦର୍ଶିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଆଙ୍ଗୀ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଝିଟ ହୋଇ ଲାଗିବା**—ଦେ. କ୍ରି—କୌଣସି ବ୍ୟକ୍ତି ନିକଟରେ ନିର୍ଲଜ୍ଜ-
Jhita hoi lāgibā ଭାବରେ ଉପର୍ଯ୍ୟୁପରି ପ୍ରାର୍ଥନା କରିବା—
To solicit unreasonably; to importune; to tease; to worry with requests.

**ଝିଟିକା**—ଦେ ବି. (ସଂ. ଉଚ୍ଚିଙ୍ଗଟ; ଉଚ୍ଚିଟିଙ୍ଗ; ସଂ. ଝିଣ୍ଟିକା)—ଲମ୍ଫପଦ
Jhitikā ବର୍ଗିଷ୍ଠ ପତଙ୍ଗବିଶେଷ; ଶଲଭ; ଝିଣ୍ଟିକା—
ସଂ. ନାମ—ଝିଲ୍ଲୀ, ଝିରିକା, ଝିଲ୍ଲୀ, ଉଚ୍ଚିଙ୍ଗଟ. ଉଚ୍ଚିଟିଙ୍ଗ
ଝିରିକା; ଝିରି; ଉଇଚିଂଡ଼େ
**ଟିଡ୍ଡା; ଟିଡ୍ଡୀ; ଝୀଂଗୁର**
[ଦ୍ର—ଏହି ଲମ୍ଫପଦୀ ଷଟ୍‌ପଦୀ ପତଙ୍ଗ ବୃକ୍ଷର ପତ୍ରଆଦି ଖାଇ ବୃକ୍ଷକୁ ପତ୍ରହୀନ କରନ୍ତି । ଏମାନେ ସମୟେ ସମୟେ ବହୁ-ସଂଖ୍ୟାରେ ଦଳବଦ୍ଧ ହୋଇ କୌଣସି କୌଣସି ଅଞ୍ଚଳର ସମସ୍ତ ଫସଲ ଓ ଗଛର ପତ୍ରକୁ ନଷ୍ଟ କରି ଦିଅନ୍ତି; ଏମାନେଙ୍କୁ ଝିଙ୍କାସ୍ତ । ]
ପ୍ରାଦେ. (ଗଞ୍ଜାମ) ବି—୧ । ଝିଟ୍‌କା (ଦେଖ)
1. Jhit-kā (See)
୨ । ବର୍ଷା ପାଣିର ଛାଟ—
2. The splash of diogonal shower of rain.

**ଝିଟିଙ୍ଗା**—ପ୍ରାଦେ. (ସମ୍ବଲପୁର) ବି—ଝାଟି (ଦେଖ)
Jhitingā Jhāti (See)

**ଝିଟିପିଟି**—ଦେ. ବି. ( ସଂ. ଜ୍ୟୋଷ୍ଣୀ; ଚଟକ୍ଷା )—୧ । ପଲ୍ଲୀ ବା
Jhiti-piti ଗୃହଗୋଧିକା; ଗୃହରେ ଥିବା ସରୀ-ସୃପବିଶେଷ—1. The common house-lizard; the house gecko; Hemidactylus.
ସଂ. ନାମ—ଜ୍ୟୋଷ୍ଣୀ, ମାଣିକ୍ୟା, ଚଟକ୍ଷା, ପଲ୍ଲୀ, ଭିତ୍ତିକା, ଗୃହଗୋଧା, ଗୃହଗୋଧିକା, ପଲଲ୍ଲୀ, ମୁଷଲୀ, ଗୃହୋଳିକା, ଗୃହଗୋଳିକା, କୁଡ୍ୟମତ୍ସ୍ୟ, ବର୍ଣ୍ଣିବସା
ଟିକଟିକୀ
**ଛିପକଲୀ; ଟିକଟିକୀ**
[ଦ୍ର—ଏମାନଙ୍କର ମସ୍ତକ ମଣ୍ଡଳାକାର, ଅଙ୍ଗୁଳି ନଖବର୍ଗିଷ୍ଠ; ଏମାନେ ଠକ୍ ଠକ୍ ଶବ୍ଦ କରନ୍ତି । ଶରୀରର ଭିନ୍ନଭିନ୍ନ ଅଙ୍ଗରେ ଏମାନେ ପଡ଼ିଲେ ତଦ୍ଦ୍ୱାରା ମଙ୍ଗଳକର ବା ଅମଙ୍ଗଳକର ଫଳ ଘଟେ ବୋଲି ଲୋକେ ବିଶ୍ୱାସ କରନ୍ତି । ଏମାନେ କାନ୍ଥ ଉପରେ ସହଜରେ ଗମନ କରନ୍ତି ଓ କାନ୍ଥରେ ବସିବା ପୋକ ଆଦି ଖାଆନ୍ତି; ଏମାନେ କାନ୍ଥଦେହରେ ପେଟ ଲଗାଇ ୪ ଗୋଡ଼ଦ୍ୱାରା ଚାଲନ୍ତି; ବୈଦ୍ୟଶାସ୍ତ୍ରମତରେ ଏହାର ମାଂସ ଭକ୍ଷଣ କଲେ କୁଷ୍ଠ, ଉପଦଂଶ ଓ ଗଣ୍ଡମାଳା ବିନଷ୍ଟ ହୁଏ । ରାଜବଲ୍ଲଭ. ଦ୍ରବ୍ୟଗୁଣକଳ୍ପଦ୍ରୁମ ।]
୨ । ଘର ଚାଳର ତଳରେ ଥିବା ଭୁଣ୍ଡାଟ ପଟାକୁ ଓ ଛଣଖାଇକୁ ସଂଯୋଗ କରିବା କ୍ଷୁଦ୍ର କ୍ଷୁଦ୍ର କାଷ୍ଠଖଣ୍ଡ—
2. A small piece of wood joining the eaves-plate with the end-piece of a thatched roof; a bracket-like piece of wood attached to the eaves-plate to support the end-plate of a thatch to prevent it from falling down.

**ଝିଟୁଆ (ଇତ୍ୟାଦି)**—ଦେ. ବିଣ. ପୁଂ—ଝିଟ ଇତ୍ୟାଦି (ଦେଖ)
Jhituā (etc) Jhita etc (See)

**ଝିଣ୍‌ଝିଣ୍**—ଦେ. ବି—ଝିଣିଝିଣି (ଦେଖ)
Jhin-jhin Jhini-jhini (See)

**ଝିଣ୍‌ଝିଣିଆ**—ପ୍ରାଦେ. (ମେଦନୀପୁର) ବି—କଙ୍କି (ଦେଖ)
Jhin-jhiniā Kanki (See)

**ଝିଣିଝିଣି**—ଦେ. ବି.—(ଅନୁଭୂତିର କାଳ୍ପନିକ ଅନୁକରଣ ଶବ୍ଦ)—ଅଙ୍ଗ-
Jhini-jhini ସୁପ୍ତି; ବହୁକାଳ ଏକ ଅବସ୍ଥାରେ ରହି ଗଲେ ରକ୍ତ-
ଝିନଝିନି ସଞ୍ଚାଳନର ରୋଧ ହେବାରୁ ଅଙ୍ଗବିଶେଷର ଯେଉଁ ଅବଶ
**ସୁନସୁନୀ** ଅବସ୍ଥା ବୋଧ ହୁଏ; ଅଙ୍ଗାଦିର ଅବଶତା; ଝମି ଝିମି—
Numbness of limbs; sensation of the limb being asleep; 'limbs going to sleep'; 'pins and needles' (due to limbs temporarily losing sensation after being kept unmoved for a long period), tingling sensation.
ଦେ ଅ.—(ଧ୍ୱନ୍ୟନୁକରଣ)—ଝୁଣୁ ଝୁଣୁ (ଦେଖ)
Jhunu jhunu (See)

**ଝିଣିଝିଣିଆ(ଆଁ)**—ପ୍ରାଦେ. (ଯାଜପୁର) ବି.—ଏକପ୍ରକାର ଆମ୍ବ, ଯାହାକୁ
Jhini-jhiniā (ā̃) ଖାଇଲେ ତଣ୍ଟି ଓ ପାଟି ଝିମି ଝିମି ହୋଇଯାଏ;
ରସୁଣିଆ ଆମ୍ବ—A kind of mango which causes irritation in the throat and mouth.

**ଝିଣିବା**—ପ୍ରାଦେ. (ଯାଜପୁର)—କ୍ରି.—ଝୁଣିବା (ଦେଖ)
Jhiniba Jhuniba (See)

**ଝିଣ୍ଟିକା**—ଦେ. ବି.—ଝିଟିକା (ଦେଖ)—Jhitikā (See)
Jhintikā 'ଝିଣ୍ଟିକା ମାର ବଣି ପୋଷିବା ନ୍ୟାୟ' । ପ୍ରବଚନ ।
ସଂ ବି.—ଝିଣ୍ଟୀ (ଦେଖ)
Jhinti (See)

**ଝିଣ୍ଟିବା**—ଦେ. କ୍ରି—୧ । ଝୁଣିବା (ଦେଖ)
Jhintibā 1. Jhunibā (See).
୨ । ( ବ୍ୟଙ୍ଗାର୍ଥ )—ଖାଇଦେବା; ଚିଲପକାଇବା—
2. (ironical) To devour; to eat up.

**ଝିଣ୍ଟୀ**—ସଂ. (ଝିନ୍=ଅନୁକରଣ ଶବ୍ଦ+ଋଟ୍ ଧାତୁ=ଶବ୍ଦ କରିବା+କର୍ତ୍ତୃ
Jhinti ଅ+ସ୍ତ୍ରୀ. ଈ; କପାଳନ)—ବାସକାଦି ବର୍ଗୀୟ ବନ୍ୟ ପୁଷ୍ପ-
ସଂ. ନାମ—ଝିଣ୍ଟି, ଝିଣ୍ଟିକା, କଣ୍ଟସାରକା, ଝିଣ୍ଟୀ, କୁରଣ୍ଟକ, ବର୍ଣ୍ଣପୁଷ୍ପ, ମହାସହ, ଅମ୍ଲାନ, ଅମ୍ଲାନକ
ଝିଟୀ, ଝିଟୀ ଝାଁଟୀ
**କଟସରୈଯା, पियाबासा**
କ୍ଷୁପବିଶେଷ—A kind of shrub growing wild; Barlaria.
[ଦ୍ର—ଏହା ଅନେକ ପ୍ରକାରର ।]
୧ । କଣ୍ଟା ଝିଣ୍ଟି ବା ଦାସଟକରଣ୍ଟା; ଏ ଗଛର କାଣ୍ଡରେ କଣ୍ଟା ଥାଏ; ଫୁଲ ହଳଦିଆ.
ସଂ. କୁରୁଣ୍ଟକ, କଙ୍କିରାତ—
1. Barlaria Prionites.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଚ | ଶ,ଷ | ଙ୍କ | ଇଦ୍ମ | ଉଅ | ଈ |
| ୨ | ଈ | ଊ | ରୁ | ଲୁ | ପୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗିଁ୍ୟ | ଇଅ | ଊ | ନ୍ତୁ |

୨ । ସାଦାଝିଣ୍ଟି; ଗଛରେ କଣ୍ଟା ନାହିଁ. ଫଲ ସ୍ୱର୍ଣ୍ଣ ଓ ଫୁଲ ଧଳା; ସଂ. ସୈରେୟ୍ୟା, ସୈରେୟକ, କଣ୍ଟସାରକା ସହଚର, ସହାଚର, ଝିଣ୍ଟି—

୩ । ନେଳ ଝିଣ୍ଟି; ଫୁଲ ନେଳଆ ସଂ.ବାଣା ଦାସୀ; ଆର୍ତ୍ତଗଳ—

୪ । ନାଲି ଝିଣ୍ଟି ଅଁଟଲେଇ ଫୁଲ; ଫୁଲ ଆରକ୍ତ ସଂ. କୁରୁବକ—

2. 3 & 4. Barlaria Cristata of different varieties; Dichotoma.

[ବୈଦ୍ୟଶାସ୍ତ୍ର ଅନୁସାରେ ଝିଣ୍ଟୀ କୁଷ୍ଠ, ବାୟୁ, ରକ୍ତ-ଦୋଷ, କଫ, କଣ୍ଡୁ ଓ ବିଷ ହରଣ କରେ; ଏହା ତିକ୍ତ ମଧୁର ରସ, ଉଷ୍ଣବୀର୍ଯ୍ୟ, ଈଷତ୍ ଅମ୍ଳ ଓ କେଶରଞ୍ଜକ; ଏହା ସେବନ କଲେ କୁଷ୍ଠ, ବାତ, ବ୍ରଣ, ଚର୍ମବିକାର, ଶ୍ୱାସ, କାସ, ଜ୍ୱର, ଶୋଥ, ଅଗ୍ନିମାନ୍ଦ୍ୟ, ବାତରକ୍ତ, ରକ୍ତଦୋଷ, କଫ, କଣ୍ଡୁ, ଶୂଳ ଓ ଦାରୁଣ ବିଷ-ବିକାର ନଷ୍ଟ ହୁଏ, କାନ୍ତି ବୃଦ୍ଧି ହୁଏ, ବଳପଳିତ ନିବାରିତ ହୁଏ, ଦନ୍ତ ଓ କେଶର ଉପକାର ହୁଏ—ବୃଜବନ୍ଧୁ, ଦ୍ରବ୍ୟଗୁଣ କଳ୍ପଦ୍ରୁମ ।]

ଝିନ୍ଝଟ୍—ଦେ. ବି—ଝିଞ୍ଜଟ (ଦେଖ)
Jhin-jhaṭ Jhiñjaṭa (See)
(ଝିନ୍ଝିଟ୍; ଝିନ୍ଝୁଟ୍, ଝିନ୍ଝୋଟ—ଅନ୍ୟରୂପ)

ଝିନ୍ଝଟିଆ—ଦେ. ବିଣ. ପୁଂ—ଝିଞ୍ଜଟିଆ (ଦେଖ)
Jhin-jhaṭiā Jhiñjaṭiā (See)
(ଝିନ୍ଝିଟିଆ, ଝିନ୍ଝିଟୁଆ;
(ଝିନ୍ଝଟୁଆ, ଝିନ୍ଝୁଟିଆ, ଝିନ୍ଝୋଟିଆ } ଅନ୍ୟରୂପ

ଝିନ୍ଝିଟ୍—ଦେ. ବି—ଝିଞ୍ଜଟ୍ ( ଦେଖ )
Jhin-jhiṭ Jhiñjaṭ ( See )

ଝିନ୍ଝିନ୍—ଦେ. ବି—ଝିଣିଝିଣି ( ଦେଖ )
Jhin-jhin Jhiṇi-jhiṇi ( See )

ଝିନ—ଦେ. ବିଣ. ( ସଂ. ଚୀନ=ଚୀନଦେଶ; ଏ ଦେଶରେ ପୂର୍ବେ ଖୁବ୍ ପତଳା ଲୁଗା ତିଆରି ହେଉଥିବାରୁ; ସଂ ଚୀନାଂଶୁକ କିମ୍ବା ସଂ. କ୍ଷୀଣ; ପ୍ରାକୃତ. ଝୀଣ)—ସୂକ୍ଷ୍ମ; ବାରିକ୍; ଅତ୍ୟନ୍ତ ପାତଳ—Very thin and delicate ( cloth ).
Jhina
ঝিন
झीन, झीना

ବକଳ ପିନ୍ଧିଛ ଯାହାର କଟିଦେଶ
ଆର ଜନ୍ମେ ପିନ୍ଧେ ସେ ସରୁ ଝିନବାସ—କୃଷ୍ଣସିଂହ. ମହାଭାରତ. ଶାନ୍ତି ।

ଦେ. ବି—ଅତି ସରୁ ଲୁଗା—Very thin cloth.

ଝିନପତନୀ—ଦେ. ବି. (ସଂ. ଚୀନ+ପଟ୍ଟ)—୧ । ଅତ୍ୟନ୍ତ ସୂକ୍ଷ୍ମ ବସ୍ତ୍ର—
Jhina-patanī 1. Very delicate fabric.
ঝিলিমিলি ୨ । ଅତ୍ୟନ୍ତ ପତଳା ପାଟ ଲୁଗା; ହାଉଆ ଶାଢ଼ୀ—
2. Thin silk cloth; a thin kind of silk gauze.
ଝିନବସନ } ଅନ୍ୟରୂପ
ଝିନବାସ }

ଝିନପତନୀ ଅଙ୍ଗେ ଶୋଭା, ଝଟକ ଦିଶୁ ପ୍ରାୟ ଅଙ୍ଗ—
ବଳରାମ ଦାସ. କମଳଲୋଚନ ଚଉତିଶା ।

ଝିନଝଟ୍ ( ଇତ୍ୟାଦି )—ଦେ. ବି—ଝଞ୍ଜଟ ଇତ୍ୟାଦି (ଦେଖ)
Jhinijhaṭ ( etc ) Jhañjata etc ( See )

ଝିପ୍ଝିପ୍—ଦେ. ଅ. ( ଧ୍ୱନ୍ୟନୁକରଣ )—ଝିପିଝିପି ( ଦେଖ )
Jhip-jhip Jhipi-jhipi ( See )

ଝି-ପକା(କେ)ଇବା—ପ୍ରାଦେ. ( ଗଞ୍ଜାମ ) କ୍ରି—ଝିଇ ପକାଇବା (ଦେଖ)
Jhi-pakā(ke)ibā Jhi-i pakāibā ( See )

ଝିପା—ପ୍ରାଦେ. (ସମ୍ବଲପୁର) ବି—ଏକପ୍ରକାର ଦୁବାଘାସ—
Jhipā A kind of creeping grass.

ଝିପିଝିପି—ଦେ. ଅ. ( ଧ୍ୱନ୍ୟନୁକରଣ )—ଛୋଟ ଛୋଟ ଟୋପାରେ ବର୍ଷା ହେବା—Raining in small drops; drizzling; light shower of rain; gentle shower.
Jhipi jhipi
টিপিটিপি
झिरझिर

( ଝିପିରି ଝିପିରି—ଅନ୍ୟରୂପ ) ଝିପିଝିପି ମେଘ ବରଷି ଅସିଲା
ଦେଖୁ ଦେଖୁ ଦୁମ୍‌ଦୁମ୍—ନନ୍ଦକିଶୋର. ନର୍ତ୍ତକୀ ।

ଦେ. ବି—ସାମାନ୍ୟ ଓ କ୍ଷୁଦ୍ର ଟୋପାରେ ବର୍ଷା—
A drizzle; dribble; gentle shower.

[ ଦ୍ର—ଦୁମ୍‌ଦୁମ୍, ଦୁମ୍ଦୁକାଣି=ଖୁବ୍ ବଡ଼ବଡ଼ ଟୋପାରେ ପ୍ରଚୁର ବର୍ଷା । ଟପଟପ, ଟପର ଟପର=ବଡ଼ ବଡ଼ ଟୋପାରେ ବରଷା । ଝପ୍‌ଝପ୍, ଝପଝପ, ଝପର ଝପର=ଏହାଠାରୁ ସାନ ଟୋପାରେ ବରଷା । ଝିପ୍‌ଝିପ୍, ଝିପିଝିପି, ଝିପିରି ଝିପିରି=ଏହା ଅପେକ୍ଷା ଛୋଟ ଟୋପାରେ ବର୍ଷା । ଝୁପ୍‌ଝୁପ୍, ଝୁପୁଝୁପୁ, ଝୁପୁରୁ ଝୁପୁରୁ=ଏହା ଅପେକ୍ଷା ଛୋଟ ଟୋପାରେ ବର୍ଷା । ଲିପ୍‌ଲିପ୍, ଲିପିଲିପି=ଏହା ଅପେକ୍ଷା କ୍ଷୁଦ୍ର ବିନ୍ଦୁରେ ବର୍ଷା । କୁଣ୍ଡାଝଡ଼ା (ଗ୍ରା)—ଅତି କ୍ଷୁଦ୍ର ବିନ୍ଦୁରେ ବର୍ଷା । ]

ଝିମ୍ଝିମ୍—ଦେ. ବି—ଝିମିଝିମି ( ଦେଖ )
Jhim-jhim Jhimi-jhimi ( See )

ଝିମ୍ ଝିମ୍ ମାରିବା—ଦେ. କ୍ରି—ଝିମ୍ ଝିମ୍ ହେବା ( ଦେଖ )
Jhim jhim māribā Jhim jhim hebā ( See )

ଝିମ୍ଝିମ୍ ହେବା—ଦେ. କ୍ରି. (ଅନୁଭୂତର କାଳ୍ପନିକ ଅନୁକରଣ ଶବ୍ଦ)—
Jhim-jhim hebā ୧ । ଝାଇଁ ଝାଇଁ (ଦେଖ)
ঝিম্‌ঝিম্ করা 1. Jhāiṅ jhāiṅ (See)
झुनझुनाना ୨ । ଅନଶନାଦିଜନିତ ଦୁର୍ବଳତା ବୋଧ—
2. A tingling or creeping sensation due to sheer weakness and fasting.

ଝିମା—ଦେ. ବି —୧ । ଏକପ୍ରକାର ବାତରୋଗ—
Jhimā 1. A fit or disease accompanied with a tingling sensation and stupor.
ঝিমা রোগ
सुन्न, सनसनी

[ ଦ୍ର—ଏଥିରେ ଦେହ ହାତ ଝିମ୍‌ଝିମ୍ ମାରେ ଅର୍ଥାତ୍ ଅଙ୍ଗ ଆଦି ଅବଶ ଓ ସ୍ପନ୍ଦନହୀନ ହୋଇଯାଏ । ]

୨ । ମୂର୍ଚ୍ଛାବାତ—2. Swoon.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ରୁଚିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରୁଚିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରୁଚିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚକ୍ରୁଚିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୃଷ୍ଣ ନ ମିଳିଲେ 'କୃଷ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅକ୍ଷି ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

ଦେ. ବଣ. ( ସଂ. କ୍ଷୀଣ )—୧ । ଅବଶ; କାଲୁଆ—
1. Paralysed; benumbed.
୨ । ଯେଉଁ ଆମ୍ବ ଖାଇଲେ ପାଟି ଓ ଚୋଟିରେ ଝିମ୍ ଝିମ୍ ଅନୁଭୂତ ହୁଏ; ରସୁଣିଆଁ ( ଆମ୍ବ )—
2. ( mango ) Producing irritation in the throat and mouth.
ଧୀମା ୩ । ଯେ ଧିମେଇ ଧିମେଇ କୌଣସି କାର୍ଯ୍ୟ କରେ; ଅଳସୁଆ-
धीमा 3. Slothful; slow coach; laggard.
୪ । ସେମଟା ( ଫଳ )—
4. Withered and shrunk ( fruit ).

**ଝିମା(ମେ)ଇବା**—ଦେ. କ୍ରି—୧ । (ଦେହ) ଝିମିଝିମି ବୋଧ କରିବା—
Jhimā(me)ibā 1. To feel a tingling sensation in the body
ଝିମା
सनसनाना ୨ । ଅଙ୍ଗାଦି ଅବଶ ହୋଇ ଚଳତ୍ ଶକ୍ତିହୀନ ହେବା—
2. (limbs) To be benumbed or overpowered.
୩ । (ଅଙ୍ଗାଦି ଅବଶ ହେବା ପରି) ଧୀରେ ଧୀରେ କୌଣସି କାର୍ଯ୍ୟ କରିବା; ଧିମେଇବା—
3. To do some work very slowly (as if the doer is suffering from numbness).
ପ୍ରାଦେ ( ଯାଜପୁର ) କ୍ରି—ନିଦ୍ରାତୁର ହୋଇ ଢୁଲାଇବା ବା ଝୁଙ୍କି ହେବା—To nod with drowsiness

**ଝିମାଣି**—ଦେ. ବି—୧ । ଦୁଇ ଦଳ ବାଳକମାନଙ୍କ ମଧ୍ୟରେ ଏକ ପ୍ରକାର
Jhimāṇi ଖେଳ; ଡୁ ଡୁ ଖେଳ—1. A kind of out-door game amongst boys.
୨ । ଜୁଆ ଖେଳ—2. A game at hazards.
ଝିମାଣି ଖେଳରୁ ମହାଭାରତ ଉପୁଜିବା ନ୍ୟାୟ—ପ୍ରବଚନ ।
୩ । (ସଂ. ଧ୍ମା ଧାତୁ) ଅସ୍ତ୍ର ଶସ୍ତ୍ର ପ୍ରସ୍ତୁତ କରିବା କାରଖାନାର ଅଗ୍ନି—2. The fire of an arms-factory.

**ଝିମା ବାତ**—ଦେ. ବି—ଝିମା ( ଦେଖ )
Jhimā bāta Jhimā ( See )
(ଝିମା ରୋଗ—ଅନ୍ୟରୂପ)

**ଝିମିଝିମା**—ଦେ. ବଣ—ରସୁଣିଆ (ଆମ୍ବ);ଯାହାକୁ ଖାଇଲେ ପାଟି ଝିମିଝିମି
Jhimi-jhimā ହୋଇଯାଏ ( ଯଥା— ଝିମିଝିମା ଆମ୍ବ, ଝିମିଝିମା ବାଜ ଆମ୍ବ;—( mango ) Which produces iritation in the throat and mouth.
ପ୍ରାଦେ. ( ସିଂହଭୂମ ) ବି—ମାଇପେ ପିନ୍ଧିବା ଉପରକାନର ଫିରିଫିରି—A kind of earring worn on the upper part of the ear.

**ଝିମିଝିମି**—ଦେ. ଅ. ( ସଂ. ଝିଷ୍ମ )—୧ । ବହୁକାଳ ଏକ ଅବସ୍ଥାରେ
Jhimi-jhimi ଅବସ୍ଥିତ ଯୋଗୁଁ ରକ୍ତସଞ୍ଚାଳନରେ ବ୍ୟାଘାତ ହେବାରୁ ଅଙ୍ଗବିଶେଷରେ ଅବଶତା ଅନୁଭୂତ ବା ଯନ୍ତ୍ରଣାବୋଧ—1. Tingling sensation due to numbness of a limb if kept in one position for a long period.
୨ । ଘୁଙ୍ଗୁର ଆଦି ପିନ୍ଧି ପାଦକ୍ଷେପ ବା ନୃତ୍ୟାଦି କରିବା ଯୋଗୁଁ ଝମ୍‌ଝମ୍ ବା ଝୁମୁ ଝୁମୁ ଶବ୍ଦ; ଝୁମୁରୁ ଝୁମୁରୁ—
2. Tinkling sound caused by dancing while wearing small bells.

**ଝିମିଟ(ଣ୍ଟ)**—ଦେ. ବି—ମୁହୂର୍ତ୍ତ; ନିମିଷ ମାତ୍ର—
Jhimiṭa(ṇṭa) One moment only, instant; a very short time; 'no time'.
ଝିମିଟେ ମିଳାଇ ଗଲା ସେ ତୃଷାର କୋଧ । ଚନ୍ଦ୍ରାମଣି, ଦକ୍ଷମାଦଭ୍ୟ ।

**ଝିମିଟକ**—ଦେ. ବି—ଝିମିଟ ( ଦେଖ )
Jhimiṭaka Jhimiṭa ( See )
ଝିମିଟକ କଳ୍ପ ଶତରୁ ଅଳଲ୍ପ ହୋଇଲାଣି ଝୁରିଝୁରି । କବିସୂର୍ଯ୍ୟ ସଙ୍ଗୀତ ।

**ଝିମିଟକେ**—ଦେ. କ୍ରି. ବଣ—ମୁହୂର୍ତ୍ତକେ—
Jhimiṭa-ke In no time; in a moment, in a trice.

**ଝିମିଣି**—ଦେ. ବି—ଝିମାଣି (୧) ( ଦେଖ )
Jhimiṇi Jhimāṇi (1) ( See )

**ଝିମିଣି**—ଦେ. ବି—ଝିମାଣି (୧) ( ଦେଖ )
Jhimiṇi Jhimāṇi (1) ( See )

**ଝିମିଣ୍ଟେ**—ବି—ନିମେଷ ମାତ୍ର—
Jhimiṇṭe A very short time; a moment.
ଝିମିଣ୍ଟେ ଗଲେ କାଳ ପୁଣ ଆପଣା ବାଳକଙ୍କୁ ଛାଅରନ୍ତ ।
ଅଭିମନ୍ୟୁ. ବଦଗ୍ଧଚନ୍ଦ୍ରାମଣି ।

**ଝିମିରି**—ଦେ. ବି—ଯେଉଁମାନେ ଅସ୍ତ୍ରଶସ୍ତ୍ର ତିଆରି କରନ୍ତି; ହତିଆର-
Jhimiri କାରିଗର—Manufacturer of arms.

**ଝିମିରି ଖେଳ**—ଦେ. ବି—ଝିମାଣି (୧) ( ଦେଖ )
Jhimiri khela Jhimāṇi (1) ( See )

**ଝିମିଶାଳ**—ଦେ. ବି—ଅସ୍ତ୍ରଶସ୍ତ୍ରାଦି ପ୍ରସ୍ତୁତ କରିବାର କାରଖାନା—
Jhimi-śāla Arms-factory.

**ଝିମୁଟ**—ଦେ. ବି—ମୁହୂର୍ତ୍ତ—
Jhimuta A moment.
ଝିମୁଟ ହେବାକୁ ସହସ୍ର ଯାମ । କବିସୂର୍ଯ୍ୟ. କଳୋଗ୍ଗ ଚଣ୍ଡ ୫. ଗୀତ ।

**ଝିମେଇ ଝିମେଇ**—ଦେ. କ୍ରି. ( ଅସମାପିକା କ୍ରିୟା; କ୍ରିୟାବିଶେଷଣ
Jhimei jhimei ରୂପେ ବ୍ୟବହୃତ )—
୧ । ଅତି କ୍ଷୀଣ ଭାବରେ—
1. Very slightly.
୨ । ଧୀରେ ଧୀରେ—2. Slowly.
( ଯଥା—ପାଣି ପୋଖରୀରୁ ଝିମେଇ ଝିମେଇ ବହି ଯାଉଛି । )
୩ । ଆଳସ୍ୟ ସହକାରେ—Idly; slothfully.
୪ । ନିଦ୍ରାତୁର ହୋଇ ଇତସ୍ତତଃ ଢୁଲାଇବା ପ୍ରକାରେ—
4. Drowsily; nodding.
( ଯଥା—ସେ ଝିମେଇ ଝିମେଇ ଗୁଲୁଛି । )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ଼ | ଉଅ | ଣ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ୱ | ନ |

ଝିମ୍ପୁଡ଼ି—ଦେ. ବି—ଝୁମ୍ପୁଡ଼ି ( ଦେଖ )—
Jhimpurdi Jhumpurdi ( See )
ଝିମ୍ପୁଡ଼ି ବାଂଶ ସଂଅ ଅଂକୁଲ ବଦର—କୃଷ୍ଣସିଂହ ମହାଭାରତ. ବନ ।

ଝିରିକା—ସଂ. ବି—ଝିଙ୍କାରି—
Jhirikā A cricket ( Apte ).
(ଝିରି, ଝିରିକା—ଅନ୍ୟରୂପ)

ଝିରିଝିରି—ଦେ. ଅ. ( ଧ୍ୱନ୍ୟନୁକରଣ; ସଂ. ଧୀର )—
Jhiri-jhiri ପାଣି ଅଳ୍ପ ଅଳ୍ପ ଝରିବା ପ୍ରକାରରେ—Water oozing or flowing very thinly or slightly.
ଝିରି ଝିରି ହୋଇ ବହଇ ସଲିଳ । ରାଧାନାଥ, ମହେନ୍ଦ୍ରଗିରି ।

ଝିଲ୍‌ଝିଲ୍—ଦେ. ଅ—ଚକ୍‌ଚକ୍; ଜକ ଜକ—
Jhil-jhil In a twinkling manner; flashing.
झिलमिल ବକୁଳ ଝିଲ୍ ଝିଲ୍ ମାରୁଛ । ଲୁଲଲାକୁମାରୀ. କଥଗୁଣ୍ଡ ।

ଝିଲ୍‌ମିଲ୍—ଦେ. ବି— ୧ । ଖଡ଼ଖଡ଼ି; କବାଟ ବନ୍ଦ ହୋଇଥିବା
Jhilmil ଅବସ୍ଥାରେ ମଧ୍ୟ ଘର ଭିତରକୁ ବାୟୁ ଓ ଆଲୋକ
ଝିଲିମିଲି ପଶିବା ଭଳି ଅନେକ ଖଣ୍ଡ ପଟାରେ ତିଆରି ଏକ ପ୍ରକାର
झिलमिली କବାଟ—1. Venetian blind ( for doors and windows ); a shutter.
ଝିଲ୍‌ମିଲ୍ } ଅନ୍ୟରୂପ
ଝିଲମିଲ }
[ ଦ୍ର—ଝିଲ୍‌ମିଲ୍ କବାଟ ଏପରି ଭାବରେ ପ୍ରସ୍ତୁତ ଯେ, ତାହାର ପଛ ଆଡ଼େ ଥିବା ଛଡ଼କୁ ଝିଙ୍କି ଟାଣି ଦେଲେ କବାଟ ବନ୍ଦଥିବା ଅବସ୍ଥାରେ କବାଟ ଭିତରେ ଥିବା ସରୁ ପଟାମାନଙ୍କ ମଧ୍ୟରେ ଫାଙ୍କମାନ ମେଲା ହୋଇଯାଏ । ଓ ଉକ୍ତ ଛଡ଼କୁ ଖସ୍ତ ଦେଲେ ଉକ୍ତ ଫାଙ୍କମାନ ବନ୍ଦ ହୋଇଯାଏ । ସେ ଫାଙ୍କମାନ ମେଲା ହେଲେ ଉକ୍ତ ଫାଙ୍କ ବାଟେ ବାୟୁ ଓ ଆଲୋକ ଗୃହ ମଧ୍ୟକୁ ଯାଏ । ଗାଡ଼ି ଓ ପାଲଙ୍କିର କବାଟମାନଙ୍କରେ ମଧ୍ୟ ଏ ପ୍ରକାର ସୂକ୍ଷ୍ମ ଥାଏ । ]
୨ । ଖୁବ୍ ପତଳା; ଜାଲିଜାଲିଆ—2. Gauze-like.
(ଝିଲ୍‌ମିଲ୍‌କାଣୀ—ସ୍ତ୍ରୀ) ଦେ. ବଣ. ପୁଂ—୩ । ଯେଉଁ ବ୍ୟକ୍ତି ଆଖିର ପଲକକୁ ସବୁବେଳେ ଉଠାଉ ଥାଏ ଓ ପକାଉଥାଏ ଓ ଯାହାର ଦୃଷ୍ଟିଶକ୍ତି ଉତ୍ତମ ନୁହେଁ—3 A dim-sighted person; one who always quickly moves his eyelids up and down.
ଦେ. ବଣ —ଅତି ଉଜ୍ଜ୍ୱଳ—
Very bright; dazzling.

ଝିଲ—ଦେ. ବି.—(ସଂ. ଜଲ; ସଂ. ବଲ୍ଲ; ବଲ=ଗର୍ତ୍ତ)—୧ । ଜଳପାଟ;
Jhila ଦହ; ବର୍ଷାପାଣିରେ ଯେଉଁ ବହୁବିସ୍ତୃତ ନିମ୍ନଭୂମି ଜଳପୂର୍ଣ୍ଣ
बिल ହୋଇଯାଏ—1. Marsh; swamp; morass; bog.
झिल
୨ । ଅଗଭୀର ଜଳାଶୟ—2. Shallow lake.

ଝିଲ(ଲି)କିବା—ଦେ. କି.—(ସଂ. ଧୀର).—(ପବନ) ଧୀରେ ବହିବା
Jhila(li)kibā (wind) To blow slowly.
ପଛୁପଟରୁ ପବନ ଛୁଟଏ ଝିଲକ ଦେଇ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଝିଲ(ଲି)କେଇବା—ଦେ. କି.—(ପବନ) ଧୀରେ ଧୀରେ ବହିବା—
Jhila(ke)ibā (wind) To blow slowly.
ଝିଲ୍‌ଝିଲ୍ ପବନ ଝିଲକେଇଲା ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

ଝିଲ(ଲି)ପି—ଦେ. ବି.—୧ । (ଫା. ଜୁଲ୍‌ଫ୍; ସ. ନାମ କାକପକ୍ଷ)—
Jhila(li)pi କର୍ଣ୍ଣମୂଳ ପାଖେ ଯେଉଁ କୁଞ୍ଚିତ ବଙ୍କ କେଶ ଥାଏ—
ଜୁଲଫି 1. Curling lock hanging down and
जुलफी dressed so as to descend and curve round the lobe of the ear.
ଦ ମଧୁର ହସେ ଗୌର ଗଣ୍ଡେ କଳା-କାଳ ଝିଲପି ।
ରାଧାନାଥ. ଉଷା ।
ଝିଲାପୀ ୨ । ଜିଲିବି (ଦେଖ)
जिलेबी 2. Jilibi (See)

ଝିଲ(ଲି)ପି କାଟିବା—ଦେ.କି.—ମସ୍ତକର କେଶଗୁଚ୍ଛ କାନ ପର୍ଯ୍ୟନ୍ତ ଲମ୍ବିବା
Jhila(li)pi kātibā ପ୍ରକାରରେ କେଶକୁ କାଟି ବିନ୍ୟାସ କରିବା—
ଜୁଲଫି କାଟା To wear hair cut and curled round the lobe of the ear.
जुलफ काटना
(ଝିଲପି ଛାଡ଼ିବା, ଝିଲପି ରଖିବା—ଅନ୍ୟରୂପ)

ଝିଲି—ଦେ. ବି.—ଝିଲ୍ଲି (ଦେଖ)
Jhili Jhilli (See)

ଝିଲିକନା---ଦେ. ବି.—ମଝିରେ ଛିଦ୍ରଯୁକ୍ତ କନା,ଯାହା ମଧ୍ୟରେ ବଟା ବିରିକୁ
Jhili-kanā ପୂରାଇ କଡ଼ାଇ କରେଇରେ ଅଳାଡ଼ିଲେ ଝିଲି ଓ ଜଳପି ତିଆରି ହୁଏ—A piece of rag with a hole in the centre through which liquid-paste is poured into the frying pan to prepare spiral jhili.

ଝିଲିପି (ଇତ୍ୟାଦି)—ଦେ.ବି—ଝିଲପି (ଇତ୍ୟାଦି) (ଦେଖ)
Jhilipi (etc) Jhilapi (etc) (See)

ଝିଲିପିର ପେଞ୍ଚ—ଦେ. ବି.—କୂଟବୁଦ୍ଧି (ଯାହା ଝିଲିପିରକୁଣ୍ଡଳ ପରି
Jhilipira peñcha ବଙ୍କ)—Crooked policy
ଝିଲିପିର ପେଚ (like the tortuous folds of jilapi).

ଝିଲିମିଲି—ଦେ. ବି. ଓ ବଣ—୧ । ଝିଲ୍‌ମିଲ୍ (ଦେଖ)
Jhili-mili 1. Jhil-mil (See)
(ଝିଲିମିଲିକାଣୀ—ସ୍ତ୍ରୀ)
୨ । ଝିଲିମିଲିକା (୧ ଓ ୩) (ଦେଖ)
2. Jhili-milikā (1 and 3) (See)

ଝିଲିମିଲିକରି ଚାହିଁବା—ଦେ. କି.—ଆଖି ମିଟିମିଟି କରିବା; ଅନବରତ
Jhili-mili kari chāhiñbā ଆଖିର ପଲକକୁ ଉଠାଇବା—
To blink; to quickly move one's eye-lids; to repeatedly open and shut one's eye-lids while looking

ସାଧାରଣ ଲୋକେ ଅପର ପୃଷ୍ଠାରେ ଦଉଡ଼ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ-ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଁଖା' ନ ପାଇଲେ 'ଅଙ୍ଖା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଝିଲିମିଲି କରିବା**—ଦେ. କି.—ଝିଲିମିଲି କରି ଚାହିଁବା (ଦେଖ)
Jhili-mili karibā Jhili-mili kari chāhiñbā (See)

**ଝିଲିମିଲିକା**—ଦେ. ବି (ସଂ. ଝୁଲ ବା ଝୁଲ ଧାତୁ)—୧ । ଜୁଳୁଜୁଳିଆ
Jhili-milikā ପୋକ—1. Fire-fly.
ঝিলমিল ୨ । ଯେଉଁ କବାଟ ବନ୍ଦ ଥାଇ ସୁଦ୍ଧା ତହିଁର ଫାଙ୍କ ଖୋଲି ଯିବା ଓ ବନ୍ଦ କରିବା ପାଇଁ କଳ ଲାଗି ଥାଏ—
2. Venetian door.
୩ । ସ୍ତ୍ରୀମାନଙ୍କ ସୀମନ୍ତରେ ପିନ୍ଧାଯିବା ଜାଲଦାର ଭୂଷଣବିଶେଷ-
3. An ornament for the head.
ବହୁଁ ଚନ୍ଦ୍ର ଝୁମ୍ପ ଝିଲିମିଲିକା ।
ଭଞ୍ଜ. ବୈଦେହୀଶବିଳାସ ।

**ଝିଲୁପି**—ଗ୍ରା. ବି.—ଝିଲପି (ଦେଖ)
Jhilupi Jhilapi (See)

**ଝିଲ୍ଲି**—ସଂ. ବି.—୧ । ଝିଙ୍କାରି—
Jhilli 1. A cricket (Apte)
କେବେ ଭଲ୍ଲୁକ ଅବା ଝିଲ୍ଲି,
କର୍କଶ ରବ ଠାରୁ ବଳି । ଜଗନ୍ନାଥ. ଚଗବତ ।
୨ । ବାଦ୍ୟଯନ୍ତ୍ରବିଶେଷ—
2. A kind of musical instrument (Apte)
୩ । ଚମଡ଼ାର ଉଳୁରେ ନିର୍ମିତ କାଗଜ—
3. Parchment (Apte).
ଦେ. ବି. (ସଂ. ଝିଲ୍ଲୀ)—୧ । ( କାନ ଭିତରର ) ସୂକ୍ଷ୍ମ ଚର୍ମ; (କାନର) ଜାଲି—1. Membrane; diaphram; thin skin inside the ear
୨ । (ସଂ. ଜାଲ)—କୁଣ୍ଡଳାକାର ରଚିତ ଓ ଘୃତପକ୍ୱ ସରୁ ସରୁ ନାଡ଼ ଥିବା ମିଷ୍ଟାନ୍ନବିଶେଷ; ନାଡ଼ୀ—
2. A kind of spiral cake.
ଚନ୍ଦ୍ରକାନ୍ତ ଝିଲ୍ଲି ନାଡକା ସୁଶୋଭନ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।
[ ଦ୍ରୁ—ଚିର ଓ ଶୃଙ୍ଖଳ ବନ୍ଧାକୁ ଗୋଟିଏ ଛିଦ୍ରଯୁକ୍ତ ପାତ୍ରରେ ଭରି ବା ହାତରେ ପୂରାଇ ତହିଁରୁ ବାହାରିବା ଶସ୍ତରର ନାଡ଼ୀ ଭଳି ତରଳ ପଦାର୍ଥକୁ ଫୁଟନ୍ତା ଘିଅରେ ପୂଆଇଲେ ଏହି ପିଠା ପ୍ରସ୍ତୁତ ହୁଏ ଓ ଏହା ଉପରେ କନ୍ଦପୂନା ଛାଞ୍ଚି ଏହାକୁ ମିଠା କରାଯାଏ । ଏହାକୁ ଗିନ୍ତରେ ବୁଡ଼ାଇଲେ ଏହା ଝିଲପି ହୁଏ; ଗିନ୍ତରେ ନ ବୁଡ଼ାଇଲେ ଝିଲ୍ଲି ହୁଏ । ]
୩ । (ସଂ ଝିଲ୍ଲି)—ଝିଙ୍କାରିରବ—
Chirping of crickets.
ଝିଲ୍ଲିସଙ୍ଗେ ରବ ଛତିଛିତିକିଆ
ପ୍ରଦୋଷର ମହାଜ୍ଞାସ୍ୟ । ରାଧାନାଥ. ଯଯାତି ।

**ଝିଲ୍ଲିକା**—ସଂ. ବି. (ଝିଲ୍ଲି=ଅନୁକରଣ ଶବ୍ଦ+ଇକ+ଆ)—
Jhillikā ଝିଲ୍ଲି (ଦେଖ)—Jhilli (See)

**ଝିଲ୍ଲି ଶଙ୍ଖା**—ଦେ. ବି—ଯେଉଁ ଶଙ୍ଖା ଉପରେ ଝକଝକ ଦର୍ପଣଖଣ୍ଡମାନ
Jhilli śaṅkhā ବସାଯାଇ ଥାଏ—Lac-bracelets set with bits of mirror-glass.

**ଝିଲ୍ଲୀ**—ସ ବି.—ଝିଲ୍ଲି (ଦେଖ)
Jhillī Jhilli (See)

**ଝୀଝୀ**—ପ୍ରାଦେ. (ଗଡ଼ଜାତ) ଅ—ଝି (ଦେଖ)
Jhī-jhī Jhi (See)

**ଝୁଅ**—ଗ୍ରା. (ନୃଦ୍ରଭାଷା) ବି. (ସଂ. ଦୁହିତା)—ଝିଅ (ଦେଖ)
Jhua Jhia (See)
ମାଆ ଝୁଅଙ୍କର ଗୋଡରେ ରଚନର ଝୁଣ୍ଟିଆ । କବିବଖୋର. କର୍ଣ୍ଣଭୂଣୀ ।

**ଝୁଅ ଝୁଆଣି**—ଗ୍ରା. ବି—ଝିଅ ଝିଆଣି (ଦେଖ)
Jhua jhuāṇi Jhia jhiāṇi (See)

**ଝୁଅ ଝୁଆଣିଆ(ଆଁ)**—ଦେ. ବି ଓ ବିଣ—ଝିଅ ଝିଆଣିଆ (ଦେଖ)
Jhua jhuāṇiā(āñ) Jhia jhiāṇiā (See)

**ଝୁଆଣିଆ(ଆଁ)**—ଦେ. ବି ଓ ବିଣ—ଝିଆଣିଆ (ଦେଖ)
Jhuāṇiā(āñ) Jhiāṇiā (See)

**ଝୁକା**—ପ୍ରାଦେ. (ସମ୍ବଲପୁର) ବି—୧ । ଫଳଆଦିର ପେଣ୍ଡା ବା ଥୋପା—
Jhukā 1. Bunch of fruits.
ଅମ୍ବ ଫଳେ ଝୁକାଝୁକା
ତେନ୍ତୁଳି ଫଳେ ବଙ୍କା । ପ୍ରବଚନ ।
୨ । ଜନ୍ତୁ ଶିକାର କରିବା ପାଇଁ ଲୁଚି କରି ଜଗିବା—
2. Lying in ambush to shoot the prey.

**ଝୁକା ବସିବା**—ପ୍ରାଦେ. (ସମ୍ବଲପୁର) କି—ଜନ୍ତୁ ଶିକାର କରିବାକୁ ଲୁଚି
Jhukā basibā କରି ଜଗିବା—To lie in ambush to shoot the prey.
(ଯଥା—ଆଜି ରାଜାସାହେବ୍ ନଇଖଣ୍ଡିରେ ଝୁକା ବସିଛନ୍ତି ।)

**ଝୁକିବା**—ପ୍ରାଦେ. (ସମ୍ବଲପୁର) କି—୧ । ଲକ୍ଷ୍ୟଭ୍ରଷ୍ଟ ହେବା—
Jhukibā 1. To miss the aim.
(ଯଥା—ମୋର କାଁଡ଼ ଝୁକିଗଲା ।)
୨ । (କ୍ଷେତରେ ଚାଷଆଦି କରିବା ପାଇଁ ପାଗ) ବିଲମ୍ବହେବା; ଅପାଗ ହେବା—2. ( the proper season for ploughing) To pass away without the accomplishment of the requisite operations.

**ଝୁକ୍‌ତି**—ଦେ. ବି—୧ । ନଇଁପଡ଼ିବା; ଅବନତି—
Jhuṅk-ti 1. Stooping; bending down; a
ঝুকতি pitching forward.

**ଝୁଙ୍କ**—ଦେ. ବି (ସଂ. ଧୁକ୍ଷ; ଧୁକ୍ଷ ଧାତୁ—ସନ୍ଦୀପନ, କ୍ଲେଶନ)—
Jhuṅka ୧ । ନତି; ନତହେବା—1. Stooping.
ঝুঁক, ঝোঁক ୨ । ନିଶାର ଆକ୍ରମଣ ଯୋଗୁ ଟଳିବା—
झोंक 2. Tottering due to intoxication.
୩ । ମାଦକ ଦ୍ରବ୍ୟର ପ୍ରଭାବ; ନିଶା—
3. Intoxication.
୪ । କ୍ରୋଧାବେଗ; ରାଗର ବୃଦ୍ଧି—4. Fit of anger.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଉପ୍ | ଉଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଓ | ଙ୍ |

ଝୁକାବ ୭ । କୌଣସି ପଦାର୍ଥର ଅପେକ୍ଷାକୃତ ଅଧିକ ଓଜନ ହେତୁ ତରାଜୁର ଏକପାଖ ତଳକୁ ଝୁଙ୍କିବା—
2. The coming down of one of the scale-pans of a balance due to the relative heaviness of an article put on it.
୩ । ବେଶି ଓଜନ —3. Comparative heaviness of a thing put on the scalepan

**ଝୁଙ୍କା**— ଦେ. ବି—୧ । ଝୁଙ୍କିବା; ନଇଁବା—
Jhuṅkā 1. Stooping.
ঝুঁকা झुँका ୨ । ଝିଙ୍କା (ଦେଖ)—2. Jhiṅkā (See)

**ଝୁଙ୍କା(ଙ୍କେ)ଇବା**—ଦେ. କ୍ରି—ଝୁଙ୍କିବାର ଣିଜନ୍ତରୂପ—
Jhuṅka(ṅke)ibā Causative of Jhuṅkibā.
ঝোঁকান झुकाना

**ଝୁଙ୍କାଝୁଙ୍କି**—ଦେ. ବି—ନୁଆଁଇବା କର୍ମ—
Jhuṅkā-jhuṅki Act of bending; causing to stoop
ঝোঁকাঝুঁকি, झुकाझुकि

**ଝୁଙ୍କି**—ଦେ. ବି—୧ । ଦାୟିତ୍ୱ—1. Responsibility.
Jhuṅki ପିଲା ପ୍ରସବ ଝୁଙ୍କି ଯାକ ସବୁ ଆମର । ଉତ୍କଳ. ଯୌତୁକ ।
ঝক্কী ୨ । ଉତ୍ସାହ—2. Zeal.
झोकी ୩ । ଖିଆଲ—3. Whim.
(ଯଥା—ତାର ଗୋଟାଏ ଝୁଙ୍କି ଉଠିଛି ।)
୪ । କେଶଜନକ ଭାର—4. Hard task.
୫ । ଝୁଙ୍କ (ଦେଖ)—5. Jhuṅka (See)

**ଝୁଙ୍କି ପଡ଼ିବା**—ଦେ. କ୍ରି—ଆଗକୁ ନଇଁ ପଡ଼ିବା—
Jhuṅki paṛibā To bend forward.
ঝুকেপড়া झुकजाना

**ଝୁଙ୍କିବା**—ଦେ. କ୍ରି. (ସଂ. ଧୃକ୍ଷ; ଧୃକ୍ଷ ଧାତୁ = ସନ୍ଦୀପନ; କ୍ଲେଶନ)—
Jhuṅkibā ୧ । ନିଶାରେ ଟଳିବା—1. To reel with intoxication; to totter; to stagger.
ঝুংকা
झुकना ୨ । ଟଳିବା—2 To reel.
୩ । ଆଗକୁ ନଇଁ ପଡିବା—3. To stoop forward.
୪ । ଦୋହୋଲିବା—4. To shake.
୫ । କଷ୍ଟ ସହକାରେ ଲାଗିବା ବା ଶ୍ରମ କରିବା—
5. To labour at a thing with effort.
ବଙ୍ଗଳା ଏପିଡେମିକ୍ ଫିଭର୍ ଓ ବୋମ୍ବେ ପ୍ଲେଗ୍‌ରେ
କେତେ କେତେ ଡାକ୍ତର ଝୁଙ୍କିଥିଲେ, କଣ କଲେ ?
ଫକୀରମୋହନ. ଛମାଣଆଠଗୁଣ୍ଠ
୬ । କୌଣସି ବ୍ୟକ୍ତି ଉପରେ ଗୁରୁ ଦାୟିତ୍ୱ ବା ଅଭିଯୋଗ ଲଦା ହେବା—6. (any grave responsibility or charge) To lie on the head of a person.
ଥରେ ଗୋଟାଏ ଗୋରୁ ମାମଲା ତାହା ଉପରେ ଝୁଙ୍କିଥିଲା—
ଫକୀରମୋହନ. ଛମାଣଆଠଗୁଣ୍ଠ ।
୭ । ନଇଁବା; ନତହେବା—7. To bend.
୮ । ଗୋଟାଏ ପାଖକୁ ଢଳିବା—
8. To lean to one side; to incline.

**ଝୁଙ୍କୁଟି**—ଗ୍ରା. ବି—ଝୁଙ୍କ୍‌ଟି ( ଦେଖ )
Jhuṅkuti Jhuṅk-ti ( See )

**ଝୁଞ୍ଜଲ**—ଦେ. ବି—ବାଦ୍ୟବିଶେଷ; ଝାଞ୍ଜ—
Jhuñjala A musical instrument; cymbals.
ঝাঁজ

**ଝୁଟ୍**—ଦେ. ବିଣ (ସଂ. ଅଯୁକ୍ତ, ପ୍ରା. ଅଜୁତ୍ତ)—୧ । ସତ୍ୟଲଂଘନକାରୀ—
Jhuṭ 1. Transgressing one's promise.
ঝুট ୨ । ମିଥ୍ୟାବାଦୀ—2. Lying.
झूट, झूठ ୩ । ମିଥ୍ୟା—3. False; untrue.
୪ । କୃତ୍ରିମ—4. Forged; not genuine.
ବି—ମିଥ୍ୟା କଥା—False-hood.

**ଝୁଟ୍‌ମୁଟ୍**—ଦେ. ବିଣ. (ନିରର୍ଥକଦ୍ୱିରୁକ୍ତି ସହଚର)—ମିଥ୍ୟା—
Jhuṭ-muṭ False.
ঝুটমুট, झूठमूठ

**ଝୁଟା**—ଦେ. ବି (ସଂ. ଜୁଷ୍ଟ)—୧ । ଅଇଁଠା; ଉଚ୍ଛିଷ୍ଟ—
Jhuṭā 1. Leavings of one's meal; refuse; offal; orts.
এঁঠো
झुठा ୨ । ଝୁଟ୍ ( ଦେଖ )—2. Jhuṭ ( See )
ବିଣ.—ଝୁଟ୍ ( ଦେଖ )—
Jhuṭ ( See )

**ଝୁଟା ଉଠା(ଠେ)ଇବା**—ଦେ. କ୍ରି—୧ । ପରର ଅଇଁଠାକୁ ପରିଷ୍କାର କରିବା—1. To cleanse the leavings or refuse of another's meal.
Jhuṭā uṭhā(ṭhe)ibā
এঁঠো তোলা
झुठा उठाना
୨ । ଅତି ଘୃଣ କର୍ମ କରିବା—
2. To do the most humiliating work.

**ଝୁଟାଖିଆ**—ଦେ. ବି—ପରର ଅଇଁଠା ଖାଇବା—
Jhuṭā-khiā Partaking of the leavings of another.
এঁঠো খেকো ଦେ ବିଣ. ପୁଂ—(ଗାଳି) ଅଇଁଠାଖିଆ—
झुठिहारा (a term of abuse) Partaking of the leavings of another.
(ଜୁଠାଖାଈ—ସ୍ତ୍ରୀ)

**ଝୁଟି**—ଦେ. ବି—କାନ୍ଥରେ ନାନାବର୍ଣ୍ଣରେ ଲେଖିବା ଚିତ୍ର; ଚିତା;
Jhuṭi ଚିତ୍ରବଳ୍ଲୀ; ଝୋଟି—Drawings or paintings on the wall.
আলপনা

**ଝୁଟୁଆ**—ପ୍ରାଦେ. (ସିଂହଭୂମ) ବି—ଶିମ୍ବ—
Jhuṭuā Bean.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷଅ' ନ ମିଳିଲେ 'କ୍ଷ୍ୟ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କୋ'ନ ପାଇଲେ 'ଆଙ୍କ' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ଝୁଡ଼ଙ୍ଗା**—ପ୍ରାଦେ (ସମ୍ବଲପୁର) ବି—ଝୁଡ଼ୁଙ୍ଗ ( ଦେଖ )
Jhurdṅgā — Jhurduṅgā (See)
(ଝୁଡ଼ୁଙ୍ଗା, ଝୁନ୍‌ଗା—ଅନ୍ୟରୂପ)

**ଝୁଡ଼ଙ୍ଗ**—ଦେ. ବି—ଝୁଡ଼ୁଙ୍ଗ ( ଦେଖ )—
Jhurdaṅga — Jhurduṅga ( See )

**ଝୁଡ଼ି**—ଦେ. ବି—ଟୋକେଇ —
Jhurdi — Basket; scuttle.
ଝୁଡ଼ୀ, **ଝୋବା**

**ଝୁଡ଼ୁଙ୍ଗ**—ଦେ ବି (ସଂ. ବର୍ବଟ)—୧ । ଏକପ୍ରକାର ଛୁଇଁ—
Jhurduṅga — 1. A kind of pod-bearing creeper; Vigna Typisa
ବରବଟୀ
**ବୋଡ଼ା**
(ସଂ. ରାଜମାଷ, ମରୁଚ୍ଛକର, ବର୍ବଟ)
(ଝୁଡ଼ୁଙ୍ଗା—ଅନ୍ୟରୂପ)

ପୂର୍ବଭାଦ୍ରପଦେ ଝୁଡ଼ୁଙ୍ଗ ଦାନ ଦେଲେ
ସବୁ ଭକ୍ଷ୍ୟ ତାକୁ ମିଳଇ ଜାଣ ଭଲେ ।
କୃଷ୍ଣସିଂହ, ମହାଭାରତ ଅନୁଶାସନ ।

[ ଦ୍ର—ଏହାର ଲମ୍ବା ଶିମ୍ବ ପରି । ଛୁଇଁ ଧଳା, କଳା ଓ ନାଲି ଭେଦରେ ୩ ପ୍ରକାର । ଏହା ବରଗଡ଼ା ଛୁଇଁ ପରି ତିଅଣରେ ବ୍ୟବହୃତ ହୁଏ । କିନ୍ତୁ ବରଗଡ଼ା ଛୁଇଁ ଅପେକ୍ଷା ଏହା ଆକାରରେ ସରୁ । ଝୁଡ଼ୁଙ୍ଗ ଆକାରଭେଦରେ ୩ ପ୍ରକାର;—୧ । ବଡ଼—ଲମ୍ବରେ ୧।୨ ଫୁଟ ବଡ଼େ । ୨ । ମାକଡ଼ଦାନ୍ତିଆ—ଛୋପା ଖୁବ୍ ଚେମଡ଼ା; ଛୋପା ଖାଇ ହୁଏ ନାହିଁ । ୩ । କାଠିଝୁଡ଼ଙ୍ଗ—ସବୁଜ ଓ ଛୁଇଁ ସାନ । ]

୨ । ଏକପ୍ରକାର ଲୁଣି ମାଛ—
2. A kind of sea-fish.

**ଝୁଡ଼ୁଙ୍ଗା**—ପ୍ରାଦେ (ସମ୍ବଲପୁର) ବି—ଝୁଡ଼ୁଙ୍ଗ (ଦେଖ)
Jhurduṅgā — Jhurduṅga (See).

**ଝୁଣ୍ ଝୁଣ୍**—ଦେ. ଅ (ଧ୍ୱନ୍ୟନୁକରଣ)—ଝୁଣୁ ଝୁଣୁ (ଦେଖ)
Jhuṇ-jhuṇ — Jhuṇu jhuṇu (See)

**ଝୁଣ୍‌ଝୁଣିଆଁ**—ଦେ ବି—ଏକପ୍ରକାର ଔଷଧ ଗୁଳ୍ମ; ଝୁଣୁଝୁଣୁକା—
Jhuṇ-jhuṇiāṅ — A kind of herb.

**ଝୁଣ୍‌ଝୁଣିଆ** ଦେ. ବିଣ (ଧ୍ୱନ୍ୟନୁକରଣ)—୧ । ଜଳହୀନ ହୋଇ ଭିନ୍ନ ଭିନ୍ନ ଖଣ୍ଡରେ ବିଭକ୍ତ ହୋଇଥିବା; (ବିପରୀତ ସୁରସୁରିଆ)
1. Reduced to separate bits after water is dried up from it.
(ଯଥା—ଶଜନା ଶାଗକୁ ଝୁଣ୍‌ଝୁଣିଆଁ କରି ଭାଜିଦିଅ । )

୨ । ଯାହା ଝୁଣୁ ଝୁଣୁ ଶବ୍ଦ କରେ—
2. Producing a metallic clank.

**ଝୁଣା**—ଦେ. ବି. (ସଂ. ଧୂନକ)—୧ । ସାଲବୃକ୍ଷର ସୁଗନ୍ଧ ନିର୍ଯ୍ୟାସ—
Jhuṇā — 1. Resin.
ଧୁନା
**ଧୁନା, ରାଳ**
**ସଂ.** ସର୍ଜ, ସାଲନିର୍ଯ୍ୟାସ, ଦେବେଷ୍ଟ, ସର୍ଜରସମ୍

ଝୁଣା ଲାଗି ହୃତ ହୋଇ ପୂଜନ୍ତି ଭୂତାରେ ।
ରଘୁନାଥ. ମହାଯାତ୍ରା ।

[ ଦ୍ର—ଏଥିର ଚୂର୍ଣ୍ଣକୁ ବଡ଼ ନିଆଁରେ ପକାଇଲେ ସୁଗନ୍ଧ ଧୂଆଁ ଉଠେ । ]

୨ । ଚନ୍ଦରସ (ଦେଖ)
2. Chandarasa (See)

୩ । ଦନ୍ତ ଦ୍ୱାରା ଜୋରରେ ଆଘାତ କରି ଓଟାରିବା;
ଝୁଣିବା—3. Pulling a thing by pressing with the teeth.

୪ । ଜୋରପୂର୍ବକ ଦୋହିଁବା—
4. To milk with much pressure.

ଝୁନା ୪ । (ସଂ. ଝୁଣୀ)—ଶୁଖିଲା ନଡ଼ିଆ; ଖୁରୁଡ଼ା ନଡ଼ିଆ—
4. Dried cocoanut.

**ଝୁଣା(ଣେ)ଇବା**—ଦେ. କ୍ରି—ଝୁଣିବାର ଣିଜନ୍ତରୂପ—
Jhuṇā(ṇe)ibā — Causative of Jhuṇibā.

**ଝୁଣା ଗୁଗୁଲ**—ଦେ. ବି (ସହଚର) (ସଂ. ଧୂନକ ଓ ଗୁଗ୍ଗୁଲ)—
Jhuṇā gugula — ଧୂପ ପାଇଁ ବ୍ୟବହୃତ ଝୁଣା ଓ ଗୁଗ୍ଗୁଲ—
ଧୁନାଓଗୁଲ — Resin and gum myrrh used as incense.
**ଧୂପଧୁନା**
(ଝୁଣାଗୁଗ୍ଗୁଲ—ଅନ୍ୟରୂପ)

**ଝୁଣା ଗୋକଲ**—ଗ୍ରା ବି.—(ସଂ. ଧୂନା + ଗୁଗ୍ଗୁଲ )—
Jhuṇā gokala — ଝୁଣା ଗୁଗୁଲ (ଦେଖ)

ଝୁଣାଗୋଗୁଲ,
ଝୁଣାଗୋଗଲ,
ଝୁଣା ଗୋଗୁଲ
—ଅନ୍ୟରୂପ — Jhuṇā gugula (See)

**ଝୁଣି ପକା(କେ)ଇବା**—ଦେ. କ୍ରି—୧ । ଝୁଣିବା (ଦେଖ)
Jhuṇi pakā(ke)ibā — 1 Jhuṇibā (See)

୨ । ଅଳି କରି କରି ବ୍ୟତିବ୍ୟସ୍ତ କରିବା—
2. To bother by repeated requests.

**ଝୁଣିବା**—ଦେ. କ୍ରି.—(ସଂ. ଧୂର୍ଵି ଧାତୁ ହନନେ; ଏହି ଧାତୁରୁ ସଂ. ଧୂର୍ତ୍ତି ଧୂର୍ଣ୍ଣି; ଧୂର୍ଣ୍ଣିରୁ ସଂ. ଝୁଣୀ=ଖୁରୁଡ଼ା ହୋଇଅଛି; ଭୁଲ ସଂ. ଟୁଣୋତି)—୧ । ଟିକି ଟିକି କରି ଛିଣ୍ଡାଇବା—
Jhuṇibā — 1. To tear to pieces or shreds.
ଝୁନା
**ଲାନା**

ଶଙ୍ଖୀ ନଳା ତାହାର ଧରି ଝୁଣି ଦେବ ।
କୃଷ୍ଣସିଂହ: ମହାଭାରତ. ଅଦି ।

୨ । ରେକଟିବା; ଉପର୍ଯ୍ୟୁପରି ଦାନ୍ତରେ କାମୁଡ଼ିବା—
2. To bite repeatedly; to gnaw.

୩ । କ୍ଷତବିକ୍ଷତ କରିବା—3. To wound.

ଝୁମ୍ପି କାମ ସଙ୍ଗେ ଝୁଣି ଦେବ ସିନା ।
କବିସୂର୍ଯ୍ୟ, ଚମ୍ପୁଗୀତ ।

୪ । ଦାନ୍ତରେ କାମୁଡ଼ି ଚୁରୁମିବା ବା ଶୋଷିବା; ଦାନ୍ତରେ ଟାଣି ରସ ଶୁଷ୍କ କରିବା—4. To suck hard with pressed teeth.
(ଯଥା—ସବୁଦିନ ବରଷର ବୁଢ଼ୀ ଆଈଙ୍କ ଖୀରି ନ ଥିବା ଥନକୁ ମାଅଛେଉଣ୍ଡ ଅବୁଝା ଜଗବନ୍ଧୁ ସବୁବେଳେ ଝୁଣୁଛି ।)

| ୧ | ଇ | ଡ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଉଅ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ୍ୟ | ଇଅ | ଔ | ନ୍ |

୫ । ଝିଙ୍କିବା—
5. To pull with sudden jerks.

୬ । କମ୍ପାଇବା—6. To shake.
(ଯଥା ଶିର ଝୁଣିବା)

୭ । ଅତି ବିରକ୍ତ କରିବା—7. To tease; to pester.

**ଝୁଣୀ(ଣି)**—ସଂ. ବି—୧ । ଝୁରୁଡ଼ି ନଡ଼ିଆ—
Jhuṇi(ṇi) 1. Dried cocoanuts from which water has a dried up.

୨ । ଶୁଖିଲା ଗୁଆ—2. Dry areca nut.

**ଝୁଣୁଝୁଣିଆଁ**—ଦେ. ବି ଓ ବିଣ—ଝୁଣୁଝୁଣିଆଁ ( ଦେଖ )
Jhuṇujhuṇiāṅ Jhuṇ-jhuṇiāṅ ( See)

**ଝୁଣୁଝୁଣୁ**—ଦେ. ଅ ( ଧ୍ୱନ୍ୟନୁକରଣ )—ଝୁଣୁଝୁଣୁ; ଘୁଙ୍ଗୁର ଆଦିର
Jhuṇujhuṇu ମଧୁର ଧ୍ୱନି—The sweet tinkling sound of ornaments.
କନ୍‌ଝୁନ୍
ঝুনঝুনা [ ଦ୍ର—ଝୁଣ୍ଝୁଣ୍ ଅପେକ୍ଷା ଝୁଣୁଝୁଣୁ ମଧୁରତର ଓ କ୍ଷୀଣତର ଧ୍ୱନି ।]

**ଝୁଣୁଝୁଣୁକା**—ଦେ. ବି—ବନ୍ୟ ଗୁଳ୍ମବିଶେଷ—A wild plant
Jhuṇujhuṇukā Crotolaria Striata (Haines)

**ଝୁଣ୍ଟ**—ସଂ. ବି—(ଝଟ୍ ଧାତୁ=ସଂହତହେବା ସ୍ଥାନରେ+ଇକ୍ଷ୍ଣି. ଅ; ନ
Jhuṇṭa ଆଗମ ଅ=ଉ)—୧ । କ୍ଷୁଦ୍ର ଗୁଳ୍ମ ବା ବୁଦା—1. Bush; shrub.

୨ । ଅକାଣ୍ଡ ବୃକ୍ଷ—2. Plant.

୩ । ବୃକ୍ଷ; ଗଛ—3. A tree. (Apte).

**ଝୁଣ୍ଟା**—ଦେ. ବି—(ସଂ. ଝୁଣ୍ଟ)—୧ । ଅକାଣ୍ଡ ବୃକ୍ଷ; ବୁଦା—
Jhuṇṭā 1. Shrub; bush.
ঝোপ ୨ । ରାଜା ବା ଦେବତାଙ୍କ ନାମ ଧରି ବା ରାଣ ପକାଇ
झाड़ी କୌଣସି ବସ୍ତୁ (ଯଥା ଫସଲ)କୁ ଅଟକ କରିବା ନିମନ୍ତେ
झंडी ଭୂମିରେ ପୋତାଯିବା ପତାକା ବା ଡାଙ୍ଗ—2. A flag or pole put on the ground in the name of the king or a Deity to restrain a thing being removed therefrom.
হুচট্, হেঁচোট, উছোট ୩ । ଗୁଲୁ ଗୁଲୁ ଗୋଡ଼ର ଅଗ୍ରଭାଗ
ठोकर କୌଣସି କଠିନ ବସ୍ତୁଦ୍ୱାରା ଆଘାତ ପ୍ରାପ୍ତ ହେବା—3. Stumbling.

**ଝୁଣ୍ଟାଇ ହେବା**—ପ୍ରାଦେ (ସମ୍ବଲପୁର) କ୍ରି—ଝୁଣ୍ଟିବା ( ଦେଖ )
Jhuṇṭāi hebā Jhuṇṭibā ( See )

**ଝୁଣ୍ଟା ଦେବା**—ଦେ. କ୍ରି—ଝୁଣ୍ଟା ମାରିବା ( ଦେଖ )
Jhuṇṭā debā Jhuṇṭā māribā ( See)

**ଝୁଣ୍ଟା ମାରିବା**—ଦେ. କ୍ରି—ରାଜା ବା ଦେବତାଙ୍କ ରାଣ ପକାଇ କୌଣସି
Jhuṇṭā māribā ପଦାର୍ଥ ବା ଫସଲକୁ ଅଟକ କରିବା ନିମନ୍ତେ ଭୂମିରେ ଗୋଟିଏ ପତାକା ପୋତିବା—To set up a flag on the ground in the name of the king or a Deity, restraining a thing thereon being removed by any person; formal injunction by way of fixing a pole on the ground.

**ଝୁଣ୍ଟି**—ଦେ. ବି—ଉତ୍ସବ ଓ ବିବାହାଦି ଉପଲକ୍ଷେ ପିଠୋଉରେ ଘରେ
Jhuṇṭi ଓ ଘର ବାହାରେ କାନ୍ଥରେ କରାଯିବା ଚିତ୍ରମାନ; ଝୋଟି—
আলপনা Figures drawn on the walls and floors of the house on festive occasions.

ସର୍ବଦା କଲ୍ପଣା ଝୁଣ୍ଟି ଅଲ୍ପଣା ହୋଇଛି—ପ୍ରାଚୀ ବ୍ରହ୍ମନିରୂପଣଗୀତା ।

ପ୍ରାଦେ (ମେଦିନୀପୁର) ବି. (ସଂ. ଜୁଟ; ଭୁଲ. ଏହି ଅର୍ଥରେ ବି. ଏହି ଶବ୍ଦ)—୧ । ମସ୍ତକର ଚୂଡ଼ା; ଜୁଟ; ମୁଣ୍ଡର ଗଣ୍ଠି—
1. A knot of hair on the head; chignon.

୨ । ଷଣ୍ଢ, ଓଟ ଆଦିଙ୍କ ଚୂଳ ବା ଚୂଡ଼ା—
2. Tuft or protuberance on the shoulder of the bull or camel.

ପ୍ରାଦେ (ସମ୍ବଲପୁର) ବି—ସକାଳୁ ଦୁଆରେ ଗୋବର ପାଣି ଛିଞ୍ଚିବା—
Sprinkling of water mixed with cowdung in the courtyard every morning.

**ଝୁଣ୍ଟିଆ**—ଦେ. ବି—ସ୍ତ୍ରୀମାନେ ଗୋଡ଼ର ମଝି ଅଙ୍ଗୁଠିରେ ପିନ୍ଧିବା
Jhuṇṭiā ମୁଦ୍ରିକାଯୁକ୍ତ ଝଣ ଝଣ ଶବ୍ଦକାରୀ ଅଳଙ୍କାରବିଶେଷ—
আঙ্গঠা Tinkling ring for the 2nd fingers of the
अंगुठी leg; a ring (making a sound) worn by females on the small fingers of the leg.

ଝୁମୁ ଝୁମୁ ବଜାଇ ଝୁଣ୍ଟିଆ ଧୀରେ—ଗୋଲୋକ. ଇନ୍ଦୁରେଖା ।

ପ୍ରାଦେ (ସମ୍ବଲପୁର) ବି—ଗୋଡ଼ର ବୁଢ଼ା ଅଙ୍ଗୁଠିରେ ପିନ୍ଧାଯିବା ମୁଦି; ଚୁଟୁକି—A ring worn by females on the thumb.

**ଝୁଣ୍ଟିବା**—ଦେ. କ୍ରି—୧ । ଗୁଲୁ ଗୁଲୁ ଗୋଡ଼ର ଆଙ୍ଗୁଠି କୌଣସି
Jhuṇṭibā କଠିନ ପଦାର୍ଥରେ ଆଘାତ ପାଇବା—
পায়ে ঠোকর লাগা, হোচাট খাওয়া 1. To trip in walking.
ठोकर खाना to stumble; to tumble; to strike one's fingers of the leg against something rising out of the ground while walking.

ଝୁଣ୍ଟୁଛି କୁଞ୍ଜଗାମୀ ଗମନ କାଳେ
ଝୁରୁଛି ଲୁରସ୍ତ ପରି ବସ୍ତେଲେ—ଗୋଲୋକ ଇନ୍ଦୁରେଖା ।

୨ । ପ୍ରତିବନ୍ଧକରେ ପାଦାଗ୍ର ବାଜିବା ଯୋଗୁଁ ଗତିରୁଦ୍ଧ ହେବା; ପ୍ରତିହତଗତି ହେବା—
2. To have one's motion retarded by tripping or striking one's foot against something rising from the ground.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଢଭ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ।

୩ । କୌଣସି କଥା କହୁ କହୁ ବା ପଢୁ ପଢୁ ଅଟକିଯିବା— 3. To stutter or stumble while speaking or reading.

୪ । ( ଲକ୍ଷଣାର୍ଥ ) ନ ଜାଣି ଭ୍ରମରେ କାର୍ଯ୍ୟ କରିବା; ଭ୍ରମଯୁକ୍ତ କାର୍ଯ୍ୟ କରିବା; ଭ୍ରାନ୍ତିରେ ପଡ଼ିବା; ଭୁଲକରିବା— 4. (figurative) To commit mistake or wrong; to transgress any rule unintentionally.

୫ । ( ଲକ୍ଷଣାର୍ଥ ) ଅନାଦର କରିବା; ଖାତିର ନ କରିବା— 5. ( figurative ) To disregard; not to care.

ଝୁଲି ଝୁଲି ଚାଲୁ ମୋଦେ ମଦେ, ଝୁମୁଝୁମୁ ତୋ ଝୁଣ୍ଟିଆ ନାଦେ
ଝଟତ ନର୍ତ୍ତର-ପ୍ରଭୃ-ଶୀର୍-ଶିର-ଝଗଳୁ ମୁଁ ଝୁଣ୍ଟିଯାଏଁ ପାଦେ ।
କବିସୂର୍ଯ୍ୟ, କବିତା ।

ପ୍ରାଦେ ( ସମ୍ବଲପୁର ) କ୍ରି—ସକାଳୁ ଅଗଣାରେ ଗୋବର ପାଣି ଛିଞ୍ଚିବା; ଛଡ଼ା ଦେବା—To sprinkle water mixed with cowdung in the courtyard on the morning.

**ଝୁଣ୍ଟେଇବା**— ପ୍ରାଦେ (ସମ୍ବଲପୁର ଓ ଅଠମଲ୍ଲିକ ) କ୍ରି—ଝାଡ଼େଇବା, ଖରଡ଼ିବା—To sweep a place or house clean.
Jhunṭeibā

**ଝୁନ୍‌ଗା**—ପ୍ରାଦେ (ସମ୍ବଲପୁର) ବି—ଝୁର୍ଡୁଙ୍ଗ (ଦେଖ)
Jhun-gā Jhurḍuṅga (See).

**ଝୁନା**—ପ୍ରାଦେ (ବସ୍ତର) ବି—ଝୁଣା (ଦେଖ)
Jhunā Jhuṇā (See)

**ଝୁପ୍**—ଦେ. ଅ—(ଧ୍ୱନ୍ୟନୁକରଣ) (ଙ୍ଗଳାରୁ ଅନୁକୃତ)--ଝପ (ଦେଖ)
Jhup Jhap (See)

**ଝୁପ୍‌ଝାପ୍**—ଦେ. ଅ—ଝପ୍‌ଝପ୍ ( ଦେଖ )
Jhup-jhāp Jhap-jhap ( See )

ନାଆ ଉପରୁ ମଙ୍ଗଧର, ବାହାଣିଆ, ବାଇବତା,
ସବୁଗୁଡ଼ାକ ଝୁପ୍‌ଝାପ୍ କରି ନଈରେ ପଡ଼ଗଲେ ।
ପକାରମୋହନ. ଗଳ୍ପସ୍ୱଳ୍ପ ।

**ଝୁପ୍‌ଝୁପ୍**—ଦେ. ଅ—ଝିପ୍‌ଝିପ୍ ( ଦେଖ )
Jhup-jhup Jhip-jhip ( See )
(ଝୁପୁରଝୁପୁର, ଝୁପୁରୁଝୁପୁରୁ—ଅନ୍ୟରୂପ)

**ଝୁବା**—ଦେ. ବି—ଝବା ୧ ( ଦେଖ )
Jhubā Jhabā 1 ( See )

**ଝୁମ୍‌କା**—ଦେ. ବି—ଝୁମୁକା ( ଦେଖ )
Jhum-kā Jhumukā ( See )

**ଝୁମ୍‌ଝୁମ୍**—ଦେ. ଅ. ( ଧ୍ୱନ୍ୟନୁକରଣ )—ଅଳଙ୍କାରାଦିର ମଧୁର କ୍ୱଣନ ବା କଣିକଣି ଧ୍ୱନି—Sweet rattling noise of ornaments while moving.
Jhum-jhum
(ଝୁମୁଝୁମୁ—ଅନ୍ୟରୂପ)

**ଝୁମ୍‌ଝୁମ୍‌କା**—ଦେ. ବି—ଝୁମୁଝୁମୁକା ( ଦେଖ )
Jhum-jhumkā Jhumu-jhumukā ( See )
( ଝୁମୁଝୁମୁକା—ଅନ୍ୟରୂପ )

**ଝୁମରା**—ପ୍ରାଦେ. ( ସମ୍ବଲପୁର ) ବି. ( ଭୁଲ. ହ୍ର )—୧ । ତନ୍ଦ୍ରା— 1. Nap.
Jhum-rā
( ଝୁମୁରା—ଅନ୍ୟରୂପ ) ୨ । ଢୁଲାଇବା; ଘୁମାଇବା— 2. Dozing.

**ଝୁମ୍‌ରା(ରେ)ଇବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ଘୁମାଇବା, ଢୋଲାଇବା—To doze.
Jhumrā(re)ibā
( ଝୁମୁରିବା—ଅନ୍ୟରୂପ )

**ଝୁମରି**—ପ୍ରାଦେ. ( ସିଂହଭୂମ ) ବି—ରାଗିଣୀବିଶେଷ— A metre.
Jhumari

**ଝୁମା**—ଦେ. ବି. ( ସ. ଘୂର୍ଣ୍ଣି; ସ. ଝମ୍ପ )—୧ । ମୂର୍ଚ୍ଛା; ଭ୍ରମ— 1. Fainting; swoon; stupor.
Jhumā

୨ । ନିଶା ଭୋଳରେ ଟଳିବା— 2. Reeling with intoxication.

୩ । ନିଦ ଭୋଳରେ ଟଳିବା— 3. Reeling with drowsiness.

ପ୍ରାଦେ. ( ସମ୍ବଲପୁର ) ବି—ଝୁମୁରା ( ଦେଖ ) Jhumrā ( See )

**ଝୁମିବା**—ଦେ. କ୍ରି. ( ସ. ଘୂର୍ଣ୍ଣି )—
Jhumibā ୧ । ମୂର୍ଚ୍ଛା ବା ଭ୍ରମରେ ମୁଣ୍ଡ ବୁଲାଇବା— 1. To reel; to feel giddy.
ଝିମା
**ଝୁମନା**
ଝୁମାଇବା } ଅନ୍ୟରୂପ
ଝୁମେଇବ

ଘଣପ୍ରକ ଶରେ ଦେହରୁ ଝାଳ ଗଳ
ପଡନ୍ତେ ରଥେ ଝୁମି ରହିଲେ ବନମାଳୀ—
କୃଷ୍ଣସିଂହ, ମହାଭାରତ ଦ୍ରୋଣ ।

୨ । ଘୁମାଇବା; ଢୁଲାଇବା—2. To doze.

ଝୁମି ଝୁମି ଲୁଠି ଭଲେ ରସାର—କବିସୂର୍ଯ୍ୟ. କଣୋପାଳନ୍ତ, ଚ. ଗାଢ ।

୩ । ଯୁଦ୍ଧ କରିବା—3. To fight.

ଝୁମି କାମବାଣେ ଝୁଣି ଦେବ ସିନା—କବିସୂର୍ଯ୍ୟ, ଭୁଖା ଗୀତ ।

**ଝୁମୁକା**—ଦେ. ବି. ( ସ. ଘୂର୍ଣ୍ଣି )—
Jhumukā ୧ । ଶିଶୁମାନଙ୍କର ଖେଳନାବିଶେଷ— 1. Children's rattle.
ଝୁମଝୁମି
**ଝୁନଝୁନା**
(ଝୁମୁକା—ଅନ୍ୟରୂପ)

[ ଦ୍ର—ଏହା କାଠ ବା ଟିଣରେ ପ୍ରସ୍ତୁତ । ଏହା ଫମ୍ପା ଓ ଏଥି ଭିତରେ ଗୋଡ଼ି ପୂରା ଯାଇଥାଏ । ଏହାର ବେଣ୍ଟ ଧରି ହଲାଇଲେ ଏହା ଝୁମୁଝୁମୁ ବାଜେ । ]

୨ । ଅନେକଗୁଡ଼ିଏ କୁଣ୍ଡଳା ଲୁହା ମୁଦିଆ ଲାଗିଥିବା ଗୁଡ଼ିଆମାନଙ୍କର ବୃତ୍ତାକାର ବଳା— 2. A circular ring with smaller loose ones attached to it used by confectioners while going out te hawk sweetmeats.

[ ଦ୍ର—ଗୁଡ଼ିଆମାନେ ମିଷ୍ଟାନ୍ନ ବୋଝ ଧରି ବିକ୍ରି କରିବା ଉଦ୍ଦେଶ୍ୟରେ ବୁଲିବା ସମୟରେ ସେମାନଙ୍କର ଆଗମନ ବିଷୟ ଜନସାଧାରଣଙ୍କୁ ଜଣାଇ ଦେବା ନିମନ୍ତେ ଏହି ଝୁମୁକାକୁ ହାତରେ ଧରି ହଲାଉ ଥାଆନ୍ତି । ]

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଯ୍ | ଡ଼ଥ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ନ |

୩ । କାନର ଅଳଙ୍କାରବିଶେଷ; ସୁନାର କାପ—
3. An earring with a round bob which revolves in the hole of the lobe of the ear.

ঝুমকা ୪ । ଏକଜାତୀୟ ଲତା ଓ ତାହାର ଫୁଲ—
झुमका 4. Passiflora; passion flower; Crotoleria Siricea ( Haines ).

[ ଦ୍ର—ଏହି ଲତା ପ୍ରଥମେ ଆମେରିକାରୁ ଆନୀତ ହୋଇ ଅଳ୍ପକାଳ ଏ ଦେଶରେ ବଗିଚାମାନଙ୍କରେ ଏହା କୃଷିଜାତ ହୋଇଅଛି । ଏଥିର ଫୁଲ ବାଇଗଣି ରଙ୍ଗର, ଚକ୍ରାକାର, ସୁଗନ୍ଧ ଓ ପଞ୍ଚଦଳ । ଫୁଲର ଦାଣ୍ଡରେ ସୁନ୍ଦର କେଶରମାନ ଥାଏ । ଫୁଲ ବର୍ଷା ଦିନେ ଫୁଟେ । ଫୁଲର ଗନ୍ଧ ମୃଦୁମଧୁର । ଏ ଲତାର ପତ୍ର ତିନିକୋଣିଆ । ଏହାକୁ ବାଡ଼, ଜାଲି ବା ଭଞ୍ଜାରେ ମଡ଼ାଇଲେ ଏହା ଭଲ ମାଡ଼େ । ଏହାର ମୂଳରୁ ୧୫।୨୦ ହାତ ସୀମା ମଧ୍ୟରେ ଯେଉଁ ଯେଉଁଠାରେ ଭୂଇଁରେ ଚେର ମାଡ଼ିଥାଏ ସେଠାରେ ଚେରରୁ ନୂଆ ଲତା ଗଜୁରେ ଏବଂ ଉକ୍ତ ଗଜୁରିଥିବା ଲତାକୁ ଚେର ଅଂଶ ସହିତ କାଟି ଅନ୍ୟତ୍ର ରୋପଣ କଲେ ଏହା ପୁଣି ନୂଆ ଲତା ପରି ମାଡ଼େ । ଏ ଦେଶରେ ଏହାର ମଞ୍ଜି ହୁଏ ନାହିଁ । ଲତାରୁ କଲମ କରିବାଦ୍ୱାରା ବା ଗଜୁରିଥିବା ଲତାରୁ ନୂଆ ଗଛ ଉଠୁଥାଏ । ଏହା ତ୍ରିବିଧ । ଯଥା— ୧ ଝୁମୁକା ( ଲତା )-(ଉପରେ ଦେଖ) । ୨. ଶୁଭ୍ରଝୁମୁକା—ଏହାର ଫୁଲ ଧଳା ଓ ମୃଦୁ ସୁଗନ୍ଧଯୁକ୍ତ—White passiflora. ୩. ବଣଝୁମୁକା—ଫୁଲ ଧଳା ଈଷତ୍ ଦୁର୍ଗନ୍ଧ—Passiflora Foetida. ]

**ଝୁମୁକି**—ଦେ. ବି—ନାଚିବା ସମୟରେ ଗୋଡ଼ରେ ବନ୍ଧା ଯିବା ଘୁଙ୍ଗୁର ବା ଘାଗୁଡ଼ି—Tinkling bells strung together and worn round the ankle of dancers.
Jhumuki

**ଝୁମୁକି କଠ(ଠା)ଉ**—ଦେ. ବି—ଘୁଙ୍ଗୁର ଲାଗିଥିବା କାଷ୍ଠ ପାଦୁକା—
Jhumuki katha(ṭhā)u Wooden sandals with tinkling bells attached to them.

ମୁହିଁ ମାଉଥିବ ଝୁମୁକି କଠଉ ଶବଦ ଶୁଣାଉଥିବ—ଚଗ ।

**ଝୁମୁକି ବାଡ଼ି**—ଦେ. ବି—ଘୁଙ୍ଗୁର ଲାଗିଥିବା ଯଷ୍ଟି—
Jhumuki bardi A stick with tinkling bells.

**ଝୁମୁଝୁମ୍କା**—ଦେ. ବି—ବନ୍ୟ ଛଣପଟ ଗୁଳ୍ମ ( ଛଣପଟ ଦେଖ )—
Jhumu-jhum-kā Wild flax hemp ( See Chhanapata ).
( ଝୁମୁଝୁମୁକା—ଅନ୍ୟରୂପ )

**ଝୁମୁଝୁମୁ**—ଦେ. ଅ.—ଝୁମ୍‌ଝୁମ୍ ( ଦେଖ )
Jhumu-jhumu Jhum-jhum ( See ).

ଝୁମୁଝୁମୁ ତୋ ଝୁଣ୍ଟିଆ ନାଦେ—କବିସୂର୍ଯ୍ୟ, କବିତା ।

**ଝୁମୁର ଝୁମୁର**—ଦେ. ଅ—ଝୁମ୍‌ଝୁମ୍ ( ଦେଖ )
Jhumur jhumur Jhum-jhum ( See )
(ଝୁମୁରୁଝୁମୁରୁ—ଅନ୍ୟରୂପ) [ ଦ୍ର—ଏହା 'ଝୁମ୍‌ଝୁମ୍' ଅପେକ୍ଷା ମଧୁରତର କ୍ୱଣନ ଧ୍ୱନିବ୍ୟଞ୍ଜକ । ]

**ଝୁମୁରିବା**—ଦେ. କ୍ରି—ଝୁମୁରୁ ଝୁମୁରୁ ଶବ୍ଦ ଉତ୍ପାଦନ କରିବା—
Jhumuribā To produce a tinkling sound.
ঝুনু ঝুনু করা झमझमाना

**ଝୁମ୍ପଇ**—ଦେ. (ପଦ୍ୟ) ବି—ଝୁମ୍ପି ( ଦେଖ )
Jhumpai Jhumpi ( See )

ଝୁମ୍ପଇ ଚଟାଇ ମଦନେ ଲଟାଇ ବଢାଇ କି ବନାଣିଲେ ।
ଅଭିମନ୍ୟୁ, ବଦଗ୍ଧଚନ୍ତାମଣି ।

**ଝୁମ୍ପା**—ଦେ. ବି—୧ । ଫିତା ବା ପାଟଫୁଲ ଅଗରେ ଲାଗିଥିବା ଫୁଲ—
Jhumpā 1. Tassel; flower-like design attached to the ends of dressing tapes.
ঝাপা, থোপা
झब्बा ୨ । ଗୁଚ୍ଛ ବା ଥୋପା, ପେନ୍ଥା—2. Cluster.

ଗଜ ମୁକୁତା ଝୁମ୍ପା ଫଳ । ଭୂପତି. ପ୍ରେମପଞ୍ଚାମୃତ ।

୩ । ମୁଣ୍ଡର ଜୁଡ଼ାରେ ପିନ୍ଧାଯିବା ପାଟଫୁଲ ଅଗରେ ଲାଗିଥିବା ପେନ୍ଥା ବା ଗ୍ରନ୍ଥିଚୟ—3. Tassels or cluster of knots tied to the end of a tape for the chignon.

୪ । ( ବଣିଆ ଶବ୍ଦ ) ଝୁଲୁଥିବା ଅଳଙ୍କାରର ଗୁଚ୍ଛଯୁକ୍ତ ଅଂଶ ବିଶେଷ—4. Tassellated pendants.

ପ୍ରାଦେ ( ଗଡ଼ଜାତ ) ବି—ଢୁମ୍ପା ( ଦେଖ )
Dhumpā ( See )

**ଝୁମ୍ପା ଗୀତ**—ଦେ. ବି—ଢୁମ୍ପା ବାଦ୍ୟ ବଜାଇ ବୋଲିବା ଗୀତ—
Jhumpā-gita Songs sung in accompaniment of Dhumpā drum.

**ଝୁମ୍ପାଲଗା**—ଦେ. ବି—( ଅଳଙ୍କାରାଦି ) ଯହିଁରେ ଝୁମ୍ପା ବା ପେନ୍ଥା ଲାଗିଥାଏ—( ornament etc ) Having pendants; tassellated.
Jhumpā-lagā
झब्बेदार

**ଝୁମ୍ପି**—ଦେ. ବି—୧ । ସ୍ତ୍ରୀ ଲୋକଙ୍କ କର୍ଣ୍ଣାଳଙ୍କାରବିଶେଷ; ଫିରିଫିରି—
Jhumpi 1 Earring with pendants hanging from the bores in the upper helix of the ear.
ঝুম্পী
झब्बा

୨ । କପାଳ ଉପରକୁ ଲମ୍ବିଥିବା ବାଳ; ଚୂର୍ଣ୍ଣକୁନ୍ତଳ—
2. Ringlets of hair hanging down the forehead.

୩ । ଝୁମ୍ପା ( ଦେଖ )—3. Jhumpā ( See )

**ଝୁମ୍ପି ବରଡ଼ାଳୁ**—ପ୍ରାଦେ. ( ଗଞ୍ଜାମ ) ବି—ଝୁଲୁଥିବା ମଲକଡ଼ି—
Jhumpi barardalu A kind of hanging ornament worn on the upper part of the ear.

**ଝୁମ୍ପୁଡ଼ି**—ଦେ. ବି—୧ । ବନ୍ୟ ଗୁଳ୍ମବିଶେଷ—
Jhumpurdi 1. A kind of wild plant.
(ଝୁମ୍ପୁଡ଼ି—ଅନ୍ୟରୂପ) [ ଦ୍ର—ଏହାର ଫୁଲ ଚଉଦଳ ଏବଂ ପତ୍ର ପରି ସବୁଜ ବର୍ଣ୍ଣ । ଏହା ବର୍ଷା ଦିନେ ଫୁଟେ । ଫୁଲ ଭିତରେ ଲାଇଖ ଆକାରର ଗୋଟିଏ ମଞ୍ଜି ଥାଏ । ଏ ଗଛ ୩।୪ ହାତ ଉଚ୍ଚ

ହୁଏ । ଏହା କଣ୍ଟକମୟ; ଏହାର ଦଳମୂଳଜାତ ଧୂଳିକୁ ଲୋକେ ଶାଗ କରି ଖାଆନ୍ତି । ]

୨ । ଝାମ୍ପୁଡ଼ା ବା କ୍ଷୁଦ୍ରାଗ୍ର ଗୁଳ୍ମ—
2 Small bushy plant.

ଝୋପ ୩ । କ୍ଷୁଦ୍ର ବୁଦା—3. Bush; shrub.

ଝୁପବୀଘର ୪ । ଋଷିମାନଙ୍କ ଆଶ୍ରୟ ନିମନ୍ତେ କରାଯିବା ଛାୟା; ଝୋଁପାଡ଼, ଝୁପଡ଼ୀ ପର୍ଣ୍ଣଶାଳା—4. Shed made of leaves and branches.

୫ । କୁଡ଼ିଆ—5. Cottage; cabin; hut

**ଝୁମ୍ପୁଡ଼ି ଘର**—ଦେ. ବି—ଛୋଟ ଓ ନୀଚ ଘର; ମେଣ୍ଢାକୁଡ଼ିଆ ପରି ଘର; Jhumpur̤di ghara କୁଡ଼ିଆ—A low hut; a cottage as high as a bush.
ଝୁପବୀଘର
ଝୋପଡ଼ୀ

**ଝୁମ୍ପୁଡ଼ି ବଣ**—ଦେ. ବି—ଯେଉଁ ବଣ ବୁଦା-ବୁଦିଆ ଗୁଳ୍ମରେ ପୂର୍ଣ୍ଣ—
Jhumpur̤di bana A wood full of shrubs.
ଝୁପୀବନ

**ଝୁମ୍ପୁଡ଼ିମୁଣ୍ଡି**—ଦେ. ବିଣ. ସ୍ତ୍ରୀ.—ଝାମ୍ପୁଡ଼ାମୁଣ୍ଡାର ସ୍ତ୍ରୀଲିଙ୍ଗ—
Jhumpur̤di-mundi Feminine of jhāmpur̤dāmundā

**ଝୁମ୍ପୁରି** (ଇତ୍ୟାଦି)—ଗ୍ରା. ବି—ଝୁମ୍ପୁଡ଼ି ଇତ୍ୟାଦି ( ଦେଖ )
Jhumpuri (etc) Jhumpur̤di etc. ( See )

**ଝୁରଝୁର**—ଦେ. ଅ. ( ଧ୍ୱନ୍ୟନୁକରଣ )—କୌଣସି ଚୂନା ଶୁଷ୍କ ପଦାର୍ଥ Jhurjhur ଝଡ଼ି ପଡ଼ିବାର ଅନୁଚ୍ଚ ଶବ୍ଦ; ଝୁଡ଼୍‌ଝୁଡ଼୍—
Low rumbling sound of crumbling particless of small bits or grains.

ପ୍ରାଦେ. (ସମ୍ବଲପୁର) ବିଣ(ସଂ.ଜର୍ଜ୍ଜର)—୧ । ଅତି ବୃଦ୍ଧ (ବ୍ୟକ୍ତି)—
1. Very old ( person ).

(ଝୁରୁଝୁରୁ—ଅନ୍ୟରୂପ) ୨ । ମୁମୂର୍ଷୁ—2. Dying; about to die.

**ଝୁରିବା**—ପ୍ରାଦେ. (ସମ୍ବଲପୁର) କ୍ରି—(ଅଗ୍ନିର ଉତ୍ତାପ)ଦେହକୁ କାଟିବା—
Jhur-bā To affect with heat (said of fire).
( ଯଥା—ନିଆଁ ବହୁତ ଝୁରିଲା । )

**ଝୁରମାଇବା**—ପ୍ରାଦେ. (ସମ୍ବଲପୁର ଭୁଲ.ହି. ଝୁମ୍ନା) କ୍ରି—ଘୁମାଇବା—
Jhur-māibā To doze.

**ଝୁରୁଲି**—ପ୍ରାଦେ. (ସମ୍ବଲପୁର) ବି—ପତଙ୍ଗବିଶେଷ; ଅସର୍ପା—
Jhur-lā Cockroach.

**ଝୁରା**—ଦେ. ବି. ( ସଂ. ଧୁର, ଯୁଗନ୍ଧର )—
Jhurā ୧ । ଶଗଡ଼ ଯୁଆଳିର ମଧ୍ୟଭାଗ ( ଯେଉଁଠାରେ ଶଗଡ଼-ଦଣ୍ଡାର ଅଗ୍ରଭାଗ ଯୁଆଳି ସଙ୍ଗେ ସଂଯୋଜିତ ହୁଏ )—
1. The middle of the yoke to which the shaft of a cart is attached; the front end of the beam of a cart which is attached to the middle of the yoke.

ଚୂର, ଝୁରୀ ୩ । (ସଂ. ଚୂର୍ ଧାତୁ=ଚୂର୍ଣ୍ଣ କରିବା)—ଚୂର୍ଣ୍ଣ; ଚୂନା—
ଝୁରଝୁରୀ 3. Powder.

୨ । କୌଣସି ବସ୍ତୁର କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ—2. Small particles of any thing; crumbs.

ଝୁରା ୪ । ବିରହର ସନ୍ତାପ; ପ୍ରିୟ ବ୍ୟକ୍ତିର ବିଚ୍ଛେଦଜନିତ ଝୁରନା ଶୋକ; ଝୁରିବା—4. Pining after one's absent beloved.

ପ୍ରାଦେ. (ଗଞ୍ଜାମ ଓ କୋରାପୁଟ) ବି—ଶଗଡ଼ ଯୁଆଳିକୁ ଦଣ୍ଡାର ଅଗ ସଙ୍ଗେ ବାନ୍ଧିବାରେ ବ୍ୟବହୃତ ଚମ ଦଉଡ଼ି—
The thong joining the shaft of a cart to the middle of the yoke.
[ ଦ୍ର—କଟାଦଉଡ଼ିକୁ ଗଡା କହନ୍ତି ।]

ଦେ. ବିଣ.—୧ । ଅଗ ପାଖରେ ବୋଝେଇ ବେଶୀ ହେବା ଯୋଗୁଁ ଅଗ ପାଖ ଭାର ହୋଇଥିବା (ଶଗଡ଼)—
1. Front-heavy; (cart) which has become heavier in the front.

(ଭୁଲ୍ଝର, ଝପାଳିଆ—ବିପରୀତ)
୨ । ଚୂର୍ଣ୍ଣିତ—2. Powdered.
୩ । କ୍ଷୁଦ୍ର କ୍ଷୁଦ୍ର ସ୍ୱତନ୍ତ୍ର ଖଣ୍ଡବିଶିଷ୍ଟ—
3. Consisting of tiny bits.
(ଯଥା—ମାଛର ଝୁରା ଭଜା ।)

ପ୍ରାଦେ.—୧ । (ପୁରୀ) ବିଣ.—ଅତି ମାତ୍ରାରେ; ଅତ୍ୟଧିକ, ଆକଣ୍ଠ ( ଭୋଜନ )—1. (Eating) To one's fill.

୨ । (ସିଂହଭୂମ) ବିଣ.—ଛୋଟ ଛୋଟ; ଚୂନା ଚୂନା—
2. Small bits of; tiny grains of.
(ଯଥା—ଝୁରା ଧାନ ।)

ପ୍ରାଦେ. ( ପୁରୀ )—ବି.—ଅତି ଭୋଜନ ଯୋଗୁଁ ଅନୁଭୂତ ଅସ୍ୱାଚ୍ଛନ୍ଦ୍ୟ—Uneasiness felt after over-eating.

**ଝୁରା କାଠି**—ପ୍ରାଦେ. (ଗଡ଼ଜାତ) ବି.—ଶଗଡ଼ର ଯୁଆଳି—
Jhurā kāthi The yoke of a cart.

**ଝୁରା ଡିହ**—ଦେ. ବି.—ଶଗଡ଼ ଦଣ୍ଡାର ଅଗ ଓ ଯୁଆଳି ମଧ୍ୟସ୍ଥଳ ସଂଯୁକ୍ତ Jhurā diha ହେବା ସ୍ଥାନ—The centre of the yoke tied to the front end of the beam of a cart.

**ଝୁରା ଭଜା**—ଦେ. ବି.—କଣ୍ଟାଯାକ ବାହାର କରାଯାଇ ଚୂନା ଚୂନା Jhurā bhajā ହୋଇ ଭଜା ହୋଇଥିବା ମାଛ—
ଝୁରିଭାଜା Fish fried to powder.

**ଝୁରା ଭାରି**—ଦେ. ବି.—୧ । ଶଗଡ଼ର ଅଗ ପାଖରେ ବେଶୀ ବୋଝେଇ Jhurā-bhāri ହେବା ଅବସ୍ଥା—1. The state of being over-loaded at the front (said of a cart).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ୠ,ୡ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | ଜ୍ଞ | ଇଯ଼ | ଉଅ | ଛ |
| ୨ | ଈ | ଊ | ଋ | ଳ | ଏ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଙ୍କ | ନ୍ତ |

୨ । ଅତିଭୋଜନ ଯୋଗୁଁ ଅନୁଭୂତ ଅସ୍ୱାଚ୍ଛନ୍ଦ୍ୟ—
2. Uneasiness felt after overeating.

**ଝୁରା ମାଟି**—ଦେ. ବି.—ଖୁଦ୍ ଖୁଦ୍ ମୃତ୍ତିକାଖଣ୍ଡମାନ—
Jhurā māṭi Loose bits of earth.

**ଝୁରି**—ଦେ. ବି.—ଛୋଟ ଛୋଟ ଡାଳ କାଠ—
Jhuri Twigs for fuel.

ପ୍ରାଦେ. (ଗଡ଼ଜାତ) ବି.—୧ । କ୍ଷୁଦ୍ର ଗଛ—1. Plant.

୨ । ଚୂନା—2. Powder.

ପ୍ରାଦେ. (ସମ୍ବଲପୁର) ବି.—ଛୋଟ ମାଛ; ଚୂନାମାଛ—
Small fish (e. g. fry).

ଚଙ୍ଗଡ ଝୁରିର ଝୋଲ୍ । ଚଗ ।

ପ୍ରାଦେ.—( ଗଞ୍ଜାମ ) ବୈଦେ. (ଚେ.) ବି.—ଠାକୁରାଣୀଙ୍କ ଆଗରେ ଛୁଆଛୁଆ ଆଦି ବଳି ଦେବା ଉପଲକ୍ଷରେ ଠାକୁରାଣୀଙ୍କ ନାମରେ ତାଙ୍କ ଆଗେ ହିଡ଼ଏ ମଦ ଢଳେ ଢାଳ ଦେବା—An oblation of wine made to a village-Goddess on the occasion of killing a victim.

**ଝୁରିବା**—ଦେ. କ୍ରି.—(ସଂ ଝୁ ଧାତୁ=ଢଳଢଳ ପଡ଼ିବା)—୧ । ପ୍ରିୟ
Jhuribā ବ୍ୟକ୍ତିର ବିଚ୍ଛେଦରେ ଅଶ୍ରୁମୋଚନ କରିବା—
ଝୁରା 1. To shed tears after an absent dear
ଝୁରନୋ person.

ଝୁରୁଥିବ ପ୍ରେୟସୀ ନିକ ବନନେ । ରାଧାନାଥ. ମେଘଦୂତ ।

୨ । ଅନୁପସ୍ଥିତ ପ୍ରିୟ ବ୍ୟକ୍ତି ବା ବସ୍ତୁର ଗୁଣ ସ୍ମରଣ କରି ଅହରହ ଶୋଚନା କରିବା—2. To pine after or bemoan an absent dear person or thing.

ଝୁରିବାଁର ଏକା ହୋଇବ ସାର ।
କବିସୂର୍ଯ୍ୟ ବଳଦେବ. ଛ. ଗୀତ ।

୩ । ପ୍ରତିବେଶୀ ବା ପ୍ରତିଦ୍ୱନ୍ଦ୍ୱୀର ସୁଖରେ ଈର୍ଷାନ୍ୱିତ ହୋଇ ଆପଣାର ଦୁର୍ଭାଗ୍ୟକୁ ନିନ୍ଦା କରିବା ବା ଶୋଚନା କରିବା; ପରଶ୍ରୀକାତର ହେବା—3. To bemoan one's lot by envying the good fate of one's neighbour or rival.

[ ଯଥା—ତାର ସୁଖ ଦେଖି ସାଇପଡ଼ିଶା ଝୁରି ମରୁଛନ୍ତି ।]

**ଝୁରି ଭଜା**—ଦେ. ବି.—ଝୁରା ଭଜା (ଦେଖ)
Jhuri bhajā Jhurā bhajā (See)

**ଝୁରୁଲା**—ପ୍ରାଦେ. (ଗଡ଼ଜାତ) ବି.—ଅସରପା
Jhurulā Cockroach.

**ଝୁର୍ମାଇବା**—ପ୍ରାଦେ. (ସମ୍ବଲପୁର) କ୍ରି.—ଘୁମାଇବା—
Jhurmāibā To doze.

**ଝୁଲ୍‌ପି**—ପ୍ରାଦେ. (ସମ୍ବଲପୁର) ବି.—ଜୁଲ୍‌ପି (ଦେଖ)
Jhul-pi Jul-pi (See)
(ଝୁଲପ୍, ଝୁଲୁପ୍, ଝୁଲୁପି— ଅନ୍ୟରୂପ)

**ଝୁଲ୍‌ପିଆ**—ପ୍ରାଦେ. (ସମ୍ବଲପୁର) ବିଣ. ପୁଂ—ଯେଉଁ ବ୍ୟକ୍ତି ଜୁଲ୍‌ପି ବାଳ
Jhul-piā ରଖେ—Having the hair cropped up to
(ଝୁଲୁପିଆ—ଅନ୍ୟରୂପ) hang down to the neck.

**ଝୁଲ୍‌ପୁଲ୍**—ପ୍ରାଦେ. (ବାମଣ୍ଡା ଓ ସମ୍ବଲପୁର) ବି—ବଡ଼ିସକାଳ; ଉଷା;
Jhul-pul ବଡ଼ଭୋର—Early morning.

**ଝୁଲ**—ଦେ. ବି. (ସଂ. ଝୁଲ ବା ଧୂଲ ଧାତୁ (Beams); ତାମ୍ନା ସଂ. ଧୂଳ;
Jhula ସଂ. ଦୁଲ ଧାତୁ)—୧ । ଘରର ଅଲନ୍ଧୁ; ଧୂମ୍ରମାର; ଅଲକ୍ଷ୍ମମ;
ଝୁଲ 1. Soot hanging from the roof.
ଝୁଲ ୨ । (ଜ୍ୱଲ ସଂ. ଅଙ୍ଗୁଲ=ଜଳନ୍ତା ଅଙ୍ଗାର) ଅଗ୍ନିଝୁଲିଙ୍ଗ; ଅଗ୍ନିକଣା—2. Sparks of fire.

କହିଁ ଝୁଲ ସବୁ ଲୁଗାପଟାଯାକ ଭୁଶିପଡ଼ିଲା ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

୩ । ମୟୂରର ପୁଚ୍ଛ—3. Peacock-tail.

୪ । (ସଂ. ଦୁଲ ଧାତୁ ) ହାତୀପିଠିରେ ଚଢ଼ିଥିବା ଆସ୍ତରଣ—
4. The ornamental cover or cloth laid on the back of an elephant.

୫ । ଯାହା ଝୁଲୁଥାଏ ବା ଝୁଲି ପଡ଼ିଥାଏ; ଲମ୍ବମାନ—
5. A hanging or dangling thing.

୬ । ଗୋଡ଼ରେ ଗୋଡ଼ ପଶିଥିବାରୁ ବାଜୁଥିବା ଏକପ୍ରକାର ଝୁଣ୍ଟିଆ—6. A kind of tinkling ring for the 2nd finger of the leg.

ପ୍ରାଦେ. (ବାଲେଶ୍ୱର) ବି. (ଝୋ ସ୍ଥାନରେ ଝୁ ଉଚ୍ଚାରଣ)—
ତିଅଣର ଅଣ; ଝୋଳ—Soup of curry; broth.

**ଝୁଲଙ୍ଗୋ**—ପ୍ରାଦେ. (ସମ୍ବଲପୁର) ବିଣ(ସଂ. ଦୁଲ ଧାତୁ)—ଶ୍ଳଥ;ଢିଲା—
Jhulaṅgo Loose; slack.
(ଯଥା—ଖଟର ଆଠନ୍ ଭଲ ଟଣା ହୋଇ ନ ଥିବାରୁ ଖଟଟି ଝୁଲଙ୍ଗୋ ହୋଇଗଲା ।)

**ଝୁଲଣ**—ଦେ. ବି. (ସଂ. ଦୋଳନ)—୧ । ଦୋଳନ; ଦୋଳିଖେଳିବା—
Jhulaṇa 1. Swinging.
ଝୁଲନ; ଦୋଲନ ୨ । ଶ୍ରାବଣ ଶୁକ୍ଳଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ
ଝୁଲନ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କର ଦୋଳରେ ଝୁଲିବା ଉତ୍ସବ—2. The ceremony or festival of swinging of the Deities Rādhā and Kṛushṇa in a swing from the 10th of the bright fort-night of Śrābaṇa upto the fullmoon day.

[ ଦ୍ର—ପୁରୀ ଓ ବୃନ୍ଦାବନରେ ଏହି ଯାତ୍ରା ଉପଲକ୍ଷରେ ବିଶେଷ ଉତ୍ସବ ହୁଏ । ]

**ଝୁଲଣ ହାତୀ**—ପ୍ରାଦେ. (ସମ୍ବଲପୁର) ବି—ଯେଉଁ ହାତୀ ଠିଆ ହେଲା
Jhulaṇa hāti ବେଳେ ଝୁଲୁଥାଏ—An elephant that rocks to and fro while standing.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଡ' ନ ମିଳିଲେ 'ଗାଡ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଆଜ୍ଞା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଝୁଲଣା**—ଦେ. ବି. (ସଂ. ଦୋଳନ)—୧ । ଝୁମ୍ପା; ଫୁଲ—
Jhulaṇā 1. Tassel.
୨ । ଦୋଳି—2. Cradle; a swing.

ଝସ ବଉଳା ରଙ୍ଗ ରଙ୍ଗେ
ଝୁଲଣା ସାଧାକୃଷ୍ଣର ସେ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଝୁଲପି**—ବୈଦେ. ବି. (ଫା)—ଝିଲପି (ଦେଖ)
Jhulapi Jhilapi (See)

**ଝୁଲା**—ଦେ. ବି. (ସଂ. ଦୁଲ ଧାତୁ)—୧ । ଝୁଲିବା—
Jhulā 1. Swinging; rocking.
ঝুলা; ঝোলা ପଦ ପଦକରେ ଯାତ ଦେଉଥାଏ ଶଙ୍କପଦ ମଣିକିଅଝୁଲା ।
झूला; झोला କବିସୂର୍ଯ୍ୟ. ସଙ୍ଗୀତ ।
୨ । ଦେହର ଇତସ୍ତତଃ ଚାଳନ—
2. Bodily movement to and fro.
ଝୁଲ ମଞ୍ଜୁଳ ତୋ ଲଲାମ ଛବିକି ସଲାମ ସହସ୍ର ଥରରେ ।
କବିସୂର୍ଯ୍ୟ. ସଙ୍ଗୀତ ।
୩ । ଦଣ୍ଡି; ନାସିକାର ଅଲଙ୍କାରବିଶେଷ—
3 A nose-ring with a pendant
ନାସା ତଳ ଫୁଲ ତଳେ ଝଲମଲ ବୁଲାକ ଝୁଲା କି ମାନୁଥିଲା ।
କବିସୂର୍ଯ୍ୟ. ସଙ୍ଗୀତ ।
୪ । ଦୋଳା; ଦୋଳି—
4. Cradle; swinging basket.
୫ । ସଙ୍ଗୀତର ଏକପ୍ରକାର ସହଜ ତାଳ—
5. Name of a light air in music.
୬ । ଝୋଲା (ଦେଖ)—6. Jholā (See)
୭ । ହାଣ୍ଡୋଲା; ଯାନବିଶେଷ—
7. A swinging sedan chair.
[ଦ୍ର—ଏହା ମୁଣି ପରି ବାଉଁଶ ମଝିରେ ଝୁଲୁଥାଏ । ଏଥିରେ ମନୁଷ୍ୟ ବସିଲେ ବାହକମାନେ ବାଉଁଶର ଦୁଇ ମୁଣ୍ଡକୁ କାନ୍ଧେଇ ଏକ-ସ୍ଥାନରୁ ଅନ୍ୟସ୍ଥାନକୁ ଯାଆନ୍ତି ।]
୮ । ଝୁଲାପୋଲ; ଯେଉଁ ପୋଲ ଉପରେ ଥିବା ଦଉଡ଼ିକୁ ହାତରେ ଧରି ତହିଁରେ ଝୁଲିଲା ପରି ହୋଇ ମନୁଷ୍ୟମାନେ ପାର ହୁଅନ୍ତି—8. A swinging bridge which men pass by swinging on a rope.
(ଯଥା—ହରଦ୍ୱାରର ଉତ୍ତରରେ ଲକ୍ଷ୍ମଣଝୁଲା ।)

**ଝୁଲା(ଲେ)ଇବା**—ଦେ. କ୍ରି—'ଝୁଲିବା'ର ଣିଜନ୍ତରୂପ—
Jhulā(le iba Causative form of Jhulibā.
ঝুলান ଝୁଲାଇ ନ ଦେଲି ରସକଳ୍ପବଲ୍ଲୀ ଲକ୍ଷ୍ମମୂଳସ୍ଥଳ ।
झुलाना କବିସୂର୍ଯ୍ୟ. ରତ୍ନାକରଚନ୍ଦ୍ର ।

**ଝୁଲାଝୁଲି**—ଦେ. ବି—ପରସ୍ପରକୁ ଝୁଲାଇବା—
Jhulā-jhuli Rocking each other by turns.

**ଝୁଲି**—ଦେ. ବି. (ସଂ. ଦୁଲ ଧାତୁ; ବେକରେ ଏହା ଝୁଲୁଥିବା ହେତୁ)—
Jhuli ୧ । ବୈଷ୍ଣବମାନଙ୍କର ମାଳ ଜପିବାର ମୁଣି; କୋଥଲି—
ঝুলী 1. Satchel; a wallet containing rosary.
झोरा
[ଦ୍ର—ଏଥିରେ ଜପମାଳି ଓ ତିଳକଆଦି ଥାଏ ।]
୨ । ମୁଣା; ମୁଣି—2. A pouch; a wallet.
୩ । ଭିକ୍ଷୁକର ମୁଣି—3. Beggar's wallet.
ପ୍ରାଦେ. (ସମ୍ବଲପୁର) ବି—୧ । ଡବଲ ଅଦ୍ୟା; ଦୁଇଧାଡ଼ି ହାଣ୍ଡି ବସିବା ଅଦ୍ୟା ବା ଲମ୍ବଚୁଲି—1. A long oven on which 2 rows of pots can be set at a time.
[ଦ୍ର—ଖଦାରେ ଧାଡ଼ିଏ ମାତ୍ର ହାଣ୍ଡି ବସେ ।]
୨ । ଝିପା (ଦେଖ)—2. Jhipā (See)

**ଝୁଲିପି**—ବୈଦେ. ବି. (ଫା)—ଝିଲପି (ଦେଖ)
Jhulipi Jhilapi (See)

**ଝୁଲିବା**—ଦେ. କ୍ରି. (ସଂ. ଦୁଲ ଧାତୁ)—୧ । ତଳକୁ ଲମ୍ବି ଦୋହଲିବା-
Jhulibā 1. To swing down.
ঝুলা ୨ । ଲଟକିବା—
झूलना 2. To be suspended.
ଡାଳର ଡାମ୍ବାଦ ହୋଇ କହେ ବାରେ
ଝୁଲୁଥିବ କାନ୍ତା ପଣତ କାନରେ । ରାଧାନାଥ. ଦରବାର ।
୩ । ଓହୋଳପଡ଼ିବା—3. To dangle loosely.
୪ । ଫାସି ଲଟକାଇ ହେବା; ଫାସି ଖେଳିବା—
4. To hang oneself.
୫ । ଚଳିବା; ଇତସ୍ତତଃ ଦୋଳାୟମାନ ହେବା—
5. To oscillate; to rock to and fro; to swing.
ଝୁଲି ଝୁଲି ଗଲୁ ମୋଦେ ମଦେ—କବିସୂର୍ଯ୍ୟ, କଳଭା ।
[ଦ୍ର—ଏହି କ୍ରିୟାର ଅସମାପିକାରୂପ ସଙ୍ଗେ ପଡ଼ିବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ ।]

**ଝୁଲୁ**—ପ୍ରାଦେ. ( ସମ୍ବଲପୁର ) ବି ( ସଂ, ଚୁଲ୍ଲୀ )—ଅଦ୍ୟା; ଦୁଇରୁ
Jhulu ବେଶୀ ହାଣ୍ଡି ବସିବା ଚୁଲି—An oven on which more then 2 pots can be set at a time.

**ଝୂଣି(ଳି)**—ସଂ. ବି—୧ । ଏକଜାତୀୟ ଗୁବାକ—
Jhūṇi(ḷi) 1. A kind of betel-nut ( Apte )
୨ । ଅମଙ୍ଗଳସୂଚକ ଶୂନ୍ୟ ଶବ୍ଦ—2. A voice from heaven boding ill-luck ( Apte ).
୩ । ଅଶୁଭ ଶକୁନ—
3. An evil omen ( Apte ).
୪ । ଝାଡ଼ି ଜଙ୍ଗଲ; ବୁଦାଳିଆ ବଣ—
4. Thicket ( Apte ).

**ଝୃ** ( ଧାତୁ )—ଜୀର୍ଣ୍ଣ ହେବା; ପୁରୁଣା ହୋଇଯିବା—
Jhṛṛu ( root ) To grow old.

| ୧ | ଇ | ଉ | ରୃ,ରୂ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଆ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ଦ |

**ଝେଗୁଣା ତ୍ରିଣା ରିଣା**—ଦେ. ଅ. ( ଧ୍ୱନ୍ୟନୁକରଣ )—ଝାଞ୍ଜର ଉକ୍ତି
Jhegunā trinā rinā ବିଶେଷ—A catch-word of striking cymbals.

ଝେ ଝଙ୍କ ଝଙ୍କ ଝଙ୍କ ଝଞ୍ଜାଳ ଝଙ୍କେ
ଝେଗୁଣା ତ୍ରିଣାରିଣା ଗୁଣିତ ଗୁଣାଙ୍କେ—ପ୍ରାଚୀ, ରହସ୍ୟମଞ୍ଜରୀ ।

**ଝେ ଝଙ୍କ ଝଙ୍କ ଝଙ୍କ**—ଦେ. ଅ. ( ଧ୍ୱନ୍ୟନୁକରଣ )—ଝାଞ୍ଜର ଉକ୍ତି
Jhe jhaṅka jhaṅka jhaṅka ବିଶେଷ—A catch-word of striking cymbals.

ଝେ ଝଙ୍କ ଝଙ୍କ ଝଙ୍କ ଝଞ୍ଜାଳ ଝଙ୍କେ—ପ୍ରାଚୀ. ରହସ୍ୟମଞ୍ଜରୀ ।

**ଝେଞ୍ଜା(ଞ୍ଜେ)କା**—ଦେ. ବି—ଝଞ୍ଜକା ( ଦେଖ )
Jheñja(ñje)kā Jhañjakā (See)

**ଝେବ**—ଦେ. ବି—ଝବା ୧ ( ଦେଖ )
Jheba Jhabā 1. ( See )
( ଝେବା—ଅନ୍ୟରୂପ )

**ଝୋଆ**—ଦେ. ବି—ଝବା (୧) (ଦେଖ)
Jhoā Jhabā (1) (See).

**ଝୋଟ**—ଦେ. ବି (ସଂ. ଜୂଟ=କେଶ ଜଟା)—ନଳିତା ବା କାଉଁରିଆ ନାମକ ଗୁଳ୍ମର ଛାଲ ବା ବକଲାରୁ ଉତ୍ପନ୍ନ ଶୁକ୍ଳ ଓ ଦାହ୍ୟ ତନ୍ତୁବିଶେଷ—
Jhoṭa
ପାଟ
ଜୁଟ, ପଟୁଆ Jute; the coarse strong fibre of the East Indian Corchorus Olitorius; Corchorus Capsularis.

**ଝୋଟି**—ଦେ. ବି—ଝୁଟି (ଦେଖ)
Jhoṭi Jhuṭi (See).

କଟିଭଙ୍ଗେ ମାନ ଶୋଭେ ବକ୍ଷଶ୍ରେଣୀ
ଶ୍ୟାମପାଦେ ଝୋଟି ଦେଇଛନ୍ତି ମଣି—ଚାରଣୀଚରଣ. ଋଷିକୁଲ୍ୟା ।

**ଝୋଟି ଉଠା(ଠେ)ଇବା**—ଦେ. କ୍ରି—ଆକ୍ରାନ୍ତ କରିବା—
Jhoṭi uṭhā(ṭhe)ibā To reduce to exhaustion.

**ଝୋଟି ଉଠି(ଯିବା)ବା**—ଦେ. ବି—ପରିଶ୍ରମରେ ଅତ୍ୟନ୍ତ ବିରକ୍ତ ବା ଅଥୟ ହୋଇଯିବା—
Jhoṭi uṭhi (jibā)bā
Being utterly exhausted with labour or pestsred to death.

**ଝୋଟି କୁଟା**—ଦେ. ବି (ବୈଦ୍ୟକ)—ବନ୍ୟ ବୃକ୍ଷବିଶେଷ—
Jhoṭi kuṭā A kind of wild tree.
[ ଦ୍ର—ଏହାର ସମୂଳ ପତ୍ରର କଳ୍କ ଭୃଙ୍ଗରାଜ ରସ ସହିତ ସେବନକଲେ ଜ୍ୱର ବିନଷ୍ଟ ହୁଏ । ଏ ଗଛର ରସ ଗର୍ଭୋତ୍ପାଦକ, ମେହନିବାରକ, ସଦ୍ୟୋବ୍ରଣନାଶକ—ଦ୍ରବ୍ୟଗୁଣ କଳ୍ପଦ୍ରୁମ । ]

**ଝୋଟି ଦେବା**—ଦେ. କ୍ରି—ଘର କାନ୍ଥରେ ପିଠଉଦ୍ୱାରା ଚିତ୍ରକରିବା—
Jhoṭi debā To paint the walls of a house with
(ଝୋଟି ପକାଇବା—ଅନ୍ୟରୂପ) rice-paste or lime water.
ଆଲପନା ଦେଓୟା

**ଝୋଟି ମୁରୁଜ**—ଦେ. ବି (ସହଚର)—ଉତ୍ସବାଦି ଉପଲକ୍ଷେ ଘରର କାନ୍ଥ ଓ ପିଣ୍ଡାରେ ପିଠଉ ଓ ମୁରୁଜ ଦ୍ୱାରା ଅଙ୍କିତ ଚିତ୍ର
Jhoṭi muruja
ଆଲପନା ମାନ—Figures drawn on the walls and varanda with paste and powder.

**ଝୋଣ୍ଡ**—ସଂ. ବି—ଗୁଆ ଗଛ—
Jhoṇḍa The betel-nut tree (Apte);

**ଝୋପ**—ଦେ. ବି (ସଂ. କ୍ଷୁପ)—୧ । ବୁଦା—
Jhopa 1. Bush; shrub.
(ଝୋଁପ—ଅନ୍ୟରୂପ) ୨ । କ୍ଷୁଦ୍ର ଗଛ—2. Plant.
ঝোপ ୩ । ବହୁଶାଖ କ୍ଷୁଦ୍ର ବୃକ୍ଷ; ଝାମ୍ପୁଡ଼ା ଗଛ—
झाड़ी 3. Bushy plant.

**ଝୋପଡ଼ି**—ଦେ. ବିଣ (ସଂ. କ୍ଷୁପ)—୧ । ବୁଦବୁଦିକିଆ; କ୍ଷୁପ ବହୁଳ
Jhopaṛdi ( ବଣ )—1. Bushy; shrubby; full of bushes.
(ଝୋଁପଡ଼ି—ଅନ୍ୟରୂପ)
ঝোঁপড়ী ୨ । ବୁଦା ପରି ଖେଟ ଓ ଗୁହଆଡ଼କୁ ଗୁଳର ଓଳ ଓହୋଳ
झोँपड़ी, झोँपड़ा ପଡ଼ିଥିବା ( ଘର )—2. Low and bushy; mean (hut).

**ଝୋବା**—ଦେ. ବି—ଝବା ୧ (ଦେଖ)
Jhobā Jhabā 1 (See).
(ଝୋବ—ଅନ୍ୟରୂପ ) କରଞ୍ଜ ତେଲ ଝୋବା ପୁଞ୍ଜ ତନ କ ଗୃହ ।
ঝাঁড় ଫକୀରମୋହନ. ଛମାଣଅଠଗୁଣ୍ଠ ।

**ଝୋର୍କା**—ପ୍ରାଦେ (ମେଦିନୀପୁର) ବି—ଝରକା
Jhor-kā Window.

**ଝୋରିଆ**—ପ୍ରାଦେ (ମାନ୍ଦ୍ରାଜ) ବି—୧ । ମାନ୍ଦ୍ରାଜ ପ୍ରଦେଶବାସୀ ମିଶ୍ର ଶୂଦ୍ର ଜାତିବିଶେଷ—
Jhoriā
1. A class of the Śūdras of Madras.
୨ । ମାନ୍ଦ୍ରାଜ ପ୍ରଦେଶର ଅଧିବାସୀ ଝୋରିଆ ଜାତିର କଥିତ ଭାଷା—2. The language spoken by the Jhoriās of Madras

**ଝୋଳ**—ଦେ. ବି (ସଂ. ଜଳ)—ଅଣ; ରନ୍ଧା ମାଛ, ଡାଲି, ତିଅଣ ଆଦିରେ ଥିବା ଜଳୀୟ ଅଂଶ; ତିଅଣର ପାଣି—
Jhoḷa
ঝোল্ Soup; broth; gravy.
झोल, रस

**ଝୋଲି**—ପ୍ରାଦେ. (ଯାଜପୁର) ବି.—ନିଆଁ ଝୁଲି—
Jhola Sparks of fire.
ଦେ. ବି—ଝୁଲ (ଦେଖ)— Jhula (See).

**ଝୋଳ ଝୋଳ**—ଦେ. ବିଣ—ପାଣିପାଣିଆଁ (ବ୍ୟଞ୍ଜନାଦି); ଯେଉଁ ତିଅଣରେ ଜଳର ଭାଗ ଅଧିକ ଥାଏ—Soupy.
Jhoḷa jhoḷa
(ଝୋଳ ଝୋଳିଆ—ଅନ୍ୟରୂପ)
ঝোল ঝোল

**ଝୋଲି**—ଦେ. ବି (ସଂ. ଦୁଲ ଧାତୁ)—୧ । ଏକପ୍ରକାର ଯାନ; ଝୁଲି—
Jholā 1. A swinging sedan chair.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଆଁଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

ଝୋଲା ୨ । ବଡ଼ ଥଳିଆ—2. A big bag.

ଝୋଲା ୩ । ପତଳା ଚଦର—3. A thin sheet.

କୁସୁମ ପାଖୁଡ଼ା ବସ୍ତ୍ର ଝୋଲା ପକାଇ—ଦୀନକୃଷ୍ଣ. ରସକଲ୍ଲୋଳ ।

୪ । ଲୁଗାର ମୁଣି ବା ଥଳି; ଝୁଲା—
4. Wallet; pouch; bag of cloth.

[ଦ୍ର ଏହା ଦେହରେ ଦଉଡ଼ି ଲଗାଇ ଏହାକୁ କାନ୍ଧରୁ କଡ଼ପଟେ ଝୁଲାଇବାକୁ ହୁଏ । କନଷ୍ଟବଲ ଓ ପଲ୍ଟଣମାନେ ଏହାକୁ ବ୍ୟବହାର କରନ୍ତି ।]

୫ । ଜପମାଳ ରହିବାର ମୁଣି—
5. A pouch containing rosaries.

୬ । ଭିକ୍ଷୁକର ମୁଣି; ଭିକ୍ଷାଝୁଲି—
6. Beggar's wallet.

**ଝୋଲମର୍‌**—ଦେ. ବି—ଅଚେତନ ଅବସ୍ଥା; ମୂର୍ଚ୍ଛା; ମଥା ଭ୍ରମ—
Jholā-marā Swooning; giddiness.

ଝୋଲାମାରା ଦେ. ବିଣ—ମୂର୍ଚ୍ଛାପ୍ରାପ୍ତ; ଅଚେତନ—
Swooning; fainted.

ଝୋଲମର୍‌ ପ୍ରାପ୍ତ ହୋଇ କେତେକ୍ଷଣ ପରେ । ଚନ୍ଦ୍ରାମଣି, ଚନ୍ଦ୍ରମାଦଲ୍ୟ ।

**ଝୋଲ ମାରିବା**—ଦେ. କ୍ରି—ଅଚେତନ ହେବା; ମଥା ଭ୍ରମଜାତ ହେବା;
Jholā māribā ଦୁର୍ବଳତା, କ୍ଷୁଧା ବା ରୋଗଯୋଗୁଁ ମୂର୍ଚ୍ଛିତ ହେବା—
ଝୋଲା ମାରା Fainting; swooning.

**ଝୋଲ। ମାରନା** ଝଳ ପାଖାଳ ଝଟକେ ନାହିଁ କି
ଝୋଲ ମାରିଲା ଭୁକ୍କୁ କାହିଁ କି । କବିସୂର୍ଯ୍ୟ. କଣୋଇଚମ୍ପୂ, ଝ ଗୀତ ।

**ଝୋଲି**—ଦେ. ବି. ( ସଂ. ଦୁଲ ଧାତୁ )—
Jholi ୧ । ଛୋଟ ମୁଣା; ମୁଣି; ଛୋଟ ଝୋଲା—
ଝୋଲୀ, ଝୁଲୀ 1. Small bag or sack; pouch; satchel.
**ଝୋଲୀ** ୨ । ଝୁଲି ମୁଣି; ଭକ୍ତମାନେ ଯେଉଁ ମୁଣିରେ ଜପମାଳାଦି ରଖି ତାକୁ ହାତରେ ଝୁଲାଇ ତହିଁ ମଧ୍ୟରେ ହାତ ପୂରାଇ ମାଳ ଜପନ୍ତି—2. A bead-teller's wallet.

କଙ୍ଗାଳୀ ବରତ ଥାଳୀ ସେ ମୋର ତ ନାମ ଗଳାରତ ଦୁଃଖ-ଝୋଲି ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଝୋଲିଆ**—ଦେ. ବିଣ—ଯେଉଁ ତିଅଣରେ ବେଶି ପରିମାଣରେ ଝୋଲ
Jholiā ଥାଏ—Soupy (curry).

ଦେ. ବି—ରସ ଯୁକ୍ତ ଖାଦ୍ୟ—
Juicy or savoury food ( Grundy ).

**ଝ୍ୟୁ** (ଧାତୁ)—ସଂ—ଯିବା; ଗତି କରିବା—
Jhyu (root) To move; to go ( Apte ).



**ଞ**—ବ୍ୟଞ୍ଜନ ବର୍ଣ୍ଣମାଳାର ୧୦ମ ବର୍ଣ୍ଣ ଓ ଚ ବର୍ଗର ୫ମ ବର୍ଣ୍ଣ । ଏହା
Ña ଗୋଟିଏ ଅନୁନାସିକ ବର୍ଣ୍ଣ । ତାଳୁ ଓ ନାସିକା ଏହାର ଉଚ୍ଚାରଣସ୍ଥାନ । ଏ ଅକ୍ଷର ଭାଷାରେ 'ଇଅଁ' ବା 'ୟଁ' ରୂପେ ଉଚ୍ଚାରିତ ହୁଏ । କିନ୍ତୁ ଏହାର ପ୍ରକୃତ ଉଚ୍ଚାରଣ 'ଚ ଛ ଜ ଝ' ଉଚ୍ଚାରଣ ଜନିତ 'ନ୍ୟ'—
The 10th consonant with a nasal sound; the nasal of the palatine consonants pronounced as 'an'.

( ଦ୍ର—ସଂସ୍କୃତ ଓ ଓଡ଼ିଆରେ ଞ ଅକ୍ଷରାଦ୍ୟ ଶବ୍ଦ ନାହିଁ । )

**ଞ**—ସଂ. ବି—୧ । ଷଣ୍ଢ—1. Bull.
Ña ୨ । ବଳୀବର୍ଦ୍ଦ; ବଳଦ—2. Bullock.
୩ । ଗାନ—3. Singing.
୪ । ଗାୟକ—4. Singer; songster.
୫ । ଘର୍ଘର ଧ୍ୱନି—5. Rattling sound.
୬ । ଯୋଗୀ—6. A sage.
୭ । ଶବ୍ଦ—7. A sound.
ବିଣ—୧ । କ୍ରୂର—1. Cruel; hard-hearted.
୨ । ସ୍ୱଧର୍ମଭ୍ରଷ୍ଟ—2. Renegade.



**ଟ**—ବ୍ୟଞ୍ଜନ ବର୍ଣ୍ଣମାଳାର ୧୧ଶ ବର୍ଣ୍ଣ । ଏହା ଟ ବର୍ଗର ପ୍ରଥମ ବର୍ଣ୍ଣ ।
Ta ଏହାର ଉଚ୍ଚାରଣସ୍ଥାନ ମୂର୍ଦ୍ଧା—The 11th consonant sound produced from the head; pronounced as ṭ in the ṭea.

**ଟ**—ସଂ. ବି. ( ଟକ୍‌ ଧାତୁ = ଶବ୍ଦ କରିବା + କର୍ତ୍ତ୍ରି. ଅ )—
Ta ୧ । ଶବ୍ଦ—1. Sound.
୨ । ପାଦ; ଚତୁର୍ଥ ଭାଗ—4. Fourth part.
୩ । ଶିବ—3. God Śiba.
୪ । ବାମନ—4. A dwarf.
୫ । ଟଙ୍କାର—5. The twang of a bow.

| ୧ | ଇ | ଊ | ର୍,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଏ | ଉଅ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ୱ | ନ୍ |

୬ । କରଙ୍କ; ଗୋଲ ଡବା—
6. A head-like pot; a round box.
୭ । ମୁଣ୍ଡର ଖପୁରି—7. Skull.
୮ । ନଡ଼ିଆର ଖଡ଼େଇ ( ହି. ଶବ୍ଦସାର )—
8. Skull-shaped cocoanut-shell.
ବିଣ—ଜଗତ୍ ବିଖ୍ୟାତ; ତ୍ରିଭୁବନ ବିଖ୍ୟାତ—
World-famed.

[ ଦ୍ର—ଟର କରଣୀ ଆକାର ଟ ବା ଟ । ଟଙ୍କାର ସାଙ୍କେତିକ ଚିହ୍ନ ସ୍ୱରୂପ ଏହି ଚିହ୍ନ ସଂଖ୍ୟାର ପୂର୍ବରେ ଲେଖାଯାଏ । ଯଥା ଟ ୧୵ = ଏକ ଟଙ୍କା ତିନି ଅଣା । ସମ୍ବଲପୁର ଅଞ୍ଚଳରେ 'ତ' ସ୍ଥାନରେ 'ଟ' ଉଚ୍ଚାରଣ କରନ୍ତି ।
ଯଥା—ଓଡ଼ିଆ ତାଟ=ସମ୍ବଲପୁର ଟାଟ, ତାଡ଼=ଟାଡ଼, ତଟ୍ଟୁ=ଟଟ୍ଟୁ, ତଣ୍ଟି=ଟଣ୍ଟି, ତେଣ୍ଡିବା=ଟେଣ୍ଡିବା ଇତ୍ୟାଦି । ]

ଟଉ—ଦେ. ବି—୧ । ଦସ୍ତା ଧାତୁ—
Tau 1. Zinc.
ଦସ୍ତା ୨ । ରଙ୍ଗା ମିଶ୍ରିତ ଧାତୁ—2. Pewter.
ଜସଦ [ ଦ୍ର—ଏଥିରେ ଗରିବ ଲୋକଙ୍କ ବ୍ୟବହାରୋପଯୋଗୀ ପାନପାତ୍ରାଦି ଓ ଅଳଙ୍କାର ନିର୍ମିତ ହୁଏ; ଏଥିରେ ୪ ଭାଗ ତୁଣ ବା ରଙ୍ଗା ଓ ଏକ ଭାଗ ଶୀଶା ମିଶିଥାଏ; ସମୟସମୟରେ ତୁଣ ସଙ୍ଗେ ତମ୍ବା ଓ ଆଣ୍ଟିମନି ନାମକ ଧାତୁ ମିଶାଯାଏ । ]

ଟଂ—ଦେ. ଅ—(ଧ୍ୱନ୍ୟନୁକରଣ; ସ. ଟଙ୍କାର)—ଟଙ୍କାର ଶବ୍ଦ; ଘଣ୍ଟା
Taṁ ଆଦି ବାଜିବାର ବିଶିଷ୍ଟ ଶବ୍ଦ; ଧନୁର୍ଗୁଣ ଟାଣି ଛାଡ଼ିବାର
ଠନ୍, ଟିଂ ଶବ୍ଦ—Twang; the sound of a gong or
ଠନ୍ 'bell; chiming sound.
ଟଂ ଟଂ—ଦେ. ଅ—ଏକାଧିକ ଥର ଟଂଶବ୍ଦ—ଟଂ ( ଦେଖ )—
Taṁ-taṁ Repeatedsound of a gong,
ଠନ୍‌ଠନ୍, ଠନ୍‌ଠନ୍ Taṁ (See)
ଟଁ—ଦେ. କ୍ରି. ବିଣ ଓ ବିଣ—ଟଁ ଟଁ ( ଦେଖ )
Tañ Tañ-tañ ( See )
ଟଁଟି—ପ୍ରାଦେ (ସମ୍ବଲପୁର) ବି—୧ । ତଣ୍ଟି; ଚୋଟ; କଣ୍ଠ—
Tañṭi 1. Throat.
୨ । ବେକ—2. Neck.
ଟଁଟିଆ—ପ୍ରାଦେ. (ସମ୍ବଲପୁର) ବି—ତଣ୍ଟିଆ—
Tañṭiā A push on the throat.
ଟଁ ଟଁ—ଦେ. କ୍ରି. ବିଣ—୧ । (ବ୍ୟଙ୍ଗ) ପୂର୍ଣ୍ଣମାତ୍ରାରେ; ସମ୍ପୂର୍ଣ୍ଣରୂପେ—
Tañ-tañ 1. Fully; completly.
ଟଇଁଟମ୍ବୁର ( ଯଥା—ସେ ଟଁ ଟଁ କରି ପାଠ ପଢ଼ି ପକାଇବ । )
ଟୁଁଟୁ ୨ । ଟଁ ଟଁ ଶବ୍ଦକର (ଯଥା—ଅଧୋବାୟୁ ନିଃସରଣ ଶବ୍ଦ)—
2. Making a long 'tañ' sound.
( ଯଥା—ଟଁ ଟଁ ଶବ୍ଦଠାରୁ ଟୁଁ ଟାଁ ଅନୁଚସ୍ୱର । )

ବିଣ—(ବ୍ୟଙ୍ଗ)—୧ । ପୂର୍ଣ୍ଣ—1. Full.
୨ । ପର୍ଯ୍ୟାପ୍ତ—2. Abundant.
(ଯଥା—ମୋ ଠେଇଁ ଟଙ୍କା ଟଁ ଟଁ ହୋଇଛି । )
୩ । ଚରିତାର୍ଥ; କୃତାର୍ଥ; ସମ୍ପୂର୍ଣ୍ଣରୂପେ ସନ୍ତୁଷ୍ଟ—
3. Fully satisfied or satiated.
( ଯଥା—ମୁଁ ଖାଇକରି ଟଁ ଟଁ ହୋଇଗଲି । )

ଟକ୍ କରି—ଦେ.କ୍ରି—(ସ. ଦ୍ରୁତ; ହଠାତ୍; ଏକାବେଳକେ; ଅତିଶୀଘ୍ର—
Tak kari At once; at one gulp.
ଟକ୍‌କରେ ( ଯଥା—ବଗ ମାଛଟାକୁ ଟକ୍‌କରି ଗିଳିଦେଲା । )
ତଡ଼ାକ୍, ଖଟସେ
(ଟକ୍‌କିନା, ଟକ୍‌କିନ, ଟକ୍‌କରି, ଟକ୍‌ଦିସ୍—ଅନ୍ୟରୂପ)

ଟକ୍‌ଟକ୍—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଭାତ ଫୁଟିବାର ଶବ୍ଦ—
Tak-ṭak 1. Bubbling sound; sound of boiling rice.
ଟକ୍ ଟକ୍, ଟଗ୍ ବଗ୍ ୨ । ଠକ ଠକ ଶବ୍ଦ—2. Rapping
ଖଟଖଟ sound; tapping sound.
ଠକ୍‌ଠକ୍ ୩ । ହାତ ଗୋଡ଼ର ଆଙ୍ଗୁଠି ଫୁଟିବାର ଶବ୍ଦ—
ଖଟଖଟ 3. Cracking sound of the finger-
ମଟମଟ joints when twisted.
ଚଟଚଟ [ ଦ୍ର—ହାତଗୋଡ଼ ମୋଡ଼ିବା ସମୟରେ ହାତ ଓ ଗୋଡ଼ର ଅଙ୍ଗୁଠିମାନଙ୍କୁ ମୋଡ଼ିଦେଲେ ଆଙ୍ଗୁଠିର ଗଣ୍ଠିମାନ ଟକ୍ ଟକ୍ ଫୁଟିବାର ଶବ୍ଦ ଶୁଣାଯାଏ । ଚାଲିବା ସମୟରେ କାହାର କାହାର ଗୋଡ଼ ଅଙ୍ଗୁଠିର ଗଣ୍ଠିମାନ ଟକ୍ ଟକ୍ ଶବ୍ଦ କରେ ।
ଟକ୍‌ଟକ୍ ୪ । କଳ ଘଡ଼ି ବା କାନ୍ଥ ଘଣ୍ଟାର ପେଣ୍ଡୁଲମ୍ ହାଲିବା
ଚଟଚଟ ସମୟରେ ଶୁଣାଯିବା ଶବ୍ଦ—Ticking sound of a clock or time-piece.
ଟନଟନ ୫ । ଧକ ଧକ; ପୂଜପୂର୍ଣ୍ଣ ବଥ ଓ ଘାଆ ଆଦିର ବ୍ୟଥା—
ଟହକ 5. Throbbing or smarting pain of a boil or wound when filled with pus.
ଦେ. କ୍ରି. ବିଣ.—ଚଞ୍ଚଳ ଚଞ୍ଚଳ ଉପର୍ଯ୍ୟୁପରି—
In quick succession.

ଟକ୍‌ଟକ୍ ନାଲ(ଲି)—ଦେ. ବିଣ. (ତୁଲ. ସ. ଟଙ୍କୁକ=ରକ୍ତବର୍ଣ୍ଣ)—
Tak-ṭak nāl (li) ରଙ୍ଗ ଟହଟହ; ନାଲି ଟୁହୁ ଟୁହୁ—
ଟକ୍‌ଟକ୍‌ଲାଲ, ଟକ୍‌ଟକେ ଲାଲ Bright red; carmine or
ଲାଲଗୁଲାଲ; ତାଫା ଲାଲ crimson-coloured.
(ଯଥା—କଇଁଚକାକୁଡ଼ିର ପାଚି କରି ଟକ୍‌ଟକ୍ ନାଲି ହୋଇଅଛି ।)
[ଦ୍ର—ଅପେକ୍ଷାକୃତ ବଡ଼ ବସ୍ତୁ (ମହାକାଳ ଫଳ ଇତ୍ୟାଦି) ନାଲି ଟକ୍‌ଟକ୍ ଓ କ୍ଷୁଦ୍ର ବସ୍ତୁ (କାଇଞ୍ଚଫଳ) ନାଲି ଟୁକୁଟୁକୁ ବୋଲି ଯାଏ; ସାଧାରଣତଃ ଏ ଶବ୍ଦ ନାଲ(ଲି)ଟକଟକ ଆକାରରେ ବ୍ୟବହୃତ ହୁଏ ।]

ସାଧାରଣ ଲୋକେ ଅପର ପୃଷ୍ଠାରେ ମଡଡ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ-ରକ୍ଷା କରନ୍ତିନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗ' ନ ପାଇଲେ 'ଅଙ୍ଗ' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଟକ୍‌ଟକ୍ ସଡ଼୍‌ସଡ଼୍**—ଦେ. ଅ.—ପୂଜପୂର୍ଣ୍ଣ ବ୍ରଣ ବା ଘାଆ ଯୋଗୁଁ ଅନୁଭୂତ ତୀବ୍ର ବେଦନା—Smarting pain due to a boil or wound when filled up with undischarged pus; twitching pain.
Ṭak-ṭak sarḍ-sarḍ
ଟନ୍‌ଟନ୍
**टहक**

**ଟକ୍‌ଟକ୍ ହେବା**—ଦେ. କ୍ରି.—୧ । (ବ୍ରଣ ଓ କାକୁ ଆଦି) ପାଚି ଯାଇ ଫାଟିବା ପୂର୍ବରୁ ବେଦନାଯୁକ୍ତ ହେବା; (ଘାଆ) ବ୍ୟଥାଯୁକ୍ତ ହେବା—(a tumour or boil) To become very painful owing to accumulation of pus before bursting.
Ṭak-ṭak hebā
ଟନଟନ କରା
**टहकना**

୨ । କୌଣସି ଗୁପ୍ତ କଥା ପ୍ରକାଶ କରିବା ନିମନ୍ତେ ଅଧୀର ବା ବ୍ୟଗ୍ର ହେବା—To be impatient to speak or babble out a secret.

୩ । କୌଣସି ଲୋଭନୀୟ ବସ୍ତୁ ଖାଇବା ନିମନ୍ତେ ଅତ୍ୟନ୍ତ ଲାଳାୟିତ ହେବା; ଲାଳେଇବା—
3. To be eager or impatient to eat some particular articles; to hanker after or have a vehement hankering for some dainty food.

୪ । ଖାଇବା ପାଇଁ ଅତ୍ୟନ୍ତ ବ୍ୟଗ୍ର ବା ଚଞ୍ଚଳହେବା ·
4. To be impatient for eating.

ଟକଟକ ହଓୟା ୫ । ଘଣ୍ଟା ଆଦି ଠକ ଠକ ହୋଇ ବାଜିବା—
**खटखट होना** 5. To tick like a watch or clock

**ଟକ**—ଦେ. ବି. (ସଂ. ତକ୍ର)—୧ । ଖଟା ପଦାର୍ଥ—
Ṭaka 1. Sour or acid article.
ଟକ ୨ । କୌଣସି ବିଶେଷ ଖାଦ୍ୟ ଖାଇବା ନିମନ୍ତେ ଆଗ୍ରହାତିଶଯ୍ୟ ବା ଲାଳସା; ଟକର—2. Vehement or inordinate desire for a particular food.
**खट्टा**
ଟକର
**टकर**
(ଯଥା—ତାର ମାଛରେ ଭାରି ଟକ ।)
ଟ଼କ ଦେ. ଗୁଣ.—ଖଟା—"
**खट्टा** Acidish; sour.

**ଟକଟକା**—ଦେ. ଗୁଣ. ପୁଂ—୧ । ଖାଇବା ପାଇଁ ବ୍ୟଗ୍ର; ଲାଳାୟିତ; ଲାଳଚଥା—1. Gourmandising; having an inordinate hankering after food.
Ṭaka-ṭakā
ଉତାଲା
**उतावला** ୨ । ଲୋଭନୀୟ ତୃପ୍ତିକର ଖାଦ୍ୟ ପ୍ରତି ଲାଳସାଯୁକ୍ତ—
(ଟକଟକୀ; ଟକଟକେଇ—ସ୍ତ୍ରୀ) 2. Epicurean in diet; hankering after dainties.

୩ । ଭୁରୁଭୁରୟା; ତରତରଥା—3. Hasty; impatient

୪ । ଯେ କୌଣସି ଗୁପ୍ତ କଥା ଅପଣା ପେଟ ଭିତରେ ବହୁକାଳ ଲୁଚାଇ ନ ପାରି ପ୍ରକାଶ କରିବା ପାଇଁ ବ୍ୟଗ୍ର ହୁଏ—4. Impatient or eager to babble out or divulge a secret.

୫ । ବାବଦୂକ; ପ୍ରଗଲ୍‌ଭ; ବାଗ୍ମୀ—
5. Babbling; talkative.

**ଟକଟକିଆ**—ଦେ. ଗୁଣ. ପୁଂ—୧ । ଟକ ଟକା (ଦେଖ)
Ṭaka-ṭakiā Ṭaka-ṭakā (See)

୨ । ଲୋଭନୀୟ; ପ୍ରଲୋଭନଜନକ (ଖାଦ୍ୟ ଦ୍ରବ୍ୟ)—
2. Dainty; appetising (food).
(ଯଥା—ଟକଟକିଆ ମାଲ୍ ।)

**ଟକଟାକ୍**—ଦେ. ଅ. (ଧ୍ୱନ୍ୟନୁକରଣ)—ଟକ୍ ଟକ୍ (ଦେଖ)
Ṭaka-ṭāk Ṭak-ṭak (See)

**ଟକ ମକ**—ଦେ. ଅ. (ଧ୍ୱନ୍ୟନୁକରଣ)—ଟକ୍ ଟକ୍ (ଦେଖ)
Ṭaka-maka Ṭak-ṭak (See)

**ଟକର ଟକର**—ଦେ. ଅ (ଧ୍ୱନ୍ୟନୁକରଣ)—ଟକ୍ ଟକ୍ (ଦେଖ)
Ṭakara-ṭakara Ṭak-ṭak (See)

**ଟକର ମକର**—ଦେ. ଅ (ଧ୍ୱନ୍ୟନୁକରଣ)—ଟକ୍ ଟକ୍ ( ଦେଖ )
Ṭakara-makara Ṭak-ṭak ( See )

**ଟକରା**—ଦେ. ଗୁଣ. ପୁଂ—ଟକଲା ( ଦେଖ )
Ṭakarā Ṭakaḷā ( See )
(ଟକରୀ—ସ୍ତ୍ରୀ)

**ଟକଲା**—ଦେ. ଗୁଣ. ପୁଂ—୧ । ଯେଉଁ ଲୋକ ଖାଇବା ପାଇଁ ଅତ୍ୟନ୍ତ ଲାଳାୟିତ ବା କୌଣସି ବିଶେଷ ଖାଦ୍ୟଦ୍ରବ୍ୟ ପ୍ରତି ଅତ୍ୟନ୍ତ ଲୋଭୀ—1. Having inordinate hankering after food; impatient for food.
Ṭakaḷā
(ଟକଲୀ—ସ୍ତ୍ରୀ)

୨ । ଯେଉଁ ଲୋକ ପେଟ ଭିତରେ କୌଣସି କଥା ବହୁକାଳ ଗୋପନ କରି ରଖିପାରେ ନାହିଁ—
2. One who can not keep secrets; babbler; tattler.
**लुतरा**

**ଟକ ଲାଗିବା**—ଦେ. କ୍ରି—ଥରେ ଚାଖିବା ପରେ କୌଣସି ବ୍ୟକ୍ତିର କୌଣସି ଖାଦ୍ୟ ପଦାର୍ଥ ପ୍ରତି ବଳବତୀ ଲାଳସା ଜାତ ହେବା—Inordinate desire or hankering after a particular article of food after once tasting it.
Ṭaka lāgibā
(ଯଥା—ମୋର ଆମ୍ବରେ ଭାରି ଟକ ଲାଗିଛି ।)

**ଟକଲିଆ**—ଦେ. ଗୁଣ. ପୁଂ—ଟକଲା (ଦେଖ)
Ṭakaḷiā Ṭakaḷā
(ଟକଲେଇ-ସ୍ତ୍ରୀ)

**ଟକସର**—ଗ୍ରା. ବି. ( ସଂ. ତସ୍କର )—ତସ୍କର; ଚୋର—
Ṭakasara Thief; robber.

**ଟକାଟକ୍**—ଦେ. ବି—୧ । କୌଣସି ବିଷୟରେ ଦୁଇଜଣଙ୍କର ପରସ୍ପର ପ୍ରତିଯୋଗିତା; ପ୍ରତିଦ୍ୱନ୍ଦ୍ୱିତା; ସ୍ପର୍ଦ୍ଧା—
Ṭakāṭak 1. Emulation; rivalry.
ଟକବ
**होड़ाहोड़ी** ୨ । ଜିଦାଜିଦି; ଜିଦମସ୍ମର—
1. Envious contention; staking for competition; betting.
( ଯଥା—ସେ ଦୁହିଙ୍କର ଖେଳରେ ଭାରି ଟକାଟକ୍ ଲାଗିଛି । )
ଦେ. କ୍ରି. ବିଣ—ଟକ୍ ଟକ୍ (ଦେଖ)—Ṭak-ṭak (See).

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଡ଼ଅ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ଁ | ନ୍ |

**ଟକାଟକି**—ଦେ. ବି—ଟକାଟକ୍ ( ଦେଖ )
Takātaki — Takāṭak ( See )
ଟକ୍କରାଟକ୍କରୀ — ବିଣ—୧ । କୌଣସି କାର୍ଯ୍ୟ କମନ୍ତେ ପ୍ରତିଦ୍ୱନ୍ଦ୍ୱୀ
ହୋଡ଼ାହୋଡ଼ୀ — (ଦୁଇ ଜଣ ବ୍ୟକ୍ତି); ସ୍ପର୍ଦ୍ଧାକ୍ୟୁତ—
1. Emulating; rival.

ଦୁଇ ମନକୁ ଦୁହେଁ ଟକାଟକି
ସଲନ୍ତ ପ୍ରୀତ ଭୁଞ୍ଜ ଥାଇ ନକ । ପ୍ରାଚୀ. ରହସ୍ୟମଞ୍ଜରୀ ।

୨ । ଜିଦାଜିଦି (ହେବା ବ୍ୟକ୍ତି ଦ୍ୱୟ); ଜିଦ ବା ବାଜି ସମ୍ବନ୍ଧୀ (ହେବା ବ୍ୟକ୍ତି)—2. Staking for competition; betting

ଅନ୍ୟୋନ୍ୟରେ ସେ ଧ୍ୱଜଦ୍ୱୟ ଯୁଦ୍ଧକଳ
ବଦାବଦ୍ଧ ହେଲେ ହୋଇଣ ଟକାଟକ । କୃଷ୍ଣସିଂ ହ. ମହାଭାରତ. ଭୀଷ୍ମ ।

**ଟକ୍କର**—ଦେଶୀ. ବି. ( ଧ୍ୱନ୍ୟନୁକରଣ )—
Takkar — ୧ । ଦୁଇ ବସ୍ତୁର ପରସ୍ପରର ଧକ୍କା ଲାଗିବା ଦ୍ୱାରା
ଟକ୍କର — ଆଘାତ; ଠୋକର—1. Sudden impact;
ठोकर, टक्कर — clash; knock; rap; push.
(ଟକର—ଅନ୍ୟରୂପ) ୨ । ଟକାଟକ୍ ବା ଜିଦାଜିଦି—
2. Competition.
୩ । ପ୍ରତିଯୋଗିତା—3. Rivalry; emulation.

**ଟକ୍କର ଖାଇବା**—ଦେ. କ୍ରି—ଠୋକର ଖାଇବା; ଝୁଣ୍ଟିବା—
Takkar khāibā — To stumble; to trip.
(ଟକ୍କର ନେବା, ଟକର ଖାଇବା—ଅନ୍ୟରୂପ)
ଟକ୍କର ଖାଓୟା टक्कर खाना

**ଟକ୍କର ଦେବା**—ଦେ. କ୍ରି—ସମକକ୍ଷ ହେବା; କାର୍ଯ୍ୟକ୍ଷେତ୍ରରେ ପ୍ରତିଦ୍ୱନ୍ଦ୍ୱୀ
Takkar debā — ରୂପେ ଠିଆ ହେବା—To compete;
ଟକ୍କର ଦେଓୟା — to rival; to stand in competition with another.
टक्करदेना
(ଟକର ଦେବା—ଅନ୍ୟରୂପ)

**ଟକ୍କର ପକା(କେ)ଇବା**—ଦେ. କ୍ରି—ଟକ୍କର ଦେବା ( ଦେଖ )
Takkar pakā(ke)ibā — Takkar debā ( See )
(ଟକର ପକାଇବା—ଅନ୍ୟରୂପ)

**ଟକ୍କର ମାରିବା**—ଦେ. କ୍ରି—୧ । ପ୍ରତିଯୋଗୀ ରୂପେ ପରୀକ୍ଷାକ୍ଷେତ୍ରରେ
Takkar māribā — ଅବତୀର୍ଣ୍ଣ ହେବା—
ଟକ୍କର ମାରା — 1. To compete.
टक्कर मारना — ୨ । ବାଜି ମାରିବା—2. To stake.
(ଟକର ମାରିବା—ଅନ୍ୟରୂପ) ୩ । ଠୋକର ବା ଧକ୍କା ମାରିବା—
3. To give a rap or violent push.

**ଟକ୍ରୁ**—ସଂ. ବି—ତାକୁଡ଼ି—
Takru — Spindle.

**ଟଗର**—ସଂ. ବି—୧ । ଟାଙ୍ଗଣା ( ହି. ଶବ୍ଦସାଗର )—
Tagara — 1. Borax.

୨ । ବିଳାସ; କ୍ରୀଡ଼ା (ହି.ଶବ୍ଦସାଗର)—
2. Sport.

ଦେ ବି. ( ସଂ ତଗର )—ତରଟ ଫୁଲ; ତଗର—
Tabornamontana Coronoria; Ticoma;
ଅନ୍ୟ ସଂସ୍କୃତ ପ୍ରତିଶବ୍ଦ— a plant with white flowers
ନନ୍ଦୀବୃକ୍ଷ [ଦ୍ର—ଏହା ଦ୍ୱିବିଧ—୧—Valeriana Hardwicki;
ତଗର ୨—Taborna Montana ( ଶାର୍ଙ୍ଗିକାର ) ।
तगर, टगर ଏ ଫୁଲର କ୍ଷୁପ ୩ ହାତ ପର୍ଯ୍ୟନ୍ତ ଉଚ୍ଚ ହୁଏ । ପତ୍ର ମାଛର ଆକାର ପରି । ଗଛର ଡାଳ ଭାଙ୍ଗି ଦେଲେ କ୍ଷୀର ବହେ । ଫୁଲର ପାଖୁଡ଼ା ଧଳା । ଫୁଲର ଡେମ୍ଫ ଈଷତ୍ ହଳଦିଆ । ଫୁଲ ଦୁଇ ପ୍ରକାର । ଗୋଟିଏ ଏକ ପ୍ରସ୍ଥ ପାଖୁଡ଼ାବିଶିଷ୍ଟ ଓ ଫୁଲ ଈଷତ୍ ସୁଗନ୍ଧବିଶିଷ୍ଟ, ଅନ୍ୟଟି ବହୁ ପାଖଡ଼ାଯୁକ୍ତ ଓ ଫୁଲ ଅତ୍ୟନ୍ତ ସୁଗନ୍ଧଯୁକ୍ତ । ]

**ଟଗର ପାଦ**—ଦେ. ବି. ( ସଂ. ତଗର ପାଦ )—
Tagara pāda — ତଗର ଫୁଲ ପରି ଫୁଲବିଶିଷ୍ଟ ଜଳଜ ଲତା-
(ଟେଗରପାଦ—ଅନ୍ୟରୂପ) ବିଶେଷ—An aquatic plant whith white flowers.

**ଟଙ୍କ୍ (ଧାତୁ)**—ସଂ—୧ । ଟଂ ଟଂ ଶବ୍ଦ କରିବା—
Tank (root) — 1. To make a twanging sound.
(ଟନକ—ଅନ୍ୟରୂପ) ୨ । ବାନ୍ଧିବା; ଆବଦ୍ଧ କରିବା—
2. To confine; to bind.

**ଟଙ୍କ**—ସଂ. ବି ( ଟଙ୍କ୍ ଧାତୁ=ବାନ୍ଧିବା+କରଣ. ଅ )—
Tanka — ୧ । ପାହାଡ଼; କ୍ଷୁଦ୍ର ଶୈଳ—1. Hill
୨ । ଗଣ୍ଡ ଶୈଳ; ପର୍ବତ ଦେହରୁ ବିଚ୍ୟୁତ ବଡ଼ ପଥରଖଣ୍ଡ—
2. A block of stone separated from the main hill.
୩ । ଖଡ୍ଗ—3. Sword; scimitar.
୪ । ଟାଙ୍ଗର ଭୂମି—4. Hilly ground; rocky ground.
୫ । (+ଅଧି.ଅ) ଖଡ୍ଗକୋଷ; ଖଣ୍ଡାର ଖାପ—
5. Scabbard; sheath.
୬ । ଏକ ପ୍ରକାର ସରୁ କୋଡ଼ି; ଖଣତା—6. A spud or digging iron; a narrow-bladed spade; hoe.
୭ । କ୍ରୋଧ; ରାଗ—7. Anger; wrath.
୮ । (+କର୍ମ. ଅ) ଗର୍ବ—8. Arrogance.
୯ । ପରିମାଣବିଶେଷ; ଚାରି ମସା ପରିମାଣ; ଏକଟଙ୍କାର ଦ୍ୱିପଞ୍ଚମାଂଶ—9 A weight of 4 'masas' or 68 grains; ⅖ of a tola.

[ଦ୍ର—ସ୍ଥଳବିଶେଷରେ ଏହା ୩ ମସା ବା ୨୪ ରତି ପରିମାଣ ବୋଲି ଧରି ଯାଏ ।]

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୁଅଁ' ନ ମିଳିଲେ 'କୁଅଁ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଗିଆ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୧୦ । ଗୋଡ଼—10. The leg.
୧୧ । ମୁଦ୍ରା—11. Coin.
୧୨ । ପଥର କାଟିବାର ଅସ୍ତ୍ର; ଟାଙ୍ଗିଆ—12. Mattock; an axe used in chipping stone.
୧୩ । ରୌପ୍ୟ ମୁଦ୍ରା—13. A silver coin.
୧୪ । ଟଙ୍କା—14. A rupee.
୧୫ । ଜଙ୍ଘ—15. Thigh.
୧୬ । ଟାଙ୍ଗଣା; ସୁହାଗା—16. Borax.
୧୭ । କୁରାଢ଼ି; ପରଶୁ (ହି. ଶବ୍ଦସାଗର)— 17. Axe; hatchet
୧୮ । କୋଷ; ଧନାଗାର (ହି. ଶବ୍ଦସାଗର)— 18. Treasury.
୧୯ । ଶ୍ରୀ, ଭୈରବ ଓ କାନଡ଼ ରାଗ ଯୋଗ ହୋଇ ରଚିତ ସମ୍ପୂର୍ଣ୍ଣ ଜାତିର ରାଗିଣୀ—19. A kind of mixed musical strain.
[ଦ୍ର—ଏହା ଗାଇବାର ସମୟ ରାତି ୧୬ ଦଣ୍ଡ ଠାରୁ ୨୦ ଦଣ୍ଡ ପର୍ଯ୍ୟନ୍ତ । ଏଥିରେ କୋମଳ ଓ ଋଷଭ ସ୍ୱର ଲାଗେ । ହନୂମାନ୍‌ଙ୍କ ମତରେ ଏହାର ସ୍ୱରଗ୍ରାମ ସଗ ମପ ଧନ ସାସା (ହି. ଶବ୍ଦସାଗର)]
୨୦ । ନୀଳ କପିତ୍ଥ (ହି. ଶବ୍ଦସାଗର)— 20. The blue wood-apple.
୨୧ । ଏକ କଣ୍ଟକୀ ଗଛ ଯହିଁରେ ବେଲ ବା କଇଥ ପରି ଫଳ ଧରେ (ହି. ଶବ୍ଦସାଗର)—21. A kind of wild tree producing fruits like marmalus.

ଟକ ଦେ. ବି. (ସଂ. ତକ୍ର=ଅମ୍ଳ)—ଅମ୍ଳସ୍ୱାଦ; ଅମ୍ଳରସ; ଅମ୍ଳତା—
**খটাই, তুর্ষ** 1. Sour or acid taste; sourness.
ଟଙ୍କ ନ ଥାଇ ଟଭ, ଟାଙ୍ଗର ମୁଣ୍ଡରେ ଗଭ । ଢଗ ।

ଟକ, ଟକୋ ଦେ. ବିଣ.—ଅତ୍ୟନ୍ତ ଖଟା ଲାଗୁଥିବା; ଅତି ଅମ୍ଳ—
**তুর্ষ, খাট্টা** Very sour.

**ଟଙ୍କ ଆମ୍ବିଲା**—ଦେ. ବିଣ.—ଅତ୍ୟନ୍ତ ଖଟ୍ଟା—
Taṅka āmbiḻā Very sour.

**ଟଙ୍କକ**—ସଂ. ବି.—(ଟଙ୍କ+ସ୍ୱାର୍ଥେ. କ)—୧ । ଟଙ୍କା—
Taṅkaka 1. Rupee; silver coin,
୨ । ମୁଦ୍ରା—2. Coin.

**ଟଙ୍କକଶାଳା**—ସଂ. ବି. ସ୍ତ୍ରୀ.—ଟଙ୍କଶାଳା (ଦେଖ)
Taṅkaka-śāḻā . Taṅka-śāḻā (See)

**ଟଙ୍କଟୀକ**—ସଂ. ବି.—ଶିବ (ହି. ଶବ୍ଦସାଗର)—
Taṅkaṭīka Śiba.

**ଟଙ୍କଣ**—ସଂ. ବି.—(ଟଙ୍କ ଧାତୁ+କର୍ତ୍ତୃ. ଅନ)—୧ । ପ୍ରାବତ୍ୟ ଅଶ୍ୱ—
Taṅkaṇa 1. A horse of a hilly country.
୨ । ଟାଙ୍ଗଣା; ସୋହାଗା—2. Borax.
୩ । ଧାତୁ ଦ୍ରବ୍ୟରେ ଜୋଡ଼ ବା ଢାଳ ପକାଇ ଯୋଡ଼ିବା କର୍ମ (ହି. ଶବ୍ଦସାଗର)—3. Soldering.

୫ । (+ଭାବ. ଅନ) ବନ୍ଧନ—5. Binding.

**ଟଙ୍କଧର**—ସଂ. ବି (ଟଙ୍କ+ଧୃ ଧାତୁ=ଧରିବା+ଅ; ଟଙ୍କ ବା ପରଶୁ
Taṅka-dhara ଏହାଙ୍କ ଧୃତ ଅସ୍ତ୍ର ଥିବାରୁ; ଏହା ସଂସ୍କୃତ ଶବ୍ଦ ମାତ୍ର ଏହାର ପ୍ରୟୋଗ କେବଳ ଭାଷାରେ ଦେଖାଯାଏ)— ମହାଦେବ—Lord Śiba.
ଟଙ୍କଧର ପାଦେ ବନ୍ଦର ଯାର—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଟଙ୍କନ**—ସଂ. ବି (ଟଙ୍କ୍ ଧାତୁ+ଭାବ. ଅନ)—୧ । ଟାଙ୍ଗଣା—
Taṅkana 1. Borax.
୨ । ଉଲ୍ଲେଖ—2. Mention.
୩ । ଟଙ୍କା—3. Rupee
୪ । ବନ୍ଧନ—4. Binding.

**ଟଙ୍କପତି**—ସଂ ବି—ଟଙ୍କଶାଳାର ଅଧ୍ୟକ୍ଷ ( ହି. ଶବ୍ଦସାଗର )—
Taṅka-pati Master of a mint.

**ଟଙ୍କ ପାଣି**—ଦେ. ବି—ଖଟା ପାଣି; ଆମ୍ବିଳ ତୋରାଣୀ—
Taṅka-pāṇi Rice-water turned sour; sour liquid; fermented liquid.

**ଟଙ୍କ ବଥୁଆ**—ଦେ. ବି (ସଂ. ଟଙ୍କ+ବାସ୍ତୁକ)—ଏକପ୍ରକାର ଖଟା ବଥୁଆ
Taṅka bathuā ଶାଗ—A sour variety of Cheno-
টক বেথো podium Album (a kind of pot-herb).

**ଟଙ୍କ ମରିବା**—ଦେ. କ୍ରି—୧ । କୌଣସି ଆମ୍ବିଲା ଖାଦ୍ୟରୁ ଉପଯୁକ୍ତ
Taṅka maribā ଉପାୟ ପ୍ରୟୋଗଦ୍ୱାରା ଅମ୍ଳସ୍ୱାଦ କମିବା—
1. Disappearance or decrease of sour taste from a sour food.
( ଯଥା—ଉପଯୁକ୍ତ ପରିମାଣରେ ଲୁଣ ଦିଆ ନ ଯିବାରୁ କାଞ୍ଜି-ପାଣିରୁ ଟଙ୍କ ମରି ନାହିଁ । )
**टकोर याना** ୨ । ଅତି ଆମ୍ବିଲା ପଦାର୍ଥ ଖାଇବା ଯୋଗୁଁ ମୁଖରେ
( ଟଙ୍କ ମରିଯିବା—ଅନ୍ୟରୂପ ) ଜନ୍ମିଥିବା ବିକାର ଲୋପ ପାଇବା—
2. Disappearance of the disagreeable sensation from the mouth due to taking very sour food.
( ଯଥା—ବହୁତ ଦିନର ବସାଦହି ଖାଇଲେ ୪ ଘଣ୍ଟା ପରେ ସୁଦ୍ଧା ମୁହଁରୁ ଟଙ୍କ ମରେ ନାହିଁ । )

**ଟଙ୍କ ମାରିବା**—ଦେ. କ୍ରି—୧ । କୌଣସି ଜଳୀୟ ପଦାର୍ଥ ବାସି ରହି
Taṅka māribā ଆମ୍ବିଲା ହୋଇଯିବା ( ଯଥା—ତୋରାଣୀ; କାଞ୍ଜି )—1. To turn sour ( said of some liquids e, g. stale rice-water ).
টকা ଦେ. କ୍ରି—୨ । ଅମ୍ଳରସ ଯୋଗୁଁ ଦାନ୍ତରେ ଦୁଃଖ ବା ବିକାର
**टकोरना, दाँत उठना** ବୋଧ ହେବା ( ଯଥା—ଦାନ୍ତ )—
2. A feeling of sourness ( in the mouth ) by tasting stale and sour food.
( ଯଥା—ବାସି ପଖାଳ ଖାଇଁ ମୋ ଦାନ୍ତ ଟଙ୍କ ମାରି ଗଲାଣି । )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ଊଅ | ଣ୍ଣ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ତ |

**ଟଙ୍କଶାଳା**—ସଂ. ବି. ସ୍ତ୍ରୀ—ଟାଙ୍କଶାଳା; ଯେଉଁ କାର୍ଯ୍ୟାଳୟ ବା କାରଖାନାରେ ମୁଦ୍ରା ପ୍ରସ୍ତୁତ ହୁଏ—Mint,
Taṅka-śāḻā

**ଟଙ୍କା**—ସଂ. ବି. ସ୍ତ୍ରୀ. (ଟଙ୍କ୍ ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ. ଆ)—୧ । ଜଙ୍ଘ—1. Thigh.
Taṅkā

୨ । ଏକ ତୋଳା ଓଜନର ପ୍ରାଚୀନଭାରତର ରୌପ୍ୟମୁଦ୍ରା—2 A silver coin current in ancient India

୩ । ପ୍ରାଚୀନକାଳର ତାମ୍ରମୁଦ୍ରାବିଶେଷ (ହି. ଶବ୍ଦସାଗର)—3, A copper coin current in ancient India.

ଦେ. ବି—୧ । ଷୋଳ ଅଣା ବା ପୂର୍ଣ୍ଣମାତ୍ରା ପରିମାଣ—1. Sixteen annas; full measure.

୨ । ଭାରତରେ ପ୍ରଚଳିତ ଏକ ତୋଳା ପରିମିତ ରୌପ୍ୟ ମୁଦ୍ରା—2. Rupee.

ଅନ୍ଧେର ନଗରରେ ବେବୁଝ ରଜା
ଟଙ୍କା ସେର ଭଜା, ଟଙ୍କା ସେର ଖଜା—ଢଗ ।

[ ଦ୍ର—ପ୍ରାଚୀନକାଳରେ ଭାରତରେ **ଟଙ୍କା** ନାମରେ ଯେଉଁ ରୌପ୍ୟ ମୁଦ୍ରା ଚଳୁଥିଲା ତାହାର ଏକ ତୋଳା ଓଜନ ଥିଲା । ଇଂରାଜ ଗଭର୍ଣ୍ଣମେଣ୍ଟଙ୍କ ଅମଳରେ ପ୍ରଚଳିତ ଟଙ୍କା ମଧ୍ୟ ଏକ ତୋଳା ବା ୧୮୦ ଗ୍ରେନ୍ ଓଜନ ଅଟେ । ଏଥିରେ ୧୧ ଭାଗ ରୁପା ଓ ୧ ଭାଗ ତମ୍ବା ଥାଏ; ବର୍ତ୍ତମାନ ପ୍ରଚଳିତ ୧ ଟଙ୍କା=୧୬ ଅଣା ବା ୧୬ଟି ଅଣି=୮ ଦୋଅଣି=୪ ସୁକି=୨ ଅଧୁଲି=୩୨ ଦୋପଇସା=୬୪ ପଇସା=୧୨୮ ଅଧଲା=୧୯୨ ପାହୁ ବା ପାହୁଲା; ଏଥିମଧ୍ୟରୁ ପାହୁଲା, ଅଧଲା, ପଇସା ଓ ଦୋପଇସା ତାମ୍ରନିର୍ମିତ । ଅଣି, ଦୋଅଣି, ସୁକି ଓ ଅଧୁଲି ନିକେଲ୍ ଧାତୁ ନିର୍ମିତ । ଦୋଅଣି, ସୁକି ଓ ଅଧୁଲି ମଧ୍ୟ ରୌପ୍ୟନିର୍ମିତ । ବାଲେଶ୍ୱରୀସେର=୮୦ ଟଙ୍କା; କଟକୀ ସେର=୧୦୫ ଟଙ୍କା । ]

টাকা ୩ । ଧନ; ଅର୍ଥ—1. Riches; money.
**टका; रुपैया** ୪ । ନଗଦ ମୁଦ୍ରା—4. Hard cash; cash.
টাঁকা ୫ । ଲୁଗାକୁ ସିଲାଇ କରିବା; ଟାଙ୍କା ମାରିବା—5. Stiching; stich.
**टाँका**

**ଟଙ୍କା(ଙ୍କେ)ଇବା**—ଦେ. କ୍ରି—ଟାଙ୍କିବା କ୍ରିୟାର ଣିଜନ୍ତ ରୂପ—The causative form of 'ṭaṅkibā'.
Taṅkā(ṅke)ibā
টাঁকান, **टाँकवाना**

**ଟଙ୍କାଏ କାନ୍ତର**—ଦେ. ବି—ପ୍ରାୟ ଏକ ଟଙ୍କା; ଏକ ଟଙ୍କା ବା ତହିଁରୁ କିଛି କମି ବା ବେଶି ଧନ—About a rupee; a rupee or so.
Taṅkāe kāntara
টাকাখানিক

( ଯଥା—ବର୍ତ୍ତମାନ ଟଙ୍କାଏ କାନ୍ତର ହେଲେ ମୋ କାମ ଚଳିଯିବ । )

(ଟଙ୍କାଏ ଖଣ୍ଡେ; ଟଙ୍କାଏ ମଣାଏ—ଅନ୍ୟରୂପ)

**ଟଙ୍କା କଉଡ଼ି**—ଦେ. ବି (ସହଚର ଶବ୍ଦ; ସଂ. ଟଙ୍କା + କପର୍ଦ୍ଦିକା)—ଟଙ୍କା ଟୋକର (ଦେଖ)
Taṅkā kauṛi Taṅkā ṭokara (See).

**ଟଙ୍କାକିଆ**—ଦେ. ବିଣ—୧ । ଯାହାର ମୂଲ୍ୟ ଏକ ଟଙ୍କା ମାତ୍ର—1. Of the value of one rupee.
Taṅkākiā
টাকাকিয়া ୨ । ଯାହାର ପ୍ରତ୍ୟେକର ମୂଲ୍ୟ ଏକ ଟଙ୍କା—2. Worth one rupee each.
(ଟଙ୍କିକିଆ—ଅନ୍ୟରୂପ)

**ଟଙ୍କା ଗଛ**—ଦେ. ବି (ଯେଉଁ ଗଛରେ ଟଙ୍କା ଫଳେ)—
Taṅkā gachha ( ଲକ୍ଷଣାର୍ଥ ) ୧ । ଧନୋପାର୍ଜକ ବ୍ୟକ୍ତି—
টাকার গাছ (figurative) 1. Earner; one who earns money (of. Pagoda-tree).
**रुपैयाका झाड़**

(ଯଥା—ଅର୍ଜନକାରିଆ ପୁଅ ମୋର ଟଙ୍କା ଗଛ । )

୨ । ଯେଉଁ ବ୍ୟକ୍ତିଠାରୁ କୌଣସି ବ୍ୟକ୍ତି ପ୍ରଚୁର ପରିମାଣରେ ଧନ ପାଏ—2 A person from whom another gets much money.

**ଟଙ୍କା ଗଣିବା**—ଦେ. କ୍ରି—୧ । ମୁଦ୍ରାକୁ ସୁମାରି କରିବା—1. To count money.
Taṅkā gaṇibā
টাকা গুনা ୨ । (ଲକ୍ଷଣାର୍ଥ) ନଗଦ ଅର୍ଥ ବା ମୁଦ୍ରା ଦେବା—2. (figurative) To pay cash.
**रुपैया गीनना**

( ଯଥା—ଆମ ଗ୍ରାମର ରାମ ସାହୁ ଦଶ ହଜାର ଟଙ୍କା ଗଣିଦେବ । )

୩ । ଧନ ବ୍ୟୟ କରିବା—3. To spend money.
(ଯଥା—ବୃଥା ପୁଳାଏ ଟଙ୍କା ଗଣି ମୁଁ ପୁଅକୁ ପଢ଼େଇଲି । )

**ଟଙ୍କା ଟଙ୍କି**—ଦେ. ବି ( ଧ୍ୱନ୍ୟନୁକାରୀ ଦ୍ୱିତୀୟ ଶବ୍ଦ )—ଟଙ୍କା ଫଙ୍କା (ଦେଖ)
Taṅkā ṭaṅki
টাকাটুকি 1. Taṅkā phaṅkā (See).

( ଯଥା—ମୁଁ ଅନେକ ଦିନ ହେଲା ଶ୍ୱଶୁର ଘରେ ଅଛି, ମୋ ହାତକୁ ଟଙ୍କାଟଙ୍କି କାହୁଁ ଆସିବ । )

(ଟଙ୍କାଟଙ୍କି—ଅନ୍ୟରୂପ)
টাঁকাটুঁকী ୨ । ବହୁବାର ଟାଙ୍କିବା କର୍ମ—2. Several acts of stitching.
**टंकाइ**

**ଟଙ୍କା ଟୋକର**—ଦେ. ବି (ସହଚର ଶବ୍ଦ)—ଧନ; ଅର୍ଥ—Riches; money (generally.)
Taṅkā ṭokara
টাকাকড়ি × ଟଙ୍କାଟୋକର ଗଣିନେଇ × ଲଙ୍ଗର ଉଠେଇଦେଲୁ ।
**रुपैआपैसा** ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଟଙ୍କା ପଇସା**—ଦେ. ବି (ସହଚର ଶବ୍ଦ)—ଟଙ୍କା ଟୋକର (ଦେଖ)
Taṅkā paisā Taṅkā ṭokara (See).

**ଟଙ୍କା ଫଙ୍କା**—ଦେ. ବି ( ଟଙ୍କା ଶବ୍ଦ ଓ ତାହା ସଙ୍ଗେ ଧ୍ୱନ୍ୟନୁକାରୀ ନିରର୍ଥକ ଫଙ୍କା ଶବ୍ଦ)—
Taṅkā phaṅkā
টাকা ফাকা, টাকা মাকা ୧ । ଅର୍ଥ ଇତ୍ୟାଦି; ଧନ—1. Riches; money etc.
**रुपौया उपौया**

୨ । ମୁଦ୍ରା—2. Coins (generally).

**ଟଙ୍କା ବନ୍ଧା(ନ୍ଧେ)ଇବା**—ଦେ. କ୍ରି—୧ । ଅପଣା ପାଖରେ ଥିବା ପଇସା ଓ ରେଜକିମାନଙ୍କୁ ବଦଳାଇ ସେହି ମୂଲ୍ୟର ଟଙ୍କା ଆଣିବା—1. To get pice and other small coins changed into rupees.
Tanka bandhā(ndhe)ibā
টাকা বাঁধান
**रुपैया बंधाना**
୨ । ଅପଣା ପାଖରେ ଥିବା ଟଙ୍କାମାନଙ୍କୁ ବଦଳାଇ ତଦ୍‌ବଦଳରେ ମୋହର ବା କରେନ୍ସି ନୋଟ୍ ଆଣିବା—2. To get rupees changed into gold coins or currency notes.

**ଟଙ୍କା ବାନ୍ଧିବା**—ଦେ. କ୍ରି—ଆପଣାର ଦେୟ ଧନ ( ଯଥା—ଜମିଦାରଙ୍କ ଦେୟ ଖଜଣା ) ଦାଖଲ କରିବା ପାଇଁ ସଂଗ୍ରହ କରିବା—1. To collect sufficient money to pay one's dues.
Tanka bāndhibā
টাকা বাঁধা
**रुपैया बांधना**
୨ । ଆପଣାର ଦେୟ ଧନ ଅଭିପ୍ରେତ ବ୍ୟକ୍ତିଙ୍କ ନିକଟରେ ଦାଖଲ କରିବା—2. To pay or deposit one's dues at its destination.
୩ । ଆବଶ୍ୟକୀୟ ଧନ ସଙ୍ଗରେ ନେବା—3. To have with one's self money sufficient for the intended purpose.

**ଟଙ୍କାବାଲା**—ଦେ. ଣ. ପୁଂ—ଧନୀ; ଧନବାନ୍—Rich.
Tankā-bālā
টাকাবালা, **टकेवाला**
(ଟଙ୍କାବାଲୀ—ସ୍ତ୍ରୀ)

**ଟଙ୍କା ଭଙ୍ଗା (ଙ୍ଗେ)ଇବା**—ଦେ. କ୍ରି—ଆପଣା ପାଖରେ ଥିବା ଟଙ୍କାକୁ ବଦଳାଇ ତଦ୍‌ବଦଳରେ କ୍ଷୁଦ୍ରତର ମୁଦ୍ରା ଆଣିବା—To get the rupee changed into small coins.
Tankā bhangā(nge)ibā
টাকা ভাঁগান
**रुपैया तुड़वाना**

**ଟଙ୍କା ଭଙ୍ଗେଇ**—ଦେ. ବି—୧ । ଟଙ୍କାକୁ କ୍ଷୁଦ୍ରତର ମୁଦ୍ରାରେ ବଦଳ କରାଇବା କର୍ମ—1 Change of a rupee into small coins.
Tankā bhangei
টাকা ভাঙ্গাই
୨ । ଟଙ୍କା ପରିବର୍ତ୍ତେ କ୍ଷୁଦ୍ରତର ମୁଦ୍ରା ବଦଳାଇ ଦେବାବାଲା ବ୍ୟକ୍ତିକୁ ଯେଉଁ କମିସନ୍ ବା ବଟ୍ଟା ଦିଆଯାଏ—2. Commission paid for getting a rupee exchanged into small coins.

**ଟଙ୍କାର**—ସଂ. ବି ( ଟନ୍=ଅନୁକରଣ ଶବ୍ଦ+କୃ ଧାତୁ+ଭାବ. ଅ )—
Tankāra ୧ । ଧନୁ ଓଟାର ଛାଡ଼ିବାର ଟଂ ଟଂ ଶବ୍ଦ; ଧନୁକର ଜ୍ୟା ଶବ୍ଦ—1. The twang of a bow-string.
୨ । ତାରରେ ଆଙ୍ଗୁଠି ମାରିବା ଶବ୍ଦ—
2. The sound produced by striking a string.
୩ । ଟଂ ଟଂ ଶବ୍ଦ; ଠଣ ଠଣ ଶବ୍ଦ; ଧାତୁଖଣ୍ଡରେ ଅଘାତ ଲାଗିବାଦ୍ୱାରା ଉତ୍ପନ୍ନ ଶବ୍ଦ—3. Metallic clang.
୪ । ଯଶଃ; ଖ୍ୟାତି—4. Fame; reputation.
୫ । ବିସ୍ମୟ; ଆଶ୍ଚର୍ଯ୍ୟ—5. Surprise; wonder
ବିଣ—ଟଙ୍କାରଯୁକ୍ତ; ଟଙ୍କାର ଶବ୍ଦଯୁକ୍ତ—Twanging.

**ଟଙ୍କା ରକ୍ମୀ ଜମା**—ଦେ. ବି—ଜମିଉପରେ ଧାର୍ଯ୍ୟହେବା କାଳ୍ପନିକ ଖଜଣା—An imaginary assessment of rent on holdings.
Tankā rakmī jamā
[ ଦ୍ର—ମୋଗଲ୍‌ମାନଙ୍କ କାଗଜପତ୍ରରେ ତୋଡ଼ରମଲଙ୍କ ଓଡ଼ିଶାର ଭୂରାଜସ୍ୱ ବନ୍ଦୋବସ୍ତ ସମ୍ପର୍କରେ ଦୁଇପ୍ରକାର ଜମାର ଉଲ୍ଲେଖ ଥିଲା । 'ଟଙ୍କାରକ୍ମୀ' ନାମରେ ଏବଂ ଦ୍ୱିତୀୟଟି 'ଜମ୍ ହିଲ୍' ନାମରେ ପ୍ରକାଶିତ ହୋଇଥିଲା । ପ୍ରଥମଟି କାଳ୍ପନିକ ଏବଂ ଦ୍ୱିତୀୟଟି ସଂଶୋଧିତ ଜମା । ଜଗବନ୍ଧୁ. ପ୍ରାଚୀନ ଉତ୍କଳ । ]

**ଟଙ୍କାରିତ**—ସଂ. ବିଣ ( ଟଙ୍କାର+ଯୁକ୍ତାର୍ଥେ. ଇତ )—
Tankārita ଟଙ୍କାର ଶବ୍ଦଯୁକ୍ତ (ଧନୁ)—Twanged (bow); emitting a twanging sound.

**ଟଙ୍କାରିବା**—ଦେ. (ପଦ୍ୟ) କ୍ରି ( ସଂ. ଟଙ୍କାର )—ଟଂ ଟଂ ଶବ୍ଦ କରି ଧନୁକୁ ଓଟାରିବା—To draw the bow with a twang.
Tankāribā
টঙ্কারা, **टंकारना**

**ଟଙ୍କାରୀ**—ସଂ. ବି. ସ୍ତ୍ରୀ—୧ । ତାନ୍ତ୍ରିକଦେବୀ; ତନ୍ତ୍ରୋକ୍ତ ଦଶମହାବିଦ୍ୟାଙ୍କ ମଧ୍ୟରୁ ଏକ—1. One of the 10 'Mahābidyās' or Goddesses mentioned in the 'Tantras'.
Tankārī
୨ । ଡଙ୍କାରି (ଦେଖ)—2. Dankāri (See).

**ଟଙ୍କାଶାଲ**—ଦେ. ବି. ( ସଂ. ଟଙ୍କଶାଲା )—ଟଙ୍କଶାଳା ( ଦେଖ )
Tankā-sāla Tanka-sālā ( See )

**ଟଙ୍କାଶାଳା**—ଦେ. ବି. ( ସଂ. ଟଙ୍କଶାଳା )—ଟଙ୍କଶାଳା ( ଦେଖ )
Tankā-sālā Tanka-sālā ( See )
টাকশালা **टकशाल**

**ଟଙ୍କା ସୁନା**—ଦେ. ବି. ( ସହଚର ଶବ୍ଦ )—ଟଙ୍କା ଟୋକର ( ଦେଖ )
Tankā sunā Tankā tokara ( See)

**ଟଙ୍କି**—ଦେ. ବି. ( ସଂ. ଟଙ୍କା )—୧ । ଲାଖରାଜ ଭୂମି ନିମନ୍ତେ ଲାଖରାଜଦାରମାନେ ସରକାରଙ୍କୁ ଦେବା ନିରୂପିତ ସାମାନ୍ୟ ରାଜକର—1. Nominal or quit-rent paid by holders of revenue-free grants.
Tanki
[ଦ୍ର—ଓଡ଼ିଶାର ରାଜାମାନେ ବ୍ରାହ୍ମଣଶାସନମାନ ବସାଇ ବ୍ରାହ୍ମଣମାନଙ୍କୁ ଯେଉଁ ଭୂ-ବୃତ୍ତି ଦାନ କରିଥିଲେ ତାହା ଉପରେ ନାମମାତ୍ର କର ଧାର୍ଯ୍ୟ କରିଥିଲେ (ଯଥା—ଏକ ବାଟିକୁ ଟଙ୍କାଏ ଲେଖାଏଁ ) ଓ ଉକ୍ତ ଜମିମାନଙ୍କର ଟଙ୍କି ଖଜଣା ଚିରକାଳ ସକାଶେ ଅପରିବର୍ତ୍ତନୀୟ ହୋଇ ରହିବ ବୋଲି ଗ୍ରହୀତାମାନଙ୍କୁ ସନନ୍ଦ ମିଳିଥିଲା । ଇଂରାଜ ସରକାର ଓଡ଼ିଶା ରାଜସ୍ୱ ବନ୍ଦୋବସ୍ତବେଳେ ସନନ୍ଦମାନ ପରୀକ୍ଷା କରି ଉକ୍ତ ସନନ୍ଦମାନ ଅନୁମୋଦନ କରିଅଛନ୍ତି । ]

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇମ୍ପ | ଉଅ | ଲ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଢ଼ | ନ |

୨ । ଯେଉଁ ଲାଖରାଜ ବୃତ୍ତି ଉପରେ ଟଙ୍କି କର ନିର୍ଦ୍ଧାରିତ ଅଛି—2. Revenue-free holding held on quit-rent.

ବିଣ—୧ । ଯେଉଁ ଜମି କମନ୍ତେ ଟଙ୍କି ଖଜଣା ଦେୟ ଅଟେ 1 ( land ) Held on payment of a nominal rent.

୨ । ଯେଉଁ ରାଜସ୍ୱ ନାମମାତ୍ର ବା ଟଙ୍କିରୂପେ ନିର୍ଦ୍ଧାରିତ (ଯଥା—ଟଙ୍କି ଖଜଣା )—2. (sum) Paid in the shape of quit-rent; nominal ( rent ).

[ ଦ୍ର—ଟଙ୍କି ଅନେକ ପ୍ରକାର ଅଛି; ଯଥା—ବାଟୀଟଙ୍କି, ବାହେଲ ଟଙ୍କି, ଟଙ୍କି ବାଯ୍ୟାପ୍ତି, ଦେବୋତ୍ତର ଟଙ୍କି, ବ୍ରହ୍ମୋତ୍ତର ଟଙ୍କି ଇତ୍ୟାଦି । ]

**ଟଙ୍କିଆ**—ଦେ. ବିଣ. ( ସଂଖ୍ୟାବାଚକ ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ )—
Ṭaṅkiā ଯହିଁର ମୂଲ୍ୟ ବା ପରିମାଣ ଏତେ ଟଙ୍କା ଅଟେ—
টাকার Worth so many rupees.
**रुपैयाका** ( ଯଥା—ଦଶଟଙ୍କିଆ ନୋଟ, ପାଞ୍ଚଟଙ୍କିଆ ଯୋଡ଼ି, ଆଠ ଟଙ୍କିଆ ଚୂଡ଼ି । )

ପ୍ରାଦେ. ବିଣ. ( ଗଡ଼ଜାତ )—ଖରାପ ଗନ୍ଧ ବା ବାସନାଯୁକ୍ତ ( ବାସି ତୋରାଣି ବା ଭାତ )—
Stale and bad-smelling ( food ).
( ଯଥା—ଏ ଭାତ ଭାରି ଟଙ୍କିଆ ବାସୁଛି । )

**ଟଙ୍କିଆଣ**—ଦେ. ବିଣ—ଯେଉଁ ଜମି ପାଇଁ ଟଙ୍କି ଖଜଣା ଦିଆଯାଏ—
Ṭaṅkiāṇa ( land ) Paying Ṭaṅki or quitrent.

**ଟଙ୍କିକା** - ସଂ. ବି. ( ଟଙ୍କ + ସ୍ୱାର୍ଥେ, କ + ସ୍ତ୍ରୀ. ଆ )—ପଥର କାଟିବାର
Ṭaṅkikā ଟାଙ୍ଗିଆ—Hatchet for chipping stones.

**ଟଙ୍କିକିଆ**—ଦେ. ବିଣ—ଟଙ୍କାକିଆ ( ଦେଖ )
Ṭaṅkikiā Ṭaṅkākiā ( See )

**ଟଙ୍କିଛାଡ଼ ପରୁଆନା**—ଦେ. ବି—ଟଙ୍କି ବା ଖଜଣା ଛାଡ଼ ହେବାର
Ṭaṅki-chhārda paruānā ଆଦେଶପତ୍ର—An order
ଟଙ୍କି ଛାଡ଼ ପରୱାନା } ଅନ୍ୟରୂପ
ଟଙ୍କି ଛାଡ଼ ପରବାନା }
issued by a proper authority sanctioning the exemption of a land from payment of quit-rent.

**ଟଙ୍କିଜମା**—ଦେ. ବି—ଟଙ୍କି ବୃତ୍ତି ଉପରେ ନିର୍ଦ୍ଧାରିତ ଚିରସ୍ଥାୟୀ ନାମମାତ୍ର
Ṭaṅki-jamā ଖଜଣା—Quit-rent fixed in perpetuity on Ṭaṅki lands.

**ଟଙ୍କିତ**—ସଂ. ବିଣ. ( ଟଙ୍କ୍ ଧାତୁ + କର୍ମ. ତ )—୧ । ଧ୍ୱନିତ—
Ṭaṅkita 1. Twanging; sounding; resounding.
୨ । ଉଲ୍ଲିଖିତ—2. Written; enunciated; defined; mentioned.
୩ । ବନ୍ଧା ହୋଇଥିବା; ବଦ୍ଧ—2. Bound.
୪ । ସିଲେଇ କରା ଯାଇଥିବା—4. Stitched.

**ଟଙ୍କିଦାର୍(ର)**—ଦେ. ବି—ଟଙ୍କି ଖଜଣା ଦିଆଯିବା ବୃତ୍ତିର ଅଧିକାରୀ—
Ṭaṅkidār(ra) Holder of a tenure paying quit-rent.
[ଦ୍ର—ଯେଉଁ ଲାଖରାଜଦାରମାନେ ପ୍ରଥମରୁ ନିର୍ଦ୍ଧାରିତ ନାମମାତ୍ର ରାଜସ୍ୱ (ଟଙ୍କି) ଆଜି ପର୍ଯ୍ୟନ୍ତ ଦେଇ ଆସୁଅଛନ୍ତି ସେମାନଙ୍କୁ ବାହେଲ ଟଙ୍କିଦାର Confirmed Ṭaṅkidārs ଓ ଯେଉଁମାନଙ୍କର ସନନ୍ଦ ଆଦି ସନ୍ଦେହଜନକ ଥିବାରୁ ସେମାନଙ୍କର ଟଙ୍କି ଜମା ପରେ ସରକାର ବୃଦ୍ଧି କରିଅଛନ୍ତି ସେମାନଙ୍କୁ ବାଯ୍ୟାପ୍ତି ଟଙ୍କିଦାର Resumed Ṭaṅkidārs ବୋଲାଯାଏ । ]

**ଟଙ୍କି ବାଯ୍ୟାପ୍ତି**—ଦେ. ବି—ଯେଉଁ ଟଙ୍କି ଜମିର ସନନ୍ଦ ଦେଖି ଇଂରାଜ
Ṭaṅki bājyāpti ସରକାର ସନ୍ତୁଷ୍ଟ ନ ହୋଇ ସେ ଜମି ଉପରେ
( ଟଙ୍କି ବାଜଆପ୍ତି—ଅନ୍ୟରୂପ ) ଅଧିକା ଖଜଣା ବସାଇ ଅଛନ୍ତି—
Resumed Ṭaṅki lands

**ଟଙ୍କି ବାହେଲ୍**—ଦେ. ବି—ଯେଉଁ ଟଙ୍କି ଜମିମାନଙ୍କ ସନନ୍ଦ ପରୀକ୍ଷା
Ṭaṅki bāhel କରି ସରକାର ବାହାଦୁର ତାହା ଅନୁମୋଦନ
ଟଙ୍କି ବାହଲ୍(ଲ) } ଅନ୍ୟରୂପ
ଟଙ୍କି ବାହେଲ }
କରିଅଛନ୍ତି—Confirmed Ṭaṅki tenures.
( ଯଥା—ଏହା ଦୁଇ ଶ୍ରେଣୀର—ଦେବୋତ୍ତର ଟଙ୍କି ବାହେଲ ଓ ବ୍ରହ୍ମୋତ୍ତର ଟଙ୍କି ବାହେଲ । )

**ଟଙ୍କିବାହେଲ ଫଏସଲା**—ଦେ. ବି—ଯେଉଁ ଆଦେଶଦ୍ୱାରା ଟଙ୍କି ବୃତ୍ତି ସବୁ
Ṭaṅki-bāhel phaesalā ଇଂରାଜ ଗଭର୍ଣ୍ଣମେଣ୍ଟଙ୍କଦ୍ୱାରା ଅନୁମୋଦିତ ହୋଇଅଛି—Judgment confirming Ṭaṅki tenures.

**ଟଙ୍କିଲ**—ସଂ. ବିଣ.(ଟଙ୍କ୍ ଧାତୁ + ଇଲ)—ପାହାଡ଼ିଆ; ଠାଙ୍ଗର (ପ୍ରଦେଶ)—
Ṭaṅkila Hilly; stony; rocky; mountainous (tract).
ଦେ. ବିଣ—ଖଟାଳିଆ—Sour.

**ଟଙ୍କୀ**—ସଂ. ବି—ଶ୍ରୀରାଗର ରାଗିଣୀବିଶେଷ ( ହି. ଶବ୍ଦସାଗର )—
Ṭaṅkī Name of a secondary musical air.

**ଟଙ୍କୁରିତ**—ଦେ. ବି—୧ । ରୋମାଞ୍ଚିତ—
Ṭaṅkurita With hairs standing on end.
୨ । ଠାଙ୍କୁରି ଥିବା (ଲୋମ)—2. Bristling (hairs).

**ଟଙ୍କୁରିବା**—ଦେ. କ୍ରି—ଠାଙ୍କୁରିବା ( ଦେଖ )
Ṭaṅkuribā Ṭāṅkuribā ( See )

**ଟଙ୍କେ**—ଗ୍ରା. ବି—ଟଙ୍କାଏ; ଏକଟଙ୍କା ମାତ୍ର—
Ṭaṅke One rupee only.

**ଟଙ୍କେଇତ**—ଦେ. ବିଶେ. ପୁଂ—ଧନଶାଳୀ—
Ṭaṅkeita Rich; owning a large cash.
টাকাওয়ালা **टकैत**
(ଟଙ୍କେଇତୀ - ସ୍ତ୍ରୀ)

**ଟଙ୍ଗ**—ସଂ. ବି. ( ଟଙ୍କ୍ ଧାତୁ + କରଣ. ଅ )—
Ṭaṅga ୧ । ଟାଙ୍ଗିଆ—1. Hatchet.
୨ । ସୋହାଗା—2. Borax.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; ଅଙ୍କ ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୩ । ଖଣତା—3 Hoe; spud.

୪ । ଜଙ୍ଘ; ଫଳ୍ଦିଆ—4. Thigh; part of the leg between the knee and buttock.

୫ । ୪ ମଷା ପରିମାଣ—
5. A standard of weight; 68 grains troy.

୬ । ଗୋଡ଼ର ପେଣ୍ଡୁ ( ହି. ଶବ୍ଦସାଗର )—
6. The calf of the leg.

ଦେ. ବିଣ. ( ସଂ. ଭୁଗ୍ନ ଓ ଫା. ତଙ୍ଗ୍ = ଠାଣୁଆ, ସିଧା )—
टङ्ग ୧ । ସଙ୍କୋଚ—1. Heighest.
तङ्ग ( ଯଥା—ଠଙ୍ଗ ଡାଳରେ ଅମ୍ବ ଅଛି । )

୨ । ଦୁଇ ପାଖ ଭୂମିରେ ଠିକ୍ ମତେ ନ ଲାଗି ମଝିଟା ଲାଗିଥିବାରୁ ହଲଚଲ ହେଉଥିବା ( ପଥର ଆଦି )—
2. Not securely set; bobbing (as an uneven stone when set on the ground); touching the ground in the middle but not at both ends.

୩ । ଟଙ୍ଗ; କ୍ରୋଧ ଦ୍ୱାରା ଯାହାର ଦେହ ଉନ୍ନତ ବା ସିଧା ହୋଇଅଛି—3 With the body stiffened with anger.

୪ । ଉଦ୍ଧତ ( ଲିଙ୍ଗ )—
4. Stiffened and erect ( male organ ).

୫ । ଦୃଢ଼—5. Stiff.

ଠଙ୍ଗଠଙ୍ଗ—ଦେ. ଅ. ( ସଂ. ତଙ୍ଗ ଧାତୁ = କମ୍ପନ ବା ପଦସ୍ଖଳନ; Tanga-tanga ଯୋଗେଶ୍ଚନ୍ଦ୍ର )—୧ । ସାଧାରଣ ଭାବରେ ଗୋଡ଼
टङ्गस् टङ्गस् ଉଠାଇ ଦେହକୁ ସିଧା କରି ପଦ କ୍ଷେପ କରି
डग ଚାଲିବା ପ୍ରକାରେ ( ଅନାସ୍ଥା ବା ଗର୍ବ ପ୍ରକାଶ କରି (ଟଙ୍ଗରଟଙ୍ଗର—ଅନ୍ୟରୂପ) ବା ଖାତିର ନକରି ଚାଲିଯିବା ପ୍ରକାରେ ।
1. In a striding or stalking manner; ( indicating pride or unconcern ).
( ଯଥା—ସେ ମୋ କଥା ନ ଶୁଣି ସେଠାରୁ ଠଙ୍ଗଠଙ୍ଗ ଚାଲିଗଲା । )

୨ । ଜମିକୁ ଗହିରିଆ ଚାଷ ନ କରି ଉପରଠାଉରିଆ କରି ହଳ ବୁଲାଇବା ପ୍ରକାରେ—2. Superficially; not deeply ( as in ploughing ).

ବାଲ୍ମଣ ଚାଷ ହଳ ଠଙ୍ଗଠଙ୍ଗ ଉପରେ ଘାସ । ଡାକ ।

୩ । ପଥର ଓ କାଠ ଗଡ଼ ଇତ୍ୟାଦିର ଦୁଇ ପାଖ ଓ ମଧ୍ୟଭାଗ ଭୂମିରେ ସମାନ ହୋଇ ନ ବସିବାରୁ ମଝିଟା ଭୂମିରେ ଲାଗିଥାଇ ଏ ପାଖ ସେ ପାଖ ନ ଲାଗିବା ପ୍ରକାରେ—
3. Unevenly (set) ( said of a stone or log ).

୪ । ଟଂ ଟଂ (ଦେଖ)—4 Tam tam (See)

ଠଙ୍ଗଠାଙ୍ଗ୍—ଦେ. ଅ. ( ଧ୍ୱନ୍ୟନୁକରଣ )—୧ । ଟଂ ଟଂ ଶବ୍ଦ କରିବା Tang-tang ପ୍ରକାରେ ( ଯଥା—ଘଣ୍ଟ ବାଜିବା; ବେହେଲା ତାର ବାଜିବା )—1. Making a twang or chiming sound.

୨ । ଠଙ୍ଗଠଙ୍ଗ ( ଦେଖ )—2. Tanga-tanga ( See )

ଠଙ୍ଗଣ—ସଂ. ବି. ( ଟଙ୍କ ଧାତୁ + କର୍ତ୍ତୃ. ଅନ )—
Tangana ୧ । ଟାଙ୍ଗଣ; ସୋହାଗା—1. Borax.

୨ । ଜଡ଼ା ହେବା; ସଂଲଗ୍ନ କରାଯିବା ( ହି. ଶବ୍ଦସାଗର )—
2. To be stuck to.

ଠଙ୍ଗଣ ମଙ୍ଗଣ ହେବା—ଦେ. କ୍ରି—୧ । ଏପାଖ ସେପାଖ ଯିବା ଆସିବା Tangana mangana heba କରିବା—1. To come and
টোটো করে বেড়ান go; to walk about.
टकराते फिरना, ୨ । କିଛି କାର୍ଯ୍ୟ ନ ଥାଇ ଏ ପାଖରୁ ସେପାଖ
टक्कर खाना, डग मारना ଚାଲିବା ବୁଲିବା; ଚାଲିଯିବା ଓ ଚାଲି ଆସିବା-2. To take a walk up and down without having any particular object or aim; to loaf about; to wander aimlessly.

ଠଙ୍ଗ ମଙ୍ଗ ହେବା—ଦେ. କ୍ରି—ଠଙ୍ଗଣ ମଙ୍ଗଣ ହେବା ( ଦେଖ )
Tanga manga heba Tangana mangana heba(See)

ଠଙ୍ଗା—ଦେ. ବି. ( ସଂ. ଟଙ୍କ୍ ଧାତୁ = ବାନ୍ଧିବା; ତୁଳ. ସଂ. ତୁଙ୍ଗ = ଉଚ୍ଚ;
Tanga ସଂ. ଟଙ୍କଣ; ଠଙ୍ଗଣ = ଜଡ଼ା ହେବା; (ହି. ଶବ୍ଦସାଗର)—
टाँगा ୧ । ବାନ୍ଧି କରି ଝୁଲାଇବା; ଲଟକାଇବା—
टाँगना 1. Hanging; suspending a thing.

୨ । ଲିଆରୁ ଧାନ ବାହାର କରିବା ସକାଶେ ବାଉଁଶ କାଟିରେ ତିଆରି ହୋଇଥିବା ଏକପ୍ରକାର ଚୋକେଇ; ଖଇଝଡ଼ା-
खईचाला 2. A kind of wicker-work seive for
झरना sifting chaff from fried paddy.

ବିଣ—ଝୁଲା ହୋଇଥିବା; ଝୁଲୁଥିବା—
Hung; suspended; hanging.

ଗୋ ତହିଁ କେତେ ଠଙ୍ଗ ପ୍ରାକୃତର ଦ୍ରବ୍ୟ ସାମର୍ଥ୍ୟ କ ରୂପ
ଚିନ୍ତାମଣି • ଚକ୍ରମାହାନ୍ତି ।

ପ୍ରାଦେ. (ସମ୍ବଲପୁର) ବି. (ତୁଳ. ଉର୍ଦ୍ଦୁ ଟାଙ୍ଗା )—ଦୁଇ ଚକିଆ ଆବରଣଯୁକ୍ତ ଘୋଡ଼ା ଗାଡ଼ି ( ଏଥିରେ ଗୋଟିଏ ଘୋଡ଼ା ଲାଗେ )—Dog-cart; two-wheeled horse-cart with a hood.

ପ୍ରାଦେ. (କୁଜଙ୍ଗ) ବି—ଧରା ଯାଉଥିବା ମାଛ ରଖିବାର ଖାଲୋଇ-
A basket used by fisherman for keeping fish while fishing.

ଠଙ୍ଗା(ଙ୍ଗେ)ଇବା—ଦେ. କ୍ରି—ଟାଙ୍ଗିବା କ୍ରିୟାର ଣିଜନ୍ତ ରୂପ—
Tanga(nge)iba The causative form of tangiba.
टाँगान ୧ । ଲଟକାଇବା; ଟାଙ୍ଗିବା; ଝୁଲାଇବା—
टंगवाना 1. To hang or suspend a thing.

| ୧ | ଲ | ଉ | ର,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇଏ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ | ନ୍ତ |

୬ । ଦଉଡ଼ି ଦ୍ୱାରା ବାନ୍ଧି ଓହୋଳାଇବା—
2. To have a thing suspended by means of a string.
୩ । ଝୁଙ୍ଗାଇବା; ( ଲିଙ୍ଗ ) ଉଦ୍ଧୃତ ହେବା—
3. (the penis) To become stiff and erect.

ଟଙ୍ଗାଟଙ୍ଗି—ଦେ. ବ.—ନାନା ପଦାର୍ଥ ଟାଙ୍ଗିବା କର୍ମ—
Ṭangāṭangi Act of hanging many articles.
টাংগা টাংগী टाँगा टागी

ଟଙ୍ଗା ମାରିବା—ପ୍ରାଦେ. (ଗଞ୍ଜାମ) କି.—ଘଣ୍ଟା ମାରିବା; ଘଣ୍ଟା ବଜାଇବା—
Ṭangā māribā To ring the bell.

ଟଙ୍ଗା ଯିବା—ଦେ. କି.—ଟାଙ୍ଗିବା କ୍ରିୟାର କର୍ମବାଚ୍ୟରୂପ—
Ṭangā jibā Passive voice of Ṭāngibā
টাঁগাহওয়া टंगना
(ଟଙ୍ଗା ହେବା—ଅନ୍ୟରୂପ)

ଟଙ୍ଗାରି—ସଂ. ବ. (ଟଙ୍କ+ଅରି)—ସାନ କୁରାଢ଼ି; ଟାଙ୍ଗିଆ—
Ṭangāri Small axe.
ଦେ. ବ—ଅନୁଗୁଳର ପର୍ବତବିଶେଷ—
Name of a mountain of Angul in Orissa.
[ଦ୍ର—ଏହାର ଉଚ୍ଚତା ୧୯୫୬ ଫୁଟ ।]

ଟଙ୍ଗିବା—ଦେ. କ୍ରି. (ସଂ. ଭୁଙ୍ଗ ବା ଫା. ତଙ୍ଗ୍; ସଂ. ଟଙ୍ଗଣ)—
Ṭangibā ୧ । ପଥରର ଦୁଇ ପ୍ରାନ୍ତ ଓ ମଧ୍ୟଭାଗ ଭୂମିରେ ସମତଳ ଭାବରେ ନ ଲାଗିବାରୁ ତାହାର ମଝିଟା ଭୂଇଁରେ ଲଗିଥିବା ଏବଂ ଦୁଇପାଖ ଭୂମିରେ ଟିକ୍ ହୋଇ ନ ଜମିବା; ଛିପି-ଛିପେଇବା; ଟଙ୍ଗଟଙ୍ଗ ହେବା—1. To bob; not to sit stiff or firm on the ground (said of a stone not properly set on the ground and becoming unsteady like a sea-saw when pressure is put on one end of it)
हिलना
উঠা ୬ । (ଲିଙ୍ଗ) ଉଦ୍ଧୃତ ହେବା; ଝୁଙ୍ଗେଇବା—
खड़ाहाना 2. To become rigid and erect (said of a male organ when excited.

ଟଟ୍‌ଟଟ୍—ଦେ. ଅ. (ଧ୍ୱନ୍ୟନୁକରଣ)—ଅବ୍ୟକ୍ତ 'ଟଟ୍' (ଜିଭ ଓ ତାଳୁଦ୍ୱାରା ଉତ୍ପନ୍ନ) ଶବ୍ଦ; ପଶୁଅଦଳଙ୍କୁ ଗୃଳନା କରିବା ନିମନ୍ତେ ପାଟିରେ ଉଚ୍ଚାରିତ ହେବା ଠାକରା—The sound 'Ṭaṭ' made by the tongue taken back to the palate while driving cattle.
Ṭaṭ-taṭ
টট্‌টট্
तत तत्

ଟଟନୀ—ସଂ. ବ. ( ଟଟ୍ ଟଟ୍ ଶବ୍ଦ କରୁଥିବାରୁ, ଭୁଲ. ବ. ଟିକ୍ ଟିକ୍)—ଝିଟିପିଟି—House-lizard.
Ṭaṭṭani

ଟଟରୀ—ସଂ. ବ.—୧ । ଢାଇଁ ଢାଇଁ; ଢୋଲର ଶବ୍ଦ (ହି. ଶବ୍ଦସାଗର)—
Ṭaṭṭari 1. The sound of drum-beating.
୬ । ବାଲଙ୍ଗି; ବାଗାଡ଼ମ୍ବର (ହି. ଶବ୍ଦସାଗର)—
2. Boast; bombast.
୩ । ଥଟ୍ଟା (ହି. ଶବ୍ଦସାଗର)—3. Joke.

ଟଟ୍ଟି—ଦେ. ବ. (ସଂ. ତଟୀ=ନଈ ଆଦିର କୂଳ; ହି.ରୁ ଅନୁକୃତ)—
Ṭaṭṭi ମଳ ମୂତ୍ର ତ୍ୟାଗ କରିବା ନିମନ୍ତେ ତାଟି ବନ୍ଦା ବା ଘେରା ସ୍ଥାନ; ପାଇଖାନା—
পায়খানা, টাট্টি
टट्टी (ଟଟ୍ଟି—ଅନ୍ୟରୂପ) Latrine.

ଟଟ୍ଟି ଫେରିବା—ଦେ. କି.—ଟଟ୍ଟି ଯିବା ୬ (ଦେଖ)
Ṭaṭṭi pheribā Ṭaṭṭi jibā 2 (See)
(ଟଟ୍ଟ ଫେରିବା—ଅନ୍ୟରୂପ)

ଟଟ୍ଟି ଯିବା—ଦେ. କ୍ରି.—୧ । ମଳ ତ୍ୟାଗ କରିବା ପାଇଁ ପାଇଖାନାକୁ ଯିବା—1. To go to the privy to ease oneself.
Ṭaṭṭi jibā
ঘাটে যাওয়া
टट्टी जाना ୬ । ଝାଡ଼ା ଫେରିବା—
2. To ease one's self.
(ଟଟ୍ଟ ଯିବା—ଅନ୍ୟରୂପ)

ଟଟ୍ଟୁ—ଦେ. ବ. (ହି.ରୁ ଅନୁକୃତ) ଦୃଢ଼କାୟ, ସହିଷ୍ଣୁ, ଏବଂ ଛୋଟ ଘୋଡ଼ା; ଟଟ୍ଟୁ; ଅନାଦରପାଳିତ ଛୋଟ ଘୋଡ଼ା; ଦଳଖିଆ ଘୋଡ଼ା
Ṭaṭṭu
টাট্টু A tat; a pony; a nag.
टट्टु (ଟଟ୍ଟୁ—ଅନ୍ୟରୂପ)

ଟଟ୍ଟର—ସଂ. ବ.—ଭେରୀର ଶବ୍ଦ—(ହି. ଶବ୍ଦସାଗର)—
Ṭaṭṭara The sound of a bugle.

ଠଣ୍‌କିନି—ଦେ. କ୍ରି. ବିଣ.—( ଧ୍ୱନ୍ୟନୁକରଣ )—୧ । ଠଣ୍ ଠଣ୍ ଶବ୍ଦ କରି—1. Making a tinkling sound.
Ṭan-kini
টন্ করে (ଯଥା—ଘଣ୍ଟା ଠଣ୍‌କିନି ବାଜିଲା ।)
टनटन ୬ । ତୀବ୍ର ବେଦନା ବା ବଥା କରି—
2. Giving acute pain.
ଠଣ୍ କରି, ଠଣ୍‌କିନା, ଠଣ୍ କରି, ଠଣ୍‌ଦିନ୍—ଅନ୍ୟରୂପ
୩ । ହଠାତ୍—3. Suddenly.
(ଯଥା—ସୂତା ଖଣ୍ଡ ଠଣ୍‌କିନି ଛିଣ୍ଡିଗଲା ।)

ଠଣ୍ ଠଣ୍—ଦେ. ଅ. (ଧ୍ୱନ୍ୟନୁକରଣ)—୧ । ଘଣ୍ଟି ବାଜିବାର ଶବ୍ଦ—
Ṭan-ṭan 1. Chiming sound of a bell or gong or clock.
টন্‌টন্
टनटन [ଦ୍ର—ଠଣ୍ଟୁ ଠଣ୍ଟୁ ଠାରୁ ଠଣ୍ ଠଣ୍ ଉଚ୍ଚତର ଶବ୍ଦ ।]
୬ । ଶରୀରରେ ଧମ୍ ଧମ୍ ବା ଧକ୍ ଧକ୍ ବେଦନା ଅନୁଭୂତ—
2. Throbbing bodily pain.
୩ । ବଥ ପାଚି ଫାଟି ଯିବା ପୂର୍ବରୁ ପୂଜ ଜମାହେବା ହେତୁ ଅନୁଭୂତ ତୀବ୍ର ବେଦନା; ଠକ ଠକ—3. Acute pain felt before a boil bursts; twitching or aching sensation; acute throbbing sensation.
୪ । କାନବିନ୍ଧିବାର ତୀବ୍ର ବେଦନା—
4. Acute pang of the ear-ache.
୫ । ଠିଁ ଠିଁ; ପୂର୍ଣ୍ଣ ମାତ୍ରାରେ—5. Fully; to the fili.

**ଟଣକ**—ଦେ. ବି. (ସଂ. ତନ ଧାତୁ; ସଂ. ଟଙ୍କ ଧାତୁ)—୧। ବ୍ୟଥାପ୍ରଦ ବଥ; ବ୍ରଣ—1. Painful boil.
Ṭaṇaka
ଟନ୍‌କ ତଡ଼୍ ଉପରେ ଟଣକର ଘା। ପ୍ରବଚନ।
टनक ୨। ହାତ ଆଙ୍ଗୁଠିର ଗଣ୍ଠିଦ୍ୱାରା ଶରୀରର ହାଡ଼ୁଆ ସ୍ଥାନରେ କରାଯିବା; ଆଘାତ; ଠଣା—2. A rap with the knuckles on a bony part of the body.

ଦେ. ବିଣ—ଟାଣ—Hard.

**ଟଣକପଣ**—ଦେ. ବି—ଟାଣପଣ; ମନର ଦମ୍ଭ; ସହିଷ୍ଣୁତା—
Ṭaṇaka-paṇa Strength of mind; fortitude.

**ଟଣକା**—ଦେ ବି. (ତନ୍ ଧାତୁର ଣିଜନ୍ତ ତାନ ଧାତୁ = ଆକର୍ଷଣ କରିବା; ବିସ୍ତାରିତ କରିବା)—୧। ଯେଉଁ ଦଉଡ଼ି ଦୁଇ ଗୋଟି ପଦାର୍ଥକୁ ବା ଏକ ପଦାର୍ଥର (ଯଥା—ଶଗଡ଼ର ଚାଳିର) ଦୁଇ ବିପରୀତ ଅଂଶକୁ ପରସ୍ପର ଆଡ଼କୁ ଟାଣି ଧରି ରଖେ—1. A string which is tied to the two ends of a thing or to two things to bring them towards each other.
Ṭaṇakā
टनका
डोरी
टनटानानि ୨। ଶରୀରରେ ଅନୁଭୂତ ବିନ୍ଧା—
टहक 2. Aching pain.
(ଯଥା—କାନ ଟଣକା।)

**ଟଣକିବା**—ଦେ. କ୍ରି. (ସଂ. ତନ ଧାତୁ)—(କାନ) ବିନ୍ଧିବା—
Ṭaṇakibā To ache (said of the ear.)
टनटन करा टनटन करना

**ଟଣା**—ଦେ. ବି. (ସଂ. ତନ ଧାତୁ)—୧। ଟାଣିବା—
Ṭaṇā 1. Drawing out; extending; pulling.
টানা ୨। ତନ୍ତରେ ଲୁଗା ବୁଣିବା ପାଇଁ ଲମ୍ବ ବାଗର ସୂତା
टान ଦେବା; ଟାଣି—2. Laying the warp in the loom.
[ଦ୍ର—ତନ୍ତରେ ତଉଡ଼ାବାଗର ସୂତା ଦେବାକୁ ବୁଣା ବା ଭରଣି ବୋଲାଯାଏ।]
୩। (ଶରୀରର) ବେଦନା—3. Aching pain; throbbing pain; pang.
(ଯଥା—କାନଟଣା, ପେଟଟଣା।)
ବିଣ—ବିସ୍ତାରିତ ହୋଇଥିବା—Drawn; extended; pulled.

**ଟଣା(ଣେ)ଇବା**—ଦେ. କ୍ରି. (ସଂ. ତନ ଧାତୁ ଣିଚ ତାନ ଧାତୁ)—
Ṭaṇā(ṇe)ibā ଟାଣିବାର ଣିଜନ୍ତ ରୂପ—
টানান The causative form of 'ṭāṇibā'; to cause to draw.
तनाना; टनाना

**ଟଣାଓଟରା**—ଦେ. ବି—୧। ପରସ୍ପର ଓଟରା ଓଟରି ବା ଝିକାଝିକି—
Ṭaṇā-oṭarā 1 Mutual pulling or straining.
টানাটানি ୨। ବିଶେଷ ଭାବରେ ଟାଣିବା ବା ଝିକିବା—
खींचतान Pushing or shoving; straining.

ଟଣାଝିକା } ଅନ୍ୟରୂପ ୩। ଏକ ବସ୍ତୁକୁ ଏକ ସମୟରେ ବିପରୀତ ଦିଗରୁ ଝିକିବା—
ଟଣାଟଣି }
3. Pulling a thing simultaneously from opposite directions.
୪। (ସମୟ ବା ଧନର) ଅଭାବ; ନଅଣ୍ଟ—
4. Want; deficiency; falling short.

**ଟଣା ପଙ୍ଖା**—ଦେ. ବି—ଯେଉଁ ପଙ୍ଖା ଛାତରୁ ଝୁଲା ହୋଇ ରହିଁରେ ଦଉଡ଼ି ଲାଗି ହାତଦ୍ୱାରା ଟଣା ପାଇ ପବନ କରାଯାଏ—Ceiling-fan.
Ṭaṇā pankhā
টানাপাখা

**ଟଣା ଯିବା**—ଦେ. କ୍ରି—ଟାଣିବା କ୍ରିୟାର କର୍ମବାଚ୍ୟ ରୂପ—
Ṭaṇā jibā The passive voice of Ṭāṇibā.
টানা যাওয়া ସୁରଭି ସୁଷମ ବଦଧ କୁସୁମମଯ଼ ଚନ୍ଦ୍ରାତପ ଟଣାଯିବ।
तानाजाना କବିସୂର୍ଯ୍ୟ. ସଙ୍ଗୀତ।
(ଟଣା ହେବା—ଅନ୍ୟରୂପ)

**ଟଣ୍ଟା**—ପ୍ରାଦେ. (ସମ୍ବଲପୁର) ବି—ତଣ୍ଟା (ଦେଖ)
Ṭaṇṭā Tanṭā (See)

**ଟଣ୍ଟି**—ପ୍ରାଦେ. (ସମ୍ବଲପୁର) ବି—ତଣ୍ଟି (ଦେଖ)
Ṭanṭi Tanṭi (See)

**ଟଣ୍ଟିଆ**—ପ୍ରାଦେ. (ସମ୍ବଲପୁର) ବି—ତଣ୍ଟିଆ (ଦେଖ)
Ṭanṭiā Tanṭiā (See)

**ଟଣ୍ଡେଇ**—ପ୍ରାଦେ. (ସମ୍ବଲପୁର) ବି—ଡାହାଣୀ—
Ṭaṇḍai Witch.

**ଟନ୍**—ବୈଦେ. ବି. (ଇଂ. ଟନ୍)—ବାଲେଶ୍ୱରୀ ଓଜନରେ ୨୭½ ମହଣ; ୨୦ ହଣ୍ଡର—Ton (weight); 20 hundred-weight; about 27½ standard maunds.
Ṭan
টন
टन

**ଟନିକ୍**—ବୈଦେ. ବି. (ଇଂ)—ଆରୋଗ୍ୟୋନ୍ମୁଖ ରୋଗୀ ବା ଦୁର୍ବଳ ବ୍ୟକ୍ତିର ବ୍ୟବହାର୍ଯ୍ୟ ବଳକାରକ ଔଷଧବିଶେଷ—Tonic (medicine).
Ṭanik
টনিক
टनिक

**ଟନେଲ୍**—ବୈଦେ. ବି. (ଇଂ ଟନେଲ୍)—ପର୍ବତାଦିର ଗର୍ଭରେ ବା ଭୂଗର୍ଭରେ ସୁଡ଼ଙ୍ଗ ଖୋଳାଯାଇ କରାଯିବା ବାଟ—Tunnel.
Ṭanel

**ଟପ୍**—ବୈଦେ. ବି. (ଇଂ)—୧। ଗାଡ଼ି ଓ ତାମ୍ଯାନ ଆଦି ଉପରେ ଥିବା ଛତାକାର ଆବରଣ—1. Hood of a carriage or sedan-chair.
Ṭap
টপ
टप ୨। (ଇଂ. ଟାପ୍) ଜଳ ନିଷ୍କାସନ ପାଇଁ ଦେହର ଅଂଶ
টাপ टेप ବିଶେଷ (ଯଥା, କୋଷ, ପେଟ)କୁ ଫୋଡ଼ିବା—
टेप 2. Tapping.

**ଟପ୍ କରିବା**—ଦେ. କ୍ରି—ଏକଶିରା ବା ଜଳକୋଷ ବା ଜଳୋଦରୀ ରୋଗୀର ପେଟରୁ ଜଳୀୟ ଅଂଶ ନିଷ୍କାସଣ କରିବା ନିମନ୍ତେ ଉକ୍ତ ଅଂଶ ଫୋଡ଼ିବା—
Ṭap karibā
টাপ করা
टेप करना To tap a hydrocele or a dropsy.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋୃ | ୡ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଙ୍ପ୍ | ଡ୍ଅ | ଞ |
| ୨ | ଈ | ଊ | ଋୁ | ଲୁ | ଯ୍ୱେ | ଅକାରାନ୍ତବର୍ଣ୍ଣ | ଅନସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଙ୍ଅ | ଙ୍ଗ | ନ |

ଟପ୍‌ଟପ୍—ଦେ. ଅ. (ଧ୍ୱନ୍ୟନୁକରଣ)—ଟପଟପ (ଦେଖ)
Ṭap-ṭap Ṭapaṭapa (See)

ଟପ୍‌ଟାପ୍—ଦେ. ଅ ଓ କ୍ରି. ବିଣ—ଟପଟପ (ଦେଖ)
Ṭap-ṭāp Ṭapaṭapa (See)

ଟପକ ନବିସ୍—ଦେ. ବି—୧ । ଚୁଗୁଲିଆ; ଯେଉଁ ଲୋକ ଜଣକର ଗୁପ୍ତ କଥାକୁ ଅନ୍ୟବ୍ୟକ୍ତିର କାନରେ ଗୋପନରେ କହିଦିଏ ବା ପ୍ରକାଶ କରେ—
Ṭapaka nabis
ଟପକନବିସି } ବିଣ
ଟପକନବିସିଆ }
(ଟପକନବସି—ଅନ୍ୟରୂପ)
टपक नविस
1. One who reports secretly; a secret reporter; a backbiter; informer.

୨ । ଯେଉଁ ଲୋକ ସାମାନ୍ୟରେ କୌଣସି କାର୍ଯ୍ୟକୁ ସାରିଦିଏ ଓ ମଝିରେ ଅନେକ ବିଷୟ ବା ଅଙ୍ଗ ଛାଡ଼ିଯାଏ—
2. A person who does any work in a slipshod manner.

ଟପକ ନବିସି—ଦେ. ବି—ଟପକ ନବିସ୍ (ଦେଖ)
Ṭapaka nabisi Ṭapaka nabis (See)
टपकनवीसी ଦେ. ବି—ଟପକନବିସ୍‌ର କର୍ମ—
The act of a backbiter.

ଦେ. ବିଣ—ଟପକନବିସିର କୃତ (କର୍ମ)—Slipshod (act).

ଟପକ ବିସିନି—ଦେ. ବି—ବଦରସିକ ବ୍ୟକ୍ତି—
Ṭapaka bisini An ill-mannered gallant.

ଟପକା(କେ)ଇବା—ଦେ. କ୍ରି—୧ । ଟପକିବା କ୍ରିୟାର ଣିଜନ୍ତରୂପ—
Ṭapakā(ke)ibā 1. The causative of Ṭapakibā.
टपकान ୨ । ଟପାଇବା ( ଦେଖ )
टपकाना 2. Ṭapāibā ( See )

ଟପକିବା—ଦେ. କ୍ରି. ( ସଂ. ଛପ ଧାତୁ=କ୍ଷରଣ; ଦମ୍ଭା ଟପଟପ ଧ୍ୱନ୍ୟନୁକରଣ )—୧ । କୌଣସି ଜଳପୂର୍ଣ୍ଣ ପାତ୍ରରୁ ବା କୋଠାର ଛାତରୁ ଛିଦ୍ର ବାଟେ ଠୋପା ଠୋପା ହୋଇ ଜଳ ପଡ଼ିବା—To drip; to ooze or fall drop by drop ( said of water from a leaking vessel or roof ).
Ṭapakibā
टपका
टपकना

୨ । କୌଣସି ଉଚ୍ଚ ସ୍ଥାନକୁ ଡେଇଁ କରି ଯିବା—
2. To leap or jump over a high place

ଟପଟପ—ଦେ. ଅ. ( ଧ୍ୱନ୍ୟନୁକରଣ ) ( ସଂ. ଛପ ଧାତୁ=କ୍ଷରଣ; ସଂ. ଅଟୋପ )—
Ṭapaṭapa
टपटप ୧ । ବଡ଼ ବଡ଼ ଠୋପାରେ ବର୍ଷା ହେବା—
टपाटप; टिपटिप 1. Pattering of rain.

୨ । ଆଖିରୁ ବଡ଼ ବଡ଼ ଠୋପାରେ ବହୁତ ଲୁହ ବୋହିବା—
2. Weeping profusely; shedding profuse tears.

ଟପଟପ ଗାର ବହୁଛି ଅଛ ଯେ ତୋ ନୟନ ଖଞ୍ଜସଟ—
କବିସୂର୍ଯ୍ୟ, ସଙ୍ଗୀତ ।

୩ । କୌଣସି ପଦାର୍ଥକୁ ମୁନିଆଁ ପଦାର୍ଥରେ ଫୁଟାଇବା—
3. Thursting a pointed thing into a soft thing.

ହୃଦା ବେଦନା କୁଆ ନ ଜାଣେ
ଟପଟପ କରି ଠେଙ୍ଗୁରେ ହାଣେ—ଡଗ ।

୪ । ପରର ମନକୁ ବାଧିଲା ପରି କାଷ୍ଠୁର ବଚନ କହିବା—
4. Speaking out harshly or sharply; in a pain spoken manner.

ଟପଟପ ଭାଷା କେତେ ସହିବ—ଅଭିମନ୍ୟୁ, ବଦଗ୍ଧଚନ୍ତାମଣି ।

(ଟପର ଟପର—ଅନ୍ୟରୂପ ) କ୍ରି. ବିଣ—ତୀକ୍ଷ୍ଣଭାବରେ ( ମୁନିଆଁ ଜିନିଷର ମୁନ ନରମ ପଦାର୍ଥରେ ଭୁଷିବା)—Sharply.
( ଯଥା—ଛୁଞ୍ଚିଟାକୁ ଦେହରେ ଟପଟପ ଫୋଡ଼ି ଦେଉଛି । )

ଟପନବିସ୍—ଦେ. ବିଣ—ଟପକ ନବିସ୍ ( ଦେଖ )
Ṭapanabis Ṭapaka nabis ( See )
( ଟପନବିସି—ଅନ୍ୟରୂପ )

ଟପ ଯନ୍ତ୍ର—ଦେ. ବି· (ଇଂ. ଟାପ୍ ଓ ସଂ. ଯନ୍ତ୍ର )—ଅଣ୍ଡକୋଷ ଆଦିରୁ ଜଳ ବାହାର କରିବା ପାଇଁ ବ୍ୟବହୃତ ଡାକ୍ତରଙ୍କ ମୁନିଆଁ ଶଲାକାବିଶେଷ—Tapping instrument.
Ṭapa jantra
टपयन्त्र
टपजन्तर

ଟପର ଟପର—ଦେ. ଅ. ( ଧ୍ୱନ୍ୟନୁକରଣ )—
Ṭapara ṭapara ୧ । ବଡ଼ ବଡ଼ ଠୋପାରେ ମେଘ ବରଷିବା
टपटप ଶବ୍ଦ—1. Pattering sound of rain.
टपाटप ମେଘ ବରଷିଲା ଟପର ଟପର ମୋ ହୃଦରେ କିଏ ରେ ?—ହିଁସ୍ତରୀତ ।

[ ଦ୍ର—ଏହାଠାରୁ ଶ୍ରେଷ୍ଠ ବର୍ଷାକୁ ଟୁପୁରୁ ଟୁପୁରୁ, ତାଠାରୁ କ୍ଷୀଣତର ବର୍ଷାକୁ ଝିପିଝିପି, ତହୁଁ କ୍ଷୀଣରେ ବର୍ଷାକୁ ଲଫିଲଫି ଓ ତହୁଁ କ୍ଷୀଣରେ ବର୍ଷାକୁ ଦୁଣ୍ଡୁଡ଼ୁଡ଼ା କହନ୍ତି । ]

ଟପା—ଦେ ବି. ( ସଂ. ଲମ୍ଫ )—୧ । ସରଳ ତାଳଯୁକ୍ତ ଗୀତବିଶେଷ—
Ṭapā 1. A solo; a short light air in music; a short merry song.
टप्पा
टप्पा ( ଟପ୍ପା—ଅନ୍ୟରୂପ )
डाक ୨ । ( ଭୁଲ. ଦ୍ରାବିଡ଼—ଟପାଲ ) ଉଠି ନେବାର ଡାକ;
डाक ପୋଷ୍ଟ—2. Post.

ଟପା ଥିବା ଘର ବଚନ୍ ଗୋଟିଏ ଯେପରି ସମାଗ୍ରର ଗୋଟେ—
କବିସୂର୍ଯ୍ୟ, କଳୋକଲ୍ପଲ୍ଲ, ଟ-ଗୀତ ।

୩ । ଟପିବା; ଡେଇଁବା—3. Leaping; jumping.

୪ । ଯେଉଁ ଲୋକ ଡାକଥଳ ବହେ—
4. Post-man; postal runner.

ବାଘୋଇର ଭୟ ଦେଖି ନାଉସ ମଧ ଚୋଠ ଅଡ଼ର ଗର୍ହ୍ଣ କହିଲ
ଓହୋ ଟପାଥା ହାରୁଭଗ ସେ—ଫକୀରମୋହନ, ଛମାଣ ଆଠଗୁଣ୍ଠ ।

टांगा ୫ । ଡାଗା ସିଲାଇ; ବହୁଦୂର ବ୍ୟବଧାନରେ ଗୋଟାଏ
टप्पा ଲେଖାଏ ଟାଙ୍କା ଦେଇ କରିଯିବା ସିଲେଇ; ଡାଗା—
5. Long stitch.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଥ' ନ ମିଳିଲେ 'କ୍ରୁଥ' ଦେଖିବେ; 'ବଧୂ' ନ ପାଇଲେ 'ବଦ୍ଧୁ' ଦେଖିବେ; 'ଅର୍ଣ୍ଣା'ନ ପାଇଲେ 'ଅର୍ଣ୍ଣା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ପ୍ରାଦେ. ୧ । (ଗଞ୍ଜାମ) ବି—ଯାନାଦିର ଡାକ—1. Relay of horses for travelling a long distance.

୨ । ( ଗଡ଼ଜାତ ) ବି—ସ୍ୱାଧୀନଦେଶରେ ଗ୍ରାମ ମଧ୍ୟ ଦେଇ ଏକ ଗ୍ରାମରୁ ଗ୍ରାମାନ୍ତର ବାଟେ ଦୂର ଦେଶରୁ ପତ୍ରାଦି ନିଆ ଯିବାର ବନ୍ଦୋବସ୍ତ—2. An arrangement of taking letters from village to villege.

୩ । ( ସମ୍ବଲପୁର ) ବି—ବ୍ୟଙ୍ଗୋକ୍ତିଦ୍ୱାରା କୌଣସି ବ୍ୟକ୍ତିକୁ ଚିଡ଼ାଇବା—3. Teasing a person by innuendoes.

**ଟପା(ପେ)ଇବା**—ଦେ. କ୍ରି—୧ । ଟପିବା କ୍ରିୟାର ଣିଜନ୍ତରୂପ—
Ṭapā(pe)ibā 1. The causative form of Ṭapibā.
टपाना ୨ । ଟପି ଯିବାର ଉପାୟ କରିବା; ଡିଆଁଇବା—
**टपवाना; टपकाना** 2. To cause to leap or jump over.
୩ । ଅତିକ୍ରମ କରାଇବା—
3. To cause to exceed or to outrun.
( ଯଥା—ପଛର ଅଶ୍ୱାରୋହୀ ଆଗରେ ଯାଉଥିବା ଘୋଡ଼ାକୁ ଟପାଇ ଆପଣା ଘୋଡ଼ାକୁ ଝପଟେଇ ନେଇ ଚାଲିଗଲା । ),

**ଟପାଟପ୍**—ଦେ. କ୍ରି. ବିଣ—୧ । ଅବିରାମ; ଗୋଟା ଗୋଟା କରି ଏକା-
Ṭapā-ṭap ଥରକେ—1. In quick succession; without
टपाठप stopping.
**टपाटप** ମନ ଭୁକି ପାଇଲେ ଟପାଟପ ପାତ୍ରରେ ପକାଇ ଦିଏ—
ଗୋପୀକୃଷ୍ଣ ଦାଶ. ପିଲଙ୍କ ରାମାୟଣ ।
୨ । ଟପଟପ ଭାବରେ—2. With a continuous pattering sound (as of rain).
( ଯଥା—ବର୍ଷା ଟପାଟପ୍ ଚାଲିଛି । )

**ଟପାନବିସ୍**—ଦେ. ବିଣ—ଟପକ ନବିସ୍ ( ଦେଖ )
Ṭapānabis Ṭapaka nabis ( See )
( ଟପାନବିସି—ଅନ୍ୟରୂପ )

**ଟପାନବିସିଆ**—ଦେ. ବିଣ—ଟପକ ନବିସି ( ଦେଖ )
Ṭapānabisiā Ṭapaka nabisi ( See )

**ଟପାବାଲା**—ପ୍ରାଦେ. (ଗଞ୍ଜାମ) ବି—ଡାକବାଲା; ଡାକପିଅନ—
Ṭapā-bālā Postman.

**ଟପାଲ**—ଦେ. ବି—ଟପାଲିଆ ( ଦେଖ )
Ṭapāla Ṭapālia ( See )

**ଟପାଲିଆ**—ଦେ. ବିଣ—ପଛଗରୁଆ (ଶଗଡ଼); ହାଲୁକା—
Ṭapālia ( a cart ) Which is lightly loaded on
(ଶୁଦ୍ଧ, ନଦଭୂ—ବିପରୀତ ) the front side and heavier on the back side.

**ଟପିବା**—ଦେ. କ୍ରି. ( ସ. ପତ୍ ଧାତୁ—ଗତି କରିବା; ପତ୍ ଧାତୁ ବ୍ୟବ-
Ṭapibā ... ହାରରେ ଟପ୍ ହୋଇଅଛି; କିମ୍ବା ସ. ଲଙ୍ଘ ଧାତୁ )—
टपकाना ... ୧ । ଲମ୍ଫ ପ୍ରଦାନ କରି ଡେଇଁ ଯିବା—
**टपना** 1. To jump or leap over.

୨ । ଅତିକ୍ରମ କରିବା—2. To exceed; to pass over.
ଆସବଷ୍ଟୀ ଶୃଙ୍ଗ ଟପି ରେଖିଥିଲେ ଯାହିଁ ଯାହା ହିମଗିରି ଶିଖର ।
ନନ୍ଦକିଶୋର. କୃଷ୍ଣକୁମାର ।
୨ । ବଳି ପଡ଼ିବା—2. To excel.
( ଯଥା—ପାଠରେ ସେ ସମସ୍ତଙ୍କୁ ଟପି ଯାଏ । )

**ଟପୁଡିଆଁ**—ଦେ. ବିଣ—୧ । କୌଣସି କାର୍ଯ୍ୟକୁ ଏଠୁଁ ସେଠୁଁ କରିବା;
Ṭapu-ḍiān̐ ଉଅଠଅ କରି କରାଯିବା (କର୍ମ)—
1. Done in a slovenly manner.
( ଯଥା—ତାର ଯେତେକ କାମ ସବୁ ଟପୁଡ଼ିଆଁ । )
୨ । ଆବଡ଼ା ଖାବଡ଼ା—2. Rough; uneven.
୩ । ଡପୁଡିଆଁ ( ଦେଖ )—Tapu-ḍiān̐ ( See )

**ଟବ୍**—ବୈଦେ. ବି. (ଇଂ)—ନାନ୍ଦିଆ; କୁଣ୍ଡ—
Ṭab Tub.
टब्‌ ଦେ. ଅ. ( ଧ୍ୱନ୍ୟନୁକରଣ )—
**टब्** କୌଣସି ଭାରି ବସ୍ତୁର ପାଣିରେ ପଡ଼ି ବୁଡ଼ିଯିବାର ଶବ୍ଦ-
टुब **छप** The thumping sound of a heavy thing falling and sinking in water.
ଟବ୍ ପରି ଟପେ ବୁଡ଼ିବ ଶେଳ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଟବ୍ କରି**—ଦେ. ଅ—( ପାଣିରେ କୌଣସି ପଦାର୍ଥ ଭାରି ପଡ଼ି ) ହଠାତ୍
Ṭab kari ( ବୁଡ଼ିଯିବା ଶବ୍ଦ )—At once, with a splash
टुबबारे ( said of a heavy thing falling and
**छपकर** sinking in water. )
(ଟବ୍‌କିନା, ଟବ୍‌କିନି, ଟବ୍‌କିରି, ଟବ୍‌ଦିସ୍—ଅନ୍ୟରୂପ)

**ଟବ୍‌ଟବ୍**—ଦେ. ଅ. ( ଧ୍ୱନ୍ୟନୁକରଣ )—ଜଳ ଦ୍ୱାରା ଅର୍ଦ୍ଧାଧିକ ପୂର୍ଣ୍ଣ ପାତ୍ର
Ṭab-ṭab ଚହଲିଲେ ଯେଉଁ ଶବ୍ଦ ହୁଏ—
टुब् टुब् Sound caused by shaking a vessel
**छपछप** more than half full of water.
(ଟବର ଟବର—ଅନ୍ୟରୂପ) ( ଯଥା—ଘଇଡ଼ିଟାରେ ପାଣି ଟବ୍‌ଟବ୍ ହେଉଛି । )
[ ଦ୍ର—ଟବ୍‌ଟବ୍ ଠାରୁ ଟୁବ୍ ଟୁବ୍ କ୍ଷୁଦ୍ରତର ଶବ୍ଦ । ]

**ଟବ୍‌ଟାବ୍**—ଦେ. ଅ. ( ଧ୍ୱନ୍ୟନୁକରଣ )—
Ṭabṭāb ଜଳରେ କଉ ଆଦି ମାଛ ଉପରକୁ କ୍ଷଣେ ଉଠି
टुब् टाब् ପୁଣି ବୁଡ଼ିଯିବାର ଶବ୍ଦ—Sound of small fishes
**छपछप** ( as anabas ) while coming up to the surface of water and immediately dipping into it.

**ଟଭର**—ଦେ. ବି. ( ଜାହାଜିଆ ଶବ୍ଦ; ଇଂ ଟପ୍‌ସେଲ୍ )—
Ṭabhara ଜାହାଜର ମାସ୍ତୁଲର ଅଗ ପାଖରେ ବନ୍ଧାହେବା ପାଲ—
Top sail.
ତୋଲ ଉପରେ ସବଲ, ଗଭର, ଟଭର—ପଛକୁ କଲମି ତୋଲ ଅଉ ବରଗାମାନ ଟେକି ଦେଇ ଗେଡ଼ ଗୁଡ଼ାଇ ଠିକ କରି ରଖି ଦେଇଛନ୍ତି ।
ଫକୀରମୋହନ, ଗଳ୍ପସ୍ୱଳ୍ପ,

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହ୍ରସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ | ଉଥ | ଙ୍କ |
| ୨ | ଈ | ଊ | ରୁ | ଲୁ | ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଞ୍ଚ | ନ |

ଟଭା—ଦେ. ବି. ( ସଂ. ମାତୁଲୁଙ୍ଗ; ବୀଜପୂର )—
Ṭabhā ଈଷତ୍ ଅମ୍ଳ ଅତି ସୁଗନ୍ଧ ଏକ ଜାତୀୟ ବଡ଼ ଲେମ୍ବୁ—
টাবানেবু Citron.
बिजौरा

ଟଭରି—ଦେ ବି—ବନ୍ୟ ବୃକ୍ଷବିଶେଷ—
Ṭabhārı Mallotus Pettata; a wild tree.
[ ଦ୍ର—ଏହି ବୃକ୍ଷ ସିଂହଭୂମ, ମୟୂରଭଞ୍ଜ, ପୁରୀ ଓ ଅନୁଗୁଳରେ ଜନ୍ମେ । Haines.]

ଟମ୍‌ଟମ୍‌—ବୈଦେ. ବି. ( ଇଂ. ଟାନ୍‌ଡେମ୍—ଆଗ ପଛ ହୋଇ ଦୁଇଟା ଘୋଡ଼ା ଲାଗିଥିବା ଗାଡ଼ି )—
Ṭam·ṭam
টমটম একଘୋଡ଼ା ଯୋଚି ଚଳାଇବା ବଗି ଗାଡ଼ି; ଦୁଇ-
टमटम ଚକିଆ ବଗି ଗାଡ଼ି—A dog cart

ଟମକ—ଦେ. ବି. ( ସଂ. ଧ୍ୱନ୍ୟନୁକରଣ )—୧ । ନାଗରା; ଧେଣ୍ଡୁରା—
Ṭamaka 1. Drum; tom tom.
টমটম ଟମକ ଯେ ବାଜେ ବ୍ରଜ ବଜାରେ ।
टमकी କବିସୂର୍ଯ୍ୟ. ସଙ୍ଗୀତ ।
୨ । ନାଗରା ଦ୍ୱାରା ଘୋଷଣା—2. Proclamation; publication by beat of drum.

ଟମକ ନିଶାଣ—ଦେ ବି. ( ସହଚର ଶବ୍ଦ )—ଟମକ ଓ ନିଶାଣ; ସାନ ଓ
Ṭamaka nisāṇa ବଡ଼ ନାଗରା—Drums big and small.
ଦିନା ମାଡ଼େ ବାଜି ଯିବ ଟମକ ନିଶାଣ । ପ୍ରାଚୀ. ବୃନ୍ଦାବନଭ୍ରମଣ ଗୀତା ।

ଟମକ ବାଜିବା—ଦେ. ବି—କୌଣସି ବିଷୟ ସର୍ବତ୍ର ଉଦ୍ଘୋଷିତ ହେବା—
Ṭamaka bājibā Wide publication of a matter
ଟମକଇ ବାଜଇ ଜଗତ ଯାକେ ତୁ କି ନ ଜାଣୁ କପଟ ।
କବିସୂର୍ଯ୍ୟ, ସଙ୍ଗୀତ ।

ଟମକିଆ—ଦେ. ବି—ଧେଣ୍ଡୁରା ଦେବା ଲୋକ; ନାଗରଚୀ—
Ṭamakiā Drummer.
ସେ ଉଗରା ନାୟକ ଶୁଣି ବାହାରିଲେ
ଟମକିଆମାନଙ୍କ ଆଗରେ କହିଲେ । କୃଷ୍ଣସିଂହ. ମହାଭାରତ. ବନ ।

ଟମଟମା—ଦେ. ବି. ( ସଂ. ତୁଲ. ଇଂ. ଟମ୍‌ଟମ୍; ଟମଟମ୍ ଶବ୍ଦ
Ṭamaṭamā କରୁଥିବାରୁ )—ଧେଣ୍ଡୁରା; ନାଗରା—
টমটম্ Tomtom; drum.
टमकी

ଟମରସ—ପ୍ରାଦେ. ( କାମଣ୍ଡା ) ବି—ପିଜୁଳି; ଗୁଆଳଆ—
Ṭamarasa Guava.

ଟମାଟମ୍—ଦେ. ବିଣ—ଟୁମାଟୁମ୍ ( ଦେଖ )
Ṭamāṭam Ṭumāṭum ( See )

ଟର ଆମ୍ବିଲ୍—ପ୍ରାଦେ. (ସମ୍ବଲପୁର) ବି—ଖୁବ୍ ଆମ୍ବିଳା; ଭାରି ଖଟା—
Ṭar āmbil Very sour.

ଟରଟର—ପ୍ରାଦେ. (ସମ୍ବଲପୁର) କ୍ରି. ବିଣ—
Ṭar ṭar ୧ । ବକ୍ତା ହୋଇ ଚାହିଁ ରହିବା ପ୍ରକାରେ; ବକବକ—
1. Staringly; looking on foolishly.
୨ । ସମ୍ପୂର୍ଣ୍ଣରୂପେ—2. Fully; deeply (black).
(ଯଥା—କଳାସ୍ୱା ଟରଟର—ଭ୍ରିପଣ୍ଡକଳା; ଘୋରକୃଷ୍ଣ ।)
ବିଣ୍ଣ ଆଇସି କଲସ୍ୱା ଟର୍‌ଟର୍
ପିନ୍ଧି ଆଇସି ହଲ୍‌ଦିଆ ଟେର୍‌ଗର୍ । ସମ୍ବଲପୁରୀ. ଗୀତ ।

ଟରର—ଦେ. ବିଣ. (ସଂ. ଟଲ୍ ଧାତୁ)—୧ । ନିଶାରେ ଅଜ୍ଞାନ ବା
Ṭar-r ଅସ୍ଥିର; ଟଳଟଳଯୁମାନ; ଚୁର—
টর 1. Reeling with intoxication.
टर्रा ୨ । ଅତ୍ୟନ୍ତ ରାଗାନ୍ଧ; କ୍ରୋଧାନ୍ଧ—
2. Maddened or blinded with rage.

ଟରକା(କେ)ଇବା—ଦେ. କ୍ରି—ଟରକିବା କ୍ରିୟାର ଣିଜନ୍ତରୂପ—
Ṭaraka(ke)ibā Causative of Tarakibā.
ভাগান ଆସନ୍ନ ବିପଦ ବିଷୟରେ କୌଣସି ବ୍ୟକ୍ତି ବା ଜୀବକୁ ପୂର୍ବରୁ
टरकाना ସାବଧାନ କରି ଦେଇ ତାକୁ ସେ ସ୍ଥାନ ତ୍ୟାଗ କରିବାର ସୁବିଧା କରିଦେବା—To scare away a person or animal from a place by giving a hint of impending danger.

ଟରକିବା—ଦେ. କ୍ରି. ( ସଂ. ଟଲ ଧାତୁ; ସଂ. ସତର୍କ )—
Ṭarakibā ଟରକିବା; ଆସନ୍ନ ବିପଦ ବିଷୟରେ ପୂର୍ବରୁ ସତର୍କ-
ভাগা . ହୋଇ କୌଣସି ସ୍ଥାନରୁ ଖସି ପଳାଇଯିବା—
टरकना To steal or flee away from a place after scenting danger betimes.

ଟରଣୀ—ବୈଦେ. ବି. (ଇଂ. ଆଟର୍ଣ୍ଣୀ)—ଟର୍ଣ୍ଣୀ (ଦେଖ)
Ṭaraṇī Ṭarṇṇī (See)
(ଟରନୀ—ଅନ୍ୟରୂପ)

ଟର୍କ୍—ବୈଦେ. ବି. (ଇଂ)—ତୁରସ୍କ ଦେଶୀୟ ଲୋକ—
Ṭark Turk.
তুর্ক तुर्क

ଟର୍କି—ବୈଦେ. ବି. (ଇଂ)—୧ । ତୁରସ୍କ—
Ṭarki 1. Turkey (country).
তুর্কী तुरकी ୨ । ମୟୂର ଜାତୀୟ ବିଦେଶୀ କୁକ୍କୁଟ—
2. Turkey (bird).

ଟର୍ଚ୍—ବୈଦେ. ବି. (ଇଂ. ଟର୍ଚ୍—ମଶାଲ)—ଟର୍ଚ୍‌ଲାଇଟ୍ (ଦେଖ)
Ṭarch Tarch lāiṭ (See)

ଟର୍ଚ୍‌ଲାଇଟ୍—ବୈଦେ. ବି. (ଇଂ)—ମଶାଲ ଆକାରର ବେଷ୍ଟଲାଗିଥିବା
Ṭarch-lāiṭ ବିଜୁଳିବତି—Electric torch-light.
টর্চলাইট टर्चलाइट

ଟର୍ଣ୍ଣୀ—ବୈଦେ. ବି. (ଇଂ. ଆଟର୍ଣ୍ଣୀ—ମୁକ୍ତାର୍)—
Ṭarṇṇī ଅର୍ଥଲୋଭରେ ମୁକ୍ତାର ଓକିଲଙ୍କ ନିକଟରେ ମକ୍କେଲ
টাউটর জুଟାଇବା ଲୋକ—A tout; a procurer of
मकद्माका दाडाल legal business for legal
(ଟର୍ନୀ; ଟରନୀ—ଅନ୍ୟରୂପ) practitioners.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଢ଼ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**ଟର୍ମ୍**—ବୈଦେ. ବି. (ଇଂ)—୧ । କଲେଜ, ସ୍କୁଲ ଓ କଚେରୀମାନଙ୍କ ବଡ଼ବଡ଼ ଛୁଟିମାନଙ୍କ ମଧ୍ୟରେ ବ୍ୟବଧାନ ଥିବା ସମୟ (ଯହିଁରେ କି ପିଲାମାନେ କଲେଜରେ ରହି ପାଠ ପଢ଼ନ୍ତି)—
Tarm
ଟହରମ
टर्म
1. Term in a college, school or court.
[ଦ୍ର—ଭାରତବର୍ଷରେ ଗ୍ରୀଷ୍ମଛୁଟିଠାରୁ ପୂଜା ଛୁଟି ପର୍ଯ୍ୟନ୍ତ ଗୋଟିଏ ଟର୍ମ୍; ପୂଜାଛୁଟିଠାରୁ ଗ୍ରୀଷ୍ମମସ୍ ଛୁଟି ପର୍ଯ୍ୟନ୍ତ ଗୋଟିଏ ଟର୍ମ୍ ।]
୨ । ଚୁକ୍ତିର ସର୍ତ୍ତ—2. Term of an agreement.

**ଟର୍ମିନାଲ୍ ଟାକ୍ସ**—ବୈଦେ. ବି. (ଇଂ)—କଲିକତା ପୁରୀ ପ୍ରଭୃତି ବଡ଼ ବଡ଼ ସହର ଓ ତୀର୍ଥକୁ ଯାଉଥିବା ଯାତ୍ରୀଙ୍କଠାରୁ ରେଲ ଟିକଟ୍ ଉପରେ ରେଲ ମାସୁଲ ଛଡ଼ା ଆଦାୟ କରାଯିବା ଅଧିକା ଟାକ୍ସ—
Tarminal taks
ଟର୍ମିନାଲ୍ ଟେକ୍ସ
टर्मिनेल टैक्स
Terminal tax.
[ଦ୍ର—ଏହି ଟାକ୍ସ ପ୍ରତ୍ୟେକ ଟିକଟ୍ କିଣିବା ଲୋକଠାରୁ ଦୁଇପଇସା ବା ଚାରିପଇସା ଲେଖାଁଏ ଆଦାୟ ହୁଏ ଓ ତାହା ଟିକଟର ମାସୁଲ ସଙ୍ଗେ ସାମିଲ ହୋଇ ଆଦାୟ କରାଯାଏ । ରେଲ କୋମ୍ପାନୀ ତାହା ଏକାଠେଇଁ କରି ଗଭର୍ଣ୍ଣମେଣ୍ଟଙ୍କୁ ଦିଅନ୍ତି । ଏତଦ୍ୱାରା ଗଭର୍ଣ୍ଣମେଣ୍ଟ ଉକ୍ତ ସ୍ଥାନର ସ୍ୱାସ୍ଥ୍ୟୋନ୍ନତିଜନକ କାର୍ଯ୍ୟର ବ୍ୟୟ ନିର୍ବାହ କରନ୍ତି ।]

**ଟଳ୍** (ଧାତୁ)—ସଂ—ବିଚଳିତ ବା ବିକଳ ହେବା—
Tal (root) To totter; to reel.

**ଟଳଟଳ**—ଦେ. ବିଣ.—(ସଂ. ଟଳ୍ ଧାତୁ=ବୈକଲ୍ୟ)—୧ । ଉତ୍କଣ୍ଠିତ; ଅସ୍ଥିର—1. Anxious; restless.
Talatala
ଟଲଟଲ
डगमग
ବୋଇଲ ଶ୍ରୀ ନାଥ ତୁମ୍ଭେ କି ପ୍ରତିଜ୍ଞା କଲ,
କୃପା କରି କହ ମୋତେ ମନ ଟଳଟଳ । ତୁଳସୀଦାସ ରାମାୟଣ ।
୨ । ଦୋହଲୁ ଥିବା—2. Waving.
୩ । ଟଳୁଥିବା; ବିଚଳିତ ହେଉଥିବା—
3. Tottering; staggering.
ସେ ଜଳେ ନ ପାରିଲା ରହି ଭୂମରେ ଟଳ ଟଳ ହୋଇ ।
ଯଶୋବନ୍ତ. ପ୍ରେମଭକ୍ତି ଗୀତା ।
୪ । ଯାହାର ମୂଳ ଭୂମିରେ ସ୍ଥିର ହୋଇ ବସି ନ ଥାଏ—
4. Unstable.
ଟଳଟଳ ହେବ ମେରୁ ଭୂଧର ।
ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।
କ୍ରି. ବିଣ.—୧ । ଦୋହଲୁ ଥିବା ପ୍ରକାରେ; ବିଚଳିତ ହେଉଥିବା ପ୍ରକାରେ—1. Staggeringly; totteringly; reeling.
୨ । ଅସ୍ଥିର ଭାବରେ—
2. Unsteadily; unstably.
୩ । ଆସନ୍ନ ବିଚଳନର ଭୟ ଜନ୍ମାଉ ଥିବା ପ୍ରକାରେ—
3. Threatening to fall down.
ଟଳନ୍ତି ହସ୍ତିନା-ହର୍ମ୍ମ୍ୟଚୟ ଟଳଟଳେ ।
ରାଧାନାଥ. ଦେଶୀଦରବାର ।

**ଟଳଟଳାୟମାନ**—ସଂ. ବିଣ. ପୁଂ.—୧ । ଟଳୁଥିବା—
Talatalayamana 1. Tottering; reeling.
(ଟଳଟଳାୟମାନା—ସ୍ତ୍ରୀ) ୨ । କମ୍ପମାନ—
2 Shaking; wavering.
୩ । ଅସ୍ଥିର—3. Restless.

**ଟଳଟଳିଆ**—ଦେ. ବିଣ. ଓ କ୍ରି. ବିଣ.—ଟଳଟଳ (ଦେଖ)
Talatalia Talatala (See)
ଟଲଟଲିଆ ଟଳଟଳିଆ ଏ ବନ୍ଧ ଅଟଇ । ପ୍ରାଚୀ, ପଦ୍ମଦେ ଗୀତା ।

**ଟଳମଟଳ**—ଦେ. ବିଣ ଓ କ୍ରି ବିଣ.—ଟଳଟଳ (ଦେଖ)
Talamatala Talatala (See)
ଟଳମ୍‌ଟଳ
ଟଳମଟଳା }—ଅନ୍ୟରୂପ
ଟଳମ୍‌ଟଳା
ବାହାର ହେଲେ ବାନର ବଳ,
କୁରୁମ ହେଲା ଟଳମଟଳ
ବିଶ୍ୱନାଥ ବିଚିତ୍ରରାମାୟଣ ।

**ଟଳମଳ**—ଦେ. ବିଣ. ଓ କ୍ରି. ବିଣ.—ଟଳ ଟଳ (ଦେଖ)
Talamala Talatala (See)
ଅ.—୧ । ଟହ ଟହ (ଦେଖ)—1. Taha taha (See)
୨ । ଆଗ ପାଖ ଉପରକୁ ଉଠିଲା ବେଳେ ପଛ ପାଖ ତଳକୁ ଯାଉଥିବା ଓ ତଳ ପାଖ ଉପରକୁ ଉଠିଲା ବେଳେ ଆଗ ପାଖ ତଳକୁ ଯାଉଥିବା; ଚିପିଟିପା—2 Bobbing.

**ଟଳା(ଳେ)ଇବା**—ଦେ. କ୍ରି. (ସଂ. ଟଳ ଧାତୁ)—୧ । (ଟଳିବା କ୍ରିୟାର ଣିଜନ୍ତ ରୂପ)—ଟାଳିବା (ଦେଖ)
Tala(le)iba
ଟାଲାନ
टलाना
1. The causative form of taliba; Taliba (See)
[ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା କ୍ରିୟାର ସମାପିକ ରୂପ ଯୁକ୍ତ ହୁଏ ।]

**ଟଳାଟଳି କରିବା**—ଦେ. କ୍ରି.—ଟାଳଟୁଳ ବା ଭଣ୍ଡାଭଣ୍ଡି କରିବା; ଦମ୍‌ଦିଲାସା ଦେଇ ସମୟକୁ ଅତିକ୍ରାନ୍ତ କରିବା
Talatali kariba
টালটুল করা, টালটোল করা
टालटालि करना
To cause a fixed time-limit to expire by various excuses.

**ଟଳି ପଡ଼ିବା**—ଦେ. କ୍ରି.—(ସଂ. ଟଳ ଧାତୁ)—୧ । ଟଳି କରି ତଳେ ପଡ଼ିଯିବା—1. To fall to the ground reeling; to topple down.
Tali pardiba
টলেপড়া
टलजाना
୨ । (ଲକ୍ଷଣାର୍ଥ) ମରିବା—
(ଟଳିଯିବା—ଅନ୍ୟରୂପ) 2. (figurative) To die.
୩ । (ଲକ୍ଷଣାର୍ଥ)—ଲୁପ୍ତ ହେବା—
3. (figurative) To disappear.
ଟଳି ପଡ଼ୁଥାଏ ମୋର ବିବେଚନା—କବିସୂର୍ଯ୍ୟ. ସଙ୍ଗୀତ ।

**ଟଳିବା**—ଦେ. କ୍ରି. (ସଂ ଟଳ ଧାତୁ)—୧ । (ମନ) ବିଚଳିତ ହେବା—
Taliba
টলা
टलना
1. (the mind) To be moved; to be agitated.
କେନେକାର ନିମେଷ ମାତ୍ର ଅପାଙ୍ଗ ଦୃଷ୍ଟିରେ ତା ମନ ଟଳି ଗଲା ।
ଫକୀରମୋହନ. ଛମାଣଆଠଗୁଣ୍ଠ ।
୨ । ଖସିପଡ଼ିବା; ଗଡ଼ି ପଡ଼ିବା—
2. To fall down; to come down.
ମଥାରୁ କୁମୁଦ ବନ୍ଧୁ ଟଳିଲାରେ । କବିସୂର୍ଯ୍ୟ. ସଙ୍ଗୀତ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ର୍ | ୠ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ | ଉଅ | ଢ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଢ଼ | ଡ଼ |

୩ । (ପବନରେ) ଦୋହଲିବା—
3. To rock; to wave to and fro.

୪ । ଠିଆ ହୋଇ ନ ପାରି ଇତସ୍ତତଃ ଚଳିବା—
4. To stagger; to totter.

ପାଢଲେ ଅନ୍ଧ ପଣସ ଚାଢଲେ ସଳଳ.
କଳଲ ଗଖାର ମୋ ଟଳିଲ କଳେବର । ପ୍ରାଚୀ, ଇନ୍ଦ୍ରୟମଞ୍ଜରୀ ।

୫ । (ପ୍ରତିଜ୍ଞା; କଥା) ଅନ୍ୟଥା ହେବା—
5. To be nullified; to be rendered

୬ । (ଉପାୟ) ନିଷ୍ଫଳ ହେବା—
6. To be frustrated.

୭ । (ନିର୍ଦ୍ଦିଷ୍ଟ ବେଳା) ଅତିକ୍ରାନ୍ତ ହେବା—
7. To expire; to pass by.

୮ । ( ବଳ ) କମିବା—8. To become less; to diminish.

୯ । (ଧୈର୍ଯ୍ୟ) ନାଶ ହେବା—9. To decline or vanish.

୧୦ । (ମନୁଷ୍ୟ ନିଦ୍ରାରେ) ଘାରି ହେବା; ଢଳିବା—
10. To reel; to dose.

୧୧ । ( ମନ ) ସନ୍ଦେହରେ ଦୋଳାୟମାନ ହେବା—
11. (mind) To waver, to hesitate.

୧୨ । ( ମନରୁ ବିବେକ; ଅନୁରାଗ ) ଲୁପ୍ତ ହେବା—
12. To disappear.

ପ୍ରଣୀପ ସେ ଜଳୁଥିବ, ବିବେକ ତ ଟଳୁଥିବ— କବିସୂର୍ଯ୍ୟ. ସଙ୍ଗୀତ ।

୧୩ । (ମନ) ତରଳି ଯିବା; (କୌଣସି ବିଷୟ ପ୍ରତି) ଆକୃଷ୍ଟ ହେବା—13. (mind) To be enamoured of.

୧୪ । (ଆଦେଶ) ଉଲ୍ଲଙ୍ଘନ କରିବା; ଅତିକ୍ରମ କରିବା—
14. To violate; to transgress; to go beyond.

ସ୍ୱାମୀ ଶ୍ୱଶୁରଙ୍କ କଥାରୁ ସେ ପଦେ ଟଳେ ନାହିଁ—
କୁନ୍ତଳାକୁମାରୀ. ନଅପୁରଣୀ ।

୧୫ । ମୁଗ୍ଧ ହେବା—
15. To be captivated or charmed.

୧୬ । ବିଚଳିତ ହେବା; ମନର ସ୍ଥିରତା ହରାଇବା—
15. To lose one's balance of mind or mental equilibrium.

୧୭ । ସ୍ଥାନଚ୍ୟୁତ ହେବା, ସ୍ଖଳିତ ହେବା—
17. To be displaced; to budge.

୧୮ । ( ଆଦେଶ ) ଲଙ୍ଘିତ ହେବା; ଖଣ୍ଡିତ ହେବା; ଉଲ୍ଲଙ୍ଘିତ ହେବା—18. ( order ) To be violated or disobeyed.

ତୋ ଆଜ୍ଞା ଟଳେଘ କଖାଇ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

୧୯ । ( ଲକ୍ଷଣାର୍ଥ ) ହାରିବା; ପରାଜିତ ହେବା—
19. ( figurative ) To be defeated.

୨୦ । ( ଲକ୍ଷଣାର୍ଥ ) ଅକୃତକାର୍ଯ୍ୟ ହେବା—
20. (figurative) To fail; not to succeed.

[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ପଡ଼ିବା, ଯିବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

ଟଲେମି—ଦେ. ବି. ( ନାମ )—ଆଲେକଜାଣ୍ଡ୍ରିୟାର ପ୍ରସିଦ୍ଧ ଗ୍ରୀକ୍ ଜ୍ୟୋତିଷୀ—Ptolemy.
Ṭalemi
ଟଲେମୀ [ ଦ୍ର—ଏହାଙ୍କ ଗ୍ରନ୍ଥକୁ ମୂଳ କରି ସଂସ୍କୃତ ଜ୍ୟୋତିଷ
टलेमी ରୋମକସିଦ୍ଧାନ୍ତ ରଚିତ । ଅଶୋକଙ୍କ ଲିପିରେ ଏହାଙ୍କ ନାମ ତୁରମୟ ବୋଲି ଲେଖାଅଛି । ]

ଟସକର—ଗ୍ରା. ( ପଦ୍ୟ ) ବି. ( ସଂ. ତସ୍କର )—ତସ୍କର ୧ ( ଦେଖ )
Ṭasakara Taskara 1 ( See )

କହୁଥିଲ ତେ ବଢିଲା, ଗେର ଟସକର ବାଟେ ଭୂଡା ପଢିଲ—
ପ୍ରାଚୀ ପ୍ରତାପ, ଶଶିସେଣା ।

ଟସର ( ଇତ୍ୟାଦି )—ତସର ଇତ୍ୟାଦି ( ଦେଖ )
Ṭasara ( etc ) Tasara etc ( See )

ଟସର ମିଶାଇ ଦେଲେ ନାହିଁ ଅଛି ପସନ୍ଦ ହିଶଇ ପାଃ—
କବିସୂର୍ଯ୍ୟ. ସଙ୍ଗୀତ ।

ଟସ୍କର—ଦେ. ବି. ( ସଂ. ତସ୍କର )—ତସ୍କର ୧ ( ଦେଖ )
Ṭaskara Taskara 1 ( See )

ଟହକ—ଦେ. ବିଣ. ( ସଂ. ଟଙ୍କ—ରକ୍ତବର୍ଣ୍ଣ )—
Ṭahaka ୧ । ସୁନ୍ଦର; ରମଣୀୟ; ମନୋହର—
1. Beautiful; graceful.

ଟହକହାସୀ କଶୋଗ ମନ, ଟକ ସଙ୍ଗ ରସେ ଭୁଭବ ଖେଳ—
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

୨ । ରକ୍ତବର୍ଣ୍ଣ—2. Red.

ଟହକ ଗଛର ମହକ ଫଳ, ଉପରେ କାହିଁକି ପଡ଼ିଲୁ ?—ଢଗ ।
( ଆମ୍ବଗଛର ଫଳକୁ ଲକ୍ଷ୍ୟ କରି । )

ଟହଟ—ଦେ. ଅ—ଟହଟହ ( ଦେଖ )
Ṭahaṭa Ṭahaṭaha ( See )

ଟହଟହ—ଦେ. ଅ. ( ସଂ. ଅଟ୍ଟହାସ୍ୟ )—ଉଚ୍ଚହାସ୍ୟ ଧ୍ୱନି—
Ṭahaṭaha Loud laugh.

ହାସ ପ୍ରକାଶ କଲେ ଟହଟହ ହୋଇ—କୃଷ୍ଣସିଂହ. ମହାଭାରତ. ଆଦି ।

टुकटुक ଦେ. ବିଶେଷଣ ବିଣ—୧ । (ଏହି ଅର୍ଥରେ 'ରଙ୍ଗ ଟହଟହ'
टहटहे ପ୍ରୟୋଗ ହୁଏ ) ଅତ୍ୟନ୍ତ ଗାଢ଼ ( ରକ୍ତ ବର୍ଣ୍ଣ )—
Deep ( red ).

୨ । ସମ୍ପୂର୍ଣ୍ଣରୂପେ ( ପକ୍ୱ )—2. Fully (ripe).

ଟହବର—ଦେ. ବି—ଶିବିକା; ପାଲିଙ୍କି; ତାମଯାନ୍—
Ṭahabara Palki; sedan chair.

ବକେ ହେଲେ ଟହବରେ ମହାସଖ ଦେଖେ—ଚିନ୍ତାମଣି. ଜଣମାବତ୍ୟ ।

ଟହଲ—ଦେ. ବି. ( ହିନ୍ଦିରୁ ଅନୁକୃତ; ସଂ. ଚଲ ଧାତୁ )—
Ṭahala ୧ । ପରିକ୍ରମା; ଗୁଲିଗୁଲି—
टहल 1. Wandering; walking up and down;
टहल roving; rambling, perambulation.

୨ । ସ୍ୱାସ୍ଥ୍ୟରକ୍ଷାର୍ଥେ ଭ୍ରମଣ—
2. Constitutional walk.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ରାଙ୍କିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରାଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରାଙ୍କିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ସ୍ଥଳରେ ବଦଳରେ ୨ ବା ୧ ଚକ୍ରାଙ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଆଧ୍ୟ' ନ ମିଳିଲେ 'ଗାଧ' ଦେଖିବେ; 'କୃଅ' ନ ମିଳିଲେ 'କ୍ୱଅ' ଦେଖିବେ, 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଗିଆ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୩ । ଘୋଡ଼ାକୁ ସକାଳେ ସଉଦ୍ଧରେ ଟହଲାଇବା—
3. The taking out of a horse for a morning walk or stroll.

୪ । ଚାକର—4. Service.

୫ । ଗୃହର ବା ଦେବ ମନ୍ଦିରର ବା ମଠର ନୀଚ କାର୍ଯ୍ୟ—
5. Menial household duties.

୬ । ସେବା; ଶୁଶ୍ରୂଷା—
6. Service of or attendance on a master.

**ଟହଲ ଟାକର୍**—ଦେ. ବି—୧ । ଗୃହର ଶ୍ରେଷ୍ଠ ବା ନୀଚ କର୍ମମାନ—
Ṭahala ṭākara — 1. Petty or menial works of the household.
टहल टाकर, **टहलटकोर**

ଟହଲ ଟାକର୍, ଟହଲ ଟୁକୁର୍, ଟହଲ ଟୁକୁସ୍ — ଅନ୍ୟରୂପ

୨ । ପ୍ରଭୁଙ୍କର ଡାକହାକ ଶୁଣିବା କର୍ମ—
2. Personal service and carrying out orders of the master; acts of an orderly.

୩ । ସେବା ସୁଶ୍ରୂଷା—4. Acts of service of or attendance on a person.

**ଟହଲଦାର୍**—ଦେ. ବି—ଟହଲିଆ ( ଦେଖ )
Ṭahaladār — Ṭahaliā ( See )

**ଟହଲ ବଜା(ଜେ)ଇବା**—ଦେ. କ୍ରି—ଆପଣା ଉପରେ ନ୍ୟସ୍ତ ଚାକରୀର କର୍ତ୍ତବ୍ୟ କର୍ମ ନିର୍ବାହ କରିବା—
Ṭahala baja(je)ibā — To render one's fixed service.
टहल बजाना
**टहल बजाना**

**ଟହଲ ମାରିବା**—ଦେ. କ୍ରି (ବ୍ୟଙ୍ଗ)—ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତକୁ ବିନା କାର୍ଯ୍ୟରେ ବୁଲିବା—
Ṭahala māribā — To walk up and down aimlessly.

**ଟହଲା(ଲେ)ଇବା**—ଦେ. କ୍ରି—୧ । ଟହଲିବା କ୍ରିୟାର ଣିଜନ୍ତରୂପ—
Ṭahalā(le)ibā — 1. The causative form of 'ṭahalibā'
टहलाना
**टहलवाना**

୨ । ଘୋଡ଼ା ଆଦିଙ୍କୁ ସ୍ୱାସ୍ଥ୍ୟରକ୍ଷା କାମନାରେ ପ୍ରତିଦିନ ସକାଳୁ ବୁଲାଇନେବା; ଶ୍ରମ ଅପନୋଦନାର୍ଥ ଚଲାଇବା—
2. To take out for a walk; to walk up and down (a horse).

ଘୋଡ଼ା ଚାକରେ ଯେ ଦିଆଇଣ ଦେଲେ
ଟହଲଇ ସାଇଣ ଧର ଛଡ଼ା ହେଲେ—କୃଷ୍ଣସିଂ. ମହାଭାରତ. ବନ ।

୩ । ବୁଲାଇବା; ଚଲାଇବା—
3. To cause to move.

**ଟହଲିଆ**—ଦେ. ବି. ପୁଂ ( ହିନ୍ଦୀ. ଟହଲୁଆ )—
Ṭahaliā — ୧ । ସେବାକାରୀ; ଯେଉଁ ଚାକର ପ୍ରଭୁଙ୍କର ସେବା କରେ ବା ଆଦେଶ ବହନ କରେ—
टहलिया
**टहलुआ** — 1. Orderly servant; personal attendant.
(ଟହଲିଆଣୀ—ସ୍ତ୍ରୀ)

୨ । ପାଇକଥିଲ—2. Menial servant.

୩ । ଦେବାଳୟ ବା ମଠର ନୀଚଭୃତ୍ୟସେବାକାରୀ ବୈଷ୍ଣବ—
3. A mendicant who does the menial duties of a temple or math.

**ଟହଲିବା**—ଦେ. କ୍ରି (ସଂ. ଚଲ ଧାତୁ)—୧ । ପରିକ୍ରମା କରିବା; ଆଗକୁ ପଛକୁ ଚାଲବୁଲ କରିବା; ଭ୍ରମଣ କରିବା—
Ṭahalibā
टहला — 1. To walk up and down; to go backward and forward.
**टहलना**

୨ । ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ବୁଲିବା—
2. To take a constitutional walk.

୩ । ଧୀରେ ଧୀରେ ବୁଲିବା—
3. To move or walk slowly.

**ଟହୁ**—ଦେ. ବି—ଟଉ (ଦେଖ)
Ṭahu — Ṭau (See).

**ଟା**—ଦେ (ଅବ୍ୟୟ)—୧ । (ଅନାଦରାର୍ଥ ପ୍ରତ୍ୟୟ; ଅନ୍ୟ ସଂଖ୍ୟାବାଚକ ଶବ୍ଦ ସଙ୍ଗେ ଯୋଗ ହେଲେ ସଂଖ୍ୟା ନିର୍ଦ୍ଦେଶ କରେ)—
Ṭā
टा — ( ଏବେ ) ଗୋଟା—
**टा** — 1. (Particle affixed to a word to denote number) So many.
(ଟି—ଆଦରାର୍ଥକ)

(ଯଥା—ଦଶଟା ଲୋକ ଆସିଥିଲେ । )

୨ । (ବସ୍ତୁ ନିର୍ଦ୍ଦେଶକ; ବକ୍ତାର ଦୃଢ଼ଭାବଦ୍ୟୋତକ ବ୍ୟବହାର)—ସେ; ତାହା; ଏହା—
2 (used in emphasis) That; this; it.

( ଯଥା—ଗୋରୁଟା ଫସଲ ଖାଇଗଲା । )

[ ଦ୍ର—ଏହିପରି ସ୍ଥଳରେ ଆଦରାର୍ଥରେ ଟି ପ୍ରତ୍ୟୟ ହୁଏ । ]

୩ । ( ଏବେ ) ଘଣ୍ଟା ବାଜିବା ସମୟ—
3. O'clock.

( ଯଥା—୫ଟା ବେଳ ହେଲାଣି । )

**ଟାଆଁଶ**—ଦେ· ବିଣ ( ଭୁଲ. ସଂ. କର୍କଶ )—
Ṭā-ānśa — ଟାଆଁଶା ( ଦେଖ )—
Ṭā-ānśā (See).

**ଟାଆଁଶା**—ଦେ. ବିଣ ( ଭୁଲ. ସଂ. କର୍କଶ )—
Ṭā-ānśā — ୧ । କର୍କଶ; କରଡ଼ା ( ଲୋମ ବା କେଶ )—
कड़ा — 1. Rough; tough; bristling; wiry (said of hair).
**कड़ा**

୨ । ଟାଣୁଆ; ନିଷ୍ଠୁର (କଥା)—
2. Rough; harsh or cruel (words).

୩ । ଦୃଢ଼—3. Firm

୪ । କଠିନ—4. Hard.

୫ । ଅବାଧ୍ୟତାପୂର୍ଣ୍ଣ ( କଥା )—
5. Impudent ( words ); impertinent.

୬ । କରଡ଼ା; ଚେମଡ଼ା—6. Tenacious.

| ॰ | ର | ଊ | ଋ,ୠ | ଌ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍ | ଇଏ | ଓଅ | ନ |
|---|---|---|---|---|---|---|---|---|---|---|---|---|---|---|
| ́ | ଛ | ଉ | ରୁ | ଲୃ | ପ୍ତ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଗ | ଇଅ | ଔ | ନ୍ |

ଟାଇ— ବୈଦେ. ବି. ( ଇଂ. ଟାଇ=ବନ୍ଧନ )—
Ṭāi ୧ । ଦୁଇ ଜଣ ପରୀକ୍ଷାର୍ଥୀଙ୍କର ପରୀକ୍ଷାରେ ସମାନ ନମ୍ବର
टाई ରହିବା ଅବସ୍ଥା—
টাই 1. A tie between two examinees.
୨ । ଦୁଇ ପ୍ରତିଦ୍ୱନ୍ଦ୍ୱୀ ଖେଳାଳିଙ୍କର ଖେଳରେ ସମାନ ଫଳ ପାଇବା ଅବସ୍ଥା —
2. A tie between two players in a game.
[ ଦ୍ର—ଏ ଦୁଇଜଣଙ୍କୁ ଉଚ୍ଚତର ଓ ନିମ୍ନତର ନ କରି ଦୁଇଜଣଙ୍କ ନାମ ଲେଖି ଗୋଟିଏ ବ୍ରାକେଟ୍ ବା ବନ୍ଧନୀ ଦିଆଯାଏ । ]

ଟାଇଆ—ଦେ. ବି—ଟାହିଆ ( ଦେଖ )
Ṭāiā Ṭāhiā ( See )

ଟାଇଁ କରି—ଦେ. କ୍ରି. ବିଣ. ( ଧ୍ୱ- ଟଙ୍କାର )—
Ṭāiṅ kari ୧ । ଟାଇଁ ଟାଇଁ ଶବ୍ଦ କରି—
ঠন্ করে 1. With a hard sound like that of a
ठनाक metal striking a metal.
ଟାଇଁ କରି; ଟାଇଁକରି; ଟାଇଁ ଦିସ୍; ଟାଇଁ ଧସ୍ } ଅନ୍ୟରୂପ
୨ । ହଠାତ୍‌; ହଠାତ—
2. All on a sudden.

ଟାଇଁଟାଇଁ—ଦେ. ଅ. ( ଧ୍ୱନ୍ୟନୁକରଣ )—
Ṭāiṅ-ṭāiṅ ୧ । କଠିନ ବା ଧାତୁମୟ ପଦାର୍ଥରେ କୌଣସି
ঠনঠন କଠିନ ବସ୍ତୁ ବାଡ଼େଇବାର ଧ୍ୱନି—
ठनठन 1. Metallic hard sound; sound of striking a metal with another hard substance.
[ ଦ୍ର—ଘଣ୍ଟା ବାଡ଼େଇବାର; କମାର ହାତୁଡ଼ିରେ ଲୁହା ବାଡ଼େଇବାର; ଶୁଖିଲା ଠେକାଠାଏ ଫମ୍ପା ହାଣ୍ଡିରେ ଜୋରରେ ବାଜିବାର ଶବ୍ଦକୁ ଟାଇଁ ଟାଇଁ ଶବ୍ଦ କୁହାଯାଏ । ]
୨ । ତୀବ୍ର; ପ୍ରଚଣ୍ଡ; କଠୋରଭାବରେ—
2. Afflicting; giving pain; sharply.
( ଯଥା—ଖରାଟା ଟାଇଁ ଟାଇଁ ମାରୁଛି । )
୩ । ଟାଉଁ ଟାଉଁ; ବିରକ୍ତିଆ; ଚଢ଼ଚଢ଼—3 Fretting.
ଅଳି ସବୁବେଳେ ଟାଇଁ ଟାଇଁ, ଗଣ୍ଡା ପୂର୍ଣ୍ଣ ଦିନ ମାଇଁ—ଉଗ ।

ଟାଇଁଟାଇଁଆ—ଦେ. ବିଣ—୧ । ପ୍ରଚଣ୍ଡ ବା ତୀବ୍ର ( ରୌଦ୍ର )—
Ṭāiṅ-ṭāiṅā 1. Blasting; very hot ( rays of the sun ).
( ଯଥା—ଆଜି ଖରା ଟାଇଁଟାଇଁଆ ଖରା ହୋଇଛି । )
୨ । ନିଛାଟିଆ ( ପଡ଼ିଆ )—
2. Lonely ( field ).
୩ । ବୃକ୍ଷଲତାଶୂନ୍ୟ ବା ଛାୟାଶୂନ୍ୟ ( ସ୍ଥାନ )—
3. Open ( tract of country ); devoid of a shade to protect a wayfarer from the heat of the sun.
( ଯଥା—ଟାଇଁଟାଇଁଆ ଗହିର ବିଲ । )

୪ । ଯାହା ଦୃଢ଼ ପଦାର୍ଥଦ୍ୱାରା ଆହତ ହେଲେ ଟାଇଁ ଟାଇଁ ଶବ୍ଦ କରେ—
4 Producing a metallic clang when struck with a hard substance.

ଟାଇଟ୍—ବୈଦେ. ବିଣ ( ଇଂ )—ଚୁସ୍ତ; କସି ହୋଇଥିବା—
Ṭāiṭ Tight.

ଟାଇଟଲ୍—ବୈଦେ. ବି. ( ଇଂ. ଟାଇଟ୍ଲ୍ )—ଲୋକଙ୍କୁ ଦିଆ ଯିବା
Ṭāiṭal ଉପାଧି—Title given to a person.
टाईटल টাইটল
( ଟାଇଟ୍ଲ—ଅନ୍ୟରୂପ )

ଟାଇଟଲ୍ ପରୀକ୍ଷା—ଦେ. ବି—୧ । ଯେଉଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା
Ṭāiṭal parikshā ଛାତ୍ର କର୍ତ୍ତୃପକ୍ଷଙ୍କଠାରୁ ଉପାଧି ପାଏ—
टाईटल परीक्षा Title-examination.
টাইটল পরীক্ষা ୨ । ସଂସ୍କୃତ ଟୋଲରୁ ଉତ୍ତୀର୍ଣ୍ଣ ହୋଇ କାବ୍ୟତୀର୍ଥ, ସାଂଖ୍ୟତୀର୍ଥ, ବେଦାନ୍ତତୀର୍ଥ ଆଦି ଉପାଧି ଯେଉଁ ପରୀକ୍ଷାରେ ମିଳେ—
2. Title-examination of Sanscit schools.

ଟାଇଟଲ୍ ପେଜ୍—ବୈଦେ. ବି. (ଇଂ)—ପୁସ୍ତକର ନାମ ଲେଖା ଥିବା
Ṭāiṭal pej ପୃଷ୍ଠା; ଉପର ପୃଷ୍ଠା—
टाईटेल पेज Title-page of a book.
টাইটল পেজ

ଟାଇନ୍—ସ୍ତ୍ରୀ. ବୈଦେ. ବି. (ଇଂ. ଟାଇମ୍)—୧ । ଟାଇମ୍ (ଦେଖ)
Ṭāin 1. Ṭāim (See)
टाईन টাইন ୨ । ସମୟର ନିୟମ ରକ୍ଷା—
(ଟାଇନ—ଅନ୍ୟରୂପ) 2. Punctuality.
୩ । ସୁବ୍ୟବସ୍ଥା—3. Good arrangement; method.

ଟାଇଟେଲ୍ (ଇତ୍ୟାଦି)—ସ୍ତ୍ରୀ. ବୈଦେ. ବି. (ଇଂ)—
Ṭāiṭel (etc) ଟାଇଟଲ ଇତ୍ୟାଦି (ଦେଖ)—Ṭāiṭal etc (See)

ଟାଇପ୍—ବୈଦେ. ବି. (ଇଂ)—୧ । ଛାଞ୍ଚରେ ଢଳା ହୋଇ ଥିବା
Ṭāip ସୀସାରେ ଛାପିବା ଅକ୍ଷର—
टाईप 1. Type cast in mould for printing.
টাইপ
୨ । ଛପା ଅକ୍ଷରର ପ୍ରକାର—
2. Type; kind or class of printed letter.
[ ଦ୍ର—ଛପା ଅକ୍ଷରର ଆକାରପ୍ରକାରଭେଦରେ ଟାଇପ୍‌ର ଭିନ୍ନ ଭିନ୍ନ ନାମ ଅଛି—
ଯଥା—ଗ୍ରେଟ୍ ପ୍ରାଇମର୍, ଇଙ୍ଗ୍ଲିଶ୍ ବଡ଼ି, ପାଇକା, ସ୍ମଲ୍ ପାଇକା, ଲଙ୍ଗ୍ ପ୍ରାଇମର୍ ।]

ଟାଇପ୍ କପି—ବୈଦେ. ବି. ( ଇଂ. ଟାଇପ୍‌ଡ୍ କପୀ )—ହାତଲେଖାର
Ṭāip kapi ଟାଇପ୍ କରାଯାଇଥିବା ନକଲ—
टाईपकापी Typed copy.
টাইপকপি

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ସ୍ଥାନରେ ବ୍ୟବହୃତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟାଁନ'ପାଇଲେ 'ଅଜ୍ଞ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

ଟାଇପ୍ କରିବା—ଦେ. କ୍ରି.—(ଇଂ ଟାଇପ୍)—ଟାଇପ୍ ରାଇଟର୍ ଯନ୍ତ୍ରରେ
Ṭāip karibā ଅକ୍ଷର ଛାପିବା—To type by the
টাইপ কবা टाईप करना type-writer.

ଟାଇପ୍ କଳ—ଦେ. ବି.—ଟାଇପ୍ ରାଇଟର୍ (ଦେଖ)
Ṭāip kaḷa Ṭāip rāiṭar (See)
টাইপ কল

ଟାଇପ ଫାଉଣ୍ଡ୍ରି—ବୈଦେ. ବି. (ଇଂ)—ଛାପାଖାନାପାଇଁ ଶୀଶାର ଅକ୍ଷର
Ṭāip phāunḍrī ଢଳା ହେବା କାରଖାନା—
টাইপফাউণ্ড্রী; टाइप् फाउण्ड्री Type-foundry.

ଟାଇପ୍‌ରାଇଟର—ବୈଦେ. ବି. (ଇଂ)—ଟାଇପ୍ କରିବାର କଳ—
Ṭāip-rāiṭar Type-writer.
টাইপরাইটর टाईपराईटर

ଟାଇ ପିନ୍—ବୈଦେ. ବି (ଇଂ)—ପୁରୁଷମାନଙ୍କର କାମିଜରେ ଲଗିଥିବା
Ṭāi pin ଏକପ୍ରକାର କଣ୍ଟା—Tie-pin.
টাইপীন टाईपीन

ଟାଇପିଷ୍ଟ—ବୈଦେ. ବି. (ଇଂ)—ଟାଇପ୍ କରି ଜାଣିଥିବା ଲୋକ—
Ṭāipishṭ Typist.
টাইপিষ্ট टाईपीष्ट

ଟାଇଫଏଡ ଜର—ଦେ. ବି. (ଇଂ ଟାଇଫଏଡ୍+ଜ୍ୱର)—ବାତକଫ-
Ṭāiphaeḍ jara ପ୍ରକୋପଜନିତ ଏକପ୍ରକାର ମାରାତ୍ମକ ଜ୍ୱର—
টাইফএড় Typhoid or enteric fever.
टाईफयड्

ଟାଇମ୍—ବୈଦେ. ବି. (ଇଂ)—୧ । ସମୟ—
Ṭāim 1. Time.
টাইম ୨ । ଉପଯୁକ୍ତ ସମୟ—
टाईम 2. Proper time.
୩ । ନିର୍ଦ୍ଦିଷ୍ଟ ସମୟ—3. Fixed time.

ଟାଇମ୍‌ଟେବଲ୍—ବୈଦେ. ବି. (ଇଂ ଟାଇମ୍‌ଟେବ୍‌ଲ୍)—ରେଳ ଗାଡ଼ିର
Ṭāim ṭebal ଯିବା ଆସିବାର ନିର୍ଦ୍ଦିଷ୍ଟ ସମୟଜ୍ଞାପକ ପୁସ୍ତକ—
টাইমটেবল Railway time-table.
टाईमटेबल
(ଟାଇମ୍‌ଟେବ୍‌ଲ୍, ଟାଇମଟେବୁଲ୍—ଅନ୍ୟରୂପ)

ଟାଇମ୍‌ପୀସ—ବୈଦେ. ବି. (ଇଂ)—ଟେବଲ ଉପରେ ବା କାନ୍ଥକୁଣ୍ଡରେ
Ṭāim-pīs ରଖାଯିବା ଏକପ୍ରକାର ଘଣ୍ଟା—Time-piece.
টাইমপীস टाइम पीस
[ଦ୍ର—ଏହା ପକେଟ୍‌ଘଡ଼ି ବା ୱାଚ୍ ଠାରୁ ବଡ଼; ଏଥିରେ ସମୟଜ୍ଞାପକ ଘଣ୍ଟି ବାଜେ ନାହିଁ ।]

ଟାଇମସ୍—ବୈଦେ.ବି(ଇଂ)—ଲଣ୍ଡନର ପ୍ରଧାନ ଦୈନିକ ସମ୍ବାଦପତ୍ର—
Ṭāimas The Times newspaper of London.
টাইমস टाइमस
(ଟାଇମ୍ସ୍—ଅନ୍ୟରୂପ)

ଟାଇଲ୍—ବୈଦେ.ବି.(ଇଂ)—କୋଠାର ଛାତ ବା ମେଜିଆରେ ବସାହେବା
Ṭāil ଚତୁଷ୍କୋଣ ବା ବର୍ଗକ୍ଷେତ୍ରାକାର ପତଳା ଇଷ୍ଟକ—
টালি; টাইল্ खपड़ा Tile.
(ଟାଇଲ୍‌-ଅନ୍ୟରୂପ)

ଟାଉଁ ଟାଉଁ—ଦେ. କ୍ରି.ବିଣ—କର୍କଶ ଭାବରେ (କଥା କହିବା)—
Ṭāuñ ṭāñu Rudely (speaking).
ଦେ.ବିଣ—ଟାଉଁଟାଉଁଆ (ଦେଖ)
Ṭāuñ-ṭauñā (See)

ଟାଉଁ ଟାଉଁଆ—୧ । ବିରକ୍ତିସୂଚକ ବା ବିରକ୍ତି ପ୍ରକାଶକ ବା କର୍କଶ
Ṭāuñ-ṭāuñā (କଥା)—1. Harsh (words)
୨ । ରୁକ୍ଷପ୍ରକୃତିକ (ବ୍ୟକ୍ତି)—2. Harsh-natured (person); surly; rude.

ଟାଉଁ ଟାଉଁ କରିବା—ଦେ. କ୍ରି—କ୍ରୋଧ ବା ଘୃଣାରେ
Ṭāuñ-ṭāuñ karibā (ନାସିକା) କୁଞ୍ଚନ କରିବା;(ନାକ)ଛିଞ୍ଚାଡ଼ିବା; ଚିଡ଼ ଚିଡ଼ ହେବା—To fret with anger or contempt.

ଟାଉଁ ଟାଉଁ ହେବା—ଦେ. କ୍ରି—କୌଣସି ବ୍ୟକ୍ତି ଉପରେ ବିରକ୍ତି-
Ṭāuñṭāuñ hebā ଭାବ ପ୍ରକାଶ କରିବା—
खीजना To fret at a person.

ଟାଉଁଶା—ଦେ. ବିଣ—ଟାଆଁଶା (ଦେଖ)
Ṭāuñśā Ṭā-āñśā (Seee)

ଟାଉକା—ଦେ. ବି—ଯେଉଁ ଚୋର ସାମାନ୍ୟ ପଦାର୍ଥ ଚୋରିକରେ—
Ṭāukā Pilferer; petty thief.
ছিচকাচোব अंटीबाज

ଟାଉକା ଚୋର—ଦେ. ବି—ଟାଉକା (ଦେଖ)
Ṭāukā chora Ṭāukā (See)

ଟାଉଟ୍—ବୈଦେ. ବି ଇଂ)—ଟର୍ଣ୍ଣୀ (ଦେଖ)
Ṭāuṭ Ṭarṇṇī (See)

ଟାଉଟର୍—ବୈଦେ. ବି (ଇଂ ଟାଉଟ୍)—ଟର୍ଣ୍ଣୀ (ଦେଖ)
Ṭāuṭar Ṭarṇṇī (See)

ଟାଉଟାଉ—ଦେ. କ୍ରି. ବିଣ—(ସଂ. ତ୍ୱରିତ)-ଅତିଶୀଘ୍ର; ତ୍ୱରିତଭାବରେ—
Ṭāu-ṭāu sharp; very quickly, hastily.
চটপট जल्द (ଯଥା—ପିଲାମାନେ ୧୦ଟା ବେଳେ ଗାଧୋଇ ଟାଉଟାଉ କରି ଭାତ ଗଣ୍ଡାଏ ଖାଇ ଦେଇ ସ୍କୁଲକୁ ଦଉଡ଼ନ୍ତି)
ବିଣ—୧ । ଚଞ୍ଚଳ; ଅସ୍ଥିର—1. Restless.
୨ । ଉଦ୍ବିଗ୍ନ—2. Anxious.
ରସିଣ ଚାହାଣ ଫିଟାଇ ଫିଟାଇ
ଟାଉ ଟାଉ ହେଉ ମନ ।—ଅଭିମନ୍ୟୁ .ବିଦଗ୍ଧ ଚିନ୍ତାମଣି ।
୩ । ଅସ୍ଥିରପ୍ରକୃତିକ; ଅବ୍ୟବସ୍ଥିତ ଚିତ୍ତ } 3. Of restless desposition; fickle-minded.

ଟାଉଟାଉଆ—ଦେ. ବିଣ (ସଂ. ତ୍ୱରିତ)—୧ । ଭୁରୁଭୁରିଆ—
Ṭāu-ṭāuā 1. Hasty by nature.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଂ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍ସ | ଇଂ | ଅ | ଡ |
| ୨ | ଈ | ଊ | ଋ | ଲୃ | ଂ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଙ୍ସ | ଇଥ | ଡ଼ | ନ |

বাস্তবাগীশ **उतावला** ୨ । ଅବ୍ୟବସ୍ଥିତଚିତ୍ତ—
2. Fickle-minded.

ଟାଉନ୍—ବୈଦେ. ବ (ଇଂ)—ସହର; ନଗର—Town
Tāun
টাউন্ **टाउन्**
[ଦ୍ର—ଏହି ଇଂରାଜି ଶବ୍ଦ ସଙ୍ଗେ ଆହୁରି ଅନେକ ଇଂରାଜି ଓ ବୈଦେଶିକ ଶବ୍ଦମାନ ଲାଗିଥିବା ଇଂରାଜି ଓ ବୈଦେଶିକ ଶବ୍ଦମାନ ଓଡ଼ିଆ ଭାଷାରେ ଚଳୁଛନ୍ତି । ଯଥା—ଟାଉନ୍ ଇନ୍ସପେକ୍ଟର, ଟାଉନ୍ ଜମାଦାର, ଟାଉନ୍ ସବ୍‌ଇନ୍ସପେକ୍ଟର, ଟାଉନ୍ ସୁପରଣ୍ଟେଣ୍ଡେଣ୍ଟ ।]

ଟାଉନ୍ କ୍ଲବ୍—ବୈଦେ. ବ. (ଇଂ)—ନଗରବାସୀମାନଙ୍କର ପ୍ରତ୍ୟହ ସନ୍ଧ୍ୟାବେଳେ ବସାଉଠା, ଖେଳ କୌତୁକ ଓ ଗପ କରିବାର ଘର—Town club.
Tāun klab
টাউনক্লব **टाउन क्लब**

ଟାଉନ୍ ଡିଉଟି—ବୈଦେ. ବ (ଇଂ) (ସମ୍ବଲପୁର ଅଞ୍ଚଳରେ ବ୍ୟବହୃତ)—ସହରକୁ ପଣ୍ୟ ନେବାଆଣିବା ବ୍ୟକ୍ତିଦ୍ୱାରା ମିଉନିସିପାଲିଟିକୁ ଦଆଯିବା ମାସୁଲ—Town-duty levied on merchandise by a municipality; octroi.
Tāun ḍiuṭi
টাউন ড্যুটী
**टाउन ड्युटी**

ଟାଉନ୍ ଥାନା—ବୈଦେ. ବ (ଇଂ)—ସହରମଧ୍ୟସ୍ଥ ପୁଲିସ୍ କର୍ମଚାରୀଙ୍କ କାର୍ଯ୍ୟାଳୟ ବା ଆଡ୍ଡା—Town police-station
Tāun thānā
টাউনথানা
**कुतवाली**

ଟାଉନ୍ ପୁଲିସ୍—ବୈଦେ. ବ. (ଇଂ)—ନଗରର ଶାନ୍ତିରକ୍ଷକ ଫଉଜ—Town-police.
Tāun pulis
টাউন পুলিস; **टाउन पुलिस**

ଟାଉନ୍ ପ୍ଲାନିଙ୍ଗ୍—ବୈଦେ. ବ. (ଇଂ ଟାଉନ୍ ପ୍ଲାନିଙ୍ଗ୍)—ନଗରବାସୀଙ୍କ ସ୍ୱାସ୍ଥ୍ୟରକ୍ଷା ପ୍ରତି ଦୃଷ୍ଟି ରଖାଯାଇ ଘରମାନ ତିଆରି କରିବାର ପ୍ରଣାଳୀ—Town-planning.
Tāun plāning

ଟାଉନ୍ ଲାଇବ୍ରେରି—ବୈଦେ. ବ (ଇଂ)—କୌଣସି ସହରର ଲୋକମାନଙ୍କର ବ୍ୟବହାରାର୍ଥ ସାଧାରଣ ପୁସ୍ତକାଗାର—Town-library.
Tāun lāibreri
টাউন লাইব্রেরী; **टाउन लाइब्रेरी**
[ଦ୍ର—ଟାଉନ୍ ଲାଇବ୍ରେରି ସଂଲଗ୍ନ ଯେଉଁ ବଡ଼ ଲମ୍ବ କାମରାରେ ସାଧାରଣ ସଭାମାନ ବସେ, ତାକୁ ଟାଉନ୍ ଲାଇବ୍ରେରି ହଲ ବୋଲାଯାଏ ।]

ଟାଉନ୍ ସ୍କୁଲ୍—ବୈଦେ. ବ. (ଇଂ. ଟାଉନ୍+ସ୍କୁଲ୍)—୧ । ସହରରେ ଥିବା ବିଦ୍ୟାଳୟ—A school in a town.
Tāun skul
୨ । (ନାମ) କଟକ ସହରରେ ସ୍ୱର୍ଗୀୟ ରାୟବାହାଦୁର ମଧୁସୂଦନ ରାଓଙ୍କ ସ୍ଥାପିତ 'ଟାଉନ ଭିକ୍ଟୋରିଆ ହାଇ ଇଂଲିସ୍ ସ୍କୁଲ'ର ଡାକନାମ—
2. The name by which the Town Victoria Rai High English school started by the late Bahadoor Madhusudan Rao at Cuttack is popularly known.
(ଟାଉନ୍ ଇସ୍କୁଲ୍—ଅନ୍ୟନାମ)

ଟାଉନ୍ ହଲ୍—ବୈଦେ. ବ (ଇଂ)—ନଗର ବା ସହରର ଅଧିବାସୀମାନଙ୍କର ସାଧାରଣ ସଭା ସମିତି ବସିବାର ବଡ଼ ଓ ଲମ୍ବ କାମରା—Town hall.
Tāun hal
টাউন হল; **टाउनहाल**

ଟାଉଲି (ଇତ୍ୟାଦି)—ଦେ. ବ.—ଟାହୁଲି ଇତ୍ୟାଦି (ଦେଖ)
Tāuli (etc) Tahuli etc (See)

ଟାଉଲି ମାଉଲି—ଦେ. ବ— ଟାହୁଲି (ଦେଖ)
Tāuli māuli Tāhuli (See)
ତମ୍ଭା ଟାଉଲି ମାଉଲି କେତେ କଥା କହେ ।
ଫକୀରମୋହନ. ଛମାଣ. ଆଠଗୁଣ୍ଠ ।

ଟାଏଟ୍—ପ୍ରାଦେ (ସମ୍ବଲପୁର) ବ, (ଭୁଲ. ହି ଟାଟ୍ଟି)—ବାଉଁଶ ପାତିଆରେ ବୁଣା ହୋଇଥିବା ତଲେଇ, ଛାଟି—Mat made of bamboo-laths.
Tāeṭ

ଟାଁସମାଲପା—ପ୍ରାଦେ (ଗଞ୍ଜାମ) ବ— ଏକପ୍ରକାର ବାଦ୍ୟ—
Tā̃samālapā A kind of musical instrument.

ଟାକ୍—ଦେ. ବ— (ସଂ. ଟଙ୍କନ) କଲରେ ସିଲାଇ କରାଯିବା ପୂର୍ବରୁ ହାତଦ୍ୱାରା ଛୁଞ୍ଚରେ କରାଯାଇଥିବା ଟାଙ୍କା ସିଲାଇ—Hand-stiching.
Tāk
টাঁক, **टाँका**
ପ୍ରାଦେ (ସମ୍ବଲପୁର) ବିଣ ଓ କ୍ରି ବିଣ—ଟିକିଏ—A little; a bit.

ଟାକର—ଦେ. ବ—(ଧ୍ୱନ୍ୟନୁକରଣ) ଠଣା; ଆଙ୍ଗୁଠିର ଗଣ୍ଠିଦ୍ୱାରା ମୁଣ୍ଡର ଖପୁରୀରେ କରାଯିବା ଆଘାତ—
Tākara
ঠোকর, **ठोंग, खुदका** A rap on the skull with the knuckles.
ସୁରଙ୍ଗରମଣି ଶ୍ୟାମେ ଅଛ ମୋ ଉରସ
ପର ପରିବାଦ ମୁଣ୍ଡେ ଟାକର ବରଷ । କବିସୂର୍ଯ୍ୟ. ସଙ୍ଗୀତ ।

ଟାକରଖାଇ—ଦେ. ବ.—ଚିଲିକାର ଏକପ୍ରକାର ମାଛ—
Tākara-khāi A kind of fish of the Chilka lake.

ଟାକର ଖାଇବା—ଦେ. କ୍ରି-୧ । (ଲକ୍ଷଣାର୍ଥ) ପରଦ୍ୱାରା ଅପମାନିତ ହେବା—
Tākara khāibā 1. (figurative) To be insulted by another.
୨ । ଉପହସିତ ହେବା—To be jeered at.
ଏ ଉତ୍ତରସେ ଯେ ପୁଅ ଖାଏ,
ଲୋକେ ମହ ଟାକର ଖାଏ । ଉଗ ।

ଟାକର ମାରିବା—ଦେ. କ୍ରି—୧ । ଠଣା ମାରିବା; ଆଘାତ କରିବା—
Tākara māribā 1. To rap with the knuckle.
ঠোকর মারা ଟାକର ମାର ମୋ ଅଣା, ମୁଣ୍ଡେ ଉଙ୍କୁଶଦେଶା—
**धौल मारना, ठोंगना** କବିସୂର୍ଯ୍ୟ. ସଙ୍ଗୀତ ।
টিটকারি মারা ୨ । (ଲକ୍ଷଣାର୍ଥ) ଉପହାସ କରିବା—
**चटकारना** 2. (figurative) To jeer at.
୩ । (ଲକ୍ଷଣାର୍ଥ) ବଳିଯିବା; ଉତ୍କୃଷ୍ଟ ହେବା—
3. (figurative) To excel.
ନାଗରମଣୀଙ୍କୁ ଟାକର ମାରୁଛ ତୋ କରତଳେ ଥିବା ଦାସୀ—
କବିସୂର୍ଯ୍ୟ. ସଙ୍ଗୀତ ।

**ଠାକର଼**—ଦେ. ବି. (ଠକ୍ ଠକ୍ ଶବ୍ଦାନୁକରଣ)—୧ । ତାଳୁ ଓ ଜିଭଦ୍ୱାରା କୃତ ଅବ୍ୟକ୍ତ ଠକ୍‌ଠକ୍ ଶବ୍ଦ—1. Clicking sound produced by the tongue taken back quickly to the palate.
Ṭākarā
টাকরা
चटकारा, टिटकारा

[ ଦ୍ର—ଗୋରୁଙ୍କୁ ଅଡ଼ାଇବା ସମୟରେ ଏ ଶବ୍ଦ ଉଚ୍ଚାରିତ ହୁଏ । ]

୨ । ତାଳୁ—2. Palate.

ପ୍ରାଦେ (ବାଲେଶ୍ୱର) ବି ( ତୁଳ. ବଂ. ଟାକ୍ )—ମୁଣ୍ଡର ଚନ୍ଦା ବା କେଶହୀନ ସ୍ଥଳ—Baldness of the head.

ବିଣ—ଠାଙ୍କର଼; ଚନ୍ଦା—Bald.

**ଠାକର଼ ଆମ୍ବୁଲ**—ଦେ. ବି—ଠାକୁଆ ଆମ୍ବୁଲ—Scraped mango pickled without its stone being removed.
Ṭākarā āmbula

**ଠାକର଼ ଫୁଟା(ଟେ)ଇବା**—ଦେ. କ୍ରି—ତାଳୁରେ ଜିଭ ଲଗାଇ ଶବ୍ଦ କରିବା—To utter a clicking sound with the tongue and the palate.
Ṭākarā phuṭā(ṭe)ibā
টাকরা মারা
टिटकारना
(ଠାକର଼ ମାରିବା—ଅନ୍ୟରୂପ) ପାଛରେ ଠାକର଼ ଫୁଟାଉଥିଛି—
ଫକୀରମୋହନ. ଛମାଣ ଅଠଗୁଣ୍ଠ ।

**ଠାକ ବସିବା**—ଦେ. କ୍ରି—ଠାକି ରହିବା ( ଦେଖ ) Ṭāki rahibā ( See )
Ṭāki basibā

**ଠାକିବା**—ଦେ. କ୍ରି—ଠାକି ରହିବା ( ଦେଖ ) Ṭāki rahibā ( See )
Ṭākibā

[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ବସିବା ଓ ରହିବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ଠାକି ରହିବା**—ଦେ. କ୍ରି—(ସଂ. ତର୍କ ଧାତୁ)—୧ । କୌଣସି ପଦାର୍ଥ (ଯଥା—ନିର୍ଦ୍ଦିଷ୍ଟ ସମୟରେ ଭୋଜ୍ୟ ଦ୍ରବ୍ୟ) ମିଳିବ ବୋଲି ଚାହିଁ ବସିବା; ଉତ୍କଣ୍ଠାସହକାରେ ଅପେକ୍ଷା କରିବା—1. To eagerly look out for; to hankeringly wait for.
Ṭāki rahibā
টাঁকা
टकटकाना

ଅଯାଚିତ ବୃତ୍ତି ଅଜଗର ତୃଣ-ଭୂମିରେ ଲଗି,
ଓଠାଇବା ଅଶେ ଶ୍ୱାସେ ମୃଗ ଯହିଁ ରହନ୍ତି ଠାକି ।
ରାଧାନାଥ. ଉଷା ।

୨ । ଆଶା କରିବା—2. To expect.

ଠାକିଛି ସୁଧାଂଶୁଂ କଳାକୁ ଥକାଇଁ କରିବାକୁ ପାଣିଗତ—
କବିସୂର୍ଯ୍ୟ. କଣୋଶ୍ୱରମ୍ଭୁ, ଠ. ଗୀତ ।

୩ । ଅଧୈର୍ଯ୍ୟ ସହକାରେ ଚଗି ରହିବା — 3. To watch impatiently for.

ପ୍ରଣୟୀ-ଅନନ୍ଦେ କୋଟି କୋଟି ଯୁଗ ବସି ରହିଥାନ୍ତି ଠାକ—
ନନ୍ଦକିଶୋର. ଶର୍ମିଷ୍ଠା ।

୪ । ଅନିମେଷ ଦୃଷ୍ଟିରେ ଚାହିଁ ରହିବା—4. To wait with winkless eyes; to be on the look out for.

ଯେମନ୍ତେ ବ୍ୟାଧ ଯେ ମୃଗର,
ଛିଦ୍ର ଠାକଇ ନିରନ୍ତର । ଜଗନ୍ନାଥ. ଭାଗବତ ।

୫ । ନାକେଇବା ( ଦେଖ )— 5. Nākeibā (See)

**ଠାକୁ**—ଦେ. ବି—(ସଂ. ତର୍କୁ)—ଅରଟ ଲୌହ-ଶଳାକା ତାକୁଡ଼ି—Spindle.
Ṭāku
টাকুয়া, टाकुआ

**ଠାକୁଆ**—ଦେ. ବି (ସଂ. ଠଙ୍କ ?)—୧ । ପକ୍ୱ ଆମ୍ରଫଳର ମଞ୍ଜି—1. Stone of the ripe mango fruit.
Ṭākuā
गुठली ଆମ୍ବ ଖାଇଲା ପୃଥକୁ ଠାକୁଆ ଭଣ୍ଡଉଛି—ଢଗ ।

୨ । (ସଂ. ତର୍କୁ) ବାଣୀ ବା ଝୋଟର ସୁତୁଲି କାଟିବାର ତାକୁଡ଼ି—2. A spindle for spinning strings of jute or hemp.
টাকুয়া
टमखड़ा, टकुआ

୩ । ତାକୁଡ଼ି ମୂଳରେ ଥିବା ମାଟିର, ଖପରିର ବା ପଥରର ପାତଳା ଚକତି—3. A thin round piece attached to the base of a spindle.

ବିଣ—ଠାକୁଆ ପରି ଚେପଟା—Flat like a mango—stone.

ପ୍ରାଦେ. ( ପୁରୀ ) ବି—ଏକପ୍ରକାର ମିଷ୍ଟାନ୍ନ ଖଜା—A kind of sweetmeat like the stone of mango.

[ ଦ୍ର—ପୁରୀ ଜଗନ୍ନାଥଙ୍କଠାରେ ଏହି ପିଠା ଭୋଗ ହୁଏ । ଏହାର ଆକୃତି ଆମ୍ବ ଠାକୁଆ ପରି ହୋଇଥିବାରୁ ଏହାକୁ ଠାକୁଆ ବୋଲି କହନ୍ତି । ]

(ଗଡ଼ଜାତ) ବି—ଏକପ୍ରକାର ମୋଟା ବନ୍ୟ ଲତା—A kind of thick wild creeper.

[ ଦ୍ର—ଏହା ଆମ୍ବ ପ୍ରଭୃତି ବଡ଼ ଗଛରେ ମାଡ଼େ । ଏହାକୁ ଲଇ କରନ୍ତି । ଏ ଲତାକୁ ଛେଚି ଚିପୁଡ଼ିଲେ ଏଥିରୁ ମହୁପରି ବହଳ ରସ ବାହାରେ । ତେଣୁ ଲୋକେ ଏହାକୁ ମହୁ ସଙ୍ଗେ ମିଶାଇ ବିକନ୍ତି । ]

**ଠାକୁଆ ଆମ୍ବୁଲ**—ଦେ. ବି—କଞ୍ଚା ଆମ୍ବ ଉପରୁ ଚୋପା ଚାଞ୍ଛି ତହିଁ ମଧ୍ୟରୁ ଠାକୁଆ ଓ କୋଇଲି ନ କାଢି ଶୁଖାଇ ପ୍ରସ୍ତୁତ କରିବା ଆମ୍ବୁଲ; ଠାକର଼ ଆମ୍ବୁଲ—Unripe mango scraped of its rind and seasoned for being used as pickle.
Ṭākuā āmbula
আমশী
अमहर

**ଠାକୁଆ ଗାଲ**—ଦେ. ବି—ଯେଉଁ ଗାଲ ଠାକୁଆ ପରି ସେମିତି ବା ଚେପଟା ହୋଇଥାଏ (ଏହା ଦନ୍ତହୀନତା, ବାର୍ଦ୍ଧକ୍ୟ ଓ ଦୁର୍ବଳତାର ଚିହ୍ନ )—Hollow cheek ( due to old age and ill health ).
Ṭākuā gāla

**ଠାକୁଆ ଗାଲି**—ଦେ. ବିଣ. ସ୍ତ୍ରୀ ( ଗାଲ )—ଯେଉଁ ସ୍ତ୍ରୀର ଗାଲ ଆମ୍ବ-ଠାକୁଆ ପରି ଚେପଟା ହୋଇ ପାଟିର ଭିତର ମଧ୍ୟକୁ ପଶି ଯାଇଥାଏ ଓ ଥୋଡ଼ ବାହାରିଥାଏ—( a term of abuse) Bony-cheeked; (a woman) with sunken cheeks and long snout.
Ṭākuā gāli
(ଠାକୁଆଗାଲେଇ—ଅନ୍ୟରୂପ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟୁ | ଊଅ | ଷ୍ଣ |
| ୨ | ଈ | ଉ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ଥ |

[ ଦ୍ର—ଏପରି ସ୍ତ୍ରୀଙ୍କ ମୁଖ ବଡ଼ ଅସୁନ୍ଦର ଦେଖାଯାଏ । ଏ ବିଶେଷଣ ସ୍ତ୍ରୀମାନଙ୍କୁ ଗାଳି ଦେବାରେ ବା ଚିଡ଼ାଇବାରେ ବ୍ୟବହୃତ ହୁଏ । ]

**ଟାକୁଆ ମୁହାଁ**—ଦେ. ବିଣ ପୁଂ. (ଗାଳି )—ଯାହାର ମୁହଁ ଆମ୍ବ ଟାକୁଆ Ṭākuā muhān̐ ଭଳିଆ ଲମ୍ବା ଓ ଚେପ୍ଟା—( a term of (ଟାକୁଆମୁହୀଁ—ସ୍ତ୍ରୀ) abuse) Having a long and narrow face; bony-faced.

**ଟାକୁଆଲି**—ଦେ. ବି—ବଡ଼ ବନ୍ୟବୃକ୍ଷବିଶେଷ—
Ṭākuāli A wild tree; Vitis Repanda ( Haines).

**ଟାକୁଟାକୁ କରିବା**—ଦେ କ୍ରି. ( ଧ୍ୱନ୍ୟନୁକରଣ )—
Ṭāku-ṭāku kariba ଟାକୁଟାକୁ ହେବା ( ଦେଖ )
Ṭāku-ṭāku heba (See )

**ଟାକୁଟାକୁ ହେବା**—ଦେ. କ୍ରି. ( ଧ୍ୱନ୍ୟନୁକରଣ )—
Ṭāku-ṭāku heba ୧ । ଭୋକରେ ପାଟୁ ପାଟୁ ହେବା ବା ବିକଳ ହେବା—
1 To feel the extreme pangs of hunger.
୨ । ଖାଇବା ପାଇଁ ଠାକ ବସିବା—
2. To wait impatiently for food.

**ଟାକ୍ସ**—ବୈଦେ. ବି. ( ଇଂ )—କର; ଶୁଳ୍କ; ଟିକସ୍—
Ṭāks Tax; rate.
टेक्स **टिकस**

**ଟାକ୍ସ ଦାତା**—ଦେ. ବି. ( ଇଂ. ଟାକ୍ସ ଓ ସଂ. ଦାତା )—କରଦାତା—
Ṭāks dātā Rent-payer; tax-payer.
টেক্সদাতা **टिकसदाता**

**ଟାକ୍ସ ଦାରୋଗା**—ବୈଦେ. ବି. ( ଇଂ. ଟାକ୍ସ ଓ ଫା. ଦାରୋଗା )—
Ṭāks dārogā କର ସଂଗ୍ରହକାରୀ କର୍ମଚାରୀ—
টেক্স দারোগা Tax-collector; tax-darogah.
**टिकस दारोगा**

**ଟାକ୍ସ ବସା(ସେ)ଇବା**—ଦେ. କ୍ରି—କୌଣସି ବ୍ୟକ୍ତିଙ୍କ ଉପରେ ବା ଘର-
Ṭāks basā(se)iba ଉପରେ ଶୁଳ୍କ ଧାର୍ଯ୍ୟ କରିବା—
To assess tax on a person or holding.

**ଟାକ୍ସ ବସିବା**—ଦେ. ବି—କୌଣସି ବ୍ୟକ୍ତି ବା ସ୍ଥାନ ଉପରେ ଶୁଳ୍କ
Ṭāks basibā ଧାର୍ଯ୍ୟ କରାଯିବା—Assessment of tax on a person or holding.

**ଟାକ୍ସି**—ବୈଦେ. ବି. ( ଇଂ )—ଭଡ଼ାରେ ଚାଲିବା ମଟର ଗାଡ଼ି—
Ṭāksi Taxi.
টেক্সী **टेक्सी**

**ଟାକ୍ସି ଡ୍ରାଇଭର୍**—ବୈଦେ.ବି.(ଇଂ)—ଭଡ଼ାଚାଲିବା ମଟର ଗାଡ଼ିର ଚାଳକ—
Ṭāksi drāibhar A taxi-driver.
টেক্সি ড্রাইভর **टेक्सी ड्राइवर**

**ଟାକ୍ସି ମିଟର୍**—ବୈଦେ. ବି. (ଇଂ) —ଭଡ଼ାଚାଲିବା ମଟର ଗାଡ଼ିରେ ଥିବା
Ṭāksi miṭar ଦୂରତ୍ୱ ଯନ୍ତ୍ର (ଯହିଁରୁ ଗାଡ଼ି କେତେ ବାଟ ଚାଲିଛି
টেক্সি মিটর **टेक्सी मिटर** ଏହା ଜଣାଯାଏ )—Taxi-moter.

**ଟାଙ୍କ୍**—ବୈଦେ. ବି. ( ଇଂ )—୧ । ଜଳାଧାର; ଟାଙ୍କି—
Ṭāṅk 1. Cistern; water-reservoir.
୨ । ମୋଟା ଲୁହାପଟାରେ ଆଚ୍ଛାଦିତ ଗାଡ଼ି; ଯହିଁରେ ସୈନିକ-
টাঙ্ক ମାନେ ବସି ଶତ୍ରୁବେଷ୍ଟିତ ସ୍ଥାନକୁ ନିରାପଦରେ ଯାଇ
**टांकी** ଶତ୍ରୁଙ୍କୁ ଆକ୍ରମଣ କରନ୍ତି—
2. Tank; armoured car.
ପ୍ରାଦେ. ( ସମ୍ବଲପୁର ) ବି—ଆମ୍ବ ଟାକୁଆ—
The stone inside the mango fruit.

**ଟାଙ୍କ**—ଦେ. ବି—୧ । ( ସଂ. ଟଙ୍ଗ ) ଜଙ୍ଘ—
Ṭāṅka 1. Thigh.
ঠেঙ্গ ୨ । ( ସଂ. ଟଙ୍କ ) ଗୋଡ଼—
**टाँग** 2. Leg.
টাঁকা ୩ । ( ସଂ. ଟଙ୍କ ଧାତୁ ) ଛୁଞ୍ଚିଦ୍ୱାରା ସିଲାଇ ବା ଛାଗା—
**टाँका** 3. A stitch.
ঠুঁক ୪ । ପ୍ରହାରାଦିର ଏକ ଦଫା —
**ठोंक** 4. One shower of cudgelling or abuse.
( ଯଥା—ମୁଁ ଭାଲୁ ଆଚ୍ଛା କରି ଟାଙ୍କେ ଦେଇଚଲି । )

**ଟାଙ୍କା**—ବୈଦେ. ବି. ( ସଂ. ଟଙ୍କନ=ବନ୍ଧନ )—
Ṭāṅkā ୧ । ଲୁଗା ସିଲାଇ କରିବାର ଥର; ଛାଗା—
টাঁকা 1. A stitch
**टंका** ୨ । ମୋଟା ସିଲାଇ କରିବା—2. Rough sewing

**ଟାଙ୍କି**—ବୈଦେ. ବି. ( ଇଂ. ଟାଙ୍କ୍ )—ବହୁ ପରିମିତ ଜଳ ବା ତେଲ
Ṭāṅki ସଞ୍ଚୟ କରିବାର ବୃହତ୍ ଲୌହମୟ ଆଧାର—
টাঁকী Iron-tank for storing oil or water.
**टंकी**
**टाँकी** ଦେ. ବି. ( ସଂ. ଟଙ୍କ )—ପଥର କାଟିବାର ଲୁହା କଣ୍ଢଣ—
Iron chisel for cutting stone.

**ଟାଙ୍କିଟୁଙ୍କି ଦେବା**—ଦେ. କ୍ରି. ( ବ୍ୟଙ୍ଗ ) ( ତୁଳ. ପେଟେ ଠୁଙ୍କି ଦେବା,
Ṭāṅki-ṭuṅki debā ପେଟେ ମାରି ଦେବା; ପେଟେ ଗୋଡ଼
ঠুঁকে দেওয়া ଦେବା )—ପେଟେ ଭୋଜନ କରିବା; ପେଟ ଭର୍ତ୍ତି
**ठुंक देना** କରି ଖାଇବା—To eat one's belly-ful.
ସେଥି ଆନନ୍ଦରେ କଂସାକ ପଖାଳ ଟାଙ୍କିଟୁଙ୍କି ଦେଇ ସଙ୍ଗାତ
ପାଖରୁ ଚାଲିଯାଏ—ଫକୀରମୋହନ. ଗଳ୍ପସ୍ୱଳ୍ପ ।

**ଟାଙ୍କି ତେଲ**—ଦେ. ବି. ( ଇଂ. ଟାଙ୍କ୍ + ସଂ. ତୈଳ )—ଯେଉଁ କେରା-
Ṭāṅki tela ସିନ ତେଲ ପ୍ରଥମେ ଆମଦାନି ହୋଇ ଟାଙ୍କି ବା ବଡ଼ ବଡ଼ ଲୌହଧାରରେ ସଞ୍ଚିତ ହୋଇ ରଖାଯାଏ ଓ ପରେ ବେପାରିମାନଙ୍କୁ ଖୁଚୁରା ବିକ୍ରୟ କରାଯାଏ—
Keroisine oil at first stored in tanks at depots in bulk and afterwards sold in retail to dealers; bulk oil.

**ଟାଙ୍କି ଧରିବା**—ଦେ. କ୍ରି—୧ । ଖୁବ୍ କସ କରି ଟାଣି ଧରିବା—
Ṭāṅki dhariba 1. To hold down by pulling tightly.

ସାଧାରଣ ଲେଖକେ ଅପର ପୃଷ୍ଠାରେ ଦଉତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ପଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଲୁଅ' ନ ମିଳିଲେ 'ଲୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ

୨ । ଓହଳାଇ ଧରିବା—
2. To hold a thing suspended

**ଟାଙ୍କିବା**—ଦେ. କ୍ରି (ସ. ଟଙ୍କ ଧାତୁ=ବନ୍ଧନ; ତୁଳ. ଇଂ ଟାକ୍)—
Ṭāṅkibā ୧ । ଛୁଞ୍ଚିଦ୍ୱାରା ସିଲାଇ କରିବା; ଛାଗା ଗଲାଇବା—
टाँकना 1. To stitch; to sew roughly.
**टांका** ୨ । ଦୁଇଖଣ୍ଡ କନାକୁ ଛାଗା ଗଲାଇ ସିଇଁବା—
2. To tack together two pieces of cloth.
୩ । (ସ. ତର୍କଣ) ହାତଦ୍ୱାରା କୌଣସି ପଦାର୍ଥକୁ ଟେକି ବା ଧରି ତହିଁର ଓଜନକୁ ଅଟକଳ କରିବା—
3. To estimate the approximate weight of an article by lifting or holding it on the palm.
୪ । (ସ. ଟଙ୍କ ଧାତୁ=ବନ୍ଧନ) (ଲୋମ) ଟାଙ୍କୁରିବା=
4. (the down of the body) To stand on end; to horripilate.
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ଟାଙ୍କି ହେବା**—ଦେ. କ୍ରି—୧ । କସି ହେବା—
Ṭāṅki hebā 1. To sit tight (said of tight clothes).
(ଯଥା—ଏ କୁର୍ତ୍ତାଟା ମୋ ଦେହକୁ ଟାଙ୍କି ହଉଛି । )
୨ । ଟାଙ୍ଗି ହେବା; ଝୁଲୁଚ ହେବା—
2. To be suspended.

**ଟାଙ୍କୁ**—ଦେ. ବି (ସ. ଟଙ୍ଗ=ଜଙ୍ଘ; ଟଙ୍କ=ଗୋଡ଼)—୧ । କଟିତଳ ଓ
Ṭāṅku ପିଚ୍ଛ ଉପରର ଅସ୍ଥିମୟ ଅଂଶ; ଠେଙ୍ଗ—
ठेंग 1. Buttock; rumpilium.
**टाँक** ୨ । ଜଙ୍ଘ—2. Thigh,
୩ । ଜଙ୍ଘ ତଳକୁ ଥିବା ଗୋଡ଼ର ଅଂଶ—
3. Part of the legs below the thigh.
୪ । ଟାଙ୍କୁଅ (ଦେଖ)—4. Ṭāṅkuā (See).
ପ୍ରାଦେ (ସିଂହଭୂମ ଓ ମେଦନୀପୁର)—ଟାଙ୍କୁଅ (ଦେଖ)
Ṭāṅkuā (See).

**ଟାଙ୍କୁଅ**—ଦେ. ବି (ସ. ଟଙ୍କ=ପାହାଡ଼)—ଉଇ ହୁଙ୍କା ମଧ୍ୟରେ ଥିବା
Ṭāṅkuā ଉଇ ବସା ( ଏଥିରୁ ଛତୁ ଜନ୍ମେ )—
**बमेटा** Matrix or mould or soft substance found inside the deep cavities of ant-hills from which mushrooms grow out.
ପ୍ରାଦେ (ସିଂହଭୂମ ଓ ମେଦନୀପୁର) ବି—ଅମ୍ବ ଟାଙ୍କୁଅ—
The seed of a mango fruit.

**ଟାଙ୍କୁ ମହୁ**—ଦେ. ବି—ଅମ୍ବ ଟାଙ୍କୁଅ ଆକୃତିବିଶିଷ୍ଟ ଛୋଟ ଛୋଟ
Ṭāṅku mahu ମହୁଫେଣାରୁ ଜାତ ମହୁ—
Honey from small hives shaped like mango-stones

**ଟାଙ୍କୁରା**—ଦେ. ବି—ଲୋମାଞ୍ଚ; ପୁଲକୋଦ୍ଗମ—
Ṭāṅkurā Horripilation; loose-flesh.
शिहरा **पुलकाई**

**ଟାଙ୍କୁରି ଉଠିବା**—ଦେ. କ୍ରି ( ସ. ଟଙ୍କ ଧାତୁ )—
Ṭāṅkuri uṭhibā ଲୋମାଞ୍ଚିତ ହେବା, ପୁଲକିତ ହେବା—
शिहर उठना To be suddenly horripilated.
**पुलकना**

**ଟାଙ୍କୁରିବା**—ଦେ. କ୍ରି ( ସ. ଟଙ୍କ ଧାତୁ=ବନ୍ଧନ )—
Ṭāṅkuribā ୧ । ( ଦେହର ଲୋମମାନ ) ଭୟ, ଶୀତ,
शिहरा ଚିନ୍ତା, ବା ପ୍ରେମାତିଶଯ୍ୟରେ ଠିଆ ହେବା; ପୁଲକିତ ହେବା—
**रोंगटे खड़ा होना** To stand on end; to bristle (the down of the body in an ecstasy of fear, love or intense cold).
ଟାଙ୍କୁରିଲା ଲୋମଗଣ ତାହାର—ଗୋଲୋକ ଉଦ୍‌ରେଖା ।
୨ । ( ଶରୀର ) ଲୋମାଞ୍ଚିତ ହେବା—
2 (the body) To be horripilated.

**ଟାଙ୍କୁ ହାଣିବା**—ଦେ. କ୍ରି—୧ । ଦୁଇ ଜଙ୍ଘ ନିକଟରୁ ଗୋଡ଼କୁ ହାଣି-
Ṭāṅku hāṇibā ଦେବା—1. To cut a person's the legs at the thighs.
୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ଅକର୍ମଣ୍ୟ କରିଦେବା—
2. ( figurative ). 2. To disable a person.
( ଯଥା—ମୁଁ ତୋ ଟାଙ୍କୁ ହାଣିଦେବି । )

**ଟାଙ୍କେ**—ଦେ. ବି—ଏକ ଟାଙ୍କା ବା ଛାଗା ମାତ୍ର—
Ṭāṅke One stitch only.
ठोंकन ଦେ. ବି—ନିର୍ଦ୍ଦୟ ମାଡ଼, ବିଶେଷ ପ୍ରହାର—
**ठोंक** A severe beating; a shower of thrashings.

**ଟାଙ୍କେଇବା**—ଦେ. କ୍ରି—ଟାଙ୍କିବାର ଣିଜନ୍ତରୂପ—
Ṭāṅkeibā Causative form of Ṭāṅkibā.
टाँकाना **टँकाना**

**ଟାଙ୍କେ ଛେଚିବା**—ଦେ. କ୍ରି—ବିଶେଷ ଆଘାତ କରିବା; ଖୁବ୍ ପ୍ରହାର
Ṭāṅke chhechibā ଦେବା; ନିର୍ଦ୍ଦୟ ମାଡ଼ ଦେବା—
ठोंकन कसा To beat severely; to give a sound
**टाँकना** thrashing.
(ଟାଙ୍କେ କସିବା, ଟାଙ୍କେ ମାଡ଼ଦେବା—ଅନ୍ୟରୂପ )

**ଟାଙ୍କେ ଦେବା**—ଦେ. କ୍ରି—୧ । ଟାଙ୍କେ ଛେଚିବା—
Ṭāṅke debā 1. To give a sound beating.
୨ । ନିର୍ଦ୍ଦୟ ଗୋଧନ ଦେବା—
2. To administer a shower of rebuke.
(ଟାଙ୍କେ ଚଢ଼ା(ଢେ,ଇବା—ଅନ୍ୟରୂପ)

**ଟାଙ୍କୋ**—ପ୍ରାଦେ (ସମ୍ବଲପୁର) ବି—ଟାଙ୍କୁଅ (ଦେଖ)
Ṭāṅko Ṭākuā (See).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍, ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ, ଷ | ଙ୍କ | ଇଯ୍ | ଉଅ | ଖ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଙ୍ଗ | କ୍ |

**ଟାଙ୍କୋରିବା**—ଗ୍ରା କ୍ରି—ଟାଙ୍କୁରିବା (ଦେଖ)
Ṭāṅkoribā — Ṭāṅkuribā (See).

**ଟାଙ୍ଗନା**—ପ୍ରାଦେ (ସମ୍ବଲପୁର) ବି—ଟାଙ୍ଗଣା (ଦେଖ)
Ṭāṅgnā — Ṭāṅgaṇā (See).

**ଟାଙ୍ଗଣ**—ବୈଦେ. ବି (ପା. ଟଙ୍ଗନ୍; ଭୁଲ. ସଂ. ତୁରଙ୍ଗମ)—
Ṭāṅgaṇa — ୧ । ଟଟ୍ଟୁ ଘୋଡ଼ା; କ୍ଷୁଦ୍ରାକୃତି ଘୋଟକବିଶେଷ—
টাঙ্গন — 1. A pony; a hill-pony; a tat.

ଚଳ ଚଳାଇ ଚଳୁଛି କେହି
କାହା ଟାଙ୍ଗଣ ଯାଉଛି ବହି—ବ୍ରଜନାଥ: ସମରତରଙ୍ଗ ।

[ଦ୍ର—ଏମାନଙ୍କୁ ପାହାଡ଼ିଆ ଘୋଡ଼ା ମଧ୍ୟ କୁହାଯାଏ । ଏମାନେ ଦ୍ରୁତଗାମୀ ଓ କଷ୍ଟସହିଷ୍ଣୁ । ଏମାନଙ୍କର ଅଙ୍ଗପ୍ରତ୍ୟଙ୍ଗ ଖୁବ୍ ମଜବୁତ୍ ।]

୨ । ( ଲକ୍ଷଣାର୍ଥ ) ଖୁବ୍ ଚଞ୍ଚଳ ଓ କର୍ମଠ ବ୍ୟକ୍ତି—
2. ( figurative ) A brisk and active person.

(ଯଥା—ସେ ପରା ଟାଙ୍ଗଣ ଖଣ୍ଡେ ।)

ଦେ. ବି—୧ । (ସଂ. ଟଙ୍ଗଣ)—ଟାଙ୍ଗଣା (ଦେଖ)
টাংগনা — 1. Ṭāṅgaṇā (See).
टांगना — ୨ । (ସଂ. କଙ୍ଗୁ) କୃଷିଜାତ ବାର୍ଷିକ ଶସ୍ୟବିଶେଷ; କଙ୍ଗୁ—
কংগু — 2. Italian millet; Setaria Italica.
**कंकुनी, कङ्गनी** — [ ଦ୍ର—ଏହାର କାଣ୍ଡ ସିଧା, ସରୁ ଓ ଟାଣୁଆ । ] (Haines).

**ଟାଙ୍ଗଣା**—ଦେ. ବି (ସଂ. ଟଙ୍ଗଣ; ଟଙ୍କଣ)—ସୋହାଗା; ଉପଧାତୁବିଶେଷ—
Ṭāṅgaṇā — Borax, Sodas Biboras.
ସଂ. ପର୍ଯ୍ୟାୟ—ଲୋହଦ୍ରାବୀ, କନକ, ଧାତୁବଲ୍ଲଭ, ଟଙ୍କଣ, ଗଙ୍ଗେଶ, ସୌଭାଗ୍ୟ; କ୍ଷାର; ଧାତୁଦ୍ରାବକ, ଟଙ୍କଣ, ଟଙ୍ଗଣ, ଟଙ୍କ, ଟଙ୍ଗ
সোহাগা, টঙ্গণ
**टङ्कण, सुहागा**
ଫା. ତାଗାର
ଆ. ବୁରକ୍
ତେ. ବେଲଗାରମୁ, ଏଲଗାରମୁ
ମ. ଟଙ୍କଣକ୍ଷାର, ସ୍ୱାଗୀକ୍ଷାର, ସବାଗୀ
ଗୁ. ଟଙ୍ଗଣପାଟଯ୍ୟୋ, ଟଙ୍କଣଫୁଲଯ୍ୟୋ

ଚହ୍ନିଁ ହରିଦ୍ରା ଟାଙ୍ଗଣା ମିଶାଇ
ପୋଛ ଦେବାର ଶାଣ ଦେଲା ଚହ୍ନିଁ—
ଭକ୍ତ. ପ୍ରେମସୁଧାନିଧି ।

[ ଦ୍ର—ସୁନା ରୁପାରେ ଟାଙ୍ଗଣା ମିଶାଇଲେ ତାହା ଶୀଘ୍ର ଅଉଟି ହୁଏ; ଏହାକୁ ନିଆଁରେ ପକାଇଲେ ଏହା ଫୁରୁସି ଯାଇ ଖଇ ପରି ଫୁଲି ଉଠେ । ଏବଂ ଉକ୍ତ ଖଇ ଚୂନାକୁ ପାଣିରେ ବତୁରାଇ ସୁନା ରୁପାରେ ବୋଳି ତାହାକୁ ନିଆଁରେ ପୋଡ଼ିଲେ ତାହାର ବର୍ଣ୍ଣ ଖୁବ୍ ଉଜ୍ଜ୍ୱଳ ହୁଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଅଗ୍ନିବର୍ଦ୍ଧକ, ରୁକ୍ଷ, କଫଘ୍ନ, ରଜଃପ୍ରବର୍ତ୍ତିକ, ବଳକାରକ, ମୂଢ଼ଗର୍ଭାକର୍ଷକ, ବାୟୁ ଓ ପିତ୍ତବର୍ଦ୍ଧକ । ଟାଙ୍ଗଣାଖଇର ଚୂନା ଘାଆ ଆଦିରେ ପକାଇଲେ ପୂଜ ହୁଏ ନାହିଁ ଓ ରୋଗବୀଜ ଶରୀରକୁ ସଂକ୍ରମଣ କରେ ନାହିଁ ଓ ଏହା କ୍ଷତ ଆଦିକୁ ନୀରୋଗ କରେ, ଏଥିପାଇଁ ଡାକ୍ତରମାନେ ଘାଆ ଧୁଆ ପାଣି, ମଲମ, ପଟି, ଅଞ୍ଜନ ଆଦିରେ ଏହାର ବହୁଧା ବ୍ୟବହାର କରନ୍ତି । ଲୁଗା ଆଦି ରଙ୍ଗାଇବାକୁ ହେଲେ ରଙ୍ଗରେ ଟାଙ୍ଗଣା ମିଶାଇଲେ ରଙ୍ଗ ବେଶି ସ୍ଥାୟୀ ହୁଏ । ଲୁହା, ପିତଳ, ସୁନା ରୁପା, ଓ କାଚବାସନ ଝାଳିବାରେ ମଧ୍ୟ ଟାଙ୍ଗଣା ଲାଗେ । ସାଧାରଣତଃ ଅସଲ ଧାତୁକୁ ଟାଙ୍ଗଣା ଓ ପୋଡ଼ାହେବା ଟାଙ୍ଗଣାକୁ ଟାଙ୍ଗଣାଖଇ ବା ସୋହାଗା କୁହାଯାଏ ।]

**ଟାଙ୍ଗଣା ଖଇ**—ଦେ. ବି. ( ସଂ. ଟଙ୍ଗଣକ୍ଷାର )—ନିଆଁରେ ପକାଯିବାରୁ ଫୁଲିଯିବା ଟାଙ୍ଗଣା—Fried borax.
Ṭāṅgaṇā khai
টঙ্গনখার
**टङ्कणखार** — [ ଦ୍ର—ଟାଙ୍ଗଣାକୁ ନିଆଁରେ ପକାଇଲେ ତାହା ଖୁବ୍ ବଡ଼ ହୋଇ ଫୁଲି ଯାଏ । ଉକ୍ତ ଖଇ ଫୁଲୁକା, ହାଲୁକା ଏବଂ ଏହା ସହଜରେ ଚୂନା ହୋଇଯାଏ । ]

**ଟାଙ୍ଗର**—ଦେ ବି—୧ । ( ସଂ. ଟଙ୍କ ) ବୃକ୍ଷଲତାହୀନ ପାହାଡ଼ିଆ ଭୂମି; ଟାଙ୍ଗି—
Ṭāṅgara
ডাঙ্গা — 1. Rocky land; a barren hilly tract.
**डुङ्गर**
টাক — ୨ । ମସ୍ତକର କେଶହୀନତା—
**गंज, चंद्लाह** — 2. Baldness of the head.

ପ୍ରାଦେ. ( ଗଡ଼ଜାତ ) ବି—ଢେଲା—
A brickbat or clod of earth for throwing.

ଦେ. ବିଣ—ଟାଙ୍ଗରା ( ଦେଖ )—Ṭāṅgarā ( See )

**ଟାଙ୍ଗରା**—ଦେ. ବି—୧ । ( ସଂ. ଟଙ୍କ ) ରୋଗବିଶେଷ; ଯେଉଁ ରୋଗ ହେଲେ ମୁଣ୍ଡର ବାଳ ଉପୁଡ଼ି ଯାଏ; ଖଲ୍ୱାଟ; ମସ୍ତକର କେଶହୀନତା—1. Alopacia; baldness.
Ṭāṅgarā
টাক
**गंज; चंद्लाह**
কোলংগা — ୨ । (ସଂ. ବ୍ୟଙ୍ଗଟ—ଶିକା) ଢେଙ୍ଗଡ଼ା; ରନ୍ଧନଶାଳାରେ ହାଣ୍ଡି ଆଦି ରଖିବାର ମାଟିର ପିଣ୍ଡି ବା ଉଚ୍ଚ ସ୍ଥାନ—
**तगार, ताखा** — 2. A grooved niche in the kitchen for keeping cooking pots.

ପ୍ରାଦେ. ( ସମ୍ବଲପୁର; ଗଡ଼ଜାତ ) ବିଣ—ପାହାଡ଼ିଆ ଓ ଉଦ୍ଭିଦ-ଶୂନ୍ୟ ( ଭୂମି )—Barren and hilly ( tract of land ).

( ଟାଙ୍ଗରୀ—ସ୍ତ୍ରୀ ) ଦେ. ବିଣ—୧ । ଚନ୍ଦାମୁଣ୍ଡିଆ; ଯାହା ମୁଣ୍ଡର ମଝିରୁ ବାଳଯାକ ଉପୁଡ଼ି ଯାଇଥାଏ—
টাকুয়া; টেকো
**चँद्ला, गंजा** — 1. Bald-headed.
টাকপড়া — ୨ । କେଶହୀନ ( ମସ୍ତକ )—
**चंद्ला** — 2. Bald ( head ).

**ଟାଙ୍ଗରପୁଟ**—ଦେ. ବି. ( ବୈଦ୍ୟକ )—ବୃକ୍ଷବିଶେଷ—
Ṭāṅgarā-puṭa — A kind of tree.

[ ଦ୍ର—ଏହା ଇଟା ବାଡ଼ ଓ ପଥର ସନ୍ଧିରେ ଜନ୍ମେ । ଏହାର ପତ୍ର ଛୋଟ, ସରୁ କୃଷ୍ଣବର୍ଣ୍ଣ ଓ ଚିକ୍କଣ । ଏହାର ରସ ପିଚ୍ଛିଳ, ତିକ୍ତ ଏବଂ କଟୁ । ଏହାର ସମୂଳ ପତ୍ରର ପ୍ରଲେପ ଅଗ୍ନିଦଗ୍ଧ ବ୍ରଣ ଓ ଉଲ୍ଲାତକଜନିତ ବ୍ରଣ ଓ ଶୋଥ ପ୍ରଶମନ କରେ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତୀୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ଆଉ ଯଥାକ୍ରମେ ଉକ୍ତ ଦୁଇ ପ୍ରକାର ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଷ' ନ ମିଳିଲେ 'କ୍ରିଷ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ।

**ଠାଙ୍ଗରମୁଣ୍ଡା**—ଦେ. ବଣ. ପୁଂ—ଯାହା ମୁଣ୍ଡରୁ ବାଳ ଉପୁଡ଼ି ଯାଇଅଛି—
Ṭāṅgarā muṇḍā — Bald-headed.
ଟେକୋ ଗଂଜା
( ଠାଙ୍ଗରମୁଣ୍ଡୀ; ଠାଙ୍ଗରମୁଣ୍ଡୀ—ସ୍ତ୍ରୀ )
( ଠାଙ୍ଗର ମୁଣ୍ଡିଆ—ଅନ୍ୟରୂପ )

**ଠାଙ୍ଗା**—ପ୍ରାଦେ.—୧ । ( ଗଞ୍ଜାମ ) ବି—ଏକବଳଦିଆ ବା ଏକ-
Ṭāṅgā ଘୋଡ଼ାକିଆ ଦୁଇଚକିଆ ସ୍ପ୍ରିଙ୍ଗଲଗା ଗାଡ଼ି; ଝଟକା—
1. A springed cart drawn by a single bullock or horse.
[ ଦ୍ର—ଏହା ମାନ୍ଦ୍ରାଜ ଅଞ୍ଚଳରେ ବ୍ୟବହୃତ ହୁଏ । ଏହାକୁ ଉତ୍ତର ପଶ୍ଚିମ ଅଞ୍ଚଳରେ ଏକ୍କା ବୋଲାଯାଏ । ]
୨ । ( ସମ୍ବଲପୁର ) ବି—ଏକପ୍ରକାର ଦୁଇଚକିଆ ଛପରବାଲା ଘୋଡ଼ା ଗାଡ଼ି—2. A kind of hooded two-wheeled carriage drawn by a horse.
[ ଦ୍ର—ଏ ଗାଡ଼ିର ପଛଆଡ଼େ ଆରୋହୀଙ୍କ ଅସନ ଥାଏ ଓ ଆରୋହୀମାନେ ପଛଆଡ଼କୁ ମୁହଁ କରି ବସନ୍ତି ଓ ଆଗପାଖେ ଗାଡ଼ିଆନ୍ ବସେ। ଏ ଗାଡ଼ିର ଚକ ଛୋଟ ଓ ଆରୋହୀଙ୍କ ଆସନ ମଧ୍ୟ ଭୂମିଠାରୁ ଅଳ୍ପ ଉଚ୍ଚାରେ ଥାଏ । ଗାଡ଼ି ଓଲଟି ପଡ଼ିଲେ ମଧ୍ୟ ଆରୋହୀଙ୍କର ଗୁରୁତର ଆଘାତ ହେବାର ଆଶଙ୍କା ନ ଥାଏ । ]

**ଠାଙ୍ଗି**—ଦେ. ବି—୧ । ( ସଂ. ଟଙ୍କ; ତୁଙ୍ଗ ) କ୍ଷୁଦ୍ର ପାହାଡ଼—
Ṭāṅgi — 1. Hill; hillock.
ଡାଙ୍ଗା ୨ । ଠାଙ୍ଗର; ପାହାଡ଼ିଆ ସ୍ଥାନ—2. Hilly country.
ଡୁଙ୍ଗର ୩ । ପ୍ରସ୍ତରମୟ ପ୍ରଦେଶ—3. Stony country.
ଟାংଗী ୪ । ( ସଂ. ଟଙ୍କ ) ଛୋଟ କୁରାଢ଼ୀ—
ଟାଙ୍ଗୀ 4. Small axe; hatchet; tomahawk.
ପ୍ରାଦେ—୧ । (ସିଂହଭୂମ, ସମ୍ବଲପୁର) ବି—ଫାରସା—
Poleaxe.

**ଠାଙ୍ଗିଆ**—ଦେ. ବି—ଠାଙ୍ଗି ( ୪ ) ( ଦେଖ )
Ṭāṅgiā — Ṭāṅgi ( 4 ) ( See )

**ଠାଙ୍ଗିଆ ପଶା**—ଦେ. ବି—୧ । ଠାଙ୍ଗିଆ ଦେହରେ ଲାଗିଥିବା ଲୌହଖଣ୍ଡ;
Ṭāṅgiā pasā — ଠାଙ୍ଗିଆର ଫଳକ—
1. The blade of a hatchet.
୨ । ଠାଙ୍ଗିଆର ପଛଆଡ଼ ବା ବେଣ୍ଟ ଧରି ତାହାର ପଶା ବା ଲୌହାଂଶଦ୍ୱାରା ହଣାଯିବା ପ୍ରହାର—2. A blow with the blunt side of a hatchet.
ହାରମଜାଦାକୁ ଠାଙ୍ଗିଅ ପଶା—ଢଗ ।

**ଠାଙ୍ଗିବଥୁଆ**—ଦେ. ବି—(ସଂ. ଟଙ୍କବାସ୍ତୁକ) ଟଙ୍କବଥୁଆ ( ଦେଖ )
Ṭāṅgi-bathuā — Ṭaṅka-bathuā (See)

**ଠାଙ୍ଗିବା**—ଦେ. କ୍ରି ( ସଂ. ତୁଙ୍ଗ = ଉଚ୍ଚ ବା ଟଙ୍କ ଧାତୁ = ବାନ୍ଧିବା )—
Ṭāṅgibā ୧ । ଝୁଲାଇବା; ଲଟକାଇବା; କୌଣସି ବସ୍ତୁକୁ
ଟାঙ্গান ଦଉଡ଼ିରେ ବାନ୍ଧି ଓହଳାଇବା—1. To hang
ଟାଂଗନା or suspend a thing, with a rope or string.
୨ । କୌଣସି ବସ୍ତୁକୁ (ଲୁଗା, ମଶାରି ଆଦିକୁ) ଦଉଡ଼ି ଉପରେ ଠାଣି ଦେବା—2. To suspend or put a thing (cloth etc.) on a string.

**ଠାଙ୍ଗି ହେବା**—ଦେ. କ୍ରି—କୌଣସି ବସ୍ତୁ ଦଉଡ଼ିଦ୍ୱାରା ଝୁଲା ହୋଇ
Ṭāṅgi hebā ରହିବା ବା କଷି ହୋଇଯିବା—To remain
ଟাঙ্গান হওয়া suspended.
ଟାଙ୍ଗା ହୋନା ( ଯଥା—ଶଗଡ଼ର ଦଣ୍ଡାପାଖ ଭାରୀ ହୋଇଗଲେ ଯୁଆଳରେ ବନ୍ଧା ହୋଇଥିବା ବଳଦଙ୍କ ବେକ ଠାଙ୍ଗି ହୋଇଯାଏ । )

**ଠାଙ୍ଗେରା**—ଗ୍ରା. ବି ଓ ବଣ—ଠାଙ୍ଗରା ( ଦେଖ )
Ṭāṅgerā — Ṭāṅgarā ( See )

**ଠାଟ୍‌ଲୁ**—ପ୍ରାଦେ. (ସମ୍ବଲପୁର) ବଣ—ଚନ୍ଦାମୁଣ୍ଡିଆ—
Ṭāṭ-lu — Bald headed.

**ଠାଟାରିକ୍ ଏସିଡ୍**—ବୈଦେ. ବି (ଇଂ. ଟାର୍ଟାରିକ୍ ଏସିଡ୍)—
Ṭāṭārik esid ତେନ୍ତୁଳିରୁ ପ୍ରସ୍ତୁତ ରସାୟନିକ ଦ୍ରବ—
ଟার্টারিক এসিড় — Tartaric acid.
ଟାର୍ଟାରିକ ଏସିଡ

**ଠାଟି**—ପ୍ରାଦେ ( ସମ୍ବଲପୁର ) ବି ( ତୁଳ. ହି. ଟଟ୍ଟୀ )—ତାଟି; ବାଉଁଶ-
Ṭāṭi କଡ଼ା ବା ପାତିଆରେ ବୁଣାହୋଇଥିବା ପରଦା; ଚଲେଇ—
A partition made of split bamboo woven together.

**ଠାଡ଼**—ପ୍ରାଦେ. (ସମ୍ବଲପୁର; ତୁଳ. ହି. ଏହି ଅର୍ଥରେ ଏହି ଶବ୍ଦ ) ବି—
Ṭārd ସ୍ତ୍ରୀମାନଙ୍କର ବାହୁରେ ପିନ୍ଧାଯିବା ଅଲଙ୍କାରବିଶେଷ; ତାଡ଼—
An ornament for the arm; armlet.

**ଠାଣ**—ଦେ. ବି ( ସଂ. ତନ ଧାତୁ—ବୃଦ୍ଧି କରିବା; ତୁଳ. ସଂ. କଠିନ;
Ṭāṇa ପ୍ରା. କଠିଣ)—୧ । କର୍କଶତା—1. Harshness;
ଟାନ rudeness; roughness.
କଠିନ, କଡ଼ା ୨ । କାଠିନ୍ୟ—Hardness; rigidity.
୩ । ଦୃଢ଼ତା; ଧୈର୍ଯ୍ୟ; ଦମ୍ଭ—
3. Patience; courage.
୪ । ଗର୍ବ; ଗୁମାନ—
4. Pride; arrogance; haughtiness.
୫ । ଅଶ୍ଳୀ; ଦାମ୍ଭିକତା; ଉଦ୍ଧତ—
5. Brazenness; impudence.
୬ । ଜୋର—6; Force.
୭ । କୌଣସି ବିଷୟ ପ୍ରତି ସ୍ପୃହା; ମମତା; ଆସକ୍ତି—
7. Tendency; eagerness; inclination.
( ଯଥା—ସଂସାର ପ୍ରତି ମନୁଷ୍ୟର ଗୋଟାଏ ଠାଣ ଥାଏ । )
୮ । ସ୍ରୋତର ବେଗ—
8. Velocity of a current of water.

| ୧ | ଇ | ଉ | ର,ରି | ଋ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ଼ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୂ | ଲୃ | ଯ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଵ | ନ୍ତ |

୯ । ଟଣା; ଆକର୍ଷଣ—9. Attraction; pull.

୧୦ । ନିଷ୍ଠୁରତା—10. Cruelty.

ଗ୍ରେର ପଣେ ଅସି ମୋର ପାଶେ ବସି ଯୋର ଅତରର ଟାଣ ଗୋ—
ଦନବନ୍ଧୁ. ସଙ୍ଗୀତ ।

୧୧ । ଶକ୍ତି—11. Power.

ବୃଃଖେ ପାପେ ସର୍ବ ସାଂସାରିକ ପ୍ରୀତି ଟାଣ ପଲ୍ଲସାଏ ଜଣା—
ନନ୍ଦକିଶୋର. କାର୍ତ୍ତ୍ୟରଣୀ ।

୧୨ । ଦୈହିକ ବଳ—12. Bodily strength.

୧୩ । ମାନସିକ ବଳ—13. Strength of mind.

୧୪ । (ବ. ଭ୍ରୁ ଅନୁରୂପ) ମାନସିକ ଆକର୍ଷଣ—
14. Attachment; partiality.

ଦେ. ବିଣ—୧ । କଠିନ; କଡ଼ା—1. Hard; rigid; strong; callous; tough.

ମନେ କଲ ଘମ ବାଣର ବଡ଼ ଟାଣ—କୃଷ୍ଣସିଂହ. ମହାଭାରତ. ବନ ।

୨ । କର୍କଶ; ନିଷ୍ଠୁର—2. Harsh; cruel.

୩ । ଭୀଷ୍ଣ; ଅସହ୍ୟ—3. Unbearable.

୪ । ଦାମ୍ଭିକ—4. Brazen-faced.

୫ । ଉଚ୍ଚୈଃସ୍ୱରବିଶିଷ୍ଟ—5. Loud.

୬ । ସଫଳ ଅବସ୍ଥାପନ୍ନ; ସଙ୍ଗତିସମ୍ପନ୍ନ—
6. Well to do; better off.

୭ । ଶ୍ରମସହିଷ୍ଣୁ, କଷ୍ଟସହିଷ୍ଣୁ—
7. Able to bear strain; hardy.

୮ । ମହର୍ଘ; ଉଚ୍ଚ (ମୂଲ୍ୟ)—8. Dear; high (price).

୯ । ସବଳ—9. Strong.

**ଟାଣ କରିବା**—ଦେ. କ୍ରି—ଭୃରୁଡ଼ାଇବା; ଆଖି ଦେଖାଇବା; ଦାମ୍ଭିକତା ପ୍ରକାଶ କରିବା—To speak impudently; to brazen.
Ṭāṇa karibā

**ଟାଣ କାଢ଼ିବା**—ଦେ. କ୍ରି—ଟାଣ କରିବା ( ଦେଖ )
Ṭāṇa kārdhibā — Ṭāṇa karibā ( See )

**ଟାଣ ଖରା**—ଦେ. ବି—ପ୍ରଚଣ୍ଡ ବା ଅସହ୍ୟ ସୂର୍ଯ୍ୟକିରଣ—
Ṭāṇa kharā Excessive or unbearable rays of the sun.
ପ୍ରଚଣ୍ଡରୋଦ **କଡ଼ାଧୂପ**

**ଟାଣ ଖୁଣ୍ଟା**—ଦେ. ପଦ୍ୟ. ବିଣ—୧ । ଅତ୍ୟନ୍ତ ପୀଡ଼ାଦାୟକ—
Ṭāṇa khuṇṭā — 1 Very painful.

୨ । ମର୍ମଭେଦ—2. Cutting to the quick.

ଟାଣ ଖୁଣ୍ଟା ଗୁରୁଜନ ଗଞ୍ଜନାରୁ ମୋ ପ୍ରାଣ ସର୍ଭ ସହିବ—
କବିସୂର୍ଯ୍ୟ, ବଜୋସ୍ୱରାଜ୍ୟ, ୫ ଗୀତ ।

**ଟାଣଟାଣ କଥା**—ଦେ. ବି—କର୍କଶ ବା ଅସହ୍ୟ ବାକ୍ୟ—
Ṭāṇa-ṭāṇa kathā — Harsh language.
**ଶକ୍ତକଥା, କଡ଼ା କଡ଼ା ବାତ୍**

**ଟାଣଟୁଣ**—ଦେ. ବି (ଅନର୍ଥକ ଯୁଗ୍ମ ସହଚର)—୧ । ଗର୍ବ; ଦାମ୍ଭିକତା—
Ṭāṇa-ṭuṇa — 1. Pride; arrogance.

୨ । ଟଣା; ଓଟରା—2. Pulling and pushing.

୩ । ଅତ୍ୟନ୍ତ ଅଭାବଗ୍ରସ୍ତ ଅବସ୍ଥା—
3. State of dire need or want.

**ଟାଣପଣ**—ଦେ. ବି—୧ । ଦମ୍ଭ; ଗର୍ବ—1. Arrogance.
Ṭāṇa-paṇa ବଡ଼ଥିଲ ଟାଣପଣ ଗଙ୍ଗାର ଭ୍ରମର—ଜଗନ୍ନାଥ. ବାଣହରଣ ।
**କଡ଼ାଇ** ୨ । ଦାମ୍ଭିକତା—2. Brazenness; impudence.
(ଟାଣପଣିଆ-ଅନ୍ୟରୂପ) ୩ । ସଚ୍ଛଳତା—
3. Affluence; well-to-do condition.

**ଟାଣମୁହାଁ**—ଦେ. ବିଣ. ପୁଂ—୧ । ଯେଉଁ ଲୋକର ମୁହଁ ଟାଣ, ଅର୍ଥାତ୍ ଯେଉଁ ଲୋକ ଆପଣାର ଦୋଷ ବା ଅପରାଧକୁ ମୁହଁରେ ସ୍ୱୀକାର କରେ ନାହିଁ; ଭୃରୁଡ଼ା—
Ṭāṇa-muhāñ
(ଟାଣମୁହୀ—ସ୍ତ୍ରୀ)
1. One (e. g. a thief) who does not easily confess his guilt.

[ଯଥା—ଚୋରମାନେ ଟାଣମୁହାଁ ।]

୨ । ଦାମ୍ଭିକ—2. Brazen-faced; impudent.

୩ । ନିର୍ଲଜ୍ଜ—Shameless.

**ଟାଣହତା**—ଦେ. ବିଣ—୧ । ଯେଉଁ ଅଳସୁଆ ବଳଦ ବା ଛାତ୍ର ଗୁଡ଼ାଏ ମାଡ଼ ନ ଖାଇଲେ କାମ କରେ ନାହିଁ ବା ଭଲ କରି ପଢ଼ାପଢ଼ି କରେ ନାହିଁ—
Ṭāṇa-hatā
1. One (bullock or pupil) who does not work properly unless soundly cudgelled.

୨ । ଯେଉଁ ଲୋକ ଅଳସୁଆ ବଳଦ ବା ଅମନଯୋଗୀ ଛାତ୍ରଙ୍କୁ ଗୁଡ଼ାଏ ପ୍ରହାର କରି କାମରେ ଲଗିବାକୁ ବାଧ କରାଏ; ଉତ୍ପୀଡ଼କ, ନିଷ୍ଠୁର—2. High-handed; one who gives a sound cudgelling to unwilling bullocks or pupils and makes them work.

୩ । ଯେଉଁ ଲୋକ ଅନ୍ୟ ଲୋକମାନଙ୍କୁ ଅପେକ୍ଷା ନ କରି ଆପଣା ଉପରେ ପଡ଼ିଥିବା କାମକୁ ତୁଲାଇ ନିଏ—
3. A person who accomplishes a work without waiting for help from others.

**ଟାଣହାତ**—ଦେ. ବି—କଠୋର ଶାସନ—Iron rule.
Ṭāṇa hāta ଦେ. ବିଣ—ଟାଣହତା (ଦେଖ)
(ଟାଣହାତିଆ—ଅନ୍ୟରୂପ) Ṭāṇahātā (See)

**ଟାଣି**—ଦେ. ବି (ସଂ. ତନ ଧାତୁ)—ଲୁଗା ବୁଣିବାବେଳେ ତନ୍ତରେ ଯେଉଁ ସୂତାକୁ ଟାଣି କରି ରଖାଯାଇ ଥାଏ; ବସ୍ତ୍ରର ଲମ୍ବ-ବାଗର ସୂତା—Warp.
Ṭāṇi
ଟାନା
**ତାନା; ତାନୀ**

[ଦ୍ର—ତନ୍ତରେ ପ୍ରଥମେ ଲମ୍ବବାଗର ସୂତାମାନଙ୍କୁ ଟାଣି କରି ରଖାଯାଏ ଓ ପରେ ତାହାଁ ମଧ୍ୟରେ ଓସାରିଆବାଗର ସୂତାକୁ କାଣ୍ଡିଆ ଦ୍ୱାରା ଭରଣା କରାଯାଇ ଲୁଗା ବୁଣାଯାଏ ବୋଲି ଏ ସୂତାମାନଙ୍କର ନାମ ଯଥାକ୍ରମେ ଟାଣି ଓ ଭରଣି ହୋଇଅଛି ।]

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ଦ୍ୱିତୀୟ ଉପସ୍ଥିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଷ' ନ ମିଳିଲେ 'ଭୂଷ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ।

ଦେ. କ୍ରି· ବଣ (ଟାଣିବା କ୍ରିୟାର ଅସମାପିକା ରୂପ)—
ଟେନେ କର୍କଶରୂପେ; ନିଷ୍ଠୁରଭାବରେ—Harshly; cruelly.
तानकर ଟାଣି ପଡ୍ଡେ ପଦେ ବୋଲନ୍ତି— କବିସୂର୍ଯ୍ୟ· ସଙ୍ଗୀତ ।

**ଟାଣି ଓଟାର**—ଦେ. କ୍ରି. ବଣ ('ଟାଣିବା' ଓ 'ଓଟାରିବା' କ୍ରିୟାର Ṭāṇi oṭāri ଅସମାପିକାରୂପ କ୍ରି. ବଣ ରୂପେ ବ୍ୟବହୃତ)—
ଟାଣି ଟୁଣି (ଦେଖ)
Ṭāṇi-ṭuṇi (See)

**ଟାଣିଟୁଣି**—ଦେ. କ୍ରି. ବଣ (ଅସମାପିକା ରୂପ)—୧ । ନିଃଶେଷ କରି; Ṭāṇi-ṭuṇi ସମସ୍ତ ଟାଣି ନେଇ—1. Drawing out
টেনেটুনে; तानखी चकर everything completely.
ନେ ବଳଦ ଟାଣିଟୁଣି; ଅଉ ନାହିଁଟି ବୋଉଡାପାଣି । ଶିଶୁଗୀତ ।

୨ । ବହୁତ ପରିଶ୍ରମ ସହ; ଖୁବ୍ ଜୋରରେ—
2. Laying much stress or strain; with much straining.

୩ । ବଡ଼ ପାଟି କରି—3. Loudly.
ଦ୍ରୋଣ ଗୁରୁ କର୍ଣ୍ଣ ଯେ ଶଲ୍ୟଙ୍କୁ ନ ଜଣି
ନ କହ ସଭା ମଧ୍ୟେ ହୋଇ ଟାଣିଟୁଣି—କୃଷ୍ଣସିଂହ·ମହାଭାରତ ଉଦ୍ୟୋଗ ।

୪ । ଭିଡ଼ିଓଟାରି; କ୍ଲିଷ୍ଟାର୍ଥ ବା କଳ୍ପିତାର୍ଥ ପ୍ରୟୋଗପୂର୍ବକ—
4. By much straining of language; by applying far-fetched meaning.
ଅପଣ ନ ହୁଏ ଟାଣିଟୁଣି ଏକ ପ୍ରକାର ପାଠ ଲଗାଇସିବେ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

[ଦ୍ର—କୌଣସି ବାକ୍ୟାର୍ଥ ବକ୍ତାଙ୍କ ଅଭିପ୍ରାୟର ଅନୁକୂଳ ନ ହେଲେ କ୍ଲିଷ୍ଟାର୍ଥ ବା କଳ୍ପିତାର୍ଥ ପ୍ରୟୋଗ କରି ତାଙ୍କ ଅଭିପ୍ରାୟର ଅନୁକୂଳ ଅର୍ଥ କଲେ ଗଲେ ଏହି ଶବ୍ଦ ପ୍ରୟୋଗ କରାଯାଏ । ]

୫ । ଗର୍ବ ପ୍ରକାଶ ବା ଆସ୍ଫାଳନପୂର୍ବକ—
Boastfully; arrogantly.

**ଟାଣିଟୁଣି ହେବା**—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ କୁଣ୍ଠିତ Ṭāṇi-ṭuṇi hebā ହେବା ବା ଦ୍ୱିଧା କରିବା; କୁନ୍ଥ୍ କୁନ୍ଥ୍ ହେବା-
1. To hesitate to do a thing.

୨ । ଅଭାବ ବା ନାଅଣ୍ଟ ଯୋଗୁଁ ବ୍ୟୟ କରିବାକୁ ସଙ୍କୁଚିତ ବା କୁଣ୍ଠିତ ହେବା; ବ୍ୟୟକୁଣ୍ଠ ହେବା—
2. To stint at spending money (due to want).

୩ । ଗର୍ବିତ ହେବା; ଆସ୍ଫାଳନ କରିବା—
3. To be arrogant; to brag.
ଜ ପାର କର ପର ଭୂଲରେ ଆରଣି
କହୁଥାଅ ସଭାରେ ହୋଇ ଟାଣିଟୁଣି—କୃଷ୍ଣସିଂହ· ମହାଭାରତ· ଦ୍ରୋଣ ।

**ଟାଣିବା**—ଦେ. କ୍ରି. (ସଂ. ତନ୍ ଧାତୁ=ଆକର୍ଷଣ କରିବା; ସଂ. ଆକର୍ଷଣ)-- Ṭāṇibā ୧ । ଝିଙ୍କିବା; ଓଟାରିବା; ଆକର୍ଷଣ କରିବା—
টানা; खींचना,टानना 1. To draw; to attract; to pull.
[ଟଣା(ଣେ)ଇବା—ଣିଜନ୍ତରୂପ] ୨ । (ଛତା) ଉପରେ ବିସ୍ତୃତ କରିବା—
2. To spread above (umbrella etc).

୩ । (ଗାର; ଚିତ୍ର) କାଟିବା; ଆଙ୍କିବା; ଲେଖିବା—
3. To draw (a figure or line).

୪ । (ସୂତା) ଲମ୍ବ ଭାବରେ ଟାଙ୍ଗିବା—
4. To lay (a line or rope).

୫ । (ରେଖା ଆଦି) ଲମ୍ବରେ ବଢ଼ାଇବା; ଲମ୍ବ କରିବା—
5. To lengthen (a straight line).

୬ । (ପାଣିକୁ) ନିଃଶେଷ କରିବା ବା ଶୁଖାଇବା —
6. To drain out (water)

୭ । (ଗଞ୍ଜେଇ ଧୂଆଁ ଆଦି) ଶୋଷିବା—
7. To suck or inhale.

୮ । (ପେଟ, କାନ) ବ୍ୟଥା କରିବା—
8. To ache (said of belly and ear.)

୯ । ଜୋର୍ କରିବା ବା ଚେଷ୍ଟା କରିବା—
9. To strain.

খটান, টাঙ্গান ୧୦ । (ମଶିଆରି, ଚାନ୍ଦୁଆ ଆଦିର) କୋଣରେ ଦଉଡ଼ି टांगना ବାନ୍ଧି ବିସ୍ତାର ପୂର୍ବକ ବାନ୍ଧିବା; ଟାଙ୍ଗିବା—
10. To hang up a canopy or mosquito-net.

୧୧ । ଏକ ବସ୍ତୁର ଗୋଟିଏ ମୁଣ୍ଡ ବା ମଝିକୁ ସ୍ଥିର ରଖିଅନ୍ୟ ମୁଣ୍ଡକୁ ବା ଦୁଇ ମୁଣ୍ଡକୁ ବିପରୀତ ଦିଗକୁ ଓଟାରିବା—
11. To pull a thing on one sideor in opposite directions.

(ଯଥା—ରବର ଖଣ୍ଡ ବା ସୂତାକୁ ଦୁଇ ମୁଣ୍ଡରୁ ଟାଣିଲେ ତାହା ବଢ଼ିଯାଏ ।)

[ଦ୍ର—ଟାଣିବା, ଝିଙ୍କିବା, ଓଟାରିବା ସମାର୍ଥବୋଧକ; ଝିଙ୍କିବାରେ ଏକକାଳୀନ ଜୋର୍ ପ୍ରୟୋଗ କରାଯାଇ ତତ୍‌କ୍ଷଣାତ୍ ତାହା ଶିଥିଳ ହେବାର ସୂଚନା ହୁଏ । ଆପେ ଠିଆ ହୋଇ ଅନ୍ୟବସ୍ତୁ ବା ବ୍ୟକ୍ତିଙ୍କ ଆପଣା ଆଡ଼କୁ ଆଣିବା ପାଇଁ ବଳ ପ୍ରୟୋଗ କରିବାକୁ ଓଟାରିବା ଏବଂ ଆପେ ଗତି କରୁଥିବା ଅବସ୍ଥାରେ ଆକୃଷ୍ଟ ବସ୍ତୁକୁ ମଧ୍ୟ ଗତି କରାଇବାକୁ ଟାଣିବା ବୋଲାଯାଏ ।]

**ଟାଣି ଭରଣି**—ଦେ. ବି (ସଦ୍‌ଚର)—ଲୁଗା ବୁଣିବାରେ ତନ୍ତରେ ବ୍ୟବହୃତ Ṭāṇi bharaṇi ଲମ୍ବାଗର ଓ ଚଉଡ଼ାବାଗର ସୂତା—
টানাবোনা, টানাপড়েন The warp and woof of a cloth.
तानाबाना

**ଟାଣି ହେବା**—ଦେ. କ୍ରି—୧ । କଷ୍ଟରେ କଥା କହିବା ବା ନିଃଶ୍ୱାସ Ṭāṇi hebā ମାରିବା; ନିଃଶ୍ୱାସ ନେବା ବା କଥା କହିବା ନିମନ୍ତେ ସମଧିକ ଉଦ୍ୟମ କରିବା, ଓଟାରିହେବା—
1. To strain while talking or breathing.
(ଯଥା—ଅତି ଦୁର୍ବଳ ବା ରୋଗୀ ବ୍ୟକ୍ତି କଥା କହିଲାବେଳେ ଏବଂ ଶ୍ୱାସରୋଗୀ ନିଃଶ୍ୱାସ ମାରିବାବେଳେ ଟାଣିହୁଏ ।)

୨ । ଉଚ୍ଚୈଃସ୍ୱରରେ କଥା କହିବା—
2. To speak loudly.
କହିଲେ ଭୀମସେନ କ୍ରୋଧେ ହୋଇ ଟାଣି—କୃଷ୍ଣସିଂହ ମହାଭାରତ ସଭା ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୯ | ଇ | ଉ | ଋ,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ୟ | ଜ | ଶ,ଷ | ଜ୍ଞ | ଇୟ | ଉଅ | ଙ |
| ୨ | ଈ | ଊ | ରୁ | ଲୁ | ଏ୍ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଞ | ଙ୍ |

୩ । ଆସ୍ଫାଳନ କରିବା—3. To boast; to brag.

୪ । ଠାଣିବା କ୍ରିୟାର କର୍ମବାଚ୍ୟ—
4. Passive voice of Ṭāṇibā.

(ଅଠାଣୁଆଁ)—ଦେ. ବିଣ. ପୁଂ (ସଂ. କଠିନ)—୧ । କଠିନ—
Ṭāṇuāṅ(ā) 1. Hard; tough.
शक्त

୨ । ଅତି ଅଧିକ—2. Excessive.
कड़ा

୩ । ଦୃଢ଼; ସବଳ; ମଜବୁତ୍; ବଳୁଆ—
3. Strong.

ଠାଣେଇ } —ସ୍ତ୍ରୀ
ଠାଣୋଇ }

୪ । ଧନବାନ୍—
4. Rich; wealthy.

୫ । କ୍ଷମତାଶାଳୀ—5. Influential; powerful.

୬ । କଡ଼ା; ତୀକ୍ଷ୍ଣ, ଅସହ୍ୟ—
6. Intolerable; unbearable.

୭ । ଗର୍ବିତ—7. Proud; arrogant.

୮ । ମହର୍ଘ—8. Dear (in price).

୯ । ଦାମ୍ଭିକ—9. Brazen-faced.

ଠାଣେ—ଦେ (ପଦ୍ୟ) କ୍ରି, ବିଣ—୧ । ଜୋର୍ କରି; ଡାଣ କରି—
Ṭāṇe 1. With force; forcibly
टाने
जोरसे

ଠାଣେ ବନ୍ଧେ ଶମ୍ଭ ସଦୃଶ କଳମ୍ବ ଭୂମିକୁ ଏକା ଅଡନ୍—
କବିସୂର୍ଯ୍ୟ, କଶୋରଚନ୍ଦ୍ର, ଚ. ଗୀତ ।

୨ । ଉତ୍ତମରୂପେ—2. Excellently; well.

କହେ ଜଗଦେବ ଶିକ୍ଷା ହେଲେ ହେଲେ ଠାଣେ
କେ କାହା ସ୍ୱଭାବ ଛଡ଼େ ପବନ ପ୍ରମାଣେ—କବିସୂର୍ଯ୍ୟ, ସଙ୍ଗୀତ ।

ଠାଣେଇବା—ଦେ. କ୍ରି—୧ । ଅପେକ୍ଷାକୃତ ସବଳ ହେବା—
Ṭāṇeibā 1. To become stronger.
( ଯଥା—ରୋଗୀ ଦୁଇ ମାସ ବିଶ୍ରାମ ପରେ ଠାଣେଇଲାଣି । )

୨ । ଅପେକ୍ଷାକୃତ ଡାଣ ବା କଠିନ ହେବା—
2. To harden; to stiffen.
(ଠାଣୋଇବା—ଅନ୍ୟରୂପ) (ଯଥା—ଏ ମାଟି ଖରାରେ ଠାଣେଇଲାଣି ।)

ଠାନ୍—ପ୍ରାଦେ. ( ସମ୍ବଲପୁର ) ବି—ଠାଣ ( ଦେଖ )
Ṭān Ṭāṇa ( See )

ଠାପ—ପ୍ରାଦେ. ( ସମ୍ବଲପୁର; ଗଡ଼ଜାତ ) ବି—ସ୍ଥାୟୀ ଜଳସ୍ରୋତ ସଙ୍ଗେ
Ṭāpa ଯେଉଁ ପ୍ରାକୃତିକ କ୍ଷୁଦ୍ର ଜଳାଶୟର ସମ୍ବନ୍ଧ ନ ଥାଏ; ଯେଉଁ କ୍ଷୁଦ୍ର ତଡ଼ାଗ କୌଣସି ନଦୀ ସଙ୍ଗେ ସମ୍ପୃକ୍ତ ନୁହେଁ—A small tank or expanse of water which has no connection with any permanent current.

ଠାପ ( ଇତ୍ୟାଦି )—ଦେ. ବି—ଠାପୁ ଇତ୍ୟାଦି ( ଦେଖ )
Ṭāpa ( etc ) Ṭāpu etc ( See )

ଠାପରା—ଦେ. ବି. ( ସଂ. ଝର୍ଝରୀ )—୧ । ଥଟ୍ଟା; ତାମସା; ରଙ୍ଗ; ପରିହାସ; ରହସ୍ୟ —
Ṭāparā
ठठ्ठा 1. Jest; joke; mockery.
ठट्ठा

ଭୁଠାଏ କ ଜାତି ଭୁଣର ପୀରତି ତାମସା ଠପରା ଠାହି—
କବିସୂର୍ଯ୍ୟ. ସଙ୍ଗୀତ ।

୨ । ସାମାଜିକ ପ୍ରଥା ଅନୁସାରେ ପରିହାସ ଯୋଗ୍ୟ ବ୍ୟକ୍ତି—
2. Relations with whom a person can cut jokes under the rules of one's society.
ठठ्ठोर

ଦେ. ବିଣ—ପରିହାସଯୋଗ୍ୟ (ବ୍ୟକ୍ତି)—
(a person) Fit to be cut jokes with.

ଠାପରା କରିବା—ଦେ. କ୍ରି—ଥଟ୍ଟା ଖେଳିବା; ପରିହାସ କରିବା—
Ṭāparā karibā To play or cut jokes; to jest.
ठठ्ठा करना
ठट्ठा करना

[ ଦ୍ର—ଆମ୍ଭମାନଙ୍କ ସମାଜରେ ଅଜା ନାତି, ଅଜା ନାତୁଣୀ, ଦିଅର ଭାଉଜ, ଶଳା ଭଣୋଇ, ଭଣୋଇ ଶାଳୀ, ଆଈ ନାତି ଓ ଭଣୋଇ ଶଳାଭାଉଜ ପରସ୍ପର ସଙ୍ଗେ ଠାପରା କରି ପାରନ୍ତି । ]

ଠାପରା ଖେଳିବା—ଦେ. କ୍ରି—ଠାପରା କରିବା ( ଦେଖ )
Ṭāparā khelibā Ṭāparā karibā ( See )

ଠାପରା ଠାପରି - ଦେ. ବି ଓ ବିଣ—ଠାପରା ଠାପୁରି ( ଦେଖ )
Ṭāparā ṭāpari Ṭāparā ṭāpuri ( See )

ଠାପରା ଠାପୁରି—ଦେ. ବି— ୧ । ଦୁଇ ଜଣଙ୍କର ପରସ୍ପର ମଧ୍ୟରେ ଥଟ୍ଟା ତାମସା—
Ṭāparā ṭāpuri 1. Mutual joking.
ठठ्ठाठुट्ठि

ହସ କୌତୁକ କଥା ଠାପରା ଠାପୁରି କଥା ଢେର ହେଲା—
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

खोंचाखूँचि ୨ । ପରସ୍ପର ଖୁମ୍ପୁରା ଖୁମ୍ପୁରି ହେବା—
2. Poking at each other.

୩ । ଶାଗ କିଆରି ବା ବଗିଚାର ମାଟିକୁ କାଠିରେ ଏକାଧିକବାର ଖୁସୁରାଇବା—3. Slackening the soil of a garden by means of a poker.

ଦେ. ବିଣ—ପରସ୍ପର ଥଟ୍ଟା ଖେଳୁଥିବା—Joking or jesting with each other.

ଠାପରା ଲଗା(ଗେ)ଇବା—ଦେ. କ୍ରି—ଠାପରା କରିବା ( ଦେଖ )
Ṭāparā lagā(ge)ibā Ṭāparā karibā (See)

ଠାପରେଇବା—ଦେ. କ୍ରି—୧ । ଠାପରା କରିବା; ଥଟ୍ଟା ଖେଳିବା—
Ṭāpareibā 1. To play jokes.
टापरान

୨ । ଖୁରସାଇବା ( ଦେଖ )
ठट्ठा करना 2. Khurasāibā (See)

୩ । ଖୁମ୍ପୁରାଇବା; ଅନ୍ୟର ଦେହରେ ଆଙ୍ଗୁଠି ଆଦି ଗେଞ୍ଜିବା—3. To poke at another with the fingers.
खोंचा

୪ । ବଳଦଙ୍କ ଦେହରେ ହାତମାରି ଓ ମୁହଁରେ ଟାକରା ଫୁଟାଇ ଗାଡ଼ିକୁ ଚଞ୍ଚଳ ଗତିରେ ଚଳାଇବା—4. To drive (a cart) quickly by patting the bullocks.

ତାପଡ଼ାନ
ଥପକଳା

(ଯଥା—ମୁଁ ଟାପରେଇ କରି ନେଲେ ଏ ଗାଡ଼ିକୁ ୨ ଘଣ୍ଟାରେ ଆଠଗଡ଼ରୁ କଟକରେ ପହଞ୍ଚାଇ ଦେବି ।)

**ଟାପୁ**—ଦେ. ବି (ସଂ. ସ୍ଥା ଧାତୁ ଣିଜନ୍ତ ସ୍ଥାପି ଧାତୁ; ଯାହା ଭୂମିରେ ସ୍ଥାପନ କରାଯାଏ)—୧ । ଘୋଡ଼ାଙ୍କ ଖୁରା—1. The hoofs of a horse.
Ṭāpu
ଟାପ
टाप

୨ । ଜୀବର ପାଦଚିହ୍ନ—2. Foot-steps of animals.

୩ । ଘୋଡ଼ାଙ୍କ ଗୋଡ଼—3. The legs of a horse.

୪ । ଜୀବର ପାଦ—4. The foot of an animal.

ଟାପୁ ୫ । ଦ୍ୱୀପ—5. Island.

टापु ୬ । (ବ୍ୟଙ୍ଗ) ମନୁଷ୍ୟର ଦୁଇ ହାତ ଓ ଦୁଇ ଗୋଡ଼; ଖୁରା ହାତ—6. The 2 legs and 2 hands of a man

(ଯଥା—ଲୋକେ ମିଳି ତାର ଖୁରା ଟାପୁ ହାଣି ଦେଲେ ।)

**ଟାପୁ ମାରିବା**—ଦେ. କ୍ରି—(ଘୋଡ଼ା) ଖୁରା ଦ୍ୱାରା ଭୂମିକୁ ଆଘାତ କରିବା; ଖୁରା ଖାଇବା—To paw; to strike a place with the hoofs (said of a horse).
Ṭāpu māribā
ଟାପ ମାରା
टापना

**ଟାମ୍‌ଜାନ୍**—ବୈଦେ. ବି (ଫା)—ତାମଜାନ (ଦେଖ) Tāmajāna (See)
Ṭām-jān
তামজান

**ଟାମ୍‌ଟୁର୍‌କୁ**—ପ୍ରାଦେ. (ସମ୍ବଲପୁର) ବି—କୁରର; ଧୂସର ବର୍ଣ୍ଣ କ୍ଷୁଦ୍ର କପୋତ—Small grey dove.
Ṭām-ṭur-ku

[ଦ୍ର—ଏହାର ଧ୍ୱନି କରୁଣରସୋଦ୍ଦୀପକ ।]

**ଟାୟା**—ପ୍ରାଦେ. (ଗଞ୍ଜାମ) ବି—ଟାହିଆ (ଦେଖ) Ṭāhiā (See)
Ṭāyā

**ଟାୟାର୍**—ବୈଦେ. ବି (ଇଂ)—ମଟର୍ ବା ସାଇକଲ୍ ଅଦିର ଚକ ଚାରିପାଖେ ଘେରିଯିବା ରବର ନଳ—Tyre.
Ṭāyār
টায়ার, टायार

**ଟାର**—ସଂ. ବି—୧ । ଘୋଡ଼ା—1. A horse (Apte).
Ṭāra

୨ । ଗାଣ୍ଡିଆ ଲୋକ; ଅସ୍ୱାଭାବିକ ପ୍ରକ୍ରିୟାରେ ପୁରୁଷର କାମପ୍ରବୃତ୍ତି ଚରିତାର୍ଥ କରାଇବା ବ୍ୟକ୍ତି—2. A catamite (Apte).

୩ । କୁଟୁଣୀ—3. A pander.

**ଟାରିଫ୍‌ବୋର୍ଡ଼**—ବୈଦେ. ବି (ଇଂ)—ଶୁଳ୍କ ବିଷୟକ ନିୟମମାନ ପ୍ରଣୟନ କରିବା ପାଇଁ ସରକାରଙ୍କ ଦ୍ୱାରା ଗଠିତ ସମିତି—Tariff board.
Ṭārif-borrd
টারিফ বোর্ড
टारिफबोर्ड

**ଟାଲ**—ଦେ. ବି (ସଂ. ଟଲ୍ ଧାତୁ)—୧ । ଛଳ—1. Pretext.
Ṭāla
টাল
टाल

୨ । ବିଳମ୍ବ; କାଳକ୍ଷେପଣ—2. Delay; whiling away of time.

୩ । ନିଜର ଦାୟିତ୍ୱ ଅନ୍ୟ ଉପରେ ପକାଇବା—3. Laying one's own responsibility on the shoulder of another.

୪ । ବାହାନା; ଛଳନା—4. Excuse.

**ଟାଲ**—ଦେ. ବି (ସଂ. ତଲ) କୌଣସି ନଦୀ ବା ଜଳାଶୟର ଗଭୀର ଅଂଶ; ଖାଲ; ଗଣ୍ଡ—Deep part of a river or tank.
Ṭāla
টাল

ପ୍ରାଦେ (ସମ୍ବଲପୁର) ବି—ପୋଖରୀ ବନ୍ଧ ବା ବଡ଼ ହିଡ଼ର ଘାଇ—A breach made in a big ridge of a paddy field or the embankment of a tank.

**ଟାଲଟୁଲ**—ଦେ. ବି (ସଂ. ଟଲ୍ ଧାତୁ)—୧ । ଭଣ୍ଡାଭଣ୍ଡି; ଠକାଠକି; ଛଳନା—1 Deception.
Ṭāla-ṭula
টাল টোল টালতুল

୨ । ଛଳନା ଦ୍ୱାରା ବାରମ୍ବାର କାଳକ୍ଷେପଣ—3. Repeatedly putting off or letting the time-limit expire under some pretence or another; wasting time under some excuse; procrastination; temporizing.

୩ । ମୂଳୋତ୍ପାଟନ—3. Uprooting; eradication.

୪ । ଟଳିବା; ସ୍ଥାନଭ୍ରଷ୍ଟ କରିବା—4. Dislocating.

**ଟାଲ ଦେବା**—ଦେ. କ୍ରି—୧ । କୌଣସି କଥା ଅନ୍ୟ ବ୍ୟକ୍ତି ଉପରେ ନିର୍ଭର କରୁଛି ବୋଲି କହିବା—1. To evade; to refer to some matter as depending upon a 3rd person.
Ṭāla debā
টালদেওয়া
टालमारना

୨ । ନିଜର ଦାୟିତ୍ୱକୁ ଅନ୍ୟ ଉପରେ ପକାଇବା; ଆପଣାଠାରୁ ଛୁଡ଼ିଛଡ଼ାଇବା—2. To dodge; to shuffle; to shirk one's responsibility.

୩ । ନାନା ଛଳନାରେ କାଳକ୍ଷେପଣ କରିବା; ଦମ୍‌ଦିଲାସା ଦେବା—3. To put off from time to time on various pretexts; to temporize.

**ଟାଲମଟାଲ**—ଦେ. ବି—୧ । ଟାଲଟୁଲ—1. Procrastination; wasting time or putting off on various excuses.
Ṭālamaṭāla
টালমাটাল
टाल-मटाल

୨ । ଟଳିବା; ଦୋହଲିବା—2. Staggering; reeling.

ଟାଲମଟୁଲ, ଟାଲମ୍‌ଟୁଲ }—ଅନ୍ୟରୂପ

୩ । ପତନୋନ୍ମୁଖ ଅବସ୍ଥା—3. Tottering condition; tumbling condition.

| ୧ | ଇ | ଡ଼ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇସ୍ | ଡ଼ଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଢ଼ | ରୁ | ଲ୍ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ |

୪ । ବଞ୍ଚନା—4. Deception.

୫ । ଓଲଟାଇ ଦେବା; ବିପର୍ଯ୍ୟସ୍ତ କରିବା—
5. Turning a thing upside down.

୬ । ଛଳନାଦ୍ୱାରା ବିଳମ୍ବ କରିବା; ଦମ୍ଭଦିଲାସା—
6. Delaying by excuses.

ଟାଲମଟୁଲ—ଦେ. ବି—ଟାଲମଟାଳ (ଦେଖ)
Ṯāḻamaṯuḻa Ṯāḻamaṯāḻa (See).
টালমাটাল टालम-टुल

ଟାଳ ମାରିବା—ଦେ. କ୍ରି—ଟାଳ ଦେବା (ଦେଖ)
Ṯāḻa māribā Ṯāḻa debā (See).

ଟାଲି—ଦେ. ବି—ଟାଇଲ୍ ଦେଖ)
Ṯāli Ṯāil (See).

ଟାଳିବା—ଦେ. କ୍ରି ( ସ. ଟଲ୍ ଧାତୁ; ଣିଚ୍ ଟାଳ ଧାତୁ; ଟଳିବାର ଣିଜନ୍ତରୂପ )—୧ । ଟଳାଇବା; ବିଚଳିତ କରିବା; ଶ୍ଲଥ କରିବା; ଢିଲା କରିବା—
Ṯāḻibā
টালা
टालना
1. To dislocate; to loosen.

୨ । ମୂଳୋତ୍ପାଟନ କରିବା; ଉପାଡ଼ିବା—
2. To uproot (as a tree).

୩ । ବଞ୍ଚନା କରିବା; ଭଣ୍ଡିବା; ଭଣ୍ଡାଇବା—
3. To dodge; to deceive; to brick.

୪ । ଛଳନା କରିବା—
4. To pretend; to prevaricate.

୫ । ଛଳନା ଦ୍ୱାରା କାଳକ୍ଷେପଣ କରିବା—
5. To while time or put off under various pretexts; to evade; to dilly-dally.

ମିଥ୍ୟା ଟାଳିଲ ପିଆଦା ପଶ୍ଚେ ମାର ଝିଙ୍କେ ଅସ୍ତ୍ର ଯାଉ ।
କବିସୂର୍ଯ୍ୟ ସଙ୍ଗୀତ ।

୬ । ( ଗୁରୁଜନଙ୍କୁ ) ଥଟ୍ଟା ବା ପରିହାସ କରିବା—
6. To jest ones elders.

୭ । ( ଅଙ୍ଗୀକାର ) ଅନ୍ୟଥା କରିବା—
7. To break ( one's promise ).

୮ । ( ଆଜ୍ଞା ) ଅବଜ୍ଞା କରିବା; ଲଂଘନ କରିବା—
8. To disobey ( an order).

ଟଙ୍କଧର ପାଦେ ବଙ୍କର ଯାଉ
ଟାଳିବ କେ ଆଜ୍ଞା ସଂସାରେ ତାର—ଅଭିମନ୍ୟୁ ବିଦଗ୍ଧଚିନ୍ତାମଣି ।

୯ । ନିଜର ଦାୟିତ୍ୱ ଅନ୍ୟ ଉପରେ ଲଦିଦେବା ବା ପକାଇଦେବା—9 To shirk one's responsibility to another.

୧୦ । (ଆଦେଶ) ରଦ୍ଦ୍ କରିବା—
10. To set aside (an order)

୧୧ । ଆଘାତ ଆଦିକୁ ଅଟକିବା; ସମ୍ଭାଳିନେବା—
11. To ward off (a blow).

ସୁଯୋଧନ ରଜା ଅଟନ୍ତି ବୁଦ୍ଧିଶାଳୀ
ସେ ଗଦା ପ୍ରହାରକୁ ଦେଲେ କରେ ଟାଳ—କୃଷ୍ଣସିଂହ. ମହାଭାରତ.ଶଲ୍ୟ.

୧୨ । (ଶୁଣ୍ଠୀ ପିପ୍ପଳୀ ଆଦି) ଔଷଧରୂପେ ବ୍ୟବହାର କରିବା ପାଇଁ ଈଷତ୍ ଭୃଷ୍ଟ କରିବା—12. To scorch bits of dry ginger and long pepper etc for using them as medicine.

ଟାହାଙ୍ଗିବା—ପ୍ରାଦେ. (ସମ୍ବଲପୁର) କ୍ରି—ମୁଣ୍ଡ ଟେକି ଚାହିଁବା—
Ṯāhāṅgibā To look with one's head raised or lifted up.

ଛଲ୍ ଥାନକେ ମଯୂର ବାଏ (ଘ)
ବାଏ କି ନ ବାଏ ଟାହାଙ୍ଗ ଥାଏ—ଉଗ ।

ଟାହି—ଦେ. ବି (ସ. ଅଟ୍ଟହାସ; ଟଟ୍ଟରୀ)—୧ । କୌତୁକ—1. Fun.
Ṯāhi ୨ । ଥଟ୍ଟା; ପରିହାସ; ଟାପରା—
ঠাট্টা; ठट्ठा 2. Jest; joke; mockery.

ଟାହିରେ ପଣ୍ଡିତ କି ପ୍ରଜାପତି
ଟଙ୍କେ ବଡ଼ାଉଛି ମଦନ ଗତି—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

মেকানি ୩ । କାମଜ ପରିହାସ—3. Flirtation.

[ଦ୍ର—ଏହା ଟାପରା ପୂର୍ବେ ସହଚର ରୂପେ ବ୍ୟବହୃତ ହୁଏ]

ଟାହିଆ—ଦେ. ବି (ଭୁଲ. ଇଂ. Tiara; ଟାୟାରା)—ଠାକୁରଙ୍କ ପ୍ରଭା ପଛ ଆଡ଼େ ବିଆଯିବା ବା ମୁଣ୍ଡ ଜୁଡ଼ାରେ ଖୋସାଯିବା (ଟାହିଆ-ଅନ୍ୟରୂପ) ଫୁଲଦ୍ୱାରା ସଜ୍ଜିତ ମୟୂରପୁଚ୍ଛାକାର ଆଭରଣ-ବିଶେଷ—A fan-shaped nosegay or bouquet arranged for show in the back-ground of an image or a chignon
Ṯāhiā
ঠাট্টাবাজ, ठठोल
ଦେ. ବଣ.—ଥଟ୍ଟିଲ; ପରିହାସପ୍ରିୟ—Jestive; jocular.

ଟାହି କରିବା—ଦେ. କ୍ରି—ଥଟ୍ଟା କରିବା—To jest.
Ṯāhi karibā ଟାହି କରି ହସି ଉଠନ୍ତି ପୁଣି—ପ୍ରାଚୀ. ପରଦେଶୀୟା ।
মেকা; ठट्ठा उड़ाना

ଟାହି ଖେଳିବା—ଦେ. କ୍ରି—୧ । ମୁହଁରେ ଥଟ୍ଟା କରିବା—
Ṯāhi kheḻibā 1. To crack jokes; to banter.

୨ । କାର୍ଯ୍ୟତଃ ପରିହାସ କରିବା—
2. To cut practical jokes.

ଟାହି ଟାପରା—ଦେ. ବି (ଏକାର୍ଥ ସହଚର)—୧ । କୌତୁକ—
Ṯāhi ṯāparā 1. Fun.
ঠাট্টাবাটখারা; हाँसीठट्ठा ୨ । ଥଟ୍ଟା ପରିହାସ—
2. Jest; joking.

ଟାହିବା—ଦେ. କ୍ରି—ଟାହି କରିବା—To jest.
Ṯāhibā

ଟାହୁଲି (ଇତ୍ୟାଦି)—ଦେ. ବି—ଟାହି ଇତ୍ୟାଦି (ଦେଖ)
Ṯāhuli (etc.) Ṯāhi etc (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ପଙ୍‌କ୍ତିର ଅକ୍ଷର ଓ ମାତ୍ରା ଏବଂ ୨ ପଙ୍‌କ୍ତିର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ପଙ୍‌କ୍ତିର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ପଙ୍‌କ୍ତିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅଙ୍ଗିଆ' ନ ପାଇଲେ 'ଅଙ୍ଗୀଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଟାହିଲିଆ**—ଦେ. ବିଣ. ପୁଂ—୧ । ଥଟ୍ଟାଳିଆ; ପରିହାସପ୍ରିୟ (ବ୍ୟକ୍ତି)—
Ṭāhilia 1. Fond of fun; jocular; given to joking.
ठट्ठेबाज **ठठारा** (ଟାହୁଲେଇ—ସ୍ତ୍ରୀ)

୨ । ପରିହାସଯୁକ୍ତ (କଥା)—
2. Humorous; funny (words).

**ଟାହୁଲି** (ଇତ୍ୟାଦି)—ଦେ. ବି—ଟାହି ଇତ୍ୟାଦି (ଦେଖ)
Ṭāhuli etc. Ṭāhi (etc) (See)

ନଇଁଶୁଆ ସବୁବେଳେ ମୋ କଥାକୁ ଟାହୁଲି କରଇ—
ଉପକାରଚରଣ. ଇନ୍ଦୁମାଳୀ ।

**ଟାହୁଲି** (ଇତ୍ୟାଦି)—ଦେ. ବି—ଟାହି ଇତ୍ୟାଦି (ଦେଖ)
Ṭāhuli etc Ṭāhi etc (See)

ଶ୍ୟାମଦାସ ଗୁମାସ୍ତା ଜ୍ୟୋତିଷଙ୍କୁ ଟିକିଏ ଟାହୁଲି କରି କହିଲେ—
ଫକୀରମୋହନ. ଗଳ୍ପସ୍ବଳ୍ପ ।

**ଟାହୁଲିଆ**—ଦେ. ବିଣ ପୁଂ—ଟାହିଲିଆ (ଦେଖ)
Ṭāhulia Ṭāhilia (See)
(ଟାହୁଲେଇ—ସ୍ତ୍ରୀ)

**ଟାହ୍ୟା**—ଦେ. ବି—ଟାହିଆ (ଦେଖ)
Ṭāhyā Ṭāhia (See)

**ଟି**—ଦେ. ଅ. (ସଂ. ହି; ଏହା ଶବ୍ଦପରେ ବ୍ୟବହୃତ ହୁଏ)—୧ । ବାକ୍ୟ-
Ṭi ପୂରଣ ଓ ଶବ୍ଦ ଉପରେ ଜୋର ଦେବାପାଇଁ ବ୍ୟବହୃତ ପ୍ରତ୍ୟୟ ବିଶେଷ—1. A particle used to complete a sentence and give emphasis on a word, corresponding to the English "too".

ଅଖିଳ ଜନଙ୍କ ନାସା ମୃଗମଦ କଲାଟି । କବିସୂର୍ଯ୍ୟ ବଳଦେବ ରଥ. କିଶୋରଚନ୍ଦ୍ରାନନ୍ଦଚମ୍ପୂ ।

୨ । ପ୍ରଶ୍ନାର୍ଥକ—2. Interrogative.
[ଯଥା—ତୁମ୍ଭେ କାଲି ଫେରି ଆସିବଟି ? ]

୩ । ନିଶ୍ଚୟ (ନିଶ୍ଚୟାର୍ଥକ)—3. (a particle used to denote certainty) Certainly.

ଅବଶ୍ୟ ତା ସମ୍ମୁଖରେ ନିବେଦନ କଲିଟି—କବିସୂର୍ଯ୍ୟ କିଶୋରଚନ୍ଦ୍ରାନନ୍ଦଚମ୍ପୂ ଗୀତ ।

୪ । ଆଶୟାର୍ଥ ପ୍ରକାଶକ—4. A particle used to indicate the speaker's intention.

ଅଶ୍ରୟ ହୋଇବ ଗୋବର୍ଦ୍ଧନ ଗିରିଟି—କବିସୂର୍ଯ୍ୟ. କିଶୋରଚନ୍ଦ୍ରାନନ୍ଦଚମ୍ପୂ ଗୀତ ।

୫ । (ଅଦରାର୍ଥକ) ଏକମାତ୍ର; ଗୋଟିଏ—
5. Sole; one only.

ଉହିବ ଏହିଟି ଦୋଳି କୃପାକଲ୍ପତରୁ ଛାଇଟି—କବିସୂର୍ଯ୍ୟ. କିଶୋରଚନ୍ଦ୍ରାନନ୍ଦଚମ୍ପୂ ଗୀତ ।

[ଦ୍ର—କବିସୂର୍ଯ୍ୟ କିଶୋରଚନ୍ଦ୍ରାନନ୍ଦଚମ୍ପୂର 'ଣ' ଗୀତରେ 'ଟି' ର ଭିନ୍ନ ଭିନ୍ନ ପ୍ରୟୋଗର ଉଦାହରଣ ସୁଲଭ ଅଟେ ।]

୬ । (ଅଦରାର୍ଥକ, ବହୁସଂଖ୍ୟାବାଚକ)—ସଂଖ୍ୟକ—
6. Numbering (so many).
[ ଯଥା—ପାଞ୍ଚଟି ଟଙ୍କା ତାଙ୍କୁ ମିଳିଲା । ]

୭ । କ୍ଷୁଦ୍ରାର୍ଥକ—7. Tiny.

କି ବଡ଼ିଆ ହେଲେ କଳେବର ଛୁଇଁ ପିଲଟି—ପ୍ରାଚୀନ ଭଜନ

୮ । କାରୁଣ୍ୟବ୍ୟଞ୍ଜକ—8. A particle denoting compassion.

[ ଯଥା—ବୁଢ଼ୀଟି କେତେ ଦୁଃଖ ପାଉଛନ୍ତି । ]

**ଟିଆ**—ଦେ. ବି. (ସଂ. ଟିଟ୍ଟିଭ) ୧ । ଟିଟ୍ଟିଭ (ଦେଖ)
Ṭia 1. Ṭiṭṭiva (See)
टिया, टेंया ୨ । ତୋତା ପକ୍ଷୀ; ଏକ ଜାତୀୟ ଶୁକ ପକ୍ଷୀ—
**टुईआ** 2. A kind of parrot; rose-ringed paraquat; Palaeornis Torquatus.

[ଦ୍ର—ଏହା ସାଧାରଣ ଶୁଆନାମକ ପ୍ରସିଦ୍ଧ ନୀଳପକ୍ଷ ଓ ରକ୍ତଚଞ୍ଚୁ ବିଶିଷ୍ଟ ପକ୍ଷୀ ଏବଂ ଲମ୍ବରେ ମୁଣ୍ଡଠାରୁ ପର୍ଯ୍ୟନ୍ତ ବଡ଼ । ଅଣ୍ଡିରି ପକ୍ଷୀର କଣ୍ଠ ଚାରିପାଖେ କଳା ଓ ନାଲି କଣ୍ଠି ପରି ଗାର ବୁଲିଥାଏ । ମାଈ ପକ୍ଷୀର କଣ୍ଠ ବୁଲି ନ ଥାଏ ।

୩ । ଚେହିବା; ଉତ୍ତେଜନା—3. Instigation.

ପ୍ରାଦେ. (ସମ୍ବଲପୁର) ବି—୧ । ଭରଦ୍ବାଜ ପକ୍ଷୀ—
1. The lark.

୨ । କୌଣସି କାର୍ଯ୍ୟ ପାଇଁ ନିର୍ଦ୍ଧାରିତ ସମୟ ବା କଉର—
2. Fixed time.

**ଟିଆଇବା**—ଦେ. କି. (ସଂ ତପ ଧାତୁ; ଣିଜନ୍ତ ତାପି ଧାତୁ, କର୍ମ୍ମ ସଂ
Ṭiaiba ତପ ଧାତୁ = ତାପ୍ତ କରିବା, ତାତ୍ କରିବା )—
टुआन, टुयान ଉତ୍ତେଜିତ କରାଇବା, ମତାଇବା, ତେଜିବା—
**उसकाना** To instigate, to goad.
(ଟିହାଇବା, ଟେହିବା, ଟିଏଇବା; ଟେହିବା, ଟ୍ୟାହିବା—ଅନ୍ୟରୂପ)

**ଟିଆ କରିବା**—ପ୍ରାଦେ. (ସମ୍ବଲପୁର) କି—କଉର କରିବା—
Ṭiā karibā To make a bargain; to appoint a time.

**ଟିଆମତା**—ଦେ. ବି. (ସହଚର)—ଉତ୍ତେଜନା—
Ṭia-matā Instigation.

**ଟିଇକ**—ଗ୍ରା. ବିଣ—ଟିକକ (ଦେଖ)
Ṭi-ika Tikaka (See)

**ଟିଇକେ**—ଗ୍ରା. କି. ବିଣ—କ୍ଷଣକେ—
Ṭi-ike In an instant.

କ୍ଷଣକେ ଅଛି ଏ ଟିଇକେ ନାଶ—ପ୍ରାଚୀ ପରତେ ଗୀତ ।

**ଟିଉଟର୍**—ବୈଦେ. ବି ( ଇଂ )—ଶିକ୍ଷକ; ଗୁରୁ—
Ṭiuṭar Teacher.
टिउटर **ट्यूटर**

**ଟିଉବ୍**—ବୈଦେ. ବି ( ଇଂ )—
Ṭiub ନଳ—Tube.
टिउब **ट्यूब**

**ଟିଉବ୍ ଉଏଲ୍**—ବୈଦେ. ବି (ଇଂ. ଟିଉବ୍‌ୱେଲ୍)—କଳକୂଅ—
Ṭiub uel Tube well.
टिउबउएल् **ट्यूबवेल**

[ ଦ୍ର—କୂଅ ପାଇଁ ମାଟିରେ ଗହିର ଗାତ ନ ଖୋଳି ଗୋଟିଏ ଲୁହା ନଳକୁ ମାଟିରେ ତଳ ଆଡ଼କୁ ଠେଲି ମାରିବାକୁ ହୁଏ ଓ

| ୧ | ଘ | ଭ | ର୍,ର୍ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇପ୍ସ | ଡଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଯ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ୍ | ଙ୍ଗ୍ୟ | ଇଅ | ଢ଼ | ନ୍ |

ନଳଟି ମାଟି ଉପରକୁ କ୍ରମଶଃ ପଶୁଥାଏ । ଏହାପରେ ପଶୁ ପଶୁ ନଳ ଯେତେବେଳେ ଭୂଗର୍ଭସ୍ଥ ଜଳସ୍ରୋତକୁ ବାଜୁଡ଼େ ସେତେବେଳେ ସେହି ନଳବାଟେ ଉକ୍ତ ଜଳ ପିଚକା କରି ଉପରକୁ ଉଠି ଆସେ ଓ ନଳ ମୁହଁରେ ପାଣି ବାହାରେ । ]

**ଟିଉସନ୍**—ବୈଦେ. ବି. ( ଇଂ. ଟ୍ୟୁସନ୍ )—୧ । ଶିକ୍ଷକତା—
Ṭiusan 1. Teachership.
ଟିଉସନ ୨ । ଘରେ ସ୍କୁଲଛାତ୍ରମାନଙ୍କୁ ପଢ଼ାଇବା—
ଟ୍ୟୁସନ 2. Private tuition.
( ଟିଉସନ—ଅନ୍ୟରୂପ )

**ଟିଏ**—ଦେ. ପ୍ରତ୍ୟୟ. ( ଆଦରାର୍ଥକ )—ଏକଗୋଟି ମାତ୍ର—
Ṭie One only.
একটি ଚମ୍ପା ଫୁଲଟିଏ ପାଇଲ ବନ ହଳଦ ପ୍ରାଏ—ନନ୍ଦକିଶୋର. ପଲ୍ଲି ଚିତ୍ର ।
एकता [ ଦ୍ର—ଏହା ବିଶେଷ୍ୟ ପଦରେ ଯୁକ୍ତ ହୋଇ ବ୍ୟବହୃତ ( ଟାଏ—ଅନାଦରାର୍ଥକ ) ହୁଏ; ଯଥା—ମନୁଷ୍ୟଟିଏ, ପିଲାଟିଏ । ]

**ଟି. ଏ**—ବୈଦେ. ( ସାଙ୍କେତିକ ) ବି. (ଇଂ. ଟ୍ରାଭେଲିଙ୍ଗ୍ ଆଲାଉଆନ୍ସରେ
Ṭ. A. ଥିବା ଦୁଇଟି ଶବ୍ଦର ପ୍ରଥମ ଦୁଇ ଇଂରାଜୀ ଅକ୍ଷର )—
ଟି ଏ ଟ୍ରାଭେଲିଙ୍ଗ୍ ଆଲାଉଆନ୍ସ; ଗସ୍ତଖର୍ଚ୍ଚା—T. A; abbrevia-
टि ए tion of the word travelling allowance.

**ଟି. ଏ. ବିଲ**—ବୈଦେ. ବି. ଇଂ. ( ଟ୍ରାଭେଲିଙ୍ଗ୍ ଆଲାଉଆନ୍ସର ପ୍ରଥମ ଦୁଇ
Ṭ. A. bil ଇଂରାଜୀ ଅକ୍ଷର ଓ ଇଂ. ବିଲ୍ )—କର୍ତ୍ତୃପକ୍ଷଙ୍କଠାରୁ
ଟି ଏ বিল ପଠାଯିବା ଗସ୍ତଖର୍ଚ୍ଚର ବିବରଣ ଲେଖା ଥିବା ବିଲ୍—
T. A. bill; a bill for travelling allowance.

**ଟିଏଇବା**—ଦେ. କ୍ରି —ଟିଆଇବା ( ଦେଖ )
Ṭi-eibā Ṭiā-ibā ( See )

**ଟିଁଟିଁଆଁ**—ଦେ. ବି. ( ସଂ. ଟିଟ୍ଟିଭ )—ଟିଟ୍ଟିଭ ( ଦେଖ )
Ṭiñ-ṭiñ-āñ Ṭiṭṭibha ( See )
ଦେ. ବିଣ —ଟିଁ ଟିଁ ଶବ୍ଦ କରୁଥିବା —
Making a trilling sound.

**ଟିଁଟିଁଆଁ ବଣି**—ଦେ. ବି— ଏକପ୍ରକାର ବଣିଚଢ଼େଇ—
Ṭiñ-ṭiñ-āñ bani A kind of myna bird.

**ଟିକ୍‌ଟିକ୍**— ଦେ. ବି—୧ । (ଟିକ୍‌ଟିକ୍ ଶବ୍ଦ କରିବା ଯୋଗୁଁ; ସଂ. ଟିଟ୍ଟିକା)—
Ṭik-ṭik ଝିଟିପିଟି; ପଲ୍ଲି; ଗୃହଗୋଧିକା—
টিকটিকি 1. The house-lizard; the house gecko;
छिपकलि Hemidactylus.
টুকুবা টুকুরা ୨ । ( ସଂ. ସ୍ତୋକ ) ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡ—
टुकड़ा टुकड़ा 1. Particles; tiny bits.
টিকরা ୩ । ଶାଖାଶ୍ରୟୀ ପକ୍ଷିବିଶେଷ—
3. Reed warbler ( a sweet singing bird ); Acrocephalus Calamoherpe.
ମୁଦୁ ନାଦେ କାହିଁ ରଟେ ଟିକଟିକ କହଇ ଜାଙ୍ଗଲବାସୀ—
ରାଧାନାଥ. ଋତୁଣୀ ।

[ ଦ୍ର—ଏହା ପ୍ରାୟ ୮ ଅଙ୍ଗୁଳ ଲମ୍ବ ହୁଏ । ଏହାର ଦେହ ଈଷତ୍ ହଳଦିଆ । ଏହା କୀଟ ପତଙ୍ଗ ଆଦି ଖାଏ । ଏହାର ଗାନ ମଧୁର । ]
টিকটিকী ୪ । ( ଇଂ. ଟ୍ରାଙ୍ଗଲ୍; ସ. ତ୍ରିକାଷ୍ଠ ) ତିନିଖଣ୍ଡ ଡେଙ୍ଗା
टिकटिकी; टिकठी ଦଣ୍ଡକୁ ଭୂମିରେ ପୋତି ଲଗାଇ ଠିଆ କରାଯିବା ଯନ୍ତ୍ର, ଯହିଁରେ ଦଣ୍ଡିତ ବ୍ୟକ୍ତିର ହାତଗୋଡ଼କୁ ବାନ୍ଧି ତା ପିଠିରେ ବା ପିଚ୍ଛରେ ବେତ ମାଡ଼ ଦିଆ ଯାଏ —
4. Triangle; a triangular form to which offenders are tied and caned.
টিকটিকী ବୈଦେ. ବି. ( ଇଂ. ଡିଟେକ୍ଟିଭ୍ )—ଗୋଇନ୍ଦା ପୁଲିସ; ଗୁପ୍ତ
खुफिया पुलिस ଚର—Detective; detective police.
ଦେ. ବିଣ — କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ—
টুকরাটুকুরা, टुकड़ाटुकड़ा Divided into tiny bits.
( ଯଥା—ଟିକ୍‌ଟିକ୍ କାଗଜଗୁଡ଼ିକ ପବନରେ ଉଡ଼ିଗଲା । ]
টিকটিক ଦେ. ଅ. ( ଧ୍ୱନ୍ୟନୁକରଣ )—ଘଣ୍ଟା ଓ ଘଡ଼ିର ଠକଠକ
टिकटिक ବାଜିବା ଶବ୍ଦ—The ticking sound of a clock or watch.

**ଟିକ୍‌ଟିକି**—ଦେ. ବି ଓ ବିଣ—ଟିକ୍‌ଟିକ୍ ( ଦେଖ )
Ṭik-ṭiki Ṭik-ṭik ( See )

**ଟିକ୍‌ଲି**—ଦେ. ବି—ଟିକିଲି ( ଦେଖ )
Ṭik-li Ṭikili ( See )

**ଟିକି**—ଦେ. ଅ. ( ସଂ. ସ୍ତୋକ )—ଅଳ୍ପ ପରିମାଣ; ସାମାନ୍ୟ, ବିକଟେ,
Ṭika ଟି—Little in quantity; small; tiny.
টুকু [ ଦ୍ର—ଏହା ବିଶେଷ୍ୟ ପରେ ଯୁକ୍ତ ହୋଇ ସଂଖ୍ୟା, ଆକାର ठा ବା ପରିମାଣର କ୍ଷୁଦ୍ରତା ବା ଅଳ୍ପତା ବୁଝାଏ, ଯଥା—ପିଲାଟିକ= ଏକମାତ୍ର କ୍ଷୁଦ୍ର ପିଲା, ଦୁଧଟିକ=ଟିକିଏ ଦୁଧ ବା ଅତି ଅଳ୍ପ ମାତ୍ର ଥିବା ଦୁଧ । ]
ଦେ. ବି ଓ ବିଣ—ଟିକକ ( ଦେଖ )—Ṭikaka ( See )

**ଟିକକ**—ଦେ. ବିଣ. ( ସଂ. ସ୍ତୋକ )—୧ । ଅତି ସାମାନ୍ୟ—
Ṭikaka 1. Insignificant.
এতটুকু ୨ । ଅତି ଅଳ୍ପ—2. Very little.
थोड़ासा ୩ । ଅତି କ୍ଷୁଦ୍ର—3. Very small; tiny.
ଦେ. ବି—୧ । ଅତି ସାମାନ୍ୟ ବସ୍ତୁ—1. A little.
୨ । ଅତି କ୍ଷୁଦ୍ର ଖଣ୍ଡ—2. A bit.
ଦେ. ଅ—ଟିକ ( ଦେଖ )—Ṭika ( See )

**ଟିକକ ଠାଉଁ**—ଦେ. କ୍ରି. ବିଣ—କିଛିମାତ୍ର ଅବଶିଷ୍ଟ ନ ରଖି—
Ṭikaka ṭhauñ Leaving no remnant.
अवलसे आखिरतक ( ଯଥା—ମୁଁ ତାକୁ ସବୁ କଥା ଟିକକଠାଉଁ କହିଗଲି । )

**ଟିକକ ଠାଉଁ ନିଖକ ଯାଏ**—ଦେ. କ୍ରି. ବିଣ—ଟିକକ ଠାଉଁ ( ଦେଖ )
Ṭikaka ṭhauñ nikhaka jāe Ṭikaka ṭhauñ (See)

| |
|---|
| ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଶ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଲୁଅ' ନ ମିଳିଲେ 'ଲୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ। |

**ଟିକଟ**—ବୈଦେ. ବି. ( ଇଂ. ଟିକେଟ୍ )—
Ṭikaṭa — ଟିକିଟ — टिकट
୧। ରେଲ ଆଦିରେ ଚଢ଼ି ଯିବା ନିମନ୍ତେ ଯାତ୍ରୀ ଭଡ଼ା ଦେଇ ଥିବାର ଚିହ୍ନ ସ୍ୱରୂପ କର୍ମଚାରୀଙ୍କଠାରୁ ପ୍ରାପ୍ତ କ୍ଷୁଦ୍ର କାଗଜ ଖଣ୍ଡମାନ—1. Railway tickets.
୨। ଡାକ ଟିକଟ—
2. Postage tickets; postal stamps.
୩। କୌଣସି ବସ୍ତୁ ଉପରେ ମରା ଯାଇଥିବା ଛପାଠ କାଗଜ—
3. Label
୪। ଥିଏଟର, ମେଳା, ପ୍ରଦର୍ଶନୀ ଆଦିକୁ ଯିବା ପାଇଁ ଦର୍ଶକଙ୍କୁ ଦିଆ ଯିବା ଅନୁମତିସୂଚକ କାଗଜ—
4. Ticket or pass for admission to a show, theatre etc.
୫। ରେଜିଷ୍ଟ୍ରି ଖାନାରୁ ଦଲିଲର ସମ୍ପାଦନକାରୀଙ୍କୁ ମିଳିବା ନିଦର୍ଶନ କାଗଜଖଣ୍ଡ—5. A slip of paper granted to the presenter of a deed for registration which he has to deliver before the registerd document is returned to him after copying.
[ ଦ୍ର—ଦଲିଲସମ୍ପାଦନକାରୀ ଯେଉଁ ବ୍ୟକ୍ତିଙ୍କ ନାମରେ ଉକ୍ତ ଟିକଟ ପଛରେ ବରାଦ ଲେଖିଦିଏ ସେହି ବ୍ୟକ୍ତି ନିର୍ଦ୍ଦିଷ୍ଟ ତାରିଖରେ ଉକ୍ତ ଟିକଟ ରେଜିଷ୍ଟ୍ରିଖାନାରେ ଦାଖଲ କରି ଦଲିଲ ଓାପସ ପାଏ। ]
ପ୍ରାଦେ (ଗଞ୍ଜାମ) ବି—ଟିକସ; ଟାକ୍ସ—Tax.

**ଟିକଟ କଟା(ଟେ)ଇବା**—ଦେ. କ୍ରି—ମୂଲ୍ୟ ଦେଇ ରେଲକର୍ମଚାରୀଆଦିଙ୍କଠାରୁ ରେଲ ଗାଡ଼ିର ଟିକଟ ଆଣିବା; ଟିକଟ କରିବା; ଟିକଟ କିଣିବା—
Ṭikaṭa kaṭā(ṭe)ibā — টিকিট কাটান — टिकट कटाना
To purchase a ticket on payment of the fare or fee.

**ଟିକଟ କରିବା**—ଦେ. କ୍ରି—ଟିକଟ କଟାଇବା (ଦେଖ)
Ṭikaṭa karibā — টিকিট করা — टिकट करना
Ṭikaṭa kaṭāibā (See)

**ଟିକଟ କାଟିବା**—ଦେ. କ୍ରି—୧। ମୂଲ୍ୟ ନେଇ ଯାତ୍ରୀମାନଙ୍କୁ ରେଲଗାଡ଼ିର ଟିକଟ ଦେବା—
Ṭikaṭa kāṭibā — টিকিট কাটা — टिकट काटना
1. To issue tickets.
୨। ଟିକଟ କରିବା; ଟିକଟ କିଣିବା—
2. To purchase tickets on payment of the fare.

**ଟିକନ୍**—ବୈଦେ· ବି (ଇଂ. ଟିକିଙ୍ଗ୍)—ଗଦି ଓ ଶେଯ ଆଦିର ଖୋଳ ନିମନ୍ତେ ବ୍ୟବହୃତ ଏକପ୍ରକାର ସୂତାର ମୋଟା ଡୋରିଆ ଲୁଗା—Ticking; a coarse striped cotton-stuff for cushions etc.
Ṭikan — টিকিং — ठीकन

**ଟିକମ୍**—ଦେ. ବି ( ସଂ. ସ୍ତୋକ)—ଅତି ଖର୍ବକାୟ ବ୍ୟକ୍ତି; ବାମନ; ବାଙ୍ଗର—Dwarf.
Ṭikam — বেঁটে — ठुमका, बौना
ଦେ. ବିଣ—ଖର୍ବକାୟ; ବାଙ୍ଗୁରା—Dwarfish.

**ଟିକମା**—ଦେ. ବି ଓ ବିଣ—ଟିକମ୍ (ଦେଖ)
Ṭikamā — Ṭikam (See).

**ଟିକର**—ଦେ. ବି (ସଂ. କଙ୍କର)—୧—ଗୋଡ଼ି—
Ṭikara — টিকর — टेकर
1. Shingles; pebbles; gravel.
୨। ଢିପ; ଉଚ୍ଚ ଜମି—2. High land.
୩। ବାଲିସ୍ତୂପ ବା ବନ୍ଧ—3. Sandbank.
ଦେ. ବିଣ—୧। ଉଚ୍ଚ ବା ଟାଣିଆ ( ଭୂମି )—
1. High and dry (land); elevated.
୨। ପଥୁରିଆ; ଗୋଡ଼ିଆ ( ଭୂମି )—
2. Shingly; stony; gravelly,
ପ୍ରାଦେ (ଗଡ଼ଜାତ) ବି—ବ୍ୟଙ୍ଗୋକ୍ତି; ପରିହାସ—
Banter; joke.

**ଟିକର କରିବା**—ପ୍ରଦେ (ଗଡ଼ଜାତ) କ୍ରି—ପରିହାସ କରିବା; ବ୍ୟଙ୍ଗ କରିବା—To banter.
Ṭikara karibā

**ଟିକର ମାରି ହେବା**—ପ୍ରାଦେ (ଗଡ଼ଜାତ) କ୍ରି—ଟିକର କରିବା (ଦେଖ)
Ṭikara māri hebā — Ṭikara karibā (See).

**ଟିକରା**—ଦେ. ବି—ଟିକର (ଦେଖ)
Ṭikarā — Ṭikara (See).
ଦେ. ବିଣ—୧। (ସଂ. ସ୍ତୋକ) ଅଳ୍ପପରିମିତ—
1. Of small dimensions; petty.
୨। ଟିକର ( ଦେଖ )—
2. Tikara (See).
ପ୍ରାଦେ (ବାଲେଶ୍ୱର) ବି—ହୁଙ୍କା—Ant hill.
(ଯଥା—ଉଇ ଟିକରା।)

**ଟିକରା ଚଷ**—ଦେ. ବି—ଖଣ୍ଡ ଖଣ୍ଡ କରିଥିବା ଚଷ କରିବା—
Ṭikarā chasha — Cultivation of tiny plots of land.
କେବେହେଁ ନ କରିବୁ ଟିକରା ଚଷ
କର ଦେଇ ନାହିଁ ଲାଭରେ ଅଶ—କୃଷିବଚନ

**ଟିକରିଆ**—ପ୍ରାଦେ. ( ଗଡ଼ଜାତ ) ବିଣ. ପୁଂ—୧। ବ୍ୟଙ୍ଗୋକ୍ତିକାରୀ—
Ṭikariā — 1. Bantering; scoffing.
(ଟିକରେଇ—ସ୍ତ୍ରୀ) ୨। ଥଟ୍ଟାଳିଆ—2. Jestive; jocular.

**ଟିକଲ**—ଦେ. ବି—ପରିହାସ; ଠାପରା—
Ṭikala — Jest; joke.

**ଟିକସ**—ବୈଦେ. ବି—୧। (ଇଂ. ଟାକ୍ସ) କର; ଶୁଳ୍କ—
Ṭikasa — টেক্স, টাক্স; टिकस
1. Tax; toll; duty.

| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ଁ | ଉଅ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ୠ | ନ |

୨ । ଗ୍ରା. (ଇଂ. ଟିକେଟ୍) ଅନୁମତି ସୂଚକ କ୍ଷୁଦ୍ର କାଗଜଖଣ୍ଡ—
টিকিট; **टिकट** 2. Ticket.

**ଟିକସ ଦାରୋଗା**—ବୈଦେ. ବି (ଇଂ. ଟାକ୍ସ୍ + ଫା. ଦାରୋଗା)—ଟାକ୍ସ
Ṭikasa dārogā ବା କର ସଂଗ୍ରାହକ କର୍ମଚାରୀ—
টেক্স দারোগা Tax collector.
**टिकस दारोगा**

**ଟିକସ ବସା(ସେ)ଇବା**—ଦେ. କ୍ରି—କର ଧାର୍ଯ୍ୟ କରିବା—
Ṭikasa basā(se)ibā To assess tax.
টাক্স বসান; **टिकस लगाना**

**ଟିକା**—ଦେ. ବି (ସଂ. ତିଲକ; ଭୁଲ. ସଂ. ବଟକା)—୧ । କପାଳରେ
Ṭikā ଯେଉଁସବୁ ଗୋରୋଚନା ଓ ଚନ୍ଦନ ଆଦିର ଟୋପା—
টীকা; **टीका** 1. A circular-finger mark of different colours painted on the brow.
ଦେଲେ ଶ୍ରୀଚନ୍ଦନ ଟିକା ସମ ଲଲାଟରେ—ମଧୁସୂଦନ. ବାଲ୍ମୀକିରାମାୟଣ ।
টীকা ୨ । ସ୍ୱର୍ଣ୍ଣ ରୌପ୍ୟାଦି ନିର୍ମିତ ପଦକ; ମସ୍ତକର ଅଳଙ୍କାର ବିଶେଷ—2. A silver or gold medal worn as an ornament.
টীকা ୩ । ବସନ୍ତ ରୋଗସଂକ୍ରମଣର ଭୀଷଣତା ନିବାରଣାର୍ଥ ବସନ୍ତ-
**टीका** ରୋଗଗ୍ରସ୍ତ ମନୁଷ୍ୟ ବା ଗୋରୁଙ୍କଠାରୁ ପୂଜ (ବୀଜ) ନିଆଯାଇ ମନୁଷ୍ୟର ହାତ ବା ବାହୁରେ ଛିଦ୍ର କରି ଉକ୍ତ ପୂଜକୁ ଭର୍ତ୍ତି କରିବା ପ୍ରଣାଳୀ—
3. Vaccination; inoculation.
[ଦ୍ର—ମନୁଷ୍ୟମାନଙ୍କରେ ଦିଆଯିବା ଟିକାକୁ ଦେଶୀଟିକା ଓ ଗୋମାନଙ୍କରେ ଦିଆଯିବା ଟିକାକୁ ବିଲାତି ଟିକା କୁହାଯାଏ ।]
୪ । ଅଭିଷେକ ଉପଲକ୍ଷରେ ରାଜା ଓ ଯୁବରାଜଙ୍କ କପାଳରେ ଦିଆଯିବା ଚିହ୍ନ; ରାଜଟୀକା—
4. A circular finger-mark given on the brow of a Raja and heir apparent on the occasion of installation; sign of royalty.
টেক্কা ୫ । ତାସ୍ ଖେଳରେ ଏକ ସଂଖ୍ୟକ ତାସ—
**इक्का** 5. The ace at cards.
୬ । ଅଙ୍ଗୁଠିର ଅଗ ଦ୍ୱାରା ଆଘାତ; ଥୋପି—
6. A tap with the tip of a finger.
୭ । (ଲକ୍ଷଣାର୍ଥ)ବହୁ ଲୋକଙ୍କମଧ୍ୟରେ ଶ୍ରେଷ୍ଠତ୍ୱସୂଚକ ଚିହ୍ନ—
7. (fig) Sign of excellence amongst many.
ପାଇଛି ଟିକା ସୁବେଶ ଯାକେ—ଉପେ. କୋଟୀବ୍ରହ୍ମାଣ୍ଡସୁନ୍ଦରୀ ।
ଦେ ବିଣ—୧ । ଶ୍ରେଷ୍ଠ; ପ୍ରଧାନ—1. Chief.
ତରଳ ତାରକାହାରମଧ୍ୟୀ ନାୟିକାରସିକଟିକା । ସଧାନାଥ. ଉଷା ।
୨ । ଉତ୍କୃଷ୍ଟ—2. Excellent.
ପ୍ରାଦେ. (ଗଡ଼ଜାତ) ବି—୧ । ପ୍ରଜାଙ୍କର ରାଜାଙ୍କୁ ପ୍ରଣାମ କରିବା ଉପଲକ୍ଷରେ ଦେବା ଭେଟି—1. Present given to a king by a subject after making obeisance.
୨ । ରାଜା ଓ କ୍ଷତ୍ରିୟମାନଙ୍କ ଘରେ ବୈବାହିକ ମହାପ୍ରସାଦ-ନିର୍ବନ୍ଧର ଅଙ୍ଗବିଶେଷ; ଟିକାଲାଗି—
2. The ceremony of betrothal amongst the Kshatriyas.
[ଦ୍ର—ଏଥିରେ କନ୍ୟାପକ୍ଷର ଅଭିଭାବକ ବର ଘରକୁ ଯାଇ ତାଙ୍କୁ ନବବସ୍ତ୍ର ଓ ଅଳଙ୍କାରାଦି ଦେଇ କନ୍ୟାପ୍ରଦାନ କରିବାକୁ ସଂକଳ୍ପ ପୂର୍ବକ ତାଙ୍କ ମୁଣ୍ଡରେ ଟିକା ବା ଟୋପାଏ ମାରି ଦିଅନ୍ତି ।]
୩ । ଏକ ରାଜଧାନୀକୁ ଆଗତ ଅନ୍ୟଦେଶର ରାଜାଙ୍କୁ ପ୍ରଥମ ରାଜଧାନୀର ଅଧୀଶ୍ୱରଙ୍କ ଗୃହରେ ଭୋଜନ କରିବା ନିମନ୍ତେ କରାଯିବା ସବିଧି ନିମନ୍ତ୍ରଣ—
3. A formal invitation for dinner sent by a Raja to a brother-chief during his visit to the former's capital.
[ଦ୍ର—ଅର୍ଘ୍ୟ, ପୁଷ୍ପ, ଧୂପ, ଦୀପ ଓ ପଟ୍ଟବସ୍ତ୍ରାଦି ଦେଇ ଏ ନିମନ୍ତ୍ରଣ କରାଯାଏ ।]
ପ୍ରାଦେ. (ସମ୍ବଲପୁର) ବି—ଗୋରୁଆଦିଙ୍କ ମୁଣ୍ଡରେ ଥିବା ଶୁକ୍ଳ—
Big white patch found on the head of coloured cattle.
ପ୍ରାଦେ. (ସମ୍ବଲପୁର) ବିଣ—ଶୁକ୍ଳଥିଆ; ଯେଉଁ ଗୋରୁ ମୁଣ୍ଡରେ ଶୁକ୍ଳ ଥାଏ—(cattle) Having a white patch on the head.

**ଟିକା(କେ)ଇତ**—ଦେ. ବି. (ଏହାଙ୍କ ମୁଣ୍ଡରେ ଟିକା ବା ସମ୍ମାନସୂଚକ
Ṭikā(ke)ita ଚିହ୍ନ ଦିଆ ଯିବାରୁ)—୧ । ଯୁବରାଜ; ରାଜାଙ୍କର
**टिकैत; टिकाइ** ଜ୍ୟେଷ୍ଠପୁତ୍ର; ରାଜ୍ୟର ଭାବୀ ଉତ୍ତରାଧିକାରୀ—
1. The eldest prince; the heir-apparent to the throne.
୨ । ରାଜଦ୍ୱାରରେ ବିଶିଷ୍ଟ ସମ୍ମାନର ଚିହ୍ନସ୍ୱରୂପ ଯେଉଁ ବ୍ୟକ୍ତିର କପାଳରେ ଟିକା ଦିଆଯାଇ ଥାଏ—2 A person specially honoured by the king by being given a mark of sandal on the brow.
୩ । ଯୁବକ ରାଜା—3. A young king.
ଟିକାଇତ ଅଷ୍ଟବର୍ଗରେ କହଇ ଶ୍ୟାମ ଏକ ଅବରତ ।
କବିସୂର୍ଯ୍ୟ ବଳଦେବ. ଚମ୍ପୂ ଡ. ଗୀତ ।
୪ । (ଲକ୍ଷଣାର୍ଥ) ଶ୍ରେଷ୍ଠବ୍ୟକ୍ତି—4. Chief.
ଟିକାଇତ ତୁ ରସିକଙ୍କେ ସିନା । କବିସୂର୍ଯ୍ୟ. ସଙ୍ଗୀତ ।

**ଟିକାଏ**—ଦେ. ଅ—ଟିକକ (ଦେଖ)
Ṭikāe Ṭikaka (See)
একটু ଟିକାଏ ହେଲେ ଯେ ତୁଭସୁ ସଙ୍ଗେକେ ଜୋହିଲ ଗାସ ବଢାଣ ।
କବିସୂର୍ଯ୍ୟ. ବଳଦେବ. ଚମ୍ପୂ ଡ ଗୀତ ।
ଦେ. କ୍ରି. ବିଣ—ଅଳ୍ପକ୍ଷଣ ମାତ୍ର—For a short time.

**ଟିକାଏତ**—ଦେ. ବି—ଟିକାଇତ (ଦେଖ)
Ṭikāeta Ṭikāita (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ୍‌ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ଆଉ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍‌' ଦେଖିବେ ।

**ଟିକାକ**—ଦେ. ଅ—ଟିକକ (ଦେଖ)
Ṭikāka Ṭikaka (See)
ଟିକାକ ଦୋଷକୁ ଗମା କେତେ ଭୂଷା ଭୂଷିଲରେ । କବିସୂର୍ଯ୍ୟ, ସଙ୍ଗୀତ ।

**ଟିକା ଘେ(ଘି)ନିବା**—ଦେ. କ୍ରି—୧ । ବସନ୍ତବୀଜର ଟିକା ନିଜ ଅଙ୍ଗରେ
Ṭikā ghe(ghi)nibā ଗ୍ରହଣ କରିବା—1. To be vaccinated or inoculated.
ଟীকা নওআ **टीका लगाना**
(ଟୀକା ନେବା—ଅନ୍ୟରୂପ) ୨ । କପାଳରେ ଚିତା ଧାରଣ କରିବା—2. To paint a circular mark on the forehead.

**ଟିକାଦିଆ**—ଦେ. ବି—୧ । ଯେଉଁ ବ୍ୟକ୍ତି ଅନ୍ୟମାନଙ୍କ ଠାରେ ବସନ୍ତ
Ṭikādiā ବୀଜର ଟିକା ଦିଏ—1. Vaccinator; inoculator.
টীকাদাব
**टीकादार** ୨ । ଟିକାଦେବା କର୍ମ—
টীকা দেওয়া 2. Vaccinating.
**टीका चढ़ाना**

**ଟିକା ଦେବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଦେହରେ ବସନ୍ତ
Ṭikā debā ରୋଗନିବାରକ ବୀଜ ପ୍ରବେଶ କରାଇବା—
টীকা দেওয়া 1. To vaccinate; to inoculate.
**टीका चढ़ाना** ୨ । କୌଣସି ବ୍ୟକ୍ତିର କପାଳରେ ଚିତା ବା ଠୋପା ଦେବା—2. To paint a circular mark on the forehead of a person.

**ଟିକା ନେବା**—ଦେ. କ୍ରି—ଟିକା ଘେନିବା (ଦେଖ)
Ṭikā nebā Ṭikā ghenibā (See)

**ଟିକାୟତ**—ଦେ. ବି—ଟିକାଇତ ( ଦେଖ )
Ṭikāyata Tikāita ( See )
(ଟିକାଏତ, ଟିକାଇତ—ଅନ୍ୟରୂପ)

**ଟିକାଲଗି**—ପ୍ରାଦେ. (ଗଡ଼ଜାତ) ବି—ବିବାହ ପ୍ରସଙ୍ଗରେ ରାଜାଙ୍କ ଘରେ
Ṭikā-lāgi କନ୍ୟା ପକ୍ଷର ପୁରୋହିତ ବର ଘରକୁ ଯାଇ କରିବା ସ୍ୱୀକାର ବା ନିର୍ବନ୍ଧ ବିଧି—The ceremony of betrothal amongst the Kshatriyas.

**ଟିକି**—ଦେ. ଅ—୧ । ପ୍ରଶ୍ନାର୍ଥକ—
Ṭiki 1. Interrogative.
নাকি ( ଯଥା—ତୁ ସେଠାକୁ ଯିବୁଟିକି ? )
**टोक.** ୨ । ନିଶ୍ଚୟାର୍ଥକ—2. A particle used to denote certainty.
ନଜାଣ୍ଟିକି ସ୍ଥଳ ଏ ବଡ ଶୀତଳ ନୁହନ୍ତାଟିକି ବିହାର—କବିସୂର୍ଯ୍ୟ କଣୋଜ୍ୱଳନ୍ତ୍ର ଙ ଗୀତ ।

ଦେ. ବିଣ. ପୁଂ ଓ ସ୍ତ୍ରୀ—ଅତି କ୍ଷୁଦ୍ର—Very small; tiny.
ଟିକି ନୂଆ ବୋହୂ ଜଳ ଅଣୁ ଅଣୁ ପାଦ ଭାର ଗଲା ଖସି—
ନନ୍ଦକିଶୋର. ଦାର୍ହରଣୀ ।

ଦେ. ପ୍ରତ୍ୟୟ—୨ୟା ବିଭକ୍ତି ଏକବଚନ ଆଦର ବା ସ୍ନେହାର୍ଥ—
(ଟିକୁ—ଅନ୍ୟରୂପ) Objective singular case-suffix.
ଏଡ଼ିଲେ କେଶ୍ୟ ପୁଣ୍ୟ ଫଳଟିକି ପାଏ—କୃଷ୍ଣସିଂହ. ମହାଭାରତ. ଅନୁଶାସନ ।

**ଟିକିଆ**—ଦେ. ବି—ଧୂମପାନବେଳେ ଗୁଡ଼ାଖୁରେ ବା ମଦର ଗୋଲାରେ
Ṭikiā ନିଆଁ ଧରାଇବା ପାଇଁ ପେଙ୍କଗୋଲଆ ଅଙ୍ଗାରଗୁଣ୍ଡାରେ
টিকিয়া, টিকে ପ୍ରସ୍ତୁତ ପିଷ୍ଟକାକାର ଖଣ୍ଡ—Dried cakes of
**टिकिया** powdered charcoal used to ignite tobacco or opium preparations (bullets) for smoking.

**ଟିକିଏ**—ଦେ.ବିଣ ଓ ବି—(ସଂ. ସ୍ତୋକ) ଅତି କ୍ଷୁଦ୍ର; ଟିକଟିଏ; କଣିକ—
Ṭiki-e Very small; a bit.
একটু ଦେ. ଅ—୧ । ସାମାନ୍ୟ ପରିମାଣରେ—
**टुक, टुकसा** 1. A little; in a small quantity.
ଟିକିଏ ହେଲେ ବବେକ ନ କରି ସେବକ ବେକ କରଇ ବୋଲ ଦର୍ପକ—
କବିସୂର୍ଯ୍ୟ. ସଙ୍ଗୀତ ।
୨ । ଅଳ୍ପ ସମୟ ପାଇଁ—
2 For a short time; for a moment.
ଟିକିଏ ରହି ନମସ୍କାରୁଥାଏ କରି—କୃଷ୍ଣସିଂହ. ମହାଭାରତ. ବନ ।
୩ । ଅନୁଗ୍ରହପୂର୍ବକ (ଅମୁକ କର୍ମ କର)—
3. Do please; please.
[ ବି—ଇଂରାଜୀରେ ଯେଉଁ ଅର୍ଥରେ 'please' ଅର୍ଥାତ୍‌ 'ଅନୁଗ୍ରହପୂର୍ବକ' ଶବ୍ଦ ବ୍ୟବହୃତ ହୁଏ ଓଡ଼ିଆରେ ଅନେକ ସ୍ଥଳରେ 'ଟିକିଏ' ସେହି ଅର୍ଥରେ ବ୍ୟବହୃତ ହୁଏ; ଯଥା—ନାହୁର ଭାଇ ! ମତେ ଟିକିଏ ଉଖିଲ ନଈପାରି କରି ଦିଅ । ]

**ଟିକିଏକ**—ଦେ. (ପଦ୍ୟ) ବି ଓ ବିଣ—କ୍ଷଣକ; ମୁହୂର୍ତ୍ତକ; ଟିକକ—
Ṭikieka A while; a whit.
ଟିକିଏକ ଭୂଷରେ ଦେଉଁ ଦା'ଇ ଗ୍ରାମ
ଧଇଲେ କରେ ଗଦା କରି ମହାଭାଗ—କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

**ଟିକିଏ ନିଖିଏ**—ଦେ. ବି—ଅତି ସାମାନ୍ୟ ପରିମାଣ; ଟିକଟିଏ—
Ṭiki-e-nikhie Minute quantity.
অল্পস্বল্প ଦେ. ବିଣ—ଅତି ସାମାନ୍ୟ ବା ଅଳ୍ପ—
Minute; small.
ଦେ. କ୍ରି. ବିଣ—ଅତି ସାମାନ୍ୟ ପରିମାଣରେ—
In minute quantity

**ଟିକିଏ ମାତ୍ର**—ଦେ. ବି ଓ ବିଣ—ଟିକିଏ ନିଖିଏ (ଦେଖ)
Ṭiki-e mātra Tikie nikhie (See)
অল্পমাত্র

**ଟିକିକ**—ଦେ. ଅ ଓ ବିଣ ଓ ବି—ଟିକକ (ଦେଖ)
Tikika Tikaka (See)
ଟିକି ଚଢେଇ ଟିକକ ପାଣିରେ ବୁଡ଼ି ମରଇ—ପ୍ରହେଳିକା ।

**ଟିକିକେ**—ଦେ. କ୍ରି. ବିଣ—୧ । ଅତି ଅଳ୍ପ ସମୟ ମଧ୍ୟରେ—
Ṭikike 1. In a very short time.
একটুতে ୨ । ସାମାନ୍ୟ କାରଣରେ—2. Slightly.

**ଟିକି ଜୀବନ**—ଦେ. ବି. (ସଂ. ସ୍ତୋକ+ଜୀବନ)—୧ । କ୍ଷୁଦ୍ର ଜୀବନ;
Ṭiki-jībana ଯାହାର ଜୀବନ ଅଳ୍ପକେ ବାହାରିଯାଏ; ସୁକୁମାରଆ—
স্বল্পপ্রাণ 1. Very tender or delicate life; frail life.
୨ । ହେୟ ଜୀବନ—2. Despicable or mean-life.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ସ | ଓଅ | ଊ |
| ୨ | ଈ | ଊ | ଋ | ଲୁ | ପ୍ତେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଂ୍ୟ | ଇଅ | ଢ଼ | ନ୍ |

୩ । ଭୀରୁତା—3. Timidity; cowardice.

ଦେ. ବିଣ—ଟିକିଜୀବନଆଁ ( ଦେଖ )
Ṭiki-jibaniāñ ( See)

**ଟିକିଜୀବନଆଁ**—ଦେ. ବିଣ. ( ଭୁଲ. ସ. ଲଘୁଚେତସ୍ )—
Ṭiki-jibaniāñ ୧ । ଯେ ସାମାନ୍ୟ ଆଘାତ ବା ପୀଡ଼ାରେ
ସ୍ୱଳ୍ପପ୍ରାଣ ମରିଯାଏ; ସ୍ୱଳ୍ପମାରିଆ—
1. Of very frail vitality.

୨ । ଲଘୁଚେତା, ନୀଚମନା—2. Mean-minded.

୩ । ଭୀରୁ—3 Coward; timid.

**ଟିକିଟିକି**—ଦେ. ବି ଓ ବିଣ—ଟିକ୍‌ଟିକ୍ ( ଦେଖ )
Ṭiki-ṭiki Ṭik-ṭik ( See )

**ଟିକିଦିନୁ**—ଦେ. ( ପଦ୍ୟ ) ଅ—ପିଲା ଦିନରୁ—
Ṭiki-dinu From childhood.
ছেলেবেলাথেকে ଟିକି ଦିନୁ ହେବେ ବଣା ତୁମ୍ଭର—
**বচপনসে** (ଟିକିଟିଦିନୁ—ଅନ୍ୟରୂପ) ଅଭିମନ୍ୟୁ ବଧ ଗ୍ରନ୍ଥାବଳୀ ।

**ଟିକିନ୍**—ବୈଦେ. ଭ. ( ଇଂ )—ଟିକନ୍ ( ଦେଖ )
Ṭikin Ṭikan ( See )

**ଟିକି ପିଲା**—ଦେ. ବି—ଅତି ଛୋଟ ପିଲା; ଶିଶୁ—
Ṭiki pilā Child; infant.
କଚି ছেলে କି ବଡ଼େ କଲେ ନନ୍ଦନନ୍ଦନ ଟିକିପିଲାଟି—ପ୍ରାଚୀନ ଭଜନ ।
[ ଦ୍ର—ଏହିପରି ଟିକି ଚଢ଼େଇ, ଟିକି ବାଛୁରୀ, ଟିକି ଛୁଆ ଆଦି ମଧ୍ୟ ହୁଏ । ]

**ଟିକିବା**—ଦେ. କ୍ରି. ( ସ. ସ୍ଥା ଧାତୁ )—୧ । ଛିଡ଼ିବା; ସମ୍ଭାଳିବା—
Ṭikibā 1. To go on; to get on.
টিকা; টেকা ୨ । ସ୍ଥାୟୀ ହେବା—2. To last.
**टिकना** ୩ । ବୃଦ୍ଧିପାଇବା—3. To thrive.
୪ । ଫଳବାନ୍ ହେବା—
4. To fructify; to be effective.

**ଟିକିମା**—ଦେ. ବି ଓ ବିଣ—ଟିକମ୍ ( ଦେଖ )
Ṭikimā Ṭikam ( See )

**ଟିକିରି**—ଦେ. ବିଣ—କ୍ଷୁଦ୍ର; ସାମାନ୍ୟ, ଅତି ଛୋଟ—
Ṭikiri Pretty; very small; tiny.

**ଟିକିଲି**—ଦେ. ବି. ( ସ. ତିଲକରୁ ଟିକା; ଟିକାରୁ କ୍ଷୁଦ୍ରାର୍ଥେ ନିଷ୍ପନ୍ନ )—
Ṭikili ସ୍ତ୍ରୀଲୋକମାନଙ୍କର ଭ୍ରୂଲତା ମଧ୍ୟରେ ଦେଉଥିବା ପତଳା ଓ
টীপ ଚକାକାର ଚୋପି—Wafer; small disks of thin
**टिकुलि; चाँदला** coloured material worn by females in the middle of the eye-brows.
[ ଦ୍ର—ଅଭ୍ର ବର୍ଣ୍ଣର କାଗଜ ବା ଧାତୁର ପତଳା ଓ ଚକାକାର କ୍ଷୁଦ୍ର କ୍ଷୁଦ୍ର ଖଣ୍ଡକୁ ଟିକିଲି ଏବଂ ସିନ୍ଦୁର, ଗୋରଚନା ଓ ଚନ୍ଦନକଳା ଆଦିରେ ରଞ୍ଜିତ କ୍ଷୁଦ୍ର ବିନ୍ଦୁମାନଙ୍କୁ ଚୋପି ଓ ବଡ଼ବିନ୍ଦୁମାନଙ୍କୁ ଚୋପା ବୋଲାଯାଏ । ]

**ଟିକେ**—ଦେ ଅ—ଟିକିଏ ( ଦେଖ )
Ṭike Ṭikie ( See )

**ଟିକେଇତ**—ଗ୍ରା ବି—ଟିକାଇତ ( ଦେଖ )
Ṭikeita Ṭikāita ( See )

**ଟିକେ ନିଖେ**—ଗ୍ରା. ଅ—ଟିକିଏ ନିଖିଏ ( ଦେଖ )
Ṭike nikhe Ṭikie nikhie ( See )

**ଟିକେ**—ପ୍ରାଦେ. ( ସମ୍ବଲପୁର ) ଅ—ଟିକିଏ ( ଦେଖ
Ṭikhe Ṭikie ( see )

**ଟିଙ୍କ୍‌ଚର**—ବୈଦେ. ବି ( ଇଂ )—ସୁରାରେ ଦ୍ରବୀଭୂତ ଡାକ୍ତରୀ ଔଷଧ
Ṭink-char ବିଶେଷ, ଅରିଷ୍ଟ; ଅରକ—Tincture.
টিঙ্কচর [ ଦ୍ର—ଯେଉଁ ଯେଉଁ ପଦାର୍ଥ ସୁରାରେ ମିଶିଥାଏ ସେହି
**टिंचर** ପଦାର୍ଥର ବୈଦେଶିକ ନାମ ଅନୁସାରେ ଟିଙ୍କ୍‌ଚରର ନାମ ହୁଏ, ଯଥା ଟିଙ୍କ୍‌ଚର୍ ଓପିଅଇ=ଅଫିମ ଅରକ । ]

**ଟିଙ୍କ**—ଦେ. ବି. (ସ ଅଷ୍ଟପଦୀ; ଭୁଲ. ଇଂ. ଟିକ୍ )—ପଶୁଙ୍କ ଦେହରେ
Ṭinka ଲାଗି ରହି ରକ୍ତ ଶୋଷିବା ଅଷ୍ଟପଦୀ କୀଟବିଶେଷ—
এঁটেলী; অঁটালী Tick; a parasitic insect sucking
**अठाई; अँठइ** blood from beasts; the Persian tick; Argas Persicus.
[ ଦ୍ର—ଏମାନେ ପଶୁଙ୍କ ଚମକୁ କାମୁଡ଼ି କରି ଲାଗି ଥାଆନ୍ତି; ଏମାନଙ୍କ ମୁହଁରେ ଗୋଟିଏ ରକ୍ତଶୋଷକ ନଳ ଅଛି । ପଶୁଙ୍କ ଦେହରୁ ରକ୍ତ ଶୋଷି ଏମାନଙ୍କ ଦେହ ରକ୍ତରେ ଫୁଲି ଯାଏ ଏବଂ ଗୋଡ଼ଯାକ ଅତି ସାନ ଦେଖାଯାଏ । ଟିଙ୍କ ଅନେକ ପ୍ରକାର ଦେଖା ଯାଆନ୍ତି; ଯଥା—୧. ଘାଗୁଡ଼ିଆ=ବଡ଼ ଓ ଚେପ୍ଟା, ୨ ପଥରିଆ=ପଥରି ପରି ଟାଣୁଆ, ଖୁବ୍ ପତଳା ଓ ଚେପ୍ଟା; ୩. ଜଉଟିଙ୍କ=କଳାକରି ପରି ସାନ, ମେଞ୍ଚା ମେଞ୍ଚା ହୋଇ ପଶୁଙ୍କ ଦେହରେ ଲାଗନ୍ତି, ୪. ମଣ୍ଡାଟିଙ୍କ=ବଡ଼ ଓ ନରମ, ୫ ପୁଡ଼ାଟିଙ୍କ=ଏମାନେ ସରୁ ସରୁ । ]

**ଟିଙ୍କ ଜର**—ଦେ. ବି—ଗୋରୁଙ୍କର ହେବା ଏକପ୍ରକାର ଜ୍ୱର—
Ṭinka jara Tick fever.

**ଟିଙ୍କି**—ଗ୍ରା. ବି—ଟିଙ୍କ ( ଦେଖ )
Ṭinki Ṭinka ( See )

**ଟିଙ୍ଗ୍‌ଟିଙ୍ଗା**—ଦେ. ବିଣ. ପୁଂ—ଚଡ଼ିଲ—Surly; of an irritable
Ṭing-ṭingā disposition; peevish.
( ଟିଙ୍ଗ୍‌ଟିଙ୍ଗେଇ—ସ୍ତ୍ରୀ )

**ଟିଙ୍ଗ୍‌ଟିଙ୍ଗା(ଙ୍ଗେ)ଇବା**—ଦେ. କ୍ରି—ଚିଡ଼ିବା—
Ṭing-ṭingā(nge)ibā To fret; to be irritated.

**ଟିଙ୍ଗ୍‌ଶୂଲା**—ଦେ. ବିଣ—ଟିଙ୍ଗିଶୂଲା ( ଦେଖ )
Ṭing-śulā Ṭingi-śulā ( See )

**ଟିଙ୍ଗ୍‌ଶୂଲିଆ**—ଦେ. ବିଣ—ଟିଙ୍ଗିଶୂଲା ( ଦେଖ )
Ṭing-śuliā Ṭingi-śulā ( See )

**ଟିଙ୍ଗ୍‌ଶୂଲା(ଲେ)ଇବା**—ଦେ. କ୍ରି—ଟିଙ୍ଗିଶୂଲାଇବା ( ଦେଖ )
Ṭing-śulā(le)ibā Ṭingi-śulāibā ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ।

**ଟିଙ୍ଗା**—ଦେ ବି. ( ସଂ. ଭୃଙ୍ଗ ) —ଲିଙ୍ଗର ଉତ୍ଥାନ ବା ଉଦ୍ରେକ— Ṭiṅgā Erection of the male organ.
ଦେ ବିଣ—ଟିଙ୍ଗ ଶୂଳା—Surly; currish.

**ଟିଙ୍ଗା(ଙ୍ଗେ)ଇବା**—ଦେ. କ୍ରି. ( ସଂ. ଭୃଙ୍ଗ )— Ṭiṅgā(ṅge)ibā ୧ । (ଲିଙ୍ଗ) ଉଦ୍ରିକ୍ତ ହେବା— ঠাটান, টাটান, ঠাড় হওয়া **খড়াহোনা, ঠাড় হোনা** 1. To become turgid or erect ( said of the male organ when irritated ).
୨ । ଶଗଡ଼ର ଏକମୁଣ୍ଡକୁ ମାଡ଼ି ବସି ଅନ୍ୟ ପାଖ ଉପରକୁ ଉଠାଇବା— 2. To raise one end of a thing by holding the other end ( as of a cart ).
୩ । ଟିଙ୍ଗ ହେବା; ଟିପିଟିପିଯିବା—3. To bob.

**ଟିଙ୍ଗାରି ସି)ହେବା**—ପ୍ରାଦେ. ( ଗଡ଼ଜାତ ) କ୍ରି— Ṭingāri,si)hebā ୧ । ଚଢ଼ିମର୍କଟି ହେବା ( ଦେଖ ) 1. Chaḍi-markaṭi hebā ( See)
୨ । ଚଢିବା ( ଦେଖ )—2. Chaḍibā ( See )

**ଟିଙ୍ଗି ଶୂଳା**—ଦେ. ବିଣ—୧ । ଚିଡ଼ିଲ; ଯେ ସାମାନ୍ୟ କଥାରେ ରାଗି ଉଠେ—1. Surly; illnatured & rude; irascible by nature; peevish. Ṭiṅgi-śūḷā খীটখীটে **चीड़चीड़ा**
୨ । ଯେଉଁ କଥାରେ ଲୋକ ହଠାତ୍ ଚିଡ଼ି ଉଠେ— 2. Irritating.

**ଟିଙ୍ଗି ଶୂଳିଆ**—ଦେ. ବିଣ—ଟିଙ୍ଗି ଶୂଳା ( ଦେଖ ) Ṭiṅgiśūḷiā Ṭiṅgi-śūḷā ( See )

**ଟିଙ୍ଗି ଶୂଳା(ଳେ)ଇବା**—ଦେ. କ୍ରି—ଟିକିକ କଥାରେ ଚିଡ଼ିବା; ସହଜରେ ରାଗିଯିବା—To be easily irritated or provoked. Ṭiṅgi-śūḷā(e)ibā

**ଟିଟ୍‌କାରି**—ଦେ. ବି. ( ସଂ. ଧିକ୍କାର ) —ଧିକ୍କାର ବାକ୍ୟ— Ṭiṭ-kāri Hooting words.
টিট্‌কারী, টিটকিরী **फटकार**
(ଟିଟ୍‌କାର—ଅନ୍ୟରୂପ)

**ଟିଟ୍‌କାରିବା**—ଦେ. କ୍ରି—ଧିକ୍କାର କରିବା— Ṭiṭ-kāribā To hoot at.
টিটকিরী দেওয়া **फटकारना**
(ଟିଟ୍‌କାରିବା—ଅନ୍ୟରୂପ)

**ଟିଟ୍‌କାରି ମାରିବା**—ଦେ. କ୍ରି—ଧିକ୍କାର କରିବା; ଟିଟ୍‌କାରିବା— Ṭiṭ-kāri māribā To hoot at.
টিটকিরী মারা **फटकारना**

**ଟି-ଟି-ଆଇ**—ବୈଦେ. ବି. (ଇଂ. ସାଙ୍କେତିକ ଅକ୍ଷରତ୍ରୟ)— Ṭi-ṭi-āi ରେଲ ଗାଡ଼ିର ଯାତ୍ରୀମାନଙ୍କ ଟିକଟ ଚେକ୍ କରିବାପାଇଁ ନିଯୁକ୍ତ କର୍ମଚାରୀ—Travelling ticket inspector; travelling ticket examiner.
টিটিআই **टिटिआइ**
(ଟିଟିଇ—ଅନ୍ୟରୂପ)

**ଟିଟିଭ**—ଦେ. ବି—ଟିଟ୍ଟିଭ ( ଦେଖ ) Ṭiṭiva Ṭiṭṭiva ( See )

**ଟିଟିର**—ଦେ. ବି. ( ସଂ. ତିତ୍ତିର )—ତିତିର (ପକ୍ଷୀ) ( ଦେଖ ) Ṭiṭira Tittira ( bird ) ( See )

**ଟିଟ୍ଟିଭ**—ସଂ. ବି. ( ଟିଟ୍ଟି = ଅନୁକରଣ ଶବ୍ଦ + ଭାଷ୍ ଧାତୁ + କର୍ତ୍ତୃ. ଅ; ଗୁଲ. ଲାଟିନ୍ ଟୋଟାନସ୍, ଇଂ. ଟାଟ୍ଲର୍ )— Ṭiṭṭiva ଟେଣ୍ଟେଯା; ଟେଁଟେଁୟା ପକ୍ଷୀ; ଟେଣ୍ଟେଇ ଚଢ଼େଇ— The tattler bird; Totanus Flavipes
টিটিভ **टिटिह, टि टहरी**
ଟିଟ୍ଟିଭୀ / ଟିଟ୍ଟିଭି } ସ୍ତ୍ରୀଲିଙ୍ଗ
[ ଦ୍ର—ଏହା କୁଳେଚର ବର୍ଗର ପକ୍ଷବିଶେଷ ଏହାର ଦେହ ପାଉଁଶିଆ ଧଳା ଓ ଚିକ୍କଣ । ଏହାର ମୁଣ୍ଡରେ ପଖୁଆ ପର କଳା ପରର ଚୂଟାପରି ଅଛି; ଥଣ୍ଟ ସରୁ, କଳା ଓ ଲମ୍ବ; ଗୋଡ଼ ଲମ୍ବ ଲମ୍ବ ଓ ସରୁ; ଲାଞ୍ଜର ଅଗ କଳା । ଏହା ପ୍ରାୟ ୮" ଅଙ୍ଗୁଳ ଲମ୍ବ ହୁଏ; ଏ ରାତିରେ ଗୋଡ଼କୁ ଆକାଶ ଆଡ଼କୁ ଟେକି ଚିତ ହୋଇ ଶୁଏ; ପ୍ରବାଦ ଅଛି ଯେ, କାଳେ ସେ ଶୋଇଲାବେଳେ ଆକାଶ ତା ଉପରେ ଖସି ଅଜାଡ଼ି ହୋଇ ପଡ଼ିଯିବ ଓ ଯେବେ ଖସି ପଡ଼ିବ ତେବେ ସେ ତାହାର ଗୋଡ଼ ଦ୍ୱାରା ଆକାଶକୁ ଟେକି ଧରି ଆପଣାକୁ ବଞ୍ଚାଇବ, ଏହି ଧାରଣାରେ ଟିଟ୍ଟିଭ ପକ୍ଷୀ ଗୋଡ଼ ଟେକି ଚିତ ହୋଇ ଶୁଏ । ଏ ଉଡ଼ିଲା ବେଳେ ଏହାର ପ୍ରସାରିତ ପକ୍ଷରେ ଧଳା ଓ କଳା ପଟି ଦେଖାଯାଏ । ଗେଣ୍ଡା ଓ ପୋକଜୋକ ଏହାର ଖାଦ୍ୟ । ଏ ନଈ କୂଳରେ ଟେଁ ଟେଁ ଶବ୍ଦ କରି ଉଡ଼େ । ଏ ଚାଲିଲା ବେଳେ ଲାଞ୍ଜକୁ ସର୍ବଦା ନଚାଉ ଥାଏ । ]

**ଟିଟ୍ଟିଭକ**—ସଂ. ବି. ( ଟିଟ୍ଟିଭ + ସ୍ୱାର୍ଥେ. କ )—ଟିଟ୍ଟିଭ (ଦେଖ ) Ṭiṭṭivaka Ṭiṭṭiva ( See )

**ଟିଣ୍‌ଟିଣ୍**—ଦେ. ଅ. ( ଧନ୍ୟନୁକରଣ )— Ṭin-ṭin ଘଣ୍ଟି ଆଦି ବାଜିବାର ଶବ୍ଦ— Tinkle of bells etc.
টুনটুন **टनटन**
[ ଦ୍ର—'ଠଣ୍‌ଠଣ୍' ଠାରୁ 'ଟଣ୍‌ଟଣ୍' ଏବଂ ଟଣ୍‌ଟଣ୍ ଠାରୁ 'ଟୁଣ୍‌ଟୁଣ୍' ମୃଦୁତର । ]

**ଟିଣ**—ବୈଦେ. ବି. ( ଇଂ. ଟିନ୍; ସଂ. ନାମ ବଙ୍ଗ )— Ṭiṇa ୧ । ଟିନ୍ ବା ରଙ୍ଗ ନାମକ ଧାତୁ; ରଙ୍ଗା— 1. Tin ( metal ).
টীন **टीन**
୨ । ରଙ୍ଗା ତରଳାଯାଇ ଲେପ ହୋଇଥିବା ଲୁହାର ଗୁଦର— 2 Tin plate.
୩ । ଦସ୍ତା ଲେପା ଲୁହାର କୁଞ୍ଚୁକୁଞ୍ଚିଆ ପଟି— (ଟିଣି—ଅନ୍ୟରୂପ) 3. Corrugated iron.
୪ । ଟିଣ ପତ୍ରର ଡିମ୍ବା—4. Tin canister.

**ଟିଣ କୋଳି**—ଦେ. ବି—କ୍ଷୁଦ୍ର ବୃକ୍ଷବିଶେଷ ଓ ତହିଁର କୋଳି— Ṭiṇa koḷi A small tree; Ziziphus Rugosa.
ଟିଣିଅାଁକୋଳି / ଟିଣିଆକୋଳି } ଅନ୍ୟରୂପ [ ଦ୍ର—ଏହାର ଫଳ ଧଳା ଓ ଖଟା ରସୁଥାଏ; ଏ କୋଳି ବରକୋଳି ଜାତୀୟ । ]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍, ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ପ | ଉଥ | ଘ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ | ଇଥ | ଡ଼ | ଢ଼ |

**ଟିଣ ବାକ୍ସ**—ବୈଦେ. ବି. (ଇଂ. ଟିନ୍‌ବକ୍ସ)—ଟିଣରେ ତିଆରି ପେଟରା—
Ṭiṇa bāksa — Tin box; tin trunk.
টিনের বাক্স **টীনকা বকস**
(ଟିଣବାକସ—ଅନ୍ୟରୂପ)

**ଟିଣା**—ଦେ. ବିଣ—୧। ରାଗୀ; ଯେ ଅଳ୍ପ କଥାରେ ଚିଡ଼ିଯାଏ; ଚିଡ଼ଚିଡ଼ିଆ—
Ṭiṇā — 1. Surly; of an irritable temper; peevish.
বদরাগী
**चोड़चीड़ा** ୨। ଯେଉଁ କଥା ଶୁଣିଲେ ଲୋକ ଚିଡ଼ି ଉଠେ—
2. Irritatory (wards).
ଦେ. ବି—ଏକ ପ୍ରକାର ଘାସ—A kind of grass.
ଟିଣା ଠାଙ୍ଗଣା, ଲେମ୍ବୁ ଘାସ, ଘାସ ନେଇ ବେଗେ ଯାଉଛ ଘର—ଗୀତ।
[ ଦ୍ର—ଏ ଘାସ ଶ୍ରାବଣ ମାସରୁ ମାର୍ଗଶିର ଯାଏ ବିଲ ଓ ହିଡ଼ରେ ଜନ୍ମେ। ]
ପ୍ରାଦେ. ( ବାଲେଶ୍ୱର ) ବି. ( ଇଂ. ଟିନ୍; ଟିଣରେ ପ୍ରସ୍ତୁତ ହେବାରୁ )—ଟିଣର ତିଆରି; କିରାସିନି ଦୀପ—
Kerosine lamp made of tin.

**ଟିଣା ସିଝୁ**—ଦେ. ବି—ସିଝୁ ( ଦେଖ )
Ṭiṇā sijhu — Sijhu ( See )

**ଟିଣିଆ**—ଦେ. ବି—୧। ଏକ ପ୍ରକାର ଘାସ—
Ṭiṇiā — 1. A kind of meadow grass.
ଟୁନା [ଦ୍ର—ଏହା ପଡ଼ିଆରେ ଉଠେ ଓ ପ୍ରାୟ ଏକ ଫୁଟ ଉଚ୍ଚରେ ବଢ଼େ। ଏହାର ପତ୍ର ବଳଦା ପରି ସରୁ। ପ୍ରତ୍ୟେକ ପତ୍ରର ଅଗରେ ପିଆଜଫଣ୍ଡା ଭଳି ଗୋଟିଏ ଲେଖାଏଁ ଈଷତ୍ ଲାଲ୍ ଛତାକାର ଭୃଣ୍ଡି ଥାଏ।]
**सालही** ୨। ବନ୍ୟବୃକ୍ଷବିଶେଷ—2. A kind of wild tree; Albezzia Odoratissima; Acacia Speciosa (Haines).
[ଦ୍ର—ଏ ଗଛ ଖୁବ୍ ବଡ଼ ହୁଏ। ଏହାର ପତ୍ର ଛୋଟ; ଫଳ ଚେପ୍‌ଟା ଓ ଦୃଢ଼ ଲମ୍ବର ଛୁଇଁ ପରି; ଫୁଲ ହଳଦିଆ ଏବଂ ପେଣ୍ଡା ପେଣ୍ଡା ହୋଇ ଫୁଟେ। ଏହାର କାଠ ଖୁବ୍ ଶକ୍ତ ବୋଲି ଘର, ସଗଡ଼ ଓ ହଳର ଉପକରଣ ହୁଏ।]

**ଟିଣିଟିଣି**—ଦେ. ଅ.—ଟିଣ୍ ଟିଣ୍ (ଦେଖ)
Ṭiṇi-ṭiṇi — Ṭiṇ ṭiṇ (See)

**ଟିଣ୍ଟିଣିକା**—ସଂ. ବି.—୧। ଜଳଶିରସ ଗଛ (ହି. ଶବ୍ଦସାଗର)—
Ṭiṇṭiṇikā — 1. A kind of tree growing near water.
୨। ଜୋକ (ହି. ଶବ୍ଦସାଗର)—2. Leech.

**ଟିଣ୍ଡିଶ**—ସଂ. ବି.—ଭେଣ୍ଡି (ଫଳ) (ହି. ଶବ୍ଦସାଗର)—
Ṭiṇḍiśa — Lady's finger (fruit).

**ଟିନ୍**—ବୈଦେ. ବି. (ଇଂ.)—ଟିଣ (ଦେଖ)
Ṭin — Ṭiṇa (See)

**ଟିନ୍ ଟିନ୍**—ଦେ. ଅ.—ଟିଣ୍ ଟିଣ୍ (ଦେଖ)
Ṭin ṭin — Ṭiṇ ṭiṇ (See)

**ଟିପ୍‌ଟିପ୍**—ଦେ. ଅ. (ଧ୍ୱନ୍ୟନୁକରଣ)—(ବର୍ଷା) ଛୋଟ ଛୋଟ ଟୋପାରେ
Ṭip-ṭip ପଡ଼ିବା—(rain) Dripping in small drops.
টিপটিপ টিপটাপ [ଦ୍ର—ଲୁଣ୍ଡାଝର ବା ଝିପ୍ ଝିପ୍=ଅତି ସୂକ୍ଷ୍ମ
**टिपटिप** ଟୋପାରେ ପଡ଼ିବା ( ବର୍ଷା ); ଝିପି ଝିପି ବା ଲଫି
(ଟିପି ଟିପି—ଅନ୍ୟରୂପ) ଲଫି=ଲୁଣ୍ଡାଝର ଠାରୁ ବଡ଼ ବଡ଼ ଟୋପା।
ଟିପ୍ ଟିପ୍ ବା ଟୁପୁରୁ ଟୁପୁରୁ=ଝିପି ଝିପି ଠାରୁ ବଡ଼ ବଡ଼ ଟୋପା।
ଟପ ଟପ ବା ଟପର ଟପର=ଟିପ୍ ଟିପ୍ ଠାରୁ ବଡ଼ ବଡ଼ ଟୋପା।
ଅସରା=ସାଧାରଣ ବର୍ଷା। ଦୁମ୍‌କାଣି=ବଡ଼ ବଡ଼ ଟୋପାରେ କିଛି ସମୟ ଅବିରତ ବର୍ଷା।]

**ଟିପ୍ (ଧାତୁ)**—ସଂ—୧। ଗୁଳନ କରିବା—
Ṭip (root) — 1 To move.
୨। ପ୍ରେରଣ କରିବା—2. To send.

**ଟିପ**—ଦେ. ବି.—(ସଂ. ଟିପ୍ ଧାତୁ=ଗୁଳନ କରିବା, ତୁଳ. ଇଂ. ଟିପ୍=ଅଗ୍ରଭାଗ)—୧। ଅଙ୍ଗୁଳିର ଅଗ୍ରଭାଗ—
Ṭipa
টিপ — 1. Finger-tip.
**नोक** ୨। ଅଙ୍ଗୁଳିର ଅଗ ପବ—
2. The top phalanx of a finger.
**चुटकी** ୩। ଦୁଇ ଅଙ୍ଗୁଠିର ଅଗ ମଧ୍ୟରେ ଧରା ଯିବା (ନାସ ଆଦିର) ପରିମାଣ—3. A quantity of powdered thing held between the phalanges of 2 fingers; a pinch (e. g. of snuff.)
(ଯଥା—ମିଶ୍ରେ ଆପଣେ। ଟିପେ ନାସ ଶୁଙ୍ଘିବ କି ?)
**टिका टिक्की** ୪। ଅଙ୍ଗୁଠିର ଅଗ୍ରଭାଗ ଅନ୍ୟ ବସ୍ତୁ ଦେହରେ ଚିପି
**टीप** ହୋଇ ଯାଇଥିବାର ଚିହ୍ନ—4. Mark left by the phalanx of the finger; finger-impression.
୫। କରଜପତ୍ର; ତମସୁକ—5. Bond.
୬। ଟିପଚିହ୍ନ; ପକ୍ଷ, ଆସାମୀ ବା ମୁଦାଲମାନେ ରାଜକୀୟ ଆଦେଶ ବା ବିଧି ଅନୁସାରେ (ରେଜିଷ୍ଟ୍ରିଖାନା ବା ଥାନା ବା ଜେଲଖାନାରେ ) ବାମହସ୍ତର ବୁଢ଼ାଅଙ୍ଗୁଠି ଅଗରେ କାଳି ବୋଳି କାଗଜରେ ଯେଉଁ ଚିହ୍ନ ଲଗାନ୍ତି—
6. Left hand thumb-impression left on a bit of paper.
[ ଦ୍ର—ବହୁବର୍ଷବ୍ୟାପୀ ବୈଜ୍ଞାନିକ ଗବେଷଣାଦ୍ୱାରା ଦେଖାଯାଇ ଅଛି ଯେ ପ୍ରତ୍ୟେକ ଲୋକର ଟିପ ଉପରେ ଥିବା ରେଖାମାନ ଅନ୍ୟ ବ୍ୟକ୍ତିର ଟିପର ରେଖା ସଙ୍ଗେ ସମାନ ନୁହେଁ। ଏଥିପାଇଁ ଲକ୍ଷେ ଲୋକଙ୍କ ଟିପଚିହ୍ନ ମଧ୍ୟରେ କୌଣସି ବିଶିଷ୍ଟ ଲୋକର ଟିପଚିହ୍ନ ବାରି ହୋଇ ପଡ଼ିବ। ସାଧାରଣତଃ ଦଲିଲ ଆଦିରେ ବାମହସ୍ତ

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଁଖୀ' ନ ପାଇଲେ 'ଆଖି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ବୃଦ୍ଧାଙ୍ଗୁଷ୍ଠିର ଟିପଚିହ୍ନ ଦିଆଯାଏ । ପରୀକ୍ଷାଦ୍ୱାରା ଦେଖା ଯାଇଅଛି ଯେ ମନୁଷ୍ୟର ହାତର ଦଶଅଙ୍ଗୁଠିରେ ଯେଉଁ ସବୁ ଶଙ୍ଖ ଚକ୍ରାଦି ଆକୃତିର ସରୁରେଖାମାନ ଅଛି ବୟସବୃଦ୍ଧି ସଙ୍ଗେ ମନୁଷ୍ୟ ଆକାରରେ ବଢ଼ିଲେ ସୁଦ୍ଧା ତାହାଁର ଖାଞ୍ଜ ବଦଳେ ନାହିଁ । ଏଥିପାଇଁ ଆଜି ଯାହା ହାତର ଟିପଚିହ୍ନ ନିଆଯାଇ ଥିବ ୧୦ ବର୍ଷ ପରେ ମଧ୍ୟ ତାହାର ଟିପଚିହ୍ନ ନେଲେ ପ୍ରତ୍ୟେକ ଅଙ୍ଗୁଠିର ଟିପଚିହ୍ନ ମଧ୍ୟରେ ସାମଞ୍ଜସ୍ୟ ଲକ୍ଷିତ ହେବ । ଏଥିପାଇଁ ଦାଗୀ ଓ ବନ୍ଦୀମାନଙ୍କର ୧୦ଟି ଯାକ ଅଙ୍ଗୁଠିର ଟିପଚିହ୍ନ ନିଆଯାଏ । କିନ୍ତୁ ସାଧାରଣତଃ ଦଲିଲମାନଙ୍କରେ କେବଳ ବାଆଁହାତ ବୁଢ଼ା ଅଙ୍ଗୁଠିର ଟିପଚିହ୍ନ ନିଆଯାଏ କାହିଁକି ? ପରୀକ୍ଷାଦ୍ୱାରା ଦେଖାଯାଇ ଅଛି ହାତର ସବୁ ଅଙ୍ଗୁଠି ମଧ୍ୟରେ ଉକ୍ତ ଅଙ୍ଗୁଠି ଉପରେ ସବାପେକ୍ଷା କମ୍ କାମ ବା ଚାପଟ ପଡ଼େ; ଏଥିପାଇଁ ତାହା କ୍ଷତ ବା ନଷ୍ଟ ହେବାର ସମ୍ଭାବନା ଅନ୍ୟ ଅଙ୍ଗୁଠିମାନଙ୍କ ଅପେକ୍ଷା କମ୍; ଏଥିପାଇଁ ଉକ୍ତ ଅଙ୍ଗୁଠିର ଟିପଚିହ୍ନ ନେଲେ ଭବିଷ୍ୟତରେ ଟିପଚିହ୍ନ ଦେବା ମନୁଷ୍ୟର ଉକ୍ତ ଅଙ୍ଗୁଠିର ଟିପଚିହ୍ନ ପୁଣି ନିଆଯାଇ ଉଭୟ ଟିପଚିହ୍ନକୁ ତୁଳନା କରି ଉକ୍ତ ମନୁଷ୍ୟକୁ ଚିହ୍ନଟ କରି ହେବ, ଏହି ଆଶାରେ ଉକ୍ତ ଅଙ୍ଗୁଠିର ଟିପଚିହ୍ନ ନିଆଯାଏ । କିନ୍ତୁ ପରେ ସେ ଅଙ୍ଗୁଠି କ୍ଷତ ହେଲେ ବା କଟି ଗଲେ ପ୍ରଥମେ ନିଆଯିବା ଟିପଚିହ୍ନଦ୍ୱାରା ଉକ୍ତ ଲୋକକୁ ଚିହ୍ନଟ କରିବା ଅସମ୍ଭବ ।]

ফোঁটা ୭ । ତାସ୍ ବା ଗଞ୍ଜପା ସାରରେ ୧ଠାରୁ ୧୦ ପର୍ଯ୍ୟନ୍ତ
टीप ସଂଖ୍ୟା ନିର୍ଦ୍ଦେଶକ ବିନ୍ଦୁ—7. Points (from 1 to 10) marked on a playing card.

**ଟିପ ଚାଳିବା**—ଦେ. କ୍ରି—୧ । ଟିପ ଦେବା (ଦେଖ)
Ṭipa chāḷibā 1. Ṭipa debā (See)
୨ । ଲେଖିବା—2. To write.

**ଟିପ ଚିହ୍ନ**—ଦେ. ବି—୧ । ଅଙ୍ଗୁଠିର ଅଗ୍ରଭାଗରେ କାଳି ଲଗାଇ ତଦ୍ୱାରା କାଗଜରେ ବସାଯିବା ଚିହ୍ନ ବା ଛାପ—
Ṭipa chihna
টিপসহি 1. Finger-impression put on a
टिप्पो, टिक्की piece of paper.
୨ । ଦଲିଲଆଦିରେ ଦିଆଯିବା ବାମହସ୍ତ ବୃଦ୍ଧାଙ୍ଗୁଳିର ଅଗର ଛାପ—2. Impression of the thumb of the left hand put on a deed.
୩ । କୌଣସି ଚିହ୍ନଗ୍ରାହୀ ବସ୍ତୁରେ ବସିଯାଇଥିବା ଟିପର ଦାଗ—3. Impression of the finger-tips left on any impressionable thing.

**ଟିପଚିହ୍ନ ଦେବା**—ଦେ. କ୍ରି—କୌଣସି ଦଲିଲ ସମ୍ପାଦନ କରିବାର ନିଦର୍ଶନ ସ୍ୱରୂପ (ଦଲିଲର ସମ୍ପାଦନକାରୀ ବ୍ୟକ୍ତି) କାଳିବୋଳା ବାମ ହାତର ବୁଢ଼ା ଅଙ୍ଗୁଠିର ଛାପ ଲଗାଇବା—
Ṭipa-chihna debā
টিঁপসহি করা
टिप्पी देना
To imprint one's finger-impression on a document.

**ଟିପ ଛୁଆଁଇବା**—ଦେ. କ୍ରି—୧ । କୌଣସି ଦଲିଲର ଲେଖକ ଅଶିକ୍ଷିତ ଦଲିଲସମ୍ପାଦନକାରୀର ସମ୍ମୁଖ ଲେଖିବାପୂର୍ବରୁ କଲମକୁ ଉକ୍ତ ବ୍ୟକ୍ତିର ଟିପଦ୍ୱାରା ସ୍ପର୍ଶ କରାଇବା—
Ṭipa-chhuāñibā
1. (the scribe of a document) To get the pen touched by the fingers of an illiterate executant.
୨ । ଟିପ ଦେବା ୧-୪ (ଦେଖ)
2. Ṭipa debā 1-4 (See)

**ଟିପ ଛୁଇଁବା**—ଦେ. କ୍ରି—ଟିପ ଛୁଆଁଇବା (ଦେଖ)
Ṭipa chhuiñbā Ṭipa chhuāñibā (See)
(ଟିପଛୁଆଁଇଁବା, ଟିପଛୁଇଁବା—ଅନ୍ୟରୂପ)

**ଟିପଟାଣ କରିବା**—ଦେ. କ୍ରି—କୌଣସି ପଦାର୍ଥକୁ ଦୁଇ ଅଙ୍ଗୁଠିର ଟିପ ମଧ୍ୟରେ ଦୃଢ଼ଭାବରେ ଧରିବା—
Ṭipa-ṭāṇa karibā
To hold anything tightly between the phalanges of 2 fingers.

**ଟିପଣା**—ଦେ. ବି. (ସଂ. ଟିପ୍ ଧାତୁ; ସଂ. ଟିପ୍ପନ)—୧ । ସ୍ମାରକଲିପି—
Ṭipaṇā 1. Memorandum notes.
ঠিকুজী ୨ । ଜାତକ ବା ଜନ୍ମପତ୍ରିକାରୁ ଉଦ୍ଧୃତ ସଂକ୍ଷିପ୍ତ ଲିପି;
टिप्पन; टीप କୋଷ୍ଠୀ—2. Short jottings taken from a horoscope.

ମଧ୍ୟସ୍ଥ ସକଳ ଟିପଣା ଦେଖିଣ କାହିଁ କାହିଁ ବଉଡଲେ ।
ଭିକାରୀଚରଣ, ସାଆନ୍ତଆ ବାଡ଼ା ।

୩ । ଅଙ୍ଗୁଠିରେ ଥିବା ଉନ୍ନ ଉନ୍ନ ଗାର—
3. Finger mark; a notch (Beams).

**ଟିପଣା ଦେଖିବା**—ଦେ. କ୍ରି—ବିବାହ ପ୍ରସଙ୍ଗରେ ବରପାତ୍ର ଓ କନ୍ୟାପାତ୍ରିଙ୍କ ଜାତକକୁ ତୁଳନା କରିବା—
Ṭipaṇā dekhibā
ঠিকুজী দেখা To compare the horoscopes of
टिप्पन मिलाना the bride and the bridegroom elect to see if they tally.
ଟିପଣା ପକା(କେ)ଇବା,
ଟିପଣା ଗୁଣିବା,
ଟିପଣା ମିଳା(ଲେ)ଇବା—ଅନ୍ୟରୂପ

**ଟିପଣା ମିଳିବା**—ଦେ. କ୍ରି—ଜାତକ ସୁଝିବା; ବିବାହମେଳକ ଘଟିବା; ବରକନ୍ୟା ପ୍ରସଙ୍ଗରେ ପ୍ରସ୍ତାବିତ ବରପାତ୍ର ଓ କନ୍ୟାପାତ୍ରଙ୍କର ଜାତକ ପରସ୍ପର ପ୍ରତି ଅନୁକୂଳ ଥିବା—
Ṭipaṇā miḷibā
ঠিকুজী মিলা
टिप्पन मिलना
Favourable tallying of 2 horoscopes (of the bride and the bridegroom elect) with each other.
(ଟିପଣାସୁଝିବା—ଅନ୍ୟରୂପ)

**ଟିପଣୀ**—ଦେ. ବି. (ସଂ. ଟିପ୍ପନୀ)—୧ । ଟିପଣା (ଦେଖ)
Ṭipaṇī 1. Ṭipaṇā (See)
টিপনী ୨ । ସଂକ୍ଷିପ୍ତ ଟୀକା—2. Short gloss or concise
टिप्पणी commentary.

ବିହଦର୍ଶ ବୋଇଲେ ପଚାରୁଛ ଯେବେ,
ଟୀକା ଟିପଣୀ ତାହା କରି ଶୁଣ ଏବେ ।
କୃଷ୍ଣସିଂହ ମହାଭାରତ, ବନ—

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍‌,ରୂ | ୠ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଅ | ଉଅ | ଞ୍ଚ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଞ୍ଜ | ନ୍‌ |

**ଟିପ ଦେବା**—ଦେ. କ୍ରି.—୧ । ଲେଖାଲେଖି ବା ଅନ୍ୟ କୌଣସି କାର୍ଯ୍ୟ କରିବାକୁ ଆରମ୍ଭ କରିବା—
Ṭipa debā
টিপ দেওয়া
टिपो देना
1. To begin any work or writing.
(ଯଥା—ମୁଁ ତାଳପତ୍ର ପୋଥିରେ ୧୫ ଦିନ ହେଲା ଟିପ ଦେଇ ନାହିଁ ।

ଟିପ ଛୁଇଁବା, ଟିପ ଛୋଇଁବା, ଟିପ ଲଗା(ଗେ)ଇବା —ଅନ୍ୟରୂପ

୨ । ଲେଖିବା—
2. To write.

ଆଉ ଆଉ ଗୁଣ କେଉଁ ବିଚକ୍ଷଣ ଟିପ ଦେବ ଦିଶୁ ନାହିଁ ।
ଅଭିମନ୍ୟୁ- ବିଦଗ୍ଧଚିନ୍ତାମଣି ।

୩ । କୌଣସି ବ୍ୟକ୍ତିର ଲେଖାକୁ ସଂଶୋଧନ କରିବା ବା କାଟିଦେବା—3. To correct the writings of of a person by scoring through something already written.

୪ । କୌଣସି ବ୍ୟକ୍ତି ବା ବସ୍ତୁକୁ ଅଙ୍ଗୁଳିର ଅଗ୍ରଭାଗଦ୍ୱାରା ସ୍ପର୍ଶ କରିବା—4. To touch a person or a thing slightly with the finger-tip.

୫ । ଟିପଚିହ୍ନ ଦେବା (ଦେଖ)
5. Ṭipa-chihna debā (See)

**ଟିପ ବସା(ସେ)ଇବା**—ଦେ. କ୍ରି.—୧ । ଦଲିଲରେ ନିଜର ଟିପଚିହ୍ନ ଦେବା—1. To imprint one's finger impression on a document.
Ṭipa basā(se)ibā

୨ । କୌଣସି ନରମ ପଦାର୍ଥ ଉପରେ ଟିପକୁ ମାଡ଼ି ଚାପିରେ ଆପଣାର ଅଙ୍ଗୁଠିର ଟିପଚିହ୍ନକୁ ଅଙ୍କିତ କରି ଦେବା—
2. To impress the marks of one's finger-tips on the body of a soft thing.

**ଟିପି ମାରିବା**—ଦେ. କ୍ରି.—୧ । ଟିପ ଦେବା (୧—୪) (ଦେଖ)
Ṭipa māribā
টিপমারা
टिपना
1. Ṭipa debā (1--4) (See)

୨ । ତାସ୍ ବା ଗଞ୍ଜପା ଖେଳରେ ବଡ଼ ବା କୁଙ୍କୁମ ସାର ପକାଇ ଶ୍ରେଷ୍ଠ ସାରକୁ ଜିତି କରି ନେବା—2. To play with a card of higher value by throwing it against a card of lower value.

୩ । ଫଳ ଆଦି କୌଣସି ବସ୍ତୁକୁ ପରୀକ୍ଷା କରିବା ନିମନ୍ତେ ଟିପ ବା ଅଙ୍ଗୁଠିର ଅଗଦ୍ୱାରା ତାହାକୁ ଟିପି ଦେବା—
3. To press with the tip of one's finger a thing to see if it is soft or ripe.

**ଟିପ ଲଗା(ଗେ)ଇବା**—ଦେ. କ୍ରି.—ଟିପ ଦେବା (୧—୪) (ଦେଖ)
Ṭipa lagā(ge)ibā
Ṭipa debā (1-4) (See)

**ଟିପା**—ଦେ. ବି—(ସଂ. ଟିପ୍ପଣୀ)—୧ । ଲେଖି ରଖିଥିବା ସ୍ମାରକ ଚିଠା--
Ṭipā
টিপ
टिप्पा, टिप्पणी
1. Memo.

୨ । ସଂକ୍ଷିପ୍ତ ନୋଟ—
2. Short notes; jottings

୩ । ଚିତା; ଫୋଟା—3. A small circular mark on the brow made with the tip of the finger dipped in sandal-paste etc.

୪ । ମଇଁଷିଙ୍କ ବେକରେ ବନ୍ଧା ହୋଇଥିବା ଗୋଟିଏ ପୋଲା ବାଉଁଶ ନଳ ଓ ତାହାର ଦୁଇ ପାଖରେ ଝୁଲୁଥିବା ଦୁଇ ଖଣ୍ଡ କାଠି; ଟିପେଇ—4. A hollow piece of bamboo tube suspended to the neck of a buffalo and having two small sticks suspended on both sides of it.

ମହିଷ-ଟିପାର ଗୁରୁ ଗୁରୁ ଧ୍ୱନି,
ଘୋଷେ ମୁଖରିତ ଅରଣ୍ୟ ସରଣୀ । ରାଧାନାଥ. ଚିଲିକା ।

[ଦ୍ର—ଦୁଷ୍ଟ ବା ଓଲିଆ ଗୋରୁ ମଇଁଷିଙ୍କ ବେକରେ ଏହା ବନ୍ଧା ହୋଇ ଥାଏ । ସେମାନେ ଚାଲିଲା ବେଳେ କାଠି ଦୁଇ ଖଣ୍ଡି ପୋଲା ନଳରେ ବାଜିବାରୁ ଟଣ ଟଣ ଶବ୍ଦ ହୁଏ ଏବଂ ଏଥିରୁ ସେମାନଙ୍କର ଗତିବିଧି ଜଣା ଯାଏ ।]

୫ । ପାଇକମାନେ ବାଆଁ ହାତରେ ଧରିବା ଚାରିକୋଣିଆ ଢାଲ--
5. A four cornered shield used by the foot-soldiers.

୬ । ମାଇପେ କପାଳରେ ଦେଉଥିବା ଗୁଞ୍ଜର ପୋକର ଦୃଢ଼ ପକ୍ଷର ନାଲି ଓ ନେଳ ଟିକଲି—6. Small circular slips of the hard green or red stiff wing of a kind of insect.
টিপ
टिकली

୭ । ଛୁଞ୍ଚିରେ ସିଲାଇ କର୍ମ—
7. Sewing with the needle.

୮ । ଚାଗା—8. Stitch.

ପ୍ରାଦେ. (ସମ୍ବଲପୁର) ବି—ବସନ୍ତ ରୋଗ ନିବାରଣ ପାଇଁ ଦେଉଥିବା ଟିକା—Vaccination; inoculation.

**ଟିପାଇ**—ଦେ ବି—ଟିପେଇ (ଦେଖ)
Ṭipāi
Ṭipei (See)

**ଟିପା(ପେ)ଇବା**—ଦେ. କ୍ରି. (ସଂ. ଟିପ ଧାତୁ=ପ୍ରେରଣ; ଚାଳନ)—
Ṭipā(pe)ibā
টিপেটিপে যাওয়া
टिपवाना
୧ । ଗୋଡ଼ର ଅଗ୍ରଭାଗକୁ ଭୂମିରେ ଲଗାଇ ଛେଚେଇ ଛେଚେଇ ଚାଲିବା—1. To walk with the fore part of the soles touching the ground.

୨ । ଛେଚେଇ ଛେଚେଇ ଚାଲିବା—
2. To limp; to walk lamely.

୩ । ଟିପିବାର ଣିଜନ୍ତରୂପ—
3. Causative form of Ṭipibā.

**ଟିପା(ପେ)ଇ ହେବା**—ପ୍ରାଦେ. (ସମ୍ବଲପୁର) କ୍ରି—୧ । ଟିକା ଦେଇବା—
Ṭipā(pe)i hebā 1. To be vaccinated or inoculated.

୨ । କୌଣସି ବ୍ୟକ୍ତିଦ୍ୱାରା ନିଜର ଗୋଡ଼ହାତ ମୋଡ଼ାଇ ହେବା—2. To have one's limbs massaged by another.

ସାଧାରଣ ଲୋକେ ଅପର ପୃଷ୍ଠାରେ ବ୍ୟବହୃତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

ଟିପାଏ—ଦେ. ବି, ବିଣ ଓ କ୍ରି. ବିଣ—ଟିପେ (ଦେଖ)
Ṭipāe Ṭipe (See)

ଟିପା କାଗଜ—ଦେ. ବି—ଯେଉଁ କ୍ଷୁଦ୍ର କାଗଜ ଖଣ୍ଡରେ କୌଣସି ବିଷୟ ଅସ୍ଥାୟୀଭାବରେ ଟିପି ନିଆଯାଏ—
Ṭipā kāgaja
টেপাকাগজ Memorandum slip; a slip of paper in
**याददास्त टीपा** which casual notes are jotted down; rough draft.

ଟିପା କାଠି—ଦେ. ବି—ହାଲୁକା କାଠରେ ନିର୍ମିତ ଦଣ୍ଡବିଶେଷ—
Ṭipā kāṭhi A log of light wood used by the Noḻiā fishermen of Puri for floating on the billowy sea.

ଟିପା କାଠି ପୃଷ୍ଠେ ଚଳନ୍ତେ ନୋଳିଆ
ଗାଏ 'ଜୟ ଗଙ୍ଗେଶ୍ୱର'। ପ୍ରାଣନାଥ. ପାର୍ବତୀ।

[ ଦ୍ର—ଏହା ଚକିପର ଓ ୪।୫ ହାତ ଲମ୍ବା ଓ ଅତି ହାଲୁକା କାଠ। ପୁରୀର ନୋଳିଆମାନେ ଏହା ଉପରେ ବସି ତରଙ୍ଗମୟ ସମୁଦ୍ରରେ ମାଛ ଧରିବା ପାଇଁ ଅନାୟାସରେ ବିଚରଣ କରନ୍ତି। ଏହା ପାଣିରେ ଭାସି ଉଠେ। ]

ଟିପା ଖାତା—ଦେ. ବି—ଯେଉଁ ଖାତା ବା ବହିରେ କୌଣସି ବିଷୟ ଅସ୍ଥାୟୀଭାବରେ ଲେଖାଯାଏ; ଚଠାଖାତା; ହାତଚଠା—
Ṭipā khātā
টেপাখাতা Note-book; pocket-book.
**टीपाखाता**

ଟିପାଟିପି—ଦେ. ବି. (ସଂ. ଟିପ ଧାତୁ=ପ୍ରେରଣ; ଗୃଳନ)—
Ṭipā-ṭipi ୧। ଅନ୍ୟୋନ୍ୟରେ ଠାରାଠାରି; ଠାରିବା, ଠାରଠାରି—
টেপাটেপী 1. Mutual significant glances; mutual nods and winks.
**टीपाटीपि**
୨। ସଂକ୍ଷେପରେ ଲେଖିବା—2. Taking down of stray notes.
୩। ସ୍ମାରକ ଲିପି—3. Memorandum.
୪। ଗୋପନରେ କଥାଭାଷା—4. Whisperings.
୫। ଚିପାଚିପି—5. Pinching; squeezing.
୬। କାହାଣୀରେ ବର୍ଣ୍ଣିତ ଭାଇଭଉଣୀଙ୍କ ନାମ—6. Names of a brother and sister in the folktale.

ଟିପାଟିପି ହେବା—ଦେ. କ୍ରି—ଦୁଇଜଣ ପରସ୍ପରମଧ୍ୟରେ ଠାରାଠାରି ହେବା—
Ṭipāṭipi hebā To carry on or exchange thoughts
টেপাটেপি হওয়া by mutual nods and signs.

ଟିପାରା—ଦେ. ବି. (ନାମ) (ସଂ. ତ୍ରିପୁରା)—ବଙ୍ଗଦେଶସ୍ଥ ତ୍ରିପୁରା ରାଜ୍ୟ—
Ṭipāra Tippara State in Bengal.
টিপারা

ଟିପାରି—ଦେ. ବି. ( ଇଂ. ଷ୍ଟ୍ରବେରି )—
Ṭipāri ୧। ବିଦେଶୀ ଖାଦ୍ୟ ଫଳବିଶେଷ; ଟେପାରି—
টিপারী, টেপারী 1. Cape goose berry; Brazil cherry;
**विलायती मकी** Physalis Peruvina.

[ ଦ୍ର—ଏହା ବଙ୍ଗନାଦି ବର୍ଗର ବର୍ଷାୟୁ ଫଳ ଶାକ। ଫଳ ଶ୍ଳେଷ୍ମ ଓ ବାଇଗଣ ପରି ବହୁବୀଜ, ଫଳ ଅଣ୍ଡାକାର ଫଳ ପରି ଫୁଲର ବହିର୍ଛଦରେ ଆବୃତ ଥାଏ। ଏ ଗଛ ଆମେରିକାର ପେରୁ ଦେଶରୁ ଏ ଦେଶକୁ ଅଣାଯାଇ କୃଷି କରାଯାଉଅଛି (ଯୋଗେଶଚନ୍ଦ୍ର)। ପାଚିଲା ଫଳ ସୁସ୍ୱାଦୁ। ]
୨। ଡଙ୍କାରି (ଦେଖ)—2. Ḍaṅkāri (See)

ଟିପି—ପ୍ରାଦେ. (ସମ୍ବଲପୁର) ବି—ଅଗ; ଅଗ୍ରଭାଗ—
Ṭipi Top.

ଟିପି ଚଢେଇ—ଦେ. ବି—କ୍ଷୁଦ୍ର ପକ୍ଷୀବିଶେଷ—
Ṭipi chaṛhei A kind of small bird.

ଟିପି ଚଢେଇ ଟକିକ ପାଣିରେ ବୁଡି ମରଇ। ପ୍ରହେଳିକା।

[ ଦ୍ର—ଏ ୩।୪ ଇଞ୍ଚ ଲମ୍ବ ହୁଏ। ଲୋକେ ଏହାକୁ ପୋଷନ୍ତି। ]

ଟିପିଟିପି—ଦେ. ଅ—ଟିପ୍‌ଟିପ୍ ( ଦେଖ )
Ṭipi-ṭipi Ṭip-ṭip ( See )

ଇନ୍ଦ୍ର ଟିପିଟିପି କରଣ ଜଳ ବୃଷ୍ଟି। କୃଷ୍ଣସିଂହ. ମହାଭାରତ. ବନ।

ଟିପିଣ୍(ନ୍)—ବୈଦେ. ବି. (ଇଂ)—ଟିଫିନ୍ ( ଦେଖ )
Ṭipiṇ(n) Ṭiphiṇ ( See )

ଟିପିବା—ଦେ, କ୍ରି. ( ସଂ. ଟିପ୍ ଧାତୁ=ଗୃଳନ, ପ୍ରେରଣ )—
Ṭipibā ୧। ନଖ ଆଦି ଦ୍ୱାରା ସାମାନ୍ୟ ଆଘାତ କରିବା; ଉତ୍ତେଜିବା
টিপা, টেপা 1. To pinch softly; to titilate; to hurt
**टिपना** softly; to tip.

ମୋତେ ଭୁଲ୍ଲା କଲ ଏବ ଭେଲୁ ମୁଁ ନଖରଖର
ଟିପୁଁ ଚେତ ଲାଗେ ଜରଜର। ଭକ୍ତ. ପ୍ରେମସୁଧାନିଧି।

୨। ଟିପ ଦ୍ୱାରା ଆଘାତ କରିବା ବା ଚପିବା—
2. To strike or press with the tip of the finger.

କେତେକ ଲୋକ ଉହିଁ ମୃଦଙ୍ଗ ଟିପିଲେ। କୃଷ୍ଣସିଂହ. ମହାଭାରତ. ଆଦି।

୩। ଅଙ୍ଗମାନଙ୍କୁ ଆଙ୍ଗୁଠି ଦ୍ୱାରା ମୋଡିବା ବା ଘଷିବା; ମର୍ଦ୍ଦନ କରିବା—3. To perform massage on the body; to rub the body with the fingers; to press.
୪। ସ୍ମରଣାର୍ଥେ କୌଣସି ବିଷୟ ସଂକ୍ଷେପରେ ଲେଖି ରଖିବା; କୌଣସି କଥା ସଂକ୍ଷେପରେ ଲେଖିବା; ନୋଟ୍ କରିବା—4. To note down; to jot down anything for future reference.
୫। ଆଖି ମାରିବା; ଠାରି ବା ସଙ୍କେତ ଦ୍ୱାରା କୌଣସି ଭାବ ପ୍ରକାଶ କରିବା—5. To convey one's idea by signs, winks or glances.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଜ୍ଞ | ଇଅ | ଉଅ | ଯ୍ଯ |
| ୨ | ଈ | ଊ | ରୁ | ଲୁ | ପ୍ଳୃ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ | ନ୍ତ |

୬ । ଗୋପନରେ କହିବା; କାନରେ ଭୁକ କରି କହିବା—
6. To report a thing privately or in whispers; to hint.

ଟିପି ଦେଲେ କଂସ ଅଗେ କେ ନୃଶଂସ ନନ୍ଦବନ୍ଦୀ ହେବେ ଝୋପେ ।
କବିସୂର୍ଯ୍ୟ. କଣୋଲ୍ଲଚମ୍ପୁ, ଚ ଗୀତ ।

୭ । ଉତ୍ତେଜିତ କରିବା; ହସ୍ତୀ, ଅଶ୍ୱ ଆଦିଙ୍କୁ ଚାଳିତ କରିବା—
7. To goad to action; to drive a horse or elephant.

ତ୍ରିଗର୍ତ୍ତ ଦେଶ ରାଜା ଶୁଣିଣ କୋପିଲେ
ମାରିବାକୁ ତାହାଙ୍କୁ ହାତୀ ଟିପି ଦେଲେ । କୃଷ୍ଣସିଂହ. ମହାଭାରତ. ବନ ।

୮ । ( ବନ୍ଧୁକର ଗୁଳି, ଶର, ଢେଲା ଆଦିକୁ ) ଲକ୍ଷ୍ୟ ବସ୍ତୁ ପ୍ରତି ଫିଙ୍ଗିବା—8. To despatch (a ball, stone etc) towards an aim; to throw at.

୯ । ସିଲେଇ କରିବା; ଟିପେ ଦିଟିପ ସେଇଁ ଦେବା—
9. To sew a stitch or two.
( ଯଥା—ଏ ଚିରା ଲୁଗା ଖଣ୍ଡ ଠାଏ ଦୁଇଠାଆ ଟିପି ଦେଇ ସାରି ତୁମ ସାଙ୍ଗେ ଯିବି । )

[ଦ୍ର—'ଟିପିବା' କ୍ରିୟାର ଅସମାପିକାରୂପ ସଙ୍ଗେ ଆଣିବା, ଦେବା, ନେବା, ପକା(କେ)ଇବା କ୍ରିୟାର ସମାପିକାରୂପ ବ୍ୟବହୃତ ହୁଏ । ]

ଟିପୁଣା—ଦେ. ବି—ଚିତ୍ରକାରମାନେ କୌଣସି ରୂପକୁ ଚିତ୍ର କରିବା
Ṭipuṇā ପୂର୍ବରୁ ଯେଉଁ ପଟରେ ମୋଟାମୋଟି ଚିହ୍ନ ଅଙ୍କନ କରନ୍ତି—The canvas on which a painter chalks or pencils the outlines of a picture before actually painting it.

ଟିପେ—ଦେ. ବି. ବିଣ—ଚିମୁଟାଏ; ଟିପରେ ଧରିବା ଭଳି—
Ṭipe A quantity of something contained between the phalanges of 2 fingers; a pinch of.

ଦେ. କ୍ରି. ବିଣ—ଲେଶମାତ୍ର; ସାମାନ୍ୟ ପରିମାଣରେ——
A little; in a small degree; slightly.

ଢେଙ୍କବା ଯନ୍ତି ଟିପେ ଘୁଞ୍ଚାଇ ନ ପାରିଲେ—କୃଷ୍ଣସିଂହ. ମହାଭାରତ, ବନ ।

ଟିପେଇ—ଦେ. ବି. ( ସଂ. ତ୍ରିପଦୀ )—୧ । ତିନିଗୋଡ଼ିଆ ଷ୍ଟୁଲ୍—
Ṭipei Tripod.
तिपाई ୨ । ଶଗଡ଼ର ଧୁରମୁଣ୍ଡିକୁ ଟେକି ଧରିବାର ଠିଅ ବା ଠେଁସ—
तिरखाइ 2. A forked prop to support the front-
उटड़ा, उटड़पा point of a standing cart ( so as to make the body of the cart parallel with the ground ).

୩ । ଟିପା ( ୪ ) ( ଦେଖ )
3. Ṭipā ( 4 ) ( See )

୪ । ଟିପା କାଠି (ଦେଖ )
4. Ṭipā kāṭhi ( See )

୫ । ଦୁଇ ମୁଣ୍ଡରେ ଶୋଲ ବନ୍ଧା ହୋଇଥିବା ଦଉଡ଼ି—
5. A contrivance having two bunches of pithy stems of cork attached to the both ends of a string and used as a buoy to keep a person a float in water; a float.

[ ଦ୍ର—ଖଣ୍ଡେ ଦଉଡ଼ିର ଦୁଇ ମୁଣ୍ଡରେ ଶୋଲ ବିଡ଼ା ଦୁଇଟା ବନ୍ଧା ହୋଇଥାଏ । ଲୋକେ ଏହା ଉପରେ ବସିଲେ ଏହା ପାଣିରେ ବୁଡ଼ି ନ ଯାଇ ଭାସେ ଓ ମନୁଷ୍ୟ ପାଣିରେ ବୁଡ଼ିଯାଏ ନାହିଁ । ]

୬ । ( ବଣିଆ ଶବ୍ଦ ) ତିନି ଗୋଟି ଗୋଡ଼ ଥିବା ଏକପ୍ରକାର ଛୋଟ ଚଉକି—6. A three legged stool used by goldsmiths.

[ଦ୍ର—ଏହା ୧ ଫୁଟ ଉଚ; ବଣିଆମାନେ ଏହା ଉପରେ ଛୋଟ ଛୋଟ ସୁନା ରୁପାର ବସ୍ତୁ ରଖି ଏହାକୁ ବସିବା ସ୍ଥାନର ସାମନାରେ ଡେକ୍ସ ରୂପେ ବ୍ୟବହାର କରନ୍ତି । ]

ଟିଫିଣ(ନ୍)(ଣି)—ବୈଦେ. ବି (ଇଂ. ଟିଫ୍ଫିନ)—ଜଳଖିଆ—
Ṭiphiṇ(n)(ṇi) Light refreshments.
টিফিন टिफ़न

ଟିମ—ଦେ. ବି. ପୁଂ ଓ ସ୍ତ୍ରୀ (ସଂ. ଡିମ୍ଭ)—୧ । ଶିଶୁ—
Ṭima 1. Child; infant.
(ଟିମୀ—ସ୍ତ୍ରୀ) ୨ । ହୃଷ୍ଟପୁଷ୍ଟ ବାଙ୍ଗୁରା ବ୍ୟକ୍ତି—
2. A stout dwarf.

ଦେ. ବିଣ—୧ । ଯାହା ପେଟ ଟୁମାଟୁମ୍ ହୋଇ ଫୁଲିଥାଏ—
1. Having one's belly swollen.

୨ । ବାଙ୍ଗୁରା ଓ ସ୍ଥୂଳକାୟ (ବ୍ୟକ୍ତି)—
2. Stout and dwarfish (person).

୩ । ଛୋଟ ଏବଂ ମୋଟ(ବସ୍ତୁ)—
3. Stumpy; stout and thick (thing).

ବୈଦେ. ବି (ଇ ଟୀମ୍)—କ୍ରିକେଟ୍ ଆଦି ଖେଳିବା ଦଳ; ଖେଳୁ-
টীম আଡ଼ଙ୍କ ଗୋଟିଏ ପୂର୍ଣ୍ଣାଙ୍ଗ ଦଳ— Team (of players).
टीम

ଟିମକ୍—ଦେ. ବି ଓ ବିଣ —ଟିମ (ଦେଖ)
Ṭimak Ṭima (See).

ଟିମା—ଦେ. ବି. ଓ ବିଣ ପୁଂ ଓ ସ୍ତ୍ରୀ—ଟିମ (ଦେଖ)
Ṭimā Ṭima (See).

ଟିମା(ମେ)ଇବା—ଦେ. କ୍ରି (ତୁଳ. ଇଂ. ଟିମ୍ପାନି=ପେଟ ଫୁଲାଇବା)—
Ṭimā(me)ibā ପୂର୍ଣ୍ଣ ପାନଭୋଜନ ବା ବାୟୁଦୋଷ ଯୋଗୁଁ
টুইটুম্বুরহওয়া (ପେଟ) ଢୋଲ ଭଳି ଫୁଲିବା—
फुलना To swell like a drum (said of the belly after a full meal or drink).

ଟିମି—ଦେ. ବି ଓ ବିଣ ପୁଂ ଓ ସ୍ତ୍ରୀ—ଟିମ (ଦେଖ)
Ṭimi Ṭima (See).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୁଥ' ନ ମିଳିଲେ 'କୃଥ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଟିମ୍ପଣି**—ପ୍ରାଦେ (ସିଂହଭୂମ) ବି—ପାଚଣ (ଦେଖ)
Ṭimpaṇi Pāchaṇa (See).

**ଟିମ୍ବିରି**—ପ୍ରାଦେ (ଗଞ୍ଜାମ) ବି—ବିରୁଡ଼ି (ଦେଖ)
Ṭimbiri Birurdi (See).

**ଟିର୍‌କା(କେ)ଇବା**—ଦେ. କ୍ରି—୧ । ଆଗରୁ ସାବଧାନ କରାଇ ତୁରୁଡ଼ାଇ ଦେବା; ଟରକୋଇବା—ଭାଗାନ 1. To scare away by cautioning beforehand.
Ṭir-kā(ke)ibā
[ଟିରକା(କେ)ଇବା—ଅନ୍ୟରୂପ]
୨ । ଗୋପନରେ ଉତ୍ତେଜିତ କରିବା; ଟୁଆଇବା; ମଚାଇବା—2. To instigate a person by giving secret advice; to secretly incite a person

**ଟିର୍‌କା ଟିର୍‌କି କରିବା**—ଦେ. କ୍ରି—ଟିର୍‌କାଇବା (ଦେଖ)
Ṭir-kā ṭir-ki karibā Ṭir-kāibā (See).

**ଟିର୍‌କି (ଇତ୍ୟାଦି)**—ଦେ. ବି—ଟିରିକି ଇତ୍ୟାଦି (ଦେଖ)
Ṭir-ki (etc) Ṭiri-ki etc (See).

**ଟିରିକା(କେ)ଇବା**—ଦେ. କ୍ରି—ଟିର୍‌କାଇବା (ଦେଖ)
Ṭirikā(ke)ibā Ṭir-kāibā (See).

**ଟିରିକି**—ଦେ. ବି ( ଭୁଲ. ସଂ. ତୀର; ଗ୍ରୀକ୍ )—
Ṭiriki
୧ । ମେରୁଦଣ୍ଡର ନିମ୍ନ ସ୍ଥାନ—1. The coccyx; fundament or lowest point of the lower end of the spine.
୨ । ଗୁହ୍ୟଦ୍ୱାର—2. Anus.

ଆଖି କଜଳ ସୁହାଯାଏ
ଟିରିକି କଜଳ ସୁହା ନ ଯାଏ—ଢଗ ।

**ଟିରିକି କଜଳ**—ଦେ. ବି (ବ୍ୟଙ୍ଗୋକ୍ତି)—ଆଖିରେ କଜଳ ନ ଦେଇ ଅସ୍ଥାନ ବା ଗୁହ୍ୟଦ୍ୱାରରେ ଦେଇବା କଜ୍ଜଳ (ଯାହା ପ୍ରତିବେଶୀଙ୍କ ଦୃଷ୍ଟିକଣ୍ଟକ ହୁଏ)—Black rouge painted at the wrong part of the body (which become an eyesore to the neighbours).
Ṭiriki kajaḷa

**ଟିରିକି ନଚା(ଚେ)ଇବା**—ଦେ. କ୍ରି—କର୍ମହୀନ ବା ଉଦ୍ଦେଶ୍ୟବିହୀନ ହୋଇ ବୃଥାରେ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଯାଇ, ବସିବସି, ବା ବୁଲିବୁଲି ସମୟ ନଷ୍ଟ କରିବା—To loaf; to lounge aimlessly.
Ṭiriki nachā(che)ibā
ଟୋଟୋ କରିୟା ବେଡ଼ା

**ଟିରିକି ନାଚିବା**—ଦେ. କ୍ରି—ଗୁହ୍ୟ ଦ୍ୱାରର ଯନ୍ତ୍ରଣା ଯୋଗୁଁ ଛଟପଟ ହେବା—Becoming restless in agony on account of pain in the anus.
Ṭiriki nāchibā
( ଟିରିକି ମାଡିବା—ଅନ୍ୟରୂପ )

ବୁଢା ମାକଡ ରେ ବୁଢା ମାକଡ । ମୋ ବରକୋଳି ପାଚିଲା ।
ଯୋଉଯାଉ ତୋ ବରକୋଳି ମୋ ଟିରିକି ନାଚିଲା ।
ବୁଢାମାକଡ କାହାଣୀ

**ଟିରିକିବା**—ଦେ. କ୍ରି—୧ । (ଓଦା ଭୂଇଁ ବା ବିଲ) ଖରା ଯୋଗୁଁ ଶୁଖି ଫାଟିଯିବା; ଚଡ଼କିବା—1 To crack (said of clayey soil hardened by drought.)
Ṭirikibā
ଫାଟା
ଟିଲକନା
୨ । (ଜମି) ଅତ୍ୟନ୍ତ ଶୁଷ୍କ ହୋଇ ହଳ ହେବାର ଅଯୋଗ୍ୟ ହେବା; ପାଗଛଡ଼ା ହେବା—2. (Land) To become too dry to be ploughed.

**ଟିଲ୍**—ଦେ. ବି—କେହି କାହାକୁ ଶପଥ ପକାଇବା ସମୟରେ ଶପଥ ଦୋଷ ବାଧିବ ନାହିଁ ବୋଲି ସେହି ବ୍ୟକ୍ତିର ତର୍ଜନୀ ଓ ମଧ୍ୟମ ଅଙ୍ଗୁଳିକୁ ଛନ୍ଦି ରଖିବା—A pose made by the index and the middle finger to undo the evil effects of an oath uttered.
Ṭil
ଟିକଟିକୀ

**ଟିଲା**—ପ୍ରାଦେ. (ମେଦିନୀପୁର) ବି. (ସଂ. ସ୍ଥଳୀ=ଯୋରେଷ୍ଟ୍ରନ୍; ସଂ. ଅଷ୍ଠୀଲା=ବାଲିଗରଡ଼ା; ଭୁଲ. ବଂ ଓ ହି. ଏହି ଅର୍ଥରେ ଏହି ଶବ୍ଦ)—ଖାଲଜମିକୁ ଘେରିଥିବା ଡିହ ଜମି—High land surrounding a low field.
Ṭilā

**ଟିଲି**—ଦେ. ବି.—ଟିଲ୍ (ଦେଖ)
Ṭili Ṭil (See)

**ଟିହା ( ଇତ୍ୟାଦି )**—ଦେ. ବି—ଟିଆ ଇତ୍ୟାଦି ( ଦେଖ )
Ṭihā ( etc ) Ṭiā etc ( See )

**ଟିହାଇବା**—ଦେ କ୍ରି—ଟିଆଇବା ( ଦେଖ )
Ṭihāibā Ṭiā-ibā ( See )
(ଟିହେଇବା, ଟେହିବା—ଅନ୍ୟରୂପ)

**ଟିହାଟେହି**—ଦେ. ବି—କୌଣସି କୁକାର୍ଯ୍ୟ ନିମନ୍ତେ ଉତ୍ତେଜିତ କରିବା—Instigation.
Ṭihā-tehi
ଟୁଆଟୁଇ ବହକାବ

**ଟିହିକା**—ପ୍ରାଦେ. ( ସମ୍ବଲପୁର ) ବି—ଟିଟ୍ଟିଭ ପକ୍ଷୀର ଟିଁ ଟିଁ ଡାକ—Tittering or the tit-tit sound of the lapwing.
Ṭihikā

**ଟିହିକିବା**—ପ୍ରାଦେ. ( ସମ୍ବଲପୁର ) କ୍ରି—( ଟିଟ୍ଟିଭ ବା ତଦ୍ରୂପ ପକ୍ଷୀ ) ଟିଁ ଟିଁ ରାବିବା—To make a tit-tit sound; to titter ( said of the lapwing ).
Ṭihikibā

**ଟିହିଙ୍କିବା**—ପ୍ରାଦେ. ( ସମ୍ବଲପୁର; ଗଡ଼ଜାତ ) କ୍ରି—ନିକ୍ଷିପ୍ତ ହେବା—To be thrown.
Ṭihiṅkibā

**ଟିହୁଙ୍ଗାଇବା**—ପ୍ରାଦେ. ( ସମ୍ବଲପୁର ) କ୍ରି—କୁଦି କୁଦି ପଳାଇବା—To run away frisking; to run with leaps and bounds.
Ṭihuṅgāibā

**ଟିହୁଲାଇବା**—ପ୍ରାଦେ. ( ସମ୍ବଲପୁର ) କ୍ରି—ଟିହୁଙ୍ଗାଇବା ( ଦେଖ )
Ṭihulāibā Ṭihuṅgāibā ( See )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୯ | ଙ | ଡ଼ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇମ୍ପ | ଊଥ | ୟ |
| ୬ | ଝ | ଡ଼ | ରୁ | ଲୁ | ପ୍ରେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଗଁ୍ୟ | ଇଅ | ଢ଼ | ନ୍ |

ଦେହରେ ଦେଖି ଲୋକେ ଟୋପି ଟୋପି ଝାଳ
ମଣନ୍ତି ଏ କି ଅବା ମୁକୁତାର ମାଳ । କୃଷ୍ଣସିଂହ, ମହାଭାରତ ସଭା ।

**ଟୋପିଦାର୍**—ଦେ. ବିଣ—ଯେଉଁ ବନ୍ଧୁକର ନଳୀର ମୂଳରେ ଥିବା ଛିଦ୍ର ଉପରେ ଟୋପି ଲଗାଯାଇ ସେ ଟୋପି ଉପରେ ଘୋଡ଼ାର ଆଘାତହେଲେ ନଳୀମଧ୍ୟସ୍ଥ ବାରୁଦରେ ନିଆଁ ଲାଗି ବନ୍ଧୁକ ଫଏର ହୁଏ—(a gun)
Topidār
ଟୁପୀଦାର
**टोपदारी**
Fired with percussion caps; flint-lock; hammer-gun.
[ ଦ୍ର—ଯେଉଁ ବନ୍ଧୁକରେ ରଞ୍ଜକଦ୍ୱାରା ନିଆଁ ଲଗାଇ ଫଏର କରିବାକୁ ହୁଏ ତାକୁ ତୋଡ଼ାଦାର୍ ବନ୍ଧୁକ ବୋଲାଯାଏ ]

**ଟୋପି ଦେବା**—ଦେ. କ୍ରି.—କୌଣସି ବ୍ୟକ୍ତିର କପାଳରେ ଚନ୍ଦନାଦିର ଟୋପା ଚିତ୍ରଣ କରିବା—To put a tip of sandal etc on the forehead of a person.
Topi debā
ଟୀପ ଦେଓୟା
**टीका देना**

**ଟୋପି ପିନ୍ଧିବା**—ଦେ. କ୍ରି.—ନିଜର କପାଳରେ ଚନ୍ଦନାଦିର ଟୋପି ଘେନିବା; ଚିତା ଲଗାଇବା ବା କାଟିବା—To put a tip of sandal etc. on the forehead.
Topi pindhibā
ଟୀପ ପରା
**टीका लगाना**
[ଟୋପି ମାରିବା, ଟୋପି ଲଗା(ଗେ)ଇବା—ଅନ୍ୟରୂପ]

**ଟୋରି**—ବୈଦେ. ବି (ଇଂ)—ଇଂଲଣ୍ଡର ଗୋଟିଏ ପ୍ରାଚୀନ ରାଜନୀତିକ ଦଳର ସଭ୍ୟ; ରକ୍ଷଣଶୀଳ ଦଳଭୁକ୍ତ ବ୍ୟକ୍ତି—A Tory; a member of the conservative party in English politics.
Tori
ଟୋରୀ
**टोरी**
(ହ୍ୱିଗ୍—ବିପରୀତ)

**ଟୋଲ୍**—ଦେ. ବି.—(ସଂ. ତଲ)—ସଂସ୍କୃତ ବିଦ୍ୟାଳୟ; ଚଉପାଢ଼ୀ—Sanskrit school.
Tol
ଟୋଲ
**टोल**
[ଦ୍ର—ଯେଉଁ ବିଦ୍ୟାଳୟରେ କେବଳ ସଂସ୍କୃତ ଶିକ୍ଷା ଦିଆଯାଏ ତାକୁ ଟୋଲ୍ କହନ୍ତି ।]

ପ୍ରାଦେ. (ଗଡ଼ଜାତ; ସମ୍ବଲପୁର) ବି.—ମହୁଲଫଳର ମଞ୍ଜି—The seed of the fruit of the Mahuā tree.
[ଦ୍ର—ଏଥିରୁ ତେଲ ବାହାରେ । ଏହା ଦେଖିବାକୁ ଘିଅ ପରି, ମାତ୍ର ଶୀତଦିନେ ଏହା ଘିଅପରି ବସି ଯାଏ ନାହିଁ । ଗଡ଼ଜାତ ଓ ସମ୍ବଲପୁରରେ ଲୋକେ ଏହାକୁ ତିଅଣ ଆଦିରେ ପକାଇ ଓ ଏଥିରେ ପିଠା ଛାଣିକରି ଖାଆନ୍ତି । ବେପାରୀମାନେ ଏହାକୁ ଗୁଆଘିଅ ସଙ୍ଗେ ମିଶାନ୍ତି । ]

ବୈଦେ. ବି. (ଇଂ. ଟୋଲ୍)—ସାଧାରଣ ରାସ୍ତା ବା ପୋଲ ଉପରେ ମନୁଷ୍ୟ ଓ ଯାନାଦିର ଗମନାଗମନ ଯୋଗୁଁ ଆଦାୟ ହେବା ଶୁଳ୍କ—Toll realised from passengers and vehicles for using a public road or bridge.
ଟୋଲ
**टोल**

**ଟୋଲ**—ଦେ. ବି. (ସଂ. ତଲ)—ଗୁରୁ ଆଘାତ ଯୋଗୁଁ ପିତଳ ବାସନ ଆଦିରେ ଯେଉଁ ଅଂଶ ବସି ଯାଏ ବା ଦବି ଯାଏ—Indentation; a dent or depression in metallic vessel produced by its striking against a harder substance.
Tola
ଟୋଲ
**दबाव, बिल**

**ଟୋଲକ**—ଦେ. ବି.—୧ । (ସଂ. ପିଣ୍ଡିତକ)—ବୋଇତି କଖାରୁ—1. The red pumpkin.
Tolaka
୨ । ପାନ ବରଜରେ ଅଛିରଲ୍ଲ ପଡ଼ିଆ ଦେବା ହେତୁ ପାନରେ ଧରିବା ଏକପ୍ରକାର ରୋଗ—2. A kind of disease infecting betel leaves.
୩ । ଗୋରୁ ମଇଁଷି ଆଦିଙ୍କୁ ଧରିବା ରୋଗବିଶେଷ—3. A kind of cattle-disease.
[ଦ୍ର—ଏ ରୋଗ ହେଲେ ଗୋରୁ ଆଦିଙ୍କ ଜିଭରେ ଘାଆ ହୁଏ, ଦାନ୍ତ ହଲେ ଓ ଦେହରେ ଉତ୍ତାପ ବଢି ଯାଏ; ସେମାନେ ନିଃଶ୍ୱାସ ମାରିଲା ବେଳେ ଫେଣ ହୁଅନ୍ତି; ଆଗ ଗୋଡ଼ରେ ଖ୍ଲେଟେଇ ଖ୍ଲେଟେଇ ଚାଲନ୍ତି, ଏବଂ ୨୨ ଦିନ କାଳ କିଛି ଖାଇ ପାରନ୍ତି ନାହିଁ । ]

**ଟୋଲକା**—ଦେ. ବିଣ. ( ସଂ. ତଲ )—
Tolakā
୧ । କଠିନ ପଦାର୍ଥରେ ଆଘାତ ଯୋଗୁଁ କୌଣସି ଅଂଶ ଟୋଲପଡ଼ା, ଦୁମଡ଼ା ନଇଁ ଯାଇଥିବା; ଆଘାତ ବାଜିବା ହେତୁ ଚେପା ହୋଇଥିବା ( ଧାତୁପାତ୍ର )—1 Dented or depressed ( utensil ).
**विपटा**
୨ । ପାଚ ପୂଜ ପୂର୍ଣ୍ଣ ହୋଇ ଫୁଲିଥିବା ( ବଥ )—2 Swollen and suppurated ( boil ).

**ଟୋଲକା(କେ)ଇବା**—ଦେ. କ୍ରି—ଟୋଲାଇବା ( ଦେଖ )
Tolakā(ke)ibā Tolāibā ( See )

**ଟୋଲଙ୍କ**—ଦେ. ବି—ଏକ ଜାତୀୟ ବନ୍ୟ ଲତା ଓ ତାହାର ଖାଦ୍ୟ ଫଳ—A kind of wild creeper and its edible fruit.
Tolanka
[ ଦ୍ର—ଏ ଫଳକୁ ତିଅଣ ଓ ଭଜା କରି ଖିଆଯାଏ । ]

**ଟୋଲା**—ପ୍ରାଦେ.—୧ । (ପୁରୀ) ପୁରୀ ଜିଲ୍ଲା ବାହାଙ୍ଗର ପ୍ରଥମ ଅଧିବାସୀ ବୈଦିକ ବ୍ରାହ୍ମଣମାନଙ୍କ ବଂଶର ପୂର୍ବ ମର୍ଯ୍ୟାଦାସୂଚକ ଉପାଧିବିଶେଷ—A distinguishing title of some Brahman families of Puri district.
Tolā
( ଯଥା—ଟୋଲା ମିଶ୍ରେ । )
୨ । (ସମ୍ବଲପୁର) (ଭୁଲ. ବଂ. ଓ ହି. ଏହି ଅର୍ଥରେ ଏହି ଶବ୍ଦ )—ତୁଲା ( ଦେଖ )
2. Tulā ( See )

ଦେ. ବିଣ—ଟୋଲକା ( ୧ ) ( ଦେଖ )
Tolakā ( 1. ) ( See )

**ଟୋଲ(ଲେ)ଇବା**—ଦେ. କ୍ରି—୧ । (ସକର୍ମକ) କୌଣସି ପାତ୍ରକୁ ଟୋଲ କରିବା—1. To dent a pot.
Tolā(le)ibā
**दुमड़ाना**
୨ । (ଅକର୍ମକ) (କୌଣସି ପାତ୍ର) ଟୋଲ ହୋଇଯିବା; ଟୋଲେଇ ଯିବା—2. (a pot) To become dented.
**पिचकाना**
ଟୋଲଖାଓୟା

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଖାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗଂଧା' ନ ପାଇଲେ 'ଅଙ୍ଗା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**चिपटना** ୩ । ( ବଥ ) ପାଚି ପୂଯ ପୂର୍ଣ୍ଣ ହୋଇ ଫୁଲିବା—
ফোলা 3. ( a boil ) To be ripe and
**खुजना** suppurated.

**ଟୋଲି**—ପ୍ରାଦେ. ବି. ୧ । (ଗଞ୍ଜାମ) ବୈଦେ· ( ଡେ ) ଅଧପାହି—
Ṭoli 1. Half a pie; $\frac{1}{6}$ of a pice.
୨ । (ସମ୍ବଲପୁର)—ଧାନ ବିଲରେ ଜନ୍ମିବା ଏକ ପ୍ରକାର ଘାସ—2. A kind of grass growing in paddy-fields.
[ ଦ୍ର—ଏହାର ଫଳ ସୋରିଷ ପରି । ]
୩ । ( ସମ୍ବଲପୁର ) ଟୁଲି ( ଦେଖ )—3. Ṭuli ( See )

**ଟୋଲୁଆ**—ଦେ. ବିଣ. ପୁଂ—ଢୋଲୁ; ପେଟୁଆ ସ୍ଥୂଳୋଦର—
Ṭoluā Pot-bellied.
(ଟୋଲେଇ—ସ୍ତ୍ରୀ)

**ଟ୍ରଙ୍କ୍**—ବୈଦେ. ବି. ( ଇଂ )—ଲୁହା ବା ମୋଟ ଟିଣପାତିଆର ସାନ
Ṭrañk ସିନ୍ଦୁକ ବା ବାକସ—
ট্রঙ্ক Iron or tin trunk.
**तुरङ्ग**

**ଟ୍ରଙ୍କ୍ ରୋଡ୍**—ବୈଦେ. ବି. (ଇଂ)—କଲିକତାରୁ କଟକ ଓ ପୁରୀ ବାଟେ
Ṭrañk roḍ ମାନ୍ଦ୍ରାଜକୁ ପଡ଼ିଥିବା ରାଜପଥ—
ট্রঙ্ক রোড় The Grand Trunk road from Calcutta
**ट्राङ्क रोड़** to Madras via Cuttack and Puri.

**ଟ୍ରଲି**—ବୈଦେ. ବି. ( ଇଂ. ଟ୍ରଲୀ )—
Ṭrali ରେଳ ଲାଇନ୍ ପରିଦର୍ଶକ ଇଞ୍ଜିନିଅରଙ୍କ ଦ୍ୱାରା ବ୍ୟବହୃତ
ট্রলি ଠେଲା ଗାଡ଼ି—Trolly.
**ट्राली**

**ଟ୍ରଷ୍ଟ ଫଣ୍ଡ୍**—ବୈଦେ. ବି. ( ଇଂ )—ଯେଉଁ ଧନ ନିର୍ଦ୍ଦିଷ୍ଟ କର୍ମ ପାଇଁ
Ṭrashṭ-phanḍ କୌଣସି ବ୍ୟକ୍ତିଙ୍କ ନିକଟରେ ଗଚ୍ଛିତ ଥାଏ—
ট্রষ্টফণ্ড Trust fund.
**ट्रष्टफण्ड**

**ଟ୍ରଷ୍ଟୀ**—ବୈଦେ. ବି (ଇଂ)—କୌଣସି ବିଶିଷ୍ଟ ଉଦ୍ଦେଶ୍ୟ ପାଇଁ ଯାହାଙ୍କ
Ṭrashṭi ମାରଫତରେ କୌଣସି ଧନ ବା ସମ୍ପତ୍ତି ନ୍ୟସ୍ତ ଥାଏ;
ট্রষ্টি ମାରଫତଦାର—Trustee.
**ट्रष्टि**

**ଟ୍ରାଙ୍ଗୁଲର ସର୍ଭେ**—ବୈଦେ. ବି ( ଇଂ. ଟ୍ରାଙ୍ଗୁଲାର ସର୍ଭେ )—
Ṭrāngulār sarbhe ଚେନ୍ ଦ୍ୱାରା ଏକପ୍ରକାର ଜମି ମାପ—
ট্রাঙ্গুলার সর্ভে Triangular survey.
**ट्रैङ्गुलार सरभे**

**ଟ୍ରାଇସାଇକ(କେ)ଲ୍**—ବୈଦେ ବି ( ଇଂ )—ଗୋଡ଼ରେ ଚଲା ଯିବା
Ṭrāisāika (ke)l ତିନିଚକିଆ ଗାଡ଼ି—
ট্রাইসাইকেল Tricycle.
**ट्रैसीकल**

**ଟ୍ରାନ୍‌ସ୍‌ଫର୍**—ବୈଦେ. ବି (ଇଂ)—ବଦଳି; ସ୍ଥାନପରିବର୍ତ୍ତନ; ଏକ ସ୍କୁଲ
Ṭrānsfar ବା କାର୍ଯ୍ୟକ୍ଷେତ୍ରରୁ ସ୍ଥାନାନ୍ତରକୁ ଗମନ—
ট্রান্সফর Transfer
**ट्रैनसफर**

**ଟ୍ରାନ୍‌ସ୍‌ଫର୍ ସାଟି(ର୍ଟି)ଫିକ(କେ)ଟ୍**—ବୈଦେ. ବି ( ଇଂ. ଟ୍ରାନ୍‌ସ୍‌ଫର୍
Ṭrānsfar sāṭi(rṭi)phika(ke)ṭ ସାର୍ଟିଫିକେଟ୍ )—
ট্রান্‌স্‌ফর সার্টিফিকেট ଛାତ୍ର ଏକ ସ୍କୁଲରୁ ନାମ କଟାଇଲେ
**ट्रान्सफर सार्टिफिकट** ସମୟରେ ତାକୁ ସ୍କୁଲର କର୍ତ୍ତୃପକ୍ଷଙ୍କ ଦ୍ୱାରା ପ୍ରଦତ୍ତ ଲେଖ—Transfer-certificate.

**ଟ୍ରାନ୍‌ସ୍‌ଲେଟର୍**—ବୈଦେ. ବି (ଇଂ) —ଅନୁବାଦକ—
Ṭrānsleṭar Translator.
ট্রান্সলের **ट्रान्सलेटर**

**ଟ୍ରାଫିକ୍**—ବୈଦେ· ବି ( ଇଂ ଟ୍ରାଫ୍‌ଫିକ୍ )—୧ । ଲୋକସାଧାରଣ ବା
Ṭrāphik ପଣ୍ୟଦ୍ରବ୍ୟାଦିର ଯାନାଦିରେ ଗମନାଗମନ—
ট্রাফিক 1. Traffic.
**ट्राफिक** ୨ । ରେଳର ଯେଉଁ ବିଭାଗରେ ଯାତ୍ରୀ ଓ ପଣ୍ୟଦ୍ରବ୍ୟାଦିର ଗମନାଗମନ ବିଷୟ ବୁଝାଯାଏ—
2. Traffic department of a Railway.
[ ଦ୍ର—ଏହି ଶବ୍ଦ ସଙ୍ଗେ ଅନେକଗୁଡ଼ିଏ ଇଂରାଜୀ ଶବ୍ଦ ଯୁକ୍ତ ହୋଇଥିବା ଶବ୍ଦ ରେଳ ବିଭାଗରେ ଚଳେ । ଯଥା—ଟ୍ରାଫିକ୍ ଇନ୍‌ସପେକ୍ଟର, ଟ୍ରାଫିକ୍ ସୁପରିଣ୍ଟେଣ୍ଡେଣ୍ଟ । ]

**ଟ୍ରାଭର୍‌ସ୍ ସର୍ଭେ**—ବୈଦେ. ବି.—(ଇଂ) କୌଣସି ଅଞ୍ଚଳର ଏକ
Ṭrābhars sarbhe ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ ଯନ୍ତ୍ର ସାହାଯ୍ୟରେ
ট্রাভর্স সর্ভে କରା ଯିବା ଜମି ମାପ—
Traverse survey.

**ଟ୍ରାଭ୍‌ଲିଙ୍ଗ୍**—ବୈଦେ. ବି. (ଇଂ ଟ୍ରାଭ୍‌ଲିଙ୍ଗ୍)—ମୁଖ୍ୟ; ସରକାରୀ କାମରେ
Ṭrābh-ling ପରିଭ୍ରମଣ—Travelling.
ট্রাভলিঙ্গ **ट्राभलिङ्ग**

**ଟ୍ରାଭ୍‌ଲିଙ୍ଗ୍ ଆଲାଉଆନ୍‌ସ୍**—ବୈଦେ. ବି. (ଇଂ)—ଗସ୍ତକାରୀ କର୍ମଚାରୀ
Ṭrābh-ling ālāuāns ଅଦିଙ୍କୁ ମିଳିବା ଖରଚ; ଗସ୍ତଖରଚ—
ট্রাভলিঙ্গ আলাউআন্স Travelling allowance.
**ट्रैभलिङ्ग आलाउआन्स**

**ଟ୍ରାଭ୍‌ଲିଙ୍ଗ୍ ଆଲାଉଆନ୍‌ସ୍ ବିଲ୍**—ବୈଦେ. ବି· (ଇଂ)—ଗସ୍ତ କରିବା
Ṭrābh-ling ālāuāns bil କର୍ମଚାରୀଙ୍କ ଗସ୍ତ ଖରଚ ପାଇଁ କର୍ତ୍ତୃପକ୍ଷଙ୍କଠାକୁ ପଠାଇବା ବିଲ୍—
Travelling allowance bill.

**ଟ୍ରାଭ୍‌ଲିଙ୍ଗ୍ ଏଜେଣ୍ଟ**—ବୈଦେ. ବି ( ଇଂ )—କୌଣସି ବ୍ୟବସାୟୀର
Ṭrābh-ling ejenṭ ପଣ୍ୟଦ୍ରବ୍ୟର ପ୍ରସାର ବଢ଼ାଇବା ପାଇଁ
ট্রাভিলিঙ্গ এজেণ্ট ନିଯୁକ୍ତ ଭିନ୍ନ ଭିନ୍ନ ଅଞ୍ଚଳ ଭ୍ରମଣକାରୀ କର୍ମଚାରୀ—
**ट्राभलिङ्ग एजेण्ट** Travelling agent.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍, ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ, ଷ | ଙ୍କ | ଇସ୍ | ଉଅ | ଘ |
| ୨ | ଈ | ଊ | ଋ | ଌ | ଯ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଗଁ୍ୟ | ଇଅ | ଞ | ନ୍ |

ଟ୍ରାମ୍—ବୈଦେ. ବି ( ଇଂ )—ଲୌହ ଲାଇନ୍ ଉପରେ ଚାଲିବା
Trām ଏକପ୍ରକାର ଗୃହ ଚକଥିଆ ଗାଡ଼ି—
ट्राम Tram-car.
ट्रैम

ଟ୍ରାମ୍‌ଓ୍ୱେ—ବୈଦେ. ବି ( ଇଂ )—ଟ୍ରାମ୍ ଗାଡ଼ି ଯେଉଁ ଲୁହା
Trām-ue ଲାଇନ୍ ଉପରେ ଚଲେ—
ट्रामओ्ये Tram way.
ट्रैमवे

ଟ୍ରିପ୍ଲିକେଟ୍—ବୈଦେ. ବି ଓ ବିଣ ( ଇଂ )—
Tripliket ତ୍ରିଗୁଣ ବା ତ୍ରିଗୁଣାତ୍ମକ—
ट्रिपिकेट Triplicate.
ट्रिप्लिकेट

ଟ୍ରିବ୍ୟୁଟେରୀ ଚୀଫ୍—ବୈଦେ. ବି ( ଇଂ )—
Tributeri chif ଯେଉଁ ରାଜା ସମ୍ରାଟଙ୍କୁ ପେଷ୍କସ ଦିଅନ୍ତି—
Tributary chief

ଟ୍ରିବ୍ୟୁଟେରୀ ମାହାଲ—ବୈଦେ. ବି ( ଇଂ. ଟ୍ରିବ୍ୟୁଟାରୀ=କରଦ + ଫା. ମାହାଲ=ରାଜ୍ୟ )—
Tributeri mahāla
ट्रिबुटेरी माहाल ଯେଉଁ ରାଜ୍ୟର ରାଜା ସମ୍ରାଟଙ୍କୁ ଟ୍ରିବ୍ୟୁଟ୍ ବା ପେଷ୍କସ୍ ଦିଅନ୍ତି—Tributary Mahals.

[ ଦ୍ର—ଇଂରାଜମାନେ ଭାରତକୁ ଅଧିକାର କରିବା ସମୟରେ ଯେଉଁ ଯେଉଁ ରାଜ୍ୟର ରାଜାମାନେ ସରକାରଙ୍କୁ ପେଷ୍କସ୍ ଦେବାର ଚୁକ୍ତି କରି ଇଂରାଜଙ୍କ ସଙ୍ଗେ ସନ୍ଧି କଲେ ସେମାନଙ୍କୁ ଟ୍ରିବ୍ୟୁଟେରି ବା କରଦ ଓ ଯେଉଁମାନେ ଯୁଦ୍ଧ ସମୟରେ ଇଂରାଜଙ୍କୁ ସୈନ୍ୟାଦିଦ୍ୱାରା ସାହାଯ୍ୟ କରିବା ପାଇଁ ସନ୍ଧି କଲେ ସେମାନଙ୍କୁ ଫିଉଡେଟେରୀ ଚୀଫ୍ ବୋଲାଗଲା । ଓଡ଼ିଶାର ଗଡ଼ଜାତମାନ ପୂର୍ବେ 'ଟ୍ରିବ୍ୟୁଟେରୀ ମାହାଲ' ନାମରେ ଡକା ଯାଉଥିଲା, ପରେ ସେମାନେ ଫିଉଡେଟେରୀ ଷ୍ଟେଟ୍ସ୍ ନାମରେ ଅଭିହିତ ହେଲେ ଓ ଏବେ ସେମାନେ ଓଡ଼ିଶା ଷ୍ଟେଟ୍ସ୍ ନାମରେ ଅଭିହିତ । ]

ଟ୍ରେଇନ୍—ପ୍ରାଦେ. (ଗଡ଼ଜାତ) ବୈଦେ. ( ଇଂ. ଟ୍ରେନ )—
Trein ଟ୍ରେନ୍; ରେଲ ଗାଡ଼ି—Railway train.

ଟ୍ରେଜର୍ ଟ୍ରୋଭ—ବୈଦେ. ବି. ( ଇଂ )—
Trejar trobh ଅଜ୍ଞାତ-ସ୍ୱାମିକ ପ୍ରୋଥିତ ଧନ—
Treasure trove.

ଟ୍ରେଜରର୍—ବୈଦେ. ବି. (ଇଂ)—ଧନାଗାରର ରକ୍ଷକ—
Trejarar Treasurer.
ट्रेजरर ट्रेजरर

ଟ୍ରେଜରୀ—ବୈଦେ. ବି. ( ଇଂ )—
Trejari ୧ । ଖଜଣାଖାନା; ରାଜକୀୟ ଧନାଗାର—
ट्रेजरी 1. Treasury.
ट्रेजरी ୨ । ଲୁହା ସିନ୍ଦୁକ—2. Iron safe.

ଟ୍ରେଜରୀ ଅଫିସର—ବୈଦେ. ବି. ( ଇଂ )—
Trejari aphisar ଯେଉଁ ହାକିମ ଜିଲ୍ଲାର ବା ମହକୁମାର ସରକାରୀ
ट्रेजरी अफिसर ଖଜଣାଖାନାର ତତ୍ତ୍ୱ ନିଅନ୍ତି—
ट्रेजरी अफसर Treasury officer.

ଟ୍ରେଞ୍ଚ୍—ବୈଦେ. ବି. ( ଇଂ )—
Trench ଭୂପୃଷ୍ଠରେ ଖୋଳା ଯାଇଥିବା ଲମ୍ବ ଓ ଅବୃତ ପହଣୀ
ट्रेञ्च Trench.
ट्रेञ्च

ଟ୍ରେଞ୍ଚିଙ୍ଗ୍ ଗ୍ରାଉଣ୍ଡ—ବୈଦେ. ବି. ( ଇଂ )—
Trenching graund ମିଉନିସିପାଲିଟି ଓ ମେହେନ୍ତରମାନଙ୍କ
ट्रेञ्चिंग ग्राउण्ड ଦ୍ୱାରା ସହରର ପାଇଖାନାମାନଙ୍କରୁ ନିଆ-
ट्रेञ्चिङ्ग ग्राउण्ड ଯାଉଥିବା ବିଷ୍ଠା ପୋତାଯିବା ପାଇଁ ସହରଠାରୁ କିଛିଦୂରରେ ଥିବା ନିର୍ଦ୍ଦିଷ୍ଟ ଭୂମି—Trenching ground.

ଟ୍ରେଡ୍ ଉଇଣ୍ଡ—ବୈଦେ.ବି. (ଇଂ)—ଉତ୍ତର ମେରୁ ଆଡ଼ୁ ବିଷୁବ ରେଖା
Tred uind ଆଡ଼କୁ ବହୁଥିବା ପବନ; ବାଣିଜ୍ୟ ବାୟୁ—
ट्रेड उईण्ड Trade-wind.
ट्रेड वइण्ड [ ଦ୍ର—ଏହି ବାୟୁ ଦ୍ୱାରା ବାଣିଜ୍ୟ ପୋତମାନଙ୍କ ଗତିରେ ସୁବିଧା ହେବାରୁ ଏହି ନାମକରଣ ହୋଇଅଛି ।]

ଟ୍ରେଡ୍ କମିସନର୍—ବୈଦେ. ବି. ( ଇଂ )—କୌଣସିଦେଶର ବାଣିଜ୍ୟ
Tred kamisanar ବ୍ୟବହାର ତତ୍ତ୍ୱାବଧାନ କରିବା ନିମନ୍ତେ କ୍ଷମତାପ୍ରାପ୍ତ ରାଜକର୍ମଚାରୀ—Trade Commissioner.

ଟ୍ରେଡ୍ ମାର୍କ—ବୈଦେ. ବି. ( ଇଂ )—ଭିନ୍ନ ଭିନ୍ନ ପଣ୍ୟ ଦ୍ରବ୍ୟ ଉପରେ
Tred mārk ଚିହ୍ନିତ ଉକ୍ତ ଦ୍ରବ୍ୟର ନିର୍ମାତାଙ୍କ ଉଦ୍ଭାବିତ ବିଶିଷ୍ଟ
ट्रेड़ मार्क, ट्रेड़मार्क ଚିହ୍ନ—Trade mark.
[ଦ୍ର—ଏ ଚିହ୍ନ ଅନ୍ୟ କୌଣସି ବ୍ୟକ୍ତି ଅନ୍ୟ କୌଣସି ପଣ୍ୟ ଦ୍ରବ୍ୟ ଉପରେ ମାରି ପାରିବେ ନାହିଁ ବୋଲି ଏହା ସରକାରଙ୍କଠାରେ ଆଇନ ଅନୁସାରେ ରେଜିଷ୍ଟର କରାଯାଏ ।]

ଟ୍ରେଣ୍ଡ୍—ବୈଦେ. ବି. ( ଇଂ. ଟ୍ରେନ୍ଡ୍ )—
Trend କୌଣସି ବିଶିଷ୍ଟ କାର୍ଯ୍ୟର ପରିଚାଳନା ନିମନ୍ତେ ଶିକ୍ଷା
(ଯଥା—ଟ୍ରେଣ୍ଡ୍ ଗୁରୁ) ପ୍ରାପ୍ତ—Trained.

ଟ୍ରେନ୍—ବୈଦେ. ବି. (ଇଂ)—ରେଲଗାଡ଼ି—
Tren Train.

ଟ୍ରେନିଙ୍ଗ୍—ବୈଦେ. ବି. (ଇଂ)—କୌଣସି ବିଷୟରେ ଯୋଗ୍ୟ ହେବା
Trening ନିମନ୍ତେ ପାଇବା ଶିକ୍ଷା—Training.
ट्रेनिंङ [ ଦ୍ର—ଏହି ଇଂରେଜି ଶବ୍ଦ ସଙ୍ଗେ କ୍ଲାସ, ସ୍କୁଲ,
ट्रेनिङ्ग କଲେଜ ଆଦି ଶବ୍ଦ ଓ ପୂର୍ବରେ ଗୁରୁ, ପଣ୍ଡିତ, ଏଗ୍ରିକଲଚର, ଫରେଷ୍ଟ, କନଷ୍ଟବଲ, ପୁଲିସ ଆଦି ଶବ୍ଦ ଲାଗେ । ]

ଟ୍ରେନିଙ୍ଗ୍ କଲେଜ—ବୈଦେ. ବି. ( ଇଂ )—
Trening kalej ଉଚ୍ଚ ଶ୍ରେଣୀର ଟ୍ରେନିଙ୍ଗ ସ୍କୁଲ—
ट्रेनिंङ कलेज Training college.
ट्रेनिंग कालेज

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ',ନ ମିଳିଲେ 'ଦ୍ୱୀ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଟ୍ଟାଂ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଟ୍ରେନିଙ୍ଗ୍ ସ୍କୁଲ୍**—ବୈଦେ. ବି. (ଇଂ)—ଯେଉଁ ବିଦ୍ୟାଳୟରେ ଭିନ୍ନ ଭିନ୍ନ
Ṭrening skul  କର୍ମ ପାଇଁ ଯୋଗ୍ୟ ହେବା ନିମନ୍ତେ ଶିକ୍ଷାର୍ଥୀ-
ট্রেনিঙ্গ স্কুল  ମାନଙ୍କୁ ତାଲିମ କରାଯାଏ—
**ट्रेनिंग स्कूल**  Training school.
( ଯଥା—ଯେଉଁ କର୍ମ ପାଇଁ ଟ୍ରେନିଙ୍ଗ୍ ଦିଆଯାଏ ସେହି ସେହି ନାମ ଏହି ଶବ୍ଦଦ୍ୱୟର ପୂର୍ବରେ ଲାଗେ । ଯଥା—ଗୁରୁ ଟ୍ରେନିଙ୍ଗ୍ ସ୍କୁଲ, ପୁଲିସ ଟ୍ରେନିଙ୍ଗ୍ ସ୍କୁଲ, ଟିଚର ଟ୍ରେନିଙ୍ଗ୍ ସ୍କୁଲ । )

**ଟ୍ରେସ୍**—ବୈଦେ. ବି. ( ଇଂ )—ଅସଲ ନକ୍ସାରୁ ଟ୍ରେସିଙ୍ଗ୍ କାଗଜ ବା
Ṭres  ଟ୍ରେସିଙ୍ଗ୍ କ୍ଲଥ୍ ସାହାଯ୍ୟରେ ଅଙ୍କିତ ନକ୍ସା—
ট্রেস  A trace ( map ).
**ट्रेस**

**ଟ୍ରେସ୍‌ପାସ୍**—ବୈଦେ. ବି. (ଇଂ. ଟ୍ରେସ୍‌ପାସ୍) (କଚେରିଆ ଶବ୍ଦ)—
Ṭrespās  ପରର ସ୍ଥାନରେ ଅନଧିକାର ପ୍ରବେଶ—
ট্রেসপাস  Tresspass.
**ट्रेसपास**

**ଟ୍ରେସ୍‌ପାସର୍**—ବୈଦେ. ବି. (ଇଂ. ଟ୍ରେସ୍‌ପାସର୍) (କଚେରିଆ ଶବ୍ଦ)—
Ṭrespasar  ପରର ସ୍ଥାନ ବା ଗୃହରେ ଅନଧିକାର ପ୍ରବେଶକାରୀ—
ট্রেসপাসর  Tresspasser.
**ट्रेसपासर**

**ଟ୍ରେସିଙ୍ଗ୍**—ବୈଦେ. ବି. (ଇଂ)—ଅସଲ ନକସା ଉପରେ ଟ୍ରେସିଙ୍ଗ୍ କ୍ଲଥ୍
Ṭresing  ବା ଟ୍ରେସିଙ୍ଗ କାଗଜ ପକାଇ ଚିତ୍ରାଦି ଅଙ୍କନ କରିବା—
ট্রেসিঙ্গ  Tracing.
**ट्रेसिङ्ग**

**ଟ୍ରେସିଙ୍ଗ୍ କ୍ଲଥ୍**—ବୈଦେ. ବି. (ଇଂ)—ଯେଉଁ ମହମଜାମା ସ୍ୱଚ୍ଛ କନାକୁ
Ṭresing klath  ଚିତ୍ରଥିବା ଅନ୍ୟ କାଗଜ ଉପରେ ରଖି ଚିତ୍ର
ট্রেসিঙ্গ ক্লথ  ଆଦିକୁ ଅବିକଳ ଅଙ୍କିତ କରାଯାଇ ପାରେ—
**ट्रेसिङ्ग क्लाथ**  Tracing cloth.

**ଟ୍ରେସିଙ୍ଗ୍ ପେପର୍**—ବୈଦେ. ବି. (ଇଂ)—ଯେଉଁ ମହମଜାମା ସ୍ୱଚ୍ଛ କାଗଜ
Ṭresing pepar  ଦ୍ୱାରା ଅନ୍ୟ କାଗଜରେ ଥିବା ଚିତ୍ର ଆଦିକୁ
ট্রেসিঙ্গ পেপর  ଅବିକଳ ଉତାରି ନିଆଯାଇ ପାରେ—
**ट्रेसिङ्ग पेपर**  Tracing paper.
(ଟ୍ରେସିଙ୍ଗ୍ କାଗଜ—ଅନ୍ୟରୂପ)
[ ଦ୍ର—ଏହି ଟ୍ରେସିଙ୍ଗ୍ ପେପର୍ ବା ଟ୍ରେସିଙ୍ଗ୍ କ୍ଲଥ୍‌ରେ ମହମ ମଡ଼ା ହୋଇଥିବାରୁ ଏହା ସ୍ୱଚ୍ଛ ଅଟେ; ଏଥିପାଇଁ ଏହା ତଳେ କୌଣସି ଚିତ୍ରାଙ୍କିତ ବା ଲେଖା ହୋଇଥିବା କାଗଜ ରଖିଲେ ତଳ କାଗଜର ଚିତ୍ର ବା ଲେଖା ଫୁଟି କରି ଉପରକୁ ଦେଖାଯାଏ ଓ ସେହି ରେଖାମାନଙ୍କୁ ନକଲ କରି ପେନ୍‌ସିଲ ବା କଲମରେ ଚିତ୍ର ଆଦି ଟ୍ରେସିଙ୍ଗ୍ ପେପର୍ ବା ଟ୍ରେସିଙ୍ଗ୍ କ୍ଲଥ୍‌ରେ ଅବିକଳ ଉଠିଯାଏ । ]



**ଠ**—ବ୍ୟଞ୍ଜନ ବର୍ଣ୍ଣର ଦ୍ୱାଦଶ ବର୍ଣ୍ଣ; ଟ ବର୍ଗର ଦ୍ୱିତୀୟ ବର୍ଣ୍ଣ; ଏହାର ଉଚ୍ଚାରଣ
Ṭha  ସ୍ଥାନ ମୂର୍ଦ୍ଧା—The twelfth consonant. Its sound is produced from the head (cerebral). This letter is not represented by any single letter in the English alphabet, but resembles the sound of 'ṭ' followed immediately by the sound 'h' as in 'pent-house'. Generally the oria letter 'ଠ' is rendered into English by writing 'th' with some distinguishing mark or dot to differentiate it from the English pronunciation of th, as in 'path' and of th as in 'the'. Thus the word ଠାକୁର is transliterated in English as Ṭhākura.

ସଂ. ବି—୧ । ଶିବ—1. Śiba.
୨ । ମହାଧ୍ୱନି—2. A great sound
୩ । ଚନ୍ଦ୍ରମଣ୍ଡଳ—3. Moon's disc.
୪ । ଶୂନ୍ୟ—4. The void; the space.
ଠ ପରି ଜଗତ ଦିଶେ, ଠିକେ କବିରଜ ଭାଷେ ।
କବିସୂର୍ଯ୍ୟ. ରତ୍ନାକର ଚମ୍ପୂ. ଠ. ଗୀତ ।
ବିଣ—ଇନ୍ଦ୍ରିୟଗୋଚର—
Perceptible by the senses.
ଦେ. ବି—ଶୂନ; ଶୂନ୍ୟ ସଂଖ୍ୟା—Zero.
(ଯଥା—ସେ ପରୀକ୍ଷାରେ ଠ ଟିଏ ପାଇଅଛି ।)

**ଠଅ**—ଦେ. ବିଣ—ଶୂନ୍ୟାକାର; ପୂର୍ଣ୍ଣବୃତ୍ତାକୃତି—
Ṭhaa  Zero-like; circular.
ଠଅ ହୋଇଣ ମଣ୍ଡଳ ଗୋଟିଏ । ପ୍ରାଚୀ. ପରତେ ଗୀତା ।
ବି—ଶୂନ୍ୟସଂଖ୍ୟା—Zero.

**ଠଉଁ**—ଦେ. ଅ. (ପଞ୍ଚମୀ ବିଭକ୍ତିସୂଚକ ପ୍ରତ୍ୟୟବିଶେଷ; ଅନ୍ୟ ଶବ୍ଦ
Ṭhaun̐  ସଙ୍ଗେ ବ୍ୟବହୃତ)—୧ । ରୁ; ଠାରୁ—
থেকে  1, From.
**से**  (ଯଥା—କଟକ ଠଉଁ ପୁରୀ ୫୪ ମାଇଲ ।)
୨ । ଅପେକ୍ଷା—2. Than.
(ଯଥା—ସେ ମୋ ଠଉଁ ୫ବର୍ଷ ବଡ଼ ।)

**ଠଉର**—ଦେ. ବି. ( ସଂ. ସ୍ଥିର )—୧ । ସ୍ଥିରତା—
Ṭhaura  1. Certainty.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଓ | ନ୍ |

ଠାଉର; ଠାଅର; ଠାହବ ୨ । ଠାବ; ଦୃଢ଼ ଅବସ୍ଥିତ—
ठौर, ठउर 2. Firm footing; stability.
(ଯଥା—ଶିଉଳରେ ଗୋଡ଼ର ଠଉର ହେଉ ନାହିଁ ।)
୩ । ଇନ୍ଦ୍ରିୟଗୋଚର; ଅନୁଭବ—
3. Perception; ken
(ଯଥା—ଲୁଚୁଡ଼ ହେବୁ ବାଟର ଠଉର ହେଉ ନାହିଁ ।)
୪ । ନିଶ୍ଚୟାତ୍ମକ ଜ୍ଞାନ; ଠିକଣା—4. Knowing; ascertainment; certain knowledge; positive assurance.
୫ । ଅନୁମାନ—5 Guess.
(ଯଥା—ମୁଁ ତା କଥାରେ କିଛୁ ଠଉର ପାଇଲି ନାହିଁ ।)
ବିଣ—୧ । ସ୍ଥିର; ଦୃଢ଼ସ୍ଥାୟୀ—1. Stable, firm;
୨ । ସ୍ଥିରୀକୃତ—2 Ascertained.
୩ । ଇନ୍ଦ୍ରିୟଦ୍ୱାରା ଅନୁଭୂତ—
3. Perceived by the senses.
୪ । ଅନୁମିତ—4 Guessed.

ଠଉର କରିବା—ଦେ. କ୍ରି. (ସ. ସ୍ଥିର)—୧ । ଠିକଣା କରିବା—
Ṭhaura karibā 1. To ascertain.
ଠାଓର କବା ୨ । ଅନୁମାନ କରିବା—2. To guess.
ठौर करना

ଠଉର ଠିକଣା—ଦେ. ବି—୧ । ସୁବନ୍ଦୋବସ୍ତ—
Ṭhaura ṭhikaṇā 1. Good arrangement.
ଠାଓର ଠିକାନା ୨ । କୌଣସି ବ୍ୟକ୍ତି ବା ବସ୍ତୁର ପତ୍ତା—
ठौर ठिकाना 2. Address or whereabouts of a person or thing.

ଠଉର ପଡ଼ିବା—ଦେ· କ୍ରି—ଠଉରିବା (ଦେଖ)
Ṭhaura parḍibā Ṭhauribā (See)

ଠଉର ହେବା—ଦେ. କ୍ରି—ଠଉରିବା (ଦେଖ)
Ṭhaura hebā Ṭhauribā (See)

ଠଉରା(ରେ)ଇବା—ଦେ. କ୍ରି· (ସ. ସ୍ଥିର)—୧ । ଅନୁସନ୍ଧାନ ପୂର୍ବକ
Ṭhaurā(re)ibā ସ୍ଥିର କରିବା—1. To ascertain after
ଠାଓରାନ enquiry or search.
ठौराना ଠଉରେଇ ଅବସର କଲେ ଭୁ ପ୍ରସଙ୍ଗ ମୋର ।
କବିସୂର୍ଯ୍ୟ. କଣୋସ୍ୱରଚମ୍ପୂ ଠ. ଗୀତ ।
୨ । ଅନୁମାନ କରିବା—
2. To guess; to infer; to conjecture.
ଠଣି ବର ପ୍ରେମପଥ କଲବଣା ଠଉରାଇଲ ଯା ନାହିଁ ।
ଗୋପେଶ. ଉଦ୍ଧରେଖା ।
୩ । ଖୁଣ୍ଡିବା; ଖୋଜିବା; ଅନ୍ଧାରରେ ଖଣ୍ଡାଳିବା—
3. To seek; to search; to feel in the dark.
୪ । କଳ୍ପନାଦ୍ୱାରା ସ୍ଥିର କରିବା ବା ଭାବିବା—
4. To imagine.

ଠଉରଉବ କେ ତୋ ବର୍ତ୍ତମ ଗତି । କବିସୂର୍ଯ୍ୟ. କବତାମ୍ୱୋଳ ।
୫ । ଇନ୍ଦ୍ରିୟ ଗୋଚରକୁ ଆଣିବା; ଇନ୍ଦ୍ରିୟ ଦ୍ୱାରା ଅନୁଭବ କରିବା— 5. To perceive; to feel; to find.

ଠଉରିବା—ଦେ. କ୍ରି. (ସ, ସ୍ଥିର)—୧ । ସ୍ଥିର ହେବା; ସ୍ଥିର ବା ଦୃଢ଼-
Ṭhauribā ଭାବରେ ରହିବା—1. To remain fixed; to
ଠାଉରା remain undisturbed; to become settled.
ठहरना ବ ମାତ ବ ଜାତଗୀଲ, ବ ଭୂଲବରଣ ଫଳ
ଠଉର ଦାବଇ ମୋ ମନରେ । କବିସୂର୍ଯ୍ୟ. କଣୋସ୍ୱରଚମ୍ପୂ କ. ଗୀତ ।
୨ । ସ୍ଥିରୀକୃତ ହେବା; ସିଦ୍ଧାନ୍ତ ହେବା—
2. To be adjudged; to be determined.
୩ । ଠାକିବା; ବଞ୍ଚିବା—3. To live; to subsist.
ଠଉରିବ ନାହିଁ ବୋଲି ଠଉର କରଗ ପାଉଣ ମଦନ ପଳାଏ ରଚେ ଛଇଳ ।
କବିସୂର୍ଯ୍ୟ ରକ୍ଷା ଗୀତ
୪ । ଅପେକ୍ଷା କରିବା—4. To wait.
ଠଉରିବ ନାହିଁ ବୋଲି ଠଉର କରଗ ପାଉଣ ମଦନ ପଳାଏ ରଚେ ଛଇଳ ।
କବିସୂର୍ଯ୍ୟ. ରକ୍ଷା ଗୀତ ।
୫ । ଅନୁମିତ ହେବା—
5. To be guessed or inferred.
୬ । ସହ୍ୟ କରିବା; ସହିବା—
6. To bear up; to endure.
୭ । ଭାର ସମ୍ଭାଳିବା—7. To sustain.
୮ । ଠଉରାଇବା (ଦେଖ)—8. Ṭhaurāibā (See)

ଠଂ—ଦେ. (ଧ୍ୱନ୍ୟନୁକରଣ)—ଅ.—ଧାତୁମୟ ଦ୍ରବ୍ୟ ସଙ୍ଗେ କୌଣସି
Ṭhaṃ କଠିନ ପଦାର୍ଥ ବାଜିଲେ ଯେଉଁ ଶବ୍ଦ ଜାତ ହୁଏ; ଟଂ—
ठं Sound of a metallic vessel struck by a hard substance; clanking sound.
ପ୍ରାଦେ. (ସମ୍ବଲପୁର) ଅ.—ଠଙ୍ଗ୍ (ଦେଖ)
Ṭhaṅg (See)

ଠଂ ଠଂ—ଦେ. (ଧ୍ୱନ୍ୟନୁକରଣ) ଅ.(ବହୁବଚନ)—ଠଂ (ଦେଖ)
Ṭhaṃ ṭhaṃ Ṭhaṃ (See)

ଠକ୍—ଦେ. (ଧ୍ୱନ୍ୟନୁକରଣ) ଅ.—(ସ· ସ୍ତକ୍; ସ୍ଥକ୍ ଧାତୁ=ପ୍ରତିଘାତ)
Ṭhak କାଠ ଆଦି କୌଣସି ଦୃଢ଼ ବସ୍ତୁରେ ଅନ୍ୟ ଦୃଢ଼ ବସ୍ତୁ ଥରେ
ଠକ ବାଜିବାର ଶବ୍ଦ; ଧାତବ ପଦାର୍ଥ ଛଡ଼ା ଅନ୍ୟ କଠିନ ବସ୍ତୁ-
ठक ଦ୍ୱୟର ଥରେ ପ୍ରତିଘାତଜନିତ ଶବ୍ଦ—Clattering sound of two hard things (except metal) striking against each other; click.
(ଯଥା—ଦୁଇଖଣ୍ଡ କାଠିର ପରସ୍ପର ସହିତ ଥରେ ଅଘାତଜନିତ ଶବ୍ଦ ।)

ଠକ୍ କରି—ଦେ. ଅ.—୧ । ହଠାତ୍—
Ṭhak kari 1. Suddenly.
ଟକ କରେ ପାପିଷ୍ଠାର ଧନ ପାଣି ପରି ବହି ଯାଉଛି,
झट ଏବେ ଜାଣ ଠକ୍ କରି ଛାଡ଼ି ପଡ଼ିବ । ଫକୀରମୋହନ. ଗଳ୍ପସ୍ୱଳ୍ପ ।
(ଠକ୍‌କିନା, ଠକ୍‌କିନି, ଠକ୍‌କରି, ଠକ୍‌ଦେଇ—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍‌ଚତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗ୍ନି' ନ ପାଇଲେ 'ଅଗ୍ନି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ଠକ୍ ଠକ୍**—ଦେ. ଅ. ବହୁବଚନ (ସଂ.ସ୍ତକ୍, ସ୍ଥକ୍ ଧାତୁ=ପ୍ରତିଘାତ)—
Ṭhak ṭhak ୧ । କାଷ୍ଠାଦି ଦୃଢ଼ ବସ୍ତୁରେ ଅନ୍ୟ ଦୃଢ଼ ବସ୍ତୁର
ठक ठक ଏକାଧିକ ଥର ବାଜିବାର ଶବ୍ଦ, ଧାତବ ପଦାର୍ଥ ଛଡ଼ା
**ठक ठक** ଅନ୍ୟ କଠିନ ବସ୍ତୁଦ୍ୱୟର ଏକାଧିକ ଥର ଘାତପ୍ରତିଘାତ-ଜନିତ ଶବ୍ଦ—1. Rattling sound; repeated tapping or rapping sound.

(ଯଥା—କାଠହଣା ଚଢ଼େଇ ଗଛରେ ଠକ୍ ଠକ କରୁଛି; ଦାନ୍ତ ଶୀତରେ ଠକ୍ ଠକ୍ ବାଜୁଛି । )

୨ । ଖାଦ୍ୟାଭାବରୁ ବିକଳ ହୋଇ ଛଟ୍ ପଟ୍ ହେବା—
2. Starving.

(ଯଥା—ଦୁର୍ଭିକ୍ଷ ଯୋଗୁଁ ତା ପିଲାମାନେ ଠକ୍ ଠକ୍ ହୋଇ ମଲେ ।)

୩ । ବିଶେଷ ପରିମାଣରେ; ଠୋପା ଠୋପା ହୋଇ; ଥପ୍‌ଥପ୍—
3. Repeatedly; in copious drops.

(ଯଥା—ତା ଆଖିରୁ ଠକ୍ ଠକ୍ ଲୁହ ଗଡ଼ି ପଡ଼ିଲା ।)

୪ । ପ୍ରତି ମୁହୂର୍ତ୍ତରେ; ବାରମ୍ବାର—
4. Repeatedly; in every moment.

(ଯଥା—ମୋ ବାଆଁ ଆଖି ଠକ୍ ଠକ୍ ଡେଉଁଛି ।)

କ୍ରି. ବିଣ.—ଠକ ଠକ ଶବ୍ଦ କରି—
1. Making a clicking sound.

(ଯଥା—ସେ କଠୋଉ ମାଡ଼ି ଠକ୍ ଠକ୍ ଚାଲି ଯାଉଛି ।)

୨ । ଅତି ଦ୍ରୁତଗତିରେ ନୁହେଁ ବା ଅତି ଧୀର ଗତିରେ ନୁହେଁ ଏପରି ଚାଲିବା ପ୍ରକାରରେ—
2. In a stalking manner (neither rapidly nor slowly).

(ଯଥା—ଦେଢ଼ ବରଷର ପିଲା ଆମ ଜଗବନ୍ଧୁଟି ଠକ୍ ଠକ୍ ଚାଲିଲାଣି । )

ଦେ. ବିଣ.—୧ । ବିରକ୍ତ; କୌଣସି ବ୍ୟକ୍ତି ଉପରେ ବିରକ୍ତି ଭାବ ମୁଖରେ ପ୍ରକାଶ କରୁଥିବା—
1. Giving vent to annoyance by words.

(ଯଥା—ବଡ଼ ଯାଆ ସବୁବେଳେ ସାନ ଯାଆ ଉପରେ ଠକ୍ ଠକ୍ ହେଉଛି ।)

୨ । ଶୁଷ୍କ; ମାରସ (ମ୍ଳାନ)—2. Dried up.

(ଯଥା—ମରୁଡ଼ିରେ ଧାନ ବିଲ ଯାକ ଠକ୍ ଠକ୍ ହୋଇ ଗଲାଣି ।)

୫ । ଅଭୁକ୍ତ; ଉପବାସ ଜର୍ଜରିତ; ଛଟ ପଟ; ପାଟୁ ପାଟୁ—
3. Starving; fasting.

(ଯଥା—ଠକ୍ ଠକ୍ ମଦନ ଗୋପାଲ ।)

୪ । ଚଞ୍ଚଳ ଚାଲୁଥିବା—4. Walking briskly.

(ଯଥା—ଅମ ସାଆନ୍ତଙ୍କର ଠକ୍ ଠକ୍ ଚାଲି ସଙ୍ଗେ ମୁଁ ଚାଲି ପାରିବି ନାହିଁ ।)

ଦେ· ବି.—୧ । ବାରଂବାର ଦୁଇ ଜଣଙ୍କର ତଳ କଜିଆ—
1. Constant quarrelling between two persons; bickerings.

୨ । ବାରଂବାର କୌଣସି ବ୍ୟକ୍ତି ଉପରେ ବିରକ୍ତି ପ୍ରକାଶ—
2. Giving vent to one's displeasure repeatedly.

(ଯଥା—ମୁଁ ସେ ଘରେ ଏତେ ଠକ୍ ଠକ୍ ସହି ତଳ ପାରିବି ନାହିଁ ।)

**ଠକ୍ ଠକ୍ ଠକସା**—ଦେ. ବିଣ.—ଯେ ଠକ୍ ଠକ୍ ହୋଇ ଗତି କରେ—
Ṭhak ṭhak ṭhakasā Making a rattling sound during movement.

ଠକ ଠକ ଠକସା, ୩ ମୁଣ୍ଡ ୧୦ ଗୋଡ କହୁଦଉଛି ମଉଷା ।
ପ୍ରହେଳିକା ।

(ଏଥିର ଉତ୍ତର—ହଳ ବୁଲାଉ ଥିବା ଦୁଇଟି ବଳଦ ଓ ଗୋଟିଏ ମନୁଷ୍ୟ ।)

**ଠକ୍ ଠକ୍ ମଦନଗୋପାଳ**—ଦେ. ବି.—ଖାଇବାକୁ ପାଉ ନ ଥିବା
Ṭhak ṭhak madanagopāla ଗରିବ ଲୋକ—
A famishing poor person.

**ଠକ୍ ଠକ୍ ହୋଇ ଚାଲିବା**—ଦେ. କ୍ରି—ଚଞ୍ଚଳ ଚଞ୍ଚଳ ପଦକ୍ଷେପ
Ṭhak-ṭhak hoi chāliba କରି ଚାଲିବା—
To stalk; to walk briskly.

( ଯଥା—ଶିଶୁଟି ଏବେ ଠକ୍ ଠକ୍ ହୋଇ ଚାଲିଲାଣି । )

**ଠକ୍ଠକି**—ଦେ. ବି—୧ । ବିପଦ; ଉତ୍ପାତ—
Thakṭhaki 1. Calamity; hardship.

୨ । ଝଞ୍ଜଟ; କଠିନ ବ୍ୟାପାର; ବିଷମ ସମସ୍ୟା—
2 Crisis; dilemma; difficulty.

୩ । ଠକ୍ଠକି ତନ୍ତ ( ଦେଖ )—
3. Ṭhak-ṭhaki tanta ( See ).

ବିଣ—ଯାହା ଠକ୍ ଠକ୍ ଶବ୍ଦ କରେ—
Producing a clicking or clapping sound.

**ଠକ୍ଠକିଆ**—ଦେ. ବିଣ—ଯେଉଁ ମାଟି ଶୁଖି ଯାଇଥିବାରୁ ହଳ ବୁଲାହେବା
Ṭhak-ṭhakiā ସମୟରେ ତହିଁ ମଧ୍ୟକୁ ଲଙ୍ଗଳ ଲୁହା ପ୍ରବେଶ ନ କରି ଉପରେ ଉପରେ ଡେଇଁ ଡେଇଁ ( ଠକଠକ ହୋଇ ) ଚାଲିଯାଏ; ଅତ୍ୟନ୍ତ ଶୁଷ୍କ ଓ ଟାଣୁଆ ଭୂମି—
Dry ( land ).

**ଠକ୍ଠକି ତନ୍ତ**—ଦେ. ବି— ଯେଉଁ ତନ୍ତ ଚଳାଇବା ସମୟରେ
Ṭhak-ṭhaki tanta ଠକ୍ ଠକ୍ ଶବ୍ଦ ଶୁଭେ—
ठकठकी ताँत Fly-shuttle loom.
**ठकठकि ताँत**

**ଠକ୍ଠାକ୍**—ଦେ. ଅ—୧ । ତତ୍‌କ୍ଷଣାତ୍; ହଠାତ୍—
Ṭhak-ṭhāk 1. At once; in no time.

( ଯଥା—ମୋତେ ମୋର ପ୍ରାପ୍ୟ ଦେବାର ହେଲେ ଠକ୍ଠାକ୍ ଦେଇଦିଅ । ) ୨ । ନଗଦ; ରୋକ୍ ସୋକ୍—2. In cash.

| ୧ | ଇ | ଡ଼ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇମ୍ବ | ଋ୍ୟ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଢ଼ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଢ଼ | ନ୍ |

ଠକ—ଦେ. ବିଣ (ସଂ. ସ୍ଥଗ=ଧୂର୍ତ୍ତ; ସ୍ଥଗ୍ ବା ସ୍ଥୁଗ୍ ଧାତୁ=ଗୋପନ)—
Ṭhaka ୧ । ଠଗ; ପ୍ରତାରକ; ପ୍ରବଞ୍ଚକ—
( ଠକୁଣୀ—ସ୍ତ୍ରୀ ) 1. Cheating; swindling;
ठक, ठग fraudulent; roguish;
ठग deceiving.

ଠକ ନ ବୋଲେ ମାନସେ—କବିସୂର୍ଯ୍ୟ ବଳଦେବ ରଥ୍, ଠ ଗୀତ୍।

୨ । ଛଳକାରକ; କପଟୀ—
2. Hypocritical;

୩ । ଛଳମୟ; ପ୍ରତାରଣାପୂର୍ଣ୍ଣ—
3. Full of deceit; deceitful.

୪ । ନିଷ୍ଠୁର—4. Cruel.

୫ । ଖଳ—5. Wicked.

୬ । ଚତୁର—6 Sly; clever,

ଆରେ ଠିକହାସୀ, ଠକପଣ ପୁଣି କହ ଥାଏ କିସି ।
କବିସୂର୍ଯ୍ୟ. ସଙ୍ଗୀତ ।

ବି—୧ । ପ୍ରତାରକ ବ୍ୟକ୍ତି; ଧୂର୍ତ୍ତ ବ୍ୟକ୍ତି—
1. A sharper; a rogue; swindler; cheat.

୨ । ରାଜପଥର ଦସ୍ୟୁ—
2. Highway robber; thug.

[ ଦ୍ର—ଏମାନେ ପୂର୍ବେ ଭାରତର ରାଜପଥ ମାନଙ୍କରେ ଅତିଶୟ ଅତ୍ୟାଚାର କରୁଥିଲେ; ମନୁଷ୍ୟଙ୍କୁ ଓ ବିଶେଷତଃ ବାଟୋଇମାନଙ୍କୁ ବିଷ ଦେଇ ବା ତଣ୍ଟି ଚିପି ମାରି ଧନ ଅପହରଣ କରୁଥିଲେ । ଇଂରାଜମାନେ ସେମାନଙ୍କୁ ଦମନ କଲେ । ]

୩ । ନରହନ୍ତା — 3. A cut-throat

ଠକର (ଇତ୍ୟାଦି)—ଦେ. ବି—ଠୋକର ଇତ୍ୟାଦି (ଦେଖ)
Ṭhakara (etc) Ṭhokara etc (See).

ଠକର ଖାଇବା—ଦେ. କ୍ରି—ଠୋକର ଖାଇବା (ଦେଖ)
Ṭhakara khāibā Ṭhokara khāibā (See).

ଠକର ଠକର—ଦେ (ଧ୍ୱନ୍ୟନୁକରଣ) ଅ—ଠକ୍ ଠକ୍ (ଦେଖ)
Ṭhakara ṭhakara Ṭhak ṭhak (See).

ଠକରା—ପ୍ରାଦେ ( ଗଡ଼ଜାତ ) ବି—( ଧ୍ୱନ୍ୟନୁକରଣ )—
Ṭhakarā ବଣ ନିକଟସ୍ଥ ଭୂମିରେ ଫସଲ ଜଗିବା ଲୋକଙ୍କ ଦ୍ୱାରା ବନ୍ୟ ଜନ୍ତୁଙ୍କୁ ଘଉଡ଼େଇବା ପାଇଁ ଗଛ ଉପରେ ଠକ ଠକ ବଜାଯିବା ବାଉଁଶର ଏକପ୍ରକାର ବାଦ୍ୟ ଯନ୍ତ୍ର—
A contrivance of bamboo which is sounded with 2 sticks and produces clicking sounds to scare away wild animals from the fields in the night.

[ ଦ୍ର—ଦୁଇଅଡ଼େ ଗଣ୍ଠି ଥିବା ଏକପବ ମୋଟ ବାଉଁଶରେ ଆଙ୍ଗୁଳେ ଚଉଡ଼ାରେ ଗୋଟିଏ ଲମ୍ବା ଛିଦ୍ର କରି ତାହାର ଦାଢ଼ରେ ଦୁଇଖଣ୍ଡ କାଠି ବାଡ଼େଇଲେ ଉଚ୍ଚ ଶବ୍ଦ ହୁଏ । ]

ଠକା—ଦେ. ବି. (ସଂ. ସ୍ଥଗ୍ ଧାତୁ)—ଠକେଇ; ଠକବା କର୍ମ—
Ṭhakā Cheating; deception.
ठकान ପ୍ରାଦେ. (ସମ୍ବଲପୁର) ବିଣ—୧ । ଠିକ୍—
ठगाइ 1. Correct; right.

୨ । ଅସଲ; ଖାଣ୍ଟି—2. Genuine; original.

କ୍ରି. ବିଣ—ଠିକ୍‌ରୂପେ; ଅଚ୍ଛା—Well; correctly.

(ଯଥା— ତୁ ଠକା କହିଲୁ=ତୁ ଠିକ୍ କହିଲୁ ।)

ଠକା(କେ)ଇ—ଦେ. ବି. (ସଂ. ସ୍ଥଗ୍ ଧାତୁ)—ପ୍ରବଞ୍ଚନା; ପ୍ରତାରଣା—
Ṭhakā(ke)i Deception; cheating; fraud;
ठकामि roguery.
ठगाइ

ଠକା(କେ)ଇବା—ଦେ. କ୍ରି. (ସ୍ଥଗ୍ ଧାତୁ=ଗୋପନ)—
Ṭhakā(ke)ibā ୧ । ପ୍ରତାରଣା କରିବା; ଭଣ୍ଡିବା—
ठकान 1. To cheat; to swindle; to deceive; to
ठगाना delude; to practise deception.

୨ । କୌଣସି କାର୍ଯ୍ୟକୁ ଉପରଠାଉରିଆ କରି ସମ୍ପନ୍ନ କରିବା—2. To finish a work any how.

୩ । (କୋଲପ ବା ତାଲାକୁ ) ବନ୍ଦ ନ କରି ବନ୍ଦ ହେବାଭଳି ଅଟକାଇ ରଖିଦେବା—3. To leave a padlock unlocked but in a position appearing to an onlooker as if it were locked.

୪ । (କୌଣସି ବ୍ୟକ୍ତିକୁ ) କୌଣସି ସ୍ଥାନରେ ବା ଗୃହରେ ଅସ୍ଥାୟୀଭାବରେ (ଅର୍ଥାତ୍ ଆପାତତଃ ଚଳିବାପାଇଁ) ରଖାଇବା—4. To place man temporarily in a post for the present.

ଠକାଠକ୍—ଦେ. ଅ—୧ । ଦରିଦ୍ରରେ ଅଚଳ ଅବସ୍ଥା—
Ṭhakāṭhak 1. Very poor and destitute condition.
(ଯଥା—ତା କଥା ଠକାଠକ୍ ।)

୩ । ଆସନ୍ନମୃତ୍ୟୁ ସମୟ—
3. Time of impending death.

ଠକାଠକି—ଦେ ବି—୧ । ଭଣ୍ଡାଭଣ୍ଡି; ଭଣ୍ଡାଇବା—
Ṭhakāṭhaki 1. Deception.
ठगाठगि ୨ । ପରସ୍ପର ପ୍ରତାରଣା—
ठगाठगि 2. Mutual deception or cheating.

ଠକାମି—ଦେ. ବି. (ସଂ. ସ୍ଥଗ)—ଠକାଇ (ଦେଖ)
Ṭhakāmi Ṭhakāi (See)

ଠକାରି—ଦେ. ବି—୧ । ଠାରଠୁର; ସଙ୍କେତ—
Ṭhakāra 1. Dumb significant signs; gesture.
ठार ୨ । ଠକପଣ; ଠକାମି—2. Roguery.
इशारा ଠକାରୁ ପରି ଠକାରି ପରହିତ କପାରୁ ନିର୍ବନ୍ଧେ ।
ठकामी ଉଷ. କୋଡିବ୍ରହ୍ମାଣ୍ଡସୁନ୍ଦରୀ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। 'ଅତଏବ ୧ ବା ୨'ଚିହ୍ନିତ କୌଣସି ବର୍ଣ୍ଣ ବା, ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତିର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ନୂଆଁ' ନ ପାଇଲେ 'ବନ୍ଧ' ଦେଖିବେ; ଅଣ୍ଟା ନ ପାଇଲେ 'ଅଣ୍ଟା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ठगाइ ୩ । କପଟ; ଛଳ—3. Deceit; feigning.
୪ । ଗୋପନୀୟ ପରାମର୍ଶ—4. Secret consultation.
ଦେ. ବଣ. (ସଂ. ଠ + ଆକାର)—ଠପରି ଆକାର ଯାହାର; ପୂର୍ଣ୍ଣ ଗୋଲ—Shaped like the letter ṭh; round; circular.

ଠକାର କରିବା—ଦେ. କ୍ରି—ଠାରିବା; ଅନ୍ୟ ବ୍ୟକ୍ତିର ଅଲକ୍ଷରେ ଦୁଇ ଜଣଙ୍କର ଭାବ ଆଦାନ ପ୍ରଦାନ କରିବା—
Ṭhakāra karibā
ठारा
इसारा करना
To make signs or nods.

ଠକାର କଳି—ଦେ. ବି—ଲୋକେ ଦେଖିବାକୁ ବାହାରେ କଳି କିନ୍ତୁ ଭିତରେ ସୌହାର୍ଦ୍ଦ୍ୟ—Quarrel for outward show.
Ṭhakāra kaḷi

ଶାଶୁ ବୋହୂଙ୍କର ଠକାର କଳି
ଚଲୁଛି ଗାଆନ୍ତି କବାଟ ଝଳି । ତଗ ।

ଠକିବା—ଦେ. କ୍ରି (ସଂ. ସ୍ଥଗ; ସ୍ଥଗ୍ ଧାତୁ = ଗୋପନେ)—
Ṭhakibā ୧ । ପ୍ରତାରିତ ହେବା—
ठका 1. To be deceived.
गोना ୨ । ପ୍ରତାରଣା କରିବା—2. To cheat; to deceive.
ठकान ୩ । ଭଣ୍ଡାଇବା; ଭଣ୍ଡିବା—To simulate.

ଠଣସୁନ୍ଦର ମୁଖ ଦେଖାଇ,
ଠକି ଲୁଚଗଲ କାହିଁ ପାଇଁ । ଗୋଲୋକ. ଇନ୍ଦୁରେଖା ।

୪ । ଛଳନା କ୍ରମେ କାଳକ୍ଷେପ କରିବା—
4. To put off on various excuses.

ଠକି ଯିବା—ଦେ. କ୍ରି.—ଠକିବା ୧ (ଦେଖ)
Ṭhaki jibā Ṭhakibā 1 (See)

ଠକ୍କର (ଇତ୍ୟାଦି)—ଦେ. ବି.—ଠୋକର ଇତ୍ୟାଦି (ଦେଖ)
Ṭhakkar (etc) Ṭhokara etc. (See)

ଠକ୍କୁର—ସଂ. ବି.—୧ । ଠାକୁର; ଦେବତା ପ୍ରତିମା—
Ṭhakkura 1. Image of a Deity.
୨ । ଗଣ୍ୟମାନ୍ୟ ବ୍ୟକ୍ତି—
2. A man of rank (M. W.)
୩ । ଦେବ—3. Deity. (M. W.)

ଠଗ—ଦେ. ବି. ଓ ବଣ.—ଠକ (ଦେଖ)
Ṭhaga Ṭhaka (See)

ଠଗାମି—ଦେ. ବି.—ଠକାଇ (ଦେଖ)
Ṭhagāmi Ṭhakāi (See)

ଠଗି—ଦେ. ବଣ.—୧ । ନରହନ୍ତା ଦସ୍ୟୁ ସମ୍ବନ୍ଧୀୟ ବା ଠଗ ସମ୍ବନ୍ଧୀୟ—
Ṭhagi 1. Pertaining to the 'Thugs'.
ठगी ୨ । ଠଗ ଦମନ ସମ୍ବନ୍ଧୀୟ—
ठगी 2. Pertaining to the prevention of the depredations formerly committed by the Thugs of India.

ଠଗିବା—ପ୍ରାଦେ. (ସମ୍ବଲପୁର) କ୍ରି.—(ଭୁଲ. ହି. ଠଗ୍‌ନା)—ଠକିବା; ଭଣ୍ଡିବା—To cheat; to deceive.
Ṭhagibā

ଠଙ୍—ପ୍ରାଦେ.—(ସମ୍ବଲପୁର) ବି.—ମୂଲ୍ୟ; ଦାମ—
Ṭhaṅg Price.

ଯତନଥା ମାଲର ଠଙ୍ ନାହିଁ । ତଗ ।

ଅ.—(ଧ୍ୱନ୍ୟନୁକରଣ)—ଖଣ୍ଡା ଆଦିରେ କୌଣସି ପଦାର୍ଥକୁ ଜୋରରେ ହଠାତ୍ କାଟି ଦେବା ପ୍ରକାରେ—
Swiftly or suddenly (to cut asunder the head with a sharp weapon); swiftly and with a thud.
(ଯଥା—ମୁଁଡ଼ିଟା ଠଙ୍ କରି ହାଣି ଦେଲାରେ ) ।

ଠ ଠା ଠି—ଦେ. ବି.—ଅତ୍ୟନ୍ତ ଦୀନ ବା ନିର୍ଦ୍ଧନ ଅବସ୍ଥା; ଅଭାବ; ଅର୍ଥାଭାବ—Utter want; destitution; extreme poverty.
Ṭha ṭhā ṭhi

ଠଣ୍—ଦେ. ଅ —(ଧ୍ୱନ୍ୟନୁକରଣ)—ଠଣ୍ ଠଣ୍ (ଦେଖ)
Ṭhaṇ Ṭhaṇ ṭhaṇ (See)

ଠଣ୍ ଠଣ୍—ଦେ. (ଧ୍ୱନ୍ୟନୁକରଣ) ଅ—୧ । ଧାତୁମୟ ପଦାର୍ଥର ପରସ୍ପର ଆଘାତଜନିତ ଶବ୍ଦ; ଟଙ୍କା ଗଣିବାର ଶବ୍ଦ; ଘଣ୍ଟି ଶବ୍ଦ—
Ṭhaṇ ṭhaṇ
ठन्‌टन् 1. Clanging sound; ding; clang.
ठनाक्, ठन्ठन् ୨ । ଫୋପା ପାତ୍ରର ଶବ୍ଦ—
2. Sound of a hollow vessel; hollow sound.
ବଣ—୧ । ଅପର୍ଯ୍ୟାପ୍ତ; ଗଳ୍‌ଗଳ (ଧନ)—
1. Plentiful ( cash ).
( ଯଥା—ତା ପାଖରେ ଟଙ୍କା ଠଣ୍‌ଠଣ୍ ହଉଛି । )
୨ । ଅତି ଅଭାବଗ୍ରସ୍ତ ବା ନିର୍ଦ୍ଧନ (ବ୍ୟକ୍ତି)—
2. Very needy; indigent ( person ).
( ଯଥା—ମୁଁ ଏବେ ଠଣ୍‌ଠଣ୍ ମଦନ ଗୋପାଳ । )
ଦେ. କ୍ରି. ବଣ—ନଗଦ—In cash.
( ଯଥା—ସେ ଟ ୩୦୦୦ ୮ ଠଣ୍‌ଠଣ୍ କରି ଗଣି ଦେଲା । )

ଠଣ୍‌ଠଣ୍ ମଦନଗୋପାଳ—ଦେ. ବି—କପର୍ଦ୍ଦକ ଶୂନ୍ୟ ବ୍ୟକ୍ତି—
Ṭhaṇ-ṭhaṇ madanagopāḷa A penniless person.

ଠଣ—ଦେ. ବି. ( ସ୍ଥା ଧାତୁ )—୧ । ଅଙ୍ଗର ଶୋଭା—
Ṭhaṇa 1. Symmetry; bodily grace.
डौल
ढोंक

ଠଣ ସୁନ୍ଦର ଶିରୋମଣି, ଠିକେ କମଳା ଯାର ଧଣୀ ।
କମଳଲୋଚନ. ଚଉତିଶା ।

୨ । ଠାଣ—2. Pose of the body.
୩ । ସୌନ୍ଦର୍ଯ୍ୟ—3. Grace; beauty,
୪ । ଅଙ୍ଗର ଗଠନ—4. Cut of the body.

କୋଇଲି । ଠଣ ସେ ସୁନ୍ଦର ବେନି ପୋଏ । ବଳରାମ ଦାସ. କୋଇଲି ।

ବଣ—ସୁନ୍ଦର—Graceful.

ଠଣ ଚନ୍ଦ୍ରମୁହଁଲେ, ଠଣିବ କେତୁରେ ।
ବଡ଼ସୂର୍ଯ୍ୟ. ରତ୍ନାକରଚଉ, ଠ ଗୀତ ।

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଅ | ଉଅ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଳୁ | ପ୍ରୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଷ୍ଟ | କ୍ଷ |

**ଠଣରଣ**—ଦେ. ଅ. ( ଧ୍ୱନ୍ୟନୁକରଣ )—
Ṭhaṇaraṇa  କଙ୍କଣି, ଘଣ୍ଟି ଆଦି ବାଜିବାର ଶବ୍ଦ—
Tinkling sound.
କନ୍ତ କଙ୍କିଣୀ, ଘଣ୍ଟି ଠଣରଣ କଙ୍କଣ ଝଙ୍କ ବାଜେ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ଠଣା**—ଦେ. ବି. ( ସଂ. ସ୍ଥାନ; ତୁଳ. ପ୍ରା. ଠାଣ )—
Ṭhaṇā  ୧ । କାନ୍ଥକୁଣ୍ଡ—1. Niche.
କୁଲୁଙ୍ଗୀ  ଠଣାରେ ମୂର୍ତ୍ତି ରଖି ଦେଇଥିଲେ ।
ताका  ଫକୀରମୋହନ. ଛମାଣ ଆଠଗୁଣ୍ଠ ।
୨ । ନିର୍ଦ୍ଦିଷ୍ଟ ସ୍ଥାନ—
2. Seat; appropriate place.
ঠোনা  ୩ । ବଙ୍କାଙ୍ଗୁଳିର ଗଣ୍ଠି ଦ୍ୱାରା ମସ୍ତକର ଖପୁରିରେ ଆଘାତ-
ठोंग, टुगा  3. A blow on the skull with the knuckles.
ଠଣା ଠୁଙ୍କି ଚାପଚାପ, ମୁଣ୍ଡେ ମନମଥ ପାଶ
ବନ୍ଧନ କର ତୁ ମୋତେ ମୋ ଚଉରେ । କବିସୂର୍ଯ୍ୟ. କଳୋଗଚମ୍ପୂ. ଠ ଗୀତ ।
ঠাঁ  ୪ । ଠାବ; ସ୍ଥାନ; ଅବସ୍ଥିତି; ବାସସ୍ଥଳ—
ठहर  3. Residence; habitat.
୬ । ଶିବିର; ଛାଉଣି—6. Encampment ( Beams ).
୭ । ପହରା; ଜଗିବା—7. Watching; guarding.
ଗମ ଅଙ୍କା ପାଇଣ କପି ଗଜନ, କପି ସେନି ଠାବେ ଠାବେ ଠଣା ଦେଲେ ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଠଣା ଠୁଙ୍କିବା**—ଦେ. କ୍ରି—୧ । ଅଙ୍ଗୁଠିର ଗଣ୍ଠି ଦ୍ୱାରା ଅନ୍ୟର ମୁଣ୍ଡର
Ṭhaṇā ṭhuṅkibā  ଖପୁରିରେ ଆଘାତ କରିବା—
ঠোনামারা  1. To strike on the skull with
घौलमारना  the kunckles.
ଠଣାଦେବା } ଅନ୍ୟରୂପ  ଠଣା ଠୁଙ୍କି ଚାପ ଚାପ ମୁଣ୍ଡେ ମନମଥ ପାଶ
ଠଣାମାରିବା }  ବନ୍ଧନ କର ତୁ ମୋତେ ମୋ ଚଉରେ ।
କବିସୂର୍ଯ୍ୟ. କଳୋଗଚମ୍ପୂ. ଠ ଗୀତ ।
୨ । ( ଲକ୍ଷଣାର୍ଥ ) ଆଘାତ କରିବା—
2. ( figurative ) To strike.
୩ । ( ଲକ୍ଷଣାର୍ଥ ) ବଳପୂର୍ବକ ଦୂର କରିବା—
3. ( figurative ) To remove with force.

**ଠଣ୍ଠଣ**—ଦେ. ( ଧ୍ୱନ୍ୟନୁକରଣ ) ଅ—
Ṭhanṭhaṇa  ୧ । ଖାଲି କାଂସ୍ୟ ପାତ୍ରାଦିରେ ଆଘାତଜନିତ ଶବ୍ଦ—
ঠন্‌ঠন  1. Clanging or ringing sound produced
ठनठन  by striking an empty metal vessel.
(ଠଣ୍ଠନ—ଅନ୍ୟରୂପ)  ୨ । ଠଣଠଣ (ଦେଖ)
2. Ṭhaṇaṭhaṇa (See)

**ଠନ୍‌କି**—ପ୍ରାଦେ (ସମ୍ବଲପୁର) ବି—ପ୍ରସ୍ରାବପୋଡ଼ା ରୋଗ—
Ṭhan-ki  Painful urination.

**ଠନୁ**—ପ୍ରାଦେ (ସମ୍ବଲପୁର) ଅ—୧ । (ଅମୁକ) ସ୍ଥାନରୁ—
Ṭhanu  1. From a place.
୨ । ଠାରୁ—2. From.
( ଯଥା—ଅଳଠନୁ—ଅଳଠାରୁ । )

**ଠବର୍ତ୍ତୁଳ**—ଦେ. ବିଣ—ଠ ପରି ଗୋଲାକାର; ସମ୍ପୂର୍ଣ୍ଣ ଗୋଲ—
Ṭhabarttuḻa  Completely circular; all round.
ଠିକ ଠବର୍ତ୍ତୁଳ ଚନ୍ଦ୍ରାନନା ତୋ ଚଉରେ ।
କବିସୂର୍ଯ୍ୟ. କଳୋଗଚମ୍ପୂ. ଠ ଗୀତ ।

**ଠମକ**—ଦେ. ବି ( ସ୍ତନଭ୍ ଧାତୁ; ସଂ. ଧାମ )—
Ṭhamaka  ୧ । ହାବଭାବ ସହିତ ଗଲାଭଙ୍ଗି; ଛଇ—
ঠমক  1. Coquetry.
ठमक  ୨ । ନୃତ୍ୟଭଙ୍ଗିରେ ଚାଲିବା—
2. Affected gait.
୩ । ଆଡ଼ମ୍ବର—3. Parade; pomp; show.

**ଠରକା(କେ)ଇବା**—ଦେ. କି—ଟରକାଇବା (ଦେଖ)
Ṭhar-kā(ke)ibā  Ṭarakāibā (See).

**ଠରକିବା**—ଦେ. କ୍ରି—ଠିରିକିଯିବା (ଦେଖ)
Ṭharakibā  Ṭhirikijibā (See).
( ଠରକ ଯିବା—ଅନ୍ୟରୂପ)

**ଠରା**—ଦେ. ବି ( ସ୍ତୁ, ସ୍ତୃ ଧାତୁ=ଆଚ୍ଛାଦନେ )—
Ṭharā  ନେତ୍ରକରାଦିଦ୍ୱାରା ସଙ୍କେତ ଦ୍ୱାରା ମନୋଭାବର
ঠারা  ଅଭିବ୍ୟକ୍ତି; ଇଙ୍ଗିତ; ଇସାରା—
सैन  Ogling; making signals with the eyes, head and hands.

**ଠରାଠରି**—ଦେ. ବି—ପରସ୍ପର ସଙ୍କେତ ଦ୍ୱାରା ମନୋଗତ ଭାବର
Ṭharāṭhari  ଆଦାନପ୍ରଦାନ; ଠାରଠୁରି—
ঠারঠোর  Mutual exchange of significant glances and signs; reciprocal nodding and gestures.
ଆମ୍ଭକୁ ନ କହୁଣ ଠରାଠରି ହୋଇଣ ଅଗମ୍ୟ ବନରେ ପଶିଲେ ଗୋ ।
ବିଶ୍ୱନାଥ. ବିଚିତ୍ରରାମାୟଣ ।
( ଠରାଠୁରି—ଅନ୍ୟରୂପ )  ବିଣ—ପରସ୍ପର ମଧ୍ୟରେ ଠାର ଦ୍ୱାରା ମନୋଗତଭାବ ପ୍ରକାଶ କରୁଥିବା (ବ୍ୟକ୍ତିଗଣ)—
Exchanging thoughts with each other by glances and signs.

**ଠସ**—ଦେ. ବି ( ସଂ. ସ୍ଥାସକ=ଜଳବୁଦ୍‌ବୁଦ )—
Ṭhasa  ୧ । (ବଣିଆ ଶବ୍ଦ) ଲୁହା ବା ପିତ୍ତଳ କଂସାର ଏକପ୍ରକାର ଛାଞ୍ଚ—
ঠাসা  1. A die; a mould.
ठसा  [ଦ୍ର—ଏହା ଉପରେ ସୁନା ବା ରୁପାର ପାତିଆ ରଖି ପିଟିଲେ ଛାଞ୍ଚର ଆକାର ଅନୁରୂପ ପାତିଆର ଆକାର ହୋଇଯାଏ । ]
୨ । ଠସକ (ଦେଖ)—2. Ṭhasaka (See).

**ଠସକ**—ଦେ. ବି (ସଂ. ସ୍ତୈ ଧାତୁ=ଶବ୍ଦ)—୧ । ଥଟ୍ଟା; ଠାପରା—
Ṭhasaka  1. Jesting; joke.
ঠাট্টা  ୨ । ପରିହାସ—2. Fun; sport;
ठसक  ୩ । ଉପହାସ—Taunting; gibe.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଂଶୋ' ନ ପାଇଲେ 'ଅଂଶୁ' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

ବିଣ—୧ । ପରିହାସଯୁକ୍ତ (କଥା)—
1. Uttered in jest; jocular.
୨ । ମିଥ୍ୟା—2. False,

ଠସକା—ଦେ. ବିଣ—୧ । ମସକା; ଭଙ୍ଗୁର—
Ṭhasakā 1. Brittle; fragile; frangible.
ठेनको ୨ । ଫୁଲୁକା ଏବଂ ମସକା—
खसता 2. Swollen and fragile.

ଠସକାଇ—ଦେ. ବି—ଅଶକ୍ତତା; ଅସମର୍ଥତା—
Ṭhasakāi Inability; unfitness.

ଠସଲି—ଦେ. ବି ଓ ବିଣ—ଠସକ (ଦେଖ)
Ṭhasali Ṭhasaka (See).

ଠସା—ଦେ. ବି—ଠସ (ଦେଖ)
Ṭhasā Ṭhasa (See).
ବି. ଓ ବିଣ—ଠସକ ( ଦେଖ )
Ṭhasaka ( See )

ଠହର—ପ୍ରାଦେ ( ସମ୍ବଲପୁର ) ବିଣ ( ସଂ. ସ୍ଥିର; ଭୁଲ. ଏହି
Ṭhahara ଅର୍ଥରେ ହି. ଏହି ଶବ୍ଦ )—ସ୍ଥିର—
Settled.

ଠହରାଏବା—ପ୍ରାଦେ ( ସମ୍ବଲପୁର ) କ୍ରି—
Ṭhaharāebā ଠଉରାଇବା ( ଦେଖ )
Ṭhaurāibā ( See )

ଠହରିବା—ପ୍ରାଦେ (ସମ୍ବଲପୁର) କ୍ରି (ହିନ୍ଦି ଠହର୍‌ନା )—
Ṭhaharibā ଅପେକ୍ଷା କରିବା; ସମ୍ଭାଳିବା—
1. To wait.
୨ । ଠଉରିବା (ଦେଖ)—2. Ṭhauribā (See).

ଠା (ଇତ୍ୟାଦି)—ଦେ. ବି ଓ ଅ—ଠାଆ ଇତ୍ୟାଦି (ଦେଖ)
Ṭhā (etc) Ṭhā-ā etc (See).
ଅଠଠା ବନ୍ଧ ହୋଇ କନ୍ଧ ଭୁ ବୋଇଲେ ।
କୃଷ୍ଣସିଂହ ମହାଭାରତ ବନ।

ଠାଆ—ଦେ. ବି (ସଂ. ସ୍ଥାନ ପ୍ରା. ଠା, ଠାଆଁ, ଠାଣ)—୧ । ସ୍ଥାନ—
Ṭhā-ā 1. Place; locality.
ठाँ, ठाईं ୨ । ଜାଗା; ବ୍ୟବଧାନ—2. Space.
ठां, ठाँव ୩ । ଭୋଜନସ୍ଥଳ—
3. The place prepared for taking meals on it.
୪ । ( ରାଜା ଆଦିଙ୍କ ) ଭୋଜନ—
4. Meals; taking food (of Rājās).
୫ । ଭୋଜନ ସ୍ଥାନରେ ଭୋଜନ ପାତ୍ର ରଖାଯିବା ପୂର୍ବରୁ ଭୂମିରେ ମୁରୁଜ ଦ୍ୱାରା ଲେଖାଯିବା ଚିତ୍ର—
5. Figures drawn over the place where plates for a meal are kept.
୬ । ଭୋଜନ ନିମନ୍ତେ ସ୍ଥାନ ଓ ଆସନ ଆଦି ପ୍ରସ୍ତୁତ କରିବା—
6. Preparation for taking meal.

[ ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ସଙ୍ଗରେ ( ଯଥା—ଏ, ଏହି, ସେ, ସେହି, ତା, ତାହା, ମୋ, ତୁମ୍ଭ) ବ୍ୟବହୃତ ହେଲେ ୧—ସ୍ଥାନ, ୨—ପାଖ, ୩—ସମ୍ପର୍କ ଅର୍ଥ ବୁଝାଏ । ]
ଦେ. ଅ—(ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ)—(ଅମୁକ) ସ୍ଥାନର—
Of such or such place.

ଠାଆଁ (ଇତ୍ୟାଦି)— ଦେ. ବି— ଠାଆ (ଇତ୍ୟାଦି) (ଦେଖ)
Ṭhā-āṅ (etc) Ṭhā-ā etc. (See)

ଠାଆ କରିବା—ଦେ. କ୍ରି—( ସଂ. ସ୍ଥାନ, ପ୍ରା. ଠାଣ )—୧ । ଭୋଜନ
Ṭhāā-kariba ପାଇଁ ସ୍ଥାନ ପ୍ରସ୍ତୁତ କରିବା—1. To make
ठाईं करा a place ready for dining.
[ଦ୍ର—ଭୋଜନ ସ୍ଥାନକୁ ଓଳାଇ, ପାଣି ଛିଞ୍ଚି, ପୀଢ଼ା ବା ଆସନ ପକାଇ, ଭୋଜନ ପତ୍ର ବା ପାତ୍ର ପଡ଼ିବା ସ୍ଥାନରେ ମୁରୁଜ ଦ୍ୱାରା ଚିତ୍ର କାଟିବାକୁ ବୁଝାଏ; ପୀଢ଼ାଉପରେ ଭୋଜନ କରିବା ବ୍ୟକ୍ତି ବସନ୍ତି ଓ ମୁରୁଜ ଦିଆଯାଇ ଥିବା ସ୍ଥାନରେ ପାତ୍ର ବା ପତ୍ର ରଖାଯାଇ ତହିଁରେ ଖାଦ୍ୟାଦି ବଢ଼ାଯାଇ ଖିଆଯାଏ । ]
୨ । (ରାଜା ଆଦି) ଭୋଜନରେ ବସିବା—
2. To dine; to take one's meal.

ଠାଆକୁ ଠାଆ—ଦେ. ଅ.— ସ୍ଥାନକୁ ସ୍ଥାନ; ଏକ ସ୍ଥାନ ପରେ ଅନ୍ୟ
Ṭhā-āku ṭhā-ā ସ୍ଥାନରେ; ବହୁ ସ୍ଥାନରେ—In places;
ठाँय ठाँय place after place; in many
जगह जगह places.
(ଠାଆକୁ ଠା—ଅନ୍ୟରୂପ)

ଠାଆ ଠାଆ—ଦେ. ଅ.—୧ । ଭିନ୍ନ ଭିନ୍ନ ସ୍ଥାନରେ—
Ṭhā-ā ṭhā-ā 1. Separately.
ठाईं ठाईं ୨ । ଅନେକ ସ୍ଥାନରେ—
जगह जगह 2. At many places.

ଠାଆ ଠାଆକେ—ଦେ. ଅ.—ଠାଆକୁ ଠାଆ ( ଦେଖ )
Ṭhā-ā ṭhā-āke Ṭhā-āku ṭhā-ā (See)

ଠାଆ ଠିକଣା—ଦେ. ବି—୧ । ସୁବ୍ୟବସ୍ଥା—
Ṭhā-ā ṭhikaṇā 1. Good arrangement.
ठिकठिकाना ୨ । ସ୍ଥିରତା—2. Certainty
ठिकाना

ଠାଆ ପୀଢ଼ା—ଦେ. ବି ( ସଂ. ସ୍ଥାନ ଓ ପୀଠ )—୧ । ଭୋଜନ ସ୍ଥାନରେ
Ṭhā-ā pirḍhā ମୁରୁଜ ଦେଇ ଓ ପୀଢ଼ା ପକାଇ ଭୋଜନସ୍ଥାନ ପ୍ରସ୍ତୁତ କରିବା—1. Setting the place for meal in order; making a place ready for occupation of the diner.
ଠାଆ ପୀଢ଼ା କରି କୃଷ୍ଣଙ୍କୁ ସେନ ଗଲେ,
ଛତିଶକୁଳରେ ସବୁ ବଢ଼ାବଢ଼ି କଲେ ।
କୃଷ୍ଣସିଂହ ମହାଭାରତ. ଉଦ୍ୟୋଗ ।
୨ । ଭୋଜନକ୍ରିୟା—2. The act of eating.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍, ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ, ଷ | କ୍ଷ | ଇଯ୍ | ଉଅ | ଘ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଞ | ନ୍ |

ଠାଅବଢ଼ା—ଦେ. ବି ( ସହରର ଶବ୍ଦ )—ଭୋଜନ ସ୍ଥାନରେ ଜଣକପାଇଁ
Ṭhā-ā-barḍhā ସଜ୍ଜିତ ଭୋଜନ ଦ୍ରବ୍ୟ—Meal set for one person.

ଏ ଗୃହେ ଠାଅବଢା ହୋଇଛି ପାଣେ ଛ—କୃଷ୍ଣସିଂହ, ମହାଭାରତ, ଆଦି ।

ଠାଅ ବଢ଼ା(ଢ଼େ)ଇବା—ଦେ. କ୍ରି ( ରାଜାମାନଙ୍କ ପ୍ରତି ପ୍ରଯୁଜ୍ୟ )—
Ṭhā-ā barḍhā(rḍhe)ibā ଭୋଜନ କ୍ରିୟା ପରିସମାପ୍ତ କରିବା—To finish meal.

ଠାଅ ବଢ଼ିବା—ଦେ. ବି ( ରାଜାମାନଙ୍କ ପ୍ରତି ପ୍ରଯୁଜ୍ୟ )—ଭୋଜନର
Ṭhā-ā barḍhibā ସମାପ୍ତି—Finish of one's meal.
(ଯଥା—ରାତି ୧୧ଟା ବେଳେ ଶ୍ରୀମୁଖଙ୍କର ଠାଅ ବଢ଼େ ।)

ଠାଅ ସଜ—ଦେ. ବି—ଭୋଜନ ପାତ୍ରାଦି; ଏକ ସାଜ ଭୋଜନ ପାତ୍ର—
Ṭhā-ā saja Dinner-set; a full set of plates and cups etc. for dinner.

ଠାଇଁ—ଦେ. ବି (ସଂ. ସ୍ଥାନ)—୧ । ସ୍ଥାନ—1. Place.
Ṭhāin ୨ । ଦିଗ—2. Direction.
ठाई एବେ ଧାଇଁଅଛନ୍ତି କୋଥରେ ମୋ ଠାଇଁ କି—
ठाँयँ କୃଷ୍ଣସିଂହ, ମହାଭାରତ, ବନ ।
୩ । ଶୂଦ୍ର ସମାଜରେ ବିଧବାର ଦ୍ୱିତୀୟ ବିବାହ; ଅଥଥୋଇ;
साङ्गा ଚୁଡ଼ିଅ ଦେବା ପ୍ରଥା—3. The custom of
सगाई widow-marriage among the Śūdras.
୪ । ଆଶ୍ରୟ—4. Shelter.
ठाई ପାଇ ଅଛିଗଲି ଠାଇଁ ତୋ ବକ୍ଷେ—
ठायँ ନନ୍ଦକିଶୋର, କୃଷ୍ଣକୁମାରୀ ।
ठाँइ ଅ (ସଂ. ସ୍ଥାନେ) ଠାରେ—In, at.
से ବ୍ରହ୍ମା କହିଲେ ସେ କୃଷ୍ଣଙ୍କ ଠାଇଁ—ପ୍ରାଚୀ, ପରବେଶୀଗୀତା ।

ଠାଇଁଆଁ ( ଇତ୍ୟାଦି )—ଦେ. ବି. ପୁଂ—ଠାୟାଁ ଇତ୍ୟାଦି ( ଦେଖ )
Ṭhāinān ( etc ) Ṭhāyān etc ( See )
( ଠାଇଁଆଣୀ—ସ୍ତ୍ରୀ )

ଠାଇ କରି—ଦେ. କ୍ରି. ବିଣ—ଠୋ କରି; ସଶବ୍ଦ ଓ ଜୋର୍ କରି
Ṭhāi kari ( ଚଟକଣା ମାରିବା ବା ଆଘାତ କରିବା )—
ठाईकरे Producing a clapping sound.
ठाँयँकर ( ଯଥା—ସେ ମୋତେ ଠାଇ କରି ଗୋଟାଏ ଚଟକଣା ମାଇଲା । )
( ଠାଇକିନା, ଠାଇକିନି, ଠାଇଦେଇ—ଅନ୍ୟରୂପ )

ଠାଇଠାଇ—ଦେ. କ୍ରି. ବିଣ (ବହୁବାର)—୧ । ଗାଲରେ ଜୋରରେ
Ṭhāi-ṭhāi ଉପର୍ଯ୍ୟୁପରି ଚୁପୁଡ଼ା ମାରିବା ପ୍ରକାରେ—
ठाईठाई 1. (to deal slaps) With repeatated
ठाँयँठाँयँ clapping sounds.
( ଯଥା—ସେ ମତେ ଠାଇଠାଇ ଦୁଇଟାଏ ଚୁପୁଡ଼ା ମାଇଲା । )
୨ । ଶୀତରେ ଦେହ ବିଶେଷ କମ୍ପିବା ପ୍ରକାରେ—
2. With a shiver ( through cold ).

ଠାଉଆ—ଦେ. ବି—ଯେଉଁ ଚୋର ପୂର୍ବରୁ କୌଣସି ବସ୍ତୁ ଠାବ କରି
Ṭhāuā ବା ଲକ୍ଷ୍ୟ କରି ପରେ ଚୋରି କରେ—A thief who
(ଠାଉଆ ଚୋର—ଅନ୍ୟରୂପ) steals after reconnoitre or preliminary survey.

ଠାଉକା—ଦେ. ବି—୧ । ଗୁଣ୍ଡି; ଯେଉଁ ଚୋର ଘର ଘରୁ ଛୋଟ ଛୋଟ
Ṭhāukā ବା ଅଳ୍ପ ମୂଲ୍ୟର ଜିନିଷ ଗୃହସ୍ୱାମୀର ଅସାବଧାନତା
(ଠାଉକିଆ—ଅନ୍ୟରୂପ ) ସମୟରେ ଚୋରି କରି ନିଏ—
चाई 1. Petty thief; pilferer.
୨ । ଠାଉଆ ( ଦେଖ )—Ṭhāuā ( See )

ଠାଉରିଆ—ଦେ. ବି—ଠାଉଆ ( ଦେଖ )
Ṭhāuriā Ṭhāuā ( See )

ଠାଏ—ଦେ. ଅ—୧ । (ଅମୁକ) ସ୍ଥାନରେ—
Ṭhāe 1. At (a place); in.
ठाँये ଏଣୁ ପରମ ଅଣ୍ଡା ଠାଏଁ, ଲୁହାସୀ ମନେ ସନ୍ଦେଠାଏ—
में ଜଗନ୍ନାଥ, ଭାଗବତ ।
୨ । ଏକ ସ୍ଥାନରେ—
2. At one place, at a certain place.
ଏକଠା ହୋଇଣ ବସିଲେ ଠାଏ ଆସି—କୃଷ୍ଣସିଂହ, ମହାଭାରତ, ବନ ।
୩ । (ଅମୁକ) ସ୍ଥାନକୁ—3. To (a place).
କେଶିଦୈତ୍ୟକରଠାରୁ ଭୟେ, ପଳାଇ ଗଲେ ଅନ ଠାଏ—
ଜଗନ୍ନାଥ, ଭାଗବତ ।
୪ । ( ୭ମୀ ବିଭକ୍ତି ପ୍ରତ୍ୟୟ ) ଠାରେ—
4. (a suffix donoting) In; at.

ଠାଏଁ—ଦେ. ଅ—ଠାଏ ( ଦେଖ )
Ṭhāen Ṭhāe ( See )

ଠାଏଁ ଠାଏଁ—ଦେ. କ୍ରି. ବିଣ—୧ । ସ୍ଥାନେ ସ୍ଥାନେ; ଭିନ୍ନ ଭିନ୍ନ
Ṭhāen ṭhāen ସ୍ଥାନରେ—At different places.
ଗୁହାରି ଶୁଣନ୍ତି ସେ ଠାଏଁ, ପଡ଼ି ଚରଣ ଅଗ ଜୋଡ଼େ—
ଭୂପତି, ପ୍ରେମପଞ୍ଚାମୃତ ।
୨ । କେତେକ ସ୍ଥାନରେ—2. At some places.
( ଠାଏଁ ଠାଏଁକେ—ଅନ୍ୟରୂପ ) ୩ । ଅନେକ ସ୍ଥାନରେ—
3. At many places.

ଠାଏ ଠାଏ—ଦେ. କ୍ରି. ବିଣ—ଠାଏଁ ଠାଏଁ ( ଦେଖ )
Ṭhāe ṭhāe Ṭhāen ṭhāen (See)

ଠାଁ—ପ୍ରାଦେ. ( ଗଡ଼ଜାତ ) ବି ( ସଂ. ସ୍ଥାନ )—ରାଜାଙ୍କ ଭୋଜନ ପାଇଁ
Ṭhān ସଜ୍ଜିତ ସାମଗ୍ରୀସମୂହ—
Articles of food set for a Rājā.

ଠାଁ ଜ(ଜା)ଗା—ଦେ. ବି—ଖାଇବାର ସ୍ଥାନ—
Ṭhān ja(jā)gā The place where one takes his meal.
ଘମଣ୍ଡର ନାହିଁ ଖବର ପାଇ ଠାଁଜାଗାରୁ ଉଠି ଲଣ୍ଡଭଣ୍ଡ ହୋଇ
ଧାଇଁଛନ୍ତି—ଫକୀରମୋହନ, ଗଳ୍ପସ୍ୱଳ୍ପ ।

ସାଧାରଣ ଲୋକେ ଅନ୍ତର ପୃଷ୍ଠାରେ ଦ୍ୱିତୀୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଉ' ନ ମିଳିଲେ 'ଗାଈ' ଖୋଜିବେ, 'ନ୍ତଥ' ନ ମିଳିଲେ 'କ୍ତଥ' ଦେଖିବେ; 'ବନ୍ଧୁ'କି ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧା' ନ ପାଇଲେ 'ଅର୍ଦ୍ଧା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

**ଠାଁସିବା**—ଦେ. କ୍ରି—ଠାସିବା ( ଦେଖ )
Thāñsibā — Thāsibā ( See )

**ଠାକର**—ଦେ. ବି—୧ । ବାଣବିଶେଷ; ଭୂମି ବାଣ (କାଠଗଣ୍ଡିରେ ଗଭୀର ଛିଦ୍ର କରି ତହିଁରେ ବାରୁଦ ଗୁଳ ଖୁନ୍ଦା ହେବା ବାଣ)—
Thākarā
ठिकरा
ठिकरा
1. A kind of fire-work made by ramming powder into a hole made in a trunk or log of wood.

୨ । ଦେଉଳ ବା କୋଠାର ଛାତ ଉପରେ ସର୍ବ ଶେଷରେ ଯେଉଁ ପଥର ବା ଟାଇଲ୍‌ଖଣ୍ଡ ପକାଇ ଛାତ ମୁଦା ଯାଏ—
2. The last stone or tile set at the apex of a spire, temple, dome or building.

୩ । ଢେଳୁଆ; ଢିମା; ଢେଲା—
3. Big clod of earth; shard.

୪ । ଠାକର; ଠଣା; ଅଙ୍ଗୁଠିର ଗଣ୍ଠି ଦ୍ୱାରା ମୁଣ୍ଡରେ ଆଘାତ—
4. A rap on the head with the knuckle.

୫ । ଖପର—5. Potsherd.

ଦେ ବିଣ—୧ । ( ସ. ଶୁଷ୍କ ) ଶୁଷ୍କ—
1. Dried up; having no moisture.

ठिकरा ୨ । ନିର୍ଜଳ—2. Waterless.

ठोठरा, ठाँठ ୩ । ନୀରସ; ରସଶୂନ୍ୟ—2. Sapless; juiceless.

ଓଳଅ ଗଲେଣି ବମା ଖାଇ
ଚଲୁଛ ପଉଛ ଠାକର ହୋଇ—ଚଗ ।

୪ । ଫୋଲା; ଶୂନ୍ୟଗର୍ଭ—4. Empty,

**ଠାକର ବସା(ସେ)ଇବା**—ଦେ. କ୍ରି—୧ । ଯେଉଁଠାରେ ଚୁଲି ନ ଥାଏ ସେହିଠାରେ ହାଣ୍ଡି ବସିବା ନିମନ୍ତେ ତିନିଖଣ୍ଡ ଢେଲା ରଖି ଦେଇ ତା ଉପରେ ହାଣ୍ଡି ବସାଇ ରୋଷେଇ କରିବା—1. To cook by provisionally setting up an oven on three clods of earth or stone.
Thākarā basā(se)ibā

୨ । ଖାଦ୍ୟାଦି ରାନ୍ଧିବା—2. To cook one's food.

(ଠାକର ବସିବା—ବ)

**ଠାକିବା**—ଦେ. କ୍ରି. ( ସ୍ଥା ଧାତୁ; ତୁଳ. ଇଂ. ସ୍ଟିକ୍, ସ୍ଟେ )—
Thākibā
टिका; तिष्ठा
टिकना
୧ । ସ୍ଥିର ହେବା—1. To be satationary; to have a firm footing.
(ଯଥା—ପିଚ୍ଛିଳରେ ମୋ ଗୋଡ଼ ଠାକୁ ନାହିଁ ।)

୨ । ବଞ୍ଚିବା; ଜୀବନରେ ରହିବା—
2. To live; to be alive,
(ଯଥା—ଏ ବର୍ଷ ଏପରି ଶୀତ ହେଲେ ବୁଢ଼ାର ଠାକିବା କଷ୍ଟ)

୩ । ଥାକିବା; ଅବସ୍ଥାନ କରିବା—3. To stay.

୪ । କୌଣସି ସ୍ଥାନରେ ସ୍ଥିରଭାବରେ କିଛିଦିନ ରହିବା—
4. To stick to a place.

**ଠାକୁ**—ଦେ. ଅ. ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ )—
Thāku
ठाँइए, थाय
को
୧ । (ଅମୁକ ବ୍ୟକ୍ତି ବା ସ୍ଥାନର) ନିକଟକୁ—
1. Near; to (such a person or place).

ଯାଅ ହେ ଏବେ ତୁମ୍ଭେ ବନମାଳୀ ଠାକୁ ।
କୃଷ୍ଣସିଂହ. ମହାଭାରତ. ବନ ।

୨ । (ଅମୁକ) ସ୍ଥାନକୁ—2. To (such a place).

ଦେଇଁ ଠାକୁ ଗଲେ ସେ କଣ୍ୱ ମହାଋଷି । କୃଷ୍ଣସିଂହ, ମହାଭାରତ, ଅଦ ।

**ଠାକୁଠା**—ଦେ. କି. ଚଣ—ଠାଆକୁ ଠାଆ ( ଦେଖ )
Thāku-thā — Thā-āku thā-ā ( See )

**ଠାକୁ ଠାକୁ ହେବା**—ଦେ. କ୍ରି—ଭୋକରେ ବା ମୁମୂର୍ଷୁ ଅବସ୍ଥାରେ ପାଟିକୁ ଠାକୁ ଠାକୁ କରିବା, ପାକୁପାକୁ ହେବା—To repeatedly open and shut the mouth in the throes of hunger or death.
Thāku thāku hebā

**ଠାକୁ ଯିବା**—ଦେ. କ୍ରି—ଭୋଜନ କରିବାକୁ ଯିବା—
Thāku jibā — To go to take one's meal.
(ଠାଆକୁ ଯିବା—ଅନ୍ୟରୂପ)

ସପ୍ତମୀ ଦିନ ଏକବାର ଗଛ ତେଳକୁ ଠାକୁ ଯାଉଥିଲେ ।
ଫକୀରମୋହନ ଛମାଣ ଅଠଗୁଣ୍ଠ ।

**ଠାକୁର**—ଦେ. ବି. ( ସ. ଠକ୍କୁର )—
Thākura
ठाकुर
ठाकुर
(ଠାକୁରାଣୀ—ସ୍ତ୍ରୀ)
୧ । ଦେବ; ମହାପ୍ରଭୁ—
1. Deity; God; the Lord.

ଠାକୁର ଠାକୁରାଣୀଙ୍କ ପଦାମ୍ବୁଜ ଧ୍ୟାନରଙ୍କ ।
କବିସୂର୍ଯ୍ୟ, କଳୋଖଚମ୍ପୁ, ଠ ଗୀତ ।

୨ । ଦେବ ପ୍ରତିମା—2. Idol; image of a Deity.

୩ । ପ୍ରଭୁ; ଖାମିନ୍ଦ—3. Lord; master,

୪ । ଶ୍ରେଷ୍ଠ ବା ମାନନୀୟ ବ୍ୟକ୍ତି—
4. Respected person; His Holiness.
( ଯଥା—ଠାକୁର ଆଜ୍ଞା । )

୫ । ଗୁରୁ ବ୍ୟକ୍ତି—5. One's elder.

ସ୍ୱାମସେନ ଠାକୁରଙ୍କ ଅଟେ ଏ ଆଦେଶ । ରାଧାନାଥ. ବେଣୀସଂହାର ।

୬ । ବ୍ରାହ୍ମଣଙ୍କୁ ସମ୍ବୋଧନ—
6. An address used to Brāhmaṇas.

୭ । ବଙ୍ଗୀୟ ବ୍ରାହ୍ମଣମାନଙ୍କ ବଂଶୋପାଧିବିଶେଷ—
7 A family-title of Brāhmaṇas in Bengal.

୮ । କ୍ଷତ୍ରିୟମାନଙ୍କ ବଂଶୋପାଧିବିଶେଷ—
8. A family-title amongst Kshatriyas.

୯ । ଭାରତର ପଶ୍ଚିମାଞ୍ଚଳରେ ଭଣ୍ଡାରୀମାନଙ୍କ ବଂଶୋପାଧିବିଶେଷ—9. A family-title of barbers in N. W. India.

୧୦ । ଗୁରୁଦେବ—10. Spiritual preceptor.

ପ୍ରାଦେ. ( ସିଂହଭୂମ ) ବି—ରାଜାମାନଙ୍କ ବଂଶୋପାଧି—
Family-title of Rajas in Singhbhum.

| ୧ | ଚ | ଉ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇ୍ୟ | ଉ୍ୟ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଢ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଓ | ନ |

ଠାକୁର କୋଠି—ଦେ. ବ—ଠାକୁର ଘର ( ଦେଖ )
Ṭhākura koṭhi   Ṭhākura ghara ( See )

ଠାକୁର ଘର—ଦେ. ବ—ଦେବାଳୟ; ଦିଅଙ୍କ ଘର; ଦେବମନ୍ଦିର—
Ṭhākura ghara   A temple; shrine; a house where
ঠাকুরবাড়ী, ঠাকুরঘর   images of Deities are kept and
**ठाकुरबाड़ी, ठाकुरद्वारा**   worshipped.

ଠାକୁର ଦେବତା—ଦେ. ବ. ( ଏକାର୍ଥବୋଧକ ସହଚର ଶବ୍ଦ; ସ. ଠକ୍କୁର+ଦେବତା )—
Ṭhākura debatā
ঠাকুর দেবতা   ଦେବଦେବୀ; ଦିଅଁ ଦେବତା—
Deities ( in general ).
( ଯଥା—ପିଲାଏ ଏବେ ଅଙ୍ଗ୍ରେଜୀ ପାଠ ପଢ଼ି ଆଉ ଆମ ଠାକୁର ଦେବତାଙ୍କୁ ମାନଲେ ନାହିଁ । )

ଠାକୁର ପୂଜା—ଦେ. ବ. ( ସ. ଠକ୍କୁର+ପୂଜା )—
Ṭhākura pūjā   ୧ । ଦେବୋପାସନା—
ঠাকুর পূজা   1. Prayer and devotional rites.
**ठाकुरसेवा**   ୨ । ପ୍ରତିମା ପୂଜା—2. Image-worship.

ଠାକୁର ବାଡ଼ି—ଦେ. ବ—ଠାକୁର ଘର ( ଦେଖ )
Ṭhākura bāṛi   Ṭhākura ghara ( See )

ଠାକୁର ବାପା—ଦେ. ବ. ପୁଂ—ପିତାମହ—
Ṭhākura bāpā   Paternal grandfather.
(ଠାକୁର ମା—ସ୍ତ୍ରୀ)
ঠাকুরদাদা **दादा**

ଠାକୁର ରଜା—ଦେ. ବ—ପୁରୀର ରାଜା—
Ṭhākura rajā   The name by which the Raja of Puri is generally styled.
[ ଦ୍ର—ପୁରୀର ରାଜା ହିନ୍ଦୁ ଜାତିର ଉପାସ୍ୟ ଶ୍ରୀଶ୍ରୀ ଜଗନ୍ନାଥ ଦେବଙ୍କର ସେବାଏବଂ ମାଇଫଇଦାରୁ ବୋଲି ହିନ୍ଦୁମାନେ ତାଙ୍କୁ ଠାକୁର ରଜା କହନ୍ତି । ]

ଠାକୁର ସେବା—ଦେ. ବ. ( ସ. ଠକ୍କୁର+ସେବା )—
Ṭhākura sebā   ଠାକୁର ପୂଜା ( ଦେଖ )
ঠাকুর সেবা   Ṭhākura pūjā ( See )
**ठाकुरसेवा**

ଠାକୁରାଣୀ—ଦେ. ବ. ସ୍ତ୍ରୀ. ( ଠାକୁରର ସ୍ତ୍ରୀଲିଙ୍ଗ )—
Ṭhākurāṇi   ୧ । ଦେବୀ—1. Goddess.
ঠাকুরাণী, ঠাকরুন   ଠାକୁର ଠାକୁରାଣୀଙ୍କ ପଦାମ୍ବୁଜ ଧ୍ୟାନରଙ୍କ ।
**ठकुराइन, ठकुरानी**   କବିସୂର୍ଯ୍ୟ, ଉଶୋଷାଭିଷ୍ଣୁ ଠ ଗୀତ ।
୨ । ରାଣୀ—2. Queen.
କାନ୍ତର ବମନ ଜାଣି, ପଦ୍ମାବତୀ ଠାକୁରାଣୀ, ଦଶୁଛନ୍ତି ଶ୍ରୀମୁଖ ବଚନ ।
ବିଶ୍ୱନାଥ, ବିଚିତ୍ରରାମାୟଣ ।
୩ । ସ୍ୱାମିନୀ; ପ୍ରଭୁ ପତ୍ନୀ; ପ୍ରଭୁଙ୍କ ସ୍ତ୍ରୀ—
3. Lady; mistress.
୪ । ଗୃହିଣୀ; ଗୃହକର୍ତ୍ତ୍ରୀ—4. Mistress of the house.
୫ । ଗୁରୁପତ୍ନୀ—5. Spiritual preceptor's wife.
୬ । ମହାଲକ୍ଷ୍ମୀ—6. The Goddess of fortune.
ବୋଲୁ ଠାକୁରାଣୀ ରଥ ଚଳ ଭଣି ଅଯୋଧ୍ୟାବର ସେ ।
ଭଞ୍ଜ, ବୈଦେହୀଶବିଳାସ ।
୭ । ଦୁର୍ଗା, ପାର୍ବତୀ—7. Goddess Durgā.
୮ । ବସୁମାତା; ବସୁଧା ଦେବୀ—
8. The Goddess of earth; earth personified.
୯ । ଗ୍ରାମ ଦେବତା—9. Village Goddess.
୧୦ । ଶୀତଳାଦେବୀ; ବସନ୍ତ ରୋଗ—
10. Small pox; the Goddess of small pox.
୧୧ । ଗୋବସନ୍ତ—11. Cattle-pox.
୧୨ । କେନ୍ଦୁଝର ରାଜ୍ୟର ପର୍ବତବିଶେଷ—11. Name of a mountain in Keonjhar State.
[ ଦ୍ର—ଏହାର ଉଚ୍ଚତା ୩୦୦୩ ଫୁଟ । ]

ଠାକୁରାଣୀ ଉଭାହେବା—ଦେ. କ୍ରି—ଠାକୁରାଣୀ ଲାଗିବା (ଦେଖ)
Ṭhākurāṇi ubhāhebā   Ṭhākurāṇi lāgibā (See).

ଠାକୁରାଣୀ ଓହ୍ଲା(ହ୍ଲେ)ଇବା—ଦେ. କ୍ରି—ଠାକୁରାଣୀ ଛାଡ଼ିବା (ଦେଖ)
Ṭhākurāṇi ohlā(hle)ibā   Ṭhākurāṇi chhāṛibā ( See ).

ଠାକୁରାଣୀ ଗାଧୁଆ—ଦେ. ବ—୧ । ଠାକୁରାଣୀ ମାଜଣା (ଦେଖ)
Ṭhākurāṇi gādhuā   1. Ṭhākurāṇi mājaṇā (See).
୨ । ରଜ ସଂକ୍ରାନ୍ତିର ପରବର୍ତ୍ତୀ ୩ୟ ଦିବସ ପ୍ରତ୍ୟୁଷରେ ଦେବୀ ବସୁମତୀଙ୍କୁ ସ୍ନାନ କରାଇ ପୂଜା କରିବାର ବିଧି—
2. The ceremonial bathing of the Earth-Goddess on the 3rd day of 'Raja samkrānti.
[ ଦ୍ର—ରଜ ସଂକ୍ରାନ୍ତି ସମୟରେ ବସୁମତୀ ରଜସ୍ୱଳା ହୋଇଥିବାରୁ ତୃତୀୟ ଦିନ ଶୁଦ୍ଧିସ୍ନାନ କରି ପବିତ୍ର ହୁଅନ୍ତି । ]

ଠାକୁରାଣୀ ଛାଡ଼ିବା—ଦେ. କ୍ରି—ଠାକୁରାଣୀ ଲାଗିଥିବା ବ୍ୟକ୍ତିର ଦେହରୁ
Ṭhākurāṇi chhāṛibā   ଦେବତାଙ୍କର ଆବେଶ ଛାଡ଼ିଯିବା—
The disappearance of the spirit of the Goddess from a persou possessed by a Goddess.

ଠାକୁରାଣୀ ଯାତ୍ରା—ପ୍ରାଦେ ( ଗଞ୍ଜାମ ) ବ—ଫାଲ୍‌ଗୁନ ଶୁକ୍ଳ ଦ୍ୱିତୀୟାଠାରୁ
Ṭhākurāṇi jātrā   ଚୈତ୍ରମାସ ଶେଷପର୍ଯ୍ୟନ୍ତ କରାଯିବା ଉତ୍ସବ—
A festival begun on the 2nd day of the bright fortnight of Fālguna.
[ ଦ୍ର—ଏହି ଉପଲକ୍ଷରେ ଗୋଷ୍ଠୀଏ ଶୂଦ୍ରମାନେ ପୋଷାକାଦି । ବିଶେଷତଃ ଚୈତ୍ର ମାସର ସବୁ ମଙ୍ଗଳବାରରେ ତାଙ୍କ ତାରିଣୀ ଆଦି ଦେବୀଙ୍କ ନିକଟରେ ପୂଜା ଓ ପଶୁ ପକ୍ଷୀ ଆଦି ବଳି ଦିଆଯାଏ । ]

ଠାକୁରାଣୀ ମାଜଣା—ଦେ. ବ—ଗ୍ରାମ ଦେବତାଙ୍କୁ ବିଧିପୂର୍ବକ ସ୍ନାନ
Ṭhākurāṇi mājaṇā   କରାଇବା—The ceremonial bathing of the village-Deity.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ବିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ଉପସ୍ଥିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଟିଯା' ନ ପାଇଲେ 'ଅଣ୍ଟା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ।

**ଠାକୁରାଣୀ ଲାଗିବା**—ଦେ. ବ—କାଳସୀ ଲାଗିବା; ଦେବତା ଭର ହେବା; ନରଦେହରେ ଗ୍ରାମଦେବତାଙ୍କର ଅବେଶ ବା ଅଧିଷ୍ଠାନ—
Ṭhākurāṇi lāgibā
ঠাকুরের ভর হওআ
A person being possessed with the spirit of a Goddess.

[ ଦ୍ର—ଯେଉଁ ବ୍ୟକ୍ତିଙ୍କୁ ଠାକୁରାଣୀ ଲାଗନ୍ତି ତାଙ୍କୁ କାଳସୀ କହନ୍ତି । ଏ ବ୍ୟକ୍ତି ଠାକୁରାଣୀ ଲାଗିବା ସମୟରେ ଥରଥର ହେଉଥାଏ ଓ ମୁଣ୍ଡ ହଲାଉଥାଏ, ଠାକୁରାଣୀଙ୍କ ଆଦେଶ ସାଧାରଣଙ୍କଠାରେ ବ୍ୟକ୍ତ କରେ ଏବଂ ଅନେକ ଅଦ୍ଭୁତ କଥା କହିବାର ଓ କରିବାର ଶୁଣାଯାଏ ଓ ଦେଖାଯାଏ । କେତେକ ସମୟ ପରେ ତା ଦେହରୁ ଠାକୁରାଣୀ ଓହ୍ଲାଇ ଗଲାରୁ ଉକ୍ତ ବ୍ୟକ୍ତି ପୁନର୍ବାର ସାଧାରଣ ମନୁଷ୍ୟ ପରି ବ୍ୟବହାର କରେ । ଗ୍ରାମରେ କୌଣସି ବିପଦ (ବସନ୍ତ,ଓଲାଉଠା) ହେଲେ ଲୋକେ ଗ୍ରାମଦେବତାଙ୍କୁ ମାନସିକ କରି ବାଜା ଆଦି ବଜାଇଲେ ଗ୍ରାମଦେବତାଙ୍କ ସେବକଙ୍କୁ ବା ଅନ୍ୟ ନିର୍ଦ୍ଦିଷ୍ଟ ବ୍ୟକ୍ତିଙ୍କୁ ଠାକୁରାଣୀ ଲାଗନ୍ତି ଓ ସେ ଗ୍ରାମବାସୀମାନଙ୍କୁ ଠାକୁରାଣୀଙ୍କ ଆଦେଶ (ହୁକୁମ) ଶୁଣାନ୍ତି, ଗ୍ରାମ ପ୍ରଦକ୍ଷିଣ କରନ୍ତି ଓ ଠାକୁରାଣୀଙ୍କ ଭୋଗ ଲଗାଯିବା ଛେନାପଣା ପିଅନ୍ତି । କାଳସୀ ଠାକୁରାଣୀଙ୍କ ଆଦେଶକୁ ସାଧାରଣ ଲୋକଙ୍କ ଆଗରେ କହିବାକୁ 'ଅବତରିବା' ବୋଲାଯାଏ ।]

**ଠାକେରା (ଇତ୍ୟାଦି)**—ଦେ. ବଣ—ଠାଙ୍ଗରା—
Ṭhākerā (etc) Bald-headed.
টেকো
ଦ୍ର—ଠାକରା ଇତ୍ୟାଦି ( ଦେଖ ) Ṭhākarā etc. ( See ).

**ଠାଟ**—ଦେ. ବ ('ସ୍ଥା ଧାତୁ; 'ସଂ. ସ୍ଥିତି, ସ୍ଥାନ )—
Ṭhāṭa
ঠাম
୧ । ଅଙ୍ଗଭଙ୍ଗୀ; ଶରୀରର ଗଠନ; ଗଢ଼ଣ—1. Figure; the build or make of one's body.
୨ । ଦେହ; ଶରୀର—2. Body.

**ଠାଠା**—ଦେ. ଅ—ଠାଆକୁ ଠାଆ (ଦେଖ)
Ṭhā ṭhā Ṭhā-āku ṭhā-ā (See)

**ଠାଠାଏ**—ଦେ. କି. ବଣ—ଠାଅ ଠାଅକେ (ଦେଖ)
Ṭhā ṭhāe Ṭhā-ā ṭhā-āke (See).
(ଠାଏଠାଏ—ଅନ୍ୟରୂପ)

**ଠାଠାକେ**—ଦେ. କି. ବଣ—ଠାଅକୁ ଠାଅ (ଦେଖ)
Ṭhāṭhāke Ṭhā-āku ṭhā-ā (See)
(ଠାଆଠାଆକେ—ଅନ୍ୟରୂପ)

**ଠାଠିକ**—ଦେ. ବଣ—ଅତି ସୁନ୍ଦର ଆକୃତିବିଶିଷ୍ଟ—
Ṭhā-ṭhika Very graceful.
ଠାଠିକ ଢଙ୍ଗେ ଅମୃତକୁ ନ ଗଣେ ଅବଳା କି ବର୍ଷାଲକାରେ ।
ଭୂଷଣ ଲାବଣ୍ୟବତୀ ।

**ଠାଡ଼**—ପ୍ରାଦେ. (ସମ୍ବଲପୁର) ବଣ, (ସଂ. ସ୍ଥା ଧାତୁ; ତୁଳ. ହି. ଠାଢ଼)—
Ṭhāḍ ଦଣ୍ଡାୟମାନ—Standing; erect.

**ଠାଡ୍ ହେବା**—ପ୍ରାଦେ. (ସମ୍ବଲପୁର) କି (ତୁଳ. ହି. ଠାଢ଼ା ହୋନା—
Ṭhāḍ hebā ଠିଆ ହେବା; ଦଣ୍ଡାୟମାନ ହେବା—
To stand up; to stand erect.

**ଠାଣା**—ଦେ. ବ. (ସଂ. ସ୍ଥାନ; ପ୍ରା. ଠାଣ)—ପ୍ରହରୀର ସ୍ଥାନ—
Ṭhāṇā The post of a sentinal.

**ଠାଣି**—ଦେ. ବ. (ସଂ. ସ୍ଥାନ)—୧ । ଅଙ୍ଗଭଙ୍ଗୀ—
Ṭhāṇi 1. Pose of the body.
ঢঙ্; ঠমক
ठाट; ठमक
ଲେଖାରେ ହେଲେହେଁ ଲେଖାମାନଙ୍କରେ ଲେଖାରେ ନୋହି ସେ ଠାଣି । କବିସୂର୍ଯ୍ୟ. ସଙ୍ଗୀତ ।
୨ । ଆକୃତି—2. Figure; form.
ମର୍ତ୍ତ୍ୟେ କି ସମ୍ଭବେ କେବେ ସେ ଅଦ୍ଭୁତ ଲାବଣ୍ୟ ଠାଣି । ରାଧାନାଥ. ନନ୍ଦିକେଶ୍ୱରୀ ।
୩ । କଥାର ଭଙ୍ଗୀ—3. Mode of speech.
୪ । ଖଣ୍ଡି; ଢଙ୍ଗ; ଭଙ୍ଗୀ—4. Mode; manner.
ତରୁଣୀ ହେ ବାଣୀ ମୃଦୁ ମୃଦୁ ଠାଣି ଶୁଣିଥିବ ପୁଣି ଯାହା କାନ । କବିସୂର୍ଯ୍ୟ. ସଙ୍ଗୀତ ।
୫ । ସ୍ଥିରତା; ଧୈର୍ଯ୍ୟ—5. Patience.
ମାର ରଖିଛି ଶର ଶାଣି, ତାର ତ ତରିବ ଅଛୁ ପଣ ଜାଣି,
ସାରଙ୍ଗ ସେବନିବ ଘଣି, କାର ସେ ରହେ ଠାଣି ।
କବିସୂର୍ଯ୍ୟ, ସଙ୍ଗୀତ ।

**ଠାଣି ମାଣି**—ଦେ. ବ. (ଅନର୍ଥକ ଦ୍ୱିତୀୟ ସହଚର)—ଠାଣି (ଦେଖ)
Ṭhāṇi māṇi Ṭhāṇi (See)
ঢঙ্গঢাঙ্গ ठमक ठुकम

**ଠାଣେଦାର**—ଦେ. ବ. (ହି. ଥାନେଦାରରୁ ଅନୁକୃତ)—
Ṭhāṇedārā ୧ । ଥାନାଦାର; ଥାନାର ଭାରପ୍ରାପ୍ତ ଅଫିସର—
থানাদার
थानेदार
1. The officer in charge of a police-station.
୨ । (ଲକ୍ଷଣାର୍ଥ) ପରାକ୍ରମଶାଳୀ ବ୍ୟକ୍ତି—
2. (figurative) A mighty or powerful person.
ଦେ. ବଣ—ପରାକ୍ରମଶାଳୀ—Mighty; powerful.
ଠାଣେଦାର ରଣରଣ ଠୋ କର ନେବ ପ୍ରାଣ । କବିସୂର୍ଯ୍ୟ. ସଙ୍ଗୀତ ।

**ଠା ଦେବା**—ଦେ. କି—ଆଶ୍ରୟ ଦେବା; ସ୍ଥାନ ଦେବା—
Ṭhā debā To give shelter.

**ଠାନ୍**—ପ୍ରାଦେ. (ସମ୍ବଲପୁର) ବ. (ସଂ. ସ୍ଥାନ; ପ୍ରା. ଠାଣ; ତୁ ଲ. ହି. ଠାନ୍)—
Ṭhān ୧ । ଠା; ସ୍ଥାନ—1. Place.
୨ । ଆଧାର—2. Receptacle.

**ଠାନ୍ ଠାନ୍**—ପ୍ରାଦେ. (ସମ୍ବଲପୁର) କି. ବଣ—ସ୍ଥାନେ ସ୍ଥାନେ—
Ṭhān ṭhān In some places.

**ଠାନ୍‌ଲେ**—ପ୍ରାଦେ. (ଉତ୍ତର ଭାଷା) (୫ମୀ ବିଭକ୍ତିର ପ୍ରତ୍ୟୟ)—ଠାରୁ—
Ṭhānle From.

**ଠାନୁ**—ପ୍ରାଦେ. (ସମ୍ବଲପୁର) (୫ମୀ ବିଭକ୍ତିର ପ୍ରତ୍ୟୟ) ଅ—ଠାରୁ—
Ṭhānu From.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ‍ି | ଇ | ଉ | ଋ,ର | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଥ | ଢ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ଊ | ଢ଼ |

ଠାପର୍‍—ଗ୍ରା. ବିଣ. ପୁଂ—ଠାପୁଅ (ଦେଖ)
Ṭhāpara    Ṭhāpuā (See)
(ଠାପର୍‍—ସ୍ତ୍ରୀ)

ଠାପୁଆ—ଦେ. ବିଣ. ପୁଂ. (ସ୍ଥା. ଧାତୁ, ଣିଚ୍‌; ସ୍ଥାପି ଧାତୁ)—
Ṭhāpuā    ୧ । ମଠୁଆ—1. Dilatory; slow; sluggish.
**सुस्त**    ୨ । କର୍ମକୋଢ଼ି; ଅଳସୁଆ; ଶ୍ରମବିମୁଖ—
(ଠାପେଈ; ଠାପୋଈ—ସ୍ତ୍ରୀ)    2. Idle; lazy.
କେହି ବା ଠାପୁଆ ପଣେ ଧର୍ମ୍ମିକ ଧର୍ମ
ପରଠାରୁ ସଦା ଅର୍ଥଶୋଷଣ ପ୍ରୟାସୀ । ରାଧାନାଥ, ମହାଯାତ୍ରା ।
୩ । ଯେଉଁ ଲୋକ ବାହାନା କରି କାର୍ଯ୍ୟରୁ ବା ପରିଶ୍ରମରୁ ଅବ୍ୟାହତି ପାଇବାକୁ ଚେଷ୍ଟାକରେ; ଛଠାଗଲା—
3. One who puts off work on various lame excuses (e.g. feigning inability or disease).

ଠାପୁର୍‍ ଠାପୁର୍‍—ଦେ. (ଧ୍ୱନ୍ୟନୁକରଣ) ଅ—ଘୋଡ଼ାଖୁରା ମାଟିରେ
Ṭhāpur ṭhāpur    ବାଜିଲେ ଯେଉଁ ଶବ୍ଦ ହୁଏ—
Thudding sound caused by the horse's hoofs striking the earth.

ଠାପେ(ପୋ)ଇବା—ଦେ. କ୍ରି—୧ । ବାହାନା କରିବା; ଛଠା ଗାଳିବା—
Ṭhāpe(po)ibā    1. To feign; to plead excuses for being exempted from work.
୨ । ଲେଙ୍ଗେଇ ଲେଙ୍ଗେଇ ଚାଲିବା—2. To limp.

ଠାବ—ଦେ. ବି. (ସଂ ସ୍ଥାନ; ପ୍ରା. ଠାଣ; ଠାଁ; ସଂ. ସ୍ଥାପନ)—
Ṭhāba    ୧ । ସ୍ଥାନ; ଜାଗା—1. Place; space; room.
ठाई; ठिकाना    ଦେଢ଼େ ମୁଁ ମହାତପ କଲି, ବସିବା ଠାବେ ତା ଲଭିଲି ।
**ठाँव**    ଭୂପତି, ପ୍ରେମପଞ୍ଚାମୃତ ।
୨ । କୌଣସି ବ୍ୟକ୍ତିର ବାସସ୍ଥାନ; ଠିକଣା—
2. Dewelling place; address or whereabouts of a person.
( ଯଥା—୩ ବରଷ ଖୋଜି ଖୋଜି ନିରୁଦ୍ଦିଷ୍ଟ ବ୍ୟକ୍ତିର ଠାବ ମିଳିଲା ନାହିଁ । )
୩ । ଠିକଣା; ନିଶ୍ଚିତ ଖବର; ପତ୍ତା; ସନ୍ଧାନ—
3. Certain news; trace; clue.
( ଯଥା—ମୁଁ ତାଙ୍କର ତୀର୍ଥଭ୍ରମଣର କୌଣସି ଠାବ ପାଇଲି ନାହିଁ । )
୪ । ଆଶ୍ରୟ—4. Shelter.
୫ । ପାତ୍ର; ଆଧାର—5. Pot; receptacle.
ଠାବ ଅଣ ବୋଲି ସର୍ପେ ଧାଇଲେ କହିଲେ
ସୁବର୍ଣ୍ଣ ଭାଜିଆ ମୁକୁଟଲୀ ଆଣି ଦେଲେ । ପ୍ରାଚୀ, ଚଳଚରିତ ।

ଠାବ କରିବା—ଦେ. କ୍ରି—୧ । ଅନୁସନ୍ଧାନ ଦ୍ୱାରା କୌଣସି ଅଜ୍ଞାତ
Ṭhāba karibā    ବିଷୟ ବା ଖବର ସ୍ଥିର କରି ବୁଝିବା;
ठिकाना करा    ଠିକଣା କରିବା—
**ठाँव करना**    1. To find out the clue to something after inquiry; to ascertain an unknown matter.
ବୁଲି ବୃକ୍ଷମାନଙ୍କେ ଖୋଜି ନ ପାଇ
ଶବରଙ୍କେ ସେ ଠାବ କଲେ ଯାଇଁ । ଭଞ୍ଜ, ବୈଦେହୀଶବିଳାସ ।
୨ । କୌଣସି ବ୍ୟକ୍ତିର ପତ୍ତା ବା ଠିକଣା ଅନୁସନ୍ଧାନ ଦ୍ୱାରା ଜାଣିବା—2. To ascertain the address or whereabouts of a person.
( ଯଥା—ହନୁମାନ ସୀତାଙ୍କୁ ଠାବ କରିବାକୁ ଲଙ୍କାକୁ ଗଲେ । )
୩ । ରହିବା; ଅବସ୍ଥାନ କରିବା—3 To stay.
ମନେ କଲି ଚନ୍ଦ୍ରଙ୍କୁ ଯେମନ୍ତ ସୂର୍ଯ୍ୟଦେବ
ଏ ମେଘର ମଧ୍ୟେ କି କରନ୍ତିଛନ୍ତି ଠାବ । କୃଷ୍ଣସିଂହ, ମହାଭାରତ, ଅନୁଶାସନ ।

ଠାବକୁ—ଦେ (ପଦ୍ୟ) କ୍ରି. ବିଣ. ( ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ )—
Ṭhāba-ku    ଠାକୁ; ନିକଟକୁ ; ପାଖକୁ—To; near.
( ଯଥା— ନାରଦ ଗଲେ ବ୍ରହ୍ମାଙ୍କ ଠାବକୁ । )

ଠାବ ଠାବକେ—ଦେ. (ପଦ୍ୟ) ଅ—ସ୍ଥାନେ ସ୍ଥାନେ; କେତେ ସ୍ଥାନରେ—
Ṭhāba ṭhāba-ke    At some places.
ଠାବ ଠାବକେ ଦେଖ ଶ୍ୟାମ ଅଟବ
ସପ୍ତଚ୍ଛଦ ପ୍ରସୂନେ ଶବଳ ଛବି । ରାଧାନାଥ, ତୁଳସୀ ସ୍ତବକ ।

ଠାବ ଦେବା—ଦେ. କ୍ରି—ଆଶ୍ରୟ ବା ସ୍ଥାନ ଦେବା—
Ṭhāba debā    To give shelter.
( ଯଥା—ମୋ କଥାଟା ଏପରି ବଢ଼ୁଛି ଯେ ମତେ ପୃଥିବୀ ଠାବ ଦେଉ ନାହିଁ । )

ଠାବର—ଦେ. (ପଦ୍ୟ) ଅ—ଠାବରେ—
Ṭhāba-ra    Ṭhābare ( See )
ବର୍ତ୍ତମାନ ଭୂତ ଭବିଷ୍ୟରେ ଶୋଭା ସାର
ବୋଲିବାର ସମ୍ଭବିଲା ଏହାଙ୍କ ଠାବର । ଭଞ୍ଜ, ବୈଦେହୀଶବିଳାସ ।

ଠାବରୁ—ଦେ. (ପଦ୍ୟ) ଅ—ଠାରୁ—
Ṭhāba-ru    From.
ବଧୂ ଅଧିକକି ଶାଶୁ ଠାବରୁ
ବୋଧ ତାକୁ ବାଣୀ ଏହି ନ୍ୟାସରୁ । ଭଞ୍ଜ, ବୈଦେହୀଶବିଳାସ ।

ଠାବରେ—ଦେ. (ପଦ୍ୟ) ଅ—୧ । ନିକଟରେ; ପାଖରେ—
Ṭhābare    1 Near.
୨ । ଠାରେ—2. At; in; with.
ଶ୍ରମ ସାହା ଠାବରେ କରି ଆଏ କ୍ରୋଧ ।
କୃଷ୍ଣସିଂହ, ମହାଭାରତ, ଉଦ୍‌ଯୋଗ ।

ଠାବେ ଠାବେ—ଦେ. (ପଦ୍ୟ) ଅ—କୌଣସି କୌଣସି ସ୍ଥାନରେ—
Ṭhābe ṭhābe    At some places.
ठाईं ठाईं    ଠାବେ ଠାବେ ଉଠେ ଶ୍ୱେତ-ଶିଳାସ୍ତୂପ ପ୍ରାସାଦ କୁଟୀର ।
**जगह जगह**    ରାଧାନାଥ, ଉଷା ।

ଠାମ—ଦେ. ବି—ଗଢ଼ଣ; ଗଠନ—
Ṭhāma    Formation; make; figure; build.
ठाम    ( ଯଥା—ସୁଠାମ । )
**ठाम**

ସାଧାରଣ ଲୋକେ ଅପର ଦୃଷ୍ଟାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାନା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଟାଁ' ନ ପାଇଲେ 'ଆଣ୍ଟା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ ।

**ଠାୟାଁ**—ଦେ. ବଣ. ପୁଂ.—ଯେଉଁ ପୁରୁଷ ବିଧବା ସ୍ତ୍ରୀକୁ ଶୂଦ୍ରମାନଙ୍କ **Ṭhāyāñ** ସମାଜରେ ପ୍ରଚଳିତ 'ଦୁତିଅ' ପ୍ରଥା ଅନୁସାରେ (ଠାୟାଁଣୀ—ସ୍ତ୍ରୀ) ବିବାହ କରେ—The husband of a remarried Śūdra widow.

[ ଦ୍ର—ଠାୟାଁ । ଠାୟାଁଣୀଙ୍କ ଔରସ ପୁତ୍ରକୁ ଗଜମନ ଠାୟାଁ ଓ କନ୍ୟାକୁ ଗଜମନ ଠାୟାଁଣୀ ବୋଲାଯାଏ । ]

**ଠାୟାଁଣୀ**—ଦେ· ବି. ସ୍ତ୍ରୀ.—୧ । ୧ । ଦ୍ୱିତୀୟ ବିବାହିତା ଶୂଦ୍ର ବିଧବା— **Ṭhāyāñṇi** 1. A remarried Śūdra widow. ୨ । ସ୍ୱାମୀଦ୍ୱାରା ପରିତ୍ୟକ୍ତା ବା ବିଧବା ଯେଉଁ ଶୂଦ୍ରାଣୀ ଦୁତିଅ ପ୍ରଥା ଅନୁସାରେ ଯଥାକ୍ରମେ ଏକାଧିକ ପତି ଗ୍ରହଣ କରେ—2. A Śūdra widow who takes successive husbands.

[ଦ୍ର—ଯେଉଁ ବିଧବା ଶୂଦ୍ରାଣୀ ଯଥାକ୍ରମେ ଏକାଧିକ ପତିଙ୍କୁ 'ଦୁତିଅ' କରେ ତାକୁ 'ତିନ ଠାୟାଁଣୀ' ବୋଲାଯାଏ ।]

**ଠାୟେ**—ଦେ. ଅ.—୧ । ଠାରେ; ନିକଟରେ— **Ṭhāye** 1. At; near.
ଠୈଁ ଅମ୍ଭ ନୃତ୍ୟ ଗୀତ ଦେଖି ଦାନ ଦେବ, ଜଣାଅ ରଜାଙ୍କ ଠାୟେ ।
ସଂ ପ୍ରାଚୀ. ରହସ୍ୟମଞ୍ଜରୀ ।
୨ । ଏକ ସ୍ଥାନରେ—2. In one place.
ଆସ୍ୱାଧାନରେ ଥିବ ଠାୟେ, କାହିଁକି ନ ଚଳିବ ପାୟେ ।
ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।
୩ । କୌଣସି ନିର୍ଦ୍ଦିଷ୍ଟ ସ୍ଥାନରେ—3. At a certain place.

**ଠାର୍‌ଠୁର୍‌**—ଦେ. ବି. (ସଂ. ସ୍ତୃ ଧାତୁ=ଆଚ୍ଛାଦନ)—ନେତ୍ର ଓ ହସ୍ତା- **Ṭhār thur** ଦିର ସଙ୍କେତଦ୍ୱାରା ଅନ୍ୟୋନ୍ୟରେ ମନୋଭାବର ଠାରଠୋର ଆଦାନ ପ୍ରଦାନ—Mutual exchange of view ସଂ ନ by dumb signs and glances.
ଠାରଠୁର କଥା ହୋଇଣ ସରସରେ । କୃଷ୍ଣସିଂ. ମହାଭାରତ. ଅଦ ।

**ଠାର୍‌ଠୁର୍‌ ଊଣେଇଶ୍‌ ବିଶ୍‌**—ଦେ.—ଉପସ୍ଥିତ ତୃତୀୟ ବ୍ୟକ୍ତିର ଅବୋଧ **Ṭhār thur ūneis bis** ସଙ୍କେତ ଆଦି ଦ୍ୱାରା ଦୁଇଜଣଙ୍କ ମଧ୍ୟରେ ଠାର୍‌ ଠୋର ଊନୀଶ ବୀଶ " ଭାବର ଆଦାନ ପ୍ରଦାନ—Exchange of thought betweeu two persons, which is not understood by a third person present there.

**ଠାର**—ଦେ. ବି.—(ସଂ. ସ୍ତୃ ଧାତୁ=ଆଚ୍ଛାଦନ କରିବା; ଆଖି ପତାଦ୍ୱାରା **Ṭhāra** ଆଖିକୁ ଆଚ୍ଛାଦନ କରିବାର ଭଙ୍ଗୀ)—୧ । ଉପସ୍ଥିତ ଠାର ତୃତୀୟ ବ୍ୟକ୍ତିର ଅବୋଧ ଦୁଇଜଣଙ୍କ ମଧ୍ୟରେ ଭାବର ଆଦାନ ସଂ ନ ପ୍ରଦାନ ନିମନ୍ତେ କରାଯିବା ଚକ୍ଷୁ ଓ ଅଙ୍ଗାଦିଦ୍ୱାରା ସଙ୍କେତ— 1. Gesture; signal; dumb signs through which two persons exchange thought with each other without a third persons knowing the meaning; dactylology: manual conversation.

[ଦ୍ର—ମୁହଁରେ କଥା ନ କହି ମୁଣ୍ଡ ହଲାଇ ଓ ହାତଦ୍ୱାରା ଓ ଅଙ୍ଗୁଠିଦ୍ୱାରା ବଧିର ଓ ମୂକମାନଙ୍କ ନିକଟରେ କଥକ ନିଜ ମନର ଭାବ ବ୍ୟକ୍ତ କରନ୍ତି । ଏହାକୁ ଠାର ବୋଲାଯାଏ । ଆଧୁନିକ ଯୁଗରେ ଏହି ଠାର ସାହାଯ୍ୟରେ ବଧିର ଓ ମୂକମାନଙ୍କୁ ଅଭିନବରୂପେ ଶିକ୍ଷା ଦିଆଯିବା ନିମନ୍ତେ ବିଦ୍ୟାଳୟମାନ ସ୍ଥାପିତ ହୋଇଅଛି । ହାତଦ୍ୱାରା କରାଯିବା ଠାର ଦୁଇ ପ୍ରକାର; ଯଥା—(୧) ଅଙ୍ଗୁଠିମାନଙ୍କର ଭିନ୍ନ ଭିନ୍ନ ଅବସ୍ଥାନ-ଭଙ୍ଗୀ ଓ ଚାଳନାଦ୍ୱାରା ଭିନ୍ନ ଭିନ୍ନ ଅକ୍ଷର ଓ ଅଙ୍କ ପ୍ରକାଶ କରାଯିବା (Dactylology or manual alphabet system) ଯଥା—ଏକ ଅଙ୍ଗୁଠି ଉଠାଇଲେ ୧ ସଂଖ୍ୟା, ଦୁଇ ଅଙ୍ଗୁଠି ଉଠାଇଲେ ୨ ସଂଖ୍ୟା ଇତ୍ୟାଦି । ଏହା ମଧ୍ୟ ଏକହାତିଆ ଠାର ଓ ଦୁଇହାତିଆ ଠାର ଏପରି ଦୁଇ ପ୍ରକାର । (୨) ଅଙ୍ଗୁଠି ଓ ହାତ ଆଦି ଚାଳନାଦ୍ୱାରା ଭିନ୍ନ ଭିନ୍ନ ବସ୍ତୁ ବା ଭାବ ପ୍ରକାଶ କରାଯିବା (Manual signs; motion; action or gesture by which the speaker conveys his meaning) । ଆମ୍ଭମାନଙ୍କ ସମାଜରେ ଶାଶୁଘରକୁ ଆସିଥିବା ନବବଧୂମାନେ ଶାଶୁଘରେ ସମ୍ମାନାସ୍ପଦ ବ୍ୟକ୍ତିମାନଙ୍କୁ (ଯଥା— ଶାଶୁ, ନଣନ୍ଦ, ବଡ଼ ଯାଆଙ୍କୁ) ପାଟି ଫିଟାଇ କଥା ନ କହି 'ହୁଁ ହୁଁ' ଓ 'ଠାର' ଦ୍ୱାରା ମନୋଗତ ଭାବ ପ୍ରକାଶ କରନ୍ତି । ଏବେ ମଧ୍ୟ ଏ ରୀତି କେତେକ ରକ୍ଷଣଶୀଳ ପରିବାରରେ ଚଳୁ ଅଛି । କନ୍ୟାମାନେ ଶାଶୁଘରକୁ ଯିବା ପୂର୍ବରୁ ପିତୃଗୃହରେ ଏହା ପ୍ରବୀଣା ମାନଙ୍କଠାରୁ ସ୍ୱଇମତେ ଶିକ୍ଷାକରି ଥାଆନ୍ତି ।

ନାଟୁଆମାନେ ମୁହଁରେ ବୋଲିବା ସଙ୍ଗୀତର ମର୍ମକୁ ପାରିଜା ବା ହସ୍ତକ କରି ଅର୍ଥାତ୍‌ ହସ୍ତଚାଳନ ଓ ମୁଖଭଙ୍ଗୀ ଦ୍ୱାରା ପ୍ରକାଶ କରନ୍ତି, ଏହା ମଧ୍ୟ ଏକପ୍ରକାର ଠାର ।

ଆମ ଦେଶରେ ପିଲାମାନଙ୍କ ମଧ୍ୟରେ ପ୍ରଚଳିତ 'ଅହିଠାର' ଏହି ଶ୍ରେଣୀର । ତାହାର 'ସାଙ୍କପଦ' ଏହି:—

"ଅହି, କଳଶ, ଚକ୍ର, ଟଙ୍କାର, ତାଲଯୁ (ତାଳ), ପବନ; ଯବ, ଶଶି ପରିମାଣ; ଆଙ୍ଗୁଠି ଟେକି ଅକ୍ଷର ଦେଖାଇବ ଜାଣ, ଫୁଙ୍କି ମାରିଣ ମାତ୍ରା କରିବ ବଖାଣ ।"

ଅ ଆ ଇ ଈ ଋ ଌ ଏ ଐ ଓ ଔ=
୧ ୨ ୩ ୪ ୫ ୬ ୭ ୮ ୯ ୧୦

ହାତକୁ ( ଅହି ) ସର୍ପାକୃତି କରି ତା ପରେ ଯେତୋଟି ଅଙ୍ଗୁଠି ଦେଖାଇବ ସେହି ସଂଖ୍ୟକ ସ୍ୱର ବୁଝାଯିବ । ଯଥା—ଏକ ଅଙ୍ଗୁଠି ଦେଖାଇଲେ ଅ, ୨ ଅଙ୍ଗୁଠି ଦେଖାଇଲେ—ଆ, ଇତ୍ୟାଦି

କ ବର୍ଗ=କଳଶ, ଚ ବର୍ଗ=ଚକ୍ର, ଟ ବର୍ଗ=ଧନୁଷ୍ଟଙ୍କାର, ତ ବର୍ଗ=ତାଳ, ପ ବର୍ଗ=ପବନ ( ହାତ ଦ୍ୱାରା ବିଞ୍ଚିବା ) ଯରଲବ=ଯବଧାନ, ଶଷସହ=ଚନ୍ଦ୍ର; ଅଙ୍ଗୁଠିର ସଂଖ୍ୟା ଦ୍ୱାରା

ବର୍ଗର ସେହି ସଂଖ୍ୟକ ବର୍ଣ୍ଣ ବୁଝାଯିବ । ଫୁଟୁକ ମାରଲେ ଅକ୍ଷରରେ ମାତ୍ରା ଦିଆଯିବାର ବୁଝାଯିବ । ]

୨ । ତୃତୀୟ ବ୍ୟକ୍ତିର ଅବୋଧ ଦୁଇ ଜଣଙ୍କ ମଧ୍ୟରେ ଭାବର ଆଦାନ ପ୍ରଦାନ—
2. Cipher-language.

ଶୋଭା କାମିନୀର ମାର ବଶେ ପୟୋଧରଧର କାଶେ ପ୍ରକାଶୁଁ ସେ ଠାର ଠାର ହେ । ଭଞ୍ଜ ପ୍ରେମସୁଧାନିଧି ।

[ ଦ୍ର—ଅନ୍ୟ ବ୍ୟକ୍ତିର ଅବୋଧ କଥା ବା ଲେଖାଦ୍ୱାରା ୨ ଜଣ ବ୍ୟକ୍ତି ପରସ୍ପର ମଧ୍ୟରେ ଭାବ ଆଦାନ ପ୍ରଦାନ କରିବାକୁ cipher ଠାର ବୋଲାଯାଏ । ଦୂରଦେଶସ୍ଥ ରାଜକର୍ମଚାରୀମାନଙ୍କ ମଧ୍ୟରେ ଏହି ପ୍ରଣାଳୀ ଦ୍ୱାରା ଗୋପନୀୟ ଚିଠି ଓ ତାର ଖବର ପ୍ରେରିତ ହୁଏ । ଉକ୍ତ ଠାରର ବୀଜ ( key ) ନ ଜାଣିଥିବା ବ୍ୟକ୍ତି ଏଥିରୁ କିଛି ମାତ୍ର ବୁଝି ପାରେ ନାହିଁ ।

ଆମ ଦେଶରେ ମଧ୍ୟ ଅନେକ ପ୍ରକାର 'ଠାର' ଅଛି ।

ଶଶିଠାର—ଏଥିର ବୀଜ; ଅ=କ, ଖ=ଗ, ଘ=ଙ, ଚ=ଟ, ଛ=ଠ, ଜ=ଡ଼, ଝ=ଢ଼, ଞ=ଣ, ତ=ପ, ଥ=ଫ, ଦ=ବ, ଧ=ଭ, ନ=ମ, ର ଓ ଲ=ସ, ହ=ଞ ।

ଏଥିର ଉଦାହରଣ ଯଥା—'ମୁଁ ଆଜି ଘରକୁ ଯିବି' ଏହି ବାକ୍ୟ ଶଶିଠାରରେ='ନୁ କାଡ ଙ ସଉ ଡବ' ହେବ ।

ଶେଲେଷା ବା ଶ୍ଳେଷ ଠାର—ଏଥିରେ ପ୍ରତ୍ୟେକ ମୂଳ ଅକ୍ଷରଟି ଉଚ୍ଚାରିତ ହୋଇ ତହିଁରେ ଉକ୍ତ ଅକ୍ଷରର ମାତ୍ରାଯୁକ୍ତ 'ଶଲସ' ଶବ୍ଦ ଲାଗେ । ଯଥା—ମୁଁ=ମ ଶୁଲୁସୁ, ଆଜି=ଅ ଶାଲାସା ଜ ଶିଲସି, ଘରକୁ=ଘ ଶଲସ ର ଶଲସ କ ଶୁଲୁସୁ, ବେଗ ହୋଇ=ବ ଶେଲେସେ ଗ ଶଲସ ହ ଶୋଲୋସୋ ଅ ଶିଲସି, ଯିବ=ଯ ଶିଲସି ବ ଶିଲସି ।

ଫୁଲ ଠାର—ପ୍ରତ୍ୟେକ ଅକ୍ଷର ପରେ 'ଫୁଲ' ପଦ ଯୋଗ ହୁଏ । ମୁଁ ଯାଉଛି ଏହାକୁ କହିବାକୁ ହେଲେ ମୁଁ ଫୁଲ ଯା ଫୁଲ ଉ ଫୁଲ ଛି ଫୁଲ ।

ପ୍ନ ଠାର—ପ୍ରତ୍ୟେକ ଅକ୍ଷର ପରେ ପ୍ନ ଯୋଗ ହୁଏ, କିନ୍ତୁ ଶବ୍ଦର ଶେଷ ଅକ୍ଷରରେ ପ୍ନ ଲାଗେ ନାହିଁ । ଯଥା—'ମୁଁ ଖାଇବି' ଏହା କହିବାକୁ ହେଲେ ମୁଁ ପ୍ନୁ ଖା ପ୍ନା ଇ ପ୍ନି ବି ।

ଆଉ ଗୋଟିଏ ଠାରରେ ପ୍ରତ୍ୟେକ ଶବ୍ଦକୁ ଓଲଟା କରି କୁହାଯାଏ । ଯଥା—ପାନ ଖଣ୍ଡେ ଦିଅ=ନପା ଣ୍ଡେଖ ଅଦି ।

ଆଉ ଏକପ୍ରକାର ଠାର ଅଛି, ସେଥିରେ ଗୋଟିଏ ସୂତ୍ର ଏପରି ଥାଏ ଯେ ପ୍ରତ୍ୟେକ ପଦ ମଧ୍ୟରେ ପୂର୍ବରୁ ସ୍ଥିରୀକୃତ ୨।୩।୪ ବା ତତୋଽଧିକସଂଖ୍ୟକ 'ଶୂନ୍ୟ ଶବ୍ଦ' ନିହିତ କରାଯାଇ ଲେଖାଯାଏ । ଲେଖକର ମନୋଭାବ ଜାଣିବାକୁ ହେଲେ ପ୍ରଥମ ଶବ୍ଦକୁ ଗଣି ସେହିଠାରୁ ୩ଟି ଶବ୍ଦ ଛାଡ଼ିଦେଇ ୨ୟ ଶବ୍ଦ ଓ ସେଠାରୁ ପୁଣି ୩ଟି ଶବ୍ଦ ଛାଡ଼ିଦେଇ ୩ୟ ଶବ୍ଦ ପଢ଼ିବାକୁ ହୁଏ । ମୁଁ କାଲି ଗଡ଼ରେ ପାଇକ ନେଇ ଗଡ଼ରେ ପହଞ୍ଚିବି । ଏହି ବାକ୍ୟଟି ଲେଖିବାକୁ ହେଲେ—

ମୁଁ ଏଠାରେ ଭଲ ଅଛି । କାଲି ମତେ ଜର କଲା ।
ପାଇକ ତିନି ଜଣ ପଟା ନେଇ ଜମି ଚାଷ କଲେ ।
ଗଡ଼ରେ ବରଷକ ପରେ ମୁଁ ପହଞ୍ଚିବି ।

(ଉପରେ ଶବ୍ଦମାନଙ୍କ ଉପରେ ୧ ୨ ୩ ସଂଖ୍ୟା ଛପା ହୋଇଛି ।)

ଏହି ଶ୍ରେଣୀର ମଧ୍ୟ ଅନ୍ତ୍ୟଲିପି, ବହିର୍ଲିପି, ଆଦ୍ୟଲିପି, ମଧ୍ୟଲିପି ଯୁକ୍ତ ଠାର ଅଛି । ପ୍ରତ୍ୟେକ ଧାଡ଼ି ବା ପଦର ଆଦ୍ୟ, ମଧ୍ୟ ବା ଶେଷ ଅକ୍ଷରକୁ ସମ୍ମୁଖକାର କରି ପଢ଼ିଲେ କଥକର ମନୋଭାବ ବୁଝାଯାଏ ।

ଆହୁରି ମଧ୍ୟ ପ୍ରତ୍ୟେକ ଧାଡ଼ିରେ ଥିବା ପ୍ରଶ୍ନର ଉତ୍ତରସ୍ୱରୂପ ପ୍ରଦତ୍ତ ଶବ୍ଦମାନଙ୍କର ଆଦ୍ୟ, ମଧ୍ୟ ବା ଶେଷ ଅକ୍ଷରକୁ ସମ୍ମୁଖକାରରେ ପଢ଼ିଲେ ଅର୍ଥ ଜଣାଯାଏ ।

ଆଜି କାଲିର କ୍ଷୁଦ୍ର ଲେଖ (short hand) ମଧ୍ୟ ଏକପ୍ରକାର ଠାର ]

୩ । ଆଖିଠାର; ଆଖିର ଭଙ୍ଗୀଦ୍ୱାରା କରାଯିବା ଇଙ୍ଗିତ ବା ମନୋଭାବର ଅଭିବ୍ୟକ୍ତି—3. Signals made by various movements and glances of the eye.

ଠାର ନେତ୍ରାନ୍ତ ମନ ମୋହନ ପାଣୀ । କବିସୂର୍ଯ୍ୟ. ସଙ୍ଗୀତ ।

ଦେ. (ପଦ୍ୟ) ଅ. (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ)—୧ । (୭ମୀ ବିଭକ୍ତିର ଚିହ୍ନ) ଠାରେ—1. In; at.

କରନ୍ତି ସ୍ୱଧର୍ମୀ ଅଗ୍ରେ
ସଙ୍ଗକୁ ତେଜି ସର୍ବଠାର । ଜଗନ୍ନାଥ. ଭାଗବତ ।

୨ । (୫ମୀ ବିଭକ୍ତିର ଚିହ୍ନ) ଠାରୁ—2. From.

ଏ ଭାଗବତ ଗ୍ରନ୍ଥସାର
ମୋ ଶିକ୍ଷା ପୂର୍ବେ ତାଙ୍କଠାର । ଜଗନ୍ନାଥ. ଭାଗବତ ।

ଦେ. ଅ.—(୬ଷ୍ଠୀ ବିଭକ୍ତିର ଚିହ୍ନ)—(ଅମୁକ) ସ୍ଥାନର—Of such or such a place.
(ଯଥା—ଏ କେଉଁଠାର ଲୋକ ।)

**ଠାରିବା**—ଦେ. କ୍ରି (ସଂ. ସ୍ଥ ଧାତୁ=ଆଚ୍ଛାଦନ)—୧ । ନେତ୍ର, ବକ୍ତ୍ର ଓ ହସ୍ତାଦିର ଭଙ୍ଗିଦ୍ୱାରା ସଙ୍କେତ ବା ଇଙ୍ଗିତ କରିବା—
Ṭhāribā
ঠারা
इसारा करना, सैनमारना
1. To convey one's meaning to another by signs, winks or gestures; to signal.

ଠାରି ଦେଲେ ନେତ୍ରାଞ୍ଚଳେ । କବିସୂର୍ଯ୍ୟ. କଶୋରଚନ୍ଦ୍ର ଠ. ଗୀତ ।

୨ । କୌଣସି ବିଷୟର ସଂକ୍ଷିପ୍ତ ସ୍ମାରକ-ଲେଖ କାଗଜ ଆଦିରେ ଟିପି ରଖିବା (ଏହା ଅନ୍ୟ ବ୍ୟକ୍ତିର ଦୁର୍ବୋଧ୍ୟ)—2. To jot down short notes in shorthand.

**ଠାରୁ**—ଦେ. ଅ. (୫ମୀ ବିଭକ୍ତିର ଚିହ୍ନ)—୧ । ରୁ—1. From.
Ṭhāru
থেকে, হইতে
୨ । (ଅମୁକ) ସ୍ଥାନରୁ—2. From (a place).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତୀୟ ୧ ଛକ୍କିତ ଅକ୍ଷର ଓ ମାତ୍ରା ଏବଂ ୨ ଛକ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ସ୍ୱରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଛକ୍କିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବର୍ଣ୍ଣର ବଦଳରେ ୨ ବା ୧ ଛକ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଗ୍ୟା'ନ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ।

**ସେ** ୩ । (ଅମୁକ) ବ୍ୟକ୍ତି ନିକଟରୁ—
3. From (some person).
୪ । (ଅମୁକ) ଅପେକ୍ଷା—4. Than
୫ । (ଅମୁକ) ସମୟରୁ ଆରମ୍ଭ କରି —
5. Since; beginning from (such a time).
ପ୍ରାଦେ. (ସମ୍ବଲପୁର) ବିଣ—ଚନ୍ଦା; ଟାଙ୍ଗର୍—Bald.

**ଠାରୁମୁଁଡ଼ା**—ପ୍ରାଦେ. (ସମ୍ବଲପୁର) ବିଣ. ପୁଂ—ଚନ୍ଦାମୁଣ୍ଡିଆ; ଟାଙ୍ଗର୍—
Ṭhāru-muṅrḍa Bald-headed.
(ଠାରୁମୁଁଡ଼ୀ—ସ୍ତ୍ରୀ) ଠାରୁମୁଁଡ଼ା ଠେଙ୍କେ ଖେଲ୍। ଶିଶୁ ପରିହାସ ।

**ଠାରେ**—ଦେ. ଅ. (ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ)—୧ । (ଅଧିକରଣ ବା
Ṭhāre ୭ମୀ ବିଭକ୍ତି ଚିହ୍ନ) ରେ; ନିକଟରେ—
ତେ, ଠେଁ, ଠେୟେଁ 1. At; near.
**ସେ** ସେ କଥା କହ ଅସ୍ତଠାରେ । ପ୍ରାଚୀ. ନଗୁର୍ଣମାହାତ୍ମ୍ୟ ।
୨ । ହେଁ; ସତ୍ତ୍ୱେ; (ଅମୁକକଥା) ଘଟିଥାଇ ସୁଦ୍ଧା—
2. In spite of.
ସାହା ହୋଇ କୃଷ୍ଣର ଭୁଲରେ ଭୁଲେ ମୋର
ଥିବାଠାରେ ଦାସୀ ହୋଇଲି ମୁଁ ତାଙ୍କର । କୃଷ୍ଣସିଂହ ମହାଭାରତ ବନ ।
୩ । (ଅମୁକ ବିଷୟ ଘଟିଥିବା) ଅବସ୍ଥାରେ—3. Under the circumstances of.
ଏରୂପେ ହେଲାଠାରେ ଭୀଷ୍ମ ତାଙ୍କ ସେନା
ଯୁଦ୍ଧକଲେ ସଜନ ହୋଇ କ୍ରୋଧମନା । କୃଷ୍ଣସିଂହ, ମହାଭାରତ ଭୀଷ୍ମ ।
୪ । (ଅମୁକ) ସ୍ଥାନରେ—4. In a place; at a place.
ଏରୂପେ ଇନ୍ଦ୍ରଙ୍କ ଦେହରୁ ବ୍ରହ୍ମହତ୍ୟା,
ଗୁରୁଠାରେ ରଖିଲେ ବ୍ରହ୍ମାଲୋକ ପିତା । କୃଷ୍ଣସିଂହ. ମହାଭାରତ. ଶାନ୍ତି ।
୫ । (ଅମୁକ ସ୍ତ୍ରୀର) ଅଙ୍ଗରେ; ଗର୍ଭରେ (ଜାତ)—
5. In the womb of; (born) from such or such a woman.
ପଞ୍ଚକୁମର ଭାରଠାରେ
ହୋଇଲେ ଅତି ମନୋହରେ । ଜଗନ୍ନାଥ. ଭାଗବତ ।

**ଠାସକୁ ମାରିବା**—ଦେ. କ୍ରି—୧ । ପର ଉପରେ ନିର୍ଭର କରିବା—
Ṭhāsaku māribā 1. To depend on another.
୨ । ଅନୁମାନ କରିବା; ଅନ୍ଦାଜ କରିବା; ଠଉରାଇବା—
2. To guess; to conjecture.
(ଯଥା—୧ । ବୁଢ଼ା ବାଡ଼ି ଧରି ଅନ୍ଧାର ବାଟରେ ଠାସକୁ ମାରି ଚାଲୁଛି —୨ । ଠାସକୁ ମାରି ମୁଁ ଏ ଛନ୍ଦା ଲେଖାକୁ ପଢ଼ିଗଲି ।)
୩ । ଛୁଣ୍ଡାଳିବା, ଅଣ୍ଡାଳିବା—3. To feel in the dark.

**ଠାସିବା**—ଦେ. କ୍ରି.—(ସଂ. ସ୍ଥାସ୍ନୁ=ଦୃଢ଼ ସନ୍ନିବେଶିତ)—୧ । କୌଣସି
Ṭhāsibā ପଦାର୍ଥକୁ କୌଣସି ପାତ୍ର ବା ସଙ୍କୀର୍ଣ୍ଣ ସ୍ଥାନରେ ପୂରାଇ
ଠାସା, ଠାଁସା ଉପରୁ ଖେଦିବା; ଠେସିବା—1 To stuff in or
**ଠାସନା ଠୁସନା** press a thing into a narrow space;
ଠସା(ସେ)ଇବା } —ଣିଜନ୍ତରୂପ to ram down something into a narrow
ଠାସେଇବା tube or space; to cram down with force.

( ଯଥା—ବାଣୁଆ ବନ୍ଧୁକ ନଳରେ ବାରୁଦକୁ ଠାସୁଛି । )
୨ । ଠସା ବା ଛାଞ୍ଚରେ ସୁନା ରୁପାଆଦିର ପାତିଆ ରଖି ପାତିଆ ଉପରେ ମାଡ଼ ଦେବା—2. To beat a thin metal-plate over a mould or a die.
୩ । ଜୋର୍‌କରି ପେଲିବା—
3. To push with force.
୪ । (ଅଶ୍ଳୀଳ) ସ୍ତ୍ରୀକୁ ମୈଥୁନ କରିବା—
4. (indecent) To cohabit a woman.

**ଠାସୁଆ**—ଦେ. ବିଣ. ପୁଂ—କୌଣସି ବିଷୟ ନ ଜାଣି ଅନ୍ଦାଜରେ ସେ
Ṭhāsuā ବିଷୟ କହିବାରେ ଅଭ୍ୟସ୍ତ—Habituated to saying
ଠାସେଇ } ସ୍ତ୍ରୀ things by guess or without
ଠାସୋଇ } personal knowledge.

**ଠି**—ଦେ. ଅ ( ଅନ୍ୟ ଶବ୍ଦ ସଙ୍ଗେ ଲାଗେ; ୭ମୀ ବିଭକ୍ତିର ଚିହ୍ନ )—
Ṭhi ଠାରେ; ଠାଇଁ; ଠେଇଁ;—In, at.
ଠାଇଁ, ( ଯଥା—ସେଠି ବସିଲେ ଖାଇବାକୁ ମିଳିବ ନାହିଁ । )
ଯେ ପ୍ର.ଦେ (ମେଦିନୀପୁର) (କ୍ରିୟା ପ୍ରତ୍ୟୟ)—(ମୁଁ) ଛି; ଅଛି—
[ଯଥା—ଖାଉଠି=ମୁଁ ଖାଉଛି ]
ପ୍ରାଦେ. (ଜାଜପୁର) ପ୍ରତ୍ୟୟ—କୁ—To.
( ଯଥା—ତାଠି=ତାକୁ । )
(ଠି, ଠାଇଁ, ଠେଇଁ—ଅନ୍ୟରୂପ)

**ଠିଆ**—ଦେ. ବି. (ସଂ. ସ୍ଥିତି ବା ସ୍ଥିତ)—୧ । ମର୍ଯ୍ୟାଦା; ଠେକ—
Ṭhia 1. Prestige.
ଠେକନା ୨ । ଠିଣ୍ଡ; ଅବଲମ୍ବନ; ଆଶ୍ରା; କୌଣସି ବସ୍ତୁକୁ ଠେକ
**ଟେକ, ଠେପା** ରଖିବା ନିମନ୍ତେ ତଳେ ଲଗାଯିବା ଖୁଣ୍ଟି ଆଦି—
2. Prop; support.
୩ । ମନୁଷ୍ୟ ଚାଲିବା ସମୟରେ ଯେଉଁ ଯଷ୍ଟିକୁ ଅବଲମ୍ବନ କରିଥାଏ—3. Walking stick.
୪ । ଯଷ୍ଟି ଆଦିର ମୂଳଦ୍ୱାରା କରାଯିବା ଆଘାତ; ଉଦ୍; ଗୋବ—
4. A push by the butt-end of a stick.

**ଠିଅ ମାରିବା**—ଦେ. କ୍ରି—ଅନ୍ଧାର ସ୍ଥଳରେ ବା ଅଜ୍ଞାତଗଭୀରତା ଜଳରେ
Ṭhia māriba ବା ଖସଡ଼ା ବାଟରେ ଚାଲିବା ନିମନ୍ତେ ଯଷ୍ଟିକୁ ଅବଲମ୍ବନ କରିବା—To feel one's way with the help of a stick while walking in the dark or wading in water of unknown depth or in a slippery place.
୨ । ଯଷ୍ଟି ଆଦିର ମୂଳଦ୍ୱାରା ଆଘାତ କରିବା; ଉଦ ମାରିବା—2. To give a push with the butt-end of a stick; to ram.

**ଠିଆ**—ଦେ. ବି (ସଂ. ଖଡ଼ା=ତୃଣାଦିର ନାଡ଼ ବା ସ୍ଥା ଧାତୁରୁ ସ୍ଥା,
Ṭhiā ସଂ. ସ୍ଥିତ; ପ୍ରା. ଠିଅ; ସଂ ସ୍ଥାତା—
ଠାଡ଼, ଖାଡ଼ା ୧ । ଦଣ୍ଡାୟମାନ ହେବା; ଉଭା ହେବା—
**ଠାଡ଼ା** 1. Standing up;

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉ଼ଥ | ଈ |
| ୨ | ଈ | ଊ | ରୁ | ଲୁ | ଯ୍ୱେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଙ୍ଗ | ନ୍ |

୨ । ଉଚ୍ଚତା; ଡେଙ୍ଗ—2. Height; stature.
( ଯଥା—ସେ ଠିଆରେ ୫ ହାତ । )

୩ । ଭୂପୃଷ୍ଠରୁ ସମକୋଣଭାବରେ ଅବସ୍ଥିତ—
3. Upright position; perpendicular position.

ବିଣ—୧ । ଦଣ୍ଡାୟମାନ; ଛିଡ଼ା—1. Standing; erect.

ଯେଉଁ ଗୋପୀ ହୋଇ ଠିଆ ସେ, ଚୁମ୍ବିଲା ଘଷିଲା
ବଢ଼ିଲାକୁ କାନ୍ଧୁ ହେଲୁ ଏତେ ଅପାଠିଆ । ଅଧ୍ୟାତ୍ମ, ସଦାନନ୍ଦ ଚନ୍ଦ୍ରମଣି ।

**ଠିଆ କରତ**—ଦେ. ବି—ଯେଉଁ କରତକୁ ୨ଜଣ ମନୁଷ୍ୟ ଠିଆ ହୋଇ ଧରି ବଡ଼ କାଠ ଚିରନ୍ତି; ବଡ଼ କରତ; ଠେଲା-କରତ—Cross-cut saw (as opposed to hand-saw).
Ṭhiā karata
(ହାତକରତ—ବିପରୀତ)
ঠেলাকবত, বড় কবাত
**আরা**

**ଠିଆ କରା(ରେ)ଇବା**—ଦେ. କ୍ରି—୧ । କୌଣସି ବ୍ୟକ୍ତି ବା ପଦାର୍ଥକୁ ଦଣ୍ଡାୟମାନ କରାଇବା—1. To make a person or thing stand erect.
Ṭhiā karā(re)ibā
ঠাড় কবান
**ठाढ़ा करना**

୨ । ଠିଆ ହୋଇ ଅପେକ୍ଷା କରିବା ନିମନ୍ତେ ବାଧ୍ୟ କରାଇବା—2. To cause or oblige a person to wait standing or to dance attendance.

୩ । ଦଣ୍ଡ ଭୋଗ ନିମନ୍ତେ କୌଣସି ବ୍ୟକ୍ତିକୁ ଠିଆ ହେବାପାଇଁ ବିଧାନ କରିବା—3. To make a person stand up on his legs (as a punishment).

୪ । [ ଲକ୍ଷଣାର୍ଥ ] ଘରର ନିର୍ମାଣ ସମ୍ପୂର୍ଣ୍ଣ କରିବା—
4. (figurative) To erect (a house)

୫ । ( ଲକ୍ଷଣାର୍ଥ ) କୌଣସି ଅନୁଷ୍ଠାନକୁ ପ୍ରତିଷ୍ଠା କରିବା—5. (figurative) To start an institution.

**ଠିଆ କୋରଣା**—ଦେ. ବି—ଯେଉଁ କୋରଣାର ଲୁହା ଯନ୍ତ୍ରଟି ଗୋଟିଏ ପିଢ଼ାରେ ଠିଆ ବାଗରେ ମାରିଥାଏ; ଗଛ କୋରଣା—An erect-bladed scraper (as opposed to hand-scraper).
Ṭhiā koraṇā
( ହାତ କୋରଣା—ବିପରୀତ )
ঠাড়াকুরনী
**ठाढ़ाखुरचनी**
(ଠିଆ କୋରଣୀ—ଅନ୍ୟରୂପ)

**ଠିଆ ଗୋଇଠା**—ଦେ. ବି—ଠିଆ ହୋଇଥିବା ଅବସ୍ଥାରେ ଏକ ଗୋଡ଼ରେ ଅନ୍ୟ ବ୍ୟକ୍ତିକୁ ମାରିବା ଗୋଇଠା—A standing kick; a kick administered by a person while standing.
Ṭhiā goiṭhā
খাড়া লাথি
**ठाढ़ा लात**

**ଠିଆଗୋଡ଼ିଆ ଖେଳ**—ଦେ. ବି—ଠିଆଲଙ୍ଗୁଳୀ ଖେଳ (ଦେଖ)
Ṭhiā-goṛiā kheta Ṭhiā languḷi kheta (See).

**ଠିଆଚିତା**—କପାଳରେ ଲମ୍ବକରି କାଟିଥିବା ତିଳକ; ଊର୍ଦ୍ଧ୍ୱପୁଣ୍ଡ୍ର; ଭ୍ରୂଯୁଗର ମଧ୍ୟସ୍ଥଳରୁ କିମ୍ବା ନାସାଗ୍ରରୁ କପାଳମଧ୍ୟସ୍ଥଳର କେଶମୂଳ ପର୍ଯ୍ୟନ୍ତ ଲମ୍ବବାଗରେ ଯେଉଁ ଚିତା କଟାଯାଏ—A long perpendicular mark of sandal-paste made on the forehead.
Ṭhiā chitā
লম্বাফোটা

ଗୋମସ୍ତେ ଦେଲେ ଠିଆ ଚିତା
ଯେ ପ୍ରଭୁ ଗୋବ୍ରାହ୍ମଣହିତା—ଜଗନ୍ନାଥ ଭାଗବତ ।

[ ଦ୍ର—ଚିତା ନାନାପ୍ରକାରରେ କଟାଯାଏ । ଯଥା—ହରିମନ୍ଦିର ଚିତା; ରାମାନନ୍ଦ ଚିତା, ଶଗଡ଼ଦଣ୍ଡା ଚିତା ବା ଠିଆ ଚିତା ଇତ୍ୟାଦି । ]

**ଠିଆଚିରା**—ଦେ. ବି—ଠିଆହୋଇ ଲୁହିବା—Leap while standing; scamper.
Ṭhiā chirā
**फलाग**

**ଠିଆ ଠାକୁର**—ଦେ. ବି—ଯେଉଁ ଠାକୁର ବା ଦେବତା ଦଣ୍ଡାୟମାନ ମୂର୍ତ୍ତିରେ ଗଢ଼ା ହୋଇଥାଆନ୍ତି—A standing image; an image built in a standing posture.
Ṭhiā ṭhākura

**ଠିଆଠାଣି**—ଦେ. ବି—ଠିଆହେବାର ଭଙ୍ଗି ବା ଛଟା—Pose; standing posture; stature.
Ṭhiā-ṭhāṇi

ବିଣ—ସୁଗଠିତ; ମନୋହର ଆକାର ବିଶିଷ୍ଟ—Of graceful stature or build.

**ଠିଆ ଠିଆ**—ଦେ. ବିଣ—୧ । କିଛିକାଳ ପର୍ଯ୍ୟନ୍ତ ଦଣ୍ଡାୟମାନ—1. Standing for some time.
Ṭhiā ṭhiā
খাড়া খাড়া
**खड़े खड़े**
( ଯଥା—ମୁଁ ସେଠାରେ ଠିଆ ଠିଆ ହୋଇ ଘଣ୍ଟାଏ ପରେ ତାଙ୍କୁ ନ ଦେଖି ଫେରି ଆଇଲି । )

୨ । ଠିଆ ହୋଇ ଅପେକ୍ଷା କରୁଥିବା—
2. Waiting in a standing posture.

କ୍ରି. ବିଣ—୧ । ଠିଆ ହୋଇ ହୋଇ ଅର୍ଥାତ୍ ନ ବସି—
1. In a standing posture
( ଯଥା—ମୋର କାଲି ରାତିଯାକ ଠିଆ ଠିଆ ପାହିଗଲା । )

୨ । ଗୋଡ଼େ ଗୋଡ଼େ; ଖଡ଼େଦମ୍; ତତ୍କାଳ ଅର୍ଥାତ୍ ବିଳମ୍ବ ନ କରି; କୌଣସି ସ୍ଥାନରେ ନ ବସି ବା ବିଶ୍ରାମ ନ କରି; ଅତି ଶୀଘ୍ର—2. Without delay i. e. without taking any rest or without sitting; for an instant.
খাড়াদম
**खड़ेदम**
ଠିଆରେ ଠିଆରେ } ଅନ୍ୟରୂପ
ଠିଆ ଠିଆରେ }
( ଯଥା—ତୁ ଡାକଘରୁ ପାର୍ସେଲ୍‌ଟି ଠିଆ ଠିଆ ନେଇ ଆସିବୁ )

**ଠିଆ ଠିଆ ହେବା**—ଦେ. କ୍ରି—୧ । ଅନିଚ୍ଛା ବା ଆଳସ୍ୟ ବଶତଃ କୌଣସି କାର୍ଯ୍ୟ ନ କରି ଠିଆ ହୋଇ ବିଳମ୍ବ କରିବା—1. To delay in doing a work (due to unwillingness or laziness) by halting and standing at intervals.
Ṭhiā ṭhiā heb

ସାଧାରଣ ଲୋକେ ଅନେକ ସ୍ଥଳରେ ହ୍ରସ୍ୱ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଥ' ନ ମିଳିଲେ 'କ୍ୱଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ।

୨। ଚାଲିବା ବେଳେ କାହାକୁ ଅପେକ୍ଷା କରି ଚାଲିବା; ମଝିରେ ରହି ରହି ଗତି କରିବା— 2. To loiter during walk; to walk with frequent halts.

**ଠିଅଡ଼୍**—ପ୍ରାଦେ. (ସମ୍ବଲପୁର) ବି (ଭୁଲ. ସ୍ଥ. ଠାଡ଼)—ଠିଆ; Ṭhiārd ଦଣ୍ଡାୟମାନ—Standing erect.

**ଠିଆ ପହଁରା**—ଦେ. ବି—୧। ପାଣିରେ ଠିଆ ହେବା ବାଗରେ ପହଁରିବା— Ṭhiā pahañrā 1. A dexterous mode of swimming with the legs in a standing position.
ਉਁਡ ਸੌਂਤਾਵ

୨। ଠିଆ ହୋଇ ଘର ଦ୍ୱାର ଝାଡ଼ୁଣିଦ୍ୱାରା ସମ୍ମାର୍ଜନ କରିବା ବା ଓଳାଇବା— 2. Sweeping a place while standing, i. e. without stooping low.

[ ଦ୍ର—ନଇଁ କରି ନ ଓଳାଇଲେ ଝାଡ଼ୁଣି ଅଦ୍ଧ ଚୂର୍ଣ୍ଣିରୂପେ ଭୂମିରେ ଲାଗେ ନାହିଁ। ]

**ଠିଆ ପହରା**—ଦେ. ବି—ଖଡ଼୍ଗପହରା; ବରାବର ଦଣ୍ଡାୟମାନ ଅବସ୍ଥାରେ Ṭhiā paharā (ଅର୍ଥାତ୍ ନ ବସି) ପହରା ଦେବା ବା ଜଗିବା— खाडा पाहारा ·Keeping watch while standing (i. e. **खड़ा पहरा** without sitting).

**ଠିଆ ପାଲ**—ଦେ. ବି—ଯେଉଁ ସତ୍ୟନାରାୟଣ ବା ସତ୍ୟପୀର ପୂଜାରେ Ṭhiā pālā ପୂଜକମାନେ ଠିଆ ହୋଇ ବା ନାଚି ନାଚି ପାଲା (ଠିଆପୂଜା—ଅନ୍ୟରୂପ) ବୋଲନ୍ତି—The chanting of Pālā songs by a band of musicians while standing or dancing.

[ ଦ୍ର—ସତ୍ୟନାରାୟଣ ପୂଜାର ପାଲା ବା ଗୀତକୁ ବସି କରି ପୋଥିଦ୍ୱାରା ବୋଲିବାକୁ 'ପୋଥିପୂଜା' ଓ ନାଚି କରି ବୋଲିବାକୁ 'ଠିଆପାଲା' ବା 'ଠିଆପୂଜା' ବୋଲାଯାଏ। ]

**ଠିଆ ପୁଚି**—ଦେ. ବି—ଯୁବତୀ ଓ ବାଳିକାମାନେ ଠିଆ ହେବା ଅବସ୍ଥାରେ Ṭhiā puchi ଅର୍ଥାତ୍ ଚାଲି ଚାଲି ଯେଉଁ ପୁଚି ଖେଳ ଖେଳନ୍ତି— A frisking dance danced by girls in a standing posture.

ଠିଆ ପୁଚି ନାରଙ୍ଗ, ଗୋଡ ଉଠନ୍ତି ସାରଙ୍ଗ—ପୁଚିଗୀତ।

[ ଦ୍ର—ବାଳିକାମାନେ ବସି ବସି ପୁଚି ଖେଳ ଖେଳନ୍ତି ଓ ଠିଆ ହୋଇ ବା ଚାଲି ଚାଲି ମଧ୍ୟ ପୁଚି ଖେଳନ୍ତି। ]

**ଠିଆ ଫୁଲି ଜନକ୍ ରଏତ୍**—ପ୍ରାଦେ. (ସମ୍ବଲପୁର) ବି—ଯେଉଁ ନିର୍ମଳ Ṭhiā phuli janak rāet ରାତ୍ରିରେ ଅତି ଶୁଭ୍ର ଚନ୍ଦ୍ରକିରଣ ପଡ଼ୁଥାଏ—A very clear moonlit night.

**ଠିଆ ବାଗରେ**—ଦେ.କ୍ରି ବିଣ—ଦଣ୍ଡାୟମାନ ଅବସ୍ଥାରେ; ଲମ୍ବ ବାଗରେ- Ṭhiā bāgare Perpendicularly.

**ଠିଆ ବାହି ଦଣ୍ଡା**—ଦେ. ବି—ମଲ୍ଲଭୂମିରେ ଲମ୍ବ ଭାବରେ ପୋତା Ṭhiā bāhi daṇḍā ହୋଇଥିବା କାଠ ଖୁଣ୍ଟ, ଯାହାକୁ ମଲ୍ଲ- **मालखंभ** ମାନେ ବାହୁ ଦ୍ୱାରା ଆଘାତ କରନ୍ତି; ମାଲଖୁମ୍ବ—A perpendicular pillar in a gymnasium against which the athletes strike their arms.

ରତ୍ନ ବେଦୀ କରନ୍ତିଛନ୍ତି ଠିଆ-ବାହି-ଦଣ୍ଡା। ପ୍ରାଚୀ, ବ୍ରହ୍ମକଳ୍ପଣ ଗୀତା।

**ଠିଆ ମରୁଡ଼ି**—ଦେ. ବି—କେଣ୍ଡା ବାହାର ହୀର ନ ହୋଇଥିବା Ṭhiā marurdi ଅବସ୍ଥାରେ ଜଳାଭାବରୁ ଧାନ ଗଛ ମରିଯିବା; ଧାନ ଗଛ ଫୁଲ ଉଡ଼େଇବା ପୂର୍ବରୁ ଜଳାଭାବରୁ ଶୁଖି ମଉଳିଯିବା—Withering of paddy plants for want of water while the ears of corn have not come out from the stalks.

[ ଦ୍ର—ଧାନଗଛ ଫୁଲ ଉଡ଼େଇବା ପରେ ଧାନ ମଧ୍ୟରେ ଗୁଣ୍ଡିଳ ଜନ୍ମେ। ଗୁଣ୍ଡିଳ ଜନ୍ମିବାରୁ ଧାନ କେଣ୍ଡାମାନ ଭାରି ହୋଇ ଯାଏ ଓ ଗଛରୁ ତଳକୁ ଝୁଙ୍କି ପଡ଼େ। ଧାନ କେଣ୍ଡାମାନ ଝୁଙ୍କିବା ପୂର୍ବରୁ ଧାନଗଛମାନ ଲମ୍ବ ଭାବରେ ଠିଆ ହୋଇ ଥାଏ। ସେହି ସମୟରେ ବର୍ଷା ନ ହେଲେ ଅର୍ଥାତ୍ ମରୁଡ଼ି ହେଲେ ତାକୁ ଠିଆ ମରୁଡ଼ି ବୋଲାଯାଏ। ]

**ଠିଆ ମୁତୁରା**—ଦେ ବିଣ. ପୁଂ—ଯେଉଁ ବ୍ୟକ୍ତି ଠିଆ ଠିଆ ମୂତ୍ରତ୍ୟାଗ କରେ- Ṭhiā muturā One who makes water standing. (ଠିଆ ମୁତୁରୀ—ସ୍ତ୍ରୀ)

**ଠିଆ ମେଲା**—ଦେ. ବିଣ--ସମ୍ପୂର୍ଣ୍ଣ ରୂପେ ଉନ୍ମୁକ୍ତ (ଦ୍ୱାର)— Ṭhiā melā Wide open (door). (ଆଉଜେଇଲା; ଦରମେଲା; ଆଡ଼ମେଲା—ବିପରୀତ)

**ଠିଆ ଯୋଗୀ**—ଦେ. ବି—ଯେଉଁ ଯୋଗୀ ଦିବାରାତ୍ରି ଠିଆ ହୋଇ ରହନ୍ତି- Ṭhiā jogi An anchorite who passes his whole **ठाडेश्वरी** time (day and night) in a standding posture.

[ ଦ୍ର—ଏମାନେ ଠିଆରେ ଠିଆରେ ଖାଆନ୍ତି, ମଳୋତ୍ସର୍ଗ, ମୂତ୍ରୋତ୍ସର୍ଗାଦି କରନ୍ତି ଓ ଗୋଟିଏ ଅଲଗୁଣୀ ବା ବୃକ୍ଷଶାଖା ବା କାନ୍ଥକୁ ଆଉଜି ଠିଆରେ ଠିଆରେ ନିଦ୍ରା ଯାଆନ୍ତି। ]

**ଠିଆରିଆ**—ପ୍ରାଦେ. (କଟକ) ବିଣ. (ଗାଳି)— Ṭhiāriā ୧। ବିଚାରହୀନ; ଚିନ୍ତାହୀନ; ଅବିବେଚକ— 1. Thoughtless.

୨। ଅଭଦ୍ର— 2. Uncouth; rude (Howells).

**ଠିଆରିଆ କଥା**—ପ୍ରାଦେ. (କଟକ) ବି—୧। ଅବଜ୍ଞାସୂଚକ କଥା— Ṭhiāriā kathā 1. Disrespectful or impertinent language.

୨। ଉପରଠାଉରିଆ କଥା—2. Half-hearted utterance; superficial words.

**ଠିଆରିଆ କାମ**—ପ୍ରାଦେ. (କଟକ) ବି—ଉପରଠାଉରିଆ କାମ; ଯେଉଁ Ṭhiāriā kāma କାମକୁ ମନୁଷ୍ୟ ମନ ଲଗାଇ କରେ ନାହିଁ— Work done half-heartedly; superficial work.

| ୧ | ୮ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇପ୍ସ | ଡ଼ୃଅ | ଲ୍ଲ |
|---|---|---|---|---|---|---|---|---|---|---|---|---|---|---|
| ୨ | ଐ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ତ |

ଠିଆରେ ଠିଆରେ—ଦେ. କ୍ରି. ବିଣ—ଠିଆ ଠିଆ ( ଦେଖ )
Ṭhiāre ṭhiāre Ṭhiā ṭhiā ( See )

ଠିଆ ଲଙ୍ଗୁଳି ଖେ(କ୍ଷେ)ତ—ଦେ. ବି—ଯେଉଁ ଜଳମଗ୍ନ କ୍ଷେତ୍ରରେ
Ṭhiā languli khe(kshe)ta ସର୍ବଦା ଅଣ୍ଟୁକଠାରୁ ବେଶି ଜଳ
(ଠିଆଲଙ୍ଗୁଳିଆ କ୍ଷେତ—ଅନ୍ୟରୂପ) ପୂର୍ଣ୍ଣ ଥାଏ । ଯେଉଁ କ୍ଷେତରେ କୃଷି-ପ୍ରକ୍ରିୟା ସବୁ ( ଯଥା—ଧାନରୁଆ, ହଳବଙ୍କ, ଖେଳୁଆ ଆଦି ) କୃଷକ ଠିଆ ହୋଇ କରିବାକୁ ବାଧ୍ୟ ହୁଏ— Water-logged field where the agriculturist is obliged to perform agricultural operations in a standing posture ( as there is more than knee-deep of water in it ).

ଠିଆ ହଗୁରା—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ଠିଆ ହୋଇ ଝାଡ଼ା
Ṭhiā hagurā ଫେରେ—A person who eases himself
( ଠିଆ ହଗୁରୀ—ସ୍ତ୍ରୀ ) in a standing posture (e. g. without sitting.)

ଠିଆ ହଗୁରା ମାଛି—ଦେ· ବି— ଏକପ୍ରକାର ବଡ଼ ମାଛି—
Ṭhiā hagurā māchhi A kind of big flea.
[ ଦ୍ର—ଏ ମାଛିମାନେ ଖାଦ୍ୟ ଉପରେ ଗୁଳି ଗୁଳି ହଗି ଦିଅନ୍ତି, ସେ ବିଷ୍ଠା ସଙ୍ଗେସଙ୍ଗେ କୃମିରେ ପରିଣତ ହୋଇଯାଏ । ]

ଠିଆ ହେବା—ଦେ. କ୍ରି. ( ସଂ. ସ୍ଥିର ଭୂଳ; ପ୍ରା. ଠିଆ ଲମ୍ବା ସ୍ଥା
Ṭhiā hebā ଧାତୁ ସ୍ଥା=ଠିଆ )—
ଖାଡ଼ାହଓୟା; দাঁড়ান ୧ । ଛିଡ଼ା ହେବା; ଗୋଡ଼ରେ ଦଣ୍ଡାୟମାନ
खड़ा होना; ठाढ़ा होना ହେବା—1. To stand on the legs; to stand up.

୨ । ଲମ୍ବ ଭାବରେ ଅବସ୍ଥାନ କରିବା; ଭୂପୃଷ୍ଠ ସଙ୍ଗେ ସମକୋଣ ଉତ୍ପନ୍ନ କରି ଅବସ୍ଥାନ କରିବା—
2 To stand erect or perpendicularly; to stand on end.
( ଯଥା—ବାଘକୁ ଦେଖି ମୋ ଦେହର ଲୁମସାକ ଠିଆ ହୋଇଗଲା । )

୩ । ଉପସ୍ଥିତ ହେବା; ଅବସ୍ଥାନ କରିବା—
3. To be present.
( ଯଥା—ସେ ଗଛଟା ଛଅ ବର୍ଷ ହେଲା ମଠ ସେଠିପରେ ଠିଆ ହୋଇ ରହିଅଛି । )

୪ । ମସ୍ତକ ଉତ୍ତୋଳନ କରିବା—
5. To raise one's head.
( ଯଥା—ଲଜ୍ଜାରେ ମୁଁ ଦାଣ୍ଡରେ ଠିଆ ହୋଇ ପାରୁ ନାହିଁ )

୫ । ( ଲିଙ୍ଗ ) ଉଦ୍ରିକ୍ତ ହେବା—5. To become rigid and erect (said of the male organ).

୬ । ବିପକ୍ଷତା ଆଚରଣ କରିବା—
6. To stand against.
( ଯଥା—ସେ ସର୍ବଦା ମୋ ବିପକ୍ଷରେ ଠିଆ ହେଉଅଛନ୍ତି )

୭ । ସମକକ୍ଷ ହେବା; ପ୍ରତିଯୋଗୀ ହେବା—
7. To cope ( with ); to vie (with ).
( ଯଥା—ବଳରେ ଭୀମ ଆଗରେ ଠିଆ ହେବାକୁ କୌରବମାନଙ୍କ ମଧ୍ୟରେ ଜଣେ କେହି ବୀର ନ ଥିଲେ । )

୮ । ଅନୁସରଣ ବା ପ୍ରାର୍ଥନାର ପୂରଣାର୍ଥ କୌଣସି ବ୍ୟକ୍ତିଙ୍କ ନିକଟରେ କିଛି କାଳ ଠାକ ରହିବା—8. To dance attendance on a person for the grant of some prayer; to wait upon a person.
(ଯଥା—ସେଉ ଏଥର କେତେ କାହା ଦୁଆରେ ଠିଆ ହଉଛି ତା ହିସାବ ସରିବ ନାହିଁ ।)

୯ । (ଲକ୍ଷଣାର୍ଥ) ଉପଯୁକ୍ତ ହେବା; ଯୋଗ୍ୟ ହେବା—
9. (figurative) To stand on one's own legs.
(ଯଥା—ତା ପିଲାଟିମାନେ ଆଜି ସରିକ ଦାଣ୍ଡରେ ଠିଆ ହେଲେ ।)

୧୦ । ( ଲକ୍ଷଣାର୍ଥ ) ଗୃହ ଆଦି ସମ୍ପୂର୍ଣ୍ଣରୂପେ ନିର୍ମିତ ହେବା; ସମାପ୍ତ ହେବା—10. ( figurative ) (a house) To be erected or completed.

୧୧ । (ଲକ୍ଷଣାର୍ଥ) (କୌଣସି ଅନୁଷ୍ଠାନ) ଅନୁଷ୍ଠିତ ହେବା—
11. To be started.

୧୨ । (ଲକ୍ଷଣାର୍ଥ) ନିର୍ବାଚନ ପାଇଁ ପ୍ରାର୍ଥୀ ହେବା—
12. To stand as a candidate for an Election.

[ଦ୍ର—ଇଂରାଜୀରେ ଷ୍ଟାଣ୍ଡ (stand) ପରି ଠିଆ ହେବାର ଅନେକ ଲକ୍ଷଣସୂଚକ (figurative) ବ୍ୟବହାର ଦେଖାଯାଏ]
[ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଯିବା, ରହିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ ।

ଠିଏ ଠିଏ—ଦେ. କ୍ରି. ବିଣ.—କେବଳ ମାତ୍ର ଠିଅ ବା ଠିଗ୍ରିକୁ ଆଶ୍ରା
Ṭhie ṭhie କରି—Depending upon props only (said of old delapidated houses and walls which are supported by props).
(ଯଥା—ଦଦରା କାନ୍ଥକୁ ମୁଁ ଠିଏ ଠିଏ ଏ କରିଷ ସମ୍ଭାଳି ନେବି ।)

ଠିଁ—ଦେ. ଅ.—ଠି (ଦେଖ)
Ṭhiṅ Ṭhi (See)

ଠିକ୍—ଦେ. ବିଣ. (ସଂ. ସ୍ଥିର୍ ଧାତୁ=ସନ୍ନିହିତ, ଗୋପନ; ଲମ୍ବା ସ୍ଥଗ୍,
Ṭhik ଷ୍ଟାକ୍ ଧାତୁ=ପ୍ରତିଘାତ)—୧ । ପ୍ରକୃତ; ଯଥାର୍ଥ—
ঠিক 1. Actual; exact.
ठीक (ଯଥା—ମୁଁ ଆପଣଙ୍କ ଆଗେ ଘଟଣାର ଠିକ୍ ବିବରଣ କହୁଛି)

୨ । ଶୁଦ୍ଧ; ଅଭ୍ରାନ୍ତ—2. Correct; right,
(ଯଥା—ଏ ଛାତ୍ରର ଅଙ୍କ ଖଣ୍ଡିକ ଠିକ୍ ହୋଇଛି ।)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦେଖିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ଚିହ୍ନା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୩ । ଉପଯୁକ୍ତ—3. Fit; fitting; proper.
(ଯଥା—ଠିକ୍ ସମୟରେ ନ ଶୋଇଲେ ମୋ ଦେହ ବିଗିଡ଼େ)
୪ । ନିର୍ଦ୍ଦିଷ୍ଟ ବା ନିର୍ଦ୍ଧାରିତ ସମୟରୁ କ୍ଷଣମାତ୍ର ବେଶି ବା କମ୍ ନୁହେଁ—Precise; punctual.
(ଯଥା—ସେ ଠିକ୍ ୧୨ଟା ବେଳେ ଆସି ପହଞ୍ଚି ଗଲା ।)
୫ । ତତ୍ତ୍ୱରୂପ, ସ୍ୱାଭାବିକ—5. Natural.
(ଯଥା—ଚିତ୍ରଟା ଠିକ୍ ବାଘଛୁଆ ପରି ଦିଶୁଛି ।)
୬ । ସତ୍ୟ—6. True.
(ଯଥା—ସାକ୍ଷୀ ହାକିମଙ୍କ ଆଗରେ ହଲପ ନେଇ ଠିକ୍ କଥା କହି ଗଲା ।)
୭ । ଅବିକଳ—7. Genuine, exact.
(ଯଥା—ଏ ପିତଳ ଖଣ୍ଡିକ ଠିକ୍ ସୁନା ପରି ଦେଖାଯାଉଛି)
୮ । ନିଶ୍ଚିତ—8. Certain; accurate.
(ଯଥା—ହଜି ଥିବା ବଳଦର ଠିକ ଖବର ମୁଁ ପାଇଲି ନାହିଁ ।)
୯ । ସ୍ଥିର; ନିଶ୍ଚଳ—9 Sure; stable; fixed.
(ଯଥା—ଘୋଡ଼ା ପିଠିରେ ଠିକ୍ ଆସନ ଜମାଇ ବସି ନ ପାରିଲେ ତୁମେ ଖସି ପଡ଼ିବ ।)
୧୦ । ନ୍ୟାୟପର; ସତ୍—
10. Upright; just; honest; righteous.
(ଯଥା—ରାଜା ଠିକ୍ ବିଚାର କଲେ ।)
୧୧ । ସ୍ଥିରୀକୃତ; ନିଶ୍ଚିତ—11. Certain; ascertained.
(ଯଥା—ମକରମାସର ୮ ଦିନକୁ ବିବାହ ଠିକ୍ ହେଲା ।)
୧୨ । ଦୋଷଶୂନ୍ୟ—
12. Faultless; free from blemishes.
(ଯଥା— ଏ ପିଲାଟାର ଆଚରଣ ଠିକ୍ ଅଛି ।)
୧୩ । ଅପରିବର୍ତ୍ତନୀୟ; ଅଟଳ—
13. Firm; unchangeable.
(ଯଥା—ଆମ ସାଆନ୍ତଙ୍କ ଜବାବ୍ ଠିକ୍ ଅଛି ।)
୧୪ । ଅଚ୍ଛା; ସୁନ୍ଦର; ଉତ୍ତମ—14. Good.
(ଯଥା—ତୁମ୍ଭଙ୍କ ମିଜାଜ୍ ଠିକ୍ ଥିଲାବେଳେ ମୋ ଗୁହାରିଟା ତୁମ୍ଭରେ ପକାଇଦେବି ।)
୧୫ । ସୁଶାସିତ—15. Brought under control.
(ଯଥା—ଚାବୁକମୁଆର ଦୁଷ୍ଟ ଘୋଡ଼ାକୁ ଠିକ୍ କରିଦେଲା ।)
୧୬ । ସୁଧାରିବାକୁ ଆନୀତ; ସୁଧୁରିଥିବା—
16. Set right.
(ଯଥା—ଘଡ଼ିବାଲା ବିଗିଡ଼ିଥିବା ଘଣ୍ଟାକୁ ଠିକ୍ କରି ଦେଲା ।)
୧୭ । ସୁବ୍ୟବସ୍ଥିତ—
17. Nicely arranged; well organised.
କ୍ରି. ବିଣ.—୧ । ସତ୍ୟରେ; ସତେ ସତେ—1. Truly.
୨ । ସମ୍ପୂର୍ଣ୍ଣରୂପେ—2. Fully; completely.
୩ । ନିଶ୍ଚିତରୂପେ; ନିର୍ଦ୍ଦିଷ୍ଟରୂପେ—
3. Certainly; surely.
୪ । ନିୟମିତରୂପେ—4. Punctually.
୫ । ପ୍ରକୃତରେ—5. Actually.
୬ । ଅବିକଳ—6. Exactly.
୭ । ନ୍ୟାୟତଃ—7. Righteously; justly.
୮ । ଅବିକଳ—8. Exactly.
୯ । ଉପଯୁକ୍ତରୂପେ—9 Properly.
୧୦ । ଅଭ୍ରାନ୍ତରୂପେ—10. Correctly, unerringly.
୧୧ । କ୍ଷଣମାତ୍ର ଆଗପଛ ନ କରି—11. Punctually.
୧୨ । ସମାନଭାବରେ—12. Equally.
୧୩ । ସୁନ୍ଦରଭାବରେ—13. Nicely; well.

ଠିକ୍ କରିବା—ଦେ. କ୍ରି (ଧମକାଣରେ ବ୍ୟବହୃତ)—୧ । (ଲକ୍ଷଣାର୍ଥ)
Ṭhik karibā ସୁଶାସିତ କରିବା ବା ଜବତ୍ କରିବା—
ठिक करा 1 (figurative) To bring under control;
**ठीक बनाना** to teach a lesson.
(ଯଥା—ମୁଁ ତତେ ଠିକ୍ କରି ଦେବି)
୨ । ନିଷ୍ପନ୍ନ ବା ସମ୍ପନ୍ନ କରିବା—2. To complete; to accomplish.
୩ । ନିଶ୍ଚୟ ବା ସ୍ଥିର କରିବା; ନିରୂପଣ କରିବା—
3. To ascertain; to settle; to make sure.
୪ । ବାଟକୁ ଆଣିବା; ସୁଧାରିବା—4. To set right.

ଠିକ ଠାକ୍—ଦେ. ବିଣ ଓ କ୍ରି. ବିଣ—୧ । ସୁନିଶ୍ଚିତ; ସ୍ଥିରୀକୃତ—
Ṭhik-ṭhāk 1. Settled.
ठिक्ठाक्, **ठिकठाक** ୨ । ନିୟମାଧୀନ—2. Ordered; orderly
୩ । ନିରୂପିତ; ନିର୍ଦ୍ଦିଷ୍ଟ—3. Certain; ascertained.
୪ । ସୁସମାହିତ—4. Completed; well arranged.
୫ । କମ୍ ବା ବେଶି ନ ହୋଇ—5. Fitting, exact; precise.
୬ । ନିଷ୍ପତ୍ତି କରି ଯାଇଥିବା—
6. Decided; settled.

ଠିକ୍ ଠିକଣା—ଦେ. ବି.—୧ । ସ୍ଥିରତା—1. Certainty.
Ṭhik ṭhikaṇā ୨ । ବନ୍ଦୋବସ୍ତ; ଆୟୋଜନ –
ठिकठेकाना; **ठिकाटिकाना** 2. Arrangement.
୩ । ସ୍ଥିରୀକରଣ—3. Ascertainment.
୪ । ଇୟତ୍ତା—Estimate.
୫ । ସୁବ୍ୟବସ୍ଥା—5. Good arrangement; nice order.

ଠିକ୍ଡ଼ି—ପ୍ରାଦେ. (ସମ୍ବଲପୁର) ବି—ଠିକ୍ରି; ତାସ୍ ଖେଳର ନାଲି
Ṭhik ṛḍi ଚତୁଷ୍କୋଣାକୃତି ରଙ୍ଗ—
The diamond of cards.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଚ | ଡ଼ | ଋ,ଈ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଯ୍ | ଓଅ | ୟ |
| ୨ | ଈ | ଡ଼ | ରୁ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯଁ | ସ | ଗଁ୍ୟ | ଇଅ | ଜ୍ଞ | ନ୍ |

ଠିକ୍ରି—ଦେ. ବି—ଠିକରି ( ଦେଖ )
Ṭhik-ri Ṭhikiri (See)

ଠିକ—ଦେ. ବି—୧ । ନିଶ୍ଚୟ—1. Surety; precision; accuracy.
Ṭhika
୨ । ସମଷ୍ଟି—2. Addition; summing up; total.
ଗରଭ ହୋଇଥିବା ଗାଈଙ୍କ ମାନଙ୍କ
ନାମ ପକାଇଲେ କରଣେ କରି ଠିକ—କୃଷ୍ଣସିଂହ.ମହାଭାରତ. ବନ ।
୩ । ସ୍ଥିରତା—3. Fixity; stability.
୪ । ସଂକ୍ଷିପ୍ତ ବା ସାରକଥା—4. Summary.
ଯେତେ କହିଲ ବେଦ ଠିକ—ପ୍ରାଚୀ ନିର୍ଗୁଣ ମାହାତ୍ମ୍ୟ ।
ବିଣ—୧ । ସାର; ବହୁମୂଲ୍ୟବାନ୍ ( କଥା )—
1. Very valuable.
(ଯଥା—ଠିକ କଥା ପଦେ ଏ ସମୟରେ ଶୁଣା ଯାଉ ନାହିଁ । )
୨ । ସୁନ୍ଦର; ମନୋହର—
2. Charming; graceful; nice.
ଅରେ ଠିକହାସି । ଠକପଣ ପୁଣି କହୁ ଥାଏ ମିଶି—କବିସୂର୍ଯ୍ୟ.ସଙ୍ଗୀତ ।
୩ । ସମ୍ପୂର୍ଣ୍ଣ; ଅଚ୍ଛିନ୍ନ—3. Complete; full.
ଠିକଠ ବର୍ତ୍ତୁଳ ଚନ୍ଦ୍ରାନନା ତୋ ତନ୍ତ୍ରରେ—କବିସୂର୍ଯ୍ୟ କଳୋଲି ଚମ୍ପୁ ଠ ଗୀତ ।

ଠିକ କରିବା—ଦେ. କ୍ରି—୧ । ସମଷ୍ଟି କରିବା; ଯୋଗ କରିବା—
Ṭhika karibā 1. To sum up; to add together.
ठिक देओया ୨ । ଏକାଧିକ ସଂଖ୍ୟାର ଯୋଗଫଲ ବାହାର କରିବା—
**जोड़ना** 2. To cast up a sum, to work out the total of more than one number.

ଠିକ ଠିକ—ଦେ. ବିଣ ( ବହୁବଚନ )—୧ । କୌଣସି ସମାଜର ବା
Ṭhika ṭhika ସ୍ଥାନର ବଶିଷ୍ଟ ବା ଗଣ୍ୟମାନ୍ୟ (ବ୍ୟକ୍ତିଗଣ)—
1. Very respectable and leading ( persons ) of a locality or society. elite;
(ଯଥା—ଏ ଗାଆଁରୁ ଠିକ ଠିକ ୫ ଜଣ ଲୋକଙ୍କୁ ଡାକି ଏ ନିଷ୍ପତ୍ତି କରାଇବା । )
୨ । ସାର; ମୂଲ୍ୟବାନ୍—
2. Substantial; valuable.
ଶୁଣ ବାବୁ ନରକାର ଠିକଠିକ କଥା—ପ୍ରାଚୀ ବ୍ରହ୍ମନିରୂପଣଗୀତା ।
୩ । ବଛା ବଛା—3. Chosen; select.

ଠିକଣା—ଦେ. ବି [ସଂ ସ୍ଥା ଧାତୁ (Beams); ସଂ. ସ୍ଥାନ ]—
Ṭhikaṇā ୧ । ସ୍ଥିରତା; ଥୟ; ନିଶ୍ଚୟତା—
ठिकाना 1. Stability; certainty; precision; fixity.
**ठिकाना** ୨ । କୂଳ କିନାରା, ତତ୍ତ୍ୱ; ନିଦର୍ଶନ; କଳନା—
2. Trace or vestige of any thing.
୩ । ପତ୍ତା; ବାସସ୍ଥାନ, କୌଣସି ବ୍ୟକ୍ତିଙ୍କ ରହିବା ସ୍ଥାନ—
3. Residence; address; where-abouts of a person.
୪ । ସତ୍ୟ ବା ସୁନିଶ୍ଚିତ ସମ୍ବାଦ—4. Accurate or exact information.
୫ । ଯୋଗାଡ଼; ଆୟୋଜନ; ବନ୍ଦୋବସ୍ତ—
5. Arrangement; disposition.
୬ । ଶେଷ ସୀମା, ଶେଷ ଉଦ୍ଦେଶ୍ୟ—
6. The end; last aim; desired limit.
୭ । କୌଣସି ବିଷୟର ସ୍ଥିରୀକରଣ—
7. Ascertainment.

ଠିକଣା କରିବା—ଦେ. କ୍ରି.—୧ । ଅନୁସନ୍ଧାନଦ୍ୱାରା କୌଣସି ବିଷୟର
Ṭhikaṇā karibā ସୁନିଶ୍ଚିତ ସମ୍ବାଦ ସଂଗ୍ରହ କରିବା—
ঠিকানা করা 1. To gather exact information.
**ठिकाना करना** ୨ । ଠାବ କରିବା—
2. To trace an affair; to seek.
୩ । ସୁଧାରିବା—3. To set right.
୪ । ଯୋଗାଡ଼ କରିବା; ଆୟୋଜନ କରିବା—
4 To arrange.
୫ । ସ୍ଥିର କରିବା—
5. To fit; to ascertain; to settle.
୬ । ଖୋଜି ବାହାର କରିବା—6. To find out; to seek out.

ଠିକଣା ଲଗା(ଗେ)ଇବା—ଦେ. କ୍ରି.—ଠିକଣା କରିବା (ଦେଖ)
Ṭhikaṇā lagā(ge)ibā Ṭhikaṇā karibā (See)
ঠিকানা লাগান **ठिकाना लगाना**

ଠିକଣା ଲାଗିବା—ଦେ. କ୍ରି.—୧ । କୌଣସି ବିଷୟର ପତ୍ତା ମିଳିବା—
Ṭhikaṇā lāgibā 1. A matter being traced.
ঠিকানা লাগা **ठिकाना लगना**
୨ । ସ୍ଥିରୀକରଣ—2. Settlement; ascertainment.

ଠିକ ଦେବା—ଦେ. କ୍ରି.—ଠିକ କରିବା—
Ṭhika debā Ṭhika karibā (See)

ଠିକ ବନ୍ଧ—ଦେ. ବି.—ଅଟଳ ବା ଦୃଢ଼ ବନ୍ଧ—
Ṭhika bandha A firm embankment.
ମନେ କଲ୍ପିଲ ମାନେ ସାଧୁ, ତକ୍ଷଣ ହୋଏ ଠିକବନ୍ଧ ।
ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।

ଠିକ ମୁଣ୍ଡ—ଦେ. ବି.—୧ । ଶେଷକାଳ; ମୃତ୍ୟୁକାଳ—
Ṭhika muṇḍa 1. Death.
(ଠିକଣାମୁଣ୍ଡ—ଅନ୍ୟରୂପ)
୨ । ଅଭିପ୍ରେତ ଶେଷ ସ୍ଥାନ—
2. Intended limit; terminus.

ଠିକର—ଦେ. ବି.—ଠୋକର (ଦେଖ)
Ṭhikar Ṭhokara (See)

ଠିକର ଖାଇବା—ଦେ. କ୍ରି.—୧ । ଝୁଣ୍ଟି ପଡ଼ିବା—
Ṭhikar khāibā 1. To stumble; to trip.
ঠোকর খাওয়া ୨ । ତଳେ ବାଜି ପୁଣି ଉପରକୁ ଉଠିବା—
**ठोकर खाना** 2. To rebound.

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ବୃଥ' ନ ମିଳିଲେ 'ବ୍ରଥ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅଙ୍ଖି' ନ ପାଇଲେ 'ଆଙ୍ଖି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଠିକରା(ରେ)ଇବା—ଦେ. କ୍ରି—୧ । ଠିକରିବାର ଣିଜନ୍ତରୂପ—
Ṭhikarā(re)ibā 1. The causative form of
ठिकवा, **ठिठकाना** 'Ṭhikaribā'.

୨ । ଝଲସାଇବା—2. To dazzle

କସ୍ତା ନୈଶଗିକ୍-ବାସ୍ପ ନାବକଇ ଆଖି ଠିକରଇ ।
ରାଧାନାଥ. ମହାଯାତ୍ରା ।

[ଠିକରା(ରେ)ଇବା—ଅନ୍ୟରୂପ]

ଠିକରିବା—ଦେ. କ୍ରି.—(ସ. ସ୍ତୁକ୍, ସ୍ତୁକ୍=ପ୍ରତିଘାତ)—(ଆଖି) ଝଲସି
Ṭhikaribā ଯିବା ବା ବୁଜି ହୋଇ ଯିବା; ବାଧା ପାଇବା—
ठिकवाना To be dazzled; to be dazed (said of the
**ठिठकना** eyes.)

ଠିକରି ପଡୁଛି ଠାବେ ଠାବେ ନେତ୍ର ହେଉ ଏ ଚନ୍ଦ୍ରମା ହାତ ।
ରାଧାନାଥ. ପାର୍ବତୀ ।

[ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ପଡ଼ିବା, ଯିବା କ୍ରିୟାର ସମାପିକାରୂପ ଲାଗେ ।]

ଠିକା—ଦେ. ବି.—(ସ. ସ୍ଥିରୀକରଣ)—୧ । କୌଣସି କାମ ପାଇଁ
Ṭhikā ଆଗରୁ ସ୍ଥିରୀକୃତ ମୂଲ୍ୟ ବା ଦର—
ठिका 1. Contracted rate for a whole work;
**ठेका** consolidated fare for a work agreed to beforehand.

୨ । ପୂର୍ବରୁ ପାରିଶ୍ରମିକ ଚୁକ୍ତି କରି ବା ସ୍ଥିର କରି କରାଯିବା କାର୍ଯ୍ୟ; କାଣ୍ଟ୍ରାକ୍ଟ କାମ—2. Job-work; piece-work; work done by contract.

୩ । ଅସ୍ଥାୟୀ କାର୍ଯ୍ୟ ବା ଚାକିରି—
3. Temporary service or arrangement.

୪ । ମଜୁରିରେ କରାଯିବା କାମ—
4. Hire; mercenary work.

୫ । ଠିକାରେ କାମ କରିବା ପ୍ରଣାଳୀ ବା ରୀତି—
5. Contract system.

୬ । ଇଜରା; ନିର୍ଦ୍ଦିଷ୍ଟ କର ରେ କିଛି କାଳ ପାଇଁ ଦିଆଯିବା ଭୂସମ୍ପତ୍ତିର ପଟ୍ଟା—Ijara; farming; temporary lease.

टेक्का ୭ । ତାସ୍ ଖେଳରେ ଏକ ସଂଖ୍ୟା ଚିହ୍ନିତ ତାସ୍—
**ईक्का** 7. The ace in card play.

ଦେ. ବିଣ—୧ । ଅସ୍ଥାୟୀ—1. Temporary.

୨ । ଆଗରୁ ପାରିଶ୍ରମିକ ସ୍ଥିର ହୋଇଥିବା (କାର୍ଯ୍ୟ)—
2. Contracted (work).

ଠିକା(କେ)ଇବା—ଦେ. କ୍ରି—୧ । କୌଣସି ବ୍ୟକ୍ତିର ସମ୍ମୁଖରେ ବାଧା
Ṭhikā(ke)ibā ହାବୁଡ଼େଇବା—1. To make a man
ठेकान encounter obstacles; to put obstacles in
**ठिकवाना** one's way.

୨ । ମନୁଷ୍ୟକୁ ଶିକ୍ଷା ଦେବା—
2. To teach a man a lesson.

୩ । ଠିକ୍ କରିବା; ଠିକଣା ବା ସ୍ଥିର ବା ମନୋନୀତ କରିବା—3. To settle or select a thing wanted

(ଯଥା—ଚାଷ ଓ ଶଗଡ଼ ଦୁଇକାମର ଉପଯୋଗୀ ଗୋଟିଏ ବଳଦ ମୁଁ ଠିକେଇଛି ।)

ଠିକା ଗାଡ଼ି—ଦେ. ବି—ଭଡ଼ାଟିଆ ଗାଡ଼ି; ଭଡ଼ା ଦିଆ ଯାନ—
Ṭhikā gāṛdi Hackney carriage.
ठीकागाड़ी **किरायागाड़ी**

ଠିକାଠିକା—ଦେ.ବିଣ(ବିଶ୍ଳ)—୧ । ଗୋଟିଏ ଗୋଟିଏ;ଗୋଟାଗୋଟାକିଆ-
Ṭhikā-ṭhikā 1. Solitary

୨ । ବିରଳ—2. Rare.

ଠିକାଦାର—ଦେ. ବିଣ—୧ । କାଣ୍ଟ୍ରାକ୍ଟଦାର; କାମଚୁକ୍ତି; କଣ୍ଟ୍ରାକ୍ଟର—
Ṭhikā-dār 1. Contractor; one who undertakes
ठीकादाव to do any work on contract system.
**ठिकेदार**

ନାନାପ୍ରକାର ମିଷ୍ଟାନ୍ନ, ନାନାପ୍ରକାର ପେୟ, ଆସନ,
ତାମ୍ବୁଲାଦି ପର୍ଯ୍ୟନ୍ତ ସବୁ ଠିକାଦାର ହାଜିର ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

୨ । ଇଜାରାଦାର; ବାର୍ଷିକ ବା ସାମୟିକ ଜମାରେ ଗାଁ ଅନ୍ଦର ମାଲ୍ ଆଦାୟର ସ୍ୱତ୍ୱ ପଟ୍ଟାନେଇ ଥିବା ବ୍ୟକ୍ତି—
2 Ijaradar; a peron who takes a farming lease.

ପ୍ରାଦେ. (ସମ୍ବଲପୁର) ବିଣ—ଗ୍ରାମର ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ନିର୍ଦ୍ଦିଷ୍ଟ ରାଜସ୍ୱ ଜମିଦାରଙ୍କ ନିକଟ ଦାଖଲ କରିବା ପାଇଁ ନିର୍ଦ୍ଦିଷ୍ଟ କାଳ ନିମନ୍ତେ ଇଜାରା ନେଇଥିବା ବ୍ୟକ୍ତି—Farmer of a village under a zamindar.

ଠିକାଦାରି—ଦେ. ବି—ଠିକାଦାରର କାର୍ଯ୍ୟ—The position or
Ṭhikādāri state of being a contractor.
ठीकादावि **ठीकेदारी**

ଠିକା ଦେବା—ଦେ. କ୍ରି—କୌଣସି କାର୍ଯ୍ୟକୁ ନିରୂପିତ ପାରିଶ୍ରମିକ ଓ
Ṭhikā debā ସମୟରେ ଶେଷ କରିବା ନିମନ୍ତେ କାଣ୍ଟ୍ରାକ୍ଟ ଉପରେ
ठीका देओया ଅର୍ପଣ କରିବା—To let out a work on
**ठीका देना** contract.

ଠିକା ନେବା—ଦେ. କ୍ରି—କୌଣସି କାର୍ଯ୍ୟକୁ ଠିକା ପ୍ରଣାଳୀରେ ନିଷ୍ପନ୍ନ
Ṭhikā nebā କରିବା ନିମନ୍ତେ ଭାର ଗ୍ରହଣ କରିବା—
ठिका लओआ To undertake any work on contract.
**ठीका लेना**

ଠିକିବା—ଦେ. କ୍ରି. (ସ. ସ୍ତୁକ; ସ୍ତୁକ ଧାତୁ=ପ୍ରତିଘାତ)—
Ṭhikibā ୧ । ଗତିରୁଦ୍ଧ ହେବା; ବାଧା ପାଇବା; ହାବୁଡ଼ିବା—
ठीका; ठेका 1. To be obstructed; to be hindered; to
**ठिकना** encounter a hindrance.

| ୧ | ଋ | ଉ | ର୍ୟ,ର୍ବ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଙ୍ଗ,ଙ୍କ | ଞ୍ଜ | ଇପ୍ସ | ଉଅ | ଊ |
|---|---|---|---|---|---|---|---|---|---|---|---|---|---|---|
| ୨ | ଌ | ଊ | ଋ | ଌ | ଯ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ୍ର | ଙ୍ଖ | ଇଅ | ଊ | ୠ |

୨ । କୌଣସି ଦୃଢ଼ପଦାର୍ଥରେ ଆଘାତ ପାଇବା —
2. To strike against a hard thing; to collide against a hard thing.

୩ । ଝେକାଯିବା; ଅଟକାଯିବା—
3. To be detained or checked.

୪ । ଅତିରିକ୍ତ ହେବା, ସମଧିକ ହେବା; ବଳପଡ଼ିବା —
4. To exceed.

୫ । ନିଶ୍ଚିତ ହେବା—5. To be fixed or settled

୬ । ସଂସାରରେ ବା କାର୍ଯ୍ୟକ୍ଷେତ୍ରରେ ଧକ୍କା ପାଇବା —
6. To encounter difficulties in one's field of action or in the world.

ଠିକ ଯିବା—ଦେ. କ୍ରି —୧ । କାର୍ଯ୍ୟକ୍ଷେତ୍ରରେ ବାଧା ପାଇବା—
Thiki jibā 1. To meet with difficulties.
ठीके याओया ୨ । ଅକୃତକାର୍ଯ୍ୟ ହେବା—
ठीक जाना 2. To be baffled.

ଠିକିରି—ଦେ. ବି—୧ । ତାସ୍‌ଖେଳରେ ନାଲିରଙ୍ଗ ଚତୁଷ୍କୋଣ ଆକାରର
Thikiri ତାସ୍; ରୁହିତନ୍—1. The diamond cards of card play.
কইতন
ईंट ୨ । ଗୁଡ଼ାଖୁ ଖାଇବା ଚିଲମର କଣ୍ଠଦେଶରେ ଦିଆଯିବା ଗୋଡ଼ି—2. A bit of flint put at the neck
ठिकवी of the mouthpiece or receiver of a
कंकड़ hubble-bubble.

ଠିକିରିବା—ଦେ. କ୍ରି—ଠିକରିବା (ଦେଖ)
Thikiribā Thikaribā (See)

ଠିକିରି ବାହାରିବା—ଦେ. କ୍ରି—ଫୁଟି କରି ବାହାରିବା; ପ୍ରକଟିତ ହେବା-
Thikiri bāharibā To bulge out.

ଠିକ ଶିଖିବା—ଦେ. କ୍ରି— ସଂସାରକ୍ଷେତ୍ରରେ ନାନା ବାଧା ଅନୁଭବ କରି
Thiki sikhibā ଶିକ୍ଷା ବା ଅଭିଜ୍ଞତା ଲାଭ କରିବା; ଅନୁଭବଦ୍ୱାରା
ঠীকে শিখা କର୍ତ୍ତବ୍ୟଦର୍ଶୀ ହେବା—To learn a lesson or to acquire experience by encountering difficulties in the world.
[ ଦ୍ର—ଠିକିଲା ନାରୀ ଘର କରେ—ପ୍ରବଚନ; ଏହାର ଅର୍ଥ =ଯେଉଁ ସ୍ତ୍ରୀ ସଂସାରରେ ବହୁତ ଦୁଃଖ ପାଇଥାଏ ସେ ଖୁବ୍ ଅଭିଜ୍ଞତା ଲାଭ କରେ । ]

ଠିକେ—ଦେ. ଅ—ଠିକ୍ କଥା କହିବାକୁ ଗଲେ— To speak the
Thike truth; roughly speaking
କ୍ରି. ବିଣ—ସଂକ୍ଷେପରେ; ସ୍ଥୂଳତଃ—Briefly, roughly.

ଠାରୁ ଜଗତେ ବିଶେ, ଠିକେ କହି ଦେବ ଭସେ । କବିସମ୍ରାଟ୍, ସଙ୍ଗୀତ ।

ଠିକେ ଠିକେ—ଦେ. କ୍ରି. ବିଣ—୧ । ସଂକ୍ଷେପରେ—
Thike thike 1. Briefly; succinctly.
୨ । ସ୍ଥୂଳତଃ—2. Roughly; on the whole.

ଏଥକୁ ଅନ୍ୟେମାନେ ଠିକେ ଠିକେ ଏକୁ କଥା ଲେଖି ମଙ୍ଗଳାଜୀ
ଅଟବୀଚର ମର୍ଯ୍ୟାଦା ... ନାରିବାକୁ ଚେଷ୍ଟା କରନ୍ତୁ ।
ଫକୀରମୋହନ, ଛମାଣଆଠଗୁଣ୍ଠ ।

ଠିକେଣ—ଦେ. (ପଦ୍ୟ) ଅ—ଠିକେ ଠିକେ ( ଦେଖ )
Thikena Thike thike ( See )

ଠିକେଦାର—ପ୍ରାଦେ. (ସମ୍ବଲପୁର) ଛ ( ଭୁଲ. ହି. ଠୀକେଦାର୍ )—
Thikedār - ଠିକାଦାର ( ଦେଖ )—Thikādār (See)

ଠିକ୍କା—ଦେ. ବି—୧ । ତାସ୍ ଖେଳରେ ଗୋଟିଏ ବିନ୍ଦୁ ବା ସଂଖ୍ୟା
Thikkā ଥିବା ତାସ୍ ଖଣ୍ଡ; ଟିକ୍କା—
টেক্কা 1. The ace of cards; the card having
एक्का a single point on it.
[ ଦ୍ର—ତାସ ଖେଳରେ ୪ ରଙ୍ଗ ( ନାଲି ପାନ—Heart, ଇସ୍କାପାନ ବା କଳାପାନ-Spade, ଚିଡ଼ିତନ —Club, ଏବଂ ଠିକିରି ବା ରୁହିତନ୍—Diamond), ପ୍ରତ୍ୟେକ ରଙ୍ଗର ୧୩ପଟ ଲେଖାଏଁ ( ୧ ଠାରୁ ୧୦, ଗୋଲାମ—୧୧, ବିବି—୧୨, ସାହେବ—୧୩ ) ଥାଏ । ୧ ସଂଖ୍ୟା ବା ବିନ୍ଦୁ ଯୁକ୍ତ ତାସର ମୂଲ୍ୟ ୧୪ ଅର୍ଥାତ୍ ସମସ୍ତଙ୍କ ଅପେକ୍ଷା ଅଧିକ । ଏଥିପାଇଁ ସମସ୍ତଙ୍କ ମଧ୍ୟରୁ ପ୍ରଧାନ ବ୍ୟକ୍ତିଙ୍କୁ 'ଠିକ୍କା' ସଙ୍ଗେ ତୁଳନା କରାଯାଏ । ]
୨ । ବହୁ ଲୋକଙ୍କ ମଧ୍ୟରେ ପ୍ରଧାନ ବ୍ୟକ୍ତି—
2. The chief person in an assemblage.

ଠିପି—ଦେ. ବି. ( ସ୍ଥା ଧାତୁ ଣିଜନ୍ତ ସ୍ଥାପି ଧାତୁ )—
Thipi ଶିଶି ପ୍ରଭୃତିର ମୁହଁ ବନ୍ଦ କରିବା ନିମିତ୍ତ ଦିଆଯାଇ
छिपि ଥିବା ଘୋଡ଼ଣି ବା ଖିଲ—A cork; plug;
ठेपी stopper.

ଠିପିଦାର—ଦେ. ବିଣ— ଠିପି ଦିଆଯାଇଥିବା (ବୋତଲ ବା ଅନ୍ୟପାତ୍ର)-
Thipi dār Corked; stoppered ( bottle )
छिपिदार ठेपीदार

ଠିର୍କା—ପ୍ରାଦେ. (ଗଡ଼ଜାତ) ବି—ବାଉଁଶ ନିର୍ମିତ ବାଦ୍ୟ ଯନ୍ତ୍ର ବିଶେଷ-.
Thir-kā A kind of contrivance made of bamboo
(ଠରକା—ଅନ୍ୟରୂପ) which is struck with 2 sticks and produces a hollow sound which scares away wild beasts from fields during the night.
[ ଦ୍ର—ଗୋଟିଏ ପୋଲା ବାଉଁଶ ନଳୀରୁ ଫାଳେ ଚିରି ତାହାର ପଛ ପାଖ ମୁନ୍ଦ ସେଥିରେ ଖଣ୍ଡିଏ ଦଉଡ଼ି ଲଗାଇ ୨ ଖଣ୍ଡ କାଠିରେ ତା ଉପରେ ଆଘାତ କଲେ ଯେଉଁ ଶବ୍ଦ ହୁଏ ରାତିରେ ଫସଲ ନଷ୍ଟ କରୁଥିବା ପଶୁମାନେ ଡରିଯାଇ ପଳାନ୍ତି । ]

ଠିର୍କା(କେ)ଇବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କୁ ବା ଜୀବକୁ ଆଗରୁ
Thirkā(ke)ibā ସାବଧାନ କରି ଦେବାକୁ କୌଣସି ସ୍ଥଳରୁ ସେ ଗଳି
[ଠିରକା(କେ)ଇବା—ଅନ୍ୟରୂପ] ଯିବାର ଉପାୟ କରିବା;
ଟିରକେଇବା—To warn away a person or animal from a place.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'କଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟା'ନ ପାଇଲେ 'ଆଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ।

ଠିରିକା—ପ୍ରାଦେ. (ଗଡ଼ଜାତ) ବି—ଠିର୍କା ( ଦେଖ )
Ṭhirikā — Ṭhirkā ( See )

ଠିରିକିବା—ଗ୍ରା. କ୍ରି—ମାଟିରୁ ପାଣି ବା ଆର୍ଦ୍ରତା ଶୁଖି ଯିବା ( ମାଟି ଟାଣ ହୋଇଯାଏ )—To dry up ( said of a soil ) and harden.
Ṭhirikibā
(ଠିରିକିଯିବା—ଅନ୍ୟରୂପ)

ଠିଲ୍—ଦେ. ବିଣ. ( ସଂ. ସ୍ଥୂଳ )—
Ṭhil — ୧ । ସମ୍ପୂର୍ଣ୍ଣ—1. Full.
ଭରପୂର — (ଯଥା—ଭୋଜନରେ ମୋ ପେଟ ଠିଲ୍ ହୋଇଗଲା ।)
ठिलाठिल — ୨ । ପ୍ରଚୁର—2. More than sufficient.

ଠିଲେଇବା—ଦେ. କ୍ରି. ( ସଂ. ସ୍ଥୂଳ )—
Ṭhileibā — ୧ । ଅଧିକ ମାତ୍ରାରେ ପୂର୍ଣ୍ଣ ହେବା—
ठिलना — 1. To be full to overflowing.
( ଯଥା—ନଈରେ ପାଣି ଠିଲେଇଛି । )
୨ । ପଛଆଡ଼ୁ ଠେଲିବା—
2. To push from behind.
( ଯଥା—ଗଙ୍ଗାରେ କୁଅର ପାଣି ଠେଲେଇଛି । )

ଠୁ—ଦେ. ଅ—ଠୁଁ ( ଦେଖ )—
Ṭhu — Ṭhuṅ ( See )
ପ୍ରାଦେ. (ମେଦନୀପୁର) କ୍ରି. (ପ୍ରତ୍ୟୟ)—ଛୁ (ଭୁ)—
(thou) Art doing.

ଠୁଇଲ୍ ହେବା—ପ୍ରାଦେ. ( ସମ୍ବଲପୁର ) କ୍ରି—
Ṭhuil hebā — ଠୁଳ ହେବା; ଏକତ୍ର ହେବା—
To be assembled; to be gathered.

ଠୁଂରି—ବୈଦେ. ବି. ( ହି. ଠୁମ୍ରି )—ଠୁମ୍ରି ( ଦେଖ )
Ṭhumri — Ṭhum-ri ( See )

ଠୁଁ—ଦେ. ଅ. ( ପଞ୍ଚମୀ ବିଭକ୍ତିର ଚିହ୍ନ )—୧ । ଠାରୁ—
Ṭhuṅ — 1. From.
थेके — ନୋହିଲେ ମରିବ ମୁଁ ଛାଡ଼ ମୋଠୁଁ ସ୍ନେହ ।
से — କୃଷ୍ଣସିଂ. ମହାଭାରତ. ବନ ।
୨ । ଅପେକ୍ଷା—2. Than.
୩ । ଅମୁକ କାଳରୁ; ଅବଧି—3. Since.

ଠୁଁସିବା—ଦେ. କ୍ରି—୧ । ଠେଁସିବା ( ଦେଖ )
Ṭhuṅsibā — 1. Ṭheṅsibā ( See )
ठूँसा — ୨ । ହାତୁଡ଼ିରେ ପିଟିବା—
ठुसकाना, ठुँसना — 2. To beat with a hammer.
୩ । ବାଡ଼ିର ଅଗ ବା ମୂଳରେ ଖୋଞ୍ଚିବା; ଖୁନ୍ଦିବା—
3. To ram.

ଠୁକ୍ଠାକ୍—ଦେ. (ଧ୍ୱନ୍ୟନୁକରଣ) ଅ ଓ ବି—ଠୁକୁଠୁକୁ ( ଦେଖ )
Ṭhuk-ṭhāk — Ṭhuku-ṭhuku ( See)

ଠୁକ୍ଠୁକ୍—ଦେ. (ଧ୍ୱନ୍ୟନୁକରଣ) ଅ ଓ ବି—ଠୁକୁଠୁକୁ ( ଦେଖ )
Ṭhuk-ṭhuk — Ṭhuku-ṭhuku ( See)

ଠୁକ—ଦେ. ବି—ଟୋକ (ଦେଖ)
Ṭhuka — Ṭoka (See..

ଠୁକ ଚଳିବା—ଦେ ବି. ( ସଂ. ସ୍ତୋକ )—ଠୁକି ଚଳିବା ( ଦେଖ )
Ṭhuka chaḻibā — Ṭhuki chaḻibā ( See )

ଠୁକର—ଦେ. ବି—ଠୋକର ( ଦେଖ )
Ṭhukara — Ṭhokara ( See )

ଠୁକ(କୁ)ରା(ରେ)ଇବା—ଦେ. କ୍ରି—ଠୋକରାଇବା ( ଦେଖ )
Ṭhuka(ku)rā(re)ibā — Ṭhokarāibā ( See )

ଠୁକା(କେ)ଇବା—ଦେ. କ୍ରି—ଠୁକିବା (୨) ( ଦେଖ )
Ṭhukā(ke)ibā — Ṭhukibā 2 ( See )
( ଯଥା—ଅବଧାନେ ବାଳକର ତାଳୁରେ ବେତ ଠୁକାଉ ଅଛନ୍ତି । )

ଠୁକା ଠିକି—ଦେ. ବି—ଠୁକାଠୁକି ( ଦେଖ )
Ṭhukā ṭhiki — Ṭhukā ṭhuki ( See)

ଠୁକା ଠୁକି—ଦେ. ବି—୧ । ଦୁଇ ଜଣଙ୍କ ମଧ୍ୟରେ ସାମାନ୍ୟ ଉତ୍ତର-ପ୍ରତ୍ୟୁତ୍ତର ବା କଳି—
Ṭhukāṭhuki
ঠোকাঠুকী — 1. A breeze; slight verbal altercation.
ठोंकठाँक
୨ । ପରସ୍ପର ମଧ୍ୟରେ ସାମାନ୍ୟ ଶବ୍ଦରେ ଆଘାତ ପ୍ରତିଘାତ—2 Mutual pecking at each other.
ଚରେଇ ଦର୍ଶିତ ଠୁକାଠୁକି—ଶିଶୁକ୍ରୀଡ଼ା ଗୀତ ।

ଠୁକି—ଦେ. ବି—ଟୋକ ( ଦେଖ )
Ṭhuki — Ṭoka ( See )

ଠୁକି ଚଳିବା—ଦେ. ବି ( ସଂ. ସ୍ତୋକ )—ସାମାନ୍ୟପ୍ରକାରରେ ଜୀବିକା ନିର୍ବାହ ହେବା; ଟୋକ ବା ଥୋକ ଚଳିବା—
Ṭhuki chaḻibā
Bare living; eking out of one's livelihood; having a frugal fare.

ଠୁକି ଠୁକି ଦେବା—ଦେ. କ୍ରି—ଗୁପୁଚୁଇବା; ଧୀରେ ଧୀରେ ଆଘାତ କରିବା—To pat; to strike slowly.
Ṭhuki ṭhuki debā
ठूका — ଅର୍ଜୁନ ବାହୁ ଆଞ୍ଚ ବୁଝିବା ପାଇଁକି
ठोंकना — ଚପି ଚପି ଇନ୍ଦ୍ର ସେ ଦେଲେ ଠୁକି ଠୁକି ।
କୃଷ୍ଣସିଂ. ମହାଭାରତ, ବନ ।

ଠୁକିବା—ଦେ. କ୍ରି (ସଂ. ଷ୍ଟୈ୍ୟ ଧାତୁ=ଶବ୍ଦ କରିବା; ଧୃଷ ଧାତୁ=କ୍ଲେଶନ; କିମ୍ବା ଧ୍ୱନ୍ୟନୁକରଣ )—
Ṭhukibā
ठुकान — ୧ । ଧୀରଭାବରେ କଠିନ ପଦାର୍ଥରେ ଆଘାତ କରିବା—
ठुकना — 1. To strike on a hard thing slowly.
ଠ ବଢ଼ିଲା ସ୍ୱନେ କଣ
ଠୁକିଲେ ହେଲେ ବମୁଗ—ବକ୍ରସୂର୍ଯ୍ୟ. ସଙ୍ଗୀତ ।
୨ । ଠୁକୁରାଇବା—2. To peck repeatedly; to strike gently.
୩ । (ଢେଳା) ଫିଙ୍ଗିବା—3. To pelt.
ଢେଳ ଠୁକିଲ ଲୋଷ୍ଟ ସବ ସୁପବ ଶ୍ରେଷ୍ଠ ଚନ୍ଦ୍ରଚୂଳ ଦେଖିଲ ଦ୍ୱାରକୁ ରେ ।
କବିସୂର୍ଯ୍ୟ. ସଙ୍ଗୀତ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ଯ | ଉ୍ଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଜ୍ଞ | ନ୍ |

ଠୁକୁଠାକ୍—(ଧ୍ୱନ୍ୟନୁକରଣ) ଅ ଓ ବି—ଠୁକୁଠୁକୁ (ଦେଖ)
Ṭhuku-ṭhāk Ṭhuku-ṭhuku (See).

ଠୁକୁଠୁକ୍ —ଦେ (ଧ୍ୱନ୍ୟନୁକରଣ) ଅ. ଓ ବି—ଠୁକୁଠୁକୁ (ଦେଖ)
Ṭhuku-ṭhuk Ṭhuku-ṭhuku (See).

ଠୁକୁଠୁକା—ଦେ. ବି—ବ୍ୟଞ୍ଜନର ପ୍ରକାରବିଶେଷ; କ୍ଷୁଦ୍ର ମତ୍ସ୍ୟାଦିର ଅଳ୍ପ ରସଯୁକ୍ତ ବ୍ୟଞ୍ଜନ; ଶ୍ରେଷ୍ଠ ମାଛ କିମ୍ବା ଶ୍ରେଷ୍ଠ ଫଳ-
Ṭhuku-ṭhukā
ଚଡ଼ଚଡ଼ୀ, ସଡ଼ସଡ଼ୀ
ବଡ଼ି ବା ଛତୁକୁ ମସଲା ପାଣି ଦେଇ ପାଣି ଶୁଖି-ଯିବା ଅବସ୍ଥା ପର୍ଯ୍ୟନ୍ତ ଚୁଲିରେ ବସାଇ ତିଆର କରିବା ବ୍ୟଞ୍ଜନ, ଯେଉଁ ଅବସ୍ଥାରେ ତାହା ସଜଳ ବା ନିର୍ଜଳ ହୋଇ ନାହିଁ—Curry cooked in such a manner that it is neither watery nor waterless.

ଠୁକୁଠୁକୁ— ଦେ ଅ. (ଧ୍ୱନ୍ୟନୁକରଣ) ଅ (ବହୁବଚନ)—ଦୃଢ଼ ପଦାର୍ଥରେ ଆଘାତ ଜନିତ ଧୀର ଅନୁଚ୍ଚ ଶବ୍ଦ; ମୃଦୁ ଆଘାତଜନିତ ଶବ୍ଦ--Tapping sound; sound of gentle strokes on hard substance; ticking sound.
Ṭhuku-ṭhuku
ठुकठाक्, ठुकुठुकु
ठुमकठुमक

'ବାଡ଼ି ଠୁକୁ ଠୁକୁ କାନ ନଡ଼ିବା,
ବାଟେ ହିଁ କିବର ଦେଖିବ ଏକା,
ପାଆକେ କୁମ୍ଭାର କୋଣକେ ଢେଲ
ବାପଘର ହେଲେ ନ ଯିବ ଟେଲ—ଭାକରୁଷି ବଚନ ।

[ ବ୍ୟୁ—ଠକ ଠକ ଶବ୍ଦଠାରୁ ଠୁକୁ ଠୁକୁ ଶବ୍ଦ କ୍ଷୀଣତର । ବଢ଼େଇମାନେ ସାଧାରଣତଃ ବାଡ଼ିଆଇ ଦ୍ୱାରା କାଠ କାଟିଲା ବେଳେ 'ଠକଠକ' ଶବ୍ଦ ହୁଏ, କିନ୍ତୁ ଶ୍ରେଷ୍ଠ ବାଡ଼ିଆଇରେ ସୂକ୍ଷ୍ମ କାମ କଲା ବେଳେ ଠୁକୁଠୁକୁ ଶବ୍ଦ ଶୁଣାଯାଏ । ]

ବି—ଗୃହର ଆଭ୍ୟନ୍ତରୀଣ କଳହ, ଯାହାକି ସାଧାରଣରେ ପ୍ରଘଟ ହୋଇ ନ ଥାଏ—Slight bickerings in a family, which is not known to outsiders.

ଠୁକୁର ଠୁକୁର—ଦେ. ଅ. ( ଧ୍ୱନ୍ୟନୁକରଣ )—ଠୁକୁ ଠୁକୁ ( ଦେଖ )
Ṭukur ṭhukur Ṭhuku ṭhuku ( See )
(ଠୁକୁରୁ ଠୁକୁରୁ—ଅନ୍ୟରୂପ)

ଠୁକୁରା(ରେ)ଇବା—ଦେ. କ୍ରି. ( ହି. ଠୋକ୍ନା=ପକ୍ଷୀର ଚଞ୍ଚୁ )—
Ṭhukurā(re)ibā ୧ । ଠୁକ ଠୁକ ଶବ୍ଦ କରି ବା ଦୃଢ଼ ପଦାର୍ଥରେ
ठोकराना ସାମାନ୍ୟ ଆଘାତ କରି କୌଣସି କାର୍ଯ୍ୟ କରିବା—
ठुकराना 1. To do anything by making a gentle hard sound.

୨ । ଠୋକରାଇବା; ଥଣ୍ଟ ଦ୍ୱାରା କଠିନ ବସ୍ତୁରେ ସାମାନ୍ୟ ଆଘାତ କରିବା—2. To peck.

ଠୁକେଇ ଠୁକେଇ—ଦେ. କ୍ରି. ବିଣ. ( ଠୁକାଇବା କ୍ରିୟାର ଅସମାପିକା ରୂପର ଦ୍ୱିତ୍ୱ; କ୍ରି. ବିଣ ରୂପେ ବ୍ୟବହୃତ )—
Thukei ṭhukei
ठकठक
ठुमकठुमक
ଭୂମିରେ ନାଡ଼ିଧୀର ନାଡ଼ିଶୀଘ୍ର ପାଦ ପକାଇ ( ଚାଲିବା )—( to walk ) With slow foot steps.

ଠୁଙ୍କା—ଦେ. ବି—୧ । ଶ୍ରେଷ୍ଠ ଠେଙ୍ଗାଦ୍ୱାରା ପ୍ରହାର—
Ṭhuṅkā 1. Beating; beating with a short
ठोंकनी, ठेंकन् cudgel; cudgelling.
ठोंक
୨ । ଅବରୋଧ କରିବା; କଏଦ୍ କରିବା—
2. Confinement.

୩ । ଆକଣ୍ଠ ଭୋଜନ—3. Full meal.

ଠୁଙ୍କା(ଙ୍କେ)ଇବା—ଦେ. କ୍ରି—ଅନ୍ୟ ବ୍ୟକ୍ତି ଦ୍ୱାରା ଠୁଙ୍କା ବା ପ୍ରହାର କରାଇବା—To cause a person to be cudgelled.
Ṭhuṅkā(ṅke)ibā
ठोंकना
ठोंकवाना
( ଯଥା—ପିଲାମାନେ ଘରେ ଦୁଷ୍ଟାମୀ କରିବାରୁ ପିତା ଗୁରୁଙ୍କୁ କହି ସେମାନଙ୍କୁ ଆଚ୍ଛାକରି ଠୁଙ୍କେଇଲେ । )

ଠୁଙ୍କା ଠୁଙ୍କି—ଦେ. ଅ—୧ । ଶ୍ରେଷ୍ଠ ଠେଙ୍ଗା ଦ୍ୱାରା ପରସ୍ପର ମଧ୍ୟରେ
Ṭhuṅkā ṭhuṅki ମାଡ଼ ମରାମରି—1. Mutual cudgelling.
ठोंकाठोंकि ୨ । ଠେଙ୍ଗା ଦ୍ୱାରା ପ୍ରହାର—
ठोंकाठोंकि 2. Cudgelling

ଠୁଙ୍କିବା—ଦେ. କ୍ରି. ( ଠକର ଠକର ଧ୍ୱନ୍ୟନୁକରଣ )—
Ṭhuṅkibā ୧ । ଠେଙ୍ଗା ବା ଶ୍ରେଲ ବାଡ଼ିର ଗୋବ ଦ୍ୱାରା
ठोंका, ठुका ପ୍ରହାର କରିବା; ଗୁଳ୍ପିବା—1. To strike
ठोंकना or give blows with the butt of short stout sticks.

୨ । ଠେଙ୍ଗା ଦ୍ୱାରା ପ୍ରହାର କରିବା—
2. To cudgel.

୩ । (ବ୍ୟଙ୍ଗ) ଖାଦ୍ୟ ଦ୍ରବ୍ୟକୁ ଖୁବ୍ କରି ବା ପେଟକୁ ଠୁଙ୍କି କରି ଖାଇବା; ଆକଣ୍ଠ ଭୋଜନ କରିବା—
3. (ironical) To eat one's full.

( ଯଥା—ସେ ତିନି ବେଳ ଠୁଙ୍କି ଦେଇ ଯା' ଦୁଆର ତା ଦୁଆର ହୋଇ ବୁଲୁଛି । )

୪ । କାରାବଦ୍ଧ କରିବା; ଘର ଭିତରେ ବନ୍ଦ କରି ଦୁଆର ପକାଇ ଅଟକିବା—4 To imprison or keep a person in confinement.

( ଯଥା—ସେ ଦୁଷ୍ଟକୁ ୨ ଘଣ୍ଟା ଅନ୍ଧାର ଘରେ ଠୁଙ୍କି ଦେଲା । )

୫ । କାରାବନ୍ଧନ ଆଦେଶ ଦେବା; ଜେଲ୍ ଦେବା—
5. To pass a sentence of imprisonment.

( ଯଥା—ମେଜେଷ୍ଟ୍ରେଟ ଚୋରକୁ ୩ ମାସ ମିଆଦ ଠୁଙ୍କି ଦେଲେ । )

୬ । ଆଘାତ କରିବା—6. To strike.

ଠଣା ଠୁଙ୍କି ତାପ ତ୍ରାସ ମୂର୍ଚ୍ଛେ ମନମଥ ପାଶ
ବନ୍ଧନ କରି ତୁ ମତେ ମୋ ଚିତ୍ତରେ । କବିସୂର୍ଯ୍ୟ, କଳୋସାଚମ୍ପୂ, ୦ ଗୀତ ।

୭ । ବନ୍ଦ ହୋଇଥିବା କବାଟରେ ହାତ ଗୋଡ଼ ବା ଆଙ୍ଗୁଠି ଆଘାତ କରିବା—7. To knock at ( the door ).

ଜଣିଜମ ହୋଇ ଥାଏ ବକତ
ଅସି ନସେ ଠୁଙ୍କ ଯାହା କବାଟ । କବିସୂର୍ଯ୍ୟ, ସଙ୍ଗୀତ ।

ସାଧାରଣ ଲୋକେ ଅ ୨ ୨ ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନ ଯେକୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ସଥାକ୍ରମେ ଚିହ୍ନର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଅ' ନ ମିଳିଲେ 'କୃଅ' ଦେଖିବେ; 'ବନ୍ଧୁ'କି ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୮ । ଧୀରେ ଧୀରେ ଆଘାତ କରିବା—
8. To strike slowly.

ମୁଣ୍ଡ ନବେଶିଲା ନାକ ଉପରେ
ଛିଡ଼ ଠାକି ଅଟକିଲା କପାଳେ । ଭଞ୍ଜ ଲାବଣ୍ୟବତୀ ।

୯ । ପିଟିବା; ମାଡ଼ଦେବା—9. To beat; to thrash.

୧୦ । ଖିଲ ଆଦିକୁ ଛୋଟ ଛିଦ୍ରରେ ବାଡ଼େଇ ପୁରାଇବା—
10 To drive a peg into a small hole.

୧୧ । (ନାଲିସ, ଅଭିଯୋଗ, ମକଦମା) ଦାଏର କରିବା—
11. To file (a suit or complaint or case).

୧୨ । ଥାପଡ଼େଇବା; ଧୀରେ ଧୀରେ ଚପେଟାଘାତ କରିବା—
12. To pat; to tap

**ଠୁଙ୍ଗା**—ଦେ ବଣ—୧ । ଶାଖାପତ୍ରାଦିବର୍ଜିତ; ଥୁଣ୍ଟା (ଗଛ)—
Ṭhuṅgā 1. Pollard (tree); lopped off.

ठूँठा ୨ । (ସଂ. ନଗ୍ନ) ଲଙ୍ଗଳା; ବସ୍ତ୍ରାଦି ଦ୍ୱାରା ଅନାବୃତଶରୀର—
ठूँठ 2. With naked or uncovered body.
খোলা ঘড়ংগ

[ ଦ୍ର—ଯେଉଁ ବ୍ୟକ୍ତିର ସର୍ବାଙ୍ଗରେ ଲୁଗା ନ ଥାଏ ତାକୁ ଲଙ୍ଗଳା (ନଗ୍ନ) ବୋଲିଯାଏ । ଯେଉଁ ବ୍ୟକ୍ତି ଖଣ୍ଡିଏ ମାତ୍ର ଲୁଗା ବା କନା ଅଣ୍ଟା ଚାରିପାଖେ ପିନ୍ଧିଥାଏ ଓ ଅଣ୍ଟାପାଖ ଓ ଅଣ୍ଟାତଳ ଛଡ଼ା ଶରୀରର ଅନ୍ୟ ଅଂଶମାନ ଅନାବୃତ ଥାଏ ତାକୁ ଠୁଙ୍ଗା ବୋଲିଯାଏ । ]

একলা ୩ । (ସଂ. ଏକାକୀ) ଏକାକୀ—
अकेला 3. Alone; solitary.

ବକ୍ଷା ଓଡ଼ା ହାତଖା ମୁହଁରେ ବୁଲାଇଦେଇ ଠୁଙ୍ଗା ହୋଇ ଗୁରୁପଦ ପାଖରେ ବସି
ବଡ଼ ବଡ଼ ଗୁଣ୍ଡାରେ ଗୁଡ଼୍ ଗୁଡ଼୍ ଶବ୍ଦରେ ଦଣ୍ଡକ ମଧ୍ୟରେ ପକ ଖାଲି କରି ଦେଲା ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ଦେ. ବି—୧ । ଏକ ବସ୍ତ୍ର ପରିଧାନକାରୀ ବ୍ୟକ୍ତିର ଅଣ୍ଟାଠାରୁ ଉପରକୁ ଥିବା ଅନାବୃତ ଦେହ—1. The bare upper part of the body of a person (who has got only one piece of cloth round the loins)

ঠোঁগা ୨ । (ସଂ. ଦ୍ରୋଣ) ଠୋଙ୍ଗା; ପତ୍ର ବା କାଗଜର ଠୋଲା—
दोना 2. A cone-shaped case made of leaves or paper (to put sweetmeats etc.).

**ଠୁଙ୍ଗ୍ରି**—ଦେ. ବି (ହି. ଠୁମ୍ରୀ)—ଠୁମ୍ରି ( ଦେଖ )
Ṭhuṅg-ri Ṭhumri ( See)

**ଠୁଠା**—ପ୍ରାଦେ (ସମ୍ବଲପୁର) ବଣ (ଥୁ ସ୍ଥାନରେ ଠୁ ଉଚ୍ଚାରଣ; ସଂ. ସ୍ଥାଣୁ;
Ṭhuṭhā ତୁଳ. ହି. ଠୁଠ୍)—୧ । ଯାହାର ହାତ, ଗୋଡ଼ ବା ଅଙ୍ଗୁଳି ଆଦି ଛିଣ୍ଡି ଯାଇଅଛି—1. Having no limbs or fingers; fingerless.

୨ । ପଙ୍ଗୁ; କୋଢ଼ିଆ—2. Leprous.

୩ । ଥୁଣ୍ଟା; ଶାଖାବିରହିତ ବୃକ୍ଷ)—
3. Lopped up (tree); pollarded.

ବି—୧ । ପଙ୍ଗୁ—1. A fingerless leper; a cripple
୨ । ଥୁଣ୍ଟା ଗଛ—2. Pollard.

**ଠୁଠା ରୋଗ**—ପ୍ରାଦେ. (ସମ୍ବଲପୁର) ବି—କୋଢ଼; କୁଷ୍ଠ ବ୍ୟାଧି—
Ṭhuṭhā rog Leprosy.

**ଠୁଠୁ**—ପ୍ରାଦେ. (ସମ୍ବଲପୁର) ବି—ସାତଗାଡ଼ି ଖେଳ ( ଦେଖ )
Ṭhuṭhu Sātagāti khela ( See )

**ଠୁଡ଼ଇବା**—ପ୍ରାଦେ. (ଜାଜପୁର) କ୍ରି—ଠୁଳ କରିବା—
Ṭhurḍaibā To gather; to amass

**ଠୁଣ୍‌କା**—ଦେ. ବି.—ଟୁଣୁକା (ଦେଖ)
Ṭhuṇ-kā Ṭuṇukā (See)

বেঁটে, খাট ବଣ.—[ସଂ. ଖଣ୍ଡିନ=ଖଣ୍ଡ(ଅସ୍ତ୍ରେ)]—୧ । ବାଙ୍ଗୁରା;
ठुमका ଠୁରା—2. Dwarf; diminutive.

(ଠୁଣ୍‌କୀ—ସ୍ତ୍ରୀ) ୨ । ଛୋଟ ଅଥଚ ସୁନ୍ଦର—2. Pretty; small and graceful.

୩ । ଛୋଟ ଅଥଚ ମୋଟ—
(ଠୁଣକା; ଠୁଣୁକା—ଅନ୍ୟରୂପ) 3. Short and stout; stumpy.

**ଠୁଣ୍‌କା ଠୁଣ୍‌କି**—ଦେ. ବି.—ଟୁଣୁକା (ଦେଖ)
Ṭhuṇ-kā ṭhuṇ-ki Ṭuṇukā (See)

**ଠୁଣ୍ ଠୁଣ୍**—ଦେ. (ଧ୍ୱନ୍ୟନୁକରଣ) ଅ· (ବହୁବଚନ)—ଟୁଣ୍ ଟୁଣ୍ ଶବ୍ଦ—
Ṭhuṇ ṭhuṇ Jingle; tinkling sounds.
ঠুংঠুং टुनटुन

**ଠୁଣ୍‌ଠୁଣ୍‌କା**—ଦେ. ବି.—ଟୁଣୁକା (ଦେଖ)
Ṭhuṇ-ṭhuṇkā Ṭuṇukā (See)
(ଠୁଣ୍‌ଠୁଣ୍‌କିଆ, ଠୁଣ୍‌ଠୁଣୁକା, ଠୁଣୁଠୁଣୁକିଆ, ଠୁଣୁଠୁଣୁକା—ଅନ୍ୟରୂପ)

**ଠୁଣା**—ଦେ. ବି.—୧ । ଟୁଣୁକା (ଦେଖ)
Ṭhuṇā 1. Ṭuṇukā (See)

ঠোনা ୨ । ଆଙ୍ଗୁଠିକୁ ବଙ୍କା କରି ଆଙ୍ଗୁଠିର ଗଣ୍ଠି ଦ୍ୱାରା ଅନ୍ୟର
ठोंगा ଖପୁରିରେ କରିବା ଆଘାତ ଠଣା—2. A blow by the knuckle of the fisted fingers dealt on the skull of another.

(ଠଣୀ—ସ୍ତ୍ରୀ) ବଣ. ପୁଂ.—ଠୁଣ୍‌କା (ଦେଖ)
Ṭhuṇ-kā (See)

**ଠୁଣି**—ଦେ. ବି.—ଟୁଣୁକା (ଦେଖ)
Ṭhuṇi Ṭuṇukā (See)

**ଠୁଣୁକା**—ଦେ. ବି.—ଟୁଣୁକା (ଦେଖ)
Ṭhuṇukā Ṭuṇu-kā (See)

(ଠୁଣୁକୀ—ସ୍ତ୍ରୀ) ବଣ. ପୁଂ—ଠୁଣ୍‌କା (ଦେଖ)
Ṭhuṇkā (See)

**ଠୁଣୁ ଠୁଣୁ**—ଦେ. (ଧ୍ୱନ୍ୟନୁକରଣ), ଅ.—ଠୁଣ୍ ଠୁଣ୍ (ଦେଖ)
Ṭhuṇu ṭhuṇu Ṭhuṇ ṭhuṇ (See)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ୯ | ଡ଼ | ଋ,ଌ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଜ୍ଞ | ଇପ୍ସ | ତ୍ଥ | ଞ |
| ୨ | ଝ | ଉ | ରୁ | ଲୁ | ଫ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ଢ଼ | ଟ |

ଠୁଣୁ ଠୁଣୁକା—ଦେ. ବ —ଟୁଣୁକା (ଦେଖ)
Ṭhuṇu-ṭhuṇukā  Ṭuṇukā (See)
(ଠୁଣୁ ଠୁଣୁକିଆ—ଅନ୍ୟରୂପ)

ଠୁଣ୍ଟ—ପ୍ରାଦେ. (ସମ୍ବଲପୁର) ବ.—(ଭୁକ. ହୁ. ଏହି ଅର୍ଥରେ ଠୁଁଟ); ଚଞ୍ଚୁ; ଥଣ୍ଟ—Beak of a bird.
Ṭhuṇṭ
(ଠୁଁଟ, ଠୁଁଠ, ଠୁଣ୍ଠ—ଅନ୍ୟରୂପ)

ଠୁଣ୍ଟା—ପ୍ରାଦେ. (ସମ୍ବଲପୁର) ବଣ.—ଥୁଣ୍ଟା (ଦେଖ)
Ṭhuṇṭā  Thuṇṭā (See)
(ଠୁଁଟା, ଠୁଁଠା, ଠୁଣ୍ଠା—ଅନ୍ୟରୂପ)

ଠୁଣ୍ଠି—ପ୍ରାଦେ. (ସମ୍ବଲପୁର) ବ —୧ । ଓଷ୍ଠ; ଚିବୁକ—
Ṭhuṇṭhi  1. Lip; chin.
୨ । ଚଞ୍ଚୁ; ଥଣ୍ଟ—2. Beak.

ଠୁଣ୍ଡି—ପ୍ରାଦେ. (ସମ୍ବଲପୁର) ବ.—ଠୁଣ୍ଠି ୧ (ଦେଖ)
Ṭhuṇḍi  Ṭhuṇṭhi 1 (See)
(ଠୁଣ୍ଡି, ଠୁଁଡି, ଠୁଁଡ଼ି—ଅନ୍ୟରୂପ)

ଠୁମ୍‌ରୀ—ଦେ. ବ.—ଚିପା ଗୀତର ତାଳ—
Ṭhum-ri  A light measure in music.
ठुंवी [ଦ୍ର—ଏଥିରେ ଦୁଇ ପାଦ ଥାଏ । ପ୍ରଥମ ପାଦରେ ୬୮
ठुमरी ଅକ୍ଷର ଓ ୨ୟ ପାଦରେ ୩୨ ଅକ୍ଷର । ପ୍ରତି ପାଦରେ ଷୋଡ଼ଶ ଅକ୍ଷରରେ ଯତି ପଡ଼େ ।]

ଠୁରା—ଦେ. ବଣ. ପୁଂ.(ସଂ. ଖଟ୍ଟନ)—ଖର୍ବକାୟ; ବାଙ୍ଗର—
Ṭhurā  Dwarfish; short; of low stature.
(ଠୁରୀ—ସ୍ତ୍ରୀ)
खाट  ठुमका; ठिंगना

ଠୁରି କାଣ୍ଡ—ପ୍ରାଦେ. (ସମ୍ବଲପୁର) ବ.—ବର୍ତ୍ତୁଳାକାର ମୁଖଯୁକ୍ତ ଶର—
Ṭhuri kāṇḍ  An arrow with a round head.
(ଠୁରକାଁଡ; ଠୁରୁକାଁଡ଼—ଅନ୍ୟରୂପ)

ଠୁରା ବେଙ୍ଗ—ଦେ. ବ.—ଲୁଲୁ ବେଙ୍ଗ; ଟଙ୍କ ବେଙ୍ଗ—
Ṭhurā beṅga  Small frog.
(ଠୁରୁବେଙ୍ଗ—ଅନ୍ୟରୂପ) କସ କଥା ? ବେଙ୍ଗ ମଥା ।
କ ବେଙ୍ଗ ? ଠୁରା ବେଙ୍ଗ । କାହାଣୀର ଲଥା ।

ଠୁଳ—ଦେ. ବଣ (ସଂ. ସ୍ଥୂଳ; ସ୍ତୂପୀକୃତ; ଭୁଲ ସଂ. ଅଷ୍ଠୀଳ)—
Ṭhuḷa  ୧ । ଗଦା କରାଯାଇଥିବା—1. Heaped up.
जड़  ୨ । ଏକତ୍ରୀଭୂତ; ସଂହତ; ମିଳିତ; ଯୁଣ୍ଡ—
इकट्ठा  2. Crowded; collected together; amassed.
ଗରଜନ ପବନ ହୋଇ ଏକ ମେଳ
ରହିଛନ୍ତି ଚହୁଁରେ ହୋଇଣ ସେ ଠୁଳ । କୃଷ୍ଣସିଂହ, ମହାଭାରତ ସଭା ।
୩ । ଦଳବଦ୍ଧ—3. Formed into a herd; herded together.
ପାଣି ପିଇବାକୁ ଅସିବେ ହୋଇ ଠୁଳ । କୃଷ୍ଣସିଂ ହ. ମହାଭାରତ. ବନ ।

୪ । ସମଷ୍ଟି କରାଯାଇ ଥିବା (ବହୁସଂଖ୍ୟା)—
4. Added up; totalled (many numbers).
ବ—୧ । ମୋଟ; ସମଷ୍ଟି—1. Collection; total.
जमा; थाक  ୨ । ଗଦା; ଥାକ—2. Heap; stack.
टाल; अटाला  ୩ । ରାଶି—3. Mass.
ବ ଓ ବଣ—ଠୂଲ (ଦେଖ)—Ṭhūla (See)

ଠୁଳ କରିବା—ଦେ. କ୍ରି. (ସଂ. ସ୍ଥୂଳ)—୧ । ଗଦା କରିବା; ଜମା କରିବା—1. To heap up; to amass.
Ṭhuḷa karibā
जड़ करा  ୨ । ସଂଗ୍ରହ କରିବା—2. To gather up.
टालकरना, बटोरना  ୩ । ବହୁଲୋକଙ୍କୁ ଏକଜ କରାଇବା—
3. To cause people to gather at a place.
୪ । ବହୁବସ୍ତୁକୁ ଏକତ୍ର ମିଶାଇବା—
4. To mix up many things.
୫ । (ବହୁସଂଖ୍ୟାକୁ) ଯୋଗ କରିବା; ଯୋଗ କରିବା—
5. To add up; to total.

ଠୁଳା(ଳେ)ଇବା—ଦେ. କ୍ରି—ଠୁଳ କରିବା (ଦେଖ)
Ṭhuḷā(ḷe)ibā  Ṭhuḷa karibā (See)

ଠୁଳାଇବା—ପ୍ରାଦେ. (ସମ୍ବଲପୁର) କ୍ରି—ଠୁଳ କରିବା (ଦେଖ)
Ṭhuḷāibā  Ṭhuḷa karibā (See)

ଠୁଲି—ଦେ. ବ. (ସଂ. ସ୍ଥୁ ଧାତୁ=ଅଚ୍ଛାଦନ)—ମୁଣ୍ଡର ଖପୁରି—
Ṭhuli  Skull.
खुली  खोपड़ी

ଠୁଳେ—ଦେ. କ୍ରି. ବଣ (ସଂ. ସ୍ଥୂଳତଃ)—୧ । ସ୍ଥୂଳରେ—
Ṭhuḷe  1. Roughly.
मोटे  ୨ । ଆଦୌ; ମୂଳରୁ; ଭେଟେ; ଜମାରୁ—
सारा, बिलकुल  2. At all.
(ଯଥା—ମୋର କଟକକୁ ଯିବାକୁ ଏବେ ଠୁଳେ ଇଚ୍ଛା ହେଉନାହିଁ ।)
୩ । ଏକତ୍ର; ସମଷ୍ଟିରେ; ମୋଟରେ—
3. In a lump; in the gross; altogether.
ଚହୁଁର ପ୍ରତଫଳ ଠୁଳେ
ଦେଖ ପାଇଲ ଏକାବେଳେ । ଭୂପତି. ପ୍ରେମପଞ୍ଚାମୃତ ।
୪ । (ସଂ. ସ୍ତୋକ) କିଞ୍ଚିନ୍ମାତ୍ର—4. A little.

ଠୁସିବା—ଦେ. କ୍ରି—ଠୁଁସିବା (ଦେଖ)
Ṭhusibā  Ṭhuṅsibā (See)

ଠୂଳ—ଦେ. ବ. (ସଂ. ସ୍ଥୂଳ)—୧ । (ତାନ୍ତ୍ରିକ ସାଧନା) ମାତ୍ରା; ଚିହ୍ନ; ଲକ୍ଷଣ—1. (tantric exercise) Sign; symbol.
Ṭhūḷa
ତୋ ବର୍ଣ୍ଣ ବେଦରୁ ବାହାର
ଠୂଳ ଶୂନ୍ୟରୁ ଅଭ୍ୟନ୍ତର । ପ୍ରାଚୀ. ବ୍ରହ୍ମରୂପଣ ଗୀତା ।
୨ । (ତାନ୍ତ୍ରିକ ସାଧନା) ଜୀବାତ୍ମା ଓ ଅକ୍ଷର ବା ପରମାତ୍ମାର ମିଳନ ସ୍ଥାନ; ଅର୍ଦ୍ଧ ମାତ୍ରା—2. (tantric exercise)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଅକ୍ଷି' ଦେଖିବେ, 'ଅଳବତ' ନ ପାଇଲେ 'ଅଲବତ୍' ଦେଖିବେ।

The centre where the Individual Soul and the Divine Soul meet.

ଅକାଶ ପରେ ପୃଥ୍ୱୀ କ ସେ
ଶୂନ୍ୟ ଉପରେ ଠଲ ବସେ । ଭୂପତି ପ୍ରେମପଞ୍ଚାମୃତ ।

ବିଣ—୧ । କେବଳ—1. Only; mere.

ଅବ୍ୟୟ ଅକ୍ଷୟ ଅଥୟ
ନାମଟି ଠୂଳ ଶୂନ୍ୟମୟ । ଭୂପତି. ପ୍ରେମପଞ୍ଚାମୃତ ।

୨ । ସ୍ଥୂଳରୂପ ଧାରୀ—
2. Having a material shape.

ବି ଓ ବିଣ— ଠୂଳ (ଦେଖ)—Ṭhuḷa (See)

**ଠୂଳରୂପ**—ଦେ. ବି—ସ୍ଥୂଳ ରୂପ, ଦେହଧାରୀ ଆକାର—
Ṭhūḷa-rūpa — Material shape.

ସାଧୂଜନଙ୍କୁ ହିତ କରେ
ଶୂନ୍ୟରେ ଠୂଳ ରୂପ ଧରେ । ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।

**ଠୂଳ ଶୂନ୍ୟ**—ଦେ. ବି (ତାନ୍ତ୍ରିକ ବା ଶୂନ୍ୟ ସାଧନା)—ଜୀବାତ୍ମା ପରମାତ୍ମାଙ୍କ ମିଳନ-ସ୍ଥଳ—(tantric exercise)
Ṭhūla śūnya — The imaginary centre or meeting place of the Individual Soul and the Divine Soul.

**ଠୂଳେ**—ଦେ. କ୍ରି. ବିଣ—ଠୂଳେ (ଦେଖ)
Ṭhūḷe — Ṭhuḷe (See).

ସବୁ ମିଶାଇ କର ଗାଏ
ଠୂଳେ ପାଇଛ ବଡଭାଏ—ଭୂପତି.ପ୍ରେମପଞ୍ଚାମୃତ ।

କିଛୁ ଅ (ସଂ. ସ୍ତୋକ)—କିଞ୍ଚିତ୍—
ଥୋଡ଼ା — A little.

ଇଚ୍ଛା ହୋଇଲେ ଗୁଲେ ଠୂଳେ
ଇଚ୍ଛା ହେଲେ ରହେ ନିଷ୍ଫଳେ—ପ୍ରାଚୀ ନିର୍ଗୁଣମାହାତ୍ମ୍ୟ ।

**ଠେ**—ଦେ. ଅ (ସଂ. ସ୍ଥାନେ; ତୁଲ. ପ୍ରା. ଠେଁ ୭ମୀ ବିଭକ୍ତିର ଚିହ୍ନ; ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ)—
Ṭhe
୧ । ଠାଇଁ; ଠାରେ; ସ୍ଥାନରେ—1 At; in.
୨ । ପ୍ରତି; ଆଡ଼େ—2. For; towards
ପ୍ରାଦେ (ମେଦିନୀପୁର) କ୍ରି (ପ୍ରତ୍ୟୟ)—
(ସେ) ଅଛି; ଛି—(he) Is.
(a verbal inflexion in the present tense, 3rd person, singular number).
(ଯଥା—ସେ ପାକକେ ଯାଇଠେ । )

**ଠେଁ**—ଦେ. ଅ—ଠେ (ଦେଖ)
Ṭheṅ — Ṭhe (See).

**ଠେଁଇଁ**—ଦେ. ଅ—ଠେ (ଦେଖ)
Ṭheṅiṅ — Ṭhe (See).
(ଠେଇଁ—ଅନ୍ୟରୂପ) ତା ମନ ଯା ଠେଇଁ ବରସେଇ ଗଲା ।
କୃତ୍ତିବାସୁମାଙ୍କ କଥଗୁଣ୍ଠୀ ।

**ଠେଁକି**—ପ୍ରାଦେ (ସମ୍ବଲପୁର) ବି—ଠେକି;. ମାଟିର ଛୋଟ ଘଡ଼ି—
Ṭheṅki — A small earthen pitcher or jug.

**ଠେଁକେ**—ପ୍ରାଦେ (ସମ୍ବଲପୁର) ଅ—ଠାରେ=
Ṭheṅke — At; in.

**ଠେଁଟା**—ପ୍ରାଦେ (ସମ୍ବଲପୁର) ବିଣ—ଥେଣ୍ଟା (ଦେଖ)
Ṭheṅṭā — Thenṭā (See).
(ଠେଣ୍ଟା, ଠେଁଠା, ଠେଣ୍ଠା—ଅନ୍ୟରୂପ)

**ଠେଁଠୁ**—ପ୍ରାଦେ (ଲଗଆ) ବି—ଗଳା; ବେକ—
Ṭheṅṭhu — Throat; neck.
(ଠେଣ୍ଠୁ—ଅନ୍ୟରୂପ)

**ଠେଁଠେଁ**—ଦେ (ଧ୍ୱନ୍ୟନୁକରଣ) ଅ—ଠୋ ଠୋ ୨ (ଦେଖ)
Ṭheṅ ṭheṅ — Ṭho ṭho 2 (See).

**ଠେଁସ**—ଦେ. ବି (ସଂ. ସ୍ଥା ଧାତୁ)—୧ । ଅବଲମ୍ବନ; ଠିଅ—
Ṭheṅsa — 1. Prop; support.
(ଠେସ—ଅନ୍ୟରୂପ) ୨ । ଆଉଜିବା—
ঠেস — 2. Leaning against.
ठेस; टेक ୩ । ପେଲା; ଧକ୍କା—3 Push.

**ଠେଁସ ଦେବା**—ଦେ. କ୍ରି—୧ । କୌଣସି ପଦାର୍ଥକୁ ଆଶ୍ରୟ କରିବା—
Ṭheṅsa debā — 1. To take the help of a prop.
(ଠେସ ଦେବା—ଅନ୍ୟରୂପ) ୨ । ଦୃଢ଼ ସଲଗ୍ନ ହୋଇ ଆଉଜିବା—
ঠেস দেওয়া — 9. To lean against.
टेक लगाना କୁନ୍ଦନ କୁମ୍ଭ କୁଚେ ଲେପି ଚନ୍ଦନ ଠେଁସ ଦିଏ ହୃଦୟର ।
ଭଞ୍ଜ. ଲାବଣ୍ୟବତୀ ।
୩ । ପେଲିବା—3. To push.

**ଠେଁସା**—ଦେ. ବି—୧ । ଆଧାର, ଭରା; ଆଶ୍ରୟ—
Ṭheṅsā — 1. Support; prop.
(ଠେସା—ଅନ୍ୟରୂପ) ୨ । ଠେଲା; ପେଲା—
ঠেসান — 2. Push.
୩ । ଆଦେଶ ନ ମାନିବା; ଅବାଧ୍ୟତା—
3. Disobedience of order; insubordination; recalcitrance; refractoriness.
ବିଣ. ପୁଂ—୧ । ଅବାଧ—1. Insubordinate.
ଠେଁସୀ } ସ୍ତ୍ରୀଲିଙ୍ଗ ୨ । ପେଲୁଥିବା—
ଠେଁସେଇ } 2. Pushing; shoving.
୩ । କାର୍ଯ୍ୟର ଦାୟିତ୍ୱ ଆପଣା ଉପରକୁ ନ ନେବା—
3. Evasive.
୪ । ଅମାନିଆ—4. Disobedient.
ঠেসা ୫ । ଯେଉଁ ବାଳକ ବା ଭୃତ୍ୟ ଗୁରୁଜନ ବା ପ୍ରଭୁଙ୍କ
मगरा ବାକ୍ୟକୁ ଅବଜ୍ଞାସୂଚକ ଜବାବ ଦିଏ—
5. Refractory; recalcitrant (boy or servant).

**ଠେଁସା(ସେ)ଇବା**—ଦେ. କ୍ରି—ଠେଁସିବାର ଣିଜନ୍ତରୂପ—
Ṭheṅsā(se)ibā — Causative form of Ṭheṅsibā.
ঠেসান

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | ଙ୍କ | ଇସ୍ପ | ଉଥ | ଘ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଥ | ଢ଼ | ନ୍ |

ଠେଁସାଠେଁସି—ଦେ. ବ—୧ । ପେଲାପେଲି; ଧକାଧକି; ଠେଲାଠେଲି—
Ṭheñsā-theñsi 1. Mutual pushing, jostling.
( ଠେସାଠେସି—ଅନ୍ୟରୂପ ) ୨ । କଥାରେ ପେଲାପେଲି—
ठेंसाठेंसि · 2. Mutual recrimination.
ঠেলাঠেলি ୩ । ଦୁଇ ଜଣଙ୍କର କୌଣସି କାର୍ଯ୍ୟ କରିବା ନିମନ୍ତେ ଅନିଚ୍ଛାପୂର୍ବକ ବିରୋଧ—
3. Mutual shuffling of work to each other's shoulder.

ଠେଁସିବା—ଦେ. କ୍ରି—୧ । ପେଲିବା—
Ṭheñsibā 1. To push; to jostle.
( ଠେସିବା—ଅନ୍ୟରୂପ ) ଘଣ ବୋଲୁ ଠେଁସେ ନଶି ଭାଷି ହସି ପଶିଗଲୁ
ठेंसना ঠেলনা ଅଲଂକାରରେ—କବିସୂର୍ଯ୍ୟ, ସଙ୍ଗୀତ ।
୨ । ଧକା ମାରିବା—2. To shove.
୩ । କଥାକୁ ଅବଜ୍ଞା କରିବା; କଥା ନ ମାନିବା—
3. To be refractory; to resist an order.
୪ । କାର୍ଯ୍ୟର ଦାୟିତ୍ୱ ଆପଣା ଉପରୁ ଖସାଇବା—
4. To shirk or shufle responsibility.
୫ । ଚାପିବା; କୌଣସି ବସ୍ତୁକୁ ଅନ୍ୟ ବସ୍ତୁରେ ଦୃଢ଼ରୂପେ ସଂଲଗ୍ନ କରିବା—5 To press.
ଠେଁସିଥାଇ ଉରେ ହରକରୁ—କବିସୂର୍ଯ୍ୟ, ସଙ୍ଗୀତ ।
୬ । ଭରାଦେବା—
6. To support oneself upon a prop.
୭ । ବଳପୂର୍ବକ ଭର୍ତ୍ତି କରିବା—
7. To ram down; to stuff; cram.
୮ । ଅଧିକ ହେବା; ଅପର୍ଯ୍ୟାପ୍ତ ହେବା—8. To preponderate; to predominate; to exceed.
୯ । ଠିଲାଇବା (ଦେଖ)—9. Ṭhilāibā (See).
[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ପକା(କେ)ଇବା, ନେବା, ଆଣିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

ଠେକ—ଦେ. ବ (ସଂ. ସ୍ଥା ଧାତୁ)—୧ । ଅବଲମ୍ବନ; ଡିଗ; ଠିଆ—
Ṭheka 1. Prop; support.
ठेकना ୨ । କାଠର ବା ଗଛର ଚଉଡ଼ାବାଗ; ଆଡ଼ବାଗ—
टेक, ठेक 2. The breadth of a timber or tree across its grains.
୩ । ଉଚ୍ଚଙ୍ଗ; ଉଚ୍ଚତା—3. Height.
( ଯଥା—ମୋ ଠାରୁ ସେ ଠେକରେ ଚାରି ଅଙ୍ଗୁଳ ବଡ଼ )
୪ । ପଥର ବା କାଠକୁ ଉଠାଇବା ନିମନ୍ତେ ତଳପାଖେ ମଝିରେ ଦିଆଯିବା କ୍ଷୁଦ୍ର ପଥର ବା କାଷ୍ଠଖଣ୍ଡ, ମାଡ଼ୀ—4. Fulcrum.
୫ । ବାଧା—5. Obstacle; hindrance.
୬ । ଠେକରା ୨ । ୩ ( ଦେଖ )
6. Ṭhekarā 2. 3 ( See ).

ବିଣ—୧ । ଉଚ୍ଚ; ଡେଙ୍ଗା—
1. High; tall.
୨ । ଅପେକ୍ଷାକୃତ ଡେଙ୍ଗା; ଉଚ୍ଚତର—
2. Higher; taller.

ଠେକ ଯିବା—ଦେ. କ୍ରି—ଈଷତ୍ ଉଚ୍ଚତର ହେବା; ଅପେକ୍ଷାକୃତ ଡେଙ୍ଗା
Ṭheka jibā ହେବା—To be a little higher or
( ଠେକ ହେବା—ଅନ୍ୟରୂପ ) taller.
(ଯଥା—ବଡ଼ ପୁଅଟି ସାନ ପୁଅଠାରୁ ଠେକ ଯିବ । )

ଠେକର—ଦେ. ବ—ଲମ୍ବ କାଠ କିମ୍ବା ପଥର ରଖିବା ନିମନ୍ତେ ତହିଁ
Ṭhekara ତଳେ ଆଡ଼ ବାଗରେ ଦିଆଯିବା ଆଡ଼ କାଠ—
Cross-pieces over which a long log or stone is supported; stays put under long heavy logs or slabs to keep them level.

ଠେକରା—ଦେ. ବିଣ—୧ । ଠେକ; ଉଚ୍ଚ—
Ṭhekarā 1. High.
୨ । ଅପେକ୍ଷାକୃତ ଡେଙ୍ଗା—2. Higher; taller.
ବ—୧ । ଢେଲୁଆ; ବୋଲୁଅ; ଢିମା—
Big clods of earth.
୨ । ଚଉକି, ମେଜ, ଖଟ ଆଦି ଢିଗିଢିପି ହେଉଥିଲେ ଭୂମିରେ ଲାଗି ନ ଥିବା ଗୋଡ଼ ବା ପାଖ ତଳେ ଦିଆଯିବା ପତଳା କାଠ ବା ଖପରା—2. Thin piece of wood or shard put under the short leg or side of a bobbing or unstable chair, table etc.
୩ । ଅଗ ସରୁ ଓ ମୂଳ ମୋଟ କିଲା—3. Wedge.

ଠେକରା ବସା(ସେ)ଇବା—ଦେ. କ୍ରି—ଠାକରା ବସାଇବା ( ଦେଖ )
Ṭhekarā basā(se)ibā Ṭhākarā basāibā ( See )

ଠେକ ଲାଗିବା—ଦେ. କ୍ରି—ବାଧା ପାଇବା—
Ṭheka lāgibā To be obstructed.
ଗଲୁଁ ଗଲୁଁ ଯେବେ ଅଳସ୍ୟ ବା ଅସାବଧାନତା ଯୋଗୁ
ଠେକ ଲାଗି କେହୁ ଝୁଣ୍ଟି ପଡେ । ରାଧାନାଥ, ଝଟେକା ।

ଠେକା—ଦେ. ବ. (ସଂ. ସ୍ଥଗ୍ ବା ଷ୍ଟୁର୍ ଧାତୁ ଗୋପନ )—
Ṭhekā ୧ । ମୁଣ୍ଡରେ ଲୁଗା ଦ୍ୱାରା ଗୁଡ଼ାଅ ହୋଇଥିବା
पाग, पागड़ी ପରିଧାନ; ପାଗ; ପଗଡ଼ି—
पगिया, चीरा 1. Turban, head-dress.
୨ । ହାଉଇ ବାଣର ମୁଣ୍ଡରେ ବନ୍ଧାଯିବା ନାଗନଳ ବା ନକ୍ଷତ୍ରନଳ—2. A tube filled with Bengal lights tied to the top of a rocket which emits star-like sparks from high.
୩ । ମାଟିର ଘଡ଼ି—
3. Small earthen pitcher or jug.
ଠେକା କହେ ହେକାରେ
ତୁ କୋଉ ମଣିଷରେ ଲେଖାରେ—ଢଗ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍କା ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ପ୍ରାଦେ. (ମେଦିନୀପୁର) ବି—୧ । ଟୋକେଇ; ପାଚ୍ଛିଆ—
1. Small basket.

୨ । ( ଗଡ଼ଜାତ ) ବି—ମୋଟ କାଠ ଆଦି ଫଟାଇବା ପାଇଁ ବ୍ୟବହୃତ ବଡ଼ ମୁଗୁର ବା ହାତୁଡ଼ି—
2. A big mallet used for spilling up thick logs of wood.

୩ । ( ସମ୍ବଲପୁର; ଭୁଲ. ହି. ଏହି ଅର୍ଥରେ ଏହି ଶବ୍ଦ )—
ଠିକା; କଣ୍ଟ୍ରାକ୍ଟ—3. Contractor's job.

**ଠେକାଦାର୍**—ପ୍ରାଦେ. (ସମ୍ବଲପୁର ଭୁଲ. ହି. ଏହି ଶବ୍ଦ ) ବି—
Ṭhekā-dār — ଠିକାଦାର (ଦେଖ) Ṭhikādāra ( See )

**ଠେକି**— ଦେ ବି—ଠେକା ୩. (ଦେଖ )
Ṭheki — Ṭhekā 3. ( See )

ପ୍ରାଦେ. ( ମଧ୍ୟପ୍ରଦେଶ ) ବି—ଚକି—Hand-mill.

**ଠେକିବା**—ଦେ. କ୍ରି ( ସଂ. ଷ୍ଟୁଗ୍ ଧାତୁ )—
Ṭhekıbā — ୧ । ଗୋଟିଏ ଟାଣ ବସ୍ତୁ ଅନ୍ୟ ଗୋଟିଏ ଟାଣ ବସ୍ତୁରେ ବାଜିବା—
ଠେକ୍ନା
**टेकना** — 1. To strike (one hard thing against another ); to collide with.

୨ । ଠିକିବା; ବାଧା ପାଇବା—
2. To be obstructed.

୩ । ସଂସାରରେ ଦୁଃଖ ପାଇବା—
3. To suffer in the world.

୪ । ସଂସାରରେ ଅନୁଭବ ଦ୍ୱାରା କଷ୍ଟ ବା ବାଧା ସଙ୍ଗେ ପରିଚିତ ହେବା—4. To become acquainted with the ups and downs of life by experience.

୫ । ( ଲକ୍ଷଣାର୍ଥ ) ମାତ୍ରାରେ ଖୁବ ବେଶି ହୋଇଯିବା; ଖୁବ ଚଢ଼ା ହୋଇଯିବା—5. ( figurative ) To rise up to; to go up to.
( ଯଥା—ମୋର ଋଣ ଅଧଲକର ଅଧୁ ଆସି ଅଜକାଲ ଦଶ ପଇସାରେ ଠେକିଲାଣି । )

**ଠେକୁଆ**—ଦେ. ବି. ( ସଂ. ଶଶକ )—
Ṭhekuā — ଶଶକ; ଶଶ—Hare; rabbit; Lupus Ruficaudatus
ସଂ. ଶଶ, ଶଶକ
शशा, खरगोस, [ ଦ୍ର—ଏମାନେ ମୂଷା ଜାତୀୟ, କିନ୍ତୁ ମୂଷାଠାରୁ
**खरगोस, चौगुड़ा** ବଡ଼ ଜୀବ; ଲମ୍ବରେ ଏକ ହାତ ପର୍ଯ୍ୟନ୍ତ ବଢ଼ନ୍ତି ଏମାନଙ୍କ ପିଠି ଓ ପୁଚ୍ଛ ଧୂସର, ପେଟ ଧଳା । ଏମାନଙ୍କ କାନ ଦେହତୁଳନାରେ ଖୁବ ବଡ଼; ପ୍ରାୟ ୭ଅଙ୍ଗୁଳ ଲମ୍ବ । ଏମାନେ ଘାସବଣ ଓ ବୁଦାଳିଆ ଜଙ୍ଗଲରେ ଓ ପଡ଼ିଆରେ ଗାତ ଖୋଳି ଦଳ ବାନ୍ଧି ରହନ୍ତି; ଲାଙ୍ଗୁଡ଼ ଖୁବ୍ ଛୋଟ, ପଛ ଗୋଡ଼ ଆଗ ଗୋଡ଼ ଅପେକ୍ଷା ଡେଙ୍ଗା; ଏମାନେ ସ୍ୱଭାବରେ ପଦାରେ ବେଶି ବୁଲନ୍ତି ଓ ଖୁବ କୁଦା ମାରନ୍ତି ଓ ଦଉଡ଼ନ୍ତି । ଏ ଭାରି ଡରକୁଳା; ଏହାଙ୍କ ଦେହର ରୋମ ଖୁବ୍ କୋମଳ । ଏ ସାମାନ୍ୟ ଆଘାତ ପାଇଲେ ମରଯାଏ । ଠେକୁଆ ୨ ମାସ ବୟସରେ ଗର୍ଭ ଧାରଣ କରେ ଓ ମାସକ ଅନ୍ତରରେ ଗର୍ଭବତୀ ହୋଇ ଥରକେ ୭।୮ ଛୁଆ ଜନ୍ମ କରେ । କୌଣସି କୌଣସି ଦେଶରେ ଠେକୁଆମାନେ ଶୀତକାଳରେ ଧଳା ପାଲଟି ଯାଆନ୍ତି । ଏହାର ମାଂସ ସୁସ୍ୱାଦୁ । ହିନ୍ଦୁ ଶାସ୍ତ୍ର ମତେ ଏହା ଭକ୍ଷ୍ୟ । ବୈଦ୍ୟକ ମତରେ ଏହାର ମାଂସ ଶୀତଳ, ଲଘୁ ଏବଂ ଶୋଥ, ଅତିସାର, ପିତ୍ତ, ଓ ରକ୍ତନାଶକ, ମଳବନ୍ଧକାରକ— ହି. ଶବ୍ଦସାଗର । ]

ପ୍ରାଦେ. ( ମେଦିନୀପୁର ) ବି—ବଙ୍କାଠିଆ—
Wooden peg put on the wall.

**ଠେଗ୍‌ଲା ଠେଗ୍‌ଲି**—ପ୍ରାଦେ. (ସମ୍ବଲପୁର) ବି—ଠେଲାଠେଲି ( ଦେଖ )
Ṭheg lā theg-li — Ṭhelā theli ( See )

**ଠେଙ୍କି**—ପ୍ରାଦେ. (ସମ୍ବଲପୁର) ବି—ଠେକି; ମାଟିର ଘଡ଼ି—
Ṭheṅki — Small earthen jar or jug.

**ଠେଙ୍ଗ**—ଦେ ବି. ( ସଂ. ଠଙ୍କ )—
Ṭheṅga — ୧ । ଉଚ୍ଚ ଭୂମି; ଢିପା ଜମି—
ଟିକର, ଟୀଳା — 1. High ground.
**टीकुर, टीला** ( ଯଥା—ସେହି ଜମିରେ ଧାନ ଆଦି ଫସଲ ଭଲ ହୁଏ ନାହିଁ । )
ଠେଂ, ଠେଙ୍ଗ
**टाँग** — ୨ । ( ସଂ. ଠଙ୍ଗ ) ଗୋଡ଼—2. Leg.
୩ । ଚଟିଆ; ଜଙ୍ଘ—3. Buttock.
ବିଣ—ଢିପା—High (land).

**ଠେଙ୍ଗଣା**—ଦେ. ବି—ଢିପ ଜମି—
Ṭheṅganā — High land.
ଟିକର — ବିଣ—ଢିପ—High (land).
**टीकुर**

**ଠେଙ୍ଗଣି**—ଦେ. ବି—ଠେଙ୍ଗୁଣି (ଦେଖ)
Ṭheṅgani — Ṭheṅguṇi (See)
(ଠେଙ୍ଗଣି, ଠେଙ୍ଗିଣି, ଠେଙ୍ଗୁଣି, ଠେଙ୍ଗେଣି—ଅନ୍ୟରୂପ)

**ଠେଙ୍ଗା**—ଦେ. ବି.— (ସଂ. ଠଙ୍କ=ଗୋଡ଼; ଏହା ଗୋଡ଼ ପରି ଲମ୍ବ ଓ
Ṭheṅgā — ମୋଟ; ସଂ. ଦଣ୍ଡ)—
ଠେଂଗା — ୧ । ଲାଠି—1. A staff; club; bludgeon.
**ठेङ्गा** — ୨ । ଲାଠିଦ୍ୱାରା ଆଘାତ—
2. A blow with a bludgeon.

ପ୍ରାଦେ. (ଗଡ଼ଜାତ) ବି.—ଗଡ଼ଜାତର ଚଉକିଦାରବିଶେଷ—
A class of additional village-watchmen.

**ଠେଙ୍ଗା(ଙ୍ଗେ)ଇବା**—ଦେ. କ୍ରି.—(ଠେଙ୍ଗା ଶବ୍ଦରୁ ଓଡ଼ିଆ ନାମଧାତୁର
Ṭheṅgā(ṅge)ibā — କ୍ରିୟା ) ଠେଙ୍ଗାଦ୍ୱାରା ପ୍ରହାର କରିବା;
ଠେଙ୍ଗାନ — ଠେଙ୍ଗାରେ ବାଡ଼େଇବା ବା ପିଟିବା; ଠେଙ୍ଗା ମାରିବା—
**ठेंगा बजाना** — To beat with a club; to cudgel.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଅ | ଉଅ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନ୍ତ |

ଠେଙ୍ଗା ଖାସି—ପ୍ରାଦେ. (ସମ୍ବଲପୁର) ବି.—(ଭୁଲ. ହି. ଠସ୍କା + ଖାସୀ)
Ṭheṅgā khāsi ବଡ଼ ଜୋରରେ ହେଉଥିବା କାଶ; ଦମା କାଶ; ଶୁଖିଲା କାଶ—Severe cough; dry coughing.

ଶୁଖି ଖାସି, ବାରମାସି, ଠେଙ୍ଗା ଖାସି, ସଙ୍ଗନ୍ ନେସି । ପ୍ରବଚନ ।

ଠେଙ୍ଗା ଜର—ଦେ. ବି.—(ଇଂ. ଡେଙ୍ଗ୍ୟୁ ବା ଓ. ଠେଙ୍ଗା)—ଛନ୍ଦାଦ୍ଦନ-
Ṭheṅgā jara ସ୍ଥାୟୀ ଏକପ୍ରକାର ଜ୍ୱର—
ठेंगाज्वर Influenza; dengue fever.
डंगुजर [ ଦ୍ର—ଏଥିରେ ଦେହହାଡ ଭାର ହଜେ ଓ ଦରଜ (ଠେଙ୍ଗା ଜ୍ୱର—ଅନ୍ୟରୂପ) ହୁଏ । ତିନି ଦିନ ପରେ ଜର ମଳାଗ୍ତୁ ଛାଡ଼ି ଯାଏ । ଏହା ସାଂଘାତିକ ନୁହେଁ । ଏହି ଜରରେ ଦେହତମାମ ଏପରି ପୀଡ଼ା ହୁଏ ଯେ, ରୋଗୀ ମନେ କରେ ସତରେ ତାଙ୍କୁ କେହି ଯେପରି ଠେଙ୍ଗାରେ ଖୁବ୍ ପୁଡ଼ାଏ ପିଟିଛି । ]

ଠେଙ୍ଗା ଠେଙ୍ଗି—ଦେ. ବି.—୧ । ଠେଙ୍ଗାରେ ମାଡ଼ ମରାମରି—
Ṭheṅgā-ṭheṅgi 1. Mutual striking with clubs.
ठेंगाठेंगि ୨ । ଠେଙ୍ଗାରେ ବିଶେଷ ମାଡ଼—
पीटापिटी 2. Belabouring with club or bludgeon.

ଠେଙ୍ଗା ବାଡ଼ି—ଦେ ବି. (ସହଚର ଶବ୍ଦ)—ଲାଠି ଓ ବାଡ଼ି; ସବୁପ୍ରକାର
Ṭheṅgā bāṛdi ଅର୍ଥାତ୍ ବଡ଼ ଓ ସାନ ଯଷ୍ଟି—
लाठि सोंठा Sticks, large and small.
लाठी सोठा

ଠେଙ୍ଗି—ଦେ. ବି.—ଠେଙ୍ଗୁ (ଦେଖ)
Ṭheṅgi Ṭheṅgu (See)

ଗାଁଅ ଯୁଅଧୋଇ ସନ୍ଧ୍ୟାରେ ପଶେ,
ମାଅ ଲାଙ୍ଗୁଳୀ ଠେଙ୍ଗିରେ ଘଷେ । ଡାକବର୍ଣ୍ଣିବଚନ ।

ଠେଙ୍ଗୁ—ଦେ. ବି.—(ସଂ. ଠଙ୍କ)—୧ । କଟିତଳର ଉଭୟ ପାର୍ଶ୍ୱସ୍ଥ
Ṭheṅgu ହାଡ଼—1. The upper part of the hip-bone
ठेंग in vertibrate animals; ilium.
टाङ्ग, पुट्ठा ୨ । ଗୋରୁ ପ୍ରଭୃତି ପଶୁଙ୍କର ଜଙ୍ଘାହାଡ଼ର ଉପର ଭାଗ; ଯେଉଁ ଅଣ୍ଟା ପାଖେ ଶିଙ୍ଗ ହାଡ଼ର ଦୁଇ ପାଖକୁ ବାହାରି ଥିବା ହାଡ଼ ଓ ତତ୍ ସଂଲଗ୍ନ ଶରୀରାଂଶ—
2. The rump of cattle; buttock.

ଠେଙ୍ଗୁଣି—ଦେ. ବି.—୧ । ଛୋଟ ଠେଙ୍ଗା—
Ṭheṅguṇi 1. Cudgel; a short stout club.
सोंठा ୨ । ଗୋରୁ ରଖୁଆଳର ପାଞ୍ଚଣ—
सोंठा, लठिया 2. Cow-heard's staff.

ଅରଗିଣିକ ବାଇଗିଣି, ଗୋରୁମରା ଠେଙ୍ଗିଣି—ଶିଶୁବୋଧ ।

(ଠେଙ୍ଗଣି, ଠେଙ୍ଗିଣି, ଠେଙ୍ଗେଣି—ଅନ୍ୟରୂପ)
୨ । ଠେଙ୍ଗୁ (ଦେଖ)—2. Ṭheṅgu (See)

ଠେଟର୍—ଗ୍ରା. ବୈଦେ. ବି.—(ଇଂ ଥିଏଟର)—ଥିଏଟର—
Ṭheṭar Theatre.
थेटर ठेठर

ଠେଠର—ପ୍ରାଦେ. (ସମ୍ବଲପୁର)—ବୈଦେ. ବି. (ଇଂ)—ଥିଏଟର—
Ṭheṭhar Theatre.

ଠେଣ୍ଟ୍—ପ୍ରାଦେ. (ସମ୍ବଲପୁର) ବି, (ଥ ସ୍ଥାନରେ ଠ ଉଚ୍ଚାରଣ)—ଥଣ୍ଟ;
Ṭhenṭ ଡକାଇତ—Robber; dacoit.
(ଠେଣ୍ଟ, ଠେଁଟ୍, ଠେଁଠ୍—ଅନ୍ୟରୂପ)

ଠେପା—(ସମ୍ବଲପୁର)—ବି. (ଭୁଲ. ଠେପୀ=ବୋତଲର ଠିପି)—
Ṭhepā ମେଖ; ଖୁଣ୍ଟି; ଖିଲା—A small post or pole; a peg.

ଠେରି—ଦେ. ବି. ସ୍ତ୍ରୀ.—ବୁଢ଼ୀ ସ୍ତ୍ରୀ; ବୁଢ଼ୀ—
Ṭheri Old woman hag.

ପାହାନ୍ତେ ବସି କି ଠେରି ବୁଆର ଅବୋଇ । ନାରାୟଣ ଦାସ.ହରିବଂଶ ।

ଠେଲ କୋ—ପ୍ରାଦେ. (ସମ୍ବଲପୁର) ବି.—ଠୋଲଙ୍କ; ବନ୍ୟ ଖାଦ୍ୟ ଲତା-
Ṭhel ko ଫଳବିଶେଷ—A kind of edible wild fruit.
[ଦ୍ର—ଏ ଫଳ କଇଁଥ୍‌କାଲୁଛି ଠାରୁ ଛୋଟ ଓ ମଟମଟକା ଘର । ଏହାକୁ ତରକାରି କରି ଖିଆ ଯାଏ । ]

ଠେଲ—ଦେ. ବି. ( ସଂ. ସ୍ଥୁଳ ଧାତୁ=ଗଢ଼; ସଂ. ଠଲ ଧାତୁ )—
Ṭhela ୧ । ଠେଲଠେଲି; ଲୋକ ଭିଡ଼; ଗାଡ଼ ଜନତା—
ठेलाठेलि 1. Rush; dense crowd.
रेला
ठेमान ୨ । କାନ୍ଥ ଅବକୁ ପଛ ଅଡ଼ୁ ଠେଲ ରଖିବା ଠିଅ; ଠେସ—
ठेकनी 2. A prop which keeps a thing in position by supporting it from behind.

ଠେଲଉଁ ଠେଲା—ଦେ. ବି.—ଠେଲାଠେଲି (ଦେଖ)
Ṭhelauṅ ṭhelā Ṭhelā-ṭheli (See)
(ଠେଲମ୍ ଠେଲା—ଅନ୍ୟରୂପ)

ଠେଲା—ଦେ. ବି. (ସଂ. ସ୍ଥୁଳ ଧାତୁ ଗଢ଼; ସଂ. ଠଲ ଧାତୁ)—
Ṭhelā ୧ । ପଛଆଡ଼ୁ ପେଲିବା; ପେଲା—
ठेल 1. Pushing from behind.
ठेला ୨ । ତଳୁ ଉପରକୁ ଚାପ—2. Upward pressure.
୩ । ଲେଡ଼ା, ଧକ୍କା—3. A push; a shove.
୪ । (ପାନବରଜୀଙ୍କ ଭାଷା)—ବରଜର ଏକ ମୁଣ୍ଡର ଡାଟରେ ଦୁଇଆଡ଼ୁ ଲଗା ଯାଇ ଥିବା ବାଉଁଶଦ୍ୱୟ—4. A pair of bamboos which diogonally prop the wicker-frame at the end of a betel plantation.
[ ଦ୍ର—ଏହା ଡାଟକୁ ଦୃଢ଼ ଓ ସିଧା କରି ଠେଲ ରଖେ ଓ ତୋଫାନର ବାଡ଼ିରୁ ପାନବରଜକୁ ରକ୍ଷା କରେ । ]
ପ୍ରାଦେ ( ସମ୍ବଲପୁର ) ବି—ଗୋରୁଙ୍କ ରୋଗରେ ବ୍ୟବହୃତ ଔଷଧବିଶେଷ—A sort of medicine used for cattle-diseases.

ଠେଲା(ଲେ)ଇବା—ଦେ. କ୍ରି—୧ । ଠେଲିବା କ୍ରିୟାର ଣିଜନ୍ତରୂପ—
Ṭhelā(le)ibā 1. The causative form of 'Ṭhelibā'
ठेलान ଅନ୍ୟଦ୍ୱାରା ଠେଲିବା କର୍ମ କରାଇବା—
ठिलवाना To cause to be pushed.

ସାଧାରଣ ଲେକେ ଅପର ପୃଷ୍ଠାରେ ସଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ତାହା ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'ଲୁଥ' ନ ମିଳିଲେ 'ଲୂଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ

୨ । ଠିଲାଇବା (ଦେଖ)—2. Ṭhilāibā (See).

**ଠେଲା ଗାଡ଼ି**—ଦେ. ବି—୧ । ଯେଉଁ ଗାଡ଼ିକୁ ପଛଆଡ଼ୁ ଜଣେ ମନୁଷ୍ୟ ଠେଲିକରି ଚଳାଏ—
Ṭhelā gārdi
ଠେଲା ଗାଡ଼ି 1. A cart which is pushed from behind, a push-push.
**ठेला**
୨ । ଟ୍ରଲି—2. Trolley.

**ଠେଲା ଜାଲ**—ପ୍ରାଦେ (ସିଂହଭୂମ) ବି—ପେଲଣା ଜାଲ—
Ṭhelā jāla — A kind of triangular net which is pushed forward at the apex

**ଠେଲାଠେଲି**—ଦେ. ବି—୧ । ପେଲାପେଲି; ପରସ୍ପରକୁ ପେଲିବା—
Ṭhelā-ṭheli — 1. Jostling; mutual hustling; tussle.
ঠেলাঠেলি
**ठेलाठेली, ठेलमठेला, ਠੇਲਠੇਲ** — ୨ । ଭିଡ଼—
2. A press or rush of people; in rush.
ଦେ. ବିଣ—୧ । ପରସ୍ପରକୁ ପେଲୁଥିବା (ବ୍ୟକ୍ତିଗଣ)—
1. Hustling each other; mutually pushing.
୨ । ଅତ୍ୟନ୍ତ ଲୋକଗହଳପୂର୍ଣ୍ଣ ସ୍ଥାନ—
2. Densely crowded (place), packed up

**ଠେଲିବା**—ଦେ. କ୍ରି ( ସ୍ଥୁଳ ଧାତୁ=ଗତି କମ୍ପା ଠେଲ ଧାତୁ )—
Ṭhelibā — ୧ । ପଛଆଡ଼ୁ ପେଲିବା—
ঠেলা, ঠেলা — 1. To push from behind.
**ठिलना** — ୨ । ପେଲିବା—2. To jostle.

ଜେମା ସେବାଦାସୀ ମୋତେ ଚରଣରେ
କୃପେ ଠେଲି ଗଲେ ଗୁଲୁ—ନନ୍ଦକିଶୋର. ଶର୍ମିଷ୍ଠା ।

[ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ପକା(କେ)ଇବା, ନେବା, ଆଣିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

**ଠେସ (ଇତ୍ୟାଦି)**—ଦେ. ବି—ଠେଁସ ଇତ୍ୟାଦି (ଦେଖ)
Ṭhesa (etc) — Ṭheeṅsa etc (See).

**ଠେସିବା**—ପ୍ରାଦେ (ସମ୍ବଲପୁର) କ୍ରି—ଛେଚିବା—
Ṭhesibā — To bruise a thing; to pestle.
ପ୍ରାଦେ ( କଳାହାଣ୍ଡି ) କ୍ରି—ପିଟିବା—
[ଠେସା(ସେ)ଇବା—ଣିଜନ୍ତ] — To beat, to thrash.
ଦେ. କ୍ରି—ଠେଁସିବା (ଦେଖ)—Ṭheṅsibā (See).

**ଠୋ**—ଦେ. (ଧ୍ୱନ୍ୟନୁକରଣ) ଅ (ଏକବଚନ)—ଠୋ ଠୋ (ଦେଖ)
Ṭho — Ṭho ṭho (See).
ସଂ. ବି—ମଣ୍ଡଳ—Circle.

**ଠୋଓ**—ଦେ (ଧ୍ୱନ୍ୟନୁକରଣ) ଅ—ଠୋ ଠୋ ୧ (ଦେଖ)
Ṭho-o — Ṭho ṭho 1 (See).

ସିଂହ ସାଙ୍ଗେ କାଣ୍ଡ ମାନ ଠୋଓ ରଡ
ନନା କଲ ପ୍ରଳୟକାଳ ଘଡଘଡ—କୃଷ୍ଣସିଂହ, ମହାଭାରତ

**ଠୋକ**—ଦେ. ବି. (ସଂ. ସ୍ତବକ; ସ୍ତୋମକ; ପ୍ରା. ଥୋବିକ; ସଂ.ସ୍ତୂପ)—
Ṭhoka — ୧ । ସମଷ୍ଟି; ଥୋକ—1. Sum; total.
থোক — ୨ । ରାଶି; ଗଦା—2. Heap; mass.
**थोक**

**ଠୋକର**—ଦେ. ବି. (ଧ୍ୱନ୍ୟନୁକରଣ)—୧ । କଠିନ ଦ୍ରବ୍ୟ ସଙ୍ଗେ କଠିନ ଦ୍ରବ୍ୟର ଜୋରରେ ଲାଗିବା ଆଘାତ—
Ṭhokara
ঠোকর, ঠেক্কর — 1. Hard knock; a hard thing coming in forceful contact with another hard thing; impact.
**ठोकर**

[ ଦ୍ର—ଗୋଟିଏ ଜୀବ ବା ବସ୍ତୁ ବେଗରେ ଗତି କରୁଥିବା ଅବସ୍ଥାରେ ଆଉ ଗୋଟିଏ ଅଚଳ ବସ୍ତୁ ବା ବାଧାରେ ହାବୁଡ଼ିଗଲେ ପ୍ରଥମ ବସ୍ତୁ ବା ଜୀବ ଯେଉଁ ପ୍ରତିଘାତ ପାଏ ତାକୁ ଠୋକର ବୋଲାଯାଏ; ଦ୍ୱିତୀୟ ବସ୍ତୁ ଯେଉଁ ଅଘାତ ପାଏ ତାକୁ ଚୋଟ ବା ମାଡ଼ ବୋଲାଯାଏ । ୨ଟି ଗତିଶୀଳ କଠିନ ବସ୍ତୁ ବିପରୀତ ଦିଗରୁ ଆସି ଜୋରରେ ବାଜିଗଲେ ଉକ୍ତ ଦୁଇ ବସ୍ତୁର ଘାତପ୍ରତିଘାତକୁ ଲଢ଼େଇ ବା ହାବୁଡ଼ାହାବୁଡ଼ି କହନ୍ତି । ]

୨ । ଝୁଣ୍ଟି ପଡ଼ିବା—2. Stumbling; tripping.
୩ । ମନୁଷ୍ୟ ଚାଲୁ ଚାଲୁ ବାଟରେ ଯେଉଁ ବସ୍ତୁ ଗୋଡ଼ ଆଗରେ ହାବୁଡ଼ି ଗଲେ ମନୁଷ୍ୟ ଝୁଣ୍ଟି ପଡ଼େ—
3 Stumbling-block.
୪ । ବାଧା—4. Impediment; obstacle.
୫ । ଠଣା; ବକ୍ରୀକୃତ ଅଙ୍ଗୁଠିର ଗଣ୍ଠି ଦ୍ୱାରା ମୁଣ୍ଡଆଦି ଅସ୍ଥିମୟ ସ୍ଥାନରେ କରାଯିବା ଅଘାତ—5. A rap with the knuckles.
୬ । କଥା କହୁଥିବା ବ୍ୟକ୍ତିଙ୍କ କଥାର ତୀବ୍ର ମନ୍ତବ୍ୟ ପ୍ରକାଶ ପୂର୍ବକ ତାଙ୍କୁ କଥା କହିବାର ମଝିରେ ମଝିରେ ଦିଆଯିବା ବାଧା—6. Obstacles put on the way of a speaking person in the shape of ironical or pithy remarks or criticisms on the subject-mater of his speech.
୭ । ( ଲକ୍ଷଣାର୍ଥ ) ଅପ୍ରୀତିକର ସାଂସାରିକ ଅନୁଭବଜନିତ ଶିକ୍ଷା—7. (figurative) Lesson learnt by a person from bitter worldly experience.
୮ । ଧୀରେ ଧୀରେ କରାଯିବା ଅଘାତ—
8. Slight stroke.

**ଠୋକର ଖାଇବା**—ଦେ. କ୍ରି—୧ । ଝୁଣ୍ଟି ପଡ଼ିବା—
Ṭhokara khāibā — 1 To stumble; to trip.
ঠোকর খাওআ — ୨ । ବାଧା ପାଇବା—
**ठोकर खाना** — 2. To be obstructed.
୩ । ଠେକିବା ୩ (ଦେଖ)—3. Ṭhekibā 3 (See)

**ଠୋକର ଦେବା**—ଦେ. କ୍ରି—୧ । ଠଣା ଠୁକିବା—
Ṭhokara debā — 1 To strike with the knuckle.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇପ୍ସ | ଙ୍କ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗ୍ୟ | ଇଅ | ଙ୍ଗ | ନ୍ |

ଠୋକର ଦେଓଆ
ठोकर देना
୨ । କଥା କହୁଥିବା ବ୍ୟକ୍ତିଙ୍କୁ କଥା କହୁଥିବା ମଝିରେ ମଝିରେ ଭାବ ମନ୍ତବ୍ୟ ପ୍ରକାଶପୂର୍ବକ ବାଧା ଦେବା—2. To obstruct a person during his speech by passing unpleasant or ironical remarks at intervals.
୩ । କୌଣସି ବ୍ୟକ୍ତିଙ୍କୁ ସାବଧାନ ବା ସତର୍କ କରିଦେବା; ଚାବୁକ କରିବା—3. To warn; to give a warning.
୪ । ଧୀରେ ଧୀରେ ଆଘାତ କରିବା—
4 To give slight strokes;

**ଠୋକର ନେବା**—ଦେ. କ୍ରି—ଠୋକର ଖାଇବା ୧।୨ (ଦେଖ)
Ṭhokara nebā Ṭhokara khāibā 1-2 (See)

**ଠୋକର ମାରିବା**—ଦେ. କ୍ରି—ଠୋକର ଦେବା ୧।୨।୪ (ଦେଖ)
Ṭhokara māribā Ṭhokara debā 1.2.4 (See)
ଠୋକର ମାରା **ठोकर मारना**

**ଠୋକର ଲାଗିବା**—ଦେ. ବି—ଚାଲୁଥିବା ବ୍ୟକ୍ତିର ଆଙ୍ଗୁଠି ବା ଘୋଡ଼ାର ଖୁରା ଭୂମିରୁ ବାହାର ପଡ଼ୁଥିବା କୌଣସି କଠିନ ବସ୍ତୁରେ ବାଜିବା—
Ṭhokara lāgibā
ଠୋକର ଲାଗା
**ठोकर लगना**
The coming of a stumbling block on the way.

**ଠୋକରା**—ଦେ. ବି—ଠୋକର (ଦେଖ)
Ṭhokarā Ṭhokara (See)

**ଠୋକରା(ରେ)ଇବା**—ଦେ. କ୍ରି. (ଧ୍ୱନ୍ୟନୁକରଣ; ତୁଳ ସଂ. ତ୍ରୋଟି—ପକ୍ଷୀ ଚଞ୍ଚୁ)—୧ । କଠିନ ପଦାର୍ଥକୁ ଚଞ୍ଚୁ ଦ୍ୱାରା ଧୀରେ ଧୀରେ ଆଘାତ କରିବା; ଖୁମ୍ପିବା—
Ṭhokarā(re)ibā
ଠୋକବାନ
**चोंचमारना, टुकराना**
1. To peck at.
୨ । କଠିନ ପଦାର୍ଥରେ ଅନ୍ୟ କଠିନ ବସ୍ତୁକୁ ଧୀରେ ଧୀରେ ଅର୍ଥାତ୍ ଠୁକୁଠୁକୁ କରି ଆଘାତ କରିବା—
2. To rap; to knock slowly and repeatedly.
୩ । ଉପର୍ଯ୍ୟୁପରି ସାମାନ୍ୟ ଠଣାମାରିବା—
3. To repeatedly strike with the knuckle.
୪ । ଠୋକର ଦେବା (ଦେଖ)
4. Ṭhokara debā (See)

**ଠୋ କରି**—ଦେ. କ୍ରି. ବିଣ—୧ । (ସଂ. ସ୍ପଷ୍ଟ) ଠୋସ୍ କରି; ସ୍ପଷ୍ଟରୂପେ (କହିବା)—1. (to speak) Clearly or plainly.
Ṭho kari
ଠାଁଶ କରେ
**ठाँ से**
୨ । (ବିଶେଷ କଠିନ ବସ୍ତୁର ଆଘାତ ଜନିତ ଧ୍ୱନି) ଠୋ ଶବ୍ଦ ଛାଡ଼ି କରି; ସଶବ୍ଦରେ—2. Producing a loud cracking sound.
ଠୋକନା; ଠୋକନ } ଅନ୍ୟରୂପ
ଠୋକର; ଠୋଦସ୍ }
୩ । (ସଂ. ହଠାତ୍) ହଠାତ୍; ଅଗ୍ର ପଶ୍ଚାତ୍ ବିଚାର ନ କରି—3. Suddenly; without mature consideration.
ଠୋ କରି ଛଣ୍ଡ଼ାଇ ଦେଲା । କବିସୂର୍ଯ୍ୟ, କଣୋଦ୍ୱରକମ୍ପୁ ଠ. ଗୀତ ।

**ଠୋଙ୍ଗା**—ଦେ. ବି (ସଂ. ଦ୍ରୋଣ)—ଡାଲି ଚାଉଳ ଆଦି ରଖିବା ପାଇଁ କାଗଜ ବା ପତ୍ରର ଠୋଲି ବା ପାତ୍ର; ଦନା—
Ṭhongā
ठोंगा
**दोना**
A cone-shaped case or packet made of leaves or paper.

**ଠୋଟିଆ**—ପ୍ରାଦେ, (ବସ୍ତର) ବିଣ.—୧ । ଅକିଞ୍ଚନ—
Ṭhoṭiā 1. Insignificant.
୨ । ଅସହାୟ—2. Helpless.

**ଠୋ-ଠା**—ଦେ. (ଧ୍ୱନ୍ୟନୁକରଣ) ଅ. (ଚନ୍ଦ୍ରବଚନ)—ଠୋ ଠୋ (ଦେଖ)
Ṭho-ṭhā Ṭho ṭho (See)
ଦେ. କ୍ରି. ବିଣ—ଉଚ୍ଚ ଶବ୍ଦ ଉତ୍ପନ୍ନ କରି—Producing loud cracking sounds (as of splitting wood).
କାଠ ହାଣ୍ଡୁ ଠୋ ଠା, ବାଘ ମାମୁଁ ଭୁ ଅନ୍ଦେଇଲି ଯା—
ଚାଣ୍ଡୁରୀ କାହାଣୀ ।
ବିଣ. ଓ କ୍ରି. ବିଣ—ଉଚ୍ଚ ଓ ସ୍ପଷ୍ଟ କଥା—Words spoken loudly and distinctly.
(ଠୋଓଠା, ଠୋଓଠାଅ—ଅନ୍ୟରୂପ)

**ଠୋ-ଠା ମରିଯିବା**—ଦେ. କ୍ରି—(ବହୁଲୋକ ବା ଜୀବ) ଜଣକ ପରେ ଜଣେ ଚଞ୍ଚଳ ମରିଯିବା—
Ṭho ṭhā marijibā
(many persons or animals) To die in quick succession.

**ଠୋ ଠୋ**—ଦେ. ଅ—(ଧ୍ୱନ୍ୟନୁକରଣ) (ଏକାଧିକ ଠୋ ଶବ୍ଦ)—
Ṭho-ṭho
ଠାଇ ଠାଇ
**ठायँ ठायँ**
୧ । କୁରାଢ଼ିରେ ବଡ଼ କାଠ ହାଣିବାର ଶବ୍ଦମାନ; ଉପର୍ଯ୍ୟୁପରି କୁରାଢ଼ି ଚୋଟର ଶବ୍ଦ—1. Repeated loud sounds produced by splitting logs with the axe.
୨ । ଏକାଧିକ ବାଣଫୋଟକା ଫୁଟିବାର ଉଚ୍ଚ ଶବ୍ଦ—
2. Loud cracking sounds of the bursting of many crackers.
୩ । ନଡ଼ିଆ ଆଦି କଠିନ ପଦାର୍ଥକୁ ପଥର ଉପରେ ଜୋରରେ ଏକାଧିକ ଥର ବାଡ଼େଇବାର ଶବ୍ଦ—3. Sound produced by repeated striking of cocoa-nuts on a stones.
(ଠୋଓଠୋ, ଠୋଓଠୋଓ—ଅନ୍ୟରୂପ)
[ ଦ୍ର—ଠୁକ୍ ଠୁକ୍ ଠାରୁ ଠକ ଠକ ଶବ୍ଦ ଉଚ୍ଚତର, ଠକ ଠକ ଠାରୁ ଠୋ ଠା ବା ଠୋ ଠୋ ଉଚ୍ଚତର, ଠୋ ଠୋ ଠାରୁ ଦୁ ଢା ଉଚ୍ଚତର ଶବ୍ଦ । ]
୪ । କଠିନ ପଦାର୍ଥ ବାଡ଼େଇ ହୋଇ ହଠାତ୍ ଫାଟିଯିବା ଶବ୍ଦ—4. The loud sound of bursting of hard things.
୫ । ବିଲରୁ ପାଣି ଶୁଖି ଯାଇ ଭୂମି ଫାଟିଯିବା—
5. Cracking of the surface of a field when it dries up.
(ଯଥା—ଏ ବର୍ଷ ଭାଦ୍ରମାସରୁ ବର୍ଷା ନ ହେବାରୁ କାର୍ତ୍ତିକମାସକୁ ବିଲଯାକ ଠୋ ଠୋ ଫାଟିଗଲାଣି ।)

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଆଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୬ । ଖୁବ୍ ଜୋର୍‌ରେ ଏକାଧିକ ଥର ଚାପୁଡ଼ା ମାରିବାର ଶବ୍ଦ—6. Repeated clapping sounds of slapping.

( ଯଥା—ଅବଧାନେ ଆସି ମୋ ଗାଲରେ ଠୋ ଠୋ ଦୁଇପୁଞ୍ଜା ଚାପୁଡ଼ା ମାରିଲେ । )

୭ । ବହୁବାର ବିକଟ ହାସ୍ୟର ଶବ୍ଦ; ଅଟ୍ଟହାସର ଧ୍ୱନି—7. Sound of repeated boisterous laughter or horse laugh.

[ ଦ୍ର—ଠୋ ଠୋ ଶବ୍ଦ ଏକାଧିକ ଠୋ ଧ୍ୱନି ସୂଚନା କରେ । 'ଠୋ' ଶବ୍ଦ ହଠାତ୍ ଜାତ ହେବା କଠିନ ବସ୍ତୁଦ୍ୱୟର ଆଘାତଜନିତ ଧ୍ୱନି ଅଟେ । ସେହି ଧ୍ୱନି ଜାତ ହେବା ପ୍ରସଙ୍ଗରୁ (ଯଥା—ନଡ଼ିଆକୁ ପଥରରେ ଜୋରରେ କରି ବାଡ଼େଇଦେଲେ ତାହା ହଠାତ୍ ଠୋ ଶବ୍ଦପୂର୍ବକ ଫାଟିଯାଏ, ଏହି ଭାବର ସଂକ୍ରମଣ ଦ୍ୱାରା ) ଏହି ଠୋ ଠା ଓ ଠୋ ଠୋ ଶବ୍ଦର ଭିନ୍ନାର୍ଥକ ପ୍ରୟୋଗମାନ ଭାଷାରେ ଚଳେ, ଯଥା—ଖରାରେ ବାଲିଯାକ ଠୋଠୋ ଫାଟିଗଲା, ଖାଇବାକୁ ନ ପାଇ ପିଲାଗୁଡ଼ାକ ଠୋ ଠୋ ମରିଗଲେ, ସେ ଠୋ ଠୋ ହସିଲା । ]

ଠୋ ଠୋ ହସିବା—ଦେ. କ୍ରି—ଠୋ ଠୋ ହୋଇ ହସିବା (ଦେଖ)
Ṭho ṭho hasibā Ṭho ṭho hoi hasibā ( See )

ଠୋ ଠୋ ହୋଇ ହସିବା—ଦେ. କ୍ରି ( ସଂ. ଅଟ୍ଟହାସ୍ୟ )—ଉଚ୍ଚହାସ୍ୟ କରିବା—To laugh loudly; to laugh outright.
Ṭho ṭho hoi hasibā
हो हो हासा
**ठठाना, कहकहा उठाना**

ଠୋ ପଟକା—ଦେ. (ଧ୍ୱନ୍ୟନୁକରଣ) ଅ—୧ । ଠୋ ଶବ୍ଦ କରି—1. Making a loud report.
Ṭho paṭakā

୨ । ତତକ୍ଷଣାତ୍; ସଙ୍ଗେ ସଙ୍ଗେ—2. At once; at a trice; immediately.

ଠୋ ପଟାକ୍
ଠୋ ଫଟକା
ଠୋ ଫଟାକ୍
ଠୋଓ ପଟକା
} ଅନ୍ୟରୂପ

ଜୀବନଟା ପାଣି ଫୁଟୁକା,
ଫାଟିଯିବ ଠୋ ପଟକା । ଭକ୍ତକବି ଗୀତଲହରୀ ।

ଠୋ ପ(ଫ)ଟକା କଥା—ଦେ. ବି—୧ । ଆକସ୍ମିକ ବିଷୟ—
Ṭho pa(pha)ṭaka kathā 1. Accidental matter; a thing occurring suddenly

୨ । ସ୍ପଷ୍ଟ ଓ ସତ୍ୟ କଥା—
2. Plain spoken words; plain truth.

୩ । କୌଣସି ପ୍ରଶ୍ନ ବା ପ୍ରାର୍ଥନାର ସଙ୍ଗେ ସଙ୍ଗେ ଦିଆଯିବା ଉତ୍ତର—3. Instant reply given to a question or prayer.
[ଠୋଓ ପ(ଫ)ଟକା କଥା—ଅନ୍ୟରୂପ ]

ଠୋଲକ—ଦେ. ବି—ଠୋଲକା (ଦେଖ)
Ṭholaka Ṭholakā (See)

ଠୋଲକା—ଦେ. ବି. (ସଂ. ସ୍ଥୂଳ)—କାକରା ପିଠା; ଯେଉଁ ଘିଅପିଠାର ଦୁଇପାଖ ଫୁଲିଥାଏ—Swollen cakes (boiled in ghee).
Ṭholakā
गुड़पिठा
**ठोंकवा**
(ଠୋଲ୍ଲୋକା—ଅନ୍ୟରୂପ)

फँूपा; फोंपा ବିଣ—ଫୁଲିଥିବା; ଫୁଲୁକା—Swollen; inflated.
**फुलाहुआ**

ଠୋଲକା ମୁହାଁ—ଦେ. ବିଣ—ଯାହାଙ୍କର ମୁହଁ ଫୁଲିଯାଏ; ସୋଥାମୁହାଁ—
Ṭholakā muhā̃ Having one's face swollen.
(ଠୋଲକାମୁହୀଁ ; ଠୋଲକାମୁହୀଁ—ସ୍ତ୍ରୀ)

ଠୋଲା—ଦେ. ବି—ଦନା; ପତ୍ରାଧାର; ଠୁଙ୍ଗା—
Ṭholā A cone-shaped packet or cup made of leaves sewn with each other.
ठोंगा
**दोना**

ଠୋଲାରେ ବୁଇ ଛନ ଢୋଳା ଘିଅ ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

ଠୋଲି—ଦେ. ବି—ଛୋଟ ଠୋଲା; ଛୋଟ ଚଉପଦ—
Ṭholi Small cup made of leaves sewn together

ଠୋସ୍—ଦେ. ବିଣ—୧ । (ସଂ.କର୍କଶ) କର୍କଶ; ରୁକ୍ଷ (ବାକ୍ୟ,ଭାଷା)—
Ṭhos 1. Rough (words; language); rasping.
खरखरे
**कड़ा, खरा; खुरखुरा**

ତା କଥାରେ ଏକା ମିଠା ନାହିଁ. ଠୋସ୍ ଠୋସ୍ ।
ଫକୀରମୋହନ, ଛମାଣଆଠଗୁଣ୍ଠ ।

୩ । (ସଂ. ସ୍ପଷ୍ଟ) ସ୍ପଷ୍ଟରୂପେ ଉଚ୍ଚାରିତ—
3. Uttered clearly; distinct.

୪ । ସ୍ପଷ୍ଟବାଦୀ (ବାକ୍ୟ)—4. Plain (utterance)

୫ । ଟାଣୁଆ; କଠିନ; ଦୃଢ଼—5. Hard; firm.

୬ । ଘନ—6. Solid.

ଦେ. ବି—କଥା କହିଲା ବେଳେ କୌଣସି ବାକ୍ୟ ବା ଶବ୍ଦ ଉପରେ ଦିଆଯିବା ବିଶେଷ ଜୋର—Emphasis put on a word or sentence during speech.

[ ଦ୍ର—ବଙ୍ଗଳା ଓ ହିନ୍ଦୀରେ ଠୋସ ଶବ୍ଦର ଅର୍ଥ ନିବିଡ଼, ଘନ, ଗାଢ଼, ଯାହା ପୋଲା ନୁହେଁ । ]

ଠୌର (ଇତ୍ୟାଦି)—ଦେ. ବି—ଠଉର ଇତ୍ୟାଦି (ଦେଖ)
Ṭhaura (etc) Ṭhaura etc (See)

| | | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|---|
| ୧ | ଐ | ଉ | ଋ,ଋ | ଌ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍ଷ | ଋଷ୍ଟ | ଋଥ | ଜ୍ଞ |
| ୨ | ଈ | ଊ | ରୁ | ଲୁ | ପ୍ଲେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଗଁ୍ୟ | ଇଥ | ଜ୍ଞ | ନ୍ନ |



ଡ—୧୩ ଶ ବ୍ୟଞ୍ଜନ ବର୍ଣ୍ଣ । ଟ ବର୍ଗର ତୃତୀୟ ବର୍ଣ୍ଣ । ଏହାର ଉଚ୍ଚାରଣ
Ḍa ସ୍ଥାନ ମୂର୍ଦ୍ଧା । ଏ ଅକ୍ଷର ଓଡ଼ିଆ ଶବ୍ଦର ଆଦ୍ୟରେ ଥିଲେ ଏଥିର ଉଚ୍ଚାରଣ 'ଡ' ଓ ମଧ୍ୟରେ ବା ଶେଷରେ ଥିଲେ 'ଡ଼' ହୁଏ—The 13th consonant and the 3rd letter of the 'Ṭa' series (cerebral), corresponding to the 'd' sound. When it occurs at the beginning of Oria words it is pronounced as in day and when at the end or middle of a word it is pronounce as rd in bird.

ସଂ. ବି. (ଡପ୍ ଧାତୁ=ସ୍ତୁଶ କରିବା+କର୍ତ୍ତୃ. ଅ)—
୧ । ଶିବ; ମହାଦେବ—1. Siba.
୨ । ଶବ୍ଦ—2 Sound.
୩ । ଭୟ; ତ୍ରାସ—3 Alarm; fright.
୪ । ବାଡ଼ବାଗ୍ନି—4 Submarine fire.
୫ । ଡମରୁ; କ୍ଷୀଣମଧ୍ୟ ଆନଦ୍ଧ ବାଦ୍ୟଯନ୍ତ୍ରବିଶେଷ—
5. A musical instrument narrow in the middle.
୬ । (ଡୀ ଧାତୁ=ଉଡ଼ିବା+କର୍ତ୍ତୃ. ଅ)—
ଚାଷପକ୍ଷୀ; ଭଦରଭଦଳିଆ ପକ୍ଷୀ—6. The blue jay; The Indian Roller bird; Coracias Indica.

ଡଅଣା—ପ୍ରାଦେ. (ଗଡ଼ଜାତ) ବି.—ଗୋରୁ ଓ ମଇଁଷିଙ୍କୁ ଚିହ୍ନ ଦେବା
Ḍa-aṇā ପାଇଁ ବ୍ୟବହୃତ ବକ୍ରାଗ୍ର ଲୌହଦଣ୍ଡ—A hooked iron rod used for searing cattle.

ଡଅଁର—ଦେ. ବି. (ସଂ. ଦର=ଗର୍ତ୍ତ)—୧ । ପାଣି ଭଉଁରିର ତୋଡ଼
Ḍa-añra ହାରା ନଦୀ ଗର୍ଭରେ ହୋଇଥିବା ଗର୍ତ୍ତ ବା ଖାଲ—
ডহর; ডওর 1. Deep pools grooved by eddies in the river-bed.
(ଡିଅଁର—ଅନ୍ୟରୂପ)
୨ । ଜଳ ଭଉଁରି—2. Eddy.
୩ । ନଦୀର ଗଭୀର ଅଂଶ—
8. Deep part of a river.

ଡଅଁର କରଞ୍ଜ—ଦେ. ବି.—ପାଣିକୂଳରେ ଓ ଖାଲ ଜମିରେ ଜନ୍ମିବା
Ḍa-añra karañja ଏକପ୍ରକାର କରଞ୍ଜ ଗଛ—
ସଂ. ନାମ—କରଞ୍ଜୀ, Pongamia Indica.
ଉଦକୀର୍ଯ୍ୟ, ଷଡ଼ଗ୍ରନ୍ଥା, [ଦ୍ର—କରଞ୍ଜ ତଳେ ନୋଟ ଦେଖ;
ହସ୍ତିବାରୁଣୀ, ମର୍କଟୀ, ବୈଦ୍ୟକ ମତରେ ଏହା ସ୍ତମ୍ଭନକାରକ,
ବାୟସୀ, କରଭଞ୍ଜିକା ତିକ୍ତକଷାୟରସ, କଟୁବିପାକ ଓ ଉଷ୍ଣ-
ডহর করঞ্জা ବୀର୍ଯ୍ୟ; ଏହା ବମନ, ପିତ୍ତ, ଅର୍ଶ, କ୍ରିମି,
कंजा କୁଷ୍ଠ ଓ ପ୍ରମେହ ନିବାରକ । ଏଥିର ଛୁଇଁ
(ଡହର କରଞ୍ଜ—ଅନ୍ୟନାମ) ଚେପଟା ଓ ପ୍ରତି ଛୁଇଁରେ ଗୋଟିଏ ଲେଖାଏଁ ଚେପଟା ମଞ୍ଜି ଥାଏ । ଏ ମଞ୍ଜିରୁ ଦୀପ ଜଳାଇବା ତେଲ ବାହାରେ । ଏ ତେଲ ଚର୍ମରୋଗରେ ମଧ୍ୟ ଉପକାରୀ । ]

ଡଇଁ—ପ୍ରାଦେ. (ଗଞ୍ଜାମ) ବି.—ଖେଳରେ ହାରିବା ବ୍ୟକ୍ତି—
Ḍaiñ The person who loses in a game.

ଡଇଁ ଡଇଁ—ଗ୍ରା. ବିଣ.—୧ । ଉପବାସକ୍ଲିଷ୍ଟ—
Ḍaiñ ḍaiñ 1. Starving; famishing.
मरकुटे ୨ । ଧଡ଼ଧଡ଼ିଆ; ଶୀର୍ଣ୍ଣକାୟ—2. Emaciated.
(ଯଥା—ପିଲାଟା ନ ଖାଇ ନ ପିଇ ଡଇଁ ଡଇଁ ହୋଇ ବୁଲୁଛି)

ଡଉଁରା—ଦେ. ବି.—ଡେଉଁରିଆ (ଦେଖ)
Ḍauñrā Ḍeuñriā (See)

ଡଉଁରିଆ—ଦେ. ବି.—(ସଂ. ଡମରୁ)—ଡେଉଁରିଆ (ଦେଖ)
Ḍauñriā Ḍeuñriā ( See )

ଡଉଲ—ଦେ. ବିଣ (ସଂ. ଡମ୍ବର=ଆଡ଼ମ୍ବର; ବିଳାସ)—
Ḍaula ୧ । ସୁନ୍ଦର; ସୁଠାଣ—
सुडौल 1. Pretty; handsome; nice; graceful.
डौलदार ୨ । ସୁଡୌଲ; ସୁଠାମ; ସୁଗଠିତ ଶରୀରବିଶିଷ୍ଟ—
(ଡୌଲ—ଅନ୍ୟରୂପ) 2. Of symmetrical build; well-shaped.
[ଦ୍ର—ସୁଡୌଲ=ସୁନ୍ଦର, ବେଡୌଲ=ଅସୁନ୍ଦର ।]
ଡୌଲ ବି.—ଢଙ୍ଗ; ଢପ; ରୀତି; ଢାଞ୍ଚା—
डौल 2. Manner; fashion; method.
୨ । ଭାବଭଙ୍ଗୀ; ଆଚରଣ—2. Attitude.
୩ । ଅଙ୍ଗସୌଷ୍ଠବ; ସୁଗଠନ—
3. Symmetry of form; grace.
୪ । ମୂର୍ତ୍ତି—4. Shape
୫ । ଗଠନ—5. Form; make.

ଡଉଲ ଡାଉଲ—ଦେ. ବିଣ—ସୁଠାମ; ସୁଗଠିତ; ସୁନ୍ଦର—
Ḍaula ḍāula Pretty; handsome.
ডৌলশুদ্ধ डौलदार

ଡଉଲଦାର—ଦେ. ବିଣ.—ଡଉଲ ଡାଉଲ (ଦେଖ)
Ḍauladār Ḍaula ḍāula (See)
सुडौल डौलदार

ଡଉଲିଆ—ଦେ. ବିଣ.—ଡଉଲ ଡାଉଲ (ଦେଖ)
Ḍauliā Ḍaula ḍāula (See)

ଡଂବ—ପ୍ରାଦେ. (ବିଶାଖ ପଟଣା) ବି.—ବିଶାଖାପଟଣା ଜିଲ୍ଲାର ଓଡ଼ିଆ
Ḍamba ଜାତିବିଶେଷ—The name of an Oriya caste in the Vizag district.

ସାଧାରଣ ଲୋକେ ଅପର ଦୃଷ୍ଟାରେ ଦ୍ୱାରା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ତଥ୍ୟକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୁ' ନ ମିଳିଲେ 'ବଧୂ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲଙ୍ଘ' ନ ପାଇଲେ 'ଅଲଂଘ' ଦେଖିବେ।

[ ଦ୍ର—ଏମାନେ ଲୁଗା ବୁଣି ବା ମୁଷ୍ଟିଭିକ୍ଷା କରି ଜୀବିକା ନିର୍ବାହ କରନ୍ତି । ଏମାନଙ୍କ ମଧ୍ୟରୁ କେତେକ ଖ୍ରୀଷ୍ଟଧର୍ମ ଅବଲମ୍ବନ କରି ଅଛନ୍ତି । ]

**ଡଂଶିବା**—ଗ୍ରା. କ୍ରି. ( ସ. ଦଂଶ ଧାତୁ )—ଦଂଶିବା ( ଦେଖ )
Ḍaṁśiba Daṁśiba ( See )
দংশা **डंसना**

**ଡକ୍**—ବୈଦେ. ବି. (ଇଂ)—ଜାହାଜ ବନ୍ଦରରେ ଲାଗିବାର ଘାଟ—
Ḍak Dock; dockyard.
ডক্ **डक**

**ଡକଡକା**—ଦେ. ବିଣ. ଓ ବି. ପୁଂ. (ସ. ଢକ୍କା; ଯେ ସବୁ କଥାକୁ ନାଗରା Ḍakaḍakā ପିଟି ଘୋଷଣା କରିବା ଭଳି ସବୁଆଡ଼େ କହି ବୁଲେ)— (ଡକଡକୀ—ସ୍ତ୍ରୀ) ୧ । ଡବଡବା; ଯେଉଁ ଲୋକ ପେଟରେ କିଛି
ডেঁফো କଥା ଗୋପନ ନ ରଖି କହି ବୁଲେ—
**ढिंगिया** 1. Babbler; one who babbles out secrets.
୨ । ଯେଉଁ ଲୋକ ଅସମ୍ଭବ ଆଶ୍ଚର୍ଯ୍ୟଜନକ କଥାମାନ ଗପେ; ଅତ୍ୟୁକ୍ତିକାରକ—
2. A marvel-teller, an exaggerator.
୩ । ବାକଦୂକ; ଗପଡ଼ି—3. Talkative; garrulous.

**ଡକରା**—ଦେ. ବି. ( ସ. ଡ=ଶବ୍ଦ; ସ. ଢକ୍କା; ସ. ହୁଙ୍କାର )—
Ḍakarā ୧ । ଆହ୍ୱାନ; ଡାକ—1. A call.
ডাক ୨ । ନିମନ୍ତ୍ରଣ—2. Invitation.
**बुलावा, पुकार**

**ଡକରା ବିଭୀଷଣ**—ଦେ. ବି. (ନାମ)—ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରର Ḍakarā bibhīshaṇa ପୂର୍ବ ପାଖରେ ଥିବା ଶିବଲିଙ୍ଗବିଶେଷ—
Name of an image of Śiba to the east of Bhubaneswar temple.
[ ଦ୍ର—ଏହା ଭୁବନେଶ୍ୱର ଥାନାର ଠିକ ପୂର୍ବରେ ଗୋଟିଏ ଭଗ୍ନ ମନ୍ଦିରରେ ଅବସ୍ଥିତ । ]

**ଡକରା ହକରା**—ଦେ. ବି. (ସହଚର ଶବ୍ଦ)—ଡାକହାକ—
Ḍakarā hakarā Calling; hallooing.

**ଡକା**—ଦେ. ବି. ( ସ. ଢକ୍କା )—
Ḍakā ୧ । ବୋବାଳି; ଧ୍ୱନି; ରବ; ଚିତ୍କାର—
ডাকা 1. Cry; sound.
**डकार**

ମୃଗାରୁ ମେଘ ପରି ଗାଣ୍ଡିବ କଲେ ଡକା
ଶୁଣି ଦ୍ରୁମର ଲୋକେ ହୋଇଲେ ଚାଃକା ।
କୃଷ୍ଣସିଂହ. ମହାଭାରତ, ଦ୍ରୋଣ ।

୨ । କ୍ରନ୍ଦନର ଉଚ୍ଚରୋଳ—2. Lamentation.
ଧାଇଁ ଅଇଲ ନ ସହି ଡାକ ଡକା, ଅବକଥିବନ ସରି ରେ ।
କବିସୂର୍ଯ୍ୟ, ସଙ୍ଗୀତ

୩ । ରଡ଼ି; ଉଚ୍ଚ ଗର୍ଜନ—3. Violent roar.
୪ । ଉଦ୍ଦୋଳ—5- Noise; uproar.
ହାତୁ ପିଟିଲେ ତୁଳରେ ପଡେ ଡକା । ଦାଶରଥି, ବ୍ରଜବିହାର ।
୫ । ନିନ୍ଦା; ଅପବାଦ—
5. Scandal; bad name; evil reputation.
୬ । ଆତୁର ଶବ୍ଦ; ବିକଳ ଚିତ୍କାର—
6. Cry of distress.
ଡକା କରଇ ମୁଁ ବନ୍ଧୁ ସରଲିଛି । କବିସୂର୍ଯ୍ୟ. ସଙ୍ଗୀତ ।
୭ । ଡମରୁ ୧ ( ଦେଖ )—7. Ḍamaru 1 ( See )
ବିଣ—୧ । ଆହୂତ—1. Called
୨ । ନିମନ୍ତ୍ରିତ—2. Invited.

**ଡକା(କେ)ଇତ**—ଦେ. ବି. ( ସ. ଢକ୍କା, ସ. ହୁଙ୍କାର; ଓ. ଡାକ; ଯେଉଁ Ḍakā(ke)ita ଦସ୍ୟୁ ଢକ୍କା ପିଟି ବା ଡାକ ମାରି ଧନ ଲୁଣ୍ଠନ ডাকাইত, ডাকাত্ କରେ )—ଖଣ୍ଟ; ଡାକୁ; ବଳ ପ୍ରୟୋଗ ପୂର୍ବକ **डकैत, डाकू** ଚୋରିକର୍ମରେ ଦଳବଦ୍ଧ କିମ୍ବା ସଶସ୍ତ୍ର ବ୍ୟକ୍ତି; ଦସ୍ୟୁ—Dacoit; robber; bandit; highway-man.
ଡକାଇତ ପଣ କରେ ଜୀବ ଯେତେ କାଳ । ପ୍ରାଚୀ. ଶିବ ସ୍ୱରୋଦୟ ।
[ ଦ୍ର—ଚୋର ସଶସ୍ତ୍ରରେ ଏକ ବା ତତୋଧିକ ବ୍ୟକ୍ତି; ଚୋର ଦ୍ରବ୍ୟ ସ୍ୱାମୀର ଅଜ୍ଞାତରେ ଦ୍ରବ୍ୟକୁ ଲୁଚାଇ କରି ଚୋରି କରେ । କିନ୍ତୁ ଡକାଇତମାନେ ଦଳବଦ୍ଧ ହୋଇ ବଳ ପ୍ରୟୋଗପୂର୍ବକ ଡାକ-ଡାକି ଅର୍ଥାତ୍ ପ୍ରକାଶ୍ୟରେ ଚୋରି କରନ୍ତି ଏବଂ କେହି ବାଧା ଦେଲେ ତାକୁ ମାରି ପକାଇବାକୁ ଦ୍ୱିଧା ବୋଧ କରନ୍ତି ନାହିଁ ।]

**ଡକାଇତ ପଣ**—ଦେ. ବି—ଡକାଇତି ( ଦେଖ )
Ḍakāita paṇa Ḍakāiti ( See )

**ଡକା(କେ)ଇ(ଏ)ତି**—ଦେ. ବି—ବଳ ପ୍ରୟୋଗପୂର୍ବକ ଦଳବଦ୍ଧ ଦସ୍ୟୁଙ୍କ Ḍakā(ke)i(e)ti ଦ୍ୱାରା ଲୁଣ୍ଠନକାର୍ଯ୍ୟ; ଦଳବଦ୍ଧ ହୋଇ ଲୁଣ୍ଠନ ডাকাতি କରିବା—Dacoity; gang robbery.
**डाका, डकैती** [ ଦ୍ର—ଭାରତୀୟ ଦଣ୍ଡବିଧି ଆଇନର ୩୯୧ ଦଫାରେ ଡକାଇତି ଅପରାଧର ସଂଜ୍ଞା ଦିଆ ଯାଇଅଛି । ୫ଜଣରୁ ଅଧିକ ବ୍ୟକ୍ତି ଚୋରି କରିବା ବା ଜବରଦସ୍ତି ଜିନିଷ ଛଡ଼ାଇନେବା ସମ୍ପର୍କରେ ବଳ ପ୍ରୟୋଗ କଲେ ବା କାହାରିକୁ ଆଘାତ ବା ହତ୍ୟା କଲେ ବା କରିବାକୁ ଭୟ ଦେଖାଇଲେ ଉକ୍ତ ଅପରାଧକୁ ଡକାଇତି ବୋଲାଯାଏ । ଏହା ଗୋଟିଏ ଗୁରୁତର ଅପରାଧ ଓ ଏଥିର ଦଣ୍ଡବିଧାନ ୩୯୫ ଦଫାରେ ଅଛି । ]

**ଡକା(କେ)ଇବା**—ଦେ. କ୍ରି—୧ । ଡାକିବା କ୍ରିୟାର ଣିଜନ୍ତ ରୂପ—
Ḍakā(ke)ibā 1. Causative of 'Ḍākibā'
ডাকান ୨ । ଡାକି ଆଣିବା ନିମନ୍ତେ ଲୋକ ପଠାଇବା—
**बुलवाना** 2. To call for; to send for.
ଶକୁନି ଦୁଃଶାସନ କର୍ଣ୍ଣେ ଡକାଇଲେ—କୃଷ୍ଣସିଂହ, ମହାଭାରତ. ବନ ।
୩ । ତଲବ କରିବା; ଉପସ୍ଥିତ ହେବାପାଇଁ ସମ୍ବାଦ ପ୍ରେରଣ କରିବା—3. To summon.

| ୧ | ଏ | ଓ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇୟ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଙ୍ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଡ଼ | ନ୍ |

୪ । ଚିତ୍କାର କରିବାକୁ ବାଧ କରିବା—
4. To cause a person to shout.

ଡକାଏତ(ଇତ୍ୟାଦି)— ଡକାଇତ (ଇତ୍ୟାଦି) (ଦେଖ)
Dakāeta etc Dakāita (etc) (See)

ଡକା କରିବା—ଦେ. କ୍ରି—ବଡ଼ ପାଟିକରି କହିବା; ରଡ଼ି କରିବା—
Ḍakā karibā To speak in a very loud voice; to shout.
জোৰে ডাকা
चीक मारना
କି କରୁଛ ବ୍ରାହ୍ମଣ ବୋଲି କଲେ ଡକା—
କୃଷ୍ଣସିଂହ ମହାଭାରତ ଉଦ୍ଯୋଗ ।

ଡକା ଛାଡ଼ିବା—ଦେ. କ୍ରି—ଡକା ପାଡ଼ିବା (ଦେଖ)
Ḍakā chhārḍibā Ḍakā pārḍibā (See).
ପବନଙ୍କୁ ଡକା ଛାଡ଼ିଲେ (୧) ପବନରେ—ରଘୁନାଥ. ହରିଚନ୍ଦ୍ର ।

ଡକାଡକି—ଦେ. ବ—୧ । ପରସ୍ପର ଆହ୍ୱାନ—
Ḍaka ḍaki Calling each other.
ଆସ ଆସ ଡକାଡକିରେ ସେ ଡକା ପକାଉ ଅଛନ୍ତି ପିକେ ।
ଉପେନ୍ଦ୍ର କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
ডাকাডুকি, ডাকডোক ୨ । ଉଚ୍ଚୈଃସ୍ୱରରେ ବାରମ୍ବାର ଡାକିବା—
हाँकपुकार 2. Outcry; repeated shouts.
ବିଣ—ପରସ୍ପର ଦ୍ୱାରା ଆହୂତ—
Called by each other.
ସଖାମାନେ ସଙ୍ଗିଲୁ ଝୁରୁଁ ଛାଡ଼ିଦେଇ
ଡକାଡକି ହୋଇଲେ ଯୁଝିବାର ପାଇଁ ।
କୃଷ୍ଣସିଂହ, ମହାଭାରତ. ଭୀଷ୍ମ ।

ଡକା ଦେବା—ଦେ. କ୍ରି—ଡକା ପାଡ଼ିବା (ଦେଖ)
Ḍakā debā Ḍakā pārḍibā (See).
ଡକାଦେବା ସ୍ୱନେ ଅରିଙ୍କେ ଉଗ୍ରନେ ଦେଖିଛୁ ଶଙ୍କିତ ଦଶା ।
କବିସୂର୍ଯ୍ୟ. ଜଗୋଣଦଳମୁ ଗୀତ ।

ଡକା ପକା(କେ)ଇବା—ଦେ. କ୍ରି—ଡକା ପାଡ଼ିବା (ଦେଖ)
Ḍakā pakā(ke)ibā Ḍakā pārḍibā (See).

ଡକା ପାଡ଼ିବା—ଦେ. କ୍ରି.—୧ । ଉଚ୍ଚୈଃସ୍ୱରରେ ଶବ୍ଦ କରିବା—
Ḍakā pārḍibā 1. To utter a loud cry.
ডাক ছাড়া
ସେଠାରୁ ସେହି ସ୍ଥାନ ଡକା ପାଡ଼ି ଗଲା ।
कृष्णसिंह. ମହାଭାରତ. ଆଦି ।
डफारना
(ଡକା ପାରିବା—ଅନ୍ୟରୂପ) ୨ । ଉଚ୍ଚୈଃସ୍ୱରରେ କାନ୍ଦିବା; କାନ୍ଦବୋବାଳି କରିବା—2. To lament loudly; to wail.
ମାତାମାନେ ତାହା ଦେଖିଣ ଦୁଃଖୀ ହୋଇ
ପାଡ଼ିଲେ ଡକା ଉଚ୍ଚେ ବଦନ ଶୁଖାଇ । କୃଷ୍ଣସିଂହ. ମହାଭାରତ. ବନ ।

ଡକା ବୋବାଳି—ଦେ. କ୍ରି. ( ସହଚର ଶବ୍ଦ )—କାନ୍ଦବୋବାଳି;
Ḍakā bobāḷi ଅତି ଆର୍ତ୍ତ ସ୍ୱରରେ ରୋଦନ—
কাঁদাকাটা Wail; cry of distress.
रोना पीटना

ଡକାମଝା—ଦେ. ବି. ସ୍ତ୍ରୀ—ଡାକ କଟି; ଯେଉଁ ସ୍ତ୍ରୀର କଟି ଡମରୁ ପରି
Ḍakā-majhā ସରୁ; ଡମରୁମଝା—Slender-waisted.
ଡାକ କରିଗଲ ତୋତେ, ଡାକ କରିଅଛ ଡକାମଝା ସରୁ କୁହାଇ
ମୁଁ କହାଉଛେ । କବିସୂର୍ଯ୍ୟ, ଚମ୍ପା ଗୀତ ।

ଡକାର—ବୈଦେ. ବି. ( ଧ୍ୱନିରୁ ଅନୁକୃତ; ସଂ. ଉଦ୍ଗାର )—
Ḍakāra ଉଦ୍ଗାର; ବମନ; ବାନ୍ତି—
ডকার Vomiting.
डकार

ଡକାହକା—ଦେ. ବି. ( ସହଚର ଶବ୍ଦ )—
Ḍakā-hakā ୧ । ଡକାଡକି, ଅନ୍ୟୋନ୍ୟ ଆହ୍ୱାନ; ଡାକହାକ—
ডকাডাকি 1. Calling each other.
बुलौआ ୨ । ଡାକହାକ ( ଦେଖ )
2. Ḍāka-hāka ( See )

ଡାକୁଣୀ—ଗ୍ରା. ବି. (ସଂ. ଡାକିନୀ)—ଡାଙ୍କେଣୀ ( ଦେଖ )
Ḍākuṇi Ḍāṅkeṇi ( See )
ডাইনী
ଏ ଡାକୁଣୀଙ୍କୁ କାହିଁକି ଚିହ୍ନ ହେଲୁରେ ପଦ୍ମ ।
चुडैल, डायन
ଉକାସ. ଯୌତୁକ ।

ଡକେଟ୍—ବୈଦେ. ବି (ଇଂ)—ବଡ଼ ଚଠି ବା ଆଦେଶପତ୍ରର ସାରାଂଶ—
Ḍaket Docket.
ডকেট डाकेट

ଡକ୍କାରୀ—ସଂ. ବି—ଚଣ୍ଡାଳବୀଣା; କେନେରା—
Ḍakkāri The lute of the Chāṇḍāḷas (Apte).

ଡଗ—ଗ୍ରା. ବୈଦେ. ବି ( ଇଂ. ଡକ୍ )—ଡକ୍ ( ଦେଖ )
Ḍaga Ḍak ( See )

ଡଗଡଗ (ଚାଲିବା)—ଦେ. କ୍ରି. ବିଣ ( ସଂ. ଦକ୍ଷ; ସଂ. ଢକ ଧାତୁ—
Ḍagaḍaga (chālibā) ଗତି କରିବା )—
ঢকঢক করে (চলা) ୧ । ଶୀଘ୍ର ଶୀଘ୍ର (ଚାଲିବା)—
डग मारकर (चलना) 1. (to walk) Briskly or hastily.
ଡଗଡଗ ସେ ଶକ୍ତିରୁ ଉଠୁଛି ଚପଳ । ପ୍ରାଚୀ. ବ୍ରହ୍ମକଭୂଷଣ ଗୀତା ।
୨ । ଲମ୍ବ ଲମ୍ବ ପାହୁଣ୍ଡ ପକାଇ (ଚାଲିବା)—
2. (to walk) With long strides; in a stalking manner.
ମୁଁ ଯେ ବଗ—ଚାଲେ ଡଗଡଗ । ଶିଶୁଗୀତ ।

ଡଗଡଗା—ଦେ. ବିଣ. ପୁଂ—୧ । ଡକଡକା ( ଦେଖ )
Ḍaga ḍagā 1. Ḍakaḍakā ( See )
(ଡଗଡଗିଆ—ଅନ୍ୟରୂପ) ୨ । ଯେଉଁ ବ୍ୟକ୍ତି ଡଗଡଗ ହୋଇ ଚାଲେ-
ଡଗଡଗୀ } ସ୍ତ୍ରୀ 2. Stalking; habituated to walking
ଡଗଡଗେଇ } with long strides.

ଡଗର କରିବା—ପ୍ରାଦେ. (ସିଂହଭୂମ) କ୍ରି—ତଲାସ କରିବା—
Ḍagar karibā To search; to be on the look-out for a thing.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଡଗର**—ଦେ. ବି—୧ । ଦୂତ—
Ḍagara 1. Messenger.
पाइक
हरकारा

ମୈଁ ବିଗେ ମୃତ୍ୟୁ-ଡଗର ବୁଲୁଅଛି ନିରନ୍ତର । ମଧୁସୂଦନ. ସଙ୍ଗୀତମାଳା ।

ପ୍ରାଦେ. (ଗଡ଼ଜାତ) ବି (ତୁଲ. ହି. ଡଗର = ରାସ୍ତା)—
୧ । ପଦଚିହ୍ନ—1. Footstep.
୨ । ରାସ୍ତା; ମାର୍ଗ—2. Road; way; path.
୩ । ପଦାତି; ପିଆଦା—3. Peon.
୪ । ଗୁପ୍ତଚର—3. Spy.
୫ । ନିବିଡ଼ ଅରଣ୍ୟ ମଧ୍ୟରେ ଥିବା ମନୁଷ୍ୟ ଚଲା ବାଟ—
डहर, डगर, पगडंडी 5. A foot-path running through a dense forest.
୬ । ଚାଲିଯିବା ପରେ ପଡ଼ିଥିବା ମନୁଷ୍ୟ ବା ପଶୁର ପାଦଚିହ୍ନ-
6. Foot-print; foot-track.

ଶରଗତ ଜଦନ୍ତରେ ପଳାଇ ଗୁପତେ
ସେ ପଳାଶ କୁଞ୍ଜେ କୁଞ୍ଜେ ମହିଷ ଡଗରେ । ରାଧାନାଥ. ଉଷା ।

୭ । ଯେଉଁ ବ୍ୟକ୍ତି ରାଜାଜ୍ଞାକୁ ସାଧାରଣରେ ପ୍ରଚାର କରେ—
7. Proclaimer of royal order; herald.

ନେଇ ଡଗରକୁ ଆଗ ସେ ବୁଲାଇଲେ । କୃଷ୍ଣସିଂହ. ମହାଭାରତ. ବନ ।

ପ୍ରାଦେ. ( ସିଂହଭୂମ ) ବି—୧ । ଖୋଜିବା; ଅନ୍ୱେଷଣ—
1. The act of searching.
୨ । ଏକ ପ୍ରକାର ଧାନ—
2. A species of paddy.

**ଡଗରାଇବା**—ପ୍ରାଦେ. ( ଜାଗପୁର ) କ୍ରି—ବାଟ ଦେଖାଇ ନେବା—
Ḍagarāibā To lead the way.

**ଡଗର ଡଗର**—ଦେ. କ୍ରି. ବିଣ—ଡଗଡଗ ( ଦେଖ )
Ḍagara ḍagara Ḍagaḍaga ( See )

**ଡଗର ଫସର**—ବୈଦେ. ବି. ( ହି. ଦଗଲ ଫସଲ )—
Ḍagara phasara ଡଗଲ ଫସର ( ଦେଖ )
Ḍagala phasara ( See )
(ଡଗରଫସଲ, ଡଗଲଫସଲ—ଅନ୍ୟରୂପ)

**ଡଗରା**—ଦେ. ବି—୧ । ଯେଉଁ ବ୍ୟକ୍ତି ଦ୍ୱାରା ରାଜାଦେଶ ଉଦ୍‌ଘୋଷିତ ହୁଏ; ଭାଟ—1. A herald; a proclaimer of royal order.
Ḍagarā
पाइक
हरावल

ଉଚ୍ଚୈଃସ୍ୱରେ ଡାକ ଡଗରା ଘୋଷିଲା ପଣ ଉଷାର । ରାଧାନାଥ, ଉଷା ।

୨ । ଗୁପ୍ତଚର—2. Spy.

ଡଗରା ବୁଲୁଛି ପୁର, ବଷାଉ କଷମ ଶର । କବିସୂର୍ଯ୍ୟ. ସଙ୍ଗୀତ ।

୩ । ଖଣ୍ଡାଏତ; ପାଇକମାନଙ୍କ ସର୍ଦ୍ଦାର—
3. The headman of the peons.
୪ । ଦୂତ; ବାର୍ତ୍ତାବହ—4. Messenger.

ତଥର କର ସୈନ୍ୟ ଡକାଅ ଡଗରାକୁ
ଚାଲି ଯିବା ସମସ୍ତେ କାମ୍ୟକ ବନକୁ । କୃଷ୍ଣସିଂହ. ମହାଭାରତ. ବନ ।

୫ । ଖଣ୍ଡାଏତମାନଙ୍କର ଶାଖାବିଶେଷ—
5. A class or sect of Khandayats.

ବିଣ—ଯେ ଡଗ ଡଗ ହୋଇ ଚାଲେ; ଯାହାର ଗୋଡ ଲମ୍ବା—
Long-legged ( ant etc ); stalking

**ଡଗରା(ରେ)ଇ**—ଦେ. ବି—୧ । ଡଗରାର କାର୍ଯ୍ୟ—
Ḍagarā(re)i 1 The duty or post of a Dagarā.
୨ । ଡଗରାକୁ ପ୍ରଦତ୍ତ ଜାଗିର—2. Service-tenure granted to a Dagarā.

[ ଦ୍ର—ଡଗରା ବା ଖଣ୍ଡାଏତ ବା ପାଇକସରଦାରମାନଙ୍କୁ ଓଡ଼ିଶାର ସ୍ୱାଧୀନ ରାଜାଙ୍କର ଓ ମରହଟ୍ଟାଙ୍କ ଅମଳରେ ଦିଆ ଯାଇ ଥିବା ବୃତ୍ତି ଆଜି ପର୍ଯ୍ୟନ୍ତ ଡଗରାଇ ଜାଗିର ନାମରେ ଖ୍ୟାତ ଓ ତାହା ସାବକ ଡଗରାମାନେ ଅନ୍ୟ ବ୍ୟକ୍ତିଙ୍କୁ ହସ୍ତାନ୍ତର କରିଥିବାରୁ ଗଭର୍ଣ୍ଣମେଣ୍ଟ ତହିଁରେ ଜମା ଧାର୍ଯ୍ୟ କରି ତାହାକୁ ସ୍ୱତନ୍ତ୍ର ଜମିଦାରୀରେ ପରିଣତ କରିଅଛନ୍ତି । ଏ ଜମିମାନ ବର୍ତ୍ତମାନ ପର୍ଯ୍ୟନ୍ତ ଆରାଜି ଡଗରାଇ ଜାଗିର ବାଯ୍ୟାପ୍ତି (ଯହିଁର ସାଙ୍କେତିକ ଆ. ଡ. ଜା. ବା ଯଥା—ଆ. ଡ. ଜା. ବା. ମୌ କମାପୁର ଓଗ୍ର) ବୋଲି ସରକାରୀ ସିରସ୍ତାରେ ଲେଖା ଯାଉଅଛି । ]

୩ । ଯେ ଢେଙ୍କୁରା ଦିଏ—3. A drummer.

ବିଣ—ଡଗରା ସମ୍ବନ୍ଧୀୟ—Pertaining to a Ḍagarā.

**ଡଗରା ଜନ୍ଦା**—ଦେ.ବି—ବଡ଼ ବଡ଼ ଗୋଡ଼ ଥିବା ଏକପ୍ରକାର ଜନ୍ଦା—
Ḍagarā jandā Black big ants with long legs.
ডেহুয়া পিঁপড়ে; ডেয়েঁ পিঁপড়ে

**ଡଗରା ନାୟକ**—ଦେ. ବି—ପାଇକ ସର୍ଦ୍ଦାର—
Ḍagarā nāyaka The head of the Pāikas or old militia of Orissa.
পাইকদের সর্দার

ଜମ୍ବବ ଉଗ୍ରସେନ ଡଗରା ନାୟକ
ଡକାଇ ଆଜ୍ଞାଦେଲେ ରଥ ରୁ ଟମକ । କୃଷ୍ଣସିଂହ. ମହାଭାରତ ବନ ।

**ଡଗରେଇବା**—ପ୍ରାଦେ. (ଯାଜପୁର) କ୍ରି—ଡଗରଇବା (ଦେଖ)
Ḍagareibā Ḍagaraibā (See)
ପ୍ରାଦେ. (ଗଡ଼ଜାତ) କ୍ରି—ଚୋର ଓ ପଶୁମାନଙ୍କର ପଦଚିହ୍ନ ଅନୁସରଣ କରିବା—To track a beast or thief by following their footsteps or other marks left by them.

**ଡଗଲ ଫସର(ଲ)**—ବୈଦେ.ବି—୧ । ଦମଦିଲାସା; ଭଣ୍ଡାଇବା; ଟାଳଟୁଳ-
Ḍagala phasara(la) 1. Putting off on various excuses.
दगलफसल
୨ । ଦଗାବାଜୀ—2. Fraud.
୩ । ହେଳା—3. Procrastination.

**ଡଗା**—ଦେ. ବି—ମାଟିର ମଦ୍ୟଭାଣ୍ଡ; ଅଧିଆ—
Ḍagā An earthen toddy-pot (Howells).
ভাঁড়

| ୧ | ୯ | ଓ | ର,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇମ୍ଭ | ଡ଼ଥ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ୍ | ଉ | ରୁ | ଲୁ | ସ୍ୱ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ଢ଼ | ନ୍ |

ଡଙ୍କ—ଦେ. ବି. (ସଂ. ଡଙ୍ଗ୍ ଧାତୁ=ଗଢ଼)—୧ । ବୃକ୍ଷ ଓ ଲତାର କୋମଳ ଅଗ୍ରଭାଗ—1. The tendrils or sprouts of a creeper or plant; tender shoots of plant.
Ḍanka
ଡଗ; ଡଗା
ଡଗ; କଲ୍ଲା

ବେଳୁ ପିଡାରେ ଚଢି କଖାରୁ ଡଙ୍କ ଯଦଳି ଦେଉଥିଲେ ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

୨ । କୌଣସି ଲମ୍ବ ପଦାର୍ଥର ସରୁ ଅଗ—
2. The slender top of a long thing.
୩ । ସାପ—3. Serpent.
୪ । ପ୍ରାଣୀର ବେକ—4. Neck of animal.
୫ । ବେକମୁଣ୍ଡା—5. Nape of the neck.
୬ । (ସଂ. ଦଂଶ) ସାପର ବିଷଦାନ୍ତ—
6. The fangs of a serpent.

ମରମେ ଗଲା ଡଙ୍କ ହାଣି
କହ୍ନା ନ ଦେଇ ଗଦ ଅଣି । ଭୂପତି. ପ୍ରେମପଞ୍ଚାମୃତ ।

ହୁଲ ୭ । ନାହୁଡ଼—7. The sting of venomous animals.
ଡଙ୍କ

ଡଙ୍କ ଛୁଇଁବା—ଦେ. ବି. (ଶୁଭବାଚକ; କମ୍ପା ସଂ. ଦଂଶ=ନାହୁଡ଼)—ସର୍ପାଘାତ—(Euphemism) Snake-bite.
Ḍanka chhuiñbā
ଡଙ୍କମାରିବା } ଅନ୍ୟରୂପ
ଡଙ୍କଲାଗିବା }
[ଦ୍ର—ସାପର ନାମ ଉଚ୍ଚାରଣ କରିବା ଅମଙ୍ଗଳକର ଭାବି ଲୋକେ ସାପ ନାମ ନ ଧରି ଡଙ୍କ, ଲଥ, ଲତ୍ଵ, ଲମ୍ବଜନ୍ତୁ ଆଦି ଶବ୍ଦ ବ୍ୟବହାର କରନ୍ତି । ]

ଡଙ୍କ ମାରିବା—ଦେ. ବି—ଡଙ୍କ ଛୁଇଁବା (ଦେଖ)
Ḍanka māribā Ḍanka chhuiñbā (See)
ହୁଲ ଫୁଟାନ ଦେ. କ୍ରି—ନାହୁଡ଼ଦ୍ୱାରା ଆଘାତ କରିବା—To sting.
ଡଙ୍କ ମାରନା

ଡଙ୍କ ମୋଡ଼ିଦେବା—ଦେ. କ୍ରି—୧ । (ଜଳାଭାବରୁ ବା ପ୍ରଚଣ୍ଡ ଖରା-ଯୋଗୁଁ ବା ମୂଳକାଟି ଦେବାରୁ) ବୃକ୍ଷ-ଲତାଦିର କୋମଳ ଅଗ୍ରଭାଗ ମଉଳିଯିବା ବା ଝାଉଁଳି ଯିବା—1. To wither at the top (said of plants and creepers).
Ḍanka mordidebā
ମୁରଝାନା
(ଯଥା—ଖରାରେ ଲାଉ ଗଛଟି ଡଙ୍କ ମୋଡ଼ି ଦେଲାଣି ।)
୨ । ( ଆଘାତାଦିଜନିତ ଦୁର୍ବଳତା ଯୋଗୁଁ କୌଣସି ପ୍ରାଣୀର) ମୁଣ୍ଡ ଅଂଶ ବେକଠାରୁ ଏକପାଖକୁ ଢଳି ପଡ଼ିବା—
2. To bend down one's head, being overcome with weakness.
(ଯଥା—ସର୍ପାଘାତରେ ସେ ମନୁଷ୍ୟଟି ଡଙ୍କ ମୋଡ଼ି ଦେଲାଣି ।)
୩ । ଲତା ବା ବୃକ୍ଷାଦିର କୋମଳ ଅଗ୍ରଭାଗକୁ ମୋଡ଼ି ପକାଇବା—3. To twist the tender shoot of a plant or creeper.
୪ । କୌଣସି ଲୋକର ବେକଠାରୁ ମୁଣ୍ଡକୁ ମୋଡ଼ି ମାରି ପକାଇବା—4. To wring out a person's neck.

ଡଙ୍କା—ଦେ. ବି. (ସଂ. ଢକ୍କା)—୧ । ଦୁନ୍ଦୁଭି; ଧେଣ୍ଡୁରା; ନାଗରା; ଢେଙ୍ଗୁରା—1 A drum; tomtom.
Ḍankā
ଡଙ୍କା
ଡଙ୍କା ୨ । (ସଂ. ଦ୍ରୋଣକ; ଦଣ୍ଡ; ଦର୍ବିକା) —ଅଣକ—
2. A wooden ladle or spoon.
ଡୌଁକା ପ୍ରାଦେ. (ସିଂହଭୂମ) ବି—ଲୁହା ବା ପିତଳର କରଛୁଲି—A metal ladle.
ଡୌଁଡ଼, ଡଣ୍ଡୁ

ଡଙ୍କା(ଙ୍କେ)ଇବା—ଦେ. କ୍ରି. (ଡଙ୍କ ଶବ୍ଦରୁ ଓଡ଼ିଆ ନାମ ଧାତୁ )—( ଲତା ) ବୃଦ୍ଧିପାଇ ଡଙ୍କ ବା ଅଗ୍ରଭାଗ ବିସ୍ତାର କରିବା; ଲଟାଇବା—To send out creeping tendrils or shoots (said of creepers while growing).
Ḍankā(ṅke)ibā
ଲତାନ
ହିଁଗନା; ଉଗନା

ଡଙ୍କା ପିଟିବା—ଦେ. କ୍ରି.—ନାଗରା ବା ଢେଙ୍ଗୁରା ବଜାଇ କୌଣସି କଥା ଘୋଷଣା କରିବା; ସ୍ପଷ୍ଟ କରିବା—
Ḍankā piṭibā
[ଡଙ୍କା ବଜା(ଜେ)ଇବା—ଅନ୍ୟରୂପ] To proclaim by beat of drum; to publish anything.
ଡଙ୍କା ପେଟା
ଡଙ୍କାପୀଟନା

ଡଙ୍କା ମାରିବା—ଦେ. କ୍ରି.—୧ । ଡଙ୍କା ପିଟିବା (ଦେଖ)
Ḍankā māribā 1. Ḍankā piṭibā (See)
ଡଙ୍କାମାରା ୨ । ହାଣ୍ଡିରେ ସିଝୁଥିବା ତିଅଣ ଆଦିକୁ ଅଣକଦ୍ୱାରା ଗୋଳାଇବା—2. To stir boiling curry etc with the ladle.
ଡଙ୍କାପୀଟନା
ହାତା ମାରା
ଡୋଇମାରନା

ଡଙ୍କାରି—ଦେ. ବି. —(ସଂ. ଟଙ୍କାରୀ)—ଏକପ୍ରକାର ବନ୍ୟ କ୍ଷୁପ—Wild; Goose-berry; Physalis Peruvina a plant used as medicine for some cattle diseases and as antidote against poisoning.
Ḍankāri
ନ ଟେପାରୀ
ଟଙ୍କାରୀ

[ଦ୍ର—ଏହା ବଙ୍ଗଳାଦିବର୍ଗର ବର୍ଷାୟୁ ଫଳ ଶାକ । ଏହାର ଫଳ ଟିକି ବାଇଗଣ ପରି ବହୁବୀଜ । ଅଶ୍ୱଗନ୍ଧା ଫଳ ପରି ଫଳର ମୂଳ ଫୁଲର ପାଖୁଡ଼ାରେ ଆବୃତ । ଏହା ଦକ୍ଷିଣ ଆମେରିକାର ଗଛ; ଏ ଦେଶକୁ ଅଣା ଯାଇ ଜଙ୍ଗଲୀ ହୋଇ ଅଛି । ଏ ଗଛରେ କଣ୍ଟା ନାହିଁ, ପତ୍ରର ଆକୃତି ମନ୍ଦାରପତ୍ର ପରି, କିନ୍ତୁ ମନ୍ଦାର ପତ୍ର ଠାରୁ ଛୋଟ । ନାଲି, ଧଳା ଓ ଗୋଲାପୀ ଫୁଲ ଭେଦରେ ଏ ଗଛ ତିନି ପ୍ରକାରର । ଫୁଲ ଗୋଛ ଗୋଛ ହୋଇ ଧରେ, ଫୁଲ ଝଡ଼ି ଗଲେ ଫଳ ମଧ୍ୟ ଥୋପା ଥୋପା ହୋଇ ଫଳେ । ବୈଦ୍ୟଶାସ୍ତ୍ର ମତରେ ଏହା ବାତଘ୍ନ, ତିକ୍ତରସ, କଫନାଶକ, ଅଗ୍ନି ଦୀପକ, ଲଘୁ ଏବଂ ଶୋଥ ଓ ଉଦର ରୋଗ ନାଶକ ଏବଂ ଉଦର ଓ ବିସର୍ପ ରୋଗରେ ହିତକର ।

ସାଧାରଣ ଲୋକେ ଅନେକ ସ୍ଥଳରେ ସ୍ୱତନ୍ତ୍ର ୧ ଚନ୍ଦ୍ରବିନ୍ଦୁ ଅକ୍ଷର ଓ ମାତ୍ରା ଏବଂ ୨ ଚନ୍ଦ୍ରବିନ୍ଦୁ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚନ୍ଦ୍ରବିନ୍ଦୁ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚନ୍ଦ୍ରବିନ୍ଦୁ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ'ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଟୋ' ନ ପାଇଲେ 'ଅଛା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

ଗୋମେଷାଦିଙ୍କର ବେଙ୍ଗା ଓ ଖୋଷା ରୋଗରେ ଏହା ବ୍ୟବହୃତ ହୁଏ ଓ ଏହା କ୍ଷତନାଶକ।]

ପ୍ରାଦେ. (ସମ୍ବଲପୁର) ବି.—ପିତଳର ଏକ ପ୍ରକାର ଚାଟୁ— A kind of brass ladle.

**ଡଙ୍କାରୁଣୀ**—ଦେ. ବି.—ଗନ୍ଧଣା (ଦେଖ)
Ḍaṅkāruṇi — Gandhaṇā (See)

**ଡଙ୍କି**—ଦେ. ବି.—(ଓଡ଼ିଆ ଡଙ୍କା=ଅଙ୍କୁଶ + କ୍ଷୁଦ୍ରାର୍ଥେ ଇ)—
Ḍaṅki ୧। ତମ୍ବା ବା ପିତଳନିର୍ମିତ କ୍ଷୁଦ୍ର ଚାମଚ; ଚମଚୀ—
କୁଶୀ; କୋଶୀ 1. Metal spoon; a small ladle made of metal.
**କର୍ଛି, କଲଛା**

[ଦ୍ର—ଏଥିଦ୍ୱାରା ପଞ୍ଚପାତ୍ରିରୁ ଜଳ ଆଣି ପୂଜାବେଳେ ବ୍ୟବହାର କରାଯାଏ।]

୨। (ସଂ. ବ୍ରଣ) ବେକମୂଳରେ ଉଠିବା ମାରାତ୍ମକ ବ୍ରଣ-ବିଶେଷ; ପୃଷ୍ଠ ବ୍ରଣ—2. A boil or carbuncle on the nape of the neck.

୩। ମାଲଖମ୍ବରେ କରାଯିବା ଏକପ୍ରକାର କସରତ୍—
3. A kind of athletic exercise with a post or pillar.

ପ୍ରାଦେ. (ସମ୍ବଲପୁର) ବି—୧। ବାନ୍ତି ରୋଗ—
1. A disease accompanied with repeated vomiting.

(ଯଥା—ଡଙ୍କି ଧରିବା, ଡଙ୍କି ଦେଖାଇବା।)

୨। ଏକପ୍ରକାର ଲତା—
2. A kind of creeper.

**ଡଙ୍କୁଣୀ**—ଗ୍ରା. ବି. ସ୍ତ୍ରୀ. (ସଂ. ଡାକିନୀ)—ଡାଙ୍କେଣୀ (ଦେଖ)
Ḍaṅkuṇi — Ḍāṅkeṇi (See)

(ଡଙ୍କୁଣା—ପୁଂ) ଶାଶୁଆ ବାଳୁଙ୍କୁ ଡଙ୍କୁଣୀଟା ବୋଲି ଗାଳି ଦିଏ।
ଫକୀରମୋହନ. ଛମାଣ ଆଠଗୁଣ୍ଠ।

**ଡଙ୍ଗର ଫେରା(ରେ)ଇବା**—ଦେ. (ବ୍ୟଙ୍ଗ) କ୍ରି.—(ଭୁଲ. ହି. ଡଙ୍ଗର =ଗୋମେଷାଦି ଚତୁଷ୍ପଦ ଜୀବ)—
Ḍaṅgar pherā(re)ibā

୧। ହଳ ବୁଲାଇବା—1. To plough a field.

୨। ଗୋମେଷାଦିଙ୍କୁ ଚରିବା ବେଳେ ଜଗିବା—
2. To tend cattle while grazing.

**ଡଙ୍ଗା**—ଦେ. ବି.—(ସଂ. ଦ୍ରୋଣ, ଦ୍ରୋଣୀ=ଅଣ୍ଡାକାର କାଷ୍ଠପାତ୍ର-ବିଶେଷ, ଲମ୍ବ କାଠୁଆ; ଦ୍ରୋଣୀ=ଡଙ୍ଗା)—
Ḍaṅgā
ଡଙ୍ଗା; ଡୋଙ୍ଗା ୧। କ୍ଷୁଦ୍ର ନାବ; ନାହା; ନୌକା—
**ଡୋଙ୍ଗା, ଡୋଙ୍ଗୀ** 1. A small country-boat.

୨। ନୌକାକାର ପାତ୍ର; ଦ୍ରୋଣୀ—
2. A reservoir or cup shaped like a boat; boat-shaped cup or water-vessel; an oval wooden vessel.

[ଦ୍ର—ବସ୍ତୁତଃ ଦେଖାଯାଏ ଯେ ବଡ଼ଲୋକଙ୍କର ବିବାହାଦି ଉତ୍ସବ ଉପଲକ୍ଷରେ ପିଇବା ଓ ହାତଗୋଡ଼ ଧୋଇବାପାଇଁ ବିଶେଷ ପରିମାଣରେ ପାଣି ଲୋଡ଼ା ହୁଏ ଓ ଏଥିପାଇଁ ଡଙ୍ଗା ଗୋଟିଏ ଆଣି ଭୂଇଁରେ ରଖି ସେଥିରେ ପାଣି ଭରତି କରି ରଖାଯାଏ।]

୩। ଡଙ୍ଗା ମଟାମ (ଦେଖ)—
3. Ḍaṅgā matāma (See)

ପ୍ରାଦେ. (ସମ୍ବଲପୁର) ବି—ଗୋଟିଏ ଗଛର ଭିତର ଅଂଶ ଖୋଳା ଯାଇ ପ୍ରସ୍ତୁତ ହୋଇଥିବା ସାନ ନାହା; ସାପୂଆ ଡଙ୍ଗା; କୁଲି ଡଙ୍ଗା—
A small boat made by excavating a tree; dug-out

ପ୍ରାଦେ. (ଗଞ୍ଜାମ) ବି.—କୁଣ୍ଡ—Crater; bucket.

**ଡଙ୍ଗାପତନ**—ଦେ. ବି—ଡଙ୍ଗା ମଟାମ ଯନ୍ତ୍ର ସାହାଯ୍ୟରେ କୌଣସି କାନ୍ଥ ଆଦିକୁ ସମତଳ କରିବା—
Ḍaṅgā-patana
Making a structure level with the help of the plumb-level.

**ଡଙ୍ଗାପାଣିଦିଆ**—ଦେ. ବି—ନୌକାର ଅନ୍ୟ ସମସ୍ତ ଅଙ୍ଗ ତିଆରି ସରିବା ପରେ ଡଙ୍ଗାର ଆଗ ମଙ୍ଗର ବେକ ପାଖେ ଯେଉଁ ଚକିଡ଼ ପଟାଖଣ୍ଡ ଲାଗିବ ତାହାଁ ଉପରେ ପାଣି ଢାଳିବା ରୂପ ମାଙ୍ଗଳ୍ୟ କର୍ମ—
Ḍaṅgā-pāṇi-diā
The ceremony of pouring water over the end-plate of a newly made boat before it is launched.

[ଦ୍ର—ଡଙ୍ଗାଟି ତିଆରି ସରିଲେ ତାହାର ଆଗ ମଙ୍ଗର ବେକରେ ଚକିଡ଼ ପଟା ଖଣ୍ଡିକ ଲାଗି ନ ଥାଏ। ବଢ଼େଇ ସବୁ-ଶେଷରେ ଡଙ୍ଗାର ଆଗ ମଙ୍ଗରେ ଉକ୍ତ ପଟାଖଣ୍ଡି ରଖି ତା ଉପରେ ଢାଳେ ପାଣି ଦିଏ ଓ ଡଙ୍ଗାର ସ୍ୱାମୀ ଉକ୍ତ ପାଣିକୁ ଖଣ୍ଡେ ନୂଆ ଲୁଗାରେ ଅଣ୍ଟି ଦେଖାଇ ଧରେ। ଡଙ୍ଗାପାଣିଦିଆ କାମ ଶେଷ ହେଲେ ବଢ଼େଇ ଉକ୍ତ କାଠ ଖଣ୍ଡକୁ କଣ୍ଟା ମାରି ଡଙ୍ଗାରେ ସଲଗ୍ନ କରିବା ପରେ ଡଙ୍ଗାର ନିର୍ମାଣକ୍ରିୟା ସମ୍ପନ୍ନ ହୁଏ ଓ ଡଙ୍ଗା ପାଣିକୁ ଯାଏ। ଏହା ନ ହେବା ପର୍ଯ୍ୟନ୍ତ ଡଙ୍ଗା ପାଣିକୁ ଯାଏ ନାହିଁ।]

**ଡଙ୍ଗା ବାହିବା**—ଦେ. କ୍ରି—କାତ ବା ଅହୁଲା ମାରି ନୌକା ଚଳାଇବା—
Ḍaṅgā bāhibā — To ply a boat.
ଡିଙ୍ଗି ଚାଲାନ **ଡାଙ୍ଗା ଚଲାନ**

ଡଙ୍ଗା ବୃହା(ହୋ)ଇବା } —ଅନ୍ୟରୂପ
ଡଙ୍ଗା ବୋହିବା }

**ଡଙ୍ଗା-ମଟାମ**—ଦେ. ବି—ରାଜମିସ୍ତ୍ରୀମାନେ କୋଠାର କାନ୍ଥ ବା ଚଟାଣର ସମତଳତା ପରୀକ୍ଷା କରିବା ନିମନ୍ତେ ଯେଉଁ ତ୍ରିକୋଣ ଯନ୍ତ୍ର ବ୍ୟବହାର କରନ୍ତି—
Ḍaṅgā-matāma
Mason's plumb-level in the shape of a triangle; mason's angle.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଦ୍ଧ | ୬° | ଉ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଙ୍ଖ | ନ୍ତ |

**ଡଙ୍ଗି**—ଦେ. ବ ( ଓଡ଼ିଆ. ଡଙ୍ଗା+କ୍ଷୁଦ୍ରାର୍ଥେ. ଇ )—
Ḍāṅgi — କ୍ଷୁଦ୍ର ଡଙ୍ଗା—Canoe; a small boat; a dug-out.
ଡିଙ୍ଗା
ଡୋଙ୍ଗା

**ଡଙ୍ଗି କିଆରି**—ପ୍ରାଦେ (ଗଡ଼ଜାତ) ବ—କମ୍‌ଚଉଡ଼ା ଲମ୍ବା କିଆରି—
Ḍaṅgi kiāri — A long and narrow plot.

**ଡଙ୍ଗୁର ନାଚ**—ପ୍ରାଦେ (ଗଡ଼ଜାତ) ବ—କୋହ୍ଲ ବା ଭୁୟାଁମାନଙ୍କ
Ḍaṅgura nācha — ମଧ୍ୟରେ ପ୍ରଚଳିତ ଏକପ୍ରକାର ନୃତ୍ୟ—
A sort of dance amongst the Kolhas and Bhuyāns

**ଡଜନ**—ବୈଦେ. ବ ( ଇଂ ଡଜନ୍ )—ଦର୍ଜନ; ୧୨ ଗୋଟି ବସ୍ତୁର
Ḍajana — ସମାହାର—A dozen; an aggregate of 12 articles
ডজন, দর্জন
ଦର୍ଜନ — ବିଣ—୧୨ ସଂଖ୍ୟକ; ୧୨ ଗୋଟି—
A dozen of.

**ଡଜନ ଦର**—ଦେ. ବ ( ଇଂ. ଡଜନ୍+ଫା. ଦର୍ )—କୌଣସି ପଣ୍ୟ
Ḍajana dara — ଦ୍ରବ୍ୟର ପ୍ରତି ୧୨ ଗୋଟାର ମୂଲ୍ୟ ବା କମତ—
ডজন দর — Rate per dozen of any ware.
ଦର୍ଜନଭାବ — ( ଯଥା—ଗେଞ୍ଜିଗୁଡ଼ିକ ମୁଁ ଡଜନ ଦରରେ
ଡଜନ ରେଟ } —ଅନ୍ୟରୂପ — କଲିକତାରେ କିଣିବାରୁ ସସ୍ତାରେ
ଡଜନ ଭାଉ } — ମିଳିଲା । )
[ଦ୍ର—ପଣ୍ୟଦ୍ରବ୍ୟ ବେଶି ସଂଖ୍ୟାରେ କିଣିବା ପାଇଁ ଲୋକମାନଙ୍କୁ ଉତ୍ସାହିତ ବା ପ୍ରଲୋଭିତ କରିବା ନିମନ୍ତେ ଦୋକାନୀମାନେ ଉକ୍ତ ଦ୍ରବ୍ୟର ଡଜନ ଦରକୁ ଗୋଟିକିଆ ଦର ଅନୁପାତରେ ସସ୍ତା କରିଥାଆନ୍ତି ।]

**ଡଜନ ଦରିଆ**—ଦେ. ବିଣ.ଓ କ୍ରି. ବିଣ—ଏକକ ୧୨ ଗୋଟା ଲେଖାଏଁ
Ḍajana dariā — ବିକି କରି ଯିବା (ପଣ୍ୟ ଦ୍ରବ୍ୟ)—
ডজনদরে — (articles) Sold by the dozen.
(ଡଜନଦାରିଆ —ଅନ୍ୟରୂପ)

**ଡଜଲ**—ପ୍ରାଦେ. (ସମ୍ବଲପୁର) ବିଣ.—ମହର୍ଗ; ମହଙ୍ଗା—
Ḍajal — Of high price; dear
(ଯଥା—ଇନର ଧାନ ଗୁଡ଼ିଲ ବଡ଼ା ଡଜଲ, ଅର୍ଥାତ୍ ଏ ବର୍ଷ ଧାନ ଗୁଡ଼ିଲ ଭାରି ମହର୍ଗ ହୋଇଅଛି ।)

**ଡଣସେନା**—ପ୍ରାଦେ. (କେନ୍ଦୁଝର) ବ:—ପାଇକମାନଙ୍କର ଅଧକ୍ଷ—
Ḍaṇasenā — Head of pāikas

**ଡଣା**—ଦେ. ବ.—(ସଂ. ଦଣ୍ଡ)—ଡୋଡ଼ି ଜାତୀୟ ଏକପ୍ରକାର ମାଛ—
Ḍaṇā — A kind of fish
[ଦ୍ର—ଏମାନେ ମଧୁର ପାଣିରେ ପଙ୍କୁଆ ପୋଖରୀ ଆଦିରେ ରହନ୍ତି, ଲମ୍ବରେ ୨।୨୨ ହାତ ପର୍ଯ୍ୟନ୍ତ ବଢ଼ନ୍ତି ଓ କୋଡ଼ଆ ପରି; ମୁଣ୍ଡ ବଗଡ଼ି ମୁଣ୍ଡ ପରି ଓ ମୁଣ୍ଡରେ ୨ ଗୋଟା କାନ ଥାଏ । ଏମାନେ ପଙ୍କ ଭିତରେ ରହନ୍ତି ଓ ପାଣି ଭିତରେ ମନୁଷ୍ୟଙ୍କ ଗୋଡ଼ର ଓ ହାତର ଅଙ୍ଗୁଠିକୁ କାମୁଡ଼ି ଛିଣ୍ଡାଇ ପକାନ୍ତି; ଏମାନଙ୍କ ଦଂଶନ ଭାରି ଜ୍ୱାଲାପ୍ରଦ ।]

**ଡଣ୍ଟା(ଣ୍ଟେ)ଇବା**—ଦେ. କ୍ରି.—(ତୁଳ. ହି. ଡାଂଟ୍‌ନା=ଧମକାଇବା;
Ḍaṇṭā(ṇṭe)ibā — ଛଟାନା=ରଡ଼ିବା)—ଦଣ୍ଟାଇବା (ଦେଖ)
Danṭāibā See)
[ଡଣ୍ଟା(ଣ୍ଟେ)ଇବା— ଅନ୍ୟରୂପ]

**ଡଣ୍ଡ**—ଦେ. ବ.—(ସଂ. ଦଣ୍ଡ; ଭୂମିରେ ପ୍ରଥମେ ଦଣ୍ଡବତ୍ ଅବସ୍ଥାନ
Ḍaṇḍa — କରି ଏହା ସାଧନ କରି ଯିବାରୁ) ଦଣ୍ଡ; ଏକପ୍ରକାର
ডাংড়, ডণ — ବ୍ୟାୟାମ ବା କସରତ, ଯହିଁରେ ଦୁଇ କରତଳ ଓ ଦୁଇ
ଡଂଡ୍ — ପଦତଳର ପଞ୍ଜାକୁ ଭୂମିରେ ସ୍ଥାପନ କରି ସମସ୍ତ ଦେହର ଭାର ସେହି ଚାରି ସ୍ଥାନରେ ରଖି ପ୍ରଥମେ ଦେହକୁ ଭୂମିର ସମାନ୍ତରାଳ କରି ଅବସ୍ଥାନ କରାଯାଏ, ଓ କରତଳ ଏବଂ ପଦତଳକୁ ଉକ୍ତ ଅବସ୍ଥିତିରେ ସ୍ଥିର କରି ରଖି ଦେହର ଅନ୍ୟ ସମସ୍ତ ଅଂଶକୁ ନାନା ପ୍ରକାରେ ଚାଳିତ କରାଯାଏ—A kind of athletic exercise.

**ଡଣ୍ଡ କରିବା**—ଦେ. କ୍ରି.— ଭୂମିରେ ଦୁଇ କରତଳ ଓ ଦୁଇ ପଦତଳର
Ḍaṇḍa karibā — ଭାର ରଖି ନାନା ପ୍ରକାରେ ଶରୀର ଚାଳନା
ডণ পেলা — କରିବା—To practise the Ḍaṇḍa exercise.
ଡଂଡ୍ ପେଲନା
ଡଣ୍ଡ ପେଲିବା, ଡଣ୍ଡ ମାରିବା, }
ଡଣ୍ଡ ପକା(କେ,)ଇବା, ଡଣ୍ଡ ସାଧିବା } —ଅନ୍ୟରୂପ

**ଡଣ୍ଡା**—ପ୍ରାଦେ. ( ସଂ ହିଭୂମ ) ବ.—( ତୁଳ. ହି. ଡଂଡା=ଲମ୍ବା ଓ
Ḍaṇḍā — ମୋଟା ବାଉଁସ ବା କାଠ)—ଶଗଡ଼ର ଦଣ୍ଡା—
The poles or shafts of a cart.

**ଡଣ୍ଡି**—ପ୍ରାଦେ. (ସମ୍ବଲପୁର) ବ. —୧ । ଦଣ୍ଡି (ଦେଖ)
Ḍaṇḍi — 1. Dandi (See)
୨ । (ତୁଳ ହି. ଡଣ୍ଡୀ) ଝମ୍ପାନ୍ (ଦେଖ)
2. Jhampān (See)

**ଡପ୍** (ଧାତୁ)—ସଂ.—ଗଦା କରିବା—
Ḍap (root) — To amass; to heap up (Apte).

**ଡଫଲ ଶଙ୍ଖ**— ପ୍ରାଦେ. (କେନ୍ଦ୍ରାପଡ଼ା) ବ.—(ତୁଳ. ଏହି ଅର୍ଥରେ ହି.
Ḍaphala śaṅkha — ଡଫୋରଶଂଖ) ଯେ ଡିଲକୁ ତାଲକରି କହି ବୁଲେ—An exaggerator.

**ଡଫା**—ଦେ. ବିଣ.—ଡମ୍ଫା (ଦେଖ)
Ḍaphā — Ḍamphā (See)

**ଡଫୋର**—ପ୍ରାଦେ. (ଗଡ଼ଜାତ) ବିଣ. (ତୁଳ. ହି. ଡଫୋରନା=ଚିତ୍କାର
Ḍaphora — କରିବା )—ଡମ୍ଫା—Ḍamphā (See)

**ଡବ୍‌ନା**—ପ୍ରାଦେ. (ସମ୍ବଲପୁର) ବ. (ତୁଳ: ଏହି ଅର୍ଥରେ ହି. ଢପନା)
Ḍab-nā — ପାତ୍ରର ଢାଙ୍କୁଣି—Lid of a pot.

**ଡବ୍ରି**—ପ୍ରାଦେ. (ସମ୍ବଲପୁର) ବିଣ.—ଡେବିର; ବାମ—
Ḍab-ri — Left (side; hand).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଘଇ' ନ ମିଳିଲେ 'ଗାଈ' ଖୋଜିବେ, କୂଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଙ୍ଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଡବକା—ପ୍ରାଦେ. (ସିଂହଭୂମ) ବି—(ଘରର) ଶ୍ରେଣୀ—
Ḍabakā The long beams of a thatched house over which rafters are laid.

ଡବଡବ—ଦେ. (ଧ୍ୱନ୍ୟନୁକରଣ) ଅ.—୧ । ଜଳପୂର୍ଣ୍ଣ ମାଠିଆର ମୁହଁ
Ḍaba daba ତଳକୁ କରି ପାଣି ଅଜାଡ଼ିଲେ ଯେଉଁ ଶବ୍ଦ ହୁଏ—
ডব ডব 1. Sound produced by water when
डब डब poured out from an upturned pot.
୨ । ଅର୍ଦ୍ଧପୂର୍ଣ୍ଣ ଜଳକୁମ୍ଭ ବା ପଇଡ଼କୁ ହଲାଇଲେ ତହିଁରୁ ଜାତ ହେବା ଶବ୍ଦ—2. Sound produced by a pot or an unripe cocoanut more than half full of water.
୩ । ଚମଡ଼ା ଓଦା ହୋଇଥିବା ଢୋଲକୁ ବଜାଇଲେ ଯେପରି ଶବ୍ଦ ହୁଏ—3. Muffled sound as of a wet drum.
କ୍ରି. ବି—ଅଜସ୍ର ଭାବରେ; ବିଶେଷ ପରିମାଣରେ (ଜଳ ଅଜାଡ଼ିବା)—Profusely, in torrents (said ,of gushing tears or water)
ଡବ ଡବ ବାରି ନିଃସରିବ ଶର ପହରେ ନୟନ ଯୁଗୁଁ ।
କବିସୂର୍ଯ୍ୟ ବଳଦେବ ରଥ—ଚ ଗୀତ ।

ଡବଡବା—ଦେ. ବିଣ. (ସଂ. ବାବଦୂକ; ସଂ. ଦାମ୍ଭିକ)—
Ḍabaḍabā ଡକଡକା (ଦେଖ)
(ଡବଡବୀ, ଡବଡବେଇ—ସ୍ତ୍ରୀ) Ḍakaḍakā (See)

ଡବଲ୍—ବୈଦେ. ବି (ଇଂ. ଡବ୍‌ଲ)—ଦ୍ୱିଗୁଣ ପରିମାଣ ବା ସଂଖ୍ୟା—
Ḍabal Double quantity or number.
ডবল ବିଣ—୧ । ଦ୍ୱିଗୁଣିତ—1. Doubled.
डबल ୨ । ଦ୍ୱିଗୁଣ ଧର୍ମମିତ—2. Double.

ଡବଲ୍ ନିମୋନିଆ—ବୈଦେ ବି. (ଇଂ. ଡବ୍‌ଲ ନ୍ୟୁମୋନିଆ)—
Ḍabal nimoniāā ଯେଉଁ ମାରାତ୍ମକ ବାତକଫ ରୋଗ ଫୁସ୍-
ডবল নিউমোনিয়া ଫୁସ୍ ଯନ୍ତ୍ରର ଉଭୟ ପାଖକୁ ଆକ୍ରମଣ କରେ
डबल निमोनिया ଓ ଯହିଁରେ ଦୁଇପାଖର ଫୁସ୍‌ଫୁସ୍‌ରେ ପ୍ରଦାହ ଓ ଶୋଥ ହୁଏ—Double pneumonia

ଡବଲ୍ ପଇସା—ଦେ. ବି. (ଇଂ. ଡବଲ+ଓ. ପଇସା)—ଦୋପଇସି;
Ḍabal paisā ଦୋହୋର ପଇସା; ଅଧଅଣା ପରିମିତ ତାମ୍ରମୁଦ୍ରା।—
ডবলপয়সা A copper coin of the value of two
डबलपाइ; टका pice or ⅛ anna; half-anna bit.

ଡବଲ୍ ପାନ—ଦେ. ବି. (ପାନବରଜୀଆଙ୍କ ଶବ୍ଦ)—
Ḍabal pāna ସମସ୍ତଙ୍କଠାରୁ ବଡ଼ ପାନ; ମହଭାପାନ—
ডবল পান Very big betel-leaf.
डबल पान

ଡବଲ୍ ପ୍ରମୋଶନ୍—ବୈଦେ. ବି. (ଇଂ)—ସାଧାରଣ ଛାତ୍ର ବାର୍ଷିକ
Ḍabal pramosan ପରୀକ୍ଷାପରେ ବର୍ଷଶେଷରେ ଏକ ଶ୍ରେଣୀରୁ
ডবল প্রমোসন্ ତଦୂର୍ଦ୍ଧ୍ୱ ଶ୍ରେଣୀକୁ ଉନ୍ନୀତ ହେବା ପରି
डबल प्रमोसन ଉନ୍ନୀତ ନ ହୋଇ ଉତ୍କୃଷ୍ଟ ଛାତ୍ର ଏକାଥରକେ ଗୋଟିଏ କ୍ଲାସ୍‌କୁ ଡେଇଁ ତାହା ଉପର କ୍ଲାସକୁ ଯାଇବା ପ୍ରମୋସନ୍—Double promotion.
[ ଦ୍ର—ସାଧାରଣତଃ ସ୍କୁଲରେ ଏକଶ୍ରେଣୀରେ ପଢ଼ୁଥିବା ଛାତ୍ରମାନେ ବାର୍ଷିକ ପରୀକ୍ଷାରେ ପାଶ୍ କଲେ ଉପର ଶ୍ରେଣୀକୁ ପ୍ରମୋସନ୍ ପାଆନ୍ତି । କିନ୍ତୁ କୌଣସି କୌଣସି ଅସାଧାରଣ ବୁଦ୍ଧିଶାଳୀ ଛାତ୍ରର ଅସାଧାରଣ ପାଠୋନ୍ନତି ଦେଖାଗଲେ ଶିକ୍ଷକମାନେ ତାକୁ ଡବଲପ୍ରମୋସନ୍ ଦିଅନ୍ତି ଅର୍ଥାତ୍ ଉକ୍ତ ଛାତ୍ରକୁ ଏକାବର୍ଷକେ ଉପରକ୍ଲାସକୁ ଡେଇଁ ତହିଁ ଉପର କ୍ଲାସକୁ ଉଠାଇ ଦିଅନ୍ତି । ]

ଡବଲ୍ ରୁ(ରୋ)ଟି—ଦେ. ବି. (ଇଂ. ଡବ୍‌ଲ+ହି. ରୋଟୀ)—
Ḍabal ru(ro)ṭi (ଏହା ସାଧାରଣ ରୁଟି ଅପେକ୍ଷା ଆକାରରେ ବଡ଼
ডবলরুটী ଓ ଫୁଲୁକା ଥିବାରୁ) ପାଉଁରୋଟି—Loaf.
डबलरोटी

ଡବଲ୍ ଲକ୍—ବୈଦେ. ବି. (ଇଂ)—ଦୋହରି କୋଲପ; ଜୋଡ଼ି
Ḍabal lak କୋଲପ—Double lock
ডবললক डबललक
[ଦ୍ର—କୌଣସି ସିନ୍ଦୁକ ବା ବାକ୍ସ ବା ଘରେ ଥିବା ଧନ ବା କାଗଜପତ୍ରକୁ ଅପେକ୍ଷାକୃତ ନିରାପଦ କରିବା ପାଇଁ ସେଠାରେ ୨ଟି କୋଲପ ପଡ଼େ ଓ ଦୁଇ କୋଲପର ୨ଟି ଚାବି ପୃଥକ୍ ୨ ଜଣଙ୍କ ପାଖରେ ଥାଏ; ଜଣେ କେହି ତାକୁ ଫିଟାଇ ପାରିବେ ନାହିଁ । ୨ ଜଣଙ୍କ ଏକ ହେଲେ ତାହା ଫିଟେ । ]

ଡବଲି—ବୈଦେ. (ଅସାମ ଶ୍ରୀହଟ୍ଟ) ବି (ଇଂ ଡବ୍‌ଲ)—ଠିକାକାମ—
Ḍabali Contract work.

ଡବା—ଦେ. ବି. (ସଂ. ଦର୍ବି=ଅଣକ)—୧ । ଛୋଟ ଧାତୁମୟ ଫରୁଆ—
Ḍabā 1. A small metal case.
(ଡବା—ଅନ୍ୟରୂପ) ୨ । ରେଲ ଗାଡ଼ିର ଗୋଟିଏ କୋଠରି—
ডাবা 1. Railway compartment.
डिब्बा ୩ । କାମ୍‌ରା; ରେଲ ଗାଡ଼ିର ଏକ ଖଣ୍ଡ—
3. Railway carriage or waggon.

ଡବା ମାଲି—ପ୍ରାଦେ. (ସମ୍ବଲପୁର) ବି—ବେକର ଏକପ୍ରକାର ହାର—
Ḍabā māli A kind of necklace.

ଡବାଳିବା—ପ୍ରାଦେ. (ଗଡ଼ଜାତ) କ୍ରି—(ଧ୍ୱନ୍ୟନୁକରଣ, ଡବଡବ)
Ḍabāḷibā ୧ । ବହୁ ପରିମାଣରେ ପାଣି ଅଜାଡ଼ି ଦେବା—
1. To pour down water profusely.
୨ । ବହୁ ପରିମାଣରେ ପାଣି ଝରିବା—
2. (water) To ooze much.
( ଯଥା—ସେଠାରେ କୂଅ ଖୋଳିଲେ ପାଣି ଡବାଳିବ । )

ଡବି—ପ୍ରାଦେ. ( ସମ୍ବଲପୁର; ବସ୍ତର ) ବି—
Ḍabi ଧାତୁର ଡବି ବା ଫରୁଆ; କଉଟି; ଡବା—
A small metal case.

| ୧ | ଠ | ଡ଼ | ଋ,ଋ | ଌ | ଐ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯୁ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଔ | ନ୍ |

ଡବିତ୍ଥ—ସଂ. ବି—କାଠରେ ତିଆରି ମୃଗ; ଶିଶୁ କ୍ରୀଡ଼ନକ ମୃଗାଦିର ମୂର୍ତ୍ତି—
Ḍabittha A wooden toy representing a deer or other beast.

ଡଭର—ଦେ. ବି. ( ସଂ. ଡମ୍ବର )—
Ḍabhara ବାହ୍ୟାଡ଼ମ୍ବର; ଘୋର—
ফড়ং Pomp; grandeur.
**ভড়ক** ବିଣ—୧ । ଦେଖାସୁନ୍ଦର; ରୂପସୁନ୍ଦର; ଉଜ୍ଜ୍ୱଳଡାଉଳ—
ডগডগে 1. Showy.
**ভড়কীলা, ভম্ভু** ୨ । ସ୍ଥୂଳକାୟ—2. Fat; thick.

ଡଭା—ଦେ ବିଣ—୧ । ମୋଟା ଓ ଫୋମ୍ପା; ଡୋଭା; ଡୋମ୍ପ, ଫମ୍ପା
Ḍabhā ( ବାଉଁଶ )—1. Big and hollow (bamboo).
**ভম্ভু**
୨ । ବଡ଼—2. Large; big.
ବି—ଡବା ( ଦେଖ )—Ḍabā ( See )

ଡଭା ଛଣ—ଦେ. ବି—ମୋଟ ନାଡ଼ଯୁକ୍ତ ନଳା—
Ḍabhā chhana Thick-stemmed straw.

ଡଭା ବାଉଁଶ—ଦେ. ବି—ମୋଟ ଓ ଫମ୍ପା ବାଉଁଶ—
Ḍabhā bāunsa Hallow and big bamboo.

ଡଭା ଡଭା—ଦେ ବିଣ. (ବହୁବଚନ)—ଡଭା ( ଦେଖ )
Ḍabhā ḍabhā Ḍabhā ( See )

ଡଭାଳିଆ—ଦେ. ବିଣ—ଡଭା ( ଦେଖ )
Ḍabhāliā Ḍabhā ( See )

ଡଭୋର—ଦେ. ବି ଓ ବିଣ—ଡଭର ( ଦେଖ )
Ḍabhora Ḍabhara ( See )

ଡମ୍ (ଧାତୁ)—ସଂ—ରବ କରିବା; ଶବ୍ଦ କରିବା; ବାଦ୍ୟ ବଜାଇବା—
Ḍam (root) To sound (Apte).

ଡମ—ସଂ. ବି ପୁଂ. ( ଡମ୍ ଧାତୁ=ଶବ୍ଦ କରିବା, ବାଦ୍ୟ ବଜାଇବା+ କର୍ତ୍ତୃ. ଅ )—
Ḍama
ଡମଣୀ } ସ୍ତ୍ରୀ.
ଡମୁଣୀ }
ডোম, ডম
**ডোম**
ଅସ୍ପୃଶ୍ୟ ଜାତିବିଶେଷ, (ଏମାନେ ଢୋଲ ବଜାନ୍ତି ଓ ବାଉଁଶପାତିଆରେ କୁଲା, ବାଉଁଶିଆ, ଇତ୍ୟାଦି ବୁଣନ୍ତି—The Dome caste; a low untouchable caste ( who weave baskets of bamboo laths and also sound drums ); a despised mixed caste ( Apte ).

[ ଦ୍ର—ବ୍ରହ୍ମବୈବର୍ତ୍ତ ପୁରାଣରେ ଏମାନେ ଲେଟ ପିତା ଓ ଚଣ୍ଡାଳୀ ମାତାଠାରୁ ଉତ୍ପନ୍ନ ବର୍ଣ୍ଣସଙ୍କର ଜାତି ଥିବାର ଉଲ୍ଲେଖ ଅଛି । ଦ୍ର. ଶବ୍ଦସାଗର । ]

ଡମଘୁରୁଡ଼ୁ—ଦେ. ବି—ଓଡ଼ିଶା ଗଡ଼ଜାତରେ ଉତ୍ପନ୍ନ ଏକ ପ୍ରକାର
Ḍama ghururḍu ଶକ୍ତ କାଠ ଗଛ—A kind of hard-wood-tree found in the Orissa States.

[ ଦ୍ର—ଏଥିରେ ଭଲ ପାନଅଁ ପ୍ରସ୍ତୁତିଆଅର ହୁଏ । ଛପା ହେବାପାଇଁ ଚିତ୍ରର ବ୍ଲକ୍ ତିଆରି କରିବାରେ ଏହା ଖୁବ୍ ଉପଯୋଗୀ । ]

ଡମଡମ—ଦେ. (ଧ୍ୱନ୍ୟନୁକରଣ) ଅ—ଢମଢମ; ଢାଉଁଢାଉଁ, ଢୋଲ
Ḍama-ḍama ବାଜିବାର ଶବ୍ଦ—Loud sound of drum-
দমদম, ড্যাংড্যাং beating.
**ढमढम** ଡମଡମ କରି ବଜା ଢୋଲଥରେ
ନାଚବ କୋଧା ବଲୁଥ । ଚଉଚଗୋଡା ଗୀତ ।

ଡମଣୀ—ଦେ. ବି—୧ । କବାଟକୁ ଝୁଲାଇବା କମନ୍ତେ ଚଉକାଠରେ
Ḍamaṇi ଲାଗିଥିବା ଶୃଙ୍ଗ ବା କାଲକବିଶିଷ୍ଟ ଧାତୁଖଣ୍ଡ—
ডোমনী, হাঁসল 1 Pintle.
**जफ़्फ़का, चूल** [ ଦ୍ର—ଏହି ଶୃଙ୍ଗରେ କବାଟରେ ଲାଗିଥିବା କବଜାର ଛିଦ୍ର ପଶିଲେ କବାଟ ଝୁଲି ରହେ । ଚୌକାଠରେ ଲଗାଯିବା ଲୌହଖଣ୍ଡକୁ ଡମଣୀ ଓ କବାଟରେ ଲଗାଯିବା ଲୌହଖଣ୍ଡକୁ କବଜା ବୋଲାଯାଏ । ]
ଡୋମନୀ ସ୍ତ୍ରୀ—୨ । ଡମର ସ୍ତ୍ରୀ—
**डोमिन** 2. A female of the 'Dome' class.

ଡମଣୀ କବଜା—ଦେ. ବି (ସହଚର ଶବ୍ଦ)—କବାଟକୁ ଚଉକାଠ ସଙ୍ଗେ
Ḍamaṇi kabijā ଝୁଲାଇବା କମନ୍ତେ ଆବଶ୍ୟକ ୨ଟି ଲୌହ-
হাঁসকল ଖଣ୍ଡ; ଡମଣୀ ଓ କବଜା—
**नरमादगी** Pintle and hinge for doors.

ଡମନ—ଦେ. ଅ (ଜାହାଜିଆ ଶବ୍ଦ)—(ପାଲଟଣା ଡଙ୍ଗା ବା ଜାହାଜର
Ḍaman ପାଲକୁ ତଳକୁ ଟାଣିଦେବା ଆବଶ୍ୟକ ହେଲେ ନାଉରିମାନେ ଏହି ଶବ୍ଦ ବ୍ୟବହାର କରନ୍ତି; ଏହାର ଅର୍ଥ) ପାଲକୁ ତଳକୁ ଟାଣିଦିଅ—
(nautical term) Lower the sail.

ଡମର—ସଂ. ବି (ଡମ ଅନୁକରଣ ଧ୍ୱନି+ ରୁ ଧାତୁ+ଭାବ. ଅ)—
Ḍamara ୧ । ଅସ୍ତ୍ରଶସ୍ତ୍ରାଦି ସହିତ କଳହ, ଦଙ୍ଗା; ମାରପିଟ—
1. Affray amongst people armed with weapons; riot.
୨ । ଆକ୍ରମଣ—2. Attack; invasion; onslaught; assault.
୩ । ବିପ୍ଳବ—3. Insurrection; rebellion.
୪ । ଭୟରେ ପଳାଇବା; ଛତ୍ରଭଙ୍ଗ—
4. Fleeing out of fright; rout.
୫ । କୋଳାହଳ; ହୋଓସା—
5. Tumult ( Apte ).
୬ । ଭିନ୍ନ ଭିନ୍ନ ଗ୍ରାମମାନଙ୍କ ମଧ୍ୟରେ ଯୁଦ୍ଧ—
6. Petty warfare between villages. ( Apte ).
୭ । ଚିତ୍କାର ଓ ସଙ୍କେତ ଦ୍ୱାରା ଶତ୍ରୁକୁ ଡରାଇବା—
7. Terrifying an enemy by shouts and gestures ( Apte. )

ସାଧାରଣ ଭେବେ ଅପର ପୃଷ୍ଠାରେ ୧ଚଉ ୧ ଚକ୍ଷ୍ଟ ଅକ୍ଷର ଓ ମାତ୍ରା ଏବ ୨ ଚକ୍ଷ୍ଟ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚକ୍ଷ୍ଟ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'ଭୂଅ' ନ ମିଳିଲେ 'ଦୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କୋ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲଚେ' ନ ପାଇଲେ 'ଅଲ୍‌ବହ ଦେଖିବେ

**ଡମରୁ**—ସଂ. ବି (ଡମ୍=ଅନୁକରଣଧ୍ୱନି+ରୁ ଧାତୁ=ଯିବା, ପାଇବା+କର୍ତ୍ତୃ. ଉ; ଡମ୍ବା ଡମ ଧାତୁ=ବାଦ୍ୟ ବଜାଇବା+ସଜ୍ଞାର୍ଥେ ଅରୁ )—ମଝି ସରୁ ଓ ଦୁଇପାଖ ଚଉଡ଼ା ଚର୍ମବାଦ୍ୟବିଶେଷ—A small double-faced drum in the shape of an hour-glass.
Damaru
[ଦ୍ର—ଏହାର ମଝିରେ ଖଣ୍ଡେ ଦଉଡ଼ିରେ ଗୋଟିଏ ଚଉଡ଼ା ବା ଶିଶା ଗୋଲା ଝୁଲୁଥାଏ । ଏହାକୁ ମଝିରୁ ଧରି ହଲାଇଲେ ସେ କଉଡ଼ିଟି ଦୁଇପାଖର ଚମଡ଼ାରେ ବାଜି ଡକ୍ ଡକ୍ ବା ଡମ୍ ଡମ୍ ଶବ୍ଦ ଉତ୍ପନ୍ନ କରେ; ଏହା ଶିବଙ୍କର ବାଦ୍ୟ । ]

**ଡମରୁଧର**—ସଂ ବି (ଡମରୁ+ଧୃ ଧାତୁ+କର୍ତ୍ତୃ. ଅ)—ମହାଦେବ—Siba.
Damaru-dhara

**ଡମରୁମଧ୍ୟ**—ସଂ. ବିଣ ପୁଂ ( ବହୁବ୍ରୀହି; ଡମରୁ+ମଧ୍ୟ )—
Damaru-madhya ଡମରୁ ପରି ଯାହା ମଧ୍ୟ ବା କଟିଭାଗ ସରୁ—
(ଡମରୁମଧ୍ୟା—ସ୍ତ୍ରୀ) Slender in the middle.
ବି ( ଭୂଗୋଳପରିଭାଷା )—ଯୋଜକ—( Geography ) Isthmus

**ଡମରୁମଧ୍ୟା**—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି; ଡମରୁ+ମଧ୍ୟ+ସ୍ତ୍ରୀ ଆ;ଡମରୁର ମଧ୍ୟସ୍ଥଳ ପରି ସରୁ କଟିଦେଶ ଯେଉଁ ସ୍ତ୍ରୀର )—ସରୁକଙ୍କାଳୀ—Slender-waisted (woman).
Damaru-madhyā

**ଡମାଡଉଲ**—ଦେ. ବିଣ—୧ । ଅମିତବ୍ୟୟୀ—
Damādaula 1. Extravagant; spendthrift
୨ । ଅସ୍ଥିର—2. Restless.
୩ । ଅବ୍ୟବସ୍ଥିତଚିତ୍ତ—3. Fickle-minded.

ଡମାଡୋଲ } ଅନ୍ୟରୂପ— ବି—୧ । ଅଯଥା ଆଡ଼ମ୍ବର—
ଡମାଡୋଲ } 1. Pomp; outward grandeur.
ଡମ୍ବାଡ଼ୋଲ
**डबाँडोल** ୨ । ଗୋଲମାଲ; ଘୋଟା—
2. Uproar; tumult; disorder.
୩ । ଧଇପଗଡ଼; ଘଣ୍ଟାଚକଟା—
3. Hurly-burly; a violent agitation.

**ଡମାଡୋଲ**—ପ୍ରାଦେ (ଯାଜପୁର) ବିଣ—ପେଟୁଆ ଓ ହୃଷ୍ଟପୁଷ୍ଟ—
Damādola Stout and pot-bellied.

**ଡମଣୀ** (ଇତ୍ୟାଦି) ଦେ. ବି.—ଡମଣୀ ଇତ୍ୟାଦି (ଦେଖ)
Damuṇī (etc) Damaṇi etc (See).

**ଡମ୍ଫ୍** ( ଧାତୁ )—ସଂ.—୧ । ଶବ୍ଦକରିବା—
Damp (root) 1. To sound ( Apte ).
୨ । ପିଙ୍ଗିବା—2. To throw ( Apte ).
୩ । ଆଦେଶ ଦେବା—3. To order ( Apte ).
୪ । ଦେଖିବା—4. To behold (Apte)

**ଡମ୍ଫ**—ଦେ. ବି ( ସଂ. ଦମ୍ଭ )—୧ । କପଟ; ଛଳ—
Dampha 1. Deceit; hypocricy.
୨ । ( ସଂ. ଡମ୍ଫ ଧାତୁ )—ଡେମ୍ଫ ନାଗରା (ଦେଖ)
2. Dempha nāgarā ( See ).

ବାଣା ମର୍ଦ୍ଦଳ ଡମ୍ଫ ଢାଲ
ଧଇଣ ଗୋପିକା ସକଳ—ପ୍ରାଚୀ. ଗୃର୍ଣ୍ଣିତମ ଚନ୍ଦ୍ରୋଦୟ ।

**ଡମ୍ଫ ନାଗରା**—ଦେ ବି—ଡେମ୍ଫ ନାଗରା (ଦେଖ)
Dampha nāgarā Dempha nāgarā (See).

**ଡମ୍ଫା**—ଦେ.ବିଣ (ସଂ. ଦମ୍ଭ;ସଂ ଡମ୍ଫ ଧାତୁ)—୧ । ଭଉଡ଼ିବା; ବାଚାଳ,
Damphā ପ୍ରଗଲ୍‌ଭ; ବହୁଭାଷୀ; ବାକ୍‌ସର୍ବସ୍ୱ—
ଡେଁଫୋ 1. Swaggering; talkative; swashbuckler; blustering.
**डफोरशंख**
୨ । ଆଗଚଲା; ଆଗବୋଲା—
2. Forward in talk; presumptuous; officious.
୩ । ଉଦ୍ଧତ—3. Impertinent.
ଫାଁକା ୪ । ଫମ୍ପା; ଫୋଲା—
**खोखला** 4. Hollow.
୫ । ଯେ ଖୁବ୍ କହେ କିନ୍ତୁ କାର୍ଯ୍ୟରେ କିଛି କରେ ନାହିଁ—
5. Promising much but doing little.
ବି—ଆନଦ୍ଧ ବାଦ୍ୟବିଶେଷ; ଡେମ୍ଫନାଗରା—A kind of drum.

କର୍ଣ୍ଣାଳ, ବାହାଳ ବାଜଘୋଷ ବେଣୁ ଡମ୍ଫା
ମୂରଜ ଡିଣ୍ଡିମ ଦୁନ୍ଦୁଭିରେ ମିଶ୍ରି କମ୍ପା—ଉପେ. ଲାବଣ୍ୟବତୀ ।

**ଡମ୍ଫାଲିଆ**—ଦେ. ବିଣ—ଡମ୍ଫା (ଦେଖ)
Damphālia Damphā (See)

**ଡମ୍ଫିବା**—ଦେ. କ୍ରି—୧ । ଅତି ରଞ୍ଜିତ କଥା କହିବା—
Damphibā 1. To speak exaggerated stories.
**डींग मारना** ୨ । ବାଲିଙ୍ଗି କରିବା; ଗପିବା—
2. To swagger; to brag; to boast.

**ଡମ୍ବ୍‌ବେଲ୍**—ବୈଦେ. ବି. ( ଇଂ )—
Damb-bel ଡମରୁ ଆକାରର ଏକ ପ୍ରକାର ଲୌହ ମୁଦ୍ଗର—
ଡମ୍ବେଲ Dumb-bell.
**डम्बेल**

**ଡମ୍ବ**—ଗ୍ରା. ବି. ( ସଂ. ଡମ୍ବ )—ଡମ ( ଦେଖ )
Damba Dama ( See )

**ଡମ୍ବର**—ସଂ. ବିଣ. ( ଡମ୍ବ୍ ଧାତୁ=ପ୍ରେରଣ କରିବା+ଅର )—
Dambara ୧ । ଉଦ୍ଧତ—1. Arrogant.
୨ । ବିଖ୍ୟାତ—2. Noted; celebrated.
୩ । ଉତ୍କୃଷ୍ଟ—3. Excellent.
ବି—୧ । ଉତ୍କର୍ଷ—2. Excellence.
୨ । ଔଦ୍ଧତ୍ୟ; ଗର୍ବ—2. Arrogance; pride.

ଶମ୍ବରପର କମ୍ବଳ ସମ୍ବଦସ୍ୱ ଡମ୍ବର ବଳଲେ ଲମ୍ବ ଚକ୍ରବର୍ତ୍ତୀ ।
କବିସୂର୍ଯ୍ୟ. ସଙ୍ଗୀତ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଓ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ତ | ଉଅ | ଉ |
| ୨ | ଈ | ଊ | ଋୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ | ଯ | ସ | ଗଁ | ଇଅ | ଞ | ନ୍ |

୩ । ପ୍ରକାଶ—
3. Manifestation; appearance.
କନକ ଦର୍ପଣ ବଦନ ମଣ୍ଡଳ ଗଣ୍ଡ ପ୍ରସାଦ ଡମ୍ବରକୁ ।
ଗୋପୀକୃଷ୍ଣ. ରସକଲ୍ଲୋଳ ।

୪ । ଆଡ଼ମ୍ବର—4. Ado; grandeur.

୫ । ସମୂହ; ରାଶି—
5. Assemblage; collection; mass (Apte).

୬ । ବିସ୍ତାର—6. Extension.

୭ । ବିଳାସ—7. Sport.

୮ । ସାଦୃଶ୍ୟ—
8. Resemblance; likeness (Apte).
ବଦମ୍ବ ଜଳଦଡମ୍ବର ବିଳାସୀ । ସ୍ୱାମୀନାଥ. ଚଉକ. ।

ଡମ୍ବରୁ—ଦେ. ବି. ( ସଂ. ଡମରୁ )—୧ । ଡମରୁ (ଦେଖ )
Ḍambaru 1. Ḍamaru ( See )
ଡୁଗଡୁଗୀ ଡମ୍ବରୁମଧ୍ୟା ଙ୍କ ଠାଣି, ରତ୍ନ ମେଖଳା ସୁକଙ୍କିଣୀ ।
ଡମରୂ ଭୂପତି. ପ୍ରେମପଞ୍ଚାମୃତ ।

୨ । ଢଳ କାନରେ ପିନ୍ଧାଯିବା ସୁନାର ଅଳଙ୍କାରବିଶେଷ—
2. An ornament worn on the lower part of the ear.

ଡମ୍ବରୁଧର—ଦେ. ବି. ପୁଂ (ସଂ. ଡମରୁ ଧର)—୧ । ମହାଦେବ—
Ḍambaru-dhasa 1. God Śiba.
ଡମ୍ବରୁ ଧର ଯାଙ୍କୁ ସେବା, ଉରେ ଶଙ୍କର ସର୍ବ ଦେବା ।
ବଳରାମ ଦାସ. କମଲଲୋଚନ ଚଉତିଶା ।

୨ । ଲୋକଙ୍କ ନାମ—
2. A name given to males.

ଡମ୍ବରୁମଧ୍ୟା—ଦେ. ବିଣ. ସ୍ତ୍ରୀ—ଡମରୁମଧ୍ୟା ( ଦେଖ )
Ḍambaru-madhyā Ḍamaru-madhyā ( See )

ଡମ୍ବୁର—ପ୍ରାଦେ. (ମେଦିନୀପୁର) ବି. (ଭୁଲ. ବଂ. ଡୁମୁର )—
Ḍambura ଡିମ୍ବିରି ଗଛ ଓ ଫଳ—
Fig tree and its fruit.

ଡମ୍ଭ (ଧାତୁ)—ସଂ—ସଂଗ୍ରହ କରିବା—
Ḍambha (root) To collect (Apte).

ଡର୍—ପ୍ରାଦେ. (ସମ୍ବଲପୁର) ବି—ଡର ( ଦେଖ )
Ḍar Ḍara ( See )

ଡର୍‌ବା—ପ୍ରାଦେ. (ସମ୍ବଲପୁର) କ୍ରି— ଡରିବା ( ଦେଖ )
Ḍar-bā Ḍaribā ( See )

ଡର୍‌ହା—ପ୍ରାଦେ. (ସମ୍ବଲପୁର) ବିଣ—ଡରୁଆ ( ଦେଖ )
Ḍar-hā Ḍaruā ( See )

ଡର—ଦେ. ବି. ( ସଂ. ଦର; ପ୍ରା. ଡର )—
Ḍara ୧ । ଭୟ; ତ୍ରାସ—1. Dread; terror; fear;
ଡର alarm.
डर
ଜାପ ଉପବନ ନିକଟ ପବନ ସ୍ୱରଶକୁ ଯେବେ ଡର ।
କବିସୂର୍ଯ୍ୟ. କଶୋଗ୍ରଚନ୍ଦ୍ର ଭ ଗୀତ ।

୨ । ଅନିଷ୍ଟାଦିର ଆଶଙ୍କା—2. Apprehension
ଡର ନାହିଁ କ ହେ ପର ତରୁଣୀ ହରଣ ।
କବିସୂର୍ଯ୍ୟ. କଶୋଗ୍ରଚନ୍ଦ୍ର ଭ ଗୀତ ।

ଡରକୁରା—ଗ୍ରା. ବିଣ. ପୁଂ—ଡରକୁଳା ( ଦେଖ )
Ḍarakurā Ḍarakuḷā ( See )
(ଡରକୁରୀ—ସ୍ତ୍ରୀ)

ଡରକୁଳା—ଦେ. ବିଣ. ପୁଂ. ( ସଂ. ଦରାକୁଳ )—
Ḍarakuḷā ୧ । ଭୀରୁ; ଭୟାକୁ—
(ଡରକୁଳୀ—ସ୍ତ୍ରୀ 1. Timid; timorous.
ଡରାକା डरपोक

ଡରକୋଳା—ଦେ. ବିଣ. ପୁଂ—ଡରକୁଳା ( ଦେଖ )
Ḍarakoḷā Ḍarakuḷā ( See )
(ଡରକୋଳୀ—ସ୍ତ୍ରୀ) ନୁଁ କ ଗଲେ ନରେ ବୋଲିବେ ଡରକୋଳା ।
ନୀଳକଣ୍ଠ ଦାସ, ପିଲାଙ୍କ ରାମାୟଣ ।

ଡରଡର—ଦେ. ବିଣ—ଭୟାଶଙ୍କିତ ହେବା—
Ḍara-ḍara Apprehensive.

ଡର ଦେଖା(ଖେ)ଇବା—ଦେ. କ୍ରି—ଡରାଇବା ( ଦେଖ )
Ḍara dekhā(khe)ibā Ḍarāibā ( See )
ଦେ. ବି—ଡର ମାଡ଼ିବା ( ଦେଖ )
Ḍara mārḍibā ( See )

ଡର ଭୟ—ଦେ. ବି. ( ଏକାର୍ଥବୋଧକ ସହଚର ଶବ୍ଦ )—
Ḍara-bhaya କୌଣସି ପ୍ରକାରର ଭୟ; ଛଳେ ମାତ୍ର ଭୟ—
ଭୟଡର, ଭୟଟୟ The feeling of fear.
डरभय ( ଯଥା—ଆଜି କାଲିର ଟୋକାମାନେ ଡର ଭୟ ସବୁ ଛାଡ଼ିଲେଣି । )

ଡର ମାଡ଼ିବା—ଦେ. ବି—(ଅମୁକକୁ) ଭୟ ବୋଧ ହେବା—
Ḍara mārḍibā Being afraid; being overpowered
ଭୟଲାଗା with a feeling of dread.
डर लगना ( ଯଥା—ଏ କାମ କରିବାକୁ ମୋତେ ଭାରି ଡର ମାଡୁଛି । )

ଡରମି—ପ୍ରାଦେ. (ବସ୍ତର) ବି—ଡାଳିମ୍ବ (ଗଛ ଓ ଫଳ)—
Ḍarami Pomegranate (tree and its fruit).

ଡରା—ଦେ. ବି—ଡରାଣ ( ଦେଖ )
Ḍarā Ḍarāṇa ( See )

ଡରା(ରେ)ଇବା—ଦେ. କ୍ରି. (ସଂ. ଦର —୧ । ଡରିବା କ୍ରିୟାର ଣିଜନ୍ତ-
Ḍarā(re)ibā ରୂପ—1. The causative form of
ଡବାନ; ଭୟଦେଖାନ 'ḍaribā'
डराना; डरपाना ୨ । ଭୟ ଦେଖାଇବା—2. To frighten; to cause alarm; to terrify.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚକ୍ଷ୍ଟିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷ୍ଟିତ ଅକ୍ଷର ଓ ମାତ୍ରା ମଧ୍ୟରେ ସ୍ୱରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷ୍ଟିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚକ୍ଷ୍ଟିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୁ' ନ ପାଇଲେ 'ବଧୂ' ଦେଖିବେ; 'ଅଗ୍ୟା'କୁ ପାଇଲେ 'ଆଜ୍ଞା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ର ଦେଖିବେ

କୁଠା ଗୁଡ଼ିକରେ ମୁଁ ଖୁଣ୍ଟାଏକ କଲି
ହୋମ କରୁଥିଲେ ସେ ଋଷିଙ୍କି ଡରାଇଲି । କୃଷ୍ଣସିଂହ. ମହାଭାରତ.ଅଦ ।

୩ । ଧମକାଇବା—3. To threaten.

୪ । ମାରିବାକୁ ବା ଆଘାତ କରିବାକୁ ଧମକାଇବା—
4. To threaten to beat or strike.

ରତି ସଙ୍ଗୀତ ହ୍ରାସ, ଶ୍ରବଣ ଅବତଂସ
ଡରାଇ ଭଙ୍ଗାଇଲେ ତାଙ୍କୁ ଦେହା । କବିସୂର୍ଯ୍ୟ. ସଙ୍ଗୀତ ।

[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ପକା(କେ)ଇବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ଡରାଡରି**—ଦେ. ବି—୧ । ଅନ୍ୟୋନ୍ୟକୁ ଭୟ ଦେଖାଇବା—
Ḍarāḍari 1. Frightening each other.
ডরাডরি ୨ । ଭୟ ପାଇବା—2. The state of being
डराडरी frightened.
୩ । ଡରାଣ; ଭୟ ଦେଖାଇବା—3. Frightening.

**ଡରାଣ**—ଦେ. ବି—୧ । ଭୟ ଦେଖାଇବା—
Ḍarāṇa 1. Frightening; causing dread.
ডরান ୨ । ଧମକ—2. Threatening; threat.
डरवा; डरात

କାହା ହାସ କୁହାଇବ କାମ ଡରାଣକୁ ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

୩ । ଏକ ବ୍ୟକ୍ତିଦ୍ୱାରା କୌଣସି କାର୍ଯ୍ୟର ସୁସମ୍ପାଦନର ଆଶାକୁ ଦୃଢ଼ତର କରିବା ଉଦ୍ଦେଶ୍ୟରେ ଦ୍ୱିତୀୟ ବ୍ୟକ୍ତିଠାରୁ ନିଆଯିବା ଜାମିନ୍‌ନାମା—
3. A formal security bond or bail bond taken from a 3rd person.

**ଡରିବା**—ଦେ. କ୍ରି. (ସଂ. ଦର)—୧ । ଭୀତ ହେବା—
Ḍaribā 1. To be afraid of; to dread; to fear.
ডরা; ডরান ୨ । ହଠାତ୍ ଭୟ ପାଇବା—
डरना; डरपना 2. To be alarmed.
[ଡରି(ରେ)ଇବା—ଣିଜନ୍ତ]

ସେ ମଧ୍ୟ ଡରିଗଲେ ଦେଖି ଭୀମବଳ ।
କୃଷ୍ଣସିଂହ. ମହାଭାରତ ସଭା ।

୩ । ଆଶଙ୍କା କରିବା—3. To apprehend.

[ ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଯିବା, ପକାଇବା କ୍ରିୟାର ସମାପିକାରୂପ (ଡରିଯିବା, ଡରି ପଡ଼ିକେଇବା ) ଓ ମରିବା ଏବଂ ହରିବା କ୍ରିୟାର ଅସମାପିକା ରୂପ ଯୁକ୍ତ ହୁଏ ( ଡରିମରି, ଡରିହରି ) । ]

**ଡରି ମରି**—ଦେ. କ୍ରି. ବିଣ. (ଡରିବା ଓ ମରିବା କ୍ରିୟାଦ୍ୱୟର ଅସମାପିକା ରୂପ କ୍ରି. ବିଣ. ରୂପେ ବ୍ୟବହୃତ)—୧ । ଅତ୍ୟନ୍ତ
Ḍari mari
ডরেমরে ଭୀତ ହୋଇ; ମନରେ ବିଶେଷ ଭୟ ରଖି—
डरकेमारे 1. With great fear; with a great dread.

କରୁଣାସିନ୍ଧୁ ବୋଲି କରି
କହନ୍ତି ବୁଧେ ଡରି ମରି । କବିସୂର୍ଯ୍ୟ ସଙ୍ଗୀତ ।

୨ । ଭୟର କାରଣରୁ—2. On account of dread.

**ଡରି ମରିବା**—ଦେ. କ୍ରି—ସର୍ବଦା ଆଶଙ୍କିତ ହେବା; ଭୟରେ ସମୟ
Ḍari maribā କଟାଇବା—To lead a life of dread;
ৱেমরা to pass one's days in fear.

ଗଗନ ସଲିଳ ଗୃହିଁ ହଂସକୁଳ, ବନଯାଏ ଡରି ମରି ମରି ।
କବିସୂର୍ଯ୍ୟ. ସଙ୍ଗୀତ

**ଡରି ହରି**—ଦେ. କ୍ରି. ବିଣ—ଡରି ମରି (ଦେଖ)
Ḍari hari Ḍari mari (See)

କେତେ ଡରିହରି କଲେଖେ । ରାଧାନାଥ. ବିବେକୀ ।

**ଡରୁଆ**—ଦେ. ବିଣ. ପୁଂ—ଭୀତ—1. Timid.
Ḍaruā ୨ । ଭୀରୁ—2. Timorous.
ডরালু
डराङ्गक
(ଡରେଇ—ସ୍ତ୍ରୀ) ୩ । ଯେ ଡରାଏ—
3. Frightening; fearful.

ଯେତେକ ଯୋଦ୍ଧା ତହିଁ ଥିଲେଟି ଡରୁଆ ।
କୃଷ୍ଣସିଂହ ମହାଭାରତ. ବା

**ଡରେଇ ହରେଇ**—ଦେ.କ୍ରି.ବିଣ. (ସହଚର ଶବ୍ଦ)—୧ । ନାନାପ୍ରକାରେ
Ḍarei harei ଭୟ ଦେଖାଇ—1. By holding out dread.

ଅଳ କରି ଡରେଇ-ହରେଇ ମୋ ପାଖରୁ ଟଙ୍କା ପଇସା ନିଏ ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।

୨ । ଧମକା ଚମକା କରି—
2. By repeated threats.

**ଡଲକ**—ସଂ. ବି—୧ । ଛାଟକଣି—1. A sling (Apte).
Ḍaḷaka ୨ । ଟୋକେଇ—2. Basket (Apte).

**ଡଲା**—ଦେ. ବି. (ସଂ. ଡଲ୍ଲକ=ବଂଶାଦିନିର୍ମିତ ପାତ୍ର)—
Ḍalā ବାଉଁଶ ବା ବେତ ପାତିଆର ଗୁଙ୍ଗୁଡ଼ା—
ডালা A wicker-work tray.
डला ପ୍ରାଦେ. (ସମ୍ବଲପୁର) ବି—୧ । ବାଉଁଶିଆ—
1. Basket.
୨ । ଗାଣ୍ଡୁଆ—2. A wide-mouthed bamboo-strip-basket.

**ଡଲ୍ଲକ**—ସ.ବି—୧ । ବାଉଁଶ ପାତିଆରେ ନିର୍ମିତ ବଡ଼ ଗୁଙ୍ଗୁଡ଼ି; ଡଲା—
Ḍallaka 1. Wicker-work tray.
୨ । ଡଲକ (ଦେଖ)—Ḍaḷaka (See) (Apte)

**ଡସ୍‌ନା**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଦର୍ଭାସନ; ଭୁଲ. ହି. ଏହି
Ḍas-nā ଅର୍ଥରେ ଡାସନ୍)—ବିଛଣା—Bedding.

**ଡହକ**—ଦେ. ବି. (ସଂ. ଦହ ଧାତୁ; ସଂ. ଧୁକ୍ଷ ଧାତୁ=ସନ୍ଦୀପନ)—
Ḍahaka ୧ । ଦହକ; ତାତି; ଅଗ୍ନିର ଜ୍ୱାଳା—
ডহক; ধকধকানি 1. Heat of fire.
दहक, धधक ୨ । ଜଳୁଥିବା ଅଙ୍ଗାରର ତେଜ—
2. Glare of red-hot fire or charcoal.
୩ । ଶରୀରର ଦାହ; ପ୍ରଦାହ—
3. Inflamation; burning sensation.
୪ । ଅସହ୍ୟ ଗ୍ରୀଷ୍ମ; ଝାଞ୍ଜି—4. Unbearable heat.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ର୍‌, ର୍‌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ, ଷ | କ୍ଷ | ଇଯ଼ | ଡଅ | ଢ |
| ୨ | ଈ | ଉ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ୟ | ଯ | ସ | ଗ୍ୟ | ଇଅ | ଡ଼ | ନ୍ନ |

ଧକଧକ ବିଣ—୧ । ତାତିଲା; ଉତ୍ତପ୍ତ—
दहड़ 1. Hot; scorched.

୨ । ନିଆଁରେ ପାଚିଯାଇ ନାଲି ହୋଇଥିବା; ଜାଜ୍ୱଲ୍ୟମାନ—
2 Glaring; blazing; red-hot.
(ଯଥା—ଚୁଲିରେ ରଡ଼ନିଆଁ ଖୁବ୍ ଡହକ ହୋଇଛି ।)

୩ । ରଡ଼ନିଆଁ ଯୁକ୍ତ (ଚୁଲ୍ଲୀ)—3. (oven) Full of red-hot or live charcoal.

ପ୍ରାଦେ. (ଗଡ଼ଜାତ) ବିଣ—ବଡ଼; ବୃହତ୍—Big.
(ଯଥା—ଏ ବରଷ ଡହକ ବଢ଼ିରେ ସବୁ ଫସଲ ଧୋଇଗଲା ।)

ଡହକ ବିକଳ—ଦେ. ବିଣ ଓ ବି—ଡହଳ ବିକଳ (ଦେଖ)
Ḍahaka bikaḻa Ḍahaḻa bikaḻa (See)

ଡହକା(କେ)ଇବା—ଦେ. କ୍ରି· (ସଂ. ଦହ ଧାତୁ; ସଂ. ଧୁକ୍ଷ ଧାତୁ= Ḍahakā(ke)ibā ସ୍ୱଯାପନ(—୧ । ଡହକିବା କ୍ରିୟାର ଣିଜନ୍ତ
फूँके जालान ରୂପ—1. The causative form of Ḍahakibā.
दहकाना

୨ । ନିଆଁକୁ ଫୁଙ୍କି ବା ବିଞ୍ଚି ରଡ଼ କରିବା—
2. To fan fire into a blaze; to cause to blaze.

ଡହକିବା—ଦେ. କ୍ରି. (ଦହ ଧାତୁ; ସଂ. ଧୁକ୍ଷ ଧାତୁ)—୧ । ଦହଡ଼ିବା,
Ḍahakibā ରଡ଼ନିଆଁଯୁକ୍ତ ହେବା; (ଜଳନ୍ତା ଅଙ୍ଗାର) ଦାଉ
जला, धकधक करना ଦାଉ କରିବା—1. To be full of
दहेकना blazing fire or live charcoal.
(ଯଥା—ଚୁଲିଟା ଡହକୁଛି ।)

୨ । ଉତ୍ତପ୍ତ ହୋଇ ପାଚି ଯିବା—
2. To become red-hot or blazing.
(ଯଥା—କମାରର ଲୋହ୍ଲା ଉପରେ ଲୁହା ଖଣ୍ଡ ଡହକୁଛି ।)

ଡହଡ଼—ଦେ. ବିଣ. (ସଂ. ଦହ ଧାତୁ)—ଦହଡ଼ (ଦେଖ)
Ḍahaṟḍa Dahaṟḍa (See)

ଡହଡହ—ଦେ. ବିଣ.—(ସଂ. ଦହ ଧାତୁ)—ଦହଡ଼ (ଦେଖ)
Ḍahaḍaha Dahaṟḍa (See).
तप्त ଡହ ଡହ ହେବ ମୁହଁ କିସୁବ ଶ୍ୟାମ ଶ୍ରୀଅଙ୍ଗରୁ ଭେର୍ଷେ ।
दहड़ କବିସୂର୍ଯ୍ୟ. କଶୋପାଚମ୍ପୂ, ଭ. ଗୀତ ।

ଡହଣା—ଦେ. ବି.—ପିଲାମାନଙ୍କର ଏକପ୍ରକାର ଖେଳ—
Ḍahaṇā A kind of childrens' game.

ଡହନିଆଁ—ପ୍ରାଦେ. (ସମ୍ବଲପୁର) ବି.—କୋଠିଆ ଓ ମୂଲିଆଙ୍କୁ ଦିଆଯିବା
Ḍahaniā̃ ଜମି, ଡେରା—Land given to a labourer engaged for the agricultural year.

ଡହର (ଇତ୍ୟାଦି) ଦେ. ବି.—ଡଅଁର ଇତ୍ୟାଦି (ଦେଖ)
Ḍahara (etc) Ḍa-ā̃ra etc (See)

ଡହର କରଞ୍ଜ—ଦେ. ବି.— ଡଅଁର କରଞ୍ଜ (ଦେଖ)
Ḍahara karañja Ḍa-ā̃ra karañja (See)

ଡହରା—ଦେ. ବିଣ. ପୁଂ —୧ । ଡକ୍କା; ଡବଡବା; ଯାହା ପେଟରେ
Ḍaharā କୌଣସି କଥା ରହେ ନାହିଁ—
डेफो 1. Unable to keep a secret; babbling.
डफोर शङ्ख ୨ । ଗପଡ଼ି—2. Talkative; swaggering.
(ଡହରୀ—ସ୍ତ୍ରୀ) ୩ । ବାଉଳା; ପରିଭ୍ରମଣଶୀଳ; ଅସ୍ଥିର—
3. Restless; wandering; loafing.

୪ । ଯେଉଁ ବ୍ୟକ୍ତି ପରର କଥା କହି ବୁଲେ—
4 Tattling; gossiping.

୫ । (ଜାହାଜିଆ ଭାଷା)—ପୂର୍ବଦିଗ—
5. East quarter (according to the mariner's compass).

ଡହରା ଜଣ୍ଡା—ଦେ. ବି.—ଡଗରା ଜଣ୍ଡା (ଦେଖ)
Ḍaharā jaṇḍā Ḍagarā jaṇḍā (See)

ଡହଳ ବିକଳ—ଦେ. ବି. ( ସଂ ଦାହାକୁଳ; ସଂ. ଦଗ୍ଧ+ଆକୁଳ )—
Ḍahaḻa bikaḻa ୧ । ପୀଡ଼ାରେ ଅସ୍ଥିର; ପୀଡ଼ାରେ ଅଧୀର—
आकुलि व्याकुलि 1. Restless through pain.
बेचैन ୨ । ଶୋକାକୁଳ—2. Afflicted with grief; overcome with sorrow.

ବି.—ପୀଡ଼ାଜନିତ ଅସ୍ଥିରତା ବା ଅଧୀରତା—
Affliction; restlessness due to pain.

ଡହଳା—ଦେ. ବିଣ.—(ସଂ. ଲାଳାୟିତ)—୧ । ବିକଳା; ଖାଇବା ନିମନ୍ତେ
Ḍahaḻā ଆତୁର—1. Ravenous; gluttonous.
लालचे ୨ । ଲୋଭିଲା; ଅତିରିକ୍ତରୂପେ ଖାଦ୍ୟଲୋଲୁପ—
भुक्कड़, लालचि 2. Having an inordinate yearning or longing for food.

ଡା—ଦେ. ଅ.—ଡା ଡା (ଦେଖ)
Ḍā Ḍā ḍā (See)
ସଂ. ବି. ସ୍ତ୍ରୀ —ଡାକିନୀ—Witch.

ଡାଆଁ—ଦେ. ବିଣ.— ଡାହାଣ (ଦେଖ)
Ḍā-ā̃ṅ Ḍāhāṇa (See)
(ଡାଆଁଣ—ଅନ୍ୟରୂପ)

ଡାଆଁଣ ବାଆଁଣ—ଦେ. ବି.—(ବିପରୀତାର୍ଥ ସହଚର; ଦ୍ୱନ୍ଦ୍ୱ; ସଂ. ଦକ୍ଷିଣ
Ḍā-ā̃ṇa bā-ā̃ṇa +ବାମ )—୧ । ଦକ୍ଷିଣ ଓ ବାମ
डाआन बाआँ ପାର୍ଶ୍ୱଦ୍ୱୟ—1. Right and left sides.
दायाँ बायाँ ୨ । ଶଗଡ଼ ବା ହଳର ଡାହାଣ ପାଖରେ ଚାଲିବାରେ
(ଡାଆଣବାଆଣ—ଅନ୍ୟରୂପ) ଅଭ୍ୟସ୍ତ ବଳଦ ବାଆଁ ପାଖରେ ଯୋଚା ହୋଇଥିଲେ ଓ ବାଆଁ ପାଖରେ ଚାଲିବା ବଳଦ ଡାହାଣ ପାଖରେ ଯୋଚା ହୋଇଥିଲେ ଉକ୍ତ ବଳଦ ଉପଯୁକ୍ତ ଭାବରେ ନ ଚାଲିବାରୁ ଯେଉଁ ଅସୁବିଧା ଭୋଗ କରାଯାଏ—
2. The inconvenience felt in driving a cart when the right hand bullock is yoked to the left side of the yoke and vice versa.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

ଦେ. ଯଣ.—ଦକ୍ଷିଣ ଓ ବାମ (ପାର୍ଶ୍ୱ)—
Right and left (side).

**ଡାଆଁଣବାଆଁଣ କରିବା**—ଦେ. କ୍ରି.—ଶଗଡ଼ରେ ବା ହଳରେ ଡାହାଣ ପାଖରେ ଯୋଚା ହୋଇଥିବା ବଳଦକୁ ବାଆଁ ପାଖରେ ଓ ବାଆଁ ପାଖରେ ଯୋଚା ହୋଇଥିବା ବଳଦକୁ ଡାହାଣ ପାଖେ ଯୋଚିବା—
Ḍā-āñṇa bā-āñṇa karibā
To change the bullock of the right side to the left side of the yoke and vice versa

**ଡାଆଁଣ ବାଆଁଣ ବତା(ତେ)ଇବା**—ଦେ. କ୍ରି—୧ । ଏଣୁ ତେଣୁ କହିବା; କୌଣସି ନିଶ୍ଚିତ ବା ତଥ୍ୟ ଉତ୍ତର ନ ଦେବା; ଗୋଳମାଳ କରି ଉତ୍ତର ଦେବା—To give prevaricating answers; to prevaricate.
Ḍā-āñṇa bā-āñṇa batā(te)ibā

**ଡାଆଁଣ ବାଆଁଣ ବୁଲା(ଲେ)ଇବା**—ଦେ. କ୍ରି—( ଲକ୍ଷଣାର୍ଥ ) ନାନା ଛଳନାକ୍ରମେ କୌଣସି ବ୍ୟକ୍ତିକୁ ଏକ ଏକ ସ୍ଥାନରୁ ଅନ୍ୟ ଅନ୍ୟ ସ୍ଥାନକୁ ନେବା—
Ḍā-āñṇa bā-āñṇa bulā(le,ibā
1. ( figurative ) To lead a person from place to place under various pretexts or under false scents.
(ଯଥା—ଗିରଫଦାର ଆସାମୀ ଚୋରି ମାଲ କେଉଁଠାରେ ଅଛି ଏହା ଦେଖାଇବା ନିମନ୍ତେ ୩ ଦିନ ହେଲା ପୁଲିସ ଜମାଦାରଙ୍କୁ ଡାଆଁଣ ବାଆଁଣ ବୁଲାଉଛି । )
୨ । ( ଲକ୍ଷଣାର୍ଥ ) ହଇରାଣ କରିବା—
2. (figurative) To harass.

**ଡାଆଁ ବାଆଁ** (ଇତ୍ୟାଦି)—ଗ୍ରା. ବ—ଡାଆଁଣ ବାଆଁଣ ଇତ୍ୟାଦି (ଦେଖ)
Ḍā-āñ bā-āñ (etc) Ḍā-āñṇa bā-āñṇa etc (See).

**ଡାଆଁଶ**—ଦେ. ବି—ଡାଉଁଶ (ଦେଖ)
Ḍā-āñśa Ḍāuñśa (See).

**ଡାଆଣ** (ଇତ୍ୟାଦି)—ଦେ. ବି—ଡାହାଣ ଇତ୍ୟାଦି (ଦେଖ)
Ḍā-āṇa (etc) Ḍāhāṇa etc (See).
(ଡାଁଆଣ, ଡାଆଁଣ—ଅନ୍ୟରୂପ)

**ଡାଆଣା**—ଦେ. ବି—ଡାହାଣା (ଦେଖ)
Ḍā-āṇā Ḍāhāṇā (See).
(ଡାଁଆଣା, ଡାଆଁଣା—ଅନ୍ୟରୂପ)

**ଡାଆଣିଆଁ** (ଇତ୍ୟାଦି)—ଡାହାଣିଆଁ ଇତ୍ୟାଦି (ଦେଖ)
Ḍā-āṇiāñ (etc) Ḍāhāṇiāñ etc (See).
(ଡାଆଁଣିଆ, ଡାହାଣିଆ, ଡାଁଆଣିଆ—ଅନ୍ୟରୂପ)

ଡାଆଁଣିଆ ଷଣ୍ଢ ପଚିଣ୍ଡ ବେଳ ଯାଉଛ ବୁଢ଼ା ।
ନନ୍ଦକିଶୋର, ନର୍ସରୀ ।

**ଡାଆଣୀ** (ଇତ୍ୟାଦି)—ଡାହାଣୀ ଇତ୍ୟାଦି (ଦେଖ)
Ḍā-āṇī (etc) Ḍāhāṇī etc (See).

**ଡାଇ**—ଦେ. ବି—ଅସ୍ତ୍ରାଘାତ—
Ḍāi Stroke with a weapon.
ବୈଦେ. ବି (ଇଂ.)—୧ । ପଶାକାଠି—
1. Die; a cube used in the game of dice.
ডাই ୨ । ଛାଞ୍ଚ; ଠସା—2. Die; mould.
डाई ୩ । ରଙ୍ଗ—3. Die; colour.

**ଡାଇଆଁ ବାଇଆଁ** (ଇତ୍ୟାଦି)—ଡାଆଁଣ ବାଆଁଣ ଇତ୍ୟାଦି (ଦେଖ)
Ḍāiāñ bāiāñ (etc) Ḍā-āñṇa bā-āñṇa etc (See).

**ଡାଇଁକିଡାଇଁ, ଡଇଁକିଡାଇଁ, ଡାଇଁକିଡିଡାଇଁ ଡାଇଁକିଡାଇଁ**—
Ḍāiñki-ḍāiñ ḍaiñki-ḍāiñ ḍāiñki-diḍāiñ ḍāñiki-ḍāiñ
ଘଣ୍ଟ ବଜାଇବାର ଉକ୍ତି—
The formula or catchword for striking gongs.

**ଡାଇଁ ଡାଇଁ**—ଦେ ( ଧ୍ୱନ୍ୟନୁକରଣ ) ଅ—ଘଣ୍ଟ ବଜାଇବାର ଶବ୍ଦ—
Ḍāiñ ḍāiñ The sound of striking gongs.
ঢাইঢাই
ठनठन

**ଡାଇଁ ବାଇଁ** (ଇତ୍ୟାଦି)—ଡାଆଁଣ ବାଆଁଣ ଇତ୍ୟାଦି (ଦେଖ)
Ḍāiñ-bāiñ (etc) Ḍā-āñṇa bā-āñṇa etc (See).

**ଡାଇକା** (ଇତ୍ୟାଦି)—ଦାଇକା ଇତ୍ୟାଦି (ଦେଖ)
Ḍāikā (etc) Dāikā etc (See).

**ଡାଇ ପକାଇବା**—ପ୍ରାଦେ. (ସମ୍ବଲପୁର) କ୍ରି·—(ଗାଈ) ଗର୍ଭ ପକାଇବା
Ḍāi pakāibā To miscarry (said of a cow.)

**ଡାଇ ପ୍ରେସ୍**—ବୈଦେ. ବି (ଇ°) (ଛାପାଖାନା ବ୍ୟବହୃତ ଶବ୍ଦ)—ଫଳକରୁ ଉପରକୁ ଉଠିଥିବା ଅକ୍ଷର ଓ ମନୋଗ୍ରାମ ଆଦି ଛାପିବାର କଳ—Die-press.
Ḍāi pres
ডাইপ্রেস্
डाइप्रेस

**ଡାଇମନ** (ଇତ୍ୟାଦି)—ବୈଦେ. ବି.(ଇଂ)—ଡାଏମନ୍ ଇତ୍ୟାଦି (ଦେଖ)
Ḍāiman (etc) Ḍāeman etc (See)

**ଡାଇମନ୍ କଟା**—ଦେ. ବିଣ—ଡାଏମନ୍ କଟା ( ଦେଖ )
Ḍāiman kaṭā Ḍāeman kaṭā (See)

**ଡାଇରି**—ବୈଦେ. ବି (ଇଂ)—୧ ଦୈନିକ ଘଟଣାର ସ୍ମାରକ ଲିପି ବା ବିବରଣ—Diary.
Ḍāiri
ডাইরী ୨ । ଦୁଧ, ଦହି, ଲହୁଣୀ ଆଦି ସଂଗୃହୀତ ହୋଇ ବିକ୍ରି କରାଯିବାର ସ୍ଥାନ—2. Dairy.
डायरी, दिनचर्या
(ଡାଏରି, ଡାୟରି—ଅନ୍ୟରୂପ)

**ଡାଇରିଆ**—ବୈଦେ. ବି (ଇଂ. ଡାଇରିଆ)—ପତଳା ଝାଡ଼ାରୋଗ—
Ḍāiriā Diarrhœa.
ডাইরিআ, डाइरिया

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ମ | ଓ | ର୍,ର୍ୱ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଋ | ଡ଼ | ଢ଼ |
| ୨ | ଝ | ଉ | ରୁ | ଲୁ | ଯ୍ୟ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ |

ଡାଇର ଫାରମ୍—ବୈଦେ. ବ ( ଇଂ. ଡାଇର ଫାର୍ମ୍ )—ଗାଈ ପୋଷା
Dāiri phāram ଯାଇ ଯେଉଁଠାରେ ଦୁଧ, ଦହି, ଛେନା, ଲହୁଣୀ,
ଡାଇରି ଫାର୍ମ ଘିଅ ଆଦି ବ୍ୟବସାୟଦୃଷ୍ଟିରେ ଅମଦାନି
**डाइरि फारम** କରାଯାଏ—Dairy-farm.
(ଡାଇର ଫାର୍ମ୍—ଅନ୍ୟରୂପ)

ଡାଇରେକ୍ଟର୍—ବୈଦେ. ବ (ଇଂ)—୧ । ଶିଳ୍ପ, କୃଷି ବା ଶିକ୍ଷା ବିଭାଗର
Dāirektar ପ୍ରାଦେଶିକ କର୍ତ୍ତୃପକ୍ଷ—1. The Provincial
ଡାଇରେକ୍‌ଟର Head of Education, Industries or
**डाइरेक्‌टर** Agriculture; Director of Public Instruction; Director of Agriculture.
(ଡିରେକ୍ଟର୍—ଅନ୍ୟରୂପ)
୨ । ଯୌଥ କୋମ୍ପାନୀ ବା ସଙ୍ଘର ପରିଚାଳକ ବ୍ୟକ୍ତି—
2. Director of a Company.

ଡାଇସ୍—ବୈଦେ. ବ ( ଇଂ. ଡାଇ, ବହୁବଚନ ଡାଇସ୍ )—
Dāis ୧ । ଲୁହା ଆଦି ଧାତୁର ପେଚ ଖୋଲିବା କରିବା କଳ—
ଡାଇସ 1. A turner's die; a machine for turning out screws.
**डाइस**
୨ । ବଣିଆଙ୍କ ଠସା—2. Goldsmith's die

ଡାଇରେକ୍ଟରୀ—ବୈଦେ. ବ—(ଇଂ.)—କୌଣସି ଦେଶ ବା ନଗରର
Dāirektarī ନାନାଦି ଜ୍ଞାତବ୍ୟ ବିଷୟ ଓ ଠିକଣା ସ୍ୱରକ୍ରମେ ଦିଆ
ଡାଇରେକ୍‌ଟରୀ ଯାଇଥିବା ପୁସ୍ତକ—Directory.
**डाइरेकटरी**

ଡାଉଁ ବାଉଁ (ଇତ୍ୟାଦି)—ଡାଆଁଣ ବାଆଁଣ ଇତ୍ୟାଦି (ଦେଖ)
Dāuñ bāuñ (etc) Dā-āñna bā-āñna etc (See)

ଡାଉଁରା(ରେ)ଇବା—ଦେ. କ୍ରି—ଦାଉଁ ବା ସୁଯୋଗକୁ ଅପେକ୍ଷା କରିବା—
Dāuñrā(re)ibā To wait for an opportunity; to bide one's time.
ପ୍ରାଦେ ( ଗଡ଼ଜାତ ) କ୍ରି—ଧାରିବାହିକରୂପେ କୌଣସି କାର୍ଯ୍ୟ ନ କରି ଦରପଲ୍ଲିଆ କରି କରିବା—To do a work in a slovenly or imperfect manner.

ଡାଉଁଶ—ଦେ. ବ (ସଂ. ଦଂଶ)—କୁକୁରମାଛି; ଜୀବଙ୍କ ଦେହରୁ ରକ୍ତ
Dāuñsa ଶୋଷଣ କରିବା ବଡ଼ ମାଛି ବିଶେଷ—
ଡାଁଶ A gadfly.
**डांश**
ଚଢ଼ି ମାଛି ମନ୍ଦ ଘେରିଥିବା ଲୋକ
ଡାଉଁଶ ପ୍ରବ ହୋଇ ଦୁଇ ପକ୍ଷୀ ବକ । କୃଷ୍ଣସିଂହ, ମହାଭାରତ, ଅନୁଶାସନ ।

[ ଦ୍ର—ଏମାନେ ଗୋରୁଗାଈ, ଘୋଡ଼ା, କୁକୁର ଓ ପକ୍ଷୀଙ୍କ ଦେହରେ ବସି ସେମାନଙ୍କୁ ଦଂଶନ କରନ୍ତି । ମନୁଷ୍ୟଠାରେ ଡାଉଁଶ ବସିବାର ଦେଖାଯାଏ ନାହିଁ । ]

ଡାଉନ୍ ଟ୍ରେନ୍—ବୈଦେ. ବ. (ଇଂ. ଡାଉନ୍=ନିମ୍ନକୁ, ତଳକୁ+
Dāun tren ଟ୍ରେନ୍=ରେଲଗାଡ଼ି)—ଯେଉଁ ରେଲଗାଡ଼ି ଦୂର-
ଡାଉନ୍ ଟ୍ରେନ ବର୍ତ୍ତୀ ଷ୍ଟେସନ୍‌ରୁ କୌଣସି କେନ୍ଦ୍ରିକ ଷ୍ଟେସନ୍ ବା
**डाउन'ट्रेन** ପ୍ରଧାନ ଟର୍ମିନାଲ୍ ଷ୍ଟେସନ୍ ( ଶେଷମୁଣ୍ଡ ଷ୍ଟେସନ୍ )
(ଅପ୍ ଟ୍ରେନ୍—ବିପରୀତ) ବା ପ୍ରଧାନ ରାଜଧାନୀ ଆଡ଼କୁ ଆସେ—
Down train; a railway-train proceeding towards a central or terminal station or metropolis.

[ ଦ୍ର—ଭାଷାକୋଷର ୧ମ ଖଣ୍ଡ ୩୬୭ ପୃଷ୍ଠାରେ 'ଅପ୍ ଟ୍ରେନ୍'ର ଅର୍ଥ-ଯେଉଁ ରେଲଗାଡ଼ି ଦୂରବର୍ତ୍ତୀ ଷ୍ଟେସନ୍‌ରୁ ରେଲର କେନ୍ଦ୍ରିକ ବା ମୂଳ ଷ୍ଟେସନ୍‌କୁ ଯାଏ, ବୋଲି ଲେଖାଅଛି—ୱେବ୍‌ଷ୍ଟରକୃତ ବିଖ୍ୟାତ ଇଂରାଜୀ ଭାଷାକୋଷରେ ( Webster's English Dictionary ରେ) ଡାଉନ୍ ଟ୍ରେନ୍ ଶବ୍ଦ ନାହିଁ । ଅପ୍ ଟ୍ରେନ୍ (up-train)ର ଅର୍ଥ ଲେଖା ଅଛି—A train going in the direction of the metropolis or the main terminus. ଅର୍ଥାତ୍ ରାଜଧାନୀ ବା ପ୍ରଧାନ ଟର୍ମିନାଲ୍ ଷ୍ଟେସନ୍ ଆଡ଼କୁ ଯେଉଁ ରେଲଗାଡ଼ି ଯାଏ । ଏ ଭାଷାକୋଷରେ ଦିଆଯାଇ ଥିବା 'ଅପ୍ ଟ୍ରେନ୍'ର ଅର୍ଥ ୱେବ୍‌ଷ୍ଟରଙ୍କ ପ୍ରଦତ୍ତ ଅର୍ଥ ସଙ୍ଗେ ମିଳୁଅଛି—କିନ୍ତୁ ବି. ଏନ୍. ଆର୍ ( ବେଙ୍ଗଲ ନାଗପୁର ରେଲୱେ ) ଇ. ଆଇ. ଆର୍ ( ଇଷ୍ଟଇଣ୍ଡିଆନ୍ ରେଲୱେ ), ଟାଇମ୍‌ଟେବୁଲ୍‌ମାନଙ୍କରେ ଥିବା ଅପ୍ ଓ ଡାଉନ୍ ଟ୍ରେନ୍‌ମାନଙ୍କ ସଙ୍ଗେ ଉପରୋକ୍ତ ଅର୍ଥର ମେଳ ହେଉନାହିଁ । ଉପରୋକ୍ତ ଟାଇମ୍‌ଟେବୁଲ୍‌ମାନଙ୍କରୁ ଦେଖାଯାଏ ଯେ ବି. ଏନ୍. ଆର୍‌ର ବୋମ୍ବେ, ନାଗପୁର ଓ ମାନ୍ଦ୍ରାଜ ଆଦି ଆଡ଼ୁ ହାବଡ଼ା ଷ୍ଟେସନ୍ ଆଡ଼କୁ ଯେଉଁ ଗାଡ଼ିମାନ ଆସେ ସେମାନ ଡାଉନ୍ ଟ୍ରେନ୍ ଓ ହାବଡ଼ାରୁ ବୋମ୍ବେ, ମାନ୍ଦ୍ରାଜ, ନାଗପୁରଆଦି ଦୂରବର୍ତ୍ତୀ ଷ୍ଟେସନ୍‌ମାନଙ୍କୁ ଯେଉଁ ଗାଡ଼ିମାନ ଯାଏ ତାକୁ ଅପ୍ ଟ୍ରେନ୍ ବୋଲାଯାଏ । ଇ. ଆଇ. ଆର୍‌ର ସାହାରନପୁର, ଦିଲ୍ଲୀ, ପଞ୍ଜାବ, ବମ୍ବେ, ମାନ୍ଦ୍ରାଜ, ବର୍ଦ୍ଧମାନଆଦି ଆଡ଼ୁ ହାବଡ଼ାକୁ ଆସୁଥିବା ଗାଡ଼ିମାନ ଡାଉନ୍ ଟ୍ରେନ୍ ଓ ହାବଡ଼ାରୁ ପଞ୍ଜାବଆଦି ଆଡ଼କୁ ଯିବା ଗାଡ଼ିମାନ ଅପ୍ ଟ୍ରେନ୍ ନାମରେ ଅଭିହିତ, ଏବଂ ଏହି ଦିଗବାରଣ ଅନୁସାରେ ମଧ୍ୟ ବ୍ରାଞ୍ଚ୍ ଲାଇନ୍‌ମାନଙ୍କରେ ଚଳୁଥିବା ଗାଡ଼ିମାନଙ୍କୁ ଯଥାକ୍ରମେ ଡାଉନ୍ ଟ୍ରେନ୍ ଓ ଅପ୍ ଟ୍ରେନ୍ ବୋଲାଯାଏ । ଦାକ୍ଷିଣାତ୍ୟର ରେଲମାନଙ୍କରେ ଟ୍ୟୁଟିକରିନ୍, ତ୍ରିଚିନାପଲ୍ଲୀଠାରୁ ମାନ୍ଦ୍ରାଜକୁ ଓ ମାନ୍ଦ୍ରାଜରୁ ଉଆଲଟାୟାରକୁ ଯିବା ଗାଡ଼ିମାନଙ୍କୁ ଡାଉନ୍ ଟ୍ରେନ୍ ଓ ଏଇଦ୍-ବିପରୀତଗାମୀ ଗାଡ଼ିମାନଙ୍କୁ ଅପ୍ ଟ୍ରେନ୍ ବୋଲାଯାଏ । ଏହି ଲକ୍ଷ୍ୟରେ ଭାଷାକୋଷର ୧ମ ଖଣ୍ଡରେ 'ଅପ୍ ଟ୍ରେନ୍'ର ଯେଉଁ ଅର୍ଥ ୱେବ୍‌ଷ୍ଟରଙ୍କ ଇଂରାଜୀ ଭାଷାକୋଷର ଅର୍ଥାନୁସରଣରେ ଲେଖା ହୋଇଅଛି ତାହା ଠିକ୍ ନୁହେଁ । ତାହା 'ଡାଉନ୍ ଟ୍ରେନ୍'ର ଅର୍ଥ ବୁଝିବାକୁ ହେବ ଓ 'ଅପ୍ ଟ୍ରେନ୍'ର ଅର୍ଥ—ଯେଉଁ ରେଲଗାଡ଼ି କେନ୍ଦ୍ରିକ ବା ଟର୍ମିନାଲ୍ ଷ୍ଟେସନରୁ ଦୂରବର୍ତ୍ତୀ ଷ୍ଟେସନ୍‌ମାନଙ୍କ ଆଡ଼କୁ ଯାଏ—The train which starts from a central or terminal station of a Railway for a distant destination—ବୁଝିବାକୁ ହେବ । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ବୃତ୍ତର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା– 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'ଭୂଅ' ନ ମିଳିଲେ 'ଦ୍ଧଅ' ଦେଖିବେ; 'ବଂ' ନ ପାଇଲେ 'ବଜ୍ଞ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗୀ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

ଡାଉନି—ପ୍ରାଦେ. (ସମ୍ବଲପୁର) ବି. (ସଂ. ଡାକିନୀ)—ଡାହାଣୀ (ଦେଖ)
Ḍāuni Ḍahāṇi (See)

ଡାଉ ପୁଅ—ଗ୍ରା. ବି—ଡାବଲ ପୁଅ (ଦେଖ)
Ḍāu puā Ḍābala puā (See)

ଡାଏମନ୍—ବୈଦେ. ବି (ଇଂ. ଡାୟ୍‌ମଣ୍ଡ୍)—୧ । ହୀରକ; ହୀରା—
Ḍāeman 1. Diamond.
ডাএমন ୨ । ତାସର ଠିକିରି ରଙ୍ଗ—
डायमन 2. Diamond in card-play,
୩ । ହୀରା ପରି କୋଣବିଶିଷ୍ଟ ହୋଇ କଟା ହୋଇଥିବା କାରୁକର୍ମ—3 Artistic cutting made in ornaments.

ଡାଏମନ୍ କଟା—ଦେ. ବିଣ. (ଇଂ. ଡାୟ୍‌ମଣ୍ଡ୍‌କଟ୍; Diamond= ହୀରା ଓ ଉମ୍‌ସ୍ ଅଙ୍କିତ ତାସ୍‌ର ଠିକିରି ରଙ୍ଗ + cut=କଟା ହୋଇଥିବା )—ଦାଇମନ୍‌କଟା;
Ḍāeman kaṭā
ডাইমনকটা
डैमनकाटाहुआ ଯେଉଁ ଅଳଙ୍କାରର କ୍ଷୁଦ୍ର ଅର୍ବୁଦ ବା ଆବୁମାନଙ୍କୁ କୋଣବିଶିଷ୍ଟ କରି କାଟି ବା ଉଖାରେ ଘଷି ହୀରା ଖଣ୍ଡପରି ଜକଜକ କରାଯାଏ—
Diamond.cut; ( an ornament ) with the raised points cut and polished and glittering like the facets of diamond.

ଡାଏମନ୍ କାଟିବା—ଦେ. କି—ଅଳଙ୍କାରର ଅର୍ବୁଦାକାର ଅଂଶମାନଙ୍କୁ କୋଣବିଶିଷ୍ଟ କରି କାଟି ବା ଉଖାରେ ଘଷି ଜକଜକ କରାଇବା—To file and polish points raised in an ornament into facets.
Ḍāeman kāṭibā
ডাইমন কাটা
डैमन काटना

ଡାଏରି—ବୈଦେ. ବି. (ଇଂ)—ଡାଇରି (ଦେଖ)
Ḍāeri Ḍāiri (See)

ଡାଁକୁ—ପ୍ରାଦେ. (ସିଂହଭୂମ) ବି.—(ହି. ଡାକୁ; ସଂ. ଦସ୍ୟୁ)—
Ḍāṅku ଡକାଇତ (ଦେଖ)—Ḍakāita (See)

ଡାଁଡ଼—ପ୍ରାଦେ. (ସମ୍ବଲପୁର) ବି.—(ଦ ସ୍ଥାନରେ ଡ ଉଚ୍ଚାରଣ)—
Ḍāṅrḍa ଦାଣ୍ଡ—The main road of a village.
ପ୍ରାଦେ. (ଯାଜପୁର) ବି.—ଦଣ୍ଡା—A narrow and long field lying waste for pasture.

ଡାଁଡ଼ୀ—ପ୍ରାଦେ. (ସମ୍ବଲପୁର) ବି.—(ଭୁଲ. ହି. ଡାଂଡାଲ୍=ନାଗରା; Ḍāṅrḍi ହାଡ଼ିମାନେ ନାଗରା ବଜାନ୍ତି) ମେହେନ୍ତରାଣୀ—
A female sweeper.

ଡାକ୍‌ଟର୍ (ଇତ୍ୟାଦି)—ପ୍ରାଦେ. (ଗଞ୍ଜାମ) ବୈଦେ. ବି. (ଇଂ ଡକ୍‌ଟର୍)—
Ḍāk-ṭar (etc) ଡାକ୍ତର ଇତ୍ୟାଦି (ଦେଖ)
Ḍāktara etc. (See)

ଡାକ୍‌ଟରି—ପ୍ରାଦେ. (ଗଞ୍ଜାମ) ବୈଦେ. ବି. ଓ ବିଣ.—
Ḍāk-ṭari ଡାକ୍ତରି (ଦେଖ)—Ḍāktari (See)

ଡାକ—ସଂ. ବି. ପୁଂ—ଶିବାନୁଚରବିଶେଷ; ପିଶାଚଗଣବିଶେଷ—
Ḍāka A class of Śiba's attendants.
(ଡାକିନୀ—ସ୍ତ୍ରୀ) ଦେ. ବି. (ସଂ. ଡ=ଶବ୍ଦ; ଡକାର=ଶବ୍ଦକରଣ)
ডাক ୧ । ଚିତ୍କାର—1. Halloo; shout.
पुकार, हाँक ୨ । ଧ୍ୱନି; ଉଚ୍ଚଶବ୍ଦ; ରବ—
ডাক 2. Loud sound.
डाक ସେହି କାଳରେ କଲା ଭଡ ଭଡ ଡାକ । କୃଷ୍ଣସିଂହ, ମହାଭାରତ. ବନ ।
୩ । ଗର୍ଜନ ଶବ୍ଦ—3. Roaring sound.
୪ । ଡାକିବା; ଆହ୍ୱାନ—4. Call.
୫ । ଜୀବ ଜନ୍ତୁଙ୍କ ରବ—
5. The sound produced by an animal.
୬ । ଉପସ୍ଥିତ ହେବାପାଇଁ ତଲବ—6. Summons.
୭ । ସ୍ୱର; କଣ୍ଠ ଧ୍ୱନି—7. Voice; sound from the mouth
୮ । ପ୍ରେରିତ ପତ୍ରାଦିକୁ ସ୍ଥାନାନ୍ତରକୁ ବହି ନେବାର ସ୍ୱାସ—
8. Post; mail.
[ଦ୍ର—ପୂର୍ବକାଳରେ ବାଟରେ ବାଘ, ଭାଲୁ, ଚୋର ଆଦିଙ୍କର ଭୟ ଥିବାରୁ ପତ୍ରବାହକମାନେ ଡାକ ଡାକ ବା ଚିତ୍କାର କରି କରି ଯାଉ ଥିବାରୁ ଦୂରଦେଶକୁ ପତ୍ରାଦି ପ୍ରେରଣର ଏହି ନାମ ଦିଆଯାଇ ଅଛି । ]
୯ । ପୋଷ୍ଟ ଦ୍ୱାରା ପ୍ରେରିତ ଚିଠି ପତ୍ରାଦି—
9. Mail; postal articles.
୧୦ । ଦ୍ରୁତବେଗରେ ଓ ବାଟରେ ନ ଥାମି ଯାନବାହନଦ୍ୱାରା ଏକ ସ୍ଥାନରୁ ଦୂର ଦେଶକୁ ଯିବା ନିମନ୍ତେ ମଝିରେ ମଝିରେ ନୂଆ ଘୋଡ଼ା ବା ବେହେରା ବଦଳାଇବାର ବନ୍ଦୋବସ୍ତ—10. Stage; the system of keeping ready relays of horses or bearers at intervals for continuing long journeys in conveyances without any stoppage.
୧୧ । ସରକାରୀ କର୍ମଚାରୀଙ୍କ ନିକଟକୁ ପ୍ରତିଦିନ ଯିବା ଆସିବା ପତ୍ରାଦି—11. Letters received and sent by an official daily.
ডাক ୧୨ । ଡାକ କାମ; ପ୍ରତିମା ଆଦି ଉପରେ ସଜାଇବାର
डाँक ଓ ଜଡ଼ାଇବାର ଚକଚକା; ପନ୍ନା—12 Finery; tin foil.
ডাক ୧୩ । ଡାକ ଋଷି; ଯେଉଁ ପ୍ରାଚୀନ ଋଷି ପ୍ରବଚନ ଆଦି
घाघ ରଚନା କରି ଥିବାର କଥିତ—13. A name by which the imaginary author of some wise sayings is known.
୧୪ । ବୋଲି; ଜନଶ୍ରୁତି; ପ୍ରବାଦ—14. Saying; tradition.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର୍‌ଋ | ଡ଼ | ବ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଣ,ଶ | ଙ୍କ | ଇସ୍ପ | ଋଅ | ଞ୍ଚ |
| ୨ | ଈ | ଊ | ରୁ | ଲୁ | ପ୍ଟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଊ | ନ୍ |

୧୫ । ପରିଶ୍ରମ କରିବା ସମୟରେ ଶ୍ରମାପନୋଦନାର୍ଥ କେଉଟ, ସବାର ବେହେରା ଓ କୁଲି ପ୍ରଭୃତିଙ୍କର ବୋଲିବା ପଦ — 15. Vociferations of palki-bearers, coolies and boatmen while engaged in their work.

୧୬ । ଖ୍ୟାତି; ସୁଖ୍ୟାତି — 16. Reputation.

୧୭ । ଉଚ୍ଚସ୍ୱରରେ ଡାକିଲେ ଯେତେ ଦୂରତାରୁ ଶବ୍ଦ ଶୁଣା ଯାଏ — 17. A distance from which a man's hallooing or shouts can be heard. (ଯଥା— ତାଙ୍କ ଘର ମୋ ଘରଠାରୁ ଡାକେ ହେବ)

୧୮ । କୌଣସି ସମ୍ପତ୍ତି ପ୍ରକାଶ୍ୟ ନିଲାମ ହେଉଥିବା ବେଳେ କ୍ରେତାମାନଙ୍କର ଅଭିପ୍ସିତ ମୂଲ୍ୟର ଉଚ୍ଚୈଃସ୍ୱରରେ ଉଲ୍ଲେଖ — 18. Bidding of auction-purchasers at a public sale.

୧୯ । ଉଚ୍ଚୈଃସ୍ୱରରେ ଆର୍ତ୍ତ ବ୍ୟକ୍ତିର ପ୍ରାର୍ଥନା — 19. A loud prayer of a person in distress.

ବିଣ — ବିଖ୍ୟାତ — Famous; notorious.

ସାଆନ୍ତ ସାଇରେ ଖୋଜ୍ ରାମଚନ୍ଦ୍ର ମଙ୍ଗରାଜଙ୍କ ଘର
ଏଥିପାଇଁ ଖୁବ୍ ଡାକ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ଡାକ ଅଫିସ୍ — ଦେ. ବି. (ଓ. ଡାକ + ଇଂ. ଅଫିସ୍ )—
Ḍāka aphis ଡାକ ଘର ( ଦେଖ )
ডাক অফিস Ḍāka ghara ( See )
डाक अफिस
[ଡାକ ଅଫିସ୍; ଡାକ ଅଫି(ଫି)ସି — ଅନ୍ୟରୂପ]

ଡାକ ଋଷି — ଦେ. ବି — କେତେକ ପ୍ରବଚନ ରଚୟିତା ପ୍ରାଚୀନ ଋଷିଙ୍କ କଳ୍ପିତ ନାମ — Name of a sage reputed to be the author of certain wise saying in rhyme.
Ḍāka ṛushi
ডাক
घाघ

[ ଦ୍ର — ଫଳିତ ଜ୍ୟୋତିଷ, କୃଷି, ଗଣିତ, ଋତୁ, ଶୁଭାଶୁଭ-ଶକୁନ, ବୃଷ୍ଟି, ଆସନ୍ନ ଦୁର୍ଭିକ୍ଷ ଆଦି ସମ୍ବନ୍ଧେ କେତେଗୁଡ଼ିଏ ପ୍ରବଚନ ଡାକ ଋଷିଙ୍କ ଦ୍ୱାରା ରଚିତ ବୋଲି ଜନସାଧାରଣରେ ବିଖ୍ୟାତ । ଏହିପରି ବଚନମାନ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ଓ ଭିନ୍ନ ଭିନ୍ନ ଭାଷାରେ ମଧ୍ୟ ଚଳିବାର ଦେଖାଯାଏ । ]

ଡାକ ଋଷି ବଚନ — ଦେ. ବି — ପଦ୍ୟାକାରରେ ବହୁକାଳରୁ ପ୍ରଚଳିତ କୃଷି, ବର୍ଷା, ଜ୍ୟୋତିଷ ଆଦି ସମ୍ବନ୍ଧୀୟ ସଂକ୍ଷିପ୍ତ ପ୍ରବଚନ; ପ୍ରବାଦ ବାକ୍ୟ — Some wise sayings or saws about agriculture, rain, astrology omens and impending famine attributed to a sage who is known by the name of Ḍāka.
Ḍāka ṛushi bachana
ডাকের বচন
घाघ बचन

( ଯଥା— ୧ । ଆଗରେ ମଙ୍ଗଳ ପଛରେ ରବି,
ଘର ଘରକେ ପଡ଼ିବ ବୋବି ।
୨ । କାଡ଼ ଠକୁ ଠକୁ କାନ ନୁଛୁକା,
ବାଟେ ଦ୍ୱିଜବର ଦେଖିବ ଏକା ।
ପାଆନ୍ତେ କୁମ୍ଭାର କୋଣକେ ତେଲି
ଡାକ ବୋଲେ ପୂଜା ନ ଯିବୁ ପେଲି ।
୩ । ଭୂଷି ମୁଠି, ଆଡ଼ ହମୁଟି,
କାଆର ମଧ୍ୟରେ ପୋଡ଼ିବୁ କାଠି ।
ପର୍ବତ ଶିଖରରେ ବୁଣିବୁ ଧାନ,
ନ ହେଲେ କାଟିବୁ ଡାକର କାନ ।
୪ । ହସି ପଶେ ଉଠି ନ ହସେ
ଦକ୍ଷିଣ ମେଘ ଉତ୍ତରେ ଆସେ
ସନ୍ଧ ଗୋବରରେ ଅଂଶେଇ ବସେ
ଡାକ ବୋଲେ ପୃଥ୍ୱୀ ନଷ୍ଟେ ବରଷେ ।)

ଡାକ କାଗଜ — ଦେ. ବି — ଯେଉଁ ଛୋଟଆକାର କାଗଜରେ ଚିଠି ଲେଖାଯାଇ ଡାକରେ ପଠା ଯାଏ — Note-paper.
Ḍāka kāgaja
ডাক কাগজ
चिट्ठिका कागज
[ ଦ୍ର — ଏଥିରୁ ଏକ ଫର୍ଦ କାଗଜ ଲଫାଫାରେ ମୁଦାହୋଇ ସାଧାରଣ ଡାକମାସୁଲରେ ସ୍ଥାନାନ୍ତରିତକୁ ପ୍ରେରିତ ହୋଇ ପାରେ ବୋଲି ଏହି ନାମ । ]

ଡାକ କାବର — ପ୍ରାଦେ (ଗଞ୍ଜାମ) ବି. (ଓ ଡାକ; ଇଂ. କଭର୍) —
Ḍāka kābarā ଡାକ ଲଫାଫା ( ଦେଖ )
Ḍāka laphāpā ( See )

ଡାକ କାମ — ଦେ. ବି — ପ୍ରତିମାରେ ଘନା ସଜାଇବାର କାମ — Finery; tinfoil for dressing idols.
Ḍāka kāma
ডাকের কাজ ডাঁক

ଡାକ ଖର୍ଚ୍ଚା — ଦେ. ବି — ଡାକ ମାସୁଲ୍ ( ଦେଖ )
Ḍāka kharchā Ḍāka māsul ( See )
(ଡାକଖର୍ଚ୍ଚ, ଡାକ ଖରଚ, ଡାକ ଖରଚା — ଅନ୍ୟରୂପ)

ଡାକ ଗାଡ଼ି — ଦେ. ବି — ୧ । ଯେଉଁ ଗାଡ଼ି, ଶଗଡ଼ ଓ ମଟର ଆଦି ଦ୍ୱାରା ଡାକ ବୁହାଯାଏ — 1. Mail-cart; mail-carriage; mail-van.
Ḍāka gāṛdi
ডাকগাড়ি
डाकगाड़ि
୨ । ସାଧାରଣ ଯାତ୍ରୀ ନେବା ରେଳଗାଡ଼ିଠାରୁ କ୍ଷିପ୍ରଗତିରେ ଚାଲିବା ରେଳଗାଡ଼ି, ଯହିଁରେ ସରକାରୀ ଡାକ ମଧ୍ୟ ବୁହାଯାଏ; ମେଲ୍ ଗାଡ଼ି — 2. Mail train; express train.

ଡାକ ଘର — ଦେ. ବି — ଦୂରଦେଶକୁ ବା ଦେଶରୁ ପ୍ରେରିତ ଚିଠିପତ୍ର ଆଦାନ ପ୍ରଦାନାର୍ଥ ନିର୍ଦ୍ଦିଷ୍ଟ ସରକାରୀ ଗୃହ; ପୋଷ୍ଟ ଅଫିସ — Post office.
Ḍāka ghara
ডাকঘর
डाकखाना

ଡାକ ଚଉକା — ଦେ. ବି — ୧ । ଡାକ ଘର (ଦେଖ)
Ḍāka chaukā 1. Ḍāka ghara (See).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଗ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, ରୁଅ ନ ମିଳିଲେ 'ରୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ।

ড়াকচৌকী ୨। ଯେଉଁଠାରେ ଡାକ ଦ୍ୱାରା ଯିବା ଆସିବା କରିବା
**डाकचौकी** ପାଲିକ ବା ଗାଡ଼ିର ବେହେରା ବା ଘୋଡ଼ାମାନଙ୍କର ବଦଳ ହୁଏ—

ଡାକ ଚଉକି
ଡାକଚୌକା } ଅନ୍ୟରୂପ—
ଡାକଚୌକି

2. A place where post-horses or post-bearers are changed.

୩। ଯେଉଁଠାରେ ଡାକ ରନରମାନଙ୍କର ବଦଳ ହୁଏ—
3. A place where postal-runners are renewed.

ଡାକ ଚଠି(ଟି)—ଦେ. ବ—ଡାକ ଦ୍ୱାରା ପ୍ରେରିତ ପତ୍ର—
Ḍāka chiṭhi (ṭi) Letter sent by post.
ড়াকচিটি
**डाकचिठि**

ଡାକ ଛାଡ଼ିବା—ଦେ. କ୍ରି—୧। ଡାକ ମାରିବା (ଦେଖ)
Ḍāka chhāṛdibā 1. Ḍāka māribā (See).
ড়াক ছাড়া ୨। ବିପନ୍ନ ଅବସ୍ଥାରେ ସାହାଯ୍ୟ ପାଇଁ ଚତ୍କାର କରିବା—
**हाँक देना, पुकारना** 2. To cry out for help in distress.

ଡାକ ଟିକଟ୍—ଦେ. ବ ( ଓ. ଡାକ+ଇଂ. ଟିକେଟ୍ )—
Ḍāka tikaṭ ଡାକରେ ପଠାଯିବା ଚଠି ଆଦି ଦୂର ଦେଶକୁ
ডাকটিকিট ନେବାର ପାରିଶ୍ରମିକ ପାଇଁ ପହାଦର ଓଜନ
**डाकटिकट** ଅନୁପାତରେ ପ୍ରେରକ ଯେଉଁ ଧନ ଦିଅନ୍ତି ତାହା ବିନିମୟରେ ଡାକଘରୁ ମିଳିବା ରାଜଚିହ୍ନାଙ୍କିତ ଟିକଟ୍—

ଡାକଟିକେଟ୍
ଡାକଟିକଲି
ଡାକଟିକଟ୍ } —ଅନ୍ୟରୂପ Postage stamps.
ଡାକଟିକଟ୍

[ଦ୍ର— ଉପଯୁକ୍ତ ମୂଲ୍ୟର ଟିକଟ୍ ଚଠି ଉପରେ ମରା ଥିଲେ ଉକ୍ତ ଚଠି ଠିକଣାରେ ପହଞ୍ଚିବା ପାଇଁ ଆଉ ଅଧିକ ଖରଚ ଲାଗେ ନାହିଁ। ଯେଉଁ ଚଠି ଆଦିର ଉପରେ ଡାକ ଟିକଟ ମରା ଯାଇ ନ ଥାଏ ତାହା ବେଅରିଙ୍ଗ୍ (ବେରିଙ୍ଗ୍) ହୁଏ ଓ ସେଥିପାଇଁ ଚଠି ପାଇବା ଲୋକଠାରୁ ଦୋହୋର ଅର୍ଥ ଆଦାୟ କରାଯାଏ। ]

ଡାକ ଟିକିଲି—ଦେ. ବ—୧। ଡାକ ଟିକଟ୍ (ଦେଖ)
Ḍāka ṭikili 1. Ḍāka ṭikaṭ (See).
ডাকের টিপ ୨। ସ୍ତ୍ରୀଲୋକମାନେ କପାଳରେ ମାରିବା
**डाँकंकि टिकिलि** ଚକଚକିଆ ଟିଣ ପାତ୍ଥରେ ନିର୍ମିତ ଟିକିଲି ବା ଚକତି—
2 A small circular bit of tinfoil put on the middle of the brow of females.

ଡାକ ଡଙ୍ଗା—ଦେ. ବ—ଯେଉଁ ନାହାରେ ଡାକକୁ ନଦୀ ପାର କରାଯାଏ
Ḍāka ḍaṅgā Mail-boat; a boat which ferries
ডাকডিংগী mail across a river.
**डकडोंगा**
(ଡାକଡଙ୍ଗି, ଡାକଡୁଙ୍ଗି— ଅନ୍ୟରୂପ)

ଡାକ ଥଲି --ଦେ. ବ (ଓ. ଡାକ+ଫ. ଥ୍ଲାଲୀ)—
Ḍāka thali ଡାକ ବ୍ୟାଗ୍ ( ଦେଖ )
ডাকথলে Ḍāka byāg (See).
**डाकथ ली**
(ଡାକଥଳିଆ—ଅନ୍ୟରୂପ)

ଡାକଡୁକ କରିବା—ଦେ. କ୍ରି ( ସହଚର ଶବ୍ଦ )—
Ḍāka-ḍuka karibā ଅହ୍ୱାନ କରିବା; ଡାକିବା—
ডাকাডাকিকরা To call.

ଡାକ ତୁରୁପ—ଦେ. ବ ( ଓ. ଡାକ+ଇଂ. ଟ୍ରମ୍ପ୍ )—
Ḍāka turup ତାସର ଏକପ୍ରକାର ଖେଳ—
ডাকতুরুপ A kind of game at cards; a kind
**डाकतुरुप** of whist-play.

[ଦ୍ର—ଏଥିରେ କୌଣସି ଖେଳାଳିଙ୍କ ହାତରେ ୩ ଖଣ୍ଡ କ୍ରମୋଚ୍ଚ ସଂଖ୍ୟକ ତାସ୍ ପଡ଼ିଲେ ସେ ଅପର ପକ୍ଷକୁ ଡାକ ବା ଡାକମାର ଏ ବିଷୟ ଜଣାଇ ଦିଅନ୍ତି। ]

ଡାକ ଦ(ଦେ)ହାତ—ଦେ. ବ (ଓ. ଡାକ+ଫା. ଦେହାତ୍=ଗ୍ରାମ,
Ḍāka di(de)hāti ମଫସଲ; ସହରରୁ ଗ୍ରାମକୁ ବା ମଫସଲକୁ ଓ
ডাকসেস ଗ୍ରାମରୁ ସହରକୁ ଯିବାଆସିବା କରୁଥିବା ଡାକର ବ୍ୟୟ
**डाकसेस** ନିର୍ବାହାର୍ଥ ଏ ଶୁଳ୍କ ଆଦାୟ ହେବାରୁ ସମ୍ଭବତଃ ଏହି ନାମ)-
(ଡାକସେସ୍—ଅନ୍ୟରୂପ) ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଡାକ ବା ଚଠି ନେବା ଅଣିବା ପାଇଁ ଦେଶର ଲୋକଙ୍କଠାରୁ ଗଭର୍ଣ୍ଣମେଣ୍ଟ ପୂର୍ବେ ଯେଉଁ କର ନେଉଥିଲେ—
Dak-cess; a cess realised formerly by the Government for maintaining the postal service.

ଡାକ ଦେବା—ଦେ. କ୍ରି—୧। ଡାକ ମାରିବା ( ଦେଖ )
Ḍāka debā 1. Ḍāka māribā (See)
ডাক দেওয়া ୨। ନିଲାମରେ ବିକି କରା ଯାଉଥିବା ସମ୍ପତ୍ତି ପାଇଁ
**पुकार करना** ( କ୍ରେତୃକ୍ତ ବ୍ୟକ୍ତି ) ନିଜର ପ୍ରସ୍ତାବିତ ମୂଲ୍ୟ ଉଚ୍ଚୈଃସ୍ୱରରେ ଉଲ୍ଲେଖ କରିବା—
2. To bid at an auction-sale.

ଡାକ ନାମ—ଦେ. ବ—୧। ଲେଖକମାନେ ଆପଣା ଆପଣା ନାମ ପ୍ରକାଶ
Ḍāka nāma ନ କରି ଲେଖାରେ ଗ୍ରହଣ କରିବା ଅନ୍ୟ ନାମ—
ডাক নাম 1. Nom-de-plume; a fictitious name as-
**उर्फ़** sumed by a writer or author; pseudonym.

୨। ଯେଉଁ ନାମରେ କୌଣସି ବ୍ୟକ୍ତିକୁ ସାଧାରଣତଃ ଲୋକେ ଡାକନ୍ତି; ଓରଫ—
2. A name by which a person is ordinarily known; alias.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଈ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଈୟ | ଉଅ | ଝ |
| ୨ | ଈ | ଊ | ଋ | ଌ | ଏ୍ୟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଖ | ଈଅ | ଞ | ନ୍ |

୩ । କୃପଣ, ଅଦାତା ଆଦି ବ୍ୟକ୍ତିଙ୍କୁ ଲୋକେ ଚିଡ଼ାଇବା ପାଇଁ ବା ଘୃଣା ପ୍ରକାଶ କରିବା ପାଇଁ ଯେଉଁ ନାମରେ ଡାକନ୍ତି—3. Nick-name.

୪ । ସାଙ୍ଗ ସୁଖମାନେ ଥଟ୍ଟାରେ ବା ପ୍ରେମରେ କୌଣସି ବ୍ୟକ୍ତିଙ୍କୁ ଯେଉଁ ନାମରେ ଡାକନ୍ତି—

4. A nickname given in sportive familiarity.

୫ । ପିତାମାତା ଆଦି ପିଲାଙ୍କୁ ଗେଲବସରରେ ଯେଉଁ ନାମରେ ଡାକନ୍ତି; ଗେହ୍ଲା ନାଁ—

5. A term by which fond parents or elders call their children in affection; fond name.

[ ଦ୍ର—ଗୋଟିଏ ମାତୃଶୂନ୍ୟ ସ୍ତନନ୍ଧୟ ପିଲାକୁ ଶ୍ରୀମତୀ ପୀତାମ୍ବରୀ ଦେବୀ ଆଣି ପାଳିଥିଲେ। ତାହାର ନାମ ଜଗବନ୍ଧୁ, କିନ୍ତୁ ତା ପାଟି ସମ୍ପୂର୍ଣ୍ଣ ଫିଟି ନ ଥିବାରୁ ସେ 'ଜଗବନ୍ଧୁ' ଶବ୍ଦ ଉଚ୍ଚାରଣ କରି ନ ପାରି ଦିନେ ଖନେଇ ଖନେଇ ନିଜର ନାମକୁ 'ଜୁଜୁ' ବୋଲି ଉଚ୍ଚାରଣ କଲା, ସେହି ଦିନଠାରୁ ତାକୁ ପାଳୟିତ୍ରୀ ଓ ଆମ୍ଭେମାନେ ସମସ୍ତେ ଜୁଜୁ ବୋଲି ଡାକୁ ଅଛୁଁ । ]

[ ଦ୍ର—ସମ୍ବାଦପତ୍ର ଓ ସାମୟିକ ପତ୍ରର ଲେଖକମାନେ ବ୍ୟଙ୍ଗ ବିଦ୍ରୂପ ପୂର୍ଣ୍ଣ ବା ଗୁରୁତର ଅଭିଯୋଗ ବା ସମାଲୋଚନା ଯୁକ୍ତ ବିଷୟ କୌଣସି ପ୍ରବନ୍ଧ ଲେଖି ସେହି କାରଣରୁ ବା ଅନ୍ୟ କିଛି କାରଣରୁ ତହିଁରେ ନିଜର ପ୍ରକୃତ ନାମ ନ ଲେଖି ଗୋଟିଏ କାଳ୍ପନିକ ବା ଆକ୍ଷରିକ ଅର୍ଥବିଶିଷ୍ଟ ନାମ ଦିଅନ୍ତି । ଫକୀରମୋହନ ସେନାପତି କେତେକ ଲେଖାରେ ତାଙ୍କ ନାମ ଧୂର୍ଜଟି ରଖିଥିଲେ । ପଣ୍ଡିତ କୁଳମଣି ଦାସ ଉଦ୍ଭଟ ଶ୍ଳୋକମାନଙ୍କ ପଦ୍ୟାନୁବାଦରେ ଉତ୍କଳ ସାହିତ୍ୟ ପତ୍ରିକାରେ ଆପଣାର ନାମ ବାଚସ୍ପତି ଶର୍ମା ଓ ସମ୍ମାର୍ଜନୀଶୀର୍ଷକ ପ୍ରବନ୍ଧମାନଙ୍କରେ ବିଷ୍ଣୁଶର୍ମା ରଖିଅଛନ୍ତି । ଏ ଭାଷାକୋଷର ସଂଗ୍ରାହକ ଭାଗବତ ଟୁଙ୍ଗି ଆଦି ପ୍ରବନ୍ଧରେ ଆପଣା ନାମ ଦୁର୍ମୁଖ ଶର୍ମା ରଖିଥିଲେ । ଖ୍ୟାତନାମା ବ୍ୟକ୍ତିଙ୍କ ଲେଖା ଦେଖି ପାଠକମାନେ ଲେଖାକୁ ସ୍ୱାଧୀନ ଭାବରେ ଆଲୋଚନା ନ କରି ଲେଖକଙ୍କ ନାମ ଦେଖି ତଦ୍ୱାରା ଚାଳିତ ହୋଇ ନିଜର ସ୍ୱାଧୀନ ମନ୍ତବ୍ୟ ବା ମତ ସଂଗଠନ ବା ପ୍ରକାଶ କରିବେ ନାହିଁ, ଏହି ଆଶଙ୍କାରେ କେତେକ ଖ୍ୟାତନାମା ଲେଖକ ମଧ୍ୟ ଡାକ ନାମ ବ୍ୟବହାର କରନ୍ତି । ଜାତକରେ ରାଶିଗତ ନାମ ଗୋଟିଏ ଥାଏ, ପିତା ମାତା ସ୍ନେହରେ ଗୋଟିଏ ନାମ ଦିଅନ୍ତି । ଶାଶୁ ଘରେ ବଧୂକୁ ଶାଶୁ ଶ୍ୱଶୁର ଗୋଟିଏ ନୂଆ ନାମ ଦିଅନ୍ତି । ପୋଷ୍ୟ ପୁତ୍ରମାନଙ୍କୁ ଗ୍ରହୀତାମାନେ ନୂଆ ନାମ ଦିଅନ୍ତି । ବେଶି ଅକ୍ଷର ଥିବାରୁ ଯେଉଁ ନାମ ଉଚ୍ଚାରଣ କରିବାକୁ ଆୟାସ ପଡ଼େ ତାକୁ ଲୋକେ ଗୋଟିଏ ସଂକ୍ଷିପ୍ତ ନାମ ଦିଅନ୍ତି । ଯଥା—ସତ୍ୟବାଦୀର ଡାକ ନାମ ବାଇ, ହୃଷିକେଶ—ହରୁଷୀ, ଧୂବ-ଚରଣ—ଧୋବା, ମନମୋହିନୀ—ମନା, ପଦ୍ମନାଭ—ପଦଆ, ନରେନ୍ଦ୍ରକୁମାର—ନରୀ, ପୀତାମ୍ବରୀ—ପିତେଇ, ପଦ୍ମଚରଣ—ପଦ । ଶିଶୁମାନଙ୍କୁ ନାମକରଣ ପୂର୍ବରୁ ପିତାମାତା ଗେଲବସରରେ ଗୋଟିଏ ଗୋଟିଏ ନାମ ଦିଅନ୍ତି । ଶାଶୁଶ୍ୱଶୁର ଆଦି ଗୁରୁଜନଙ୍କ ନାମ ଧରିବା ନିଷିଦ୍ଧ, ଏଥିପାଇଁ ଯେବେ କୌଣସି ବଧୂର ବା ଭୃତ୍ୟର ନାମ ଶ୍ୱଶୁର ଘରର ବା ସ୍ୱାମିନଙ୍କ ପରିବାରର କୌଣସି ଗୁରୁଜନଙ୍କ ନାମ ହୋଇଥାଏ ତେବେ ଶ୍ୱଶୁର ଘରେ ବା ଭୃତ୍ୟସ୍ୱାମୀମାନେ ବଧୂକୁ ବା ଭୃତ୍ୟକୁ ଗୋଟିଏ ନୂଆ ନାମ ଦିଅନ୍ତି । ଅପତ୍ୟିଆଣୀ-ମାନଙ୍କର ପ୍ରକୃତ ନାମକୁ ଯମଠାରୁ ଲୁଚାଇ ରଖିବା ଆଶାରେ ସେମାନଙ୍କୁ ବାଉରିଆ, ପାଣୁଆ, କଣ୍ଡୁରିଆ, ହାଡ଼ିଆ ଆଦି ଡାକ ନାମ ଦିଆଯାଏ । ଶିଶୁମାନଙ୍କୁ ମଧ୍ୟ ନାମକରଣ ପରେ ପିତାମାତାଦି ଗୁରୁ-ଜନମାନେ ନୂଆ ନାମ ଦିଅନ୍ତି । କୃପଣ ଓ ଦୁଷ୍ଟ ବ୍ୟକ୍ତିର ନାମ ଉଚ୍ଚାରଣ କରିବା ଅଶୁଭ, ଏଥିପାଇଁ ସେମାନଙ୍କୁ ଲୋକେ ଗୋଟିଏ ଗୋଟିଏ ଡାକ ନାମ ଦେଇ ଥାଆନ୍ତି । ସାଙ୍ଗସୁଖମାନେ ସ୍ନେହରେ ବା ଥଟ୍ଟାପରିହାସରେ ଆପଣା ଆପଣା ମଧ୍ୟରେ ଡାକ ନାମ ଦିଆଦେଇ ହୁଅନ୍ତି । ଏକନାମଧାରୀ ଏକାଧିକ ବ୍ୟକ୍ତିଙ୍କୁ ବାରିବା ପାଇଁ ମଧ୍ୟ ଡାକନାମ ଦିଆଯାଏ । ]

**ଡାକ ନିଲାମ**—ଦେ ବି. ( ଓ ଡାକ+ପର୍ତ୍ତୁଗୀଜ୍. ଲିଲାମ୍ )—
Dāka nilāma ଯେଉଁ ପ୍ରକାଶ୍ୟ ବିକ୍ରିରେ ଖରିଦ୍‌ଦାରମାନଙ୍କ ମଧ୍ୟରେ ପ୍ରତିଯୋଗିତା ହୁଏ; କୌଣସି ବସ୍ତୁ ବା ସମ୍ପତ୍ତି କିଣିବାପାଇଁ ଖରିଦ୍‌ଦାରମାନେ ନିଜ-ନିଜର ଇପ୍ସିତ ଦରସମନ ଉଲ୍ଲେଖ କରି ଯେଉଁ ନିଲାମରେ ଡାକନ୍ତି—Public auction.
ডাক নিলাম
डाक निलाम

[ଦ୍ର—ଡାକ ନିଲାମରେ ସମ୍ପତ୍ତି କିଣିବାକୁ ଇଚ୍ଛୁକ ବ୍ୟକ୍ତିମାନଙ୍କ ମଧ୍ୟରୁ ଯାହାର ଡାକ ସର୍ବୋଚ୍ଚ ହୁଏ ଅର୍ଥାତ୍ ଯେଉଁ ଖରିଦ୍‌ଦାର ଅନ୍ୟ ସମସ୍ତଙ୍କ ଅପେକ୍ଷା ବେଶି ଟଙ୍କା ଦେବାକୁ ଡାକ ଦିଏ ତାକୁ ହିଁ ନିଲାମ ହେଉଥିବା ସମ୍ପତ୍ତି ବିକ୍ରି କରାଯାଏ । ]

**ଡାକ ନୁ(ନୋ)ଟିସ୍(ସି)**—ଦେ. ବି. (ଓ. ଡାକ+ଇଂ ନୋଟିସ୍ )—
Dāka nu(no)ṭis(si) ଏକ ବ୍ୟକ୍ତି ଦ୍ୱାରା ଅନ୍ୟ ବ୍ୟକ୍ତି ନିକଟକୁ ଡାକ ଦ୍ୱାରା ପ୍ରେରିତ ବିଜ୍ଞାପନ—Notice sent by registered post.
ডাক নোটিস
डाक नुटीस
(ଡାକ ଲୁ(ଲୋ)ଟିସ୍(ସି)— ଅନ୍ୟରୂପ)

**ଡାକ ପକା(କେ)ଇବା**— ଦେ. କ୍ରି – ଡାକ ମାରିବା ( ଦେଖ )
Dāka pakā(ke)ibā Dāka māribā ( See )
ডাকপাড়া
पुकार मारना

**ଡାକ ପାକି(କେ)ଟ୍**—ଦେ. ବି. ( ଓ ଡାକ+ଇଂ. ପାକେଟ୍ )—
Dāka pāki(ke)ṭ ବଡ଼ ମୁଣିରେ ଭରିତ ହୋଇ ଡାକରେ ପଠାଯିବା ବନ୍ଧୁତଗୁଡ଼ିଏ କାଗଜ ପତ୍ର—A packet or bundle of papers sent by post.
ডাক পাকেট
डाक पाकेट

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ଭୃଅ' ନ ମିଳିଲେ 'ବୃଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ଡାକ ପାଣି**—ଦେ.ବି—୧ । ଯେଉଁ ଅଭିମନ୍ତ୍ରିତ ଜଳର ଶକ୍ତିଦ୍ୱାରା ବିଦେଶ-
Ḍāka pāṇi ପ୍ରସ୍ଥିତ ବ୍ୟକ୍ତି ଉଦ୍‌ବିଗ୍ନ ହୋଇ ଘରକୁ ଫେରିଆସେ—
ডাকের জল 1. Enchanted water reputed to have the
**फुँका हुआ पानी** potency of attracting wanderers back to their homes.
୨ । ଗର୍ଭଣା ସଂକ୍ରାନ୍ତି ଦିନ ବିଲରୁ ଯେଉଁ ପାଣି ନେଇ ମୁଣ୍ଡରେ ଛିଞ୍ଚିବାକୁ ହୁଏ (ଏହା କଲେ ରୋଗ ଆଦି ହୁଏ ନାହିଁ)—2. Water brought from paddy fields on Garbhaṇā Saṁkrānti and sprinkled over the head.

**ଡାକ ପାଣି କରିବା**—ଦେ. କ୍ରି.—ବିଦେଶପ୍ରସ୍ଥିତ ବ୍ୟକ୍ତିକୁ ଉଦ୍‌ବିଗ୍ନ
Ḍāka pāṇi karibā କରାଇ ଘରକୁ ଫେରାଇ ଆଣିବା ନିମନ୍ତେ ଗୁଣିଆଁ ଦ୍ୱାରା ଅଭିମନ୍ତ୍ରିତ ଜଳ ପ୍ରୟୋଗ କରିବା—
To employ charmed water for bringing a wanderer back to his home

**ଡାକ ପାର୍ସ(ର୍ସେ)ଲ୍**— ଦେ. ବି (ଓ ଡାକ+ଇଂ.ପାର୍ସେଲ) (ଡାକରେ
Ḍāka pārsa(se)l ପ୍ରେରିତ ପୁଡ଼ା—A parcel sent by
ডাক পার্সেল post.
**डाक पारसल**

**ଡାକ ପିଅନ୍**—ଦେ. ବି. ( ଓ. ଡାକ; ଇଂ. ପିଅନ୍ )—
Ḍāka pian ଡାକ ଚିଠି ବାଣ୍ଟିବା ଚପରାସୀ—
ডাক পিওন Post peon.
**डाक पिउन**
(ଡାକ ପିଉନ୍; ଡାକ ପିଅଦା—ଅନ୍ୟରୂପ)

**ଡାକପିଆ**—ଦେ. ବିଣ—ଯେଉଁ ଲୋକ ବହୁତ ଡାକରେ ସୁଦ୍ଧା ଜବାବ ଦିଏ
Ḍākapiā ନାହିଁ—A person who does not respond inspite of repeated calls.

**ଡାକ ପିଅଦା**—ଦେ ବି—ଡାକ ପିଅନ୍ (ଦେଖ)
Ḍāka piādā Ḍāka pian (See).

**ଡାକପୁଆ ବାଟ**—ପ୍ରାଦେ ( ଗଡ଼ଜାତ ) ବି—ଯେଉଁ ଦୂରତା ପର୍ଯ୍ୟନ୍ତ
Ḍākapuā bāṭa ଡାକ ଦେଲେ ଶୁଭିବ; ଡାକେ ବାଟ—
The distance upto which a person's loud call can be heard.

**ଡାକ ପୁଲିନ୍ଦା**—ଦେ.ବି. (ଓ ଡାକ+ସ. ପୁଲ=ରାଶି, ଗୁଚ୍ଛ)—
Ḍāka pulindā ୧ । ଡାକ ଲଫାପା (ଦେଖ)
1. Ḍāka laphāpā (See)
୨ । ଡାକ ପାକିଟ୍ (ଦେଖ)
2. Ḍāka pākiṭ (See)

**ଡାକ ବଙ୍ଗଳା(ଲା)**—ବୈଦେ. ବି—ଯେଉଁ ବଙ୍ଗଳା ବା କୋଠି ବା
Ḍāka baṅgaḷā(lā) ବିଶ୍ରାମାଗାରରେ ଡାକ ବୋହିବା ବେହେରା-
ডাক বাঙ্গলা ମାନେ ଅପେକ୍ଷା କରନ୍ତି ଓ ମଫସଲ ଗସ୍ତ କରୁଥିବା
**डाकबंगला** ସରକାରୀ ଓ ବେସରକାରୀ ଭଦ୍ରଲୋକମାନେ ସାମୟିକ ଆଶ୍ରୟ ନଅନ୍ତି—Dak bungalow, staging bungalow.
[ ଦ୍ର—ଯେତେବେଳେ ଏ ଦେଶରେ ମଟର ଓ ରେଳଅାଦିର ସୁବିଧା ନ ଥିଲା ସେହି ସମୟରେ ରାଜକର୍ମଚାରୀମାନେ ଦୂରସ୍ଥ ସ୍ଥାନକୁ ଯିବା ଆସିବା ପାଇଁ ଡାକସବାରି ବା ଡାକ ଘୋଡ଼ା ବା ଗାଡ଼ି ବ୍ୟବହାର କରୁଥିଲେ । ଡାକବଦଳ ଘୋଡ଼ା ବା ବେହେରା-ମାନେ ଏବଂ ରାଜକର୍ମଚାରୀମାନେ ଆଶ୍ରୟ ନେବା ପାଇଁ ୧୦।୧୨ ମାଇଲ ଛଡ଼ାରେ ସରକାରୀ ବଙ୍ଗଳାମାନ ଥିଲା, ସେହି ସମୟରୁ ଏ ଡାକବଙ୍ଗଳା ଶବ୍ଦ ଚଳୁଛି । ]

**ଡାକ ବଚନ**—ଦେ. ବି—ଡାକଋଷି ବଚନ (ଦେଖ)
Ḍāka bachana Ḍākaṛushi bachana (See)

**ଡାକ ବଦଳି**—ଦେ. ବି—୧ । ଡାକ ବୋହିବା ଘୋଡ଼ା ବା ବେହେରା
Ḍāka badaḷi ମାନଙ୍କ ପରିବର୍ତ୍ତନ—1. Change
ডাক বদলান of relays of horses or palky-bearers
**डाक बदली** at staging places.
୨ । ଜଣେ ଡାକ ରନର୍ ନିର୍ଦ୍ଦିଷ୍ଟ ଦୂରତ୍ୱ ଅତିକ୍ରମ କରିବା ପରେ ପରବର୍ତ୍ତୀ ଦୂରତ୍ୱ ପାଇଁ ନିଯୁକ୍ତ ଡାକ ରନର୍ ତା ଠାରୁ ଡାକ ମୁଣିର ଭାର ଗ୍ରହଣ କରିବା—2. Change of the post-bag between 2 runners.

**ଡାକ ବସା(ସେ)ଇବା**—ଦେ. କ୍ରି—ବାଟ ମଝିରେ ମଝିରେ ଡାକଗାଡ଼ିର
Ḍāka basā(se)ibā ଘୋଡ଼ା ଓ ଡାକସବାରିର ଗଡ଼ୁଡ଼ିମାନଙ୍କର
ডাক বসান ବଦଳାବଦଳ ହେବାର ବନ୍ଦୋବସ୍ତ କରିବା—
**डाक बैठाना** To arrange for keeping ready relays of horses and bearers at stages.

**ଡାକ ବସିବା**—ଦେ. ବି—ଶୀଘ୍ର ଦୂରଦେଶକୁ ଯିବା ଆସିବା କରିବା
Ḍāka basibā ପାଇଁ ଯାନାଦିର ଡାକର ବନ୍ଦୋବସ୍ତ—
ডাক বসা Arrangement for travelling long
**डाक बैठना** distances swiftly by keeping ready relays of horses or bearers at convenient distances.

**ଡାକ ବହି**—ଦେ. ବି—ପ୍ରେରିତ ପତ୍ରାଦି ପାଇବାର ସ୍ୱାକ୍ଷର ବା ନିଦର୍ଶନ
Ḍāka bahi ଯେଉଁ ପୁସ୍ତକରେ ଗ୍ରହୀତାଙ୍କଠାରୁ ନିଆଯାଏ—
ডাক বুক্ Dak book.
**डाक बुक**
(ଡାକ ବୁକ୍—ଅନ୍ୟରୂପ)

**ଡାକ ବାକ୍ସ**—ଦେ. ବି. (ଓ. ଡାକ; ଇଂ. ବକ୍ସ )—ଯେଉଁ ବାକ୍ସରେ
Ḍāka bāksa ଡାକରେ ଯିବାପାଇଁ ଚିଠି ପକାଯାଏ—Post box.
ডাক বাক্স **डाक बकस**

**ଡାକ ବାବୁ**—ଦେ. ବି—ଡାକଘରର ଅଧ୍ୟକ୍ଷ କର୍ମଚାରୀ; ପୋଷ୍ଟମାଷ୍ଟର—
Ḍāka bābu Post mas
ডাক মুন্সী **डाक मुंशी**

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ং | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଅ | ଉଅ | ୟ |
| ୵ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ | ନ୍ତ |

ଡାକ ବାଲା—ଦେ. ବି—୧ । ଡାକ ପିଅନ—1. Post-peon.
Ḍāka bālā ୨ । ଡାକ ହରକରା; ଯେଉଁ ବ୍ୟକ୍ତି ଏକ ଡାକଘରୁ
ডাকউআলা ଦୂରବର୍ତ୍ତୀ ଡାକଘରକୁ ପ୍ରେରିତ ଚିଠିପତ୍ର ଓ
डाकवाला ପୁଳିନ୍ଦାଆଦି ବହନ କରି ଦଉଡ଼ି ଦଉଡ଼ି ଯାଏ—
2. Postal runner.

ଡାକ ବିଭାଗ—ଦେ ବି—ଦୂରଦେଶ ସହିତ ଚିଠିପତ୍ର ଆଦାନ ପ୍ରଦାନ
Ḍāka bibāga କରିବା ନିମନ୍ତେ ନିଯୁକ୍ତ କର୍ମଚାରୀମାନଙ୍କ ଦ୍ୱାରା
ডাক বিভাগ ଗଠିତ ସରକାରୀ ବିଭାଗ—
डाक महकमा Postal department.
(ଡାକ ମହକୁମା—ଅନ୍ୟରୂପ)

ଡାକ ବ୍ୟାଗ୍—ଦେ. ବି. (ଓ. ଡାକ ଇଂ. ବାଗ୍)—୧ । ଡାକ ଚିଠି
Ḍāka byāg ଆଦି ବାନ୍ଧିବା ବେଳେ ଯେଉଁ ଥଳିରେ ଡାକବାଲା
ডাক ব্যাগ ଚିଠି ଆଦି ବନ୍ଦନ କରେ—
डाक बेग 1. Postman's bag.
ଡାକ ବାଗ୍ }—ଅନ୍ୟରୂପ ୨ । ଡାକ ରନର୍‌ମାନେ ଏକ ଡାକ-
ଡାକ ବେଗ୍ ଘରୁ ଅନ୍ୟ ଡାକଘରକୁ ନେବା
ଚିଠିପତ୍ର ଆଦିର ମୁଣି—2. The bag carried by postal runners.
୩ । ଏକ ଡାକଘରୁ ଅନ୍ୟ ଡାକଘରକୁ ରେଲ, ବଳିଗାଡ଼ି ବା ଜାହାଜ ଆଦିଦ୍ୱାରା ଚିଠି ପତ୍ର ଆଦି ପଠା ଯିବା ପାଇଁ ବ୍ୟବହୃତ ମୁଣି—3. Mail-bag.
୪ । ଏକ ଡାକଘରୁ ଅନ୍ୟ ଡାକ ଘରକୁ ପ୍ରେରିତ ଟଙ୍କା ଓ ନୋଟ୍ ଆଦି ପଠାଯିବା ପାଇଁ ବ୍ୟବହୃତ ସୁଦୃଢ଼ ଚମଡ଼ାର ଥଳି—4. Strong leather-bags used for sending money and currency notes from one post office to another.

ଡାକ ମାରିବା—ଦେ. କି.—ଉଚ୍ଚୈଃସ୍ୱରରେ ଚିତ୍କାର କରିବା; ଡାକିବା-
Ḍāka māribā To call out; to halloo; to shout.
ডাক মাৰা पुकार देना

ଡାକ ମାସୁଲ୍—ଦେ. ବି. (ଓ. ଡାକ. ଫା. ମହସୁଲ୍)—ଡାକରେ ଚିଠି
Ḍāka māsul ବହିବା ପାଇଁ ଡାକବିଭାଗ ପ୍ରେରକମାନଙ୍କ ଠାରୁ
ডাক মাসুল আଦାୟ କରିବା ଶୁଳ୍କ—Cash paid to the
डाक महसूल post office in lieu of postage; postal charges.
(ଡାକ ମାହାସୁଲ—ଅନ୍ୟରୂପ)

ଡାକ ମାଷ୍ଟର— ଦେ. ବି. (ଓ.ଡାକ+ଇ.ମାଷ୍ଟର)—ଡାକ ବାବୁ (ଦେଖ)
Ḍāka māstara Ḍāka-bābu (See)

ଡାକ ମୁଣା(ଣି)—ଦେ. ବି.—ଡାକ ବ୍ୟାଗ୍ (ଦେଖ)
Ḍāka munā (ṇi) Ḍāka byāg (See)

ଡାକ ମୁନ୍‌ସି—ଦେ. ବି.(ଓ. ଡାକ+ଫା. ମୁନ୍‌ଶୀ)—ଡାକ ବାବୁ (ଦେଖ)
Ḍāka-munsi Ḍāka bābu (See)
(ଡାକ ମୁନସି; ଡାକ ମୁନ୍‌ସୀ,—ଅନ୍ୟରୂପ)

[ଦ୍ର—ପୋଷ୍ଟମାଷ୍ଟର୍ ଓଡ଼ିଆ ବା ବଙ୍ଗାଳି ହିନ୍ଦୁ ହୋଇଥିଲେ ଲୋକେ ତାଙ୍କୁ ଡାକ ବାବୁ ଏବଂ ମୁସଲମାନ ବା ପଶ୍ଚିମା ହୋଇଥିଲେ ତାଙ୍କୁ ଡାକମୁନ୍‌ସି ଡାକନ୍ତି ।]

ଡାକ ମୋହର—ଦେ. ବି.—(ଓ.ଡାକ+ସଂ. ମୁଦ୍ରା) ଡାକ ଚିଠିମାନଙ୍କ
Ḍāka mohara ଉପରେ ଡାକ ବିଭାଗୀୟ କର୍ମଚାରୀମାନେ ଯେଉଁ
ডাক মোহর ଛାପା ମୁଦ୍ରିତ କରନ୍ତି—Seal of post office
डाक मुहर affixed to postal articles.

ଡାକ ରନର୍—ଦେ. ବି.—(ଓ ଇଂ ଡାକ+ଇଂ. ରନର୍)—ଯେଉଁ କୁଲି
Ḍāka ranar ଏକ ଡାକଘରୁ ଚିଠି ଓ ପୁଳିନ୍ଦା ଆଦି ନେଇ ଅନ୍ୟ
ଡାକଘରକୁ ଦଉଡ଼ି ଦଉଡ଼ି ଯାଏ—
Postal runner.
[ଦ୍ର—ସାଧାରଣ ପତ୍ରବାହକଦ୍ୱାରା ପ୍ରେରିତ ପତ୍ରାଦି ଅପେକ୍ଷା ଡାକରେ ପ୍ରେରିତ ପତ୍ରାଦି ଠିକଣାରେ ଶୀଘ୍ର ପହଞ୍ଚିବ ବୋଲି ଡାକ ରନର୍‌ମାନେ ଦ୍ରୁତଗତିରେ ଚାଲନ୍ତି, ଏବଂ ରାତିରେ ମଧ୍ୟ ଯିବା-ଆସିବା କରନ୍ତି । ସାଧାରଣତଃ ଜଣେ ଡାକ ରନର୍ ୧୦ ମାଇଲ ବାଟ ଦ୍ରୁତଗତିରେ ଯାଇ ସେଠାରେ ଥିବା ନୂଆ ରନର୍‌କୁ ଡାକ ବ୍ୟାଗ୍ ଦିଏ ଓ ଉକ୍ତ ରନର୍ ପରବର୍ତ୍ତୀ ୧୦ ମାଇଲ ବାଟ ଯାଇ ଅନ୍ୟ ରନର୍‌କୁ ଦିଏ । ପୂର୍ବେ ଏହି ରନର୍‌ମାନଙ୍କଦ୍ୱାରା ଭାରତର ଏକ ମୁଣ୍ଡରୁ ଅନ୍ୟ ମୁଣ୍ଡ ପର୍ଯ୍ୟନ୍ତ ଡାକ ନିଆ ଅଣା ହେଉଥିଲା । ଆଜି କାଲି ରେଲ ଓ ମଟର ଆଦି ଚଳିବାରୁ ଡାକ ରନର୍‌ମାନଙ୍କ ସଂଖ୍ୟା କମିଛି; ତଥାପି ଯେଉଁଠାରେ ରେଲ ଓ ମଟର ଆଦି ଯିବାଆସିବା କରୁ ନାହିଁ ସେଠାରେ ରନର୍‌ମାନେ ହିଁ ଡାକ ବୋହୁ ଅଛନ୍ତି । ବିଲାତରୁ ଜାହାଜରେ ଡାକ ଯିବାଆସିବା କରେ; ବର୍ତ୍ତମାନ ଉଡ଼ାଜାହାଜ ହେବାରୁ ଜରୁରି ଚିଠିପତ୍ରାଦି ଉଡ଼ାଜାହାଜରେ ଭାରତ ଓ ବିଲାତ ମଧ୍ୟରେ ନିଆ ଅଣା ହେଉ ଅଛି । ଉଡ଼ାଜାହାଜରେ ଚିଠିପତ୍ରାଦି ବିଲାତକୁ ଡାକରେ ପଠାଇଲେ ସାଧାରଣ ଡାକମାସୁଲ ଅପେକ୍ଷା ପ୍ରେରକଙ୍କୁ ବେଶି ମାସୁଲ ଦେବାକୁ ପଡ଼େ । ଡାକ ରନର୍-ମାନେ ଝୁମ୍‌ଝୁମି କଳଶା ବାଡ଼ିକୁ ଝୁମ୍ ଝୁମ୍ କରି ବଜାଇ ଶ୍ରମାପନୋଦନାର୍ଥ ଗୀତ ବୋଲି ବୋଲି ଦଉଡ଼ନ୍ତି ଥାଆନ୍ତି; ଶ୍ୱାପଦ ଓ ଦସ୍ୟୁ ସଙ୍କୁଳ ଅଞ୍ଚଳରେ ଏକସଙ୍ଗରେ ଏକାଧିକ ରନର୍ ଅସ୍ତ୍ରଶସ୍ତ୍ରସଜ୍ଜିତ ହୋଇ ଯିବା ଆସିବା କରନ୍ତି ।]

ଡାକ ରସିଦ୍—ବୈଦେ. ବି. (ଓ. ଡାକ+ଇଂ. ରସିଦ୍)—ମନିଅର୍ଡ଼ର
Ḍāka rasid ବା ରେଜିଷ୍ଟ୍ରି ଚିଠି ଆଦି ଡାକ ଘରେ ଅର୍ପଣ କରିବା
ডাক রসিদ ବ୍ୟକ୍ତିଙ୍କୁ ପୋଷ୍ଟମାଷ୍ଟର ଯେଉଁ ରସିଦ ଦିଅନ୍ତି—
डाक रसिद Postal receipt; postal acknowledgement for registered letters and money orders.

ଡାକରା—ଦେ. ବି.—(ସଂ. ଡ ଧାତୁ=ଶବ୍ଦ କରିବା)—୧ । ନିମନ୍ତ୍ରଣ
Ḍākarā 1. Invitation.
ডাক ୨ । ଆହ୍ୱାନ—
बुलावा, पुकार 2. Call.

ସାଧାରଣ ଲୋକେ ଅନ୍ତର ପୃଷ୍ଠାରେ ପ୍ରଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ୱଥ' ନ ମିଳିଲେ 'କ୍ୱଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍ଗୀ' ନ ପାଇଲେ 'ଆଜ୍ଞା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୩ । କଚେରି ଅଦାଲତ ହାଜର ହେବା ନିମନ୍ତେ ପକ୍ଷ ବା ସାକ୍ଷୀଆଦିଙ୍କୁ ତଲବ୍; ସମନ—Summons to a party or witness to attend a place.

ତୃତୀୟଦିନ ସନ୍ଧ୍ୟାବେଳେ ସାଆନ୍ତାଣୀଙ୍କର ଡାକରା ଆସେ ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

୪ । ମକଦମାର ତାରିଖ ଦିନ ପକ୍ଷମାନଙ୍କ ନାମ ଧରି କଚେରୀଘରର ଦୁଆରମୁହଁ ପାଖେ ଚପରାଶୀଦ୍ୱାରା 'ଅମୁକ ହାଜର୍ ହୋ' ବୋଲି ଉଚ୍ଚୈଃସ୍ୱରରେ ଆହ୍ୱାନ—4. Loud call by the court-peon to a party by name at the door of a court-house on the date of a case.

୫ । ମକ୍କେଲ ଚିକିତ୍ସାର୍ଥ ଦେଖିବା ପାଇଁ ଯିବାକୁ କିମ୍ବା କୌଣସି ମକଦମା ଚଲାଇବାକୁ ମକ୍କେଲ ତରଫରୁ ବା ପକ୍ଷଙ୍କ ତରଫରୁ ଡାକ୍ତର ବା ଓକିଲଙ୍କୁ ନିମନ୍ତ୍ରଣ—5. Professional call.

ପ୍ରାଦେ. ( ଯାଜପୁର ) ବି—ଆଶୀର୍ବାଦଘରର ପୂର୍ବଦିନ ବର ଘରୁ କନ୍ୟାକୁ ନିମନ୍ତ୍ରଣ କରିବା ପାଇଁ ପଠାଯିବା ସନ୍ଦେଶ ପାଳି— Formal invitation sent to the father's house of a girl on the eve of her coming to her husband's house for consummation.

[ ଦ୍ର—ଡାକରା ନେଇଯାଇଥିବା ଲୋକ ଝିଅର କାନ୍ଦଣା ଶୁଣି ଆସି ବର ଘରେ କହିଲେ ବର ଘରେ ଉତ୍ସବର ଆୟୋଜନ କରାଯାଏ । ]

**ଡାକରା ପଡ଼ିବା**—ଦେ. ବି—କୌଣସି ବ୍ୟକ୍ତିର ନାମୋଚ୍ଚାରଣପୂର୍ବକ
Ḍākarā par̤ḍibā ଆହ୍ୱାନ—There being a call; the
ডাক পড়া state of being called.
बुलावट होना ଦେ. କ୍ରି—ଆହୂତ ହେବା—To be called.

**ଡାକରା ହେବା**—ଦେ. କ୍ରି. ଓ ବି—ଡାକରା ପଡ଼ିବା ( ଦେଖ )
Ḍākarā hebā Ḍākarā par̤ḍibā ( See )

**ଡାକ ରିସାଲି**—ଦେ. ବି. ( ଓ. ଡାକ + ଆ. ଇର୍‌ସାଲ୍ )—ଡାକଦ୍ୱାରା
Ḍāka risāli ଟଙ୍କା ବା ଦ୍ରବ୍ୟାଦିର ପ୍ରେରଣ—
ডকেরিশালি Postal remittance.
डाकमे भेजना ଦେ. ବିଣ—ଡାକରେ ପ୍ରେରିତ (ଟଙ୍କା ଓ ଦ୍ରବ୍ୟ)—
( money or article ) Remitted by post.

**ଡାକ ରେଜି(ଜେ)ଷ୍ଟରି**—ଦେ. ବି. (ଓ. ଡାକ ଓ ଇଂ. ରେଜିଷ୍ଟ୍ରେସନ୍ )-
Ḍāka reji(je)shṭari ଚିଠି ପତ୍ରାଦି ନିରୂପିତ ସ୍ଥାନରେ
ডাক রেজিষ্ট্রি ନିଃସନ୍ଦେହ ପହଞ୍ଚିବା ପାଇଁ ପ୍ରେରକ
डाक रजिष्टरी ସାଧାରଣ ଡାକମାସୁଲ ଅପେକ୍ଷା ଅଧିକ ମାସୁଲ
ଡାକ ରେଜଷ୍ଟରି } ଅନ୍ୟରୂପ ଦେଇ ଚିଠି ପଠାଇବା ବିଷୟ
ଡାକ ରେଜେଷ୍ଟ୍ରେରି } ଡାକଘରର ପୁସ୍ତକରେ ଲିପିବଦ୍ଧ
କରାଇବାର ବିଧି—Postal registration.

ଦେ. ବିଣ—ଯେଉଁ ପତ୍ର ବା ପାକେଟ୍ ପୋଷ୍ଟଅଫିସରେ ରେଜିଷ୍ଟ୍ରି କରାଯାଇ ଥାଏ—Registered by post ( letter or packet ).

**ଡାକ ଲଫାପା(ଫା)**—ଦେ. ବି. ( ଓ.ଡାକ ଓ ଇଂ.ଲଫାଫା=ମୁଣା)—
Ḍāka laphāpā(phā) ୧ । ଯେଉଁ କାଗଜମୁଣାରେ ଚିଠି ଆଦି
ডাক লেফাফা ଭର୍ତ୍ତି କରାଯାଇ ଡାକରେ ପ୍ରେରିତ ହୁଏ—
डाक लिफाफा 1 Postal cover or envelope.
୨ । ଡାକ ଟିକଟ ମରାଯାଇଥିବା ଲଫାପା, ଯାହା ଡାକଘରେ ବିକ୍ରି କରାଯାଏ—Stamped postal envelope.

**ଡାକ ସଂକ୍ରାନ୍ତି**—ପ୍ରାଦେ. ( ମେଦିନୀପୁର; ଉତ୍ତର ବାଲେଶ୍ୱର ) ବି—
Ḍāka saṁkrānti ଗର୍ଭଣା ସଂକ୍ରାନ୍ତି—
Garbhaṇā Saṁkrānti.
[ ଦ୍ର—ବଙ୍ଗଦେଶରେ ଏ ଦିନ କ୍ଷେତରୁ ପାଣି ଆଣି ଦେହରେ ଛିଞ୍ଚି ହେଲେ ମନୁଷ୍ୟ ବର୍ଷକ ପାଇଁ ନୀରୋଗ ହୁଏ । ]

**ଡାକ ସେସ୍**—ଦେ. ବି.(ଓ. ଡାକ+ଇଂ.ସେସ୍)—ଡାକ ଦିହାତି (ଦେଖ)
Ḍaka ses Ḍāka dihāti ( See )

**ଡାକ ସାଜ**—ଦେ. ବି—ରଙ୍ଗତା; ଯେଉଁ ଚକଚକିଆ ପାତିଆ ଆଦି ପ୍ରତିମା
Ḍāka sāja ଆଦିରେ ମଡ଼ା ଯାଏ—The tinfoils or finery
ডাকের সাজ with which temporary images are
डाँक साज decorated.

**ଡାକ ହରକରା**—ଦେ .ବି (ଓ.ଡାକ + ଫା.ହରକାର୍)-ଡାକବାଲା (ଦେଖ)
Ḍāka harakarā Ḍākabālā ( See )

**ଡାକ ହାକ**—ଦେ. ବି. ( ସହଚର ଶବ୍ଦ )—
Ḍāka hāka ୧ । ପ୍ରଭୁଙ୍କ ପ୍ରଦତ୍ତ ଆଦେଶମାନଙ୍କର ପାଳନ—
ডাক হাঁক 1. Carrying out of a master's orders.
हाँक पुकार ୨ । ଆହ୍ୱାନ, ଡାକରା—2. Summons.

ପାଇକେ ପାଇକଙ୍କୁ ଡାକହାକ କରି—କୃଷ୍ଣସିଂହ, ମହାଭାରତ, ଭୀଷ୍ମ ।

୩ । ପ୍ରଭୁଙ୍କ ପ୍ରଦତ୍ତ ଆଦେଶ ସଙ୍ଗେ ସଙ୍ଗେ ପାଳନ ବା ସମ୍ବାଦ ନେବା ପାଇଁ ନିକଟରେ ଉପସ୍ଥିତ ଭୃତ୍ୟକୁ ଡାକିବା—3. The call of a master to an crderly to carry out urgent orders.

ଦେ. ବିଣ—ଡକାଡକି; ପରସ୍ପରକୁ ଡାକିବା ବ୍ୟକ୍ତି (ଗଣ)—(persons) Calling each other.

**ଡାକହାକ କରିବା**—ଦେ. କ୍ରି—୧ । ପରସ୍ପରକୁ ଉଚ୍ଚୈଃସ୍ୱରରେ
Ḍākahāka karibā ଡାକିବା—
1. To call each other aloud.
୨ । ଡାକହାକ ଶୁଣିବା ( ଦେଖ )
2. Ḍākahāka śuṇibā ( See )

**ଡାକହାକ ବଜା(ଜେ)ଇବା**—ଦେ. କ୍ରି—ଡାକହାକ ଶୁଣିବା ( ଦେଖ )
Ḍākahāka bajā(je)ibā Ḍākahāka śuṇibā ( See

| ି | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଲ୍ଭ | ର୍ଥ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ଌୄ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗିଁ୍ୟ | ଲ୍ଥ | ଞ୍ଜ | ନ୍ନ |

**ଡାକହାକ ଶୁଣିବା**—ଦେ. କ୍ରି—ପ୍ରଭୁଙ୍କର ନାନା ଜରୁରୀ ଆଦେଶକୁ ବା
Ḍākahāka śuṇibā ଆହ୍ୱାନକୁ ଶୁଣି ସଙ୍ଗେ ସଙ୍ଗେ ତଦନୁସାରେ
କାର୍ଯ୍ୟ କରିବା—To carry out a master's immediate orders to act as an orderly servant.

**ଡାକହାକ ହେବା**—ଦେ. କ୍ରି—ପରସ୍ପର ଡକାଡକି ହେବା—
Ḍākahāka hebā To call out to each other.
ডাকাডাকি হওয়া ଡାକହାକ ହୋଇ ସେ ଘରୁ ବାହାରିଲେ—
हाँकफुकार होना କୃଷ୍ଣସିଂହ. ମହାଭାରତ ଆଦି ।

**ଡାକି**—ଦେ. ବି—ଡମରୁ—A double faced slender-waisted drum.
Ḍāki
ডুগডুগী ହରିକଟି ଡାକି ବେଢା ମଧ୍ୟରେ କି କୁହାଥାଁ କରନ୍ତେ ରୂପମାନ—
डौंरु କବିସୂର୍ଯ୍ୟ. ସଙ୍ଗୀତ ।

**ଡାକି କଟି(ଟୀ)**—ଦେ. ବିଣ. ସ୍ତ୍ରୀ—କ୍ଷୀଣକଟୀ ସ୍ତ୍ରୀ—
Ḍāki kaṭi(ṭi) slender-waisted (woman).
ଘସିଲୁଁ ଡାକିକଟି ସୁନ୍ଦରୀ ଅଙ୍ଗପାଟେ—କବିସୂର୍ଯ୍ୟ. ସଙ୍ଗୀତ ।

**ଡାକିଣୀ**—ଦେ. ବି. ସ୍ତ୍ରୀ (ସଂ. ଡାକିନୀ)—ଡାକିନୀ (ଦେଖ)
Ḍākiṇi Ḍākini (See)
ডাইনী डाकिन
ଡାକେଣୀ, ଡାଙ୍କିଣୀ, ଡାଙ୍କଣୀ
ଡାଙ୍କେଣୀ, ଡାଙ୍କୁଣୀ, ଡାହାଣୀ } ଅନ୍ୟରୂପ

**ଡାକିନୀ**—ସଂ. ବି. ସ୍ତ୍ରୀ. (ଡାକ+ସ୍ତ୍ରୀ. ଈ)—୧ । କାଳୀଙ୍କ ଗଣ ବା
Ḍākini ଅନୁଚରବିଶେଷ; ପିଶାଚୀବିଶେଷ—1. A class of female attendants of Goddess Kāli.
୨ । କୁହୁକିନୀ; ମାୟାବିନୀ ସ୍ତ୍ରୀ—2. A sorceress.
୩ । ଡାଙ୍କିଣୀ; ଡାହାଣୀ—3. Witch.
ଡାକିନୀ ଲେଖନ୍ତି ବୋଲି ଡରୁଥାଇଁ ମନେ—ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

**ଡାକି ଫୁକାରି**—ଦେ. କ୍ରି. ବିଣ—ଡାକି ହାକି (ଦେଖ)
Ḍāki phukāri Ḍāki hāki (See).

**ଡାକି ବଜା(ଜେ)ଇ**—ଦେ. କ୍ରି. ବିଣ—ଡାକି ହାକି (ଦେଖ)
Ḍāki bajā(je)i Ḍāki hāki (See).

**ଡାକିବା**—ଦେ. କ୍ରି (ସଂ. ଡ=ଶବ୍ଦ କରିବା; ସଂ ହୁଙ୍କାର)—
Ḍākibā ୧ । ଆହ୍ୱାନ କରିବା—
ডাকা 1. To call.
बुलाना, पुकारना, हाँकना ଡାକିମଧ୍ୟମକୁ ଡାକି ଆଣିବାକୁ ଏଠାକୁ କାହା
ଭରସା—କବିସୂର୍ଯ୍ୟ. ଯଶୋମତିଜନ୍ମ ତ ଗୀତ
୨ । ନିମନ୍ତ୍ରଣ କରିବା—2. To invite.
୩ । ଉପସ୍ଥିତ ହେବାପାଇଁ ତଲବ କରିବା—
3. To summon; to send for.
୪ । ଉଚ୍ଚୈଃସ୍ୱରରେ ଚିତ୍କାର କରିବା—
4. To bowl; to shout.
ଡାକିଲେ ଦାନ ପଡ଼ଇ ଅବଜ୍ଞା କୋହ୍ନ ଯେ—ପ୍ରାଚୀ. ନଳଚରିତ ।
୫ । ବୋବାଇବା; ରବ କରିବା; କଣ୍ଠରେ ସ୍ୱର କରିବା—
5. To utter a sound.
ଡାକନ୍ତେ ମୟୂର ଭଳ ଲକ୍ଷ୍ମି ଦର୍ଦ୍ଦୁର ବୃନ୍ଦ ଚେତା କଲ ହୋଇ ଥର ଥର ହେ ।
ଭଞ୍ଜ. ପ୍ରେମସୁଧାନିଧି ।
[ଦ୍ର—ଭିନ୍ନ ଭିନ୍ନ ଜାତୀୟ ପ୍ରାଣୀ ଭିନ୍ନ ଭିନ୍ନ ପ୍ରକାରରେ ଡାକନ୍ତି । ଯଥା—ଷାଣ୍ଢ ଦୁମୁରିବା, ଗୋରୁ ହମ୍ବାଳିବା, କୁକୁର ଓ ବିଲୁଆ ଭୁକିବା; ମେଣ୍ଢା ଓ ଛେଳି ମେଁ ମେଁ ହେବା, ବିରାଡ଼ି ମ୍ୟାଉଁ ମ୍ୟାଉଁ ହେବା; ବାଘ ହୁଙ୍କାଳିବା ।]
୬ । ସମ୍ବୋଧନ କରିବା—6. To hail; to accost
୭ । ଅନୁଗ୍ରହ ବା କୃପାପ୍ରାର୍ଥୀ ହୋଇ ଦେବତା ଆଦିଙ୍କ ନାମ ନେବା ବା ପ୍ରାର୍ଥନା କରିବା ବା ସ୍ମରଣ କରିବା—
7. To invoke (a Deity or God) for help or favour.
୮ । ସ୍ପଷ୍ଟରୂପେ କହିବା—8. To speak out.
୯ । (ବିଲ) ଶୁଖି କରି ଫାଟିବା—
9. To crack, being dried of all moisture (said of a field).
୧୦ । କୌଣସି ବ୍ୟକ୍ତିର ନାମ ଉଚ୍ଚାରଣ ପୂର୍ବକ ଉଚ୍ଚୈଃସ୍ୱରରେ କହିବା—10. To call out a person's name.
୧୧ । କୌଣସି ବ୍ୟକ୍ତିର ନାମ ଧରି ତାକୁ ପାଖକୁ ଆସିବାକୁ ଉଚ୍ଚୈଃସ୍ୱରରେ କହିବା—11. To call a person to come near by uttering his name.
୧୨ । ଉଚ୍ଚ ଶବ୍ଦ ଉତ୍ପନ୍ନ କରିବା—
12 To produce a loud sound.
(ଯଥା—ବାଉଁଶ ଉପରେ ଖୁବ ବୋଝ ଲଦି ଦେବାରୁ ବାଉଁଶ କଡ଼ କଡ଼ ଡାକୁଛି ।)
୧୩ । ଗର୍ଜନ କରିବା—13. To roar.
(ଯଥା—କାଲିଠାରୁ ମେଘ ଭାରି ଡାକୁଛି ।)
୧୪ । (ଲକ୍ଷଣାର୍ଥ) ନିର୍ଦ୍ଦେଶ କରିବା; ଉଲ୍ଲେଖ କରିବା—
13. ((figurative) (a book; the scriptures) To say; to lay down.
(ଯଥା—ମଦ ଖାଇଲେ ପ୍ରାୟଶ୍ଚିତ୍ତ କରିବାକୁ ହୁଏ ବୋଲି ଆମ ଶାସ୍ତ୍ର ଡାକୁଛି ।)
[ଦ୍ର—ଡାକିବା କ୍ରିୟାର ଅସମାପିକା ରୂପ ସଙ୍ଗେ ଆଣିବା, ଦେବା, ନେବା, ପକା(କୋ)ଇବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ଡାକିବା କ୍ରିୟାର ସମାପିକାରୂପ ସଙ୍ଗେ ହାକିବାର ସମାପିକା ରୂପ ଯୁକ୍ତ ହୁଏ ଓ ଅସମାପିକାରୂପ ସଙ୍ଗେ ଫୁକାରିବା, ବଜାଇବା, ହାକିବା କ୍ରିୟାର ଅସମାପିକାରୂପ ଯୁକ୍ତ ହୁଏ ।]

**ଡାକି ମଧ୍ୟମା**—ଦେ. ବିଣ. ସ୍ତ୍ରୀ—ଯେଉଁ ସ୍ତ୍ରୀର କଟି ଡାକି ବା ଡମରୁର
Ḍāki madhyamā ମଧ୍ୟ ପରି ସରୁ; ଡମରୁମଧ୍ୟା—
(ଡାକିମଧ୍ୟା—ଅନ୍ୟରୂପ) Slender-waisted (woman).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଅଙ୍କିତ ଅକ୍ଷର ଓ ମାତ୍ରା ଏବଂ ୨ ଅଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଅଙ୍କିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ରୂପରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଡାକନ୍ଧମାଙ୍କୁ ଡାକ ଅର୍ଣବାକୁ ଏଠାକୁ କାହା ଭରସା—
କବିସୂର୍ଯ୍ୟ. କଣୋଇଚକ୍ଷୁ. ଉ.ଗୀତ ।

**ଡାକିଲା**— ଦେ. ବିଣ—ଡାକ ଦେଉଥିବା; ଗର୍ଜୁଥିବା—
Ḍākilā Sounding.
ଡାକା ଡାକର ନେସ ବରଷେ ନାହିଁ—ପ୍ରବଚନ ।
( ଡାକିବା—ଅନ୍ୟରୂପ )

**ଡାକିଲେ ଓ କରିବା**— ଦେ. କ୍ରି—୧ । ( ନାମୋଚ୍ଚାରଣପୂର୍ବକ ଆହୂତ
Ḍākile o karibā ବ୍ୟକ୍ତି ) ଜବାବ ଦେବା—
ଡାକଲେ ଶୁନା 1. To respond to a call.
( ଡାକିଲେ ଶୁଣିବା—ଅନ୍ୟରୂପ ) ୨ । ( ଲକ୍ଷଣାର୍ଥ ) ସଙ୍ଗେ ସଙ୍ଗେ ଅଭୀପ୍ସିତ ଫଳ ପ୍ରଦାନ କରିବା—
2. ( figurative ) To grant or produce the wished for result immediately.
( ଯଥା—ଆମ ବାଲୁଙ୍କେଶ୍ୱର କବିରାଜଙ୍କ ଔଷଧ ଡାକିଲେ ଓ କରେ । )

**ଡାକି ହାକି**— ଦେ. କ୍ରି. ବିଣ—ପ୍ରକାଶ୍ୟଭାବରେ—
Ḍāki hāki Openly.
ଡେକେହେଁକେ ବାଘେ ଡାକହାକ ଧର୍ମିଁ କରବ—ଚନ୍ଦ୍ରକାଅପର୍ଣା ଗୀତ ।
**हाँक पुकारकर**

**ଡାକୁ**— ଦେ. ବି. ( ସଂ. ଡ=ଶବ୍ଦ. ସଂ. ହୁଂକାର; ସଂ. ଦସ୍ୟୁ )—
Ḍāku ୧ । ଡକାଇତ—Dacoit; robber.
୨ । ପ୍ରବଞ୍ଚକ ବ୍ୟକ୍ତି; ଠକ—2. A swindler.
ଡାକାତ ୩ । ଡକାଇତି—3 Dacoity; robbery.
**डाकू** ବିଣ—୧ । ବିଖ୍ୟାତ—1. Famous; notorious.
( ଯଥା—ଡାକୁ ନା ଭାଇ ଡାକୁ । )
୨ । ପ୍ରବଞ୍ଚକ—2. Swindling.

**ଡାକୁଆ**— ଦେ. ବି. ପୁଂ—୧ । (ଡାକ ଦେବା ଲୋକ) ଦଣ୍ଡ ଅସୀ ବା
Ḍākuā ଚଉକିଆ—1. Watchman.
ଡାକେଇ } ସ୍ତ୍ରୀ
ଡାକୋଇ } ୨ । ଯେ ଚିତ୍କାର କରେ— 2. A shouter.
୩ । ଯେ ଡାକିବାକୁ ଯାଏ; ଆହ୍ୱାନବାହକ ବ୍ୟକ୍ତି—
3. A caller; a messenger.
ବାଇ ସିବା ବୋଇଛ ଶମନ କଳାଇ
ଡାକୁଆକୁ ବୋଇଲେ ହେ ଦେଇଯାଉ କହି—କୃଷ୍ଣସିଂ ହ. ମହାଭାରତ ଉଦ୍ୟୋଗ ।
ଦେ. ବିଣ.—୧ । ବିଖ୍ୟାତ—1. Famous.
୨ । ଚିତ୍କାରକାରୀ—2. Shouting.

**ଡାକୁଣୀ**— ଦେ. ବି ସ୍ତ୍ରୀ. (ସଂ. ଡାକିନୀ)—ଡାଙ୍କେଣୀ (ଦେଖ)
Ḍākuṇī Ḍāṅkeṇī (See)
(ଡାକିଣୀ, ଡାକେଣୀ, ଡାଙ୍କୁଣୀ, ଡାଙ୍କେଣୀ—ଅନ୍ୟରୂପ)
ଶୁଣ ସ୍ୱର୍ଗବେଶ୍ୟା ମାୟା ଶ୍ମଶାନ ଡାକୁଣୀ ।
ଚନ୍ତାମଣି, ଚକ୍ରମାଦତ୍ୟ ।

**ଡାକେଣୀ**— ଦେ. ବି. ସ୍ତ୍ରୀ.—(ସଂ. ଡାକିନୀ)—ଡାଙ୍କେଣୀ (ଦେଖ)
Ḍākeṇī Ḍāṅkeṇī (See)

**ଡାକେ ବାଟ**— ଦେ. ବି.—୧ । ଏକ ଲୁହାଟ ବାଟ; ଜଣକର ଉଚ୍ଚ
Ḍāke bāṭa ଡାକ ଯେତେଦୂରକୁ ଶୁଭେ ସେହି ଦୂରତ୍ୱର ପଥ—
ଏକଡାକ ପଥ 2 A call's distance.
୨ । ପ୍ରାୟ ଏକ କ୍ୱାର୍ଟର ମାଇଲ—2. A distance of about one quarter of a mile.
୩ । ଡାକବୁହା ଘୋଡ଼ା ବା ମନୁଷ୍ୟମାନେ ଏକ ଦମ୍ଭା ବା ଗତିରେ ଯେତେ ବାଟ ଯିବେ; ମଞ୍ଜିଲ; ପ୍ରାୟ ୧୦ ମାଇଲ୍ ବାଟ—3. 10 miles; the distance travelled by one relay of post-horses or dak-bearers at one stretch; stage.
[ଦ୍ର—ଏହିପରି ୨ ଡାକ ବାଟ, ୩ ଡାକ ବାଟ ଇତ୍ୟାଦି ପ୍ରୟୋଗ ହୁଏ ।]

**ଡାକେଶ୍ୱରୀ**— ଦେ. ବି ସ୍ତ୍ରୀ.—ଯୋଗିନୀବିଶେଷ—One of the
Ḍākeswarī attendants of Kālī, worshipped as a
ଡାକେଶ୍ୱରୀ village-Deity.

**ଡାକୋର**— ଦେ. ବି. (ନାମ) (ସଂ. ଠକ୍କୁର; ଭୁଲ. ହି. ଡାକୋର ଓ
Ḍākora ଗୁଜରାଟୀ ଏହି ଅର୍ଥରେ ଏହି ଶବ୍ଦ)—ଗୁଜରାଟର ସହର
ଡାକୋର ବିଶେଷ—Name of a city in Gujerat.
**डाकोर** [ଦ୍ର—ଏହା ବରୋଦାଠାରୁ ୪୧ ମାଇଲ ଦୂର । ଏଠାରେ ଦ୍ୱାରକା ନାଥ ଡାକୋରଜୀଙ୍କ ମନ୍ଦିର ଅଛି । ଏହା ହିନ୍ଦୁମାନଙ୍କର ଏକ ପବିତ୍ର ସ୍ଥାନ ; ମଦନ ମୋହନ ତୀର୍ଥ ଦର୍ଶନ । ]

**ଡାକ୍ତର୍ (ଇତ୍ୟାଦି)**— ପ୍ରାଦେ. (ଗଞ୍ଜାମ) ବି.—(ଭୁଲ. ତେ. ଡାକ୍ଟାରୁ)—
Ḍāktār (etc) ଡାକ୍ତର ଇତ୍ୟାଦି (ଦେଖ)—
Ḍāktara etc. (See)

**ଡାକ୍ତର**— ବୈଦେ. ବି. (ଇଂ. ଡକ୍ଟର୍)—୧ । ପାଶ୍ଚାତ୍ୟ ପ୍ରଣାଳୀରେ
Ḍāktara ଚିକିତ୍ସା କରିବା ଚିକିତ୍ସକ—
ଡାକ୍ତାର 1. Doctor· allopath.
**डाक्टर, डाक्तर** [ଦ୍ର—ପଶୁଚିକିତ୍ସକମାନଙ୍କୁ ପଶୁ ଡାକ୍ତର ,ସ୍ତ୍ରୀ
ଡାକ୍ତରାଣୀ } —ସ୍ତ୍ରୀ. ଚିକିତ୍ସକମାନଙ୍କୁ ଲେଡ଼ୀ ଡାକ୍ତର ଓ
ଡାକ୍ତରଆଣୀ } ଡାକ୍ତର ବ୍ୟବସାୟ କରୁଥିବା ଦେଶିଲୋକମାନଙ୍କୁ ନେଟିଭ୍ ଡାକ୍ତର ବୋଲାଯାଏ ।]
୨ । କୌଣସି ବିଦ୍ୟାରେ ( ଯଥା; ଆଇନ୍ ଚିକିତ୍ସାଶାସ୍ତ୍ର, ଦର୍ଶନ, ସାହିତ୍ୟ, ଖ୍ରୀଷ୍ଟାନ୍‌ଙ୍କ ଧର୍ମଶାସ୍ତ୍ରରେ ପାରଦର୍ଶିତା ଲାଭ କରିଥିବାର ନିଦର୍ଶନସ୍ୱରୂପ ବିଶ୍ୱବିଦ୍ୟାଳୟରୁ ଉଚ୍ଚତମ ଉପାଧି ଲାଭ କରିଥିବା ବ୍ୟକ୍ତି—2. Doctor, a person who has got the title of Doctor in law, medicine, theology, divinity etc from a university.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଲ | ଊ | ଋ ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଘ | ଜ | ଞ,ଷ | କ୍ଷ | ଇପ୍ସ | ଦ୍ଧ୍ୟ | ଢ |
| ୨ | ଈ | ଊ | ରୁ | ଲୁ | ପ୍ସେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ୍ୱ | ଗଁ୍ୟ | ଇଥ | ଞ୍ଜ | ନ୍ |

ଡାକ୍ତର ଖାନା—ବୈଦେ. ବି. (ଇଂ ଡକ୍ଟର+ଫା. ଖାନା=ସ୍ଥାନ, ଗୃହ)
Ḍāktara khānā ୧ । ପାଶ୍ଚାତ୍ୟ ଚିକିତ୍ସା ପ୍ରଣାଳୀରେ ଚିକିତ୍ସା କରିବା ଡାক্তারখানা ଯିବାର ଆଳୟ; ଚିକିତ୍ସାଳୟ; ହାସପାତାଲ—
**अस्पताल, दवाघर** 1. Hospital.
୨ । ଯେଉଁଠାରେ ରୋଗୀମାନଙ୍କୁ ଔଷଧ ବିତରଣ ବା ବିକ୍ରି କରାଯାଏ; ଔଷଧାଳୟ—2. Dispensary.

ଡାକ୍ତର ସାହେବ୍—ବୈଦେ. ବି. (ଫା)—୧ । ପାଶ୍ଚାତ୍ୟ ପ୍ରଣାଳୀରେ
Ḍāktara sāheba ଚିକିତ୍ସକ ଇଉରୋପୀୟ ବ୍ୟକ୍ତି—
ডাক্তার সাহেব 1. A European doctor.
**डाक्टर साहेब** ୨ । ଜିଲ୍ଲାର ପ୍ରଧାନ ସରକାରୀ ଡାକ୍ତର; ସିଭିଲ୍ ସର୍ଜନ୍—
2. The Civil Surgeon of a district.

ଡାକ୍ତରି—ଦେ. ବି. (ଇଂ. ଡକ୍ଟର+ଓଡ଼ିଆ ପ୍ରତ୍ୟୟ ଇ)—
Ḍāktari ୧ । ପାଶ୍ଚାତ୍ୟ ଚିକିତ୍ସା ପ୍ରଣାଳୀ—
ডাক্তারী 1. The western system of medical
**डाक्टरी** treatment; allopathy.
୨ । ପାଶ୍ଚାତ୍ୟ ଚିକିତ୍ସା ବିଜ୍ଞାନ—
2. The western medical science.
୩ । ଡାକ୍ତର ବ୍ୟବସାୟ—
3. The profession of a doctor.
ବିଣ—୧ । ପାଶ୍ଚାତ୍ୟ ଚିକିତ୍ସା ସମ୍ବନ୍ଧୀୟ—1. Relating to the western medical science: allopathic.

ଡାକ୍ତରି ଔଷଧ—ଦେ. ବି—ପାଶ୍ଚାତ୍ୟ ବିଜ୍ଞାନାନୁମୋଦିତ ଔଷଧ—
Ḍāktari aushadha Allopathic medicine.
ডাক্তারী ঔষুধ **डाक्टरी दवा**
[ଡାକ୍ତରି ଓଷଦ(ଧ)—ଅନ୍ୟରୂପ]

ଡାଗର—ପ୍ରାଦେ. (ମେଦିନୀପୁର) ବିଣ. ପୁଂ ଓ ସ୍ତ୍ରୀ. (ମୂଳ ବଂ. ଡାଗର;
Ḍāgara ସଂ. ଦୀର୍ଘ)—୧ ବଡ଼—1. Big; great.
୨ । ଢେଙ୍ଗା—2. Tall.

ଡାଗରା—ଦେ. ବି—ଢଙ୍ଗା; ବଡ଼ ଉକୁଣୀ—
Ḍāgarā A large louse.
ডাগর **ढूँ**

ଡାଗରିଜ—ବୈଦେ. ବି—୧ ରଫୁ; ଚିରିଯାଇଥିବା ଲୁଗାର ସିଲେଇ ବା
Ḍāgarāji ମରାମତି—1. Repair of a torne cloth by
রিফু sewing; darning.
**रफु** ୨ । କୋଠାଆଦିର ଅଂଶତଃ ଭଗ୍ନଅଂଶର ମରାମତି—
2 Petty repair works; petty repairs.

ଡାଙ୍କଣା—ଦେ. ବି. ପୁଂ. (ସଂ. ଡଙ୍କର=ଦୁଷ୍ଟ; ଶଠ; ହି ଶବ୍ଦସାଗର)
Ḍāṅkaṇā (ଗାଳିରେ ବ୍ୟବହୃତ)—ଦୁଷ୍ଟ ଓ ଖଳ ବ୍ୟକ୍ତି—
ডেগরা Wicked person.
**डुंगर**
(ଡାଙ୍କେଣୀ—ସ୍ତ୍ରୀ)

ଡାଙ୍କି(ଙ୍କୁ)(ଙ୍କେ)ଣୀ—ଦେ. ବି. ସ୍ତ୍ରୀ. (ସଂ. ଡାକିନୀ)—ଡାକିନୀ; କାଳୀଙ୍କ
Ḍāṅki(ṅku) (ṅke)ṇī ଗଣଭୁକ୍ତା ଅପଦେବତା; ଯୋଗିନୀ—
ডাইন 1. The female attendants of
**डंकिनी, डाकिन** Goddess Kālī.
ଡାକି(କୁ)(କେ)ଣୀ } ଅନ୍ୟରୂପ ୨ । ଡାହାଣୀ—
ଡକୁଣୀ } 2. Witch; sorceress.
୩ । (ଗାଳିରେ ବ୍ୟବହୃତ) ଦୁଷ୍ଟା ସ୍ତ୍ରୀ—
3. Wicked woman.
୪ । ଝାଡ଼ାବାନ୍ତି ରୋଗ—4. Cholera.
(ଯଥା—ଡାହାଣୀ ଚଳେ ଜୋଡ଼ ଦେଖ ।)

ଡାଙ୍କେଣୀଖିଆ—ଦେ. ବିଣ ପୁଂ. (ଅଭିଶାପରେ ବ୍ୟବହୃତ)—
Ḍāṅkeṇī-khiā ଯାହାକୁ ପିଶାଚୀ ଖାଇବ—
(ଡାଙ୍କେଣୀଖାଇ—ସ୍ତ୍ରୀ) (term of cursing) (a person) To be devoured by a witch.

ଡାଙ୍କେଣୀ ବାଡ଼ି—ଦେ. ବି. (ଗାଳିରେ ବ୍ୟବହୃତ)—ହଇଜା—
Ḍāṅkeṇī bāṛdi Cholera.

ଡାଙ୍ଗ୍—ପ୍ରାଦେ. (ଲଢ଼ଆ) ବି—ଅଲଗୁଣି—
Ḍāṅg Clothes-horse.

ଡାଙ୍ଗ—ଦେ. ବି. (ସଂ· ଦଣ୍ଡ)—୧ । କାଠି—1. Twig.
Ḍāṅga ୨ । ବେତ୍ରାଦି ସରୁ ପ୍ରହରଣାସ୍ତ୍ର; ବାଡ଼ି—
ডাঙ্গ 2. Stick; staff.
**डाँग** ୩ । ସରୁ ଛୋଟ ବାଡ଼ି; ପାଞ୍ଚଣ—
3. A slender stick; peg.
ପିଲାହିନେ ଇଷୀକା ଡାଙ୍ଗଟିଏ ନେଇ
ଶୂଳ ହେଲ ତହିଁ ଝିଙ୍କି କାଢ଼ିଏ ମୁହିଁ । କୃଷ୍ଣଙ୍କ ଦ୍ୱ, ମହାଭାରତ ଆଦ ।
ডাঁঠা ୪ । ସରୁ ଓ ଲମ୍ବ ପତ୍ରଶୂନ୍ୟ ବୃକ୍ଷକାଣ୍ଡ—
**डंठल** 4. Leafless long slender stem of a tree.
ଦେ. ବିଣ—ଅସ୍ଥିକଙ୍କାଳସାର (ବ୍ୟକ୍ତି)—
**डांगर** (a person) Reduced to skeleton.

ଡାଙ୍ଗ ଡୁଙ୍ଗା—ଦେ. ବି. (ସହଚର; ନିରର୍ଥକ ଶେଷ ଶବ୍ଦ)—
Ḍāṅga duṅgā ଛୋଟ ଛୋଟ କାଠି; କାଠିକୁଟା—
Small twigs or bits of wood.

ଡାଙ୍ଗର—ଦେ. ବିଣ. (ସଂ· ଦୀର୍ଘ)—୧ । ଢେଙ୍ଗା—
Ḍāṅgara 1. Tall (person).
ডাগর ୨ । ଢେଙ୍ଗା ଓ ସ୍ଥୂଳ ଦେହ—
**लम्बा** 2. Tall and stout.

ଡାଙ୍ଗରା—ଦେ. ବିଣ—ପତ୍ର ଓ ଅଗ୍ରଭାଗ କାଣ୍ଡବିଶିଷ୍ଟ—
Ḍāṅgarā Consisting of leafless twigs.
ବି—ଡାଳି—A tray.
ପ୍ରାଦେ. ( ବସ୍ତର ) ବି—ଫୁଟି କାକୁଡ଼ି—
A sort of cucumber.

ସାଧାରଣ ଶେଷରେ ଅପର ପୃଷ୍ଠାରେ ଦତ୍ତ ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚକ୍ରର ବିପରୀତ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'ଢ଼ିଅ' ନ ମିଳିଲେ 'କ୍ରିଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅଙ୍କା'ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବର' ନ ପାଇଲେ 'ଅଲ୍‌ବର' ଦେଖିବେ

**ଡାଙ୍ଗରାଜ ତୈଳ**—ଦେ. ବ—ଔଷଧ ବୃକ୍ଷାଦିର ଶୁଷ୍କ ଡାଙ୍ଗ ବା କାଣ୍ଡ ଓ
Ḍāngarāja taila ମଞ୍ଜଙ୍ଗରୁ ପ୍ରସ୍ତୁତ ଏକ ପ୍ରକାର ତୈଳ—
A medicinal oil prepared from dry sticks of certain plants.
ଗ୍ରା. (ଅଶ୍ଳୀଳ) ବ.—ଶୁକ୍ର; ବୀର୍ଯ୍ୟ—Semen.

**ଡାଙ୍ଗା**—ଦେ. ବ—ଡାଙ୍ଗ ( ଦେଖ )
Ḍāngā Ḍānga ( See )

**ଡାଙ୍ଗା ତୈଳ**—ଦେ. ବ— ଡାଙ୍ଗରାଜ ତୈଳ ( ଦେଖ )
Ḍāngā taila Ḍāngarāja taila ( See )

**ଡାଙ୍ଗି**—ଦେ. ବ—ଡାଙ୍ଗ ( ଦେଖ )
Ḍāngi Ḍānga ( See )

**ଡାଙ୍ଗିଆ**—ଦେ. ବ—୧ । ଘରର ରୁଅ କିବା ଘରକାନ୍ଥର ବାଉଁଶ
Ḍāngiā ବାଡ଼ରେ କାମୁଡ଼ା ଉଡ଼ିବା ପାଇଁ ଯେଉଁ କଟକଟ ବା
ଡାଙ୍ଗୀ ଦଉଡ଼ା ବ୍ୟବହୃତ ହୁଏ ସେହି ଦଉଡ଼ାକୁ
ମୋଡ଼ିବା ନିମନ୍ତେ ବ୍ୟବହୃତ ବାଉଁଶର ଛୋଟ ଡାଙ୍ଗ—
1. A short stick used to twist the cross-bamboos to stick to the rafter of a thatch or of a bamboo wall.
୨ । ନାହା, ବୋଇତ ଆଦି ଓଟାରିବା ଦଉଡ଼ିର ଅଗରେ ଲାଗିଥିବା କାଠି; ଟାଣିବାବାଲା ଯାହାକୁ କାଖରେ ଧରି ଟାଣନ୍ତି—2. Short stick attached to the end of a towing rope for being handled by the coolies while pulling boats.
୩ । ଗୋବର୍ ଡହେଳକୁ ବସାଇବା ନିମନ୍ତେ ଯେଉଁ ଡାଙ୍ଗ ବା କାଠି ବ୍ୟବହୃତ ହୁଏ—3. The upper cross-like arm of a bird-perch.
୪ । ତନ୍ତ ସଲଗ୍ନ ଛୋଟ କାଠ—4. Small stick attached to a fly-shuttle loom.
[ ଦ୍ର—ଏହାଦ୍ୱାରା ବୁଣା ହେଉଥିବା ଲୁଗାର ଧଡ଼ିରେ ଲୁମ୍ ବା ଛକ ବୁଣାଯାଏ ।]
୫ । ଡାଙ୍ଗ ( ଦେଖ )—5. Ḍānga ( See )
ପ୍ରାଦେ. (ଗଡ଼ଜାତ) ବ—ଯେ ଖଣ୍ଡା ବା କଟାରିରେ ବଳି (ପଶୁ) କୁ ହାଣେ—One who kills the sacrificial beast by means of a weapon.

**ଡାଙ୍ଗିରି**—ଦେ. ବ—ଡାହାଙ୍ଗିରି ( ଦେଖ )
Ḍāngiri Ḍāhāngiri ( See )

**ଡାଙ୍ଗୁ**—ପ୍ରାଦେ. (ସମ୍ବଲପୁର) ବଣ. ପୁଂ—ଡେଙ୍ଗା—
Ḍāngu Tall ( man ).

**ଡାଙ୍ଗୁଆ**—ପ୍ରାଦେ. (ବାଲେଶ୍ୱର) ବ—ଏକାକୀ—
Ḍānguā Alone.
ତେବେ ତ ସବୁ ଡାଙ୍ଗୁଆ ମଣିଷ,ବର କନ୍ୟାଙ୍କୁ ବନ୍ଦେଇ ନେଉଛ କିଏ ?
ଫକୀରମୋହନ, ଗଳ୍ପସ୍ୱଳ୍ପ ।
ପ୍ରାଦେ. (ମୟୂରଭଞ୍ଜ, ବାଲେଶ୍ୱର) ବ—୧ । ଅବିବାହିତ ପୁରୁଷ—
1. Bachelor.
୨ । ଯାହାର ସ୍ତ୍ରୀ ମରିଯାଇ ଥାଏ—2. Widower.
ପ୍ରାଦେ. ( ସୋନପୁର ) ବ — ମାଳଙ୍କ ପରି ଶୂଦ୍ର ଜାତୀୟ ଠାକୁରାଣୀଙ୍କ ସେବକବିଶେଷ—A caste of Śūdra Sebaks of a village-Goddess.
[ ଦ୍ର—ଅଶ୍ୱିନ ପୂଜା ସମୟରେ ଦେଖା ଏହିମାନଙ୍କ ମଧ୍ୟରୁ କୌଣସି ବ୍ୟକ୍ତିଠାରେ ଭରା ହୁଅନ୍ତି । ]

**ଡାଙ୍ଗୁଆ ମାଙ୍ଗୁଆ**—ଦେ. ବ. (ବାଲେଶ୍ୱର) ବ. (ସହଚର ଶବ୍ଦ)—
Ḍānguā mānguā ୧ । ଅବିବାହିତ ବ୍ୟକ୍ତି—
1. Bachelor.
ଦୁଇ ସବୁ ଦିନେ ଡାଙ୍ଗୁଆ ମାଙ୍ଗୁଆ ହୋଇ ରହିଥିବୁ ।
ଫକୀରମୋହନ, ଗଳ୍ପସ୍ୱଳ୍ପ ।
୨ । ଏକାକୀ—2. Lonely; solitary; single.

**ଡାଡ଼**—ଦେ. ବ—ପୈଶାଚିକ ଭାଷା ( ଦେଖ )
Ḍārda Paiśāchika bhāshā ( See )

**ଡା ଡା**—ଦେ. ଅ—ଗୀତ ବୋଲିବା ପୂର୍ବରୁ ଉଚ୍ଚାରିତ ସ୍ୱରବନ୍ଧ—
Ḍā ḍā Recitation of a musical air by the singer before begining to sing a song.
[ଦ୍ର—ବୋଲାଯିବା ଗୀତର ଅକ୍ଷର ଓ ଯତିକୁ ମିଳାଇ ପ୍ରଥମେ ଡା, ଡାରେ ଆଦି ବୋଲି ତା ପରେ ଗାୟକ ଗୀତ ବୋଲିବାକୁ ଆରମ୍ଭ କରନ୍ତି । ]

**ଡାଡିର୍ ଡାରା**—ଦେ. ବ—ଡାଡିର୍ ଡାର୍ ଡାର୍ ଡାର୍ (ଦେଖ)
Ḍādir ḍārā Ḍādir ḍārā ḍārā ḍārā (See).

**ଡାଡିର(ରି)ଡାର୍ ଡାର୍ ଡାର୍**—ଦେ. ବ—ସୀତାର ବଜାଇବାର ଭଙ୍ଗୀ ବିଶେଷ
Ḍādir(ri) ḍārā ḍārā darā (ରେକଟ)—An air of guitar.

**ଡାଣ୍ଡା**—ପ୍ରାଦେ (ସମ୍ବଲପୁର) ବ (ସଂ. ଦଣ୍ଡ, ଭୁଲ; ହି ଡାଁଡ଼ା—ଯଷ୍ଟି,
Ḍāṇḍā ଦଣ୍ଡ)—ଆଖୁ—Sugarcane.
(ଡାଁଡ଼ା—ଅନ୍ୟରୂପ)

**ଡାଣ୍ଡା ପନା**—ପ୍ରାଦେ ( ସମ୍ବଲପୁର ) ବ ( ସଂ. ଦଣ୍ଡ+ପ୍ରପାନକ )—
Ḍāṇḍā panā ଆଖୁ ଦୋରୁଅ—
The juice of sugarcane.

**ଡାଣ୍ଡୀ**—ପ୍ରାଦେ (ସମ୍ବଲପୁର) ବ—ମେହେନ୍ତରାଣୀ—
Ḍāṇḍi A sweeper woman.
(ଡାଁଡ଼ୀ—ଅନ୍ୟରୂପ)

**ଡାଫଣ**—ଗ୍ରା. ବ—ଡାମ୍ଫଣ (ଦେଖ)
Ḍāphaṇa Ḍāmphaṇa (See).

**ଡାଫନ୍**—ପ୍ରାଦେ (ସମ୍ବଲପୁର) ବ—ଡାମ୍ଫଣ (ଦେଖ)
Ḍāphan Ḍāmphaṇa (See).

**ଡାଫର୍**—ଦେ. ବ ( ଇଂ. ବଫର୍ )—ଅନ୍ୟ ଜାହାଜ ବା ଅନ୍ୟ କିଛି
Ḍāpharā ଦୃଢ଼ ବସ୍ତୁ ସହିତ ଧକ୍କା ବାଜିଲେ ଧକ୍କାର ବେଗ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ଼ | ଉଅ | ଋ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ଁୟ | ଇଅ | ଓ | ନ |

କମ୍ କରିବା ପାଇଁ ଜାହାଜ ବା ବୋଟ କଡ଼ରେ ଝୁଲୁଥିବା ଦଉଡ଼ିର ମୁଗୁଲା—
Buffer ( attached to the side of a boat or ship to deaden the violence of a collision).

ଡାବ—ଦେ. ବି—୧ । ଡାବଲ; ଛୋଟ ବାଡ଼ି—
Ḍāba 1. Small stick.
ଡାଙ୍ଗ ୨ । ଏକପ୍ରକାର ଯାଉ—
डांग 2. A kind of gruel.
୩ । ଔଷଧର ବ୍ୟବସ୍ଥାପତ୍ର—
नुसखा 3. Medical prescription, recipe.
୪ । ତାଲିକା—4. List.

କେତେଜଣ ବନ୍ଧ୍ୟା ଦେବୀଙ୍କ ବରରୁ ପୁତ୍ରଲାଭ କରିଅଛନ୍ତି ସେଥିର ବିଶେଷ ଡାବ ଦେଇ ପାରିବୁ ନାହିଁ—ଫକୀରମୋହନ. ଛମାଣଆଠଗୁଣ୍ଠ ।

୫ । (ସଂ. ଡମ୍ବର) ଆଡ଼ମ୍ବର—5. Ado.
ବିଣ—ସୁନ୍ଦର—Graceful
ପ୍ରାଦେ ( ବାଲେଶ୍ୱର ) ବି (ଭୁଲ. ବ. ଓ ହି. ଏହି ଅର୍ଥରେ ଏ ହି. ଶବ୍ଦ )—ପଇଡ଼; ନାଲି ନଡ଼ିଆ—
A raw cocoanut (with thin kernel and full of sweet drinkable water ).

ଡାବ ଖଣ୍ଡା—ଦେ. ବି—ଦୁଇଆଡ଼େ ଦାଢ଼ ଥିବା ଖଣ୍ଡା—
Ḍāba khaṇḍā Double-edged sword.

ଡାବ ଛଣ—ପ୍ରାଦେ (ଗଡ଼ଜାତ) ବି (ସଂ. ଦାବ=ଅରଣ୍ୟ)—
Ḍāba chhaṇa ଜଙ୍ଗଲରେ ହେବା ଏକପ୍ରକାର ତୃଣ—
A kind of thatching grass growing wild.
[ ଦ୍ର—ଏହାକୁ କାଟି ଆଣି ଗରିବ ଲୋକେ ଏଥିରେ ଘର ଛୁଆଁନ୍ତି କରନ୍ତି । ]

ଡାବ ପୁଆ—ଦେ. ବି—ଡାବଲ ପୁଆ (ଦେଖ)
Ḍāba puā Ḍābala puā (See).

ଡାବର (ଇତ୍ୟାଦି)—ଡାବଲ ଇତ୍ୟାଦି (ଦେଖ)
Ḍābara (etc) Ḍābala etc (See).

ଡାବରା (ଇତ୍ୟାଦି)—ଡାମରା (ଇତ୍ୟାଦି) (ଦେଖ)
Ḍābarā (etc) Ḍāmarā (etc) (See).

ଡାବଲ—ଦେ ବି—୧ । କ୍ଷୁଦ୍ର ବାଡ଼ି—
Ḍābala 1. Small stick.
(ଡାବଲା—ଅନ୍ୟରୂପ) ୨ । ଡାବଲପୁଆ ଖେଳରେ ବ୍ୟବହୃତ
ଡାଂଗ ଛୋଟ ବାଡ଼ି—2 A small stick used in
डांग Ḍabala-puā game.

ଡାବଲ ପୁଆ—ଦେ. ବି—ଗୁଡି ଡାଣ୍ଡୁ ଖେଳ; ଗୁଲି ଡାଙ୍ଗ ଖେଳ;
Ḍābala puā ଗୋରୁ ଜଗୁଆଳ ଓ ଅନ୍ୟ ପିଲାମାନେ ଖଣ୍ଡେ ବାଡ଼ି ଡାଂଗଗୁଲୀ; গুলিডাংডা (ଡାବଲ) ଓ ଖଣ୍ଡେ ଛୋଟ କାଠିଦ୍ୱାରା ଖେଳିବା
गुल्लीडंडा ଖେଳ—A game played by urchins and cowherd boys with a stick and a small peg.

ଡାବଲ ହାତିଆ—ପ୍ରାଦେ. ( କେନ୍ଦ୍ରାପଡ଼ା; ଯାଜପୁର ) ବିଣ—
Ḍābala hātiā ଡାବଲା ହାତି ( ଦେଖ)
(ଡାବଲା ହାତିଆ—ଅନ୍ୟରୂପ) Ḍābalā hāti ( See )

ଡାବଲା ହାତି—ପ୍ରାଦେ. ( କେନ୍ଦ୍ରାପଡ଼ା ଓ ଯାଜପୁର ) ବିଣ ( ସଂ.
Ḍābala hāti ଦାନଶୀଳ ହସ୍ତ )—୧ । ଅତିରିକ୍ତ ଦାନଶୀଳ—
(ଡାବଲା ହାତିଆ—ଅନ୍ୟରୂପ) 1 Unduly liberal.

ମୁଁ ତ ହେଲି ଵିଧ ପୁରୁଷ, ତୁ ତ ହେଲୁ ଡବଲା ହାତ
ବର୍ଷକେ ଗୋଟାଏ ଗୁଆ ସଇଲା, ଘର କରିବା କହ କମିତ—ଢଗ ।

ଡାବା—ପ୍ରାଦେ. ( ଗଞ୍ଜାମ ) ବି—କିରାସିନ୍ ଆଦିର ବଡ଼ ଟିଣି—
Ḍābā A tin of kerosine oil; canister.
( ଡାବି—ଅନ୍ୟରୂପ )

ଡାବିବା—ପ୍ରାଦେ. ( ସମ୍ବଲପୁର ) କ୍ରି—୧ । ଢାଙ୍କିବା—
Ḍābibā 1 To cover; to envelop.
୨ । ଢାଙ୍କୁଣିରେ ଘୋଡ଼ାଇବା—
2. To cover with a lid.

ଡାବୁ—ପ୍ରାଦେ. ( ଗଞ୍ଜାମ ଓ କଟକ ସଦର ) ବି ( ତେଲୁଗୁ ଶବ୍ଦ )—
Ḍābu ୧ । ଧନ; ଅର୍ଥ—1. Money.
(ଡାବୁ—ଅନ୍ୟରୂପ) ୨ । ନଗଦ ପଇସା—2. Cash.
୩ । ( ଗଞ୍ଜାମ ) ପଇସା—3. Pice.
୪ । ( ଗଞ୍ଜାମ ) ଚାରି ପାହୁଲା—4. Four pies.

ଡାବୁ ଖଡ଼—ପ୍ରାଦେ. ( ବସ୍ତର ) ବି—ତଣ୍ଡା ( ଦେଖ )
Ḍābu khaṛd Tanḍā ( See ).

ଡାମ୍—ବୈଦେ. ବି. ( ଇଂ )—ଡେମ୍ ସୁଅର ( ଦେଖ )
Ḍām Ḍem suar ( See )

ଡାମର—ପ୍ରାଦେ. ( ସମ୍ବଲପୁର ) ବି. ( ଭୁଲ. ଏହି ଅର୍ଥରେ ହି. ଏହି
Ḍāmar ଶବ୍ଦ )—ଆଲକାତରା; ଗୁଳ—Coal tar.

ଡାମର—ସଂ. ବି—ତନ୍ତ୍ର ଗ୍ରନ୍ଥବିଶେଷ—
Ḍāmara One of the works on Tantra.
[ ଦ୍ର—ଏହା ଶିବକଥିତ ଶାସ୍ତ୍ର । ଏଥିର ଛଅ ଭାଗ ଅଛି—ଯୋଗ ଡାମର, ଶିବ ଡାମର, ଦୁର୍ଗା ଡାମର, ସାରସ୍ୱତ ଡାମର, ବ୍ରହ୍ମ ଡାମର ଓ ଗନ୍ଧର୍ବ ଡାମର । ଉଡ୍ଡୀଶ, ଡାମର ଆଦି ତନ୍ତ୍ରରେ ମୋହନ, ବଶୀକରଣ, ଉଚ୍ଚାଟନ, ମାରଣ ଆଦି ଅଭିଚାର ମନ୍ତ୍ର ଓ ପ୍ରୟୋଗ ଆଦି ଲେଖା ଅଛି । ]
ଦେ. ବିଣ—ଉଦ୍ଧତ; ଅବାଧ୍ୟ—Impertinent.

ଡାମରା—ପ୍ରାଦେ. ( ଗଡ଼ଜାତ ) ବି—ଶବର ଶବରୁଣୀମାନେ ଜଙ୍ଗଲରୁ
Ḍāmarā କାଟିବା କାଳ କାଠକୁ ଲଇରେ ବଡ଼ା ବାନ୍ଧି ସାରିବା

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଅଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। 'ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଣ୍ଟା ନ ପାଇଲେ 'ଅଣ୍ଟା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍‌' ଦେଖିବେ।

( ଡାମେର୍‌—ଅନ୍ୟରୂପ ) ପରେ ଭିଡ଼ି ବନ୍ଧାକୁ ମଜବୁତ କରିବା ପାଇଁ ପଛଆଡ଼ୁ ତା ମଝିରେ ଗେଞ୍ଜିବା ଖଣ୍ଡିଏ ଲମ୍ବା କାଠ—A long wedge of wood thrust into a bundle of faggots after the fuel is cut and tied into a bundle ( to make the bundle tight and ready for being carried on the head ).

[ ଦ୍ର—ଯେପରି ବଢ଼ିଶା ମୁଠା ବାନ୍ଧ ସାରି ତା ପଛଆଡ଼ୁ ଖଣ୍ଡେ ଚେଞ୍ଚଣା ବା ଖିଲ ପୂରାଇ କାଢ଼ିଥା ଯାଏ, ସେହିପରି ଏହା କାଠବନ୍ଧାରେ ଦିଆଯାଏ, ମାତ୍ର ଡାମର୍‌ ବଢ଼ିଶାର ଖିଲଠାରୁ ବଡ଼। ]

ଦେ. ବି—ଡାମର୍‌ କୁଆ ( ଦେଖ )

Ḍāmarā kuā ( See )

**ଡାମର୍‌ କାଉ**—ଗ୍ରା ବି—ଡାମର୍‌ କୁଆ ( ଦେଖ )

Ḍāmarā kāu Ḍāmarā kuā ( See )

ଡାମର କାଉ ରେ ଡାମର କାଉ
ସବୁ ଚିହ୍ନ କହୁ କି ଯଶ ପାଉ—ଶିଶୁଗୀତ।

**ଡାମର୍‌ କୁଆ**—ଦେ. ବି. ( ସଂ. ଦ୍ରୋଣ କାକ )—ବଡ଼ କୁଆ—

Ḍāmarā kuā A raven; a large crow; the carrion crow.

ডাঁড কাক

**डोम कौआ** [ ଦ୍ର—ଏମାନେ ସାଧାରଣ କୁଆ ଅପେକ୍ଷା ବଡ଼ ଓ ଘାଢ଼ କୃଷ୍ଣ ବର୍ଣ୍ଣ ଦେଖାଯାନ୍ତି। ]

**ଡାମେଜ୍‌**—ବୈଦେ. ବି. ( ଇଂ. )—କ୍ଷତିପୂରଣ; ଖେସର୍‌—

Ḍāmej Damage.

ବିଣ. (ଇଂ. ଡାମେଜଡ୍‌)—ଯେଉଁ ଦ୍ରବ୍ୟ ନଷ୍ଟ ହୋଇ ଯାଇଥାଏ— Damaged.

**ଡାମ୍ଫଣ**—ଦେ. ବି—ମୋଟ ଲୁଗା, ବସ୍ତା ଓ ଚମଡ଼ା ଆଦି ସିଲାଇ କରିବାର ବଡ଼ ଛୁଞ୍ଚି; ଫୋଡ଼ଣୀ—Packing needle, big needle for sewing coarse stuff (e. g. gunny); awl.

Ḍāmphaṇa

গুণছঁচ

**सुतार; सुआ**

( ଡାଫଣ—ଅନ୍ୟରୂପ )

**ଡାମ୍ଫଣିଆଁ**—ଦେ. ବି. ( ସଂ. ଦର୍ଭ )—ଧାନ କିଆରୀରେ ହେବା ଏକ ପ୍ରକାର ଲମ୍ବ ଓ ଚୂଳିଆଁ ଘାସ—A kind of grass growing in the paddy field.

Ḍāmphaṇiāṅ

[ ଦ୍ର—ଏହା ଅଶ୍ୱିନ ମାସରେ ବିଲରେ ଉଠେ। ଏହାର ଗୋଟିଏ ମାତ୍ର ଚାଳୁଆଁ କାଣ୍ଡ; ଏହା ଏକ ଫୁଟ ବଢ଼େ, ଅଗ ମୁନିଆଁ।]

**ଡାମ୍ଫରା**—ଦେ. ବି. ( ନାଉରି ଭାଷା )—ଦୁଇଟି ଡଙ୍ଗା ପରସ୍ପରକୁ ଆଘାତ କରିବା—(nautical term) The jamming or collision of two boats.

Ḍāmpharā

**ଡାମ୍ବର**—ଦେ. ବି. ( ସଂ. ଡମ୍ବର=ଆଡ଼ମ୍ବର; ବିଳାସ )—ଶୋଭା—

Ḍāmbara Beauty; grace.

ଛନ୍ଦାଳସ୍ୟ କଳନ ଡାମ୍ବର
କୋଟି କୋଟି ଚନ୍ଦ୍ର ଲହରୀ ଗୁମର—ପ୍ରାଚୀ, ରହସ୍ୟମଞ୍ଜରୀ।

**ଡାର୍‌ୱିନ୍‌**—ବୈଦେ. ବି. ( ଇଂ. ନାମ )—ଦାର୍‌ୱିନ୍‌ ( ଦେଖ )

Ḍār-win Dār-win ( See )

( ଡାରଉଇନ୍‌; ଡାରୁଇନ୍‌—ଅନ୍ୟରୂପ )

**ଡାରେ ଡାରେ**—ଦେ. ଅ—ଡା ଡା ( ଦେଖ )

Ḍāre Ḍāre Ḍā ḍā ( See )

(ଡାରୁ ଡାରୁ—ଅନ୍ୟରୂପ)

**ଡାଲ୍‌ନା**—ଦେ. ବି. ( ବଙ୍ଗଳାରୁ ଅନୁକୃତ )—୧। ଶିଲ୍ଲା—

Ḍālnā 1. A kind of soupless-curry.

ডালনা ୨। ଡାଲିରେ ତରକାରୀ ପରିବା ପକାଇ ଯେଉଁ ବ୍ୟଞ୍ଜନ ପ୍ରସ୍ତୁତ ହୁଏ—2. A curry prepared by boiling pulse and vegetables together.

( ଡାଲ୍ନା—ଅନ୍ୟରୂପ )

**ଡାଲ୍‌ପୁରୀ**—ଦେ. ବି—ବୁଟଡାଲିର ପୂର ଦିଆଯାଇ ଥିବା ପୁରୀପିଠା—

Ḍālpuri A kind of sandwich.

দালপুরী **डालपूरी**

**ଡାଲ୍‌ବୁଟ୍‌**—ଦେ. ବି—ରଗଡ଼ା ଓ ଗ୍ରେପା ଛଡ଼ା ହୋଇ ବଳୁଗ୍ ହୋଇ ସାମାନ୍ୟ ଭଜା ହୋଇଥିବା ବୁଟ—

Ḍālbuṭ

দালবুঁট Gram fried after being split.

**डालबुँट**

**ଡାଲ**—ଦେ. ବି. (ସଂ. ଦଳ; ଦଳକ; ଦାରୁ)—୧। ବୃକ୍ଷଶାଖା—

Ḍāḷa 1. Bough; branch (of a tree).

ডাল্‌ ୨। (ଲକ୍ଷଣାର୍ଥ) ଋଣ ଦିଆଯାଇଥିବା ମୂଳଧନ ଉପରେ ହିସାବ ହେବା ସୁଧ—2. (figurative) Interest accruing on capital.

**डहना; टहनी; डाल**

୩। (ଲକ୍ଷଣାର୍ଥ) ସନ୍ତାନ ସନ୍ତତି—

3. (figurative) Offspring.

**ଡାଲ ଖାଇ**—ପ୍ରାଦେ. (ସମ୍ବଲପୁର) ବି—ନୀଚ ଜାତୀୟ ସ୍ତ୍ରୀମାନେ ଅଶ୍ଳୀଳ ଓ ଆଦିରସଯୁକ୍ତ ଗୀତ ବୋଲି କରିବା ଏକପ୍ରକାର ନାଚ—A kind of dance by low caste women.

Ḍāḷa khāi

(ଡାଲଖାଇ ନାଚ—ଅନ୍ୟରୂପ)

[ ଦ୍ର—ଏଥି ସଙ୍ଗେ ଢାଢ଼ବାଜା ଓ ଯୁଦ୍ଧବାଦ୍ୟ ମଧ୍ୟ ବାଜୁଥାଏ ଓ ଯୁବତୀ ସ୍ତ୍ରୀମାନେ ଦାଣ୍ଡରେ ଗୀତ ବୋଲି ନାଚୁଥାଆନ୍ତି। ]

**ଡାଲ ଚିନି**—ଦେ. ବି. (ସଂ. ଦାରୁଚିନି)—ଗୁଡ଼ତ୍ୱକ; ବୃକ୍ଷବିଶେଷର ସୁମିଷ୍ଟ ସୁବାସ ବଳ୍କଳ—Cinnamon; Cinnamonum Zeylanicum; Cinnamoni Bartex.

Ḍāḷa chini

ଡାଲଚିଣି
ଡାଲଚେନି } ଅନ୍ୟରୂପ
ଡାଲଚେଣି

ସଂ. ତ୍ୱକ୍‌ପତ୍ର; ବାରଙ୍ଗ; ଭୃଙ୍ଗ; ଗ୍ରୈଚ; ଉତ୍କଟଚ୍ଛଦ; ଗୁଡ଼ତ୍ୱକ; ଦାରୁଚିନି; ଦାରୁସିତା

ডালচিনি; গুড়ত্বক্‌;

[ ଦ୍ର—ଏ ବୃକ୍ଷର ପତ୍ର ମୋଟା ଓ ପତ୍ରର ପିଠି ଚିକ୍କଣ। ଏହା ଦକ୍ଷିଣ ଭାରତରେ ଜନ୍ମେ। ତେଜପତ୍ରର ଗଛ ଦେଖିବାକୁ ଡାଲଚିନିର ଗଛ ପରି। କେହି କେହି ତେଜପତ୍ର ଗଛର ବକଳକୁ ଡାଲଚିନି ବୋଲି ଭ୍ରମ କରନ୍ତି।

| ୧ | ଳ | ଉ | ର,ହ୍ର | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇପୃ | ଉ୍ଥ | ଛ |
|---|---|---|---|---|---|---|---|---|---|---|---|---|---|---|
| ୨ | ଝ | ଉ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଂ୍ୟ | ଇଥ | ଡ଼ | ଳ |

ଦାରୁଚିନି — ବୈଦ୍ୟକ ଅନୁସାରେ ଏହା କଫ, ବାୟୁ,
**ଦାରଚିନି,** — କଣ୍ଡୁ, ଆମଦୋଷ, ଅରୁଚି, ହୃଦ୍ରୋଗ,
**କଲମୀ ଦାରୁଚିନି** — ବସ୍ତିରୋଗ, ବାତଜନିତ ଅର୍ଶ, କୃମି, ପୀନସ
ମ. ଦାଲଚିନୀ — ଓ ଶୁକ୍ରରୋଗ ନାଶକ । ଏହା ମୁଖଶୋଷ
ଗୁ. ତଜ — ଓ ତୃଷ୍ଣା ନିବାରକ । ଡାଲଚିନିକୁ ଘୋରି
ତେ. ସନ୍ନଲଙ୍ଗ; — କପାଳରେ ଲଗାଇଲେ ମୁଣ୍ଡବିନ୍ଧା ଭଲ ହୁଏ ।
ଡାଲଚିନୀ — ଡାଲଚିନି ତୈଳ ମଧ୍ୟ ଔଷଧରେ ଲାଗେ । ଏହା
ଭା. କାରୁଖା; କରୁ — ପାନ ଓ ତରକାରୀର ମସଲାରୂପେ
ଫା. ଦାର୍ଚିନି — ବ୍ୟବହୃତ ହୁଏ । ]
ଆ. ସାଲିଖା

**ଡାଲଭଙ୍ଗା କୋଶ**—ଦେ. ବି—ଡାଲ ଖଣ୍ଡେ ଭାଙ୍ଗି ହାତରେ ନେଇ
Ḍāla-bhangā kosa — ଯେତେଦୂର ପଥ ଗଲା ପରେ ତାହା ଝାଉଁଳି
ডালভাঙ্গাকোশ — ପଡ଼େ ସେତିକି ଦୂରତା; ପ୍ରାୟ ୩ମାଇଲ — A distance of about 3 miles rougly determined by the withering of a fresh branch which a traveller carries during the journey.

**ଡାଲ ଭୂତ**—ଦେ. ବି—ଦୋଲଆଦି ଯାତ୍ରା ସମୟରେ ବାଳକମାନେ
Ḍāla bhūta — ଦେହରେ ଡାଳ ଓ ପତ୍ର ଗୁଡ଼ାଇ ଯେଉଁ ଭୂତ ଆକୃତି ଧରି ନାଚନ୍ତି—A mask consisting of leaves and branches tied round the body of the dancer.

**ଡାଲମା**—ଦେ. ବି—ମୁଗ ବା ହରଡ଼ ଡାଲି ସଙ୍ଗେ ପରିବା ପକାଇ
Ḍālamā — କରାଯିବା ତରକାରୀ; ଡାଲନା—A sort of curry prepared by boiling vegetables with pulse.

**ଡାଲ ମାକୁଡ଼ୀ**—ଦେ. ବି. ସ୍ତ୍ରୀ—୧ । ଏକ ଡାଲରୁ ଅନ୍ୟ ଡାଲକୁ
Ḍāla mākurdi — ମାକଡ଼ଙ୍କ ପରି ଡେଇଁ ଖେଳିବା ପିଲାମାନଙ୍କ ଏକପ୍ରକାର ଖେଳ—1. A game
ଡାଲମାକଡ଼ୀ, ଡାଲମାଙ୍କଡ଼ୀ, ଡାଲମାଙ୍କୁଡ଼ୀ } ଅନ୍ୟରୂପ — played by boys by jumping from bough to bough like monkeys.
**ଚିଲହବାଡ଼ା**

୨ । ଏକଡାଲରୁ ଅନ୍ୟ ଡାଲକୁ ଡେଇଁବା ମାକଡ଼; ଶାଖାମୃଗ—2. Monkey.

୩ । ପିଲାମାନେ ଦେହରେ ଡାଲପତର ଗୁଡ଼େଇ ହୋଇ ନାଚିବା ଖେଳ; ଡାଲଭୂତ—3. A dance performed by boys putting a cloak of leaves and branches round the body.

ପ୍ରାଦେ. (ଗଡ଼ଜାତ)—ମେଘ ବର୍ଷା ନ ହେଲେ ଗୋଟିଏ ପିଲାର ସର୍ବାଙ୍ଗକୁ ଜାମୁଡାଲରେ ଗୁଡ଼ାଇ ତା ମୁଣ୍ଡରେ ଗୋଟିଏ ବେଙ୍ଗ ରଖି ବାଜା ବଜାଇ ଗାଁରେ ବୁଲାଇବା ସ୍ଥିତି—A boy covered over with branches of black-berry tree and going round the village, carrying a frog on the head, to invite rain in seasons of draught.

[ ଦ୍ର—ସେହି ପିଲାର ମୁଣ୍ଡ ଉପରେ ଇନ୍ଦ୍ରରାଜାଙ୍କ ନାମ କରି ସମସ୍ତେ ହଳଦି ପାଣି ଢାଳନ୍ତି । ଏହାପରି କଲେ ଗଡ଼ଜାତଆ ସାଧାରଣ ଲୋକେ ବିଶ୍ୱାସ କରନ୍ତି ଯେ ଶୀଘ୍ର ଇନ୍ଦ୍ର ବର୍ଷା କରିବେ ! ସେହି ସଜ୍ଜିତ ବାଳକକୁ ଡାଲମାକୁଡ଼ୀ କୁହାଯାଏ । ]

**ଡାଲ ମେଲିବା**—ଦେ. କି—୧ । (ବୃକ୍ଷାଦି) ବହୁତ୍ୱରକୁ ଶାଖା ବିସ୍ତାର
Ḍāla melibā — କରିବା—1. To send forth or spread
ডাল মেলান — out branches (said of trees).
**डाल फैलाना** — ୨ । (ଲକ୍ଷଣାର୍ଥ) ବହୁ ସନ୍ତାନ ସନ୍ତତି ଜନ୍ମ କରିବା—
[ଡାଲ ମେଲା(ଲେ)ଇବା—ଅନ୍ୟରୂପ] 2. (figurative) To bring forth a bevy of offsprings.

୩ । ପୁଅ, ଝିଅ, ନାତି, ଅଣନାତିଙ୍କ ଦ୍ୱାରା ନିଜର ବଂଶ ବୃଦ୍ଧି କରିବା—3 To multiply (in progeny)
(ଯଥା—ଅଣି ବର୍ଷର ବୁଢ଼ୀ ଡାଲ ମେଲି କରି ବସିଛି ।)

୪ । ନାନାଆଡ଼େ ନାନା ସମ୍ପର୍କ ଲଗାଇବା—
4 To spread out one's connection to various branches or points.

**ଡାଲ ରତ୍ନ**—ଦେ. ବି. (ବୃକ୍ଷ ଶାଖାର ଭୂଷଣ; literally that which
Ḍāla ratna — is an ornament to the branches)—
କୋଇଲି—The cuckoo

ବିଣ—ଯେ (ଯେଉଁ ପକ୍ଷୀ) ବୃକ୍ଷ ଡାଲରେ ବସି ସୁସ୍ୱରରେ ଗାନ କରିବାଦ୍ୱାରା ଉକ୍ତ ଡାଲର ରତ୍ନ ସ୍ୱରୂପ ହୁଏ, ଅର୍ଥାତ୍ ଡାଲକୁ ମଣ୍ଡିଦିଏ—(a bird) Adorning the branch of a tree when he perches on it and pours forth melodious tunes.

କୋଇଲି ଲୋ । ଡାକିଲେ ଭଷେ ଯେତେକେ ଶାସି,
ଡାଲରତ୍ନ ଶୁଅ ପ୍ରାୟେ ଭଷୁଥାଉ ହରି ଲୋ କୋଇଲି ।
ମାରକଣ୍ଡ ଦାସ. କେଶବ କୋଇଲି ।

**ଡାଲ ସିଙ୍ଗ**—ପ୍ରାଦେ. (ଗଡ଼ଜାତ) ବି.—ବନ୍ୟ ବୃକ୍ଷବିଶେଷ—
Ḍāla singa — Name of a wild tree (Haines).
(ଭୁମାର ଚକଣି—ଅନ୍ୟନାମ)

**ଡାଲା**—ଦେ. ବି. (ସଂ. ଡଲ୍ଲକ = ବଂଶାଦି ନିର୍ମିତ ପାତ୍ର)—
Ḍālā — ୧ । ବଡ଼ ଗୁଞ୍ଜୁଡ଼ି; ଡାଟ—1. A large tray of wicker work.
ডালা
**डाल, डलिया** — ୨ । ଭୋଗ ସାମଗ୍ରୀ ଓ ଫୁଲଆଦି ରଖିବା ପାଇଁ ବ୍ୟବହୃତ ବାଉଁଶ ନିର୍ମିତ ଅଗଭୀର ପାତ୍ର—
2. A shallaw tray for keeping flowers and offerings.

ସାଧାରଣ ଲୋକେ ଅପର ଦୃଷ୍ଟାରେ ବ୍ୟବହୃତ ୧ ଚକ୍ଷୁ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷୁ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷୁ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପର ବଦଳରେ ୨ ବା ୧ ଚକ୍ଷୁ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'କ୍ଷ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ।

ଡାଳୀ ଡାଲି ୩ । ( ଡାଲିମାନଙ୍କରେ ଏମାନ ପଠା ଯାଉଥିବାରୁ ) ସିଧା; ସୁଷ୍ଠୁ; ବନ୍ଧୁବାନ୍ଧବ, ବାନ୍ଧବବନ୍ଧୁଜନ, ଅଭ୍ୟାଗତ, ଭଦ୍ରଲୋକ ଓ ଭୋଟଦାତାମାନଙ୍କ ନିକଟକୁ ଆଦର, ସମ୍ମାନ, ଅନୁଗ୍ରହ ଓ ଇଲେକ୍ସନ୍ ଭୋଟ୍‌ରେ ଆକର୍ଷଣାର୍ଥ ବଶିଷ୍ଟ ପର୍ବଆଦି ଉପଲକ୍ଷରେ ପଠାଯିବା ଖାଦ୍ୟସାମଗ୍ରୀପରିପୂର୍ଣ୍ଣ ଉପଢୌକନ ବା ଭେଟି—3. Dalee; present of fruits etc sent to relatives, friends, officials and voters on special or festive occasions or before elections.

୪ । ବାକ୍ସ ବା ପେଡ଼ି ଆଦିର ଢାଙ୍କୁଣୀ—
4. The cover of a box or basket.

୫ । ବାକ୍ସ, ଟେବଲ୍ ଓ ଅଲମାରି ଆଦିର ଦରାଜ—
5. The drawyer of a box, table or almira.

ଡାଳି—ଦେ. ବି. (ସଂ. ଦଳ; ଓ. ଡାଳଶବ୍ଦରୁ କ୍ଷୁଦ୍ରାର୍ଥେ ଇ)—
Ḍāḷi ୧ । ଛୋଟ ଡାଳ—1. Small branch.
ଡଁଟା, ଡାଳାପାଳ — ଘୋରଣା ପ୍ରାୟେ ପଞ୍ଚ ଡାଳି ।
ଡାଳ, ଟହନୀ — ରୂପକ. ପ୍ରେମପଞ୍ଚାମୃତ ।

୨ । ଶାଖା ବା ଡାଳ ଆକୃତିରେ କରାଯିବା ଚିତ୍ର—
2. Painting or picture drawn in the shape of branches.

୩ । ସବାରି ଓ ଗାଡ଼ିର ଆଗ ପାଖରେ ଲଣ୍ଠନ ଖଞ୍ଜିବା ନିମନ୍ତେ ଏବଂ କାନ୍ଥରେ ଦେବାଲ୍‌ଗିରି ଖଞ୍ଜିବା ନିମନ୍ତେ ବୃକ୍ଷଶାଖାକୃତି ଯେଉଁ ବକ୍ର ଧାତୁମୟ ଶଳାକା ଲାଗିଥାଏ—
3. A metal bracket attached to a carriage, palki or wall to put lanterns on it; bracket-like pegs.

୪ । ତରାଜୁର ଦଣ୍ଡୀର ପ୍ରତ୍ୟେକ ଅର୍ଦ୍ଧ—4. The half portion of a weighing yard on each side of the pivot or central hole.

୫ । ନିଆଁ ଜଳୁଥିବା ହାମ୍ଡ଼ୀ—5. An earthen pot with fire burning in it; fire-pan.

୬ । ଜଳନ୍ତା ନିଆଁ—7. Burning fire.

୭ । ଏକପ୍ରକାର ପାରିଧ ବା ଶିକାର ପ୍ରଣାଳୀ; ଡାଳ ପାରିଧ; ଡାଳ ବେଣ୍ଟ (ଏଥିରେ ଶିକାରୀମାନେ ମୁଣ୍ଡ ଉପରେ ଜଳନ୍ତାନିଆଁର ହାମ୍ଡ଼ି ରଖି ବଣରେ ବୁଲନ୍ତି ଓ ଅଗ୍ନିଶିଖାକୁ ଦେଖି ମୃଗମାନେ ପାଖକୁ ଧାଇଁ ଆସିଲେ ତାଙ୍କୁ ବନ୍ଧୁକ ବା ଧନୁ ମାରନ୍ତି)—7. A kind of hunting (in which a burning fire-pan is carried over the head, when wild animals (deer) are attracted by the moving light and are shot down when they come near).

ଜଳେ କି ଡାହୁଁ ଜ୍ୱଳନ କାମ ଡାଳ ବହୁ
ଅଶ୍ୱଥିଲ ଉପମାକୁ ସେ ବାମା ଲଭଇ । ଉପେ. ଲାବଣ୍ୟବତୀ ।

ଡାଲି—ଦେ. ବି. (ସଂ. ଦଲ; ଦଳିତ; ଦାଲ; ଦାଲୀ=ଶମୀଧାନ୍ୟ)—
Ḍāli ୧ । ଭଗଡ଼ା ହୁଗ ଆଦି ଶସ୍ୟ—1. Split pease.
ଡାଲ୍, ଡାଇଲ; ଦାଇଲ, ଡାଲି; ଡାଲ [ ଦ୍ର—ଭଗଡ଼ା ହୋଇଥିବା ଶସ୍ୟର ନାମ ପରେ ଏହି ପଦ ବସେ । ଯଥା—ମୁଗଡାଲି, ହରଡାଲି, ବିରଡ଼ଡାଲି, ଖେସାରିଡାଲି ଇତ୍ୟାଦି । ]

୨ । ଭଗଡ଼ା ଓ ଖୋସାଛଡ଼ା ମୁଗଆଦିର ଝୋଳ; ଡାଲି ଝୋଳ; ଦାଲମା—2. Soup made of split pease.

ଡାଲୀ ଡାଲି ୩ । ଡାଲି; ବନ୍ଧୁଅଦିଙ୍କ ନିକଟକୁ ପ୍ରେରିତ ଖାଦ୍ୟସାମଗ୍ରୀ ସମ୍ବଳିତ ଉପଢୌକନ—3. Present of fruits and victuals sent to friends in a tray; dalee.

ଦେଇଅଛନ୍ତି ଡାଲି ଭରି ମେବା ନାନା । ରାଧାନାଥ. ଦରବାର ।

ପ୍ରାଦେ. (ସମ୍ବଲପୁର) ବି—ଶସ୍ୟାଦି ରଖିବା ପାଇଁ ବେତ ବା ବାଉଁଶ ପାତିଆର ବଡ଼ ଟୋକେଇ—
Big wicker-baskets for storing grain.

ପ୍ରାଦେ. (ଗଡ଼ଜାତ) ବି—ଶବରମାନେ ରଜା ବା ରାଜକର୍ମଚାରୀଙ୍କୁ ଯେଉଁ ପରିବା ଆଦି ଭେଟି ଦିଅନ୍ତି; ଭେଟି—
Vegetables and fruits presented to the Raja or officials by Sabaras or people living in jungles.

ଡାଳିଆ—ଦେ. ବି. (ସଂ. ଦଲ ବା ଦାରୁ)—୧ । ଛୋଟ ଡାଳ—
Ḍāḷiā 1 Small branch.
ଡାଳପାଳା; ଟହନୀ ୨ । ପତ୍ରହୀନ ସରୁଡାଳମାନ—2. Small boughs or branches when shorn of leaves.

ପ୍ରାଦେ. ( ବାଲେଶ୍ୱର ) ବି—ମାଟିତିଆରି କ୍ଷୁଦ୍ର କଳସି; ଗଡ଼ୁ—
Small earthen water jug.

ଡାଲିଆ—ଦେ. ବି—ବେତ ବାଉଁଶ ଆଦିରେ ବୁଣା ଛୋଟ ଡାଲି—
Ḍāliā Small trays of wicker work.
ପ୍ରାଦେ. ( ସମ୍ବଲପୁର ) ବି—ଢମା ( ଦେଖ )
Dhamā ( See )

ଡାଳି ଉ(ଓ)ରା—ପ୍ରାଦେ. ( ଗଞ୍ଜାମ, ଗଡ଼ଜାତ ) ବି—ପାଞ୍ଚଖେଣିଆ ବା ସାତଖେଣିଆ ଘରର ସର୍ବ ନିମ୍ନ ଉରା ଉପରେ (ତାଳିକ ଉରା—ଅନ୍ୟରୂପ) ଯେଉଁ ଉରାମାନ ଥାଏ—The lesser cross-beams in a five-plated or seven-plated thatched house.
Ḍāḷi u(o)rā

ଡାଳ କାଠ—ଦେ. ବି. ( ସଂ. ଦଲ+କାଷ୍ଠ )—ଯେଉଁ କାଠ ସରୁଆ ଓ ସଳଖ; ଯେଉଁ ଡାଳରେ ଗଣ୍ଠି ନ ଥାଏ—
Ḍāḷi kāṭha; ଟହନା Long slender pieces of wood which consist of branches having no warts or joints on them.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଛ | ଊ | ଋ,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ଟ | ଊ,ଥ | ଘ |
| ୨ | ଛ଼ | ଊଂ | ରୂ | ଲୁ | ଯୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଝ | ନ୍ |

ଡାଳ କୁଆ—ଦେ. ବି—ସାଧାରଣ ଗ୍ରାମ୍ୟ କାକ—
Ḍāḷi kuā Ordinary crow; the house-crow.
କାଗ **कौआ**
( ଡାଳ କାଉ—ଅନ୍ୟରୂପ )

ଡାଲକ୍ଷ କୋଲି—ପ୍ରାଦେ. ( ଗଡ଼ଜାତ; ନୂଆଗଡ଼, ଦଶପଲ୍ଲା, ଖଣ୍ଡପଡ଼ା )
Ḍaḷiksha koḷi ବି—ପିଜୁଳି—Guava.
( ଡାଲକ୍ଷ୍ୟ କୋଲି—ଅନ୍ୟରୂପ )

ଡାଳ ପଣସ—ଦେ. ବି—ଏକ ଜାତୀୟ ପଣସ ( ଏହା ସାଧାରଣତଃ
Ḍāḷi panasa ଗଛର ଗଣ୍ଡିରେ ନ ଫଳି ଡାଳରେ ଫଳେ )—
A kind of jack-fruit which is borne on the branches of the tree ( instead of on the trunk ).
[ ଦ୍ର—ଏହା ଅନ୍ୟ ଜାତୀୟ ପଣସ ଅପେକ୍ଷା ଉତ୍କୃଷ୍ଟ ଓ ସୁସ୍ୱାଦୁ ।]

ଡାଳ ପାରିଧି—ପ୍ରାଦେ. ( ଗଡ଼ଜାତ ) ବି—ଏକପ୍ରକାର ମୃଗୟା;
Ḍāḷi pāridhi ରାତିରେ ଶିକାରୀମାନେ ମୁଣ୍ଡରେ ଡାଳ ବା ଜଳନ୍ତା
ଡାଳ ଟୋକାଇ } ଅନ୍ୟରୂପ ନିଆଁର ଉମେଇ ନେଇ ବନରେ ବୁଲି
ଡାଳ ବେଣ୍ଟ } ପାଖକୁ ଆସିବା ମୃଗମାନଙ୍କୁ ଶିକାର କରିବା
ରୀତି—A kind of hunting in which animals are attracted by a burning fire-pan carried by an attendant on the head and are killed by the hunter when they come near.

[ ଦ୍ର—ଡାଳପାରିଧିରେ ଶିକାରୀର ଅନୁଚର ମୁଣ୍ଡ ଉପରେ ଗୋଟିଏ ଜଳନ୍ତା ନିଆଁର ଉମେଇ ରଖି ସେ ଉମେଇ ପଛରେ ଗୋଟିଏ ଚଉଁରୀଚଳ ଭାଙ୍ଗି ବାନ୍ଧି ଆପଣା ଅଣ୍ଟାରେ ଘଣ୍ଟି ଘାଗୁଡ଼ି ବାନ୍ଧି ଅନ୍ଧାର ରାତିରେ ଜଙ୍ଗଲରେ ନାଚି ନାଚି ଦ୍ରୁତଗତିରେ ଚାଲୁଥାଏ ଓ ତା ପଛରେ ଶିକାରୀ ବନ୍ଧୁକ ବା କାଣ୍ଡ ଧରି ଚାଲୁଥାଏ । ବନ୍ୟଜନ୍ତୁମାନେ ସେହି ଗତିଶୀଳ ଆଲୋକ ଓ ଘଣ୍ଟି ଘାଗୁଡ଼ିର ଶବ୍ଦଦ୍ୱାରା ଆକୃଷ୍ଟ ହୋଇ ନିକଟକୁ ଆସିଲେ ତା ପଛରେ ଥିବା ଶିକାରୀ ସେମାନଙ୍କୁ ବାଣ ବା ବନ୍ଧୁକ ମାରେ । ବର୍ତ୍ତମାନ ବୈଦ୍ୟୁତିକ ମଶାଲ ( ଇଲେକ୍‌ଟ୍ରିକ୍ ଟର୍ଚ୍ଚ୍ ଲାଇଟ୍ ) ଦ୍ୱାରା ମୃଗମାନଙ୍କୁ ନିକଟକୁ ଆକୃଷ୍ଟ କରି ଡାଳପାରିଧି କରା ଯାଉଅଛି । ]

ଡାଳ ପୋହ(ହେ)(ହୋ)ଲା—ଦେ. ବି. ( ସଂ. ଦଲ ଓ ପ୍ରବାଲ )—
Ḍāḷi poha(he) ho)ḷā ୧ । ମାଳାରେ ଗୁନ୍ଥା ଯିବା ଲମ୍ବ-
लंबा पला ଲମ୍ବ ଗଡ଼ରେ କଟା ହୋଇଥିବା ପ୍ରବାଳଖଣ୍ଡ;
**लम्बा मुंगा** ବୃକ୍ଷବତ୍ ପ୍ରବାଳର ଡାଳ ବା ଶାଖାରୁ କଟା ହୋଇଥିବା ଲମ୍ବ ଲମ୍ବ ଖଣ୍ଡମାନ—1. Long pieces of coral used for stringing into necklaces.
[ ଦ୍ର—ପ୍ରବାଳ ଏକପ୍ରକାର ସାମୁଦ୍ରିକ ଜୀବଙ୍କ ଉପର୍ଯ୍ୟୁପରି ଗଠିତ ସ୍ତରମାନଙ୍କ ସମଷ୍ଟି ଅଟେ । ତାହା ଦେଖିବାକୁ ଶାଖାବିଶିଷ୍ଟ ବୃକ୍ଷ ପରି । ସେହି ଶାଖାରୁ ସରୁ ଲମ୍ବ ଲମ୍ବ ଶାଖାବିସ୍ଥାନ ଖଣ୍ଡମାନ କାଟିଲେ ତାହାକୁ ଡାଳ ପୋହଲା ଓ ଗୋଲ, ମୋଟା ଏବଂ ଗଣ୍ଠିଆ ଖଣ୍ଡମାନଙ୍କୁ ମୁଣ୍ଡି ପୋହଲା ବୋଲାଯାଏ । ଏ ଡାଳ ପୋହୋଲର ଖଣ୍ଡମାନଙ୍କୁ ଗୁନ୍ଥି କଣ୍ଠି ବା ମାଳ କରାଯାଏ । ]
୨ । ଏକଜାତୀୟ ନାଲି ଓ ଲମ୍ବା ଧାନ—
2. A species of paddy ( red and long ).

ଡାଲିବି—ଗ୍ରା. ବି—ଡାଲିମ୍ବ, ( ଦେଖ )
Ḍāḷibi Ḍāḷimba ( See )

ଡାଲି ବେଣ୍ଟ—ପ୍ରାଦେ. ( ଗଡ଼ଜାତ ) ବି—ଡାଳି ପାରିଧି ( ଦେଖ )
Ḍāli benṭa Ḍāḷi pāridhi ( See )

ଡାଲି ଭାତ—ଦେ. ବି. ( ସଂ. ଦଲ + ଭକ୍ତ )—
Ḍāli bhāta ୧ । ଭୋଜନାର୍ଥ ପ୍ରସ୍ତୁତ ଡାଲି ଓ ଭାତ—
दाल भात 1. Boiled pulse and rice used for
**डाल भात** meal.
୨ । ଶୂଦ୍ର ଘରର ଖିରି ପିଠା—
2. A Śūdra's caste-dinner.
[ ଦ୍ର—ବଡ଼ଲୋକମାନଙ୍କ ଭୋଜିରେ 'ଖିରି ଓ ପିଠା' ଆଦି ସାମଗ୍ରୀ ଖାଇବାକୁ ମିଳେ ଓ ଗରିବ ଲୋକମାନଙ୍କ ଭୋଜି ବା ଜାତିଭାଇରେ ଜାତିଭାଇଙ୍କୁ 'ଡାଲି ଓ ଭାତ' ଖାଇବାକୁ ମିଳେ । ଏଥିପାଇଁ 'ଡାଲିଭାତ'ର ଏକ ଅର୍ଥ ହାଡ଼ିଆ ଓ ଗରିବ ଲୋକଙ୍କର ଜାତିଭାଇମାନଙ୍କୁ ଦେବା ଭୋଜି । ବଡ଼ ଲୋକମାନଙ୍କ ଭୋଜିକୁ ଖିରି ପିଠା ବୋଲାଯାଏ । ]

ଡାଲିମ (ଇତ୍ୟାଦି)—ଦେ. ବି—ଡାଲିମ୍ବ, ଇତ୍ୟାଦି ( ଦେଖ )
Ḍāḷima (etc) Ḍāḷimba etc ( See )

ଡାଳି ମହୁ—ଦେ. ବି—ଗଛର ଡାଳରେ ମହୁମାଛିମାନେ ବାନ୍ଧିଥିବା
Ḍāḷi mahu ଫେଣାରୁ ସଂଗୃହୀତ ମହୁ—Honey from hives
डालमधु made on branches of trees.
[ ଦ୍ର—ମହୁମାଛିମାନେ ମହୁ ଫେଣା କରିବା ସ୍ଥାନବିଶେଷର ନାମ ଅନୁସାରେ ମହୁର ନାମ ଦିଆଯାଇ ଥାଏ । ଯଥା—କାନ୍ଥମହୁ, କୋରଡ଼ ମହୁ, ଡାଳ ମହୁ, ବାଉଁଶ ମହୁ । ମହୁମାଛିମାନଙ୍କ ନାମ ଅନୁସାରେ ମଧ୍ୟ ମହୁର ନାମ ଦିଆଯାଇ ଥାଏ । ଯଥା—ବାଘୁଆ, ନିକୁଟି । ଫେଣାର ଆକାର ଅନୁସାରେ ମଧ୍ୟ ବଣ୍ଟଣୀ, ସାତଫେଣିଆଁ ଇତ୍ୟାଦି ନାମକରଣ ହୋଇଥାଏ । ]

ଡାଲିମା—ଡାଲିମ୍ବା ( ଦେଖ )
Ḍāḷimā Ḍāḷimbā ( See )

ଡାଳ ମାକୁଡ଼ୀ—ଦେ. ବି—ଡାଲ ମାକୁଡ଼ୀ ( ଦେଖ )
Ḍāḷi mākurḍi Ḍāḷa mākurḍi ( See )
(ଡାଳ ମାକଡ଼ୀ, ଡାଳ ମାକ୍‌ଡ଼ୀ, ଡାଲ ମାକୁଡ଼ୀ—ଅନ୍ୟରୂପ)

ଡାଲ ମୁଣ୍ଡା—ଦେ. ବି—ଯେଉଁ ଲଙ୍ଗଳମୁଣ୍ଡା ଗଛର ଗଣ୍ଡି ଅଂଶର
Ḍāḷi munḍā କାଠରୁ ତିଆରି ନ ହୋଇ ଗଛର ଡାଳ କାଠରୁ ତିଆରି ହୋଇ ଥାଏ—Plough made from the branch portion of a tree ( and not from its trunk. )

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଲୁଅ' ନ ମିଳିଲେ 'ଳୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଗ୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

**ଡାଳମ୍ବ**—ଦେ. ବି. ( ସଂ. ଦାଡ଼ିମ୍ବ, ଦାଳମ୍ବ, ଦାଡ଼ିମ )—
Ḍā̱limba ୧ । ପ୍ରସିଦ୍ଧ ଅମ୍ଳମଧୁର ରୁଚିକର ବହୁବୀଜ ଫଳ ଓ ବୃକ୍ଷ—
ସଂ. କୁଚଫଳ, ରକ୍ତବୀଜ, ବୃତ୍ତଫଳ
1. Pomegranate (fruit and tree) Punica Granatum.
ଡାଲିମ, ଅନାର
ଅନାର, ଦାଡ଼ିମ
ତେ. ଦାନିମ୍ମ
ଫା. ଅନାର
[ ଦ୍ର—ଏହାର ଗଛ ସରୁ ଓ ବୁଦାଳିଆ ଓ ଫୁଲ ନାଲି । ଏ ଭାରତର ସର୍ବତ୍ର ଦେଖାଯାଏ । ଲୁଣିଆ ମାଟିରେ ଏ ଗଛ ଭଲ ରୂପେ ବଢ଼େ ନାହିଁ । ଯେଉଁ ଡାଳମ୍ବର ମଞ୍ଜି ମଧ୍ୟରେ ଆଦୌ ଟାଣୁଆ ଅଂଶ ବା ଦାନା ନ ଥାଏ ତାକୁ 'ବେଦାନା' ବୋଲାଯାଏ ଓ ଯହିଁର ମଞ୍ଜି ମଧ୍ୟରେ ଟାଣୁଆ ଦାନା ଥାଏ ତାହାକୁ ଅନାର ବୋଲାଯାଏ । କାବୁଲ ଆଦି ପଶ୍ଚିମାଞ୍ଚଳର ଡାଳମ୍ବ ବଡ଼ ଓ ସୁମିଷ୍ଟ ଏବଂ ସେହି ଅଞ୍ଚଳରୁ ଏ ଫଳ ଆମ ଦେଶକୁ ଆମଦାନି ହୁଏ । ସୁପକ୍ୱ ଫଳ ନ ପଚି ବହୁ ଦିନ ରହେ । ଡାଳମ୍ବମଞ୍ଜିଗୁଡ଼ିକ ଦେଖିବାକୁ ସୁନ୍ଦର, ସୁଗଠିତ ଓ ସୁନ୍ୟସ୍ତ ଥିବାରୁ ସୁନ୍ଦର ଦାନ୍ତକୁ କବିମାନେ ଡାଳମ୍ବ ମଞ୍ଜି ସଙ୍ଗେ ତୁଳନା କରି ଥାଆନ୍ତି । ]

୨ । ( ଡାଳମ୍ବ ଉପରୁ ଚୋପା ଛଡ଼ାଇଲେ ଯେପରି ଦେଖାଯାଏ ସେହିପରି ଦେଖା ଯିବାରୁ ) ଗୁଣ୍ଡଲବଟାକୁ ଘିଅରେ ପୁଆଇ କରାଯିବା ଏକ ପ୍ରକାର ବଡ଼ ଲଡୁ— ( ଏହାର ଆକାର ଆତ ଫଳ ପରି )—
2. A kind of sweatmeat prepared by frying flour paste in ghee ( having the appearance of custard apple).

୩ । ଏକ ଜାତୀୟ କଳା ପଥର ଯହିଁରେ ଭିନ୍ନ ଭିନ୍ନ ରଙ୍ଗର ଚିତ୍ର ବା ଚୋପାମାନ ଦେଖାଯାଏ—
3. A kind of stone having coloured spots on it; spotted lime stone.

[ ଦ୍ର—ଏ ପଥର ଖୁବ ଟାଣ ହେବାରୁ ଏଥିରେ ଶିଳ, ଚନ୍ଦନପେଡ଼ି, କୁଣ୍ଡ, ଖଲ ଆଦି ତିଆରି କରାଯାଏ ।
ଯେଉଁ ପଥରରେ ନାଲି ଚୋପି ଦେଖାଯାଏ ତାକୁ ରଙ୍ଗ ଡାଳମ୍ବା ବୋଲାଯାଏ । ସେହିପରି କଳା ଡାଳମ୍ବା ଆଦି ନାମକରଣ ହୁଏ । ]

୪ । ରାମାୟଣ ବର୍ଣ୍ଣିତ ମର୍କଟ ସେନାପତି—
4. Name of a monkey general.
ବଣ୍ଟି ମଧ୍ୟରେ କଞ୍ଚନ ଡାଳମ୍ବ ଉଭୁଫୁଲ୍ଲ । ଉପ. ବୈଦେହୀଶବିଳାସ ।

**ଡାଳମ୍ବ ଦଶନା**—ଦେ. ବିଣ. ସ୍ତ୍ରୀ ( ସଂ ଦାଡ଼ିମ୍ବ + ଦଶନ )—ଯେଉଁ ସ୍ତ୍ରୀର
Ḍā̱limba daśanā ଦାନ୍ତ ଡାଳମ୍ବ ମଞ୍ଜିପରି ସୁନ୍ଦର—
A woman having teeth as graceful as the pomegranate seed.

**ଡାଳମ୍ବ ମନଶିଳା**—ଦେ. ବି. ( ସଂ. ଦାଳମ୍ବ ମନଃଶିଳା )—
Ḍā̱limba manaśi̱lā ଏକ ପ୍ରକାର ମନଃଶିଳା—
(ଡାଳମ୍ବା ମନଶିଳା—ଅନ୍ୟରୂପ) A kind of red arsenic.

**ଡାଳମ୍ବା**—ଦେ. ବି—୧ । ଡାଳମ୍ବ ୨ ଓ ୩ ( ଦେଖ )
Ḍā̱limbā 1. Ḍā̱limbā 2 & 3 ( See )
୨ । ଡାଳମ୍ବ ମନଶିଳା ( ଦେଖ )
2. Ḍā̱limba manaśi̱lā ( See )

**ଡାଲି ରୁ(ରୋ)ଟୀ**—ଦେ. ବି— ୧ । (ଭାରତର ଉତ୍ତରପଶ୍ଚିମ ଦେଶବାସୀଙ୍କର
Ḍāli ru(ro)ṭi ଖାଦ୍ୟର ୨ଟି ପ୍ରଧାନ ସାମଗ୍ରୀ) ଡାଲି ଓ ରୁଟୀ—
ଦାଲରୁଟୀ
डालरुटी
1. Soup of pulses and bread; the (two chief ingredients of the food of the people of Northwestern India).
୨ । ( ଲକ୍ଷଣାର୍ଥ ) ଜୀବିକା—
2 ( figurative ) Livelihood.

**ଡାଳି ହଳଦି**—ଦେ. ବି (ଦାରୁହରିଦ୍ରା)—ଦାରୁହରିଦ୍ରା; ଦାରୁହଳଦି—
Ḍā̱li ha̱ladi A medicinal plant of yellowish wood; Berberis Aristala; Cascinium Fenestratum
ଦାରୁହରିଦ୍ରା
दारुहलदी
ତେ. ମାନିପସୁପୁ
ତା. ମରମଞ୍ଜିଲ
ମ. ଦାରୁହଳ୍ଳଦ
ଗୁ. ଦାରୁହଲଦର
ଫା. ଦାରଚୋବ୍
ଆ. ଦାରୁହଲ୍‌ଦ୍
[ଦ୍ର—ଏହା ହିମାଳୟର କଣ୍ଟକୀ ଗୁଳ୍ମବିଶେଷ । ଏହାର କାଠ ଓ ମୂଳ ହଳଦିଆ, ପିତା ଲାଗେ । ମୂଳ ଔଷଧରୂପେ ବ୍ୟବହୃତ ହୁଏ । ଏହା ନେତ୍ରରୋଗ, କର୍ଣ୍ଣରୋଗ ଓ ମୁଖରୋଗବିନାଶକ । ]

**ଡାଳୁଅ**—ଦେ. ବି— ଗ୍ରୀଷ୍ମକାଳରେ ଉତ୍ପାଦିତ ଏକପ୍ରକାର ଧାନ; ଦାଳୁଅ—
Ḍā̱lua A species of paddy grown in summer.
( ଦାଳୁଅ—ଅନ୍ୟରୂପ ) [ ଦ୍ର—ଏ ଧାନର ଚାଉଳ ମୋଟା ଏବଂ ଗୁରୁପାକ । ଖରାଦିନେ କ୍ଷେତକୁ ପାଣି ବୁହାଇ ଏ ଧାନ ଫସଲକୁ ବଞ୍ଚାଯାଏ । ଡାଳୁଅ ଲାଗି କନାଶିରୀ ପାଣି ପିଇବା ନ୍ୟାୟ—ଗ୍ରୀଷ୍ମକାଳରେ ଲୋକେ ଡାଳୁଅ ଫସଲକୁ ବଞ୍ଚାଇବା ନିମନ୍ତେ ବିଲକୁ ପାଣି ବୋହିବାରୁ ଉକ୍ତ କିଆରୀରେ ଥିବା କନାଶିରୀ ଗଛ ମଧ୍ୟ ପାଣି ପାଇ ବଞ୍ଚିଯାଏ । ସେହିପରି ଜଣେ ବ୍ୟକ୍ତିର ଉପକାର ହେବା ସଙ୍ଗେ ସଙ୍ଗେ ଯଦି ଅନ୍ୟ ବ୍ୟକ୍ତି ଉପକୃତ ହୁଏ, ତେବେ ଏହି ପ୍ରବଚନ ପ୍ରୟୋଗ କରାଯାଏ । ]

**ଡାସ୍**—ବୈଦେ. ବି (ଇଂ. ଡାଶ୍)—ଲେଖିବାବେଳେ ବ୍ୟବହୃତ ଚିହ୍ନବିଶେଷ
Ḍās ବିରାମ-ଚିହ୍ନଦ୍ୟୋତକ ଏକପ୍ରକାର ଗାର ( — );
ড্যাস
ड्या
୨ଟି ପରସ୍ପରସମ୍ବନ୍ଧ ଶବ୍ଦର ସଂଯୋଜକ ଚିହ୍ନ—
Dash.
( ଡ୍ୟାସ୍, ଡେସ୍—ଅନ୍ୟରୂପ ) [ ଦ୍ର—ଗୋଟିଏ ଶବ୍ଦର କେତେକ ଅଂଶ ଏକ ଧାଡ଼ିରେ ଥାଇ ଜାଗା ନ ଅଣ୍ଟିଲେ ସେଠାରେ ଗୋଟିଏ ଡାସ୍ ଦେଇ ଅନ୍ୟ ଧାଡ଼ିରେ ବାକି ଅଂଶତକ ଲେଖାଯାଏ । ଏହା ଗୋଟିଏ ଛୋଟ ବାମରୁ ଦକ୍ଷିଣକୁ ଲମ୍ବ ଗାର । ]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଢ଼ | ଶ,ଷ | ଙ୍କ | ଇସ୍ତ | ଉ୍ଥ | ଛ |
| ୨ | ଈ | ଊ | ଋ | ଲୁ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଢ଼ | ନ୍ନ |

ଡାହ —ଦେ. ବ ଓ ବଣ — ଦାହ (ଦେଖ)
Ḍāha — Dāha (See).
दाह डाह

ଡାହକ—ଦେ. ବ—ଦାହକ (ଦେଖ)
Ḍāhaka — Dāhaka (See).

ଡାହା—ଦେ. ବ. ଓ ବଣ — ଦାହ (ଦେଖ)
Ḍāhā — Dāha (See).
ଡାହା ଉଗ୍ରୀର୍ଣ୍ଣ ଉସାଣ ହେମପାତ୍ରେ ଛିଡ ବ ମଣିକ୍ୟ ମଣି ରେ ।
ଭଞ୍ଜ, ରସବଣ୍ୟବଗ ।

ଡାହାକ—ଦେ. ବ—ଦାହକ (ଦେଖ)
Ḍāhāka — Dāhaka (See).

ଡାହାଙ୍ଗିରି—ଦେ. ବ — ଏକପ୍ରକାର ଖାଦ୍ଧ ଥିବା ଲୁଣି ମାଛ—
Ḍāh āngiri — A class of edible salt-water fish ( found in the sea near Puri and in the Chilka lake).

ଡାହାଣ—ଦେ. ବଣ —(ସଂ. ଦକ୍ଷିଣ; ଭୁଲ. ପ୍ରା. ଦାହୁଣ; ଦକ୍ଷ= Ḍāhāṇa କର୍ମଠ; ଡାହାଣ ହାତ ବାମ ହାତ ଅପେକ୍ଷା ଅଧିକ ডাইন, ডাহিন, ডান, ডানি କର୍ମଠ ଥିବାରୁ )—୧ । ମନୁଷ୍ୟ ଅଙ୍ଗର
दाहिन ଦକ୍ଷିଣ ପାର୍ଶ୍ୱସ୍ଥ (ଅଙ୍ଗ); ଖାଇବା (ହାତ; ଗୋଡ଼)—
1. Right(side of the limbs).
ବାଆଁ / ବାଆଣ } ବିପରୀତ
(ଯଥା—ଡାହାଣ ହାତ, ଡାହାଣ ଗୋଡ଼ ।)
୨ । ମନୁଷ୍ୟର ଦକ୍ଷିଣ ପାଖରେ ଥିବା —
2 Belonging to the right side of a person.
(ଯଥା—ଶଗଡ଼ର ଡାହାଣ ବଳଦ ।)
[ଦ୍ର—ପୂର୍ବାଭିମୁଖ ହୋଇ ଠିଆ ହେଲେ ମନୁଷ୍ୟର ଯେଉଁ ଅଙ୍ଗମାନ ଦକ୍ଷିଣ ଦିଗକୁ ରହେ ତାକୁ ଦକ୍ଷିଣ ବା ଡାହାଣ ଅଙ୍ଗ ବୋଲି ଯାଏ । ମନୁଷ୍ୟ ଦକ୍ଷିଣ ବା ଡାହାଣ ହାତରେ ଖାଉ ଥିବାରୁ ଡାହାଣ ହାତକୁ ଖାଇବା (ଖାଇଲା, ଖାଇସା) ହାତ ବୋଲାଯାଏ ଏବଂ ମନୁଷ୍ୟ ଶରୀରର ଯେଉଁ ଅଂଶରେ ଉକ୍ତ ଡାହାଣ ହାତ ଅଛି ସେହି ପାଖକୁ ଓ ସେହି ପାଖର ଅନ୍ୟାନ୍ୟ ପ୍ରତ୍ୟଙ୍ଗକୁ ଡାହାଣ ବା ଖାଇସା (ଖାଇବା, ଖାଇଲା) ବୋଲାଯାଏ ଯଥା—ଖାଇସା ଗୋଡ଼; ଖାଇସା କାନ ଇତ୍ୟାଦି । ]

ଡାହାଣ ପଡ଼ିଆ—ଦେ. ବ—ଶଗଡ଼ର ଡାହାଣ ଚକ ଗଳିବା ବେଳେ
Ḍāhāṇa pardiā ଖାଲରେ ପଡ଼ିଯିବା ଅବସ୍ଥା—The state of the right wheel of a cart moving on a lower plane than the left one.

ଡାହାଣ ବାଆଣ—ଦେ. ବ. (ସଂ. ଦକ୍ଷିଣ + ବାମ)—
Ḍāhāṇa bā-āṇa ଦକ୍ଷିଣ ଓ ବାମପାର୍ଶ୍ୱ—
Right and left sides.
ବଣ—ଦକ୍ଷିଣ ଓ ବାମପାର୍ଶ୍ୱରେ ଅବସ୍ଥିତ—
Situate on the right and on the left sides.

ଡାହାଣ ବାଆଣ ବୋଦା—ପ୍ରାଦେ. (ପୁରୀ, ଗଡ଼ଜାତ) ବ—କୌଣସି
Ḍāhāṇa bā-āṇa bodā ଠାକୁରାଣୀଙ୍କ ଆଗରେ ଏକସମୟରେ ବଳି (ଡାହାଣ ବାହାଣ ବୋଦା—ଅନ୍ୟରୂପ) ଦିଆଯିବା ଦୁଇଟି ବୋଦା ବା ପଶୁ—Two victims killed simultaneously before a Goddess.
[ ଦ୍ର— ଠାକୁରାଣୀଙ୍କୁ ଗୋଟିଏ ବଳି ଦେଲେ ସେ ଯେଉଁ ପରି ପ୍ରସନ୍ନ ହେବେ, ଦୁଇଟି ବଳି ଦେଲେ ତଦପେକ୍ଷା ବେଶି ପ୍ରସନ୍ନ ହୋଇ ବେଶି ବର ଦେବେ, ଏହି ବିଶ୍ୱାସରେ ବିପନ୍ନ ବ୍ୟକ୍ତିମାନେ ଠାକୁରାଣୀଙ୍କୁ ଡାହାଣ ବାଆଣ ବୋଦା ଯାଚନ୍ତି । ]

ଡାହାଣହାତ ଚଳିବା—ଦେ. ବ—୧ । ଭୋଜନ କ୍ରିୟା—
Ḍāhāṇahāta chaḷibā — 1. Meals.
दक्षिणहस्त चाला ୨ । ଅନ୍ନ ସଂସ୍ଥାନ; ଜୀବିକା ନିର୍ବାହ—
2. Livelihood; sustenance.

ଡାହାଣହାତ ଗଳିବା—ଦେ. କ୍ରି —ଭୋଜନ କରିବା—
Ḍāhāṇahāta chaḷibā — To eat or take one's food.
दक्षिणहस्त चालान
[ଡାହାଣ ହାତ ଚଳା(ଲେ)ଇବା—ଅନ୍ୟରୂପ]

ଡାହାଣା —ଦେ. ବଣ. ପୁଂ—(ସଂ. ଡାକମା=ଦେ. ଡାହାଣୀର ପୁଂଲିଙ୍ଗରେ
Ḍāhāṇā ଡାହାଣା)—୧ । ଖାଦ୍ୟଲୋଲୁପ; ଉଦଳା; ଯେ ଅନ୍ୟ
(ଡାହାଣୀ—ସ୍ତ୍ରୀ) ବ୍ୟକ୍ତିର ଖାଇବା ପଦାର୍ଥ ପ୍ରତି ଲୋଲୁପ ଦୃଷ୍ଟି ପକାଏ; ଯେ ଖାଇବା ଲୋକର 'ପେଟରେ ପଶେ'—
1. Yearning after or casting wistful glances on another man's food.
[ ଦ୍ର—ଲୋକେ ବିଶ୍ୱାସ କରନ୍ତି ଯେ ଯେବେ ଖାଦ୍ୟଦ୍ରବ୍ୟ ପ୍ରତି ଅନ୍ୟ କେହି (ଡାହାଣା ପୁରୁଷ ବା ଡାହାଣୀ ସ୍ତ୍ରୀ) ଲୋଲୁପ ଦୃଷ୍ଟି ପକାଏ ତେବେ ସେ ଖାଦ୍ୟକୁ ଖାଇଲେ ପେଟ ଅସୁଖ ହୁଏ ବା ପେଟ ଫାଟେ । ଡାହାଣା ବା ଡାହାଣୀ ଅମୁକ ଲୋକର 'ପେଟରେ ପଶିଛି' ବା ଖାଦ୍ୟରେ 'ଦୃଷ୍ଟି ପକାଇଛି' ବୋଲି ଲୋକେ କହନ୍ତି । ପୁରୁଷ ଡାହାଣାଙ୍କ ଅପେକ୍ଷା ସ୍ତ୍ରୀ ଡାହାଣୀମାନଙ୍କ ସମ୍ବନ୍ଧେ ଲୋକଙ୍କର ବିଶ୍ୱାସ ଅଧିକ ଭୟାନକ । ଡାହାଣୀ ଚଢ଼େଇ ନୋଟ୍ ଦ୍ରଷ୍ଟବ୍ୟ । ]
୨ । ଯେଉଁ ଲୋକ କୌଣସି ସୁନ୍ଦର ବସ୍ତୁ ବା ଜୀବ (ଶିଶୁ, ଯୁବତୀ ) ପ୍ରତି ଲୋଲୁପ ଦୃଷ୍ଟି ପକାଏ ବା ତାକୁ 'ଖୁଣ୍ଟି ଦିଏ'—2. One who casts wistful or covetuous glances at a beautiful infant or lady.

ଡାହାଣିଅଁ (ଆ)—ଦେ.ବଣ—୧ । ବହୁଲୋକ ଯେଉଁ ଖାଦ୍ୟ ପଦାର୍ଥରେ
Ḍāhāṇiāṅ(ā) ଦୃଷ୍ଟି ପକାଇବାରୁ ତାହା ସୁସ୍ୱାଦୁ ଲାଗେ ନାହିଁ; ଅଖିଦୃଷ୍ଟିଆ —1. (food) Spoiled by being exposed to the public gaze.
( ଯଥା— ହାଟରେ ମାଛଗୁଡ଼ାକ ଡାହାଣିଅଁ ହୋଇଗଲାଣି । )

୨ । କୃଶ (ଯେଉଁ ଶିଶୁକୁ ଡାହାଣୀ ଦୃଷ୍ଟି ପକାଇଥାଏ ତାହା ପରି କୃଶ)—2. Weak and emaciated.

୩ । ଦକ୍ଷିଣ ପାର୍ଶ୍ୱସ୍ଥ—
3. Belonging to the right side.

( ଯଥା—ହଳ ବା ଶଗଡ଼ର ଡାହାଣିଆଁ ବଳଦ । )

**ଡାହାଣିଆଁ ଖର**—ଦେ. ବି—ସୂର୍ଯ୍ୟାସ୍ତର ଅବ୍ୟବହିତ ପୂର୍ବରୁ ପଡ଼ିବା
Ḍahāṇiāñ kharā   ଖର ବା ସୂର୍ଯ୍ୟକିରଣ—The slanting rays of the sun just before it sets down.

**ଡାହାଣିଆଁ ଦିଶିବା**—ଦେ. କ୍ରି—(କୌଣସି ବ୍ୟକ୍ତି ବା ଜୀବ) ଶ୍ରୀହୀନ ଓ
Ḍahāṇiāñ disibā   ଶୀର୍ଣ୍ଣ ଦେଖାଯିବା—To look pale and emaciated.

[ ଦ୍ର—ଲୋକେ ବିଶ୍ୱାସ କରନ୍ତି ଯେ ଯେଉଁ ସୁନ୍ଦର ଶିଶୁ ବା ଖାଦ୍ୟ ପଦାର୍ଥକୁ ଡାହାଣୀ ଖାଇଥାଏ ବା ଶୋଷିଥାଏ ତାହା ଶୁଖିଯାଏ ଓ ଶ୍ରୀହୀନ ହୁଏ । ]

**ଡାହାଣିଆଁ ପୋକ**—ଦେ. ବି—କାଠି ପୋକ ( ଦେଖ )
Ḍahāṇiāñ poka   Stick insect; Diapheromera Famorata.

**ଡାହାଣିଆଁ ବଳଦ**—ଦେ. ବି—ବେଙ୍ଗଳାର ଶେଷ ମୁଣ୍ଡରେ
Ḍahāṇiāñ baḷada   ଯୋଚା ହୋଇଥିବା ବଳଦ—The bullock which is tethered to the end of the tether during paddy-treading operation.

**ଡାହାଣୀ**—ଦେ. ବି ( ସଂ. ଡାକିନୀ )—୧ । ଡାକିନୀ; ଯୋଗିନୀ; ଅପ-
Ḍahāṇī   ଦେବତା; କାଳୀ ଠାକୁରାଣୀଙ୍କ ସହଚରୀ—
ଡାଇନ୍, ଡାଇନୀ   1. An evil spirit (female); an
डाइन, चुड़ैल   evil Deity; one of the 64 Joginis attending on Goddess Kāḷī.

୨ । ପିଶାଚୀ—2. A female ghost.

टोनहाई   ୩ । ଗୁଣୀ ବିଦ୍ୟାରେ ପାରଙ୍ଗମା ସ୍ତ୍ରୀ—
3. A woman versed in sorcery or blackart.

୪ । ଲଳୁଣୀ; ଯେଉଁ ସ୍ତ୍ରୀ ପରର ଖାଦ୍ୟଦ୍ରବ୍ୟ ପ୍ରତି ବା ସୁନ୍ଦର ଶିଶୁ ପ୍ରତି ଲୋଲୁପ ଦୃଷ୍ଟି ପକାଏ; ମାୟାବିନୀ—
4. Sorceress; witch; a woman who casts longing glances on a dainty article of food or on a fine-looking infant.

[ଦ୍ର—ଆମ ଦେଶରେ ଜଣେ ଜଣେ ସ୍ତ୍ରୀଲୋକଙ୍କୁ ଓ ବିଶେଷତଃ ଇତର ଜାତୀୟା କୁରୂପା ସ୍ତ୍ରୀମାନଙ୍କୁ କେହି କେହି ଡାହାଣୀ କହନ୍ତି । ଏମାନେ ସୁନ୍ଦର ଶିଶୁ, ଗାଈ ପକ୍ଷୀ କିମ୍ବା ଭଲ ଖାଦ୍ୟଦ୍ରବ୍ୟ ଦେଖିଲେ ତହିଁପ୍ରତି ଏପରି ଲୋଲୁପ ଲୁବ୍ଧଦୃଷ୍ଟି ପକାନ୍ତି ଯେ ତଦ୍ୱାରା ଦୃଷ୍ଟ ଜୀବଟି ରୋଗଗ୍ରସ୍ତ ହୋଇ ମରିଯାଏ ଓ ସେମାନଙ୍କ ଦୃଷ୍ଟି ପଡ଼ିଥିବା ଖାଦ୍ୟକୁ ଯେ ଖାଏ ତାର ମଧ୍ୟ ଝାଡ଼ା ହୁଏ । ଏଥିପାଇଁ କହନ୍ତି ଯେ ଡାହାଣୀ ମୋ ପିଲାର ପେଟରେ ପଶି ପେଟ କୋରି ପକାଉ ଅଛି ବା ମୋ ପିଲାଟିକୁ ଡାହାଣୀ ଖାଇଗଲା ବା ମାରିପକାଇଲା, ଏ ଖାଦ୍ୟକୁ ଡାହାଣୀ ଦୃଷ୍ଟି କରିଛି । ଡାହାଣୀମାନେ ଆପଣା ଦେହ ସଙ୍ଗେ ନିକଟବର୍ତ୍ତୀ ଶିଶୁ ବା ମନୁଷ୍ୟ ଦେହରେ ଲାଗିଥିବା ଖଣ୍ଡିଏ ନଡ଼ା (ଯାହା କି ଡାହାଣୀଙ୍କ ଦେହକୁ ଯୋଗ କରିଥାଏ) ଦ୍ୱାରା ଉକ୍ତ ଶିଶୁ ବା ବ୍ୟକ୍ତି ଦେହରୁ ରକ୍ତ ଶୋଷି ନେବାର ପ୍ରବାଦ ଅଛି । ଯେଉଁ ସ୍ତ୍ରୀ ସାଧାରଣତଃ ଡାହାଣୀ ବୋଲି ପରିଚିତ ତା ଦୃଷ୍ଟିରୁ ମାଆମାନେ ନିଜ ନିଜର ଶିଶୁକୁ ଓ ଗାଈ ପକ୍ଷୀ ପୋଷିଥିବା ଲୋକେ ଗାଈ ପକ୍ଷୀକୁ ଓ ଖାଦ୍ୟକୁ ଲୁଚାଇକରି ରଖନ୍ତି । ଏହି ଡାହାଣୀମାନେ କଳା ରାତିରେ ଛଦ୍ମ ଓ ବିକଟ ବେଶ ଧରି ଗୋପନରେ ଆପଣା ପରିବାରର ଅଜ୍ଞାତରେ ଘରୁ ବାହାରିଯାଇ ଗୁହ୍ୟପଡ଼ିଆରେ ସେମାନଙ୍କର ଅନ୍ୟ ସହଚରୀମାନଙ୍କୁ ଭେଟି ଲଙ୍ଗଳା ହୁଅନ୍ତି, ମୁଣ୍ଡକୁ ତଳକୁ କରି, ଗୋଡ଼କୁ ଉପରକୁ ଟେକି ହାତରେ ଗୁଲି ଗୁଲି କଞ୍ଚା ବିଷ୍ଠା ଚର ଗୁଳିବାର ମଧ୍ୟ ଲୋକେ ଦେଖିଥିବାର କହନ୍ତି । ଏମାନଙ୍କ କଞ୍ଚାଖାଇ ଡାହାଣୀ କୁହାଯାଏ । ଏମାନେ ଜୀବନ୍ତ (କଞ୍ଚା) ମନୁଷ୍ୟକୁ ମଧ୍ୟ ଖାଇଯାଆନ୍ତି । ଏମାନେ ଶ୍ମଶାନରେ ଶବର କଞ୍ଚା ମାଂସ ଖାଆନ୍ତି । ଏମାନଙ୍କ ହାବୁଡ଼ରେ କଳା ରାତିରେ ନିର୍ଜନ ସ୍ଥାନରେ କେହି ମନୁଷ୍ୟ ପଡ଼ିଗଲେ ତାକୁ ମଧ୍ୟ ଖାଇଯାଆନ୍ତି ବୋଲି ଶୁଣା ଅଛି । ଶୁଖିଲାଖାଇ ଡାହାଣୀମାନେ ଶୁଖିଲା ବିଷ୍ଠା ଓ ମୂର୍ଦ୍ଦାର ଶୁଖିଲା ମାଂସ ଖାଆନ୍ତି । ଡାହାଣୀମାନେ ନାନାରୂପଧାରୀ ଡାକିନୀ ବା ଅପଦେବତା ଥିବାର ଲୋକ ବିଶ୍ୱାସ । ଏମାନଙ୍କର କୌଣସି ଶିଶୁଠାରେ ଦୃଷ୍ଟି ପଡ଼ିଲେ ସେ ଶିଶୁକୁ ରକ୍ଷା କରିବା ନିମନ୍ତେ ମନ୍ତ୍ର ଯନ୍ତ୍ର ( ଝାଡ଼ା ଫୁଙ୍କା ), ଜଡ଼ିବୁଟୀ ଆଦି ପ୍ରୟୋଗ କରାଯାଏ ।

ଡାହାଣୀମାନେ ପାଳ ଦଉଡ଼ିକୁ ଡେଇଁକରି କିମ୍ବା ସେମାନଙ୍କ ଘରପାଖେ ମଣ୍ଡଳାକାରରେ ଠିଆ ହୋଇଥିବା ଗାଈକୁ ଡେଇଁକରି ଯାଆନ୍ତି ନାହିଁ ।

ଏମାନଙ୍କର ଭିନ୍ନ ଭିନ୍ନ ନାମ ଅଛି ଯଥା—କଞ୍ଚାଖାଇ, ଶୁଖିଲା-ଖାଇ, ଶୋଷଣୀ, ଖୁଦୁଡ଼ୀ, ହାଡ଼ବାଇ, ଦୃଷ୍ଟି, ପିଶାଚୁଣୀ ବା ପିଶାଚୁଣୀ ଇତ୍ୟାଦି ।

ସ୍ତ୍ରୀମାନଙ୍କ ମଧ୍ୟରେ 'ଡାହାଣୀ' ଶବ୍ଦ ଗାଳିରେ ବ୍ୟବହୃତ ହୁଏ । ଡାହାଣୀମାନଙ୍କ ସମ୍ବନ୍ଧୀୟ ଓ ପ୍ରତିଷେଧକ ମନ୍ତ୍ରଯନ୍ତ୍ରକୁ 'ଗାରୁଡ଼ି ବିଦ୍ୟା' ବୋଲାଯାଏ ଓ ଏହା ଆସାମ ଦେଶସ୍ଥ 'କାଉଁରୀ କାମାକ୍ଷ୍ୟା' ବା 'କାଉଁରୀ କାମଚଣ୍ଡୀ' ଠାକୁରାଣୀଙ୍କ ଅଞ୍ଚଳକୁ ଯାଇ ଶିକ୍ଷା କରାଯାଇ ପାରେ ବୋଲି ସାଧାରଣଙ୍କର ବିଶ୍ୱାସ । କାଉଁରୀ କାମଚଣ୍ଡୀ ଅଞ୍ଚଳରେ 'ହରେଇ ମା ଧୋବଣୀ' 'ହଟେଇ ମା ପତର ଶବରୁଣୀ' ପ୍ରଧାନ ଗୁରୁ ଥିଲେ ବୋଲି ଏପର୍ଯ୍ୟନ୍ତ ଝାଡ଼ାଫୁଙ୍କାର ଅଧିକାଂଶ ମନ୍ତ୍ର

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଏ | ଉଅ | ଋ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଓ | ନୁ |

ସେମାନଙ୍କ ନାମରେ ଭଣିତା ହୋଇଥିବାର ଦେଖାଯାଏ । ପାଶ୍ଚାତ୍ୟ ଶିକ୍ଷାବିସ୍ତାର ସଙ୍ଗେ ସଙ୍ଗେ ଏ ସଂସ୍କାରଗୁଡ଼ିକ କ୍ରମେ କ୍ରମେ ସମାଜରୁ ଉତ୍ପାଟିତ ହେଉଅଛି । ଏସଂସ୍କାର ସମ୍ବନ୍ଧରେ କେତେଗୁଡ଼ିଏ ରଗ ଓ ପ୍ରବଚନ ମଧ୍ୟ ଦେଖାଯାଏ । ଯଥା—ପଦାରେ ପୁଅ ଦେଇ ଡାହାଣୀକୁ ଡରିବା ନ୍ୟାୟ । ଡାହାଣୀ ବା ପିତାଶୁଣୀମାନେ ଅନ୍ୟ ବ୍ୟକ୍ତିର ଦେହରେ ପ୍ରବେଶ କରି ତାହାକୁ ବାଉଳା କରନ୍ତି । ଏହାକୁ ଡାହାଣୀ ଲାଗିବା ବୋଲାଯାଏ ଏବଂ ଗୁଣିଆଁ ଆସି ଝାଡ଼ଫୁଙ୍କ କଲେ ଡାହାଣୀମାନେ ସେ ବ୍ୟକ୍ତି ଦେହରୁ ଛାଡ଼ି ପଳାନ୍ତି । ନଚେତ୍ ସେ ବ୍ୟକ୍ତିର ମୃତ୍ୟୁ ଅବଶ୍ୟମ୍ଭାବୀ । ଏଥି ସମ୍ବନ୍ଧେ ରଗ ଅଛି; ଯଥା—ଡାହାଣୀ ହୋଇ ଲାଗିବା, ଗୁଣିଆଁ ହୋଇ ଝାଡ଼ିବା ନ୍ୟାୟ । ]

ଡାହାଣୀ ଖାଇବା—ଦେ. କ୍ରି—ପୁଅ ରୋଗ; ଶିଶୁକୁ ଡାହାଣୀ ଦୃଷ୍ଟି Ḍahāṇi khāibā କରିବା ଯୋଗୁଁ ଶିଶୁ ଶୀର୍ଣ୍ଣ ହେବା—
ପୁୟେଁ ପাওয়া; Possession of children by a
ডাইনী চোষা witch; rickets; infantile marasmus

ଡାହାଣୀ ଛଡ଼ା(ଡ଼େ)ଇବା—ଦେ.କ୍ରି—କୌଣସି ବ୍ୟକ୍ତିର ଶରୀରରୁ ମନ୍ତ୍ର-
Ḍahāṇi chharḍā(rḍe)ibā ଯନ୍ତ୍ର ପ୍ରୟୋଗଦ୍ୱାରା ଡାହାଣୀକୁ
ডাইনী ছাড়ান ନିଃସାରଣ କରିବା—To exorcize.
आसेब उतारना

ଡାହାଣୀ ପଶିବା—ଦେ. କ୍ରି—ଡାହାଣୀ ଖାଇବା ( ଦେଖ )
Ḍahāṇi pasibā Ḍahāṇi khāibā ( See )

ଡାହାଣୀ ଲାଗିବା—ଦେ. କ୍ରି—କୌଣସି ବ୍ୟକ୍ତିଠାରେ ଅପଦେବତାଙ୍କର
Ḍahāṇi lāgibā ଆବିର୍ଭାବ ହେବା—Possession by evil
ডাইন লাগা spirits or witches.

ଡାହାଣୀ ହୋଇ ଲାଗିବା; ଗୁଣିଆ ହୋଇ ଝାଡ଼ିବା—ରଗ ।

ଡାହା ମିଛ—ବୈଦେ. ବି. ( ବି )—ଭୁଚ୍ଛା ମିଛ; କଞ୍ଚା ମିଛ; ସମ୍ପୂର୍ଣ୍ଣ
Ḍahā michha ମିଥ୍ୟା କଥା—Downright falsehood.
ডাহামিথ্যা ବିଣ—ସମ୍ପୂର୍ଣ୍ଣରୂପେ ମିଥ୍ୟା—Totally false.
निपट झूठा

ଡାହାଳ—ଦେ. ବି. ( ନାମ )—୧ । ପ୍ରାଚୀନ ଦେଶବିଶେଷ—
Ḍahāḷa 1. An ancient country.
୨ । ଡାହାଳ କୁକୁର ( ଦେଖ )
2. Ḍahāḷa kukura ( See )

ଡାହାଳ କୁକୁର—ଦେ. ବି. ( ସଂ. ଦଳକ=ଡାଳ+କୁକ୍କୁର; ଏମାନ-
Ḍahāḷa kukura ଙ୍କର ଦେହ ଡାଳ ପରି ସରୁ ଥିବାରୁ )—
ডালকোতা ଏକପ୍ରକାର ଦୀର୍ଘକାୟ ଶୀର୍ଣକଟି ଲମ୍ବପାଦ
डालकुत्ता; ताजीकुत्ता ଗୋଜିଆମୁହାଁ ଶିକାରୀ କୁକୁର—
(ଡାହାଳ କୁତା—ଅନ୍ୟରୂପ) Grey hound.
( ଡାହାଳକୁତୀ—ସ୍ତ୍ରୀ ) [ ଦ୍ର—ଏମାନଙ୍କର ଦେହ ଲମ୍ବ ଓ ଛିପି-ଛିପିକା; ମୁଣ୍ଡ ଛୋଟ ଓ ମୁହଁ ଗୋଜିଆ; ପାଦ ସରୁ ଓ ଲମ୍ବ; ଉଦର ଓ କଟି ଅତ୍ୟନ୍ତ କୃଶ; ଦେହର ଲୋମ ପାତଳା ଏବଂ ଛୋଟ ଛୋଟ । ଏମାନେ ଅତି ଦ୍ରୁତଗାମୀ । ଏମାନଙ୍କୁ କୌଣସି ଜନ୍ତୁକୁ ଦେଖାଇ ଦେଲେ ବା ଜନ୍ତୁଠାରେ ଲଗାଇ ଦେଲେ ଉକ୍ତ ଜନ୍ତୁ ଏମାନଙ୍କଠାରୁ ସହଜରେ ପରିତ୍ରାଣ ପାଏ ନାହିଁ । ]

ଡାହାଳିଆ—ଦେ. ବିଣ—( ଡାହାଳ କୁକୁର ପରି ) ଶୀର୍ଣକାୟ ଓ
Ḍahāḷiā ଡେଙ୍ଗା ( ବ୍ୟକ୍ତି )—Thin and tall (person).

ଡାହାଳିଆ କୁକୁର—ଦେ. ବି—ଡାହାଳ କୁକୁର ( ଦେଖ )
Ḍahāḷiā kukura Ḍahāḷa kukura ( See )
( ଡାହାଳିଆ କୁତା—ଅନ୍ୟରୂପ )
( ଡାହାଳିଆ କୁତୀ—ସ୍ତ୍ରୀ )

ଡାହି—ଦେ. ବି—୧ । ବୃକ୍ଷର ଡାଳ—
Ḍahi 1. Branch.
ডালপালা ୨ । ଛୋଟ ଡାଳ—2. Small branch.
टहनी ପୁଷ୍ପିତ ଏବେ ହୋଇ ହୋଇଛି ଡାହି—ମଧୁସୂଦନ. ଉତ୍ତର ରାମଚରିତ ।
ପ୍ରାଦେ. ( ଗଡ଼ଜାତ ଓ ସମ୍ବଲପୁର ) ବି—ପାର୍ବତ୍ୟ ଜଙ୍ଗଲ—
ଡାହି କାଟି ବଇଙ୍ଗା ମାରି ଫସଲ କାଢ଼ି ଥିଲୁଁ—
ଉତ୍କଳ ସାହିତ୍ୟ ୩୬।୮, ୩୧୭ ପୃଷ୍ଠା ।

ଡାହିଆ—ଦେ. ବି—ଡାହି ( ଦେଖ )
Ḍahiā Ḍāhi ( See )

ଡାହିକା ( ଇତ୍ୟାଦି )—ଡାଇକା ଇତ୍ୟାଦି ( ଦେଖ )
Ḍahikā ( etc ) Ḍāikā etc ( See )

ଡାହୁ—ଦେ. ବି. ( ଜାହାଜିଆ ଶବ୍ଦ )—ବାମ ଦିଗ—
Ḍahu (nautical term) The left (direction).
ପ୍ରାଦେ. ( ଗଞ୍ଜାମ ) ବି—ଡାବଲ (ଦେଖ)—Ḍābala (See)

ଡାହୁକ—ସଂ. ବି. [ ଦହ୍ ଧାତୁ=( ରୋଗ ) ଦାହ କରିବା+କର୍ତ୍ତୃ.
Ḍahuka ଉକ ]—କୂଳଚର ପକ୍ଷୀବିଶେଷ—The white-
ডাকপাখী; ডাহুক breasted water-hen; Amourornis
डाहुक Phœnicursis; water rail or the clapper rail; Rallus Aquaticus.

ଡାହୁକ ଡାକ ପିକ ଶାମୁକ ଧ୍ୱନି
ଛଳେ ଚହଟାର କଲା ଉଦ୍ୟେ ଅବନୀ—ଗୋଲୋକ, ଇନ୍ଦୁରେଖା ।

[ ଦ୍ର—ଏମାନେ ୧୬।୧୭ ଅଙ୍ଗୁଳ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ଗୋଡ଼ ସରୁ ଓ ଲମ୍ବ; ମୁଣ୍ଡ ଓ ଛାତି ଧଳା; ପିଠି ପାଉଁଶିଆ କଳା; ଥଣ୍ଟ ସବୁଜ; ପଳାଇବା ସମୟରେ ଲାଙ୍ଗୁଡ଼ ଟେକି ପଳାନ୍ତି; ଜଳର କୂଳରେ ବସା କରନ୍ତି; ବର୍ଷା ଓ ଶରତ୍କାଳରେ 'କକ୍ କକ୍ କୋଆ କୋଆ' ଡାକ ଡାକନ୍ତି; ଦିନ ରାତ୍ରିର ପ୍ରତ୍ୟେକ ପ୍ରହରର ଶେଷରେ ଡାକନ୍ତି; ବର୍ଷା ଆରମ୍ଭରେ ଅଣ୍ଡା ଦିଅନ୍ତି ।

ଏମାନଙ୍କ ମାଂସ ସୁସ୍ୱାଦୁ । ଚଢ଼େଇଆମାନେ ଡାହୁକ ଧରିବା ପାଇଁ ଫାଶ ମେଲାଇ ମେଲା ଫାଶର ମଝିରେ ଗୋଟିଏ ପିଞ୍ଜରାରେ ଗୋଟିଏ ଡାହୁକକୁ ବନ୍ଦ କରି ଥୋଇ ଦିଅନ୍ତି ଓ ଖଣ୍ଡିଦୂରରେ ଲୁଚି କରି ବସନ୍ତି । ପିଞ୍ଜରା ମଧ୍ୟସ୍ଥ ଡାହୁକଟି ବୋବାଇ ଉଠିଲାକ୍ଷଣି ନିକଟବର୍ତ୍ତୀ ଡାହୁକମାନେ ପିଞ୍ଜରା ନିକଟକୁ ଦଉଡ଼ି ଆସି ରୁଣ୍ଡ ହୁଅନ୍ତି

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଖାଇ' ନ ମିଳିଲେ 'ଖାଈ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ଓ ତତ୍ପରେ ସେହି ସମ୍ମୁଖରେ ଫାଶର ଦଉଡ଼ିକୁ ଟାଣି ଦେଲାରୁ ଡାହୁକମାନେ ଜାଲରେ ଧରା ପଡ଼ନ୍ତି । ଏଥିପାଇଁ ପ୍ରବାଦ ଅଛି 'ବଡ଼ିଶମରା ଡାହୁକ ।'

ଡାହୁକମାନଙ୍କ ଗୋଡ଼ ସରୁ ଓ ଡେଙ୍ଗା ଥିବାରୁ ନଳୀଗୋଡ଼ୀ ସ୍ତ୍ରୀମାନଙ୍କୁ 'ଡାହୁକୀ' ଓ ପୁରୁଷମାନଙ୍କୁ 'ଡାହୁକା' ବୋଲାଯାଏ । ]

**ଡାହୁକା**—ଦେ. ବିଣ. ପୁଂ—ନଳୀଗୋଡ଼ା—
Ḍāhukā — Having long and slender legs (like a gun-barrel.)
(ଡାହୁକଅ—ଅନ୍ୟରୂପ)
(ଡାହୁକୀ; ଡାହୁକେଇ—ସ୍ତ୍ରୀ)

**ଡାହୁ ପୁଅ**—ପ୍ରାଦେ. (ଗଞ୍ଜାମ) ବି—ଡାବଲ ପୁଅ (ଦେଖ)
Ḍāhu puā — Ḍābala puā (See)

**ଡାହୁଲ**—ପ୍ରାଦେ. (ସମ୍ବଲପୁର) ବିଣ. ସ୍ତ୍ରୀ—ଯେଉଁ ଗାଈ ଗର୍ଭପାତକାଏ—
Ḍāhula — A cow which miscarries.

**ଡି**—ଦେ. ଅ—ଡି ଡି (ଦେଖ)
Ḍi — Ḍi ḍi (See)
(ଡିଃ—ଅନ୍ୟରୂପ) ଦେ. ବି. (କଚେରୀଅ ବ୍ୟବହାର)—
୧ । ଡିକ୍ରୀର ସାଙ୍କେତିକ—
1. Abbreviation for the word decree.
(ଯଥା—ଡିକ୍ରୀଦାର = ଡି: ଦାର, ଡିକ୍ରୀଜାରୀ = ଡି: ଜାରି ।)
୨ । ଏକରର ଶତେକଭାଗରୁ ଏକଭାଗର ବା ଡେସିମିଲ୍‌ର ସାଙ୍କେତିକ ଚିହ୍ନ—2. Abbreviation for the word decimal of an acre.

**ଡିଅ**—ଗ୍ରା. ବି—ଡିହ (ଦେଖ)
Ḍia — Ḍiha (See)

**ଡିଆ**—ଦେ. ବି—ଡିଆଁ (ଦେଖ)
Ḍiā — Ḍiāñ (See)
ପ୍ରାଦେ. (ବସ୍ତର) ବି—ଦୀପ—Lamp.

**ଡି. ଆଇ. ଜି**—ବୈଦେ. ବି. (ସାଙ୍କେତିକ)—ପୁଲିସ ଆଦି ବିଭାଗର
Ḍi āi ji — ପ୍ରାଦେଶିକ ଅଧ୍ୟକ୍ଷଙ୍କ ସହକାରୀ: ଡେପୁଟି ଇନ୍‌ସ୍‌ପେକ୍ଟର
ଡି ଆଇ଼ ଜି — ଜେନେରାଲର ୩ ଗୋଟି ବଡ଼ ଶବ୍ଦର ଆଦ୍ୟ ଇଂରାଜୀ
ଡି ଆଇ ଜି — ଅକ୍ଷର ସମ୍ବଳିତ ସାଙ୍କେତିକ—D. I G; abbreviation for Deputy Inspector General of Police or other department.

**ଡିଆଁ**—ଦେ. ବି. (ସଂ. ଡୀନ)—୧ । ଲମ୍ଫ; କୁଦା—
Ḍiāñ — 1. A jump; a leap; bound.
ଡିଁଆଁ, ଡିଁଆ } ଅନ୍ୟରୂପ — ୨ । ଡେଇଁବା; କୁଦିବା— 2. Jumping.
ডিআঁ; ডিঙ্গা — ୩ । ଦଉଡ଼ିବା—3. Running about.
ফলাঁগ, ফাঁদ্ — (ଯଥା—ଦୁଷ୍ଟ ବାଳକ ସ୍କୁଲକୁ ନ ଯାଇ ବହି ନ ପଢ଼ି ଖାଲି ଡିଆଁ ମାରୁଛି ।)
୪ । ହୃତ୍‌ପିଣ୍ଡର ସ୍ପନ୍ଦନ—
4. Throbbing; palpitation.
୫ । ଗୋରୁ, ମହିଷି ଇତ୍ୟାଦି ପଶୁ କୌଣସି ସ୍ଥାନକୁ ପଶି ନ ପାରିବେ ଅଥଚ ମନୁଷ୍ୟମାନେ ଡେଇଁ କରି ସେଠାକୁ ଯାଇ ପାରିବେ ଏହି ଉଦ୍ଦେଶ୍ୟରେ ବାଡ଼ରେ ପୋତା ହୋଇଥିବା କାଠ ବା ବାଉଁଶର ଛକ—
5. A turnpike; two bamboos placed crosswise in a gate which men pass by jumping over but which cattle cannot pass.
୬ । ଯେଉଁ ବାଡ଼କୁ ମନୁଷ୍ୟ ଡେଇଁ କରି ଯାଇପାରେ; ଅଳ୍ପ ଉଚ୍ଚ ବାଡ଼—6. A low fence over which a man can leap.
୭ । ମାଛ ଧରିବା ପାଇଁ ନଦୀ ପ୍ରଭୃତିରେ କରାଯିବା ମାଟିର ଗଡ଼ା ବା ଜାଲ ଇତ୍ୟାଦିର କ୍ରମୋଚ୍ଚ ବାଡ଼—
7. A contrivance made of sloping nets or earth on which fishes fall while jumping up from water.
[ ଦ୍ର—ଏହାର ଉପରକୁ ମାଛ ଡେଇଁ ପଡ଼ିଲେ ପାଣିକୁ ପଳାଇ ଯାଇ ନ ପାରି ସହଜରେ ଧରା ପଡ଼ନ୍ତି । ]
ବିଣ—୧ । ଯେ କୁଦେ—1. Jumping.
(ଯଥା—ଡିଆଁ ପୋକ ।)
୨ । ସଂକ୍ରାମକ; ଯେଉଁ ରୋଗ ଏକ ଲୋକଠାରୁ ଅନ୍ୟ ଲୋକଠାକୁ ଡିଏଁ ବା ସଂକ୍ରମଣ କରେ—
2. Contagious (disease); infectious.
୩ । ଯେଉଁ ବାଟରେ ଯିବାକୁ ହେଲେ ଅନେକ ଉଚ୍ଚ ବାଡ଼ ବା ପ୍ରଶସ୍ତ ଗର୍ତ୍ତ ଇତ୍ୟାଦି ଡେଇଁ କରି ଯିବାକୁ ହୁଏ—
(a road) To pass which a man has to jump over many fences and pits.
୪ । ବହୁ ଅନ୍ତର ବା ବ୍ୟବଧାନରେ ଅବସ୍ଥିତ (ଗ୍ରାମଆଦି)—
4. Situated at great intervals.
(ଯଥା—ସମ୍ବଲପୁର ଜିଲ୍ଲାର ଗ୍ରାମଗୁଡ଼ିକ ଡିଆଁ ଅଟେ ।)
ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ହି. ଦୀମକ)—ଉଈ—
White ant.

**ଡିଆଁଇ ଦେବା**—ଦେ. କ୍ରି—୧ । ଅତିକ୍ରମ କରିବା; ବାଦ୍ ଦେବା—
Ḍiāñi debā — 1. To pass over.
(ଯଥା—ମୁଁ ଅସଲ କଥା ଡିଆଁଇ ଦେଇ ଅନ୍ୟ କଥା କହିଗଲି ।)
୨ । (ରୋଗ) ଅନ୍ୟ ବ୍ୟକ୍ତି ଦେହକୁ ସଂକ୍ରମଣ କରାଇ ଦେବା—
2. To cause one's disease to infect another person,

**ଡିଆଁଇବା**—ଦେ. କ୍ରି. (ସଂ. ଡୀନ)—
Ḍiāñibā — ୧ । ଡେଇଁବା କ୍ରିୟାର ଣିଜନ୍ତରୂପ—
ডিঙ্গান — 1. The causative of Deiñbā.

| ୧ | ଈ | ଊ | ୠ,ୡ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ଼ | ଉଅ | ୠ |
|---|---|---|---|---|---|---|---|---|---|---|---|---|---|---|
| ୨ | ଇ | ଉ | ରୁ | ଲୁ | ଏ୍ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଓ | ଦ୍ର |

**ଉଛାଳନା; ଫନ୍ଦାନା** ୨ । ଗୋଟିଏ ଉଚ୍ଚ ପଦାର୍ଥ (ବାଡ଼ ବା ପାଚେରି)କୁ
ଡିଆଁଇବା | ଅନ୍ୟରୂପ ଅତିକ୍ରମ କରାଇ କୌଣସି ବସ୍ତୁକୁ ନିକ୍ଷେପ
ଡ୍ୟାଇଁବା | କରିବା—2. To throw a thing over a high fence wall.

୩ । କୌଣସି ବ୍ୟକ୍ତି ବା ଜୀବ ଉଚ୍ଚ ବାଡ଼ ଆଦି ଡେଇଁଯିବାର ଉପାୟ କରିବା—
3. To cause another to jump or leap over a high fence, wall or ridge.
( ଯଥା—ଅଣ୍ଡିରା ବାଛୁରିକୁ ଗଡ଼ା ବେଗା ଉପରେ ଡିଆଁଇବା )

ଡିଂଗା ୪ । କୌଣସି ଉଚ୍ଚ ପଡ଼ା ପଦାର୍ଥକୁ ଅତିକ୍ରମ କରିବା; ଡେପିବା; ଡେଇଁବା; ଲୁଦିବା—
**ଉଛଳନା, ଫାଁଦନା**
4. To overleap; to jump or leap over.

୫ । ଦଉଡ଼ିବା—
5. To run about; to frisk about.

୬ । ଦୃସ୍ତ୍ରିତ ପଦାର୍ଥକୁ ଉପରକୁ ଫୋପାଡ଼ି ପୁନର୍ବାର ଧରିବା-
6. To toss a thing up; to throw a thing to the air and again catch it (e. g. a ball).
ନନ୍ଦବାଳା ଘା ଶୁଣି ଡିଆଇଁ ଫଟୁକୁ
ବୋଇଲେ କାନ୍ଦିବ ସୃଷ୍ଟର ତୋ ମୁଣ୍ଡକୁ—କୃଷ୍ଣସିଂହ, ମହାଭାରତ, ବନ।

୭ । ନାଚିବା—7. To dance.

୮ । ସ୍ପନ୍ଦିତ ହେବା—2. To throb.
( ଯଥା—ମୋ ଡାହାଣ ଆଖି ଡିଆଁଉଛି । )

୯ । ( ରୋଗ ) ସଂକ୍ରମଣ କରିବା—
9. To infect (said of contagious diseases).

**ଡିଆଁ ଜର**—ଦେ. ବି—ସଂକ୍ରାମକ ଜ୍ୱର; ଯେଉଁ ଜର ଜଣକୁ ହେଲା ପରେ ଅନ୍ୟ ଲୋକଙ୍କୁ ଆକ୍ରମଣ କରେ—
Diāñ jara
ଛୁଆଁଚେ ଜ୍ୱର Contagious or infectious fever.
**ଉଡ଼ନୀ ବୁଖାର**

**ଡିଆଁ ଡେଇଁ**—ଦେ. ବି (ସହଚର ଶବ୍ଦ)—୧ । ଲୁଦା; ଲମ୍ଫ—
Diāñ deiñ 3. Jump; leap
ଲାଫାଲାଫି ୨ । ଦଉଡ଼ିବା—2. Running; bounding along; frisking.
**उछल कूद**
୩ । ଏକାଧିକଥର ଡେଇଁବା କର୍ମ; ଲୁଦାଲୁଦି; ଲମ୍ଫଝମ୍ପ—
3 Repeated leaping.

**ଡିଆଁ ପୋକ**—ଦେ. ବି—ଯେଉଁ ପୋକମାନେ ଡେଇଁ ଡେଇଁ ଚାଲନ୍ତି—
Diāñ poka Jumping insects.

**ଡିଆଁ ବେଙ୍ଗ**—ଦେ. ବି—ଏକପ୍ରକାର ମସୃଣଶରୀରବିଶିଷ୍ଟ ବେଙ୍ଗ,
Diāñ benga ଏମାନେ ବହୁତ ବ୍ୟବଧାନ ଡେଇଁ ପାରନ୍ତି—
Leaping frog (a kind of frog).
[ ଦ୍ର—ଲୋକଙ୍କର ବିଶ୍ୱାସ ଯେ ଏମାନେ ମନୁଷ୍ୟର ଆଖିକୁ ଡେଇଁ ପଡ଼ନ୍ତି । ]

**ଡିଆଁ ମାରିବା**—ଦେ. କି—୧ । ଲୁଦିବା; ଲମ୍ଫ ଦେବା—
Diāñ māribā 1. To jump over; to leap over.
ଡିଙାଁ মাৰা × × ମିଥ୍ୟ ସରଗାକ ଡିଆଁ ମାର ନଥା ନାଉଥାଏ ।
**फान्दना** ପଦ୍ମାଚରମୋହନ, ଛମାଣଆଠଗୁଣ୍ଠ ।

୨ । ଦଉଡ଼ିବା—2. To run along.

୩ । ଦଉଡ଼ିକରି ପଳାଇବା—
3. To run away; to flee away.

୪ । ଶୀଘ୍ର କୌଣସି ସ୍ଥାନ ତ୍ୟାଗ କରିବା—
4 To leave a place in hot-haste.
ଅରେ ଡାକ କହ । ଡିଆଁ ମାରିଯିବାକୁ ବସନ୍ତେ ହିଁ,
ଡକା କରଇ ମୁଁ ବନ୍ଧୁ ଧରିଲି—କବିସୂର୍ଯ୍ୟ, ସଙ୍ଗୀତ ।

**ଡିଆଁ ରୋଗ**—ଦେ. ବି—ସଂକ୍ରାମକ ରୋଗ; ଯେଉଁ ରୋଗ ଏକ ବ୍ୟକ୍ତି
Diāñ roga ଠାରୁ ଅନ୍ୟ ବ୍ୟକ୍ତିକୁ ଡିଏଁ ବା ସଂକ୍ରମଣ କରେ—
ছোয়াঁচে রোগ Contagious disease, infectious disease.
**उड़नी बिमारी**

**ଡିଆସିଲି**—ଗ୍ରା. ବି—ଦିଆସିଲାଇ ( ଦେଖ )
Diāsili Diāsilāi ( See )

**ଡିଉ**—ବୈଦେ. ବିଣ (ଇଂ)—(ମହାଜନୀ ସିରସ୍ତା) ହୁଣ୍ଡି ବା ଟଙ୍କା ଆଦାୟ
Diu କରାଯିବାର ନିର୍ଦ୍ଧାରିତ ମିଆଦ—
ডিউ, **ड्यू** Due (date of a hundi).

**ଡିଉଟି**—ବୈଦେ. ବି ( ଇଂ. ଡ୍ୟୁଟି )—୧ । କୌଣସି ବ୍ୟକ୍ତି ଉପରେ
Diuṭi ନ୍ୟସ୍ତ କର୍ତ୍ତବ୍ୟ କର୍ମ—1 Particular duty
ডিউটি assigned to a person.
**ड्यूटि** ୨ । ଅବକାରୀ ଦ୍ରବ୍ୟ ଉପରେ ସରକାରଙ୍କ ନିର୍ଦ୍ଧାରିତ
(ଡ୍ୟୁଟି—ଅନ୍ୟରୂପ) ଶୁଳ୍କ—2. Duty or cess assessed on exciseable articles.
୩ । ଡାକ୍ତରଖାନା ଆଦିରେ ରୋଗୀମାନଙ୍କୁ ଜଗିବା ପାଇଁ ପ୍ରତ୍ୟେକ ଛାତ୍ର ବା ଭୃତ୍ୟର ନିର୍ଦ୍ଧାରିତ ପାଳି—
3 Turn of a student or servant to attend the patients etc in a hospital

**ଡିଉ ଡେଟ୍**—ବୈଦେ. ବି. (ଇଂ) (ମହାଜନୀ ସିରସ୍ତା)—
Diu deṭ ତମସୁକ ବା ହୁଣ୍ଡି ଆଦିଦ୍ୱାରା ନିଆଯିବା ଟଙ୍କା ପରିଶୋଧ
ডিউডেট করিবা ପାଇଁ ନିର୍ଦ୍ଧାରିତ ସମୟ—
**ड्युडेट** Due date of a hundi or bond.

**ଡି. ଏସ୍. ପି**—ବୈଦେ. ବି ( ଇଂ. ସାଙ୍କେତିକ )—ପୁଲିସ୍ ଡେପୁଟୀ
Di. es. pi ସୁପରିଣ୍ଟେଣ୍ଡେଣ୍ଟ; ଜିଲ୍ଲାର ପ୍ରଧାନ ପୁଲିସ କର୍ମଚାରୀଙ୍କ
ডি এস্. পি ସହକାରୀ—D. S. P.; Deputy Superintendent of Police.
**डि. एस्. पि**

**ଡିକି**—ବୈଦେ. ବି ( ଇଂ. ଡିକ୍ଲୀ )—୧ । ରିଚର୍ଡ଼ ନାମକ ବ୍ୟକ୍ତିର
Diki ଡାକନାମ— 1. Dicky; nick name of Richard.
ডিকী

ସାଧାରଣ ଲୋକେ ଅନେକ ସ୍ଥଳରେ ପ୍ରଥମ ୧ ପଙ୍କ୍ତିର ଅକ୍ଷର ଓ ମାତ୍ରା ଏବଂ ୨ ପଙ୍କ୍ତିର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ପଙ୍କ୍ତିର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ପଙ୍କ୍ତିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ଷୁଅ' ନ ମିଳିଲେ 'କଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କ୍ୟା' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଡିକୀ** ୨ । (ଇଂ. ଡିକ୍କୀ=ଗୃହକର ବସିବା ପାଇଁ ମଟର (ଡିକ—ଅନ୍ୟରୂପ) ଗାଡ଼ିର ପଛଆଡ଼େ ଥିବା ଆସନ) ମଟରଗାଡ଼ିର ଡ୍ରାଇଭରର ସହାୟକ ଭୃତ୍ୟ; କ୍ଲିନର—
2. A servant or cleaner who accompanies a motor-car and helps the driver in any trouble.

**ଡିକି ସିଟ୍**—ବୈଦେ. ବି (ଇଂ. ଡିକ୍କୀ)—ଗୃହକର ବା ସଇସ ବସିବା ପାଇଁ
Ḍiki sit̤ କେତେକ ମଟରଗାଡ଼ିର ପଛଆଡ଼େ ଥିବା ଆସନ—
ডিকীসিট Dickey; a seat at the back of some
**डिकीसीट** motor-cars for the servant or cleaner.

**ଡିକ୍ଟେସନ୍**—ବୈଦେ. ବି (ଇଂ)—ମୁଦ୍ରଣରେ ବୋଲାଯିବା ପଦ ଓ ବାକ୍ୟମାନ
Ḍikt̤esan ଲେଖିନେବା ପାଇଁ ଲେଖକଙ୍କୁ ଶୁଣାଇ ଅନ୍ୟ ଜଣେ
ডিক্টেসন ବ୍ୟକ୍ତିଙ୍କର ଉକ୍ତ ପଦମାନ ଡାକିବା—Dictation.
**डिक्टेसन**

**ଡିକ୍ରୀ** (ଇତ୍ୟାଦି)—ଡିଗ୍ରୀ ଇତ୍ୟାଦି (ଦେଖ)
Ḍikri (etc) Ḍigri etc. (See)
(ଡିକ୍ରୀ—ଅନ୍ୟରୂପ)

**ଡିକ୍‌ସିନାରୀ**—ବୈଦେ. ବି.(ଇଂ.ଡିକ୍ସନାରୀ)—ଅଭିଧାନ ଗ୍ରନ୍ଥ; ଭାଷାକୋଷ
Ḍik-sināri ଶବ୍ଦକୋଷ; ଯେଉଁ ପୁସ୍ତକରେ କୌଣସି ଭାଷାର ଶବ୍ଦ
ডীক্সীনারী ମାନଙ୍କର ଅର୍ଥ ଲେଖା ହୋଇଥାଏ—
**डिकसनारी** Dictionary; lexicon.
(ଡିକ୍ସନାରୀ, ଡିକ୍ସନେରୀ—ଅନ୍ୟରୂପ)

**ଡିଗବାଜି**—ଦେ. ବି.—(ବଙ୍ଗଳାରୁ ଅନୁକୃତ) ଶୂନ୍ୟକୁ ଲମ୍ଫ ଦେଇ ଓଲଟିବା;
Ḍig-bāji ପଲ୍ଟିବା; ମାଙ୍କଡ଼ତଡ଼—Somersault.
ডীগবাজী **उछलकूद**
(ଡିଗିବାଜି—ଅନ୍ୟରୂପ)

**ଡିଗ୍ରୀ**—ବୈଦେ. ବି. (ଇଂ. ଡିକ୍ରୀ)—୧ । ଫଇସଲା; ଅଦାଲତଙ୍କ ନିଷ୍ପତ୍ତି
Ḍigri ବା ବ୍ୟବସ୍ଥା—1. Judicial decision; decree
ডিক্রী, ডিগ্রী or final order.
**डिक्री, डिगरी** [ଦ୍ର—ମକଦ୍ଦମା ବିଚାର କରି ସାରି ଅଦାଲତ ଗୋଟିଏ
(ଡିଗିରୀ—ଅନ୍ୟରୂପ) ରାୟ (Judgment) ଦିଅନ୍ତି; ସେଥିରେ ମକଦ୍ଦମାର ସମସ୍ତ ହାଲ ଓ ମୀମାଂସାର କାରଣମାନ ଖୋଲା ହୋଇ ଲେଖା ଥାଏ, କିନ୍ତୁ ଡିଗ୍ରୀରେ ଅରଜିରେ ପ୍ରାର୍ଥିତ ଦାବୀ ଓ ଜିଣିଥିବା ପକ୍ଷ କି ପ୍ରକାରର କାହାଠାରୁ କପର ଆକାରରେ ପାଇବ ତାହାହିଁ କେବଳ ଲେଖା ଥାଏ । ମୀମାଂସାର ହେତୁବାଦମାନ ଡିଗ୍ରୀରେ ଲେଖା ହୋଇ ନ ଥାଏ ।]

୨ । ମକଦ୍ଦମାରେ କୌଣସି ପକ୍ଷର ଜୟଲାଭ—
2. Success of one party in litigation.

୩ । ତାପମାନ ଯନ୍ତ୍ରରେ ତାପର ନିର୍ଦ୍ଦିଷ୍ଟ ପରିମାଣ—
3. Degree of a thermometer.

୪ । ସମକୋଣର $\frac{1}{90}$ ଅଂଶ, କୋଣର ପରିମାପକ ଭାଗ—
3. One ninetieth part ($\frac{1}{90}$) of a right angle.

୫ । ବିଶ୍ୱବିଦ୍ୟାଳୟର ଉଚ୍ଚ ପରୀକ୍ଷାରେ ଉତ୍ତୀର୍ଣ୍ଣ ବ୍ୟକ୍ତିଙ୍କୁ ବିଶ୍ୱବିଦ୍ୟାଳୟ କର୍ତ୍ତୃମାନଙ୍କ ଦ୍ୱାରା ପ୍ରଦତ୍ତ ଉପାଧି; ଗ୍ରାଜୁଏଟ୍‌ମାନଙ୍କ ଉପାଧି (ଯଥା; ବି. ଏ, ଏମ୍. ଏ, ବି. ଏଲ୍, ବି. ଇ;)—5. Decree or title of academic distinction conferred on graduates of an university.

**ଡିଗ୍ରୀ କରା(ରେ)ଇବା**—ଦେ. କ୍ରି.—ଚେଷ୍ଟାଦ୍ୱାରା ମକଦ୍ଦମାରେ କୌଣସି
Ḍigri karā(re)ibā ପକ୍ଷର ଜୟଲାଭ କରାଇବା—
ডিগ্রী করান To secure a decree; to get a case
**डिग्रि करना** decreed.
(ଡିଗ୍ରି କରିବା—ଅନ୍ୟରୂପ)

**ଡିଗ୍ରୀ ଚୂଡ଼ାନ୍ତ**—ଦେ. ବି.—(କଚେରୀଆ ଭାଷା)—ବନ୍ଧକୀ ଓ ବଣ୍ଟାରା
Ḍigri churd̤ānta ମକଦ୍ଦମାର ପ୍ରାଥମିକ ଡିଗ୍ରୀକୁ ନିର୍ଦ୍ଧାରିତ
ডিগ্রীচুড়ন্ত ସମୟ ପରେ ଶେଷ ଡିଗ୍ରୀରେ ପରିଣତ କରାଇବାର
(ଡିଗ୍ରୀଚୂଡ଼ାନ୍ତ—ଅନ୍ୟରୂପ) ପ୍ରଣାଳୀ—A preliminary decree being made absolute or final in a mortgage or partition suit

**ଡିଗ୍ରୀ ଜାରି**—ବୈଦେ. ବି. (କଚେରୀଆ ଭାଷା)—(ଇଂ ଡିକ୍ରୀ ଓ ଫା. ଜାରୀ)
Ḍigri jāri ଅଦାଲତଙ୍କ ନିଷ୍ପତ୍ତିକୁ କାର୍ଯ୍ୟରେ ପରିଣତ କରାଯିବାର
ডিগ্রীজারি ପଦ୍ଧତି—Execution of a judicial decree
**डिगरिजारी** or order.

ମକଦ୍ଦମାର ଏତାଲାନାମା ଡିଗ୍ରୀଜାରୀ ପରୁଆନା ସବୁ ମୋ ପାଖରେ ଅଛି ।
ଫକୀରମୋହନ. ଛମାଣ ଅଠଗୁଣ୍ଠ ।

**ଡିଗ୍ରୀ ଟଙ୍କା**—ଦେ. ବି.—(କଚେରୀଆ ଭାଷା)—ଡିଗ୍ରୀଦାର ଦେଣଦାରଠାରୁ
Ḍigri t̤ankā ଠାରୁ ପାଇବା ପାଇଁ ଅଦାଲତ ଡିଗ୍ରୀ ଦେଇଥିବା
ডিগ্রীটাকা ଟଙ୍କା; ଜର-ଡିଗ୍ରି—Decretal amount.
**जरडिगिरी** [ଦ୍ର—ଡିଗ୍ରି ଟଙ୍କା ଆଦାୟ ହେବା ପାଇଁ ଦେଣଦାରର ଚଳନ୍ତି ଓ ଅଚଳନ୍ତି ସମ୍ପତ୍ତି ନିଲାମ ହୁଏ । ଏବଂ ଦେଣଦାରର ଶରୀରରୁ (ଅର୍ଥାତ୍ ଡିଗ୍ରୀ ଟଙ୍କା ଆଦାୟ ହେବା ପର୍ଯ୍ୟନ୍ତ ଦେଣଦାରକୁ ଗିରଫ କରାଇ ଦେୱାନୀଫାଟକରେ ବନ୍ଦୀ କରି ରଖିବାଦ୍ୱାରା) ମଧ୍ୟ ଉକ୍ତ ଡିଗ୍ରୀ ଟଙ୍କା ଆଦାୟ କରା ଯାଏ ।]

**ଡିଗ୍ରୀ ଡିସମିସ୍**—ବୈଦେ. ବି. (ଇଂ) (ବିପରୀତାର୍ଥକ ସହଚର)—
Ḍigri dismis ୧ । ମକଦ୍ଦମାରେ ଜୟଲାଭ ଓ ପରାଜୟ—
ডিগ্রী ডিসমিস 1. A case being decreed in one's
**डिग्री डिसमिस** favour or dismissed against him.

୨ । ଅନୁକୂଳ ଓ ପ୍ରତିକୂଳ ଆଦେଶ—
2. Favourable and unfavourable orders.

ଡିଗ୍ରୀ ଡିସମିସ
ଡିଗ୍ରୀ ଡିସ୍(ସି)ମିସ୍(ସ) } ଅନ୍ୟରୂପ

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହ୍ରସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍ଷ୍ମ | ଈଷ୍ଟ | ୍ରୁଈ | ଊ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚିଁ | ଇଥ | ଌ | ବ |

ଡଗ୍ରୀଦାର୍—ବୈଦେ. ବି. (ଇଂ. ଡଗ୍ରୀ ଓ ଫା. ଦାର୍) (କଚେରୀ ଭାଷା)
Ḍigridār ଯାହା ସପକ୍ଷରେ କୌଣସି ମକଦମା ଡଗ୍ରୀ ହୋଇ
ଡିଗ୍ରୀଦାର ଥାଏ; ମକଦମାରେ ଜିଣିଥିବା ପକ୍ଷ—
डिगरिदार Decree-holder.
(ଦେଣଦାର୍—ବିପକ୍ଷର)

ଡଗ୍ରୀ ଦେବା—ଦେ. କ୍ରି.—(ବିଚାରକ) କୌଣସି ପକ୍ଷ ଜୟଯୁକ୍ତ ହେବାର
Ḍigri debā ଆଦେଶ ଦେବା—( a court ) To pass a
ଡିଗ୍ରୀ ଦେଓୟା decree in favour of a party.
डिगरी देना
(ଡଗ୍ରୀ କରିବା—ଅନ୍ୟରୂପ)

ଡଗ୍ରୀ ପାଇବା—ଦେ. କ୍ରି.—(କଚେରୀ ଭାଷା)—ଅଦାଲତରୁ ଆପଣା
Ḍigri pāibā ପକ୍ଷର ଅନୁକୂଳ ଆଦେଶ ପ୍ରାପ୍ତ ହେବା; ମକଦମାରେ
ଡିଗ୍ରୀ ପାଓୟା ଜୟଲାଭ କରିବା—To get a decree; to win
डिग्री पाना, डिग्री हासल करना a case.
(ଡଗ୍ରିହାସଲ୍—ଅନ୍ୟରୂପ)

ଡଗ୍ରୀ ହେବା—ଦେ. ବି.—ମକଦମାରେ ଜୟଲାଭ କରିବା—
Ḍigri hebā Getting a decree in one's favour;
ଡିଗ୍ରୀ ହଓୟା winning a case.
डिग्री होना

ଡଙ୍ଗର—ସଂ. ବି.—( ଲଙ୍ଗର୍ ଧାତୁ=ପାଇବା+ଅର; ଲ ସ୍ଥାନରେ ଡ
Ḍiṅgara ଆଦେଶ)—
୧। ମୋଟା ଲୋକ—1. Fat man.
୨। ବଦମାସ୍; ଦୁଷ୍ଟ ଲୋକ—2. Wicked person.
୩। ଠକ—3. Knave; a cheat.
୪। ଦାସ; ଗୋଲମ—4. Slave; servant.
ଡିଙ୍ଗର; ଡୋଙ୍ଗର; ଡୋଂଗର ଦେ. ବି. (ସଂ. ଟଙ୍କ; ଭୃଙ୍ଗ)–ଟାଙ୍ଗର;
डुङ्गर ପାହାଡ଼ିଆ ଭୂମି—Hilly country.
ବନ ଡଙ୍ଗର କଣିଣ ଅସନ୍ତ ରହିବେ। ସାରଳା ମହାଭାରତ. ସଭା।
ବିଣ.—୧। ଦୁଷ୍ଟ—1. Wicked.
୨। ଶଠ—2. Cheating, deceitful.
ଡଙ୍ଗର ଭୁଲେ ନ ଗୁଲବ ବାତ। ବହୁକ୍ରମାଏ. ଚଉତିଶା।
୩। ଧୂର୍ତ୍ତ—3. Cunning.
କୋଇଲି। ଡଙ୍ଗର ସବଣ ବଡ଼ ଦୁଷ୍ଟ। ବାନ୍ଧକୋଇଲି।
୪। କଣା—4. One-eyed.
ପ୍ରାଦେ. (ସମ୍ବଲପୁର) ବିଣ.—ଅଦୃଶ୍ୟ—One who can not be defeated or over powered; indomitable.

ଡଙ୍ଗର ଆଖିଆ—ଦେ. ବିଣ—ଯାହାର ଆଖି ଫୁଟିଯାଇ ଥାଏ—
Ḍiṅgara ākhiā Blinded.

ଡଙ୍ଗର ମାଳ—ପ୍ରାଦେ.(ଗଡ଼ଜାତ)ବି—ପର୍ବତର ଢାଲୁରେ ଥିବା ଗଡ଼ାଣିଆ
Ḍiṅgara māḷa ଜାଗାରେ କରାଯିବା ଶସ୍ୟ କ୍ଷେତ୍ର—Field on the slope of a hill where crops are raised.

ଡିଙ୍ଗରା—ପ୍ରାଦେ. (ସମ୍ବଲପୁର) ବିଣ. (ସଂ. ଡିଙ୍ଗର)—ଦୁଷ୍ଟ—
Ḍiṅgarā Wicked.
ବି—(ଧ୍ୱନ୍ୟନୁକରଣ) ଧେଣ୍ଡ୍ରା; ଢେଙ୍ଗୁରା—Drum.

ଡିଙ୍ଗଲା—ପ୍ରାଦେ. (ଛୋଟନାଗପୁର ଓ ହିନ୍ଦୋଳ) ବି—ବୋଇତ କଖାରୁ—
Ḍiṅgalā Cucurbita; red gourd.

ଡିଙ୍ଗା—ଦେ. ବି—୧। କେଶକୀଟ; ବଡ଼ ଉକୁଣୀ; ଡାଗରା—
Ḍiṅgā 1. A big louse.
ଡେଙ୍ଗବ [ ଦ୍ର—ମୁଣ୍ଡର ବଡ଼ ବଡ଼ ଉକୁଣୀଙ୍କୁ ଡଙ୍ଗା, ସାନ ଉକୁଣୀଙ୍କୁ
टेंग ଗଞ୍ଜ ଓ ଉକୁଣୀ ଡିମ୍ବକୁ ନଖ ବୋଲାଯାଏ। ]
୨। (ଫରାସୀ, ଦିନାମାର ଆଦି ଶବ୍ଦ ପରେ ଯୁକ୍ତ )—ଅମୁକ
ଜାତିର ଅଧିକୃତ ସ୍ଥାନ ବା ବସତି—2. Place occupied by such and such a nation.
(ଯଥା—ଦିନାମାର ଡଙ୍ଗା, ଫରାସି ଡଙ୍ଗା।)

ଡିଙ୍ଗାରିବା—ପ୍ରାଦେ. (ବାଲେଶ୍ୱର) କ୍ରି—ଟାଣି ହେବା—
Ḍiṅgāribā To strain; to stretch oneself.

ଡିଙ୍ଗାରି ହେବା—ପ୍ରାଦେ.(ବାଲେଶ୍ୱର)କ୍ରି—ଲମ୍ବି ବା ସିଧା ହୋଇଯିବା-
Ḍiṅgāri hebā To be stretched; to be straightened.

ଡିଙ୍ଗୀ—ଦେ. ବି. (ସଂ. ଦ୍ରୋଣୀ)—ଛୋଟଡଙ୍ଗା; କୁଲାଡଙ୍ଗା; ଡଙ୍ଗୀ—
Ḍiṅgi Small boat; canoe; dug-out.
ଡିଙ୍ଗୀ डींगी

ଡିଟ—ପ୍ରାଦେ. (ଗଞ୍ଜାମ) ବୈଦେ. ବି. (ଇଂ. ଡିଟ୍ଟୋ)—ଡିଟୋ (ଦେଖ)
Ḍiṭa Ḍiṭo (See)

ଡିଟୋ—ବୈଦେ. ଅ. (ଇଂ. ଡିଟ୍ଟୋ)—ଏକନ; ପୂର୍ବେ ବା ଉପରେ
Ḍiṭo ଲେଖା ହୋଇଥିବା ବିଷୟ ବା ବ୍ୟକ୍ତି ସଙ୍ଗେ ଏକ—
ଡିଟୋ डिटो Ditto.

ଡିଟୋ କରିବା—ଦେ. କ୍ରି—ଡିଟୋ ମାରିବା (ଦେଖ)
Ḍiṭo karibā Ḍiṭo māribā (See)

ଡିଟୋ ମାରିବା—ଦେ. କ୍ରି—କୌଣସି ବ୍ୟକ୍ତିଙ୍କର କଥାରେ ହଁ ମାରିବା-
Ḍiṭo māribā To ditto what another says; to
ଡଟୋ ମାବା ditto slavishly.
डिटो मारना

ଡିଡାର୍—ବୈଦେ. ବି. (ଆ)—ଜମିଦାର ଓ ରାଜାମାନଙ୍କର ଚାକର
Ḍidār ଗୃହବାସ, ଗୋରୁ ଗାଈ ଆଦିଙ୍କ ତତ୍ତ୍ୱନେଉଥିବା ବ୍ୟକ୍ତିଙ୍କୁ
ଦିଆଯିବା ଜାଗିର—Jaghir; service-tenure given to a servant who looks after the cattle and agriculture of a Raja or Zamindar.

ଡି ! ଡି !—ଦେ. ଅ—ହଳ ଓ ଗାଡ଼ିରେ ଲାଗିଥିବା ବଳଦମାନଙ୍କୁ
Ḍi ḍi ଚାଳନ କରିବାପାଇଁ ଚାଳକର ଉଚ୍ଚାରିତ ଧ୍ୱନି—Sound
(ଡିଃ ଡିଃ—ଅନ୍ୟରୂପ) uttered to incite bullocks of a cart or plough to action.
[ଦ୍ର—ବଳଦଙ୍କୁ ସୂଚିତ କରିବା ପାଇଁ ଉଚ୍ଚାରିତ ଧ୍ୱନି 'ଡିଃ' ।]

ସାଧାରଣ ଲୋକେ ଅପର ପୃଷ୍ଠାରେ ୧ଚିହ୍ନ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତରୁ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ, କୂଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅଗିଆ ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଡିଡିମ—ଦେ. ବି. (ସଂ. ଡିଣ୍ଡିମ)—ଡିଣ୍ଡିମ (ଦେଖ)
Ḍiḍima Ḍiṇḍima (See)

ଡିଣା—ଦେ. ବି—୧ । ପାନ ରଖିବା ପାତ୍ରବିଶେଷ; ପାନଡିବା—
Ḍiṇā 1. Betel-case.
୨ । ଶସ୍ୟଆଦି ମାପିବାର ଗଉଣୀ ବା ଡିବା; ପିତଳ ଗଉଣୀ; ପିତଳ ମାଣିକା—2. A corn-measure; a corn-measuring pot of brass.

ଡିଣ୍ଡା—ପ୍ରାଦେ. (ବସ୍ତର) ବି. ସ୍ତ୍ରୀ—ଯୁବତୀ—
Ḍiṇḍā A young woman.
ପ୍ରାଦେ. (ସିଂହଭୂମ) ବି. ପୁଂ ଓ ସ୍ତ୍ରୀ—ଅବିବାହିତ ପୁରୁଷ ବା ସ୍ତ୍ରୀ—Bachelor or maid.

ଡିଣ୍ଡିମ—ସଂ. ବି. (ଡିଣ୍ଡି=ଅନୁକରଣ ଶବ୍ଦ+ମି ଧାତୁ=କ୍ଷେପଣ କରିବା
Ḍiṇḍima +କର୍ତ୍ତୃ ଅ, ତୁଳ. ଇଂ. ଡ୍ରମ୍)—୧ । ଅନଦ୍ଧ ବାଦ୍ୟର ଏକମୁଖା ବାଦ୍ୟ; ଢୋଲ୍‌ କୁରି; ନାଗରା—
Drum; tomtom; tabor; kettle-drum.
ବ୍ରଜେ ହେଉଛି ଏହି ଡଣ୍ଡିମ ବାଜଣାରେ ।
କବିସୂର୍ଯ୍ୟ. ବଳଦେବରଥ, ବ. ଗୀତ ।
୨ । କୃଷ୍ଣପାକ ଫଳ (ହି. ଶବ୍ଦସାଗର); କରଦା (ଦେଖ)
A kind of acidish sweet berry.

ଡିଣ୍ଡିର—ସଂ. ବି—୧ । ସମୁଦ୍ର ଫେଣ (ଏହା ରଙ୍ଗ ଦିଆଯିବା ଜିନିଷକୁ
Ḍiṇḍira ପାଲିସ କରିବାରେ ବ୍ୟବହୃତ ହୁଏ)—1. Cuttle-bone; the bone of cuttle-fish (used in polishing furnitures to be dyed).
୨ । ପାଣିର ଫେଣ (ହି. ଶବ୍ଦସାଗର)—
2. Foam of water.

ଡିଣ୍ଡିଶ—ସଂ. ବି—ଭେଣ୍ଡି (ହି. ଶବ୍ଦସାଗର)—
Ḍiṇḍiśa Lady's finger (fruit).

ଡିତ୍ଥ—ସଂ. ବି—୧ । କାଠର ତିଆରି ହାତୀ—
Ḍit-tha 1. An elephant made of wood; wooden elephant.
୨ । ବିଶିଷ୍ଟ ଲକ୍ଷଣବନ୍ତ ପୁରୁଷ (ହି. ଶବ୍ଦସାଗର)—
2. A person with characteristic traits or mark.

ଡିତ୍ଥ ଡବିତ୍ଥ—ସଂ. ବି (ସହଚର ଶବ୍ଦ)—କାଠରେ ତିଆରି ମୃଗ ଆଦି
Ḍittha ḍabittha ଖେଳନା—Wooden toys representing animals.

ଡିନ୍ଦ୍‌ (ଧାତୁ)—ସଂ—୧ । ପ୍ରେରଣ କରିବା—
Ḍin-b (root) 1. To send out.
୨ । ବାହାରକୁ ଫିଙ୍ଗିବା; କାଢ଼ିବା—
2. To throw out; to bring out.

ଡିନ୍ଭ୍‌ (ଧାତୁ)—ସଂ—ଏକଜ କରିବା—
Ḍin-bh (root) To amass; to gather up.

ଡିନର୍—ବୈଦେ. ବି. (ଇଂ. ଡିନର୍)—ସାହେବମାନଙ୍କ ମଧ୍ୟାହ୍ନ ବା ଦିନର
Ḍinar ପ୍ରଧାନ ଭୋଜନ—Dinner.
(ଡିନାର୍—ଅନ୍ୟରୂପ) [ ଦ୍ର—ଏହା ରାତି ୮ଟା ବେଳେ ଖିଆ
ডিনার যାଏ । ]
डिनार ୨ । ସାହେବୀ ଖାନା—2. European meal.

ଡିନର ଦେବା—ଦେ. କ୍ରି—ସାହେବୀ ଧରଣର ଭୋଜିରେ ଅନେକ
Ḍinar debā ସାହେବଙ୍କୁ ଓ ସାହେବୀ ଧରଣରେ ଖାଉଥିବା ଦେଶୀ ଲୋକଙ୍କୁ ନିମନ୍ତ୍ରଣ କରି ଖୁଆଇବା; ଖାନା ଦେବା—
To give dinners in European style.

ଡିନାର୍—ବୈଦେ. ବି. (ଆ)—ପାରସ୍ୟଦେଶପ୍ରଚଳିତ କ୍ଷୁଦ୍ର ମୁଦ୍ରା
Ḍinār (ଆମ ଦେଶର କଉଡ଼ା ଗଣ୍ଡା ପରି ହିସାବରେ ବ୍ୟବହୃତ)—
दिनार A small coin of Persia used in squaring
दिनार up accounts.
(ଦିନାର୍—ଅନ୍ୟରୂପ) ବୈଦେ. (ଇଂ)—ଡିନର୍ (ଦେଖ)
Ḍinar (See)

ଡିପ(ପା)ଜିଟ୍—ବୈଦେ. ବି. (ଇଂ)—ଡିପୋଜିଟ୍ (ଦେଖ)
Ḍipa(pā)jiṭ Ḍipojiṭ (See)

ଡିପାର୍ଟ୍‌ମେଣ୍ଟ୍—ବୈଦେ. ବି. (ଇଂ. ଡିପାର୍ଟ୍‌ମେଣ୍ଟ୍)—କାର୍ଯ୍ୟ ଚାଳନର
Ḍipāṭ-menṭ ସୁବିଧା ପାଇଁ ଗଠିତ ପୃଥକ୍ ପୃଥକ୍ ବିଭାଗ;
ডিপার্টমেণ্ট ମହକୁମା—Department created for
डिपार्टमेण्ट division of work.
(ଡିପାର୍ଟମେଣ୍ଟ—ଅନ୍ୟରୂପ)

ଡି ପି. ଡବ୍ଲ୍ୟୁ—ବୈଦେ. ବି. (ଇଂ)—(ସାଙ୍କେତିକ; ଡିପାର୍ଟମେଣ୍ଟ
Ḍi. pi. ḍablyu ଅଫ ପବ୍ଲିକ୍ ୱାର୍କ୍ସରେ ଥିବା ପ୍ରଧାନ ଶବ୍ଦତ୍ରୟର
(ପି. ଡବ୍ଲ୍ୟୁ. ଡି—ଅନ୍ୟରୂପ) ଆଦ୍ୟ ୩ ଇଂରାଜୀ ଅକ୍ଷର) ସରକାରଙ୍କ ବାଣକର୍ମିଷ୍ଠୀ ଇଲାକା—
D. P. W; abbreviation for the Department of Public Works; P. W. D.

ଡି. ପି. ଆଇ—ବୈଦେ. ବି. (ଇଂ) (ସାଙ୍କେତିକ); (ଡାଇରେକ୍ଟର୍ ଅଫ୍
Ḍi. pi. āi ପବ୍ଲିକ୍ ଇନ୍‌ଷ୍ଟ୍ରକ୍‌ସନ୍‌ର ପ୍ରଧାନ ଶବ୍ଦତ୍ରୟର ଆଦ୍ୟ
ডি. পি. আই ୩ ଇଂରାଜୀ ଅକ୍ଷର) ସରକାରୀ ଶିକ୍ଷା ବିଭାଗର ପ୍ରାଦେଶିକ
डि पि. आइ କର୍ତ୍ତା ବା ହାକିମ—D. P I; abbreviation for the Director of Public Instruction of a province.
(ଯଥା—ବିହାର ଓଡ଼ିଶାର ଡି. ପି. ଆଇ ମହାମତି ଫକସ୍ ସାହେବଙ୍କର ଏ ଭାଷାକୋଷର ପ୍ରକାଶ ସମ୍ବନ୍ଧେ ପ୍ରଗାଢ଼ ଉଦ୍ୟମ ଓ ଉତ୍ସାହଦାନ ଲାଗି ସଂଗ୍ରାହକ ତାଙ୍କଠାରେ ଚିରଋଣୀ ।)

ଡିପୁ—ବୈଦେ. ବି. (ଫରାସୀ)—ଡିପୋ (ଦେଖ)
Ḍipu Ḍipo (See)

ଡିପୁଟୀ (ଇତ୍ୟାଦି)—ଡେପୁଟୀ ଇତ୍ୟାଦି (ଦେଖ)
Ḍipuṭi (etc) Ḍepuṭi etc (See)
(ଡିପୋଟୀ—ଅନ୍ୟରୂପ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଦ | ଡ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ପ | ଡ଼ଥ | ଞ |
| ୨ | ଏ | ଉ | ରୁ | ଲୁ | ଙ୍ଗ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଥ | ଢ଼ | ନ୍ |

ଡିପୁଟେସନ୍—ବୈଦେ. ବି. (ଇଂ)—ଡେପୁଟେସନ୍ ( ଦେଖ )
Diputesan Deputesan ( See )

ଡିପୋ—ବୈଦେ. ବି. ( ଫରାସୀ )—୧ । ଯେଉଁଠାରେ ମାଲମାନ
Dipo ସଂଗୃହୀତ ହୋଇ ଜମା ରହେ; ଗୋଦାମ; ଭଣ୍ଡାର; ଗଞ୍ଜ—
ଡୀପୋ 1. Depot for merchandise.
**डिपो** ( ଯଥା—କୋଇଲା ଡିପୋ । )
୨ । ଯେଉଁଠାରେ ଦେଶାନ୍ତରକୁ ପ୍ରେରିତ କୁଲିମାନେ ବିଦେଶକୁ ପଠାଯିବା ପୂର୍ବରୁ ଏକତ୍ର ବା ଗୁଣ୍ଡ କରାଯାଆନ୍ତି—
2. Cooly-depot.

ଡିପୋଜିଟ୍—ବୈଦେ. ବି. ( ଇଂ. ଡିପଜିଟ୍ )—
Dipojit ୧ । ଧନ ଅନ୍ୟ ବ୍ୟକ୍ତି ନିକଟରେ ଗଚ୍ଛିତ ରଖିବା;
ଡୀପୋଜୀଟ ଅମାନତ୍—1. Deposit.
**डिपाजिट** ୨ । ନ୍ୟାସ; ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ଜଣକ ମାରଫତରେ ଟଙ୍କା ଜମା କରାଯିବା—
2. A deposit in trust.
୩ । କୌଣସି ବ୍ୟକ୍ତି ନିକଟରେ ନିର୍ଦ୍ଦିଷ୍ଟ କାର୍ଯ୍ୟ ପାଇଁ ଜମା କରାଯିବା ଟଙ୍କା—
3. A sum deposited with some one for a particular purpose.

ଡିପୋଟୀ ( ଇତ୍ୟାଦି )—ବୈଦେ. ବି—ଡେପୁଟୀ ଇତ୍ୟାଦି ( ଦେଖ )
Dipoti ( etc ) Deputi etc ( See )

ଡିପୋର୍ଟେସନ୍—ବୈଦେ. ବି. ( ଇଂ )—ସ୍ୱଜାତିଦେଶରେ ଅପରାଧୀ ବା
Diportesan ସନ୍ଦେହୀ ବ୍ୟକ୍ତିକୁ ଦେଶାନ୍ତର ପ୍ରେରଣ—
ଡୀପୋର୍ଟେସନ ( ଡିପୋର୍ଟେସନ୍—ଅନ୍ୟରୂପ ) Deportation
**डामल**

ଡିପ୍ଲୋମା—ବୈଦେ. ବି. ( ଇଂ )—କୌଣସି ବିଦ୍ୟାରେ ପାରଦର୍ଶିତା
Diplomā ଲାଭ କରିଥିବା ଛାତ୍ରକୁ ଶେଷ ପରୀକ୍ଷା ପରେ ବିଦ୍ୟାଳୟର
ଡୀପ୍ଲୋମା ସର୍ବୋଚ୍ଚ କର୍ତ୍ତୃପକ୍ଷଙ୍କଠାରୁ ମିଳିବା ସନନ୍ଦ—Deploma.
**डिप्लोमा** [ ଦ୍ର—ସାଧାରଣତଃ ବିଦ୍ୟାଳୟ ବା କଲେଜର ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଛାତ୍ରଙ୍କୁ ଡିପ୍ଲୋମା ମିଳେ; ଯେଉଁ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ଛାତ୍ରଙ୍କୁ ଡିପ୍ଲୋମା ମିଳେ ସେହି ପରୀକ୍ଷାକୁ 'ଡିପ୍ଲୋମା ଏକ୍ଜାମିନେସନ୍' ବୋଲାଯାଏ । ]

ଡିଫାମେସନ୍—ବୈଦେ. ବି. ( ଇଂ )—କୌଣସି ବ୍ୟକ୍ତି ବିରୁଦ୍ଧରେ
Diphāmesan ଅପବାଦର ପ୍ରଚାର—Defamation.
ଡୀଫାମେସନ [ ଦ୍ର—ଯେବେ କୌଣସି ବ୍ୟକ୍ତି ଅନ୍ୟ ବ୍ୟକ୍ତିର
**डिफामेसन** ସୁନାମରେ ବାଧା ଦେବା ଉଦ୍ଦେଶ୍ୟରେ ଅନ୍ୟ ବ୍ୟକ୍ତି ବିରୁଦ୍ଧରେ ଲିଖିତଭାବରେ, ମୁହଁରେ କିମ୍ବା ଇଙ୍ଗିତାଦିଦ୍ୱାରା ଉକ୍ତ ବ୍ୟକ୍ତିର କୌଣସି ନିନ୍ଦାଜନକ ବା ସମ୍ମାନହାନିକର ବିଷୟ ଏକାଧିକ ବ୍ୟକ୍ତିଙ୍କ ନିକଟରେ ପ୍ରଚାର କରେ ତେବେ ତାହା 'ଡିଫାମେସନ୍' ହୁଏ । ଏଥିର ଦଣ୍ଡ ଭାରତୀୟ ଦଣ୍ଡବିଧି ଆଇନର ୪୯୯ ଦଫାରେ ଓ ଦଣ୍ଡ ୫୦୦ ଦଫାରେ ବିବୃତ ହୋଇଅଛି । ]

ଡିଫେନ୍ସ୍—ବୈଦେ. ବି. (ଇଂ)—୧ । ଫଉଜଦାରୀ ମକଦ୍ଦମାରେ ମୁଦାଲାର
Diphens ପକ୍ଷ—1. The side of the accused in a
ଡୀଫେନ୍ସ criminal case.
**डिफेन्स** ୨ । ଦେୱାନୀ ମକଦ୍ଦମାରେ ପ୍ରତିବାଦୀର ପକ୍ଷ—
2. The side of the defendant in a civil suit.
୩ । ଫଉଜଦାରୀ ମକଦ୍ଦମାରେ ମୁଦ୍ଦେଇର ଉପସ୍ଥାପିତ ଅଭିଯୋଗ ଓ ଦେୱାନୀ ମକଦ୍ଦମାରେ ବାଦୀର ଆରଜିଲିଖିତ ଦାବୀ ବା ବିବୃତିର ଉତ୍ତରରେ ଯଥାକ୍ରମେ ମୁଦାଲାର ଓ ପ୍ରତିବାଦୀର ଉପସ୍ଥାପିତ ଜବାବ୍; ସଫେଇ—
3 Defence of an accused or of a defendant in a criminal or civil case.

ଡିବା—ଦେ. ବି. ( ସଂ. ଦର୍ବୀ=ଅଣଳ କିମ୍ବା ସଂ. ଡିମ୍ବ; କିମ୍ବା ହି.
Dibā ଡିବ୍ବା )—୧ । ପାନ କତା, ଭଙ୍ଗା ପାନ ବା ପାନଖିଲି
ଡୀପେ, ଡୀପା; ରଖିବାପାଇଁ ବ୍ୟବହୃତ ଧାତୁମୟ ଆବରଣଯୁକ୍ତ ପାତ୍ର-
ଡୀବା, ଡୀବୀ 1 Betel-case made of metal.
**डिबिआ; डिबा** ୨ । ଧାନ ମାପିବାର ଛୋଟ ଗଉଣୀ—
2. A corn-measuring pot.
୩ । ଧାତୁନିର୍ମିତ ଆବରଣଯୁକ୍ତ ଛୋଟ ପାତ୍ର; ସମ୍ପୁଟ—
3. A metal casket.
ପ୍ରାଦେ. (ଗଞ୍ଜାମ) ବି—କିରାସିନି ତେଲ ଜଳିବାର ଡିବି; ଡିବିରି;
ଚିମ୍ନି ଲାଗି ନ ଥିବା କେରାସିନ୍ ତେଲ ଜଳିବା ଟିଣର ଦୀପ—
A kerosine burner or lamp without a chimney.
(ମେଦିନୀପୁର) ବି—କିରାଟ—A small metal box for putting small things and carrying it in the waist-cloth.
ଦେ. ବିଣ—ଡିମ୍ବା ( ଦେଖ )—Dimbā ( See )

ଡିବାଡିବା—ଦେ. ବିଣ—ଡିମ୍ବାଡିମ୍ବା ( ଦେଖ )
Dibā-dibā Dimbā-dimbā ( See )

ଡିବି—ଦେ. ବି—୧ । ଡିବା ( ଦେଖ )
Dibi 1. Dibā ( See )
ଲଙ୍ଫ ୨ । ( ସଂ. ଦୀପ; ଭୁଲ. ଗୁଜରାଟୀ. ଡିଓ)—
ଲୈଂଫ କିରାସିନି ତେଲ ଜଳିବାର ଧାତୁମୟ ପ୍ରଦୀପ—
2. A kerosine burner or naked lamp.
ପ୍ରାଦେ. (ସମ୍ବଲପୁର ଓ ସିଂହଭୂମ) ବି—ଛୋଟ ହାଣ୍ଡି; ଅଟିକା—
Small earthen pot.

ଡିବଥା—ଦେ. ବି—୧ । ଡିବା ( ଦେଖ )
Dibiā 1. Dibā ( See )
ଡିପେ ୨ । ଡିବି ( ଦେଖ )
**डिबिया** 2. Dibi ( See )
୩ । ଛୋଟ ଡବା—3, Small metal case.

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା:— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଥ' ନ ମିଳିଲେ 'କୂଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅହୈ' ନ ପାଇଲେ 'ଆଙ୍କି' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଲଂକାର' ଦେଖିବେ ।

**ଡିବିକିରାଜି**—ପ୍ରାଦେ. (ଗଞ୍ଜାମ) ବି—ଖାତରେ ପକାଇ ଖେଳିବା ବାଟି ଖେଳର ଦ୍ୱିତୀୟ ଆଘାତ (ଚିଦେ)—
Ḍibikirāji
The second stroke of a kind of a game with marbles.

**ଡିବିଡିବି**—ଦେ. ଅ. ( ଧ୍ୱନ୍ୟନୁକରଣ )—
Ḍibi-ḍibi ନାଗରା ବା ଡମରୁ ବାଜିବାର ଶବ୍ଦ—
ଡିମ୍‌ଡିମ୍, ডীবডিবি The sound of drum-beating.
ডুগডুগ, डिमडिम
ଡିବିଡିବି ଢୋଲରୁ ବଜାଇ ବଳେ ।
ପ୍ରତାପ. ଶଶିସେଣା ।

ଦେ. ବି—୨ । ଆମେରିକାରୁ ଏ ଦେଶକୁ ଆସିଥିବା ଉଦ୍ଭିଦ ବିଶେଷ—2. American Sumach; Cæsalpinia Coriaria (tree).

**ଡିବିଡିବି ବାଜିବା**—ଦେ. କ୍ରି —(କୌଣସି ବିଷୟ) ସର୍ବତ୍ର ପ୍ରଘଟ ହେବା; ସାଧାରଣରେ ପ୍ରକଟିତ ବା ବିଖ୍ୟାତ ହେବା—
Ḍibiḍibi bājibā
ডিমডিম বাজা, ডিবডিব বাজা To be published or
डीमडीमबजना proclaimed broad cast.
କଣ୍ଠକରେ ବାଜେ ଡିବିଡିବି
ଛିଅ ନାହିଁ କହୁ ଥାଏ ସିଦ୍ଧ ସିଦ୍ଧ—ଚଗ ।

**ଡିବିରି**—ଦେ. ବି. ( ସଂ. ଦୀପ; ଡିମ୍ବ=ଗୋଲ )—
Ḍibiri ୧ । ପେଚର ମୁହଁରେ ଲଗାଯିବା ପେଞ୍ଚ ବିଶିଷ୍ଟ
ঢিবরী ମୁଣ୍ଡିଆ ବା ଭୁଣ୍ଡି—
डेबरी,डिबी, डिबरो 1. The nut of a bolt or screw.
୨ । ଡିବି ୨ ( ଦେଖ )—2 Ḍibi 2 ( See )

**ଡିବେଞ୍ଚର**—ବୈଦେ. ବି ( ଇଂ )—ଋଣ ପାଇଁ କୌଣସି କମ୍ପାନୀଙ୍କ ଦ୍ୱାରା ସମ୍ପାଦିତ ବନ୍ଧକ ଦଲିଲ—
Ḍibeñchar
ডিবেঞ্চার Debenture.
डिबेंचर

**ଡିମ୍**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଡିମ୍ବ; ତୁଳ. ବ. ଡିମ୍)—
Ḍim ଡିମ୍ବ—Egg.

**ଡିମ୍(ମି)ଡିମ୍ (ମି)**—ଦେ. ଅ—ଡିବିଡିବି ( ଦେଖ )
Ḍim(mi)-ḍim(mi) Ḍibi-ḍibi ( See )

**ଡିମ୍(ମି)ରି**—ଦେ. ବି—ଡିମ୍ବିରି ( ଦେଖ )
Ḍim(mi)-ri Ḍimbiri ( See )

**ଡିମ**—ଗ୍ରା. ବି—ଡିମ୍ବ ( ଦେଖ )
Ḍima Ḍimba ( See )

**ଡିମା**—ଦେ. ବିଣ—ଡିମ୍ବା ଡିମ୍ବା ( ଦେଖ )
Ḍimā Ḍimbā ḍimbā ( See )

**ଡିମାଇ**—ବୈଦେ. ବି. (ଇଂ. ଡିମାଇ; ଡେମୀ=ଅର୍ଦ୍ଧ )—
Ḍimāi ୧ । ଡେମୀ; କାଗଜଫର୍ଦ୍ଦର ଆକାରବିଶେଷ; ୧ଫର୍ଦ୍ଦର
তিমাই ଅର୍ଦ୍ଧ—1 A certain size of half a sheet
डिमाइ of paper, measuring 20 inches by 15½
(ଡିମେଇ, ଡେମୀ—ଅନ୍ୟରୂପ) inches; demy paper.

[ ଦ୍ର—ଯେଉଁ କାଗଜର ଫର୍ଦ୍ଦ ଲମ୍ବରେ ୨୦ ଇଞ୍ଚ ଓ ଚଉଡ଼ା ୧୫½ ଇଞ୍ଚ ଏପରି କାଗଜର ଫର୍ଦ୍ଦକୁ ୪ ଭାଗ ହେଲେ ଡିମାଇ ୪ ପେଜୀ; ଆଠ ଭାଗ ହେଲେ ଡିମାଇ ୮ ପେଜୀ, ୧୬ ଭାଗ ହେଲେ ଡିମାଇ ୧୬ ପେଜୀ ବୋଲାଯାଏ । ଛପା ହେବା ପାଇଁ ଉଦ୍ଦିଷ୍ଟ ୨୨½ ଇଞ୍ଚ × ୧୭½ ଇଞ୍ଚ ଓ ହାତ ଲେଖାପାଇଁ ଉଦ୍ଦିଷ୍ଟ ୨୦ ଇଞ୍ଚ × ୧୫½ ଇଞ୍ଚ ( ମତାନ୍ତରରେ ୨୧ ଇଞ୍ଚ × ୧୬ ଇଞ୍ଚ ) ଆକାରର କାଗଜକୁ ଡିମାଇ ବୋଲାଯାଏ ( ଚେମ୍ବର୍ସ ଇଂରାଜୀ ଅଭିଧାନ) । ୧୮ ଇଞ୍ଚ × ୧୨ ଇଞ୍ଚ ଆକାରର କାଗଜକୁ ଡିମାଇ ବୋଲାଯାଏ । ହି. ଶବ୍ଦସାଗର ]

**ଡିମାଡିମା**—ଦେ. ବିଣ—ଡିମ୍ବାଡିମ୍ବା ( ଦେଖ )
Ḍimā-ḍimā Ḍimbā-ḍimbā ( See )

**ଡିମ୍ବ**—ସ ବି. ( ଡିମ୍ବ୍ ଧାତୁ=ପ୍ରେରଣ କରିବା+କର୍ତ୍ତୃ. ଅ; ଯାହା ଦ୍ୱାରା ଜୀବ ଗର୍ଭ ମଧ୍ୟରୁ ବାହାରକୁ ପ୍ରେରିତ ହୁଏ )—
Ḍimba
୧ । ଅଣ୍ଡା—1. Egg.
ବେନି ଦଳେ ବେନି ଡିମ୍ବ କି କଲୁ ଥିଲ ପ୍ରସବ—ଗୋଲୋକ-ଲହରୀ ।
୨ । ମାଛ ଆଦି ଜୀବଙ୍କ ମଞ୍ଜି—
2. Spawn (of fish, crab etc).
୩ । ପତଙ୍ଗମାନଙ୍କ ଶୈଶବକାଳୀନ ଆକୃତି—
3. Chrysalis.
୪ । ଗର୍ଭସ୍ଥ ଶିଶୁ ଭ୍ରୂଣ—4 Embryo; fœtus.
୫ । ଶିଶୁ ଜନ୍ତୁ; ଛୁଆ—5. Infant of animals; the young of an animal.
୬ । ମନୁଷ୍ୟ ଶିଶୁ—6. Child; infant.
୭ । (+କରଣ. ଅ) ଭୟଜନିତ ଚିତ୍କାରବିଦ ଚିତ୍କାର—
7 Exclamation due to fright.
୮ । ଫଉଜଦାରୀ; ଦଙ୍ଗା—8. Riot; affray.
୯ । ବିବାଦ; କଳହ—9. Dispute; quarrel.
୧୦ । ବିପ୍ଳବ—10. Insurrection; mutiny.
୧୧ । ଫୁସ୍ଫୁସ୍—11. Lungs.
୧୨ । ପ୍ଲୀହା—12. Spleen.
୧୩ । କଳେବର (ପ୍ରକୃତିବାଦ)—13. Body.

**ଡିମ୍ବ ଉଷୁମା**—ଦେ. ବି (ସଂ. ଡିମ୍ବ+ଉଷ୍ମ)—ପକ୍ଷିମାତା ଡିମ୍ବ ଉପରେ ବସି ତାକୁ ଉଷ୍ମ କରିବା—Incubation
Ḍimba ushumā
ডীমে তা brooding.
अंडे सेना

**ଡିମ୍ବ ଉଷୁମା(ମେ)ଇବା**—ଦେ. କ୍ରି—୧ । (ପକ୍ଷିମାତା) ଡିମ୍ବ ପ୍ରସବ କଲା ପରେ ନିର୍ଦ୍ଦିଷ୍ଟ କାଳ ଯାଏ ଡିମ୍ବ ଉପରେ ଅନବରତ ବସି ତାହାକୁ ଉଷ୍ଣତାଯୁକ୍ତ କରିବା—1. (a bird) To sit on the eggs for hatching; to incubate; to brood.
Ḍimba ushumā(me)ibā
ডীমে তা দেওয়া
अंडे सेना

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇସ୍ | ଉଅ | ଘ |
| ୨ | ଈ | ଊ | ଋ | ଲୃ | ଏଁ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗଂ୍ୟ | ଇଅ | ଞ | ନ୍ତ |

[ ଦ୍ର—ଡମ୍ବକୁ ନ ଉଷୁମାଇଲେ ଡିମ୍ବ କାଞ୍ଚିଆ ହୋଇଯାଏ ଓ ଡିମ୍ବରୁ ଛୁଆ ବାହାରେ ନାହିଁ । ଅନେକ ସ୍ଥଳରେ ପକ୍ଷିଦମ୍ପତି ଦୁହେଁ ପାଳ କରି ଡିମ୍ବ ଉଷୁମାଇବାର ଦେଖାଯାଏ । ]

୨ । (ଲକ୍ଷଣାର୍ଥ) କୌଣସି କାର୍ଯ୍ୟରେ ଅନବରତ ନିଯୁକ୍ତ ରହିବା—2. (figurative) To be constantly kept engaged in some work.

୩ । (ଲକ୍ଷଣାର୍ଥ) ଘରୁ ବାହାର କିଛିକାଳ ପାଇଁ କେଉଁଆଡ଼େ ନ ଯିବା—3. (figurative) To always stay at home; not to stir out of one's residence.

ଡମ୍ବକେଶର—ଦେ. ବି—ଡିମ୍ବ ମଧ୍ୟରେ ଥିବା ହଳଦିଆ ଅଂଶ—
Dimba kesara The yellow portion found inside the egg.

ଡମ୍ବକୋଷ(ଶ)—ସଂ. ବି ( ଉଦ୍ଭିଦ ବିଜ୍ଞାନ ପରିଭାଷା )—ପୁଷ୍ପର ଗର୍ଭକେଶର ନିମ୍ନସ୍ଥ ଶୂନ୍ୟଗର୍ଭ ଅଂଶ; ପୁଷ୍ପଯୋନି—
Dimba-kosha(śa) The reproductive organ in a flower; the ovary of flowers.

ଡମ୍ବଜ—ସଂ. ବିଣ ( ଡିମ୍ବ+ଜନ୍ ଧାତୁ+କର୍ତ୍ତୃ. ଅ )—ଡିମ୍ବରୁ ଜାତ; ଅଣ୍ଡଜ; ଯେଉଁ ଜୀବମାନେ ଡିମ୍ବରୁ ଜନ୍ମନ୍ତି—
Dimbaja Oviparous (animals).

[ଦ୍ର—ପକ୍ଷୀ, ସରୀସୃପ, ମତ୍ସ୍ୟ ଓ କୀଟାଦିଙ୍କୁ ଡିମ୍ବଜ ବୋଲାଯାଏ । ]

ଡମ୍ବ ତିଅଣ—ଦେ. ବି ( ସଂ. ଡିମ୍ବ+ତେମନ )—ଡିମ୍ବ ରନ୍ଧା ହୋଇ ଥିବା ବ୍ୟଞ୍ଜନ—
Dimba tiana Curry made with eggs.
ডীমের তরকারী
अण्डेकी तरकारी

[ ଡିମ୍ବ ତିଅଣ ବ ଅଇଁଷରେ ଲେଖା ?—ପ୍ରବଚନ ।
(ଡିମ୍ବିତିଅଣ—ଅନ୍ୟରୂପ)
ଡିମ୍ବରେ ତରକାରି କରି ଖାଇଲେ ଆମିଷ ଖାଇବା ଲାଳସ ପରିତୃପ୍ତ ହୁଏ ନାହିଁ, ଅଥଚ ଜୀବହତ୍ୟା ପାପ ଅର୍ଜିତ ହୁଏ । ଏହିପରି ସ୍ଥଳରେ ଏ ଉକ୍ତି ବ୍ୟବହୃତ ହୁଏ । ]

ଡମ୍ବ ଦେବା—ଦେ. କ୍ରି—ଡିମ୍ବ ପାଡ଼ିବା ( ଦେଖ )
Dimba debā Dimba pārdibā ( See )

ଡମ୍ବ ପାଡ଼ିବା—ଦେ. କ୍ରି ( ସଂ. ଡିମ୍ବ+ପାତନ)—ଡିମ୍ବ ଜନ୍ମ କରିବା—
Dimba pārdibā To lay eggs.
ডীম পাড়া, अंडा देना

ଡମ୍ବ ଫୁଟା(ଟେ)ଇବା—ଦେ. କ୍ରି. (ସଂ. ଡିମ୍ବ+ସ୍ଫୋଟନ)—
Dimba phutā(te)ibā ଡିମ୍ବକୁ ନିର୍ଦ୍ଦିଷ୍ଟକାଳ ଉଷୁମାଇବା ପରେ ତାହାର ବହିରାବରଣ ଫଟାଇବା—
ডিম ফুটান To hatch eggs.
अंडा फुटाना

[ ଦ୍ର—ଡିମ୍ବ କେବେକେବେ ମଳକୁ ଓ କେବେକେବେ ମାଆର ଚଞ୍ଚୁ ଆଦିର ଆଘାତ ଦ୍ୱାରା ଫାଟି ଯାଏ । ଡିମ୍ବ ମଳକୁ ଫାଟି ଛୁଆ ବାହାରିଲେ ତାକୁ ଡିମ୍ବ ଫୁଟିବା ଓ ମାଆ ଡିମ୍ବକୁ ଆଘାତ କରି ଫଟାଇଲେ ତାକୁ ଡିମ୍ବ ଫୁଟାଇବା କହନ୍ତି । ]

ଡମ୍ବ ଫୁଟିବା—ଦେ. କ୍ରି—ଉପଯୁକ୍ତ ସମୟ ପକ୍ଷିମାତାଦ୍ୱାରା ଉଷୁମ ହେବାପରେ ଡିମ୍ବ ଫାଟିଯାଇ ତହିଁରୁ ଛୁଆ ବାହାରିବା—The hatching of an egg.
Dimba phutibā
ডিম ফুটা
अंडा खटकना

ଡମ୍ବା—ଦେ. ବିଣ.—ଡିମ୍ବା ଡମ୍ବା (ଦେଖ)
Dimbā Dimbā dimbā (See)

ଡମ୍ବା ଡିମ୍ବା—ଦେ. ବିଣ.—(ସଂ. ଡମ୍ବ)—୧ । ଆବୁଆବୁଆ—
Dimbā dimbā 1. Bulbous.
ডিমের মত ଯଥା—ତାଙ୍କ ଦେହରେ ଡମ୍ବାଡିମ୍ବା ହୋଇ କଅଣ
अण्डासा, बैजावी ଗୁଡ଼ାଏ ବାହାରି ଗଲାଣି । )

୨ । ଡମ୍ବପରି ଫୁଲି ଥିବା (ଆଖି)—
2. Swollen (eye).
(ଯଥା—କାନ୍ଦି କାନ୍ଦି ତା ଆଖି ଡିମ୍ବା ଡିମ୍ବା ହେଲାଣି । )

୩ । ଡିମ୍ବାକୃତି; ଡିମ୍ବ ପରି ବୃତ୍ତାଭାସ ଆକାରବିଶିଷ୍ଟ—
3 Oval; elliptical; egg-shaped,

ଦେ. ବି.—୧ । ଡମ୍ବପରି ଆକୃତି ବିଶିଷ୍ଟ ପଦାର୍ଥ—
1. Any egg-shaped thing.

୨ । ବହୁକାଳ ହେଲା ଗୋଦର ହୋଇଥିବା ରୋଗୀର ଗୋଦର ଗୋଡ଼ ଉପରେ ବାହାରିବା ଅଣ୍ଡାକାର ଆବୁମାନ—
2. Bulbous tumours appearing on the legs swollen with elephantiasis for a very long time.

୩ । ଅଙ୍ଗ ପ୍ରତ୍ୟଙ୍ଗରେ ଆକ୍ରାବାଡ଼ା ପରି ଫୁଲି ଥିବା ଫୁଲା ବା ଆବୁ—3. Egg-shaped protuberances appearing on the body.

ଡମ୍ବାହବ—ସଂ. ବି—ନୃପତିହୀନ ଯୁଦ୍ଧ; ଯେଉଁ ଯୁଦ୍ଧରେ ଉଭୟପକ୍ଷର ନରପତିମାନେ ଯୁଦ୍ଧଭୂମିରେ ଉପସ୍ଥିତ ନ ଥାନ୍ତି—
Dimbāhaba Warfare in which the kings of the opposing sides do not take part.

ଡମାରେଜ୍—ବୈଦେ. ବି.—( ଇଂ ଡିମରେଜ୍)—୧ । ବନ୍ଦରରେ ଜାହାଜ ନିର୍ଦ୍ଦିଷ୍ଟ ଦିନ ଅପେକ୍ଷା ବେଶି ଦିନ ରହିଲେ ତହିଁ ପାଇଁ ଜାହାଜବାଲା ବନ୍ଦରସ୍ୱାମୀଙ୍କୁ ଦେବା ଅର୍ଥଦଣ୍ଡ—2. Demmurrage for a ship.
Dimārej
ডিমরেজ
डिमरेज

୨ । ଗଇର୍ ଖରଚ୍ (ଦେଖ)
2. Gair kharachā (See)

ଡିମ୍ବିକା—ସଂ. ବି. ସ୍ତ୍ରୀ. ( ଡିମ୍ବ+ଇକ+ସ୍ତ୍ରୀ. ଆ )—
Dimbikā ୧ । କାମୁକୀ ସ୍ତ୍ରୀ—1. A lascivious woman

୨ । ଜଳବୁଦ୍ବୁଦ—3. Water-bubble.

ସାଧାରଣ ଲୋକେ ଅପର ବୃଷ୍ଟାରେ ଦ୍ରୁତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'କୃଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ମିଳିଲେ 'ବଧୂ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ର' ଦେଖିବେ

୩ । ଶ୍ୟୋନାକ ବୃକ୍ଷ (କ୍ଷାନେନ୍ଦ୍ର); ଫଣଫଣା ( ଦେଖ )
3. Phaṇaphaṇā ( See )

**ଡିମ୍ବିରି**— ଦେ. ବି. (ସ ଉଦୁମ୍ବର; ଉଡ୍ଡୁମ୍ବର)—ଶ୍ଳେଷ୍ଠ ଜାତିର ଡମ୍ବିର ଗଛ ଓ ତହିଁର ଫଳ—Ficus Opposetifolia; Ficus Hispida; fig ( tree and fruit ).
Ḍimbiri
ସ. ଉଡୁମ୍ବର, କଷ୍ଠନଫଳା, ଫଲ୍‌ଗୁ, କାକୋଦୁମ୍ବରିକା
ଡୁମାବ, କାକଡୁମର, ଡୁମୁର
गुलर, उमर, कागसा, गोबला, काठगुलारिया, कादुमर
ତେ. ବ୍ରହ୍ମମେଡ଼ି, କାକାବାଡୁ
ଗଞ୍ଜାମ. ଖଟସେଣ
ମ. ବୋକଡ଼ା, କାଲଉମ୍ବର
ଗୁ. ଟେଡ଼ୁମ୍ବରୋ
ଫା. ଅଂଜୀରେଦସ୍ତୀ
ଆ. ତନ୍‌ବସ୍ତି

ଉଗ୍ର ବୋଇଲେ ଲୁ ରଡ଼ୁମ୍ବର କଣ
ଟିମ୍ବି ରକ ପାଇ ଧଇଲୁ କୋଳ କର—
କୃଷ୍ଣସିଂ. ମହାଭାରତ. ବନ ।

[ଦ୍ର—ଏହା ବଡ଼ଜାତୀୟ ନାଇଦାର୍ଘ ଗଛିଲ ଆରଣ୍ୟ ତରୁ । ଏହି ଗଛର କାଣ୍ଡରେ ବା ଶାଖାମୂଳରେ ଫଳ ଧରେ । ଏହାର ଫୁଲ ଦେଖା ଯାଏ ନାହିଁ । ପତ୍ରର ଦେହରେ ଅଂଶୁ ଥାଏ । ଗଛର ମୂଳ ହାଣି ଦେଲେ ଜଳବତ୍ ପ୍ରଚୁର ସ୍ୱଚ୍ଛ ଦ୍ରବ୍ୟ ନିଃସୃତ ହୁଏ । ଏହାର ଫଳ ଗୋଲାକାର ଓ ଶ୍ଳେଷ୍ଠ ଡିମ୍ବ ପରି । ଫଳ ମଧ୍ୟରେ ଅସଂଖ୍ୟ କ୍ଷୁଦ୍ର ବୀଜ ଥାଏ । ଅଶ୍ୱତ୍ଥ ଓ ବଟ ବୃକ୍ଷ ପରି ଡିମ୍ବିର ଗଛର ସୂକ୍ଷ୍ମ ଫୁଲ ମଧ୍ୟ ଅନ୍ତର୍ମୁଖ, ଅର୍ଥାତ୍ ଫୁଲ ଗୋଟିଏ କୋଷ ମଧ୍ୟରେ ମୁଦ୍ରିତ ହୋଇ ରହିଥାଏ । ପୁଂ ପୁଷ୍ପ ଓ ସ୍ତ୍ରୀ.ପୁଷ୍ପର ଅଲଗା ଅଲଗା କୋଷ ହୁଏ । କୀଟମାନଙ୍କ ସହାୟତାରେ ଏ ପୁଷ୍ପର ଗର୍ଭାଧାନ ହୁଏ । ପୁଂ.କେଶରର ବୃଦ୍ଧି ସଙ୍ଗେ ସଙ୍ଗେ ଏଥି ମଧ୍ୟରେ ଏକପ୍ରକାର କୀଟ ଜନ୍ମନ୍ତି । ଏହି ପୋକମାନେ ପୁଂ.ପରାଗକୁ ଗର୍ଭକେଶର ମଧ୍ୟକୁ ନେଇ ଯାଆନ୍ତି ଏବଂ ତଦ୍ୱାରା ଗର୍ଭକୋଷ ବଢ଼ି ଫଳ ଜନ୍ମେ । ଏ ଫଳ କୋମଳ; ଫଳର କରଡ଼ା ଚୋପା ନାହିଁ । ଫଳକୁ ଗଛରୁ ତୋଳି ଆଣି ଭାଙ୍ଗି ଦେଲେ ଫଳ ଭିତରେ ପରପକ୍ୱ ଗର୍ଭକେଶର ଓ ଝକଝକ ମଞ୍ଜି ଦେଖାଯାଏ ଓ ପୋକକ ପରି ଗୁଡ଼ିଏ ଝକଝକ ପୋକ ବାହାର ପଡ଼ନ୍ତି । ବୈଦ୍ୟଶାସ୍ତ୍ରମତରେ ଏହାର ଛାୟା ଖୁବ୍ ଶୀତଳ । ଫଳ ତରକାରୀ ହୁଏ ଓ ଡାଳ ଦାନ୍ତକାଠି ରୂପେ ବ୍ୟବହୃତ ହୁଏ । ଏହାର ଫଳ ମଧ୍ୟରେ ଫୁଲ ଥିବାରୁ ଲୋକେ ଫଳର ବାହାରେ ଫୁଲ ନ ଦେଖି ଭ୍ରମରେ ବିଶ୍ୱାସ କରନ୍ତି ଯେ ଡିମ୍ବିର ଗଛର ଫୁଲ ନାହିଁ । ଏଥିପାଇଁ ନୟନର ଅଗୋଚର ବସ୍ତୁକୁ ଲୋକେ କଥା ପ୍ରସଙ୍ଗରେ ଡିମ୍ବିର ଫୁଲ ସଙ୍ଗେ ତୁଳନା କରି ଥାଆନ୍ତି । କାବୁଲୀ ଡିମ୍ବିର ଫଳକୁ ଅଞ୍ଜୀର କହନ୍ତି । ଏହା ଆମ ଦେଶର ଡିମ୍ବିର ଫଳ ଅପେକ୍ଷା ବଡ଼ ଓ ଖାଇବାକୁ ମିଠା । ଏହା ଖାଇଲେ କୋଷ୍ଠ ପରିଷ୍କାର ହୁଏ । ବୈଦ୍ୟକ ମତରେ ଡିମ୍ବିର ସ୍ତମ୍ଭନକାରକ, ତିକ୍ତ କଷାୟ ରସ ଓ ଶୀତବୀର୍ଯ୍ୟ; ଏହା କଫ, ପିତ୍ତ, ବ୍ରଣ, ଶ୍ୱିତ୍ର, କୁଷ୍ଠ, ପାଣ୍ଡୁ, ଅର୍ଶ ଓ କାମଳା ରୋଗରେ ଉପକାରୀ । ବୃହତ୍ତର ଫଳ ଓ ବୃହତ୍ତର ଆକୃତି ବିଶିଷ୍ଟ ଏହି ଜାତୀୟ ଗଛକୁ ଓଡ଼ିଆରେ ଉଦୁମ୍ବର ବା ଯଜ୍ଞ ଡିମ୍ବିର ( ସ. ଉଦୁମ୍ବର ଲ. —Ficus Glomerata: ଇଂ. Glomerous Fig or Keg-tree ) କହନ୍ତି । ]

ପ୍ରାଦେ. (ଗଡ଼ଜାତ) ବି—ଜଙ୍ଗଲରେ ଥିବା ଏକପ୍ରକାର ସରୁଆ ଫିକା ରଙ୍ଗର ବିରୁଡ଼ି । (ଏମାନଙ୍କ କାମୁଡ଼ା ଅତି ବିଷାକ୍ତ)- A kind of slender brown wasp.

**ଡିମ୍ବିର ଫୁଲ**—ଦେ. ବି—ଡିମ୍ବିର ଗଛର ଫୁଲପରି ଅସମ୍ଭବ ବିଷୟ; ଆକାଶ କୁସୁମ—An imaginary thing which has no existence (like the flower of the fig tree).
Ḍimbiri phula
ଡୁମୁରଫୁଲ
गुलरका फुल
[ ଦ୍ର—ପ୍ରକୃତରେ କିନ୍ତୁ ଡିମ୍ବିର ଗଛର ଫୁଲ ଫଳ ମଧ୍ୟରେ ଥାଏ । ]

**ଡିମ୍ଭ**—ସ. ବି. ପୁଂ. (ଡିମ୍ଭ୍ ଧାତୁ=ଏକତ୍ର କରିବା+କର୍ତ୍ତୃ. ଅ)—
Ḍimbha
(ଡିମ୍ଭା—ସ୍ତ୍ରୀ)
୧ । ଶିଶୁ; କଅଁଳା ପିଲା—1. Child; infant; newborn child.
୨ । (ନାମ) ଶାଲ୍ୱ ଦେଶର ଅଧିପତି—2 Name of a king of the ancient Sālwa kingdom.
୩ । (ନାମ) ଜରାସନ୍ଧର ସେନାପତି—
3. Name of the general of king Jarāsandha.
ବିଣ—୧ । ମୂର୍ଖ—1. Illiterate.
୨ । ଅଜ୍ଞ—2. Ignorant.
୩ । ନିର୍ବୋଧ—3. Foolish.
୪ । ମୋଟାବୁଦ୍ଧିଆ—4. Blockhead; stupid.

**ଡିମ୍ଭକ**—ସ. ବି. (ଡିମ୍ଭ+ସ୍ୱାର୍ଥେ କ)— ଡିମ୍ଭ (ଦେଖ)
Ḍimbhaka Ḍimbha (See)

**ଡିର୍‌ରା**—ପ୍ରାଦେ. (କଳାହାଣ୍ଡି) ବି—ଉଚ୍ଚଭୂମି ଖଣ୍ଡ—
Ḍir-rā A piece of high land.

**ଡିର**—ପ୍ରାଦେ. (ସମ୍ବଲପୁର) ବି—ଲତାଆଦିର ଡଙ୍କ—
Ḍira The tendril or tender shoot of a creeper.

**ଡିରେକ୍‌ଟର୍**—ବୈଦେ. ବି. (ଇଂ. ଡାଇରେକ୍ଟର୍)—
Ḍirektar ଡାଇରେକ୍ଟର୍ (ଦେଖ)
Ḍāirektar (See)

**ଡିଲ୍ (ଇତ୍ୟାଦି)**—ବୈଦେ.ବି. (ଆ. ଦିଲ୍)—ଦିଲ୍ ଇତ୍ୟାଦି (ଦେଖ)
Ḍil (etc) Dil etc (See)
(ଡିଲ—ଅନ୍ୟରୂପ)

**ଡିଲ୍‌ଡଉଲ୍**—ବୈଦେ. ବି—୧ । ମନ ଓ ରୂପ—
Ḍil ḍaul 1. Mind and shape.
डीलडौल
୨ । ମାନସିକ ଶାନ୍ତି ଓ ଶାରୀରିକ ସ୍ୱାଚ୍ଛନ୍ଦ୍ୟ—
2. Mental peace and bodily comforts.
ଅମ୍ଭେମାନେ ଏ ଗ୍ରୀଷ୍ମଦିନରେ ଡିଲଡଉଲ ସ୍ଥାନ
ହୋଇ ଡାକ ଭୋଗ କରି ଅଛୁଅଛୁଁ । ଗଡ଼ଜାତ ବାସିନୀ. ୨୪।୪।୨୫ ।
୩ । ଶରୀରର ଆକୃତି—3. The shape of the body.

| ୯ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଘ | ଜ | ଶ,ଷ | କ୍ଷ | ଇୟ | ଉଅ | ଢ଼ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଝ | ୯ |

ଡିଲ୍ – ପ୍ରାଦେ. (ବସ୍ତୁର) ବ—ଷଣ୍ଢର ଚୂଲ; କକୁଦ୍—
Dila — The hump or protuberance on the nape of the neck of a bull.

ଡିଲ୍ଲି (ଇତ୍ୟାଦି)—ଦିଲ୍ଲୀ ଇତ୍ୟାଦି (ଦେଖ)
Dilli (etc) — Dilli etc (See)

ଡିଶ୍ – ବୈଦେ. ବ. (ଇଂ. ଡିଶ୍)—ପିଆଲା; ରେକାବି; ଥାଳିଆ—
Dis — Dish.
ডিস **ডীস**

ଡିସ୍କାଉଣ୍ଟ—ବୈଦେ. ବ. (ଇଂ. ଡିସ୍କାଉଣ୍ଟ)—
Dis-kaunt — ୧ । ଟଙ୍କା କରଜ ଦେଲା ବେଳେ ତହିଁରୁ
ডিসকাউন্ট — ମହାଜନ କାଟି ରଖିବା ଆଗଭୁର ସୁଧ—
**डिसकाउन्ट** — 1. Discount.
୨ । ପଣ୍ୟଦ୍ରବ୍ୟ ନଗଦ ଧନ ନେଇ ଖରିଦ କରିବା ଲୋକକୁ ବେପାରି ଛାଡ଼ି ଦେବା ମୂଲ୍ୟର ଅଂଶ—2. Discount allowed to a purchaser for cash.

ଡିସ୍ଚାର୍ଜ୍—ବୈଦେ. ବ. (ଇଂ. ଡିସ୍ଚାର୍ଜ୍)—୧ । ଚାକିରିରୁ ସ୍ଥଗିତ ବା
Dis-charj — ରହିତ କରାଯିବା; ବରଖାସ୍ତ—
ডিসচার্জ — 1. Discharge from service.
**डिसचार्ज** — ୨ । ରେତଃସ୍ଖଳନ—
2. Discharge of semen
୩ । ରୋଗୀ ସମ୍ପୂର୍ଣ୍ଣ ଆରୋଗ୍ୟ ହେଲା ପରେ ଡାକ୍ତରଖାନାରୁ ଖଲାସ ହେବା—
3. Discharge of a patient from the hospital after cure.
୪ । ମୁକ୍ତି ପ୍ରଦାନ; ଖଲାସି—
4. Release; discharge.

ଡିସ୍ଟିଲରି—ବୈଦେ. ବ. ( ଇଂ ଡିସ୍ଟିଲେରି )—
Dis-tilari — ମଦଭାଟି; ଡେଷ୍ଟିଲେରି; ଭାତ ଆଦିକୁ ସଢ଼ାଇ କରି
ডেষ্টিলারী — ତହିଁରୁ ଅରଖ ବାହାର କରି ମଦ ତିଆରି କରିବା ସ୍ଥାନ
**भट्टी** — Distillary.
[ଡିଷ୍ଟିଲ(ଲେ)ରି—ଅନ୍ୟରୂପ]

ଡିସ୍ଟ୍ରେଣ୍ଟ—ବୈଦେ. ବ. (ଇଂ)—ଖଜଣା ପାଇଁ କଲେକ୍ଟରଙ୍କ
Dis-trent — ଆଦେଶରେ ପ୍ରଜାର ଫସଲ କୋରଖ—
ডিসট্রেন্ট — Distraint of a tenant's standing crop
**फसलकुर्की** — by a public servant at the instance of the landlord

ଡିସ୍ପିଉଟ୍—ବୈଦେ. ବ. (ଇଂ) (ସେଟଲମେଣ୍ଟ ଯୋଗୁଁ ପ୍ରଚଳିତ ଶବ୍ଦ)—
Dis-piut — ବନ୍ଦର ବା ଖାନାପୁରି କାର୍ଯ୍ୟ ଶେଷ ହେବାପରେ ଅର୍ଥାତ୍
ডিসপিউট — ଅଟେଷ୍ଟେସନ୍ କାର୍ଯ୍ୟ ଚଳିବା ସମୟରେ ଭୁଲ ସଂଶୋଧନ
**डिसपूट** — ପାଇଁ କୌଣସି ବ୍ୟକ୍ତି ଦାଏର କରିବା ଆପତ୍ତି—
(ଡିସ୍ପ୍ୟୁଟ୍—ଅନ୍ୟରୂପ) A case or dispute filed by a person at the attestation-stage during the Settlement operations.

ଡିସ୍ମଲ୍—ବୈଦେ. ବ. (ଇଂ)—ଡେସିମଲ୍ ( ଦେଖ )
Dis-mal — Desimal ( See )
(ଡିଶିମଲ୍; ଡିସିମିଲ୍—ଅନ୍ୟରୂପ)

ଡିସ୍ମିସ—ବୈଦେ. ବ. (ଇଂ)—୧ । ମକଦ୍ଦମାରେ ବାଦୀର ଦାବି
Dis-mis — ନାମଞ୍ଜୁର ହେବା—1. Dismissal of the plaintiff's claim.
ଡିସ୍ମିସ୍ / ଡିସ୍ମିସି } ଅପଭ୍ରଂଶ — ୨ । ଚାକିରିରୁ ବରଖାସ୍ତ ହେବା—
ডিসমিস — 2. Dismissal from any post or service.
**डिसमिस**
(ଡିଶିମିଶ, ଡିଶିମିଶି—ଅନ୍ୟରୂପ)

ଡିଷ୍ଟ୍ରିକ୍ଟ—ବୈଦେ.ବ.(ଇଂ)—ଜିଲ୍ଲା; ଶାସନବିଭାଗର ଗୋଟିଏ ନିର୍ଦ୍ଦିଷ୍ଟ
Dishtrict — ଅଞ୍ଚଳ—District; an administrative
ডিষ্ট্রিকট — unit of a Division.
**डिष्ट्रिक्ट**
[ ଦ୍ର—ଜିଲ୍ଲା ଅର୍ଥବାଚକ ଇଂ. ଡିଷ୍ଟ୍ରିକ୍ଟ ଶବ୍ଦ ସଙ୍ଗେ ବ୍ୟବହୃତ ଅନେକଗୁଡ଼ିଏ ଇଂରାଜୀ ଶବ୍ଦ ଓଡ଼ିଆରେ ଚଳୁଅଛି । ତହିଁ ମଧ୍ୟରୁ କେତେ ଗୁଡ଼ିଏ ଶବ୍ଦ ଏଠାରେ ଦିଆଯାଇ ଅଛି । ଓଡ଼ିଆରେ ଚଳୁଥିବା ଅନ୍ୟ ଶବ୍ଦମାନଙ୍କ ପାଇଁ ଡିଷ୍ଟ୍ରିକ୍ଟ ଶବ୍ଦ ବାଦ ଦେଇ ପରବର୍ତ୍ତୀ ଶବ୍ଦ ଏ ଭାଷାକୋଷରେ ଖୋଜ, ଉକ୍ତ ଅର୍ଥ ପୂର୍ବେ ଡିଷ୍ଟ୍ରିକ୍ଟର ଅର୍ଥଯୋଗ କଲେ ଉକ୍ତ ଶବ୍ଦର ମର୍ମ ବୁଝାଯିବ, ଯଥା— ଡିଷ୍ଟ୍ରିକ୍ଟ ଗେଜେଟ୍, ଡିଷ୍ଟ୍ରିକ୍ଟ ଗେଜେଟିଅର୍, ଡିଷ୍ଟ୍ରିକ୍ଟ ଟ୍ରାଫିକ୍ ସୁପରିଣ୍ଟେଣ୍ଡେଣ୍ଟ, ଡିଷ୍ଟ୍ରିକ୍ଟ କନ୍ଫରେନ୍ସ ।]

ଡିଷ୍ଟ୍ରିକ୍ଟ ଅଫିସ୍—ବୈଦେ. ବ. (ଇଂ)—ଜିଲ୍ଲାର ସର୍ବପ୍ରଧାନ ରାଜସ୍ୱ
Dishtrikt aphis — ଓ ଫଉଜଦାରୀ ହାକିମଙ୍କ କାର୍ଯ୍ୟାଳୟ—
ডিষ্ট্রিক্ট অফীস — District Office.
**डिष्ट्रिक्ट आफिस**

ଡିଷ୍ଟ୍ରିକ୍ଟ ଅଫିସର—ବୈଦେ. ବ. (ଇଂ)—ଜିଲ୍ଲାର ସର୍ବପ୍ରଧାନ ରାଜସ୍ୱ-
Dishtrikt aphisar — ଓ ଫଉଜଦାରୀ ବିଭାଗର କର୍ମଚାରୀ, ମାଜିଷ୍ଟ୍ରେଟ
ডিষ্ট্রিক্ট আফিসর — ଓ କଲେକ୍ଟର—District Officer.
**डिष्ट्रिक्ट अफसर**

ଡିଷ୍ଟ୍ରିକ୍ଟ ଇଞ୍ଜିନିୟର—ବୈଦେ. ବ. (ଇଂ. ଡିଷ୍ଟ୍ରିକ୍ଟ+ଏଞ୍ଜିନିଅର)—
Dishtrikt injiniyar — ଡିଷ୍ଟ୍ରିକ୍ଟବୋର୍ଡ ଅଧୀନ ପୂର୍ତ୍ତବିଭାଗର
ডিষ্ট্রিক্ট ইঞ্জীনীআর — ସର୍ବୋଚ୍ଚ କର୍ମଚାରୀ—
**डिष्ट्रिक्ट इंजिनिआर** — District Engineer.

ଡିଷ୍ଟ୍ରିକ୍ଟ ଇନସ୍ପେକ୍ଟର—ବୈଦେ ବ. (ଇଂ)—
Dishtrikt in-spek-tar — ଜିଲ୍ଲାର ଶିକ୍ଷାବିଭାଗର ପ୍ରଧାନ ପରିଦର୍ଶକ—
ডিষ্ট্রিক্ট ইনসপেক্টর — District Inspector of schools.
**डिष्ट्रिक्ट इंसपेक्टर**

ଡିଷ୍ଟ୍ରିକ୍ଟ କମ(ମେ)ଟି—ବୈଦେ ବ. (ଇଂ. ଡିଷ୍ଟ୍ରିକ୍ଟ+କମିଟି)—
Dishtrikt kami(me)ti — ଜିଲ୍ଲାର ପ୍ରଧାନ ସଭା; ଯେଉଁ
ডিষ্ট্রিক্ট কমটি — ସଭାରେ ଜିଲ୍ଲାର ବିଷୟମାନ ବିବେଚିତ ହୁଏ—
**डिष्ट्रिक्ट कमेटि** — District-committee.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ଵିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଆ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅରୀ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଳବଢ଼' ନ ପାଇଲେ 'ଅଳ୍‌ବଢ଼' ଦେଖ

**ଡିଷ୍ଟ୍ରିକ୍ଟ କାଉନ୍‌ସିଲ୍**—ବୈଦେ. ପ୍ରାଦେ. (ସମ୍ବଲପୁର) ବି. (ଇଂ)—
Ḍishṭrikṭ kāun-sil ସମ୍ବଲପୁର ଜିଲ୍ଲାର ଡିଷ୍ଟ୍ରିକ୍ଟବୋର୍ଡ—
District Council; the Disttrict Board of Sambalpur.

**ଡିଷ୍ଟ୍ରିକ୍ଟ କୋର୍ଟ(ର୍ଟ)**—ବୈଦେ. ବି. (ଇଂ)—୧ । ଜିଲ୍ଲାର ପ୍ରଧାନ
Ḍishṭrikṭ koṭ(rṭ) ବିଚାରାଳୟ—1. District Court.
ଡଷ୍ଟ୍ରିକ୍ଟକୋର୍ଟ ୨ । ଡିଷ୍ଟ୍ରିକ୍ଟ ଜଜଙ୍କ ବିଚାରାଳୟ—
डिष्ट्रिक्टकोर्ट 2. The court of the District Judge.

**ଡିଷ୍ଟ୍ରିକ୍ଟ ଜଜ୍**—ବୈଦେ. ବି. (ଇଂ)—ଜିଲ୍ଲାର ଦେବାନୀ ବିଚାର
Ḍishṭrikṭ jaj ପାଇଁ ନିଯୁକ୍ତ ସର୍ବୋଚ୍ଚ ବିଚାରପତି—
ডষ্ট্রিক্ট জজ District Judge.
डिष्ट्रिक्ट जज

**ଡିଷ୍ଟ୍ରିକ୍ଟବୋର୍ଡ (ର୍ଡ)**—ବୈଦେ. ବି. (ଇଂ)—ଜିଲ୍ଲାର ଶିକ୍ଷା, ସ୍ଵାସ୍ଥ୍ୟାଦି
Ḍishṭrikṭ borḍ(rḍ) ପରିଚାଳନ କରୁଥିବା ଗଭର୍ଣ୍ଣମେଣ୍ଟଙ୍କ
ডষ্ট্রিক্ট বোর্ড ପ୍ରତିଷ୍ଠିତ ସ୍ୱାୟତ୍ତଶାସନାଧିକାରପ୍ରାପ୍ତ ସଭା—
डिष्ट्रिक्ट बोर्ड District Board.

**ଡିଷ୍ଟ୍ରିକ୍ଟ ମାଜିଷ୍ଟ୍ରେଟ୍**—ବୈଦେ. ବି. (ଇଂ)—ଜିଲ୍ଲାର ପ୍ରଧାନ ଫଉଜଦାରୀ
Ḍishṭrikṭ mājishṭreṭ ବିଚାରପତି ଓ ଶାନ୍ତିରକ୍ଷକ ହାକିମ—
ডষ্ট্রিক্ট ম্যাজীষ্ট্রেট District Magistrate.
* डिष्ट्रिक्ट मेजिष्टर

**ଡିଷ୍ଟ୍ରିକ୍ଟ ସୁପରିଣ୍ଟେଣ୍ଡେଣ୍ଟ**—ବୈଦେ. ବି. (ଇଂ.)—ଜିଲ୍ଲାର ପୁଲିସ-
Ḍishṭrikṭ suparinṭenḍenṭ ବିଭାଗର ସର୍ବଶ୍ରେଷ୍ଠ ରାଜ-
ডিষ্ট্রিক্ট সুপরিন্টেণ্ডেণ্ট କର୍ମଚାରୀ; ପୁଲିସ୍ ସାହେବ—
डिष्ट्रिक्ट सुपरिंटेंडेंट District Superintendent of Police.

**ଡିଷ୍ଟ୍ରିବ୍ୟୁଟ୍ କରିବା**—ବୈଦେ. କ୍ରି (ଇଂ)—(ଛାପାଖାନାରେ ବ୍ୟବହୃତ)—
Ḍishṭribiuṭ karibā ଛାପା ହୋଇ ସାରିବା ପରେ କମ୍ପୋଜ୍
ডিষ্ট্রিব্যুট করা ହୋଇଥିବା ଟାଇପ୍‌ମାନଙ୍କୁ ଫରମାରୁ କାଢ଼ିନେଇ ପୁଣି
डिस्ट्रिब्यूट करना ସ୍ଵସ୍ଥାନରେ ସାଇତିବା—(printers word)—
To distribute the types after a form is printed.

**ଡିହ**—ବୈଦେ. ବି. (ଫା. ଡିହ୍ ବା ଦେହ୍=ଗ୍ରାମ ସମଷ୍ଟି; ତୁଳ. ସଂ. ଦେଶ)—୧ । ମାଟିର ଗଦା ବା ଢିପ—
Ḍiha
ডহী; ভিটা 1. Mound of earth.
डिह,मेंड़, भीटा ୨ । ବାସଯୋଗ୍ୟ ଉଚ୍ଚ ଜମି—
2. A high habitable ground.
୩ । ଯେଉଁ ଜମି ଉପରେ ଘର ତୋଳା ଯାଏ—
3. Site of dewelling.
খোঁচা; ঠোঁসা ୪ । ଯଷ୍ଟିର ସ୍ଥୂଳ ଅଗ୍ରଦ୍ୱାରା ଭୁଷା—
रेला 4. A push or poke with the butt or thick end of a rod.
( ଡିଘି—ଅନ୍ୟରୂପ ) ୫ । ଏକ ତହସିଲଦାରଙ୍କ ଅଧୀନ କେତେ ଗୋଟି ଗ୍ରାମର ସମଷ୍ଟି—5. An aggregate of some villages under one rent-collector.
ଦେ. ବିଣ—ଡିହି ( ଦେଖ )—Ḍihi ( See )
ପ୍ରାଦେ. ( ଯାଜପୁର ) ବିଣ—ଢିପ ( ଜମି )—
High land; upland.

**ଡିହ ଅଣ୍ଡିରା**—ଦେ. ବିଣ—ଡିହ କୁଟା ( ଦେଖ )
Ḍiha anḍirā Ḍiha kuṭā ( See )

**ଡିହ କୁଟା**—ଦେ. ବିଣ ( ବ୍ୟଙ୍ଗାର୍ଥ )—କୁକୁର ଯେପରି ନିଜର ବାସ
Ḍiha kuṭā ସ୍ଥାନନିକଟରେ ପ୍ରଭୁତ୍ୱ ଦେଖାଏ, ଯେଉଁ ବ୍ୟକ୍ତି ସେହିପରି
डिगिया ଆପଣାର ବାସସ୍ଥାନର ସାମନାରେ ଠିଆ ହୋଇ ପ୍ରୌଢ଼ି ଦେଖାଇ ହୁଏ; ଗେହେଶୂର—
A person who brags of his bravery
(ଡିହ ବିଲୁଆ-ଅନ୍ୟରୂପ) at his own house; a swaggerer.

**ଡିହ ଜମି**—ଦେ. ବି—ଯେଉଁ ଉଚ୍ଚ ଜମିରେ ଘର ତିଆରି ହୋଇଥାଏ—
Ḍiha jami Homestead land; building site.
ভীহীজমী

**ଡିହ ବାନ୍ଧିବା**—ଦେ. କ୍ରି—ଘର କରିବା ନିମନ୍ତେ କୌଣସି ନିମ୍ନ
Ḍiha bāndhibā ଭୂମିରେ ମାଟି ପକାଇ ଉଚ୍ଚ କରିବା—
ভীহীবাঁধা To raise a low ground by piling earth
मेड़ बाँधना on it to make it a building site.
(ଡିହମାଡ଼ିବା—ଅନ୍ୟରୂପ)

**ଡିହ ମାରିବା**—ଦେ. କ୍ରି—ବାଡ଼ିର ମୁଣ୍ଡଦ୍ୱାରା ଆଘାତ କରିବା ବା
Ḍiha māribā ଭୁଷିବା—To give a push with the
খোঁচা দেওয়া butt of a rod.
रेला मारना
(ଡିହପକା(କେ)ଇବା, ଡିହ ଦେବା—ଅନ୍ୟରୂପ)

**ଡିହରେ ପୋଖରୀ ଖୋଳିବା**—ଦେ. କ୍ରି. ( ଧମକାଣ ବାକ୍ୟ )—
Ḍihare pokhari khoḷibā ( ଲକ୍ଷଣାର୍ଥ ) କାହାରିକୁ ସର୍ବସ୍ୱାନ୍ତ କରିବା—( figurative ) ( a threat ) To utterly ruin a person and deprive him
ভিটামাটি উচ্ছন্নকরা of his homestead.
[ ଦ୍ର— ଜଣେ ଲୋକକୁ ମାମଲା ମୋକଦ୍ଦମା ଆଦିରେ ପକାଇ ସର୍ବସ୍ୱାନ୍ତ କରି ତାହାର ଘର ଡିହକୁ ଦଖଲ ନେଇ ଡିହର ଚିହ୍ନ ମାତ୍ର ନ ରଖିବାର ଧମକାଣ ଦେବାବେଳେ କଳ କଳିଅରେ ଏହା ବ୍ୟବହାର କରାଯାଏ । ]

**ଡିହରେ ବିଲୁଆ ଡେଇଁବା**—ଦେ. ବି. ( ଏକପ୍ରକାର ଅଭିଶାପ )—
Ḍihire biluā ḍeiṅbā ( ଲକ୍ଷଣାର୍ଥ ) ବଂଶ ସମୂଳରେ ଲୋପ
ভীহীতে ঘুঘু চরা ହେବା; ବଂଶର ସମସ୍ତେ ମରି ଯାଇ ବାସଗୃହ ଶ୍ମଶାନରେ ପରିଣତ ହେବା—(figurative)
( a form of curse ) The turning of one's

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଣ,ଷ | ଙ୍କ | ଇଯ୍ | ଋଅ | ଞ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଚ୍ୟ | ଇଅ | ଡ଼ | ନ୍ |

homestead into a cremation ground by the death of all the members of the family.

[ ଦ୍ର—ଅଭିଶପ୍ତ ମନୁଷ୍ୟର ବଂଶ ଲୋପ ହେଲେ ତାହାର ବାସଗୃହର ଡିହ ଫଳତଃ ପଡ଼ିଆ ବା ଶ୍ମଶାନରେ ପରିଣତ ହେବ । ଏହି ଅଭିଶାପକୁ ନାନା ପ୍ରକାରେ ବୋଲାଯାଏ । ଯଥା—ତୋ ଡିହରେ ବଳୁଆ ଡେଉଁ । ତୋ ଡିହରେ କଣ୍ଟା ଛଟା ହେଉ । ତୋ ଡିହରେ ଦୁବୁରି ଗଛ ଉଠୁ । ଇତ୍ୟାଦି । ]

ଡିହ ସାପ—ଦେ. ବି—ଘରର ଡିହ ଓ ଉଚ୍ଚ ଭୂମିରେ ବିଚରଣ କରୁଥିବା
Ḍiha sāpa ବିଷଧର ସାପ—Poisonous snakes inhabiting homesteads or high grounds.

ଡିହା—ଦେ. ବି—ଏକଜାତୀୟ ଗୋଖର ସାପ—
Ḍihā A species of cobra.
( ସାପ ତଳେ ନୋଟ୍ ଦ୍ରଷ୍ଟବ୍ୟ । )

मगरा ବିଣ—୧ । ( ସଂ ଧୃଷ୍ଟ ) ଧେଣ୍ଟା; ଯେଉଁ ଭୃତ୍ୟ ପ୍ରଭୁର
ढीट, मगरा ଆଦେଶକୁ ଅବଜ୍ଞା କରେ; ଅମାନିଆଁ; ଉତ୍ତରଦାୟକ ( ଭୃତ୍ୟ ); ଠେସା ( ବ୍ୟକ୍ତି )—
1. Showing disrespect to authority; impertinent; refractory; recalcitrant (person); impudent (servant).
୨ । ଅବଜ୍ଞାସୂଚକ ( କଥା )—
2. Impertinent; disrespectful (words).
୩ । ଡିହି ( ଦେଖ )—3. Ḍihi ( See )

ଡିହାଳିଆ—ଦେ. ବିଣ—ଡିହା ୧ ଓ ୨ ( ଦେଖ )
Ḍihāliā Ḍihā 1 and 2 ( See )

ଡିହି—ଦେ. ବିଣ—୧ । ଡିହ ବା ଉଚ୍ଚ ଜମିରେ ଉତ୍ପାଦିତ (ଫସଲ)—
Ḍihi 1. (crop) Grown on homestead or high land.
( ଯଥା—ଡିହି ବାଇଗଣ; ଡିହି କପା ଇତ୍ୟାଦି । )
୨ । ଡିହ ସମ୍ବନ୍ଧୀୟ—
2. Relating to high land or homestead.
୩ । ଡିହରେ ବାସ କରୁଥିବା—
3. Living on homestead.
( ଯଥା—ଡିହି ନାଗ । )
ପ୍ରାଦେ. ( ମେଦିନୀପୁର ) ବି—ଡିହ ଜମି; ଉତ୍ପାଦିକା ଶକ୍ତି ବଢ଼ିବାପାଇଁ ଦୁଇ ତିନି ବର୍ଷ ପଡ଼ିଆ ରଖାଯାଇଥିବା ଉଚ୍ଚ ଜମି—High land left fallow for 2 or 3 years for becoming more fertile.

ଡିହି କପା—ଦେ. ବି—ଡିହ ବା ଉଚ୍ଚ ଜମିରେ କରାଯିବା କପା—
Ḍihī kapā Cotton plant grown on high land.
(ବିଲ କପା—ବିପରୀତ) [ଦ୍ର—ଡିହି ଜମିରେ କପା ଫସଲ ଭଲ ହୁଏ ।]

ଡିହି ଖରଚ—ଦେ. ବି—ଜମିଦାରମାନେ ତହସିଲଖରଚ ପାଇଁ
Ḍihi kharachā ପ୍ରଜାମାନଙ୍କଠାରୁ ସରକାରଙ୍କ ନିର୍ଦ୍ଦିଷ୍ଟ ଖଜଣାର
डीही खरचा ଅତିରିକ୍ତ ଯେଉଁ ବେ-ଆଇନ୍ କର ଆଦାୟ
अबवाब, मिहौरी କରୁଥିଲେ—An illegal cess formerly levied by zamindars from tenants to meet the collection-charges.

ଡିହି ବାଇଗଣ—ଦେ. ବି—ଡିହ ବା ଉଚ୍ଚ ଜମିରେ କରାଯିବା ବାଇଗଣ—
Ḍihi bāigaṇa Egg-plant grown on high land.
বাড়ীবেগুন
( ବିଲ ବାଇଗଣ—ବିପରୀତ )

ଡିହି ମୁଗ—ଦେ. ବି—ଏକପ୍ରକାର ମୁଗ; କଳା ମୁଗ—
Ḍihi muga A variety of moong ( pulse ).
[ ଦ୍ର—ଏହା ଉଚ୍ଚ ଭୂମିରେ ହୁଏ । ]

ଡୀନ—ସଂ. ବି. ( ଡୀ ଧାତୁ=ଉଡ଼ିବା + ଭାବ. ତ )—
Ḍīna ୧ । ପକ୍ଷୀଙ୍କର ଶୂନ୍ୟ ମାର୍ଗରେ ଗତି; ଉଡ଼ା—
1. Flying in the air.
୨ । ଆଗମ ଶାସ୍ତ୍ରବିଶେଷ; ହିନ୍ଦୁ ଧର୍ମର କ୍ରିୟାକାଣ୍ଡ ବର୍ଣ୍ଣନା କରା ଯାଇଥିବା ଶାସ୍ତ୍ର—
2. A class of religious books dealing with ceremonials and rituals of the Hindu religion.
( + କର୍ତ୍ତୃ. ତ ) ବିଣ. ପୁଂ—ଉଡ୍ଡୀୟମାନ—Flying.
(ଡୀନା—ସ୍ତ୍ରୀ)

ଡୁ—ପ୍ରାଦେ. ( ଗଡ଼ଜାତ ) ବି—ଡୁଡୁ ଖେଳ ( ଦେଖ )
Ḍu Ḍuḍu khela ( See )

ଡୁଆ—ଦେ. ବି—ଡୁହା ( ଦେଖ )
Ḍuā Ḍuhā ( See )
ପ୍ରାଦେ. ( ସମ୍ବଲପୁର ) ବି. ( ତୁଳ. ହି. ଏହି ଅର୍ଥରେ ଡୋଇ ସଂ. ଦ୍ରୋଣିକ )—୧ । ଅଣକ; ଡଙ୍କା; କରଚୁଲି—
1. Wooden spoon for stirring boiling rice etc or for serving food from the cooking pot.
୨ । ଚଟୁ—2. A broad-bladed ladle.
ପ୍ରାଦେ. ( ଆଠମଲ୍ଲିକ ) ବି—୧ । ( ତୁଳ. ହି. ଡୋଇ ) ଡେଲ ଥିବାର ପଲା—1. An erect spoon.
୨ । ପିଲାଙ୍କୁ ଦୁଧ ଖୁଆଇବାର ଚାମଚ; ଦୁଧପିଆ ଶାମୁକା—
2. A spoon for feeding infants with milk.

ଡୁଇଁ—ପ୍ରାଦେ. (ଗଞ୍ଜାମ) ବି—ଖେଳରେ ହାରିବା—
Ḍuiñ Losing in a game.
ଦେ. ବିଣ. ( ସଂ. ଦୁଃଖିତ )—ଡୁଇଁଡାଇଁ ( ଦେଖ )
Ḍuiñ-ḍāiñ ( See )
ଡୁଇଁ ହେବୁ କିନା ଅମ୍ଭେ ବଳ ଦକା । କବିସୂର୍ଯ୍ୟ କଶୋରଚନ୍ଦ୍ର, ଭ'ଗୀତ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, କୃଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଗିଁଆ ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଡୁଇଁଡାଇଁ**—ଦେ. ବିଣ. ( ସଂ. ଆନ୍ଦୋଳିତ; ଦୁଃଖିତ )—
Ḍuiṅ-ḍāiṅ ୧ । ବ୍ୟାକୁଳ—1. Perturbed; perplexed; agitated; distracted.
୨ । କାତର—2 Troubled, overwhelmed.
୩ । ଚିନ୍ତିତ—3. Anxious.
୪ । ଦୁଃଖିତ—4. Grieved.

**ଡୁଗୁଡୁଗୀ**—ପ୍ରାଦେ. ( ମେଦିନୀପୁର ) ବି. ( ଭୁଲ. ବଂ. ଏହି ଶବ୍ଦ
Ḍug-dugi ଏହି ଅର୍ଥରେ )—
୧ । ସାପୁଆ ଓ ବାଜିଗର ଯେଉଁ କ୍ଷୁଦ୍ର ଡମରୁ ବାଦ୍ୟ ବଜାନ୍ତି—A kind of X shaped double-faced small drum played on by snake-charmers and magicians.
୨ । ଡୁଲ୍‌କୀ ( ଦେଖ )—2. Ḍul-ki (See )

**ଡୁଗି**—ଦେ. ବି. ( ଡୁଗୁଡୁଗ୍ ଧ୍ୱନ୍ୟନୁକରଣ )—
Ḍugi ତବଲାର ସହଚର ବାଦ୍ୟ; ବାୟାଁ—
ডুগী A tabour struck by the left hand
डुग्गी while the right hand strikes on
(ଡୁଗ୍ଗି—ଅନ୍ୟରୂପ) another and longer drum called 'Tabalā'.

[ ଦ୍ର—ଏହା ତବଲା ଅପେକ୍ଷା କ୍ଷୁଦ୍ର ଏବଂ ବାଁଆ ହାତରେ ବଜାଯାଏ । ଏହା ଗୋଟିଏ ଅଟକା ବା କ୍ଷୁଦ୍ର ନାଗରା ପରି । ଏହା ମାଟି, ପିତ୍ତଳ ବା ତମ୍ବାରେ ତିଆରି ହୋଇ ଥାଏ ଏବଂ ଏହାର ମୁହଁ ଚମଡ଼ାରେ ଛାଉଣି ହୋଇ ଥାଏ । ତବଲା ଡୁଗି ଅପେକ୍ଷା ଲମ୍ବ ଓ କାଠରେ ତିଆରି । ତବଲାଟି ପଖୋଉଜର ଫାଳେ ଆକାର ଏବଂ ଏକମୁହାଁ ଡୁଗି କ୍ଷୁଦ୍ର ନାଗରା ପରି । ]

ପ୍ରାଦେ, ( ଗଞ୍ଜାମ ) ବି—ଏକ ପ୍ରକାର ଗଞ୍ଜପା ଖେଳ—
A kind of indoor game at cards ( played with 96 cards).

[ ଦ୍ର—ଏଥିରେ ୯୬ ପଟ ସାର ବା ତାସ୍ ଥାଏ ଓ ଏ ଖେଳ ୪ ଜଣ ଖେଳାଳି ଖେଳନ୍ତି ଓ ଦୁଇ ଜଣ ଲେଖାଏଁ ଏକପକ୍ଷ ହୋଇ ଖେଳନ୍ତି । ଯେଉଁ ଖେଳାଳି କଣ୍ଠା ହୋଇଥିବା ରଙ୍ଗର ସର୍ବୋତ୍କୃଷ୍ଟ ସାର ପାଇଥାଏ ଖେଳ ଆରମ୍ଭ ହେବାବେଳେ ସେହି ଲୋକ ପ୍ରଥମେ ସାର ପକାଏ । ]

**ଡୁଗି ତବଲା**—ଦେ. ( ସହଚର ଶବ୍ଦ; ଧ୍ୱନ୍ୟନୁକରଣ ଡୁଗି+ଆ.
Ḍugi tabalā ତବଲହ୍ )—ବାଁଆ ହାତରେ ଛୁଟିବା ପାଇଁ ବାୟାଁ ଓ
ডুগী তবলা ଡାହାଣ ହାତରେ ଛୁଟିବା ପାଇଁ ତବଲା, ଏହିପରି
डुग्गी तबला ଦୁଇଟି ଏକ ସଙ୍ଗେ ବଜାଯିବା ଆନଦ୍ଧ ବାଦ୍ୟ ଯନ୍ତ୍ର—
ଡୁଗି ତବଲ୍, ଡୁଗି ତାବଲ୍, ଡୁଗି ତବା } ଅନ୍ୟରୂପ — A pair of kettle-drums sounded by striking them with the left and right hands respectively.

**ଡୁଙ୍ଗବା**—ପ୍ରାଦେ. ( ଗଡ଼ଜାତ ଓ ସମ୍ବଲପୁର ) କ୍ରି—
Ḍuṅg-bā ୧ । ଝାଙ୍କିବା, ଲୁଚି କରି ଚାହିଁବା; ଉଣ୍ଡିବା—
1. To look stealthily; to peep.
୨ । ପୋଡ଼ିବା—2 To burn

**ଡୁଙ୍ଗ୍ରି**—ପ୍ରାଦେ. ( ସମ୍ବଲପୁର ଓ ସିଂହଭୂମ ) ବି ( ସଂ. ଟଙ୍କ, ଡୁଙ୍ଗ,
Ḍuṅg-ri ଭୁଲ. ଏହି ଅର୍ଥରେ ହି. ଏହି ଶବ୍ଦ )—କ୍ଷୁଦ୍ର ଗିରି;
( ଡୁଙ୍ଗୁରି—ଅନ୍ୟରୂପ ) ପାହାଡ଼; ମୁଣ୍ଡିଆ— Hillock; a hill.

**ଡୁଙ୍ଗିବା**—ଦେ. କ୍ରି ( ସଂ. ଯୁକ୍ତ ଧାତୁରୁ ଯୋଗ )—୧ । ଶଗଡ଼ର ଭିନ୍ନ
Ḍuṅgibā ଭିନ୍ନ ଅଂଶକୁ ଏକତ୍ର ସଂଯୋଜିତ କରି କାର୍ଯ୍ୟରେ ଉପଯୁକ୍ତ କରିବା—
1.To put the different parts of a cart together so as to make the cart ready for use.
୨ । ଝାଙ୍କିବା; ଲୁଚିକରି ଚାହିଁବା—
2. To peep; to look from a covert.
ପ୍ରାଦେ. (ଗଡ଼ଜାତ ଓ ସମ୍ବଲପୁର) କ୍ରି.—ଡୁଙ୍ଗବା (ଦେଖ)
(ଡୁଙ୍ଗେଇବା—ଅନ୍ୟରୂପ) Ḍuṅg-bā (See)

**ଡୁଙ୍ଗୀ**—ଦେ. ବି. (ସଂ. ଦ୍ରୋଣୀ; ଭୁଲ. ଇଂ ଡଗ୍‌ଆଉଟ୍)—୧ । କ୍ଷୁଦ୍ର
Ḍuṅgi ଡଙ୍ଗା; ସ୍ଥୂଳ ଡଙ୍ଗା—1. Canoe; dug-out.
ডিঙ্গী ୨ । ତନ୍ତୀଙ୍କର ଭରଣୀ ସୂତା ଗୁଡ଼ା ହୋଇଥିବା ନଳୀ;
डोंगी କଣ୍ଡା, (ଦେଖ)—2. Fly shuttle
[ଦ୍ର—ଏ ନଳୀରେ ଭରଣୀ ସୂତା ଗୁଡ଼ିଆ ହୋଇଥାଏ । ତନ୍ତରେ ଲୁଗା ବୁଣା ହେଉଥିବାବେଳେ ଏହି ନଳୀକୁ ଟାଣୀ ସୂତା ଉପରେ ଆଡ଼ବାଗରେ ଚଳାଇବାକୁ ଏ ପାଖରୁ ସେ ପାଖକୁ ଫିଙ୍ଗାଯାଏ । ଏହା ଡଙ୍ଗା ପରି ଦୁଇମୁଣ୍ଡ ଗୋଜିଆ ଥିବାରୁ ଏହାର ଏହି ନାମ । ]

**ଡୁଙ୍ଗୁର ଡୁଙ୍ଗୁର୍**—ଦେ. (ଧ୍ୱନ୍ୟନୁକରଣ) ଅ.—ଢୋଲ ଆଦି ବାଜିବାର
Ḍuṅgur duṅgur କ୍ଷୀଣ ଶବ୍ଦ—
ডুগডুগ Low sound of drum-beating.
डुगडुग [ଦ୍ର—ଏହା ଡଙ୍ଗର ଡଙ୍ଗର ଠାରୁ ମୃଦୁତର ।]
(ଡୁଙ୍ଗୁରୁ ଡୁଙ୍ଗୁରୁ—ଅନ୍ୟରୂପ)

**ଡୁଙ୍ଗୁରା**—ପ୍ରାଦେ. (ଯାଜପୁର) ବି.—ଡେଙ୍ଗୁରା (ଦେଖ)
Ḍuṅgurā Ḍeṅgurā (See)

**ଡୁଙ୍ଗୁରି**—ପ୍ରାଦେ.(ସମ୍ବଲପୁର ଓ ସିଂହଭୂମ) ବି.—ଡୁଙ୍ଗ୍ରି (ଦେଖ)
Ḍuṅguri Ḍuṅgri (See)

**ଡୁଙ୍ଗେଇ**—ଦେ. ବି.—୧ । ଛୋଟ ମୂଷା—
Ḍuṅgei 1. A small house-rat
(ଡୁଙ୍ଗେଇ ମୂଷା—ଅନ୍ୟରୂପ) ୨ । ଗୁଣ୍ଡୁରି ୨ (ଦେଖ)
2 Gunḍuri 2 (See)

**ଡୁଡୁ**—ଦେ.ବି.(ଏଥିରେ ଆକ୍ରମଣକାରୀ ବାଳକ 'ଡୁ ଡୁ' ଧ୍ୱନି ଉଚ୍ଚାରଣ
Ḍuḍu କରେ ବୋଲି ଏହି ନାମକରଣ)—ବାଗ୍ ଡୁଡୁ; ବାଗୁଡୁ
হাডুডুডু ଗୁଡୁ ଖେଳ;ଡୁଡୁ ଖେଳ; ଯୁବକ ଓ ବାଳକମାନଙ୍କର
कबाडी,कबड्डी ଉପଯୋଗୀ ଏକପ୍ରକାର ବ୍ୟାୟାମସାଧ୍ୟ କ୍ରୀଡ଼ା—
(ଡୁଡୁଡୁ—ଅନ୍ୟରୂପ) A kind of field-game requiring

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ନ | ଉଅ | ହ୍ୱ |
| ୨ | ଈ | ଉ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ନ |

physical exercise and played by two parties of young men or boys of equal number on both sides of a line drawn on the ground.

[ଦ୍ର—ଏ ଖେଳରେ ଭୂମିରେ ଗୋଟିଏ ମଧ୍ୟ-ରେଖା ଟଣା ଯାଏ ଓ ରେଖାର ଦୁଇପାଖରେ ସମାନ ସଂଖ୍ୟକ ଦୁଇଦଳ ଖେଳାଳି ରହନ୍ତି । ଗୋଟିଏ ପକ୍ଷରୁ ଜଣେ ପିଲା ଉପର୍ଯ୍ୟୁପରି ଡୁଡୁ ଶବ୍ଦ ଉଚ୍ଚାରଣ କରି ଉକ୍ତରେଖାକୁ ଅତିକ୍ରମ କରି ଏକା ନିଶ୍ୱାସକେ ବିପକ୍ଷ ପକ୍ଷର ସୀମା-ନିର୍ଦ୍ଦିଷ୍ଟ ସ୍ଥାନ (ପାହି)କୁ ଯାଇ ବିପକ୍ଷ ଦଳର ପିଲାମାନଙ୍କ ମଧ୍ୟରୁ ଜଣକୁ ଛୁଇଁଦେଇ ଯେବେ ଅପରପକ୍ଷଙ୍କଦ୍ୱାରା ଧରା ନ ପଡ଼ି ସେହିକ୍ଷଣି ଏକା ନିଶ୍ୱାସକେ ମଧ୍ୟରେଖାକୁ ଡେଇଁ ଆପଣାର ସୀମା (ପାହି)କୁ ପଳାଇ ଆସି ପାରେ, ତେବେ ସେ ଯେଉଁଖେଳାଳିକୁ ଛୁଇଁଥାଏ ସେ ଖେଳାଳିଟି 'ମରେ'; ପରନ୍ତୁ ଆକ୍ରମଣକାରୀ ନିଜ ପାହିକୁ ନ ଆସୁଣୁ ଅପରପକ୍ଷର କୌଣସି ଖେଳାଳିଙ୍କ ଦ୍ୱାରା ଧରା ପଡ଼ିଗଲେ ଆକ୍ରମଣକାରୀ ନିଜେ 'ମରେ'; ତତ୍ପରେ ଅପର ପକ୍ଷରୁ ଜଣେ ପିଲା ପୁଣି ଏ ପକ୍ଷକୁ ଆକ୍ରମଣ କରେ । ଏକ ପକ୍ଷରୁ ଗୋଟିଏ ଖେଳାଳି 'ମରି ଗଲେ' ବିପକ୍ଷ ପକ୍ଷର ମରିଥିବା ଜଣେ ଖେଳାଳି 'ଜୀଇଁ ଉଠେ' ଏହିପରି ଏ ଖେଳ ଚାଲିଥାଏ । ଆକ୍ରମଣକାରୀ ଖେଳାଳି ଏକା ନିଶ୍ୱାସକେ ଅପରପକ୍ଷର ପାହିକୁ ଯାଇ ଅପର ପକ୍ଷର ଜଣେ କାହାକୁ ଛୁଇଁ ଦେଇ ନିଶ୍ୱାସ ଶେଷ ନ ହେଉଣୁ ଆପଣା ସୀମାକୁ ଫେରି ନ ପାରିଲେ ସେ 'ମରେ' । ଆକ୍ରମଣକାରୀ ପିଲାର ଏକା ନିଶ୍ୱାସ କାରି ହୋଇ ପାରିବା ନିମନ୍ତେ ଉକ୍ତ ପିଲା 'ଡୁ ଡୁ' 'ଡୁ ଡୁ' 'ବାଗୁ ଡୁ ଡୁ'; 'ଦା ଡୁ ଡୁ' 'ଛେଡ଼ପାକୁ ଡୁ ଡୁ' ଆଦି ଶବ୍ଦ ଓ ଗୀତରେ ପଦମାନ ମୁହଁରେ ବୋଲୁଥାଏ; ସେ ମୁଖର ଶବ୍ଦ ବନ୍ଦ କରି ଦେଲେ ଜଣା ଯାଏ ଯେ ନିଶ୍ୱାସ ନେବା ନିମନ୍ତେ ପାଟି ବନ୍ଦ କଲା । ଅତଏବ ଏକାନିଶ୍ୱାସ ହେଲାନାହିଁ ଏହି ଡୁ ଡୁ ଖେଳରେ ଆକ୍ରମଣକାରୀଙ୍କ ଉଚ୍ଚାରିତ ଗୋଟି କେତେ ପଦ ନିମ୍ନରେ ଦିଆ ଗଲା । ଯଥା—୧ । ଚେଙ୍କ ଚେଙ୍କ ମଦରଙ୍ଗା, ଫୁଲ ଫୁଟେ ରଙ୍ଗା ରଙ୍ଗା । ୨ । କଲା କଲା ବାଇଗଣ ଧଳା ଧଳା କଉଡ଼ି, ନେଇ ଯା ତୋ ବାଇଗଣ ଦେଇ ଯା ମୋ କଉଡ଼ି । ୩ । ବାଘ ମଲା ଯନ୍ତାରେ, ଢିଙ୍କି ଢିଙ୍କି ଶବଦ କଲା ସମୁଦ୍ର ପନ୍ତାରେ । ୪ । ପଣସ ପତର ବଙ୍ଗ ଠୁଙ୍ଗୁଠି, ମାରିବି ଜାବୁଡ଼ା ଭାଙ୍ଗିବି ଚୁଳୁ ।

ଡୁଡୁକା—ପ୍ରାଦେ. (ସମ୍ବଲପୁର) ବି.—ଲତାଫଳବିଶେଷ; ଏକ ପ୍ରକାର ଜହ୍ନି—A species of Luffa (fruit)
Durduka

ଡୁଡ୍ରୋ ବଘା—ପ୍ରାଦେ. (ସମ୍ବଲପୁର) ବି (ଭୁଲ. ସ୍ଥ. ଲକଡ଼ବଘା)—ବାଘେଟା; ଏକ ଜାତୀୟ ହେଟା—A kind of hyena.
Durdo bagha

ଡୁଡୁମା—ଦେ. ବି. (ନାମ)—ବିଶାଖାପାଟଣା ଜିଲ୍ଲାର ଜୟପୁର ରାଜ୍ୟର ରାଜଧାନୀଠାରୁ ତିନି ଶହ ମାଇଲ ଦୂରରେ ଥିବା ଗୋଟିଏ କମନୀୟ ଜଳପ୍ରପାତ—
Durduma

Name of a fine waterfall in the Jeypur Estate of the Vizag district.

[ ଦ୍ର—ଏହି ସ୍ଥାନକୁ ଅନେକ ବିଦେଶୀ ପ୍ରତିବର୍ଷ ଗ୍ରୀଷ୍ମ ଓ ଶୀତ କାଳରେ ଆସନ୍ତି । ]

ଡୁଣ୍ଡୁ—ଦେ. ବି—୧ । ଫଣାହୀନ ଏକପ୍ରକାର ନିର୍ବିଷ ଜଳଚର ସର୍ପ; ଧଣ୍ଡସାପ; ପାଣିଧଣ୍ଡ—1. A kind of venomless water-snake.
Dundu

୨ । ଚେମଣା ସାପ—
2. A kind of non-venomous snake.

[ ଦ୍ର—ଏମାନେ ମଧ୍ୟ ଫଣାହୀନ, ନିର୍ବିଷ ଓ ୪।୫ ହାତ ପର୍ଯ୍ୟନ୍ତ ଲମ୍ୱ ହୁଅନ୍ତି । ]

ଡୁଣ୍ଡୁଭ(ମ)—ସଂ. ବି—ଡୁଣ୍ଡୁ (ଦେଖ)
Dundubha (ma) Dundu (See)

ଡୁଣ୍ଡୁଲ—ସଂ. ବି—ଏକପ୍ରକାର କ୍ଷୁଦ୍ର ପେଚା—
Dundula A kind of small owl; owlet.

ଡୁପ୍ଲିକେଟ୍—ବୈଦେ. ବିଣ. (ଇଂ)—ଦୋହରା; ଜୋଡ଼ାରୁ ଏକ; ମୂଳବସ୍ତୁର ଅବିକଳ ନକଲ ବା ସମାନ (ବସ୍ତୁ)—
Dupliket Duplicate.
ଡୁପ୍ଲିକେଟ

**ଡୁପ୍ଲିକେଟ** ବୈଦେ. ବି—ମୂଳ ଲେଖାର ଅବିକଳ ଦ୍ୱିତୀୟ ନକଲ—
Duplicate copy.

ଡୁପ୍ଲିକେଟ
ଡୁପ୍ଲିକେଟ } ଅନ୍ୟରୂପ

ଡୁପ୍ଲିକେଟ୍ କପି—ବୈଦେ. (ଇଂ)—ଦୋହରା ନକଲ, ମୂଳ ଲେଖର ଅବିକଳ ପ୍ରତିଲିପି—Duplicate copy.
Dupliket kapi
ଡୁପ୍ଲିକେଟ କାପୀ **ଡୁପ୍ଲିକେଟକାପୀ**

ଡୁବଡୁବି—ପ୍ରାଦେ. (ମେଦିନୀପୁର) ବି. (ଭୁଲ. ଏହି ଅର୍ଥରେ ବ. ଏହି ଶବ୍ଦ)—ଡୁଗଡୁଗୀ (ଦେଖ)
Dub-dubi Dug-dugi (See)

ଡୁବ (ଇତ୍ୟାଦି)—ଦେ. ବି—ଡୁବା ଇତ୍ୟାଦି (ଦେଖ)
Duba (etc) Duba etc (See)

ଡୁବକ—ଦେ. ବି. (ବାଇବଲର ପ୍ରାଚୀନ ଓଡ଼ିଆ ଅନୁବାଦରେ ବ୍ୟବହୃତ; ଓଡ଼ିଆ ଡୁବ୍ ଧାତୁ ସଙ୍ଗେ ସଂସ୍କୃତ କର୍ତ୍ତୃ ଅକ ପ୍ରତ୍ୟୟ)—
Dubaka
ଡୁବକ ୧ । ପାଦ୍ରୀ; ଖ୍ରୀଷ୍ଟାନ୍‌ମାନଙ୍କ ଜଳଦୀକ୍ଷା ଦେବା
**ବପତିସ୍ମାଦେନେବାଲା** ସମୟରେ ଯେଉଁ ପୁରୋହିତ ବା ପାଦ୍ରୀ ଦୀକ୍ଷାପ୍ରାର୍ଥୀ ବ୍ୟକ୍ତିଙ୍କୁ ପବିତ୍ର ଜଳର ପାଣିରେ ବୁଡ଼ାନ୍ତି—
1. A baptist; a baptiser.

[ ଦ୍ର—ଡୁବିତ ଶବ୍ଦ ତଳେ ନୋଟ୍ ଦ୍ରଷ୍ଟବ୍ୟ । ]

ଡୁବୁରୀ; ଡୁବାରୁ ୨ । ଯେଉଁ ବ୍ୟକ୍ତି ଗଭୀର ଜଳରେ ବୁଡ଼ି ବହୁକ୍ଷଣ
**ପନଡୁବା** ରହି ଅଭୀପ୍ସିତ କାର୍ଯ୍ୟ (ପାଣି ଭିତରେ କୌଣସି ପଦାର୍ଥ ଖୋଜିବା; ମୁକ୍ତା, ଶାମୁକାଆଦି ସଂଗ୍ରହ କରିବା) ସମ୍ପନ୍ନ କରି ଉପରକୁ ଛୁଟି ଆସିବାରେ କିମ୍ବା ପାଣି-ଭିତରେ ବୁଡ଼ି ବହୁଦୂର ଗତିକରିବାରେ ଅଭ୍ୟସ୍ତ;

ସାଧାରଣ ଲେଖକ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଟ୍ଟା' ନ ପାଇଲେ 'ଅଟ୍ଟା' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

ବୁଡ଼ାଳୀ (କୂଅରେ କୌଣସି ଜିନିସ ପଡ଼ିଗଲେ ଡୁବକ ମାନେ ପାଣିରେ ବୁଡ଼ି ତାହା ବାହାର କରନ୍ତି)— An expert diver.

**ଡୁବକ ପ୍ରଚାର ସମ୍ପ୍ରଦାୟ**—ଦେ. ବି (ବାଇବ୍‌ଲ ଅନୁବାଦକଙ୍କ ଭାଷା— Ḍubaka prachāra sampradāya ଡୁବକ ଧର୍ମଯାଜକଙ୍କ ସଙ୍ଘ

ଡୁବକପ୍ରଚାରକ ସମ୍ପ୍ରଦାୟ, ଡୁବକପାଦ୍ରୀ ସମ୍ପ୍ରଦାୟ } ଅନ୍ୟରୂପ — Baptist mission society.

**ଡୁବକ ସମ୍ପ୍ରଦାୟ**—ଦେ. ବି. (ବାଇବଲ ଅନୁବାଦକଙ୍କ ଭାଷା)— Ḍubaka sampradāya ଖ୍ରୀଷ୍ଟାନ୍‌ମାନଙ୍କ ମଧ୍ୟରେ ଗୋଟିଏ ସମ୍ପ୍ରଦାୟ—The Baptists; Baptist Christians.

(ଡୁବନ ତଳେ ନୋଟ ଦେଖ ।)

**ଡୁବନ**—ଦେ. ବି—୧ । ନିମଜ୍ଜନ; ପାଣିରେ ଡୁବାଇବା—
Ḍubana 1. Immersion,
ଡୁବନ ୨ । ( ବାଇବ୍‌ଲ ଅନୁବାଦକଙ୍କ ଭାଷା ) ଖ୍ରୀଷ୍ଟଧର୍ମରେ ଦୀକ୍ଷିତ
**ବପତିସ୍ମା** ହେବା ପୂର୍ବରୁ ପବିତ୍ର କୁଣ୍ଡରେ ସ୍ନାନ; ଜଳଦୀକ୍ଷା— 2. Baptism.

[ଦ୍ର—ବାଇବ୍‌ଲର ପୁରାତନ ଅନୁବାଦରେ ଏହି ଶବ୍ଦ ଥିଲା, ମାତ୍ର ୧୯୨୭ ସାଲରେ ରେଭରେଣ୍ଡ ପାଇକ୍‌ସାହେବଙ୍କ ଅନୁବାଦରେ ଏହା 'ଜଳଦୀକ୍ଷା' ହୋଇଅଛି । ଡୁବକ ଶବ୍ଦ ତଳେ ନୋଟ୍ ଦ୍ରଷ୍ଟବ୍ୟ]

**ଡୁବର**—ଦେ. ବି—ଡୁବନ ୨ (ଦେଖ)
Ḍubara Ḍubana 2 (See).

**ଡୁବା**—ଦେ. ବି—୧ । ଡୁବକା; ବୁଡ଼; ଠୁବା—
Ḍubā 1. Diving in water; a dip in the water.
ଡୁବା
**ଡୁବକୀ, ଡାବା** ୨ । ଡୋବା; କ୍ଷୁଦ୍ର ଜଳାଶୟ; ଗଡ଼ିଆ—
ଡୋବା 2. A small tank or pit for water.
**ଗଡ୍ଢା** ୩ । ପାଣିକୁ ହାତ ପାପୁଲି ଦ୍ୱାରା ଆଘାତ କରି 'ଡୁବ୍ ଡୁବ୍' ପରି ଶବ୍ଦ କରିବା—
3. A low report caused by slapping over the surface of water with concaved pamls.
ଡୁବନ ୪ । ଜଣେ ମନୁଷ୍ୟ ବୁଡ଼ିଯିବା ଭଳି ଜଳର ଗଭୀରତା; ପୁରୁଷ—
**ଡୁବାନ** 4. A depth of water in which a man can sink

**ଡୁବାଇ**—ଦେ. ବି—୧ । ପାଣିକୁଆ ପକ୍ଷୀ—
Ḍubāi 1. The Diver bird; the Grebe; the
ଡୁବାରୀ Dabchick; Colimbus Holboellii;
**ଡୁବକୀ** Podilymbus Podicepes.

[ଦ୍ର—ଏମାନେ ଲମ୍ବରେ ୧୨ ଅଙ୍ଗୁଳ ପର୍ଯ୍ୟନ୍ତ ହୁଅନ୍ତି; ମୁଣ୍ଡ କଳା, ପେଟ ଧଳା, ପକ୍ଷ କଳା ଓ ଛାତି ଖଇରି, ଥଣ୍ଟ ସିଧା ଓ ଥଣ୍ଟର ଅଗ ଦାଢ଼ୁଆ, ପକ୍ଷ ଛୋଟ, ଲାଞ୍ଜ ଅତି ଛୋଟ; ପାଦ ହଂସପାଦ ପରି । ଏମାନେ ପାଣିରେ ବହୁକ୍ଷଣ ବୁଡ଼ି ରହି ଗୋଡ଼ ଓ ପକ୍ଷ ଦ୍ୱାରା ପହଁରି ମାଛ ଧରି ଖାଆନ୍ତି ଓ ଶୁଖିଲାରେ ବସି ପକ୍ଷକୁ ଶୁଖାନ୍ତି । ଏମାନେ ଜାଲପାଦ । ]

୨ । ଡୁବେଇ ୨ (ଦେଖ)—2. Ḍubei 2 (See).
୩ । ଦୁବେ (ଦେଖ)—3. Dube (See).

**ଡୁବା(ବେ)ଇବା**—ଦେ. କ୍ରି—୧ । ଡୁବିବା କ୍ରିୟାର ଣିଜନ୍ତ ରୂପ—
Ḍubā(be)ibā 1. The causative form of
ଡ଼ୁବାନ, ଡୋବାନ Dubibā.
**ଡୁବାନା, ଡୁବବାନା** ୧ । କୌଣସି ବ୍ୟକ୍ତି ବା ବସ୍ତୁକୁ ପାଣିରେ ନିମଜ୍ଜିତ କରାଇବା; ବୁଡ଼ାଇବା; ମଗ୍ନ କରିବା—
2 To immerse a thing or person in water; to drown a person.

୩ । ଜାତି ଧର୍ମ ଆଦି ତ୍ୟାଗ କରିବା ବା ଲୋପ କରିବା—
3 To give up one's caste or religious practices.

(ଯଥା—ଆଜିକାଲିର ପିଲାଏ ଚିଡ଼ା ପଇଡ଼ା ସବୁ ଡୁବାଇଲେଣି । )

୪ । ପରର ସର୍ବନାଶ ବା ଅନିଷ୍ଟ ଘଟାଇବା—
4. To cause another's ruin..

(ଯଥା—ନିଷ୍ଠୁର ମହାଜନ ମୋର ସର୍ବସ୍ୱ ନିଲାମ କରି ନେଇ ମତେ ଡୁବାଇ ଦେଲା । )

୫ । ଲୋପ କରିବା; ନଷ୍ଟ କରିବା—
5. To annihilate; to destroy.

୬ । ଅପବାଦ ଦେଇ ଜାତିଚ୍ୟୁତ କରାଇବା —
6 To cause a person to be out-casted by making serious aspersions against him.

୭ । କୁଳ ଲୋପ କରିବା; ବଂଶକୁ ନିର୍ବଂଶ କରାଇବା—
7. To root out a family; to cause extinction of a family.

( ଯଥା—ଅମୁକ ବ୍ୟକ୍ତି ବିବାହ ନ କରି ଆପଣା କୁଳକୁ ଡୁବାଇ ଦେଲା । )

୮ । ପ୍ରାପ୍ୟ ଧନକୁ ବହୁକାଳ ଆଦାୟ ନ ଦେଇ ତମାଦି କରାଇବା—8. To cause another person's dues to become unrealisable by lapse of time.

(ଯଥା —ଖାତକ ୧୨ ବର୍ଷ ହେଲା ମୋ ଠାରୁ ଟଙ୍କା କରଜ ନେଇ ସୁଧ ମୂଳ ସବୁ ଡୁବାଇ ଦେଲା । )

୯ । ଧନ ନଷ୍ଟ ବା କ୍ଷତି କରାଇବା; ଗମାଇବା—
9. To cause loss of money.

(ଯଥା—ଆମ ଗୁଣବନ୍ତ ପୁଅ ଘରୁ ଗୁଡ଼ିଏ ଟଙ୍କା ନେଇ ବେପାର କରି ଶେଷକୁ ମୂଳଧନତକ ଡୁବାଇ ଦେଲା ।)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ୮ | ଓ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇପ୍ସ | ତୃଅ | ଘ |
| ୨ | ଝ | ଓ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଜ୍ଞ | ନ |

୧୦ । ଅନ୍ୟ ବ୍ୟକ୍ତିର ମହତ୍ତ୍ୱ ଇଜ୍ଜତ୍ ବା ପ୍ରତିଷ୍ଠା ସୁନାମକୁ କ୍ଷୁଣ୍ଣ କରାଇବା —10. To cause loss to one's prestige or honour.

( ଯଥା—ମୁଁ ଗରିବ ଲୋକ ବୋଲି ଗାଁଅଁବାଲାଯାକ ଏକମେଳ ହୋଇ ମତେ ଡୁବାଇ ଦେବାକୁ ବସି ଅଛନ୍ତି । )

୧୧ । ( ସୁନାମ ) କଳଙ୍କିତ କରିବା—
11. To bring stigma or stain upon one's good name.

[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା ଓ ପକା(କେ)ଇବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

ଡୁବା(ବେ)ଇ ମାରିବା—ଦେ. କ୍ରି —୧ । କୌଣସି ବ୍ୟକ୍ତିକୁ ଜଳରେ ବୁଡ଼ାଇ ବଧ କରିବା—
Ḍubā(be)i māribā
ଡୁবিয়েমারা
**डुबाकर मारना**
1. To drown a person; to kill a person by causing him to sink in water or by immersing him in water.

୨ । (ଲକ୍ଷଣାର୍ଥ) ଅନ୍ୟ ବ୍ୟକ୍ତିର ସର୍ବନାଶ କରିବା—
2. (figurative) To cause another's ruin.

ଡୁବା ମାରିବା—ଦେ.କ୍ରି —୧ । ପାଣିରେ ବୁଡ଼ି କିଛିକାଳପରେ ଉଠିବା-
Ḍubā māribā
ডুব মারা
**डुबकी देना,डुब मारना, डोबा देना**
1. To dip into the water.

୨ । ହାତ ପାପୁଲି ଦ୍ୱାରା ପାଣିକୁ ଗୁପୁଡ଼ା ମାରି ଏକ ପ୍ରକାର 'ଡୁବୁ' ଶବ୍ଦ ଉତ୍ପନ୍ନ କରିବା—
2. To cause a loud report by giving intensive slaps on the surface of water.

ଡୁବା ଯି(ହେ)ବା—ଦେ. କ୍ରି—ଡୁବିବା କ୍ରିୟାର କର୍ମବାଚ୍ୟ ରୂପ—
Ḍubā ji(he)bā Passive voice of Ḍubibā, to sink.

ଡୁବାରି—ଦେ. ବି—ଡୁବକ ୨ ( ଦେଖ )
Ḍubāri · Ḍubaka 2 ( See )

ଡୁବି—ଦେ ବି—୧ । ଡୁବେଇ ୧ ( ଦେଖ )
Ḍ } 1. Ḍubei 1 ( See )

୨ । ଡୁବିବା ଘଟଣା; ବୁଡ଼ିଯିବା—
ডোবা, ডুবা
**डुबकी**
2. Sinking; drowning.

୩ । ଡୁଗି ( ଦେଖ )—3 Ḍugi ( See )

ଡୁବିତ—ଦେ.ବିଣ (ବାଇବ୍ଲ ଅନୁବାଦକଙ୍କ ଭାଷା)—୧ । ପାଣିରେ ଡୁବା ହୋଇଥିବା—1. Immersed in water.
Ḍubita

୨ । ଡୁବନ ବା ଜଳସଂସ୍କାର ଦ୍ୱାରା ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ-
ডুবত
**जलदीक्षित**
2. Baptised.

[ ଦ୍ର—ଏ ଶବ୍ଦ ଓ ଡୁବକ ଓ ଡୁବନ ଶବ୍ଦକୁ ଖ୍ରୀଷ୍ଟିୟାନ୍ ପାଦ୍ରୀ (Missionary) ମାନେ ଉଦ୍ଭାବନ କରି ଅଛନ୍ତି । ଓଡ଼ିଆ ଡୁବ ଧାତୁରେ ସଂସ୍କୃତ ଅକ, ଅନ ପ୍ରତ୍ୟୟ କରି ଡୁବକ, ଡୁବନ ଓ ଇତ ପ୍ରତ୍ୟୟ କରି ଡୁବିତ ଶବ୍ଦ ନିଷ୍ପନ୍ନ କରି ସେଗୁଡ଼ିକୁ ଯଥାକ୍ରମେ ଇଂରେଜୀରେ Baptiser, Baptism ଓ Baptised ଅର୍ଥରେ ପ୍ରୟୋଗ କରି ଅଛନ୍ତି ।

ଶିଶୁ ଜନ୍ମ ହେବାର କିଛି ଦିନ ପରେ ଖ୍ରୀଷ୍ଟଧର୍ମଯାଜକ ଗିର୍ଜାରେ ଥିବା ପବିତ୍ର ଜଳ କୁଣ୍ଡରେ ତାହାକୁ ସ୍ନାନ କରାଇ ଖ୍ରୀଷ୍ଟଧର୍ମରେ ଦୀକ୍ଷିତ କରି ତାହାର ନାମକରଣ କରନ୍ତି । ଅନ୍ୟ ଧର୍ମାବଲମ୍ବୀବ୍ୟକ୍ତି ଖ୍ରୀଷ୍ଟଧର୍ମ ଗ୍ରହଣ କଲେ ତାଙ୍କୁ ମଧ୍ୟ ପ୍ରଥମେ ପାଦ୍ରୀମାନେ ଜଳରେ ଡୁବାଇ ତା ପରେ ଦୀକ୍ଷା ଓ ନୂତନ ନାମ ଦିଅନ୍ତି । ଏହି ସ୍ନାନ ଓ ଦୀକ୍ଷା-ବିଧିକୁ 'ଡୁବନ' ବୋଲାଯାଏ । ଆମ ଦେଶରେ ଶିଶୁମାନଙ୍କ 'ନାମ-କରଣ' ବିଧି ସଙ୍ଗେ ଏ 'ଡୁବନ' ବିଧି ତୁଳନା କରାଯାଇ ପାରେ । ଶିଶୁର 'ନାମକରଣ' କରିବା ଓ ଅଧିକ ବୟସ୍କ ବ୍ୟକ୍ତିଙ୍କୁ ଗୁରୁ 'ନାମକରଣୀ' ଦେବା ବା 'ମନ୍ତ୍ର ଦେବା'କୁ ଇଂରାଜୀ ଭାଷାରେ 'Baptism' ( ବାପ୍‌ଟିଜିମ୍ ) ଶବ୍ଦ ସଙ୍ଗେ ତୁଳନା କରାଯାଇ ପାରେ ।

ବାଇବ୍ଲର ପୁରାତନ ଅନୁବାଦରେ ବ୍ୟବହୃତ ହୋଇଥିବା ଡୁବକ,ଡୁବନ ଓ ଡୁବିତ ଶବ୍ଦ ପରିବର୍ତ୍ତେ ରେଭରେଣ୍ଡ୍ ଏଚ୍.ଡବ୍ଲୁ. ପାଇକ୍ ସାହେବ ତାଙ୍କର ୧୯୬୭ ରେ ଅନୁବାଦରେ ଯଥାକ୍ରମେ ଜଳଦୀକ୍ଷାଦାତା ଗୁରୁ, ଜଳଦୀକ୍ଷା, ଜଳଦୀକ୍ଷିତ ଶବ୍ଦମାନ ବ୍ୟବହାର କରି ଅଛନ୍ତି । ]

ଡୁବିବା—ଦେ. କ୍ରି. [ ସଂ. ବୁଲ ଧାତୁ ( Beams ) ତୁଲ. ପ୍ରା. ବୁଡ଼ଧାତୁ = ନିମଜ୍ଜନ; ତୁଲ. ସଂ. ବୁଡ଼୍ ଧାତୁ = ଘୋଡ଼ାଇବା, ଲୁଚାଇବା, to hide; to conceal, ଛାଡ଼ିବା, ଉତ୍ସର୍ଗ କରିବା, to emit, to discharge (Apte). ବର୍ଣ୍ଣ ବିପର୍ଯ୍ୟୟରେ 'ଡୁବ' ହୋଇଅଛି; ବଙ୍ଗଳା, ହିନ୍ଦୀ ଓ ମରାହଟ୍ଟୀ ଭାଷାରେ ଏ ଅର୍ଥରେ ଡୁବିବା କ୍ରିୟାର ବ୍ୟବହାର ଅଛି ]—
Ḍubibā
ଡୁବିଯିବା—ଅନ୍ୟରୂପ)
[ଡୁବାଇବା—ଣିଜନ୍ତ]
ডুবা, ডোবা
**डूबना**
[ଡୁବା(ବେ)ଇବା—ଣିଜନ୍ତ]
[ଡୁବା ହେ(ଯି)ବା—କର୍ମବାଚ୍ୟ ରୂପ]

୧ । ଜଳାଦିରେ ବୁଡ଼ିବା; ନିମଜ୍ଜିତ ହେବା; ଜଳମଗ୍ନ ହେବା—1. To dive; to dip; to sink; to plunge in water.

୨ । ( ସଂ. ବୁଡ଼ ଧାତୁ=ଆଚ୍ଛାଦନ, ତ୍ୟାଗ; ଯୋଗେଶ୍ଚନ୍ଦ୍ର ), ଆଚ୍ଛାଦିତ ହେବା—
2. To be covered over.

( ଯଥା—ଚନ୍ଦ୍ର ମେଘରେ ଡୁବି ଗଲେ । )

୩ । ଅଭିଭୂତ ହେବା; ବିହ୍ୱଳ ହେବା—
3. To be overwhelmed.

( ଯଥା—ମୁଁ ଦେଣାରେ ଡୁବି ଗଲିଣି । )

୪ । ଅସ୍ତଗାମୀ ହେବା—4. To set.

ଡୁବିଲା ଦିନାନ୍ତେ ତପ୍ତ ହେମନ୍ତିକ
ଧୀରେ ଦେଖାଇ ଗିରିଶୃଙ୍ଗେ ରଙ୍ଗ । ରାଧାନାଥ. ନନ୍ଦିକେଶ୍ୱରୀ ।

୫ । ଅଦୃଶ୍ୟ ହେବା; ଉଭେଇଯିବା—
5. To vanish; to disappear.

ସାଧାରଣ ଲୋକେ ଅପର ବୃଷ୍ଟାରେ ଦେଇ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଭୂଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲଙ୍ଘ' ନ ପାଇଲେ 'ଅଲଙ୍ଘ୍ୟ' ଦେଖିବେ

( ଯଥା—ଆଜି କାଲି ଏ ଦେଶରୁ ଅତିଥିସତ୍କାର ଓ ଧର୍ମାନୁଷ୍ଠାନମାନ ଡୁବିଗଲାଣି । )

୬ । ( ମୂଳଧନ ବା ପାଣ୍ଠି ) ବିନଷ୍ଟ ହେବା—
6. (capital or invested money) To be lost
( ଯଥା—କାରବାରରେ ମୋ ମୂଳଧନ ଯାକ ଡୁବିଗଲା । )

୭ । ଅଧୋଗତି ବା ଅବନତି ପ୍ରାପ୍ତ ହେବା—
7. To go down; to deteriorate.

ସୁଜନ ଲୋକ ଯେବେ ଗ୍ରାମରେ ଜଣେ ଥାଇ
ତାହାଙ୍କ ଲାଗି ପୃଥ୍ୱୀ କେବେହେଁ ନ ଡୁବଇ । ପାଗାଦ୍ୟର, ବୁଦ୍ଧି ହୃତ୍ୟୁଗଣ ।

୮ । କୌଣସି ପ୍ରାପ୍ୟ ଧନ ଅବଧି ଉତ୍ତୀର୍ଣ୍ଣ ବା ଗରଜାଦି ଅନ୍ୟ କାରଣରୁ ଅଦାୟ ହୋଇ ନ ପାରିବା—
8. ( any money or due ) To become unrealisable; to be barred by limitation.
(ଯଥା—ବାର ବର୍ଷ ହେଲା ଖାତକଠାରେ ମହାଜନଙ୍କର ପାଉଣା ସୁଧମୂଳ ଯାକ ଡୁବିଗଲା । )

୯ । ନଷ୍ଟ ହେବା; ଲୋପ ପାଇବା; ବିନାଶ ପ୍ରାପ୍ତ ହେବା; ଲୁପ୍ତ ହେବା—9. To be destroyed or ruined

୧୨ । (ବଂଶ, କୁଳ) ଲୁପ୍ତ ହେବା; ନିର୍ବଂଶ ହେବା—
12. (a family) To become extinct.

୧୩ । ପାଣିରେ ମୁଣ୍ଡ ବୁଡ଼ାଇ ସ୍ନାନ କରିବା—
13. To have a bath by taking a dip in water.
( ଯଥା—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଯିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । )

**ଡୁବି ପଡ଼ିବା**—ଦେ. କ୍ରି—ଡୁବିବା ୧୩ (ଦେଖ)
Ḍubi pardiba Dubiba 13 (See).
( ଯଥା—ମୁଁ ଘଣ୍ଟାକ ମଧ୍ୟରେ ଡୁବିପଡ଼ି ଆସିବି । )

**ଡୁବି ମରିବା**— ଦେ. କ୍ରି—୧ । ବୁଡ଼ି ମରିବା; ପାଣିରେ ବୁଡ଼ି ଆତ୍ମହତ୍ୟା କରିବା—1. To commit suicide by throwing one's self into water; to drown oneself.
Ḍubi mariba
ଡୁବେ ମରା
ডুব মরো
[ଡୁବା(ବେ)ଇ ମାରିବା—ଶିଜନ୍ତ] ୨ । ସନ୍ତରଣ ଜଳରେ ସନ୍ତରଣ କରିବାକୁ ଅସମର୍ଥ ହୋଇ ପାଣିରେ ବୁଡ଼ିଯାଇ ପ୍ରାଣତ୍ୟାଗ କରିବା—2. To meet a watery death by being unable to swim; to be drowned.

୩ । (ଲକ୍ଷଣାର୍ଥ) ଅତ୍ୟନ୍ତ କ୍ଷତିଗ୍ରସ୍ତ ହେବା—
3. (figurative) To suffer irreparable loss.

୪ । ସର୍ବସ୍ୱାନ୍ତ ହେବା—
4. To be reduced to utter poverty,

୫ । ପରଶୋଧର ଅଶାଧ୍ୟ ହୋଇ ଋଣଗ୍ରସ୍ତ ହେବା —
5. To become insolvent; to be heavily involved in debt.

**ଡୁବୁ ଡୁବୁ**—ଦେ. ବିଣ.—୧ । ଆକଣ୍ଠ ନିମଜ୍ଜିତ; ମଗ୍ନ ପ୍ରାୟ—
Ḍubu dubu 1. About to sink; sinking.
ଡବୁଡବୁ ୨ । ପାଣିରେ ଥରେ ବୁଡ଼ିଯାଇ ପୁଣି ଭାସି ଉଠୁଥିବା;ଡୁବେଇଡୁବେଇ—2. Bobbing in water; alternately sinking down and rising up.
ডুবুডুবু

**ଡୁବୁର**—ଦେ. ବି.—ଡୁବକ ୨ (ଦେଖ)
Ḍubura Ḍubaka 2 (See)
(ଡୁବୁରୁ—ଅନ୍ୟରୂପ)

**ଡୁବେ**—ଦେ. ବି.—ଦୁବେ (ଦେଖ)
Ḍube Dube (See)

**ଡୁବେଇ**—ଦେ. ବି.—୧ । ଡୁବାଇ (ଦେଖ)
Ḍubei 1. Ḍubai (See)
୨ । ଏକପ୍ରକାର ଗଭୀର କଂସା ବାସନ—
2. A kind of deep bell-metal utensil.
୩ । ପିଞ୍ଛା (ଦେଖ)—3. Pinchha (See)
୪ । ଦୁବେ (ଦେଖ)—4. Dube (See)

**ଡୁଭା**—ପ୍ରାଦେ. (ସମ୍ବଲପୁର) ବି.—ଡୋବ (ଦେଖ)
Ḍubha Ḍoba (See)
ଏଡକ ବଡ଼କେ ଡୁଭା, ଫୁଲ ଫୁଟେ ଗୋଭା । ଶିଶୁଗୀତ ।

**ଡୁମ୍ ଡୁମ୍**—ଦେ. (ଧ୍ୱନ୍ୟନୁକରଣ) ଅ.—ଢୋଲ ବାଜିବାର ଅନୁଚ୍ଚ ଶବ୍ଦ।
Ḍum ḍum ଡୁଙ୍ଗୁର ଡୁଙ୍ଗୁର ଶବ୍ଦ— Low sound of drum; beating.
ଡୁମ୍‌ଡୁମ୍, ଡେଂଡେଂ
ডুগডুগ
[ଦ୍ର—ଡୁମ୍ ଡୁମ୍ ଶବ୍ଦ ଡମ୍ ଡମ୍ ଅପେକ୍ଷା ଅନୁଚ୍ଚ; ଡମ୍ ଡମ୍ ଅପେକ୍ଷା ଢାଇଁ ଢାଇଁ ଉଚ୍ଚତର ।]

**ଡୁମ୍ ଡୁମା**—ଦେ. ବିଣ.—ଡୁମ୍ ଡୁମ୍ ଶବ୍ଦଯୁକ୍ତ—
Ḍum ḍumā Low sounding (like a low drum-beating.

**ଡୁମ୍ସ**—ପ୍ରାଦେ. (ସମ୍ବଲପୁର) ବିଣ.—ଜଳରେ ଓଦା ହୋଇ ଫୁଲିଥିବା
Ḍum' Swollen and wet.
(ଯଥା—ଡୁମ୍ସ ଗୁଡ଼ୁଲ ।)

**ଡୁମ୍ବରି**— ପ୍ରାଦେ. (ସମ୍ବଲପୁର) ବି.(ସଂ.ଉଦୁମ୍ବର; ଉଡ଼ୁମ୍ବର)—ଡମ୍ବିରି—
Ḍum-ri Ficus; fig.

**ଡୁମ**—ଗ୍ରା. ବି.—ଡମ (ଦେଖ)
Ḍuma Ḍama (See)

**ଡୁମଣୀ** (ଇତ୍ୟାଦି)—ଡମଣୀ (ଇତ୍ୟାଦି) (ଦେଖ)
Ḍumaṇi (etc). Ḍamaṇi etc (See)

**ଡୁମର**—ପ୍ରାଦେ. (ବସ୍ତର) ବି.—ଡମ୍ବିରି—
Ḍumara Fig.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯୃ | ଉଅ | ଞ |
| ୨ | ଈ | ଊ | ରୁ | ଲୁ | ଯେୃ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଞ୍ଜ | ନ୍ତ |

ଡୁମରି—ପ୍ରାଦେ. (ସମ୍ବଲପୁର) ବି.—ଟିପ—
Ḍumari High-land.
ବିଣ.—ଟିପ; ଉଚ୍ଚ (ଭୂମି)—High (ground.)

ଡୁମା—ପ୍ରାଦେ. (ସମ୍ବଲପୁର) ବି.—ବଡ଼ଜାତିଆ ଅଣ୍ଡିରା ଗୋବରା
Ḍumā ଚଢ଼େଇ—A male of a large species of Gobarā bird.
ପ୍ରାଦେ. (ବସ୍ତର) ବି. (ଭୁଲ. ଇଂ. ଡିମନ୍)—ଅସୁର—Devil.
ପ୍ରାଦେ (କଳାହାଣ୍ଡି) ବିଣ. ସ୍ତ୍ରୀ.—ଡାହାଣୀ—Witch.
ଦେ. ବିଣ.—ଡମ୍ବା ଡମ୍ବା (ଦେଖ)—
Ḍimbā ḍimbā (See)

ଡୁମା(ମେ)ଇବା—ଦେ. କ୍ରି.—ଟୁମାଇବା (ଦେଖ)
Ḍumā(me)ibā Ṭumāibā (See)

ଗୁଳ ଶୁଣ୍, ବାଡ ଶୁଣ୍, ଯେତିକ ଚୁନା ସେତିକ ଲୁଣ୍
ପାଣି ଦେଇଥିବୁ ଅଛେଇ ଘୁଣ୍; ଜାଳ ଦେଇଥିବୁ ଡୁମେଇ କରି,
ବସିଥିବୁ ଗୋଡ ଲମ୍ବେଇ କରି । ଢଗ ।

ଡୁମା ଡୁମା—ଦେ. ବିଣ.—ଡିମ୍ବା ଡିମ୍ବା (ଦେଖ)
Ḍumā ḍumā Ḍimbā dimbā (See)

ଡୁମାଳ—ପ୍ରାଦେ. (ଗଡ଼ଜାତ) ବି. ପୁଂ—୧ । ଅସ୍ପୃଶ୍ୟ ଜାତୀୟ ଶୁଦ୍ରବିଶେଷ
Ḍumāla 1. A low caste people.
(ଡୁମାଳୁଣୀ—ସ୍ତ୍ରୀ) ୨ । ସମ୍ବଲପୁରର ଗଉଡ଼ ଜାତିର ଶାଖା ବିଶେଷ-
2. A sub-caste of Gaurdas in Sambalpur.

ଡୁମୁଡୁମା—ଦେ. ବି.—ବନ୍ୟ ଶାକ ଗୁଳ୍ମବିଶେଷ—
Ḍumuḍumā Monetia Tetracantha (herb).
ବିଣ.—ଡୁମ୍ ଡୁମା (ଦେଖ)—Ḍum ḍumā (See

ଡୁମୁ ଡୁମୁ—ଦେ. (ଧ୍ୱନ୍ୟନୁକରଣ) ଅ.—ଡୁମ୍ ଡୁମ୍ (ଦେଖ)
Ḍumu ḍumu Ḍum ḍum (See)
(ଡୁମୁରୁ ଡୁମୁରୁ; ଡୁମୁରୁ ଡୁମୁରୁ—ଅନ୍ୟରୂପ)

ଡୁମୁଣୀ (ଇତ୍ୟାଦି)—ଡମଣୀ ଇତ୍ୟାଦି (ଦେଖ)
Ḍumuṇī (etc) Ḍamaṇī (See)

ଡୁମେର—ପ୍ରାଦେ. (ସମ୍ବଲପୁର) ବି.—ଡିମ୍ବିରି (ଦେଖ)
Ḍumer Ḍimbiri (See)
ବିଣ—ଧୂସର—Brown.

ଡୁମେର୍ ଗୁରିଆ—ପ୍ରାଦେ. (ସମ୍ବଲପୁର) ବିଣ—ଧୂସରବର୍ଣ୍ଣର ଗୋରୁ—
ıı n r guriā Brown (cattle).

ଡୁମ୍ଫା—ଦେ. ବି.—ଢୁମ୍ପା (ଦେଖ)
Ḍumphā Ḍhumpā (See)

ଡୁମ୍ବାଳ—ପ୍ରାଦେ. (ଗଡ଼ଜାତ) ବି. ପୁଂ—ଢୁମ (ଦେଖ
Ḍumbāla Ḍhumāla(See)
(ଡୁମ୍ବାଳୁଣୀ—ସ୍ତ୍ରୀ)

ଡୁମ୍ବେର—ପ୍ରାଦେ. (ସମ୍ବଲପୁର) ବି.—ଡିମ୍ବିରି (ଦେଖ)
Ḍumber Ḍimbiri (See)

ଡୁରା—ପ୍ରାଦେ. (ବାଲେଶ୍ୱର) ବି—ଡୋରିଆ ଲୁଗା—
Ḍurā Striped cloth.
ବିଣ—ଗାର ପଡ଼ିଥିବା—Striped.

ଡୁରି—ପ୍ରାଦେ. (ସମ୍ବଲପୁର) ବି.—ମହୁଲ (ଦେଖ)
Ḍuri Mahula (See)

ଡୁରି ତେଲ୍—ପ୍ରାଦେ. (ସମ୍ବଲପୁର) ବି.—ମହୁଲ ତେଲ—
Ḍuri tel Mahula oil.

ଡୁର୍କା—ପ୍ରାଦେ. (କଳାହାଣ୍ଡି) ବି.—ଛୋଟ ବାଘ; ନେପାଳବାଘ—
Ḍurkā A small species of tiger; leopard.

ଡୁଲ୍—ପ୍ରାଦେ. (ସମ୍ବଲପୁର) ବି—କ୍ଷେତରୁ ପାଣି ବୋହି ଯାଇ ଜମା
Ḍul ହେବା ଗାତ—A hole or pit where water flowing from a field accummulates.

ଡୁଲ୍କୀ—ଦେ. ବି. (ସଂ. ଢୋଲକ)—ଢୋଲକୀ; ପିଲାଙ୍କ ଖେଳର
Ḍul-kī ଉପଯୋଗୀ ଛୋଟ ଢୋଲ—A small double-faced
(ଡୁଲ୍କି—ଅନ୍ୟରୂପ) drum used as a toy.
ढोलकी, **ढोलकी**

ଡୁଲ୍ ଡାଲ—ବୈଦେ. ବି. (ହିନ୍ଦୀ)—ଡୋଲ୍ ଡାଲ୍ (ଦେଖ)
Ḍul ḍāl Ḍol ḍāl (See)

ଡୁଲା—ପ୍ରାଦେ. (ସମ୍ବଲପୁର) ବି—ଲୁଗା ଘେରା ହୋଇଥିବା ପାଲିଙ୍କି
Ḍulā ପରି ଖଟୁଆ; ଡୋଲି—A rude litter covered with cloth.

ଡୁଲି—ପ୍ରାଦେ. (ବାଲେଶ୍ୱର) ବି. (ସଂ. ଦୋଲକ; ଦୋଳା; ଭୁଲ. ବି.
Ḍuli ଡୁଲି)—୧ । ଡୋଲି; ଦୋଳା; ଛୋଟସବାରି; ମନୁଷ୍ୟଙ୍କ କାନ୍ଧରେ ବୁହା ହେବା ଯାନବିଶେଷ—
1. A small closed sedan chair for carrying a person; dooly; a litter.
୨ । ଶସ୍ୟ ରଖିବା ନିମନ୍ତେ ବାଉଁଶ ପାତିଆରେ ବୁଣା ବଡ଼ ପାତ୍ର; କୋଡ଼ମେଇଁ—2. A big basket for storing grains.
ପ୍ରାଦେ. (ସିଂହଭୂମ) ବି—ବଡ଼ ବେତା—A big basket.
ପ୍ରାଦେ. (ସମ୍ବଲପୁର) ବି—ବିଆର—Cornfield.

ଡୁଶ୍—ବୈଦେ. ବି. (ଇଂ)—କୋଷ୍ଠବଦ୍ଧ ହେଲେ ସାବୁନ ପାଣି ବା
Ḍuś ଲୁଣ ପାଣିପୂର୍ଣ୍ଣ ଗୋଟିଏ ପାତ୍ରରେ ରବରନଳ ଲଗାଇ ନଳଦ୍ୱାରା
ডুস পେଟଭିତରକୁ ପାଣି ଦେଇ ଝାଡ଼ା କରାଇବା ଯନ୍ତ୍ର—
डूस Douche.

ଡୁଶ୍ ଦେବା—ଦେ. କ୍ରି—କୋଷ୍ଠବଦ୍ଧ ରୋଗୀର ପେଟରେ ଡୁଶ୍ଯନ୍ତ୍ରଦ୍ୱାରା
Ḍuś debā ପାଣି ପୂରାଇବା—To thrust water into the
ডুস দেওআ abdomen of a costive patient through
डूस देना the anus by means of a douche.

ଡୁଶ୍ ନେବା—ଦେ କ୍ରି—ନିଜର ପେଟ ଭିତରକୁ ଡୁଶ୍ଦ୍ୱାରା ପାଣି ଦେଇବା-
Ḍuś nebā To flush one's abdomen with water by means of a douche.

ସାଧାରଣ ଲୋକେ ଅନେକ ସ୍ଥଳରେ ସ୍ୱତନ୍ତ୍ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କୁଥ' ନ ମିଳିଲେ 'କଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**ଡୁସିବା**—ପ୍ରାଦେ. (କଳାହାଣ୍ଡି) କ୍ରି—ନିଆଁ ଲଗେଇବା—
Ḍusibā — To set fire; to ignite.

**ଡୁହା**—ଦେ. ବି. (ହି. ଦ୍ୱିପଦୀ)—୧ । ସଙ୍ଗୀତର ଘୋଷାପଦ; ଭୁଆ;
Ḍuhā — ଭୁଆ—1. The refrain of a song.
ଦୋହା — ୨ । ଦୁଇପାଦ ଯୁକ୍ତ ଗୀତ—
ଦୁହ୍‌ରାବ — 2. A song with two lines; doggerel.

**ଡୁହା କରିବା**—ଦେ. କ୍ରି—ଡୁହା ଧରିବା (ଦେଖ)
Ḍuhā karibā — Ḍuhā dharibā (See)

**ଡୁହା ଧରିବା**—ଦେ. କ୍ରି—୧ । ଗାୟକ ବ୍ୟକ୍ତି ସଙ୍ଗୀତର ପଦମାନ
Ḍuhā dharibā — ବୋଲିବା ପରେ (ତାଙ୍କର ସହଚରମାନେ)
ଦୋଆ ଧର୍‌ନା — ସଙ୍ଗୀତର ଘୋଷା ପଦକୁ ବାରମ୍ବାର ଗାଇବା;
ଦୁହ୍‌ରାବ କରନା — ଦୁଆ ଧରିବା—1. To catch or repeat the refrain of a song after it is sung by a singer.

୨ । (ଲକ୍ଷଣାର୍ଥ) କୀର୍ତ୍ତି ଘୋଷଣା କରିବା; ପ୍ରଶଂସା କରିବା; ଜେଜେକାର କରିବା—2. (figurative) To repeat the praise of a person; to acclaim a person to the skies.

**ଡୁହୁରି**—ପ୍ରାଦେ. (ସମ୍ବଲପୁର) ବି. (ତୁଳ. ହି. ଝୁର୍‌ରୀ=ଲମ୍ବରେଖା)—
Ḍuhuri — ଲଙ୍ଗଳର ଶିଆର—Furrow.

**ଡେଇଁ ଡେଇଁ**—କ୍ରି. ବିଣ. (ଅସମାପିକା କ୍ରିୟା)—୧ । ପୁସ୍ତକାଦିର
Ḍeiṅ ḍeiṅ — କେତେକ ଅଂଶ ଛାଡ଼ିଦେଇ (ପଢ଼ିଯିବା)—
ଡେଇଁଡାଇଁ, ଡେଇଁଡେଇଁକା } ଅନ୍ୟରୂପ — 1. (To read) by omitting some portion of a book or writing.
ଡିଙ୍ଗିୟେ ଡିଙ୍ଗିୟେ
କୁଦକୁଦ କର — ୨ । ବାରମ୍ବାର ଉଲ୍ଲଙ୍ଘନ କରି (ଯିବା)—
2. (To go) Leaping many times; by successive leaps and bounds.
(ଯଥା—ଘୋଡ଼ାଟି ପାଞ୍ଚଟା ବାଡ଼ ଡେଇଁ ଡେଇଁ ବାହାରିଗଲା।)

୩ । ପାଦକୁ ଉଚ୍ଚକୁ ଉଠାଇ (ଚାଲିବା)—
3. (To walk) With high steps.

**ଡେଇଁ ଦେବା**—ଦେ. କ୍ରି—ଡିଆଇଁବା; ଡେଇଁବାର ଣିଜନ୍ତରୂପ—
Ḍeiṅ debā — Causative of Ḍeiṅbā, to jump.

**ଡେଇଁ ପଡ଼ିବା**—ଦେ. କ୍ରି—୧ । ଲମ୍ଫ ଦେବା—1. To leap.
Ḍeiṅ paṛibā — ଡେଇଁ ପଡ଼ିଲ ପ୍ରାସ୍ୱ ଭାବ ବହକ।
ଡିଙ୍ଗିୟେ ପଡ଼ା — ରଧାନାଥ. ମେଘଦୂତ।
କୁଦ୍ ପଡ଼ନା — ୨ । (ଅଗ୍ନି ଆଦିରୁ) ଝାସ ଦେବା—
2. To jump into (fire or water).

୩ । ଡେଇଁ ଯିବା (ଦେଖ)—3. Ḍein jibā (See)

**ଡେଇଁବା**—ଦେ. କ୍ରି. (ସ. ଡୀ ଧାତୁ=ଉଡ଼ିବା; ତୁଳ. ଡା—ଡିଗୁ
Ḍeiṅbā — =ଓଲ୍ଲାଇବା)—୧ । ଲମ୍ଫଦେବା; କୁଦିବା—
ଡିଙ୍ଗାନ, ଡିଙ୍ଗିୟେ ଯାଓୟା — 1. To jump; to leap; to spring.
କୁଦନା ଫାଁଦନା

ଡେଁଇବା, ଡେଇଁବା } ଅନ୍ୟରୂପ — ୨ । ଉଲ୍ଲଙ୍ଘନ କରିବା; କୌଣସି ଉଚ୍ଚ ବସ୍ତୁ ବା ଚଉଡ଼ା ପଦାର୍ଥକୁ ଅତିକ୍ରମ କରିବା; ଉଲ୍ଲଙ୍ଘନ କରିବା—2. To leap over; to jump over a height or breadth, to over-leap.

୩ । (ଶରୀରର ଅଙ୍ଗବିଶେଷ) ସ୍ପନ୍ଦିତ ହେବା; ଫୁରିବା କମ୍ପିତ ହେବା—3. To throb; to vibrate; to tremble (said of limbs).

ସବୁ ଅଙ୍ଗଯାକ ମୋହର ଡେଇଁଛନ୍ତି
ଭୀବସ୍ୱେ ମହାଭସ୍ୱ ହେଉଛି ଉପୁଣି। — କୃଷ୍ଣସିଂହ, ମହାଭାରତ ଦ୍ରୋଣ।

[ଦ୍ର—ସ୍ୱପ୍ନଶାସ୍ତ୍ର ମତରେ ଶରୀରର ଭିନ୍ନ ଭିନ୍ନ ଅଙ୍ଗ ଡେଇଁଲେ ଭିନ୍ନ ଭିନ୍ନ ଆଶୁ ଶୁଭ ବା ଅଶୁଭ ଫଳ ସୂଚିତ ହୁଏ; ସାଧାରଣତଃ ପୁରୁଷମାନଙ୍କ ଦକ୍ଷିଣ ଅଙ୍ଗ ଓ ସ୍ତ୍ରୀମାନଙ୍କ ବାମ ଅଙ୍ଗ ଡେଇଁବା ଆଶୁ ଶୁଭଫଳ ସୂଚନା କରେ।]

୪ । (ରୋଗଆଦି) ଏକବ୍ୟକ୍ତିଠାରୁ ଅନ୍ୟ ବ୍ୟକ୍ତିକୁ ସଂକ୍ରମଣ କରିବା—4 To infect (said of contagious diseases).
(ଯଥା—ତା ଦେହରୁ ମୋ ଦେହକୁ କାଛୁ କୁଣ୍ଡିଆ ଡେଇଁଲା।)

୫ । ଦଉଡ଼ି ବୁଲିବା; ଡିଆଁ ମାରି ଦଉଡ଼ିବା—
5. To run about.

୬ । ନାଚ କୁଦ ହେବା; ଖେଳ ବୁଲିବା—
6. To frisk about; to skip about.
ଡେଇଁ ଆଥ ବନ ଯାକ ଭ୍ରମୁ ମନ ଶ୍ରୀହରିଚନ୍ଦନ ବୋଲେ—
କବିସୂର୍ଯ୍ୟ. ଚମ୍ପୋଦୟଚମ୍ପୂ. ଡ-ଗୀତ।

୭ । ବିରକ୍ତ ହେବା; ଚିଡ଼ିବା; ଚିଡ଼ି ଚିଡ଼ି ହେବା—
7. To snap at a person in displeasure; to snarl.
(ଯଥା—ଗୃହସ୍ଥର ପାକରେ ମାଛ ରନ୍ଧା ହେବା ଦେଖି ଆଗନ୍ତୁକ ନିରାମିଷାଶୀ ବାବାଜୀ ଡେଇଁଉଠିଲେ।)

୮ । (ଡେଇଁବାର ଣିଜନ୍ତରୂପ) ଡିଆଇଁବା; କୌଣସି ବସ୍ତୁକୁ ହାତରେ ଶୂନ୍ୟକୁ ପକାଇ ଧରି ନେବା—
8. To throw up a thing to the air and then catch it; to toss a thing up.
(ଯଥା—ସେ ହାତରେ ପେଣ୍ଡୁ ଦୁଇଟା ଡେଇଁ ଡେଇଁ ଆସୁଛି।)

୯ । (ଡେଇଁବାର ଣିଜନ୍ତ) ଡେଇଁବାର ଉପାୟ କରିବା—
9. To cause to jump.
(ଯଥା—ମୁଁ ଅଳ ଆମ ବାଛୁରିକୁ ନେଇ ଗାଡ଼ିଆ ବେଢ଼ ଡେଇଁ ଆଣିଲି।)

୧୦ । କୌଣସି ସୀମାକୁ ଟପିବା—
10. To exceed any limit.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଯ୍ | ଉଅ | ୟ |
| ୨ | ଈ | ଊ | ଋୁ | ଌୁ | ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଜ | ନ୍ବ |

ଆଖି ଡେଇଁ ବର୍ଷକେ ବୁଇଖଣ୍ଡ ଚିହ୍ନିବାର କେଁଟେ ଜଣଙ୍କର ଅଛ୍ତ ।

ଦୈନିକ ଆଶ . ୨୧।୨।୨୧ ।

( ଯଥା—ରେଲଗାଡ଼ି କାଠଜୋଡ଼ି ନଈର ପୋଲ ଡେଇଁ ଅସିବା ପରେ ଗାଡ଼ିର ଗତି ଶିଥିଳ ହେଲା । )

ଡେଙ୍ଗିବା, ଡିଆଁଇବା, ଡେଇଁ ଦେବା } ଟେକନ୍ତ ରୂପ — ୧୧ । ପାଠ କରିବା ସମୟରେ ପୁସ୍ତକାଦିର ଅଂଶବିଶେଷ ତ୍ୟାଗ କରି ଅଗକୁ ପଢ଼ି ଯିବା, କେତେକ ଅଂଶ ଛାଡ଼ି ପଢ଼ିଯିବା; ଗଡ଼େଇ ପକାଇବା—11. To omit portions of a writing or book while reading it through.

( ଯଥା—ସେ ସାତକାଣ୍ଡ ରାମାୟଣ ପୋଥିକୁ ପହରକ ମଧ୍ୟରେ ଡେଇଁ ଗଲା । )

୧୨ । ( ଅକର୍ମକ ) ( ନିର୍ଦ୍ଧାରିତ ସମୟର ସୀମା ) ଅତିକ୍ରାନ୍ତ ହେବା; ଟପି ଯିବା—

12. ( a fixed point of time ) To pass.

( ଯଥା—ଭାଷାକୋଷର ୩ୟ ଖଣ୍ଡ ପ୍ରକାଶିତ ହେବାବେଳକୁ ସମ୍ଭବତଃ ବୋଲ ଡେଇଁଥିବ । )

[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଅସିବା, ପଡ଼ିବା, ଦେବା, ଯିବା କ୍ରିୟାର ସମାପିକାରୂପ ଯୁକ୍ତ ହୁଏ । ]

**ଡେଇଁଯିବା**—ଦେ. କ୍ରି—ଲମ୍ଫ ଦେଇ ଅତିକ୍ରମ କରିଯିବା; ଡିଆଁଯିବା— Deiṅ-jibā To overleap; to leap over; to overcome by jumping.
ডিঙ্গিয়ে যাওয়া
**कूद जाना** ( ଯଥା—ତୋର ଏ ବାଡ଼କୁ ଡେଇଁ ଯିବା କଥା ଅଗରୁ ଜଣା ଅଛି । )

**ଡେଇରି ଫାରମ୍**—ବୈଦେ. ବି. ( ଇଂ )—ଡାଇରି ଫାରମ୍ ( ଦେଖ ) Ḍeiri phāram Ḍāiri phāram ( See )

**ଡେଉଁ(ଉ)ରିଆ**—ଦେ. ବି. ( ସଂ. ଡମରୁ )— Ḍeuṅ(u)riā ୧ । ତଉଁରିଆ; ତାବିଜ; ମର୍ଦ୍ଦଳାକାର ଧାତୁମୟ ଅଳଙ୍କାରବିଶେଷ; ଧାତୁର ମର୍ଦ୍ଦଳାକାର କବଚ—
মাদুলী, মাদলী
**ढोलना, बाकना** 1. Phylactery; an amulet; talisman; a charm made of metal; a drum-shaped locket.

[ ଦ୍ର—ଧାତୁଦ୍ୱାରା ଡେଉଁରିଆ ତିଆରି ହୁଏ । ସେଥି ମଧ୍ୟରେ ମନ୍ତ୍ରଲେଖା କାଗଜ ବା ଭୁର୍ଜପତ୍ର ଖଣ୍ଡ ବା ଜଡ଼ିବୁଟି ଭରି ଲୋକେ ଭୟ, ରୋଗ, ଗ୍ରହଦୋଷ ଓ କୁଦୃଷ୍ଟି ନିବାରଣାର୍ଥ ବେକରେ, ବାହୁରେ ଓ ଅଣ୍ଟାରେ ପିନ୍ଧନ୍ତି । ସୁନା ରୁପାର ଡେଉଁରିଆ ତିଆରି କରି ଲୋକେ ଅଳଙ୍କାରରୂପେ ବେକରେ, ଅଣ୍ଟାରେ ବା ବାହୁରେ ମଧ୍ୟ ବାନ୍ଧନ୍ତି । ଅଷ୍ଟଧାତୁର ଡେଉଁରିଆ ଏକ ଧାତୁରେ ନିର୍ମିତ ଡେଉଁରିଆ ଅପେକ୍ଷା ବେଶି ଉପକାରୀ ଥିବାର କଥିତ । ସ୍ତ୍ରୀଲୋକମାନେ ଓ କେତେକ ପୁରୁଷ ସଉକରେ ବେକରେ ସୁନା ରୁପାର ଡେଉଁରିଆ ମାଳ କରି ପିନ୍ଧନ୍ତି । ଗୁଣିଆଁମାନେ ବିପକ୍ଷର ମନ୍ତ୍ରସମ୍ବନ୍ଧ ଅଭିଚାରକୁ ପ୍ରତିହତ କରିବା ପାଇଁ ବାହାରେ ଡେଉଁରିଆ ବାନ୍ଧନ୍ତି ।]

୨ । ଖଟ, ପଲଙ୍କ ଓ ଡ଼ମାନ ଆଦିର ଚାଉଁରେ ଲଗାଯିବା ମୃଦଙ୍ଗାକାର କାଠି—

2. Ornamental railings attached to the side-posts or head-plates of bedsteads, desks etc.

**ଡେଉଁରିଆ ମାଳ**—ଦେ. ବି—ସ୍ତ୍ରୀମାନଙ୍କ ବାହା ଓ ବେକରେ ବନ୍ଧାଯିବା Ḍeuṅriā māḷa ଡେଉଁରିଆର ମାଳ; କାଙ୍କ ଡେଉଁରିଆ— A string of amulets worn by females round the arm and neck as an ornament.

**ଡେକ୍**—ବୈଦେ. ବି. ( ଇଂ )—ଜାହାଜ ବା ବୋଟର ପଟା ବିଛା ହୋଇଥିବା ଉପର ଅଂଶ—
Ḍek
ডেক Deck of a ship or boat.
**डेक**

**ଡେକ୍‌ଚି**—ବୈଦେ. ବି. ( ଫା. ଦେଗ୍‌ଚ; ଦେଗ୍‌ଚୀ=ତମ୍ବାର ଛୋଟ ପାକ ପାତ୍ର )—ତମ୍ବା ବା ଆଲୁମିନିଅମ୍ ଧାତୁରେ ନିର୍ମିତ ହାଣ୍ଡି ବା ରନ୍ଧନ ପାତ୍ର—Degchee; copper or aliuminium cooking pot.
Ḍek-chi
ডেকচী
**देग, देगची**

**ଡେକ୍ ଚେଆର୍**—ବୈଦେ. ବି (ଇଂ)—ଜାହାଜର ଡେକ୍‌ରେ ବ୍ୟବହାର କରାଯିବା ଚଉକି; କାନ୍‌ଭାସ୍ ଚଉକି—
Ḍek cheār
ডেক চেয়ার Deck-chair.
**डेकचौकी**

**ଡେକ୍‌ନା**—ପ୍ରାଦେ. ( ଲରିଅ ) ବି—ଓଡ଼ଶ; ଛାରପୋକ—
Ḍek-nā Bed bug.

**ଡେକ୍ ପାସେଞ୍ଜର୍**—ବୈଦେ. ବି. ( ଇଂ )—ଜାହାଜର ଡେକ୍‌ରେ ଯିବା ଯାତ୍ରୀ; ଜାହାଜର ତୃତୀୟ ଶ୍ରେଣୀର ଯାତ୍ରୀ—
Ḍek pāseñjar
ডেক পাসেঞ্জর Deck-passenger.
**डेक पैसेंजर**

**ଡେକ୍ସ**—ବୈଦେ. ବି ( ଅଶୁଦ୍ଧ ଉଚ୍ଚାରଣ ) ( ଇଂ. ଡେସ୍କ )—
Ḍeksa ୧ । ମେଜ ଆଦିରେ ଲଗାଯିବା କାଠର ଗୁଣ୍ଡ଼ୁ ବା ଡାଲା; ଦରାଜ—1. A drawyer under tables etc.
ডেস্ক
**डेस्क** ୨ । ଲେଖିବାର ଗଡ଼ାଣିଆଁ ଛୋଟ ମେଜ—
ଡେକସ୍, ଡେସ୍କ } ଅନ୍ୟରୂପ 2. A writing desk.
୩ । ଛାତ୍ରମାନଙ୍କ ପଢ଼ିବା ବେଳେ ବେଞ୍ଚ୍ ସମ୍ମୁଖରେ ଯେଉଁ କାଷ୍ଠନିର୍ମିତ ଗଡ଼ାଣିଆଁ ମେଜ ରଖାଯାଇଥାଏ—

**ଡେକ୍ସନାରୀ**—ବୈଦେ. ବି. (ଇଂ. ଡିକ୍ସିନାରୀ)—ଡିକ୍ସନାରୀ ( ଦେଖ ) Ḍeksanārī Ḍiksanārī ( See )
ডিক্সিনারী, **डिक्सनरी**
( ଡେକ୍ସିନେରୀ; ଡେକ୍ସିନାରୀ—ଅନ୍ୟରୂପ )

**ଡେଗିବା**—ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ )..କ୍ରି ( ତୁଳ. ହି. Ḍegibā ଡଗ୍‌ନା=ଘୁଞ୍ଚିବା, ହଟିବା; ନିଜର ପ୍ରତିଜ୍ଞା ଲଂଘନ କରିବା )—୧ । ଡେଇଁବା—1. To jump

୨। ଝାମ୍ପିବା—2. To swoop.

**ଡେଙ୍କା**— ପ୍ରାଦେ (ସମ୍ବଲପୁର) ବି—ଠେକା; ପଗଡ଼ି—
Ḍeṅkā Turban.

**ଡେଙ୍ଗ୍**—ପ୍ରାଦେ. (ଭଦ୍ରିଭାଷା) ବିଣ—ଡେଙ୍ଗା—
Ḍeṅg Tall.

**ଡେଙ୍ଗ**—ଦେ. ବି. (ସଂ. ତୁଙ୍ଗ)—ଲମ୍ବରେ ଉଚ୍ଚତା; ଠିଆ ବାଗରେ
Ḍeṅga କୌଣସି ବସ୍ତୁର ଉଚ୍ଚତା—
ଲମ୍ବା Height (of a tall thing or person).
ଉଁଚାଇ (ଯଥା—ତା ବାପଠାରୁ ପୁଅଟି ଡେଙ୍ଗରେ ବିଗୁଣେ ଉଚ୍ଚ।)
ଢେଙ୍ଗା; ডেঙ্গা ବିଣ—ଡେଙ୍ଗା—Tall.
ଉଁଚା ଡେଙ୍ଗ ନଥିଅ ବାଙ୍ଗର ଗୁଅ,
ଏହାଠାରୁଁ ଭଲ ବାନ୍ଧରେ ଛୁଅ — କୃଷିବଚନ।

**ଡେଙ୍ଗବେଜାରି**—ପ୍ରାଦେ. (ଗଡ଼ଜାତ)—ବନ୍ୟ ବର୍ଷାୟୁ କଣ୍ଟକୀ କ୍ଷୁପ;
Ḍeṅgabejāri ଅଗର—A thorny shrub; Argemone
(ସଂ. ନାମ—ଶୃଗାଲକଣ୍ଟକ) Mexicana; Mexican poppy;
শিয়ালকাঁটা Gamboje Thistle.

**ଡେଙ୍ଗରା**—ପ୍ରାଦେ. (ସମ୍ବଲପୁର) ବି—ଡେଙ୍ଗୁରା (ଦେଖ)
Ḍeṅgarā Ḍeṅgurā (See)

**ଡେଙ୍ଗା**—ଦେ. ବି. (ସଂ. ତୁଙ୍ଗ, ଦୀର୍ଘ)—
Ḍeṅgā ୧। ଉଚ୍ଚତା—1. Tallness; height.
ঢেঙ্গা, ডাগর ୨। (ପୁଂ) ଉଚ୍ଚ ଲୋକ ବା ବସ୍ତୁ—
ଉଁଚାଇ 2 Tall person or thing.
ଡେଙ୍ଗୀ, ଡେଙ୍ଗେଣି } ସ୍ତ୍ରୀ. ୩। ସର୍ବୋଚ୍ଚ ବ୍ୟକ୍ତି ବା ବସ୍ତୁ—3. Highest or tallest person or thing.
ଡେଙ୍ଗା ମୁଣ୍ଡରେ ଠେଙ୍ଗା ବାଜେ—ପ୍ରବଚନ।
ঢেঙ্গা ଦେ. ବିଣ—୧। ଦୀର୍ଘ; ଠିଆ ବାଗରେ ଲମ୍ବା—
ଉଁଚା, ଲମ୍ବା 1. Tall.
୨। (ପୁଂ) ଉଚ୍ଚ (ବ୍ୟକ୍ତି ବା ବସ୍ତୁ)—
2. Tall (person or thing).
ଶୀର୍ଣ୍ଣକାୟ, ନୁହେଁ ଡେଙ୍ଗା ଅଥବା ବାଙ୍ଗର। ଚନ୍ଦ୍ରାମଣି. ବହ୍ନମାବନ୍ଧ।
୩। ସରୁ ଅଥଚ ଉଚ୍ଚ—
3. Slender and high; thin and tall.

**ଡେଙ୍ଗା ଭେଜି**—ଦେ. ବି—ଶ୍ୱେତ ବୃହତୀ (ଦେଖ)
Ḍeṅgā bheji Śweta bṛuhatī (See)

**ଡେଙ୍ଗିବା**—ପ୍ରାଦେ. (ସିଂହଭୂମ) କ୍ରି (ତୁଳ. ହି. ଡାଁଗ୍‌ନା=ଲଙ୍ଘନ
Ḍeṅgibā ପ୍ରତିବନ୍ଧ ଲଂଘନ କରିବା; ତୁଲବ. ହି. ଡଙ୍ଗନା)
ଡେଇଁବା—To jump; to leap; to spring.

**ଡେଙ୍ଗୁ**—ବୈଦେ. ବି. (ଇଂ. ତୁଳ. ସ୍ପେନ ଦେଶର ଭାଷା ଡେଙ୍ଗା=
Ḍeṅgu ହାଡ଼ଭଙ୍ଗା ଜର)—ଠେଙ୍ଗା ଜର—Dengu fever.
ডেঙ্গু [ଦ୍ର—ଏହା ପ୍ରଥମେ ସ୍ପେନ୍ ଦେଶରେ ଦେଖାଯାଇ
डंगु जर ଥିବାରୁ ଏପରି ନାମ ହୋଇଅଛି।
(ଡେଙ୍ଗୁଜର—ଅନ୍ୟରୂପ) ଏ ଜର ୩ ଦିନ ମାତ୍ର ରହେ। ରୋଗୀର ଦେହହାଡ଼ ଭାରି ଛେଚିଲା ପରି ହୁଏ ଓ ଦରଜ ବୋଧ ହୁଏ। ଠେଙ୍ଗାରେ ବିଶେଷ ମାଡ଼ ଖାଇଲେ ଶରୀର ଯେପରି ଅବଶ ହୁଏ ଏ ଜରରେ ସେହିପରି ଅନୁଭୂତ ଘଟେ, ଏହା ମାରାତ୍ମକ ନୁହେଁ।]

**ଡେଙ୍ଗୁରକ**—ଦେ. ବି—ନାଗରା—
Ḍeṅguraka Drum; tomtom.
ଦାନବନ୍ତୁ ପଗ ପଛ ଥାଇଁ ବାଜେ ନଗର ପାଶେ ତହିଁକ
ହୁଁବା ଧ୍ୱନ ଡେଙ୍ଗୁରକ, ବଯୋଗୀ ଶୁଣି ଉତ୍ସୁକ।
ଭଞ୍ଜ. ଲାବଣ୍ୟବତୀ।

**ଡେଙ୍ଗୁରା**—ଦେ. ବି. (ସଂ. ଡିଣ୍ଡିମ)—
Ḍeṅgurā ଧେଣ୍ଡୁରା; ଢକ୍କା; ନାଗରା—
ঢেঁড়া, ঢেঁট্‌রা Tomtom; drum; kettle-drum.
ঢেঁডরা ଡେଙ୍ଗୁରା ଦେଇ ବୁଲାଇବ ଦେଶ।
ढिंढोरा ପ୍ରାଚୀ ପ୍ରତାପ. ଶଶିସେଣା।
[ଦ୍ର—ଏହା ଏକମୁହାଁ ଆନଦ୍ଧ ବାଦ୍ୟ; ୨ ଖଣ୍ଡ କାଠିଦ୍ୱାରା ୨ ହାତରେ ଏହା ବଜା ଯାଏ। କୌଣସି ସମ୍ବାଦ ସାଧାରଣରେ ବା ପ୍ରକାଶ୍ୟରେ ଘୋଷଣା କରିବା ନିମନ୍ତେ ଡେଙ୍ଗୁରା ବଜାଇ ତାହା ପ୍ରଚାର କରାଯାଏ।
ଆମ ଦେଶରେ ସଧବା ସ୍ତ୍ରୀ ମୃତା ହେଲେ ତାହାର ଶବ ଆଗରେ ଡେଙ୍ଗୁରା ବଜାଇ ଶବକୁ ଶ୍ମଶାନକୁ ନିଅନ୍ତି; ଏହାକୁ ଅହ୍ୟଡେଙ୍ଗୁରା ବୋଲାଯାଏ।]

**ଡେଙ୍ଗୁରା ଦିଆ**—ଦେ. ବି. ଓ ବିଣ—ଡେଙ୍ଗୁରା ପିଟା (ଦେଖ)
Ḍeṅgurā diā Ḍeṅgurā pitā (See)

**ଡେଙ୍ଗୁରା ଦେବା**—ଦେ. କ୍ରି.—ଡେଙ୍ଗୁରା ପିଟିବା (ଦେଖ)
Ḍeṅgurā debā Ḍeṅgurā piṭibā (See)
ঢেঁড়া দেওয়া ବଲା ଡେଙ୍ଗୁରା ଦେଇବ ଅପସରସା,
ढिंढोरा देना ବଳାହାରେ ଶୋଭ ଗୁଣେ ଛଡ଼ାଇ ରସା।
ଭଞ୍ଜ. ବୈଦେହୀଶ ବିଳାସ।

**ଡେଙ୍ଗୁରା ପିଟା**—ଦେ. ବି.— କୌଣସି ବିଷୟର ପ୍ରକାଶ୍ୟରେ ପ୍ରକଟନ—
Ḍeṅgurā piṭā Wide publication of a matter.
ঢাক পিটা ବିଣ.—ସର୍ବସାଧାରଣରେ ପ୍ରକଟିତ—
(ଡେଙ୍ଗୁରା ବଜା—ଅନ୍ୟରୂପ) Published broadcast.

**ଡେଙ୍ଗୁରା ପିଟିବା**—ଦେ. କ୍ରି.—୧। ଧେଣ୍ଡୁରା ଦେବା, ଢକ୍କା ବଜାଇବା
Ḍeṅgurā piṭibā 1. To sound a tomtom or
[ଡେଙ୍ଗୁରା ବଜା(ଜେ)ଇବା—ଅନ୍ୟରୂପ] drum
ডাঙ্গ পিটা ୨। କୌଣସି ବିଷୟକୁ ଘୋଷଣା କରିବା ନିମନ୍ତେ
ঢাক পিটা ଢକ୍କା ବଜାଇବା—2. To proclaim a
ढिंढोरा पीटना matter by beat of drum; to beat a tomtom to announce any matter (e.g. an order).
୩। (ଲକ୍ଷଣାର୍ଥ) କୌଣସି (ଗୋପନୀୟ) ବିଷୟ ସାଧାରଣରେ ଘୋଷଣା କରିବା ବା କହି ବୁଲିବା—
3. (figurative) To publish a secret matter; to publish a scandal.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ର୍‌ | ଌ | ଏ | ଦସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇସ୍ | ଉଅ | ଢ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଅ | ଙ୍ଖ | ଡ଼ |

**ଡେଙ୍ଗେଇ**—ଦେ. ବଣ. ସ୍ତ୍ରୀ—୧ । ଲମ୍ବଶରୀରଯୁକ୍ତା (ସ୍ତ୍ରୀ)—
Ḍengei 1. Tall (woman).
ঢেঙ্গী ୨ । କ୍ଷୀଣ ଅଥଚ ଲମ୍ବଶରୀରବିଶିଷ୍ଟା—
लंबी 2. Thin and tall (woman).
ଡେଙ୍ଗାଇ } ଅନ୍ୟରୂପ [ ଦ୍ର—ଏହା ମଧ୍ୟ ଗାଳିରୂପେ ବ୍ୟବହୃତ
ଡେଙ୍ଗୀ } ହୁଏ । ଡେଙ୍ଗେଇ ସ୍ତ୍ରୀମାନେ ଅସୁନ୍ଦରୀଙ୍କ
ଡେଙ୍ଗ } ପୁଂଲିଙ୍ଗ ମଧ୍ୟରେ ଗଣିତ ହୁଅନ୍ତି । ]
ଡେଙ୍ଗା }

**ଡେଙ୍ଗେନ୍**—ପ୍ରାଦେ. (ସମ୍ବଲପୁର) ବଣ—ଡେଙ୍ଗେଇ—
Ḍengen Tall (woman).

**ଡେଣା**—ଦେ. ବି. (ସଂ. ଡୀ ଧାତୁ; ଡୀନ; ଉଡ୍ଡୀନ)—
Ḍenā ୧ । ପକ୍ଷୀମାନେ ଯେଉଁ ପକ୍ଷ ସାହାଯ୍ୟରେ ଉଡ଼ନ୍ତି—
ডানা; ডেনা 1. Wings; pinion (of bird).
डैना, पंख, पर ଏବେ ଡେଣା ଶୁଖାଇ ଅଛ ବେଶ ହଇ ।
କୃଷ୍ଣସିଂହ. ମହାଭାରତ ବନ ।
୨ । ମାଛମାନେ ଯେଉଁ ପକ୍ଷ ସାହାଯ୍ୟରେ ପହଁରନ୍ତି—
2. Fins (of fishes).
.ହି ୩ । ମନୁଷ୍ୟର ବାହୁ; ବାହା; ହାତର ମୂଳଭାଗ—
बाज़ू, भुजा 3. Arm (of a man).
ଗୁଲଗ ବେଳେ ଦୋହଲାଇ ଦୁଇ ଡେଣା
ହୋଇଥାଏ ଧନମଦେ ପୁର୍ବବଣା । କୃଷ୍ଣସିଂହ. ମହାଭାରତ. ଶାନ୍ତି ।
୪ । (ଲକ୍ଷଣାର୍ଥ) ମନୁଷ୍ୟର ପ୍ରଧାନ ସହାୟ—
4. (figurative) The chief source of a man's strength; chief help; the 'right hand' of a person.

**ଡେଣା ଖସି ପଡ଼ିବା**—ଦେ. ବି—ଡେଣା ଛିଡ଼ି ପଡ଼ିବା (ଦେଖ)
Ḍenā khasi pardibā Ḍenā chhirdi pardibā (See)

**ଡେଣା ଛିଡ଼ି ପଡ଼ିବା**—ଦେ. ବି—(ପକ୍ଷୀର ଡେଣା ଛିଡ଼ି ପଡ଼ିଲେ ସେ
Ḍenā chhirdi pardibā ଯେପରି ଉଡ଼ିପାରେ ନାହିଁ)—
(ଡେଣା ଛିଣ୍ଡିପଡ଼ିବା—ଅନ୍ୟରୂପ) (ଲକ୍ଷଣାର୍ଥ) ପ୍ରଧାନ ସହାୟକ
ডেনা ছিড়ে যাওআ ବ୍ୟକ୍ତି ମୃତ ବା ଅନ୍ତରିତ ହେବା ଯୋଗୁଁ
पर टूटना ମନୁଷ୍ୟ ସହାୟଶୂନ୍ୟ ହେବା—(figurative) The state of being deprived of one's chief support or source of strength.

( ଯଥା—ବଡ଼ ପୁଅଟି ମରିଯିବାରୁ ବୁଢ଼ାର ଡେଣା ଛିଡ଼ି ପଡ଼ିଲା । )

[ ଦ୍ର—ଇଂରାଜୀରେ ମଧ୍ୟ ଏହି ମର୍ମରେ 'Right hand-man' ଅର୍ଥାତ୍ 'ଡାହାଣହାତ ଭଳିଆ ବ୍ୟକ୍ତି' ବ୍ୟବହୃତ ହୁଏ । ଯଥା—By the death of so and so, he has lost his right hand.]

**ଡେଣୁଆଁ**—ଦେ. ବି. (ଡେଣା ବା ବାହୁର ବଳଦ୍ୱାରା ଦୂରକୁ ନିକ୍ଷେପ କରି
Ḍenuān ଯାଏ ବୋଲି)—୧ । ଢେଲା; ଟେକା; ଟେଲା;
ঢিল, ডেলা, ঢেলা ବୋଲୁଅ—1. Clods of earth or stone;
ढेला brickbats; brickbats for tying to the ends of the strings while weaving a mat.

**ଡେଣ୍ଡ୍ରା**—ପ୍ରାଦେ (ସମ୍ବଲପୁର) ବି—(ଭୁଲ. ହି. ଡେଁଡରା)—
Ḍend-rā ଡେଙ୍ଗୁରା (ଦେଖ)
Ḍengurā (See)

**ଡେଣ୍ଡିଆ**—ପ୍ରାଦେ (ସମ୍ବଲପୁର) ବଣ (ଖଣ୍ଡିଆ ସଙ୍ଗେ ନିରର୍ଥକ ଧ୍ୱନ୍ୟନୁ-
Ḍendiā କାରୀ ସହଚର ରୂପେ ବ୍ୟବହୃତ)—ଖଣ୍ଡିଆ; କ୍ଷତ—
Wounded.

[ ଦ୍ର—ଓଡ଼ିଆରେ ଖଣ୍ଡିଆ ସଙ୍ଗେ ଦଣ୍ଡିଆ ସହଚର ରୂପେ ବ୍ୟବହୃତ ଯଥା, ଖଣ୍ଡିଆ ଦଣ୍ଡିଆ । ]

**ଡେଣ୍ଡୁ**—ପ୍ରାଦେ (ସମ୍ବଲପୁର) ବି (ସଂ. ଡୁଣ୍ଡୁଭ; ଭୁଲ. ଏହି ଅର୍ଥରେ
Ḍendu ହି. ଡେଡ଼ହା; ଡେଂଢ଼ା ସାଁପ)—ଧଣ୍ଡ ସାପ—
(ଡେଣ୍ଡୁସାପ—ଅନ୍ୟରୂପ) A kind of water-snake.
ନାଗର ପୋ ଡେଣ୍ଡୁ—ପ୍ରବଚନ ।

**ଡେନ୍**—ବୈଦେ. ବଣ—ଡେନ୍‌ମାର୍କ ଦେଶୀୟ—
Ḍen Dane; Danish.
(ଡାନସ୍—ଅନ୍ୟରୂପ) ବି—ଡେନ୍‌ମାର୍କବାସୀ ବ୍ୟକ୍ତି—A Dane.

**ଡେନ୍‌ମାର୍କ**—ବୈଦେ.ବି (ନାମ)—ଇଉରୋପର ଜର୍ମାନୀରାଜ୍ୟର ଉତ୍ତରରେ
Den-mārk ଦ୍ୱୀପ ଓ ଉପଦ୍ୱୀପ ସମ୍ବଳିତ ଗୋଟିଏ ରାଜ୍ୟ—
ডেনমার্ক Denmark.
डेनमार्क [ ଦ୍ର—ଏହାର ରାଜଧାନୀ କୋପେନ୍‌ହେଗେନ୍ ]
(ଡେନ୍ମାର୍କ୍—ଅନ୍ୟରୂପ)

**ଡେନା**—ପ୍ରାଦେ (ସମ୍ବଲପୁର) ବି (ଣ ସ୍ଥାନରେ ନ ଉଚ୍ଚାରଣ) ଡେଣା—
Ḍenā Wings.

**ଡେପୁଟୀ**—ବୈଦେ. ବି (ଇଂ. ଡେପୁଟୀ)—ଦୋପଟୀ; ଡେପୁଟୀ କଲେକ୍ଟର
Deputi ଓ ଡେପୁଟୀ ମେଜେଷ୍ଟ୍ରର; କଲେକ୍ଟରଙ୍କ ଅଧୀନ ଶାସନ
ডেপুটী ଓ ବିଚାର ବିଭାଗୀୟ ଉଚ୍ଚ କର୍ମଚାରୀ—Deputy;
डिप्टी Deputy Collector; Deputy Magistrate.

[ ଦ୍ର—ଏହି ଇଂରାଜୀ ଶବ୍ଦ ସଙ୍ଗେ ଅନ୍ୟାନ୍ୟ ଅନେକଗୁଡ଼ିଏ ଇଂରାଜୀ ଶବ୍ଦ ଭାଷାରେ ଚଳନ୍ତି; ଯଥା—ଇନ୍‌ସ୍‌ପେକ୍ଟର, ପୋଷ୍ଟ-ମାଷ୍ଟର, ପ୍ରେସିଡ଼େଣ୍ଟ, ସୁପରିଣ୍ଟେଣ୍ଡେଣ୍ଟ, କମିଶନର, ଗଭର୍ଣ୍ଣର ।]

**ଡେପୁଟୀ ଇନ୍ସ୍‌ପେକ୍ଟର ଜେନେରାଲ୍**—ବୈଦେ. ବି (ଇଂ)—ପୁଲିସ ଓ
Deputi ins-pektar jenaral ଅନ୍ୟ କେତେକ ବିଭାଗର
ডেপুটী ইন্সপেক্টর জেনেরল্ ପ୍ରାଦେଶିକ କର୍ତ୍ତାଙ୍କ ସହକାରୀ—
डिप्टी इंसपेक्टर जेनरल Deputy Inspector General.

ସାଧାରଣ ଲୋକେ ୬୮୨ ପୃଷ୍ଠାରେ ୧ଚଉ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତିର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଡ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅଁଖି ନ ପାଇଲେ 'ଆଖି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**ଡେପୁଟୀ କଲେକ୍ଟର**—ବୈଦେ. ବି ( ଇଂ )—ଜିଲ୍ଲାର ରାଜସ୍ୱ ଭାରପ୍ରାପ୍ତ ହାକିମଙ୍କ ସହକାରୀ—Deputy Collector.
Deputi kalektar
ଡେପୁଟୀ କଲେକ୍‌ଟର, ଡେପୁଟୀ କଲଟର, ଡେପୁଟୀ କଲେଟର—ଅନ୍ୟରୂପ—
ডেপুটী কালেক্টর
**डिपटी कलक्टर**
[ ଦ୍ର—ଜିଲ୍ଲାକଲେକ୍ଟରଙ୍କ ଅଧୀନ ଶାସନବିଭାଗୀୟ ଉଚ୍ଚ କର୍ମଚାରୀଙ୍କୁ ଗଞ୍ଜାମରେ ସବ୍ କଲେକ୍ଟର କହନ୍ତି । ]

**ଡେପୁଟୀ କମିସନର**—ବୈଦେ. ବି ( ଇଂ )—ଅପେକ୍ଷାକୃତ ଅନୁନ୍ନତ (ନନ୍ ରେଗୁଲେସନ୍) ଜିଲ୍ଲାର ଉଚ୍ଚତମ ଶାସନକର୍ତ୍ତା—Deputy Commissioner of a non-regulation District
Deputi kamisanar
ডেপুটী কমিসনার
**डिपटी कमिसनर**
[ ଦ୍ର—ଇଂରାଜଶାସିତ ଭାରତ ଅଞ୍ଚଳରେ ଜିଲ୍ଲାର ପ୍ରଧାନ ଶାସନକର୍ତ୍ତାଙ୍କୁ ଡିଷ୍ଟ୍ରିକ୍ଟ-ମାଜିଷ୍ଟ୍ରେଟ୍ କହନ୍ତି । ]

**ଡେପୁଟୀ ଡାଇରେକ୍ଟର**—ବୈଦେ. ବି ( ଇଂ )—କୌଣସି ରାଜକୀୟ କାର୍ଯ୍ୟ ବିଭାଗର ଡାଇରେକ୍ଟରଙ୍କ ସହକାରୀ—Deputy Director of any department.
Deputi dāirektar
ডেপুটি ডাইরেক্টর
**डेपुटि डाइरेक्टर**
(ଡେପୁଟୀ ଡିରେକ୍ଟର—ଅନ୍ୟରୂପ)

**ଡେପୁଟୀ ପ୍ରେସିଡେଣ୍ଟ**—ବୈଦେ. ବି (ଇଂ)—ପ୍ରତିନିଧି ସଭାପତି; ସ୍ଥାୟୀ ସଭାପତିଙ୍କ ଅନୁପସ୍ଥିତିରେ ସଭାପତିଙ୍କ କାର୍ଯ୍ୟନିର୍ବାହକ ବ୍ୟକ୍ତି—Deputy President.
Deputi president
ডেপুটি প্রেসিডেন্ট　**डिपटी प्रेसिडन्ट**

**ଡେପୁଟୀ ମାଜିଷ୍ଟ୍ରେଟ**—ବୈଦେ. ବି (ଇଂ)—ଜିଲ୍ଲାର ଫଉଜଦାରୀ ଶାସନ ବିଭାଗର ପ୍ରଧାନ ରାଜକର୍ମଚାରୀବିଶେଷ; ଜିଲ୍ଲା ମାଜିଷ୍ଟ୍ରେଟଙ୍କ ସହକାରୀ—Deputy Magistrate.
Deputi mājishtret
ଡେପୁଟୀ ମାଜିଷ୍ଟର, ଡେପୁଟୀ ମେଜେଷ୍ଟର—ଅନ୍ୟରୂପ
ডেপুটী মাজিস্ট্রেট　**डिपटी मेजेष्टर**

**ଡେପୁଟୀ ସୁପରିଣ୍ଟେଣ୍ଡେଣ୍ଟ**—ବୈଦେ. ବି (ଇଂ)—ଜିଲ୍ଲାର ପୁଲିସ ବିଭାଗର ଅଧ୍ୟକ୍ଷଙ୍କ ସହକାରୀ—Deputy Superintendent of Police.
Deputi suparintendent
ডেপুটী সুপারিন্টেণ্ডেন্ট
**डिपटी सुपरिन्टेंडेंट**

**ଡେପୁଟେସନ**—ବୈଦେ. ବି (ଇଂ)—କୌଣସି କର୍ତ୍ତୃପକ୍ଷ ବା ଶାସକଙ୍କୁ ସାକ୍ଷାତ୍ କରି ତାଙ୍କ ନିକଟରେ କୌଣସି ବିଶିଷ୍ଟ ଉଦ୍ଦେଶ୍ୟ, ଅଭିଯୋଗ ବା ପ୍ରାର୍ଥନା ଜଣାଇବା ପାଇଁ ନିର୍ବାଚିତ ହୋଇଥିବା ଲୋକପ୍ରତିନିଧିଦଳ—Deputation of selected persons who wait upon a high personage.
Deputesan
ডেপুটেসন্
**डेपुटेसन्**

**ଡେବରା**—ଦେ. ବିଣ—ବାଙ୍ଗିଆ; ଯେଉଁ ଲୋକର ବାମହସ୍ତ ଦକ୍ଷିଣହସ୍ତ ଅପେକ୍ଷା ଅଧିକ ଦକ୍ଷ ବା କାର୍ଯ୍ୟକାରୀ—Left-handed (person).
Debarā
ଡେବରିଆ, ଡେବର ହାତିଆ—ଅନ୍ୟରୂପ
ডেবরা, **बैंहत्था, डेबरा**

**ଡେବ(ବି)ରି**—ଦେ. ବିଣ (ସଂ, ଦକ୍ଷିଣେତର, ସବ୍ୟେତର)—ବାମପାର୍ଶ୍ୱସ୍ଥ; ବାଆଁ—Left; pertaining to the left side.
Deba(bi)ri
(ଡାହାଣ, ଖାଇଣା—ବିପରୀତ)
ବାଁ: **डेरा; बायाँ**　ଝେଙ୍କ ବେଳେ ଡେବରି ପାଦକୁ ଆଗରେ । କୃଷ୍ଣସିଂହ, ମହାଭାରତ ସଭା ।

**ଡେଭଲପ**—ବୈଦେ. ବି. ( ଇଂ. ଡେଭେଲପ୍‌ମେଣ୍ଟ )—୧ । ଉନ୍ନତି; ବିବର୍ଦ୍ଧନ—1. Development.
Debhalap
ডেভেলপ
**डेवलप**
୨ । ଫଟୋଗ୍ରାଫ୍ ଯନ୍ତ୍ର ବା କାମେରାଦ୍ୱାରା କାଚ ଉପରେ ଉଠିଥିବା ଛବିକୁ ଉଜ୍ଜ୍ୱଳତାସହ କାଗଜରେ ଉଠାଇବା—Developing a photo from a negative plate.

**ଡେଭଲପ୍ କରିବା**—ଦେ. କ୍ରି—ଫଟୋଗ୍ରାଫ୍ ନିଆ ଯାଇଥିବା ନେଗେଟିଭ୍ କାଚକୁ ମସଲା ପାଣିରେ ଧୋଇବା ଦ୍ୱାରା ସେଥିରେ ପଡ଼ିଥିବା ଛାୟାଚିତ୍ରର ଆକାର ଅନ୍ୟ କାଗଜରେ ସ୍ପଷ୍ଟରୂପେ ଉଠାଯିବାର ଉପାୟ କରିବା—To develop a plate in photography.
Debhalap karibā
ডেভেলপ করা
**डेवलप करना**

**ଡେଭିଡ**—ବୈଦେ. ବି ( ଇଂ. ନାମ )—ବାଇବ୍‌ଲ୍‌ଲିଖିତ ସ୍ତୁତିମାନଙ୍କ ଗାୟକ ରାଜା—King David; singer of Psalms in the Bible
Debhid
ডেভিড
**डेभीड**
(ଡାଭିଡ୍—ଅନ୍ୟରୂପ)

**ଡେମ୍ ସୁଅର**—ବୈଦେ. ବି ( ଗାଳିରେ ବ୍ୟବହୃତ ) ( ଇଂ ଡାମ୍‌ଡ୍= ନାରକୀ ଓ ଫା. ସୁଅର୍= ଘୁଷୁରି)—ନାରକୀ; ପାପିଷ୍ଠ—(interjection) Damn you !
Dem suar
ଡେମ୍, ଡ୍ୟାମ୍ ସୁଅର—ଅନ୍ୟରୂପ
ড্যাম্　**डेम सुअर**

**ଡେମରେଜ**—ବୈଦେ. ବି ( ଇଂ. ଡେମରେଜ୍ )—ଡିମରେଜ୍ (ଦେଖ)—Dimarej ( see )
Demarej
ডিমারেজ　**डेमरेज**

**ଡେମି**—ବୈଦେ. ବି. (ଇଂ. ଡେମୀ)—୧ । ଡିମାଇ ( ଦେଖ )—1. Dimāi ( See )
Demi
ডেমি
**डेमी, डिमांइ**
୨ । ଡେମି ଅଫିସିଅଲ୍ ଚିଠି ( ଦେଖ )—2. Demi aphisial chithi ( See )
୩ । ଆରଜି ଓ ଦରଖାସ୍ତ ଆଦି ଲେଖିବା ପାଇଁ ଗଭର୍ଣ୍ଣମେଣ୍ଟଙ୍କ ତରଫରୁ ଷ୍ଟାମ୍ପଭେଣ୍ଡରମାନଙ୍କଦ୍ୱାରା ବିକ୍ରି କରାଯାଉଥିବା ଫୁଲ୍‌ସ୍କାପ୍ କାଗଜର ଅଧ ଫର୍ଦ୍ଦ ଆକାର ମୋଟା କାଗଜ; ସାଦା କାଗଜ—3. Demy paper; single sheets of paper sold by Government on which petitions and plaints are written.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଈ | ଊ | ଋ,ୠ | ଌ | ଐ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ଼ | ଡ଼ଅ | ଢ |
| ୨ | ଇ | ଉ | ରୁ | ଲୁ | ଏ୍ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଢ଼ | ନ୍ |

**ଡେମି ଅଫିସିଅଲ୍ ଚିଠି**—ବୈଦେ. ବି ( ଇଂ. ଡେମୀ ଅଫିସିଅଲ୍—ଅର୍ଦ୍ଧ ସରକାରୀ + ଓ. ଚିଠି )—
Ḍemi aphisial chiṭhi
ডেমি অফিসিআল চিঠি
**डेमी अफिसियाल चिट्ठि**
ସରକାରୀ କର୍ମଚାରୀଙ୍କର ସରକାରୀ କାର୍ଯ୍ୟ ସମ୍ବନ୍ଧେ ଘରୋଇ ଚିଠି—Demi-official letter.

**ଡେମି କାଗଜ**—ଦେ. ବି—କଚେରୀରେ ଦରଖାସ୍ତ ଆଦି ଲେଖିବା ନିମନ୍ତେ ବ୍ୟବହୃତ ପରିଚିତ କାଗଜଫର୍ଦ୍ଦ; କାର୍ଟ୍ରିଜ୍ କାଗଜ—Demy paper; cartridge paper sheets used for writing petitions and plaints.
Ḍemi kāgaja
ডেমি কাগজ
**डिमाइ काँगज**

[ ଦ୍ର—ଏହା ଆକାରରେ ଫୁଲସ୍କାପ୍ ଫର୍ଦ୍ଦର ଅଧେ ଓ ସାଧାରଣ କାଗଜ ଅପେକ୍ଷା ମୋଟ; ଏହାର ଲମ୍ବ ୧୩½ ଇଞ୍ଚ ଏବଂ ଓସାର ୮½ ଇଞ୍ଚ । ଏ କାଗଜର ଦେହରେ ସରକାରଙ୍କ ନାମ ସାଧା ଅକ୍ଷରରେ ଛପା ହୋଇଥାଏ ଓ ଷ୍ଟାମ୍ପ ଭେଣ୍ଡରମାନେ ଏହା ବିକନ୍ତି । ]

**ଡେମିବା**—ପ୍ରାଦେ. (ସମ୍ବଲପୁର) କ୍ରି—ଶିଳରେ ଛେଚିବା—
Ḍemibā To pestle or bruise with stone.

**ଡେମେଜ୍**—ବୈଦେ. ବି ଓ ବିଣ (ଇଂ)—ଡାମେଜ୍ ( ଦେଖ )
Ḍemej Ḍāmej ( See )

**ଡେମ୍ଫ**—ଦେ. ବି. ( ସଂ. ଦଣ୍ଡ )—
Ḍempha ୧ । ପତ୍ର, ଫୁଲ ଓ ଫଳ ଆଦିର ବୃନ୍ତ ବା ନାଡ଼—
বোঁটা 1. Stalk; petiole; foot-stalk ( of a fruit, flower or leaf .
**डाँठ, डंठी, ढिपुनी**

୨ । ପ୍ରାଦେଶ ପରିମାଣ; ବିସ୍ତାରିତ କରତଳର ବୁଢ଼ା ଆଙ୍ଗୁଠିର ଅଗରୁ ତର୍ଜନୀ ଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ବିସ୍ତାରର ପରିମାଣ—2. The span of the stretched-out palm between the tips of the thumb and the fore finger

[ ଦ୍ର—ବିସ୍ତୃତ କରତଳର ବୁଢ଼ା ଆଙ୍ଗୁଠିର ଅଗଠାରୁ କାଣୀ ଆଙ୍ଗୁଠିର ଅଗ ପର୍ଯ୍ୟନ୍ତ ବିସ୍ତୃତିକୁ ବିଖଣ୍ଡ ବୋଲାଯାଏ । ]

ବୈଦେ. ବି. ( ଆ. ଦଫ୍; ଡଫ୍ )—କାଠ, ତମ୍ବା ବା ପିତଳର ଏକପ୍ରକାର ଛୋଟ ଆନଦ୍ଧ ବାଦ୍ୟ; ଡମ୍ଫ (ଏହାର ଆକାର ଡାଲି ପରି; ଏହାର ଗୋଟାଏ ପାଖ ଚମଡ଼ାରେ ଆବୃତ ଓ ଆଉ ଗୋଟାଏ ପାଖ ମେଲା ଥାଏ, ଏହା ୨ ଖଣ୍ଡ କାଠିଦ୍ୱାରା ୨ ହାତରେ ବଜାଯାଏ )—
ডম্ফ A kind of small shallow kettle-drum covered with hide on one side; tabor.
**डफ**

**ଡେମ୍ଫ ନାଗରା**—ବୈଦେ. ବି. (ଆ. ଦଫ୍; ଡଫ୍—ଫା. ନାଗରା)—
Ḍempha nāgarā ୧ । ଡେମ୍ଫ ୨—1. Ḍempha 2.
ডম্ফ ୨ । ଏକତ୍ର ବାଜିବା ଡେମ୍ଫ ଓ ନାଗରା ନାମକ ବାଦ୍ୟଦ୍ୱୟ—2. A pair of kettle-drums slightly differing from each other, sounded together.
**डफ**

[ ଦ୍ର—ନାଗରା ହାଣ୍ଡି ଆକୃତି, ହାଣ୍ଡିର ମୁହଁରେ ଚମଡ଼ା ଛାଉଣି ହୋଇଥାଏ । ଡେମ୍ଫର ଆକୃତି ବିଙ୍କଡ଼ା ପରି । ଏହାର ଏକ ମୁଣ୍ଡରେ ଚମଡ଼ା ଛାଉଣି ହୋଇଥାଏ ଓ ଅନ୍ୟ ମୁଣ୍ଡଟି ଖୋଲା ଥାଏ । ଡେମ୍ଫକୁ ଜଣେ ଲୋକ ଦୁଇ ହାତରେ ୨ ଖଣ୍ଡ କାଠି ଧରି ବଜାଏ, କିନ୍ତୁ ଡେମ୍ଫ ନାଗରା ଏକତ୍ର ବଜା ହେଲାବେଳେ ବାଁ ହାତରେ ନାଗରାକୁ ଖଣ୍ଡିଏ କାଠିରେ ଓ ଡାହାଣ ହାତରେ ନାଗରାକୁ ଗୋଟିଏ କାଠିରେ ଏକସମୟରେ ବଜାଯାଏ । ]

**ଡେମ୍ଫେ**—ଦେ. ବି ଓ ବିଣ—ଏକ ଡେମ୍ଫ ପରିମାଣ—
Ḍemphe The length measured between the tips of the thumb and the fore-finger when the palm is stretched out.

କୁକୁର ଡେମ୍ଫେ ଜିଭଟା କାଢ଼ି ପକାଇ ଥକାଇ ଅଛି ।
ଫକୀରମୋହନ. ଛମାଣଆଠଗୁଣ୍ଠ ।

**ଡେମ୍ବ୍‌ରିଆ**—ପ୍ରାଦେ. (ମେଦିନୀପୁର) ବି—ଡେଉଁରିଆ ( ଦେଖ )
Ḍemb-riā Ḍeuñriā ( See )

**ଡେମ୍ବୁର୍**—ପ୍ରାଦେ. (ମେଦିନୀପୁର) ବି. (ଭୁଲ ବ. ଡୁମୁର୍)—ଡିମିରି—
Ḍembur Fig.

**ଡେର୍ ଜମି**—ଦେ. ବି—ଉଚ୍ଚ ଜମି—
Ḍer jami Land on a high level; high land.

**ଡେର**—ଦେ. ବି—୧ । ଠିଆ ବାଗ; କୌଣସି ବସ୍ତୁର ଅଗ୍ରଭାଗ କାନ୍ଥ ବା ବାଡ଼ ପାଖକୁ ସଂଲଗ୍ନ କରି ତାହାକୁ ଠିଆ କରି ରଖିବାର ଅବସ୍ଥା—1. Leaning position of a thing.
Ḍera
ডের
**खाड़ा**

୨ । ଠିଆ ( ଦେଖ )—2. Ṭhia ( See )

ପ୍ରାଦେ. (ସମ୍ବଲପୁର) ବିଣ—ଢେଙ୍ଗା—Tall.

**ଡେରା**—ବୈଦେ. ବି. ( ସଂ. ଦ୍ରାକ୍ ଧାତୁ=ନିକ୍ଷେପ କରିବା କିମ୍ବା ସ୍ଥା ଧାତୁ )—ତମ୍ବୁ; ବସ୍ତ୍ରଗୃହ; ଛାଉଣୀ—
Ḍerā Tent; camp.
ডেরা
**डेरा**

ଘର କରି ଅଗମନେ ଘର ଡେରା ଆଗ କରି ପକାଇଛି ।
ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ଦେ. ବିଣ.—କାନ୍ଥ ଆଦିରେ ଠିଆ ବାଗରେ ଆଉଜା ହୋଇ ଥିବା—Leaning against a wall in a standding posture.

କି ଅବା ଡେରା କିବା ନଶିଲୁଲ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ପ୍ରାଦେ. (ଗଞ୍ଜାମ) ବି.—ବୁଣା ଜାତି; ଏକ ଜାତୀୟ ତନ୍ତି—A class of weavers.

ପ୍ରାଦେ.—(ସମ୍ବଲପୁର ଓ ଗଡ଼ଜାତ) ବି.—୧ । (ଭୁଲ. ଏହି ଅର୍ଥରେ ହି. ଏହି ଶବ୍ଦ) ଆଗନ୍ତୁକ ବ୍ୟକ୍ତିଙ୍କର ବସାଘର ବା ଅସ୍ଥାୟୀ ବାସସ୍ଥାନ—1. Lodgings of a guest.

୨ । କୌଣସି ସ୍ଥାନରେ କରାଯିବା ଅସ୍ଥାୟୀ ବାସ—2. Temporary abode taken up at a place.

ସାଧାରଣ ଲୋକଙ୍କ ଅପର ପୃଷ୍ଠାରେ ସ୍ଵତନ୍ତ୍ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବର୍ଣ୍ଣର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଢେରା(ରେ)ଇବା**—ଦେ. କ୍ରି.—୧ । ଢେରିବା କ୍ରିୟାର ଣିଜନ୍ତ ରୂପ—
Ḍerā(re)ibā 1. The causative form of 'Ḍeribā, to set leaning.
ଡେରান
**ଉଠଂଗବାନା** ୨ । ଅନ୍ୟ ବ୍ୟକ୍ତିଦ୍ଵାରା କୌଣସି ପଦାର୍ଥକୁ ଢେର କରି ରଖାଇବା—2. To cause a thing to be placed in a leaning position.

**ଢେରା ଘର**—ପ୍ରାଦେ. (ସମ୍ବଲପୁର) ବି.—୧ । ଗ୍ରାମର ସାଧାରଣ ଅତିଥିଶାଳା—The village guest-house.
Ḍerā ghara
୨ । ବସା ଘର—2. Lodgings.

**ଢେରା ଯି(ହେ)ବା**—ଦେ. କ୍ରି.—ଢେରିବା କ୍ରିୟାର କର୍ମବାଚ୍ୟ ରୂପ—
Ḍerā ji(he)bā Passive voice of the verb
ଡেবা হওয়া Ḍeribā, to set in a leaning posture.
**ଉଠଂଗନା** ୧ । ଲମ୍ବ ବାଗରେ କାନ୍ଥ ଆଦିକୁ ଲଗାଇ ଠିଆରୂପେ ରଖାଯିବା—1. To be put in a standing position leaning against a wall.
୨ । (ସ୍ତ୍ରୀଲୋକଙ୍କ ପ୍ରତି ଅଭିଶାପ ବଚନ) ଗର୍ଭବତୀ ଅବସ୍ଥାରେ ମରିବା—2. To die during pregnancy.
(ଢେରା ହୋ ଗଲେ ନୋହ୍ ଦେଖ)

**ଢେରା ହୋ**—ଦେ. ଅ.—(ସ୍ତ୍ରୀଲୋକଙ୍କୁ ଗାଳିବିଶେଷ)—ତୁ ଗର୍ଭବତୀ
Ḍerā ho ହୋଇ ପ୍ରାଣତ୍ୟାଗ କର; ତୋ ପେଟ ଚିରା ହେଉ ଓ ତୋ ଶବ ଢେରା ହେଉ—(a curse used to women) Die while pregnant.
[ଦ୍ର—ଆମ ଦେଶରେ ଗର୍ଭିଣୀ ସ୍ତ୍ରୀମାନେ ମଲେ ଶବକୁ ଦାହ କରିବା ପୂର୍ବରୁ ତା ପେଟକୁ ଚିରି ଗର୍ଭସ୍ଥ ପିଲାକୁ ବାହାର କରି ଉକ୍ତ ଶବକୁ ଢେର କରି ରଖି ମାତୃ ଶବ ଓ ଭ୍ରୂଣ ଶବକୁ ପୃଥକ୍ ପୃଥକ୍ ସଂସ୍କାର କରନ୍ତି । ଏଥିପାଇଁ ଢେରା ହେବାର ଏହି ଅର୍ଥ ]

**ଢେରି**—ବୈଦେ. ବି. (ଫା. ଦେର୍)—ବିଳମ୍ବ; କାଳବିଳମ୍ବ—
Ḍeri Lateness; delay.
দেরী **ବିଣ.**—ବିଳମ୍ବ ହୋଇଥିବା; ବିଳମ୍ବିତ—
**देर, देरी** Late.

**ଢେରି କରିବା**—ଦେ. କ୍ରି.—ବିଳମ୍ବ କରିବା—
Ḍeri karibā To be late; to defer.
দেরি করা **देर करना**

**ଢେରି ଦେବା**—ଦେ. କ୍ରି.—୧ । ଢେରିବା (ଦେଖ)
Ḍeri debā 1. Ḍeribā (See)
(ସାରଦେବା—ବିପରୀତ) ୨ । (କେଉଟଙ୍କ ଭାଷା) ନୌକାର ଆଗ
ডেরে রাখা ମଙ୍ଗକୁ କାତଦ୍ଵାରା ସଯତ କରିବା—2 (nautical term) To direct or regulate the direction or position of the front end of a boat by punting it with the punting rod.

**ଢେରିବା**—ଦେ. କ୍ରି. (ସଂ. ଦ୍ରାଢ଼ ଧାତୁ=ନକ୍ଷେପ)—୧ । କୌଣସି ଲମ୍ବ
Ḍeribā ବସ୍ତୁର ଅଗ୍ରଭାଗକୁ କାନ୍ଥ ବା ବାଡ଼ ଆଦିକୁ ଡ଼ଲଗ୍ କରି
ডেরা ଉକ୍ତ ବସ୍ତୁକୁ ଠିଆ କରାଇବା; ଆଉଜାଇବା—
**ଉଠଂଗନା** 1. To set a thing leaning against a wall etc.
(ଯଥା—ବାଡ଼ ଖଣ୍ଡ ଘର କଣରେ ଢେରି ଦିଅ ।)
୨ । ଠିଆ କରାଇବା; କୌଣସି ଲମ୍ବ ପଦାର୍ଥକୁ ଠିଆ ବାଗରେ ରଖାଇବା—2. To make a thing stand up; to erect; to set up.
(ଯଥା—ଭୂଇଁରେ ପଡ଼ିଥିବା ଖୁଣ୍ଟକୁ ଢେରିଦିଅ ।)
[ଢେରା(ରେ)ଇବା—ଣିଜନ୍ତ] ୩ । କୌଣସି କଥା ବା ଶବ୍ଦ ଶୁଣିବା ନିମନ୍ତେ କାନକୁ ସେହି ଶବ୍ଦ ଆଡ଼କୁ ବୁଲାଇବା—
3. To prick or turn the ears (in order to hear any sound more distinctly).
୪ । ନିବିଷ୍ଟ ଚିତ୍ତରେ କୌଣସି କଥା ଶୁଣିବା ନିମନ୍ତେ କାନସହିତ ମୁଣ୍ଡକୁ ବୁଲାଇବା; କାନ ପାଡ଼ିବା—4. To try to hear or catch any sound with concentration; to listen to any thing.
ଶୁଣ ମା ଶୁଣ ମା କାହିରେ ଢେରିଣ ଶ୍ରବଣ । ମଧୁସୂଦନ. ଉତ୍କଳ ଗାଥା ।
[ଦ୍ର—ଘୋଡ଼ା ଓ ଗାଈମାନେ ମୁଣ୍ଡକୁ ନ ବୁଲାଇ କାନକୁ ଶବ୍ଦ ଆଡ଼କୁ ଢେରିବାର ଦେଖାଯାଏ । କାରଣ ସେମାନେ ମୁଣ୍ଡକୁ ନ ବୁଲାଇ କାନକୁ ଏପାଖ ସେପାଖ ବୁଲାଇ ପାରନ୍ତି । ମାତ୍ର ମନୁଷ୍ୟର ସେପରି ଆବଶ୍ୟକ ହେଲେ ସେ ମୁଣ୍ଡକୁ ନ ବୁଲାଇଲେ କେବଳ କାନକୁ ଇତସ୍ତତଃ ବୁଲାଇ ପାରେନାହିଁ । ଅତଏବ ମନୁଷ୍ୟ ପକ୍ଷରେ 'କାନ ଢେରିବାର' ଅର୍ଥ ନିବିଷ୍ଟ ଚିତ୍ତରେ କୌଣସି ଶବ୍ଦ ବା କଥା ଶୁଣିବା । ]
୫ । ବିସ୍ତାର କରିବା—5. To extend; to spread out.
୬ । ସିଧା କରିବା—6 To straighten.
୭ । (ନାଉରି ଭାଷା) କାତଦ୍ଵାରା ନୌକାର ଆଗ ମଙ୍ଗକୁ କଡ଼ିକିଷ୍ଟ ଦିଗଆଡ଼କୁ ବୁଲାଇବା—7. (nautical term) To regulate the front end of a boat by using the punting rod.
୮ । (ନାଉରି ଭାଷା) ଡଙ୍ଗାର ଆଗ ମଙ୍ଗକୁ କୂଳ ପାଖରୁ ଛଡ଼ାଇବା—8. (nautical term) To keep the front end of the boat off from the shore while plying it.
ପ୍ରାଦେ. (ସମ୍ବଲପୁର) କ୍ରି—ଢେଇଁବା; ଲମ୍ଫ ପ୍ରଦାନ କରିବା—To leap; to jump.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଘ | ଜ | ଷ,ଷ | ଙ୍କ | ଇପ୍ | ଡ଼ଅ | ଛ |
| ୨ | ଈ | ଊ | ରୁ | ଲୁ | ପୈ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟଂ୍ୟ | ଇଥ | ଊ | ନ୍ |

ଡେରି ହେବା—ଦେ. କ୍ରି—ବିଳମ୍ବ ଘଟିବା—
Ḍeri hebā Being late; or delared
দেবী হওয়া
ଡେ. କ୍ରି—୧ । ଡେରିବା କ୍ରିୟାର କର୍ମବାଚ୍ୟରୂପ—
देर होना 1. To be made to lean in a standing posture.

୨ । ଆପଣାର ଦେହକୁ ଭୂତଳରୁ ସମକୋଣଭାବରେ ରଖିବା—
2. To keep one's body perpendicular to the earth's surface.

(ଯଥା—ତୁମେ ଡେରି ହୋଇ ବସ ।)
ପ୍ରାଦେ. (ସମ୍ବଲପୁର) କ୍ରି. (ଗାଳରେ ବ୍ୟବହୃତ) ନିଜର ବାହାଦୁରୀ ଦେଖାଇ ହେବା—To display one's excellence; to show off; to be ostentatious

ଡେରି ହୋଇ ବସିବା—ଦେ. କ୍ରି—ଗୋଡ଼ରେ ଭର ଦେଇ ବସିବା; କେବଳ ଗୋଡ଼ର ତଳପାକୁ ଭୂମିରେ ଲଗାଇ ଦେହର ଅନ୍ୟ କୌଣସି ଅଂଶ ଭୂମିରେ ନ ଲଗାଇ ବସିବା; ଊର୍ଦ୍ଧ୍ୱଜାନୁ ହୋଇ ବସିବା—
Ḍeri hoi basibā
উবু হয়ে বসা
उठ बैठना
To sit upright with the soles of the feet on the ground; to sit up; to sit on the heels; to squat with the knees held up.

ଡେଲଙ୍ଗା—ଦେ. ବିଣ—କୁବ୍ଜପୃଷ୍ଠ; କୁବ୍ଜ ବା ଉପରକୁ ବଙ୍କା ହୋଇଯାଇ ଥିବା (ପଟା); ଉପରକୁ ବାଙ୍କିଥିବା—
Ḍelangā
বাংকা
Warped; bent; become curved.
टेढ़ा [ ଦ୍ର—ଯେଉଁ ପଟା ଉପରଆଡ଼କୁ ବାଙ୍କିଯାଇ ଥାଏ ତାକୁ ଡେଲଙ୍ଗା ଓ ତଳଆଡ଼କୁ ବାଙ୍କିଯାଇ ଥାଏ ତାକୁ ନୁଆଁ ବା ଲୁଆଁ କହନ୍ତି । ]

ଡେଲଙ୍ଗିବା—ଦେ. କ୍ରି—ଡେଲିଙ୍ଗିବା (ଦେଖ)
Ḍelangibā Ḍelingibā (See)

ଡେଲହୁସି—ବୈଦେ. ବି ( ଇଂ. ନାମ, ଡେଲ୍‌ହଉସୀ )—ଲର୍ଡ଼ ଡେଲହୁସି; ଭାରତର ଗଭର୍ଣ୍ଣର ଜେନେରାଲ—
Ḍelāhusi
Lord Dalhousie, one Governor General of India.

[ଦ୍ର—ଏ ୧୮୪୮ରୁ ୧୮୫୬ ସାଲ ପର୍ଯ୍ୟନ୍ତ ଭାରତର ବଡ଼ଲାଟ ହୋଇଥିଲେ । ଏହାଙ୍କ ଅମଳରେ ପଞ୍ଜାବ, ଦାର୍ଜିଲିଙ୍ଗ, ଅଯୋଧ୍ୟା, ସାଗର, ଝାନ୍ସି, ନାଗପୁର ଓ ବେରାର ଭାରତୀୟ ଇଂରାଜ ରାଜ୍ୟଭୁକ୍ତ ହେଲା ଏବଂ ୨ୟ ବ୍ରହ୍ମ ସମର ହୋଇ ରେଙ୍ଗୁନ, ମାର୍ତ୍ତାବାନ, ପେଗୁ ଆଦି ମଧ୍ୟ ଭାରତ ସାମ୍ରାଜ୍ୟଭୁକ୍ତ ହେଲା । ଏହାଙ୍କ ଅମଳରେ ବଙ୍ଗ ପାଇଁ ସ୍ୱତନ୍ତ୍ର ଛୋଟଲାଟ ନିଯୁକ୍ତ ହେଲେ । ଏହାଙ୍କ ଅମଳରେ କଲିକତା, ବମ୍ବେ ଓ ମାନ୍ଦ୍ରାଜଠାରୁ ପ୍ରଥମେ ରେଲ ଲାଇନମାନ ପଡ଼ିଲା, କେନାଲମାନ ଖୋଳା ହେଲା, ପକ୍କା ସଡ଼କ ହେଲା, ତାରଡାକ ବସିଲା, ଦୁଇପଇସିଆ ଡାକଟିକଟ ଚଳିଲା ଓ ଭାରତରେ ସରକାରଙ୍କ ଶିକ୍ଷାବିଭାଗ ପ୍ରତିଷ୍ଠିତ ହେଲା । ]

ଡେଲି—ବୈଦେ. ବିଣ ( ଇଂ )—ଦୈନିକ—
Ḍeli Daily.
ডেলী (ଯଥା—ଡେଲି ଆଶା; ଡେଲି ଖବର କାଗଜ । )
डेली ବି—ଦୈନିକ ଖବର କାଗଜ—
Daily newspaper.

ଡେଲିଗେଟ୍—ବୈଦେ. ବି ( ଇଂ )—ସଭା, ସମିତି ଆଦିକୁ ଲୋକଙ୍କ ତରଫରୁ ମନୋନୀତ ବା ନିର୍ବାଚିତ ହୋଇ ପଠାଯିବା ପ୍ରତିନିଧି ବା ସଭ୍ୟ—Delegate.
Ḍeliget
ডেলিগেট
डेलिगेट

ଡେଲିଗେଟ୍ ଫି—ବୈଦେ. ବି ( ଇଂ )—ସଭା, ସମିତି ଆଦିରେ ପ୍ରତିନିଧି ରୂପେ ଗ୍ରହଣ କରାଯିବା ବ୍ୟକ୍ତିଙ୍କର ଉକ୍ତ ସଭାସମିତିକୁ ଦେୟ ନିର୍ଦ୍ଧାରିତ ଅର୍ଥ—Delegate-fee.
Ḍeliget phi

ଡେଲିଙ୍ଗିବା—ଦେ. କ୍ରି—(କୌଣସି ଦିଧା ପତଳା ଲମ୍ବ ପଟା) ବଙ୍କା ବା କୁବ୍ଜ ହୋଇଯିବା—To become bent or curved ( said of a thin plank ); to bulge.
Ḍelingibā
(ଡେଲଙ୍ଗିବା—ଅନ୍ୟରୂପ)
বাঁকান
कुबड़ना [ ଦ୍ର—ପଟା ଆଦିର ମଧ୍ୟ ଅଂଶ ତଳଆଡ଼କୁ ବଙ୍କେଇ ଗଲେ ତାକୁ ନଇଁବା ବା ଲଇଁବା ଏବଂ ଉପରଆଡ଼କୁ ବଙ୍କେଇ ଗଲେ ତାକୁ ଡେଲଙ୍ଗିବା କହନ୍ତି । ]

ଡେଲିଙ୍ଗି ବାଉଁଶ—ଦେ. ବି—ବେଲଙ୍ଗି ବାଉଁଶ; ଏକପ୍ରକାର ସରୁ ବାଉଁଶ—A kind of slender bamboo; Arundinacea (Kirtikar); Oxylenanthera Nigrocilliate ( Haines ); Bambusa Tulda.
Ḍelingi bāunsa
(ଡେଲଙ୍ଗି—ଅନ୍ୟରୂପ)
ସ୍ତ. ବଂଶ, ଖାଚକ
বেউড় বাঁশ
डोलु; नलबांस

ଡେଲ୍ଟା—ବୈଦେ. ବି (ଇଂ)—ନଦୀ ସମୁଦ୍ରରେ ପଡ଼ିବା ସ୍ଥାନ ବା ମୁହାଣରେ ପଙ୍କଦ୍ୱାରା ଗଠିତ ତ୍ରିକୋଣାକାର ଭୂମି; ନଦୀମୁଖସ୍ଥ ତ୍ରିକୋଣ ଭୂମି—Delta.
Ḍeltā
ডেল্‌টা, ব-দ্বীপ
डेल्टा [ ଦ୍ର—ଗ୍ରୀକ୍ ଭାଷାର ('Δ')ଏହି ତ୍ରିକୋଣ ଅକ୍ଷରର ନାମ ଡେଲ୍ଟା । ସମୁଦ୍ରରେ ପଡ଼ିବା ପୂର୍ବରୁ ନଦୀ ବହୁଧାର ହୋଇ ବହି ଯାଇ ସ୍ଥାନେ ସ୍ଥାନେ ଏହିପରି ଆକାର ଧାରଣ କରିଥିବାରୁ ଇଂରାଜୀରେ ଏହାର ନାମ ଡେଲ୍ଟା; ବଙ୍ଗଳାରେ ବ ଅକ୍ଷର ( ব ) ତ୍ରିକୋଣ ଅଟେ, ଅତଏବ ଡେଲ୍ଟାକୁ ବଙ୍ଗଳାରେ ବ ଦ୍ୱୀପ, ଆଖ୍ୟା ଦିଆ ଯାଇଅଛି । ଓଡ଼ିଆରେ କେତେକ ଲେଖକ ବଙ୍ଗଳା ଅନୁକରଣରେ 'ବ ଦ୍ୱୀପ' ରୂପକ ନିରର୍ଥକ ଓଡ଼ିଆ ଶବ୍ଦ ପ୍ରୟୋଗ କରିବାର ଦେଖାଯାଏ । ]

ଡେଷ୍ଟ୍ରୟର—ବୈଦେ. ବି (ଇଂ)—୧ । ଧ୍ୱଂସକାରୀ—
Ḍeshṭrayar 1. Destroyer.
ডেষ্ট্রয়র ୨ । ଶତ୍ରୁର ଜାହାଜ ଧ୍ୱଂସକାରୀ ରଣତରୀ—
डेस्ट्रायर 2. Destroyer; a class of battle-ships which can destroy the ships of the enemy.

> ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ଡେସପାଚ୍**—ବୈଦେ. ବି (ଇଂ)—୧ । ଗୁରୁତର ବିଷୟକ ସରକାରୀ
Des-pāch ଚିଠି—1. Official despatch
ডেস্ পাচ্ ୨ । ଭାରତର ବଡ଼ଲାଟଙ୍କ ଠାରୁ ଓ ଠାରୁ ଯେଉଁ
डेस् पाच सरकारୀ ରିପୋର୍ଟ ଓ ଆଦେଶମାନ ଭାରତ ସଚିବଙ୍କ ଠାରୁ ଓ ଠାକୁ ଯିବା ଆସିବା କରେ—2 Despatch from the Viceroy to the Secretary of State for India and vice versa.

**ଡେସିମଲ୍**—ବୈଦେ. ବି (ଇଂ)—୧ । ଦଶମିକ; ଏକସଂଖ୍ୟାର ଦଶୋତ୍ତର
Desimal ଭାଗ—Decimal.
ডেসিমল ୨ । ଏକ ଏକର ଭୂମିର $\frac{1}{100}$, $\frac{1}{1000}$, $\frac{1}{10000}$
डिसिमल ପ୍ରଭୃତି ଅଂଶ—2. One decimal of an acre.

[ ଦ୍ର—ଓଡ଼ିଶାରେ ପୂର୍ବେ ଭିନ୍ନ ଭିନ୍ନ ଦସ୍ତିର ପଦ୍ଧତିରେ ଜମି ମାପ ହୋଇ ବାଟି, ମାଣ, ଗୁଣ୍ଠ, ବିଶ୍ୱା ଓ କାଣୀ ଦ୍ୱାରା ଜମିର କ୍ଷେତ୍ରଫଳ ନିର୍ଦ୍ଦିଷ୍ଟ ହେଉଥିଲା । କିନ୍ତୁ ଇଂରାଜ ଗଭର୍ଣ୍ଣମେଣ୍ଟଙ୍କ ଭୂରାଜସ୍ୱ ସେଟଲମେଣ୍ଟରେ ଏକର, ଡେସିମଲ୍ ହିସାବରେ ଜମିର କ୍ଷେତ୍ରଫଳ ନିର୍ଦ୍ଦିଷ୍ଟ ହୋଇଅଛି । ୨୪ ଦସ୍ତି ପଦ୍ଧତିରେ ଏକମାଣ = ୧ ଏକର; ଏକରକୁ ଏକଶହ, ଏକହଜାର ଓ ସ୍ଥାନବିଶେଷରେ ଦଶହଜାର ଭାଗରେ ବିଭକ୍ତ କରି ପ୍ରତ୍ୟେକ ଅଂଶକୁ ଡେସିମଲ୍‌ଦ୍ୱାରା ଚିହ୍ନିତ କରାଯାଏ । ଯେଉଁ ଅଞ୍ଚଳରେ ଏକରକୁ ୧୦୦ ଭାଗରେ ବିଭକ୍ତ, ସେଠାରେ ୧୦୦ ଡେସିମଲ୍ = ୧ ଏକର; ଯେଉଁଠାରେ ଏକରକୁ ୧୦୦୦ ଭାଗରେ ବିଭକ୍ତ, ସେଠାରେ ୧୦୦୦ ଡେସିମଲ୍ = ୧ ଏକର; ଯେଉଁଠାରେ ଏକରକୁ ଦଶହଜାର ଭାଗରେ ବିଭକ୍ତ, ସେଠାରେ ୧୦୦୦୦ ଡେସିମଲ = ୧ ଏକର । ବଡ଼ ବଡ଼ ସହରରେ (ଯଥା କଟକରେ) ଜମିମାନ ଅତି କ୍ଷୁଦ୍ର କ୍ଷୁଦ୍ର ଖଣ୍ଡରେ ବିଭକ୍ତ ହୋଇ ଥିବାରୁ ଏକରକୁ ଦଶହଜାର ଡେସିମଲରେ ବିଭକ୍ତ କରି ଯାଇ ସେଟଲମେଣ୍ଟ କରା ଯାଇଥିଲା । ]

**ଡେସ୍କ**—ବୈଦେ. ବି (ଇଂ)—ଡେକସ୍ (ଦେଖ)
Desk Dekas (See).

**ଡୋଉଆ**—ପ୍ରାଦେ (ଗଡ଼ଜାତ) ବି—ନୀଚ ତନ୍ତୁଜାତିବିଶେଷ—
Douā A low class of weavers

**ଡୋଉଲ୍**—ପ୍ରାଦେ (ଯାଜପୁର) ବି. ଓ ବିଣ—ଡଉଲ (ଦେଖ)
Doul Daula (See).

**ଡୋକରା**—ଦେ. ବିଣ (ତୁଲ. ସଂ. ଦୁଷ୍କର; ପ୍ରା. ଡୁକ୍କର; ତୁଲ. ସଂ. ଦକ୍କର = ଯୁବା)—୧ । ଅତି ବୃଦ୍ଧ; ଧୋକଡ଼ା—
Dokarā 1. Very old; decrepit.
ডোকরা ୨ । ଶ୍ଲଥଚର୍ମା—2. With hanging or
डोकरा shrivelled skin.
(ଡୋକରୀ—ସ୍ତ୍ରୀ)
ଦେ. ବି. ପୁଂ—ଅଶକ୍ତ ଓ ବୃଦ୍ଧ ବ୍ୟକ୍ତି—
A decrepit old man.

**ଡୋଜ୍**—ବୈଦେ. ବି (ଇଂ)—ଔଷଧର ମାତ୍ରା; ପାନ—
Doj Dose (of medicine).
ড়োজ डोज

**ଡୋବ(ଭ)ର୍**—ବୈଦେ. ବି (ନାମ)—ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ଥିବା ସଂକୀର୍ଣ୍ଣ ଜଳଭାଗ ବା ପ୍ରଣାଳୀ—
Doba(bha)r The strait of Dover.
ড়োভব
डोवर [ ଦ୍ର—ଏ ପ୍ରଣାଳୀର ଉପକୂଳସ୍ଥ ଇଂଲଣ୍ଡର କେଣ୍ଟ୍ କାଉଣ୍ଟିର ବନ୍ଦର ଓ ସହରର ନାମ ମଧ୍ୟ ଡୋବର୍ । ]

**ଡୋବା**—ଦେ. ବି (ସଂ. ଦଭ୍ର = ସମୁଦ୍ର, ଝୀଲ—ହି. ଶବ୍ଦସାଗର)—
Dobā ୧ । ହୁଡ଼ି; ଛୋଟ ବା ଅତି କ୍ଷୁଦ୍ର ଜଳାଶୟ—
ଡୋବ } ଅନ୍ୟରୂପ 1 A very small tank.
ଡୋବର }
୨ । ପାଣି ଝରିବା ନିମନ୍ତେ ଭୂମିରେ ବା
ড়োব, ড়োবঁর, ড়ুদা, ড়োদ্রা ନଈବାଲିରେ ଖୋଳାଯିବା ଗର୍ତ୍ତ—
डबरा 1. Small pits dug in the sandy bed of a river or ground for collecting water by percolation.

**ଡୋଭା**—ଦେ. ବି—ଅର୍ବୁ—
Dobhā Tumour.
ବିଣ—ମୋଟା ଓ ପୋଲ; ଫମ୍ପା; ଉଭା—
Large and empty; thick and hollow.
(ଯଥା—ଡୋଭା ବାଉଁଶ । )

**ଡୋମ୍‌ନା**—ପ୍ରାଦେ. ବି (କନ୍ଧ ଭାଷା)—କନ୍ଧମାନଙ୍କ ପୁରୋହିତ—
Dom-nā The priest of the Khonds.
(ଡୋମ୍‌ଣା—ଅନ୍ୟରୂପ)

**ଡୋମ୍‌ରିଆ**—ପ୍ରାଦେ (ମେଦିନୀପୁର) ବି—ଡେଉଁରିଆ (ଦେଖ)
Dom-riā Deuñriā (See).

**ଡୋମ**—ଗ୍ରା. ବି—ଡମ (ଦେଖ)
Doma Dama (See).

**ଡୋମଣୀ** (ଇତ୍ୟାଦି)—ଡମଣୀ (ଇତ୍ୟାଦି) (ଦେଖ)
Domaṇī (etc) Damaṇī etc (See).
(ଡୋମୁଣୀ—ଅନ୍ୟରୂପ)

**ଡୋମିନିଅନ୍**—ବୈଦେ. ବି. ( ଇଂ ) ( ଆଧୁନିକ ପ୍ରୟୋଗ )—ଇଂରାଜ
Dominian ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ସ୍ୱାୟତ୍ତଶାସନାଦି ଅଧିକାର
(ଡୋମିନିୟନ—ଅନ୍ୟରୂପ) ପ୍ରାପ୍ତ ଭିନ୍ନ ଭିନ୍ନ ରାଜ୍ୟ—Dominion; a self-governing unit inside the British Empire.
(ଯଥା—ଉତ୍ତର ଆମେରିକାର କାନେଡ଼ା, ଅଷ୍ଟ୍ରେଲିଆ, ମିଶର, ସୁଡାନ୍ ଓ ଦକ୍ଷିଣ ଆଫ୍ରିକାର ରୋଡେସିଆ । )

**ଡୋମିନିଅନ ଷ୍ଟେଟସ୍**—ବୈଦେ. ବି (ଇଂ) (ଆଧୁନିକ ପ୍ରୟୋଗ)—ଇଂରାଜ
Dominian shtetas ସାମ୍ରାଜ୍ୟର କାନେଡ଼ା, ଅଷ୍ଟ୍ରେଲିଆ ଆଦି

| ୧ | ଇ | ଉ | ର,ଋ | ଃ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇସ୍ତ୍ | ଊଥ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ନ |

ସ୍ୱାୟତ୍ତଶାସନାଧୀନ ରାଜ୍ୟମାନଙ୍କର ଶାସନ ରୀତି ଓ ରାଜନୈତିକ ଅବସ୍ଥା—Dominion status.

[ ଦ୍ର—ବର୍ତ୍ତମାନ ଅଧିକାଂଶ ଭାରତବାସୀ ଭାରତବର୍ଷ ନିମନ୍ତେ ଡୋମିନିଅନ୍ ଷ୍ଟେଟସ୍ ଇଂରେଜ ସରକାରଙ୍କଠାରୁ ଦାବୀ କରୁଅଛନ୍ତି ଓ ୧୯୨୮ ସାଲର ନେହେରୁଙ୍କ ରିପୋର୍ଟରେ ଓ ବିଲାତର ରାଉଣ୍ଡ୍ ଟେବଲ୍ କନ୍ ଫରେନ୍ସରେ ଅଧିକାଂଶ ଭାରତୀୟ ପ୍ରତିନିଧିଙ୍କଦ୍ୱାରା ଏକଥା ସମର୍ଥିତ ହୋଇଅଛି । ]

ଡୋମିସାଇଲ୍ଡ୍—ବୈଦେ. ବି. ( ଇଂ )—ଏକ ପ୍ରଦେଶରୁ ଆସି ଅନ୍ୟ ପ୍ରଦେଶରେ ସ୍ଥାୟୀରୂପେ ବାସ କରିଥିବା ଉପନିବେଶୀ—Domiciled.
Ḍomisāil-ḍ

[ଦ୍ର—ବିଦେଶୀ ବ୍ୟକ୍ତି କୌଣସି ପ୍ରଦେଶରେ ଡୋମିସାଇଲ୍ଡ୍ ହୋଇଥିବାର ସନ୍ତୋଷଜନକ ପ୍ରମାଣ କର୍ତ୍ତୃପକ୍ଷଙ୍କ ନିକଟ ଦର୍ଶାଇଲେ ସେହି ପ୍ରଦେଶର ସରକାରୀ ଚାକିରି ଆଦିରେ ପ୍ରଦେଶବାସୀଙ୍କ ସମାନ ଦାବୀ ତାଙ୍କୁ ପ୍ରବର୍ତ୍ତେ । ]

ଡୋମୁଣୀ ( ଇତ୍ୟାଦି )—ଡମଣୀ ଇତ୍ୟାଦି ( ଦେଖ )
Ḍomuṇi ( etc ) Damaṇi etc ( See )

ଡୋମ୍ବ(ମ୍ବୋ)—ପ୍ରାଦେ. (ଭିଜାଗାପାଟଣା ) ବି—ଭିଜାଗାପାଟଣାରେ ବାସ କରୁଥିବା ଓଡ଼ିଆ ଡମମାନଙ୍କର ଭାଷା—The Oriya language spoken by the Damas in Vizagapatam Agency.
Ḍomba(mbo)

ଡୋର—ସଂ. ବି—ପାଟ, ସୂତା ଆଦିର ସରୁ ଦଉଡ଼ି; ରଶି; ତାର—String; chord; line.
Ḍora

ଡୋର ଲଗ୍ନ ଥୋପ ଯେସନ ଅନୁସରେ ଶଫରୀ—ରାଧାନାଥ. ଚନ୍ଦ୍ରଭାଗା ।

[ ଦ୍ର—ଜାଲ, ବନିସି, ପୋଥି, ବଟୁଆ ଆଦି ନିମନ୍ତେ ବ୍ୟବହୃତ ମସୃଣ ଓ ଦୃଢ଼ ସୂତାକୁ ଡୋର କୁହାଯାଏ । ଜଗନ୍ନାଥ ଆଦିଙ୍କ ପ୍ରତିମାମାନ ରଥକୁ ବିଜେ କଲାବେଳେ ତାଙ୍କ ଅଣ୍ଟାରେ ପାଟ ଡୋର ବନ୍ଧା ହୁଏ, ସେହି ପାଟ ଡୋରକୁ ଟାଣି ଟାଣି ସେବକମାନେ ମହାପ୍ରଭୁଙ୍କୁ ପହଣ୍ଡି ବିଜେ କରାନ୍ତି । ]

ଡୋର; ଡୋରୀ; ଡୁରୀ ଦେ. ବି—୧ । ଅକର୍ଷଣ— 1. Attraction.
डोर; डोरा; डोरि ୨ । ସ୍ନେହବନ୍ଧନ; ପ୍ରଣୟପାଶ—
2. Attachment or tie of love.

ଲଭବସ୍ ମୋହର ବନ୍ଧା ଥିଲା ତାଙ୍କ ପାଦପଦ୍ମେ ସ୍ନେହଡୋରେ—ରାଧାନାଥ, ପାର୍ବତୀ ।

୩ । କରଦୁନା; କଟିସୂତ୍ର—
3. A string worn round the waist.

୪ । ଦଉଡ଼ା; ରଜ୍ଜୁ—4. Rope.

ଡୋର ଲଗି ସେର ପଡ଼ବ ସେ ହେବ ଶୈର ପର ଅବରଣ—କବିସୂର୍ଯ୍ୟ. ବଳଦେବରଥ, ଚ-ଗୀତ ।

୫ । ବାବାଜୀମାନେ କଉପୁନିର ଦୁଇ ମୁଣ୍ଡକୁ ଲମ୍ବି ତଳେ ଓ ଅଗ୍ରୁ ପଛରେ ଖୋସିବା ପାଇଁ ଅଣ୍ଟାରେ ଗୁଡ଼ାଇ ଥିବା ସରୁ ଦଉଡ଼ି—
5 String tied round the waist for attaching the ends of the Kaupuni.

୬ । ଗାର, ରେଖା—6. Line.

( ଯଥା—ଏ ଲୁଗାର ଧଡ଼ିରେ କଳା ଡୋର ଅଛି । )

ଡୋରକ—ସଂ. ବି (ଡୋର + ସ୍ୱାର୍ଥେ. କ.)—ଡୋର ( ଦେଖ )
Ḍoraka Ḍora ( See )

ଡୋର କଣ୍ଟା—ଦେ. ବି. ( ସଂ. ଡୋର + କଣ୍ଟକ )—ବନିସିର ସୂତା ଓ ବନିସି କଣ୍ଟା—The angler's string and hook.
Ḍora kanṭā
ডোর কাণ্টা
डोर काँटा

ଡୋର କୌପୁନୀ—ଦେ.ବି.(ସହଚର ଶବ୍ଦ; ସଂ. ଡୋର+କୌପୀନ)—ବୈଷ୍ଣବମାନେ ଗୁରୁଙ୍କଠାରୁ ଦୀକ୍ଷା ନେଇ ସନ୍ନ୍ୟାସ ଧର୍ମ ଗ୍ରହଣ କରିବା ସମୟରେ ସନ୍ନ୍ୟାସ ଧର୍ମର ଚିହ୍ନସ୍ୱରୂପ ଗୁରୁଙ୍କଠାରୁ ପାଇଥିବା ଅଣ୍ଟାରେ ବନ୍ଧା ଯିବା ଡୋର ଏବଂ କୌପୁନୀ—A small strip of rag with a waist-band worn by ascetics which are presented to them by their spiritual preceptors at the time of the initiation ceremony.
Ḍora kaupuni
ডোর কপনী
डोर कफनी
( ଡୋର କଉପୁନୀ—ଅନ୍ୟରୂପ )

ଡୋର କୌପୁନୀ ନେବା—ଦେ. କ୍ରି—ଗୁରୁଙ୍କଠାରୁ ସନ୍ନ୍ୟାସ ଦୀକ୍ଷା ଗ୍ରହଣ କରିବା; ସନ୍ନ୍ୟାସ ଧର୍ମରେ ଦୀକ୍ଷିତ ହେବା—To be initiated into the tenets of asceticism.
Ḍora kaupuni nebā
ডোর কপনী লওয়া
डोर कफनी लेना

[ ଦ୍ର—ଏହି ଉପଲକ୍ଷରେ ଉତ୍ସବ ହୁଏ; ସାଧୁ, ବୈଷ୍ଣବ, ସନ୍ଥ, ମହନ୍ତମାନଙ୍କୁ ନିମନ୍ତ୍ରଣ କରାଯାଏ ଓ ସେମାନଙ୍କୁ ଭୋଜୀ ( ମଉଛବ ) ଦିଆଯାଏ ଓ ନାମ ସଂକୀର୍ତ୍ତନ ହୁଏ । ]

ଡୋର ଦେବା—ଦେ. କ୍ରି—ଡୋର ବାନ୍ଧିବା ( ଦେଖ )
Ḍora debā Ḍora bāndhibā ( See )

ଡୋର ବନ୍ଧା ହେବା—ଦେ. କ୍ରି. ( ଲକ୍ଷଣାର୍ଥ )—କୌଣସି କାର୍ଯ୍ୟର ସମାପ୍ତି ବା ନିବୃତ୍ତି—( figurative ) The cessation or finis of some work.
Ḍora bandhā hebā
পুঁথী বাঁধা হওয়া

( ଯଥା—ଖବରର ବିବାଦ ହେଲେ ପାଠପଢ଼ାରେ ଡୋର ବନ୍ଧା ଯାଏ । )

[ ଦ୍ର—ତାଳପତ୍ର ପୋଥିରେ ଡୋର ବନ୍ଧା ହୋଇ ରଖା ଯାଇଥାଏ । ପଢ଼ିବା ବ୍ୟକ୍ତି ଉକ୍ତ ଡୋରକୁ ଫିଟାଇ କରି ପୋଥିକୁ ପଢ଼େ । ପୁଣି ପୋଥି ପଢ଼ି ସାରିଲେ ପୋଥିରେ ଡୋର ବାନ୍ଧି ରଖିଦିଏ । ଅତଏବ ପୋଥିରେ ଡୋର ବାନ୍ଧିବା ବା ଡୋର ଦେବା 'କୌଣସି କାର୍ଯ୍ୟର ସମାପ୍ତି ବା ନିବୃତ୍ତି' ଏହି ଅର୍ଥର ସୂଚକ । ]

ଡୋର ବାନ୍ଧିବା—ଦେ. କ୍ରି. ( ଲକ୍ଷଣାର୍ଥ )—
Ḍora bāndhibā ୧ । କୌଣସି କର୍ମର ସମାପ୍ତି କରିବା—
1. To finish a work.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅଗିଆ' ନ ପାଇଲେ 'ଅଗ୍ନିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୨ । କୌଣସି କର୍ମ ବନ୍ଦ କରିବା—
2. To cease doing a work; to stop a work.

**ଡୋର ଲଗା(ଗେ)ଇବା**—ଦେ. କ୍ରି—(ଲକ୍ଷଣାର୍ଥ) (ସ୍ନେହର ଡୋରି ଦ୍ୱାରା) ଟାଣିବା; ଆକର୍ଷଣ କରିବା—
Ḍora lagā(ge)ibā
ଡୁରୀ ଲାଗାନ (figurative) To attract.
डोर लगाना ( ଯଥା—ମୋଠାରେ ଜଗନ୍ନାଥେ ଡୋର ଲଗାଇଲେଣି । ଅର୍ଥାତ୍ ଜଗନ୍ନାଥ ମହାପ୍ରଭୁ ମତେ ପୁରୀ ଯିବାକୁ ଆକର୍ଷଣ କଲେଣି । )

**ଡୋରା**—ଦେ. ବି ( ସଂ. ଡୋର )—
Ḍorā ୧ । ଧାଡ଼ି; ଧାଡ଼ୁ; ସରୁ—1. Row; string.
ଡୋରା ୨ । ରେଖା—2. Line; stripe; streak.
डोरा ( ଯଥା—ଗୁଣ୍ଡୁଚିମୂଷା ପିଠିରେ ୩ଟି ଡୋରା ଅଛି । )
ପ୍ରାଦେ. ( ବସ୍ତ୍ର ) ବି. (ଭୁଲ. ଏହି ଅର୍ଥରେ ଶୁ. ଏହି ଶବ୍ଦ)—ପଲା (ଦେଖ)— Palā ( See )

**ଡୋରା ଡୋରା**—ଦେ. ଗୁଣ—ସମାନ୍ତର ବହୁ ରେଖାବିଶିଷ୍ଟ—
Ḍorā ḍorā Striped.
ଡୋରା ଡୋରା ଡୋରା ଡୋରା ହୋଇ ପଡ଼ିଅଛି ଚିତ୍ରେ
डोरा डोरा ଠାବେ ଠାବେ ଯାର ମାଟି ଗଇରିବେ—ରାଧାନାଥ. ଚିଲିକା ।

**ଡୋରି** ( ଇତ୍ୟାଦି )—ଦେ. ବି. ( ସଂ. ଦୋରି; ଡୋରି; ଡୋରକ )—
Ḍori ( etc ) ଡୋର ଇତ୍ୟାଦି ( ଦେଖ )
ଡୁରୀ Ḍora etc ( See )
डोरी

**ଡୋରିଆ**—ଦେ. ବି—ରେଖାରଞ୍ଜିତ ବସ୍ତ୍ର; ଧୁରେଇ ଲୁଗା—
Ḍoriā Striped cloth; check.
ଡୋରା ଡୋରା, ଡୁରିଆ [ ଦ୍ର—ଏଥିରେ ଟାଣିସୂତା ଏକରଙ୍ଗର ଓ
डोरिया ଭରଣୀ ସୂତା ବିଭିନ୍ନ ରଙ୍ଗର ଥାଏ, କିମ୍ବା ଏକରଙ୍ଗୀ ଲୁଗାରେ ମଝିରେ ମଝିରେ ଅନ୍ୟ ରଙ୍ଗର ସୂତାର ଲମ୍ବ ଡୋରାମାନ ବୁଣାଯାଇ ଥାଏ । କେଉଁ କେଉଁ ଲୁଗାରେ ଛକ ପଙ୍କ ଡୋରା ବୁଣା ଯାଇଥାଏ ଓ କେଉଁ କେଉଁ ଲୁଗାରେ ସମାନ୍ତର ଡୋରାମାନ ବୁଣା ଯାଇଥାଏ । ]

**ଡୋରିଆ ରେଖୁ**—ପ୍ରାଦେ. (ଗଞ୍ଜାମ) ବି—ଲହରଯୁକ୍ତ ଲୁହାର ବଡ଼ ବଡ଼ ପତର—Corrugated iron sheet.
Ḍoriā rekhu

**ଡୋଲ୍**—ଦେ. ବି. ( ନାଉରିଭାଷା ) ( ସଂ. ଦୋଲ=ଝୁଲିବା, ଦୋହୋଲିବା )—ମାସ୍ତୁଲ—
Ḍol
ମାସ୍ତୁଲ Mast of a ship.
डोल ଜାହାଜରୁ ସଫା ସୁରତ କରି ଡୋଲ ଉପରେ ସବୁ, ଗଉର, ଟଉର ପଟ୍ଟକୁ କଲମି ଡୋଲ ଅଛି, ବରଗାମାନ ଠେକ ଦେଇ ଶେଜ ଗୁଡ଼ାଇ ଠିକ କରି ରଖିଦେଇ ଅଛନ୍ତି ।
ଫକୀରମୋହନ. ଗଳ୍ପସ୍ୱଳ୍ପ ।
ପ୍ରାଦେ ( ସମ୍ବଲପୁର ) ବି—ବଡ଼ ବାଉଁଶିଆ; ଟୋକେଇ—
Big basket.

**ଡୋଲ୍‌ଡାଲ୍**—ବୈଦେ. ବି (ହି. ଡୋଲ୍=କୂଅରୁ ପାଣି କାଢ଼ିବା ବାଲଟି)—ଡୁଲ୍‌ଡାଲ୍; ବହିର୍ଦେଶ ଯିବା; ମଳୋତ୍ସର୍ଗ—
Ḍol-ḍāl
ଡୁଲ୍‌ଡାଲ୍, ବାହିଟାହି Easing one's self; passing stools.
1 डोलडाल
[ ଦ୍ର—ଝାଡ଼ାଫେରି ଯିବାକୁ ଆମ ଦେଶରେ 'ପୋଖରୀପାଣି ଯିବା' ଓ ଉତ୍ତରପଶ୍ଚିମ ଅଞ୍ଚଳମାନଙ୍କରେ 'ଡୋଲ୍‌ଡାଲ୍ ଯିବା' କହନ୍ତି । ଏଥିରୁ ଦେଖାଯାଏ ଯେ ଆମ ଦେଶରେ ଅନେକ ଗଡ଼ିଆ ପୋଖରୀ ଥିବାରୁ ସାଧାରଣତଃ ଲୋକେ ମଳୋତ୍ସର୍ଗ କରିସାରି ପୋଖରୀରେ ଶୌଚ କରିବାକୁ ଯାଉଥିବାରୁ ପୋଖରୀ ଯିବା, ପୋଖରୀପାଣି ଯିବା ଶବ୍ଦମାନ ଚଳିଛି । ଉତ୍ତରପଶ୍ଚିମାଞ୍ଚଳରେ ବହୁତ ପୋଖରୀ ନ ଥିବାରୁ ସାଧାରଣତଃ ଲୋକେ କୂଅରୁ 'ଡୋଲରେ' ପାଣି କାଢ଼ି ତଦ୍ୱାରା ଶୌଚ କରୁଥିବାରୁ ଡୋଲ୍‌ଡାଲ୍ ଶବ୍ଦ ଚଳୁଅଛି । ଲୋକେ ଘରୁ ବାହାରି ଦୂରକୁ ଝାଡ଼ା ଫେରିଯିବାକୁ ବାହାରକୁ ଯିବା (ବ. ବାହ୍ୟ ଯାଓଆ, ସଂ. ବହିର୍ଦେଶ) ଓ ମଇଦାନ ଯିବା, ବାଡ଼ିକି ଯିବା ଆଦି ଶବ୍ଦମାନ ମଳୋତ୍ସର୍ଗ କରିବା ଅର୍ଥରେ ଚଳୁଅଛି । ]

**ଡୋଳ**—ଦେ ବି—ଡୋଳା ( ଦେଖ )
Ḍoḷa Ḍoḷā ( See )
କମଳରେ ରଜନୀ ହୁଅନ୍ତେ ବନ୍ଧୁଳ,
ନଦ୍ରାକୁ ଅଶେଷ କଲା ସଦ୍ଭକ୍ତର ଡୋଳ କୃଷ୍ଣସିଂହ. ମହାଭାରତ. ଦ୍ରୋଣ ।

**ଡୋଳା**—ଦେ. ବି. ( ସଂ. ଦୁଲ ଧାତୁ=ଦୋଳିବା; ଚଞ୍ଚଳ ହେବା; ଆଖିର ଡୋଳା ସର୍ବଦା ଇତସ୍ତତଃ ଚାଳିତ ହେଉଥିବାରୁ )—
Ḍoḷā
ପୁତୁଲ ୧ । ଚକ୍ଷୁ ମଧ୍ୟସ୍ଥ ଅଣ୍ଡାକାର କୋମଳ ପିଣ୍ଡ; ଚକ୍ଷୁଗୋଲକ—
ढोडर; पुतली 1. Eye-ball.
ଚପଳତା ସମ୍ଭାଳ ବୋଲି ମୋ ଡୋଳା—କବିସୂର୍ଯ୍ୟ. ସଙ୍ଗୀତ ।
[ ଦ୍ର—ଆଖିରଡୋଳା ଦୁଇ ଭାଗରେ ବିଭକ୍ତ, ଯଥା—୧. ଧଳା, ଯାହା ସ୍ଥିର ଥାଏ—ଧଳା ଡୋଳା । ୨. କଳା, ଯାହା ଦୃଷ୍ଟି ଚାଳନ ସଙ୍ଗେ ଇତସ୍ତତଃ ଚାଳିତ ହୁଏ—କଳାଡୋଳା । ]
୨ । ଆଖି—2. Eye.
୩ । ଚକ୍ଷୁର ଦୃଷ୍ଟିଶକ୍ତି—3. Eye sight.
୪ । ଆଖିର ପିତୁଳା; ଚକ୍ଷୁର ତାରା—
4. The pupil of the eye.

**ଡୋଳା**—ଦେ. ବି. (ସଂ. ଦୋଲା)—୧ । ଶିବିକା; ଦାନୋଲା—
Ḍoḷā 1. Sedan chair.
ଡୁଲି ୨ । ଡୋଲି; ଖଟୁଆ—2. A closed litter; doolie; dhooy.
डोलि

**ଡୋଳା ଖୋସିବା**—ଦେ. କ୍ରି.—(ମୂର୍ଚ୍ଛିତ ବା ଉନ୍ମାଦଗ୍ରସ୍ତ ବା ମୃତ ବ୍ୟକ୍ତି) କଳା ଡୋଳା କପାଳ ଆଡ଼କୁ ଉଠାଇବା; ଊର୍ଦ୍ଧ୍ୱଦୃଷ୍ଟି ବା ଶିବନେତ୍ର ହେବା; ଡୋଳା ଲେଉଟାଇ ଦେବା—To have one's pupils upturned (as a result of any fit, disease or death.
Ḍoḷā khosibā
ଚୋଖ ଉପରେ ତୋଲା, ଶିବନେତ୍ର ହଓୟା
पुतलि फिराना
(ଡୋଳାଖୋସିଦେବା—ଅନ୍ୟରୂପ)
(ଡୋଳା ଖୋସିଦେବା, ଡୋଳା ଖୋସି ହୋଇଯିବା—ବି)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ଼ | ଉଅ | ଋ |
| ୨ | ଈ | ଊ | ରୁ | ଳୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଓ | ନ୍ତୃ |

ଡୋଳା ପ୍ରତିମା—ଦେ. ବି.—୧ । ଆଖିର କଳାଡୋଳା ମଧ୍ୟରେ ପ୍ରତି-
Ḍoḷā pratimā ବିମ୍ବିତ ହେଉଥିବା ଉପର ଅଗ୍ରସ୍ଥିତ ପଦାର୍ଥର ପିତୁଳୀ ବା ରୂପ; ଆଖିର ପୁଅ; ଚକ୍ଷୁର ପିତୁଳ—
1. The image of a person or object presented to the eye which is reflected in the pupil of one's eye; the pupil or apple of the eye.

ଡୋଳା ପ୍ରତିମାକୁ ସସ୍ନେହେ ତୁମ୍ଭକୁ ସଶୋଦା ଅଛନ୍ତି ପାଳ ।
କବିସୂର୍ଯ୍ୟ, ଯଶୋଦାବିଳାପ ଗୀତ ।

୨ । ( ଲକ୍ଷଣାର୍ଥ ) ( ନିଜର ଆଖି ପିତୁଳା ପରି )—
ଅତି ସ୍ନେହ ଓ ଆଦରର ପାତ୍ର ( ଯାହାକୁ ମନୁଷ୍ୟ ସର୍ବଦା ନିଜ ପାଖେ ପାଖେ ରଖିଥାଏ )—
2. (figurative) An object of fondest attachment which a person always wants to keep near him; the apple of one's eye (like the image reflected in one's pupil of the eye.)

[ ଡୋଳାପିତୁଳା (ଳି)—ଅନ୍ୟରୂପ ]

[ ଦ୍ର—ଇଂରାଜୀ ଭାଷାରେ ମଧ୍ୟ ଅତି ସ୍ନେହ ଓ ଆଦରର ପାତ୍ରକୁ ଡୋଳାପ୍ରତିମା (the apple of the eye) ବୋଲିଯାଏ । ]

ଡୋଳା ବୁଲ(ଲେ)ଇବା—ଦେ. କ୍ରି.—୧ । ଆଖିର କଳା ଡୋଳାକୁ
Ḍoḷā bulā (le)ibā ଇତସ୍ତତଃ ଚାଳନ କରି ଚାରିଆଡ଼େ
ଚୋখ ফিরান ଦେଖିବା—1. To move one's eye-
আঁখফিরনা balls to see round.

୨ । (ଲକ୍ଷଣାର୍ଥ)—ଅଭୀପ୍ସିତ ଦ୍ରବ୍ୟ ପାଇଁ ନାନା ଆଡ଼େ ଖୋଜିବା—2. (figurative) To search many places for some desired object.

( ଯଥା—ମୁଁ ମୋ ଝିଅପାଇଁ ଗୋଟିଏ ବର ପାଇବା ଲାଗି ଚାରିଆଡ଼େ ଡୋଳା ବୁଲେଇଲିଣି । )

ଡୋଲି—ଦେ. ବି.—୧ । ଡୋଲି ୨ (ଦେଖ)
Ḍoli 1. Ḍolā 2 (See)

[ ଦ୍ର—ଧନୀ ପରିବାରର ସ୍ତ୍ରୀମାନେ ପାଲିଙ୍କିରେ ଯିବା ଆସିବା କରନ୍ତି । ସବାରି ବହିବା ପାଇଁ ଚାରି କିମ୍ବା ତତୋଧିକ ବାହକ ଲୋଡ଼ା ହୁଅନ୍ତି, କିନ୍ତୁ ଡୋଲି ସବାରି ପରି ବଡ଼ ବା ଭାରି ନୁହେଁ ବୋଲି ତାକୁ ଦୁଇ ଜଣ ବାହକ ସହଜରେ ବହି ନେଇ ପାରନ୍ତି । ଏଥିପାଇଁ ମଫସଲରେ ଓ ସହରର ମଧ୍ୟବିତ୍ତ ଓ ଗରିବ ଘରର ବୋହୂ ଝିଅମାନେ ଡୋଲିରେ ଯିବା ଆସିବା କରନ୍ତି । ]

୨ । ମୁମୂର୍ଷୁରୋଗୀ ବା ମଲାରୋଗୀ ଖଟିଆ—
2. A covered litter used as an ambulance.

[ଦ୍ର—ଏ ଶବ୍ଦ ଡୁଲି ବା ଢୁଲି (Dooly, Dhooly) ରୂପ ଧାରଣ କରି ଇଂରାଜୀ ଭାଷାରେ ଚଳିଲାଣି । ]

୩ । (ସଂ. କଣ୍ଡୋଲ—ଶସ୍ୟାଧାର) ବାଉଁଶ ବା ବେତ ଆଦିର ପାତିଆରେ ବୁଣା ଗୋଲ ଗଭୀର ଟୋକେଇ; କୋଡ଼ମେଇ—
3. A large cylindrical basket for storing grains.

୪ । ଚାଳିଶ ଗୌଣୀ; ଶସ୍ୟାଦିର ମାପବିଶେଷ; ୨ ପୌଟି—
4. A measure of 40 'Gauṇis' of grains.

୫ । ( ବ୍ୟଙ୍ଗାର୍ଥ; ପେଟ ଗୋଟିଏ ଡୋଲି ସଙ୍ଗେ ତୁଳାଯାଏ ) ପେଟ; ଉଦର—5. (ironical) Belly.

ଡୋଲି ପୂରିବା—ଦେ. କ୍ରି—ପୂର୍ଣ୍ଣ ଭୋଜନ ଦ୍ୱାରା ଉଦର ପୂର୍ତ୍ତି—
Ḍoli pūribā Having a bellyful of meal; eating one's fill.

ଯେବେ ପୂରଥାଏ ଡୋଲି, ତେବେ ସୁସାର ବଚନ ବୋଲି;
ଯେବେ ନ ପୂରଇ ଡୋଲି, ତେବେ ଫୋପି ପାଆ କରି ବୋଲି—ଢଗ ।

ଡୋଲିରେ ବସିବା—ପ୍ରାଦେ. ( ଯାଜପୁର ) କ୍ରି—
Ḍolire basibā ଭାର ନେଇ ଯିବା; ବାଲ୍ୟବିବାହିତା କନ୍ୟା ରଜସ୍ୱଳା ହେବା ପରେ ପ୍ରଥମେ ଶ୍ୱଶୁରାଳୟକୁ ଯିବା; ପହିଲିପାଳି ଯିବା—
(said of an early-married girl) To start for the husband's house for the first time for consummation of marriage after attaining puberty.

( ଯଥା—ଝିଅଟା ଆସି ଡୋଲିରେ ବସିଲାଣି, ତେବେ ଭାଇ ପିଲା ବୁଦ୍ଧି ଛାଡ଼ୁ ନାହିଁ । )

ଡୋଲି ଲେଉଟା—ପ୍ରାଦେ. ( ଯାଜପୁର ) ବି—
Ḍoli leuṭā ଝିଅ ପହିଲିପାଳି ଯାଇ ତହିଁ ଆର ଦିନ ବାପ-ଘରକୁ ଫେରି ଆସି ସଙ୍ଗେସଙ୍ଗେ ସାମାନ୍ୟ କେତେକ ଭାର ନେଇ ସେହି ଦିନ ପୁଣି ଶାଶୁଘରକୁ ଫେରି ଯିବା—
The coming back of a matured girl to her husband's house the very day she is brought back therefrom on the next day of her first trip to the husband's house for consummation of marriage.

ଡୌକି—ପ୍ରାଦେ. ( ବସ୍ତର ) ବି. ସ୍ତ୍ରୀ. ( ଭୂଲ. ହି. ଡୋକରୀ—ବୁଢ଼ୀ
Ḍauki ସ୍ତ୍ରୀ )—ମାଇପି ଲୋକ; ସ୍ତ୍ରୀ—
Woman; females ( generally ).

( ଯଥା—ଡୌକିକେ ପଙ୍ଗତ୍ ଲଗିଛେ=ସ୍ତ୍ରୀଲୋକଙ୍କୁ ଭାତ ଦିଆଯାଉଛି । )

ଡୌଁରିଆ—ଦେ. ବି—ଡେଉଁରିଆ ( ଦେଖ )
Ḍauṅriā Ḍeuṅriā ( See )
(ଡୌରି, ଡୌରିଆ—ଅନ୍ୟରୂପ)

ସାଧାରଣ ଲୋକେ ଅ୨ର ପୃଷ୍ଠାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଡୌଲ (ଇତ୍ୟାଦି)**—ଦେ. ବିଣ ଓ ବି—ଡଉଲ ଇତ୍ୟାଦି (ଦେଖ)
Ḍaula (etc) Ḍaula etc (See)

ବାରେତ ଦେଖିବାକୁ ଯେମନ୍ତ ଡୌଲ, କଥାଗୁଡ଼ିକ ବି ଖୁବ୍ ମଧୁର ।
ଫକୀରମୋହନ, ଗଳ୍ପସ୍ୱଳ୍ପ ।

ପ୍ରାଦେ. (ଭଦ୍ରିଗୁଆ) ବି—ଯୋଗ୍ୟତା—Eligibility, fitness.

**ଡୌଲତ୍**—ଗ୍ରା. ବୈଦେ. ବି. (ଅ. ଦୌଲତ୍)—ଦୌଲତ୍ (ଦେଖ)
Ḍaulat Ḍaulat (See)

**ଡ୍ର**—ବୈଦେ. ବି. (ଇଂ)—୧ । ଡ୍ରନ୍ (ଦେଖ)
Ḍra 1. Ḍran (See)
ড্র ୨ । ଡ୍ରୟର (ଦେଖ)
ड्रा 2. Ḍrayar (See)

**ଡ୍ରଇଙ୍ଗ୍**—ବୈଦେ. ବି. (ଇଂ)—ରେଖାଚିତ୍ର—
Ḍraiṅg Drawing.
ড্রইং [ ଦ୍ର—ଆଜିକାଲି ବିଦ୍ୟାଳୟରେ ବାଳକ ବାଳିକାମାନଙ୍କର
ड्रइंग ଏହା ଗୋଟିଏ ଶିକ୍ଷଣୀୟ ବିଷୟ ବା ସବ୍‌ଜେକ୍ଟ ରୂପେ
ଡ୍ରଇଂ } ଅନ୍ୟରୂପ ନିରୂପିତ ହୋଇଅଛି । ]
ଡ୍ରୟିଙ୍ଗ }

**ଡ୍ରଇଙ୍ଗ୍ ରୁମ୍**—ବୈଦେ. ବି. ( ଇଂ )—ବଇଠକଖାନା; ବଡ଼ଲୋକେ
Ḍraiṅg rum ଯେଉଁ ସଜ୍ଜିତ କୋଠରିରେ ଆଗନ୍ତୁକ ଭଦ୍ର-
ড্রইংরুম ଲୋକଙ୍କୁ ଦେଖା ଦିଅନ୍ତି—
ड्रइंगरूम Drawing room.

**ଡ୍ର କରିବା**—ବୈଦେ. କ୍ରି—(ଇଂ ଡ୍ର; କ୍ରିଥିଡ୍ର)—ବାଙ୍କ୍ ବା ଖଜଣାଖାନା
Ḍra karibā ଆଦିରେ ଅମାନତ୍ ଥିବା ଟଙ୍କାକୁ ଫାପସ୍ ବା ଉଠାଇଆଣିବା—To draw or withdraw money from a bank etc.

ପ୍ରାଦେ. (ଗଞ୍ଜାମ) କ୍ରି—ମାସିକ ବେତନରେ କର୍ମ କରିବା—
To draw as one's pay.
[ ଦ୍ର—ସରକାରୀ ଚାକରମାନେ ସେମାନଙ୍କ ଦରମା ଟଙ୍କା ମାସକୁ ମାସ ଖଜଣାଖାନାରୁ ଡ୍ର କରନ୍ତି । ଏଥିପାଇଁ ଗଞ୍ଜାମରେ ମାସିକ ବେତନ ପାଇବା ଅର୍ଥରେ ଏ କ୍ରିୟା ବ୍ୟବହୃତ ହୁଏ । ଯଥା—ରାମନ୍ନା ନାଇଡ଼ୁ ପଚାଶ ଟଙ୍କା ଡ୍ର କରନ୍ତି, ଅର୍ଥାତ୍ ରାମନ୍ନାଙ୍କର ଚାକିରିର ମାସିକ ବେତନ ପଚାଶ ଟଙ୍କା ଅଟେ । ]

**ଡ୍ରଗିଷ୍ଟ୍**—ବୈଦେ. ବି. (ଇଂ)—ଔଷଧବିକ୍ରେତା; ପୋଟଳ ବଣିଆ—
Ḍragishṭ Druggist.

**ଡ୍ରନ୍**—ବୈଦେ. ବି. (ଇଂ. ଡ୍ର କ୍ରିୟାର ବିଣ. ରୂପ ଡ୍ରନ୍=ଟଣା
Ḍran ହୋଇଥିବା; ଇଂ. ଡ୍ରନ୍ ଗେମ୍=ଯେଉଁ ଖେଳରେ ଉଭୟପକ୍ଷଙ୍କ ଯୋଗ୍ୟତା ସମାନ ହୁଏ )—ଖେଳରେ ବା ପରୀକ୍ଷାରେ କୌଣସି ପକ୍ଷର ହାରଜିଣ ନ ହୋଇ ସମାନ ହେବା—
Drawn game; a draw between two parties in a game.

**ଡ୍ରୟର୍**—ବୈଦେ. ବି. (ଇଂ)—ଟେବଲ, ଖଟଆଦିର ତଳେ ଦିଆଯାଇ-
Ḍrayar ଥିବା କାଠର ଟଣାଡ଼ା; ଦରାଜ—
ড্রয়ার Drawer of a table, almirah.
ड्रायर

**ଡ୍ରାଇ**—ବୈଦେ. ବିଣ. (ଇଂ)—ଶୁଷ୍କ; ଶୁଖିଲା—
Ḍrāi Dry.
ড্রাই ड्राई

**ଡ୍ରାଇ ପ୍ରିଣ୍ଟିଙ୍ଗ୍**—ବୈଦେ. ବି. (ଇଂ)—ଶୁଖିଲା କାଗଜରେ ଛାପିବା
Ḍrāi priṇṭiṅg ପ୍ରକ୍ରିୟା—Dry printing.
ড্রাইপ্রীণ্টং [ ଦ୍ର—ସାଧାରଣତଃ ଛାପିବା ପୂର୍ବରୁ କାଗଜକୁ ଓଦା
ड्राईप्रिंटिंग କରାଯାଏ; ଓଦା କରି ଛାପା କରାଯିବା କାଗଜରୁ ତାହାର ମୌଳିକ ଉଜ୍ଜ୍ୱଳତା ମଉଳିଯାଏ, କିନ୍ତୁ ଡ୍ରାଇପ୍ରିଣ୍ଟିଙ୍ଗ୍ ଦ୍ୱାରା କାଗଜର ମୌଳିକ ଉଜ୍ଜ୍ୱଳତା ଅକ୍ଷୁଣ୍ଣ ରହେ । ]

**ଡ୍ରାଇଭର୍**—ବୈଦେ. ବି. (ଇଂ)—୧ । ରେଲ ଓ ମଟରଗାଡ଼ି ଆଦିର
Ḍrāibhar କଳର ଚାଳକ—1. Driver of a railway train
ড্রাইভর ड्राइवर or motor car.
୨ । କଚୁଆନ୍; ଗାଡ଼ୁଆନ୍—
2. Driver of a coach or cart.

**ଡ୍ରା କରିବା**—ପ୍ରାଦେ (ଗଞ୍ଜାମ) ବୈଦେ (ଇଂ)—ଡ୍ର କରିବା (ଦେଖ)
Ḍrā karibā Ḍra karibā ( See )

**ଡ୍ରାଫ୍ଟ୍**—ବୈଦେ.ବି.(ଇଂ)—ଚିଠା; କୌଣସି ଲେଖାର ଖସଡ଼ା; ପାଣ୍ଡୁଲିପି-
Ḍrāphṭ Draft.
ড্রাফ্‌ট ड्राफ्ट

**ଡ୍ରାଫ୍ଟ କପି**—ବୈଦେ. ବି. (ଇଂ)—କୌଣସି ଲେଖାର ପ୍ରଥମ ଖସଡ଼ା
Ḍrāphṭ kapi ବା ଚିଠା—Draft copy of a writing.
ড্রাফ্‌টকাপী ड्राफ्टकापी

**ଡ୍ରାଫ୍ଟସ୍ ମାନ୍**—ବୈଦେ ବି. (ଇଂ)—ନକସା ଆଙ୍କିବା କର୍ମଚାରୀ—
Ḍrāphṭs mān Draftsman.
ড্রাফ্‌টস মেন ड्राफ्टस मैन

**ଡ୍ରାମ୍**—ବୈଦେ. ବି. (ଇଂ) (ଓଜନ ପରିମାଣ)—୬୦ ଟୋପା ପରିମାଣ
Ḍrām ବା ୬୦ ଗ୍ରେନ୍ ପାଶ୍ଚାତ୍ୟ ଓଜନ; ପ୍ରାୟ ୪ ମସା—
ড্রাম Liquid and solid dram.
ड्राम [ ଦ୍ର—ତରଳୀୟ ଓ ଘନ ପଦାର୍ଥର ଓଜନ—୬୦ ଟୋପା ବା ଗ୍ରେନ୍=୧ ଡ୍ରାମ୍; ୮ ଡ୍ରାମ୍=୧ ଆଉନ୍ସ, ୧୨ ଡ୍ରାମ୍=୧ ଆଉନ୍ସ, ୧୨ କମ୍ବା ୧୬ ଆଉନ୍ସ=୧ ପାଉଣ୍ଡ, ୧୧୨ ପାଉଣ୍ଡ=୧ ହନ୍ଦର—କଟେଙ୍କୀ ୧ ମହଣରୁ କିଛି ବେଶି, ୨୦ ହନ୍ଦର=୧ ଟନ୍ । ଡାକ୍ତରି ଔଷଧର ଓଜନ—୮ ଡ୍ରାମ୍=୧ ଆଉନ୍ସ, ୧୨ ଆଉନ୍ସ=୧ ପାଉଣ୍ଡ । ]

**ଡ୍ରିଲ୍**—ବୈଦେ. ବି (ଇଂ)—୧ । ନିୟମିତ ଅଙ୍ଗଚାଳନାଦିର ଅଭ୍ୟାସ—
Ḍril 1. Drill.
ড্রিল [ ଦ୍ର—ଏହା ସ୍କୁଲମାନଙ୍କରେ ଆଜିକାଲି ନିୟମିତରୂପେ
ड्रिल ଶିକ୍ଷା ଦିଆ ଯାଉଅଛି । ]

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଂ | ଡ଼ | ର୍‌,ର୍ହ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଫ୍ଫ | ଉଅ | ଢ |
| ୨ | ଈ | ଡ଼ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଞ | ନ |

୨ । ସେନା ଓ ପୁଲିସ ବିଭାଗର ସିପାହୀ ଆଦିଙ୍କର ଦୈନିକ ପରେଡ୍—Drilling or parade of soldiers or police force.

୩ । ଧାତୁରେ ଛିଦ୍ର କରିବା ଉପଯୋଗୀ ବର୍ଣିଆ ଆଦିଙ୍କ ଯନ୍ତ୍ରବିଶେଷ—3. Drilling instrument; instrument for boring metal, stone etc.

ଡ୍ରିଲ୍ ମାଷ୍ଟର୍—ବୈ. ଦେ. ବି (ଇଂ)—ଡ୍ରିଲ୍ ଶିକ୍ଷା ଦେବାର ଶିକ୍ଷକ—
Ḍril māshṭar Drill-master
ড্রিল্ মাষ্টর **ड्रिल मास्टर**
(ଡ୍ରିଲ ଷ୍ଟର୍—ଅନ୍ୟରୂପ)

ଡ୍ରେଗୁନ୍—ବୈଦେ. ବି (ଇଂ. ଡ୍ରାଗୁନ୍)—ଘୋଡ଼ସବାର ସିପାହୀ—
Ḍregun Dragoon; Cavalry Soldier.

ଡ୍ରେନ୍—ବୈଦେ. ବି (ଇଂ,—୧ । ନର୍ଦ୍ଦମା; ଜଳପ୍ରଣାଳୀ; ନଳା—
Ḍren 1. Drain.
ড্রেন ୨ । ସଫେଇ ନାଳ—
**ड्रेन** 2. Drainage channel.

ଡ୍ରେସ୍—ବୈଦେ. ବି (ଇଂ)—୧ । ପୋଷାକ; ଦରେଶ୍—
Ḍres 1. Dress
ড্রেস ୨ । ଡାକ୍ତରମାନଙ୍କର ଅସ୍ତ୍ରୋପଚାର କରିବା ପରେ କ୍ଷତସ୍ଥାନ ଧୁଆ-
**ड्रेस** ଧୋଇ ଓ ସଫାସଫା କରି ପଟି ଆଦି ବାନ୍ଧିବା କର୍ମ—
2. Dressing of a wound by a surgeon.
୩ । ପଥର ଆଦିକୁ କାଟି, ଚାଞ୍ଛି, ପାଲିସ୍ କରି ଚିକ୍କଣ କରିବା—
3. Dressing of stones etc.

ଡ୍ରେସିଙ୍ଗ୍—ଦେ. ବି—୧ । ଘା ଆଦି ଧୋଇଧାଇ ସଫା କରି ତହିଁରେ
Ḍresing ଔଷଧ ଦେଇ ତହିଁ ଉପରେ ଡାକ୍ତର ପଟି ଚଢ଼ାଇବା—
ড্রেসিঙ্গ 1. Surgical dressing of a wound.
**ड्रेसिंग** ୨ । ଡ୍ରେସ୍ ୧।୩ ( ଦେଖ )
2. Ḍres 1 and 3 (See).

[ଦ୍ର—ଏହି ଇଂରେଜୀ ଶବ୍ଦ ସଙ୍ଗେ ଲାଗିଥିବା ଅନ୍ୟ କେତେ ଗୁଡ଼ିଏ ଇଂରାଜୀ ଶବ୍ଦ ଯୁକ୍ତ ଇଂରାଜୀ ଶବ୍ଦମାନ ଭାଷାରେ କ୍ରମଶଃ ଚଳୁଛି ଯଥା—ଡ୍ରେସିଙ୍ଗ୍ ଟେବଲ୍, ଡ୍ରେସିଙ୍ଗ୍ ଗାଉନ୍; ଡ୍ରେସିଙ୍ଗ୍‌କେସ୍, ଡ୍ରେସିଙ୍ଗ୍ କ୍ଲଥ, ଡ୍ରେସିଙ୍ଗ୍ ଜାକେଟ୍, ଡ୍ରେସିଙ୍ଗ୍ ରୁମ୍ । ]

ଡ୍ରେସିଙ୍ଗ୍ କ୍ଲଥ୍—ବୈଦେ. ବି (ଇଂ.)—କ୍ଷତ ଆଦି ଧୋଇ ତାହା ଡାକ୍ତରଙ୍କ
Ḍresing klath ଦ୍ୱାରା ଡ୍ରେସିଙ୍ଗ୍ ହେବା ପାଇଁ ଯେଉଁ ସଫା
ড্রেসিঙ্গ্ ক্লথ ପତଳା କନା ବ୍ୟବହୃତ ହୁଏ—Dressing
**ड्रेसिंग क्लथ** cloth.

ଡ୍ରେସିଙ୍ଗ୍ ଟେବଲ୍—ବୈଦେ. ବି.—(ଇଂ)—୧ । ଡାକ୍ତରଖାନାରେ ଯେଉଁ
Ḍresing ṭebal ଟେବଲ ଉପରେ ରୋଗୀକୁ ଶୁଆଇ କ୍ଷତରେ ପଟି
ড্রেসিঙ্গ টেবিল ବନ୍ଧା ଯାଏ—1. Dressing table in a
**ड्रेसिंग टेबुल** hospital.

ଡ୍ରେସିଙ୍ଗ ଟେବୁଲ
ଡ୍ରେସିଙ୍ଗ ଟେବ୍ଲ } ୨ । ସମ୍ମୁଖରେ ଦର୍ପଣ ଲାଗି ଥିବା ଯେଉଁ ଟେବଲ୍ ସାମନାରେ ସାହେବ, ମେମ୍ ଓ ବାବୁ, ବାବୁଆଣୀମାନେ ଠିଆ ହୋଇ ପୋଷାକ ପରିଚ୍ଛଦରେ ସଜବାଜ ହୁଅନ୍ତି ଓ କେଶବେଶାଦିର ବିନ୍ୟାସ କରନ୍ତି—2. Dressing table; toilet table.

ଡ୍ରେସିଙ୍ଗ ରୁମ୍—ବୈଦେ. ବି. (ଇଂ)—୧ । ନଟ, ନଟୀମାନେ ପୋଷାକ
Ḍresing rum ପିନ୍ଧିବା ଓ ସଜ୍ଜିତ ହେବା ପାଇଁ ରଙ୍ଗମଞ୍ଚକୁ
ড্রেসিঙ্গ রুম ଲାଗି ଯେଉଁ କୋଠରି ଥାଏ—
**ड्रेसिङ्ग रुम** 1. Dressing room; green room.
୨ । ଭଦ୍ରଲୋକ ଓ ଭଦ୍ରମହିଳାମାନଙ୍କର ପୋଷାକ ଓ ଡ୍ରେସିଙ୍ଗ୍ ଟେବଲ୍ ଆଦି ଯେଉଁ ଘରେ ଥାଏ ଓ ଯେଉଁ ଘରେ ସେମାନେ ସଜବାଜ ହୁଅନ୍ତି—2. Dressing room of a gentleman or lady.





ଢ—ଚତୁର୍ଦ୍ଦଶ ବ୍ୟଞ୍ଜନ ଓ ଟ ବର୍ଗର ୪ର୍ଥ ବର୍ଣ୍ଣ । ଏହାର ଉଚ୍ଚାରଣ
Ḍh ସ୍ଥାନ ମୂର୍ଦ୍ଧା । ସାଧାରଣତଃ ଏ ଅକ୍ଷର ଓଡ଼ିଆ ଶବ୍ଦର ଆଦ୍ୟରେ ଥିଲେ ଏହା ଢ, ମଧ୍ୟ ବା ଶେଷରେ ଥିଲେ ଢ଼ ଉଚ୍ଚାରିତ ହୁଏ—The 14th consonant (cerebral); corresponding to the .d. sound joined with .h. sound as in mad-house. This letter has no corresponding letter in English, but is transliterated in this work into ḍh. The letter ଢ଼ has the sound of rd added to h, as in birdhouse and is transliterated into ṛdh.

ସ. ବି.—୧ । ଢକ୍କା; ଢୋଲ—1. Drum.
୨ । କୁକ୍କୁର—2. Dog.
୩ । କୁକ୍କୁରର ଲାଙ୍ଗୁଡ଼—3 Tail of a dog.
୪ । ଧ୍ୱନି—4. Sound
୫ । ସର୍ପ—5. Serpent.
ଗୁଣ—ନିର୍ଗୁଣ—Worthless; devoid of qualily.

ଢଅ—ଦେ. ବି. (ସ. ଧବ)—ଧବ ଗଛ (ଦେଖ)
Ḍha-a Dhaba tree (See)

ସାଧାରଣ ଲୋକଙ୍କ ପାଇଁ ସୂଚନା: ଏହି ଅଭିଧାନରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରା ଥିବା ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'କୃଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ।

**ଢଅ ଛତୁ**—ଦେ. ବି. (ସଂ. ଧବ+ଛତ୍ରାକ)—ଢଉ ଛତୁ (ଦେଖ)
Ḍha-a chhatu — Ḍhau chhatu (See)

**ଢଉ**—ଦେ. ବି—୧। ଢାଉ (ଦେଖ)—
Ḍhau — 1. Ḍhāu (See)
୨। ଧବ ଗଛ (ଦେଖ)—2. Dhaba tree (See)

**ଢଉ ଛତୁ**—ପ୍ରାଦେ. (ଗଡ଼ଜାତ) ବି. (ସଂ. ଧବ+ଛତ୍ରାକ)—ଧବ
Ḍhau chhatu — ଗଛର ଗଣ୍ଡି ଓ ମୂଳରେ ବାହାରୁଥିବା ଏକପ୍ରକାର ଛତୁ—A kind of mushroom growing on the trunk and foot of Dhaba tree.
[ଦ୍ର—ଏହା ହାତୀକାନ ବା ବେଙ୍ଗ ନ ଥିବା ପଞ୍ଝା ଆକୃତି-ବିଶିଷ୍ଟ ଓ ବଡ଼। ଏଥିର ଗୁଣ୍ଡା ପୋଡ଼ା ଘାଆ ପ୍ରତି ମହୌଷଧ।]

**ଢଂକାର**—ପ୍ରାଦେ. (ସମ୍ବଲପୁର) ବି. (ସଂ. ଉଦ୍ଗାର; ତୁଳ. ହି. ଡକାର)
Ḍhaṁkāra — ଉଦ୍ଗାର; ହାକୁଟି—Belching.
(ଢକାର, ଢିଁକାର—ଅନ୍ୟରୂପ) (ଯଥା—ଢ଼ୁଙ୍ଗିଆ ଢଂକାର=ଖଇର ହାକୁଟି।)

**ଢଂ ଢଂ**—ଦେ. (ଧ୍ୱନ୍ୟନୁକରଣ) ଅ. (ବହୁଶବ୍ଦବ୍ୟଞ୍ଜକ)—(ସଂ. ଧ୍ୱନ୍ ଧାତୁ=ଶବ୍ଦ କରିବା)—୧। ଘଣ୍ଟା ଧ୍ୱନି; ଟଂ ଟଂ
Ḍhaṁ ḍhaṁ
ढंग ढंग — 1. Ding-dong sound.
डिम डिम — ୨। ଢୋଲ ବାଦ୍ୟର ଧ୍ୱନି—2 Sound of drums.
୩। ବଡ଼ ହାଣ୍ଡି ଭିତରେ ସାନହାଣ୍ଡି ଠିଆ ହୋଇ ଗଳି ପଡ଼ିଥିବା ଅବସ୍ଥାରେ ହାଣ୍ଡି ହଲାଇବାରୁ ଉତ୍ପନ୍ନ ଶବ୍ଦ—3. Sound of jostling of earthen pots, one inside the other.
(ଢଂ, ଢଙ୍ଗ୍ ଢଙ୍ଗ୍—ଅନ୍ୟରୂପ) ୪। ଢିଲା ଅଳଙ୍କାର ପିନ୍ଧି ଅଙ୍ଗ ଚାଳନ କଲେ ତହିଁରୁ ଉତ୍ପନ୍ନ ଶବ୍ଦ—4. Sound of ill-fitting ornaments when the limb is moved.

**ଢଁ ଢଁ**—ଦେ. (ଧ୍ୱନ୍ୟନୁକରଣ) ଅ.—ଏକାଧିକଥର ଅଧୋବାୟୁର ନିର୍ଗମନ-
Ḍhaṅ ḍhaṅ — ଜନିତ ଉଚ୍ଚଶବ୍ଦ—Loud sounds of passing wind
(ଢଁ, ଢଅଁ ଢଅଁ—ଅନ୍ୟରୂପ)
ढँ ढँ

**ଢକ୍ କିନି**—ଦେ. କ୍ରି. ବିଣ (ଧ୍ୱନ୍ୟନୁକରଣ)—ଅତି ଅଳ୍ପ ସମୟ ମଧ୍ୟରେ;
Ḍhak kini — ଝଟ୍ (ଢୋକ ଦେବା); ଏକା ଢୋକକେ—
ढक करे — (to swallow) At a gulp; in a moment.
गटसे, ढकोस (ଯଥା—ଏ ଔଷଧ ଟିକ ଢକ୍‌କିନି ଗିଳି ଦେ।)

**ଢକ**—ଦେ. ବି.—(ସଂ. ବଟକ)—୧। ବଣିଆଙ୍କ ବ୍ୟବହୃତ ବଟକରୁ—
Ḍhaka — 1. A standard weighing bit used by
ढक, बाटखारा — goldsmiths; a metal-piece used as
बटखरा, बाँट — a standard of weight.
ढप — ୨। କେବଳ ଖୋଳ, ପଞ୍ଜା ଅବରଣ—
ढाँचा, ढपना — 2. Empty frame.

(ଯଥା—ନ ଖାଇ ନ ପିଇ ତାର ବର୍ତ୍ତମାନ ଢକ ରହିଲାଣି।)
ପ୍ରାଦେ. (ହିନ୍ଦୁଭୂମ) ବି.—ଢଗ—Doggerel sayings.

**ଢକଢକ**—ଦେ. (ଧ୍ୱନ୍ୟନୁକରଣ) ଅ. (ବହୁଶବ୍ଦବ୍ୟଞ୍ଜକ) (ତୁଳ. ସଂ.
Ḍhaka ḍhaka — ଢୌକ ଧାତୁ=ଗତି କରିବା)—ପାଣି ଏକାଧିକ
ढक ढक — ଥର ଢୋକ କରି ପିଇବାର କଣ୍ଠଶବ୍ଦ—The sound of
डकडक; डगडग, ढकोस — swallowing or gulping any liquid.
ବାସଙ୍ଗି ତାଙ୍କ ଘରଆଡେ ଢକଢକ କରି ଢାଳେ ପାଣି ପିଇ ଦେଇ ପଡ଼ି ଗଲେ।
ଫକୀରମୋହନ. ଛମାଣ ଆଠଗୁଣ୍ଠ।

**ଢକଢକ ହେବା**—ଦେ. କ୍ରି.—୧। (କୌଣସି ବଡ଼ ଗର୍ତ୍ତ ବା ସ୍ଥାନରେ
Ḍhaka ḍhaka hebā — ଅପେକ୍ଷାକୃତ ସରୁଆ ଖିଲ ଆଦି ଢିଲା
ढनढनकरा ढनढने हओया — ହୋଇ ବସିଥିବାରୁ) ହୋହଲିବା; ହଲିବ
ढन मनाना — ହଲିବ ହେବା—1. To sit slackly (as a slender stick in a bigger hole).
(ଯଥା—ମେରଗାଡ଼ରେ ମାଟି ଠିକ୍ ମତେ ଜନ୍ଦା ହୋଇ ନ ଥିବାରୁ ମେରଖୁଣ୍ଟା ଢକଢକ ହଉଛି।)
୨। ରୋଗ ବା ଅନାହାର ଯୋଗୁଁ କୌଣସି ଜୀବ ଦୁର୍ବଳ ଓ କ୍ଷୀଣ ହେବା—2. To be reduced to skeleton (owing to weakness, disease or fasting).
(ଯଥା—ଦୁର୍ଭିକ୍ଷ ଯୋଗୁଁ ସେ ଅଞ୍ଚଳର ଲୋକମାନେ ଢକଢକ ହୋଇ ଗଲେଣି।)

**ଢକଢକିଆ**—ଦେ. ବିଣ—୧। ଢିଲା; ଶ୍ଳଥ—
Ḍhaka-ḍhakiā — 1. Loose; loosely fitting.
ढनढने, ढनढनिया — ୨। ଅତି ଦୁର୍ବଳ ଓ କ୍ଷୀଣ; ଶୀର୍ଣ୍ଣକାୟ—
डंगला — 2. Very thin; emaciated.
(ଯଥା—ଢକଢକିଆ ମନୁଷ୍ୟ।)

**ଢକର**—ପ୍ରାଦେ. (କଳାହାଣ୍ଡି) ବି—
Ḍhakara — ଶଗଡ଼ ଚାଳିବା ବେଳେ ଚକର ପାଖ ବଳଦଙ୍କ ଗାଣ୍ଡିକୁ ଖାଇ ନ ଯିବା ପାଇଁ ଦୁଇ ଚକ ଆଗରେ ଦଣ୍ଡା ସହିତ ବନ୍ଧା ଯାଇଥିବା ବାଉଁଶ ଖଣ୍ଡ—A bar tied across the shafts of a bullock cart in front of the wheels, to prevent the rumps of the bullocks from clashing with the revolving rims of the wheels.

**ଢକା**—ଦେ. ବି.—୧। (ସଂ. ଢକ୍କ) ଢାକା; ଢେକ୍କା—
Ḍhakā — 1. Dacca (name of a division, district and
(ଢକ୍କା—ଅନ୍ୟରୂପ) — town in East Bengal.
ढाक — ୨। (ସଂ. ଢକ୍କା) ଡିଣ୍ଡିମ; ବାଦ୍ୟ; ଢୋଲ, ଡେଙ୍ଗୁରୁ; ବଡ଼ଢାଠ;
ढक्का — ପଟହ—2. Drum.
ढाका — ବିଣ—ଅଚ୍ଛାଦିତ—Covered.
ढँकाहुआ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଓ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଣ,ଷ | କ୍ଷ | ଜ୍ଞ | ଡ଼ଅ | ଞ |
| ୨ | ଈ | ଊ | ଋୁ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଷ୍ୟ | ଯ | ସ | ଙ୍ଗ୍ୟ | ଢ଼ଅ | ଢ଼ | ନ୍ |

ଢକାଇ—ଦେ· ବଣ—ଢାକାରେ ନିର୍ମିତ—
Ḍhakāi Manufactured in Dacca.
ଢକେଇ } ଅନ୍ୟରୂପ ( ଯଥା—ଢକେଇ ଶାଢୀ । )
ଢକ୍କାଇ }
ढाकाई **ढकई**

ଢକା(କେ)ଇବା—ଦେ. କ୍ରି—ଢଙ୍କାଇବା ( ଦେଖ )
Ḍhakā(ke)iba Ḍhaṅkāiba ( See )

ଢକା ପିଟିବା—ଦେ କ୍ରି. ( ଲକ୍ଷଣାର୍ଥ )—
Ḍhakā piṭiba କୌଣସି ବିଷୟ ଜନସମାଜରେ ପ୍ରଚାର କରିବା—
ढाक पिटा To publish a thing.
**ढिँढोरा पिटना** ସରସେ ପିଟିବେ ଢକା ସଖୀଙ୍କୁ ଏତେ ଏକା।
[ଢକ୍କା ପିଟିବା, ଲବଙ୍ଗ ଚମ୍ପୂ, କଶୋଳଦତ୍ତ, ୭ ଗୀତ।
ଢକ୍କ,ବଜା(ଜେ)ଇବା—ଅନ୍ୟରୂପ]

ଢକା ବଜା(ଜେ)ଇବା—ଦେ. କ୍ରି—ଢକା ପିଟିବା ( ଦେଖ )
Ḍhakā bajā(je)iba Ḍhakā piṭiba ( See )
[ଢକ୍କା ବଜା(ଜେ)ଇବା—ଅନ୍ୟରୂପ]
ढाक बाजान

ଢକା ବାଜିବା—ଦେ. ବି. ( ସଂ. ଢକ୍କା ଓ ବାଦନ )—
Ḍhakā bājiba ୧ । ଢୋଲ ଶବ୍ଦାୟମାନ ହେବା—
(ଢକ୍କା ବାଜିବା—ଅନ୍ୟରୂପ) 1. Sounding of a drum.
ढाक बाजा ୨ । (କୌଣସି ବିଷୟ) ସାଧାରଣରେ ପ୍ରଚାରିତ ହେବା—
**ढिँढोरा फेरना** 2. Wide publication of a matter ( as if by beat of drum )·
ଢକା ବାଜୁଥାଇ ବୃନ୍ଦେ । ଲବଙ୍ଗ ଚମ୍ପୂ, କଶୋଳଦତ୍ତ, ଢ ଗୀତ।

ଢକାର—ଦେ. ବି. ( ସଂ. ଉଦ୍ଗାର Beams )
Ḍhakāra ୧ । ହାକୁଟି—1. Belching; hiccup.
ଢକ୍କାର—ଅନ୍ୟରୂପ ୨ । ବାନ୍ତି—2. Vomiting.
ढेकुर **डकार**

ଢକୋ ଢକୋ—ପ୍ରାଦେ. (ସମ୍ବଲପୁର) ଅ · ଢକଢକ ( ଦେଖ )
Ḍhako ḍhako Ḍhakaḍhaka (' See )

ଢକ୍କ—ସଂ. ବି—ଢାକା ନଗର—
Ḍhakka The Sanskrit name of the town of Dacca.

ଢକ୍କା—ସଂ. ବି. ( ଢକ୍—ଅନୁକାର ଶବ୍ଦ + କୈ ଧାତୁ = ଶବ୍ଦ କରିବା + କର୍ତ୍ତୃ. ଅ )—ବଡ଼ ଢୋଲ, ବଡ଼କାଠ—
Ḍhakkā
1. Big drum.
୨ । ନାଗରା—2· Kettle-drum.

ଢଗ୍—ପ୍ରାଦେ. ( ସମ୍ବଲପୁର ) ବି ( ସଂ. ବଟକ )—
Ḍhag ବଣିଆଙ୍କ କଟକଣା; ଢକ—
Standard weight used by goldsmiths.

ଢଗ୍‌ବିରି—ପ୍ରାଦେ. (ସମ୍ବଲପୁର)ବି. (ଭୁଲ. ହି. ଢେବ୍‌ରୀ = ଶସ୍ୟ ଅର୍ଦ୍ଧ)—
Ḍhag-biri ୧ । ଆଲୁଅ—1. Light.
୨ । ପ୍ରଦୀପ—2. Lamp.
୩ । ଡିବିରି—3. An open kerosene lamp.

ଢଗ—ଦେ. ବି. ( ଭୁଲ. ଇଂ. Doggerel, ଡଗ୍ଗରେଲ୍ = ବ୍ୟଙ୍ଗପୂର୍ଣ୍ଣ ନୀଚ ଶ୍ରେଣୀର ପଦ୍ୟ )—
Ḍhaga
ढामालि, हेयाँलि ୧ । ଢେଗ; ପରିହାସ ବା ବ୍ୟଙ୍ଗାତ୍ମକ ଛନ୍ଦ
**बोलिठोलि** ବା ମିତ୍ରାକ୍ଷର ମିଳିତ ବଚନ—
1. Badinage; banter; sarcastic doggerel; a gibe or proverb in rhyme.
୨ । ପ୍ରବଚନ—
2. Wise popular sayings; saws.
[ ଦ୍ର—ସାଧାରଣତଃ ଢଗମାନଙ୍କରେ ଶେଷପଦମାନଙ୍କର ମେଳ ଥାଏ ଓ ଉପସ୍ଥିତ ଘଟଣାକୁ ଲକ୍ଷ୍ୟ କରି ତାହା ବୋଲାଯାଏ । ]

ଢଗ ଢମା—ଦେ. ବି—ଢଗ ଢମାଳି (ଦେଖ)
Ḍhaga ḍhamā Ḍhaga ḍhamāli (See)
ଢଗ ଢମରେ କଲ୍ପ ମାନସ ତୋଷ। ଗୋଲୋକ, ଉଦ୍ଧବରେଖା।

ଢଗ ଢମାଳି—ଦେ. ବି.(ସହଚର; ପ୍ରାୟ ଏକାର୍ଥବୋଧକ ଶବ୍ଦ)—
Ḍhaga ḍhamāli ୧ । ଢଗ ଓ ଢମାଳି—
**बोलिठोली** 1. Banter; badinage.
୨ । ବାଜେ ବା ଅପ୍ରୟୋଜନୀୟ କଥା—
2. Miscellaneous or useless words.
ଢମଣେ ବର୍ଣ୍ଣିବି ମୁଁ ଗୋକୁଳଚରିତ
ଢଗଢମାଳ ହେଲେହେଁ ସାକ୍ଷାତେ ଅମୃତ।
ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି।
[ ଦ୍ର—ଢଗରେ ପଦମାନଙ୍କ ଶେଷ ଅକ୍ଷରର ମେଳଥାଏ ଓ କୌଣସି କୌଣସି ଢଗରେ ଉପଦେଶ ଓ ଅନୁଭବପୂର୍ଣ୍ଣ ବଚନ ଥାଏ । ଢମାଳି ବ୍ୟଙ୍ଗୋକ୍ତି ବହୁଳ ଏବଂ ତହିଁରେ ଅକ୍ଷରର ମେଳ ନ ଥାଏ । ]

ଢଗ ପକା(କେ)ଇବା—ଦେ. କ୍ରି—ଢଗ ମେଳିବା (ଦେଖ)
Ḍhaga pakā(ke)iba Ḍhaga meliba (See)

ଢଗ ମେଳିବା—ଦେ. କ୍ରି—କୌଣସି ବ୍ୟକ୍ତି ବା ଘଟଣାକୁ ଲକ୍ଷ୍ୟ କରି
Ḍhaga meliba ଉପହାସ କରି ଢଗ ବୋଲିବା—
ढामाली बना To banter a person.
**बाली छोड़ना** ଗାଁର ମନୁଷ୍ୟ ନନ୍ଦଙ୍କ ଲୋକମାନେ ସେମାନଙ୍କୁ ଦେଖି ଢଗ ମେଳନ୍ତି । ଫକୀରମୋହନ. ଛମାଣ ଆଠଗୁଣ୍ଠ।

ଢଙ୍କ—ଦେ ବି. (ସଂ. କଣ୍ଡୁରା, ଅବ୍ୟଙ୍ଗା)—ଶିମ୍ବାଦି ବର୍ଗର ଲତା ଓ
Ḍhaṅka ତହିଁର ଛୁଇଁ; ବାଇଢଙ୍କ—A species of creeper
आलकुशी and its bean; cowitch.
**केँच** [ ଦ୍ର—ଏହା ଦୁଇ ଜାତୀୟ । ଏକ ଜାତୀୟ ବନ୍ୟଜ । ଏହାର ଛୁଇଁ ଉପରେ ଅଁଶ ଥାଏ । ଏହା ଦେହରେ ଲାଗିଲେ ଭୟଙ୍କର

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍ତ ଦେଖିବେ

ଗଲୁ ହୁଏ । ଏହାକୁ ବାଇଢଙ୍କ କହନ୍ତି । ଅନ୍ୟ ଜାଗାଯ୍ଯ ଲଗାକୁ ଲୋକେ ବାଡ଼ି ଓ ଅଗଣାରେ ଲଗାନ୍ତି । ଏହାର ଖୁଣ୍ଟି ତରକାରୀ ରୂପେ ବ୍ୟବହୃତ ହୁଏ ଓ ଏ ଖୁଣ୍ଟିରେ ଆଁଶ ନ ଥାଏ । ]

ଦେ· ବଣ—ଢଙ୍କସର ପାଣି (ଦେଖ)
Ḍhaṅkasara pāṇi (See)

ଢଙ୍କଣ—ଦେ. ବି—୧ । ଢେଙ୍କଣ; ସରୁ ବାଉଁଶର ଲଗି—
Ḍhaṅkaṇa — 1. A long and thin bamboo pole.
ଲଗୀ
ଲଗୋ
୨ । ଓଲଥ ଓ ଦୁଷ୍ଟଗୋରୁଙ୍କ ବେକରେ ଓହଳାଇ ଦିଆଯିବା ବାଉଁଶ ବା କାଠର ଖଣ୍ଡ; କାଠ ଘଣ୍ଟା—
କାଷ୍ଠିଘଣ୍ଟା
ଢିଂଗର, ଠିଂଗୁରୀ
2. A log of bamboo or wood suspended from the neck of wicked cattle.

ଢଙ୍କଣ ପାଳି—ପ୍ରାଦେ (ପୁରୀ) ବି—ଢଙ୍କଣ ଧର ଜମିଦାରଙ୍କ କଚେରୀ Ḍhaṅkaṇa pāli ବା ଜମାରବାଡ଼ିର ଫସଲ ଖାଇବାକୁ ଅଇବା ମାଙ୍କଡ଼ମାନଙ୍କୁ ଜଗିବା ପାଇଁ ପ୍ରଜାଙ୍କ ମଧ୍ୟରେ ବେଠି ବନ୍ଧାଯାଇ ଥିବା ପାଳି—Turn for scaring away monkeys from a zamindar's Kutchery-house and its adjoining garden.

ଢଙ୍କ ପାଣି—ଦେ. ବଣ—ଢଙ୍କସର ପାଣି (ଦେଖ)
Ḍhaṅka pāṇi — Ḍhaṅkasara pāṇi (See)

ଢଙ୍କର—ଦେ. ବଣ—ଢଙ୍କସର ପାଣି (ଦେଖ)
Ḍhaṅkara — Ḍhaṅkasara pāṇi (See)

ଢଙ୍କସର—ଦେ. ବଣ.—ଢଙ୍କସର ପାଣି (ଦେଖ)
Ḍhaṅkasara — Ḍhaṅkasara pāṇi (See)

ଢଙ୍କସର ପାଣି—ଦେ. ବଣ.—(ସଂ. ଢୁକ ଧାତୁ କମ୍ପା ସ୍ତୋକ ଧାତୁ= Ḍhaṅkasara pāṇi ଚୋକ; ଯାହାକୁ ଚୋକ କର ପିଆ ଯାଏ)—
ଗଙ୍ଗାଜଳ
ପତଲା
ଅତ୍ୟନ୍ତ ଜଳୀୟ; ପାଣିଆଁ—
Very watery.
(ଯଥା—ଆଜ ସନ୍ତୁଣୀ ଡାଲକୁ ଢଙ୍କସର ପାଣି କର ଦେଇଛି ।)

ଢଙ୍କା—ଦେ. ବି.—୧ । (ସଂ. ଢକ୍ ଧାତୁ=ଆଚ୍ଛାଦନ—ହି. ଶବ୍ଦସାଗର)
Ḍhaṅkā — ୧ । ଆଚ୍ଛାଦନ—1. Covering.
ଟାଁକା
ଢାଁକନା
୨ । (ସଂ. ଢକ୍କା) ବଡ଼ ନାଗରା; ମେଘା—
2. Big kettle-drum.
ଢାକ୍
ଡଙ୍କା, ଢକା
[ ଦ୍ର—ଏହା ମଠ ଓ ଠାକୁର ମନ୍ଦିରମାନଙ୍କରେ ପିଟାଯାଏ ଓ ବହୁଦୂରକୁ ମେଘ ଗର୍ଜନ ପରି ଶୁଭେ । ]
ଢାକା
ଢାକା
୩ । (ସଂ. ଢକ୍କ) ଢାକା ଅଞ୍ଚଳ; ଢେଙ୍କା—
3. Dacca ( in East Bengal )
ବଣ—ଆଚ୍ଛାଦିତ—Covered; closed.

ଢଙ୍କା(ଙ୍କେ)ଇବା—ଦେ. କ୍ରି (ସଂ. ଢକ୍ ଧାତୁ=ଆଚ୍ଛାଦନ; ଢୌକ ଧାତୁ =ଆବରଣ )—
Ḍhaṅkā(ṅke)ibā
(ଢାଙ୍କେଇବା—ଅନ୍ୟରୂପ)
୧ । ଢାଙ୍କିବା କ୍ରିୟାର ଣିଜନ୍ତରୂପ—
ଢାଁକାନ
ଢକ୍ଯାନା
1. The causative form of 'Ḍhāṅkibā.
୨ । ଘୋଡ଼ାଇବା; ଢାଙ୍କିବା —
2. To cover; to conceal.

ଢଙ୍କୁଣ—ପ୍ରାଦେ (ଗଡ଼ଜାତ) ବି—ଲମ୍ବ ବେଣ୍ଟଯୁକ୍ତ ବରଛା—
Ḍhaṅkuṇa — Long-handled lance.

ଡେଲଙ୍ଗା ବାହାର ଧର ଢଙ୍କୁଣ,
ଯହିଁ ନ ଦଶିଲ୍ସ ସୂର୍ଯ୍ୟ କରଣ—ବ୍ରଜନାଥ ସମରତରଙ୍ଗ ।

ଢଙ୍କୁଣିଆ—ପ୍ରାଦେ (ଗଡ଼ଜାତ) ବି—ଢଙ୍କୁଣଧାରୀ ପାଇକ—
Ḍhaṅkuṇiā — Foot-soldiers holding long-handled lances.

ଢଙ୍ଗ—ଦେ. ବି ( ସଂ. ଭଙ୍ଗୀ; ହିଂ, ତଂଗନ=ଗତି )—
Ḍhaṅga — ୧ । ଛାଞ୍ଚ; ରୀତି; ଭଙ୍ଗୀ—
(ଢଂ—ଅନ୍ୟରୂପ) — 1 Manner; method; mode; fashion.
ଢঙ্গ
ढङ्ग
୨ । ସୁବ୍ୟବହାର; ଭଦ୍ରତା—
2. Good treatment; manners.

ଅଢ଼ଙ୍ଗରେ ଢ ଙ୍ଗ ନାହିଁ,
କଟକ ବାଇଦ ଶୁରେ ନାହିଁ—ଢଗ ।

୩ । ପ୍ରକାର—3. Kind; sort.
୪ । ଉପାୟ—4 Means.
୫ । ଗଢ଼ଣ—5. Make; build.
୬ । ଲକ୍ଷଣ—6. Indication; trait.
୭ । ଚାଲି; ଚଳନ; ଆଚରଣ—7. Conduct.

ଢଙ୍ଗ କାଢ଼ିବା—ଦେ. କ୍ରି—ଛଇ ଦେଖାଇବା—
Ḍhaṅga kāṛḍhibā — To put on airs.
ঢঙ দেখান — ढङ्ग निकालना

ଢଙ୍ଗ ଢଙ୍ଗ—ଦେ. ଅ—ଢଙ୍ଗର ଢଙ୍ଗର (ଦେଖ)
Ḍhaṅga ḍhaṅga — Ḍhaṅgara ḍhaṅgara (See)

ଢଙ୍ଗଢଙ୍ଗିଆ—ଦେ. ବଣ—୧ । ଢୁଲୁଲା; ଗଳଗଳିଆ (ଅଳଙ୍କାର)—
Ḍhaṅga-ḍhaṅgiā — 1. Loosely fitting (ornament).
ঢঙ্গঢঙ্গে
ढीला
୨ । ଆଡ଼ମ୍ବର ପୂର୍ଣ୍ଣ—
2 Grand; grandiose.

ଢଙ୍ଗ ଢାଙ୍ଗ—ଦେ. ବି (ସଂ. ଭଙ୍ଗୀ)—୧ । ଆଡ଼ମ୍ବର—
Ḍhaṅga ḍhāṅga — 1. Grandeur.
ঢঙ্গঢাঙ্গ
रंगढंग
୨ । ଚାଲିଚଳନ; ଆଚାର ବ୍ୟବହାର—
2. Conduct; gait.
୩ । ରୀତି; ପ୍ରଥା—3. Manners and customs.

ଢଙ୍ଗର ଢଙ୍ଗର- ଦେ. (ଧ୍ଵନ୍ୟନୁକରଣ) ଅ—୧ । ଅନେକଗୁଡ଼ିଏ ଢୋଲ
Ḍhaṅgara ḍhaṅgara — ଅନୁଚ୍ଚସ୍ୱରରେ ବାଜିବାର ଶବ୍ଦ;
ঢংঢং
डिमडिम
ଢାଉଁ ଢାଉଁ—1. Loud sound of many tomtoms or drums.

| ୧ | ଋ | ଊ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ୟ | ଜ | ଷ,ଷ | କ୍ଷ | ଇଯୃ | ଉଅ | ୱ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଲୁ | ଙ୍ଗୃ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଡ଼ | ନ୍ |

ସଉର ଏଣ ବାଇଦ ବାଜେ ଢଙ୍ଗରଢଙ୍ଗର—ଉଗ ।

୨ । ଢ° ଢ° ୧ (ଦେଖ)—2. Ḍham ḍham (See)

ଦେ. ଢଣ—ଢୁଗୁଲା; ଗଲଗଲ—2 Loose; slack; loosely fitting.

**ଢଙ୍ଗିଆ**—ଦେ. ଢଣ—ଆଡ଼ମ୍ବରପ୍ରିୟ—
Ḍhangiā Fond of outward show.
বঙ্গঢঙ্গে, **ঢৌঙ্গী**

**ଢଣ**—ଦେ. ବ. ( ସଂ. ଧନୁସ୍ )—ଧନୁ—
Ḍhaṇa Bow.

**ଢଣ ଢଣ ହୋଇ ବୁଲିବା**—ଦେ. କ୍ରି—ଧନଯାକ ନ ଖାଇ ନ ପିଇ ଉଦ୍ଦେଶ୍ୟହୀନ ଭାବରେ ଗୃହଆଡ଼େ ବୁଲିବା—To wander about aimlessly and without food; to loaf about.
Ḍhaṇa ḍhaṇa hoi bulibā
টো টো করে বেড়ান
**ডাঁবা ডোল হোনা**

**ଢଣଢଣିଆଁ**—ଦେ. ଢଣ—୧ । ବହୁତ ବୁଲି ବୁଲି ବଉଳି ଓ ଶ୍ରାନ୍ତ ହୋଇଥିବା—1. Over-fatigued by too much wandering.
Ḍhaṇa-ḍhaṇiāñ
ঢন্‌ঢনিয়াঁ; ঢনঢনে
**डांबाडोल**

୨ । ଉଦ୍ଦେଶ୍ୟହୀନ ଭାବରେ ବୁଲୁଥିବା (ବ୍ୟକ୍ତି)—
2. Roving; loafing about (person).

**ଢଣା**—ଦେ. ଢଣ—୧ । ପରିଶ୍ରାନ୍ତ; କ୍ଳାନ୍ତ—
Ḍhaṇā 1. Tired; fatigued; wearied.

ଢନ୍ନା ପ୍ରାଦେ. ( ଗଡ଼ଜାତ ) ବ—ଗୋରୁଙ୍କ ଧରିବା ରୋଗବିଶେଷ—
**काहील** A kind of cattle disease.

[ଦ୍ର—ଏ ରୋଗ ହେଲେ ଗୋରୁଙ୍କ ତାଳୁ ବାଟେ ଭୁଇଁଟା କଣା ଫୁଟି ଯାଏ । ସବୁବେଳେ ଗୋରୁ ଝୁଲନ୍ତି । ସେ କଣା ବାଟେ ପାଣି ଚୋପାଣୀ ତାଳୁରେ ପଶିଯିବାରୁ ଗୋରୁ ଖାଇ ପାରନ୍ତି ନାହିଁ । ଅଲତା ସିଠାରୁ ଜମ କାଠିରେ ଖୁନ୍ଦି ସେ କଣାକୁ ବୁଜି ଦେଲେ ଏ ରୋଗ ଭଲ ହୋଇଯାଏ । ]

**ଢଣୁଆ**—ଦେ ବ (ସଂ. ଦୋହନ)—ଦୁହାଁଳ ଗାଈ; ଖେଣୁଆ ଗାଈ—
Ḍhaṇuā Milch cow.
দুধাল, **दुधारू**
(ବରଡ଼, ବରଡ଼ା—ବୃଷଖଣ୍ଡ)

**ଢନ୍କନା**—ପ୍ରାଦେ. (ସମ୍ବଲପୁର) ବ—ଛୋଟ ଜାତିର ସ୍ତ୍ରୀଲୋକେ ପିନ୍ଧିବା ପିତଳର ବାହୁଖଡ଼ୁ—A kind of broad wristlet worn by women of lower classes in Sambalpur.
Ḍhankanā

**ଢପ**—ଦେ. ବ (ସଂ. ଭାବ; ଧବ=ଗଢ,—୧ । ଛାଞ୍ଚ; ଆକୃତି—
Ḍhapa 1. Shape; form.
ঢপ ୨ । ଗଠନ—2. Structure; mould.
**ढप** ୩ । ଛଇ; ଆଡ଼ମ୍ବର; ରୋଚ—
3 Grandeur; show.

୪ । ଆଚରଣ—4. Behaviour; conduct; carriage.

୫ । ଆଗ୍ରହ; ବ୍ୟବହାର—
5. Manners; deportment; attitude.

୬ । ଫେସନ୍; ଭଙ୍ଗୀ; ଢଙ୍ଗ—6. Fashion; mode.

୭ । ରୀତି; ପ୍ରଥା—7 Custom; usage.

୮ । ଅଭ୍ୟାସ—8. Habit.

୯ । ପ୍ରକାର—9. Manner; kind.

୧୦ । ସ୍ୱଭାବ—10. Nature.

୧୧ । ରୂପ; ଛନ୍ଦ—11. Mien; appearance.

**ଢପ ଢପ**—ଦେ. (ଧ୍ୱନ୍ୟନୁକରଣ) ଅ—୧ । ଚମଡ଼ା ଓଦା ବା ଢିଲା ହୋଇଥିବା ବା ଉପରେ ଲୁଗା ପକା ହୋଇଥିବା ଆନକ ବାଦ୍ୟ ଉପରେ ଆଘାତ ଜନିତ ଶବ୍ଦ—
Ḍhapa ḍhapa
ঢপঢপ
**ढबढब**
1. Dull sound of beating a drum whose hide has become slack or damp or is covered with a piece of cloth; sound of a muffled drum.

୨ । କୁଣ୍ଡା, ଚଷୁ ଆଦି ଅସାର ପଦାର୍ଥକୁ ଢିଙ୍କିରେ କୁଟିବା ଶବ୍ଦ—2. The hollow sound of beating husks with the ḍhinki

୩ । ଘୋଡ଼ାର ଖୁରା ଟାଣୁଆ ମାଟିରେ ପଡ଼ିବାର ଶବ୍ଦ—
3. The thud of horse's hoofs on hard soil.

ଦେ. ଢଣ—ଢକଢକ; ଶିଥିଳ; ଢୁଗୁଲା (ଅଳଙ୍କାର)—
Loose (ornaments).

**ଢପ ରକ୍ଷା**—ଦେ. ବ—ଫେସନ୍ ବା ଢଙ୍ଗକୁ ସର୍ବଦା ବଜାଏ ରଖିବା—
Ḍhapa rakshā Continuance of a fashion.
ঢপরক্ষা

**ଢପର ଢପର**—ଦେ. ଅ—ଢପ ଢପ ( ଦେଖ )
Ḍhapara ḍhapara Ḍhapa ḍhapa ( See )

**ଢବ୍ନା**—ପ୍ରାଦେ. (ସମ୍ବଲପୁର) ବ—ଢପ୍ନା ( ଦେଖ )
Ḍhab-nā Ḍhap-nā ( See )

**ଢବ ଢବ** (ଇତ୍ୟାଦି)—ଡବ ଡବ ଇତ୍ୟାଦି (ଦେଖ)
Ḍhaba ḍhaba (etc) Ḍaba ḍaba etc. (See)

**ଢବା**—ଦେ. ବ—୧ । ଡବା; ମାଲ ଗାଡ଼ିର ଖଣ୍ଡେ ଗାଡ଼ି—
Ḍhabā 1. A goods-wagon.

୨ । ରେଲ ଗାଡ଼ିର କୋଠରି—
2. A compartment of a Railway carriage.

ଢଣ—ଚୁଙ୍ଗା; ଡବା; ପୋଲା ଓ ବଡ଼—
Hollow and big.
( ଯଥା—ଢବା ବାଉଁଶ । )

ପ୍ରାଦେ. ( ଗଡ଼ଜାତ ) ବ. ( ଭୁଲ., ହି. ଛରୁଆ=ଘେରିବାକୁ ଲଗିବା ପାଇଁ କରା ଯାଇଥିବା ମଞ୍ଚା ଉପରେ କରାଯିବା ଛପର )—ଅନ୍ତ ଘର—A thatched house with an inner mud-covered roof.

ସାଧାରଣ ଲୋକେ ଅନେକ ସ୍ଥଳରେ ନ୍ତ୍ରଷ୍ଟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'ନ୍ଥ' ନ ମିଳିଲେ 'କ୍ଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଗ୍ୟା'କ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

ବି—୩ । କୋଠା; ପକ୍କାଘର; ପ୍ରାସାଦ—
3. A pucca house; building; a house of brick masonry; mansion.

ଢବା ଚନାବରୁ ଗୋପ ନଗରର ବନ୍ଦ ଭୂପ ବାଲୁବେଶ ଦେବ ନୃପ
କୃଷ୍ଣପ୍ରଞ୍ଜ ସହିତ—କବିସୂର୍ଯ୍ୟ, କଂଶୋଷବଧ୍ୟ, ଚ ଗୀତ ।

[ ଦ୍ର—ଢବା ଶବ୍ଦ ଏହି ଅର୍ଥରେ ଗଞ୍ଜାମ ଅଞ୍ଚଳର ଓଡ଼ିଆ ଭାଷାରେ ବହୁଳ ବ୍ୟବହାର ଦେଖାଯାଏ । ]

ପ୍ରାଦେ. (ଗଞ୍ଜାମ) ବି—୧ । ଝିଙ୍କର ଛୁଆଣି ଘର; ଖପରଲି ଘର·
1. A house with a thin tiled roof.

ପ୍ରାଦେ. (ଗଡ଼ଜାତ, ସମ୍ବଲପୁର) ବିଣ—ଅନ୍ତଃବିଶିଷ୍ଟ (ଗୃହଘର)
( thatched house ) Having an inner mud-roof.

ଢବା ଘର—ପ୍ରାଦେ.(ସମ୍ବଲପୁର ଓ ଗଡ଼ଜାତ) ବି—ଅନ୍ତ ଘର—
Ḍhabā ghara  A thatched house with an inner mud roof.

ଢବା ତନାବି—ଦେ. ବି—କୋଠା ଘରର ଝରକା—
Ḍhabā tanābi  Window of a mansion

ଢବାତନାବି ଦେହଳୀ ସମୀପରେ ପ୍ରିୟ ଅଳୀ,
ସମାଜେ ବସନ୍ତ ବବ ମହଲାରେ । କବିସୂର୍ଯ୍ୟ· ସଙ୍ଗୀତ ।

ଢବାଲିଆ—ଦେ. ବିଣ—ଢବା ( ଦେଖ )
Ḍhabālia  Ḍhabā ( See )

ଢମ୍ନି—ପ୍ରାଦେ. (ସମ୍ବଲପୁର) ବି—ଲୁଚିଆଣି ଖେଳ; ଲୁଚକାଳି ଖେଳ—
Ḍham-ni  The game of 'Hide and Seek'.

ଢମ—ଦେ. ବି. ( ସଂ. ଦମ୍ଭ )—୧ । ଅହଙ୍କାର; ଗର୍ବ—
Ḍhama  1 Pride; arrogance.
ঢম  ଢମ ଯେ କଲା ସମ୍ଭେ କଂସ, ତାଲେ ଅସୁର ଗଲା ନାଶ ।
घमण्ड  ବଳରାମ ଦାସ, କମଳଲୋଚନ ଚଉତିଶା

୨ । ଦମ୍ଭ; ଗୁମର; ମୁହଁ ବାଲିଙ୍ଗି—
2. Boast; vainglory; bragging.

୩ । ସାରହୀନ ବାହ୍ୟାଡ଼ମ୍ବର—
3. Outward show without any inner worth.

( ଯଥା—କରଣ ସାଆନ୍ତମାନଙ୍କ ଢମକୁ ଉଚ୍ଚଶିକ୍ଷିତ କରଣ ଯୁବକମାନେ ମଧ୍ୟ ବିରାଗ ଚକ୍ଷୁରେ ଦେଖୁ ଅଛନ୍ତି । )

୪ । ଢଙ୍ଗ; ରୀତି—4. Fashion; custom.

ଢମ(ମୁ)କ—ଦେ. ସର୍ବନାମ (ଅମୁକ ଶବ୍ଦ ସଙ୍ଗେ ସହଚରରୂପେ ବ୍ୟବହୃତ)
Ḍhama(mu)ka —କହି ନ ହେବା ବିଷୟ; ଫଲଣା; ଅମୁକ
তুসুকা  ଅନିର୍ଦ୍ଦିଷ୍ଟନାମା, ଉଦ୍ଦିଷ୍ଟନାମା (ବ୍ୟକ୍ତି ବା ବିଷୟ)—
ढिमका  So and so.

(ଯଥା—ମୋର ଭୁ ଅମୁକ ଢମୁକ କରି ପକେଇରୁ ।)

ଢମ କରିବା—ଦେ. କ୍ରି—୧ । ଗୁମର କରିବା—
Ḍhama karibā  1. To boast; to brag.
ঢম দেখান  ୨ । ଗର୍ବ କରିବା—2. To arrogate.
घमंड करना  ୩ । ବାହ୍ୟାଡ଼ମ୍ବର କରିବା—
3. To make a grand display.

ଢମ କହିବା—ଦେ. କ୍ରି—ଢମ କରିବା ୧ (ଦେଖ)
Ḍhama kahibā  Ḍhama karibā 1 (See)

ଢମ କାଢ଼ିବା—ଦେ. କ୍ରି—ଢମ କରିବା (ଦେଖ)
Ḍhama kārḍhibā  Ḍhama karibā (See)

ଢମ ଢମ—ଦେ.(ଧ୍ୱନ୍ୟନୁକରଣ) ଅ, (ଭୁଲ. ସଂ. ଧ୍ୱନ୍ ଧାତୁ)—
Ḍhama ḍhama  ଢୋଲ ବାଜିବାର ଶବ୍ଦ—
ঢংঢং  Sound of beating of drums.
ढमढम  [ ଦ୍ର—ଢମଢମ ଢାଉଁଢାଉଁ ଅପେକ୍ଷା ଅନୁଚ୍ଚ ଶବ୍ଦ । ]
(ଢମର ଢମର—ଅନ୍ୟରୂପ)

ଢମ ଢମାଳି—ଦେ. ବି—ବାହ୍ୟାଡ଼ମ୍ବର—Outward show.
Ḍhama ḍhamāli  ବୁଢ଼ୀ ଏ ଢମଢମାଳି ବୁଝେ ନାହିଁ ।
रंगढंग  ଫକୀରମୋହନ ଗଳ୍ପସ୍ୱଳ୍ପ ।

ଢମଣା—ଦେ. ବି. (ସଂ. ଧାମନ୍=ଗୃହ; ଏମାନେ ଘରେ ବିଚରଣ କରିବାରୁ; ଜମ୍ଭା ସଂ. ଦଣ୍ଡ)—ଏକପ୍ରକାର ନିର୍ବିଷ
Ḍhamaṇā
তেমনা  ଫଣାହୀନ ଲମ୍ବା ସର୍ପ; ଢାମଣା ବା ଢେମଣା ସାପ—
डोमा; ढामना  Zamenis Mucosus (serpent).

(ଢମଣୀ—ସ୍ତ୍ରୀ) [ ଦ୍ର—ଏମାନେ ଲମ୍ବରେ ୪।୫ ହାତ ପର୍ଯ୍ୟନ୍ତ ବଢନ୍ତି, ଦେହର ଉପର ଈଷତ୍ ନାଲି, ପିଠିରେ କଳା ଓ ହଳଦିଆ ଚିହ୍ନଆ ଚିହ୍ନ ଥାଏ, ପେଟପାଖ ଈଷତ୍ ହଳଦିଆ । ଏମାନେ ଗୃହରେ ବୁଲି ମୂଷା ଓ ଗଛରେ ଚଢ଼ି ଚଢ଼େଇ ଛୁଆ ଓ ଡିମ୍ବ ଗିଳନ୍ତି । ଏମାନେ ଖୁବ୍ ଭୀରୁ । ପ୍ରବାଦ ଅଛି ଯେ ଏମାନେ ଗାଈଙ୍କ ପଛଗୋଡ଼ ବାନ୍ଧେ ଛନ୍ଦି ପଛଗୋଡରେ ଛନ୍ଦା ହୋଇ ଗାଈଙ୍କ ଥନ ଚୁଚୁମି ଦୁଧ ପିଇ ଯାଆନ୍ତି । ଏମାନେ ଘରେ ଓ ଘରର ଖଞ୍ଜା ଭିତରେ ବେଙ୍ଗ ଖାଇବାକୁ ଅନେକ ସମୟରେ ବୁଲନ୍ତି । ଲୋକଙ୍କର ବିଶ୍ୱାସ ଯେ ମାଈ ଢମଣା (ଢେମଣୀ) ଗୋଖରସାପଙ୍କ ସଙ୍ଗେ ଜୋଡ଼ ଖାଇଲେ ଏହାଙ୍କଠାରୁ ଦୋମିଶା ଜନ୍ମ ଜନ୍ମନ୍ତି । ]

ଢମ ଦେଖାଇବା—ଦେ. କ୍ରି—ଢମ କରିବା (ଦେଖ)
Ḍhama dekhāibā  Ḍhama karibā (See)

ଢମ ପଣ—ଦେ. ବି—ଢମ (ଦେଖ)
Ḍhama paṇa  Ḍhama (See)

ଢମପଣେ ବର୍ଣ୍ଣିଛି ମୁଁ ଗୋବିନ୍ଦ ଚରିତ । ଅଭିମନ୍ୟୁ. ବିଦଗ୍ଧଚିନ୍ତାମଣି ।

ଢମା—ଦେ. ବି. (ସଂ. ଧାମକ=ପରିମାଣ ବିଶେଷ)—ଗୋରୁଙ୍କୁ କୁଣ୍ଡା-
Ḍhamā  ପାଣି ଖୁଆଇବା ନିମନ୍ତେ ବ୍ୟବହୃତ ଭିତର ପାଖେ
ধামা  ଲଟକାଇ ଛୁଆଣି ହୋଇଥିବା ବାଉଁଶ ଟୋକେଇ—
धामा  Manger; scuttle; an impervious bamboo backet or trough used for feeding cattle with liquid food.

ବିଣ—୧ । ଢମ ପ୍ରିୟ—1. Boastful; showy.
୨ । ଗର୍ବୀ—2. Proud; haughty.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଡ଼ | ଶ,ଷ | ଜ୍ଞ | ଲ୍ୟ | ତ୍ର | ଘ୍ନ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଲଥ | ଞ୍ଜ | ନ୍ଦ୍ର |

୩ । ବଡ଼—3. Big.

**ଢମା ଆଖିଆ**—ଦେ· ବିଣ—ଢେଗା ଆଖିଆ (ଦେଖ)
Ḍhamā ākhiā Ḍhegā ākhiā (See)

**ଢମାଳି**—ଦେ ବି. (ସଂ ଦମ୍ଭ)—୧ । ଢମ; କବିତ୍ୱହୀନ ବ୍ୟଙ୍ଗ ବା
Ḍhamāḻi ପରିହାସ ବଚନ—1. Unrhymed jeer; gibe.
ଢାମାଲି; ଢମାଲୀ ଢମାଳ ଗୀତ ଭବେମେଲ । ଭୂପତି. ପ୍ରେମପଞ୍ଚାମୃତ ।
ଧମାଲ [ ଦ୍ର—ଛଗରେ ପଦମାନଙ୍କର ମିତ୍ରାକ୍ଷର ମିଳେ, ମାତ୍ର ଢମାଳରେ ତାହା ନ ଥାଏ । ଏହା ଛଗ ସଙ୍ଗେ ସହଚରରୂପେ ବ୍ୟବହୃତ ହୁଏ । ]
୨ । ଦମ୍ଭ ବାଲଙ୍ଗ—2 Bragging; boasting.
୩ । ପରିହାସ; ରଙ୍ଗରସ—3. Jest; witticism
ଅନ୍ତୁକୂଳ ଗାଳେ ଯାଇ ମିଳି
ହାସ୍ୟକ କରନ୍ତି ଢମାଳ । ଜଗନ୍ନାଥ. ଭାଗବତ ।
୪ । ଗର୍ବ; ଅହଙ୍କାର—4. Pride; arrogance

**ଢମାଳିଆ**—ଦେ. ବିଣ—୧ । ଗର୍ବୀ—
Ḍhamāḻia 1. Proud; haughty.
ଢମାଲୀୟା ୨ । ନିଃସାର ଅଥଚ ବାହ୍ୟାଡ଼ମ୍ବର ଯୁକ୍ତ—
ଧମାଲିୟା, ଧମଂଡ଼ୀ 2. Showy but unsubstantial
ଢମାଳୁଣୀ } ସ୍ତ୍ରୀ
ଢମାଳେଇ }
ଭୋଲ ହୋଇ କରୁ ନ ଥାଏ ସ୍ୱର,
ସର ହୋଇ ଯେବେ ନ ଥାଏ ମାର ।
ଢମାଳିଆ ନାମ ଅଟେ ସେ ପୁର,
କହେ ବନାଇ ଏ କଥା ନିକର । ବନାଇଦାସଙ୍କ ପହଳ ।
୩ । ଆଡ଼ମ୍ବରପ୍ରିୟ—
3. Showy; fond of pomposity.
୪ । ବଚନସର୍ବସ୍ୱ—
4 Boasting, braggart, boastful.

**ଢମାଳୁଣୀ**—ଦେ. ବି. ସ୍ତ୍ରୀ—ଅପଦେବତା; ନୀଚଦେବୀ; ଅପୂଜ୍ୟ ଦେବତା-
Ḍhamāḻuṇi ବିଶେଷ—An inferior female Deity.
(ଢମାଳେଇ—ଅନ୍ୟରୂପ) ବିଣ— ଢମାଳିଆର ସ୍ତ୍ରୀଲିଙ୍ଗ—
The feminine of Ḍhamāḻiā.

**ଢମ୍ପା**—ଦେ. ବିଣ ( ସଂ. ଢକ୍ ଧାତୁ=ଲୁଚାଇବା )—ଆବୃତ—
Ḍhampā Covered
ଢାକା ढांका हुआ

**ଢମ୍ପା(ମ୍ଫେ)ଇବା**—ଦେ. କ୍ରି ( ଢକ୍ ଧାତୁ=ଲୁଚାଇବା )—
Ḍhampā(mphe)ibā ୧ । ଢାମ୍ପିବା କ୍ରିୟାର ଣିଜନ୍ତରୂପ—
ঢাকান 1. The causative form of 'Ḍhāmpibā.
ढाँकना ୨ । ଢାଙ୍କିବା; ଘୋଡ଼ାଇବା —
2. To cover.

**ଢଳ ଢଳ**—ଦେ. ବିଣ—୧ । ଲୋତକପୂର୍ଣ୍ଣ (ଆଖି)—
Ḍhaḻa ḍhaḻa 1. Brimming with tears (eye);
ঢলঢল tearful.
डबाडब ଯା ଶୁଣି ଦମୟନ୍ତୀ ନୟନକମଳ
ଲୋତକ କମଳରେ ହୋଇ ଢଳଢଳ—କୃଷ୍ଣସିଂହ ମହାଭାରତ ବନ ।
୨ । ଚଞ୍ଚଳ ଓ ଚଞ୍ଚଳ; ଈଷତ୍ କମ୍ପିତ; ଅସ୍ଥିର; ଅଟଳାଳତ
2. Tremulous; shaking.
ପଡଙ୍ଗ ଭବ ହୃଦ ଜଳ,
କମଳଦଳପର ଢଳଢଳ—ଭଞ୍ଜ ପ୍ରେମସୁଧାନିଧି ।
টলটল ୩ । ଟଳଟଳ; ଅଥୟ—
डगमग 3. Trembling; tottering.
୪ । ଝଲଝଲ; ଚକଚକ; ସ୍ନିଗ୍ଧ—
4. Glistening; glittering;
sparkling; graceful.
ତା ମଧ୍ୟେ ଢଳଢଳ ଲୁହ କମଳ—ମଧୁସୂଦନ ପଦ୍ମ ।

**ଢଳଢଳିଆ**—ଦେ ବିଣ—ଢଳଢଳ (ଦେଖ)
Ḍhaḻaḍhaḻiā Ḍhaḻaḍhaḻa (See).

**ଢଳନୟନା**—ଦେ. ବିଣ. ସ୍ତ୍ରୀ - ଲୋଲନୟନା—
Ḍhaḻanayanā Having tremulous eyes.
ଭୋଳାଇ ଭୋଳାଇ ଚନିପଡେ
ଢଳ ନୟନା ମୋ କୋଳ ପରେ । ଲକ୍ଷ୍ମୀକିଶୋର ମହାପାତ୍ର କାମଦୂତା. ଚଉତିଶା ।

**ଢଳ ହଳ**—ଦେ. ବିଣ— ଢଳଢଳ ( ଦେଖ )
Ḍhaḻa haḻa Ḍhaḻa ḍhaḻa (See).
କମଳଦଳେ ଢଳହଳ (୨) କାଳନ୍ଦୀଜଳ ପଗ ଡୋଳା ଢଳୁଛି ।
ଭଞ୍ଜ. ଲାବଣ୍ୟବତୀ ।

**ଢଳା**—ଦେ. ବି (ସଂ. ଢାଳ ଧାତୁ=ଗଳନ; ଦ୍ରାହ୍ ଧାତୁ=ନିକ୍ଷେପ)—
Ḍhaḻā ୧ । ଢଳି ପଡ଼ିବା—
1. Falling down, tumbling.
ঢালা, ঢলনে ୨ । ଢଳିବା; ଏକପାଖକୁ ସାମାନ୍ୟରେ
ढरनी, ढलवाँ ନଇଁ ପଡ଼ିବା—2. Leaning; inclining to one side.
୩ । ଢାଳିବା କର୍ମ—3. Act of pouring.
ଢଳାଢଳ ନୟନ ଢଳା ରସକୁ ମନ ବଳାଅ ରେ ।
କବିସୂର୍ଯ୍ୟ, ସଙ୍ଗୀତ ।
୪ । ( ଦୃଷ୍ଟିକୁ ) ବାଙ୍କ କରିବା—
4. Bending; ogling.
୫ । ଧାତୁ ଢାଳିବା ଛାଞ୍ଚ—5. Mould.
୬ । ଧାତୁକୁ ତରଳାଇ ଛାଞ୍ଚରେ ଢାଳିବା କର୍ମ—
6. Act of pouring molten metal into a mould.
ঢলা ବିଣ—୧ । ଢଳିଥିବା; ସାମାନ୍ୟରେ ଏକପାଖକୁ ଟଳିଥିବା—1. Slightly leaning to one side
ঢালা ୨ । ଅଉଟା ହୋଇ ଛାଞ୍ଚରେ ଢଳା ଯାଇଥିବା—
ढलाहुआ 2. Molten and cast into a mould.
୩ । ଅଉଟା ହୋଇ ଛାଞ୍ଚରେ ଢଳା ହୋଇଥିବା ଧାତୁ ଦ୍ୱାରା ପ୍ରସ୍ତୁତ—3 Made of molten metal cast in mould.
ଅମୃତ ହବରସେ ଢଳା
ବାଗ୍‌ଦେବୀ ବାଣୀ ବ୍ରହ୍ମକଳା—ମଧୁସୂଦନ, ସଙ୍ଗୀତମାଳା ।

ସାଧାରଣ ଲୋକେ ଅ୦ର ସ୍ଥଳରେ ସ୍ଵରର ୧ ଚନ୍ଦ୍ରର ଅକ୍ଷର ଓ ମାତ୍ରା ଏବଂ ୨ ଚନ୍ଦ୍ରର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚନ୍ଦ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳବ, ତେବେ ସେହି ଶବ୍ଦ ଖାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚନ୍ଦ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାର' ନ ମିଳିଲେ 'ଗାଈ' ଖୋଜିବେ, 'ବୃଅ' ନ ମିଳିଲେ 'କଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୪ । ପ୍ରଚୁରରୂପେ ଇଡ଼ା ହୋଇଥିବା—
4. Poured profusely.

୫ । ଅପାଙ୍ଗ ଦୃଷ୍ଟିଯୁକ୍ତ ( ନେତ୍ର )—
5. Ogling ( eye )

ଢଳା ନେତ୍ର କର ମୋ ସଙ୍ଗ ଲା—କବସୂର୍ଯ୍ୟ, ସଙ୍ଗୀତ ।

ପ୍ରାଦେ (ସିଂହଭୂମ) ବ—କ୍ଷୁଦ୍ର ଢାଳ; ସାମସେଇ; ଝର—
Very small water jug.

**ଢଳାଇ**—ଦେ. ବିଣ. ଓ ବ—୧ । ଢଳା (ଦେଖ)
Dhalai — 1. Dhala (See)
ঢালাই
୨ । ଧାତୁ ଆଦ ଢାଳିବା ମଜୁରି—
ढलाइ — 2. Wages paid for moulding a metal article.

**ଢଳା(ଳେ)ଇବା**—ଦେ. କ୍ରି—୧ । ଢାଳିବା କ୍ରିୟାର ଣିଜନ୍ତରୂପ—
Dhala(le)iba 1. The causative form of Dhaliba.
୨ । ଢଳିବାର ଉପାୟ କରିବା—
2. To cause to lean.
ढलाना; ढलवाना ୩ । ଢାଳିବାର ଉପାୟ କରିବା—
ঢালান — 3. To cause to be poured.

**ଢଳାଢଳ କରିବା**—ଦେ. କ୍ରି—ଇଡ଼ାଇଡ଼ କରିବା; ତରଳପଦାର୍ଥକୁ ଏକ ପାତ୍ରରୁ ଅନ୍ୟ ପାତ୍ରରେ ବା ସ୍ଥାନରେ ଇଡ଼ିବା—To pour out.
Dhaladhali karibā
ঢালাঢাল্ করা
ढलकाना

**ଢଳିତ**—ଦେ. ବିଣ (ସଂ. ଢଲ ଧାତୁ)—ଚଞ୍ଚଳ; କମ୍ପିତ—
Dhalita — Tremulous.

**ଢଳିପଡ଼ିବା**—ଦେ. କ୍ରି—(ସଂ. ଢଲ ଧାତୁ)—୧ । ଢଳ ପଡ଼ିବା—
Dhali pardibā — 1. To tumble down to the ground.
ঢলেপড়া
ढलपड़ना
ନାକ ନିଶ୍ଵାସରେ ପଡ଼ିଲେ ଢଳି—କବସୂର୍ଯ୍ୟ, ସଙ୍ଗୀତ ।

୨ । ମରିଯିବା—2. To die.
( ଯଥା—ଆପେ ଢଳି ପଡ଼ିଲେ ପୃଥିବୀ ଅନ୍ଧାର । )

୩ । ଆଉଜି ପଡ଼ିବା—3. To lean
ମୋର ଉରକୁ ସେ ଢଳିପଡ଼ିଲ—ଭଞ୍ଜ. ପ୍ରେମସୁଧାନିଧି ।

୪ । ମୁଗ୍ଧ ହେବା; ଲୁବ୍ଧ ହେବା; ମୋହଯୁକ୍ତ ହେବା—
ପଦ୍ମପତ୍ରର ପର ଅଛିଲ ନୟନ
ଗୁହିଁଲେ ଲକ୍ଷଣୀ ଢଳିପଡ଼ନ୍ତି ମୁନିଜନ ।
କୃଷ୍ଣସିଂହ. ମହାଭାରତ ବନ ।

୪ । ଭୂମିରେ ପଡ଼ିଯିବା—4. To reel down to the ground; to tumble down.

୫ । ( ଲକ୍ଷଣାର୍ଥ ) ସପକ୍ଷଭାବଲମ୍ବନ କରିବା; କୌଣସି ବ୍ୟକ୍ତି ପ୍ରତି ଅନୁକୂଳ ମତ ପୋଷଣ କରିବା—
5 To have a leaning or sympathy for a person or a party; to be partial to.
(ଯଥା—ହାକିମ୍ୱରପତି ମକଦମାର ଆରମ୍ଭରୁ ବାଦୀ ପକ୍ଷକୁ ଢଳିଛନ୍ତି)
[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ପଡ଼ିବା, ଯିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

**ଢଳେଇ**—ଦେ. ବି—୧ । ଛାଞ୍ଚରେ ଧାତୁ ଆଦ ଢାଳିବା କର୍ମ—
Dhalei — 1. Casting metal in mould.
ঢালাই
୨ । ଢଳାକାର୍ଯ୍ୟ କରିବାର ମୂଲ—
ढलाई, ढालाई — 2. The wages for casting metal.

**ଢାଇ**—ଦେ (ଧ୍ଵନ୍ୟନୁକରଣ) ଅ—୧ । ମୁଣ୍ଡକୁ ମୁଣ୍ଡ ଲଢ଼ାଇ—
Dhāi — 1. Butting of two goats or rams with each other; striking of two heads against each other.
ঠাঁই, ঢু
ठायँ

୨ । ଦୁଇଟି କଠିନ ବସ୍ତୁ ପରସ୍ପରକୁ ଆଘାତ କରିବାର ଶବ୍ଦ; ଠିଠି ଶବ୍ଦ—
2. Sound of two hard things striking forcibly against each other.

**ଢାଇ ଢାଇ**—ଦେ. ଅ—୧ । (ଶିଶୁରଞ୍ଜନ) (ଶିଶୁମାନଙ୍କୁ ବୟସ୍କମାନେ ହାତ ବା ମୁଣ୍ଡ ଦେଖାଇ ଗେଲରେ ମୁଣ୍ଡକୁ ଲଢ଼ାଇବାକୁ ଆହ୍ଵାନ କରିବାବେଳେ ବ୍ୟବହୃତ ଶବ୍ଦ; ମୁଣ୍ଡିଆ ମାରୁ—1. Words uttered by grown up persons inviting children to butt their heads against the head or palm of the inviter in jest.
Dhāi dhāi
ঢু ঢু
ठायँ, ठायँ

୨ । ଲଢ଼ୁଥିବା ମେଣ୍ଢା ଓ ଛେଳିଙ୍କୁ ଉତ୍ତେଜନା କରିବାର ଧ୍ଵନି—2. Words used to goad 2 goats or rams to butt each other's head.

୩ । (ବହୁବାର) ଢାଇ (ଦେଖ)—3. Dhāi (See).

**ଢାଇ ମାରିବା**—ଦେ. କ୍ରି—ଅନ୍ୟ କୌଣସି ବ୍ୟକ୍ତି ବା ଜୀବର ମୁଣ୍ଡରେ ମୁଣ୍ଡ ବାଡ଼େଇବା—To butt one's head against another's head.
Dhāi māribā
ঢু মারা
टक्कर मारना

**ଢାଉ**—ଦେ. ବ—୧ । ଢାଉ, ଗେରୁମାଟି; ଗୈରିକ—
Dhāu — 1. Red chalk; red ochre; ruddles red stone.
গিরমাটি, গিরি, গেরু
गेरु
୨ । (ସଂ. ଧବ) ଜଙ୍ଗଲୀ ବୃକ୍ଷ ବିଶେଷ; ଧଅଗଛ—
ধ — 2. Anogeissus Latifolia (tree)
धाव

**ଢଳିବା**—ଦେ. କ୍ରି ( ସଂ. ସ୍ଖଲ ଧାତୁ=ସ୍ଖଳନ; ସଂ. ଢଲ ଧାତୁ )—
Dhalibā ୧ । ଶ୍ଳଥ ହେବା—1 To become loose.
ঢলা
୨ । ଅଣେଇ ହେବା; ଆଉଜିବା ଏକପାଖକୁ ନଇଁବା—
ढुलना, ढलना 2. To incline; to lean to one side.
[ଢଳା(ଳେ)ଇବା—ଣିଜନ୍ତ] ଢୁଳାଇଗ ପବ ଢଳ ଗଲେ ପଇଯିବା ଭଳ ।
ବକସୂର୍ଯ୍ୟ. କଣୋଗଗଙ୍ଗ୍, ଗୀତ ।

୩ । ଦୋହୋଲିବା; ଟଳଟଳ ହେବା—
3. To reel; to totter.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଈ | ଊ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଇଓ | ଉଅ | ହ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ତ୍ୟ | ଇଅ | ୱ | ୍ୟ |

ଢାଉଆ—ଦେ ବଣ—ଢାଉ ରଙ୍ଗଯୁକ୍ତ; ଗେରୁଆ—
Ḍhāuā Ruddy; reddish; red-painted.
ଗେରুয়া, **गेरुआ**

ଢାଉଁ—ଦେ. ବ (ଧ୍ୱନ୍ୟନୁକରଣ, ଶିଶୁଭାଷା)—ଢୋଲବାଦ୍ୟ; ଦାମାମା—
Ḍhāuñ Drum.
[ ଦ୍ର—ଢୋଲ, ମୃଦଙ୍ଗ ଅବଦ ଆନଦ୍ଧ ବାଦ୍ୟଗଣର ସାଧାରଣ ନାମ ଢାଉଁ । ]
ধাঙ, ধাঙসা ଅ—ଢାଉଁ ଢାଉଁ ( ଦେଖ )
**धाहां, ढोल** Ḍhāuñ ḍhāuñ ( See )

ଢାଉଁ ଢାଉଁ—ଦେ. ଅ. ( ଧ୍ୱନ୍ୟନୁକରଣ )—
Ḍhāuñ ḍhāuñ ଢୋଲ ବାଦ୍ୟର ଶବ୍ଦ—
ধার্ড ধার্ড The sound of drums; tomtom.
**धायँधायँ, ढमढम** ଗ୍ରାଦେ. ( ଛତିଶିଆ ) ବ—ମାଙ୍କଡ଼—
Monkey.
( ଧ୍ୱନ୍ୟନୁକରଣ ) ଅ - ଢୋଲ (ଶିଶୁଭାଷା)—Drum.

ଢାଉକ—ଗ୍ରା. ବ—ଡାହୁକ ( ଦେଖ )
Ḍhāuka Ḍāhuka ( See )

ଢାଉ ରଙ୍ଗ—ଦେ. ବ—୧ । ଗଞ୍ଜପା ତାସର ନାଲି ରଙ୍ଗ—
Ḍhāu ranga 1. The red coloured cards of 'Gañjapā' game.
**धावा**
(ଢାଉରଙ୍ଗ—ଅନ୍ୟରୂପ) ୨ । ଫିକା ନାଲି ରଙ୍ଗ—
2 Light red colour.
୩ । ଏକ ପ୍ରକାର ବଡ଼ ଜଙ୍ଗଲି ଗଛ—
3. A kind of wild timber tree; Ulmus Entegrifolia; Heloptelea; Integrifolia ( Haines).
[ ଦ୍ର—ଏଥିରେ ଚକାଣ୍ଟ ଅବଦ ପତ୍ର ହୁଏ । କାଠ ଧୂସର ନାଲି । ଏହା ଲୁରୁମ ଜାତୀୟ ଗଛ । ]

ଢାକ—ଦେ. ବ. ( ସଂ. ଢକ୍କା )—
Ḍhāka ବୃହତ୍ ଢୋଲ—
ঢাক Big kettle drum.
**ढका**

ଢାକା—ଦେ. ବ. (ନାମ)—ପୂର୍ବବଙ୍ଗର ରାଜଧାନୀ—
Ḍhākā Dacca.
ঢাকা **ढाका**
(ଢାକ୍କା—ଅନ୍ୟରୂପ)

ଢାକା(କେ)ଇ—ଦେ. ବଣ—ଢାକାରେ ତିଆରି—
Ḍhākā(ke)i Manufactured in Dacca.
ঢাকাই **ढकइ**
(ଢକ୍କାଇ, ଢାକେଇ, ଢାକ୍କେଇ— ଅନ୍ୟରୂପ)

ଢାକରି—ଗ୍ରାଦେ. (ଗଞ୍ଜାମ) ବ—୧ । ଜଗୁଆଳ; ଜଗୁଆ—
Ḍhākari 1. Watchman.
୨ । ଯତ୍ନ—2. Care.

ଢାଗା—ଦେ. ବ. ( ସଂ. ଟଙ୍କନ )—
Ḍhāgā ଛୁଞ୍ଚରେ ସିଧା ସିଲେଇ, ଦୁଇଖଣ୍ଡିଆ କରି ଟାଙ୍କ ମାରି
ট াঁকা କରାଯିବା ସିଲେଇ—Single stitch.
**धागा**

ଢାଗା ଗଳା(ଳେ)ଇବା—ଦେ. କ୍ରି—ଖୁବ୍ ଦୂରଦୂରିଆ କରି ଢାଗା
Ḍhāgā gaḷā(ḷe)ibā ଦେଇ ସିଲେଇ କରିବା; ଛୁଞ୍ଚରେ
টাঁকা ଗୋଟିକିଆ ସିଲେଇ କରିବା—
**धागा मारना** To make a single stitch.
(ଢାଗା ମାରିବା, ଢାଗା ଦେବା—ଅନ୍ୟରୂପ)

ଢାଗୁଆ—ଗ୍ରାଦେ. ( ଯାଜପୁର ) ବ—ଅଟ୍ଟୁ ଘର—
Ḍhāguā A thatched house with an inner mud-covered roof.

ଢାଙ୍କିଢୁଙ୍କି—ଦେ. ବଣ. ( ସହଚର ଶବ୍ଦ )—
Ḍhāṅkiḍhuṅki ଭଲରୂପେ ଆବୃତ—
Well covered; well concealed.

ଢାଙ୍କିବା—ଦେ. କ୍ରି. ( ସଂ ଢୌକ୍ ଧାତୁ=ଆବରଣ; ଢକ୍ ଧାତୁ= ଲୁଗାଇବା )—୧ । ଢାଙ୍କିବା; ଆଚ୍ଛାଦନ କରିବା;
Ḍhāṅkibā
ঢাঁকা ଘୋଡ଼ାଇବା—1. To cover.
**ढाँकना, ढकना, ढाँपना** ଶରୀର କବଚେ ଢାଙ୍କଇ ।
ଭୂପତି. ପ୍ରେମପଞ୍ଚାମୃତ ।
୨ । ଲୁଗାଇବା—2. To conceal; to hide.
୩ । ଉପରେ ମାଡ଼ିଯିବା—3. To overspread.
୪ । ଆବୃତ କରିବା; ଓଢ଼ଣା ପକାଇବା—
4. To veil.
୫ । (ଆଖି ପତାକୁ) ଘୋଡ଼ାଇ ଦେବା; ମୁଦି ଦେବା, ବୁଜିବା-
5. To close ( the eye lids ).
ଢାଙ୍କି ପକ୍ଷ ଫେଡ଼ି ପୁଣି ରହୁ ଖେଳା । ବକସୂର୍ଯ୍ୟ, ସଙ୍ଗୀତ ।

ଢାଙ୍କୁଣି—ଦେ. ବ. ( ସଂ. ଢୌକ ଧାତୁ=ଆବରଣ )—
Ḍhāṅkuṇi ୧ । ଘୋଡ଼ଣି—1. A cover.
ঢাকনী ନୟନ ଭିତ୍ତରଗଲା ନଳିନ ଢାଙ୍କୁଣି ।
**ढकनी** ଗ୍ରାଚୀ. ରହସ୍ୟମଞ୍ଜରୀ ।
୨ । ଆବରଣ; ସରପୋଷ—2. A lid.

ଢାଙ୍କେନ—ଗ୍ରାଦେ. (ସମ୍ବଲପୁର) ବ—ଢାଙ୍କୁଣି ( ଦେଖ )
Ḍhāṅken Ḍhāṅkuṇi ( See )

ଢାଞ୍ଚା—ଦେ. ବ. ( ସଂ. ସ୍ଥା )—୧ । ନମୁନା—
Ḍhāñcha 1. Pattern.
টাঁচা ୨ । ଢଙ୍ଗ; କ୍ରମ; ସ୍ୱଭାବ; ଧରଣ—
**ढाँचा** 2. Manner; mode; style.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷାନୁସାରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଠ' ନ ମିଳିଲେ 'ଗାଣ୍ଠି' ଖୋଜିବେ; 'ଭୁଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଁ' ନ ପାଇଲେ 'ଅଙ୍ଗି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ।

୩ । ଚଳ; ଆଚରଣ; ଗୃହଚାଳନ—
3. Mien; behaviour; fashion.
୪ । ଆକୃତି—4. Appearance; shape.
୫ । ଠାଠ; କୌଣସି ବସ୍ତୁର ଗଢ଼ା ହେବା ପୂର୍ବରୁ ନିର୍ମିତ ସ୍ଥୂଳରୂପ—
5. Frame-work.
୬ । ଗଢ଼ଣ—6. Build; make.

ଢାପନି—ପ୍ରାଦେ. (ସମ୍ବଲପୁର) ବି (ଭୁଲ. ଏହି ଅର୍ଥରେ ଢପଣୀ)—
Ḍhāpni ଢାଙ୍କୁଣି; ଆବରଣ—Cover; lid.
(ଢାପନ୍—ଅନ୍ୟରୂପ)

ଢାପ—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି. ( ସଂ. ଢକ୍କା )—
Ḍhāpa ଢୋଲ—Drum.

ଢାପିବା—ପ୍ରାଦେ. (ସମ୍ବଲପୁର) କ୍ରି —ଢାଙ୍କିବା, ଘୋଡ଼ାଇବା—
Ḍhāpibā To cover with a lid.

ଢାବଲ୍—ଦେ. ବି.—ବେପାରୀମାନଙ୍କର ବାଣିଜ୍ୟ ବସ୍ତୁ (କିସ୍‌ମିସ୍; ଲଣ୍ଡନ
Ḍhābal ଆଦି) ଆସିବାପାଇଁ ପଟଳା ଦେବଦାରୁ ଆଦି ପଟାରେ
ବାକ୍ସ ତିଆରି ବଡ଼ ବଡ଼ କାଠର ବାକ୍ସ—Big boxes meant for packing merchandise in

ଢାବଲାହାଟିଆ—ପ୍ରାଦେ (ଯାଜପୁର) ବିଣ— ବ୍ୟୟଶୀଳ; ଅତିରିକ୍ତ
Ḍhābalāhātiā ଦାନଶୀଳ—Spendthrift

ଢାବା—ପ୍ରାଦେ· (ସିଂହଭୂମ) ବି.—ଅଟ୍ଟାଳୀଘର; ଦୋମହଲା ଖୁଲଘର—
Ḍhābā The clay roof of a double roofed thatched house.

ଢାବୁଆ— ପ୍ରାଦେ. (କେନ୍ଦୁଝର) ବି.— ପ୍ରାଚୀନ କାଳର ପ୍ରଚଳିତ ଓଜନ-
Ḍhābuā ବିଶେଷ—A standard of weight used in ancient times equal to 16 masas.
[ଦ୍ର—ଏହାର ପରିମାଣ ୧୬ ମସା ।]

ଢାମ—ଦେ ବି.—ଢମ (ଦେଖ)
Ḍhāma Ḍhama (See)

ଢାମଣ—ଦେ. ବି.— ଧାମଣ (ଦେଖ)
Ḍhāmaṇa Ḍhāmaṇa (See)

ଢାମଣା—ଦେ ବି.—୧ । ଧାମଣ (ଦେଖ)
Ḍhāmaṇā 1. Ḍhāmaṇa (See)
୨ । ଢମଣା (ଦେଖ)—2. Ḍhamaṇā (See)

ଢାମ୍ପ—ଦେ. ବି.—(ଆ. ଦଫ୍) ଅନଦ୍ଧ ବାଦ୍ୟବିଶେଷ; ଢେମ୍ପ—
Ḍhāmpa A kind of drum.
ଡଂଫ ଡଫ
(ଢାମ୍ଫ—ଅନ୍ୟରୂପ)

ଢାମ୍ପିବା—ଦେ. କ୍ରି. (ସଂ. ପିଧାନ Beams)—ଢାଙ୍କିବା (ଦେଖ)
Ḍhāmpibā Ḍhāṅkibā (See)

ଢାଲ—ସଂ. ବି.— ଶତ୍ରୁର ଅସ୍ତ୍ରାଘାତରୁ ରକ୍ଷା ପାଇବା ନିମନ୍ତେ ଦୁର୍ଭେଦ୍ୟ
Ḍhāḷa ଚର୍ମନିର୍ମିତ ଦେହରକ୍ଷକ ଫଳକ; ଢାଲ—Shield·
ଢାଳ ପୃଥୁଳ ବିଶାଳ ରୁଚି ହରିଚାଳ ସୁସଜ୍ଜିତ ଚାଳତ୍ରୟମାନେ ।
କବିସୂର୍ଯ୍ୟ ;ସଙ୍ଗୀତ ।

ଦେ. ବି.—୧ । ଧାତୁନିର୍ମିତ ଛୋଟ ଜଳପାତ୍ର ବା ଘଟି; ଲୋଟା--
ଘଟି 1. Narrow mouthed metal water pot;
ଲୋଟା ଲୋହିୟା small jug.
ଢାଳା ୨ । ଅଜାଡ଼ିବା କର୍ମ—
ଢାଳା 2. Act of pouring.
୩ । ଛାଉଣୀ—3. Thatching.
୪ । ଏକ ଧାତୁମୟ ପାତ୍ର ଉପରେ ଅନ୍ୟ ଧାତୁମୟ ଦ୍ରବ୍ୟକୁ ଢାଳିବା କ୍ରିୟା; ପୁଟ—4. Laying a thin layer over some metal article.
ପ୍ରାଦେ. (ବାଲେଶ୍ୱର ପ୍ରାନ୍ତ)—ଚେଲାଭୂଣୀ—
A concave earthen pan.

ଢାଲ—ସଂ. ବି.—ଢାଳ (ଦେଖ)
Ḍhāla Ḍhāḷa (See)
ତୁମ୍ଭ ଯୋଗ୍ୟ ଢାଲ ସିନା ଢକ୍କାର, ଲୋକେ ।
ରାଧାନାଥ, ମହାଯାତ୍ରା ।
ପ୍ରାଦେ. (ଗଡ଼ଜାତ) ବି.— ମୟୂରର ବ୍ୟଜନାକୃତି ପକ୍ଷ—
Peacock's feather.

ଢାଳଦେବା—ଦେ. କ୍ରି —ଧାତୁ ନିର୍ମିତ ବସ୍ତୁରେ ଅନ୍ୟ ଧାତୁର ଦ୍ରାବକର
Ḍhāḷa debā ଲେପ ଦେବା—To overlay a thin layer
ଜଲ୍ ଦେଓଆ of molten metal over an article of
ଫଲାନା another metal.

ଢାଳା—ପ୍ରାଦେ. (ଗଞ୍ଜାମ) ବି.—ଆଶା; ଭରସା—
Ḍhāḷā Hope.

ଢାଳିଆ—ଦେ. ବିଣ.—୧ । ବିସ୍ତୃତ—
Ḍhāḷiā 1. Extended.
ଦେ. ବି.—ଢମା—2. An impervious bamboo basket.

ଢାଳିବା—ଦେ. କ୍ରି. (ସଂ. ଢ୍ୱାଲ ଧାତୁ=ଖଳନ)—୧ । କୌଣସି
Ḍhāḷibā ତରଳ ପଦାର୍ଥକୁ ପାତ୍ରାଦିରୁ ଉପରୁ ତଳକୁ ପକାଇବା;
ଢାଳା ଅଜାଡ଼ିବା; ଗଡ଼ିବା— 1. To pour out; to spill.
ढालना, ढारना, ढरकाना ढलकाना
ଢାଳେ କି ଢାଳନ୍ତି ନାହିଁ କୃପା-ସୁଧାଝରକ ।
କବିସୂର୍ଯ୍ୟ, କଳୋସବଟୀ, ୨ ଗୀତ ।
[ଦ୍ର—କୌଣସି ତରଳ ପଦାର୍ଥ ଥିବା ପାତ୍ରର ମୁହଁ ପାଖକୁ ଅଣାଇ ଦେଇ ବା ଲେଉଟାଇ ପାତ୍ରରେ ଥିବା ତରଳ ପଦାର୍ଥକୁ ଢାଳିବାକୁ ହୁଏ । ବେଶି ପରିମାଣରେ ଢାଳିବାକୁ ଅଜାଡ଼ିବା କହନ୍ତି ।]
ढोलाना ୨ । ଧାତୁ ଇତ୍ୟାଦିକୁ ତରଳ କରି ଛାଞ୍ଚରେ ଦେବା—
2. To pour molten metal into a mould; to cast in a mould.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ, ଋୃ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ, ଷ | କ୍ଷ | ଇସ୍ତ | ଡ୍ଥ | ଞ |
| ୨ | ଈ | ଊ | ୠ | ୡ | ଐ | ଅହାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ପ | ସ | ଗଁ୍ୟ | ଇଅ | ଜ୍ଞ | ନ୍ଦ |

୩ । (ସଂ. ଢୁଲ୍ ଧାତୁ) ଚାମର ଆଦି ଇତସ୍ତତଃ ଚାଳନ କରିବା- 3. To wave a chowrie (or fan).

ଫୁଲ ଛତ ଫୁଲ ଅଲଙ୍କ ଚାମର ଫୁରୁଣାରେ ଧରି କରେ,
ବେନି ପାଶରେ ମନ୍ଦେ ମନ୍ଦେ ଢାଳନ୍ତି କ କହୁନ ବଚନରେ ।
ଦୀନକୃଷ୍ଣ. ଜଗମୋହନ ।

୪ । ବର୍ଷାକାଳ ପ୍ରଚୁର ପରିମାଣରେ ବର୍ଷା— 4. To rain cats and dogs; to rain incessantly.

(ଯଥା—ମେଘ ପହରେ ଦେଲା ଢାଳୁଛି ।)

୫ । ଅଜସ୍ର ଅର୍ଥ ବ୍ୟୟ କରିବା— 5. To spend money like water.

(ଯଥା—ସେ ଏହି ମକଦମାରେ ଟଙ୍କା ଢାଳିଦେଲା ।)

୬ । ଅଜସ୍ର ଅଜାଡ଼ିବା—6. To pour out profusely.

(ଯଥା—ମୋ ପତ୍ରରେ ଖିରିପିଠା ଢାଳି ଦେଇଗଲେ ।)

୭ । (ଢାଳିବାର ଲୌକିକ ରୂପ) (ଅପାଙ୍ଗ; ଦୃଷ୍ଟି) କୌଣସି ପାଖକୁ ବୁଲାଇବା—7. To cast (a look or glance) to one side.

ଚଞ୍ଚଳ ନୟନ ଦେ ଥରେ ଢାଳି । କବିସୂର୍ଯ୍ୟ ସଙ୍ଗୀତ ।

୮ । (ମୁହଁ) ତଳକୁ କରିବା— 8. To lower (the face)

କ କରି ଅନାଏ ବଦନ ଢାଳି । ଭଞ୍ଜ. ସୁବର୍ଣ୍ଣରେଖା ।

୯ । (ପ୍ରାଣ) ସମର୍ପଣ କରିବା; ଉତ୍ସର୍ଗ କରିବା; ଅକାତରରେ ଅର୍ପଣ କରିବା—9. To surender or offer unconditionally.

ସରିଚ୍ଛଦରୂପେ ସୈନ୍ୟ ନେଇ ସଙ୍ଗେ
ଅଙ୍ଗ ଢାଳିଥିଲେ ଯେ ରଣ-ତରଙ୍ଗେ । ରାଧାନାଥ. ଦରବାର ।

[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ପକାଇବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

ଢାଳିଯିବା—ଦେ. କ୍ରି—୧ । ଢାଳିବା କ୍ରିୟାର କର୍ମବାଚ୍ୟ ରୂପ ଅଜାଡ଼ି
Ḍhā̱lijibā ହେବା—1. To be poured out; to be spilt.

ଢାଳିହୋଇଯିବା } ଅନ୍ୟରୂପ
ଢାଳିହେବା }

୨ । ମନକୁ ଉଛୁଳିଯିବା— 2. To be spilt out of its own accord.

(ଯଥା—କାଳସିଭି ଅସମତଳ ଭୂମିରେ ରଖାଯିବାରୁ କାଳିସାକ ଢାଳିଗଲା ।)

ଢାଳି ହେବା—ଦେ. କ୍ରି—ନିଜ ଉପରେ ନିଜେ ପାଣି ଢାଳି ଗାଧୋଇବା—
Ḍhā̱li hebā To pour water on one's head or other limb for bathing.

୨ । ଢାଳିଯିବା (ଦେଖ)—Ḍhā̱lijibā (See)

ଢାଳି ହୋଇଯିବା—ଦେ. କ୍ରି—ତରଳ ବସ୍ତୁ ପାତ୍ରରୁ ଅଜାଡ଼ି ହୋଇଯିବା
Ḍhā̱li hoijibā ପାଣି ଆଦି ପାତ୍ରରୁ ବୋହିଯିବା—
ढेलेयाओआ To flow away from a pot; to be
**ढलकना, ढलना** spilt.

ଢାଲି—ଦେ. ବିଣ—ଢାଲଧାରୀ; ଢାଲ ପିନ୍ଧିଥିବା—
Ḍhālī Armed with a shield; wearing a
ढालकी shield.

ଢାଲୁ—ଦେ. ବିଣ. (ସଂ. ଢାଳ ଧାତୁ=ଚାଳନ; ସଂ. ଧାର)—
Ḍhālu ଗଡ଼ାଣିଆ; କ୍ରମନିମ୍ନ; ପାହାଚିଆ—
ढालू Sloping; inclined; slanting.
**ढार, ढाल** ବି—ଗଡ଼ାଣି; ଗଡ଼ାଣିଆ ଜାଗା; କ୍ରମନିମ୍ନତା— Inclination; slope.

ଢାଲୁଆ—ଦେ. ବିଣ—ଢାଲୁ (ଦେଖ)
Ḍhāluā Ḍhālu (See)

ଢାଲୁଆ ମୟୂର—ପ୍ରାଦେ. (ଗଡ଼ଜାତ) ବି—ଅଣ୍ଡିରା ମୟୂର, ଯେଉଁ
Ḍhāluā mayūra ମୟୂର ପଛଆଡ଼େ ଢାଲ ବା ପଙ୍ଖା ପରି ପକ୍ଷ ଥାଏ—A male peacock; a peacock whose tail feather is spread like a fan or shield.

ଢାଲୁ କାଟିବା—ଦେ. କ୍ରି—କୌଣସି ସ୍ଥାନକୁ କାଟି କ୍ରମନିମ୍ନ କରିବା—
Ḍhālu kāṭibā To cut a place into a
ढालुकरा slope.
**ढालुकाटना**

ଢାଲୁ ଗଡ଼ା(ଡ଼େ)ଇବା—ଦେ. କ୍ରି—ଢାଲୁ କାଟିବା (ଦେଖ)
Ḍhālu garḍā(rḍe)ibā Ḍhālu kāṭibā (See)

ଢାଳେ—ଦେ. (ପଦ୍ୟ) କ୍ରି. ବିଣ—୧ । (ଥରେ ମୁଣ୍ଡ ଢାଳିବାକୁ ଯେତେ
Ḍhā̱le ସମୟ ଲାଗେ, ସେତିକି ସମୟରେ); କ୍ଷଣକରେ; ଏକ ପିଛୁଡ଼ାରେ—1. In the twinkling of the eye; in a moment; in a trice.

ଢାଳେ ପ୍ରଶମ୍ୟ ବୃଷ୍ଟି କଲା ଶୋଭଙ୍ଗୀ । ଗୋଲକ. ଇନ୍ଦୁରେଖା ।

୨ । ଅନାୟାସେ; ଅକ୍ଲେଶରେ; ସହଜରେ—2. Easily

ଢାଳେ ଅସୁର ଗଣ ନାଶ । ବଳରାମଦାସ. କମଳଲୋଚନ ଚଉତିଶା ।

୩ । ନିଶ୍ଚୟରେ—3. Certainly.

ଢାଳେ କରୁର ଢାଳେ କରୁର ଦର୍ଶନ ନେତ୍ର କରେ ।
ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

୪ । ଥରେମାତ୍ର; ବାରେ—4 Only once.

ଢାଳେ ତ ଢାଳିଲୁ ନାହିଁ କୃପା ସୁଧାଝର କି ରେ ।
କବିସୂର୍ଯ୍ୟ. କଶୋଯାଣ୍ଡୁ ତ ଗୀତ ।

୫ । ଟିକିଏ ମାତ୍ର; ଢିଲେ—5. A little.

୬ । ଦୃଷ୍ଟିମାତ୍ରକେ; କଟାକ୍ଷମାତ୍ରରେ—6. At a glance.

एकघटि ବିଣ—ଏକ ଢାଳ ବା ଘଟପରିମିତ—
**एकलोटा** A small metal jug of (water).

(ଯଥା—ଢାଳେ ପାଣି ।)

ଢି—ଦେ. (ଧ୍ୱନ୍ୟନୁକରଣ) ଅ—ଢି ଢା (ଦେଖ)
Ḍhi Ḍhi ḍhā (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚକ୍ରଭୁକ୍ତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରଭୁକ୍ତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରଭୁକ୍ତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ପୁସ୍ତକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚକ୍ରଭୁକ୍ତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଭୂଅଁ' ନ ମିଳିଲେ 'ଭୂଅଁ' ଦେଖିବେ; 'ବନ୍ଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍ଗୀ' କୁ ପାଇଲେ 'ଅଙ୍ଗି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଢିଇମାଥା**—ପ୍ରାଦେ. (ଗଡ଼ଜାତ) ଅ—ଯେଉଁ ପକ୍ଷ ଖେଳରେ ଜିତେ, Ḍhiimāthā ସେ ପକ୍ଷର ହାରିବା ପକ୍ଷକୁ ଲକ୍ଷ୍ୟ କରି ବ୍ୟଙ୍ଗରେ (ଢିଇମାଇ—ଅନ୍ୟରୂପ) ବୋଲିବା ଆପଣାର ଜୟସୂଚକ ପଦ—Exclamation uttered by a winning party in a game

**ଢିଁଢିଁ**—ଦେ. (ଧ୍ୱନ୍ୟନୁକରଣ) ଅ—ଅଧୋବାୟୁର ଶବ୍ଦ— Ḍhiṅḍhiṅ Sound of passing wind.
ଟିଁଟିଁ [ ଦ୍ର—ଏହା ଢିଁଢିଁ ଅପେକ୍ଷା ଅନୁଚ୍ଚ ଶବ୍ଦ । ]

**ଢିକା**—ଗ୍ରା. ବି. ( ସଂ. ଧୃକ୍ଷ, ଧୃକ୍ଷ ଧାତୁ=କ୍ଳେଶନ )—କ୍ଷଣକେ ବନ୍ଦ Ḍhikā ହୋଇ ପରକ୍ଷଣରେ ତୀବ୍ରଭାବରେ ଅନୁଭୂତ ବେଦନା—ବ୍ୟଥା Throbbing pain
**टीस** (ଯଥା—ମୋ ଅଣ୍ଟାରୁ ଢିକା ଉଠୁଛି ।)

**ଢିକାଘେନିବା**—ଦେ. କ୍ରି—ଅଙ୍ଗ ପିଠି ଘୋଳା ହେବା— Ḍhikāghenibā Throbbing pain in the limbs.
ବ୍ୟଥାକରା ଥୋଇବାରେ ତାହା କର ମୋ ନଥାଇଲା
**टीसमारना** ଅଣ୍ଟାଠାରୁ ଢିକା ଯେ ପିଠିକ ସେନଲା ।
ଢିକାଉଠିବା } ଢିକାମାରିବା } କୃଷ୍ଣସିଂହ, ମହାଭାରତ ସଭା ।

**ଢିଙ୍କି**—ଦେ. ବି. (ସଂ. ଢେଙ୍କ=ବକ ଜାତୀୟ ପକ୍ଷୀ, ବଡ଼ିଆକାଙ୍କ, ଏହାର Ḍhiṅki ଆକୃତି ବଡ଼ିଆକାଙ୍କର ବେକ ସହିତ ଥଣ୍ଟର ଆକୃତି ପରି ଢେଙ୍କୀ ଥିବାରୁ ସଂ. ଢୌକ୍ଟ ଧାତୁ=ଆଘାତ) ଧାନ ଆଦି କୁଟିବା **धनकुट्टी ढेंकली, ढेंकी** ପାଇଁ ବ୍ୟବହୃତ ପାଦ ଚାଳିତ ସ୍ଥୂଳ ଗୋଲ କାଷ୍ଠଯନ୍ତ୍ରବିଶେଷ—A husking pedal block with lever arrangements; Ḍhenki
ଢିଙ୍କି ସ୍ୱର୍ଗକୁ ଗଲେ ବି ଧାନକୁଟା ;ଗଣ୍ଡିବ—ପ୍ରବଚନ ।
[ ଦ୍ର—ଏହା ଲମ୍ବରେ ୪।୫ ହାତ ଓ ଏଥିର ବ୍ୟାସ ଏକ ଫୁଟ । ଏହାର ମୁଣ୍ଡ ପାଖରେ ଗୋଟିଏ ପାହାର ଓ ଅଣ୍ଟାରେ ଗୋଟିଏ ପକ୍ଷ ଲାଗିଥାଏ । ଉଦୂଖଳ ମୁଷଳକୁ ପାଶ୍ଚାତ୍ୟମାନେ ଯନ୍ତ୍ର କହନ୍ତି । ବୈଦିକ କାଳରେ ( ଅଦ୍ୟାବଧି ମଧ୍ୟ ଦକ୍ଷିଣ ଓ ପଶ୍ଚିମରେ ) ଧାନ କୁଟିବା ନିମନ୍ତେ ଉଦୂଖଳ (କାଠରେ ନିର୍ମିତ ଗୋଟିଏ ବଡ଼ ପାତ୍ର ) ଏବଂ ମୁଷଳ (୬।୭ ଫୁଟ ଉଚ୍ଚ କାଠର ଗୋଟିଏ ଠେଙ୍ଗା) Pestle and mortar ) ବ୍ୟବହାର କରାଯାଉଥିଲା । ବଙ୍ଗ ଓ ଓଡ଼ିଶାରେ ଢିଙ୍କି ପ୍ରାଚୀନ ଉଦୂଖଳ ମୁଷଳର କାର୍ଯ୍ୟ କରୁଅଛି । ଉଦୂଖଳରେ ଧାନ ଆଦି ଶସ୍ୟକୁ ଭରିଦି କରି ମନୁଷ୍ୟ ଠିଆ ହୋଇ ମୁଷଳକୁ ଦୁଇ ହାତରେ ଉଠାଇ ପକାଇ ଧାନ କୁଟେ । ଢିଙ୍କିକୁ ମନୁଷ୍ୟ ଗୋଡ଼ ଦ୍ୱାରା ଚଳାଇ ଧାନ କୁଟେ । ଉଦୂଖଳ ମୁଷଳରେ ଜଣେ ଲୋକ ଧାନ କୁଟି ପାରେ, କିନ୍ତୁ ଢିଙ୍କିରେ ଅନ୍ତତଃ ଜଣେ କୁଟିବା ପାଇଁ ଓ ଜଣେ ଖୁଣ୍ଟାଇବା ପାଇଁ ଏପରି ଦୁଇ ଜଣ ଦରକାର । ଶ୍ରମାପନୋଦନାର୍ଥ ଢିଙ୍କି କୁଟାଳମାନେ ଗୀତ ବୋଲନ୍ତି । ଢିଙ୍କିଦ୍ୱାରା ଧାନ କୁଟି ଚାଉଳ କରାଯାଏ । ଚାଉଳ, ଚୁଡ଼ା ଆଦି କୁଟି ଚୂନା କରାଯାଏ ଏବଂ ଧାନକୁ କୁଟି ଚୁଡ଼ା ମଧ୍ୟ କରାଯାଏ । ଧାନକୁଟା ଢିଙ୍କି ଅପେକ୍ଷା ଚୁଡ଼ା କୁଟା ଢିଙ୍କି ଛୋଟ ଓ ହାଲୁକା । ଉଦୂଖଳ ମୁଷଳ ଅପେକ୍ଷା ଢିଙ୍କିଦ୍ୱାରା ବେଶି ପରିମାଣରେ ଓ ଶୀଘ୍ର ଧାନ କୁଟି ହୁଏ । ଢିଙ୍କି ନାରଦଙ୍କ ଯାନ ବୋଲି ଲୌକିକ ବିଶ୍ୱାସ । ]

**ଢିଙ୍କିଆ**—ଦେ. ବି (ସଂ. ଢେଙ୍କ=ବଡ଼ିଆକାଙ୍କ ବା ବଗ; ଏହାର ଗଢ଼ଣ Ḍhiṅkiā ବଡ଼ିଆକାଙ୍କ ପରି ହୋଇଥିବାରୁ)—
ଫିରିକି ୧ । କବାଟ ଓ ଝରକାକୁ ବନ୍ଦ କରିବା ପାଇଁ ବ୍ୟବହୃତ **टेंगुर, डेली, छोगना, ढंगर** ଢିଙ୍କି ଆକୃତିବିଶିଷ୍ଟ କୁଳୁପ; ଛିଟକିଣୀ—1. A hook or trigger-like contrivance for fastening doors and windows.
**ढिंगर** ୨ । ଦୁଷ୍ଟ ଗୋରୁଙ୍କ ବେକରେ ଓହଳାଯିବା ଗୋଟିଏ କାଠଖଣ୍ଡ—2 A clog attached to the neck of wild or restless cattle to impede their motion.
[ଦ୍ର—ଏହା ବେକରେ ବନ୍ଧା ହେଲେ ଗୋରୁ ତାହାଁର ଭାର ଦ୍ୱାରା ଆକ୍ରାନ୍ତ ହୋଇ ଦଉଡ଼ିପାରେ ନାହିଁ । ]
୩ । ଢିପିଢିପା ୨ ( ଦେଖ ) 3. Ḍhipiḍhipā 2 ( See ).
ବିଣ—୧ । ଢିଙ୍କି ଆକୃତିବିଶିଷ୍ଟ— 1. Like a 'Ḍhiṅki.
୨ । ଲମ୍ବ—2. Long; large.
ପ୍ରାଦେ (ଗଡ଼ଜାତ) ବି—( ଏମାନଙ୍କ ଆଗପାଖ ଢିଙ୍କି ପରି ନିମ୍ନ ଥିବାରୁ )—ହେଣ୍ଟା—Hyena.

**ଢିଙ୍କିଆ କୁମ୍ଭୀର**—ଦେ. ବି—ଢିଙ୍କି ଆକୃତିବିଶିଷ୍ଟ ଦୀର୍ଘାକାର କୁମ୍ଭୀର— Ḍhiṅkiā kimbhira A big alligator compared to a ( ଢିଙ୍କିଆ କୁମ୍ଭୀର—ଅନ୍ୟରୂପ ) dhiṅki in length and girth.

**ଢିଙ୍କିଆ ଦଳ**—ଦେ. ବି—ଏକପ୍ରକାର ଜଳଜ ଲତା— Ḍhiṅkiādaḷa A species af Nephrolipis ( a very thick aquatic fern like the English Braken); Crinum defiaxum crinum Asiaticum.
[ ଦ୍ର—ଏହାର ନାଡ଼ ବହୁ ଦୂରକୁ ସୁଅ ନ ଥିବା ପାଣି ଉପରେ ମାଡ଼େ ଓ ସେଥିରୁ ଗୋଟିଏ ଲେଖାଏଁ ୨ ଠାରୁ ୩ ଇଞ୍ଚ ପର୍ଯ୍ୟନ୍ତ ଲମ୍ବ ପକ୍ଷାକୃତି ଡାଳ ବାହାରଥାଏ । ]

**ଢିଙ୍କିଆ ବାଘ**—ପ୍ରାଦେ. (ଗଡ଼ଜାତ) ବି—ହେଣ୍ଟାବାଘ— Ḍhiṅkiā bāgha Hyena.
[ ଦ୍ର—ଏମାନଙ୍କ ଅଗ ପାଖ ଢିଙ୍କିପରି ନିମ୍ନ ଅଟେ । ]

**ଢିଙ୍କିଆ ବାତ**—ଦେ. ବି—ଏକ ପ୍ରକାର ବାତ, ଯାହା ଆକ୍ରମଣରେ ରୋଗୀ Ḍhiṅkiā bāta ସର୍ବଦା ଭୂମିରେ ଲମ୍ବ ହୋଇ ପଡ଼ି ରହେ—

**ଢିଙ୍କିଆ ଲାଉ**—ଦେ. ବି—ଏକଜାତୀୟ ଲମ୍ବ ଓ ବଡ଼ ଲାଉ— Ḍhiṅkiā lāu A kind of bottle gourd (large and long); lagenaria vulgaris.
ବଡ଼ଲାଉ
**लम्बाघिया** ଢିଙ୍କିଆ ଲାଉ, ଟେକଟାକ ଦେଲେ ପାଗାକୁ ଯାଉ । ଢଗ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଘ | ଡ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇତ୍ୟ | ନ୍ଥ | ଢ |
| ୨ | ଘ | ଡ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ଞ୍ଜ | ନ୍ |

[ ଦ୍ର—ଏ ଲଗା ଥରେ ପିଢ଼ାରେ ମାଡ଼ିଲେ ଢେର୍ ଫଳେ । ପାକଲ ଲୋକର ମୁଣ୍ଡ ପାଖକୁ କାଟି ଦେବାର ଯୋଗୀମାନେ ଥାଳ କରନ୍ତି ଓ ସୀତାଙ୍କର ହାଣ୍ଡି ହୁଏ । ଢିଙ୍କିଆ ଲୋକ ଗଛକୁ ନିର୍ଲଜ୍ଜ ବ୍ୟକ୍ତି ସଙ୍ଗେ ଠଗରେ ଇତର ଲୋକେ ତୁଳନା କରିଥାନ୍ତି । ଏଥିପାଇଁ ନିର୍ଲଜ୍ଜ ବ୍ୟକ୍ତିଙ୍କୁ ଲକ୍ଷ କରି ଉକ୍ତ ଠଗ ବୋଲି ଯାଇଥାଏ । ]

ଢିଙ୍କି ଓଷା—ଦେ. ବି—ଭାଲୁକୁଣୀ ଓଷା; ଖୁଦୁରୁକୁଣୀ ଓଷା, ଭାଦ୍ର
Ḍhiṅki oshā ମାସରେ ପ୍ରତି ରବିବାର ଦିନ ଅବିବାହିତା ଖଣ୍ଡାଏତ, କରଣ ଓ ଅନ୍ୟ ଶୂଦ୍ରକନ୍ୟାମାନେ ଢିଙ୍କିକୁ ପୂଜା କରିବା ଓଷା—A festival observed by unmarried Śūdra girls on the Sundays of the month of Bhādra.

ଢିଙ୍କିକୁଟା—ଦେ ବି— ଢିଙ୍କିରେ କୁଟିବା କ୍ରିୟା—
Ḍhiṅkikuṭā Husking and pounding operations.
ঢেংককুটা
ढेंकिकुटा ଦେ. ବିଣ.—ଯାହା ଢିଙ୍କିରେ କୁଟା ହୋଇଥାଏ—
Pounded with the Ḍhenki.

ଢିଙ୍କିକୁଟା ପାଣିବୁହା—ଦେ. ବି ( ଲକ୍ଷଣାର୍ଥ )—ଏକ ସମୟରେ ଜଣେ
Ḍhiṅkikuṭā pāṇibuhā ମନୁଷ୍ୟ ଉପରେ ଅନେକଗୁଡ଼ିଏ କାର୍ଯ୍ୟର ଭାର ପଡ଼ିଥିବାର ଅବସ୍ଥା—The state of a person having to perform many things at a time.

( ଯଥା—ତାକୁ ଢିଙ୍କିକୁଟା ପାଣିବୁହା ଲାଗିଛି । )

[ଦ୍ର—ଘରେ କେହି ସାହାଯ୍ୟକାରୀ ନ ଥିଲେ ଘରର ବୋହୂ ଧାନ କୁଟିବା କାର୍ଯ୍ୟ ଓ ରୋଷେଇ ପାଇଁ କୂଅରୁ ବା ଗଡ଼ିଆରୁ ପାଣି ବୋହିବା କାର୍ଯ୍ୟ ଏପରି ଉଭୟ କାର୍ଯ୍ୟ କରିବାକୁ ବ୍ୟସ୍ତ ହୋଇ ପଡ଼େ । ଏହି ଅର୍ଥରୁ ଲକ୍ଷଣାର୍ଥର ସୃଷ୍ଟି । ]

ଢିଙ୍କି କୁଟାଳୀ—ଦେ. ବି. ପୁଂ. ଓ ସ୍ତ୍ରୀ—ଯେଉଁମାନେ ଢିଙ୍କିରେ
Ḍhiṅki kuṭāḷi କୁଟିବା କାର୍ଯ୍ୟ କରନ୍ତି—
ঢেংকিকোটা Plying the 'Ḍhiṅki'.
ढिंकि कुटनेवाला

ଢିଙ୍କି କୁଟିବା—ଦେ. କ୍ରି—ଗୋଡ଼ ସାହାଯ୍ୟରେ ଢିଙ୍କିକୁ ଦଣ୍ଡି ତଳରୁ
Ḍhiṅki kuṭibā ଉପରକୁ ଉଠାଇ ପୁଣି ସେଥିରେ ପକାଇବା—
ঢেঙ্কিকুটা, ভানা To set a 'Ḍheṅki' going with the foot.
ढेंकि कुटना

[ ଦ୍ର—ଜଣେ ବା ଦୁଇ ଜଣ ଲୋକ ଢିଙ୍କିଲାଞ୍ଜି ପାଖରେ ଠିଆ ହୋଇ ଗୋଟିଏ ପାଦ ତଳେ ରଖି ଆଉ ଗୋଟିଏ ପାଦ ଲାଞ୍ଜି ଉପରେ ରଖି ପାଦର ଭରଦ୍ୱାରା ଲାଞ୍ଜିକୁ ତଳ ଆଡ଼କୁ ମାଡ଼ିଲେ ଢିଙ୍କିର ମୁଣ୍ଡରେ ଥିବା ମୁଷଳ ଉପରକୁ ଉଠିଯାଏ ଓ ପାଦକୁ ଛାଡ଼ିଦେଲେ ଢିଙ୍କି ଦଣ୍ଡି ଗାତରେ ମୁଷଳଟି ଦୁଲ୍‌କିନା ପଡ଼ିଯାଏ । ଏହିପରି ଉପର୍ଯ୍ୟୁପରି ପାଦଭର ଦ୍ୱାରା ମୁଷଳକୁ ଉଠାଇବା ଓ ପକାଇବାକୁ କୁଟିବା ବୋଲାଯାଏ । ଢିଙ୍କି କୁଟାଳୀମାନେ ଗୋଟିଏ ଗୋଡରେ ତଳେ ଠିଆ ହୋଇ ଅନ୍ୟ ଗୋଡରେ ଢିଙ୍କି କୁଟିବା ଯୋଗୁଁ ସେମାନଙ୍କର କୌଣସି ଆଶ୍ରୟ ବା ଭରା ଲୋଡ଼ା ହୁଏ । ଏଥିପାଇଁ ଘରର ଓହଳ ଥିବା ଖଣ୍ଡେ ଦଉଡ଼ିକୁ ଧରି କିମ୍ବା ଢିଙ୍କିର ପକ୍ଷୀ ଥିବା ସ୍ଥାନର ଦୁଇପାଖରେ ଦୁଇଖଣ୍ଡ ବଡ଼ ଖୁଣ୍ଟ ପୋତାଯାଇ ମନୁଷ୍ୟର ଛାତି ଉଚ୍ଚରେ ଖଣ୍ଡେ ଆଡ଼ ଧାରଣା ପଡ଼ିଥାଏ । ସେହି ଅଡ଼ ଧାରଣାକୁ ଆଶ୍ରା କରି କୁଟାଳୀ ଧାନ କୁଟନ୍ତି ।

ଧାନର ଚାଉଳ ବାହାର କରିବାକୁ ହେଲେ ଢିଙ୍କିକୁ ଆସ୍ତେ ଆସ୍ତେ କୁଟିବାକୁ ହୁଏ । ଚାଉଳ ଆଦିକୁ ଗୁଣ୍ଡା କରିବାକୁ ହେଲେ ଢିଙ୍କିକୁ ଦୁମ୍ ଦୁମ୍ କରି କୁଟିବାକୁ ହୁଏ । ବଗଡ଼ା ମୁଗକୁ କାଣ୍ଡିବାକୁ ହେଲେ ଢିଙ୍କି ପାହାର ଅଗରେ ଫୁଲାଏ କୁଟା ଗୁଡ଼ାଇବାକୁ ହୁଏ ତାହାହେଲେ ଡାଲିଗୁଡ଼ିକ ଗୁଣ୍ଡା ହୋଇଯାଏ ନାହିଁ ।

ଢିଙ୍କି କୁଟିବାର ଶବ୍ଦ ଦୁଲ୍ ଦୁଲ୍ ବା ଦୁମ୍ ଦୁମ୍ । ଏ ଶବ୍ଦରେ ଘର, ଦ୍ୱାର, ସାହି ଓ ଗ୍ରାମ ପୁଲକି ଉଠେ । ଏଥି ସଙ୍ଗେ ସମୟ ସମୟରେ ଢିଙ୍କିର ପକ୍ଷୀ ଢିଙ୍କିଖୁଣ୍ଟର କନାରେ ଘଷିହୋଇ କେଁ କେଁ କଣି କଣି ଶବ୍ଦ ହୁଏ । ବଉଳ ଧାନକୁ ସାମାନ୍ୟ ଉଷାଇଁ ଢିଙ୍କିଦ୍ୱାରା ଚୂଡ଼ା କୁଟାଯାଏ । ରାତି ନ ପାହୁଣୁ କେଉଟୁଣୀମାନେ ଚୂଡ଼ା କୁଟିବା ଆରମ୍ଭ କରନ୍ତି ଓ କେଉଟସାହିର ଅନେକଗୁଡ଼ିଏ ଢିଙ୍କି ପାହାରର ଦୁଲ୍ ଦୁଲ୍ ଶବ୍ଦ ଗ୍ରାମାନ୍ତରକୁ ମଧ୍ୟ ଶୁଭେ ।

ଢିଙ୍କି କୁଟିବା ବିଶେଷ ପରିଶ୍ରମସାଧ୍ୟ କାର୍ଯ୍ୟ । ଜେଲଖାନାରେ ଚୋରମାନଙ୍କୁ ଢିଙ୍କିଦ୍ୱାରା ନଡ଼ିଆକତାକୁ କୁଟିବା ଭଳି ଶ୍ରମସାଧ୍ୟ କାର୍ଯ୍ୟମାନ ଦିଆଯାଏ । ସାଧାରଣତଃ ସ୍ତ୍ରୀମାନେ ଢିଙ୍କି କୁଟନ୍ତି । ଢିଙ୍କି କୁଟିବା ପୁରୁଷଙ୍କୁ କୁଟାଳୀ ଓ ସ୍ତ୍ରୀମାନଙ୍କୁ କୁଟୁଣୀ ବୋଲାଯାଏ । ଆମ ଦେଶରେ ଗରିବ ସ୍ତ୍ରୀମାନେ ଅନ୍ୟ ଲୋକଙ୍କର ଧାନକୁଟି ଜୀବିକା ନିର୍ବାହ କରନ୍ତି । ଏଥିପାଇଁ ସ୍ତ୍ରୀଲୋକମାନେ କହିବା 'ମୁଁ ଧାନ କୁଟି ପୁଅକୁ ପାଳିବି' ବାକ୍ୟର ଅର୍ଥ ମୁଁ ଅତି ଦୁଃଖରେ ଅର୍ଥାତ୍ ପର ଘରେ ଢିଙ୍କିକୁଟା କାର୍ଯ୍ୟ କରି ମୂଲ୍ୟସ୍ୱରୂପ ଯାହା ପାଇବି ସେଥିରେ ପିଲାକୁ ପୋଷିବି । । ]

ଢିଙ୍କି କୁଟୁଣୀ—ଦେ. ବିଣ. ସ୍ତ୍ରୀ—ଢିଙ୍କି କୁଟିବା ସ୍ତ୍ରୀ; କୁଟୁଭୁଣୀ—
Ḍhiṅki kuṭuṇi Females who paddle the 'Ḍhiṅki'.
(ଢିଙ୍କି କୁଟୁଭୁଣୀ— ଅନ୍ୟରୂପ)
ढेंकी कुटनी, ढिंकि कुटनेवाली

ଢିଙ୍କି ଖମ୍ବ—ଦେ. ବି—ଅର୍ଗଳୀ ବା କନା ହୋଇଥିବା ଦୁଇଟି ଖୁଣ୍ଟ, ଯାହା
Ḍhiṅki khamba ଭୂମିରେ ପୋତା ହୋଇଥାଏ ଓ ଯାହା
(ଢିଙ୍କିଖୁଣ୍ଟ— ଅନ୍ୟରୂପ) ଉପରେ ଢିଙ୍କିର ପକ୍ଷ ରହେ—The side supports of a 'Ḍheṅki'.
ঢেঙ্কিপোআ

ଢିଙ୍କି ଖୁସୁରା(ରେ)ଇବା—ଦେ. କ୍ରି—ଢିଙ୍କି ସମକାଇବା ( ଦେଖ )
Ḍhiṅki khusurā(re)ibā Ḍhiṅki samakāibā (See)

ଢିଙ୍କି ଖୁସେଇବା—ଦେ. କ୍ରି— ଢିଙ୍କି ସମକାଇବା ( ଦେଖ )
Ḍhiṅki khuseibā Ḍhiṅki samakāibā ( See )

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ଅଧ୍ୟାୟର ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଢ' ନ ମିଳିଲେ 'ଗାଢ' ଖୋଜିବେ, କୃଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅର୍ଦ୍ଧୋ ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଢିଙ୍କି ଗିଳା(ଳେ)ଇବା—ଦେ. କ୍ରି—କୌଣସି କରାକୁ ଅସମ୍ଭବ ବା ନ Ḍhiṅki gilā(le)ibā ପାରିବା ଭଳି କାର୍ଯ୍ୟ କରିବାକୁ ବାଧ୍ୟ ঢেংকি গিলান କରାଇବା ଓ କହିବା—To force one to do something quite impracticable and impossible.

ଢିଙ୍କି ଗିଳିବା—ଦେ. କ୍ରି—କୌଣସି ଅସମ୍ଭବ କର୍ମ କରିବାକୁ ବାଧ୍ୟ Ḍhiṅki gilibā ହେବା—To be forced to do something impossible. ঢেঁকিগিলা
ବ.ପା ଭଣ ଢିଙ୍କି ଗିଳ—ପ୍ରବଚନ ।

ଢିଙ୍କିଗୀତ—ଦେ. ବି—ଢିଙ୍କି କୁଟିବା ସ୍ତ୍ରୀଲୋକମାନେ ଶ୍ରମାପନୋଦନ Ḍhiṅkigīta ବା ଆନନ୍ଦ ସକାଶେ ଯେଉଁ ଗୀତ ବୋଲନ୍ତି—Ḍheṅki songs.

[ଦ୍ର—ଏଠାରେ ଢିଙ୍କି ଗୀତର ଗୋଟିଏ ଉଦାହରଣ ଦିଆଗଲା । ଯଥା—

ଧୁଲ୍ ଧୁଲ୍ ଢିଙ୍କି ଶବଦ,
ବ୍ରହ୍ମା ନ ପାଇଲେ ତାହାର ଭେଦ ଲୋ (ଘୋଷା)
ଅମ୍ବ ଡାଳୁଖଣ୍ଡି ଘୁଣ ଖାଇଗଲା ଲୋ, କରଞ୍ଜ ସରୁଠୁଁ ଟାଣ,
ଓଜଥା ଫାଉସା ସବୁ ମିଶାଇ ଲୋ, ସବୁ ଟାଣି ନେଲା ଲୁଣ ଲୋ । ୧ ।
ନୋଉଲ ନାକରେ ଫାଶିଆ ହେଲେ ଲୋ, ଏଣ୍ଡୁଅ ନାକରେ ଗୁଣା,
ମୂଷା ଶୋଇଅଛି ଉଚ୍ଚ ପଲଙ୍କରେ, ମଞ୍ଜାର ଧରେ ବିଞ୍ଚଣା ଲୋ । ୨ ।
ଟୋକେଇ କଣେଇ ବାପଘର ଗଲେ, ଗୁଞ୍ଜୁଣୀ ଜଗିଛି ଘର,
କଂସା ଥାଳ ଗଲେ ଯାଡଗ୍ରୁ ଦେଖି, ମଝେ କଳା ବାଉଁଜର ଲୋ । ୩ ।

ଢିଙ୍କି ଚାଳି—ଦେ. ବି—ଯେଉଁ ଚାଳରେ ଢେଙ୍କି ବସିଥାଏ— Ḍhiṅki chāli A leanto used for the 'Ḍhiṅki'. ঢেংকিচালী

ଢିଙ୍କି ଦ(ଧ)ମକା—ଦେ. ବି.—ଢିଙ୍କି ସମକା (ଦେଖ) Ḍhiṅkida dha)makā Ḍhiṅki samakā (See)

ଢିଙ୍କି ଦ(ଧ)ମକା(କେ)ଇବା—ଦେ. କ୍ରି.—ଢିଙ୍କି ସମକାଇବା (ଦେଖ) Ḍhiṅki da(dha)makā(ke)ibā Ḍhiṅki samakāibā (See)

ଢିଙ୍କି ଦୁଲୁକା—ଦେ. ବି.—ଢିଙ୍କି ସମକା (ଦେଖ) Ḍhiṅki dulukā Ḍhiṅki samakā (See)

ଢିଙ୍କି ଦୁଲୁକା(କେ)ଇବା—ଦେ. କ୍ରି.—ଢିଙ୍କି ସମକାଇବା (ଦେଖ) Ḍhiṅki dulukā(ke)ibā Ḍhiṅki samakāibā (See)

ଢିଙ୍କି ପକ୍ଷୀ—ଦେ. ବି.—ଢିଙ୍କିର ଅଗ ବା ମୁଣ୍ଡରୁ ପ୍ରାୟ ୩ ଭାଗ ଛାଡ଼ି Ḍhiṅki pakshi ଢିଙ୍କିକୁ କଣା କରି ଯେଉଁ କାଠ ମରାଯାଇ ଆঁক শলী ଥାଏ ଓ ଯାହା ଦୁଇ ପାଖକୁ ବାହାରି ଢିଙ୍କି ଖମ୍ବର ଅର୍ଗଳଦ୍ୱୟରେ ପଶିଥାଏ— The wings of a 'Ḍhiṅki'.

ଢିଙ୍କି ପଡ଼ିବା—ଦେ. କ୍ରି.—ଢିଙ୍କିର ମୂଷଳ ଭରଣ୍ଡି ମଧ୍ୟରେ ପଡ଼ିବା— Ḍhiṅki pa<u>rd</u>ibā The working of the 'Ḍhiṅki' pestle. ঢেঁকি পড়া

ଢିଙ୍କି ପାହାର—ଦେ. ବି.—୧ । ଢିଙ୍କି ମୁଣ୍ଡରୁ ଅଳ୍ପ ଦୂରରେ ଭରଣ୍ଡିରେ Ḍhiṅki pāhāra ପଡ଼ିବା ନିମିତ୍ତ ଲମ୍ବଭାବରେ ମୂଷଳାକାରରେ ଢেকী মোনা ପଶିଥିବା କାଠ ଖଣ୍ଡ— ढिकोका मुआ 1. The pestle of a 'Ḍhiṅki'. (ଢେଙ୍କି ପାହୁରୁଣୀ—ଅନ୍ୟରୂପ) ୨ । ଢିଙ୍କିର ଆଘାତ— 2. A stroke of the Ḍheṅki.

ଢିଙ୍କି ପେଟ—ଦେ. ବି.—ଢିଙ୍କି ପାହାର ଲାଗିଥିବା ସ୍ଥାନରୁ ପକ୍ଷୀ ଲାଗି Ḍhiṅki peṭa ଥିବା ସ୍ଥାନପର୍ଯ୍ୟନ୍ତ ଅଂଶ— ঢেঙ্কির পেট The middle part of a 'Ḍheṅki'.

ଢିଙ୍କି ବାଲୀ—ପ୍ରାଦେ. ବି. ସ୍ତ୍ରୀ—(କଟକ ସଦର ପ୍ରଚଳିତ ଭାଷା)— Ḍhiṅki bāli କୋଠାକାମ ପାଇଁ ଯେଉଁ ସ୍ତ୍ରୀଲୋକମାନେ ଢିଙ୍କିଦ୍ୱାରା ଚୂନ ସୁରୁକି ଆଦି କୁଟନ୍ତି—Women who work in pounding mortar and brick with the 'Ḍheṅki'.

ଢିଙ୍କି ଭରା—ଦେ. ବି.—ଯେଉଁ ଅଳଗୁଡ଼ି ବା ଓହଳିଥିବା ଦଉଡ଼ିକୁ Ḍhiṅki bharā ଅବଲମ୍ବ କରି ଢିଙ୍କି କୁଟାଳୀମାନେ ଧାନ କୁଟନ୍ତି— A support for the workers in a 'Ḍheṅki' while engaged in husking.

ଢିଙ୍କି ଭରଣ୍ଡି—ଦେ. ବି—ଢିଙ୍କିର ମୂଷଳ ଯେଉଁ ଖାଲରେ ପଡ଼େ— Ḍhiṅki bharāṇḍi The mortar of a 'Ḍheṅki'. ঢেঙ্কি গড়

ଢିଙ୍କି ମୁଣ୍ଡ—ଦେ ବି.- ଢିଙ୍କିର ଅଗଠାରୁ ପାହାର ଲାଗିଥିବା ପର୍ଯ୍ୟନ୍ତ ଅଂଶ-- Ḍhiṅki muṇḍa The head of a 'Ḍheṅki'. ঢেঙ্কি মাথা

ଢିଙ୍କି ମୁଣ୍ଡା—ଦେ. ବି.—ଢିଙ୍କିର ଭରଣ୍ଡି ଗାତ ତଳେ ଦିଆଯାଇଥିବା Ḍhiṅki muṇḍā କାଠ (ବା ପଥର)ର ମୁଣ୍ଡିଆ— গড়কাঠ The anvil (wood or stone) of a Ḍheṅki.

ଢିଙ୍କି ମୂଷଳ—ଦେ. ବି.—ଢିଙ୍କି ପାହାର (ଦେଖ) Ḍhiṅki mushala Ḍhiṅki pāhāra (See)

ଢିଙ୍କିରେ (ଧାନ ଆଦି) ଶୁଖା(ଖେ)ଇବା—ଦେ. କ୍ରି—ଢିଙ୍କିରେ କୁଟାଯାଉଥିବା Ḍhiṅkire (dhāna etc) śukhā(khe)ibā ଧାନ ଆଦିକୁ ଲେଉଟ ପାଲଟ କରିବା— To stir the contents of the mortar during the husking operation of the 'Ḍheṅki'

[ଦ୍ର—ଢିଙ୍କିର ମୂଷଳ ଉପରକୁ ଉଠି ପୁନର୍ବାର ତଳକୁ ପଡ଼ିବା ମଧ୍ୟରେ ଯେଉଁ ଅଳ୍ପ ସମୟ ବ୍ୟବଧାନ ଥାଏ, ସେହି ସମୟରେ ଢିଙ୍କି ଭରଣ୍ଡିରେ ଥିବା ଧାନକୁ ହାତଦ୍ୱାରା ଏପରି ସାବଧାନ ହୋଇ ଲେଉଟ ପାଲଟ କରିବାକୁ ହୁଏ ଯେ ଢିଙ୍କିର ମୂଷଳ ଭରଣ୍ଡିରେ ପଡ଼ିବା ବେଳକୁ ହାତଟି ଭରଣ୍ଡି ଭିତରୁ ବାହାରି ଆସିଥାଏ । ନଚେତ୍ ସମା ଲଗା ମୂଷଳ ଥରେ କରପୃଷ୍ଠରେ ପଡ଼ିଲେ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଙ୍ଗ | ଞ୍ଚ | ଙ୍କ |
| ୨ | ଈ | ଊ | ଋୁ | ଌୁ | ପ୍ରୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଗ୍ୟ | ଙ୍ଗ | ଞ୍ଚ | ନ୍ତ |

ହାତ କୁଟି ହୋଇଯିବ । ନୂଆ କରି ଶିଖାଉଥିବା ଲୋକଙ୍କ ହାତରେ ଅନେକ ସମୟରେ ଢିଙ୍କି ପଡ଼ିଯାଏ । ]

ଢିଙ୍କିରେ ପଣିବା—ଦେ କ୍ରି—ଢିଙ୍କିରେ କୁଟାଯିବା ନିମନ୍ତେ ଧାନ ଆଦି
Ḍhiṅkire paṇibā ଆଣି ଢିଙ୍କି ଭଣ୍ଡିରେ ଭରିବା—
ঢেঁকিসেঁকা To fill the article to be husked in the mortar of the 'Ḍheṅki'.

ଢିଙ୍କି ଲାଞ୍ଜି—ଦେ. ବି—ପଛିଠାରୁ ଢିଙ୍କି ଛମୁଣ୍ଡ ପର୍ଯ୍ୟନ୍ତ ଉପରସ୍ଥ
Ḍhiṅki lāñji କ୍ରମନମ୍ର ଅଂଶ—The tail or pedal of
ঢেঙ্কিলেঞ্জ a 'Ḍheṅki'.

[ ଦ୍ର—କୁଟାଳୀମାନେ ଏହା ଉପରେ ଗୋଡ଼ ଦେଇ ଢିଙ୍କିକୁ ଚାଳନ କରନ୍ତି । ]

ଢିଙ୍କିଲାଞ୍ଜି ଗାତ—ଦେ. ବି—ଢିଙ୍କିର ଲାଞ୍ଜି ତଳେ ଯେଉଁ ଗର୍ତ୍ତ ଥାଏ;
Ḍhiṅkilāñji gāta ଢିଙ୍କିର ମୁଣ୍ଡ ଉପରକୁ ଉଠିବା ସମୟରେ ଢିଙ୍କି ଲାଞ୍ଜି ଯେଉଁ ଗାତ ଭିତରକୁ ପଶି ଥାଏ—
The hole below the tail of the 'Ḍheṅki'.

ଢିଙ୍କିଶାଳ—ଦେ. ବି—ଯେଉଁ ଘରେ ଢିଙ୍କି ପଡ଼ି ଥାଏ—
Ḍhiṅkiśāla The room set apart for the
ঢেঙ্কিশাল,ঢেঁকশাল 'Ḍheṅki'.

[ ଦ୍ର—ଢିଙ୍କି ଯେଉଁ ଘରେ ବସେ, ସେ ଘରେ ଢିଙ୍କି ଭଣ୍ଡି ଗୋଟିଏ ଖୋଳାଯିବା ଓ ଖୁଣ୍ଟି ଦୁଇଟି ପୋତାଯିବା ଦରକାର ଥିବାରୁ ସେଥିପାଇଁ ଖାସ୍ ଗୋଟିଏ ଘର ବା ଶାଳ ସ୍ୱତନ୍ତ୍ର ରଖାଯାଏ ଓ ସେହି ଘରେ ଢିଙ୍କି ରହେ ।

ଢିଙ୍କିଶାଳରେ ଢେଙ୍କାନାଳ ଚିନ୍ତା ନ୍ୟାୟ—

ଢିଙ୍କିଶାଳରେ କୁଟାଳୀମାନେ ଓ ଧାନ ଆଦି କୁଟୁଥିବା ବ୍ୟକ୍ତିମାନେ ଆପଣାର ପାରିବାରିକ, ସାମାଜିକ ବା ଗ୍ରାମୀୟ ବିଷୟର ଚର୍ଚ୍ଚା କରି ଥାଆନ୍ତି । ଢିଙ୍କିଶାଳରେ ଥିବା ବ୍ୟକ୍ତିମାନଙ୍କ ମୁହଁରେ ବହୁ ଦୂରଦେଶର ବିଷୟ ବା ରାଜ୍ୟଶାସନ ବିଷୟକ ଚର୍ଚ୍ଚା ଅନଧିକାରଚର୍ଚ୍ଚା ମାତ୍ର । କୌଣସି ଅନଧିକାର ବା ଅପ୍ରାସଙ୍ଗିକ ଚର୍ଚ୍ଚା କରିବା ବ୍ୟକ୍ତି ପ୍ରତି 'ଢିଙ୍କିଶାଳରେ ଢେଙ୍କାନାଳର ଚିନ୍ତା ପଡ଼ିଛି' ଏହି ବ୍ୟଙ୍ଗୋକ୍ତି ପ୍ରୟୋଗ କରାଯାଏ, ଅର୍ଥାତ୍ ଢିଙ୍କିଶାଳର କଥା ଚର୍ଚ୍ଚା ନ କରି ଢେଙ୍କାନାଳର ଚର୍ଚ୍ଚା କରୁଛି । ]

ଢିଙ୍କି ସମକା—ଦେ. ବି—ଢିଙ୍କି କୁଟିବାର ଶବ୍ଦ—
Ḍhiṅki samakā The sound of working a 'Ḍheṅki'.

[ଦ୍ର—ଢିଙ୍କିର ଅଳ୍ପ ଶବ୍ଦକୁ ସମକା—ସମ୍ ସମ୍ ଶବ୍ଦ; ତାଠାରୁ ବଡ଼କୁ ଦମକା—ଦମ୍ ଦମ୍ ଶବ୍ଦ; ତାଠାରୁ ବଡ଼କୁ, ଦୁଲୁକା—ଦୁଲୁଦୁଲୁ ଶବ୍ଦ କହନ୍ତି । ]

ଢିଙ୍କି ସମକା(କେ)ଇବା—ଦେ. କ୍ରି—ଢିଙ୍କିକୁ ତ୍ୱରାନ୍ୱିତ(?) ଉପର୍ଯ୍ୟପରି ଦୋହଲାଇ
Ḍhiṅki samakā(ke)ibā କରି କୁଟିବା—To hustle the pedal of the 'Ḍheṅki'.

ହେ ହମକେଇ ଲୋ ! ସମା କୁଟଇ ଧାନ, ଢିଙ୍କି ହେ ସମକେଇ ଲୋ ।
ଚ ସଉତୁଣୀ ଢିଙ୍କି ଲାଞ୍ଜିରେ ଖାଆନ୍ତି ବଙ୍ଗଳା ପାନ—ଢେଙ୍କିକୁଟା ଗୀତ ।

ଢିଙ୍କି ସମା—ଦେ. ବି—ଢିଙ୍କି ମୂଷଳର ଅଗ୍ରଭାଗରେ ଦିଆ ହୋଇଥିବା
Ḍhiṅki samā ଲୁହାର ବଳା—The ring round the
সামা end of the pestle.

ଢିଢା—ଦେ. ( ଧ୍ୱନ୍ୟନୁକରଣ ) ଅ—
Ḍiḍhā ୧ । ବନ୍ଧୁକ ତୋପ ଆଦି ଫୁଟିବା ଢୁଢା ଶବ୍ଦ—
ঢাইঢাই 1. Booming sound of cannon.
धायँधायँ ୨ । ଏକ କଠିନ ପଦାର୍ଥରେ ଅନ୍ୟ ଏକ କଠିନ ପଦାର୍ଥର ସବଳରେ ବାଜିବା ଶବ୍ଦ—
2 The clashing sound of two hard things.
୩ । ମୁଣ୍ଡକୁ କଠିନ ଭୂମିରେ ବାଡ଼େଇବାର ଶବ୍ଦ—
3 The sound of striking one's head on the hard ground.
( ଯଥା—ଢୁଢା ଶବ୍ଦ ଅପେକ୍ଷା ଢିଢା କ୍ଷୀଣ ଶବ୍ଦ । ).

ଢିଢି—ଦେ (ଧ୍ୱନ୍ୟନୁକରଣ) ଅ—ଢିଢା (ଦେଖ)
Ḍhiḍhi Ḍhiḍhā (See).

ଢିଣ୍ଡା—ପ୍ରାଦେ (ସମ୍ବଲପୁର) ବି—ମେଞ୍ଚା; ମୁଠା—
Ḍhiṇḍā Lump; handful.
(ଢିଂଡ଼ା—ଅନ୍ୟରୂପ) (ଯଥା—ମାଟି ଢିଣ୍ଡା, ଗୁଡ଼ ଢିଣ୍ଡାଏ । )

ଢିଣ୍ଡିଶ—ସଂ. ବି—ଭେଣ୍ଡୀ—
Ḍhiṇḍiśa Lady's finger (a kitchen fruit).
ঢেঁড়স डेड़सा डिंडस डिन्द्

ଢିପ—ଦେ. ବି ( ସଂ. ସ୍ତୂପ ବା ଦ୍ୱୀପ )—୧ । ଦ୍ୱୀପାକାର ବା ଉଚ୍ଚ ଭୂମି;
Ḍhipa ଢୁହ—1 High land; high ground.
ঢিপী ୨ । ମାଟିର ସ୍ତୂପ—2. Mound of earth; a raised land; hillock.
ढीह, ढूह
ଦେ. ବିଣ—ଉଚ୍ଚ; ଢିପ—High; raised.
(ଢିପଣା—ଅନ୍ୟରୂପ) ଚତୁରସ୍ରେ ଢିପ ଯେ ଖାଲ କୋଣଯାଏ ।
କୃଷ୍ଣସିଂହ. ମହାଭାରତ. ବନ ।

ଢିପା—ଦେ. ବିଣ—୧ । ଢିପ (ଦେଖ)
Ḍhipā 1. Ḍhipa (See).
ঢিপী ୨ । ଯେଉଁ ବ୍ୟକ୍ତି ତଳପାଦ ଗୋଟିଏ ଅଂଶରେ ଭରାଦେଇ
ढिपा ଚାଲେ; ଢିପେଇ ଢିପେଇ ଚାଲିବା—
2. Limping; halting.
ପ୍ରାଦେ (ଗଡ଼ଜାତ) ବି—ପିଲାମାନଙ୍କର ବଜାଇବା ଏକପ୍ରକାର ବାଜା—A kind of musical instrument played on by children.
ରଜରେ ବାଳକ ବାଳିକାମାନେ ଦୋଳରେ ଉପବେଶନ ଓ ଢିପା ବଜାଇବା ଇତ୍ୟାଦିରେ କାଳକ୍ଷେପ କରିବାକୁ ବଡ ଆମୋଦ ବୋଧ କରନ୍ତି ।
ଗଡ଼ଜାତବାସିନୀ ୨୨।୭।୨୯ ।

ଢିପା(ପେ)ଇବା—ଦେ. କ୍ରି—ଢିପେଇ ଢିପେଇ ଚାଲିବା (ଦେଖ)
Ḍhipā(pe)ibā Ḍhipei ḍhipei chālibā (See

ସାଧାରଣ ଲୋକେ ଅପର ପୃଷ୍ଠାରେ ଦେଇ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କ୍ଷୁଧ' ନ ମିଳିଲେ 'କ୍ଷୁଦ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍କ' ନ ପାଇଲେ 'ଅର୍କ' ଦେଖିବେ; 'ଅଲଙ୍କ' ନ ପାଇଲେ 'ଅଳଙ୍କ' ଦେଖିବେ

ଢିପାଳିଆ—ଦେ. ବିଣ—ଢିପ (ଦେଖ)
Ḍhipāliā Ḍhipa (See).

ଢିପିଢିପା—ଦେ. ବି—୧ । ମଝିରେ ଥିବା ଠେକ ଉପରେ ରହି କୌଣସି ବସ୍ତୁର ଦୁଇ ମୁଣ୍ଡ ଉଠିବା ପଡ଼ିବା ଅବସ୍ଥା—
Ḍhipiḍhipā (ଢିପ୍ଢିପା—ଅନ୍ୟରୂପ) 1. Seesaw condition of anything due to a lever in its middle.
ନାଗରଦୋଲା ; ঢেঙ্কিকল
ਡੰਡਾਡੋਲੀ

୨ । ମଝିଠା ଭୂଇଁରେ ଲାଗି ଥାଇ ଦୁଇ ମୁଣ୍ଡ ଶୂନ୍ୟରେ ଥିବା ଗୋଟାଏ ଲମ୍ବ କାଠ ଯାହାର ଦୁଇ ମୁଣ୍ଡରେ ପିଲାଏ ବସି ଖେଳନ୍ତି—2 See-saw.

ଢିପିଢିପା(ପେ)ଇବା—ଦେ. କ୍ରି—ମଝିରେ ଥିବା ଅଙ୍ଗ ବା ଠେକ ଉପରେ ରହି ଶଗଡ଼ ପ୍ରଭୃତିର ଦୁଇ ମୁଣ୍ଡ ଉଠିବା ପଡ଼ିବା—To seesaw; to move up and down on a lever in the middle (like a cart or a 'Ḍhenki),to bob; to toss up and down.
Ḍhipiḍhipā(pe)ibā
উঠাপড়া
डगडोल
ଢିପ୍ଢିପେଇବା, ଢିଢିପାଇବା } ଅନ୍ୟରୂପ

ଢିପେଇ ଢିପେଇ ଚାଲିବା—ଦେ. କ୍ରି—ଚଳପାର ଗୋଟିଏ ଅଂଶ ବା ଟିପରେ ଭର ଦେଇ ବା ଟିପେଇ ଟିପେଇ ଚାଲିବା—To limp (on the top of the foot); to walk in a halting manner.
Ḍhipei ḍhipei chālibā
লেঙ্গচে চলা
लंगड़ाना
( ଯଥା—ମୋ ଗୋଇଠିରେ କଣ୍ଟା ପଶିଯିବାରୁ ମୁଁ ଢିପେଇ ଢିପେଇ ଚାଲୁଛି । )

ଢିବି—ଦେ. ବି—ଡିବିରି ( ଦେଖ )
Ḍhibi Ḍibiri ( See )
(ଢିବିରି—ଅନ୍ୟରୂପ)
ডিবরী, ढिबरी

ଢିମା—ଦେ. ବି—(ସ. ମଧ୍ୟମ) ୧ । କ୍ଷୁଦ୍ର ପ୍ରସ୍ତରଖଣ୍ଡ—
Ḍhimā 1. Pebble.
(ଢିମାଢିମି—ଅନ୍ୟରୂପ) ୨ । ଢେମା; ଢେଲୁଆ; ଲୋଷ୍ଟ୍ର; ପଥରର ଅସମାନ ବଡ଼ ଖଣ୍ଡ—2. Large bit of stone; large fragment of stone or brick.
ঢিল ।
ढीमा

୩ । ରେବଲ୍ ପଥର—
3. Rubble; undressed bits of stone.

ଢୀମା ବିଣ· ( ସ. ମନ୍ଦ; ମଧ୍ୟମ )—୧ । ଯେଉଁ ଲୋକ କାର୍ଯ୍ୟ କରିବାକୁ କୁଣ୍ଠିତ ହୁଏ; ଅଳସୁଆ; ଧୀମା—
धीमा
1. Slack; lazy; unwilling to work.
୨ । ( ସ. ମନ୍ଥର ) ମନ୍ଥରଗତିବିଶିଷ୍ଟ—2. Slow.
୩ । ( ସ. ଡିମ୍ବ ) ଡିମ୍ବ ପରି ପଦାକୁ ବାହାରିଥିବା (ଆଖି); ଢିମା—3. Bulging out ( eyes ).

ଢିମା ଆଖି—ଦେ. ବି. ( ସ. ଡିମ୍ବ+ଅକ୍ଷି )—ଡିମ୍ବ ପରି ବଡ଼ ଓ ପଦାକୁ ବାହାରିଥିବା—Eyes bulging out like eggs.
Ḍhimā ākhi

ଢିମାଆଖିଆ—ଦେ. ବିଣ—ଯାହାର ଆଖିମାନ ଡିମ୍ବ ପରି ବଡ଼—
Ḍhimā ākhiā With eyes as big as eggs.
( ଢିମାଆଖେଇ—ସ୍ତ୍ରୀ )

ଢିମା ଆଖି ଦେଖାଇବା—ଦେ. କ୍ରି—ରାଗ ଦୃଷ୍ଟିରେ ଚାହିଁବା, କ୍ରୋଧ-ବ୍ୟଞ୍ଜକ ଦୃଷ୍ଟି ପକାଇବା—
Ḍhimā ākhi dekhāibā
রাগ চোখ দেখান To set an angry look.

ଢିମା(ମେ)ଇବା—ଦେ. କ୍ରି. ( ସ. ମଧ୍ୟମ; ମୃଦୁ )—ଢିମାଇ ଢିମାଇ ଚାଲିବା; ମନ୍ଥରଗତିରେ ଚାଲିବା; ମନ୍ଦ ଗତିରେ ଚାଲିବା—To walk slowly.
Ḍhimā(me)ibā
ঢীমান
धीमाकर चलना

ଢିମାଢିମା—ଦେ. ବିଣ—୧ । ଖାଲ ଢିପ; ଅସମତଳ (ପଥ ବା ଭୂମି)—
Ḍhimāḍhimā 1. Uneven or rough (land or road).
୨ । ଢିମାଦୂର୍ଣ୍ଣ—2 Strewn with large bits of stone; stony ( ground ); pebbly.

ଢିମିରା—ପ୍ରାଦେ. (ଗଞ୍ଜାମ) ବି—ସାନ ସାନ ପର୍ବତ; ପାହାଡ଼; ମୁଣ୍ଡିଆ—
Ḍhimirā Hillocks.

ଢିରା—ଦେ. ବି ( ସ. ଧୃ ଧାତୁ=ଧାରଣ )—୧ । ଠେକ; ଧାରଣା—
Ḍhirā 1. A prop.
ভর ୨ । ଠେସ; ଠିଆ—2. A support.
सहारा ୩ । ବାଉ—3. The pole used in pushing a boat.
अड़वाड़ ୪ । ଅବଲମ୍ବନାର୍ଥ ଯଷ୍ଟି—
4 A stick used for support.
୫ । ବାଣୀ ବା ସୁତୁଲିକୁ କାଟିବା ବା ବଳିବା ନିମନ୍ତେ ବ୍ୟବହୃତ ଛକବନ୍ଧଆ ଡାଳୁଡ଼ି ବା ଶଲାକା—
5. A spindle with a cross at the bottom to spin strings.

ଢିରା ଦେବା—ଦେ. କ୍ରି—୧ । କୌଣସି ବସ୍ତୁରେ ଠେସ ବା ଠିଆ ଲଗାଇବା—1. To prop up a thing.
Ḍhirā debā
ভর দেওয়া ୨ । କୌଣସି ଠିଆ ବା ଢିରାକୁ ଆଶ୍ରୟ କରିବା—
टेक देना 2. To support one self on a prop.

ଢିରା ମାରି ଚାଲିବା—ଦେ. କ୍ରି—( ଅନ୍ଧକାର ସ୍ଥଳରେ ବାଟରେ କମ୍ପା ଗଭୀର ପାଣିରେ ଚାଲିବାବେଳେ ) ବାଡ଼ିକୁ ଭୂମିରେ ମାରି ମାରି ବାଡ଼ି ଉପରେ ଭର ରଖି ଗମନ କରିବା—To walk by holding a stick for support.
Ḍhirā māri chālibā
ভর দিএ চলা
आसरेपर चलना

ଢିରା ମାରିବା—ଦେ. କ୍ରି—୧ । ବାଉ ମାରିବା—
Ḍhirā māribā 1. To use the pole in propelling a boat.
ভর দেওয়া

| ୧ | ଇ | ଓ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ | ନ୍ଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଔ | ନ୍ |

୨ । ପାଣିରେ ପଶି ଗଲିବା ସମୟରେ ଯଷ୍ଟି ଦ୍ୱାରା ପାଣିକୁ କଳିବା—2. To feel or fathom the depth of water with a stick while wading.

୩ । ଗଲିବା ସମୟରେ ଯଷ୍ଟି ଉପରେ ଭର ଦେବା—3. To walk with the support of a stick.

ଢିଲ୍—ଦେ. ବ—୧ । ଦୁଇ ପାଖର ଗାର ପର୍ଯ୍ୟନ୍ତ ବା ପାତ୍ରର ମୁଖ ପର୍ଯ୍ୟନ୍ତ ପୂର୍ଣ୍ଣ ହୋଇଥିବା ( ଜଳ )—
Ḍhil
ଟେଟୁମ୍ବୁର 1. Full to the brim; full to overflowing.
भरपूर ୨ । ପରିପୂରିତ—2. Filled up
୩ । ଢିଲ୍ଲ ( ଦେଖ )—3. Ḍhilā ( See )
ବଣ—ଢିଲ୍ଲ ( ଦେଖ )—Ḍhilā ( See )

ଢିଲମଢିଲା—ଦେ. ବଣ—ଅବହେଳାକାରୀ ( ଚାକ୍ରି )—
Ḍhilamaḍhilā Negligent
ଟୀଲା ଦେ. ବ—ଢିଲ୍ଲ ( ଦେଖ )
ढिलमढिला Ḍhilā ( See )
ଦେ. କ୍ରି. ବଣ—ଅବହେଳା ସହକାରେ—Negligently.

ଢିଲା—ଦେ ବଣ ଓ ବ—ଢିଲ୍ଲ ( ଦେଖ )
Ḍhilā Ḍhilā ( See )
ବୈଦେ. ବ. ( ଇଂ. ଡ୍ରିଲ ) —ସୁନାରେ ଛିଦ୍ର କରିବା ଉଥିଁରର ଛଳା—Drill-bits.

ଢିଲ୍ଲ—ଦେ. ବଣ. ( ସଂ. ଶିଥିଳ; ହେଲା ( ଭୁଲ ) ପ୍ରା. ଶିଢିଲ; ସିଢୋଲୋ )—୧ । ଢୁଗୁଲା; ଶିଥିଳ—
Ḍhilā
ଟୀଲା 1. Slack; loose; lax; not fitting in properly.
ढिला ( ଯଥା—ମୋ ଦେହକୁ କୁର୍ତ୍ତାଟା ଢିଲ୍ଲ ହେଉଛି । )
( ଢିଲମ୍ଢିଲ୍ଲ—ଅନ୍ୟରୂପ ) ୨ । ଅଳସୁଆ; ସୁସ୍ତୀ—
( ଭଦ୍ର, ଜାକୁଅ—ବିପରୀତ ) 2. Lazy; slack ( in doing any work ) dilatory; slow.
୩ । କାର୍ଯ୍ୟରେ ଅବହେଳାକାରୀ—3. Negligent in work.
୪ । ଅନିୟମ, ବିଶୃଙ୍ଖଳ—4. Irregular; undisciplined
ଟୀଲାମୀ ବ—୧ । ଶିଥିଳତା—1. Slackness; laxity.
ढिलाइ ହୁଏ ତାହାଙ୍କର କାର୍ଯ୍ୟରେ ଗଫଲତ, ନ ହୁଏ ଢିଲ୍ଲ—
ଫକୀରମୋହନ, ଛମାଣ ଆଠଗୁଣ୍ଠ ।
୨ । ଆଳସ୍ୟ; ଶୈଥିଲ୍ୟ; ହେଲା—2 Laziness; dilatoriness; negligence.
୩ । ନିୟମ ବା ଶୃଙ୍ଖଳାର ଅଭାବ—3. Irregularity; indiscipline.
ପ୍ରାଦେ ( ଗଞ୍ଜାମ ) ବ—ଦାଉଣୀ; ଯେଉଁ ବନ୍ଧନୀରେ ଅନେକଗୁଡ଼ିଏ ଗୋରୁ ଏକସମୟରେ ଧାଡ଼ି ହୋଇ ବନ୍ଧା ହେବା ପାଇଁ ପଡ଼ା ଥାଏ—A rope used to yoke many bullocks in a row; a tether.

[ ଦ୍ର—ବେଙ୍ଗଲାରେ ଓ ଗୋରୁଗୋଠରେ ବହୁସଂଖ୍ୟକ ଗୋରୁଙ୍କୁ ଧାଡ଼ି କରି ବାନ୍ଧିବାପାଇଁ ଏହା ବ୍ୟବହୃତ ହୁଏ । ]
ପ୍ରାଦେ. (ଗଡ଼ଜାତ)—ବ.—ମାଛ ଧରିବା ଜାଲ—A kind of fishing net.

ଢିଲା(ଲେ)ଇବା—ଦେ. କ୍ରି. (ସଂ. ଶିଥିଳ; ହେଲା)—
Ḍhilā (le)ibā ଢିଲ୍ଲ କରିବା (ଦେଖ)—
Ḍhilā karibā (See)

ଢିଲ୍ଲ କରିବା—ଦେ. କ୍ରି.—୧ । ଢୁଗୁଲା କରିବା—
Ḍhilā karibā 1. To slacken.
ଟିଲାଦେଓ୍ୱା, ଟିଲାନ ୨ । ହେଲା କରିବା—
ढिलाना 2. To neglect one's work.
ଖଣ୍ଡ ଅଫଣ୍ଡରେ ସ୍ୱତ ହୋଇ ନ ପାରିଲେ ,ଜେନାପୁଅ
ସେଦିନ ସତରେ ତାହା ଘର ପହରା କାମରେ ଢିଲ୍ଲ କରି ଦବ ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।
୩ । ଶିଥିଳ କରିବା—3. To relax.

ଢିଲାଢିଲି—ଦେ. ବ.—୧ । କାର୍ଯ୍ୟରେ ହେଲା—
Ḍhilā ḍhili 1. Laxity or slackness in work.
ଟୀଲା ଟୀଲୀ ୨ । ଭିଡ଼; ଲୋକଗହଳ; ଠେଲାଠେଲି—
ढिलाई 2. Dense crowd; concourse (Howells)

ଢିଲିବା—ପ୍ରାଦେ (ସମ୍ବଲପୁର)—କ୍ରି.— ଚରିବା ପାଇଁ ଗାଈ ବାଛୁରିଙ୍କୁ
Ḍhilibā ଗୁହାଳରୁ ଫିଟାଇ ଦେବା—To set the cattle free for going out to graze.

ଢିଶ୍ଙ୍ଗା—ପ୍ରାଦେ. (ସମ୍ବଲପୁର) ବ.— ଆଷାଢ଼, ଶ୍ରାବଣ ମାସରେ ନୂଆ
Ḍhisṅgā ପାଣିରେ ଗାଧୋଇବା ଯୋଗୁଁ ଦେହରେ ବାହାରୁ ଥିବା
(ଢିଶିଁଗା—ଅନ୍ୟରୂପ) ଘିମିରିଠାରୁ ବଡ଼ ବଡ଼ ବ୍ରଣ ପରି ଲୁଣ୍ଡିଆ—A kind of big eruption on the body of persons, bathing in the new water of the rainy season.

ଢୁ—ଦେ. (ଧ୍ୱନ୍ୟନୁକରଣ) ଅ.—ଢୁ ଢୁ (ଦେଖ)
Ḍhu Ḍhu ḍhu (See)
(ଢୁଃ—ଅନ୍ୟରୂପ)

ଢୁଂ—ଦେ. (ଧ୍ୱନ୍ୟନୁକରଣ) ଅ —ଢୁଙ୍ଗୁରୁ ଢୁଙ୍ଗୁରୁ (ଦେଖ)
Ḍhuṁ Ḍhuṅguru ḍhuṅguru (See)
धूँ
(ଢୁଂ ଢାଂ, ଢୁଂଢୁଂ—ଅନ୍ୟରୂପ)

ଢୁଁ ଢୁଁ—ଦେ. (ଧ୍ୱନ୍ୟନୁକରଣ) ଅ.—ଢାଁ ଢାଁ (ଦେଖ)
Ḍhuṅḍhuṅ Ḍhāṅ ḍhāṅ (See)
(ଢୁଁ, ଢୁଁଢାଁ—ଅନ୍ୟରୂପ)

ଢୁଆ (ଇତ୍ୟାଦି)—ଡୁହା ଇତ୍ୟାଦି (ଦେଖ)
Ḍhuā etc Duhā etc (See)

ଢୁକ୍ଢୁକ୍ (ଇତ୍ୟାଦି)—ଦେ. ଅ.—ଢୁକୁ ଢୁକୁ ଇତ୍ୟାଦି (ଦେଖ)
Ḍhuk ḍhuk Ḍhuku ḍhuku (See)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୂ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲବଢ' ଦେଖିବେ।

ଢୁକ—ପ୍ରାଦେ. (ବାଲେଶ୍ୱର) ବି. (ସଂ. ଢୌକ ଧାତୁ=ଗତି; ବା ସ୍ତୋକ)—
Ḍhuka ଢୋକ; ଥରକେ ମନୁଷ୍ୟ ଯେତିକି ପାଣି ଗଳାଧଃକରଣ କରି ପାରେ—A gulp (of water).
ପ୍ରାଦେ. (ସମ୍ବଲପୁର) ବି.—(ଜଳାଦିର) ଗଣ୍ଡୁଷ— A sip (of water.)

ଢୁକା—ପ୍ରାଦେ. (ବାଲେଶ୍ୱର) ବି.—ଢୋକା; ଢୋକିବା; ପିଇବା—
Ḍhukā Gulping; swallowing.
ପ୍ରାଦେ. (ସମ୍ବଲପୁର) ବି.—୧ । ଢୁକାଇବା; ପ୍ରବେଶ କରାଇବା— 1. Thrusting.
୨ । ଢୁକିବା; ପ୍ରବେଶ କରିବା—2. Entering.

ଢୁକାଇ ଆଣ୍‌ବା—ପ୍ରାଦେ. (ସମ୍ବଲପୁର) କି.—ଗାଈ ଗୋରୁଙ୍କୁ ଚରାଇ
Ḍhukāiānbā ଆଣି ଘରେ ପୂରାଇ ଦେବା—To bring cattle back to the house after grazing.

ଢୁକାଇ ଦେବା—ଦେ. କି. (ସଂ. ଢୌକ ଧାତୁ=ଗତି)—ପହଞ୍ଚାଇବା;
Ḍhukāidebā ପ୍ରବେଶ କରାଇବା—
ঢুকিএ দেওয়া To cause a thing to reach; to reach
**ढुकादेना** a thing to a place; to thrust.
ଢୁକାଇ ଦେଲେ ଚୁଣିରେ ଚକୋର ଚଞ୍ଚୁରେ ଶୀଘ୍ର-
ଭାନୁ ଚନ୍ଦ୍ରକାକୁ ଦରି ଯାଏ କଞ୍ଚ ସମ୍ବନ୍ଧ ରେ ।
କବିସୂର୍ଯ୍ୟ. କଳୋପଳବମ୍ଭ, ଚ. ଗୀତ ।

ଢୁକା(କେ)ଇବା—ଦେ. କି. (ସ ଢୌକ ଧାତୁ=ଗତି)—
Ḍhukā(ke)ibā ୧ । ଢୁକିବା କ୍ରିୟାର ଣିଜନ୍ତରୂପ—
ঢুকান 1. The causative form of 'Ḍhukibā'.
**ढकेलना** ୨ । ଢୁକାଇ ଦେବା—2. To thrust.
(ଢୁକେଇବା—ଅନ୍ୟରୂପ) ୩ । କୌଣସି ବ୍ୟକ୍ତିଙ୍କୁ କୌଣସି ସ୍ଥାନରେ ପ୍ରବେଶ କରାଇବା—3. To cause a person to enter into a place.
୪ । ସଂଲଗ୍ନ କରାଇବା—4. To press.
ତାକୁ ଅନୁକମ୍ପା ସୁଧାଧର ।
ଢୁକାଇ ମୋ ହୃଦେ ପୟୋଧର । କବିସୂର୍ଯ୍ୟ, ସଙ୍ଗୀତ ।
୫ । ଢୁକୁଢୁକୁ ହେବା ୧ (ଦେଖ)
5. Ḍhukuḍhuku hebā 1 (See)
[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ । ]

ଢୁକିବା—ଦେ. କି. (ସଂ. ଢୌକ ଧାତୁ=ଗତି)—
Ḍhukibā ୧ । ପଶିବା; ଭିତରକୁ ପ୍ରବେଶ କରିବା—
ঢুকা 1. To enter into.
**ढुकना** ୨ । ପହଞ୍ଚିବା; ଉପସ୍ଥିତ ହେବା—
2. To arrive at; to reach.
୩ । ସଂଲଗ୍ନ ହେବା—
3. To be joined or attached to.
ପ୍ରାଦେ. (ବାଲେଶ୍ୱର)—ଢୋକିବା—
To gulp; to swallow.

ଢୁକୁ—ପ୍ରାଦେ. (ସମ୍ବଲପୁର) ବି—ମାଟି ଭିତରେ ଥିବା କଳା ଓ ସଚ୍ଛିଦ୍ର
Ḍhuku ଉଇଙ୍କାକୁ—Molds of white ants found below the surface of the earth.

ଢୁକୁ ଢୁକାଇବା—ପ୍ରାଦେ. (ସମ୍ବଲପୁର) କି—ପରସ୍ତ୍ରୀକୁ ରକ୍ଷିତାରୂପେ
Ḍhuku dhukāibā ଘରେ ରଖିବା—To keep another person's wife in one's house as one's concubine.

ଢୁକୁ ଢୁକିବା—ପ୍ରାଦେ (ସମ୍ବଲପୁର) କି—କୌଣସି ବିବାହିତା ସ୍ତ୍ରୀ
Ḍhuku dhukibā ସ୍ୱେଚ୍ଛାକ୍ରମେ ପରପୁରୁଷର ରକ୍ଷିତା ରୂପେ ତାହା ଘରେ ବାସ କରିବା—(the wife of one person) To come to live with another male at his house as his concubine.

ଢୁକୁଢୁକୁ—ଦେ. (ଧ୍ୱନ୍ୟନୁକରଣ) ଅ—୧ । ପାଣି ଢୋକିବାର ଶବ୍ଦ—
Ḍhukuḍhuku 1 The sound of gulping one
ঢুক্‌ঢুক্ sip of water.
**तड़पतड़प्** ୨ । ଢିଲା, ଶ୍ଲଥ—2 Slack; loose.
ଢୁକ୍, ଢୁକୁଢୁକ୍ } ଅନ୍ୟରୂପ ୩ । ଜୀବନ ଯିବା ପୂର୍ବରୁ କ୍ଷୀଣଭାବରେ ନିଶ୍ୱାସ ମାରିବା, କ୍ଷୀଣଭାବରେ ଚାମ୍ଫିବା—
3. Slow panting of a dying animal.

ଢୁକୁଢୁକୁ ହେବା—ଦେ. କି—୧ । ଢୋକେଇବା; ଜୀବନ ଯିବା
Ḍhukuḍhuku hebā ପୂର୍ବରୁ କ୍ଷୀଣଭାବରେ ନିଶ୍ୱାସ ନେବା ବା
খাবীখাওআ ପାଟିକୁ ପାକୁପାକୁ କରିବା; କ୍ଷୀଣରୂପେ
**तड़पना** ଚାମ୍ଫିବା – 1. To pant or gasp
(ଢୁକୁଢୁକ୍ ହେବା—ଅନ୍ୟରୂପ) very feebly just before death, to pant.
(ଯଥା—ପୋଖରୀର ପାଣି ଗୋଳ ହେବାରୁ ଭାକୁଡ଼ି ଓ ରୋହି ମାଛଯାକ ଢୁକୁଢୁକୁ ହେଲେଣି ।)
୨ । ମୁମୂର୍ଷୁ ଅବସ୍ଥାପନ୍ନ ହେବା—2. To be dying.
୩ । ଅତିକ୍ଷୀଣ ବା ମୃତପ୍ରାୟ ହେବା—
3. To be reduced to the last extremity; to have lost one's vitality.

ଢୁଙ୍କିବା—ପ୍ରାଦେ. (ସମ୍ବଲପୁର) କି—ଢୋକିବା—
Ḍhuṅkbā To sip; to gulp down.

ଢୁଙ୍କୁରା—ପ୍ରାଦେ. (ଗଞ୍ଜାମ) ବି—ଢୁଳା—
Ḍhuṅkurā Dozing.

ଢୁଙ୍କୁରା(ରେ)ଇବା—ପ୍ରାଦେ. (ଗଞ୍ଜାମ) କି—ଢୁଳାଇବା—
Ḍhuṅkurā(re)ibā To doze.

ଢୁଙ୍ଗ୍‌ଢାଙ୍ଗ୍—ଦେ. (ଧ୍ୱନ୍ୟନୁକରଣ) ଅ—ଢୁଙ୍ଗୁରୁ ଢୁଙ୍ଗୁରୁ (ଦେଖ)
Ḍhuṅgḍhāṅg Ḍhuṅguru ḍhuṅguru (See)
(ଢୁଙ୍ଗ୍ ଢୁଙ୍ଗ୍—ଅନ୍ୟରୂପ)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ঃ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ୍ଯ | ଉଅ | ଞ |
| ୨ | ଈ | ଊ | ରୁ | ଲୁ | ଯ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଢ଼ | ନ୍ନ |

ଢୁଙ୍ଗା—ଦେ. ବଣ (ସଂ. ଢୁଣ୍ଢି=ଗଣେଶ)—୧ । ବେଢଙ୍ଗିଆ (ଲୋକ)
Ḍhuṅgā ଯାହାର ଶରୀର ସୁଗଠିତ ନୁହେଁ—Unmethodical; unsymmterical.
୨ । ଥଲ୍ଲଲପେଟା—2. Pot-bellied.
୩ । ଧୁମ୍ବୁସା; ମୋଟ ଓ ଡେଙ୍ଗା—3. Stout and tall.

ଢୁଙ୍ଗୁରୁ ଢୁଙ୍ଗୁରୁ—ଦେ. (ଧ୍ୱନ୍ୟନୁକରଣ) ଅ—ଢୋଲଆଦିର ଅନୁଚ୍ଚ ଶବ୍ଦ;
Ḍhuṅguru ḍhuṅguru ঢুংগ্ ঢুংগ্—Low sound of a drum.
ঢুংগুর ঢুংগুর
ভুগ ভুগ [ ଦ୍ର—ଏହା ଢଙ୍ଗଢଙ୍ଗଠାରୁ ଅନୁଚ୍ଚ । ]
(ଢଙ୍ଗ୍ ଢାଙ୍ଗ୍, ଢଙ୍ଗ୍ ଢୁଙ୍ଗ୍, ଢୁଙ୍ଗୁରୁ ଢୁଙ୍ଗୁରୁ—ଅନ୍ୟରୂପ)

ଢୁଚନି—ପ୍ରାଦେ. (ମେଦିନୀପୁର) ବି. (ତୁଳ. ବ. ଏହି ଅର୍ଥରେ ଧୁଚନୀ)—
Ḍhuchani ଚାଉଳଧୁଆ ବାଉଁଶିଆ—A bamboo basket used for washing rice.

ଢୁଢା—ଦେ. (ଧ୍ୱନ୍ୟନୁକରଣ) ଅ—ଢୁଢୁ (ଦେଖ)
Ḍhuḍhā Dhudhu (See)
ପ୍ରାଦେ· (ସମ୍ବଲପୁର) ବି—୧ । ଖାଡ—1 Pit.
୨ । ଶିଶୁଙ୍କ ଧରିବା ନାଳରକ୍ତ ହଗା—
2. Infantile Dysentry.

ଢୁ ଢୁ—ଦେ. (ଧ୍ୱନ୍ୟନୁକରଣ) ଅ.—୧ । ଢିଢା (ଦେଖ)
Ḍhu ḍhu 1 Ḍhiḍhā (See)
ঢু ঢু धायँ धायँ
୨ । ବିଶେଷ ଜୋରରେ ବହୁ ପରିମାଣର ଜଳ କଠିନ ବସ୍ତୁ ଉପରେ ଅଜାଡ଼ି ହେବା—
2. Sound of profuse pouring down of water on a hard substance.
(ଯଥା—ବାତୁଳ ରୋଗୀର ମୁଣ୍ଡ ଉପରେ ବୈଦ୍ୟଙ୍କ ଉପଦେଶ-ମତେ ଗୃହକରମାନେ ପଗ୍ରଣ ଗରା ପାଣି ଢୁଢୁ କରି ଢାଳିଲେ । )
୩ । ଭାରି ଅସରାରେ ଅପର୍ଯ୍ୟାପ୍ତରୂପେ ବହୁ ସମୟ ବର୍ଷା ହେବା—3. A very heavy downpour or shower; to rain cats and dogs
(ଯଥା—ଆଜ ଘଣ୍ଟାଏକାଳ ଢୁଢୁ ବରଷା ହେବାରୁ ଗଡ଼ଆ ପୋଖରୀ ପାଣିରେ ପୂର୍ଣ୍ଣ ହୋଇଗଲା । )
୪ । ଅଜୀର୍ଣ୍ଣ ଓ ବାୟୁ ଯୋଗେ ପେଟ ମଧ୍ୟରେ ଉଚ୍ଚ କଳ କଳ
ढबढब ଶବ୍ଦ—4. Loud gurgling sound inside the abdomen due to indigestion and wind.
(ଯଥା—କାଲି ରାତିରେ ଖିରିପିଠା ଖାଇ ଆଜି ସକାଳୁ ତା ପେଟ ଢୁ ଢୁ ହେଉଅଛି । )
୫ । ଡୁ ଡୁ ( ଦେଖ )—5. Ḍu ḍu ( See )

ଢୁଢୁଆ—ପ୍ରାଦେ (ଗଡ଼ଜାତ) ବି—ପାହାଡ଼ ଓ ଜଙ୍ଗଲରୁ ବାହାରିଥିବା
Ḍhuḍhuā ଛୋଟ ନାଳ ବା ଜୋଡ଼—A small stream rising from a hill or jungle.

ଢୁଢୁଆ କେଲା—ଦେ. ବି—ଦାକ୍ଷିଣାତ୍ୟରୁ ଏ ଦେଶକୁ ସମୟେ ସମୟେ
Ḍhuḍhuā kelā ଆସିବା ଏକଜାତୀୟ ତେଲଙ୍ଗା କେଲା—
A class of wandering gipsies hailing from the Telugu country.
[ ଦ୍ର—ଏ ଜାତିର କେଲୁଣୀମାନେ ଚଟା ବୁଣନ୍ତି । ତାଳପତ୍ରରେ ଝୁମ୍ପିକା ଓ ଖେଳନା ବୁଣି ବିକନ୍ତି ଓ ଭିକ ମାଗନ୍ତି । ]

ଢୁଢୁଆ ବାଇଗଣ—ଦେ. ବି—ପାଳୁଆ ବାଇଗଣ; ନଈକୂଳ ପଟୁରେ
Ḍhuḍhuā bāigaṇa ହେବା ବଡ଼ ବା ଡୋଲ, ପାଣିଚିଆ ବାଇଗଣ—A kind of brinjal grown on silted river-side land. ( specially that grown in the bank of the Mahanadı river in Banki Estate in the District of Cuttack.)
ରଣ, ବଣ, ଛଣ,
ବାଙ୍କିରଜା ଆଉ ବୋଇଲେ ମୋ ଢୁଢୁଆ ବାଇଗଣ । ଢଗ ।
[ ଦ୍ର—ଡମ୍ପଡ଼ା ରାଜ୍ୟର ରଣ ନଦୀର ମାଛରୁ ଓ ଜଙ୍ଗଲ ଜାତ ଦ୍ରବ୍ୟମାନଙ୍କରୁ ଓ ଛଣ ବା ଛଣିରୁ ଡମ୍ପଡ଼ା ରାଜାଙ୍କର ଯାହା ଆୟ ହୁଏ, ବାଙ୍କି ରଜାଙ୍କର ଢୁଢୁଆ ବାଇଗଣ ଫଳବା ପଟୁ ଜମିର ଖଜଣାରୁ ତହିଁ ଅପେକ୍ଷା ବେଶି ଆୟ ହୁଏ, ଏହି ବିଷୟକୁ ଲକ୍ଷ୍ୟ କରି ଏହି ଢଗ ବୋଲାଯାଏ । ]

ଢୁଢୁ ବରଷା—ଦେ. ବି—ଦୁମୁକାଣି ବରଷା; ମୁଷଳଧାରାରେ ବର୍ଷା—
Ḍhuḍhu barashā A very heavy downpour.
ঘোরবৃষ্টি, বড়পসলা, धारासारा, मूसलधार बरसना

ଢୁଣିନାଗ—ପ୍ରାଦେ (ସମ୍ବଲପୁର) ବି—ଡମ୍ପସାପ—
Ḍhuṇināg A sort of cobra.

ଢୁଣ୍ଡିବା—ପ୍ରାଦେ (ସମ୍ବଲପୁର) କ୍ରି ( ତୁଳ. ହି. ଢୁଁଢନା ) ଖୋଜିବା—
Ḍhuṇḍbā To search after.
(ଢୁଁଢିବା, ଢୁଣ ବା, ଢଣ୍ଢିବା—ଅନ୍ୟରୂପ)

ଢୁଣ୍ଡୁଣ—ଦେ. (ଧ୍ୱନ୍ୟନୁକରଣ) ଅ—ଅନୁଚ୍ଚ ଠଁ ଠଁ ଶବ୍ଦ—
Ḍhuṇḍuṇ Low tinkling sound.
(ଢଣ୍ଢଣ—ଅନ୍ୟରୂପ)

ଢୁଣ୍ଡୁପନ୍ଥନାନା—ଦେ. ବି (ନାମ)—ନାନା ଫଡ଼ନବିସ (ଦେଖ)
Ḍhuṇḍupanthanānā Nānā phaṛḍnabisa (See)

ଢୁଣ୍ଡୁରା—ଦେ. ବି (ସଂ. ଢୁଣ୍ଢ ଧାତୁ=ଅନ୍ୱେଷଣ)—୧ । ଅନ୍ୱେଷଣ;
Ḍhuṇḍurā ଖୋଜାଖୋଜି; ଧୁଣ୍ଡିବା—1. Searching.
ঢুণ্ডা, ढूँढा

ଢୁଣ୍ଢ (ଧାତୁ)—ସଂ.—ଅନ୍ୱେଷଣ କରିବା; ଖୋଜିବା—
Ḍhuṇḍha (root) To search after; to seek for.

ଢୁଣ୍ଢା—ସଂ. ବି—(ନାମ) ହିରଣ୍ୟକଶିପୁର ଭଉଣୀ—Name of the
Ḍhuṇḍhā sister of Hiraṇya Kaśipu.
[ ଦ୍ର—ଏ ଶିବଙ୍କଠାରୁ ବର ପାଇଥିଲା ଯେ, ନିଆଁରେ ପୋଡ଼ି ହେବ ନାହିଁ । ପ୍ରହ୍ଲାଦଙ୍କୁ ମାରି ପକାଇବା ପାଇଁ ନାନା

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ରୁତ ୧ ଚଳ୍ଣ୍ଢ ଅକ୍ଷର ଓ ମାତ୍ରା ଏବଂ ୨ ଚଳ୍ଣ୍ଢ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚଳ୍ଣ୍ଢ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବଦଳରେ ୨ ବା ୧ ଚଳ୍ଣ୍ଢ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ଢୁଅ' ନ ମିଳିଲେ 'ଢ଼ୁଅ' ଦେଖିବେ; 'ବଢ଼' ନ ପାଇଲେ 'ବଢ' ଦେଖିବେ, 'ଅଢ଼ୋ' କୁ ପାଇଲେ 'ଅଢ଼ା' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ

ଉପାସ୍ୟ କରି ହିରଣ୍ୟକଶିପୁ କଷ୍ଟଳ ହେବାରୁ ଢୁଣ୍ଢାକୁ ଡାକିଲା । ଢୁଣ୍ଢା ପ୍ରହ୍ଲାଦକୁ କୋଡ଼ରେ ବସାଇ ନିଆଁ ଭିତରେ ଯାଇ ବସିଲା । ପ୍ରଭୁଙ୍କ ଦୟାରୁ ପ୍ରହ୍ଲାଦ ପୋଡ଼ିଗଲା ନାହିଁ କିନ୍ତୁ ଢୁଣ୍ଢା ଭସ୍ମ ହୋଇ ଗଲା—(ହି. ଶବ୍ଦସାଗର) । ]

**ଢୁଣ୍ଢି**—ସଂ. ବି—ଗଣେଶଙ୍କର ଏକ ନାମ—
Ḍhuṇḍhi One of the names of Gaṇesa.

**ଢୁଣ୍ଢିରାଜଗଣେଶ** —ଦେ ବି ( ସଂ. ଢୁଣ୍ଢି=ଗଣେଶ )—
Ḍhuṇḍhirājagaṇesa କାଶୀରେ ପ୍ରତିଷ୍ଠିତ ଗଣେଶ ମୂର୍ତ୍ତିଙ୍କ ନାମ—Name of an idol of Ganesh at Benares.

**ଢୁମୁଢୁମୁ**—ଦେ. ( ଧ୍ୱନ୍ୟନୁକରଣ ) ଅ—
Ḍhumuḍhumu ଢୋଲ ଆଦି ବାଦ୍ୟର ଅନୁଚ୍ଚ ଶବ୍ଦ—
(ଢୁମ୍ ଢୁମ୍—ଅନ୍ୟରୂପ) Low sound of drum
ଢୁମ୍ ଢୁମ୍ [ ଦ୍ର—ଢମଢମଠାରୁ ଅନୁଚ୍ଚ । ]
**डिमड़िम**

**ଢୁମ୍ପା**—ଦେ. ବି (ଏ ବାଦ୍ୟରୁ ଉତ୍ପନ୍ନ ଢୁମ୍ ଢୁମ୍ ଶବ୍ଦ ଅନୁକରଣ)—
Ḍhumpā ୧ । ଗଡ଼ଜାତ ଓ ଗଞ୍ଜାମରେ ବ୍ୟବହୃତ ମଇ ଗଛର କାଣ୍ଡ ବା ଶିଆଳି ଲତାର ଖୋଳରେ ନିର୍ମିତ ଏକପ୍ରକାର ଆନଦ୍ଧ ବାଦ୍ୟ—1. A kind of long double mouthed drum made from the hollow bark of 'Mai' ( Odina wodier ) tree or 'Siāli' creeper.

[ ଦ୍ର—ମଇ ଗଛର ଗୋଟିଏ ୭ ହାତ ଲମ୍ବର ସଳଖ ଗଣ୍ଡିକୁ କାଟି ପାଣିରେ ବୁଡ଼ାଇ ରଖିଲେ କେତେ ଦିନ ପରେ ତହିଁର ବକଳଟି କାଠରୁ ଶ୍ଳଥ ହୋଇ ଛାଡ଼ିଯାଏ ଓ ବକଳରୁ କାଠକୁ ଖସାଇଲେ କେବଳ ଫମ୍ପା ବକଳ ରହେ । ସେହି ଫମ୍ପା ବକଳକୁ ଶୁଖାଇ ଗଡ଼ଜାତର ଲୋକେ ତାହାର ଦୁଇ ମୁଣ୍ଡରେ ଚମଡ଼ା ଛାଉଣି କରନ୍ତି । ବାଦକମାନେ ଉକ୍ତ ଲମ୍ବ ବାଦ୍ୟର ବିପରୀତ ପାଖରେ ଜୋଡ଼ା ଜୋଡ଼ା ହୋଇ ବସି ଘାଗୁଡ଼ିଲଗା କାଠି ବା ଡାଙ୍ଗ ଖଣ୍ଡିଏ ଲେଖାଏଁ ପ୍ରତ୍ୟେକଙ୍କ ଦୁଇ ହାତରେ ଧରି ଉକ୍ତ ଟୋଲ ଫମ୍ପା ବକଳର ଦେହରେ ତାଳ ଅନୁସାରେ ଅଘାତ କରି ଗୀତ ବୋଲନ୍ତି । ଏହାକୁ ଢୁମ୍ପା ବାଦ୍ୟ ବୋଲିଯାଏ—ଏହାର ଗୋଲେଇ ୩½ ଫୁଟ ଓ ଲମ୍ବ ୧୦ ଫୁଟ ପର୍ଯ୍ୟନ୍ତ ହୁଏ । ଏହା ଦେଖିବାକୁ ବଡ଼ କାଠ ପରି । ]

୨ । ଢୁମ୍ପା ବାଦ୍ୟ ବଜାଇ ବୋଲିଯିବା ଗୀତ—
2. Songs sang in accompaniment of Ḍhumpā drum.

[ ଦ୍ର—କବିସୂର୍ଯ୍ୟଙ୍କ ରଚିତ ଢୁମ୍ପା ଗୀତ ୨୫ଟି ( ଶ୍ଳେଷ ଢୁମ୍ପା ଓ ଜାଇ ଫୁଲ ଢୁମ୍ପା ) ପଣ୍ଡିତ କୁଳମଣି ଦାଶଙ୍କ କବିସୂର୍ଯ୍ୟ ଗ୍ରନ୍ଥାବଳୀର ୪ର୍ଥ ଭାଗ ୨୯୬।୨୯୩।୨୯୪ ପୃଷ୍ଠାରେ ଦିଆ ହୋଇଅଛି । ]

**ଢୁମ୍ପା ଗୀତ**—ଦେ. ବି—ଢୁମ୍ପା ୨ (ଦେଖ)
Ḍhumpā gīta Ḍhumpā 2 (See).
(ଢୁମ୍ପା ସଙ୍ଗୀତ—ଅନ୍ୟରୂପ) [ ଦ୍ର—ଏହା ପ୍ରଥମେ ଗଞ୍ଜାମ ଓ ଅଠଗଡ଼ରୁ ଉଦ୍ଭାବିତ ଓ କବିସୂର୍ଯ୍ୟଙ୍କ ଦ୍ୱାରା ପ୍ରଥମେ ପ୍ରବର୍ତ୍ତିତ ବୋଲି କେହି କେହି କହନ୍ତି । ]

**ଢୁମ୍ପାରାଷ୍ଟ୍ର**—ଦେ. ବି—କନ୍ଦମୂଳଜାତୀୟ ଲତାବିଶେଷ—
Ḍhumpā rāshṭra A kind of creeper with sweet bulbous roots.

**ଢୁରି**—ପ୍ରାଦେ (ସମ୍ବଲପୁର) ବି—ଶଗଡ଼ର ଝିପେଇ—
Ḍhuri A triangular prop for the front end of a cart.

**ଢୁଳ**—ଦେ. ବି.(ସଂ. ଦୁଲ୍ ଧାତୁ=ଚଳନ)—ନିଦ୍ରାବେଶଜନିତ ଚଳିବା;
Ḍhuḷa ଢୁମାଇବା—Dozing.
ଢଳ, **झपकी, झूम**

**ଢୁଳା**—ଦେ. ବି—ଢୁଳ ( ଦେଖ )
Ḍhuḷā Ḍhuḷa ( See )
ଢୁଳା ବିଣ—୧ । ସର୍ବଦା ଢୁଳାଇବାରେ ଅଭ୍ୟସ୍ତ—
**झूमाउ** 1. Given to dozing; drowsy.
୨ । ଢୁଳୁଢୁଳୁ ( ଦେଖ )
2. Ḍhuḷu-ḍhuḷu ( See )

**ଢୁଲାଇ**—ଦେ. ବି—ଢୋଲାଇ ( ଦେଖ )
Ḍhulāi Ḍholāi ( See )
( ଢୁଲେଇ—ଅନ୍ୟରୂପ )

**ଢୁଳା(ଳେ)ଇବା**—ଦେ. କ୍ରି· ( ସଂ. ଦୁଲ୍ ଧାତୁ )—ନିଦ୍ରାକୃଷ୍ଟ ହୋଇ
Ḍhuḷā(ḷe)ibā ଇତସ୍ତତଃ ଚଳିବା; ନିଦ୍ରାରେ ଘାରି ହେବା—
ଢୁଳା; ଢୋଳା To drowse; to doze.
**झूमना, झपकी लेना** ଢୁଳାଇଲା ପରି କାମ ଅନଳ ଲାଗିଲୁ—କବିସୂର୍ଯ୍ୟ, ସଙ୍ଗୀତ ।

**ଢୁଳା ରୋଗ**—ଦେ. ବି—ନିଦ୍ରା ରୋଗ—
Ḍhuḷā roga Sleeping sickness.
କୁମ୍ଭକର୍ଣ୍ଣ ରୋଗ **ऊँघा रोग**

**ଢୁଳୁଢୁଳୁ**—ଦେ. ବି—ନିଦ୍ରାକୃଷ୍ଟ ହେବାରୁ ଚଳିବା—
Ḍhuḷu-ḍhuḷu Dozing.
ଢୁଳୁଢୁଳୁ ବିଣ—୧ । ନିଦ୍ରାକୃଷ୍ଟ—1. Sleepy; drowsy.
**ढुलमुल** ୨ । ନିଦ୍ରାକୃଷ୍ଟ; ନିଦ୍ରାରେ ଘାରି ହେବା; ଢୁଳାଉଥିବା—
ଢୁଳ ଢୁଳ } ଅନ୍ୟରୂପ 2. Dozing; drowsing.
ଢୁଳା ଢୁଳା ( ଯଥା—ଢୁଳୁଢୁଳୁ ଆଖି । )

**ଢୁସ୍**—ଦେ. ଅ ( ଧ୍ୱନ୍ୟନୁକରଣ )—ଢୁସୁ ( ଦେଖ )
Ḍhus Ḍhusu ( See )
( ଢୁସ୍ ଢୁସ୍—ଅନ୍ୟରୂପ )

**ଢୁସାଫଳ**—ପ୍ରାଦେ. ( ଗଡ଼ଜାତ ) ବି—ମଏଣ ( ଦେଖ )
Ḍhusā-phaḷa Maeṇa ( See ).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଏ | ଉଅ | ଞ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଵ | ନ୍ |

ଢୁସା—ଦେ. ବି. ( ସଂ. ଧୃଷ୍ ଧାତୁ=ହିଂସା କରିବା )—
Ḍhusā ୧ । ମୁଣ୍ଡ ଖପୁରି ଉପରେ ଆଙ୍ଗୁଠି ମୂଠା କରି ମାରିବା
ଢୁସା ଆଘାତ; ଠଣା—1. A hit on the head with
**ढुसा** the knuckles or back of the fist.
( ଢୁସି—ଅନ୍ୟରୂପ ) ୨ । ମୂଠା କରାଯାଇଥିବା କରତଳଦ୍ୱାରା ଭୁସିବା ଆଘାତ—
2. A butting stroke with the fisted palm.
୩ । କୁସ୍ତିର ଗୋଟିଏ ପେଚ—
3. A trick in wrestling.
[ ଦ୍ର—ଏ ପେଚରେ ଉପରେ ଥିବା ପହଲଵାନ ତଳେ ଥିବା ପହଲଵାନର ବେକରେ ହାତ ମାରି ତାହାକୁ ଚିତ କରେ । ]
( ଢୁସୀ—ଷୀ ) ଦେ. ବିଣ. ପୁଂ—ସ୍ଥୂଳକାୟ—Fat
ଢୁସା(ସେ)ଇବା—ଦେ. କ୍ରି. ( ସଂ. ଧୃଷ୍ ଧାତୁ. ହିଂସା କରିବା )
Ḍhusā(se)ibā ୧ । ଢୁସିବା କ୍ରିୟାର ଣିଜନ୍ତ ରୂପ—
ଢୁସାନ 1. The causative form of Ḍhusibā.
**टकराना, ठाँसवाना** ୨ । ଅନ୍ୟଦ୍ୱାରା ସବଳରେ ଆଘାତ କରାଇବା—2 To cause to hit hard; to cause to ram or butt.
୩ । କୌଣସି ପଦାର୍ଥରେ ଅନ୍ୟ ପଦାର୍ଥକୁ ଜୋରରେ ବାଜାଇବା—3. To cause to collide.
ସେ ଆଘାତରେ ଦୁଃଶାସନ ଢୁସି ହୋଇ
ପଡ଼ିଲା ରଥଦଣ୍ଡ ମୁଣ୍ଡକୁ ଢୁସାଇ—କୃଷ୍ଣସିଂହ. ମହାଭାରତ. କର୍ଣ୍ଣ ।
ଢୁସିବା—ଦେ. କ୍ରି—ଜୋରରେ ଆଘାତ କରିବା—
Ḍhusibā To strike or hit hard; to ram.
ଢୁସାନ ଦ୍ୱାର ପରି ମଣି ମୁଁ ଅଭ୍ୟାସରେ ଗଲି
**ठाँसना** ପଥର କାନ୍ଥ ଥିଲା ଢୁସି ହେଲି—କୃଷ୍ଣସିଂହ, ମହାଭାରତ, ସଭା ।
ଢୁସି ହେବା—ଦେ. କ୍ରି—ଚାଲିବା ସମୟରେ ଅଗ୍ରସ୍ଥିତ ବାଧାଦ୍ୱାରା
Ḍhusi hebā ଆଘାତ ପ୍ରାପ୍ତ ହେବା—To meet with an obstruction in front while walking.
ପିନ୍ଧିବା ଦୁଆରମାନଙ୍କୁ ଭେଟିଲେ
ନ ପିନ୍ଧିବା ଦ୍ୱାରମାନଙ୍କେ ଢୁସି ହେଲେ—କୃଷ୍ଣସିଂହ. ମହାଭାରତ. ସଭା ।
ଢୁସୁ—ଦେ. ( ଧ୍ୱନ୍ୟନୁକରଣ ) ଅ—
Ḍhusu ୧ । ଭୁସ୍; ହଠାତ୍ ଭୂମିରେ ପଡ଼ିଯିବା ଶବ୍ଦ—
ଭୁସ 1. Heavy sound of sudden fall.
**ठस्** ୨ । ଢୁସ୍ ଶବ୍ଦ କରି—
( ଢୁସ୍—ଅନ୍ୟରୂପ ) 2. Producing a thudding sound.
ସେ ଆଘାତରେ ଦୁଃଶାସନ ଢୁସ୍ ହୋଇ
ପଡ଼ିଲା ରଥଦଣ୍ଡ ମୁଣ୍ଡକୁ ଢୁସାଇ—କୃଷ୍ଣସିଂହ, ମହାଭାରତ, କର୍ଣ୍ଣ ।
ଢେଉ—ଦେ. ବି. ( ସଂ. ଧ୍ୱନ୍ତ=ଜଳ କମ୍ପ ସମୁଦ୍ରର ଢେଉ ଆଘାତ
Ḍheu ବେଳେ ଢୁ ଢୁ ଶବ୍ଦ ଶୁଭିବାରୁ)—ଲହଡ଼ି; ଜଳତରଙ୍ଗ; ଊର୍ମି—Wave.
ଢେଉ **लहर**
**लहर, ढेउ**

ଢେଁକ୍ରା—ପ୍ରାଦେ. (ସମ୍ବଲପୁର ଓ ଗଡ଼ଜାତ) ବି—ଭଣ୍ଡା; ଗଛ ମାଡ଼ିବା
Ḍheṅkrā ପାଇଁ ଦିଆଯିବା ଝୁଣ୍ଟା—Frame work or
ଢେଂକ୍ରି } ଅନ୍ୟରୂପ trellis put on the ground to
ଢେଂକା } make creepers creep up.
ଢେଁକ୍‌ଲିବା—ପ୍ରାଦେ. ( ସମ୍ବଲପୁର ) କ୍ରି—୧ । ( ଭୁଲ. ଏହି
Ḍheṅk-libā ଅର୍ଥରେ ଢକେଲ୍‌ନା )—ପେଲି ଦେବା—
1. To push off.
୨ । ତରଳ ପଦାର୍ଥ ଢୋକ ଦେବା; ଗିଳି ଦେବା—
2. To swallow up; to gulp down.
ଢେଁକାର—ପ୍ରାଦେ. ( ସମ୍ବଲପୁର ) ବି—ଢକ୍କାର; ହାଲୁଟ୍—
Ḍheṅkāra Belching.
( ଢେଂକାର—ଅନ୍ୟରୂପ )
ଢେଁଚୁ—ପ୍ରାଦେ. ( ସମ୍ବଲପୁର ) ବି. (ଭୁଲ. ହି. ଢେଁକଲା=ଟେଣ୍ଡା)—
Ḍheṅchā ସାନ ଟେଣ୍ଡା—A small contrivance for
(ଢେଂଚୁ—ଅନ୍ୟରୂପ) lifting water.
[ ଦ୍ର—ବେଶୀ ଗଭୀରରୁ ପାଣିକୁ ବଡ଼ ଟେଣ୍ଡାଦ୍ୱାରା ଉଠାଇ ଗୋଟିଏ ଖାଲରେ ପହଲେ ଜମା କରି ସେଠାରୁ ଅଳ୍ପ ଗୋଟିଏ ଟେ ଚୁଦ୍ୱାରା ତାହା କିଆରିକୁ ବୁହାଇବାକୁ ହୁଏ । ]
ଢେକାର—ଦେ. ବି—ଢକାର ( ଦେଖ )
Ḍhekāra Ḍhakāra ( See )
( ଢେକର; ଢେକୁର—ଅନ୍ୟରୂପ )
ଢେକା—ଦେ. ବି—୧ । ଢାକ୍କା—
Ḍhekā 1. Dacca (in east Bengal).
ଢେକ୍କା } ଅନ୍ୟରୂପ ୨ । ବହୁଦୂରସ୍ଥ ଦେଶ—
ଢେକ୍କା } 2. Any distant country; far off or distant country.
(ଯଥା—ଲୋକେ ବାଟ ପଚାରି ପଚାରି ଢେକାକୁ ଯାଉଛନ୍ତି ।)
୩ । (ସଂ. ଢକ୍କା) ବାଦ୍ୟବିଶେଷ; ଢକ୍କା—3 Drum.
୪ । ଢିକା (ଦେଖ)—4. Ḍhikā (See)
ଢେକି—ପ୍ରାଦେ. (ବସ୍ତର) ବି—ଢିଙ୍କି (ଦେଖ)
Ḍheki Ḍhiṅki (See)
ଢେଗ—ଗ୍ରା. ବି—ଢଗ (ଦେଖ)
Ḍhega Ḍhaga (See)
ଢେଗା—ଦେ. ବିଣ—ବର୍ତ୍ତୁଳ ଓ ବଡ଼; ଉମ୍ଭାକୃତି—
Ḍhegā Egg-shaped; oval and protruding.
ଡେବରା (ଯଥା—ଢେଗା ଆଖି ।)
(ଢେଗାଢେଗା—ଅନ୍ୟରୂପ) ବି—ଛାଗା—Single stitch.
ପ୍ରାଦେ. (ସମ୍ବଲପୁର) ବି—ପାଟି ଖେଳରେ ସାନ କଉଡ଼ିମାନଙ୍କୁ ଲକ୍ଷ୍ୟ କରି ମରାଯିବା ବଡ଼ କଉଡ଼ି—Big cowrie which is aimed at the row of small cowries in a Pati game.

ସାଧାରଣ ଲୋକେ ୬୮୮ ପୃଷ୍ଠାରେ ସ୍ୱତନ୍ତ୍ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଶାଢ଼' ନ ମିଳିଲେ 'ଶାଢ଼ି' ଖୋଜିବେ, 'କୃଅ' ନ ମିଳିଲେ 'କଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅର୍ଦ୍ଧ୍ୟ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ଢେଗାଆଖି**—ଦେ ବି—ବଡ଼ ବଡ଼ ଡିମ୍ବାକୃତି ଚକ୍ଷୁ—
Ḍhegāākhi — Oval and protruding eyes.
ডেবরাচোখ

**ଢେଗାଆଖିଆ**—ଦେ. ବିଣ ପୁଂ—ବଡ଼ ବଡ଼ ଚକ୍ଷୁ ଯାହାର ଥାଏ—
Ḍhegā ākhiā — Having oval and protruding eyes.
(ଢେଗା ଆଖେଇ—ସ୍ତ୍ରୀ)

**ଢେଗାଫଳ**—ଦେ. ବି—ଅଣ୍ଡାକାର ବର୍ତ୍ତୁଳ ଫଳବିଶେଷ; ଲେଖନ
Ḍhegāphaḷa — କୋଳି—A kind of egg-shaped fruit.

**ଢେଗା ମାରିବା**—ଦେ. କ୍ରି—କୌଣସି ବସ୍ତ୍ରଖଣ୍ଡକୁ ଅଟକାଇ ରଖିବା
Ḍhegā māribā — ଉଦ୍ଦେଶ୍ୟରେ ଦୂର ଛାଡ଼ିଆ କରି ଠାଙ୍କା ମାରି
টাঁকামারা — ସିଲେଇ କରିବା—To make single and
टाँकामारना — distant stitches.
(ଢେଗା ଗଲାଇବା; ଢେଗା ଗଲେଇବା—ଅନ୍ୟରୂପ)

**ଢେଙ୍କଣ**—ଦେ. ବି—୧ । ଢଙ୍କଣ (ଦେଖ)
Ḍheṅkaṇa — 1. Ḍhaṅkaṇa (See)
୨ । ଲମ୍ବ ବେଣ୍ଟଯୁକ୍ତ ବରଛା—
2. Long handled lance.

**ଢେଙ୍କଲା**—ପ୍ରାଦେ. (ଗଡ଼ଜାତ) ବି—ଢେକା—
Ḍheṅkaḷā — Brick bats; clods of earth for flinging.

**ଢେଙ୍କା**—ଦେ. ବି—୧ । ଢେକା (ଦେଖ)
Ḍheṅkā — 1. Ḍhekā (See)
ଢେଂକା } ଅନ୍ୟରୂପ — ୨ । ଢିର୍ା (ଦେଖ)
ଢେଁକା } — 2. Dhirā (See)
୩ । ପ୍ରାଚୀନକାଳରେ ଢେଙ୍କାନାଳ ରାଜ୍ୟରେ ରାଜତ୍ୱ କରୁଥିବା ରଣପ୍ରିୟ ଶବର ରାଜା—3. Name of a king of the Sabara caste who ruled over the Dhenkanal State of Orissa in anceint times.

କପିଳ ସ ଢୋଲ ନିବାସୀ ଶବର
ରଣରଙ୍କା ଢେଙ୍କା ଯା ବଂଶଶେଖର । ରଥାଜାଥ· ନନ୍ଦୀକେଶ୍ୱରୀ ।

[ ଦ୍ର—ତାଙ୍କର ବାସସ୍ଥାନ ଶାଳିଆ ପର୍ବତ ଶିଖରରେ ଥିଲା । ଶ୍ରୀଧର ଭଞ୍ଜ ନାମକ ଜଣେ କ୍ଷତ୍ରିୟ ତାଙ୍କୁ ପରାଜିତ କରି ତାହା ନାମରେ ରାଜ୍ୟର ନାମ ଢେଙ୍କାନାଳ ଦେଲେ । ]

ପ୍ରାଦେ. (ସମ୍ବଲପୁର) ବି—ଠେକା—Turban.

**ଢେଙ୍କାନାଳ**—ଦେ. ବି. (ନାମ)-ଓଡ଼ିଶାର ଗୋଟିଏ ବଡ଼ ଗଡ଼ଜାତ
Ḍheṅkānāḷa — ରାଜ୍ୟ—Name of one of the bigger Orissa States.
ଢେଂକାନାଳ } ଅନ୍ୟରୂପ
ଢେଁକାନାଳ }

**ଢେଙ୍କାଶ୍ରାବଣ**—ଦେ. ବି—ଧାରଶ୍ରାବଣ; ଯେଉଁ ଶ୍ରାବଣମାସରେ ଢିଙ୍କି
Ḍheṅkāsrābaṇa — କୁଟିଲା ପରି ଅନବରତ ବୃଷ୍ଟି ହୁଏ—
(ଢେଙ୍କାଶ୍ରାବଣ—ଅନ୍ୟରୂପ) — Month of Śrābaṇa in which it rains incessantly.

ଅଇଲାରେ ଢେଙ୍କାଶ୍ରାବଣ, ଘଡ଼ବଡ଼ ଦରଶିବନ
ଆଶ୍ୱିନ ମାସରେ ଗହଳା ଗହଳ, କାର୍ତ୍ତିକରେ ପାଇବୁ ଧନ ।
କୃଷିବଚନ ।

**ଢେଙ୍କି**—ଦେ. ବି—ଢିଙ୍କି (ଦେଖ)
Ḍheṅki — Ḍhiṅki (See)
(ଢେଂକି, ଢେଁକି—ଅନ୍ୟରୂପ)

**ଢେଙ୍କିଆ**—ଦେ. ବି—୧ । ବାଲିରେ ଢିଙ୍କି ପରି ଖଣ୍ଡିଏ କାଠି ପୋତି
Ḍheṅkiā — ଆଖି ଆଡ଼କୁ ବାଲି ଛୁଆଁଡ଼ିବା—
1. A mode of sprinkling sands towards the eyes of a person by means of a contrivance of a twig resembling a dhenki.
୨ । ପୂର୍ବେ ଅବଧାନମାନେ ଛାତ୍ରମାନଙ୍କୁ ଦେଉଥିବା ଦଣ୍ଡବିଶେଷ—2 A kind of punishment given in the village schools in old days.

[ ଦ୍ର—ଏଥିରେ ଡାହାଣ ଅଣ୍ଟୁକୁ ଭୂଇଁରେ ମାଡ଼ିବସି ବାଆଁ ଗୋଡ଼ର ତଳପାରେ ବସି ବାଆଁ ଗୋଡ଼ ଓ ଜଙ୍ଘ ସନ୍ଧିରେ ବାଆଁ ହାତ ପୂରାଇ ବାଆଁ ହାତଦ୍ୱାରା ନିଜର ନାକକୁ ଧରି ଡାହାଣ ହାତରେ ନିଜର ବାଳ ଧରି ମୁହଁକୁ ଭୂଇଁରେ ଲଗାଇବାକୁ ହୁଏ । ]

**ଢେଙ୍କିବୁନ୍ଧିଆ**—ପ୍ରାଦେ (ସମ୍ବଲପୁର) ବିଣ—ଯେଉଁ ଗଛର ମୂଳ ପାଖ ବା
Ḍheṅkibuṅdhiā — ଗଣ୍ଡି ଢିଙ୍କି ପରି ମୋଟ ( ପ୍ରାୟ ୧ ଫୁଟ ବ୍ୟାସବିଶିଷ୍ଟ )—( a tree ) Having the trunk at the foot about one foot in diameter.

**ଢେଙ୍କୁଣ**—ପ୍ରାଦେ (ଗଡ଼ଜାତ) ବି—ଢଙ୍କୁଣ (ଦେଖ)
Ḍheṅkuṇa — Ḍhaṅkuṇa (See).

**ଢେଙ୍କୁଣିଆ**—ପ୍ରାଦେ (ଗଡ଼ଜାତ) ବି—ଢଙ୍କୁଣିଆ (ଦେଖ)
Ḍheṅkuṇiā — Ḍhaṅkuṇiā (See).

[ ଦ୍ର—୧୮୯୧ ସାଲ ପର୍ଯ୍ୟନ୍ତ କେନ୍ଦୁଝରରେ ଢେଙ୍କୁଣିଆ ପାଇକ ନାମରେ ଏକ ଶ୍ରେଣୀର ଜାଗିରିଆ ପାଇକ ଥିଲେ । ]

**ଢେଙ୍କୁଲି**—ପ୍ରାଦେ (ଗଡ଼ଜାତ) ବି—ଛାଟକଣି—
Ḍheṅkuli — A sling.

**ଢେଙ୍ଗରା**—ପ୍ରାଦେ (ସମ୍ବଲପୁର ଓ ଗଡ଼ଜାତ) ବିଣ—ବଗଡ଼ା; ମୋଟା—
Ḍheṅgarā — Coarse.
( ଯଥା—ଢେଙ୍ଗରା ଚାଉଳ; ଢେଙ୍ଗରା ଚାଉଳ । )

**ଢେଙ୍ଗା**—ପ୍ରାଦେ (ସିଂହଭୂମ) ବିଣ—ଢେଙ୍ଗା—
Ḍheṅgā — Tall

**ଢେଣ କୋଇଲା ( ଇତ୍ୟାଦି )**—ପ୍ରାଦେ ( ଗଡ଼ଜାତ ) ବି—
Ḍheṇa koilā (etc) — ଢେଣୁ ଇତ୍ୟାଦି (ଦେଖ)
Ḍheṇu etc (See).

| ଽ | ଈ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟୁ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ରୁ | ଲୁ | ପ୍ରୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଢ଼ | ନ୍ତ |

ଢେଣୁ—ପ୍ରାଦେ (ପୁରୀ) ବି (ସଂ ଧନୁ)—ପୁରୀ ସାଇଯାତରେ ବାହାରିବା
Ḍheṇu ନାଗାମାନଙ୍କ ପିଠିରେ ବନ୍ଧାଯିବା ଧନୁ—
Bow tied to the back of 'Nāgās in the 'Sāijāta of Puri town.

ପ୍ରାଦେ ( ଗଡ଼ଜାତ )—ବି—ଗଡ଼ଜାତରେ ଗ୍ରାମ ଦେବତା ମଙ୍ଗଳାଙ୍କ ନିକଟରେ ବାଜିବା ବାଦ୍ୟବିଶେଷ—
A sort of musical instrument struck before "Village Goddess in the Orissa States.

[ଦ୍ର—କୌଣସି କୌଣସି ଗଡ଼ଜାତରେ ଆଶ୍ୱିନ ମାସ ଷୋଳ ପୂଜା ସମୟରେ ବ୍ରାହ୍ମଣ କରଣ ଭିନ୍ନ ଅନ୍ୟଜାତୀୟ ସ୍ତ୍ରୀଲୋକମାନେ ମଙ୍ଗଳାଙ୍କ ମନ୍ଦିରରୁ ପ୍ରତ୍ୟହ ଗୋଟିଏ ଗୋଟିଏ କଳସ ପୋଖରୀକୁ ନେଇ ସେଠାରେ ସ୍ନାନ କରନ୍ତି । ରାତିରେ ସେହି ସ୍ତ୍ରୀମାନେ ମଙ୍ଗଳାଙ୍କ ଘରେ ରୁଣ୍ଡ ହୋଇ ଠାକୁରାଣୀଙ୍କୁ ଭକ୍ତି କରନ୍ତି ଓ ସାଧବ ଗମନ ନାମରେ ଗୀତ ଗାଆନ୍ତି । ଗୋଟାଏ ହାଣ୍ଡି ମୁହଁରେ କୁଲା ଘୋଡ଼ାଇ ତା ଉପରେ ଗୋଟିଏ ଗୁଣଯୁକ୍ତ ଧନୁ ବସି ତାକୁ ଟାଣି ଏକପ୍ରକାର ଶବ୍ଦ ମଧ୍ୟ କରନ୍ତି । ଏହିଭଳି ବାଦ୍ୟକୁ କୋଇଲା କହନ୍ତି । ଏହି ଯାତ୍ରା "ଆଶ୍ୱିନ ମଙ୍ଗଳା" ଯାତ୍ରା ନାମରେ ପରିଚିତ । ]

ଢେଣୁଁଆଁ—ଦେ. ବି—ଡେଣୁଆଁ (ଦେଖ)
Ḍheṇuñāñ Ḍeṇuāñ (See).

ଢେଣୁକ—ଦେ. ବି—ଧନୁ—
Ḍheṇuka Bow.

ଢେଣୁ କୋଇଲା ( ଇତ୍ୟାଦି )—ପ୍ରାଦେ ( ଗଡ଼ଜାତ ) ବି—
Ḍheṇu koilā (etc) ଢେଣୁ (ଇତ୍ୟାଦି) (ଦେଖ)
Ḍheṇu (etc) (See).

ଢେଣୁ ଗୀତ—ପ୍ରାଦେ (ଗଡ଼ଜାତ) ବି—ଢେଣୁ ବାଦ୍ୟ ସହିତ ବୋଲାଯିବା
Ḍheṇu gita ଗୀତ—The songs sung in accompaniment of the Dheṇu music.

ଢେଣ୍ଡ୍ରା (ଇତ୍ୟାଦି)—ଡେଙ୍ଗୁରା ଇତ୍ୟାଦି ( ଦେଖ )
Ḍhendrā etc. Ḍengurā etc (See)
ਢੇਂਡ੍ਰਾ, ढिंढोरा

ଢେଣ୍ଡୁରା ଇତ୍ୟାଦି—ଡେଙ୍ଗୁରା ଇତ୍ୟାଦି ( ଦେଖ )
Ḍhendurā etc. Ḍengurā etc (See)

ଢେଁପ୍‌ଲିବା—ପ୍ରାଦେ (ସମ୍ବଲପୁର) କ୍ରି—ଢେଁକ୍‌ଲିବା ( ଦେଖ )
Ḍheñplibā Ḍheñklibā ( See )

ପ୍ରାଦେ. ( ଗଡ଼ଜାତ ) ବି—ଗଡ଼ଜାତରେ ସବାରୀ କାନ୍ଧିଆ ବେହେରାଙ୍କ ଡାକବିଶେଷ—One of the words uttered by Palki bearers in the Orissa States.

( ଯଥା—ଢେଁପ୍‌ଲିବା, ଢିପେଇଥିବା । )

ଢେପ—ପ୍ରାଦେ (ଗଞ୍ଜାମ) ବିଣ—ଢିପ; ଉଚ୍ଚ (ଭୂମି)—
Ḍhepa High (land)

ବି—ଉଚ୍ଚ ଭୂମି—High land.

ଢେପା—ଦେ. ବିଣ—୧ । ଢିପା—
Ḍhepā 1. High.
ਟਿੱਪਾ ୬ । ଢେଙ୍ଗା—2. Tall.

ଗାଈ କରିବ ଗୁଣ୍ଡିଆ ଗାରଡ଼ି, ବଳଦ କରିବ ଢେପା
ଆଗୁ ବଳଦୁ ମାଣେ ନ କରିବ, ପାଏ କରିଥିବ କପା । କୃଷିବଚନ ।

ଢେବା—ଦେ. ବିଣ—ଡିମ୍ବା ( ଦେଖ )
Ḍhebā Ḍimbā ( See )

ଢେବା ଗେବା—ଦେ. କ୍ରି. ବିଣ—୧ । ଉଅଠଅ କରି; ବିଶ୍ରୀ ବା
Ḍhebā gebā ଅସୁନ୍ଦର ଭାବରେ—1. Unelegantly.
( ଯଥା—ସେ ଢେବା ଗେବା କରି କାମ କରୁଛି । )
अड़बड़ ୬ । ଢେବା ଗେବା; ଖାବୁ ଖାବୁରିଆ; ଅସମାନ ଭାବରେ—2. Unevenly

ଢେଲ ଲଗାଇବ ଢେବା ଗେବା,
ତେବେ ଖାଇବାକୁ ଆଗ
ତହିଁ ହୋଇ ଗୋଲ ପଡ଼ିଥିବ,
ମାଡ଼ି ବସିଥିବ ଜାଗା । ପ୍ରବଚନ ।

ଢେବା ଢେବା—ଦେ ବିଣ—ଡିମ୍ବା ଡିମ୍ବା ( ଦେଖ )
Ḍhebā ḍhebā Ḍimbā ḍimbā ( See )

ଢେମଣ—ଦେ. ବି. ପୁଂ. ( ସଂ. ଧମନୀ=ଫୁଙ୍କିବା; ବ୍ରହ୍ମବାଲାସିନୀ )—
Ḍhemaṇa ୧ । ଉପପତି—1 A gallant; paramour.
(ଢେମଣୀ—ସ୍ତ୍ରୀ) ୬ । ଜାରଜ—2. Bastard; illegitimate.
୩ । ଅଲ୍ଲଜ୍ଜୁକ—3. A shameless person.
୪ । ଲୁଚରିତ୍ର ବା ଲମ୍ପଟ ବ୍ୟକ୍ତି—4. A lewd lechér.

ଢେମଣା—ଦେ. ବି—୧ । ଢେମଣ ( ଦେଖ )
Ḍhemaṇā 1. Dhemaṇa (See)
୬ । ଢମଣା ( ଦେଖ )—2. Ḍhamaṇā (See)

ଢେମଣୀ—ଦେ. ବି. ସ୍ତ୍ରୀ—( ସଂ. ଧମନୀ=ହସ୍ତିବାଲାସିନୀ )—
Ḍhemṇi ୧ । ଉପପତ୍ନୀ; ରକ୍ଷିତ ସ୍ତ୍ରୀ—1. Mistress, kept woman; concubine.
ਢੇਮਣੀ
उढरी ୬ । ବେଶ୍ୟା—2. Prostitute.
୩ । କୁଲଟା; ନଷ୍ଟା ସ୍ତ୍ରୀ—3. Adulteress.
୪ । ସ୍ତ୍ରୀଲୋକଙ୍କ ପ୍ରତି ଗାଳି—4. A term of rebuke.
୫ । ମାଈ ଢେମଣା ସାପ—
5. A female 'Ḍhemaṇā' serpent.

ଢେମା—ଦେ. ବି—ଢିମା ( ଦେଖ )
Ḍhemā Ḍhimā ( See )

ଢେର—ଦେ. ବିଣ—(ସଂ. ଭୂରି)—୧ । ଯଥେଷ୍ଟ—
Ḍhera 1. Abundant; sufficient.
ਢੇਰ ଯେ ସବୁ କଥା ଲେଖିବାକୁ ଗଲେ ଢେର କାଗଜ,
ढेर କଲମ, ଢେର ସମୟ ଆବଶ୍ୟକ । ଫକୀରମୋହନ. ଛମାଣ ଆଠଗୁଣ୍ଠ ।

ସାଧାରଣ ଲୋକେ ଅପର ସ୍ଥାନରେ ଦ୍ୱିତ ୧ ଛକ୍ଡ଼ିର ଅକ୍ଷର ଓ ମାତ୍ରା ଏବଂ ୨ ଛକ୍ଡ଼ିର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଛକ୍ଡ଼ିର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଛକ୍ଡ଼ିର ବଦଳରେ ୨ ବା ୧ ଛକ୍ଡ଼ିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଦ୍ୱିଅ' ନ ମିଳିଲେ 'ଦୀଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟା'ନ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବତ୍ତ' ନ ପାଇଲେ 'ଅଲ୍‌ବତ୍ତ ଦେଖିବେ

୨ । ଅତ୍ୟନ୍ତ; ବହୁତ; ଅତ୍ୟଧିକ; ଅନେକ—
2. Too much; exececssive; too many.
ବି.—ଅତ୍ୟଧିକ—Execess; plenty.

**ଢେଗ୍ର**—ପ୍ରାଦେ. (ସମ୍ବଲପୁର) ବି.—୧ । ଏକପ୍ରକାର ପାଣିଛୁଆଁ ତନ୍ତି
Dherā ଜାତି—1. A class of touchable weaver.
୨ । (ଭୁଲ. ହି. ଏହି ଅର୍ଥରେ ଏହି ଶବ୍ଦ)—ସୂତା ବଳିବା ପାଇଁ ବ୍ୟବହୃତ ତାକୁଡ଼ି—2 A kind of spindle for spinning thread.
ପ୍ରାଦେ. (ଯାଜପୁର) ବି.—ଘର ମଙ୍ଗଳାଙ୍କ ପୂଜାବିଶେଷ—
[ଦ୍ର—ଭାଦ୍ର ମାସରେ ଥରେ ମଙ୍ଗଳବାର ବା ଶନିବାର ଢେଳାମଣ୍ଡା କରି ପ୍ରତି ଘରେ କଳସ ବସାଇ ଘର ମଙ୍ଗଳାଙ୍କୁ ପୂଜା କରାଯାଏ, ଏବଂ ଗୋରୁଖୁଣ୍ଟ ମୂଳେ, ଦାଣ୍ଡରେ ଢେଳାପଣା ଢାଳି ଗାଁ ମୁଣ୍ଡ ଛକ, ପୋଖରୀ କୂଳରେ ଥିବା ବୁଢ଼ୀ ମୂଳରେ ସେହି ଢେଳାମଣ୍ଡାକୁ ଗ୍ରାମର ୨।୪ ଜଣ ବୁଢ଼ୀ ରଖି ଦେଇ ଆସନ୍ତି । ସେହି ଦିନ ରାତିରେ ଗ୍ରାମର ସମସ୍ତ ଅଦ୍ୟ ସ୍ତ୍ରୀଲୋକ କମଳଭୁଞ୍ଜା କରନ୍ତି ।]

**ଢେଲ୍**—ପ୍ରାଦେ. (ସମ୍ବଲପୁର) ବି—(ସଂ. ଦଲ)—ଢେଲା; ଟେକା;
Dhel ଲୋଷ୍ଟ୍ର—Clod of earth for flinging.

**ଢେଲା**—ଦେ. ବି. (ସଂ. ଦଳ, ଢଳ)—ଲୋଷ୍ଟ୍ର; ବଡ଼ ଟେକା—
Dhelā Big clod of earth used for pelting.
ঢেলা ଦେ. ବିଣ.—ଢେଗା (ଦେଖ)
**ढेला** Dhegā (See)

**ଢେଲା ଆଖିଆ**—ଦେ. ବିଣ. ପୁଂ.—ଢେଗା ଆଖିଆ (ଦେଖ)
Dhelā ākhiā Dhegā ākhiā (See)
(ଢେଲାଆଖିଇ—ସ୍ତ୍ରୀ)

**ଢୋ**—ଦେ. (ଧ୍ୱନ୍ୟନୁକରଣ) ଅ.—ଢୋ ଢା (ଦେଖ)
Dho Dho dhā (See)

**ଢୋଇବା**—ପ୍ରାଦେ. (ସିଂହଭୂମ) କ୍ରି. (ଭୁଲ. ହି. ଢୋନା=ବୋହି Dhoibā ନେଇ ପଳାଇବା)—(ସମ୍ପତ୍ତି) ଉଡ଼ାଇ ନଷ୍ଟ କରିବା—
To squander.

**ଢୋକ**—ଦେ. ବି. (ସଂ. ସ୍ତୋକ; କନ୍ନା ତୌକ=ଗଳ)—୧ । ଯେଉଁ
Dhoka ପରିମିତ ଜଳ ଏକାଥରକେ ଗଳାଧଃକରଣ କରି ଯାଇ
ঢোক ପାରେ; ଏକ ତରଳ ପରିମିତ ଜଳ—
**घूंट** 1. A gulp of water; a draught.
ଢୋକୁଟିଏ ଦିନା ହସ୍ତ ମୋ ସାର ଯାଉଛି ଦୃଷ୍ଟି ।
କବିସୂର୍ଯ୍ୟ, କଣୋପାଚମ୍ପୁ, ତ: ଗୀତ ।
୨ । ଭୋଜନ କ୍ରିୟା—2. Eating.
୩ । ଜୀବିକା—3. Livelihood; sustenance.
(ଯଥା—ବୃଷ୍ଟିର ଖଣ୍ଡି ଗଲା ଦିନ ଆଜି ଆମର ଢୋକ ଚଳୁନାହିଁ ।)

[ଦ୍ର—ଢୋକେ ପି, ଦଣ୍ଡେ ଖା—ନ୍ୟାୟ ।
ଉପସ୍ଥିତ ବିପଦରୁ ଖଲାସ ହୋଇ ପରେ କି ଅବସ୍ଥା ହେବ ତହିଁ ପ୍ରତି ଦୃଷ୍ଟି ନ ରଖିବା ସ୍ଥଳରେ ଏ ନ୍ୟାୟ ପ୍ରଯୋଜ୍ୟ । ବର୍ତ୍ତମାନ ଢୋକେ ପାଣି ପିଇ ଦେଲେ ଦଣ୍ଡକ ପାଇଁ ଶୋଷ ମରିଯିବ । ତାକୁ ତା ପରେ କପରି ତୃଷା ନିବୃତ୍ତି ହେବ ଏଥିର ଉପାୟ ନ ଭାବିବା ସ୍ଥଳରେ ଏ ନ୍ୟାୟ ଉଲ୍ଲେଖ ହୋଇଥାଏ ।]

**ଢୋକ ଚଳା(ଳେ)ଇବା**—ଦେ. କ୍ରି.—ଜୀବିକା ନିର୍ବାହ କରିବା—
Dhoka chaḷā(le)ibā To carry on one's livelihood.

**ଢୋକ ଚଳିବା**—ଦେ. ବି.—ଜୀବିକା ନିର୍ବାହ ହେବା—
Dhoka chaḷibā Maintenance.

**ଢୋକ ଛାଡ଼ିବା**—ଦେ. କ୍ରି.—(ମୁମୂର୍ଷୁ ବ୍ୟକ୍ତି) ଖାଇବା ବନ୍ଦ କରିବା—
Dhoka chhārdibā ଆହାର ଛାଡ଼ିବା—To give up
আহার ছাড়া taking any food ( said of a
**अहार छोड़ना** dying man.)
(ଢୋକ ଛାଡ଼ି ଦେବା—ଅନ୍ୟରୂପ)

**ଢୋକା(କେ)ଇବା**—ଦେ. କ୍ରି.—୧ । ଢୋକିବା କ୍ରିୟାର ଣିଜନ୍ତରୂପ—
Dhokā (ke)ibā 1. The causative form of Dhokibā.
ঢেকান ୨ । ଢୋକିବାକୁ ବାଧ୍ୟ କରିବା—2. To cause
**तुकवाना** another to gulp or swallow.
୩ । (ଭିତିବାର ଣିଜନ୍ତ) ପ୍ରବେଶ କରାଇବା—
3 To thrust; to cause to enter.
୪ । ମୁମୂର୍ଷୁ ହୋଇ ଶେଷ ନିଃଶ୍ୱାସ ତ୍ୟାଗ କରିବା—
4. To pant feebly just before dying.

**ଢୋକାଏ**—ଦେ. ବିଣ. ଓ ବି.—ଏକ ଢୋକ ମାତ୍ର—
Dhokāe One sip only (of)
এক ঢোক
(ଢୋକେ—ଅନ୍ୟରୂପ)

**ଢୋକିବା**—ଦେ. କ୍ରି.—(ସଂ. ସ୍ତୋକ; ସଂ. ତୌକ ଧାତୁ=ଗତି)—
Dhokibā ୧ । ଗିଳିବା—1. To gulp down.
ঢোকা ୨ । ଗଳାଧଃକରଣ କରିବା—
**ढोकाना ढोकना** 2. To swallow.
୩ । ପିଇବା—3. To drink.
ଢୋକୁଥିଏ ତା ପଲ୍ଲବ, ଅଧରରୁ ମଧୁ ଦ୍ରବ ଢୋକିବା କବେକ ଲବ ନୋହିଲା ରେ ।
କବିସୂର୍ଯ୍ୟ, ସଙ୍ଗୀତ ।

**ଢୋଡ଼୍**—ପ୍ରାଦେ. (ସିଂହଭୂମ) ବି.—ଗଛର କୋରଡ଼—
Dhodra The hollow inside the trunk of a tree.
ବିଣ.—ପୋଲ (ଗଛ)—Hollow (tree)

**ଢୋଢା**—ଦେ. (ଧ୍ୱନ୍ୟନୁକରଣ) ଅ.—୧ । ଢୋ ଢା ଶବ୍ଦ; ବାଣ ଓ
Dhodhā ବନ୍ଧୁକ ଆଦି ଫୁଟିବାର ଉଚ୍ଚ ଶବ୍ଦ—1. The loud report of fire work or gun.

| ୧ | ଚ | ଓ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଋଯ୍ | ଭ୍ଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ସ୍ତେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ପ | ସ | ଙ୍ଗ | ଋଅ | ଢ଼ | ନ୍ |

୨ । ଦୁଇଟି କଠିନ ବସ୍ତୁର ପରସ୍ପର ବାଡ଼େଇ ହେବାର ଉଚ୍ଚ ଶବ୍ଦ—2. The loud sound of two hard things striking against each other.

**ଢୋଲ**—ଦେ ବି. (ସଂ. ଢୁଲ୍ ଧାତୁ)—୧ । ଢୁଳ—
Ḍhola 1. Dozing; drowsiness.
ଢୁଳ ୨ । ତନ୍ଦ୍ରାଳୁତା—2. Sleepiness.
ऊँघ, झपकी

ନେଁ ଥିଲି ଜଗାଗରେ, ରଜନୀ ଅଛି ପହରେ,
ଅଳ୍ପ ଆସିଲା ଢୋଲ, ଏମନ୍ତ ବେଳ ସେ । ଭଞ୍ଜ- ଲାବଣ୍ୟବତୀ ।

**ଢୋଲ**—ସଂ. ବି.—ଦୁଇ ମୁହଁରେ ଚମଡ଼ା ଛାଆଣି ହୋଇଥିବା କାଠର ଲମ୍ବ ବାଦ୍ୟ—Drum
Ḍhola

ହାତ ଗାଏ କହନ୍ତ ଢୋଲ ଖାଏ ମାଡ । ପ୍ରବଚନ ।

[ଦ୍ର—ଘରରେ ମୂଷା ପୂରେଇ ଢୋଲ ସେଁକିବା ନ୍ୟାୟ—ଅର୍ଥାତ୍ ଅନଷ୍ଟକାରୀ ବ୍ୟକ୍ତିଙ୍କୁ ଘର ଭିତରେ ରଖି ବାହାରରୁ ଲୋକଙ୍କୁ ଯିବା ଆସିବା ବନ୍ଦ କରିବା ନ୍ୟାୟ ନିଷ୍ଫଳ ପରିଶ୍ରମ । ଢୋଲର ଏକ ପାଖକୁ ବାଆଁ ହାତଦ୍ୱାରା ଓ ଅନ୍ୟ ପାଖକୁ ଡାହାଣ ହାତରେ ଖଣ୍ଡେ କାଠି ଧରି ବଜାଇବାକୁ ହୁଏ । ସେହି କାଠିକୁ ଖ୍ୟେପ ବା ଖ୍ୟେପକାଠି ବୋଲାଯାଏ ।]

ଦେ. ବି.—୧ । (ଢୋଲ ଆକାରରୁ) ପେଟ—1. Belly.
୨ । ଏକ ପ୍ରକାର ଛୋଟ ଡଙ୍ଗା—
2 A dug-out or drum-like canoe.
୩ । ବୟାଁ—3. A buoy.
୪ । ଢୋଲ ଆକାରର ଲୁହା ବା ଟିଣର ଫମ୍ପା ଗୁଡ଼ିମାନ ନଳ ଦ୍ରବ୍ୟ ଯାହା ନୌକାରୂପେ ବ୍ୟବହୃତ ହୁଏ—
4. Two hollow iron cylinders joined together and used as a dug-out.
୫ । ଭସା ପୋଲ ଯେଉଁ ଫମ୍ପା ଲୁହା ବମ୍ବା ଉପରେ ଭାସେ—
5. Cylindrical hollow iron tubes on which floating bridges are supported.

ବିଣ—ଫମ୍ପା—Hollow.

**ଢୋଲକ**—ଦେ. ବି. (ସଂ. ଢୋଲ) —ଛୋଟ ଢୋଲ—
Ḍholaki Small drum.
ঢোলক, ঢোলকী [ ଦ୍ର—ସଙ୍ଗୀତ ବୋଲିବା ବେଳେ ଏହା ତାଳ
ढोलक, ढोलको ଦେବା ପାଇଁ ବାଦିତ ହୁଏ; ଏହାର ଦୁଇମୁହଁକୁ
ଢୋଲକ } ଅନ୍ୟରୂପ ଦୁଇହାତଦ୍ୱାରା ବଜାଯାଏ । ]
ଢୋଲି }

**ଢୋଲ ଢୋଲନା**—ଦେ. ବି—ମରହଟ୍ଟାଙ୍କ ବିବାହ ଉପଲକ୍ଷରେ ବର-କନ୍ୟାଙ୍କୁ ଦିଆଯାଉଥିବା ମୁଦି ଦୁଇଟିର ନାମ—
Ḍhola ḍholanā କନ୍ୟାଙ୍କ ବନ୍ଧାଣ ଲାଗି ବରର 'ଢୋଲ' ଓ କନ୍ୟାର 'ଢୋଲନା' ନାମକ ସୁନ୍ଦର ମୁଦ୍ରିକାଦ୍ୱୟ—
The respective names of the two rings presented to the bridegroom and bride on occasions of marriage amongst the Marhattas.

**ଢୋଲ ପିଟିବା**—ଦେ. କ୍ରି. (ଲକ୍ଷଣାର୍ଥ)—ଧେଣ୍ଡୁରା ଦେବା; ଘୋଷଣା
Ḍholapiṭibā କରିବା—( figurative ) To publish a
ঢোল পীটা matter by beat of drum.
ढोल पीटना

**ଢୋଲା**— ଦେ. ବିଣ—୧ । ଫମ୍ପା; ବଡ଼ ଓ ଫମ୍ପା—
Ḍholā 1· Hollow and big.
ঢোলা ୨ । (ପୁଂ) ପେଟୁଆ; ବଡ଼ପେଟୁଆ —
पोला 2. Pot-bellied
(ଢୋଲୀ — ସ୍ତ୍ରୀ) ୩ । ଅକର୍ମଣ୍ୟ — 3. Worthless
ঢোলা; ঢোস্কা; ঢোসা ୪ । ପେଟୁ ; ଉଦରମ୍ଭରି—
पेटल 4. Greedy; gluttonous.
(ଢୋଲୀ—ସ୍ତ୍ରୀ) ୫ । ସ୍ଥୂଳକାୟ—5. Stout; corpulent.

**ଢୋଲା ଆଖିଆ**—ଦେ. ବିଣ —ଢେଗା ଆଖିଆ (ଦେଖ)
Ḍholā ākhiā Ḍhegā ākhiā (See)

**ଢୋଲା(ଲେ)ଇ**—ଦେ. ବି (ସଂ. ବୋଢ=ବହନ କରିବା; ହି. ଶବ୍ଦସାଗର)—୧ । ଶଗଡ଼ରେ ଜିନିଷ ବୋହାଇ
Ḍholā(le)i
ঢোলাই ନେଇ ବୋହିବା—1. Carrying and carting
ढुलवाई of burdens.
୨ । ଶଗଡ଼ ଭଡ଼ା —2. Cart hire.
୩ । ମାଟିକୁ ସମତୁଲ କରିବା—
3. Levelling the ground.
୪ । ମାଟିକୁ ସମାନ କରିବାର ଖରଚ—
4 Cost of levelling a plot of land.
୫ । ଉଲରେ ଜମା କରିବା ପାଇଁ ପଥର ଗୋଡ଼ି ଆଦିକୁ ଡଙ୍ଗାରୁ ବା ଶଗଡ଼ରୁ ବାହାର କରିବା—
5. Unloading a cart or boat.

**ଢୋଲା(ଲେ)ଇ ପଡ଼ିବା**—ଦେ. କ୍ରି—ଢୋଲାଇବା (ଦେଖ)
Ḍholā(le)ipardibā Ḍholāibā (See)

**ଢୋଲା(ଲେ)ଇବା**—ଦେ. କ୍ରି. (ସଂ. ଢୁଲ୍ ଧାତୁ)—
Ḍholā(le)ibā ଢୁଳାଇବା; ଘୁମାଇବା—To doze.
ঢোলা ଢୋଲାଇବା ପରି ଉଳ, ଉଳେ ପଡ଼ିଯିବା ଭଳ ।
ऊँघाना କବିସୂର୍ଯ୍ୟ, କଳୋପାଦନ୍ତ୍ୟ ଛ. ଗୀତ ।

**ଢୋଲିଆ**—ଦେ. ବି—ଯେ ଢୋଲ ବଜାଏ; ବଜନ୍ତୀ—
Ḍholiā A drummer.
ঢোলকী ढोलिया

**ଢୋଲୀ**—ଦେ. ବିଣ. ସ୍ତ୍ରୀ. (ଢୋଲାର ସ୍ତ୍ରୀଲିଙ୍ଗ)—
Ḍholī ୧ । ଅତି ସ୍ଥୂଳକାୟା (ସ୍ତ୍ରୀ); ମୋଟୀ—
(ଢୋଲେଇ — ଅନ୍ୟରୂପ) 1. Stout and big-bellied (woman).
୨ । ପେଟୁ (ସ୍ତ୍ରୀ)—2. Gluttonons (woman).

**ଢୋଲୁ**—ଦେ. ବିଣ. ପୁଂ ଓ ସ୍ତ୍ରୀ. (ସଂ. ଢୋଲ)—୧ । ସ୍ଥୂଳୋଦର—
Ḍholu 1. Pot-bellied.
(ଢୋଲେଇ—ସ୍ତ୍ରୀ) ୨ । ଉଦରମ୍ଭରି—2. Greedy.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ଵୃଥ' ନ ମିଳିଲେ 'ବୃଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍କ୍ୟ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲକତ' ନ ପାଇଲେ 'ଅଲ୍‌କତ' ଦେଖିବେ

**ଢୌକ (ଧାତୁ)** —ସଂ—ଗତି କରିବା—
Ḍhauka (root) To move.

**ଢୌକନ**—ସଂ. ବି (ଢୌକ. ଧାତୁ + ଅନ)—୧ । ଭେଟି; ଉପହାର—
Ḍhaukana 1. Offering; present.
୨ । ଲାଞ୍ଚ; ଉତ୍କୋଚ—2. Bribe.





**ଣ**—ସଂ—ପଞ୍ଚଦଶ ବ୍ୟଞ୍ଜନ ବର୍ଣ୍ଣ । ଟ ବର୍ଗର ପଞ୍ଚମ ବର୍ଣ୍ଣ । ଅନୁନାସିକ । ଏହାର ଉଚ୍ଚାରଣ ସ୍ଥାନ ମୂର୍ଦ୍ଧ ।—Fifteenth consonant; cerebral; nasal; corresponding to cerebral gliding sound of N in 'turning
Ṇa

[ ଦ୍ର—ଏ ଅକ୍ଷରାଦ୍ୟରେ କୌଣସି ଶବ୍ଦ ନ ଥିବାରୁ ଓଡ଼ିଶାର କବିମାନେ ଚଉତିଶା ପ୍ରଭୃତିରେ 'ଣାଦ୍ୟ' ପଦମାନଙ୍କୁ 'ଅ' ଅକ୍ଷରରେ ଆରମ୍ଭ କରିଅଛନ୍ତି ।

ହିନ୍ଦୀ ଓ ବଙ୍ଗଳାରେ ଣର ଉଚ୍ଚାରଣ ନ ପରି । ଓଡ଼ିଆର 'ଣ'ର ସ୍ୱତନ୍ତ୍ର ଉଚ୍ଚାରଣ ସ୍ଥାନରେ ସମ୍ବଲପୁରିଆମାନେ 'ନ' ଉଚ୍ଚାରଣ କରନ୍ତି । ]

ବି—୧ । ଜ୍ଞାନ—1. Knowledge.
୨ । ଚୈତନ୍ୟ—2. Consciousness.
୩ । ନିଶ୍ଚୟ—3. Certainty.
୪ । ଭୂଷଣ—4. Ornament.
୫ । ଶିବ—5. Śiba.
୬ । ଜଳାଶୟ—6. Pond.

ବିଣ—ନିର୍ଗୁଣ—Devoid of any attribute.

ଅ. (ପଦ୍ୟରେ ବ୍ୟବହୃତ)—୧ । ଅସମାପିକା କ୍ରିୟା ଶେଷରେ ପଦ୍ୟରେ ଅକ୍ଷର ପୂରଣ ନିମିତ୍ତ ବ୍ୟବହୃତ ହୁଏ—
An inflection used after present participle in poetry
(ଯଥା—କରିଣ, ଖାଇଣ ଇତ୍ୟାଦି ।)

୨ । (ପ୍ରାଚୀନ କବି ପ୍ରୟୋଗ)—ସଂ. ଭାବନାର୍ଥ କ୍ରିୟା ଶେଷରେ ଅକ୍ଷର ପୂରଣାର୍ଥ ବ୍ୟବହାର—
2. A letter added to verbs in potential mood by classic poets.

ପାରିଲେଣ ସ୍ନେହ ମୋତେ ଭିକାରୀଣ ଧରି । ପ୍ରଭାପ ଶଶିରେଖା ।

୩ । ଉପରେ—3. On.

ଦେବକୀ ଷଷ୍ଠ ଗର୍ଭପୂଣ,
କଂସ ତ କରତେ ଟୀଳେଣ । ଜଗନ୍ନାଥ. ଭାଗବତ ।

୪ । ରେ—4. In.

କମଳ ଲୋଚନ ଶ୍ରୀହରି କରେଣ ଶଙ୍ଖ ଚକ୍ରଧାରୀ—କମଳଲୋଚନ. ଚଉତିଶା ।

**ଣତ୍ୱ**—ସଂ. ବି—'ନ' ଅକ୍ଷରର 'ଣ'ରେ ପରିଣତି—
Ṇatwa Change of dental 'N' into cerebral 'Ṇ'.

**ଣତ୍ୱ ବିଧାନ**—ସଂ—ପଦ ମଧ୍ୟରେ ଥିବା 'ନ' ଅକ୍ଷର ଯେଉଁ ଯେଉଁ ସ୍ଥାନରେ 'ଣ' ହୁଏ ଓ ଯେଉଁ ଯେଉଁ ସ୍ଥାନରେ 'ନ' ରହେ ତଦ୍ୱିଷୟକ ବ୍ୟାକରଣଗତ ନିୟମ ବା ବିଧାନ—The grammatical rule as to where 'Na' is turned into 'Ṇa and where not.
Ṇatwa bidhāna
(ଣତ୍ୱବିଧି—ଅନ୍ୟରୂପ)

[ ଦ୍ର—୧ । ପଦ ମଧ୍ୟରେ ଥିବା ଋ, ର, ଷ ର ପରବର୍ତ୍ତୀ 'ନ' 'ଣ' ହୁଏ । ୨ । 'ନ' ତନ୍ନ ତ ବର୍ଗୀୟ ବର୍ଣ୍ଣ ସଂଯୁକ୍ତ 'ନ' 'ଣ' ହୁଏନାହିଁ । ୩ । ଯ, ବ, ହ, ଅନୁସ୍ୱାର, ବିସର୍ଗ, ସ୍ୱରବର୍ଣ୍ଣ, କ ବର୍ଗ, ପ ବର୍ଗ ବ୍ୟବଧାନ ଥିଲେହେଁ 'ନ' 'ଣ' ହୁଏ । ]

**ଣ ସ୍ୱରୂପା**—ବିଣ. ସ୍ତ୍ରୀ—୧ । ମହାଶକ୍ତି ସ୍ୱରୂପିଣୀ—1. Creative.
Ṇa swarūpā ୨ । ଜନ୍ତୁ—2. Animal; living.
ସଂ. ବି—ମହାଶକ୍ତି ପରମେଶ୍ୱରୀ—
The Creative Power of the universe.

**ଣି**—ଦେ.(ପ୍ରତ୍ୟୟ)(କ୍ରିୟା ପଦର ବ୍ୟବହୃତ)—୧ । (ନିଶ୍ଚୟାର୍ଥ) ନିଶ୍ଚେ—
Ṇi 1. (an inflection used after verbs)—Certainly.

ଗଲେଣି ତେ । ସଙ୍ଗରୁ ଯେତେକ ଜନ—ମନବୋଧ ଚଉତିଶା ।

୨ । ତର୍କଣାର୍ଥ—2. Methinks.
( ଯଥା—ସେ ଶୋଇବେଣି । )
୩ । ସମାପ୍ତ୍ୟର୍ଥ—3 Denoting the end.

ଗଲଣିତ ଗଲା କଥାରେ ସଙ୍ଗାତ—କବିସୂର୍ଯ୍ୟ. କଳୋଲବନ୍ଧୁ. ଗ. ଗୀତ ।

**ଣିଚ୍**—ସଂ. ( ପ୍ରତ୍ୟୟ )—ପ୍ରେରଣାର୍ଥେ ବା ବିନିଯୋଗାର୍ଥେ ଧାତୁର ଉତ୍ତରରେ ହେବା ପ୍ରତ୍ୟୟବିଶେଷ—A suffix which changes a root into the causative form.
Ṇich

**ଣିଜନ୍ତ**—ସ, ବିଣ ( ଣିଚ୍ + ଅନ୍ତ)—ଣିଚ୍ ପ୍ରତ୍ୟୟବିଶିଷ୍ଟ—
Ṇijanta Having the causative suffix.
( ଯଥା—କୃ ଧାତୁର ଣିଚ୍=କାରି ଧାତୁ )

**ଣିଜନ୍ତ ପ୍ରକରଣ**—ସ. ବ—ଣିଚ୍ ପ୍ରତ୍ୟୟ ଯୋଗେ ଧାତୁର ଯେଉଁ ଯେଉଁ ରୂପାନ୍ତର ହୁଏ ତାହାର ନିୟମାବଳୀ—The rules for forming causative roots.
Ṇijanta prakaraṇa

**ଣୁ**—ଦେ. ( ପ୍ରତ୍ୟୟ )—ଉକାରାନ୍ତ ଅସମାପିକା କ୍ରିୟା ପରେ ବ୍ୟବହୃତ ସମାପ୍ତି ସୂଚକ ପ୍ରତ୍ୟୟବିଶେଷ—An inflection added to verbs to denote the completion of a verb.
Ṇu

| | | | | | | | | | | | | |
|---|---|---|---|---|---|---|---|---|---|---|---|---|
| ୧ | ଇ | ଢ଼ | ଋ,ଈ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇସ୍ତ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଣ୍ୟ | ଯ | ସ | ଗଁ | ଇଅ |

( ଯଥା—ମୁଁ ନ ଖାଇଣୁ ସେ ପହଞ୍ଚ ଗଲେ । )

ଣ୍ୟ—ସଂ. ବ—ବ୍ରହ୍ମଲୋକସ୍ଥ ସରୋବରବିଶେଷ—Name of a tank
Nya in the Brahmaloka.






ତ—୧୬ଶ ବ୍ୟଞ୍ଜନବର୍ଣ୍ଣ, 'ତ' ବର୍ଗର ପ୍ରଥମ ବର୍ଣ୍ଣ । ଏହାର ଉଚ୍ଚାରଣ-
Ta ସ୍ଥାନ 'ଦନ୍ତ' । ଏହାକୁ ଉଚ୍ଚାରଣ କଲାବେଳେ ଉପର ପାଟିର ଦାନ୍ତରେ ଜିହ୍ୱାଗ୍ର ସ୍ପର୍ଶ କରାଯାଏ—The 16th consonant corresponding to the dental sound of 'T' (in English) when it approaches partly the sound of 't' in the pronunciation the word path.

ସଂ. ବି. (ତୃକ୍ ଧାତୁ=ହାସ୍ୟ ବା ସହ୍ୟ କରିବା + କର୍ତ୍ତୃ. ଅ)—

୧ । ଚୋର—1. Thief

୨ । ବୃଷ—2. Bull.

୩ । ଅମୃତ—3. Nectar.

୪ । ( +କରଣ. ଅ ) ପୁଣ୍ୟ—4. Virtue; piety.

୫ । କ୍ରୋଡ଼—5. Lap.

୬ । ମ୍ଳେଚ୍ଛ—6. A barbarian.

୭ । ପୁଚ୍ଛ—7. Tail.

୮ । ଭ୍ରୂଣ—8. Embryo, foetus.

୯ । ଗର୍ଭ—9 Belly; womb.

୧୦ । ରତ୍ନ—10 Gem.

୧୧ । ଶଠ ବ୍ୟକ୍ତି—11. A cheat.

୧୨ । ( ତୃ ଧାତୁ=ପାର ହେବା+ଭାବ. ଅ )—ତରଣ; ପାର ହେବା—12. Crossing.

ତ ଦେ. ଅ. ( ସଂ. ତୁ )—ନିମ୍ନଲିଖିତ ଅର୍ଥ ଓ ସ୍ଥାନରେ ବ୍ୟବହାର
ତୌ କରାଯିବା ଅବ୍ୟୟ—A participle added to a word or sentence corresponding to the uses of 'too', 'also'.

୧ । ( ପାଦ ପୂରଣାର୍ଥକ ) ବି—

1. (in filling up or completing a sentence) Too.

ସାନ୍ତ ତ ଦୁଃଖର ସାନ୍ତ ପଣରୁ
ଖାଉକ ଦୁଃଖର କେଉଁ ଗୁଣରୁ ?—ପ୍ରବଚନ ।

୨ । ( ଅବଧାରଣ ବା ନିଶ୍ଚୟାର୍ଥକ ) ନିଶ୍ଚେ—

2. Certainly.

ସେ ତ ସେ, ଅତି ବାଉପଡା ନିଶ୍ଚୟ କେ—ତିନ ।

୩ । ( ତର୍କାର୍ଥ ) ମୁଁ ଅନୁମାନ କରୁଛି; ବୋଧହୁଏ; ସମ୍ଭବତଃ—3. Methinks; meseems

ଠକଯାଇ ଅବସର କଲେ ତୁ ପ୍ରସଙ୍ଗ ମୋର ଯିବ ଗାଙ୍ଗାବନେବାକୁ
ରୁଚରେ—କବିସୂର୍ଯ୍ୟ ବଳଦେବରଥ, ୦ ଗୀତ ।

୪ । ପକ୍ଷାନ୍ତରେ; ପରନ୍ତୁ; କିନ୍ତୁ—

4. On the other hand.

(ଯଥା—ମୁଁ ତ ଯାଇ ପାରୁ ନାହିଁ, ମୁଁ ନ ଗଲେ କଅଣ ହେଲା ? ତୁ ତ ଯିବୁ । )

୫ । ( ପ୍ରଶ୍ନାର୍ଥକ ) କି ? କି ?—5 Interogative.

( ଯଥା—ତୁ ଯାଉଛୁ ତ ? )

୬ । ( ସଂ. ତତଃ ) ତେବେ; ତାହାହେଲେ; ଫଳତଃ—

6. Then; consequently.

( ଯଥା—ଋଣ ନ ମିଳଲେ ତ ମୋର ଆଉ ଗତି ନାହିଁ । )

୭ । ( ଅନୁରୋଧ ବା ନିଯୋଗାର୍ଥକ ) ମ—

7. Indicating a request.

( ଯଥା—ତାକୁ ଡାକ୍ ତ, କଅଣ ସେ କହୁଛି, ବୁଝିବା । )

୮ । ପ୍ରତିଜ୍ଞାସୂଚକ—

8. Indicating a resolve.

( ଯଥା—ମୁଁ ଆଜି ଏ କାମ କରିବି ତ; ଦେଏ ମୋତେ ବନ୍ଦ କରିବ କରୁ । )

୯ । ମାତ୍ର; ସୁଦ୍ଧା—9. Even.

ତାଳେ ତ ଚାଳିଲୁ ନାହିଁ, କୃପାସୁଧା ଝରିବ ରେ—
କବିସୂର୍ଯ୍ୟ, ବଳଦେବରଥ, ୦ ଗୀତ ।

୧୦ । ( ଅପେକ୍ଷାର୍ଥକ ) ସିନା—

10. Indicating probalility or contingency.

(ଯଥା—ସେ ସେଠାକୁ ଗଲେ ତ ହୁଏ; ନୋହିଲେ ମୁଁ ସେଠାରେ ତାହାକୁ ନ ପାଇ ଭାଁ ଭାଁ ହେଉଥିବି । )

ଦେ. ପ୍ରତ୍ୟୟ (ସଂ. କ୍ତ ପ୍ରତ୍ୟୟ)—ଏହା ଧାତୁ ସଙ୍ଗେ ଭାବ, କର୍ତ୍ତୃ ଓ କର୍ମବାଚ୍ୟରେ ଅତୀତକାଳ ଅର୍ଥରେ ପ୍ରତ୍ୟୟ ହୁଏ, (କ୍ରମେ ଉଦାହରଣ ଯଥା—କସ୍ଥି, ଜୀବିତ, କୃତ)—An affix corresponding to 'ed', (in English) and 'kta' in Sanskrit, as in accomplished signed, added to the root verbs to denote past passive participles.

ଦେ. (ସାଙ୍କେତିକ; ଏପରି ବ୍ୟବହାର ସ୍ଥଳରେ ଏହାର ଉଭୟ ପାର୍ଶ୍ୱରେ ଦୁଇଟି ଗାର ରହେ ଯଥା—। ତ । )—

୧ । ଟପ୍ପା; ପ୍ରଗନ୍ନା—1. An abbreviation for the word 'Tappā' or Pergunnah.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଢ଼ତ ୧ ଚଣ୍ଡିତ ଅକ୍ଷର ଓ ମାତ୍ରା ଏବ ୨ ଚଣ୍ଡିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚଣ୍ଡିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତିର ବଦଳରେ ୨ ବା ୧ ଚଣ୍ଡିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, ରୁଅ ନ ମିଳିଲେ 'ରୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଙ୍କୀ ନ ପାଇଲେ 'ଅଙ୍କି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

(ଯଥା—ରାମଚନ୍ଦ୍ର ମିଶ୍ର । ତ । ଗୋପାଳପୁର=ଗୋପାଳପୁର ତପ୍ପା ବା ପ୍ରଗଣାନିବାସୀ ରାମଚନ୍ଦ୍ର ମିଶ୍ର । )

୨ । ତରଫ—2. On behalf of.

(ଯଥା—ଲଖିତଂ ତହସିଲଦାର ରାମ ମହାନ୍ତି । ତ । ଜମିଦାର ରାମନାରାୟଣ ସିଂହ; ଅର୍ଥାତ୍ ଜମିଦାର ରାମନାରାୟଣଙ୍କ ତରଫରୁ ଲେଖୁବା ବ୍ୟକ୍ତି ରାମ ମହାନ୍ତି ତହସିଲଦାର । )

୩ । ତଉଜି—3. An abbreviation for Tauji.

(ଯଥା—। ପ୍ର । ରାହାଙ୍ଗ । ତ । ୨୬୮ । )

**ତଅ**—ଦେ. ବି—ତହ (ଦେଖ)
Ta-a — Taha (See).

**ତଅଁର**—ଦେ. ବି (ସଂ. ତନ୍ତୁ)—୧ । ରଞ୍ଜିତ ସୂତ୍ରବିଶେଷ; ଏକପ୍ରକାର କସ୍ତା—1. A coloured thread.
Ta-añra
କସ୍ତା
୨ । ଲୁଗାର ଧଡ଼ିରେ ଦିଆଯିବା ଫିକା ନାଲି ସୂତା—2. Light-red thread used in the border of a cloth.

**ତଅଁର ଧରିବା**—ଦେ. କ୍ରି (ଧୋବା ଲୁଗା ଧୋଉ କଲାବେଳେ) ଲୁଗା ଧଡ଼ିର ରଙ୍ଗକୁ ରକ୍ଷା କରିବା—
Taañra dhariba — To protect or preserve the colour of the dyed border of a cloth during washing.
(ଯଥା—ଧୋବଣୀ ତଅଁରି ଧରିବା ଖର୍ଚ୍ଚ ମାଗୁଛି । )

**ତଅଁରା**—ଦେ. ବି—ନୀଚଜାତୀୟ ତନ୍ତୁବିଶେଷ; ତଉଁଲା—
Ta-añrā — A class of low-caste weavers who weave coarse cloth.
[ଦ୍ର—ଏମାନେ ମୋଟା ଲୁଗା ବୁଣନ୍ତି; ଏମାନଙ୍କ ବୁଣିବା ଲୁଗାକୁ 'ତଅଁରି ଲୁଗା' କହନ୍ତି । ]

**ତଅଁଲା**—ଦେ. ବି—ତଅଁରା (ଦେଖ)
Ta-añḻā — Ta-añrā (See).
ଝରଭସବାଉଧାସ ସପ୍ତଶସ୍ୟ ଶିଙ୍ଗିର-ଶୃଙ୍ଗେ ତଅଁଲା—ରଘୁନାଥ. ସାବିତ୍ରୀ ।

**ତଅକ୍**—ବୈଦେ. ବି (ମୁସଲମାନୀ ଅଳଂକାର)—ହଂସଲି (ଦେଖ)
Ta-ak — Hamsali (See).

**ତଅ ଖରଚ**—ବୈଦେ. ବି (ଫା. ତହ୍‌ଖରଚ୍)—ତହ ଖରଚ (ଦେଖ)
Ta-a-kharacha — Taha-kharacha (See).

**ତଅପୋଇ**—ଦେ. ବି (ନାମ)—ଖୁଦୁରୁକୁଣି ଓଷା କଥାରେ ବର୍ଣ୍ଣିତ ମହାଜନ ଝିଅର ନାମ—The name of the merchant's daughter narrated in the story of 'Khudurukuṇi vow observed by maidens.
Ta-a-poi

**ତଅସିଲ (ଇତ୍ୟାଦି)**—ବୈଦେ. ବି (ଆ)—ତହସିଲ ଇତ୍ୟାଦି (ଦେଖ)
Ta-asila (etc) — Tahasila etc (See).

**ତଇ**—ଦେ. ବି (ସଂ. ତପ୍ ଧାତୁ)—ଚଟକା ତଳବିଶିଷ୍ଟ କରେଇ, ଯହିଁରେ ଅମାଲୁ, ମାଲପୁଆ, ଜିଲିବି ଆଦି ଛଣାଯାଏ—
Tai
ଚାଟୁ — A flat-bottomed and shallow frying pan.
**तौ, ताई**

**ତଇଁ**—ଗ୍ରା. ଅ (ସଂ. ତତ୍ ଶବ୍ଦର ୭ମୀ ବିଭକ୍ତି ଏକବଚନ, ତସ୍ମିନ୍)—
Taiñ — ୧ । ତହିଁ (ଦେଖ)— 1 Tahiñ (See).
୨ । ତଙ୍ଗି (ଦେଖ)—2. Taṅgi (See)

**ତଇଁତଇଁ**—ପ୍ରାଦେ (ଗଞ୍ଜାମ) ଅ (ଧ୍ୱନ୍ୟନୁକରଣ)—କଇଁକଇଁ (ଦେଖ)
Taiñ-taiñ — Kaiñ-kaiñ (See)

**ତଇତୁଳା**—ଦେ. ବି. ସ୍ତ୍ରୀ—ଗ୍ରାମଦେବୀଙ୍କ ନାମବିଶେଷ—
Taituḻā — Name of a village-Goddess.

**ତଇନ୍**—ବୈଦେ. ବି (ଆ. ତୟୂନ୍; ଆ. ତୟୂ=ସମାପ୍ତ; ନିର୍ଣ୍ଣୀତ)—
Tain — ୧ । ସ୍ଥିରତା; ନିଶ୍ଚୟ—1. Certainty.
তয়ন — ୨ । ନିର୍ଣ୍ଣୟ—2 Ascertainment.
**तयन** — ୩ । ଫଇସଲ—3. Disposal.
ବୈଦେ. ବିଣ.—୧ । ସ୍ଥିର; ନିଶ୍ଚିତ—1 Certain; fixed.
୨ । ନିର୍ଣ୍ଣୀତ—2 Ascertained.

**ତଇନାତ**—ବୈଦେ. ବି.—(ଆ. ତୟୁନାତ୍)—୧ । ପିଆଦା ପଠାଇ ବିଶେଷ ତାଗିଦ ସହିତ ତଲବ ତାଗିଦା; ପିଆଦା ଯୋଗେ ବିଶେଷ ଜରୁରି ତଲବ; ତମିତାଗିଦା—Demand made through a special messenger.
Tainātạ
ତଇନାତି; ତଏନାତ, ତଏନାତି — ଅନ୍ୟରୂପ
তয়নাতি — ୨ । କୌଣସି କାର୍ଯ୍ୟ ପାଇଁ କୌଣସି ବ୍ୟକ୍ତିର
**तैनात ; तयनात** — ନିଯୁକ୍ତିକରଣ—2. Deputation; appointment.
୩ । ବାକିଦାର ପ୍ରଜା ଓ ଖାତକ ଆଦିଙ୍କଠାକୁ ପଠାଯିବା ପିଆଦା—3. A peon deputed to a tenant or debtor in arrears.
**तयनाती** — ବିଣ (ଆ. ତଅୟୁନାତ୍)—ବିଶେଷ କାର୍ଯ୍ୟ ପାଇଁ ନିଯୁକ୍ତ (ପିଆଦା)—Specially deputed (peon).

**ତଇନି**—ବୈଦେ. ବି. ଓ ବିଣ—ତଇନ୍ (ଦେଖ)
Taini — Tain (See).

**ତଇଳ**—ପ୍ରା. (ପଦ୍ୟ) ବି (ସଂ. ତୈଳ)—ତୈଳ (ଦେଖ)
Taiḻa — Taiḻa (See).
ତଇଳ ବିନା ବାଳ ବନ୍ଧସୁଗ୍ରୀବଙ୍କର
ଉଡ଼ୁ ହେ ଅଛି ଉପରକୁ ଫରଫର—କୃଷ୍ଣସିଂହ. ମହାଭାରତ ବନ ।

**ତଇଲ**—ଗ୍ରା. ବି (ସଂ. ତୈଳ)—ତୈଳ (ଦେଖ)
Taila — Taiḻa (See).

**ତଇଲପିଆ**—ଦେ. ବିଣ (ସଂ. ତୈଳପାୟୀ)—୧ । ଯାହା ବହୁକାଳ ତେଲ ଲଗାଯାଇ ଦୃଢ଼ ବା ମସୃଣ କରାଯାଇଥାଏ—
Tailapiā
তেলপাকা
(ଯଥା—ତଇଲପିଆ କାଣ୍ଡ; ତଇଲପିଆ ଯଷ୍ଟି)—
1. (a stick) Saturated and made smooth with oil.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇସ୍ତ | ଡ଼ୁଅ | ଘ୍ର |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଞ୍ଜ | ନ୍ତ୍ର |

୨ । ଯହିଁରେ ବହୁକାଳ ତେଲ ରଖାଯାଇ ସଜ କରାଯାଇ ଥାଏ (ଯଥା—ତଇଲପିଆ ଘଡ଼ ବା ମାଠିଆ)—
2. (a pot) Soaked thoroughly with oil.
ବି—ଅସରପା ପୋକ—Cockroach; Blatta.

**ତଇଲା**—ଦେ. ବି—୧ । ବନପୂର୍ଣ୍ଣ ଆବାଦଯୋଗ୍ୟ ଭୂମି—
Tailā 1. Arable land overgrown with jungle.
তয়লা
(ତଇଲ୍ଲା—ଅନ୍ୟରୂପ) ୨ । ଜଙ୍ଗଲ କଟାଯାଇ ଆବାଦ କରାଯାଇ ଥିବା ଜମି—2. Cultivated land reclaimed from jungle

ବିଣ—ଜଙ୍ଗଲ କାଟି ନୂତନ ଆବାଦ କରାଯାଇଥିବା—
Newly reclaimed (land).

[ ଦ୍ର—ଜମି ଉପରେ ବଢ଼ିଥିବା ଜଙ୍ଗଲ ଆଦି ସଫା କରି ବୃକ୍ଷ ଆଦି ଦ୍ୱାରା ଯେଉଁ ଜମିକୁ ଲୋକେ ଫସଲ କରିବାର ଉପଯୋଗୀ କରନ୍ତି, ତାକୁ ତଇଲା ଜମି ବୋଲାଯାଏ । ]

**ତଇଲା ପକା(କେ)ଇବା**—ଦେ. କ୍ରି. (ଲକ୍ଷଣାର୍ଥ)—୧ । (ଗାଳି ଓ ଅଶୁଭଚିନ୍ତା କରି) ଅମଙ୍ଗଳ ଘଟାଇବା—
Tailā pakā(ke)ibā 1. To bring misfortune to another (by abusing and cursing).
(ଯଥା—ସେ ଆମକୁ ଗାଳି ଦେଇ ଦେଇ ତଇଲା ପକାଇଲାଣି ।)
୨ । ତଳତଳାନ୍ତ କରିବା—2. To cause total destruction or ruin (of a person).
(ଯଥା—ସେମାନେ ସର୍ବଦା ମୋ ଘରୁ ଝୋରାଇ ନେଇ ନେଇ ମୋତେ ତଇଲା ପକାଇଦେଲେଣି ।)

**ତ: ଉ:**—(ସାଙ୍କେତିକ) (ଓ. ତ=ତହିଁର; ଉ=ଉତ୍ତର)—
Ta: u: (ଦେଶୀୟ ଜରିପ ତଉଁରିଆରେ ଜମିର କ୍ରମିକ ଦଗନିର୍ଣ୍ଣୟ କରିବାର ସାଙ୍କେତିକ ଚିହ୍ନ) ତାହାର ଉତ୍ତରରେ—
An abbreviation used in field books to denote the situation of a plot of land situate to the north of the foregoing plot

[ ଦ୍ର—ଏ ଦେଶରେ ଇଂରାଜ ପ୍ରଣାଳୀରେ ଚେନ୍ ଓ କମ୍ପାସ୍-ଦ୍ୱାରା ମାପ ହେବା ପୂର୍ବରୁ ନଳ ବା ପଦକାଦ୍ୱାରା କ୍ଷେତ୍ରମାନ ମାପ ହେଉଥିଲା ଏବଂ ସେ ମାପ ଯେଉଁ ତଉଁରିଆରେ ଲେଖା ହୋଇ ରହୁଥିଲା, ସେଥିରେ ଖଣ୍ଡିଏ ଜମିର ଉତ୍ତରରେ ପରବର୍ତ୍ତୀ ଜମି ଖଣ୍ଡି ଥିଲେ ଦ୍ୱିତୀୟ ଜମିର କ୍ରମିକ ନମ୍ବର ଲେଖା ହେବା ପରେ 'ତ: ଉ' ଲେଖା ଯାଉଥିଲା, ଅର୍ଥାତ୍ ଏ କ୍ଷେତ୍ରଖଣ୍ଡି ପୂର୍ବୋକ୍ତ କ୍ଷେତ୍ରର ଉତ୍ତରରେ ଅବସ୍ଥିତ ।
ଏହିପରି 'ତ: ଦ'=ତହିଁ ଦକ୍ଷିଣରେ, ଅର୍ଥାତ୍ ପୂର୍ବୋକ୍ତ ନମ୍ବର ଜମିର ଦକ୍ଷିଣରେ, ତ ପୂ:=ତହିଁର ପୂର୍ବରେ ଅର୍ଥାତ୍ ପୂର୍ବୋକ୍ତ ନମ୍ବର ଜମିର ପୂର୍ବରେ, ତ: ପ:=ତହିଁର ପଶ୍ଚିମରେ ଅର୍ଥାତ୍ ପୂର୍ବୋକ୍ତ ନମ୍ବର ଜମିର ପଶ୍ଚିମରେ । ]

**ତଉଁ**—ଗ୍ରା. ଅବ୍ୟୟ—ତହୁଁ (ଦେଖ)
Taun̐ Tahun̐ (See)

**ତଉଁରି**—ଦେ. ବି—ଟଅଁରାଙ୍କ ବୁଣା ମୋଟା ଶାଢ଼ୀ; ଟଅଁର ସୂତାର ଧଡ଼ିଯୁକ୍ତ ମୋଟା ଶାଢ଼ୀ—A coarse cloth for
Taun̐ri females with a light-red or dyed border.
ଦେ. ବିଣ—ତଉଁରିଆ (ଦେଖ)—Taun̐riā (See)

**ତଉଁରିଆ**—ଦେ. ବିଣ—ଟଅଁର ସୂତାର ଧଡ଼ିଯୁକ୍ତ (ମୋଟ ଲୁଗା)—
Taun̐riā (coarse cloth) Furnished with a red or dyed border.

ଘଇତା ପଞ୍ଚକେ ସନ୍ତୁଆ ହୋଇ
ଶାଢ଼ୀ ହୋଇ ତଉଁରିଆ । ଚଗ ।

**ତଉଁଲା**—ଦେ. ବି—ଟଅଁରା (ଦେଖ)
Taun̐lā Taan̐rā (See)

**ତଉଜି**—ବୈଦେ. ବି. (ଆ. ତୌଜୀ=ରାଜସ୍ୱ ତାଲିକା) (କଚିରିଆ ଶବ୍ଦ)—
Tauji ୧ । ତୌଜୀ, ଜମିଦାରୀର କ୍ରମିକ ସଂଖ୍ୟା—
তৌজি 1. Touzi; serial number of a Zamindary;
तउजी [ ଦ୍ର—ଏଥିର ସାଙ୍କେତିକ ।ତା । ଯଥା—।ତା ୧୯୭୫=
(ତୌଜି—ଅନ୍ୟରୂପ) ୧୯୭୫ ତଉଜୀ ନମ୍ବର ଭୁକ୍ତ ଜମିଦାରୀ । ]
ପ୍ରାଦେ. (ଗଞ୍ଜାମ) ବି—୨ । ପେନ୍ସନ୍; ଖୋରାକ ପୋଷାକ ପାଇଁ ପ୍ରଦତ୍ତ ନିର୍ଦ୍ଦିଷ୍ଟ ଭତ୍ତା—
2. Pension; maintenance allowance.

ନାଭି ମହାରାଜାଙ୍କ ତଉଜି ଦଶ ହଜାରରୁ ପାଞ୍ଚ ହଜାର କରାଯିବ ବୋଲି ଶୁଣି ପଡ଼ୁଛି ।
ଦୈ. ଆଶା. ତା ୨୯।୧୧।୨୮ ।

**ତଉଜି ଖାନା**—ବୈଦେ. ବି. (ଆ. ତୌଜୀ+ଫା. ଖାନା) (କଚିରିଆ
Tauji khānā ଶବ୍ଦ)—ଯେଉଁ ସରକାରୀ କାର୍ଯ୍ୟାଳୟରେ ଜମିଦାରୀ-
তৌজিখানা ମାନଙ୍କର କ୍ରମିକ ନମ୍ବର ଅନୁସାରେ ରାଜସ୍ୱସଂକ୍ରାନ୍ତ
तउजिखाना ହିସାବ ରଖାଯାଏ—Touzi office.
(ତୌଜିଖାନା—ଅନ୍ୟରୂପ)

**ତଉଜି ନବିସ୍**—ବୈଦେ. ବି. (ଆ)—ଯେଉଁ କର୍ମଚାରୀ ତଉଜି ହିସାବ
Tauji nabis ରଖେ—Touzi Nabis.
তৌজিনবীস तउजीनबीस
(ତୌଜି ନବୀସ୍—ଅନ୍ୟରୂପ)

**ତଉଜି ନମ୍ବର**—ବୈଦେ. ବି. (ଆ. ଓ ଇଂ)—କଲେକ୍ଟରଙ୍କ ତାଲିକାର
Taujinambara ଜମିଦାରୀ ମାହାଲ ପ୍ରଭୃତିର କ୍ରମିକ ସଂଖ୍ୟା—
তৌজি নম্বর The serial number of an estate borne
तउजीनम्बर on the Collector's revenue-roll.
(ତୌଜି ନମ୍ବର—ଅନ୍ୟରୂପ)

ସାଧାରଣତଃ ଲୋକଙ୍କ ଉଚ୍ଚାରଣରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ନ ମିଳିଲେ ପାଠକ ଏ ଅଭିଧାନରେ ନିମ୍ନଲିଖିତ ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ବୃଥା' ନ ମିଳିଲେ 'ବ୍ରଥା' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅକ୍ଷି' ନ ପାଇଲେ 'ଆକ୍ଷି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତଉଫିର୍**—ବୈଦେ. ବିଣ. (ଫା.) (କଚେରୀ ଶବ୍ଦ)—ସନନ୍ଦ ବା ଦାନପତ୍ର
Tauphir ଲିଖିତ ଜମିର ପରିମାଣରୁ ଅଧିକା (ଜମି); ଅଧିକା—
तउफीर (land) In excess of the area originally
**तौफ़ीर** granted.
(ତୌଫିର୍—ଅନ୍ୟରୂପ) [ଦ୍ର—ସନନ୍ଦ ବା ପଟ୍ଟା ବା ଦାନପତ୍ରଦ୍ୱାରା ଦିଆଯାଇଥିବା ଜମିର ପରିମାଣ ଅପେକ୍ଷା ଯଦି ସନନ୍ଦଗ୍ରହୀତାଙ୍କ ଦଖଲରେ ଅଧିକା ଜମି ଥିବାର ମାପଦ୍ୱାରା ଦେଖାଯାଏ, ତାହା 'ତଉଫିର୍' ଜମି ନାମରେ ବାଜିଆପ୍ତ କରାଯାଇ ଏହି 'ତଉଫିର୍' ଜମି ଉପରେ କର ଧାର୍ଯ୍ୟ କରାଯାଏ ।]

**ତଉଲ**—ଦେ. ବି. (ସଂ. ତୁଲ ଧାତୁ)—୧ । ତୌଲ; ତୌଲ୍ୟ; ତୁଳିବା
Taula କର୍ମ; ଓଜନ କରିବା କର୍ମ—
तोल 1. Weighing; weighment.
**तौल** ୨ । ଓଜନ—2. Weight.
(ତୌଲ—ଅନ୍ୟରୂପ) ୩ । ତରାଜୁ; ତୁଳାଯନ୍ତ୍ର—
3. Weighing instrument; scale.

**ତଉଲା**—ଦେ. ବି.—ତଉଲ (ଦେଖ)
Taulā Taula (See)
(ତୌଲା—ଅନ୍ୟରୂପ) ବିଣ.—ଓଜନ କରାଯାଇଥିବା—
Weighed.
ପ୍ରାଦେ. ( ପୁରୀ )—ବି.—ଏକ ଭରା ବା କଟକୀ ୧¼ ସେର ପରିମାଣ—Weight of $1\frac{1}{4}$ Cuttack seers.

**ତଉଲା(ଲେ)ଇବା**—ଦେ. କ୍ରି.—ତଉଲିବାର ଣିଜନ୍ତ ରୂପ—
Taulā(le)ibā Causative form of Taulibā.
तोलान **तौलाना**
[ତୌଲା(ଲେ)ଇବା—ଅନ୍ୟରୂପ]

**ତଉଲା ଯିବା**—ଦେ.କ୍ରି.—ତୁଳିତ ହେବା; ତଉଲିବାର କର୍ମବାଚ୍ୟ ରୂପ—
Taulā jibā Passive voice of Taulibā.
(ତୌଲା ଯିବା—ଅନ୍ୟରୂପ)

**ତଉଲା ସେର**—ଦେ. ବି.—କଟକୀ ସେର; ଟ ୧୦୫ ଙ୍କା ଓଜନର
Taulā sera ସେର—A seer of 105 Rupee's
কटकी सेर weight.
(ତୌଲା ସେର—ଅନ୍ୟରୂପ) [ଦ୍ର—ସାଧାରଣତଃ ସେରର ଓଜନ ଟ ୮୦ଙ୍କା କିନ୍ତୁ କଟକୀ ସେରର ଓଜନ ଟ ୧୦୫ । ଟ ୮୦ଙ୍କା ଓଜନର ସେରକୁ ବାଲେଶ୍ୱରୀ ସେର ବୋଲାଯାଏ ।]

**ତଉଲା ହେବା**—ଦେ. କ୍ରି.—ତଉଲିବାର କର୍ମବାଚ୍ୟ ରୂପ—
Taulā hebā Passive form of Taulibā.
(ତୌଲା ହେବା—ଅନ୍ୟରୂପ)

**ତଉଲିଆ**—ବୈଦେ. ବି. (ଇଂ. ଟାୱେଲ୍)—ତୁଆଲିଆ; ଖଦଡ଼ା ଓ
Tauliā ଶ୍ୱେତ ଗାମୁଛା, ତୌଲିଆ; କ୍ଷୁଦ୍ର ଗାତ୍ରମାର୍ଜନୀ—
तुयालिया; तोलिया Towel.
**तौलिया**
(ତୌଲିଆ—ଅନ୍ୟରୂପ)

**ତଉଲିବା**—ଦେ. କ୍ରି. ( ସଂ. ତୁଲ୍ ଧାତୁ )—
Taulibā ତୌଲିବା; ତୁଳିବା; ଓଜନ କରିବା—
তৌলা, ওজনকরা To weigh in the scale
**तोलना, तुलना** ଏହି ଦଣ୍ଡେ ଧାତା ତଉଲନ୍ତି ଅବା ନରଭାଗ୍ୟ ମଣ୍ଡିତଳେ ।
[ତଉଲା(ଲେ)ଇବା—ଣିଜନ୍ତ] ରଘୁନାଥ, ପାର୍ବତୀ ।

**ତଉଲୁଆଁ ଖାଇ ରୁପ**—ପ୍ରାଦେ. ( ସମ୍ବଲପୁର ) ବି—
Tauluāṅkhāi rūpa କଳା ଚଞ୍ଚୁଯୁକ୍ତ ଶୁଆ—
Black-beaked parrot.

**ତଏଁ**—ପ୍ରାଦେ (ସମ୍ବଲପୁର) ସର୍ବନାମ—ତୁମ୍ଭେ—
Taeṅ You.

**ତଏନ୍**—ବୈଦେ. ବି. ( ଆ —ତଇନ୍ ( ଦେଖ )
Taen Tain ( See )

**ତଏନାତ୍**—ବୈଦେ. ବି. (ଆ)—ତଇନାତ୍ ( ଦେଖ )
Taenāt Taināt ( See )

**ତଂ**—ଦେ. ବିଣ—ତଙ୍ଗ ( ଦେଖ )
Taṁ Taṅga ( See )

**ତଃ**—ସଂ ପ୍ରତ୍ୟୟ (ସଂ. ତସ୍, ଯଥା—ଫଳତଃ, କାର୍ଯ୍ୟତଃ)—
Taḥ (ବିଭକ୍ତିର ଚିହ୍ନ) ପଞ୍ଚମୀ ସପ୍ତମୀ ବିଭକ୍ତି ଅର୍ଥରେ ପ୍ରତ୍ୟୟ; ରୁ, ରେ,—A particle added to words denoting 'From' or 'In'.
( ଯଥା—ଆପଣଙ୍କ ମନର ଭାବ କାର୍ଯ୍ୟତଃ ଜଣାଯିବ, ଅର୍ଥାତ୍ କାର୍ଯ୍ୟରୁ ଜଣାଯିବ । ଅନେକତଃ ଦେଖାଯାଏ ଯେ, ଲୋକମାନେ ଫଳତଃ=ଫଳରେ ଭଗାରି କୁଅନ୍ତି । )

**ତଁଡେଇ**—ପ୍ରାଦେ. (ସମ୍ବଲପୁର) ବି. (ତୁଳ. ହି. ଚୁଡ଼ୈଲ)—
Taṅḍei ଡାହାଣୀ—Witch.
(ତଁଡ଼େି, ତଂଡ଼େଇ, ତଂଡ଼େି, ତଂଡେଇ, ତଂଡି—ଅନ୍ୟରୂପ)

**ତଁଢେ**—ପ୍ରାଦେ. (ସମ୍ବଲପୁର) ବି. ସ୍ତ୍ରୀ. (ଗାଳିରେ ବ୍ୟବହୃତ)—
Taṅṛhe ୧ । ଡାହାଣୀ —1. Witch.
୨ । ଅନିଷ୍ଟକାରିଣୀ ସ୍ତ୍ରୀ—2. Harmful woman.
୩ । ଗୁଣି ଗାରେଡ଼ି ଜାଣିବା ସ୍ତ୍ରୀ—3. A woman versed in black magic; sorceress.

**ତକ୍** (ଧାତୁ)—ସଂ—ସହ୍ୟ କରିବା—
Tak (root) To bear; to endure.

**ତକ୍‌ଦିର୍**—ବୈଦେ. ବି. (ଆ)—ଭାଗ୍ୟ; କପାଳ, ଅଦୃଷ୍ଟ—
Tak-dir Luck.
তকদির **तक़दीर**
(ତଗଦିର୍—ଅନ୍ୟରୂପ)

**ତକ୍‌ଦିର୍‌ବର୍**—ବୈଦେ. ବିଣ. (ଆ. ତକ୍‌ଦିର+ଫା. ପ୍ରତ୍ୟୟ.ବର୍)—
Tak-dir-bar ଭାଗ୍ୟବାନ୍—Fortunate.
তকদীরবন্ত **तक़दीरवर**
(ତକ୍‌ଦିର୍‌ବନ୍ତ—ଅନ୍ୟରୂପ)

| ՝ | ଇ | ଉ | ଋ,ଋ | ଌ | ଏ | ହଳନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | କ୍ଷ | ଇସ୍ତ୍ର | ତ୍ରଥ | ଷ୍କ |
|---|---|---|---|---|---|---|---|---|---|---|---|---|---|---|
| ୵ | ଈ | ଊ | ୠ | ୡ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଘ | ସ | ଙ୍ଖ୍ୟ | ଇଥ | ଭୃ | ନ୍ନ |

**ତକମା**—ବୈଦେ. ବି. (ତୁର୍କୀ=ତମ୍‌ଗା=ଶାସନଫଳକ ବା ସନନ୍ଦ)—
Takmā ୧ । ଶାସନଫଳକ; ତମ୍ବାପାଟ୍ଟଥା ସନନ୍ଦ—
तकमा 1. A firman; a written grant.
**तकमा** ୨ । ମେଡାଲ୍; ପଦକ—2. Medal.
ଛତ୍ରେ ଲମ୍ବମାନ ସ୍ୱର୍ଣ୍ଣ ତକମା । ରଥ ନାଥ, ଦରବାର ।

**ତକ୍‌ମିରି**—ବୈଦେ. ବି. (ଆ. ତକ୍‌ର୍‌ର୍)—ତକ୍‌ରାର୍ (ଦେଖ)
Tak-miri Tak-rār ( See )

**ତକ୍‌ରାର୍**—ବୈଦେ. ବି. (ଆ. ତକ୍‌ର୍‌ର୍, ଭୁଲ. ହି. ତର୍କ)—
Tak-rār ୧ । କଳି; କଜିଆ; ଝଗଡ଼ା—
तकरार 1. Quarrel; dispute; altercation.
**तकरार** ୨ । ଆପତ୍ତି—2. Objection.
[ତକରାଳ(ଲି)—ଅନ୍ୟରୂପ]

**ତକ୍‌ରୀର୍**—ବୈଦେ. ବି. (ଆ)—୧ । କଥୋପକଥନ—
Tak-rir 1. Conversation; talk
तकरीर ୨ । ବକ୍ତୃତା—2. Lecture; an address
**तकरीर**

**ତକଲା କୋଟ**—ବୈଦେ. ବି. (ନାମ)—ହିମାଳୟର ଗିରିସଙ୍କଟବିଶେଷ,
Taklā koṭa (ନାଇନ୍‌ତାଲ୍ ବାଟେ ଭାରତରୁ ତିବତକୁ ଯିବାକୁ
(ତକଲାଖାର୍—ଅନ୍ୟରୂପ) ଏହାହିଁ ନଗ୍ନପଦ ରାସ୍ତା)—
The name of a pass in the Himalayan ranges, through which people pass from India to Tibet.
(ସ୍ୱାମୀ ରାମାନନ୍ଦ ୨୧୭ ପୃଷ୍ଠା)

**ତକ୍‌ଲିପ୍ (ଫ୍)**—ବୈଦେ. ବି. (ଆ ତକ୍‌ଲୀଫ୍)—କଷ୍ଟ—
Tak-lip(ph) Hardship; difficulty.
तकलीफ ହଜୁର । ବୁଡ଼ା ଅଦ୍‌ମି, ବହୁତ ତକଲିଫ୍ ପାଇ ।
**तकलीफ** ଲିବାସଚରଣ, ହସାରଙ୍ଗ ।

**ତକଲିପି(ଫି)**—ଗ୍ରା. ବୈଦେ. ବି. (ଆ. ତକ୍‌ଲୀଫ୍)—କଷ୍ଟ—
Tak-lipi(phi) Hardship; difficulty.

**ତକ୍‌ସିର୍**—ବୈଦେ. ବି. (ଆ. ତକ୍‌ସୀର)
Tak-sir ୧ । ଅପରାଧ—1. Crime; guilt.
तकसीर ୨ । କସୋର; ଦୋଷ—2. Fault.
**तकसिर** ୩ । ଭ୍ରାନ୍ତି; ଭୁଲ—3. Error; mistake.

**ତକ୍‌ସିରି**—ଗ୍ରା. ବୈଦେ. ବି. (ଆ. ତକ୍‌ସୀର)—ତକ୍‌ସିର୍ (ଦେଖ)
Tak-siri Tak-sir ( See )

**ତକ**—ଦେ. ଅ. ( ସଂ. ଅନ୍ତ+କ )—
Taka ୧ । ପର୍ଯ୍ୟନ୍ତ; ଅବଧି ( ସ୍ଥାନ ବା ସମୟ )—
तक 1. Upto; till; until.
**तक, तलक** ( ଯଥା—ମୁଁ ସନ୍ଧ୍ୟାତକ ଅପେକ୍ଷା କଲି, ସେ ଆସିଲେ ନାହିଁ; ମୁଁ କାହିଁତକ ଯିବି ? )

୨ । ଠାରେ—2. In.
(ଯଥା—ଏ କାର୍ଯ୍ୟଭାର ତୁମତକ ରହିଲା । )
ଗୁଣି, ସବ ଦେ. ପ୍ରତ୍ୟୟ—ସମୁଦାୟ; ମାନ—
**समुचा** All; the whole of.
(ଯଥା—ମୋ ଠଙ୍କାତକ ଚୋରେ ନେଇଗଲେ । )

**ତକତ୍ ତାଉସ୍**—ବୈଦେ. ବି—ତଖତ୍ ତାଉସ୍ (ଦେଖ)
Takat tāus Takhat tāus (See).

**ତକତ୍ ନସୀନ୍**—ବୈଦେ. ବିଣ ( ଫା. ତଖ୍‌ତ୍ ନସୀନ୍ )—
Takat nasin ଗାଦୀନସୀନ; ସିଂହାସନାରୂଢ଼ ( ରାଜା )—
तकतनसीन (a king) Installed on the throne.
**तखतनशीन**

**ତକତ୍‌ପୋଷ**—ବୈଦେ. ବି (ଫା)—ତକ୍ତପୋଷ (ଦେଖ)
Takat-posha Taktaposha (See).

**ତକତ**—ବୈଦେ. ବି ( ଆ. ତଖ୍‌ତ୍=ସିଂହାସନ )—
Takata ୧ । ଆପଣାର ଉପଯୁକ୍ତ ସ୍ଥାନ—
तक्त 1. One's proper place.
**तख्त** ୨ । ରାଜସିଂହାସନ—2. Throne.
୩ । କ୍ଷମତା—3. Power.
୪ । ମଧ୍ୟସ୍ଥଳ—4. Centre; central place.
( ଯଥା—ରାମ ସାହୁର ବଗିଚା ବ କୋଠର ତକତରେ ଅଛି । )
ବୈଦେ, ବି—୧ । ଉପଯୁକ୍ତ—1. Proper.
( ଯଥା—ଗୁଲାବ ବାସର ବେଶ୍ ତକତ ଜାଗାରେ କରିଥିଲି ।)
୨ । ମଧ୍ୟସ୍ଥ; ସନ୍ଧ୍ୟସ୍ଥ—2. Midde; central.
(ଯଥା—କୂଅଟାକୁ ଗ୍ରାମର ଏପରି ତକତ ସ୍ଥାନରେ ଖୋଳାଯିବ, ଯେପରି କି ଗ୍ରାମର ସମସ୍ତ ଲୋକ ତହିଁରୁ ପାଣି ବ୍ୟବହାର କରି ପାରିବେ । )

**ତକତକ**—ଦେ. ବିଣ (ସଂ. ତକ ଧାତୁ=ହସନ; ତର୍କ ଧାତୁ=ଦୀପ୍ତି—
Takataka ଯୋଗେଶଚନ୍ଦ୍ର)—୧ । ଚକ୍‌ଚକ୍ (ଦେଖ)
तकतक 1. Chak-chak (See).
**चमकदार** ୨ । ଈଷତ୍ ରକ୍ତାଭ; ଗୋଲାପୀ
2. Ruddy, Rosy.

**ତକତକ ଗୋରା**—ଦେ. ବିଣ—ରକ୍ତାଭ ଗୌର—
Takataka gorā Having a rosy fair complexion.

**ତକତକିଆ**—ଦେ. ବିଣ—ଚକ୍‌ଚକ୍ (ଦେଖ)
Takatakiā Chak-chak (See).
तकतकिया ବିଣର ବିଣ ଖୁବ୍ (ଗୋରା)—ଯଥା, ତକତକିଆ ଗୋରା)—
Very (fair-coloured).

**ତକତା**—ବୈଦେ. ବି ( ଆ. ତଖ୍‌ତାଦ୍=ପଟା )—
Takatā ୧ । ତକ୍ତା; କାଠର ପଟା—
तख्ता 1. A plank of wood; board.
**तख्ता** ୨ । ପତଳା ଲମ୍ବ ଓ ଚଉଡ଼ା ଖଣ୍ଡ; ଫର୍ଦ୍ଦ—2; A sheet.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୂ' ଦେଖିବେ; 'ଅଙ୍ଖୀ' ନ ପାଇଲେ 'ଆଙ୍ଖି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୩ । କାଗଜର ଫର୍ଦ୍ଦ— 3. A sheet of paper.

୪ । ଶ୍ଳେଟ ପଟା; ପଟ୍ଟୀ—4. Tablet.

୫ । (ସେଟଲମେଣ୍ଟ ଶବ୍ଦ) ଯେଉଁ ତ୍ରିପଦ ଟେବଲ ଉପରେ ନକ୍ସା ରଖି ଅମିନମାନେ ସରଜମିନ ମାପ ବେଳେ କାମ କରନ୍ତି—5 Plane table.

୬ । ଧାତୁର ଫଳକ—6. Metal plate.

୭ । ପଥରର ଲମ୍ବ ଓ ଚଉଡ଼ା ପତଳା ଖଣ୍ଡ— 7. Slab of stone.

**ତକତି**—ବୈଦେ. ବି (ଆ. ତଖ୍‌ତଡ୍)—୧ । ଶ୍ଳେଟ ପଟା; ପଟ୍ଟ—
Takati — Small plate.
তক্তি
୨ । ଛାତ୍ରମାନେ ଲେଖିବା ଶ୍ଳେଟ— 2. Writing slate.
तख़्ती

**ତକରୁହାଁ**—ଦେ. ବି—ଚିଲିକାରେ ଦେଖାଯିବା ଏକପ୍ରକାର ପକ୍ଷୀ—
Takaruhā̃ A species of bird found in Chilkā.

**ତକଲା(ଲି)**—ଦେ. ବି (ସଂ. ତର୍କୁ)—ତାକୁଡ଼ି—
Takalā(li) Spinning spindle.
টেকো तकला, तकलि

**ତକଲ୍ଲପ୍(ଫ୍)(ବ୍)**—ବୈଦେ. ବି—୧ । (ଆ. ତଗଲ୍ଲବ=ବଞ୍ଚନା)—
Takallap(ph)(b) ୧ । ପ୍ରବଞ୍ଚନା—Deception.
তগল্লব
୨ । (ଆ) ତକଲୀପ୍ (ଦେଖ) Taklip (See).
तगल्लब

**ତକସିମ୍ ଜମା**—ବୈଦେ. ବି (ଆ. ତକ୍‌ସୀମ୍=ବଣ୍ଟନ+ଜମା=ରାଜସ୍ୱ, ଖଜଣା)—ସମ୍ରାଟ ଅକବରଙ୍କ ସଚୀବ ତୋଡ଼ର-ମଲଙ୍କ ଦ୍ୱାରା କରାଯାଇଥିବା ଓଡ଼ିଶାର ରାଜସ୍ୱ ବନ୍ଦୋବସ୍ତ—
Takasim jamā The name of the Revenue Settlement of Orissa done by Akbar's minister Tordaramala.

ତୋଡ଼ରମଲଙ୍କ ଓଡ଼ିଶା ରାଜସ୍ୱ ବନ୍ଦୋବସ୍ତର ନାମ
ତକସିମ ଜମା ଓ ଟଙ୍କା ରକ୍ମି । ଜଗବନ୍ଧୁ. ପ୍ରାଚୀନ ଉତ୍କଳ ।

**ତକା(କେ)ଇବା**—ଦେ. କ୍ରି—(ସଂ. ତର୍କ୍ ଧାତୁ=ବିଚାରିବା; ଜ୍ଞାନ)—
Takā(ke)ibā ୧ । ଚାହିଁବା; ଦେଖିବା—1. To look at.
তাকান
ଅଷ୍ଟ ବୋଲି କାହା ମୁଖ ତକାନ୍ତେ,
तकना
ସେ ବୋଲେ କାମ୍ବରଷ୍ଟ ଏହୁମତେ । ବ୍ରଜନାଥ. ସମରତରଙ୍ଗ ।
୨ । ଅପେକ୍ଷା କରିବା—2. To wait for.

**ତକା(କେ)ଇ ରହିବା**—ଦେ. କ୍ରି—୧ । ଚାହିଁ ରହିବା—
Takā(ke)i rahibā 1. To keep looking at; to gaze at; to look at.
তাকিয়েথাকা
୨ । ଅପେକ୍ଷା କରି ରହିବା—
तका रहना
2. To keep waiting for; to wait for
ପଥକ ତକାଇ ରହିଲ—ନୀଳକଣ୍ଠ ଦାଶ. ପିଲ୍ଲଙ୍କ ରାମାୟଣ ;

**ତକାତକି**—ଦେ. ବି—୧ । ପରସ୍ପର ଚହାଁଚହିଁ—
Takātaki 1. Looking at each other.
তাকাতাকি
୨ । ପରସ୍ପରକୁ ଅପେକ୍ଷା କରିବା— 2. Waiting for each other.
ताक
୩ । ଜଗାଜଗି—3. Watching each other.

**ତକାବି**—ବୈଦେ. ବି (ଆ. ତକାବୀ)—ତଗାବି ( ଦେଖ )
Takābi Tagābi ( See )
তাগাবি तकावी

**ତକିଆ**—ବୈଦେ. ବି ( ଫା. ତକ୍‌ୟା )—୧ । ମାଣ୍ଡି; ବାଲିସ୍; ଅପସର; ମୁଣ୍ଡିଆ—1. Pillow; bolster.
Takiā
তাকিয়া
ପ୍ରଳୟକାଳେ କୋଧାରୁଣ ଶମ୍ଭୁର ମସ୍ତକ ତକିଆ ପଦ୍ମ—
तकिया
କବିସୂର୍ଯ୍ୟ. ଚନ୍ଦ୍ରକଳା ।
୨ । ମୁସଲମାନ ଫକୀର ବା ମହାପୁରୁଷମାନଙ୍କର କବର; ଆଶ୍ରମ (ଯଥା—ଫକୀରତକିଆ)—2. Grave of Mahomedan saints.

**ତକିଆ ଖୋଲ**—ବୈଦେ. ବି (ଫା. ତକ୍‌ୟା+ଗିଲଫ୍)—ମାଣ୍ଡିକୁ ଆବୃତ କରିବାପାଇଁ ତହିଁରେ ଖଞ୍ଜାଯିବା କନାର ମୁଣା ଭଳି ଆବରଣୀ (ଖୋଲ)—Pillow-case.
Takiā khola
তাকিয়া খোল
तकियका गिलाफ़

**ତକିଲ**—ସଂ. ବି ( ତକ୍ ଧାତୁ=ସହ୍ୟ କରିବା+ସଂଜ୍ଞାର୍ଥେ. ଇଲ )—
Takila ୧ । ଧୂର୍ତ୍ତ ବ୍ୟକ୍ତି ( ହି. ଶବ୍ଦସାଗର )— 1. Knave; cheat
୨ । ଔଷଧ—2 Medicine

**ତକିଲା**—ସଂ. ବି (ତକିଲ+ଆ)—ଔଷଧ (ହି. ଶବ୍ଦସାଗର)—
Takilā Medicine.

**ତକ୍ତ (ଇତ୍ୟାଦି)**—ବୈଦେ. ବି (ଫା.ତଖ୍‌ତ)—ତକତ ଇତ୍ୟାଦି (ଦେଖ)
Takta (etc) Takata (etc) (See)

**ତକ୍ତପୁରୁଷ**—ବୈଦେ. ବି (ଫା)—ତକ୍ତପୋଷ ( ଦେଖ )
Taktapurusha Taktaposha (See)

**ତକ୍ତପୋଷ**—ବୈଦେ. ବି (ଫା. ତଖ୍ତ୍‌ପୋଶ୍=ବସିବାର ଆସ୍ତରଣ, ଆ. ତଖ୍‌ତାପୋଷ=କାଠର ଖଟ)—କାଠ ପଟାର ଖଟ—A bedstead made of planks.
Taktaposha
তকতপোষ
तखतपोष
ସେହି ତକ୍ତପୋଷ ଉପରେ ଗୋଟିଏ ପୁରୁଷ ଏବଂ ତଳେ ଗୋଟିଏ ସ୍ତ୍ରୀ ବସି ଭାରି କଥାବାର୍ତ୍ତାରେ ଲାଗି ଯାଇଥିଲେ ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ତକ୍ତା**—ବୈଦେ. ବି—ତକତା ( ଦେଖ )
Taktā Takatā (See)

**ତକ୍ତି**—ବୈଦେ. ବି—ତକତି ( ଦେଖ )
Takti Takati ( See )

**ତକ୍ମା**—ସଂ. ବି ( ତକ୍ ଧାତୁ+କର୍ମ ଅନ୍; ତକ୍ମନ୍ ଶବ୍ଦ ୧ମା. ୧ବ )—
Takmā ବସନ୍ତରୋଗ (ହି. ଶବ୍ଦସାଗର)—Small pox,

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଯ଼ | ଉ଼ୱ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଯ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଡ଼ | ନ୍ତ |

ତକ୍ର—ସଂ. ବି [ତକ୍ ଧାତୁ=(ପୀଡ଼ା) ସହ୍ୟ କରିବା+କର୍ତ୍ତୃ. ର; ଯାହା
Takra ମନ୍ଥନପୀଡ଼ା ସହ୍ୟ କରିଥାଏ]—୧ । ଘୋଳ ଦହି; ଚକ୍ଷା—1. Churned butter-milk.

୨ । ଦୁଧ ଦହି ବସିଗଲେ ଉପରେ ଯେଉଁ ପାଣିଆ ଅଂଶ ପାତ୍ରର ଉପରକୁ ଉଠିଯାଏ—2. Whey.

ତକ୍ରକୂର୍ଚ୍ଚିକା—ସଂ. ବି ( ତକ୍ର+କୂର୍ଚ୍ଚିକା, ୬ଷ୍ଠୀ ତତ୍ )—୧ । ଗରମ
Takra-kūrchchikā ଦୁଧରେ ଦହି ପକାଇ ପ୍ରସ୍ତୁତ କରିବା ଛେନା; ଦୁଧଛେନା—1. Cheese

୨ । ଲହୁଣୀ (ପ୍ରକୃତିବାଦ)—2. Butter.

ତକ୍ରପିଣ୍ଡ—ସଂ. ବି (ତକ୍ର+ପିଣ୍ଡ, ୬ଷ୍ଠୀ ତତ୍;)—ଦହିଛେନା—
Takra-piṇḍa Inspissated whey.

ତକ୍ରଭିଦ୍—ସଂ. ବି ( ତକ୍ର+ଭିଦ୍ ଧାତୁ+କର୍ତ୍ତୃ. କ୍ୱିପ୍; ୧ମା. ୧ବ )—
Takra-bhid କପିତ୍ଥ; କଇଁଥ—The wood apple.

ତକ୍ରମାଂସ—ସଂ. ବି (ତକ୍ର+ମାଂସ, ଦ୍ୱନ୍ଦ୍ୱ)—୧ । ଛେନା ସଙ୍ଗେ ମାଂସ
Takra-māṁsa ରନ୍ଧା ହୋଇଥିବା ପାରସ୍ୟ ଦେଶୀୟ ଖାଦ୍ୟ; କୋର୍ମା—1. A sort of Persian curry

୨ । ମାଂସର ପକ୍ୱରସ (ହି. ଶବ୍ଦସାଗର)—
2. Meat soup; broth

ତକ୍ରସଂଧାନ—ସଂ. ବି ( ୬ଷ୍ଠୀ ତତ୍; ତକ୍ର+ସନ୍ଧାନ )—ଦହି ସଙ୍ଗେ
Takra-saṁdhāna ସମ୍ଭର ଲୁଣ, ବେଶର ଓ ହଳଦୀ ମିଶାଯାଇ ୧୫ ଦିନ ପର୍ଯ୍ୟନ୍ତ ରଖାଯାଇ ଖଟାଇ କରାଯିବା କାଞ୍ଜି—
A kind of sour gruel made from churned curd.

( ଯଥା—ଏହା ସେବନ କଲେ ପ୍ଲୀହା ରୋଗ ଭଲ ହୁଏ ।
ହି. ଶବ୍ଦସାଗର)

ତକ୍ରସାର—ସଂ. ବି (୬ଷ୍ଠୀ ତତ୍; ତକ୍ର+ସାର)—ଲହୁଣି—
Takra-sāra Butter.

ତକ୍ରାଟ—ସଂ. ବି (ତକ୍ର=ଘୋଳ ଦହି+ଅଟ୍ ଧାତୁ=ଗମନ କରିବା+
Takrāṭa କର୍ତ୍ତୃ. ଅ)—ମନ୍ଥନ ଦଣ୍ଡ; ଖୁଆ—Churning stick; churner.

ତକ୍ରାର୍ (ଲ୍)—ବୈଦେ. ବି—ତକ୍‌ରାର୍ ( ଦେଖ )
Takrār (l) Tak-rār ( See )

ତକ୍ଷ (ଧାତୁ)—ସଂ—କାଠ ଚାଞ୍ଛିବା—
Taksha (root) To scrape wood.

ତକ୍ଷ—ସଂ. ବି. ପୁଂ—୧ । (ନାମ) ରାଜା ଭରତଙ୍କ ପୁତ୍ର—
Taksha 1. The son of king Bharata, king of Gāndhāra (modern Kabul); his capital was at Taxillā ( modern Rawalpiṇḍi).

ତକ୍ଷ ପୁଷ୍କଳ ଦେନ ତଉ,
ଭରତ ପତ୍ନୀ ଗର୍ଭେ ହୋଇ । ଜଗନ୍ନାଥ. ଭାଗବତ ।

[ ଦ୍ର—ଏ ଗାନ୍ଧାରର ରାଜା ଥିଲେ ଏବଂ ଏହାଙ୍କ ରାଜଧାନୀ ତକ୍ଷଶିଳା (ଆଧୁନିକ ରାୱଲପିଣ୍ଡି) ଥିଲା । ]

୨ । କାଠ ଚାଞ୍ଛିବା—2. Act of scraping wood.

ତକ୍ଷକ—ସଂ. ବି ( ତକ୍ଷ ଧାତୁ=କାଠ ଚାଞ୍ଛିବା+କର୍ତ୍ତୃ. ଅକ )—
Takshaka ୧ । ସୂତ୍ରଧର; ବଢେଇ—1. Carpenter.

୨ । ବିଶ୍ୱକର୍ମା—2. Biswakarmā, the mythical divine architect.

୩ । ନାଟକର ସୂତ୍ରଧାର; ନାଟ୍ୟାଧ୍ୟକ୍ଷ—
3 Stage-manager.

୪ । ପାତାଳର ଅଷ୍ଟନାଗ ମଧ୍ୟରେ ଏକ ନାଗ—
4. One of the eight mythical serpents of the nether world.

[ ଦ୍ର—ଏ କଶ୍ୟପଙ୍କ ଔରସରେ କଦ୍ରୁ ଗର୍ଭରୁ ଜାତ ଓ ସର୍ପରାଜ ବାସୁକିଙ୍କ ଭାଇ । ଖାଣ୍ଡବ ବନରେ ଏହାଙ୍କର ବାସ ଥିଲା । ଏ ପରୀକ୍ଷିତ ମହାରାଜାଙ୍କୁ ବ୍ରହ୍ମଶାପ ଅନୁସାରେ ଦଂଶନ କରିବାରୁ ପରୀକ୍ଷିତ ମୃତ ହେଲେ ଓ ତାଙ୍କ ପୁତ୍ର ଜନମେଜୟ ସର୍ପଯଜ୍ଞ କରି ସର୍ପକୁଳ ନିର୍ମୂଳ କରିବାକୁ ଉଦ୍ୟତ ହେବାରୁ ତକ୍ଷକ ଆସ୍ତିକ ମୁନିଙ୍କ ଚେଷ୍ଟାରେ ଉକ୍ତ ଯଜ୍ଞାଗ୍ନିରେ ନ ପଡ଼ି ରକ୍ଷା ପାଇଥିଲେ । ]

୫ । ଏଣ୍ଡୁଅ—5. Chameleon

୬ । ଏଣ୍ଡୁଅ ପରି ଏକପ୍ରକାର ପକ୍ଷଯୁକ୍ତ ଜୀବ—
6. The flying lizard; dragon; Draco Volans

[ ଦ୍ର—ଏମାନେ ଉଡ଼ି ବୁଲନ୍ତି ଓ ରାତିରେ ବିକଟ ଚିତ୍କାର କରନ୍ତି । ସେହି ଚିତ୍କାରର ଧ୍ୱନି 'ତକ୍ଷକ' 'ତକ୍ଷକ' ପରି ଶୁଭେ । ଏମାନେ ପରସ୍ପର କାମୁଡ଼ାକାମୁଡ଼ି ହୁଅନ୍ତି । ]

୭ । ଦେହ ମଧ୍ୟସ୍ଥ ଦଶ ବାୟୁ ମଧ୍ୟରୁ ଏକ; ନାଗ ବାୟୁ—
7. One of the ten airs inside the human body.

[ ଦ୍ର—ଶରୀର ମଧ୍ୟସ୍ଥ ଦଶ ବାୟୁ—ପ୍ରାଣ, ଅପାନ, ବ୍ୟାନ, ଉଦାନ, ସମାନ, ତକ୍ଷକ, ଧନଞ୍ଜୟ, ପୌଣ୍ଡ୍ରକ, ଦେବଦତ୍ତ ଓ ଶଙ୍ଖ ।]

୮ । ଭଗବତୋକ୍ତ ପ୍ରସେନଜିତଙ୍କ ପୁତ୍ର—
8. Name of the son of King Prasenajit.

୯ । ସୂତକ ପିତା ଓ ବ୍ରାହ୍ମଣୀ ମାତାଙ୍କଠାରୁ ଉତ୍ପନ୍ନ ବର୍ଣ୍ଣସଙ୍କର ଜାତିବିଶେଷ ( ହି. ଶବ୍ଦସାଗର )—
9. Name of a class of half-caste Hindus.

ତକ୍ଷଣ—ସଂ. ବି. ( ତକ୍ଷ ଧାତୁ=କାଠ ଚାଞ୍ଛିବା+ଭାବ. ଅନ )—
Takshaṇa ୧ । ବଢ଼େଇ କାମ—1. Carpentry.

୨ । ଅସ୍ତ୍ରଦ୍ୱାରା କାଠ ଚାଞ୍ଛିବା; ରନ୍ଦା ମାରିବା—
2. Planing of wood; scraping of wood work.

୩ । ରନ୍ଦା; ରନ୍ଧା—3. Carpenter's plane

୪ । ବଢ଼େଇ ( ହି. ଶବ୍ଦସାଗର )—4. Carpenter.

ସାଧାରଣ ଲୋକେ ଅ ।ଉ ପୃଷ୍ଠାରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷାଟକାକ୍ଷରରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ୱଥ' ନ ମିଳିଲେ 'କଥ' ଦେଖିବେ; 'ବଂଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍ଖୋ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୫ । ପଥର କାଠ ଆଦି ଖୋଳି ମୂର୍ତ୍ତି ଆଦି ଗଢ଼ିବା କର୍ମ ( ହି. ଶବ୍ଦସାଗର )—5 Carving of wood & stone.

ଦେ. କ୍ରି. ବିଣ. ( ସଂ. ତତ୍‌କ୍ଷଣ )—
ତଥୁନି, ତର୍ଥନି — ଅତି ଚଞ୍ଚଳ; ତତ୍‌କ୍ଷଣାତ୍; ଶୀଘ୍ର—
ଫୌରନ — At once; very soon; immediately.

ତୁଡପେ ବସାଇ ତକ୍ଷଣ, ଅନାଦି ପ୍ରଭୁ ନାରାୟଣ । ଜଗନ୍ନାଥ. ଭାଗବତ ।

**ତକ୍ଷଣି**—ଦେ. କ୍ରି. ବିଣ. ( ସଂ. ତତ୍‌କ୍ଷଣ )—ତକ୍ଷଣ ( ଦେଖ )
Takshani — Takshana ( See )

**ତକ୍ଷଣେ**—ଦେ. କ୍ରି ବିଣ. (ସଂ. ତତ୍‌କ୍ଷଣ)—ତକ୍ଷଣ ( ଦେଖ )
Takshane — Takshana ( See )

ତକ୍ଷଣେ ଲୁଣ୍ଠମଣା କରି, ଶତ୍ରୁ ମଇନ୍ତ ସମ ସରି ।
ଭୂପତି. ପ୍ରେମପଞ୍ଚାମୃତ ।

**ତକ୍ଷଶିଳା**—ସଂ. ବି. ( ତକ୍ଷ+ଶିଳା )—
Taksha-śilā — ପଞ୍ଜାବ ଅନ୍ତର୍ଗତ ନଗରୀବିଶେଷ ( ତକ୍ଷ ରାଜାଙ୍କ ରାଜଧାନୀ; ବର୍ତ୍ତମାନ ନାମ ରାଓଲପିଣ୍ଡି )—
A town in the Punjab; Taxilla

[ ଦ୍ର—ବର୍ତ୍ତମାନ ତକ୍ଷଶିଳାର ଭୂମି ତଳୁ ଅନେକ ବୌଦ୍ଧ ସ୍ତୂପାଦିର ଚିହ୍ନ ବାହାରୁଛି । ଗ୍ରୀକ୍‌ମାର ସିକନ୍ଦରଙ୍କୁ ତକ୍ଷଶିଳାର ରାଜା ଖୁବ୍ ସମ୍ମାନ ଓ ସତ୍କାର କରିଥିଲେ । କେତେକ କାଳ ପର୍ଯ୍ୟନ୍ତ ଏହା ଅଶୋକଙ୍କ ସାମ୍ରାଜ୍ୟଭୁକ୍ତ ସମୃଦ୍ଧିମନ୍ତ ନଗର ଓ ପଶ୍ଚିମ ଭାରତର ପ୍ରଧାନ ବିଦ୍ୟାପୀଠ ଥିଲା । ଚାଣକ୍ୟ ଏହି ସ୍ଥାନର ଲୋକ ଥିଲେ । ]

**ତକ୍ଷା**—ସଂ. ବି. (ତକ୍ଷ୍ ଧାତୁ+କର୍ତ୍ତୃ. କନିନ୍, ତକ୍ଷନ୍ ଶବ୍ଦ, ୧ମା.୧ବ)—
Takshā ୧ । ବିଶ୍ୱକର୍ମା—1. Biśwakarmā; the mythical divine architect

୨ । ବଢ଼େଇ—2. Carpenter

୩ । ଚିତ୍ରାନକ୍ଷତ୍ର—
3. The 14th Lunar mansion.

**ତଖତ୍**—ବୈଦେ. ବି. (ଆ. ତଖ୍‌ତ୍)—ତକତ (ଦେଖ)
Takhat — Takata (See)

**ତଖତ୍ ତାଉସ୍**—ବୈଦେ. ବି. (ଫା. ତଖ୍‌ତ୍+ଆ. ତାଉସ୍)—
Takhat tāus — ମୋଗଲ ସମ୍ରାଟ ସାହାଜାହାନଙ୍କ ନିର୍ମିତ ମୟୂର-ସିଂହାସନ—Peacock-throne raised by the Moghal emperor Sahajahan
ତଖତ ତାଊସୀ
तख्त ताउस
(ତଖତ୍ ତାଉସୀ—ଅନ୍ୟରୂପ)

[ ଦ୍ର—ଏଥି ଉପରେ ମଣିଇହୀର ଖଚିତ ପୁଚ୍ଛାଳଙ୍କୃତ ମୟୂରର ମୂର୍ତ୍ତି ଥିଲା । ଏହାର ନିର୍ମାଣରେ ୬ କୋଟି ଟଙ୍କା ଖରଚ ହୋଇଥିଲା । ଖ୍ରୀ ୧୭୩୬ ସାଲରେ ନାଦୀରସାହା ଏହାକୁ ଲୁଣ୍ଠନ କରି ନେଇଗଲେ । ]

**ତଖଲିପ୍(ଫ୍)**—ପ୍ରାଦେ. (ସମ୍ବଲପୁର) ବି. (ଆ. ତକ୍‌ଲିଫ)—କଷ୍ଟ—
Takhalip(ph) — Pain; trouble; difficulty.

**ତଖ୍ତ**—ବୈଦେ. ବି. (ଫା)—ତକତ (ଦେଖ)
Takhta — Takata (See)

**ତଗଦିର୍ (ଇତ୍ୟାଦି)**—ବୈଦେ. ବି. (ଫା)—ତକଦୀର୍ ଇତ୍ୟାଦି (ଦେଖ)
Tag-dir (etc) — Tak-dir etc (See)

**ତଗସିର୍**—ବୈଦେ. ବି (ଆ)—ତକ୍‌ସିର୍ (ଦେଖ)
Tag-sir — Tak-sir (See)

**ତଗର**—ସଂ. ବି—୧ । (ତ=କ୍ରୋଡ଼+ଗୃ ଧାତୁ=ଗ୍ରାସ କରିବା+କର୍ତ୍ତୃ. ଅ)—ଟଗର (ଦେଖ)
Tagara — Ṭagara (See)

(ସଂ. ନାମ—ତଗର, ବକ୍ର, କୁଟିଳ, ଶଠ, ମହୋରଗ, ନତ, ଦୀପନ, ବିନମ୍ର, କୁଂଚିତ, ଘଂଟି, ନହୁଷ, ପାର୍ଥିବ, ରାଜହର୍ଷଣ, କ୍ଷତ୍ର, ଦୀନ, କାଲାନୁଶାରିବା, କାଲାନୁସାରକ)—

୨ । ତଗର ବୃକ୍ଷର ଚେର—
2. The root of the Tagara plant

[ ଦ୍ର—ଏହା ସୁଗନ୍ଧଦ୍ରବ୍ୟରେ ଗଣିତ ହୁଏ । ଏହାକୁ ସେବିଲେ ଦାନ୍ତର ଦରଜ ଭଲ ହୁଏ—ହି. ଶବ୍ଦସାଗର । ]

୩ । ମଦନ ବୃକ୍ଷ ଓ ଫଳ; ମଏଣ (ଦେଖ) —
3. Maena (See)

**ତଗର ପାଦ**—ଦେ. ବି—୧ । ଟଗର ୨ (ଦେଖ) (ହରେକୃଷ୍ଣ ଦ୍ରବ୍ୟଗୁଣ)-
Tagara pāda — 1. Ṭagara 2. (See)
(ତଗରପାଦିକା—ଅନ୍ୟରୂପ) — ୨ । ତଗର ୨ (ଦେଖ)
2. Tagara 2 (See)

**ତଗରା**—ଦେ. ବି—୧ । ରାଜସେବକବିଶେଷ—1. A class of personal servants of a king.
Tagarā

ତାଗାଡ଼ — ବୈଦେ. ବି. (ତୁର୍କୀ. ତଗାର୍)—୨ । ରାଜମିସ୍ତ୍ରୀମାନେ ପଲସ୍ତରା ବା ଗାନ୍ଥିନିକାମ କରିବା ସମୟରେ ଚକଟା ମାଟି ବା ମସଲା ରଖିବା ନିମିତ୍ତ ଯେଉଁ ମାଟିର ଚଟକା ପାତ୍ର ବା ମାଟି ଡେଲୁଣୀ ବ୍ୟବହାର କରନ୍ତି—2. An earthen pan used by masons to put mortar in
तगाड़ा

**ତଗା**—ଦେ. ବି. (ସଂ. ପତାକା)—୧ । ନିଶାଣ; ପତାକା—
Tagā — 1. Flag.

୨ । ଲମ୍ବା ବାଉଁଶ ଉପରେ ବନ୍ଧାଯାଇଥିବା ପତାକା—
2. A flag put on a long pole.

**ତଗାଇଦା**—ପ୍ରାଦେ. (ଗଞ୍ଜାମ) ବି (ଆ. ତାକିଦ୍=ଆଦେଶ)—ମକଦମା—
Tagāidā — Case; litigation.

**ତଗା(ଗେ)ଇବା**—ଦେ. କ୍ରି—ତାଗିବା କ୍ରିୟାର ଣିଜନ୍ତ ରୂପ—
Tagā(ge)bā — Causative form of Tāgibā.

**ତଗାଦା**—ବୈଦେ. ବି. (ଆ. ତକାଜା)—୧ । ତାଗଦା; କୌଣସି ପ୍ରାପ୍ୟ ଦ୍ରବ୍ୟ ଦେବା ପାଇଁ ଦେବା ବ୍ୟକ୍ତିକୁ ପାଇବାକୁ ଅଧିକାରୀ ବ୍ୟକ୍ତିର ଅନୁରୋଧ ବା ତଲବ—Demand for a thing from a person from whom it is due.
Tagādā
তাগদা
तगादा, तकाजा

| ୧ | ଗ | ଓ | ଋ,ଋ | ଌ | ୵ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇସ୍ | ଉଃ | ଈ |
|---|---|---|---|---|---|---|---|---|---|---|---|---|---|---|
| ୨ | ଏ | ଉ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ପ | ସ | ଟ୍ୟ | ଇଥ | ବ | ଙ |

୨ । ସ୍ୱୀକୃତ ବସ୍ତୁ ଦେବା ବା କାର୍ଯ୍ୟ କରିବା ପାଇଁ ସ୍ୱୀକାରକାରୀ ବ୍ୟକ୍ତିକୁ ଅନୁରୋଧ—2. Request to a person to carry out a promised act

**ତଗାଖି**—ବୈଦେ. ବି (ଆ. ତକାବୀ)—କୃଷିଯନ୍ତ୍ର ଓ ବୀଜାଦି କ୍ରୟ କରିବା ନିମନ୍ତେ ଦୁର୍ଭିକ୍ଷ ବା ଫସଲ ହାନି ସମୟରେ ରାଜା ବା ସରକାରଙ୍କ ଦ୍ୱାରା କୃଷକଙ୍କୁ ଦିଆଯିବା ଋଣ ବା ଦାଦନ—Tuccavi loan, agricultural loan advanced to needy cultivators by the Government
Tagābi
তাকাবী;তগাবী
तक्काषी

[ଦ୍ର—ଏ ଅବସ୍ଥା ଶବ୍ଦ ତକାଭି ଇଂରାଜୀ ଭାଷାରେ ଚଳୁଅଛି ।]

**ତଗେଇ**—ଦେ 'ବି. ( ଭୂକ୍ଷ—ତଗାର ) ପଖୁଳ; ଛେନା ଦହି ଆଦି ରଖିବା ପାଇଁ ବ୍ୟବହୃତ ଚଉଡ଼ାମୁହାଁ ଛୋଟ ମାଟି ହାଣ୍ଡି—A small wide-mouthed earthen pot.
Tagei
ছোটহাঁড়ী

**ତଗ୍ୟ**—ଗ୍ରା. ବି. (ସଂ. ତତ୍ ଓ ଜ୍ଞା ଧାତୁରୁ)—୧ । ଜ୍ଞାନ—1. Knowledge.
Tagya

୨ । ସ୍ମରଣ—2 Recollection.

**ତଙ୍କ୍** (ଧାତୁ)—ସଂ.—୧ । ଦୁଃଖରେ ପଡ଼ିବା—1. To undergo troubles.
Tank (root)
(ତଂକ୍—ଅନ୍ୟରୂପ) ୨ । ସହିବା—2. To bear; to endure.

୩ । ହସିବା—3. To laugh (Apte)

୪ । ଦୁଃଖରେ ବଞ୍ଚି ରହିବା—4. To live in distress (Apte).

**ତଙ୍କ**—ସଂ. ପୁ. (ତଙ୍କ୍ ଧାତୁ+ଭାବ. ଅ)—୧ । ପଥରକଟା ଅସ୍ତ୍ରବିଶେଷ; ଛିଣି—1. An instrument for cutting stone.
Tanka

୨ । ଆତଙ୍କ; ଡର; ଭୟ—2. Fear; apprehension.

୩ । ପ୍ରିୟବିୟୋଗ ଦୁଃଖ (ହି. ଶବ୍ଦସାଗର)—3. Grief due to separation from one's dear person.

୪ । ପିନ୍ଧିବାର ଲୁଗା (ହି. ଶବ୍ଦସାଗର)—4. Wearing cloth.

୫ । ଦୁଃଖରେ ଜୀବନଧାରଣ—5. Miserable existence (Apte).

**ତଙ୍କା**—ସଂ. ବି.—ଟଙ୍କା (ଯୋଗେଶ୍ଚନ୍ଦ୍ର)—Ṭankā (See)
Tankā

**ତଙ୍ଗ** (ଧାତୁ)—୧ । ଗତି କରିବା; ଯିବା—1. To go; to move (Apte).
Tang (root)
(ତଂଗ୍—ଅନ୍ୟରୂପ) ୨ । ଝୁଣ୍ଟି ପଡ଼ିବା—2. To stumble (Apte).

**ତଙ୍ଗ**—ବୈଦେ. ବିଣ. (ଫା. ତଂଗ୍; ତୁଲ. ସଂ. ତଙ୍କ—ଭୟ; ଦୁଃଖ; ଓ ସଂ. ତଙ୍ଗ୍ ଧାତୁ)—୧ । ଦୃଢ଼—1. Fast.
Tang
तंग

୨ । ବିକଳ; କଷ୍ଟ, ଦୁଃଖରେ ଜର୍ଜରିତ; ସନ୍ତପ୍ତ—2. Grieved; afflicted.
तंग

୩ । ଚୁସ୍ତ; କସା କସ୍—3. Tight; fitting tightly.

୪ । ସଂକୀର୍ଣ୍ଣ—4. Narrow.

୫ । ସଙ୍କୁଚିତ—5 Contracted.

୬ । ଅଭାବଗ୍ରସ୍ତ—6. In want; needy.

୭ । ଅସ୍ଥିର; ବେଚୈନ୍—7. Restless.

ବୈଦେ. ବି. (ଫା) ଜିନ୍‌କୁ ଘୋଡ଼ାର ପିଠିରେ ଦୃଢ଼ କରି ସଂଲଗ୍ନ କରିବା ପାଇଁ ଘୋଡ଼ାର ଛାତିବାଟେ ବୁଲାଇ କିଆଯାଇ କସାଯିବା ପଟି, ପେଟୀ—A tape passing around the breast of a horse to keep the saddle tight on its back.

ଦେ ବି.—ଢଙ୍ଗ; ଛଳ—1. Affectation; air; foppery.

୨ । ଚାଲାକୀ; ଚତୁରତା—2. Shrewdness; cunning.

**ତଙ୍ଗତଙ୍ଗ**—ଦେ. କ୍ରି. ବିଣ. (ସଂ. ଚଞ୍ଚଳ)—ଟଙ୍ଗ ଟଙ୍ଗ; ଅସ୍ଥିର ଦୃଷ୍ଟି ସହିତ—Glancing around restlessly.
Tang tang
চংবং, চংচং
बेचैन

**ତଙ୍ଗଦସ୍ତ**—ବୈଦେ. ବିଣ. (ଫା)—୧ । କୃପଣ—1. Close-fisted; miserly.
Tang-dast
তঙ্গদস্ত
तङ्गदस्त
(ତଙ୍ଗଦସ୍ତୀ—ବି)

୨ । ଗରିବ; ଧନହୀନ—2. Poor; penniless

**ତଙ୍ଗହାଲ୍**—ବୈଦେ. ବିଣ ( ଫା )—୧ । ନିର୍ଦ୍ଧନ; ଗରିବ—1 Poor
Tang-hāl

୨ । ରୋଗଗ୍ରସ୍ତ—2. Ill; sick.

୩ । ବିପନ୍ନ—3. Distressed; afflicted

**ତଙ୍ଗି**—ଦେ ବି (ସଂ. ତଙ୍ଗ=ଦକ୍ଷ, ସୁନ୍ଦର)—ଚାଲାକି; ଚତୁରୀ—Shrewdness; cunning.
Tangi
তংগী
त.गी

ବୈଦେ ବି (ଫା)—୧ । ଦୁଃଖ—1. Misery

୨ । ସଂକୀର୍ଣ୍ଣତା—2. Narrowness.

୩ । ବିପନ୍ନ ଅବସ୍ଥା—3. Distressed or afflicted condition.

୪ । ନିର୍ଦ୍ଧନତା—Poverty.

ଗ୍ରାଦେ. (ଯାଜପୁର)—ବି—ତମ୍ବୀ (ଦେଖ) Tambī (See).

**ତଙ୍ଗି ତୋ(ତୁ)ଫାନ(ନି)**—ବୈଦେ. ବି (ଫା ତଙ୍ଗୀ=ବିପନ୍ନ ଅବସ୍ଥା + ତୁଫାନ୍=ବୃଥା ଦୋଷାରୋପଣ)—
Tangito(tu)phāna(ni)

୧ । ବାହାଦୁରୀ; ମୁହଁବାଲଗି—1. Bragging; boasting.

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଥ' ନ ମିଳିଲେ 'କ୍ରଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଚ୍ୟା' ନ ପାଇଲେ 'ଆଚ୍ଛା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୨ । ବୃଥା ଅପବାଦ; କଳଙ୍କାରୋପଣ—2. Defamation; scandalisation.

**ତଙ୍ଗିତୋ(ତୁ)ଫାଣି**—ବୈଦେ. ବିଣ—୧ । ବାବଦୂକ; ମୁହଁବାଲିଙ୍ଗିକଲ୍ଲିବାଲ୍ଲ—1. Braggart; boastful.
Tangito(tu)phāni
(ତଙ୍ଗିତୋଫାଣିଆ—ଅନ୍ୟରୂପ) ୨ । ଅପବାଦ ରଟନାକାରୀ—2. Defamatory; scandalous.

**ତଚ୍ଛରୂପ**—ଗ୍ରା. ବିଣ (ସଂ. ତସ୍ୟ ରୂପ)—ହୁବେହୁବ୍; ଅବିକଳ—1. Exact; perfect.
Tachchharūpa
(ଯଥା—ଫଟୋଗ୍ରାଫ ଯନ୍ତ୍ର ମନୁଷ୍ୟର ତଚ୍ଛରୂପ ଛବି ଅଙ୍କିଦିଏ ।)
୨ । ଠିକ୍ ତାହାପରି—2. Exactly similar to that.
ଗ୍ରା. ବି—ନିଜର ବିକଟ ରୂପ—One's own furious image or form.
(ଯଥା—ଭୂତ କେବେ ତା ତଚ୍ଛରୂପ ଦେଖି ନାହୁଁ, ଦେଖିଲେ ଦବି ମରି ପଡ଼ିବୁ ।)

**ତଚ୍ଛୀଳ**—ସଂ. ବିଣ ପୁଂ(ତତ୍+ଶୀଳ, ବହୁବ୍ରୀହି)—ତାହାପରି ସ୍ୱଭାବବିଶିଷ୍ଟ—Similar in nature to it or him or her; of similar nature.
Tachchhila
(ତଚ୍ଛୀଳା—ସ୍ତ୍ରୀ)

**ତଚ୍ଛୁ**—ଗ୍ରା. ବି (ସଂ. ଚକ୍ଷୁ)—୧ । ଦେବପ୍ରତିମାମାନଙ୍କର ଚକ୍ଷୁ—1. The eyes painted on an image.
Tachchhu
୨ । ଚକ୍ଷୁ—2. Eye

**ତଚ୍ଛୁଦାନ**—ଗ୍ରା. ବି (ସଂ. ଚକ୍ଷୁର୍ଦାନ)—ଦେବପ୍ରତିମାମାନଙ୍କ ପ୍ରାଣ ପ୍ରତିଷ୍ଠା ପୂର୍ବରୁ ଆଖିକୁ ଚିତ୍ରଣ କରିବା ବିଧି—The painting of the eyes in an image just before the rite of giving life to it.
Tachchhudāna
[ଦ୍ର—ପ୍ରାଣପ୍ରତିଷ୍ଠା ପୂର୍ବରୁ ନିର୍ମିତ ପ୍ରତିମାର ଦେହରେ ଚିତ୍ରକାରର ଏହାହିଁ ଶେଷ କାର୍ଯ୍ୟ । ପ୍ରତିମାର ସବୁ ଅଙ୍ଗ ତିଆରି ସରିବା ପରେ ଆଖିର ଚିତ୍ରଣ କରାଯାଏ । ତଚ୍ଛୁଦାନ ହେବା ପରେ ପ୍ରତିମାର ମନ୍ତ୍ରଦ୍ୱାରା ଜୀବନ୍ୟାସ କରାଯାଏ ।]

**ତଜ୍‌ଦିକ୍(ଗ୍)**—ବୈଦେ. ବି (ଆ)—ତସ୍‌ଦିକ୍ (ଦେଖ)—Tas-dik (See)
Taj-dik (g)

**ତଜ୍‌ବିଜ୍**—ବୈଦେ. ବି (ଆ)—୧ । ନିର୍ଣ୍ଣୟ; ଫଏସଲ—1. Decision.
Taj-bij
୨ । ରାୟ; ବିଚାର—2. Judgment; trial.
୩ । ବିବେଚନା—3. Consideration.
୪ । ବନ୍ଦୋବସ୍ତ—4. Settlement; arrangement.
୫ । ଗବେଷଣା; ଅନ୍ବେଷଣା—5. Investigation; enquiry.
୬ । ପରୀକ୍ଷା—6. Examination; test.

**ତଜ୍‌ବିଜ୍ ସାନି**—ବୈଦେ. ବି. (ଆ)—୧ । (କଚେରିଆ)—କୌଣସି ଅଦାଲତଙ୍କ ଦ୍ୱାରା ନିଜର ଫଏସଲ ମୋକଦ୍ଦମାର ପୁନର୍ବିଚାର—1. Review of a case once decided.
Taj bij sāni
୨ । ପୁନର୍ବିବେଚନା—2. Reconsideration.

**ତଜ୍ଜନିତ**—ସଂ ବିଣ (ତତ୍+ଜନିତ, ଷଷ୍ଠୀ ତତ୍; ୫ମୀ ତତ୍)—ସେହି କାରଣରୁ ଜାତ; ତହିଁରୁ ଜାତ—Resulting therefrom; consequent thereto.
Tajjanita
ଦେ. କ୍ରି. ବିଣ.—ସେହି କାରଣରୁ—Therefore; consequently.

**ତଜ୍ଜନ୍ୟ**—ସଂ. ବିଣ. (ତତ୍+ଜନ୍ ଧାତୁ+କର୍ତ୍ତୃ. ଯ) ତହିଁରୁ ଜାୟମାନ, ତହିଁରୁ ଉତ୍ପାଦ୍ୟ—Originating from that.
Tajjanya
ଦେ. କ୍ରି. ବିଣ—୧ । ତାହାଙ୍କ ନିମନ୍ତେ—1. For him or her.
୨ । ତହିଁ ନିମିତ୍ତ—2. For it; therefor.
୩ । ସେହି କାରଣରୁ—3. For that reason; owing to that.

**ତଜ୍ଜାତ**—ସଂ. ବିଣ. (ତତ୍+ଜାତ, ୫ମୀ ତତ୍)—୧ । ତହିଁରୁ ଉତ୍ପନ୍ନ—Produced from that; arising therefrom.
Tajjāta
୨ । ତାହାଙ୍କଠାରୁ ଜନ୍ମ ଲଭିଥିବା—2. Produced by or born of him or her or that.

**ତଜ୍ଜାତୀୟ**—ସଂ. ବିଣ (ତତ୍+ଜାତି+ଈୟ)—୧ । ସେହି ଜାତି ବା ଶ୍ରେଣୀର ଅନ୍ତର୍ଗତ—1. Belonging to that species or class; of that class.
Tajjātiya
(ତଜ୍ଜାତୀୟା—ସ୍ତ୍ରୀ)
୨ । ସେହି ପ୍ରକାର, ତତ୍ତୁଲ୍ୟ—2. Similar to that.

**ତଜ୍ଜୀ**—ସଂ. ବି.—ହିଂଗୁପତ୍ରୀ (ଦେଖ) (ହି. ଶବ୍ଦସାଗର)—Himgu-patri (See)
Tajji

**ତଞ୍ଚ୍** (ଧାତୁ)—ସଂ.—୧ । ଗମନ କରିବା—1. To move; to go.
Tanch (root)
୨ । ସଙ୍କୁଚିତ ହେବା—2. To be contracted; to shrink.
(ତଂଚ, ତଂଚ୍, ତଞ୍ଚ୍—ଅନ୍ୟରୂପ)

**ତଞ୍ଚ**—ସଂ. ବି. (ତଞ୍ଚ୍ ଧାତୁ = ଗମନ, ସଙ୍କୋଚନ+ଭାବ. ଅ)—ପ୍ରବଞ୍ଚନା, ପ୍ରତାରଣା—Deception; cheating.
Tancha

**ତଞ୍ଚକ**—ସଂ. ବି (ତଞ୍ଚ୍ ଧାତୁ = ଗମନ, ସଙ୍କୋଚନ+କର୍ତ୍ତୃ. ଅକ)—ପ୍ରବଞ୍ଚକ ବା ପ୍ରତାରକ ବ୍ୟକ୍ତି—A cheat; a fraudulent person; an imposter.
Tanchaka
ବିଣ—ପ୍ରତାରଣାକାରୀ—Fraudulent.
ଦେ. ବି (କଚେରିଆ ଭାଷା)—ପ୍ରତାରଣା—Fraud; deception.
ଦେ. ବିଣ. (କଚେରିଆ ଭାଷା)—ପ୍ରତାରଣାପୂର୍ଣ୍ଣ—Fraudulent.

ସାଧାରଣ ଲୋକେ ଆ୨ର ପୃଷ୍ଠାରେ ଦିଅଛ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୃଅ' ନ ମିଳିଲେ 'କଅ' ଦେଖିବେ; 'ବଧୂଁ'କି ପାଇଲେ 'ବନ୍ଧୁ' ଦେଖିବେ; 'ଅଁଧା' ନ ପାଇଲେ 'ଅନ୍ଧା' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ତନୟିତ୍ନୁ**—ସଂ. ବି ( ତନ୍ ଧାତୁ=ବିସ୍ତାର କରିବା+କର୍ତ୍ତୃ. ଇତ୍ନୁ )—
Tanayitnu ୧ । ବଜ୍ର—1. Thunder.
୨ । ମେଘ—2. Cloud.

**ତନା କରିବା**—ପ୍ରାଦେ ( ସମ୍ବଲପୁର ) କ୍ରି ( ଭୁଲ ହି. ତାନା=ଟାଣୀ
Tanā karibā ସୂତା )—ଲୁଗା ବୁଣିବାଲାଗି ଟାଣୀ ସୂତାକୁ ସଜାଡ଼ି ରଖିବା—To keep the warp thread ready for weaving.

**ତନାଘନା**—ଦେ. ବି ( ସଂ. ତନ ଧାତୁ ଓ ଘନ ଶବ୍ଦ ସମ୍ମିଶ୍ରଣରେ )—
Tanā-ghanā ୧ । ତରବର—1. Hot haste;
তাড়াতাড়ি ( ଯଥା—ବିଭାଘର ଆଉ ୩ ଦିନ ଅଛି ବୋଲି ଘରମୁଣ୍ଡିଆ
तानाबाना ବାନ୍ଧିବା କାମରେ ଭାରି ତନାଘନା ଲାଗିଛି । )
୨ । ତମ୍ବି; ତାଗିଦା—2. Urgent pressure.
(ଯଥା— ଲାଟବନ୍ଦି ଖଜଣା ଆଦାୟ ନିମନ୍ତେ ପିଆଦାମାନେ ଭାରି ତନାଘନା ଲଗାଇଛନ୍ତି । )
ବିଣ—ଅତି ତ୍ୱରାଯୁକ୍ତ—Hasty.
କ୍ରି. ବିଣ—ତ୍ୱରାଯୁକ୍ତଭାବରେ—In hot haste.

**ତନାଘନା କରିବା**—ଦେ. କ୍ରି—୧ । ଅତ୍ୟନ୍ତ ତମ୍ବି କରିବା—
Tanāghanā karibā 1. To apply urgent pressure;
তাড়াতাড়ি করা to demand with pressure.
तानाबाना करना ୨ । ଅତ୍ୟନ୍ତ ତ୍ୱରାଯୁକ୍ତ କରିବା—
[ ତନାଘନା ଲଗା(ଗେ)ଇବା—ଅନ୍ୟରୂପ ] 2. To hasten; to urge haste.

**ତନାଘିଚା**—ପ୍ରାଦେ. (ସମ୍ବଲପୁର) ବି. (ସଂ. ତନ ଧାତୁ)—
Tanāghichā ଟଣାଟଣି; ଟଣା ଓଟରା—
টানাটানি खींचतान Pushing and shuffling.

**ତନାଜା**—ବୈଦେ ବି ( ଆ )—୧ । ଅଡ଼୍ଗୁଆ; ବଖେଡ଼ା—
Tanājā 1. Complication.
तनाज़ा ୨ । ଶତ୍ରୁତା—2. Enmity.
୨ । ଅଦାଉତି—3. Grudge.

**ତନାବି**—ବୈଦେ. ବି ( ତେ )—ଜଳାକବାଟ; ଗବାକ୍ଷ; ଝରକା—
Tanābi Window; latticed window.

ଦଳିତ ଲଳିତ ହରିତାଳ ଦେହ ସଭିଏ ତନାବି ଗୃହିଁ—କବିସୂର୍ଯ୍ୟ, ସଙ୍ଗୀତ ।

**ତନି**—ପ୍ରାଦେ ( ମେଦନୀପୁର ) ବି—ତୋରାଣୀ—
Tani Water from moistened rice.

**ତନିମା**—ସଂ. ବି ( ତନୁ=କୃଶ+ଭାବାର୍ଥେ. ଇମନ୍; ୧ମା. ୧ବ.)—
Tanimā ୧ । କୃଶତା—1. Thinness.
୨ । ସୂକ୍ଷ୍ମତା—Minuteness.
୩ । ଯନ୍ତ୍ରକ୍—Lever.

**ତନିଷ୍ଠ**—ସଂ. ବିଣ. (ତନୁ=ଅଳ୍ପ+ଅତିଶୟାର୍ଥେ, ଇଷ୍ଠ)—
Tanishṭha ୧ । ଅତି ଅଳ୍ପ—1. Very little.
୨ । ଅତିକୃଶ—2. Very weak.
୩ । କ୍ଷୀଣତର—3. Very thin; minute.

**ତନୀୟାନ୍**—ସଂ. ବିଣ ପୁଂ. (ତନୁ=ଅଳ୍ପ+ଅତିଶୟ ଅର୍ଥରେ, ଈୟସ୍;
Tanīyān ୧ମା. ୧ବ) —୧ । ଅତିଅଳ୍ପ—
(ତନୀୟସୀ—ସ୍ତ୍ରୀ) 1. Very little.
୨ । ଅତିକୃଶ—2. Very weak; minute.

**ତନୁ**—ସଂ. ବି. ସ୍ତ୍ରୀ (ତନ୍ ଧାତୁ=ବିସ୍ତାର କରିବା+କରଣେ. ଉ କିମ୍ବା
Tanu କର୍ତ୍ତୃ. ଉ, ଯାହା ଉତ୍ପତ୍ତିଠାରୁ ବିସ୍ତାର ଲାଭ କରେ)—
୧ । ଶରୀରର ଚର୍ମ—1 Skin of the body.
୨ । ଅଙ୍ଗ; ଶରୀର—2. Body; person.
୩ । ମୂର୍ତ୍ତି—3. Image; form.
ଦେ. ବି (ପ୍ରାଚୀନପଦ୍ୟ)—ତନୟ—Child; son.

ସେ ନାମ ମହିମା କହିଲେ ନ ସରେ
ଶୁଣ ରେ ବରଜ ତନୁ । ଅଚ୍ୟୁତାନନ୍ଦ. ଅଣାକାର ସଂହିତା ।

(ତନୁ, ତନ୍ୱୀ—ସ୍ତ୍ରୀ) ବିଣ. ପୁଂ—୧ । ଅଳ୍ପ—1. Little.
୨ । ଛୋଟ—2. Small.
୩ । କୃଶ—3. Weak; slim; lean; thin.
୪ । କ୍ଷୀଣ—4. Feeble; slender.
୫ । କୋମଳ—6 Delicate.
୬ । ସୂକ୍ଷ୍ମ—5. Minute.

ଅସମାନ ମାନୁ କରେ ତନୁ ତନୁ ସକଳ କଳଙ୍କର ସୀମା ।
ଭଞ୍ଜ କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ତନୁଃ**—ସଂ. ବି. (ତନ୍ ଧାତୁ=ବିସ୍ତାର କରିବା+ଅଧିକରଣେ. ଉସ୍)—
Tanuḥ ଶରୀର; ଦେହ—Body.

**ତନୁକୂପ**—ସଂ. ବି. (ତନୁ+କୂପ; ୬ଷ୍ଠୀ ତତ୍;)—ଲୋମକୂପ; ଲୋମମୂଳ—Pores of the skin.
Tanu-kūpa

**ତନୁଖା**—ବୈଦେ. ବି (ଫା)—ତନ୍‌ଖା ୨ (ଦେଖ)
Tanukhā Tan-khā 2 (See)

**ତନୁକ୍ଷୀର**—ସଂ. ବି (ବହୁବ୍ରୀହି; ତନୁ+କ୍ଷୀର, ଯାହାର କ୍ଷୀର ଅଳ୍ପ)—
Tanu-kshīra ଆମ୍ବଡ଼ା—(ହି. ଶବ୍ଦସାଗର)—Hogplum.

**ତନୁଚ୍ଛଦ**—ସଂ. ବି (ତନୁ=ଶରୀର+ଛଦ୍ ଧାତୁ=ଆଚ୍ଛାଦନ କରିବା+
Tanu-chchhada କର୍ତ୍ତୃ. ଅ )—୧ । ଚମଡ଼ା; ଦେହଚର୍ମ—1. Skin
୨ । କବଚ; ସାଞ୍ଜୁ—2. Armour; mail.
୩ । ଦେହାବରଣ—3. A cover for the body.

ହରିତ ପଲ୍ଲବେ ତନୁଚ୍ଛଦ କେବେ କରେ ରଚନା—ରାଧାନାଥ. ଉଷା ।

**ତନୁଚ୍ଛାୟ**—ସଂ. ବିଣ. ପୁଂ. ( ତନୁ=ଅଳ୍ପ+ଛାୟା; ବହୁବ୍ରୀହି)—ଅଳ୍ପ
Tanu-chchhāya ଛାୟାବିଶିଷ୍ଟ—Having little shade.
( ତନୁଚ୍ଛାୟା—ସ୍ତ୍ରୀ ) ବି—୧ । ବବୁର ଗଛ—1. The Acacia,
୨ । କଣ୍ଟା କୁସୁମ ଗଛ—2. Arabica tree.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ହ୍ନ | ଇଯ୍ଯ | ଉଅ | ଲ୍ମ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୃ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଡ଼୍ୟ | ଇଅ | ଞ୍ଜ | ନ୍ |

୩ । ଜଳ ବବୁର ଗଛ ( ଦେଖ )
3. Jala babura ( See )

**ତନୁଚ୍ଛାୟା**—ସଂ. ବି. ( ତନୁ+ଛାୟା; ୬ଷ୍ଠୀ ତତ୍ ) —ଶରୀରର ଛାୟା;
Tanuchchhāyā ଦେହର ଛାଇ—The shadow of a body.
ସଂ. ବିଣ. ସ୍ତ୍ରୀ—ତନୁଚ୍ଛାୟର ସ୍ତ୍ରୀଲିଙ୍ଗ ରୂପ—
Feminine form of Tanuchchhāya.

**ତନୁଜ**—ସଂ. ବି. ପୁଂ. ( ତନୁ=ଶରୀର+ଜନ୍ ଧାତୁ=ଜନ୍ମିବା+କର୍ତ୍ତୃ
Tanuja ଅ; ଯେ ତନୁରୁ ଜନ୍ମେ )—ପୁଅ; ପୁତ୍ର—Son
( ତନୂଜା—ସ୍ତ୍ରୀ ) ବିଣ. ପୁଂ—ଶରୀରରୁ ଉତ୍ପନ୍ନ—
Born of the body.

**ତନୁତା**—ସଂ. ବି. ( ତନୁ=କୃଶ+ଭାବାର୍ଥେ; ତା )—
Tanutā ୧ । କୃଶତା—1. Thinness
ତନୁ ତାହାଙ୍କ ଅତି ତନୁତା ଭଜନ୍ତି—କୃଷ୍ଣସିଂହ, ମହାଭାରତ, ଅଦି ।
୨ । ଅଳ୍ପତା; ଲଘୁତା—
2 Smallness; littleness
୩ । ଦୁର୍ବଳତା—3. Weakness.

**ତନୁ ତ୍ୟାଗ**—ସଂ. ବି. ( ତନୁ+ତ୍ୟାଗ; ୬ଷ୍ଠୀ ତତ୍ )—ମୃତ୍ୟୁ—
Tanu tyāga Death.

**ତନୁତ୍ର**—ସଂ. ବି. ( ତନୁ=ଶରୀର+ତ୍ରୈ ଧାତୁ=ତ୍ରାଣ କରିବା+କର୍ତ୍ତୃ.
Tanutra ଅ; ଯାହା ଶରୀରକୁ ଆଘାତରୁ ତ୍ରାଣ ବା ରକ୍ଷା କରେ)—
୧ । ବର୍ମ୍ମ; ସାଞ୍ଜୁ—1. Armour; mail.
୨ । ଶରୀରକୁ ରକ୍ଷା କରିବା ବସ୍ତୁ—2. Skin protector.

**ତନୁତ୍ରାଣ**—ସଂ. ବି. ( ତନୁ=ଶରୀର+ତ୍ରୈ ଧାତୁ=ତ୍ରାଣ କରିବା+
Tanutrāṇa କର୍ତ୍ତୃ. ଅନ )—ବର୍ମ୍ମ; ସାଞ୍ଜୁ—Armour; mail

**ତନୁଦାନ**—ସଂ. ବି. ( ତନୁ+ଦାନ; ୬ଷ୍ଠୀ ତତ୍ )—୧ । (୬ଷ୍ଠୀ ତତ୍)
Tanudāna ଦେହ ଦାନ; ନିଜର ଦେହକୁ କୌଣସି ଉଦ୍ଦେଶ୍ୟରେ
ଅର୍ପଣ—1. The gift or offering of one's
body for certain purpose.
୨ । ( କର୍ମ୍ମଧାରୟ ) ଅଳ୍ପ ଦାନ—2 Small gift.
ବଦାନ୍ୟ ଯେ ଲୋକେ ହୋଇଥାଇ
ତୁଚ୍ଛ ତନୁଦାନ କି ନ ଦେଇ—ଭଞ୍ଜ. ବୈଦେହୀଶବିଳାସ ।
୩ । ( ସ୍ତ୍ରୀ ପକ୍ଷରେ ) ପୁରୁଷକୁ ସମ୍ଭୋଗାର୍ଥ ଆପଣାର ଦେହକୁ
ଅର୍ପଣ କରିବା—3. Letting one's (a female's)
body to be enjoyed by a male.

**ତନୁଧାମ**—ଦେ. ବି. ( ତନୁ+ଧାମ; ୬ଷ୍ଠୀ ତତ୍ )—ତନୁର ଆଭା—
Tanudhāma Gloss of the body.
କାରଣମାନଙ୍କ କାରଣ, ତୁଚ୍ଛ ଯାହାର ତନୁଧାମ—
ପ୍ରାଚୀ. ପର୍ଣ୍ଣଭନ୍ତଲ୍ଲୋତସ୍ତ୍ର ।

**ତନୁ ପାତଳ**—ଦେ. ବି. ପୁଂ. ( ସଂ. ତନୁ=ଦେହ+ପତଳ )—କ୍ଷୀଣ-
Tanu pātaḷa କଳେବରବିଶିଷ୍ଟ; କ୍ଷୀଣଦେହ—
ପାତଳା Delicate; thin-bodied.
ପତଳା ଗୋସାଇଁ ହୋଇବ ଶଏ ଶାଠିଏ, କାଳୀଙ୍କ ଅମୂଲମୂଲ
(ତନୁପାତଳା—ଅନ୍ୟରୂପ) ଏହିଠେ ସେ ଯେଉଁ ତନୁପାତେଳୀ ସରଗଡ଼ରର ଭୂଲ.
, ତନୁପାତଲୀ, ତନୁପାତେଲୀ—ସ୍ତ୍ରୀ ) —ଚଗ ।

**ତନୁବାର**—ସଂ. ବି. ( ତନୁ=ଶରୀର+ବୃ ଧାତୁ=ଆବରଣ କରିବା
Tanubāra +କର୍ତ୍ତୃ. ଅ; ଯାହା ଶରୀରକୁ ଆବରଣ କରେ )—
ବର୍ମ୍ମ; ସାଞ୍ଜୁ—Armour; mail.

**ତନୁଭିଣା**—ଦେ. ବି—ଦେହ ବିଦାର୍ଣ୍ଣ ହେବା—
Tanubhiṇā Piercing of the body.
ବଶିଟେ ତଳ ଭୂଳ ତନୁଭିଣା ବା-ଭୂଲା ସେ କପଟୀ
ବୋଧଲକ୍ଷ୍ମୀ ସେ—ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

**ତନୁଭୃତ୍**—ସଂ. ବିଣ ( ତନୁ=ଶରୀର+ଭୃ ଧାତୁ=ଧାରଣ କରିବା+
Tanubhṛut କର୍ତ୍ତୃ. କ୍ୱିପ୍ )—ଶରୀରଧାରୀ; ଦେହୀ—
Having a body; embodied; corporeal.
ବି—ଜୀବ—Animal

**ତନୁମଧ୍ୟା**—ସଂ. ବିଣ. ସ୍ତ୍ରୀ. ( ତନୁ=କୃଶ+ମଧ୍ୟ=କଟି+ଆ
Tanumadhyā ବହୁବ୍ରୀହି )—କ୍ଷୀଣକଟିବିଶିଷ୍ଟା ( ସ୍ତ୍ରୀ )—
Slender-waisted (woman ).

**ତନୁମୁନା ମୁଦ୍ରା**—ଦେ. ବି—ମୁଦ୍ରାବିଶେଷ; ମୁଦ୍ରା ( ଦେଖ )
Tanumunā mudrā Mudrā ( See )
ତନୁମୁନା ମୁଦ୍ରା ଚରିତ ଶୁଣ—ପ୍ରାଚୀ. ପରବେଗୀତା ।

**ତନୁରୁଚି**—ସଂ. ବି. ( ତନୁ+ରୁଚି; ୬ଷ୍ଠୀ ତତ୍ )—୧ । ଶରୀର କାନ୍ତି—
Tanuruchi 1. Gloss of the body.
୨ । ଶରୀରର ସୌନ୍ଦର୍ଯ୍ୟ—2. Beauty of the body.

**ତନୁରୁହ**—ସଂ. ବି. ( ତନୁ=ଶରୀର+ରୁହ ଧାତୁ=ଉତ୍ପନ୍ନ ହେବା
Tanuruha +କର୍ତ୍ତୃ. ଅ; ଯାହା ଶରୀରରୁ ଉଠେ )—
୧ । ରୋମ ଲୋମ—
1. The hair of the body; fur; plumage.
ଅମ୍ଭ ଲଙ୍କାକୁ ଗୃହେଁ ତନୁରୁହ ଫୁଲଇ ହେଉଛନ୍ତି ତ ମହାକୋପୀ—
ବିଶ୍ୱନାଥ. ବିଚିତ୍ର ରାମାୟଣ ।
୨ । ପକ୍ଷୀର ପର—2 The down of a bird.
୩ । ପୁତ୍ର କନ୍ୟା; ସନ୍ତାନ—3. Offspring.

**ତନୁଲ**—ସଂ. ବିଣ ( ତନ୍ ଧାତୁ=ବିସ୍ତାର କରିବା+ଉଲ )—ବିସ୍ତୃତ—
Tanula Spreading; extensive.

**ତନୂ**—ସଂ. ବି ଓ ବିଣ ( ତନ୍ ଧାତୁ+କରଣ. ଉ )—ତନୁ ( ଦେଖ )
Tanū Tanu ( See )

**ତନୂକରଣ**—ସଂ. ବି. ( ତନୁ+ଅଭୂତ ତଦ୍‌ଭାବାର୍ଥେ ଚ୍ୱି+କରଣ )—
Tanūkaraṇa ବଡ଼ ପଦାର୍ଥକୁ ଛୋଟ କରିବା; କ୍ଷୁଦ୍ରୀକରଣ—
Attenuation; extenuation

**ତନୂଜ**—ସଂ ବି ଓ ବିଣ. ପୁଂ. ( ତନୁ=ଶରୀର+ଜନ୍ ଧାତୁ+କର୍ତ୍ତୃ.
Tanūja ଅ )—ତନୁଜ ( ଦେଖ )—Tanuja ( See ).
( ତନୂଜା—ସ୍ତ୍ରୀ )

ସାଧାରଣ ଲେଖକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୃଥ' ନ ମିଳିଲେ 'କ୍ରିଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଙ୍ଗୋ' ନ ପାଇଲେ 'ଅଙ୍କୋ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତନୂଭବ**— ସଂ. ବି. ପୁଂ. (ତନୂ+ଉତ୍+ଭୂ ଧାତୁ +କର୍ତ୍ତୃ. ଅ)—ପୁତ୍ର—
Tanūdbhaba — Son.
( ତନୂଭବା—ସ୍ତ୍ରୀ ) ବିଣ. ତ୍ରି°—ଦେହରୁ ଜାତ—
Born of the body.

**ତନୂନ**— ସଂ. ବି. ( ବହୁବ୍ରୀହି; ତନୂ=ଶରୀର+ଊନ; ଯାହା ଦେହ
Tanūna — ଅତି ସୂକ୍ଷ୍ମ )—ବାୟୁ—The air.

**ତନୂନପ**— ସଂ. ବି. ( ତନୂ=ଶରୀର+ଊନ=ଲଙ୍ଘିତ+ପା ଧାତୁ=ପୁଷ୍ଟ
Tanūnapa — କରିବା, ପାଳନ କରିବା+କର୍ତ୍ତୃ. ଅ; ଯାହା ଖାଇଲେ
ଶରୀର ପୁଷ୍ଟ ହୁଏ )—ଘୃତ; ଘିଅ—
Ghee; clarified butter.

**ତନୂନପାତ୍**— ସଂ. ବି. ( ତନୂନପ=ଘୃତ+ଅଦ୍ ଧାତୁ=ଭକ୍ଷଣ କରିବା+
Tanūnapāt — କ୍ୱିପ୍; ଯେ ମନ୍ତ୍ରପୂତ ଘୃତାହୁତି ଭକ୍ଷଣ କରେ )—
ଅଗ୍ନି- Fire.

**ତନୂରୁହ**— ସଂ. ବି. ( ତନୂ=ଶରୀର+ରୁହ୍ ଧାତୁ=ଉତ୍ପନ୍ନ ହେବା+
Tanūruha — କର୍ତ୍ତୃ. ଅ; ଯାହା ଶରୀରରୁ ଉଠେ )—
ତନୁରୁହ ( ଦେଖ )—Tanuruha ( See )

**ତନେଇ ଘନେଇ (ଇତ୍ୟାଦି)**— ଗ୍ରା. କ୍ରି, ବିଣ ଓ କ୍ରି. ବିଣ—
Tanei ghanei (etc) — ତନାଘନା ଇତ୍ୟାଦି ( ଦେଖ )
Tanāghanā etc ( See )

**ତନ୍ତ**— ଦେ. ବି. ( ସଂ. ତନ୍ତ୍ର ବା ତନ୍ତୁ )—
Tanta — ୧ । ଲୁଗା ବୁଣିବା ଯନ୍ତ୍ର—1. A weaver's gear,
तँात — a loom.
তাঁত

ତନ୍ତଅନ୍ତେ ଦେଖିଲେ ଦର୍ପଣ ଯୁବତୀ
ବସିଣ କର ତନ୍ତେ ଲୁଗା ବୁଣ ତନ୍ତ । କୃଷ୍ଣସିଂହ. ମହାଭାରତ, ଆଦି ।

[ ଦ୍ର—ତନ୍ତର ଭିନ୍ନ ଭିନ୍ନ ଅଙ୍ଗମାନ; ଯଥା :—ବିଣକମୀ— ଲୁଗାକୁ ବୁଣୁଥିବା ବ୍ୟକ୍ତିର ଡାହାଣ ହାତ ପାଖରେ ଭୂମିରେ ପୋତା ଯାଇଥିବା ଗୋଟିଏ ଖୁଣ୍ଟ ବା, ଖିଲ, ଯହିଁରେ ନରାଜର ଡାହାଣ ପାଖରେ ଥିବା ଖିଲରେ ଗୁଡ଼ଆ ଦଉଡ଼ି ବନ୍ଧାଯାଏ । ମାକୁ; ମାଙ୍କୁ—ଯେଉଁ ନାବାକୃତି କାଷ୍ଠ ଖଣ୍ଡରେ ଭରଣୀ ସୂତାର କଣ୍ଡା ପଶି ଥାଏ ଓ ଯାହା ଟାଣୀ ସୂତାମାନଙ୍କ ଅନ୍ତରାଳ ଦେଇ ଅଡ଼ ବାଟରେ ମେଣ୍ଟୀଦ୍ୱାରା ଫିଙ୍ଗା ହେଉଥାଏ । କଣ୍ଡା—ଭରଣୀ ସୂତା ଗୁଡ଼ିଆ ହୋଇଥିବା ନଳୀ, ଯାହା ମାକୁ ମଧ୍ୟରେ ପଶି ଥାଏ । ପାନଆ—ଯେଉଁ ସରୁ ବାଉଁଶକାଠିର ପାନଆ ଉପରେ ଟାଣୀ ସୂତା ଯୋଡ଼ା ଯୋଡ଼ା ହୋଇ ପିନ୍ଧାଇ ହୁଅଯାଏ । ଦଣ୍ଡି— ପାନଆର ସରୁ ଖଡ଼ିକାର ଲମ୍ବା ଫର୍ମା । ବ; ବଅ; ବଅପାଟ—ଯେଉଁ ସୂତ୍ରମୟ ପାଶଯୁକ୍ତ ପାନଆ ଉପରେ ଟାଣୀ ସୂତା ଗୋଟି ଗୋଟି ହୋଇ ଗଳି ଥାଏ; (ଏହାର ସଂଖ୍ୟା ଦୁଇଟି) । ବଅପଟା—ଯେଉଁ ପଟାରେ ବଅ ବନ୍ଧାଯାଏ । ବଅକାଠି—ଯେଉଁ କାଠି ଦୁଇ ଖଣ୍ଡରେ ବଅର ପାତଅ ସୂତାମାନ ଟଣା ହୋଇ ବନ୍ଧାଯାଏ । ନାତୁଣୀ, ନାତୁଣୀ ପଶୀ—କଳଙ୍କ ଦଣ୍ଡି ଆକାରର କାଠି, ଯାହାର ଦୁଇ ପ୍ରାନ୍ତରୁ ବଅ ଓହଳା ଯାଇଥାଏ । ଛଟ୍‌କଣି; ଛଟକଣି—ଯେଉଁ କାଠଖଣ୍ଡ ବା ବେଣ୍ଟକୁ ହାତରେ ମୁଠାଇ ଧରି ଡାହାଣ ବା ବାଆଁ ଆଡ଼କୁ ମାରିଲେ ଦଉଡ଼ିଦ୍ୱାରା ମେଣ୍ଟୀ ଚାଳିତ ହୁଏ । ଟାଣୀସୂତା—ବୁଣା ଲୁଗାର ଲମ୍ବ ସୂତା । ଭରଣୀ ସୂତା—ଲୁଗାର ଆଡ଼ବାଟର ସୂତା । ତନ୍ତକାଠ, ନରାଜ, ନରାଜୁ, ନରେଜ—ଯେଉଁ ମୋଟ ଗୋଲ ଦଣ୍ଡରେ ବୁଣିବାର ଟାଣୀ ସୂତା ଗୁଡ଼ିଆ ହୋଇଥାଏ । ତାଷଣ ବା ମୁଠା—ଯେଉଁ ବ୍ରୁସ ବା ମାର୍ଜନୀ ଦ୍ୱାରା ତନ୍ତିମାନେ ସୂତାକୁ ପରିଷ୍କାର କରନ୍ତି ବା ମାଜନ୍ତି । ଗୃପଣା, ଚିପିଣୀଦଣ୍ଡା, ଗୃପଣାକାଠି—ବଅକୁ ତଳକୁ ଉପରକୁ ଉଠାଇବା ପକାଇବା ପାଇଁ କମ୍ପୁଥ ଯେଉଁ ଦଣ୍ଡ ଦୁଇଟିକୁ ଏକାନ୍ତକ୍ରମେ ଗୋଡ଼ଦ୍ୱାରା ଚିପାଯାଏ । ଚିପିଣୀ ଦଉଡ଼ି— ଯେଉଁ ଦଉଡ଼ି ଚିପିଣୀଦଣ୍ଡା ଓ ବଅକୁ ସଂଯୁକ୍ତ କରିଥାଏ । ମଞ୍ଚ— ଯେଉଁ '×' ଆକାରର ବେତ ଦୁଇ ଖଣ୍ଡ ବୁଣା ଯାଉଥିବା ଲୁଗାର ଧଡ଼ିକୁ ଓସାରେଇ କରି ଟାଣି ଧରିଥାଏ । ନାଠୀ, ନଟେଇ— ଯେଉଁ କାଠିରେ ସୂତା ଗୁଡ଼ିଆ ହୋଇଥାଏ । ମେଣ୍ଟୀ—ମାକୁକୁ ଚଳାଇବାର ଦଉଡ଼ିଯୁକ୍ତ କାଷ୍ଠଖଣ୍ଡ ( ଯାହା ଛଟକଣିଦ୍ୱାରା ଚାଳିତ ହୁଏ) । ଭୁଲକାଠ—ଯେଉଁ ଗୋଲ ଦଣ୍ଡରେ ଲୁଗାର ବୁଣା ହୋଇଥିବା ଅଂଶ ଗୁଡ଼ିଆ ହୁଏ । ପଞ୍ଝା—ସେଉରଙ୍ଗି ବୁଣିବା ବେଳେ ଭରଣୀ ସୂତାକୁ ପୂର୍ବବୁଣା ସୂତା ସଙ୍ଗେ ବସାଇ ଦେବାପାଇଁ ବ୍ୟବହୃତ ଅଙ୍ଗୁଳଯୁକ୍ତ କରତଳ ଆକୃତିର କାଷ୍ଠଖଣ୍ଡ । ଲସ୍ତ, ଲସ୍କାଠି—ଟାଣୀ ସୂତାର ଫାଙ୍କ । ତ୍ରନ୍—ଟାଣି ଓ ଭରଣୀ ସୂତା ଗୁଡ଼ିଆ ହୋଇ ରହିବାର ପିଣ୍ଡା ପରି ଗୋଲାକାର ନଟେଇ । କୁଣ୍ଡା—ଅରଟ ମଝିରେ ଥିବା କାଠ ବା ପଥରର ଚକ୍ର । ମାଲ— ଯେଉଁ ସୂତା ଅରଟର ଚକ ଘୂରି ପାଖେ ବୁଲି ଭାଲୁଡ଼ିର ମଧ୍ୟ ଭାଗର ଶରଡ଼ ଘୂରି ପାଖରେ ବୁଲି ଥାଏ ( ଚକକୁ ଘୂରାଇଲେ ଏହା ଗତି କରିବା ଯୋଗୁଁ ଭାଲୁଡ଼ି ଘୂରେ) । ଭାଲୁଡ଼ି—ଯେଉଁ ମୁନଆଁ ଦଣ୍ଡ ଅରଟ ଘୂରାଯିବାବେଳେ ଘୂରେ ଓ ଯହିଁ ସାହାଯ୍ୟରେ ସୂତା କଟାଯାଇ ତହିଁରେ ଗୁଡ଼ିଆ ହୋଇଥାଏ । ଅରଟ—ସୂତା କାଟିବା ପାଇଁ ବ୍ୟବହୃତ ଏକ ଦିଗରେ ଚକ ଓ ଅନ୍ୟ ଦିଗରେ ମୁନଆ ଦଣ୍ଡ ଲାଗିଥିବା ଯନ୍ତ୍ର । ଖୁଣୀ—ଅରଟର ପଛିର ମୁଣ୍ଡରେ ବନ୍ଧା ଯାଇଥିବା ଦଉଡ଼ା । ଅରଟର ପଞ୍ଚ—ଅରଟର ଅର । ]

୨ । ଚମ ଦଉଡ଼ି—2. Leather string.

ଚର୍ମିକ-ତନ୍ତ-ବାଦ୍ୟ ଯେତେ
ସକଳ ଦଶୀ ରହୁଗଡେ । ଭୂପତି, ପ୍ରେମପଞ୍ଚାମୃତ ।

୩ । ଖାଣା, ବେହେଲା ଆଦିର ଚମଡ଼ାର ତାର—
3. Catgut string.

**ତନ୍ତ ଓଟରା ବଳଦ**—ଦେ. ବି—ଯେଉଁ ବଳଦ ମଠୁଆ ନୁହେଁ ଓ ଖୁବ୍
Tanta otarā balada — ପରିଶ୍ରମ କରେ--A brisk bullock.

**ତନ୍ତକଟା ଲୋକ**—ଦେ. ବି—୧ । ଯେଉଁ ବ୍ୟକ୍ତି କୌଣସି କାର୍ଯ୍ୟକୁ
Tanta katā loka — ବିଗାଡ଼ିଦିଏ—1. One who wantonly spoils any work; a wanton mischief-maker.

| ୧ | ଇ | ଉ | ଋ,ଋୃ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | କ୍ଷ | ଇଁୟୁ | ଉଥ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଙ | ନ୍ |

୨ । ବିଶ୍ୱାସଘାତକ ଲୋକ—2. Faithless person.

**ତନ୍ତ ଗାଡ଼**—ଦେ. ବି—ତନ୍ତ ଯନ୍ତ୍ର ତଳେ ଥିବା ଗର୍ତ୍ତ; ତନ୍ତରେ ଲୁଗା
Tanta gārḍa ବୁଣିବା ସମୟରେ ଯାହା ଭିତରକୁ ତନ୍ତି ଗୋଡ଼
ताँतगर्त, ताँतगाड़ ଲମ୍ବାଇ ବସେ—Loom-pit.
**ताँतका गढ़ा**
(ତନ୍ତଗାତ—ଅନ୍ୟରୂପ)

**ତନ୍ତପଡ଼ିଆ**—ଦେ. ବି—ତନ୍ତରେ ବୁଣିବା କାର୍ଯ୍ୟ ବନ୍ଦ ହେବା—
Tanta parḍiā The stoppage of a weaver's task.

**ତନ୍ତବୁଣା**—ଦେ. ବି—ତନ୍ତରେ ବୁଣିବା କାର୍ଯ୍ୟ—
Tantabuṇā Weaving.
ताँतबोना ଦେ. ବିଣ—ତନ୍ତରେ ବୁଣା ହୋଇଥିବା (ବସ୍ତ୍ର)—
(cloth) Woven with the loom; loom-woven (cloth).

**ତନ୍ତର କଟା**—ପ୍ରାଦେ. (ସମ୍ବଲପୁର)—ବି.—ଯେ ତନ୍ତରେ ଲୁଗା ବୁଣେ;
Tantara kaṭā ତନ୍ତି—Weaver.

ପଡରକଟା, ତନ୍ତରକଟା, ପାଣିଓଡା, ଗଉଡୁଣୀ ମାଇ
ଏ ଚାରିଜାତିଙ୍କୁ ବିଶ୍ୱାସ ନାଇ । ସମ୍ବଲପୁର—ପ୍ରବଚନ ।

**ତନ୍ତର ମାଧିଆ**—ଦେ. ବିଣ.—ଋଅଠଅ; ଅସୁନ୍ଦରରୂପେ ବା ଅସମ୍ପୂର୍ଣ୍ଣ
Tantara mādhiā ରୂପେ ସମ୍ପାଦିତ (କାର୍ଯ୍ୟ)—(work)
ताड़ाताड़ि Badly done; half heartedly done;
**बेपरवाह** perfunctorily or imperfectly done.
୨ । ଯେଉଁ ଲୋକ କାର୍ଯ୍ୟକୁ ଅସମ୍ପୂର୍ଣ୍ଣଭାବରେ କରେ—
2. (person) Doing work half-heartedly.

**ତନ୍ତରା**—ଦେ. ବି.—ତେନ୍ତରା (ଦେଖ)
Tantarā Tentarā (See)

**ତନ୍ତଶାଳ**—ଦେ. ବି. (ସଂ. ତନ୍ତ୍ରଶାଳା)—ଯେଉଁ ଘରେ ତନ୍ତ ବସାଯାଇ
Tantraśāḷa ଥାଏ—Weaver's work-shop.
ताँतशाला

**ତନ୍ତି**—ଦେ. ବି. ପୁଂ (ସଂ. ତନ୍ତ୍ରୀ; ତନ୍ତୁବାୟ)—୧ । ଯେଉଁ ଜାତିର
Tanti ଲୋକେ ଲୁଗା ବୁଣନ୍ତି—1. A man of the weaver caste.
ताँति **जुलाहा, ताँती**
(ତନ୍ତିଆଣୀ—ସ୍ତ୍ରୀ) ୨ । ତନ୍ତୁବାୟ—2. Weaver.

ତନ୍ତିଭଣ୍ଡ, ନଡ ବୁଣୁଥାଏ ମୋହର ଖଣ୍ଡ । ପ୍ରବଚନ ।

[ଦ୍ର—ତନ୍ତିମାନଙ୍କର ଶ୍ରେଣୀବିଭାଗ; ଯଥା—ବଙ୍ଗଳା, ରଙ୍ଗଣୀ, ଦୋତଳ, ଗଉଡ଼ିଆ, ମାହୁଅ ଓ ସରାକ । ଏତଦ୍‌ଭିନ୍ନ ଯେଉଁ ନୀଚଜାତୀୟ ଲୋକେ ତନ୍ତକାମ କରି ତନ୍ତି ବୋଲାନ୍ତି, ସେମାନଙ୍କର ଶ୍ରେଣୀ, ଯଥା—ବୁଣା, ହଂସୀ ଓ ଚଅଁରା । ଭିନ୍ନ ଭିନ୍ନ ସ୍ମୃତିରେ ତନ୍ତି ଜାତିର ଉତ୍ପତ୍ତି ସମ୍ବନ୍ଧେ ଭିନ୍ନ ଭିନ୍ନ ବିବରଣ ଅଛି । ମଣିବନ୍ଧ ପୁରୁଷ ମଣିକାର ସ୍ତ୍ରୀ ଠାରୁ, ମତାନ୍ତରରେ ବୈଶ୍ୟ ପୁରୁଷ ଓ କ୍ଷତ୍ରିୟ ସ୍ତ୍ରୀଠାରୁ ତନ୍ତି ଜାତିର ଉତ୍ପତ୍ତି । (ହି. ଶବ୍ଦସାଗର) । ଆମ ଦେଶରେ ତନ୍ତି ଜାତି ସମସ୍ତଙ୍କ ଅପେକ୍ଷା ବେଶି ନିର୍ବୋଧ ବା ନିର୍ବୁଦ୍ଧିଆ ବୋଲି ଚିରପ୍ରସିଦ୍ଧ । ସେମାନଙ୍କ ସମ୍ବନ୍ଧେ ଅନେକଗୁଡ଼ିଏ ଗଳ୍ପ ଓ ପ୍ରବାଦ ଅଛି । ଏଥିପାଇଁ ନିର୍ବୁଦ୍ଧିଆ ବ୍ୟକ୍ତିଙ୍କୁ ତନ୍ତି ବୋଲି ଗାଳି ଦିଆଯାଏ । ତନ୍ତିଙ୍କଠାରୁ ଜୁଲାହମାନଙ୍କ ବୁଦ୍ଧି ଟିକିଏ ସରସ ଥିବାର ମଧ୍ୟ ପ୍ରସିଦ୍ଧ ଅଛି ।]

ଦେ. ବିଣ.—୧ । ନିର୍ବୋଧ; ଓଲୁ; ଓଲମା—1. Fool.
୨ । ମୂର୍ଖ—2. Illiterate

[ଦ୍ର—ତନ୍ତିମାନଙ୍କ ଓଲୁପଣିଆ ଯୋଗୁଁ ଏମାନଙ୍କ ସମ୍ବନ୍ଧରେ ନାନା ପ୍ରବଚନ ଅଛି । ଯଥା—୧ । ତନ୍ତିସାଇରେ କଣ୍ଟାଶ ମହାବଳ । ୨ । ତନ୍ତିଏ ବାଣ୍ଡି କରି ବାଟ ଚାଲିବା ନ୍ୟାୟ । ୩ । ଗୋଟାଏ ଗଡ ପାଇଁ ତନ୍ତିଏ ଧରାଧରି ହୋଇ ବୁଡ଼ିମରିବା ନ୍ୟାୟ ।]
ସଂ. ବି.—ଗାଈ; ଗୋରୁ—Cattle.

**ତନ୍ତିଆ**—ଦେ. ବିଣ.—ଅଠାଳିଆ—
Tantiā Gummy.
**चिपचिपा**

**ତନ୍ତିଆ ଟୋପୀ**—ଦେ. ବି.—ତାନ୍ତିଆ ଟୋପୀ (ଦେଖ)
Tantiā ṭopī Tāntiā ṭopī (See)
(ତନ୍ତିଆ ଭିଲ୍—ଅନ୍ୟରୂପ)

**ତନ୍ତିଆଣୀ**—ଦେ. ବି. ସ୍ତ୍ରୀ—୧ । 'ତନ୍ତି'ର ସ୍ତ୍ରୀଲିଙ୍ଗ ରୂପ—
Tantiāṇī 1. Feminine form of 'Tanti'.
ताँतनी ୨ । ତନ୍ତିଜାତୀୟା ସ୍ତ୍ରୀଲୋକ—
2. A female of the weaver caste.

**ତନ୍ତିପାଳ**—ସଂ. ବି. (ତନ୍ତି+ପାଳ ଧାତୁ+କର୍ତ୍ତୃ. ଅ)—୧ । ଗୋପାଳକ;
Tantipāḷa ଗଉଡ଼—1. Cowherd.
୨ । ବିରାଟ ରାଜ୍ୟରେ ଅଜ୍ଞାତବାସ ସମୟରେ ସହଦେବଙ୍କ ଗୃହୀତ ନାମ—2. The name assumed by the youngest Pāṇḍaba-brother in the court of king Birāṭa.

**ତନ୍ତୁ**—ସଂ. ବି. (ତନ୍ ଧାତୁ=ବିସ୍ତାର କରିବା+କର୍ତ୍ତୃ. ତୁ)—
Tantu ୧ । ସୂତ୍ର; ସୂତା—1. Thread.
୨ । ତାର—2. Wire.
୩ । ସୁତୁଲି—3. String.
୪ । ମାକଡ଼ସାର ଜାଲ: ଲୂତାତନ୍ତୁ; ବୁଢ଼ିଆଣୀ ଜାଲ—
4. Spider's web; cobweb.
୫ । ଅପତ୍ୟ; ସନ୍ତାନ—5. Offspring.
୬ । ହାଙ୍ଗର; ଗ୍ରାହ—6. Shark.
୭ । ବଂଶପରମ୍ପରା—
7. Succession of descendants.
୮ । (+ଭାବ. ତୁ)—ବିସ୍ତାର—
8. Extension; extent.

**ତନ୍ତୁକ**—ସଂ. ବି. (ତନ୍ତୁ+କ)—ସର୍ଷପ; ସୋରିଷ—
Tantuka Mustard seed; rye.

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଦତ୍ତ ୧ ଗଣ୍ଡର ଅକ୍ଷର ଓ ମାତ୍ରା ଏବଂ ୨ ଗଣ୍ଡର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଗଣ୍ଡର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଗଣ୍ଡର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଚ୍ଚ୍ୟା' ନ ପାଇଲେ 'ଅର୍ଚ୍ଚା' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

**ତନ୍ତୁକାଷ୍ଠ**—ସଂ. ବି. (ତନ୍ତୁ+କାଷ୍ଠ; ମ. ପ. ଲୋ)— ତାଷଣ; ଯାହାଦ୍ୱାରା
Tantu kāshṭha ତନ୍ତ୍ରମାନେ ସୂତାକୁ ପରିଷ୍କାର କରନ୍ତି ବା ମାଜନ୍ତି; ବ୍ରୁସ୍—Weaver's brush.

**ତନ୍ତୁକୀ**—ସଂ. ବି. (ତନ୍ତୁକ+ସ୍ତ୍ରୀ. ଈ)—ଶିରା; ଧମନୀ—
Tantuki Vein; artery.

**ତନ୍ତୁ କୀଟ**—ସଂ. ବି. (ତନ୍ତୁ+କୀଟ)—୧ । ତସରପୋକ; ଗୋଟିପୋକ—
Tantu kīṭa 1. Silk worm.
୨ । ମାକଡ଼ସା—2 Spider.

**ତନ୍ତୁକେ**—ଦେ. ଅ. (ତନ୍ତୁ+ଏକାର୍ଥକ ଓଡ଼ିଆ ପ୍ରତ୍ୟୟ, କ=ତନ୍ତୁକ=
Tantuke ଏକ ତନ୍ତୁ)—ଏକ ସୂତା ପରିମାଣରେ—By the breadth of a thread.

ତନ୍ତୁକେ ରହିଅଛ ଏକା ବେଣୀ ମୋକା,
ତାହାକୁ ଅଗ୍ରେ କରିଅଛନ୍ତି ସେ ଏକା । କୃଷ୍ଣସିଂ ମହାଭାରତ. ଅଦ ।

**ତନ୍ତୁ ନାଗ**—ସଂ. ବି.—୧ । ଗ୍ରାହ; କୁମ୍ଭୀର—1. Alligator.
Tantunāga ୨ । ସମୁଦ୍ରର ସାପ—2. Sea-serpent.

**ତନ୍ତୁନାଭ**—ସଂ. ବି.—(ତନ୍ତୁ+ନାଭି; ବହୁବ୍ରୀହି)—ଊର୍ଣ୍ଣନାଭ; ବୁଢ଼ିଆଣୀ,
Tantunābha ମାକଡ଼ସା—Spider.

**ତନ୍ତୁ ନିର୍ଯାସ**—ସଂ. ବି. (ତନ୍ତୁ+ନିର୍ଯାସ, ବହୁବ୍ରୀହି)—ତାଳଗଛ—
Tantu nirjāsa Palm tree.

**ତନ୍ତୁପର୍ବ**—ସଂ. ବି. (ତନ୍ତୁ=ସୂତାନିର୍ମିତ ଯଜ୍ଞୋପବୀତ+ପର୍ବନ)—
Tantuparba ଶ୍ରାବଣ ପୂର୍ଣ୍ଣିମା; ଗହ୍ମାପୂର୍ଣ୍ଣିମା; ରକ୍ଷୀ ପୂର୍ଣ୍ଣିମା—
The fullmoon day of the month of Śrābaṇa.
[ଦ୍ର—ଏହିଦିନ ବ୍ରାହ୍ମଣମାନେ ନୂଆ ପଇତା ପିନ୍ଧନ୍ତି; ରାଜାମାନେ ସୁବର୍ଣ୍ଣ ପଇତା ଗ୍ରହଣ କରି ଅଭିଷିକ୍ତ ହୁଅନ୍ତି ଓ ସାଧାରଣ ଲୋକେ ରକ୍ଷୀ ବାନ୍ଧନ୍ତି ।]

**ତନ୍ତୁ ବାଦକ**—ସଂ. ବି. (୬ଷ୍ଠୀ ତତ୍; ତନ୍ତୁ+ବାଦକ)—
Tantu bādaka ବୀଣା, ସୀତାର ଆଦି ତାର ଥିବା ଯନ୍ତ୍ର ବଜାଇବା ବ୍ୟକ୍ତି—A musician who tunes the harp and other stringed instruments.

**ତନ୍ତୁବାପ**—ସଂ. ବି. (ତନ୍ତୁ+ବପ୍ ଧାତୁ=ବୁଣିବା+କର୍ତ୍ତୃ. ଅ; ଯେ
Tantubāpa ତନ୍ତୁରେ ବୁଣେ)—୧ । ତନ୍ତି—1. Weaver.
୨ । ବୁଢ଼ିଆଣୀ—2. Spider.

**ତନ୍ତୁବାୟ**—ସଂ. ବି (ତନ୍ତୁ+ବେ ଧାତୁ=ବୁଣିବା+କର୍ତ୍ତୃ. ଅ, ଯେ
Tantubāya ତନ୍ତୁରେ ବୁଣେ)—ତନ୍ତୁବାପ (ଦେଖ) Tantubāpa (See)

ବହୁ ସୂକ୍ଷ୍ମାମ୍ବରସ୍ୱ, ବହୁରତ୍ନ କେତେ ତନ୍ତୁବାୟ—ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

**ତନ୍ତୁ ବିଗ୍ରହ**—ସଂ. ବି (ବହୁବ୍ରୀହି; ତନ୍ତୁ+ବିଗ୍ରହ) କଦଳୀଗଛ (ହି.
Tantu bigraha ଶବ୍ଦସାଗର)—The plantain tree

**ତନ୍ତୁଭ**—ସଂ. ବି (ତନ୍ତୁ+ଭା ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅ)—
Tantubha ୧ । ସର୍ଷପ; ସୋରିଷ—1. Mustard; rye.
୨ । ବାଛୁରି—2. Calf.

**ତନ୍ତୁମତ୍**—ସଂ. ବି—ଅଗ୍ନି (ହି. ଶବ୍ଦସାଗର)—
Tantumat Fire.

**ତନ୍ତୁର**—ସଂ. ବି (ତନ୍ତୁ+ରା ଧାତୁ=ଗ୍ରହଣ କରିବା+କର୍ତ୍ତୃ. ଅ)—
Tantura ପଦ୍ମନାଡ଼; ମୃଣାଳ (ହି. ଶବ୍ଦସାଗର)—The stalk
(ତନ୍ତୁଳ—ଅନ୍ୟରୂପ) of lotus.

**ତନ୍ତୁ ଶାଳା**—ସଂ ବି (ତନ୍ତୁ+ଶାଳା; ୬ଷ୍ଠୀ ତତ୍)—ଲୁଗା ବୁଣିବାର
Tantu śālā ଘର; ତନ୍ତୁଶାଳା—Weaver's work-shop.

**ତନ୍ତୁ ସାର**—ସଂ. ବି (ତନ୍ତୁ+ସାର, ବହୁବ୍ରୀହି; ଯେଉଁ ବୃକ୍ଷର ସାରାଂଶ
Tantu sāra ତନ୍ତୁମୟ)—ଗୁଆଗଛ—The betel-nut tree.
ସଂ. ବିଣ—ଅତି କୃଶ (ବ୍ୟକ୍ତି)—Quite lean; very emaciated (person).

**ତନ୍ତ୍ର**—ସଂ. ବି (ତନ୍ ଧାତୁ=ବିସ୍ତାର କରିବା+କର୍ତ୍ତୃ.. ତ୍ର; ଯେଉଁ
Tantra ଶକ୍ତିଦ୍ୱାରା ଶିବ ଓ ଶକ୍ତିଙ୍କ ଉପାସନା ବିସ୍ତାର କରା ଯାଇଅଛି)—୧ । ଶିବୋକ୍ତ ଶାସ୍ତ୍ରବିଶେଷ; ଶିବ ଓ ଶକ୍ତିଙ୍କର ପୂଜା ବା ଉପାସନା ବିଷୟକ ଶାସ୍ତ୍ର—
1 A class of Hindu scriptures composed and delivered by Śiba; a code of religious rites observed in the worship of Śiba and Durgā.
୨ । ତନ୍ତ—2. A loom
୩ । ସୂତ୍ର; ସୂତା—3. Thread
୪ । ମୀମାଂସା; ସିଦ୍ଧାନ୍ତ; ବେଦର ଶାଖାବିଶେଷ—
4. A part of the Vedas.
୫ । ଔଷଧ—Medicine; drug.
୬ । କାରଣ; ହେତୁ; ମୂଳ—6. Cause; origin.
୭ । ଉପାୟ; କୌଶଳ—7. Means or instrument used for attaining an object; contrivance.
୮ । ପରିଚ୍ଛଦ; ବସ୍ତ୍ର; ଲୁଗା—8. Raiment; dress; vesture; clothing; clothes.
୯ । ଯାଦୁବିଦ୍ୟା ମନ୍ତ୍ର; ମନ୍ତ୍ରଯନ୍ତ୍ର; ଅନ୍ୟ ବ୍ୟକ୍ତିଙ୍କ ପ୍ରତି ମାରଣ, ବଶୀକରଣ, ସ୍ତମ୍ଭନ, ମୋହନ, ଉଚ୍ଚାଟନାଦି ପ୍ରୟୋଗବିଧି—
9. Incantations; spell; charm.
୧୦ । ରାଜ୍ୟଶାସନପଦ୍ଧତି; ଶାସନତନ୍ତ୍ର—
10 Administration; mode of government.

[ଦ୍ର—ଶାସନତନ୍ତ୍ର ବହୁବିଧ; ଯଥା—(କ)—ସାଧାରଣ ତନ୍ତ୍ର ବା ପ୍ରଜାତନ୍ତ୍ର—(a) Democracy; republic. (ଖ)—ସ୍ୱାଧୀନତନ୍ତ୍ର—(b) Self-government. (ଗ)—ଆମଲାତନ୍ତ୍ର—(c) Beaureocracy. (ଘ)—ଅଳ୍ପସଂଖ୍ୟକ ଲୋକଙ୍କଦ୍ୱାରା ରାଜ୍ୟ ଶାସନ—(d) Oligarchy. (ଙ)—ରାଜତନ୍ତ୍ର—(e) Monarchy.(ଚ)—ଯଥେଚ୍ଛାଚାରୀ ରାଜତନ୍ତ୍ର—(f Despotism.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଚ | ଓ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇପ୍ସ | ଡ଼ଥ | ଝଁ |
| ୨ | ଛ | ଉ | ରୁ | ଲୁ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁୟ | ଇଥ | ଊ | ଟ |

୧୧ । ରାଜସମଭିବ୍ୟାହାରୀ ଲୋକ; ସୈନ୍ୟ; ରାଜାନୁଚର—11. The retinue of a king; king's attendant.

୧୨ । ରାଜ୍ୟ—12. Kingdom.

୧୩ । ସମୂହ—13. Multitude; collection;

୧୪ । ଅଧୀନତା; ପରନିର୍ଭରତା—14. Subservience; dependence.

୧୫ । ବୀଣା ଆଦି ବାଦ୍ୟର ତନ୍ତୁନିର୍ମିତ ସୂକ୍ଷ୍ମ ସୂତ୍ର—15. String of musical instruments.

୧୬ । ଉଦ୍ଦେଶ୍ୟ; ମତ - 16. Aim; object; opinion.

୧୭ । ସମ୍ପ୍ରଦାୟ; ଦଳ—17. Sect.

୧୮ । କୁଳ—18. Family.

୧୯ । ପୂଜାବିଧି; କର୍ମକାଣ୍ଡ ପଦ୍ଧତି—19 Ritual.

୨୦ । ପରିଚ୍ଛେଦ—20. Chapter.

୨୧ । ପ୍ରବନ୍ଧ—21. Connected narrative.

୨୨ । ପ୍ରାଧାନ୍ୟ—22. Superiority.

୨୩ । ସ୍ୱରାଜ୍ୟ ଚିନ୍ତା—23. Pondering over one's own kingdom.

୨୪ । ବିଧାନ; ବିଧି—24. System; regulations.

୨୫ । ଅନ୍ତର୍ନିହିତ ନିୟମ—25. Underlying principle.

୨୬ । ସୈନ୍ୟ—26. Army.

୨୭ । ତନ୍ତି; ଯେ ଲୁଗା ବୁଣେ (ପ୍ରକୃତିବାଦ)—27. Weaver.

୨୮ । ବସ୍ତ୍ରବୟନସାମଗ୍ରୀ—28. Materials for weaving cloth.

୨୯ । ଆହ୍ଲାଦ; ଆନନ୍ଦ; ପ୍ରସନ୍ନତା—28. Joy; delight, pleasure

୩୦ । କୁଟୁମ୍ବ ଭରଣ ପୋଷଣାଦି କର୍ମ—Maintenance of one's family.

୩୧ । ନିଶ୍ଚିତ ସିଦ୍ଧାନ୍ତ ( ହି. ଶବ୍ଦସାଗର )—31. Decision.

୩୨ । ପ୍ରମାଣ—32. Evidence.

୩୩ । କାର୍ଯ୍ୟ; କର୍ମ—33. Act; deed; effect.

୩୪ । ରାଜକର୍ମଚାରୀଗଣ (ହି. ଶବ୍ଦସାଗର)—34. Government officials; bureaucracy.

୩୫ । ଅଧିକାର—(ହି. ଶବ୍ଦସାଗର)—35. Authority; jurisdiction.

୩୬ । ପଦ; କାର୍ଯ୍ୟ କରିବାର ସ୍ଥାନ; କର୍ମକ୍ଷେତ୍ର—36. Post; field of action.

୩୭ । ଶ୍ରେଣୀ; ବର୍ଗ; କୋଟି ( ହି. ଶବ୍ଦସାଗର )—37. Class; genus.

୩୮ । ଶପଥ—(ହି. ଶବ୍ଦସାଗର)—38. Oath.

[ ଦ୍ର—ସର୍ବସୁଦ୍ଧା ୧୯୨ ଖଣ୍ଡ ତନ୍ତ୍ର ଶାସ୍ତ୍ର ଅଛି । ତହିଁ ମଧ୍ୟରୁ ୬୪ ଖଣ୍ଡ ବଙ୍ଗଦେଶରେ ସଂଗୃହୀତ ହୋଇଅଛି; ୬୪ଖଣ୍ଡ ନେପାଳ, ମିଥିଳା ଆଦି ଦେଶରେ ପ୍ରଚଳିତ ଏବଂ ୬୪ ଖଣ୍ଡ ଅନ୍ୟତ୍ର ପ୍ରଚଳିତ ।

ତନ୍ତ୍ର ଶାସ୍ତ୍ରରେ ବିଶ୍ୱସଂସ୍ଥାନ, ଭୂତସଂସ୍ଥାନ, ପୁରାଣାଖ୍ୟାନ, କୋଷ-କଥନ, ବ୍ରତବର୍ଣ୍ଣନ, ଶୌଚାଶୌଚ ବିଚାର, ନରକ ବର୍ଣ୍ଣନ, ଓ ହରଚକ୍ର ବର୍ଣ୍ଣିତ ହୋଇଅଛି । ବୈଦିକ ଯୁଗରେ ଏହା ନ ଥିଲା ଏବଂ ଏହା ପୌରାଣିକ ଯୁଗରେ (ଅନ୍ତତଃ ଖ୍ରୀଷ୍ଟୀୟ ୪ର୍ଥ ବା ୫ମ ଶତାବ୍ଦି ପରେ) ପ୍ରଚଳିତ ହୋଇଥିଲା । ତନ୍ତ୍ର ନାମରେ ହିନ୍ଦୁ ଧର୍ମରେ ଅନେକଗୁଡ଼ିଏ ଅଲୌକିକ କ୍ରିୟା ପ୍ରଚଳିତ ହୋଇଅଛି । ଏଥିରେ ଚକ୍ରକଥା, ଯୋଗସାଧନା, ବାୟୁସାଧନା, ଶରୀର ମଧ୍ୟସ୍ଥ ଚକ୍ର ନିରୂପଣ, ମାରଣ, ବଶୀକରଣ, ସ୍ତମ୍ଭନ, ମୋହନ, ଉଚ୍ଚାଟନ ଆଦି ପ୍ରୟୋଗ, ଶିବ ଓ ଦୁର୍ଗାଙ୍କୁ ପୂଜା କରିବାର ନାନାବିଧ କ୍ରିୟା ଓ ପଞ୍ଚ ମକାର, ବାମାଚାର, କାମଶାସ୍ତ୍ର, ଭୌତିକ ବିଦ୍ୟା, ଅଲୌକିକ କ୍ଷମତା ସାଧନ ଆଦି ବର୍ଣ୍ଣିତ ହୋଇଅଛି । ଏମନ୍ତ କି, ତନ୍ତ୍ର ନାମରେ ବିବିଧ ଇନ୍ଦ୍ରିୟପରାୟଣ କର୍ମ ଓ ଅମେଧ୍ୟ ଭୋଜନ ମଧ୍ୟ କରାଯାଏ । ତାନ୍ତ୍ରିକମାନେ ଅଲୌକିକ କ୍ଷମତା ଓ ସିଦ୍ଧି ମଧ୍ୟ ଦେଖାଇ ଥାଆନ୍ତି ।

ତନ୍ତ୍ର ୩ ଭାଗରେ ବିଭକ୍ତ—୧. ଆଗମ, ୨. ଯାମଳ ଓ ୩. ମୁଖ୍ୟତନ୍ତ୍ର । ଆଗମରେ ସୃଷ୍ଟି, ପ୍ରଳୟ, ଦେବପୂଜା ଓ ସବୁ କାର୍ଯ୍ୟରେ ସାଧନ, ପୁରଶ୍ଚରଣ, ଷଟ୍‌କର୍ମ ସାଧନ ଓ ୪ ପ୍ରକାର ଧ୍ୟାନଯୋଗ ବର୍ଣ୍ଣିତ ହୋଇଅଛି । ଯାମଳରେ ସୃଷ୍ଟିତତ୍ତ୍ୱ, ଜ୍ୟୋତିଷ, ନିତ୍ୟକୃତ୍ୟ, କ୍ରମ, ସୂତ୍ର, ବର୍ଣ୍ଣଭେଦ ଓ ଯୁଗଧର୍ମ ବର୍ଣ୍ଣିତ ହୋଇଅଛି । ମୁଖ୍ୟ ତନ୍ତ୍ରରେ ସୃଷ୍ଟି, ଲୟ, ମନ୍ତ୍ରନିର୍ଣ୍ଣୟ, ଦେବତାମାନଙ୍କ ସଂସ୍ଥାନ, ଯନ୍ତ୍ର-ନିର୍ଣ୍ଣୟ, ତୀର୍ଥ, ଆଶ୍ରମ ଧର୍ମ, କଳ୍ପ, ଜ୍ୟୋତିଷସଂସ୍ଥାନ, ବ୍ରତକଥା, ଶୌଚ, ଅଶୌଚ, ସ୍ତ୍ରୀ ପୁରୁଷ ଲକ୍ଷଣ, ରାଜଧର୍ମ, ଦାନଧର୍ମ, ଯୁଗଧର୍ମ, ବ୍ୟବହାର ଓ ଆଧ୍ୟାତ୍ମିକ ବିଷୟମାନ ବର୍ଣ୍ଣିତ ହୋଇଅଛି । ତନ୍ତ୍ରର ସିଦ୍ଧାନ୍ତ ଏହି କି କଳିଯୁଗରେ ବୈଦିକମନ୍ତ୍ରଜପ, ତପସ୍ୟା ଓ ଯଜ୍ଞ ଆଦିର କିଛି ଫଳ ନାହିଁ, କିନ୍ତୁ କାର୍ଯ୍ୟର ସିଦ୍ଧିଲାଭ ପାଇଁ ତନ୍ତ୍ର-ଶାସ୍ତ୍ରବର୍ଣ୍ଣିତ ମନ୍ତ୍ର ଓ ଉପାୟ ଅବଲମ୍ବନ କରିବା କର୍ତ୍ତବ୍ୟ । ତନ୍ତ୍ରର ସିଦ୍ଧାନ୍ତ ଗୁପ୍ତ ରଖାଯାଏ ଓ ଏହା ଶିକ୍ଷା କରିବା ପାଇଁ ମନୁଷ୍ୟଙ୍କୁ ଦୀକ୍ଷା ନେବାକୁ ପଡ଼େ । ଆଜିକାଲି ମାରଣ, ଉଚ୍ଚାଟନ, ବଶୀକରଣ ଆଦି ନାନାପ୍ରକାରର ସିଦ୍ଧିର ସାଧନ ପାଇଁ ତାନ୍ତ୍ରିକ ମନ୍ତ୍ର ଓ କ୍ରିୟା କରାଯିବାର ଦେଖାଯାଏ । ତନ୍ତ୍ର ବିଧିରେ ପ୍ରଧାନତଃ ଶାକ୍ତମାନେ ଉପାସନା କରନ୍ତି । ତନ୍ତ୍ରୋକ୍ତ ଅଧିକାଂଶ ମନ୍ତ୍ର ଅର୍ଥହୀନ ଓ ଏକାକ୍ଷରୀ ଯଥା—କ୍ଲୀଂ, ହ୍ଲୀଂ, ଶ୍ରୀଂ, ଐଂ, ହ୍ରୀଂ, ଗ୍ରୀଂ, ଇଂ, ହୁଂ । ତାନ୍ତ୍ରିକମାନେ ସବୁ ଦେବତାଙ୍କୁ ପୂଜା କରନ୍ତି, କିନ୍ତୁ ସେମାନଙ୍କ ପୂଜାବିଧି ବୈଦିକ ବିଧି ଠାରୁ ଭିନ୍ନ । ତାନ୍ତ୍ରିକମାନଙ୍କର ପୂଜା ଓ ବିଶେଷତଃ ଚକ୍ରପୂଜାରେ ମତ୍ସ୍ୟ, ମାଂସ, ମୈଥୁନ, ମଦ୍ୟ ଓ ମୁଦ୍ରା ନାମକ ପଞ୍ଚ ମକାରର ବ୍ୟବହାର କରାଯାଏ । କଥିତ ଅଛି ଯେ ତାନ୍ତ୍ରିକମାନେ ଡାକୁଣୀ,

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ବାଘ' ନ ମିଳିଲେ 'ବାଘ' ଖୋଜିବେ 'ବ୍ରଜ' ନ ମିଳିଲେ 'ବ୍ରଜ' ଦେଖିବେ; 'ବଧୂ' ନ ମିଳିଲେ 'ବଧୂ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଳଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ

ଯୋବଣୀ ଆଦି ସ୍ତ୍ରୀମାନଙ୍କୁ ଉଲଗ୍ନ କରି ପୂଜା କରନ୍ତି । ହିନ୍ଦୁମାନଙ୍କ ଦେଖାଦେଖି ବୌଦ୍ଧମାନଙ୍କ ମଧ୍ୟରେ ମଧ୍ୟ ତନ୍ତ୍ରର ପ୍ରଚାର ହେଲା ଓ ବୌଦ୍ଧମାନଙ୍କର ଅନେକ ତନ୍ତ୍ର ଗ୍ରନ୍ଥ ଅଛି । ଏ ଗ୍ରନ୍ଥମାନଙ୍କର ପ୍ରଚାର ଚୀନ, ତିବ୍ବତ ଓ ନେପାଳରେ ଅଛି । ବାରାହୀ ତନ୍ତ୍ରରେ ଲେଖା ଅଛି ଯେ ଜୈମିନି, କପିଳ, ନାରଦ, ଗର୍ଗ, ଭୃଗୁ, ଶୁକ୍ର, ବୃହସ୍ପତି ଆଦି ଋଷିମାନେ କେତେକ ଉପତନ୍ତ୍ର ରଚନା କରିଥିଲେ— ହି. ଶବ୍ଦସାଗର । ]

ସଂ. ବିଣ—୧ । ଶାସିତ—1. Administered.

୨ । ଅଧୀନ; ଅନୁଗତ—

2. Subservient; subordinate; dependent.

**ତନ୍ତ୍ରକ**—ସଂ. ବି ( ତନ୍ତ୍ର+କ ) —ନୂଆ ଲୁଗା—
Tantraka A new cloth.

ଦେ. ବି ( ସଂ. ତନ୍ତ୍ରୀ )—ତାର ବାଦ୍ୟ; ଯଥା—ବେହେଲା, ବୀଣା, ସିତାର—Stringed musical instrument.

କାମଜ ହ୍ରଚଣ ସହସ୍ର ଲକ୍ଷେ
ତେଲ ଲକ୍ଷକ ସହସ୍ର ବଂଶେ—ପ୍ରାଚୀ. ରହସ୍ୟମଞ୍ଜରୀ ।

**ତନ୍ତ୍ର କାଷ୍ଠ**—ସଂ. ବି (ତନ୍ତ୍ର+କାଷ୍ଠ; ମ. ପ. ଲୋ.)—୧ । ତନ୍ତୁକାଷ୍ଠ;
Tantra kāshṭha ତାଷଣ; ମୁଠା—1. A fibrous stick for cleansing the warp; weaver's brush.

୨ । ତନ୍ତ—2. Weaver's loom.

**ତନ୍ତ୍ରଣ**—ସଂ. ବି—ଶାସନ ବା ପ୍ରବନ୍ଧ ଆଦି କରିବା କର୍ମ—
Tantraṇa Administration; management.

**ତନ୍ତ୍ରତା**—ସଂ. ବି (ତନ୍ତ୍ର+ଭାବାର୍ଥେ, ତା)—୧ । ଅଧୀନତା—
Tantratā 1. Subservience; dependence.

୨ । ଷଡ଼ଯନ୍ତ୍ର—2. Intrigue.

୩ । ଉଦ୍ଭାବନା; କୌଶଳ—3. Contrivance.

୪ । ଘନିଷ୍ଠତା; ସମ୍ପର୍କ; ସାନ୍ନିଧ—
4. Proximity; intimacy.

୫ । ଏକସଙ୍ଗେ ବହୁ କାର୍ଯ୍ୟର ପ୍ରାରମ୍ଭକରଣ—5. The commencing of many actions at a time

୬ । ଏକ କର୍ମ ପରିବର୍ତ୍ତରେ ଅନ୍ୟ କର୍ମକରଣ—
6 The doing of one thing instead of another.

୭ । ବହୁ ଉଦ୍ଦେଶ୍ୟ ସାଧନାର୍ଥ ଗୋଟିଏ କାର୍ଯ୍ୟ କରିବା (ହି. ଶବ୍ଦସାଗର)—7 Doing of one act for attaining more than one object.

[ ଦ୍ର—ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୋଇ ଏହି ଶବ୍ଦ ବ୍ୟବହୃତ ହୋଇଥାଏ । ଯଥା—ପରତନ୍ତ୍ରତା; ସ୍ୱତନ୍ତ୍ରତା । ]

**ତନ୍ତ୍ର ଧାରକ**—ସଂ. ବି (ତନ୍ତ୍ର=କର୍ମକାଣ୍ଡ ପଦ୍ଧତି+ଧୃ ଧାତୁ=ଧାରଣ କରିବା
Tantra dhāraka +କର୍ତ୍ତୃ. ଅକ)—ଯେଉଁ ବ୍ୟକ୍ତି କର୍ମକାଣ୍ଡର ପଦ୍ଧତି ଅନୁସାରେ କର୍ମ କରୁଥିବା ବ୍ୟକ୍ତିଙ୍କୁ ମନ୍ତ୍ର ପାଠ କରାଏ, ଅର୍ଥାତ୍ କୌଣସି କର୍ମକାଣ୍ଡ ଅନୁଷ୍ଠିତ ହେବା ସମୟରେ ଯେଉଁ ପୁରୋହିତ ପୋଥି ଧରି କର୍ମକାଣ୍ଡୋକ୍ତ ମନ୍ତ୍ରପାଠରେ ସାହାଯ୍ୟ କରୁଥାଆନ୍ତି; କର୍ମକାଣ୍ଡର ପ୍ରଚାରକ—A priest who assists at a worship or rite by reciting mantras and procedure from the book of rituals.

**ତନ୍ତ୍ରବାପ**—ସଂ. ବି ( ତନ୍ତ୍ର+ବପ୍ ଧାତୁ=ବୁଣିବା+କର୍ତ୍ତୃ. ଅ )—
Tantrabāpa (ପ୍ରକୃତିବାଦ ମତରେ 'ତନ୍ତ୍ରବାପର' ଅର୍ଥ ସ୍ୱରାଜ୍ୟ ଓ ପର ରାଜ୍ୟ ଚିନ୍ତା)—

୧ । ତନ୍ତୁବାୟ; ତନ୍ତି—1. Weaver.

୨ । ଲୂତିଅଣୀ; ମାକଡ଼ସା—2. Spider.

**ତନ୍ତ୍ରବାୟ**—ସଂ. ବି ( ତନ୍ତ୍ର+ବେ ଧାତୁ=ବୁଣିବା+କର୍ତ୍ତୃ. ଅ )—
Tantrabāya ୧ । ତନ୍ତୁବାପ ( ଦେଖ )—1. Tantubāpa (See).

୨ । ତନ୍ତି (ଦେଖ) (ହି. ଶବ୍ଦସାଗର)—2. Tanta (See)

**ତନ୍ତ୍ର ମନ୍ତ୍ର**—ସଂ. ବି ( ତନ୍ତ୍ର+ମନ୍ତ୍ର; ୬ଷ୍ଠୀ ତତ୍ ) —ତନ୍ତ୍ରୋକ୍ତ ମନ୍ତ୍ର—
Tantra mantra The incantations mentioned in the 'Tantra śāstra'.

ତନ୍ତ୍ରମନ୍ତ୍ର ଦେ. ବି (ସହଚର)—ମନ୍ତ୍ରଯନ୍ତ୍ର; ଗୁଣିବିଦ୍ୟା; ଗୁଣି
तन्त्रमन्त्र ଗାରେଡ଼ି—A charm; the black art.

**ତନ୍ତ୍ର ମନ୍ତ୍ର କରିବା**—ଦେ. କ୍ରି—କୌଣସି ବ୍ୟକ୍ତି ବିପକ୍ଷରେ ମାରଣ,
Tantra mantra karibā ବଶୀକରଣ ଆଦି ତାନ୍ତ୍ରିକ ବିଧି
ତନ୍ତ୍ରମନ୍ତ୍ର କରା ପ୍ରୟୋଗ କରିବା—To direct or apply
तन्त्रमन्त्र करना charms and black magic against a person.

**ତନ୍ତ୍ର ଯନ୍ତ୍ର** (ଇତ୍ୟାଦି) —ଦେ. ବି (ସହଚର)-ତନ୍ତ୍ରମନ୍ତ୍ର ଇତ୍ୟାଦି (ଦେଖ)
Tantra jantra (etc) Tantra-mantra etc (See)
ତନ୍ତ୍ରଯନ୍ତ୍ର, तन्त्रयन्त्र

**ତନ୍ତ୍ରଯାନ**—ଦେ. ବି—ବୌଦ୍ଧଧର୍ମର ତାନ୍ତ୍ରିକ ଶାଖା ବିଶେଷ—
Tantra jāna The branch of Buddhistic religion dealing with the Tantras.

**ତନ୍ତ୍ର ଯୁକ୍ତି**—ସଂ. ବି—ଯେଉଁ ଯୁକ୍ତିର ସାହାଯ୍ୟରେ କୌଣସି ବାକ୍ୟର ଅର୍ଥ
Tantra jukti ବୁଝାଯାଏ (ହି. ଶବ୍ଦସାଗର)—The reasoning with the help of which the meaning of a word or sentence is comprehended.

**ତନ୍ତ୍ର ସଂସ୍ଥିତି**—ସଂ. ବି—ରାଜ୍ୟର ଶାସନ ପ୍ରଣାଳୀ—
Tantra saṁsthiti The mode of government; administration of a kingdom

**ତନ୍ତ୍ର ସାଧନ (ନା)**—ସଂ. ବି ( ତନ୍ତ୍ର+ସାଧନ; ସମ୍ବନ୍ଧେ ୬ଷ୍ଠୀ ତତ୍ )—
Tantra sādhana (nā) ତନ୍ତ୍ରୋକ୍ତ ପଦ୍ଧତିକୁ ଅବଲମ୍ବନ କରି ସିଦ୍ଧିଲାଭ କରିବା ନିମନ୍ତେ କରାଯିବା କ୍ରିୟାକଳାପ—The observance of rituals mentioned in the 'Tantras' with a view to attain success.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଙ୍ଘ | ଞ୍ଝ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲ୍ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ୟ | ଯ | ସ | ଙ୍ଗ | ଙ୍ଘ | ଞ୍ଚ | ନ୍ |

**ତନ୍ତ୍ର ସାର**—ସଂ. ବି (ତନ୍ତ୍ର+ସାର; ୬ଷ୍ଠୀ ତତ୍) – ତନ୍ତ୍ରଶାସ୍ତ୍ରମାନଙ୍କରୁ ସଙ୍ଗୃହୀତ ସାରାଂଶ ପୁସ୍ତକ —A digest or summary of the Tantras.
Tantra sāra

**ତନ୍ତ୍ର ସ୍କନ୍ଦ**—ସଂ. ବି—ଜ୍ୟୋତିଷ ଶାସ୍ତ୍ରର ଯେଉଁ ଅଙ୍ଗର ଗଣନା ଦ୍ୱାରା ଗ୍ରହ ଆଦିଙ୍କ ଗତି ନିରୂପିତ ହୁଏ; ଗଣିତ ଜ୍ୟୋତିଷ—Astronomy.
Tantra skanda

**ତନ୍ତ୍ରହୋମ**—ସଂ. ବି (ମ. ପ. ଲୋ. ତନ୍ତ୍ର+ହୋମ)—ତନ୍ତ୍ରଶାସ୍ତ୍ରର ବିଧାନ ବା ମତ ଅନୁସାରେ ଅନୁଷ୍ଠିତ ହୋମ—Oblations to fire according to Tantric rituals.
Tantra homa

**ତନ୍ତ୍ରାବାପ**—ସଂ ବି (ତନ୍ତ୍ର=ରାଜ୍ୟ+ଅବାପ=ଶତ୍ରୁରାଜ୍ୟ ଚିନ୍ତା; ୬ଷ୍ଠୀ ତତ୍)—ସ୍ୱରାଜ୍ୟ ଓ ପରରାଜ୍ୟ ଚିନ୍ତନ—A consideration of matters connected with one's own kingdom as well as with other kingdoms; diplomacy.
Tantrābāpa

**ତନ୍ତ୍ରି**—ସଂ. ବି—୧। ତନ୍ତ୍ରୀ (ଦେଖ) 1. Tantrī (See)
Tantri
୨। ତନ୍ଦ୍ରା (ହି. ଶବ୍ଦସାଗର)—2. Nap.

**ତନ୍ତ୍ରିକା**—ସଂ. ବି. ସ୍ତ୍ରୀ (ତନ୍ତ୍ର+କ+ସ୍ତ୍ରୀ. ଆ)—ଗୁଳୁଚି ଲତା— A medicinal creeper.
Tantrikā

**ତନ୍ତ୍ରିପାଳ**—ସଂ. ବି. ପୁଂ (ତନ୍ତ୍ରୀ+ପାଳ; ଉପପଦ ତତ୍)—ବିରାଟରାଜ୍ୟରେ ଛଦ୍ମବେଶଧାରୀ ପାଣ୍ଡବମାନଙ୍କର ଅଜ୍ଞାତ ବାସ କାଳରେ ସହଦେବଙ୍କର ଧାରଣ କରିଥିବା ନାମ—The name assumed by Sahadeba during the stay of the Pāṇḍabas at the court of the king Birāṭa in disguise.
Tantripāḷa
(ତନ୍ତ୍ରପାଳ—ଅନ୍ୟରୂପ)

**ତନ୍ତ୍ରିପାଳକ**—ସଂ. ବି (ତନ୍ତ୍ର=ସୈନ୍ୟ+ଇ+ପାଳକ; ଉପପଦ ତତ୍)—
Tantripāḷaka ୧। ସୈନ୍ୟାଧ୍ୟକ୍ଷ—1. Commander of an army.
୨। (ମହାଭାରତୋକ୍ତ) ରାଜା ଜୟଦ୍ରଥ—
2. (Mahābhārata) King Jayadratha.

**ତନ୍ତ୍ରୀ**—ସଂ. ବି (ତନ୍ତ୍ର+ସ୍ତ୍ରୀ.ଈ.)—୧। ତନ୍ତ—1.Weaver's loom.
Tantrī ୨। ବୀଣା—2. Harp; lute.
୩। ବୀଣା ବେହେଲା ଆଦି ତାରଯୁକ୍ତ ବାଦ୍ୟ ଯନ୍ତ୍ର—3. Stringed musical instruments.
୪। ବୀଣା ପ୍ରଭୃତିର ତାର—4. String of musical instruments.
୫। ଗୁଳୁଚି ଲତା—5. A medicinal creeper.
୬। ରଜ୍ଜୁ; ଦାଉଁ; ସୁତୁଲି—6. A string of rope.
୭। ସୂତା—7. A thread.
୮। ଯୁବତୀ—8. A young woman.
୯। ବୀଣା ଆଦିର ବାଦକ—9. A musician playing on stringed instruments
୧୦। ତନ୍ତ୍ର ବିଦ୍ୟା ସାଧକ ବ୍ୟକ୍ତି—10. One who professes and practises the doctrines of Tantra; a professor of Tantra.
୧୧। ଶରୀରର ନାଡ଼ୀ (ହି. ଶବ୍ଦସାଗର)—11. Vein; blood-vessel; artery.
୧୨। (ତନ୍ତ୍ର+ଅସ୍ତ୍ୟ ଅର୍ଥରେ ଇନ୍; ୧ମା. ୧ବ)—ଯେଉଁ ବ୍ୟକ୍ତି କୌଣସି ଅନୁଷ୍ଠାନର ତତ୍ତ୍ୱାବଧାରଣ କରେ—12 A superintendent of any work.
୧୩। ବାଦ୍ୟ ବାଦକ—13. Musician.
୧୪। ଗାୟକ—(ହି. ଶବ୍ଦସାଗର)—14. Singer.
ବିଣ—ଦଳଭୁକ୍ତ; ସମ୍ପ୍ରଦାୟ ନିବିଷ୍ଟ—Forming an assembly or sect; sectarian; belonging to a sect.

**ତନ୍ଦରା**—ପ୍ରାଦେ. ବି. (ଗଞ୍ଜାମ; ଗଡ଼ଜାତ) (ସଂ. ତ୍ୱରା)—
Tandarā ୧। ଉଦ୍‌ବେଗ—1. Eagerness; anxiety.
୨। ଉତ୍କଣ୍ଠା—2. Uneasiness.
୩। ଅସ୍ଥିରତା—3. Restlessness.
୪। ତ୍ୱରାନ୍ୱିତ ଅବସ୍ଥା—4. Hurry; haste.
ବିଣ. (ସଂ. ତ୍ୱରାନ୍ୱିତ)—୧। ଉଦ୍‌ବିଗ୍ନ—1. Anxious.
୨। ଅସ୍ଥିର—2. Restless.
୩। ତ୍ୱରାନ୍ୱିତ—3. In haste.

**ତନ୍ଦରା କରିବା**—ପ୍ରାଦେ. (ଗଞ୍ଜାମ; ଗଡ଼ଜାତ) କ୍ରି—କୌଣସି କାର୍ଯ୍ୟ କରିବା ନିମନ୍ତେ କୌଣସି ବ୍ୟକ୍ତିକୁ ତ୍ୱରାନ୍ୱିତ କରାଇବା ବା ବେଗ ଦେବା; ତାଉଲ କରାଇବା—To incite or press a person to push on with a work; to hurry up another person to do a work.
Tandarā karibā

**ତନ୍ଦରା ପଡ଼ିବା**—ପ୍ରାଦେ. (ଗଞ୍ଜାମ; ଗଡ଼ଜାତ) କ୍ରି.—୧। କୌଣସି ବିଷୟରେ ଉଦ୍‌ବିଗ୍ନ ହେବା—
Tandarā paṛibā
1. To show anxiety or uneasiness in any work.
୨। କୌଣସି ବିଷୟରେ ତ୍ୱରାନ୍ୱିତ ହେବା—
2. To be in haste; to be in hurry.

**ତନ୍ଦୁର(ରୁ)**—ବୈଦେ. ବି. (ଫା. ତନୂର, ଉର୍ଦ୍ଦୁ. ତନ୍ଦୁର)—ପାଉଁରୁଟି ତିଆରି କରାଯିବା ଚୁଲ୍ଲୀ ବା ଭାଟି—An oven for baking loaf.
Tandur(ru)
तन्दूर तंदुर

[ ଦ୍ର—ଏ ଚୁଲ୍ଲୀ ଉପୁଡ଼ା ହେବାଁ ଦାଣ୍ଡି ଅକାରର ମାଟି ବା ଚୂନରେ ତିଆରି; ଏଥିରେ ଗୋଟିଏ ଛୋଟ ଦ୍ୱାର ଥାଏ । ଏଥିରେ କିଛୁକ୍ଷଣ କାଠ ବା ଅଙ୍ଗାର ଜାଳ ଏହାର କାନ୍ଥ ଖୁବ ତାତିଗଲା

ସାଧାରଣ ଲୋକେ ଅପର ବୃଷ୍ଠାରେ ୧,ଘର ୧ ଚନ୍ଦ୍ରିର ଅକ୍ଷର ଓ ମାତ୍ରା ଏବଂ ୨ ଚନ୍ଦ୍ରିର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚନ୍ଦ୍ରିର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚନ୍ଦ୍ରିର ବଦଳରେ ୨ ବା ୧ ଚନ୍ଦ୍ରିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଠ' ନ ମିଳିଲେ 'ଗାଣ୍ଠ' ଖୋଜିବେ, ଲୁଅ ନ ମିଳିଲେ 'ଲୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; ଅଁଖି ନ ପାଇଲେ 'ଆଖି' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

ପରେ ଏହା ମଧ୍ୟରୁ ପାଞ୍ଚ ଅଂଶ ଅଦ କାଢ଼ି ଆଣି ଚନ୍ଦ୍ର ମଧ୍ୟରେ ପାରିବୃତ୍ତର ଗୋଲାମାନ ରଖି ଦେଲେ ଭଲ ରୁଚ ଫୁଲ ଯାଏ । ]

**ତନ୍ଦୁରସ୍ତ୍**—ବୈଦେ. ବଣ. (ଫା)—ନୀରୋଗ; ସୁସ୍ଥ—
Tandurast Healthy.
तन्दरुस्त तंदुरस्त

**ତନ୍ଦୁରସ୍ତି**—ବୈଦେ. ବ. ସ୍ତ୍ରୀ. (ଫା)—ଆରୋଗ୍ୟ; ସ୍ୱାସ୍ଥ୍ୟ—
Tandurasti Health.
तन्दरुस्ती तंदुरुस्ती

**ତନ୍ଦୁଲୀୟକ**—ସଂ. ବ.—ଲେଉଟିଆ ଶାଗ (ହି. ଶବ୍ଦସାଗର) (ଦେଖ)
Tandūlīyaka Leutiā sāga (See)

**ତନ୍ଦ୍** (ଧାତୁ)—ସଂ—ଅଳସ ହେବା—
Tandra (root) To be idle.

**ତନ୍ଦ୍ରା**—ସଂ. ବ. ସ୍ତ୍ରୀ. (ତନ୍ଦ୍ ଧାତୁ=ଅଳସ ହେବା+ଭାବ. ଅ)—
Tandrā ୧ । ଅଳ୍ପ ନିଦ୍ରା; ଛାଇ ନିଦ—1. Slight sleep; nap.
୨ । ନିଦ୍ରାବେଶ; ନିଦ ମାଡ଼ିବା; ଘୁମାଇବା—
2 Drowsiness; sleepiness; dozing.
୩ । ଜଡ଼ତା; ଆଳସ୍ୟ—
3. Sloth; idleness; laziness.
୪ । ଅବସାଦ; ଅବସନ୍ନତା—
4. Lassitude; weariness, langour.
ପ୍ରାଦେ. (ଗଞ୍ଜାମ, ଗଡ଼ଜାତ) ବଣ ଓ ବ—
ତନ୍ଦରା (ଇତ୍ୟାଦି) (ଦେଖ)—Tandarā (etc)(See)

**ତନ୍ଦ୍ରାଭିଭୂତ**—ସଂ. ବଣ. (ତନ୍ଦ୍ରା+ଅଭିଭୂତ; ୩ୟା ତତ୍)—
Tandrābhibhūta ଢୁଳାଉଥିବା; ନିଦ୍ରାରେ ଆସକ୍ତ ହୋଇଥିବା—
Feeling drowsy; stupefied.

**ତନ୍ଦ୍ରାଯୁକ୍ତ**—ସଂ. ବଣ. (ତନ୍ଦ୍ରା+ଯୁକ୍ତ; ୩ୟା ତତ୍)—
Tandrājukta ଢୁଳାଉଥିବା; ନିଦ୍ରାସକ୍ତ—
Feeling drowsy; stupefied.

**ତନ୍ଦ୍ରାଳୁ**—ସଂ. ବଣ (ତନ୍ଦ୍ରା+ଶୀଳାର୍ଥେ, ଆଳୁ)—
Tandrālu ୧ । ନିଦ୍ରାଳୁ; ଘୁମା—1. Drowsy; sleepy
୨ । ଅଳସ—2. Slothful; idle.
୩ । କ୍ଳାନ୍ତ; ଅବସନ୍ନ—3. Weary.

**ତନ୍ଦ୍ରାସକ୍ତ**—ସଂ. ବଣ. (ତନ୍ଦ୍ରା+ଆସକ୍ତ; ୭ମୀ ତତ୍)—
Tandrāsakta ତନ୍ଦ୍ରାଭିଭୂତ (ଦେଖ)—Tandrābhibhūt (See)

**ତନ୍ଦ୍ରି**—ସଂ. ବ (ତନ୍ଦ୍ ଧାତୁ+ଭାବ ଇ)—୧ । ନିଦ୍ରାବେଶ—
Tandri 1. Sleepiness; drowsiness.
୨ । ଅଳସ୍ୟ—2. Slothfulness.
୩ । କ୍ଳାନ୍ତି—3. Weariness.
୪ । ମୂର୍ଚ୍ଛା—4. Fit of fainting.

**ତନ୍ଦ୍ରିକ ସନ୍ନିପାତ**—ଏକପ୍ରକାର ସାନ୍ନିପାତିକ ଜ୍ୱର—
Tandrika sannipāta A kind of fever.
[ ଦ୍ର—ଏଥିରେ ରୋଗୀ ତନ୍ଦ୍ରାସକ୍ତ ହୁଏ; ଜ୍ୱରର ତାପ ଖୁବ୍ ବେଗରେ ବେଶି ହୁଏ, ଖୁବ୍ ଶୋଷ ହୁଏ; ଜିଭ କଳା ଓ ଖରଖର ହୁଏ, ଜୋରରେ ନିଶ୍ୱାସ ବହେ, ଖୁବ ଝାଡ଼ା ହୁଏ; ଦେହ ଜଳେ; କାନ ବଧିର ହୁଏ । ଏହାର ଅବଧି ୨୫ ଦିନ । ହି. ଶବ୍ଦସାଗର ।]

**ତନ୍ଦ୍ରିକା**—ସଂ. ବ. (ତନ୍ଦ୍ ଧାତୁ+ଇକ ସ୍ତ୍ରୀ. ଆ)—ତନ୍ଦ୍ରି (ଦେଖ)
Tandrikā Tandri (See)

**ତନ୍ଦ୍ରିତ**—ସଂ ବଣ (ତନ୍ଦ୍ରା+ସଂଜାତ ଅର୍ଥରେ ଇତ)—୧ । ତନ୍ଦ୍ରାସକ୍ତ;
Tandrita ତନ୍ଦ୍ରାଳୁ; ତନ୍ଦ୍ରାଯୁକ୍ତ—1. Drowsy; slothful.
୨ । କ୍ଳାନ୍ତ—2. Exhausted.

**ତନ୍ଦ୍ରିବା**—ପ୍ରାଦେ. (ସମ୍ବଲପୁର) କ୍ରି—ତରତର ହେବା—
Tandribā To be in haste or hurry.

**ତନ୍ଦ୍ରୀ**—ସଂ. ବ. (ତନ୍ଦ୍ ଧାତୁ+ଇ+ ସ୍ତ୍ରୀ, ଈ)—
Tandrī ୧ । ତନ୍ଦ୍ରି (ଦେଖ)—1. Tandri (See)
୨ । ଭ୍ରୂଭଙ୍ଗୀ—( ହି. ଶବ୍ଦସାଗର ) 2. Frowning.
୩ । ଭ୍ରୂ (ହି ଶବ୍ଦସାଗର)—3. Eyebrow.

**ତନ୍ନ ତନ୍ନ**—ଦେ. କ୍ରି. ବଣ (ସଂ. ତନ୍ନ='ତତ୍, ନ' ଅର୍ଥାତ୍ ତାହା ନୁହେଁ,
Tanna tanna ଅନେକ କଥାକୁ ଦେଖି 'ଏ କଥା ନୁହେଁ', 'ଏ
तन्न तन्न କଥା ନୁହେଁ' କହି କହି କୌଣସି ବିଷୟକୁ ପରୀକ୍ଷା କରିବା)—
अवलसेआखीरतक, पूरा ୧ । ପୁଙ୍ଖାନୁପୁଙ୍ଖ; ବିଶଦଭାବରେ; ବିଶେଷ ଅନୁସନ୍ଧାନପୂର୍ବକ; ଅତି ସୂକ୍ଷ୍ମଭାବରେ ବିଗ୍ଭର ପୂର୍ବକ—1. Most thoroughly; minutely, closely; in a sifting manner.
୨ । ଆଦ୍ୟୋପାନ୍ତ—2. From beginning to end.
( ଯଥା—ମୁଁ ବୈଦ୍ୟଶାସ୍ତ୍ରକୁ ତନ୍ନ ତନ୍ନ କରି ଆଲୋଚନା କରିଅଛି । )

**ତନ୍ନାମ**—ସଂ. ବ (ତତ୍+ନାମ; ୬ଷ୍ଠୀ ତତ୍)—୧ । ତାହାଙ୍କର ନାମ—
Tannāma 1. His, her or its name.
୨ । (କର୍ମଧାରୟ) ସେହି ନାମ—2. That name.
[ଦ୍ର—ଏହିପରି ତନ୍ନାମଧେୟ, ତନ୍ନାମଗ୍ରହଣ ଓ ତନ୍ନାମକରଣ ଆଦି ଶବ୍ଦ ନିଷ୍ପନ୍ନ ହୁଏ ।]

**ତନ୍ନିବନ୍ଧନ**—ଦେ. କ୍ରି. ବଣ—୧ । ସେହି କାରଣରୁ—
Tannibandhana 1. On that account; therefore.
तन्निबन्धन ୨ । ତଜ୍ଜନ୍ୟ—2. For that reason.
उसवास्ते
ସଂ. ବ ( ତତ୍+ନିବନ୍ଧନ=କାରଣ, ହେତୁ; କର୍ମଧାରୟ )—
୧ । ସେହିକାରଣ—1. That cause.
୨ । ସେହି ବନ୍ଧନ—2. That bond.
ସଂ. ବଣ (ବହୁବ୍ରୀହି)—୧ । ସେହିକାରଣଯୁକ୍ତ—
1. Having that cause.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ୠ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଅ | ଉଅ | ଙ୍କ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଢ଼ | ନ୍ |

୨ । ସେହି ବନ୍ଧନଯୁକ୍ତ—2. Having that bond.

**ତନ୍ନିମନ୍ତେ**—ଦେ. କ୍ରି. ବଣ (ସଂ. ତନ୍ନିମିତ୍ତ )—ତନ୍ନିବନ୍ଧନ (ଦେଖ)
Tannimante Tannibandhana (See)
तज्जन्ये उसबाजें

**ତନ୍ନିମିତ୍ତ**—ସଂ. କ୍ରି. ବଣ (ତତ୍+ନିମିତ୍ତ; କର୍ମଧା)—ତନ୍ନିବନ୍ଧନ (ଦେଖ)
Tannimitta Tannibandhana (See).

**ତନ୍ନିମିତ୍ତେ**—ଦେ. କ୍ରି. ବଣ. (ସଂ ତନ୍ନିମିତ୍ତ)—ତନ୍ନିବନ୍ଧନ (ଦେଖ)
Tannimitte Tannibandhana ( See )

**ତନ୍ୱଙ୍ଗୀ**—ସଂ. ବଣ. ସ୍ତ୍ରୀ ( ବହୁବ୍ରୀହି; ତନୁ=କୃଶ+ଅଙ୍ଗ=ଦେହ+
Tanwangi ସ୍ତ୍ରୀ. ଈ )—କ୍ଷୀଣାଙ୍ଗୀ, କୃଶାଙ୍ଗୀ—
Of a slender and delicate build (female).
ବି. ସ୍ତ୍ରୀ—୧ । କୃଶାଙ୍ଗୀ ସ୍ତ୍ରୀ—
1 A woman of delicate proportions
୨ । ଶାଳପର୍ଣ୍ଣୀ ବୃକ୍ଷ—
2. A kind of medicinal plant.
[ ଦ୍ର—ଏହା ଔଷଧରେ ବ୍ୟବହୃତ ହୁଏ । ]

**ତନ୍ୱୀ**—ସଂ ବଣ. ସ୍ତ୍ରୀ. ( ତନୁ=କୃଶ+ସ୍ତ୍ରୀ ଈ )—ତନ୍ୱଙ୍ଗୀ (ଦେଖ)
Tanwi Tanwangi ( See )
ସଂ. ବଣ. (ତନୁ ଶବ୍ଦର ସ୍ତ୍ରୀ ଲିଙ୍ଗ)—କ୍ଷୀଣା; କୃଶା—Weak.
ସଂ. ବି—ସଂସ୍କୃତ ବୃତ୍ତିବିଶେଷ—
Name of a Sanskrit metre.
[ ଦ୍ର—ଏଥିରେ ୨୪ ଅକ୍ଷର; ପଞ୍ଚମ, ଦ୍ୱାଦଶ ଓ ଚତୁର୍ବିଂଶ ଅକ୍ଷର ଉପରେ ଯତି ପଡ଼େ । ଦ୍ର. ଶବ୍ଦସାଗର ]

**ତନ୍ମଧ୍ୟ**—ସଂ ବି. ( ତତ୍+ମଧ୍ୟ; ୬ଷ୍ଠୀ ତତ୍ )—ତାହାର ମଧ୍ୟ—
Tanmadhya The midst of that.
[ ଦ୍ର—ଏହିପରି ସପ୍ତମୀରେ ତନ୍ମଧ୍ୟେ, ତନ୍ମଧ୍ୟସ୍ଥ, ତନ୍ମଧ୍ୟସ୍ଥିତ ଶବ୍ଦମାନ ନିଷ୍ପନ୍ନ ହୁଏ । ]

**ତନ୍ମଧ୍ୟରୁ**—ଦେ. ଅ·—୧ । ତାହାର ମଧ୍ୟସ୍ଥଳରୁ—
Tanmadhyaru 1. From its interior.
(ତନ୍ମଧ୍ୟୁଁ—ଅନ୍ୟରୂପ) ୨ । ସେମାନଙ୍କ ମଧ୍ୟରୁ—2. Out of them

**ତନ୍ମଧ୍ୟରେ**—ଦେ. ଅ—୧ । ତାହାର ଅନ୍ତର୍ଦ୍ଦେଶରେ—
Tanmadhyare 1. Inside that.
तन्मध्ये ୨ । ସେହି ସମୟ ମଧ୍ୟରେ—
उसके बीचमे 2. Within that time.
(ତନ୍ମଧ୍ୟେ—ଅନ୍ୟରୂପ) ୩ । ସେମାନଙ୍କ ମଧ୍ୟରେ—
3. Amongst them

**ତନ୍ମନ**—ଦେ. ବଣ. ( ସଂ. ତନ୍ମନସ୍ )—
Tanmana ଏକ ବିଷୟରେ ନିବଦ୍ଧଚିତ୍ତ; ଯେଉଁ ବ୍ୟକ୍ତି କୌଣସି ବିଷୟରେ ମନକୁ ନିଜେ ଅର୍ପଣ କରିଥାଏ; ଅନନ୍ୟମନା, ତନ୍ମୟ—Having concentrated one's attention to one particular object; in an absorbed state of mind; having that alone in mind.

**ତନ୍ମନା**—ସଂ. ବଣ. (ତତ୍+ମନସ୍, ବହୁବ୍ରୀହି; ତାହାଁରେ ମନ ଯାହାର)—
Tanmanā ତନ୍ମନ ( ଦେଖ )—Tanmana ( See )

**ତନ୍ମୟ**—ସଂ. ବଣ. ପୁଂ ( ତତ୍+ସ୍ୱରୂପାର୍ଥେ, ମୟ )—
Tanmaya ୧ । ତନ୍ନିମଗ୍ନ; ତଦାତ୍ମ; ତନ୍ମନା—
(ତନ୍ମୟୀ—ସ୍ତ୍ରୀ) 1. Wholly absorbed in that.
(ତନ୍ମୟତା—ବି) ୨ । ତନ୍ମୟ—2. Become one with that.

**ତନ୍ମୟ ଚିତ୍ତ**—ସଂ. ବଣ. ( ତନ୍ମୟ+ଚିତ୍ତ; ବହୁବ୍ରୀହି )—
Tanmaya chitta ତାହିଁରେ ନିବଦ୍ଧମନା—With the mind wholly absorbed in that; with the heart set on that.

**ତନ୍ମୟାସକ୍ତି**—ସଂ. ବି—ଭଗବାନଙ୍କଠାରେ ତନ୍ମୟ ହେବା—
Tanmayāsakti Being absorbed in God.

**ତନ୍ମାତ୍ର**—ସଂ. ବି. ( ତତ୍+ମାତ୍ରା=ପଞ୍ଚଭୂତାନ୍ତର୍ଗତ ଭୂତ )—
Tanmātra ୧ । ସାଂଖ୍ୟ ଦର୍ଶନର ମତରେ ପଞ୍ଚଭୂତର ଆଦ୍ୟ ଅମିଶ୍ର ସୂକ୍ଷ୍ମ ରୂପ—1. The suitable rudiments of the five elements of matter according to Sāmkhya philosophy
[ ଦ୍ର—ପଞ୍ଚଭୂତର ( କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମର ) ଗନ୍ଧ, ରସ, ରୂପ, ସ୍ପର୍ଶ ଓ ଶବ୍ଦ ତନ୍ମାତ୍ର ଅଟେ । ଏହି ପାଞ୍ଚ ଗୁଣକୁ ପଞ୍ଚ ତନ୍ମାତ୍ର ବୋଲାଯାଏ । ସାଂଖ୍ୟ ଦର୍ଶନ ମତରେ ଶବ୍ଦ ତନ୍ମାତ୍ରରୁ ବ୍ୟୋମର ଉତ୍ପତ୍ତି (ଅର୍ଥାତ୍ ଆକାଶର ଗୁଣ ଶବ୍ଦ ); ଶବ୍ଦ ଓ ସ୍ପର୍ଶରୁ ମରୁତ୍‌ର ଉତ୍ପତ୍ତି; ଶବ୍ଦ, ସ୍ପର୍ଶ ଓ ରୂପରୁ ତେଜର ଉତ୍ପତ୍ତି; ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧରୁ କ୍ଷିତିର ଉତ୍ପତ୍ତି, ଅର୍ଥାତ୍ ଉପରୋକ୍ତ ମହାଭୂତମାନଙ୍କରେ ତତ୍ତତ୍ ଗୁଣମାନ ଅଛି ।]
୨ । ସେହି ମାତ୍ର, ତେତିକି ମାତ୍ର—2. That much.
ସଂ. ବଣ—୧ । ସେହି ମାତ୍ରକ; ସେହି ପରିମିତ—
1. That much of.
ସଂ. କ୍ରି. ବଣ. (ତତ୍=ସେହି+ମାତ୍ର=କେବଳ; ନିତ୍ୟସମାସ)—
କେବଳ ତାହାହିଁ; ତେତିକି ମାତ୍ର; ସେତିକିହିଁ—
That much; only that.

**ତନ୍ୟତୁ**—ସଂ. ବି. ( ତନ୍ ଧାତୁ+କର୍ତ୍ତୃ. ଯତୁ )—
Tanyatu ୧ । ବାୟୁ; ପବନ ( ଦ୍ର. ଶବ୍ଦସାଗର )—
1. Wind; air.
୨ । ରାତ୍ରି ( ଦ୍ର. ଶବ୍ଦସାଗର )—2. Night.
୩ । ଗର୍ଜ୍ଜନ ( ଦ୍ର. ଶବ୍ଦସାଗର )—2. Roaring.
୪ । ଏକ ପ୍ରକାର ପ୍ରାଚୀନ ବାଜା ( ଦ୍ର. ଶବ୍ଦସାଗର )—
4 A kind of ancient musical instrument.

**ତପ୍** (ଧାତୁ)—ସଂ—୧ । ଦଗ୍ଧ କରିବା, ଉତ୍ତପ୍ତ କରିବା; ତତେଇବା—
Tap (root) 1. To heat; to burn; to warm.
୨ । ତପସ୍ୟା କରିବା—
2. To practise penance or austerities.

ସାଧାରଣ ଲୋକେ ଅନେକ ସ୍ଥଳରେ ହ୍ରସ୍ୱ ଓ ଦୀର୍ଘ ଉଚ୍ଚାରଣ ଅକ୍ଷର ଓ ମାତ୍ରା ଏବଂ ଉଚ୍ଚାରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କ୍ୱଥ' ନ ମିଳିଲେ 'କଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଗୀ' ନ ପାଇଲେ 'ଅଙ୍ଗି' ଦେଖିବେ, 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

**ତପ୍ଲା**—ପ୍ରାଦେ. (ସମ୍ବଲପୁର) ବିଣ (ସଂ. ତପ୍ତ)—ତପ୍ତ; ତାତିଲା—
Tap-lā Hot.

**ତପ**—ସଂ. ବି. ( ତପ୍ ଧାତୁ+କର୍ତ୍ତୃ. ଅ )—
Tapa ୧ । ତପନ; ସୂର୍ଯ୍ୟ—1. The sun
୨ । ଆତପ; ରୌଦ୍ର—2. Sunshine
୩ । ଗ୍ରୀଷ୍ମକାଳ—3. The summer; the hot season.
ବଶେଷତ ତପ ପ୍ରଭା ହୋଇଲା, ବନଗତ ଜୀବନରେ ରହିଲା ।
ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।
୫ । ଉତ୍ତାପ; ଗରମି—5 Heat; warmth.
ବିଣ—୧ । ତାପଦାୟକ—1. Radiating heat.
୨ । ଗରମ—2 Hot.
ଦେ. ବି.—ତପଃ (ଦେଖ)—Tapaḥ (See)

**ତଃ ପଃ**—ଦେ. ଅ ସାଙ୍କେତିକ (ସଂ. ତତ୍ ପଶ୍ଚିମ ଶବ୍ଦର ସାଙ୍କେତିକ)—
Ta: pa: ଭର୍ତ୍ତିଖାତାରେ ବ୍ୟବହୃତ କୌଣସି ଜମିର ପଶ୍ଚିମରେ ଥିବା ଜମିକୁ ନିର୍ଦ୍ଦେଶ କରିବାର ସାଙ୍କେତିକ ଚିହ୍ନ—
An abbreviation appended to the plot-number in a field-book to denote the position of the plot lying to the west of the previous plot of land.

**ତପଃ**—ସଂ. ବି. (ସଂ. ତପସ୍ ଶବ୍ଦ; ତପ୍ ଧାତୁ=ତପସ୍ୟା କରିବା+
Tapaḥ କରଣ ଅସ୍)—୧ । ତପସ୍ୟା; ଧର୍ମାର୍ଥବ୍ରତ; ମୁନିବ୍ରତ—
1. Religious austerities; penance.
[ଦ୍ର—ଚିତ୍ତଶୁଦ୍ଧି ଓ ବିଷୟ ନିବୃତ୍ତି ପାଇଁ ଶରୀରକୁ କଷ୍ଟ ଦେଇ ଯେଉଁ ଯମ, ନିୟମାଦି ପାଳନ କରାଯାଏ ତାକୁ ତପଃ ବୋଲାଯାଏ ।]
୨ । ବ୍ରାହ୍ମଣାଦିଙ୍କ ଧର୍ମ ବା କର୍ତ୍ତବ୍ୟ —2. Religious duty.
୩ । ଦେବତା ଆଦିଙ୍କ ଧ୍ୟାନ—3. Meditation.
୪ । ଅଦୃଷ୍ଟ—4. Fate; destiny.
୫ । (+ଭାବ. ଅସ୍) ଆଚରଣ—
5. Practice; conduct.
୬ । ଆଲୋଚନା—6. Discussion; dealing with a subject or matter
୭ । ସପ୍ତଭୁବନ ମଧ୍ୟରୁ ଗୋଟିଏ; ତପୋଲୋକ—
7. One of the seven worlds mentioned in the Hindu scriptures.
୮ । ଶୀତଋତୁ—8. The winter.
୯ । ମାଘମାସ—9. The month of Māgha
୧୦ । ଶରୀର ବା ଇନ୍ଦ୍ରିୟଗଣର ବଶୀକରଣ—
10. Self-control and self-denial.
୧୧ । ଅଗ୍ନି (ଦ୍ର. ଶବ୍ଦସାଗର)—11. Fire.
୧୨ । ଫଳିତ୍ ଜ୍ୟୋତିଷରେ ଲଗ୍ନର ୯ମ ସ୍ଥାନ—
12. The ninth place from one's Lagna in astrology.

[ଦ୍ର—ପୁରାଣ ମତରେ ସତ୍ୟଯୁଗରେ ତପଃ, ତ୍ରେତାରେ ଜ୍ଞାନ, ଦ୍ୱାପରରେ ଯଜ୍ଞ ଓ କଳିରେ ଦାନ ବା ନାମକୀର୍ତ୍ତନ, ମନୁଷ୍ୟର ମୋକ୍ଷ ବା ପାରଲୌକିକ ମୁକ୍ତି ନିମିତ୍ତ ପ୍ରଶସ୍ତ ।

ଭଗବଦ୍‌ଗୀତାରେ ତପଃ ନିମ୍ନଲିଖିତରୂପେ ବିଭକ୍ତ ହୋଇଅଛି— ତପଃ ତ୍ରିବିଧ; ଶାରୀରିକ, ଯଥା—ଶୌଚ, ବ୍ରତାନୁଷ୍ଠାନ ଓ ଉପବାସ; ଦେବତା ଓ ପୂଜ୍ୟବ୍ୟକ୍ତିଙ୍କ ପୂଜା; ସରଳତା; ବ୍ରହ୍ମଚର୍ଯ୍ୟ ଏବଂ ଅହିଂସା । ମାନସିକ ଯଥା—ଧ୍ୟାନ; ମନର ପ୍ରସନ୍ନତା ମୌନ, ଆତ୍ମନିଗ୍ରହ ଓ ଭାବଶୁଦ୍ଧି । ବାଚନିକ ଯଥା—ବେଦ ଓ ସ୍ତୋତ୍ରପାଠ; ପ୍ରିୟହିତ ସତ୍ୟ ଓ ଅକ୍ଳେଶ ଦାୟକ ବାକ୍ୟ ଉଚ୍ଚାରଣ ଓ ବେଦାଧ୍ୟୟନ । ଗୁଣତ୍ରୟ ଭେଦରେ ତପଃ ତ୍ରିବିଧ ଯଥା—ସାତ୍ତ୍ୱିକ ତପଃ ଯଥା— ଫଳାକାଂକ୍ଷା ରହିତ ତପସ୍ୟା; ରାଜସିକ ତପଃ=ଯଶଃ ମାନାଦି ନିମିତ୍ତ ଦମ୍ଭପୂର୍ବକ ଅନୁଷ୍ଠିତ ତପସ୍ୟା । ତାମସିକ ତପଃ=ପରର ପ୍ରାପ୍ତି ଅନିଷ୍ଟ ଘଟାଇବା ପାଇଁ ଆତ୍ମାକୁ ପୀଡ଼ା ଦେଇ ଯେଉଁ ତପସ୍ୟା ଅନୁଷ୍ଠିତ ହୁଏ । ଅଗ୍ନି ଯେପରି ପାର୍ଥିବ ବସ୍ତୁମାନଙ୍କୁ ଦଗ୍ଧ କରେ ଶାସ୍ତ୍ର ମତରେ ତପସ୍ୟା ସେହିପରି ମନୁଷ୍ୟର ପାପାଦିକୁ ଦଗ୍ଧ କରେ ବୋଲି ଏହାର ନାମ 'ତପଃ' ।

ପ୍ରାଚୀନକାଳରେ ହିନ୍ଦୁ, ବୌଦ୍ଧ, ଇହୁଦୀ ଓ ଖ୍ରୀଷ୍ଟାନ୍‌ମାନଙ୍କ ମଧ୍ୟରେ ମଧ୍ୟ ବହୁ ଲୋକ ତପସ୍ୟା କରୁଥିଲେ । ତପୋନିରତ ଲୋକେ ଆପଣାର ଇନ୍ଦ୍ରିୟମାନଙ୍କୁ ବଶ ରଖିବା ଓ ପ୍ରଲୋଭନରୁ ଦୂରରେ ରହିବା ପାଇଁ ସଂସାର ତ୍ୟାଗ କରି ଜଙ୍ଗଲରେ କୁଡ଼ିଆ ତିଆରି କରି ରହୁଥିଲେ ଓ ବନ୍ୟ ଫଳ ମୂଳ ଓ ବାହୁଙ୍ଗାଧାନର ତଣ୍ଡୁଳ ରାନ୍ଧି ଖାଉଥିଲେ, କେହି କେହି ମୌନବ୍ରତ ଅବଲମ୍ବନ କରୁଥିଲେ, ଶୀତୋଷ୍ଣ ସୁଖ ଦୁଃଖ ସହ୍ୟ କରୁଥିଲେ, ଉପବାସ କରୁଥିଲେ ଓ କୃଚ୍ଛ୍ରସାଧ ଓ କାୟକ୍ଳେଶକର ସାଧନମାନ କରୁଥିଲେ । ଏହି ସବୁ ଆଚରଣକୁ ତପଃ ବୋଲାଯାଏ । କେହି କେହି ଅଭୀଷ୍ଟସିଦ୍ଧି ଓ ବର ପାଇବାପାଇଁ ମଧ୍ୟ ତପଃ କରୁଥିଲେ । ପାତଞ୍ଜଳ ଦର୍ଶନରେ ତପଃକୁ କ୍ରିୟାଯୋଗ ବୋଲି ଯାଇଅଛି ।]

**ତପଃକର**—ସଂ. ବିଣ. ( ତପଃ+କୃ ଧାତୁ+କର୍ତ୍ତୃ. ଅ )—୧ । ଯେ
Tapaḥ kara ତପସ୍ୟା କରେ; ତପସ୍ୱୀ—1 Practising religious austerities or penance; religious mortification.
୨ । ତପସ୍ୟା ମତ୍ସ୍ୟ (ଦେଖ)—
2. Tapasyā matsya (See)

**ତପଃକୃଶ**—ସଂ. ବିଣ. ପୁଂ—(ମ. ପ. ଲୋ; ତପଃ+କୃଶ)—ତପସ୍ୟାଚରଣ କରିବା ଯୋଗୁଁ ଯାହାର ଶରୀର ଶୀର୍ଣ୍ଣ ହୋଇଅଛି—Emaciated on account of practising penance.
Tapaḥ kṛuśa
(ତପଃକୃଶା—ସ୍ତ୍ରୀ)
(ତପଃକୃଶତା, ତପଃକାର୍ଶ୍ୟ—ବି)

**ତପଃକ୍ଳେଶ**—ସଂ. ବି. (ତପଃ+କ୍ଳେଶ, ୬ଷ୍ଠୀ ତତ୍)—ତପସ୍ୟାଜନିତ ଦୁଃଖ ବା ଶାରୀରିକ କଷ୍ଟ—Physical suffering caused by engagement in or the practice of religious austerities.
Tapaḥ kleśa
(ତପଃକ୍ଳିଷ୍ଟ—ବିଣ)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ତ | ଡ଼ | ର୍‌, ର୍ହ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ, ଷ | ଙ୍କ | ତମ୍ଭ | ତ୍ଥ | ଘ |
| ୨ | ଋ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଥ | ଢ଼ | ନ୍ତ |

[ ଦ୍ର—ଏଥିରୁ ତପଃକ୍ଲେଶସହ, ତପଃକ୍ଲେଶସହିଷ୍ଣୁ, ଆଦି ଶବ୍ଦ ନିଷ୍ପନ୍ନ ହୁଏ। ସନ୍ଧିଦ୍ୱାରା ତପଃ ଶବ୍ଦଯୁକ୍ତ ହୋଇ ମଧ୍ୟ କେତେକ ଶବ୍ଦ ନିଷ୍ପନ୍ନ ହୁଏ। ଯଥା—ତପୋବଳ; ତପୋନୁଷ୍ଠାନ। ]

**ତପଃ ପରାୟଣ**—ସଂ ବିଣ. ପୁଂ. (ତପଃ+ପର+ଅୟନ; ବହୁବ୍ରୀହି)—
Tapaḥ parāyaṇa ତପସ୍ୟାରେ ରତ—Devoted to contemplation and austerities.
(ତପଃପରାୟଣା—ସ୍ତ୍ରୀ)
(ତପଃପରାୟଣତା—ବି)

**ତପଃ ପ୍ରଧାନ**—ସଂ. ବିଣ. ପୁଂ. (ତପଃ+ପ୍ରଧାନ; ବହୁବ୍ରୀହି)—
Tapaḥ pradhāna ଯାହାର ତପସ୍ୟାହିଁ ପ୍ରଧାନ କାର୍ଯ୍ୟ—Wholly devoted to austerities and spiritual contemplation.
(ତପଃପ୍ରଧାନା—ସ୍ତ୍ରୀ

**ତପଃ ପ୍ରଭାବ**—ସଂ. ବି. (ତପଃ+ପ୍ରଭାବ; ୬ଷ୍ଠୀ ତତ୍)—ତପୋବଳ;
Tapaḥ prabhāba ତପସ୍ୟା ଜନିତ ବଳ—The power derived from meditation; spiritual force.

**ତପଃ ଶକ୍ତି**—ସଂ. ବି. (ତପଃ+ଶକ୍ତି; ୬ଷ୍ଠୀ ତତ୍)—ତପଃ ପ୍ରଭାବ (ଦେଖ)
Tapaḥ śakti Tapaḥ prabhāba (See)

**ତପଃ ଶୀଳ**—ସଂ. ବିଣ. ପୁଂ. (ତପଃ+ଶୀଳ, ବହୁବ୍ରୀହି)—
Tapaḥ śīla ତପସ୍ୟାରେ ସର୍ବଦା ଅନୁରକ୍ତ—Given to the performance of religious austerities.
(ତପଃଶୀଳା—ସ୍ତ୍ରୀ)
(ତପଃଶୀଳତା—ବି)

**ତପଃ ସାଧନ**—ସଂ. ବି. (ତପଃ+ସାଧନ; ୬ଷ୍ଠୀ ତତ୍)—
Tapaḥ sādhana ୧। ତପସ୍ୟା କରିବା—1. Practice of religious austerities
୨। ତପସ୍ୟାର ଉପକରଣ—2 The materials required for the performance of penance or sacrifice ( e. g. ghee, fuel ).

**ତପଃ ସ୍ଥଳୀ**—ସଂ. ବି. (ତପଃ+ସ୍ଥଳୀ; ୭ମୀ ତତ୍)—୧। ତପସ୍ୟା
Tapaḥ sthalī କରିବାର ସ୍ଥାନ—1. The place where religious austerities are practised.
୨। କାଶୀଧାମ; ବାରାଣସୀ—2 Benares.
[ ଦ୍ର—ଏଠାରେ ମହାଦେବ ବହୁଯୁଗ ତପସ୍ୟା କରିଥିବାରୁ ଏହା ତପଃସ୍ଥଳୀ ବୋଲି ବିଖ୍ୟାତ। ]

**ତପଃସ୍ଥାନ**—ସଂ. ବି. ( ତପଃ+ସ୍ଥାନ; ୭ମୀ ତତ୍ )—
Tapaḥ sthāna ତପୋବନ; ତପସ୍ୟା କରିବାର ସ୍ଥାନ—The place for practicing austerities.

**ତପଚାରୀ**—ଦେ. ବିଣ. (ସଂ. ତପଶ୍ଚାରୀ)—ଯେ ତପସ୍ୟା କରେ—
Tapa chārī Engaged in practising austerities.
তপচারী ବି—ତପସ୍ୱୀ—A sage; an ascetic.
तपकरनेवाला

**ତପ ଜପ**—ଦେ. ବି (ଅନୁଚର ଶବ୍ଦ)—ତପ ଓ ଜପ; ତପସ୍ୟାଦି
Tapa japa ଧର୍ମକର୍ମ—Religious rites and penances.
জপতপ जपतप

**ତପତ୍**—ପ୍ରାଦେ. (ସମ୍ବଲପୁର) ବିଣ. (ସଂ. ତପ୍ତ)—ତପ୍ତ; ତାତିଲା—
Tapat Hot.

**ତପତ**—ଦେ. (ପଦ୍ୟ) ବିଣ.—(ସଂ. ତପ୍ତ)—ଉତ୍ତପ୍ତ; ଗରମ; ତାତିଲା;
**Tapata** ତତଲା—**Hot; warm.**

**ତପତି**—ଦେ. ବି. (ପଦ୍ୟ) (ସଂ. ତପ୍ତି)—୧। ତାତି; ଉତ୍ତାପ; ତପ୍ତି;
Tapati ତାପ—1. Heat; temperature.

ଶୀତ ତପତି ଜାଣିବାରେ
ଚର୍ମେ ବସିଲେ ଅଧିକାରେ। ଜଗନ୍ନାଥ. ଭାଗବତ।

୨। (ଲକ୍ଷଣାର୍ଥ) ଦୁଃଖ; କ୍ଲେଶ—
2. (figurative) Pain.

ନାଶଇ ବିରହ ତପତି
ମାରଶରକୁ ସେ ବାଳା ବଜ୍ରସୂପତି। ଉପେନ୍ଦ୍ରଭଞ୍ଜ. ପ୍ରେମସୁଧାନିଧି।

୩। (ଲକ୍ଷଣାର୍ଥ) ତତଲା ଭାତ—3. Hot boiled rice.

**ତପତୀ**—ସଂ. ବି. ସ୍ତ୍ରୀ. (ତପ+ଅପତ୍ୟାର୍ଥରେ ଅତ୍+ସ୍ତ୍ରୀ, ଈ)—
Tapatī ୧। ସୂର୍ଯ୍ୟକନ୍ୟା; ଛାୟାଗର୍ଭସମ୍ଭୂତା ସାବିତ୍ରୀଙ୍କ ଅନୁଜା; କୁରୁବଂଶୀୟ ସମ୍ବରଣ ରାଜାଙ୍କ ପତ୍ନୀ—1. Daughter of the Sun-god; name of a Rāṇī.
୨। ସୂର୍ଯ୍ୟପତ୍ନୀ ଛାୟାଦେବୀ—
2 One of the 2 wives of the Sun-god.
୩। ତାପ୍ତୀ ନଦୀ—3. Name of a river in South India; the Tāpti river.

କେବେ ବନ ଅନ୍ତେ ପାନ୍ଥେ ମିଳିଲେ ପ୍ରଦୋଷେ
ତପତୀ-ତଟିନୀ-ତୀରେ ଅଗ୍ନିଦେବ ସହ। ରାଧାନାଥ. ମହାଯାତ୍ରା।

**ତପନ**—ସଂ. ବି. (ତପ୍ ଧାତୁ+କର୍ତ୍ତୃ ଅନ)—୧। ସୂର୍ଯ୍ୟ—
Tapana 1. The sun.
୨। ସୂର୍ଯ୍ୟକାନ୍ତମଣି—2. The sun-stone; a gem.
୩। ନରକର ଭାଗବିଶେଷ—
3. A division of hell.
[ ଦ୍ର—ଏଠାରେ ଅଗ୍ନି ଜ୍ୱାଳାରେ ପାପୀମାନେ ଦଗ୍ଧ ହୁଅନ୍ତି। ]
୪। ଗ୍ରୀଷ୍ମକାଳ—4. The summer.
୫। ଅଗ୍ନିବିଶେଷ—5. Name of a sacrificial fire.
୬। ଅକନ୍ଦ ବୃକ୍ଷ; ଅର୍କଗଛ—
6. The swallowwort Calotropis Gigantea.
୭। ଖରା (ଦ୍ର. ଶବ୍ଦସାଗର)—7. Sun's rays.
୮। ନାୟକ ବିୟୋଗରେ ନାୟିକାପ୍ରଦର୍ଶିତ ହାବଭାବ—
8. The expressions of grief of a lady on the death of her lover.
୯। (+ଭାବ ଅନ)—ଉତ୍ତାପ; ତାପ—
9. Heat; warmth.

ସାଧାରଣ ଲୋକେ ଅପର ସ୍ଥାନରେ ଦ୍ୱିତୀୟ ଓ ତୃତୀୟ ଅକ୍ଷର ଓ ମାତ୍ରା ଏବଂ ୨ ତତ୍ତ୍ୱ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ରୁ ୨ ସ୍ଥାନର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଛନ୍ଦର ବିପରୀତ ୨ ବା ୧ ତତ୍ତ୍ୱର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କ୍ରୁଅ' ନ ମିଳିଲେ 'କଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗା' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବଡ' ନ ପାଇଲେ 'ଅଳ୍ପବହୁ' ଦେଖିବେ

୧୦ । ଦାହ; ଜ୍ୱଳନ—10. Burning

ସଂ. ବିଣ—୧ । (+କର୍ତ୍ତୃ. ଅନ) ଉତ୍ତାପଜନକ; ସନ୍ତାପକ—
1. Heating; warm; burning

**ତପନ କର**—ସଂ. ବି. (ତପନ+କର=କିରଣ; ୬ଷ୍ଠୀ ତତ୍)—
Tapana kara ସୂର୍ଯ୍ୟକିରଣ; ଖରା—The rays of the sun; sunshine.

**ତପନ କିରଣ**—ସଂ. ବି. (ତପନ+କିରଣ; ୬ଷ୍ଠୀ ତତ୍)—ଖରା—
Tapana kiraṇa The rays of the sun; sunshine.

**ତପନଚ୍ଛଦ**—ସଂ. ବି—ଅର୍କଗଛ—
Tapanachchhada The swallowwort; Calotropis Gigantia.

**ତପନଜ**—ସଂ. ବି. ପୁଂ. ( ତପନ+ଜନ୍ ଧାତୁ+କର୍ତ୍ତୃ. ଅ )—
Tapanaja ତପନ ତନୟ ( ଦେଖ )—
Tapana tanaya ( See )

**ତପନଜା**—ସଂ. ବି. ସ୍ତ୍ରୀ ( ତପନ+ଜନ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—
Tapanajā ତପନ ତନୟା ( ଦେଖ )
Tapana tanaya ( See )

ତପନଜା ଶବ୍ଦରୁ ତରୁଣୀ ଓ କେଉଁ କୁଳୁହଳରୁ ଅସିଲୁ ହେତୁ
କହ ବୋଲି ରହିଲ ରେ—କବିସୂର୍ଯ୍ୟ, କିଶୋରଚନ୍ଦ୍ର, ଚ-ଗୀତ ।

**ତପନ ତନୟ**—ସଂ. ବି. ପୁଂ. ( ତପନ+ତନୟ; ୬ଷ୍ଠୀ ତତ୍ )—
Tapana tanaya ୧ । ତପନାତ୍ମଜ—The son of the Sun-god.

୨ । ଯମ—2 Jama; the God of death.

୩ । ଶନିଗ୍ରହ—3. The planet Saturn.

୪ । କର୍ଣ୍ଣରାଜା—4. The king Karṇṇa

[ ଦ୍ର—କୁନ୍ତୀଙ୍କ କୁମାରୀ ଅବସ୍ଥାରେ ସୂର୍ଯ୍ୟଦେବଙ୍କ ଔରସରେ ଏ ରାଜା କୁନ୍ତୀଙ୍କ ଗର୍ଭରୁ କାନ ବାଟେ ଜନ୍ମିଥିଲେ ବୋଲି ପୁରାଣରେ ବର୍ଣ୍ଣିତ ଅଛି । ]

୫ । ସୁଗ୍ରୀବ—5. A monkey-king.

**ତପନ ତନୟା**—ସଂ. ବି. ସ୍ତ୍ରୀ ( ତପନ+ତନୟା; ୬ଷ୍ଠୀ ତତ୍ )—
Tapana tanayā ୧ । ତପନାତ୍ମଜା; ସୂର୍ଯ୍ୟଙ୍କ କନ୍ୟା—
1. The daughter of the Sun-god.

୨ । ଗୋଦାବରୀ ନଦୀ—
2. The river Godābarī in South India.

୩ । ଯମୁନା ନଦୀ—3. The river Jamunā passing through Muttra.

୪ । ଶମୀବୃକ୍ଷ; ବଇଜକାଠୀଯୁ ଏକପ୍ରକାର ବୃକ୍ଷ—
4. Name of a tree from which fuel for Vedic sacrifices ( homa ) is gathered; Acacia Suma

୫ । ବ୍ରଜାଙ୍ଗନା; ଗୋପୀ—
5. The women-devotees of Śrikṛushṇa.

**ତପନ ତାପ**—ସଂ. ବି. ( ତପନ+ତାପ; ୬ଷ୍ଠୀ ତତ୍ )—
Tapana tāpa ୧ । ସୂର୍ଯ୍ୟଙ୍କର ତେଜ—
1. The heat of the sun.

୨ । ଖରା—2. The rays of the sun.

[ ଦ୍ର—ଏହିପରି ୩ୟା ତତ୍ପୁରୁଷରେ ତପନତପ୍ତ, ତପନତାପିତ, ତପନୋତ୍ତପିତ ଆଦି ଶବ୍ଦ ନିଷ୍ପନ୍ନ ହୁଏ । ]

**ତପନ ମଣି**—ସଂ. ବି. ( ତପନ+ମଣି; ୬ଷ୍ଠୀ ତତ୍ )—ସୂର୍ଯ୍ୟକାନ୍ତମଣି—
Tapanamaṇi The sun-stone; aventurine feldrpan.

**ତପନାଂଶୁ**—ସଂ. ବି ( ୬ଷ୍ଠୀ ତତ୍; ତପନ+ଅଂଶୁ )—ସୂର୍ଯ୍ୟକିରଣ;
Tapanāmśu ଖରା—Sun's rays

**ତପନାତ୍ମଜ**—ସଂ. ବି ପୁଂ ( ତପନ+ଆତ୍ମଜ; ୬ଷ୍ଠୀ ତତ୍ )—
Tapanātmaja ତପନ ତନୟ ( ଦେଖ )
Tapana tanaya ( See )

**ତପନାତ୍ମଜା**—ସଂ. ବି. ସ୍ତ୍ରୀ ( ତପନ+ଆତ୍ମଜା; ୬ଷ୍ଠୀ ତତ୍ )—
Tapanātmajā ତପନ ତନୟା ( ଦେଖ )
Tapana tanayā ( See )

**ତପନୀ**—ସଂ. ବି. ସ୍ତ୍ରୀ ( ତପନ+ସ୍ତ୍ରୀ. ଈ )—ଗୋଦାବରୀ ନଦୀ—
Tapanī The river Godābarī in South India.

**ତପନୀୟ**—ସଂ. ବିଣ ( ତପ୍ ଧାତୁ+କର୍ମ. ଅନୀୟ )—ଉତ୍ତପ୍ତ କରିବାର
Tapanīya ଉପଯୁକ୍ତ—Fit to be heated; requred to be heated.

ବି—୧ । ସୁବର୍ଣ୍ଣ; ସୁନା; ( ଯାହାକୁ ଅଗ୍ନି ଦ୍ୱାରା ଉତ୍ତପ୍ତ କରି-ଯାଏ )—1. Gold.

୨ । କନକ ଧୁତୁରା; କଳା ଦୁଦୁରା—2. The violet variety of Datura Fastuosa flower and plant.

**ତପନୀୟକ**—ସଂ. ବି. ( ତପନୀୟ+ସ୍ୱାର୍ଥେ. କ )—ସ୍ୱର୍ଣ୍ଣ—
Tapanīyaka Gold.

**ତପନେଷ୍ଟ**—ସଂ. ବି. ( ତପନ+ଇଷ୍ଟ; ୬ଷ୍ଠୀ ତତ୍ )—ତମ୍ବା; ତାମ୍ର—
Tapaneshṭa Copper.

**ତପନୋପଳ**—ସଂ. ବି. ( ତପନ+ଉପଳ )—ସୂର୍ଯ୍ୟକାନ୍ତମଣି—
Tapanopaḷa The sun-stone.

**ତପବନ୍ତ**—ଦେ. ବିଣ.—(ସଂ. ତପୋବନ୍ତ)—ତପୋବନ୍ତ (ଦେଖ)
Tapabanta Tapobanta (See).

ତପବନ୍ତ ତପବନ୍ତ ଜନ ଏ ଋତୁରେ ଭୋଗ କରନ୍ତି ଦ୍ରବ୍ୟ ଅଶନ ହେ ।
ତପବନ୍ତ କବିନାଥ, କଉତୁକମାୟଣ ।

**ତପରଖ**—ଗ୍ରା. ବି. ( ଆ. ତଦାରୁକ୍ ଶବ୍ଦର ଅପଭ୍ରଂଶ ବ୍ୟବହାର; ଭୁଲ
Taparakha ସଂ. ପରୀକ୍ଷା)—୧ । ପରଖ; ତଦାରଖ—
ତଦାରଖ 1. Investigation; enquiry; examination.
ତଦାରୁକ ୨ । ତତ୍ତ୍ୱାବଧାରଣ; ତନଖି—2, Supervision

**ତପଲା**—ପ୍ରାଦେ. (ସମ୍ବଲପୁର) ବିଣ. (ସଂ. ତପ୍ତ)—ତତଲା; ତାତିଲା; ଉଷ୍ଣ
Tapalā Warm.
(ଯଥା—ତପଲା ଭାତ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଡ଼୍ୟ | ନ୍ଥ | ଣ୍ଠ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଥ | ଞ୍ଜ | ନ୍ଦ |

**ତପଶ୍ଚର**—ସଂ. ବି.(ତପସ୍+ଚର ଧାତୁ=ଆଚରଣ କରିବା+କର୍ତ୍ତୃ. ଅ)—
Tapaśchara ତପସ୍ୟା କରୁଥିବା ବ୍ୟକ୍ତି—A person
(ତପଶ୍ଚରୀ—ସ୍ତ୍ରୀ) engaged in religious austerities.
ବିଣ ପୁଂ.—ତପସ୍ୟାକାରୀ—
Practising austerities.

**ତପଶ୍ଚରଣ**—ସଂ. ବି ( ତପଃ+ଚରଣ; ୬ଷ୍ଠୀ ତତ୍ )—୧ । ତପସ୍ୟା
Tapaścharaṇa କରିବା; ତପଃ ସାଧନା; ତପସ୍ୟାର ଅନୁଷ୍ଠାନ—
ତପଶ୍ଚର୍ଯ୍ୟା } ଅନ୍ୟରୂପ 1. The practising of religious
ତପଶ୍ଚାରଣ } austerities; engagement in spiritual meditation.
୨ । ତପସ୍ୟା, ମୁନିବୃତ୍ତି—
2. Asceticism; religious mortification

**ତପଶ୍ଚାରୀ**—ସଂ. ବି ଓ ବିଣ. ପୁଂ ( ତପସ୍+ଚର୍ ଧାତୁ=ଆଚରଣ
Tapaśchārī କରିବା+କର୍ତ୍ତୃ. ଇନ୍; ୧ମା. ୧ବ)—
(ତପଶ୍ଚାରିଣୀ—ସ୍ତ୍ରୀ) ତପଶ୍ଚର (ଦେଖ)– Tapaśchara ( See )

**ତପସ**—ସଂ. ବି (ତପ୍ ଧାତୁ+ସଂଜ୍ଞାର୍ଥେ. ଅସ)—୧ । ଚନ୍ଦ୍ର—
Tapasa 1 The moon
୨ । ସୂର୍ଯ୍ୟ—2 The sun
୩ । ପକ୍ଷୀ—3. Bird.

**ତପସିଲ୍**—ବୈଦେ. ବି (ଅ. ତଫ୍‌ସୀଲ୍) (କଚଡ଼ିଆ)—୧ । ବିବରଣ—
Tapasil 1. Description.
তফসীল ୨ । ବିସ୍ତାରିତ ବିବରଣ—2. Detailed statement.
तफशील
୩ । ତାଲିକା; ଫେରସ୍ତ; ଫର୍ଦ୍ଦ—3. Schedule; list.
୪ । କୈଫିୟତ—4. Explanation; explanatory remarks.
୫ । ବିଶ୍ଳେଷଣ; ବିଭାଜନ; ବଣ୍ଟନ—5. Distribution.
୬ । ସୂଚୀ—6 Index.
୭ । ଟୀକା; ନୋଟ୍—7. Note.
ଦେ. ବିଣ—ଯାହାର ବିସ୍ତାରିତ ବିବରଣ ନିମ୍ନରେ ଦିଆଗଲା;
ତପସିଲ ଲିଖିତ—Of which the detail is appended or given below.

**ତପସିଲ୍ ଆସାମୀ**—ବୈଦେ. ବି (କଚଡ଼ିଆ) (ଫା. ତଫ୍‌ସୀଲ୍ ଆସାମୀ)—
Tapasil āsāmī ଯେଉଁ ଆସାମୀ ବା ବ୍ୟକ୍ତିମାନଙ୍କ ନାମ
তপসিল আসামী ତାଲିକାରେ ଲେଖାଗଲା—The persons
तफसील आशामी whose names are given in the appended list.

**ତପସିଲ୍ ଖୋଲିବା**—ବୈଦେ. କ୍ରି (ଅ. ତଫ୍‌ସୀଲ୍+ଅ. ଖୁଲ୍‌ନା)—
Tapasil kholibā କୌଣସି ବିଷୟର ବିସ୍ତାରିତ ବିବରଣ ଯୋଗ
তপসিল খুলা କରିବା ବା ପ୍ରକାଶ କରିବା—To add a
तफसील खुलना detailed statement or glossary to a matter.

**ତପସିଲ୍ ମୁତାବକ୍**—ବୈଦେ. ଅ ( କଚଡ଼ିଆ ) (ଫା. ତଫ୍‌ସୀଲ୍+
Tapasil mutābak ଫା. ମୁତାବକ୍)—ତାଲିକା ବା ବିସ୍ତୃତ
তপসিলমুতাবেক ବିବରଣ ଅନୁସାରେ—As per list or
तफसील मुताबिक schedule.

**ତପସିଲ ଲି(ଲେ)ଖିତ**—ଦେ. ବିଣ (କଚଡ଼ିଆ) (ଫା. ତଫ୍‌ସୀଲ+ସଂ.
Tapasil li(le)khita ଲିଖିତ)—ତାଲିକା ବା ବିସ୍ତୃତ ବିବରଣରେ
তপসিল লিখিত ଲେଖା ହୋଇଥିବା—Given or entered
तफसीलमें लिखाहुआ in the schedule or list.

**ତପସୀ ମାଛ**—ପ୍ରାଦେ (ବାଲେଶ୍ୱର) ବି (ସଂ. ତପସ୍ୱୀ ମତ୍ସ୍ୟ ଭୁଲ. ବି.
Tapasī māchha ତପସେ ମାଛ)—ଏକପ୍ରକାର ମାଛ; କୋଦସି
ମାଛ—A kind of fish; mango fish.

**ତପସ୍ତକ୍ଷ**—ସଂ. ବି ( ତପସ୍+ତକ୍ଷ ଧାତୁ=ଛୁଞ୍ଚିବା+କର୍ତ୍ତୃ. ଅ, ଯେ
Tapastaksha ଅନ୍ୟ ବ୍ୟକ୍ତିର ତପସ୍ୟାରେ ବିଘ୍ନ ଜନ୍ମାନ୍ତି)—
ଇନ୍ଦ୍ର—God Indra.

**ତପସ୍ତେଜଃ**—ସଂ. ବି (ମ ପ. ଲୋ. ତପଃ+ତେଜସ୍)-ତପାନଳ (ଦେଖ)
Tapastejaḥ Tapānaḷa ( See )

**ତପସ୍ପତି**—ସଂ. ବି (୬ଷ୍ଠୀ ତତ୍; ତପଃ+ପତି)—ବିଷ୍ଣୁ—
Tapaspati God Bishṇu.

**ତପସ୍ୱାନ**—ସଂ. ବି. ପୁଂ (ତପସ୍+ବତ୍; ୧ମା. ୧ବ)-ତପସ୍ୱୀ—
Tapaswān Sage; anchorite.
(ତପସ୍ୱତୀ—ସ୍ତ୍ରୀ) ସଂ. ବିଣ. ପୁଂ—ତପସ୍ୟା କରୁଥିବା; ତପୋରତ—
Engaged in the practice of austerities.

**ତପସ୍ୱିତା**—ସଂ. ବି ( ତପସ୍ୱିନ୍+ଭାବାର୍ଥେ. ତା )—ତପସ୍ୱୀ ହେବାର
Tapaswitā ଅବସ୍ଥା—The state of being an anchorite.

**ତପସ୍ୱିନୀ**—ସଂ. ବି. ସ୍ତ୍ରୀ ( ତପସ୍ୱିନ୍+ସ୍ତ୍ରୀ. ଈ, ତପସ୍ୱୀର ସ୍ତ୍ରୀଲିଙ୍ଗ )—
Tapaswinī ୧ । ତପସ୍ୟାକାରିଣୀ ସ୍ତ୍ରୀ, ତପଶ୍ଚାରିଣୀ—
1. A female ascetic.
୨ । ଜଟାମାଂସୀ ( ଦେଖ )—
2. Jaṭāmāmsī (See).
ଇନ୍ଦୁ ତପସ୍ୱିନୀ ସେନ ବହୁ ନେତ୍ର ଶୋଭ ହୋଇଥିଲା ଏଥିରେ ।
ଉପେନ୍ଦ୍ରଭଞ୍ଜ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୩ । ତପସ୍ୱୀର ସ୍ତ୍ରୀ; ଋଷିପତ୍ନୀ—3. Wife of a sage.
୪ । ପତିବ୍ରତା ବା ସାଧ୍ୱୀ ସ୍ତ୍ରୀ—
4. A chaste and virtuous woman.
୫ । କଟୁକା; କଟୁକା (ଦେଖ) ( ହି. ଶବ୍ଦସାଗର )—
5. Katukā (See)
୬ । ସ୍ୱାମୀଙ୍କ ମୃତ୍ୟୁ ପରେ ଯେଉଁ ସ୍ତ୍ରୀ ସହମୃତା ନ ହୋଇ
ସନ୍ତାନ ପାଳନ କରିବା ପାଇଁ ବଞ୍ଚି ରହେ ଓ କଷ୍ଟରେ
ଜୀବନ ଯାପନ କରେ—( ହି. ଶବ୍ଦସାଗର )—
6. A widow who does not immolate

ସାଧାରଣ ଲୋକେ ଅପର ପୃଷ୍ଠାରେ ବ୍ରତ୍ରା ୧ ଚନ୍ଦ୍ରିକ ଅକ୍ଷର ଓ ସାନା ଏବଂ ୨ ଚନ୍ଦ୍ରିକ ଅକ୍ଷରଙ୍କ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚନ୍ଦ୍ରିକ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉଲ୍ଲିଖିତ ବଦଳରେ ୨ ବା ୧ ଚନ୍ଦ୍ରିକ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କ୍ରୁଅ' ନ ମିଳିଲେ 'କ୍ରଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଗ୍ନି' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲବଡ଼' ଦେଖିବେ

herself on the funeral pyre of her husband but lives to tend her child and passes her days in austerities.

୭ । ବଡ଼ ଗୋରଖମୁଣ୍ଡୀ ( ଦେଖ ) (ହି ଶବ୍ଦସାଗର)—
7. A large species of Gorakhamuṇḍī (See).

**ତପସ୍ୱିପତ୍ର**— ସଂ. ବି— ଦମନକ ଗୁଳ୍ମ (ଦେଖ) (ହି. ଶବ୍ଦସାଗର)—
Tapaswi patra — Damanaka plant (See).

**ତପସ୍ୱୀ**—ସଂ. ବି. ପୁଂ ( ତପସ୍+ଅସ୍ତି ଅର୍ଥରେ, ବିନ୍ ୧ମା. ୧ବ)—
Tapaswī (ତପସ୍ୱିନୀ—ସ୍ତ୍ରୀ) ୧ । ସଂସାରବିରକ୍ତ ଅରଣ୍ୟାଶ୍ରମବାସୀ ବ୍ୟକ୍ତି—
1. A person who lives in a bower, being quite disgusted with the world.

୨ । ସଂଯତେନ୍ଦ୍ରିୟ ବ୍ୟକ୍ତି; ମୁନି; ତାପସ—
3 Ascetic; sage.

୩ । ତପସ୍ୟା ମତ୍ସ୍ୟ ( ଦେଖ )
Tapasyā matsya ( See ).

୪ । ଘୃତକୁମାରୀ ( ଦେଖ )—( ହି. ଶବ୍ଦସାଗର )—
4 Aloes.

ବିଣ—୧ । ଧାର୍ମିକ; ବ୍ରତଧାରୀ, ତପସ୍ୟାରତ, ଧର୍ମାର୍ଥ କ୍ଳେଶସହିଷ୍ଣୁ—1 Devoted to religious austerities or penances.

୨ । ଶାନ୍ତସ୍ୱଭାବ—2. Meek.

୩ । ନିର୍ଦ୍ଦୋଷ—3. Faultless.

୪ । ଦୀନ—4. Poor; afflicted; miserable

୫ । ଦୟାର ଯୋଗ୍ୟ—( ହି. ଶବ୍ଦସାଗର )—
5. Pitiable.

**ତପସ୍ୱୀ ମତ୍ସ୍ୟ**—ସଂ. ବି. କ୍ଳୀ— ତପସ୍ୟା ମତ୍ସ୍ୟ (ଦେଖ)
Tapaswī matsya — Tapasyā matsya (See)

**ତପସ୍ୟ**—ସଂ. ବିଣ (ତପସ୍+କରଣାର୍ଥେ. ଯ)—୧ । ତପସ୍ୟାରେ ରତ—
Tapasya 1 Given to austerities; engaged in penances.

୨ । ତପୋନିଷ୍ଠ—2. Steadily engaged in austerities.

ସଂ. ବି ( ତପସ+ଭାବେ. ଯ )—୧ । ତପସ୍ୟା—
1. Penance; religious austerities.

୨ । ଅର୍ଜୁନ—2. Arjuna.

[ ଦ୍ର—ଅର୍ଜୁନଙ୍କ ନାମ ଫାଲ୍‌ଗୁନ ଥିବାରୁ ଫାଲ୍‌ଗୁନାର୍ଥବାଚକ ଏହି ଶବ୍ଦ ଅର୍ଜୁନଙ୍କର ଏକ ନାମ । ]

୩ । କୁନ୍ଦ ଫୁଲ—3. A white feeble-smelling flower; Jasminum Pubescens.

୪ । ଫାଲ୍‌ଗୁନ ମାସ—
4. The month of Fālguna.

୫ । ହରିବଂଶ ଅନୁସାରେ ତାମସମନୁଙ୍କର ୧୦ ପୁତ୍ର ମଧ୍ୟରୁ ଏକ—5. One of the ten sons of Tāmasa Manu.

**ତପସ୍ୟା** —ସଂ. ବି. ସ୍ତ୍ରୀ ( ତପସ୍+ଭାବେ. ଯ+ସ୍ତ୍ରୀ. ଆ )—୧ । ଅଭୀଷ୍ଟ ଫଳ-ପ୍ରାପ୍ତି ନିମନ୍ତେ କଠୋର ବ୍ରତ ସାଧନା—
Tapasyā 1. Asceticism.

୨ । ବ୍ରତଚର୍ଯ୍ୟା—2. Devotional engagement

୩ । କଠୋର ବ୍ରତାଚରଣ—
3. Practice of severe austerities.

୪ । ତପସ୍ୟା ମତ୍ସ୍ୟ ( ଦେଖ )
4. Tapasyā matsya ( See ).

୫ । ଫାଲ୍‌ଗୁନ ମାସ ( ହି. ଶବ୍ଦସାଗର )—
5. The month of Fālguna.

**ତପସ୍ୟାଚରଣ**—ସଂ. ବି (ତପସ୍ୟା+ଆଚରଣ, ୬ଷ୍ଠୀ ବା ୭ମୀ ତତ୍)—
Tapasyācharaṇa ୧ । ଯୋଗ ସାଧନ—
1. Practising austerities.

୨ । ବ୍ରତାର୍ଥ କଠୋର ନିୟମ ପାଳନ—
2. Observance of hard and strict rules of penance.

**ତପସ୍ୟା ଜନିତ**—ସଂ. ବିଣ ( ତପସ୍ୟା+ଜନିତ, ୫ମୀ ତତ୍ )—
Tapasyā janita ତପସ୍ୟାରୁ ଜାତ—Produced by or arising from religious devotion.

**ତପସ୍ୟା ବିଘ୍ନ**—ସଂ. ବି ( ତପସ୍ୟା+ବିଘ୍ନ, ୬ଷ୍ଠୀ ତତ୍ )—
Tapasyā bighna ତପସ୍ୟା ଭଙ୍ଗ ( ଦେଖ )
Tapasyā bhaṅga ( See ).

**ତପସ୍ୟା ଭଙ୍ଗ**—ସଂ. ବି ( ତପସ୍ୟା+ଭଙ୍ଗ, ୬ଷ୍ଠୀ ତତ୍ )—କୌଣସି ବ୍ୟକ୍ତି କରୁଥିବା ତପସ୍ୟା ଅନୁଷ୍ଠାନରେ ଜାତ ହେବା ବାଧା—Interruption of one's religious austerities.
Tapasyā bhaṅga

**ତପସ୍ୟା ମତ୍ସ୍ୟ**—ସଂ. ବି—କଇ ମାଛ ପରି ୧୦।୧୨ ଅଙ୍ଗୁଳ ଲମ୍ବ, ଚେପଟା, ଈଷତ୍ ହଳଦିଆ, କଣ୍ଟକପଙ୍କ୍ତି ଲୁଣି ମାଛ ବିଶେଷ; ବୋଦସୀ ମାଛ ପରି ଏକପ୍ରକାର ମାଛ—
Tapasyā matsya
ତପସେ মাছ
तपसी मछली
The mangoe fish; a salt-water small fish; Polynemus Paradiscus.

[ ଦ୍ର—ଏହା ୧ ଖ୍ରୁଣ୍ଡ ପର୍ଯ୍ୟନ୍ତ ବଢ଼େ, ଅଣ୍ଡା ଦେବା ପାଇଁ ବୈଶାଖ ଓ ଜ୍ୟେଷ୍ଠ ମାସରେ ଏ ମାଛ ସମୁଦ୍ରରୁ ଗଙ୍ଗାକୁ ଉଠିଆସି ଗଙ୍ଗାରେ ମଧ୍ୟ ଧରାଯାଆନ୍ତି । ଏ ମାଛ ଖାଇବାକୁ ସୁସ୍ୱାଦୁ । ]

**ତପା**—ବୈଦେ. ବି (ଉର୍ଦ୍ଦୁ)—ଟପ୍ପା; ପ୍ରଗନା; ତାଲୁକ; ମୁସଲମାନ ରାଜତ୍ୱ ସମୟରେ କରାଯାଇଥିବା ଦେଶାଂଶର ବିଭାଗ—
Tapā A Pergunnah or Sub-division, prevalent during the Mohomedan rule in India.

| ୧ | ଇ | ଓ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଖ | ଜ | ଶ,ଷ | କ୍ଷ | ଇଯୃ | ତ୍ୟ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଢ଼ | ନ୍ଧ |

[ଦ୍ର—ଏହାର ସାଙ୍କେତିକ ଚିହ୍ନ । ତ । ଯଥା— । ତ । ଗୋପାଳପୁର=ତପେ ଗୋପାଳପୁର, ଅର୍ଥାତ୍ ଗୋପାଳପୁର ନାମକ ତପାର ଅନ୍ତର୍ଗତ ।]

ତପା(ପେ)ଇବା—ଦେ. କ୍ରି (ସଂ. ତପ୍ ଧାତୁ)—ତତାଇବା—To heat.
Tapā(pe)ibā
ଗବମକବା **तपाना** ତାପେ ତପାଇଲାର, ନାମ ତପାଇଲାର ।
ଅରୁନ୍ଦ୍‌ନ୍‌ଦବରୁ' ତନ୍ତ୍ରାମଣି ।

ତପାତ୍ୟୟ—ସଂ. ବି (ବହୁବ୍ରୀହି, ତପ=ଗ୍ରୀଷ୍ମକାଳ+ଅତ୍ୟୟ=ନାଶ)—ବର୍ଷାକାଳ—Rainy season.
Tapātyaya

ତପାନଳ—ସ ବି(ମ ପ.ଲେ. ତପ+ଅନଳ)—ତପସ୍ୟାଜନିତ ତେଜଃ—Splendour due to the practice of austerities.
Tapānaḷa

ତପା ମାସ—ଦେ. ବି—ମାଘ ମାସ—The month of Māgha.
Tapā māsa ତପାକାଳରେ ଯେଣ, ପ୍ରାପ୍ତ । ତପା ମାସରେ ବସାପ୍ତ ।
ଉପେନ୍ଦ୍ରଭଞ୍ଜ—କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

ତପାଳି—ଦେ. ବି—୧ । କଠୋର ତପସ୍ୟା—1. Hard penance.
Tapāḷi ୨ । ବହୁ ତପସ୍ୟା—2 A good deal of penance.
ତପାକରେ ଯେଣ, ପ୍ରାପ୍ତ । ତପାମାସରେ ବସାପ୍ତ ।
ଉପେନ୍ଦ୍ରଭଞ୍ଜ—କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

ତପିତ—ସଂ. ବିଣ—ଉଜ୍ଜ୍ୱଳ; ପରିଷ୍କୃତ; ମାର୍ଜିତ (ସୁବର୍ଣ୍ଣ)
Tapita Refined; burnished (gold) M. W.

ତପିବା—ଦେ. (ପଦ୍ୟ) କ୍ରି—ତପ ବା ତପସ୍ୟା କରିବା—
Tapibā To practise austerities.
तपां; **तपना**

ତପି ହେବା—ପ୍ରାଦେ. (ଗଡ଼ଜାତ) କ୍ରି—ନିଆଁ ପୋଇଁବା—
Tapi hebā To warm one's self before fire.

ତପୀ—ଦେ. ବି—ତପସ୍ୱୀ—Sage; ascetic.
Tapī
तपी **तपी**
ବିଣ.—ତପସ୍ୟାକାରୀ—Practising austerities

ତଃପୁଃ—ଦେ. ଅ. (ସାଙ୍କେତିକ ଚିହ୍ନ) (ସଂ. ତତ୍ ପୂର୍ବ)—ଉର୍ଦ୍ଧ୍ୱରେ
Ta:pu: କୌଣସି କ୍ଷେତ୍ର ପୂର୍ବବର୍ତ୍ତୀ କ୍ଷେତ୍ରର ପୂର୍ବଦିଗରେ ଥିଲେ ଏହି ସାଙ୍କେତିକ ଚିହ୍ନ ଲେଖାଯାଏ—An abbreviation noted against a plot in the field-book to denote its position as being to the east of the previous plot.

ତପୁ ଡିଆଁ କରିବା—ଦେ. କ୍ରି—କୌଣସି କାର୍ଯ୍ୟକୁ ଅଧାଅଣିଆ ଭାବରେ
Tapu diāñ karibā କରିବା; କୌଣସି କାର୍ଯ୍ୟ କରିବା ସମୟରେ ମଝିରୁ କେତେକ ଛାଡ଼ିଯାଇ ପରବର୍ତ୍ତୀ ଅଂଶ କରିଯିବା—To do some work (e g.writing,reading) by omitting portions in the middle; to do a thing by halves or hap-hazardly.

ତପୁ ସିଆଁ କରିବା—ଦେ. କ୍ରି—ତପୁ ଡିଆଁ କରିବା (ଦେଖ)—
Tapu siāñ karibā Tapu diāñ karibā (See).

ତପୁସ—ଦେ. ବି (ନାମ)—ଜଣେ ଉତ୍କଳବାସୀ ବଣିକଙ୍କ ନାମ, ଯେ କି
Tapusa ପରେ ବୁଦ୍ଧଦେବଙ୍କ ଶିଷ୍ୟ ହୋଇଥିଲେ (କୃପାସିନ୍ଧୁ-ଉତ୍କଳ ଇତିହାସ)—The name of a tradesman of Orissa, who during the later part of his life became a disciple of the Buddha.

ତପୁସୀ—ଗ୍ରା. ବି (ସଂ. ତପସ୍ୱୀ)—ଋଷି—Sage.
Tapusī ବୃଦ୍ଧ ବ୍ରାହ୍ମଣ ସେ ତପୁସୀ
ସମୁଦ୍ରେ ଯାଇଥିଲେ ବୁଡ଼ି । ଭୂପତି—ପ୍ରେମପଞ୍ଚାମୃତ ।

ତପୂ—ସଂ. ବି (ତପ୍ ଧାତୁ+କର୍ତ୍ତୃ. ଊ)—୧ । ଅଗ୍ନି—1. Fire.
Tapū ୨ । ସୂର୍ଯ୍ୟ—2. The sun.
୩ । ଶତ୍ରୁ—3. Enemy.
ଦେ. ଅ—ତପୁ (ଦେଖ)—Tapu (See)

ତପେ—ଦେ. ଅ. (କଚରଥ)—
Tape ତପା ମଧ୍ୟରେ; ପ୍ରଗଣାର ଅନ୍ତର୍ଗତ—In a Pergunnah or Subdivision.
(ଯଥା—ତପେ ଗୋପାଳପୁର । ଏଥିର ସାଙ୍କେତିକ । ତ ।)

ତପେଇବା—ପ୍ରାଦେ. (ଗଞ୍ଜାମ) କ୍ରି—ଛାଡ଼ି ଦେବା—
Tapeibā To let go.
ପ୍ରାଦେ. (ସଂ. ତପ ଧାତୁ) (କଳାହାଣ୍ଡି) କ୍ରି—ତତେଇବା—To heat; to warm.

ତ ପୋଇ—ଦେ. ବି. (ନାମ)—ତଅ ପୋଇ (ଦେଖ)
Ta-poi Ta-a poi (See)

ତପୋଧନ—ସଂ. ବି. ପୁଂ. (ବହୁବ୍ରୀହି, ତପଃ+ଧନ)—
Tapodhana ୧ । ଯୋଗୀ; ମୁନି; ଋଷି—
1. A sage; an ascetic.
୨ । (ରୂପକ କର୍ମଧାରୟ) ତପସ୍ୟା ରୂପ ଧନ—
2. Asceticism compared to riches.
୩ । ତପୋଲଭ୍ୟ ସ୍ୱର୍ଗାଦି—3. Heaven etc aimed at by an ascetic.
୪ । ମୁଣ୍ଡୀର ବୃକ୍ଷ (ପ୍ରକୃତିବାଦ) (ଦେଖ)—
4. The Mundira tree. (See)
୫ । ଦମନକ (ହି. ଶବ୍ଦସାଗର) (ଦେଖ)—
5. Damanaka plant. (See)
୬ । ଗୋରଖମୁଣ୍ଡୀ (ହି. ଶବ୍ଦସାଗର) (ଦେଖ)
6. Gorakhamundi (See)
ସଂ. ବି—ଅତ୍ୟନ୍ତ ଧାର୍ମିକ—Eminently pious.

ତପୋନିଧି—ସଂ. ବି. ପୁଂ. (ବହୁବ୍ରୀହି; ତପଃ+ନିଧି)—
Taponidhi ୧ । ତପସ୍ୱୀ; ମୁନି; ଋଷି—2. An ascetic.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୃଥ' ନ ମିଳିଲେ 'କ୍ରଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ' ଦେଖିବେ

୨ । ଅତ୍ୟନ୍ତ ଧାର୍ମିକ ବ୍ୟକ୍ତି—
2. An eminently pious person.

**ତପୋନିଷ୍ଠ**—ସଂ. ବିଣ. ପୁଂ. ( ବହୁବ୍ରୀହି; ତପଃ + ନିଷ୍ଠା )—
Taponishṭha ତପସ୍ୟାନିରତ; ତପଃପରାୟଣ—
(ତପୋନିଷ୍ଠା—ସ୍ତ୍ରୀ) Steadily engaged in practising austerities.

**ତପୋବଟ**—ସଂ ବି—ବ୍ରହ୍ମାବର୍ତ୍ତ ଦେଶ (ଦେଖ) (ବ୍ର. ଶବ୍ଦସାଗର)—
Tapobaṭa Brahmābartta ( See )

**ତପୋବନ**—ସଂ. ବି (୬ଷ୍ଠୀ ତତ୍; ତପଃ + ବନ)—୧ । ମୁନିଙ୍କ ଆଶ୍ରମ—
Tapobana 1. A hermit's grove; hermitage.
୨ । ତୀର୍ଥସ୍ଥାନ ବିଶେଷ—
2. Name of a place of pilgrimage.

[ ଦ୍ର—ଏହା ହରିଦ୍ୱାରର ଉତ୍ତରରେ ହୃଷୀକେଶ ଓ ଲକ୍ଷ୍ମଣଝୋଲାର ମଧ୍ୟବର୍ତ୍ତୀସ୍ଥାନରେ ଅବସ୍ଥିତ । କେହି କେହି କହନ୍ତି ଏହା ବୃନ୍ଦାବନ ଅନ୍ତର୍ଗତ ଏବଂ ଏଠାରେ ଗୋପୀମାନେ କାତ୍ୟାୟନୀ ବ୍ରତ ଅନୁଷ୍ଠାନ କରିଥିଲେ । ]

**ତପୋବନ୍ତ**—ଦେ. ବିଣ—ତପୋନିଷ୍ଠ (ଦେଖ)
Tapobanta Taponishṭha (See)
ତାହାଙ୍କ ମିତାମହ ଅଙ୍ଗିର ତପୋବନ୍ତ । କୃଷ୍ଣସିଂ. ମହାଭାରତ ଆଦି ।

**ତପୋବଳ**—ସଂ. ବି. (୬ଷ୍ଠୀ ତତ୍ ବା ମ. ପ. ଲୋ; ତପଃ + ବଳ)—
Tapobaḷa ତପସ୍ୟା ଜନିତ ପରାକ୍ରମ ବା କ୍ଷମତା—Power or potency acquired by the practice of austerities; potency of penances.

**ତପୋବିଘ୍ନ**—ସଂ. ବି. (୬ଷ୍ଠୀ ତତ୍; ତପଃ+ବିଘ୍ନ)—ତପସ୍ୟାରେ ଘଟିବା
Tapobighna ବାଧା—Interruption of religious
(ତପୋଭଙ୍ଗ—ଅନ୍ୟରୂପ) contemplation.

**ତପୋବୃଦ୍ଧ**—ସଂ. ବିଣ. ପୁଂ—ଯେ ତପସ୍ୟାଦ୍ୱାରା ଶ୍ରେଷ୍ଠତ୍ୱଲାଭ କରିଅଛନ୍ତି—
Tapobṛuddha One who has achieved excellence through austerities.

**ତପୋଭ୍ରଷ୍ଟ**—ସଂ. ବିଣ. ( ୫ମୀ ତତ୍; ତପଃ+ଭ୍ରଷ୍ଟ )—
Tapobhrashṭa ତପସ୍ୟାସାଧନରୁ ବିଚଳିତ; ଯୋଗଭ୍ରଷ୍ଟ—
(ତପୋଭ୍ରଷ୍ଟା—ସ୍ତ୍ରୀ) Straying or fallen from the observance of austerities

**ତପୋମୟ**—ସଂ. ବିଣ. ପୁଂ. (ତପଃ+ପ୍ରାଚୁର୍ଯ୍ୟାର୍ଥରେ ମୟ)—
Tapomaya ତପଃ ପ୍ରଧାନ—Abounding in religious
(ତପୋମୟୀ—ସ୍ତ୍ରୀ) austerities.
ସଂ. ବି. ପୁଂ—୧ । ପରମେଶ୍ୱର—1 God.
୨ । ମହାଦେବ—2. God Śiba.

**ତପୋମାର୍ଗ**—ସଂ. ବି (ରୂପକ କର୍ମଧା;ତପଃ+ମାର୍ଗ)—ତପସ୍ୟା ରୂପକ ପଥ;
Tapomārga ଯୋଗମାର୍ଗ—The way of penance.

**ତପୋଲୋକ**—ସଂ ବି. (ମ. ପ. ଲୋ. କର୍ମଧା; ତପଃ + ଲୋକ)—
Tapoloka ସପ୍ତଭୁବନ ମଧ୍ୟରୁ ତପଃ ନାମକ ଭୁବନ (ଜନଲୋକର ଊର୍ଦ୍ଧ୍ୱରେ ଅବସ୍ଥିତ)—The region above the 'Janaloka'

[ଦ୍ର—ପୁରାଣ ମତରେ ଏହା ପୃଥିବୀଠାରୁ କୋଟିଯୋଜନ ଊର୍ଦ୍ଧ୍ୱରେ ଅବସ୍ଥିତ ।
ବଙ୍ଗୀୟ ପଣ୍ଡିତ ଉମେଶଚନ୍ଦ୍ର ବିଦ୍ୟାରତ୍ନ ପ୍ରଣୀତ 'ମାନବେର ଜନ୍ମଭୂମି' ନାମକ ଗ୍ରନ୍ଥର ମତରେ ତପୋଲୋକ 'ହିରଣ୍ୟବର୍ଷ'ର ନାମାନ୍ତର ଏବଂ ଋଷିଆ ଦେଶସ୍ଥ ସାଇବେରିଆର ଅନ୍ତର୍ଗତ ଅଟେ; ଉକ୍ତ ଗ୍ରନ୍ଥ ମତରେ ମହର୍ଲୋକ, ତପୋଲୋକ ଓ ବ୍ରହ୍ମଲୋକ ମିଶି 'ତ୍ରିଦିବ', ଅର୍ଥାତ୍ ବର୍ତ୍ତମାନ ସମଗ୍ର ସାଇବେରିଆ ପ୍ରଦେଶ ।]

**ତପ୍ତ**—ସଂ. ବିଣ. (ତପ୍ ଧାତୁ+କର୍ମ. ତ)—୧ । ଉତ୍ତାପଯୁକ୍ତ; ତାତିଲା;
Tapta ଉଷ୍ଣ; ଗରମ—1. Hot; heated; warm;
(ତପ୍ତା—ସ୍ତ୍ରୀ) scorched.
୨ । ଦୁଃଖଦ୍ୱାରା ଦଗ୍ଧ; କ୍ଲେଶପ୍ରାପ୍ତ—
2 Afflicted with pain or sorrow.
୩ । ଅନୁତାପ ଦଗ୍ଧ; ଅନୁତପ୍ତ—3. Remorseful; penitent.
୪ । ଗଳିତ—4. Molten.
୫ । କୁପିତ; ରୁଷ୍ଟ—5. Angered; enraged.
୬ । ଖିନ୍ନ, ଦୁଃଖିତ; ଶୋକାର୍ତ୍ତ—6. Sorrowing; afflicted with grief; distressed.
୭ । ଅଗ୍ନିରେ ପୋଡ଼ି ଦିଆ ହୋଇଥିବା—
7. Burnt in fire.
୮ । ପୁଟପାକ ଶୋଧିତ—8. Burnt inside a ball of clay.
୯ । ଆଚରିତ—9. Followed; practised.

[ଦ୍ର—ଏହାର ପୂର୍ବରେ ଉତ୍ ଓ ସମ୍ ଉପସର୍ଗ ଲାଗି ଉତ୍ତପ୍ତ ସନ୍ତପ୍ତ ଆଦି ଶବ୍ଦ ଗଠିତ ହୁଏ ।]

**ତପ୍ତ କାଞ୍ଚନ**—ସଂ. ବି ( କର୍ମଧା; ତପ୍ତ+କାଞ୍ଚନ )—୧ । ଗଳିତ ସ୍ୱର୍ଣ୍ଣ;
Tapta kāñchana ତରଳ ସୁନା—1. Molten gold.
୨ । ଅଗ୍ନି ସଂଯୋଗରେ ବିଶୁଦ୍ଧ କାଞ୍ଚନ—
2. Refined gold.

**ତପ୍ତ କୁଣ୍ଡ**—ସଂ. ବି.—ଉଷ୍ଣପ୍ରସ୍ରବଣ; ଯେଉଁ ପ୍ରାକୃତିକ ଜଳଧାର ଗରମ
Tapta kuṇḍa ହୋଇ ଭୂଗର୍ଭରୁ ବାହାରୁ ଥାଏ—
Hotspring.

**ତପ୍ତ କୁମ୍ଭ**—ସଂ. ବି (କର୍ମଧା; ତପ୍ତ+କୁମ୍ଭ)—୧ । ଉତ୍ତପ୍ତ ମାଠିଆ—
Tapta kumbha 1. A heated jug.
୨ । ନରକ ବିଶେଷ; ହିନ୍ଦୁଶାସ୍ତ୍ରୋକ୍ତ ୮୪ ନରକ ମଧ୍ୟରୁ ଏକତମ—2. Name of a hell.

| ୧ | ଇ | ଜ୍ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଣ,ଷ | ଙ୍କ | ଇଯ୍ | ଉଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଉ | ରୁ | ଳୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ସ | ସ | ଙ୍ଗ୍ୟ | ଇଅ | ଡ଼ | ନ୍ |

**ତପ୍ତ କୃଚ୍ଛ୍ର**—ସଂ. ବି. ( କର୍ମଧା; ତପ୍ତ + କୃଚ୍ଛ୍ର )—ବ୍ରତ ବା ପ୍ରାୟଶ୍ଚିତ୍ତ ବିଶେଷ—
Tapta kṛuchchhra — A peculiar sort of religious penance or mortification.
[ ଦ୍ର—ଏ ବ୍ରତରେ ୩ଦିନ ଲେଖାଏଁ ଉଷ୍ଣଦୁଗ୍ଧ, ଘୃତ ଓ ଜଳପାନ କରି ରହିବାକୁ ହୁଏ । ମତାନ୍ତରରେ ଏ ବ୍ରତ ୧୨ ଦିନ କରାଯାଏ ଓ ଏ ବ୍ରତରେ ପ୍ରଥମ ୩ଦିନ ପ୍ରତିଦିନ ୩ପଲ ଗରମ ଦୁଧ, ୨ୟ ୩ଦିନ ନିତି ୧ପଲ ଗରମ ଘିଅ, ୩ୟ ୩ଦିନ ୬ପଲ ଲେଖାଏଁ ଗରମ ଜଳ ଓ ଶେଷ ୩ଦିନ ଗରମ ଦୁଧରୁ ଉଠୁଥିବା ବାଷ୍ପ ସେବନ କରିବାକୁ ହୁଏ । ଏ ବ୍ରତ କଲେ ବ୍ରାହ୍ମଣ ସର୍ବପ୍ରକାର ପାପରୁ ବିମୁକ୍ତ ହୁଏ—ହି. ଶବ୍ଦସାଗର । ]

**ତପ୍ତ ତୈଳଦ୍ରୋଣୀ**—ସଂ. ବି. ସ୍ତ୍ରୀ—୧ । ନରକବିଶେଷ—
Tapta taila droṇi — 1. One of the hells where boiling oil is poured over sinners or they are put into pots of hot oil.
୨ । ତାତିଲା ତେଲ ପଶିଥିବା ପାତ୍ର—
2. A pot full of hot oil.

**ତପ୍ତ ପାଷାଣ କୁଣ୍ଡ**—ସଂ. ବି.—ନରକବିଶେଷ—
Tapta pāshāṇa kuṇḍa — One of the 84 hells
(ତପ୍ତପାଷାଣ—ଅନ୍ୟରୂପ)

**ତପ୍ତପୋଷ**—ବୈଦେ. ବି—ତକ୍ତପୋଷ ( ଦେଖ )
Taptaposha — Taktaposha ( See )

**ତପ୍ତ ବାଲୁକ**—ସଂ. ବି.( ବହୁବ୍ରୀହି; ତପ୍ତ+ବାଲୁକା )—
Tapta bāluka — ନରକବିଶେଷ—One of the 84 hells filled with hot sand for the punishment of sinners.

**ତପ୍ତ ବୈତରଣୀ**—ସଂ. ବି. ସ୍ତ୍ରୀ—ହିନ୍ଦୁ ପୁରାଣ ମତରେ ମୃତ୍ୟୁ ପରେ ମନୁଷ୍ୟକୁ ପ୍ରେତ ରୂପେ ଯେଉଁ ତପ୍ତଜଳପୂର୍ଣ୍ଣ ନଦୀ ପାର ହେବାକୁ ପଡ଼େ—
Tapta baitaraṇi — A river seething with boiling water which the ghost of a deceased person is said to have to pass after death according to the Hindu Purāṇas.

**ତପ୍ତ ମାଷକ**—ସଂ. ବି. ( ବହୁବ୍ରୀହି; ତପ୍ତ + ମାଷକ = ବିରି )—
Tapta māshaka — ମାଣ୍ଡୁ ବା ପରୀକ୍ଷାବିଶେଷ—
(ଅପ୍ତମାଷ—ଅନ୍ୟରୂପ) A particular mode of trial to find out if an accused is guilty.
[ ଦ୍ର—ଏ ପରୀକ୍ଷାରେ ଅପରାଧୀ ବା ସନ୍ଦେହୀ ବ୍ୟକ୍ତିକୁ ହାତରେ ତାତିଲା ବିରି ଧରିବାକୁ ଦେଇ ସେ ଦୋଷୀ ବା ନିର୍ଦ୍ଦୋଷ ପ୍ରମାଣ କରାଯାଉଥିଲା । ମତାନ୍ତରରେ ନିଆଁ ଉପରେ କଡ଼େଇରେ ଫୁଟୁଥିବା ଘିଅ ବା ତେଲରେ ଅଙ୍ଗୁଠି ବୁଡ଼ାଇଲେ ଯେବେ ସେ ବ୍ୟକ୍ତିର ହାତରେ ଫୋଟକା ହେଉ ନ ଥିଲା ତେବେ ସେ ନିର୍ଦ୍ଦୋଷ ବୋଲି ପ୍ରମାଣିତ ହେଉଥିଲା । ହି. ଶବ୍ଦସାଗର । ]

**ତପ୍ତମୁଦ୍ରା**—ସଂ. ବି—ଦ୍ୱାରକାରେ ଭକ୍ତମାନଙ୍କ ବାହୁ ଆଦିରେ ଦିଆ ଯାଉଥିବା ଶଙ୍ଖ ଚକ୍ରାଦି ଚିହ୍ନ; ଉତ୍ତପ୍ତ ଧାତୁମୟ ମୋହରର ଛାପ—
Tapta mudrā — Marks of conch and discus made on the arms of devotees with heated metal seals.

**ତପ୍ତ ରୂପକ**—ସଂ. ବି. ( କର୍ମଧା; ତପ୍ତ + ରୂପକ = ରୌପ୍ୟ )—
Tapta rūpaka — ବିଶୁଦ୍ଧ ରୌପ୍ୟ; ରୂପା—Pure silver.

**ତପ୍ତ ଲୌହ**—ସଂ. ବି—୧ । ମାଣ୍ଡୁ ବା ପରୀକ୍ଷାବିଶେଷ—
Taptalauha — 1 A mode of trial
୨ । ପ୍ରାୟଶ୍ଚିତ୍ତବିଶେଷ—
2 A kind of penance or expiation.

**ତପ୍ତ ଶୂର୍ମ୍ମିକୁଣ୍ଡ**—ସ ବି. କ୍ଲୀ—ନରକବିଶେଷ—
Tapta sūrmmikuṇḍa — Name of a hell.
(ତପ୍ତ ଶୂର୍ମୀ—ଅନ୍ୟରୂପ)
[ ଦ୍ର—ଏଥିରେ ଅଗମ୍ୟା ସ୍ତ୍ରୀ ସମ୍ଭୋଗକାରୀ ପୁରୁଷ ବା ଅଗମ୍ୟ ପୁରୁଷ ସମ୍ଭୋଗକାରିଣୀ ସ୍ତ୍ରୀ ପାତକରେ ନାଲି ହୋଇଥିବା ଲୁହା ଖୁମ୍ବକୁ ଆଲିଙ୍ଗନ କରିବାକୁ ପଡ଼େ ବୋଲି ପୁରାଣରେ ଲେଖା ଅଛି । ]

**ତପ୍ତ ସୁରାକୁଣ୍ଡ**—ସ. ବି.—ନରକବିଶେଷ—
Tapta surā kuṇḍa — Name of a hell.

**ତପ୍ତା ବୈତରଣୀ**—ସ. ବି—ତପ୍ତ ବୈତରଣୀ ( ଦେଖ )
Taptā baitaraṇi — Tapta baitaraṇi ( See )
ଦେ. ବି—ଭୟଙ୍କର ଦାରିଦ୍ର୍ୟ; ମନୁଷ୍ୟର ଅତି ନିଃସ୍ୱ ଅବସ୍ଥା; ଅନାହାରରେ ରହିବା—A very destitute or starving condition of a person.

**ତଫଉତ୍** (ଇତ୍ୟାଦି)—ବୈଦେ. ବି ଓ ବିଣ—ତଫାତ୍ ଇତ୍ୟାଦି (ଦେଖ)
Taphaut (etc) — Taphāt etc. ( See )
(ତଫାଉତ୍, ତଫୋଉତ୍—ଅନ୍ୟରୂପ)

**ତଫସିଲ୍** (ଇତ୍ୟାଦି)—ବୈଦେ. ବି ଓ ବିଣ.( ଆ ) ତପସିଲ୍ ଇତ୍ୟାଦି(ଦେଖ)
Taphasil (etc) — Tapasil etc. ( See )

**ତଫାତ୍**—ବୈଦେ. ବି. ( ଆ. ତଫାବତ )—
Taphāt — ୧ । ବ୍ୟବଧାନ; ଅନ୍ତର—1. Interval.
ତଫୋତ୍, ତଫଉତ୍, ତଫାଉତ୍ } ଅନ୍ୟରୂପ — ୨ । ଦୂରତ୍ୱ—2. Distance.
୩ । ପ୍ରଭେଦ—3. Difference; disparity.
तफात् — ବିଣ—୧ । ଭିନ୍ନ—1. Separate.
तफावत — ୨ । ଦୂରସ୍ଥ—2. Distant.
୩ । ଅନ୍ତର ବା ବ୍ୟବଧାନରେ ଅବସ୍ଥିତ—
3. Situated at intervals.
ଅ—ଆଡ଼େଇ ଯାଅ; ଦୂର ହୁଅ—
( interjection ) Be off ! keep away ! stay at a distance !

ସାଧାରଣ ଲୋକେ ଅପର ଦୃଷ୍ଟାରେ ବ୍ୟବହୃତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷଗ୍ରନ୍ଥରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ବାଘ' ନ ମିଳିଲେ 'ବାଘ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୂ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ୍' ନ ପାଇଲେ 'ଅଲବତ୍' ଦେଖିବେ।

**ତଫାତ୍ କରିବା**—ଦେ. କ୍ରି—କୌଣସି ବ୍ୟକ୍ତି ବା ବସ୍ତୁକୁ ପୃଥକ୍ କରିବା ବା ଦୂରକୁ ସ୍ଥାନାନ୍ତରିତ କରିବା; ଅନ୍ତେଇବା—
Taphāt karibā
ତଫାତ୍ କବା
**तफावत करणा**
To separate a thing; to cause a thing or a person to move away to a distance; to remove a thing or a person to a distance.

**ତବ୍‌ଲା**—ପ୍ରାଦେ. ( ସମ୍ବଲପୁର ) ବି—୧ । ଫାରସା—
Tab-lā 1 Pole-axe.
୨ । ତାବଲା ( ଦେଖ )—2. Tābalā ( See )

**ତବ**—ସଂ. ସର୍ବନାମ ( ଯୁଷ୍ମଦ୍ ଶବ୍ଦର ୬ଷ୍ଠୀ ବିଭକ୍ତି ୧ ବଚନ )—
Taba ତୁମ୍ଭର; ତୋର—Your; thy; thine.
[ ଦ୍ର—ସ୍ନେହାସ୍ପଦ ବା ଭକ୍ତିଭାଜନ ବ୍ୟକ୍ତି ବା ଈଶ୍ୱରଙ୍କ ପ୍ରତି ପଦ୍ୟରେ 'ତୁମ୍ଭର' ଏହି ଶବ୍ଦ ପରିବର୍ତ୍ତିରେ 'ତବ' ବ୍ୟବହୃତ ହୁଏ । ଓଡ଼ିଆରେ ଏହାକୁ ଅବ୍ୟୟ ବୋଲି ଅନୁମିତ କରାଯାଏ । ]

**ତବକ**—ବୈଦେ. ବି. ( ଆ. ତବକହ୍ =ପତ୍ର )—ଉପହାରରୂପେ ପ୍ରଦତ୍ତ ମିଷ୍ଟାନ୍ନ ବା ତାମ୍ବୂଳ ଉପରେ ଆବରଣରୂପେ ବ୍ୟବହୃତ ସୁନା ବା ରୂପାର ଅତି ସୂକ୍ଷ୍ମ ପାତିଆ ବା ସ୍ତର—
Tabaka
Thin filaments of gold and silver used in overlaying presents of sweets or betels.
[ଦ୍ର—ଏହି ପାତିଆ ଏତେ ପତଳ ଯେ ଏହାକୁ ହାତରେ ମଳି ଦେଲେ ବା ଘାଣ୍ଟରେ ଘୋଷାଇଦେଲେ ଏହା ଚୂନା ହୋଇ ମିଳେଇଯାଏ । କୌଣସି ମିଠେଇ ବା ପାନଖିଲି ଉପରେ ଏହାକୁ ବସାଇ ଦେଲେ ତାହା ସୁନାରୂପାରେ ଛୁଆଣି ହେଲା ପରି ଦିଶେ, ଅଥଚ ଖାଇ ଦେଲେ ଉକ୍ତ ପାତିଆ ପାଟିକୁ ଜଣା ପଡ଼େ ନାହିଁ । ୧ ଭରି ଓଜନ ସୁନା ବା ରୂପାରେ ୧ ଇଞ୍ଚ ଲମ୍ବ ଓ ୫ ଇଞ୍ଚ ଚଉଡ଼ାର ୧୬୦ ପରସ୍ତ 'ତବକ' ପ୍ରସ୍ତୁତ ହୋଇପାରେ ଏବଂ ଏହି ୧୬୦ ଖଣ୍ଡ ଯାକ ଏକତ୍ର ଉପର୍ଯ୍ୟୁପରି ରଖି ଦେଲେ ସମୁଦାୟର ସ୍ଥୂଳତା ଏକ ଇଞ୍ଚର ⅟ ଭାଗ ସୁଦ୍ଧା ହୁଏ ନାହିଁ । ୧ ଭରି ସୁନା ବା ରୂପାକୁ ୧୬୦ ଖଣ୍ଡ କରି କାଟି ୧୬୦ ପରସ୍ତ ମୃଗ ବା ଛାଗ ଚମଡ଼ାର ମୁଣା ମଧ୍ୟରେ ପ୍ରତ୍ୟେକ ପରସ୍ତରେ ଖଣ୍ଡିଏ ଲେଖାଏଁ ପୂରାଇ ସେ ଚମଡ଼ା ଉପରେ ହାତୁଡ଼ିରେ ମାଡ଼ ଦେଲେ ଉକ୍ତ ସୁନାରୂପାର କ୍ଷୁଦ୍ର କ୍ଷୁଦ୍ର ଖଣ୍ଡମାନ ଗୋଟିଏ ଗୋଟିଏ 'ତବକ'ରେ ପରିଣତ ହୁଏ । ]
୨ । ଚଉଡ଼ା ଓ ପତଳା ପିତଳର ବା ଅନ୍ୟ ଧାତୁର ଥାଳ—
2. Big and thin plates of brass or other metal.
୩ । (ହିନ୍ଦୁ ସ୍ତ୍ରୀମାନଙ୍କୁ ଡାହାଣୀ ଲାଗିବା ଭଳି) ପକ୍ଷୀମାନଙ୍କ ବାଧାରୁ ରକ୍ଷା ପାଇବା ନିମନ୍ତେ ମୁସଲମାନ୍ ସ୍ତ୍ରୀଲୋକଙ୍କ ବୋଲିବା ନମାଜ୍—3. Portion of the Koran recited by Mahommedan females to save themselves from the attack of evil imps.
୪ । ଘୋଡ଼ାଙ୍କ ଦେହରେ ଚକା ଚକା ଫୁଲା ଦାଗ ହେବା ଏକ ପ୍ରକାର ରୋଗ—4. A kind of disease attacking horses.
ଦେ. ବି. (ତୁକ. ସଂ. ସ୍ତବକ)—୧ । ସ୍ତର; ପରସ୍ତ—
1. Layer; stratum.
୨ । ଥାକ—2. Shelf.

**ତବକା**—ବୈଦେ. ବି.—(ଆ. ତବକହ୍=ପାତିଆ)—ଚନାର ଖିସ୍ତିରେ ପୂର୍ଣ୍ଣ ଗୋଲାକାର ବୁନ୍ଦିଆ; ଟବକାବୁନ୍ଦିଆ—A kind of sweetmeat consisting of hollow globules of flour boiled in ghee and saturated with syrup.
Tabakā
(ତବକାବୁନ୍ଦିଆ—ଅନ୍ୟରୂପ)
ପ୍ରାଦେ. (ମେଦିନୀପୁର) ବି.—ତମାଖୁ (ଦେଖ)
Tamākhu (See)

**ତବତ**—ଦେ. ବିଣ. (ସଂ. ତପ୍ତ)—ଉଷ୍ଣ; ତାତିଲା; ତତଲା—
Tabata Hot; warm.
ଦେ. ବି.—ଗରମ ଭାତ; ତତଲା ଭାତ—
Fresh boiled rice.

**ତବତ ଖଣ୍ଡା**—ପ୍ରାଦେ. (ଗଡ଼ଜାତ) ବି.—ବାରବରଷିଆ (ଗଛ) (ଦେଖ)
Tabata khandā Bāra barashiā (tree) (See)

**ତବତା**—ଗ୍ରା. ବିଣ. (ସଂ. ତପ୍ତା)—ତାତିଲା; ଗରମ—
Tabatā Hot; warm.

**ତବତା ବଇତରଣୀ**—ଦେ. ବି.—ତପ୍ତା ବୈତରଣୀ (ଦେଖ)
Tabatā baitaranī Taptā baitaranī (See)

**ତବତି**—ଦେ. ବି. (ସଂ. ତପ୍ତତା)—୧ । ଉଷ୍ଣତା—
Tabati 1. Warmth.
୨ । ତାତି; ଗରମି—2. Heat.
୩ । ଜ୍ୱର ଆଦି ଯୋଗୁଁ ହେବା ଶରୀରର ଉତ୍ତାପ—
3. High temperature of the body during fever etc.

**ତବତିଆ**—ଦେ. ବିଣ. (ସଂ. ତପ୍ତ)—୧ । ଉତ୍ତାପଯୁକ୍ତ; ତାତିଲା—
Tabatiā 1. Hot; warm.
୨ । ଯେ ତବତ ଭାତ ଖାଏ—
2. One who eats boiled rice while still hot.
ଶୁଖିଲ ସେରକୁ ଚନ ତବତିଆ, ମଝିରେ ବସିଛି ଶିଶୁପତିଆ । ଢଗ ।
[ ଦ୍ର—ଏ ଦେଶରେ ମଧ୍ୟବିତ୍ତ ଓ ବଡ଼ଲୋକଙ୍କ ବ୍ୟତୀତ ଅନ୍ୟମାନେ ଦିନବେଳା ତବତ ଭାତ ନ ଖାଇ କେବଳ ତବତ ଓ ଅନ୍ୟ ବେଳା ପଖାଳ ଖାଆନ୍ତି ।]
୩ । ଯେ ତବତ ଭାତ ଖାଇବାକୁ ଉପସ୍ଥିତ ହୁଏ—
3. One ready to take fresh boiled rice.

| ୧ | ୯ | ଡ | ଋ,ଋ | ଌ | ଏ | ହସନ୍ତ ଖାର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଝ | କ୍ଷ | ଗ,ଚ | ଜ୍ଞ | ଲ୍ଯ | ଥ୍ଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ମ | ସ୍ମ | ର୍ଦ୍ଧ | ଲ୍ଥ | ଊ | ଟ |

**ତବଦ**—ଗ୍ରା (ପଦ୍ୟ) ବିଣ. (ସଂ. ସ୍ତବ୍ଧ)—ତବଦା (ଦେଖ)
Tabada Tabadā (See)

ଶୁଣିକର ସବୁଜନେ ତବଦ ହୋଇଲେ ।
ବିଶ୍ୱନାଥ. ବିଚିତ୍ରରାମାୟଣ ।

**ତବଦା**—ଦେ. ବିଣ. (ସଂ. ସ୍ତବ୍ଧ)—୧ । ସ୍ପନ୍ଦହୀନ; ନିଶ୍ଚଳ; ସ୍ତବ୍ଧ—
Tabadā 1. Motionless; calm.
୨ । ବନ୍ଦ କରାଯାଇ ଥିବା; ସ୍ତମ୍ଭିତ—2. Stopped.
୩ । (କର୍ଣ୍ଣ) ବଧିରୀକୃତ, ତାବଦା—
3. Deafened; stiffened.
[ଯଥା—ଘଡ଼ଘଡ଼ି ଶବ୍ଦରେ ମୋ କାନ ତବଦା ହୋଇଗଲା ।]
୪ । ମୂର୍ଚ୍ଛିତ—4. Swooned; fainted.
୫ । (ଶରୀର ବା ଅଙ୍ଗବିଶେଷ) ବୋଧଶକ୍ତି ରହିତ—
5. Turned rigid; deadened.
୬ । ଅବଶୀକୃତ—6. Paralysed.

**ତବଲ୍‌ଚୀ**—ବୈଦେ. ବି. (ଫା. ଭୁଲ. ଫା. ନାଗରଚୀ)—ଯେଉଁ ବ୍ୟକ୍ତି
Tabal-chī ତବଲା ବାଦ୍ୟ ବଜାଏ—A musician who plays on the Tabalā

**ତବଲକ୍**—ବୈଦେ. କ୍ରି. ବିଣ (ଅ.)—ହରଦମ୍; ସର୍ବଦା—
Tabalak Always; constantly.

**ତବଲା**—ବୈଦେ. ବି. (ଆ. ତବଲହ୍=ଢୋଲ; ଭୁଲ. ସଂ. ତଲମୃଦଙ୍ଗ)—
Tabalā ୧ । ଡାହାଣହାତରେ ବଜାଯିବା ପଖୋଜପର କିନ୍ତୁ
तबला ଏକମୁଖା ଆନଦ୍ଧ ବାଦ୍ୟବିଶେଷ—1. A one-
तबला faced drum played on with the fingers
(ତବଲ—ଅନ୍ୟରୂପ) of the right hand.

[ ଦ୍ର—ପଖୋଜ ଓ ମୃଦଙ୍ଗର ଦୁଇ ପିଠିରେ ହାତମାରି ବଜାଯାଏ; କିନ୍ତୁ ଏହା ନ କରି ଦୁଇ ହାତରେ ଦୁଇଟି ସ୍ୱତନ୍ତ୍ର ଆନଦ୍ଧ ବାଦ୍ୟଯନ୍ତ୍ର ବଜାଇଲେ ବାଁଆ ପାଖର ବାଦ୍ୟକୁ 'ଡୁଗୀ, ଡୁଗ୍ଗା, ବା ବାୟାଁ' ଏବଂ ଡାହାଣ ପାଖର ବାଦ୍ୟକୁ 'ତବଲ, ତବଲା, ବା ଡାହାଁ' ବୋଲାଯାଏ । 'ଡୁଗୀ ତବଲ' ଓ 'ବାୟାଁ ତବଲା' ଶବ୍ଦଦ୍ୱାରା ଏହି ଯନ୍ତ୍ରଦ୍ୱୟ ବୁଝାଯାଏ । ଡୁଗୀ ମାଟିରେ ବା ଧାତୁରେ ଏବଂ ତବଲା କାଠରେ ତିଆରି ହୋଇଥାଏ । ଏମାନଙ୍କର ଉପର ପାଖରେ ଚମଡ଼ା ଛାଉଣି ହୋଇଥାଏ ଏବଂ ତଳପାଖଟି ବନ୍ଦ ଥାଏ । ]

ତାବଲା; ତବା ୨ । (ଭୁଲ. ସଂ. ତପ୍ ଧାତୁ=ଉତ୍ତପ୍ତ ହେବା)—
तवा ତେଲଭଜଣୀ ବା ପଲମ ଅଲୁହିର ଚଟକା ପାତ୍ର; ତାଉଆ—
2. A shallow metal pot or frying pan; shallow cauldron.

**ତବଲି**—ବୈଦେ. ବି. (ଅ)—ସିତାରର ତୁମ୍ବୀର ମୁହଁରେ ବସାଯିବା
Tabali ପତଳା କାଠପଟା—The thin plate of wood
तबलि, तबली covering the bulb of a guitar.

**ତବିଅତ୍**—ବୈଦେ. ବି. (ଆ. ତବୀଅତ୍)—୧ । ଶାରୀରିକ ସ୍ୱାସ୍ଥ୍ୟ—
Tabiat 1. Health.
तबिअत ୨ । ଦିଲ୍; ମେଜାଜ୍; ଚିତ୍ତ—
तबीअत 2. Temperament; humour

**ତବିଅତ୍ ଖରାପ ହେବା**—ବୈଦେ. କ୍ରି.(ଆ. ତବୀଅତ୍+ଫା. ଖରାବ୍)—
Tabiat kharāpa hebā ସ୍ୱାସ୍ଥ୍ୟ ବିଗିଡ଼ିବା, ଅସୁସ୍ଥ ହେବା—
(ତବିଅତ୍ ବିଗିଡ଼ିବା—ଅନ୍ୟରୂପ) Not feeling well; feeling sick.

**ତବିଅତ୍ ଦାର୍**—ବୈଦେ. ବିଣ. (ଆ. ତବୀଅତ୍+ଫା. ପ୍ରତ୍ୟୟ ଦାର୍)—
Tabiat dār ୧ । ଭାବୁକ—Thinker.
(ତବିଅତ୍ ଦାରୀ—ବି) ୨ । ରସିକ; ରସଜ୍ଞ—2. A person of wit and humour.
୩ । ସମଝଦାର୍—3. A person of intelligence.

**ତବୀବ୍**—ବୈଦେ. ବି. (ଅ)—ବୈଦ୍ୟ; ଚିକିତ୍ସକ—
Tabib Physician.

**ତବ୍ୟ**—ସଂ.ପ୍ରତ୍ୟୟ—ଧାତୁର ଉତ୍ତର ଭବିଷ୍ୟତ୍‌କାଳରେ ଯୋଗ୍ୟ, ଉଚିତ
Tabya ବା କର୍ତ୍ତବ୍ୟ ଅର୍ଥରେ ହେବା ପ୍ରତ୍ୟୟ ବିଶେଷ (ଯଥା—ଶ୍ରୋତବ୍ୟ=ଶୁଣିବାର ଯୋଗ୍ୟ)—An affix with which future passive participles are formed from verbal roots like the English affix 'able' as in 'readable'; meaning, fit to be, deserving to be or requring to be

**ତମ୍** (ଧାତୁ)—ସଂ—୧ । ଖେଦ କରିବା—
Tam (root) 1. To grieve; to lament.
୨ । କ୍ଳାନ୍ତ ହେବା; ଅବସନ୍ନ ହେବା—
2. To be exhausted or fatigued.
୩ । ମ୍ଳାନ ହେବା—3. To fade; to pine.
୪ । ପବନ ରୁଦ୍ଧ ହେବା; ଅଣନିଶ୍ୱାସି ହେବା—
4. To be choked; to be suffocated (Apte).
୫ । କ୍ଳିଷ୍ଟ ହେବା; (ଶାରୀରିକ ବା ମାନସିକ) କ୍ଳେଶ ପାଇବା—5. To be distressed (in body or mind) (Apte).
୬ । ଇଚ୍ଛା କରିବା—6. To wish; to desire (Apte).
୭ । ବନ୍ଦହେବା—7. To stop (Apte).
୮ । ଅଚଳ ହେବା—
8. To become immoveable (Apte).

**ତମ**—ସଂ. ବି. (ସଂ. ତମ୍ ଧାତୁ=ଖେଦ କରିବା+କର୍ତ୍ତୃ. ଅ)—
Tama ୧ । ରାହୁ—1. The planet Rāhu; the Ascending Node (in Hindu astronomy).

ଧବଳ କରର କବଳ ତମ । ଭଞ୍ଜ. ପ୍ରେମସୁଧାନିଧି ।

[ ଦ୍ର—ସୂର୍ଯ୍ୟର କାନ୍ତି ତମୋମୟ ବା ଅନ୍ଧକାରମୟ ହୋଇଥିବାରୁ ତାହାର ଏପରି ନାମ ହୋଇଅଛି । ]

୨ । (+କରଣ. ଅ) ଅନ୍ଧକାର—
2. Darkness; gloom.

୩ । ଗୋଡ଼ର ଅଗ; ଅଗଗୋଡ଼—
3. The tip of the foot (Apte).

ଦେ. ବି. (ସଂ, ତମଃ)—କ୍ରୋଧ; ରାଗ—Anger.
ମୁନ ନ ପଡ଼ିଗଲେ ତମ । ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

ଦେ. ବିଣ—୧ । କ୍ରୋଧୀ—1. Angry.
୨ । ମତ୍ତ—2. Maddened
କାମେ ତମ ହୋଇ ହିଂସା କରନ୍ତି—ପ୍ରାଚୀ ପଇଡେଗୀତା ।

ଗ୍ରା. ସର୍ବ—ତୁମ୍ଭ, ତୁମ୍ଭର—Your.

ସଂ. ପ୍ରତ୍ୟୟ—୧ । ତିନି ବା ତତୋଽଧିକ ବ୍ୟକ୍ତି ବା ବସ୍ତୁ ମଧ୍ୟରେ ଆଧିକ୍ୟ ବା ନ୍ୟୂନତା ଅର୍ଥରେ ବିଶେଷଣ ଶବ୍ଦରୁ ଉତ୍ତର ହେବା ପ୍ରତ୍ୟୟବିଶେଷ—1. A superlative suffix added to adjectives like 'est', as in 'biggest and largest'.
( ଯଥା—ବୃହତ୍ତମ; କ୍ଷୁଦ୍ରତମ । )

୨ । ବହୁ ମଧ୍ୟରେ ଏକକୁ ନିର୍ଦ୍ଦେଶ କରିବା ପାଇଁ କିମ୍, ତଦ୍ ଓ ଯଦ୍ ସର୍ବନାମ ପରେ ବ୍ୟବହୃତ ପ୍ରତ୍ୟୟ ( ଏଥିରୁ ନିଷ୍ପନ୍ନ ପଦ କତମ, ତତମ, ଯତମ )—
2. A suffix to denote one of many.

**ତମଃ**—ସଂ. ବି. (ତମ୍ ଧାତୁ+କରଣ ଅସ୍; ତମସ୍ ଶବ୍ଦ ୧ମା. ୧ବ)—
Tamah ୧ । ଅନ୍ଧକାର; ଅନ୍ଧାର—1. Darkness.
୨ । ଭ୍ରମ; ଭ୍ରାନ୍ତି—2 Error.
୩ । ରାହୁଗ୍ରହ—3. The Ascending Node (in Hindu astronomy).
୪ । ତମୋଗୁଣ. ମନୁଷ୍ୟ ପ୍ରକୃତିର ୩ ଗୋଟି ଗୁଣ (ସତ୍ତ୍ୱ ରଜଃ ଓ ତମଃ) ମଧ୍ୟରୁ ଅଧମଗୁଣ; ମନୁଷ୍ୟର ପାଶବିକ ବୃତ୍ତି—4. The lowest human passions; animal passion.
[ ଦ୍ର—କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ଏହି ଷଡ଼ରିପୁ ଏଥିରୁ ଜାତ । ]
୫ । ପାପ—5. Sin.
୬ । ଶୋକ—6 Sorrow, grief.
୭ । ନରକ—7. Hell.
୮ । ଛାୟା—8. Shadow; shade.
୯ । ତମାଲ ବୃକ୍ଷ—9. The Tamāla tree.
୧୦ । ବରାହ—10. Boar.
୧୧ । କାଳିମା—11. Blackness.
୧୨ । ମୋହ—12 Fascination; infatuation; delusion.
୧୩ । (ସାଂଖ୍ୟମତରେ) ଅବିଦ୍ୟା; ମାୟା—
13. (Sāmkhya philosophy) Illusion.
୧୪ । ପାଦର ଅଗ୍ରଭାଗ—
14 Front part or tip of the foot.
୧୫ । କଳଙ୍କ—15 Stain.
୧୬ । ଅଜ୍ଞାନ—16. Ignorance.

ସଂ. ବିଣ (+କର୍ତ୍ତୃ. ଅସ୍)—କ୍ଲାନ୍ତ—Fatigued.

**ତମକ**—ସଂ. ବି (ତମ୍ ଧାତୁ+କରଣ ଅକ; ଯାହା ଦ୍ୱାରା ରୋଗୀ କ୍ଲିଷ୍ଟ ହୁଏ)—ଏକପ୍ରକାର ଶ୍ୱାସରୋଗ; ଦମା କାସ—
Tamaka
(ତମକ ଶ୍ୱାସ—ଅନ୍ୟରୂପ) A kind of asthma accompanied with fits of coughing and strained breathing.
[ ଦ୍ର—ଏଥିରେ କାସିବା ସଙ୍ଗେ ସଙ୍ଗେ ଭାଷା ଶୋଷ ହୁଏ, ଦେହରୁ ଝାଳ ବହେ ଓ ଗଳା ଘଡ଼ର ଘଡ଼ଘଡ଼ ହୁଏ । ମେଘୁଆ ପାଗରେ ଏ ରୋଗର ଆକ୍ରମଣର ପ୍ରାବଲ୍ୟ ଦେଖାଯାଏ—ହି ଶବ୍ଦସାଗର । ]

ଦେ. ବି—୧ । କ୍ରୋଧ; ରାଗ—1. Anger; rage.
तमक ୨ । ତେଜ; ତୀବ୍ରତା—2 Fury.
୩ । ଦପ୍‌ପା—3. Fit; gust; burst.

**ତମ କବଳ**—ଦେ ( ପଦ୍ୟ ) ବି ( ସଂ. ତମ+କବଳ=ଗ୍ରାସ; ଯେ ଅନ୍ଧକାରକୁ ଗ୍ରାସ କରେ )—ଚନ୍ଦ୍ର—
Tama kabāla The moon.
ତମକବଳ ତମକୁ ଗୁହାରେ ପୂରଇ—ଭଞ୍ଜ. ପ୍ରେମସୁଧାନିଧି ।

**ତମଙ୍ଗକ**—ସଂ. ବି—ମଞ୍ଚ; ବେଦୀ—
Tamaṅgaka A pulpit.

**ତମତ**—ସଂ. ବିଣ (ତମ୍ ଧାତୁ+ତ)—୧ । (+କର୍ତ୍ତୃ. ତ) ତୃଷିତ—
Tamata 1. Thirsty.
୨ । ଲାଳାୟିତ—2. Longing for.
୩ । ( +କର୍ମ. ତ )—ବାଞ୍ଛିତ—
3. Wished for, desired.

**ତମ ତମ**—ଦେ. ଅ ( ସଂ. ତମଃ=କ୍ରୋଧ )—
Tama tama ୧ । (ରାଗରେ) ଜର୍ଜର ବା ଅଧୀର—
गरगर 1. Full of; brimming with (anger).
तमतम, तमतमाहट [ ଦ୍ର—ସେ ରାଗରେ ତମତମ ହୋଇ ମୋ ଉପରକୁ ଉଚ୍ଛୁଙ୍କି ଆସିଲା । ]
୨ । କ୍ରୋଧାନ୍ଧ; ଅତ୍ୟନ୍ତ କ୍ରୋଧଯୁକ୍ତ—
2. Over powered with anger; trembling with rage.
ଅର୍ଜୁନ ମୁଖୁଁ ଏହା ଶୁଣିବାକ୍ଷଣି ଭୀମ
ବଳ ଅଶ୍ରେ କରଣ ହେଲେ ତମତମ—କୃଷ୍ଣସିଂହ. ମହାଭାରତ. ଆଦି ।

**ତମତମ ହେବା**—ଦେ. କି—କ୍ରୋଧାନ୍ଧ ହେବା—
Tamatama hebā To be blinded by rage.
राग़े गरगर करा तमतमाना

**ତମତା**—ସଂ. ବି ( ତମ+ଭାବାର୍ଥେ ତା )—୧ । ଅନ୍ଧକାର; ଅନ୍ଧାର
Tamatā (ହି. ଶବ୍ଦସାଗର)—1. Darkness.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଷ,ଷ | ଙ୍କ | ଇଯ୍ | ଢ଼ଅ | ଢ଼ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ୍ୟ | ଇଥ | ଢ଼ | ନ୍ |

୨ । ତମୋଭାବ—2 The state of being dark or delusive.

**ତମ ପ୍ରଭ**—ସଂ. ବି(ବହୁବ୍ରୀହି; ତମ+ପ୍ରଭା)—ଅନ୍ଧକାରମୟ ନରକବିଶେଷ
Tama prabha · Name of a hell full of darkness.

**ତମମୟ**—ସଂ. ବିଣ—ତମୋମୟ ( ଦେଖ )
Tamamaya Tamomaya ( See )

ବଶଷ୍ଟେ ଯେତେ ସ୍ପିତ ସେ ହେଲେ ବଗଦନ୍ତୀ ତମମୟରେ ଲୁପ୍ତ ଜ୍ୟୋତି ।
ଭଞ୍ଜ. ବୈଦେହୀଶବିଳାସ ।

**ତମର**—ସଂ. ବି. (ତମ ଧାତୁ+ଅର)—ସୀସା; ସୀସକ—
Tamara Lead.

ଗ୍ରା. ସର୍ବନାମ—ତୁମ୍ଭର—Your; yours

**ତମଲୁକ୍**—ଦେ. ବି.—(ସଂ. ତାମ୍ରଲିପ୍ତ)—ବଙ୍ଗପ୍ରଦେଶର ମେଦିନୀପୁର
Tamaluk ଜିଲ୍ଲାର ଗୋଟିଏ ସବ୍‌ଡିଭିଜନ୍ ଓ ସହର—
তমলুক Tamlook; name of a subdivision and a
**तमस्तुक, तामलुक** town in the district of Midinapur in Bengal.

[ ଦ୍ର—ତମଲୁକ ସହର ରୂପନାରାୟଣ ନଦୀକୂଳରେ ଅବସ୍ଥିତ; ଏହା ଡାଏମଣ୍ଡ୍ ହାର୍ବର (ରୂପନାରାୟଣ ମୁହାଣ) ଠାରୁ ୧୫ ମାଇଲ ଦୂର । ଏଠାରେ ସବ୍‌ଡିଭିଜନ୍ ମହକୁମା, ଇଂରାଜୀ ହାଇସ୍କୁଲ, ମିଉନିସିପାଲିଟି, ମୁନସଫ୍ କୋର୍ଟ ଓ ଲୋକାଲ୍ ବୋର୍ଡ଼ ଆଦି ଅଛି । ଏଠାର ପୂର୍ବ ମାହିଷ୍ୟ (ଉତ୍କଳରୁ ଯାଇଥିବା ଧୀବର) ରାଜାଙ୍କର ବଂଶଧରମାନେ ରାଜ୍ୟ ହରାଇ ଅଛନ୍ତି; କିନ୍ତୁ ଏ ପର୍ଯ୍ୟନ୍ତ ଏହାଙ୍କର 'ରାଜା' ଉପାଧି ରହିଅଛି । ଏହି ରାଜବଂଶର ବଂଶୋପାଧି 'ରାୟ' । ମହିଷାଦଲର ରାଜା ତମଲୁକକୁ କିଣି ନେଇଅଛନ୍ତି । ଏହା ଖ୍ରୀଷ୍ଟ ୪ର୍ଥ ଶତାବ୍ଦୀ ଠାରୁ ୧୨ଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତର ଗୋଟିଏ ପ୍ରଧାନ ବାଣିଜ୍ୟ କେନ୍ଦ୍ର ଥିଲା । ଏହା ଗଙ୍ଗବଂଶରାଜାଙ୍କ ଅମଳରେ ଓଡ଼ିଶାର ଅନ୍ତର୍ଭୁକ୍ତ ଥିଲା । ଏବେ ଏଠାରେ ଓଡ଼ିଆପାଞ୍ଜି ଓ ଓଡ଼ିଆଭାଷା ଚଳୁଅଛି । (ଜଗବନ୍ଧୁ. ପ୍ରାଚୀନ ଉତ୍କଳ । )

ଏହା କଳିଙ୍ଗଦେଶକୁ ଲାଗି ସମୁଦ୍ରକୂଳରେ ଅବସ୍ଥିତ ଗୋଟିଏ ରାଜ୍ୟ ବୋଲି ମହାଭାରତରେ ଉଲ୍ଲେଖ ଅଛି । ଏଠାର ଲୋକେ ମହାଭାରତ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷ ଅବଲମ୍ବନ କରିଥିଲେ ।
ହି. ଶବ୍ଦସାଗର ]

**ତମସ୍**—ସଂ. ବି—ତମଃ ( ଦେଖ )
Tamas Tamaḥ ( See )

**ତମସ**—ସଂ. ବି (ତମ୍ ଧାତୁ+କରଣ. ଅସ)—୧ । ଅନ୍ଧକାର—
Tamasa 1. Darkness; gloom.

ବିଧ୍ୱଂସନ ତମସ କମଳେ, ବିକର୍ତ୍ତନ ଉଦେ ହୋଇ ଅସେ ।
ଭଞ୍ଜ. ବୈଦେହୀଶବିଳାସ ।

୨ । ଅଜ୍ଞାନ—2. Ignorance.
୩ । ତମୋଗୁଣ—3. Lowest human passions; low animal passions.
୪ । ନଗର ବିଶେଷ—4 Name of a town.

[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ଯୁକ୍ତ ହୁଏ, ଯଥା—ତମସାଚ୍ଛନ୍ନ, ତମସାକ୍ରାନ୍ତ, ତମସାନ୍ଧ, ତମସାବୃତ, ତମସାକୁଳ ଇତ୍ୟାଦି । ]

**ତମସା**—ସଂ. ବି. ସ୍ତ୍ରୀ (ତମସ+ସ୍ତ୍ରୀ. ଆ)—ନଦୀ ବିଶେଷ—
Tamasā Name of a river in N. India.

[ ଦ୍ର—ଏହି ନଦୀ ଯମୁନାର ଉତ୍ପତ୍ତିସ୍ଥାନର ନିକଟବର୍ତ୍ତୀ ଗଡ଼ୱାଲ୍ ଦେଶରେ ପ୍ରବାହିତ । ଗୋଟିଏ ବ୍ୟାଧ କ୍ରୌଞ୍ଚଯୁଗଳ ମଧ୍ୟରୁ ଗୋଟିକୁ ମାରି ପକାଇବାର ଦେଖି ଏହି ନଦୀର ନିକଟସ୍ଥ ଅରଣ୍ୟରେ ବାଲ୍ମୀକି ମୁନିଙ୍କ ମୁଖରୁ ଛନ୍ଦୋବଦ୍ଧ ପ୍ରଥମ ଶ୍ଳୋକ ଉଚ୍ଚାରିତ ହୋଇଥିଲା; ଯଥା—
"ମା ନିଷାଦ ପ୍ରତିଷ୍ଠାଂତ୍ୱ ମଗମଃ ଶାଶ୍ୱତୀଃ ସମାଃ
ଯତ୍ କ୍ରୌଞ୍ଚ ମିଥୁନାଦେକ ମବଧୀଃ କାମମୋହିତଂ । " ]

**ତମସାଚ୍ଛନ୍ନ**—ସଂ. ବିଣ ( ୩ୟା ତତ୍; ତମସ+ଆଚ୍ଛନ୍ନ )—୧ । ଅନ୍ଧକାର
Tamasāchchhanna ଦ୍ୱାରା ଆବୃତ; ଅନ୍ଧକାରମୟ—
(ତମସାବୃତ—ଅନ୍ୟରୂପ) 1. Utterly dark; pervaded with darkness.

୨ । ଅଜ୍ଞାନାଚ୍ଛନ୍ନ—2. Pervaded with ignorance.

**ତମସୁକ**—ବୈଦେ. ବି ( ଅ. ତମସ୍ସୁକ୍ )—ଋଣଲେଖ, ଖାତକର
Tamasuka ମହାଜନକୁ ଲେଖିଦେବା ଋଣଗ୍ରହଣର ନିଦର୍ଶନପତ୍ର;
তমস্সুক ଋଣପତ୍ର; ଗୋଜା—Bond; handnote.
**तमस्तुक** [ ଦ୍ର—ତମସୁକ ନାନାପ୍ରକାର; ଯଥା—ଯୋଲ୍ଲି ବା ସାଧା ତମସୁକ, ବନ୍ଧକୀ ତମସୁକ, ଯାଏବନ୍ଧକ ବା ରହଣବନ୍ଧକ ତମସୁକ, ଫଲବନ୍ଧକ ବା ଦଖଲବନ୍ଧକ ତମସୁକ, କଣ୍ଟ ବା କଟବନ୍ଧକ ତମସୁକ ଓ ଯାମିନ୍‌ନାମା ତମସୁକ । ]

**ତମସ୍ତତି**—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍; ତମସ୍+ତତି=ବିସ୍ତାର; ରାଶି )
Tamastati ଘୋର ଅନ୍ଧକାର—Gloom; deep or profound darkness.

**ତମସ୍ୱିନୀ**—ସଂ. ବି. ସ୍ତ୍ରୀ (ତପସ୍ୱିନ୍+ସ୍ତ୍ରୀ. ଈ)—୧ । ଅନ୍ଧାର ରାତି—
Tamaswinī 1. Dark night.
୨ । ରାତି—2. Night.
୩ । ହରିଦ୍ରା; ହଳଦୀ—3. Turmeric.
ସଂ. ବିଣ. ସ୍ତ୍ରୀ—ତମସ୍ୱୀର ସ୍ତ୍ରୀଲିଙ୍ଗ—Feminine of Tamaswī.

**ତମସ୍ୱୀ**—ସଂ. ବିଣ. ପୁଂ (ତମସ୍+ଅସ୍ତି ଅର୍ଥରେ ବିନ୍; ୧ମା. ୧ବ)—
Tamaswī ଅନ୍ଧାରୁଆ; ତମୋମୟ; ଅନ୍ଧକାରମୟ—
(ତମସ୍ୱିନୀ—ସ୍ତ୍ରୀ) Dark; gloomy.

**ତମା**—ସଂ. ବି. ସ୍ତ୍ରୀ (ତମ+ସ୍ତ୍ରୀ. ଆ)—୧ । ରାତ୍ରି; ତମୀ—
Tamā 1. Night.
୨ । ତମାଲବୃକ୍ଷ—2. The Diospyrus Tomentosa tree.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ସ୍ଥଳର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ' ନ ମିଳିଲେ 'ଗାଡ଼' ଖୋଜିବେ; 'କୁଥ' ନ ମିଳିଲେ 'କୂଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଖୋ' ନ ପାଇଲେ 'ଆଙ୍ଖୋ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତମାଖୁ**—ଦେ. ବି (ସଂ. ତାମ୍ରକୂଟ; ଭୁଲ. ପର୍ତ୍ତୁ. ଟାବାକୋ)—
Tamākhu ୧ । ଦୋକତା; ଧୂଆଁପତ୍ର; ତମାଲୁ—1 Tobacco;
তামাক্, তামুক্, তমাকু Nicotiana; Nicotiana Tabacum.
**तंबाकू, तमाखु** (Kirtikar).
ଅ=ଟାବାକ୍ [ ଦ୍ର— ତମାଖୁ ବାଇଗଣାଦି ବର୍ଗର ବର୍ଷାୟୁ
ଫା=ଟାବାକୁ ଶାକ ଗୁଳ୍ମ । ବର୍ତ୍ତମାନ ଆସିଆ, ଆମେରିକା,
ତେ=ଧୂମପତ୍ରଂମ୍, ପୁଗାକୁ; ଇଉରୋପ, ଆଫ୍ରିକା ଆଦିରେ ଏହାର
(ତମାଲୁ—ଅନ୍ୟରୂପ) କୃଷି ହେଉଅଛି । ତମାଖୁ ଗଛ ୩ ଠାରୁ ୬ ଫୁଟ ପର୍ଯ୍ୟନ୍ତ ଉଚ୍ଚ ହୁଏ । ଏଥିର ପତ୍ର ୨।୩ ଫୁଟ ପର୍ଯ୍ୟନ୍ତ ଲମ୍ବ ଓ ୧।୧୲ ଫୁଟ ଚଉଡ଼ା ହୁଏ । ଯେଉଁ ଜମିରେ କ୍ଷାର ଅଂଶ ବେଶି ଓ ନଈର ପଟୁ ଜମିରେ ଏ ଫସଲ ହୁଏ । ପ୍ରଥମେ ଏ ଗଛର ମଞ୍ଜି ବୁଣାଯାଏ । ଗଛମାନ ୪।୬ ଇଞ୍ଚ ଉଚ୍ଚ ହେଲେ ତଳ ମାନଙ୍କୁ ନେଇ ବହୁବାର ହଳ କରି ଯାଇଥିବା ଜମିରେ ୩ ଫୁଟ ଲେଖାଏଁ ଛଡ଼ାରେ ରୋଇବାକୁ ହୁଏ । ଏ ଫସଲପାଇଁ ଖୁବ୍ ପାଣି ଲୋଡ଼ା । ଯେଉଁ ଜମିରେ ଏ ଫସଲ ହୁଏ, ବରଷକ ଭିତରେ ସେ ଜମିରେ ଅନ୍ୟ ଫସଲ ହୋଇ ପାରେ ନାହିଁ । ଗଛରେ ଫୁଲ ହେବା ପୂର୍ବରୁ କଢ଼ି ଓ କଅଁଳ ଅଗମାନ ଭାଙ୍ଗି ଦିଆଯାଏ ଓ ମୂଳପତ୍ର ମାନ ମଧ୍ୟ ଭାଙ୍ଗି ଦିଆଯାଏ । ଏ ଗଛରେ ଅନେକ ରୋଗ ହୁଏ ଓ ପୋକ ଲାଗନ୍ତି । ଏଥିପାଇଁ ସାବଧାନ ରହିବାକୁ ହୁଏ । ଗଛର ପତ୍ରମାନ ଟିକିଏ ହଳଦିଆ ପଡ଼ି ଆସିଲେ ଓ ତା ଉପରେ ଧଳା ଧଳା ଟୋପି ଟୋପି ଦାଗ ଦେଖାଗଲେ ଏ ଗଛମାନ କାଟି ପତ୍ରମାନଙ୍କୁ କେତେଦିନ ଖରାରେ ଓ କେତେଦିନ ଛାଇରେ ଟାଙ୍ଗି କରି ଶୁଖାଇବାକୁ ହୁଏ । ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦି ପୂର୍ବେ ଏହା କେବଳ ଆମେରିକାର ଆଦିମ ନିବାସୀମାନେ ବ୍ୟବହାର କରୁଥିଲେ । କଲମ୍ବସ ଖ୍ରୀ. ୧୪୯୨ରେ ଆମେରିକା ଆବିଷ୍କାର କରିବା ସମୟରେ ଏହା ଦେଖିଥିଲେ ଓ ୧୫୩୬ ସାଲରେ ସ୍ପେନ ଦେଶ ବାସୀମାନେ ଏହାକୁ ଇଉରୋପକୁ ପ୍ରଥମେ ଆଣିଲେ । ପର୍ତ୍ତୁଗାଲ ଦେଶୀୟ ଖ୍ରୀଷ୍ଟାନ୍ ପାଦ୍ରୀମାନେ ଷୋଡ଼ଶ ଶତାବ୍ଦିରେ ଏହା ଭାରତକୁ ଆଣିଲେ । ଏହି ପାଦ୍ରୀମାନଙ୍କୁ ଏହା ବ୍ୟବହାର କରିବା ଦେଖି ଦାକ୍ଷିଣାତ୍ୟ ଗୋଲକୁଣ୍ଡା ବିଜାପୁରର ନବାବ ଏହା ବ୍ୟବହାର କରି ହୁକ୍କା ଓ ଚିଲମରେ ଏହାର ଧୂଆଁ ପିଇବା ମାର୍ଗ ଉଦ୍ଭାବନ କରି ଏହାକୁ ହସ୍ତି ନେଲେ ଓ ମୋଗଲ ସମ୍ରାଟ ଆକବରଙ୍କୁ ଏହା ସେବନ କରିବାକୁ मार्ग ମଡ଼ାଇଲେ । କିନ୍ତୁ ହକିମ୍‌ମାନେ କହିଲେ ଯେ ଏହା ସେବନ କଲେ ରୋଗ ଜନ୍ମିବ, ଏଥିଲାଗି ଆକବର ଏହା ସେବନ କଲେ ନାହିଁ; କିନ୍ତୁ ବିଜାପୁରର ନବାବଙ୍କ ଦେଖାଦେଖି ଏହା କ୍ରମଶଃ ବଡ଼ଲୋକଙ୍କ ମଧ୍ୟରେ ଓ ପରେ ଜନସାଧାରଣରେ ପ୍ରବେଶ ଲାଭ କଲା । ଇଉରୋପ ଓ ଆସିଆରେ ତମାଖୁର ପିକାରେ ଧୂଆଁ ଖାଇବା ଏପରି ଚଳିଲା ଯେ ଇଂଲଣ୍ଡ, ଫ୍ରାନ୍ସ ଓ ଭାରତରେ ରାଜାମାନେ ଆଇନଦ୍ୱାରା ତମାଖୁ ସେବନ ନିଷିଦ୍ଧ କଲେହେଁ ଏଥିର ବ୍ୟବହାର କ୍ରମଶଃ ବଢ଼ିଲା । ଡାକ୍ତର ଓ ଚିକିତ୍ସକମାନେ କହି ଆସୁଅଛନ୍ତି ଯେ ତମାଖୁରେ ବିଷ ଓ ନିଶା ଅଛି ଓ ଏହା ସେବନ କଲେ ସ୍ୱାସ୍ଥ୍ୟହାନି ଓ ବିଶେଷତଃ ଦୃଷ୍ଟିଶକ୍ତିର ହାନି ହୁଏ । ତଥାପି ଏହାର ପ୍ରଚୁର ଆବାଲବୃଦ୍ଧବନିତା ଓ ରାଜା ମହାରାଜାଙ୍କଠାରୁ କୁଟୀର ବାସୀ ଭିକ୍ଷୁକ ପର୍ଯ୍ୟନ୍ତ ସମସ୍ତଙ୍କ ମଧ୍ୟରେ ସର୍ବତ୍ର ବଢ଼ୁଛି । ତମାଖୁ ପତ୍ରକୁ ବଳ ପିକା କରି, କିମ୍ବା ଟିକି ଟିକି କରି କାଟି ବା ମଳି ଚିଲମ ଓ ପାଇପ୍‌ରେ ଏବଂ ତମାଖୁ ପତ୍ରର ଗୁଣ୍ଡାରେ ଗୁଡ଼ ଓ ସୁବାସିତ ଦ୍ରବ୍ୟ ମିଶାଇ ଗୁଡ଼ାଖୁ ରୂପେ ହୁକ୍କାରେ ଲୋକେ ଏଥିର ଧୂଆଁ ପିଅନ୍ତି । ଏଥିର ଗୁଣ୍ଡାରେ ଧନିଆ ଓ ପାନ ମସଲାର ଆଦି ମିଶାଇ ପାନ ସଙ୍ଗେ ଗୁଣ୍ଡି ରୂପେ, ଏଥିର ଚୂନାରେ ମସଲା ମିଶାଇ ସୁରୁତିରୂପେ ଓ ଏ ପତ୍ରକୁ ଚୂନ ସଙ୍ଗେ ଦଳି ଚୂନପତ୍ରରୂପେ ଲୋକେ ପାଟିରେ ଜାକନ୍ତି । ଏହି ପତ୍ରକୁ ଚୂର୍ଣ୍ଣ କରି ଲୋକେ ନାସ କରି ଶୁଂଘନ୍ତି । ପୂର୍ବେ ଏ ଦେଶରେ ଏକ ପ୍ରକାର ଧୂଆଁପତ୍ର ବଣରେ ଜାତ ହେଉଥିଲା; କିନ୍ତୁ କେହି ତାର ବ୍ୟବହାର ଜାଣି ନ ଥିଲେ । ଚରକାଦି ଆୟୁର୍ବେଦ ଶାସ୍ତ୍ରରେ 'ଧୂମ୍ରପାନ'ର ଉଲ୍ଲେଖ ଅଛି, ମାତ୍ର 'ତାମ୍ରକୂଟ' ଶବ୍ଦର ଉଲ୍ଲେଖ ନାହିଁ । ଅନେକ ପ୍ରକାରର ଧୂଆଁପତ୍ର ଦେଖାଯାଏ; ଯଥା— ଦେଶୀ, ବାଲେଶ୍ୱରୀ, ମୋତିହାରୀ, ସଂଘିପୁରୀ, ବାଇଂଗଣୀ ଓ ବିଷ୍ଣୁପୁରୀ ବା ବଡ଼ପତ୍ର । ବୈଦ୍ୟଙ୍କ ମତରେ ତମାଖୁ ତୀକ୍ଷ୍ଣ, ଗରମ, କଡ଼ୁଆ, ବମନ କାରକ, ମତ୍ତତାଜନକ ଓ ଦୃଷ୍ଟିଶକ୍ତିର ହାନିକାରକ । ଏଥିରେ ନିକୋଟୀନା ନାମକ ମାରାତ୍ମକ ବିଷ ଅଛି । ]

୨ । ଗୁଡ଼ାଖୁ—2. A smoking mixture made of tobacco powder kneaded with molasses.

**ତମାଖୁ ଖାଇବା**—ଦେ. କ୍ରି—୧ । ହୁକ୍କା ଦ୍ୱାରା ଗୁଡ଼ାଖୁର ଧୂଆଁ ପିଇବା
Tamākhu khāibā ବା ଟାଣିବା—1. To smoke
ତମାଖୁ ଟାଣିବା } ଅନ୍ୟରୂପ tobacco-mixure with a
ତମାଖୁ ପିଇବା } hubble-bubble.
তামাক্ খাওয়া, ୨ । ତମାଖୁ ପତ୍ରର ଗୁଣ୍ଡା ବା ଖଣ୍ଡମାନ ଚିଲମରେ
তামাক্ টানা ବା ନଳୀ ଭର୍ତ୍ତି ଯେଉଁଥିରେ ନିଆଁ ଲଗାଇ କିମ୍ବା ପିକା
**तमाखु पीना** ବା ଚୁରୁଟ ଦ୍ୱାରା ତହିଁର ଧୂଆଁ ପିଇବା—
2 To smoke tobacco leaves with cigarettes or pipes.

**ତମାଖୁ ସଜା(ଜେ)ଇବା**—ଦେ. କ୍ରି—ଧୂଆଁ ଖାଇବା ପାଇଁ ହୁକ୍କାର
Tamākhu sajā(je)ibā ଚିଲମରେ ଗୁଡ଼ାଖୁ ବା ଧୂଆଁ ପତ୍ର
(ତମାଖୁ ଚଢ଼ାଇବା—ଅନ୍ୟରୂପ) ଖଣ୍ଡମାନ ରଖି ତହିଁରେ ଅଗ୍ନି
তামাক্ সাজান, তামাক্ চড়ান সଂଯୋଜିତ କରି ପିଇବାର ବ୍ୟବସ୍ଥା
**तमाखु चढ़ाना** କରିବା—To fit a hubble-bubble with smoking mixure and fire.

**ତମାଦି**—ବୈଦେ. ବି. ( ଆ. ତମାଦୀ ) ( କଚେରୀଆ ଭାଷା )—
Tamādi ୧ । ନିର୍ଦ୍ଦିଷ୍ଟ କାଳ ଅତିକ୍ରମିଯିବା; ନିର୍ଦ୍ଧାରିତ ସମୟ
তামাদি ଅତିକ୍ରାନ୍ତ ହେବା—1. Limitation; expiry
**तमादि** of the fixed time.

୨ । କାଳାତିକ୍ରମ ଦୋଷ—2. Bar of limitation.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଡ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇଐ | ଉଥ | ଛ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଗଁ୍ୟ | ଇଅ | ଞ୍ଜ | ନ୍ତୁ |

ବିଣ—ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହୋଇଥିବା ଯୋଗୁଁ ଆଇନ୍ ଅନୁସାରେ ଆଦାୟ କରାଯାଇ ନ ପାରିବା (ପ୍ରାପ୍ୟ ବା ଦାବୀ)—(claim or due) Barred by limitation; time-expired; statute-barred.

( ଯଥା—ତମାଦି ତମସୁକ । )

[ ଦ୍ର—ଭିନ୍ନ ଭିନ୍ନ ଶ୍ରେଣୀର ମକଦ୍ଦମା ଦାଏର୍ କରିବା ପାଇଁ ଆଇନ୍ ଅନୁସାରେ ବିଭିନ୍ନ ସମୟ 'ନିର୍ଦ୍ଧାରିତ' ହୋଇଅଛି । ନାଲିସର କାରଣ ( cause of action ) ର ଉଦ୍ଭବ ହେବାସମୟରୁ ସେହି ନିର୍ଦ୍ଦିଷ୍ଟ ସମୟମଧ୍ୟରେ ମକଦ୍ଦମା ଦାଏର୍ ନ ହେଲେ ମକଦ୍ଦମାରେ ତମାଦି ଦୋଷ ଘଟେ ଓ ବାଦୀର ଦାବୀ ପ୍ରକୃତ ହେଲେ ମଧ ତାର ମକଦ୍ଦମା ଡିସ୍‌ମିସ୍ କରାଯାଏ । ]

**ତମାଦି ଆଇନ୍**—ବୈଦେ. ବି. ( ଅ. ତମାଦୀ + ଅଇନ୍ ) ( କଚେରିଆ ଭାଷା )—ଯେଉଁ ଆଇନ୍‌ରେ ଭିନ୍ନ ଭିନ୍ନ ଶ୍ରେଣୀର ଦାବୀ ଭିନ୍ନ ଭିନ୍ନ ନିର୍ଦ୍ଦିଷ୍ଟ ସମୟ ପରେ ବାରିତ ହେବା ବିଷୟର ଉଲ୍ଲେଖ ଥାଏ—Law of Limitation; Limitation Act.
Tamādi āin
তামাদি আইন
**तमादी कानुन**

[ ଦ୍ର—ବର୍ତ୍ତମାନ ଇଂରେଜ ଶାସିତ ଭାରତବର୍ଷରେ ୧୯୦୮ ସାଲର ଯେଉଁ ୯ ଆଇନ୍ ତମାଦି ଆଇନ୍ ନାମରେ ଚଳୁଅଛି ତହିଁରେ ଭିନ୍ନ ଭିନ୍ନ ମକଦ୍ଦମା, ଅପିଲ, ଦରଖାସ୍ତ ଓ ଅନ୍ୟାନ୍ୟ ଦାବୀ କଚେରିରେ ଉତ୍ଥାପିତ କରିବା ପାଇଁ ଭିନ୍ନ ଭିନ୍ନ କାଳ ନିର୍ଦ୍ଦିଷ୍ଟ ହୋଇଅଛି; ସେହି ନିର୍ଦ୍ଦିଷ୍ଟ କାଳ ମଧରେ ମକଦ୍ଦମା ଦାଏର ନ କଲେ ବା ଦରଖାସ୍ତ ଆଦି ନ ଦେଲେ ପ୍ରାର୍ଥୀ କୌଣସି ପ୍ରତିକାର ପାଇ ପାରିବ ନାହିଁ । ]

**ତମାଦି ଦୋଷ**—ଦେ. ବି (କଚେରିଆ ଭାଷା)—ନିର୍ଦ୍ଧାରିତ ସମୟ ଅତିକ୍ରାନ୍ତ ହେବା ପରେ ମକଦ୍ଦମା ବା ଦରଖାସ୍ତ ଦାଏର ହେବା ଯୋଗୁଁ ଘଟିବା ଦୋଷ, ଯହିଁ ଯୋଗୁଁ ପ୍ରାର୍ଥନାକାରୀଙ୍କୁ ପ୍ରାର୍ଥିତ ପ୍ରତିକାର ମିଳି ପାରେ ନାହିଁ—Bar of limitation in a suit or case.
Tamādi dosha
তমাদিদোষ
**तमादीदोष**

**ତମାଦି ଦୋଷରେ ବାରିତ**—ଦେ. ବିଣ ( କଚେରିଆ ଭାଷ ।)—
Tamādi doshare bārita
୧ । ତମାଦି ଆଇନ ଅନୁସାରେ ନିର୍ଦ୍ଧାରିତ ଉପଯୁକ୍ତ ସମୟ ମଧରେ ଦାଏର୍ କରାଯାଇ ନ ଥିବା ଯୋଗୁଁ ଉକ୍ତ ତ୍ରୁଟୀ ଯୋଗୁଁ ନାମଞ୍ଜୁର ହେବା ଯୋଗ୍ୟ ( ଦାବୀ ବା ମକଦ୍ଦମା ବା ଦରଖାସ୍ତ ଆଦି)—1 (a claim or case or petition) Barred by time.

୨ । ତମାଦି ଆଇନରେ ନିର୍ଦ୍ଧାରିତ ସମୟ ମଧ୍ୟରେ ଅସୁଲ କରାଯାଇ ନ ଥିବାରୂପ ଯେଉଁ ଦୋଷ ହେତୁ ଉକ୍ତ ତମସୁକ ବା ଋଣପତ୍ର ସମ୍ବନ୍ଧେ ଅଦାଲତରେ ମକଦ୍ଦମା କଲେ ମକଦ୍ଦମା ଡିସ୍‌ମିସ୍ ହୁଏ—2. ( bond or handnote) Time-barred.

[ ଦ୍ର—ହାଣ୍ଡନୋଟ୍ ବା ସାଧାରଣ ତମସୁକର ସମ୍ପାଦନ ତାରିଖ ଠାରୁ ୩ ବର୍ଷ ମଧ୍ୟରେ, କିମ୍ବା ଖାତକ କିଛି ଟଙ୍କା ସୁଝି ଦଲିଲରେ ଅସୁଲ ପ୍ରସଙ୍ଗ ଲେଖି ଦସ୍ତଖତ୍ କରିଥିଲେ ଅସୁଲ ତାରିଖରୁ ୩ ବର୍ଷ ମଧରେ ଉକ୍ତ ଦଲିଲ ବାବଦ୍ ପ୍ରାପ୍ୟ ପାଇଁ ନାଲିସ ଦାଏର୍ ନ ହେଲେ ଉକ୍ତ ଦଲିଲ ତମାଦିଦୋଷରେ ବାରିତ ହୁଏ । ରେଜିଷ୍ଟ୍ରି ତମସୁକ, ଭରଣାବନ୍ଧକ ତମସୁକ ପାଇଁ ନିର୍ଦ୍ଧାରିତ ମିଆଦ ପୃଥକ୍; ଏହିପରି ଖଜଣା ନାଲିସ, ଡିକ୍ରିଜାରୀ ମକଦ୍ଦମା, ଖେସାରତ ମକଦ୍ଦମା, ସ୍ୱତ୍ୱରୁ ବେଦଖଲ ହେଲେ ଦଖଲ ପାଇବା ପାଇଁ ମକଦ୍ଦମା, ଅପିଲ ମକଦ୍ଦମା ଆଦି ପାଇଁ ଭିନ୍ନ ଭିନ୍ନ ନିର୍ଦ୍ଦିଷ୍ଟ ସମୟ ଅଛି । ଉକ୍ତ ସମୟ ଟପିଯିବା ପରେ କୌଣସି ପ୍ରତିକାର ମିଳେ ନାହିଁ । ]

**ତମାଦି ବାକି**—ବୈଦେ. ବି. ଓ ବିଣ—(ଅ. ତମାଦୀ + ବାକୀ)—ଆଦାୟ ହୋଇ ନ ଥିବା ଯେଉଁ ପ୍ରାପ୍ୟ ଧନରେ ତମାଦି ଦୋଷ ଘଟି ଅଛି—Time-barred arrear.
Tamādi bāki
তমাদি বাকি
**तमादी बाकी**

**ତମାଦି ରକ୍ଷା**—ଦେ. ବି. (କଚେରିଆ ଭାଷା) ତମସୁକ ଆଦି ତମାଦି ହେବାର ଆଇନ୍‌ରେ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଉକ୍ତ ତମସୁକ ବାବଦ୍ ପାଉଣା ମଧରୁ କିଛି ଟଙ୍କା ଆଦାୟ ଦେବା, କିମ୍ବା ଉକ୍ତ ପ୍ରାପ୍ୟ ଲିଖିତ ଭାବରେ ସ୍ୱୀକାର କରିବାଦ୍ୱାରା ତମାଦି ଦୋଷରୁ ଉକ୍ତ ଦଲିଲକୁ ବଞ୍ଚାଇ ରଖିବା—The saving of limitation by part payment or acknowledgement of the dues on a bond.
Tamadi raksha
তমাদিরক্ষা

**ତମାଦି ହେବା**—ଦେ. କ୍ରି.—(କୌଣସି ଦଲିଲ ବା ବାକୀ) ତମାଦି ଦୋଷ ଦୁଷ୍ଟ ହେବା—(a document or claim) To be barred by limitation.
Tamādi heba
তমাদি হওয়া
**तमादी होना**

**ତମାମ୍**—ବୈଦେ. ବିଣ. (ଅ. ତମାମ୍ = ପୂରା, ସମ୍ପୂର୍ଣ୍ଣ, ସାରା)—
Tamām
তমাম
**ईतिमाम, तमाम**

୧ । ପୂରା; ସମ୍ପୂର୍ଣ୍ଣ—1. Entire; complete.
୨ । ସମାପ୍ତ; ଖତମ—2. Completed; finished.
୩ । ସମୁଦାୟ—3. Whole.
୪ । ଶେଷ; ଅନ୍ତିମ—4. Final
୫ । ପରିପୂର୍ଣ୍ଣ—5 Full; filled up.
୬ । ସମଷ୍ଟି କରାଯାଇ ଥିବା—6 Added together; totalled up.
୭ । ମୃତ—7 Dead.

ବୈଦେ.—ସର୍ବନାମ—ସବୁ; ସମୁଦାୟ (ବ୍ୟକ୍ତି, ବସ୍ତୁ, ସ୍ଥାନ, ସମୟ)—7. All; the whole (persons, things, places and time).

ବି.—୧ । ସମଷ୍ଟି—1. Total
୨ । ସମାପ୍ତି—2. Completion; finish.

ସାଧାରଣ ଲୋକେ ଅନେକ ସ୍ଥଳରେ ହ୍ରସ୍ୱ ଓ ଦୀର୍ଘ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ଆଦ୍ୟ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ହୋଇ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କଅ' ଦେଖିବେ; 'ବଧୂ'କି ପାଇଲେ 'ବଧୁ' ଦେଖିବେ; 'ଅର୍ଗଳ' ନ ପାଇଲେ 'ଅର୍ଗଳ' ଦେଖିବେ, 'ଅଲିବନ୍ଦି' ନ ପାଇଲେ 'ଅଲ୍‌ବନ୍ଦି' ଦେଖିବେ ।

ଅ.—୧ । ସମ୍ପୂର୍ଣ୍ଣରୂପେ— 1. Fully; completely; entirely.

୨ (ଅମୁକ ସମୟ)ସାକ; ସାରା— 2. Throughout (such a period).

୩ । (ଅମୁକ) ସମ୍ପ୍ରଦାୟ ଅଞ୍ଚଳରେ— 3. All round (such a place).

**ତମାମି**—ବୈଦେ. ବି. (ଫା.)—୧ । ପୂର୍ଣ୍ଣତା— Tamāmi 1. Fullness.

୨ । ସମାପ୍ତି—2 Completion

**ତମାଲ**—ସଂ. ବି ( ତମ୍ ଧାତୁ=ମ୍ଳାନ ହେବା+କର୍ତ୍ତୃ. ଅଲ )— Tamā̲la ୧ । ବୃକ୍ଷ ବିଶେଷ; ତାପିଞ୍ଛବୃକ୍ଷ—1. A kind of tree; Diospyrus Tomentosa.

ସଂ. ପର୍ଯ୍ୟାୟ—କାଳସ୍କନ୍ଧ, ତିନ୍ଦୁକ, ଖାଦକଦ୍ରୁମ, ତାପିଞ୍ଛ, ସ୍ଫୂର୍ଜ ଓ ଶୀତସାରକ, ତାପିଚ୍ଛ, ନୀଳସ୍କନ୍ଧ, ନୀଳଧ୍ୱଜ, ନୀଳତାଳ, ତାପିଞ୍ଛ, ତମ, ତମ୍ମୀ, କାଳତାଳ, ମହାବଳ

[ ଦ୍ର—ଏହା କେନ୍ଦୁଗଛ ପରି । ଏହାର ବଲ୍କଲ କୃଷ୍ଣବର୍ଣ୍ଣ; ପତ୍ର ଅଣ୍ଡାକାର ଓ କୋମଳ ଏବଂ ପତ୍ରର ଗୋଟିଏ ପିଠି ରୋମଶ । ଯାକଲ କାଠର ମଞ୍ଜ ଅବଲୁପ୍ତ କାଠପର ଗାଢ଼ କୃଷ୍ଣବର୍ଣ୍ଣ, ମାତ୍ର ଏଥିରେ ଖଇର ରଙ୍ଗର ରେଖାମାନ ପଡ଼ିଥାଏ । ଏ କାଠ ଜଳଲେ ଚଡ଼ଚଡ଼ ଶବ୍ଦ କରେ । ଦକ୍ଷିଣ ଭାରତର ଜଙ୍ଗଲରେ ଏ ଗଛ ଜନ୍ମେ, ମାତ୍ର ଓଡ଼ିଶା ଜଙ୍ଗଲରେ ଏହା କ୍ୱଚିତ୍ ଦେଖାଯାଏ । ସାକ୍ଷୀଗୋପାଳ ମନ୍ଦିରର ବେଢ଼ା ମଧ୍ୟରେ ଗୋଟିଏ ଗଛ ଅଛି । ତାକୁ ଲୋକେ ତମାଲ କହନ୍ତି; କିନ୍ତୁ ତାହା ଜୁପଶେକ୍ତ ତମାଲ ନୁହେଁ । ସତ୍ୟବାଦୀ ଗୋପୀନାଥଙ୍କ ବେଢ଼ାର ଭିତର ପାଖରେ ଜଣେ ଭକ୍ତ ବୃନ୍ଦାବନରୁ ଆଣିଥିବା ତମାଲଗଛ ଲଗା ଯାଇଅଛି । ଏହାର ବକଳ କଳା ନୁହେଁ ଓ ବେଢ଼ା ମଧ୍ୟସ୍ଥ ଗଛର ପତ୍ରପରି । ଏହାର ପତ୍ର ଆତ ଗଛର ପତ୍ରପରି, କିନ୍ତୁ ପତଳା; ଏ ଗଛରେ ଟୁକ ଟୁକ ଧଳା ଫୁଲ ଧରେ, କିନ୍ତୁ ଫଳ ଫଳିବାର ଦେଖା ଯାଏ ନାହିଁ । ଏ ଗଛ ହରବଂଶ କାନ୍ଦ୍ରୋକ୍ତ ୧ମ ଜାତିର ତମାଲ ଅଟେ । ତମାଲଗଛ ୨ ଜାତିର । ୧ ସାଧାରଣ ତମାଲ ଓ ୨ ଶ୍ୟାମ ତମାଲ । ଶ୍ୟାମ ତମାଲର ଫୁଲ ନାଲି ଓ ମଞ୍ଜ କଳା; ସାଧାରଣ ତମାଲର ଫୁଲ ଧଳା ଓ କାଠ ଫିକ୍କା; ବୈଦ୍ୟଶାସ୍ତ୍ର ମତରେ ଶ୍ୟାମତମାଲ କଷାୟ ମଧୁରରସ, ବଳବୀର୍ଯ୍ୟବର୍ଦ୍ଧକ, ଗୁରୁ, ଶୀତଳ, ଶ୍ରମ ଓ ଦାହ, କଫ ଓ ପିତ୍ତନାଶକ—ହି. ଶବ୍ଦସାଗର । ]

୨ । ଖଡ୍ଗ—2. Scimitar.

୩ । ଚନ୍ଦନର ଚିତା ବା ତିଳକ—3. A sectarian mark of sandal-paste on the forehead.

୪ । କୃଷ୍ଣ ଖଦିର—4. A sort of black catechu.

୫ । ବାଉଁଶର ଛାଲ (ହି. ଶବ୍ଦସାଗର)— 5. The bark of bamboo.

୬ । ତେଜପତ୍ର—5. The Cassia cinnamon leaves.

୭ । ବରୁଣ ଗଛ (ଦେଖ) (ହି. ଶବ୍ଦସାଗର)— 7. Baruna tree (See)

୮ । ତିଳକ ବୃକ୍ଷ (ଦେଖ) (ହି. ଶବ୍ଦସାଗର)— 8. Tila̲ka tree (See)

୯ । ହିମାଳୟ ଓ ଦକ୍ଷିଣ ଭାରତରେ ଜନ୍ମିବା ବୃକ୍ଷ ବିଶେଷ— 9. Name of a gum-exuding tree.

[ ଦ୍ର—ଏ ଗଛର ଗଣ୍ଡିରୁ ଏକପ୍ରକାର ଅଠା ବାହାରେ, ଛାଲରୁ ହଳଦିଆ ରଙ୍ଗ ବାହାରେ । ଏହାର ଫଳ ଅମ୍ଳ । ଲୋକେ ଏହାକୁ ତରକାରି, ଔଷଧ ଓ ସିରକା କରନ୍ତି—ହି. ଶବ୍ଦସାଗର । ]

**ତମାଲକ**—ସଂ. ବି. (ତମାଲ+ସ୍ୱାର୍ଥ ବା ସାଦୃଶ୍ୟ ଅର୍ଥରେ କ)— Tamā̲laka ୧ । ତମାଲ ଗଛ (ଦେଖ) 1. Tamā̲la tree (See)

୨ । ତେଜପତ୍ର—2. The Cassia cinnamon tree Laurus Cassia.

୩ । ସୁନ୍‌ସୁନିଆ ଶାଗ—3. A pot-herb growing wild; Marsilia Quadrifolia.

୪ । ବାଉଁଶର ବହିଃଆବରଣ ବା ଚୋପା— 4 The bark of bamboo

**ତମାଲ ପତ୍ର**—ସଂ. ବି. କ୍ଲୀ. (୬ଷ୍ଠୀ ତତ; ତମାଲ+ପତ୍ର)— Tamā̲la patra ୧ । ତମାଲଗଛର ପତ୍ର— 1. The leaf of the Tamā̲la tree.

୨ । ତମାଲଗଛ—2 The Tamā̲la tree.

୩ । ଚନ୍ଦନର ଚିତା ବା ତିଳକ— 3. Sandal-mark on the forehead.

**ତମାଲ ବରଣିଆଁ**—ଦେ. (ପଦ୍ୟ) ବିଣ. (ସଂ. ତମାଲ+ବର୍ଣ୍ଣ)— Tamā̲la baraniān̐ ତମାଲବର୍ଣ୍ଣ ବିଶିଷ୍ଟ; କୃଷ୍ଣନୀଳ— Dark-blue.

ତମାଲ ବରଣିଆଁ ମଦନମୋହନ । କୃଷ୍ଣସିଂହ. ମହାଭାରତ ଆଦି ।

**ତମାଲ ଶ୍ୟାମ**—ସଂ. ବିଣ. ପୁଂ (ଉପମାନ କର୍ମଧାରୟ)—ତମାଲପରି Tamā̲la śyāma କୃଷ୍ଣବର୍ଣ୍ଣ (ବ୍ୟକ୍ତି)—Of a dark colour ତମାଲଶ୍ୟାମା—ସ୍ତ୍ରୀ like the Tamā̲la tree; of a bluish dark complexion.

ଦେ. ବି—ଶ୍ରୀକୃଷ୍ଣ—Śrīkrushna.

ତୋ ସେନ ତମାଲଶ୍ୟାମ ମୋ ମରଣ କହିଲରେ— କବିସୂର୍ଯ୍ୟ. କିଶୋରଚନ୍ଦ୍ର ଉ. ଗୀତ ।

**ତମାଲ ଶ୍ୟାମଳ**—ସଂ. ବିଣ. ପୁଂ—ତମାଲ ଶ୍ୟାମ (ଦେଖ) Tamā̲la syāma̲la Tamā̲la śyāma (See) ତମାଲଶ୍ୟାମଳା—ସ୍ତ୍ରୀ

**ତମାଲିକା**—ସଂ. ବି. ସ୍ତ୍ରୀ (ତମାଲ+ସମ୍ବନ୍ଧାର୍ଥରେ ଇକ+ସ୍ତ୍ରୀ. ଆ)— Tamā̲likā ୧ । ତମଲୁକ ଦେଶ; ତାମ୍ରଲିପ୍ତ—1. The country of Tamlook (a subdivision and town in Midnapur district).

୨ । ଭୁଇଁ ଅଁଳା—2. Philanthus Niruri (a herb.)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଇୟୁ | ନ୍ଥ | ଞ୍ଚ |
| ୨ | ଈ | ଊ | ରୁ | ଲୁ | ସ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗିଁ | ଇଅ | ଙ୍ଗ | ନ୍ |

୩ । ମଞ୍ଜିଷ୍ଠା (ଦେଖ)—3. Mañjishṭhā (See)

**ତମାଳନୀ**—ସଂ. ବ. ସ୍ତ୍ରୀ (ତମାଳ+ଅସ୍ତି ଅର୍ଥରେ ଇନ୍+ସ୍ତ୍ରୀ. ଈ)—
Tamālinī ତମଲୁକ ବା ତାମ୍ରଲିପ୍ତ ଦେଶ—
Tamlook subdivision and town in Midnapur district.

**ତମାଲି**—ସ. ବ—୧ । ବରୁଣ ( ଗଛ ) (ଦେଖ) (ହ୍ର. ଶବ୍ଦସାଗର)
Tamāli 1. Baruṇa ( tree ) ( See)
୨ । ତାମ୍ରପର୍ଣ୍ଣୀ ( ଲତା ) ( ହ୍ର. ଶବ୍ଦସାଗର )—
2. A creeper.
[ ଦ୍ର—ଏହା ଚନ୍ଦ୍ରକୂଟରେ ବହୁତ ଜନ୍ମେ—ହ୍ର. ଶବ୍ଦସାଗର । ]

**ତମାସା**—ବୈଦେ. ବ. (ଆ. ତମାସା=ମନୋରଞ୍ଜକ ଦୃଶ୍ୟ, ଯାତ୍ରା)—
Tamāsā ୧ । ତାମସା; ଖେଳ; ଜନ ମନୋରଞ୍ଜକ ଦୃଶ୍ୟ—
তামাসা 1. A diversion; games
तमासा (ଯଥା—ମେଳା, ନାଚ, ଥିଏଟର, ଯାତ୍ରା, ଅତସବାଜୀ । )
୨ । ଆମୋଦ; ଆନନ୍ଦୋତ୍ସବ—2. Merriment.
୩ । ପ୍ରଦର୍ଶିନୀ; ଦୃଶ୍ୟ—
3. A show; a sight; exhibition.
୪ । ରହସ୍ୟ; ପରିହାସ; ଥଟ୍ଟା—
4. A joke; jest; fun.
[ ଦ୍ର—ଏହା ଥଟ୍ଟା ଓ ନାଚ ଶବ୍ଦ ପରେ ଅନୁଚର ଶବ୍ଦରୂପେ ବ୍ୟବହୃତ ହୁଏ । ]
୫ । ଅଦ୍ଭୁତ ବ୍ୟାପାର—5. Wonderful event.

**ତମାସା କରିବା**—ଦେ. କ୍ରି—୧ । ତାମସା କରିବା; ନାଚ ବା ଖେଳ ଦେଖାଇବା—1. To set up a show.
Tamāsā karibā
তামাসা করা, তামাসা লাগান ୨ । ଥଟ୍ଟା କରିବା—
तमासा करना 2. To make fun.
ତମାସା ଲଗା(ଗେ)ଇବା, ତମାସା କାଢ଼ିବା } ଅନ୍ୟରୂପ ୩ । ରହସ୍ୟ କରିବା—
3. To play tricks.

**ତମାସା ବାଲ**—ଦେ. ବ. ପୁଂ—୧ । ନର୍ତ୍ତକ
Tamāsā bālā 1. Dancer.
তমাসাওলা तमासबीन ୨ । ଐନ୍ଦ୍ରଜାଲିକ—2. Magician.
୩ । ବାଜୀଗର—3. One who performs feats; a show-man.

**ତମି**—ସ.ବ(ତମ୍ ଧାତୁ+ଅଧିକରଣ;ଇ. ଯହିଁରେ ସବୁ ବସ୍ତୁ ମ୍ଳାନ ହୁଏ)—
Tami ତମୀ; ରାତ୍ରି—Night.
(ତମୀ—ଅନ୍ୟରୂପ) ଦେ. ବ—ରାଗ, କ୍ରୋଧ—Anger.

**ତମି ନାଥ**—ସ. ବ. ପୁଂ (ଷଷ୍ଠୀ ତତ୍; ତମି+ନାଥ)—ଚନ୍ଦ୍ର—
Tami nātha The moon.
(ତମୀନାଥ, ତମୀଶ—ଅନ୍ୟରୂପ)

**ତମିବା**—ଦେ. (ପଦ୍ୟ) କ୍ରି. ( ସ ତମ୍ )—
Tamibā ୧ । କ୍ରୁଦ୍ଧ ହେବା; ରାଗାନ୍ଧ ହେବା—
তমা 1. To be angry; to be enraged.

**ତମତମାନା** ଶାଳ୍ୱର ସେ ବରମ ଦେଖିଣ ତମିଲେ ।
କୃଷ୍ଣସିଂହ. ମହାଭାରତ. ବନ ।

**ତମିସ୍ର**—ସ. ବ.ପୁଂ ଓ କ୍ଳୀ (ତମସ୍=ଅନ୍ଧକାର+ସ୍ୱାର୍ଥରେ ଓ ଅସ୍ତି ଅର୍ଥରେ ର. ନିପାତନ)—୧ । ଅନ୍ଧକାର—1. Darkness.
Tamisra
ବାମନ ତେଜେ ଅସ୍ତ ଗଲେ, ତମିସ୍ର ସେତେକ୍ଷେ ପ୍ରାତଃ କାଳେ ।
ଜଗନ୍ନାଥ, ଭାଗବତ ।
୨ । କ୍ରୋଧ; କୋପ—2 Wrath; anger.
୩ । ଅଜ୍ଞାନ—3. Ignorance
୪ । ଅନ୍ଧକାରମୟ ନରକବିଶେଷ—
4. Name of a dark hell.
ସ. ବିଣ—ଅନ୍ଧାରୁଆ; ତମୋମୟ—Dark.

**ତମିସ୍ର ପକ୍ଷ**—ସ. ବ—ଶୁକ୍ଳ ମାସର ଅନ୍ଧାର ପକ୍ଷ; କୃଷ୍ଣପକ୍ଷ—
Tamisra paksha The dark fortnight of a lunar month.

**ତମିସ୍ରା**—ସ ବ. ସ୍ତ୍ରୀ. ( ତମିସ୍ର+ସ୍ତ୍ରୀ. ଆ )—
Tamisrā ୧ । ଗାଢ଼ ଅନ୍ଧକାର; ଘନାନ୍ଧକାର—
1 Deep darkness.
୨ । ଗାଢ଼ ଅନ୍ଧକାରମୟୀ ରାତ୍ରି; ତମୋମୟୀ ରଜନୀ—
2 Very dark night.

**ତମୀ**—ସ. ବ. ( ତମ+ଯୁକ୍ତ ବା ଅସ୍ତି ଅର୍ଥରେ ଈ )—
Tamī ୧ । ରାତ୍ରି—1. Night.
୨ । ହରିଦ୍ରା; ହଳଦୀ—2. Turmeric.
ଦେ· ବିଣ. ( ସ. ତମସ୍ୱୀ )—୧ । କ୍ରୋଧୀ; ରାଗୀ—
1. Angry; wrathful.
ଭୟରେ ଦୁର୍ଯୋଧନ ସୂଚୀ ଅଗ୍ରେ ଭୂମି
ଦେବାର କହନ୍ତି ସେ ଅଟନ୍ତି ତ ତମୀ । କୃଷ୍ଣସିଂହ· ମହାଭାରତ ଉଦ୍ୟୋଗ ।
୨ । ( ବ୍ୟସନାଦିରେ ) ଆସକ୍ତ; ରତ—2. Addicted to.
ଦ୍ରୌପଦୀ ବୋଇଲେ କ ବୋଲ ପ୍ରାଣକାନ୍ତ
କେଉଁ ରାଜା ଅକ୍ଷ ଖେଳରେ ହୋଇ ତମୀ । କୃଷ୍ଣସିଂହ· ମହାଭାରତ· ସଭା

**ତମୀଚର**—ସ. ବ. ( ତମୀ=ରାତ୍ରି+ଚର ଧାତୁ+କର୍ତ୍ତୃ. ଅ )—
Tamīchara ନିଶାଚର; ରାକ୍ଷସ—Demon

**ତମୀଜ୍**—ବୈଦେ. ବ. (ଆ)—୧ । ଭଲ ଓ ମନ୍ଦ ଚିହ୍ନିବା ଶକ୍ତି—
Tamīj 1. Discrimination.
তমীজ ୨ । ବୁଦ୍ଧି—2. Intelligence.
तमीज ୩ । ଆଦବ କାଇଦା—3. Etiquette.
(ତମୀଜଦାର—ବିଣ)

**ତୁମେ**—ଗ୍ରା. ସର୍ବନାମ—ତୁମେ ( ଦେଖ )
Tame Tume ( See )

**ତମୋଗୁଣ**—ସ. ବ. ( ମ. ପ ଲୋ; ତମଃ+ଗୁଣ )—
Tamoguṇa ୧ । ମନୁଷ୍ୟ ପ୍ରକୃତିର ତିନୋଟି ଗୁଣ ମଧ୍ୟରୁ ଅଧମ ଗୁଣ
1. The lowest human passion.
[ ଦ୍ର—କାମ କ୍ରୋଧାଦି ଷଡ଼ରିପୁ ଏଥିରୁ ଜାତ । ]

| |
|---|
| ସାଧାରଣ ଲୋକେ ଅନେକ ସ୍ଥଳରେ ୨ ଫଳାର ବ ଫଳା ଅକ୍ଷର ଓ ମାନା ୨ ଫଳା ୨ ଫଳାରେ ଅପରୀତେ ମାତ୍ରା ମଧ୍ୟରେ ସ୍ଥିରେ ରକ୍ଷା କରନ୍ତି ନାହିଁ । ଅତଏବ ବ ବା ୨ ଫଳାର କୌଣସି ବର୍ଣ୍ଣ ବା ମାନାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ଫଳାର ୨ ବା ବ ଫଳାର ବର୍ଣ୍ଣ ବା ମାନାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ମୃଢ' ନ ମିଳିଲେ 'ମୂଢ଼' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ |

୨ । ସୃଷ୍ଟିର ଅଧମ ପ୍ରକୃତିର ଏକତମ ଗୁଣ—
2. One of the 3 primeval qualities of matter.
[ ତ୍ତ୍ୱ—ହିନ୍ଦୁ ଶାସ୍ତ୍ର ଅନୁସାରେ ପ୍ରକୃତି ସତ୍ତ୍ୱ, ରଜଃ ଓ ତମଃ ଏହି ୩ ଗୁଣରେ ବିଭକ୍ତ । ସତ୍ତ୍ୱ ଗୁଣକୁ ଉଚ୍ଚ ବା ସୁଗୁଣ ବୋଲାଯାଏ । ଏହାଦ୍ୱାରା ସୃଷ୍ଟିର ଆରମ୍ଭ । ରଜଃ ମଧ୍ୟମ, ଏହା ଦ୍ୱାରା ସୃଷ୍ଟିର ପାଳନ; ତମଃ ଅଧମ ବା ମନ୍ଦ ଗୁଣ, ଏହାଦ୍ୱାରା ସୃଷ୍ଟିର ନାଶ । ]
୩ । ଅହଂକାର—3. Arrogance, pride
୪ । ସୃଷ୍ଟିର ପ୍ରଳୟକାରିଣୀ ଶକ୍ତି—4. The force which destroys the universe.

**ତମୋଗୁଣିଆଁ**—ଦେ. ବିଣ—ତମୋଗୁଣୀ ( ଦେଖ )
Tamoguṇiāṅ Tamoguṇi ( See )

**ତମୋଗୁଣୀ**—ସଂ. ବିଣ. ପୁଂ. ( ତମୋଗୁଣ + ଅସ୍ତ୍ୟର୍ଥରେ ଇନ୍; ବମା.
Tamoguṇi ବବ )—ତମୋଗୁଣ-ପ୍ରଧାନ ( ବ୍ୟକ୍ତି )—
( a person ) Having the lower animal passions predominant in the temperament.

**ତମୋଘ୍ନ**—ସଂ. ବିଣ. ପୁଂ. ( ତମସ୍=ଅନ୍ଧକାର+ହନ୍ ଧାତୁ=ନାଶ
Tamoghna କରିବା + କର୍ତ୍ତୃ. ଅ)—ଯେ ଅନ୍ଧକାର ନାଶ କରେ;
(ତମୋଘ୍ନୀ—ସ୍ତ୍ରୀ) ତମୋହା; ତମୋପହ; ତମୋହର; ତମୋନୁଦ—
Dispelling darkness.
ସଂ. ବି—୧ । ସୂର୍ଯ୍ୟ—2. The sun.
୨ । ଚନ୍ଦ୍ର—2. The moon.
୩ । ଅଗ୍ନି—3. Fire.
୪ । ଦୀପଶିଖା—4 Flame of lamp-light.
୫ । ବିଷ୍ଣୁ; ପରମେଶ୍ୱର—5. God; Bishṇu.
୬ । ଶିବ; ମହାଦେବ—5 God Śiba.
୭ । ବୁଦ୍ଧଦେବ—7. The Buddha.
୮ । ଜ୍ଞାନ—8. True knowledge.

**ତମୋଜ୍ୟୋତିଃ**—ସଂ. ବି ପୁଂ. ( ବହୁବ୍ରୀହି; ତମସ୍=ଅନ୍ଧକାର+
Tamojyotiḥ ଜ୍ୟୋତିଦ୍=ଦୀପ୍ତି )—ଜୁଳୁଜୁଳିଆ ପୋକ;
ଖଦ୍ୟୋତ—Fire-fly.

**ତମୋଦର୍ଶନ**—ସଂ. ବି—ପିତ୍ତ ପ୍ରକୋପରୁ ଉତ୍ପନ୍ନ ଜ୍ୱର (ହି. ଶବ୍ଦସାଗର)·
Tamodarśana Fever due to bile.

**ତମୋନାଶ**—ସଂ. ବି. ( ଷଷ୍ଠୀ ତତ୍; ତମଃ + ନାଶ )—
Tamonāśa ଅନ୍ଧକାରର ନାଶ—The dispulsion of darkness.

**ତମୋନାଶକ**—ସଂ. ବିଣ. ପୁଂ—ଯେ ଅନ୍ଧକାର ନାଶକରେ; ତମୋଘ୍ନ;
Tamonāśaka ତମୋପହ—Dispelling darkness.

**ତମୋନୁଦ**—ସଂ. ବିଣ. ପୁଂ. ( ତମସ୍ + ନୁଦ୍ ଧାତୁ=କ୍ଷେପଣ କରିବା
Tamonuda + କର୍ତ୍ତୃ. ଅ )—ତମୋନାଶକ ( ଦେଖ )
(ତମୋନୁଦା—ସ୍ତ୍ରୀ) Tamonāśaka ( See )
ସଂ. ବିଣ. ପୁଂ—୧ । ଅଗ୍ନି—1. Fire.
୨ । ସୂର୍ଯ୍ୟ—2. The sun
୩ । ଚନ୍ଦ୍ର—3. The moon
୪ । ପ୍ରଦୀପ—4. Lamp.
୫ । ଆଲୋକ—5 Light.
୬ । ପୁତ୍ର—6. Son.
୭ । ଜ୍ଞାନ—7. Knowledge

**ତମୋନ୍ତ୍ୟ**—ସଂ. ବି. (ତମଃ + ଅନ୍ତ + ଯ)—ସୂର୍ଯ୍ୟ ଓ ଚନ୍ଦ୍ରଗ୍ରହଣରେ
Tamontya ଦଶ ପ୍ରକାର ଗ୍ରାସ ମଧ୍ୟରୁ ଏକ (ଏଥିରେ ଚନ୍ଦ୍ର ବା
(ତମୋହନ୍ତ—ଅନ୍ୟରୂପ) ସୂର୍ଯ୍ୟମଣ୍ଡଳରେ ଶେଷ ଭାଗରେ ଅନ୍ଧକାର
ବେଶି ପରିମାଣରେ ଦେଖାଯାଏ; ମଧ୍ୟଭାଗରେ ଅନ୍ଧକାର
କମ୍ ପରିମାଣରେ ଦେଖାଯାଏ । ଫଳିତ ଜ୍ୟୋତିଷମତରେ
ଏପରି ଗ୍ରହଣ ହେଲେ ଫସଲର ହାନି ଓ ଚୌରୋପଦ୍ରବ
ଘଟେ-ହି. ଶବ୍ଦସାଗର)—
A kind of lunar and solar eclipse.

**ତମୋନ୍ଧ**—ସଂ. ବିଣ. ପୁଂ. (ସପ୍ତମୀ ତତ୍; ତମଃ + ଅନ୍ଧ)—
Tamo-ndha ୧ । ଅଜ୍ଞାନୀ (ହି. ଶବ୍ଦସାଗର)—1. Illiterate.
୨ । କ୍ରୋଧୀ (ହି. ଶବ୍ଦସାଗର)—2. Wrathful.

**ତମୋପହ**—ସଂ. ବିଣ. ପୁଂ. (ତମଃ + ଅପ + ହନ୍ ଧାତୁ + କର୍ତ୍ତୃ. ଅ)—
Tamopaha ଅନ୍ଧକାର ଦୂରକାରୀ; ଅଜ୍ଞାନନାଶକ; ମୋହନାଶକ
(ତମୋପହା—ସ୍ତ୍ରୀ Dispelling darkness.
ସଂ ବି. ପୁଂ—୧ । ସୂର୍ଯ୍ୟ—1. The sun.
୨ । ଚନ୍ଦ୍ର—2. The moon.
୩ । ଦୀପ—3. Lamp.
୪ । ଅଗ୍ନି—4. Fire

**ତମୋଭିଦ୍**—ସଂ. ବି. ପୁଂ (ତମସ୍ + ଭିଦ୍ ଧାତୁ=ଭେଦ କରିବା + କର୍ତ୍ତୃ
Tamobhid କ୍ୱିପ୍)—ଖଦ୍ୟୋତ; ଜୁଳୁଜୁଳିଆ ପୋକ—
Firefly.
ବିଣ.—ଅନ୍ଧକାର ବିନାଶକ—Dispelling darkness.

**ତମୋମଣି**—ସଂ. ବି. ପୁଂ (ତମଃ+ମଣି; ରୂପକ)—୧ । ଖଦ୍ୟୋତ—
Tamomaṇi 1. Firefly.
୨ । ଗୋମେଦ ମଣି; ପୀତବର୍ଣ୍ଣ ରତ୍ନ; ବୈଦୂର୍ଯ୍ୟ ମଣି—
2. The topaz or agate (a gem).

**ତମୋମୟ**—ସଂ. ବିଣ ପୁଂ. (ତମସ୍ + ପ୍ରାଚୁର୍ଯ୍ୟାର୍ଥେ. ମୟ)—
Tamomaya ୧ । ତମସାଚ୍ଛନ୍ନ; ଅନ୍ଧକାରାବୃତ—1. Dark;
(ତମୋମୟୀ—ସ୍ତ୍ରୀ) gloomy; involved in darkness.
୨ । ଅଜ୍ଞାନାଚ୍ଛନ୍ନ—2. Steeped in ignorance.
୩ । ଅହଂକାର ପରିପୂର୍ଣ୍ଣ—
3. Steeped in arrogance.
୪ । କ୍ରୋଧାବିଷ୍ଟ—4. Wrathful.
ସଂ. ବି. ପୁଂ.—ରାହୁ—The Ascending Node.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଟି | ଡି | ଋ,ଌ | ଌ | ଏ | ସଂଯୁକ୍ତ ବର୍ଣ୍ଣ | ଅନୁନାସିକ ପୁତ୍ରାକ୍ଷର | ଷ | ଜ | ଶ,ଷ | ଳ | ତଥ | ଦ୍ଧ | ଞ |
| ୨ | ଇ | ଉ | ରୁ | ଲୁ | ଏ୍ | ଯୋଗ୍ରଯୁକ୍ତ ବର୍ଣ୍ଣ | ଅନୁସ୍ଵାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଡ଼ | ଢ଼ଥ | ଢ଼ | ନ୍ |

**ତମୋଃରି**—ସଂ. ବି. (୬ଷ୍ଠୀ ତତ୍; ତମଃ+ଅରି)—ସୂର୍ଯ୍ୟ (ହ୍ର. ଶବ୍ଦସାଗର)
Tamori The sun.

**ତମୋହର**—ସଂ. ବିଣ. ପୁଂ (ତମସ୍+ହୃ ଧାତୁ+କର୍ତ୍ତୃ. ଅ)—ଅନ୍ଧକାର-
Tamohara ନାଶକ; ତମୋଘ୍ନ—Dispelling darkness.
(ତମୋହରୀ—ସ୍ତ୍ରୀ) ସଂ. ବି.—୧ । ଚନ୍ଦ୍ର—1. The moon.
୨ । ସୂର୍ଯ୍ୟ—2. The sun.
୩ । ଦୀପ—3. Lamp
୪ । ଅଗ୍ନି—4 Fire.

**ତମୋହା**—ସଂ. ବିଣ. (ତମସ୍+ହନ୍ ଧାତୁ+କର୍ତ୍ତୃ. କ୍ୱିପ୍)—
Tamohā ୧ । ତମୋଘ୍ନ; ତମୋନାଶକ—
1. Dispelling darkness.
୨ । ଅଜ୍ଞାନନାଶକ—2 Dispelling ignorance.
ସଂ. ବି.—୧ । ସୂର୍ଯ୍ୟ—1 The sun
୨ । ଚନ୍ଦ୍ର—2. The moon.
୩ । ଅଗ୍ନି—3. Fire
୪ । ଦୀପ—4. Lamp.
୫ । ଆଲୋକ—5 Light.

**ତମ୍ପ**—ଦେ. ବି.—(ସଂ. ତାମ୍ର; ଏ ସାପର ବର୍ଣ୍ଣ ତମ୍ବାପରି ଥିବାରୁ ଗୋଖର
Tampa ଜାତୀୟ ଏକପ୍ରକାର ବିଷଧର ସର୍ପ—
କେଉଁଟିଆ ସାପ, ଖରିସ୍ A kind of copper-coloured.
* गेहुंअन snake; cobra-de-capello.

ତମ୍ପପ୍ରାୟେ ଫୁଁ ଫୁଁ ସ୍ୱନେ ନଶ୍ୱାସି ସଘନେ ଅସୁରକୁଳ ପଶ୍ଚାତେ ।
ଜଗନ୍ନାଥ. ମହାଯାତ୍ରା ।

[ଦ୍ର—ଗୋଖର ସାପର ଫଣାରେ ଦୁଇଟି କଣ୍ଠାଉପର ଚିହ୍ନ ଥାଏ, ମାତ୍ର ତମ୍ପର ଫଣାରେ ପଦ୍ମ ପରି ଗୋଲ ଚିହ୍ନ ଦେଖାଯାଏ । ଲୋକଙ୍କର ବିଶ୍ୱାସ ଯେ ଡେମଣାସାପ ଓ ନାଗସାପର ମିଶ୍ରଣରେ ତମ୍ପସାପର ଜନ୍ମ । ତେଣୁ ଏହାକୁ ଦୋମିଶା ସାପ ବୋଲି କୁହାଯାଏ । ନାଗ ବା ଗୋଖର ଏହାପରି ବିଷଧର ସତ୍ୟ, ମାତ୍ର ଗୋଖର ମହାଦେବଙ୍କ ଭୂଷଣ ବୋଲି ଲୋକରେ ପୂଜା ପାଏ ଏବଂ ତାକୁ ଆଘାତ ନ କଲେ ସେ କାହାରିକୁ ଆଘାତ କରେ ନାହିଁ ବୋଲି ଲୋକଙ୍କର ବିଶ୍ୱାସ; କିନ୍ତୁ ତମ୍ପକୁ ଲୋକେ କ୍ରୋଧୀ ଓ ଅବିଶ୍ୱାସୀ ବୋଲି ମନେ କରନ୍ତି । ତମ୍ପ ଗୋଡ଼େଇ ଗୋଡ଼େଇ ଯାଇ ଲୋକଙ୍କୁ କାମୁଡ଼େ । ଏ ବଡ଼ କ୍ରୋଧୀ ଓ କ୍ରୂର । ଏ ସାପ କେଳାମାନଙ୍କର ପଦ୍ମତୋଳା ମାନେ ନାହିଁ । ତମ୍ପ ୫ ପ୍ରକାର; ଯଥା—କଳା, ଛତ୍ରଲିଆ ବା ତମ୍ବାକାଠିଆ ବା ଇଟାଳିଆ, ଅଡ଼େଇକିଆରିଆ, ଗେଣ୍ଡାଗିଲା ବା କୋଲଥିଆ, ଓ ବାଉଁଶବଣିଆ ।]

ପ୍ରାଦେ. (ଗଞ୍ଜାମ) ବିଣ.—ଓଦା; ଆର୍ଦ୍ର; ସନ୍ତସନ୍ତିଆ—Wet.

**ତମ୍ପ ମୁହାଁ**—ଦେ. ବିଣ. ପୁଂ—ଯେଉଁ ବ୍ୟକ୍ତି ସ୍ୱଭାବତଃ କ୍ରୋଧୀ ବୋଲି
Tampa muhāṅ ମୁହଁରୁ ଜଣା ପଡ଼େ; ଯେଉଁ ବ୍ୟକ୍ତିର ମୁଖ
(ତମ୍ପମୁହାଁ; ତମ୍ପୀମୁହାଁ—ସ୍ତ୍ରୀ) କ୍ରୋଧବ୍ୟଞ୍ଜକ ଦେଖାଯାଏ—
Of a wrathful countenance.

**ତମ୍ପା**—ସଂ. ବି. 'ତମ୍ ଧାତୁ=ଇଚ୍ଛା କରିବା+କର୍ତ୍ତୃ. ପ+ସ୍ତ୍ରୀ ଆ)—
Tampā ଗାଈ; ଧେନୁ—The cow.
ପ୍ରାଦେ. (ଗଞ୍ଜାମ) ବି—ଯବାଦି ଚୂର୍ଣ୍ଣ ସଙ୍ଗେ ଗୁଡ଼ ମିଶାଯାଇ ପ୍ରସ୍ତୁତ ହେବା ଏକପ୍ରକାର ଖାଦ୍ୟ—A food prepared by mixing molasses with barley-meal.

**ତମ୍ପୀ**—ପ୍ରାଦେ. (ଗଞ୍ଜାମ) ବି—(ସଂ. ତମ୍ପା)—ଗାଈ—
Tampī Cow.
(ତମ୍ପୀ—ଅନ୍ୟରୂପ)

**ତମ୍ପୁଆ**—ଦେ. ବିଣ—ତମ୍ପପରି କ୍ରୋଧୀ—
Tampuā Very angry.

**ତମ୍ଫ**—ଦେ. ବି—ତମ୍ପ (ଦେଖ)
Tampha Tampa (See)

କିବ ନ ଡରଇ ଉଗ୍ରଫଣ ତମ୍ଫକୁ । ଜଗନ୍ନାଥ—ଦରବାର ।

**ତମ୍ବୁରୁ**—ବୈଦେ. ବି. (ଫା)—ତମ୍ବୁର (ଦେଖ)
Tamburu Tambura (See)

**ତମ୍ବା**—ଦେ. ବି. (ସଂ. ତାମ୍ର; ପ୍ରା. ତାମ୍ବ)—ତାମ୍ର ନାମକ ଧାତୁ—
Tambā Copper.

ସଂ. ନାମ—ତାମ୍ର, ତମ୍ରକ, ଶୁଳ୍ବ, ମ୍ଲେଚ୍ଛମୁଖ, କରିଷ୍ଟ, ଉଦୁମ୍ବର, ଦ୍ୱିଷ୍ଟ, ଅମ୍ବକ, ତପନେଷ୍ଟ, ଅରବିନ୍ଦ, ରବିଲୌହ, ରବିପ୍ରିୟ, ରକ୍ତ, ନୈପାଳକ, ମୁନିପିତ୍ତଲ, ଅର୍କ, ଲୌହିତାୟସ
ताँबा, तामा
तांबा

[ଦ୍ର—ହିନ୍ଦୁ ଶାସ୍ତ୍ରମତରେ ଏହା ଗୋଟିଏ ପବିତ୍ର ଧାତୁ; ଏଥିରେ ଦେବ-ସେବା ଓ ତର୍ପଣପାଇଁ ପାତ୍ରି, ପଞ୍ଚପାତ୍ରି, ଥାଳିଆ ଆଦି ତିଆରି ହୁଏ । ଏହାର ବର୍ଣ୍ଣ ଈଷତ୍ ରକ୍ତାଭ; ଏଥିରେ ପଇସା, ମୁଦ୍ରା ଓ ନାନାପ୍ରକାରର ପାତ୍ର ପ୍ରସ୍ତୁତ ହୁଏ । ତମ୍ବାପାତ୍ରରେ ଖଟା ଜିନିଷ ରଖିଲେ ତାହା ଉକୋଇ ଯାଏ ଅର୍ଥାତ୍ ବିସ୍ୱାଦ ଓ ବିଷାକ୍ତ ହୁଏ । ତାପ ଓ ବିଦ୍ୟୁତ୍ ପ୍ରବାହର ସଂଚାର ତମ୍ବାଦ୍ୱାରା ଅଧିକ ହୁଏ ବୋଲି ଉକ୍ତ ପ୍ରବାହ ପରିଚାଳନାର୍ଥ ତମ୍ବାତାର ବ୍ୟବହୃତ ହୁଏ । ତମ୍ବାରେ ନିର୍ଦ୍ଦିଷ୍ଟ ଅନୁପାତରେ ଟିଣ ବା ଦସ୍ତା ମିଶାଇଲେ କଂସା ଓ ଦସ୍ତା ମିଶାଇଲେ ପିତଳ ହୁଏ । ଗିନି ବା ସଭରେନ୍‌ରେ (ବିଲାତି ମୋହରରେ) ସୁନା ସଙ୍ଗେ ତମ୍ବା ମିଶାଯାଏ । ଭାରତରେ ସିଂହଭୂମି ଓ କେତେକ ଗଡ଼ଜାତରେ ତମ୍ବାର ଖଣିଅଛି ।]

ଦେ. ବିଣ—ତାମ୍ରନିର୍ମିତ—Made of copper.

**ତମ୍ବା କାଠିଆ**—ଦେ. ବି—ଏକଜାତୀୟ ତମ୍ପସାପ (ତମ୍ପ ତଳେ ନୋଟ୍
Tambā kāthiā ଦେଖ)—A kind of copper-coloured cobra (see notes under 'Tampā').

**ତମ୍ବାକୁ(ଖୁ)**—ଦେ. ବି—ତମାଖୁ (ଦେଖ)
Tambāku (khu) Tamākhu (See)
तंबाकु

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତିହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କୁଥ' ନ ମିଳିଲେ 'କୂଥ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ, 'ଅଙ୍କୋ' ନ ପାଇଲେ 'ଅଙ୍କା' ଦେଖିବେ; 'ଅଲବଛ' ନ ପାଇଲେ 'ଅଲ୍‌ବଛ' ଦେଖିବେ

**ତମ୍ବାଟିଆ**—ଦେ. ବିଣ. (ସଂ. ତାମ୍ର)—୧ । ତାମ୍ରମିଶ୍ରିତ—
Tambāṭiā 1. Mixed with copper
তামাটিযা ୨ । ତାମ୍ରବର୍ଣ୍ଣ ବିଶିଷ୍ଟ; ଫିକା ନାଲିଆ—
**तामड़ा** 2. Copper-coloured; reddish brown.
(ତମ୍ବାଳିଆ - ଅନ୍ୟରୂପ)

**ତମ୍ବା ତୁଳସୀ ଛୁଇଁବା**—ଦେ. କ୍ରି—ତମ୍ବା ଓ ତୁଳସୀପତ୍ର ଛୁଇଁ ହଲପ
Tambā tuḷasī chhuiñbā ବା ଶପଥ କରିବା—
তামাতুলসী হাতে কৰা To swear by touching a piece of copper with Tulsi leaves.
[ଦ୍ର—ହିନ୍ଦୁଙ୍କର ବିଶ୍ୱାସ ଯେ ତମ୍ବା, ତୁଳସୀ, ଶାଳଗ୍ରାମ ବା ହରିବଂଶ ପୋଥି ଛୁଇଁ ଶପଥ ବା ହଲପ କରି ମିଛ କହିଲେ ହଲପ କରିବା ବ୍ୟକ୍ତିର ସର୍ବନାଶ ଘଟେ । ଏଣୁ ନ୍ୟାୟ-ପଞ୍ଚାୟତରେ ଓ ଅଦାଲତରେ ମଧ୍ୟ ଲୋକେ ବିପକ୍ଷପକ୍ଷକୁ 'କାଟିର ହଲପ' ମାଗନ୍ତି, ଅର୍ଥାତ୍ ବିପକ୍ଷ-ପକ୍ଷ 'ତମ୍ବାତୁଳସୀ', 'ତମ୍ବାତୁଳସୀ ଶାଳଗ୍ରାମ' ବା 'ତମ୍ବାତୁଳସୀ ହରିବଂଶପୋଥି' ଛୁଇଁ ହଲପ କରି ଯାହା କହିବ ତାହାଦ୍ୱାରା ହଲପ ହୋଇବା ଲୋକ ବାଧ୍ୟ ହେବ ବୋଲି ସ୍ୱୀକାର କରନ୍ତି । ]

**ତମ୍ବା ପଟା**—ଦେ. ବି. (ସଂ. ତାମ୍ରପଟ୍ଟ)—୧ । ତମ୍ବାର ପତର ବା ପଟା—
Tambā paṭā 1. Copper-plate.
তামার তকতী ୨ । ଦାନପତ୍ର ବା ସନନ୍ଦ ଫଳକ—
**तांबेका तख्ता** 2. Inscribed copper-plates embodying grants of land.
ତମ୍ବାପାଟିଆ } ଅନ୍ୟରୂପ
ତମ୍ବାପାତିଆ }
[ଦ୍ର—ପୂର୍ବେ ରାଜାମାନେ ଭୂସମ୍ପତ୍ତି ଦାନ କଲା ବେଳେ ତମ୍ବାପଟାରେ ଅକ୍ଷର ଖୋଳାଇ ସନନ୍ଦ ବା ଦାନପତ୍ର ଦେଉଥିଲେ । କାଗଜ ବା ତାଳପତ୍ରରେ ଲେଖା ସନନ୍ଦ ଅଳ୍ପକାଳରେ ନଷ୍ଟ ହୋଇଯିବାର ଆଶଙ୍କାରେ ଏହି ତମ୍ବାପଟାର ବ୍ୟବହାର ହେଉଥିଲା । ]

**ତମ୍ବାଳିଆ**—ଦେ. ବିଣ—ତମ୍ବାଟିଆ (ଦେଖ)
Tambāḷiā Tambāṭiā (See)

**ତମ୍ବାଳୁ**—ଦେ. ବି. (ସଂ. ଚର୍ମକଷା)—କ୍ଷୁଦ୍ର ବନ୍ୟ ବୃକ୍ଷବିଶେଷ—
Tambāḷu A kind of small wild tree; Ehretia
চামরকষা Taevis; Ehretia Pubescenes; Ehretia
**चमरखा** Acuminata (Haines).
[ଏହା ପୁରୀ ଜିଲ୍ଲାର ଖୋରଧା ଓ ଗଡ଼ଜାତମାନଙ୍କରେ ବିଶେଷ ପରିମାଣରେ ଦେଖାଯାଏ । ଗଛର ଗୋଲେଇ ପ୍ରାୟ ୪ ଫୁଟ; କାଠ ଖୁବ ଟାଣୁଆ ଓ ବହୁକାଳ ରହେ । ଏହାର ପତ୍ରକୁ ଚୋବାଇଲେ ଦାନ୍ତ ରଙ୍ଗ ପଡ଼ିଯାଏ । ]

**ତମ୍ବି**—ବୈଦେ. ବି. (ଆ. ତମ୍ବୀହ୍; ତୁଳ· ସଂ. ତୁମ୍ ଧାତୁ=ପୀଡ଼ନ
Tabmi କରିବା ଓ ତମ୍ ଧାତୁ=ହିଂସା କରିବା)—
তম্বী ୧ । ତର୍ଜନ; ଭର୍ତ୍ସନା—1. Rebuke; reproof;
**तंबीह** admonition; censure.
୨ । ଜିଗର; ଯିଦ୍—2. Importunity
୩ । ତୋଡ଼; ଜୁଲମ—3. Oppression; brunt.
୪ । ଧମକାଣ; ଧମକ ଦେଖାଇବା—4. Threatening.
୫ । ଜିଗର କରି କୌଣସି ବିଷୟ ତଲବ କରିବା—
5 Pressing demand.
୬ । ରାଗ; କ୍ରୋଧ—6. Anger.
୭ । ତାକିଦ୍; ପୂର୍ବରୁ ସାବଧାନ କରିବା—7. Warning.

**ତମ୍ବି କରିବା**—ଦେ. କ୍ରି—୧ । ଧମକାଇବା—1. To threaten.
Tambi karibā ୨ । ଜିଗର କରିବା—
তম্বীকৰা 2 To importune.
**तंबीह करना** ୩ । ଜୁଲମ କରିବା—3. To oppress.
୪ । ତାକିଦ୍ କରିବା; ପୂର୍ବରୁ ଦଣ୍ଡର ଭୟ ଦେଖାଇ ସାବଧାନ କରିଦେବା—4. To warn.

**ତମ୍ବିକା**—ସଂ. ବି. ସ୍ତ୍ରୀ—ଗୋ; ଗାଈ (ହି. ଶବ୍ଦସାଗର)—
Tambikā Cow.

**ତମ୍ବିତଲବ**—ବୈଦେ. ବି. (ଆ. ସହଚର)—ଜିଗର କରି କୌଣସି
Tambi talaba ବସ୍ତୁ ତଲବ କରିବା—1. Importunate
(ତମ୍ବିତାଗିଦା—ଅନ୍ୟରୂପ) demands; pressing demands.
୨ । କୌଣସି ବ୍ୟକ୍ତିକୁ ଧମକ ଦେଖାଇ ତାଠାରୁ କିଛି ନେବାକୁ କହିବା—2. Threatening demands; dunning threats and demands.
୩ । ଦଣ୍ଡର ଭୟ ପ୍ରଦର୍ଶନପୂର୍ବକ ତାକିଦ୍—3. Warning.

**ତମ୍ବିବାଜ୍**—ବୈଦେ. ବିଣ (ଆ.)—ଅତ୍ୟାଚାରୀ; ଜିଗରବାଜ୍—
Tambi bāj Threatening; oppressive;
তম্বিবাজ্ importunate.
**तंबीहबाज**

**ତମ୍ବୁ**—ବୈଦେ. ବି (ଆ. ତମ୍ବୂ=ଯୋଗେଶ୍ଚନ୍ଦ୍ର; ସଂ. ତନ୍ ଧାତୁ ହି.
Tambu ଶବ୍ଦସାଗର)—ଶିବିର; ପଟ୍ଟବାସ; ରାଉଟି; କନାଘର—
তাঁবু **तंबू** Tent.

**ତମ୍ବୁକୁ ତୋପଖାନ ଦେଖାଇବା**—ଦେ.କ୍ରି—୧ । ଡର ମାରିବା—1. To
Tambuku tophāna dekhāibā inveigle (a person).
ତମ୍ବୁ ତୋପଖାନ(ନା)କରି କହିବା } ଅନ୍ୟରୂପ
ତମ୍ବୁ ତୋପଖାନ ଦେଖାଇବା }
୨ । କୌଣସି ବ୍ୟକ୍ତିକୁ ଧମକ ଚମକ କରିବା ବା ଭୟ ଦେଖାଇବା—2. To threaten a person.

**ତମ୍ବୁରି**—ବୈଦେ. ବି (ଫା. ତମ୍ବୁରଚି)—ତମ୍ବୁରଚି; ଢୋଲିଆ; ଯେ
Tambuchi ତମ୍ବୁରୁବାଜା ବଜାଏ—Drummer.
তম্বুর্চি, **तंबुरची**

**ତମ୍ବୁର(ରୁ)**—ଦେ. ବି (ସଂ. ତୁମ୍ବୁରୁ=ସଙ୍ଗୀତବିଦ୍ୟାନିପୁଣ ଗନ୍ଧର୍ବ
Tambura (ru) ବିଶେଷ)—ତାନପୁରା; ତିନିଗୋଟି ତାରଯୁକ୍ତ ବାଦ୍ୟ
তানপুরা ବିଶେଷ; ତିନତାର—1. A three-stringed
**तंबूरा** musical instrument.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | କ୍କ | ପ୍ପ | ଙ୍ଗ | ଞ୍ଚ |
| ୨ | ଈ | ଊ | ରୁ | ଲୁ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଞ୍ଜ | ନ୍ |

[ଦ୍ର—ଏହା କେବଳ ସଙ୍ଗୀତ ବୋଲିବାବେଳେ ସ୍ୱର ଦେବା ପାଇଁ ବଜାଯାଏ; ଏହାର ଦୁଇ ପାଖର ଦୁଇ ତାର ପିତଳର ଓ ମଝି ତାର ଲୁହାର; କେତେକ ଯନ୍ତ୍ରରେ ମଝିରେ ଦୁଇଟି ଲୁହା ତାର ଥାଏ ।]

ତଂବୁର **ତ୍ବୁର** ବୈଦେ. ବି (ଫା. ତମ୍ବୂର)—ଛୋଟ ଢୋଲ; ଢୋଲକି—A small drum.

**ତମ୍ବୁରା**—ଦେ. ବି—କମାରଙ୍କ ସଣ୍ଡୁଆସୀ—A pair of pincers of Tamburā tongs

ତମ୍ବୁରା **तंबूरा** ବୈଦେ. ବି (ଫା.)—୧ । ତମ୍ବୂର (ଦେଖ) 1. Tambura (See)

୨ । ଏକପ୍ରକାର ତୋପ—2. A kind of cannon.

**ତମ୍ବୋରା**—ବୈଦେ ବି (ଫା.)—ତମ୍ବୂର (ଦେଖ) Tamborā Tambura (See)

ତାଳ ମୃଦଙ୍ଗ ବେଣୁ ବୀଣା ପିନାକୀ ରବା ତମ୍ବୋର ସେ ସେନ—ପ୍ରାଚୀ ପ୍ରଭାପ ଶଶିସେଣା ।

**ତୟନ୍**—ବୈଦେ ବି. ଓ ବିଣ. (ଆ.)—ତଇନ୍ (ଦେଖ) Tayan Tain (See)

(ତୟୂନ, ତୟିନ୍, ତୟିନ, ତୟେନ୍, ତୟେନ—ଅନ୍ୟରୂପ)

**ତୟନାତ୍**—ବୈଦେ. ବି ଓ ବିଣ (ଆ.)—ତଇନାତ୍ (ଦେଖ) Tayanāt Taināt (See)

(ତୟିନାତ୍, ତୟେନାତ୍, ତୟେନାତ—ଅନ୍ୟରୂପ)

**ତୟାର(ରି) (ଇତ୍ୟାଦି)**—ବୈଦେ. ବି ଓ ବିଣ (ଆ. ତୈୟାର୍) Tayāra (ri) (etc.) ତିଆର ଇତ୍ୟାଦି (ଦେଖ) Tiāra etc. (See)

**ତୟାରି**—ପ୍ରାଦେ. (ବାଲେଶ୍ୱର) ବି—ନଈ ମୁହାଣରୁ ଧରାଯିବା ଏକପ୍ରକାର Tayāri ଲୁଣୀ ମାଛ—A kind of sea-fish caught at the mouths of rivers.

ବୈଦେ. ବି ଓ ବିଣ (ଆ.)—ତୟାର (ଦେଖ) Tayāra (See)

**ତର**—ସଂ. ବି (ତୃ ଧାତୁ=ପାର ହେବା+ଭାବ. ଅ)—

Tara ୧ । ସନ୍ତରଣ—1. Swimming.

୨ । ଅତିକ୍ରମଣ; ପାରହେବା—2. Crossing.

୩ । ଗତି—3. Motion.

ଏବେ ଗୃହୀଁ ବ ସେବେ ଲୁହିତରେ—ଉ୍ଭଞ୍ଜ. ପ୍ରେମସୁଧାନିଧି ।

୪ । (+ଅଧିକରଣ. ଅ) ପଥ—4. Path; road; way.

୫ । ଆଘାତ—5. Striking; stroke.

୬ । (+କରଣ. ଅ) ଘାଟ-ପାର ମାହାସୁଲ; ନଈ ଆଦି ପାର ହେବା ସକାଶେ ଘାଟବାଲାଙ୍କୁ ଦେବା ଶୁଳ୍କ—6. Toll paid for being taken across a ferry.

୭ । ନଈ ପାର କରବା ନୌକା—7. A ferry-boat.

୮ । ପାର ଉତାର କରବା କର୍ମ—8. Ferrying across.

୯ । ଅଗ୍ନି (ହ୍ର. ଶବ୍ଦସାଗର)—9. Fire.

୧୦ । ବୃକ୍ଷ (ହ୍ର. ଶବ୍ଦସାଗର)—10. Tree.

ସଂ. ବିଣ. (+କର୍ତ୍ତୃ. ଅ)—ପାରଗାମୀ—Having crossed a river or water.

ସଂ. ପ୍ରତ୍ୟୟ—୧ । ଦୁଇ ବ୍ୟକ୍ତି ବା ବସ୍ତୁ ମଧ୍ୟରେ ଉତ୍କର୍ଷ ବା ଅପକର୍ଷସୂଚକ ପ୍ରତ୍ୟୟବିଶେଷ—1. Comparative suffix added to adjectives like 'er'as in 'smaller' and 'greater'.

[ଯଥା—ଗୁରୁତର; କ୍ଷୁଦ୍ରତର]

[ଦ୍ର—ଗୁଣବାଚକ ବିଶେଷଣ ପଦର ଉତ୍ତର ଏହି ପ୍ରତ୍ୟୟ ହୁଏ ।]

୨ । ଦୁଇ ବସ୍ତୁ ମଧ୍ୟରୁ ଏକକୁ ନିର୍ଦ୍ଦେଶ କରିବାପାଇଁ କିମ୍, ତଦ୍ ଓ ଯଦ୍ ଶବ୍ଦ ସଙ୍ଗେ ବ୍ୟବହୃତ ପ୍ରତ୍ୟୟ—1 A suffix indicating one of the two.

[ଦ୍ର—ଏଥିରେ ନିଷ୍ପନ୍ନ ପଦ କତର, ତତର, ଯତର—ଅପ୍ରେ]

ଦେ. ବି—୧ । ଛଳନା—1. Feigning; excuse; pretence.

[ଯଥା—ପିଲା ଗୃହାଳକୁ ନ ଯିବା ପାଇଁ ତର କାଢୁଛି ।]

୨ । ସୁଯୋଗ; ସୁବିଧା—2. Opportunity.

୩ । ବିଳମ୍ବ—3. Delay.

[ଯଥା—ଭାତ ଗଳା ଦେବା ଯାଏ ମୋର ତର ସହୁନାହିଁ ।]

୪ । ଅବକାଶ; ଫୁରୁସତ୍—4. Leisure.

ତୋତେ ନମିଷେ ନାହିଁ ତର—ପ୍ରାଚୀ. ଜଗନ୍ନାଥ ମାହାତ୍ମ୍ୟ ।

ଦେ. କ୍ରି. ବିଣ—(ସ୍ୱଭାବ) ଚଞ୍ଚଳ; ଶୀଘ୍ର; ଭୁରତ—Swiftly; hurriedly.

ବୃଷଭ୍ରସରେ ବୃଷ ଘୁଷେଣେ ଅତି ତର—ଉଞ୍ଜ. ବୈଦେହୀଶବିଳାସ ।

ପ୍ରାଦେ. (ବାଲେଶ୍ୱର) ସର୍ବନାମ—ତୋର; ତୋହୋର—Your; yours.

**ତରକ**—ଗ୍ରା. (ପଦ୍ୟ) ବି (ସଂ. ତର୍କ)—୧ । ବାଦାନୁବାଦ; ତର୍କ—Taraka 1. Reasoning; argument.

ତରକ **तरक** ୨ । ଛନ୍ଦ; କପଟ; ଧୂର୍ତ୍ତତା—2. Deceit; craftiness; fraud; knavery.

୩ । କୌଶଳ—3. Trick.

କର୍ଣ୍ଣ ତ ସୁବ କୁଅ ତରକ ଜାଣନ୍ତି
ପଳାଇଲେ ହେଲେ ବନ୍ଧିଲେ ଶର ଅତ—କୃଷ୍ଣସିଂହ, ମହାଭାରତ କର୍ଣ୍ଣ ।

**ତରକଣା**—ଦେ (ପଦ୍ୟ) ବି (ସଂ. ତର୍କଣା)—୧ । ତର୍କ—Tarakaṇā 1. Reasoning.

୨ । ଅନୁମାନ—2. Guess.

**ତରକ ତାରକ**—ଦେ. ବି (ସଂ. ତର୍କ ଧାତୁ)—୧ । ବିଶେଷ ସାବଧାନତା; Taraka tāraka ହୁସିଆର—1. Vigilance.

ତାକତରକ **चौकसी** ୨ । ତାକତରକ; ପରସ୍ପର ଜଗାଜଗି—2. Watching each other.

(ଯଥା—ମାମଲତକାର ଦୁଇ ଜଣଯାକ ଯୋଗ୍ୟ ତରକ-ତାଲୁକରେ ଅଛନ୍ତି।)

**ତରକ ତ୍ୟାଗୀ**—ଦେ ବି—୧ । ଯେଉଁ ଯୋଗୀ ଅନ୍ୟଠାରୁ ଭିକ୍ଷା ଗ୍ରହଣ କରେ ନାହିଁ ଓ ଯାହା ପାଏ ତାହା କ୍ଷୁଧା-ଶାନ୍ତି ପାଇଁ ସଙ୍ଗେସଙ୍ଗେ ଭୋଜନ କରେ—
Taraka tyāgi
1. An anchorite who does not take any gift but only eats any food given him when hungry.

ତରକତ୍ୟାଗୀ ବୋଲି ଡାକୁ କହି
ଅୋବ ନାହିଁ ଲଜ୍ଜା ନ ହୁଇ—ପ୍ରାଚୀ, ଭେଟେଗାଣ୍ଡା।

୨ । ଯେଉଁ ବ୍ୟକ୍ତିର ଜ୍ଞାନ ଅତି ସାମାନ୍ୟ ଥିବାରୁ ସେ ଧର୍ମ ବିଷୟରେ ତର୍କ କରେ ନାହିଁ—
2. A person whose knowledge is scanty and so who does not enter into arguments.

**ତରକସ୍**—ବୈଦେ. ବି (ଫା. ତର୍‌କଶ୍)—ତୂଣୀର; ଶର ରଖିବାର ମୁଣା—
Tarakas
Quiver.
তরকশ तरकश

**ତରକା** ଦେ. ବିଣ—୧ । (ସଂ. ତରଳ; ତ୍ରସ୍ତ)—ଡ଼ରୁଆ; ଭୟାଳୁ; ଯେ ସାମାନ୍ୟ କାରଣରୁ ଅସ୍ଥିର ହୋଇ ପଳାଇଯାଏ; ଭୀରୁ—
Tarakā
(ତର୍କା—ଅନ୍ୟରୂପ)
1. Timid; easily frightened; shy.
চমকে, ভীতু चौकना

୨ । (ସଂ. ଚତୁର)—କୌଶଳୀ; ଚତୁର—
2. Shrewd; elusive; crafty; sly.

୩ । (ସଂ. ସତର୍କ)—ହୁସିଆର; ସାବଧାନ—
3. Cautious; vigilant.

୪ । (ସଂ ତରସ=ବେଗ)—ଅତ୍ୟନ୍ତ ବେଗବାନ୍—
4. Very fleet.

ବାପ ବଙ୍କା, ପୁଅ ସଳଖା, ନାତ ଝୋକାନ୍ତ ତେ ତରକା।
(ଧନୁ, ଗୁଣ ଓ ଶର)—ପ୍ରହେଳିକା

ବୈଦେ. ବି (ଆ)—୧ । ତରକା ହିଂସା (ଦେଖ)
1. Tarakā himsā (See).

୨ । ପରୋକ୍ଷ ଉତ୍ତରାଧିକାରୀଙ୍କୁ ମିଳିବା ମୃତ ବ୍ୟକ୍ତିର ସମ୍ପତ୍ତି—
2. Property left by a deceased which is inherited by his collateral heirs.

ପ୍ରାଦେ (ସିଂହଭୂମ) ବି (ତୁଳ. ଏହି ଅର୍ଥରେ ହି. ତରକୀ)—କାପ; କାନର ବର୍ତ୍ତୁଳ ଅଳଂକାରବିଶେଷ; ତଡ଼କା—
A kind of flat ornament for the ears.

**ତରକା(କେ)ଇବା**—ଦେ. କ୍ରି—୧ । ଡ଼ରୁଡ଼ାଇବା—
Tarakā(ke)ibā
1. To frighten; to cause one to shy.
भड़काना

୨ । ପୂର୍ବରୁ ସାବଧାନ କରାଇ ଦେବା—
2. To warn beforehand.

**ତର କାଢ଼ିବା**—ଦେ. କ୍ରି—୧ । ଛଳନା କରିବା—
Tara kārdhibā
1. To give out an excuse.
तरसाना

୨ । ଲୋକଙ୍କୁ ବିଚଳିତ କରାଇବା ନିମନ୍ତେ ମିଥ୍ୟା ଭୟ ଦେଖାଇବା—2 To raise a false alarm.

୩ । ବଞ୍ଚିତ କରିବା ଅଭିପ୍ରାୟରେ କୌଣସି ବ୍ୟକ୍ତିକୁ ବୃଥା ଆଶା ଦେଖାଇବା—To tantalise.

୪। ଭଣ୍ଡାଇବା—4. To inveigle.

**ତରକା ତରକି**—ଦେ. ବି (ସଂ. ତର୍କ)—ତରକ ତାରକ (ଦେଖ)
Tarakā taraki
Taraka tāraka (See)

**ତରକା ପଣିଆ**—ଦେ. ବି—୧ । ସାମାନ୍ୟ କଥାରେ ଭୟ ପାଇବା ସ୍ୱଭାବ—
Tarakā paṇiāṅ
1. Timidity; shyness.

୨ । ଧୂର୍ତ୍ତତା—2. Shrewdness.

**ତରକାରି**—ବୈଦେ. ବି (ଫା. ତର୍‌କାରୀ=କଞ୍ଚା ଶାଗ ପତ୍ର)—
Tarakāri
(ଉର୍ଦ୍ଦୁରେ ତରକାରୀର ଅର୍ଥ—ମାଂସ ତିଅଣ)
(ତକାରୀ—ଅନ୍ୟରୂପ) ୧ । ତର୍କାରି; ବ୍ୟଞ୍ଜନ; ତିଅଣ; ପରିବା ତିଅଣ—
তবকাৰী
1. Vegetable curry.
तरकारी

୨ । ମାଛ ମାଂସର ତିଅଣ—
2. Fish or meat curry.

୩ । ବ୍ୟଞ୍ଜନାର୍ଥ ଗୃହୀତ ଫଳ ମୂଳାଦି; ପରିବା—
3. Kitchen-vegetables; esculent vegetables; greens.

[ଦ୍ର—ଏ ଶବ୍ଦ ଡାଲି, ଭାତ, ତିଅଣ, ଭଜା ଆଦି ଶବ୍ଦ ସଙ୍ଗେ ଅନୁଚରରୂପେ ବ୍ୟବହୃତ ହୁଏ; ଏହାର ଫାରସୀ ଅର୍ଥ ପରିବାପତ୍ରରେ ରନ୍ଧା ତିଅଣ ଓ କଞ୍ଚା ପରିବା ଓ ଶାଗ ।]

**ତରକା ହିଂସା**—ବୈଦେ. ବି (ମୁସଲମାନଙ୍କ ସମ୍ପତ୍ତି ବିଭାଗ ଆଇନ)—
Tarakā himsā
(ଫା. ତର୍‌କା=ମୃତ ବ୍ୟକ୍ତିର ତ୍ୟକ୍ତ ସମ୍ପତ୍ତିର ଅବଶିଷ୍ଟ ଅଂଶ + ହିସ୍ସା=ବଣ୍ଟନରେ ବିଭକ୍ତିତ ଅଂଶ)—କୋରାନ୍ ଅନୁସାରେ ମୃତ ବ୍ୟକ୍ତିର ପ୍ରତ୍ୟକ୍ଷ ଉତ୍ତରାଧିକାରୀମାନେ ଅଂଶ ନେବା ପରେ ଅବଶିଷ୍ଟ ସମ୍ପତ୍ତିକୁ ବାଣ୍ଟିନେବା ହିଂସାଦାରଙ୍କ ହିସ୍ସା—
(ତରକାହିଂସା—ଅନ୍ୟରୂପ)
তরকাহিসা तरकोहिसा
Residuary share got by certain collateral relations of a deceased person.

**ତରକିବ୍**—ବୈଦେ. ବି (ଆ. ତର୍‌କୀବ୍)—୧ । ସଂଯୋଗ; ମେଳ—
Tarakib
1. Union.
তবকীব

୨ । ରଚନା—2. Composition.
तरकीब

୩ । ରଚନାର ଢଙ୍ଗ; ରଚନାପ୍ରଣାଳୀ—
3. Style of composition.

୪ । ଉପାୟ—4. Means.

**ତରକିବା**—ଦେ. କ୍ରି—୧ । (ସଂ. ସତର୍କ) ପୂର୍ବରୁ ସାବଧାନ ହେବା—
Tarakibā
(ତର୍କିବା—ଅନ୍ୟରୂପ)
1. To be vigilant or cautious beforehand.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ୨ | ଊ | ଋ,ଋ | ଌ | ଏ | ଦୀର୍ଘ ... | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ... | ... | ... |
| ୬ | ଝ | ଊ | ରୁ | ଲୁ | ଐ | ଏକାରାନ୍ତ ବ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | | ଖ | ... | ... | ... | ... | ... |

କେ ବୋଇଲେ ଏ ଘୋର ଜଣିବାରୁ ଭୟ୍ଥା,
ତରକ ପଳାଇଲ ସ୍ୱର୍ଗେ କବା ଗମ୍ଥା । କୃଷ୍ଣସିଂହ-ମହାଭାରତ-ବନ ।

୨ । ଝୁରୁଡ଼ିବା—2 To shy; to run away with alarm.

୩ । (ସଂ. ତର୍କ ଧାତୁ) ଜାଣିବା—3. To know.

ତରକ ନ ପାର ଯା ମନେ, କେ ତାହା କହିବ କେବେ—
ଜଗନ୍ନାଥ. ହରେକ ।

୪ । ତର୍କଣା କରିବା, ଅନୁମାନ କରିବା—4. To guess.

ବେମାନେ ସେ କଥା ତରକ ଜାଣିଲେ—କୃଷ୍ଣସିଂହ. ମହାଭାରତ. ବନ ।

**ତରକ୍ଷୁ**— ସଂ. ବି (ତର=ପଥ+କ୍ଷି ଧାତୁ=କ୍ଷୟ କରିବା+କର୍ତ୍ତୃ. ଉ)—
Tarakshu ଗଧିଆ; ହେଣ୍ଡାବାଘ; ବାଘେଣ୍ଡା—Wolf; hyena.

**ତରଙ୍ଗ୍ ତରଙ୍ଗ୍**—ଦେ ବିଣ (ସଂ. ତରଙ୍ଗ; ତରଙ୍ଗ ସଦୃଶ ଅସ୍ଥିର)—
Tarang tarang ଟଙ୍ ଟଙ୍; ଚଞ୍ଚଳ; ଚପଳ—Restless; fidgety disquieted.
चं चं
बेचैन (ଯଥା—ବଣ ଜନ୍ତୁକୁ ଅଣି ଘରେ ରଖିଲେ ସେ ପ୍ରଥମେ କିଛିକାଳ ତରଙ୍ଗ୍ ତରଙ୍ଗ୍ ହୁଏ ।)

**ତରଙ୍ଗ**— ସଂ. ବି ( ତୃ ଧାତୁ=ପାର ହେବା; ଗମନ କରିବା+ଅଙ୍ଗ )—
Taranga ୧ । ଊର୍ମି; ଢେଉ; ଲହରୀ—1. Wave; ripple; billow.

୨ । ପ୍ରବଳ ଅଶ୍ରୁଧାର—2. Profuse tear.

୩ । ଅଙ୍ଗଭଙ୍ଗୀ; ଦେହର ଭଙ୍ଗୀ—3. Posture.

୪ । କମ୍ପ; କମ୍ପନ—4. Oscillation.

୫ । କଥାର ଭଙ୍ଗୀ—5. Wit, humorous word.

୬ । ଲୁଗାର କୁଞ୍ଚ—6. Ripples raised by folding a cloth artistically.

୭ । 'ସାଗର' ବା 'ସମୁଦ୍ର' ବା 'ତରଙ୍ଗିଣୀ' ଉପାଧିଯୁକ୍ତ ସଙ୍ଗୀତ ବା କାବ୍ୟାଦି ଗ୍ରନ୍ଥର ଖଣ୍ଡ ବା ଭାଗ—7. Section or volume of a book.

( ଯଥା—ଦାମୋଦର ପଟ୍ଟନାୟକଙ୍କ 'ସଙ୍ଗୀତ ସାଗର'ର ୧ମ, ୨ୟ, ୩ୟ, ଓ ୪ର୍ଥ ଆଦି ତରଙ୍ଗ । )

୮ । ସଙ୍ଗୀତରେ ସ୍ୱରର କମ୍ପନ; ସ୍ୱରଲହରୀ; ମୂର୍ଚ୍ଛନା—
8. Modulation of voice or tune in music.

୯ । ଉଲ୍ଲାସ ଓ ଆନନ୍ଦ ଆଦିର ବନ୍ୟା—
9. Burst of delight.

୧୦ । ବସ୍ତ୍ର; ଲୁଗା (ହି. ଶବ୍ଦସାଗର)—10. Cloth.

୧୧ । ଘୋଡ଼ା ଆଦିଙ୍କ କୁଦା (ହି. ଶବ୍ଦସାଗର)—11. Gallop.

ଦେ. ବିଣ—ଚଞ୍ଚଳ—Restless, quick.

ଏକାନ୍ତ କାନ୍ତ-ଆଲିଙ୍ଗନ-ଭାବେ ମଗନ ହୋଇ,
ଥିବ ପାଶବନ୍ଧ କୁରଙ୍ଗୀପରି ତରଙ୍ଗ ନୋହି । ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ତରଙ୍ଗକ**— ସଂ. ବି (ତରଙ୍ଗ+କ)—ତରଙ୍ଗ ( ଦେଖ )
Tarangaka Taranga (See)

**ତରଙ୍ଗବତୀ**—ସଂ. ବି. ସ୍ତ୍ରୀ (ତରଙ୍ଗ+ବତ୍+ସ୍ତ୍ରୀ. ଈ)—ନଦୀ—
Tarangabati River.

**ତରଙ୍ଗା**—ଦେ. ବିଣ. ପୁଂ—ଚଞ୍ଚଳସ୍ୱଭାବ—
Taranga Of restless nature; fidgety.
(ତରଙ୍ଗିଆ—ଅନ୍ୟରୂପ)
(ତରଙ୍ଗୀ, ତରଙ୍ଗେଇ—ସ୍ତ୍ରୀ)

**ତରଙ୍ଗାକୁଳିତ**— ସଂ. ବିଣ. (୩ୟା ତତ୍; ତରଙ୍ଗ+ଆକୁଳିତ)—
Tarangākulita ୧ । ତରଙ୍ଗଯୁକ୍ତ; ତରଙ୍ଗିତ—
(ତରଙ୍ଗାନ୍ୱିତ—ଅନ୍ୟରୂପ) 1. Wavy; billowy.

୨ । ତରଙ୍ଗ ଦ୍ୱାରା ଆନ୍ଦୋଳିତ—
Ruffled or agitated with waves.

**ତରଙ୍ଗାୟମାନ**— ସଂ. ବିଣ. (ତରଙ୍ଗ+ଅଚରଣ ଅର୍ଥରେ ଆୟ=
Tarangāyamāna ତରଙ୍ଗାୟ ନାମ ଧାତୁ+କର୍ତ୍ତୃ ମାନ)—
ତରଙ୍ଗାୟିତ (ଦେଖ)—Tarangāyita (See)

**ତରଙ୍ଗାୟିତ**— ସଂ. ବିଣ (ତରଙ୍ଗ+ଅଚରଣାର୍ଥରେ ଆୟ=ତରଙ୍ଗାୟ
Tarangāyita ନାମ ଧାତୁ+କର୍ତ୍ତୃ. ତ)—ତରଙ୍ଗ ଉଠୁଥିବା; ଢେଉ ଉଠୁଥିବା; ଢେଉପରି ଚଞ୍ଚଳ ହେଉଥିବା; ତରଙ୍ଗଯୁକ୍ତ—Wavy; undulating.

**ତରଙ୍ଗାଳି**— ସଂ. ବି—ନଦୀ (ହି. ଶବ୍ଦସାଗର)—
Tarangāli River.

**ତରଙ୍ଗିଣୀ**— ସଂ. ବି. ସ୍ତ୍ରୀ. (ତରଙ୍ଗ+ଅସ୍ତି ଅର୍ଥରେ ଇନ୍+ସ୍ତ୍ରୀ. ଈ)—
Tarangini ନଦୀ—River.

**ତରଙ୍ଗିତ**— ସଂ. ବିଣ. (ତରଙ୍ଗ+ଯୁକ୍ତାର୍ଥରେ. ଇତ)—
Tarangita ୧ । ତରଙ୍ଗଯୁକ୍ତ; ଢେଉପରି ଉଠୁଥିବା ଓ ପଡୁଥିବା—
1. Billowy; wavy; undulating.

୨ । ଭଙ୍ଗୀବିଶିଷ୍ଟ—2 Agitated; having postures of the body.

୩ । ଚଞ୍ଚଳ— 3. Restless.

**ତରଙ୍ଗୀ**— ସଂ. ବିଣ. ପୁଂ. ( ତରଙ୍ଗ+ଇନ୍; ୧ମା. ୧ବ )—
Tarangi ୧ । ଲହରୀଯୁକ୍ତ—1. Wavy.

୨ । ମନମୌଜୀ; ବେପରୁଆ—
2. Wilful; happy-go-lucky.

**ତରଚ**—ପ୍ରାଦେ. ( ସମ୍ବଲପୁର ) ବିଣ—ତରଛ ( ଦେଖ )
Taracha Tarachha ( See )

**ତରଛ**—ଦେ. ବିଣ. ( ସଂ. ତ୍ରସ୍ତ; ତୁଳ. ପାଲି. ତରଛ )—
Tarachha ସନ୍ତ୍ରସ୍ତ; ହଠାତ୍ ଭୀତ; ଅତରଛ; ଭୟବିହ୍ୱଳ—
তৰাস Frightened; terrified
तरस, तरास

ତରଛ ହୋଇଣ ବେଗୀ ଗାଈଁବା ପଣରେ ।
ପ୍ରାଚୀ. ଶିବ ସ୍ୱରୋଦୟ ।

ଦେ. ବି—ହଠାତ୍ ଉପସ୍ଥିତ ଭୟ; ଚମକ;—
Sudden fright.

**ତରଛରିଆ**—ପ୍ରାଦେ. ( ଯାଜପୁର ) ବିଣ—ଅତଛିଆ ( ଝାଡ଼ା )—
Tarachhariā Terrific; frightful.

> ସାଧାରଣ ଲୋକେ ଅନେକ ସ୍ଥଳରେ ୧ ଚନ୍ଦ୍ରବିନ୍ଦୁ ଅନେକ ଓ ୨ ଚନ୍ଦ୍ରବିନ୍ଦୁ ଅନେକ ଓ ମାତ୍ରା ମଧ୍ୟରେ ପ୍ରଭେଦ କରି ନ ପାରନ୍ତି । ଅତଏବ ୧ ବା ୨ ଚନ୍ଦ୍ରବିନ୍ଦୁ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ତାହା ଏହି ପରି ଯଥାକ୍ରମେ ଚନ୍ଦ୍ରର ବଦଳରେ ୨ ବା ୧ ଚନ୍ଦ୍ରବିନ୍ଦୁ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅଦ୍ଧ' ଦେଖିବେ; 'ଅଲଙ୍କୃତ' ନ ପାଇଲେ 'ଅଲଂକୃତ' ଦେଖିବେ।

**ତରଛା**—ଦେ. ବି ଓ ବିଣ. ( ଦ୍ର ଦେଖ )—ତରଛ ( ଦେଖ )
Tarachhā — Tarachha ( See )

**ତରଛା(ଛେ)ଇବା**—ଦେ. କ୍ରି. ( ସଂ. ତ୍ରାସ )—
Tarachhā(chhe)ibā — ହଠାତ୍ ଭୟ ଜନ୍ମାଇବା; ଡରାଇବା—
तरसाना, तिरसाना, डराना, — To cause sudden fright

**ତରଛିଆ**—ଦେ. ବିଣ. ( ସଂ. ତ୍ରସ୍ତ; ତ୍ରସ୍ତର )—
Tarachhiā — ୧ । ହଠାତ୍ ଉପସ୍ଥିତ ଭୟ ଦ୍ୱାରା କମ୍ପିତ—
তরাসিয়া — 1. Frightened; terrified.
त्रसित, डरपाक — ୨ । ହଠାତ୍ ଭୀତି ଉତ୍ପାଦକ—
1. Frightening; terrific.
୩ । ଭୟଶୀଳ; ଭୀରୁ; ଭୟାଳୁ—3. Timid.

**ତରଛିବା**—ଦେ. କ୍ରି. ( ସଂ. ତ୍ରାସ )—
Tarachhibā — ଭୀତ ହେବା; ହଠାତ୍ ଭୟ ପାଇବା—
To take sudden fright; to be frightened.

**ତରଜନ**—ଗ୍ରା. ( ପଦ୍ୟ ) ବି—ତର୍ଜନ ( ଦେଖ )
Tarajana — Tarjana ( See )
তরজন — ଦେଲେ କହରକୁ କର ତରଜନ ।
तरजन — କୃଷ୍ଣସିଂହ. ମହାଭାରତ. ବନ ।
(ତରଜନା—ଅନ୍ୟରୂପ)

**ତରଜନ ଗରଜନ**—ଗ୍ରା. ବି —(ସଂ. ତର୍ଜନ ଗର୍ଜନ)—
Tarajana garajana — ତର୍ଜନ ଗର୍ଜନ (ଦେଖ)
Tarjana garjana (See)

**ତରଜମା**—ବୈଦେ. ବି.—( ଆ. ତର୍ଜୁମା )—୧ । ଭାଷାନ୍ତରୀକରଣ;
Tarajamā — ଅନୁବାଦ—1. Translation.
তরজমা — ୨ । ଭାଷାନ୍ତରିତ ବା ଅନୁବାଦିତ ବିଷୟ—
तरजुमा — 2. Translated matter.
(ତରଜୁମା, ତର୍ଜମା—ଅନ୍ୟରୂପ)

**ତରଜା**—ଦେ. (ସଂ. ତର୍ଜନା)—ତର୍ଜନା; ଗାଳିମନ୍ଦ—
Tarajā — 1. Admonition.
तरजना — ଦେ. ବିଣ.—୧ । ଯେ ତର୍ଜନା କରେ; ତର୍ଜକ—
1. Admonising; one who rebukes; reproaching.
୨ । ଉତ୍ତେଜିତ; ତର୍ଜିତ —2. Excited.

**ତରଜିବା**—ଦେ. (ପଦ୍ୟ) କ୍ରି (ସଂ. ତର୍ଜ ଧାତୁ)—୧ । ତର୍ଜିବା; ଧମକାଇ
Tarajibā — ଗାଳି ଦେବା—1. To threaten and abuse.
তরজা
तरजना — ୨ । ଭୟ ଦେଖାଇବା—2. To threaten.
ନଥିଲା ଯାହାଙ୍କୁ ପାଟଳ ପ୍ରସୂନ
ହାମିକି ତରଜେ ସେମନ୍ତେ କାନ-ଚୁଣ— । ରାଧାନାଥ, ଚନ୍ଦ୍ରଭାଗା ।

**ତରଜୁତ୍**—ବୈଦେ. ବି (ଆ. ତରଦ୍ଦୁଦ୍) (ଜଟରଆ)—୧ । ବନ୍ଦୋବସ୍ତ—
Tarajut — 1. Settlement; arrangement.
তবদ্দুদ — ୨ । ଚର୍ଚ୍ଚା—
तरद्दुद — 2. Discussion; treatment.
(ତରଦ୍ଦୁଦ୍—ଅନ୍ୟରୂପ) — ୩ । ରକ୍ଷଣାବେକ୍ଷଣ—
3. Preservation; looking after.
୪ । ଚିନ୍ତା; କଳ୍ପନା—4. Contemplation; thought.

**ତରଜୁତ୍ ଆବାଦ କରିବା**—ଦେ. କ୍ରି (ଆ. ତରଦ୍ଦୁଦ୍+ଆ. ଆବାଦ୍)
Tarajut ābād karibā (କଟକଆ) କୌଣସି ଜମିକୁ ରକ୍ଷଣା-
তরদ্দুদআবাদকরা — ବେକ୍ଷଣ କରିବା ଓ ଚାଷ କରିବା—To
तरद्दुद आबाद करना — preserve and cultivate a plot of land; to properly look after or take care of a property.

**ତରଟା**—ଦେ. ବି—ତରାଟ (ଦେଖ)
Taratā — Tarāta (See)

**ତରଡଙ୍ଗ(ଙ୍ଗା)**—ଦେ. ବିଣ. ପୁଂ (ସଂ. ତ୍ୱରାନ୍ୱିତ)—୧ । ତରତରିଆ;
Taradaṅga (ṅgā) — ଚପଳ—1. Hasty; fickleo.
(ତରଡଙ୍ଗିଆ, ତର୍ଡଙ୍ଗା—ଅନ୍ୟରୂପ)
ତରଡଙ୍ଗୀ / ତରଡଙ୍ଗେଇ / ତର୍ଡଙ୍ଗୀ / ତଡ଼ଙ୍ଗେଇ } —ସ୍ତ୍ରୀ — ୨ । ଯେଉଁଲୋକ କୌଣସି ଗୁପ୍ତ କଥା ମନରେ ରଖି ନ ପାରେ; ଅଧୀର—
2. Impatient; prone to babble out secrets.
୩ । କ୍ଷୀଣ; କୃଶ—3. Emaciated; delicate.
୪ । ତରବଧିଆ; ଭଣ୍ଡ—4. One who puts off another person on various excuses.

**ତରଡ଼ା**—ଦେ. ବି ( ସଂ. ନାମ—ପାର୍ଶ୍ୱ ପଟୋଳକା )—ଜହ୍ନି ପରି
Tarardā — ଏକପ୍ରକାର ବନ୍ୟ ଲତା ଓ ତାହାର ଫଳ; ତୋରଡ଼ା—
তরুই, পরোল্, কুন্দুরীকী — A cucurbitaceous creeper
कुन्दुरि — and its fruit.
ଗୋ—ଦୋଣ୍ଡାକାସ୍ଥି । [ ଦ୍ର—ଏହା ସ୍ୱାଦଭେଦରେ ଦୁଇପ୍ରକାର; ଯଥା—ମଧୁର ତରଡ଼ା (Luffa Ægytiaca) ଓ ପିତାତରଡ଼ା (Luffa Amara) । ମଧୁର ତରଡ଼ା ଖାଦ୍ୟ; ମାତ୍ର ପିତାତରଡ଼ା ଔଷଧରେ ଲାଗେ । ପାଚିଲା ଶୁଖିଲା ତରଡ଼ାର ଉପରର ଚୋପା ସଡ଼ିଗଲା ପରେ ଏହା ଭିତରୁ ଯେଉଁ କରଡ଼ା ଜାଲିଜାଲିଆ ଅଂଶ ବାହାରେ ତାହାଦ୍ୱାରା ଦେହ ଘଷିଲେ ଦେହରୁ ମଇଳା ଛାଡ଼ିଯାଏ ।]

**ତରଣ**—ସଂ. ବି (ତୃ ଧାତୁ=ପାରହେବା+ଭାବ. ଅନ)—
Tarana — ୧ । ପାରଗମନ; ପାରହେବା; ଅତିକ୍ରମଣ—
1. Act of crossing over; passing over.
୨ । ପ୍ଲବନ; ପହଁରିବା—2. Swimming.
୩ । ଦେଶାନ୍ତର ଗମନ—3. Going abroad.
୪ । (+କରଣ ଅନ) ଭେଳା—4. Raft.
୫ । ଡଙ୍ଗା—5 Boat.
୬ । ସ୍ୱର୍ଗ—6 Heaven.

| ୧ | ର | ଋ | ର,ର୍ | ଝ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଣ | ଜ | ଶ,ଷ | କ୍ଷ | ଇଁଯ୍ | ଋଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଋ | ଌ | ଋ | ଌ | ଯ୍ୟ | ଅନ୍ତଃସ୍ଥବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଣ୍ୟ | ଯ | ଷ | ଙ୍ୟ | ଋଥ | ଞ | ନୃ |

୭ । ନିସ୍ତାର; ଉଦ୍ଧାର—7. Deliverance.

ଦେ. ବି—୧ । ଝିଗ୍ଗ; ଯାଉ—1 Gruel.

୨ । ପିଠା କରିବା ସକାଶେ ବଟା ଯାଇଥିବା ପିଠଉ—
2 Dough; paste made from grains for making cakes.

**ତରଣି**—ସଂ. ବି (ତୃ ଧାତୁ+କରଣେ. ଅନି)—୧ । ନୌକା—.
Taraṇi 1. Boat.

୨ । ଭେଳା—2. Raft.

୩ । (+କର୍ତ୍ତୃ. ଅନି) ସୂର୍ଯ୍ୟ—3 The sun.

୪ । କିରଣ—4 Ray; beam of light.

୫ । ଘିକୁଆଁରି (ଗୁଳ୍ମ) (ଦେଖ)
5. Ghikuāri (plant) (See)

୬ । ସେବତୀ ଫୁଲ—6. Rosa Moschata (flower).

୭ । ତାମ୍ର—7. Copper.

୮ । ଅରକ ଗଛ—8. Calotropis Gigantia.

ସଂ. ବିଣ—୧ । ଶୀଘ୍ରଗାମୀ—1. Fleet

୨ । ଉଦ୍ଧାରକର୍ତ୍ତା—2. Delivering.

ଦେ. ବି—ପ୍ରାଚୀନ ଅର୍ଣ୍ଣବପୋତବିଶେଷ—
Name of a ship sailing on the sea in ancient times.
( ଜଗବନ୍ଧୁ. ପ୍ରାଚୀନ ଉତ୍କଳ । )

**ତରଣିଜା**—ସଂ. ବି. ସ୍ତ୍ରୀ ( ତରଣି=ସୂର୍ଯ୍ୟ+ଜନ୍ ଧାତୁ+କର୍ତ୍ତୃ. ଅ+ ସ୍ତ୍ରୀ. ଆ)—ଯମୁନା ନଦୀ—
Taraṇijā The river Jamunā.

**ତରଣି ରତ୍ନ**—ସଂ. ବି. କ୍ଲୀ—ପଦ୍ମରାଗମଣି—
Taraṇi ratna Ruby.

**ତରଣିସୁତ**—ସଂ. ବି. ପୁଂ (୬ଷ୍ଠୀ ତତ୍; ତରଣି=ସୂର୍ଯ୍ୟ+ସୁତ)—
Taraṇi suta ୧ । ଶନି—1. Planet Saturn.

ତରଣିକୁମାର } ଅନ୍ୟରୂପ
ତରଣିତନୟ }
୨ । ଯମ—2. Jama, the God of Death.

**ତରଣିସୁତା**—ସଂ. ବି. ସ୍ତ୍ରୀ ( ୬ଷ୍ଠୀ ତତ୍; ତରଣି+ସୁତା) ଯମୁନା ନଦୀ—
Taraṇi sutā The river Jamunā.

**ତରଣୀ** (ଇତ୍ୟାଦି)—ସଂ. ବି. ( ତରଣି+ସ୍ତ୍ରୀ. ଈ )—
Taraṇi (etc) ୧ । ତରଣି ଇତ୍ୟାଦି ( ଦେଖ )
1. Taraṇi etc. ( See )

୨ । ସ୍ଥଳକମଳ (ଦେଖ)—2. Sthaḷa kamaḷa (See)

୩ । ଘୃତକୁମାରୀ (ଦେଖ)—3. Ghṛuta kumārī (See)

**ତରଣ୍ଡ**—ସଂ. ବି. ( ତୃ ଧାତୁ+କରଣ. ଅଣ୍ଡ )—
Taraṇḍa ୧ । ନୌକା—1. Boat.

୨ । ଭେଳା—2. Raft.

୩ । ଚେରେଣ୍ଡା; ମାଛ ଧରିବା ବନଶୀର ସୂତା ବା ଜାଲର ସୂତା ମଧ୍ୟରେ ଲାଗିଥିବା କାଠି ବା ସୋଲ ( ଯାହା ମାଛ ଧରିବା ସମୟରେ ପାଣିରେ ଭାସେ )—
3. A float of a fishing line or net

୪ । ଦେଶବିଶେଷ—4. Name of a country.

୫ । ଡଙ୍ଗା ବୋହିବା ଦଣ୍ଡ; କାତ ( ହି. ଶବ୍ଦସାଗର )—
5. Long pole with which a boat is propelled.

**ତରଣ୍ଡକ**—ସଂ. ବି. ( ତରଣ୍ଡ+ସ୍ୱାର୍ଥେରେ. କ )—
Taraṇḍaka ୧ । ଚେରେଣ୍ଡା—1. A float of a fishing line.

୨ । ତୀର୍ଥବିଶେଷ—
2. Name of a place of pilgrimage.

**ତରତ୍ସମନ୍ଦୀୟ**—ସଂ. ବି—ବେଦର ପାବମାନ ସୂକ୍ତର ଅନ୍ତର୍ଗତ
Tarat-samandiya ସୂକ୍ତ ବିଶେଷ—Name of a vedic hymn.

[ ଦ୍ର—ଅପ୍ରତିଗ୍ରାହ୍ୟ ଧନ ଗ୍ରହଣ କଲେ ବା ନିଷିଦ୍ଧ ଅନ୍ନ ଭକ୍ଷଣ କଲେ ଏ ସୂକ୍ତ ଜପ କରି ଉକ୍ତ ଦୋଷରୁ ମୁକ୍ତ ହେବାକୁ ହୁଏ । ହି. ଶବ୍ଦସାଗର ]

**ତରତମ**—ସଂ. ବିଣ. ( ଦ୍ୱନ୍ଦ୍ୱ; ତର+ତମ )—
Taratama ୧ । ନ୍ୟୂନାଧିକ; କମ୍ ବେଶୀ—
(ତାରତମ୍ୟ—ବି) 1. More or less.

୨ । ଛୋଟ ବଡ଼—2. Large and small.

ସଂ. ବି—୧ । ସାନ ବଡ଼ ଭେଦ ଜ୍ଞାନ—
1. Knowledge of distinction; discrimination.

୨ । ଇତସ୍ତତଃ କରିବା—2. Hesitation.

୩ । ସଂଶୟ—3. Doubt.

**ତରତର**—ଦେ. ବିଣ. ( ସଂ, ତ୍ୱର )—୧ । ଅଧୀର—
Taratara 1. Impatient; agitated.
(ତରତରିଆ—ଅନ୍ୟରୂପ) ୨ । ଅସ୍ଥିର; ଚପଳ—
তরতর, তাড়াতাড়ি 2. Restless; fickle.
तुरतुरा, तुरतरिया ୩ । ଲଣ୍ଡଭଣ୍ଡ; ଭୁଷଙ୍କ୍ଷ; ସମୟାଭାବରୁ ବ୍ୟସ୍ତ—
3. Busy for want of time; hasty.

୪ । ଯେ ସମ୍ୟକ୍ ବିବେଚନା ବା ଆଗ ପଛ ବିଚାର ନ କରି କାର୍ଯ୍ୟ କରେ—4. One who acts hastily without mature consideration.

୫ । ଯେ ଆଗ ପଛ ବିଚାର ନ କରି ଯାହା ମନକୁ ଆସେ ତାହା କହି ପକାଏ—5. One who speaks out without mature consideration.

ଦେ. କ୍ରି. ବିଣ—୧ । ଅତି ଶୀଘ୍ର; ଚଞ୍ଚଳ; ସତ୍ୱର—
1. Hastily; in haste; hurriedly.

ବଳାଇ କମ୍ବୁର ନାଦୁହେ ତରତର ତରଳ ତର୍ଜ୍ଜିଂ ବାଣି ।
ଉତ୍କ. ବୈଦେଶିଶବିଳାସ ।

ସାଧାରଣ ଲୋକେ ଅନେକ ସ୍ଥଳରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥ କୋଷରେ ନ ମିଳିବ, ତେବେ ତାହା ବଦଳରେ ଯଥାକ୍ରମେ ଉହିଁର ଅନୁରୂପ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଚାନ୍ଦ' ନ ମିଳିଲେ 'ଚାନ୍ଦ' ଖୋଜିବେ; 'ବୃନ୍ତ' ନ ମିଳିଲେ 'ବୃନ୍ତ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ର' ଦେଖିବେ

୨ । ଅସ୍ଥିର ଭାବରେ —2. Restlessly.

**ତରତିବ୍**—ବୈଦେ. ବି. (ଅ.)—୧ । ନିୟମ; କ୍ରମ; ଧାରା—
Taratib        1. Order; succession.
(ତର୍ତିବ—ଅନ୍ୟରୂପ)  ୨ । ବସ୍ତୁମାନଙ୍କର ଯଥାସ୍ଥାନାବସ୍ଥିତି —
ତରତୀବ        2. Ordered sequence of things
तरतीब        ବିଣ—୧ । କ୍ରମିକ—1 Successive; serial.
୨ । ଧାରାବାହିକ—2. Consecutive.

**ତରତିବ୍ ନମ୍ବର୍**—ବୈଦେ. ବି. (ଅ.ତରତିବ୍+ଇଂ. ନମ୍ବର୍)—
Taratib nambar  କ୍ରମ ଅନୁସାରେ କୌଣସି ବସ୍ତୁର କ୍ରମିକ
ତରତିବ ନম্বর  ସଂଖ୍ୟା—Serial number of
तरतीब नम्बर        anything.

**ତରତୁଦ୍** (ଇତ୍ୟାଦି —ବୈଦେ. ବି. (ଅ)—ତରଜୁଦ୍ ଇତ୍ୟାଦି (ଦେଖ.
Taratud (etc)        Tarajut etc ( See )
(ତରଦୁଦ୍—ଅନ୍ୟରୂପ)

**ତର ଦିଆ**—ଦେ. ବିଣ—ଯେ ଭଣ୍ଡାଏ; ଭଣ୍ଡ—
Tara diā    One who puts off another on various excuses.

**ତରଦୀଦ୍**—ବୈଦେ. ବି (ଅ)—୧ । ରଦ କରିବା—
Taradid        1. Nullification.
ତରদিদ    ୨ । ଖଣ୍ଡନ—2. Refutation.
तरदीद    ୩ । ପ୍ରତ୍ୟୁତ୍ତର—3. Reply; rejoinder.

**ତର ଦେଖା(ଖେ)ଇବା**—ଦେ. କ୍ରି—ତର କାଢ଼ିବା ( ଦେଖ )
Tara de(khākhe)ibā    Tara kāṛhibā ( See )
(ତର ଦେବା; ତର ମାରିବା—ଅନ୍ୟରୂପ)

**ତରନ୍ତ**—ସ. ବି. ପୁଂ ( ତୃ ଧାତୁ+କର୍ତ୍ତୃ. ଅନ୍ତ )—
Taranta  ୧ । ସମୁଦ୍ର—1. The river.
୨ । (+କରଣ. ଅନ୍ତ) ଭେଳା—2. Raft.
୩ । (+କର୍ତ୍ତୃ. ଅନ୍ତ) ବେଙ୍ଗ—3. Frog.
୪ । ଫେରେଣ୍ଡା—4. A float for the fishing line.
୫ । ରାକ୍ଷସ—5. A demon; monster.

**ତରନ୍ତୀ**—ସ. ବି. ସ୍ତ୍ରୀ. ( ତୃ ଧାତୁ+କରଣ. ଅନ୍ତ+ସ୍ତ୍ରୀ. ଈ )—
Taranti    ତରଣୀ; ନୌକା – Boat.

**ତରପ** (ଇତ୍ୟାଦି)—ବୈଦେ. ବି ଓ ବିଣ (ଅ)—ତରଫ ଇତ୍ୟାଦି (ଦେଖ)
Tarapa (etc)        Tarapha etc ( See )

**ତରପଣ**—ଗ୍ରା. (ପଦ୍ୟ) ବି. ( ସ. ତର୍ପଣ )—ତର୍ପଣ (ଦେଖ)
Tarapaṇa        Tarpaṇa ( See )
তর্পন, তরপন    ସ୍ନାନ ତରପଣ ସେ ସେଠାରେ କଲେ ।
तरपन        କୃଷ୍ଣସିଂ. ମହାଭାରତ. ଅନୁଶାସନ ।

**ତରପଣ୍ୟ**—ସ. ବି. [ ୬ଷ୍ଠୀ ତତ; ତର=ପାରଗମନ (ନଦୀର)+
Tara paṇya    ପଣ୍ୟ+ଶୁଳ୍କ]—ନଦୀ ପାର ମାସୁଲ—Ferry-toll; payment made to the ferryman.

**ତର ପଦୀ**—ସ. ବିଣ (ତର=ତରଣଯୋଗ୍ୟ+ପଦ+ଅସ୍ତି ଅର୍ଥରେ ଇନ୍;
Tara padī   ୧ମା. ୧ବ)–ସନ୍ତରଣପଟୁ ଲିପ୍ତପଦବିଶିଷ୍ଟ (ହଂସାଦି)—
Web-footed (swan etc.)
ସ ବି—ହଂସାଦି ଲିପ୍ତପଦବିଶିଷ୍ଟ ଜଳଚର ପକ୍ଷୀ—
Webfooted aquatic birds; Nattatores; (e g. swan).

**ତରପା**—ବୈଦେ. ବିଣ. (ଅ.)—ତରଫା (ଦେଖ)
Tarapā        Taraphā (See)

**ତରଫ**—ବୈଦେ. ବି. (ଅ. ତରଫ୍)—୧ । ପକ୍ଷ—
Tarapha        1. Party.
(ତରପ, ତର୍ପ, ତର୍ଫ—ଅନ୍ୟରୂପ)  [ଯଥା— ହାକିମ କାହା ତରଫକୁ ଟଳି ନାହାନ୍ତି ।]
তরফ    ୨ । ଦିଗ—2. Direction.
तरफ    (ଯଥା—ସୂର୍ଯ୍ୟ ପୂର୍ବ ତରଫରୁ ଉଇଁଲେଣି ।)
୩ । ସୀମା—3. Boundary
(ଯଥା—କଟକ ସହରର ଦକ୍ଷିଣ ତରଫରେ କାଠଯୋଡ଼ି ନଦୀ ।)
୪ । ନିକଟବର୍ତ୍ତୀ ଅଞ୍ଚଳ—
4. Proximity; a tract of a country
(ଯଥା—କଲିକତା ତରଫରେ ଏବେ ଭାରି ବର୍ଷା ହୋଇଅଛି ।)
୫ । ପାଖ; ପାର୍ଶ୍ୱ; କଡ଼—5. Side.
(ଯଥା—ମୋ ବାଆଁ ତରଫ ଅଙ୍ଗ ବଥୁଛି ।)
ଦେ. ବିଣ.—ପକ୍ଷୀୟ; ପକ୍ଷରୁ କାର୍ଯ୍ୟ କରୁଥିବା—Working or appearing on behalf of; representing.
(ଯଥା—ସେ ଜମିଦାରଙ୍କ ତରଫ ଗୁମାସ୍ତା ।)
ଦେ. ଅବ୍ୟୟ—(ଜାତରଥ ଭାଷା) ପକ୍ଷରୁ—
On behalf of.
(ଯଥା—ନରହରି ମିଶ୍ର, ମହାଫିସ୍ 'ତରଫ' ନାବାଲଗ ।)
[ଦ୍ର—ଏହି ଅର୍ଥରେ ଏହି ଶବ୍ଦର ସାଙ୍କେତିକ । ତ ।, ଯଥା— ଅମୁକ ମହାଫିସ୍ । ତ । ଅମୁକ ନାବାଲଗ୍ ।]

**ତରଫଦାର୍**—ବୈଦେ. ବିଣ (ଫା.)—୧ । ପକ୍ଷୀୟ; ପକ୍ଷାବଲମ୍ବୀ—
Taraphadār  1. Partisan; belonging to one party.
তরফদার  तरफदार    ୨ । ପକ୍ଷପାତୀ—2. Partial.
(ତରପଦାର୍ —ଅନ୍ୟରୂପ)  ୩ । କୌଣସି ପକ୍ଷରୁ କାର୍ଯ୍ୟ କରୁଥିବା—
(ତରଫଦାର—ବି)  3. Representing one of the parties.
୪ । ଏକ ପକ୍ଷର ଅଧିକାରୀ ବା ମାଲିକ—
4. The chief person of one party.
ବୈଦେ. ବି.—ମୁସଲମାନ ସମ୍ରାଟଙ୍କ ଅମଳରେ ବଙ୍ଗଦେଶର ରାଜସ୍ୱ କର୍ମଚାରୀ ଓ ଜମିଦାରଙ୍କୁ ପ୍ରଦତ୍ତ ଉପାଧିବିଶେଷ—
A title in Bengal given under Mahomedan rule to a Zamindar or Revenue officer in charge of certain tracts of a district.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଋ | ଔ | ର୍,ଋ | ଝ | ଣ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଙ୍କ | ଶ,ଷ | ଦ | ଋପ୍ | ଥ | ଞ |
| ୨ | ଛ | ଉ | ଋ | ଲୁ | ଙ୍କ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଅ୍ୟ | ଯ | ସ | ଟ୍ୟ | ଋଥ | ଞ | ନ୍ |

ତରଫଦାର—ବୈଦେ. ବିଣ. (ଫା)—ଏକ ପକ୍ଷକୁ ଅବଲମ୍ବନ କରି Taraphadāri କରୁଥିବା (ବ୍ୟକ୍ତି); ପକ୍ଷପାତୀ; ଏକତରଫା— तरफदारी Partial; expartе. तरफ़दारी (ଯଥା—ଧର୍ମାଧିକରଣରେ ବସି ତରଫଦାର ହେବାର (ତରଫଦାର—ଅନ୍ୟରୂପ) କରିବା ଘୋର ଅନ୍ୟାୟ ।)

ବୈଦେ. ବି.—୧ । ପକ୍ଷପାତୀ ହେବାର; ପକ୍ଷପାତ; ପାତର ଅନ୍ତର— 1. Partiality.

୨ । ପକ୍ଷାବଲମ୍ବନ—2. Taking sides.

ତରଫ ଧରିବା—ଦେ. କ୍ରି.—୧ । କୌଣସି ଗୋଟିଏ ପକ୍ଷର ଅନୁକୂଳତା Tarapha dharibā କରିବା—1. To take sides. तरफ लेना (ଯଥା—ଆପଣ ପଞ୍ଚ ଏଠାରେ ବସି ତରଫ ଧରି ହେବାର तरफ लेना କଲେ ଚଳିବ ନାହିଁ ।)

୨ । କୌଣସି ପକ୍ଷରେ ଭୁକ୍ତ ହେବା— (ତଟପ ଧରିବା—ଅନ୍ୟରୂପ) 2. To be enrolled in a party.

ତରଫ ନେବା—ଦେ. କ୍ରି.—ତରଫ ଧରିବା (ଦେଖ) Tarapha nebā Tarapha dharibā (See) (ତରପ ନେବା—ଅନ୍ୟରୂପ)

ତରଫ ମାଡ଼ିବା—ଦେ. କ୍ରି.—୧ । ତରଫ ଧରିବା (ଦେଖ) Tarapha mārdibā 1. Tarapha dharibā (See) (ତରପ ମାଡ଼ିବା—ଅନ୍ୟରୂପ) ୨ । କୌଣସି ପାଖକୁ ବା ଦିଗକୁ ଘୁଞ୍ଚିବା ବା ଢଳିଯିବା—2. To move to one side or direction. (ଯଥା—କାନ୍ଥଟି ପୂର୍ବତରଫ ମାଡ଼ିଛି ।)

୩ । କୌଣସି ଦିଗକୁ ଢଳିବା— 3. To incline to one side.

ତରଫ ସାନି—ବୈଦେ. ବି. ଓ ବିଣ. (ଅ.)—ତରଫଦାର (ଦେଖ) Tarapha sāni Taraphadāri (See) (ତରପସାନି—ଅନ୍ୟରୂପ)

ତରଫା—ବୈଦେ. ବିଣ. (ଅ. ତରଫ୍+ଫା.ପ୍ରତ୍ୟୟ ଆ)—୧ । (ଅମୁକ) Taraphā ପକ୍ଷୀୟ; ପକ୍ଷାବଲମ୍ବୀ—1. Espousing the cause of; dealing with the side of.

୨ । (ଅମୁକ) ଦିଗବ୍ୟାପୀ— 2. Extending to a quarter or quarters.

[ଦ୍ର—ଏହା ସଂଖ୍ୟାବାଚକ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ । ଯଥା—ଏକତରଫା, ଦୋତରଫା; ଚଉତରଫା ।]

ତରବର—ଦେ. ବିଣ.—ତରତର (ଦେଖ) Tarabara Taratara (See) (ତରବର—ଅନ୍ୟରୂପ)

ଯାଇ ତର୍ଡ଼ିଗଲେ ହୋଇ ତରବର ।
କୃଷ୍ଣସିଂହ ମହାଭାରତ ବନ ।

ତରବାଁ—ଟ୍ରାଦେ (ବସ୍ତର) କ୍ରି.—ତଲବାଁ (ଦେଖ) Tarabāñ Talabāñ (See)

ତରବାର—ସଂ. ବି. (ତର=ଅଧାତ+ବୃ ଧାତୁ=ନିଯୋଗ କରିବା Tarabāra କର୍ମ. ଅ)—ଖଡ୍ଗ; ଖଣ୍ଡା; କୃପାଣ— Sword; scimitar.

ତରବାରି—ସଂ. ବି. (ତର+ବୃ ଧାତୁ+କର୍ମ. ଇ)—ତରବାର (ଦେଖ) Tarabāri Tarabāra (See)

ତରବାଲ—ସଂ. ବି. (ତର+ବୃ ଧାତୁ+ଅ; 'ର' ସ୍ଥାନରେ 'ଲ' Tarabāla ଆଗମ)—ତରବାର (ଦେଖ) Tarabāra (See)

ତରଭୁଜ—ଦେ. ବି.—(ସଂ. ତରମୁଜ; ଭୂଳ. ଫା. ତରବୁଜ୍)— Tarabhuja କୁଷ୍ମାଣ୍ଡାଦିବର୍ଗର ଜଳବହୁଳ ଗ୍ରୀଷ୍ମ ଲତାଫଳବିଶେଷ; तरबूज; तरमूज ଖରଭୁଜ; ଖରଭୁଜା—Water-melon; तरमुज Citrullus Vulgaris; Cucurbita Citrullus (Kirtikar).
ତରବୁଜ, ତରମୁଜ, ତରୁଭୁଜ, ତରୁବୁଜ, ତରୁମୁଜ } ଅନ୍ୟରୂପ)

ତରଭୁଜ ଅମୃ ଟେନସ ନାନା ଖାଦ୍ୟ ସମ୍ଭାର
ଗଙ୍ଗାଧର ମେହେର. କୀଚକବଧ ।

[ଦ୍ର—ଏ ଫଳର ଆକୃତି କେତେକାଂଶରେ ମନୁଷ୍ୟର ମୁଣ୍ଡପରି; ପାଚିଲେ ମଧ୍ୟ ସବୁଜବର୍ଣ୍ଣ ଦେଖାଯାଏ; ବାଲିଆ ଓ ପଟୁ ମାଟିରେ ଏ ଲତା ଖୁବ୍ ମାଡ଼େ ଓ ଫଳେ ।]

ତର ମାରିବା—ଦେ. କ୍ରି—କଥାଛଳରେ କୌଣସି ବ୍ୟକ୍ତିକୁ ଭଣ୍ଡିବା— Tara māribā To inveigle a person.

ତରମିମ୍—ବୈଦେ. ବି. (ଅ. ତରମୀମ୍) (କଚେରୀ ଭାଷା)— Taramim ୧ । ସଂଶୋଧନ - 1. Correction, rectification, तरमिम तरमीम ୨ । ପରିବର୍ତ୍ତନ—2. Modification.

୩ । ଆଂଶିକଭାବରେ ଦାବୀକୁ ଅଗ୍ରାହ୍ୟ କରିବା— 3. Rejection of a portion of a claim.

ବିଣ—୧ । ସଂଶୋଧିତ —1. Corrected.

୨ । ପରିବର୍ତ୍ତିତ —2. Modified.

୩ । ଆଂଶିକ ଅଗ୍ରାହ୍ୟ ହୋଇଥିବା— 3. With a portion rejected; partially rejected; rejected in part.

ତରମିମ୍ କରିବା—ଦେ. କ୍ରି. (କଚେରୀ)—୧ । ଦାବିର ପରିମାଣ କମାଇ Taramim karibā ଦେବା—1. To modify the claim. तरमिम करना ୨ । ଦାବିର କେତେକ ଅଂଶ ବାଜ୍ୟାପ୍ତ ବା ଅଗ୍ରାହ୍ୟ तरमीम करना କରିବା—2. To reject a part of the claim.

ତରମିମ୍ ଡିଗ୍ରୀ—ବୈଦେ. ବି. (ଅ. ତରମୀମ୍+ଇଂ. ଡିଗ୍ରୀ) (କଚେରୀ Taramim digri ଭାଷା)—ଦାବୀ ଉପସ୍ଥାପିତ କରିଥିବା ଦାବୀର तरमिम डिक्री ପରିମାଣ ବା ପ୍ରକାରକୁ ସଂଶୋଧିତ ବା ପରିବର୍ତ୍ତିତ

ସାଧାରଣ ଲୋକେ ଏପରି ପୁସ୍ତକରେ ଦେଖନ୍ତି ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ପୁସ୍ତକ ମଧ୍ୟରେ ନ ମିଳିବ ତେବେ ସେହି ଶବ୍ଦ ପରେ ଯଥାକ୍ରମେ ଉକ୍ତର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବାଡ଼ି' ନ ପାଇଲେ 'ବାଡି' ଦେଖିବେ; 'ଅର୍ଚ୍ଚ୍ୟ' ନ ପାଇଲେ 'ଅର୍ଚ୍ଚ୍ଯ' ଦେଖିବେ, 'ଅଲଙ୍କୃତ' ନ ପାଇଲେ 'ଅଲଙ୍କ୍ରୃତ' ଦେଖିବେ

**तरमीम डिगरी** ଯେଉଁ ଡିକ୍ରୀ ଦଆଯାଏ— Modified decree; decree passed by rejecting or modifying part of the claim.

**ତରଳ**—ସଂ. ବିଣ. ( ତୃ ଧାତୁ=ଗମନ କରିବା, ବୋହିଯିବା+କର୍ତ୍ତୃ Tara̱la ସଂଜ୍ଞାର୍ଥରେ. ଅଳ)—୧ । ପାଣିଆଁ; ଜଳପରି ପତଳା; (ତରଳା—ସ୍ତ୍ରୀ) ଜଳୀୟ; ଦ୍ରବ—1. Fluid; liquid; watery.
ତରଳତା } ବି ୨ । ବାଷ୍ପୀୟ—2 Gaseous.
ତାରଲ୍ୟ } ୩ । ଦ୍ରବୀଭୂତ; ବିଗଳିତ—3. Melted; molten.
୪ । କମ୍ପମାନ—4. Tremulous.
୫ । ଟଳଟଳ; ବିଚଳିତ ହେଉଥିବା; ଚଞ୍ଚଳ; ଚପଳ— 5 Unsteady; unstable, fickle; wavering; flickering.
୬ । ଉଜ୍ଜ୍ୱଳ; ଦୀପ୍ତିଶୀଳ—6. Glittering; flashing.
୭ । କାମୁକ—7. Lustful.
୮ । ଦୋଲାୟମାନ— 8. Oscillating; waving.
୯ । ଫୋପଡ଼ା (ହି. ଶବ୍ଦସାଗର)—9. Empty.
୧୦ । ବହି ଯାଉଥିବା—10. Flowing.
୧୧ । ତରଙ୍ଗଯୁକ୍ତ—11. Wavy.
ସଂ. ବି—୧ । ହାର—1. Necklace.
୨ । ହାରର ମଧ୍ୟମଣି— 2. The central gem of a necklace.
ହାର ହାର ହୋଇ ତରଳକୁ ଯେନ ସ୍ୱରସରିତ ଅନୁସରି ।
ଉଦ୍ଧ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।
୩ । ହୀରା (ହି. ଶବ୍ଦସାଗର)—3. Diamond.
୪ । ଲୁହା (ହି. ଶବ୍ଦସାଗର)—4. Iron.
ଦେ. (ପଦ୍ୟ) ବି—ଚଞ୍ଚଳତା; ଚଞ୍ଚଳତା— Unsteadiness; restlessness.
ବଢାଇ କମ୍ବୁକ ବାହୁକୁ ତରଳର ତରଳ ଚକ୍ଷୁ ନାଶି ସେ ।
ଉଦ୍ଧ. ବୈଦେହୀଶବିଳାସ ।

**ତରଳ ଜ୍ୟୋତି**—ସଂ. ବି. (କର୍ମଧା; ତରଳ=ଦୀପ୍ତିଶୀଳ+ଜ୍ୟୋତିଃ)— Tara̱la jyoti ମଣିମୁକ୍ତାଦିରେ ଝଟକୁ ଥିବା ତେଜ; ଉଜ୍ଜ୍ୱଳ କାନ୍ତି— Shining lustre.

**ତରଳ ନୟନ**—ସଂ. ବି. (କର୍ମଧା; ତରଳ+ନୟନ)— Tara̱la nayana ୧ । ଯେଉଁ ଆଖିର ଡୋଳା ଚଞ୍ଚଳ ଏଣେତେଣେ (ତରଳ ଲୋଚନ—ଅନ୍ୟରୂପ) ବୁଲୁଥାଏ—1 Eyes with tremulous pupils.
୨ । ଏକ ବର୍ଣ୍ଣବୃତ୍ତ—2. Name of a Sanskrit metre.
ସଂ. ବିଣ. ପୁଂ. (ବହୁବ୍ରୀହି)—ଯାହାର ଆଖି ଡୋଳା ଚଞ୍ଚଳ— Having tremulous pupils; casting tremulous glances.

**ତରଳ ନୟନା**—ସଂ. ବିଣ. ସ୍ତ୍ରୀ. (ବହୁବ୍ରୀହି; ତରଳ+ନୟନ+ସ୍ତ୍ରୀ. Tara̱la nayanā ଆ)—ଯେଉଁ ସ୍ତ୍ରୀର ଚକ୍ଷୁର ଡୋଳା ଚଞ୍ଚଳ

ତରଳନୟନା, ତରଳଲୋଚନା } ଅନ୍ୟରୂପ ବୁଲୁଥିବାରୁ ତାହାଁର ଭଙ୍ଗୀ ଅତ୍ୟନ୍ତ ମନୋହର ହୁଏ; ତରଳାକ୍ଷୀ; ଚଳାପାଙ୍ଗୀ—(a woman) With lustful or tremulous pupils; with wanton glances.

**ତରଳ ପଦାର୍ଥ**—ସଂ. ବି. ( କର୍ମଧା; ତରଳ+ପଦାର୍ଥ )—ଜଳୀୟ ବା ଦ୍ରବ Tara̱la padārtha ପଦାର୍ଥ--Liquid; fluid.
[ ଦ୍ର—ପଦାର୍ଥବିଦ୍ୟା ଅନୁସାରେ ପଦାର୍ଥମାନ ୩ ଶ୍ରେଣୀରେ ବିଭକ୍ତ; ଯଥା—ଘନ, ତରଳ ଓ ବାୟବୀୟ । ]

**ତରଳ ମତି**—ସଂ. ବିଣ. (ବହୁବ୍ରୀହି; ତରଳ+ମତି)— Tara̱la mati ଯାହାର ଚିତ୍ତ ଚଞ୍ଚଳ; ଚପଳ; ଲଘୁଚିତ୍ତ— Fickle; weak-minded; of unsteady mind.

**ତରଳ ହେବା**—ଦେ. କ୍ରି—୧ । ତରଳିବା; ଦ୍ରବୀଭୂତ ହେବା— Tara̱la hebā 1. To become liquid.
୨ । ତରଳ ଝାଡ଼ା ହେବା— 2. To pass liquid stools.
[ ଦ୍ର—ପତଳା ଝାଡ଼ା ହେଲେ ପେଟ ତରଳ ହେଲା ବା ତରଳିଲା ବୋଲି ଲୋକେ କହି ଥାଆନ୍ତି; ମାତ୍ର ଫଳତଃ ପେଟ ତରଳ ନ ହୋଇ ପେଟରେ ଥିବା ମଳାଦି ତରଳଭାବ ଧାରଣ କରେ । ]

**ତରଳା**—ପ୍ରାଦେ. (ଗଞ୍ଜାମ) ବି—ତରଡ଼ା (ଦେଖ) Tara̱lā Tarardā (See)
ଦେ. ବି. (ନାମ)—ଗଞ୍ଜାମର ଗୋଟିଏ ଜମିଦାରୀ ରାଜ୍ୟର ନାମ— Name of an estate in the district of Ganjam.
ସଂ. ବି—୧ । ମଦ୍ୟ—1 Wine.
୨ । ମହୁମାଛି—2. Bee.
ସଂ. ବିଣ (ତରଳ+ସ୍ତ୍ରୀ. ଆ)—ତରଳର ସ୍ତ୍ରୀଲିଙ୍ଗ; ଚଞ୍ଚଳା— Feminine of Tara̱la.
ପୁନାଙ୍କୁରେ ବ୍ୟସ୍ତେ ଦୋଳଇ ମୋତିମାଳା ତରଳା ।
ରାଧାନାଥ. ଚନ୍ଦ୍ରଭାଗା ।

**ତରଳା(ଳେ)ଇବା**—ଦେ. କ୍ରି. (ସଂ. ତରଳ; ତରଳିବା କ୍ରିୟାର ଣିଜନ୍ତ- Tara̱lā(le)ibā ରୂପ)—୧ । ଦ୍ରବ କରିବା—
गलाना 1. To melt; to liquify; to cause a
पिघलाना solid matter to melt.
୨ । କୋମଳ କରାଇବା—2. To mollify; to soften.
୩ । ହୃଦୟରେ ଦୟା ଜାତ କରାଇବା—3. To elicit sympathy or pity from one's heart
୪ । ହୃଦୟକୁ ଅସ୍ଥିର ବା ଚଞ୍ଚଳ କରାଇବା— 4. To cause mental unrest; to afflict.
ତୋରଣର ମୂର୍ତ୍ତି ଦେବାକୁ ତରଳାଇ ଦେଉଛ—କଳାକଳେବର ।
୫ । ଭାଙ୍ଗିବା; ନାଶ କରିବା; ଲଘୁ କରିବା— 5. To break; to ruin; to lessen.

| ୧ | ଇ | ଈ | ଋ,ୠ | ଌ | ୯ ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଷ,ଶ | କ୍ଷ | ଇୟ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଦ୍ୱୈ ଅକାରାନ୍ତବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁ ଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ଷ | ଚ୍ୟ | ଇଥ | ଊ | ଁ |

ତରସ୍ଥାରଙ୍ଗ କ ଯ ତିରଳାଇ ନୃ୍ ଅଙ୍ଗ—
କର୍ପୂ. ଧ. କଂସ ଦହନ, ଡ. ୧୨

[ ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ଦେବା, ପକାଇବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ ]

**ତରଳଆ**—ଦେ. ବଣ (ସ. ତରଳିତ)—୧। ପତଳା ଓ ଜଳୀୟ—
Taraḻiā 1 Thin and watery.
୨। ଈଷତ୍ ତରଳ—2. Semi-liquid
[ଯଥା—କାଲି ସଞ୍ଜରେ ଚାଉଳ ଧୁଇଁଚା ତରଳଆ ଖାଉଡ଼ା ହେଲା।]
୩। ଦ୍ରବୀଭୂତ; ତରଳିତ—3 Liquefied; melted.

**ତରଳିକା**—ସ. ବଣ ସ୍ତ୍ରୀ (ତରଳ+ସ୍ୱାର୍ଥରେ କ+ସ୍ତ୍ରୀ. ଆ)—ଚଞ୍ଚଳା —
Taraḻikā Fickle; wavering.
ସ. ବି—୧। ଏକ ପ୍ରକାର ହାର—1 A kind of necklace
୨। କାଦମ୍ବରୀ ଉପନ୍ୟାସର ଦାସୀ ନାମ—2. Name of a young lady in the story of Kādambarī.

**ତରଳିତ**—ସ. ବଣ (ତରଳ+ଇ=ତରଳି, ନାମ ଧାତୁ+କର୍ମ. ତ)—
Taraḻita ୧। ଦ୍ରବୀଭୂତ; ବିଗଳିତ—1. Melted; molten.
୨। କମ୍ପିତ; ଚଞ୍ଚଳିତ – 2. Tremulous, trembling.
୩। ତରଙ୍ଗାୟିତ—3. Wavy.
୪। ବିସ୍ତାରିତ; ବ୍ୟାପ୍ତ—4. Extended; expanded

**ତରଳିବା**—ଦେ. କ୍ରି (ସ. ତରଳ ଶବ୍ଦରୁ ଓଡ଼ିଆ ନାମ ଧାତୁ)—
Taraḻibā ୧। ଦ୍ରବୀଭୂତ ହେବା; ତରଳ ହେବା—
তরলা, গলা বিগলনা 1. To be melted; to melt.
ଶିଳପେଶ ଯାହା କଷ୍ଟ ବଳ ଅଙ୍କ
ତରଳେ କରକ, ପ୍ରାଂଶୁ କାଳଚନ୍ଦ୍ରେ—ରାଧାନାଥ, ଦରବାର।
୨। (ହୃଦୟ) ଚଞ୍ଚଳ ବା ଅସ୍ଥିର ହେବା—2. (heart) To become restless.
ମୋହନପରଶେ ଜୀବଙ୍କର ମନ ତରଳଇଲା କାନ୍ତ—ରାଧାନାଥ. ଜୀବଶା।
୩। (ହୃଦୟ) ଦୟାର୍ଦ୍ର ହେବା; ନରମ ବା କୋମଳ ହେବା—
3. (heart) To become soft or pitiful; to become mollified.
୪। ବିଚଳିତ ହେବା—4. To waver.
[ଦ୍ର—ଏ କ୍ରିୟାର ଅସମାପିକା ରୂପ ସଙ୍ଗେ ପଡ଼ିବା, ଯିବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ।]

**ତରଳୀକୃତ**—ସ. ବଣ (ତରଳ+ଅଭୂତ ତଦ୍ଭାବାର୍ଥରେ ଚ୍ୱି; ଈ+କୃତ)—
Taraḻīkṛuta କଠିନ ଅବସ୍ଥାରୁ ତରଳ ଅବସ୍ଥା କରାଯାଇଥିବା—
Liquefied; molten.

**ତରୱାର**—ଦେ. ବି—ତରବାର (ଦେଖ)
Tarawāra Tarabāra (See)
তলবার ମାତଙ୍ଗ ଅଶ୍ୱ ଅମନ ନିଶାଣ
तलवार ତାଲ ତରଓ୍ୱାର କଟାରୀ ପୁଣ—ଦୀନନାଥ ସମ୍ପଦଭଙ୍ଗ।
(ତରୱାର—ଅନ୍ୟରୂପ)

**ତରସ୍**—ସ. ବି (ତୃ ଧାତୁ+ଭାବେ ଅସ୍)—୧। ବେଗ; ଗତି—
Taras 1 Velocity; speed
୨। (+କରଣେ. ଅସ୍) ବଳ—2. Strength.
୩। ରୋମ—3. The down of the body.
୪। ଭେଳା—4. Raft.
୫। (+କର୍ମ ଅ) ତୀର; ରୋଧ; ତଟ—5. Shore; bank.
୬। (+କର୍ତ୍ତୃ. ଅ)—ବାନର (ଦ୍ର. ଶବ୍ଦସାଗର)—6 Monkey.
ସ. ବଣ—୧। ବେଗବାନ୍—1. Speedy; swift
୨। ବଳଶାଳୀ—2. Strong.
କ୍ରି ବିଣ—ଶୀଘ୍ର—Sharp; quickly
ପ୍ରାଦେ. (ସମ୍ବଲପୁର) ବଣ—ତ୍ରସ୍ତ, ଭୀତ—Frightened.

**ତରସ**—ସ. ବି (ତରସ୍=ବଳ+ସଜ୍ଞାର୍ଥରେ ଅ; ଯାହାଦ୍ୱାରା ବଳଲାଭ
Tarasa ହୁଏ)—ମାଂସ—Flesh; meat.
ସ. ବଣ—ବେଗଯୁକ୍ତ—Fleet; swift.
ଦେ. ବି—୧। ମାନସିକ ଶାନ୍ତି—1. Mental peace.
୨। ମାନ; ସମ୍ଭ୍ରମ—2. Honour; respect.
୩। ଆଶା; ପ୍ରାପ୍ତି-ଆଶା—3. Hankering after a thing; hope of acquisition.
ପୁରନ୍ଦର-ମଣି ଶ୍ୟାମେ ଅଛି ମୋ ତରସ—ବନ୍ଦସୁନ୍ଦର, କଣୋସତନ୍ତ୍ର ପ. ଗୀତ।
୪। (ସ ତ୍ରାସ) ଭୟ—Fear.
ଅଙ୍ଗର ସମ୍ପଦ ହରଷ ତରସ ସବୁର ମୂଳ—ଭକ୍ତ ପ୍ରେମସୁଧାନିଧି।
୫। ଚାଞ୍ଚଲ୍ୟ—5. Restlessness.
କହେ ସଦା ତରସ ସହିତ ଦାସ ହେବ—ଭକ୍ତ. ବୈଦେହୀଶବିଳାସ।
ଦେ. କ୍ରି. ବିଣ—ଶୀଘ୍ର; ଚଞ୍ଚଳ—Quickly.
ତୁମ୍ଭ ଦେବାରେ ତରସ ଗୋକ ଶ୍ରୀମୁଖ ପାରସ—ଭକ୍ତ. ପ୍ରେମ ସୁଧାନିଧି।

**ତରସର**—ପ୍ରାଦେ. (ସମ୍ବଲପୁର) ଅବ୍ୟୟ—ଅତି କଷ୍ଟରେ—
Tarasar With a great difficulty.

**ତର ସହିବା**—ଦେ. ବି—୧। ସମୟ ହେବା; ବେଳ ଅଣ୍ଟିବା; କାଳ
Tara sahibā ପାଇବା—1. There being sufficient time.
(ଯଥା—ଇସ୍କୁଲିଆ ଟୋକାଙ୍କୁ ଦୁଇଟା ଖାଇବା ପାଇଁ ତର ସହେ ନାହିଁ)
୨। କିଛିକ୍ଷଣ ଅପେକ୍ଷା କରିବାର ସୁବିଧା ହେବା—
2. Affording to wait for some time.

**ତରସ୍ତ**—ଗ୍ରା (ପଦ୍ୟ) ବଣ (ସ. ତ୍ରସ୍ତ)—୧। ଭୀତ —
Tarasta 1. Frightened; alarmed.
ତରସ୍ତ ହୋଇଣ ଭ୍ରମରମାନେ ଦେଖି ଓଡ଼ାକ ମେଘକରେ ଗୁଣି—
ଓଡ଼ିଆ. ଲୀଳାବତୀ।
୨। ଭୟବ୍ୟସ୍ତ; ବ୍ୟସ୍ତସମସ୍ତ—
2. Struck with fear.
୩। ତ୍ୱରାନ୍ୱିତ—3. Hurried.

ସାଧାରଣ ଭେବେ ଅପର ପୃଷ୍ଠାରେ ଦ୍ୱିତୀୟ ୧ ଅଙ୍କ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଅଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ଶ୍ରୁଚ୍ଛେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଅଙ୍କିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭଦ୍ଧାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପର ବ୍ୟପର ୨ ବା ୧ ଅଙ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ବ୍ରଅ' ନ ମିଳିଲେ 'ବେଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗ'ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

କ୍ରି. ବଣ—୧ । ଅତ୍ୟନ୍ତ ବ୍ୟସ୍ତ ହୋଇ—1. Hastily; hurriedly; helter-skelter.

**ତର ସ୍ଥାନ**—ସଂ. ବି ( ୬ଷ୍ଠୀ ତତ୍; ତର+ସ୍ଥାନ )—୧ । ନଦୀ ପାର ହେବାର ଘାଟ—1. Ferry-ghat; wharf.
Tara sthāna
୨ । ଯେଉଁଠାରେ ନଦୀ ପାର ହେବା ବ୍ୟକ୍ତିମାନେ ଉତୁରନ୍ତି—2. A landing place.

**ତରସ୍ୱାନ୍**—ସଂ. ବିଣ. ପୁଂ ( ତରସ୍=ବେଗ+ଅସ୍ତ୍ୟର୍ଥରେ ବତ୍; ୧ମା. ୧ବ. )—୧ । ଦ୍ରୁତଗାମୀ; ବେଗବାନ୍—1. Fleet; swift
Taraswān
(ତରସ୍ୱତୀ—ସ୍ତ୍ରୀ)
୨ । ବଳଶାଳୀ—2. Powerful; strong; mighty.

**ତରସ୍ୱୀ**—ସଂ. ବିଣ. ପୁଂ ( ତରସ୍+ଅସ୍ତ୍ୟର୍ଥରେ ବିନ୍; ୧ମା. ୧ବ )—୧ । ତରସ୍ୱାନ୍ ( ଦେଖ )—1. Taraswān (See)
Taraswī
(ତରସ୍ୱିନୀ—ସ୍ତ୍ରୀ) ୨ । ରୋଗଗ୍ରସ୍ତ—2. Sick; ailing.
ସଂ ବି—୧ । ବାୟୁ—1. Air.
୨ । ଗରୁଡ଼—2. The mythological bird-king who carries Bishṇu on his back.
୩ । ପତ୍ରବାହକ; ହରକରା—3. A courier.

**ତରା**—ଗ୍ରା. ବି—୧ । (ସଂ. ତାରା)—ତାରା; ନକ୍ଷତ୍ର—1. Star.
Tarā
तराइ ୨ । (ଲକ୍ଷଣାର୍ଥ) ରାତ୍ରି—2. Night.
( ଯଥା—ମୁଁ ତରତରା ନ ମାନି ଏଠାରେ କାମ କରୁଛି । )
୩ । (ସଂ. ତାର) ଆଖିର ତାରା ବା ଡୋଳା; ଚକ୍ଷୁଗୋଳକ—3. The pupil of the eye.
ପ୍ରାଦେ (ଗଡ଼ଜାତ) ବି—ଚେଲିବା—Scraping off.
ପ୍ରାଦେ (ସମ୍ବଲପୁର) ବି (ସଂ. ତୀର)—ନଦୀତୀର; କୂଳ—Bank; shore.
( ଯଥା—ନଏଦ୍ ତରା=ନଦୀକୂଳ । )

**ତରା(ରେ)ଇ**—ଦେ. ବି ( ସଂ. ତୄ ଧାତୁ=ପାର ହେବା; ଣିଜନ୍ତ. ତାର ଧାତୁ; ଯେଉଁମାନେ ନୌକାଦ୍ୱାରା ଲୋକଙ୍କୁ ପାର କରନ୍ତି )—୧ । କେତେକଙ୍କ ବଂଶୋପାଧିବିଶେଷ—1. The family-title of some fishermen.
Tarā(re)i
तराई
तराई, खिवैया ୨ । ନାଉରିଆ—2. Boatman.
୩ । (ସଂ ତଳ) ହିମାଳୟର ପାଦଦେଶରେ ଥିବା ଜଳାର୍ଦ୍ର ନିମ୍ନ ପ୍ରଦେଶ—3. Tarai; damp country at the foot of the Himalayas.
[ ଦ୍ର—ଏହା ଜଙ୍ଗଲମୟ ଓ ଅସ୍ୱାସ୍ଥ୍ୟକର । ]

**ତରା(ରେ)ଇବା**—ଦେ. କ୍ରି ( 'ତରିବା' କ୍ରିୟାର ଣିଜନ୍ତ ରୂପ )—ମୁକ୍ତ କରାଇବା; ଉଦ୍ଧାର କରାଇବା—To cause to be delivered or rescued.
Tarā(re)ibā
ମୁଁ ସ୍ୱୟଂ ତରାଇବ ଭୋ ତିନି ଭୁବନ୍ତୁ—କୃଷ୍ଣସିଂ. ମହାଭାରତ. ଅଦି ।

**ତରାଜ(ଜୁ)**—ଦେଶି. ବି (ଫା; ଭୁଲ. ସଂ. ଏହି ଅର୍ଥରେ ନାରାଚୀ; ତେ. ତ୍ରାସୁ)—ନିକ୍ତି; ତଉଲିବା କାଠି ଓ ପଲ୍ଲା; ତୁଲାଯନ୍ତ୍ର—A pair of scales; a balance.
Tarāja(ju)
तराजू
तराज़ू
ମୁଁ ତରାଜୁରେ ସବୁ ତୁଳନ ହେଉଛି—ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

**ତରାଟ**—ଦେ. ବି—୧ । (ସଂ. ତାରାବର୍ତ୍ତ) ଟଗର ( ଦେଖ )—Tagara ( See )
Tarāṭa
(ତରଟି—ଅନ୍ୟରୂପ) ଜାଇ ଫିଙ୍ଗି ଦେଇ ଗୋଳ ତରାଟ—କବିସୂର୍ଯ୍ୟ. କବିତା ।
तगर ୨ । (ସଂ. ତାରାଟ, ତାରାବର୍ତ୍ତନ ଭୁଲ. ଇଂ. ଷ୍ଟେୟାର୍)—
टगर ଆଖିଡୋଳା ବୁଲାଇ ଚାହିଁବା; କଟାକ୍ଷପାତ—
ताक 2. Ogling; a leer; a side-glance.
ताक ୩ । ଆଖିର ଡୋଳାକୁ ବିସ୍ତାର କରି ଚାହିଁବା; କଟମଟ ଚାହାଣି—3. Arch-look; a look with the pupils stretched; glaring look; stare.
୪ । ଶିବନେତ୍ର ହେବା; ଉର୍ଦ୍ଧ୍ୱନେତ୍ର ହେବା—4. The state of the pupils being upturned.

**ତରାଟିବା**—ଦେ. କ୍ରି—(ସଂ. ତାରାଟ; ଭୁଲ. ଇଂ. ଷ୍ଟେୟାର୍; ଏ ଶବ୍ଦ ଅଣି ତରାଟିବା ରୂପେ ବ୍ୟବହୃତ ହୁଏ )—୧ । ଆଖିର ଡୋଳାକୁ ବିସ୍ତାର କରି ଚାହିଁବା; କଟାକ୍ଷପାତ କରିବା; କଟମଟ କରି ଚାହିଁବା—1. To stare; to glare at.
Tarāṭibā
कटमटकरे ताकान
ताकना, तरेरना
ଏହା କହି କୃଷ୍ଣଙ୍କୁ ତରାଟି ଅନାଇ—କୃଷ୍ଣସିଂ. ମହାଭାରତ ସଭା ।
୨ । ଆଖି ଶୋଷିବା—2. To have the pupils of one's eyes turned towards the upper eyelids.
ଜମ୍ବୁଦ୍ୱୀପ ଅଣି ତରଟିଲେ ତରାଟି—କୃଷ୍ଣସିଂ. ମହାଭାରତ. ବନ ।
୩ । ଭ୍ରୂକୁଞ୍ଚି କରିବା—3. To frown.

**ତରାଟି ମରାଟି**—ଦେ. କ୍ରି. ବିଣ ( ତରାଟିବା ଓ ମରାଟିବା କ୍ରିୟାର ଅସମାପିକା ରୂପ; ସହଚର )—
Tarāṭi marāṭi
(ତରାଟ ମରାଟ—ଅନ୍ୟରୂପ) ୧ । କଟମଟ କରି ଚାହିଁ; କଟାକ୍ଷପାତ କରି—1. Staring; glaring at.
ବାପଣା ମୋ ଅଡ଼ିକୁ ତରାଟି ମରାଟି ଚାହିଁଲ—ଫକୀରମୋହନ. ଛମାଣ ଅଠଗୁଣ୍ଠ ।
୨ । ଭ୍ରୂକୁଟି କରି—2. Frowningly.

**ତରାର୍ଡ଼ି**—ପ୍ରାଦେ (ସିଂହଭୂମ) ବି—ତରବାରି; ଖଣ୍ଡା—Sword.
Tarārḍi

**ତରାତର**—ଦେ. କ୍ରି. ବିଣ (ନଦୀ) ଦୁଇ କୂଳ ଉଛୁଳି ପଡ଼ୁଥିବା ପ୍ରକାରେ—(river) Overflowing the banks.
Tarātar
( ଯଥା—ନଦୀ ତରାତର ବଢ଼ିଅଛି । )

**ତରା ତାରିଣୀ**—ଦେ. ବି. ସ୍ତ୍ରୀ ( ସଂ. ତାରା ଓ ତାରିଣୀ )—ତାରା ତାରିଣୀ ( ଦେଖ ) Tarā tāriṇī (See).
Tarā tāriṇī
(ତରା ତାରେଣୀ—ଅନ୍ୟରୂପ)

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ତ୍ପ୍ର | ତ୍ଥ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋୁ | ଌୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଗ୍ୟ | ଇଅ | ଡ଼ | ଢ଼ |

ତରାନ୍ଧୁ—ସଂ. ବି ( ତର=ପାରଗମନ+ଅନ୍ଧୁ=ଜଳ )—
Tarāndhu ନୌକାବିଶେଷ; ତଳ ସମତଳ ଥିବା ବଡ଼ ଡଙ୍ଗା—
Big flat-bottomed boat.

ତରାବଟ—ଦେଶ ବି ( ଫା. ତର=ଆର୍ଦ୍ର, ଓଦା )—୧ । ଆର୍ଦ୍ରତା—
Tarābaṭ 1. Wetness.
तराबट ୨ । ଶୀତଳତା—2. Coolness.
ଦେ. ବିଣ—୧ । ଯାହା ଦେହକୁ ଶୀତଳ କରେ—
Cooling the body.
୨ । ତେଲିଆ; ଚିକଣା; ସ୍ନିଗ୍ଧ ( ଖାଦ୍ୟ )—
2 Oily ( food ).
୩ । କ୍ଲାନ୍ତିନାଶକ—3. Allaying fatigue.

ତରାବର—ଦେ. ବି (ସଂ. ତାରା ଓ ବର; ତାରକାଙ୍କ ମଧ୍ୟରେ ଶ୍ରେଷ୍ଠ)—
Tarābara ଚନ୍ଦ୍ର—The moon.
ତରାବର କିରଣ ବଢିବର ତରଣି ନକ୍ଷତ୍ରଙ୍କୁ ଶୁଭଣେ ଟିଶ ଭରଣ ହେ ।
କବିସୂର୍ଯ୍ୟ. କଲ୍ୟାଣଚମ୍ପୂ ୪ ଗୀତ ।

ତରାବରା—ଦେ. ବିଣ ( ସଂ. ତ୍ୱରା )—ଚଞ୍ଚଳ; ତ୍ୱରିତ—
Tarābarā Hasty.
(ତୋରାବୋରା—ଅନ୍ୟରୂପ) କାଲି ଟେଲେ ଶିଖାଇବେ ପର
তাড়াতাড়ি କରଲେ ରେ କାହିଁପାଇଁ ଏତେ ତରାବରା ।
तड़ाक पड़ाक ରକାସ. କଟକ ବିଜୟ ।
ଦେ. କ୍ରି. ବିଣ—ଶୀଘ୍ର—Quickly.

ତରାଳୁ—ସଂ. ବି (ତୃ ଧାତୁ+କରଣେ. ଅଳୁ)—ବଡ଼ ନୌକା; ନାହା—
Tarāḻu Big flat-bottomed boat.

ତରାସ୍—ପ୍ରାଦେ (ସମ୍ବଲପୁର) ବି (ସଂ. ତ୍ରାସ)—୧ । କିରଣ—
Tarās 1. Ray.
୨ । ଖରା—2. Sun's rays.
୩ । ତାପ; ତାତି—3 Heat; warmth.

ତରାସ—ଦେ (ପଦ୍ୟ) ବି (ସଂ. ତ୍ରାସ) ୧ । ତ୍ରାସ; ଭୟ—
Tarāsa 1. Fright; fear.
তরাস ୨ । ଆଭା; ଆଲୋକ ଆଦିର ତେଜ—
तरास 2. The brilliance or lustre of a light.
ସୁନ୍ଦରବେ ଚନ୍ଦ୍ର ସୂର୍ଯ୍ୟ ତରାସେ ସୁନ୍ଦର—ଅଭିମନ୍ୟୁ. ରସପଞ୍ଚକ ।
୩ । ଅଡ଼େଣୀ; ପଙ୍ଖା ଆକାରର ଛତ୍ରବିଶେଷ—
3. A fan-shaped umbrella held up on the side of idols and Rajas to protect them from the slanting rays of the sun.
ଧରାଇଛନ୍ତି ସୁବର୍ଣ୍ଣ ଛତ୍ରଚୟ ମୟୂର ପୁଚ୍ଛ ତରାସ
ମାଳତୀ କୁସୁମ ଚାମର ଗ୍ରାମର ତାଳବୃନ୍ତ ତାଳପାଶ ।
ବିଶ୍ୱନାଥ. ବିଚିତ୍ରରାମାୟଣ ।
[ ଦ୍ର—ଏହା ରାଜା ଓ ଠାକୁରଙ୍କ ପାଖେ ଶୋଭା ଯାତ୍ରା ଆଦିରେ ଟେକା ହୁଏ । ]

ଦେଦେ. ବି ( ଫା. ତରାଶ୍=କର୍ତ୍ତନ )—
୧ । କଲମତରାଶ; କଲମ କାଟିବା ଛୁରି—
1. Pen-knife.
୨ । ତାସ୍ ଓ ଗଞ୍ଜପା ଖେଳରେ ରଙ୍ଗ କଟା ହେବା ପରେ ତାସ୍‌ର ଯେଉଁ ଅଂଶ ତାସ ଧରିଥିବା ବ୍ୟକ୍ତିର ହାତରେ ରହିଯାଏ—
2. The pack of cards which are left in the hand of the holder after a portion of it is taken up in a game of cards.

ତରାସିଆ—ପ୍ରାଦେ ( ଗଞ୍ଜାମ ) ବି—୧ । ନାପିତ; ଭଣ୍ଡାରୀ—
Tarāsiā 1. Barber.
୨ । ଭଣ୍ଡାରୀଙ୍କ ଉପାଧିବିଶେଷ—
2. A title given to barbers
୩ । ଯେଉଁ ବ୍ୟକ୍ତି ରାଜା ବା ଠାକୁରଙ୍କ ପାଖରେ ଶୋଭାଯାତ୍ରାରେ ତ୍ରାସ ବା ଅଡ଼େଣୀ ଟେକି ଧରେ—3. The bearer of the 'Trāsa' ( side-umbrella) accompanying a king or idol in a procession.

ତରାସିବା—ଦେ (ପଦ୍ୟ) କ୍ରି (ସଂ. ତ୍ରାସ)—୧ । ତ୍ରାସିବା; ଭୀତ କରାଇବା—
Tarāsibā 1. To frighten; to alarm.
তরাসা ୨ । (ଫା. ତରାଶ୍=କର୍ତ୍ତନ) ଛୁରିରେ କାଟିବା—
तरासना 2. To cut or scratch with a knife.
୩ । (ଚନ୍ଦ୍ର ସୂର୍ଯ୍ୟାଦି) ତେଜ ପ୍ରକାଶ କରିବା; କିରଣ ଦେବା—
3. (the sun and the moon etc) To shine; to give light.
ସେତେବେଳକୁ ଜନ୍ଦ ତରାସିଲାଣି—ସହକାର କାର୍ତ୍ତିକ ମାର୍ଗଶୀର ୧୯୩୦ ।

ତରି—ସଂ. ବି (ତୃ ଧାତୁ=ପାରହେବା+କରଣେ. ଇ)—୧ । ନୌକା—
Tari 1. Boat.
୨ । ଭେଲା—2; A raft.
୩ । ଲୁଗା ଆଦି ରଖିବା ପେଟରା ବା ପେଡ଼ି—
3. A box for keeping clothes
୪ । ବସ୍ତ୍ରାଞ୍ଚଳ; ଲୁଗାର ଦଶି—4. The loose ends of the warp threads hanging at the ends of of a piece of cloth.
୫ । ଅବସ୍ଥା; ଦଶା—5. Condition.
ଦେ. ବିଣ—ନଈକୂଳ ଜମି; ଚରଜମି; ପଠା; ଯେଉଁ ଜମିରେ ନଈ ପାଣି ମାଡ଼ି ଛାଡ଼ି ଯାଇ ଥାଏ ଓ ପଟୁ ପଡ଼ିଥାଏ—
Silted land in the river-bed.
ସଂ. ବିଣ. ( ତୃ ଧାତୁ+କର୍ତ୍ତୃ. ଇ )—ପାରଗାମୀ—
Crossing over ( a river ).

ତରିଅଣ—ଦେ. ବିଣ. ( ସଂ. ତୃ ଧାତୁ )—
Tariāṇa ଉଦ୍ଧାରଣକାରୀ; ତାରକ; ଯେ ତାରେ; ଯେ ପାରି କରେ·
तरिया One who saves or carries another across.

ସାଧାରଣ ଲୋକେ ଥାଉ ମୁଦ୍ରାକରେ ମଧ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଁଳା' ନ ପାଇଲେ 'ଅଳା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଦେ. ବି— ତରିବା; ଉତ୍ତରଣ—Crossing over.

**ତରିକ**—ସଂ. ବି. ( ତର+ଇକ )—
Tarika ୧ । କେଉଟ; ନାବିକ ( ଦ୍ର. ଶବ୍ଦସାଗର ) ତରୀଇ—
1 Boatman; sailor; ferry-man.
୨ । ଘାଟ ମାସୁଲ ଅଦାୟ କରିବା ବ୍ୟକ୍ତି—
2. Collector of ferry-toll.
୩ । ଭେଲା—3. Raft.

**ତରିକା**—ସଂ. ବି. ସ୍ତ୍ରୀ. ( ତର+ସ୍ୱାର୍ଥେ କ+ସ୍ତ୍ରୀ. ଆ )—
Tarikā ତରି ( ଦେଖ )—Tari ( See )
তরিকা ବୈଦେ. ବି. ( ଅ. ତରୀକା )—୧ । ଢଙ୍ଗ, ପ୍ରକାର—
तरीका 1. Manner; mode.
୨ । ଚାଲିଚଳନ; ବ୍ୟବହାର—2. Conduct; behaviour
୩ । ଉପାୟ—3. Means.
୪ । (ଫା. ତରକା) ହିସ୍ସା; ଭାଗ; ଅଂଶ—4. Share.
୫ । ସମ୍ବନ୍ଧ; ସମ୍ପର୍କ—5. Connection; concern.
୬ । ସାହଚର୍ଯ୍ୟ; ଭାଗଦାରୀ—6. Partnership.

**ତରିଜା**—ଦେ. (ପ୍ରାଚୀନ ପଦ୍ୟ) ବି. (ସଂ. ତର୍ଜ୍ ଧାତୁ)—୧ । ତର୍ଜନ;
Tarijā ବଡ଼େଇ; ଗାଲୁଗି—1 Bragging; boasting.
କେଶବ ବୋଇଲେ ଅମ୍ଭେ ରାଜା ଭଣଜା,
କହୁଅଛୁ ଅସ୍ତ୍ର ଧରେ ଏଡ଼େ ତରିଜା । ବାଳକୃଷ୍ଣ. ରସକଲ୍ଲୋଳ ।
୨ । କ୍ରୋଧ—2. Anger; wrath.
୩ । ପ୍ରଭାବ; ମହିମା—3. Power; might.
୪ । ଦ୍ୱେଷ—4. Envy.
୫ । ତେଜ—5. Glory.
୬ । ଗର୍ବ; ଅହଙ୍କାର—6. Pride; arrogance.

**ତରିଣ୍ଡା**—ଦେ. ବି. (ସଂ. ତରଣ୍ଡ)—୧ । ସମୁଦ୍ର ବା ନଦୀର ଗଭୀର ଜଳ
Tarinḍā ଦେଶରେ ଲଙ୍ଗର ବା ଜୁଆଡ଼ାର ସ୍ଥାନ ଜଣାଇଥିବା ଭାସମାନ
বয়া ଚିହ୍ନ; ବୟା—1. Buoy.
तरिंदा ୨ । ତେରେଣ୍ଡା (ଦେଖ)
2. Terenḍā (See)

**ତରିତ**—ସଂ. ବିଣ. ପୁଂ. (ତର+ଇତ)—ଅପର ପାରକୁ ନୀତ—
Tarita Carried over or across.
(ତରିତା—ସ୍ତ୍ରୀ)

**ତରି ତରକାରି**—ଦେ ବି. (ଫା. ତରି=କଞ୍ଚା+ତରକାରୀ)—
Tari tarakāri (ସହଚର)—କଞ୍ଚା ପରିବା—
তরি তরকারী Green kitchen-vegetables; greens.
तरी तरकारी

**ତରିତା**—ସଂ. ବିଣ. ସ୍ତ୍ରୀ. (ତରିତ+ସ୍ତ୍ରୀ. ଆ)—'ତରିତ'ର ସ୍ତ୍ରୀଲିଙ୍ଗ—
Taritā Feminine of Tarita.
ସଂ. ବି. ସ୍ତ୍ରୀ—୧ । ତର୍ଜନୀ; କଣିଅଙ୍ଗୁଠି—
1. Index finger.
୨ । ରସୁଣ—2. Garlic.
୩ । ଗଞ୍ଜେଇ; ଭାଙ୍ଗ—3. Cannabis Sativa; Ganja;
Indian hemp.

**ତରିତ୍ର**—ସଂ. ବି. ପୁଂ (ତୃ ଧାତୁ+କରଣ. ତ୍ର; ଇ ଆଗମ)—
Taritra ୧ । ନୌକା—1. Boat.
(ତରିତ୍ରୀ—ସ୍ତ୍ରୀ) ୨ । ଭେଲା—2. Raft.

**ତରିବତ୍**—ବୈଦେ. ବି. (ଅ. ତର୍ବୀୟତ୍)—୧ । ତାଲିମ୍; ଶିକ୍ଷା—
Taribat 1. Education; training.
তরিবত ୨ । ତାଡ଼ନା—2 Chastisement.
तर्बियत ୩ । ଉପଦେଶ—3. Advice; instruction.
୪ । ଭରଣପୋଷଣ; ପ୍ରତିପାଳନ—
4. Bringing up; support; maintenance.
୫ । ଚାଲିଚଳନ; ଆଚରଣ; ଚରିତ୍ର—
5. Conduct; character.
୬ । ଧାରା; ରୀତି—6. Rule; custom; practice.
୭ । ଭଦ୍ରତାନୁମୋଦିତ ବ୍ୟବହାର; ଅଦବ କାଇଦା—
Etiquette.
୮ । ସ୍ୱଭାବ; ପ୍ରକୃତି—8. Nature.
୯ । ଅଭ୍ୟାସ—9. Habit.

**ତରିବା**—ଦେ. କ୍ରି. ( ସଂ. ତୃ ଧାତୁ )—
Taribā ୧ । ନଦୀ ଆଦି ପାର ହେବା; ଉତ୍ତୀର୍ଣ୍ଣ ହେବା—
তরা 1 To get over; to cross over;
तरना to pass over.
୨ । ରକ୍ଷା ପାଇବା; ପରିତ୍ରାଣ ପାଇବା—
2. To be saved or redeemed.
୩ । (ବିପଦାଦିରୁ) ମୁକ୍ତି ପାଇବା; ଉଦ୍ଧାର ପାଇବା—
3 To escape from or overcome ( a difficulty or danger ).
ଦୁଃଖ ସମୁଦ୍ରରୁ ତରିଲେ ଲୋକ ଭଲେ । କୃଷ୍ଣସିଂହ. ମହାଭାରତ, ବନ ।

**ତରୀ**—ସଂ. ବି ଓ ବିଣ. ସ୍ତ୍ରୀ. ( ତୃ ଧାତୁ+କରଣ. ଈ )—
Tarī ୧ । ତରି ( ଦେଖ )—1. Tari ( See )
୨ । ଗଦା ( ଦ୍ର. ଶବ୍ଦସାଗର )—3 Mace.
୩ । ଧୂମ; ଧୂଆଁ ( ଦ୍ର. ଶବ୍ଦସାଗର )—3. Smoke.
ଦେ. ବି—ପ୍ରାଚୀନ ଅର୍ଣ୍ଣବପୋତବିଶେଷ—
A kind of sea-going vessel or ship used in ancient times.
( ଜଗବନ୍ଧୁ. ପ୍ରାଚୀନ ଉତ୍କଳ । )

**ତରୀ ଦନ୍ତ**—ସଂ. ବି (୬ଷ୍ଠୀ ତତ୍; ତରୀ+ଦନ୍ତ)—କ୍ଷେପଣୀ; ଅରିତ୍ର—
Tarī danta Oar.
ତରୀଦନ୍ତେ ରଙ୍ଗେ କାଟନ୍ତି ତରଙ୍ଗ—ରାଧାନାଥ. ଚିଲିକା ।

**ତରୀଷ**—ସଂ. ବି. (ତୃ ଧାତୁ+ଈଷ)—୧ । ଶୁଖିଲା ଗୋବର;
Tarīsha (ଦ୍ର. ଶବ୍ଦସାଗର)—1. Dried cowdung.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଛ | ଏ | ଢ଼ହଲ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଚ | ଶ,ଷ | କ୍ଷ | ଞ୍ଚ | ଊଥ | ଞ |
| ୨ | ଈ | ଊ | ରୁ | ଲୃ | ଟଚ୍ଛ | ଅକାରାନ୍ତ ବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଶଂ୍ୟ | ଇଥ | ଡ଼ | ନ |

୨ । ନୌକା; ନାବ (ହି. ଶବ୍ଦସାଗର) —2. Boat.
୩ । ଭେଳା; ପାଣିରେ ଭାସିବା କାଠ (ହି. ଶବ୍ଦସାଗର)—
3 Raft; floating plank.
୪ । ସମୁଦ୍ର (ହି. ଶବ୍ଦସାଗର)—4. Ocean.
୫ । ବ୍ୟବସାୟ (ହି ଶବ୍ଦସାଗର)—
5. Professon; trade.
୬ । ସ୍ୱର୍ଗ—(ହି. ଶବ୍ଦସାଗର)—6 Heaven.

**ତରୁ**—ସଂ. ବି ( ତୃ ଧାତୁ=ପାରହେବା, ଉଦ୍ଧାର ହେବା;+ଉ; ଦୁଇ. Taru ପୁଂ. ସ୍ତ୍ରୀ —ଗଛ ବୃକ୍ଷ—Tree.

**ତରୁଆ**—ପ୍ରାଦେ (ଗଡ଼ଜାତ) ବି – ମେଢ଼ା ( ଦେଖ )—
Taruā Merdhā ( See )
ପ୍ରାଦେ (ସମ୍ବଲପୁର) ବି—ଢଡ଼ା; କାଠ ବା ବାଉଁଶର ମୋଟା ଠେଙ୍ଗା—A cudgel of wood or bamboo.

**ତରୁଆର**—ଦେ. ବି (ସଂ. ତରବାର)—ଖଣ୍ଡା; କରବାଲ—
Taruāra Sword.
তরাল ସ୍ୱର ତରୁଆର ଧାରେ ଶେଷ ଘରେ ... —
तरवरिया ... ସଙ୍ଗୀତ ।

**ତରୁଆରି**—ଗ୍ରା. ବି (ସଂ. ତରବାର)—ଖଣ୍ଡା—
Taruāri Sword.
তরোয়াল ଅଙ୍ଗରେ ଅଛେ ଯେ ବାନ୍ଧଲେ ତରୁଆରି—
तरवरिया ବୃନ୍ଦାବନ. ମହାଜନ. ଅବ।

**ତରୁଆଲ(ଳି)**—ଦେ ବି (ସଂ. ତରବାଳ)—ଖଣ୍ଡା—
Taruāla(li) Sword.
তরোয়াল, तलवार

**ତରୁ ଜୀବନ**—ସଂ. ବି (ଷଷ୍ଠୀ ତତ୍; ତରୁ+ଜୀବନ)—ଗଛର ମୂଳ ବା Taru jībana ଚେର—Root of a tree.

**ତରୁଣ**—ସଂ. ବିଣ. ପୁଂ (ତୃ ଧାତୁ+କର୍ତ୍ତୃ. ଉନ)—୧ । ନବଯୁବା—
Taruṇa 1. Youthful; juvenile.
ତରୁଣୀ—ସ୍ତ୍ରୀ ୨ । ନବ; ନବୀନ; ନୂତନ—2. New.
ତରୁଣତା, ତରୁଣତ୍ୱ }—ବି. ୩ । ସଦ୍ୟଃ; ତଟକା—3. Fresh.
୪ । ଅପରିପକ୍ୱ—4. Unripe; raw.
୫ । କୋମଳ—5. Soft; tender.
୬ । ନବଜାତ—6. Newly born.
ସଂ. ବି. ପୁଂ—୧ । ନବଯୁବକ—1. Youth; young man
୨ । ବୃକ୍ଷାଦିର କୋମଳାଗ୍ର—2. Tender shoot of a tree.
୩ । ସ୍ଥୂଳ ଜୀରକ ( ହି. ଶବ୍ଦସାଗର )—
3. A large variety of cumin seed.
୪ । ଏରଣ୍ଡ; ଗବ ( ହି. ଶବ୍ଦସାଗର )—4. Custard.
୫ । ଏକପ୍ରକାର ମଲ୍ଲୀ ଫୁଲ ( ହି. ଶବ୍ଦସାଗର )—
5. A kind of jasmine.

**ତରୁଣ ଜ୍ୱର**—ସଂ. ବି ( କର୍ମଧା; ତରୁଣ ଜ୍ୱର )—
Taruṇa jwara ଜ୍ୱରର ନୂତନ ଅବସ୍ଥା—New fever.
[ ଦ୍ର—ଯେଉଁ ଜ୍ୱର ୭ ଦିନ ପର୍ଯ୍ୟନ୍ତ ଦେହରୁ ଛାଡ଼ ନାହିଁ ତାକୁ ତରୁଣ ଜ୍ୱର କହନ୍ତି । ]

**ତରୁଣତା**—ସଂ. ବି. (ତରୁଣ+ଭାବାର୍ଥେ. ତା )—
Taruṇatā ୧ । ନବୀନତା—1. Newness; freshness.
(ତରୁଣତ୍ୱ—ଅନ୍ୟରୂପ) ୨ । ନବ ଯୁବାବସ୍ଥା—2. Adolescenc.

**ତରୁଣ ଦଧି**—ସଂ. ବି. ( କର୍ମଧା; ତରୁଣ+ଦଧି )—
Taruṇa dadhi ୧ । ସଦ୍ୟୋଜାତ ଦହି; ସଜ ଘୋଳ ଦହି—
1. Fresh butter-milk.
୨ । ପାଞ୍ଚ ଦିନ ହେଲା ବସା ଯାଇଥିବା ଦହି; ପାଞ୍ଚ ଦିନର ପୁରୁଣା ଦହି ( ହି. ଶବ୍ଦସାଗର )—
2. Curd 5 days old.

**ତରୁଣ ପୀଡ଼ିକା**—ସଂ. ବି—ମନଃଶିଳା—
Taruṇa piṭikā Red arsenic (Apte).

**ତରୁଣ ବୟସ୍କ**—ସଂ. ବିଣ. ପୁଂ. ( ବହୁବ୍ରୀହି; ତରୁଣ+ବୟସ୍+କ )—
Taruṇa bayaska ନବଯୁବକ—
(ତରୁଣ ବୟସ୍କା—ସ୍ତ୍ରୀ) Adolescent.

**ତରୁଣ ସୂର୍ଯ୍ୟ**—ସଂ. ବି. ( କର୍ମଧା; ତରୁଣ+ସୂର୍ଯ୍ୟ )—
Taruṇa sūrjya ୧ । ବାଳସୂର୍ଯ୍ୟ; ନବୋଦିତ ସୂର୍ଯ୍ୟ—
1. The newly risen sun.
୨ । ମଧ୍ୟାହ୍ନ ସୂର୍ଯ୍ୟ ( ହି. ଶବ୍ଦସାଗର )—
2. The midday-sun

**ତରୁଣାସ୍ଥି**—ସଂ. ବି. (କର୍ମଧା; ତରୁଣ+ଅସ୍ଥି) (ଜୀବବିଜ୍ଞାନ ପରିଭାଷା)—
Taruṇāsthi ଜୀବ ଦେହର ଉପାସ୍ଥି ବିଶେଷ; ନରମ ହାଡ଼—
Cartilage; gristle.

**ତରୁଣୀ**—ସଂ. ବିଣ. ସ୍ତ୍ରୀ. ( ତରୁଣ+ସ୍ତ୍ରୀ. ଈ )—ତରୁଣର ସ୍ତ୍ରୀଲିଙ୍ଗ—
Taruṇī Feminine of Taruṇa.
ନବୀନା; ନବଯୌବନା—
Youthful; young ( female ).
ସଂ. ବି. ସ୍ତ୍ରୀ—୧ । ନବଯୁବତୀ ସ୍ତ୍ରୀ—1. Young woman.
[ ଦ୍ର—ଭାବପ୍ରକାଶ ମତରେ ୧୬ ଠାରୁ ୩୨ ବର୍ଷ ବୟସ୍କା ନାରୀ ତରୁଣୀ । ]
୨ । ଘୃତକୁମାରୀ; ଘିକୁଆଁରି—2. The succulent aloe; the Succotrine aloe.
୩ । ଧଳା ସେବତୀ ଫୁଲ—3. Rosa Muscata.
୪ । ସ୍ଥୂଳ କୃଷ୍ଣ ଜୀରକ—
4. A kind of large black cumin seed.
୫ । ଦନ୍ତୀ ବୃକ୍ଷ—5. A medicinal plant; Baliospermum Axillare.

ସାଧାରଣ ଲୋକେ ଅନେକ ସ୍ଥଳରେ ୧ ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଙ୍ଗୀ ନ ପାଇଲେ 'ଅଙ୍ଗି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୬ । ମେଘ ରାଗର ରାଗିଣୀବିଶେଷ—
6. Name of a subsidiary tune.

ତରୁ ତଳ—ସ. ବି. ( ୬ଷ୍ଠୀ ତତ୍; ତରୁ+ତଳ )—ବୃକ୍ଷର ତଳ—
Taru taḷa The ground under the branches of a tree.

ତରୁ ତୂଳିକା—ସ. ବି. ( ତରୁ+ତୂଳିକା=ତୂଳ ବା ତୂଳାରେ ପ୍ରସ୍ତୁତ
Taru tūlikā ଶଯ୍ୟା; ଯେଉଁ ପ୍ରାଣୀ ବୃକ୍ଷର ଶାଖାରେ ଝୁଲା ପରି ଓହଳି ଥାଏ )—ବାଦୁଡ଼ି—The bat.

ତରୁଧର—ଦେ. ବି—ମର୍କଟ; ମାଙ୍କଡ଼—
Tarudhara Monkey.
ବନଧରେ ଭୁଲ ତରୁଧର ବ୍ୟଙ୍ଗ ପ୍ରକାଶ କରୁଛ ଭର ।
ଉପେ- ବୈଦେହୀଶବିଳାସ ।

ତରୁ ନଖ—ସ. ବି. ( ୬ଷ୍ଠୀ ତତ୍; ତରୁ+ନଖ )—ଗଛର କଣ୍ଟା—
Taru nakha Thorn.

ତରୁ ବଲ୍ଲୀ—ସ. ବି. ( ମ୍ଧ୍ୟ.ପ.ଲୋ; ତରୁ+ବଲ୍ଲୀ )—
Taru balli ୧ । ଯେଉଁ ଲତା ଗଛକୁ ବେଢ଼ି ଉଠି ଥାଏ—
1. Creeper entwining a tree.
୨ । ଜାତୁକା ନାମ୍ନୀ ସୁଗନ୍ଧ ଲତା—
2. A kind of scented creeper
୩ । (ଦ୍ୱନ୍ଦ୍ୱ) ଗଛ ଓ ଲତା—3. Tree and creeper.
୪ । ପରମୂଳୀ—4 A parasitic plant.

ତରୁ ବିଳାସିନୀ—ସ. ବି. ସ୍ତ୍ରୀ. ( ତରୁ+ବିଳାସିନୀ; ଏହା ଗଛରେ
Taru bilāsini ମାଡ଼ିବା ହେତୁ )—ନବମାଳିକା; ନଅଳୀ ଲତା-
A kind of creeper; Jasmanium Arborescens.

ତରୁଭୁକ୍—ସ. ବି. ( ତରୁ+ଭୁଜ୍ ଧାତୁ+କ୍ୱିପ୍=ତରୁଭୁଜ୍, ୧ମା.
Tarubhuk ୧ବ; ଯାହା ଗଛର ରସ ଖାଇ ବଢ଼େ )—
ପରମୂଳୀ;ମଲଙ୍ଗ—Orchid; parasitic plant; mistletoe.

ତରୁଭୁଜ—ଦେ. ବି. ( ସ. ତରମୁଜ; ପା. ତରବୁଜ୍ )—
Tarubhuja ତରଭୁଜ ( ଦେଖ )—Tarabhuja ( See )
তর্মুজ तर्बुज
(ତରମୁଜ—ଅନ୍ୟରୂପ)

ତରୁ ଭୋଜୀ—ସ. ବି. ( ତରୁ+ଭୁଜ୍ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ)—
Taru bhoji ତରୁଭୁକ୍ ( ଦେଖ )—Tarubhuk ( See )

ତରୁମାଳିନୀ—ସ. ବି. ସ୍ତ୍ରୀ—ଭୂଇଁ ଅଁଳା—
Tarumālini Philanthus Niruri ( a herb ).

ତରୁ ମୂଳ—ସ. ବି. ( ୬ଷ୍ଠୀ ତତ୍; ତରୁ+ମୂଳ )—
Taru mūḷa ୧ । ତରୁତଳ; ଗଛର ତଳ—1. The ground under the branches of a tree.
୨ । ବୃକ୍ଷର ଚେର—2. Root of a tree.
୩ । ଗଛର ଗଣ୍ଡିର ଭୂମିନିକଟସ୍ଥ ସ୍ଥାନ—
3. Foot of a tree.

ତରୁ ମୃଗ—ସ. ବି. ( ୭ମୀ ତତ୍; ତରୁ+ମୃଗ )—
Taru mṛuga ଶାଖାମୃଗ; ମାଙ୍କଡ଼—Monkey.

ତରୁ ରାଗ—ସ. ବି. ( ୬ଷ୍ଠୀ ତତ୍; ତରୁ+ରାଗ )—
Taru rāga ୧ । ଅଙ୍କୁର—1. The tender shoots of a tree.
୨ । ପୁଷ୍ପ—2. Flower.
୩ । ନବପଲ୍ଲବ; କିଶଳୟ—
3. The tender leaves of a tree.

ତରୁରାଜ—ସ. ବି. ପୁଂ ( ୭ମୀ ତତ୍; ତରୁ+ରାଜନ୍ )—
Tarurāja ୧ । ତାଳ ଗଛ - 1. Palm tree.
୨ । ନଡ଼ିଆ ଗଛ—2. Cocoanut tree.
୩ । ମହାତରୁ; ବଡ଼ ଗଛ—3. Big tree.
୪ । ବଟ ବୃକ୍ଷ; ବର ଗଛ—4. The Banian tree.
୫ । ଅଶ୍ୱତ୍ଥ ଗଛ—5 The Peepal tree.

ତରୁରୁହ—ସ. ବି. ପୁଂ. ( ତରୁ+ରୁହ୍ ଧାତୁ+କର୍ତ୍ତୃ. ଅ )—
Taruruha ପରମୂଳୀ ଲତା—A parasitic creeper.
(ତରୁରୁହା—ସ୍ତ୍ରୀ)

ତରୁ ରୋହିଣୀ—ସ ବି. ସ୍ତ୍ରୀ (ତରୁ+ରୁହ ଧାତୁ+ଇନ୍+ସ୍ତ୍ରୀ. ଈ)—
Taru rohiṇi ତରୁରୁହ ( ଦେଖ )
Taruruha ( See ).

ତରୁ ଶାୟୀ—ସ. ବି. ପୁଂ (ତରୁ+ଶୀ ଧାତୁ+କର୍ତ୍ତୃ. ଇନ୍; ୧ମା. ୧ବ)-
Taru śāyi ୧ । ପକ୍ଷୀ—1. Bird.
(ତରୁଶାୟିନୀ—ସ୍ତ୍ରୀ) ୨ । ମର୍କଟ—2. Monkey.
ସ. ବିଣ—ଗଛରେ ଶୋଇଥିବା—
Sleeping on a tree.

ତରୁ ସାର—ସ. ବି (୬ଷ୍ଠୀ ତତ୍; ତରୁ+ସାର)—କର୍ପୂର—
Taru sāra Camphor.

ତରୁଟ—ସ. ବି (ତରୁ+ଉଟ)—ପଦ୍ମ ମୂଳ—
Tarūṭa The tuberous root of the lotus flower.

ତରେଇ—ପ୍ରାଦେ ( କଟକ ) ବି—ପୋଖରୀ—
Tarei Pond; tank.
ପ୍ରାଦେ (ମେଦନୀପୁର) ବି ( ଭୁଲ. ବ. ତରୁଇ ) ଜହ୍ନି (ଦେଖ)
Jahni ( See ).
ଦେ ବି—ତରାଇ (ଦେଖ)—Tarāi (See.

ତର୍କ୍ (ଧାତୁ)—ସ.—୧ । ତର୍କ ବିତର୍କ କରିବା; ବାଦାନୁବାଦ କରିବା—
Tark (root) 1. To argue; to reason.
୨ । ଅନୁମାନ କରିବା—
2. To guess; to suppose.
୩ । ସ୍ଥିର କରିବା—3. To ascertain (Apte).
୪ । ଚିନ୍ତା କରିବା—4 To reflect.
୫ । କହିବା—5. To speak.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ୯ | ଊ | ୠ,ଈ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଜ୍ଞ | ଇଯ୍ | ଡ଼ଅ | ଢ଼ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଙ୍ୟ | ଇଅ | ଢ଼ | ୯ |

୬ । ଝକଝକ ହେବା; ଶୋଭା ପାଇବା—
6. To shine

୭ । ବିଚାର କରିବା; ବିବେଚନା କରିବା—
7. To think of; to have in view; to consider.

୮ । କଳ୍ପନା କରିବା; ଉଦ୍ଦେଶ୍ୟ କରିବା—8. To intend.

ତର୍କ—ସଂ. ବି. (ତର୍କ୍ ଧାତୁ+ଭାବ. ଅ)—୧ । ଯୁକ୍ତି—
Tarka 1. Abstract reasoning.

୨ । ବାଦାନୁବାଦ—
2. Argument; discussion; debate.

୩ । ତଦନ୍ତ; ସନ୍ଧାନ—
3. Inquiry; investigation.

୪ । (+କରଣ. ଅ)—ନ୍ୟାୟଶାସ୍ତ୍ର—4. Logic.

୫ । ଅଳଙ୍କାର ଶାସ୍ତ୍ର—
5. The Science of Rhetoric.

୬ । କାରଣ; ହେତୁ—9. Cause.

୭ । ସମ୍ଭାବନା—7 Possibility; probability.

୮ । ସନ୍ଦେହ—8. Doubt.

୯ । ଅନୁମାନ; ଉତ୍ପ୍ରେକ୍ଷା—
9. Guess; inference; conjecture.

୧୦ । ଆକାଂକ୍ଷା; ଇଚ୍ଛା—10. Desire; wish

୧୧ । ପ୍ରସ୍ତାବ (ନ୍ୟାୟ)—11. Proposition (logic.)

୧୨ । (ନ୍ୟାୟଶାସ୍ତ୍ର) କୌଣସି ପ୍ରତିଜ୍ଞା ଅସମ୍ଭବ ଥିବା ବିଷୟ ଯୁକ୍ତି ଦ୍ୱାରା ପ୍ରମାଣିତ କରିବା—
12. (logic) Reduction to absurdity; Reductio ad absurdum (Apte).

୧୩ । ଦର୍ଶନଶାସ୍ତ୍ର—13. Philosophy; metaphysics; the system of doctrine founded on pure reasoning or free thinking (Apte).

୧୪ । (ଦର୍ଶନଶାସ୍ତ୍ରର ସଂଖ୍ୟା ୬ ଥିବାରୁ)—ଛଅ ସଂଖ୍ୟା—
14. The number six (Apte).

୧୫ । ବାକ୍ୟର ଶୂନ୍ୟ ସ୍ଥାନର ପୂରଣ—
15. Supplying an ellipsis (Apte).

୧୬ । ଉଦ୍ଦେଶ୍ୟ; କାରଣ—
16. Cause; motive (Apte).

ଦେ. ବି—୧ । ଛଳ; କପଟ—1. Deceit.

୨ । ସତର୍କତା—2. Vigilance.

ତର୍କକ—ସଂ. ବିଣ. ପୁଂ (ତର୍କ୍ ଧାତୁ+କର୍ତ୍ତୃ. ଅକ) ଯେ ସନ୍ଧାନ କରେ; ଅନୁସନ୍ଧିତ୍ସୁ—Inquiring; inquisitive.
Tarkaka
(ତର୍କିକା—ସ୍ତ୍ରୀ) ସଂ. ବି—୧ । ଅନୁସନ୍ଧାନକାରୀ ବ୍ୟକ୍ତି—
1. Inquirer.

୨ । ଯାଚକ; ଦରଖାସ୍ତକାରୀ—
2. Petitioner (Apte).

୩ । ପ୍ରାର୍ଥୀ ବ୍ୟକ୍ତି—3. Suitor (Apte).

୪ । ନ୍ୟାୟଶାସ୍ତ୍ର ବିଶାରଦ ବ୍ୟକ୍ତି—4. Logician (Apte).

ତର୍କ ଜାଲ—ସଂ. ବି. (୬ଷ୍ଠୀ ତତ୍; ତର୍କ+ଜାଲ=ସମୂହ)—
Tarka jāla ୧ । ବହୁ ତର୍କ—1. A mesh of arguments.
(ତର୍କ ଜାଲ—ଅନ୍ୟରୂପ) ୨ । କୂଟତର୍କ—
2 Round-about arguments; hair-splitting arguments.

ତର୍କଣ(ଣା)—ସଂ. ବି. ସ୍ତ୍ରୀ. (ତର୍କ୍ ଧାତୁ+ଭାବ. ଅନ; +ସ୍ତ୍ରୀ. ଆ)—
Tarkaṇa (ṇā) ୧ । ଅନୁମାନ—1. Guess.
(ତର୍କଣୀୟ, ତର୍କ୍ୟ—ବିଣ) ୨ । ଯୁକ୍ତି—
2. Reasoning; speculation.

ତର୍କ ପଞ୍ଚାନନ—ସଂ. ବି.—ନ୍ୟାୟଶାସ୍ତ୍ରରେ ବିଚକ୍ଷଣ ପଣ୍ଡିତଙ୍କୁ ଦିଆଯିବା
Tarka pañchānana ଉପାଧିବିଶେଷ—A title given to Logician pandits.

ତର୍କ ବାଗୀଶ—ସଂ. ବି.—ତର୍କ ପଞ୍ଚାନନ (ଦେଖ)
Tarka bāgīśa Tarka pañchānana (See)

ତର୍କ ବିତର୍କ—ସଂ. ବି. (ସହଚର; ଦ୍ୱନ୍ଦ୍ୱ; ତର୍କ+ବିତର୍କ)—ବାଦାନୁବାଦ;
Tarka bitarka ବାଦପ୍ରତିବାଦ; ଊହାପୋହ; ଅନୁକୂଳ ଓ ପ୍ରତିକୂଳ ଆଲୋଚନା—The pros and cons of a matter; repeated discussions from all points of view.

ତର୍କ ବିଦ୍ୟା—ସଂ. ବି.—ନ୍ୟାୟଶାସ୍ତ୍ର; ସିଦ୍ଧାନ୍ତର ଖଣ୍ଡନମଣ୍ଡନ ପ୍ରଣାଳୀ ଓ
Tarka bidyā ନିୟମ ଯେଉଁ ବିଦ୍ୟାରୁ ଶିକ୍ଷା କରାଯାଏ—
(ତର୍କଶାସ୍ତ୍ର—ଅନ୍ୟରୂପ) The science of Logic or reasoning; logomachy.

ଦେ. ବି—କପଟ—Deceit.

ତର୍କଲାସ୍ୟ—ସଂ. ବି.—ଚକୁଣ୍ଡା (ଦେଖ)
Tarkalāsya Chākuṇḍā (See)

ତର୍କ ମୁଦ୍ରା—ସଂ. ବି.—ତନ୍ତ୍ରୋକ୍ତ ଅଙ୍ଗୁଳିରଚିତ ମୁଦ୍ରାବିଶେଷ—
Tarka mudrā A certain pose of the fingers mentioned in the 'Tantras'.

ତର୍କସ୍—ବୈଦେ. ବି.—(ଫା)—ତୂଣୀର; ଶରମୁଣା—
Tarkas Quiver for arrows.
तरकस तरकस

ତର୍କ ସନ୍ଧି—ସଂ. ବି.—କାବ୍ୟାଳଙ୍କାରବିଶେଷ—A figure of speech
Tarka sandhi in composition.

ଉଦାହରଣ ଯଥା—

ଭବ ନଗରରେ କାମିନୀ ଚିତ୍ତର ମନ
ଜୀବନ ଯିବ ଅପୂର୍ବ କୃପା କଲେ ଧନ
ମୀନ ନୟନ କୁମୁଦ ହାସରେ କି ସବ
ବରହେ ବରଷ୍ଟି ଧ୍ୟାନ ଅଛି କି ନ ହେବ । ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି ।

୨ ଅଙ୍କରେ ଲେଖିବା ଅପରେ ଦୃଷ୍ଟ ହେବ ୧ ଚିହ୍ନିତ ଅକ୍ଷର ଓ ମାତ୍ର ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ସେ ସ୍ଥାନରେ ତାହା ନ ମିଳିବ, ତେବେ ତାହା ଶବ୍ଦ ପାଠ ସ୍ଥାନରେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'କାଇଁ' ନ ମିଳିଲେ 'କାଇଁ' ଖୋଜିବେ; 'ବୃଥ' ନ ମିଳିଲେ 'ବୃଥ' ଦେଖିବେ; 'ବଥ' ନ ମିଳିଲେ 'ବକ୍ଷ' ଦେଖିବେ; 'ଅର୍ଚ୍ଚା' ନ ପାଇଲେ 'ଅର୍ଚ୍ଚା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

ତର୍କା—ଦେ. ବିଣ.—ତରକା (ଦେଖ
Tarkā Tarakā (See)

ତର୍କା(ର୍କେ)ଇବା—ଦେ. କ୍ରି.—ତରକାଇବା (ଦେଖ)
Tarkā(rke)ibā Tarakāibā (See)

ତର୍କା ତର୍କି—ଦେ. ବି. ( ସଂ. ତର୍କବିତର୍କ ) ଦୁଇଜଣ ବ୍ୟକ୍ତିଙ୍କ ମଧ୍ୟରେ
Tarkā tarki ବାଦାନୁବାଦ ବା ବିଚାର; ତର୍କବିତର୍କ—
Debate; discussion.

ଦେ. ବି. ଓ ବିଣ.—ପରସ୍ପର ଜଗାଜଗି; ଚକାଚକି—Closely watching the movement of one against the other.

ତର୍କାଭାସ—ସ. ବି.—(୬ଷ୍ଠୀ ତତ୍; ତର୍କ+ଆଭାସ)—୧ । ଭ୍ରାନ୍ତ ସିଦ୍ଧାନ୍ତ-
Tarkābhāsa 1. Wrong inference; fallacy.
୨ । କୁଯୁକ୍ତି—2. Fallacious argument.

ତର୍କାରି—ଦେ. ବି.—ତରକାରି (ଦେଖ)
Tarkāri Tarakāri (See)

ତର୍କାଳଙ୍କାର—ସ. ବି.—ତର୍କଶାସ୍ତ୍ରଜ୍ଞ ପଣ୍ଡିତଙ୍କ ଉପାଧିବିଶେଷ—
Tarkālankāra 1. A title given to Pandits proficient in Logic.

ତର୍କିଣ(ଳ)—ସ. ବି.—ଚକୁଣ୍ଡା (ଦେଖ) (ଦ୍ର. ଶବ୍ଦସାଗର)—
Tarkiṇa (ḻa) Chākuṇḍā (See)

ତର୍କିତ—ସ. ବିଣ. (ତର୍କ୍ ଧାତୁ+କର୍ମ. ତ)—
Tarkita ୧ । ଆଲୋଚିତ—1. Discussed; debated.
(ତର୍କିତା—ସ୍ତ୍ରୀ) ୨ । ବିଚାରିତ; ବିବେଚିତ—2. Considered.
୩ । ଅନୁମିତ—3. Inferred.
୪ । ଉତ୍ପ୍ରେକ୍ଷିତ—4. Guessed.
୫ । ସମ୍ଭାବିତ—5. Apprehended; possible.
୬ । ପ୍ରସ୍ତାବିତ—6. Proposed.
୭ । ଅନୁସନ୍ଧାନ କରାଯାଇ ଥିବା—7. Investigated.
୮ । ଯହିଁ ସମ୍ବନ୍ଧେ ସନ୍ଦେହ କରା ଯାଉଥାଏ—
8. Doubted.

ସ. ବି.—(+ଭାବ. ତ)—ଅନୁମାନ—Conjecture.

ତର୍କିବା—ଦେ. କ୍ରି.—(ସ. ତର୍କ୍ ଧାତୁ)—ତରକିବା (ଦେଖ)
Tarkibā Tarakibā (See)
ତର୍କା ତର୍କି କରନ୍ତେ ତହିଁ ମୋ ବନ୍ଧୁ ଗ୍ରୀବ
तरकना ତହୁଁ ଘଟନ୍ତେ ଅବଧାରି ଦେଖା ହୁସିଅ ।
କବିସୂର୍ଯ୍ୟ. କଣେ.ସ୍ୱଚ୍ଛନ୍ଦ. ଓ ଗୀତ ।

ତର୍କୀ—ସ. ବିଣ. ଓ ବି. ପୁଂ (ତର୍କ+ଅସ୍ତ୍ୟର୍ଥେ ଇନ୍; ୧ମା. ୧ବ.)
Tarki ୧ । ତର୍କକାରୀ; ଯେ ତର୍କ କରେ—
(ତର୍କିଣୀ—ସ୍ତ୍ରୀ) 1. Disputant; reasoner.
୨ । ତାର୍କିକ; ତର୍କଶାସ୍ତ୍ରଜ୍ଞ—
2. Logician; versed in logic.

ତର୍କୁ—ସଂ. ବି. ( କୃତ୍ ଧାତୁ=କାଟିବା + ସଂଜ୍ଞାର୍ଥରେ କରଣେ· ଉ;
Tarku ନିପାତନ)—ତାକୁଡ଼ି—A spindle.

ତର୍କୁଟ(ଟୀ)—ସଂ. ବି. (କୃତ୍ ଧାତୁ+କରଣ ଉଟ+ଅ;+ଈ)—
Tarkuṭa (ṭī) ୧ । ତର୍କୁ (ଦେଖ)—Tarku (See)
୨ । କଟାକଟି କରିବା (ପ୍ରକୃତିବାଦ)—
2. Scoring through.

ତର୍କୁ ପିଠ(ଠୀ)(ଣ୍ଡ )—ସଂ. ବି.—(୬ଷ୍ଠୀ ତତ୍; ତର୍କୁ+ପିଠ+ପିଠୀ;
Tarku pitha (thī)(ṇḍa)+ପିଣ୍ଡ=ଗୋଲାକାର ବସ୍ତୁ)--ତାକୁଡ଼ି
(ତର୍କୁପୀଠୀ—ଅନ୍ୟରୂପ) ମୂଳରେ ଯେଉଁ ପିଣ୍ଡ ବା ଗୋଲ ପଦାର୍ଥ ଥାଏ; ତାକୁଡ଼ିମୂଳର ବାଟୁଳି—The ball at the lower end of a spindle.

ତର୍କୁ ଲାସକ—ସଂ. ବି.—(ତର୍କୁ+ଲସ୍ ଧାତୁ ଣିଚ୍+କର୍ତ୍ତୃ· ଅକ)—
Tarku lāsaka ତର୍କୁନ୍ୟାସକ ଯନ୍ତ୍ର; ଚରଖା; ଅଟେ—
Spinning wheel.

ତର୍କ୍ଷୁ—ସ. ବି—ତରକ୍ଷୁ (ଦେଖ)
Tarkshu Tarakshu (See)

ତର୍କ୍ଷ୍ୟ—ସ. ବି—ଯବକ୍ଷାର—
Tarkshya Nitre; saltpetre.

ତର୍ଜ୍ (ଧାତୁ)—ସ—୧ । ଗାଳି ଦେବା—1. To abuse; to scold.
Tarja (root) ୨ । ଧମକାଇବା—2. To threaten.
୩ । ଭୟ ଦେଖାଇବା—3. To terrify.
୪ । ଉପହାସ କରିବା—4. To mock; to deride.

ତର୍ଜନ(ନା)—ସ. ବି. (ତର୍ଜ୍ ଧାତୁ+ଭାବ. ଅନ;+ଆ)—
Tarjana(nā) ୧ । କ୍ରୋଧରେ ଗର୍ଜନ—
1. Roaring in rage.
୨ । କ୍ରୋଧ ପ୍ରକାଶ—2. Expression of anger.
୩ । ତିରସ୍କାର; ଭର୍ତ୍ସନା—3. Rebuke; abuse.
୪ । ଭୟପ୍ରଦର୍ଶନ—4. Terrifying.
୫ । ଧମକାଣି—5. Threatening.
୬ । ଉପହସନ—6 Pointing at in redicule or contempt (Apte).
୭ । କ୍ରୋଧ—7. Anger (Apte)

ତର୍ଜନ ଗର୍ଜନ—ସ. ବି. (ସଦ୍ଭବ)—ତମ୍ବିତର୍କ ହେବା—
Tarjana garjana Chafing and roaring.
ସେ ଭୂମ୍ବର ଯୁକ୍ତିର ପ୍ରତିଯୁକ୍ତି ନ ଦେଖାଇ ହାତ ଗୋଡ଼ କମ୍ପାଇ ତର୍ଜନ ଗର୍ଜନ କରୁଛି । ରଧାନାଥ. ଜବେଣା ।

ତର୍ଜନୀ—ସ. ବି. ସ୍ତ୍ରୀ. (ତର୍ଜ୍ ଧାତୁ+କରଣ ଅନ+ସ୍ତ୍ରୀ. ଈ;
Tarjani ଯାହାଦ୍ୱାରା ତର୍ଜନ କରାଯାଏ)—ତର୍ଜନୀ ଅଙ୍ଗୁଠି—
Index finger; forefinger.

ତର୍ଜନୀ ମୁଦ୍ରା—ସ. ବି. ସ୍ତ୍ରୀ—ତନ୍ତ୍ରୋକ୍ତ ଅଙ୍ଗୁଳିରଚିତ ମୁଦ୍ରାବିଶେଷ—
Tarjani mudrā A peculiar pose of the fingers used in Tantric worship.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଚ | ଡ | ଗ୍,ଙ୍କ | ଓ | ଏ | ବ୍ୟଞ୍ଜନ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | - | ଚ୍ଛ | ନ୍ଥ | ଢ |
| ୨ | ଉ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ୟ | ଯ | ସ | ଚ୍ୟ | ଛଥ | ଝ | ଣ୍ |

[ ଦ୍ର—ଏଥିରେ ବାର୍ଥ ହାତକୁ ନୂଠା କର ତର୍ଜମା ଓ ମଧ୍ୟମାକୁ ପ୍ରସାରିତ କରାଯାଏ—ହି. ଶବ୍ଦସାଗର । ]

ତର୍ଜମା—ବୈଦେ. ବି—ତରଜମା (ଦେଖ
Tarjamā Tarajamā See)

ତର୍ଜିତ—ସଂ. ବିଣ. ପୁଂ. (ତର୍ଜ ଧାତୁ+କର୍ମ. ତ)—୧ । ଭର୍ତ୍ସିତ—
Tarjita 1. Abused; reproached.
(ତର୍ଜିତା—ସ୍ତ୍ରୀ) ୨ । ଭୟପ୍ରଦର୍ଶିତ—
2 Threatened; menaced.
୩ । ତାଡ଼ିତ—3. Driven out.
୪ । ଅପମାନିତ—4. Disgraced Apte).

ତର୍ଜିବା—ଦେ. କ୍ରି. (ସଂ. ତର୍ଜ ଧାତୁ)—୧ । ଭୟପ୍ରଦର୍ଶନ କରିବା;
Tarjibā ଡରାଇବା; ଧମକାଇବା—1. To threaten.
ତର୍ଜା ... 
तर्जना ...
୨ । ଗାଳିଦେବା—2. To scold.

ତର୍ଣ୍ଣ—ସଂ. ବି. (ସଂ. ତୃ ଧାତୁ=ଗମନ କରିବା+କର୍ତ୍ତୃ. ଣ)—
Tarṇṇa ୧ । ସଦ୍ୟୋଜାତ ବାଛୁରି; କଅଁଳ ବାଛୁରି—
(ତର୍ଣ୍ଣକ—ଅନ୍ୟରୂପ) 1. A newborn calf.

ତର୍ଣ୍ଣି—ସଂ. ବି. ପୁଂ. (ତୃ ଧାତୁ,ପାରଗମନ କରିବା+କର୍ତ୍ତୃ.ନି)—୧ । ସୂର୍ଯ୍ୟ—
Tarṇṇi 1. The sun.
୨ । (+କରଣ ନି) ଭେଲା—2. Raft.
୩ । ଡଙ୍ଗା—3. Boat.

ତର୍ତ୍ତରୀକ-ସଂ. ବି. (ତୃ ଧାତୁ=ପାର ହେବା+କରଣ ଈକ)—
Tarttarika ୧ । ନୌକା—1. Boat.
୨ । ଭେଲା—2. Raft.
ସଂ. ବିଣ. (+କର୍ତ୍ତୃ. ଈକ)—ପାରଗାମୀ; ଯେ ପାର ହୁଏ—
Crossing over ( a river).

ତର୍ତିବ୍ (ଇତ୍ୟାଦି) - ବୈଦେ. ବିଣ—ତରତିବ୍ (ଦେଖ
Tartib (etc) Taratib (See)

ତର୍ଦ୍ଦ (ଧାତୁ)—ସଂ—୧ । ହିଂସା କରିବା; ଅଘାତ କରିବା —
Tarda (root) 1. To injure; to hurt.
୨ । ହତ୍ୟା କରିବା; ବଧ କରିବା - 2. To kill (Apte).
୩ । କାଟି ଦେବା—3. To cut through (Apte).

ତର୍ଦ୍ଦୁ(ର୍ଦ୍ଦୂ)—ସଂ. ବି ସ୍ତ୍ରୀ. (ତର୍ଦ ଧାତୁ+କରଣ ଉ;+ଊ)—
Tarddu(rddū) ଦର୍ବୀ; ଚଟୁ—A wooden ladle.

ତର୍ପଣ—ସଂ. ବି. କ୍ଲୀ. [ତୃପ୍ ଧାତୁ=ତୃପ୍ତ ହେବା; ଏଠେ ତର୍ପି ଧାତୁ+
Tarpaṇa ଭାବ ଅନ]—୧ । ତୃପ୍ତି—1. Satiety.
୨ । [+କରଣ ଅନ] ଦେବତା, ଋଷି ଓ ପିତୃଲୋକଙ୍କ ତୃପ୍ତ୍ୟର୍ଥ ଜଳଦାନ—2. The rites of offering oblations of water to the manes of one's deceased ancestors, Deities and sages.
[ ଦ୍ର—ମନ୍ତ୍ରପାଠ ପୂର୍ବକ କୁଶ, ତିଳ, ଜଳ, ଯବ ଓ ତଣ୍ଡୁଳ-ଅବଦ୍ୱାରା ଜଳାଞ୍ଜଳି ଦେଇ ଦେବତା, ଋଷି ଓ ପିତୃଲୋକଙ୍କ ଉଦ୍ଦେଶ୍ୟରେ ତର୍ପଣ କରାଯାଏ । ଆଶ୍ୱିନମାସର ପ୍ରଥମ ପକ୍ଷର ଦିନ ପିତୃପକ୍ଷ ବା ଅପରପକ୍ଷ ବୋଲି କଥିତ । ଏ ସମୟରେ ତର୍ପଣ କରିବାର ବିଧାନ ଅଛି । ଶ୍ରାଦ୍ଧ ଦିବସରେ ମଧ୍ୟ ତର୍ପଣ କରାଯାଏ । ]
୩ । ପ୍ରୀଣନ; ତୃପ୍ତିସାଧନ—
3. Act of satisfying.
ସଂ. ବିଣ—ତୃପ୍ତି ଜନକ—Satisfying; pleasing.
[ ଦ୍ର—ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ; ଯଥା—ଘ୍ରାଣତର୍ପଣ=ନାସାତୃପ୍ତିକର; କର୍ଣ୍ଣତର୍ପଣ=କର୍ଣ୍ଣର ତୃପ୍ତିଜନକ ]

ତର୍ପିତ—ସଂ ବିଣ ( ତୃପ ଧାତୁ ଣିଚ+କର୍ମ ତ —ଯାହାକୁ ତୃପ୍ତ କରା
Tarpita ଯାଇଅଛି; ସନ୍ତୋଷିତ; ତୃପ୍ତିପ୍ରାପ୍ତ—Satisfied; pleased.

ତର୍ପୀ—ସଂ. ବିଣ ପୁଂ (ତୃପ ଧାତୁ ଣିଚ୍+କର୍ତ୍ତୃ. ଇନ୍; ୧ମା. ୧ବ)—
Tarpi ଯେ ତର୍ପଣ କରେ—One who offers oblations
(ତର୍ପିଣୀ—ସ୍ତ୍ରୀ) of water to the manes.

ତର୍ବ (ଧାତୁ)—ସଂ—ଗମନ କରିବା; ଗତି କରିବା—
Tarba (root) To go; to move.

ତର୍ବଟ—ସଂ. ବି (ତର୍ବ ଧାତୁ+କର୍ତ୍ତୃ. ଅଟ)—ବର୍ଷ—
Tarbaṭa Year.

ତର୍ମ—ସଂ. ବି. କ୍ଲୀ (ତୃ ଧାତୁ=ପାରହେବା+କର୍ତ୍ତୃ. ମନ୍; ୧ମା. ୧ବ)—
Tarma ଯୂପକାଷ୍ଠର ଅଗ୍ରଭାଗ—The top of the sacrificial post.

ତର୍ମିମ୍ (ଇତ୍ୟାଦି)—ବୈଦେ. ବିଣ ଓ ବି—ତରମିମ୍ (ଇତ୍ୟାଦି) (ଦେଖ)
Tarmim (etc) Taramim (etc) (See)

ତର୍ଷ - ସଂ. ବି. ପୁଂ (ତୃଷ ଧାତୁ=ତୃଷାର୍ତ୍ତ ହେବା+ଭାବ. ଅ)—
Tarsha ୧ । ଅଭିଳାଷ—1. Desire.
୨ । ଶୋଷ; ତୃଷା; ତୃଷ୍ଣା—2. Thirst.
୩ । ଭେଲା—3. Raft.
୪ । ସମୁଦ୍ର—4. The sea.
୫ । ସୂର୍ଯ୍ୟ—5. The sun.
୬ । ତୃଷ୍ଣା; ଅସନ୍ତୋଷ—
6. Hankering; covetousness.

ତର୍ଷଣ—ସଂ. ବି. କ୍ଲୀ (ତୃଷ ଧାତୁ ଣିଚ୍=ତର୍ଷି ଧାତୁ+ଭାବ. ଅନ)—
Tarshaṇa ୧ । ପିପାସା; ତୃଷ୍ଣା—1. Thirst.
୨ । ଆଗ୍ରହ; ଇଚ୍ଛା—2 Desire; longing.

ତର୍ଷିତ—ସଂ. ବିଣ (ତୃଷ ଧାତୁ ଣିଚ୍=ତର୍ଷି ଧାତୁ+କର୍ମ. ତ)—
Tarshita ୧ । ତୃଷିତ; ପିପାସିତ—1. Thirsty.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦେଉ ୧ ଚିହ୍ନିତ ଅକ୍ଷର ଓ ମଧ୍ୟ ଏବ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ବାଢ଼' ନ ମିଳିଲେ 'ବାଢ' ଦେଖିବେ; 'ବୁଢ' ନ ମିଳିଲେ 'ବୁଢ଼' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲଙ୍କାର' ନ ପାଇଲେ 'ଅଲଂକାର' ଦେଖିବେ

୨ । ବାଞ୍ଛିତ—2. Greatly desired.

୩ । ଉତ୍କଣ୍ଠିତ—3. Eager for.

ତର୍ହି—ସଂ. ଅବ୍ୟୟ ( ତଦ୍ + ହି; ନିପାତନ )—୧ । ସେହିସମୟରେ; ତଦା—1. At that time.
Tarhi

୨ । ତେବେ—2. Then; in that case.

[ ଦ୍ର—ଭାଷାରେ ଏଥିର ବ୍ୟବହାର ବିରଳ । ]

ତଲ୍ (ଧାତୁ)—ସଂ—୧ । ପ୍ରତିଷ୍ଠିତ ହେବା—1. To be established or fixed.
Tal (root)

୨ । ବିଶ୍ରାମ କରିବା—2. To rest.

୩ । ପରିପୂର୍ଣ୍ଣ ହେବା—3. To be full.

୪ । ସମାପ୍ତ ହେବା—4. To be completed.

୫ । ପ୍ରତିଷ୍ଠା କରିବା—5. To found; to establish (Apte).

୬ । ବ୍ରତ ପୂର୍ଣ୍ଣ କରିବା—6. To accomplish a vow. (Apte).

ତଲ୍—ପ୍ରାଦେ. (ସମ୍ବଲପୁର) ବି ( 'ଳ' ସ୍ଥାନରେ 'ଲ୍' ଓ ଶେଷ ଅକ୍ଷରର ହଲନ୍ତ ଉଚ୍ଚାରଣ)—ତଳ; ଅଧୋଦେଶ—Ground; bottom.
Tal

ବିଣ.—ନିମ୍ନ—Low.

ତଲ୍ ମୁହାଁ—ପ୍ରାଦେ (ସମ୍ବଲପୁର) ବିଣ—ଅଧୋମୁଖ—With head bowed down.
Tal muhāñ

ତଳ—ସଂ. ବି. ( ତଲ୍ ଧାତୁ + କର୍ତ୍ତୃ. ଅ )—୧ । ଅଧୋଭାଗ; ନିମ୍ନଦେଶ—1. Bottom; ground; floor; the underpart; base.
Tala

୨ । ସ୍ୱରୂପ—2. Likeness; identity; actual form.

୩ । ଗର୍ତ୍ତ—3. Hole.

୪ । ଉପରଭାଗ—4. Upper part; surface.

( ଯଥା—ଭୂତଳ, ଧରାତଳ, ସମତଳ । )

୫ । ମଧ୍ୟଦେଶ—5. Middle part.

୬ । ଭୂପୃଷ୍ଠ; ଭୂଇଁ ଉପର—6. Ground; face of the earth.

ଘୋଡାଙ୍କ ପଦ ତଳ ତଳେ ପଡ଼ିଯିବା ଭଳି—କଦମ୍ବୂର୍ଯ୍ୟ. କଣୋସରଙ୍ଗ ଦ. ଗୀତ।

୭ । ପୃଷ୍ଠଦେଶ; ପଛଅଙ୍ଗ—7. Back or hind part.

୮ । ଗମ୍ଭୀରତା—8. Depth.

୯ । କାନନ; ବନ—9. Forest

୧୦ । (ଜ୍ୟାମିତି) ସମତଳ କ୍ଷେତ୍ର—10. (geometry) A plane.

୧୧ । ଖଡ୍ଗମୁଷ୍ଟି; ଖଣ୍ଡାର ବେଣ୍ଟ—11. Hilt or handle of a sword.

୧୨ । ଅବସ୍ଥିତିର ନିମ୍ନତା—12. Lowness of position (Apte).

୧୩ । ଗୃହର ସ୍ତର; ମହଲ—13. Storey of a house.

୧୪ । ପାଖ; ଉପକଣ୍ଠ; ନିକଟ—14 Vicinity; neighbourhood; suburbs.

୧୫ । ଚପେଟ; ଚାପୁଡ଼ା—15. Slap.

୧୬ । ତାଳଗଛ—16. Palm tree; palmyra.

୧୭ । ଆଧାର—17. Receptacle

୧୮ । ସ୍ୱଭାବ—18. Nature.

୧୯ । ସପ୍ତପାତାଳ ମଧ୍ୟରୁ ୧ମ ପାତାଳ; (ପାତାଳ ଦେଖ)—19. The 1st of the 7 nether worlds according to the Hindu Purāṇas (See Pātāla)

ତର୍ହି ଅପସରମାନଙ୍କୁ କରି ଭେଟ,
ପୁଣି ତଳେ ପଡି ଲଭନ୍ତି ଦୁଃଖଭୋଗ । କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ ।

୨୦ । ମର୍ତ୍ତ୍ୟଲୋକ—20. The earth.

୨୧ । ପାତାଳ ଲୋକ—21. The nether worlds, the lower regions.

୨୨ । ସହାୟ; ଭରା—22. Support; prop.

୨୩ । ଅତୀତ କାଳ—23 The past; days gone by.

୨୪ । କରତଳ; ନେଡ଼ୀ; ଲେଡ଼ୀ; ହାତର ତଳ—24. The palm of the hand.

୨୫ । ଗୋଡ଼ର ତଳପା—25 The sole of the foot.

୨୬ । ଗୋଧି ସାପ ( ହି. ଶବ୍ଦସାଗର )—26. Iguana, Varanus Salvator.

୨୭ । ନଦୀ, ପୋଖରୀ, ସମୁଦ୍ର ଆଦି ଜଳାଶୟରେ ଥିବା ଜଳର ନିମ୍ନସ୍ଥ ଭୂମି—27. The land at the bottom of water in a tank, river or sea.

୨୮ । ଜ୍ୟାଘାତବାରଣ; ଧନୁର ଡୋରୀର ଘର୍ଷଣରୁ ହାତକୁ ରକ୍ଷା କରିବା ପାଇଁ ବାମ ବାହୁରେ ପିନ୍ଧାଯିବା ଚମଡ଼ାର ପଟି (ହି. ଶବ୍ଦସାଗର)—28. A strip of leather worn round the left arm to protect it from the friction of the bow-string.

୨୯ । ମୂଳଦେଶ; ମୂଳର ଚତୁଃପାର୍ଶ୍ୱବର୍ତ୍ତୀ ସ୍ଥାନ; ମଧ୍ୟାହ୍ନରେ କୌଣସି ପଦାର୍ଥର ତଳେ ଯେତେଦୂର ଛାଇ ପଡ଼େ—(ଯଥା, ତରୁତଳ)—29. The area on which the shadow of a thing falls at noon; the part underneath.

୩୦ । ଶସ୍ତ୍ରାଦିର ମୁଠା; ବେଣ୍ଟ (ହି. ଶବ୍ଦସାଗର)—30. The handle of a weapon etc.

୩୧ । ହାତର କବଜା; ହାତଗଣ୍ଠି ( ହି.. ଶବ୍ଦସାଗର)—31. Wrist.

୩୨ । ମୁଖଣ୍ଡ (ହି.ଶବ୍ଦସାଗର)—32. Span of the palm.

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଲ୍ପ | ନ୍ଥ | ଊ |
|---|---|---|---|---|---|---|---|---|---|---|---|---|---|---|
| ୦ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଣ୍ୟ | ଯ | ସ | ଙ୍ଗ | ଲ୍ଥ | ଡ଼ | ନ୍ତ |

୩୩ । ମହାଦେବ; ଶିବ (ହି. ଶବ୍ଦସାଗର)—33. The Deity Siba.

୩୪ । ବାଅଁ ହାତ ଦ୍ୱାରା ବୀଣା ଅବ ବଜାଇବା—34. Pressing the strings of the lute with the left hand (Apte)

୩୫ । ତଳଭୂ; ପୋଖରୀ—35. Pond (Apte).

୩୬ । ନରକର ଅଂଶବିଶେଷ—36. A division of hell (Apte)

୩୭ । କାରଣ; ଅଦ; ପ୍ରାରମ୍ଭ—37. Cause; origin (Apte).

ଦେ. ବିଣ—୧ । ନିମ୍ନସ୍ଥ; ତଳରେ ଥିବା—1. Situated below.

(ଯଥା—ସ୍ତୁତ ତଳ କାଠ କାଠ ଯାକ ଭଇ ଲାଗି ଗଲାଣି ।)

୨ । ପୂର୍ବକାଳୀନ—2. Past.

(ଯଥା—ଏହା ବର୍ଷକ ତଳ କଥା ହେବ ।)

୩ । ପରବର୍ତ୍ତୀ; ପରେ ଜନ୍ମିଥିବା—3. Subsequent; born subsequently.

(ଯଥା—ତାଙ୍କ ବଡ଼ ପୁଅର ତଳ ଶିଶୁଟି ନଷ୍ଟ ହୋଇଗଲା ।)

୪ । ନିକଟବର୍ତ୍ତୀ—4 Proximate.

(ଯଥା—ଏବେ ଗୋଡ଼ତଳ ଲୋକେ ମୁଣ୍ଡକୁ ଚଢ଼ିବାକୁ ବସିଲେଣି ।)

୫ । ନିମ୍ନାଂଶରେ ରହୁ ଥିବା—5. Living in the bottom or lower regions.

ତଳେ ତଳେ ଗସ ତଳ ଗଞ୍ଜଣା—ଉଣା ।

୬ । ନଦୀର ମୁହାଣ ନିକଟସ୍ଥ ବା ସମୁଦ୍ର ଉପକୂଳସ୍ଥ ନିମ୍ନତଳ ଅଞ୍ଚଳରେ ଅବସ୍ଥିତ—6. Situated on the lower levels through which a river flows; coastal (tract).

ଦେ. ବି—୧ । ପୂର୍ବବର୍ତ୍ତୀକାଳ; ଅତୀତକାଳ—1. The past.

୨ । ନଦୀର ମୁହାଣ ନିକଟସ୍ଥ ଓ ସମୁଦ୍ର ଉପକୂଳବର୍ତ୍ତୀ ନିମ୍ନତଳ ଭୂମି—2. Lands of low level towards the mouth of a river; low land; low coastal tracts.

**ତଳ ଅଗଣା**—ଦେ. ବି (ସଂ. ତଳ+ଅଙ୍ଗନ)—ଏକାଧିକ ପ୍ରାଙ୍ଗଣ ବିଶିଷ୍ଟ ଗୃହପୃଷ୍ଠର ବାହ୍ୟଅଭ୍ୟନ୍ତର ନିକଟବର୍ତ୍ତୀ ପ୍ରାଙ୍ଗଣ—
Tala aganā
(ଉପର ଅଗଣା—ବିପରୀତ) The back-side or posterior courtyard.

**ତଳଇ**—ପ୍ରାଦେ. (ବସ୍ତର) ବି (ସଂ. ତଲକ; ତୁଳ. ହି. ତଲାଇ)—ପୋଖରୀ—Pond; tank.
Talai

**ତଳଉ**—ଦେ. ବି (ସଂ. ତଲକ; ତୁଳ. ଉର୍ଦ୍ଦୁ=ତଲାବ)—ପୋଖରୀ—Tank; pond.
Talau
তলাও তালাব; তলাউ

**ତଳ ଉପର କରିବା**—ଦେ. କ୍ରି (ସଂ. ତଳ+ଉପରି)—ତଳେ ଥିବା ବସ୍ତୁକୁ ଉପରକୁ ଓ ଉପରେ ଥିବା ବସ୍ତୁକୁ ତଳକୁ ଆଣିବା; ଲେଉଟ ପାଲଟ କରିବା—To bring down things which are upside and vice versa; to stir up or jumble things.
Tala upara karibā
উপর নীচকরা तले उपर करना

**ତଳକ**—ସଂ. ବି. କ୍ଲୀ (ତଳ=ଗର୍ତ୍ତ+କ)—ପୁଷ୍କରିଣୀ; ପୋଖରୀ—Tank; pond.
Talaka

**ତଳକ**—ସଂ. ବି.—ତୋଡ଼ି (ମାଛ) (ଦେଖ) (ହରେକୃଷ୍ଣ ଦ୍ରବ୍ୟଗୁଣ)
Talaka Tordi (fish) (See)

**ତଳକଣ୍ଟା ଉପରକଣ୍ଟା**—ଦେ. ବି—ପୂର୍ବକାଳର ରାଜଦଣ୍ଡବିଶେଷ—A mode of punishment inflicted on offenders in ancient times
Talakaṇṭā uparakaṇṭā
(ତଳକଣ୍ଟା ଉପରକଣ୍ଟା—ଅନ୍ୟରୂପ)

[ ଦ୍ର—ଗୋଟିଏ ଖଣିଗାତ ଖୋଳି ତହିଁ ତଳେ କଣ୍ଟା ବିଛାଇ କଣ୍ଟା ଉପରେ ଅପରାଧୀ ବ୍ୟକ୍ତିକୁ ଶୁଆଇ ତା ଉପରେ ପୁଣି କଣ୍ଟା ଲଦିଦେଇ ସେ ଗାତକୁ ମାଟିରେ ପୋତି ଦିଆଯାଉଥିଲା । ]

**ତଳ କନ୍ଦା**—ପ୍ରାଦେ. (ଗଡ଼ଜାତ) ବି.—କରଣ୍ଡି ଆଳୁ—Karāṇḍi ālu (See)
Tala kandā

**ତଳ କର**—ସଂ. ବି—ପୋଖରୀରୁ ଉତ୍ପନ୍ନ ଦ୍ରବ୍ୟ (ଯଥା, ମାଛ, ସିଂଘଡ଼ା, ପଦ୍ମଫୁଲ) ମାନଙ୍କ ଯୋଗୁଁ ଜମିଦାର ଅସୁଲ କରିବା କର (ହି. ଶବ୍ଦସାଗର)—Rent derived by a landlord from the produce of tanks.
Tala kara

**ତଳ କରିବା**—ଦେ. (ପଦ୍ୟ) କ୍ରି.—୧ । ନୁଆଁଇବା; ଅବନତ କରିବା—1. To bend down.
Tala karibā

ତଳ କଲୁ ମଥା, ଜାଣି ଚପଳତା-ଅଖିଳ ବୋଲି ମୋ ତୋଳା—ବଳଦ୍ରପଦ୍ୟ. ଜବତା ।

୨ । (ଲକ୍ଷଣାର୍ଥ) ବଳ ପଡ଼ିବା—2. (figurative) To excel; to surpass

ପୂର୍ଣ୍ଣଚନ୍ଦ୍ର ପର ତ ବଦନ ମଣ୍ଡଳ
ଝଳରେ ଦରପଣ-କାନ୍ତି କରେ ତଳ—
କୃଷ୍ଣସିଂହ. ମହାଭାରତ. ବନ ।

**ତଳଚକା**—ପ୍ରା. ଦେ. (ଗଞ୍ଜାମ) ବି—ବୋଇତ କଖାରୁ—Red gourd.
Talachakā

**ତଳ ତଳାନ୍ତ**—ଦେ. ବିଣ—୧ । ସର୍ବସ୍ୱାନ୍ତ; ଗରଖାଇ—1. Completely exhausted or reduced; deprived of all belongings; ruined.
Tala talānta
তলাচোঁআ
तलपट
(ତଳ ତଳାନ୍ତ—ଅନ୍ୟରୂପ) (ଯଥା—ମାମଲା ମକଦମାରେ ଶତଶତ ବଡ଼ ଲୋକ ତଳତଳାନ୍ତ ହେଉଅଛନ୍ତି ।)

୨ । ସମ୍ପୂର୍ଣ୍ଣରୂପେ ନିଃଶେଷିତ—2. Drained to the last drop.

ସାଧାରଣ ଲୋକେ ଅପର ଦ୍ବାରେ ଦେଇ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ତୁଲ୍ୟ ଦପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ବୃନ୍ଦ' ନ ମିଳିଲେ 'ବନ୍ଦ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

୩ । ସମ୍ପୂର୍ଣ୍ଣରୂପେ ନିଃସ୍ବ—3. Penniless.

**ତଳତଳିଆ**—ଦେ. ବଣ—୧ । ସବାତଳ—
Talataliā 1. Undermost; lowest.
तलानि ୨ । ନିମ୍ନ ବା ତଳରେ ଥିବା—
**तलौंछ, तलछट** 2. Lying at the bottom.
(ତଳତଳଥ—ଅନ୍ୟରୂପ) ୩ । ପାତ୍ରର ତଳେ ରହିଯାଇଥିବା—
3. Left at the bottom of a cup.
ଦେ. ବି—କୌଣସି ପାତ୍ରରୁ ତୈଳାଦି ତରଳ ପଦାର୍ଥ ନିଃଶେଷିତ ହୋଇଗଲେ ଶେଷରେ ପାତ୍ରତଳେ ଯେଉଁ ବହଳିଆ ପଦାର୍ଥ ରହିଯାଏ—Dregs of a cup when drained of its liquid contents.

**ତଳତ୍ର**—ସଂ. ବି. କ୍ଲୀ. (ତଳ=ହାତ+ତ୍ରୈ ଧାତୁ+କର୍ତ୍ତୃ. ଅ)—
Talatra ଧନୁର୍ଦ୍ଧାରୀର ଚର୍ମନିର୍ମିତ ହସ୍ତାନା ବା ହସ୍ତାବରଣ—
(ତଳତ୍ରାଣ—ଅନ୍ୟରୂପ) Leather gloves of an archer.

**ତଳଦିଗିଆ**—ପ୍ରାଦେ. (ଗଡ଼ଜାତ) ବି—ମୋଗଲବନ୍ଦୀର ଅଧିବାସୀ—
Tala digiā Inhabitants of Mogalabandi.
[ଦ୍ର—ଓଡ଼ିଶାର କଟକ, ପୁରୀ ଓ ବାଲେଶ୍ବର (ମୋଗଲବନ୍ଦୀ) ନିମ୍ନ ଭୂମିରେ ଥିବାରୁ ତାକୁ ତଳମାଳ ଓ ଗଡ଼ଜାତମାନ ଉଚ୍ଚ ଭୂମିରେ ଥିବାରୁ ତାକୁ ଉପରମାଳ ବୋଲିଯାଏ । ]

**ତଳ ଧ୍ବନି**—ସଂ. ବି. ପୁଂ. (୬ଷ୍ଠୀ ତତ୍; ତଳ+ଧ୍ବନି)—୧ । କରତାଳି—
Tala dhwani 1. Clapping of the palms.
୨ । ବାହୁସ୍ଫୋଟ ବା ତାଳର ଶବ୍ଦ—
2. Clapping sound.

**ତଳପ**—ଗ୍ରା. (ପଦ୍ୟ) ବି. (ସଂ. ତଳ୍ପ)—୧ । ବିଛଣା; ଶଯ୍ୟା—
Talapa 1. Bed.
तलप ତଳପ ଟେକ ଚଲେ ହୋଇଛ ସଙ୍ଗ-ଭକ୍ତ ସଙ୍ଗୀତ,
**तलप**
୨ । ତଳ୍ପ (ଦେଖ)—2. Talpa (See).

**ତଲପ**—ବୈଦେ. ବି (ଅ)—ତଲବ (ଦେଖ)
Talapa Talaba (See).
(ତଲପି—ଅନ୍ୟରୂପ)

**ତଳପଡ଼ ଅମ୍ବ**—ପ୍ରାଦେ (ଯାଜପୁର) ବି—ଯେଉଁ ଅମ୍ବ ଖୁଣ୍ଟାଣୀରେ
Talaparda ãmba ତୋଳା ନ ହୋଇ ଗଛରୁ ଭୂମିରେ ପଡ଼େ—
Mango which drops down from the tree without being picked.

**ତଳ ପ୍ରହାର**—ସଂ. ବି (୬ଷ୍ଠୀ ତତ୍; ତଳ=କରତଳ+ପ୍ରହାର)—
**Tala prahāra** ଚାପୁଡ଼ା; ଚଟକ—A slap or blow with the palm of the hand

**ତଲବ**—ସଂ. ବି—ଗାୟକ (ଦ୍ର° ଶବ୍ଦସାଗର)—
Talaba Singer.

**ତଲବ**—ବୈଦେ. ବି (ଅ. ତଲବ୍)—୧ । ହାକିମଙ୍କ ନିକଟକୁ ଯିବାକୁ
Talaba ଡାକରା ବା ଆହ୍ବାନ—1. Summons to attend
(ତଲବ—ଅନ୍ୟରୂପ) on a superior officer.
तलब ୨ । ଆହ୍ବାନ; ଡାକରା—2. Call.
**तलब** ୩ । ମାସିକ ବେତନ—2. Monthly salary.
୨ । ପାଖକୁ ଡାକିବା—2. A call to come near.
୩ । ପ୍ରଜା ଓ ଦେଣଦାରମାନଙ୍କୁ ନିଜ ନିଜର ଦେୟ ଦେବା ପାଇଁ ଜମିଦାରଙ୍କର ଓ ମହାଜନଙ୍କର ଆହ୍ବାନ—
3 Demand for payment of dues; asking for payment
୪ । ତଲାସ; ଖୋଜ—4 Search; enquiry.
୫ । (କେବଳ ଝାଡ଼ା, ପୋଷଣ ଓ ପରିସ୍ରା ଶବ୍ଦ ପରେ ବସେ ଯଥା—ଝାଡ଼ା ତଲବ)— ମାଡ଼ିବା; ବେଗ ଦେଖାଇବା—
5 Tendency (to pass stools and urine); call (of nature).

**ତଲବ କରିବା**—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ହାଜର ହେବା
Talaba karibā ନିମନ୍ତେ ଡାକିବା—1. To call for a person to be produced before a superior.
तलब करा ୨ । ସମନ ଜାରିବା—2. To summon.
**तलब करना** ୩ । ମଗାଇ ପଠାଇବା;—3. To send for.
୪ । କୌଣସି ପଦାର୍ଥ ଦାବି କରିବା—
4. To demand (a thing).

**ତଲବକାର**—ସଂ ବି—୧ । ସାମ ବେଦର ଏକ ଶାଖା—
Talabakāra 1; Name of a branch of the Sāma Beda.
୨ । ଏକ ଉପନିଷଦର ନାମ—
2. Name of an Upanishad.

**ତଲବ ଗାର୍**—ବୈଦେ. ବଣ (ଫା=ତଲବ୍‌ଗାର୍)—
Talaba gār ଯେ ତଲବ କରିବାକୁ ଯାଏ—A person who
तलबगीर goes to call or demand.
**तलबगार**

**ତଲବ ତାଗଦା**—ବୈଦେ. ବି (ଅ. ତଲବ୍ ଓ ତକାଜା କମ୍ବା ତାଗାଦ୍)
Talaba tāga(gi)dā (ଦ୍ବନ୍ଦ୍ବ)—ବାରମ୍ବାର ତଲବ; ତମ୍ବି-
(ତଲବ ତାଗେଦା—ଅନ୍ୟରୂପ) ତାଗିଦା—Repeated
तलब तागीद demands.
**तलब तगादा**

**ତଲବ ଦେବା(ହେବା)**—ଦେ. ବି (ଅ. ତଲବ୍; ଏବା; କେବଳ ଝାଡ଼ା
Talaba debā (hebā) ଓ ପରିସ୍ରା ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ;
तलब देना ଯଥା—ମୋତେ ଝାଡ଼ା ତଲବ ଦେଉଛି; ମୋତେ
**तलब देना** ପରିସ୍ରା ତଲବ ଦେଉଛି) ମାଡ଼ିବା; ବେଗ ଅନୁଭୂତ ହେବା-
A call by nature; tendency to ease oneself or pass stools or urine.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୍ | ଙ | ଞ | ଣ,ନ୍ | ଛ | ' | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ସ | ନ | ଶ,ଷ | ଝ | ଇର୍ଷ୍ଣ | ହ | ଞ୍ଚ |
| ୨ | ଋ | ଊ | ଖୁ | ଲୁ | ଚ୍ଚ | ଅନ୍ତଃସ୍ଥବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁ ବର୍ଣ୍ଣ | | ଖ୍ୟ | ଯ | ସ | ର୍ଯ୍ୟ | ଇଥ | ଷ | ~ |

ତଳବା— ପ୍ରାଦେ. (ବସ୍ତର) କ୍ରି. ( ତୁଳ. ହି. ତଳ୍ନା=ଭୃଜିବା; ଟିଠା
Talabā ଅଧ ଛାଣିବା )—ହଳୁଳବା—To fry vegetables with a little ghee or oil.

ତଳବାଁ—ପ୍ରାଦେ. ( ବସ୍ତର ) ବି—ସନ୍ତୁଳା; ଟିମ୍ପୋଲ୍ଲା—
Talabāñ A curry slightly fried with ghee or oil and then boiled with a little water added to it.

ତଳବାନା— ବୈଦେ ବି. ଫା. (ତଟିବ୍ଅ)—
Talabānā କଚେରିରେ ହାଜର ହେବା ପାଇଁ ପ୍ରତିବାଦିଙ୍କୁ ବା ସାକ୍ଷୀଙ୍କୁ ତଲବ କରିବା ନିମନ୍ତେ ଅବଶ୍ୟକ ନିର୍ଦ୍ଧାରିତ ଅର୍ଥ ବା ଫିସ୍—Talabana; process fees; fees required for calling for a person or a document.

[ ଦ୍ର—ଏ ଫାରସୀ ଶବ୍ଦ ଇଂରାଜିରେ ଚଳିଲାଣି । ]

ତଳବାର—ସ. ବି—ଖଡ୍ଗ; ଖଣ୍ଡା—
Talabāra Sword.

କାହିଁ ତଳିବାର କେଳବାଡି କରେ ।
ଗୁଆଳାଥ, ନନ୍ଦକେଶ୍ୱର ।

ତଳବାରି—ଦେ. ବି. ( ସ. ତଳବାର )—ଖଣ୍ଡା; ଖଡ୍ଗ—
Talabāri Sword.

তলওআর तलवार

ତଳବାରଣ—ସ. ବି—ତଳବାର (ଦେଖ)
Talabārana Talabāra (See)

ତଳବି—ବୈଦେ. ବିଣ (ଆ. ତଲବ୍)—(ତଚରଅ) ତଲବ୍
Talabi ଡକାଯାଇଥିବା—Called for; sent for; summoned.

তলবী तलबी

ଗ୍ରା. ବୈଦେ. ବି—ତଲବ (ଦେଖ)—Talaba (See)

ତଳ ଭର—ଦେ. ବିଣ—୧ । ନିମ୍ନଗାମୀ; ନିମ୍ନ ସ୍ଥାନକୁ ଗଡ଼ିଯାଉଥିବା—
Tala bhara 1. Tending to go down; tending to go below a given level.

୨ । ଭୂମିରେ ଭର ଦେଇଥିବା—2. Having the ground as one's support.

ତଳ ଭରା—ଦେ. ବି—ଭୂମିରେ ହାତ ଦ୍ୱାରା ଭର ବା ଠେସ ଦେବା—
Tala bharā Holding the ground for support; taking one's support from the ground.

ତଳ ମଳ—ସ.ବି. (ମ. ପ. ଲୋ. ତଳରେ ଥିବା ମଳ)—ପାଣି ବା ଘିଅ
Tala mala ତଳେ ବସିଯିବା ତେଲ ଅବର କାଦି (ହି. ଶବ୍ଦସାଗର)—Dreg or sediment of a liquid left at the bottom of a pot.

ତଳ ମାଳ—ଦେ. ବି—ସମୁଦ୍ର ଉପକୂଳସ୍ଥ ନିମ୍ନ ପ୍ରଦେଶ; ଅନୂପ ପ୍ରଦେଶ—
Tala māla The lower provinces; sea-side low tracts of country.

तलहटी [ଦ୍ର—ଓଡ଼ିଶାରେ ଗଡ଼ଜାତମାନଙ୍କୁ ଜାଙ୍ଗଲ ବା ଉପରମାଳ ଓ ସମୁଦ୍ର ଉପକୂଳସ୍ଥ ମୋଗଲବନ୍ଦୀକୁ ତଳମାଳ ଏବଂ ଏ ଦୁଇର ମଧ୍ୟସ୍ଥ ସମତଳ ଅଂଶକୁ 'ମାଗଧ' ବୋଲାଯାଏ ।]

ତଳ ମାଳିଆ—ଦେ. ବିଣ—ତଳମାଳରେ ବାସ କରୁଥିବା; ମୋଗଲବନ୍ଦୀ
Tala māliā ବାସୀ—Residing in the low tracts of country or the coastal district.

ତଳମୁହାଁ—ଦେ. ବିଣ. ପୁଂ—୧ । ଯେ ତଳକୁ ମୁହଁ ପୋଛି ଥାଏ—
Talamuhāñ 1. Looking to the ground.

ତଳମୁହିଁ—ସ୍ତ୍ରୀ; ୨ । ଯାହାର ମୁହଁ ତଳପାଖେ ଥାଏ—
2. Having the mouth at the bottom.

ତଳ ମୂଲିଆ—ଦେ. ବି—ଘର ଛପର ଦେବା ସମୟରେ ଯେଉଁ ମୂଲିଆ
Tala mūliā ଘରର ତଳେ ଥାଇ ଘରରେ ଚଢ଼ି ଛପର କରୁଥିବା ମୂଲିଆଙ୍କୁ ସାହାଯ୍ୟ କରେ—
The labourer who stays below the thatch and helps the thatchers.

ତଲୟ—ଦେ. (ପ୍ରାଚୀନ ପଦ୍ୟ) ବି. ( ସ. ତଲ୍ଲୟ )—
Talaya ତହିଁରେ ଲୟ ବା ଧ୍ୟାନ—Concentration of one's attention on that (matter).

ଅନେକ ଏକ କୁଅନ୍ତେ ଶେଷ
ଏହି ରୂପକୁ ତଲୟେ ଅଭ୍ୟାସ । ପ୍ରାଚୀ. ଚିନ୍ତାମଣି, ଜଗନ୍ନାଥଦାସ ।

ଗ୍ରା. ବି. ( ସ ତଳ ) ତାଳି—Clapping of hands.

ତଳ ଯୁଦ୍ଧ—ସ. ବି. ( ତଳ+ଯୁଦ୍ଧ )—ମଲ୍ଲଯୁଦ୍ଧ; କୁସ୍ତି; ବାହୁଯୁଦ୍ଧ—
Tala juddha Athletic sports; wrestling match; scuffling.

ତଳସାରକ—ସ. ବି. ( ତଳ ସୃ+ଧାତୁ ଣିଚ୍+କର୍ମ. ଅକ )—
Talasāraka ୧ । ଘୋଡ଼ାର ବକ୍ଷସ୍ଥଳ ବନ୍ଧନ-ରଜ୍ଜୁ; ଘୋଡ଼ାର ଛାତିରେ ବନ୍ଧାଯିବା ଦଉଡ଼ି—1. Horse-belt.

୨ । ଘୋଡ଼ାର ଭୋଜନ ପାତ୍ର; ତୋବଡ଼ା—
2. Horse's mouth-bag.

ତଳ ସୁଆଁସିଆ—ଦେ. ବି—ତଳ ମୂଲିଆ ( ଦେଖ )
Tala suāñsiā Tala mūliā ( See )

ତଳସ୍ଥ—ସ. ବିଣ. ପୁଂ. ( ତଳ+ସ୍ଥା ଧାତୁ+କର୍ତ୍ତୃ. ଅ )—
Talastha ନିମ୍ନ ଦେଶରେ ସ୍ଥିତ—Situated below or at the bottom.

ତଳ ସ୍ପର୍ଶ—ସ. ବି. ( ୬ଷ୍ଠୀ ତତ୍; ତଳ+ସ୍ପର୍ଶ )—
Tala sparśa ଜଳାଶୟର ତଳ ଦେଶକୁ ଛୁଇଁବା—
The act of touching the bottom of water; fathoming.

ସ. ବିଣ. ( ବହୁବ୍ରୀହି )—ଜଳାଶୟର ତଳଭାଗକୁ ଛୁଇଁଥିବା—
Sinking down to the bottom of water.

ତଳହଟି—ଦେ.ବି. (ତୁଳ.ହି. ତଲ୍‌ହଟୀ=ପାହାଡ଼ର ନିମ୍ନଦେଶସ୍ଥ ଜମି)—
Talahaṭi ତଳ ମାଳ ( ଦେଖ )—Tala māla ( See )

ପାଠକମାନେ ଯେବେ ଅପର ପୃଷ୍ଠାରେ ପ୍ରଥମ ୧ ଅଙ୍କିତ ଅକ୍ଷର ଓ ମାତ୍ରା ଏବଂ ୨ ଅଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ଦେଖି କରନ୍ତୁ ନାହିଁ । ଅତଏବ ୧ ବା ୨ ଅଙ୍କିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଦେଖିଲେ ଯେବେ ୧ ଅଙ୍କିତ ଶବ୍ଦ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଅକ୍ଷରର ଅପଲକ୍ଷିତ ୨ ବା ୧ ଅଙ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ତାର' ନ ମିଳିଲେ 'ତାର' ଖୋଜିବେ, 'କୃଅ' ନ ମିଳିଲେ 'କଅ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

**ତଳ ହୃଦୟ**—ସଂ. ବି. ( ୬ଷ୍ଠୀ ତତ୍; ତଳ+ହୃଦୟ )—
Tala hṛudaya — ଗୋଡ଼ ତଳପାର ମଧ୍ୟସ୍ଥ ଖୋଲ—
The instep or bridge of the sole of the leg.

**ତଳା**—ସଂ. ବି. ସ୍ତ୍ରୀ. ( ତଳ+ସ୍ତ୍ରୀ. ଆ )—
Talā / ତଲା / तला — ଜ୍ୟାଘାତବାରଣ; ଧନୁର୍ଦ୍ଧରମାନଙ୍କର ଧନୁର ଜ୍ୟାଘର୍ଷଣ ନିବାରଣ ନିମିତ୍ତ ବାମ ହସ୍ତର କହୁଣୀଠାରୁ ହାତଗଣ୍ଠି ପର୍ଯ୍ୟନ୍ତ ପିନ୍ଧାଯିବା ଚମଡ଼ାର ପଟି—A leathern glove worn by archers to ward off the friction of the bow-string and prevent it from hurting the hand.

ଦେ. ବି. ( ସଂ. ତଳ )—୧ । ତଳଭାଗ; ନିମ୍ନସ୍ଥଳ—
1. The lowest part or depth.

ତାଲୀ / थिगली — ୨ । ଚିରା ଲୁଗାରେ ସିଲାଇ କରାଯିବା ବସ୍ତ୍ରଖଣ୍ଡ; ତାଳି—
1. Patch of cloth stitched to a rift in a cloth.

୩ । ଜୋତାର ତଳପାର ଚମଡ଼ା—
3. Sole-leather of shoes.

୪ । ମୃଦଙ୍ଗ, ପଖଉଜ ବା ଢୋଲ ଉପରେ ଛାଉଣି ହେବା ଚମଡ଼ା—4. The leather-cover for drums.

ପ୍ରାଦେ. ( ବାଲେଶ୍ୱର ଓ ଯାଜପୁର ) ବି—ଧାନର ତଳ—
Seedlings of paddy.

**ତଲା**—ଦେ. ବି—ଘିଅ ବା ତେଲରେ ଭଜା ହୋଇଥିବା ବା ଘୃଅ ହୋଇଥିବା ବୁଟ ଆଦି ଶସ୍ୟ (ଯଥା, ବୁଟତଲା)—
Talā / সান্তোলা / तलाहुआ — Gram and pulses fried with ghee or oil.

**ତଲାଇ**—ଦେ. ବି. ( ସଂ. ତଲାଗି Apte )—
Talāi / তালাই, তলাই / चटाइ — ସରୁ ବୁଣା ବାଉଁଶ ପାତିଆର ଗୁଣ୍ଠ; ଗୁଣ୍ଠରା; ତଲାଉ—
(ତଲେଇ—ଅନ୍ୟରୂପ) Screen or matting made of bamboo-laths.

**ତଲାଉ**—ଦେ. ବି—ତଲଉ ( ଦେଖ )
Talāu — Talau ( See )

**ତଲାକ୍**—ବୈଦେ. ବି. ( ଆ )—ମୁସଲମାନ୍ ସ୍ୱାମୀ ଦ୍ୱାରା ଅପଣା ସ୍ତ୍ରୀର ବିବାହବନ୍ଧନଚ୍ଛେଦନ; ସ୍ୱାମୀ ଦ୍ୱାରା ପରିତ୍ୟାଗ—
Talāk / তলাক / तलाक — Dissolution of the marriage-tie by the husband by the utterance of the word 'Talāk' (amongst the Mahomedans).

(ତଲାକ୍—ଅନ୍ୟରୂପ)

[ ଦ୍ର—ମୁସଲମାନଙ୍କ କୋରାନ ଅନୁସାରେ ସ୍ୱାମୀ ଅପଣା ସ୍ତ୍ରୀ ସହିତ ବିବାହ ବନ୍ଧନ ଛେଦନ କରିବାକୁ ବସିଲେ ସ୍ତ୍ରୀର ଆଗରେ ୩ ଥର 'ତଲାକ୍' ( ମୁଁ ତତେ ତ୍ୟାଗ କଲି ) ଏହି ଶବ୍ଦ ଉଚ୍ଚାରଣ କରି ଦେଲେ ବିବାହ ବନ୍ଧନ ଛିନ୍ନ ହୁଏ । ତଲାକ୍ ଦେବା ସମୟରେ ସ୍ୱାମୀ ବିବାହକାଳୀନ ନିର୍ଦ୍ଦିଷ୍ଟ ଦେନ୍‌ମେହେର୍ (ଯୌତୁକ ଧନ) ସ୍ତ୍ରୀ ହସ୍ତରେ ଦେବାକୁ ବାଧ୍ୟ । ସ୍ତ୍ରୀ ଏହି 'ତଲାକ୍' ପରେ ଗର୍ଭବତୀ ହୋଇଅଛି କି ନାହିଁ ଏହା ଜାଣିବା ନିମନ୍ତେ ସ୍ତ୍ରୀ କିଛି ସମୟ ଅପେକ୍ଷା କରି ସାରିବା ପରେ ଅନ୍ୟ ସ୍ୱାମୀ ଗ୍ରହଣ କରି ପାରନ୍ତି । ୨ୟ ସ୍ୱାମୀ 'ତଲାକ୍' ନ ଦେବା ପର୍ଯ୍ୟନ୍ତ ୧ମ ସ୍ୱାମୀ ଇଚ୍ଛା କଲେ ମଧ୍ୟ ଏହି ପରିତ୍ୟକ୍ତା ସ୍ତ୍ରୀଙ୍କୁ ପୁନର୍ବାର ବିବାହ କରି ପାରିବେ ନାହିଁ ।

ମୁସଲମାନ୍ ଆଇନ ଅନୁସାରେ ସ୍ୱାମୀ ଥରେ ସୁଦ୍ଧା 'ତଲାକ୍' ଉଚ୍ଚାରଣ କରି ସାରିବା ପରେ ବିବାହବନ୍ଧନ ଛିନ୍ନ ହୋଇଯାଏ ଓ ସ୍ୱାମୀ ଉକ୍ତ କଥା ପ୍ରତ୍ୟାହାର କରି ପାରିବେ ନାହିଁ । ]

**ତଲାକ୍‌ଦିଆ**—ଦେ. ବିଣ ସ୍ତ୍ରୀ. (ମୁସଲମାନ୍‌ଙ୍କ ବ୍ୟବହୃତ)—
Talāk diā / তলাকদেওআ / तलाक दिआहुआ — ସ୍ୱାମୀଦ୍ୱାରା ତଲାକ୍ ବିଧିରେ ପରିତ୍ୟକ୍ତା (ସ୍ତ୍ରୀ)—
(wife) Whose marital relationship has been dissolved by the husband.

ପଠାଣଘର ତଲାକ୍‌ଦିଆ ମାଇକିନିଆଙ୍କ ପରି ଟାନସ୍ୱଭାବ
ଏବଂ ... ତବଲ ବୁଢଣା ଗଢ଼ୁ ଅଛି ।
ଫକୀରମୋହନ— ଛମାଣ ଆଠଗୁଣ୍ଠ ।

**ତଲାକ୍ ଦେବା**—ଦେ. କ୍ରି. (ମୁସଲମାନ୍‌ଙ୍କ ବ୍ୟବହୃତ)—
Talāk debā / তলাক দেওআ / तलाक देना — ୧ । (ସ୍ୱାମୀ ) ଅପଣା ସ୍ତ୍ରୀକୁ ପରିତ୍ୟାଗ କରିବା ନିମନ୍ତେ 'ତଲାକ୍' ଏହି ଶବ୍ଦ ୩ଥର ଉଚ୍ଚାରଣ କରି ଶପଥ କରିବା—1. (the husband) To pronounce the formula 'Talāk' 3 times while dissolving the marriage-tie with the wife, according to the dictates of the Koran.

୨ । ବିବାହିତା ସ୍ତ୍ରୀକୁ ତ୍ୟାଗ କରିବା; ବିବାହବନ୍ଧନ ଛେଦନ କରିବା—2. To dissolve one's marriage-tie with one's wife.

[ ଦ୍ର—ମୁସଲମାନ୍ ଶାସ୍ତ୍ର ମତରେ ବିବାହବନ୍ଧନ ଛେଦନପ୍ରସ୍ତାବ ସ୍ତ୍ରୀ ଆଡ଼ୁ ହେଲେ ତାକୁ 'ଖୁଲା' ଓ ସ୍ୱାମୀ ସ୍ତ୍ରୀ ଉଭୟଙ୍କ ରାଜିରେ ହେଲେ ତାକୁ 'ମୁବାରାତ୍' ବୋଲାଯାଏ । ସ୍ୱାମୀ ସ୍ତ୍ରୀକୁ ଥରେ 'ତଲାକ୍' ଦେଲେ ୩ ମାସ ମଧ୍ୟରେ ପୁଣି ମିଳିତ ହେବାକୁ ଇଚ୍ଛା କରି ତାହା ପ୍ରତ୍ୟାହାର କରି ପାରନ୍ତି; ମାତ୍ର ୩ ମାସ ଗତ ହୋଇଗଲେ ଆଉ କରି ପାରିବେ ନାହିଁ । ୩ ମାସ ପରେ ସ୍ୱାମୀ ଓ ସ୍ତ୍ରୀ ପୁନର୍ବାର ମିଳିତ ହେବାକୁ ଇଚ୍ଛା କଲେ ତଲାକ୍‌ଦିଆ ସ୍ତ୍ରୀ ଅନ୍ୟ ଜଣକୁ ବିବାହ କରିବେ ଓ ୨ୟ ସ୍ୱାମୀ ତାହାଙ୍କୁ ତଲାକ୍ ଦେବେ ଏବଂ ତତ୍ପରେ ଉକ୍ତ ସ୍ତ୍ରୀ ୧ମ ସ୍ୱାମୀଙ୍କୁ ଗ୍ରହଣ କରି ପାରିବେ । ସ୍ତ୍ରୀର ଅନୁପସ୍ଥିତିରେ ମଧ୍ୟ ସ୍ୱାମୀ ସ୍ତ୍ରୀକୁ ତଲାକ୍ ଦେଇ ପାରନ୍ତି । ]

**ତଲାକ୍ ନାମା**—ବୈଦେ. ବି. (ମୁସଲମାନ୍‌ଙ୍କ ବ୍ୟବହୃତ) (ଆ. ତଲାକ୍+ଫା. ନାମେହ୍)—ମୁସଲମାନମାନଙ୍କର ସ୍ତ୍ରୀକୁ ସ୍ୱାମୀର ଦେବା ଛାଡ଼ପତ୍ର—Deed of divorce amongst the Mahomedans.
Talāk nāmā / তলাকনামা / तलाकनामा

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଢ | ଡ଼ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଚ | ଶ,ଷ | କ୍ଷ | ଇଏ | ଉଅ | ଡ |
| ୨ | ଢ଼ | ଡ଼ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଡ଼ | ଢ଼ |

**ତଲାଚୀ**—ସଂ. ବ. (ତଲ+ଅଞ୍ଚ ଧାତୁ=ବିସ୍ତାର କରିବା+ଅଧିକରଣ
Ta̲lachī ଈ)—ଚଟେଇ; ତଲେଇ—Matting.

**ତଲାତଲ**—ସଂ. ବ. (ତଲ+ତଲ; ଅଧିକ୍ୟାର୍ଥରେ ଶବ୍ଦର ଦ୍ୱିତ୍ୱ;
Ta̲lāta̲la ନିପାତନ)—ହିନ୍ଦୁଶାସ୍ତ୍ର ମତରେ ସପ୍ତପାତାଳ ମଧ୍ୟରୁ
ଏକତମ—One of the 7 nether worlds.

ପରମ ପଦରେ ନେଇ ନାଣୁ ତୁ କହାଇ
ପୁଣି ତହୁଁ ନାଣ ତଳାତଳକୁ ନେବାଇ । କବିସୂର୍ଯ୍ୟ, କଳୋବତମ୍ପୁ ପ. ୮ଠ

[ ଦ୍ର—ହିନ୍ଦୁଶାସ୍ତ୍ରମତରେ ପାତାଳ ୭ ଭାଗ ବା ମହଲରେ ବିଭକ୍ତ;
ଯଥା—ତଳ, ଅତଳ, ବିତଳ, ସୁତଳ, ତଳାତଳ, ମହାତଳ ଓ
ରସାତଳ । ]

**ତଲାଭିଘାତ**—ସଂ. ବ. କ୍ଲୀ. ( ଷଷ୍ଠୀ ତତ୍; ତଲ+ଅଭିଘାତ)—
Ta̲lābhighāta କରତଳଦ୍ୱାରା ପ୍ରହାର; ଚପେଟାଘାତ; ଗୁଷ୍ପୁଡ଼ା-
Slapping blow.

**ତଲାରି**—ଦେ. ବ. (ସଂ. ତଲାଚୀ)—୧ । ତଲ୍ଲଇ; ବାଉଁଶପାତିଆରେ
Talāri ବୁଣାଯାଇ ଥିବା ତାଟି—1. Matting or screen of
ତଳାଈ bamboo-laths.
ଚଟାଈ [ ଦ୍ର—ଏହାଦ୍ୱାରା କୌଣସି ଅନାବୃତ ସ୍ଥାନକୁ ଆବୃତ
କରାଯାଏ । ପୂର୍ବକାଳରେ ନୌକାମାନଙ୍କୁ ପବନର ବେଗଦ୍ୱାରା
ଚାଳିତ କରାଇବା ନିମନ୍ତେ ଏହା ପାଲରୂପେ ବ୍ୟବହୃତ ହୁଏ । ]
୨ । ତାଳପତ୍ର ବା ବାଉଁଶ ପାତିଆରେ ପ୍ରସ୍ତୁତ ଏକପ୍ରକାର
ଟୋପି; ଝାମ୍ପି—2. A hat for the head made
of palm-leaves or laths of
bamboo.

ବଉଁଶୀ ଶିଙ୍ଗା ଅଣ୍ଟା ପଟକେ ଖୋଷିଲେ
ପଟର ତଲାରିକି ମୁଣ୍ଡରେ ଲଦିଲେ । କୃଷ୍ଣସିଂହ, ମହାଭାରତ ବନପର୍ବ ।

**ତଲ୍ଲସ**—ବୈଦେ. ବ. (ତୁର୍କୀ. ତଲ୍ଲାସ୍=ଅନୁସନ୍ଧାନ, ଖୋଜିବା)—
Talāsa ୧ । ଅନୁସନ୍ଧାନ—1. Seeking after; enquiry.
তলাস, তাল্লাস ୨ । ଅନ୍ୱେଷଣ; ଖୋଜିବା—
तलाश 2. Searching; quest.
୩ । ଅପରାଧୀ ବ୍ୟକ୍ତି ଦେହ ବା ଲୁଗାପଟା ଆଦିରେ କୌଣସି
ନିଷିଦ୍ଧ ପଦାର୍ଥ ଲୁଚିଛି ଅଛି କି ନାହିଁ ତାହା ଜାଣିବା
ସକାଶେ ଅପରାଧୀର ଲୁଗାପଟାଆଦି ଦରାଣ୍ଡିବା—
3. Search of a person's body or clothes.
୪ । ଅନୁପସ୍ଥିତ ବ୍ୟକ୍ତି ବା ପଦାର୍ଥକୁ ଲୋଡ଼ିବା—
4. Enquiring after an absent person or
thing.

ତନ୍ତୁ ଜାଣେ କର ଚରଣେ ତା ଲଗି ତଲ୍ଲସ ଦେ ଯାକୁ ନାହିଁ ।
କବିସୂର୍ଯ୍ୟ, ସଙ୍ଗୀତ ।

**ତଲ୍ଲସ କରିବା**—ଦେ. କ୍ରି—ତଲ୍ଲସିବା (ଦେଖ)
Talāsa karibā Talāsibā (See)
তলাস করা तलाश करना
(ତଲ୍ଲସ ନେବା—ଅନ୍ୟରୂପ)

**ତଲ୍ଲସି**—ବୈଦେ ବଣ. (ତୁ. ତଲ୍ଲାସୀ) (କଟକିଆ)—
Talāsi ୧ । ତଲ୍ଲସ କରାଯାଉ ଥିବା—
তল্লাসী 1. Searched for; wanted.
तलासी ୨ । ତଲ୍ଲସ ନିମନ୍ତେ ଆବଶ୍ୟକ—
2. Necessary or required for searching.
(ଯଥା—ତଲ୍ଲସି ଫିସ୍ ।)
ବୈଦେ. ବ. (ଫା. ତଲ୍ଲସୀ)—ତଲ୍ଲସ (ଦେଖ)
Talāsa (See).

**ତଲ୍ଲସି ନେବା**—ଦେ.କ୍ରି.—(ଫା. ତଲ୍ଲସୀ) (କଟକିଆ)—କୌଣସି ନଷ୍ଟ
Ta̲lāsi nebā ବା ଅପହୃତ ବସ୍ତୁକୁ ନିମନ୍ତେ କର୍ମଚାରୀମାନେ
তল্লাসি লওয়া ଖୋଜିବା ବେଳେ ତଦାରଖିବା—To conduct
तलासी लेना or supervise a search.

**ତଲ୍ଲସି ଫିସ୍**—ବୈଦେ. ବ. (ତୁ. ତଲ୍ଲସୀ+ଇଂ. ଫିସ୍) (କଟକିଆ)—
Talāsi phis ମହାଫିସ୍‌ଖାନାରୁ କୌଣସି ସରକାରୀ କାଗଜ
তল্লাসী ফি ବାହାର କରିବା ପାଇଁ ସରକାରଙ୍କୁ ଦିଆଯିବା ନିର୍ଦ୍ଦିଷ୍ଟ
तलाशी फिस धन—Searching fee.

**ତଲ୍ଲସିଆ**—ଦେ. ବ.—(ତୁ. ତଲ୍ଲାସ୍) (କଟକିଆ)—ଯେଉଁ ବ୍ୟକ୍ତି
Talāsiā ଚୋରି ମାଲ ଆଦି ପାଇଁ ଅନ୍ୟ ବ୍ୟକ୍ତିର ଦେହ ବା ଘର
তলাসিয়া ତଲ୍ଲସ କରେ—A person who makes a
तलासनेवाला search for lost or stolen thing.

**ତଲ୍ଲସି ଦେବା**—ଦେ. କ୍ରି. (ତୁ. ତଲ୍ଲାସୀ) (କଟକିଆ)—୧ । ଚୋରିମାଲ
Talāsi debā ବା ହଜିଥିବା ଦ୍ରବ୍ୟ ପାଇଁ ଆପଣା ଘର ବା
তল্লাসী দেওআ ଆପଣା ଦେହକୁ ଖୋଜିବା ନିମନ୍ତେ ଅନ୍ୟବ୍ୟକ୍ତିଙ୍କୁ
तलाशी देना (ଯଥା—ପୁଲିସ କର୍ମଚାରୀଙ୍କୁ) ସୁବିଧା ଦେବା—
1. To submit one's house or person tosearch
by another for a lost or stolen thing.
୨ । କୌଣସି ସନ୍ଦେହୀ ବ୍ୟକ୍ତିର ଦେହ ବା ସ୍ଥାନ ଖୋଜିବାକୁ
ଯିବା ପୁଲିସ କର୍ମଚାରୀ ନିଜର ଦେହ ବା ଲୁଗାପଟାରେ
କିଛି ଜିନିଷ ଲୁଚାଇ ନାହାନ୍ତି ଏହା ଉପସ୍ଥିତ ବ୍ୟକ୍ତିମାନଙ୍କୁ
ଦେଖାଇବାପାଇଁ ନିଜର ଦେହ ବା ଲୁଗାପଟା ଝାଡ଼ିଝୁଡ଼ି
ଦେବା—
2. ( a police officer ) To show to the
persons present at a search that nothing
is cencealed in his person or dress.

**ତଲ୍ଲସିବା**—ଦେ. କ୍ରି.—(ତୁର୍କୀ. ତଲ୍ଲାସ୍)—୧ । ଅନୁସନ୍ଧାନ କରିବା;
Talāsibā ଖୋଜିବା; ଧୁଣ୍ଡିବା—1. To search for; to
তল্লাসা hunt for.
तलासना ୨ । ସନ୍ଧାନ ବା ଖବର ନେବା—
2. To enquire after.
୩ । ଅପରାଧୀ ବା ସନ୍ଦେହୀ ବ୍ୟକ୍ତିର ଦେହ ଓ ଲୁଗାପଟା ଦରାଣ୍ଡିବା-
3. To make a search of the person and
dress of a convict or suspect.

ସାଧାରଣ ଲୋକେ ଅନେକ ସ୍ଥଳରେ ପଦର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନ ଯେକୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୃତ' ନ ମିଳିଲେ 'କୃତ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ତଳି**—ଦେ. ବି. (ସଂ. ତଳ ଧାତୁ)—୧ । ରୁଅ ହେବାର ଉପଯୁକ୍ତ ଗଛମାନଙ୍କ; ଗୁଚ୍ଛ—1. Seedlings fit for transplantation.
Tali
ଚାରା
**ପୌଁଦା, ଅଂକୁରା**
ତଳା
**तली**

ଅନ୍ନ ବେରେ ଦେଲେ ତଳି ଉଠିଲା; ତଳି ବଢ଼ିଲା ।
ଫକୀରମୋହନ. ଛମାଣ ଅଠଗୁଣ୍ଠ ।

୨ । (ସଂ. ତଳ) ନିମ୍ନଦେଶ; ତଳଭାଗ; ଅଧୋଦେଶ—2. The lower part.

୩ । ନିକଟବର୍ତ୍ତୀ ସ୍ଥାନ; ଉପକଣ୍ଠ—3 Suberbs; vicinity.
(ଯଥା—ସହର ତଳି ।)

୪ । କୌଣସି ଗୃହର ବା ବସ୍ତୁର ଅବସ୍ଥିତି-ପ୍ରଦେଶ—4. Site or position of a house or thing.

୫ । କୌଣସି ପଦାର୍ଥର ନିମ୍ନତମ ଅଂଶ—5. Bottom; the lowest part.

ସ୍ୱପ୍ନର ସର୍ଗରେ ସଜ ହେଲୁ ତାର ନ ଥାଉ ସଙ୍ଗରେ ତଳି
ପାଙ୍କୋଳ୍ପ ବେଡ଼ିବେ ରତ୍ନ ହେଉଛନ୍ତି ବନୋଭରେ ବାନ୍ଧି ତଳି ।
ଭକ୍ତକବି. ସାଅନ୍ତଙ୍କ ବାହା ।

ଦେ. ବିଣ.—୧ । ଅଧୋଭାଗରେ ଅବସ୍ଥିତ ବା ବ୍ୟବହୃତ—1. Situated or used in the lower part.
(ଯଥା—ତଳିପେଟ; ତଳିକନା ।)

୩ । ପରେ ଜାତ ହେବା—3. Younger; born after.

୪ । ଅଧସ୍ତନ—4. Subordinate; lower in grade.

**ତଳିଆ**—ଦେ. ବିଣ. (ସଂ. ତଳୀପ୍)—୧ । ନିମ୍ନସ୍ଥ; ତଳେ ଅବସ୍ଥିତ—1 Situated below.
Taliā
(ଯଥା—ଗଛତଳିଆ ବେତ; କାଗଜତଳିଆ ଛବି ବା ପୋଥି ।)

୨ । ତଳ ସମ୍ବନ୍ଧୀୟ—2. Pertaining to the bottom.
(ଯଥା—ଖୁଇତଳିଆ ବ୍ୟବସାୟ ।)

୩ । ଉପକଣ୍ଠସ୍ଥ; ନିକଟବର୍ତ୍ତୀ—2. Neighbouring; suburban.
(ଯଥା—ନଈତଳିଆ ଜମି; ସହରତଳିଆ ଗ୍ରାମ ।)

୪ । ନିକଟରେ ବାସ କରୁଥିବା—4. Living near or in the vicinity.
(ଯଥା—ସହରତଳିଆ ଲୋକ ।)

୫ । ଅଧସ୍ତନ; ଅଧୀନସ୍ଥ—5 Subordinate.
(ଯଥା—ସେ ଭୂମିର ହାତତଳିଆ ଲୋକ ।)

୬ । ଖାଟଠାରୁ—6. Lower than.
(ଯଥା—ହିନ୍ଦୁଙ୍କ ମଧ୍ୟରେ ଅନ୍ୟ ସବୁ ଜାତି ବ୍ରାହ୍ମଣଙ୍କ ତଳିଆ ।)

୭ । ତଳେ ତଳେ ଯାଉଥିବା—7. Proceeding below; passing below.
(ଯଥା—ଖୁଇତଳିଆ ବାଟ, ଛଡ଼ାତଳିଆ ଗୁଳି ।)

୮ । ତଳଦେଶ ବା ଅଧୋଭାଗରେ ଥିବା—8. Lying at the bottom; settled down at the bottom.
(ଯଥା—ଭୂମ ଭାଗରେ ହାଣ୍ଡି ତଳିଆ ଭାତ ପଡ଼ିଗଲା; ଘଡ଼ ତଳିଆ କାଞ୍ଜି ।)

୯ । ପାଖେ ପାଖେ ଯାଉଥିବା—9. Proceeding or running along.
(ଯଥା—ବନ୍ଧତଳିଆ ବାଟ ।)

୧୦ । ପରେ ଜାତ ହୋଇଥିବା—10. Born after; younger than.
(ଯଥା—ଏହି ହି ତାଙ୍କର ଛିଅତଳିଆ ପୁଅ ।)

ପ୍ରାଦେ (ବାଲେଶ୍ୱର) ବି—୧ । ଘାଣ୍ଟ ଛଅଣ—1. Hotch-potch.

୨ । (ସ୍ତ୍ରୀଲିଙ୍ଗ) ରକ୍ଷିତା ସ୍ତ୍ରୀ; ଦାସୀ—2. Concubine.

**ତଳିଆ ପୁଅ**—ଦେ ବି—ଦାସୀ ପୁତ୍ର—Son of a concubine.
Taliā pua

**ତଳିଆ ଭାରିଯା**—ଦେ. ବି—ରକ୍ଷିତା ସ୍ତ୍ରୀ—Concubine.
Taliā bhārijā

**ତଳିଆ ମହାନ୍ତି**—ଦେ. ବି—ଗୋଲାମ ଜାତି; ମାଡ଼ ଲୁଙ୍କ ଗୋଲାମ—The illegitimate sons of the Karaṇas of Orissa.
Taliā mahānti

**ତଳିଆରି**—ଦେ. ବି—ତଳାରି (ଦେଖ)—Talāri (See.
Taliāri

**ତଳି କଟା**—ଦେ. ବିଣ—୧ । ଗୋପ୍ଣକଟା; ଅଣବିଶ୍ୱାସୀ; ଯେ ଉପରେ ଉପରେ ଅନ୍ୟର ଅନିଷ୍ଟ କରେ—1. Perfidious (person).
Tali kaṭā

୨ । ତଳିକାଟ (ଦେଖ)—2 Talikāṭa (See).

ଦେ. ବି—ତଳିକାଟ (ଦେଖ)—Talikāṭa (See).

**ତଳି କଣ୍ଟା ଓପରି କଣ୍ଟା**—ଦେ, ବି—ତଳ କଣ୍ଟା ଉପର କଣ୍ଟା (ଦେଖ)—Tala kaṇṭā upara kaṇṭā (See).
Tali kaṇṭā opari kaṇṭā

**ତଳି କନା**—ଦେ. ବି—ଋତୁସ୍ରାବ ସମୟରେ ସ୍ତ୍ରୀଲୋକମାନଙ୍କର ପିନ୍ଧିବା କୌପୀନ ଓ କନା ପୁଡ଼ା—Strips of rags or absorbent linen worn by women on the private parts during menses; women's under-clothing during menstrual flow; sanitary towels.
Tali kanā

**ତଳିକା**—ସଂ. ବି. ସ୍ତ୍ରୀ. (ତଳ+କ+ସ୍ତ୍ରୀ. ଆ)—ତଳ ସାରକ (ଦେଖ)—Tala sāraka (See).
Talikā

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ୠ | ଌ | ଏ | ତାଳବ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଖ | ଛ | ଠ,ଢ | ଞ | ଷ୍ଟ | ଜ୍ଞ | ଣ |
| ୨ | ଈ | ଉ | ଋ | ଌ | ଐ | ଅନ୍ତଃସ୍ଥ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ | ଯ | ଡ | ଙ୍ଗ | ଷ୍ଠ | କ୍ଷ | ନ୍ |

**ତଳ କାଟ**—ଦେ. ବଣ (ସଂ. ତଳ + କର୍ତ୍ତିତ)—୧ । ତଳ ଭାଗ ବା ତଳ ଅଂଶରୁ କଟା ଯାଇଥିବା; ମୂଳରେ ବା ମୂଳ ପାଖରେ କଟା ହୋଇଥିବା—1. Cut at the root or near the root.
Tali kāta
(ଯଥା—ତଳକାଟ ଧାନ ଗଛ । )

୨ । ଉପର ସ୍ତରର ବସ୍ତୁ କଟା ହୋଇଯିବା ପରେ ନିମ୍ନ ସ୍ତରରୁ ଯେଉଁ ବସ୍ତୁ କଟା ହୋଇ ବାହାରେ—2. Appertaining to or cut from the lower layers.

(ଯଥା—ଏ ପୋଖରୀର ୧୦ ଫୁଟ ସ୍ତରର ତଳକାଟ ମାଟି ଉପର ଗେରୁଆ ପଡ଼ିଲା । )

ଦେ. ବି—ମୂଳ ପାଖରୁ କାଟିବା—Cutting near the root.

( ଯଥା—କିଆରିରୁ ଧାନକୁ ପ୍ରଥମେ ତଳକାଟ କରି କଡ଼ା ପକାଇ ପରେ ଅଗକାଟ କଲେ ଛିଣ ବାହାରିବ । )

**ତଳ ଗଡ଼ିଶା**—ଦେ. ବି—ପଙ୍କୁଆ ଗଡ଼ିଶା, ଯେଉଁ ଗଡ଼ିଶା ମାଛ ପାଣି ତଳେ ପଙ୍କରେ ଥାଏ—A kind of fish moving in the mud at the bottom of a tank or pond.
Tali gardisā

**ତଳିତ**—ସଂ. ବି (ତଳ୍ ଧାତୁ + କର୍ମ.ତ)—ଭୃଷ୍ଟ ମାଂସ; ଭଜା ମାଂସ—Roast; roasted meat; fried meat.
Talita

ସଂ. ବଣ—ଭୃଷ୍ଟ; ଭଜା ହୋଇଥିବା; ସିଝିଲା ହୋଇଥିବା—Fried; roasted.

[ ଦ୍ର—ଏ ଶବ୍ଦ ଭୁବପ୍ରକାଶରେ ବ୍ୟବହୃତ ହୋଇଅଛି । ]

**ତଳି ତଳାନ୍ତ**—ଦେ. ବଣ—ତଳ ତଳାନ୍ତ ( ଦେଖ )
Tali talānta — Tala talānta ( See)

**ତଳି ତଳିଆ**—ଦେ. ବି ଓ ବଣ—ତଳ ତଳିଆ ( ଦେଖ )
Tali taliā — Tala taliā (See)

**ତଳି ଧରିବା**—ଦେ. କ୍ରି—୧ । ତଳାଇବା; ତଳଦେଶରେ ଲୁଚିଯିବା—1. To sink to the bottom; to settle down at the bottom.
Tali dharibā
তলান
नीचेको बैठना

( ଯଥା—ମାଛମାନେ ତଳି ଧରିବାରୁ ଜାଲରେ ପଡ଼ିଲେ ନାହିଁ । )

୨ । ହାଣ୍ଡିରେ ସିଝା ଯାଉଥିବା ଭାତ, ଖିରି ବା ଭିଜା ଯାଉଥିବା ଧାନ ଯଥେଷ୍ଟ ଜଳ ଅଭାବରୁ ବା ବାରଂବାର ଘଣ୍ଟାଘାଣ୍ଟି ନ ହେବାରୁ ପୋଡ଼ିଯାଇ ହାଣ୍ଡିର ତଳେ ଲାଗିଯିବା—2. ( any thing boiled on fire ) To stick at the bottom of the cooking pot.

**ତଳି ପକା(କେ)ଇବା**—ଦେ. କ୍ରି—ମଞ୍ଜିରୁ ଗଛ ହେବା ପରେ ତାହାକୁ ଓପାଡ଼ି ନେଇ ଅନ୍ୟତ୍ର ରୋପଣ କରିବା ଉଦ୍ଦେଶ୍ୟରେ ମଞ୍ଜି ବୁଣିବା—To sow seeds for the purpose of raising seedlings in order to transplant them in another field.
Tali pakā(ke)ibā

**ତଳିପା**—ଦେ. ବି (ସଂ. ତଳ ଓ ପାଦ)—ପାଦର ତଳ ଭାଗ—Sole of the feet
Talipā
পায়ের তলা
तलवा

ତା ତଳିପା ତାଙ୍କ ଘଷା ହେଉଛନ୍ତି—
ଅନ୍ତ୍ୟୋ. ଦଧିନଉତ୍ତଲାମଣି ।

[ ଦ୍ର—ତଳିପାର ଅଗକୁ ପାପୁଲି, ପଛ ଭାଗକୁ ଗୋଇଠି ଓ ମଧ୍ୟ ଭାଗକୁ ଖୋଲ ବା ତାଳୁକା ବୋଲାଯାଏ । ]

**ତଳି ପେଟ**—ଦେ. ବି—ନାଭି ତଳେ ଥିବା ପେଟର ଅଂଶ—Abdomen; lower part of the belly from the navel downwards.
Tali peta
(ତଳ ପେଟ—ଅନ୍ୟରୂପ)
তলপেট, पेडू

**ତଳି ପୋଛ**—ଦେ. ବଣ—ନିଃଶେଷିତ; ଖାଲି—Drained to the last.
Tali pochha

ସୁଅମାନେ ଧାନ ଅମାର ତଳିପୋଛ ପ୍ରାପ୍ତ କରି ନେଲେଣି—
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ତଳି ଭାତୁଡ଼ି**—ଦେ. ବି—ତଳିପାର ଗୋଇଠିର ମୋଟା ଚମ ଭିତରେ ଉଠିବା କଷ୍ଟସାଧ ବ୍ରଣବିଶେଷ—A painful boil inside the sole of the foot
Tali bhāturdi

**ତଳିମ**—ସଂ. ବି. କ୍ଲୀ ( ତଳ୍ ଧାତୁ + ସଜ୍ଞାର୍ଥରେ ଇମ )—୧ । ଭୂମିକ; ପକ୍କା ମେଜିଆ—1. Pavement; paved floor.
Talima

୨ । ଖଡ୍ଗ; ଖଣ୍ଡା—2. Sword; scimitar.

୩ । ଚାନ୍ଦୁଆ—3. Canopy.

୪ । ଶଯ୍ୟା—4 Bed.

୫ । ଛପର; ଖପର; ଛାତ (ଦ୍ର. ଶବ୍ଦସାଗର)—5. Thatch; roof

**ତଳି ମଣ୍ଡ**—ଦେ. ବି (ସଂ. ତଳ + ମଣ୍ଡ)—ତୋରାଣିରେ ଯେଉଁ ବହଳିଆ ଅଂଶ ପାତ୍ରର ତଳକୁ ବସିଥାଏ—The comparatively thick layer or portion of Tordāni (boiled rice water) which is found at the bottom of a pot.
Tali manda

**ତଳି ମଣ୍ଡା**—ପ୍ରାଦେ (କଟକ) ବି—ଅଳ୍ପ ଖାଦ୍ୟ—A small quantity of food.
Tali mandā

ଟେରେ ବହା ତଳିମଣ୍ଡା ପଡ଼ିଯିବାରୁ ନିଶ୍ୱାସ କରମ ହୋଇଗଲେ—ସହକାର ।

**ତଳି ମାଛ**—ଦେ. ବି—ପଙ୍କୁଆମାଛ; ଯେଉଁ ମାଛମାନେ ( ଯଥା—ଗଡ଼ିଶା, ଶୋଲ୍ଡ଼ି, ଚିଙ୍ଗା, ମାଗୁର) ଜଳାଶୟର ନିମ୍ନଦେଶସ୍ଥ ପଙ୍କରେ ଅଧିକାଂଶ ସମୟରେ ଚଳପ୍ରଚଳ ହୁଅନ୍ତି—Fishes moving in the mud below the water.
Tali māchha

**ତଳି ମାଟି**—ଦେ. ବି (ସଂ. ତଳ ଓ ମୃତ୍ତିକା)—ଖେତ ଜମିର ତଳ ସ୍ତରର ମାଟି—The earth of the lower layers of a field.
Tali māti

ସାଧାରଣ ଲୋକେ ଅପର ବୃତ୍ତରେ ଏଣ୍ଡ ୧ ଚଢ଼ିଂ ଅକ୍ଷର ଓ ଦନ୍ତ୍ୟ ଏବଂ ୨ ଚଢ଼ିଂ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚଢ଼ିଂ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନରେ ନ ମିଳେ, ତେବେ ଅନ୍ୟ ଚିହ୍ନ ସ୍ଥାନ ପରି ଯଥାକ୍ରମେ ଚଢ଼ିଂର ବଦଳରେ ୨ ବା ୧ ଚଢ଼ିଂ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ତାଣ୍ଡ' ନ ମିଳିଲେ 'ତାଣ୍ଡ' ଦେଖିବେ, 'କ୍ଷେତ୍ର' ନ ମିଳିଲେ 'କ୍ଷେତ୍ର' ଦେଖିବେ; 'ବନ୍ଧ' ନ ପାଇଲେ 'ବନ୍ଧ' ଦେଖିବେ; ଅର୍ଦ୍ଧ ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

**ତଳ ମୁଠା**—ଦେ. ବି—ଦୁଇ ହାତର ପ୍ରସାରିତ ଅଙ୍ଗୁଷ୍ଠ ଓ ତର୍ଜ୍ଜନୀ ଦ୍ୱାରା
Tali muthā ସୀମାବଦ୍ଧ ଧାନଗଛର ଗୋଛ—A sheaf of paddy seedlings bound up so as to be contained between the encircling spans of the 2 palms.

**ତଳ ମୁଣ୍ଡା**—ଦେ. ବି—ଯେଉଁ ଜମିରେ ତଳ ପକା ଯାଏ—
Tali mundā A plot of land where seedlings are raised
(ତଳ ମନ୍ଦା—ଅନ୍ୟରୂପ)

**ତଳ ହାତ କରି ଧରିବା**—ଦେ. କ୍ରି—କୌଣସି ପଦାର୍ଥର ତଳ ବା ତଳ
Tali hāta kari dharibā ଭାଗକୁ ହାତରେ ଧରିବା; କୌଣସି ପଦାର୍ଥକୁ ତଳପଟୁ ଧରି ଟେକିବା—
(ତଳ ହାତ କରି ଧରିବା—ଅନ୍ୟରୂପ । To hold a thing up by putting one's hand at the bottom.
( ଯଥା—ଶିଶୁ ହାଣ୍ଡିକି ତଳହାତ କରି ନ ଧରିଲେ ହାଣ୍ଡିଟି ପଡ଼ିଯିବ । )

**ତଳିୟାରି**—ଗ୍ରାଦେ. (ଗଞ୍ଜାମ) ବି—ବାରିକା; ଜଗୁଆଳ; ଚଉକିଦାର—
Taliyari Watchman.

**ତଳୁ**—ଦେ. ଅ.—ଅବ୍ୟ; କୌଣସି ସମୟରୁ ଆରମ୍ଭ କରି ଏ
Talu ପର୍ଯ୍ୟନ୍ତ—Since (some time past.

ବହୁଦିନ ତଳୁ ନ ପାଇ ମାର୍ଗଂସ
ବୃଥାରେ କଳୁଥିଲ ଆହାର ମନସ । କୃଷ୍ଣସିଂ ହ. ମହାଭାରତ. ଅଦ ।

**ତଳୁଆ**—ଦେ. ବିଣ.—(ସଂ. ତଳୀୟ)—ତଳିଆ (ଦେଖ)
Taluā Taliā (See)

**ତଳୁଆର**—ଦେ. ବି ( ସଂ. ତଲବାର)—ତଲବାର (ଦେଖ)
Taluāra Talabāra (See)
(ତଲୁଆର—ଅନ୍ୟରୂପ)

**ତଳେ**—ଦେ. ଅ (ସଂ. ତଳ )—୧ । ନିମ୍ନଦେଶରେ—1. In the
Tale lower parts; below.
তলায় নীচে ୨ । ପୃଷ୍ଠଭାଗରେ—2. On the surface of.
(ତଳେ ତଳେ—ଅନ୍ୟରୂପ)

(ଧୂଳଥ ଜଳ) ଭୂଇଁ ତଳେ ତଳେ ଯାଏଁ,
କର୍ଣ୍ଣନ ମାର୍ଗଂସ କ୍ଷିତେ ପାଇଲେ ଦୁତ୍ତୁନ ଯାଏଁ—କାହାଣୀର ଲଥା ।
ତାର ତଳେ ଗଳ ଓଁ, ଗୋଲ ଗୋଲାରେ ଜାହାମ କର,
ସ୍ରୋତ କାଟିଲେ ବଢ଼—ଡାଗ ।

୩ । ଘରରେ ଘରରେ; ଗୋପନରେ; ଗୁପ୍ତଭାବରେ—
3. Secretly; clandestinely.
[ଯଥା—ସେ ତଳେ ତଳେ ମୋ ଗୋଡ଼ କାଟୁଛି ।]

୪ । (କୌଣସି ଶ୍ରେଣୀ ବା ଦଳର) ଅନ୍ତର୍ଭୁକ୍ତ ହୋଇ—
4. Being included in (any party).
(ଯଥା—ଓଡ଼ମାନେ ପ୍ରଥମେ ଅସି ଖୋରଧା ରାଜାଙ୍କ ପାଇକଙ୍କ ତଳେ ଯୁଦ୍ଧ କଲେ)

୫ । ପରବର୍ତ୍ତୀ ସମୟରେ; ପରେ—5 After.
ତାଙ୍କ ତଳେ ଜନମିଲେ କେକୟୀ ନନ୍ଦନ—ମଧୁସୂଦନ. ବାଳରାମାୟଣ ।

୬ । ଏଥିପୂର୍ବେ; ଆଗେ—5. Before this.
ତଳେ ତ ରୂଷିଙ୍କ ନିୟମ କହୁଥାଇଁ
ଏଣୁ କହିବାକୁ ହାଲଥ ହେଲି ମୁହିଁ—କୃଷ୍ଣସିଂହ ମହାଭାରତ. ଅନୁଶାସନ ।

୭ । ନିମ୍ନତମ ପ୍ରଦେଶରେ—7. At the bottom; in the lowest regions.

୮ । ଗୁପ୍ତ ସ୍ଥାନରେ—8. In the most secret places; in places not exposed to public view

୯ । ପାଖେ ପାଖେ—9. Along; by the side of.

୧୦ । ରୂପେ; ପରି; ଗଣନାରେ; (ଅମୁକ) ରୂପ—
10. As; considered as.
ତୁମେ ମୂର୍ଖ ଅସଭ୍ୟ ତଳେ ଗଲ—ଫକୀର ମୋହନ. ଛମାଣ ଆଠଗୁଣ୍ଠ ।

୧୧ । ଭୂପୃଷ୍ଠରେ; ଭୂଇଁରେ—11. On the ground.
( ଯଥା—ଘୋଡ଼ସବାର ଘୋଡ଼ା ଉପରେ ଚଢ଼ିଛନ୍ତି, ସହିସ ତଳେ ଧାଇଁ ଚାଲୁଛି । )

୧୨ । ଉପକଣ୍ଠରେ—12. In the outskirts of.
(ଯଥା—କଟକ ତଳେ ଗୁଡ଼ୁଲଥଗଞ୍ଜ ଅବସ୍ଥିତ)

**ତଲେ**—ଦେ. ( ପଦ୍ୟ ) ବି. ( ସଂ. ତଲ୍ଲୟ )—ଲୟ; ଧ୍ୟାନ—
Tale Contemplation; attention.
ନାମର ତତ୍ତ୍ୱ ଅଛଇ ଅନନ୍ତ, ତଲେ କରି ଆହେ ସୁମ—
ଭକ୍ତ ଅଚ୍ୟୁତାନନ୍ଦ, ଭଜନ ।

**ତଲେଇ**—ଗ୍ରାଦେ—୧ । ( ଯାଜପୁର ) ବି—ଲୟ; ନିଘା—
Talei 1. Attention.
( ଯଥା—କଥାକୁ ତଲେଇ ରଖିବା । )

୨ । (ସମ୍ବଲପୁର) ବି—ବାଉଁଶ ପାଉଅରେ ବୁଣା ଆସନ—
2. A mattress woven with bamboo-laths.
[ ଦ୍ର—ସମ୍ବଲପୁରରେ ବାଉଁଶପାଉଅରେ ବୁଣା ଆସନକୁ ତଲେଇ ଓ ପରଦା ବା ବାଡ଼ରୂପେ ବ୍ୟବହୃତ ତଲେଇକୁ ଟାଟୀ ବୋଲାଯାଏ । ]

ଦେ· ବି—ତଲାଇ ( ଦେଖ )—Talāi ( See )

**ତଳେଇ ଦେଖିବା**—ଦେ. କ୍ରି—୧ । (ଲକ୍ଷଣାର୍ଥ) ଉତ୍ତରେ ପଶି ଅନୁସନ୍ଧାନ
Talei dekhibā କରିବା—1. (figurative) To dive deep into a matter; to dive deep under the surface.
তলাইয়া দেখা
( ତଳେଇ କରି ଦେଖିବା—ଅନ୍ୟରୂପ )
( ଉପରେ ଉପରେ ଦେଖିବା—ବିପରୀତ ) ୨ । ତଳଦେଶ ପର୍ଯ୍ୟନ୍ତ ଦେଖିବା—2. To look into the bottom of a thing.

୩ । ତନ୍ନ ତନ୍ନ କରି ବିଚାର କରିବା—3. To consider a matter thoroughly or minutely.

**ତଳେଇବା**—ଦେ. କ୍ରି. ( ସଂ. ତଳ )—
Taleibā ୧ । ତଳକୁ ବୁଡ଼ିବା; ତଳ ଧରିବା —
তলান 1. To sink or settle down to the bottom.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ୯ | ଡ଼ | ର,ୱ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଥି | ଉଅ | ଘ |
| ୨ | ଐ | ଊ | ରୁ | ଲ୍ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଶଂ୍ୟ | ଇଅ | ଢ଼ | କ୍ର |

(ତଳାଇବା—ଅନ୍ୟରୂପ) ୨ । ତଳ ପର୍ଯ୍ୟନ୍ତ ଅନୁସନ୍ଧାନ କରିବା—
2 To dive deep into a matter.

ତଲେଇବା—ଦେ. କ୍ରି—୧ । ବୁଟ ଅବ ଶସ୍ୟଙ୍କୁ ଘିଅ ବା ତେଲରେ
Taleibā ସାମାନ୍ୟ ଭାଜିବା; ଫୁଟାଇବା—
ভাজা 1. To fry gram etc in ghee or oil
**तलना** ୨ । ଉଖୁଡ଼ା କରିବାପାଇଁ ଖଇକୁ ଗୁଡ଼ ପାଗରେ ମକାଇ ଚଟୁ
ତଲ୍ଲେଇବା } ଅନ୍ୟରୂପ ଦ୍ୱାରା ଘାଣ୍ଟିବା ବା ମୋଡ଼ିବା—2. To stir
ତଲିବା } fried paddy in syrup over fire.

ତଲେକ୍ଷଣ—ସ. ବ. ପୁଂ. ( ବହୁବ୍ରୀହି; ତଳ+ଈକ୍ଷଣ; ଯାହାର ଦୃଷ୍ଟି
Talekshana ତଳଆଡ଼କୁ ଥାଏ ) —ଶୂକର—Hog.

ତଳେ ଗଡ଼ିବା - ଦେ. କ୍ରି— ଭୂମି ଉପରେ ଲୋଟିବା—
Tale gardibā To roll on the ground.
তলায় গড়াগড়ি দেওয়া **धरती पर लुड़कना**
( ତଳେ ଲୋଟିବା—ଅନ୍ୟରୂପ )

ତଳେ ଯିବା—ଦେ. କ୍ରି—( ଅମୁକ )ରୂପେ ବିବେଚିତ ହେବା—
Tale jibā To pass for.
( ତଳେ ଗୁମାର ହେବା—ଅନ୍ୟରୂପ ) ( ଯଥା—ଅମ ପଡ଼ୋଶୀଙ୍କ ଆଖିରେ ଅମ ପୂର୍ବପୁରୁଷମାନେ ମୂର୍ଖ ତଳେ ଗଲେଣି । )

ତଳୋଦରୀ—ସ. ବ. ସ୍ତ୍ରୀ. ( ବହୁବ୍ରୀହି; ତଳ+ଉଦର; ସ୍ତ୍ରୀ. ଈ )—
Talodari ୧ । ଭାର୍ଯ୍ୟା; ସ୍ତ୍ରୀ—1. Wife.
୨ । କୃଶୋଦରୀ ସ୍ତ୍ରୀ—
2. Slender-bellied woman.

ତଳୋଦା—ସ. ବ. ସ୍ତ୍ରୀ.( ବହୁବ୍ରୀହି; ତଳ+ଉଦ=ଜଳ+ସ୍ତ୍ରୀ. ଆ )—
Talodā ନିମ୍ନଗା; ନଦୀ—River.

ତଲ୍କ—ସ ବ. (ତଲ୍ ଧାତୁ+ସଞ୍ଜ୍ଞାର୍ଥରେ କ )—ବନ—
Talka Forest.

ତଲ୍ପ—ସ. ବ. ( ତଲ ଧାତୁ+ସଞ୍ଜ୍ଞାର୍ଥରେ ପ; ଯହିଁରେ ବିଶ୍ରାମ କରି
Talpa ଯାଏ )—
୧ । ଶଯ୍ୟା; ବିଛଣା; ସେଜ—1. Bed.
୨ । ଅଟ୍ଟାଳିକା—2. An edifice.
୩ । ଗୃହ—3. House.
୪ । ଦାର; ସ୍ତ୍ରୀ; ଭାର୍ଯ୍ୟା—3. Wife.
[ ଦ୍ର—ଗୁରୁତଲ୍ପଗ, ଗୁରୁତଲ୍ପଗାମୀ—ଯେଉଁ ବ୍ୟକ୍ତି ଗୁରୁଜନଙ୍କ ଶଯ୍ୟାରେ ଶୁଏ ଅର୍ଥାତ୍ ଗୁରୁପତ୍ନୀ ଅବ ମାନ୍ୟା ସ୍ତ୍ରୀଙ୍କୁ ସମ୍ଭୋଗ କରେ । ]
୫ । ଉପର ମହଲା ଘର; ଚନ୍ଦ୍ରଶାଳା—
5. Turret; a room in an upper storey.

ତଲ୍ପକ—ସ. ବ—୧ । ( ତଲ୍ପ+ସ୍ୱାର୍ଥରେ. କ )—ଶଯ୍ୟା—
Talpaka 1. Bed.
୨ । ( ତଲ୍ପ+କରିବା ଅର୍ଥରେ. କ ) ଯେ ବିଛଣା ପ୍ରସ୍ତୁତ କରେ; ସେଜ ବିଛାଇ ଦେବା ଭୃତ୍ୟ—
2. A servant who prepares the bed for the master.

ତଲ୍ପକୀଟ—ସ. ବ. (ଷଷ୍ଠୀ ତତ୍; ତଲ୍ପ+କୀଟ; ଭୁଲ. ହି. ଖଟ୍‌ମଲ୍)—
Talpa kīta ଓଡ଼ଶ; ଛାରପୋକ—The bed-bug.

ତଲ୍ପଜ—ସ. ବ. ପୁଂ. ( ତଲ୍ପ+ଜନ ଧାତୁ=କର୍ତ୍ତୃ. ଅ )—(ହିନ୍ଦୁସ୍ମୃତି)
Talpaja କ୍ଷେତ୍ରଜ ସନ୍ତାନ—( Hindu law ) Son born of ths wife of a person but begotten by a stranger.

ତଲ୍ପି—ଦେ. ବ. ( ସ. ତଲ୍ପ=ଶଯ୍ୟା )—ବିଛଣା ପଡ଼ିବ ଗଣ୍ଠିଲି;
Talpi ବୋକଚ୍ଚ—The luggage consisting of
তল্পী bedding; baggage
**गठरी**

ତଲ୍ପିଦାର୍—ଦେ. ବ—ତଲ୍ପିବାହକ ବୋଝିଆ; ଯେ ବିଛଣାପତ୍ର ବା
Talpi dār ଗଣ୍ଠିଲି ବୁହେ; ବୋକଚ୍ଚବୁହା—A carrier of
তল্পীদার luggage; luggage-bearer; porter.
**पल्लादार**

ତଲ୍ଲ—ସ. ବ. ( ତଲ=ଗର୍ତ୍ତାବତା+ଲା ଧାତୁ=ଗ୍ରହଣ କରିବା+କର୍ତ୍ତୃ.
Talla ଅ )—୧ । ଗହ୍ୱର; ଗର୍ତ୍ତ—1. A hole.
୨ । ପୋଖରୀ; ପୁଷ୍କରିଣୀ—2. Tank; pond.

ତଲ୍ଲହ—ସ. ବ—କୁକୁର ( ହି. ଶବ୍ଦସାଗର )—
Tallaha Dog.

ତଲ୍ଲାଟ—ପ୍ରାଦେ. ( ମେଦିନୀପୁର ) ବ. ( ଭୁଲ. ବ. ଏହି ଅର୍ଥରେ ଏହି
Tallāta ଶବ୍ଦ )—ସାରା ଦୁନିଆଁ; ସାରା ସୃଷ୍ଟି—
The whole universe.

ତଲ୍ଲାସ ( ଇତ୍ୟାଦି )—ବୈଦେ. ବ—ତଲାସ ଇତ୍ୟାଦି ( ଦେଖ )
Tallāsa ( etc ) Talāsa etc ( See )

ତଲ୍ଲିକା—ସ. ବ. ସ୍ତ୍ରୀ. ( ତତ୍=ତାହା+ଲୀ ଧାତୁ=ଲୀନ ହେବା+
Tallikā କର୍ତ୍ତୃ. ଅ+କ+ଆ )—
୧ । ଚିରା ଲୁଗାର ଛିଦ୍ର ଉପରେ ପଡ଼ିବା ତାଳି—1. Patch.
୨ । ଖିଲ କାଠି; କୁଞ୍ଚି; ତାଲାକାଠି—2. A key.
୩ । କୋଲପ—3. Padlock.

ତଲ୍ଲୀ—ସ.ବ ସ୍ତ୍ରୀ (ତତ୍+ଲସ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ.ଅ+ସ୍ତ୍ରୀ.ଈ)-
Talli ୧ । ବରୁଣଙ୍କ ସ୍ତ୍ରୀ—1. The wife of Baruna, the God of the sea.
୨ । ନୌକା—2. Boat.
୩ । ଯୁବତୀ—3. Young woman.
୪ । ଜୋତାର ତଳା—(ହି. ଶବ୍ଦସାଗର)—4. The sole of shoes.
୫ । ତାଣ୍ଡି (ହି. ଶବ୍ଦସାଗର)—5. Dregs; sediment.

ତଷା (ଇତ୍ୟାଦି)—ଗ୍ରା. ବ (ସ. କୃଷି)—ଚଷା ଇତ୍ୟାଦି (ଦେଖ)
Tashā (etc.) Chashā etc. (See)

ପାଠକେ ଶ୍ରେଣୀ ଅପର ପୃଷ୍ଠାରେ ଦେଖ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରହିବା କରନ୍ତୁ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ୧ ଚିହ୍ନିତ ବର୍ଣ୍ଣରେ ନ ମିଳିବ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ତହିଁର ଅପରସ୍ଥ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—
'ଗାଢ଼' ନ ମିଳିଲେ 'ଗାଡ଼' ଖୋଜିବେ; 'କୂଟ' ନ ମିଳିଲେ 'କୁଟ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ୍ୟ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତଷା(ଣ୍ଡି)ଟିଆ**—ଗ୍ରା. ବିଣ—ଚଷାଣ୍ଡିଆ (ଦେଖ)
Tashā(ṇḍi)ṭiā Chashāṇḍiā (See)

**ତଷା(ଷେ)ଇବା**—ଗ୍ରା. କି (ସଂ. କୃଷ ଧାତୁ=ଚଷିବାର ଣିଜନ୍ତରୂପ;
Tashā(she)ibā ଅନ୍ୟଦ୍ୱାରା ଜମି ଚଷ ବା ହଳ କରାଇବା—
To cause to be ploughed up.

**ତଷିବା**—ଗ୍ରା. କି (ସଂ. କୃଷ ଧାତୁ)—ଚଷିବା (ଦେଖ)
Tashibā Chashibā (See).

**ତଷୁ (ଇତ୍ୟାଦି)**—ଦେ. ବ—(ସଂ. କୃଷ) ଚଷୁ ଇତ୍ୟାଦି (ଦେଖ)
Tashu (etc.) Chashu etc (See).

**ତଷ୍ଟ**—ସଂ.ବଣ (ତକ୍ଷ୍ ଧାତୁ=ଚାଞ୍ଛିବା+କର୍ମ.ତ)—୧ । ଚଞ୍ଛା ହୋଇଥିବା-
Tashṭa 1. Scraped.
୨ । ରନ୍ଦା ମରାଯାଇଥିବା—2. Scraped with the carpenter's plane; planed.
୩ । କୃଶୀକୃତ—3. Emaciated; reduced.
୪ । କୁଟା ଯାଇଥିବା; କଟା ଯାଇଥିବା (ହି. ଶବ୍ଦସାଗର)—4. Pounded; bruised.
୫ । ପିଟା ହୋଇଥିବା (ହି. ଶବ୍ଦସାଗର)—5. Beaten

**ତଷ୍ଟା**—ସଂ. ବି. ପୁଂ (ତକ୍ଷ୍ ଧାତୁ+କର୍ତ୍ତୃ. ତୃ; ୧ ମା. ୧ବ)—
Tashṭā ୧ । (କାଠ ଚାଞ୍ଛି କରି ଯେ କାମ କରେ) ବଢ଼େଇ—
(ତଷ୍ଟ୍ରୀ—ସ୍ତ୍ରୀ) 1. Carpenter.
୨ । ବିଶ୍ୱକର୍ମା—2. The mythological heavenly architect according to the Hindus.
୩ । ଦ୍ୱାଦଶ ଆଦିତ୍ୟଙ୍କ ମଧ୍ୟରୁ ଏକତମ—
3. One of the 12 Ādityas or Sun-gods
୪ । ଚାଞ୍ଛିବା ବ୍ୟକ୍ତି—4. Scraper.

**ତଷ୍ଟି**—ସଂ. ବ (ତଷ୍ ଧାତୁ=ଉତ୍‌କ୍ଷେପଣ; ଦର୍ଶନ+ଭାବ. ତି)—
Tashṭi ୧ । ସାଗ୍ରହ ଦୃଷ୍ଟି—1. Wistful look.
୨ । ଅତ୍ୟାକାଙ୍କ୍ଷା—2. Hankering; longing.
୩ । ଅଭିବାଞ୍ଛା; ଏକଛନ୍ଦ; ଦୃଢ଼ତା—3. Obstinacy; unyieldingness.
ଗ୍ରା. (ଇତର) ବୈଦେ. ବ (ଇଂ. ଟ୍ରଷ୍ଟୀ)—କୌଣସି ସାଧାରଣ ଟଷ୍ଟି; **ଦ୍ରଷ୍ଟୀ** ହିତକର ଅନୁଷ୍ଠାନର ଭାରପ୍ରାପ୍ତ ବ୍ୟକ୍ତି; ମାର୍ଫତଦାର; ଟ୍ରଷ୍ଟୀ—Trustee.

**ତଷ୍ଟି ନ ମା**—ଗ୍ରା. (ଇତର)ବୈଦେ.ବ(ଇଂ ଟ୍ରଷ୍ଟ+ଫା. ପ୍ରତ୍ୟୟ ନାମା)-
Tshṭi nāmā ଟ୍ରଷ୍ଟଡିଡ୍; ସେବା ଅର୍ପଣ ସମର୍ପଣ-ପତ୍ର—
Trust-deed.

**ତସ୍(ଧାତୁ)**—ସଂ. ୧ । ଅଳଂକୃତ କରିବା—
Tas (root) 1. To adorn.
୨ । ଦର୍ଶନ କରିବା—2. To see.
୩ । ଉତ୍‌ପ୍ରେକ୍ଷଣ କରିବା; ସାଗ୍ରହ ଦୃଷ୍ଟି କରିବା—
3. To cast wistful or longing glance.
୪ । ଉତ୍‌କ୍ଷେପଣ କରିବା; ଉପରକୁ ଫୋପାଡ଼ିବା—
4. To throw up.
୫ । ଉଠାଇବା—5. To lift up.

**ତସ୍‌ଦିକ୍(ଗ)**—ବୈଦେ.ବ( ଆ. ତସଦୀକ୍ ) (କଚିରିଆ)—୧ । କୌଣସି
Tas-dik(g) ବିଷୟର ସତ୍ୟତା ସମ୍ବନ୍ଧେ ପ୍ରମାଣ ବା ସମର୍ଥନ—
1. Verification
तसदिग ୨ । କୌଣସି ବିଷୟର ସତ୍ୟତା ହାକିମଙ୍କ ଆଗରେ
तसद्दीग ପ୍ରମାଣସ୍ୱରୂପ ସ୍ୱୀକାର କରିବା; ଚିହ୍ନଟ—
2. Attestation; identification.
୩ । କୌଣସି ଦଲିଲ ପରୀକ୍ଷା କରି ସେଥିରେ କରାଯିବା ହାକିମଙ୍କର ଦସ୍ତଖତ—3. Countersignature of an authority on a document.
୪ । ସାକ୍ଷ୍ୟ; ଗବେଇ—4. Testimony.

**ତସ୍‌ବୀ**—ବୈଦେ. ବ (ଆ) (ମୁସଲମାନୀ ଭାଷା)—ଜପମାଳ—
Tas-bi Rosary.
तसवी **तसबी**

**ତସ୍‌ବୀର୍**—ବୈଦେ. ବ (ଆ) (ମୁସଲମାନୀ ଭାଷା)—୧ । ଛବି—
Tas-bir 1 A picture.
तसवीव ୨ । କାଗଜ ବା **ପଟା** ଉପରେ ଅଙ୍କିତ ରୂପ—
**तसवीर** 2. A painting; drawing.
୩ । ଫଟୋଗ୍ରାଫ୍ ଯନ୍ତ୍ର ଦ୍ୱାରା ଉଠାଯିବା ପ୍ରତିରୂପ—
3. Photo.
ବୈଦେ. ବଣ—ଛବି ପରି ସୁନ୍ଦର—Picturesque; fine

**ତସରା**—ପ୍ରାଦେ. (ସମ୍ବଲପୁର) ବ (ଭୁଲ. ହି. ଏହି ଅର୍ଥରେ ଏହି ଶବ୍ଦ)--
Tas-rā ଭୁଲିଆ ତନ୍ତୀଙ୍କ ବ୍ୟବହୃତ ସୁତା ଗୁଡ଼େଇ ରଖିବାର ଫମ୍ପି ବା ନଟେଇ—A reel or form around which yarn is wound.

**ତସରୁପ୍(ଫ)**—ପ୍ରାଦେ (ସମ୍ବଲପୁର) ବ (ଆ. ତସରୁଫ୍)—
Tasrup(ph) ୧ । ତୋସରଫ୍—1. Misappropriation.
୨ । କ୍ଷତି—2. Loss.

**ତସଲିମ୍**—ବୈଦେ. ବ (ଆ) (ମୁସଲମାନୀ ଭାଷା)—ନମସ୍କାର; ବନ୍ଦନା;
Tas-lim ପ୍ରଣାମ—Obeisance; a bow of reverence.
तसलीम **तसलीम**

**ତସକର**—ଗ୍ରା (ପଦ୍ୟ) ବ (ସଂ. ତସ୍କର)—ଚୋର; ଚୋର; ଚୋରକର—
Tasakara Thief; robber.

**ତସମା**—ଗ୍ରା. ବୈଦେ. ବ. (ଫା. ଚଶ୍‌ମା)—ଚଶମା; ଉପନେତ୍ର; ପ୍ରତିଚକ୍ଷୁ-
Tasamā Spectacles

**ତସରୁଫଟା**—ପ୍ରାଦେ. ( ସମ୍ବଲପୁର ) ବ—ଫସର ଫାଟିବା ସମୟ;
Tasar-phaṭā ଅରୁଣୋଦୟର ପ୍ରାକ୍‌କାଳ; ବଡ଼ଭୋର—
Day-break.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଷ୍ଟ | ଉଥ | ଖ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଓ | ନ୍ |

**ତସର**—ଦେ. ବି. (ସଂ. ତ୍ରସର)—୧ । ଟସର; ଏକପ୍ରକାର ଗୋଟୀ-
Tasara ପୋକର ଗୋଟୀରୁ ବାହାରିବା ରେଶମ ସୂତା—
তসর 1. A kind of coarse silk got from
**टसर** cocoons; Tussar.

[ ଦ୍ର—ଛୋଟନାଗପୁର, ମୟୂରଭଞ୍ଜ, କେନ୍ଦୁଝର, ବାଲେଶ୍ୱର, ଖାଲଭୂମ୍, ମେଦିନୀପୁର ଆଦି ଅଞ୍ଚଳରେ ବଣରେ ସାହାଡ଼ା, ବାହାଡ଼ା, କୁସୁମ, ପିଆଶାଲ, ବରକୋଳି ଆଦି ଗଛର ପତ୍ର ଖାଇ ଏ ପୋକମାନେ ସେହି ଗଛରେ ବଢ଼ନ୍ତି । ରେଶମ ପୋକଙ୍କ ଭଳି ଏ ପୋକମାନଙ୍କ ପ୍ରତି ବିଶେଷ ଯତ୍ନ ନେବା ଦରକାର ନାହିଁ, କେବଳ ଏମାନଙ୍କୁ ଚଢ଼େଇ ଓ ପିମ୍ପୁଡ଼ି ଖାଇ ନ ଯିବେ ଏଥିପାଇଁ ଦୃଷ୍ଟି ରଖିବାକୁ ହୁଏ । ଏ ପୋକମାନଙ୍କୁ ପାଳିବାବାଲା ଲୋକେ ଗୋଟୀରୁ ବାହାରିବା ପ୍ରଜାପତିଙ୍କୁ ଜଙ୍ଗଲରେ ଛାଡ଼ି ଦିଅନ୍ତି । ପ୍ରଜାପତି-ମାନେ ସେଠାରେ ଯୋଡ଼ି ଲାଗିବା ପରେ ମାଈ ପ୍ରଜାପତି ଗଛର ପତ୍ରରେ ସୋରିଷ ପରି ଡିମ୍ବମାନ ପାରନ୍ତି । ପ୍ରତ୍ୟେକ ମାଈ ପ୍ରଜାପତି ୨।୩ ଦିନ ଯାକେ ୨୦୦।୨୫୦ ଡିମ୍ବ ଦିଅନ୍ତି ଓ ଡିମ୍ବ ଦେଲା-ପରେ ମରି ଯାଆନ୍ତି । ୧୦।୧୨ ଦିନ ବାଦ୍ ସେ ଡିମ୍ବରୁ ଦସିପୋକ (କୃମି) ଭଳି ଛୋଟଛୋଟ ପୋକ ବାହାରନ୍ତି ଓ ସେହି ପୋକମାନେ ଉକ୍ତ ଗଛର ପତ୍ର ଖାଇ ବଢ଼ନ୍ତି । ୧୫ ଦିନ ମଧ୍ୟରେ ୪ଥର ଚାଙ୍କ ଖୋଳ ବଦଳେ । ୧୫ଦିନ ବାଦ ପୋକମାନେ ୮।୧୦ ଅଙ୍ଗୁଳି ପର୍ଯ୍ୟନ୍ତ କର୍କୋମ ସମ୍ଭାକୃତ ପରି ବଢ଼ନ୍ତି । ଏମାନେ ନାନାବର୍ଣ୍ଣର ହୁଅନ୍ତି; କେହି ମାଟିଆ, କେହି ପାଉଁଶିଆ, କେହି ନେଳି, କେହି ହଳଦିଆ ହୁଅନ୍ତି । ଏହି ବଡ଼ପୋକମାନେ ଆପଣା ପାଟିରୁ ଲାଳ ବାହାର କରି ସେହି ଲାଳରେ ଅଣ୍ଡାକାର ୪।୬ ଅଙ୍ଗୁଳି ଲମ୍ବ ଗୋଟୀ ତିଆରି କରନ୍ତି ଓ ସେ ଗୋଟୀ ଭିତରେ ନିଜେ ଅବରୁଦ୍ଧ ହୋଇ ରହନ୍ତି । ପାଳିବାବାଲାମାନେ ସେହି ଗୋଟୀମାନ ସଂଗ୍ରହ କରି ଆଣନ୍ତି । ଗୋଟୀର ମୁହଁକୁ କାଟି ଦେଇ ଉକ୍ତ ପୋକ ପ୍ରଜାପତି ଆକାର ଧାରଣ କରି ଯେବେ ଉଡ଼ିଯିବେ, ତେବେ ସେ ଗୋଟୀର ଦୁଆଟାକ ଛିନ୍ନ-ଛିନ୍ନ ହୋଇ ଅକାମିକା ହୋଇଯିବ । ଏଥିପାଇଁ ଗୋଟୀର ଭିତରେ ଥିବା ପୋକ ଗୋଟୀକୁ କାଟି ବାହାରିଯିବା ପୂର୍ବରୁ ଗୋଟୀମାନଙ୍କୁ ନେଇ ଖାରମିଶା ଗରମପାଣିରେ ପକାଇ ଦିଅନ୍ତି ଓ ଗରମପାଣିରେ ଭିତରର ପୋକ ମରିଯାଆନ୍ତି ଓ ଗୋଟୀମାନ ଅକ୍ଷୁଣ୍ଣ ରହେ । ସେହି ଗୋଟୀମାନଙ୍କରୁ ତସର ସୂତା ବାହାରେ ]

୨ । ମଠାଲୁଗା—2 Coarse silk stuff.

[ ଦ୍ର—ଏ ଶବ୍ଦ ସଂସ୍କୃତ ଥିବାର ହି. ଶବ୍ଦସାଗରରେ ଲେଖାଅଛି । ]

**ତସର ଗୋଟୀ**—ଦେ. ବି—ଯେଉଁ ଗୋଟୀ ବା କୋଷରୁ ମଠାସୂତା ବା
Tasara goṭi ତସର ବାହାରେ; ଟସର ଗୋଟୀ ବା ଖୋଷା—
তসরের গুটী Tussar cocoons.
**टसरका कोवा**

**ତସର ପୋକ**—ଦେ. ବି—ଟସର ପୋକ; ଯେଉଁ ପୋକ ତସର ଗୋଟୀ
Tasara poka ବାନ୍ଧନ୍ତି; ଖୋଷା ପୋକ—Silk worm.
তসর পোকা **टसरका कीड़ा**

**ତସଲା**—ବୈଦେ. ବି (ଫା. ତସ୍ତ + ଉର୍ଦ୍ଦୁ. ଲ୍‌. ପ୍ରତ୍ୟୟ; ଉର୍ଦ୍ଦୁ. ତସ୍‌ଲା)—
Tasalā ୧ । ପିତଳରେ ପ୍ରସ୍ତୁତ ଯେଉଁ ଗହିରିଆ ଥାଳିରେ ରୁଟି
তসলা **तसला** ପାଇଁ ମଇଦା ଦଳାଯାଏ—1. A deep brass
(ତସଲୀ — ଛୋଟ ତସଲା) plate for kneading flour.

୨ । ପିତଳର ଛୋଟ ହାଣ୍ଡି; ଚଉଡ଼ାମୁହାଁ ବଟ୍ଲୋ; ପିତଳର ଡେକ୍‌ଚା—2. A wide-mouthed brass cooking pot.

**ତସିଦ୍**—ବୈଦେ. ବି (ଆ. ତସ୍‌ଦୀଦ୍=କ୍ଳେଶ)—କଷ୍ଟ; ଦହଗଞ୍ଜ—
Tasid Harassment; difficulty; hardship.
তসদী **तसद्दीह**
(ତସିଦା —ଅନ୍ୟରୂପ)

**ତସ୍କର**—ସଂ. ବି [ତତ୍=ସେହି, ଅର୍ଥାତ୍ ଅତି ନିନ୍ଦିତ କର୍ମ + କୃ ଧାତୁ +
Taskara କର୍ତ୍ତୃ. ଅ; ନିପାତନ; କିମ୍ବା ତସ୍ ଧାତୁ=ଉତ୍‌କ୍ଷେପ କରିବା + କୃ ଧାତୁ + କର୍ତ୍ତୃ. ଅ (ଶବ୍ଦକଳ୍ପଦ୍ରୁମ); ଅଥବା ତତ୍=ଉପକ୍ଷୟ, ବସ୍ତୁଜାତ, ଚୋରି + କୃ ଧାତୁ + କର୍ତ୍ତୃ. ଅ (ଜ୍ଞାନେନ୍ଦ୍ର. ବଙ୍ଗଳା ଅଭିଧାନ)]—୧ । ଚୋର; ଦସ୍ୟୁ; ଅପହାରକ—1. Thief; lifter (as in cattle-lifter) pilferer.

୨ । ପୃକ୍କା ବା ପିଡ଼ଙ୍ଗ ଶାଗ—2. A kind of pot herb; Trigonella Corniculata.

୩ । ମଦନ ବୃକ୍ଷ; ମଏଣ (ଦେଖ)
3. Maena (See)

୪ । ଚୋର ନାମକ ଗନ୍ଧଦ୍ରବ୍ୟ; ଗଣ୍ଠିଅଳା—
4 A scented herb.

୫ । କର୍ଣ୍ଣ; କାନ—5. The ear.

**ତସ୍କରତା**—ସଂ. ବି (ତସ୍କର + ଭାବ. ତା)—ଚୌର୍ଯ୍ୟ—
Taskaratā Theft; stealing.

**ତସ୍କରୀ**—ସଂ. ବି. ସ୍ତ୍ରୀ (ତସ୍କର + ସ୍ତ୍ରୀ. ଈ)—୧ । କୋପନା ସ୍ତ୍ରୀ—
Taskari 1. A shrew.

୨ । ଚୋରଣୀ—2. A woman who steals.

**ତସ୍ତରୀ**—ବୈଦେ. ବି. (ଫା) ରେକାବୀ; ଧାତୁର ପତଳା ଛୋଟ ଥାଳିଆ—
Tastari Thin metal plate.
তস্তরী **तश्तरी**

**ତସ୍ଥିବାନ୍**—ସଂ.ବିଣ [ସ୍ଥା ଧାତୁ+କର୍ତ୍ତୃ. ବସ୍ (କ୍ୱସୁ)]—ସ୍ଥିତ; ଅବସ୍ଥିତ—
Tasthibān Placed; situated.

**ତସ୍ଥୁ**—ସଂ. ବିଣ.(ସ୍ଥା ଧାତୁ+କର୍ତ୍ତୃ ଉ)—ସ୍ଥାବର;ଅଚଳନ୍ତ (ହି.ଶବ୍ଦସାଗର)—
Tasthu Immoveable.

**ତସ୍ମି**—ଦେ. ବି—ତସମଇ; କ୍ଷୀର; ଦୁଧ ଓ ଗୁଡ଼ଳ ଆଦିରେ ପ୍ରସ୍ତୁତ
Tasmi ପାୟସ—A gruel made of milk and rice,
পায়স **खीर** sweetened with sugar.
(ତସମଇ, ତସମେଇ, ତସ୍ମେଇ, ତସ୍ମେ, ତସ୍ମେଇ)

କାବରପିଠା, ପାଳୁଅ ତସ୍ମି କରି ଦେଇଥିବ—ଫକୀରମୋହନ. ଗଳ୍ପ ସ୍ୱଳ୍ପ ।

ପାଠକେ ଦେଖିବେ ଉପର ପୃଷ୍ଠାରେ ୧ ରେଖା ଅକ୍ଷର ଓ ନମ୍ବର ୨ ରେଖାର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ରେଖାର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ସେ ଶବ୍ଦ ମିଳିବ ନାହିଁ, ତେବେ ସେହି ଶବ୍ଦ ପାଇଁ ପାଠକମାନେ ତହିଁର ବଦଳରେ ୨ ବା ୧ ରେଖାର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ବାନ୍ଦ' ନ ଦେଖିଲେ 'ବାନ୍ଧ' ଦେଖିବେ; 'ଖଡ' ନ ମିଳିଲେ 'ଖଡ଼' ଦେଖିବେ; 'ବଡ଼୍' ନ ପାଇଲେ 'ବଢ଼' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତସ୍ୟ** —ସଂ. ସର୍ବନାମ (ତଦ୍ ଶବ୍ଦ, ପୁଂଲିଙ୍ଗ, ୬ଷ୍ଠୀ ୧ ବଚନ)— Tasya ତାହାର; ତାହାଙ୍କର—His; her; its.
(ତସ୍ୟା—ସ୍ତ୍ରୀ) ଦେ. ବିଣ—ତଦୀୟ; ତତ୍ ସମ୍ବନ୍ଧୀୟ— Pertaining to that.
[ଦ୍ର—ସମ୍ବନ୍ଧୀୟ ଭାବରେ ଏହାର ବ୍ୟବହାର ହଉନ, ମାତ୍ର ଉତ୍କଳର ଭାଷା ଓ ବଙ୍ଗଳା ଅନୁସରେ ଏହି ଶବ୍ଦ ଏବଂ ଏହାର ବିକୃତ ଆକାର ପୁଂଲିଙ୍ଗରେ 'ତସ୍ୟର' ଓ ସ୍ତ୍ରୀ ଲିଙ୍ଗରେ 'ତସ୍ୟାର' ଶବ୍ଦର ବହୁଳ ପ୍ରୟୋଗ ପରିଲକ୍ଷିତ ହୁଏ ।]

**ତହ**—ବୈଦେ. ବି. (ଫା)—୧ । କାଗଜ ବା ଲୁଗାର ଭାଙ୍ଗ ବା ଉଦ୍ଧର; ପ୍ରସ୍ଥ; ପରସ୍ତ; ସ୍ତର—1. Layer; fold; plait; braid.
Taha
तय
तह
୨ । ଧପାଇଁ; ଛଳନାଦ୍ବାରା ସମୟ ନେବା; ଭଣ୍ଡାଇବା; ଠକିବା—2 Putting off on excuses; deception.

**ତହିଁର**—ପ୍ରାଦେ. ( ଗଞ୍ଜାମ ) ବି—୧ । ଅରଖିଲା; ଶଗଡ଼ର ବା ହଳର ଯୁଆଳି ମଧ୍ୟରେ ମରିଥିବା ଲୁହାର ବା କାଠର ଖିଲା— Tahañra
1. An iron or wooden pin put in the middle of the yoke of a cart or plough.
୨ । ( ବାଲେଶ୍ୱର ) ଲୁଗାର ଧଡ଼ି—
2. Border of a cloth.

**ତହ କରିବା**—ଦେ. କ୍ରି—ଲୁଗାକୁ ଭାଙ୍ଗିବା—
Taha kariba To fold or plait a cloth.
तयकरा तह करना, तहाना

**ତହକିକତ**—ବୈଦେ.ବି. (କଚେରିଆ ଭାଷା) (ଆ.ତହକୀକ୍ ର ବହୁବଚନ ତହକୀକତ୍ )—
Tahakikat
तहकीकत ୧ । ତଦନ୍ତ; ଅନୁସନ୍ଧାନ—
तहकीकात 1. Enquiry; investigation.
(ତହକିକ, ତହକୀକାତ୍—ଅନ୍ୟରୂପ) ୨ । ଜିଜ୍ଞାସା—
2. Query; questioning

**ତହ ଖରଚ**—ଦେ. ବି. ( ଫା. ତହ ଖରଚ )—
Taha kharacha ବୃଥା ଖରଚ; ଅପବ୍ୟୟ—
तह खरच Useless expenditure; waste of money.
तह खरच

**ତହଖାନା**—ବୈଦେ. ବି. (ଫା)—ମାଟି ତଳେ ହୋଇଥିବା ଘର—
Tahakhānā An underground house; a cellar.
तहखाना [ ଦ୍ର—ଖରାଦିନେ ଖରାବେଳେ ଲୋକେ ଥଣ୍ଡାରେ
तहखाना ରହିବା ପାଇଁ ଏ ଘରେ ବିଶ୍ରାମ କରନ୍ତି । ]

**ତହ ଦେବା**—ଦେ. କ୍ରି— ଧପାଇଁ କରିଦେବା; ଭୁଲେଇବା; ଠକିବା; ଛଳନାଦ୍ବାରା ସମୟ ନେବା; ଭଣ୍ଡାଇବା—
Taha debā
दम देओया To put off on excuses; to deceive.
दमदिलासा देना

**ତହପେଚ**—ବୈଦେ. ବି. (ଫା)—ପଗଡ଼ୀର ତଳେ ମୁଣ୍ଡ ଉପରେ ବନ୍ଧା ଯିବା ଲୁଗା ବା ପତଳା କନାର ଟୋପି—
Tahapecha
তহপেঁচ Bit of cloth or thin cap put on the
तहपेच head below the turban.

**ତହବିଲ**—ବୈଦେ ବି. (ଆ)—୧ । ଗଚ୍ଛିତ ଧନ; ମହଯୁଦଥିବା ଧନ—
Tahabila 1. Cash; treasure.
তহবিল, তবিল, তফিল ୨ । ସ୍ରେକଡ଼; ପାଣ୍ଠି; ପୁଞ୍ଜି—
तहविल 2. Fund.
୩ । ଖଜଣାଖାନା—3. Treasury.

**ତହବିଲ ତୋଷରଫ**—ବୈଦେ. ବି. (ଆ. ତହବିଲ୍ ତସରୁଫ୍)—
Tahabila tosharaph ଆପଣା ହାତରେ (ଜିମାରେ) ନ୍ୟସ୍ତଥିବା
ତହବିଲ ତୁସରଫ । ତହବିଲ ତଶରୁଫ୍ । ଅନ୍ୟରୂପ ଅପରର ଧନକୁ ଖାଇଯିବା ଅର୍ଥାତ୍ ଆତ୍ମସାତ୍ କରିବା—
তহবিল্ তোছরপ Misappropriation; embezzlement.
तहबील तसरुफ

**ତହବିଲଦାର**—ବୈଦେ. ବି. ( ଆ. ତହବିଲ୍+ଫା. ପ୍ରତ୍ୟୟ ଦାର୍ )—
Tahabiladār ଯାହା ଉପରେ ତହବିଲର ଭାର ନ୍ୟସ୍ତ ଥାଏ;
তবিলদার କୋଷାଧ୍ୟକ୍ଷ; ତହବିଲ ରକ୍ଷକ; ଖାଜାଞ୍ଚି—
तहबीलदार Cashier; treasurer; one entrusted with the custody of cash.

**ତହବିଲଦାରି**—ବୈଦେ. ବି. (ଫା)—କୋଷାଧ୍ୟକ୍ଷତ୍ୱ—
Tahabiladāri Treasurership; the post of a cashier.
তবিলদারি तहबिलदारी

**ତହମତ୍**—ବୈଦେ. ବି ( ଆ. ତୋହମତ୍ )—
Tahamat ୧ । ମିଥ୍ୟା ଅପବାଦ; ମିଥ୍ୟା ଦୋଷାରୋପ; ମିଥ୍ୟା
তোহমত କଳଙ୍କ—1. Defamation; false alle-
ताहमत gation; unfounded aspersion.
୨ । ମିଛ କଥା—2. Falsehood.
ବୈଦେ. କ୍ରି. ବିଣ—ବୃଥା; ମିଥ୍ୟାରେ—Falsely.
ବୈଦେ. ବିଣ—ମିଥ୍ୟା—False.

**ତହମତି**—ବୈଦେ. ବିଣ. (ଫା)—୧ । ମିଥ୍ୟା ଅଭିଯୋଗକାରୀ—
Tahamati 1. Making false accusation.
তোহমতি ୨ । କଳଙ୍କଯୁକ୍ତ—2. Scandalous.
ताहमती ୩ । ଅମୂଳକ କଳଙ୍କଯୁକ୍ତ—2. Containing unfounded aspersions.
(ତହମତିଆ—ଅନ୍ୟରୂପ)

**ତହ ଭାଙ୍ଗିବା**—ଦେ. କ୍ରି—ତହ କରିବା ( ଦେଖ )
Taha bhāngibā Taha karibā ( See )

**ତହ ମାରିବା**—ଦେ. କ୍ରି—ତହ ଦେବା ( ଦେଖ )
Taha māribā Taha debā ( See )

**ତହରି**—ବୈଦେ. ବି. (ଆ. ତହରିର୍)—ତହରିର ( ଦେଖ )
Tahari Taharir ( See )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ରୃ,ର୍‌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଝ | ଜ | ଶ,ଷ | ଙ୍କ | ଇୟ | ତ୍ଥ | ଘ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଝ୍ୟ | ଯ | ସ | ଗ୍‌ୟ | ଇଅ | ଭ୍ର | ନ୍ଦ |

**ତହରି ତକରି**—ବୈଦେ. ବି (ଅ)—ତହରିର୍ ତକରିର୍ ( ଦେଖ )
Tahari takari   Taharir takarir ( See )

**ତହରିର୍**—ବୈଦେ. ବି. (ଅ. ତହରୀର୍) (କଟକୀଆ)—
Taharir   ଲେଖାଇ ମିହନ୍ତନା; ଲେଖକର ପାରିଶ୍ରମିକ—
ତହରିର   Copying fees; remuneration for
तहरीर   the scribe.

**ତହରିର୍ ତକରିର୍**—ବୈଦେ. ବି. ( କଟକୀଆ ) ( ଅ. ତହରୀର୍ =
Taharir takarir   ଲେଖେର ମିହନ୍ତନା + ତକରୀର୍ = ଉତ୍ସବ)—
ତହରୀର୍‌ତକରୀ   ଧାର୍ଯ୍ୟ ଖଜଣା ଉପରେ ପୂର୍ବେ ଜମିଦାରମାନେ
तहरीर तकरीर   ପ୍ରଜାଙ୍କଠାରୁ ତହସିଲଦାରର ବା ମୋହୋରରର
(ତହରର୍ ତକରର - ଅନ୍ୟରୂପ)   ପାରିଶ୍ରମିକ ଓ ନଜର ଉତ୍ସବାଦିର
ଖରଚ ଅାଦି ପାଇଁ ନାନା ଅକାରରେ ଅଦାୟ କରୁଥିବା
ଧନ; ଆବ୍‌ୱାବ୍—2. Illegal exactions formerly
realised by Zamindars from the rayats; abwab.

[ଦ୍ର—ବଙ୍ଗ ବହାର ଓଡ଼ିଶାର ଜମିଦାରମାନେ ପୂର୍ବେ ତହସିଲ୍-କର୍ମଚାରୀମାନଙ୍କ ଲେଖାଇ ମିହନ୍ତନା ପାଇଁ ଓ ନଜର ପୂଜାଆ ଆଦି ଉତ୍ସବାଦିର ଖରଚ ପାଇଁ ପ୍ରଜାଙ୍କଠାରୁ ଖଜଣା ଉପରେ ଅଧିକରୁ ଅର୍ଥ ଭିନ୍ନ ଭିନ୍ନ ନାମରେ ଆଦାୟ କରୁଥିଲେ । ସେଥି ମଧ୍ୟରୁ ତହରିର୍ ଗୋଟିଏ ଓ ତକରୀର୍ ଗୋଟିଏ । ଏହି ସବୁକୁ ଇଂରାଜ ଗଭର୍ଣ୍ଣମେଣ୍ଟ ଆଇନ୍ ଦ୍ୱାରା ବନ୍ଦ କରି ଅଛନ୍ତି । ଯେଉଁ ଜମିଦାର ପ୍ରଜାଙ୍କଠାରୁ ଏପରି ଅଧିକରୁ ଅର୍ଥ ନେବାର ପ୍ରମାଣିତ ହେବ ସେ ଦଣ୍ଡନୀୟ ହେବେ ବୋଲି ସରକାର ଆଇନ୍ କରିଅଛନ୍ତି । ]

**ତହ ଲଗା(ଗେ)ଇବା**—ଦେ. କ୍ରି.—ମିଛକଥା କହି ବିବ୍ରତ କରିବା—
Taha lagā(ge)ibā To puzzle (a person) by making false reports
(ଯଥା—କାଲି ପୂର୍ଣ୍ଣିମା ନୁହେଁ, ଅଥଚ କାଲି ପୂର୍ଣ୍ଣିମା ବୋଲି ସେ ଗୋଟାଏ ତହ ଲଗାଇ ଦେଲା ।)

**ତହସିଲ୍**—ବୈଦେ. ବି. (ଅ; ଏହି ଆରବୀ ଶବ୍ଦ ଅସୁଲ୍ ବା ଉସୁଲ ମୂଳ
Tahasil   ଶବ୍ଦର ବହୁ ବଚନ; ବହୁବାର ଅସୁଲ କରିବା ଏହି ଶବ୍ଦର
ତହଶୀଲ, ତଶିଲ   ଅର୍ଥ,—୧ । ପ୍ରଜାମାନଙ୍କଠାରୁ ଖଜଣା ଅସୁଲ୍;
तहसील   ରାଜକର ଆଦାୟ କରିବା—1. Realisation
(ତସିଲ— ଅନ୍ୟରୂପ)   or collection of rent or revenue from tenants.

୨ । ଜଣେ ତହସିଲଦାରଙ୍କ ଅଧୀନ ଇଲାକା—
2. Tahasil; jurisdiction under the charge of one Tahasildar.

ପ୍ରାଦେ. (ସମ୍ବଲପୁର) ବି.—ଜିଲ୍ଲାର ରାଜସ୍ୱ ସମ୍ବନ୍ଧୀୟ ସବ୍‌ଡିଭିଜନ୍-
Tahasil or revenue subdivision of a district.

[ଦ୍ର—ଏହି ଆରବୀ ଶବ୍ଦ ଇଂରାଜୀ ଭାଷାରେ ଚଳନ୍ତି; ଏ ଶବ୍ଦ ଅସୁଲ ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ ।]

**ତହସିଲ୍ ଅଲଗ(ହି)ଦା**—ବୈଦେ. ବି. (ଅ. ତହସୀଲ + ଅଲ୍ଲହିଦା =
Tahasil alāi(hi)dā   ପୃଥକ)—୧ । ଓଡ଼ିଶାରେ ଏକ ଶ୍ରେଣୀର
(ତହସିଲ ଅଲେହିଦା—ଅନ୍ୟରୂପ)   ଜମିଦାରୀ—1 Name of a class of Zamindary in Orissa.
୨ । ଏକ ଜମିଦାରୀ ମଧ୍ୟରେ ଥିବା ସ୍ୱତନ୍ତ୍ର ଅନ୍ୟ ଛୋଟ ଜମିଦାରୀ—2. A separate petty estate inside a large one.
[ଦ୍ର—ଏ ସମ୍ପତ୍ତିର ରାଜସ୍ୱ ପ୍ରଧାନ ଜମିଦାରୀର ରାଜସ୍ୱଠାରୁ ଅଲ୍ଲହିଦା ବା ପୃଥକ୍‌ରୂପେ ସରକାରଙ୍କ ଠାରେ ଦାଖଲ ହୋଇ ଥିବାରୁ ଏହି ନାମ ।]

**ତହସିଲ କଚ(ଚେ)ରି**—ବୈଦେ. ବି. (ଅ. ତହସିଲ୍ + ଫା. କଚହରୀ)
Tahasil kachi(che)ri   ଯେଉଁ କାର୍ଯ୍ୟାଳୟରେ ପ୍ରଜାଙ୍କଠାରୁ
ତସୀଲ କାଚାରୀ   ଜମିଦାରଙ୍କ ତରଫରୁ ଖଜଣା ଆଦାୟ କରାଯାଏ ଓ
तहसील कचहरी   ଯେଉଁଠାରେ ତହସିଲ୍‌ଦାର ଅଫିସ୍ କରନ୍ତି—
(ତହସିଲ୍ ଅଫିସ୍—ଅନ୍ୟରୂପ)   The village-office of a zamindar for rent collection.

**ତହସିଲ୍ ଖରଚା**—ବୈଦେ. ବି. (ଅ. ତହସିଲ + ଖରଚ୍)—ଖଜଣା
Tahasil kharachā   ଆଦାୟର ବ୍ୟୟ ନିର୍ବାହ ପାଇଁ ପ୍ରଜାଙ୍କଠାରୁ
ତସୀଲ ଖରଚା   ଯେଉଁ ଅଧିକରୁ କର ଜମିଦାର ଆଦାୟ କରନ୍ତି—
तहसील खरचा   Money realised from rayats to meet the collection-charges.

**ତହସିଲ୍‌ଦାର**—ବୈଦେ. ବି. (ଅ. ତହସୀଲ୍ + ଫା. ପ୍ରତ୍ୟୟ ଦାର୍)—
Tahasil-dār   ୧ । ପ୍ରଜାମାନଙ୍କଠାରେ ଜମିଦାରଙ୍କ ଖଜଣା ଆଦାୟ
ତସୀଲଦାର   କରିବା କର୍ମଚାରୀ—1. Zamindar's moffasal
तहसीलदार   Tahasiladar; rent-collector.
୨ । ଏକ ଶ୍ରେଣୀର ସରକାରୀ ରାଜସ୍ୱ-କର୍ମଚାରୀ; ସରକାରୀ ଖାସ୍‌ମହାଲର ରାଜସ୍ୱ ଅଦାୟର ଭାରପ୍ରାପ୍ତ କର୍ମଚାରୀ—2. A class of Revenue Officers under Government in charge of revenue collection of a Government Estate.
[ଦ୍ର—କଟକଜିଲ୍ଲାର ଖାସମହାଲ ବାଙ୍କି ଓ ସଦର କଟକ ଏବଂ ପୁରୀଜିଲ୍ଲାର ଖୋରଧା ଖାସମହାଲର ପ୍ରଜାମାନଙ୍କଠାରୁ ରାଜସ୍ୱ ଆଦାୟ କରିବାର ସର୍ବୋଚ୍ଚ କର୍ମଚାରୀଙ୍କୁ ତହସିଲ୍‌ଦାର ବୋଲାଯାଏ; ଏ ଫାରସୀ ଶବ୍ଦ ଇଂରାଜରେ ଚଳନ୍ତି । ]
ପ୍ରାଦେ. ( ସମ୍ବଲପୁର )—ବି.—ଜିଲ୍ଲାର ରାଜସ୍ୱସମ୍ବନ୍ଧୀୟ ସବ୍-ଡିଭିଜନ୍‌ର ରାଜସ୍ୱ ଆଦାୟର ଭାରପ୍ରାପ୍ତ ପ୍ରଧାନ ସରକାରୀ କର୍ମଚାରୀ—The chief Revenue Officer of a Revenue-subdivision of a district.

**ତହସିଲ୍‌ଦାରି**—ବୈଦେ. ବି. (ଫା.)—ତହସିଲ୍‌ଦାରର କାର୍ଯ୍ୟ—
Tahasil-dari   The post or work of a Tahasildar.
ତସୀଲଦାରୀ   तहसीलदारी

ଏଥିରେ ଛାପିବା ସମୟରେ ୧ ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ସେ ସ୍ଥାନରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଅନ୍ୟ ବର୍ଣ୍ଣ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଖାଇ' ନ ମିଳିଲେ 'ଖାଈ' ଖୋଜିବେ; 'କୁଅ' ନ ମିଳିଲେ 'କୂଅ' ଦେଖିବେ, 'ବଟୁ' ନ ପାଇଲେ 'ବଟୂ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବଟ' ନ ପାଇଲେ 'ଅଳବଟ' ଦେଖିବେ

**ତହସିଲ ପଞ୍ଚାଏତ୍**—ଦେ. ବି.—(ଇଂରେଜ ସରକାରଙ୍କ ଦ୍ୱାରା କୃତ Tahasil panchāet ନାମକରଣ)—ଗ୍ରାମ୍ୟ ପଞ୍ଚାଏତ୍‌ମାନଙ୍କ ମଧ୍ୟରୁ (ତହସିଲ୍ ପଞ୍ଚାୟତ୍—ଅନ୍ୟରୂପ) ଚୌକିଦାରୀ ଇଉନିୟନ୍‌ର ଚଉକିଦାରୀ ଟିକସ ଅଦାୟ କରିବା ନିମନ୍ତେ ନିଯୁକ୍ତ ବ୍ୟକ୍ତି; ଯେଉଁ ପଞ୍ଚାଏତ୍ ପ୍ରଜାମାନଙ୍କଠାରୁ ଚଉକିଦାରୀ ଟିକସ ଅଦାୟ କରନ୍ତି—Collecting Panchayet; the panchayet or head-man entrusted with the duty of collecting Chowkidari tax from the inhabitants of a union; collecting member of the Chowkidari Union.

[ଦ୍ର—ପୂର୍ବେ ଗ୍ରାମର ଚଉକିଆମାନେ ଗ୍ରାମବାସୀଙ୍କଠାରୁ ମୁଖ୍ୟଭାବରେ ପାରିଶ୍ରମିକ ସ୍ୱରୂପ ଦାନାବନ୍ଧାମାନ ପାଉଥିଲେ ଓ ଜାଗିର ଜମି ଭୋଗ କରୁଥିଲେ । କିନ୍ତୁ ଗଭର୍ଣ୍ଣମେଣ୍ଟ ଚଉକିଦାର ଅନଜ୍‌ବାସ୍ତ ଦ୍ରବ୍ୟ ପ୍ରଥା ଉଠାଇ ଦେଇ ଗ୍ରାମବାସୀମାନଙ୍କଠାରୁ ଚୌକିଦାରୀ ଟାକ୍ସ ଅଦାୟ କରି ତହିଁରୁ ଚଉକିଦାରମାନଙ୍କୁ ନିୟମିତ ରୂପେ ମାସିକ ଦରମା ଦେବାର ବ୍ୟବସ୍ଥା କଲେ ଓ ଚଉକିଦାରମାନଙ୍କ ନିସ୍କର ଜାଗିର ଜମି ଉପରେ କର ଧାର୍ଯ୍ୟ କଲେ । କେତେକ ଗ୍ରାମକୁ ନେଇ ଗୋଟିଏ ଇଉନିଅନ୍ ବା ଗ୍ରାମପୁଞ୍ଜ ଗଠିତ ହୋଇଅଛି । ପ୍ରତ୍ୟେକ ଇଉନିଅନ୍‌ରେ ୫ ଜଣ ପଞ୍ଚାଏତ୍ ଥାଆନ୍ତି । ପଞ୍ଚାଏତ୍‌ମାନେ ଗ୍ରାମବାସୀଙ୍କ ଉପରେ ଚଉକିଦାରୀ ଟିକସ ଧାର୍ଯ୍ୟ କରନ୍ତି । ତାଙ୍କ ମଧ୍ୟରୁ ଜଣକ ଉପରେ ଚଉକିଦାରୀ ଟିକସ ଅଦାୟର ଭାର ନ୍ୟସ୍ତ ଥାଏ । ତାଙ୍କୁ ତହସିଲ୍ ପଞ୍ଚାଏତ୍ ବୋଲାଯାଏ । ସେ ତହସିଲ ଖରଚ ପାଇଁ ସାମାନ୍ୟ କିଛି ପାରିଶ୍ରମିକ ପାଆନ୍ତି ।]

**ତହିଁ**—ଦେ. (ପଦ୍ୟ) ଅ. (ସ. ତଥାହିଁ; ତତ୍ରହି; ତସ୍ମିନ୍; ତତ୍‌ସ୍ଥାନେ)—
Tahiñ ୧ । ତତ୍ର; ସେହି ସ୍ଥାନରେ; ସେଠାରେ—
तत्राय 1. There; in that place.
वहाँ, तहिँ ୨ । ସେ ବିଷୟରେ; ସେଥିରେ—
2. In that matter.

ମୁଁ କହଇ, ତହିଁ କେଉଁ ଦୋଷ ? ରାଜା ଶୁଣି ହେଲେ ତୁଷ୍ଟ ମନ—
ଜଗନ୍ନାଥ, ଦାନବତ ।

୩ । ଠାରେ—3. With; in.

ସକଳ ଶାସ୍ତ୍ର ବୁଝ ତହିଁ, ବେଦ ପୁରାଣ ଯେତେ କହି—
ଜଗନ୍ନାଥ, ଭାଗବତ ।

୪ । ତନ୍ମଧ୍ୟରେ—4. In that.

୫ । (ଅମୁକ) ଠାରେ; ନିକଟରେ—
5. At; near; with.

ଚୈତନ୍ୟ ପଣ୍ଡିତ ଯେ ଜନ, ତା ତହିଁ ତାହାଙ୍କ ମୋ ପଣ—
ଗୁପ୍ତେଶ, ପ୍ରେମଭକ୍ତିସୃତ ।

୬ । (ଅମୁକ ସ୍ତ୍ରୀର) ଗର୍ଭରେ—6. In the womb.

ଦେବକୁଳ୍ୟାର ତହିଁ ତାର, ହୋଇବ ପ୍ରଭାବ କୁମର—
ଜଗନ୍ନାଥ, ଭାଗବତ ।

**ତହିଁ**, ସର୍ବନାମ (ସ. ତତ୍)—ତାହା—That.

[ଦ୍ର—'ତହିଁ' ଶବ୍ଦ ଓଡ଼ିଆରେ ମୂଳ ସର୍ବନାମ ଶବ୍ଦ 'ତାହା'ରୂପେ ବ୍ୟବହୃତ ହୋଇ ସେଥି ସଙ୍ଗେ କ, କୁ, ରୁ, ଠାରୁ, ରେ ଆଦି ବିଭକ୍ତ୍ୟନ୍ତ ପ୍ରତ୍ୟୟମାନ ଯୁକ୍ତ ହୁଏ; ଯଥା—ତହିଁକ, ତହିଁକୁ, ତହିଁରୁ, ତହିଁ ଠାରୁ, ତହିଁରେ ।]

**ତହିଁ ଉତ୍ତାରୁ**—ଦେ. କ୍ରି. ବିଣ—ତତ୍‌ପରେ; ତାହା ପରେ—
Tahiñ uttāru After that; then.
तारपर उसकेबाद्
(ତହିଁ ଉତ୍ତାରେ—ଅନ୍ୟରୂପ)

**ତହିଁକ(କୁ)**—ଦେ. ଅ—୧ । ସେଥିକି; ସେଥିକୁ; ସେହି ବିଷୟକୁ—
Tahiñki(ku) 1. To that.
୨ । ତେଣିକି; ସେଠାକୁ; ସେସ୍ଥାନକୁ—2. There; to that place.
୩ । ସେ ବିଷୟରେ—3 In that matter.

ତହିଁକି ମୋହଠାରୁ ଶୁଣ ହେ ବୀର—କୃଷ୍ଣସିଂହ, ମହାଭାରତ, ସଭା ।

୪ । (କଥୋପକଥନରେ ବ୍ୟବହୃତ) କିନ୍ତୁ; ପରନ୍ତୁ—
4. But; but that; on the other hand.
(ଯଥା—ମୁଁ କାଲି ଏଠାକୁ ଆସିବାକୁ ବାହାରି ଥିଲି, ତହିଁକି କୁଣିଆଁ ଆସି ପହଞ୍ଚି ଗଲାରୁ ରହିଗଲି ।)
୫ । ସେଥି ପାଇଁ; ତହିଁ ନିମନ୍ତେ—5. For that.

ବଗ ଲେ ବଗ ! ମାଛ ଖାଇବୁ ? ନାଁ, ତହିଁକି ଗୋଡେଇଁ ଅଛ—ଢଗ ।

**ତହିଁକି ଶୁହିଁ**—ଦେ. ଅ—ତହିଁର ଅନୁରୂପ—Just befitting to Tahiñki chāhiñ that; just appropriate to that; according to that.

ଭୂଷଣଠାରେ ଯେ ରୂପେ ବନ୍ଧିଛ ମୋ ପ୍ରୀତି
ତହିଁକି ଶୁହିଁ କର ଅହେ ମୁନ ଯତି—କୃଷ୍ଣସିଂହ, ମହାଭାରତ, ବନ ।

**ତହିଁ ତହିଁ**—ଦେ. ଅ (ବହୁବଚନ)—ସେହି ସେହି ସ୍ଥାନମାନଙ୍କରେ—
Tahiñ tahiñ In those places.

**ତହିଁ ପରେ**—ଦେ. ଅ.—ତତ୍‌ପରେ; ତାହା ପରେ—
Tahiñ pare After that; then
तारपर उसकेबाद्

**ତହିଁ ପାଇଁ**—ଦେ. ଅ—୧ । ସେଥିଯୋଗୁଁ; ସେହି କାରଣରୁ; ସେହି
Tahiñ pāiñ ହେତୁରୁ—1. For that reason; therefore.
तेईँ ୨ । ସେହି କର୍ମ ନିମନ୍ତେ—2. For that
उसवास्ते
(ତହିଁ ପାଇଁକି; ତହିଁ ପେଇଁକି—ଅନ୍ୟରୂପ)

**ତହିଁ ପାଁରେ**—ପ୍ରାଦେ. (ଗଞ୍ଜାମ) ଅ—ତହିଁ ପାଇଁ (ଦେଖ)
Tahiñ pāñre Tahiñ pāiñ (See)
(ତହିଁ ପାଆଁରେ—ଅନ୍ୟରୂପ)

**ତହିଁର**—ଦେ. ଅ—ତାହାର; ସେଥିର—
Tahiñra Of that.
तार उसका

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଝ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ସୂଚକ | ଯ | ଜ | ଶ,ଷ | କ୍ଷ | ଡ଼ୟ | ଢ଼ୟ | ଢ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗଁ୍ୟ | ଋଥ | ଔ | ନ୍ |

**ତହିଁରୁ**—ଦେ. ଅ—୧ । ସେଥିରୁ—
Tahiñru 1. From that.
তাথেকে; তাছে ୨ । ତାହା ଅପେକ୍ଷା—2. Than that.
उससे ୩ । ସେଠାରୁ—3. From there; thence.
୪ । ସେ ହେତୁରୁ—4. For that; owing to that.
୫ । ତା ପରେ—5. After that; since that.

**ତହିଁରେ**—ଦେ. ଅ—ସେଥିରେ; ଉକ୍ତବିଷୟରେ—
Tahiñre In that matter.
তাতে उसमे ୨ । ସେବିଷୟ ସମ୍ବନ୍ଧରେ—2. Regarding that matter.
୩ । ସେଥି ମଧ୍ୟରେ—3 Within that.

**ତହୁଁ**—ଦେ. ଅ—୧ । ସେଠାରୁ—
Tahuñ 1. From there; thence.
তা থেকে ୨ । ତହିଁରୁ; ସେଥିରୁ—2. From that.
उससे ୩ । ତାହା ଅପେକ୍ଷା – 3. Than that.
ତହୁଁ ବଳ ସୁଖ ନାହିଁ ଏ ଜଗତେ
ସ୍ୱାମୀସେ ଯା ଭୁଜ ବନ୍ଧୁ ଏ ଭୂତେ । ରଘୁନାଥ ।
୪ । ( ଅମୁକ ) ଅପେକ୍ଷା; ଠାରୁ—
4. Than ( such a person ).
ମୋ ତହୁଁ ତେଜ୍ଞା ସ୍ୱର୍ଣ୍ଣ ଶାନ୍ତେଙ୍ଗ
ଦ୍ୱି. ବୋଇ ମନେ କହୁଛି । ଉଗ
୫ । ତତ୍ପରେ—5. After that; then; afterwards.
ତହୁଁ କେତେ ଦିନ ଶେଷ
ବାଳା ପାଶେ ଦୂତ କଲ ବଡ଼ାଇ ପ୍ରବେଶ । ଉକ୍ତ. ପ୍ରେମସୁଧାନିଧି ।
୬ । (ଅମୁକ) ଠାରୁ ବା ନିକଟରୁ—6 From.
ଏ ମନ ମନ ତହୁଁ ଶୁଣି
ଧ୍ୟାନ ବୋଇଲୁ ରତ୍ନବାଣୀ । ଭୂପତି. ପ୍ରେମପଞ୍ଚାମୃତ ।
୭ । ଉକ୍ତ ବିଷୟରୁ ବା କାର୍ଯ୍ୟରୁ—
7. Resulting from that.
ତହୁଁ କି ବିଶେଷକି ଉଚିତ ମୋ ଗୃହି ଶ୍ରିତ
ଭଟକୁ ସଙ୍କେତ ଅବ ଧାନ କଲା ହସନ୍ତରେ
କବିସୂର୍ଯ୍ୟ. ଲୋସଚାମ୍ପୂ ଉ. ଗୀତ ।
୮ । ବ୍ୟତୀତ; ଛଡ଼ା —8. Except.
ନଗରେ କଥ ଘୋଷେ ଧାଇ
ଚୋ ତହୁଁ କ କାଶରୁ ଅନ । ଜଗନ୍ନାଥ ଉଗବତ ।
୯ । ସେହି କାରଣରୁ—9. From that cause; owing to that reason.

**ତହୁଁଣ**—ଦେ. (ପ୍ରାଚୀନ ପଦ୍ୟ) ଅ—ତହୁଁ (ଦେଖ)
Tahuñna Tahuñ (See)

**ତହୁଁ ତହୁଁ**—ଦେ. ଅ (ବହୁ ବ୍ୟଞ୍ଜକ)—୧ । ତଦା ତଦା; ସେହି ସେହି
Tahuñ tahuñ ସମୟରେ—1. Then and then; at those times.
୨ । ସେହି ସେହି ସ୍ଥାନମାନଙ୍କରୁ—
(ତହିଁ ତହୁଁ—ଅନ୍ୟରୂପ) 2. From those places.
୩ । ସେହି ସେହି ମାନଙ୍କଠାରୁ—3. From those.
୪ । ସେହି ସେହି ସମୟରୁ—4. From those times.
୫ । ସେହି ସେହି କାରଣମାନଙ୍କରୁ—6 For those reasons.
୬ । ସେତିକି ସେତିକି; ସେତିକ ସେତିକ—
6. Up to that extent.
ତହୁଁ ସହୁଁ ଦ୍ରିତ, ତହୁଁ ତହୁଁ ବେଳୁନ୍ । ଉମତ ।

**ତା**—ସଂ. ପ୍ରତ୍ୟୟ—୧ । ଭାବ ବା କର୍ମ ଅର୍ଥରେ ବିଶେଷ୍ୟ ଓ ବିଶେଷଣ
Tā ଶବ୍ଦରେ ଏହି ପ୍ରତ୍ୟୟ ଯୋଗ ହେଲେ ବିଶେଷ୍ୟ ପଦ ସୃଷ୍ଟିହୁଏ—
1. A suffix corresponding to the English suffix 'ness' and th ( as in the words hardness and strength) for forming abstract nouns.
(ଯଥା—ଗୁରୁତା; ଲଘୁତା; ନିବିଷ୍ଟତା; ଏବଂ ମନୁଷ୍ୟତା ଇତ୍ୟାଦି ।)
୨ । ସମୂହାର୍ଥେ ବିଶେଷ୍ୟ ପରେ ପ୍ରତ୍ୟୟ—
2. A suffix joined to a noun to denote a collection or number.
(ଯଥା—ଜନତା ।)

**ତା** ଦେ. (ସର୍ବନାମ) କ୍ଳୀ. (୧ମା. ୧ବ. ସ୍ଥ. ତଦ୍)—
उस वह ୧ । ତାହା; ତାଇ; ସେହି— 1. That.
(ତାଅ—ଅନ୍ୟରୂପ) ୨ । ସେହି କଥା, ବିଷୟ, ବସ୍ତୁ ବା ଗୁଣ—
2. That thing, matter, article or quality.
କରୁଣା ଅଛି ବୋଲି ଯା ନେଇ କେ ତା ହୃଦୟରେ ।
କବିସୂର୍ଯ୍ୟ. ବଳେ.ଯାତମ୍ପୂ ଉ ଗୀତ ।

**ତାର** ସର୍ବନାମ. ସ୍ତ୍ରୀ. ପୁଂ ଓ କ୍ଳୀ. (୬ଷ୍ଠୀ ୧ବ; ଅନାଦରାର୍ଥକ)—
उसका ତାର; ତାହାର—His; its; her; of it; of that.
(ତାଙ୍କ—ସମ୍ମାନାର୍ଥକ) [ ଦ୍ର—ଏହି 'ତା'କୁ ଅନେକ ଶବ୍ଦ ପୂର୍ବରେ ବ୍ୟବହାର କଲାବେଳେ କେହି କେହି ଲେଖକ 'ତା' (ଯଥା—ତା' ଘରକୁ) ଲେଖି ଥାଆନ୍ତି । ଏହାର ଅର୍ଥ 'ତାହାର ଘରକୁ' । ସୁତରାଂ ଏଠାରେ 'ତାହାର' ଦେହରୁ 'ହାର' ଲୋପ କରି କେବଳ ତା'ଦ୍ୱାରା ସେ ଭାବ ବ୍ୟକ୍ତ କରନ୍ତି । ]
ଗ୍ରା. ଅବ୍ୟୟ. (ନିର୍ଦ୍ଦେଶକ ବାକ୍ୟାଲଂକାର ପଦ ବ୍ୟବହୃତ)—
୧ । (ଦେଖାଇ ଦେବା ଅର୍ଥରେ) ତ—
1. (In pointing out a thing) Lo! Behold!
(ଯଥା—ଦେଖ ତା ବିଲୁଅଟା ବୃନ୍ଦାବନରେ ପଶି ଗୁହିଁଛି ।)
୨ । (ନିଶ୍ଚୟାର୍ଥକ)ତ—2. (Indicating certainty) Too.
(ଯଥା—ତୁ ଯାହା କହୁଛୁ ମୁଁ ତ ସେଇତା କହୁଛି, ତୁ କାହିଁ ରାଗୁଛୁ ?)
୩ । (କଥାପ୍ରସଙ୍ଗ ବା ବାକ୍ୟାରମ୍ଭରେ) କିନ୍ତୁ; ତଥାପି, ତେବେ—3. But; still then; so then.

ସାଧାରଣ ପ୍ରେସରେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥରେ ସ୍ଥଳରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପରିବର୍ତ୍ତେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୃଷ ନ ମିଳିଲେ 'କୃଷ୍' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; ଅର୍ଥ୍ୟ ନ ପାଇଲେ 'ଅର୍ଘ୍ୟ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

(ଯଥା—ତା ବୋଲି ମୁଁ କଅଣ ତୋ ସଙ୍ଗେ ଯାଏ ନ ଲଢ଼ି ଛାଡ଼ି ଦେବ ?)

ପ୍ରାଦେ. (ସମ୍ବଲପୁର) ଅନ୍ତ୍ୟପ୍ରତ୍ୟୟ—କ୍ରିୟାର ଅନୁମତ୍ୟର୍ଥକ ରୂପରେ ଓଡ଼ିଆ 'ନ୍ତ' ସ୍ଥଳରେ ବ୍ୟବହୃତ)— An inflection used in the conditional tense of verbs

[ଯଥା—ମିଳ୍‌ତା=ମିଳନ୍ତା।]

ଦେ. ବି—୧। ନାଚ, ଗୀତ ଆଦିର ଆରମ୍ଭରେ ବୋଲୁଥିବା ଉଚ୍ଚାରିତ ବା ସ୍ୱର—1. The sound and letter uttered by a singer or dancer before beginning to sing or dance.

୨। ମୃଦଙ୍ଗ ବଜାଇବାର ଶ୍ଳୋକରେ ଆଦ୍ୟ ସ୍ୱର—2. The 1st tune of the gamut or musical scale of a Mṛudanga.

[ ଦ୍ର—ମୃଦଙ୍ଗ ଶ୍ଳୋକରେ ୭ଟି ସ୍ୱର; ଯଥା—ତା, ଗ, ଧୋ, ଧେ, ଖୁ, ଟା, ନମ୍ । ]

(ତାଅ—ଅନ୍ୟରୂପ) (ସ. ତାପ)—୩। ତାତି; ତାପ; ଉତ୍ତାପ— 3. Heat.
ତା
ताव ୪। କମାରର ଭାତିଦ୍ୱାରା କଣ୍ଡାଁରୁ ପବନ ଯୋଗାଇବା; ତାଇବା—3. Blowing of the bellows.

୫। ପକ୍ଷୀମାନଙ୍କର ଡିମ୍ବ ଉଷୁମାଇବା; ତା ଦେବା— 5. The warming of the eggs by birds to hatch them; brooding.

ତା ବୈଦେ. ବି. (ଅ. ତଖତା; ତା)—କାଗଜର ଫର୍ଦ୍ଦ— Sheet of paper.
ताः

ଦେ. ସାଙ୍କେତିକ ଶବ୍ଦ (ତାରିଖ)—୧। ତାରିଖ— 1. An abbreviation prefixed to the numerical mention of the date as in D/ 6-3-1935.

(ଯଥା—ତା ୨।୩।୧୯୩୫ ମସିହା ।)

୨। ତାଲୁକ—2. An abbreviation for Tāluk.

(ଯଥା—। ତା । ରଘୁନାଥପୁର ।)

(ତାଃ—ଅନ୍ୟରୂପ)

**ତାଅ (ଇତ୍ୟାଦି)**—ଦେ. ସର୍ବନାମ—ତା (ଇତ୍ୟାଦି) (ଦେଖ)
Tā-ā Tā (etc) (See)

**ତାଅ କରିବା**—ଦେ. କ୍ରି. (ସ. ତାପ)—୧। ଭାତିକୁ ତାଇବା— 1. To blow the bellows.
Tā-ā kariba
ताओयान् ୨। ତରଳତା ପର୍ଯ୍ୟନ୍ତ ଲୁହାକୁ କଣ୍ଡାଁରେ ତତାଇବା— 2. To heat iron upto the melting point
तावना, दहकाना
(ତା ଦେବା—ଅନ୍ୟରୂପ)

[ଦ୍ର—ଯେଉଁ ଅବସ୍ଥାରେ ଲୁହାକୁ କଣ୍ଡାଁରୁ କାଢ଼ିଲାବେଳେ ତହିଁରୁ ଅଗ୍ନି ସ୍ଫୁଲିଙ୍ଗ ବାହାରି ଯାଇ ଥାଏ ଓ ତାକୁ ହାତୁଡ଼ିରେ ବାଡ଼େଇଦେଲେ ତାହା ଦବିଯାଏ ତାକୁ ଲୁହାକୁ ତାଅ କରିବା ଅବସ୍ଥା ବୋଲିଯାଏ । ]

**ତାଅଦାତ (ଦ୍)**—ବୈଦେ. ବି. (ଅ. ତଅଦାଦ୍=ସଂଖ୍ୟା; ପ୍ରମାଣ; ଗଣତି)—
Tā-ādāt(d) (କଚେରିଆ ଭାଷା)—୧। ତାଦାଦ୍; ସଂଖ୍ୟା— 1. Number.

| | | |
|---|---|---|
| ତାଇଦାତ୍; ତାଇଦାଦ୍ | | 1. Number. |
| ତାଏଦାଦ; ତାଦାଦ୍; ତାଦାତ୍ | ଅନ୍ୟରୂପ | ୨। ମୂଲ୍ୟ— |
| ତାୟଦାତ୍; ତାୟଦାଦ୍ | | 2. Value. |

तायदाद्; तादाद ୩। ମକଦ୍ଦମାରେ କରାଯାଇ ଥିବା ଦାବୀର ପରିମାଣ—
तादाद्; तायदाद् 3. Money-value of a claim.

୪। ମକଦ୍ଦମା ସମ୍ପର୍କୀୟ ଦାବୀର କଳ୍ପିତ ମୂଲ୍ୟ— 4. Value of the subject matter of a suit; valuation of a suit or claim.

(ଯଥା—ବର୍ତ୍ତମାନ କଟକର ମୁନସଫଙ୍କୁ ଟ ୧୦୦୦ଙ୍କା ତାଦାଦର ନମ୍ବରୀ ମକଦ୍ଦମାମାନ ବିଚାର କରିବାର କ୍ଷମତା, ହାଇକୋର୍ଟ ଦେଇ ଅଛନ୍ତି ।)

୫। କବାଲା, ଦାନପତ୍ର, ଋଣପତ୍ର ଆଦି ଦଲିଲରେ ଲେଖା ଥିବା ସମ୍ପତ୍ତି ବା ଧନର ମୂଲ୍ୟ ବା ପରିମାଣ— 5. Money-value of the subject-matter of a document.

**ତାଅ ଦେବା**—ଦେ. କ୍ରି (ସ. ତାପ)—୧। (ପକ୍ଷୀ) ଡିମ୍ବ ଉଷୁମାଇବା—
Tā-ā deba 1. (Birds) To brood over an egg;
ता देओआ to warm the egg before hatching it.
सेना
ताओयान; धौंकना ୨। ଭାତିକୁ ତାଇବା—2. To blow the bellows.

**ତାଅ ମାରିବା**—ଦେ. କ୍ରି—୧। ଭାତିକୁ ତାଇବା—
Tā-ā māribā 1. To blow the bellows.
(ତା ମାରିବା ଅନ୍ୟରୂପ) ୨। ଦୁଇଖଣ୍ଡ ଲୁହାକୁ ତରଳ ଥିବା ଅବସ୍ଥାରେ ଯୋଡ଼ି କରି ଏକତ୍ର ପିଟିବା— 2. To join two pieces of iron while they are malleable.

**ତାଅସ**—ଗ୍ରା. ବୈଦେ. ବି (ଅ)—ତାସ୍ ( ଦେଖ )
Tā-āsa Tās ( See )

**ତାଇ**—ଗ୍ରା. ଅବ୍ୟ ( ସ. ତତ୍+ହି )—୧। ତାହାହିଁ; ସେହି କଥାହିଁ—
Tai 1. That too; that also; certainly that.
ताई, ताहाई ୨। ତାହା ସୁଦ୍ଧା; ତାହା ମଧ୍ୟ—2. Even that.
तवी ଦେ. ବି—( ସ. ତାପ )—୧। ଛୋଟ ତାଉଆ; ରୁଟି
ताई ସେକିବାର ଚଟକା କରେଇ—1. A small-sized flat frying pan.
तवा

୨। ମୋହର ଚିହ୍ନ; ଛାପ—2. Seal.

ପ୍ରାଦେ. (ସମ୍ବଲପୁର) ବି—୪। ମାଟି ତେଲୁଣି— 4. An earthen pan.

| ୧ | ୯ | ଜ | ର,ଡ଼ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | କ୍ର | ଇସ୍ | ଉଥ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଐ | ଊ | ରୁ | ଲୃ | ସ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ | ଯ | ସ | ଗଁ | ଇଥ | ୬ | ୯ |

ପ୍ରାଦେ. ( ଗଡ଼ଜାତ ) ବ—୫ । ମଟରଡ଼ା—5 A kind of flat and long bean.

ଦେ ଡଣ—୧ । ତୀକ୍ଷ୍ଣ; ଚଞ୍ଚଳଆ; ତେଜୀୟାନ୍—1. Sharp; fiery, mettled.

( ଯଥା—ଘୋଡ଼ାଟା ଭାରି ତାଇ ହୋଇଛି । )

୨ । ଜଳୁଥିବା—2 Burning; flaming; blazing.

( ଯଥା—ନିଆଁଟା ଭାରି ତାଇ ହୋଇଛି । )

୩ । ନିଆଁରେ ପୋଡ଼ିବାର ନାଲି ହୋଇଥିବା ( ଲୁହା ଆଦି )—3. Red hot (metal).

ଦେ. ଅ—ତାଇ ତାଇ ( ଦେଖ )—3 Tāi tāi ( See ,

ତାଇଁକି—ଗ୍ରା (ସର୍ବନାମ)—୧ । ତହିଁକି—,
Tāṅki 1. To that.
तेई ୧ । ସେଠାକୁ—2. To that place.
उसमें ୩ । ସେ ବିଷୟରେ—3. In that matter.

ତାଇଜ୍ (ଦ୍) ନବିସ୍—ବୈଦେ. ବ (ଅ ତାଇଦ୍=ସାହାଯ୍ୟ; ଅନୁମୋଦନ +ଫା.ନବୀସ୍=ଲେଖକ; ଭୂଲ. ଇଂ ନୋଭିସ୍= ନବଶିକ୍ଷାର୍ଥୀ)—୧ । କୌଣସି ଅଫିସ୍‌ରେ ସ୍ଥାୟୀ କର୍ମଚାରୀଙ୍କ ଲେଖାପଢ଼ିରେ ସାହାଯ୍ୟ କରିବା ନିମନ୍ତେ ନିଯୁକ୍ତ ବ୍ୟକ୍ତି; ଅସ୍ଥାୟୀ ଭାବରେ ବା ପରୀକ୍ଷା ସ୍ୱରୂପ ବା କାର୍ଯ୍ୟ ଶିଖିବା ପାଇଁ ନିଯୁକ୍ତ ଲେଖକ—1. Probationer clerk.
Tāij(d) nabis
(ତାଏଜ୍(ଦ୍)ନବିସ୍—ଅନ୍ୟରୂପ)
ताईदनविस
ताइदनविस, ताईद्

୨ । ଶିକ୍ଷାର୍ଥୀ; ଶିକ୍ଷାନବିସ୍—2. An apprentice learning work in an office; a novice.

ତାଇଜ୍ (ଦ୍) ନବିସୀ—ବୈଦେ. ବ ( ଅ. ତାଇଜ୍+ଫା. ନବିସ୍+ଫା ପ୍ରତ୍ୟୟ ଈ. )—ତାଇଜ୍‌ନବିସ୍‌ର କାର୍ଯ୍ୟ—The work of a probationer or apprentice.
Taij(d) nabisi
[ ତ ଏଜ୍(ଦ୍) ନବିସୀ—ଅନ୍ୟରୂପ]
ताइजनविसि
ताईदनविस

ତାଇ(ଏ)ତ୍—ବୈଦେ. ବ ( ଅ. ତାଇଦ୍=ସାହାଯ୍ୟ; ପୁଷ୍ଟି )—
Tāi(e)t ୧ । ସେବାସେବା; ଶୁଶ୍ରୂଷା—1. Tending or looking after a sick man.
ତାଇଦ; ତାଏତ; ତାଇତ; ତାହୁଦ; ତାହୁଦ } ଅନ୍ୟରୂପ
ताईत ୨ । ଶରୀର ବା ସ୍ୱାସ୍ଥ୍ୟ ପ୍ରତି ଦୃଷ୍ଟି ରଖିବା; ଶରୀରର ଯତ୍ନ ନେବା; ଶୁଶ୍ରୂଷା—2. Taking proper care of the body.
चाह

୩ । ଯତ୍ନ ନେବା—3. Caring; taking care.

ତାଇତ—ଦେ. ବ ( ଫା. ତାଵୀଜ୍=ତେଜିଁଭିଆ )—ବାହୁର ଅଳଙ୍କାର ବିଶେଷ; ସୁନା ରୂପାର ବାଜୁ—An armlet or ornament for the arm.
Tāita
ताबीज
ताइत

ଦେ. ସର୍ବନାମ (ସ. ତତ୍ ଭୁ)—୧ । ତାହାତ; ତାହାହିଁ—1. That also; that too.
ताईत
बहबी ୨ । ତାହା ସୁଦ୍ଧା—2. That even.

ତାଇ ତାଇ—ଦେ. ଅ ( ଶିଶୁରଞ୍ଜନ )—ଶିଶୁମାନଙ୍କୁ ତାଳି ମାରିବାକୁ ଶିଖାଇବା ସମୟରେ ପ୍ରାପ୍ତବୟସ୍କମାନେ ଓ ଶିଶୁମାନେ ଯେଉଁ ଶବ୍ଦ ଉଚ୍ଚାରଣ କରନ୍ତି—The repetition of the word Tāli by elders and children while the latter are taught to clap their hands.
Tāi tāi

[ ଦ୍ର—ଶିଶୁମାନେ ସ୍ୱଭାବତଃ 'ତାଳି' ଉଚ୍ଚାରଣ କରି ନ ପାରି 'ତାଇ' ଉଚ୍ଚାରଣ କରିବାରୁ ପ୍ରାପ୍ତବୟସ୍କମାନେ ମଧ୍ୟ ତାଙ୍କ ଅନୁକରଣରେ 'ତାଳି ତାଳି' ନ କହି 'ତାଇତାଇ' କହି ଥାଆନ୍ତି । ]

ତାଇଦାତ୍(ଦ୍)—ବୈଦେ. ବ (ଅ. ତଅଦାଦ୍) (କଚେରୀ)—ତାଅଦାଦ୍ (ଦେଖ)—Tā-ādat (See)
Tāidāt,d)

ତାଇନ୍(ନି)—ଗ୍ରା. ବୈଦେ. ବ (ଇଂ. ଟାଇମ୍)—୧ । ସମୟ—1. Time.
Tāin(ni)
टाईम ୨ । ନିର୍ଦ୍ଦିଷ୍ଟ ସମୟ—2. Fixed time.
टैम ୩ । ନିୟମିତ ଅବସ୍ଥା—3. Regularity.
୪ । ନିୟମ; ବିଧି—4 Rule.

ତାଇ(ଏ)ଫା—ବୈଦେ. ବ (ଫା. ତାଯ଼ିଫା)—୧ । ନର୍ତ୍ତକୀଙ୍କ ଦଳ—1. A party of dancing girls.
Tāi e)phā
तायफा × × ସହରେ ଦୁଇ ତାଇଫା ବେଶ୍ୟା ନାଚ—ଫକୀରମୋହନ. ଗଳ୍ପସ୍ୱଳ୍ପ ।
तायफा ୨ । ନର୍ତ୍ତକୀ—2. Dancing girl.
୩ । ବେଶ୍ୟା—3. Prostitute.

ତାଇବା—ଦେ. କ୍ରି (ସ. ତପ୍ ଧାତୁରୁ)—୧ । ଉତ୍ତପ୍ତ କରିବା; ତତାଇବା—1. To heat.
Tāibā
୨ । ( ଲକ୍ଷଣାର୍ଥ ) ଉତ୍ତେଜିତ କରିବା—2 To excite.
ताओआन ୩ । ଭାତି ଦ୍ୱାରା ନିଆଁକୁ ପବନ ଯୋଗାଇବା—3. To blow the bellows.
धौंकना
ବନ୍ଧୁଣ୍ଟି ଯନ୍ତ୍ର ତାଇଛି କାମର ନେହ ଶତ ଗଡ଼ା ବୋଲ୍ ଯେ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

ତାଇ ବି(ଭି)—ଦେ. ସର୍ବନାମ (ସ. ତଦପି)—୧ । ତାହାହିଁ; ତାହାମଧ୍ୟ—1. That also; that too.
Tāi bi(bhi)
ताईबि ୨ । ତାହା ସୁଦ୍ଧା—2. Even that.
बहबि

ତାଇଲା ମାଇଲା—ଦେ. କ୍ରି . ବଣ—(ଲୁହା ତାଇ ହୋଇଥିବା ଅବସ୍ଥାରେ ଲୁହାକୁ କମାର ହାତୁଡ଼ିରେ ପିଟିଲେ ଲୁହା ଇପ୍‌ସିତ ଆକାରରେ ପରିଣତ ହୁଏ, ଏହି ଭାବରୁ)—
Tāilā māilā
ତାଇଲାକୁ ମାଇଲା
ତାହୁଲାକୁ ମାହୁଲା } —ଅନ୍ୟରୂପ

୧ । ଉପଯୁକ୍ତ ସମୟ ଦେଖି ଉପଯୁକ୍ତ କାର୍ଯ୍ୟ କରିବା ପ୍ରକାରରେ; ଦେଶକାଳପାତ୍ରର ଉପଯୋଗୀ କାର୍ଯ୍ୟ କରିବା ପ୍ରକାରରେ—1. In a manner befitting the time or the condition; in an appropriate manner.

ଅକାରାଦି କ୍ରମରେ ଶବ୍ଦ ଖୋଜିବା ସମୟରେ ଯେଉଁ ୧ ଅକ୍ଷର ଓ ମାତ୍ରା ବା ୨ ଅକ୍ଷର ଓ ମାତ୍ରା ପରେ ଶବ୍ଦ ମିଳୁ ନାହିଁ । ଏହେବେ ୧ ବା ୨ ଅକ୍ଷର ବିଶିଷ୍ଟ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ପଡ଼ିଥିବା ଉଚ୍ଚାରଣ ଅନୁସାରେ ୨ ବା ୧ ଅକ୍ଷର ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ବାଇ' ନ ମିଳିଲେ 'ବାଈ' ଖୋଜିବେ; 'ଭୂତ' ନ ମିଳିଲେ 'ଭୂତ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲଚ' ନ ପାଇଲେ 'ଅଲବ୍ଧ' ଦେଖିବେ।

୨ । ଖରଗ ବେଗେ; ତରତରିଆ ଭାବରେ କୌଣସି କାର୍ଯ୍ୟ କରିବା ପ୍ରକାରେ; ତାତ୍‌କାଳିକ ଭାବରେ—
2. In a hasty manner; hurriedly; in no time.
(ଯଥା—ଘରର ଏଷ୍ଟିମେଟ୍ ମଞ୍ଜୁର ହୋଇଗଲେ ମୁଁ ତାଇଲ ମାଇଲ କାମ ଲଗେଇ ଦେଇ କଷ୍ଟେ ଦୁଇ ମାସ ମଧ୍ୟରେ ଘରଟାକୁ ଠିଆ କରାଇ ଦେବି ।)
୩ । ତଦର୍ଥ୍ୟଭାବରେ; ଅଯତ୍ନଭାବରେ—
3. Carelessly; in a slip-shod manner.

ତାଇଲି—ଗ୍ରା. ବୈଦେ. ବି ( ଇଂ. ଟାଇଲ୍ )—ଟାଇଲ୍; କୋଠାର ଛାତ
Tāili ଆଦିରେ ବସାଇବା ପାଇଁ ପୋଡ଼ା ହୋଇଥିବା ପତଳା, ଲମ୍ବ
টাইল; টালি ଓ ଚଉଡ଼ା ଇଟା ବା ପଥର ଖଣ୍ଡ—
नरिया, खपड़ा Tile (of brick or stone).

ତାଇସା—ଦେ. ବି—ଠାଟ୍ଟା; ଠାଟ୍ଟାସା; ଠାପରା; ଥଟ୍ଟା—
Tāisā Joking; jesting; joke.

ତାଇସି—ପ୍ରାଦେ (ବାଲେଶ୍ୱର) ବି—ନଦୀ ମୁହାଣରୁ ଧରାପଡ଼ିବା ଏକ-
Tāisi ପ୍ରକାର ଲୁଣି ମାଛ—A species of sea-fish caught at the mouths of rivers.

ତାଉ—ଦେ.ବିଶେ.(ସଂ. ତପ୍ତ)-୧ । ବିଶେଷଭାବରେ ଉତ୍ତପ୍ତ; ଖୁବ୍ ତାତିଲା-
Tāu 1. Very hot.
তাও ୨ । ନିଆଁରେ ତାତି ନାଲି ହୋଇଥିବା ( ଧାତୁ )—
ताय 2 Red hot ( metal ).
୩ । ଅତି କ୍ରୁଦ୍ଧ—3. Enraged.
ବି (ସଂ. ତାପ)—୧ । ଅଗ୍ନିର ପ୍ରଖର ତେଜ; ଦହକ—
1. Blaze of fire (as of live-coals).
୨ । ତାପ; ଗରମି—2. Heat.
୩ । ଅତ୍ୟନ୍ତ କ୍ରୋଧାବେଶ—3. Rage.
୪ । ଲୁହା ଓ ଅନ୍ୟ ଧାତୁର ନିଆଁରେ ପାଚିକରି ନାଲି ହେବା ଅବସ୍ଥା, ବା ଯେଉଁ ଅବସ୍ଥାରେ ଲୁହାକୁ ବାଡ଼େଇକରି ଅଭିପ୍ରେତ ଆକାରରେ ପରିବର୍ତ୍ତିତ କରା ଯାଇପାରେ—
4. Red-hot or malleable condition of iron or other metal.
ବୈଦେ. ବି (ପା. ତା=ଫର୍ଦ୍ଦ)—କାଗଜର ଫର୍ଦ୍ଦ—
Sheet of paper.

ତାଉଆ—ଦେ. ବି ( ସଂ. ତପ୍ତକ—ଭାବପ୍ରକାଶ )—ଚେପଟା ଲୁହା-
Tāuā କଡ଼େଇ, ଯହିଁରେ ରୁଟି ସେକାଯାଏ ଓ ଭଜାଭଜି ହୁଏ—
(ତାଓଆ—ଅନ୍ୟରୂପ) Frying pan; a baking pan or
তাওয়া plate.
तावा

ତାଉଁଦେଖା(ଖେ)ଇବା—ଦେ. କ୍ରି—କ୍ରୋଧଭାବ ପ୍ରକାଶ କରିବା;
Tāu dekhā(khe)ibā କ୍ରୋଧରେ ବା ଗର୍ବରେ ନିଶ ମୋଡ଼ିବା—
গোঁফে তাব দেওয়া To give vent to one's rage or
तावदेना; ताओखाना pride.

ତାଉନ୍—ବୈଦେ. ବି (ଆ)—ବାତ ଜର; ଗିଲ୍ଟି ଦରଜ ସହିତ ହେବା
Tāun ଏକପ୍ରକାର ଜ୍ୱର—Filaria; a kind of fever
ताउन accompanied with the sweling of the glands and elephantiasis.

ତାଉସ୍—ବୈଦେ. ବି (ଆ)—ମୟୂର—
Tāus Peacock.
তাউস [ ଦ୍ର—ଆଗ୍ରାରେ ମୋଗଲ ସମ୍ରାଟ ସାହାଜାହାନଙ୍କ
ताउस ନିର୍ମିତ ମୟୂର ସିଂହାସନର ଉର୍ଦ୍ଦୁ ନାମ ତଖତ୍‌ତାଉସ୍ ବା ତଖତତାଉସୀ । ]

ତାଏଜ୍(ଦ୍) ନବିସ୍ (ଇତ୍ୟାଦି)—ବୈଦେ. ବି—ତାଇଜ୍ ନବିସ୍ ଇତ୍ୟାଦି
Tāej(d) nabis (etc) Tāij nabis etc (See).

ତାଏତ—ଦେ. ବି—ତାଇତ୍ (ଦେଖ)
Tāet Tāit (See).

ତାଏଦାତ୍( ଦ୍ )—ବୈଦେ. ବି ( ଆ. ତଅଦାଦ )—
Tāedāt(d) ତାଦାତ୍ ( ଦେଖ )
Tādāt ( See ).

ତାଏଫା—ବୈଦେ. ବି—ତାଇଫା (ଦେଖ)
Tāephā Tāiphā (See).

ତାଂଚା ରାଂଚା—ପ୍ରାଦେ ( ସମ୍ବଲପୁର ) ବି—କଳିକଜିଆ ପାଇଁ
Tāmchā rāmchā ଉଦ୍ୟମ ବା ଭାବଭଙ୍ଗୀ—
The movements and postures of a man apt to quarrel.

ତାକ୍—ଦେ. ବି ( ସଂ. ତର୍କ ଧାତୁ )—୧ । ଏକ ଦୃଷ୍ଟି; ସ୍ଥିର ଦୃଷ୍ଟି;
Tāk କୌଣସି ବସ୍ତୁ ପ୍ରତି ଅବିକ ଦୃଷ୍ଟି—1. Stare;
তাক fixed look.
ताक (ଯଥା—ଭୁବନେଶ୍ୱରର ମନ୍ଦିରମାନଙ୍କ କାରୁକାର୍ଯ୍ୟ ଦେଖି ମୋର ତାକ୍ ଲାଗିଗଲା ।)
୨ । ଦୃଷ୍ଟିର ଲକ୍ଷ୍ୟ—2. The aim of one's sight.
ପ୍ରାଦେ ( ସିଂହଭୂମ ) ବି—ସମୟ ବା ସୁବିଧାକୁ ଅପେକ୍ଷା କରି ବସିବା; ତକାଇବା—Waiting for an opportunity.
(ତାକ; ତାକ୍‌ତା; ତାକତା—ଅନ୍ୟରୂପ) ଦେ. ଅ—ପଖୋଜ ବାଦ୍ୟର ବୋଲ୍‌ଟ—The tune or gamut of a 'Pakhoja' drum.

ତାକୁଡ଼ି—ପ୍ରାଦେ (ସମ୍ବଲପୁର) ବି—ତାକୁଡ଼ି ( ଦେଖ )
Tāk-rdi Tākurdı ( See ).

ତାକ୍ ତରକ—ଦେ. ବି (ସଂ. ତର୍କ; ମୂଳ=ଇଂ ଟାକ୍‌ଟିକ୍)—
Tāk taraka ୧ । ଚାହାଁ ଚାହିଁ— 1. Watching each other.
তাকতরক, তুকতাক ୨ । ଚତୁରତା—2. Cleverness.
चौकसी ୩ । ହୁସିଆର; ସତର୍କତା—3. Being on one's guard; alertness.

| ୯ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଯ,ୟ | କ୍ଷ | ଇଅ | ଉଅ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ଔ | ମ୍ |

୪ । ଫନ୍ଦଫାନ୍ଦ; ଯୁକ୍ତ; କୌଶଳ—
4. Tactics; craft.
ଅରେ ଉଲୁବଳେ, ଟାକ ଟରକ ତୁ ଜାଣ, କେତେ ଜଣ—
କବିସୂର୍ଯ୍ୟ, ବ୍ରହ୍ମ, ବଇତନ୍ତି ।
୫ । ବିଶେଷ ସାବଧାନତା ସହକାରେ ଅନ୍ୱେଷଣ —
Careful investigation or search.

ଟାକ୍ ଟରକା—ଦେ. ବିଣ—୧ । କୌଶଳୀ—
Tāk tarakā 1. Crafty.
ତୁକତାକ ୨ । ଯେ ଫନ୍ଦି କରି କାମ ହାସଲ କରେ —
**चौकस** 2. Tactician; tactful
ଟାକଟରକା } ଅନ୍ୟରୂପ ୩ । ଚତୁର—
ଟାକ୍ଟରକିଆ } 3. Sagacious; clever.
୪ । ଯେ ସର୍ବଦା ସାବଧାନ ଥାଏ; ସତର୍କ; ହୁସିଆର—
4. Vigilant; cautious.

ଟାକ୍ ଟାକ୍ ଧୀନାଧୀନ୍—ଦେ. ଅ—ଟାଟାଥିନ୍ ( ଦେଖ )
Tāk tāk dhinādhin Tātāthin ( See )
( ଟାକ୍ ଥେଇ; ଟାକ୍ ଧେଇ; ଟାକ୍ଥିନାଥିନ୍—ଅନ୍ୟରୂପ )

ଟାକ୍(ଗ୍)ଦା—ଦେ. ବି. ( ଅ. ତାକୀଦ୍ )—୧ । କୌଣସି ପ୍ରାପ୍ୟକୁ
Tāk(g)-dā ଦୃଢ଼ତା ସହକାରେ ତଲବ କରିବା; ପୁନଃ ପୁନଃ ତଲବ-
ତାକିଦ 1. Urgent or pressing demands for any
**ताकीद्** dues.
ଟାକଦା; ଟାକ୍ଦା; } ଅନ୍ୟରୂପ (ଯଥା—ମହାଜନ ଖାତକକୁ
ଟାଗଦା; ଟାଗାଦା; } ବାରଂବାର ଟାକ୍ଦା କରୁଛି । )
ଟାଗଦା } ୨ । ଜଗର କରିବା—
2. Urging on.
୩ । ତମ୍ବି; ଜିଦ; ପାଉଣା ଆଦାୟ ଦେବା ନିମନ୍ତେ ପୀଡ଼ନ
ବା ଜଗର—3. Pressure to pay any due.
୪ । ସ୍ମାରକ ତଲବ—4. Reminding demand.
[ ଦ୍ର—ଏହି ଶବ୍ଦ 'ତମ୍ବି' ଓ 'ତଲବ' ଶବ୍ଦ ପରେ ମଧ୍ୟ ଯୋଗ
ହୁଏ; ଯଥା—ତମ୍ବି ଟାକ୍ଦା, ତଲବ ଟାଗ୍ଦା=ପୁନଃ ପୁନଃ
ତଲବ—Repeated pressing demands. ]
୫ । ସାବଧାନ କରାଇବା; ସତର୍କୀକରଣ—5. Warning.

ଟାକ୍ଡ୍ରିମ୍—ଦେ. ଅ—୧ । ପଖୋଜ ବାଦ୍ୟର ଉକ୍ତି; ମହାଦେବଙ୍କ
Tāk-drim ତାଣ୍ଡବ ନୃତ୍ୟର ସହଚର ବାଦ୍ୟ ବାଦନର ଉକ୍ତି—
ଟାକ୍ଡ୍ରିମ୍ଟିଟ୍, ଟାକଟ୍ ଟାକ୍ } 1. A tune of
ଟାକ୍ଡ୍ରୁ; ଟାକଡ୍ରୁ; ଟାକଟ୍ } ଅନ୍ୟରୂପ musical drum.
ଟାକ୍ଥିନ୍; ଟାକ୍ଥିନ୍; ଟାକ୍ଥିନା } ୨ । ନୃତ୍ୟ ସମୟରେ
ଟାଟଟ୍; ଟାଗିଟ୍ } ପାଦକ୍ଷେପର ଉକ୍ତି—
2. The vocal sound representing the steps
made while dancing.

ଟାକ୍ ଲଗିବା—ଦେ. କ୍ରି. ( ଅ. ତାକ୍=ଆଶ୍ଚର୍ଯ୍ୟ—ଯୋଗେଶ୍ୱର )—
Tāk lāgibā ୧ । ଏକଦୃଷ୍ଟି ବା ଅବିରତଦୃଷ୍ଟି ଅବସ୍ଥା ସହିବା—
ତାକ ଲାଗା 1. Looking with a fixed stare.
**टकटकी लगना** ୨ । ବିସ୍ମୟବିସ୍ଫାରିତ ନେତ୍ରରେ ଚାହିଁବା —
2. Staring with wonder.
୩ । ଆଶ୍ଚର୍ଯ୍ୟଜନକ ବୋଧ ହେବା—
3. Seeming wonderful.
୪ । ଆଶ୍ଚର୍ଯ୍ୟ—4. Astonishment.

ଟାକ—ବୈଦେ. ବି. ( ଅ. ତାକ୍=କାନ୍ଥଖୋଲ )—
Tāka ୧ । ଥାକ; କାନ୍ଥଖୋଲ—1. A niche in the wall; a
ତାକ; ଥାକ shelf in the wall.
**ताक** ୨ । ଥରସ୍ତ; ଭାଙ୍ଗ—2. Layer; fold.
୩ । ଆଲମାରିର ଥାକ ବା କୋଠରି—
3. Shelf of an almira.
ଥାକ ଦେ. ବି. ( ଭୁଲ. ଇଂ, ଷ୍ଟାକ୍; ଫ. ସ୍ତବକ )—ଗଣା ଯାଇ
**टाल** ଉପର୍ଯ୍ୟୁପରି ରଖା ଯାଇଥିବା ମୁଦ୍ରାର ଗଦା—
A heap of coins put one over the other;
a stack.

ଟାକତ୍—ବୈଦେ. ବି. ( ଅ. ତାକତ୍ )—୧ । ଶକ୍ତି; କ୍ଷମତା; ବଳ—
Tākat 1. Power; strength.
ତାକତ ୨ । ଶାରୀରିକ ବଳ—2. Bodily strength.
**ताकत**

ଟାକଟ ରୁଆ—ଦେ. ବି—ପାଣି ନ ଥିବା କାଦୁଅ ମାଟିରେ ଧାନ
Tākata ruā ରୋଇବା—Transplantation of paddy
seedlings on waterless and muddy
soil.
ବାଲ ବେଉଷ୍ଣା ଟାକଟ ରୁଆ । ଯୋଇ ନ ଯୋଇ ହୋଇବ ଠିଆ—
କୃଷି. ପ୍ରବଚନ ।

ଟାକ ମାରିବା—ଦେ. କ୍ରି—( ମୁଦ୍ରା ଆଦିକୁ ) ଉପର୍ଯ୍ୟୁପରି ଗୋଟିଏ
Tāka māribā ଗୋଟିଏ ଗଦା କରି ସଜାଇ ରଖିବା—
ଥାକ ମାରା To arrange coins in several stacks;
**ढेर लगाना** to stack coins.

ଟାକର—ପ୍ରାଦେ. ( ଜାଜପୁର ) ସର୍ବନାମ—ତାହାର; ତାଙ୍କର—
Tākara His.

ଟାକର ମନକର—ପ୍ରାଦେ. ( ଜାଜପୁର ) ସର୍ବନାମ—ସେମାନଙ୍କର—
Tākara manakara Their; theirs.

ଟାକି—ଦେ. ବିଣ—ଅଳ୍ପସ୍ୱରବିଶିଷ୍ଟ; ଅନୁଚ୍ଚସ୍ୱରବିଶିଷ୍ଟ—
Tāki Low-sounding.
ନାକୀ ସ୍ୱରରୁ ଟାକି ଗାଇଣା—ତଣ ।

ଟାକିଦ୍(ଦ୍)—ବୈଦେ. ବି. ( ଅ. ତାକିଦ୍ )—
Tākit(d) ୧ । ତମ୍ବି; ସନ୍ନିର୍ବନ୍ଧ ଅନୁରୋଧ; ଟାକିଦା; ଟାଗଦା; ତଲବ-
ତାକିଦ 1. Urging on; pressing request; demand.
**ताकीद** ୨ । ଦୃଢ଼ାଜ୍ଞା; କଡ଼ା ହୁକୁମ—
2. Strict order; injunction.

ସାଧାରଣ ଲୋକେ ଅନେକ ସ୍ଥଳରେ ସ୍ୱତନ୍ତ୍ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ଖାଣ୍ଟି ଯଥାକ୍ରମେ ଉକ୍ତ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୁଠ' ନ ମିଳିଲେ 'କଠ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୩ । ସାବଧାନ କରାଇବା—3. Warning.
୪ । ସ୍ମାରକ ଉପାୟ—4. Reminder, memo.
୫ । ସ୍ମରଣ କରାଇବା—5. Reminding.
୬ । ଅକଟ; ଆଜ୍ଞାଦ୍ୱାରା ସତର୍କୀକରଣ—
6. Cautioning order.

ବିଣ—୧ । ସ୍ମାରକ—
1. Serving as a reminder.
୨ । ଦୃଢ଼ ( ଆଦେଶ )—2. Strict ( order ).

**ତାକିତ୍(ଦ୍) କରିବା**—ଦେ. କ୍ରି—୧ । ଆଦେଶଦ୍ୱାରା ସତର୍କ କରାଇ ଦେବା; ଅକଟ କରିବା—
Tākit(d) kariba
তাকিদ করা
ताकीद् करना
1. To issue an injunction; to warn.
୨ । ତଲବ କରିବା—2. To demand.

**ତାକିତ୍(ଦ୍) ଚିଠି**—ଦେ. ବି—୧ । ତଲବ ଚିଠି—
Tākit(d) chithi
তাকিদ চিঠি
ताकिद् चिठि
1. Letter of demand.
୨ । ଜରୁରି ଚିଠି—
2. Urgent letter.
୩ । ଯେଉଁ ଚିଠି ଦ୍ୱାରା ସତର୍କ କରାଇ ଦିଆଯାଏ—
3. A letter of warning.

**ତାକି ବସିବା**—ଦେ. କ୍ରି—ଟାକିବା; ଏକ ଦୃଷ୍ଟିରେ ଅପେକ୍ଷା କରି ରହିବା—To watch eagerly.
Tāki basibā
তাকিয়ে বসা  ताक रहना
(ତାକି ରହିବା—ଅନ୍ୟରୂପ)

**ତାକିବା**—ଦେ. କ୍ରି. ( ସଂ. ତର୍କ୍ ଧାତୁ )—
Tākibā
তাকান
ताकना
୧ । ଏକ ଦୃଷ୍ଟିରେ ଚାହିଁ ରହିବା; ଟାକିବା—
1. To stare.
୨ । ଅପେକ୍ଷା କରିବା—2. To wait.

**ତାକୁଡ଼ି**—ଦେ. ବି. ( ସଂ. ତର୍କୁଟୀ )—
Tākurdi
টেকো, তাকুড
टिकुरी, तकला, तकली
୧ । ସୂତା କାଟିବାର ଲୁହା ବା ବାଉଁଶର ଶଲାକା—
—1. Spindle; Takli.
[ ଦ୍ର—ଏହା ମୂଳରେ ଗୋଟିଏ ଗୋଲ ଚକିଆ ବା ଗୋଟାଳ ବା ପିଣ୍ଡ ( ତର୍କୁପିଣ୍ଡ ବା ତର୍କୁପୀଠ ) ଥାଏ ଓ ଅଗରେ ଖଣ୍ଡେ କ୍ଷୁଦ୍ର ସୂତାଦଣ୍ଡୀ (କାଣ୍ଡ) ଲାଗିଥାଏ । ]
୨ । ଅରଟରେ ଲାଗିଥିବା ଲୌହ ଶଳାକା—
2. Spindle of a spinning wheel.

ବିଣ—ଗୋଟିଏ ତାକୁଡ଼ିରେ ଗୁଡ଼ିଆ ହେବା ପରିମିତ (ସୂତା)—
Spindle-ful ( of thread ).

ବରଷକେ କାଟେଁ ତିନି ତାକୁଡ଼ି ଲୋ, ଦିନକେ ଖାଇ ଶିଏ,
ସାଇ ପଡ଼ୁଶୁଣୀ ପଚାରୁଥା'ରୁ ମୋ ପରି ଘରଣୀ କିଏ ?
ହାସ୍ୟରସଙ୍ଗୀତ ।

[ ଦ୍ର—ଆମ ଦେଶରେ ତୂଳାରୁ ବା ଝୋଟରୁ ବା ଛଣପଟରୁ ତାକୁଡ଼ି ଦ୍ୱାରା ସୂତା କାଟିବା କାର୍ଯ୍ୟ ବହୁକାଳରୁ ପ୍ରଚଳିତ ଅଛି । ଅରଟ ପରବର୍ତ୍ତୀ କାଳର ସୃଷ୍ଟି । ଶରିବ ପରିବାରର ମାଇପେ, ବିଶେଷତଃ ବିଧବା ବ୍ରାହ୍ମଣୀମାନେ ଏ ପର୍ଯ୍ୟନ୍ତ ତୂଳାକୁ ବଳି ବଳଣା କରି ବଳଣାରୁ ତାକୁଡ଼ିରେ ପତଳା ସୂତା କାଟୁ ଅଛନ୍ତି ।

ତାକୁଡ଼ିର ମୂଳରେ ଗୋଟିଏ ଚକ ଥାଏ ଓ ତାକୁଡ଼ି ଶଲାକାକୁ ଜଙ୍ଘରେ ବଳି ଛାଡ଼ି ଦେଲେ ଏହା ବୁଲୁଥାଏ ଏବଂ ସୂତା ମନକୁ ବଳି ହୋଇ ଲମ୍ବିଆ ହେଉ ଥାଏ । ସୂତା ବଳି ହେଲା ବାଦ୍ ତାହାକୁ ତାକୁଡ଼ିର ମୂଳରେ ଗୁଡ଼ାଇ ପୁଣି ନୂଆ ସୂତା କାଟିବାକୁ ହୁଏ । ]

**ତାକୁଡ଼ି କାଟିବା**—ଦେ. କ୍ରି—ତୂଳା ବା ଝୋଟ ଆଦିରୁ ତାକୁଡ଼ି ଦ୍ୱାରା ସୂତା ବା ସୂତୁଲି ବଳି ପ୍ରସ୍ତୁତ କରିବା—
Tākurdi kātibā
তাকুড়ে সূতা কাটা
तकलीमे सूत कातना
To spin thread by means of a Takli.
[ ଦ୍ର—ଫଳତଃ ତାକୁଡ଼ିକୁ କାଟନ୍ତି ନାହିଁ, ତାକୁଡ଼ି ଦ୍ୱାରା ସୂତା କାଟନ୍ତି ।

କ୍ଷୁଦ୍ର ଯନ୍ତ୍ର, ଅର୍ଥାତ୍ ଯାହାଦ୍ୱାରା ତୂଳାରୁ ସୂତା କଟାଯାଏ ତାକୁ 'ତାକୁଡ଼ି' ଏବଂ ବଡ଼ ତାକୁଡ଼ି, ଅର୍ଥାତ୍ ଯାହାଦ୍ୱାରା ଝୋଟ ଆଦିରୁ ସୂତୁଲି ବଳାଯାଏ, ତାକୁ 'ଟାକୁଆ' କହନ୍ତି । ]

**ତାକେ**—ଗ୍ରା. ଓ ପ୍ରାଦେ. (ସମ୍ବଲପୁର) ସର୍ବନାମ—ତାକୁ; ତାହାକୁ—
Tāke
To him.

ଯାକେ ଦଦ୍ୟା ତାକେ ସାଜେ
ଅପାଠୁଆ ଠେଇଁ କଣୀ ବାହ୍ମନେ ।
ବଙ୍ଗଳା ଢଗର ଅନୁକରଣରେ ଢଗ ।

[ ଦ୍ର—ସମ୍ବଲପୁରରେ ଦ୍ୱିତୀୟା ବିଭକ୍ତିର ଚିହ୍ନ 'କୁ' ଠାରେ 'କେ' ବ୍ୟବହୃତ ହୁଏ । ବଙ୍ଗଳାଭାଷାରେ ମଧ୍ୟ ଏହି ବ୍ୟବହାର । ]

**ତାକେ ବଡ଼(ଡ଼ା)**—ଦେ. ବିଣ. (ବଙ୍ଗଳା ଓ ଓଡ଼ିଆର ଅପୂର୍ବ ମିଶ୍ରଣ; ବଂ. ତାକେ=ତାହାକୁ+ଓଡ଼ିଆ. ବଡ଼)—
Tāke barda(rdā)
ତାକେ ବଡ଼ }
ତାକେ ବଳ } ଅନ୍ୟରୂପ
ତାକେ ବଢ଼ିଆ }
ତାଙ୍କଠାରୁ ବଡ଼; ତହିଁ ବଳି; ତହୁଁ ବଡ଼; ତାଠାରୁ ବଢ଼ିଆ—
Excelling one another; superior to the previous person; comparatively superior to one by one.
( ଯଥା—ଆଜିକାଲି ଆମ ଦେଶରେ ଦିନକୁଦିନ ତାକେ ବଡ଼ ତାକେ ବଡ଼ ମହାତ୍ମା ଓ ନେତା ମାନେ ବାହାରୁ ଅଛନ୍ତି । )

**ତାଖିତ୍**—ପ୍ରାଦେ. (ସମ୍ବଲପୁର) ବି. (ଆ. ତାକୀଦ୍)—ସତର୍କୀକରଣ—
Tākhit
Caution; warning.

**ତାଗଡ଼ି**—ଦେ. ବି. ( ସଂ. ତଲ୍ଲକ )—
Tāg-rdi
তাগা
तागड़ी
ତାଗଡ଼ି }
ତାଗିଡ଼ି } ଅନ୍ୟରୂପ
ତାଟଗଡ଼ି }
୧ । ବାହୁରେ ପିନ୍ଧିବା ସୂକ୍ଷ୍ମବିଶିଷ୍ଟ ଅଳଙ୍କାର—
1. An ornament for the arm.
୨ । ଅଣ୍ଟାରେ ବନ୍ଧାଯିବା ଘୁଙ୍ଗୁରଲଗା କଟିସୂତ୍ର—
2. A tinkling waist-chain.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ୠ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଙ | ଶ,ଷ | ଜ୍ଞ | ଇପ୍ପ | ଉଅ | ଋ |
| ୨ | ଈ | ଉ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ୱ | ଙ୍ଗ |

ତାଗ(ଗା)—ଦେ. ବି. ( ସଂ. ତନ୍ତୁକ; ସଂ. ତାର୍କବ; ପ୍ରା. ତାଗ୍ଗେ )—
Tāga(gā) ୧ । ଡୋର; ସରୁ ଦଉଡ଼ି; ଡୋରି—
1. String; thread.
তাগা କେଉଁଥିମାନେ ଦେହରୁ ତାଗ କାଟିବା ସକାଶେ କ୍ଷଣକ ବଡ଼ା ନେଲେ
तागा, ताग ବନ୍ତି × × × । ଫକୀରମୋହନ- ଛମାଣ ଆଠଗୁଣ୍ଠ ।
୨ । ସ୍ୱର୍ଣ୍ଣାଦି ଧାତୁ ନିର୍ମିତ ବାହୁବଳୟ; ଅନନ୍ତ କଡ଼ା—
2. An armlet ( ornament ).
୩ । ଦେବତା ଆଦିଙ୍କ ନାମରେ ମାନସିକ କରି ରୁଗ୍ଣ ବା ସର୍ପଦଷ୍ଟ ଅଙ୍ଗାଦିରେ ବାନ୍ଧିବା ସୂତୁଲି—
3. String wound round the limbs of a sick or snake-bitten person by invoking the name of a Deity.

ତାଗଡ଼—ଦେ. ବି. ( ଜାହାଜିଆଙ୍କ ଭାଷା )—
Tāgarda କୂଳରୁ ଜାହାଜ ଉପରକୁ ଓ ଜାହାଜରୁ କୂଳକୁ
তাগড় ଯିବା ପାଇଁ ପଟାରେ ତିଆରି ସିଡ଼ି—
तागड़ ( Nautical ) A ladder made of planks for going to and from a ship or boat.

ତାଗଡ଼ା—ପ୍ରାଦେ. (ସିଂହଭୂମ) ବି—ଝୁଅ; ଅଉଟା ହୋଇ ଘନୀଭୂତ
Tāgardā ଦୁଧ—Thickened milk.

ତାଗା—ବୈଦେ. ବି. (କଚେରିଆ ଭାଷା) (ସମ୍ଭବତଃ ବାଉଁଶ ଦଣ୍ଡରେ ତାଗା
Tāgā ବା ସୂତା ବନ୍ଧା ଯାଉଥିବାରୁ ଏହି ବ୍ୟବହାର)—
তাগা ୧ । ଭୂମିରେ ପୋତା ଯିବା କ୍ଷୁଦ୍ର ବଂଶ ଦଣ୍ଡ—
तागा 1. A small pole fixed to the ground
୨ । ରାଜକର୍ମଚାରୀଙ୍କଦ୍ୱାରା ଜମି କୋରକ କରାଯିବା ବା ଇସ୍ତାହାର ଦିଆଯିବା ବା ଦଖଲ କରାଯିବା ସମୟରେ ଜମି ଉପରେ ପୋତା ଯିବା କ୍ଷୁଦ୍ର ପତାକା, ଯହିଁରେ କୋରକ ପରୁଆନା ବା ଦଖଲନାମା ଟଙ୍ଗାଇ ଦିଆଯାଏ; ଝୁଣ୍ଟା—2. A small pole with a flag planted on a plot of land proclaimed to be sold or delivered possession of or attached under court's order.
୩ । (ସଂ. ତାର୍କିକ ପ୍ରା. ତାଗ୍ଗୋ; ସଂ. ତନ୍ତୁକ)—ସରୁସୂତା—
3. Thin thread.
टाँका ୪ । (ସଂ. ଟଙ୍କନ) ତାଗା ସିଲେଇ—4. Single stitch.
୫ । ସିଲାଇପାଇଁ ମୋଟ ସୂତା —
5. Thick thread for sewing.
୬ । (ବଣିଆଙ୍କ ଶବ୍ଦ) ବାହୁରେ ଲଗାଯିବା ସୁନାର ଅଳଙ୍କାର ବିଶେଷ—6. A golden armlet.

ତାଗା ଗଳା(ଲେ)ଇବା—ଦେ.କ୍ରି.(ସଂ. ଟଙ୍କନ)—୧ । ତାଗା ଗଲେଇବା;
Tāgā galā(le)ibā ସରୁସୂତାରେ ଲୁଗାକୁ ଲମ୍ବାଳିଆରେ ସିଲେଇ
टाँका କରିବା—1. To sew with single stitch.
तागा पिरोना ୨ । ମୋଟ ସୂତାରେ ସିଲାଇ କରିବା—
2. To sew with thick thread.

ତାଗା ଗାଡ଼ି—ଦେ. ବି. (କଚେରିଆ ଭାଷା)—ରାଜ କର୍ମଚାରୀଙ୍କ ଆଦେଶରେ
Tāgā gārdi କୋରକ ବା ନିଲାମ ହେବା ପାଇଁ ବଜ୍ଝପିତ ବା
তাগাগাড়ী ଦଖଲ ଦିଆଯିବା ଭୂମିରେ ତାଗା ପୋତିବା ପ୍ରକ୍ରିୟା—
तागागाढ़ी The proceedure of planting a flag on a plot of land which is attached or proclaimed to be sold or delivered possession of under court's order.

ତାଗା ଗାଡ଼ିବା—ଦେ. କ୍ରି. (କଚେରିଆ) ( ଅ. ତାଗା; ଓ. ଗାଡ଼ା )—
Tāgā gārdibā ନିଲାମ ବା କୋରକ ହେଉଥିବା ଭୂମିରେ ତାଗା
তাগাগাড়া ପୋତିବା; ଝୁଣ୍ଟା ମାରିବା—To plant a flag on the
तागा गाढ़ना land proclaimed to be sold or delivered possession of.

ତାଗି—ଦେ. ବି. (ସଂ. ତକ୍ଷ ଧାତୁ)—୧ । ସରୁ ନିହଣୀ; ବଢ଼େଇଙ୍କ ସରୁ
Tāgi ବଟାଲି—1. A slender chisel
তাগী ୨ । ବଢ଼େଇ ଓ କରତିମାନେ କାଠ ଉପରେ ମାପ କରି
निहानी, टाँकी ଚିହ୍ନ ଦେବା ନିମନ୍ତେ ଯେଉଁ ସୂତା ବ୍ୟବହାର
তাগা କରନ୍ତି—2. A carpenter's or sawyer's lining
तागा or marking string.

ତାଗିବା—ଦେ. କ୍ରି.—୧ । ତାଗା ଗଳାଇବା—
Tāgibā 1. To sew with single stitch.
তাগা ୨ । ସରୁ ନିହଣଦ୍ୱାରା କାଠ ଆଦିରେ ରେଖା ବା ଦାଗ କରିବା-
तागयाना, तागना 2. To cut a line on a block of wood with the chisel.
୩ । ଚିରାଯିବା ବା କଟା ହେବାକୁ ଉଦ୍ଦିଷ୍ଟ କାଠ ଉପରେ ସରୁ ଦଉଡ଼ି ଦ୍ୱାରା ଦାଗ କରିବା—3. To mark a line on a block of wood with the marking string.

ତାଗିର(ରି)—ଦେ. ବି.—ବାଜ୍ୟାପ୍ତି; ନାମଞ୍ଜୁର—
Tāgir(ri) Nullifying; resuming.
[ଦ୍ର—ବ୍ୟଙ୍ଗୋକ୍ତିରେ ଜାଗୀର ଶବ୍ଦ ସଙ୍ଗେ ଏ ଶବ୍ଦ କଥାରେ ବ୍ୟବହୃତ ହୁଏ; ଯଥା—ତୁ ମୋ ଜାଗୀର ତାଗିର କରି ପକାଇବୁ ପରା । ଅର୍ଥାତ୍ ତୁ ମୋ ଜାଗିର ଜମିକୁ ବାଜ୍ୟାପ୍ତି କରି ପକାଇବୁ ପରା ? ଅର୍ଥାତ୍ ତୁ ମୋର କିଛିମାତ୍ର ଅନିଷ୍ଟ କରି ପାରିବୁ ନାହିଁ ।]

ତାଙ୍କ—ଦେ. ସର୍ବନାମ. ପୁଂ ଓ ସ୍ତ୍ରୀ ( ମାନ୍ୟାର୍ଥକ; ତତ୍ ଶବ୍ଦର ୬ଷ୍ଠୀ
Tānka ବିଭକ୍ତି)—୧ । ତାହାଙ୍କର—
তাঁর, ওঁর, ওনার 1. His; her.
उनका ଫୁଲର ତାଙ୍କର ସଞ୍ଜା ମୁହିଁ ସଜରଚି । ରାଧାନାଥ- ମହାଯାତ୍ରା ।
ତାଙ୍କର, } —ଅନ୍ୟରୂପ ୨ । ସେମାନଙ୍କର—
ତାଙ୍କରି, } 2. Their.

ସାଧାରଣ ଲେଖେ ଅପର ପୃଷ୍ଠାରେ ଦେଖ ୧ ଚନ୍ଦ୍ରିତ ଅକ୍ଷର ଓ ମାତ୍ରା ଏବେ ୨ ଚନ୍ଦ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ... ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚନ୍ଦ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ...ଲେ ଯେବେ ସେ ... ନ ମିଳେ, ... ୨ ବା ୧ ଚନ୍ଦ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ବୃଷ' ନ ମିଳିଲେ 'ବୃଷ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଳଙ୍କାର' ଦେଖିବେ

ତାଙ୍କୁ—ଦେ. ସର୍ବନାମ ପୁଂ ଓ ସ୍ତ୍ରୀ ( ମାନ୍ୟାର୍ଥକ ) ।ତତ୍ ଶବ୍ଦର ୨ୟା
Tānku ବିଭକ୍ତି ) — ୧ । ତାହାଙ୍କୁ — 1. Him; her.
ताँको; उंको ୨ । ସେମାନଙ୍କୁ—2. Them.
उन्को

ତାଙ୍କୁଇ— ଦେ. ସର୍ବନାମ, ପୁଂ ଓ ସ୍ତ୍ରୀ—୧ । ତାହାଙ୍କୁହିଁ ; ତାଙ୍କୁମାତ୍ର—
Tānkui 1. Him only; her alone.
इँनको ୨ । ସେମାନଙ୍କୁହିଁ କେବଳ —
उनकोहि 2. Them only; them.
୩ । କୌଣସି ଉଦ୍ଦିଷ୍ଟ ବ୍ୟକ୍ତି ବା ବ୍ୟକ୍ତିମାନଙ୍କୁ—
3. To that very person or persons.
(ଯଥା—ଅସତ୍ ଲୋକ ଯାହାଙ୍କର ଦାନା ପାଣିରେ ବଞ୍ଚେ ଅବଶେଷରେ ତାଙ୍କୁଇ ଦଗାଦିଏ ।)
୪ । ତାହାଙ୍କୁ ମଧ୍ୟ—4. Him also; her too

ତାଙ୍କେ—ପ୍ରାଦେ. (ଗଞ୍ଜାମ) ସର୍ବନାମ. ପୁଂ. ଓ ସ୍ତ୍ରୀ (ମାନ୍ୟାର୍ଥକ)---ସେ—
Tānke He; she.
[ଦ୍ର—ଅଙ୍କେ; ଯାଙ୍କେ=ଏ ।]

ତାଚ୍ଛ(ଚ୍ଛି)ଲ୍ୟ—ଦେ. ବି. (ସ. ତୁଚ୍ଛ)—୧ । ତୁଚ୍ଛ କରିବା; ଅବଜ୍ଞା -
Tāchchha (chchhi)lya 1. Contempt
ताच्छल्य, ताच्छिल्य ୨ । ଅଶ୍ରଦ୍ଧା; ଅବହେଳା—2. Disregard.
୩ । ଉପେକ୍ଷା—3. Neglect.
ବିଣ—ଅଶ୍ରଦ୍ଧାଯୁକ୍ତ—Contemptuous.
[ଦ୍ର— ଏ ଶବ୍ଦ ତୁଚ୍ଛଶବ୍ଦ ସଙ୍ଗେ ଅନୁରୂପେ ବ୍ୟବହୃତ ହୁଏ ।]

ତାଚ୍ଛଲ୍ୟ କରିବା— ଦେ. କ୍ରି —୧ । ଅବଜ୍ଞା କରିବା—
Tāchchhalya kariba 1. To deride; to hold in
ताच्छल्य करना contempt.
तुच्छ जानना ୨ । ତୁଚ୍ଛ କରିବା; ଉପେକ୍ଷା କରିବା—
2. To disregard; to slight; to trifle with; to neglect.

ତାଚ୍ଛୀଲ୍ୟ—ସ. ବି. (ତତ୍+ଶୀଳ+ଭାବାର୍ଥେ, ଯ)—
Tāchchhilya ତଚ୍ଛୀଳତା; ତତ୍ସ୍ୱଭାବତା; ତତ୍ସାଦୃଶ୍ୟ—
Equivalent condition; the state of being of a similar nature; the condition of being equal.
[ ଦ୍ର—ଏହି ଅର୍ଥରେ ଭାଷାରେ ବ୍ୟବହାର ଦୃଷ୍ଟ ହୁଏ ନାହିଁ । କେବଳ ବ୍ୟାକରଣରେ ତ ଓ ଶ ମିଶି 'ଚ୍ଛ' ହେବାର ସନ୍ଧିର ଉଦାହରଣରେ ତଚ୍ଛୀଳ ଲେଖାଥାଏ । ]

ତାଜ—ବୈଦେ. ବି. (ଅ. ତାଜ୍)—୧ । ଉଚ୍ଚ ପାର୍ଶ୍ୱଯୁକ୍ତ ମୁକୁଟ—
Tāja 1. A high crown.
ताज ୨ । ମୁକୁଟ; ଶିରୋଭୂଷଣ; ଟୋପି—2. Crown; cap.
ताज ଚରଣିକ୍ର ଜଗଦେବ ଧାନେ ବନ୍ଧକାବନ୍ଧନ
ଏସବୁ କରେ ମସ୍ତକରେ ତାଜ । ବର୍ଦ୍ଧ. ବଳୋଷରମ୍ଭ ଅ. ୯ଟ ।
୩ । ଗଞ୍ଜପାର ଏକରଙ୍ଗର ନାମ—
3. Name of a class of cards in Ganjapā.
୪ । ତାଜମହଲ (ଦେଖ)—4. Tājamahala (See)

ତାଜକ—ବୈଦେ. ବି. (ଫା. ନାମ)—ତୁର୍କିସ୍ତାନଠାରୁ କାବୁଲ ପର୍ଯ୍ୟନ୍ତ
Tājaka ବାସ କରୁଥିବା ଇସ୍ଲାମ ମୁସଲମାନ୍ ଜାତି—
A sect of Mahomedans found in Turkistan, Persia, Beluchistan and Afganistan.
[ ଦ୍ର—ବୁଖାରାରେ ଏମାନଙ୍କୁ ସର୍ତ୍, ଅଫଗାନିସ୍ତାନରେ ଦେହାନ୍ ଓ ବେଲୁଚିସ୍ତାନରେ ଦେହବାର୍ ବୋଲାଯାଏ । ପାରସ୍ୟରେ ତାଜକ୍ ଶବ୍ଦ ସାଧାରଣ ଗ୍ରାମୀଣ ବା ଚାଷୀ ଲୋକ ପ୍ରତି ବ୍ୟବହୃତ ହୁଏ—ହି. ଶବ୍ଦସାଗର । ]
(ତାଜିକ—ଅନ୍ୟରୂପ) ସ. ବି— ଯବନାଚାର୍ଯ୍ୟ କୃତ ସଂସ୍କୃତ ଫଳିତ ଜ୍ୟୋତିଷ ଗ୍ରନ୍ଥବିଶେଷ—Title of an astrological treatise in Sanskrit by Jabanācharjya.
[ ଦ୍ର--ଏ ଗ୍ରନ୍ଥ ପ୍ରଥମେ ଆରବୀ ଓ ଫାରସୀ ଭାଷାରେ ଲିଖିତ ହୋଇଥିଲା । ରାଜା ସମରସିଂହ ଓ ନୀଳକଣ୍ଠଆଦି ଏହାକୁ ସଂସ୍କୃତରେ ଅନୁବାଦ କଲେ । ଏଥିରେ ବାରଗ୍ରଶିକୁ ଅନେକ ଭାଗ କରି ଫଳାଫଳ କଳ୍ପିତ କରିବାର ରୀତି ବର୍ଣ୍ଣିତ ହୋଇଅଛି । ଏ ଗ୍ରନ୍ଥରୁ ଗୁଡ଼ିଏ ଆରବୀ ଓ ଫାରସୀ ଭାଷାର ଶବ୍ଦ ସଂସ୍କୃତ ଜ୍ୟୋତିଷ ଗ୍ରନ୍ଥମାନଙ୍କରେ ବ୍ୟବହୃତ ହୋଇଅଛି ଯଥା— ଇକବାଲ ଯୋଗ, ଇଂଶୁହା ଯୋଗ, ଇତ୍ୟଶାଲ ଯୋଗ, ଇଶରାଫ୍ ଯୋଗ, ଗୈରକବୁଲ-ଯୋଗ—ହି. ଶବ୍ଦସାଗର । ]

ତାଜପୋଶୀ—ବୈଦେ ବି (ଫା)—ରାଜାଙ୍କର ରାଜ୍ୟାଭିଷେକ ବିଧି—
Tājaposi The installation ceremony of a king.
ताजपोशी ताजपाशी

ତାଜବ୍ (ଇତ୍ୟାଦି)—ଦେ. ବିଣ—ତାଜ୍ଜବ୍ ଇତ୍ୟାଦି (ଦେଖ)
Tājab (etc) Tajib etc (See)

ତାଜ ବିବି—ବୈଦେ. ବି. (ଫା)—ମୋଗଲ ସମ୍ରାଟ ସାହାଜାହାନଙ୍କ
Tāja bibi ପ୍ରିୟତମା ବେଗମ୍ ମୁମତାଜମହଲଙ୍କର ନାମ—Name of the dearly beloved wife of the Moghal Emperor Sahajahan.
[ ଦ୍ର—ଏହାଙ୍କ ସ୍ମୃତିରକ୍ଷାର୍ଥ ତାଜମହଲ ନିର୍ମିତ ହୋଇଥିଲା । ]

ତାଜ ମହଲ—ବୈଦେ. ବି. (ଆ)—ଆପଣାର ବେଗମ୍ 'ମୁମ୍ତାଜମହଲ'
Tāja mahala ବା ତାଜ ବିବୀଙ୍କ ସ୍ମୃତିରକ୍ଷାର୍ଥ ମୋଗଲ ସମ୍ରାଟ
(ତାଜ୍; ତାଜ୍‌ମହଲ—ଅନ୍ୟରୂପ) ସାହାଜାହାନ କର୍ତ୍ତୃକ ଆଗ୍ରାରେ ଉକ୍ତ ବେଗମଙ୍କ କବର ଉପରେ ନିର୍ମିତ କାରୁକାର୍ଯ୍ୟ-ଶୋଭିତ ଶ୍ୱେତ ମର୍ମରପ୍ରସ୍ତରର ଅତି ମନୋହର ପ୍ରାସାଦ—The Taj; the Tajmahal at Agra; the picturesqe mausoleum at Agra-

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଡ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଶ | ଜ | ଷ,ଷ | ଜ୍ଞ | ଇଯ୍ | ଉଅ | ଖ |
| ୬ | ଈ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଚ୍ୟ | ଇଅ | ଢ଼ | ନ୍ଦ |

built by the Moghal Emperor Sahajehan in honour of his wife Tajbibi or Muntajmahal.

[ ଦ୍ର—ମୋଗଲ ସମ୍ରାଟ ସାହାଜହାନ୍ ତାଙ୍କ ବେଗମ୍ ତାଜ ବିବି ବା ମୁମ୍ ତାଜମହଲଙ୍କୁ ଅତ୍ୟନ୍ତ ପ୍ରେମ କରୁଥିଲେ । କଥିତ ଅଛି ଯେ ସେ ଗର୍ଭିଣୀ ଅବସ୍ଥାରେ ଥରେ ସ୍ୱପ୍ନ ଦେଖିଲେ ଏବଂ ସମ୍ରାଟଙ୍କୁ କହିଲେ 'ମୁଁ ବେଶିଦିନ ବଞ୍ଚିବି ନାହିଁ, ମୋର ଏକାନ୍ତ ଅନୁରୋଧ ଯେ ମୁଁ ମଲେ ତୁମେ ଆଉ ବିବାହ କରିବ ନାହିଁ, ମୋ ପୁଅକୁ ରାଜ-ସିଂହାସନରେ ବସାଇବ ଓ ମୋ କବର ଉପରେ ଏପରି ପ୍ରାସାଦ ତିଆରି କରିବ ଯେ ଏହା ଭୂମଣ୍ଡଳରେ ନ ଥିବ' । ସବୁଠାରୁ ସନ୍ତାନ ଜନ୍ମ ହେବା ବାଦ୍ ବେଗମ ପୁତ୍ର ଜନ୍ମ କରି ମଲେ । ତାଙ୍କ ଅନୁରୋଧ ଅନୁସାରେ ଯମୁନା ନଦୀକୂଳରେ ଆଗ୍ରାଠାରେ ତାଙ୍କ କବର ଉପରେ ସାହାଜାହାନ ଶ୍ୱେତମର୍ମର ପଥରରେ ଏ ତାଜମହଲକୁ ନିର୍ମାଣ କରାଇଲେ । ଏ ପ୍ରାସାଦର ସମୁଦାୟ ପଥର ଧଳା ଶ୍ୱେତମର୍ମର ଓ ତହିଁରେ ନାନା ରଙ୍ଗିନ୍ ବହୁମୂଲ୍ୟ ପଥରରେ ଗଛ, ଲତାଆଦିର ଖୋଦେଇ ଓ ଜଡ଼ାଇ କାମ ହୋଇଅଛି । ଏ ପ୍ରାସାଦ ତିଆରି କରିବାକୁ ଦେଶ ବିଦେଶର କୋଡ଼ିଏ ହଜାର କାରିଗର ୧୭ ବର୍ଷ (ଖ୍ରୀ ୧୬୩୧— ୧୬୪୮) ଲାଗିଥିଲେ ଓ ସେହି ସମୟର ମୁଦ୍ରାରେ ପ୍ରାୟ ୩ କୋଟି ସାଢ଼େ ସତରଲକ୍ଷ ଟଙ୍କା ଖରଚ ହୋଇଥିଲା । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଭୂଖଣ୍ଡର ସହସ୍ର ସହସ୍ର ଲୋକେ ଏହାକୁ ପ୍ରତିବର୍ଷ ଦେଖିବାକୁ ଆସନ୍ତି । ଏପରି ଅନୁପମ ଓ ସୁନ୍ଦର ପ୍ରାସାଦ ପୃଥିବୀରେ ଅନ୍ୟ କୁତ୍ରାପି ନାହିଁ ବୋଲି ସମସ୍ତେ ଏକମୁଖରେ ସ୍ୱୀକାର କରନ୍ତି । ତାଜମହଲ ଗମ୍ବୁଜ ସହିତ ୨୨୦ ଫୁଟ ଉଚ୍ଚ । ଏଥିର ତୋରଣଦ୍ୱାର ନାଲି ପଥରରେ ତିଆରି । ଏହା ଖ୍ରୀ. ସପ୍ତଦଶ ଶତାବ୍ଦୀରେ ନିର୍ମିତ ହୋଇଥିଲେହେଁ ଗତ ୪ ଶତାବ୍ଦୀ ପରେ ମଧ୍ୟ ଆଜି ଏହା ନୂଆ ପରି ଦେଖା ଯାଉଅଛି— ହି. ଶବ୍ଦସାଗର । ]

**ତାଜା**—ବିଦେ. ବିଣ (ଫା; ମୂଳ ସଂ. ତେଜସ୍)—୧ । ସଜ; ଟଟକା;
Tājā · ସଦ୍ୟ—1. Fresh.
ତାଜା ताजा
୨ । ଅଭିନବ—2. New.
୩ । କାଅନ୍ତା; ଯାହା ଝାଉଁଳି ନାହିଁ—3. Not withered; verdant.
୪ । ଅଳ୍ପ ସମୟ ପୂର୍ବେ ଗଛରୁ ଛିଣ୍ଡା ଯାଇଥିବା (ଫୁଲ, ଫଳ ଆଦି)—4. Newly plucked.
୫ । ଅଳ୍ପ ସମୟ ପୂର୍ବେ ପ୍ରସ୍ତୁତ (ଖାଦ୍ୟାଦି)—5. Recently cooked (food).
୬ । କାର୍ଯ୍ୟକ୍ଷମ; କର୍ମଠ—5. Active.
୭ । ତେଜୀୟାନ୍; ସ୍ଫୂର୍ତ୍ତିବାନ୍—7. Spirited; lively.
୮ । ରୋଗମୁକ୍ତ; ସୁସ୍ଥ—8. Cured; restored to health.
୯ । ଚଙ୍ଗା; ସୁସ୍ଥ ଓ ସବଳ—9. Hale and hearty; refreshed; enlivened.

[ଦ୍ର—ଅଳ୍ପକ୍ଷଣ ପୂର୍ବେ ଦୁହାଁ ହୋଇଥିବା ଦୁଧ, ଅଳ୍ପକ୍ଷଣ ପୂର୍ବେ କୂଅ ଆଦିରୁ ଅଣାଯାଇ ଥିବା ପାଣି, ଅଳ୍ପକ୍ଷଣ ପୂର୍ବେ ଲହୁଣୀରୁ ମରାଯାଇ ଥିବା ଘିଅ, ଅଳ୍ପକ୍ଷଣ ପୂର୍ବେ ଲେଖା ଯାଇଥିବା ଲେଖା ପ୍ରଭୃତି ତାଜା ବିଶେଷଣ ବ୍ୟବହୃତ ହୁଏ । ଯାହା ବାସୀ ହୋଇନାହିଁ, ଯାହାର ନୂତନତ୍ୱ ମଉଳି ନାହିଁ ତାକୁ ତାଜା ବୋଲାଯାଏ)

**ତାଜି**—ବିଦେ. ବି (ଅ. ତାଜୀ=ଆରବ ଦେଶୀୟ) ୧ । ଆରବ ଦେଶୀୟ
Tāji ତେଜୀୟାନ୍ ଟାଙ୍ଗଣ (ଘୋଡ଼ା)—
ताजी, आरबी ताजी A breed of hardy Arab pony.

କେହୁ ନର୍ତ୍ତିଛ ତାଜି ବାଜି ଉପର
ରଙ୍ଗ ଅଙ୍ଗ । ଅଙ୍ଗକୁ ବଳେ ସୁନ୍ଦର । ବ୍ରଜନାଥ. ସମରତରଙ୍ଗ ।

୨ । ଆରବ ଦେଶୀୟ ଶିକାରୀ କୁକୁର—2. The Arab hound.
୩ । ଆରବୀ ଭାଷା—3. The Arabi language.

**ତାଜିଆ**—ବିଦେ. ବି (ଅ)—ମହରମ୍ ପର୍ବ ସମୟରେ ସିହା ମୁସଲମାନ୍
Tājiā ମାନେ ବତା ଓ ବାଉଁଶ ପାତିଆର ଯେଉଁ ମେଢ଼ ଉପରେ କାଗଜ, ଜରି ଓ ପନ୍ନ ଆଦି ମଡ଼ାଇ ଶୋଭାଯାତ୍ରା କରନ୍ତି ଓ ଶେଷରେ ତାକୁ ନେଇ ନଈ ଆଦିରେ ବିସର୍ଜନ କରନ୍ତି—
A decorated framework representing the mausoleum over the tombs of Saints Hasan and Hossain which is carried by the Siha Mussalmans in procession during the Mohorram festival and consigned into water.

[ଦ୍ର—ମୁସଲମାନଙ୍କ ଧର୍ମ ପ୍ରବର୍ତ୍ତକ ହଜରତ୍ ମହମ୍ମଦଙ୍କ ଭକ୍ତ ଓ ଅନୁଚର ଦ୍ୱୟ ଇମାମ୍ ହାସନ୍ ଓ ହୋସେନ୍ ପ୍ରତିମାପୂଜକ ବିଧର୍ମୀମାନଙ୍କ ଦ୍ୱାରା ଧର୍ମଯୁଦ୍ଧରେ ଆରବ ଦେଶର କରବାଲା ନାମକ ସ୍ଥାନରେ ନିହତ ହୋଇଥିଲେ ଓ ସେହି ସ୍ଥାନରେ ସେମାନଙ୍କ କବର ଅଛି । ସେହି କବର ଉପରେ ନିର୍ମିତ ସମାଧିମନ୍ଦିରର ପ୍ରତିରୂପରେ ସିହା ମୁସଲମାନ୍‌ମାନେ ବାଉଁଶ ବତା ଓ ବାଉଁଶ ପାତିଆରେ ମେଢ଼ ତିଆରି କରି ତହିଁ ଉପରେ ନାନା ବର୍ଣ୍ଣର ଚିତ୍ର-ବିଚିତ୍ର କନା, କାଗଜ, ଜରି, ଅଭ୍ର ଓ ପନ୍ନ ମଡ଼ାଇ ତାକୁ ସଜେଇ କରି ମହରମ ପର୍ବ ସମୟରେ ଶୋଭାଯାତ୍ରା କରି ବାହାରନ୍ତି ଏବଂ ଶେଷରେ ଉକ୍ତ ମେଢ଼କୁ ନେଇ ନଈ ଆଦିରେ ବିସର୍ଜନ କରନ୍ତି । ଏ ପ୍ରଥା କେବଳ ଭାରତବର୍ଷର ସିହା ମୁସଲମାନଙ୍କ ମଧ୍ୟରେ ଚଳେ । କଥିତ ଅଛି ଯେ ଭାରତ ଆକ୍ରମଣକାରୀ ତୈମୁର୍ କେତେକ ଜାତିଙ୍କୁ ନାଶ କରି କରବଲା ତୀର୍ଥକୁ ଯାଇଥିଲେ, ସେଠାରୁ ଉକ୍ତ ତୀର୍ଥର କୌଣସି ସ୍ମାରକ ଚିହ୍ନ ଆଣିଥିଲେ; ଉକ୍ତ ବସ୍ତୁକୁ ସେ ପ୍ରତିବର୍ଷ ମହରମ ସମୟରେ ଶୋଭାଯାତ୍ରା ପୂର୍ବକ ବାହାର କରୁଥିଲେ ଓ ସେଥିରେ ତାଙ୍କ ସୈନ୍ୟମାନେ ଯୋଗ ଦେଉଥିଲେ । ସେହି କାଳରୁ ଭାରତବର୍ଷରେ ତାଜିଆ ବାହାର କରିବା ପ୍ରଥା ଚଳି ଆସୁଅଛି ।

ଧର୍ମଯୁଦ୍ଧରେ ନିହତ ଇମାମ୍ ହାସନ୍ ଓ ହୋସେନ୍‌ଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରିବା ଏ ତାଜିଆ ବାହାର କରିବାର ଉଦ୍ଦେଶ୍ୟ (ହୃ. ଅଭିଧାନ)— ମହରମ ଉଚ୍ଚେ ଦେଖ । ]

**ତାଜବ**—ବୈଦେ. ବିଣ (ଆ. ତଅଜୁବ=ବିସ୍ମୟ)—୧ । ଆଶ୍ଚର୍ଯ୍ୟ-
Tāji(jū)b ଜନକ; ବିସ୍ମୟକର; ଅଦ୍ଭୁତ—1. Wonderful; surprising.
ତାଜବ; ତାଜବ୍ } ଅନ୍ୟରୂପ
ତାଜୁବ; ତାଜୁବ }
୨ । ବିସ୍ମିତ; ଆଶ୍ଚର୍ଯ୍ୟାନ୍ୱିତ—
ताज्जब 2. Surprised; astonished.
तअज्जुब ୩ । ଅଲୌକିକ; ଅଚିନ୍ତ୍ୟନୀୟ—3. Unexpected.
ବି—ଆଶ୍ଚର୍ଯ୍ୟ—Surprise; wonder.

**ତାଜବ ବ୍ୟାପାର**—ଦେ. ବି—୧ । ଅଦ୍ଭୁତ ଘଟଣା—
Tājib byāpāra 1. Wonderful event
তাজ্জব ব্যাপার ୨ । ଆଶ୍ଚର୍ଯ୍ୟଜନକ ବିଷୟ—
तअज्जुब घटना 2. A matter of wonder.

**ତାଜବର ବିଷୟ**—ଦେ. ବି—ଆଶ୍ଚର୍ଯ୍ୟଜନକ କଥା—
Tājibara bishaya A matter of wonder or astonishment
তাজ্জবের বিষয়
तअज्जुबकी बात्

**ତାଜିମ୍**—ବୈଦେ. ବି (ଆ) (ମୁସଲମାନୀଭାଷା)—ସମ୍ମାନ ପ୍ରଦର୍ଶନ; ପୂଜ୍ୟ
Tājim ବ୍ୟକ୍ତିଙ୍କୁ ସଲାମ କରିବା, ସେ ଆସି ପହଞ୍ଚିଲେ ଠିଆ
তাজিম ହେବା ଇତ୍ୟାଦି ସମ୍ମାନସୂଚକ କର୍ମମାନ—Expres-
ताज़ीम sion of respect to a superior or honourable person.

**ତାଜୁରତ୍**—ବୈଦେ. ବି (ଫା) (କଚେରୀ ଭାଷା) (ଫା. ତୁଜୁର
Tājurāt ବହୁ ବଚନ; ମୂଳ. ଆ. ତଜରବା=ଜ୍ଞାନଲାଭାର୍ଥ
তাজুরাত ପରୀକ୍ଷା, ଅନୁସନ୍ଧାନ)—୧ । ଆପତ୍ତି; ଓଜର—
ताजुरात 1. Objection.
୨ । ତାଜୁରତ୍ ଦରଖାସ୍ତ—2. Objection petition.

**ତାଜୁରତ୍ ଦରଖାସ୍ତ**—ବୈଦେ. ବି (ଫା) (କଚେରୀ ଭାଷା)—ହାକିମ
Tājurāt darakhāsta ବା ମାଜିଷ୍ଟ୍ରେଟଙ୍କ ନିକଟରେ ପୁଲିସ-
তাজুরাত দরখাস্ত ରିପୋର୍ଟ ବିରୁଦ୍ଧରେ ଦିଆଯିବା ଆପତ୍ତି ଦରଖାସ୍ତ—
ताजुरात दरखास्त Objection-petition filed before a magistrate against a police-report.

**ତାଞ୍ଛିବା**—ଦେ. କି—ଚାଞ୍ଛିବା (ଦେଖ)
Tāñchhibā Chāñchhibā (See)

**ତାଞ୍ଜୋର**—ଦେ. ବି (ନାମ)—ଦାକ୍ଷିଣାତ୍ୟରେ ଏକ ପ୍ରଧାନ ନଗର ଓ
Tāñjora ଜିଲ୍ଲା—An important district and city in South India.

[ ଦ୍ର—ଏହା ମାନ୍ଦ୍ରାଜ ପ୍ରଦେଶର ଗୋଟିଏ ଜିଲ୍ଲା ଓ ଜିଲ୍ଲାର ରାଜଧାନୀ ଅଟେ । ଏହା ପୂର୍ବେ ଗୋଟିଏ ରାଜ୍ୟ ଥିଲା । ୧୭୯୯ ମସିହାରେ ଏହା ବ୍ରିଟିଶ ଶାସନାଧୀନ ହେଲା ଏବଂ ଏଥିର ରାଜା ପେନ୍‌ସନ୍ ପାଇଲେ । ଏହା ଚୋଳରାଜାଙ୍କ ରାଜଧାନୀ ଥିଲା । ପୂର୍ବେ ଏଠାରେ ତାଞ୍ଜନ୍ ନାମକ ଜଣେ ଦୈତ୍ୟ ବାସ କରି ପ୍ରାଣୀ-ବିନାଶ ଓ ନାନା ଉପଦ୍ରବ କରୁଥିଲା । ଶ୍ରୀ ବିଷ୍ଣୁ ଏହି ଦୈତ୍ୟକୁ ବିନାଶ କରିଥିଲେ । ଦୈତ୍ୟର ନାମାନୁସାରେ ସ୍ଥାନର ନାମ ତାଞ୍ଜନ୍ ବା ତାଞ୍ଜୋର ହୋଇଅଛି । ଏଠାରେ ଦେବେଶ୍ୱର ମହାଦେବଙ୍କର ଏକ ବୃହତ୍ ମନ୍ଦିର ଅଛି । ମଦନମୋହନ. ତୀର୍ଥଦର୍ଶନ । ]

**ଟାଟ**—ଦେ. ବି—୧ । ବାଉଁଶ ବା ତାଳପତ୍ର ନିର୍ମିତ ଚଟକା ପ୍ରଶସ୍ତ
Tāṭa ଗୁଞ୍ଜୁଡ଼ି; ଡାଲା—1. A big wicker tray
ডালা woven with bamboo laths.
डलिया

[ ଦ୍ର—ଏଥିରେ ପୂଜା ଓ ଉପହାର ସାମଗ୍ରୀ, ଖାଦ୍ୟସାମଗ୍ରୀ, ମଙ୍ଗଳାନିମନ୍ତ୍ରଣ ସାମଗ୍ରୀ ଏବଂ ଭୋଜନିମନ୍ତ୍ରଣ ସାମଗ୍ରୀ ଆଦି ସଜଡ଼ା ହୋଇ ଯଥାସ୍ଥାନକୁ ପଠାଯାଏ । ]

୨ । କରଣଙ୍କ ବିବାହଦିନ ବରପକ୍ଷ କନ୍ୟା ନିମନ୍ତେ ବସ୍ତ୍ରାଳଙ୍କାରାଦି ଯେଉଁ ଡାଲାରେ ସଜାଡ଼ି କରି କନ୍ୟାଘରକୁ ପଠାନ୍ତି—
2. A tray containing the nuptial presents of the bridegroom's party to to the bride on the marriage-day.
୩ । ଟାଟି; ଚାଟ; ବାଉଁଶ ଓ ତାଳପତ୍ର ଆଦି ନିର୍ମିତ ବାଡ଼ା;
টাট ଗୁମ୍ଫିରି—3. A frail matting of bamboo
टाटर and palm leaves; a wicker screen.
ପ୍ରାଦେ (କେନ୍ଦୁଝର) ବି—ରବୁଡ଼ି—
Thickened milk.

**ଟାଟକ**—ସଂ. ବି (ଟଟ୍ ଧାତୁ=ଦୀପ୍ତି ପାଇବା+କର୍ତ୍ତୃ. ଅକ)—
Tāṭaka ତାଡ଼ଙ୍କ; କାନ ଫୁଲ; କର୍ଣ୍ଣଭୂଷଣବିଶେଷ; କାପ; କାନ-
কানতড়কা ଚଉଡ଼କା; କର୍ଣ୍ଣପୂର—A kind of ear-ring with
तटंक blades like those of the palm leaf.

**ଟାଟକା(ଙ୍କା)**—ଦେ. ବି—୧ । ବିସ୍ମୟ—1. Wonder; astonishment.
Tāṭakā(ṅkā)
ଟାଟଙ୍କ; ଟାଟଙ୍ଗା; } ଅନ୍ୟରୂପ
ଟାଟେକା; ଟାଟେଙ୍କା; ଟାଟେଙ୍ଗା; }
ଟାଟକା }
୨ । ଭୟବିହ୍ୱଳତା; ଛନକା; ତ୍ରାସ—
ঘাবড়ানি 2. Sudden fright.
अचंभा ୩ । ବିପଦ; ଆପଦ—5. Danger; risk.

ଅବଲୋକ ଏ ଅଦ୍ଭୁତ ଅଶ୍ରୁତ ଘଟଣା
ଗଣିଲେ ଟାଟକା ସର୍ବେ ନୃପ ସଭାଜନେ—ଚନ୍ଦ୍ରମଣି. ଜଗମୋହନ ।

ବିଣ (ସଂ. ସ୍ତବ୍ଧ; ଚକିତ)—୧ । ବିସ୍ମିତ; ଆଶ୍ଚର୍ଯ୍ୟାନ୍ୱିତ; ଆଚମ୍ବିତ—1. Astonished.
ଧୃତରାଷ୍ଟ୍ର ତା ଶୁଣି ହୋଇଲେ ଟାଟକା,
କହିଲେ ମନ ମୋର ଦୁର୍ଯ୍ୟୋଧନ ଏକା—କୃଷ୍ଣସିଂହ. ମହାଭାରତ, ବନ ।

| | | | | | | | | | | | | |
|---|---|---|---|---|---|---|---|---|---|---|---|---|
| ୧ ଜ | ଊ | ଋ,ୠ . ଌ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଞ | ଶ,ଷ | କ୍ଷ ଇଯ୍ | ଋଅ | ଢ଼ |
| ୨ ଈ | ଉ | ଋ | ଌ | ଐ | ଅନ୍ତଃସ୍ଥବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଅ୍ୟ | ଯ | ସ | ଙ୍ୟ ନ୍ଥ | ଓ | ଦ୍ |

ଆଚମ୍ବିତ, ঘাবরা २ । ଶଙ୍କାଯୁକ୍ତ; ଭୟବ୍ୟାକୁଳ; ତ୍ରସ୍ତ; ଅତଙ୍କିତ; ଘାବରା—
**अचंभित** 2. Frightened; alarmed
ତା ଶୁଣି ସେ ଭୟ ହୋଇଗଲେ ଟାଟକା
...—ବ୍ରଜ. ଦ. ...

ସ. ବି—ତାଡ଼କା (ଦେଖ)—Tārḍakā (See).

**ଟାଟକା ଝାଳ**—ଦେ. ବି—ହଠାତ୍ ଭୟତ୍ରସ୍ତ ବା ଶଙ୍କାଯୁକ୍ତ ହେବା
Tāṭakā jhāḷa ଲୋକଦେହରୁ ବୋହିଯିବା ଝାଳ—
Profuse perspiration appearing on the body of a frightened person.
ଟାଟକା ଝାଳେ ...—ବ୍ରଜ. ହୋଇଗଲେ, ଦ୍ୱ.

**ଟାଟକା ଲାଗିବା**—ଦେ. କ୍ରି—୧ । ମନରେ ବିସ୍ମୟ ଜାତ ହେବା—
Tāṭakā lāgiba 1. Astonishment.
घाबरा लागा २ । ଶଙ୍କାଯୁକ୍ତ ହେବା; ଚମକା ପଶିବା—
**अचंभा लगना** 2. Being frightened; alarm.
(ଯଥା—ଆଖି ଆଗରେ ମନୁଷ୍ୟଙ୍କ ବଣାଘାତ ଦେଖି ମୋତେ ଟାଟକା ଲାଗିଲା ।)

**ଟାଟକିକା**—ସ. ବି. ସ୍ତ୍ରୀ (ସ. ତଡ଼୍ ଧାତୁ=ତାଡ଼ନା କରିବା)—
Tāṭakikā ତାଡ଼କା ( ଦେଖ )
(ଟାଟକୀ—ଅନ୍ୟରୂପ) Tārḍakā (See).

**ଟାଟଙ୍କ**—ସ. ବି ( ତଟ୍ ଧାତୁ=ସାପ୍ତି ପାଇବା + କର୍ତ୍ତ୍ରି ଅଙ୍କ)—
Tāṭanka ତାଟଙ୍କ (ଦେଖ)—Tāṭaka (See).
କପୋଳ ମୁକୁତା ଜଳ ଟାଟଙ୍କ ବୋଲିଭାବା ଦେଖି ତୁଳିଛୁ ଅଛି ପୂର୍ବର ପୁରୁଷ ପକ୍ଷ ।
କବିସୂର୍ଯ୍ୟ. ସଙ୍ଗୀତ ।

**ଟାଟଙ୍କା**—ଦେ. ବି. ଓ ବିଣ—ଟାଟକା (ଦେଖ)
Tāṭankā Tāṭakā (See).

**ଟାଟ ଚଲା(ଲେ)ଇବା**—ଦେ. କ୍ରି—ବିବାହ ବ୍ରତାଦି ଉପଲକ୍ଷରେ ଜୋଇଁ-
Tāṭa chaḷā(le)iba ନିମନ୍ତ୍ରଣ ମଉଳାଳମନ୍ତ୍ରଣ ଆଦିର
(ଟାଟ ଗୁଲିବା—ଅନ୍ୟରୂପ) ଉପଢୌକନ ପ୍ରେରଣ କରିବା—
To send the trays containing presents to the intended parties ( e. g. bride's party, maternal uncle, son-in-law.)

**ଟାଟରା**—ପ୍ରାଦେ (ଯାଜପୁର) ବି—ବଡ଼ ଚିଙ୍ଗୁଡ଼ି ମାଛ—
Tāṭarā Big shrimps.

**ଟାଟା କଳ**—ଦେ. ବି—ଚଟ କଳ (ଦେଖ)
Tāṭā kaḷa Chaṭa kaḷa (See).

**ଟାଟି**—ଦେ. ବି ( ସ. ଅସ୍ତରଣ )—୧ । ଗୁମ୍ଫିସ୍; ବାଉଁଶ ପାତିଅରେ
Tāṭi ତୁଣ ପତଳା ଚଟେଇ ବା ବାଡ଼ା—
टाट; टाटी 1. Frail matting or screen of
टट्टी; टट्टर bamboo laths or palm leaves.
छई २ । ଶଗଡ଼ ଉପରେ ବନ୍ଧାଯିବା ଛପର—
छप्पर 2. A thatch or cover of a cart.

**ଟାଟିଆ**—ଦେ. ବି—(ଟୁକୁଭାଷା) (ସ. ତପ୍ତ; ତୁଳ. ଫା. ତସ୍ତଖ= Tāṭiā ଥାଳଅ )— ଧାତୁ ନିର୍ମିତ ଛୋଟ ଟିନା; କଟୋରା—
बाटी A metal basin; small sauce-boat
कटोरा metal cup.
ଚଳ ବକିଲେ ... ଭାଙ୍ଗିବା ...—ଉନ ।

**ଟାଟି କଟା**—ଦେ. ବିଣ—ଯେ ଟାଟ୍ଟଗାଡ଼ିର ପଛଆଡ଼ ଟାଟିରୁ ଅସ୍ପଷ୍ଟଭାବ
Tāṭi kaṭā କାଟି ଗାଡ଼ି ଉପରେ ଥିବା ଜିନିଷ ଚୋରି କରେ—One who steals from a thatched cart by cutting through the screen put behind the cart.

**ଟାଟି କଣ୍ଟା ଛଟା ହେବା**—ଦେ. କ୍ରି—୧ । ବସୁନ୍ଧରା, ମହାମାରୀ,
Tāṭi kanṭā chhaṭā hebā ବସନ୍ତ ଇତ୍ୟାଦି ସଙ୍କ୍ରାମକ ରୋଗର
ଟାଟି କଣ୍ଟା ପଡ଼ିଯିବା—ଅନ୍ୟରୂପ) ଅକ୍ରମଣରେ କୌଣସି ପରିବାରର ସମସ୍ତ ଲୋକ ମରିଯିବାରୁ ସେ ଘର ଜନଶୂନ୍ୟ ହୋଇ ପଡ଼ି ରହିବା—1. A family becoming extinct and the house becoming empty through cholera or such other depopulating visitation.
(ଯଥା—ଏ ବର୍ଷ ମଡ଼କରେ ଏକାବେଳକେ ତାର ଟାଟି କଣ୍ଟା ଛଟା ହୋଇଗଲା—ଅର୍ଥାତ୍ ତା ବଂଶର ସମସ୍ତେ ମରିଗଲେ ।)
୨ । ବସୁନ୍ଧରା, ବସନ୍ତଆଦି ଯୋଗୁଁ ଗ୍ରାମର ଅନେକ ଲୋକ ମରିଯିବାରୁ ଓ ଅନ୍ୟମାନେ ଗ୍ରାମ ଛାଡ଼ି ପଳାଇ ଯିବାରୁ ଗ୍ରାମ ଜନଶୂନ୍ୟ ହେବା—2. The state of a village becoming empty (on account of the death of some and removal of other inhabitants to safer places on account of a devastating scourge.

**ଟାଟି କବାଟ**—ଦେ. ବି—୧ । ଗରିବ ଲୋକଙ୍କ ଗୃହରେ କବାଟରୂପେ
Tāṭi kabāṭa ବ୍ୟବହୃତ ଟାଟି—1. Screens of bamboo laths serving as doors to the houses of poor people who cannot afford the luxury of having costly wooden doors.
୨ । ଗ୍ରାମର ବଡ଼ଲୋକ ଓ ଗରିବ ଲୋକ ସମସ୍ତଙ୍କ ଘରର ଦୁଆରମାନ (ବଡ଼ଲୋକଙ୍କ କବାଟ ଓ ଗରିବଙ୍କ ଟାଟି)—
2 The doors of all the villagers, rich and poor.
(ଯଥା—ସେ ଗ୍ରାମରେ ଝାଡ଼ାବାନ୍ତି ପ୍ରବଳ ହେବାରୁ ସନ୍ଧ୍ୟା ପୂର୍ବରୁ ଟାଟି କବାଟ ସବୁ ପଡ଼ିଯାଉଛି ।)
୩ । ଏକପ୍ରକାର ଶାରୀରିକ ବ୍ୟାୟାମମୂଳକ ଖେଳ—
3. A kind of out-door game involving physical exercise.
[ଦ୍ର—ଦୁଇପାଖ ପକ୍ଷରେ ଛଅ ଜଣ ଖେଳାଳୀଙ୍କ ଦ୍ୱାରା ଏ ଖେଳ ଖେଳାଯାଏ । ଡୁ ଡୁ ଖେଳ ପରି ଏଥିରେ ଖେଳାଳୀମାନେ ସମାନ

ସାଧାରଣ ଲେଖେ ଅପର ପୃଷ୍ଠାରେ ଦେଖ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳେ, ତେବେ ତାହା ଶବ୍ଦର ସ୍ଥାନରେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ବୃଥ' ନ ମିଳିଲେ 'ବୃଥା' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ୍' ଦେଖିବେ

ସଂଖ୍ୟାରେ ବିଭକ୍ତ ହୋଇଥାଆନ୍ତି । ଖେଳପଡ଼ିଆରେ ଉଭୟ ପକ୍ଷଙ୍କ ମଧ୍ୟରେ ଗୋଟିଏ ରେଖା ବା ଗାର କଟାଯାଇ ପ୍ରତ୍ୟେକ ପକ୍ଷର ସୀମା (ପାଳି) ନିର୍ଦ୍ଧାରଣ କରାଯାଏ । ଏହାପରେ ଏକ ପକ୍ଷର ଦୁଇଜଣ ଗାରଠାରୁ ପ୍ରାୟ ୧୫।୨୦ ହାତ ଦୂରରେ ପରସ୍ପର ହାତ ଧରାଧରି ହୋଇ ଗୋଟିଏ ବାଡ଼ ଦେଲା ଭଳି ଠିଆ ହୁଅନ୍ତି ଓ ତାଙ୍କ ପଛରେ ସନ୍ଧି ଜାଗାରେ ଜଣେ ଖେଳାଳି ଠିଆ ହୁଏ । ତହୁଁ ଅପର ପକ୍ଷର ଜଣେ ଗାରମୁଣ୍ଡରୁ "କୁଡୁ" 'କବଡ଼ିକବଡ଼ି' ଇତ୍ୟାଦି ଧ୍ୱନି ଏକା ନିଶ୍ୱାସରେ ଅନବଚ୍ଛିନ୍ନ ରୂପେ ଉଚ୍ଚାରଣ କରି ଦୂରବୋଲୁ ଦୁଇ ଜଣଙ୍କ ପଛରେ ଠିଆ ହୋଇଥିବା ଖେଳାଳିକୁ ଛୁଇଁବା ପାଇଁ ବାଡ଼ ଭଳି ଠିଆ ହୋଇଥିବା ଦୁଇ ଲୋକଙ୍କ ଦୁଇପାଖରେ ଘାଉଁର ଖାଇ ବୁଲେ ଓ ପଛଆଡ଼େ ଥିବା ଖେଳାଳି ମଧ୍ୟ ତାକୁ ଧରି ନ ଦେବା ପାଇଁ ବାଡ଼ ହୋଇ ଠିଆ ହୋଇଥିବା ଖେଳାଳି ଦୁହିଙ୍କ ଚତୁଃପାର୍ଶ୍ୱରେ ବାଆଁ ଖାଡ଼ିଆ ଦେଇ ବୁଲୁଥାଏ । ବିପକ୍ଷ ପକ୍ଷର ଖେଳାଳି ଯେବେ ଏକା ନିଶ୍ୱାସରେ ପଛପଟର ଖେଳାଳିକୁ ଛୁଇଁ ଦିଏ, ତାହାହେଲେ ସେଗୋଟିକୁ ଖେଳାଳିଟି 'ମରେ' ଏବଂ ଆଉ ଜଣେ ତା ସ୍ଥାନ ଅଧିକାର କରେ ଓ ପୁଣି ବିପକ୍ଷ ପକ୍ଷର ଆଉ ଜଣେ ଖେଳାଳି ଗାରକୁ ଟପି ଏକା ନିଶ୍ୱାସରେ ପଛବାଲାକୁ ଛୁଇଁବାକୁ ଯାଏ । ଏହିପରି ସେ ବାଡ଼ର ସମସ୍ତେ ମରିଗଲେ ପୁନର୍ବାର ପାଳି ପରିବର୍ତ୍ତିତ ହୁଏ ଏବଂ ସେମାନଙ୍କ ଉପରେ କୋଣ୍ଡ ହୁଏ । ଏହିପରି ଅପର ପାଳିର ଖେଳାଳି ଖେଳନ୍ତି । ପାଳିକୁ ଟପି ଯାଇଥିବା ଆକ୍ରମଣକାରୀ ଖେଳାଳି ଏକାନିଶ୍ୱାସରେ ସ୍ୱର ଧରି ଦୌଡ଼ାଇବା ବେଳେ ଯଦି କୌଣସି କ୍ରମେ ବିପକ୍ଷ ପାଳିରେ ତାହାର ଧ୍ୱନି ବନ୍ଦ ହୋଇଯାଏ ଏବଂ ଏହି ଅବସ୍ଥାରେ ବିପକ୍ଷ ଦଳର କେହି ତାକୁ ଛୁଇଁ ଦିଏ, ତେବେ ସେ 'ମଲା' ବୋଲି ଧରାଯାଏ । ]

**ଟାଟି କବାଟ ଉଠିବା**—ଦେ. କ୍ରି. ( କୌଣସି ବ୍ୟକ୍ତିର ) ସର୍ବସ୍ୱ ନଷ୍ଟ **Tāṭi kabāṭa uṭhibā** ହେବା—Ruination of a person.

ଏଥର ତାର ଟାଟି କବାଟ ଉଠିଗଲା । କୁନ୍ତଳାକୁମାରୀ. ଜୟନ୍ତୀ ।

**ଟାଟି କବାଟ ପଡ଼ିଯିବା**—ଦେ. କ୍ରି—ଗ୍ରାମରେ ଓଲାଉଠା, ମହାମାରୀ, **Tāṭi kabāṭa paṛijibā** ବସନ୍ତ ଆଦି କୌଣସି ମାରାତ୍ମକ (ଟାଟି କବାଟ ପଡ଼ିଯିବା—ଅନ୍ୟରୂପ) ଭୟ ଉପସ୍ଥିତ ହେବା ସମୟରେ ସନ୍ଧ୍ୟାବେଳକୁ ଗ୍ରାମରେ ଲୋକେ ସେମାନଙ୍କ ଦାଣ୍ଡ ଦୁଆରମାନ ବନ୍ଦ କରି ଘର ଭିତରେ ରହିବା; ସନ୍ଧ୍ୟା ପରେ ଗ୍ରାମ ନିସ୍ତବ୍ଧ ହେବା—(a phrase) The doors of all the villagers being closed after nightfall in times of terrible visitations (e.g. cholera, plague, small pox); the state of the whole vilage becoming still and silent after nightfall during times of great calamities; when villagers do not stir out and shut themselves inside their houses through fear.

( ଯଥା —ହଇଜା ଲାଗିବା ଦିନରୁ ବେଲ ନ ବୁଡ଼ୁଣୁ ସେ ଗାଁଅରେ ଟାଟି କବାଟ ପଡ଼ି ଯାଉଛି ।)

**ଟାଟି କିଲା**—ଦେ. ବି—୧ । ଯେଉଁ କିଳା ବା ଧଡ଼ାଦ୍ୱାରା ଘରର ଦୁଆର-**Tāṭi kiḷā** ମୁହଁର ଟାଟିକୁ ଘରର ଭିତରଆଡ଼ୁ ବନ୍ଦ କରାଯାଏ—

ଟାଟିଡଡ଼ା } ଅନ୍ୟରୂପ
ଟାଟିଧଡ଼ା }

1. A bar attached to a 'Tāṭi' for closing it by chaining it with the 'Tāṭi'; a pole which fastens the Tāṭi tight in a doorless house.

୨ । ଘରର ବା ବାଡ଼ର କବାଟ ରୂପେ ବ୍ୟବହୃତ ଟାଟିକୁ ବନ୍ଦ କରିବା—2. The act of fastening up the Tāṭi used as a door to a house or garden.

**ଟାଟିକିଲା ମାଡ଼**—ଦେ. ବି—୧ । ଟାଟିର କିଳକ ଦଣ୍ଡ ବା ଧଡ଼ାଦ୍ୱାରା **Tāṭikiḷā māṛa** ପ୍ରହାର—1. Cudgelling with the bar of a Tāṭi.

୨ । ଘରର ଟାଟିକୁ କିଳି ଦେଇ କୌଣସି ମନୁଷ୍ୟକୁ ଘର ମଧ୍ୟରେ ପୂରାଇ ମାଡ଼ ମାରିବା—2. Beating a person inside a house by shutting the Tāṭi door (so that no outsider can intertere in the beating.)

ଏ ଘରେ ମୁଁ ରହିବି ନାହିଁ
ଖଣ୍ଡିଏ ପଥର ଚୋଇବ ନାହିଁ ।
ଟାଟିକିଲା ମାଡ ସହିବ ନାହିଁ । ଗୀତ ।

[ଦ୍ର—ଆମ ଦେଶର ଇତର ଲୋକମାନଙ୍କର ନିଜ ସ୍ତ୍ରୀଙ୍କୁ ପ୍ରହାର କରିବା ଘଟନାରେ ସ୍ତ୍ରୀମାନଙ୍କର ପ୍ରକୃତିସୂଚକ ଏ ଗୀତ ବୋଲା ଯାଏ । ଟାଟିକିଲା ମାଡ଼ର ଉଭୟ ଅର୍ଥ ସେ ସ୍ଥଳରେ ଖଟେ । ଟାଟିର କିଳାଦ୍ୱାରା ମାଡ଼ ଦିଆଯାଏ ଓ ଟାଟିକୁ ଘର ଭିତରଆଡ଼ୁ କିଳି ଦେଇ ସ୍ତ୍ରୀକୁ ମାଡ଼ ଦିଆଯାଏ, ଯେପରିକି ମାଡ଼ ଖାଉଥିବା ସ୍ତ୍ରୀ ମାଡ଼ ବିକଳରେ ଡାକ ପକାଇଲେ ଡାକ ଶୁଣି ବାହାରରୁ କେହି ଲୋକ ସେ ଘରଭିତରକୁ ଆସି ପାରିବେ ନାହିଁ ଓ ମାଡ଼ ଖାଉଥିବା ସ୍ତ୍ରୀକୁ ରକ୍ଷା କରି ପାରିବେ ନାହିଁ । ଦୁଇ ଅର୍ଥରେ ଟାଟିକିଲା ମାଡ଼ର ବିଷମ ପରିଣାମ ଆମ ଦେଶରେ ବାଉରି, କଣ୍ଡରା, ପାଣ, ହାଡ଼ି ଆଦିଙ୍କ ପରିବାରରେ ବିରଳ ନୁହେଁ । ]

**ଟାଟି ଖଟା(ଟେ)ଇବା**—ଦେ. କ୍ରି.—୧ । (ଟାଟି ଖଟିବାର ଣିଜନ୍ତ )—**Tāṭi khaṭā(ṭe)ibā** ଅନ୍ୟ ଲୋକକୁ ଅତି ହେୟ ପାଇଖାନା (ବାଡ଼ିଟାଟି ଖଟାଇବା—ଅନ୍ୟରୂପ) ସଫା କରିବା କାର୍ଯ୍ୟରେ ଲଗାଇବା—1. To engage or cause a person to cleanse one's latrine (i. e. to do the most menial work.)

୨ । ଟାଟିକୁ କିଳାଦ୍ୱାରା ବାନ୍ଧି ଘରକୁ ବନ୍ଦ କରିବା—2. To shut upthe Tāṭi door by fastening the bar.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଗ୍ଗ,ଘ | ଜ୍ଞ | ଇପ୍ସ | ଉଅ | ଯ |
| ୨ | ଈ | ଊ | ୠ | ୡ | ପୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ. | ଯ | ସ | ଗ୍ୟ | ଇଅ | ଈ | ନ୍ |

**ଟାଟି ଖଟିବା**—ଦେ. କ୍ରି.—(ମେହେନ୍ତରାଣୀ) ପାଇଖାନା ସଫା କରିବା; **Tāṭi khaṭibā** ପାଇଖାନା କମାଇବା—To cleanse a [ଟାଟି କମା(ମେ)ଇବା]—ଅନ୍ୟରୂପ) latrine.

**ଟାଟି ଖୁଣ୍ଟ**—ଦେ. ବି.—୧ । ଘର ଦୁଆରମୁହଁରେ ଲାଗିଥିବା ଟାଟିକୁ ବନ୍ଦ **Tāṭi khunṭa** କରିବା ସମୟରେ ତାହାକୁ ଘର ଭିତରେ ପୋତା (ଟାଟିଖୁଣ୍ଟି—ଅନ୍ୟରୂପ) ହୋଇଥିବା ଯେଉଁ ଖୁଣ୍ଟରେ ଥିବା ଛିଦ୍ରିଅ ଦ୍ୱାର୍ ଅଟକାଇ କରି ରଖାଯାଏ—1. A peg for making the Tāṭi door of a house fast.
୨ । ବଗିଚା ଇତ୍ୟାଦିକୁ ଯିବାର ମେଲା ବାଟରେ ଲାଗିଥିବା ଟାଟିକୁ ଟେକି ଧରିବାପାଇଁ ଏବଂ ଟାଟିକୁ ବନ୍ଦ କରିବା ବେଳେ ଖିଲ୍ଲ ବା ଦଉଡ଼ିଦ୍ୱାରା ତାକୁ ଗୋଟିଏ ଖୁଣ୍ଟରେ ବାନ୍ଧି ରଖିବା ପାଇଁ ମେଲାବାଟର ଉଭୟ ପାର୍ଶ୍ୱରେ ଯେଉଁ ଦୁଇ ଗୋଟି ଖୁଣ୍ଟ ପୋତା ଯାଇଥାଏ—2. Two low posts fixed to the ground on both sides of an opening, one to sustain the Tāṭi door when open and the other to fasten it, when closed.

**ଟାଟି ଗାଡ଼ି**—ଦେ. ବି.—ଛପର ଗାଡ଼ି; ଯେଉଁ ଗାଡ଼ିର ଉପର ଭାଗ ଟାଟି **Tāṭi gāṛdi** ଦ୍ୱାରା ଅଚ୍ଛାଦିତ ହୋଇଥାଏ—A cart with a ছপরগাড়ি; ছেকড়াগাড়ি thatched cover.
छपरगाड़ी
(ଟାଟଗାଡ଼ି; ଟାଟି ସଗଡ଼—ଅନ୍ୟରୂପ)

**ଟାଟି ଘର**—ଦେ. ବି—ଟାଟିରେ ନିର୍ମିତ ଅସ୍ଥାୟୀ ଘର; ଯେଉଁ ଘରର **Tāṭi ghara** ଛାଳ ଓ କାନ୍ଥ ଟାଟିରେ ହୋଇଥାଏ—টাটীঘর A temporary shed built with Tāṭi or टट्टीघर frail mattings.

**ଟାଟି ଦେବା**—ଦେ. କ୍ରି—ଟାଟିକୁ ବନ୍ଦ କରି ଦ୍ୱାରରୁଦ୍ଧ କରିବା—**Tāṭi debā** To close an entrance by shutting the bamboo screen thereof; to fasten the Tāṭi used as a door.
ଟାଟି ଲାଗିବା, ଟାଟି ଅଟକାଇବା, ଟାଟି ପକାଇବା—ଅନ୍ୟରୂପ

**ଟାଟିପିଟା**—ଗ୍ରା. (ଇତର) ବିଣ.—(ଲକ୍ଷଣାର୍ଥ) (ଯେଉଁ ଲୋକ ବ୍ୟଭିଚାରାର୍ଥ **Tāṭiphiṭā** ପରଘରର ଟାଟି ପିଟାଇ ପଶେ); ଯେଉଁ ପୁରୁଷ ବ୍ୟଭିଚାରରେ ଲିପ୍ତ ଥାଏ; ବ୍ୟଭିଚାରଲିପ୍ତ—Adulterous (male).

**ଟାଟୁଆ**—ଦେ. ବି. ପୁଂ—୧ । ଯେଉଁ ଭୃତ୍ୟ ଟାଟ ବା ଶୃଙ୍ଗାରରେ **Tāṭuā** ସଜ୍ଜିତ ଉପଢୌକନ ବା ଜିନିଷ ବହନକରେ—(ଟାଟୋଇ—ସ୍ତ୍ରୀ) 1. A servant who carries presents set in trays.
୨ । ରାଜା ବା ଦେବତାଙ୍କର ଯେଉଁ ସେବକ ଭୋଗ ଲାଗିବା ପାଇଁ ଅନ୍ନଭୋଗ ବା ଶୀତଳ ସାମଗ୍ରୀମାନ (ଯଥା—ଛେନାଅ ଖଇ, ଚିଡ଼ା ଇତ୍ୟାଦି) ଟାଟରେ ସଜାଇ ନେଇ ପୂଜକ ଜିମା ଦିଏ)—2. A servant whose duty is to make over the tray containing the sweets to the priest for being offered to a Deity.

**ଟାଟେଣି**—ଦେ. ବି.—ଟାଡ଼େଣି (ଦେଖ)
**Tāṭeṇi** Tārdeṇi (See)

**ଟା ଠାରୁଁ**—ଗ୍ରା. ସର୍ବନାମ.—(୫ମୀ ବିଭକ୍ତି; ଅନାଦରାର୍ଥ; ୧ବ.)—**Tā ṭhaun̐** ୧ । ତାହାଠାରୁ; ତାହା ନିକଟରୁ—1. From him; her or it; from that.
ଟାଠାରୁଁ, ଟାଠାରୁ; ଟାଠୁଁ; ଟାଠୋଉଁ, ଟାଠୌଁ—ଅନ୍ୟରୂପ
୨ । ତାହା ଅପେକ୍ଷା—2 Than him; than that.

[ବ୍ୟୁ—ବିଭକ୍ତି ଭେଦରେ 'ଟା' ଶବ୍ଦ ବିଭକ୍ତି ଚିହ୍ନଯୁକ୍ତ ହୋଇ ଦ୍ୱିତୀୟା, ତୃତୀୟା ଇତ୍ୟାଦିରେ ଏହାର ନିମ୍ନଲିଖିତ ରୂପମାନ ହୁଏ ଯଥା—୨ୟା=ଟାକୁ,ଟାଠାକୁ; ଟାଠିକି; ଟାଠିକୁ। ୩ୟା=ତାହାର ଟା ଦେଇ; ଟା ଦେଇ; ଟା ଦେଇ; ଟା ଦେଇକି; ୬ଷ୍ଠୀ=ଟାର ୭ମୀ=ଟାଠି; ଟାଠି; ଟାଠେଁ; ଟାଠେଇଁ; ଟାଠାଇଁ । 'ଟା'ର ଅନ୍ୟରୂପ 'ଟାଅ' ଓ 'ଟାହା' ସଙ୍ଗେ ଉପରେଲ୍ଲ ୨ୟା ୩ୟା, ୪ର୍ଥୀ, ୫ମୀ, ୬ଷ୍ଠୀ, ଓ ୭ମୀ ବିଭକ୍ତିର ଚିହ୍ନମାନ ମଧ୍ୟ ଲଗାଯାଏ ।]

**ଟାଡ଼ପା ପଡ଼ିବା**—ପ୍ରାଦେ. ( ଗଞ୍ଜାମ ) କ୍ରି—(କାନ) ଅତଡ଼ା ପଡ଼ିବା—**Tārd-pā parḍibā** ( the ears ) To be stunned

**ଟାଡ଼ବନ୍ଧ**—ପ୍ରାଦେ ( ସିଂହଭୂମ ) ବି—ଛୋଟ ବନ୍ଧ—**Tārd-bandha** Small embankment or ridge.

**ଟାଡ଼**—ସ. ବି. ( ତଡ଼୍ ଧାତୁ=ଦୁଃଖ ଦେବା; ଅଘାତ କରିବା+ଅ )—**Tārda** ୧ । ( +ଗ୍ରବ. ଅ ) ତାଡ଼ନ ( ଦେଖ )
1 Tārdana ( See )
୨ । ଶବ୍ଦ; ଧ୍ୱନି ( ହି. ଶବ୍ଦସାଗର )—2. Sound.
୩ । ତୃଣାଦିର ମୁଷ୍ଟିପରିମେୟ ଗୁଚ୍ଛ; ବେଢ଼ା—3. A handful of grass; a sheaf.
୪ । ବାହୁରେ ପିନ୍ଧା ଯିବା ବଳୟାକୃତି ଅଳଙ୍କାରବିଶେଷ ( ହି. ଶବ୍ଦସାଗର )—4. Armlet.

[ ବ୍ୟୁ—ହି. ଶବ୍ଦସାଗର ଏହାକୁ ସଂସ୍କୃତ ଶବ୍ଦ ବୋଲି ଲେଖି ଅଛନ୍ତି । ଯୋଗେଶଚନ୍ଦ୍ର ଏହାକୁ ସଂ ତାଟଙ୍କର ଅପଭ୍ରଂଶ ବୋଲି କହନ୍ତି । ଅପ୍ଟେ ସଂସ୍କୃତ ତାଡ଼ ଶବ୍ଦର ଏ ଅର୍ଥ ଦେଇ ନାହାନ୍ତି । (ବ. ତାଡ଼, ତାଡ଼ବାଲା; ହି. ଟାଡ଼ ।) ମନଅର୍ ଉଇଲିଅମ୍ସ ତାଡ଼ୀ ଶବ୍ଦର ଅର୍ଥ ଅଳଙ୍କାରବିଶେଷ ଲେଖି ଅଛନ୍ତି । ]

ସାଧାରଣ ଭେବେ ଅପର ପୃଷ୍ଠାରେ ଦେଖ ୧ ଷ୍ଟେଟ ଅକ୍ଷର ଓ ମାତ୍ରା ଏବ ୨ ଷ୍ଟେଟ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ଦେଖା କରନ୍ତୁ ନାହିଁ । ଅତଏବ ୧ ବା ୨ ଷ୍ଟେଟ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ତେଣୁ କେ ପାଇ ନଥାଏନେ ଅକ୍ଷର ବଦଳରେ ୨ ବା ୧ ଷ୍ଟେଟ ବର୍ଣ୍ଣ ବା ମାତ୍ରାଯୁକ୍ତ କେ ଖୋଜିବାକୁ ହେବ । ଯଥା— 'ଗାଠ' ନ ମିଳିଲେ 'ଗାଣ୍ଠ' ଖୋଜିବେ; 'କୃତ' ନ ମିଳିଲେ 'କୃନ୍ତ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଦ୍ଧୋ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲକତ' ନ ପାଇଲେ 'ଅଲକ୍ତକ' ଦେଖିବେ

୫ । ପର୍ବତ—5 Mountain.

୬ । ହେନ୍ତାଳ ( ଗଛ ) ( ଦେଖ ) (କ୍ଳୀବଲିଙ୍ଗ)—
6. Hentāla ( See )

୭ । ତମାଳ ( ଗଛ ) ( ଦେଖ ) ( କ୍ଳୀବଲିଙ୍ଗ )—
7. Tamāla ( See )

୮ । ଏକପ୍ରକାର ତାଳ ଗଛ ( ପ୍ରକୃତିବାଦ )—
8. A kind of palm tree.

ତାଡ଼ ଦେ. ବି. ( ସଂ. ତଡ଼୍ ଧାତୁ )—୧ । ମଞ୍ଜି ଗଜା ହେଲା ପରେ
**चारा** ଯେଉଁ କ୍ଷୁଦ୍ର ବୃକ୍ଷମାନଙ୍କୁ ଏକ ସ୍ଥାନରୁ ଉପାଡ଼ି ନେଇ
**पौदा** ଅନ୍ୟତ୍ର ଲଗାଯାଏ; କଲମି କରି ଯାଇଥିବା କ୍ଷୁଦ୍ର ଗଛ;
ବୃକ୍ଷ—1. Seedling for transplantation or graft.

୨ । ଯେଉଁ ମାଟି ହାଣ୍ଡିରେ ବୃକ୍ଷ ଉଠିବା ପାଇଁ ମଞ୍ଜି ଲଗା ଯାଏ; ତେଲୁଣି; ଘଲମ—
2. A shallow earthen pan in which seeds are sown for transplantation purpose.

୩ । ନଉଡ଼ିଠାରୁ କ୍ଷୁଦ୍ର ଓ ଅଟକାଠାରୁ ବଡ଼ ହାଣ୍ଡି; ତାଡ଼ସ୍ପ—
3. A medium-sized earthen pot.

୪ । ଶଗଡ଼ ବା ହଳରେ ଲାଗିଥିବା ୨ଟି ବଳଦ ପରସ୍ପର ଟଣାଟଣି ବା ଠେଲାଠେଲି ହେବା ଅବସ୍ଥା—
4. The state of the two bullocks yoked to a cart or plough straining at the yoke against each other.

ପ୍ରାଦେ. ( ବସ୍ତର ) ବି. ( ସଂ. ତାଳ ) ( ଭୁଲ. ହି. ଏହି ଅର୍ଥରେ ଏହି ଶବ୍ଦ )—ତାଳ—Palmyra tree.

**ତାଡ଼ ଉଠା(ଠୋ)ଇବା**—ଦେ. କ୍ରି—ରୋପଣାର୍ଥେ କୌଣସି ମଞ୍ଜିରୁ ପୋତି ସେଥିରୁ ବୃକ୍ଷ ଗଛ ଉଠାଇବା—
Tārda uthā(tho)ibā To succeed in rearing seedlings from seeds.
**चारा उठान**
**पौधा उगाना**
( ତାଡ଼ ଉଠାଇବା—ଅନ୍ୟରୂପ )

**ତାଡ଼କ**—ସଂ. ବିଣ. ପୁଂ. ( ତଡ଼୍ ଧାତୁ ଣିଚ୍; ତାଡ଼ି ଧାତୁ + କର୍ତ୍ତୃ. ଅକ )—ଯେଉଁ ବ୍ୟକ୍ତି ତାଡ଼ନ କରେ—
Tārdaka Punishing; rebuking.
( ତାଡ଼କା—ସ୍ତ୍ରୀ )

**ତାଡ଼କା**—ସଂ. ବି. ସ୍ତ୍ରୀ ( ତାଡ଼ି ଧାତୁ + କର୍ତ୍ତୃ. ଅକ + ସ୍ତ୍ରୀ. ଆ )—
Tārdakā ରାମାୟଣବର୍ଣ୍ଣିତ ଏକ ରାକ୍ଷସୀ, ଯାହାକୁ ରାମଚନ୍ଦ୍ର ପ୍ରଥମେ ବିଶ୍ୱାମିତ୍ରଙ୍କ ଯାଗଭୂମିରେ ବଧ କରିଥିଲେ—The name of a demoness described in the Rāmāyana who was killed by Rāma in the sacrificial area of sage Biswāmitra.
ତାଡ଼କାଯୁଗ, ତାଟକା, ତାଟକା, ତାଟବକା, ତାଡ଼କା } ଅନ୍ୟରୂପ

[ ଦ୍ର—ଏ ସୁକେତୁ ନାମକ ଯକ୍ଷର କନ୍ୟା ଓ ସୁନ୍ଦର ପତ୍ନୀ । ସୁକେତୁ ତପସ୍ୟାଦ୍ୱାରା ବ୍ରହ୍ମାଙ୍କଠାରୁ ବର ଲାଭ କରି ସେହି ବରର ଫଳରେ ଏ କନ୍ୟାକୁ ପାଇଥିଲା । ଏହାଠାରେ ସହସ୍ର ହସ୍ତୀଙ୍କ ବଳ ଥିଲା । ଅଗସ୍ତ୍ୟ ଋଷି କ୍ରୁଦ୍ଧ ହୋଇ ସୁନ୍ଦକୁ ମାରି ପକାଇବାରୁ ତାଡ଼କା ଅଗସ୍ତ୍ୟଙ୍କୁ ଖାଇବାକୁ ଗୋଡ଼ାଇଲା । ଅଗସ୍ତ୍ୟଙ୍କ ଅଭିଶାପରେ ଏ ଓ ଏହାର ପୁତ୍ର ମାରୀଚ ରାକ୍ଷସତ୍ୱ ପ୍ରାପ୍ତ ହେଲେ । ସେହି ଦିନ ଠାରୁ ଏ ଦୁହେଁ ଅଗସ୍ତ୍ୟଙ୍କ ତପୋବନକୁ ନାଶ କରି ସେ ଅଞ୍ଚଳ ପ୍ରାଣିଶୂନ୍ୟ କଲେ । ବିଶ୍ୱାମିତ୍ର ଏ ସମାଚାର ଦଶରଥଙ୍କୁ ଜଣାଇ ରାମଚନ୍ଦ୍ରଙ୍କୁ ସଙ୍ଗେ ଆଣି ତାଡ଼କାକୁ ବଧ କରାଇଲେ ଓ ତାଡ଼କା ରାକ୍ଷସତ୍ୱରୁ ମୁକ୍ତି ଲାଭ କଲା । ]

**ତାଡ଼କା ଫଳ**—ସଂ. ବି—ବଡ଼ ଅଳାଇଚ ( ହି. ଶବ୍ଦସାଗର )—
Tārdakā phala Cardamom.

**ତାଡ଼କାୟନ**—ସଂ. ବି—ବିଶ୍ୱାମିତ୍ରଙ୍କ ଏକ ପୁତ୍ର ( ହି. ଶବ୍ଦସାଗର )—
Tārdakāyana Name of a son of Biswāmitra.

**ତାଡ଼କାରି**—ସଂ. ବି. ( ତାଡ଼କା + ଅରି; ୬ଷ୍ଠୀ ତତ୍ )—ରାମଚନ୍ଦ୍ର—
Tārdakāri Rāmachandra.

**ତାଡ଼କେୟ**—ସଂ. ବି. ପୁଂ. ( ତାଡ଼କା + ଅପତ୍ୟାର୍ଥେ. ଏୟ )—ତାଡ଼କା
Tārdakeya ରାକ୍ଷସୀର ପୁତ୍ର ମାରୀଚ—Māricha (a demon), the son of Tārdakā.

**ତାଡ଼କେଶ୍ୱର**—ଦେ. ବି—ତାରକେଶ୍ୱର ( ଦେଖ )
Tārdakeśwara Tārakeśwara ( See )
( ତାଡ଼କେଶର—ଅନ୍ୟରୂପ )

**ତାଡ଼ ଗଛ**—ଦେ. ବି—୧ । ତାଡ଼ ପ୍ରକ୍ରିୟାଦ୍ୱାରା ଉତ୍ପାଦିତ ଗଛ—
Tārda gachha 1. Trees raised from seedlings.

୨ । ଯେଉଁ ଗଛର ମଞ୍ଜିରୁ ତାଡ଼ ପକାଇ ନୂଆ ଗଛ ଜନ୍ମାନ୍ତି—
2 The trees, seeds from which produce well-grown and fruitful trees.

[ ଦ୍ର—ଅତି ପାକଳ ବା ଭେଙ୍ଗା ସୁଫଳନ୍ତି ନଡ଼ିଆ ଓ ତାଳ ଆଦି ଗଛର ଫଳରୁ ତାଡ଼ ପାଇଁ ମଞ୍ଜି ରଖାଯାଏ । ମାଛ ଗୁଆର ଅଳ୍ପ ବୟସ୍କ ବା କାଙ୍ଗର ଗଛର ଫଳରୁ ମଞ୍ଜି ରଖାଯାଏ । ]

**ତାଡ଼ ଗୁଡ଼ି**—ପ୍ରାଦେ. ( ସ୍ୱେର ) ବି. (ଭୁଲ. ହି. ତାଡ଼ = ତାଳ + ଗୁଡ଼ି = ମଜ୍ଜା )—ତାଳ ସଜ ( ଦେଖ )
Tārda gudi Tāla saja ( See )

**ତାଡ଼ଘ**—ସଂ. ବି—ବେତ ବା କୋରଡ଼ା ମାରିବା ବାଲା (ହି. ଶବ୍ଦସାଗର)—
Tārdagha A person whose duty is to administer whipping.

**ତାଡ଼ ଘାତ**—ସଂ. ତ—ହାତୁଡ଼ିରେ ପିଟି କରି କାମ କରିବାବାଲା ( ହି. ଶବ୍ଦସାଗର )—A person who works by hammering.
Tārda ghāta

**ତାଡ଼ଙ୍କ**—ସଂ. ବି. (ତଡ଼୍ ଧାତୁ = ଦୀପ୍ତି ପାଇବା + କର୍ତ୍ତୃବାଚ୍ୟେ, ଅଙ୍କ;
Tārdanka ଯାହା ଶରୀରରେ ଦୀପ୍ତି ପାଏ)—୧ । ତାଟଙ୍କ; କର୍ଣ୍ଣ-

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଠ | ଓ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଏ | ଭୃଅ | ଘ |
| ୨ | ଛ | ଉ | ରୁ | ଲୁ | ସ୍ମ | ଅକାରାନ୍ତବର୍ଣ୍ଣ ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | | ଞ୍ୟ | ଘ | ଯ | ତଁ୍ୟ | ଇଅ | ଓ | ୯ |

କାନ ତଡ଼କା ଭୂଷଣ; କାନତଡ଼କା—1. A kind of flat-
**तरकी** shaped earring.
୨ । ତାଡ଼; ବାହୁବଳୟ—2. Armlet.

ତାଡ଼ ଜମା(ମେ)ଇବା—ଦେ କ୍ରି.—କୌଣସି ମଞ୍ଜିକୁ ତାଡ଼ ବା
Tārda jamā(me)ibā ଖେପଣଯୋଗ୍ୟ ଗଛ ଉଠାଇବା
ଚାରା ଜମାନ ଉଦ୍ଦେଶ୍ୟରେ ମଞ୍ଜିକୁ ମାଟିରେ ପୋତିବା—
**पौंदा जमाना** To sow seeds in the ground for the purpose of raising seedlings.
[ଦ୍ର—ନଡ଼ିଆ, ଗୁଆ ଆଦିର ମଞ୍ଜିକୁ ପ୍ରଥମେ ଭୂଇଁରେ ପୋତିଲେ ସେଥିରୁ ଗଛ ବାହାରେ । ଗଛମାନ ଟିକିଏ ବଢ଼ିଗଲେ ତାହା ଅନ୍ୟତ୍ର ରୋପିଦିଅନ୍ତି । ନଡ଼ିଆ, ଗୁଆ, ପୁନ୍ନାଗ ଆଦିର ଛୋଟ ଗଛକୁ 'ତାଡ଼' ଓ କୋବି ଆଦିର ଗଛକୁ ଗଛ କୁହାଯାଏ; ଧାନର ଏପରି ଗଛକୁ ତଳି ବୋଲାଯାଏ ।]

ତାଡ଼ଣ—ଗ୍ରା. ବି. (ସଂ. ତାଡ଼ନ)—୧ । ତାଡ଼ନ—
Tārdana 1. Act of punishing or rebuking.
୨ । ସାବଳ; ଶସ୍ତ୍ରବିଶେଷ; ଯାହାଦ୍ୱାରା ବୃକ୍ଷ ଆଦି ତଡ଼ାଯାଏ—2. A crowbar.
୩ । ତାଡ଼ିବା—3. Act of uprooting.

ତାଡ଼ଣ ମାଡ଼ଣ—ଗ୍ରା. ବି.—(ସଂ. ତାଡ଼ନ ଓ ମର୍ଦ୍ଦନରୁ)—
Tārdana mārdana ୧ । କୁମ୍ଭାରମାନେ ପାତ୍ର ଗଢ଼ିବା ପାଇଁ ମାଟିକୁ ଦଳାଦଳ କା ଚକଟା ଚକଟ କରିବା—
1. Kneading of clay for preparing pots.
୨ । ଗାଳି ଓ ମାଡ଼—2. Rebuking and thrashing

ତାଡ଼ନ—ସଂ. ବି. (ସଂ. ତଡ଼୍ ଧାତୁ ଣିଚ୍‌, ତାଡ଼ି ଧାତୁ+ଭାବ. ଅନ)—
Tārdana ୧ । ଅଘାତ; ପ୍ରହାର—1. Striking; beating.
୨ । ଦଣ୍ଡ—2. Punishment.
୩ । ବେତ୍ରାଘାତ; କଶାଘାତ—3. Whipping.
୪ । ଶାସନ—4. Swaying; ruling over another.
୫ । ଗାଳିଦେବା; ଭର୍ତ୍ସନା; ତର୍ଜନ—
5. Rebuking; reproof.
୬ । ଦଣ୍ଡ ଦେବା—6. Punishing.
୭ । ଉତ୍ପୀଡ଼ନ—7. Oppression; persecution.
୮ । ତଡ଼ିଦେବା—8. Driving away.
୯ । ଭୟ ଦେଖାଇବା; ଧମକାଇବା, ଧମ୍‌କାଇବା—
9. Threatening.
୧୦ । (ଗଣିତ) ଗୁଣନ—
10 (mathematics) Multiplication.
୧୧ । ମନ୍ତ୍ରର ବର୍ଣ୍ଣମାନଙ୍କୁ ଚନ୍ଦନରେ ଲେଖି ବାୟୁବୀଜ ପାଠ କରି କୁଶ ମନ୍ତ୍ର ଉପରେ ଜଳ ଛାଟିବା କର୍ମ (ତୃ. ଶାରଦାତିଳକ)
11. The act of spraying water over a mystic formula by reciting a certain formula after writing out the letters of the former with sandal paste.

ତାଡ଼ନା—ସଂ. ବି. ସ୍ତ୍ରୀ.—(ତାଡ଼ନ+ସ୍ତ୍ରୀ. ଆ)—୧ । ଭର୍ତ୍ସନା; ଗାଳି—
Tārdanā 1. Rebuke; reproof; reprimand.
୨ । ପ୍ରହାର—2. Striking; beating; chastisement.
୩ । ଉତ୍ପୀଡ଼ନ—3 Oppression.
୪ । ଶାସନ—4. Rule; sway; discipline.
୫ । ହାଙ୍କିବା; ପେଲା; ତଡ଼ା; ଧକ୍କା—
5. Driving; push; urging forward.
୬ । ଭୟପ୍ରଦର୍ଶନ—6. Threat.

ତାଡ଼ନୀ—ସଂ. ବି. ସ୍ତ୍ରୀ.—(ତାଡ଼ି ଧାତୁ+କରଣ. ଅନ+ସ୍ତ୍ରୀ. ଈ)+
Tārdani ଚାବୁକ; ଛାଟି; କଶା; କୋରଡ଼ା—Whip.

ତାଡ଼ନୀୟ—ସଂ. ବିଣ.—ପୁଂ (ତାଡ଼ି ଧାତୁ+କର୍ମ. ଅନୀୟ)—
Tārdaniya ୧ । ମାଡ଼ଖାଇବାର ଉପଯୁକ୍ତ (ବ୍ୟକ୍ତି)—
(ତାଡ଼ନୀୟା—ସ୍ତ୍ରୀ) 1. Fit to be whipped or beaten.
ସଂ. ବି. ପୁଂ—ତାଡ଼ନୀୟକ (ଦେଖ)
Tārdaniyaka (See)

ତାଡ଼ନୀୟକ—ସଂ. ବି. ପୁଂ—ପ୍ରଭୁଙ୍କଧାରୀ କର୍ମଚାରୀ ବା ଭୃତ୍ୟ; ବେତ୍ରଧାରୀ
Tārdaniyaka ଭୃତ୍ୟ—A lictor; a servant who
(ତାଡ଼ନୀୟକା—ସ୍ତ୍ରୀ) carries the master's whip; a whipper.

ତାଡ଼ ପକା(କେ)ଇବା—ଦେ. କ୍ରି.—୧ । କୌଣସି ମଞ୍ଜିରୁ ଗଛ
Tārda pakā(ke)ibā ବାହାର କରି ଗଛ ହେଲେ ତାହା ଲଗାଇବା ଉଦ୍ଦେଶ୍ୟରେ ମଞ୍ଜି ପୋତିବା ବା ଲଗାଇବା—
1. To sow or bury seeds in the ground for the purpose of rearing seedlings.
୨ । ଶଗଡ଼ର ଏକ ପାଖର ବଳଦ ଅପର ପାଖକୁ ଠେଲି ଠେଲି ଚାଲିବା—2. (a bullock of a cart. To go on pushing to the opposite side)

ତାଡ଼ ପତ୍ର—ସଂ. ବି.—କର୍ଣ୍ଣାଲଙ୍କାରବିଶେଷ; ତଡ଼କା—An ornament for the ear (looking like a
Tārda patra blade of palm-leaf)
ତଡ଼କା
**ताड़पत्र** ଦେ. ବି.—ତାଳ ଗଛର ପତ୍ର—
A blade of palm-leaf.

ତାଡ଼ପା—ଦେ. ବି. (ସଂ. ତଡ଼ୁ ଧାତୁ=ଅଘାତ)—ତଡ଼କା; କାନଅତଡ଼ା;
Tārdapā ବଜ୍ରଧ୍ୱନି ଇତ୍ୟାଦି ଶୁଣିବାଦ୍ୱାରା କର୍ଣ୍ଣର ସ୍ତବ୍ଧ ହେବା
ତାଳା ଧରା ଅବସ୍ଥା—Dinned or stunned condition of
**स्तम्भ** the ears (by loud sounds).
(ତାଡ଼ପି—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚକ୍ରର ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚକ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୃଷ ନ ମିଳିଲେ 'କୃଶ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; ଅକ୍ଷୋ ନ ପାଇଲେ 'ଅକ୍ଷ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ୍' ଦେଖିବେ ।

**ତାଡ଼ ବାନ୍ଧିବା**—ଦେ. କ୍ରି—ଚାଡ଼ି ବା ଚାରା ଜନ୍ମାଇବା ପାଇଁ ଉପଯୁକ୍ତ
Tarda bāndhibā ବୀଜ ସଂଗ୍ରହ କରିବା—To collect good seeds for raising seedlings.

ଭେଣ୍ଡି କାକୁଡ଼ି ବାଇଗଣ ଗୁଳ
ଏହା ଟାଣି ଭଲ ବାନ୍ଧିବରେ ଭୁଲ । କୃଷି ପ୍ରବଚନ ।

[ ଦ୍ର—ବହୁଲ ଶ୍ରେଣୀର ଗଛର ମଞ୍ଜିରୁ ଉଦ୍ଭୂତ ହେବା କ୍ଷୁଦ୍ର ଗଛକୁ ଭିନ୍ନ ଭିନ୍ନ ନାମରେ ଡକାଯାଏ । ଯଥା—କୋବି, ମୂଳା ପ୍ରଭୃତି କୋମଳ ଶାକର ଗୁଳ । ଧାନ, ବାଇଗଣ, ମାଣ୍ଡିଆ, ଖଡ଼ା, ଲଙ୍କାମରିଚ, ସାରୁ, କଖାରୁ, ଦୁଆଁପତ୍ର ପ୍ରଭୃତି କ୍ଷୁଦ୍ର ଶ୍ରେଣୀର ଗୁଳ୍ମର ତଳ । ନଡ଼ିଆ, ଗୁଆ, ଅମ୍ବ, ପୁନ୍ନାଗ, ଲେମ୍ବୁ, କାଗଜି, ଚମ୍ପା, ନାଗେଶ୍ୱର, ବଉଳ, କୁରଅନା ପ୍ରଭୃତି ବଡ଼ ବଡ଼ ବୃକ୍ଷର ତାଡ଼ । ]

**ତାଡ଼ା**—ଦେ. ବି. (ସଂ. ତାଡ଼=ଗୋଛା)—୧ । କାଗଜ ଓ ପତ୍ରଆଦିର
Tardā ଗୋଛା; ବିଡ଼ା; ବଣ୍ଡିଲ—
ତାଡ଼ା 1 A bundle of paper or leaves.
ଗଡ୍ଡୀ ୨ । ହାତର ବୁଢ଼ା ଅଙ୍ଗୁଠି ଓ ମଝିଅଙ୍ଗୁଠିର ମୁଠା ମଧ୍ୟରେ ଧରିହେବା ଭଳି ତୃଣାଦିର ଗୋଛା—
2. A sheaf or handful of grass etc

**ତାଡ଼ାତାଡ଼ି**—ଦେ. କ୍ରି. ବିଣ. (ସଂ. ତ୍ୱରା; ବଙ୍ଗଳାରୁ ଅନୁକୃତ)—
Tardātardi ତରବର; ଅତିଶୀଘ୍ର; ଅବିଳମ୍ବେ; ଶୀଘ୍ର ଶୀଘ୍ର—
ତାଡ଼ାତାଡ଼ି, ତାଡ଼ାତୁଡ଼ି Hurriedly; helter-skelter; in
ଜଲ୍‌ଦି hot haste; hastily; in a confused hurry.

**ତାଡ଼ି (ଧାତୁ)**—ତଡ଼୍ ଧାତୁର ଣିଜନ୍ତ—
Tārdi (root) Causative form of the root Tard.

**ତାଡ଼ି**—ଦେ. ବି. (ସଂ. ତାଳଜ ବା ତାଳୀରସ)—ତାଳ, ନଡ଼ିଆ ଓ ଖଜୁରୀ
Tārdi ଗଛର ବାସୀ ରସ; ମଦ୍ୟ; ତାଳଆଦି ଗଛର ମାଦକ ରସ—
ତାଡ଼ୀ Toddy; formented palm-juice; juice
ତାଡ଼ି from cocoanut, palamyra and date palm trees.

[ଦ୍ର—ସଜ ରସ ପିଇଲେ ନିଶା ହୁଏନାହିଁ; କିନ୍ତୁ ତାହା ବାସୀ ହେଲେ ଅର୍ଥାତ୍ ସେ ରସରେ ଖଟା ଲାଗିଲେ ଖାଇ ନିଶା ହୁଏ । ଖଜୁରୀ ଗଛର ବେକ ପାଖକୁ ଗୁଞ୍ଚି ତାହା ଚିରି ଦେଲେ ସେଥିରୁ ରସ ବାହାରେ; ନଡ଼ିଆ ଗଛର କଞ୍ଚା ଫଳକୋଷର ଅଗକୁ ଓ ତାଳ ଗଛର କଞ୍ଚା ଫଳକୋଷର ଓ ପୁଷ୍ପ କୋଷର ଅଗକୁ କାଟିଲେ ରସ ବାହାରେ । ଆମଦେଶରେ ଶିଅଳମାନେ ଓ ଚମାରମାନେ ଖଜୁରୀ ଗଛରୁ ତାଡ଼ୀ ବାହାର କରନ୍ତି । ବଙ୍ଗଦେଶରେ ତାଳଗଛରୁ ଏବଂ ମାନ୍ଦ୍ରାଜ ଅଞ୍ଚଳରେ ନଡ଼ିଆ ଗଛରୁ ତାଡ଼ି ବାହାର କରାଯାଏ । ବଙ୍ଗଦେଶରେ ଖଜୁରୀ ଓ ତାଳ ରସକୁ ରାନ୍ଧି ସେଥିରୁ ଗୁଡ଼ ତିଆର କରନ୍ତି । ଖଜୁରୀଗଛର ବେକକୁ ଗୁଞ୍ଚି ତାକୁ ଚିରି ତହିଁରୁ ଝରିତ ହେବା ରସ କଟିରେ ଜମା ହେବା ନିମନ୍ତେ ଗଛରେ ଯେଉଁ ମାଟିର ଘଡ଼ି ଝୁଲାଇ ଦିଆଯାଏ ତାହାକୁ 'ଭଣ୍ଡ ବା ଓଣ୍ଡ' ବୋଲାଯାଏ ଏବଂ ଉପରେ ସଂଗୃହୀତ ତାଡ଼ୀକୁ ଏକତ୍ର ସଂଗ୍ରହ କରିବାର ମଧ୍ୟମଆ ମାଠିଆକୁ 'ପାଉଲୀ' ଓ ବଡ଼ ମାଠିଆକୁ 'ଅଧା' କହନ୍ତି । ମାନ୍ଦ୍ରାଜ ଅଞ୍ଚଳରେ ନଡ଼ିଆ ଓ ତାଳ ଗଛର ବେକ ଚଞ୍ଚା ହୋଇ ତାଡ଼ି ବାହାର କରାଯାଏ ନାହିଁ । ନଡ଼ିଆ ଓ ତାଳଗଛର ଯେଉଁ ଫଳକୋଷ ଓ ଅଗ୍ରିମ ତାଳ ଗଛର ଯେଉଁ ପୁଷ୍ପକୋଷ ବାହାରୁଥାଏ ତାହାର ଅଗକୁ କାଟି ସେହିଠାରେ ଭଣ୍ଡ ସଂଲଗ୍ନ କରି ଦେଲେ ସେଥିରୁ ରସ ନିଗିଡ଼େ । ]

**ତାଡ଼ିଅଲ୍**—ଦେ. ବିଣ—ତାଡ଼ିଆଦି ନିଶାପାନରେ ଅଭ୍ୟସ୍ତ—
Tārdiala Addicted to drinking toddy.
(ତାଡ଼ିଆଲ—ଅନ୍ୟରୂପ)

**ତାଡ଼ିଆ**—ଦେ. ବି—୧ । ମଧ୍ୟ ଭଳିଆ ହାଣ୍ଡି—
Tārdia 1 Medium-sized cooking pot.
୨ । ଜଗନ୍ନାଥଙ୍କର ଛେନା ଦିଆ ଅମାଲୁ ବା ପିଠାଭୋଗ; ଛେନା ତାଡ଼ିଆ—2. A sweetmeat offered to the Deity Jagannath at Puri.
୩ । ବଡ଼ ପଲମ—3. Big earthen pan.
ଦେ. ବିଣ—ତାଡ଼ିଅଲ୍ (ଦେଖ)—Tārdial (See)
ପ୍ରାଦେ. (ମେଦିନୀପୁର) ବି—୧ । ଗୋରୁ ମୋହିବାପାଇଁ ବ୍ୟବହୃତ ଛୋଟ ମାଟି କୁଣ୍ଡ—1. Earthen crater for feeding cows.
୨ । କୁଣ୍ଡ (ସାଧାରଣ)—2. Earthen bowl.

**ତାଡ଼ିକା**—ସଂ. ବିଣ. ସ୍ତ୍ରୀ. (ତାଡ଼ି ଧାତୁ + ଅକ + ସ୍ତ୍ରୀ. ଆ)—ତାଡ଼କ
Tārdikā ଶବ୍ଦର ସ୍ତ୍ରୀଲିଙ୍ଗ—Feminine of Tārdaka (See).

**ତାଡ଼ି କାଟିବା**—ଦେ. କ୍ରି.—ତାଡ଼ିରସ ବାହାର କରିବା ନିମନ୍ତେ ଖଜୁରୀ
Tārdi kātibā ଗଛର ବେକକୁ କାଟିବା—To scrape the neck of a date-palm tree to get toddy; to tap the date-palm tree for extracting toddy.

[ ଦ୍ର—ଆମ ଦେଶରେ ଶିଅଳ ଖଜୁରୀ ଗଛର କଅଁଳ କାଣ୍ଡସ୍ଥ ଅଂଶକୁ ଗୁଞ୍ଚି କରି ସେଥିରୁ ତାଡ଼ୀ ବାହାର କରନ୍ତି ଓ ତାହା କାଟି ସେଥିରେ ମାଟିର ଘଡ଼ି ଝୁଲାଇବାକୁ ଗଛ ବସାଇବା କହନ୍ତି । ତାଡ଼ି କାଟିବା ନିମନ୍ତେ ଉପକରଣ; ଯଥା—୧. ଦାଉଡ଼ି ୨. ଖୋପା ବା ଖେଦ । ୩. କଟୁରି ଘସିବା କାଠ । ୪. କଟୁରି ଘସିବା ଚୂନା । ]

**ତାଡ଼ିଖଟି**—ଦେ. ବି—୧ । ଯେଉଁଠାରେ ତାଡ଼ି ପିଇବା ପାଇଁ ଲୋକେ
Tārdikhati ଜମା ହୁଅନ୍ତି; ତାଡ଼ି ଦୋକାନ—
ତାଡ଼ିଖାନା 1. Toddy shop; tap-room.
ତାଡ଼ୀଖାନା ୨ । ତାଡ଼ିର ଆଡ୍ଡା—2. Rendezvous for toddy-drinkers.
(ତାଡ଼ିଖଟି; ତାଡ଼ିଖାନା—ଅନ୍ୟରୂପ)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ର | ଡ଼ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇୟ୍ | ଡ଼ଃ | ଡ |
| ୨ | ଋ | ଊ | ଲୃ | ଲୃ | ଐ | ଅକାରଯୁକ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଂ | ଇଅ | ଃ | ନ୍ |

**ତାଡ଼ିଖୋର**—ଦେ. ବିଣ. ( ଓ. ତାଡ଼ୀ + ଫା. ଖୋର = ଖାଦକ )—
Tārdi khor ୧ । ତାଡ଼ୀ ନିଶା ଖାଇବାରେ ଅଭ୍ୟସ୍ତ—
ତାଡ଼ିଖୋର 1. Habitual drinker of toddy; habituated to drinking toddy.
ताड़ीखोर
୨ । ମଦୁଆ—2. Drunkard.
୩ । ମଦୁଆଙ୍କ ପରି ଅବ୍ୟବସ୍ଥିତଚିତ୍ତ ଓ ପ୍ରଳାପୀ—
3. Fickle-minded and prattling like a drunkard.

**ତାଡ଼ିଗଛ**—ଦେ. ବି—ଯେଉଁ ପୁଷ୍ପାଙ୍ଗ ବା ପୁରୁଣା ତାଳ, ଖଜୁରି ଓ
Tārdi gachha ନଡ଼ିଆ ଗଛରୁ ତାଡ଼ି କାମନ୍ତେ, ରସ ବାହାରେ—
ତାଡ଼ିଗାଛ Trees fit for being tapped for toddy.

**ତାଡ଼ିତ**—ସଂ. ବିଣ. ( ତଡ଼୍ ଧାତୁ ଣିଚ୍ ତାଡ଼ି ଧାତୁ + କର୍ମ. ତ )—
Tārdita ୧ । ଦୂରୀକୃତ; ତଡ଼ା ହୋଇଥିବା—1. Repulsed; driven out; expelled; turned away.
୨ । ଠେଲା ବା ପେଲା ହୋଇଥିବା—
2. Pushed; propelled.
୩ । ଭର୍ତ୍ସିତ; ଭର୍ତ୍ସିତ—3. Rebuked; chidden.
୪ । ଦଣ୍ଡିତ—4. Punished; chastised; persecuted.
୫ । ପ୍ରହାରିତ—5. Struck; whipped.
୬ । ବିଦ୍ଧ—6. Pierced.
୭ । ଶାସିତ—7. Controlled.
୮ । ଯାହାକୁ ଧମକା ଯାଇଥାଏ—8. Threatened.
୯ । ଆହତ—9. Beaten.
୧୦ । ମର୍ଦ୍ଦିତ—10. Pressed.
ଭୂତ ମର୍ଦ୍ଦନ ହୋଇଯ ତାଡ଼ିତ—ଉପେନ୍ଦ୍ରଭଞ୍ଜ. ପ୍ରେମସୁଧାନିଧି ।
୧୧ । ବହିଷ୍କୃତ—11. Driven away.
୧୨ । (ତଡ଼ିତ୍ + ସମ୍ବନ୍ଧାର୍ଥେ. ଅ) (ବିଜ୍ଞାନ ପରିଭାଷା)—
୧୩ । ତଡ଼ିତ୍ ସମ୍ବନ୍ଧୀୟ; ବୈଦ୍ୟୁତିକ; ବିଦ୍ୟୁତ୍‌ଜନକ; ବିଦ୍ୟୁନ୍ମୟ—
13. Electric
ସଂ. ବି (ତଡ଼ିତ୍ + ଭବାର୍ଥେ, ଅ; ତଡ଼ିତ୍‌ରୁ ଉତ୍ପନ୍ନ (ବିଜ୍ଞାନ ପରିଭାଷା)—ପଦାର୍ଥ ଦ୍ୱୟର ଘର୍ଷଣ ଦ୍ୱାରା ଉତ୍ପନ୍ନ ବୈଜ୍ଞାନିକ ଶକ୍ତି; ବିଦ୍ୟୁତ୍ ଶକ୍ତି—Electricity; electric force.
[ ଦ୍ର—ତଡ଼ିତ୍ ଓ ବିଦ୍ୟୁତ୍ ଏକ ପଦାର୍ଥ ବୋଲି ବେଞ୍ଜାମିନ୍ ଫ୍ରାଙ୍କଲିନ୍ ପ୍ରମାଣିତ କରିଅଛନ୍ତି । ]

**ତାଡ଼ିତ ପରିଚାଳକ**—ସଂ. ବି ( ତାଡ଼ିତ + ପରିଚାଳକ, ୬ଷ୍ଠୀ ତତ୍;
Tārdita parichālaka ଆଧୁନିକ ବିଜ୍ଞାନ ପରିଭାଷା)—ଯେଉଁ ସକଳ ବସ୍ତୁଦ୍ୱାରା ତାଡ଼ିତ ଶକ୍ତି ଏକ ବସ୍ତୁରୁ ଅନ୍ୟ ବସ୍ତୁକୁ ପରିଚାଳିତ ହୁଏ—
Conductor of electricity.
( ତାଡ଼ିତ ସଞ୍ଚାଳକ-ଅନ୍ୟରୂପ )

**ତାଡ଼ିତ ବାର୍ତ୍ତାବହ**—ସଂ. ବି (ଆଧୁନିକ ବିଜ୍ଞାନ ପରିଭାଷା)—ଯେଉଁ
Tārdita bārttābaha ଯନ୍ତ୍ର ଦ୍ୱାରା ବିଦ୍ୟୁତ୍ ଶକ୍ତି ସାହାଯ୍ୟରେ ଦୂରଦେଶରୁ ସମ୍ବାଦ ଆସିପାରେ ଓ ଦୂରଦେଶକୁ ସମ୍ବାଦ ଯାଇ ପାରେ—Electric Telegraph and Telephone.

**ତାଡ଼ିତ ମାନ ଯନ୍ତ୍ର**—ସଂ. ବି ( ଆଧୁନିକ ବିଜ୍ଞାନ ପରିଭାଷା )—ଯେଉଁ
Tārdita māna jantra ଯନ୍ତ୍ରଦ୍ୱାରା ତାଡ଼ିତ ଶକ୍ତିର ସଞ୍ଚାଳନ, ସତ୍ତ୍ୱ ଓ ଉପସ୍ଥିତି ପ୍ରଭୃତି ପରୀକ୍ଷା ଦ୍ୱାରା ସ୍ଥିର କରିଯାଏ; ଇଲେକ୍ଟ୍ରୋସ୍କୋପ୍—Electroscope.

**ତାଡ଼ିତ ସଞ୍ଚାଳକ**—ସଂ. ବିଣ ( ଆଧୁନିକ ବିଜ୍ଞାନ ପରିଭାଷା )—
Tārdita sañchālaka ତାଡ଼ିତ ପରିଚାଳକ—Conductor of electricity.

**ତାଡ଼ି ଦେବା**—ଦେ. କ୍ରି—ମୂଳୋତ୍ପାଟନ କରିବା—
Tārdi debā To uproot (a tree).
ତାଡ଼ା ଯେତେ ଚେଷ୍ଟାକୁ ନ ଦେଉଅଛ ତାଡ଼ି—ବୃନ୍ଦାବନ ଦା. ମହାଭାରତ ବନ ।
उखाड़ना

**ତାଡ଼ି ପତ୍ର**—ଦେ. ବି (ସଂ. ତାଡ଼ି + ପତ୍ର; ୬ଷ୍ଠୀ ତତ୍)—୧ । ତାଳପତ୍ର—
Tārdi patra 1. Palm leaf.
୨ । ତାଳପତ୍ରାକୃତି ଖଡ୍ଗ ବିଶେଷ —
2. A palm-leaf-bladed sword.

**ତାଡ଼ିବା**—ଦେ. କ୍ରି (ସଂ. ତଡ଼୍ ଧାତୁ = ଆଘାତ କରିବା; ଦୂରଇଦେବା)
Tārdibā ୧ । ଗଛରୁ ଉପାଡ଼ିବା; ମୂଳୋତ୍ପାଟନ କରିବା—
ତାଡ଼ା 1. To uproot (a tree).
उखाड़ना ୨ । ମାଟି ଖୋଳିବା—2. To dig out earth.
୩ । ଏକକଡ଼କୁ ଠେଲିବା ବା ପେଲିବା—
3. To push to one side.
୪ । (ଲକ୍ଷଣାର୍ଥ ) ମାରିବା; ବାଡ଼େଇବା; (ହାତ ଅବା ଅସ୍ତ୍ରରେ) ଆଘାତ କରିବା—4. To strike; to beat.
ଯୋଗ ଧନ ଏ ବ ସ୍ଥଳେ, ଯାବନ୍ତ ତେଜ ବା ତହିଁ ବର ବର ତାଡ଼ି—
କବିସୂର୍ଯ୍ୟ. ଉଦ୍ଧବଚରିତମ୍ ।
୫ । ପୋତା ଜିନିଷକୁ ବଳପୂର୍ବକ ଉଠାଇବା—
5. To raise out or dig out buried things forcibly.
ଗର୍ଜି ଅତ ପ୍ରବଳେ ତାଡ଼ଣ ଶିଳା ଝଡ଼େ—ମଧୁସୂଦନ. ଋଷିପ୍ରାଣ ।
୬ । କଚାଡ଼ିବା—6. To throw down with forceo to dash down.
ବାଣ୍ଟି ଘଳ ଘଳ କରୁ ଏହା ଘଳ ଶିରେ ଉପଳ ତାଡ଼ି ଉଠାଏ ସେ—
ଉଞ୍ଜ. ବୈଦେହୀଶବିଳାସ ।
୭ । ତାଡ଼ନା କରିବା—7. To chastise.
ତହିଁରେ ବିଦ୍ଧାଇଲେ ପଠନ୍ତା,
ଉଦ୍ଧେ ତାଡ଼ନ୍ତୁ ଗ୍ରହଗଣେ—ଜଗନ୍ନାଥ. ଭାଗବତ ।

**ତାଡ଼ି ବାଲା**—ଦେ. ବି. ପୁଂ—୧ । ଯେଉଁ ବ୍ୟକ୍ତି, ତାଡ଼ି ଗଛ କାଟି
Tārdi bālā ତାଡ଼ି ବାହାର କରେ—

ସାଧାରଣ ଲୋକେ ଅପଢ଼ ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଥ' ନ ମିଳିଲେ 'କ୍ରୃଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ତାଡ଼ିଭିଆଳି; ତାଡ଼ିଭିଆଳି } ଅନ୍ୟରୂପ 1. Toddy-tapper.
ତାଡ଼ିଖାଲି }
ତାଡ଼ୀଓୟାଲା ୨ । ଯେ ତାଡ଼ି ବିକ୍ରୟ କରେ—
ताड़ीवाला 2. Toddy-seller.

**ତାଡ଼ ହେବା**—ଦେ. କ୍ରି—୧ । ଶଗଡ଼ ବା ହଳର ଯୁଆଳିରେ ଯୋଚି
Tarḍi hebā ଯାଇଥିବା ବଳଦ ସିଧା ହୋଇ ନ ଚାଲି ପରସ୍ପର ପରସ୍ପରକୁ ଠେଲି ଠେଲି ଚାଲିବା— 1. ( the two bullocks of cart or plough) To walk in the manner of propelling each other and not straightforwardly.
(ଯଥା—ଏ ବଳଦ ହଳକ ଖାଲି ତାଡ଼ି ହେଉଛନ୍ତି ।)
୨ । ( ତାଡ଼ିବାର କର୍ମବାଚ୍ୟ ରୂପ )—ଉତ୍ପାଟିତ ହେବା— 2. To be uprooted.
( ଯଥା—ବହୁ ପରିଶ୍ରମ କରି ସୁଦ୍ଧା ଏ ଗଛଟି ତାଡ଼ି ହେଲା ନାହିଁ । )

**ତାଡ଼ୀ**—ସ. ବି. ସ୍ତ୍ରୀ (ତାଳ+ସ୍ତ୍ରୀ. ଈ; ଳ ସ୍ଥାନରେ 'ଡ଼' ଆଗମ)—
Tarḍi ୧ । ତାଳ ଗଛ—1. Palmyra tree.
୨ । କର୍ଣ୍ଣର ଅଳଙ୍କାରବିଶେଷ; ତାଟଙ୍କ— 2. A kind of earring.
୩ । ବାହୁବଳୟବିଶେଷ; ତାଡ଼— 3. A kind of armlet.

**ତାଡ଼ୁଆ**—ଦେ. ବି—ଏକପ୍ରକାର ସେନାବ୍ୟୂହ—
Tarḍuā A peculiar battle-array.
ସେହି ସୈନ୍ୟରେ ଥିଲେ ଯେତେକ ଗଡ଼ୁଆ
ଶକଟରେ ଗୋଟିଏ କଲେ ସେ ତାଡ଼ୁଆ—କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ.
[ ଦ୍ର—ପ୍ରକୃତ ଅର୍ଥ ଅବୋଧ, ଏ ଅର୍ଥ ଅନୁମାନସିଦ୍ଧ । ]

**ତାଡ଼େଣି**—ଦେ. ବି—ଅସ୍ତ୍ରବିଶେଷ—
Tarḍeṇi Name of a weapon.
[ ଦ୍ର—ସାରଳା ଦାସଙ୍କ ମହାଭାରତରେ ବ୍ୟବହୃତ ଏହି ଶବ୍ଦର ପ୍ରକୃତ ଅର୍ଥ ଅବୋଧ । ]

**ତାଡ୍ୟ**—ସ. ବିଣ (ତଡ଼ ଧାତୁ ଣିଜନ୍ତ ତାଡ଼ି ଧାତୁ+କର୍ମ. ଯ )—
Tāḍya ତାଡ଼ିତ ହେବା ଯୋଗ୍ୟ— Fit to be driven away, threatened or beaten.

**ତାଡ୍ୟମାନ**—ସ. ବିଣ. ପୁଂ ( ତଡ଼ ଧାତୁ ଣିଜନ୍ତ ତାଡ଼ି ଧାତୁ+
Tāḍyamāna କର୍ମ, ଆନ; ଯ ଓ, ମ ର ଆଗମ )—
( ତାଡ୍ୟମାନା—ସ୍ତ୍ରୀ ) ୧ । ବାଦ୍ୟମାନ; ଅହତ— 1. Being beaten (as a drum).
୨ । ପୀଡ୍ୟମାନ; ଯାହାକୁ ଦଣ୍ଡ ଦିଆ ଯାଉଅଛି— 2 Being chastised or beaten; undergoing beating.
୩ । ଉତ୍ପୀଡ୍ୟମାନ—3. Being oppressed or harassed.

୪ । ଯାହାକୁ ବାରଂବାର ପ୍ରହାର କରି ଯାଉଅଛି— 4. Being struck repeatedly.
ବି—ଏକପ୍ରକାର ଚର୍ମ ବାଦ୍ୟ; ଢକ୍କା; ଢୋଲ— A kind of drum

**ତାଣ୍ଡବ**—ସ. ବି ( ତଣ୍ଡୁ=ମୁନିବିଶେଷ+ଇଦମର୍ଥେ. ଅ; ତଣ୍ଡୁ ମୁନି
Tāṇḍaba ନୃତ୍ୟପ୍ରଣାଳୀର ସ୍ରଷ୍ଟା )—୧ । ନୃତ୍ୟ; ନାଟ— 1. Dancing.
୨ । ଉଦ୍ଦଣ୍ଡ ବା ଉଦ୍ଧତ ନୃତ୍ୟ; ହସ୍ତପଦାଦିର ସଞ୍ଚାଳନ ସହିତ ପୁରୁଷର ନୃତ୍ୟ—2. A male's dancing accompanied with violent gesticulations.
[ ଦ୍ର—ସ୍ତ୍ରୀଙ୍କ ନୃତ୍ୟକୁ ଲାସ୍ୟ ବୋଲାଯାଏ । ]
୩ । ମହାଦେବଙ୍କର ଉଦ୍ଦଣ୍ଡ ନୃତ୍ୟ—3. Frantic and ecstatic dance of Mahādeba.
୪ । ତଣ୍ଡି; ତୃଣବିଶେଷ— 4. A kind of reed; Saccharum Procerum; the porcupine grass.
ଦେ. ବି—୧ । ଭୀଷଣ କଳହ— 1. Violent quarrel.
ତାଣ୍ଡବ ୨ । ଯେଉଁ କଳହରେ ପକ୍ଷମାନେ ଅଙ୍ଗଭଙ୍ଗୀ କରନ୍ତି
तांडव 2. Quarrel accompanied with threatening postures of the bodies of the parties.

**ତାଣ୍ଡବ ତାଳିକ**—ସ. ବି (ତାଣ୍ଡବ+ତ.ଳ+ଇକ; ଯେ ଶିବଙ୍କ ତାଣ୍ଡବ
Tāṇḍaba tālika ସମୟରେ ତାଳ ପକାଏ )—ନନ୍ଦୀ— Nandī, the chief attendant of God Śiba.

**ତାଣ୍ଡବ ପ୍ରିୟ**—ସ. ବି. ପୁଂ ( ତାଣ୍ଡବ+ପ୍ରିୟ; ବହୁବ୍ରୀହି)—ମହାଦେବ;
Tāṇḍaba priya ଶିବ—God Śiba.
ବିଣ—ଉଦ୍ଦଣ୍ଡ ନୃତ୍ୟପ୍ରିୟ— Fond of ecstatic dance.

**ତାଣ୍ଡବିବା**—ଦେ. କ୍ରି ( ସ. ତାଣ୍ଡବରୁ ଓଡ଼ିଆ ନାମ ଧାତୁ )—
Tāṇḍabibā ତାଣ୍ଡବ ବା ଉଦ୍ଦଣ୍ଡ ନୃତ୍ୟ କରିବା— To dance in ecstasy.

**ତାଣ୍ଡି**—ସ. ବି. କ୍ଳୀ (ତଣ୍ଡୁ=ମୁନିବିଶେଷ+ଇ)—ନୃତ୍ୟ ଶାସ୍ତ୍ର—
Tāṇḍi The art or science of dancing.
( ଯଥା—ତଣ୍ଡୁ ମୁନି ନୃତ୍ୟକଳାର ଉଦ୍ଭାବକ ଥିବାର ପ୍ରସିଦ୍ଧ । )
ପ୍ରାଦେ ( ସିଂହଭୂମ ) ବି—୧ । ବଡ଼ ପ୍ରାନ୍ତର ବା ପଡ଼ିଆ— 1. A very large field; prairie.
( ଗଞ୍ଜାମ )—୨ । ଏକପ୍ରକାର ଗୁଡ଼— 2. A kind of molasses.

**ତାଣ୍ଡିଆ**—ଦେ. ବି—ଶଗଡ଼ର ଦୁଇ ଦଣ୍ଡାରେ ଯେଉଁ ବାଉଁଶଖଣ୍ଡମାନ
Tāṇḍiā ବନ୍ଧା ହୋଇଥାଏ—Pieces of bamboo attached to the 2 beams of a cart.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇୟ | ଉଅ | ଘ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଗ୍ୟ | ଇଅ | ଊ | ଙ୍ଗ |

ତାଣ୍ଡି ଗୁଡ଼—ପ୍ରାଦେ ( ଗଞ୍ଜାମ ) ବି—ଏକପ୍ରକାର ଗୁଡ଼—
Tāṇḍi gurḍa A kind of molasses.

ତାଣ୍ଡୁ—ବୈଦେ. ବି (ତେଲଗୁ)—ଡାବଲପୁଅ ଖେଳର କ୍ଷୁଦ୍ର ମୁଗୁରଅ
Tāṇḍu ଡାଠି ବା ପୁଅ— A small peg-like bit of
ডংাগ wood used in the Ḍābalapuā game.
डांग

ତାତ୍‌ଲା—ପ୍ରାଦେ ( ସମ୍ବଲପୁର ) ବିଣ—ତାତିଲା; ତପ୍ତ—
Tat-lā Hot; warm.

ତାତ—ସଂ. ବି. ପୁଂ ( ତାୟୃ ଧାତୁ=ପାଳନକରିବା+କର୍ତ୍ତୃ. ତ; ଯୃ ଲୋପ; ଯେ ସନ୍ତାନ ପାଳନ କରନ୍ତି )—
Tāta
୧ । ପିତା—1. Father.
୨ । ପବିତ୍ର ଧାର୍ମିକ ବ୍ୟକ୍ତି—
2. Holy or pious man.
୩ । ସ୍ନେହପାତ୍ର—3. Object of affection.
୪ । ମାନ୍ୟ ବ୍ୟକ୍ତି; ପୂଜ୍ୟ ବ୍ୟକ୍ତି—
4. Revered person.
୫ । ପୁତ୍ର—5. Son.
୬ । ପିତୃବ୍ୟ—6. Paternal uncle.
ସଂ. ଅ—ସ୍ନେହସୂଚକ ସମ୍ବୋଧନ—
A term of endearment or affection.
[ ଦ୍ର—ଏହା ଭାଇ, ବନ୍ଧୁ ଓ ବିଶେଷତଃ ଅପଣାଠାରୁ ବୟସରେ ସାନ ବ୍ୟକ୍ତିମାନଙ୍କୁ ସମ୍ବୋଧନ କରିବାରେ ବ୍ୟବହୃତ ହୁଏ ।
[ତୁଳନା କର, ଓଡ଼ିଶାରେ ଏହିପରି ସ୍ଥଳରେ ବାବୁ, ବାପ, ବାପା ସମ୍ବୋଧନ । ]

ହେ ତାତ କର୍ମ ପଦେ ଶେଷ
କର୍ମିଙ୍କି ଜାଣି ଅନ୍ୟ ଦେବ—ଜଗନ୍ନାଥ. ଭାଗବତ ।

ଦେ. ବି—( ତପ ଧାତୁ=ସନ୍ତାପ ଦେବା; ତତାଇବା; ସଂ. ତାପ; ତୁଳ. ଆରବୀ, ତାବ୍=ଗରମୀ;—
তাত ୧ । ତାପ; ଉତ୍ତାପ; ଦହନ; ଧାସ; ଝାଞ୍ଜି—
ताव 1. Heat; warmth; blaze.
୨ । କ୍ରୋଧ; ରାଗ—2. Anger.
ସଂ. ବିଣ—ମାନ୍ୟ; ପୂଜ୍ୟ—
Honoured; revered.
ପ୍ରାଦେ. (ବସ୍ତର) ବି (ତୁଳ. ହି. ତାତ=ତପ୍ତ) ତତଲ ଭାତ—
Hot or warm boiled rice.

ତା'ତ—ଦେ. ସର୍ବନାମ—ସେହି ବିଷୟ; ତାହାହିଁ—That too.
Tā'ta ଦୁର୍ଯ୍ୟୋଧନ ବୋଇଲେ ଶୁଣ ଅହେ ତାତ
তাইত आही ଏଥିରେ ଯେ କାରଣ କହୁଅଛ ତା'ତ । କୃଷ୍ଣସିଂହ-ମହାଭାରତ-ସଭା ।

ତା ତଇଁ(ହିଁ)କି—ଦେ. ସର୍ବନାମ—୧ । ତାଠାରୁ; ତାଠେଇଁକି—
Tā taiñ(hiñ)ki 1. From that, him or her.
(ତାଟେଇଁକି, ୨ । ତା ଅପେକ୍ଷା; ତାଠୁ—
ତା ତେଇଁକି; ତା ତେହିଁକି—ଅନ୍ୟରୂପ) 2. Than that.
୩ । ତାହାଠାରୁ; ତାହା ନିକଟରୁ—3 To him, her or it.

ତା ତଉଁ(ହୁଁ)—ଦେ. ସର୍ବନାମ—୧ । ତାହାଠାରୁ—1. From
Tā tauñ(huñ) that; from him or her.
তাহে उससे ପ୍ରକୃତ ତାର ବନ୍ଧୁ ଜାଣ,
ତାତହୁଁ ହୋଏ ମହତ୍ତ୍ୱ । ଜଗନ୍ନାଥ. ଭାଗବତ ।
(ତା ତୋ—ଅନ୍ୟରୂପ) ୨—ତାହା ଅପେକ୍ଷା—2. Than that.

ତାତଗୁ—ସଂ. ବି. ପୁଂ. (ତାତ=ପିତା+ଗମ୍ ଧାତୁ+କର୍ତ୍ତୃ ଡୁ; ଯେ ପିତାଙ୍କ ପରି ମାନ୍ୟ)—ଖୁଡ଼ୁତା; ଦଦେଇ; ଖୁଲ୍ଲତାତ;
Tātagu ପିତୃବ୍ୟ—Younger paternal uncle.

ତାତ ତୁଲ୍ୟ—ସଂ. ବି. ପୁଂ—(ତାତ+ତୁଲ୍ୟ)—ତାତଗୁ (ଦେଖ)—
Tāta tulya Tātagu (See)

ତାତନ—ସଂ. ବି—ଖଞ୍ଜନ ପକ୍ଷୀ (ଦେଖ) (ହି. ଶବ୍ଦସାଗର)—
Tātana Khañjana bird (See)

ତାତପର୍ଯ୍ୟ—ଗ୍ରା. ବି ଓ ବିଣ— ତାତ୍ପର୍ଯ୍ୟ (ଦେଖ)
Tātaparjya Tātparjya (See)
तातपय्य ବୃତ୍ତାନ୍ତ ତାତପର୍ଯ୍ୟରେ ସବୁ ଜଣାଇଲା ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

ତାତଲ—ଦେ. ବି—(ସଂ. ତପ୍ତ)—ଟିଣ ଝାଳ-ବା ପାଇଁ ବ୍ୟବହୃତ କାଠର ବେଣ୍ଟଲଗା ଲୁହାର କ୍ଷୁଦ୍ର କୁରାଢ଼ି ଅକୃତିର ଯନ୍ତ୍ର—
Tātaḷa
তাতাল तातल A tinman's soldering iron; an axe-lixe iron tool with a wooden handle which is heated and which, when touched to lead, melts it while soldering 2 pieces of tins.
[ଦ୍ର—ଏହାକୁ ନିଆଁରେ ଖୁବ୍ ତତାଇ କରି ଟିଣ ଯୋଡ଼ା ହେବା ଜାଗାରେ ରଖାଯାଇ ଥିବା 'ରଙ୍ଗ' ଉପରେ ଏହାକୁ ମାଡ଼ିଲେ ଏଥିର ଉତ୍ତାପରେ ରଙ୍ଗ ତରଳ ଯାଇ ଜୋଡ଼ ଜାଗାର ଛିଦ୍ର ବା ଫାଟରେ ଗଳି ପଡ଼େ, ଓ ସେ ଜୋଡ଼ ଜାଗା ତରଳ ରଙ୍ଗ ଦ୍ୱାରା ରୁଦ୍ଧ ହୋଇଯାଏ ]
ସଂ. ବି—୧ । ପିତୃ ସ୍ଥାନୀୟ ବ୍ୟକ୍ତି (ହି. ଶବ୍ଦସାଗର)—
1. A person in the position of the father to a person.
୨ । ରୋଗ (ହି. ଶବ୍ଦସାଗର)—2. Disease.

ତାତଲା—ଦେ. ବିଣ (ସଂ. ତପ୍ତ)—ତତଲ; ତାତିଲା; ଉତ୍ତପ୍ତ—
Tātalā Heated; hot; warm.
তাতল तातल
(ତାତଲା—ଅନ୍ୟରୂପ)

ତା ତା—ଦେ. ଅ—ସଙ୍ଗୀତ, ବାଦ୍ୟ ଓ ନୃତ୍ୟ ଅବର ଉକ୍ତି; ଶିଶୁମାନେ ନାଚିବା ସମୟରେ ବୟଃସ୍ଥମାନେ ବୋଲିବା
Tā tā
তাতা ताता ଉକ୍ତି; ଅବୁଝା ଶିଶୁମାନଙ୍କୁ ଶୁଆଇ ପକାଇବା ପାଇଁ ମାଆମାନେ ଶିଶୁଙ୍କ ପିଠିରେ ଥାପୁଡ଼େଇବା ସମୟେ

ସାଧାରଣ ସେବେ ଅତ୍ର ପୃଷ୍ଠାରେ ହ୍ରେଡ ୧ ଚନ୍ଦ୍ରବିନ୍ଦୁ ଅକ୍ଷର ଓ ମାତ୍ରା ଏବଂ ୨ ଚନ୍ଦ୍ରବିନ୍ଦୁ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚନ୍ଦ୍ରବିନ୍ଦୁ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କ୍ରମାନୁସାରେ ନ ମିଳେ, ତେବେ ସେହି ଶବ୍ଦ ଆଉଥରେ ଯଥାକ୍ରମେ ଚନ୍ଦ୍ରର କବଳରୁ ୨ ବା ୧ ଚନ୍ଦ୍ରବିନ୍ଦୁ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଇଁ' ଖୋଜିବେ, 'କୁଅ' ନ ମିଳିଲେ 'କୁଅଁ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁଁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ବୋଲିବା ଢଙ୍ଗ; ଶିଶୁମାନଙ୍କୁ ତାଳ ମାର ଶିଖାଇବାର ଢଙ୍ଗ; ତାଇ ତାଇ—An utterance used in accompaniment of music, dance and singing and in lulling children to sleep.

(ଟାଟା – ଅନ୍ୟରୂପ) ଦେ. ବି. (ନାମ)—ପାର୍ସୀମାନଙ୍କ ବଂଶୋପାଧି– Tata; A family-title amongst the Parsees.

[ ଦ୍ର—ସର୍ ଜାମସେଦ୍ ଜୀ ତାତା(ଟାଟା) ନାମକ ଜଣେ ସ୍ୱର୍ଗୀୟ ପାର୍ସୀ ସେଠ ସିଂହଭୂମ ଜିଲ୍ଲାର କାଳୀମାଟି ନାମକ ସ୍ଥାନରେ ପୃଥିବୀ-ବିଖ୍ୟାତ ଲୁହା କାରଖାନା ପ୍ରତିଷ୍ଠିତ କରିଅଛନ୍ତି ଓ ଉକ୍ତ କାରଖାନାର ସ୍ୱତ୍ୱାଧିକାରୀ ଓ ପରିଚାଳକ ସଭାର ନାମ ତାତା (ଟାଟା) କୋମ୍ପାନି ଓ ସେ ସ୍ଥାନର ନାମ ଜାମସେଦପୁର ବା ତାତା(ଟାଟା) ନଗର ହୋଇଅଛି । ]

**ତାତା ଥିନ୍(ଥେଇ)**—ଦେ. ଅ—୧ । ନାଚ ଓ ବାଦ୍ୟର ସୂଚକ; ନାଚ ଓ ବାଦ୍ୟ କରିବେଳେ ମୁହଁରେ ବୋଲାଯିବା ତାଳମାନସୂଚକ ଧ୍ୱନି—1. The measures uttered in connection with singing and dancing.
Tatā thin(thei)
ताताथै, ताथै,
ताथै
**तातथैं, तातोथेइ**

ଅପସରାମାନେ ତା ଦେଖି ଟୀକ ଗାଇ
ନୃତ୍ୟ ଆରମ୍ଭିଲେ ବୋଲିଣ ତାତାଥେଇ । କୃଷ୍ଣସିଂହ, ମହାଭାରତ ବନ
ଥ ଅକ୍ଷର ହୋଇଛି ତାତାଥିନା ଥେଇ
ମୃଦଙ୍ଗ ବାଜୁଛି ଅନ୍ୟ ସଞ୍ଚାରକୁ ଘେନି । ପ୍ରାଚୀ, ବ୍ରହ୍ମଚନ୍ଦ୍ରପଣଗୀତା । ।

(ତାତାଥୈ; ତାତାଥେଇ; ତାତାଥିନ; ତାତାଥୈଁ; ତାତା ଥେଇ ଥେଇ; ତାତା ଥିନଥିନ; ତାତା ଥୈଥେ; ତାତାଥିନ୍; ତାତାଥିନା ତାତାଥିନ; ଥିନ; ଥିନାକ୍; ତାତା ଥିନ ଥିନ; ତାତା ତାଥିନ; ତାତା ତାଥିନତା; ତାତା ଥିନ୍ ଥିନ୍; ତାତା ଥିନଥିନା; ତାକ୍ ଥିନ୍‌ତା; ତାକ୍ ଥିନତା; ତାତାଥିନା, ତାତାଥିନ; ତାତା ଥିନତା; ତାତାଥିନା ଥେଇ—ଅନ୍ୟରୂପ)

୨ । ବାଦ୍ୟ ଓ ତାଣ୍ଡବ ନୃତ୍ୟର ତାଳେ ତାଳେ ପଡୁଥିବା ପଦତଳ ଓ କରତଳର ଧ୍ୱନି—2. Measured claps or steps at every beat or time of a dance or music; beating of time to music or dance.

**ତାତା ଥେଇ କରିବା**—ଦେ. କ୍ରି—ନାଚ କରିବା; ନାଚିବା— To dance.
Tatā thei karibā
ताताथैकरना ହିବେ ଥିନ ମତେ ଅତ୍ୟନ୍ତ ମତ୍ତ ହେଲେ,
**तातायेईकरना** ମୃଣରେ ଲୁଚା ବାଛ ତାତାଥେଇ କଲେ । କୃଷ୍ଣସିଂହ ମହାଭାରତ ବନ ।

**ତାତା ଥେଇ ଥେଇ ଲାଗିବା**—ଦେ. ବି—ଦୁଇଜଣଙ୍କ ମଧ୍ୟରେ ବା କୌଣସି ପରିବାରରେ ଭୟଙ୍କର କଳି ଲାଗିବା — Violent quarrelling between two persons, or in a family.
Tatā thei thei lagibā
ତାଥୈ
**ततताथेइ**

ତାତ ଥୈଥୈ ଲାଗିବା;
ତାଥୈଥୈ ଲାଗିବା;
ତାଥେଇ ଥେଇ ଲାଗିବା
ତାଥୈ ଲାଗିବା;
ତାଥେଇ ଲାଗିବା
} ଅନ୍ୟରୂପ (ଯଥା— ତାଙ୍କ ଘରେ ଦିନଯାକ ତାତାଥୈଥୈ ଲାଗିଛି ।)

**ତାତା ନଗର**—ଦେ.ବି. (ନାମ)—କାଳୀମାଟି (ଦେଖ)
Tatā nagara Kalimāti (See)
(ଟାଟା ନଗର—ଅନ୍ୟରୂପ)

**ତାତା ନାଡ୍ରି**—ଗ୍ରା. ବି. (ଶିଶୁ ରଞ୍ଜନ) 'ତାତାନାଡ୍ରୀ ବେଙ୍ଗ ଦେଲା ପାଡ୍ରି' ଏହା ବୋଲି ମାତାମାନେ ଶିଶୁମାନଙ୍କ ମୁଣ୍ଡରେ ଓ କାନମୁଣ୍ଡାରେ ମାଲିସ୍ ମାଲିସ୍ କରନ୍ତି—Part of a rhyme used by the mothers while annointing oil over the head and ears of a child in order to coax him and to get through the oiling smoothly.
Tatā nārdi

**ତାତାର**—ବୈଦେ. ବି. (ଫା) (ନାମ)—ମଧ୍ୟଆସିଆର ଦେଶବିଶେଷ; ତୁର୍କିସ୍ଥାନ—Tartary; Tartar; Turkistan.
Tātār
तातार
**तातार**

[ ଦ୍ର—ଏଥିର ଦକ୍ଷିଣରେ ପାରସ୍ୟ, ଅଫଗାନସ୍ଥାନ, କାଶ୍ମୀର ଓ ତିବତ ଓ ଚୀନ ଦେଶମାନ, ପଶ୍ଚିମରେ କାସ୍ପିଅନ୍ ସାଗର, ଉତ୍ତରରେ ଆସିଯ୍ଲିକ ରୁସିଆ ଓ ପୂର୍ବରେ ମାଙ୍ଗୋଲିଆ ଓ ଚୀନ । କେହି କେହି ମାଙ୍ଗୋଲିଆକୁ ତାତାରର ଅନ୍ତର୍ଗତ ବୋଲି କହନ୍ତି କେହି କେହି ମାଙ୍ଗୋଲିଆକୁ ବାଦ୍ ଦିଅନ୍ତି । ବୋଖାରା, ସମରକନ୍ଦ, ୟାରକନ୍ଦ, ଖୋଟାନ, ଖୋକନ ଏ ଦେଶର ପ୍ରଧାନ ନଗରମାନ । ]

**ତାତାରି**—ବୈଦେ. ବିଣ—୧ । ତାତାର ଦେଶ ସମ୍ବନ୍ଧୀୟ— 1 Relating to Tartar.
Tātāri
तातारी
**तातारी**
୨ । ତାତାର ଦେଶବାସୀ— 2 Residing in Tartar.
ବି—ତାତାରବାସୀ ବ୍ୟକ୍ତି—An inhabitant of Tartary.

**ତାତି**—ଦେ. ବି. (ସଂ. ତପ୍ତି)—୧ । ଗରମି; ଉତ୍ତାପ; ତାପ— 1. Heat; warmth.
Tati
ताप
**ताप**
୨ । ଜ୍ୱର ଜନିତ ଦେହର ଉତ୍ତାପ— 2. High temperature of body due to fever.
୩ । ଅଗ୍ନି ଅଥବା ତେଜ; ଧାସ୍; ଝାଞ୍ଜି—3. Glare; blaze.
୪ । (ଲକ୍ଷଣାର୍ଥ) କ୍ରୋଧ—4. Wrath, anger
ସଂ. ବି.—(ତାସ୍ଥ ଧାତୁ=ପାଳନ କରିବା+କର୍ମ. ତି)—ପୁତ୍ର (ହି. ଶବ୍ଦସାଗର)—Son.

**ତାତି ଉଠିବା**—ଦେ. କ୍ରି. (ସଂ. ତପ୍ତ)—୧ । ଉତ୍ତପ୍ତ ହେବା— 1. To become warm or heated.
Tati uthibā
तातना
**तप जाना**
୨ । (ଲକ୍ଷଣାର୍ଥ) ଅତ୍ୟନ୍ତ ରାଗିଯିବା—2. (figurative) To become angry; to warm up.
(ତାତିଯିବା—ଅନ୍ୟରୂପ) (ଯଥା—ଏ ସାମାନ୍ୟ କଥାରେ କାହିଁକି ତାତି ଉଠୁଛ କୁଆଁ ?)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଏଂସ୍ | ତ୍ଥ | ଢ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଶ୍ୟ | ଞ୍ଥ | ଓ | ଡ଼ |

**ତାତି ପିଟିବା**—ଦେ. ବ.—ଝାଞ୍ଜି ପିଟିବା; ହେଙ୍ଗୁଲା ବୋହିବା; ଅତ୍ୟନ୍ତ
Tāti piṭibā ଉତ୍ତପ୍ତ ପବନ ବହିବା—The blowing of very hot blasts.
ତାତି ବହିବା, ତାତି ବୋହିବା } ଅନ୍ୟରୂପ
( ଯଥା—ବୈଶାଖ ମାସ ଦ୍ୱିପହରରେ ପାହାଡ଼ତଳଅଞ୍ଚ ଗାଆଁମାନଙ୍କରେ ଖୁବ ତାତି ପିଟେ । )

**ତାତିବା**—ଦେ. କ୍ରି.—(ସଂ. ତପ୍ ଧାତୁ)—୧ । ଉତ୍ତପ୍ତ ହେବା—
Tātibā 1. To become heated.
तातना ବାହୁ ତାତ ହସ ଶୁଣି ପ୍ରାତ ହତ ଚେତନ କାହାରେ
तपना ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ
୨ । ଜ୍ୱର ଯୋଗୁଁ (ଦେହ) ଉଷ୍ମ ହେବା—
2. ( the bodily heat ) To rise in temperature.
୩ । ପୋଡ଼ିଯିବା—3. To burn; to be burnt.
[ଦ୍ର—ଲୋକେ ଅଶୁଭସୂଚକ ବାକ୍ୟ 'ଘର ପୋଡ଼ିଗଲା' ନ କହି 'ଘର ତାତିଗଲା' କହନ୍ତି ।]
୪ । ( ଲକ୍ଷଣାର୍ଥ ) ରାଗିଯିବା—4. To be angry or ruffled; to flare up.
(ଯଥା—ସାମାନ୍ୟକଥାରେ ଏପରି ତାତିବାଟା ସୁନ୍ଦର ନୁହେଁ ।)

**ତାତି ଯିବା**—ଦେ. କ୍ରି—୧ । ପୋଡ଼ିଯିବା; ଦଗ୍ଧହେବା—
Tāti jibā 1. To be burnt; to be scorched.
ताता ୨ । (ପେଟ; ଅନ୍ତ) କ୍ଷୁଧାପୀଡ଼ିତ ହେବା—
तप जाना 2. To be troubled with hunger.
ପୂର୍ବେ ପ୍ରଜା କ୍ଷୁଧାଗ୍ନିରେ ଯେ ପୀଡ଼ିତ,
ହୋଇବା ସକାଶେ ତାତଇ ଅନ୍ତ । କୃଷ୍ଣସିଂହ. ମହାଭାରତ: ବନ ।

**ତାତିଲ୍**—ପ୍ରାଦେ. (ସମ୍ବଲପୁର) ବୈଦେ. ବି. (ଅ.)—୧ । ଛୁଟି; ଫୁର୍ସତ
Tātil ବା କାର୍ଯ୍ୟରୁ ମିଳିବା ଅବସର—
1. Vacation; holiday.
୨ । କାର୍ଯ୍ୟ ସ୍ଥଗିତ—
2. Stoppage or closing of work.

**ତାତିଲ୍ କରିବା**—ପ୍ରାଦେ. (ସମ୍ବଲପୁର) ବୈଦେ. କ୍ରି.—ଅଦାଲତ ବା ଅଫିସ କାମ ବନ୍ଦ କରିବା—To close a court or office.
Tātil karibā
(ଯଥା—ଡିପ୍ଟି ହାକିମ ସନ୍ଧ୍ୟା ୬ଟା ବେଳେ କଚିରି ତାତିଲ୍ କରି କୋଠିକୁ ଗଲେ ।)

**ତାତିଲା**—ଦେ. ବିଶ. (ସଂ. ତପ୍ତ)—ତାତିଲା; ତତଲା; ଉତ୍ତପ୍ତ; ଗରମ—
Tātilā Hot; warm.
तातिल ଦୂର ଅଣି ତାତିଲା ଖଣ୍ଡା ପଡ଼ ଭଲ,
तता, तातल ବହୁଲେ ଏ ତରିକ ଉଠରେ ଦଣ୍ଡର । କୃଷ୍ଣସିଂହ. ମହାଭାରତ. ସଭା ।

**ତାତୁଣିଆ**—ଦେ. ବିଶ. (ସଂ. ତପ୍ତ)—୧ । ତପ୍ତ; ଉତ୍ତପ୍ତ—
Tātuṇiā 1. Heated; hot; warm.
ताता ୨ । ଯେଉଁ ବ୍ୟକ୍ତି ହଠାତ୍ ରାଗି ଯାଏ—
ताता 2 Irritable; irascible; peevish.

**ତାତେ ତାତେ**—ଦେ. କ୍ରି. ବିଣ. (ସମୟବାଚକ ଦ୍ୱିତ୍ୱ ପ୍ରୟୋଗ) (ସଂ. ତପ୍ତ )—ଶୀତଳ ନ ହେଉଣୁ; ତାତି ଥାଉଁ ଥାଉଁ; ତାତିଲା ଥାଉଁ ଥାଉଁ—While hot; while still hot.
Tāte tāte
( ଯଥା—ଲୁହାକୁ ତ'ତେ ତାତେ ନ ବାଡ଼େଇଲେ ତାହା ଟେକିଲେ ବଢ଼ିବ ନାହିଁ । )

**ତାତ୍କାଳିକ**—ସଂ. ବିଣ. ( ତତ୍କାଳ + ଭବାର୍ଥେ. ଇକ )—ସେହି
Tātkālika ସମୟରେ ଘଟିଥିବା; ତତ୍କାଳଭବ; ତତ୍କାଳୋତ୍ପନ୍ନ; ସେହି ସମୟର; ସମସାମୟିକ—Happening at that time; contemporary.

**ତାତ୍ପର୍ଯ୍ୟ**—ସଂ. ବି. ( ତତ୍ପର=ସଚେଷ୍ଟ + ଭାବାର୍ଥେ. ଯ )—
Tātparjya ୧ । ଅଭିପ୍ରାୟ; ମର୍ମ; ଉଦ୍ଦେଶ୍ୟ; ସାରାଂଶ; ଅର୍ଥ; ଭାବାର୍ଥ—1. Intention; purpose or meaning of a speaker; gist; scope; design.
୨ । ତତ୍ପରତା—2. Readiness.
୩ । ଚାରୁତ୍ୱ ପରିପାଟୀ—
3. Beauty; grace; excellence.
( ଯଥା—ବୁଦ୍ଧିର ତାତ୍ପର୍ଯ୍ୟ । )
ଦେ. ବିଣ—୧ । ରମଣୀୟ; ସୁନ୍ଦର—
1. Beautiful; graceful.
୨ । ଚାରୁ; ଉତ୍କୃଷ୍ଟ—2. Excellent.
୩ । ଉପଯୁକ୍ତ—3. Fit; suitable.
୪ । ମନକୁ ରୁଚୁଥିବା; ମନୋମତ—
4. Gratifying; after one's heart or liking.
( ଯଥା—ଅତି ତାତ୍ପର୍ଯ୍ୟ ଭୋଜନଟାଏ ମିଳିଲା । )

**ତାତ୍ତ୍ୱିକ**—ସଂ. ବିଣ. ( ତତ୍ତ୍ୱ + ଇକ )—୧ । ତତ୍ତ୍ୱସମ୍ବନ୍ଧୀୟ—
Tātwika 1. Relating to Tattwa ( See )
୨ । ତତ୍ତ୍ୱଜ୍ଞାନଯୁକ୍ତ—
2. Furnished with knowledge.
୩ । ଯଥାର୍ଥ—3. Actual; true.

**ତାତ୍ସ୍ଥ୍ୟ**—ସଂ. ବି. ( ତତ୍ସ୍ଥ + ଭାବାର୍ଥେ. ଯ )—
Tātsthya ୧ । ଏକ ବସ୍ତୁ ମଧ୍ୟରେ ଅନ୍ୟ ବସ୍ତୁର ସ୍ଥିତି—
1. The state of one thing being contained in another.
୨ । ବ୍ୟଞ୍ଜନାମୂଳକ ଅଳଙ୍କାରବିଶେଷ—
2. A figure in rhetoric in which the container indicates the thing contained.

**ତା ଥଉଁ**—ଗ୍ରା. ସର୍ବନାମ—ତାଠାରୁ; ତାଠଉଁ; ତାଠାରୁ—
Tā thaun From that; from him or her.
(ତାଅଥିଁ; ତାଥିଁ; ତାଥିରୁ; ତାଥୋଉଁ;
ତାଥୌଁ; ତାହାଥିଁ; ତାହାଥୋଉଁ—ଅନ୍ୟରୂପ )

ସାଧାରଣ ଲୋକେ ଅପର ପୃଷ୍ଠାରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ବାର୍ଣ୍ଣ' ନ ମିଳିଲେ 'ବାର୍ଣ୍ଣ' ଦେଖିବେ, 'ବୃଥ' ନ ମିଳିଲେ 'ବୃଥ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତା ଥିରେ**—ଗ୍ରା. ସର୍ବନାମ. (ସ. ତତ୍ର)—ତହିଁରେ; ତତ୍ର—
Tā thire — In that
( ତାଥେରେ; ତାହାଠେରେ—ଅନ୍ୟରୂପ )

**ତାଥୈଥୈ କରିବା**—ଦେ. କ୍ରି—କୌଣସି କାର୍ଯ୍ୟ ନିମନ୍ତେ କୌଣସି
Tāthaithai karibā ବ୍ୟକ୍ତିଙ୍କୁ ଜଗର କରି ଅସ୍ଥିର କରି
थैथै करा पकाइବା—To worry a person with
ताथै करना repeated requests to do a thing

**ତାଦବସ୍ଥ୍ୟ**—ସ. ବି. (ତଦବସ୍ଥା=ସେହି ଅବସ୍ଥାଯୁକ୍ତ+ଭାବାର୍ଥେ. ଯ)—
Tādabasthya ସେହି ଅବସ୍ଥାରେ ରହିବାର ଭାବ; ତଦ୍ରୂପତା—
Sameness; the state of remaining in the same condition; the state of retaining the previous condition.

**ତାଦର୍ଥ୍ୟ**—ସ. ବି. ( ତଦର୍ଥ=ତନ୍ନିମିତ୍ତ+ଭାବାର୍ଥେ. ଯ )—
Tādarthya ୧ । ତଦର୍ଥତା; ଏକାଧିକ ବସ୍ତୁର ଉଦ୍ଦେଶ୍ୟ ଏକ ହୋଇ ଥିବା ଅବସ୍ଥା—1. Identity of object.
୨ । ଅଭେଦ, ତତ୍ସ୍ୱରୂପତା—
2. Sameness; identity.
୩ । ( ତଦର୍ଥ=ସେହି ଅର୍ଥ+ଭାବାର୍ଥେ. ଯ )—ଦୁଇ ଶବ୍ଦ ବା ବାକ୍ୟର ଏକାର୍ଥ ବୁଝାଇବାର ଅବସ୍ଥା—
3. Similarity or identity of meaning of two words or sentences.

**ତାଦାଦ୍(ଦ୍)**—ବୈଦେ. ବି. ( ଆ. ତଅଦାଦ୍=ସଂଖ୍ୟା )-( କଚେରୀ )
Tādāt(d) ମକଦ୍ଦମାରେ ପ୍ରାର୍ଥିତ ଦାବୀର ପ୍ରକୃତ ବା
तायदाद କଳ୍ପିତ ମୂଲ୍ୟ—Valuation of a suit.
तादाद्

**ତାଦାତ୍ମ୍ୟ**—ସ. ବି. ( ତଦାତ୍ମ=ଏକାତ୍ମ+ଭାବାର୍ଥେ. ଯ )—ଏକାତ୍ମତା;
Tādātmya ଏକାତ୍ମଭାବ; ତତ୍ସ୍ୱରୂପତା; ଅଭେଦ—
Identity; similarity.

**ତାଦୃକ୍**—ସ. ବିଣ. ପୁଂ ଓ କ୍ଲୀ. ( ତଦ୍=ସେହି+ଦୃଶ୍ ଧାତୁ=ଦର୍ଶନ
Tādṛuk କରିବା+କର୍ମ. କ୍ୱିପ୍; ତଦ୍ ସ୍ଥାନରେ ତା ଆଗମ; ତାଦୃଶ୍
ଯଦୃକ୍ } ସମସ୍ତ ଶବ୍ଦ; ୧ମା. ୧ବ. ଯାହା ସେହିପରି ଦେଖା
ଏତାଦୃକ୍ } ଯାଏ )—ତଦ୍ରୂପ; ତଦ୍ବିଧ; ସେହିପରି—
( ତାଦୃଶୀ—ସ୍ତ୍ରୀ ) Such; similar; identical; analogous

**ତାଦୃକ୍ଷ**—ସ. ବିଣ. ପୁଂ. ଓ କ୍ଲୀ ( ତଦ୍+ଦୃଶ୍ ଧାତୁ+କର୍ମ. ସ )—
Tādṛuksha ତଦ୍ରୂପ—Similar to that
( ତାଦୃକ୍ଷା—ସ୍ତ୍ରୀ )

**ତାଦୃଶ**—ସ. ବିଣ. ପୁଂ. ଓ କ୍ଲୀ. ( ତଦ୍+ଦୃଶ୍ ଧାତୁ+କର୍ମ, ଅ )—
Tādṛuśa ଏବମ୍ଭୂତ; ତଦ୍ରୂପ; ତାଦୃକ୍, ତାହାପରି; ସେହିପରି—
( ତାଦୃଶୀ—ସ୍ତ୍ରୀ ) Such; suchlike; similar to that.
( ଯଦୃଶ; ଏତାଦୃଶ—ସମସ୍ତ )

**ତା ଦେଇ**—ଗ୍ରା. ସର୍ବନାମ—ତାହାଦ୍ୱାରା—
Tā dei — By him, her or it.
उसद्वारा उसका हातसे
ତାଦେଇକି; ତା'ଦେଇ; ତାଦେଇଟେ; } ଅନ୍ୟରୂପ
ତାଦେଇକି; ତାଦେଇଟେ }

**ତାଧିଆ**—ଦେ. ବି—୧ । ନର୍ତ୍ତକ ବା ନର୍ତ୍ତକୀଙ୍କ ପଛରେ ବାଦ୍ୟ
Tādhiā ବଜାଇବା ଲୋକ—
ताधा 1. A person walking behind a dancer and playing on a musical instrument.
୨ । ନର୍ତ୍ତକ ନର୍ତ୍ତକୀଙ୍କର ତାଳ ଅନୁସାରେ ନୃତ୍ୟ—
2. The rhythmic dancing of dancers.
ଦକ୍ଷିଣୀ ନଟୀପଣ ଅଛି ଗୋଟିଏ ତାଧିଆ
ଶୁଣି ଶୁଣ କାନ ହୋଇ ଗଲଣି ବଧିଆ—ଫକୀରମୋହନ. ଉତ୍କଳଭ୍ରମଣ

**ତାନ୍**—ଦେ. ବିଣ. ( ସଂ. ତନ୍ମୟ )—୧ । ଚୂର; ଭୋଳ—
Tān 1. Intoxicated.
( ଯଥା—ସେ ନିଶାରେ ତାନ୍ ହୋଇ ରହିଛି । )
୨ । ବିହ୍ୱଳ; ଅଭିଭୂତ—2. Overwhelmed.
( ଯଥା—ସେ ରାଗରେ ତାନ୍ ହୋଇ ରହିଛି । )

**ତାନ୍‌ସେନ୍**—ଦେ. ବି. ( ନାମ )—ମୋଗଲ ସମ୍ରାଟ ଆକବରଙ୍କ ସମୟର
Tān-sen ବିଖ୍ୟାତ ସଙ୍ଗୀତାଚାର୍ଯ୍ୟ—Name of a famous professor of music during the reign of the Moghal emperor Ākbar.

[ ଦ୍ର—ଏହାଙ୍କର ଜନ୍ମ ଗୋୟାଲିୟର ରାଜ୍ୟରେ; ଏ ଜାତିରେ ବ୍ରାହ୍ମଣ ଏବଂ ଏହାଙ୍କର ନାମ ତ୍ରିଲୋଚନ ଥିଲା । ଏ ଆକବର୍ ବାଦସାହାଙ୍କ ଅମଳର ପ୍ରସିଦ୍ଧ ଗାୟକ ଥିଲେ । ସଙ୍ଗୀତଜ୍ଞ ପଣ୍ଡିତମାନେ କହନ୍ତି ଏପରି ଗାୟକ ଆଜି ପର୍ଯ୍ୟନ୍ତ ଭାରତରେ ଜନ୍ମି ନାହାନ୍ତି । ଏ ରାଜା ମାନସିଂହଙ୍କ ପ୍ରତିଷ୍ଠିତ ସଙ୍ଗୀତ ବିଦ୍ୟାଳୟରେ ପ୍ରଥମେ ଶିକ୍ଷା ଲାଭ କରିଥିଲେ । ତତ୍ପରେ ବୃନ୍ଦାବନର ପ୍ରସିଦ୍ଧ ହରିଦାସ ବାବାଜୀଙ୍କ ଶିଷ୍ୟତ୍ୱ ଗ୍ରହଣ କରି କେତେ କାଳ ସଙ୍ଗୀତ ବିଦ୍ୟା ଶିଖିଲେ । କେହି କେହି କହନ୍ତି ଏ ପ୍ରସିଦ୍ଧ ମୁସଲମାନ୍ ଓସ୍ତାଦ୍ ହଜରତ୍ ମହମ୍ମଦ ଗାଉସଙ୍କ ନିକଟରେ ଓ ଧ୍ରୁପଦର ଆବିଷ୍କାରକ ବୃନ୍ଦାବନର ସାରଦା ସ୍ୱାମୀଙ୍କ ନିକଟରେ ସଙ୍ଗୀତ ଶିକ୍ଷା କରିଥିଲେ । ଏ ପ୍ରଥମେ ଭାଟର ରାଜା ରାମଚନ୍ଦ୍ର ବଘେଲଙ୍କର, (ମତାନ୍ତରରେ ରେୱା ମହାରାଜଙ୍କ) ରାଜସଭାର ଜଣେକ ପାରିଷଦ ଥିଲେ । ଏହାଙ୍କର ଖ୍ୟାତି କ୍ରମେ ଦେଶବ୍ୟାପୀ ହୋଇଥିଲା । ସମ୍ରାଟ ଆକବର ସିଂହାସନ୍ ହେବାର ୧୦ ବର୍ଷ ପରେ ଏହାଙ୍କ ଖ୍ୟାତି ଶୁଣି ଏହାଙ୍କୁ ଡକାଇଲେ ଓ ଏହାଙ୍କ ଗାନରେ ଏପରି ମୁଗ୍ଧ ହେଲେ ଯେ ଏହାଙ୍କୁ ଦୁଇ ଲକ୍ଷ ଟଙ୍କା ପୁରସ୍କାର ଦେଲେ ଏବଂ ନିଜ ରାଜ ସଭାରେ 'ନବରତ୍ନ' ମଧ୍ୟରେ ଏକତମ ରୂପେ ଏହାଙ୍କୁ ପ୍ରତିଷ୍ଠିତ କଲେ । କେତେକ ଦିନ ପରେ ତାନ୍‌ସେନ୍ ଗୋଆଲିୟର ଯାଇ ସେଠାରେ ମହମ୍ମଦ୍ ଗୌସ୍ ନାମକ ଫକୀରଙ୍କଠାରୁ କଲମା ପଢ଼ି

| | | |
|---|---|---|
| [illegible] | ଅନୁନାସିକ ଯୁକ୍ତାକ୍ଷର | [illegible] |
| [illegible] | [illegible] | [illegible] |

ମୁସଲମାନ ଧର୍ମରେ ଦୀକ୍ଷିତ ହେଲେ, ଓ ସେହି ଦିନଠାରୁ ଏହାଙ୍କର ନାମ ତାନ୍‌ସେନ୍ ହେଲା । ପୁଣି ପ୍ରବାଦ ଅଛି ଯେ ବାଦଶାହା ଅକବରଙ୍କ କନ୍ୟାଙ୍କ ଆଗରେ ତାନ୍‌ସେନ୍ ଗୀତ ଗାଉଥିବା ସମୟରେ ସେ ଯେମାନଙ୍କ ରୂପରେ ମୁଗ୍ଧ ହେବା ଦେଖି ଅକବର ତାନ୍‌ସେନ୍‌ଙ୍କ ସଙ୍ଗେ ନିଜ ଝିଅଙ୍କ ବିବାହ କରାଇଲେ । କଥିତ ଅଛି ଯେ ତାନ୍‌ସେନ୍ ପାନ୍ଥିକ ବ୍ୟାଧିଗ୍ରସ୍ତ ହୋଇ ମୃତ୍ୟୁ ହୋଇଗଲେ ଓ ତାଙ୍କର କବର ଗୋୟାଲିୟରରେ ଅଛି । କବର ନିକଟରେ ଗୋଟିଏ ତିନ୍ତୁଳି ଗଛ ଅଛି । ପ୍ରଭୃତି ଭାରତର ଅନେକ ଗାୟକ ଏଠାରେ ସମବେତ ହୁଅନ୍ତି ଓ ଏ ତିନ୍ତୁଳି ଗଛର ପତ୍ର ଚୋବାନ୍ତି । ତାନ୍‌ସେନ୍‌ଙ୍କ ରଚିତ ଗୋଟିଏ ଗ୍ରନ୍ଥ ମିଳିଅଛି । ପୁଣି କେହି କେହି କହନ୍ତି ଯେ ମୁସଲମାନ୍ ଐତିହାସିକ ଅବୁଲ୍ ଫାଜଲ୍ ଏହାଙ୍କୁ ତାନ୍‌ସେନ୍ ମିଶ୍ର ବୋଲି ଲେଖି ଅଛନ୍ତି, କିନ୍ତୁ ସେ ମୁସଲମାନ୍ ଧର୍ମ ଗ୍ରହଣ କରି ନ ଥିଲେ । ଆଜି ପର୍ଯ୍ୟନ୍ତ ସିନ୍ଧିଆ ରାଜ-କୋଷରୁ ଅର୍ଥବ୍ୟୟ ହୋଇ ପୁଷ-ମାଘ ମାସରେ ତାଙ୍କ ଜନ୍ମସ୍ଥାନରେ ଗୋଟିଏ ମେଳା ଓ ଉତ୍ସବ ଅନୁଷ୍ଠିତ ହେଉଅଛି । ହି. ଶବ୍ଦସାଗର । ]

**ତାନ**—ସଂ. ବି (ତନ୍ ଧାତୁ=ବିସ୍ତାରିତ ହେବା+କର୍ମ ବାଚ୍ୟରେ, **Tāna** ଘଞର୍ଥେ ଅ (ଘଞ୍); ଯାହା ଗାୟକ କର୍ତ୍ତୃକ ବିସ୍ତାରିତ ହୁଏ; ତୁଳନା କର ଇଂ—ଟୋନ୍, ଟିଉନ୍; ଗ୍ରୀକ୍ ଟୋନସ୍; ଲାଟିନ୍-ଟୋନସ୍; ଫ୍ରେଞ୍ଚ-ଟନ୍; ଜର୍ମାନ ଟନ୍; ଡେନ୍‌ମାର୍କ-ଟୋନ୍; ଡଚ୍-ଟୁନ୍ )—

୧ । ଗୀତର ସ୍ୱରବିସ୍ତାର; ଆଳାପବିଶେଷ; ଅନୁଲୋମ ଗତିରେ ଗମନ; ମୂର୍ଚ୍ଛନା ଦ୍ୱାରା ଗୀତର ସ୍ୱର ଓ ରାଗାଦିର ବିସ୍ତାର; ସ୍ୱରଗ୍ରାମ—1. The key note of music; the flourish of a song.

[ଦ୍ର—ସଙ୍ଗୀତ ଦାମୋଦର ଗ୍ରନ୍ଥର ମତରେ ସ୍ୱରମାନଙ୍କରୁ ଉତ୍ପନ୍ନ ତାନର ସଂଖ୍ୟା ୪୯ ଓ ଏଥିରୁ ୮୩୦୦ ( ମତାନ୍ତରରେ ୫୦୪୦ ) କୂଟତାନ ବାହାରିଅଛି । ହି ଶବ୍ଦସାଗର । ]

୨ । ଗୀତର ରାଗ ବା ସ୍ୱର; ଗୀତରେ ରାଗିଣୀର ଆଳାପ; ଗତ୍-

2. Tune of a song; the strain of a song;

୩ । ଜ୍ଞାନବିଷୟ; ଇନ୍ଦ୍ରିୟ ଆଦି ଦ୍ୱାରା ଅନୁଭୂତ ବିଷୟ—

3. An object of perception through the senses.

୪ । (+ଭାବ. ଅ) ବିସ୍ତାର—4. Expansion.

୫ । ଗାୟକର ସ୍ୱର—

5. The voice of a singer.

ଦେ. ବି—୧ । ଲକ୍ଷ୍ୟ; ଉଦ୍ଦେଶ୍ୟ—1. Aim; object.

ମାତାଙ୍କୁ ଆଉଛି ଏବ ତାନ ମନେ । ରଥଯାତ୍ରା- ଜଗବନ୍ଧୁ ।

୨ । କ୍ରୋଧାଦିର ଦଶା ବା ବେଗ; କ୍ରୋଧାଦିର ଆତିଶଯ୍ୟ; ଧମକ; ଝଙ୍କ; ଝାଙ୍କ —2. Paroxysm ( of rage etc ); fit ( of passion ); volley ( of abuse ); gust ( of wind ).

তান
तान

୩ । ଲୁଗା ବୁଣିବା ସକାଶେ ତନ୍ତୀମାନେ ଯେଉଁ ଟାଣୀ ଓ ଭରଣି ସୂତା ସଜାଡ଼ି ରଖନ୍ତି—3. The warp and woof thread kept ready before weaving.

তানা

তানা ୪ । ଲୁଗାର ଲମ୍ବ ବାଗର ସୂତା; ଟାଣି ସୂତା—

तानो 4. The warp of a cloth.

୫ । ବେଗ—5. Force; velocity.

( ଯଥା—ମେଲ୍‌ଗାଡ଼ି କେଡ଼େ ତାନରେ ଗଲାଣି । )

୬ । ଜୋର; ବଳ—6. Severity; force.

( ଯଥା—ମୋ ମୁଣ୍ଡରେ ଠେଙ୍ଗାଟା କେଡ଼େ ତାନରେ ବାଜିଗଲା । )

୭ । ସବାରି ବା ପାଲିଙ୍କିର ବାଉଁଶ ସଙ୍ଗେ ସବାରିର କଲେବରକୁ ଆଣ୍ଟି ଧରିବା ନିମନ୍ତେ ବ୍ୟବହୃତ ଲୁହାର ଛଡ଼ି ବା ଦଉଡ଼ି—7. Ropes or iron bars which keep the body of a palky or litter firmly attached to the poles.

୮ । ଉଚ୍ଚୈଃସ୍ୱରରେ ଡାକ—8. Halloo.

୯ । ପ୍ରବାହ; ଅବିରଳ ଧାରା—

9 Continuous flow; current.

୧୦ । ଅବିଚ୍ଛିନ୍ନ ଥର; ବାର—

10 Stretch; strain.

( ଯଥା—ଘରୁ ବାହାରି ମୁଁ ଏକାତାନକେ ଯାଇ କଟକରେ ପହଞ୍ଚିଗଲି । )

୧୧ । କ୍ରୋଧମୟ ଚଢ଼ା ସ୍ୱର—11. Angry voice; loud and angry tone.

**ତାନକ**—ଦେ. ବି.—ଏକଥର ମାତ୍ର; ଥରେ—
**Tānaka** Once only

(ଯଥା—ଏହି ତାନକ ଛାଡ଼ି ଦାଣି ମୁଁ ଘରକୁ ଯିବି ।)

**ତାନ କାଢ଼ିବା**—ଦେ. କ୍ରି.—କ୍ରୋଧ ପ୍ରକାଶ କରିବା; କ୍ରୋଧର **Tāna kāṛhibā** ବାହ୍ୟ ଲକ୍ଷଣ ( ଅର୍ଥାତ୍ ଉଗ୍ର ଓ କଠୋର **तान तोड़ना** ଉଚ୍ଚୈଃସ୍ୱର ) ଦେଖାଇବା—

ତାନ ଦେଖା(ଖେ)ଇବା } ଅନ୍ୟରୂପ
ତାନ ବାହାରକରିବା

To give vent to one's anger or rage.

**ତାନକେ**—ଦେ. ଅ.—ଥରକେ—
**Tānake** At a time; at a stretch; in one strain.

(ତାନେକେ—ଅନ୍ୟରୂପ) (ଯଥା—ଏକା ତାନକେ ମୁଁ ଏ କଥାଟା କହି ଦେଇଗଲି ।)

**ତାନ ଛିଣ୍ଡା(ଣ୍ଡେ)ଇବା**—ଦେ. କ୍ରି.—୧ । ଝାଙ୍କ ଛିଣ୍ଡେଇବା; ଦଶା ବା **Tāna chhiṇḍā(ṇḍe)ibā** ଜୋର୍ ପୂର୍ବକ କୌଣସି କାର୍ଯ୍ୟ **तान उड़ाना** କରିବା; ଏକାଦମ୍‌କେ କୌଣସି କାମ କରିବା—

1. To do any thing in one strain.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତୀୟ ୧ ଚକ୍ଷିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ଷିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ଷିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥାବୋଧରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚକ୍ଷିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଉ' ନ ମିଳିଲେ 'ଗାଣ୍ଡ' ଖୋଜିବେ; 'କୁଥ' ନ ମିଳିଲେ 'କ୍ୱଥ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୨ । ଗାଳିମନ୍ଦ କରିବା—2. To abuse; to scold.

**ତାନ ଛିଣ୍ଡିବା**—ଦେ. ବି.—ମାଡ଼, କାମ, ଗାଳି ଆଦି ଆରମ୍ଭ ହୋଇ ଏକା ଦମ୍ଭାକେ ଶେଷ ହେବା; ଝାଙ୍କ ଛିଣ୍ଡିବା—
Tāna chhindibā
The finish of one fit of speech, rebuke etc.

**ତାନ ଟେକିବା**—ଦେ. କ୍ରି.—୧ । ଗୀତର ସ୍ୱରକୁ କ୍ରମଶଃ ଉଚ୍ଚତର କରିବା—1. To make the voice louder and louder while singing a song.
Tāna ṭekibā
তানতোলা
तान भरना
୨ । କ୍ରୁଦ୍ଧ ହେବା—2. To be possessed with a fit or paroxysm of anger.
(ଯଥା—ହରେ ! ତୋର କଅଣ ତାନ ଟେକିଛି କି ? ଅଜଣା ଭୁ ଘରର ସମସ୍ତଙ୍କୁ ଖୋଧୁଛୁ । )

**ତାନ ତରଙ୍ଗ**—ସ. ବି.—( ୬ଷ୍ଠୀ ତତ୍; ତାନ + ତରଙ୍ଗ)—ସଙ୍ଗୀତ ଲହରୀ ସ୍ୱରଲହରୀ—A continuous wave or flourish of songs.
Tāna taranga

**ତାନ ଧରିବା**—ଦେ. କ୍ରି.—୧ । ଗୀତ ବୋଲାଯିବା ଆଗରୁ ଉକ୍ତ ଗୀତର ସ୍ୱର ବା ସ୍ୱରକୁ ଆବୃତ୍ତି କରିବା; ଗୀତ ବୋଲିବା ପୂର୍ବରୁ 'ତାନା ନାନା' ଆଦି ଦ୍ୱାରା ନିର୍ଦ୍ଦିଷ୍ଟ ସ୍ଥାନରେ ସନ୍ନିପାତ କରି ଉକ୍ତ ଗୀତର ସ୍ୱରକୁ ଆବୃତ୍ତି କରିବା—1. To flourish a tune or recite the key-note before singing a song.
Tāna dharibā
তান ধরা
तान उड़ाना
[ଯଥା—"ବନ୍ଦଇ ସାରଳା ମା ଗୋ ତୋର ଶ୍ରୀଚରଣେ"
ଏହି ଗୀତ ବୋଲିବା ପୂର୍ବରୁ ଗାୟକ
'ନାରେ ନାରେ ନାରେ ନାରେ ନାରେ ନାରେ ନାରେ'
ଆବୃତ୍ତି କରି ଉକ୍ତ ଗୀତର ତାନ ଧରନ୍ତି, ତାପରେ ଅସଲ ଗୀତକୁ ବୋଲନ୍ତି ।]

**ତାନପୁରା**—ଦେ. ବି. (ସ. ତାନପୁରା)—ବୀଣା ଯନ୍ତ୍ର ବିଶେଷ—A kind of harp.
Tānapurā
তানপুরা
तानपूरा
ପଠାଣ ସର ତଳବଇଥ ମାଇବନଅଙ୍କ ପର ତାନପୁରାଃ ଏବ ପଞ୍ଚଥରେ ବାଇଛି ହାଣି ପର ତବଲ ଗୁଡ଼ାଏ ଗଭ ଅଛି ।
ପଞ୍ଚାର ମୋହନ. ଚମାଣ ଅଠଗଣ୍ଡ ।
(ତାନପୁରି, ତମ୍ବୁରା, ତାମ୍ବୁରା—ଅନ୍ୟରୂପ)

**ତାନପୂରା**—ସ. ବି.—(ତାନ+ପୂର ଧାତୁ=ପୂର୍ଣ୍ଣ କରିବା+କର୍ତ୍ତୃ. ଅ +ଆ; ଯେଉଁ ଯନ୍ତ୍ରର ଧ୍ୱନିଦ୍ୱାରା ଗାୟକର ସ୍ୱର ପୂର୍ଣ୍ଣ ହୁଏ)—ବୀଣାକୃତି ବାଦ୍ୟଯନ୍ତ୍ରବିଶେଷ; ତମ୍ବୁରା; ତାମ୍ବୁରା—A kind of harp.
Tānapūrā

**ତାନବ**—ସ. ବି. (ତନୁ=କୃଶ+ଭାବାର୍ଥେ. ଅ)—୧ । କୃଶତା; କାର୍ଶ୍ୟ 1. Slenderness.
Tānaba
୨ । ତନୁତା; କ୍ଷୀଣତା—2. Weakness; thinness.
୩ । ଅଳ୍ପତା—3. Smallness; minuteness.

**ତାନ ମାନ**—ଦେ. ବି. (ଦ୍ୱନ୍ଦ୍ୱ; ସହଚର ଶବ୍ଦ; ସ. ତାନ+ମାନ)—
Tāna māna
୧ । ଗୀତର ସ୍ୱର ବିସ୍ତାର ଓ ସ୍ୱର ପରିମାଣ; ଗୀତର ସ୍ୱରର ଆଳାପ ଓ ତାଳ ପକାଇବା; ସ୍ୱର ଓ ତାଳ—1. The tune and cadence of a song
তান মান
तानलय, तानमान
କରତାଳ ଦେଇ ଗୀତ ଗାଇ ଥିଲେ ଘୋର କରି ତାନ ମାନ ।
ନନ୍ଦକିଶୋର, ନର୍ମଦାଲୀ ।
୨ । ସ୍ୱରଅନୁସାରେ ଗାୟକର ବୋଲିବା ଗୀତ ଓ ବାଦକର ତଦନୁସାରେ ଦେବା ତାଳ—2. The singing of a song to tune accompanied with the beating of time.
୩ । (ଲକ୍ଷଣାର୍ଥ) କ୍ରୋଧଜନିତ ସ୍ୱର ଓ ଅଙ୍ଗଭଙ୍ଗୀ—3 (figurative) Angry voice accompanied with postures; paroxysm of rage with postures.

**ତାନମାନ ଉଠିବା**—ଦେ. ବି.—କୌଣସି ଗୀତକୁ ଗାଇଁ ତାଳ ପକାଯିବା
Tānamāna uṭhibā
The tolling of the song to the accompaniment of music.

**ତାନମାନ କାଢ଼ିବା**—ଦେ. କ୍ରି.—କ୍ରୋଧାନ୍ୱିତ ସ୍ୱର ସହିତ ଅଙ୍ଗଭଙ୍ଗି କରିବା—To make one's angry voice tally with one's postures, or airs or gait.
Tānamāna kāṛhibā
तान उड़ाना

**ତାନାଘନା**—ଦେ. ବି. ଦ୍ୱଣ. ଓ କ୍ରି. ବିଣ—ତନାଘନା (ଦେଖ)
Tānāghanā
Tanāghanā (See)
(ତନାଖେନା—ଅନ୍ୟରୂପ)

**ତାନା ତାନା**—ଦେ.ଅ.—ଗୀତ ବୋଲିବା ପୂର୍ବରୁ ସ୍ୱରାଳାପର ଆବୃତ୍ତି—Recitation of the keynote before the singing of a song.
Tānā tānā
তানা নানা
ताना रीरी
(ତାନା-ନା-ନା—ଅନ୍ୟରୂପ)

**ତାନି**—ଦେ. ବିଣ.—୧ । ରାଗୀ; କ୍ରୋଧପ୍ରକୃତିକ; କୋପନ ସ୍ୱଭାବ—1. Wrathful; hot-tempered
Tāni
तामसी
୨ । କ୍ରୁଦ୍ଧ—2. Passionate.
(ତାନିଅ; ତାନୁଆ—ଅନ୍ୟରୂପ)

**ତାନିସା କାମ**—ଦେ. ବି. (ବଣିଆ ଶବ୍ଦ)—ଖଣ୍ଡା ବା ତରବାରୀ ଆଦି ଉପରେ ଖୋଦାଇ କାମ ଦ୍ୱାରା ସୁନା ବା ରୁପାର ଫୁଲ ଓ ପତ୍ରଆଦି ଅଙ୍କିତ କରିବା କର୍ମ—Art of inlaying floral and other designs of gold and silver on the body of a sword.
Tānisā kāma
নকাসী
पच्चीकारि

**ତାନୁ**—ପ୍ରାଦେ. (ମେଦିନୀପୁର)—ତୋଡ଼ାଣି (ଦେଖ)
Tānu
Tordāṇi (See)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଘ | ଙ | ଋ,ୠ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ୍ଯ | ଜ୍ଞ | ଶ,ଷ | ଙ୍କ | ଉଦ୍ଘ | ଉତ୍ଥ | ଘ |
| ୨ | ଥ | ଉ | ରୁ | ଲୁ | ଙ୍ଗ | ଅକାରାନ୍ତବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | | ଖ୍ୟ | ଯ | ସ | ଗଂ୍ୟ | ଉଅ | ଡ଼ | ନ୍ |

ତାନୁର—ସଂ. ବି. (ତନ୍ ଧାତୁ—ବିସ୍ତୃତ ହେବା + କର୍ତ୍ତୃ, ଉର)—
Tānura ୧ । ଜଳର ଘୂର୍ଣ୍ଣି; ପାଣି ଭଉଁରି; ଆବର୍ତ୍ତ—
(ତାନୂର—ଅନ୍ୟରୂପ) 1. Eddy; whirlpool.
୨ । ଘୂର୍ଣ୍ଣିବାୟୁ (ହି. ଶବ୍ଦସାଗର)—2. Whirlwind.

ତାନେ—ଦେ. କ୍ରି. ବିଣ—୧ । ପୁରାଏ; ବହାଏ; ବହେ—
Tāne 1. Copiously; a crop or violent outpour of.
(ତାନେକେ—ଅନ୍ୟରୂପ) (ଯଥା—ସେ ମତେ ତାନେ ଗାଳି ଦେଇ ଗଲା; ଆଜି ଅଚ୍ଛା ତାନେ ବର୍ଷା ହୋଇଗଲା ।)
୨ । ଥରେ; ଏକଥର ମାତ୍ର—2 Once only.
(ଯଥା—ମୁଁ କଣ୍ଠରେ ଏତାତାନେ ତେଲର ବେକକୁ ହାଣି ଛିଣ୍ଡାଇ ଦେଇପାରେଁ ।)

ତାନ୍ତ—ସଂ. ବିଣ. (ତମ୍ ଧାତୁ=ମ୍ଳାନ ହେବା + କର୍ତ୍ତୃ. ତ)—
Tānta ୧ । କ୍ଳାନ୍ତ; ଶ୍ରାନ୍ତ—1. Tired; pulled down.
୨ । ମ୍ଳାନ—2. Faded.
୩ । ଦୁର୍ବଳୀକୃତ—3. Weakened; reduced.
୪ । (ବହୁବ୍ରୀହି; ତ + ଅନ୍ତ)—ଯେଉଁ ଶବ୍ଦର ଅନ୍ତରେ 'ତ' ଅକ୍ଷର ଅଛି—4. (word) Ending with the letter ta.
(ଯଥା—ଗତ, ମୃତ, ପୂତ, ହାରିତ ।)

ତାନ୍ତବ—ସଂ. ବି. (ତନ୍ତୁ + ବିକାରାର୍ଥେ. ଅ)—
Tāntaba ସୂତ୍ରନିର୍ମିତ ବସ୍ତ୍ର; ସୂତା ଲୁଗା—Cotton cloth.
ବିଣ—୧ । ସୂତ୍ର ନିର୍ମିତ—1 Made of thread.
୨ । ତନ୍ତୁ ବା ଏଣୁ ଅଂଶୁ ବିଶିଷ୍ଟ—2. Fibrous.
୩ । ଯାହାକୁ (ଯେଉଁ ଧାତୁକୁ) ପିଟିକରି ବା ଟାଣି ସରୁ ତାର କରାଯାଇ ପାରେ—3. Ductile

ତାନ୍ତବତା—ସଂ. ବି. (ତାନ୍ତବ + ଭାବାର୍ଥେ. ତା)—ଧାତୁର ଯେଉଁ
Tāntabatā ଗୁଣ ଯୋଗୁଁ ତାହାକୁ ଟାଣିଲେ ବା ପିଟିଲେ ସୂକ୍ଷ୍ମ ତାର ହୁଏ—Ductility.

ତାନ୍ତରା—ଦେ. ବି—ତେନ୍ତେରା; ଶଗଡ଼ର ଅକ୍ଷ ଉପରେ ବସିବା ନିମନ୍ତେ
Tāntarā ତଳପାଖେ ଗାର କଟାଯାଇଥିବା ଯେଉଁ ଲମ୍ବା କାଠ ଦୁଇ ଖଣ୍ଡ ଉପରେ ଶଗଡ଼ର ଦଣ୍ଡା ସଂଲଗ୍ନ ହୁଏ—
Long pieces of wood (with grooves to fit to the axle) which are set under the poles of a cart before they are fitted on the axle.

ତାନ୍ତିଆ ଟୋପୀ—ଦେ ବି. (ନାମ) (ହି. ତାନ୍ତିଆ—ସରୁ; କଥିତ ଅଛି
Tāntiā topi ଯେ ସେ ଦେଖିବାକୁ ଶୀର୍ଣ୍ଣକାୟ ଥିଲେ)—
ତାନ୍ତିଆ ଟୋପୀ ୧୮୫୭ ଖ୍ରୀଷ୍ଟାବ୍ଦରେ ଭାରତର ସିପାହୀବିଦ୍ରୋହ
ତାନ୍ତିଆ ଟୋପୀ ସମୟରେ ବିଦ୍ରୋହୀଦଳର ଜଣେକ ଅଧିନାୟକ—
(ତାନ୍ତିଅ ଟୋପୀ—ଅନ୍ୟରୂପ) The name of a leader of the rebellious forces during the Indian Sepoy mutiny of 1857 A. D.

[ ଦ୍ର—ଏ ମହାରାଷ୍ଟ୍ରୀୟ ବ୍ରାହ୍ମଣ ଓ ପ୍ରଥମେ ନାନାସାହେବଙ୍କ ଅଧୀନରେ କାମ କରୁଥିଲେ । ୧୮୫୭ ସାଲର ସିପାହୀବିଦ୍ରୋହ ସମୟରେ କାନପୁରରେ ଇଂରାଜମାନଙ୍କୁ ହତ୍ୟା କରିବା ବିଷୟର ଏ ପ୍ରଧାନ ଉତ୍ତେଜକ ଥିଲେ । ଏ ବିଠୁରର ଯୁଦ୍ଧରେ ବିଦ୍ରୋହୀ ସେନାମାନଙ୍କର ଅଧିନାୟକ ଥାଇ ଇଂରାଜମାନଙ୍କ ଦ୍ୱାରା ପରାଜିତ ହେଲେ । ପରେ ଯାଇ ଝାନ୍ସୀର ରାଣୀ ଯୋଧବାଈଙ୍କ ସଙ୍ଗେ ଇଂରାଜଙ୍କ ବିପକ୍ଷରେ ଯୋଗ ଦେଲେ, କିନ୍ତୁ ସେଠାରେ ପରାଜିତ ହୋଇ ପୁଣି ୨୦ ହଜାର ସୈନ୍ୟ ସଂଗ୍ରହ କଲେ ଓ ପୁଣି ପରାସ୍ତ ହେଲେ । କିଛିଦିନ ପରେ ଏ ଗୋଆଲିଅର ଦୁର୍ଗ ହସ୍ତଗତ କରି ସେଠାରେ ମଧ୍ୟ ପରାଜିତ ହୋଇ ମଧ୍ୟଭାରତ, ରାଜପୁତାନା ଓ ବୁନ୍ଦେଲଖଣ୍ଡରେ ଲୁଣ୍ଠ କରୁଥିଲେ । ପରେ ୧୯୫୯ ମସିହାରେ ଧରା ପଡ଼ି ବିଚାରରେ ରାଜବିଦ୍ରୋହ ଅପରାଧରେ ଅପରାଧୀ ସାବ୍ୟସ୍ତ ହୋଇ ପ୍ରାଣଦଣ୍ଡରେ ଦଣ୍ଡିତ ହେଲେ । ଏ ଜଷ୍ଟୁର, ଟ୍ରୁଣ୍ଡି ଓ ବିଦ୍ରୋହୀମାନଙ୍କ ଦଳ ମଧ୍ୟରେ ଏକମାତ୍ର ଯୁଦ୍ଧନିପୁଣ ବ୍ୟକ୍ତି ଥିଲେ । ସୁବଳଚନ୍ଦ୍ର- ବଙ୍ଗଳା ଅଭିଧାନ । ଏହାଙ୍କୁ କେହି କେହି ତାନ୍ତିଅ ଭିଲ ବୋଲି କହନ୍ତି ଓ ଏ ଭିଲ ସର୍ଦ୍ଦାର ଥିବାର ମନେ କରନ୍ତି, କିନ୍ତୁ ଏହା ଭ୍ରମ । ]

ତାନ୍ତ୍ରିକ—ସଂ. ବିଣ. (ତନ୍ତ୍ର + ସମ୍ବନ୍ଧ ବା ଜ୍ଞାନ ଅର୍ଥେ ଇକ)—
Tāntrika ୧ । ତନ୍ତ୍ର ସମ୍ବନ୍ଧୀୟ—1. Relating to the Tantras.
୨ । କଳା ବା ବିଦ୍ୟା ବିଶେଷର ପାରିଭାଷିକ (ଶବ୍ଦ)—
2. Technical (words) (of a science or art).
୩ । ତନ୍ତ୍ର ଶାସ୍ତ୍ର ବେତ୍ତା—3. Well acquainted with or versed in the Tantras.
୪ । ମାରଣ, ମୋହନ, ବଶୀକରଣାଦି ଅଭିଚାର ପ୍ରୟୋଗକାରୀ—4. Applying tantric incantations or charms against people.
୫ । ବିଶେଷଜ୍ଞ—5. Specialising in any branch of knowledge.
୬ । ତନ୍ତୁ ସମ୍ବନ୍ଧୀୟ ( କ୍ଳାଉକେନ୍ତ )—
6. Fibrous; relating to fibres.
୭ । ସାମ୍ପ୍ରଦାୟିକ ବା ବିଶିଷ୍ଟ ମତ ସମ୍ବନ୍ଧୀୟ—
7. Sectarian.
୮ । ତନ୍ତ୍ର ସମ୍ବନ୍ଧୀୟ ( କ୍ଳାଉକେନ୍ତ )—
8. Relating to the loom.
ବି—୧ । ତନ୍ତ୍ରମତାବଲମ୍ବୀ ବ୍ୟକ୍ତି—1. Follower of the Tantras or an esoteric cult of the Hindus.
୨ । ସିଦ୍ଧାନ୍ତଜ୍ଞ ବ୍ୟକ୍ତି—2. A scholar; a specialist.
୩ । କୌଣସି ସମ୍ପ୍ରଦାୟଭୁକ୍ତ ବ୍ୟକ୍ତି—3. A sectarian; member of any sect.

ଯୁକ୍ତାକ୍ଷର ଯେଉଁ ଶବ୍ଦ ବୃଦ୍ଧିରେ ହୁଏ ୧ ଅକ୍ଷର ଅଥବା ଓ ମାନ ୧ବା ୨ ଅକ୍ଷର ଅଥବା ଓ ମାତ୍ରା ମଧ୍ୟରେ ପ୍ରତ୍ୟେକ ରକ୍ଷା କରିବା ନାହିଁ । ଅତଏବ ୧ ବା ୨ ଅକ୍ଷର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ୧ କ ପାଇ ଯଥାକ୍ରମେ ଅକ୍ଷର ବଦଳରେ ୨ ବା ୧ ଅକ୍ଷର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ତାଢ଼' ନ ମିଳିଲେ 'ତାଡ଼' ଖୋଜିବେ; 'କ୍ରଥ' ନ ମିଳିଲେ 'କୃଥ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ

୪ । ଏକପ୍ରକାର ସନ୍ନିପାତ—
4. A kind of typhoid fever

**ତାନ୍ତ୍ରିକ ପ୍ରୟୋଗ**—ସଂ. ବି—ତନ୍ତ୍ରଶାସ୍ତ୍ରୋକ୍ତ କ୍ରିୟାକଳାପ ( ଯଥା—
Tāntrika prayoga ମାରଣ, ବଶୀକରଣ, ସ୍ତମ୍ଭନ, ମୋହନ, ଦ୍ରାବଣ ଆଦି; ତନ୍ତ୍ର ଶବ୍ଦ ଦେଖ )—
The application of the charms prescribed by the Tantras; esoteric appliances

**ତାନ୍ତ୍ରିକ ବିଧି**—ସଂ. ବି. ( ତାନ୍ତ୍ରିକ + ବିଧି, କର୍ମଧା )—ତନ୍ତ୍ରଶାସ୍ତ୍ରୋକ୍ତ
Tāntrika bidhi ବିଧାନ ( ତନ୍ତ୍ର ଶବ୍ଦ ଦେଖ )
Rules prescribed by the Tantras.

**ତାନ୍ତ୍ରିକ ସଂସ୍କାର**—ସଂ. ବି. ( ତାନ୍ତ୍ରିକ + ସଂସ୍କାର; କର୍ମଧା)—ତନ୍ତ୍ରଶାସ୍ତ୍ରୋକ୍ତ
Tāntrika saṁskāra ଉପନୟନାଦିର ବିଧାନ—Consecratory rules prescribed by the Tantras.

**ତାପ୍ ତରକ**—ଦେ. ବି—ତାକ୍ ତରକ ( ଦେଖ )
Tāp taraka Tāk taraka (See)

**ତାପ୍‌ବା**—ପ୍ରାଦେ ( ସମ୍ବଲପୁର ) କ୍ରି ( ସଂ. ତପ ଧାତୁ ଣିଚ୍ ତାପି ଧାତୁ,
Tāp-ba ଭୁଲ. ଏହି ଅର୍ଥରେ ହି. ତାପ୍‌ନା )—
( ନିଆଁ, ଖରା ଆଦି ) ପୋଇଁବା—
To bask or warm one's, self before fire or in the sun.

**ତାପ୍‌ମା**—ପ୍ରାଦେ (ଗଡ଼ଜାତ) କ୍ରି—ନିଆଁ ବା ଖରା ପୋଇଁବା—
Tāp-mā To bask or warm oneself before fire or in the sun.

**ତାପ**—ସଂ. ବି. କ୍ଲୀ ( ତପ୍ ଧାତୁ=ଗରମ ହେବା + ଭାବେ, ଅ )—
Tāpa ୧ । ଉତ୍ତାପ; ଆଁଚ—
1. Heat; warmth; blaze, glare.

[ ଦ୍ର—ବିଜ୍ଞାନବିତ୍ମାନଙ୍କ ମତରେ ତାପ ଜଡ଼ପଦାର୍ଥର ଗୋଟିଏ ଶକ୍ତିର ବିକାଶ ମାତ୍ର । ଏହି ଶକ୍ତି ଜଡ଼ପଦାର୍ଥର ଅଣୁରେ ପ୍ରଚ୍ଛନ୍ନ ଥାଏ । କଠିନ, ତରଳ ଓ ବାଷ୍ପୀୟ ସକଳ ପଦାର୍ଥର ଅଣୁ ଶକ୍ତିଯୁକ୍ତ ହେଲେ ମାନେ ଉକ୍ତ ଶକ୍ତି ବିକଶିତ ହୁଏ । ]

୨ । ଉଷ୍ଣତା—2. Temperature, warmth.

୩ । ଉତ୍ତାପୋତ୍ପାଦକ ଶକ୍ତି—
3. The force which generates heat.

[ ଦ୍ର—ସୂକ୍ଷ୍ମଭାବରେ ବିଚାର କଲେ ତାପ ଓ ଉଷ୍ଣତା ଏକ ନୁହେ । ତାପ ପ୍ରୟୋଗ ଦ୍ୱାରା ଶରୀରରେ ଉଷ୍ଣତା ଉତ୍ପନ୍ନ ହୁଏ । ତାପ ବାହାରିଗଲେ ଉଷ୍ଣତା କମିଯାଏ । ବିଜ୍ଞାନ ମତରେ ସବୁ ପଦାର୍ଥରେ (ଏପରିକି ବରଫରେ, ସୁଦ୍ଧା) ତାପ ଅଛି । ମନୁଷ୍ୟ ସ୍ପର୍ଶେନ୍ଦ୍ରିୟ ଦ୍ୱାରା ପଦାର୍ଥର ଉଷ୍ଣତା ଅନୁଭବ କରେ । ସ୍ପର୍ଶେନ୍ଦ୍ରିୟ ଦ୍ୱାରା କଳ୍ପନା କରାଯାଇ ନ ପାରିବା ସୂକ୍ଷ୍ମ ତାପର ପରିମାଣକୁ ନିର୍ଣ୍ଣୟ କରିବା ପାଇଁ ସୂକ୍ଷ୍ମ ଯନ୍ତ୍ରମାନ ଆବିଷ୍କୃତ ହୋଇଅଛି । ]

୪ । ସନ୍ତାପ; କ୍ଲେଶ; ଯନ୍ତ୍ରଣା; ଦୁଃଖ—
4. Pain; distress; agony.

ଇନ୍ଦ୍ର ଯେ ସବାଶରୁ ପାଇ ଅତି ତାପ,
ବୋଇଲେ ସବନ୍ତୀତ କରୁ କେତେ ଦର୍ପ—କୃଷ୍ଣସିଂହ. ମହାଭାରତ, ବନ ।

୫ । ଅଶାନ୍ତି; ଗୋଳମାଳ—5. Turmoil; agitation; torment.

୬ । କ୍ରୋଧ; କୋପ—6. Anger.

୭ । ମାନସିକ ଦୁଃଖ; ଶୋକ—
7. Sorrow; grief; mortification.

ରୂପକୁ ଲୋପ କରି ନିଷଧ ଅଧିପ
ବୁଲୁଅଛନ୍ତି ମହୀପାଳ ବହି ତାପ—କୃଷ୍ଣସିଂହ, ମହାଭାରତ. ବନ ।

୮ । ଜ୍ୱର—8. Fever.

୯ । ଅନୁତାପ—9. Mental agony, repentance; regret.

୧୦ । ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ଦୁଃଖ—
10. Pain due to mental, divine and material causes.

[ ଦ୍ର—ଉପରୋକ୍ତ ୩ ପ୍ରକାରେ ଉତ୍ପନ୍ନ ତାପକୁ ତ୍ରିତାପ ବା ତାପତ୍ରୟ ବୋଲାଯାଏ । ]

**ତାପକ**—ସଂ. ବିଣ ( ତପ୍ ଧାତୁ ଣିଜନ୍ତ ତାପି ଧାତୁ + କର୍ତ୍ତୃ. ଅକ )—
Tāpaka ୧ । ଯାହା ଉତ୍ତପ୍ତ କରେ; ତାପଜନକ—
(ତାପିକା—ସ୍ତ୍ରୀ) 1. Heating; producing warmth.
୨ । ଦାହକ—2. Burning.
ବି—୧ । ଜ୍ୱର—1. Fever.
୨ । ରଜୋଗୁଣ—2. Material or gross quality of nature.

**ତାପଜ**—ସଂ. ବିଣ (ତାପ + ଜନ୍ ଧାତୁ + କର୍ତ୍ତୃ. ଅ)—ତାପରୁ ଉତ୍ପନ୍ନ—
Tāpaja Caused by heat.
(ତାପଜନ୍ୟ—ଅନ୍ୟରୂପ)

**ତାପଜନକ**—ସଂ. ବିଣ ( ତାପ + ଜନ ଧାତୁ + କର୍ତ୍ତୃ. ଅକ )—
Tāpa janaka ୧ । ଉତ୍ତାପକାରୀ—1. Burning; heating.
୨ । ସନ୍ତାପଜନକ; ଯାହା ମନରେ ଦୁଃଖ ଜନ୍ମାଏ—
2. Causing grief.

**ତାପଡ଼ ଲୋହାର**—ଦେ. ବି—ସୁଆଁ ନଇ (ଦେଖ)
Tāparda lohāra Suān̄ nai (See).

**ତାପଡ଼ା ଶୁଖୁଆ**—ଦେ. ବି—ଚାମ୍ପଡ଼ା ଶୁଖୁଆ; ବଡ଼ଚିଙ୍ଗୁଡ଼ିର ଶୁଖୁଆ;
Tāpardā sukhuā Dried prawn.

**ତାପତୀ**—ସଂ. ବି—୧ । ସୂର୍ଯ୍ୟକନ୍ୟା. ତାପୀ—
Tāpatī 1. Name of the daughter of the Sun-god.
୨ । ତାପ୍ତୀ ନଦୀ—2. The river Tāpti.

**ତାପତ୍ୟ**—ସଂ. ବି ( ତପତୀ + ଅପତ୍ୟାର୍ଥେ ୟ )
Tāpatya ... ଅର୍ଜୁନଙ୍କ ନାମାନ୍ତର—
A name of Arjuna.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଉ | ଋ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଚ | ଗ,ଶ | ଜ୍ଞ | ଇପ୍ସ | ଉଅ | ଘ |
| ୨ | ଉ | ଊ | ଋ | ଌ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗଂ୍ୟ | ଇଅ | ଊ | ନ୍ |

[ ଦ୍ର—କୁରୁବଂଶୀୟ ସଂବରଣ ନାମକ ଜଣେ ରାଜାଙ୍କ ପତ୍ନୀଙ୍କ ନାମ ତପତୀ ଥିଲା । ତପତୀ ସୂର୍ଯ୍ୟକନ୍ୟା ଥିଲେ । ସେହି ବଂଶରୁ ଅର୍ଜ୍ଜୁନ ଜନ୍ମ ହୋଇଥିବାରୁ ସମ୍ଭବତଃ ତାଙ୍କର ଏ ନାମ ହୋଇଅଛି । ପାଣ୍ଡବମାନେ କୁରୁ ଓ ଚନ୍ଦ୍ରବଂଶୀୟ । ]

**ତାପତ୍ରୟ**—ସଂ. ବି (ତାପ+ତ୍ରୟ)—ତ୍ରି ତାପ; ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ଦୁଃଖତ୍ରୟ; ସଂସାରରେ ମନୁଷ୍ୟ ପ୍ରତି ଘଟିବା ତ୍ରିବିଧ ଦୁଃଖ—
Tāpa traya
The three classes of human sufferings (viz, those caused by the soul, by the gods and by the elements) according to the Hindus

**ତାପଦ**—ସଂ. ବିଣ. ପୁଂ ( ତାପ+ଦା ଧାତୁ+କର୍ତ୍ତୃ ଅ )—
Tāpada (ତାପଦା—ସ୍ତ୍ରୀ)
୧ । ଯାହା ତାପ ଦିଏ—1. Supplying heat.
୨ । ସନ୍ତାପଦାୟକ—2. Causing distress or yonag.

**ତାପ ଦୁଃଖ**—ସଂ ବି—ପାତଞ୍ଜଳ ଦର୍ଶନ ଅନୁସାରେ ଏକଶ୍ରେଣୀର ଦୁଃଖ—
Tāpa duḥkha
A class of troubles according Pātañjala philosophy.
[ ଦ୍ର—ପାତଞ୍ଜଳ ଦର୍ଶନରେ ଦୁଃଖ ତିନପ୍ରକାର ଥିବାର ଉଲ୍ଲେଖ ଅଛି—ତାପ ଦୁଃଖ, ସଂସ୍କାର ଦୁଃଖ ଓ ପରିଣାମ ଦୁଃଖ । ]

**ତାପନ**—ସଂ. ବି (ତପ୍ ଧାତୁ ଣିଜନ୍ତ ତାପି ଧାତୁ+କର୍ତ୍ତୃ. ଅନ)—
Tāpana
୧ । ସୂର୍ଯ୍ୟ—1. The sun.
୨ । ସୂର୍ଯ୍ୟକିରଣ—2. Sun's rays.
୩ । ସୂର୍ଯ୍ୟକାନ୍ତ ମଣି—3. A kind of gem; sunstone.
୪ । କାମଦେବଙ୍କର ପଞ୍ଚବାଣ ମଧ୍ୟରୁ ଗୋଟିଏ—4. One of the five arrows of the God Cupid.
୫ । ( +ଭାବ. ଅନ ) ତାପଜନନ; ତାପ ଜନ୍ମାଇବା—5. The generation of heat.
୬ । କ୍ଳେଶ ଦେବା; ଉତ୍ପୀଡ଼ନ—6. Tormenting; oppression.
୭ । ଅର୍କ ଗଛ ( ହି. ଶବ୍ଦସାଗର )—7. Calotropis Gigantea (plant)
୮ । ଢୋଲ ( ହି. ଶବ୍ଦସାଗର )—8 Drum.
୯ । ନରକ ବିଶେଷ ( ହି. ଶବ୍ଦସାଗର )—9. One of the hells according to the Hindus.
୧୦ । ତାନ୍ତ୍ରୋକ୍ତ ଅଭିଚାର ବା ପ୍ରୟୋଗ ବିଶେଷ; ଯହିଁ ଫଳରେ ଶତ୍ରୁର ପୀଡ଼ା ଜନ୍ମେ ( ହି. ଶବ୍ଦସାଗର )—10. A kind of application of charm resulting in the enemy being afflicted with disease.
ସଂ. ବିଣ—ତାପଜନକ—Heating; generating heat.
ଦେ. ବିଣ—ସନ୍ତାପିତ—Afflicted,
ଜନମ ହୋଇଁଲେ ମୋତେ କଲୁଛ ତାପନ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।
ଦେ. ବି—୧ । ଜୋର—1. Force
(ଯଥା—ଚଢ଼ିକାଠିଟା ମୋ ମୁଣ୍ଡରେ ଭାରି ତାପନରେ ବାଜିଗଲା)
୨ । ବେଗ—2. Velocity.
(ଯଥା—ଘୋଡ଼ାଟା ଭାରି ତାପନରେ ଦଉଡୁଛି)

**ତାପନମ୍ୟ**—ସଂ. ବିଣ. (ତାପ+ନମ ଧାତୁ+କର୍ମ. ଯ)—
Tāpa namya (ତାପ ନମ୍ର—ଅନ୍ୟରୂପ)
ଯେଉଁ ପଦାର୍ଥ (ଯଥା, ଧାତୁ) ତାପ ପାଇଲେ ନରମ ହୁଏ—Malleable by heat.

**ତାପନୀୟ**—ସଂ. ବିଣ. ପୁଂ. ( ତାପି ଧାତୁ+କର୍ମ. ଅନୀୟ )—
Tāpaniya (ତାପନୀୟା—ସ୍ତ୍ରୀ)
ତାପ୍ୟ; ତପ୍ତ କରିବାର ଉପଯୋଗୀ—Fit to be heated.

**ତାପମାନ**—ସଂ. ବି. ( ୬ଷ୍ଠୀ ତତ୍; ତାପ+ମାନ; ଆଧୁନିକ ବିଜ୍ଞାନ ପରିଭାଷା )—ଉତ୍ତାପର ପରିମାଣ ବା ମାପ—
Tāpa māna
Measure or degree of heat.

**ତାପମାନ ଯନ୍ତ୍ର**—ସଂ. ବି. ( ଆଧୁନିକ ବିଜ୍ଞାନ ପରିଭାଷା )—
Tāpamāna jantra
ଯେଉଁ ଯନ୍ତ୍ର ଦ୍ୱାରା ବସ୍ତୁର ବା ଦେହର ଉତ୍ତାପର ପରିମାଣ ଜଣାଯାଏ; ଥର୍ମୋମିଟର—Thermometer.

**ତା ପର**—ଦେ. (ପଦ୍ୟ) ଅ.—୧ । ତାହିଁ ଉପରେ; ତା ଉପରେ—
Ta para (ତା ପରେ—ଅନ୍ୟରୂପ)
ତାର ପରେ
1. Upon him or that.
ଅକାଶରେ ଯେବେ ତାହାର ଯାଉେ ଦୃଷ୍ଟି ପଡ଼ୁଛି ତାପର ସେ ।
ବିଶ୍ୱନାଥ. ବିଚିତ୍ର ରାମାୟଣ ।
ତାରପର
उसका बाद्
୨ । ତାହିଁ ପରେ—2. After that; thereafter.

**ତାପଶ୍ଚିତ**—ସଂ. ବି—ଏକ ପ୍ରକାର ଯଜ୍ଞ ( ହି. ଶବ୍ଦସାଗର )—
Tāpaśchita
A kind of vedic sacrifice.

**ତାପସ**—ସଂ. ବି. ( ତପସ୍+ପ୍ରୟୋଜନାର୍ଥେ. ଅ )—
Tāpasa (ତାପସୀ—ସ୍ତ୍ରୀ)
୧ । ତପସ୍ୱୀ; ମୁନି; ଋଷି—1. An ascetic; a sage.
୨ । ତେଜପତ୍ର—2. The fragrant leaf of Cassia Cinnamon.
୩ । ତମାଳ ( ଦେଖ )—3. Tamāla ( See )
ବିଣ—୧ । ତପସ୍ୟାକାରୀ—1. Practising asceticism or penance.
୨ । ତପସ୍ୱୀସମ୍ବନ୍ଧୀୟ—2. Relating to ascetics.

**ତାପସକ**—ସଂ ବି. ( ତାପସ+ଅଳ୍ପାର୍ଥେ. କ )—
Tāpasaka
ସାମାନ୍ୟ ବା କ୍ଷୁଦ୍ର ତପସ୍ୱୀ—A petty sage.

**ତାପସଜ**—ସଂ. ବି—ତେଜପତ୍ର ( ହି. ଶବ୍ଦସାଗର )—
Tāpasaja
Cassia Cinnamon.

ସାଧାରଣ ଲେଖେ ଅପର ପୃଷ୍ଠାରେ ଦିଆଗ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, କୃଥ ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

**ତାପସତରୁ**—ସଂ. ବି. ( ତାପସ + ତରୁ; ତପସ୍ୱୀମାନଙ୍କ ବ୍ୟବହାର୍ଯ୍ୟ ତରୁ; ଏ ତରୁର ଫଳରୁ ହେଉଥିବା ତେଲ ବାହାର କରି ଋଷିମାନେ ଦେହରେ ଲଗାଉଥିଲେ)—ଇଙ୍ଗୁଦୀ ବୃକ୍ଷ—
Tāpasa taru (ତାପସ ଦ୍ରୁମ—ଅନ୍ୟରୂପ) Terminalia Catapha (tree).

**ତାପସପ୍ରିୟ**—ସଂ. ବିଣ. ପୁଂ. ( ୬ଷ୍ଠୀ ତତ୍; ତାପସ + ପ୍ରିୟ )—
Tāpasa priya ୧ । ତପସ୍ୱୀମାନଙ୍କର ପ୍ରିୟ ( ବସ୍ତୁ ବା ବ୍ୟକ୍ତି)—1. Loved by ascetics.
୨ । (ବହୁବ୍ରୀହି) ତପସ୍ୱୀମାନେ ଯାହାର ପ୍ରିୟ; ଯେ ତପସ୍ୱୀମାନଙ୍କୁ ସୁଖ ପାଏ—2. Fond of ascestics.
ବି—୧ । ପିୟାଳ ଗଛ; ଚିଆଲ—Buchanania Latifolia (tree).
[ଦ୍ର—ଏହା ଆମ୍ରାଦି ବର୍ଗର ଅରଣ୍ୟ ତରୁବିଶେଷ; ଫଳ କୃଷ୍ଣବର୍ଣ୍ଣ, ଛୋଟ ଓ ମନୁଷ୍ୟଭକ୍ଷ୍ୟ । ଚାକୁଅ ଭିତରେ ଥିବା କୋଇଞ୍ଚ ବାଦାମ ଫଳର ଶସ୍ୟ ଭଳି ସୁସ୍ୱାଦୁ । ଏଥିରୁ ତେଲ ବାହାରେ]
୨ । ତାପସ ତରୁ (ଦେଖ) (ହି. ଶବ୍ଦସାଗର)—2. Tāpasa taru (See).

**ତାପସପ୍ରିୟା**—ସଂ. ବିଣ. ସ୍ତ୍ରୀ (ତାପସ+ପ୍ରିୟା)—ତପସ୍ୱୀମାନଙ୍କର ପ୍ରିୟା—
Tāpasa priyā Loved by ascetics.
(ତାପସେଷ୍ଟା—ଅନ୍ୟରୂପ) ବି—୧ । ଦ୍ରାକ୍ଷାଲତା; ଅଙ୍ଗୁର ଲତା—Vine
୨ । ଦ୍ରାକ୍ଷା; ଅଙ୍ଗୁର ଫଳ—2. Grape.

**ତାପସବୃତ୍ତି**—ସଂ. ବି. ସ୍ତ୍ରୀ (ତାପସ+ବୃତ୍ତି, ୬ଷ୍ଠୀ ତତ)—ତପସ୍ୟା; ତପଶ୍ଚରଣ—Asceticism; austerities.
Tāpasa brutti

**ତାପସୀ**—ସଂ. ବି. ସ୍ତ୍ରୀ—(ତାପସ + ସ୍ତ୍ରୀ. ଈ)—୧ । ତପସ୍ୟାକାରିଣୀ ସ୍ତ୍ରୀ—
Tāpasi 1. A female ascetic.
୨ । ତପସ୍ୱି ପତ୍ନୀ—2. Wife of a sage.

**ତାପସେକ୍ଷୁ**—ସଂ. ବି—(ମ. ପ. ଲୋ; ତାପସ ପ୍ରିୟ ଇକ୍ଷୁ)—ଏକପ୍ରକାର ଆଖୁ (ହି. ଶବ୍ଦସାଗର)—A kind of sugarcane.
Tapasekshu

**ତାପ ସ୍ୱେଦ**—ସଂ. ବି—(ବୈଦ୍ୟକ; ମ. ପ ଲୋ; ତାପ ଜନିତ ସ୍ୱେଦ)—
Tāpa sweda ୧ । ଗରମ ବାଲି, ଲୁଣ ବା ବସ୍ତ୍ରର ପୁଡ଼ା ବା ହାତ ଦ୍ୱାରା ସେକ ଦେହରୁ ଝାଳ ବୁହାଇବା କର୍ମ—1. Dry fomentation.
୨ । ବାମ୍ଫ୍ଅଣ—2 Vapour-bath.
୩ । ଦେହ ସେକା ହେବା ଯୋଗୁଁ ଦେହରୁ ବହୁବା ଝାଳ—3. Perspiration due to dry fomenting.

**ତାପସ୍ୟ**—ସଂ. ବି. (ତାପସ+କାର୍ଯ୍ୟାର୍ଥେ ଯ)—ତପସ୍ୱୀର ଧର୍ମ; ତପସ୍ୟା—
Tāpasya The duties of an ascetic; asceticism.

**ତାପ ହର**—ସଂ. ବିଣ ପୁଂ. ( ତାପ + ହୃ ଧାତୁ + କର୍ତ୍ତୃ. ଅ)—ସନ୍ତାପହରଣକାରୀ—Alleviating distress; soothing; cooling.
Tāpa hara (ତାପହରା—ସ୍ତ୍ରୀ)

**ତାପ ହରୀ**—ସଂ. ବି. (ତାପ + ହୃ ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ. ଈ)—ଏକ ପ୍ରକାର ଖେଚୁଡ଼ି (ଭାବପ୍ରକାଶ)—A kind of dish prepared of rice boiled with pnlse.
Tāpa hari
[ ଦ୍ର—ଏହା ପ୍ରସ୍ତୁତ କରିବାକୁ ଧୂଆ ଚାଉଳ ସଙ୍ଗେ ହରଡ଼ର ବଡ଼ି ମିଶାଇ ସେଥିରେ ହଳଦୀ ଗୋଳାଇ ତାକୁ ଘିଅରେ ସନ୍ତୁଳି ପାଣିରେ ସିଝାଇବାକୁ ହୁଏ । ଚାଉଳ ସିଝି ଗଲେ ତାହାକୁ ହେଙ୍ଗୁ ଦ୍ୱାରା ବଘାରିବାକୁ ହୁଏ । ହି. ଶବ୍ଦସାଗର ]

**ତାପହର୍ତ୍ତା**—ସଂ.ବିଣ. ପୁଂ (ତାପ + ହୃ ଧାତୁ + କର୍ତ୍ତୃ. ତୃ, ୧ମା. ୧ବ)—
Tāpa harttā ତାପହର—Alleviating distress; soothing; cooling.
(ତାପ ହର୍ତ୍ତ୍ରୀ—ସ୍ତ୍ରୀ)

**ତାପହାରୀ**—ସଂ. ବିଣ. ପୁଂ(ତାପ+ହୃ ଧାତୁ + କର୍ତ୍ତୃ. ଇନ୍ ୧ମା. ୧ବ.)-
Tāpa hāri ତାପହର—Alleviating distress; soothing; cooling.
(ତାପ ହାରିଣୀ—ସ୍ତ୍ରୀ)

**ତାପି**—ଦେ. ବି.—ଲମ୍ବା ସରୁଆ କରଣୀ—
Tāpi A long slender trowel.
ପ୍ରାଦେ. (ପୁରୀ, ବାଣପୁର) ବି—ରାଜମିସ୍ତ୍ରୀ—Mason.

**ତାପିଚ୍ଛ**—ସଂ. ବି. (ତାପିନ୍=ସନ୍ତପ୍ତ ବ୍ୟକ୍ତି + ଛଦ୍ ଧାତୁ=ଆଚ୍ଛାଦନ କରିବା+କର୍ତ୍ତୃ. ଅ)—ତମାଲ (ଦେଖ)
Tāpichchha Tamāla (See).
(ତାପିଞ୍ଛ, ତାପିଞ୍ଜ—ଅନ୍ୟରୂପ)

**ତାପିଞ୍ଜ**—ସଂ. ବି. (ତାପିନ୍=ସନ୍ତପ୍ତ ବ୍ୟକ୍ତି + ଜି ଧାତୁ+କର୍ତ୍ତୃ. ଅ)—
Tāpiñja ୧ । ତମାଲବୃକ୍ଷ—1. The Tamāla tree.
୨ । ସ୍ୱର୍ଣ୍ଣମାକ୍ଷିକ (ଦେଖ)—2. Swarnna-mākshika (See).

**ତାପିତ**—ସଂ.ବି. (ତପ୍ ଧାତୁ ଣିଚ୍ ତାପି ଧାତୁ + କର୍ମ. ତ)—୧ । ପୀଡ଼ିତ—
Tāpita 1 Sick.
୨ । ତାପପ୍ରାପ୍ତ; ଯାହାକୁ ତତା ଯାଇଅଛି—2. Heated.
୩ । ଖେଦଯୁକ୍ତ; ଦୁଃଖିତ; ସନ୍ତାପିତ—3. Afflicted; distressed.
୪ । (+କର୍ତ୍ତୃ. ତ) କ୍ରୁଦ୍ଧ—4. Incensed.
୫ । ଅତ୍ୟାଚାରିତ—5. Oppressed.

**ତାପିନୀ**—ସଂ. ବିଣ. ସ୍ତ୍ରୀ (ତାପ + ଇନ୍ + ସ୍ତ୍ରୀ, ଈ)—୧ । ତାପଯୁକ୍ତା—
Tāpini 1. Heated.
(ତାପୀ—ପୁଂ) ୨ । ସନ୍ତପ୍ତା—2. Afflicted.
୩ । ଦୁଃଖିନୀ—3 Sorrowful; miserable (woman)
୪ । ତାପ ଜନୟିତ୍ରୀ—4. Producing warmth; generating heat.
ସଂ, ବି.—ଶାସ୍ତ୍ରର ନାମ ବିଶେଷ—Title of some devotional writings.

| ୧ | ଇ | ଉ | ର,ର | ୪ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଚ | ଶ,ଷ | ଜ୍ଞ | ଇପ୍ସ | ଡ଼ | ଖ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ପୈ | ଅନୁସ୍ୱାରବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | | ଣ୍ୟ | ଯ | ସ | ର୍ୟ | ଇଥ | ଢ଼ | ÷ |

ଦେ. ବି.—୧। (ସ. ଗୋପାଳତାପିନୀ; ଶ୍ରୀମଦ୍‌ତାପିନୀ ଶବ୍ଦର ସଂକ୍ଷେପ)—ବୈଷ୍ଣବ ଧର୍ମଗ୍ରନ୍ଥବିଶେଷ—Abbreviation of the title of some devotional works

୨। ବେଦାନ୍ତ—2. Bedānta philosophy.

ତ ପିଣି ପ୍ରବନ୍ଧ ଗେ, କ ଶିବେ ଯେ ଅନ୍ତ ଗେ

ଅନ୍ତର୍ଦ୍ଦ. ଦେବ୍‌ଚନ୍ଦ୍ର ନ ।

ତାପିବା—ଦେ. କ୍ରି.—(ସ. ତାପ ଧାତୁ ଜାତ, ତପି ଧାତୁ)—
Tāpibā ୧। (ଅଗ୍ନି) ଲଗାଇବା ବା ଜାଳିବା—1. To kindle (a fire).
ତାତାନ
ତାପନା (ଯଥା—ବାବାଜୀ ଧୂନି ତାପି ବସିଛନ୍ତି।)

୨। ଦଣ୍ଡିବା; ଦଣ୍ଡ ଦେବା—2. To punish.

ଅଧମ କ ରେ ଦେଖିଲେ ତ ପ ଛାଡ଼ନ୍ତି।

କୃଷ୍ଣସିଂହ. ମହାଭାରତ. ବନ।

୩। ଉତ୍ତପ୍ତ କରିବା; ତତାଇବା—3. To heat.

ବଜ୍ରକସ୍ତୁର ବହ୍ନିର ସନ୍ତ ପ ତପ କରେ

ସେ ଯେମନ୍ତେ ସ୍ୱର୍ଣ୍ଣ ଅହିତ । ଉପେନ୍ଦ୍ରଭଞ୍ଜ ବୈଦେହୀଶବିଳାସ।

୪। ଦୁଃଖିତ ହେବା—4. To be sorry.

ମନ୍ତ୍ରୀ କ ମାନି ବସ୍ତୁ ପତେ

ମନେ ତାପିଲ ଦୁଃଖ ନ ସେ । ଜଗନ୍ନାଥ. ଭାଗବତ।

୫। ଉଷୁମ ଦେବା—5. To warm.

ପକ୍ଷୀ ପକ୍ଷିଣୀ ପୁନ ଅଙ୍ଗେ

ଡିମ୍ବ ତାପନ୍ତି ସ୍ନେହବଶେ । ଜଗନ୍ନାଥ. ଭାଗବତ।

୬। ଦୁଃଖ ଦେବା—6. To affect; to press.

ଗ୍ରାଦେ. (ସମ୍ବଲପୁର) କ୍ରି—୧। ତାପିବା (ଦେଖ)—1. Tāpbā (See).

ତାପୀ—ସ. ବିଣ. ପୁଂ. (ତାପ+ଅସ୍ତି ଅର୍ଥେ, ଇନ୍; ତାପିନ୍ ଶବ୍ଦର ୧ମା. ୧ବ.)—୧। ତାପଯୁକ୍ତ—1. Heated.
Tāpī
(ତାପିନୀ—ସ୍ତ୍ରୀ) ୨। ସନ୍ତପ୍ତ—2. Afflicted.

୩। ଦୁଃଖୀ—3. Miserable

୪। ତ୍ରିତାପୀ—4. Afflicted with all sorts of worldly troubles.

୫। (ତ୍ରିକନ୍ତ ତାପି ଧାତୁ+ଇନ. ୧ମା ୧ବ)—ଦୁଃଖଜନକ 5. Afflicting.

୬। ଉତ୍ତାପଜନକ—6. Producing or generating.

ବି. ସ୍ତ୍ରୀ—୧। ଦାକ୍ଷିଣାତ୍ୟର ତାପ୍ତୀ ନଦୀ—The river Tāpti in the Deccan.

୨। ଯମୁନା ନଦୀ—2. The river Jamuna.

୩। ସୂର୍ଯ୍ୟଙ୍କ କନ୍ୟା ଓ ସମ୍ବରଣଙ୍କ ପତ୍ନୀ—3. The daughter of the Sun-god and wife of king Sambarana.

ବି. ପୁଂ—ବୁଦ୍ଧ—The Buddha.

ତାପେନ୍ଦ୍ର—ସ. ବି (ତାପ+ଇନ୍ଦ୍ର; ୬ଷ୍ଠୀ ତତ୍)—ସୂର୍ଯ୍ୟ (ହି. ଶବ୍ଦସାଗର)—The sun
Tāpendra

ତାପେଶ୍ୱର—ସ. ବି—ତୀର୍ଥବିଶେଷ—Name of a shrine or a place of pilgrimage.
Tāpeswara

ତାପ୍ତା—ବୈଦେ. ବି. (ଫା. ତଫତ; ଇଟାଲୀୟ-ଟାଫେଟା)—
Tāptā ଟାସୀ ରେଶମର ଓ ଉରଣୀ ଲୁଗାର ସୂତାରେ ବୁଣା ହୋଇଥିବା ଲୁଗା; କାପ୍‌ଟା; ଦୃପଛସ୍ୟା ରେଶମି ଲୁଗା—A fabric made of silk and linen; Taffetta.
ତାଫତା
ତଫ୍‌ତା
ତଫତା—ଅନ୍ୟରୂପ) [ଦ୍ର—ଏ ଫାରସୀ ଶବ୍ଦ ଇଂରାଜୀରେ ଟାଫେଟା ଆକାର ଧାରଣ କରିଅଛି।]

ତାପ୍ତୀ—ସ. ବି. ସ୍ତ୍ରୀ. (ନାମ—ଦାକ୍ଷିଣାତ୍ୟର ନଦୀବିଶେଷ—Name of a river in the Deccan.
Tāpti

[ଦ୍ର—ଏହା ବିନ୍ଧ୍ୟାଚଳର ଦକ୍ଷିଣ ପାଖ ସାତପୁରା ପାହାଡ଼ରୁ ବାହାରି ପଶ୍ଚିମମୁଖ ହୋଇ ସୁରାଟଠାରେ ଆରବ ସାଗରର କାମ୍ବେ ଉପସାଗରରେ ପଡ଼ିଅଛି। ସ୍କନ୍ଦ ପୁରାଣ ତାପୀଖଣ୍ଡରେ ଲେଖା ଅଛି ଯେ ବରୁଣ ଅଗସ୍ତ୍ୟ ମୁନିଙ୍କ ଶାପରେ ସମ୍ବରଣ ନାମରେ ସୋମବଂଶର ରାଜା ହେଲେ ଓ ବହୁ ତପସ୍ୟା କରି ସୂର୍ଯ୍ୟଙ୍କ ପରମ ରୂପବତୀ ଓ ପାପନାଶିନୀ କନ୍ୟା ତାପୀଙ୍କୁ ବିବାହ କଲେ। ତାପୀ ତାପତୀ ବା ତାପ୍ତୀ ନଦୀରୂପେ ଧରାତଳରେ ବହୁଅଛନ୍ତି। ଏ ନଦୀରେ ସ୍ନାନ କଲେ ଓ ବିଶେଷତଃ ଆଷାଢ଼ ମାସରେ ସ୍ନାନ କଲେ ସବୁ ପାତକ ନାଶ ହୁଏ। ଏହା ତଟରେ ଗଙ୍ଗାତୀର୍ଥ, ଅକ୍ଷମାଳା ତୀର୍ଥ ଆଦି ଅନେକ ତୀର୍ଥ ଅଛି ଓ ତଟଦେଶରେ ଭିନ୍ନ ଭିନ୍ନ ସ୍ଥାନରେ ୧୦୮ ମହାଲିଙ୍ଗ ଅଛନ୍ତି—ହି. ଶବ୍ଦସାଗର। ଏହାର ମୁହାଣ ପାଖେ ସୁରାଟ ନଗର ଅବସ୍ଥିତ। ନାଗପୁରଠାରୁ ଯେଉଁ ରେଲ ଲାଇନ ବୋମ୍ବେ ଆଡ଼କୁ ଯାଇଅଛି ତାହା ତାପ୍ତୀ ନଦୀର ପ୍ରାୟ ସମାନ୍ତରଭାବରେ ଖଣ୍ଡୱାଠାରୁ ଉଡ଼ାରେ ଭୁସାବଲ ବାଟେ ସୁରାଟ ପର୍ଯ୍ୟନ୍ତ ଯାଇଅଛି।]

ତାପ୍ୟ—ସ. ବିଣ. (ତପ୍ ଧାତୁ ଣିଚ ତାପି ଧାତୁ+କର୍ମ. ଯ)—ତାପନୀୟ (ଦେଖ)—Tāpaniya (See)
Tāpya

ସ. ବି—ସ୍ୱର୍ଣ୍ଣମାକ୍ଷିକ (ଦେଖ) Swarnnamākshika (See)

ତାବ୍‌ଜି—ଗ୍ରାଦେ. (ସମ୍ବଲପୁର) ବି—ତାବିଜ (ଦେଖ) Tābija (See)
Tāb-ji

ତାବ୍‌ଦା—ଦେ. ବିଣ. (ସ. ସ୍ତବ୍ଧ)—୧। ସ୍ତବ୍ଧ; କଥାଶୂନ୍ୟ (କଣ୍ଠୀ)—1 Stunned.
Tāb-dā
ତାବ୍‌ଦା ୨। ସ୍ପର୍ଶଜ୍ଞାନରହିତ—2. Benumbed.
ସ୍ତବ୍ଧ ୩। ଚଳତ୍‌ଶକ୍ତିରହିତ—3. Paralysed.
[ତାବ୍‌ଦା(ଧା)—ଅନ୍ୟରୂପ]

ତାବ୍‌ଦାର୍—ବୈଦେ. ବି. (ଅ. ତାବଅ+ଫା. ପ୍ରତ୍ୟୟ. ଦାର୍) (ମୁସଲମାନୀ ଭାଷା)—୧। ଦାସ—1. Slave.
Tāb-dār
ତାବେଦାର ୨। ଅଧୀନ ବ୍ୟକ୍ତି—2. A subordinate.

ସାଧାରଣ ଲୋକେ ଅନେକ ସ୍ଥଳରେ ୧ଅଟ ୧ ଅଙ୍କ ଅକ୍ଷର ଓ ମାତ୍ରା ଏବଂ ୨ ଅଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଅଙ୍କିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଅଙ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ପଦ ଖୋଜିବାକୁ ହେବ । ଯଥା—
'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'ଦ୍ୱତ' ନ ମିଳିଲେ 'ଦ୍ରୁତ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ ।

तावेदार, तावे ୩ । ଚାକର—3. Servant.
ତାବେଦାର } ଅନ୍ୟରୂପ ) ବିଣ—ଅଧୀନ—Subservient;
ତାବେଦାର୍ } subordinate; subject to.

**ତାବେଦାରି**—ବୈଦେ. ବି. ( ଫା. ତାବେଦାରୀ ) ( ମୁସଲମାନୀ ଭାଷା )—
Tab-dāri ୧ । ଅଧୀନତା—1. Subordination.
तावेदारि, तावेदारी ୨ । ଆନୁଗତ୍ୟ—
ତାବେଦାରି } ଅନ୍ୟରୂପ 2. Subserviency; subjection.
ତାବେଦାରୀ } ୩ । ଚାକିରି—3. Service.
୪ । ହୀନ ଚାକିରି—4. Menial service.

**ତାବକ**—ସଂ. ବିଣ ପୁଂ. ( ଯୁଷ୍ମଦ୍ + ସମ୍ବନ୍ଧାର୍ଥେ. ଅ; ଯୁଷ୍ମଦ୍ ସ୍ଥାନରେ
Tābaka ତବକ ଆଦେଶ )—୧ । ତୁମ୍ଭର; ତୁମର—
( ତାବକୀ—ସ୍ତ୍ରୀ ) 1. Thine; yours; belonging to you.
୨ । ଆପଣଙ୍କ ଅଧୀନ—2. Yours obediently.

**ତାବକୀନ**—ସଂ. ବିଣ. ପୁଂ. ( ଯୁଷ୍ମଦ୍ + ସମ୍ବନ୍ଧାର୍ଥେ. ଈନ; ଯୁଷ୍ମଦ୍ =
Tābakīna ତବକ )—ତାବକ ( ଦେଖ )—Tābaka (See)
( ତାବକୀନା—ସ୍ତ୍ରୀ )

**ତାବଡ଼**—ଦେ. ବି—ଶାସନ କରିବା—
Tābarda Ruling; controlling.

**ତା ବଡ଼ା**—ଗ୍ରା. ବିଣ—ତାଙ୍କ ବଳ; ତାଠାରୁ ଅଧିକ—Superior to
Tā barḍā that; above that; higher than that.
( ତାଁ ବଡ଼ା, ତାହାଁ ବଡ଼ା, ତାଙ୍କ ବଡ଼ା—ଅନ୍ୟରୂପ )

**ତାବଡ଼ିବା**—ଦେ. କ୍ରି—ଶାସନ କରିବା—
Tābarḍibā To rule; to control.
( ତାବୁଡ଼ିବା—ଅନ୍ୟରୂପ )

**ତାବତ୍**—ସଂ. ବିଣ. ( ତଦ୍ = ସେହି + ପରିମାଣାର୍ଥେ. ବତ୍ )—
Tābat ୧ । ତତ୍‌ସଂଖ୍ୟକ; ତତ୍‌ପରିମିତ; ସେତେ; ତେତିକ—
1. So many; so much; that much of.
୨ । ତାବତୀୟ; ସେହି ସମସ୍ତ—
2. All that; all those.
ଅଗ୍ରେ ତାବତ ମନ୍ତ୍ରୀ ମଣ୍ଡଳୀ ସ୍ତାବକ ଲୋକ ଠୋକେ—
ନନ୍ଦକିଶୋର. ଗମଙ୍ଗା ।
ସର୍ବନାମ—ତାହା ସମସ୍ତ; ସେମାନେ ସବୁ—
All that; all of them.
ସ. ଅ—୧ । ସେହି ସମୟ ପର୍ଯ୍ୟନ୍ତ—
1 Till that time; till then; so long.
୨ । ତତ୍‌କାଳେ; ସେହି କ୍ଷଣରେ—
2. At that time.
୩ । ସେତେଦୂର ପର୍ଯ୍ୟନ୍ତ—3. So far.
୪ । ସେହି ପରିମାଣ ପର୍ଯ୍ୟନ୍ତ—4. So much.
( ଯଥା—ଯାବତ୍ ଶବ୍ଦରେ ଏହି ଶବ୍ଦ ପରିଚ୍ଛେଦ, ଅବଧାରଣା ଓ ବାକ୍ୟାଳଙ୍କାର ସ୍ଥଳରେ ପ୍ରଯୁକ୍ତ ହୁଏ । )

**ତାବତ**—ଦେ. କ୍ରି. ବିଣ. ବିଣ ଓ ସର୍ବ—ତାବତ୍ ( ଦେଖ )
Tābata Tābat ( See )
ତାବତେ ଗୃହାଶ୍ରମେ ରହି
କହ୍ନି ସନ୍ନ୍ୟାସ କରବଇଁ—ଜଗନ୍ନାଥ, ଭାଗବତ ।

**ତାବତୀୟ**—ସଂ. ବିଣ. ( ତାବତ୍ + ଈୟ )—
Tābatīya ୧ । ସମସ୍ତ ବସ୍ତୁ ଓ ବ୍ୟକ୍ତି—
1 All things or persons).
୨ । ତାହା ସବୁ; ସେମାନେ ସମସ୍ତେ—
2 All that; all those.

**ତାବତ୍କାଳ**—ସଂ. ବି—ସେହି ସମୟ—
Tabatkāla That time.
ଦେ. କ୍ରି. ବିଣ—୧ । ସେହି କାଳ ନିମନ୍ତେ—
1. For such time.
୨ । ସେତେ ଦିନ ପର୍ଯ୍ୟନ୍ତ—So long.

**ତାବଦା(ଧା)**—ଦେ. ବିଣ ( ସଂ. ସ୍ତବ୍ଧ )—ତାବ୍‌ଦା ( ଦେଖ )
Tābadā(dhā) Tāb-dā ( See)

**ତାବନ୍ମାତ୍ର**—ସଂ. ଅ—ସେତିକି—
Tābanmātra So much.

**ତାବାନ୍**—ବୈଦେ. ବି. ( ଫା; ମୁସଲମାନୀ ଭାଷା )—
Tābān ୧ । ଡଣ୍ଡ ( ଦେଖ )—1. Tanda ( See )
तावान ୨ । କ୍ଷତି ପୂରଣ; ଖେସାରତ—
तावान 2. Compensation for damage or loss.

**ତାବଲା**—ଦେ. ବି—୧ । ତବଲା—
Tābalā 1. The right hand piece of a pair of
(ତାବଲା—ଅନ୍ୟରୂପ) musical drums.
पतीला, पतीलि ୨ । ତବଲ; ପିତଳର ଛୋଟ କୁଣ୍ଡ—
2. A brass bowl.

**ତାବଜ**—ବୈଦେ. ବି. ( ଅ. ତଅବିଜ୍ )—
Tābija ୧ । ବାହୁଭୂଷଣବିଶେଷ; ବାଜୁ—
(ତାବିଜ—ଅନ୍ୟରୂପ) 1. Armlet; an ornament worn
तावीज on the arm.
तावीज ୩ । କଣ୍ଠାଭରଣବିଶେଷ; ବେକରେ ପିନ୍ଧାଯିବା
ଗୁରୁକୋଣିଆ ସୁନା ରୂପାର ଡେଙ୍ଗୁରିଆ—
2. An armlet worn on the neck.
୩ । ରକ୍ଷାକବଚ—3. Phylactery; charm.

**ତାବିଷ**—ସଂ. ବିଣ. ପୁଂ. ( ତବ୍ ଧାତୁ + ସଞ୍ଜ୍ଞାର୍ଥେ. ଇଷ )—
Tābisha ୧ । ସ୍ୱର୍ଗ—1. Heaven.
(ତାବିଷ—ଅନ୍ୟରୂପ) ୨ । ସ୍ୱର୍ଣ୍ଣ—2. Gold.
୩ । ସମୁଦ୍ର—3. Sea.

**ତାବିଷୀ**—ସଂ. ବି. ସ୍ତ୍ରୀ—୧ । ଚନ୍ଦ୍ର କନ୍ୟା—
Tābishi 1. The daughter of the moon (god).
(ତାବିଷୀ—ଅନ୍ୟରୂପ)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଙ | ଊ | ଋ,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଟ | ଣ,ଷ | ଞ | ଲଂ | ନ୍ଥ | ଲ |
| ୨ | ଈ | ଭ | ଋ | ଲୃ | ପୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଷ୍ୟ | ଯ | ସ | ଙ୍ୟ | ଲଅ | ଡ | ନ୍ତ |

୨ । ଦେବକନ୍ୟା—
2. Daughter of a Deity.
୩ । ନଦୀ—3. River.
୪ । ଭୂମି; ପୃଥିବୀ—4. Earth; ground.

ତାବେ—ବୈଦେ. ବି. ( ଅ. ତାବଅ; ମୁସଲମାନୀ ଭାଷା )—
Tābe ୧ । ଅଧୀନତା—1. Subordination;
(ତାବେ—ଅନ୍ୟରୂପ) subserviency; subjection.
ତାବে ୨ । ଅଧିକାର—2. Sway.
तावे ବୈଦେ. ବିଣ—ତାବେଦାର୍ ( ଦେଖ )
Tābedār ( See )

ତାବେଦାର୍—ବୈଦେ. ବି ଓ ବିଣ (ମୁସଲମାନୀଭାଷା)—ତାବ୍‌ଦାର୍ (ଦେଖ)
Tābedār Tāb-dār ( See )

ତାବେଦାରି—ବୈଦେ. ବି (ମୁସଲମାନୀଭାଷା)—ତାବ୍‌ଦାରି ( ଦେଖ )
Tābedāri Tāb-dāri ( See )

ତା'ବୋଲି—ଦେ. ଅ—ସେଥିଯୋଗୁଁ; ତେଣୁ—
Tā'boli Hence; owing to that.
তাবলে

ତା'ଭିତେ—ଦେ. ସବ—ତାହା ଦ୍ୱାରା; ତାହା ଦେଇ—
Ta'bhite By him.
ওরহাতে

ତାମ୍‌ଡ଼ା(ଡ଼ି)—ଦେ. ବି. ( ସ. ତାମ୍ର )—
Tām-ṛdā(ṛdi) ତାମ୍ର ବର୍ଣ୍ଣ ରତ୍ନବିଶେଷ—
তামড়ি Garnet ( a gem ).
तामड़ा

ତାମ—ସ. ବି. ପୁଂ. ( ତମ୍ ଧାତୁ=ଗ୍ଳାନ ହେବା+ସଂଜ୍ଞାର୍ଥ. ଅ )—
Tāma ୧ । ଦୁଃଖ—1. Sorrow; distress.
୨ । ଦୋଷ—2. Fault; defect.
୩ । ପାପ—3. Sin.
୪ । ଇଚ୍ଛା—4. Wish.
୫ । ଭୟର ବିଷୟ—
5. An object of terror ( Apte ).
୬ । ଉଦ୍‌ବେଗ—6. Anxiety (Apte).
୭ । କ୍ଳାନ୍ତି; ଶ୍ରାନ୍ତି—
7. Exhaustion; fatigue ( Apte ).

ତାମଜାନ—ଦେ. ବି. ( ସ. ତୁମ୍+ଯାନ; ଉର୍ଦ୍ଦୁ. ତାମଜାନ୍ )—
Tāmajāna ଏକ ପ୍ରକାର ଖୋଲା ପାଲିକି; ଅଗରେ ପଛରେ
(ତାଞ୍ଜାମ୍; ତାଞ୍ଜାନ୍—ଅନ୍ୟରୂପ) ବାହାରେ ବାହାରେ ଲାଗିଥିବା
তাঞ্জাম ଡଣ୍ଡିକ; ମେହେନା—Sedan chair.
तामजान, ताञ्जाम [ ଦ୍ର—ତାମଜାନରେ ଅରୋହଣକାରୀ ଚଉକିରେ
ତେ. ଅମ୍ବିଯାନ୍ ବସିଲା ପରି ଗୋଡ଼ ଲମ୍ବାଇ ବସି ପାରେ,
କିନ୍ତୁ ସବାରି ଅଦରେ ଯେପରି ଶୋଇ ହୁଏ, ଏଥିରେ ତାହା
ହୋଇ ପାରେ ନାହିଁ । କୌଣସି କୌଣସି ତାମଜାନରେ
ଅରୋହୀର ମୁଣ୍ଡ ଉପରେ ଛତାକୃତି ଆବରଣ ( ଟପ୍ ) ଥାଏ;
କେଉଁ କେଉଁ ତାମଜାନର ମୁଣ୍ଡ ଉପର ଖୋଲା ଥାଏ । ]

ତାମର—ଦେ. ବି. (ତମ ଧାତୁ=ଇଚ୍ଛା କରିବା+ସଂଜ୍ଞାର୍ଥ, କର୍ମ. ଅର)—
Tāmara ୧ । ଜଳ—1. Water
୨ । ଘୃତ—2. Clarified butter; ghee.

ତାମରସ—ସ. ବି ( ତାମର=ଜଳ+ସସ୍ ଧାତୁ=ବାସ କରିବା+
Tāmarasa କର୍ତ୍ତୃ ଅ; ଯାହା ଜଳରେ ଥାଏ )—
୧ । ପଦ୍ମ—1. Lotus.
୨ । ସାରସ ପକ୍ଷୀ—2. The crane.
୩ । ତାମ୍ର—3. Copper.
୪ । ସୁବର୍ଣ୍ଣ—4. Gold.
୫ । ଦ୍ୱାଦଶାକ୍ଷର ସଂସ୍କୃତ ଛନ୍ଦୋବିଶେଷ—
5. A Sanskrit metre of 12 letters.
୬ । ଧୁସ୍ତୁର; ଧାତୁରା—6. The Datura Fustosa ( tree & fruit ).
୭ । ରକ୍ତ ପଦ୍ମ—7. The red lotus (Apte).
[ ଦ୍ର—ଏ ଶବ୍ଦ ବେଦରେ ଅଛି, କିନ୍ତୁ ପଣ୍ଡିତମାନେ କହନ୍ତି
ଯେ ଏହା ପିକ, ନେମ ଆଦି ଶବ୍ଦ ପରି ଅନାର୍ଯ୍ୟ ଭାଷାରୁ ସଂସ୍କୃତକୁ
ଆସିଅଛି । ଦ୍ର. ଶବ୍ଦସାଗର । ]

ତାମରସୀ—ସ. ବି. ସ୍ତ୍ରୀ, ( ତାମରସ+ସ୍ତ୍ରୀ. ଈ )—
Tāmarasī ୧ । ପଦ୍ମିନୀ; ପଦ୍ମ ସମୂହ—
1. Collection of lotuses.
୨ । ପଦ୍ମ ପୂର୍ଣ୍ଣ ଜଳାଶୟ—2. Lotus-pond (Apte).

ତାମଲକ(ଖ)—ଦେ. ବି. ( ସ. ତମାଲକ )—
Tāmalaka (kha) ତମଲୁକ୍ ( ନଗର ଓ ସବ୍‌ଡିଭିଜନ୍ )—
তমলুক Tamlook ( subdivision and town in
तमलूक the district of Midnapur ).
[ ଦ୍ର—ତମଲୁକ ତଳେ ନୋଟ ଦେଖ, ଏହା ଖ୍ରୀଷ୍ଟ ଚତୁର୍ଥ
ଶତାବ୍ଦୀଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ବଙ୍ଗୋପସାଗରର ପ୍ରଧାନ
ବନ୍ଦର ଓ ବାଣିଜ୍ୟ କେନ୍ଦ୍ର ଥିଲା । ]

ତାମଲକୀ—ସ. ବି. ସ୍ତ୍ରୀ.—ଭୂମ୍ୟାମଲକୀ; ଭୁଇଁ ଅଁଳା—
Tāmalakī Philanthus Niruri.

ତାମଲି—ଦେ. ବି. ପୁଂ. (ସ. ତାମ୍ବୁଲୀ)—୧ । ପାନବିକା; ଯେ ପାନ ବିକେ—
Tāmali 1. A betel-dealer by profession.
তামলি ୨ । ଯେଉଁ ଶୂଦ୍ର ଜାତି ପାନ ବ୍ୟବସାୟ କରନ୍ତି—
तँबोलि, तमोली 2. A caste of Śūdras whose profession is to sell betel-leaves.
(ତାମ୍ଳି, ତାମୁଲି, ତାମ୍ବିଳି, ତାମୋଳି—ଅନ୍ୟରୂପ)
(ତାମଲିଅଣୀ, ତାମ୍ବିଳିଅଣୀ, ତାମୁଲିଅଣୀ, ତାମୋଳିଅଣୀ—ସ୍ତ୍ରୀ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦ୍ୱିତୀୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ତହିଁ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାର' ନ ମିଳିଲେ 'ଗାଡ଼' ଖୋଜିବେ; 'କୁଟ' ନ ମିଳିଲେ 'କୂଟ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅକ୍ଷ୍ୟ'ନ ପାଇଲେ 'ଅକ୍ଷ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତାମଲିପ୍ତ**—ସଂ. ବି. (ତାମ=ଦୁଃଖ+ଲିପ୍ତ; ଯେଉଁ ଦେଶ ଦୁଃଖ-ଲିପ୍ତ)— Tāmalipta ତମଲୁକ; ତାମ୍ରଲିପ୍ତ ଅଞ୍ଚଳ ଓ ନଗର; ତମାଳିକା— The country and town of Tamlook

ତାମଲିପ୍ତୀ; ତାମଳିପ୍ତୀ } ଅନ୍ୟରୂପ

**ତାମସ**—ସଂ. ବିଣ. ( ତମସ୍+ସମ୍ବନ୍ଧାର୍ଥେ. ଅ )—୧ । ତାମସିକ; Tāmasa ତମୋଗୁଣରୁ ଉଦ୍ଭୂତ (ଯଥା; କାମ, କ୍ରୋଧ, ଲୋଭ, (ତାମସୀ—ସ୍ତ୍ରୀଲିଙ୍ଗ) ମୋହ, ମଦ, ମାତ୍ସର୍ଯ୍ୟ)—1. Pertaining to or arising from the gross elements of nature.

୨ । ନିନ୍ଦିତ; ଗର୍ହିତ—2 Blameworthy; gross.

୩ । ପାପମୟ—3. Sinful.

୪ । ପ୍ରବଳ ତମୋଗୁଣଦ୍ୱାରା ଅନୁଷ୍ଠିତ—4. Done under the influence of evil passions

୫ । ଗାଢ଼ାନ୍ଧକାରାଚ୍ଛନ୍ନ; ଅନ୍ଧକାରମୟ— 5. Gloomy; very dark.

୬ । ଖଳ—6. Deceitful; dishonest; wicked; vicious

୭ । ତମୋଗୁଣ ପ୍ରଧାନ— 7. In which the gross elements of nature predominate.

୮ । ତମୋଗୁଣଯୁକ୍ତ— 8. Having the base elements of nature.

[ଦ୍ର—ଶ୍ରୀମଦ୍‌ଭଗବଦ୍‌ଗୀତାର ଗୁଣତ୍ରୟବିଭାଗଯୋଗ ନାମକ ଚତୁର୍ଦ୍ଦଶ ଅଧ୍ୟାୟରେ ତମୋଗୁଣର ସ୍ୱରୂପ ବର୍ଣ୍ଣିତ ହୋଇଅଛି ଓ ଶ୍ରଦ୍ଧାତ୍ରୟବିଭାଗଯୋଗ ନାମକ ସପ୍ତଦଶ ଅଧ୍ୟାୟରେ ତାମସୀ ଶ୍ରଦ୍ଧା, ତାମସପ୍ରିୟ ଆହାର, ତାମସ ଯଜ୍ଞ, ତାମସ ତପ ଓ ତାମସ ଦାନର ପ୍ରକାର ବର୍ଣ୍ଣିତ ହୋଇଅଛି । ସନ୍ନ୍ୟାସଯୋଗ ନାମକ ଅଷ୍ଟାଦଶ ଅଧ୍ୟାୟରେ ତାମସ ତ୍ୟାଗ, ତାମସ ଜ୍ଞାନ, ତାମସ କର୍ମ, ତାମସ କର୍ତ୍ତା, ତାମସୀ ବୁଦ୍ଧି, ତାମସୀ ଧୃତି, ତାମସ ସୁଖର ପ୍ରକୃତି ବିଶଦଭାବରେ ବର୍ଣ୍ଣିତ ହୋଇଅଛି । ପଦ୍ମପୁରାଣରେ କେତେକ ଶାସ୍ତ୍ରକୁ ତାମସ ଶ୍ରେଣୀଭୁକ୍ତ କରାଯାଇଅଛି; ଯଥା—କଣାଦଙ୍କ ବୈଶେଷିକ ଗୌତମଙ୍କ ନ୍ୟାୟ, କପିଳଙ୍କ ସାଂଖ୍ୟ, ଜୈମିନୀଙ୍କ ମୀମାଂସା ଦର୍ଶନ, ବୃହସ୍ପତିଙ୍କ ଚାର୍ବାକ ଦର୍ଶନ, ଶାକ୍ୟମୁନିଙ୍କ ବୌଦ୍ଧଶାସ୍ତ୍ର ଓ ଶଙ୍କରଙ୍କ ବେଦାନ୍ତ ଇତ୍ୟାଦି ଦର୍ଶନଙ୍କ ସମ୍ବନ୍ଧୀୟ ଗ୍ରନ୍ଥମାନଙ୍କୁ ଓ ସାମ୍ପ୍ରଦାୟିକ ଦୃଷ୍ଟିରେ ମତ୍ସ୍ୟ ଓ କୂର୍ମ, ଅଗ୍ନି, ଶିବ, ଓ ସ୍କନ୍ଦ ଏହି ଛଅଟି ପୁରାଣକୁ ମଧ୍ୟ ତାମସରୂପେ ଗଣନା କରାଯାଏ । ସାମୁଦ୍ର, ଶଙ୍ଖ, ଯମ, ଔଶନସ ଆଦି କେତେକ ସ୍ମୃତିକୁ ଓ ଜୈମିନି, କଣାଦ, ବୃହସ୍ପତି, ଜମଦଗ୍ନି ଓ ଶୁକ୍ରାଚାର୍ଯ୍ୟ ଆଦି କେତେକ ମୁନିଙ୍କୁ ତାମସ ବିଶେଷଣ ଦିଆଯାଇ ଅଛି । ଏତଦ୍‌ପରି ପ୍ରକୃତିର ସତ୍ତ୍ୱ, ରଜଃ ଓ ତମଃ ଗୁଣତ୍ରୟ ସମନ୍ୱିତ ଅନେକ ବସ୍ତୁ ଓ ବ୍ୟାପାରମାନଙ୍କୁ ଯଥାକ୍ରମେ ସାତ୍ତ୍ୱିକ, ରାଜସ ଓ ତାମସ କୁହାଯାଏ । ନିଦ୍ରା, ଆଳସ୍ୟ, ପ୍ରମାଦ ଆଦିରୁ ଉତ୍ପନ୍ନ ସୁଖକୁ ତାମସ ସୁଖ ଓ ପୌରୋହିତ୍ୟ, ଅସତ୍ ପ୍ରତିଗ୍ରହ, ଜୀବହିଂସା, ଲୋଭ, ମୋହ, ଅହଙ୍କାର ଆଦିକୁ ତାମସ କର୍ମ ବୋଲାଯାଏ । ବିଷ୍ଣୁ ସତ୍ତ୍ୱଗୁଣମୟ, ବ୍ରହ୍ମା ରଜୋଗୁଣମୟ ଓ ଶିବ ତମୋଗୁଣମୟ ବୋଲି ବିବେଚିତ—ହି. ଶବ୍ଦସାଗର ।]

ବି.—୧ । ପେଚକ; ପେଚା—1 Owl.

୨ । ସର୍ପ; ସାପ – 2. Snake.

୩ । ଚତୁର୍ଥ ମନୁ—3. The 4th Manu; the great grand-son of Manu, the original progentor of mankind.

ଚତୁର୍ଥେ ପ୍ରିୟବ୍ରତ ସୁତ, ତାମସ ଉତ୍ତମର ଭ୍ରାତ ।
ଜଗନ୍ନାଥ, ଭାଗବତ ।

୪ । ଖଳ ବ୍ୟକ୍ତି (ହି. ଶବ୍ଦସାଗର)— 4. Wicked person.

୫ । ଅନ୍ଧକାର—5. Darkness.

ବୋଲଇ ସେହି ନିଶାଚର, ମାୟାମନୀଷା ଯେନ ମହା ତାମସ ରେ ।
ଭଞ୍ଜ, ବୈଦେହୀଶବିଳାସ ।

୬ । ଅଜ୍ଞାନ; ମୋହ (ହି. ଶବ୍ଦସାଗର)— 6. Infatuation; delusion.

କ୍ଷତ୍ରିୟ ବଂଶ କଲେ ନାଶ,
ଏଣୁତେ ବଢ଼ିଲା ତାମସ । ଭୂପତି, ପ୍ରେମପଞ୍ଚାମୃତ ।

୭ । ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ଦେହରେ ଦେଖାଯିବା ୩୩ ପ୍ରକାର କେତୁ (ହି. ଶବ୍ଦସାଗର)—7. Thirtythree kinds of spots or heavenly bodies observed inside the solar and luner orbs.

**ତାମସ ଆହାର**—ସଂ. ବି.—ଏକ ଯାମ ବା ପ୍ରହରକ ପୂର୍ବରୁ ରାନ୍ଧି Tāmasa āhāra ହୋଇଥିବା ବା ପ୍ରସ୍ତୁତ, ଗତରସ, ପୂତି-ଗନ୍ଧଯୁକ୍ତ ପର୍ଯ୍ୟୁଷିତ ବା ବାସୀ, ଉଚ୍ଛିଷ୍ଟ ଓ ଅମେଧ୍ୟ ବସ୍ତୁର ଭୋଜନ (ଭଗବଦ୍‌ଗୀତା—୧୭-୧୦)— Eating of stale, sapless, evil-smelling and impure food or food prepared long ago or the leavings of other's tables or orts.

**ତାମସକର୍ତ୍ତା**—ବି. ପୁଂ (କର୍ମଧା; ତାମସ+କର୍ତ୍ତୃ. ୧ମା ବ)— Tāmasa karttā ଅନବହିତ, ବିବେକଶୂନ୍ୟ, ଉଦ୍ଧତ, ଶଠ, ପର ଉପରେ ଦାୟିତ୍ୱ ପକାଇ ନିଜେ ଦାୟିତ୍ୱରୁ ନିସ୍ତାର ପାଇବାକୁ ଇଚ୍ଛୁକ, ଅଳସ, ବିଷାଦଯୁକ୍ତ ଓ ଦୀର୍ଘସୂତ୍ରୀ କର୍ମୀ (ଭଗବଦ୍‌ଗୀତା ୧୮।୨୮)— A doer of work who is careless, unconscientious, arrogant, deceitful, irresponsible, lazy, sad and procrastinating.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଈ | ଊ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଏ | ଓଅ | ଧ |
| ୨ | ଉ | ଊ | ରୁ | ଲୁ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଗ୍ୟ | ଯ | ସ | ଚ୍ୟ | ଇଅ | ଓ | ନ୍ |

**ତାମସ କର୍ମ**—ସଂ. ବି (କର୍ମଧା; ତାମସ+କର୍ମନ୍; ୧ମା. ୧ବ)—ଭାବୀ
Tāmasa karma ଶୁଭାଶୁଭ ଫଳ, କ୍ଷୟ, ଗତି, ହିଂସା, ପୌରୁଷ ଆଦି ବିଚାର କରି ନ ଯାଇ ମୋହଦ୍ୱାରା ଆରବ୍ଧ କରାଯିବା କର୍ମ (ଭଗବଦ୍ଗୀତା ୧୮-୨୫)—A work undertaken without mature deliberation and done under delusion.

**ତାମସ କୀଲକ**—ସଂ. ବି (ବିଜ୍ଞାନପରିଭାଷା)—ସୂର୍ଯ୍ୟ ଓ ଚନ୍ଦ୍ରମଣ୍ଡଳର
Tāmasa kīlaka ଦେହରେ ବେଳେ ବେଳେ ଦେଖାଯିବା କଳା ଦାଗମାନ—Sun-spots; black spots on the surface of the sun and of the moon.

[ଦ୍ର—ଏମାନ ସଂଖ୍ୟାରେ ୩୩ । ସୂର୍ଯ୍ୟମଣ୍ଡଳରେ ଏମାନ ଦେଖାଗଲେ ଫଳିତ ଜ୍ୟୋତିଷ ମତରେ ସଂସାରରେ ଅଶୁଭ ଘଟେ ଓ ଚନ୍ଦ୍ରମଣ୍ଡଳରେ ଦେଖାଗଲେ ଶୁଭ ଘଟେ । ଏମାନେ ରାହୁଙ୍କ ପୁତ୍ର ଥିବାର କଳ୍ପିତ (ହି. ଶବ୍ଦସାଗର) । ]

**ତାମସ ଗୁଣ**—ସଂ. ବି—ତମୋଗୁଣ—(ତମଃ ତଳେ ଟୀକା ଦେଖ)—
Tāmasa guṇa The gross attributes or elements in Nature (See notes under Tamaḥ).

ବିଷାଦ କ୍ରୋଧ ଲୋଭ ହିଂସା
ଯାତନା ଦମ୍ଭ ମିଥ୍ୟା ଘୃଣା
କଳହ ଶୋକ ଭୟ ଭ୍ରମ
ନିଦ୍ରା ଆଳସ୍ୟ ଅଣ୍ଟ ଶ୍ରମ
ଏତେ ତାମସ ଗୁଣ ଜାଣି
ଏବେ ହୋ ଶୁଣ ଧର୍ମମଣି ।—ଜଗନ୍ନାଥ, ଭାଗବତ ।

**ତାମସଜ୍ଞାନ**—ସଂ. ବି.—(କର୍ମଧା; ତାମସ+ଜ୍ଞାନ)—ପ୍ରକୃତରେ ଈଶ୍ୱର
Tāmasa jñāna ବିଦ୍ୟମାନ ଅଛନ୍ତି ଏହିପରି କାରଣରହିତ ଅଯୌକ୍ତିକ ତୁଚ୍ଛ ଜ୍ଞାନ (ଭଗବଦ୍ଗୀତା—୧୮-୨୨)—Knowledge or conviction not based upon reasoning or sense.

**ତାମସ ତପଃ**—ସଂ. ବି.—( କର୍ମଧା; ତାମସ+ତପଃ )—ପରର ଅନିଷ୍ଟ-
Tāmasa tapaḥ ସାଧନ ପାଇଁ ଆପଣାକୁ କଷ୍ଟ ଦେଇ ବିବେକ ବିରୁଦ୍ଧ ଭାବରେ କରାଯିବା ତପସ୍ୟା ( ଭଗବଦ୍ଗୀତା ୧୭।୧୯ )—Penance or austerities practised against one's conscience for injuring another by undergoing personal privations.

**ତାମସ ତ୍ୟାଗ**—ସଂ. ବି. (କର୍ମଧା; ତାମସ+ତ୍ୟାଗ)—ମୋହବଶତଃ ଯଜ୍ଞ,
Tāmasa tyāga. ଦାନ ଓ ତପସ୍ୟାଦି କର୍ତ୍ତବ୍ୟ କର୍ମମାନଙ୍କ ତ୍ୟାଗ (ଭଗବଦ୍ଗୀତା ୧୮।୭)—Abandonment of one's charitable or religious duties on account of infatuation.

**ତାମସ ଦାନ**—ସଂ. ବି—(କର୍ମଧା; ତାମସ+ଦାନ)—ଦେଶକାଳ ବିଚାର
Tāmasa dāna ନ କରି, ଅସତ୍କାର ଓ ଅବଜ୍ଞା ସହକାରେ ଅପାତ୍ରରେ କରାଯିବା ଦାନ (ଭଗବଦ୍ଗୀତା ୧୭।୨୨)—A gift made to an improper person at an improper time and place and without due respect.

**ତାମସ ଧ୍ୟାନ**—ସଂ. ବି—( ତାମସ+ଧ୍ୟାନ; ୭ମୀ ତତ )—ବଟୁକ-
Tāmasa dhyāna ଭୈରବଙ୍କ ରୂପର ଧ୍ୟାନ—The contemplation of the Deity Baṭukabhairaba.

**ତାମସ ପୁରାଣ**—ସଂ. ବି.—( ତାମସ+ପୁରାଣ )—ପୁରାଣମାନଙ୍କ ଶ୍ରେଣୀ-
Tāmasa purāṇa ବିଶେଷ—Title of a group of Hindu Purāṇas classed as gross.

[ଦ୍ର—ମତ୍ସ୍ୟ, କୂର୍ମ, ଲିଙ୍ଗ, ଶିବ, ସ୍କନ୍ଦ, ଅଗ୍ନି ଏହି ୬ଟି ପୁରାଣକୁ ତାମସ ବୋଲାଯାଏ । ତାମସ ତଳେ ଟୀକା ଦେଖ ।]

**ତାମସ ମୁନି**—ସଂ. ବି.—ତମୋଗୁଣ ବଶବର୍ତ୍ତୀ ମୁନିଗଣ—
Tāmasa muni Passionate sages; some of the sages who are said to have been swayed by passions.

[ଦ୍ର—କଣାଦ, ଗୌତମ, ଶକ୍ତି, ଉପମନ୍ୟୁ, ଜୈମିନି, ଦୁର୍ବାସା, ମୃକଣ୍ଡୁ, ବୃହସ୍ପତି, ଶୁକ୍ରାଚାର୍ଯ୍ୟ, ଜମଦଗ୍ନି ପ୍ରଭୃତି ମୁନିମାନଙ୍କୁ ତାମସ ଶ୍ରେଣୀରେ ଗଣନା କରାଯାଇଅଛି । ]

**ତାମସ ଯଜ୍ଞ**—ସଂ. ବି. ( ତାମସ+ଯଜ୍ଞ )—ବିଧିହୀନ ଯଜ୍ଞ—
Tāmasa jajña A vedic sacrifice performed without due rites and solemnities.

[ ଦ୍ର—ବିଧିହୀନ, ଅସୃଷ୍ଟାନ୍ନ ଅର୍ଥାତ୍ ବ୍ରାହ୍ମଣାଦିଙ୍କଦ୍ୱାରା ଅସମ୍ପନ୍ନ, ମନ୍ତ୍ରହୀନ, ଦକ୍ଷିଣାଦାନବିବର୍ଜିତ ଓ ଶ୍ରଦ୍ଧାବିରହିତ ଯଜ୍ଞକୁ ତାମସ ଯଜ୍ଞ ବୋଲାଯାଏ—ଭଗବଦ୍ଗୀତା ୧୭।୧୩ । ]

**ତାମସ ସନ୍ନ୍ୟାସୀ**—ସଂ. ବି ( ତାମସ+ସନ୍ନ୍ୟାସୀ )—ଗାର୍ହସ୍ଥ୍ୟ ସୁଖ-
Tāmasa sannyāsī ସ୍ୱାଦନରେ ନିରପେକ୍ଷ ଥାଇ ବନରେ କଠୋରତାପୂର୍ବକ ତପସ୍ୟା କରୁଥିବା ଅଥଚ ମୋକ୍ଷ ପାଇଁ ଲାଳାୟିତ ସନ୍ନ୍ୟାସୀ—An ascetic who renounces the world and lives in the woods to practise austerities but hankers after salvation.

**ତାମସ ସୁଖ**—ସଂ. ବି. (କର୍ମଧା; ତାମସ+ସୁଖ)—ଯେଉଁ ସୁଖ ପ୍ରଥମରେ
Tāmasa sukha ଓ ଶେଷରେ ଆତ୍ମାର ମୋହକାରୀ ଏବଂ ନିଦ୍ରା, ଆଳସ୍ୟ ଓ ପ୍ରମାଦରୁ ଜାତ ( ଭଗବଦ୍ଗୀତା—୧୮।୩୯ )—Pleasure which begins and ends with infatuation and is derived from sleep, laziness or blunder.

ଧାରଣ ହେବେ ଅପର ଦୃଷ୍ଟାରେ ୧ରେ ୧ ରେ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ରେ ଉକ୍ତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ରେ ଉକ୍ତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ନାଢ' ନ ମିଳିଲେ 'ନାଢ଼' ଖୋଜିବେ; 'ବୃଦ୍ଧ' ନ ମିଳିଲେ 'ବୃଦ୍ଧ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତାମସ ସ୍ମୃତି**—ସଂ. ବି ( ତାମସ + ସ୍ମୃତି )—ସ୍ମୃତିଗ୍ରନ୍ଥମାନଙ୍କ ଶ୍ରେଣୀ-
Tāmasa smṛuti ବିଶେଷ—Title of a class of codes of Hindu Law.

[ ଦ୍ର—ଗୌତମ, ବୃହସ୍ପତି, ସମ୍ବର୍ତ୍ତ, ଯମ, ଶଙ୍ଖ, ଔଶନସ ଆଦି କେତେକ ମୁନିଙ୍କ ସଂକଳିତ ସ୍ମୃତି ବା ସଂହିତାମାନଙ୍କୁ ତାମସ କୁହାଯାଏ । ]

**ତାମସା**—ବୈଦେ. ବିଣ (ଅ. ତମାଶା)—୧ । କ୍ରୀଡ଼ା; ଖେଳ—
Tāmasā 1. Play; games; sports.
ତାମ୍‌ସା } ଅନ୍ୟ ରୂପ ୨। ବାଜିଗରୀ; କୁହୁକ—
ତାମାସା } 2. Magical show.
তামাসা ୩ । ଲୋକ ମନୋରଞ୍ଜନ ଦୃଶ୍ୟ—
तमाशा 3. A popular sight; a show.
୪ । ପ୍ରଦର୍ଶନୀ—4 Exhibition.
୫ । ଥଟ୍ଟା; ରହସ୍ୟ; ପରିହାସ—
5. Joke; jest; fun.
୬ । ସୁଆଙ୍ଗ, ଯାତ୍ରା, ନାଟଆଦିରେ ଦେଖାଯିବା ଭିନ୍ନଭିନ୍ନ ଲୋକ ଓ ଜୀବଙ୍କ ପ୍ରତିରୂପ—6. Masquerade.
୭ । ନାଟ, ଯାତ୍ରା ଆଦି ମେଳା—
7. Popular gatherings; dances.
୮ । ଆମୋଦ ପ୍ରମୋଦ—8. Amusements.
୯ । ମଜା; କୌତୁକ—9. Fun; diversion.

ଦୃଷ୍ଟା ଏ କି ଜାତ ଲୁଣ୍ଠର ପୀରତ ତାମସା ଠାପର ହାହୁ—
କବିସୂର୍ଯ୍ୟ. ରତ୍ନାକରଚନ୍ଦ୍ର ।

[ ଦ୍ର—ଏ ଶବ୍ଦ ଥଟ୍ଟା ଶବ୍ଦ ପରେ ସହଚରରୂପେ ବ୍ୟବହୃତ ହୁଏ, (ଯଥା ଥଟ୍ଟା ତମାସା) । ତମାସା ତଳେ ନୋଟ୍ ଦେଖ । ]

**ତାମସିକ**—ସଂ. ବିଣ ( ତମସ୍ + ଅନ୍ୱିତାର୍ଥେ. ଇକ )—୧ । ତାମସ;
Tāmasika ତମୋଗୁଣାନ୍ୱିତ—1. Gross; connected with the grosser elements of human nature.
୨ । ଗର୍ହିତ; ନିନ୍ଦିତ—2. Blameworthy.
୩ । ଅନ୍ଧକାରଗ୍ରସ୍ତ—3. Darkened; gloomy.
୪ । ତମୋଗୁଣରୁ ଜାତ—4. Born of self-delusion.
୫ । ତମୋଗୁଣ ଦ୍ୱାରା ପ୍ରଣୋଦିତ—5. Arising from or dictated by the grosser human passions.

ଦେ. ବିଣ—(ସଂ. ତାମସିକ ଓ ଅ. ତମାସା ଏହି ଦୁଇ ଶବ୍ଦର ଅର୍ଥ ଦ୍ୱୟ ଅବଲମ୍ବନରେ ବ୍ୟବହୃତ)—୧ । ଯାହା ଲୋକଙ୍କୁ ଦେଖାଇବାକୁ ଅବଲମ୍ବିତ ହୁଏ ଓ ଯାହା ଅନ୍ତରିକ ନୁହେଁ ( ଯଥା—ତାମସିକ ଭକ୍ତି )—1. Affected; pretended; not sincere.

୨ । ଲୋକପ୍ରିୟ ହେବା ପାଇଁ ଯାହା ଅବଲମ୍ବିତ ହୁଏ—
2. Done to gain popularity.

**ତାମସୀ**—ସଂ. ବିଣ. ସ୍ତ୍ରୀ (ତାମସ+ସ୍ତ୍ରୀ. ଈ)—୧ । ଘୋର ଅନ୍ଧକାରମୟୀ—
Tāmasī 1. Gloomy.
୨ । ତମୋଗୁଣାନ୍ୱିତା—2. Gross.
ବି. ସ୍ତ୍ରୀ—୧ । ଘୋର ଅନ୍ଧକାରାଚ୍ଛନ୍ନ ରାତ୍ରି—1. Gloomy night.
୨ । ରାତ୍ରି; ରଜନୀ—2. Night.
୩ । ଦୁର୍ଗା; କାଳୀ—3. Goddess Kāḷī; Durgā.
୪ । ଜଟାମାଂସୀ; ହିମାଳୟର ଶାକବିଶେଷ—
4. Spikenard ( a medicinal herb).
୫ । ମସୀ; କାଳି; ସ୍ୟାହି—5. Ink.
ଦେ. ବି. ସ୍ତ୍ରୀ—ତମସା ନଦୀ—The river Tamasā.

ବନ ତାମସୀ ନଦୀକି ବନେ ପଶି, ସେ ଦିନ ତହିଁ ରହିଲେ—
ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।

**ତାମସୀ ଧୃତି**—ସଂ. ବି—ଅବିବେକୀ ପୁରୁଷ ଯେଉଁ ଧୃତି ପ୍ରଭାବରୁ
Tāmasī dhṛuti ସ୍ୱପ୍ନ, ଭୟ, ଶୋକ, ବିଷାଦ ଓ ଗର୍ବ ତ୍ୟାଗ କରି ନ ପାରେ ( ଭଗବଦ୍‌ଗୀତା ୧୮।୩୫ )—
That gross firmness of mind for which a person cannot give up dream, fear, sorrow, sadness and pride.

**ତାମସୀ ବୁଦ୍ଧି**—ସଂ. ବି—ମନୁଷ୍ୟର ଯେଉଁ ବୁଦ୍ଧି ଅଜ୍ଞାନାନ୍ଧକାରରେ
Tāmasī buddhi ଆଚ୍ଛନ୍ନ ହୋଇ ଅଧର୍ମକୁ ଧର୍ମ ଓ ସମସ୍ତ ବିଷୟକୁ ବିପରୀତଭାବରେ ବୁଝେ (ଗୀତା ୧୮।୩୨)—Intellegence which is shrouded with ignorance and considers impiety as piety and understands every thing from an opposite point of view.

**ତାମସୀ ଶ୍ରଦ୍ଧା**—ସଂ. ବି—ଯେଉଁ ସ୍ୱଭାବଜା ଶ୍ରଦ୍ଧା ଯୋଗୁଁ ମନୁଷ୍ୟମାନେ
Tāmasī śraddhā ଭୂତପ୍ରେତସମୂହର ଆରାଧନା କରନ୍ତି—
( ଭଗବଦ୍‌ଗୀତା ୧୭।୪)—
The innate belief in some men which leads them to worship ghosts and spectres.

**ତାମିଲ୍(ଳ)**—ଦେ. ବି (ସଂ. ଦ୍ରାବିଡ଼; ମାଗଧୀ ପ୍ରାକୃତ ବା ପାଲି, ଦାମିଲୋ ।
Tāmil(ḷ) ତାମିଲ ବର୍ଣ୍ଣମାଳାରେ ତ, ଥ, ଦ ର ଏକ ଉଚ୍ଚାରଣ
তামিল ଥିବାରୁ 'ଦାମିଳୋ' ଶବ୍ଦ ଉଚ୍ଚାରଣରେ ତାମିଲ
तामील ହୋଇଅଛି—ହିନ୍ଦି. ଶବ୍ଦସାଗର )—
୧ । ଦକ୍ଷିଣ ଭାରତର ଭାଷାବିଶେଷ; ଦ୍ରାବିଡ଼ ଭାଷାର ଗୋଟିଏ ପ୍ରଧାନ ଶାଖା—1. Tamil; one of the Dravidian languages of South India.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଝ | ଌ | ଏ | ଚସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଳ | ଶ,ଓ | ଙ | ଏଚ୍ | ନ୍ଗ | ଖ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ନ୍ଥ | ଡ଼ | ଢ଼ |

୨ । ଦକ୍ଷିଣ ଭାରତର ହିନ୍ଦୁ ଜାତିବିଶେଷ— 2. A Hindu caste of South India; the Tamil.

[ ଦ୍ର—ତାମିଲ ଭାଷାରେ ଲିଖିତ ୨୦୦୦ ବର୍ଷ ପୂର୍ବର ତାଳପତ୍ର ମିଳିଅଛି । ଏ ଭାଷାରେ ବର୍ଗର ୧ମ, ୨ୟ, ୩ୟ ଓ ୪ର୍ଥ ବର୍ଣ୍ଣର ଉଚ୍ଚାରଣ ଏକ । ଏହା ଦ୍ରାବିଡ଼ ଭାଷାର ଏକ ଶାଖା । ଶଙ୍କରାଚାର୍ଯ୍ୟଙ୍କ ଶାରୀରକ ଭାଷ୍ୟରେ 'ଦ୍ରମିଳ' ଶବ୍ଦ ଅଛି ଓ ଚୀନ ପରିବ୍ରାଜକ ହୁଏନସାଂ ଏହାକୁ ଚମୋଲୋ ଉଚ୍ଚାରଣ କରିଅଛନ୍ତି । ତାମିଲ ବର୍ଣ୍ଣମାଳା ଅପୂର୍ଣ୍ଣ ଅଟେ । ବର୍ଗର ପଞ୍ଚମ ଅନୁନାସିକ ବର୍ଣ୍ଣ ଛଡ଼ା ବର୍ଗର ଅନ୍ୟ ସମସ୍ତ ବର୍ଣ୍ଣମାନଙ୍କର ଉଚ୍ଚାରଣ ଏକ ଅଟେ । ତାମିଲଜାତି ଭାରତର ଗୋଟିଏ ଅତି ପୁରାତନ ଜାତି ଓ ଭାରତକୁ ଆର୍ଯ୍ୟମାନେ ଆସିବା ପୂର୍ବେ ଏମାନେ ଭାରତରେ ଗୋଟିଏ ସଭ୍ୟ ଜାତି ଥିଲେ ଓ ଆର୍ଯ୍ୟ ସଭ୍ୟତା ବିସ୍ତାର ସଙ୍ଗେ ଏମାନେ ଆର୍ଯ୍ୟ ସଭ୍ୟତାକୁ ପୂର୍ଣ୍ଣରୂପେ ଗ୍ରହଣକଲେ । ]

ବୈଦେ. ବି— ଅ. )—ଆଜ୍ଞାର ପାଳନ— Carrying out of an order.

ବୈଦେ. ବିଣ— ପାଳିତ 'ଆଜ୍ଞା'—Carried out (order).

ତାମିସ୍ର —ସଂ. ବି ( ତମିସ୍ରା=ରାତ୍ରି+ଅ )—୧ । ରାକ୍ଷସ; ନିଶାଚର; ରାତ୍ରିଚର—1. Demon (who roams about in the night.)
Tāmisra

୨ । ଅବିଦ୍ୟାବିଶେଷ; ଇନ୍ଦ୍ରିୟବିଳାସଭୋଗର ବ୍ୟାଘାତଜନିତ କ୍ରୋଧ—2. Wrath or anger arising from the interruption of sensual indulgence.

୩ । ପ୍ରବଞ୍ଚକର ଦଣ୍ଡଭୋଗାର୍ଥ ଅନ୍ଧକାରମୟ ନରକବିଶେଷ— 3. A gloomy division of the Hell for the punishment of deceitful persons.

୪ । କ୍ରୋଧ—4. Wrath; anger.

୫ । ଦ୍ୱେଷ—5 Envy.

ତାମ୍ପଡ଼ା—ଦେ. ବି—ବଡ଼ ଚିଙ୍ଗୁଡ଼ି ଶୁଖୁଆ— Dried prawns.
Tāmparḍā

ବିଣ—କୃଶ ଓ ଲମ୍ବା ଶରୀରବିଶିଷ୍ଟ; ଛିଟଛିଟିଆ— Slender and tall (person).

ତାମ୍ପଡ଼ା ଶୁଖୁଆ—ଦେ. ବି—ତାମ୍ପଡ଼ା (ଦେଖ)
Tāmparḍā śukhuā Tāmparḍā (See).

ତାମ୍ପଡ଼ି ଯିବା—ପ୍ରାଦେ (ବାଲେଶ୍ୱର) କ୍ରି—କୁଞ୍ଚିତ ହେବା— To be wrinkled.
Tāmparḍi jibā

ତାମ୍ବଡ଼ା—ଗ୍ରା. ବିଣ—ତାଠାରୁ ବଡ଼; ତହିଁ ବଳି— Superior to that, him or her; exceeding that.
Tāmbarḍā

ତାମ୍ବର—ଦେ. ବି ( ସଂ. ତାମ୍ରକାର )—ତମ୍ବା ଧାତୁରେ କାମ କରିବା ଲୋକ—Copper-smith; brazier.
Tāmbarā

କଁସାରୀ ଏମନ୍ତେ ବହୁ ତାମ୍ବରକୁ, ଡକାଇ ଭୂପତେ ପାଖକୁ—
ଠଠେରା, କସେରା ଜଗଦାସ. ଦାର୍ଢ୍ୟଭକ୍ତି ।

ତାମ୍ବଳ—ଗ୍ରା (ଉତ୍ତର) ବି—ତାମ୍ବୂଳ ( ଦେଖ )
Tāmbaḷa Tāmbuḷa ( See )

ତାମ୍ବି—ପ୍ରାଦେ. (ଚଟ୍ଟଗ୍ରାମ ଓ ସମ୍ବଲପୁର; ସଂ. ତାମ୍ର; ସ୍ୱାଭାବିକ ଏ ପାତ୍ର ପୂର୍ବେ ତାମ୍ର ନିର୍ମିତ ଥିବାରୁ ଏ ଶବ୍ଦର ଉତ୍ପତ୍ତି (ତାମ୍ରି—ଅନ୍ୟରୂପ) ହୋଇଅଛି; ତୁଳ. ହି. ତାଂବା=ତମ୍ବା ନିର୍ମିତ ପାତ୍ର)—୧ । ଟିଣ—1 Tin.
Tāmbi

୨ । ତରଳ ପଦାର୍ଥ ଓ ଶସ୍ୟାଦି ମାପିବାପାଇଁ କାଠର ବା ଟିଣର ବଡ଼ ପାତ୍ର—2. A big wooden or metal measure for grains and liquids.

[ ଦ୍ର—ଏହି ମାପିବା ପାତ୍ର ଅନେକ ପ୍ରକାର ଯଥା— ୧ । ଭୁଡ଼ି ତାମ୍ବି=୧୦୫ ତୋଲା ଓଜନ (ଏଥିରେ ମୂଲ୍ୟଅଙ୍କ ମୂଲ ଦିଆଯାଏ) । ୨ । କଠା ତାମ୍ବି=୯୦ ତୋଲା ଓଜନ (ଗୁଡ଼ିଲ ଆଦି ଶସ୍ୟ ମାପିବାରେ ବ୍ୟବହୃତ ) । ୩ । ସେର ତାମ୍ବି =୮୦ ତୋଲା ଓଜନ ( ଘିଅ ତେଲ ଆଦି ମପାଯାଏ ) । ୪ । କରଜା ତାମ୍ବି= ୧୨୦ ତୋଲା ଓଜନ ( ଧାନ କରଜ ଦେବା ନେବା ବେଳେ ବ୍ୟବହୃତ ) । ]

ତାମ୍ବୁ—ବୈଦେ. ବି ( ଅ. ତମ୍ବୁ )—ତମ୍ବୁ; ପଟୁଡ଼ୀ; ପଟ୍ଟବାସ; ଶିବିର; ବସ୍ତ୍ରଗୃହ—A tent, pavillion.
Tāmbu

ତାଂବୁ, ତଂବୂ

ତାମ୍ବୁରା - ବୈଦେ. ବି ( ଅ. ତାମ୍ବୁର; ତମ୍ବା ତୁମ୍ବୁରୁ ଗନ୍ଧର୍ବ କର୍ତ୍ତୃକ ଉଦ୍ଭାବିତ ହୋଇଥିବାରୁ ଏହି ନାମ )—ଗୋପୀଯନ୍ତ୍ର; ତାନପୁରା—One-stringed guitar.
Tāmburā

ତାମ୍ବୁରା
ତଂବୂରା

ତାମ୍ବୂଳ—ସଂ. ବି ( ତମ୍ ଧାତୁ=ମ୍ଳାନ ହେବା+ସଜ୍ଞାର୍ଥେ, ଊଳ )— ୧ । ପାନ—1. Betel leaf; Piper Betel.
Tāmbūḷa

୨ । ପାନଖିଲ; ଖିଲିଆ—2. A quid or packet of betel leaf enclosing pieces of nut, spices etc. (chewed after meals).

୩ । ଗୁଆ; ଗୁଆ (ହ୍ର. ଶବ୍ଦସାଗର)—3. Betel nut.

ତାମ୍ବୂଳ କରଙ୍କ—ସଂ. ବି ( ତାମ୍ବୂଳ+କରଙ୍କ=ନଡ଼ିଆର ଖୋଳ )— ପାନଡବା; ପାନବଟା—Betel-box.
Tāmbūḷa karaṅka

ତାମ୍ବୂଳ ପତ୍ର—ସଂ. ବି ( ତାମ୍ବୂଳ+ପତ୍ର )—୧ । (ଷଷ୍ଠୀ ତତ୍ ) ତାମ୍ବୂଳ ଲତାର ପତ୍ର; ପାନ—1. Betel leaf.
Tāmbūḷa patra

୨ । ( ବହୁବ୍ରୀହି; ତାମ୍ବୂଳ ପରି ପତ୍ର ଯାହାର ) ଦେଶୀ ଆଳୁ (ହ୍ର. ଶବ୍ଦସାଗର)—2. Yam.

ତାମ୍ବୂଳ ପେଟିକା—ସଂ. ବି. (ତାମ୍ବୂଳ+ପେଟିକା=ପେଡ଼ି)— ୧ । ପାନ ବଟୁଆ—1. A pouch for carrying betel and other chewing requisites.
Tāmbūḷa peṭikā

୨ । ପାନ ବଟା—2. Betel box.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ବୃଅ' ନ ମିଳିଲେ 'ବୃଧ' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଗ୍ୟ' ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ

୩ । ପାନ ପେଟେରି; ଯେଉଁ ପେଟେରିରେ ପାନ ଖାଇବାର ସରଞ୍ଜାମମାନ ଥାଏ—3. A basket having a lid for carrying betel-requisites.

**ତାମ୍ବୂଳ ବାହକ**—ସଂ. ବି. ପୁଂ—ରାଜା ଆଦିଙ୍କ ସଙ୍ଗେ ଯେଉଁ ଭୃତ୍ୟ
Tambūḻa bāhaka ପାନଖିଲ ଓ ପାନଡବା ଆଦି ଧରି
(ତାମ୍ବୂଳ ବାହିକା—ସ୍ତ୍ରୀ) ଥାଏ—A servant who carries
(ତାମ୍ବୂଳଦ, ତାମ୍ବୂଳଧର—ଅନ୍ୟରୂପ) the chewing betel-packets and betel-box with kings and rich men.

**ତାମ୍ବୂଳ ବିଡ଼ିଆ**—ଦେ. ବି. (ସଂ. ତାମ୍ବୂଳ ବୀଟିକା)—ପାନଖିଲ—
Tāmbūḻa birdia A rolled packet of betel leaf prepared for chewing.

ତଦନ୍ତେ ତାମ୍ବୂଳ ବିଡ଼ିଆ ସେବାଇଲେ । କୃଷ୍ଣସିଂହ, ମହାଭାରତ ସଭା ।

**ତାମ୍ବୂଳ ବୀଟିକା**—ସଂ. ବି.—(ତାମ୍ବୂଳ+ବୀଟିକା; ୬ଷ୍ଠୀ ତତ୍)—
Tāmbūḻa biṭikā ପାନଖିଲ—A prepared packet of betel leaf for chewing.

**ତାମ୍ବୂଳ ବୋଲ**—ଦେ. ବି.—ପାନ ସେବାଇବା ଯୋଗୁ ଓଠରେ
Tāmbūḻa boḻa ଯେଉଁ ସିଠା ପରି ସ୍ତର ପଡ଼ିଯାଏ—
A thin crust or a thick dye appearing on the lips of persons habituated to chewing betel.

**ତାମ୍ବୂଳ ରସ**—ସଂ. ବି. (ତାମ୍ବୂଳ+ରସ; ୬ଷ୍ଠୀ ତତ୍)—୧ । ପାନରସ—
Tāmbūḻa rasa 1. Juice of betel leaf.
୨ । ପାନ ପିକ—2. The spittle ejected after chewing betel.

**ତାମ୍ବୂଳ ରାଗ**—ସଂ. ବି. (ତାମ୍ବୂଳ+ରାଗ; ୬ଷ୍ଠୀ ତତ୍)—୧ । ପାନ
Tāmbūḻa rāga ସେବାଇବାରୁ ଓଠରେ ହୋଇଥିବା ରକ୍ତିମା—
1. The redness of the lips due to chewing betel.
୨ । ପାନ ପିକ (ହି. ଶବ୍ଦସାଗର)—2. The spittle ejected after chewing betel.
୩ । (ବହୁବ୍ରୀହି) ମସୁର ଡାଲି—3. Lens Esculenta; a kind of pulse.

**ତାମ୍ବୂଳାଧାର**—ଦେ. ବି (ତାମ୍ବୂଳ+ଆଧାର; ୬ଷ୍ଠୀ ତତ୍)—
Tāmbūḻādhāra ୧ । ପାନ ବଟୁଆ—1. Betel pouch.
୨ । ପାନ ଡବା—2. Betel box.
୩ । ଯେଉଁ ଥାଳରେ ପାନଖିଲ ସଜା ହୋଇ ଗୃହକୁ ସମାଗତ ବନ୍ଧୁ ଆଦିଙ୍କ ଆଗରେ ରଖାଯାଏ—3. A plate of betel packets kept before guests.

**ତାମ୍ବୂଳି**—ଦେ. ବି. ପୁଂ (ସଂ. ତାମ୍ବୂଳୀ)—ତାମ୍ବୂଳିକ (ଦେଖ)—
Tāmbūḻi Tāmbūḻika (See)
তামলি तमोली
(ତାମ୍ବୂଳିଆଣୀ—ସ୍ତ୍ରୀ)
(ତାମ୍ବୂଳିଆ—ଅନ୍ୟରୂପ)

**ତାମ୍ବୂଳକ**—ସଂ ବି (ତାମ୍ବୂଳ+ଜୀବିକା ଅର୍ଥରେ ଇକ)—ତାମିଲି; ପାନରି—
Tāmbūḻika Betel seller by profession.

**ତାମ୍ବୂଳୀ**—ସଂ. ବି (ତାମ୍ବୂଳ+ଜୀବିକାର୍ଥେ ଇନ୍ ୧ମା ୧.ବ)—
Tāmbūḻi ୧ । ତାମିଲି; ପାନରି—1. Betel seller.
୨ । (ତାମ୍ବୂଳ+ସ୍ତ୍ରୀ. ଈ) ପାନ ଲତା (ହରେକୃଷ୍ଣ, ଦ୍ରବ୍ୟଗୁଣ)—2 Betel plant (Apte).
୩ । ଯେଉଁ ଭୃତ୍ୟ ପ୍ରଭୁଙ୍କ ପାଇଁ ପାନ ଭାଙ୍ଗେ ଓ ପ୍ରଭୁଙ୍କୁ ପାନଖିଲ ଯୋଗାଏ—3. A servant who prepares the betel packets for chewing and presents them to his master when wanted (Apte).

**ତାମ୍ବୂଳିକ**—ସଂ. ବି (ତାମ୍ବୂଳ+ଜୀବିକା ଅର୍ଥରେ ଇକ)—ତାମିଲି;
Tāmbūḻika ପାନରି—Betel-seller.

**ତାମ୍ବୋଲ**—ଦେ. ବି—ବାଲ ଡିମ୍ବିରି (ଦେଖ)—
Tāmboḻa Bāḻa ḍimbiri (See) (Haines).

**ତାମ୍ର**—ସଂ.ବି (ତମ୍ ଧାତୁ=ଦୁଃଖ ପାଇବା+କରଣ. ର)—୧ । ତମ୍ବା
Tāmra ଧାତୁ—1. Copper.
୨ । (ତମ୍ର+ଅ)—ଦେହରେ ରକ୍ତବର୍ଣ୍ଣ ଦାଗ ଯୁକ୍ତ କୁଷ୍ଠରୋଗ-ବିଶେଷ—2. A kind of leprosy with red spots.
୩ । ତାମ୍ର ପରି ରକ୍ତବର୍ଣ୍ଣ—
3. A dark coppery red (Apte).
ବିଣ—ଅରୁଣବର୍ଣ୍ଣବିଶିଷ୍ଟ—
Dark red; copper-coloured.

**ତାମ୍ରକ**—ସଂ. ବି (ତାମ୍ର+ସ୍ୱାର୍ଥେ. କ)—ତମ୍ବା—
Tāmraka Copper.

**ତାମ୍ରକର୍ଣ୍ଣୀ**—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ତାମ୍ର+କର୍ଣ୍ଣ+ସ୍ତ୍ରୀ ଈ)—
Tāmrakarṇṇi ପଶ୍ଚିମ ଦିଗର ହସ୍ତିନୀ—
The mythological she-elephant guarding the western point of the earth.

**ତାମ୍ରକାର**—ସଂ. ବି (ତାମ୍ର+କୃ+କର୍ତ୍ତୃ. ଅ)—୧ । ଯେ ତମ୍ବାରେ
Tāmrakāra ଜିନିଷ ଓ ବାସନ ତିଆରି କରେ; ତମ୍ବା କାରିଗର;
(ତାମ୍ରକୁଟ—ଅନ୍ୟରୂପ) ତାମ୍ବରି—1 Copper smith.

**ତାମ୍ର କୀଟ**—ସଂ. ବି—୧ । ସାଧବଘର ବୋହୂ; ଇନ୍ଦ୍ରଗୋପ; ପାଟପୋକ—
Tāmra kiṭa 1. The cochineal insect.
(ତାମ୍ର କୃମି—ଅନ୍ୟରୂପ) କନକ ମଣ୍ଡାରେ ରହିଲେ ସଧୀରେ ଶୋଭି ଯେସନ୍ତେ ତାମ୍ରକୀଟ
ଗୋପୀକୃଷ୍ଣ ରସକଲ୍ଲୋଳ ।

| | | | | | | | | | | | | |
|---|---|---|---|---|---|---|---|---|---|---|---|---|
| ୧ | ଇ | ଊ | ଋ,ୠ | ଌ | ଏ ହସନ୍ତ ବର୍ଣ୍ଣ | ଅନୁନାସିକ ସ୍ୱରାକ୍ଷର | ଯ | ଜ | ଣ,ଷ | ଙ | ଇଦ୍ୟ | ଡ଼ଅ | ଘ |
| ୨ | ଈ | ଉ | ଋ | ଌ | ସ୍ତ ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଣ୍ୟ | ଯ | ସ | ଙ୍ଗ୍ୟ | ଇଅ | ଢ଼ | ନ୍ |

୨ । ଘାଗୁଡ଼ା ପୋକ—
The lady-bird insect ( Apte ).

ତାମ୍ର କୁ(କୂ)ଟ୍ଟକ—ସଂ. ବ (ତାମ୍ର+କୁଟ୍ଟକ, ଏହା ତମ୍ବାର ବର୍ଣ୍ଣ ଥିବାରୁ)
Tāmra ku(kū)ṭṭaka ଧୂଆଁପତ୍ର, ତମାଖୁ; ତମାଖୁ—Tobacco.

ତାମ୍ର କୂଟ—ସଂ. ବ (ତାମ୍ର+କୂଟ)—ଧୂଆଁପତ୍ର—
Tāmra kūṭa Tobacco.

ତାମ୍ର ଗର୍ଭ—ସଂ. ବ (ତାମ୍ର ଅଟେ ଗର୍ଭ=ଉତ୍ପତ୍ତିସ୍ଥାନ ଯାହାର; ବହୁବ୍ରୀହି)
Tāmra garbha ତୁତିଆ—Sulphate of copper; Blue vitriol.

ତାମ୍ରଚୂଡ଼—ସଂ. ବି. ପୁଂ. ( ତାମ୍ର+ଚୂଡ଼ା, ତାମ୍ର ବର୍ଣ୍ଣ ଚୂଡ଼ା=ଚୂଳ
Tāmrachūrda ଯାହାର; ବହୁବ୍ରୀହି )—୧ । କୁକ୍କୁଟ; କୁକୁଡ଼ା-
1. A cock ( having a coppery coxcomb ).
୨ । କୁକୁରବନ୍ଧୁ; କୁକୁର ଛାଇଅ ଗୁଳ୍ମ (ହି. ଶବ୍ଦସାଗର)—
2. Pavetta Indica plant.

ତାମ୍ରତ୍ରପୁଜ—ସଂ. ବ—(ତାମ୍ର+ତ୍ରପୁ=ଟିଣ+ଜନ୍ ଧାତୁ+ଅ; ଯାହା
Tāmratrapuja ତମ୍ବା ଓ ଟିଣ ମିଶାଇ ପ୍ରସ୍ତୁତ ହୁଏ )—
୧ । କଂସା; କାଂସ୍ୟ—1. Bell-metal.
୨ । ପିତଳ—2. Brass (Apte).

ତାମ୍ର ଦ୍ୱୀପ—ସଂ. ବ—ସିଂହଳ; ଲଙ୍କା ଦ୍ୱୀପ—
Tāmra dwīpa The island of Ceylon.

ତାମ୍ରଦ୍ରୁ—ସଂ. ବ—ରକ୍ତ ଚନ୍ଦନ—
Tāmradru The red Sandal wood (Apte).

ତାମ୍ର ଧାତୁ—ସଂ. ବି—୧ । ନାଲ୍ ଚକ୍ ଖଡ଼ି—
Tāmra dhātu 1. Red chalk.
୨ । ତାମ୍ର ନାମକ ଧାତୁ; ତମ୍ବା—2. Copper (metal).

ତାମ୍ର ପଟ୍ଟ—ସଂ. ବି. (ତାମ୍ର+ପଟ୍ଟ; ମ. ପ. ଲୋ=ତାମ୍ର ନିର୍ମିତ ପଟ୍ଟ)—
Tāmrapaṭṭa ତମ୍ବା ପାତିଆ; ତାମ୍ର ଫଳକ—
A copper plate.
[ ଦ୍ର—ପୂର୍ବେ ରାଜାମାନଙ୍କ ସନନ୍ଦ ତାମ୍ର ପଟ୍ଟରେ ଲେଖା ଯାଉଥିଲା; ବର୍ତ୍ତମାନ ନାନା ସ୍ଥାନରେ ଭୂଗର୍ଭରୁ ଅନେକ ତାମ୍ରପଟ୍ଟ ଲିଖିତ ପ୍ରାଚୀନ ଅନୁଶାସନମାନ ମିଳୁଛି । ]

ତାମ୍ର ପତ୍ର—ସଂ. ବି. ( ତାମ୍ର+ପତ୍ର; ମ. ପ. ଲୋ )—
Tāmra patra ୧ । ତାମ୍ରପଟ୍ଟ ( ଦେଖ )—
1. Tāmrapaṭṭa ( See ).
୨ । (ବହୁବ୍ରୀହି) ରକ୍ତ ବର୍ଣ୍ଣ ପତ୍ର ଯୁକ୍ତ ଗଛ—
2. A tree with red leaves.
୩ । (କର୍ମଧା) ନୂଆ ଗଜା ହୋଇଥିବା ପତ୍ର—
3. New tender leaves of trees.

ତାମ୍ରପର୍ଣ୍ଣୀ—ସଂ. ବ—୧ । କର୍ଣ୍ଣାଟ ବା ମାଳବ ଦେଶସ୍ଥ ନଦୀବିଶେଷ—
Tāmraparṇṇī 1. Name of a river in S. E. India.

[ ଦ୍ର—ଏହା ମଳୟ ଶୈଳରୁ ଉତ୍ପନ୍ନ ହୋଇ ମାନ୍ଦ୍ରାଜର ଟିନେଭେଲି ଜିଲ୍ଲା ବାଟେ ଯାଇ ସମୁଦ୍ରରେ ପଡ଼ିଛି । ଏହା ପୂର୍ବେ ମୁକ୍ତା ନିମନ୍ତେ ପ୍ରସିଦ୍ଧ ଥିଲା । ଏହାର ଦୈର୍ଘ୍ୟ ୭୦ ମାଇଲ । ମହାଭାରତ, ମତ୍ସ୍ୟ-ପୁରାଣ, ଅଶୋକଙ୍କ ଶିଳାଲିପି ଓ ଗ୍ରୀକ୍ ଲେଖକ ଟଲେମୀଙ୍କ ଗ୍ରନ୍ଥରେ ଏ ନଦୀର ଉଲ୍ଲେଖ ଅଛି । ହି. ଶବ୍ଦସାଗର । ]
୨ । ଘାଇ ଓ ବଡ଼ ପୋଖରୀ; ସରୋବର—2. Lake.
୩ । ପଲାଙ୍ଗୀ ଲତା—3. Pœderia Fœtida.
୪ । ମଞ୍ଜିଷ୍ଠା—
4. Indian madder; Rubia Cordifolia.

ତାମ୍ର ପଲ୍ଲବ—ସଂ. ବ. ( ତାମ୍ର+ପଲ୍ଲବ; ବହୁବ୍ରୀହି; ଏହାର ନୂଆଁ
Tāmra pallaba ପତ୍ରମାନ ତାମ୍ରବର୍ଣ୍ଣ ଥିବାରୁ)—ଅଶୋକ ଗଛ—
The Asoka tree.

ତାମ୍ର ପାତ୍ର—ସଂ. ବ. (ତାମ୍ର+ପାତ୍ର; ମ. ପ. ଲୋ)—ତମ୍ବାନିର୍ମିତ ଅଧାର;
Tāmra pātra ତମ୍ବା ବାସନ—Copper vessel.
[ ଦ୍ର—ହିନ୍ଦୁମାନଙ୍କ ମତରେ ତାମ୍ରପାତ୍ର ଦେବ ଓ ପିତୃକାର୍ଯ୍ୟରେ ବ୍ୟବହୃତ ହେବାର ଉପଯୁକ୍ତ । ]

ତାମ୍ରପାଦୀ—ସଂ. ବ—ହଂସପଦୀ; ଲାଲ ରଙ୍ଗର ଲଜ୍ଜାଳୁ ଲତା ( ହି. ଶବ୍ଦ-
Tāmrapādī ସାଗର )—The red variety of Mimosa creeper.

ତାମ୍ର ପୁଷ୍ପ—ସଂ. ବ. ( ତାମ୍ର+ପୁଷ୍ପ; ବହୁବ୍ରୀହି )—
Tāmra pushpa ୧ । କୋଇଲାର; ରକ୍ତକାଞ୍ଚନ ଗଛ—
1. Bauhinia Variegata ( tree )
୨ । ଭୁଇଁ ଚମ୍ପା ( ଦେଖ )
2. Bhūin champā ( See )
ସଂ. ବିଣ—ରକ୍ତବର୍ଣ୍ଣ ପୁଷ୍ପ ବିଶିଷ୍ଟ—Red flowered.

ତାମ୍ର ପୁଷ୍ପିକା—ସଂ. ବ. ସ୍ତ୍ରୀ. ( ତାମ୍ର+ପୁଷ୍ପ+କ+ସ୍ତ୍ରୀ. ଅ )—ରକ୍ତ-
Tāmra pushpikā ତ୍ରିବୃତ୍; ନାଲ ଦନ୍ତୁଡ଼ୀ ଲତା—
The red Turpethum creeper.

ତାମ୍ରପୁଷ୍ପୀ—ସଂ. ବ. ସ୍ତ୍ରୀ. ( ତାମ୍ର+ପୁଷ୍ପ+ଈପ୍ )—
Tāmrapushpī ୧ । ପାଟେଲୀଗଛ—1. A tree; Stereospermum Suaveolens.
୨ । ଧାତକୀ (ଦେଖ)—2. Dhātakī (See).

ତାମ୍ରଫଳ—ସଂ. ବ—ଅଖରୋଟ ଗଛ—
Tāmraphala Walnut tree.

ତାମ୍ର ଫଳକ—ସଂ. ବ. ( ୬ଷ୍ଠୀ ତତ୍; ତାମ୍ରଫଳକ )—ତାମ୍ର ପଟ୍ଟ (ଦେଖ)
Tāmra phalaka Tāmra paṭṭa ( See )

ତାମ୍ର ବର୍ଣ୍ଣ—ସଂ. ବିଣ. ( ତାମ୍ର+ବର୍ଣ୍ଣ )—
Tāmra barṇṇa ୧ । ନାଲିଆ; ରକ୍ତବର୍ଣ୍ଣ ( ହି. ଶବ୍ଦସାଗର )—
1. Red.
୨ । ତମ୍ବାଳିଆ ବର୍ଣ୍ଣର—2. Copper-coloured.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚକ୍ରିତ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ତହିଁ ର ଅପରସ୍ଥ ୨ ବା ୧ ଚକ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଠ' ନ ମିଳିଲେ 'ଗାଣ୍ଠ' ଖୋଜିବେ; 'କୁଥ' ନ ମିଳିଲେ 'କୁଣ୍ଠ' ଦେଖିବେ; 'ବଧୂ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଁଖା' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍ତ ଦେଖିବେ'

ସଂ.ବି—୧ । ମନୁଷ୍ୟର ଦେହର ଚମଡ଼ା ତଳେ ଥିବା ୪ର୍ଥ ଚର୍ମର ସ୍ତର ( ହି. ଶବ୍ଦସାଗର )—1. The thin layer of skin below the outer skin of the human body.

୨ । ସିଂହଳ ଦ୍ୱୀପ ( ହି. ଶବ୍ଦସାଗର )—2. Ceylon.

[ ଦ୍ର—ଏ ଦ୍ୱୀପର ଏହି ନାମରୁ ପ୍ରାଚୀନ ଗ୍ରୀକ୍‌ମାନେ ଏହାକୁ ଟାପ୍ରୋବେନ୍ (Taprobane) ନାମ ଦେଇଥିଲେ । ]

ତାମ୍ରବର୍ଣ୍ଣୀ—ସଂ. ବି. ( ତାମ୍ର+ବର୍ଣ୍ଣ+ସ୍ତ୍ରୀ. ଈ )— ୧ । ରାଶିଫୁଲର
Tāmrabarṇṇī କଢ଼—1. The blossom
(ତାମ୍ରବର୍ଣ୍ଣୀ—ଅନ୍ୟରୂପ ) of Sessamum (Apte).

୨ । ମନ୍ଦାର ଫୁଲ ( ହି. ଶବ୍ଦସାଗର )—
2. China rose.

ତାମ୍ର ବଲ୍ଲୀ—ସଂ. ବି. ସ୍ତ୍ରୀ—୧ । ମଞ୍ଜିଷ୍ଠା ଲତା; ମେଦେହଜୀ ଗଛ—
Tāmra ballī 1. Indian madder plant; Rubia Cordifolia.

୨ । ଚିତ୍ରକୂଟ ପ୍ରଦେଶରେ ଜନ୍ମିବା ଲତାବିଶେଷ—
2. A plant growing in the Chitrakūṭa tracts.

ତାମ୍ର ବୀଜ—ସଂ. ବି. (ବହୁବ୍ରୀହି; ତାମ୍ର+ବୀଜ )—କୋଲଥ (ହି, ଶବ୍ଦସାଗର )—Chickpea.
Tāmra bija
( ତାମ୍ରବୃନ୍ତ, ତାମ୍ରବୃନ୍ତା—ଅନ୍ୟରୂପ )

ତାମ୍ର ବୃକ୍ଷ—ସଂ. ବି. (ତାମ୍ର+ବୃକ୍ଷ; ବହୁବ୍ରୀହି )—ରକ୍ତଚନ୍ଦନଗଛ—
Tāmra bṛuksha Red sandal wood tree, Pterocarpus Santaninus.

ତାମ୍ର ମୁଖ—ସଂ. ବିଣ ପୁଂ. ( ବହୁବ୍ରୀହି; ତାମ୍ର+ମୁଖ )—ଯାହାର ମୁହଁ
Tāmra mukha ତମ୍ବା ପରି ରକ୍ତାଭ—Copper-faced.
( ତାମ୍ରମୁଖୀ—ସ୍ତ୍ରୀ ) ସଂ. ବି—ଇଉରୋପୀୟ ବା ଫିରଙ୍ଗି ବ୍ୟକ୍ତି—
A European or Frank ( Apte ).

ତାମ୍ରମୂଳା—ସଂ. ବି. ସ୍ତ୍ରୀ. ( ତାମ୍ର+ମୂଳ+ସ୍ତ୍ରୀ. ଆ; ବହୁବ୍ରୀହି )—
Tāmramūlā ଲାଜକୁଳୀ ଲତା; ଲଜ୍ଜାଳୁ ଲତା—The Telegrapha creeper; Mimosa Sensitiva.

ତାମ୍ରଲିପ୍ତ—ସଂ. ବି—ତମଲୁକ୍ ( ଦେଖ )
Tāmralipta Tamaluk ( See )
( ତାମ୍ରଲିପ୍ତି—ଅନ୍ୟରୂପ ) ( ଦ୍ର—ଏହା କଲିକତାର ୩୫ କୋଶ ଦକ୍ଷିଣ ପଶ୍ଚିମରେ ସମୁଦ୍ରକୂଳସ୍ଥିତ ଅତି ପ୍ରାଚୀନ ବାଣିଜ୍ୟ କେନ୍ଦ୍ର—Tamlook )

ଗଙ୍ଗା ମୂଳେ ପୋତଥାଟୀ ତାମ୍ରଲିପ୍ତ ପୁର—ରଘୁନାଥ ମହାପାତ୍ର ।

[ ଦ୍ର—ଏହା କଳିଙ୍ଗ ଦେଶକୁ ଲାଗି ସମୁଦ୍ର କୂଳରେ ଅବସ୍ଥିତ ଗୋଟିଏ ରାଜ୍ୟ ବୋଲି ମହାଭାରତରେ ଲେଖା ଅଛି । ଏଥିର ଅଧିବାସୀମାନେ ମହାଭାରତ ଯୁଦ୍ଧରେ ଦୁର୍ଯ୍ୟୋଧନଙ୍କ ପକ୍ଷରେ ଯୁଦ୍ଧ କରିଥିଲେ । ହି. ଶବ୍ଦସାଗର । ]

ତାମ୍ରଶିଖୀ—ସଂ. ବି. ପୁଂ. ( ତାମ୍ର+ଶିଖା+ଅସ୍ତି ଅର୍ଥରେ. ଇନ୍. ୧ମା. ୧ବ )—କୁକ୍କୁଟ—Cock.
Tāmraśikhī

ତାମ୍ର ସାର—ସଂ. ବି. (ତାମ୍ର+ସାର; ବହୁବ୍ରୀହି )—ରକ୍ତଚନ୍ଦନ—
Tāmra sāra Red sandal wood.

ତାମ୍ରସାରକ—ସଂ ବି. ( ତାମ୍ର+ସାରକ )—୧ । ରକ୍ତଚନ୍ଦନ—
Tāmrasāraka 1. Red sandal wood.
( ତାମ୍ରସାରିକା—ଅନ୍ୟରୂପ ) ୨ । ଏକପ୍ରକାର ଖଦିର—
2. A kind of catechu.

ତାମ୍ରାକ୍ଷ—ସଂ. ବି. କ୍ଳୀ. ( ତାମ୍ର+ଅକ୍ଷି; କର୍ମଧାରୟ )—
Tāmrāksha ୧ । ରକ୍ତବର୍ଣ୍ଣ ଚକ୍ଷୁ—1. Red eye.
୨ । ( ବହୁବ୍ରୀହି ) କୋକିଳ—2. The Indian cuckoo.
ସଂ. ବିଣ—ରକ୍ତବର୍ଣ୍ଣ ଚକ୍ଷୁବିଶିଷ୍ଟ; ଲୁମ୍ବାଟିଆ-ଆଖିଆ—
Red-eyed.

ତାମ୍ରାଭ—ସଂ. ବିଣ. ପୁଂ. ( ବହୁବ୍ରୀହି; ତାମ୍ର+ଆଭା )—
Tāmrābha ତାମ୍ରବର୍ଣ୍ଣବିଶିଷ୍ଟ—Copper-coloured.
ବି. ( ବହୁବ୍ରୀହି )—ରକ୍ତ ଚନ୍ଦନ—
Red sandal wood.

ତାମ୍ରାର୍ଦ୍ଧ—ସଂ. ବି. କ୍ଳୀ—କଂସା; କାଂସ୍ୟ—
Tāmrārdha Bell metal.

ତାମ୍ରାଶ୍ମ—ସଂ. ବି. କ୍ଳୀ. ( ତାମ୍ର+ଅଶ୍ମନ୍=ପ୍ରସ୍ତର )—ପଦ୍ମରାଗମଣି—
Tāmrāśma Spinel ruby (gem).

ତାମ୍ରିକ—ସଂ. ବିଣ. ( ତାମ୍ର+ଇକ )—
Tāmrika ୧ । ତାମ୍ରନିର୍ମିତ—1. Made of copper.
୨ । ତାମ୍ରମିଶ୍ରିତ—2. Mixed with copper.
୩ । ତାମ୍ରବର୍ଣ୍ଣବିଶିଷ୍ଟ—3. Copper-coloured.
ସଂ. ବି—ତାମ୍ରକାର—Brazier; copper smith (Apte).

ତାମ୍ରିକା—ସଂ. ବି. ସ୍ତ୍ରୀ. ( ତାମ୍ର+କ+ସ୍ତ୍ରୀ. ଆ )—
Tāmrikā ୧ । ସୂକ୍ଷ୍ମ ଛିଦ୍ରମୟ ତାମ୍ରପାତ୍ର; ଯାହା ଜଳରେ ଭସାଇଲେ ଛିଦ୍ରଦ୍ୱାରା ଜଳ କ୍ରମଶଃ ପାତ୍ର ମଧ୍ୟକୁ ଉଠି ସମୟ ନିରୂପଣ କରେ; ଭାରତର ପ୍ରାଚୀନ ଘଟିକା ଯନ୍ତ୍ର—1. A copper-pot having a small hole at the bottom used in measuring time by placing it in a water-vessel.
୨ । ପ୍ରାଚୀନ ଭାରତର ତାମ୍ରମୁଦ୍ରା (ଯାହା ୪ ଏକ ପଣ କଉଡ଼ି ସଙ୍ଗେ ସମାନ ଥିଲା)—2. An old Indian copper coin which equaled in value to 80 cowries.
୩ । ଗୁଞ୍ଜା; କାଇଞ୍ଚ—3. The red seeds produced from a creeper Abrus Precotorius.
୪ । ପଟହ; ଢକ୍କା; ଢୋଲ—4. Drum.

| ୧ | | ଃ | ଋ,ଝ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଯ୍ତ | ଢ଼ଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଏ | ଉ | ଋ | ଲୃ | ଯ୍ୟେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଅ | ଡ଼ | ନ୍ |

ତାମ୍ରିମା—ସଂ. ବି. ( ତାମ୍ର+ଭାବାର୍ଥେ ଇମନ. ୧ମା· ୧ବ )—
Tāmrimā ତାମ୍ରର ବର୍ଣ୍ଣ; ରକ୍ତ ବର୍ଣ୍ଣ—
Redness; the colour of copper (Apte).

ତାମ୍ରୀ—ସଂ. ବି. ସ୍ତ୍ରୀ. ( ତାମ୍ର+ସ୍ତ୍ରୀ. ଈ )—ତାମ୍ରିକା ( ଦେଖ )
Tāmrī Tāmrikā ( See )

ତାମ୍ରେଶ୍ୱର—ସଂ. ବି—ତମ୍ବା ଭସ୍ମ ( ଦ୍ର. ଶବ୍ଦସାଗର )—
Tāmreśwara Copper oxide.

ତାମ୍ରୋଷ୍ଠ—ସଂ. ବି. ( କର୍ମଧା; ତାମ୍ର+ଓଷ୍ଠ )—ରକ୍ତାଭ ଓଷ୍ଠ—
Tāmroshtha Red or cherry lip (Apte).
(ତାମ୍ରୌଷ୍ଠ—ଅନ୍ୟରୂପ)

ତାୟ୍ (ଧାତୁ)—ସ—୧ । ପାଳନ କରିବା—
Tāya (root) 1. To bring up; to maintain.
୨ । ବିସ୍ତାର କରିବା—2. To spread (Apte).
୩ । ରକ୍ଷା କରିବା—
3. To protect; to preserve (Apte).

ତାୟଦାତ୍(ଦ୍)—ବୈଦେ. ବି—ତାଦାତ୍ ( ଦେଖ )
Tāyadāt(d) Tādāt ( See )

ତାୟଫା—ବୈଦେ. ବି—ତାଇଫା ( ଦେଖ )
Tāyaphā Taiphā ( See )

ତାୟାଁ—ପ୍ରାଦେ. (ସମ୍ବଲପୁର) ବି—ମୃଦଙ୍ଗ ଓ ପଖୋଉଜର ଡାହାଣ
Tāyā̃ ପାଖର ମୁହଁ ଓ ଓଉଁ ପିଟିଲେ ଜାତ ଧ୍ୱନି; ଧ୍ୱନି—
(ଧେୟାଁ—ବିପରୀତ) The right hand side of a two-faced drum and the sound produced from it.

ତାର୍—ପ୍ରାଦେ. (ସମ୍ବଲପୁର) ବି—୧ । ଶଗଡ଼ ଚକର ଚାରି ଅଡ଼େ
Tār ବୁଲିଥିବା ଲୌହ ବଳୟ; ହାଳ—
1. Iron rim of a cart-wheel.

আলকাতরা ବୈଦେ. ବି· ( ଇଂ. ଟାର୍; ପର୍ତ୍ତୁଗୀଜ—ଅଲକାତରା;
ଟାଲ ଭୁଲ. ସଂ. ଅଗ୍ନି=ଆଲକାତରା )—
୨ । ଗୁଳ; ଅଲକାତରା—2. Tar; coal-tar.

ତାର—ସଂ. ବି. ( ତୃ ଧାତୁ=ପାର ହେବା+ଅ )—
Tāra ୧ । ( +ଭାବ. ଅ ) ଉତୁରିବା; ଉତ୍ତରଣ—
1. Crossing; landing ( from a boat ).
୨ । (+କରଣ. ଅ) ତନ୍ତୁ; ଧାତୁନିର୍ମିତ ସରୁ ସୂତ୍ର; ଧାତୁତନ୍ତୁ—
1. Wire; metal wire.

[ ଦ୍ର—କେବଳ ସୀସା ଓ ଦସ୍ତା (ଜିଙ୍କ) ଛଡ଼ା ଅନ୍ୟ ସମସ୍ତ ଧାତୁରେ ତାର ପ୍ରସ୍ତୁତ କରାଯାଏ । ପ୍ରଥମେ ଧାତୁକୁ ଅଗ୍ନିରେ ଗଳାଇ ଲମ୍ବ କାଠି କରାଯାଏ । ତତ୍ପରେ କାଠିର ଗୋଟିଏ ମୁଣ୍ଡକୁ ପିଟି ସରୁ କରାଯାଏ । କାଠିର ସେହି ସରୁ ମୁଣ୍ଡକୁ ଲୁହାରେ ତିଆରି ବଡ଼ ଓ ସାନ ବହୁଛିଦ୍ରବିଶିଷ୍ଟ ଜନ୍ତ୍ରା ନାମକ ଯନ୍ତ୍ରର ଗୋଟିଏ କଣାରେ ଗଳାଇ ଦେଇ ଜନ୍ତ୍ରାର ଅର ପିଠି ଅଡ଼େ ବାହାରି ପଡ଼ିଥିବା କାଠିର ମୁନକୁ ସଣ୍ଢ଼ାସି ଦ୍ୱାରା ଖୁବ୍ ଜୋର୍‌ରେ ଟାଣିଲେ ଜନ୍ତ୍ରାର ଉକ୍ତ ଛିଦ୍ରର ଆୟତନ ଅନୁସାରେ ତାର ବାହାରେ । ସେହି ତାରକୁ ଅଧିକ ସରୁ କରିବାକୁ ଇଚ୍ଛା କଲେ ମୋଟା ତାରର ଅଗକୁ ବାଡ଼େଇ ଅଧିକ ସରୁ କରି ଜନ୍ତ୍ରାରେ ଥିବା ଅପେକ୍ଷାକୃତ ସାନ ଛିଦ୍ରରେ ଗଳାଇ ସଣ୍ଢ଼ାସିଦ୍ୱାରା ଜନ୍ତ୍ରାର ଅର ପାଖରୁ ଟାଣିଲେ ସରୁ ତାର ହୁଏ । ଏହିପରି ଜନ୍ତ୍ରାର କ୍ରମସୂକ୍ଷ୍ମ ଛିଦ୍ରମାନଙ୍କ ଦ୍ୱାରା ଅତି ସୂକ୍ଷ୍ମ ତାର ତିଆରି ହୁଏ । ଜନ୍ତ୍ରାର ଛିଦ୍ରରେ ତାରକୁ ପୂରାଇ ସଣ୍ଢ଼ାସିରେ ଝିଙ୍କିଲେ ତାର କରାଯାଉଥିବା କାଠି ତାତି ଯାଏ ଓ ତାତି ଯିବାରୁ ତାହା ନମନୀୟ ହୁଏ । ]

୩ । ବୀଣାଦି ଯନ୍ତ୍ରର ତନ୍ତୁ—3. String of a musical instrument.
୪ । (କର୍ତ୍ତୃ. ଅ) ରୌପ୍ୟ; ରୂପା—4. Silver.
୫ । ଓଙ୍କାରରୂପ ପ୍ରଣବ ଓ ଅନ୍ୟାନ୍ୟ ଏକାକ୍ଷର ବୀଜ ମନ୍ତ୍ର—
5. The sacred syllable 'Om' or other mono-syllabic mystic incantation.
୬ । ଉଚ୍ଚ ସ୍ୱର—6. High tone; shrill sound.
୭ । ପ୍ରଣବ; ଓଁକାର—7. The mystic sound 'Om'
୮ । ମୁକ୍ତାର ବିଶୁଦ୍ଧି, ଲାବଣ୍ୟ, ସୌନ୍ଦର୍ଯ୍ୟ ଓ ଉଜ୍ଜ୍ୱଳତା—
8. Excellence of a pearl.
୯ । ମୁକ୍ତା—9. Pearl.
୧୦ । ହାରର ମଧ୍ୟମଣି—10. The central gem of a necklace.
୧୧ । ନକ୍ଷତ୍ର—11. Star.
ମୋ ପାଇଁ ଗଣ ଆଉ ତାର ଅମ୍ବରେ—ଉପେନ୍ଦ୍ରଭଞ୍ଜ, ପ୍ରେମସୁଧାନିଧି ।
୧୨ । ରାମାୟଣ ବର୍ଣ୍ଣିତ ରାମଚନ୍ଦ୍ରଙ୍କ ସହାୟକ ବାନରସେନାପତି-ବିଶେଷ—12. Name of a commander of the monkey army mentioned in the Rāmāyaṇa.
[ ଦ୍ର—ଏ ବୃହସ୍ପତିଙ୍କ ଅଂଶରେ ଜନ୍ମିଥିଲେ ଓ ବାଳୀଙ୍କ ସ୍ତ୍ରୀ ତାରାଙ୍କର ପିତା ଥିଲେ । ଦ୍ର. ଶବ୍ଦସାଗର । ]
୧୩ । ହରିବଂଶ ବର୍ଣ୍ଣିତ ଦାନବବିଶେଷ—13. A demon mentioned in the Haribamśa.
୧୪ । ଚକ୍ଷୁର ତାରା—14. The pupil of the eye.
ଜ୍ୟୋତିପୁଞ୍ଜ ତାର ନୟନେ ଥିବ ।
ସମୀପ ସାପ ସେବେ ନ ବସିବ । ଲବପୂର୍ଣ୍ଣ. କବିତାକଲ୍ଲୋଳ ।
୧୫ । (ସାଂଖ୍ୟଦର୍ଶନ) ଏକପ୍ରକାର ଗୌଣସିଦ୍ଧି; ଗୁରୁଙ୍କଠାରୁ ବିଧିପୂର୍ବକ ବେଦାଧ୍ୟୟନଦ୍ୱାରା ପ୍ରାପ୍ତ ସିଦ୍ଧି (ଦ୍ର. ଶବ୍ଦସାଗର)—15. (Samkhya philosophy) Success acheived by a disciple on being initiated to the scriptures by the preceptor.

ସାଧାରଣ ଲୋକେ ଅନେକ ସ୍ଥଳରେ ଦ୍ୱିତୀୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; ଅଙ୍ଖୋ ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

୧୬ । ସଙ୍ଗୀତର ଉଚ୍ଚସ୍ୱରଯୁକ୍ତ ସପ୍ତକବିଶେଷ; ର୍ଦ୍ଦେ କୈଁଯ୍ୟ ସ୍ୱର—16. High or shrill octave in music.

[ବି—ଏଥିର ସ୍ୱର କଣ୍ଠରୁ ଉଠି କପାଳର ଅଭ୍ୟନ୍ତର ସ୍ଥାନ ପର୍ଯ୍ୟନ୍ତ ଯାଏ—ହି. ଶବ୍ଦସାଗର ।]

୧୭ । ଶିବ (ହି. ଶବ୍ଦସାଗର)—17. God Śiba.

୧୮ । ବିଷ୍ଣୁ (ହି. ଶବ୍ଦସାଗର)—18. Bishṇu.

୧୯ । ଅଠର ଅକ୍ଷରବିଶିଷ୍ଟ ଏକ ବର୍ଣ୍ଣବୃତ୍ତ (ହି. ଶବ୍ଦସାଗର)-- 19. A Sanskrit metre of 18 syllables.

୨୦ । ଆସ୍ୱାଦ (ଯୋଗେଶଚନ୍ଦ୍ର)— 2) Savour; taste; relish.

୨୧ । କାର୍ତ୍ତିକେୟଙ୍କଦ୍ୱାରା ନିହତ ତାରକାସୁରପିତା (ଶିବପୁରାଣ) 20. Name of the father of the Demon Tārakā.

୨୨ । ଅଖଣ୍ଡ କ୍ରମ (ହି. ଶବ୍ଦସାଗର)— 22. Regular seeqence.

୨୩ । ଜ୍ୟୋତିଷୋକ୍ତ ଯୋଗବିଶେଷ; ତାରକ ୨ (ଦେଖ) 23. Tāraka 2 (See)

ତାର୍ ଦେ. ବି.—୧ । ବଣାଇ ରାଜ୍ୟରେ କଥିତ ସାନ୍ତାଳି ଭାଷା— 1. A name for the Sāntāḻi language used in the Bonāi state of Orissa.

୨ । ଚିନି ଆଦିର ସିରାର ପାଗ ବା ଅବସ୍ଥା—2 A certain syrupy condition of boiled sugar.

(ଯଥା— ଦୋତାର, ତିନିତାର ଚିନିପାଗ ।)

[ବି—ଚିନି, ଗୁଡ଼ ବା କଦମ୍ବକୁ ପାଣି ଦେଇ ନିଆଁ ଉପରେ ପାକ କଲେ ତାହା 'ସିରା' ବା 'ରସ'ରେ ପରିଣତ ହୁଏ । ଏହି ସିରାରେ ରସଗୋଲା, ଜଲ୍ଲବୀ, ଟିକିଆବୁନ୍ଦିଆ, ଗୋଲାପଜାମ୍ ଆଦି ପକାଇ ଦେଲେ ଉକ୍ତ ପଦାର୍ଥମାନଙ୍କ ଉପରେ ସିରା ପଶିଯାଏ । ଚିନି ଆଦିକୁ ପାଗ କରି ଅର୍ଥାତ୍ ସିରାରେ ପରିଣତ କରି ତାହା ଗରମ ଥାଉଁ ଥାଉଁ ସେଥିରେ ଲିଆ ପକାଇ ଘାଣ୍ଟିଲେ ତାହା ଉଖୁଡ଼ା ହୁଏ । ଭିନ୍ନ ଭିନ୍ନ ମିଷ୍ଟାନ୍ନ ପାଇଁ ସିରା ପତଳା ବା ଘନ ହେବା ଦରକାର । ସିରା ଚୁଲି ଉପରେ ବସି ଥିବାବେଳେ ତହିଁରେ ଚାଟୁ ପକାଇ ଚାଟୁକୁ ଟେକିଲେ ଚାଟୁର ଅଗରୁ ସିରାର ଧାର ବୋହି ପଡ଼େ । ସିରା ପତଳା ଥିଲେ ଏହି ଧାର ତିନି ବା ଦୁଇଟି ଦେଖାଯାଏ ଓ ଘନ ହେଲେ ଗୋଟିଏ ମାତ୍ର ଧାର ଚାଟୁ ଅଗରୁ ଖସେ । ଏହି ଧାରକୁ ତାର ବୋଲି ଯାଏ । ଚାଟୁ ଅଗରୁ ସିରାର ଯେତୋଟି ଧାର ଖସିବାର ଦେଖାଯାଏ ସେ ସିରାକୁ ସେତେ ତାର ବା ସେତେ ତାରବିଶିଷ୍ଟ ସିରା ବୋଲିଯାଏ । ସିରା ପତଳା ହୋଇଥିଲେ ତାକୁ ଆହୁରି କିଛିକ୍ଷଣ ନିଆଁ ଉପରେ ବସାଇ ଦେଲେ ସେଥିରୁ ପାଣି ମରିଯାଇ ତାହା ଘନ ହୋଇ ଯାଏ ।]

୪ । ବିଦ୍ୟୁତ୍ ପ୍ରବାହ ବହନକାରୀ ତାର— 4. Telegraphic or electric wire.

[ ବି—ଧାତୁର ତାର ତଡ଼ିତ୍ ବା ବିଦ୍ୟୁତ୍ ପ୍ରବାହର ପରିଚାଳକ ଥିବାରୁ ବିଦ୍ୟୁତ୍‌ଶକ୍ତିକୁ ଏକସ୍ଥାନରୁ ଅନ୍ୟ ସ୍ଥାନକୁ ନେବାକୁ ହେଲେ ଧାତୁର ତାରଦ୍ୱାରା ଉକ୍ତ ଶକ୍ତିକୁ ପ୍ରବାହିତ କରାଯାଏ । ସବୁ ଧାତୁ ମଧ୍ୟରେ ତମ୍ବାର ତାରହିଁ ବେଶି ତଡ଼ିତ୍ ପ୍ରବାହକ ଥିବାରୁ ତମ୍ବା ତାର ବ୍ୟବହୃତ ହୁଏ । ଏକ ସ୍ଥାନରେ ଯନ୍ତ୍ରଦ୍ୱାରା ତଡ଼ିତ୍ ଉତ୍ପାଦନ କରି ସେହି ସ୍ଥାନରୁ ଯେତେଦୂର ତମ୍ବାତାର ଲଗାଯାଏ ତଡ଼ିତ୍ ପ୍ରବାହ ସେତେଦୂର ପର୍ଯ୍ୟନ୍ତ ଯାଏ । ଏହି ପ୍ରଣାଳୀଦ୍ୱାରା ବିଜୁଳିବତି, ବିଜୁଳିପଙ୍ଖା, ବିଜୁଳିଦ୍ୱାରା ପରିଚାଳିତ କଳମାନ ଚଳାଯାଏ । ]

୫ । ଟେଲିଗ୍ରାମ୍; ତାଡ଼ିତ୍ ବାର୍ତ୍ତା; ତାର ଖବର— 5. Telegram; telegraphic message.

[ ବି—ଦୂରଦେଶକୁ ସମ୍ବାଦ ତଡ଼ିତ୍ ସାହାଯ୍ୟରେ ପ୍ରେରଣ କରିବା ପାଇଁ ତଡ଼ିତ୍‌ଶକ୍ତି ଓ ଚୁମ୍ବକ ଶକ୍ତିକୁ କାମରେ ଲଗାଯାଏ । ପ୍ରଥମେ ବୈଜ୍ଞାନିକ ପ୍ରକ୍ରିୟା ଦ୍ୱାରା ଗୋଟିଏ ସ୍ଥାନରେ ତଡ଼ିତ୍‌ଶକ୍ତି ଉତ୍ପାଦନ କରି ସେହି ସ୍ଥାନରୁ ଦୂରବର୍ତ୍ତୀ ସ୍ଥାନ ପର୍ଯ୍ୟନ୍ତ ଗୋଟିଏ ବିଦ୍ୟୁତ୍‌ପ୍ରବାହ ଯୋଡ଼ି ରଖିବାକୁ ହୁଏ । ବିଦ୍ୟୁତ୍‌ପ୍ରବାହର ଦୁଇଟି ମୁଣ୍ଡ ଅଛି । ସେ ଦୁଇ ମୁଣ୍ଡରେ ଲାଗିଥିବା ତାର ମଧ୍ୟରୁ ଗୋଟିଏ ତାରକୁ ପୃଥିବୀର ଗର୍ଭରେ ପୋତି ଦିଆଯାଏ ଓ ଅନ୍ୟ ମୁଣ୍ଡର ତାରକୁ ଦୂରବର୍ତ୍ତୀ ସ୍ଥାନ ସଙ୍ଗେ ଲଗାଇ ଦିଆଯାଏ । ଉକ୍ତ ଦୂରବର୍ତ୍ତୀ ସ୍ଥାନରେ ସେ ତାର ଲାଗିଲେ ସେଠାରେ ସେ ତାରର ଅନ୍ୟ ମୁଣ୍ଡକୁ ନେଇ ଭୂଗର୍ଭରେ ପୋତି ଦିଆଯାଏ । ଭୂଗର୍ଭର ତଡ଼ିତ୍‌ପ୍ରବାହକ ଗୁଣ ଥିବାରୁ ଏହି ପ୍ରକ୍ରିୟାଦ୍ୱାରା ଉକ୍ତ ଦୁଇ ସ୍ଥାନ ମଧ୍ୟରେ ବିଦ୍ୟୁତ୍ ପ୍ରବାହର ଧାରା ଅଖଣ୍ଡିତ ରହେ । ଅତଏବ ଦୁଇସ୍ଥାନ ମଧ୍ୟରେ ଉପରେ ଲାଗିଥିବା ତାର ଏବଂ ତଳେ ଭୂଗର୍ଭରେ ଲାଗିଥିବା ତାର ଓ ଭୂଗର୍ଭ ବାଟେ ବିଦ୍ୟୁତ୍ ପ୍ରବାହ ପାଇଁ ଗୋଟିଏ ପୂର୍ଣ୍ଣ ବୃତ୍ତ ବା ଘେର ( Circuit ) ସୃଷ୍ଟି ହୁଏ ଓ ଏହି ବୃତ୍ତ ବାଟେ ବିଦ୍ୟୁତ୍-ପ୍ରବାହ ଅଖଣ୍ଡିତରୂପେ ବହେ । ଚୁମ୍ବକ ( Magnet )ର ଗୋଟିଏ ଗୁଣ ଅଛି ଯେ, ବିଦ୍ୟୁତ୍‌ପ୍ରବାହର ଘେର ମଧ୍ୟରେ ଚୁମ୍ବକକୁ ହଲାଇଲେ ଏହି ପ୍ରବାହରେ ଚାଲୁଥିବା ବିଦ୍ୟୁତ୍ ଶକ୍ତିର ପରିବର୍ତ୍ତନ ଘଟେ ଓ ପ୍ରବାହର ଦିଗ ମଧ୍ୟ ବଦଳେ । ପ୍ରବାହର ଦିଗ ପରିବର୍ତ୍ତନର ସୂଚନା କରିବା ପାଇଁ ଗୋଟିଏ ଲୁହାର ଛୁଞ୍ଚ କଳଦ୍ୱାରା ଲଗାଯାଇଥାଏ । ଏହି ଘେର ମଧ୍ୟରେ କୌଣସି ସ୍ଥାନରେ ତାରକୁ କାଟିଦେଲେ ପ୍ରବାହ ବନ୍ଦ ହୋଇଯାଏ । କଟା ହୋଇଥିବା ତାରକୁ ପୁଣି ଯୋଡ଼ିଦେଲେ ପୁଣି ପ୍ରବାହ ଚାଲେ । ଜଣେ ମନୁଷ୍ୟ ଯେବେ କଟା ହୋଇଥିବା ତାରର ଦୁଇ ମୁଣ୍ଡକୁ ଧରି ପରସ୍ପର ସଙ୍ଗେ ଲଗାଇ-ଦିଏ ତେବେ ପ୍ରବାହ ଚାଲେ ଓ ଦୁଇ ମୁଣ୍ଡକୁ ଅଲଗା କରି ଦେଲେ ପ୍ରବାହ ବନ୍ଦ ହୋଇଯାଏ । ପ୍ରବାହ ଚାଲିଲେ ସେ ଘେର ପାଖେ ଥିବା ଚୁମ୍ବକ ତାର ଆଡ଼କୁ ଆକର୍ଷିତ ହୁଏ । ପ୍ରବାହ ବନ୍ଦ ହୋଇ-

| ୧ | ିୀ | ଡ | ଢ,ଢ଼ | ତ | ୀ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ୟ | ଗ,ଘ | ଙ | ଇଁ | ଏଁ | ଡି |
|---|---|---|---|---|---|---|---|---|---|---|---|---|---|---|
| ୨ | ଙ | ଞ | ଘୁ | ଲ୍ଲ | ଙ୍କୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ଅଁ | ଅଁ | ମ | ଂ | ଁ | ଇଁ | ଓ | - |

ଗଲେ ଚୁମ୍ବକ ତାରକୁ ଛାଡ଼ିଯାଏ । ମନେକର ଏହି ପ୍ରକାରେ କଟକଠାରେ ଜଣେ ଲୋକ ତାରକୁ କାଟି ଦେଇ କାଟ ହୋଇଥିବା ତାରର ଦୁଇ ମୁଣ୍ଡକୁ ପରସ୍ପର ସଙ୍ଗେ ଲଗାଇ ଦେଲା; ତାହାହେଲେ କଲିକତା ପର୍ଯ୍ୟନ୍ତ ତାରଦ୍ୱାରା ସଂଯୁକ୍ତ ପ୍ରେଷର ପାଖରେ ରଖାଯାଇ ଥିବା ଚୁମ୍ବକ ଖଣ୍ଡ ସେ ପ୍ରେଷ ଆଡ଼କୁ ଆକର୍ଷିତ ହେବ; କଟକରେ ଦୁଇ ମୁଣ୍ଡକୁ ତାକୁ ପରସ୍ପରଠାରୁ ଅଲଗା କରିଦେଲେ କଲିକତାରେ ପ୍ରେଷ ପାଖେ ରଖାଯାଇ ଥିବା ଚୁମ୍ବକ ଖଣ୍ଡ ପ୍ରେଷରୁ ଅଲଗା ହୋଇଯିବ । କଟକବାଲା ଯେତେ ଥର ଏ ଦୁଇ ତାରର ମୁଣ୍ଡକୁ ଲଗାଇଥିବ ଓ ଛଡ଼ାଇଥିବ, କଲିକତାବାଲା ଦେଖୁଥିବ ଯେ ଚୁମ୍ବକ ଏ ପ୍ରେଷକୁ ସେତେଥର ଛୁଇଁ ପକାଉଥିବ ଓ ଛାଡ଼ିଯାଉ ଥିବ । ଚୁମ୍ବକ ପ୍ରେଷକୁ ଛୁଇଁଲାବେଳେ ଯେଉଁ ଠକ ଠକ ଶବ୍ଦ ହୁଏ ସେହି ଶବ୍ଦକୁ ବାରି ତାରଖବର କଥା ଅର୍ଥ କରାଯାଏ । ପ୍ରବାହର ଦିଗ ପରିବର୍ତ୍ତନ ବେଳେ ମଧ୍ୟ ଏକପ୍ରକାର ଶବ୍ଦ ହୁଏ । ଏହି ସବୁ ଆବାଜକୁ ଲକ୍ଷ କରି ଓ ପ୍ରବାହର ଦିଗ ପରିବର୍ତ୍ତନର ସୂଚନାକାରୀ ଛୁଞ୍ଚିକୁ ଲକ୍ଷ କରି କଟକବାଲା ତାରର ଦୁଇମୁଣ୍ଡକୁ କେତେଥର ଲଗାଇଲା ଓ ଛଡ଼ାଇଲା ତାହା କଲିକତାବାଲା ସେଇଠାରେ ବସି ଠଉରେଇ ନିଏ । ଛୁଞ୍ଚି ଡାହାଣ ଆଡ଼କୁ ବୁଲିଲେ ତାକୁ ବିନ୍ଦୁ (Dot) ଓ ବାଆଁ ଆଡ଼କୁ ବୁଲିଲେ ତାକୁ ରେଖା (Dash) କହନ୍ତି । ତାରଖବର ଦେବାବାଲାଙ୍କ ମଧ୍ୟରେ ପୂର୍ବରୁ ସଙ୍କେତ ନିର୍ଦ୍ଦିଷ୍ଟ ହୋଇଥାଏ ଯେ ଛୁଞ୍ଚି ଗୋଟିଏ ବିନ୍ଦୁ ଉତ୍ପାଦନ କଲେ ଜାଣିବ 'ଏ' ଇଂରାଜୀ ଅକ୍ଷର, ଗୋଟିଏ ରେଖା ଉତ୍ପାଦନ କଲେ ଜାଣିବ ଇଂରାଜୀ 'ଟି' ଅକ୍ଷର ଏକସଙ୍ଗେ ତିନିଟି ବିନ୍ଦୁ ଉତ୍ପାଦନ କଲେ ଜାଣିବ 'ସି' ଅକ୍ଷର ତିନୋଟି ରେଖା ଉତ୍ପାଦନ କଲେ ଜାଣିବ (ଓ) ଅକ୍ଷର ଇତ୍ୟାଦି । କଟକବାଲା ଉପରୋକ୍ତ ସଙ୍କେତ ଅନୁସାରେ ଯେଉଁ ଅକ୍ଷର ପାଇଁ କଟକରେ ତାରର ଦୁଇମୁଣ୍ଡକୁ ଯୋଡ଼ିବ ବା ଅଲଗା କରିବ, କଲିକତାବାଲା ସେହି ଅକ୍ଷରର ସଙ୍କେତ ସେଠାରେ ଦେଖି ପାରିବ । ଏହିପରି କଟକବାଲା ଉପରୋକ୍ତ ସଙ୍କେତଦ୍ୱାରା ଯେତୋଟି ଅକ୍ଷର କଟକରେ ଟିପି ଦିଏ, କଲିକତାବାଲା ସେତୋଟି ଅକ୍ଷରର ସଙ୍କେତ ସେ ଛୁଞ୍ଚିର ଗତିରୁ ବାରି ନେଇ ସେ ଅକ୍ଷରଗୁଡ଼ିକ ଯୋଡ଼ି ବାକ୍ୟମାନ କରି ଉକ୍ତ ବାକ୍ୟରୁ ପ୍ରେରିତ ବାର୍ତ୍ତାର ଭାବ ବୁଝି ପାରେ ଏହି ଭାବରେ ଟେଲିଗ୍ରାଫ୍‌ଦ୍ୱାରା ଦୂରଦେଶକୁ ସମ୍ବାଦ ଯାଏ ।]

୬ । ଟେଲିଗ୍ରାଫ୍‌ଦ୍ୱାରା ସମ୍ବାଦ ପ୍ରେରଣ ଶାସ୍ତ୍ର; ତାରଯନ୍ତ୍ର— 6. Telegraph; the system of sending message by wire.

୭ । ଟେଲିଫୋନ୍— 7. Telephone.

ପ୍ରାଦେ. (ସମ୍ବଲପୁର) ବି.—ତାଡ଼ (ଦେଖ)—Tāṛ (See)

ସଂ. ବିଣ.—୧ । ଉତ୍ତମ—1. Good.

୨ । ଚକ୍ ଚକ୍ କରୁଥିବା; ଉଜ୍ଜ୍ୱଳ; ଭାସ୍ୱର; ଦୀପ୍ତିଶାଳୀ— 2. Bright; sparkling.

ମୋର ଲୁବଧିଭାବ ହାର ହୁଅ ଅଟେ ସୁଗୁଣରାଗ । କବିସୂର୍ଯ୍ୟ, ସଙ୍ଗୀତ ।

୩ । ଉଚ୍ଚ (ସ୍ୱର)—3. High (tone)

୪ । ନିର୍ମଳ; ସ୍ୱଚ୍ଛ; ପରିଷ୍କୃତ—4. Clear.

୫ । ସ୍ଥୂଳ—5. Thick.

୬ । କେଁ କେଁଆ (ସ୍ୱର)— 6. Sharp and shrill (tone).

୭ । ବିସ୍ତୃତ—7. Extended; spreading.

ଦେ. ବିଣ. (ସଂ. ତାର ସ୍ୱର=ଉଚ୍ଚସ୍ୱର; କ୍ରୁଦ୍ଧ ବ୍ୟକ୍ତିର ଉଚ୍ଚସ୍ୱରର ଲକ୍ଷଣାରୁ) କ୍ରୋଧାନ୍ୱିତ—8. Angry; wrathful.

ଦେ. ସର୍ବନାମ. (ତଦ୍ ଶବ୍ଦ ୬ଷ୍ଠୀ ଅନାଦରାର୍ଥ)—ତାହାର— His; her; its.

তার, ওর

उसका

ମୋ ପାଇଁ ବଳି ଥାଉଁ ତାର ଅନ୍ତର । ଉପେନ୍ଦ୍ରଭଞ୍ଜ, ପ୍ରେମସୁଧାନିଧି ।

(ତାଙ୍କର, ତାହାଙ୍କର—ଆଦରାର୍ଥକ)

ତାର ଅ.ଆ/ଫିସ—ଦେ. ବି. (ସଂ. ତାର+ଇଂ ଅଫିସ୍)—ଟେଲିଗ୍ରାଫ୍ ଅଫିସ୍; ଯେଉଁ ସରକାରୀ କାର୍ଯ୍ୟାଳୟରେ ତାରଦ୍ୱାରା ଦୂର ଦୂର ସ୍ଥାନ ମଧ୍ୟରେ ସମ୍ବାଦର ଗ୍ରହଣ ଓ ପ୍ରେରଣ କରାଯାଏ— Telegraph office.

Tāra a.ā/phis

(ତରା ଘର—ଅନ୍ୟରୂପ)

তার আফিস

तारघर

ତାରକ—ସଂ. ବି. ପୁଂ. (ତୃ ଧାତୁ ଣିଚ୍; ତାରି ଧାତୁ=ପାର କରିବା +କର୍ତ୍ତୃ. ଅକ)—୧ । କର୍ଣ୍ଣଧାର— 1. A pilot; helmsman.

Tāraka

(ତାରକା—ସ୍ତ୍ରୀ)

୨ । ଜ୍ୟୋତିଷ ଶାସ୍ତ୍ରୋକ୍ତ ଯୋଗବିଶେଷ— 2. A class of the 9 astrological conjunctions.

[ଦ୍ର—ଜ୍ୟୋତିଷୋକ୍ତ ତାରକ ବା ତାର ୯ ଗୋଟି; ଯଥା—ଜନ୍ମ, ସମ୍ପତ୍, ବିପତ୍, କ୍ଷେମ, ପ୍ରତ୍ୟରି, ସାଧକ, ନିଧନ ବା (ବଧ) ମିତ୍ର, ପରମ ମିତ୍ର । ଏହି ୯ ଗୋଟି ଯୋଗ ମଧ୍ୟରୁ ଜନ୍ମ, ବିପତ୍, ପ୍ରତ୍ୟରି ଓ ନିଧନ ବା ବଧ ଏହି ୪ଟି ତାର ଅଶୁଭ । ଏହା ଭିନ୍ନ ଅନ୍ୟ ସମସ୍ତ ଶୁଭ । ଶୁଭ ତାରକରେ ସମସ୍ତ ଶୁଭକାର୍ଯ୍ୟ କରାଯାଏ । ବିବାହ, ଶ୍ରାଦ୍ଧ, ଭୈଷଜ୍ୟ ଯାତ୍ରା ଏବଂ କ୍ଷୌରକର୍ମ ଛାଡ଼ି ଜନ୍ମତାରକରେ ସକଳ ଶୁଭ କାର୍ଯ୍ୟ କରାଯାଇ ପାରେ । ଜନ୍ମ ନକ୍ଷତ୍ରଠାରୁ ୧୦ମ, ୧୯ଶ ଓ ୨୮ଶ ନକ୍ଷତ୍ରକୁ ଯଥାକ୍ରମେ ୧ମ, ୨ୟ ଓ ୩ୟ ତ୍ରିତୟର ତାରକ କହନ୍ତି । ପ୍ରଥମ ପ୍ରତ୍ୟରରେ ଯାତ୍ରାଦି ଶୁଭ କାର୍ଯ୍ୟ କଲେ କାର୍ଯ୍ୟ ସିଦ୍ଧି, ଦ୍ୱିତୀୟ ପ୍ରତ୍ୟରରେ କାର୍ଯ୍ୟ କଲେ ଶୁଭ, ମାତ୍ର ତୃତୀୟ ପ୍ରତ୍ୟରରେ ବିନାଶ ଓ ଅଶୁଭ ଘଟେ । ]

୩ । ଭେଳା—3. A raft.

୪ । ତାରକା; ନକ୍ଷତ୍ର—4. Star.

୫ । ଚକ୍ଷୁର ତାରା— 5. The pupil of the eye.

୬ । ତାରକାସୁର (ଦେଖ) 6. Tārakāsura (See).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ସେ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟା' ନ ପାଇଲେ 'ଅଜ୍ଞା' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ

[ ଦ୍ର—ଏହି ନାମର ଦୁଇ ଅସୁର ଥିଲେ । ]

୭ । ଛନ୍ଦୋବିଶେଷ—
7. Name of a Sanskrit metre

[ ଦ୍ର—ଏହାର ପ୍ରତ୍ୟେକ ଚରଣରେ ୪ ସଗଣ ଓ ୧ ଗୁରୁ ବର୍ଣ୍ଣ ଥାଏ—ହି. ଶବ୍ଦସାଗର । ]

୮ । ବାନରବିଶେଷ—8. Name of a monkey.

୯ । ମୁକ୍ତା—2. Pearl.

୧୦ । ଆଖି ( ହି. ଶବ୍ଦସାଗର )—10. The eye.

[୧୧ । ରାମ ତାରକ ନାମକ ଷଡ଼କ୍ଷର ମନ୍ତ୍ର ରାଂ ରାମାୟ ନମଃ ମତାନ୍ତରରେ ଓଁ ରାମାୟ ନମଃ (ହି. ଶବ୍ଦସାଗର)]—
11. A formula of 6 letters recited by the devotees of Rāmachandra.

ହୃଦ୍‌ବିଳେ ତେଜ ତପୁର ମାତଲ ଅବତ୍ୟ ଗିର
ସୁନାମ ତାରକ ସାର ଉଦତ କରେ—ଉକ୍ତ. ବୈଦେହୀଶବିଳାସ ।

୧୨ । ଭଲ୍ଲାତକ; ଭାଲିଆ (ହି. ଶବ୍ଦସାଗର)—
12 The marking nut.

୧୩ । ଯେ ଲୋକଙ୍କୁ ନଦୀ ଆଦି ପାରକରେ (ହି. ଶବ୍ଦସାଗର)·
13. Ferryman.

୧୪ । ଭବ ସାଗରରୁ ଉଦ୍ଧାର କରିବା ବ୍ୟକ୍ତି;ପରିତ୍ରାତାବ୍ୟକ୍ତି—
14. Redeemer; Saviour.

ସଂ. ବିଣ—୧ । ରକ୍ଷାକାରୀ; ରକ୍ଷକ—1. Protecting; saving.

ତାରକ ସେ ମୁହିଁ ତତ୍ୟ ତାର—ଉକ୍ତ. ପ୍ରେମସୁଧାନିଧି ।

୨ । ପରିତ୍ରାଣକାରୀ—2. Redeeming.

ବିପୁର କର କହୁ ତ ରକ ଅନ ନାହିଁ
ତାରକର ବିଗ୍ଣନ । ଉପେନ୍ଦ୍ର ଉକ୍ତ. ବୈଦେହୀଶବିଳାସ ।

୩ । ଯେ ପାରି କରାଏ—3. One who carries or ferries across.

ତାରକଜିତ୍—ସଂ. ବି (ତାରକ+ଜି ଧାତୁ+କ୍ୱିପ୍)—କାର୍ତ୍ତିକେୟ—
Tārakajit Kārttikeya.

ତାରକ ତୀର୍ଥ—ସଂ. ବି—(କର୍ମଧା; ଯେଉଁଠାରେ ପିଣ୍ଡଦାନ କଲେ ପିତୃ-
Tāraka tirtha ଲୋକେ ତ୍ରାଣ ପାଆନ୍ତି) ଗୟାତୀର୍ଥ—The sacred place of the Hindus Gya.

ତାରକ ବ୍ରହ୍ମ—ସଂ. ବି. କ୍ଲୀ (ତାରକ+ବ୍ରହ୍ମନ୍, କର୍ମଧା)—
Tāraka brahma ୧ । ରାମତାରକ ମନ୍ତ୍ର (ଓଁ ରାମାୟ ନମଃ)—
1. The mystic formula for worshipping Rāma.

୨ । ଶିବତାରକ ମନ୍ତ୍ର ( ଓଁ ନମଃ ଶିବାୟ )—2 The mystic incantation for worshipping Śiba.

ତାର କରିବା—ଦେ. କ୍ରି—୧ । ଟେଲିଗ୍ରାଫ୍ ଦ୍ୱାରା ସମ୍ବାଦ ପ୍ରେରଣ
Tāra karibā କରିବା—1. To wire; to send a telegraphic message.
তার করা

तारकनो ୨ । ଜନ୍ତାଦ୍ୱାରା ଧାତୁର କାଢ଼ି ତାର ଓଟାରିବା—
তার টানা 2 To draw out wires from a metal rod.
तारखींचना

ତାରକସ୍—ଦେ. ବି ( ସଂ. ତାର+ଫା. କଶ୍=ଓଟାରିବା ବ୍ୟକ୍ତି )—
Tārakas ୧ । ଯେଉଁ ବ୍ୟକ୍ତି ଜନ୍ତା ସାହାଯ୍ୟରେ ଧାତୁର କାଢ଼ି ତାର ତିଆରି କରେ—1. One who manufactures wire from metal rods.
তারকষ
तारकश्

୨ । ଯେଉଁ କାରିଗର ତାରକସି କାମରେ ଅଳଙ୍କାର ଆଦି କରେ—2. A person who manufactures wire-work; a wire-worker.

ତାରକସି—ଦେ. ବି—୧ । ଯେଉଁ କାରିଗର ଧାତୁରୁ ତାର ତିଆରି
Tārakasi କରେ—1. A wire-drawyer.
তারকষি ୨ । ତାରକସିକାମ କରିବା କାରିଗର—
तारकशी 2. A worker in filigree.

୩ । ତାରକସି କାମ ( ଦେଖ )—
3. Tārakasi kāma ( See )

ତାରକସି କାମ—ଦେ. ବି—(ସଂ. ତାର+ଫା. କଶ୍=ଟାଣିବା +ସଂ.
Tārakasi kāma କର୍ମ)—ସୁନାରୂପାର ଅତି ସୂକ୍ଷ୍ମ ତାର ଦ୍ୱାରା
তারকষি কাজ କରାଯିବା କାରିଗରୀ— Filigree work.
तारकशी

ତାରକହା- ସଂ. ବି (ତାରକ+ହନ୍ ଧାତୁ+କର୍ତ୍ତୃ. କ୍ୱିପ୍)—
Tārakahā କାର୍ତ୍ତିକେୟ—Kārttikeya.
(ତାରକାରି—ଅନ୍ୟରୂପ)

ତାରକା—ସଂ. ବି. ସ୍ତ୍ରୀ (ତାରକ+ସ୍ତ୍ରୀ. ଆ)—୧ । ନକ୍ଷତ୍ର—
Tārakā 1. Star.

୨ । ଲାଞ୍ଜ ତାରା—2. Comet.

୩ । ଚକ୍ଷୁର ତାରା; କନୀନିକା—
3. The pupil of the eye.

୪ । ତାଡ଼କାନାମ୍ନୀ ରାକ୍ଷସୀ—
4. The demoness Tā<u>rd</u>akā

୫ । ମୁକ୍ତା—5. Pearl.

ତରଳ ତାରକା ହାରମୟୀ ନାକ ନାଗରୀ ଟୀକା,
ସମକକ୍ଷ ତାର ହେଲେ ହେବେ ଶଚୀ ସ୍ୱର୍ଗ ଚନ୍ଦ୍ରିକା । ରାଧାନାଥ. ଉଷା ।

୬ । ଇନ୍ଦ୍ରବାରୁଣୀ (ଦେଖ) (ହି. ଶବ୍ଦସାଗର)—
6. Indrabāruṇī ( See )

୭ । ବାନରରାଜ ବାଳିର ସ୍ତ୍ରୀ; ତାରା (ହି. ଶବ୍ଦସାଗର)—
7. Wife of the monkey-king Bā<u>l</u>i.

୮ । ନାରାଚ ନାମକ ଛନ୍ଦ (ହି. ଶବ୍ଦସାଗର)—
8. Name of a vedic metre.

ଦେ. ବି. ସ୍ତ୍ରୀ—( ଆଧୁନିକ ବ୍ୟବହାର ) ପୁସ୍ତକର ଅଂଶ ବିଶେଷ ପ୍ରତି ଦୃଷ୍ଟି ଆକର୍ଷିତ ହେବା ଉଦ୍ଦେଶ୍ୟରେ ତହିଁରେ ଦିଆ ଯାଇଥିବା ନକ୍ଷତ୍ର ଚିହ୍ନ—An asterisk.

| ୧ | ଇ | ଉ | ଋ,ହ୍ର | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଚ | ଶ,ଷ | ଙ୍କ | ଇଂ | ଡ଼ଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଲଅ | ଡ଼ | ଙ୍ |

[ ଦ୍ର—ସେ ଚନ୍ଦ୍ରଃ * ଏହିପରି । ]

ତାରକା ପତି—ସଂ. ବି (ତାରକା+ପତି; ୬ଷ୍ଠୀ ତତ୍)—ଚନ୍ଦ୍ର—
Tārakā pati — The moon.

ତାରକାମୟ—ସଂ. ବିଣ ( ତାରକା+ବହୁଳାର୍ଥେ ମୟ )—ତାରକାରେ ପୂର୍ଣ୍ଣ—Full of stars;starry.
Tārakāmaya

(ତାରକାମୟୀ—ସ୍ତ୍ରୀ) ସଂ. ବି (୬ଷ୍ଠୀ ତତ୍ ବା ରୂପକ; ତାରକା+ଅମୟ; ତାରକାସୁରର ବ୍ୟାଧିସ୍ୱରୂପ; ଏହାଙ୍କ ଔରସରୁ ଉତ୍ପନ୍ନ କାର୍ତ୍ତିକେୟ ତାରକାସୁରକୁ ବଧ କରିଥିବାରୁ)—ଶିବ; ମହାଦେବ । ଦ୍ର. ଶବ୍ଦସାଗର )—Siba.

ତାରକାରି—ସଂ ବି ( ତାରକ+ଅରି; ୬ଷ୍ଠୀ ତତ୍ )—କାର୍ତ୍ତିକେୟ—
Tārakāri — Kārttikeya.

ତାରକାଶୋଭୀ—ଦେ' ବିଣ ସ୍ତ୍ରୀ (ସଂ. ତାରକାଶୋଭିନ୍ ଶବ୍ଦର ସ୍ତ୍ରୀଲିଙ୍ଗ ତାରକାଶୋଭିନୀ )—ସୁନ୍ଦର ନୟନବିଶିଷ୍ଟା—(a woman) Having charming eyes.
Tārakāśobhi

ତାରକାଶୋଭୀଠାରୁ ହୋଇ ମେଳଣି ସେ ମାଳବ ଦେଶରେ ।
ଉପେନ୍ଦ୍ର ଭଞ୍ଜ. ପ୍ରେମସୁଧାନିଧି ।

ତାରକାସୁର—ସଂ. ବି (ନାମ)—୧ । କାର୍ତ୍ତିକେୟ ଦ୍ୱାରା ନିହତ ଅସୁର-ବିଶେଷ—1. Name of a demon killed by Kārttikeya.
Tārakāsura

୨ । ବିଷ୍ଣୁଙ୍କ ଦ୍ୱାରା ନିହତ ଅସୁରବିଶେଷ—
2. Name of demon killed by Bishnu.

[ ଦ୍ର—୧ । ଶିବପୁରାଣ ମତରେ ତାରକାସୁର ତାର ନାମକ ଅସୁରର ପୁତ୍ର ଥିଲା । ସେ ଏକ ହଜାର ବର୍ଷ ତପସ୍ୟା କରି ବ୍ରହ୍ମାଙ୍କ ଠାରୁ ବର ପାଇଥିଲା ଯେ ତାଠାରୁ ସଂସାରରେ ଆଉ କେହି ବେଶି ବଳୁଆ ହେବେ ନାହିଁ ଓ ଶିବଙ୍କଠାରୁ ଜାତ ବ୍ୟକ୍ତି ଛଡ଼ା ତାହାକୁ ଆଉ କେହି ବଧ କରି ପାରିବେ ନାହିଁ । ସେ ଅତି ଉପଦ୍ରବ କରିବାରୁ ଦେବତାମାନେ ପରାମର୍ଶ କରି କାମଦେବଙ୍କୁ ପଠାଇ ହିମାଳୟରେ ତପସ୍ୟାରତ ମହାଦେବଙ୍କୁ ପାର୍ବତୀଙ୍କଠାରେ ଅନୁରକ୍ତ କରାଇଲେ । ପାର୍ବତୀଙ୍କୁ ମହାଦେବ ବିବାହ କଲେ । କିନ୍ତୁ ପାର୍ବତୀ ମହାଦେବଙ୍କ ରେତଃ ଧାରଣ କରିବାକୁ ଅସମର୍ଥା ହେବାରୁ ଦେବତାମାନେ ବିଚାର କରି କପୋତବେଶଧାରୀ ଅଗ୍ନିଙ୍କୁ ପଠାଇଲେ ଓ ଅଗ୍ନି ମହାଦେବଙ୍କ ଔରସ ଧାରଣ କଲେ; ସେହି ଔରସରୁ କାର୍ତ୍ତିକେୟ ଉତ୍ପନ୍ନ ହେଲେ । ଦେବତାମାନେ ତାଙ୍କୁ ଦେବସୈନ୍ୟର ସେନାପତି କଲେ । ଘୋର ଯୁଦ୍ଧ ପରେ କାର୍ତ୍ତିକେୟଙ୍କ ଶରରେ ତାରକାସୁର ନିହତ ହେଲା—(ଦ୍ର. ଶବ୍ଦ-ସାଗର) । ମତାନ୍ତରରେ ସେ ବଜ୍ରାଙ୍ଗ ଅସୁର ଓ ବୀରାଙ୍ଗୀ ଅସୁରୀର ପୁତ୍ର ଥିଲା ଏବଂ କାର୍ତ୍ତିକେୟ ଜନ୍ମ ହେବାର ସପ୍ତମଦିନ ତାଙ୍କୁ ବଧ କଲେ—(ଅଗ୍ନି) । ୨ । ଗରୁଡ଼ପୁରାଣ ମତରେ ତାରକାସୁର ନାମରେ ଆଉ ଗୋଟିଏ ଦୁର୍ଦ୍ଦାନ୍ତ ଅସୁର ଥିଲା । ସେ ଇନ୍ଦ୍ରଙ୍କୁ ବହୁତ ଉପଦ୍ରୁତ କରିବାରୁ ବିଷ୍ଣୁ ନପୁଂସକ ରୂପ ଧାରଣକରି ଏହାକୁ ବଧ କଲେ । (ଦ୍ର. ଶବ୍ଦସାଗର । )

ତାରକିତ—ସଂ. ବିଣ (ତାରକା+ସଞ୍ଜାତ ଅର୍ଥରେ, ଇତ)—ନକ୍ଷତ୍ରଖଚିତ.
Tārakita Starry; beptangled or adorned with stars.

ତାରକିଣୀ—ସଂ. ବି. ସ୍ତ୍ରୀ (ତାରକ+ଇନ୍+ସ୍ତ୍ରୀ. ଈ)—ରାତ୍ରି—
Tārakini — Night.

(ତାରକିଣୀ—ଅନ୍ୟରୂପ) ବିଣ. ସ୍ତ୍ରୀ—ତାରକୀର ସ୍ତ୍ରୀଲିଙ୍ଗରୂପ—
Feminine form of Tāraki

ତାରକୀ—ସଂ. ବିଣ. ପୁଂ (ତାରକା+ଇନ୍ ୧ମ. ୧ବ.)—ତାରକାଯୁକ୍ତ—
Tāraki — Starry.

(ତାରକିଣୀ—ସ୍ତ୍ରୀଲିଙ୍ଗ)

ତାରକେଶ୍ୱର—୧ ସଂ. ବି—ଶିବ; ମହାଦେବ ( ଦ୍ର. ଶବ୍ଦସାଗର )—
Tārakeśwara — Siba.

୨ । କଲିକତାର ୩୬ ମାଇଲ ଉତ୍ତରରେ ଥିବା ବଙ୍ଗଦେଶର ପ୍ରସିଦ୍ଧ ଶିବକ୍ଷେତ୍ର ଓ ତାଙ୍କ ନାମାନୁସାରେ ଏକ ଗ୍ରାମର ନାମ—2. Name of a famous shrine of Siba and a village named after Him.

[ଦ୍ର—ଏ ଶିବ ମନ୍ଦିର ଜଣେ ମହନ୍ତଙ୍କ ମାରଫତ୍‌ଦ୍ୱାରରେ ପରିଚାଳିତ । ଏଠାକୁ ଅନେକ ସହସ୍ର ଯାତ୍ରୀ ଆସନ୍ତି ଓ ଏ ଦେବ ପୂଜା ପାଇଁ ଅନେକ ସମ୍ପତ୍ତି ଲାଗି ଅଛି । ହାବଡ଼ା ଠାରୁ ଇଷ୍ଟଇଣ୍ଡିଆନ୍ ରେଲର ଗୋଟିଏ ବ୍ରାଞ୍ଚ୍ ଲାଇନ୍ ଏଠାକୁ ଯାଇଛି ଓ ପ୍ରତିଦିନ ହାବଡ଼ାଠାରୁ ଏଠାକୁ ଓ ଏଠାରୁ ହାବଡ଼ାକୁ ୬୮ ଥର ଗାଡ଼ି ଯିବା ଆସିବା କରେ । ]

୩ । ଆୟୁର୍ବେଦୋକ୍ତ ବହୁମୂତ୍ର ରୋଗନାଶକ ବଟିକାବିଶେଷ—
3. A kind of pill prepared as an antidote against diabetes.

[ଦ୍ର—ପାରଦ, ଗନ୍ଧକ, ଲୁହା, ବଙ୍ଗ, ଅଭ୍ର, ଦୁରାଳଭା, ଜବକ୍ଷାର ଗୋକ୍ଷୁରବୀଜ, ହରିଡ଼ା ସମାନ ଭାଗରେ ନେଇ ଏମାନ ସବୁ ପାଣି-କଖାରୁକୁ କୋରି ଚିପି ରସ, ପଞ୍ଚମୂଳ ସିଝା ପାଣି ଓ ଗୋକ୍ଷୁର ରସରେ ଏହାକୁ ଭାବନା ଦେଇ ଦୁଇ ରତି ଲେଖାଏଁ ଓଜନରେ ବଟିକା କରାଯାଏ, ଏହାକୁ ମହୁ ସଙ୍ଗେ ସେବନ କରାଯାଏ—ଦ୍ର. ଶବ୍ଦସାଗର । ]

ତାରକ୍ଷ—ଗ୍ରା. (ପଦ୍ୟ) ବି. (ସଂ. ତାର୍କ୍ଷ୍ୟ)—ଗରୁଡ଼—
Tāraksha — Garurda (the king of birds).
तार्क्ष
तार्क्ष

ନଗର ବନ୍ଦ ବନ୍ଧ ତାରକ୍ଷ ଅନ ନାହିଁ ଯାଉଥର ଦଂଶକ ସେ ।
ଉପେନ୍ଦ୍ର ଭଞ୍ଜ. ବୈଦେହୀଶ ବିଳାସ ।

ତାର ଖବର—ଦେ. ବି—ବିଦ୍ୟୁତ୍ ସାହାଯ୍ୟରେ ତାରଦ୍ୱାରା ସ୍ଥାନାନ୍ତରକୁ ପ୍ରେରିତ ବାର୍ତ୍ତା ବା ସମ୍ବାଦ—
Tāra khabara — Telegraphic message.
तारखबर
तारखबर

ସାଧାରଣ ଲୋକେ ଅନେକ ସ୍ଥଳରେ ବ୍ରତ ୧ ଚକ୍କ ଅକ୍ଷର ଓ ମାତ୍ରା ଏବଂ ୨ ଚକ୍କ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍କଯୁକ୍ତ କୌଣସି ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେଠାରେ ଯଥାକ୍ରମେ ଅପରଟି ୨ ବା ୧ ଚକ୍କ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'ଭୂଅ' ନ ମିଳିଲେ 'ଭୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅର୍ଥୀ' ନ ପାଇଲେ 'ଅର୍ଥି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ତାରଖୁଣ୍ଟ(ଣ୍ଟି)**—ଦେ. ବି—ବୈଦ୍ୟୁତିକ ସମ୍ବାଦ ବାହକ ତାର ଯେଉଁ Tarakhunta(nti) ଖୁଣ୍ଟ ଉପରେ ଟଙ୍ଗା ଯାଇଥାଏ— Telegraph-post.
তারখুঁটী
तारखूँटी
(ତାରଖମ୍ବ—ଅନ୍ୟରୂପ)

**ତାର ଗ୍ରାମ**—ସଂ. ବି. (ସଙ୍ଗୀତ)—୧ । ଉଚ୍ଚ ସ୍ୱର; ତୀକ୍ଷ୍ଣସ୍ୱର, ବା Tāra grama କେଁ କେଁଯାଁ ସ୍ୱର—1. Sharp or shrill note.

କଣ୍ଠରୁ ତାର ଗ୍ରାମରେ ଯାହି
ଯାଉ ଗଗନେ ଗମନ କରନ୍ତି । ଉପେନ୍ଦ୍ର. ରସକଲ୍ଲୋଳ ।

୨ । ସେତେଲେ, ହାର୍ମୋନିଅମ୍ ଆଦିର ଉଚ୍ଚ ସପ୍ତକ— 2. The shrill octave in music.

**ତାର ଚନ୍ଦ୍ର ଶୁଦ୍ଧି**—ସଂ. ବି. (ଦ୍ୱନ୍ଦ୍ୱ ଓ ୬ଷ୍ଠୀ ତତ୍; ତାର+ଚନ୍ଦ୍ର+ଶୁଦ୍ଧି) Tara chandra suddhi ଜ୍ୟୋତିଷଶାସ୍ତ୍ରର ଗଣନାମତେ ମନୁଷ୍ୟ ପକ୍ଷରେ ଶୁଭ ଚନ୍ଦ୍ର ଓ ତାରକ ଘଟିବା ଅବସ୍ଥା— Auspicious astrological combination of stars and the moon on any fixed day.

**ତାର ଛିଡ଼ିବା**—ଦେ. କ୍ରି—ଧାରାବାହିକତାରେ ବାଧା ଘଟିବା; କ୍ରମଭଙ୍ଗ Tāra chhirdibā ହେବା—Interruption in the continuity of a series.
ধারা তুটে যাওয়া
तार टूटना

**ତାର ଡାକ**—ଦେ. ବି—ଟେଲିଗ୍ରାଫ୍ ଦ୍ୱାରା ସମ୍ବାଦ ପ୍ରେରଣ— Tāra dāka Sending message by telegraph.
তার ডাক तार डाक

**ତାରଣ**—ସଂ. ବିଣ. ପୁଂ (ତୃ ଧାତୁ ଣିଚ; ତାରି ଧାତୁ+କର୍ତ୍ତୃ. ଅନ)— Tāraṇa ୧ । ତ୍ରାଣକାରୀ; ଉଦ୍ଧାରକାରୀ—
(ତାରଣୀ—ସ୍ତ୍ରୀ) 1. Delivering; redeeming.
୨ । ରକ୍ଷାକାରୀ—2 Saving.

ବି. (+ଭାବ ଅନ)—୧ । ବିପଦାଦିରୁ ଉଦ୍ଧାର କରିବା — 1. Deliverance; saving a person.
୨ । ଅନ୍ୟକୁ ପାର କରିବା— 2. Taking across; ferrying across.
୩ । ମୁକ୍ତି—3. Salvation.
୪ । (+କର୍ତ୍ତୃ. ଅନ)—ଉଦ୍ଧାରକ ବ୍ୟକ୍ତି; ତ୍ରାଣକର୍ତ୍ତା ବ୍ୟକ୍ତି— 4. Deliverer; redeemer.
୫ । ରକ୍ଷାକର୍ତ୍ତା—5. Saviour.
୬ । ବିଷ୍ଣୁ—6. Bishnu.
୭ । (+କରଣ ଅନ) ଭେଳା—7. Raft.

**ତାରଣ ମାରଣ**—ସଂ. ବି. (ବିପରୀତାର୍ଥ ଶବ୍ଦ) (ଦ୍ୱନ୍ଦ୍ୱ)— Tāraṇa māraṇa ଉଦ୍ଧାର କରିବା ଓ ମାରି ପକାଇବା— Saving and killing.

**ତାରଣି**—ସଂ. ବି. ସ୍ତ୍ରୀ. (ତୃ ଧାତୁ ଣିଚ ତାରି ଧାତୁ+କରଣ ଅନି)— Tāraṇi ନୌକା; ଡଙ୍ଗା—Boat.

**ତାର ତଣ୍ଡୁଳ**—ସଂ. ବି. (କର୍ମଧା; ତାର+ତଣ୍ଡୁଳ)—ଧଳାଜୁଆରି ଶସ୍ୟ— Tāra taṇḍula A species of white maize.

**ତାରତମ**—ଦେ. ବି. (ସଂ. ତାରତମ୍ୟ)—ପ୍ରଭେଦ— Tāratama Difference; distinction.

ଜନନ ତମାଳ ତମ । ବାଳେ ନୋହେ ତାର ତମ ।
ଉପେନ୍ଦ୍ର ଭଞ୍ଜ, ବୈଦେହୀଶବିଳାସ ।

**ତାରତମ କରିବା**—ଦେ. କ୍ରି. (ସଂ ତାରତମ୍ୟ)—ଦୁଇଜଣଙ୍କ ପ୍ରତି ଭିନ୍ନ Tāratama kariba ଭିନ୍ନ ବ୍ୟବହାର କରିବା— To treat differentially; to mete out defferential treatment.

**ତାରତମେ**—ଦେ. (ପଦ୍ୟ) କ୍ରି ବିଣ—ନ୍ୟୂନାଧିକ ହୋଇ; ଭିନ୍ନ ଭିନ୍ନ Tāratame ରୂପେ; ପୃଥକ ରୂପେ—Differently.

ଯେଣୁ ଏ ପୁରୁଷଙ୍କ ଦେହେ
ସେ ହର ତାରତମେ ରହେ । ଜଗନ୍ନାଥ. ଭାଗବତ ।

**ତାରତମ୍ୟ**—ସଂ. ବି. (ତର+ତମ=ତରତମ=ନ୍ୟୂନାଧିକ+ଭାବାର୍ଥେ Tāratamya ଯ)—୧ । ନ୍ୟୂନାଧିକ୍ୟ; ଇତରବିଶେଷ— 1. The state or condition of being more or less.
୨ । କ୍ରମୋଚ୍ଚ ବା କ୍ରମନିମ୍ନ କରିବା— 2. Gradation; proportion.
୩ । ପ୍ରଭେଦ—3. Difference; distinction.
୪ । ତୁଳନା—4. Comparision.
୫ । ଦୁଇ ବା ତତୋଽଧିକ ବସ୍ତୁ ବା ବ୍ୟକ୍ତି ମଧ୍ୟରେ କେହି ବଡ଼ କେହି ସାନ ହେବା ଭାବ—5. Comparative greatness or smallness amongst two or more things.

ତାର ତୋର ସୁଲୋଚନା ତାରତମ୍ୟ ବିବେଚନା ।
କବିସୂର୍ଯ୍ୟ. କଳୋପଲକ୍ଷ . ଚ. ଗୀତ ।

**ତାରତମ୍ୟ ବୋଧ**—ସଂ. ବି. (୬ଷ୍ଠୀ ତତ୍; ତାରତମ୍ୟ+ବୋଧ)— Tāratamya bodha ଏକାଧିକ ବସ୍ତୁ ମଧ୍ୟରେ କିଏ ବଡ଼ ଓ କିଏ ସାନ ଏହି ବିବେଚନା—
ତାରତମ୍ୟ ବିବେଚନା, ତାରତମ୍ୟ ବିଚାର }—ଅନ୍ୟରୂପ
Consideration of the comparative greatness or smallness amongst two or more things.

**ତାରତର**—ଦେ. ବି.—୧ । ଶୋଭା— Tāratara 1. Beauty.
୨ । କାନ୍ତି—2. Splender; lustre.

ବନ୍ଦେ ମିତ୍ରଙ୍କ ନାମ ଯେ ସାର;
ବସ୍ତୁ କରେ ମିଷ ତାରତର । ଭଞ୍ଜ. ବୈଦେହୀଶବିଳାସ ।

ବିଣ. (ସଂ. ତାର)—୧ । ଦେଦୀପ୍ୟମାନ; ସୁନ୍ଦର— 1, Dazzling; beautiful.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଜ | ଋ,ର୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ୍ଞ | ଶ,ଷ | କ୍ଷ | ଇୟ୍ | ଉଅ | ଘ |
| ୨ | ଐ | ଈ | ଋ | ଲୃ | ଯ୍ୟେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଚ୍ୟ | ଇଅ | ଓ | ନ୍ |

ବସ୍ତ୍ର ତାରତର ସାର ନଯାନ,
ଲକ୍ଷ୍ମ ତ୍ରସରେ ବହୁଗୁଣ ଜ । ଉପେନ୍ଦ୍ରଭଞ୍ଜ ବୈଦେହୀଶବିଳାସ ।

୨ । ଅଧିକ—2. Much; excessive.
ଏହା ଶୁଣି ବେ ସ୍ୱର୍ଗୀୟ ଯେତେ ମନେ ଅଗଣିତ
ବୋଲୁଛେ ନ ଜଣ୍ଠ ତାରତର । ଅଭିମନ୍ୟୁ. ବଦଗ୍ଧଚିନ୍ତାମଣି ।

ସଂ. ବିଣ. (ତାର+ତର)—୧ । ଅପେକ୍ଷାକୃତ ଉଚ୍ଚ (ସ୍ୱର)—
1. Louder
୨ । ଅପେକ୍ଷାକୃତ ଉଜ୍ଜ୍ୱଳ—2. Brighter.
୩ । ଅପେକ୍ଷାକୃତ ସୁନ୍ଦର—3. More beautiful.

**ତାରତରେ**—ଦେ. କ୍ରି.—ବହୁ ତାରାମାନଙ୍କ ଯୋଗୁଁ—
Tāratare    Owing to the presence of many stars.

ଅନନ୍ତ ଗୋଲ୍ ଏ ପଦ, ହେବ ତାରତରେ ଜାଣ ।
ଉପେନ୍ଦ୍ରଭଞ୍ଜ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ତାର ତହୁଁ**—ଦେ. ଅ.—୧ । ତାହାଠାରୁ; ତାଠାରୁ—
Tāra tahun̄    1. From that.
তাহে    ପ୍ରକୃତ ତାର ତହୁଁ ନାହିଁ
उससे    ତା ତହୁଁ ହୋଏ ମହାରକ୍ତ । ଜଗନ୍ନାଥ. ଭାଗବତ
୨ । ତାହା ଅପେକ୍ଷା—2 Than that.

**ତାରନ୍ତା**—ଦେ. ବିଣ. ( ସଂ. ତାର )—ଉଦ୍ଧାରକର୍ତ୍ତା—.
Tārantā    Delivering.

**ତାରପତି**—ସଂ. ବି. ( ତାର+ପତି; ୬ଷ୍ଠୀ ତତ୍ )—ଚନ୍ଦ୍ର—
Tāra pati    The moon.
ତାର ପତି ସ୍ରାସ୍ୱେ ମୁଖ ତାର । ଉପେନ୍ଦ୍ରଭଞ୍ଜ. ପ୍ରେମସୁଧାନିଧି ।

**ତାରପର**—ଦେ. ବିଣ. ପୁଂ ଓ ସ୍ତ୍ରୀ—୧ । ଗୁଣରେ ବା ରୂପରେ ଅଦ୍ୱିତୀୟ;
Tāra parā    ଅତୁଳନୀୟ—1. Incomparable;
(ତାର୍ପସ୍ୱ, ତାପର—ଅନ୍ୟରୂପ)    matchless.
ওরকমারি    ୨ । ଅତି ଉତ୍କୃଷ୍ଟ—2. Excellent.
अनोखा    ( ଯଥା—ତାଇରେ ବଧାରା ! ତାର ପର ଝିଅଟିକୁ ଏ
ଅଲକ୍ଷଣୀ ବର ଖୋଜିଲୁ ! )
ଦେ. ଅ.—ତାହାପରି; ତତ୍ସଦୃଶ—Like him, her or that.

**ତାର ପଲିନ୍**—ବୈଦେ. ବି. ( ଇଂ. ଟାର୍ପାଲିନ୍)—
Tārapalin    ତେଲପାଲ; ପୁଲ ବୋଲା ଯାଉଥିବା ଅଖା ( ଯହିଁରେ
তারপলীন্    ପାଣି ଗଲେ ନାହିଁ )—Tarpaulin.
तिरपाल

**ତାରପିଣ(ନ୍)**—ବୈଦେ. ବି. ( ଇଂ. ଟର୍ପେଣ୍ଟାଇନ୍ )—
Tārapin(n)    ଦେବଦାରୁ ଜାତୀୟ ସର୍ଜ ବା ସରଳ ବୃକ୍ଷରୁ
ତାରପିଣି; ତାରପିନ;
ତାରପିର୍ଣ୍ଣ; ତାରପିନ;
ତାରପିନ୍; ତାରପିନ୍ ତେଲ } ଅନ୍ୟରୂପ    ବାହାରିବା ନିର୍ଯ୍ୟାସରୁ ପ୍ରସ୍ତୁତ ତୈଳ—The oil of turpentine.
তারপিন্    [ ବୃ—ଭୂଟାନ, କାଶ୍ମୀର ଓ ଅଫଗାନିସ୍ଥାନର ପାର୍ବତ୍ୟ
तारपीन, तारपीन    ଅଞ୍ଚଳରେ ଜନ୍ମିବା ଏକ ପ୍ରକାର ବଡ଼ ଗଛ
(ସଂ. ନାମ ସରଳ; ହି. ଚୀଡ଼; ବ. ଚଡ଼ବା ସରଲ; ଇଂ Pine; ଲାଟିନ୍ Pinus Lengifolia) ର ଗଣ୍ଡିରେ ଭୂମି ଠାରୁ ୨ ହାତ ଉଚ୍ଚରେ କଣା କଲେ ସେଥିରୁ ଏକ ପ୍ରକାର ଅଠାଳିଆ ରସ ବାହାରେ; ସେ ରସକୁ ଗନ୍ଧବିରୁଜା (ସର୍ଜରସ) କହନ୍ତି । ଗନ୍ଧବିରୁଜାକୁ ନିଆଁ ଉପରେ ଚଢ଼ାଇଲେ ଯେଉଁ ତେଲ ବାହାରେ ତାହା ତାରପିନ୍ । ଏହା ମାଲିସ୍ କଲେ ଦେହର ଦରଜ କମିଯାଏ । ଏହା ଔଷଧରେ ଲଗେ ଓ ବାର୍ଣ୍ଣିସ୍‌ରେ ଓ ରଙ୍ଗରେ ମିଶାଯାଏ ।

**ତାର ପୁଷ୍ପ**—ସଂ. ବି. (ବହୁବ୍ରୀହି; ତାର ପୁଷ୍ପ—କୁନ୍ଦ ଗଛ (ଦେଖ)—
Tāra pushpa    (ଦ୍ର. ଶବ୍ଦସାଗର)—Kunda (plant) (See).

**ତାରବର**—ସଂ. ବି. (୬ଷ୍ଠୀ ବା ୭ମୀ ତତ୍; ତାର+ବର)—ଚନ୍ଦ୍ର—
Tārabara    The moon.
ଧନେ ଘନ ସାର ସାର ଲଭପାନ ସାର ତାର-
ବରମୁଖ ଦେଇ ବାର ବାର । ଉଦ୍ଧ. ପ୍ରେମସୁଧାନିଧି ।

**ତାର ବାଡ଼(ଡ଼ା)**—ଦେ. ବି.—ତାର ଦ୍ୱାରା ହୋଇ ଥିବା ବାଡ଼—
Tārabārḍa(rḍā)    Wire-fencing.
তারের বেড়া  तारकाघेरा

**ତାର ବାନ୍ଧିବା**—ଦେ. କ୍ରି.—୧ । ପୁନଃ ପୁନଃ ସୂଚନା ଦେବା;—
Tārabāndhibā    1. To repeatedly allude to.
୨ । ପ୍ରକାଶିତ କରିବା; ପ୍ରକଟିତ କରିବା—
2. To disclose; to publish.
୩ । ଜଣାଇ ଦେବା—3. To inform.

**ତାରମାଅ(ହା)ସୁଲ**—ଦେ. ବି. (ସଂ. ତାର, ଫା. ମହସୁଲ)—ତାର
Tāramā-ā(hā)sul    ଦେଶକୁ ତାରଖବର ବା ଟେଲିଗ୍ରାଫ୍
ତାରମାସୁଲ; ତାରମାହାସୁଲ
ତାରଖବର; ତାରଖରଚ } ଅନ୍ୟରୂପ    ପଠାଇବା ବ୍ୟକ୍ତିର ଦେୟ ବ୍ୟୟ—Fees for sending a telegraphic message.
তারমাসুল  तार महसूल

**ତାର ମାକ୍ଷିକ**—ସଂ. ବି. ( ସଂ. ତାର=ରୌପ୍ୟ+ମାକ୍ଷିକ=ମିଶ୍ରିତ )—
Tāra mākshika    ରଜତ ତୁଲ୍ୟ ଉପଧାତୁବିଶେଷ; ରୌପ୍ୟ-
ଅନ୍ୟ ସଂ. ନାମ—    ମାକ୍ଷିକ ନାମକ ଉପଧାତୁ—
ତାରକ୍ରମଳା    Iron phyrites; a mineral Ferri
রোপ্য মাক্ষক    Sulphuratum.
रूपामक्खी, तारामुखी    [ ବୃ—ତାର ମାକ୍ଷିକ ରୁପାର ଉପଧାତୁ;
ଗୁ. ରୂ. ରୁପାମାଖୀ    ବୈଦ୍ୟଶାସ୍ତ୍ର ମତରେ ଏହା ତିକ୍ତ
ଅ. ମୁର୍କଶୀଶାଫିଦା    ତିକ୍ତ ମଧୁର ରସ, ମଧୁର ବିପାକ, ଶୁକ୍ରବର୍ଦ୍ଧକ, ରସାୟନ ଓ ଚକ୍ଷୁର ହିତକର । ଏହା ବସ୍ତି ରୋଗ, କୁଷ୍ଠ, ପାଣ୍ଡୁ, ପ୍ରମେହ, ବିଷ, ଉଦର, ଅର୍ଶଃ, ଶୋଥ, କ୍ଷୟ, କଣ୍ଡୂ ଓ ତ୍ରିଦୋଷ ନାଶକ—ବେବେନ୍ଦ୍ର. ଦ୍ରବ୍ୟଗୁଣ । ]

**ତାର ମାଷ୍ଟର**—ଦେ. ବି. ( ସଂ. ତାର. ଇଂ. ମାଷ୍ଟର )—
Tāra māshṭara    ତାର ଅଫିସର ଭାରପ୍ରାପ୍ତ କର୍ମଚାରୀ—
(ତାରବାବୁ—ଅନ୍ୟରୂପ)    Telegraph signaller.
তার মাষ্টর    [ ଦ୍ର—ତୁଳନାକର ଡାକମାଷ୍ଟର. ପୋଷ୍ଟମାଷ୍ଟର । ]
तारमास्टर

ସାଧାରଣ ଲୋକେ ଅପର ପୃଷ୍ଠାରେ ଦେଖ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ସେ ସ୍ଥାନରେ ଶବ୍ଦଟି ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଅ' ନ ମିଳିଲେ 'କଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍ଗିଆ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତାରୟିତା**—ସଂ. ବିଣ. ପୁଂ. ( ତୃ ଧାତୁ ଣିଚ୍ ତାର ଧାତୁ + କର୍ତ୍ତୃ. ତୃ;
Tārayitā ତାରୟିତୃ ଶବ୍ଦ ୧ମା. ୧ବ )—ତାରକ (ଦେଖ)
(ତାରୟିତ୍ରୀ—ସ୍ତ୍ରୀ) Tāraka ( See )

**ତାରଳ**—ସଂ. ବିଣ. ( ତରଳ + ସ୍ୱାର୍ଥେ. ଅ )—କାମୁକ; ଲମ୍ପଟ—
Tāraḷa Lustful; libidinous; lascivious.

**ତାରଲ୍ୟ**—ସଂ. ବି. ( ତରଳ + ଭାବାର୍ଥେ. ଯ )—
Tāralya ୧ । ତରଳତା—1. Fluidity; liquidity.
୨ । ଟଳଟଳ ଭାବ—2 Tottering condition.
୩ । ଜଳର ଚଳଚଳ ଭାବ—
3. Unsteadiness of a liquid.
୪ । ଅବ୍ୟବସ୍ଥିତଚିତ୍ତତା—
4. Inconstancy; caprice; fickleness.
୫ । ଅସ୍ଥିରତା; ଚାଞ୍ଚଲ୍ୟ—5. Restlessness.
୬ । ପାତଳା ଅବସ୍ଥା—6. Thinness.

**ତାରଶୁଦ୍ଧି**—ସଂ. ବି—ଜ୍ୟୋତିଷ ଶାସ୍ତ୍ରୋକ୍ତ ୯ ଗୋଟି ତାର ନାମକ ଯୋଗ
Tāraśuddhi ମଧ୍ୟରୁ ସମ୍ପଦ, କ୍ଷେମ, ସାଧକ, ମିତ୍ର ଓ ପରମ ମିତ୍ର ଯୋଗମାନ ଘଟିବା ଅବସ୍ଥା; ତାରକ ତଳେ ନୋଟ ଦେଖ—Auspicious astrological conjunction. See note under Tāraka

**ତାରହାସୀ**—ଦେ. ବିଣ. ( ସଂ. ତାରହାସିନୀ )—
Tārahāsi ମନୋହର ହାସ୍ୟଯୁକ୍ତା ( ସ୍ତ୍ରୀ )—( a lady )
Having a graceful smiling face.

ଘନ ଯେ ବନ ନ ବର କର । ମନେ ସ୍ତନ ହରଷେ
ମିଁ, ମାଳି ତାର ତାରହାସୀ ଯେଉଁ କେ ଅପର ଘର ହେଁ ।
ଉପେନ୍ଦ୍ର ଭଞ୍ଜ. ପ୍ରେମସୁଧାନିଧି ।

**ତାରା**—ସଂ. ବି. ସ୍ତ୍ରୀ. (ତୃ ଧାତୁ ଣିଚ୍=ତାରି ଧାତୁ + କର୍ତ୍ତୃ. ଅ + ସ୍ତ୍ରୀ.ଆ)-
Tārā ୧ । ତାରକା; ନକ୍ଷତ୍ର—1. Star.
[ ଦ୍ର—ନକ୍ଷତ୍ର ଅର୍ଥରେ ସଂ. ତାରା ସଙ୍ଗେ ତୁଳନା କର—ଇଂ. ଷ୍ଟାର୍ (Star); ହି. ତାରା; ପା. ସିତାରା; ଗ୍ରୀ. ଅଷ୍ଟର୍ (Astar); ଲାଟିନ୍ ଷ୍ଟେଲା (Sterla, stella; astrum); ଡଚ୍ ଷ୍ଟେର (Ster) ]
୨ । ଆଖି ପୁତୁଳି; ଚକ୍ଷୁର ତାରକା—
2. The pupil of the eye.
୩ । ଦୁର୍ଗା—3. Goddess Durgā.
୪ । ଦୁର୍ଗାଙ୍କର ତନ୍ତ୍ରୋକ୍ତ ୧୦ମୂର୍ତ୍ତିକା ଦଶ ମହାବିଦ୍ୟାରୁ ୨ୟ—
4. The second of the ten Mahābidyās or Female Deities worshipped according to the Tantras.
[ଦ୍ର—ତନ୍ତ୍ରରେ ଏ ନୀଳବର୍ଣ୍ଣା, ଲୋଲଜିହ୍ୱା, କରାଳବଦନା, ସର୍ପାବୃତା, ଏକଜଟା, ତ୍ରିନୟନା, ଲମ୍ବୋଦରୀ, ଚତୁର୍ଭୁଜା, ବ୍ୟାଘ୍ର-ଚର୍ମାମ୍ବରା ବୋଲି ବର୍ଣ୍ଣିତ ହୋଇଅଛନ୍ତି । ଏହାଙ୍କ ହାତରେ ଯଥାକ୍ରମେ ନୀଳପଦ୍ମ, ଖଡ୍ଗ, କାତି ଓ ସମୁଣ୍ଡଖର୍ପର ଧରି ଶିବା (ବିଲୁଆ) ଉପରେ ଅଧିରୋହଣ କରିଥିବାର ବର୍ଣ୍ଣିତ ହୋଇଅଛନ୍ତି—ଜ୍ଞାନେନ୍ଦ୍ର ।]
୫ । ବାଲି ନାମକ ବାନରରାଜଙ୍କ ପତ୍ନୀ—
5. The wife of the monkey-king Bāḷi
[ଦ୍ର—ଏ ସୁଷେଣ ଓ ମତାନ୍ତରରେ ତାର ନାମକ ବାନର-ସେନାପତିଙ୍କ କନ୍ୟା; ବାଲୀଙ୍କ ମୃତ୍ୟୁ ପରେ ସୁଗ୍ରୀବ ଏହାଙ୍କୁ ବିବାହ କରିଥିଲେ; ହିନ୍ଦୁମାନେ ସକାଳୁ ଉଠି ଯେଉଁ ପଞ୍ଚକନ୍ୟା (ଅହଲ୍ୟା ଦ୍ରୌପଦୀ, ତାରା, ଶଚୀ, ମନ୍ଦୋଦରୀ)ଙ୍କ ନାମ ସ୍ମରଣ କରନ୍ତି ତହିଁ ମଧ୍ୟରୁ ଏ ଜଣେ ।]
୬ । ବୃହସ୍ପତିଙ୍କ ପତ୍ନୀ—6. Wife of Bṛuhaspati.
[ଦ୍ର—ତାରା ବୃହସ୍ପତିଙ୍କ ପତ୍ନୀ ଥିଲେ । ଚନ୍ଦ୍ରଙ୍କର ଏ ଗୁରୁପତ୍ନୀ ଥିଲେ ମଧ ଚନ୍ଦ୍ର ଏହାଙ୍କୁ ଏହାଙ୍କ ଇଚ୍ଛାରେ ନେଇ ଆପଣା ନିକଟରେ ରଖିଲେ, ବୃହସ୍ପତି ମାଗିବାରୁ ଫେରାଇ ଦେଲେ ନାହିଁ । ଏଥିରେ ଗୁରୁଶିଷ୍ୟଙ୍କର ବିବାଦ ଓ ଯୁଦ୍ଧ ହେଲା । ପରେ ବ୍ରହ୍ମା ମଧ୍ୟସ୍ଥତା କରି ତାରାଙ୍କୁ ଆଣି ବୃହସ୍ପତିଙ୍କୁ ଦେଲେ । ସେହି ସମୟରେ ତାରା ଗର୍ଭବତୀ ହୋଇଥିଲେ ଓ କିଛି ଦିନ ପରେ ଗୋଟିଏ ସନ୍ତାନ ଜନ୍ମ କଲେ ଓ ସେ ଚନ୍ଦ୍ରଙ୍କ ଔରସ ବୋଲି କହିଲେ । ଚନ୍ଦ୍ର ଉକ୍ତ ପୁତ୍ରକୁ ଗ୍ରହଣ କଲେ, ଉକ୍ତ ପୁତ୍ରର ନାମ ବୁଧ ଗ୍ରହ । ବୃହସ୍ପତିଙ୍କ ଅଭିଶାପରେ ଚନ୍ଦ୍ରଙ୍କ କଳାର କ୍ଷୟ ହେଲା ।]
୭ । ବୌଦ୍ଧ ଦେବୀବିଶେଷ—
7. A Buddhistic Goddess.
୮ । ବିଶୁଦ୍ଧ ମୁକ୍ତା—8. Fine pearl.
୯ । ସଙ୍ଗୀତର ଉଚ୍ଚ ସପ୍ତକବିଶେଷ—
9. The treble part of music.
[ଦ୍ର—ଏହା ଉଚ୍ଚ ସପ୍ତକ, ଉଚ୍ଚାରଣ ସ୍ଥାନ ମୂର୍ଦ୍ଧା ।]
୧୦ । ( ଜ୍ୟୋତିଷ ମତରେ ) ମନୁଷ୍ୟର ଜାତକରେ ତାରା ସମ୍ବନ୍ଧୀୟ ଯୋଗବିଶେଷ; ତାରକ ୨ (ଦେଖ)—
Tāraka 2 (See)
୧୧ । ଭାଗ୍ୟ; କପାଳ (ହି. ଶବ୍ଦସାଗର)—
11. Fortune; luck.
ଦେ. ବି. (ସଂ. ତାର) (ବଣିଆ ଶବ୍ଦ)—ହାରରେ ଲଗାଇବା ସୁନାର ଚକତି—Starlike spangles set on necklaces.
ପ୍ରାଦେ. (ବସ୍ତର) ବି (ତୁଳ. ଏହି ଅର୍ଥରେ ହି. ଏହି ଶବ୍ଦ)—
ତାଲା; କୋଲପ—Lock.

**ତାରାକାନ୍ତ**—ସଂ. ପୁ. (ତାରା + କାନ୍ତ; ୬ଷ୍ଠୀ ତତ୍)—ତାରାନାଥ; ଚନ୍ଦ୍ର—
Tārākānta The moon.

**ତାରାକ୍ଷ**—ସଂ. ବି. (ନାମ)—୧ । ତାରାକ୍ଷ ନାମଧାରୀ ବାନରବିଶେଷ—
Tārāksha 1. The name of a monkey in the war of Rāmāyana.

ବୀରେ ପୂର୍ବ କାମ୍ବ ତାରାକ୍ଷ ସାଙ୍ଗେ ଯାଇ । ଉପେନ୍ଦ୍ରଭଞ୍ଜ. ବୈଦେହୀଶବିଳାସ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଢ଼ | ଢ଼ | ୠ,ୠ | ଌ | ଏ | ଚନ୍ଦ୍ରବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଝ | ଜ | ଶ,ଷ | ଜ୍ଞ | ଲ୍ୟ | ତ୍ର | ଘ |
| ୨ | ଢ଼ | ଢ | ଋ | ଲୃ | ଐ | ଏକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଝ୍ୟ | ଯ | ସ | ଙ୍ଗ୍ୟ | ଲଥ | ତ୍ତ | ନ୍ନ |

[ ଦ୍ର—ଶ୍ରୀରାମଚନ୍ଦ୍ର ରାବଣ ସହିତ ଯୁଦ୍ଧ କରିବା ସମୟରେ ଏ ଶ୍ରୀରାମଚନ୍ଦ୍ରଙ୍କ ପକ୍ଷରେ ସୁଗ୍ରୀବଙ୍କ ଅଧୀନରେ ଜଣେ ସେନାପତି ଥିଲେ । ]

୨ । ତାରକାକ୍ଷ (ଦେଖ) (ହି. ଶବ୍ଦସାଗର)—
2. Tārakākshya (See)

**ତାରାଗୁଚ୍ଛକ**—ସ. ବ. ( ଜ୍ୟୋତିଷପରିଭାଷା )—ଅନେକ ଗୁଡ଼ିଏ
Tārāguchchhaka ଛୋଟ ଛୋଟ ତାରକାର ମିଶ୍ରଣରେ ହୋଇ-ଥିବା ପୁଞ୍ଜ—Nebula; a galaxy of stars.

**ତାରାଗ୍ରହ**—ଦେ. ବ—୧ । ଗ୍ରହ—1. Planet.
Tārāgraha ୨ । ମଙ୍ଗଳ, ବୁଧ, ଗୁରୁ, ଶୁକ୍ର ଓ ଶନି ଏହି ପାଞ୍ଚୋଟିଗ୍ରହ (ଯେଉଁ ଗ୍ରହମାନେ ତାରା ପରି ଦେଖାଯାଆନ୍ତି)—2. The 5 planets Mars, Mercury, Jupiter; Venus and Saturn.

**ତାରାଜନିତ**—ସ. ବ. (୩ୟା ତତ୍; ତାରା+ଜନିତ)—
Tārājanita ୧ । ତାରା ପୁତ୍ର ଅଙ୍ଗଦ—
1. Aṅgada the son of Tārā.

ବୋଲି ଜଳ ଦୁଷିତ । ବେଢ଼େ ତାରାଜନିତ ।
ଉପେନ୍ଦ୍ରଭଞ୍ଜ- ବୈଦେହୀଶବିଳାସ ।

୨ । ବୁଧଗ୍ରହ—2. The planet Mercury.

**ତାରାଝଲକି**—ଦେ. ବ—ତାରା ପରି ଶୋଭା ପାଉଥିବା ପୁଷ୍ପଗୁଚ୍ଛ—
Tārājhalaki Clusters of flowers shining like stars.

ଅପରାଜିତା ବକୁଳ—ଦ୍ୱନ ତାରାଝଲକି ଏ ମଧୁରବା ଗୋ ।
ସ୍ୱାତୀ. ରହସ୍ୟମଞ୍ଜରୀ ।

**ତାରାତାରିଣୀ**—ପ୍ରାଦେ. (ଗଞ୍ଜାମ) ବ. ସ୍ତ୍ରୀ—ଦେବୀବିଶେଷ—
Tārātāriṇī A goddess worshipped in Ganjam.

[ ଦ୍ର—ଖଲ୍ଲିକୋଟର ତାରାଣୀ ନାମକ ପାହାଡ଼ ଉପରେ ପ୍ରତିଷ୍ଠିତ ଦୁର୍ଗାମୂର୍ତ୍ତି । ଅତି ପୁରାକାଳରେ ପୂର୍ବଖଣ୍ଡ ରାଜ୍ୟରେ ମାଣିକେଶ୍ୱର ନାମକ ଏକ ରାଜା ଥିଲେ । ପ୍ରତିଦିନ ଏକ ମାଳାକାର ତାହାଙ୍କୁ ପୁଷ୍ପମାଳା ପ୍ରଦାନ କରୁଥାଏ । ଦିନେ ଉକ୍ତ ମାଳାକାର ପ୍ରତ୍ୟୁଷରୁ ଋଷିକୁଲ୍ୟା ନଦୀକୁ ଯାଇ ସ୍ନାନ କରିବା ନିମନ୍ତେ ନଦୀଜଳ ଅଲୋଡ଼ନ କରିବା ସମୟରେ ତାରା ତାରଣୀ ଦୁଇଗୋଟି ଦେବକନ୍ୟାରୂପେ ଜଳ ମଧ୍ୟରୁ ଉଠିଲେ । ମାଳାକାରର କେହି ସନ୍ତାନ ନ ଥିବାରୁ ସେ କନ୍ୟା ଦ୍ୱୟଙ୍କୁ ନେଇ ନିଜ ଗୃହରେ ପାଳନ କଲା । ଦିନେ କନ୍ୟା ଦ୍ୱୟଙ୍କ ରଚିତ ଅପୂର୍ବ ପୁଷ୍ପମାଳା ଦର୍ଶନ କରି ରାଜା ନିଜେ ସେମାନଙ୍କୁ ଦେଖିବାକୁ ଇଚ୍ଛା କଲେ । ଏହା ଜାଣି କନ୍ୟାଦ୍ୱୟ ପଳାୟନ କଲେ । ରାଜା ସେମାନଙ୍କ ପଶ୍ଚାତ୍‌ରେ ଧରିବା ଇଚ୍ଛାରେ ସସୈନ୍ୟରେ ଧାବମାନ ହେବାରୁ କନ୍ୟାଦ୍ୱୟ ପର୍ବତ ଶିଖରରେ ଶିଳାର ଆକାର ଧାରଣ କଲେ । ସେହି ଦିନଠାରୁ ସେହି ସ୍ଥାନରେ ଦେବୀଦ୍ୱୟ ଅବସ୍ଥାନ କରି ପୂଜିତ ହେଉଅଛନ୍ତି ବୋଲି ଜନଶ୍ରୁତି ଅଛି । ତାରଣୀତରଣ—ଋଷିକୁଲ୍ୟା । ]

**ତାରାଧିପ**—ସ. ବ. ପୁଂ (ତାରା+ଅଧିପ; ୬ଷ୍ଠୀ ତତ୍)—୧ । ଚନ୍ଦ୍ର—
Tārādhipa 1 The moon.

ତାରାଧୀଶ, ତାରାଧିପତି, ତାରାନାଥ, ତାରାପତି } ଅନ୍ୟରୂପ

୨ । ବାନରରାଜ ବାଳି—
2. The monkey-king Bāli.
୩ । ବାନରରାଜ ସୁଗ୍ରୀବ—
3. The monkey king Sugrība.
୪ । ବୃହସ୍ପତି—4 Planet Jupiter.
୫ । ଶିବ (ହି. ଶବ୍ଦସାଗର)—5. Śiba.

**ତାରାପତନ**—ସ. ବ (ତାରା+ପତନ; ୬ଷ୍ଠୀ ତତ୍)—ଉଲ୍କାପାତ—
Tārāpatana Falling of a meteor or shooting star.

**ତାରାପଥ**—ସ. ବ (ତାରା+ପଥ; ୬ଷ୍ଠୀ ତତ୍)—୧ । ଆକାଶ—
Tārāpatha 1. The sky; the firmament.
୨ । ନଭୋମଣ୍ଡଳ—2. Welkin.

ତ ରାପଥ୍ କରେ ଅବନୀ ତଳ,
ଚନ୍ଦ୍ରର ବେଶ ହିତେ ଉଜ୍ଜ୍ୱଳ । ମଧୁସୂଦନ. ଅଯୋଧ୍ୟାପ୍ରତ୍ୟାବର୍ତ୍ତନ ।

**ତାରାପୀଡ଼**—ସ. ବ. ପୁଂ ( ତାରା ଆପୀଡ଼=ଶିରୋଭୂଷଣ ଯାହାର ୬ଷ୍ଠୀ
Tārāpīrda ତତ୍)—୧ । ଚନ୍ଦ୍ର—1. The moon.
୨ । ମତ୍ସ୍ୟପୁରାଣରେ ବର୍ଣ୍ଣିତ ଅଯୋଧ୍ୟାର ନୃପତିବିଶେଷ—
2 Name of a king of ancient Oudh.

**ତାରାପୁଞ୍ଜ**—ସ. ବ (ତାରା+ପୁଞ୍ଜ; ୬ଷ୍ଠୀ ତତ୍)—ଏକସ୍ଥାନରେ ପରସ୍ପର
Tārāpuñja ନିକଟରେ ଥିବା ନକ୍ଷତ୍ର ସମୂହ—A group of
(ତାରାବଳି (ଳୀ)—ଅନ୍ୟରୂପ) stars; galaxy; stellar group; constellation.

**ତାରାଭବ**—ସ. ବ—୧ । ବୁଧ—
Tārābhaba 1. The planet Mercury.
୨ । ଅଙ୍ଗଦ—2. The son of monkey-king Bāli.

ବଦାଇ ସୁମିତ୍ରାସୁତ ତାରାଭବ ସମ୍ମିତ ଅନ୍ତକେସ୍ ବଟିଗୋଟ
ଯୁଦ୍ଧ ସମ୍ମେଳେ—ଉପେନ୍ଦ୍ର ଭଞ୍ଜ. ବୈଦେହୀଶବିଳାସ ।

**ତାରାଭ**—ସ. ବ (ବହୁବ୍ରୀହି; ତାରା+ଆଭା)—ନାରଦ ମୁନି
Tārābha (ହି. ଶବ୍ଦସାଗର)—The sage Nārada.

**ତାରାଭୂଷା**—ସ. ବ. ସ୍ତ୍ରୀ (ତାରା ଭୂଷା; ବହୁବ୍ରୀହି)—ରାତ୍ରି—
Tārābhūshā The night

**ତାରାଭ୍ର**—ସ. ବ ( ତାର=ନିର୍ମଳ+ଅଭ୍ର=ମେଘ; ନିର୍ମଳ ମେଘ ପରି
Tārābhra ଶୁଭ୍ର)—କର୍ପୂର—Camphor.

**ତାରାମଣ୍ଡଳ**—ସଂ. ବ ( ତାରା+ମଣ୍ଡଳ=୬ଷ୍ଠୀ ତତ୍ )—୧ । ନକ୍ଷତ୍ର
Tārāmaṇḍaḷa ନକ୍ଷତ୍ରଙ୍କ ମିଶ୍ରଣରେ ହୋଇଥିବା ଆକାଶମଣ୍ଡଳ—1. The zodiac; the stellar orb.
୨ । ପ୍ରକାଣ୍ଡ ଦେବମନ୍ଦିର—2. A very big temple.
୩ । ଏକପ୍ରକାର ବାଣ ବା ଆତସବାଜୀ (ହି. ଶବ୍ଦସାଗର)—
3. A kind of fire-works.

ସାଧାରଣ ଲେଖେ ଅପର ପୃଷ୍ଠାରେ ୧ଚିହ୍ନ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭଣ୍ଡାରକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ଉପସ୍ଥ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଷ' ନ ମିଳିଲେ 'କୃଷ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଳଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ

**ତାରମାଳା**—ଦେ. ବି. (ବଣିଆ ଶବ୍ଦ)—ଜୁଡ଼ା ଉପରେ ବାନ୍ଧି ପିନ୍ଧାଯିବା
Tārāmālā ଅଳଙ୍କାରବିଶେଷ—A kind of ornament worn on the chignon.

**ତାରମୃଗ**—ସଂ. ବି. (ତାରା ଚିହ୍ନଯୁକ୍ତ ମୃଗ; ମ ପ. ଲୋ)—
Tārāmṛuga ୧ । ମାୟାମୃଗ; ଯେଉଁ ମୃଗରୂପଧାରୀ ରାକ୍ଷସକୁ ଦେଖି ସୀତା ପ୍ରଲୋଭିତ ହୋଇଥିଲେ—1. A starred deer (which was really a demon in disguise) by which Sitā was beguiled.
୨ । (ଜ୍ୟୋତିଷ) ମୃଗଶିରା ନକ୍ଷତ୍ର—2. The 5th constellation of stars in Hindu Astronomy.

**ତାରାୟଣ**—ସଂ. ବି. (୬ଷ୍ଠୀ ତତ୍; ତାରା+ଅୟନ=ମାର୍ଗ)—ଆକାଶ
Tārāyaṇa (ଦ୍ର. ଶବ୍ଦସାଗର)—The sky.

**ତାରସି**—ଦେ. (ପ୍ରାଚୀନ ପଦ୍ୟ) ବିଣ—ଶୁଭ୍ର—
Tārāsi White.

ପଦ୍ମ ପାଦକୁ ଗୋଟା । ଇନ୍ଦୁ ଶ ତାରସି । ପ୍ରାଚୀ. ବ୍ରହ୍ମାଣ୍ଡଭୂଗୋଳଗୀତା ।

**ତାରହାର**—ଦେ. ବି. (ବଣିଆ ଶବ୍ଦ) (ଭୁଲ. ଚନ୍ଦ୍ରହାର)—
Tārāhāra ଅଣ୍ଟାରେ ପିନ୍ଧିବା ସୁନା ବା ରୁପାର ଅଳଙ୍କାର—
তারাহার A kind of ornament or starred chain for the waist.

**ତାରି**—ଗ୍ରା. (ଇତର) ବି—(ବାଉରି କଣ୍ଡରା ଅଦି ଓ ବିଶେଷତଃ
Tāri ସେମାନଙ୍କର ସ୍ତ୍ରୀ ଲୋକମାନେ 'ଳ' ସ୍ଥାନରେ 'ର' ଉଚ୍ଚାରଣ କରିବା ଦୋଷରେ ଉଚ୍ଚାରିତ ଶବ୍ଦ) ତାଳି—Clapping.
ଦେ. ବିଣ—୧ । (ଏକ ଦୁଇ ତିନି ସଂଖ୍ୟାବାଚକ ଶବ୍ଦ ପରେ ଯୁକ୍ତ) ନଇଁରେ ପାଗ କରାଯାଉଥିବା ଯେଉଁ ସିରାରୁ ଧାର ବହେ—1. (boiling syrup) From which lines drop down when lifted up from the pot by means of a ladle.
(ଯଥା—ଏକ ତାରୁ; ଦୋତାରୁ ଚିନି ପାଗ ।)
[ଦ୍ର—ଚିନି ବା ଗୁଡ଼ର ପାଗ ହେଲା ବେଳେ କରେଇରୁ ଚଟୁ ଦ୍ୱାରା ପ୍ରଥମେ ଶିରାକୁ ଉଠାଇଲେ ତାହା ପତଳା ଥିବାରୁ ଚଟୁରୁ ତିନି ଧାରରେ ଖସେ, ଆଉରି ଟିକିଏ ବହଳ ହେଲେ ୨ ଧାରରେ ଖସେ; ପୁଣି ବେଶି ବହଳା ହେଲେ ଏକ ମାତ୍ର ଧାରରେ ଶିରା ଚଟୁରୁ ଖସେ; ଏହିପରି ପାଗ ହୋଇଥିବା ଶିରାକୁ ଯଥାକ୍ରମେ ତିନି ତାର ଦୋତାର ଓ ଏକତାର ଶିରା ବୋଲାଯାଏ ।]
୨ । (ସଂଖ୍ୟାବାଚକ ଶବ୍ଦ ପରେ ଯୁକ୍ତ) (ଏତେ) ତାରଯୁକ୍ତ—2. Having (so many) wires.
(ଯଥା—ଏକତାର ବା ଦୋତାର ସିଥାଁ ।)
୩ । ଯେଉଁ ମସିଣା ବା ଲୁଗାରେ ଏକା ବୁଣାରେ ଏକ, ଦୁଇ ବା ଚାରିଟି ସୂତା ଲାଗିଥାଏ)—3. (mat or cloth) In which one, two or four warps are joined and woven at one spinning.
(ଯଥା—ଦୋତାର ମସିଣା; ଚଉତାର ଲୁଗା ।)

**ତାରିଆ**—ଗ୍ରା. (ଇତର) ବି. (ଭୁଲ. ବାଢ଼ି ସ୍ଥଳରେ ବାର ଉଚ୍ଚାରଣ)—
Tāriā ତାଡ଼ିଆ (ଦେଖ)—Tāṛiā (See)

**ତାରିକ୍ ତାରିଝେଣାମ୍ ତାରିତା ତାରିଝେଣାମ୍**—ସଂ. ବି—
Tārik tārijheṇām tāritā tārijheṇām ନୃତ୍ୟର ଉକ୍ତି (ତାରୁଣିଟି ତାରୁଣିଟି ଧେ—ଅନ୍ୟରୂପ) ବା ଘାତ—
A measure or key word of songs uttered before singing the actual song.

**ତାରିକ**—ସଂ. ବି. (ତୃ ଧାତୁ ଣିଚ୍+ଇକ)—ଘାଟ ପାର ମାସୁଲ—
Tārika Fees paid for being ferried over.

**ତାରିକ(ଖ)**—ବୈଦେ. ବି. (ଆ. ତାରିଖ୍)—୧ । ମାସର ଦିନ—
Tārika (kha) 1. Date or day of the month.
তারিখ ୨ । (କଚେରିଆ) ମକଦମା ଶୁଣାଣି ହେବା ପୂର୍ବରୁ
तारीख निର୍ଦ୍ଧାରିତ ଦିନ—2. Date fixed for the hearing of a case.
[ଦ୍ର—ଏହାର ସାଙ୍କେତିକ 'ତା' । ତାରିଖ ଲେଖିବାର ନିୟମ ଏହିକି ପ୍ରଥମେ ତାରିଖର ପୂରଣ ସଂଖ୍ୟା, ତତ୍ପରେ ମାସର ପୂରଣ ସଂଖ୍ୟା ଓ ଶେଷରେ ବର୍ଷର ପୂରଣ ସଂଖ୍ୟା ଲେଖାଯାଏ ଓ ସମସ୍ତଙ୍କ ପୂର୍ବରେ 'ତା' ଲେଖାଯାଏ; ଯଥା—୧୯୩୩ ସାଲ ମାର୍ଚ୍ଚ ମାସ ପାଞ୍ଚ ତାରିଖ ଲେଖିବାକୁ ହେଲେ ତା ୫।୩।୧୯୩୩ ଲେଖାଯାଏ । ସାଧାରଣତଃ ଇଂରାଜି ମାସର ଦିବସକୁ ତାରିଖ ଓ ଓଡ଼ିଆ ଗଣନାର ମାସର ଦିବସକୁ ଦିନ ବୋଲାଯାଏ ।]

**ତାରିକ ଗଡ଼ା(ଡ଼େ)ଇବା**—ଦେ. କ୍ରି (କଚେରିଆ)—୧ । ମକଦମାକୁ ଅନ୍ୟ
Tārika gaṛā(ṛe)ibā ତାରିଖକୁ ଶୁଣାଣି ପାଇ ରଖିବା—
তারিখ গড়ান To adjourn a case to some other
तारीख टलाना date for hearing.
[ତାରିକ ଘୁଞ୍ଚା(ଞ୍ଚେ)ଇବା—ଅନ୍ୟରୂପ]

**ତାରିକ ଗଡ଼ିବା**—ଦେ. ବି. (କଚେରିଆ)—ମକଦମା ଶୁଣାଣି ନିମନ୍ତେ
Tārika gaṛibā ଅନ୍ୟ ତାରିଖ ଧାର୍ଯ୍ୟ ହେବା—
তারিখ ঘুঁচা Adjournment or postponement of a
तारिख टलाना case to some other date.

**ତାରିକ ପକା(କେ)ଇବା**—ଦେ. କ୍ରି (କଚେରିଆ) (ହାକିମ) ମକଦମା
Tārika pakā(ke)ibā ବିଚାର ପାଇଁ ଗୋଟିଏ ତାରିଖ ସ୍ଥିର
তারিখ ফেলা କରିବା—(an authority or Court)
तारिख डालना To fix a date for hearing of a case.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ୟ,ଶ | କ୍ଷ | ଜ୍ଞ | ଡ଼ | ଢ଼ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଣ | ଯ | ସ | ଚଁ | ଲ୍ୱ | ଞ | ନ୍ |

ତାରିଖ ପଡ଼ିବା—ଦେ. ବ (ଫେରସ୍ଥ)—ମକଦ୍ଦମା ଶୁଣାଣି ହେବା ପାଇଁ
Tārika pardibā ହାକିମଙ୍କ ଦ୍ୱାରା ତାରିଖ ନିର୍ଦ୍ଧାରିତ ହେବା—
তারিখ পড়া A case being fixed for hearing;
तारिख पड़ना fixing of a certain date.
(ତାରିଖ ହେବା, ତାରିଖ ଧାର୍ଯ୍ୟହେବା—ଅନ୍ୟରୂପ)

ତାରିକା—ସ. ବିଣ. ସ୍ତ୍ରୀ. ( ତାରକ+ସ୍ତ୍ରୀ.ଆ )—୧ । ତ୍ରାଣକର୍ତ୍ତ୍ରୀ—
Tārikā 1. Protectress; deliverer (female).
(ତାରକ—ପୁଂ) ସ. ବି. ( ତାଲ+କ+ସ୍ତ୍ରୀ. ଆ; ଲ ସ୍ଥାନରେ ର ଆଗମ )—୨ । ତାଲ ରସ; ତାଡ଼ୀ—2 Toddy.

ତାରିଣୀ—ସ. ବିଣ.ସ୍ତ୍ରୀ. (ତୃ ଧାତୁ ଣିଚ=ତାର+କର୍ତ୍ତୃ. ଇନ୍+ସ୍ତ୍ରୀ.ଈ)—
Tāriṇi ୧ । ରକ୍ଷକର୍ତ୍ତ୍ରୀ—1 Protecting (female).
୨ । ତ୍ରାଣକର୍ତ୍ତ୍ରୀ—2. Delivering (female)-
ବି. ସ୍ତ୍ରୀ—୧ । ଦୁର୍ଗା—1. Goddess Durgā.

ସଙ୍କଟ କାଳରେ ଯାହା ହୋଇଲି ସେ ମେତେ
ତାର ସେ ତାରିଣୀ ନାମ କୋଲଅ ଜଗତେ ।
ବସ୍ତୁହାଅ. ବଡଂଶୁମାଦୁଣ ;

୨ । ତାରଣକର୍ତ୍ତ୍ରୀ ସ୍ତ୍ରୀ—2. Deliverer (woman).
୩ । ରକ୍ଷାକର୍ତ୍ତ୍ରୀ ସ୍ତ୍ରୀ—3. Saviour (woman).
ଦେ. ବି—ଗଞ୍ଜାମର ଯାହାଡ଼ବିଶେଷ; ଯହିଁରେ ତାରା ତାରିଣୀ ଦେବୀ ପ୍ରତିଷ୍ଠିତ—Name of a hill in Ganjam where the Deity ( Goddess ) Tārā Tāriṇi is established.
ପ୍ରାଦେ. (ସମ୍ବଲପୁର) ବି—ତାରିଣୀ ମଙ୍ଗଳବାର ଦିନ ସ୍ତ୍ରୀ ଲୋକମାନେ ହାତରେ ଯେଉଁ ଦୁବ-ସୂତା ବାନ୍ଧନ୍ତି—The amulet-string worn round the arm by females on the Tāriṇi tuesday.

ତାରିଣୀ ମଙ୍ଗଳବାର—ପ୍ରାଦେ (ସମ୍ବଲପୁର) ବି—
Tāriṇi maṅgaḷabāra ଗୁଣ୍ଡିଚ୍ଚାର ପରବର୍ତ୍ତୀ ମଙ୍ଗଳବାର—
The tuesday following the Puri Ratha-jātrā or car festival.
[ ଦ୍ର—ସ୍ତ୍ରୀଲୋକେ ଉପବାସ କରି ତାରିଣୀ ଠାକୁରାଣୀଙ୍କୁ ପୂଜା କରନ୍ତି ଏବଂ ହାତରେ ତାରିଣୀ ଦୁବ ସୂତା ବାନ୍ଧନ୍ତି ।]

ତାରିପ୍(ଫ୍)—ଦେ. ବି· ( ଅ. ତାରିଫ୍ )—୧ । ପ୍ରଶଂସା—
Tārip ph) 1. Praise; applause.
ତାରିପି } ଅନ୍ୟରୂପ ୨ । ଉତ୍କୃଷ୍ଟତା—2. Excellence.
ତାରିଫ } ବିଣ—୧ । ଉତ୍କୃଷ୍ଟ—1. Excellent.
তারিফ ୨ । ପ୍ରଶଂସିତ—2. Praise-worthy; praised;
तारीफ applauded.
କ୍ରି. ବିଣ—ଉତ୍କୃଷ୍ଟ ରୂପେ—Excellently.

ତାରିଫ୍ କରିବା—ଦେ. କ୍ରି—୧ । ପ୍ରଶଂସା କରିବା—
Tāriph karibā 1. To speak highly of; to praise.
তারিফ করা ୨ । ଆତ୍ମ ପ୍ରଶଂସା କରିବା—
तारीफ करना 2. To praise one's self.

ତାରିବା—ଦେ. କ୍ରି. ( ତୃ ଧାତୁ=ପାର ହେବା; ଣିଚ ତାରି ଧାତୁ=
Tāribā ପାର କରିବା )—୧ । ଉଦ୍ଧାର କରିବା—
(ମାରିବା—ଉପସର୍ଗ) 1. To deliver; to rescue.
তারা
तारना

ଧର୍ମ ହିଁ ସେ ସେବକୁ ଏ ସଂସାରୁ ତାରେ
ତାହୁଁ ତ ବଡ଼ ପ୍ରଭୁ ନ ଥିଲା ଆଉରେ ସୁଜରେ ।
ବୃନ୍ଦାବତ, ମହାଭାରତ, ବନ ।

୨ । ଉଦ୍ଧାର କରିବା; ରକ୍ଷା କରିବା—2. To save.
୩ । ପାର କରିବା—
3. To take across; to ferry across.
୪ । ବନ୍ଧନାଦିରୁ ମୁକ୍ତ କରିବା—
4. To release from bondage.
୫ । ସଂସାର ବନ୍ଧନରୁ ମୁକ୍ତ କରିବା—5. To redeem.
୬ । ଘଷି କରିବାପାଇଁ ଗୋବରକୁ ପିଠା ପରି ଭୂମିରେ ବସାଇବା; ପାରିବା—6. To lay lumps of cow-dung on the ground for drying ( to be used as fuel ).
( ଯଥା—ଘଷି ତାରିବା । )
୭ । ଫେରିବା—7. To counteract.

ପ୍ରାଣିର ବଧ ପ୍ରାଣେ ଥାଏ
କାହୁଁ ତାରିବ ଯଜ୍ଞ ଦେଉ । ଜଗନ୍ନାଥ, ଭାଗବତ ।

୮ । ବାହାର କରିବା; ଉତାରିବା—8. To take out.

ତାହାର ହସ୍ତେ ସେ ଧରଣ କରେ । ପ୍ରାଚୀ, ପରନ୍ଦେ ଗାଥା ।

ପ୍ରାଦେ. (ପଡ଼ଜାତ) କ୍ରି— ବଢ଼େଇ ବାଇସି ଦ୍ୱାରା ବା କରତ କରତ ଦ୍ୱାରା ବଡ଼ କାଠର ପାଖ ଛେଲିବା—
To scrape off slips of wood from the sides of a log with the adze or saw.

ତାରୁ—ପ୍ରାଦେ. (ଗଞ୍ଜାମ) ବୈଦେ. ବି. (ଇଂ. ଟାର୍)—
Tāru ଅଲକାତରା; କୋଲ୍‌ଟାର୍—Coal tar.

ତାରୁଣ୍ୟ—ଦେ. ବି. କ୍ଲୀ· ( ତରୁଣ=ଯୁବା+ଭାବାର୍ଥ, ଯ )—
Tāruṇya ତରୁଣତା; ଯୌବନାବସ୍ଥା—Youth

ତାରେ—ଦେ. (ପଦ୍ୟ) ସର୍ବ (ତତ୍ ଶବ୍ଦଜ; ଅନାଦରାର୍ଥେ ୨ୟା ୧ବ)—
Tāre ତାହାକୁ—Him; to him or her.
তারে

ତାରେକ—ଗ୍ରା. ବିଣ ଓ ବି. (ସ. ତାରକ)—ତାରକ (ଦେଖ)
Tāreka Tāraka ( See )

ତାରେଣୀ—ଗ୍ରା. ବି. ସ୍ତ୍ରୀ. ( ସ. ତାରିଣୀ )—
Tāreṇi ୧ । ଦେବୀବିଶେଷ—
1. Name of a village-Goddess.
୨ । ସ୍ତ୍ରୀ ଲୋକମାନେ ଉପବାସ କରି ବାହୁରେ ବା ବେକରେ ଯେଉଁ ଦୁବସୂତା ବାନ୍ଧନ୍ତି—A string tied round the arm or neck by females observing vows.
ଦେ. ବିଣ—ତାରିଣୀ (ଦେଖ)—Tāriṇi (See)

ଯୁକ୍ତାକ୍ଷର ଦେଖିବାରେ ସୁବିଧା ନିମନ୍ତେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଠ ସ୍ଥାନରେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଷ' ନ ମିଳିଲେ 'କୃଶ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତାରେୟ**—ସ. ବି. ପୁଂ. ( ତାରା+ଅପତ୍ୟାର୍ଥେ. ଏୟ )—
Tāreya ୧ । ବାଳୀର ପୁତ୍ର ଅଙ୍ଗଦ—1. Aṅgada, son of Bāḻi ( through Tārā).
୨ । ବୁଧ—2. The planet Mercury.

**ତାର୍କିକ**—ସ. ବିଣ. ( ତର୍କ+ଜ୍ଞାନାର୍ଥେ. ଇକ )—
Tārkika ୧ । ତର୍କଶାସ୍ତ୍ରଜ୍ଞ. ନ୍ୟାୟବିଶାରଦ; ଦାର୍ଶନିକ—
1. Versed in logic or philosophy.
୨ । ତର୍କପ୍ରିୟ; ତର୍କପଟୁ – 2. Argumentative; Polemic; logical; sophistic.
୩ । ଆଇନ୍ ଅଧ୍ୟୟନକାରୀ—
3. Studying the law.

**ତାର୍କ୍ଷ**—ସ. ବି. ( ତୃକ୍ଷ୍ ଧାତୁ+ଅ )—୧ । କଶ୍ୟପ ମୁନି—
Tārksha 1. Sage Kaśyapa.
୨ । କଶ୍ୟପଙ୍କ ପୁତ୍ର ଗରୁଡ଼ (ଦ୍ର. ଶବ୍ଦସାଗର)—
2. A name of the king of birds, the son of Kaśyapa.

**ତାର୍କ୍ଷଜ**—ସ. ବି.—ରସାଞ୍ଜନ (ଦ୍ର. ଶବ୍ଦସାଗର)—
Tārkshaja Antimony.
(ତାର୍କ୍ଷ୍ୟଜ, ତାର୍କ୍ଷ୍ୟଶୈଳ—ଅନ୍ୟରୂପ)

**ତାର୍କ୍ଷୀ**—ସ. ବି. ସ୍ତ୍ରୀ—ପାତାଳଗରୁଡ଼ୀ ଲତା—
Tārkshī A medicinal creeper; Cocculus Villosus.

**ତାର୍କ୍ଷ୍ୟ**—ସ. ବି ( ତୃକ୍ଷ୍ ଧାତୁ=ଗମନ କରିବା+ପଟୁତାର୍ଥେ. ଯ; କିମ୍ବା
Tārkshya ତର୍କ୍ଷ୍ୟ=କଶ୍ୟପମୁନି+ଅପତ୍ୟାର୍ଥେ. ଅ; କିମ୍ବା ତୃକ୍ଷ ମୁନି+ଗୋତ୍ରଜାର୍ଥେ. ଯ)—୧ । ଘୋଡ଼ା—
1. A horse.
୨ । ଗରୁଡ଼—2. A name of Garuṛda the mythological bird which carries Bishṇu.
୩ । ସର୍ପ—3. Serpent.
୪ । ଅରୁଣ—4. The charioteer of the Sun-god.
୫ । ଅର୍ଜୁନ—5. Arjuna.
୬ । ରଥ—6. A car.
୭ । ସ୍ୱର୍ଣ୍ଣ—7. Gold.
୮ । ଶାଳ ଗଛ—8. The Śāḻa tree; Shorea Robusta.
୯ । ଅଶ୍ୱକର୍ଣ୍ଣ ଗଛ; ଏକଜାତୀୟ ଶାଳବୃକ୍ଷ—
9. Name of a kind of Śāḻa tree.
୧୦ । କୃଷ୍ଣ ଲୋହିତବର୍ଣ୍ଣ; ରକ୍ତବର୍ଣ୍ଣ—
10. Dark red colour.
୧୧ । ରସାଞ୍ଜନ—11. Antimony.
୧୨ । ତୃକ୍ଷମୁନିଙ୍କ ଗୋତ୍ରଜ ବ୍ୟକ୍ତି (ଦ୍ର. ଶବ୍ଦସାଗର)—
12. A person born in the family of sage Tṛuksha.
୧୩ । ମହାଦେବ (ଦ୍ର. ଶବ୍ଦସାଗର)—13. Śiba.
୧୪ । ବାହନ—14. Conveyance.

**ତାର୍କ୍ଷ୍ୟ ଧ୍ୱଜ**—ସ. ବି. ପୁଂ ( ତାର୍କ୍ଷ୍ୟ+ଧ୍ୱଜ; ବହୁବ୍ରୀହି)—ଗରୁଡଧ୍ୱଜ;
Tārkshya dhwaja ବିଷ୍ଣୁ—Bishṇu.

**ତାର୍କ୍ଷ୍ୟ ନାୟକ**—ସ. ବି (୭ମୀ ତତ୍; ତାର୍କ୍ଷ୍ୟ=ବାହନ+ନାୟକ ଶ୍ରେଷ୍ଠ)
Tārkshya nāyaka ଗରୁଡ଼—Bishṇu's carrier bird

**ତାର୍ତ୍ତୀୟିକ**—ସ. ବିଣ. (ତୃତୀୟ+ସ୍ୱାର୍ଥେ, ଇକ)—ତୃତୀୟ—
Tārttīyika Third.

**ତାର୍ଯ୍ୟ**—ସ. ବିଣ. ( ତୃ ଧାତୁ=ପାର ହେବା+କର୍ମବାଚ୍ୟେ. ଯ)—
Tārjya ତରଣୀୟ; ପାର ହେବାର ଉପଯୁକ୍ତ—Fit to be crossed; that which can be crossed.
ବି—ନଦୀଆଦି ପାର ହେବାର ଶୁଳ୍କ; ଘାଟମାସୁଲ—
Fees for crossing a ferry; ferry-toll.

**ତାଲ୍**—ପ୍ରାଦେ. (ବାମଣ୍ଡା, ଅଠମଲ୍ଲିକ) ବି—ନିରର୍ଥକ ବାକ୍ୟାଂଶ;
Tāl ଚ; ତ—A redundant particle added to words to give emphasis.
(ଯଥା—ଗାଡ଼ି ନଦେ ତାଲ୍ ପହଁରେ=ଗାଡ଼ି ପହଞ୍ଚ ନାହିଁ ।)

**ତାଲ**—ସ. ବି. (ତଲ୍ ଧାତୁ=ପ୍ରତିଷ୍ଠିତ ହେବା; ଉନ୍ନତ ହେବା+କରଣ.
Tāḻa ଅ; ଯହିଁରେ ଗୀତବାଦ୍ୟ ଓ ନୃତ୍ୟ ପ୍ରତିଷ୍ଠିତ ହୁଏ; ମତାନ୍ତରରେ ହରଙ୍କ ନୃତ୍ୟ, 'ତାଣ୍ଡବ'ର ଆଦ୍ୟ ଅକ୍ଷର 'ତା' ଓ ଗୌରୀଙ୍କ ନୃତ୍ୟ 'ଲାସ୍ୟ'ର ଆଦ୍ୟ 'ଲ' ଏହି ଅକ୍ଷରଦ୍ୱୟର ମିଶ୍ରଣରେ ଏ ଶବ୍ଦ ଗଠିତ)—୧ । ଗୀତ, ବାଦ୍ୟ ଓ ନୃତ୍ୟ ବିଷୟରେ କାଳକ୍ରିୟାର ପରିମାଣ ବିଶେଷ; ଗୀତବାଦ୍ୟର ବିଶ୍ରାମ ସ୍ଥଳ; ସଙ୍ଗୀତର ତାଳକ୍ରିୟାମାନ—1. Time or measure in music and dancing; beating of time to music.
[ ଦ୍ର—ଗାନ ଓ ବାଦ୍ୟରେ ଯେଉଁ ଯେଉଁଠାରେ ଜୋର୍ ପଡ଼େ ତାହାକୁ ତାଲ ବୋଲାଯାଏ । ସଂସ୍କୃତ ସଙ୍ଗୀତ ଗ୍ରନ୍ଥରେ ତାଲ ୨ ପ୍ରକାର; ଯଥା—ମାର୍ଗ ଓ ଦେଶୀ । ଭରତ ମୁନିଙ୍କ ମତରେ ମାର୍ଗର ସଂଖ୍ୟା ୬୦ ଓ ଦେଶୀର ସଂଖ୍ୟା ୧୨୦ । ଗୀତ ବୋଲା ହେବାବେଳେ ତାଲ ଦେବାପାଇଁ ତାଳ, ଗିନି, ମୃଦଙ୍ଗ, ଢୋଲ, ମର୍ଦ୍ଦଳ, ତବଲାଆଦି ବ୍ୟବହୃତ ହୁଏ । ଗୀତବାଦ୍ୟ ଓ ନୃତ୍ୟର ନାମ ସଙ୍ଗୀତ; ସଙ୍ଗୀତରେ ଛନ୍ଦ ପ୍ରକାଶ କରିବା ପାଇଁ କାଳ ପରିମାଣର ପ୍ରୟୋଜନ, କାଳ ପରିମାଣ କରିବାପାଇଁ ତାଲର ପ୍ରୟୋଜନ । କରତାଳ ବା କିଛି କିଛି ସମୟ ବ୍ୟବଧାନରେ କରାଯିବା ଆଘାତ-ଦ୍ୱାରା କାଳ ଜ୍ଞାପିତ ହୁଏ; ଏହି ଆଘାତ କରିବାର ନାମ ତାଲ ଦେବା । ଗାନରେ ପଦ ଥାଏ । କାଳ ପରିମାଣ ବ୍ୟତୀତ ପଦ ହୁଏ ନାହିଁ । ଯେଉଁ ପରିମିତ କାଳକୁ ଏକକ ରୂପେ ଧରାଯାଏ ତାହା ମାତ୍ରା । ମାତ୍ରାମାନଙ୍କ ସମଷ୍ଟି ପଦ, ଅଥବା ପଦର ଗୁରୁ ଲଘୁ ଉଚ୍ଚାରଣକାଳର ନାମ ମାତ୍ରା । ପୁନଃ ପୁନଃ ଏକ ନିୟମରେ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | | ଂ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଉପ | ନ୍ଥ | ଘ |
| ୬ | ଠ | ଭ | କ୍ଷ | ଲ୍ଲ | ସ୍ପେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟଁ୍ୟ | ଚଅ | ଢ଼ | ନ |

ଗୁରୁଲଘୁ ଉଚ୍ଚାରଣ ବିଶିଷ୍ଟ ପଦର ନାମ ଛନ୍ଦ । ଗାନର ଛନ୍ଦର ଯେଉଁ ପଦରେ ପ୍ରସ୍ୱନ ବା ବଳନ୍ୟାସ କରିବାକୁ ହୁଏ, ଅଘାତ ଦ୍ୱାରା ତାହା ପ୍ରଦର୍ଶନ କରିବାକୁ ତାଳ ଦେବାର ଉଦ୍ଦେଶ୍ୟ । ଅଧିକ ବଳ ସହିତ ଉଚ୍ଚାରଣ ସ୍ଥାନର ନାମ ସମ; ତାଳର ଶେଷ ବା ଅବକାଶ ସ୍ଥାନର ନାମ ଫାଙ୍କ । ପ୍ରଚଳିତ ତାଳରେ ୪ ପଦ ଥାଏ । ତିନି ପଦରେ ତାଳ ବା ଅଘାତ ଦିଆଯାଏ, ଶେଷ ପଦରେ ଅନାଘାତ ବା ଫାଙ୍କ ଦିଆଯାଏ । ଦ୍ୱିତୀୟ ତାଳ—ସମ; ତାଳର ଯେଉଁ ସ୍ଥାନରେ ଅଘାତ ଦେବାର ନିୟମ ଛନ୍ଦର ସେ ସ୍ଥାନରେ ପ୍ରସ୍ୱନ ନ ଥିଲେ ଅଡ଼ (ସ. ଅସ୍ୱନ); ଯେଉଁ ତାଳର ପ୍ରତ୍ୟେକ ପାଦକୁ ୪ ସମାନ ଅଂଶରେ ବିଭାଗ କରାଯାଇ ପାରେ ତାହା ଚତୁର୍ମାତ୍ରିକ ତାଳ (ଯଥା—କାହାଲି । ଯେଉଁ ତାଳର ପ୍ରତ୍ୟେକ-ପଦକୁ ୩ ସମାନ ଅଂଶରେ ଭାଗ କରାଯାଇ ପାରେ ତାହା ତ୍ରୈମାତ୍ରିକ ତାଳ (ଯଥା—ଏକତାଳ) । ଯେଉଁ ତାଳର ପଦରେ ମାତ୍ରା ସଂଖ୍ୟା ଅସମାନ ତାହା ବିଷମମାତ୍ରିକ (ଯଥା—ଯତ୍); ଯୋଗେଶଚନ୍ଦ୍ରଙ୍କ ଉଦ୍ଧୃତ କୃଷ୍ଣଧନ ବନ୍ଦ୍ୟୋପାଧ୍ୟାୟ । ]

୨ । ସ୍ୱନାମପ୍ରସିଦ୍ଧ ସ୍ତମ୍ଭବତ୍ ଦୀର୍ଘ ତରୁ ଓ ତାହାର ଫଳ ବିଶେଷ—2. The palmyra palm and its fruit; the fan-palm and its fruit; Talipot palm; Borassus Flabellifer.

ତାଳ
ताड़, ताल
ସ. ନାମ, ତାଳଦ୍ରୁମ, ତୃଣ-ରାଜ, ଧ୍ୱଜଦ୍ରୁମ, ଦୀର୍ଘସ୍କନ୍ଧ, ଦୀର୍ଘପତ୍ର, ଲେଖ୍ୟପତ୍ର, ମଦୋଦ୍ଧତ, ପତ୍ରୀ, ମଧୁରସ, ଗୁଚ୍ଛପତ୍ର, ମଦାଢ୍ୟ, ଦୀର୍ଘ-ପାଦପ, ଅସବଦ୍ରୁ, ତରୁ-ରାଜ, ଚିରାୟୁ,
ମ. ଓ ଗୁ. ତାଡ଼
ତା. ପନନ
ଫା. ତାଲ
ଆ. ତାର

[ ଦ୍ର—ଏହା ଗ୍ରୀଷ୍ମପ୍ରଧାନ ଦେଶର ଗଛ; ଶ୍ୟାମବର୍ଣ୍ଣ, ଲମ୍ବା, ବ୍ରହ୍ମଦେଶ ସୁମାତ୍ରା, ଯାବା ଆଦି ଦ୍ୱୀପ, ପାରସ୍ୟ ଉପସାଗର ତଟବର୍ତ୍ତୀ ଦେଶରେ ଏ ଗଛ ବହୁତ ଦେଖାଯାଏ । ଏ ଗଛର ଅଗରେ ବାହୁଙ୍ଗା ଧରେ । ତାଳ ଗଛ ପ୍ରାୟ ୬୦ ହାତ ଉଚ୍ଚ ହୁଏ; ମାତ୍ର ଏହାର ବ୍ୟାସ ୨ ଫୁଟରୁ ବେଶୀ ହୁଏ ନାହିଁ । ଚୈତ୍ର ମାସରେ ଫୁଲ ଓ ବୈଶାଖରେ ଫଳ ହୁଏ ଓ ଶ୍ରାବଣ ଭାଦ୍ରବକୁ ଫଳ ପାଚେ । ଶ୍ୱେତ କଞ୍ଚା ଫଳର ଖୋପାକୁ ଛେଲିଲେ ତାହା ମଧ୍ୟରୁ କୋମଳ ଓ ସୁସ୍ୱାଦୁ ଶସ (ତାଳସଜ) ବାହାରେ । ପାଚିଲା ଫଳରୁ ଯେଉଁ ଘନ ରସ ବାହାରେ ତାହା ବଡ଼ ଗୁରୁପାକ । ଲୋକେ ଏହି ରସକୁ ଗୁଡ଼ ଚାଉଳ ଚୂନା ଆଦିରେ ମିଶାଇ ପିଠା କରି ଖାଆନ୍ତି । ଗଛର ପତ୍ର ଗୁଡ଼ିକ ଏକତ୍ର ଲିପ୍ତ ହୋଇ ଛତା ପରି ହୋଇଥାଏ । ଏହି ପତ୍ରକୁ ଚିରି ଗୋଟି ଗୋଟି କରି ତହିଁରେ ଲେଖନ ସାହାଯ୍ୟରେ ଲେଖିବାର ରୀତି ଏ ଦେଶରେ ପ୍ରାଚୀନ କାଳରୁ ଚଳି ଆସୁଅଛି । ପୂର୍ବେ ତାଳପତ୍ରରେ ବହୁତ ଗ୍ରନ୍ଥ ଲେଖା ଯାଉଥିଲା । କାଗଜର ବ୍ୟବହାର ହେବାରୁ ତାଳପତ୍ରରେ ଲେଖାଲେଖି କମି ଯାଇଅଛି । ଏହି ପତ୍ରରେ ଝାମ୍ପ, ଛତା, ପଙ୍ଖା, ଟାଟି, ପଖିଆ, ପେଟୀ ଆଦି ତିଆରି ହୁଏ ଓ ଘରଛପର କରାଯାଏ । ଏ ଦେଶର ବ୍ରାହ୍ମଣମାନଙ୍କ ମଧ୍ୟରେ ମଧ୍ୟ ତାଳପତ୍ର ଛତାର ବ୍ୟବହାର ଅଦ୍ୟାପି ରହିଅଛି । ତାଳବାହୁଙ୍ଗାର ଶିଠିରୁ ଓ ପେଟରୁ ଖୁବ ଟେମଡ଼ା ଲଇ ବାହାରେ । ପାକଲଗଛର ଗଣ୍ଡିକୁ ଚିରି ଖେଣୀ ଓ ଭୂମ୍ବ କରାଯାଏ; ଏହା ଲୁହାକାଠ ପରି ମଜବୁତ୍ । ତାଳଗଛର ଗଣ୍ଡିକୁ ଚିରି କରି ହୁଲଡଙ୍ଗା, ଜୋଧା ଓ ପାଣି ବୋହିବା ନଳା କରାଯାଏ । ଦାକ୍ଷିଣାତ୍ୟ ଓ ବଙ୍ଗଦେଶରେ ଏ ଗଛର ପୁଷ୍ପକୋଷର ଅଗ୍ରଭାଗକୁ କାଟି ସେଥିରୁ 'ତାଡ଼ୀ' ବାହାର କରାଯାଏ ଓ ଏ ରସରୁ ମଧ୍ୟ ଗୁଡ଼ ଓ ମିଶ୍ରୀ ଆଦି କରାଯାଏ । ଏ ଗଛ ଅଣ୍ଡିରା ଓ ମାଈ ଭେଦରେ ଦୁଇ ପ୍ରକାର । ମାଈଗଛ ଫଳ ଧରେ, ମାତ୍ର ଅଣ୍ଡିରା ଗଛରେ କେବଳ ଜଟା ହୁଏ । ଖଜୁରୀ, ନଡ଼ିଆ ଓ ଗୁଆଗଛ ଏହି ଶ୍ରେଣୀର । ପାଚିଲା ତାଳର ଟାକୁଆ ବା ମଞ୍ଜିରୁ ଗଜା ବାହାରିଲାବେଳେ ତାକୁ ହାଣିଲେ ତହିଁ ମଧ୍ୟରୁ ଯେଉଁ ସ୍ନିଗ୍ଧ ଶସ ବାହାରେ ତାକୁ ତାଳଶୁଙ୍କୁ କହନ୍ତି । ବୈଦ୍ୟକ ମତରେ ପକ୍ୱ ତାଳ ପିତ୍ତ, ରକ୍ତ ଓ କଫ ବର୍ଦ୍ଧକ, ଦୁଷ୍ପାଚ୍ୟ, ବହୁମୂତ୍ର-ଜନକ, ତନ୍ଦ୍ରାକାରକ, ଅଭିଷ୍ୟନ୍ଦୀ ଓ ଶୁକ୍ରବର୍ଦ୍ଧକ । ତାଳସଜ କିଞ୍ଚିତ ମଦକାରକ, ଲଘୁ, କଫବର୍ଦ୍ଧକ, ବାତଘ୍ନ, ଦୈତ୍ରନାଶକ, ସ୍ନିଗ୍ଧ, ମଧୁରରସ ଓ ସାରକ; ତାଳରସ ବା ତାଡ଼ୀ ଅତ୍ୟନ୍ତ ମତ୍ତତା-ଜନକ ଓ ଏହା ବାସୀ ହେଲେ ଖଟ୍ଟା ହୁଏ ଓ ପିତ୍ତବର୍ଦ୍ଧକ ଏବଂ ବାତଦୃଷ୍ଟିନାଶକ ହୁଏ—ଦେବେନ୍ଦ୍ର, ନଗେନ୍ଦ୍ର ଦ୍ରବ୍ୟଗୁଣ ]

୩ । ହରିତାଳ—3. The yellow orpiment.

୪ । ଦୁଇ କରତଳର ପରସ୍ପର ଅଘାତଜନିତ ଶବ୍ଦ ବା ତାଳି; ବାହୁ, ଜଂଘ ଓ ପିଠିରେ କରତଳଦ୍ୱାରା ମାରିବା ଚଟ୍ଚଟ୍; ପାଦକୁ ଭୂମିରେ ପକାଇବା ଦ୍ୱାରା କରାଯିବା ଶବ୍ଦ ଏବଂ ବୁଢ଼ା ଅଙ୍ଗୁଠି ଓ ମଝି ଅଙ୍ଗୁଠି ଦ୍ୱାରା କରାଯିବା ଶବ୍ଦ—4. The sound produced by clapping or beating the body with palms or by fingers or by foot-steps on the ground.

୫ । ଖଡ୍ଗ ମୁଷ୍ଟି; ଖଣ୍ଡାର ମୁଠା—5. The handle of a sword.

୬ । ହାତର ବୃଦ୍ଧାଙ୍ଗୁଳ ଓ ମଧ୍ୟମାଙ୍ଗୁଳର ପ୍ରସାରର ପରିମାଣ—6. The short span measured by spreading the thumb and the middle finger of the hand.

୭ । ମନୁଷ୍ୟର ପାଦ ଠାରୁ ହାତ ପର୍ଯ୍ୟନ୍ତ ଉଚ୍ଚତାର ପରିମାଣ; ଏକ ପୁରୁଷର ଉଚ୍ଚତା—7. A man's height or depth.

ମୂର୍ଖ ହୋଇବାକୁ ତ ବଳିବା ହୋଇ
ସାତତାଳ ପକୁଏ ବଳକୁ ଡିଆଇ—ଜଗନ୍ନାଥ ମହାଭାରତ, ଶାନ୍ତି ।

୮ । ଦୁର୍ଗାଙ୍କ ସିଂହାସନ—8. The throne of the Goddess Durgā.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚକ୍ରର ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚକ୍ରର ବଦଳରେ ୨ ବା ୧ ଚକ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଡ଼' ଖୋଜିବେ, କୃଷ ନ ମିଳିଲେ 'କୃଶ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

୯ । ବେଗ—9. Velocity.

୧୦ । କରତଳ; ଚାପୁଡ଼—10. Palm of the hand.

୧୧ । କଂସାରେ ତିଆରି ବାଦ୍ୟ, ଗିନି ଓ ଝାଞ୍ଜ—11. Cymbals.

ସଜାଇ ବାଦ୍ୟ ଘଣ୍ଟା ନେଇ ତାଳ ଛନ୍ଦ'ର ସେ ତାଳେ—
ଯଶୋବନ୍ତ. ପ୍ରେମଭକ୍ତି ବ୍ରହ୍ମଗୀତା ।

୧୨ । ତାଳପତ୍ର—12. Palm leaf.

୧୩ । ଭୂତଯୋନିବିଶେଷ; ଶିବାନୁଚର—13. Name of certain spirits, the attendants of Śiba.

୧୪ । (ଶିଳ୍ପଶାସ୍ତ୍ର) କପାଳଠାରୁ ଚିବୁକ ପର୍ଯ୍ୟନ୍ତ ଲମ୍ବ ମାପ—14. (architecture) A lineal measure from the skull to the extremity of the chin.

୧୫ । (ଶିଳ୍ପଶାସ୍ତ୍ର) ମଧ୍ୟମାଙ୍ଗୁଳିର ଅଗଠାରୁ କରତଳ ବା ହାତର ଆରମ୍ଭ ପର୍ଯ୍ୟନ୍ତ ଦୈର୍ଘ୍ୟ—15. (Architecture) The measure of the space between the tip of the middle finger and the wrist.

[ ଦ୍ର—ଏହି ମାପରେ ପ୍ରତିମାମାନ ନିର୍ମିତ ହୁଅନ୍ତି । ଦେବମୂର୍ତ୍ତିର ଉଚ୍ଚତା—୯ ତାଳ, ଗ୍ରହମୂର୍ତ୍ତିର ଉଚ୍ଚତା—୧୦ ତାଳ, କୁବେର ଓ ନବଗ୍ରହମୂର୍ତ୍ତିର ଉଚ୍ଚତା—୯½ ତାଳ, ମାନବମୂର୍ତ୍ତିର ଉଚ୍ଚତା—୮ ତାଳ । ଭୁବନେଶ୍ୱରର ଦେବମୂର୍ତ୍ତିମାନ ୭ ତାଳ ଉଚ୍ଚ । ]

୧୬ । ମଲ୍ଲମାନଙ୍କର ନିଜ ନିଜ ଜଂଘ ବା ବାହୁରେ ନିଜ କରତଳଦ୍ୱାରା ମାରିବା ଧ୍ୱନି; ବାହାସ୍ଫୋଟ (ହି. ଶବ୍ଦସାଗର)—16. The sound produced by strongly patting the thighs or arms by a wrestler before wrestling.

୧୭ । ତାଳୀଶ ପତ୍ର (ଦେଖ) (ହି. ଶବ୍ଦସାଗର)—17. Tā̤līśa patra (See)

୧୮ । ଚଷମାରେ ଲାଗିଥିବା ପଥର ବା କାଚର ଏକଖଣ୍ଡ (ହି. ଶବ୍ଦସାଗର)—18. One of the bits of stone or glass set on a pair of spectacles.

୧୯ । ତାଲା; କୋଲପ (ହି. ଶବ୍ଦସାଗର)—19. Padlock.

୨୦ । ବେଲ; ବିଲ୍ୱଫଳ (ହି. ଶବ୍ଦସାଗର)—20. Marmalos fruit.

୨୧ । ନରକବିଶେଷ (ହି. ଶବ୍ଦସାଗର)—21. Name of a hell.

୨୨ । ମହାଦେବ (ହି. ଶବ୍ଦସାଗର)—22. Śiba.

ସଂ. ବିଣ—୧ । ବିସ୍ତୃତ—1. Extended.

୨ । ସ୍ତୂପୀକୃତ—2. Amassed.

୩ । ବୃହତ—3. Large; great

ଦେ. ବି—୧ । (ଘୋଡ଼ା, କୁକୁର ଆଦି) ପଶୁଙ୍କର ସଙ୍ଗମ—1. Cohabitation or crossing of beasts (e.g. dog, horse).

୨ । ଏକମେଳ ହେବା—2. Tallying.

୩ । ଚଟା—3. Fist-blow.

୪ । ପ୍ରତିଯୋଗିତା—4. Rivalry; emulation.

ତାଲ—ପ୍ରାଦେ. (ସମ୍ବଲପୁର) ବି—ତାଳ (ଦେଖ)
Tāla — Tā̤la (See)

ତାଳ ଅଂଶ—ଦେ. ବି (ସଂ. ତାଳ+ଅଂଶୁ)—ତାଳ ଗଛର ଗଣ୍ଡିର ଆବରଣ ଅଂଶରେ ଥିବା ଯୋଡ଼ ଟାଣ ତନ୍ତୁ—The hard fibres of the bark and trunk of a palm tree.
Tā̤la aṁśā
তালের আংশ
ତାଳ ଅଂଷ }
ତାଳ ଅଂଶୁ }—ଅନ୍ୟରୂପ
তালচোঁচ तालकारेसा

[ଦ୍ର—ଯେଉଁ ତାଳଗଣ୍ଡିର ଅଂଶ ଯୋଡ଼ ବା ପାକଳ ହୋଇଥାଏ ତାହା ଭାରି ଟାଣୁଆ ଓ ଚିରସ୍ଥାୟୀ । ଲୋକେ ଏ ତାଳଗଣ୍ଡିକୁ ଫାଳ ଫାଳ କରି ଚାଳ ଘରର ଷେଣୀ ଓ ପଥରତଳେ ଆଡ଼ଧାରଣାରୂପେ ବ୍ୟବହାର କରନ୍ତି । ଦେଉଳମାନଙ୍କ ପାଟପଥର ତଳେ ତାଳର ଆଡ଼ଧାରଣା ଦିଆଯାଏ ଓ ଏମାନ ଶହ ଶହ ବର୍ଷ ସ୍ଥାୟୀ । ]

ତାଳ ଅନ୍ତି—ଦେ. ବି. (ସଂ. ତାଳ ଓ ଅନ୍ତ୍ର)—ତାଳଗଣ୍ଡିର ଗର୍ଭସ୍ଥ ନରମ ବା ଅପରିପକ୍ୱ ତନ୍ତୁ—The soft fibres in the middle part of the trunk of a palm tree.
Tā̤la anti
তালআঁতী

ତାଳଅନ୍ତି ଉତାର—ଦେ. ବି—ଯେଉଁ ପାକଳ ଓ ପୁରୁଣା ତାଳଗଛର ମଧ୍ୟସ୍ଥ ସମୁଦାୟ ତନ୍ତୁ ପାକଳ ହୋଇଥାଏ, ଅର୍ଥାତ୍ ଯେଉଁ ତାଳଗଛ ଚିରିଲେ ତାହା ମଧ୍ୟରେ ନରମ ଅଂଶୁ ବା ତନ୍ତୁ ନ ଥାଏ—Hard and dense fibred; well developed ( palm-trunk ); ( old palm trees ) all the fibres of which are hard.
Tā̤la-anti utāra

ତାଳ ଉରା—ଦେ. ବି—ତାଳ ଗଛର ଗଣ୍ଡିରୁ ହେବା ଉରା—Beam of the palm tree for thatched houses.
Tā̤la urā

ତାଳକ—ସଂ. ବି. କ୍ଲୀ· ( ତାଳ + କ )—
Tā̤laka ୧ । ଦ୍ୱାରରୋଧକ ଯନ୍ତ୍ର; ତାଲା; କୋଲପ—1. A lock.

୨ । କବାଟର କିଳଣୀ—2. Bolt of a door.

୩ । ହରିତାଳ—3. Yellow orpiment.

୪ । ସୁଗନ୍ଧ ମୃତ୍ତିକା—4. Scented earth.

ଦେ. ବି—ତାଳ ଫଳ—Palm fruit.

ତାଳକ ତାଳକ ଭୁଲ୍ୟ ଭଲେ । ଜନ୍ମସୂର୍ଯ୍ୟ. ଜଗନ୍ନାଥର ଚମ୍ପୂ ।

| ୧ | ଇ | ଉ | ଋ,ଋ | ଌ | ໍ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଣ,ଷ | ଙ୍କ | ଇଯ୍ | ଂ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ଌ | ଐ | ଅକାରାନ୍ତବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | | ଖ୍ୟ | ଯ | ଷ | ର୍ଯ୍ୟ | ଇଅ | ଃ | ନ |

ତାଳକ—ସଂ. ବି. କ୍ଲୀ—ତାଳକ ( ଦେଖ )
Tālaka — Ta̱laka ( See )
ତାଳକ ଶବ୍ଦର ଶୁଦ୍ଧ ରୂପ ତାଳକ ( ଅ.ଚ.ସ. ମୂଳ ଧାତୁ )

ତାଳ କଣା—ଦେ. ବି. ( ସଂ. ତାଳ+କାଣ )—
Ta̱la kaṇā — ୧ । ଗୀତ ଅବ ବୋଲିଯିବା ସମୟରେ ଯେଉଁ ବ୍ୟକ୍ତି
তালকানা — ହିସାବ କୁ ତାଳ ଅନୁସାରେ ତାଳ ପକାଇ ପାରେ
ताल्वेताल — ନାହିଁ ; ତାଳଜ୍ଞାନଶୂନ୍ୟ— 1. Having no adequate knowledge of musical measure.
୨ । (ଲକ୍ଷଣାର୍ଥ) ମୂର୍ଖ—2. (figurative) Ignorant.
୩ । ଯେଉଁ ବ୍ୟକ୍ତି ଦେଶକାଳପାତ୍ର ଦେଖି କଥା କହି ନ ପାରେ ବା କାର୍ଯ୍ୟ କରି ନ ପାରେ—
3. One who cannot adapt himself to his surroundings.

ତାଳ କଣ୍ଟା—ଦେ. ବି—ତାଳ ଗଛର ବାହୁଙ୍ଗାର ଧାରରେ ଥିବା କଣ୍ଟା—
Ta̱la kaṇṭā — Fine points of the serrated blade at the edge of a palm branch.

ତାଳ କନ୍ଦ—ସଂ. ବି. କ୍ଲୀ—ତାଳମୂଳୀ ( ଦେଖ )
Ta̱la kanda — Ta̱lamūli ( See )
ଦେ. ବି—ତାଳ ରସରୁ ପ୍ରସ୍ତୁତ କନ୍ଦ—
Sugar made from palm juice.
[ ଦ୍ର—ଏହିପରି ତାଳମଦ, ତାଳରସ, ତାଳଗୁଡ଼, ତାଳମିଶ୍ରି ଆଦି ଶବ୍ଦ ହୁଏ । ]

ତାଳ କରିବା—ଦେ. କ୍ରି—ଗୀତ ବାଦ୍ୟାଦିର ପରୀକ୍ଷା ସମୟରେ ଜଣେ
Ta̱la kariba̱ — ତାଳଜ୍ଞ ବ୍ୟକ୍ତିଙ୍କର ଅନ୍ୟ ବ୍ୟକ୍ତିମାନଙ୍କ ତାଳର
তাল ধরা — ଆଦର୍ଶ ସ୍ୱରୂପ ତାଳ ପକାଇବା—
ताल देना — (an expert) To lay down a specific measure as a model to be followed by several persons or parties at a contest in musical measure.

ତାଳ କଳିବା—ଦେ. କ୍ରି—କୌଣସି ଗାୟକର ଗୀତ ତାଳ ଅନୁସାରେ
Ta̱la kaliba̱ — ଯାଉଅଛି କି ନାହିଁ ତାହା ଜାଣିବା ନିମନ୍ତେ
(ତାଳ କଷିବା—ଅନ୍ୟରୂପ) ତାଳ ପକାଇ ପରୀକ୍ଷା କରିବା—
তাল কষা — To test if a person is singing to the
ताल जाँचना — measure by beating time.

ତାଳ କାନ୍ଧି—ଦେ. ବି. ( ସଂ. ତାଳ+ସ୍କନ୍ଧ )—
Ta̱la kāndhi — ଗୁଚ୍ଛବ ତାଳ ଫଳର ଏକକ ଗୋଟିଏ ଡେଙ୍ଗରେ
ତାଳକାନ୍ଧ, ତାଳପେଣ୍ଡା } ଅନ୍ୟରୂପ — ପରସ୍ପର ଲଗାଲଗି ହୋଇ ଫଳିଥିବା ଗୁଚ୍ଛ—
A bunch of palm fruits attached to one stem.
তালের কাঁধি
तालका गुच्छा

ତାଳକାଭ—ସଂ. ବଣ. (ବହୁବ୍ରୀହି; ତାଳକ=ହରିତାଳ+ଆଭା)—
Ta̱lakābha — ହରିଦ୍ୱର୍ଣ୍ଣ; ହଳଦିଆ—Yellow.

ତାଳକୀ—ସଂ. ବି. ସ୍ତ୍ରୀ. ( ତାଳ+କ+ସ୍ତ୍ରୀ. ଈ )—
Ta̱laki — ତାଳ ରସ; ତାଳର ତାଡ଼ି—
The juice of palm tree.

ତାଳ କେତୁ—ସଂ. ବି. ( ବହୁବ୍ରୀହି; ତାଳ=ତାଳ ଚିହ୍ନିତ+କେତୁ=
Ta̱la ketu — ପତାକା )—୧ । ଭୀଷ୍ମ—1. Bhīshma.
୨ । ବଳରାମ—2. A name of Balarāma

ତାଳକେଶ୍ୱର—ସଂ. ବି—ପୁଂ, ହରିତାଳ ଆଦିଦ୍ୱାରା ଆୟୁର୍ବେଦୋକ୍ତ
Ta̱lakeśwara — ପ୍ରକ୍ରିୟାରେ ପ୍ରସ୍ତୁତ କୁଷ୍ଠ ଓ କଣ୍ଡୁ ଆଦି ଚର୍ମରୋଗର ଔଷଧବିଶେଷ— A medicinal preparation against leprosy and itches.

ତାଳ କୋରଟ—ଦେ. ବି—ତାଳ ବାହୁଙ୍ଗାର ଉପର ଅଂଶରୁ ଛେଲି
Ta̱la koraṭa — ଯାଇଥିବା ଚକ୍‌ଚକିଆ ପାଟିଆ—Glossy strips
(ତାଳ ଲଇ—ଅନ୍ୟରୂପ) scraped from the back or
तालका डंठलका रेश — ridge of the stock of a palm-branch.
[ ଦ୍ର—ଏହା ଦ୍ୱାରା ଚଟା ବାଉଁଶିଆ ଛୋଟେଇ ଆଦି ମଗୁମଗ କରାଯାଏ ଏବଂ ବାଉଁଶମାନଙ୍କର ଗଣ୍ଠି ବନାଯାଏ ଏବଂ ଏହା ଲଇ ରୂପେ ବ୍ୟବହୃତ ହୁଏ । ]

ତାଳ କ୍ଷୀର—ସଂ. ବି—ଖଜୁରି ବା ତାଳ ରସରୁ ପ୍ରସ୍ତୁତ ଚିନି ( ହି.
Ta̱la kshīra — ଶବ୍ଦସାଗର )—Sugar from the juice of date or palm.

ତାଳ ଖଣ୍ଡିଆ କରିବା—ଦେ. କ୍ରି—ବାଦ୍ୟ ବଜାଇବା ବେଳେ ତାଳମାନ
Ta̱la khaṇḍiā kariba̱ — ଶେଷ ପର୍ଯ୍ୟନ୍ତ ପକାଇ ନ ପାରିବା;
(ତାଳ ଖୁଣ୍ଟ କରିବା—ଅନ୍ୟରୂପ) ତାଳକୁ ବେତାଳ କରିବା—
তাল ভাংগা — Not to complete a musical measure
ताल उखाड़ना — but to interrupt it in the middle.

ତାଳ ଖାଇବା—ଦେ. କ୍ରି. ( ସଂ. ତାଳ; ତୁଳ. ଇଂ. ଟାଲୀ=ସମ୍ମିଳି
Ta̱la khāibā — ରୂପେ ମେଳ ହେବା )—
তাল খাওয়া — ୧ । (ଘୋଡ଼ା, କୁକୁର ଆଦି) ଯୋଡ଼ି ପଡ଼ିବା;
जौड़ा खाना, तालमेल खाना — (ପୁଂ ଓ ସ୍ତ୍ରୀ ପଶୁ) ପରସ୍ପର ସହିତ ସଙ୍ଗମ କରିବା—1. To cross; to pair; to couple ( said of beasts ).
୨ । (ଭୁଲିଥିବା ବସ୍ତୁ) ପରସ୍ପର ସହିତ ମେଳ ଖାଇବା—
2. To tally; to fit with each other.
( ଯଥା—ଦୁଇ ଜଣ ସାକ୍ଷୀଙ୍କ କଥା ତାଳ ଖାଉ ନାହିଁ । )

ତାଳ ଖୁଙ୍କୁ—ଦେ. ବି. ( ସଂ. ତାଳାଙ୍କୁର )—
Ta̱la khuṅku — ଗଜା ହୋଇଥିବା ତାଳ ମଞ୍ଜିର ମଧ୍ୟସ୍ଥ ସୁସ୍ୱାଦୁ
ତାଳଖୁଙ୍କ, ତାଳଙ୍କୁ } ଅନ୍ୟରୂପ — ଶସ—The soft sweet kernel found inside the sprouting stone of a ripe palm-fruit.
তালকুর, তালকোঁপর
तालकागुद्दा

ସାଧାରଣ ଲୋକେ ଅନେକ ସ୍ଥଳରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତଦ୍‌ସ୍ଥଳରେ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗଢ଼' ଦେଖିବେ, 'କୁଡ଼' ନ ମିଳିଲେ 'କୁଡ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଖ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ

**ତାଳ ଖୁଞ୍ଚ**—ଦେ. ବି.—୧ । ତାଳ ବଜାଇବା ବ୍ୟକ୍ତିକୁ ପରାସ୍ତ କରିବା
Tāla khuñcha ନିମନ୍ତେ ବିଶେଷଜ୍ଞବ୍ୟକ୍ତିର ଗୀତରେ ତାଳମାନଙ୍କୁ କୌଶଳକ୍ରମେ ପରିବର୍ତ୍ତନ କରିବା—1. Dexterous change made by an expert in a song so that a musician cannot follow the measures thereof.
୨ । ତାଳ ଖୁଞ୍ଚା (ଦେଖ)—2. Tāla khuñchā (See)

**ତାଳ ଖୁଞ୍ଚା(ଞ୍ଚ)**—ଦେ. ବି.—ତାଳଗଛର ଗଣ୍ଡିରୁ ବାହାରିଥିବା ଅଂଶର
Tāla khuñchā (ñcha କ୍ଷୁଦ୍ର ଲମ୍ବ ଓ ସରୁ ଖଣ୍ଡମାନ—
ତାଲେର চোঁচ Bits of hard pointed fibres of the
(ତାଳଖୁଞ୍ଚ—ଅନ୍ୟରୂପ) palm-trunk.

**ତାଳ ଖୋଡ଼(ଲ)ପା**—ଦେ. ବି.—ତାଳବାହୁଙ୍ଗାର ଦ୍ୱିଫାଳ ହୋଇଥିବା
Tāla khorḍa('la)pā ମୂଳ ଅଂଶ (ଯାହା ଗଛର ଗଣ୍ଡିକୁ ବେଢ଼ି
তাল খাঁড়া ଥାଏ); ତାଳ ଫାଡ଼ୁଆ—The bifurcated part of the branch which entwines the trunk of a palm-tree.

**ତାଳ ଖୋପା(ଷା)**—ଦେ. ବି. (ସଂ. ତାଳ ଓ କୋଷ)—ତାଳଗଛରୁ
Tāla khopā (shā) ବାହାରିବା ଫଳକୋଷ (ଯାହା ଫାଟିଯାଇ ତହିଁ ମଧ୍ୟରୁ ତାଳଫଳର ଚଅଁର ବାହାରେ)—
The pod from which ultimately the bunch of palm fruits come out.
[ଦ୍ର—ନଡ଼ିଆଗଛର ଏହି ଫଳକୋଷକୁ ପୀପ କହନ୍ତି ।]

**ତାଳ ଖୋଳ**—ଦେ. ବି. (ସହଚର)—ଶ୍ରୀ ଚୈତନ୍ୟଦେବଙ୍କ ପ୍ରବର୍ତ୍ତିତ
Tāla khoḷa ନାମସଂକୀର୍ତ୍ତନରେ ବ୍ୟବହୃତ କରତାଳ ବା ଝାଞ୍ଜ
খোল করতাল ଓ ମୃଦଙ୍ଗ; ଖୋଲ କରତାଳ; ଝାଞ୍ଜମାଦଳ—
Cymbals and drums used in chanting Samkīrtana hymns.

**ତାଳ ଖୋଳ ଟେକିଦେବା**—ଦେ. କ୍ରି.—(ଗୁରୁ) ଶିଷ୍ୟମାନଙ୍କୁ ନାମ-
Tāla khoḷa tekidebā ସଂକୀର୍ତ୍ତନ-ମନ୍ତ୍ର ବା ଗୌରମନ୍ତ୍ରର ଦୀକ୍ଷା ଦେଇ ସାରି ସେମାନଙ୍କୁ କୀର୍ତ୍ତନ ଶିଖାଇବା ପୂର୍ବରୁ ଖୋଳ କରତାଳ ପୂଜା କରି ସେମାନଙ୍କ ହାତରେ ଉକ୍ତ ବାଦ୍ୟ ଯନ୍ତ୍ରମାନ ସମର୍ପଣ କରିବା—(the teacher) To formally hand over the cymbals and drums to the disciples as a token of imparting the key to the chanting of hymns.

**ତାଳଗଛିଆ କରିବା**—ଦେ. କ୍ରି.—(ତୁଳ. ଗଛଗଛିଆ କରିବା)—
Tāla-gachhiā karibā ୧ । ଟେକାଟେକି କରିବା; ଖୋସାମଦ
তালগাছে তোল କରିବା; ଗୁହ୍ଟୁ କରିବା—1. To flatter.
୨ । କୌଣସି ବ୍ୟକ୍ତିକୁ ଖୁବ୍ ବଡ଼ ବା ମହତ୍ ବୋଲି ପ୍ରଚାର କରିବା—2. To represent a man to be higher than what he actually is; to raise a person to the skies.

**ତାଳ ଗଣ୍ଠି**—ଦେ. ବି.—ତାଳଲଇଦ୍ୱାରା ବନ୍ଧା ଯାଇଥିବା ଗଣ୍ଠି—
Tāla ganthi Knot made with thin strips
তালের গাইঠ scraped from the back of the stock or ridge of a palm branch.

**ତାଳ ଗୋଟମା**—ପ୍ରାଦେ. (ଯାଜପୁର) ବି.—ଗଇଁଠା; ଗୁଡ଼ଲଡ଼ୁନାର
Tāla goṭamā ଗୋଲ ବାଷ୍ପସିଦ୍ଧ ପିଷ୍ଟକବିଶେଷ—A cake made of rice-flour boiled in steam.

**ତାଳ ଗୋଟମା**—ଦେ. ବି.—ଛୋଟ କଞ୍ଚା ତାଳଫଳ—
Tāla goṭamā Small undeveloped palm-fruit.
তালের মুচি

**ତାଳ ଚଞ୍ଚୁ**—ଦେ. ବି. (ସଂ. ତାଳଚଟକ)—ତାଳ ଚଟକ (ଦେଖ)
Tāla chañchu Tāla chaṭaka (See)
তালচটী
(ତାଳଚଞ୍ଚୁଆ—ଅନ୍ୟରୂପ)

**ତାଳ ଚଟକ**—ସଂ. ବି.—ଶାଖାଶ୍ରୟୀବର୍ଗର ପାଂଶୁବର୍ଣ୍ଣ ପକ୍ଷୀବିଶେଷ—
Tāla chaṭaka The swallow shrike.
[ଦ୍ର—ଏମାନେ ତାଳଗଛରେ ବୋଉଲପରି ଢଳମୁହାଁ ବସା ବୁଣି ରହନ୍ତି; ୯।୧୦ ଅଙ୍ଗୁଳ ଲମ୍ବ, ପୁରୁଷ ଓ ସ୍ତ୍ରୀ ଏକବର୍ଣ୍ଣ, ଚଞ୍ଚୁ କ୍ରମଶଃ ସରୁ ଓ ଈଷତ୍ ବକ୍ର, ପୁଚ୍ଛ ହ୍ରସ୍ୱ, ପକ୍ଷ ବଡ଼; ଏମାନେ ଅଦ୍ଭୁତ ସମୟ ପର୍ଯ୍ୟନ୍ତ ଉଡ଼ି ପାରନ୍ତି ଓ ଉଡ଼ୁଁ ଉଡ଼ୁଁ ପୋକ ଧରି ଖାଆନ୍ତି—ଯୋଗେଶଚନ୍ଦ୍ର ।]

**ତାଳଚେର**—ଦେ. ବି. (ନାମ)—ଓଡ଼ିଶାର ଗଡ଼ଜାତ ରାଜ୍ୟବିଶେଷ—
Tālachera Name of a state in Orissa.
[ଦ୍ର—ପ୍ରାଚୀନ କାଳରେ ଏହା ଗୋଟିଏ ଘଞ୍ଚ ଜଙ୍ଗଲପୂର୍ଣ୍ଣ ରାଜ୍ୟ ଥିଲା । ପ୍ରାୟ ଚତୁର୍ଦ୍ଦଶ ଶତାବ୍ଦୀରେ ଅଯୋଧ୍ୟା ରାଜବଂଶର ଜଣେ ରାଜପୁରୁଷ ଉତ୍କଳର ସ୍ୱାଧୀନ ଗଜପତି ରାଜାଙ୍କ ଆଶ୍ରୟରେ ଏଠାରେ ରାଜା ହେଲେ । ଉକ୍ତ ରାଜା ବହୁତ ତାଳଗଛ କାଟି ରାଜ୍ୟ ପ୍ରସ୍ତୁତ କରିଥିବାରୁ ଏହାର ଏପରି ନାମ ହେଲା (କୃପାସିନ୍ଧୁ ଇତିହାସ) । ଏହି ରାଜବଂଶର 'ବ୍ୟାଘ୍ର' ସଞ୍ଜ୍ଞା । ବର୍ତ୍ତମାନ ଏଠାରେ କୋଇଲା ଖଣି ଆବିଷ୍କୃତ ହୋଇଅଛି ଓ ବି. ଏନ୍. ଆର୍ କମ୍ପାନୀ ଏଠାକୁ କଟକଠାରୁ ଗୋଟିଏ ଶାଖା ଲାଇନ୍ ଖୋଲିଅଛନ୍ତି ।]

**ତାଳଜ**—ସଂ. ବି.—(ତାଳ+ଜନ୍ ଧାତୁ+କର୍ତ୍ତୃ. ଅ)—ତାଳଗଛର ରସ;
Tālaja ତାଡ଼ି—Toddy from palm tree.
[ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ମତ୍ତତାଜନକ ଓ ବାସି ହେଲେ ପିତ୍ତବର୍ଦ୍ଧକ ଓ ବାତଦୁଷ୍ଟିନାଶକ ।]

**ତାଳଜଂଘ**—ସଂ. ବିଣ. ପୁଂ (ବହୁବ୍ରୀହି; ତାଳ+ଜଂଘା)—ତାଳଗଛପରି
Tālajaṁgha ଜଂଘବିଶିଷ୍ଟ—Having well developed and muscular thighs like the trunk of a palm-tree.
ସଂ. ବି—୧ । ଯଦୁବଂଶୀୟ ରାଜାବିଶେଷ—
1. Name of a King of the Jadu dynasty.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ, ଋ,ଋ | ଳ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଚ | ଶ,ଷ | ଜ୍ଞ | ଇପ୍ର | ଉଅ | ଋ |
| ୨ | ଈ | ଊ | ଋ | ଌ | ପ୍ରେ | ଅକାରାନ୍ତ ବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଣ୍ୟ | ଘ | ସ | ଚ୍ୟ | ଇଅ | ଈ | ଦ୍ଦ |

[ ଦ୍ର—ଏହାଙ୍କ ପୁତ୍ର ରାଜା ସଗରଙ୍କ ପିତା ଅସିତଙ୍କୁ ରାଜ୍ୟଚ୍ୟୁତ କରାଇଥିଲେ । ]

୨ । ରାକ୍ଷସବିଶେଷ—2. Name of a demon

୩ । ପ୍ରାଚୀନ ଦେଶବିଶେଷ ( ସ୍ତ୍ର. ଗନ୍ଧର୍ବଗିରି )—
3. Name of an ancient country.

**ତାଳ ଜଂଘା**—ସଂ. ବି. ସ୍ତ୍ରୀ—ରାକ୍ଷସୀବିଶେଷ—
Tāla jaṃghā Name of a demoness.

**ତାଳ ଜଟ(ଟା)**—ସଂ. ବି. (ଷଷ୍ଠୀ ତତ୍; ତାଳ+ଜଟ; ଜଟା)—
Tāla jaṭa(ṭā) ଅଗ୍ରିର ତାଳଗଛର ଜଟା ବା ପୁଂପୁଷ୍ପମଞ୍ଜରୀ; ତାଳବୃନ୍ତ; ତାଳ ପ୍ରଲମ୍ବ—The long flower-stalks of male palm-trees.

**ତାଳ ଝିମିଟି**—ଦେ. ବି—ତାଳ ବାହୁଙ୍ଗା ମୂଳର ଦ୍ୱିଫାଳ ଶାଖା ବା
Tāla jhimiṭi ଫାଉଡ଼ାରୁ ବାହାରିବା ତନ୍ତୁ ବା ସୂତ୍ର—
Fibre-threads from the bifurcated root of palm-branches

[ ଦ୍ର—ଏ ତନ୍ତୁ ଝୁଡ଼ି ତେମେଡ଼ା ଓ ଶକ୍ତ । ]

**ତାଳ ଠୁଙ୍କିବା**—ଦେ. କ୍ରି—୧ । ଅଙ୍ଗେ ବାହାପଟ ଓ ଜଂଘରେ ପ୍ରହାର ମାର
Tāla ṭhuṅkibā ପ୍ରତିଦ୍ୱନ୍ଦୀ ମଲ୍ଲକୁ ମଲ୍ଲଯୁଦ୍ଧ ପାଇଁ ଆହ୍ୱାନ
তাল ঠোকা କରିବା—1. To challenge one's rival
ताल ठोंकना wrestler to a wrestling contest by patting on one's arms and thighs.

୨ । (ଲକ୍ଷଣାର୍ଥ) ପ୍ରତିଦ୍ୱନ୍ଦିତା କରିବା; ତାଳ ପକାଇବା—
2. (figurative) To emulate; to rival.

**ତାଳ ଟାଟି**—ଦେ. ବି—ତାଳପତ୍ରଦ୍ୱାରା ପ୍ରସ୍ତୁତ ଟାଟ—
Tāla ṭāṭi Partition or mat made with palm leaves.
তালপাতার টাটি
तालपत्ताकी टट्टी

**ତାଳ ଥୋଇବା**—ଦେ. କ୍ରି. (ଲକ୍ଷଣାର୍ଥ)—ବିଧା ମାରିବା—
Tāla thoibā (figurative) To deal fist-blows.
[ତାଳ ବସା(ସେ)ଇବା—ଅନ୍ୟରୂପ]
কীল মারা घूंसा मारना

**ତାଳ ଦାଢ଼ି**—ଦେ. ବି—ତାଳବାହୁଙ୍ଗାର ଦାଢ଼ୁଆ ଅଂଶରୁ କଣ୍ଟାକାଢ
Tāla dāṛhi ଚେଞ୍ଚି ନେଲାପରେ ଯେଉଁ କୋରଡ ହୁଏ—
Fibres made from the edge of palm-branches after scraping off the thorns.

[ ଦ୍ର—ଏ କୋରଡ ତାଳ ବାହୁଙ୍ଗାର ପିଠିରୁ ବାହାରିବା କୋରଡ ଅପେକ୍ଷା ବେଶି ଟାଣୁଆ । ]

**ତାଳ ଦେବା**—ଦେ. କ୍ରି—୧ । ଗୀତ ବା ନାଟର ସ୍ୱର ଅନୁସାରେ ହାତ
Tāla debā ବା ବାଦ୍ୟଦ୍ୱାରା ତାଳ ବଜାଇବା—
তাল ধরা 1. To beat time to a song or
ताल देना dance.

ଦେ ଭଲେ ହୋଇ ହରଷେ ଉତ୍ତାଳ
ଟଳକା, ତୋ କତ ଚାହିଁ ଦେଲେ ତାଳ । —ଜଗନ୍ନାଥ- ଚଉତିଶା ।

୨ । (ଲକ୍ଷଣାର୍ଥ) ତାଳ ପକାଇବା; ପ୍ରତିଯୋଗିତା କରିବା—
2. (figurative) To emulate.

**ତାଳ ଧ୍ୱଜ**—ସଂ. ବି. ପୁଂ. ( ବହୁବ୍ରୀହି; ତାଳ+ଧ୍ୱଜ; ଏମାନଙ୍କ
Tāla dhwaja ପତାକାରେ ତାଳଗଛ ଅଙ୍କିତ ଥିବାରୁ)—
୧ । ବଳରାମ—Balarāma; the elder brother of Śrīkṛushṇa.

୨ । ଭୀଷ୍ମ—2. A name of Bhīshma.

ବି. କ୍ଲୀ—ବଳରାମଙ୍କ ରଥର ନାମ—
Name of the car of Balarāma.

**ତାଳଧ୍ୱଜା**—ସଂ. ବି. ସ୍ତ୍ରୀ—୧ । ନଗରବିଶେଷ—
Tāla-dhwajā 1. Name of a town.

୨ । ତାଳଗଛର ପତ୍ର—2. Palm-leaf.

**ତାଳ ନବମୀ**—ସଂ. ବି. ସ୍ତ୍ରୀ—ଭାଦ୍ରମାସର ଶୁକ୍ଳ ନବମୀ—
Tāla nabamī The 9th day of the bright fortnight of the month of Bhādra.

[ ଦ୍ର—ଏ ଦିନ ସ୍ତ୍ରୀମାନେ ଗୌରୀପୂଜା କରନ୍ତି । ]

**ତାଳ ପକା(କେ)ଇବା**—ଦେ. କ୍ରି—୧ । ଗୀତ ବା ନାଟର ତାଳ
Tāla pakā(ke)ibā ଅନୁସାରେ ତାଳ ବା ବାଦ୍ୟ ବଜାଇବା—
তাল ধরা 1. To beat time to a song or dance.
ताल बजाना ୨ । ତାଳ ଠୁଙ୍କିବା (ଦେଖ)
2. Tāla ṭhuṅkibā (See)

**ତାଳ ପଡ଼ିବା**—ଦେ. ବି—୧ । ତାଳ ଭୂମିରେ ପଡ଼ିଲାବେଳେ ଯେପରି
Tāla paṛibā ଦୁମ୍‌ଦୁମ୍ ଶବ୍ଦ ହୁଏ ସେହିପରି ଶବ୍ଦ ସହିତ
তাল পড়া କୌଣସି ଲୋକ ଉପରେ ବିଧା ମାଡ଼ ବସିବା—
ताल गीरना 1. Dealing of heavy fist-blows on the back of a man ( with sound like that produced when palm-fruits drop down on the ground).

୨ । ଗୀତ ବା ନାଟର ତାଳ ଅନୁସାରେ ତାଳ ବା ବାଦ୍ୟ ବାଜିବା—2. Beating of time to a song or dance.

୩ । ପ୍ରତିଯୋଗିତା କରିବା—3. Emulating.

୪ । ଗଛରୁ ପାଚିଲା ତାଳ ତଳକୁ ଖସିବା—
4. The falling of ripe palm-fruits on the ground.

କୁଅ ଉଡ଼ିବାକୁ, ତାଳ ପଡ଼ିବାକୁ—ଢଗ ।

**ତାଳ ପତର**—ଦେ. ବି. (ସଂ. ତାଳ ପତ୍ର)—ତାଳପତ୍ର (ଦେଖ)
Tāla patara Tāla patra (See)
তালপাতা [ ଦ୍ର—ତାଳଗଛର ଶାଖାର ବୃନ୍ତକୁ ବାହୁଙ୍ଗା
ताड़का पत्ता ବୋଲାଯାଏ । ବୃନ୍ତ ଅଗରେ ଯେଉଁ ବ୍ୟଜନାକୃତି

ସାଧାରଣ ଲୋକେ ଅନେକ ସ୍ଥଳରେ ମୂର୍ଦ୍ଧନ୍ୟ ୧ ଦନ୍ତ୍ୟ ଅକ୍ଷର ଓ ନାମ ଏବଂ ୨ କ୍ରମିକ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୋଣ- ଶବ୍ଦ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ସେ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଅ' ନ ମିଳିଲେ 'କଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବଢ' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

ପରସ୍ପର ସଙ୍ଗେ ଲଗ୍ନ ପତ୍ରଗୁଚ୍ଛ ଥାଏ ତାହା ତାଳପତ୍ର ଅଟେ । ଭାଷାରେ ତାକୁ ତାଳ ବରଡ଼ା କହନ୍ତି ଓ ଉକ୍ତ ବ୍ୟଜନାକୃତି ପତ୍ରକୁ ଲମ୍ବ ଲମ୍ବ ପଟିରେ ଚିରିଦେଲେ ତହିଁମଧ୍ୟରେ ଶଳାକା ( ଖଡ଼ିକା ) ଥିବା ଦୁଇଫାଳିଆ ଯେଉଁ ପତ୍ର ବାହାରେ ତାକୁ ତାଳପତର କହନ୍ତି ଓ ତହିଁ ଉପରେ ଲେଖନ ସାହାଯ୍ୟରେ ଲେଖାଯାଏ । ]

ତାଳ ପତ୍ର—ସଂ. ବି. ( ୬ଷ୍ଠୀ ତତ୍; ତାଳ+ପତ୍ର )—
Tā̱la patra ୧ । ତାଳଗଛର ପତ୍ର—1. Palm leaf.
[ ଦ୍ର—ଏଥି ଉପରେ ଲେଖନରେ ଲେଖାଯାଏ; ଏଥିରେ ଭୋଗେଇ ଥଳି, ଆସନ ଓ ବିଞ୍ଚଣା ବୁଣାଯାଏ ଏବଂ ଛାତ ବନ୍ଧାଯାଏ ।]
୨ । କର୍ଣ୍ଣଭୂଷଣବିଶେଷ; ତାଟଙ୍କ—
2. An ornament for the ear.
୩ । ଖଡ୍ଗବିଶେଷ—3. A kind of sword.

ତାଳପତ୍ର ସିପାଇ(ହି)—ଦେ. ବି-(ତାଳପତ୍ରରେ ପ୍ରସ୍ତୁତ ସିପାହି ମୂର୍ତ୍ତି ଯେପରି
Tā̱lapatra sipāi(hi) ପବନର ସାମାନ୍ୟ ଆଘାତରେ ଉଡ଼ିଯାଏ
তালপাতার সিপাই ସେହିପରି) ଯେଉଁ ବ୍ୟକ୍ତି ଅଳ୍ପକେ ଦବି
(ତାଳପତ୍ର ସିପେଇ—ଅନ୍ୟରୂପ) ଯାଏ ବା ଡରି ଯାଏ; କ୍ଷୀଣ; ଦୁର୍ବଳ
ଓ ଭୀରୁ ଲୋକ—A weak, lean and timid person.

ତାଳ ପତ୍ରିକା—ସଂ. ବି. ସ୍ତ୍ରୀ—ତାଳମୂଳୀ ( ଦେଖ )
Tā̱la patrikā Tā̱lamū̱li ( See )

ତାଳ ପତ୍ରୀ—ସଂ. ବି—ମୂଷିକପର୍ଣ୍ଣୀ ( ଦେଖ )
Tā̱la patri Mūshikaparṇṇi ( See )

ତାଳ ପର୍ଣ୍ଣ—ସଂ. ବି—୧ । ମୁରା ନାମକ ଗନ୍ଧଦ୍ରବ୍ୟ—
Tā̱la parṇṇa 1. A kind of medicinal perfume.
୨ । ଗନ୍ଧ ପତ୍ର ( ଦେଖ )
2. Gandha patra ( See )

ତାଳ ପର୍ଣ୍ଣିକା—ସଂ. ବି—୧ । ମୁରା ନାମକ ଗନ୍ଧଦ୍ରବ୍ୟ; ମୁରାମାଂସୀ—
Tā̱la parṇṇikā 1. A herbarious scent.
୨ । ତାଳମୂଳୀ ( ଦେଖ )
2. Tā̱lamū̱li ( See )
୩ । ସଉପ ( ଦେଖ ) ( ଶ୍ରୁ. ଶବ୍ଦସାଗର )—
3. Saupa ( See )

ତାଳ ପାରୁ—ଦେ. ବି—ପାଚିଲା ତାଳକୁ ଚକଟି ଦେଲେ ଟାକୁଆ ଉପରେ
Tā̱la pāru ଯେଉଁ ଚେରୁଆ ଅଂଶମାନ ରହିଯାଏ—The soft fibres left on the stone after pressing the juice from a ripe palm fruit.

ତାଳ ପିଞ୍ଛା—ଦେ. ବି—ତାଳ ଜଟ ( ଦେଖ )
Tā̱la piñchhā Tā̱la jaṭa ( See )

ତାଳ ପିଠା—ଦେ ବି—ପାଚିଲା ତାଳର ଚୋରୁଅ ସଙ୍ଗେ ବଟା ଚାଉଳ
Tā̱la piṭhā ମିଶାଇ କରାଯିବା ପିଠା ବା ପିଷ୍ଟକବିଶେଷ—
তালপিঠা Cakes made with palm juice mixed with rice flour.

ତାଳ ପ୍ରଲମ୍ବ—ସଂ. ବି. (୬ଷ୍ଠୀ ତତ୍; ତାଳ+ପ୍ରଲମ୍ବ=ଜଟା )—
Tā̱la pra̱lamba ତାଳଜଟ—The long flower stalks of a male palm tree.

ତାଳ ଫ(ଫୋ)ଟକା—ଦେ. ବି—ତାଳପତ୍ରଦ୍ୱାରା ଘୋଡ଼ା ଯାଇଥିବା ବାରୁଦ-
Tā̱la pha(pho)ṭakā ପୁଡ଼ା—Crackers or packets of
তাল পটকা gunpowder tightly packed
ताल पटाका in palm-leaves.
[ତାଳଫୁଟୁକା(କି)—ଅନ୍ୟରୂପ]

ତାଳ ଫାଉଡ଼ା(ଣ୍ଡା)—ଦେ. ବି—ତାଳବାହୁଙ୍ଗାର ଦୁଇ ଫାଳିଆ ମୂଳ ଅଂଶ-
Tā̱la phāuṟḍa(ṇḍā) The parted root of a palm
তাল ষাঁড়া branch; the bifurcated or forked part of a palm branch.

ତାଳ ଫୋପଡ଼(ଡ଼ା)—ଦେ. ବି—ତାଳଗଛର ବାହୁଙ୍ଗାରୁ ପତ୍ର ଓ ଫାଉଡ଼ା
Tā̱la phopaṟḍa (ṟḍā) ବାଦ ଦେଲେ ଯେଉଁ ମଧ୍ୟଭାଗ ରହେ
তাল ডাঁটা ( ଯହିଁରୁ କୋରଟ ବା ଲଇ ବାହାରେ )—
ताडका डंठल The middle part or bare ridge of a palm-branch.

ତାଳ ବଣ(ଣି)—ଦେ. ବି (ସଂ ତାଳବନ )—ତାଳ ବୃକ୍ଷବହୁଳବନ—
Tā̱la baṇa(ṇi) A grove of palm trees.
তালবণ तालबन
( ତାଳବଣିଆଁ; ତାଳବଣିଆ—ଅନ୍ୟରୂପ )

ତାଳ ବଣା—ଦେ ବିଣ—ତାଳ କଣା ( ଦେଖ )
Tā̱la baṇā Tā̱la kaṇā (See)

ତାଳ ବନ—ସଂ. ବି—୧ । ଯେଉଁ ସ୍ଥାନରେ ପାଖେ ପାଖେ ବହୁ ତାଳ
Tā̱la bana ଗଛ ଥାଏ—1. A grove of palm trees.
୨ । ( ନାମ ) ଗୋବର୍ଦ୍ଧନ ଗିରି ଉତ୍ତରରେ ଯମୁନାକୂଳରେ ଥିବା ପ୍ରାଚୀନକାଳର ତାଳ ବୃକ୍ଷର ଏକ ବନ—
2. Name of an ancient grove of palm trees near Bṛundābana.
[ ଦ୍ର—ଏହିଠାରେ ବଳରାମ ଧେନୁକାସୁରକୁ ବଧ କରିଥିଲେ ।]

ତାଲବର—ବୈଦେ. ବିଣ. (ଫା. ତାଲେବର୍; ଆ. ତାଲ୍ଅ=ଭାଗ୍ୟ+ଫା.
Tālabara ବର୍ ପ୍ରତ୍ୟୟ )—୧ । ଭାଗ୍ୟବାନ୍—1. Lucky.
তালেবর ୨ । ମାନ୍ୟ—2. Honourable.
तालेबर ୩ । ସ୍ୱନାମଧନ୍ୟ—3. Illustrious.

ତାଳ ବରଡ଼ା—ଦେ. ବି—ତାଳଗଛର ଛତ୍ରାକୃତି ପତ୍ର—
Tā̱la baraṟḍā Fan-shaped palm-leaves.
তালপাতা

ତାଳ ବାୟା—ଦେ. ବି. [ ତାଳ+( ତନ୍ତୁ ) ବାୟ ]—ତାଳଗଛର ପତ୍ର
Tā̱la bāyā ଅଗରେ ଚୋଡିଲ ପରି ଲମ୍ବିଥିବା ବସା ବାନ୍ଧିବା ଟାଁ
তালবাবুই ଅଙ୍ଗୁଳ ଦୀର୍ଘ ଘରଚଟିଆ ଆକୃତିର ଶାଖାଶ୍ରୟୀ ବର୍ଣ୍ଣର
बाया ପକ୍ଷୀ—The weaverbird; Ploceus Baya.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଲ | ଢ଼ | ଋ,ଋ | ଝ | ଏ ହସନ୍ତ ବର୍ଣ୍ଣ | ଅନୁନାସିକ ସ୍ୱରାଘାତ | ଯ | ଜ | ଶ,ଷ | କ୍ଷ | ଜ୍ଞ | ଙ୍ଖ | ଯ |
| ୨ | ଳ | ଡ଼ | ଋ | ଌ | ଦୀର୍ଘ ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଅଂ | ଯ | ସ | ଙ୍ଗ | ଞ୍ଚ | ଔ | ଦ୍ର |

[ ଦ୍ର—ଏହାର ତାଳୁ ଓ ଗ୍ରଭ ବଳହଥ, ଦେବ ଶରସ । ଏମାନେ ତାଳ, ନଡ଼ିଆ ଓ ଖଜୁରି ପତ୍ରରୁ ସରୁ ସୂତା ପରି ଅଂଶଗୁଡ଼ିକ ଅସ୍ତ୍ରଦ୍ୱାରା ଚିରି ନେଇ ସେହିଥିରେ ଏପରି କୌଶଳରେ ବସାଗୁଡ଼ି ବୁଣି ତାଳଗଛ, ଖଜୁରିଗଛ ଓ ନଡ଼ିଆଗଛ ପତ୍ରର ଅଗରେ ଲମ୍ବିବା ବୋତଲ ପରି ବସାକୁ ଝୁଲାଇ ଥାଆନ୍ତି ଯେ ଝଡ଼ ତୋଫାନରେ ମଧ୍ୟ ବସା ଭିତରୁ ପତ୍ରରୁ ଚ୍ୟୁତ ନ ହୋଇ ଦୋହୋଲୁ ଥାଏ । ]

**ତାଳ ବାହୁଙ୍ଗା**—ଦେ. ବି—ତାଳଗଛର ପତ୍ରଯୁକ୍ତ ଶାଖା—
Tā**l**a bāhungā The stalk or branch of the palm leaf.
তালবাখড়া

**ତାଳ ବୁ(ବୋ)ରେଇ**—ଦେ. ବି—ତାଳବଣ; ତାଳଗଛର ଜୋଟା—
Tā**l**a bu(bo)rei A grove or tope of palm-trees
তালবন

**ତାଳ ବୃନ୍ତ**—ସଂ. ବି. ( ତାଳ+ବୃନ୍ତ )—
Tā**l**a brunta ୧ । ପତ୍ରହୀନ ତାଳବାହୁଙ୍ଗା—
1. The leafless stalk of palm tree.
୨ । ତାଳବାହୁଙ୍ଗାରେ ନିର୍ମିତ ବିଞ୍ଚଣା—
2 Fan made of the stalk of palm leaves.
୩ । ତାଳପତ୍ରରେ ବୁଣା ହୋଇଥିବା ବିଞ୍ଚଣା—
3. Fan of palm leaves woven together.

**ତାଳ ବୃନ୍ତକ**—ସଂ. ବି. ( ତାଳବୃନ୍ତ+କ )—ତାଳ ବୃନ୍ତ ( ଦେଖ )
Tā**l**a bruntaka Tā**l**a brunta (See)

**ତାଳ ବେଚନକ**—ସଂ. ବି. ( ତାଳ+ବଚ୍ ଧାତୁ+ଅନ+କ )—
Tā**l**a bechanaka ନର୍ତ୍ତକ; ନାଚୁଆ—Dancer

**ତାଳ ବେତାଳ**—ସଂ. ବି. ପୁଂ (ଦ୍ୱନ୍ଦ୍ୱ; ତାଳ+ବେତାଳ)—ମହାଦେବଙ୍କ
Tā**l**a betā**l**a ଅନୁଚର ତାଳ ଓ ବେତାଳ ନାମକ ଭୂତଦ୍ୱୟ—
Two aerial attendants of Śiba.

**ତାଳ(ଲ)ବ୍ୟ**—ସଂ. ବିଣ ( ତାଳୁ+ଭବାର୍ଥରେ. ଯ )—୧ । ତାଳୁ
Tā**l**a(la)bya ସମ୍ବନ୍ଧୀୟ—1. Relating to the palate.
୨ । ତାଳୁସାହାଯ୍ୟରେ ଉଚ୍ଚାରିତ—
2. Pronounced from the palate; palatal.

**ତାଳବ୍ୟ ବର୍ଣ୍ଣ**—ସଂ. ବି ( ତାଳବ୍ୟ+ବର୍ଣ୍ଣ )—ଇ, ଈ, 'ଚ' ବର୍ଗ, ଯ
Tālabya barnna ଓ ଶ—The palatal letters of the alphabet.

**ତାଳବ୍ୟ 'ଶ'**—ସଂ. ବି—ତାଳୁରୁ ଉଚ୍ଚାରିତ 'ଶ' ଅକ୍ଷର—
Tālabya 'śa' The letter 'śa'.

**ତାଳ ଭଙ୍ଗ**—ସଂ. ବି ( ୬ଷ୍ଠୀ ତତ୍; ତାଳ+ଭଙ୍ଗ )—ବେତାଳ ହେବା;
Tā**l**a bhanga ଗୀତ ବାଦ୍ୟର ତାଳ ନିୟମ ଅନୁଯାୟୀ ନ ପଡ଼ିବା—
Losing the measure of a music or song.

**ତାଳ ଭଣ୍ଡି**—ଦେ. ବି—ତାଳ ଜଟ ( ଦେଖ )
Tā**l**a bhandi Tā**l**a jata ( See )
তালগাছের ভুঁড়া, ताकसाँटा

**ତାଳଭୃତ୍**—ସଂ. ବି ( ତାଳ+ଭୃ ଧାତୁ+କର୍ତ୍ତୃ. କ୍ୱିପ୍ )—ବଳରାମ—
Tā**l**abhrut Ba**l**arāma.

**ତାଳ ମ(ମା)ଖନା**—ଦେ. ବି—କୋଇଲିଖିଆ (ଦେଖ)
Tā**l**a ma(mā)khanā Koilikhiā ( See)

**ତାଳ ମଜ୍ଜା**—ସଂ. ବି (ତାଳ+ମଜ୍ଜା)—ତାଳସଜ ( ଦେଖ )
Tā**l**a majjā Tā**l**asaja ( See )

**ତାଳ ମଞ୍ଜ**—ଦେ. ବି—୧ । ପାଚିଲା ତାଳଫଳ ମଧ୍ୟରେ ଥିବା ଟାକୁଆ—
Tā**l**a manja 1. Seed of a palm fruit.
তালের আঁটি ୨ । ପୁରୁଣା ତାଳଗଛର ମଧ୍ୟବର୍ତ୍ତୀ ଅତି କଠିନ କାଷ୍ଠାଂଶ—2. The hard long fibres inside the bark of a palm-trunk.

**ତାଳ ମଢ଼ୁଆ**—ଦେ. ବି— ତାଳପତ୍ରର ବାହାର ବା ଅଗ ପାଖର ଶିରା—
Tā**l**a mardhuā The fibrous ridge of a palm leaf.

**ତାଳ ମଣ୍ଡା**—ଦେ. ବି—ପାଚିଲା ତାଳର ଚୋପାରେ ତିଆରି ମଣ୍ଡା
Tā**l**a mandā ପିଠା—A kind of cake prepared from the juice of ripe palm-fruits.

**ତାଳ ମର୍ଦ୍ଦଳ**—ସଂ. ବି ( ଦ୍ୱନ୍ଦ୍ୱ; ତାଳ+ମର୍ଦ୍ଦଳ )—କରତାଳ ଓ ମୃଦଙ୍ଗ;
Tā**l**a marddala ତାଳ ଓ ଖୋଳ—Cymbals and drums.

**ତାଳ ମାନ**—ସଂ. ବି (ଦ୍ୱନ୍ଦ୍ୱ; ତାଳ+ମାନ)—ସଙ୍ଗୀତର ତାଳ ଓ ମାନ—
Tā**l**a māna The measure and the stop in music.

**ତାଳ ମିଶ୍ରି**—ଦେ. ବି—ତାଳରସର ଗୁଡ଼ରୁ ପ୍ରସ୍ତୁତ ମିଶ୍ରି—
Tā**l**a misri Crystallised palm-sugar.
তালমিছরী, तालमिसरी

**ତାଳମୂଳିଆ କଣ୍ଟା**—ଯେଉଁ ଲୁହା କଣ୍ଟା ତାଳଗଛ ପରି ଗଡ଼ିରୁ
Tā**l**amū**l**iā kantā ଅଗ ପର୍ଯ୍ୟନ୍ତ କ୍ରମଶଃ ସରୁ ହୋଇ ଗଢ଼ା ହୋଇଥାଏ—Stout nails gradually tapering like the trunk of a palm tree.

**ତାଳ ମୂଳୀ**—ସଂ. ବି. ସ୍ତ୍ରୀ—ତାଳର ଗଜାଗଛ ପରି ଦେଖା ଯାଉଥିବା
Tā**l**a mū**l**i ଏକପ୍ରକାର କ୍ଷୁଦ୍ର ଗୁଳ୍ମ—
ସଂ. ପର୍ଯ୍ୟାୟ—ତାଳମୂଳିକା, ତାଳପତ୍ରିକା, ହେମପୁଷ୍ପୀ, ପାର୍ଶ୍ୱକୀଳକା, ମୂଷଲୀ, ଭୂତାଳୀ
A kind of medicinal plant resembling very young shoots of palm trees; Corculigo Orchiodes; Asparagus Sarmentosus.
ମୂଷଲୀକନ୍ଦ
তালমূলী
कालिमुसली, मुसलीसुसली
ତେ. ନେଲ୍ଲତାଡ଼ି, ନେଲ୍ଲତାଡ଼ି
ସ୍ତ.—ଓ ମ. କାଲୀମୂସଲୀ
[ ଦ୍ର—ଏହାର ଫୁଲ ହଳଦିଆ ଗନ୍ଧହୀନ ଓ ଷଡ଼ଦଳ; ଏହାର ମୂଳ ଔଷଧ ରୂପେ ବ୍ୟବହୃତ ହୁଏ । ଏହି ଗଛ ପ୍ରତିବର୍ଷ ମରିଯାଏ ଓ

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, କୁଥ ନ ମିଳିଲେ 'କୁଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

ପୁଣି ଚେରରୁ ଗଜା ବାହାରେ । ଏହାର ମୂଳର କନ୍ଦ ଅଳ୍ପ ପରି; ଏହାର ପତ୍ର ଓ ତାଳ ତାଳପତ୍ର ଓ ବାଳୁଙ୍ଗାର ଅନୁରୂପ ପରି । କୃଷ୍ଣ ଓ ଶୁକ୍ଳ ଭେଦରେ ଏହା ଦୁଇପ୍ରକାର । ଏହା ମଧୁରତିକ୍ତରସ, ଶୁକ୍ର-ବର୍ଦ୍ଧକ, ଉଷ୍ଣ ବୀର୍ଯ୍ୟ, ପୁଷ୍ଟିକାରକ, ଗୁରୁ. ରସାୟନ, ଓ ଅର୍ଶ ଏବଂ ବାୟୁନାଶକ । ]

ତାଳ ମୂଷଳୀ—ଦେ. ବି (ସଂ.ମୁଷଳୀ)—ତାଳମୂଳୀ ଗୁଳ୍ମର ଚେର—
Tāla mūshali  The root of Tālamūli plant.
कालमुषली
কালোমুসলী
[ ଦ୍ର—ଏହି ଚେର ସହଜରେ ମରେ ନାହିଁ । ଗଛର ପତ୍ର ଓ ଶାଖା ଅବଧ ପ୍ରତି ବର୍ଷ ମରଯାଏ; ମାତ୍ର ଋତୁ ଅନୁସାରେ ମୂଳକନ୍ଦରୁ ପୁଣି ଗଜା ବାହାରେ । ]

ତାଳ ଯନ୍ତ୍ର—ସଂ. ବି (ତାଳ+ଯନ୍ତ୍ର)—ଶଲ୍ୟୋଦ୍ଧାରଣାର୍ଥ ଯନ୍ତ୍ରବିଶେଷ—
Tāla jantra  A surgical instrument for extracting arrows or foreign articles from the body.

ତାଳ ରସ—ସଂ. ବି (ଷଷ୍ଠୀ ତତ୍; ତାଳ+ରସ)—ଅଣ୍ଡିରା ତାଳ ଗଛର ଅପକ୍ୱ ଜଟାରୁ ବାହାରିବା ତାଡ଼ୀ—
Tāla rasa  The juice extracted from the flower-stalks of male palm trees; palm-toddy.

ତାଳଲକ୍ଷ୍ମା—ସଂ. ବି (ବହୁବ୍ରୀହି; ତାଳ+ଲକ୍ଷ୍ମନ୍)—ବଳରାମ—
Tāla lakshmā  Balarāma.

ତାଳ ଶିମି(ମୂ)ଳୀ—ଦେ. ବି ( ସଂ. ତାଳମୂଳୀ; ମୁଷଳୀ )—
Tāla śimi(mū'li  ତାଳ ମୂଷଳୀ ( ଦେଖ )
Tāla mūshali (See).

ଦେ. ବିଣ—୧ । ଚିରଞ୍ଜୀବୀ—1. Long-lived.
୨ । ଚିରସ୍ଥାୟୀ—2. Permanent.
[ ଦ୍ର—ଲୋକେ କୌଣସି ବ୍ୟକ୍ତିଙ୍କୁ ବ୍ୟଙ୍ଗ କରି କହନ୍ତି, "ତୁ କଅଣ ତାଳଶିମୂଳୀ ହେବୁ ?" ]

ତାଳଶିରା ଖଡ଼ୁ—ଦେ. ବି ( ବଳିଆ ଶବ୍ଦ )—ସୁନା ବା ରୁପାରେ ତିଆରି ହାତରେ ପିନ୍ଧିବା ଏକପ୍ରକାର ଖଡ଼ୁ—
Tālaśirā khardu  A kind of bracelet.

ତାଳି ସରି(ହି)—ଦେ. ବିଣ—ତାଳ ଅନୁସାରେ ଗୀତ ବା ବାଦିତ—
Tāla sa(hi)  Sung or set according to the musical measure; (song or music) adjusted to measure; musical.
তালসই
तालमत
(ତାଳମେଳ—ଅନ୍ୟରୂପ)

ତାଳ ସଜ—ଦେ. ବି (ସଂ. ତାଳ ଓ ଶସ୍ୟ)—କଅଁଳ କଞ୍ଚା ତାଳ ଫଳ ମଧ୍ୟରୁ ବାହାରିବା ସୁସ୍ୱାଦୁ କୋମଳ ପଦାର୍ଥ; ତାଳତାଳ; ତାଳାସ୍ଥି ମଜ୍ଜା—
Tāla saja  The tender and sweet kernel of young palm-fruits.
তাশশাষ
तालसाँस; तालकागुदा

ପୁଷ୍ଟ ତାଳସଜ ପଣା ଗରଡ଼ କବଳି—ପ୍ରାଚୀ. ରତ୍ନସଂଗ୍ରହ ।

[ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ଈଷତ୍ ମତ୍ତତାଜନକ, ଲଘୁ, କଫବର୍ଦ୍ଧକ, ଦୁଷ୍ପାଚ୍ୟ, ବହୁମୂତ୍ରଜନକ, ତନ୍ଦ୍ରାକାରକ, ଅଭିଷ୍ୟନ୍ଦୀ ଓ ଶୁକ୍ରବର୍ଦ୍ଧକ । ]

ତାଳସ୍ତନୀ—ସଂ. ବିଣ. ସ୍ତ୍ରୀ ( ବହୁବ୍ରୀହି; ତାଳ+ସ୍ତନ+ସ୍ତ୍ରୀ. ଈ )—
Tālastani  ତାଳ ଫଳ ପରି ସ୍ଥୂଳସ୍ତନଯୁକ୍ତା (ସ୍ତ୍ରୀ)—
(woman) Having breasts big like palm fruits.

ତାଳ ସ୍ଥୂଳ ବିଶାଳରୂପ ତରଳାଳ ସୁଘଟିତ ତାଳସ୍ତନ ରେ ।
କବିସୂର୍ଯ୍ୟ ସଙ୍ଗୀତ ।

ତାଳ ହାଣ୍ଡି—ଦେ. ବି—ହାଣ୍ଡି ପରି ଆକୃତିବିଶିଷ୍ଟ ତାଳ ଗଛର ମୂଳ—
Tāla hāndi  The thick round block at the root of a palm tree.
[ ଦ୍ର—ଏହାକୁ ଖୋଳି ହାଣ୍ଡି ଆକାର କରି ଏହା ଉପରେ ଚମଡ଼ା ଛାଉଣି କଲେ ଏହା ମେଘା ବା ଧଂସା (ବ. ଧାମସା) ନାମକ ବାଦ୍ୟ ହୁଏ; ଏହାର ଧ୍ୱନି ଖୁବ୍ ଗମ୍ଭୀର ଓ ବହୁ ଦୂରରୁ ଶୁଣାଯାଏ । ]

ତାଲା—ଦେ. ବି—୧ । (ସଂ. ତାଲକ, ତଲକ)—କୋଲପ—
Tala  Lock; padlock.
[ ଦ୍ର—କଳଣୀ, କମାଣୀ; ଦଣ୍ଡୀ ବା ଚିଙ୍କିଆ, ମେରୁ, ଡାଲା, ଛଟକଣୀ ଓ କୁଞ୍ଚିକଳା ତାଲାର ଭିନ୍ନ ଭିନ୍ନ ଅଂଶ ଅଟେ । ]
তালা  ୨ । (ସଂ. ତଲ) କୋଠାର ମହଲା—
ताला, ताली  2. Storey of a building.
ଦେ. ବିଣ—ଏତେ ତଲବିଶିଷ୍ଟ; (ଯଥା—ଛତାଲା କୋଠା )
( building ) Having so many storeys; storied.

ତାଲା ଅଟକା(କେ)ଇବା—ଦେ. କ୍ରି—କୌଣସି କୋଲପକୁ ଗୃହ ନ ପକାଇ ଗୃହ ପକାଇବା ପରି ଦେଖାଯିବା ଭଳି ଦ୍ୱାରରେ ଖଞ୍ଜାଇବା—
Tālā aṭakā(ke)ibā
[ ତାଲାଠକା(କେ)ଇବା—ଅନ୍ୟରୂପ ]
তালা টীপা  To put an unclosed padlock on the door in an apparently closed position.

ତାଲା କାଠି—ଦେ. ବି—କୋଲପ ଓ ଗୃହକାଠି—
Tālā kāṭhi  Lock and key.
তালাকাঠি  ताला कुंजी
ତାଲାକଞ୍ଚି }
ତାଲାକୁଞ୍ଚି } ଅନ୍ୟରୂପ

ତାଲା ଖୋଲିବା—ଦେ. କ୍ରି—କୋଲପ ପଡ଼ିଥିବା ଘରର କୋଲପ ଫିଟାଇବା—
Tālā kholibā  To unlock a locked door.
[ତାଲା ଫିଟା(ଟେ)ଇବା—ଅନ୍ୟରୂପ]
তালা খোলা  ताला खुलना

ତାଳାଙ୍କ—ସଂ. ବି ( ବହୁବ୍ରୀହି; ତାଳ+ଅଙ୍କ=ଚିହ୍ନ )—
Tālānka  ୧ । ତାଳଧ୍ୱଜ; ବଳରାମ—1. Balarāma.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଋ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଜ୍ୟ | ଇଅ | ଊ | ନ୍ |

୨ । ମହାଦେବ; ଶିବ—God Siba.

୩ । ତାଳପତ୍ରରେ ଲିଖିତ ପୁସ୍ତକ; ପୋଥି—
3. Palm leaf manuscript.

୪ । ଶାକବିଶେଷ—4. A kind of pot herb.

୫ । ତାଳଜଂଘ ପୁରୁଷ—
5. A man of developed thighs.

୬ । ଭୀଷ୍ମଦେବ—6. A name of Bhishma.

ତାଳାଙ୍କୁର—ସଂ. ବି—୧ । ମନଃଶିଳା (ବି. ଶବ୍ଦସାଗର)—
Ta͟lankura 1. Red arsenic.
୨ । ତାଳ ଖୁଙ୍କୁ ( ଦେଖ )—2. Ta͟la khunku (See)

ତାଲା ଚାବି—ଦେ. ବି. ( ସହଚର; ସଂ. ତାଲକ+ପାର୍ତ୍ତୁଗୀଜ୍. ଚାବେ)—
Tala chabi ୧ । ତାଲା; କୋଲପ—1. Lock
তালা চাবি ୨ । କୋଲପ ଓ ତାହାର କଞ୍ଚି—
ताला कुंजी 2. Lock and key.

ତାଲା ଦେବା—ଦେ. କ୍ରି—ଘରର କବାଟରେ କୋଲପ ପକାଇବା; ଦ୍ୱାରରେ କୋଲପ ଠୁକି ଦ୍ୱାର ବନ୍ଦ କରିବା—
Tala deba
তালা দেওয়া; তালা বন্দ করা To padlock a door; to lock up a door.
ताला लगाना

ତାଲା ଠୁକିବା; ତାଲା ପକା(କେ)ଇବା } ଅନ୍ୟରୂପ
ତାଲା ବନ୍ଦ କରିବା; ତାଲା ଲଗା(ଗେ)ଇବା }

ତାଳାନ୍ତ—ସଂ. ବି. ( ତାଳ+ଅନ୍ତ )—
Ta͟lanta ସଙ୍ଗୀତରେ ଦିଆଯିବା ତାଳର ବିଶ୍ରାମ—
A rest in music.
ଦେ. ବି—ଅତ୍ୟନ୍ତ କ୍ଳାନ୍ତି—Exhaustion.
ଦେ. ବିଣ—ଅବସନ୍ନ; ଅତି କ୍ଳାନ୍ତ—
Overpowered; exhausted.

ତାଲା ପଡ଼ିବା—ଦେ. କ୍ରି—୧ । ଦ୍ୱାରରେ କୋଲପ ଦିଆଯିବା—
Tala pardiba 1. Locking of a door.
(ତାଲା ଲାଗିବା—ଅନ୍ୟରୂପ) ୨ । ରୋଗ ବା ବାତ ଯୋଗୁଁ ଦାନ୍ତର
তালাপড়া କବାଟ ପଡ଼ିଯିବା—2. Lock-jaw.
ताला लगना

ତାଲା ମୁଦ—ଦେ. ବି—କୌଣସି ଘରେ କୋଲପ ପଡ଼ି ତାହା ଉପରେ
Tala muda ଲାଖ ଅବା ମୁଦ ବା ମୋହର ଦିଆଯିବା—
Sealing of a door under lock.

ତାଳାସ୍ଥିମଜ୍ଜା—ସଂ. ବି—୧ । ତାଳ ଶସ; କଅଁଳ ତାଳ—
Ta͟lasthi majja 1. The tender sweet kernel of young palm fruits.
୨ । ତାଳ ଖୁଙ୍କୁ ( ଦେଖ ) ( ହରେକୃଷ୍ଣ. ଦ୍ରବ୍ୟଗୁଣ । )—
2. Ta͟la khunku (See).

ତାଳି—ଦେ. ବି. ( ସଂ. ତାଳ )—
Ta͟li ୧ । ଦୁଇ କରତଳର ପରସ୍ପର ଆଘାତଜନିତ ଶବ୍ଦ—
তালি 1. Clapping of palms; clap.
ताली, थपड़ी

ଏକା ହାତରେ ତାଳି ବାଜେ ନାହିଁ—ଢଗ ।

[ ଦ୍ର—'ତାଳ'ର ଅଭିପ୍ରାୟ ଜାଣିବା ନିମନ୍ତେ 'ତାଳ ଦେବା' ତଳେ ନୋଟ୍ ଦ୍ରଷ୍ଟବ୍ୟ ।

କୌଣସି ବୟଃସ୍ଥ ବ୍ୟକ୍ତି ବା ମାତା ଶିଶୁକୁ ତାଳ ମାରିବାକୁ ଶିଖାଇବା ସମୟରେ ଆପଣାର କରତଳର ଆଘାତ ସଙ୍ଗେ 'ତାଳ ତାଳ ! ତାଳ ତାଳ ! ତାଳ ତାଳ ! ବନମାଳୀ,' 'ତାଳସର ! ତାଳକୁ ତେଲୁଣୀ ସଂଗ କର,' 'ତାଳସର ! ତାଳସର ! ଧନ ଗୁଲିଯିବେ ଶାଶୁ ଘର' ଇତ୍ୟାଦି ବାକ୍ୟମାନ ବୋଲନ୍ତି ଓ ବେଳେ ବେଳେ ପିଲାଙ୍କ ଅସ୍ଫୁଟ ଉଚ୍ଚାରଣକୁ ଅନୁକରଣ କରି 'ତାଳ ତାଳ' ପରିବର୍ତ୍ତରେ 'ତାଇ ତାଇ' କହନ୍ତି । ]

୨ । ଚିରା ଲୁଗାର ଛିଦ୍ରରେ ପଡ଼ିବା ବସ୍ତ୍ରଖଣ୍ଡ—
তালি, 2. Patch of cloth put on a hole in a torne garment or cloth.
थेगली

ଯାଇ ବସ୍ତ୍ରଯାକ ତାଳି, ତାଳି ପରେ ତାଳି, ପୁଣି ତାଳି ତା ଉପରେ—
ରାଧାନାଥ. ମହାଯାତ୍ରା ।

୩ । କଣା ବାସନରେ ପକାଯିବା ଧାତୁଖଣ୍ଡ—
3. A patch of metal tinkered to a hole in a metal pot.

ତାଳିକ—ସଂ. ବି (ତାଳ+ଇକ)—୧ । କରତାଳି—
Ta͟lika 1. Clap.
୨ । କରତଳ—2. Palm of the hand.
୩ । ଚାପୁଡ଼ା—3. Slap.
୪ । ବନ୍ଧନ—4. Binding; imprisonment.
୫ । ମୋହର ମାରିବା ମୁଦ କରିବା—5. Sealing.

ତାଳିକା—ସଂ. ବି. ସ୍ତ୍ରୀ (ତାଳ+କ+ସ୍ତ୍ରୀ. ଆ)—୧ । କରତାଳି—
Ta͟lika 1. Clap.
୨ । ଚାପୁଡ଼ା—2. Slap.
୩ । ମଞ୍ଜିଷ୍ଠା—3. Indian madder.
୪ । ନିର୍ଘଣ୍ଟ; ତାଲିକା—4. List.
୫ । କାଗଜର ପୁଳିନ୍ଦା—5. A cover containing a bundle of papers.
୬ । ତାଳମୂଳୀ ( ଦେଖ )—6. Ta͟lmuli ( See )
୭ । ତାଲା—7. Padlock.

ତାଲିକା—ଦେ. ବି ( ସଂ, ତାଳିକା; ତୁଳ, ଅ. ତଅଲିକା )—
Talika ନିର୍ଘଣ୍ଟ; ଲିଷ୍ଟ—Inventory; schedule;
তালিকা invoice; catalogue.
तालिका

ସାଧାରଣ ଲୋକେ ଅନେକ ସ୍ଥଳରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳେ, ତେବେ ସେହି ଶବ୍ଦ ଯଥାକ୍ରମେ ଚିହ୍ନିତ ଅପର ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ କରି ଖୋଜିବାକୁ ହେବ । ଯଥା— 'ଟାଣ' ନ ମିଳିଲେ 'ଟାଣ' ଖୋଜିବେ; 'ବୃଥ' ନ ମିଳିଲେ 'ବଥ' ଦେଖିବେ; 'ବଟ୍' ନ ପାଇଲେ 'ବଣ୍ଟ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

**ତାଳ ଦେବା**—ଦେ. କ୍ରି. (ସଂ. ତାଳ)—୧ । ହାତତାଳି ଦେବା; ଦୁଇ Tāḻi debā କରତଳକୁ ଶବ୍ଦ କରିବା; ଫଟ୍‌କାର କରିବା— ତାଲି দেওয়া 1. To clap one's palms. तालिपीटना; तालीबजाना ତାଳ ଦେଇଛନ୍ତି, ନାଚିଛନ୍ତି ।
ଉପାନାଟ. ମହାଦେବଙ୍କ ।

[ଦ୍ର—ଠାକୁରଙ୍କୁ ନୈବେଦ୍ୟ ଦେବା ସମୟରେ, ଗଡ଼େଇ ଆଦିଙ୍କୁ ଦୁରୁଡାଇବାକୁ, ସଭାରେ କୌଣସି ବକ୍ତାଙ୍କ ବକ୍ତୃତାର ଅଧ୍ୟରେ ବା ଶେଷରେ କିମ୍ବା ବକ୍ତୃତାର କୌଣସି ଅଂଶ ଶ୍ରୋତାମାନଙ୍କ ହୃଦୟସ୍ପର୍ଶୀ ହେଲେ, ପ୍ରକାଶ୍ୟଭାବରେ ଲୋକଙ୍କୁ ନିନ୍ଦା ବା ଉପହାସ କରିବା ଉପଲକ୍ଷରେ, ତଥା ନ କହି କୌଣସି ଦୂରସ୍ଥ ବ୍ୟକ୍ତିର ଦୃଷ୍ଟି ଆକର୍ଷଣ କରିବା ଉଦ୍ଦେଶ୍ୟରେ, ଗୀତବାଦ୍ୟାଦିର ତାଳ ସ୍ଥାପନ କରିବାରେ ଓ ବିବାଦରେ ଜୟଯୁକ୍ତ କୌଣସି ବ୍ୟକ୍ତି ବା ପକ୍ଷକୁ ଉତ୍ସାହିତ କରିବା ଉଦ୍ଦେଶ୍ୟରେ ତାଳ ଦିଆଯାଏ ।]

୨ । ତାଳି ପକାଇବା (ଦେଖ)— 2. Tāḻi pakāibā (See)

୩ । (ଲକ୍ଷଣାର୍ଥ) ଯୋଗଦେବା— 3. (figurative) To join.

୪ । ଉପହାସ କରିବା—4. To deride.

**ତାଳି ପକା(କେ)ଇବା**—ଦେ. କ୍ରି.—ଜୀର୍ଣ୍ଣବସ୍ତ୍ର ବା ଧାତୁ ପାତ୍ରର ଛିଦ୍ରରେ Tāḻi pakā(ke)ibā ନୂତନ ବସ୍ତ୍ର ବା ଧାତୁଖଣ୍ଡ ପକାଇବା, ତାଲି দেওয়া ତାଳି ଦେବା—To patch up a garment or थेगलि देना a metal pot.

**ତାଳି ବଜା(ଜେ)ଇବା**—ଦେ. କ୍ରି.—ତାଳଦେବା (୧) (ଦେଖ) Tāḻi bajā(je)ibā Tāḻi debā (1) (See) (ତାଳମାରିବା—ଅନ୍ୟରୂପ) তালি দেওয়া ताली बजाना

**ତାଳି ବାଇବା**—ଦେ. (ସଦ୍ୟ) କ୍ରି.—ତାଳି ବଜାଇବା— Tāḻi bāibā To clap the palms.
ଅନନ୍ତ ଯୁଗରେ ସମ ସଙ୍ଗେ ତାଳ ବାଇ । ପ୍ରାଚୀ. ଶ୍ରୀ ଗୁରୁଙ୍କ ଗୀତା ।

**ତାଲିମ୍**—ବୈଦେ. ବି. (ଅ. ତାଲିମ୍)—୧ । ଶିକ୍ଷା; ଅଭ୍ୟାସାର୍ଥ Tālim ଉପଦେଶ—1. Training; coaching. তালিম ୨ । ଶିକ୍ଷାଦାନ—2. Tuition; instruction; तालीम teaching.

୩ । ପ୍ରାଥମିକ ଶିକ୍ଷା—3. Primary instruction.

୪ । ରଙ୍ଗମଞ୍ଚରେ ଅଭିନୟ ପୂର୍ବରୁ ନଟମାନଙ୍କର ପାଠବା ଅଭିନୟର ଶିକ୍ଷା—4. Rehearsal.

ବଣ—ଶିକ୍ଷିତ—Trained; disciplined.

**ତାଲିମ୍ କରିବା**—ଦେ. କ୍ରି—୧ । ପ୍ରାଥମିକ ଶିକ୍ଷା ଦେବା; ମଣ କରିବା— Tālim karibā 1. To train; to coach; to teach. তালিম করা; তালিম দেওয়া ୨ । (ଜଜରଥ) ସାକ୍ଷୀମାନଙ୍କୁ ଅଭିପ୍ରେତ तालीम करना ସାକ୍ଷ୍ୟଦେବା ନିମନ୍ତେ ଆଗରୁ ଶିଖାଇବା— 2. To coach witnesses before trial.

**ତାଲିମ୍ ତରିବତ୍**—ବୈଦେ. ବି. (ଅ. ତାଲିମ୍=ଶିକ୍ଷା+ତରିବତ୍= Tālim taribat ଶିକ୍ଷା; ସଦ୍‌ଗତ)—ଶିକ୍ଷା— Training; discipline.

**ତାଳୀ**—ସଂ. ବି. (ତାଳ+ସ୍ତ୍ରୀ. ଈ)—୧ । ତାଳଗଛ— Tāḻī 1. The palmyra tree.

୨ । ଏକପ୍ରକାର ବଡ଼ ତାଳଗଛ—2. The Talipot palm; Corypha Umbraculifera.

[ଦ୍ର—ଏହି ଗଛ ତାଳ ଗଛ ଅପେକ୍ଷା ମୋଟ ଓ ଏହାର ପତ୍ର ଅପେକ୍ଷାକୃତ ବଡ଼ । ଏହାକୁ ଦେଖିଲେ ପ୍ରଥମେ ତାଳ ଗଛ ବୋଲି ଭ୍ରମ ହୁଏ । ଏହା ୪୦ ବର୍ଷରେ ଫୁଲ ଧରେ । ଫଳ ପାଚିଲେ ଗଛ ମରିଯାଏ । ଏହା ଦକ୍ଷିଣଭାରତର ଅରଣ୍ୟରେ ଜନ୍ମେ । ସଂସ୍କୃତରେ ଏହାର ଏକନାମ 'ଲେଖ୍ୟପତ୍ର' ।]

୩ । ତାଡ଼ି—3. Toddy; fermented palm-juice.

୪ । ହିନ୍ତାଳ; ହେନ୍ତାଳ ଗଛ—4. Phoenix Paludosa.
ଘନ-ତାଳୀ- ବନାଳୀର୍ଣ୍ଣ ଜଳଦୁର୍ଗବାସୀ । ରଘୁନାଥ. ମହାଯାତ୍ରା ।

୫ । ତାଳବନ—5. Palm grove

୬ । ତାଲା—6. Padlock.

୭ । ଗୁଞ୍ଜକାଠି—7. Key of a lock.

୮ । ତାଳମୂଳୀ (ଦେଖ)—8. Tāḻamūḻi (See)

୯ । ଭୁଇଁ ଅଁଳା; ବାଡ଼ ଅଁଳା— 9. Phyllanthus Niruri (plant).

୧୦ । (ତାଳ+ଇନ୍ ୧ମା. ୧ବ)—ଯେଉଁ ବ୍ୟକ୍ତି ଗୀତ ବୋଲାଯିବା ଉପଲକ୍ଷରେ ବାଦ୍ୟସାହାଯ୍ୟରେ ତାଳଦିଏ— 10. One who beats measures in accompaniment of a song.

୧୧ । ଶିବ; ମହାଦେବ—11 Siba.

୧୨ । ମୁନିବିଶେଷ—12. Name of a sage.

୧୩ । ହରଡ଼ (ହ୍ରି. ଶବ୍ଦସାଗର)— 13. A kind of pulse.

୧୪ । ତାମ୍ରବଲ୍ଲୀ ଲତା (ହ୍ରି. ଶବ୍ଦସାଗର) (ଦେଖ) 14 Tāmraballi creeper (See)

୧୫ । ବର୍ଣ୍ଣବୃତ୍ତବିଶେଷ (ହ୍ରି. ଶବ୍ଦସାଗର)— 15. Name of a Sanskrit metre.

୧୬ । ଖିଲାଣର ମଝି ପଥର (ହ୍ରି ଶବ୍ଦସାଗର)— 15. The central stone of an arch.

ଦେ. ବି—ବାଦ୍ୟଯନ୍ତ୍ରବିଶେଷ—A kind of drum.
ବାଜେ ମର୍ଦ୍ଦଳ ତାଳ ତାଳୀମାନ—ଭଞ୍ଜ. ବୈଦେହୀଶବିଳାସ ।

**ତାଳୀଶ ପତ୍ର**—ସଂ. ବି—ହିମାଳୟର ଦେବଦାରୁ ବର୍ଗର ତରୁବିଶେଷର Tāḻiśa patra ପତ୍ର—The silver fir; Abies তালীশপত্র Webbiana; Cinnamomum Tamala तालिशपत्र, ताकचिनि, किरिकिरिआ, (Kirtikar).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଈ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଞ | ଶ,ଷ | କ୍ଷ | ଇୟ | ନ୍ଥ | ଢ |
| ୨ | ଈ | ଊ | ରୁ | ଲୁ | ଯେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଝ | ଧ |

**କିଙ୍କା, ସିଲକାଷିଟ** [ ଦ୍ର—ବୈଦ୍ୟକ ମତରେ ଏହା
ସଂ. ପର୍ଯ୍ୟାୟ—ଧାତ୍ରୀପତ୍ର, ମଧୁର, ଗରମ, କଫବାତନାଶକ ଏବଂ
ସ୍ଥୂଳୋଦର, ତ୍ରହ୍ନିକାପତ୍ର, ଶୂଳ, କ୍ଷୟରୋଗ ଓ କାଶରେ ଉପ-
ତାଳୀଶପତ୍ର, ଅର୍କବନ୍ଧ, ପତ୍ରାଖ୍ୟ, କାଟ । ହିମାଳୟ ଅଞ୍ଚଳରେ ଏହା
କରପତ୍ର, କରଚ୍ଛଦ, ନୀଳ, ମିଳେ । ହିନ୍ଦିରେ ଯାହାକୁ ତାଳୀଶପତ୍ର
ନୀଳାମ୍ବର, ତାଳୀପତ୍ର, ଜମାହ୍ୱୟ କହନ୍ତି, ଓଡ଼ିଆରେ ତାହା ତେଜପତ୍ର ]

ତାଳୁ— ସଂ. ବି. ( ତୃ ଧାତୁ=ଗମନ କରିବା+କରଣେ. ଜୁ; ତୁଳ.
Tā̱lu ହି. ତାଲୋ; ତେ. ତାଲ; ଯାହାଦ୍ୱାରା ଶବ୍ଦ ଜାତ ହୁଏ)—
ପାଟି ମଧ୍ୟର ତାଳୁକା ବା ଉର୍ଦ୍ଧ୍ୱତମ ସ୍ଥାନ; ମୂର୍ଦ୍ଧା ଓ
ଦନ୍ତର ମଧ୍ୟବର୍ତ୍ତୀ ସ୍ଥାନ; ପାଟି ଉପରର ଛାତ—
The palate or roof of the mouth.

ଦେ. ବି—୧ ମନୁଷ୍ୟମୁଣ୍ଡର ଉର୍ଦ୍ଧ୍ୱତମ ଅଂଶ—
1. The corona or crown of the head.
୨ । ପର୍ବତାଦିର ଶୀର୍ଷ—
2. Top ( of a mountain ).

ତାଳୁଆ—ଦେ. ବି—୧ । ( ପାଟିର ) ତାଳୁ—
Tā̱luā 1. Palate.
ତାଲୂ ୨ । ମୁଣ୍ଡର ତାଳୁ—2. Crown of the head.
୩ । ଗୋଡ଼ର ତାଳୁକା—
3. The arch of the sole of the foot.
ଦେ. ବିଣ—ଯେ ଠିକ୍‌ମତେ ଗୀତର ତାଳ ପକାଏ—One who correctly beats measures to a song.

ତାଳୁ ଉଠା (ଠେ)ଇବା—ଦେ. କ୍ରି—ଶିଶୁର ଜନ୍ମ ମାତ୍ରେ ତାହାର
Tā̱lu uṭhā(ṭhe)ibā ପାଟିରେ ଅଙ୍ଗୁଠି ପୂରାଇ ତାଳୁକୁ ଉପର
**तालुउठाना** ଆଡ଼କୁ ଟିପି ଦେବା—To press up the palate of a just born baby to raise it towards the crown of its head.

ତାଳୁକ—ସଂ. ବି. ( ତାଳୁ+ସ୍ୱାର୍ଥରେ. କ )—ତାଳୁ—
Tā̱luka Palate.

ତାଲୁକ(କା)—ବୈଦେ. ବି. ( ଆ ତଅଲ୍ଲୁକ୍ )—
Tāluka(kā) ୧ । ଭୂସମ୍ପତ୍ତି; ଜମିଦାରୀ ମାହାଲ—
তালুক 1. Estate; zamindari.
**ताल्लुक, ताल्लुका** ୨ । ରାଜସ୍ୱ ଆଦାୟ ବା ଶାସନ ସୁବିଧା ନିମନ୍ତେ
**तअल्लुक** କରାଯାଇଥିବା ଦେଶର ବିଭାଗ—
2. Fiscal sub-division.
[ ଦ୍ର—ଏହାର ସାଙ୍କେତିକ ଚିହ୍ନ । ତା ।; ଯଥା—। ତା । ରଘୁନାଥପୁର=ତାଲୁକେ ରଘୁନାଥପୁର । ତାଲୁକ କେତେଗୁଡ଼ିଏ ପ୍ରଗନ୍ନାର ସମଷ୍ଟି । ]

ତାଲୁକ ଦାର—ବୈଦେ. ବି. (ଆ. ତଅଲ୍ଲୁକ+ଫା. ଦାର୍ )—ଜମିଦାର;
Tāluka dāra ଭୂମ୍ୟଧିକାରୀ—Zamindar; owner of an
তালুকদার **ताल्लुकदार** estate; tenure holder.

ତାଲୁକଦାରି—ବୈଦେ.ବି. (ଆ.ଓ.ଫା)—ତାଲୁକଦାରର କର୍ମ ବା ବୃତ୍ତି-
Tālukadāri The function of a Talukdar.
তালুকদার **ताल्लुकदारी**

ତାଲୁକ ବୋର୍ଡ(ଡ୍)—ବୈଦେ. (ଆ. ତଅଲ୍ଲୁକ୍+ଇଂ. ବୋର୍ଡ) ପ୍ରାଦେ.
Tāluka borda(rd) (ଗଞ୍ଜାମ) ବି—ସ୍ୱାୟତ୍ତଶାସନ ପ୍ରଣାଳୀଦ୍ୱାରା
(ତାଲୁକାବୋର୍ଡ—ଅନ୍ୟରୂପ ) ପରିଚାଳିତ ମାନ୍ଦ୍ରାଜ ପ୍ରଦେଶର
ଜିଲ୍ଲାର ସବ୍‌ଡିଭିଜନସ୍ଥ ବୋର୍ଡ; ମାନ୍ଦ୍ରାଜ ପ୍ରଦେଶସ୍ଥ
ଲୋକାଲ ବୋର୍ଡ—Local Boards in subdivisions of Madras.

ତାଲୁକ ମଜ(ଜୁ)କୁରି—ଦେ. ବି—ମୁସଲମାନଙ୍କ ଅମଳରେ ରାଜସ୍ୱ ସଂକ୍ରାନ୍ତ
Tāluka maja(ju) kuri ପ୍ରଗନ୍ନାର ବିଭାଗବିଶେଷ—Name of a fiscal division during the Mahomedan rule in India.
[ ଦ୍ର—ପ୍ରତ୍ୟେକ ପ୍ରଗନ୍ନା ରାଜସ୍ୱ ସଂକ୍ରାନ୍ତ କର୍ମଚାରୀମାନଙ୍କ ନାମାନୁସାରେ ତାଲୁକ ଚୌଧୁରୀ, ତାଲୁକ ମଜୁକୁରି ବା ମକଦମୀ ମଜକୁରି ଇତ୍ୟାଦି ୫ ଭାଗରେ ବିଭକ୍ତ ଥିଲା—କୃପାସିନ୍ଧୁ. ଇତିହାସ । ]

ତାଲୁକ ମୁଲକ—ବୈଦେ. ବି. (ସଦରର) ( ଆ. ତଅଲ୍ଲୁକ+ମୁଲ୍କ୍ )—
Tāluka mulaka ମାହାଲ ମୁଲକ; ଜମିଦାରୀ; ନାନା ଶ୍ରେଣୀର
তালুক মুলুক ଭୂସମ୍ପତ୍ତି—Estates of different classes.
**ताल्लुक मुल्लुक**

ତାଳୁକା—ଦେ. ବି. ( ସଂ. ତାଳୁ )—୧ । ପାଟିର ତାଳୁ—
Tā̱lukā 1. Palate.
তালু ୨ । ଗୋଡ଼ ତଳପାର ମଧ୍ୟଭାଗ—
2. The middle of the sole of the foot.
୩ । ଗୋଡ଼ତଳପା ବା ତାଳୁକାରେ ଉଠିବା ବ୍ରଣ—
3. A boil on the heel.
୪ । ମୁଣ୍ଡର ତାଳୁ—4 Crown of the head.

ତାଲୁକା—ପ୍ରାଦେ. ( ଗଞ୍ଜାମ ) ବୈଦେ. ବି—ତାଲୁକ ( ଦେଖ )
Tālukā Tāluka ( See )

ତାଲୁକା ଅଫିସର—ପ୍ରାଦେ. ( ଗଞ୍ଜାମ ) ବୈଦେ. ବି. ( ଆ. ତଅଲ୍ଲୁକ୍
Tālukā aphisara +ଇଂ. ଅଫିସର୍ )—ଜିଲ୍ଲା ସବ୍‌ଡିଭିଜନର
ପ୍ରଧାନ ରାଜକର୍ମଚାରୀ—Subdivisional officer.

ତାଳୁକା ଫୁଟା—ଦେ. ବିଣ—ଭୂମିରେ ଥିବା ଯେଉଁ ବଡ଼ ବଡ଼ ପଥର
Tā̱lukā phuṭā ବା ମାଟିଢେଲାରେ ବାଜିବା ଲୋକର ଗୋଡ଼ର
ତାଳୁକା ଫୁଟି ଯାଏ—Big clods or bats of stone or earth which hit the middle of the heel of the wayfarer.
ଦେ. ଅ—ସବାରିକାନ୍ଧିଆ ବେହେରାମାନଙ୍କର ଡାକବିଶେଷ—
A halloo of palky-bearers.

ସାଧାରଣ ଲୋକେ ଅପର ବୃତ୍ତାରେ ଦୃଢ଼ଭ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କ୍ଷେତ୍ର' ନ ମିଳିଲେ 'ଖେତ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

[ ଦ୍ର—ସ୍ନାନ କରିବା ବେଳରେ ଗୋଡ଼ର ତାଳୁକୁ ଫୁଟାଇବା ଭଳି ବଡ଼ ବଡ଼ ଚିମା ଥିଲେ ସବାର ବାହେଇ ଯାଉଥିବାବେଳେ ଶଗଡ଼ିଆମାନେ ଏହି ଡାକ ଦିଅନ୍ତି । ]

**ତାଳୁଜିହ୍ୱ**—ସଂ. ବି. (ବହୁବ୍ରୀହି; ତାଳୁ+ଜିହ୍ୱା; ଏହାର ଜିଭ ନ ଥିବାରୁ ଓ
Tālu-jihwa ତାଳୁ ଜିଭର କାର୍ଯ୍ୟ ଚଳାଉ ଥିବାରୁ )—କୁମ୍ଭୀର— Alligator.

**ତାଳୁ(ଳୂ)ର**—ସଂ. ବି. ( ତାଳ+ଉର; ଉର )—
Tālu lū)ra ଆବର୍ତ୍ତ; ଜଳ ଭଉଁରୀ—Eddy.

**ତାଳେଇବା**—ଦେ. କ୍ରି. ( ସଂ. ତାଳ )—ତାଳ ମାରିବା—
Tāleibā To clap the palms.
ପ୍ରାଦେ. ( ଯାଜପୁର ) ଅ—୧ । ଫୁଲିବା—1. To swell.
୨ । ବିରଜ ହେବା—2. To become painful.

**ତାଷ୍**—ପ୍ରାଦେ. (ସମ୍ବଲପୁର) ବି. ( ସଂ. କୃଷି )—କୃଷ—
Tāsh Cultivation.
( ଯଥା—ଅଟ୍ କରଛେ, ବୁଢ଼ା ବଲ୍‌ଦେ ଚଷ୍ କରଛେ । )

**ତାଷ (ଇତ୍ୟାଦି)**—ଗ୍ରା. ବି—ଚଷ ଇତ୍ୟାଦି ( ଦେଖ )
Tāsha (etc) Chāsha etc. ( See )

**ତାଷଣୀ**—ଗ୍ରା. ବି. ସ୍ତ୍ରୀ. ( 'ତଷା'ର ସ୍ତ୍ରୀଲିଙ୍ଗ )—
Tāshuṇi ୧ । କୃଷୁଣୀ; କୃଷକ ପତ୍ନୀ—1. The wife of a
(ତଷା—ପୁଂ) farmer or husbandman.
୨ । ଚଷାଜାତୀୟା ସ୍ତ୍ରୀ—2. A woman of the Chashā sub-caste of Sudras.

**ତାସ୍**—ଦେଶୀ. ବି. (ଅ. ତାଶ୍=ପତଳା ଚଟକା ଥାଳିଆ )—
Tās ଖେଳିବାର ଚିତ୍ରିତ ମୋଟା କାଗଜ ଖଣ୍ଡମାନ—
তাস Playing cards.
तास [ ଦ୍ର—ତାସ୍ ମୁଠାରେ ଚିହ୍ନ ୪ ପ୍ରକାର ଥାଏ । ଯଥା— ୧. ଇସ୍ପାପାନ—କଳାପାନ ଚିହ୍ନ ଯୁକ୍ତ; ୨. ହରତନ—ନାଲିପାନ ଚିହ୍ନ ଯୁକ୍ତ; ୩ ଚିଡ଼ିତନ ବା ଚିଡ଼ିଆ—କଳା ବେଲ ପତ୍ର ଭଳି ତ୍ରିପର୍ଣ୍ଣ ଚିହ୍ନ ଯୁକ୍ତ; ୪. ରୁହିତନ—ନାଲି ରମ୍ବସ୍ ଚିହ୍ନ ଯୁକ୍ତ । ଏମାନଙ୍କୁ 'ରଙ୍ଗ' ବୋଲାଯାଏ । ପ୍ରତ୍ୟେକ ରଙ୍ଗରେ ୧୩ ଖଣ୍ଡ 'କାଗଜ'; ଯଥା—(ଏକ ବିନ୍ଦୁ ଯୁକ୍ତ ) ଟିକା, ( ଦୁଇ ବିନ୍ଦୁ ଯୁକ୍ତ) ଦୁଆ, ( ତିନି ବୁଟା ଯୁକ୍ତ ) ତିନା, ( ଚାରି ବୁଟା ଯୁକ୍ତ ) ଚଉକା, ( ପାଞ୍ଚ ବୁଟା ଯୁକ୍ତ ) ପଞ୍ଜା, ( ୬ ବୁଟା ଥିବା ) ଛକ୍କା, ( ସାତ ବୁଟା ଥିବା ) ସତା, ( ଆଠ ବୁଟା ଥିବା ) ଅଠା, ( ନଅ ବୁଟା ଥିବା ) ନବା ବା ନହଲା, ( ୧୦ ଚିହ୍ନ ଥିବା ) ଦଶା ବା ଦହଲା, ଗୋଲାମ (ଚିତ୍ର), ବିବି (ଚିତ୍ର) ଓ ସାହେବ (ଚିତ୍ର) । ଏହି ୪ ରଙ୍ଗର କାଗଜ ସଂଖ୍ୟା ମୋଟରେ ୫୨ ଖଣ୍ଡ । ଏକ ବିନ୍ଦୁ ଯୁକ୍ତ ଟିକା କାଗଜ ସବୁ ତାସ୍ ଅପେକ୍ଷା ମୂଲ୍ୟରେ ଉଚ୍ଚ; ଏହି ତାସ୍ ଖେଳ ପୂର୍ବେ ଆରବ, ମିସର ଓ ବାବିଲନ୍ ଦେଶରେ ଚଳୁଥିଲା । ଗଞ୍ଜପା ଖେଳ ମଧ୍ୟ ଏକ ପ୍ରକାର ତାସ୍ ଖେଳ ଓ ଏହା ବହୁ କାଳରୁ ଆରବ ଓ ପାରସ୍ୟରେ ଚଳୁଥିଲା । ତାସ୍ ଖେଳ ଉଦ୍ଧଳ ନୋଟ ଦେଖ । ]

**ତାସ୍ କାଟିବା**—ଦେ. କ୍ରି—କୌଣସି ଖେଳାଳିର ହାତରେ ଥିବା ତାସ୍
Tās kāṭibā ମଧ୍ୟରୁ ଅନ୍ୟ ଖେଳାଳି ଅନିର୍ଦ୍ଦିଷ୍ଟ ଭାବରେ
তাস কাটা କେତେକ ଅଂଶ ଉଠାଇ ନେବା—
तास काटना To take up a portion out of a pack of playing cards.

**ତାସକି**—ପ୍ରାଦେ. ( ସମ୍ବଲପୁର ) ବି—ଗିନା; ତାଟିଆ—
Tās-ki A metal cup.

**ତାସ୍ ଖେଳ(ଳା)**—ଦେ. ବି—ତାସ୍ ସାହାଯ୍ୟରେ କରାଯିବା କ୍ରୀଡ଼ା—
Tās khelā (lā) A game of cards;
তাস খেলা card-play.
तासका खेल [ ଦ୍ର—୨ ଜଣ ତାସ୍ ଖେଳିବାର ନାମ ବିନ୍ତି; ଦୁଇ ଦୁଇ ଜଣ ଗୋଟିଏ ଗୋଟିଏ ପକ୍ଷରେ ରହି, ଏପରି ଚାରି ଜଣ ତାସ୍ ଖେଳିଲେ ତାକୁ ଗ୍ରାବୁ ବୋଲାଯାଏ । ଶେଷୋକ୍ତ ଖେଳ ପ୍ରସିଦ୍ଧ; ଏ ଖେଳରେ ପ୍ରତି ରଙ୍ଗର 'ଦୁଆ'ଠାରୁ 'ଛକ୍କା' ପର୍ଯ୍ୟନ୍ତ ତାସ୍ ବାଦ୍ ଦେଇ ବାକି ପ୍ରତି ରଙ୍ଗର ୮ ଖଣ୍ଡ ଲେଖାଏଁ ୩୨ ଖଣ୍ଡ ତାସ୍‌ରେ ଖେଳ ହୁଏ । ଏହି ୩୨ ଖଣ୍ଡ ତାସ୍‌କୁ ଫେଣ୍ଟି ବା ଗୋଳାଇ ତହିଁରୁ ଗୋଟିଏ ଅଂଶ ଅନିର୍ଦ୍ଦିଷ୍ଟ ଭାବରେ କାଟିଲେ ଅର୍ଥାତ୍ ଉଠାଇ ନେଲେ ଉଠାଇବା ଲୋକର ହାତରେ ଥିବା ଅଂଶର ସର୍ବ ତଳେ ଯେଉଁ ରଙ୍ଗର କାଗଜ ଉଠେ ସେହି ରଙ୍ଗକୁ 'ରଙ୍ଗ' ବୋଲାଯାଏ । ଏହି 'ରଙ୍ଗ'ର ନାମ ତୁରୁପ୍ ( ଇଂ. ଟ୍ରମ୍ପ୍, Trump ) ଓ ଅନ୍ୟ ରଙ୍ଗର ତାସ୍‌କୁ 'ବଦରଙ୍ଗ' ବୋଲାଯାଏ । ଉକ୍ତ ୩୨ ଖଣ୍ଡ ତାସ୍ ୪ ଜଣ ଖେଳାଳିଙ୍କ ମଧ୍ୟରେ ଏକାଦିକ୍ରମେ ଖଣ୍ଡ ଖଣ୍ଡ କରି ସମାନ ସଂଖ୍ୟାରେ ବଣ୍ଟାଯାଏ । ଏହି ଗ୍ରାବୁ ଖେଳରେ ଟିକାର ମୂଲ୍ୟ ୧୧ (ଫୋଁଟା), ଦହଲାର ୧୦, ବଦରଙ୍ଗର ଗୋଲାମ ୧, ବିବିର ୨, ସାହେବର ୩ ଧରାଯାଏ; କିନ୍ତୁ 'ରଙ୍ଗ' କାଗଜର ନହଲାର ମୂଲ୍ୟ ୧୪ ଓ ଗୋଲାମର ମୂଲ୍ୟ ୨୦ ଧରାଯାଏ । ସବୁ ରଙ୍ଗର ସତା ଓ ଅଠା ଏବଂ ବଦରଙ୍ଗମାନଙ୍କର ନହଲାର କିଛି ମୂଲ୍ୟ ନାହିଁ । ଏହି ପ୍ରକାରେ ଗ୍ରାବୁ ଖେଳରେ 'ରଙ୍ଗ' କାଗଜର ନହଲା (୧୪), ଦହଲା (୧୦), ଗୋଲାମ (୨୦), ବିବି (୨), ସାହେବ (୩) ଓ ଟିକା (୧୧) ଏପରି ୬ ଖଣ୍ଡ କାଗଜରେ ୬୦ ଫୋଁଟା ଏବଂ ଅନ୍ୟ ୩ ଜାତିର ଅର୍ଥାତ୍ ପ୍ରତ୍ୟେକ ବଦରଙ୍ଗର କାଗଜମାନଙ୍କର ୫ ଖଣ୍ଡ କାଗଜ, ଯଥା—ଦହଲା (୧୦), ଗୋଲାମ (୧), ବିବି (୨), ସାହେବ (୩) ଓ ଟିକା (୧୧); ଏପରି ୧୫ ଖଣ୍ଡ କାଗଜରେ ୨୭ × ୩ ବା ୮୧ ଫୋଁଟା ହୁଏ । ରଙ୍ଗ ଓ ବଦରଙ୍ଗ କାଗଜମାନଙ୍କର ୨୧ ଖଣ୍ଡ ତାସ୍‌ରେ ସର୍ବ ମୋଟ ( ୬୦+୮୧ ) ବା ୧୪୧ ଫୋଁଟା ହୁଏ ।

ଥରକେ ୪ ଜଣ ଖେଳାଳୀ ୪ ଖଣ୍ଡ କାଗଜ ପକାଇବାକୁ ଏକ 'ପିଠି' ଖେଳ ବୋଲାଯାଏ । ଉପରୋକ୍ତ ମୂଲ୍ୟ ପ୍ରମାଣେ ସର୍ବୋଚ୍ଚ ମୂଲ୍ୟର କାଗଜ ଯେଉଁ ଖେଳାଳି ପକାଏ ସେ ଉକ୍ତ ପିଠିର ସମସ୍ତ କାଗଜକୁ ଜିତି କରି ନିଏ । ଯେଉଁ ଜଣ ଶେଷ ପିଠିର କାଗଜ ଜିଣି ନିଏ ତାହାର 'ହାତର ପାଞ୍ଚ' ହୁଏ ଓ ସେ ଏହି 'ହାତର ପାଞ୍ଚ'

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | | ଁ | ୠ,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଣ | ଇୟ | ତ୍ଥ | ଧ |
| ୨ | ଐ | ଓ | ଋ | ଲ | ଯେ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଯ୍ୟ | ଯ | ସ | ଙ୍ୟ | ଇଅ | ଞ | ନ |

ଯୋଗୁଁ ପୋଁଣ୍ଟା ଗଣା ହେଲା ବେଳେ ୫ ପୋଁଣ୍ଟା ବେଶି ପୁରସ୍କାର ପାଏ । ସୁତରାଂ 'ହାତର ପାଞ୍ଚ'କୁ ମିଶାଇ ସମସ୍ତ ତାସ୍‌ର ମୂଲ୍ୟ ମୋଟରେ ୧୪୨ ଅର୍ଥାତ୍ ୭ କୋଡ଼ି ୨ ପୋଁଣ୍ଟା ।

ଯେଉଁ ପକ୍ଷର ଜିଣି ନେଇଥିବା ତାସ୍‌ମାନଙ୍କ ମୂଲ୍ୟର ସମଷ୍ଟି ୨ କୋଡ଼ି ୭ ପୋଁଣ୍ଟା ଅର୍ଥାତ୍ ୪୭ ପୋଁଣ୍ଟାରୁ କମ ହୁଏ ସେ ପକ୍ଷ ହାରେ ଓ ଜିତିବା ପକ୍ଷର ଜୟର ଚିହ୍ନର ନିଦର୍ଶନ ରୂପେ ଖଣ୍ଡେ ରଙ୍ଗ ତାସ୍ ହାରିବା ପକ୍ଷ ଉପରେ 'ବସେ' ।

ତାସ୍ ବଣ୍ଟା ହେବା ପରେ ଯେବେ ଦେଖାଯାଏ ଯେ ଜଣେ ଖେଳାଳୀର ହାତରେ ଏକ ରଙ୍ଗର ସାହେବ ଓ ବିବି ପଡ଼ିଛି ତେବେ ତାହାର 'ଇସ୍ତୁକ୍' ହୁଏ । ଉକ୍ତ ଖେଳାଳୀ ଉକ୍ତ 'ଇସ୍ତୁକ୍' ଦୁଇ ପଟ ତାସ୍ ଖେଳ ସାରିଲେ ତାହାର 'ଇସ୍ତୁକ୍ କାଙ୍କାରୁ' ହେଲା ବୋଲି ବୁଝାଯାଏ ।

ଗୋଟିଏ ପକ୍ଷର 'ଇସ୍ତୁକ୍' ହେଲେ ଅପର ପକ୍ଷ ଖେଳରେ ଅନ୍ତତଃ ୩ କୋଡ଼ି ବା ୬୦ ପୋଁଣ୍ଟା ମୂଲ୍ୟର କାଗଜ ଜିଣି ନ ପାରିଲେ ହାରି ଯାଏ । ଏକ ପକ୍ଷର ଜଣେ ଖେଳାଳିର ହାତରେ ଏକ ରଙ୍ଗର କ୍ରମିକ ସଂଖ୍ୟାବିଶିଷ୍ଟ ୩ ଖଣ୍ଡ ତାସ ପଡ଼ିଗଲେ ସେ ପକ୍ଷର 'ବନ୍‌ଗା' ହୁଏ । ଏକ ପକ୍ଷର 'ବନ୍‌ଗା'ର ଉଚ୍ଚତମ ତାସ୍ ଅପେକ୍ଷା ଅପର ପକ୍ଷର 'ବନ୍‌ଗା'ର ଉଚ୍ଚତମ ତାସ୍‌ର ମୂଲ୍ୟ ବେଶି ହେଲେ ଉଚ୍ଚତର ବନଗାଧାରୀକୁ ଅପର ପକ୍ଷର ଖେଳ ଶେଷରେ ୪୭ ପୋଁଣ୍ଟା ପରିବର୍ତ୍ତେ ୨୭ ପୋଁଣ୍ଟା ଦେଖାଇବା ଦରକାର ହୁଏ । ନୋହିଲେ ସେ ପକ୍ଷ ହାରିବ।

ଏଥିରେ ୨୦ ସଂଖ୍ୟା ଅଧିକ ଦେଖାଇବାକୁ ପଡ଼ିବାରୁ ଏହାର ନାମ 'ବିନଟି' (ପର୍ତ୍ତୁଗୀଜ୍ ବିନ୍‌ଗା vinte=ବିଂଶତି) । ଏକ ରଙ୍ଗର ୪ ଖଣ୍ଡ ତାସ କ୍ରମିକଭାବରେ ଜଣେ ଖେଳାଳୀର ହାତରେ ପଡ଼ିଲେ ଏହାକୁ 'ପର୍ତ୍ତୁଙ୍ଗ' ବୋଲାଯାଏ । କିନ୍ତୁ ରଙ୍ଗ ଘରର ଟିକା, ସାହେବ, ମେମ୍, ଗୋଲାମ ଏହି ୪ ଖଣ୍ଡି ତାସ୍ ଜଣେ ଖେଳାଳୀ ପାଇଲେ ତାହାକୁ 'ଇସ୍ତୁକ୍ ପର୍ତ୍ତୁଙ୍ଗ' କହନ୍ତି । ଯେଉଁ ପକ୍ଷର 'ପର୍ତ୍ତୁଙ୍ଗ' ହୋଇଥାଏ ସେ ଖେଳ ଶେଷରେ ୫୦ ପୋଁଣ୍ଟା ମୂଲ୍ୟର ତାସ୍ ଜିଣି ଥିବାର ଦେଖାଇ ପାରିଲେ ଜୟୀ ହୁଏ । କିନ୍ତୁ ଇସ୍ତୁକ୍ ପର୍ତ୍ତୁଙ୍ଗ ହେଲେ ବିପକ୍ଷ ପକ୍ଷର ହାରି ଯିବାର ସମ୍ଭାବନାରେ ପ୍ରାୟ ଖେଳ ହୁଏ ନାହିଁ ଏବଂ ଖେଳ ନ ହୋଇ ସୁଦ୍ଧା ଇସ୍ତୁକ ପର୍ତ୍ତୁଙ୍ଗ ପାଇଥିବା ପକ୍ଷ ଜୟର ଚିହ୍ନରୂପେ ଅପର ପକ୍ଷର ଉପରେ ଖଣ୍ଡେ କାଗଜ ଧରେ । ଏକ ପକ୍ଷର ଜଣେ ଖେଳାଳୀ ହାତରେ 'ବିନ୍‌ଗା' ଓ ଅନ୍ୟପକ୍ଷର ଜଣକ ହାତରେ 'ଇସ୍ତୁକ୍' ଥିଲେ, ବିନ୍‌ଗା ପାଇବା ପକ୍ଷକୁ ୬୦ ପୋଁଣ୍ଟା ଓ ଇସ୍ତୁକ୍ ପାଇବା ପକ୍ଷକୁ ୮୭ ପୋଁଣ୍ଟା ଦେଖାଇବାକୁ ପଡ଼େ । ଯେବେ ଏକ ପକ୍ଷରେ ବିନ୍‌ଗା ଓ ଅପର ପକ୍ଷରେ 'ପଞ୍ଚାଶ' ଥାଏ ତେବେ 'ପଞ୍ଚାଶ' ବାଲା ୬୦ ପୋଁଣ୍ଟା ଦେଖାଇଲେ ଜିତେ । ଜଣେ ଖେଳାଳୀ ହାତରେ 'ଇସ୍ତୁକ' ଓ 'ପର୍ତ୍ତୁଙ୍ଗ' ପଡ଼ିଲେ ଖେଳ ନ ହୋଇ ସୁଦ୍ଧା ସେହି ପକ୍ଷ ଜିଣେ । ୪ଟା ଯାକ ରଙ୍ଗର ସାହେବ, ଗୋଲାମ, ବିବି ଓ ଟିକା କିମ୍ବା ଏକ ରଙ୍ଗର କ୍ରମିକ ପରବର୍ତ୍ତୀ ୫ ଖଣ୍ଡ କାଗଜ ଜଣକ ହାତକୁ ଆସିଲେ ତାହାର 'ଇସ୍ତୁକ୍ ହଜାର' ବା 'ଶହ' ହୁଏ । 'ଶହ' ହେଲେ ନ ଖେଳ କରି ସୁଦ୍ଧା ଉକ୍ତ ବ୍ୟକ୍ତି ଜିଣେ ।

ଯେବେ ଏକ ପକ୍ଷ ଉପର୍ଯ୍ୟୁପରି ୫ ଥର ଜୟୀ ହୁଏ ତେବେ ଅପର ପକ୍ଷ ଉପରେ ସେ ଖଣ୍ଡିଏ 'ପଞ୍ଜା' କାଗଜ ବସାଏ । ଗୋଟିଏ ପକ୍ଷ ଖେଳସାରି ମୁଠାଏ ବା ପିଠିଏ ସୁଦ୍ଧା କାଗଜ ଜିତି ନ ପାରିଲେ ତାହା ଉପରେ ଅପର ପକ୍ଷର 'ଛକ୍କା' ବସେ । ଯାହା ଉପରେ 'ପଞ୍ଜା' ବସି ଥାଏ ତାହା ଉପରେ ପୁଣି 'ଛକ୍କା' ବସିଲେ 'ରମ୍' ହୁଏ ।

ଏକ ପକ୍ଷର ଖେଳାଳୀ ହାତରେ 'ରଙ୍ଗ'ର କାଗଜ ନ ଥିଲେ ଯେବେ ଅପରପକ୍ଷ 'ରଙ୍ଗ' କାଗଜ ପକାଏ ତେବେ ପ୍ରଥମ ଖେଳାଳୀ ତା ପାଖରେ ଥିବା ବେରଙ୍ଗ' ବା 'ବଦ୍‌ରଙ୍ଗ'ର ଉଚ୍ଚତମ ସଂଖ୍ୟାର କାଗଜ ପକାଇଲେ ତାହାକୁ 'ଫାଦ୍' ବୋଲାଯାଏ । ଖେଳାଳୀ ହାତରେ ଥିବା 'ବେରଙ୍ଗ'ର ସର୍ବୋଚ୍ଚ ମୂଲ୍ୟର ତାସ୍‌କୁ 'ଫିରେଇ' (ଇଂ. ଫ୍ରୀ; free) ବୋଲାଯାଏ । ]

**ତାସ୍ ଗୋଳା(ଳେ)ଇବା**—ଦେ. କ୍ରି.—ବିଭିନ୍ନ ରଙ୍ଗର ତାସ୍‌କୁ ଏକତ୍ର
Tās golā(le)ibā ମିଶାଇବା ପାଇଁ ଲେଉଟ ପାଲଟ କରିବା—
তাস গোলান To shuffle a pack of cards.
तास फेंटना
(ତାସ୍ ଫେଣ୍ଟିବା—ଅନ୍ୟରୂପ)

**ତାସ୍ ପିଟିବା**—ଦେ. କ୍ରି.—ତାସ୍ କାଗଜରେ ଖେଳିବା—
Tās piṭibā To play at cards.
তাসপিটা तास पिटना

**ତାସଙ୍ଗ**—ପ୍ରାଦେ. (ସମ୍ବଲପୁର) ବି.—କଂସାପାତ୍ର; କୁଣ୍ଡାକୃତି କଂସା—
Tāsaṅga A big bell-metal cup shaped like a bucket or crator.

**ତାସଙ୍ଗି**—ପ୍ରାଦେ.—(ସମ୍ବଲପୁର) ବି.—୧ । ଗିନା; କଟୋରୀ—
Tāsaṅgi 1. Metal cup.
୨ । ସାନ ଥାଳି—2. Saucer; small plate.

**ତାସଣ(ନ)**—ଦେ. ବି. (ସଂ. ତସର=ସୂତ୍ରବେଷ୍ଟନ)—୧ । ଲୁଗା ବୁଣିବା
Tāsaṇa(na) ପୂର୍ବରୁ ଟାଣି ସୂତାକୁ ମଣ୍ଡ ଦେଇ ମାଜିବା—
তাসন 1. Brushing of the warp threads with gum or boiled rice-paste before weaving.

ତାସଣ ତାଗାରେ ଗୋବର ଗଦା ଉଡ଼ିବା ନିତାନ୍ତ ଅସମ୍ଭବ ।
ଫକୀରମୋହନ, ଛମାଣ ଆଠଗୁଣ୍ଠ ।

୨ । ତନ୍ତୁବାୟମାନେ ଯେଉଁ ମାର୍ଜନୀଦ୍ୱାରା ସୂତାକୁ ମାଜନ୍ତି, କୁଞ୍ଚ—2. Weaver's brush

[ଦ୍ର—ଏହା 'କୁଞ୍ଚ' ଭଳିଆ ବା ବେଣାର ତେଲର କୋଷ୍ଠରେ ତିଆରି ହୁଏ ।]

| ସାଧାରଣ ଲୋକେ ଅପର ବ୍ୟକ୍ତାରେ ୨ ବା ୧ ଉଚ୍ଚାରିତ ଅକ୍ଷର ଓ ମାତ୍ରା ୧ ବା ୨ ଉଚ୍ଚାରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଉଚ୍ଚାରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଉଚ୍ଚାରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ' ନ ମିଳିଲେ 'ଗାଢ଼' ଖୋଜିବେ; 'କୁଢ' ନ ମିଳିଲେ 'କୁଢ଼' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ। |
|---|

**ତାସା**—ବୈଦେ. ବି. (ଅ. ତାସହ୍)—ପଲମ ଉପରେ ଚମଡ଼ା ଛୁଆଣି ହୋଇଥିବା ଅନଦ୍ଧ ବାଦ୍ୟବିଶେଷ—A drum made by laying hide or leather over a shallow earthen pan.
Tāsā
তাসা
तासा

**ତାସ୍କର୍ଯ୍ୟ**—ସଂ. ବି. (ତସ୍କର + ଭାବ. ଯ)—ତସ୍କରତା; ଚୌର୍ଯ୍ୟ—Stealing; robbery; theft.
Tāskarjya

**ତାହା**—ଦେ. ସର୍ବନାମ (ସଂ. ତଦ୍)—୧ । (କ୍ଳୀ. ୧ମା. ୧ବ.) ସେହି; ତା—1. That.
Tāhā
তা
उस
[ବି—ଏହି ଶବ୍ଦ ବସ୍ତୁ ବା ପଦାର୍ଥ ପାଇଁ ବ୍ୟବହୃତ ହୁଏ; ବ୍ୟକ୍ତି ପାଇଁ ବ୍ୟବହୃତ ଅକାର, ସେ ।]
୨ । (ପୁଂ. ସ୍ତ୍ରୀ. ଓ କ୍ଳୀ. ୬ଷ୍ଠୀ ୧ବ.) ତାହାର; ତାର; ତା—2. His; her; its.
୩ । (ପୁଂ. ଓ କ୍ଳୀ. ୨ୟା ୧ବ.) ତାହାକୁ; ତାକୁ—3. Him; that; it.

ନାଟପୋଶ ବାଣେ ବାନ୍ଧନ୍ତି ତାହା, ଜବରେ ପଡିଲ ମନ ଉତ୍ସାହା ।
ପ୍ରାଚୀ. ଶିଶୁଶଙ୍କର. ଉଷାଅଭିଳାଷ ।

୪ । ସେହି—4. The same.
[ବି—ତାହା ଶବ୍ଦର ୧ମା ତାହା, ୨ୟା ତାହାକୁ, ତାହାଠାକୁ, ୩ୟା ତାହାଦ୍ୱାରା, ତାହା ଦେଇ, ୫ମୀ ତାହାଠାରୁ, ତାହାଠଉଁ, ତାହାଠୁଁ, ୬ଷ୍ଠୀ ତାହାର, ୭ମୀ ତାହାଠି; ତାହାଠେଇଁ; ତାହାଠାରେ; ତାହା ଶବ୍ଦର ୧ମା ବିଭକ୍ତି କେବଳ ବସ୍ତୁ ପାଇଁ ବ୍ୟବହୃତ ହୁଏ, ଓ ବ୍ୟକ୍ତିପାଇଁ 'ସେ' ବ୍ୟବହୃତ ହୁଏ । କିନ୍ତୁ ୨ୟା, ୩ୟା, ୫ମୀ, ୬ଷ୍ଠୀ ଓ ୭ମୀ ବିଭକ୍ତିର ରୂପମାନ ଅନାଦରାର୍ଥେ ବ୍ୟକ୍ତି ପାଇଁ ମଧ୍ୟ ବ୍ୟବହୃତ ହୁଏ । ]

**ତାହାଁ**—ଦେ. ସର୍ବ. (ସଂ. ତଥା; ତତ୍ର; ହିନ୍ଦିରୁ ଅନୁକୃତ; ମୂଳ ଯାହାଁ; କାହାଁ;—ତହିଁ; ସେଠାରେ—There; at that place.
Tahān
তাহাঁ
तहाँ

**ତାହାଁ ତକ୍**—ଦେ. ଅ. (ହିନ୍ଦିରୁ ଅନୁକୃତ; ମୂଳ ଓଡ଼ିଆରେ ବ୍ୟବହୃତ ହୁଏ. ଯାହାଁତକ; କାହାଁତକ)—୧ । ତେତେଦୂର; ତାବତ୍—1. So far.
Tahān tak
তাহাঁতক
तहाँतक
୨ । ସେହି ସ୍ଥାନ ପର୍ଯ୍ୟନ୍ତ—2. Upto that place.
୩ । ସେହି କାଳ ପର୍ଯ୍ୟନ୍ତ—3. Till that time; so long

**ତାହାଁ ତାହାଁ**—ଦେ. ସର୍ବ. (ବହୁବଚନ)—
Tahān tahān
তথায় তথায়
तहाँ तहाँ
୧ । ସେହି ସେହି ସ୍ଥାନମାନଙ୍କରେ—1. At those places.
୨ । ସେହି ସେହି ସ୍ଥାନମାନଙ୍କ ପର୍ଯ୍ୟନ୍ତ—2. Upto those places.
୩ । ତାବତ୍; ତହୁଁ ତହୁଁ—3. So far; so much.

ଯାହାଁ ଯାହାଁ ଲୁହା, ତାହାଁ ତାହାଁ ବେଲୁନ୍ । ଡଗ ।

**ତାହାଠିଁ**—ଗ୍ରା. ସର୍ବନାମ. (ଅନାଦରାର୍ଥକ; ତଦ୍ ଶବ୍ଦ ୭ମୀ ବିଭକ୍ତି ୧ ବଚନ) —ତାହାଠାରେ; ତାହାନିକଟରେ—At him; with him.
Tāhā-ṭhiṅ
তারঠে
उसने
(ତାହାଠେଇଁ—ଅନ୍ୟରୂପ)
(ତାଙ୍କଠିଁ—ଆଦରାର୍ଥକ)

**ତାହାଠିକି(କୁ)**—ଗ୍ରା. ସର୍ବ. (ଅନାଦରାର୍ଥକ)—୧ । (୨ୟା ବିଭକ୍ତି) ସେହି ବ୍ୟକ୍ତି ନିକଟକୁ—1. To that person.
Tāhā ṭhiki(ku)
তারঠে
उसने
୨ । (୫ମୀ ବିଭକ୍ତି) ତାହାଠାରୁ; ତାହା ଅପେକ୍ଷା—
(ତାହାଠାରୁ, ତାହାଠେଇଁକି—ଅନ୍ୟରୂପ) 2. From him; than him.
(ଯଥା—ରାମ ଶ୍ୟାମ ଦୁଇ ଜଣଙ୍କ ମଧ୍ୟରେ ଏ ତାହାଠିକି ବଡ଼ ।)

**ତାହାଠୁଁ**—ଦେ. ସର୍ବ. (ସଂ. ତଦ୍; ୫ମୀ. ୧ବ; ଅନାଦରାର୍ଥକ)—
Tāhā-ṭhuṅ
তারঠে
उससे
୧ । ସେହି ବ୍ୟକ୍ତିଠାରୁ—1. From that person.
୨ । ତଦପେକ୍ଷା—2. Than that; than him.
(ତାହାଠଉଁ—ଅନ୍ୟରୂପ)

**ତାହାଁ ବୋଲି**—ଦେ. ଅ—ତହୁଁ; ସେହି ହେତୁରୁ; ସେଥିଯୋଗୁଁ—Hence; owing to that; therefore.
Tāhā boli
তাবলে
उसलिये

**ତାହାର(ରି)**—ଦେ. ସର୍ବ. (ସଂ. ତଦ୍; ୬ଷ୍ଠୀ. ୧ବ; ଅନାଦରାର୍ଥ)—ତାହାରହିଁ; ନିଶ୍ଚୟ ତାହାର (ଅନ୍ୟ କାହାର ନୁହେଁ)- Certainly his, her or its.
Tāhāra(ri)
তাহারি
उसकाहि
(ତାହାଙ୍କର—ଆଦରାର୍ଥକ)

**ତାହାରେ**—ଦେ. (ପ୍ରାଚୀନ ପଦ୍ୟ) ସର୍ବ (ସଂ. ତଦ୍; ୭ମୀ. ୧ବ)—ତାହାଠାରେ; ତହିଁରେ—In that.
Tāhāre

ଦେହରେ ଯେସନ୍ତେ ଆତ୍ମା ଥାଇ
ଦେହ ତାହାରେ ନ ମିଶଇ । ଭୂପତି. ପ୍ରେମପଞ୍ଚାମୃତ ।

**ତାହା ହେଲେ**—ଦେ. ଅ—୧ । ତେବେ; ଉକ୍ତ ବିଷୟ ହେଲେ ବା ଘଟିଲେ—1. Then.
Tāhā hele
তাহলে
तब
୨ । ସେପରି ଘଟଣାରେ; ସେପରି ସ୍ଥଳରେ—2. In that case.

**ତାହି**—ଦେ. ସର୍ବ. (ସଂ. ତଦ୍ହି; ତଥାହି)—ତାହା ମାତ୍ର; କେବଳ ତାହା—That only.
Tāhi
তাই
ओइ, वहि

ଜଳୋତ୍ପଳ ଦୃଷ୍ଟିପାତେ ବୃଷ୍ଟି କରେ ତାହି
ଭଞ୍ଜ. କୋଟିବ୍ରହ୍ମାଣ୍ଡ ସୁନ୍ଦରୀ ।

(ତାହାଇ, ତାହାହିଁ, ତାହିଁ—ଅନ୍ୟରୂପ) ଦେ. ବିଣ. (ସଂ. ତାପ)—ତାଇ (ଦେଖ)—Tāi (See)

**ତାହିଁ**—ଗ୍ରା. ଅ (ସଂ. ତତ୍ରହି)—ତହିଁ; ସେଠାରେ—There.
Tāhiṅ
সেখানে
ଗ୍ରା. ସର୍ବ—ତାହି (ଦେଖ)—Tāhi (See)

ନୁଅ ଲଦିକାରେ ଗୁଥି ର ମୋ ସମ କାହିଁ ?
ତୁ ଅଚିରୁ ଥାଇ ସୁମାନ ବୋଲିଯା ମୁଁ ଅରମ୍ଭ ଥାଏ ତାହିଁ ।
କବିସୂର୍ଯ୍ୟ. ସଙ୍ଗୀତ ।

| ୧ | ଇ | ଜ | ଋଚ୍ଛ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଳ | ଷ,ଶ | କ୍ଷ | ଇପ୍ସ | ଋଷ | ଓ |
|---|---|---|---|---|---|---|---|---|---|---|---|---|---|---|
| ୬ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ | ଇଅ | ଔ | ନ୍ |

ତାହିଁକି—ଗ୍ରା. ଅ—ତହିଁକି (ଦେଖ)
Tāhiñki  Tahiñki (See)
(ତାହିଁକୁ—ଅନ୍ୟରୂପ)

ତାହିଁ ତାହିଁ—ଗ୍ରା. ଅ—ତାହାଁ ତାହାଁ (ଦେଖ)
Tāhiñ tāhiñ  Tāhāñ tāhāñ (See)

ତାହିତ—ଦେ. ବି. ଓ ସର୍ବ—ତାଇତ (ଦେଖ)
Tāhita  Tāita (See)

ମନ୍ତ୍ରଦେଖା ଘର୍ଷିତ ପଢନ୍ତି ବାହୁବେଳ
ତାହିତ ଯୋଗିତ ସେ ମନ୍ତ୍ରଭଲ ହେଲ ଯେ । ଭକ୍ତ. ସ୍ୱର୍ଣ୍ଣବଟ ।

ତାହିବା—ଦେ. କ୍ରି—ତାଇବା (ଦେଖ)
Tāhibā  Tāibā (See)

ତାହିଲା ମାଇ(ହି)ଲା—ଦେ. କ୍ରି. ଭଣ—ତାଇଲା ମାଇଲା (ଦେଖ)
Tāhilā māi(hi)lā  Tāilā māilā (See)
[ତାହିଲାରୁ ମାଇ(ହି)ଲା—ଅନ୍ୟରୂପ]

ତାହି ହେବା—ଦେ. କ୍ରି—୧ । (ଭାତି ତାଇଲା ବେଳେ ଭାତି ଯେଉଁ
Tāhi hebā ପରି ଉଠେ ପଡ଼େ ସେହିପରି) (ଶ୍ୱାସ ରୋଗୀ) ଶ୍ୱାସର ବେଗରେ ଉଠିବା ପଡ଼ିବା ପ୍ରକାରେ କ୍ଲିଷ୍ଟ ହେବା—
1. To gasp violently (said of an asthmatic patient during a severe fit of asthma) compared to the rise and fall of the bellows when blown.
୨ । (ଶିଶୁ) ବହୁତ ଉଲ୍ଲାସଯୁକ୍ତ ହେବା—
2. (a child) To be very sportful and active.
(ଯଥା—ବର୍ଷକର ପିଲା ଅମ ଘରବଣ୍ଟା ସାର ତାହି ହଉଛି ।)

ତାହୁଁ—ଗ୍ରା. ଅ—ତହୁଁ (ଦେଖ)
Tāhuñ  Tahuñ (See)

ତାହୁଁ ତାହୁଁ - ଗ୍ରା. ଅ—ତହୁଁ ତହୁଁ (ଦେଖ)
Tāhuñ tāhuñ  Tahuñ tahuñ (See)

ତାହୁତ—ଦେ. ବ—ତାଇତ (ଦେଖ)
Tāhuta  Tāita (See)

ତି—ଦେ. ଭଣ—ତିନି—
Ti  Three.
ते ( ଯଥା—ତିକନା, ତିତାଲ, ତିକାଠିଆ । )
ति [ ଦ୍ର—ଏହା ସର୍ବଦା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ । ]
टि; त ଗ୍ରା· ଅ—(ବାକ୍ୟବିନ୍ୟାସରେ ନିଶ୍ଚୟାର୍ଥକ, ପ୍ରଶ୍ନାର୍ଥକ ଓ
तो ସମ୍ଭାବନାର୍ଥକ ବ୍ୟବହାର) ଟି; ତ—A particle or letter used at the end of a sentence for emphasis, question or guess.
(ଯଥା—ବାବୁ କୁଆଡ଼େ ଗଲେ ତ ?)

ତିଅ(ଉ)ଣ—ଦେ. ବ. (ସଂ. ତେମନ, ତୀଣାନ)—ବ୍ୟଞ୍ଜନ; ତରକାରୀ—
Tia(u)ṇa  Curry.
तरकारी  तरकारी, तियन
[ ଦ୍ର—ରନ୍ଧନର ପ୍ରକାରଭେଦରେ ଓ ପରିବା ଆଦି ଉପକରଣ ଭେଦରେ ମହୁର, ବେସର, ଅମ୍ବିଳ, ଖଟା, ଡାଲମା, ଘିଅ, ସନ୍ତୁଳା, ଖଇଡ଼ା, ଠୁଟୁଠୁକା ଆଦି ନାନାପ୍ରକାର ତିଅଣ କରାଯାଏ ।]

ତିଅଣ ଶାଗ—ଦେ. ବ (ସଦ୍ଧତର; ସଂ. ଶାକ)—୧ । ଭାତ ସଙ୍ଗେ ଖିଆ
Tiana śāga  ଯିବା ବ୍ୟଞ୍ଜନାଦି—1. Curry (generally).
तरकारी शाग ୨ । ତିଅଣ ଓ ଶାଗଭଜା—
तरकारी भाजी  2. Curry and cooked pot-herbs.

ତିଅର—ଦେ. ବ. ପୁଂ ( ସଂ. ଧୀବର=ମତ୍ସ୍ୟଜୀବୀ )—୧ । ମାଛ ମାରିବା
Tiara  ଜାତିବିଶେଷ—1. A caste of fishermen.
तियर [ ଦ୍ର—ଏମାନେ ଜାଲ ପକାଇ ମାଛ ମାରନ୍ତି ନାହିଁ;
तीवर ଜାଲ ପୋଲୁହ ଓ କାଠି ପୋଲୁହ ଆଦିରେ ମାଛ ମାରନ୍ତି ।
(ତିଅରୁଣୀ—ସ୍ତ୍ରୀ) ଏମାନେ ଅସ୍ପୃଶ୍ୟ ଏବଂ କେଉଟଙ୍କ ଠାରୁ ଜାତିରେ ଊଣା । ]
୨ । ( ସମ୍ଭବତଃ ଏ ଶବ୍ଦ ତେଲୁଗୁ ଓ ଏ ନାମ ପୁରୀର ନୋଳିଆମାନେ ଦେଇଥିବାର ବିଶ୍ୱାସ କରାଯାଏ—ଯୋଗେଶଚନ୍ଦ୍ର) ଏକପ୍ରକାର ସାମୁଦ୍ରିକ ମାଛ; ଚଳନ୍ତି ମାଛ—2. A kind of sea-fish; sting ray; Dasybatis Centurus; Narcine Timlei.
[ଦ୍ର—ଏହାର ଦେହ ବୃତ୍ତାକାର ଓ ଚେପଟା ଏବଂ ଲାଙ୍ଗୁଡ଼ ଲମ୍ବା; ତାହାର ଚେଙ୍ଗଣାପାଖ ଧରିଲେ ଧରିବା ଲୋକର ଦେହରେ ବୈଦ୍ୟୁତିକ ଅଘାତ ଲାଗେ । ଏ ମାଛ ପୁରୀରେ ମିଳେ । ]

ତିଅ—ପ୍ରାଦେ (ଗଞ୍ଜାମ) ବ—ତିଅପୁରା ଖେଳର ୩, ୭, ୧୧ ଓ ୧୫
Tiā  ସଂଖ୍ୟକ ଦାନ—A throw of cowries in which the numbers 3, 7, 11 or 15 come out in the indoor game of Tiāpurdā.
ଦେ. ବ (ସଂ. ତ୍ରିତୟ)—ତିକା, ଯେଉଁ ତାସରେ ୩ଟି ବୁନ୍ଦା ଥାଏ—
तिग्री  A card with three points on it.
तिया ଦେ. ବ ( ସଂ. ତ୍ରୀହିକ )—ତୃତୀୟ ଦିନ ଆକ୍ରମଣ କରିବା (ଜ୍ୱର)—Tertian (fever).

ତିଆଇବା—ଦେ. କ୍ରି (ସଂ. ତାପ)—ତାଇବା; ଭାତିଦ୍ୱାରା କାର୍ଣ୍ଣିକୁ ପବନ
Tiāibā  ଯୋଗାଇବା—To blow with the bellows.
ताओयान, धौंकना

ତିଆଗ—ଗ୍ରା (ପଦ୍ୟ) ବ (ସଂ. ତ୍ୟାଗ)—ତ୍ୟାଗ ( ଦେଖ )
Tiāga  Tyāga ( See )
ମଧୁ ତଥିରୁଁ ଅଗ ତିଆଗବିଳାସ—ରାଧାନାଥ. ମେଘଦୂତ ।

ତିଅ ଜର—ଦେ. ବ· (ସଂ. ତ୍ରୀହିକ+ଜ୍ୱର)—ପ୍ରତି ତୃତୀୟ ଦିନ ଆକ୍ରମଣ
Tiā jara  କରିବା ଜର—Tertian fever.

ତିଅଡ଼ି ମାରିବା—ଦେ. କ୍ରି (ସବାରି ବେହେରାଙ୍କ ଭାଷା)—୧ । ଦୁଇ ଜଣ
Tiārdi māribā ଟାଣୁଥିବା ସବାରିବାଉଁଶରେ ତୃତୀୟ
ତିଅଡ଼ି ପକା(କେ)ଇବା } ଅନ୍ୟରୂପ ବେହେରା କାନ୍ଧ ଲଗାଇବା—
ତିଅଡ଼ିଆ ମାରିବା } 1. To get a third bearer to shoulder the pole of a Palki.

ସାଧାରଣ ଲୋକେ ଅନେକ ସ୍ଥଳରେ ହ୍ରସ୍ୱ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତନ୍ନିମ୍ନ ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ଦୃଢ' ନ ମିଳିଲେ 'ଦୃଢ଼' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅର୍ଘ୍ୟ'ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍ ଦେଖିବେ

୨ । ସବାରିର ପ୍ରତ୍ୟେକ ପାଶର ବାଉଁଶକୁ ତିନି ଜଣ ବେହେରା କାନ୍ଧେଇବା— 2. To have each pole of a palki shouldered by three bearers.

**ତିଅଡ଼ୀ**— ଦେ. ବି— ୧ । (ସଂ. ତ୍ରିପାଠୀ) ବୈଦିକ ବ୍ରାହ୍ମଣଙ୍କର ବଂଶଗତ ଉପାଧିବିଶେଷ; ତ୍ରିପାଠୀ—1. Family-title of a class of Brahmans.
Tiārdī
তিয়ারী
तिवारी, तिवाड़ी
(ତିଅଡ଼ିଅଣୀ—ସ୍ତ୍ରୀ)

୨ । (ସଂ. ତ୍ରିନ୍) ଏକପାଶର ସବାରି ବାଉଁଶକୁ ତିନିଜଣ ବେହେରା କାନ୍ଧେଇବା—2. The arrangement of three bearers carrying each pole of a palki.

୩ । ସେ ଉ ବାଉଁଶକୁ କାନ୍ଧେଇଥିବା ତିନିଜଣ ବେହେରାଙ୍କ ମଧ୍ୟରୁ ଯେଉଁ ବେହେରା ବାଉଁଶର ମୂଳ କାନ୍ଧେଇଥାଏ; ତିଅଡ଼ିଆ—3. The bearer who shoulders the pole of a palki nearest to the body.

୪ । ତିଲକାଞ୍ଚି ବଡ଼କେନ୍ଦୁ ବୃକ୍ଷବିଶେଷ— 4 Caesalpina Digyva (Haines).

[ ଦ୍ର—ଏଥିର ଛାଲକୁ ସିଝାଇ ସେହି ପାଣିରେ ଚମଡ଼ାକୁ ବର୍ଣ୍ଣିଲେ ଚମଡ଼ା ଟାଣୁଆ ଓ ସୁନ୍ଦର ହୁଏ । ]

**ତିଅପୁରୁଡ଼ା**— ପ୍ରାଦେ ( ଗଡ଼ଜାତ ଓ ଗଞ୍ଜାମ ) ବି—ଏକପ୍ରକାର କଉଡ଼ି ଖେଳ; ଘୁଲେଇ ଖେଳ—A kind of indoor game at hazards played by 4 players with cowrie-shells.
Tiāpurdā

[ ଦ୍ର—ଏଥିରେ ୪ ଗଣ୍ଡା କଉଡ଼ିରେ ୪ ଜଣ ଖେଳାଳି ଖେଳନ୍ତି । ୪ ଜଣଙ୍କର ୪ଟି ଦାନର ନାମ; ଯଥା—
କଡ—୧, ୫, ୯, ୧୩
ଦୁଆ—୨, ୬, ୧୦, ୧୪
ତିଆ—୩, ୭, ୧୧, ୧୫
ପୁଡ଼ା—୪, ୮, ୧୨, ୧୬ । ]

**ତିଆର(ରି)**— ବୈଦେ. ବିଣ ( ଅ. ତୈୟାର୍; ତୁଳ. ସଂ. ତତ୍ପର )—
Tiāra(ri)
তয়ের, তয়ার
तैयार

୧ । ପ୍ରସ୍ତୁତ; ନିର୍ମିତ—1. Built; made; prepared; constructed; composed.

୨ । ସୁସଜ୍ଜିତ—2. Well equipped; fitted up.

୩ । ଉଦ୍ୟତ; ତତ୍ପର; ପ୍ରସ୍ତୁତ—3. Ready.

୪ । ବ୍ୟବହାରରେ ଲଗିବା ପାଇଁ ସମ୍ପୂର୍ଣ୍ଣରୂପେ ଉପଯୁକ୍ତ— 4. Fit for immediate use.

୫ । ନିଷ୍ପନ୍ନ; ସମ୍ପନ୍ନ— 5. Finished; completed.

୬ । ବଢ଼ି ଯାଇଥିବା; ଉତ୍ତମରୂପେ ପରିପୁଷ୍ଟ— 6. Well developed.

୭ । ମଜବୁତ୍ ଓ ହୃଷ୍ଟପୁଷ୍ଟ— 7. Stout and strong.

୮ । ପୃଥୁଳ— 8. Plump; fat.

୯ । ବନ୍ଦୋବସ୍ତ କରା ଯାଇଥିବା—9. Arranged.

ତୟେରୀ, তয়ারী ବି (ଅ. ତୈୟାରୀ)—୧ । ନିର୍ମାଣ; ରଚନା—
तैयारी 1. Construction; preparation; make.

୨ । ସଜ୍ଜୀକରଣ—2. Equipment.

୩ । ତତ୍ପରତା— 3. Readiness; the state of being prepared for something.

୪ । ବନ୍ଦୋବସ୍ତ—4. Arrangement.

୫ । ସୁପରିପୁଷ୍ଟ ଅବସ୍ଥା; ପୁଷ୍ଟତା— 5 Development.

**ତିଆର(ରି) କରିବା**— ଦେ. କ୍ରି— ୧ । ପ୍ରସ୍ତୁତକରିବା; ନିର୍ମାଣକରିବା— 1 To build; to make; to manufacture; to prepare.
Tiāra(ri) karibā
( ତିଆରି କରିବା—ଅନ୍ୟରୂପ )
তয়ের করা
तैयार करना

୨ । ରଚନା କରିବା—2. To compose.

୩ । ସମ୍ପନ୍ନ କରିବା— 3. To finish; to complete.

୪ । ସଜ କରିବା; ସଜାଇବା— 4. To make ready; to equip.

**ତିଆରଣ**— ଦେ. ବି— ୧ । ପ୍ରବୋଧ ବାକ୍ୟ— 1. Consoling words.
Tiāraṇa

୨ । ଉପଦେଶ—2. Advice.

डाँट ୩ । ଗାଳି—3. Reprimand; censure.

ମୁଁ ସାଧ ନୋହିଲେ ତିଆରଣରେ—କବିସୂର୍ଯ୍ୟ. ସଙ୍ଗୀତ ।

**ତିଆରି (ଇତ୍ୟାଦି)**—ବୈଦେ. ବିଣ. ଓ ବି ( ଅ. ତୈୟାର୍ )— ତିଆର ଇତ୍ୟାଦି (ଦେଖ) Tiāra etc (See).
Tiāri (etc)

**ତିଆରିବା**— ଦେ. କ୍ରି—୧ । ଗାଳିଦେବା; ଅକଟ କରିବା— 1 To rebuke; to reprimand.
Tiāribā

କହନ୍ତି ରହ ଅହ ମତେ ନ ତିଆର—କୃଷ୍ଣସିଂହ, ମହାଭାରତ. ଅଦି ।

डाँटना ୨ । ମନ୍ଦ କଥାରୁ ନିବର୍ତ୍ତାଇବା— 2. To dissuade a person from doing any bad act.

୩ । ଦେଖେଇ ଶିଖେଇ ଗାଳିଦେବା; ବ୍ୟଙ୍ଗ କରିବା— 3. To throw out innuendoes.

୪ । କୌଣସି ବିଷୟ ବୁଝାଇବା; ବିଶିଷ୍ଟ ଉପଦେଶ ଦେବା— 4. To give special instructions or directions.

ତୁଚ୍ଛମାନଙ୍କୁ ହକାରିବ,
ସବୁଙ୍କୁ ତିଅର କହିବ—ଉପେନ୍ଦ୍ର. ପ୍ରେମପଞ୍ଚାମୃତ ।

୫ । ତିଆର କରିବା; ପ୍ରସ୍ତୁତ କରିବା— 5. To prepare; to build; to construct; to make.

| ୧ | ଢ | ଢ଼ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଅ | ଉଂ | ଅ |
|---|---|---|---|---|---|---|---|---|---|---|---|---|---|---|
| ୨ | ଝ | ଡ଼ | ରୁ | ଲୁ | ପ୍ରୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଅ | ଈ | ନ୍ |

୬ । ଫରମାସି କରିବା—6. To order for.

ହୃଦଚକ୍ଷୁ ପାଇ ଚାଅସିଲେ ବୈଦ୍ୟକୁଳ
ଉରଜାହେ ଘରରେ ଅଣନ୍ତ ଜାଇଫଳ ଯେ ।
କୃଷ୍ଣସିଂହ. ମହାଭାରତ ।

**ତିଅସି**—ଦେ. ବି ( ସଂ. ତ୍ରୀଦ୍ୱ; ତୃତୀୟ ଦିବସ )—କୌଣସି ଘଟନାର Tiāsi ବା ଉତ୍ସବାଦିର ତୃତୀୟ ଦିବସ—The 3rd day after an event or festival.
ତେସରା ଦିନ
तिवासो, तीसरा रौज

**ତିଉଡ଼ି**—ଦେ. ବି—୧ । (ସଂ. ତ୍ରିବୃତ୍; ତ୍ରିପୁଟା)—ଜଳମ୍ପା ଅବ ବର୍ଗର Tiurdi ବୃହତ୍ ଲତାବିଶେଷ—1. A creeper the root of which is used in laxative medicines; Operculina Turpethum; Ipomoea Turpethum

ସଂ. ନାମ—(କାଳତିଉଡ଼ିର) ତ୍ରିବୃତ୍, ମସୂରୀ, ଶ୍ୟାମବର୍ଣ୍ଣୀ, ଅମୃତା, କାଳନ୍ଦୀ, ତ୍ରିପୁଟା, ତାମ୍ରପୁଷ୍ପିକା, କାକନାସିକା
(ଧଳାତିଉଡ଼ି—ଶ୍ୱେତତ୍ରିବୃତ୍, ତ୍ରିଭଣ୍ଡୀ, ତ୍ରିବୃତା, ସର୍ବାନୁଭୂତି, ସରଳା, ନିଶୋତ୍ରା, ରେଚନୀ
(କଳାତିଉଡ଼ି)-ଶ୍ୟାମାତ୍ରିବୃତ୍, ଅର୍ଦ୍ଧଚନ୍ଦ୍ରା, ପାଳନ୍ଦୀ, ସୁଷେଣିକା, ମସୂରବିଦଳା, କାଳା, କୌଷିକା
କାଳମେଷିକା
ତିଉଡ଼ି, ତେଉଁଡ଼ି, ତେଓରି
निसात, निसोथ, तरबुद, तुकपतर, पितोहरि, पनिलर
(ତିନୁଡ଼—ଅନ୍ୟନାମ)
ମ ତିମ୍ବୁର, ନଶୋତ୍ତର
ତେ. ଅଲଟେଗଡ଼ା
ତା. ଶିବଦଇ
ଗୁ. ନସୋତର
ଫା. ନଶୋଥ୍
ଆ. ତରବୁଦ୍

[ ଦ୍ର—କାଳତିଉଡ଼ି ମଳସ୍ତମ୍ଭ,ଗ୍ରହଣୀ, ଜଳୋଦର, ଶୋଥ, ପାଣ୍ଡୁ, କ୍ରିମି, ପ୍ଲୀହା, ଜ୍ୱର, ପିତ୍ତଦୋଷ, କଫ, ବାତରକ୍ତ, ଉଦାବର୍ତ୍ତ ଓ ହୃଦ୍ରୋଗରେ ଉପକାରୀ— ଧଳାତିଉଡ଼ି—ବିରେଚକ ଓ ବାୟୁ, ପିତ୍ତଜ୍ୱର, କଫ, ପିତ୍ତ, ଶୋଥ ଓ ଉଦର ରୋଗରେ ଉପକାରୀ— କଳାତିଉଡ଼ି—ତୀବ୍ର ବିରେଚକ ଓ ମୂର୍ଚ୍ଛା, ଦାହ, ମତ୍ତତା, ଭ୍ରାନ୍ତିନାଶକ ଓ କଣ୍ଠର ଉତ୍କର୍ଷକାରକ— ତିଉଡ଼ିର ପତ୍ର ବଡ଼ ବଡ଼; ଫୁଲ ବଡ଼, ଧଳା ଓ ପାଖପାଖୁଡ଼ା; ଫଳ ଗୋଲକୋଣିଆ ଓ ଏହା ପାଚିଲେ ଯେଉଁର ତାଳପତ୍ର ଏହାର ଉପରଅଡ଼ା ଖୋଳପା ଖସି ଆସେ; ମଞ୍ଜି କଳା । ଏ ଲତାର ମୂଳ ରେଚକ । ଏହା ଔଷଧରେ ବ୍ୟବହୃତ ହୁଏ । ଏହା ୩ ପ୍ରକାର; ଯଥା—ଶୁକ୍ଳ, କୃଷ୍ଣ ଓ ରକ୍ତ । ]

ତିଉଡ଼ୀ ୨ । (ସଂ. ତ୍ରିପୁଟୀ)—ଖେସାରି (ଦେଖ)
तिवरी 2. Khesāri (See)

**ତିଉଣ**—ଦେ. ବି—ତିଅଣ (ଦେଖ)
Tiuna Tiana (See)
(ତିଉଣ—ଅନ୍ୟରୂପ) ତିଉଣ ଦେଖିଣ ଏତୁ ବେଦନ କରନ୍ତି ।
ଗ୍ରାମ୍ୟ. କଳତରଙ୍ଗ ।

**ତିଉଣିଆଁ**—ପ୍ରାଦେ. (ପୁରୀ) ବି—ପୁରୀ ବଡ଼ଦେଉଳରେ ମହାପ୍ରସାଦ ତିଅଣପାଇଁ ପରିବା କାଟିବା ଶୂଦ୍ରଜାତିବିଶେଷ—A Śūdra class of people who chop and prepare vegetables for being cooked into curry in the temple of Jagannath at Puri.
Tiuniāñ
(ତିଅଣିଆଁ—ଅନ୍ୟରୂପ)

[ ଦ୍ର—ଅଭ୍ୟାସବଶତଃ ଏମାନେ ପରିବା କାଟିବାରେ ବଡ଼ ସିଦ୍ଧହସ୍ତ । ]

**ତିଉନ୍**—ପ୍ରାଦେ. (ସମ୍ବଲପୁର) ବି—ତିଅଣ—
Tiun Curry.

**ତିଓଡ଼**—ଦେ. ବି—୧ । କ୍ଷେତ ବା ଜମିର ତୃତୀୟ ଥର ଚଷ—
Tiorda 1. The third ploughing of a field.
তেবারা ୨ । କ୍ଷେତକୁ ତିନିଥର ଚଷ କରିବା—
तिकार 2 Ploughing of a field 3 times.

**ତିକ**—ଦେ. ବି—ବାୟା ଚଢ଼େଇ—
Tika The weaver bird.

ବାୟାଙ୍କି ତିକ ଅଳ ଅଳ ଯେ ବହିବାର । ଭକ୍ତ. ବୈଦେହୀଶବିଳାସ ।

**ତିକଛି**—ଦେ ବି. (ସଂ. ତ୍ରିକଚ୍ଛ)—ତିନି ସ୍ଥାନରେ ଅଣ୍ଟାରେ ଖୋସାଯାଇ ପିନ୍ଧା ଯାଇଥିବା ଲୁଗା; ତେକଛ—Wearing cloth tucked up to the loin at 3 places.
Tikachhi
তেকোঁচা

**ତିକ(ଖ)ଡ଼ ବାଜ୍**—ଦେ. ବିଣ—ଏକଜିଦିଆ; ଜିଦଖୋର୍—
Tika,kha rda bāj Obstinate.

**ତିକଡ଼ା**—ଦେ. ବି. (ସଂ. ତ୍ରି ଓ କପର୍ଦ୍ଦକ)—ତିନିକଉଡ଼ା କଉଡ଼ି—
Tikarda 3 cowries or small shells.

ତିକଡ଼ା କାଉଡ଼ି ଚକଡ଼ା ଲେମ୍ବୁ
ଏକ ଏକ କଉଡ଼ାକ୍ ଘର ଘର ଜାମ୍ବୁ
ଫଳ ହବ କୋଡ଼ିଏ କଉଡ଼ି ହବ ବୋଝଏ । ମାନସାଙ୍କ ପ୍ରଶ୍ନ ।

[ ଦ୍ର—ପୂର୍ବେ ଏ ଦେଶରେ କଉଡ଼ି ମୁଦ୍ରାରୂପେ ଚଳୁଥିଲା । ]

**ତିକଡ଼ି**—ଦେ. ବି.—ଅପତ୍ତିଅଣି ଶିଶୁର ଗୋଟିଏ ନାମ—
Tikardi One of the names given to a male child born after the death of its predecessor.
তিনকড়ি
(ତିକଡ଼ିଆ—ଅନ୍ୟରୂପ) ଦେ. ବିଣ.—ଯେଉଁ ବସ୍ତୁର ମୂଲ୍ୟ ତିନି-କଡ଼ା କଉଡ଼ି ମାତ୍ର; ମୂଲ୍ୟହୀନ—Of no value; worth 3 cowries.

**ତିକଣ୍ଟା**—ଦେ. ବି. (ସଂ. ତ୍ରିକଣ୍ଟ)—ଏକ ପ୍ରକାର ସିଜ୍; ତେକଣିଆସିଜ୍-Euphorbia Antiquorum.
Tikanta
(ତେକଣ୍ଟା—ଅନ୍ୟରୂପ) [ଦ୍ର—ଏହା ୧୦।୧୨ ହାତ ଉଚ୍ଚ ହୁଏ । ସଂ. ନାମ—ତ୍ରିକଣ୍ଟ, ବଜ୍ରୀ, ଏହା ସିଜୁଗଛ ପରି ଦେଖାଯାଏ ନାହିଁ; ଜାଗଫେଣିଆ ପରିପରି ଦେଖାଯାଏ । ଏହାର ପତ୍ର ଅତି କ୍ଷୁଦ୍ର ଓ ସଂଖ୍ୟାରେ ଅଳ୍ପ । ଏହାର ଡାଳ ଏକାଠେଇଁ ଏତା ଲେଖାଏଁ ବାହାରି ଥାଏ ଓ ଶିଗ୍ ଆଠା । ]
তেকাঁটা, তেশিরা মনসা
तिधारा थुहर

**ତିକଟ**—ଗ୍ରା. ବି. (ସଂ. ତିକ୍ତ)—ତିକ୍ତ (ଦେଖ)
Tikata Tikta (See)

ସାଧାରଣ ଲୋକେ ଏହି ପୁସ୍ତକରେ ବ୍ୟବହୃତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଜାଠ' ନ ମିଳିଲେ 'ଯାଠ' ଖୋଜିବେ, 'କ୍ଷୟ' ନ ମିଳିଲେ 'ଖୟ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ତିକନା**—ଦେ. ବି.—ତିନିଗୋଟି ଶାଖାବିଶିଷ୍ଟ ଅସ୍ତ୍ରବିଶେଷ—
Tikanā — A three-pronged weapon.
ଦେ. ବିଣ.—ତିନିଗୋଟି ଶାଖା ବା ଖୋଞ୍ଚବିଶିଷ୍ଟ— Three-pronged; three-forked.

**ତିକା**—ଦେ. ବି. (ସ୍ତ୍ରୀ ତ୍ରିକ)-ଗଞ୍ଜପା ବା ତାସ୍‌ରେ ତିନିବିନ୍ଦୁବିଶିଷ୍ଟ ପତ୍ର—
Tikā — The playing card having 3 points on it.
তিরী
तिक्का, तिया, तिज्जा, तिक्क्

**ତିକାଠିଆ**—ଦେ.ବି. (ସଂ. ତ୍ରିକାଷ୍ଠକ)—ତିନିସପତର ରଖିଦେବା ନିମନ୍ତେ ତିନିଖଣ୍ଡି କାଠି କାନ୍ଥର କୋଣରେ ଯୋଡା ଯାଇ ତିଆରି ହୋଇଥିବା ଆଧାର—A wall-rack made with 3 pins or sticks driven into the corner of a wall.
Tikāṭhiā
তেকাটা
तिखुंटा

**ତିକିଚ୍ଛା**—ଗ୍ରା. ବି. (ସଂ. ଚିକିତ୍ସା)—୧ । ଚିକିତ୍ସା—
Tikichhā — 1. Medical treatment.
তিকিছা
୨ । ରୋଗୀର ପରିଚର୍ଯ୍ୟା— 2. Tending after the sick.
(ତିକିଚ୍ଛା—ଅନ୍ୟରୂପ)

**ତିକିତ**—ଗ୍ରା. (ପଦ୍ୟ) ବିଣ. (ସଂ. ତିକ୍ତ)—ତିକ୍ତ (ଦେଖ)
Tikita — Tikta (See)
ଗ୍ରା. ବି.—ତିକ୍ତ (ଦେଖ)—Tikta (See)

**ତିକୋଣିଆ**—ଦେ. ବିଣ. (ସଂ. ତ୍ରିକୋଣୀ)—ତିନି କୋଣବିଶିଷ୍ଟ; ତ୍ରିଭୁଜାକାର— Triangular.
Tikoṇiān
তেকোণা
तिकोना, तिकोनिआ

**ତିକ୍ତ**—ଦେ ବିଣ.—(ତିଜ୍ ଧାତୁ=ତୀକ୍ଷ୍ଣ କରିବା + କର୍ତ୍ତୃ ତ. ଯାହା କ୍ଷୁଧାକୁ ତୀକ୍ଷ୍ଣ କରେ)—୧ । ପିତା—
Tikta — 1. Bitter (in taste).
୨ । ସୁଗନ୍ଧ; ସୁବାସିତ—2. Fragrant.
ସଂ. ବି.—୧ । ପିତାରସ; ଷଡ୍‌ରସ ମଧ୍ୟରୁ ଏକତମ— 1. Bitter taste; bitterness.
[ଦ୍ର,—ତିକ୍ତରସ ଷଡ୍‌ରସ ମଧ୍ୟରୁ ଏକତମ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଛେଦକ, ରୁଚିକାରକ, ପାଚକ, ଶୋଧକ ଏବଂ ମୂତ୍ର, ମେଦ, ରକ୍ତ, ବସା ଆଦିର ଶୋଷକ । ଜ୍ୱର, କାଛୁ, କୁଣ୍ଡିଆ, କୁଷ୍ଠ, ମୂର୍ଚ୍ଛା ଆଦିରେ ତିକ୍ତରସ ସେବନ ଉପକାରୀ; ନିମ୍ବ, ଚିରେଇତା, ଗଳଗଳାଖଣ୍ଡ, କୁଳଥାଳିକ, ଗୁଳୁଚ, ତିକ୍ତ ଅଟେ ।]
ଦେ. ବି.—୧ । କୌଣସି ବ୍ୟକ୍ତିର ମୃତ୍ୟୁର ପରଦିନ ତାହାର କୁଟୁମ୍ବମାନେ ଅସଜଳଦିଆ ଓ ଅପକ୍ୱ ତିଅଣ ଏବଂ ନିମ୍ବ ପିତା ସହିତ ଖାଇବା ଅନ୍ନାଦି—1. Cooked food consisting of rice and unseasoned curry ( not mixed with oil, spices, turmeric or rye ) mixed with neem-leaves, taken by the kinsmen of a deceased person on the next day of his death.
୨ । ମୃତ୍ୟୁର ପର ଦିବସ —
2. The next day of a person's death.

**ତିକ୍ତକ**—ସଂ. ବି (ତିକ୍ତ + ସଂଜ୍ଞାର୍ଥରେ. କ)—୧ । ନିମ୍ବ ଗଛ—
Tiktaka — 1. Neem tree.
୨ । କଳା ଖଇର—2 Black catechu
୩ । ଚିରାତ ତିକ୍ତ; ଚିରେଇତା—
3. Swertia Chiraita (plant).
୪ । କୁଟଜ; ପିତାକୋରୁଆ (ଲତା)—
4. Wrightea Antedysenterica.
୫ । ପଟୋଳ ( ଦେଖ )—5. Paṭoḷa (See)
୬ । ଇଙ୍ଗୁଦ ( ଦେଖ )—6. Iṅgudi ( See )

**ତିକ୍ତକା**—ସଂ. ବି. ସ୍ତ୍ରୀ (ତିକ୍ତକ + ସ୍ତ୍ରୀ. ଆ)—ପିତା ଲାଉ—
Tiktakā — The bitter gourd.

**ତିକ୍ତ କାଣ୍ଡ**—ସଂ. ବି (ବହୁବ୍ରୀହି; ତିକ୍ତ + କାଣ୍ଡ)—ଚିରାଇତା ଗୁଳ୍ମ (ହି. ଶବ୍ଦସାଗର) (ଦେଖ)
Tikta kāṇḍa — Swertia Chiraita (plant)

**ତିକ୍ତଗନ୍ଧା**—ସଂ. ବି ( ବହୁବ୍ରୀହି; ତିକ୍ତ + ଗନ୍ଧ + ଆ )—ବରାହକାନ୍ତା (ହି. ଶବ୍ଦସାଗର) (ଦେଖ)
Tiktagandhā — Barāhakrāntā (See)
(ତିକ୍ତଗନ୍ଧିକା—ସ୍ତ୍ରୀ)

**ତିକ୍ତଗୁଞ୍ଜା**—ସଂ. ବି—କରଞ୍ଜ (ହି. ଶବ୍ଦସାଗର)—
Tiktaguñjā — Pongamia Glabra (tree)

**ତିକ୍ତ ତଣ୍ଡୁଳା**—ସଂ. ବି—ପିପ୍ପଳୀ (ହି. ଶବ୍ଦସାଗର)—
Tikta taṇḍuḷā — Long pepper.

**ତିକ୍ତତା**—ସଂ. ବି (ତିକ୍ତ + ଭାବ. ତା)—୧ । ପିତା ଗୁଣ—
Tiktatā — 1. Bitterness.
୨ । ତିକ୍ତ ସ୍ୱାଦ—2. Bitter taste.

**ତିକ୍ତତୁଣ୍ଡୀ(ମ୍ବୀ)**—ସଂ. ବି. ସ୍ତ୍ରୀ (ତିକ୍ତ + ତୁଣ୍ଡ + ସ୍ତ୍ରୀ. ଈ)—ପିତାଲାଉ—
Tikta-tuṇḍī(mbī) — The bitter gourd.
ତିକ୍ତବୀଜା }
ତିକ୍ତାଖ୍ୟା } —ଅନ୍ୟରୂପ

**ତିକ୍ତତ୍ୱ**—ସଂ. ବି (ତିକ୍ତ + ଭାବ. ତ୍ୱ)—ତିକ୍ତତା (ଦେଖ)
Tiktatwa — Tiktatā (See).

**ତିକ୍ତଦୁଗ୍ଧା**—ସଂ. ବି ( ବହୁବ୍ରୀହି; ତିକ୍ତ + ଦୁଗ୍ଧ + ଆ )—
Tikta-dugdhā — ୧ । କ୍ଷୀରିଣୀ (ହି. ଶବ୍ଦସାଗର) (ଦେଖ) Kshīriṇī (See).
୨ । ମେଣ୍ଢାଶିଙ୍ଘା (ହି. ଶବ୍ଦସାଗର) (ଦେଖ) Menḍhāsiṅghā (See).

**ତିକ୍ତ ଧାତୁ**—ସଂ. ବି (କର୍ମଧା; ତିକ୍ତ + ଧାତୁ)—ଶରୀରସ୍ଥ ପିତ୍ତ—
Tikta dhātu — The bile.

**ତିକ୍ତ ପତ୍ର**—ସଂ. ବି. ପୁଂ (ବହୁବ୍ରୀହି; ତିକ୍ତ + ପତ୍ର)—କାଙ୍କଡ଼ (ଦେଖ)—
Tikta patra — Kāṅkaḍa ( See ).

| ୧ | ୮ | ଡ଼ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ୍କ | ଞ୍ଚ | ଶ,ଷ | ଜ୍ଞ | ଂସ୍ର | ଢ଼ୟ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଢ଼ | ଊ | ଋ | ଳୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଗ | ଞ୍ଜ | ସ | ଗ୍ୟ | ଇଅ | ଭ | ନ୍ |

ତିକ୍ତପର୍ବା—ସଂ. ସ୍ତ୍ରୀ. (ବହୁବ୍ରୀହି; ତିକ୍ତ+ପର୍ବନ୍)—୧ । ଦୂବ—
Tikta-parbā 1. The creeping Cynodon.
୨ । ଗୁଳୁଚ (ହି. ଶବ୍ଦସାଗର) (ଦେଖ)—
2. Guḷuchi (See)
୩ । ଯଷ୍ଟିମଧୁ (ହି. ଶବ୍ଦସାଗର) (ଦେଖ)
3. Jashṭi madhu (See)
୪ । ସୂର୍ଯ୍ୟମୁଖୀ (ହି. ଶବ୍ଦସାଗର) (ଦେଖ)
4. Sūrjya-mukhī (See)

ତିକ୍ତପୁଷ୍ପା—ସଂ. ସ୍ତ୍ରୀ. (ବହୁବ୍ରୀହି; ତିକ୍ତ+ପୁଷ୍ପ+ଆ)—
Tikta pushpā ଅକାନବିନ୍ଧ (ଦେଖ) Akānabindhi (See)

ତିକ୍ତ ଫଳ—ସଂ. କ୍ଲୀ.—ରିଠା (ଦେଖ)
Tikta phaḷa Rithā (See)

ତିକ୍ତଫଳା—ସଂ. ସ୍ତ୍ରୀ.—୧ । କଣ୍ଟକାରୀ (ଦେଖ)
Tikta-phaḷā 1. Kanṭakārī (See)
୨ । ତରଭୁଜ (ହି. ଶବ୍ଦସାଗର)—2. Water-melon.
୩ । ମୁଣ୍ଡି କାକୁଡ଼ି (ହି. ଶବ୍ଦସାଗର)—
3. The small variety of cucumber.

ତିକ୍ତ ରସ—ସଂ. ପୁଂ.—(କର୍ମଧା; ତିକ୍ତ+ରସ)—ଛଅ ରସ ମଧ୍ୟରୁ ଏକ-
Tikta rasa ରସ—Bitter taste.
ସଂ. ବିଣ.—(ବହୁବ୍ରୀହି) ପିତା—Bitter in taste.

ତିକ୍ତରାଜ—ଦେ. ପୁ.—ରୋହିତକ; କମ୍ପାଦିବର୍ଗର ତରୁବିଶେଷ—
Tiktarāja Amoora or Andersonia Rohitaka tree.
ସଂ. ନାମ—ରୋହିତକ, ରୋହୀତକ, ରୋହୀ, ଦାଡ଼ିମପୁଷ୍ପକ
ମ. ରକ୍ତରୋହିଡ଼ା
ତେ. ମୁଲୁମେଦୁଗଚେଟ୍ଟୁ
ତିକ୍ତବୀଜ, ରୋହାଣ
ରୋଡ଼ା ରୋହିଡ଼ା
[ବି—ଏ ଗଛର ଅଗ ଅନେକ ବେଣୀ ଶାଖା; କାଠ ଲମ୍ବଳାଠ ଠାରୁ ଶକ୍ତ ନାହିଁ; ପତ୍ର କୋମଳ ଓ ଶ୍ଳେଷ୍ମଘ୍ନ; ପର୍ଣ୍ଣ ଶାଖ ଯୋଡ଼ା; ଫୁଲ ସାନ ଓ ତ୍ରିଦଳ; ଫଳ ପାଚିଲେ ୩ ଫାଳ ହୋଇ ଫାଟି ଯାଏ; ଫଳ ଦେଖିବାକୁ ଡାଳିମ୍ବଫଳପରି । ଏହା ପ୍ଲୀହା ରୋଗରେ ଉପକାରୀ; ଏହା ରୁଚିକାରକ ଓ ଚକ୍ଷୁପ୍ରସାଦକ ।]

ତିକ୍ତରୀ—ଦେ. ସ୍ତ୍ରୀ—ତୁମଡ଼ୀ (ଦେଖ)—Tumaṛī (See)
Tiktarī

ତିକ୍ତ ଶାକ—ସଂ. କ୍ଲୀ.—୧ । ବରୁଣ ଗଛ—1. A wild tree;
Tikta śāka Crataeva Religiosa.
୨ । ଖଦିର ଗଛ—2. The catechu tree.
୩ । ପିତା ଶାଗ ( ହି. ଶବ୍ଦସାଗର )—
3. Pitā śāga.

ତିକ୍ତ ସାର—ସଂ. ପୁ—୧ । ଏକଜାତୀୟ ଘାସ; ରୋହିଷତୃଣ—
Tikta sāra 1. Name of a kind of grass.
୨ । ଖଇର; ଖଦିର—2. Catechu.

ତିକ୍ତା—ସଂ. ସ୍ତ୍ରୀ. ( ତିକ୍ତ+ଆ )—୧ । କଟୁକୀ ( ଦେଖ )
Tiktā 1. Kaṭukī ( See )
୨ । ଅକାନବିନ୍ଧ ( ଦେଖ )
2. Akānabindhi ( See )
୩ । ଯବତିକ୍ତା ଲତା ( ଦେଖ )
3. Jabatiktā ( See )
୪ । ତରଭୁଜ—4. Water melon.
୫ । ବିଲ ନାସ ( ଦେଖ )—5. Bila nāsa (See)

ତିକ୍ତାଙ୍ଗା—ସଂ. ସ୍ତ୍ରୀ—ପାତାଳଗରୁଡ଼ ଲତା (ହି. ଶବ୍ଦସାଗର) (ଦେଖ)
Tiktāngā Pātāḷagaruṛi creeper ( See )

ତିକ୍ତିକା—ସଂ. ସ୍ତ୍ରୀ. ( ତିକ୍ତକ+ସ୍ତ୍ରୀ. ଆ )—୧ । ପିତା ଲାଉ—
Tiktikā 1. The bitter gourd.
୨ । କାକମାଚୀ ( ହି. ଶବ୍ଦସାଗର ) ( ଦେଖ )
2 Kākamāchī ( See )
୩ । କଟୁକୀ ( ହି. ଶବ୍ଦସାଗର ) ( ଦେଖ )
3 Kaṭukī ( See )

ତିକ୍ତିରୀ—ସଂ. ସ୍ତ୍ରୀ—ମହୁରୀ ବାଜା ( ହି. ଶବ୍ଦସାଗର ); ତୁମଡ଼ୀ—
Tiktirī A kind of clarionet.

ତିଖ୍ରୀ—ପ୍ରାଦେ. ( ସମ୍ବଲପୁର ) ସ୍ତ୍ରୀ—ଖୀରୀ; ପାୟସ—
Tikh-rī Gruel.

ତିଖ୍‌ଖ—ଦେ. ବିଣ. ( ସଂ. ତୀକ୍ଷ୍ଣ )—ତୀକ୍ଷ୍ଣ ( ଦେଖ )
Tikha (ksha) Tīksha ( See )

ତିଖଡ଼—ଦେ. ପୁ. ( ସଂ. ବିଘ୍ନ )—୧ । ଗୋଳମାଳ—
Tikharda 1. Confusion,
ବାଗଡ଼ା ୨ । କଳି—2. Quarrel.
ବଖେଡ଼ା ୩ । ବିଘ୍ନ—3. Obstacle; hindrance.
ତିଖଡ଼ ବିଖଡ଼, ତିଖଡ଼ ତିଖଡ଼, ତିଖଡ଼ ମିଖଡ଼ } ଅନ୍ୟରୂପ ୪ । ବିବାଦ—
4. Dispute.

ତିଖଡ଼ ମିଖଡ଼—ଦେ. ପୁ—ତିଖଡ଼ ( ଦେଖ )
Tikharda mikharda Tikharda ( See )
ଦେ. ବିଣ—ଚଳଚଳ ହେଉଥିବା; ସ୍ୱସ୍ଥାନରୁ ଅପସୃତ ଥିବା—
Displaced from the original position.

ତିଖଡ଼ିଆ—ଦେ. ବିଣ. ପୁଂ—୧ । ଗୋଳମାଳିଆ—
Tikardiā 1. Knotty; confused.
ବାଗଡ଼ିଆ ୨ । ଯେ ଗୋଳମାଳ ଲଗାଏ—
ବଖେଡ଼ା 2. Creating confusion
( ତିଖଡ଼େଇ—ସ୍ତ୍ରୀ ) ୩ । ଯେ ବିଘ୍ନ ଜାତ କରେ—
3. Creating obstacles.
୪ । କଳହପ୍ରିୟ—4. Quarrelsome.

ତିଖର—ଦେ. ପୁ—ନିଷ୍ପତ୍ତି; ମୀମାଂସା—
Tikhara Final decision.
ଦେ. ବିଣ—ନିଷ୍ପନ୍ନ—Finally decided.

ସାଧାରଣ ଲୋକେ ଅପର ପୃଷ୍ଠାରେ ୧ ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ କୋଷରେ ଯେବେ ଏ ପୃଷ୍ଠାରେ ନ ମିଳେ, ତେବେ ତାହା ବଦଳରେ ଯଥାକ୍ରମେ ଉକ୍ତ ବର୍ଣ୍ଣର ବଦଳେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ରଢ଼' ନ ମିଳିଲେ 'ରଡ଼' ଖୋଜିବେ, 'ବ୍ରଥ' ନ ମିଳିଲେ 'ବଥ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍ବଢ଼' ଦେଖିବେ ।

**ତିଖ(ଖି)ଡ଼ିବା**— ଦେ. କି—ତିଖଡ଼ିବା ( ଦେଖ )
Tikha(khi)rdibā — Tikhardibā ( See )
[ ତିଖ(ଖି)ଡ଼େଇବା—ଣିଜନ୍ତରୂପ ]

**ତିଖା**—ଦେ. ବି—ତିଖ ( ଦେଖ )
Tikhā — Tikhā ( See )

**ତିଖାଡ଼ିବା**— ଦେ. କି—ତିଖାଡ଼ିବା ( ଦେଖ )
Tikhārdibā — Tikhārdibā ( See )

**ତିଖିରି**—ପ୍ରାଦେ. ( ଅଠମଲ୍ଲିକ; ସମ୍ବଲପୁର)—ଜାଉ; ପାୟସ—
Tikhiri — Gruel.

**ତିଖୁଣ୍ଟା**—ଦେ. ବିଣ—ତିନକୋଣିଆ—
Tikhuṇṭā — Triangular.
तीखूँटा तिखुँटा
( ତିଖୁଣ୍ଟିଆ—ଅନ୍ୟରୂପ )

**ତିଗିରିଆ**—ଦେ. ( ନାମ )—ଓଡ଼ିଶାର ଗଡ଼ଜାତବିଶେଷ—Tigiria;
Tigiriā — one of the States of Orissa.
[ ଦ୍ର—ପ୍ରଥମେ ତିନୋଟି ଗଡ଼ ମିଶି ଏ ରାଜ୍ୟ ହୋଇଥିବାରୁ ଏହାର ଏପରି ନାମ ହେଲା—କୃପାସିନ୍ଧୁ. ଇତିହାସ । ]

**ତିଗ୍ମ**—ସ. ବି. ( ତିଜ ଧାତୁ=ତୀକ୍ଷ୍ଣ କରିବା+ଭାବ. ମ )—
Tigma
୧ । ପ୍ରଖରତା; ତୀକ୍ଷ୍ଣତା —1. Sharpness.
୨ । ଉଷ୍ଣତା—2. Warmth; heat.
୩ । କଟୁତା; ଝାଗରସ—3. Pungency.
୪ । ବଜ୍ର—4. Thunder.
୫ । ପିପ୍ପଳୀ— 5. Long pepper.
୬ । ମହାଭାରତୋକ୍ତ ପୁରୁବଂଶୀୟ ରାଜା—6. Name of a king of the Puru dynasty of ancient India.
ସ. ବିଣ—୧ । ( +କର୍ତ୍ତୃ. ମ )—ପ୍ରଖର; ତୀକ୍ଷ୍ଣ—
1. Sharp; acute.
୨ । ଉଷ୍ଣ—2. Hot.
( ତିଗ୍ମତା—ବି ) ୩ । ଉଦ୍ଧତ—3. Rude; arrogant.
୪ । କଟୁ, ଝାଗ—4. Pungent; acrid.

**ତିଗ୍ମକର**—ସ. ବି ଓ ବିଣ ( କର୍ମଧା ଓ ବହୁବ୍ରୀହି; ତିଗ୍ମ+କର )—
Tigma kara — ତିଗ୍ମାଂଶୁ ( ଦେଖ )—Tigmāmśu ( See )
( ତିଗ୍ମଦୀଧିତି, ତିଗ୍ମରଶ୍ମି, ତିଗ୍ମଦ୍ୟୁତି—ଅନ୍ୟରୂପ )

**ତିଗ୍ମତା**—ସ ବି ( ତିଗ୍ମ+ଭାବ. ତା )—୧ । ପ୍ରଖରତା—
Tigmatā — 1. Sharpness; accuteness.
୨ । ଝାଗ ସ୍ୱାଦ—2. Pungency.
୩ । ଉଷ୍ଣତା—3. Warmth.

**ତିଗ୍ମତେଜା**—ସ. ବିଣ. (ବହୁବ୍ରୀହି; ତିଗ୍ମ+ତେଜଃ)—ପ୍ରଖର ତେଜୋବିଶିଷ୍ଟ—
Tigmatejā — Resplendent; dazzling.

**ତିଗ୍ମଯାତନା**—ସ. ବି. ( କର୍ମଧା; ତିଗ୍ମ+ଯାତନା )—ଦାରୁଣ କ୍ଳେଶ—
Tigma jātanā — Acute or violent pain; shooting pangs.

**ତିଗ୍ମରଶ୍ମି**—ସ. ବି. ଓ ବିଣ. (କର୍ମଧା ଓ ବହୁବ୍ରୀହି; ତିଗ୍ମ+ରଶ୍ମି )—
Tigma raśmi — ତିଗ୍ମାଂଶୁ (ଦେଖ )—Tigmāmśu ( See )

**ତିଗ୍ମାଂଶୁ**—ସ. ବି. (କର୍ମଧା; ତିଗ୍ମ+ଅଂଶୁ=କିରଣ)—ପ୍ରଖର କିରଣ—
Tigmāmśu — Sharp rays.
ସ. ବିଣ. ( ବହୁବ୍ରୀହି )— ସୂର୍ଯ୍ୟ—The sun

**ତିଘରା**· ଦେ. ବି—କୌଣସି ବ୍ୟକ୍ତିର ବାସ ନିମନ୍ତେ କରାଯାଇଥିବା ୩ ସାର ବାସସ୍ଥାନ—
Tigharā — Three suites of rooms built for the residence of a person.

**ତିଘିବା**—ପ୍ରାଦେ. ( ଗଡ଼ଜାତ ) କି—ଶିକାରକୁ ଗୋଡ଼ାଇବା—
Tighibā — To chase.

**ତିଘେ(ଘା)ଇ**—ଗ୍ରା. ବିଣ. ପୁଂ. ( ସ. ତ୍ରିବିବାହିତ )—ଯେଉଁ ପୁରୁଷ ଗୋଟିକ ପରେ ଗୋଟିଏ, ଏପରି ୩ ଗୋଟି ସ୍ତ୍ରୀ ବିବାହ କରିଥାଏ; ତେବେଇ; ତିବେଇ—
Tighe(ghā)i
तीजवर; तेजवर
तिजिया; तिआह
( a male ) Married a third time after the death of 2 successive wives.
(ତିବେଇ, ତିବେଇ—ଅନ୍ୟରୂପ)

**ତିଛକ(କି)**—ଦେ. ବି—ଯେଉଁଠାରେ ୩ ଗୋଟି ରାସ୍ତା ପରସ୍ପର ମିଳିତ ହୋଇଥାଏ—
Tichhaka(ki) — A meeting place of 3 roads; the crossing of 3 roads.
তেছক
तिराहा (ତିକଣ, ତିକଣିଆ—ଅନ୍ୟରୂପ)

**ତିଜ୍** ( ଧାତୁ )—ସ—୧ । ତୀକ୍ଷ୍ଣ କରିବା—
Tij ( root ) — 1. To sharpen; to whet.
୨ । ସହ୍ୟ କରିବା—To bear; to endure.
୩ । ଉତ୍ତେଜିତ କରିବା—
3. To excite; to incite (Apte).
୪ । ତେଜିବା—4. To stir ( Apte ).

**ତିଜ୍**—ବୈଦେ. ପ୍ର.ଦେ. ( ସମ୍ବଲପୁର ) ବି—ଚିଜ; ପଦାର୍ଥ—
Tij — Thing; article.

**ତିଜ**—ଗ୍ରା. ବୈଦେ. ବି. ( ଫା. ଚୀଜ୍ )—୧ । ଚିଜ; ବସ୍ତୁ; ପଦାର୍ଥ—
Tija — 1. Thing; article.
चीज ୨ । ଗହଣା; ଅଳଙ୍କାର—
चीज 2. Ornament.

**ତିଜବ୍ରତ**—ସ. ବି—ବାଲି ତୃତୀୟା ( ଦେଖ )
Tijabrata — Bāli trutīyā ( See )

**ତିଜାରତ୍**—ବୈଦେ· ବି. ( ଅ. )—
Tijārat — ୧ । ବାଣିଜ୍ୟ; ବ୍ୟବସାୟ; କାରବାର; ବେପାର—
तिजारत — 1. Trade.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଋ | ଌ | ୠ,ୡ | ଓ | ଁ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଞ | ଢ଼ | ଶ,ଷ | ଜ୍ଞ | ଉଂ | ଙ୍ଗ | ଞ |
| ୨ | ଋ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଞ୍ଚ | ଡ଼ | ସ | ଣ୍ଚ | ଙ୍ଖ | ଢ଼ | ଙ |

तिजारत ୨ । ଟଙ୍କାକୁ ସୁଧରେ ଲଗାଇବା ବ୍ୟବସାୟ; ମହାଜନୀ—
ତିଜରତି } ଅନ୍ୟରୂପ
ତେଜରତି 2. Money-lending.

**ତିଜାରତି**—ବୈଦେ. ବଣ. ( ଅ. ତିଜାରତ )—
Tijārati ୧ । ବାଣିଜ୍ୟ ସମ୍ବନ୍ଧୀୟ—
তিজারতী 1. Pertaining to trade.
तिजारती ୨ । ମହାଜନୀ ସମ୍ବନ୍ଧୀୟ—
2. Pertaining to money-lending.
ବି. (ଅ)—୧ । ବାଣିଜ୍ୟ-ବସ୍ତୁ; ପଣ୍ୟ ଦ୍ରବ୍ୟ—
ତିଜରତି } ଅନ୍ୟରୂପ 1. Merchandise.
ତେଜରତି ୨ । ବାଣିଜ୍ୟ ପେଶା—
2. The profession of trade.

**ତିଜିନ(ଲ)**—ସ. ବି. ( ତିଜ୍ ଧାତୁ+ଇନ୍; ଇଲ )—
Tijina (la) ୧ । ଚନ୍ଦ୍ର—1. The moon (Apte).
୨ । ରାକ୍ଷସ—2. A demon (Apte).

**ତିଠାଇ**—ପ୍ରାଦେ. (ସମ୍ବଲପୁର) ବି. (ଭୁଲ. ବ. ତିତିଭ)—ଟିଟ୍ଟିଭ (ଦେଖ)
Tiṭhāi Tiṭṭibha (See)

**ତିତଉ**—ସ. ବି. ( ତନ୍ ଧାତୁ=ବିସ୍ତାର କରିବା+ଡିତଉ )—
Titau ୧ । ବାଉଁଶ ପାତିଅରେ ତିଆର ହୋଇଥିବା ଚାଲୁଣୀ—
1. A seive made of bamboo-laths.
୨ । ଛତା—2. Parasol (Apte).

**ତିତର୍ଡ଼(ର) ବିତର୍ଡ଼(ର)**—ଦେ. ବଣ. ( ସ. କ୍ଷିପ୍ତବିକ୍ଷିପ୍ତ )—
Titarḍa(ra) bitarḍa(ra) ଛିନ୍ନଛତର; ଇତସ୍ତତଃ ବିକ୍ଷିପ୍ତ—
तितर बितर Strewn about; scattered about.

**ତିତାରା**—ଦେ. ବି. ( ସ. ତ୍ରି+ତାର )—
Titārā ତିନିଗୋଟି ତାର ଥିବା ସିତାର ପରି ବାଦ୍ୟଯନ୍ତ୍ରବିଶେଷ—
তেতারা Three-stringed guitar.
तितारा

**ତିତାରି**—ଦେ. ବଣ. ( ସ. ତ୍ରି+ଧାର )—
Titāri ଚିନି ବା ଗୁଡ଼ର ଯେଉଁ ପାଗ ଏପରି ପତଳା ହୋଇଥାଏ
তিনতার বন্দ ଯେ ତାକୁ ଚଟୁରେ ଉଠାଇଲେ ଚଟୁରୁ ତିନି ଧାର
ପରି ରସର ଧାର ଖସେ; ତିନିତାରବନ୍ଧ—
Thin boiling syrup ( from which three strings drop down when lifted with a ladle ).

**ତିତାଲା**—ଦେ. ବି. ( ସ. ତ୍ରିତଳ )—
Titālā ୧ । ତେତାଲା; ତିନି ମହାଲା; ତ୍ରିତଳ; ତିନିମହଲ—
তেতালা 1. Three storeys of building.
तिमंजिला ୨ । ତୃତୀୟ ମହଲା—2. The third storey.
ଦେ. ବଣ—ତ୍ରିତଳବିଶିଷ୍ଟ—
तिमंजिला Three-storied.

**ତି ତି**—ଦେ. ଅ—୧ । ଶିଶୁମାନଙ୍କ ଆଖିରେ କଜଳ ଦେଲା ବେଳେ
Ti ti ମାଇପଙ୍କର ବୋଲିବା ପଦ—1. Word uttered by women while painting collyrium on the eye-lids of children.
୨ । ପୋଷା ପାରା ଓ ହଂସ ଆଦିଙ୍କୁ ପାଖକୁ ଡାକିବାରେ ବ୍ୟବହୃତ ଧ୍ୱନି—2. The sound repeated while calling domesticated pigeons and swans to one's side.
ପ୍ରାଦେ. ( ଗଞ୍ଜାମ ) ଅ—ଶଗଡ଼ରେ ଲାଗିଥିବା ବଳଦଙ୍କୁ ଅଡ଼ାଇବାର ଶବ୍ଦ—A word used while driving cart-bullocks.

**ତିତିକାରିଆ**—ପ୍ରାଦେ. (ଗଞ୍ଜାମ) ବଣ—ଥାକିତି ( ଦେଖ )
Titikāriā Thākiti ( See )

**ତିତିକ୍ଷ**—ସ. ବଣ. ( ତିଜ୍ ଧାତୁ+ଇଚ୍ଛାର୍ଥେ ସନ୍+ଅ )—
Titiksha ତିତିକ୍ଷୁ ( ଦେଖ ) ( ବୃ. ଶବ୍ଦସାଗର ) —
Titikshu ( See )

**ତିତିକ୍ଷା**—ସ. ବି. ସ୍ତ୍ରୀ. (ତିଜ୍ ଧାତୁ=ସହିବା+ଇଚ୍ଛା ବା କ୍ଷମତା ଅର୍ଥରେ
Titikshā ସନ୍+ଅ+ସ୍ତ୍ରୀ. ଆ; ଦ୍ୱିତ୍ୱ )—
୧ । ସହିଷ୍ଣୁତା—1 Forbearance.
୨ । ଧୈର୍ଯ୍ୟ—2. Patience.
୩ । ଦୁଃଖସହିଷ୍ଣୁତା—3. Endurance; fortitude.
୪ । କ୍ଷମା ଗୁଣ; କ୍ଷାନ୍ତି—4. Forgiveness.

**ତିତିକ୍ଷୁ**—ସ. ବଣ. ( ତିଜ୍ ଧାତୁ+ଇଚ୍ଛାର୍ଥରେ. ସନ୍+କର୍ତ୍ତୃ. ଉ )—
Titikshu ୧ । ସହିଷ୍ଣୁ—1. Forbearing; enduring.
୨ । ଧୈର୍ଯ୍ୟଶୀଳ—2. Patient.
୩ । କ୍ଷମାଶୀଳ—3. Forgiving.

**ତି ତି ତି**—ଦେ. ଅ—୧ । ପୋଷା ପାରା ଓ ହଂସ ଆଦିଙ୍କୁ ଡାକିବାର ଶବ୍ଦ-
Ti ti ti 1. Sound uttered to call domestic pigeons.
୨ । ଶିଶୁଙ୍କ ଆଖିରେ କଜଳ ଦେବା ବେଳେ ସ୍ତ୍ରୀ ଲୋକମାନଙ୍କର ବୋଲିବା ଶବ୍ଦ—2. Sound uttered by females while painting the eyes of children with collyrium.

**ତିତିଭ**—ସ. ବି—୧ । ଇନ୍ଦ୍ରଗୋପ କୀଟ; ମଖମଲ ପୋକ; ସାଧବବୋହୂ ପୋକ—1. An insect with velvety red skin; cocculus.
Titibha
୨ । ଜୁଳୁଜୁଳିଆ ପୋକ—2. Fire-fly.

**ତିତିର(ରି)**—ଦେ. ବି. ( ସ. ତିତ୍ତିର )—ତିତ୍ତିର ( ଦେଖ )
Titira(ri) Tittira ( See )

ଖଣ୍ଡନ କପୋତ ତିତିର ଭୂଅ । ପ୍ରଭାତ. ଶଶିସେଣା ।

[ ଦ୍ର—ଅଗ୍ରେ ଏହାକୁ ସଂସ୍କୃତ ଶବ୍ଦ ବୋଲି ଲେଖି ଅଛନ୍ତି । ]

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଣ୍ଡ' ନ ମିଳିଲେ 'ଗାଣ୍ଠ' ଦେଖିବେ; 'କୁଠ' ନ ମିଳିଲେ 'କୁଟ' ଦେଖିବେ; 'ବଟୁ' ନ ପାଇଲେ 'ବଟୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ତିତିରି ଶାଗ**—ଦେ. ବି—ଶାକବିଶେଷ—
Titiri śāga A name of pot herb.
[ ଦ୍ର—ଏହା ପୁରୁଷେ ଉଚ୍ଚ ହୁଏ; ପତ୍ର ସରୁ ସରୁ ଏବଂ ଲୋକେ ଏହାକୁ ଶାଗ କରି ଖାଆନ୍ତି । ]

**ତିତିଲ(ଳ)**—ସଂ ବି—୧ । ନାଦିଆ; ଚଉଡ଼ାମୁହାଁ ଅଗଭୀର ମାଟିର ପାତ୍ର-
Titila(ḷa) 1. A wide-mouthed earthen jar.
[ ଦ୍ର—ପାଲମ ଠାରୁ ଗଭୀର ଓ ଚଉଡ଼ାମୁହାଁ ମାଟିର ପାତ୍ରକୁ ପଭୁଲି ବୋଲାଯାଏ; ପଭୁଲି ସମ୍ଭବତଃ ତିତିଲର ଅପଭ୍ରଂଶ । ]
୨ । ତୈତିଲକରଣ; ଜ୍ୟୋତିଷୋକ୍ତ ୭ (ମତାନ୍ତରରେ ୧୧) କରଣ ଶ୍ରେଣୀର ଯୋଗ ମଧ୍ୟରୁ ଯୋଗବିଶେଷ—
2. One of the seven ( or eleven ) astrological conjunctions of planets classed as Karaṇa.
[ ଦ୍ର—ଜ୍ୟୋତିଷୋକ୍ତ ୧୧ କରଣ ଯଥା—ବବ, ବାଲବ, କୌଳବ, ତିତିଲ ବା ତୈତିଲ, ଗର, ବାଣିଜ୍ୟ, ବିଷ୍ଟି, ଶକୁନି, ଚତୁଷ୍ପଦ, କିଂସ୍ତୁଘ୍ନ ଓ ନାଗ; ମତାନ୍ତରରେ କରଣର ସଂଖ୍ୟା ୭ ଯଥା—ବବ, ବାଲବ, କୌଳବ, ତୈତିଲ, ଗର, ବାଣିଜ୍ୟ ଓ ବିଷ୍ଟି । ]

**ତିତୀର୍ଷା**—ସଂ. ବି. ( ତୃ ଧାତୁ=ପାର ହେବା+ଇଚ୍ଛାର୍ଥରେ ସନ୍+ଭାବ. ଅ+ସ୍ତ୍ରୀ. ଆ)—ପାର ହେବାର ଇଚ୍ଛା; ତରଣେଚ୍ଛା—Desire to cross over.
Titīrshā

**ତିତୀର୍ଷୁ**—ସଂ. ବିଣ. (ତୃ ଧାତୁ+ଇଚ୍ଛାର୍ଥରେ ସନ୍+ଉ)—
Titīrshu ତରଣେଚ୍ଛୁକ; ପାରହେବାକୁ ଇଚ୍ଛୁକ—
Desirous of crossing.

**ତିତେର୍**—ପ୍ରାଦେ. (ସମ୍ବଲପୁର) ବି—ତିତ୍ତିର (ଦେଖ)
Titer Tittira (See)

**ତିତ୍ତିର**—ସଂ. ବି. ପୁଂ. (ତିତ୍ତି=ଶବ୍ଦାନୁକରଣ+ରା ଧାତୁ=ଦାନ କରିବା+ଅ)—୧ । ବର୍ତ୍ତିର ବର୍ଗର ପକ୍ଷିବିଶେଷ—
Tittira
(ତିତିରି—ଅନ୍ୟରୂପ) 1. The Frankoline partridge;
(ତିତ୍ତିରୀ; ତିତ୍ତିରି—ସ୍ତ୍ରୀ) the sandpiper.
ତୀତର [ ଦ୍ର—ଏହା ପ୍ରାୟ ୧୬ ଅଙ୍ଗୁଳ ଲମ୍ବ; ଅନେକ ଜାତିର
ତୀତର ତିତ୍ତିର ଦେଖାଯାନ୍ତି; ଯଥା—ଗୌର ତିତ୍ତିର (Grey
ଗୁ. ତେତୁର୍‌ଲୁଟିଚ୍ୟୁ, Partridge; Francolinus Pondi-
ବନଭୁଗୌର cerianus), ଏହାର ଦେହ ପାଣ୍ଡୁ ଶିଅ ଓ ଦେହସାର
ପା. ତହ୍ରୁ ଧଳା ରେଖାଙ୍କିତ ଥାଏ; ମାଂସ ସୁସ୍ୱାଦୁ; ଗ୍ରାମନିକଟସ୍ଥ
ଅ. ଲହ୍‌ମ୍‌ଲ୍ ପାହାଡ଼ ଓ ବଣରେ ଏମାନେ ରହନ୍ତି । କୃଷ୍ଣତିତ୍ତିର (Black partridge; Francolinus Vulgaris), ଏହାର ମୁଣ୍ଡର କଡ଼, ଗଳା, ଛାତି ଓ ପେଟ କୃଷ୍ଣବର୍ଣ୍ଣ । ଅନ୍ୟ ପ୍ରକାର ତିତ୍ତିର (Arboricola Torquela)ର ମୁଣ୍ଡ ଧୂସର ଓ ଛାତି ପାଉଁଶିଆ । ବୈଦ୍ୟକ ମତରେ ତିତ୍ତିର ପକ୍ଷୀର ମାଂସ ବଳପ୍ରଦ, ମଳସଂଗ୍ରାହକ ଏବଂ ହିକ୍କା, ଶ୍ୱାସ, ତ୍ରିଦୋଷ, କାଶ ଓ ଜ୍ୱର-ନିବାରକ । କୃଷ୍ଣତିତ୍ତିର ଅପେକ୍ଷା ଗୌର ତିତ୍ତିର ଅଧିକ ଉପକାରୀ । ତିତ୍ତିର ଅଭାବରେ ବତକ ଔଷଧରେ ବ୍ୟବହୃତ ହୁଏ । ]
୨ । ଯଜୁର୍ବେଦୀୟ ତୈତ୍ତିରୀୟ ଶାଖାଧ୍ୟାୟୀ ମୁନିବିଶେଷ; ଯାସ୍କ ମୁନିଙ୍କ ଶିଷ୍ୟ—2, Name of a sage versed in the Jajurbeda.
[ ଦ୍ର—ଏ ତୈତ୍ତିରୀୟ ଉପନିଷଦ୍‌ର ପ୍ରଣେତା । ଭାଗବତରେ ଲେଖାଅଛି କି ଯାଜ୍ଞବଲ୍କ୍ୟ ଯେତେବେଳେ ଯଜୁର୍ବେଦକୁ ମୁହଁରୁ ବାନ୍ତି କରି ପକାଇଲେ ସେତେବେଳେ ବୈଶମ୍ପାୟନଙ୍କ ଶିଷ୍ୟମାନେ ତିତ୍ତିର ପକ୍ଷୀ ରୂପ ଧାରଣ କରି ତାହା ଖୁଣ୍ଟି ନେଲେ—ହି. ଶବ୍ଦସାଗର । ]

**ତିତ୍ତିରି**—ସଂ. ବି. (ତିତ୍ତି=ଅନୁକରଣ ଶବ୍ଦ+ରା ଧାତୁ=ଦେବା+କର୍ତ୍ତୃ. ଇ)—ତିତ୍ତିର (ଦେଖ)—Tittira (See)
Tittirī

**ତିଥ**—ସଂ. ବି. (ତିଜ୍ ଧାତୁ=ତୀକ୍ଷ୍ଣ କରିବା+ସଂଜ୍ଞାର୍ଥ ଅ)—୧ । ଅଗ୍ନି—
Titha 1, Fire.
୨ । କାଳ—2 Time.
୩ । ପ୍ରାବୃଟ୍‌କାଳ; ବର୍ଷାକାଳ—3. Rainy season
୪ । କାମଦେବ—4. God Cupid.

ଦେ. ବି. (ସଂ. ବାନୀ)—କରମୂଲ; ପୁରୁଣା ଜିନିଷ ବଦଳାଇ
वानी ନୂଆ ଜିନିଷ ନେଲେ ମଜୁରିପାଇଁ ଗ୍ରାହକଙ୍କୁ ଯାହା
करजा; कटौती ଅଧିକା ଧନ ନଗଦ ଦେବାକୁ ପଡ଼େ—
Payment made for the making charge of a new article in the course of an exchange transaction.
ସ୍ତ୍ରୀ. ବି—୧ । (ସଂ. ତିଥି)—ଚନ୍ଦ୍ରଦିବସ; ତିଥି—
1. Lunar day.
ବି—୨ । (ସଂ. ତୀର୍ଥ)—ତୀର୍ଥ ସ୍ଥାନ—
2. Place of pilgrimage.
୩ । ତୀର୍ଥ ଯୋଗ—3. Propitious time for performing a pilgrimage.

**ତିଥି**—ସଂ. ବି. ସ୍ତ୍ରୀ. (ତନ୍ ଧାତୁ=ବିସ୍ତୃତ ହେବା+ଥି; କିମ୍ବା ଅତ୍ ଧାତୁ=ସତତ ଗମନ କରିବା+ଇଥି)—୧ । ଚନ୍ଦ୍ରକଳାର ହ୍ରାସବୃଦ୍ଧିଦ୍ୱାରା ନିର୍ଦ୍ଦିଷ୍ଟ ମାସର ୩୦ ଭାଗର ଏକଭାଗ; ଚନ୍ଦ୍ରଦିବସ—1. Lunar day.
Tithi
[ ଦ୍ର—ଚନ୍ଦ୍ର ପୃଥିବୀର ଚାରି ପାଖେ ଥରେ ବୁଲି ଆସିଲେ ଗୋଟିଏ ତିଥି ହୁଏ । ଏହିପରି ୧୫ ଥର ବୁଲିଲେ ଏକପକ୍ଷ ହୁଏ । ଦୁଇ ପକ୍ଷରେ ଏକ ମାସ ହୁଏ; ପୂର୍ଣ୍ଣିମାର ପରଦିନ କୃଷ୍ଣପକ୍ଷର ଆରମ୍ଭ ହୁଏ । କୃଷ୍ଣପକ୍ଷର ପ୍ରଥମ ତିଥି ପ୍ରତିପଦ, ତାପରେ ଯଥାକ୍ରମେ ଦ୍ୱିତୀୟା, ତୃତୀୟା, ଚତୁର୍ଥୀ, ପଞ୍ଚମୀ, ଷଷ୍ଠୀ, ସପ୍ତମୀ, ଅଷ୍ଟମୀ, ନବମୀ, ଦଶମୀ, ଏକାଦଶୀ, ଦ୍ୱାଦଶୀ, ତ୍ରୟୋଦଶୀ, ଚତୁର୍ଦ୍ଦଶୀ ଓ ଅମାବାସ୍ୟା ଏପରି ୧୫ ତିଥିରେ କୃଷ୍ଣପକ୍ଷ ଅମାବାସ୍ୟା ଦିନ ଶେଷ ହୁଏ । ଅମାବାସ୍ୟାର ପରଦିନ ଶୁକ୍ଳପକ୍ଷ ଆରମ୍ଭ ହୁଏ—ଶୁକ୍ଳପକ୍ଷର

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ୍କ | ଞ୍ଚ | ଣ୍ଟ,ଣ୍ଠ | ନ୍ତ | ମ୍ପ | କ୍ଷ | ଜ୍ଞ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ଘ | ଞ୍ଜ | ଣ୍ଡ | ନ୍ଦ | ମ୍ବ | କ୍ଷ | ଂ |

ପ୍ରଥମ ତିଥି ପ୍ରତିପଦ, ଶେଷରେ ଯଥାକ୍ରମେ ଦ୍ୱିତୀୟା, ତୃତୀୟା ଆଦି ୧୫ ତିଥିରେ ଶୁକ୍ଳପକ୍ଷ ପୂର୍ଣ୍ଣିମା ଦିନ ଶେଷ ହୁଏ । ଚନ୍ଦ୍ର ପୃଥିବୀକୁ ଥରେ ବୁଲି ଆସିଲାବେଳକୁ ଏକଦିନ ବା ୨୪ ଘଣ୍ଟା ପୂରି ନ ଥାଏ; ଏଥିପାଇଁ ଏକଦିନରେ ଏକତିଥିରୁ ଅଧିକା କେତେ ସମୟ ପଡ଼େ ।

ଜ୍ୟୋତିଷଶାସ୍ତ୍ରରେ ତିଥିମାନଙ୍କୁ ନାନା ଶ୍ରେଣୀରେ ବିଭକ୍ତ କରାଯାଇ ଅଛି; ଯଥା—କୃଷ୍ଣ ତିଥି—କୃଷ୍ଣପକ୍ଷର ପ୍ରତିପଦଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ତିଥି; ଶୁକ୍ଳାତିଥି—ଶୁକ୍ଳ ପ୍ରତିପଦଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ତିଥି; ନନ୍ଦାତିଥି—ପ୍ରତିପଦ, ଷଷ୍ଠୀ ଓ ଏକାଦଶୀ; ଭଦ୍ରାତିଥି—ଦ୍ୱିତୀୟା, ସପ୍ତମୀ ଓ ଦ୍ୱାଦଶୀ; ଜୟାତିଥି—ତୃତୀୟା, ଅଷ୍ଟମୀ ଓ ତ୍ରୟୋଦଶୀ; ରିକ୍ତାତିଥି—ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀ; ପୂର୍ଣ୍ଣାତିଥି—ପଞ୍ଚମୀ, ଦଶମୀ, ଅମାବାସ୍ୟା ଓ ପୂର୍ଣ୍ଣିମା; ତ୍ର୍ୟହସ୍ପର୍ଶତିଥି—ଏକାଦିନରେ ତିନିଗୋଟି ତିଥି ପଡ଼ୁଥିବା ଦିବସ । ]

୨ । ଏକ କଉଡ଼ା କଉଡ଼ିର ୧୫ ଭାଗରୁ ଏକଭାଗ—
2. $\frac{1}{15}$ of a cowrie or small shell-money.
(ଦ୍ର—ଏହା ହିସାବ କରିବାବେଳେ ଲୋଡ଼ା ହୁଏ ।)
୩ । ପନ୍ଦର ସଂଖ୍ୟା—3. The number 15.

**ତିଥି କୃତ୍ୟ**—ସଂ. ବି (୭ମୀ ତତ୍; ତିଥି+କୃତ୍ୟ)—୧ । ନିର୍ଦ୍ଦିଷ୍ଟ
Tithi krutya ତିଥିରେ ନିର୍ଦ୍ଦିଷ୍ଟ କର୍ତ୍ତବ୍ୟକାର୍ଯ୍ୟ—The duties suitable for respective lunar days.

**ତିଥି କ୍ଷୟ**—ସଂ. ବି. (ବହୁବ୍ରୀହି, ତିଥି=ତିଥିର ଉପଲକ୍ଷିତ ଚନ୍ଦ୍ରକଳା+
Tithi kshaya କ୍ଷୟ)—ଅମାବାସ୍ୟା—
1. The day of the new-moon.
୨ । ସୂର୍ଯ୍ୟୋଦୟ ପୂର୍ବରୁ ଶେଷ ବା ଆରମ୍ଭ ହେବା ତିଥି—
2. A lunar day beginning or ending before sun-rise.
୩ । ତ୍ର୍ୟହସ୍ପର୍ଶ ଦିବସ—3. The day on which 3 lunar days fall.
[ଦ୍ର—ଯେଉଁ ଦିନ ୨ଟି ତିଥି କ୍ଷୟ ହୋଇ ଅନ୍ୟ ତିଥିର ଆରମ୍ଭ ହୁଏ ତାକୁ ତ୍ର୍ୟହସ୍ପର୍ଶ ଦିବସ ବୋଲାଯାଏ । ଯେଉଁ ଦିନ ସୂର୍ଯ୍ୟୋଦୟ ବେଳକୁ ଗୋଟିଏ ତିଥିର କେତେକ ଅଂଶ ବାକି ଥାଏ, ତାହା ଭୋଗ ହୋଇ, ପରବର୍ତ୍ତି ତିଥି ଭୋଗ ହୁଏ, ତେବେ ପୁଣି ସୂର୍ଯ୍ୟୋଦୟ ହୋଇ ନ ଥାଏ ଓ ଅନ୍ୟ ତିଥି ପଡ଼ିବା ପରେ ସୂର୍ଯ୍ୟୋଦୟ ହୁଏ ତାହାକୁ ତ୍ର୍ୟହସ୍ପର୍ଶ ତିଥି ବୋଲାଯାଏ ।]

**ତିଥି ପତି**—ସଂ. ବି. ( ୬ଷ୍ଠୀ ତତ୍; ତିଥି+ପତି )—ଶାସ୍ତ୍ର ଅନୁସାରେ
Tithi pati ପ୍ରତ୍ୟେକ ତିଥିର ଅଧିଷ୍ଠାତ୍ରୀ ଦେବତା—
(ତିଥୀଶ—ଅନ୍ୟରୂପ) The Deities presiding over the different lunar days.
[ଦ୍ର—ସେହି ସେହି ତିଥିରେ ସେହି ସେହି ଦେବତାମାନଙ୍କର ପୂଜା କରାଯାଏ ।]

**ତିଥି ପତ୍ର(ତ୍ରୀ)**—ସଂ. ବି.—(ମ. ପ. ଲୋ, ତିଥି+ପତ୍ର; ପତ୍ରୀ)-ପଞ୍ଜାଙ୍ଗ
Tithi patra(trī) ପଞ୍ଜିକା—Almanac.

**ତିଥି ପ୍ରଣୀ**—ସଂ. ବି.—ଚନ୍ଦ୍ର—
Tithi praṇī The moon.

**ତିଥି ବୃଦ୍ଧି**—ସଂ. ବି (୬ଷ୍ଠୀ ତତ୍; ତିଥି+ବୃଦ୍ଧି) (ଜ୍ୟୋତିଷ)—ଦୁଇ
Tithi bruddhi ଦିବସବ୍ୟାପୀ ତିଥି—A lunar day occupying parts of 2 solar days.

**ତିଥି ଯୋଗିନୀ**—ସଂ. ବି.—ଜ୍ୟୋତିଷ ମତରେ ଭିନ୍ନ ଭିନ୍ନ ତିଥିରେ ଭିନ୍ନ
Tithi jogini ଭିନ୍ନ ଦିଗରେ ଥିବା ଯୋଗିନୀ ବା ଦୁର୍ଗା—
(astrology) The Goddess Durgā staying in different quarters of the globe on different lunar days.
[ଦ୍ର—ତିଥି ଅନୁସାରେ ଯୋଗିନୀର ସ୍ଥିତି—ପ୍ରତିପଦ ଓ ନବମୀରେ ପୂର୍ବରେ, ତୃତୀୟା ଓ ଏକାଦଶୀରେ ଅଗ୍ନିକୋଣରେ, ପଞ୍ଚମୀ ଓ ତ୍ରୟୋଦଶୀରେ ଦକ୍ଷିଣରେ, ଚତୁର୍ଥୀ ଓ ଦ୍ୱାଦଶୀରେ ନୈର୍‌ଋତ କୋଣରେ, ଷଷ୍ଠୀ ଓ ଚତୁର୍ଦ୍ଦଶୀରେ ପଶ୍ଚିମରେ, ସପ୍ତମୀ ଓ ପୂର୍ଣ୍ଣିମାରେ ବାୟୁକୋଣରେ, ଦ୍ୱିତୀୟା ଓ ଦଶମୀରେ ଉତ୍ତର ଦିଗରେ ଓ ଅଷ୍ଟମୀ ଓ ଅମାବାସ୍ୟାରେ ଈଶାନ କୋଣରେ । ଯୋଗିନୀ ଡାହାଣ ବା ସମ୍ମୁଖରେ ଥିଲେ ଯାତ୍ରା କରିବା ଅଶୁଭ; ଯୋଗିନୀ ଆପଣାର ବାମ ବା ପୃଷ୍ଠରେ ଥିବାବେଳେ ଯାତ୍ରାଆଦି ଶୁଭ । ]

**ତିଥି ସନ୍ଧି**—ସଂ. ବି. (ଜ୍ୟୋତିଷ) (୬ଷ୍ଠୀ ତତ୍; ତିଥି+ସନ୍ଧି)—ଦୁଇଟି
Tithi sandhi ତିଥିର ସନ୍ଧିକାଳ; ଏକ ତିଥିର ଶେଷ ଓ ପରବର୍ତ୍ତୀ ତିଥିର ଆରମ୍ଭକାଳ—Conjunction of 2 lunar days.

**ତିଥ୍ୟମୃତ ଯୋଗ**—ସଂ. ବି. (ମ ପ. ଲୋ; କର୍ମଧା; ତିଥିଘଟିତ ଅମୃତ-
Tithyamruta joga ଯୋଗ)—ଜ୍ୟୋତିଷ ଶାସ୍ତ୍ରୋକ୍ତ ଶୁଭଯୋଗ-ବିଶେଷ—Name of an auspicious conjunction of Tithis on wee -days
[ ଦ୍ର—ରବି ଓ ସୋମବାର ଦିନ ପୂର୍ଣ୍ଣାତିଥି ( ପଞ୍ଚମୀ, ଦଶମୀ, ଅମାବାସ୍ୟା ଓ ପୂର୍ଣ୍ଣିମା), ମଙ୍ଗଳବାର ଦିନ ଭଦ୍ରାତିଥି (ଦ୍ୱିତୀୟା, ସପ୍ତମୀ ଓ ଦ୍ୱାଦଶୀ), ବୁଧ ଓ ଶନିବାରରେ ନନ୍ଦା ତିଥି (ପ୍ରତିପଦ, ଷଷ୍ଠୀ ଓ ଏକାଦଶୀ ), ଗୁରୁବାରରେ ଜୟା ତିଥି, ( ତୃତୀୟା, ଅଷ୍ଟମୀ ଓ ତ୍ରୟୋଦଶୀ) ଏବଂ ଶୁକ୍ରବାର ଦିନ ରିକ୍ତା (ଚତୁର୍ଥୀ, ନବମୀ ଓ ଚତୁର୍ଦ୍ଦଶୀ) ପଡ଼ିଲେ ଏହି ଯୋଗ ଘଟେ ।]

**ତିଥ୍ୟର୍ଦ୍ଧ**—ସଂ. ବି.—(୬ଷ୍ଠୀ ତତ୍; ତିଥି+ଅର୍ଦ୍ଧ)—(ଜ୍ୟୋତିଷ)କରଣ
Tithyarddha (astronomy) Half a lunar day.
[ ଦ୍ର—ପ୍ରତି ତିଥିରେ ୨ଟି କରଣ ଭୋଗ ହୁଏ । ]

**ତିଦସ୍ତା**—ଦେ. ବି.—ତେରସ୍ତା; ଗତବର୍ଷର ପୂର୍ବ ବର୍ଷ—
Tidastā Year before last.
তেরসাবর্ষ **तीसपबरस**

**ତିନସ୍ର(ସ୍ରୀ)**—ଦେ. ବିଣ. (ସଂ. ତ୍ରି+ଲହରୀ)—ତିନିସରିଆ (ହାର ଆଦି)—
Tinarā(rī) Three-stringed (necklace.).
তেনরী **तिलड़ा, तिलड़ी** (ତିନରିଆ—ଅନ୍ୟରୂପ)

ସାଧାରଣ ଲୋକେ ଅପର ସ୍ଥାନରେ ଦ୍ୱିତୀୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଡ଼' ଖୋଜିବେ; 'କ୍ରୂର' ନ ମିଳିଲେ 'କ୍ରୁର' ଦେଖିବେ, 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଳବଳ' ନ ପାଇଲେ 'ଅଲବଲ' ଦେଖିବେ

**ତିନା**—ଦେ. ବି. (ସଂ. ତ୍ରିକ୍)—୧ । (ପଶା ଓ କଉଡ଼ି ଖେଳରେ)—ତିନି ସଂଖ୍ୟକ ଦାନ—1. The throw of dice or cowrie resulting in 3 (in the game of dice or cowries).
Tinā

୨ । (ତାସ ଓ ଗଞ୍ଜପା ଖେଳରେ) ତିନିବିନ୍ଦୁ ଥିବା ତାସ୍—2. A card having 3 points on it (in card-play).

**ତିନା ଧିନା**—ଦେ ବି—୧ । ନାଚ ଓ ବାଦ୍ୟସହ ଗୀତର ଉକୁଟ—1. A measure of song accompanied with music and dance.
Tinā dhinā
ତିନ ଧିନ, ତିନେଇ ଧିନେଇ—ଅନ୍ୟରୂପ
୨ । (ଲକ୍ଷଣାର୍ଥ) ଘରେ କଳି ବା ଅନର୍ଥ ଲାଗିବା—2. (figurative) Quarrelling in a family.

**ତିନି**—ଦେ. ବି (ସଂ. ତ୍ରୀଣି; ପ୍ରା. ତିଣ୍ଣି)—୧ । ୩ ସଂଖ୍ୟା—1 Number 3.
Tini
তিন
तीन
୨ । କଉଡ଼ି ବା ପଶାଖେଳରେ ୩ ସଂଖ୍ୟକ ଦାନ—2. The throw of cowries or dice representing 3 marks.

ଦେ. ବିଣ—୧ । ୩ ସଂଖ୍ୟକ—1. Numbering three.
୨ । '୩' ସଂଖ୍ୟାର ପୂରଣ; ତୃତୀୟ—2 Third.
[ ଦ୍ର—ସାଧାରଣଙ୍କର ବିଶ୍ୱାସ ଯେ '୩' ସଂଖ୍ୟା ଅମଙ୍ଗଳକର; ଏଣୁ ଲୋକେ କହନ୍ତି 'ତିନି ତିରକଟ (କରକଟ) ମରଣ ନିକଟ' । ବନ୍ଧୁ ବନ୍ଧୁଙ୍କୁ ତିନି ସଂଖ୍ୟକ ପଦାର୍ଥ ଦିଅନ୍ତି ନାହିଁ । ଏହି ସଂଖ୍ୟା ନିଶ୍ଚୟାତ୍ମକ ଅର୍ଥରେ ମଧ୍ୟ ବ୍ୟବହୃତ ହୁଏ; ଯଥା—ବାରବାର ତତେ ତିନିବାର ସାବଧାନ କଲି; ଏଣିକି ମୋର ଦୋଷ ନାହିଁ । ]

**ତିନି ଅବସ୍ଥା**—ଦେ ବି—୧ । ପଦାର୍ଥର ତିନିଗୋଟି ଅବସ୍ଥା; ଘନ, ତରଳ ଓ ବାଷ୍ପୀୟ ଅବସ୍ଥା—1. Three conditions of things, solid, liquid and vapour.
Tini abasthā

୨ । ମନୁଷ୍ୟର ତିନି ଅବସ୍ଥା—ବାଲ୍ୟ, ଯୌବନ ଓ ଜରା—2. Three states of manhood; childhood, youth and old age.

**ତିନି ଅଲଗା ଫୁଟେ ଖାଁ**—ଦେ. ପ୍ରବଚନ—କୌଣସି କାର୍ଯ୍ୟରୁ ନିଜର ଦାୟିତ୍ୱ ବା ସମ୍ପର୍କ ଛଡ଼ାଇ ଦେଇ ଥିବା ବ୍ୟକ୍ତି—One who has severed all connection with or responsibility from some matter.
Tini alagā phate khān

**ତିନି ଅଙ୍ଗୁଳିଆ**—ଦେ. ବି ( ସଂ. ଗୃହାଳିକା, ଗୋଧାପଦୀ )—୧ । ହଂସପଦୀ ଲତା; ଦୀର୍ଘ ଶାଖାଲତାବିଶେଷ—1. Vitis Latifolia.
Tini āngulīā
ଗୋୟାଳି ପାନା
[ ଦ୍ର—ଏହା ଘରର କାନ୍ଥ ବା ଗଛର ବକଳାରେ ଥିବା ଗାତରେ ଚେରକୁ ଫୁଟାଇ ଉପରକୁ ମାଡ଼େ । ଏହାର ପତ୍ର ତ୍ରିପର୍ଣ୍ଣୀ ଓ ଶ୍ଲେଷ୍ମଘ୍ନ । ]

୨ । ( ସଂ. ଗୋଧାପଦୀ; ପାଦ ବା ଚେର ଗୋଧା ବା ଗୋଧି ବଡ଼ ଗୋୟାଳୀ ସାପ ପରି ଥିବାରୁ )—ଉକ୍ତ ଜାତୀୟ ବଡ଼ ଲତା—2. The Maiden hair fern; Vitis Pedala; Adiantum Lamulatum.
हंसपदी
[ ଦ୍ର—ଏହାର ପତ୍ର ସପ୍ତପର୍ଣ୍ଣୀ ଓ ଶ୍ଲେଷ୍ମଘ୍ନ । ଏହାକୁ ହଂସପଦୀ ମଧ୍ୟ କୁହାଯାଏ । ]

**ତିନିକଣିଆଁ**—ଦେ. ବିଣ (ସଂ. ତ୍ରିକୋଣ)—ତ୍ରିଭୁଜାକାର—Triangular.
Tini kaniān
তেকোণা, तिकोना
(ତିନିକୋଣିଆଁ—ଅନ୍ୟରୂପ)

**ତିନି କରକଟ**—ଗ୍ରା. ବି (ସଂ. ତ୍ରି)—ତିନି ସଂଖ୍ୟା—The number three.
Tini karakaṭa
ତିନି କରକଟ ମରଣ ନିକଟ—ଋଗ ।
(ତିନି ତିରକଟ—ଅନ୍ୟରୂପ)

**ତିନିକାନିଆ**—ଦେ. ବି—ତିକଣ୍ଟା ( ଦେଖ )
Tini-kāniā Tikanṭā ( See )

**ତିନି କାଳ**—ଦେ. ବି ( ସଂ. ତ୍ରିକାଳ )—୧ । ମନୁଷ୍ୟ ଜୀବନର ତିନି ଅବସ୍ଥା—ବାଲ୍ୟ, ଯୌବନ ଓ ଜରା—1. The three stages of man's life, viz. childhood, youth and old age.
Tini kāla
তিনিকাল
तीनकाल

୨ । ତ୍ରିକାଳ; ଦିବସର ତିନି ସମୟ—ସକାଳ, ଦ୍ୱିପହର ଓ ସନ୍ଧ୍ୟା—2. Three times of the day, viz. morning, noon and evening.

୩ । ତ୍ରିକାଳ; ତିନି ସମୟ—ଭୂତ, ବର୍ତ୍ତମାନ ଓ ଭବିଷ୍ୟତ୍—3. The three tenses—past, present and future.

୪ । ପୃଥିବୀର ପ୍ରଥମ ତିନିଯୁଗ—ସତ୍ୟ, ତ୍ରେତା ଓ ଦ୍ୱାପର—4 The three ages of the world before the present (Kali) age.

୫ । ହିନ୍ଦୁଶାସ୍ତ୍ରର ବିଧାନ ଅନୁସାରେ ମନୁଷ୍ୟ ଜୀବନର ପ୍ରଥମ ତିନିଗୋଟି ଆଶ୍ରମ—ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ ଓ ବାନପ୍ରସ୍ଥ—The first 3 stages which a Hindu is enjoined to pass before he finally takes to begging before death.
(ଯଥା—ମୋର ତ ତିନିକାଳ ଗଲାଣି; ଆଉ ଏ ଚତୁର୍ଥ କାଳକୁ ଧନ ଅରଜିବ ? )

୬ । ଦିବା, ରାତ୍ରି ଓ ସନ୍ଧ୍ୟା—6. Day, night and the transition periods.

**ତିନିକି ତିନିହେଁ**—ଦେ. ସର୍ବ—ତିନିଜଣ ଯାକ; ତିନିହେଁ ଯାକ—All the three (persons).
Tiniki tinihen
(ତିନିକି ତିନିଏଁ, ତିନିକୁ ତିନିହେଁ—ଅନ୍ୟରୂପ)
তিন্‌কে তিন্, तीनों, तिन्हु

| ୧ | ଇ | ଊ | ୠ,ୡ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ଇଁ | ଉଁ | ଘ |
|---|---|---|---|---|---|---|---|---|---|---|---|---|---|---|
| ୨ | ୪ | ଞ | ଋ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଗ | ଇଅ | ଊ | ୯ |

ତିନି କୁଳ—ଦେ. ବି—କୌଣସି ବିବାହିତା ସ୍ତ୍ରୀର ସମ୍ପର୍କୀୟ ୩ ଗୋଷ୍ଠ
Tini kula ବଂଶ—ପିତୃକୁଳ, ମାତାଙ୍କର ପିତୃକୁଳ ଓ ଶ୍ୱଶୁରକୁଳ-
তিনকুল The three families with which a woman
तीनकुल has connection, viz. her father's family, her mother's father's family and her own i. e. the family in which she is married).

(ଯଥା—କୁଟପୀ ସ୍ତ୍ରୀ ତିନି କୁଳରେ କଳଙ୍କ ଲଗାଏ ।)

ତିନିକେ—ଦେ. ଅ—ତିନିଗୁଣିତ ବା ତ୍ରିଗୁଣିତ ଏକ—
Tinike Three into one; three multiplied by one.
তিনকে ତିନିକେ ତିନିପଣ—ପଣିକିଆ ।

ତିନି ଗୁଣ—ଦେ. ବି—୧ । ସତ୍ତ୍ୱ, ରଜଃ ଓ ତମଃ—
Tiniguna 1. The virtuous, worldly and sinful
তনগুন qualities of nature

୨ । କୌଣସି ପଦାର୍ଥ ବା ପରିମାଣର ଗୁଣିତକ ୩—
2. Three times as much.

୩ । ଉତ୍ତମ, ମଧ୍ୟମ ଓ ମନ୍ଦ ଗୁଣମାନ—
3. Good, medium and bad qualities.

ତିନି ଗୁଣା—ଦେ.ବି—ତିନି ଗୁଣ (୨) (ଦେଖ)
Tini-guna Tini guna (2) (See).
তনগুনা ଦେ. ବିଣ—୧ । (ସ. ତ୍ରିଗୁଣ)—ତିନି ସରିଆ—
तीनगुना Three-stringed.

ସପତ ସ୍ୱର ବଜୁଥିଲା,
ସୁସ୍ୱର ବାଦ୍ୟ ତିନିଗୁଣା—ଜଗନ୍ନାଥ. ଭାଗବତ ।

୨ । ତ୍ରିଗୁଣିତ—2. Treble; thrice as much.

ତିନିଟା—ଦେ. ବିଣ ( ଅନାଦରାର୍ଥ )—୩ ଗୋଟା; ତିନି ସଂଖ୍ୟକ—
Tinita Three; numbering three.
তনটা, তনটে तिनठा

(ତିନିଟା, ତିନୁଟା, ତିନୋଟା—ଅନ୍ୟରୂପ) ଦେ. ବି—୧ । ତିନି
তনটে, তনটা ସଂଖ୍ୟା—1. Three in number.

୨ । ଘଣ୍ଟାରେ ୩ ବାଜିବା ବେଳ—
2. Three o'clock.

ତିନିଟି—ଦେ. ବି ( ଆଦରାର୍ଥ )—ତିନି ସଂଖ୍ୟା—
Tiniti Three in number.

(ତିନିଟି, ତିନୁଟି, ତିନୋଟି—ଅନ୍ୟରୂପ) ଦେ. ବିଣ—୩ ଗୋଟି;
তিনটি ତିନି ସଂଖ୍ୟକ—Three; numbering three.

ତିନି ତବତିଆ—ଦେ. ବିଣ—ଯେଉଁ ବ୍ୟକ୍ତିର ଅବସ୍ଥା ସଚଳ ଥିବାରୁ
Tini tabatia ସେ ଦିନ ମଧ୍ୟରେ ୩ ବେଳ ତତଲ ଭାତ ଖାଏ—
One who can afford to take fresh cooked rice 3 times a day; well-to-do.

[ ଦ୍ର—ସାଧାରଣତଃ ଗରିବ ଲୋକେ ନାନାପ୍ରକାର ଅଭାବରେ ଥିବାରୁ ତିନି ବେଳଯାକ ଗରମ ଭାତ ଖାଇବାର ସୁବିଧା ପାଆନ୍ତି ନାହିଁ । ]

ଦେ. ବି—ତତଲ ଖାଇବା ବ୍ୟକ୍ତି—
A person who takes fresh boiled rice.

ଗୁଜଲ ଘରରୁ ତିନିତବତିଆ,
ମଝିରେ ବସିଛି ଶିଶୁପରିଆ—ଢଗ ।

ତିନି ତାରବନ୍ଧ—ଦେ. ବି—ଚିନିରସ ବା ଶିରାର ଖୁବ୍ ପତଳା ପାଗ—
Tini tarabanda Thin condition of boiling
তিনতার syrup.
तिनतारबंद [ ଦ୍ର—ଚିନି ବା କନ୍ଦରେ ପାଣି ଦେଇ
ତିନିତାର } —ଅନ୍ୟରୂପ ତାଲୁ ନିଆଁ ଉପରେ ବସାଇ ଅଉଟିଲେ
ତିନିତାସ୍ରି } ଶିରା ବା ରସ ପ୍ରସ୍ତୁତ ହୁଏ । ଯେଉଁ ପତଳା ରସକୁ ଚଟୁରେ ଉପରକୁ ଟେକିଲେ ପ୍ରଥମେ ତିନିଧାର ହୋଇ ରସ ଝରେ ତାକୁ 'ତିନିତାରବନ୍ଧ' ଓ ଅପେକ୍ଷାକୃତ ବହଳ ହେଲେ, ଯହିଁରୁ ଦୁଇଧାର ଝରେ ତାକୁ 'ଦୁଇତାରବନ୍ଧ' ବୋଲାଯାଏ । ରସ ଆହୁରି ବହଳ ହୋଇଗଲେ ତାକୁ ଚଟୁରେ ଟେକିଲେ ଚହିଁରୁ ଗୋଟିଏ ମାତ୍ର ଧାର ଖସି ପଡ଼େ, ତାକୁ 'ଏକତାରବନ୍ଧ' ପାଗ କୁହାଯାଏ । ]

ଦେ. ବିଣ—ତିତାସ୍ରି (ଦେଖ)—Titari (See).

ତିନି ତେ(ଥେ)ଣ୍ଟିଆ—ଦେ. ବିଣ—ଯେଉଁ କାର୍ଯ୍ୟରେ ୩ ଜଣ
Tini te(the)ntia ଲୋକଙ୍କର ଅଧିକାର, ଦାୟିତ୍ୱ ବା ସ୍ୱତ୍ୱ
(ତିନିଟେଣ୍ଟିଆ—ଅନ୍ୟରୂପ) ଥାଏ; ତିନିଜଣଙ୍କର ଭରସାଲି (ଅର୍ଥାତ୍ ଯାହା ସୁପରିଚାଳିତ ନୁହେ)—
( any work ) Belonging to 3 joint owners or masters i. e. for which three ( that is, many persons ) are jointly interested and for which the responsibility does not attach to any one in particular.

ତିନିଟେଣ୍ଟିଆ କାଉଡିବାଡ଼ି
ଖାଏ ଶିଆଳ ଦେବ ମୋଡ଼ି—ଢଗ ।

[ ଦ୍ର—'ତିନି' ଏଠାରେ 'ବହୁସଂଖ୍ୟକ ଅର୍ଥରେ ପ୍ରଯୁକ୍ତ । କୌଣସି କାର୍ଯ୍ୟରେ ଜଣକର ପୂର୍ଣ୍ଣ କର୍ତ୍ତୃତ୍ୱ ନ ରହିଲେ ତହିଁରେ ବିଶୃଙ୍ଖଳା ଘଟିବା ସ୍ୱାଭାବିକ । ]

ତିନି ଧୂପ ପାଞ୍ଚ ଅବକାଶ—ଦେ. ବି—୧ । ଶ୍ରୀଜଗନ୍ନାଥ ଓ ଲିଙ୍ଗରାଜ
Tini dhupa pancha abakasa ମହାପ୍ରଭୁ ଓ ଅନ୍ୟାନ୍ୟ ଦେବତାଙ୍କଠାରେ ହେଉଥିବା ୩ ଧୂପ ଓ ୫ ଅବକାଶ—
1. The 3 major rituals and 5 minor rituals of worship performed before the Deities Jagannath at Puri, Lingaraj in Bhubaneswar and other places.

[ ଦ୍ର—ପ୍ରଥମ ଅବକାଶ—ଦନ୍ତଧାବନ ଓ ସ୍ନାନ ( ଏଥିରେ ପଞ୍ଚାମୃତ ଅର୍ପିତ ହେଉଥିବାରୁ ଏହା ଗୋଟିଏ 'ଭୋଗ' ମଧ୍ୟରେ

ସାଧାରଣ ଲୋକେ ଅପଠ ଦୃଷ୍ଟିରେ ଦେଖିଲେ ୧ ଛାନ୍ଦର ଅକ୍ଷର ଓ ମାତ୍ରା ଏବଂ ୨ ଛାନ୍ଦର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଛାନ୍ଦର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଛାନ୍ଦର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'ଜୁଇ' ନ ମିଳିଲେ 'ଜୁଈ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୂ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଅକ୍ଷି' ଦେଖିବେ; 'ଅଲଦ୍ଦ' ନ ପାଇଲେ 'ଅଲ୍ଦଦ' ଦେଖିବେ

ଗଣ୍ଠି । ଦ୍ୱିତୀୟ ଅବକାଶ—ବଲ୍ଲଭ-ଭୋଗ । ପ୍ରଥମ ଧୂପ—ସକାଳ ଧୂପ । ତୃତୀୟ ଅବକାଶ—ଭୋଗ ମଣ୍ଡପ । ଦ୍ୱିତୀୟ ଧୂପ—ଦ୍ୱିପହର ଧୂପ । ଚତୁର୍ଥ ଅବକାଶ—ଗୋଧନ ବାହୁଡ଼ା ବା ଝେର ପିଠା । ତୃତୀୟ ଧୂପ—ସଞ୍ଜ ଧୂପ । ପଞ୍ଚମ ଅବକାଶ—ବଡ଼ ସିଂହାର ଭୋଗ । ତିନି ଧୂପରେ ଷୋଡ଼ଶୋପଚାରରେ ପୂଜା ହୁଏ; କିନ୍ତୁ ପାଞ୍ଚ ଅବକାଶରେ ପଞ୍ଚୋପଚାର ପୂଜାର ବିଧାନ ଅଛି । ଏ 'ଧୂପ' ଓ 'ଅବକାଶ' ପ୍ରତ୍ୟେକ ଭୋଗ ସମୟରେ ଧୂପ ଦୀପାଦି ଦିଆ ଯିବାର ବିଧି ଅଛି, ମାତ୍ର ଅବକାଶ ବେଳେ ଧୂପଦୀପାଦି ପରିବର୍ତ୍ତେ ପୁଷ୍ପ-ସମର୍ପଣ କରାଯାଏ । ଧୂପ ବେଳେ ପୂଜାପଣ୍ଡା ଦେବତାଙ୍କ ପିଣ୍ଡି ବା ସିଂହାସନ ଉପରେ ବସି ପୂଜା କରେ, କିନ୍ତୁ ଅବକାଶ ବେଳେ ସିଂହାସନ ତଳେ ବସେ । ଏହିବାକ୍ୟର ଅନ୍ୟ ପ୍ରକାର ଅର୍ଥପାଇଁ ଅବକାଶ ତଳେ ନୋଟ ଦେଖ । ]

୨ । ମନୁଷ୍ୟର ଶୌଚାଦି ନିତ୍ୟ କର୍ମ—
2. The daily habits of a person.

( ଯଥା—ତାର ତ ଏବେବେଳଯାଏ ତିନି ଧୂପ ପାଞ୍ଚ ଅବକାଶ ସରି ନାହିଁ !

**ତିନି ପଟ**—ଦେ. ବି—୧ । ତିପଟ; ତିନିଗୁଣ—
Tini paṭa 1. Three times.
(ତିପଟ—ଅନ୍ୟରୂପ) ୨ । କୌଣସି ବ୍ୟକ୍ତିର ତିନି ପଟ ବା ଦିଗ; ଆଗ, ପଛ ଓ ପାର୍ଶ୍ୱ—2. Front, back and sides of a person.

তিনগুনা ଦେ. ବିଣ—ତିନି ଗୁଣ ପରିମିତ; ତ୍ରିଗୁଣିତ—
तिगुना Thrice as much as; treble.

**ତିନି ପିଢ଼ି**—ଦେ. ବି. ( ସଂ. ତ୍ରି. ପୀଠ )—
Tini pirdhi ୧ । ଆପଣାର ଉପର ଓ ତଳର ୩ ପୁରୁଷ—
তিনপীঢ়ি 1. Three generations above and
तीनपिढ़ी below a person.
୨ । ଆପଣାର ପିତା, ଆପେ ଓ ଆପଣାର ପୁତ୍ର ଏପରି ୩ ପୁରୁଷ—2. One's father; one's self and one's son.
(ତିନିପୁରୁଷ, ତିନିପୁସ୍ତାନି—ଅନ୍ୟରୂପ)

**ତିନି ପୁର**—ଦେ. ବି—୧ । (ତ୍ରିପୁର) ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—
Tini pura 1. Heaven, earth and the
তিনপুর nether regions.
तीनपुर ୨ । ତିନି ପରସ୍ତ—2. Three layers or folds.
ଦେ. ବିଣ.—ତିନିପରସ୍ତିଆ—Having 3 layers or folds.

**ତିନିପୁର ମଲ୍ଲୀ**—ଦେ. ବି. (ସ ତ୍ରିପୁଷ୍ପମଲ୍ଲୀ)—ତିନିପ୍ରସ୍ତ ପାଖୁଡ଼ା ଥିବା
Tinipura mallī ମଲ୍ଲିଫୁଲ; ଡବଲ ମଲ୍ଲିଫୁଲ; ମୁଗ୍ଧର ମଲ୍ଲୀ;
মোতিয়াবেলা ତିପୁଷ୍ପ ମଲ୍ଲୀ—A kind of treble-petalled
मोगराबेला jasmine; double jasmine.

**ତିନି ପୁରୁଷ**—ଦେ. ବି.—୧ । (ବ୍ୟାକରଣ) ୧ମ ପୁରୁଷ, ୨ୟ ବା ମଧ୍ୟମ
Tini purusha ପୁରୁଷ ଓ ୩ୟ ପୁରୁଷ—1. The three
তিনিপুরুষ persons in grammar.
तीनिपुरुष ୨ । କୌଣସି ବ୍ୟକ୍ତିର ପିତୃ, ପିତାମହ ଓ ପ୍ରପିତାମହ—2. One's father, grand father and great grand father.
୩ । ତିନିପିଢ଼ି (ଦେଖ)—3. Tinipirdhi (See)

**ତିନି ପ୍ରଭୁ**—ଦେ. ବି.—୧ । (ହିନ୍ଦୁମତ) ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର—
Tini prabhu 1. The Hindu Trinity.
(ତିନି ଦେବ—ଅନ୍ୟରୂପ) ୨ । ( ଖ୍ରୀଷ୍ଟିୟାନ୍ ମତ ) ପରମ ପିତା ଈଶ୍ୱର, ଭୂତ ଓ ଈଶ୍ୱରପୁତ୍ର ଯୀଶୁ—2. God the Father, the Son and the Holy Ghost.

**ତିନି ପ୍ରାଣୀ**—ଦେ. ବି.—ଏକ ପରିବାରସ୍ଥ ତିନିଜଣ ମାତ୍ର ବ୍ୟକ୍ତି ଯଥା—
Tini prāṇi ସ୍ୱାମୀ, ସ୍ତ୍ରୀ, ଓ ସନ୍ତାନ କିମ୍ବା ସ୍ୱାମୀ ସ୍ତ୍ରୀ ଓ ମାତା—
Three persons comprising a family e.g. one's self, wife and child or one's self, wife and mother.

ଶାଶୁ ମଲା ବୋଉ ବେଇଲା, ଯେଉଁ ତିନି ପ୍ରାଣୀ କି ସେହି
ତିନି ପ୍ରାଣୀ ହେଲା । ଡଗ ।

**ତିନି ବକତ**—ଦେ. ବି. —(ସଂ. ତ୍ରୀଣି+ଆ. ୱକ୍ତ୍) ତିନି ବେଳ (ଦେଖ)
Tini bakata Tini beḻa (See).

**ତିନିବଞ୍ଚ**—ପ୍ରାଦେ. (ଗଞ୍ଜାମ) ବି—ଶକଟା ଖେଳର ଦାନବିଶେଷ
Tinibañcha (ଯେଉଁ ଦାନରେ ୩ ଗୋଟି 'ଏକ' ପଡ଼େ ଓ ଯାହାର ମୂଲ୍ୟ ୩)—A throw of dice in the game at Sakaṭā consisting of 3 'ones' or units.

**ତିନି ବାଙ୍କ**—ଦେ. ବିଣ. (ସଂ. ତ୍ରିବକ୍ର)—୧ । ତିନିସ୍ଥାନରେ ବକ୍ର;
Tini bāṅka ତ୍ରିଭଙ୍ଗିମ—1 Bent at 3 places.
তীনীবাঁকা ୨ । ବହୁସ୍ଥାନରେ ବକ୍ର —
तीनबाँका 2. Bent or curved at many places.

**ତିନି ବାଙ୍କେ**—ଦେ. କ୍ରି. ବିଣ—ବକ୍ରଭାବରେ; ଅନେକସ୍ଥାନରେ ବଙ୍କା-
Tini bāṅke ହୋଇ—In a curved manner.

ସୁଗନ୍ଧି ପେଡ଼ି ସେନି କାଖେ
ପଥେ ଗଲେଟି ତିନିବାଙ୍କେ । ଜଗନ୍ନାଥ. ଭାଗବତ ।

**ତିନି ବେଦ**—ଦେ. ବି—ଋକ୍, ସାମ ଓ ଯଜୁଃ—
Tini beda The 3 Bedas.

**ତିନି ବେଳ**—ଦେ. ବି—୧ । ତିନି କାଳ (ଦେଖ)
Tini beḻa 1. Tini kāḻa (See)
তীনবেলা (ଯଥା—ସେ ତିନିବେଳରେ ତିନିକଂସା ଖାଏ ।)
तीनबक्त ୨ । ତିନିଥର—2. Three times.

**ତିନିମା ତିରୁପୁ**—ପ୍ରାଦେ. (ଗଞ୍ଜାମ) ବି—ଗାତରେ ପକାଇ ଖେଳିବା
Tinimā tirupu କଉଡ଼ି ବା ବାଟୀ ଖେଳର ତୃତୀୟ ଆଘାତ—
Name of the third stroke in a certain game of marble or cowries.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର ଷ | ଜ | ଣ,ଷ | କ୍ଷ | ଇୟ | ଉଅ | ଓ |
| ୵ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ ଙ୍ୟ | ଯ | ସ | ଚ୍ୟ | ଇଅ | ଔ | ନ୍ |

**ତିନି ଯୁଗ**—ଦେ. ବ—ସତ୍ୟ, ତ୍ରେତା ଓ ଦ୍ୱାପର—
Tini juga — The 3 cycles or ages through which the world has already passed.

**ତିନିଶ**—ସଂ. ବ—ବନ୍ୟତରୁବିଶେଷ; ବାଣିଶ ଗଛ—
Tinisa — A timber-wood tree; Ougenia Dalborgioides.
ସଂ. ନାମ- ତିନାଶକ, ଶତଦ୍ରୁ, ରଥିକ, ଅଶକ, ତିନଶ, ସ୍ୟନ୍ଦନ, ଶତାଙ୍ଗ, ଜଲଧର, ନେମୀ, ରଥଦ୍ରୁ, କଣ୍ଟକ, ମେଷୀ, ଅତିମୁକ୍ତକ, ଚକ୍ରକୁଦ, ଚକ୍ରୀ
ଭସ୍ମଗର୍ଭ
ଜାରୁଳ
तिरिच्छ, सन्दन, तिनाश
ମ. ତିନସ
ଗୁ. ତନ୍ନେ
[ବି—ଏହାର କାଠ ଭାର କଠିନ ଓ ଘୋଡ଼ା ଗାଡ଼ି ଘର ଫଳା ନାନା ବର୍ଣ୍ଣି । ଏହି କାଠ ରଥଦ୍ରୁ, ଦ୍ୱାର ଶଗଡ଼ର ଚକ ଓ ଅକ୍ଷ ଆଦି ହୁଏ । ଏଣୁ ଏହାର ସଂସ୍କୃତ ନାମାନ୍ତର—ସ୍ୟନ୍ଦନ, ନେମୀ ଓ ରଥଦ୍ରୁ । ଏହାର ଫୁଲ ଧଳା ଓ ଫେନ୍ଥା ଫେନ୍ଥା ହୁଏ; ଫଳ ଛୁଇଁ ଘର । ବସନ୍ତକାଳରେ ଗଛର ପତ୍ର ଝଡ଼ି ପଡ଼େ ଓ ନୂଆ ପତ୍ର ବାହାରେ । ବଣରେ ଏକତ୍ର ଅନେକ ଗଛ ଉଠେ ବୋଲି ଏହାର 'ତିନଶ' ନାମ ହୋଇଅଛି । ଏହା ବିହାର, ଓଡ଼ିଶା ଓ ମଧ୍ୟପ୍ରଦେଶର ଜଙ୍ଗଲମାନଙ୍କରେ ଜନ୍ମେ । ବୈଦ୍ୟକ ମତରେ ଏହା କଫ, ପିତ୍ତ, ରକ୍ତଦୋଷ, କୁଷ୍ଠ, ପ୍ରମେହ, ଶ୍ୱିତ୍ର, ଦାହ, ବ୍ରଣ, ପାଣ୍ଡୁ ଓ କୃମିନାଶକ । ]

**ତିନିହେଁ**—ଦେ. ସର୍ବ—ତିନିଜଣଯାକ—
Tinihen — All the three.
तीनजनाई तिनौं, तिहुँ
(ତିନିଏଁ, ତିନ୍ହିଏଁ, ତିନିହେଁଯାକ—ଅନ୍ୟରୂପ )

**ତିନି ହୋର**—ଦେ. ବଣ. ( ଭୁଲ. ଦୋହୋର )—ତ୍ରିଗୁଣ; ତିନି ସର ହୋଇ ଭଙ୍ଗା ହୋଇଥିବା—
Tini hori — Folded thrice; threefold.
तीगुना
तेहरा ( ଯଥା—ଦଉଡ଼ିକୁ ତିନିହୋର କରି ଭାଙ୍ଗିଲେ ତାହା ଦୃଢ଼ ହୁଏ । )

**ତିନ୍ତା**—ଦେ. ବଣ. (ସଂ. ତିମ୍ ଧାତୁ=ଆର୍ଦ୍ର ହେବା)—ଆର୍ଦ୍ର; ଓଦା—
Tinta — Wet; moistened; damp.
भीजा — ଦେ. ବ—୧ । ଆର୍ଦ୍ର ହେବା; ଓଦା ହେବା, ତିନ୍ତିବା—
तर, भीगा; भीगना — 1. The state of being wet or moistened.
୨ । ଓଦା କରିବା—2. Moistening; wetting.

**ତିନ୍ତା(ନ୍ତେ)ଇବା**—ଦେ. କ୍ରି. ( ତିନ୍ତିବାର ଣିଜନ୍ତରୂପ )—
Tintā(nte)ibā — ୧ । ଓଦା କରିବା; ଭିଜାଇବା—
भीजाना; तीतना — 1 To wet; to moisten.
भिगाना, तिमाना — ୨ । ବତୁରାଇବା—2. To damp.

**ତିନ୍ତାତିନ୍ତି**—ଦେ. ବ—୧ । ଆର୍ଦ୍ର ହେବା—
Tintā-tinti — 1. The state of being moistened.
भीजाभीजी — ୨ । ପରସ୍ପର ପରସ୍ପରକୁ ଓଦା କରିବା—
भिगाभिगि — 2. Mutually moistening each other.

**ତିନ୍ତିଡ଼(ଡ଼ୀ)**—ସଂ. ବ. (ତିମ୍ ଧାତୁ=ଆର୍ଦ୍ର ବା କ୍ଳେଦଯୁକ୍ତ ହେବା+ଅତ୍ୟ-
Tintirda(rdi) — ନ୍ତାର୍ଥରେ ଦ୍ୱିତ୍ୱ+ଡ଼+ଈ, ପକ୍ୱଫଳ କ୍ଳେଦଯୁକ୍ତ ଥିବାରୁ)—ତିନ୍ତୁଳ ( ଦେଖ )
ତିନ୍ତିଡ଼ିକା; ତିନ୍ତିଡ଼ୀ; ତିନ୍ତିଡ଼ୀକ } ଅନ୍ୟରୂପ — Tintuli ( See )

**ତିନ୍ତିଡ଼କାମ୍ଳ**—ସଂ. ବ. ( ପାରିଭାଷିକ ଶବ୍ଦ )—ତେନ୍ତୁଳାମ୍ଳ; ଏକପ୍ରକାର
Tintirdakāmla — ବୈଜ୍ଞାନିକ ଦ୍ରାବକ—Tartaric acid.
[ ତିନ୍ତିଡ଼କାମ୍ଳ—ଅନ୍ୟରୂପ ]

**ତିନ୍ତିବା**—ଦେ. କ୍ରି. ( ସଂ. ତିମ୍ ଧାତୁ=ଓଦା ହେବା; ତୁଲ. ସିକ୍ତ )—
Tintibā — ଓଦା ହେବା; ଭିଜିବା—To become wet; to be moistened.
तीता; भीजा
भीगना
[ତିନ୍ତା(ନ୍ତେ)ଇବା—ଣିଜନ୍ତ]
କର୍ମ ନ ପାରେ ଭୋଗେ ତୁଇଁ
କଜଳ ନ ତିନ୍ତେ ଯେଉଁହେ ଲୁହ—
ଉପେନ୍ଦ୍ର. ପ୍ରେମସୁଧାନିଧି ।

**ତିନ୍ତି ବୁଡ଼ି**—ଦେ. କ୍ରି. ବଣ. ( ତିନ୍ତିବା ଓ ବୁଡ଼ିବା କ୍ରିୟାର ଅସମାପିକା
Tinti burdi — ରୂପ; କ୍ରି ବଣ. ରୂପେ ବ୍ୟବହୃତ )—ବର୍ଷା ପାଣିରେ ଓଦା ହୋଇ ଓ ପାଣିରେ ପଶି, ଅର୍ଥାତ୍ ବାଟରେ ଆସିଲାବେଳେ ମେଘରୁ ପଡ଼ିବା ବର୍ଷା ପାଣିରେ ଓ ବାଟରେ ଥିବା ଜଳାଶୟାଦିର ପାଣି ଦ୍ୱାରା ଓଦା ହୋଇ ସୁଦ୍ଧା ତାହିଁର ଭ୍ରୂକ୍ଷେପ ନ କରି ( ଦଉଡ଼ିବା ବା ଆସିବା )—(to come or run to a place) Having been drenched with rain and water on the way.
( ଯଥା—ଆପଣ ଏଠାକୁ ଆସିଛନ୍ତି ଶୁଣି ଆପଣଙ୍କୁ ଦେଖିବାକୁ ଆମେ ୪ କୋଶ ବାଟ ତିନ୍ତିବୁଡ଼ି ଆସିଛୁଁ । )

**ତିନ୍ତିଲୀ**—ସଂ. ବ. (ତିମ୍ ଧାତୁ+ ଅତ୍ୟନ୍ତାର୍ଥରେ ଦ୍ୱିତ୍ୱ+ଡ଼+ଈ. ଈ;
Tintili — ଡ଼ ସ୍ଥାନରେ ଲ )—ତିନ୍ତୁଳ ( ଦେଖ )
Tintuli ( See )

**ତିନ୍ତୁ କୋଳି**—ଦେ. ବ—ଏକପ୍ରକାର କୋଳି—
Tintu koli — A species of plum.

**ତିନ୍ତୁଡ଼ି**—ଦେ. ବ. ( ସଂ. ତିନ୍ତିଡ଼ୀ )—ତିନ୍ତୁଳ ( ଦେଖ )
Tinturdi — Tintuli ( See )
ହୁସକଳା ଥାଇଁ ଅଗସ୍ତି ତିନ୍ତୁଡ଼ି ସୁରଭିରୁ ଶାଗୋଟକ—
ନନ୍ଦିକେଶୋର. ଶର୍ମିଷ୍ଠା ।

**ତିନ୍ତୁଳ**—ଦେ. ବ. ( ସଂ. ତିନ୍ତିଲୀ )—୧ । ତିନ୍ତିଡ଼ୀ ଗଛ ଓ ତାହାର
Tintuli — ପକ୍ୱଫଳ—Tamarind tree and its ripe fruit; Tamarindus Indica.
ସଂ. ପର୍ଯ୍ୟାୟ—ଅମ୍ଳିକା, ଚୁକ୍ରିକା, ଅମ୍ଳୀ, ଚୁକ୍ରା,

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ପାଠକମାନେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗଡ଼' ନ ମିଳିଲେ 'ଗାଡ଼' ଖୋଜିବେ, କୃଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅଙ୍କୀ ନ ପାଇଲେ 'ଅଙ୍କି' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ଦନ୍ତଶଠା, ଅମ୍ଳା, ଚିଞ୍ଚିକା, ଚିଞ୍ଚା, ତିନ୍ତିଡ଼ୀ, କାରତିନ୍ତିଡ଼ୀ
ତେଁତୁଲ
**अम्लि; इम्लि**
ତେ. ଚିନ୍ତାପାଣ୍ଡୁ, ଚିଞ୍ଚ
ତା. ପୁଳି
ମ. ଇମଲି, ଚିଞ୍ଚ
ଗୁ. ଆମ୍ଲୀ
ଆ. ତମରହିନ୍ଦୀ
ଆସାମୀ. ତେଁତେଲୀ
( ତେନ୍ତୁଳି—ଅନ୍ୟରୂପ )

[ ଦ୍ର—ଏହା କୃଷ୍ଣଚୂଡ଼ାଦି ବର୍ଗର ବୃକ୍ଷ । ଏହା ଭାରତବର୍ଷରେ ସର୍ବତ୍ର ଜନ୍ମେ; ବସନ୍ତକାଳରେ ନୂଆ ପତ୍ର ଧରେ, କିନ୍ତୁ ପୁରୁଣା ପତ୍ର ଏକାବେଳେ ଝଡ଼ି ପଡ଼େ ନାହିଁ । ଏହାର କାଠ ଖୁବ୍ ଶକ୍ତ । ଏଣୁ ଏ କାଠରେ ଅଙ୍ଗାର ତିଆରି କରାଯାଏ । ଏ କାଠ ମଧ୍ୟ ଉତ୍ତମ ଜଳେ । ଏହାର ପତ୍ର ଓ ଫୁଲ ମଧ୍ୟ ଖଟାଳିଆ । ଏହାର କଞ୍ଚା ଫଳକୁ କଇଁଆ ବୋଲାଯାଏ । କଞ୍ଚା ତିନ୍ତୁଳି ଅମ୍ଳ, ଗୁରୁ, ବାୟୁନାଶକ ଏବଂ ପିତ୍ତ, କଫ ଓ ରକ୍ତଦୁଷ୍ଟିକାରକ । ପାଚିଲା ତିନ୍ତୁଳି ଅଗ୍ନିଦୀପକ, ସାରକ, ଉଷ୍ଣବୀର୍ଯ୍ୟ ଏବଂ କଫ ଓ ବାୟୁନାଶକ । ]

୨ । ପାଚିଲା ତିନ୍ତୁଳି ଫଳରୁ ଚୋପା ଛଡ଼ାଇ ମଞ୍ଜି ଓ ପାରୁକୁ ପୃଥକ କରିବା ପରେ ରହିଯିବା ସାର ପଦାର୍ଥ—
2. The pulpy substance inside the tamarind fruit after it is peeled off and the fibres removed.

ତିନ୍ତୁଳିଆ ବିଛା—ଦେ. ବି. ( ସଂ. ନାମ ଖର୍ଜୁ )—ନାଲିରଙ୍ଗର ଏକ
Tintulia bichha ପ୍ରକାର ଶତପଦୀ ବିଷଧର କୀଟ—
तेँतुलीया बीछा; तेँतुले बीछा A centiped; Scolopenda
**गोजर, कनखजूरा** Singulata.
( ତେନ୍ତୁଳିଆ ବିଛା—ଅନ୍ୟରୂପ ) [ ଦ୍ର—ଏହାର ବର୍ଣ୍ଣ ପାଚିଲା ତିନ୍ତୁଳି ପରି ଦେଖାଯାଏ । ଏହାର ଲାଙ୍ଗୁଡ଼ରେ ୨ଟି ନାହୁଡ଼ ଥାଏ । ଏ ନାହୁଡ଼ ମାରିଦେଲେ ଘୋର ଯନ୍ତ୍ରଣା ହୁଏ । ଏ ପାଟିରେ କାମୁଡ଼େ, ମାତ୍ର ଏହାର ନାହୁଡ଼ର ଜ୍ୱାଳା ଅତ୍ୟନ୍ତ ଯନ୍ତ୍ରଣାଦାୟକ । ଲୋକେ ଏହି ବିଛାର ନାହୁଡ଼ର ଆଘାତକୁ 'ବିଛା କାମୁଡ଼ିବା' ବା 'ବିଛା ମାରିବା' ବୋଲି କହି ଥାଆନ୍ତି । କଳା ବିଛା ଶ୍ରେଷ୍ଠ ଓ ନିର୍ବିଷ । ବିଛା କଳା ଓ ନାଲି ଭେଦରେ ଦୁଇପ୍ରକାର । ]

ତିନ୍ତୁଳିଆ ବିଛା କାମୁଡ଼ିବା—ଦେ. କ୍ରି. ( ଲକ୍ଷଣାର୍ଥ )—
Tintulia bichha kamurdiba ତୀବ୍ର ଯାତନାଦାୟକ
(ମୁଣ୍ଡରେ ତିନ୍ତୁଳିଆ ବିଛା କାମୁଡ଼ିବା—ଅନ୍ୟରୂପ) ଚିନ୍ତାରେ ବ୍ୟତିବ୍ୟସ୍ତ ହେବା; ଘୋର ଚିନ୍ତାରେ ଅଭିଭୂତ ହେବା—
Being overpowered with stinging or distressing thoughts.

ତିନ୍ତୁଳି ଖାଇଲା ପରି ମୁହଁ କରିବା—ଦେ. କ୍ରି—ମୁଖରେ ବିରକ୍ତିଭାବ
Tintuli khaila pari muhan kariba ପ୍ରକାଶ କରିବା; ମୁହଁ ବିରକ୍ତ କରିବା; ମୁହଁକୁ ବିରକ୍ତିଆ କରିବା—
To have a frowning face; to scowl.
[ ଦ୍ର—ଖଟା ଖାଇଲେ ମୁହଁ ଯେଉଁପରି ହୋଇଯାଏ । ବିରକ୍ତ ହେଲେ ମଧ୍ୟ ମୁହଁର ସେହି ଭଙ୍ଗୀ ହୁଏ । ଏଥିପାଇଁ ଲୋକର ମୁହଁରେ ବିରକ୍ତିଭାବ ପ୍ରକାଶ ପାଇଲେ ବୋଲାଯାଏ, 'ଅମୁକ ତିନ୍ତୁଳି ବା ଖଟା ଖାଇଲା ପରି ମୁହଁ କରୁଛି ।' ]

ତିନ୍ତୁଳି ଛାଟ—ଦେ. ବି—୧ । ତେନ୍ତୁଳି ଡାଳରୁ ପ୍ରସ୍ତୁତ ଛାଟିଆ—
Tintuli chhata 1. A rod of tamarind twig.

ଅସିବୁ ଯିବୁରେ କଳାମାଣିକ !
ତୋହର ପାଇଁକ ନିତ ଗଞ୍ଜଣା, ପିଠିରେ ତିନ୍ତୁଳି ଛାଟ—ଗୀତ ।

[ ଦ୍ର—ତେନ୍ତୁଳି ଗଛର ଡାଳ ଭାରି ଟେମଡ଼ା ଥିବାରୁ ତହିଁରେ ପ୍ରହାର କଲେ ତାହା ସହଜରେ ଭାଙ୍ଗି ଯାଏ ନାହିଁ ଏବଂ ଅନ୍ୟ ଗଛର ଛାଟ ଅପେକ୍ଷା ତିନ୍ତୁଳି ଛାଟର ମାଡ଼ ବେଶି କାଟେ । ]

୨ । ତିନ୍ତୁଳି ଛାଟ ଦ୍ୱାରା ପ୍ରହାର—
2. Stripes with a tamarind twig.

ତିନ୍ତୁଳି ସଡ଼ା(ଢ଼ା)—ଦେ. ବି—କଇଁଆ ସଡ଼ା ( ଦେଖ )
Tintuli sarda(rdha) Kayan sarda ( See )

ତିନ୍ଦା (ନ୍ଧା) କିଟା—ଦେ. ବି—ନାଚ ଓ ଆନଦ୍ଧବାଦ୍ୟର ବୋଲ—
Tinda(ndha)kita The key-words used in dancing to the tunes of a drum.
ତିନ୍ଦାକିଟା, ତିନ୍ଦାକିଟୋ, ତିନ୍ଦାତା, ତିନ୍ଦା ତାତିନ୍ଦା, ତିନ୍ଦା ତାଧିନ୍ଦା } ଅନ୍ୟରୂପ

ତିନ୍ଦୁ—ସଂ. ବି. ( ତିମ୍ ଧାତୁ=ଓଦା ହେବା+ଉ; ଦ ଆଗମ )—
Tindu କେନ୍ଦୁ ଗଛ ଓ ଫଳ—
(ତିନ୍ଦୁକ—ଅନ୍ୟରୂପ) Diospyrus Embryopteris.

ତିନ୍ଦୁକ ତୀର୍ଥ—ସଂ. ବି—ମଥୁରା ନିକଟରେ ଥିବା ହିନ୍ଦୁ ତୀର୍ଥ ବିଶେଷ—
Tinduka tirtha A sacred place near Muttra ( U. P. )

ତିପଟ—ଦେ. ବି—ତେପଟ; ତିନିଗୁଣ—
Tipata Three times as much.
তেপট ଦେ. ବିଣ—ତିନି ଗୁଣ ପରିମିତ—
**तिगुना** Thrice as much; treble.

ତିପାହିଆ—ଦେ. ବି. ( ସଂ. ତ୍ରିପଦୀ )—
Tipahia ତିନି ଗୋଡ଼ିଆ ଷ୍ଟୁଲ—
তেপাযা A tripod; a tepoy; a stool with three legs
**तिपाइ**
ତିପାଇ, ତିପାୟା, ତିପାହିଆ } ଅନ୍ୟରୂପ ଦେ. ବିଣ—ତିନି ଗୋଡ଼ିଆ—
Three-legged.

ତିପିରି—ପ୍ରାଦେ. (ଗଞ୍ଜାମ) ବି—ବେପାର ବଣିଜରେ ଧନର ନଷ୍ଟି—
Tipiri Loss of money in trade.

ତିପୁର(ରି)—ଦେ ବି. ( ସଂ. ତ୍ରିପୁର )—
Tipura(ri) ୧ । ମିଷ୍ଟାନ୍ନ ବା ପିଷ୍ଟକ ବିଶେଷ—
1. A kind of sandwich cake.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଙ | ଉ | ଋ,ଋ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଖ୍ୟ | ଜ | ଣ,ଷ | କ୍ଷ | ଇପ୍ର | ଢ଼ | ଛ |
| ୨ | ଊ | ଊ | ଋ | ଌ | ପ୍ତେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ଯ | ର୍ଗ୍ୟ | ଇଅ | ଢ଼ | ନ୍ |

[ ଦ୍ର—ଏଥିରେ ✱ ଉପାଦାନରେ ପ୍ରସ୍ତୁତ ଦୂର ହୋଇଯାଇ ଥାଏ । ]

୨ । ତଗର; ଟଗର ( ଦେଖ )—2. Tagara ( See )

[ ଦ୍ର—ଏ ଫୁଲକୁ ଚପୁଡ଼ି ସେହି ରସକୁ କଚ୍ଛ ଟୋପାଏ ଲେଖାଏ ଆଖିରେ ପକାଇଲେ ୪୦ ଦିନରେ ସବୁ ପ୍ରକାର ଚକ୍ଷୁ ରୋଗ ଦୂର ହୁଏ । (ଏହା ପରୀକ୍ଷିତ) ]

ଦେ. କ୍ରି. ବିଣ.—( ହଳଦି, ଚାଉଳ ଆଦିକୁ ) ✱ ଥର ବା ✱ ଥର (ବାଟିବା)—(to pestle turmeric etc.) Thrice or three times.

( ଯଥା—ହଳଦୀକୁ ତିପୁର ବାଟିଲୁ । )

ତିଫାଇତ୍(ତି)—ଗ୍ରା. ବୈଦେ. ବି. ( ଅ. ତଫାୟୁତ୍ )—ଲାଭ—
Tiphāit(ti) Profit.
কিফায়ত किफायत
[ତିଫେଇତ(ତି), ତିଫାତ୍, ତିଫାସୁତ୍(ତି)—ଅନ୍ୟରୂପ ।]

ତିବିରି—ଦେ. ବିଣ. ( ସ. ତିବ୍ର )—
Tibiri ୧ । ଦୁଷ୍ଟ—1. Wicked.
(ତିଭିରି—ଅନ୍ୟରୂପ) ୨ । ଚଟୁଳ; ଚପଳ—
2. Fickle; restless.

ତିବେ(ଭେ)ଇ—ଗ୍ରା. ବିଣ. ପୁଂ—ତିଘେଇ ( ଦେଖ )
Tibe(bhe)i Tighei ( See )

ତିବେଣୀ—ଦେ. ବି—କହୁଣିଆ (୨) ( ଦେଖ )
Tibeṇī Kahuṇiā (2) ( See )
[ତିରବେଣୀ—ଅନ୍ୟରୂପ]

ତିମ୍ (ଧାତୁ)—ସ—୧ । ଆର୍ଦ୍ର ହେବା; ଓଦା ହେବା—
Tim (root) 1. To be wet.

୨ । ଓଦା କରିବା—
2. To damp; to moisten ( Apte ).

୩ । ନିଶ୍ଚଳ ହେବା—3. To become quiet or tranquil; to be calm ( Apte ).

ତିମି—ସ. ବି. ପୁଂ. ( ତିମ୍ ଧାତୁ=ଆର୍ଦ୍ର ହେବା+କର୍ତ୍ତୃ. ଇ )—
Timi ୧ । ସମୁଦ୍ରଜାତ ବୃହଦାକାର ମତ୍ସ୍ୟବିଶେଷ—
(ତିମୀ—ସ୍ତ୍ରୀ) 1. Whale.

[ ଦ୍ର—ଏମାନେ ସ୍ତନ୍ୟପାୟୀ ଜୀବ ( mammal ); ଆକାରରେ ୬୦ ହାତ ପର୍ଯ୍ୟନ୍ତ ଲମ୍ବ ହୁଅନ୍ତି । ଏମାନେ ୨ ପ୍ରକାର; ଯଥା—ଦନ୍ତଯୁକ୍ତ ଓ ଦନ୍ତହୀନ; ଶୀତପ୍ରଧାନ ଅଞ୍ଚଳର ସମୁଦ୍ରରେ ବାସ କରନ୍ତି । ଚାହାଜଆମାନେ ଏମାନଙ୍କୁ ଜେଲାରେ ମାରି ଏମାନଙ୍କଠାରୁ ଚର୍ବି ବାହାର କରି ସେହି ଚର୍ବିରେ ମହମବତି ଓ ସାବୁନ ଆଦି ନାନା ପ୍ରୟୋଜନୀୟ ଦ୍ରବ୍ୟ ପ୍ରସ୍ତୁତ କରନ୍ତି । ଏମାନଙ୍କ ଜଙ୍ଘାରୁ ବୋତାମ, ବାଡ଼ି ଓ ମେମ୍‌ମାନଙ୍କ ଘୁଗୁର ଭିତରର ପଞ୍ଜରାକୁଣ୍ଡ ରୂପ ( ribs ) ତିଆରି ହୁଏ । ]

୨ । ସମୁଦ୍ର (ପ୍ରକୃତିବାଦ)—2. Ocean.

୩ । ରାତ୍ର୍ୟନ୍ଧତା; ଅନ୍ଧାରକଣା ରୋଗ—
3. Night-blindness; nyctalopia.

ତିମି କୋଷ—ସ. ବି. ( ୬ଷ୍ଠୀ ତତ୍; ତିମି+କୋଷ )—ସମୁଦ୍ର—
Timi kosha The sea.

ତିମିଙ୍ଗିଳ—ସ. ବି.—(ତିମି+ଗିଳ୍ ଧାତୁ=ଗିଳିବା+କର୍ତ୍ତୃ. ଅ)—
Timiṅgiḷa ତିମିଠାରୁ ବୃହଦାକାର ମତ୍ସ୍ୟବିଶେଷ; (ଯେଉଁ ମାଛ ତିମି ମାଛକୁ ଗିଳି ପାରେ)—The sperm whale; the bigger whale (which can devour whales); Physter Macroaphalus.

୨ । ଦ୍ୱୀପବିଶେଷ (ହି. ଶବ୍ଦସାଗର)—
2. Name of an island.

୩ । ଉକ୍ତ ଦ୍ୱୀପର ନିବାସୀ (ହି. ଶବ୍ଦସାଗର)—Inhabitant of the above island.

ତିମିଙ୍ଗିଳଗିଳ—ସ. ବି. ( ତିମିଙ୍ଗିଳ+ଗିଳ ଧାତୁ+କର୍ତ୍ତୃ. ଅ )—
Timingiḷa-gila ତିମିଙ୍ଗିଳକୁ ଗିଳିବା ବାଲା ବଡ଼ ତିମିମାଛ—Largest whale which can devour the sperm whale.

ତିମିଙ୍ଗିଳାଶନ—ସ. ବି.—୧ । ବୃହତ୍ ସଂହିତାରେ ବର୍ଣ୍ଣିତ ଦକ୍ଷିଣର
Timiṅgiḷāśana ଦେଶ ବିଭାଗବିଶେଷ—
1. Name of a tract of country in the south.

[ଦ୍ର—ଲଙ୍କାଦ୍ୱୀପ ଏହି ବିଭାଗର ଅନ୍ତର୍ଗତ । ଏଥିର ଅଧିବାସୀମାନେ ତିମିଙ୍ଗିଳ ମତ୍ସ୍ୟର ମାଂସ ଆହାର କରନ୍ତି—ହି. ଶବ୍ଦସାଗର ।]

୨ । ଉକ୍ତ ଦେଶର ନିବାସୀ—2. The inhibants of the said tract of country.

ତିମିଜ—ସ. ବି. (ତିମି+ଜନ୍ ଧାତୁ+କର୍ତ୍ତୃ. ଅ)—ମୁକ୍ତାବିଶେଷ—
Timija A kind of pearl.

ତିମିତ—ସ. ବି. (ତିମ୍ ଧାତୁ=ନିଶ୍ଚଳ ହେବା+କର୍ତ୍ତୃ. ତ); ଭୁଲ
Timita ସ୍ତିମିତ)—୧ । ନିଶ୍ଚଳ; ନିସ୍ପନ୍ଦ—1. Motionless.

୨ । ଓଦା—2. Damped; wet

ତିମି ଧ୍ୱଜ—ସ. ବି.—(ବହୁବ୍ରୀହି; ତିମି+ଧ୍ୱଜା, ଏହାର ପତାକାରେ
Timi dhwaja ତିମିର ଚିତ୍ର ଅଙ୍କିତ ଥିବାରୁ)-ଶମ୍ବର ଦୈତ୍ୟ—
A name of the demon Śambara.

[ଦ୍ର—ଏହାକୁ ବଧ କରି ରାମଚନ୍ଦ୍ର ବ୍ରହ୍ମାଙ୍କଠାରୁ ଦିବ୍ୟାସ୍ତ୍ର ଲାଭ କରିଥିଲେ—ହି. ଶବ୍ଦସାଗର ।]

ତିମିର—ସ. ବି. (ତିମ୍ ଧାତୁ=ନିଶ୍ଚଳ ହେବା+କରଣ. ଇର)—
Timira ୧ । ଅନ୍ଧକାର; ଅନ୍ଧାର—1. Darkness

୨ । ଚକ୍ଷୁରୋଗବିଶେଷ—2. An eye-disease.

[ଦ୍ର—ଏ ରୋଗରେ ଦୃଶ୍ୟବସ୍ତୁ ଯୋଗୁଁ ଗୁହିଁଲାବେଳେ ଆଖିଆଗ ଅନ୍ଧାର ଦିଶେ ଓ ଅଳ୍ପ ଆଗରେ ଜୁଳୁଜୁଳୁ ପୋକ ବା

ସାଧାରଣ ଲୋକେ ଅପର ପୃଷ୍ଠାରେ ଦଉତ ୧ ଚହ୍ନିତ ଅକ୍ଷର ଓ ମାତ୍ରା ଏବ ୨ ଚହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ସ୍ଥାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଦ' ନ ମିଳିଲେ 'ଗାଦ୍' ଖୋଜିବେ; 'କୃଥ' ନ ମିଳିଲେ 'କୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ଆସ୍‌ପୁଡ଼ାଏ ଏବେ ତେଣେ ତିନି ଗଲ୍ପପରି ଜଣା ଯାଏ । ସୁଶ୍ରୁତରେ ଏ ରୋଗର ଅନେକ ଭେଦ ବର୍ଣ୍ଣିତ ହୋଇଅଛି ଯଥା—ଅଖିକୁ ଜାଲଜାଲୁଆ ଦେଖା ଯିବା; ରଙ୍ଗବେରଙ୍ଗ ଦେଖାଯିବା, ସ୍ପଷ୍ଟରେ ଦେଖା ନ ଯିବା—ହି. ଶବ୍ଦସାଗର ।]

୩ । ଅନ୍ଧାରକଣା ରୋଗ—
3. Night-blindness; nyctalopia.

୪ । ଘୋର କୃଷ୍ଣବର୍ଣ୍ଣ—4 Deep-black colour.

ସଂ. ବିଣ.—୧ । ଅନ୍ଧକାରମୟ—1. Dark.

୨ । ଘୋର କୃଷ୍ଣବର୍ଣ୍ଣବିଶିଷ୍ଟ—2. Deep black.

**ତମିରନୁଦ୍**—ସଂ. ବିଣ. (ତିମିର+ନୁଦ୍ ଧାତୁ+କର୍ତ୍ତୃ. କ୍ୱିପ୍)—
Timiranud ଅନ୍ଧକାରନାଶକ—Dispelling darkness.
ସଂ. ବି.—ସୂର୍ଯ୍ୟ—The sun.
(ତିମିରନୁଦ୍, ତିମିର ଘ୍ନ, ତିମିରହର, ତିମିରାରି—ଅନ୍ୟରୂପ)

**ତମିରାଚ୍ଛନ୍ନ**—ସଂ. ବିଣ. (ତତ୍ପୁ. ତତ୍.; ତିମିର+ଆଚ୍ଛନ୍ନ)—ଅନ୍ଧକାରାବୃତ
Timirāchchhanna Enveloped in darkness.
(ତିମିରାବୃତ—ଅନ୍ୟରୂପ)

**ତମିରି**—ଗ୍ରା. ବି. (ସଂ. ତିମିର)—୧ । ଅନ୍ଧକାର—
Timiri 1. Darkness.
तिरमिरा ଏମନ୍ତେ ରଜନୀ ହୋଇଲା,
ଘୋର ତମିରି ପ୍ରକାଶିଲା । ଜଗନ୍ନାଥ, ସ୍ୱରବଚ ।

୨ । 'ତିମିର' ନାମକ ଚକ୍ଷୁରୋଗ—
2. An eye-disease.

**ତମିରିତ**—ସଂ. ବିଣ. (ତିମିର+ସଞ୍ଜାତାର୍ଥେ ଇତ)—ଅନ୍ଧକାରମୟ;
Timirita ଅନ୍ଧାରୁଆ—Dark; full of darkness.
କଷ୍ଟ ପାଏ ସପ୍ତ ସ୍ୱର୍ଗ ତମିରିତ ସ୍ଥାନେ ।
ଚନ୍ଦ୍ରାମଣି, ଚନ୍ଦ୍ରମ୍ପର୍ଭ୍ୟ ।

**ତମିଷ**—ସଂ. ବି. (ତିମ୍ ଧାତୁ=ଅର୍ଦ୍ର କରିବା+କର୍ତ୍ତୃ. ଇଷ)—
Timisha ୧ । କାକୁଡ଼ି; ଫୁଟି (ହି. ଶବ୍ଦସାଗର)—
1. Cucumber.

୨ । ପାଣିକଖାରୁ (ହି. ଶବ୍ଦସାଗର)—
2. The white gourd.

୩ । ତରଭୁଜ—(ହି. ଶବ୍ଦସାଗର)—3. Water melon.

**ତମୀ**—ସଂ. ବି. ସ୍ତ୍ରୀ—୧ । ମାଈ ତିମି ମାଛ—
Timi 1. A she-whale.

୨ । ଦକ୍ଷଙ୍କ କନ୍ୟା, କଶ୍ୟପଙ୍କ ସ୍ତ୍ରୀ ଓ ତିମିଙ୍କ ଲର ମାତା—
2. A wife of sage Kaśyapa said to have given birth to whales.

**ତମୁହାଣୀ**—ଦେ. ବି. (ସଂ. ତ୍ରି.+ମୁଖ)—୧ । ଯେଉଁଠାରେ ୩ ଗୋଟି
Timuhāni ନଦୀ ପଡ଼ି ଥାଆନ୍ତି ବା ଏକତ୍ର ମିଳିତ ହୋଇଥାଆନ୍ତି)—
তেমোহানা 1. A confluence of 3 rivers.
तिमुहानी ୨ । ଯେଉଁ ସ୍ଥାନରେ ୩ ଗୋଟି ରାସ୍ତା ମିଳିତ ହୋଇ ଥାଏ—2. A meeting place of 3 roads.

**ତିର୍‌କଟ**—ବୈଦେ. ବି. (ଜାହାଜିଆ ଶବ୍ଦ)—ଜାହାଜର ସାମନା ପାଲ—
Tirkat (nautical) Fore-sail.
तिरकट

**ତିର୍‌କଟ୍ ଗାବି**—ବୈଦେ. ବି. (ଜାହାଜିଆ ଶବ୍ଦ)—ମୁଣ୍ଡ ଉପରର ପାଲ-
Tir-kat gābi (nautical) Top-sail.
तिरकट गावी

**ତିର୍‌କଟ୍ ଡୋଲ**—ବୈଦେ. ବି. (ଜାହାଜିଆ ଶବ୍ଦ)—ଜାହାଜର ଆଗ
Tir kat dola ମାସ୍ତୁଲ୍—(nautical) Fore mast.
तिरकट डोल

**ତିର୍‌କଟ୍ ତବର**—ବୈଦେ. ବି. (ଜାହାଜିଆ ଶବ୍ଦ)—ଜାହାଜର
Tir kat-tabar ସର୍ବୋଚ୍ଚ ମାସ୍ତୁଲ ଉପରେ ଆଗପାଖରେ ଲଗାଯିବା-
तिरकट तबर ଚୌକୋଣିଆ ପାଲ—(nautical) The square sail flying on the top mast; the fore sky-sail.

**ତିର୍‌କଟ୍ ସବର**—ବୈଦେ. ବି. (ହି) (ଜାହାଜିଆ ଶବ୍ଦ)—
Tir-kat sabar ଜାହାଜର ସର୍ବୋଚ୍ଚ ପାଲ—(nautical)
तिरकट सबर The highest sail; main sky-sail.

**ତିର୍‌କଟ୍ ସବାଇ**—ବୈଦେ. ବି. (ଜାହାଜିଆ ଶବ୍ଦ)—ମାସ୍ତୁଲବନ୍ଧା
Tir-kat sabāi ରସିରେ ବନ୍ଧାଯିବା ଆଗ ପାଲ—
तिरकटसबाइ The sail which is attached to the rope of the main mast; the flying jib.

**ତିରଣ**—ଗ୍ରା. ବି. (ସଂ. ତୃଣ)—୧ । ତୃଣ; ଘାସ—
Tiraṇa 1. Grass.
तिरिन ୨ । ଖାଦ୍ୟ—2. Food; meal.
ଆଜି ଏକାଦଶୀ, ଦାନ୍ତରେ ତିରଣ ଦେଉ ନାହିଁ—
ଫକୀରମୋହନ. ଛମାଣଆଠଗୁଣ୍ଠ ।

**ତିର(ଯୋ)ଦଶୀ**—ଗ୍ରା. ବି. (ସଂ. ତ୍ରୟୋଦଶୀ)—ତ୍ରୟୋଦଶୀ ତିଥି—
Tira(ro)daśi The 13th day of the lunar
তিরোদশী तेरस fortnight.

**ତିରନ୍**—ପ୍ରାଦେ. (ସମ୍ବଲପୁର) ବି—ତିରଣ (ଦେଖ)
Tiran Tiraṇa (See)

**ତିରନ୍ ତଷୁ**—ପ୍ରାଦେ. (ସମ୍ବଲପୁର) ବି. (ସଦଗର) (ସଂ. ତୃଣ ଓ ତୁଷ)—
Tiran tashu ଖାଦ୍ୟ ବା ଶସ୍ୟର କଣା—
Particle of food or grain.

**ତିରଶ୍ଚୀ**—ସଂ. ବି. ସ୍ତ୍ରୀ. (ତିରସ୍=ବକ୍ର+ଅଞ୍ଚ୍ ଧାତୁ=ଗମନ କରିବା+
Tiraśchi କର୍ତ୍ତୃ. କ୍ୱିପ୍=ତିର୍ଯ୍ୟଚ୍+ସ୍ତ୍ରୀ. ଈ; ନପାତନ)—
ସ୍ତ୍ରୀଜାତୀୟ ପଶୁପକ୍ଷୀ; ମାଈ ପଶୁପକ୍ଷୀ—
Female beasts and birds.
ସଂ. ବି—ତିର୍ଯ୍ୟକ୍‌ର ସ୍ତ୍ରୀଲିଙ୍ଗ—Feminine of Tiryak.

**ତିରଶ୍ଚୀନ**—ସଂ. ବିଣ. (ତିର୍ଯ୍ୟକ୍+ସ୍ୱାର୍ଥେ ଈନ; ତିର୍ଯ୍ୟକ୍ ସ୍ଥାନରେ
Tiraśchina ତିରଶ୍ଚ ଆଦେଶ)—୧ । ବଙ୍କା; ବକ୍ର; ତେର୍ଚ୍ଛା—
1. Awry; oblique.

| ୧ | ଇ | ଈ | ଋ,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଟ | ଶ,ଷ | କ୍ଷ | ଇଏ | ଈଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଉ | ଊ | ରୁ | ଲୁ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଈ | ଦ୍ଧ |

୨ । କୁଟିଳ; ବଙ୍କା ଟଙ୍କା—2. Crooked.

୩ । ଅଡ଼ବାଗରେ ଥିବା—3. Set crosswise.

**ତିରଶ୍ଚୀନଗତି**—ସ. ବି. (କର୍ମଧା; ତିରଶ୍ଚୀନ+ଗତି)—
Tiraśchina gati ମଲ୍ଲଯୁଦ୍ଧରେ ଏକ କୌଶଳପୂର୍ଣ୍ଣ ବକ୍ରଗତି—A kind of crooked movement of a wrestler made to evade the attack of the adversary.

**ତିରସ୍**—ସ. ଅ. (ତୃ ଧାତୁ=ପାର ହେବା+କର୍ତ୍ତ୍ରି. ଅସ୍)—
Tiras ୧ । ବକ୍ର; ବଙ୍କା; ତେରଛ—
1. Curved; oblique.

୨ । କୁଟିଳ; ବଙ୍କାଟଙ୍କା—2. Crooked.

୩ । ଅପ୍ରକାଶ୍ୟ—3. Latent; not patent.

୪ । ଗୁପ୍ତ—4. Secret

୫ । ଅବଜ୍ଞା; ଅନାଦର—5. Disregard; derision.

୬ । ଏପାଖରୁ ସେପାଖକୁ—6 Across (Apte).

୭ । ଗୌଣଭାବରେ—7. Indirectly (Apte).

[ ଦ୍ର—ଓଡ଼ିଆରେ ଏ ଶବ୍ଦର ସ୍ୱତନ୍ତ୍ର ବ୍ୟବହାର ନାହିଁ; କିନ୍ତୁ ଏଥିରୁ ନିଷ୍ପନ୍ନ ତିରସ୍କାର, ତିରୋଧାନ, ତିରଶ୍ଚୀନ ଆଦି ସଂସ୍କୃତ ଶବ୍ଦ ଭାଷାରେ ବ୍ୟବହୃତ ହୁଏ । ]

**ତିରସ୍କର**—ଗ୍ରା. (ପଦ୍ୟ) ବି. (ସ. ତିରସ୍କାର)—ତିରସ୍କାର (ଦେଖ)
Tiraskara Tiraskāra (See)

ତରଣକ ବର ଶବଦ କରଇ ତିରସ୍କର କରିଲେ ।
ଉପେ. ବୈଦେହୀଶବିଳାସ ।

ସ. ବିଣ. (ତିରସ୍+କୃ ଧାତୁ+କର୍ତ୍ତ୍ରି. ଅ)—ବଳି ପଡ଼ୁଥିବା—
Surpassing; excelling (Apte).

**ତିରସ୍କରଣୀ**—ସ. ବି ସ୍ତ୍ରୀ. (ତିରସ୍=ଅପ୍ରକାଶ୍ୟ+କୃ ଧାତୁ+କରଣ. ଅନ+ସ୍ତ୍ରୀ. ଈ)—୧ । ଯବନିକା; ପର୍ଦ୍ଦା; କନାନ୍ତ-
Tiraskaraṇi
ବାଡ଼—1. A screen; curtain.

୨ । ଘୋଡ଼ଣୀ; ଘଣ୍ଟାଟୋପ—2. A cover; hood.

୩ । ଅଦର୍ଶନୀ ବିଦ୍ୟା; ଯେଉଁ ବିଦ୍ୟାବଳରେ ଲୋକକୁ କେହି ଦେଖି ପାରନ୍ତି ନାହିଁ—3. A magical spell by which a person becomes invisible to others.

**ତିରସ୍କରିଣୀ**—ସ. ବି. ସ୍ତ୍ରୀ. (ତିରସ୍+କୃ ଧାତୁ+କର୍ତ୍ତ୍ରି. ଇନ୍+ସ୍ତ୍ରୀ. ଈ)—ତିରସ୍କରଣୀ (ଦେଖ)
Tiraskariṇi
Tiraskaraṇi (See)

**ତିରସ୍କରୀ**—ସ. ବି. (ତିରସ୍+କୃ ଧାତୁ+ଇନ୍; ୧ମା. ୧ବ)—
Tiraskari ପରଦା; ଆଚ୍ଛାଦକ (ଦ୍ର. ଶବ୍ଦସାଗର)—
Screen; cover; hood.

**ତିରସ୍କାର**—ସ. ବି. (ତିରସ୍=ଅବଜ୍ଞା+କୃ ଧାତୁ+ଭାବ. ଅ)—
Tiraskāra ୧ । ଅବଜ୍ଞା; ଅନାଦର—
1. Derision; insult; disregard.

(ତିରସ୍କୃତି; ତିରସ୍କ୍ରିୟା—ଅନ୍ୟରୂପ) ୨ । ଗାଳି; ଭର୍ତ୍ସନା—
(ତିରସ୍କୃତ—ବିଣ) 2. Rebuke; reproach; abuse; scolding.

୩ । ନିନ୍ଦା—3. Blaming; defamation; censure.

୪ । ଆଚ୍ଛାଦନ; ଆବରଣ—4. Cover; hood.

୫ । କଞ୍ଚୁକ; କାଞ୍ଚୁଳି—5. A woman'sj acket.

୬ । ଘୃଣା—6. Contempt.

୭ । ଲୁଚିଯିବା; ଦେଖା ନ ପଡ଼ିବା; ଅନ୍ତର୍ଧାନ—
7 Concealment, disappearance (Apte).

୮ । ଅନାଦରପୂର୍ବକ ତ୍ୟାଗ ( ଦ୍ର. ଶବ୍ଦସାଗର )—
8. Abandonment with contempt.

**ତିରସ୍କାରିଣୀ**—ସ. ବି. ( ତିରସ୍+କୃ ଧାତୁ ଣିଚ୍+କର୍ତ୍ତ୍ରି. ଇନ୍+ସ୍ତ୍ରୀ. ଈ )—ତିରସ୍କରଣୀ ( ଦେଖ )
Tiraskāriṇi
Tiraskaraṇi ( See )

**ତିରସ୍କାରିବା**—ଦେ ( ପଦ୍ୟ ) କ୍ରି. ( ସ. ତିରସ୍କାର )—
Tiraskāribā ୧ । ତିରସ୍କାର କରିବା; ଗାଳି ଦେବା—
তিরস্কারা 1. To rebuke; to reproach; to scold.

କେମା ସେବା-ଦାସୀ ମୋତେ ତିରସ୍କାରି କୁହେ ଚେଲ ଗଲ ଘର—
ନନ୍ଦକିଶୋର. ଶର୍ମିଷ୍ଠା ।

୨ । ନିନ୍ଦା କରିବା—2. To blame.

**ତିରସ୍କୃତ**—ସ. ବିଣ. (ତିରସ୍+କୃ ଧାତୁ+କର୍ମ. ତ)—୧ । ଭର୍ତ୍ସିତ—
Tiraskruta 1. Rebuked.

୨ । ନିନ୍ଦିତ—2. Censured; blamed.

୩ । ଆଚ୍ଛାଦିତ—3. Covered.

୪ । ଅବଜ୍ଞାତ—4. Insulted.

୫ । ଦୂଷିତ ( ପ୍ରକୃତିବାଦ )—5. Contaminated.

୬ । ଅନାଦର ବା ଘୃଣାପୂର୍ବକ ତ୍ୟକ୍ତ ( ଦ୍ର. ଶବ୍ଦସାଗର )—
6. Abandoned with contempt.

**ତିରସ୍କ୍ରିୟା**—ସ. ବି. ( ତିରସ୍+କ୍ରିୟା )—ତିରସ୍କାର ( ଦେଖ )
Tiraskriyā Tiraskāra ( See )
( ତିରସ୍କୃତ—ଅନ୍ୟରୂପ )

**ତିରସ୍ତା**—ଦେ. ବି—ତିଦସ୍ତା ( ଦେଖ )
Tirastā Tidastā ( See )

**ତିରି**—ଦେ. ବି (ସ. ତ୍ରିକ୍)—ତିନି ଫୋଟା ବା ବିନ୍ଦୁଯୁକ୍ତ ତାସ୍—
Tirā A card with three points.
তিরী, तिक्की

**ତିରୀ**—ଗ୍ରା. ବି. ସ୍ତ୍ରୀ (ସ. ସ୍ତ୍ରୀ)—୧ । ସ୍ତ୍ରୀଲୋକ—
Tiri 1. A female.
তিরী ମୋ ଘର ସ୍ୱାମୀ ତିରି ନାସ—ସଖୋବନ୍ତୀ. ପ୍ରେମଭକ୍ତି ବ୍ରହ୍ମଗୀତା ।
तिया, तिय, तिरया ୨ । ଭାର୍ଯ୍ୟା; ସ୍ତ୍ରୀ—2. Wife.

୩ । ତିରି ( ଦେଖ )—3. Tirā ( See )

ସାଧାରଣ ଲୋକେ ଅନେକ ସ୍ଥଳରେ ହ୍ରସ୍ୱ ୧ ଇଙ୍ଗିତ ଅକ୍ଷର ଓ ଦୀର୍ଘ ଏବଂ ୨ ଇଙ୍ଗିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଇଙ୍ଗିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଯେଉଁ ସ୍ଥଳରେ ଯେପରି ଏ ଶବ୍ଦକୋଷରେ ନ ମିଳିବ, ସେପରି ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଇଙ୍ଗିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଢ଼' ନ ମିଳିଲେ 'ଗାଡ଼' ଖୋଜିବେ; 'ଲୁଠ' ନ ମିଳିଲେ 'ଲୁଟ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଗ୍ୟା'ନ ପାଇଲେ 'ଅଜ୍ଞା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ଦେ. ଅ—ତ୍ରିଗୁଣିତ ୩; ତିନି ସଂଖ୍ୟାରେ ଗୁଣା ହେଲେ—
Multiplied by three.
( ଯଥା—ପାଞ୍ଚ ତିରି ପନ୍ଦରପଣ—ପଣିକିଆ । )

ତିରିକଟ—ଗ୍ରା. ବି (ସଂ. ତ୍ରି —ତିନି ସଂଖ୍ୟା—
Tirikaṭa The number three.
ତିନି ତିରିକଟ ମରଣ ନକଟ—ପ୍ରବଚନ ।

ତିରିଗୁ ପାଟୁ—ପ୍ରାଦେ. (ଗଞ୍ଜାମ) ବୈଦେ. (ତେଲୁଗୁ) ବି—ଗାଳି—
Tirigu pāṭu Abuse.

ତିରିଥ—ଗ୍ରା (ପଦ୍ୟ) ବି (ସଂ. ତୀର୍ଥ)—ତୀର୍ଥ; ପୁଣ୍ୟସ୍ଥାନ—
Tiritha Place of pilgrimage.
तीर्थ, तीरथ

ତିରିପୁତ—ଗ୍ରା (ପଦ୍ୟ) ବିଣ (ସଂ. ତୃପ୍ତ)—ତୃପ୍ତ (ଦେଖ)
Tiriputa Trupta ( See )
তিরপিত, तिरपित
(ତିରୁପୁତ—ଅନ୍ୟରୂପ)

ତିରିପୁତି—ଗ୍ରା. ବି (ସଂ. ତୃପ୍ତି)—ତୃପ୍ତି ( ଦେଖ )
Tiriputi Trupti ( See )
তিরপিতি, तिरपिती; तिपति
(ତିରୁପୁତି—ଅନ୍ୟରୂପ)

ତିରିଫଳା—ଗ୍ରା. ବି (ସଂ. ତ୍ରିଫଳା)—ତ୍ରିଫଳା ( ଦେଖ
Tiriphaḷā Triphaḷā ( See )
তিরফলা, तिरफला

ତିରିବି(ବେ)ଣୀ—ଗ୍ରା. ବି (ସଂ. ତ୍ରିବେଣୀ)—୧ । ତ୍ରିବେଣୀ ( ଦେଖ )
Tiribi be)ṇi 1. Tribeṇi ( See )
তিরবেনী ୨ । କହୁଣିଆଁ ( ଦେଖ )
तिरबेनि 2. Kahuṇiān ( See )
୩ । ଟିକାଠିଆ ( ଦେଖ )—3. Tikāṭhiā ( See )

ତିରିଭଙ୍ଗ—ଗ୍ରା (ପଦ୍ୟ) ବିଣ (ସଂ. ତ୍ରିଭଙ୍ଗ)—ତ୍ରିଭଙ୍ଗ (ଦେଖ)
Tiribhanga Tribhanga ( See )
ନବୀନ କିଶୋର ଶୃଙ୍ଗ ଅନଙ୍ଗ ତରଙ୍ଗ ରଙ୍ଗ,
ବେଣୁ ଧରନ୍ତେ ତିରିଭଙ୍ଗ ହେବନ୍ତ ସୁନ୍ଦେ । ଗୌରୀ. ରତ୍ନସିଂହାସନ ।

ତିରିଭଙ୍ଗି—ଗ୍ରା. ବି (ସଂ. ତ୍ରିଭଙ୍ଗୀ)—ତ୍ରିଭଙ୍ଗୀ ( ଦେଖ )—
Tiribhangi Tribhangī ( See )

ତିରିଲ—ଗ୍ରା. ବି (ସଂ. ସ୍ତ୍ରୀ)—୧ । ତିରି; ସ୍ତ୍ରୀ; ମାଇକିନିଆ—
Tirilā Female.
(ତିର୍ଲୀ—ଅନ୍ୟରୂପ) ତିରିଲ ଝିଅ ହୋଇ ଯେବେ ଘଟ—
তিরী ଘଟ ନ ହେଲା, ଧିକ୍ ତା ଜୀବନ ।
तिरिया ଫକୀରମୋହନ. ଛମାଣ ଆଠଗୁଣ୍ଠ ।
୨ । ଭାର୍ଯ୍ୟା—2. Wife
୩ । ସ୍ତ୍ରୀ ଜାତି—3. Woman folk.

ତିରିଶ(ଶି)—ଦେ. ବି (ସଂ ତ୍ରିଂଶତ୍; ପ୍ରା. ତୀସା)—୧ । ଦଶ ସଂଖ୍ୟାର
Tirisa (si) ତିନିଗୁଣିତ ସଂଖ୍ୟା; ୩୦ ସଂଖ୍ୟା—1. Number 30.
ত্রিশ ୨ । ୩୦ ସଂଖ୍ୟାର ପୂରକ—2. Thirtieth.
तीस

ତିରିଶା—ଦେ. ବିଣ—୧ । ତିରିଶ ସଂଖ୍ୟା ସମ୍ବନ୍ଧୀୟ—
Tirisā 1. Relating to thirty;
তিরিশা consisting of 30.
तिशा ୨ । ତିରିଶ ଦିନ ବିଶିଷ୍ଟ (ମାସ)—
2. (a month) Having 30 days.
( ଯଥା—ସେପ୍ଟେମ୍ବର, ଏପ୍ରେଲ୍, ଜୁନ୍ ଓ ନଭେମ୍ବର ମାସମାନ ତିରିଶା ଅଟନ୍ତି । )

ତିରିଶା ଶହେ—ଦେ. ବି (ସଂ. ତ୍ରିଂଶୋତ୍ତର ଶତ)—୧୩୦ ସଂଖ୍ୟା—
Tirisā sahe The number 130.
ଦେ. ବିଣ—୧୩୦ ସଂଖ୍ୟକ—Numbering 130.

ତିରିଶୂଳ—ଗ୍ରା. ବି (ସଂ. ତ୍ରିଶୂଳ)—ତ୍ରିଶୂଳ ( ଦେଖ )
Tirisūḷa Trisūḷa ( See )

ତିରିହୁତ—ଦେ. ବି (ସଂ. ତୀରଭୁକ୍ତି)—ତ୍ରିହୁତ ( ଦେଖ )
Tirihuta Trihuta ( See )
তিরিহুত, तिरहुत
(ତିରିହୁତିଆ—ବିଣ)

ତିରିଟ—ସଂ. ବି—ଲୋଧ୍ର; ଲୋଧ (ଗଛ) (ଦ୍ରବ୍ୟଗୁଣ)—
Tiriṭa Symplocos Racemosa (tree).

ତିରେ(ରୈ)—ଦେ. ଅ—ହାତୀର ମାହୁନ୍ତମାନେ ହାତୀକୁ ଗାଧୋଇବା
Tire (rai) ବେଳେ ପାଣିରେ ବା ଅନ୍ୟ ସମୟରେ ଏକ କଡ଼ ମାଡ଼ି ଭୂମିରେ ଶୋଇବା ପାଇଁ ବୋଲିବା ଶବ୍ଦ—
तिरै A word uttered by the keeper of an elephant commanding him to lie down on the sides.

ତିରୋଦଶୀ—ଗ୍ରା. ବି—ତ୍ରୟୋଦଶୀ ( ଦେଖ )
Tirodasī Trayodesī ( See )

ତିରୋଟ—ଦେ. ବି—ଅର୍ଥାଭାବ; ଅଭାବ—
Tiroṭa Pecuniary want.
( ଯଥା—ମୋର ବର୍ତ୍ତମାନ ପଇସାପତ୍ରର ଭାରି ତିରୋଟ ।)
तङ्गी ଦେ. ବିଣ—୧ । ନିଅଣ୍ଟ; ନିଅଣ୍ଟିଆ—
1. Insufficient.
୨ । ମହର୍ଘ—2. Dear (in price).
୩ । ଅଭାବଯୁକ୍ତ (ଅବସ୍ଥା, ସମୟ, ବ୍ୟକ୍ତି)—3. Needy.

ତିରୋଟିଆ—ଦେ. ବିଣ—୧ । ତିରୋଟ (ଦେଖ)
Tiroṭiā 1. Tiroṭa (See).
୨ । ( ସଂ. ତୀରଭୁକ୍ତିରୁ ତ୍ରିହୁତ ଓ ତିରହୁତ. )—
ପୁଣ୍ୟ ଇଚ୍ଛାର ଯେଉଁ ବ୍ରାହ୍ମଣମାନେ ଅନେକ ପୁରୁଷ

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | କ୍ର | ଜ | ଦ୍ବ,ତ୍ର | ଡ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ସ୍ମ | ଜ୍ଞ | ଷ୍ମ,ଷ୍ପ | ଙ୍କ | ଇଘୁ | ଉ |
| ୨ | କ୍ର | ଜ | ଦ୍ବ | ତ୍ର | ଦ୍ବୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଦ୍ୟ | ଇଅ | ଉ |

ହେଲ ପୁବରୁ ଯାଇ ଦ୍ୱାରଭଙ୍ଗା (ବିହାରର ମହାରଜାଙ୍କ ଠାରୁ ଜମିବାଡ଼ ପାଇ ସେଠାରେ ସପରିବାରରେ ବାସ କରୁଅଛନ୍ତି—
2. ( Brahmans of Puri ) Who have for generations settled in Darbhanga on grants of land given by former Maharajas.

**ତରେଟିଆ କାଳ**—ଦେ. ବ—ଅଭାବ ବା ମହର୍ଘର ସମୟ—
Tirotiā kāla A time of want or dearth.

**ତିରୋଧାନ**—ସ. ବ (ତିରସ୍‌=ଅପ୍ରକାଶ୍ୟ+ଧା ଧାତୁ+ଭାବ. ଅନ)—
Tirodhāna ୧ । ଅଦର୍ଶନ—1. Disappearance.
୨ । ଅନ୍ତର୍ଧାନ—2. Vanishing.
୩ । ଆଚ୍ଛାଦନ—3. Covering.
(ତିରୋହିତ—ବଣ) ୪ । ଲୁଚିବା—4. Concealment.
୫ । ( +କରଣ. ଅନ )—ଆଚ୍ଛାଦନ ବସ୍ତ୍ର—4. Cloak.

**ତିରୋଧାୟକ**—ସ. ବଣ. ପୁଂ ( ତିରସ୍‌=ଅଦୃଶ୍ୟ+ଧା ଧାତୁ ଣିଚ୍‌+କର୍ତ୍ତୃ. ଅକ)—୧ । ଯେ ଲୁଚାଇଦିଏ—
Tirodhāyaka
(ତିରୋଧାୟିକା—ସ୍ତ୍ରୀ) 1. Causing to disappear; concealing; hiding
୨ । ଯେ ଘୋଡ଼ାଇ ଦିଏ—2. Covering.

**ତିରୋଭାବ**—ସ. ବ (ତିରସ୍‌+ଭୂ ଧାତୁ+ଭାବ. ଅ)—୧ । ଲୋପ—
Tirobhāba 1. Discontinuance; abolition.
(ତିରୋଭୂତ—ବଣ) ୨ । ଅଦର୍ଶନ—2. Disappearance.
୩ । ଉଭେଇଯିବା; ଅନ୍ତର୍ଧାନ—3. Vanishing away; vanishment.
୪ । ପ୍ରସ୍ଥାନ—4 Departure.
୫ । ଗୋପନ—5. Concealment.

**ତିରୋଭୂତ**—ସ. ବଣ (ତିରସ୍‌+ଭୂ ଧାତୁ+କର୍ତ୍ତୃ. ତ)—୧ । ପ୍ରସ୍ଥିତ—
Tirobhūta 1. Departed.
୨ । ଲୁପ୍ତ—2. Vanished.
୩ । ଗୁପ୍ତ—3. Concealed.

**ତିରୋହିତ**—ସ. ବଣ (ତିରସ୍‌+ଧା ଧାତୁ+କର୍ତ୍ତୃ. ତ)—୧ । ପ୍ରସ୍ଥିତ—
Tirohita 1. Departed.
୨ । ଲୁପ୍ତ—2. Vanished.
୩ । (+କର୍ମ. ତ) ଗୁପ୍ତ; ଲୁକ୍କାୟିତ—3. Hidden.
୪ । ଆଚ୍ଛାଦିତ—4. Covered over.

**ତିର୍ଯ୍ୟକ୍**—ସ. ବଣ. ପୁଂ (ତିରସ୍‌=ବକ୍ର+ଅନ୍‌ଚ୍‌ ଧାତୁ=ଯିବା+କର୍ତ୍ତୃ. କ୍ୱିପ୍; ନିପାତନ )—୧ । ବକ୍ର; ବଙ୍କା; ତେରଛ;
Tirjyak କୁଟିଳ—1. Crooked; awry; oblique.
[ ଦ୍ର—ବସ୍ତୁର ତିର୍ଯ୍ୟକ୍ ଅବସ୍ଥା ଦୁଇ ପ୍ରକାର; ଯାହା ଲମ୍ବଭାବରେ ନ ରହି ତେରଛ ହୋଇଥାଏ ଯଥା, / ଏବଂ ଯାହା ବଙ୍କାଟଙ୍କା ହୋଇଥାଏ ଯଥା〰 ]
୨ । ଧରାତଳ ସଙ୍ଗେ ସମାନ୍ତର—2. Horizontal
୩ । ବକ୍ରଗାମୀ—3. Moving tortuously; going crookedly.
୪ । ଗଡ଼ାଣିଆ ବା ଢଳାଣିଆ; କ୍ରମନିମ୍ନ ବା କ୍ରମୋଚ୍ଚ—4. Sliding; sloping.
ସ. ବ—ପଶୁ ପକ୍ଷୀ—Birds and beasts; the inferior beings.
[ ଦ୍ର—ମନୁଷ୍ୟ ଛଡ଼ା ଅନ୍ୟ ଜୀବ, ଅର୍ଥାତ୍ ପଶୁ ପକ୍ଷୀ ଆଦିଙ୍କୁ ତିର୍ଯ୍ୟକ୍ ବୋଲାଯାଏ; କାରଣ ମନୁଷ୍ୟ ଠିଆ ହେଲାବେଳେ ମନୁଷ୍ୟର ଶରୀରର ବିସ୍ତାର ଧରାତଳ ସଙ୍ଗେ ସମକୋଣ ଉତ୍ପନ୍ନ କରେ ବା ମନୁଷ୍ୟ ଯଷ୍ଟିବତ୍ ଦଣ୍ଡାୟମାନ ହୁଏ; କିନ୍ତୁ ପଶୁ ପକ୍ଷୀ ଆଦିଙ୍କ ଶରୀରର ବିସ୍ତାର ଭୂମିରୁ ତିର୍ଯ୍ୟକ୍, ଅର୍ଥାତ୍ ତେରଛ ବା ସମାନ୍ତର ହୁଏ; ମନୁଷ୍ୟର ଆହାର ପେଟକୁ ସିଧାଭାବରେ ଯାଏ, କିନ୍ତୁ ପଶୁ ପକ୍ଷୀ ଆଦିଙ୍କ ଆହାର ସେମାନଙ୍କ ପେଟକୁ ତେରଛ ହୋଇ ଯାଏ; ଏମାନଙ୍କ କଣ୍ଠନାଳୀ ତେରଛ ଭାବରେ ଅବସ୍ଥିତ—ହି. ଶବ୍ଦସାଗର ।]

**ତିର୍ଯ୍ୟକ୍‌ଜାତି**—ସ. ବ ( ବହୁବ୍ରୀହି; ତିର୍ଯ୍ୟକ୍+ଜାତି )—ମାନବେତର
Tirjyak-jāti ଜୀବ, ପଶୁ ପକ୍ଷୀ ଆଦି ପ୍ରାଣୀ—
The inferior animals; birds and beasts etc.

**ତିର୍ଯ୍ୟକ୍‌ଭେଦ**—ସ. ବ—ଦୁଇ ଠିଆ ଉପରେ ପୃଥିବୀର ସମାନ୍ତରଭାବରେ
Tirjyak-bheda ସ୍ଥାପିତ ବସ୍ତୁର ମଝିରେ ଚାପ ପଡ଼ିଲେ ତାହା ଭାଙ୍ଗିଯିବା ( ହି. ଶବ୍ଦସାଗର )—
Breaking in the middle of a thing laid parallel to the ground on two props.

**ତିର୍ଯ୍ୟକ୍‌ସ୍ରୋତସ୍**—ସ. ବଣ ( ବହୁବ୍ରୀହି; ତିର୍ଯ୍ୟକ୍+ସ୍ରୋତସ୍ )—
Tirjyak-srotas ୧ । ଯେଉଁ ବସ୍ତୁର ବିସ୍ତାର ତେରଛ—
Spread in a curved manner.
୨ । ଯେଉଁ ଜୀବଙ୍କ ପେଟକୁ ଆହାର ତେରଛ ହୋଇକରି ଯାଏ; ମନୁଷ୍ୟେତର (ପ୍ରାଣୀ)—
2. (animals) Whose alimentary canal is oblique (viz, beasts and birds).
[ ଦ୍ର—ପୁରାଣ ଅନୁସାରେ ଦ୍ୱିଖୁର, ଏକଖୁର, ପଞ୍ଚନଖ ପଶୁ, ଜଳଚର ଓ ଖେଚରମାନଙ୍କୁ ତିର୍ଯ୍ୟକ୍‌ସ୍ରୋତସ୍ ବୋଲାଯାଇଅଛି । ]

**ତିର୍ଯ୍ୟକ୍‌ଯୋନ**—ସ. ବ ( ବହୁବ୍ରୀହି; ତିର୍ଯ୍ୟକ୍+ଯୋନ )—
Tirjyak-joni ତିର୍ଯ୍ୟକ୍‌ଜାତି (ଦେଖ)
Tirjyak-jāti (See).

ସାଧାରଣ ଲୋକେ ଅନେକ ସ୍ଥଳରେ ହ୍ରସ୍ୱ ଇ ଦୀର୍ଘ ଈ, ହ୍ରସ୍ୱ ଉ ଦୀର୍ଘ ଊ, ମୂର୍ଦ୍ଧନ୍ୟ ଣ ଦନ୍ତ୍ୟ ନ, ତାଳବ୍ୟ ଶ ମୂର୍ଦ୍ଧନ୍ୟ ଷ ଦନ୍ତ୍ୟ ସ, ଯ ଜ, ବର୍ଗୀୟ ବ ଅନ୍ତଃସ୍ଥ ବ, ଦନ୍ତ୍ୟ ଲ ମୂର୍ଦ୍ଧନ୍ୟ ଳ, ଡ ଡ଼, ଢ ଢ଼ ଆଦି ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୂ' ଦେଖିବେ; 'ଅର୍ଣ୍ଣା' ନ ପାଇଲେ 'ଅର୍ଣ୍ଣ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ତିର୍ଯ୍ୟକ**—ଦେ. ବିଣ । ସଂ. ତିର୍ଯ୍ୟକ୍ —ବକ୍ର; ତେରଛା—
Tirjyaka oblique.

ଭକ୍ତି ଅଥ ତିର୍ଯ୍ୟକ ଲେବନ୍ଦର ମତ—କୃଷ୍ଣସିଂହ. ମହାଭାରତ. ସଭା ।

ଦେ. ବି—ପଶୁ ପକ୍ଷୀ ଆଦି ଜୀବ—
Birds and beasts.

ହେବ ତିର୍ଯ୍ୟକ ନର ଆଦି
ସମ୍ପୂର୍ଣ୍ଣ ବୃକ୍ଷ ପ୍ରସିଦ୍ଧି—ଜଗନ୍ନାଥ ଭାଗବତ ।

**ତିର୍ଯ୍ୟଗ୍‌ଗତି**—ସଂ. ବି. (କର୍ମଧା; ତିର୍ଯ୍ୟକ୍+ଗତି)—
Tirjyag-gati ୧ । ବକ୍ରଗତି; ବଙ୍କା ବା ତେରଛା ଭାବରେ ଗମନ—
1. Oblique course.
୨ । କର୍ମବଶତଃ ପଶୁପକ୍ଷି ଯୋନିରେ ଜନ୍ମଗ୍ରହଣ—
2. Being born as a bird or beast (as a result of one's Karma or actions).
ସଂ. ବିଣ. (ବହୁବ୍ରୀହି)—ବକ୍ର ବା ତେରଛାଭାବରେ ଗମନ କରୁଥିବା—Moving obliquely.

**ତିର୍ଯ୍ୟଗ୍‌ଗମନ**—ସଂ. ବି ଓ ବିଣ—ତିର୍ଯ୍ୟଗ୍‌ଗତି (ଦେଖ)
Tijyag-gamana Tirjyag-gati (See)

**ତିର୍ଯ୍ୟଗ୍‌ଦିକ୍**—ସଂ. ବି. (କର୍ମଧା; ତିର୍ଯ୍ୟକ୍+ଦିଶ୍; ୧ମା. ୧ବ)—
Tirjyag-dik ଉତ୍ତରଦିଗ (ହି. ଶବ୍ଦସାଗର)—The North.

**ତିର୍ଯ୍ୟଗ୍‌ଯାନ୍**—ସଂ. ବି. (ବହୁବ୍ରୀହି; ତିର୍ଯ୍ୟକ+ଯାନ=ଗତି; ଯାହାର
Tirjyag-jān ଗତି ତେରଛା)—କଙ୍କଡ଼ା (ହି. ଶବ୍ଦସାଗର)—
Crab.

**ତିର୍ଯ୍ୟଗ**—ଦେ. ବିଣ. (ସଂ. ତିର୍ଯ୍ୟକ୍)—ବକ୍ର; ତେରଛା—
Tirjyaga Crooked; awry.

ଯେ ସ୍ଥଳନ୍ତେ ସ୍ୱାମୀରେ ତିର୍ଯ୍ୟଗ ହୋଇ
ବଳି ମନରେ କ ଗହନ୍ତ ମଣାଇ । ଲୋକନୃତ୍ୟ. ରସକଲ୍ଲୋଳ ।

**ତିର୍ଯ୍ୟଙ୍**—ସଂ. ବି ଓ ବିଣ—ତିର୍ଯ୍ୟକ୍ (ଦେଖ)
Tirjyan Tirjyak (See)
(ତିର୍ଯ୍ୟକ୍; ତିର୍ଯ୍ୟଚ ; ତିର୍ଯ୍ୟଞ୍ଚି—ଅନ୍ୟରୂପ)

**ତିର୍ଯ୍ୟଞ୍ଚ**—ସଂ. ବି ଓ ବିଣ—ତିର୍ଯ୍ୟକ୍ (ଦେଖ)
Tirjyañcha Tirjyak (See)
(ତିର୍ଯ୍ୟଞ୍ଚୀ—[illegible])

**ତିର୍ଲ**—ଗ୍ରା. ବି. ସ୍ତ୍ରୀ. (ସଂ. ସ୍ତ୍ରୀ)—ତିରୁଲା (ଦେଖ)
Tirlā Tirilā (See)

**ତିର୍ଲୀ**—ପ୍ରାଦେ. (ସମ୍ବଲପୁର) ବି. ସ୍ତ୍ରୀ—ସ୍ତ୍ରୀଲୋକ—
Tirli Woman.

**ତିର୍ଲୋକ**—ଗ୍ରା. ବି. (ସଂ. ତ୍ରିଲୋକ)—ତ୍ରିଲୋକ (ଦେଖ)
Tirloka Triloka (See)
তিরলোক त्रिलोक

**ତିଲ୍ (ଧାତୁ)**—ସଂ.—ସ୍ନେହ ବା ତୈଳଯୁକ୍ତ ହେବା—
Til (root) To be oily; to abound in oil.

**ତିଲ୍**—ପ୍ରାଦେ. (ସମ୍ବଲପୁର) ବି.—ତିଳ (ଦେଖ)
Til Tila (See)

**ତିଳ**—ସଂ. ବି. ( ତିଲ୍ ଧାତୁ+କର୍ତ୍ତୃ. ଅ )—ରାଶି; ଖସା; କୃଷିଜାତ ବର୍ଷଜୀବୀ ଗୁଳ୍ମ ଓ ତହିଁର ଛୁଇଁରୁ ବାହାରୁଥିବା ତୈଳପ୍ରଦ ବୀଜବିଶେଷ—1. Sesamum Indicum; Gingelly; Indian sesame.
Tila

ସଂ. ନାମ—ତିଲ, ପେିତ୍ର, ସ୍ନେହଗର୍ଭ, ପବିତ୍ର, ଜଟିଲ, ସ୍ନେହଫଳ, ତୈଳଫଳ, ହୋମଧାନ୍ୟ, ପିତୃତର୍ପଣ, ପାପଘ୍ନ, ପୂତଧାନ୍ୟ, ବନୋଦ୍ଭବ
ଗୁର୍ଜ୍ଜ. ମ. ତିଲ
ତେ. ନୋଭୁଲୁ
ତା. ବାଟେଲେନେର
ଦ୍ରା. ବାରକତିଲ
ଫା. କୁଞ୍ଜଦ୍
ଆ. ସିମ୍ ସିମ୍
তিল
तिल

[ଦ୍ର—ରାଶି ୩ ପ୍ରକାର, ଯଥା—କଳା, ଧଳା ଓ ନାଲି ରାଶି । କୃଷି ସମୟଭେଦରେ ଏହା ୨ ପ୍ରକାର—ମାଘୀ ରାଶି ଓ ଭୋଦେଇ ରାଶି ।

ରାଶି ବା ତିଳରୁ ବାହାରୁବାରୁ ତୈଳ ନାମ ହୋଇଅଛି । ତିଳରୁ ବାହାରୁବା ତୈଳ ଶବ୍ଦ ଅନ୍ୟ ସମସ୍ତ ସ୍ନେହ ପଦାର୍ଥ ପାଇଁ ବ୍ୟବହୃତ ହେଉଅଛି । ତିଳରେ ଗୁଡ଼ ବା ଚିନି ମିଶାଇ ଲଡ଼ୁ କରାଯାଏ ଓ ଖଜାଉପରେ ଏହା ବୁଣାଯାଏ । ହିନ୍ଦୁଶାସ୍ତ୍ର ମତରେ ତିଳ ପବିତ୍ର ଅଟେ । ଶ୍ରାଦ୍ଧ ଓ ତର୍ପଣାଦିରେ ଏବଂ ଦାନରେ ଏହା ବ୍ୟବହୃତ ହୁଏ । ବୈଦ୍ୟଶାସ୍ତ୍ର ମତରେ ଏହା କଟୁତିକ୍ତ କଷାୟ ମଧୁର ରସ, ଗୁରୁ, କଟୁ ଓ ମଧୁର ବିପାକ, ସ୍ନିଗ୍ଧ, ଉଷ୍ଣବୀର୍ଯ୍ୟ, କଫ ପିତ୍ତନାଶକ, ବମନକର, କେଶ୍ୟ, ଶୀତଳସ୍ପର୍ଶ, ଚର୍ମର ହିତକର, ସ୍ତନ୍ୟବର୍ଦ୍ଧକ, ବ୍ରଣର ହିତକର, ଦନ୍ତର ଦୃଢ଼ତା ସମ୍ପାଦକ, ଅଳ୍ପ ମୂତ୍ରକାରୀ, ମଳସଂଗ୍ରାହକ, ବାତଘ୍ନ, ଅଗ୍ନିକର ଓ ବୁଦ୍ଧିପ୍ରଦ । କୃଷ୍ଣ ତିଳ ଶୁକ୍ରକର । କୃଷ୍ଣ ତିଳ ଶ୍ରେଷ୍ଠ, ଶୁକ୍ଳ ତିଳ ମଧ୍ୟମ, ଓ ରକ୍ତ ତିଳ ଅଳ୍ପ ଗୁଣଯୁକ୍ତ । ତିଳପୁଷ୍ପ ଧଳା ଓ ବାଇଗଣୀ । କବିମାନେ ସ୍ତ୍ରୀମାନଙ୍କ ନାସିକାକୁ ତିଳଫୁଲ ସଙ୍ଗେ ତୁଳନା କରନ୍ତି; ତିଳତୈଳର ଗନ୍ଧ କଡ଼ା ନୁହେଁ ଏବଂ ଅନ୍ୟ ବସ୍ତୁମାନଙ୍କ ଗନ୍ଧ ଗ୍ରହଣ କରିବା ଶକ୍ତି ଏ ତୈଳର ଥିବାରୁ ତିଳ ତୈଳଦ୍ୱାରା ଅନେକ ପ୍ରକାର ସୁବାସିତ ଓ ଫୁଲର ତେଲ ପ୍ରସ୍ତୁତ କରାଯାଏ । ମୁସଲମାନଙ୍କର ବିବାହ ପରେ ବର କନ୍ୟାଠାରୁ ବିଦାୟ ହେଉଥିବେଳେ କନ୍ୟା ହାତରେ ରଖା ଯାଇଥିବା ତିଳକୁ ବର ଗ୍ରହଣ କରେ; ଏଥିର ଅଭିପ୍ରାୟ ଏହିକି ବର କନ୍ୟାକୁ ସର୍ବଦା ମଧୁର ଦୃଷ୍ଟିରେ ଦେଖିବେ । ଉଦ୍ଭିଦତତ୍ତ୍ୱବିତ୍‌ମାନେ କହନ୍ତି ଯେ ବହୁ ପ୍ରାଚୀନକାଳରୁ ତିଳ ଆଫ୍ରିକାରୁ ଭାରତକୁ ଆସିଅଛି । ଆଫ୍ରିକାରେ ୮।୧୦ ଜାତିର ତିଳ ଜଙ୍ଗଲି ହୋଇ ଗଛ ଉଠେ । ହିନ୍ଦୁମାନେ ଅନ୍ୟ ତୈଳବୀଜର ବ୍ୟବହାର ନ ଜାଣିବା ପୂର୍ବରୁ ତିଳ ବ୍ୟବହାରୁ ଆସିଛନ୍ତି । ଅଥର୍ବ ବେଦରେ ତିଳ ଓ ଧାନଦ୍ୱାରା ତର୍ପଣ କରିବା ବିଧି ଲେଖା ଅଛି । ବହୁ ଅଧିକ ପରିମାଣରେ ତିଳତୈଳ ପିଇଲେ ଝାଡ଼ା ସଫା ହୁଏ—ହି. ଶବ୍ଦସାଗର ।]

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଜ୍ଞ | ଇଅ | ଉଅ | ଖ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଜ୍ୟ | ଯ | ସ | ଗ୍ୟଁ | ଇଅ | କ୍ଷ | ଡ଼ |

୨। ଦେହରେ ଖସା ପରି କୃଷ୍ଣ ଦାଗ; କଳା ଜାଇ—
2. A mole on the body; a freckle; Naevus; mother's mark; stigmata; Note-infantum.

[ଦ୍ର—ସାମୁଦ୍ରିକ ମତରେ ଯେଉଁ ପୁରୁଷର ଡାହାଣ ଅଙ୍ଗରେ ଓ ଯେଉଁ ସ୍ତ୍ରୀର ବାମ ଅଙ୍ଗରେ ତିଲ ଥାଏ ସେ ସୁଖୀ, ଧନୀ, ଲୋକପ୍ରିୟ ଓ ଦେଖିବାକୁ ସୁନ୍ଦର; କପାଳରେ ତିଲଚିହ୍ନ ସୌଭାଗ୍ୟସୂଚକ ।]

୩। କଣା ମାତ୍ର; ଅତ୍ୟଳ୍ପ; ଅତି ସାମାନ୍ୟ ପରିମାଣ—
3. A very small quantity; a little.

୪। ଖସାପରିମିତ ସ୍ଥାନ—4. A very little space.

୫। ସୂକ୍ଷ୍ମ କାଳାଂଶ—5. A moment

୬। ଏକ କଉଡ଼ା କଉଡ଼ିର ୮୦ ଭାଗରୁ ଏକଭାଗ—
6. One eightieth part of a cowrie-money

୭। ଆଖିର କଳା ଡୋଳାର ଭିତରେ କେନ୍ଦ୍ରରେ ଥିବା ଅତି କ୍ଷୁଦ୍ର ଦର୍ପଣବତ୍ ବସ୍ତୁ, ଯହିଁରେ ଆଖି ସାମନାରେ ଥିବା ପଦାର୍ଥର କ୍ଷୁଦ୍ର ପ୍ରତିବିମ୍ବ ପଡ଼େ ( ହି. ଶବ୍ଦସାଗର )—
7. The crystalline bit inside the pupil of the eye.

ଦେ. ବି—ବତକ; ହଂସଜାତୀୟ କ୍ଷୁଦ୍ର ଜଳଚର ପକ୍ଷିବିଶେଷ—
A kind of aquatic bird; the teal.

ତିଲକ୍—ଦେ. ବି—ମରହଟ୍ଟା ବ୍ରାହ୍ମଣମାନଙ୍କର ବଂଶୋପାଧିବିଶେଷ—
Tilak A family-title of the Marhatta Brahmans.
(ତିଲକ୍-ଅନ୍ୟରୂପ) (ଯଥା—ବାଲଗଙ୍ଗାଧର ତିଲକ୍ ।)

ତିଳ(ଲା)କ—ସଂ. ବି. ( ତିଲ+ସଜ୍ଞାର୍ଥେ. କ )—
Tila(la)ka ୧। ଲଲାଟରେ ଦିଆଯିବା ଚନ୍ଦନ ଆଦିର ଚିହ୍ନ; ଚିତା; ଟୋପା—1. Sectarian marks of sandal and other pastes painted on the forehead and other parts of the body of a Hindu.

[ଦ୍ର—ହିନ୍ଦୁମାନେ ସ୍ନାନ କରି ସାରି ପୂଜା କରିବା ପୂର୍ବରୁ ଚନ୍ଦନ, ଗୋରୋଚନା, ତିଳକ ମାଟି ଆଦି ଘୋରି ତିଳକ ଦେଖନ୍ତି । ଦେହରେ ବାର ସ୍ଥାନରେ ତିଳକ ଦେବାର ବିଧି ଅଛି, ଯଥା—ଲଲାଟ, ମସ୍ତକ, ଦୁଇ କାନ, କଣ୍ଠ, ଦୁଇ ବାହୁ, ବକ୍ଷ, ଦୁଇ ପାର୍ଶ୍ୱ, ପୃଷ୍ଠ ଓ ନାଭି ।

ବ୍ରାହ୍ମଣ ଓ ବୈଷ୍ଣବମାନେ ଊର୍ଦ୍ଧ୍ୱପୁଣ୍ଡ୍ର ( ଖଡ଼ଗଭଳି ପରି ୨ଟି ଊର୍ଦ୍ଧ୍ୱ ରେଖା ), କ୍ଷତ୍ରିୟ, ଶାକ୍ତ ଓ ଶୈବମାନେ ତ୍ରିପୁଣ୍ଡ୍ର ( ତ୍ରିଶୂଳ ପରି ୩ଟି ଆଡ଼ରେଖା ), ବୈଶ୍ୟଙ୍କର ଅର୍ଦ୍ଧଚନ୍ଦ୍ରାକାର ଏବଂ ଶୂଦ୍ରଙ୍କର ବର୍ତ୍ତୁଳାକାର ଟୋପା ଚିତା ଦେବାର ବିଧି ଅଛି । ତିଳକ ଦେଖି ତିଳକଧାରୀ ବ୍ୟକ୍ତିର ଜାତି ଓ ସମ୍ପ୍ରଦାୟ ସ୍ଥିର କରାଯାଇ ପାରେ ।]

୨। ଦେହରେ ଥିବା ଖସା ପରି ଚିହ୍ନ—
2. A mole on the body.

୩। ଗନ୍ଧ ତୁଳସୀ; ଦୁଲଭ ଗଛ—
3. Theosimum Basilicum.

୪। ମୂତ୍ରାଶୟ—4. Kidney; the bladder.

୫। ଖସା ଗୁଳ୍ମ—
5. The sesamum plant.

୬। ଦେହରେ ତିଲ ଚିହ୍ନ ଥିବା ଅଶ୍ୱବିଶେଷ—
6. A kind of horse with freckles on the body.

୭। ଘୋରି କରି କପାଳ ଆଦିରେ ଦେବା ନିମନ୍ତେ ବ୍ୟବହୃତ ଏକପ୍ରକାର ମାଟି; ତିଳକ ମାଟି—
7. A kind of coloured earth for making marks on the body.

୮। ଲୋଧ୍ର ( ବୃକ୍ଷ )—
8. Simplocus Racemosa tree.

୯। ( ରାଜ୍ୟାଭିଷେକ କାଳରେ ରାଜାଙ୍କ କପାଳରେ ତିଳକ ଦିଆ ଯାଉଥିବାରୁ ) ରାଜ୍ୟାଭିଷେକ—
9. Installation ceremony of a king.

୧୦। ( କନ୍ୟା ପକ୍ଷର ଲୋକେ ବରର ମୁଣ୍ଡରେ ତିଳକ ଅଙ୍କିତ କରିଥିବାରୁ ) କ୍ଷତ୍ରିୟମାନଙ୍କ ମଧ୍ୟରେ ବିବାହ ପୂର୍ବରୁ ମହାପ୍ରସାଦ ନିର୍ବନ୍ଧ—10. Ceremonial betrothal before marriage.

୧୧। ସ୍ତ୍ରୀମାନଙ୍କ କପାଳରେ ପିନ୍ଧିବାର ଅଳଙ୍କାରବିଶେଷ; ମଥାମଣି ବା ଟୀକା—11. An ornament worn on the brow by females.

୧୨। ଶିରୋମଣି ବା ଶ୍ରେଷ୍ଠ ବ୍ୟକ୍ତି—
12. Chief or best person.

୧୩। ମରୁବକ; ମରୁଆ ( ଦେଖ )
13. Maruā ( See )

୧୪। ପ୍ଲୀହା ( ହି. ଶବ୍ଦସାଗର )—14. Spleen.

୧୫। ସୌବର୍ଚ୍ଚଳ ଲବଣ—15. Name of a salt.

୧୬। କୌଣସି ଗ୍ରନ୍ଥର ଅର୍ଥସୂଚକ ବ୍ୟାଖ୍ୟା; ଟୀକା—
16. Annotation of a work.

୧୭। ପୁଲଙ୍ଗଜାତୀୟ ବୃକ୍ଷବିଶେଷ—
17. Name of a tree.

[ଦ୍ର—ଏଥିରେ ବସନ୍ତ କାଳରେ ଛତା ଆକାରର ଫୁଲ ଧରେ, ଶୋଭା ପାଇଁ ଲୋକେ ଏ ଗଛକୁ ବଗିଚାରେ ଲଗାନ୍ତି । ଏହାର କାଠ ଓ ଛାଲି ଔଷଧରେ ଲାଗେ—ହି. ଶବ୍ଦସାଗର । ରଘୁବଂଶ ( ୪।୪୧ ) ଓ ମହାଭାରତ ( ୩।୫ ) ରେ ଏ ଗଛର ଉଲ୍ଲେଖ ଅଛି । ସଂ. ପର୍ଯ୍ୟାୟ—ତିଳକ, କ୍ଷୁରକ, ଶ୍ରୀମାନ୍,

"ସାଧାରଣ ଲୋକଙ୍କ ଅପର ସୁବିଧାରେ ପାଇଁ ୧ ଚିହ୍ନିତ ଅକ୍ଷର ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଡାଳ' ନ ମିଳିଲେ 'ଡାଲ' ଦେଖିବେ; 'ଲୁହ' ନ ମିଳିଲେ 'ଳୁହ' ଦେଖିବେ, 'ବଟୁ' ନ ପାଇଲେ 'ବଟୁ' ଦେଖିବେ, 'ଅଙ୍କିଆ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ସୁପୁଷ୍ପ, ଛିଦ୍ରପୁଷ୍ପକ । ପୋ: କପ୍ପ, କୁଷ୍ଠ, କ୍ରିମି ଓ ବସ୍ତିଗତ, ମୂଖଗତ ଓ ଦନ୍ତଗତ ରୋଗର ନାଶକ । ]

୧୮ । ସମକଣ୍ଠଯୁକ୍ତ ରଚନା—
18. Alliteration ( Apte).

୧୯ । ଗୀତର ଧ୍ରୁବକ ବା ଘୋଷା—
19. The burden of a song ( Apte ).

୨୦ । ଫୁସ୍‌ଫୁସ୍—20. The lungs ( Apte ).

୨୧ । ଚର୍ମରେ ଫୁଲା ନଥାଇ କଳା ଦାଗ ପଡ଼ିବା ରୋଗବିଶେଷ—
21. A kind of disease; the appearance of black spots on the skin without any inflammation ( Apte ).

୨୨ । ମୁଞ୍ଜ ତୃଣର ଫୁଲ ( ହି. ଶବ୍ଦସାଗର )—
22. The bunch of flowers of the Muñja grass.

ସଂ. ବିଣ - ଶ୍ରେଷ୍ଠ; ପ୍ରଧାନ—Chief.
[ ଦ୍ର—ଏହି ଅର୍ଥରେ ଏହା ଅନ୍ୟ ଶବ୍ଦ ସଙ୍ଗେ ବ୍ୟବହୃତ ହୁଏ; ଯଥା—ରଘୁକୁଳତିଳକ । ]

ଦେ. ବି—୧ । ( ସଂ ତିଳ ) ରାଶି; ରାଶି—
1. Sesamum.
ପାଇଁ ଦେଲେ ତିଳକ ତିଳକ ସମ କରି ନେଇ ଗର୍ଭେ—
ଭଞ୍ଜ, ବୈଦେହୀଶବିଳାସ ।

୨ । ମୂହୂର୍ତ୍ତି କାଳ—2. A moment.
ଏହି ଅବଧି ଦୃଢ଼ ଗୁଣି ତିଳକ
ଟଳେ ତ ନ ଦେଖିବି ସୁହିତ ଦଳକ—ଭଞ୍ଜ, ପ୍ରେମସୁଧାନିଧି

ତିଳ(ଳ)କ କାଟିବା – ଦେ. କ୍ରି—୧ । ସ୍ନାନ ସାରି ଦେହରେ ତିଳକର
Tila(la)ka kāṭibā ଚିତା ଅଙ୍କିତ କରିବା—1. To draw
तिलक लगाना marks on the body with coloured
ତିଳକ ଯୋଡ଼ିବା pastes.
ତିଳକ ଯୋଡ଼ିବା }
ତିଳ(ଳ)କ ଲାଇବା } ଅନ୍ୟରୂପ
ତିଳକ ଲଗା(ଗେ)ଇବା }
୨ । ( ଲା. ଚିତା କାଟିବା ) (ଲକ୍ଷଣାର୍ଥ; ପ୍ରବଞ୍ଚନା କରିବା—
2. (fig.) To deceive; to cheat.
[ ଦ୍ର—ଅସ୍ନାତଃ ତିଳକ କାଟିବା ବ୍ୟକ୍ତିମାନେ ଭଣ୍ଡତପସ୍ୱୀ ହୋଇ ଲୋକଙ୍କୁ ଠକାଇବା ଘଟଣା ବିରଳ ନ ଥିବାରୁ ତିଳକ କାଟିବା ଓ ଚିତା କାଟିବାର ଏହି ଅର୍ଥ ହୋଇଅଛି । ]

ତିଳ(ଳ)କ କାମୋଦୀ—ସଂ. ବି—ସଙ୍ଗୀତର ମିଶ୍ର ରାଗିଣୀବିଶେଷ—
Tila(la)ka kāmodī Name of a mixed tune in Hindu music.
[ ଦ୍ର—ଏହା ଷାଡ଼ବ ଜାତିର ୨ୟ ପ୍ରହରରେ ଗେୟ । ଏହା ସପ୍ତସ୍ୱରା, କିନ୍ତୁ ଏଥିରେ ଏକ କୋମଳସ୍ୱର ଅଧିକ—ଯୋଗେଶଚନ୍ଦ୍ର । ]

ତିଳ(ଳ)କଟ—ସଂ. ବି—ତିଳଚୂର୍ଣ୍ଣ ( ହି. ଶବ୍ଦସାଗର )—
Tila(la)kaṭa Powdered sesamum.
( ତିଳକଳ୍କ—ଅନ୍ୟରୂପ )

ତିଳ(ଳ)କ ଧାରୀ—ସଂ. ବିଣ. ପୁଂ—ଯେ ତିଳକରେ ଚିତା ଯୋଡ଼ିଥାଏ-
Tila(la)ka dhārī One having marks of Tilaka
(ତିଳକଧାରିଣୀ—ସ୍ତ୍ରୀ) on the body.

ତିଳ(ଳ)କ ପାଟି—ଦେ. ବି—କପାଳରେ ଅକର୍ଣ୍ଣବିସ୍ତୃତ ତିଳକ ରେଖା—
Tila(la)ka pāṭi Painting done on the forehead
তিলক পাটি from ear to ear.

ତିଳ(ଳ)କ ପେଡ଼ି—ଦେ. ବି—ଯେଉଁ ଆଧାର ବା ପାତ୍ରରେ ତିଳକ
Tila(la)ka peṛdi କାଟିବାର ସରଞ୍ଜାମ ରଖାଯାଏ—
তিলক পেঁড়ী A pouch for keeping the materials
तिलक का पेड़ा for painting with Tilaka,
(ତିଳକ କୋଥଳି, ତିଳକମୁଣ୍ଡୀ—ଅନ୍ୟରୂପ)

ତିଳ(ଳ)କ ମାଟି—ଦେ. ବି. ( ସଂ. ତିଳକ ଓ ମୃତ୍ତିକା )—
Tila(la)ka māṭi ଯେଉଁ ରଙ୍ଗର ବାଲିଆ ମାଟିକୁ ଘୋରି ତିଳକ
ତିଳକ ମାଟି }
ତିଲକ ମାଟି } ଅନ୍ୟରୂପ ଯୋଡ଼ା ଯାଏ—Coloured earth used in painting the forehead
তিলক মাটি etc.
[ ଦ୍ର—ଗଙ୍ଗା ନଦୀର କୂଳ ଓ ବୃନ୍ଦାବନ, ପୁରୁଷୋତ୍ତମ ଆଦି ତୀର୍ଥସ୍ଥାନର ନାନା ବର୍ଣ୍ଣର ମାଟିକୁ ବଳ ତିଳକ କରିବା ନିମନ୍ତେ ରଖାଯାଏ । ]

ତିଳ(ଳ)କ ମାଟିଆ—ଦେ. ବି—ତିଳକ ଚିତା ଯୋଡ଼ିଥିବା ନାମମାତ୍ର
Tila(la)ka māṭiā ବୈଷ୍ଣବଙ୍କର ସମ୍ପ୍ରଦାୟ ବିଶେଷ—
(ତିଳକ ମାଟିଆ—ଅନ୍ୟରୂପ) A class of nominal Baishnabas found in towns and places of pilgrimage.
তিলক মাটিআ
[ ଦ୍ର—ସହର ଓ ତୀର୍ଥ ସ୍ଥାନମାନଙ୍କରେ ମୃତ ବ୍ୟକ୍ତିର ଶବ ଉଠାଇବାକୁ ଲୋକଙ୍କୁ କେହି ନ ଥିଲେ ଏମାନେ ଶବକୁ ନେଇ ସତ୍କାରାଦି କରନ୍ତି । ]

ତିଳ(ଳ)କ ସେବା—ଦେ. ଅ—ସ୍ନାନ କରି ସାରି ତିଳକ ଧାରଣ ଓ
Tila(la)ka sebā ଦେବତାଙ୍କର ପାଦୁକ ଆଦି ସେବା କରିବା
তিলক সেবা କାର୍ଯ୍ୟ—The act of painting the
तलक सेवा forehead with Tilaka and taking particles of Pādodaka of Deities after bath (in the case of the Hindus.)

ତିଳ(ଳ)କା—ସଂ. ବି. ( ତିଳକ + ଅ )—
Tila(la)kā ୧ । କଣ୍ଠର ହାରବିଶେଷ—
1. A kind of necklace.
୨ । ଏକ ବର୍ଣ୍ଣବୃତ୍ତ—
2. Name of a Sanskrit metre.

ତିଳ କାଞ୍ଚନ—ସଂ. ବି. ( ଦ୍ୱନ୍ଦ୍ୱ; ତିଳ + କାଞ୍ଚନ )—
Tila kāñchana ଶାସ୍ତ୍ରବିଧି ଅନୁସାରେ ଶ୍ରାଦ୍ଧାଦି ଅନୁଷ୍ଠାନ ଉପଲକ୍ଷେ ପ୍ରାୟଶ୍ଚିତ୍ତାର୍ଥ ବ୍ରାହ୍ମଣଙ୍କୁ ଦାନ କରାଯିବା

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଋ | ଷ | ଡ଼,ଢ଼ | ତ | ବ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଣ | ଳ | ଶ,ସ | ଲ | ଇୟ | ଉଅ | ଘ |
| ୨ | ୠ | ଲ | ଋ | ଳ | ଦ୍ୱ | ଅକାରାନ୍ତବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ଷ | ଚ୍ୟ | ଇଅ | ଞ | ଙ |

ବର୍ଣ୍ଣ ତିଳ ଓ ସ୍ୱର୍ଣ୍ଣ ଦାନ—A bit of gold and a quantity of sesamum seeds given away to Brahmins for expiation of sins during a Srāddha or other ceremony.

ତିଳକାଧାର—ସଂ. ବି. (୬ଷ୍ଠୀ ତତ୍; ତିଳକ + ଆଧାର )—
Tilakādhāra ତିଳକ ପେଡ଼ି; ତିଳକ କାଟିବାର ଉପକରଣ ରଖିବାର କୋଥଳି—A pouch for storing the materials required for painting Tilaka.

ତିଳକାଳକ—ସଂ. ବି. [ ତିଳ (ତୁଲ୍ୟ + କାଳ = କୃଷ୍ଣ ବର୍ଣ୍ଣ + କ]—
Tilakālaka ୧ । ଦେହର ଜଡ଼ୁଆ ଚିହ୍ନ; କଳାଜାଇ—
1. A mole on the body.
୨ । ଯେଉଁ ବ୍ୟକ୍ତିର ଦେହରେ ଜଡ଼ୁଆ ଚିହ୍ନ ଥାଏ—
2. A person having mole-marks on the body.
୩ । ( ବହୁବ୍ରୀହି; ତିଳକ ଅଛି ଅଳକରେ = ଦୁଇ ଜୁଲପିରେ ଯାହାର )—ଯେଉଁ ବ୍ୟକ୍ତି ଅଳକାପାର୍ଶ୍ୱରେ ଅର୍ଥାତ୍ କପାଳ ଉପରେ ଆକର୍ଣ୍ଣ ବିସ୍ତୃତ ତିଳକର ରେଖା କାଟି ଥାଏ —2. A person who paints the whole length of his forehead (from ear to ear) with Tilaka.
୪ । କପାଳରେ ଲେଖିବା ତିଳକ ପାଟି—
4. Painting done on the brow from ear to ear.
୫ । ସୁଶ୍ରୁତ ଅନୁସାରେ ଏକ ବ୍ୟାଧି, ଯହିଁରେ ପୁରୁଷର ଇନ୍ଦ୍ରିୟ ପାଚି ଯାଏ ଓ ତହିଁ ଉପରେ କଳାକଳା ଦାଗମାନ ପଡ଼ି ଯାଏ ( ବୃ. ଶବ୍ଦସାଗର )—
5. A disease in which the male organ is suppurated and freckled with black spots.

ତିଳକାଶ୍ରୟ—ସଂ. ବି. ( ୬ଷ୍ଠୀ ତତ୍; ତିଳକ + ଆଶ୍ରୟ )—
Tilakāsraya ୧ । ତିଳକାଧାର; ତିଳକ ପେଡ଼ି—
1. A pouch for Tilaka requisites.
୨ । ( ବହୁବ୍ରୀହି ) ଲଲାଟ ଦେଶ—2. The brow or forehead ( where Tilaka is painted ).

ତିଳ କିଟ୍ଟ—ସଂ. ବି. ( ୬ଷ୍ଠୀ ତତ୍; ତିଳ + କିଟ୍ଟ = ପିଡ଼ିଆ )—
Tila kiṭṭa ରସି ପିଡ଼ିଆ—The cakes of sesamum left after oil is pressed from it.

ତିଳକୀ—ସଂ. ବିଣ. ପୁଂ. ( ତିଳକ + ଅସ୍ତି ଅର୍ଥରେ ଇନ୍ ୧ମା. ୧ବ.)—
Tilakī ତିଳକଧାରୀ—Wearing marks of Tilaka on the body.
(ତିଳକୀନୀ—ସ୍ତ୍ରୀ)

ତିଳକୁଟ - ଦ. ବି. ( ? )—
Tilakuṭa ଖସା ଲଡ଼ୁ; ରାଶି ଛେଚା ହୋଇ ଗୁଡ଼ରେ ପାଗ ହୋଇ ତିଆର ହୋଇଥିବା ପିଠେଇ—Sweetmeat composed of pounded sesamum mixed with sugar.

ତିଳକୁ ତାଳ କରିବା—ଦେ. କ୍ରି—ଅତି ସାମାନ୍ୟ କଥାକୁ ବଡ଼ କରିବା;
Tilaku tāla karibā ସାମାନ୍ୟ ବିଷୟରେ ବିଶେଷ ଆନ୍ଦୋଳନ
तिलको ताल करना ଉଠାଇବା—To make a mountain of a molehill; to magnify a small or insignificant matter.

ତିଳକେ—ଦେ. କ୍ରି. ବିଣ—ସାମାନ୍ୟରେ; ଟିକେ ମାତ୍ର—
Tilake In the least, a bit; slightly.
एकतिल, तिलमात्र ତୁଳା ତିଳକେ କି ଲୋକେ ନାହିଁ ସର ।
କବିସୂର୍ଯ୍ୟ. ବଳଦା ।

ତିଳ(ଳ)ଖ - ଦେ. ବି ( ସଂ. ତିଳକ )—
Tila la)kha ୧ । ତିଳକ ମାଟି—1. Coloured earth
तिलक used in painting the body.
तिलक ୨ । ତିଳକ ଚିହ୍ନ—2. Marks made on the body with Tilaka earth.
୩ । ସ୍ନାନ ପରେ ତିଳକ ଦେବା କ୍ରିୟା—
3. The operation of painting Tilaka on the body after bath.

ତିଳ(ଳା) ଖଜା—ଦେ. ବି.—ମିଷ୍ଟାନ୍ନବିଶେଷ—
Tila(lā) khajā A kind of sweetmeat.
तिलेखाजा [ ଦ୍ର—ଏହା ଉପରେ ତିଳରାଶି ଛିଞ୍ଚା ହୋଇଥାଏ ।
तिलगनी, तिलवा ମକର ସଂକ୍ରାନ୍ତି ଉତ୍ସବରେ ଏହି ପ୍ରକାର ଖଜା ତିଆର ହୋଇ ଗୁଡ଼ିଆ ଦୋକାନମାନଙ୍କରେ ବିକ୍ରି ହୁଏ ।]

ତିଲଟ—ଦେ. ବି. ( ଜାହାଜିଆ ଶବ୍ଦ ) —ଲୁହାର ଅର୍ଦ୍ଧଚନ୍ଦ୍ରାକାର ଅର୍ଗଳ
Tilaṭa (ଯାହା ଉପରେ ଆହୁଲାର ମଧ୍ୟଭାଗ ରଖାଯାଇ ଆହୁଲା ଚାଳିତ ହୁଏ ।)—(nautical term) A crescent-shaped hook on which the oar turns while being plied.

ତିଳ ତଣ୍ଡୁଳ—ସଂ. ବି. (ଦ୍ୱନ୍ଦ; ତିଳ + ତଣ୍ଡୁଳ)—୧ । ବ୍ରାହ୍ମଣଙ୍କ
Tila taṇḍula ଦାନ କରିବା କିମ୍ବା ତର୍ପଣ ସମୟରେ
(ତିଳତଣ୍ଡୁଳକ —ଅନ୍ୟରୂପ) ବ୍ୟବହୃତ ରାଶିମିଶା ଚାଉଳ—
1. Rice mixed with grains of sesamum (given away to Brahmans or used while offering oblations to the manes).
୨ । ଗାଢ଼ାଲିଙ୍ଗନ—2. Close embrace.

ତିଳ ତଣ୍ଡୁଳିତ—ଦେ. ବିଣ. (ତିଳ + ତଣ୍ଡୁଳ + ଯୁକ୍ତାର୍ଥରେ ଇତ)—
Tila taṇḍulita କଳା ଧଳା ରଙ୍ଗରେ ଚିତ୍ରବିଚିତ୍ର—
Chequered.
ଚତୁରଙ୍ଗେ [illegible]ଆକାରରେ ହୋଇଥିଲା,
[illegible] ତିଳତଣ୍ଡୁଳିତ । ରାଧାନାଥ. ସଭାଚ ।

ସାଧାରଣ ଲୋକେ ଅନେକ ସ୍ଥଳରେ ଦନ୍ତ୍ୟ ୧ ଚିହ୍ନିତ ଅକ୍ଷର ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳେ, ତେବେ ହେତୁ ସେ ସ୍ଥାନ ଯଥାକ୍ରମେ ତତ୍ପରବର୍ତ୍ତୀ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଡ଼' ଖୋଜିବେ; 'କୁଟ' ନ ମିଳିଲେ 'କୁଠ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅଗିଁଆ' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ।

**ତିଳ ତର୍ପଣ**—ସଂ. ବି. (ମଧ୍ୟ ପଦ; ତିଳ+ତର୍ପଣ)—ପିତୃଲୋକଙ୍କ
Tila tarpana ଉଦ୍ଦେଶ୍ୟରେ ଜଳର ଅଞ୍ଜଳିରେ ତିଳ ମିଶାଇ କରାଯିବା ତର୍ପଣ—Oblations offered to the manes with handfuls of water sprinkled with sesamum.

**ତିଳ ତୈଳ**—ସଂ. ବି. (ତିଳ+ତୈଳ ପ୍ରତ୍ୟୟ)—ରାଶିତେଲ—
Tila taila Sesamum oil.
[ଦ୍ର—ରାଶିତେଲ ଓ ରାଶିଜାତ ଅନ୍ୟ ସୁଗନ୍ଧ ପଦାର୍ଥରୁ ଗନ୍ଧ ଗ୍ରହଣ କରିବାର ଶକ୍ତି ଥିବାରୁ ରାଶିତେଲ ସଙ୍ଗେ ଅନ୍ୟ ସୁଗନ୍ଧ ଦ୍ରବ୍ୟ (ଯଥା—ଫୁଲ, ମସଲା ଆଦି) ପକାଇଲେ ତାହା ଅକ୍ଲେଶରେ ଉକ୍ତ ଦ୍ରବ୍ୟର ଗନ୍ଧ ଗ୍ରହଣ କରେ; କିମ୍ବା ସୁଗନ୍ଧ ଦ୍ରବ୍ୟ ସଙ୍ଗେ ରାଶିକୁ ବହୁଦିନ ରଖି ସେହି ରାଶିରୁ ପେଡ଼ିଲେ ସେହି ତେଲ ତାହାରେ ତାହା ସୁବାସିତ ହୋଇଥାଏ । ଆୟୁର୍ବେଦ ମତରେ ଔଷଧ-ତୈଳମାନ ରାଶିତେଲଦ୍ୱାରା ପ୍ରସ୍ତୁତ କରାଯାଏ ।]

**ତିଳ ଧେନୁ**—ସଂ. ବି. (ମ. ପ. ଲୋ; ତିଳନିର୍ମିତ ଧେନୁ)—ତିଳରେ
Tila dhenu ଗାଈର ମୂର୍ତ୍ତି ତିଆର କରାଯାଇ କରାଯିବା ଦାନ—A pious gift consisting of the image of cow done with sesamum seeds.

**ତିଳ ପର୍ଣ୍ଣ**—ସଂ. ବି. (ବହୁବ୍ରୀହି; ତିଳର ପର୍ଣ୍ଣପରି ପର୍ଣ୍ଣ ଯାହାର)—
Tila parnna ୧ । ଚନ୍ଦନ ଗଛ—1. The sandal wood tree.
୨ । ତାର୍ପିନ୍ ତେଲ—2. The oil of turpentine.
୩ । (ଷଷ୍ଠୀ ତତ୍) ରାଶିଗଛର ପତ୍ର—
3. The leaf of sesamum plant.

**ତିଳ ପର୍ଣ୍ଣିକା**—ସଂ. ବି. ସ୍ତ୍ରୀ (ତିଳପର୍ଣ୍ଣ+କ+ସ୍ତ୍ରୀ. ଆ)—ରକ୍ତଚନ୍ଦନଗଛ—
Tila parnnika The red sandal-wood tree;
(ତିଳପର୍ଣ୍ଣୀ—ଅନ୍ୟରୂପ) Pterocarpus Santalinus.

**ତିଳ ପିଚଟ**—ସଂ. ବି.—ତିଳ ସଙ୍ଗେ କଣି ଚାଉଳ ଗୁଡ଼ ବା ଚିନିରେ ପାଗ
Tila pichchata କରାଯାଇ ପ୍ରସ୍ତୁତ ପିଷ୍ଟକ—A cake made
(ତିଳପିଷ୍ଟ; ତିଳପିଷ୍ଟକ—ଅନ୍ୟରୂପ) of powdered sesamum seeds seasoned with sugar.
[ଗୁ—ଏହା ଫଳବର୍ଦ୍ଧକ, ଶୁକ୍ରଜନକ, ବାୟୁନାଶକ, କଫ ଓ ପିତ୍ତବର୍ଦ୍ଧକ, ଶରୀରର ଉପଚୟକାରକ, ଗୁରୁ, ସ୍ନିଗ୍ଧ ଓ ମୂତ୍ରାଧିକ୍ୟନାଶକ ।]

**ତିଳପୀଡ଼**—ସଂ. ବି. (ତିଳ+ପୀଡ଼୍ ଧାତୁ=ପେଷିବା+କର୍ତ୍ତୃ ଅ)—
Tila pirda ତେଲି—Oil-man.

**ତିଳ ପୁଷ୍ପ**—ସଂ. ବି. (ତିଳ+ପୁଷ୍ପ)—୧ । ତିଳର ଫୁଲ—
Tila pushpa 1. The flower of sesamum.
୨ । ବ୍ୟାଘ୍ରନଖ; ନଖୀନାମକ ଗନ୍ଧଦ୍ରବ୍ୟ—
2. A scented herb; shell.

**ତିଳ ପୁଷ୍ପକ**—ସଂ. ବି. (ତିଳପୁଷ୍ପ+ସାଦୃଶ୍ୟାର୍ଥେ. କ)—
Tila pushpaka ୧ । ବାହାଡ଼ା (ଦେଖ)
Bahardа (See)

୨ । ନାକ (ସୁନ୍ଦର ନାକକୁ ତିଳ ଫୁଲ ସଙ୍ଗେ କବିମାନେ ଉପମା କରନ୍ତି)—2. Nose.

**ତିଳ ଭେଦ**—ସଂ. ବି. (ଷଷ୍ଠୀ ତତ୍; ତିଳ+ଭେଦ)—ପୋସ୍ତକଦାନା—
Tila bheda Poppy seed.

**ତିଳ ରସ**—ସଂ. ବି. (ଷଷ୍ଠୀ ତତ୍; ତିଳ+ରସ)—ରାଶିତେଲ—
Tila rasa Sesamum oil; gingelly oil.
[ଦ୍ର—ତିଳତୈଳ ଦ୍ରଷ୍ଟବ୍ୟ ।]

**ତିଲରା**—ଦେ. ବି.—କଂସାରଙ୍କ ଛେଣି (ଯାହାଦ୍ୱାରା ବାସନ ଉପରେ
Tilarā ବଙ୍କା ଗାରମାନ ଖୋଳାଯାଏ)—A kind of
ତିଲରା तोलरा brazier's drill.

**ତିଳ ସୁବର୍ଣ୍ଣ**—ସଂ. ବି. (ଦ୍ୱନ୍ଦ୍ୱ; ତିଳ+ସୁବର୍ଣ୍ଣ)—ତିଳ କାଞ୍ଚନ (ଦେଖ)
Tila subarnna Tila kānchana (See)

**ତିଳ ସ୍ନେହ**—ସଂ. ବି. (ଷଷ୍ଠୀ ତତ୍; ତିଳ+ସ୍ନେହ)—
Tila sneha ତିଳ ତୈଳ (ଦେଖ)
Tila taila (See)

**ତିଳା**—ଦେ ବି.—୧ । ବଢ଼େଇଙ୍କ ଭର୍ମର ଯନ୍ତ୍ରର କାଠଫୋଡ଼ିବା ଅଂଶ
Tilā ବା କଣ୍ଟା—1. A bit or boring nail used by carpenters in boring wood; carpenter's bit.
୨ । ଶସ୍ୟବିଶେଷ; ଏକପ୍ରକାର ରାଶି—
2. A species of sesamum seed.
୩ । ସୁନାରଣ୍ଡିଆ ପ୍ରଭୃତି ଅଳଙ୍କାରରେ ଲଗାଯାଇଥିବା ସୁନାର ଛୋଟ ଛୋଟ ଲମ୍ବ ଥିବା ଗୁଆ—3. Small elongated bits of metal put on ornaments.
ପ୍ରାଦେ. (ମେଦିନୀପୁର) ବି—ଟିଲା (ଦେଖ)—Tilā (See)

**ତିଲ୍**—ଦେ. ବି—ତିଲା (ଦେଖ)
Tilā Tilā (See)
ଗ୍ରା. ବି—ତିର (ଦେଖ)—Tiri (See)

**ତିଳାଞ୍ଜଳି**—ସଂ. ବି. (ମ. ପ. ଲୋ; ତିଳ+ଅଞ୍ଜଳି)—ମୃତବ୍ୟକ୍ତିର
Tilānjali ଉଦ୍ଦେଶ୍ୟରେ ଅର୍ପିତ ତିଳମିଶ୍ରିତ ଅଞ୍ଜଳିପୂର୍ଣ୍ଣ ଜଳ—Handful of water in which sesamum seeds are thrown and which is offered to the manes.

**ତିଳାନ୍ନ**—ସଂ. ବି. (ମ. ପ. ଲୋ; ତିଳ ମିଶ୍ରିତ ଅନ୍ନ)—
Tilānna ତିଳମିଶ୍ରିତ ଖେଚୁଡ଼ି—Rice and sesamum seeds boiled together.

**ତିଳାର୍ଦ୍ଧ**—ସଂ. ବି. (ଷଷ୍ଠୀ ତତ୍; ତିଳ+ଅର୍ଦ୍ଧ)—୧ । ସ୍ୱଳ୍ପକ୍ଷଣମାତ୍ର—
Tilarddha 1. A moment.
୨ । ଅତ୍ୟଳ୍ପ ପରିମିତ ସ୍ଥାନ—2. A little space.
୩ । ଅତିସୂକ୍ଷ୍ମାଂଶ—3. A very minute part.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇଯ଼ | ଉଥ | ଊ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଙ୍ଗ୍ୟ | ଇଅ | ଓ | ଦ୍ୱ |

**ତୁଣ୍ଡ ପକା**—ଦେ. ବି—୧ । ଯେଉଁ ପଦାର୍ଥ ତୁଣ୍ଡରେ ପକାଇବାକୁ ହୁଏ—
Tuṇḍa pakā 1. That which is put to the mouth; chewing gum.
खैनी
୨ । ଚୂନପତ୍ର; ପାଟିରେ ପକାଇବା ଧୂଆଁ ପତ୍ର—
2. Tobacco (which is chewed by some persons)

**ତୁଣ୍ଡ ପୋଡ଼ା**—ଦେ. ବି. ( ସ. ଅଗ୍ନି କୁମାର )—
Tuṇḍa porḍā ନାରଙ୍ଗାଦି ବର୍ଗର ବନ୍ୟ କଣ୍ଟକୀ କ୍ଷୁପବିଶେଷ—
ଅନ୍ୟ. ସ. ନାମ—ତୁଣ୍ଡାସ୍ୟ A kind of throny shrub
ତୀକ୍ଷ୍ଣପତ୍ର, କୁମରଚକ, with pungent leaves;
କୁମାର ପତ୍ର Toddalia Aculeata·
(ତଣ୍ଡ ପୋଡ଼ା—ଅନ୍ୟରୂପ) [ ଦ୍ର—ଏହାର ପତ୍ର ତ୍ରିପର୍ଣ୍ଣ, ପତ୍ରର
ଅଗ୍ନିକୁମାର ପିଠିରେ ମଧ୍ୟ କଣ୍ଟା ଥାଏ; ପତ୍ର କଟୁଗନ୍ଧବିଶିଷ୍ଟ
ବେ. ଅଗ୍ନି ବେଣ୍ଡମୁ ଏବଂ ତାହା ଚୋବାଇଲେ ତୁଣ୍ଡ ପୋଡ଼େ । ଏହାର
ଫୁଲ ଏକଲିଙ୍ଗ, ଫଳ ଗୋଲାକାର ଓ କ୍ଷୁଦ୍ର । ]

**ତୁଣ୍ଡ ଫିଟା(ଟେ)ଇବା**—ଦେ. କ୍ରି—୧ । କଥା କହିବା—
Tuṇḍa phiṭā(ṭe)ibā 1 To speak out.
ମୁଖ ଖୋଲା ୨ । ମାଗିବା—2. To ask for.
मुहँ फाड़कर कहना ଖାଇବୁଁ ବୋଲି ତୁଣ୍ଡ ଫିଟାଇଲେ ନାହିଁ ।
କୃଷ୍ଣସିଂହ. ମହାଭାରତ. ବନ ।

**ତୁଣ୍ଡ ବଜା**—ଦେ. ବି—(ସଂ. ତୁଣ୍ଡ+ବାଦନ)—କଳହ—
Tuṇḍa bajā Quarrelling.

**ତୁଣ୍ଡ ବାଇଦ**—ଦେ. ବି. ( ସ. ତୁଣ୍ଡ ବାଦ୍ୟ )—
Tuṇḍa bāida ୧ । ଜନରବ; ତୁଣ୍ଡ ଦ୍ୱାରା ପ୍ରଚାରିତ କଥା;
ଜନଶ୍ରୁତି—1. A report transmitted from place to place by word of mouth; rumour.
(ତୁଣ୍ଡବାଜା—ଅନ୍ୟରୂପ)
ତମ-ବାଇଦ କୋଶେ, ତୁଣ୍ଡ ବାଇଦ ସହସ୍ର କୋଶ—ଢଗ ।
୨ । ତୁଣ୍ଡ ଦ୍ୱାରା କରାଯିବା ବମ୍ ବମ୍ ଶବ୍ଦ—
2. The sound of bom-bom made by the mouth.
୩ । କଳକଳିଆ; ବାଦାନୁବାଦ; ବଚସା—
3. Wrangling quarrel.

**ତୁଣ୍ଡ ବାଦ୍ୟ**—ସ. ବି. ( ତୁଣ୍ଡ+ବାଦ୍ୟ )—ତୁଣ୍ଡ ବାଇଦ ( ଦେଖ )
Tuṇḍa bādya Tuṇḍa bāida ( See )

**ତୁଣ୍ଡ ମାରିବା**—ଦେ କ୍ରି. (ଲକ୍ଷଣାର୍ଥ)—ଖାଦ୍ୟ ଦ୍ରବ୍ୟରେ ମୁହଁ ଲଗାଇବା
Tuṇḍa māribā ଖାଇବାକୁ ବସିବା ଅଳ୍ପ କିଛିମାତ୍ର ନ ଖାଇବା—
मुहँ मारना Not to eat at all.

**ତୁଣ୍ଡ ମୁଣ୍ଡ ବାଜିବା**—ଦେ. ବି—୧ । କୌଣସି ଲୋକର ପାଟି ଶୁଭିବା-
Tuṇḍa muṇḍa bājibā 1. A person's voice being heard.
गला शोना याओया
୨ । ଶୁଣାଯିବା ଉଚ୍ଚ ସ୍ୱର—2. An audible loud voice.
(ଯଥା—ତାଙ୍କ ଘରେ ପିଲାଙ୍କର ତୁଣ୍ଡ ମୁଣ୍ଡ ବାଜିବାକୁ ନାହିଁ ।)

**ତୁଣ୍ଡରୁ ଛଡ଼ା(ଡ଼େ)ଇ ନେବା**—ଦେ. କି.—କୌଣସି ବ୍ୟକ୍ତି କୌଣସି
Tuṇḍaru chhaṛdā(ṛde)i nebā କଥା କହିବା ପୂର୍ବରୁ
मुहसे बात छिनना; ଅନ୍ୟଜଣକ ସେହି କଥା (ଅନ୍ୟ ଜଣେ) କହି
मुहँसे बात उचकना ଦେବା—To speak out what
মুখথেকে কথা কেড়ে লওআ another was just going to speak.

**ତୁଣ୍ଡରେ ଧରିବା**—ଦେ. କ୍ରି.—(କୌଣସି କଥା) କହିବା—
Tuṇḍare dharibā To speak; to utter (anything).
মুখে ধরা ମିଥ୍ୟା କଥା ମୋ ଅଗେ ତୁଣ୍ଡରେ ନ ଧର ।
मुहँपर लाना କୃଷ୍ଣସିଂହ. ମହାଭାରତ. ଆଦ ।
(ତୁଣ୍ଡରେ ଆଣିବା—ଅନ୍ୟରୂପ)

**ତୁଣ୍ଡରେ ପକା(କେ)ଇବା**—ଦେ. କ୍ରି.—ଚୋବାଇବା ବା ଖାଇବା
Tuṇḍare pakā(ke)ibā ନିମନ୍ତେ କୌଣସି ବସ୍ତୁ ପାଟିକୁ ନିକ୍ଷେପ
মুখে ফেলা କରିବା—To put any thing into one's
मुहमे देना mouth for eating or chewing.

**ତୁଣ୍ଡଲା**—ଦେ. ବି.—କୌଣସି ବ୍ୟକ୍ତି ଠିଆ ହେଲେ ତଳୁ ତାହାର
Tuṇḍalā ତୁଣ୍ଡ ବା ପାଟି ପର୍ଯ୍ୟନ୍ତ ମାପରେ ଯେଉଁ ଗଭୀରତା ହୁଏ;
এক গলা ପ୍ରାୟ ୫ ଫୁଟ ଗଭୀରତା—Depth of water
(ତୁଣ୍ଡଲା—ଅନ୍ୟରୂପ) measured from the bottom upto the mouth of a person standing in water; a depth of about 5 feet.
(ଯଥା—ସେ ପୋଖରୀରେ ପାଣି ତୁଣ୍ଡଲାଏ ।
ଦେ. ବଣ—ମନୁଷ୍ୟର ତୁଣ୍ଡ ପର୍ଯ୍ୟନ୍ତ ଗଭୀର—Lip-deep.

**ତୁଣ୍ଡ ଲଗିବା**—ଦେ. ବି.—ପାଟି ଖନା ହେବା; ଖନେଇ ଖନେଇ
Tuṇḍa lāgibā କଥା କହିବା—Stammering.
তোতলা হওয়া. तुतला होना

**ତୁଣ୍ଡ ଲେଉଟିବା**—ଦେ. ବି.—୧ । କୌଣସି ଶବ୍ଦ ବା ବାକ୍ୟାଂଶ
Tuṇḍa leuṭibā ସ୍ପଷ୍ଟଭାବରେ ଉଚ୍ଚାରଣ କରିବାକୁ ସମର୍ଥ ହେବା—
মুখে আসা 1. Being able to distinctly utter any word
୨ । କୌଣସି କଥା କହିବାପାଇଁ ସାହସ ହେବା ବା ପାଇବା-
2. Having enough courage to say something.

**ତୁଣ୍ଡ(ଣ୍ଡୁ)ଲି**—ଦେ. ବି.—ଅସ୍ତ୍ରବିଶେଷ—
Tuṇḍa(ṇḍu)li A kind of weapon.

**ତୁଣ୍ଡ ଶୁଘି(ଭି)(ବି)ବା**—ଦେ. ବି. —କୌଣସି ବ୍ୟକ୍ତିର କଣ୍ଠସ୍ୱର ଅନ୍ୟର
Tuṇḍa śughi(bhi)(bi)bā ଶ୍ରବଣଗୋଚର ହେବା—
গলা শুনা যাওয়া One's voice being heard by or audible to another person.

**ତୁଣ୍ଡ ଶୁଣା(ଣେ)ଇବା**—ଦେ. କ୍ରି.—୧ । ଆପଣାର କଣ୍ଠସ୍ୱର ଅନ୍ୟବ୍ୟକ୍ତି
Tuṇḍa śuṇā(ṇe)ibā ଶୁଣିପାରିବା ଭଳି କଥା କହିବା—
आवाज देओया 1. To talk loudly so that one's voice
मुहँ फाड़कर कहना will be audible to another.
(ଯଥା—ଅନ୍ୟଲୋକଙ୍କ ସ୍ୱଭାବରେ ବାଟ ଚାଲିଲା ବେଳେ ମଝିରେ
ମଝିରେ ତୁଣ୍ଡ ଶୁଣାଉ ଥାଏ ।)

ସାଧାରଣ ଲେଖେ ଅପର ପୃଷ୍ଠାରେ ଦେଖ ୧ ଚିହ୍ନିତ ଅକ୍ଷର ଓ ନମ୍ବର ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କ୍ରମାନୁସାରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉକ୍ତ ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'ଭୂଅଁ' ନ ମିଳିଲେ 'ଭୂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଟିଏ' ନ ପାଇଲେ 'ଅଞ୍ଚ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

ମୁଖ ଫୁଟେ ଚାଓଆ ୨ । କୌଣସି ଲୋକର ଅଗରେ ଅପଣାର ମନୋଗତ ସ୍ତବ ବା ପ୍ରାର୍ଥନା ଜଣାଇବା—
2. To express one's prayer or thoughts before another by word of mouth.
(ଯଥା—ତାହାଙ୍କୁ ତୁଣ୍ଡ ଶୁଣାଇଲେ ଭକ୍ତଙ୍କର ଦୁଃଖ ମେଣ୍ଟିଯିବ ।)

**ତୁଣ୍ଡ ସଙ୍ଖାଳି**—ଦେ. ବଣ.—ବଚନସର୍ବସ୍ୱ; କଥାବାର୍ତ୍ତାରେ ପଟୁ—
Tunḍa saṅkhāḷi বচনসার Expert in words; having nothing but hollow words; braggart

**ତୁଣ୍ଡ ସମ୍ଭାଳିବା**—ଦେ. କ୍ରି.—ବାକ୍‌ସଂଯମ କରିବା—
Tunḍa sambhāḷibā To control one's tongue.
মুখ সামলান मुहँ सँभालना

**ତୁଣ୍ଡ ସେଇଁବା**—ଦେ. କ୍ରି.—୧ । ଇଚ୍ଛା କରି କଥା ନ କହି ଚୁପ୍ ହୋଇ ରହିବା—1. To keep studiously silent.
Tunḍa seiṅbā
मुहँ सीना মুখ সেলাইকরা
(ତୁଣ୍ଡ ସିଲେଇ କରିବା—ଅନ୍ୟରୂପ) ୨ । ଅନ୍ୟ ବ୍ୟକ୍ତିକୁ କଥା କହିବାକୁ ନ ଦେବା—2. Not to allow another to speak.

**ତୁଣ୍ଡା**—ଦେ. ଦ୍ର.—ବନ୍ୟ ତରୁବିଶେଷ—
Tunḍā Umnitzera Racemosa (Haines).
[ଦ୍ର—ଏହାର ବକଳା ଅଳ୍ପ ବଳକର । ଏହା ମହାନଦୀର ମୁହାଣ ପାଖେ ଥିବା ଉପକୂଳର ଜଙ୍ଗଲରେ ଜନ୍ମେ ।]
(ତୁଣ୍ଡୀ, ତୁଣ୍ଡେଇ—ସ୍ତ୍ରୀ) ଦେ. ବଣ. ପୁଂ (ଅନ୍ୟ ଶବ୍ଦ ସଙ୍ଗେ ପ୍ରଯୁଜ୍ୟ, ଯଥା ଭଲତୁଣ୍ଡା; ଭୁତୁଣ୍ଡା)—ତୁଣ୍ଡବିଶିଷ୍ଟ—
(a particle added to other words) Having voice or voiced (as in loud-voiced.)

**ତୁଣ୍ଡାଗ୍ର**—ସଂ. ଦ୍ର. (୬ଷ୍ଠୀ ତତ୍; ତୁଣ୍ଡ+ଅଗ୍ର)—ଜିଭର ଅଗ—
Tunḍāgra The tip of the tongue

**ତୁଣ୍ଡାଟ**—ଦେ.ବି.—ଯେଉଁ ପଟା ଘରର ଓଳପାଖର ଖୁଲର ନଡ଼ାକୁ ଅଟକାଇ ରଖିବାପାଇଁ ଖୁଅମାନଙ୍କ ଅଗରେ ମରାଯାଇ ଥାଏ—A long and broad plate attached to and running along the lower end of rafters to hold back the straw of the thatch and prevent them from falling down.
Tunḍāṭa
(ତୁଣ୍ଡାଟ ପଟା—ଅନ୍ୟରୂପ)
ନେତ୍ରା ଓଳି ଭର ତୁଣ୍ଡାଟ ତହାର
ଚଉଠ ପଟା ଯୋଡ଼ିଲେ । ଦ୍ୱାକା. ରାସକ୍ରୀଡ଼ା ।

**ତୁଣ୍ଡି**—ସଂ. ବି. (ତୁଣ୍ଡ୍ ଧାତୁ+ଇ)—୧ । ବଦନ; ମୁହଁ—
Tunḍi 1. Face
୨ । ନାଭି—2 The navel.
୩ । ଚଞ୍ଚୁ; ଥଣ୍ଟ—3. Beak.
ଦେ. ବି. (ସଂ. ତୁଣ୍ଡ)—୧ । ଘୋଡ଼ୁଅଙ୍କ ମୁହଁ ଖୁରପାଖେ ବନ୍ଧାଯିବା ଫାସବିଶେଷ—1. Curb; a noose or strap put round the mouth of beasts to prevent them from biting; a muzzle.
মুখাড়
मुमिका
ଘଲଲ, ବଧିର ସଭବେଶ ମୃଗ ।
ତୁଣ୍ଡେ ବଜ୍ର-ତୁଣ୍ଡି ଦେଇ । ରଘୁନାଥ. ଯଯାତି ।
মুগুনী ୨ । ଘରର ଛଣଖାଇ; ବତାରେ ଗୁଡ଼ାଇ ହୋଇ ଘରର ଓଳରେ ବନ୍ଧାଯିବା ଛଣବଡ଼ା—2. A plait of straw woven round a rod and attached to the edge of the eaves, over which the layers of straw are laid.
୩ । ତୁଣ୍ଡାଟ (ଦେଖ)—3. Tunḍāṭa (See)

**ତୁଣ୍ଡିଆ**—ଦେ. ବଣ. ପୁଂ—୧ । ବଡ଼ପାଟିଆ; ଯାହାର କଣ୍ଠସ୍ୱର ବେଶି ଉଚ୍ଚ; ମୁଖର—1. Loud-voiced.
Tunḍiā
বাচাল ୨ । ଯେ ପାଟି କରି ଗୋଳମାଳ କରେ—
मुहँजोर 2. Noisy; brawling
(ତୁଣ୍ଡେଇ—ସ୍ତ୍ରୀ) ୩ । କଳହପ୍ରିୟ; କଳହପ୍ରିୟ—
3. Quarrelsome; querulous.
୪ । ବକୁଆ; ବାଚାଳ—4 Talkative; garrulous.
ଦେ. ବି—ତୁଣ୍ଡାଟ (ଦେଖ)—Tunḍāṭa (See)

**ତୁଣ୍ଡିକା**—ସଂ. ବି (ତୁଣ୍ଡ+କ+ସ୍ତ୍ରୀ. ଆ)—୧ । ତଣ୍ଟି (ବୃ.ଶବ୍ଦସାଗର)-
Tunḍikā 1. Throat.
୨ । ଥଣ୍ଟ (ବୃ. ଶବ୍ଦସାଗର)—2. Beak.
୩ । କଇଁଚି କାକୁଡ଼ି (ଦେଖ)
3. Kaiñchi kākuṛi (See)

**ତୁଣ୍ଡିକେଶୀ**—ସଂ. ବି—କଇଁଚି କାକୁଡ଼ି (ଦେଖ)
Tunḍikeśi Kaiñchi kākuṛi (See)

**ତୁଣ୍ଡି ପଟା**—ପ୍ରାଦେ. (ଗଞ୍ଜାମ) ବି—ଟାଇଲ୍‌ର ଛୁଆଣି ଘରେ ଦିଆଯାଇ ଥିବା କାଠର ପାଣିପାଟିଆ; ଖପରଲ୍ ଘରର ତୁଣ୍ଡାଟ ପଟା—A long plate attached to the lower end of the rafters of a tiled house.
Tunḍi paṭā

**ତୁଣ୍ଡି ବତା**—ଦେ. ବି—ପାଣିପାଟିଆକୁ ଖୁଲଉପରକୁ ଠାଣେ ରଖିବା ବତା—The split bamboo which keeps the end-plate of the eaves in position.
Tunḍi batā
ପ୍ରାଦେ (ଗଞ୍ଜାମ) ବି—ଖୁଲଘରର ପାଣିପାଟିଆ; ତୁଣ୍ଡାଟ. (ଦେଖ)—Tunḍāṭa (See)

**ତୁଣ୍ଡିଭ**—ସଂ. ବଣ. ପୁଂ (ତୁଣ୍ଡି=ନାଭି+ପ୍ରଶସ୍ତାର୍ଥରେ. ଭ)—
Tunḍibha ୧ । ପେଟୁଆ; ସ୍ଥୂଳୋଦର; ଅନ୍ତଲପେଟିଆ—
(ତୁଣ୍ଡିଭା—ସ୍ତ୍ରୀ) 1. Pot-bellied.
୨ । ଧୂଷ୍ଟ; ମୋଟାସୋଟା—2. Corpulent; fat.
୩ । ବୃହତ୍ ନାଭିଯୁକ୍ତ—3. Having a big navel.

**ତୁଣ୍ଡିଳ**—ସଂ. ବଣ. ପୁଂ (ତୁଣ୍ଡି+ପ୍ରଶସ୍ତାର୍ଥରେ ଳ)—ତୁଣ୍ଡିଭ (ଦେଖ)
Tunḍila (ତୁଣ୍ଡିଳା ସ୍ତ୍ରୀ) Tunḍibha (See).

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଚ | ଶ,ଷ | ଜ୍ଞ | ଉଦ୍ଧୃ | | ଝ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | | ଉଦ୍ଧୃ | | |

ଟୁଣ୍ଡୀ—ସଂ. ବଣ. ପୁଂ (ଟୁଣ୍ଡ+ଇନ; ୧ମା. ୧ବ)—୧ । ଥଣ୍ଟଯୁକ୍ତ—
Tuṇḍī 1. Having beak.
(ଟୁଣ୍ଡିନୀ—ସ୍ତ୍ରୀ) ୨ । ଥୋମଣିଯୁକ୍ତ—2. Snouted.

ଟୁଣ୍ଡୀ ଗୁଡପାକ—ସଂ. ବ (ଟୁଣ୍ଡୀ+ଗୁଡ+ପଚ୍ ଧାତୁ+ଅ)—ବାଳରୋଗ
Tuṇḍī gudapāka ବିଶେଷ—An infantile disease.
[ ଦ୍ର—ଏଥିରେ ଶିଶୁର ନାଭିରେ ପୀଡ଼ା ହୁଏ ଓ ଗୁହ୍ୟଦ୍ୱାର ପାଚିଯାଏ—ହି. ଶବ୍ଦସାଗର । ]

ଟୁଣ୍ଡୁରି—ଗ୍ରାଦେ. (ଗଡ଼ଜାତ) ବ—କୁନ୍ଦୁରି (ଦେଖ)
Tuṇḍuri Kunduri (See)

ଟୁଣ୍ଡୁରୁ—ଗ୍ରାଦେ. (ଜୟପୁର) ବ—କୁନ୍ଦୁରି (ଦେଖ)
Tuṇḍuru Kunduri (See)

ଟୁତ୍—ବୈଦେ. ବ. (ଫା. ତୁତ୍; ତୁଲ. ସଂ. ତୁତ M. W.).
Tut କ୍ଷୀରବିଶିଷ୍ଟ ଦୃଢ଼ଶାଖ ବୃକ୍ଷବିଶେଷ—
তুৎ, তুঁত The Mulberry plant; Morus Indica;
तूत, तूतरि (ଟୁଁତ—ଅନ୍ୟରୂପ) Morus Alba.
[ ଦ୍ର—ଏ ଗଛର ପତ୍ର ଶୀତକାଳରେ ଝଡ଼ିଯାଏ; ଏହା ଓସ୍ତପତ୍ରି ପତ୍ର । ଏହି ପତ୍ର ରେଶମପୋକର ଖାଦ୍ୟ । ଏହି ଗଛର କୋଳ ପାଚିଲେ ଖଟା ମିଠା ଲାଗେ । ଲୋକେ ଏହାକୁ ଖାଆନ୍ତି । ଏ ଫଳ ଶୀତଦିନେ ପାଚେ । ଏ ଇଉରୋପର ଗଛ ଓ ଅପିଆଧି ଶୀତ ପ୍ରଧାନ ଦେଶମାନଙ୍କରେ ଜନ୍ମେ । ]

ଟୁତ୍କାର—ଦେ. ବ—୧ । କୁକୁରକୁ ଡାକିବା 'ଟୁତ୍' ଶବ୍ଦ—
Tut-kāra The sound used in calling dogs.
তুইতোকারী ୨ । ଟୁକାର (ଦେଖ)—2. Tukāra (See)
तोता, तुतकार (ଟୁଟୁକାର—ଅନ୍ୟରୂପ)

ଟୁତ୍କାରିବା—ଦେ. କ୍ରି—କୁକୁରକୁ 'ଟୁ ଟୁ' କରି ଡାକିବା—
Tut-kāribā 1. To call a dog by making the
তুইতোকারী করা 'tu, tu' sound.
तुतुकार करना ୨ । ଟୁକାରିବା (ଦେଖ)
(ଟୁଟୁକାରିବା—ଅନ୍ୟରୂପ) 2. Tukāribā (See)

ଟୁତ୍ ପୋକ—ଦେ. ବ—ଯେଉଁ ପୋକ ଟୁତ୍ଗଛର ପତ୍ର ଖାଇ ବଞ୍ଚନ୍ତି;
Tut-poka ଗୋଟିପୋକ; ପାଟପୋକ—The silk-insect.
তুতপোকা तुतकीड़ा (ଟୁଁତ୍ପୋକ—ଅନ୍ୟରୂପ)

ଟୁତା କରିବା—ଦେ. କ୍ରି—୧ । କୌଣସି ବ୍ୟକ୍ତିକୁ ଅବଜ୍ଞାସୂଚକ
Tutā karibā ସମ୍ବୋଧନ କରିବା; ଅବମାନନାସୂଚକ କଥା
তুইতোকারী করা ବା ଟୁକାର ପ୍ରୟୋଗ କରିବା—1. To use
तुतुकार करना slang terms (thou and thee) to a
ଟୁ ତା ରେ ରି କରିବା } ଅନ୍ୟରୂପ person; to use scornful
ଟୁ ତା ବେ ବା କରିବା } address or foul words.
তোতোকার করা; তুইতোকারি করা ୨ । ଭର୍ତ୍ସନା କରିବା—
अरियाना, तुतुमैमै करना 2. To recriminate.

ଟୁତି—ବୈଦେ. ବ. (ଫା)—୧ । କ୍ଷୁଦ୍ର ପକ୍ଷିବିଶେଷ—
Tuti 1. The rose finch (bird); the canary
তুতী bird; Carpodacus Erythrinus; Serinus
तूती Canarius.
ଟୁତି, ତୋ.ତି—ଅନ୍ୟରୂପ) ଶାଳ, ଶୁଆ ଶାରୀ, ବୁତ, ବଗ ଘୁଅ । ଦସ୍ୟାକୁ ପ୍ରଣି ମୁନିଆ । ଗୀତାଗାଥା ସାର ।
[ ଦ୍ର—ଏହା ଖାଣ୍ଡାଖିସ୍ତି ବର୍ଗର ପକ୍ଷୀ;୨୮ ଅଙ୍ଗୁଳ ଲମ୍ବ । ଏହାର ମୁଣ୍ଡ, ଗଳା ଓ ଛାତି ଗୋଲାପୀ ରଙ୍ଗ; ପିଠି ଖଇରି ଏବଂ ବସନ୍ତକାଳରେ ରକ୍ତବର୍ଣ୍ଣ ହୁଏ । ଏହାର ଆଖି ଧଳା । ଏ 'ଟୁତିଝିଟି' ମଧୁର ଶବ୍ଦ ଉଚ୍ଚାରଣ କରେ । ଏଥିପାଇଁ ଲୋକେ ଏହାକୁ ପୋଷନ୍ତି । ଏ ଟୁତ୍କୋଳର ପ୍ରିୟ ଥିବାରୁ ଏହାର ଏପରି ନାମକରଣ ହୋଇଅଛି । ]

୨ । ଏକପ୍ରକାର ଛୋଟ ଶୁଆ—
2. A small species of parrot.
[ ଦ୍ର—ଏହାର ଥଣ୍ଟ ହଳଦିଆ, ବେକ ବାଇଗଣୀ ଓ ପକ୍ଷ ଏବଂ ପିଠି ଶାଗୁଆ । ]

ଟୁତିଆ—ଦେ. ବ (ସଂ. ତୁତ୍ଥ)—ତାମ୍ରଘଟିତ ନୀଳବର୍ଣ୍ଣ ଉପରସବିଶେଷ;
Tutiā ମୟୂରଗିରିଆ—Blue vitriol; copper
তুতিয়া, তুঁতিয়া, তুঁতে sulphate.
तुतिया [ ଦ୍ର—ଏହା ଦୁଇପ୍ରକାର—ମୟୂରତୁତ୍ଥ ଓ ଖର୍ପରିତୁତ୍ଥ । ]
ଭେଦ—ମୟୂରତୁଥିନୁଁ
(ଅନ୍ୟ ସଂ. ନାମ—ତୁତ୍ଥ, ମୟୂରଗ୍ରୀବକ, ନୀଳାଞ୍ଜନ )

ଟୁତି ଝିଟି—ଦେ. ଅ—ଟୁତି ପକ୍ଷୀର ଡାକ ବା ଶବ୍ଦ—
Tuti bhiti The sound made by the rose-finch.
(ଟୁତ୍ଝିଟି—ଅନ୍ୟରୂପ)

ଟୁ ଟୁ—ଦେ. ଅ—କୁକୁରଙ୍କୁ ଡାକିବା ଶବ୍ଦ—
Tu tu The voice used in calling dogs.
তুতু तु

ଟୁଟୁରି—ଦେ. ବ ( ସଂ. ତୁତୁରମ୍ )—ଶିଙ୍ଗା; ତୁରୀ—
Tuturi A trumpet; a horn for blowing.
তুতুরী तुरही, तुतुम

ଟୁତ୍ଥ—ସଂ. ବ (ତୁଜ୍ ଧାତୁ=ବ୍ୟଥିତ କରିବା ବା କଷ୍ଟଦେବା+କର୍ତ୍ତୃ. ଥ)
Tuttha ୧ । ଟୁତିଆ—1. Blue vitriol; copper sulphate.
୨ । ରସାଞ୍ଜନ—2. Antimony.
୩ । ଅଗ୍ନି—3. Fire.

ଟୁତ୍ଥକ—ସଂ. ବ ( ତୁତ୍ଥ+ସ୍ୱାର୍ଥରେ କ )—ତୁତ୍ଥ (ଦେଖ)
Tutthaka Tuttha (See).

ଟୁତା—ସଂ. ବ. ସ୍ତ୍ରୀ (ତୁତ୍ଥ+ସ୍ତ୍ରୀ ଆ)—୧ । ଛୋଟ ଅଲେଇଚ—
Tutthā 1. Small cardamom.

| |
|---|
| ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ପାଠକମାନେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଘ୍ୟ'ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ |

୨ । ନୀଳ ଗୁଳ୍ମ—2. Indigo plant.

**ତୁତ୍ଥାଞ୍ଜନ**—ସଂ. ବି (ତୁତ୍ଥ+ଅଞ୍ଜନ)—୧ । ତୁତିଆ—
Tutthāñjana 1. Blue vitriol.
୨ । ଅକ୍ଷିରେ ଲଗାଇବା କଜ୍ଜଳ—
2. Black powder or collyrium used as a pigment to paint the eyelids.

**ତୁଚ୍ଛା**—ଦେ. ବିଣ (ସଂ. ତୁଚ୍ଛ)—ତୁଚ୍ଛ (ଦେଖ—Tuchchha (See).
Tutsā ଦେଖିଲେ ମୁଁ ତୁଚ୍ଛା ଗାଲ
ଯାହା ଲୋକ ଗଣିବେ ହସିବ—ଭକ୍ତଚରଣ ଦାସ ।

**ତୁଦ୍** ( ଧାତୁ )—ସଂ.—ପୀଡ଼ା ଦେବା—
Tud (root) To cause pain; to oppress.

**ତୁଦନ**—ସଂ. ବି (ତୁଦ ଧାତୁ=ପୀଡ଼ା ଦେବା+ଭାବ ଅନ)—
Tudana ୧ । ପୀଡ଼ନ—1. Tormenting.
୨ । ପୀଡ଼ା; ବ୍ୟଥା —2 Aching.

**ତୁ ଧଃ**—ଦେ. ଅ—କୌଣସି ଜୀବକୁ ଆକ୍ରମଣ କରିବା ନିମନ୍ତେ
Tu dhah କୁକୁରକୁ ଡାକି ଦେଖାଇ ଦେବା ବ୍ୟକ୍ତିର ଉଚ୍ଚାରିତ
ଧଃ; ଧଃଧଃ ଡାକ—A halloo used in setting a dog to chase the prey.

**ତୁନ୍**—ଦେ. ବି (ସଂ.ତୁଣ; ତୁଣୀ)—ବନ୍ୟବୃକ୍ଷବିଶେଷ—A wild tree;
Tun the Toon tree; Cedrela Toona.
(ତୁଣ୍—ଅନ୍ୟରୂପ) [ ବି—ଏହା ଉତ୍ତର ଭାରତରେ ଜନ୍ମେ ।
तुन तुन, तुणी ଏହାର ଉଚ୍ଚତା ୬୦ ହାତ ଓ ବେଢ଼ ୧୨
ସଂ. ନାମ—ତୁନ୍ନ, ତୁଣୀ, ହାତ ପର୍ଯ୍ୟନ୍ତ ହୁଏ; ପତ୍ର ନିମ୍ବ ପତ୍ର ପରି ।
ତୁନ୍ନକ, ଅପୀନ, ତୁଣିକ, ଶୀତକାଳରେ ଏ ପତ୍ର ଝଡ଼ିପଡ଼େ । ବସନ୍ତ
କଚ୍ଛପ, କୁଠେରକ, କାଳରେ ଏ ଗଛରେ ଫୁଲ ଫୁଟେ । ଏ
କାନ୍ତଲକ, ନନ୍ଦିବୃକ୍ଷ, ଫୁଲ ନିମ୍ବ ଫୁଲ ପରି ଧଳା ଓ ଉତ୍ତମ
କଚ୍ଚକ, ମହାନିମ୍ବ ବାସଯୁକ୍ତ । ଫୁଲରୁ ଏକପ୍ରକାର ବସନ୍ତ
ରଙ୍ଗ ବାହାର ହୁଏ । ଏ ଗଛର କାଠ ନାଲି ଓ ମଜଭୁତ । ଏ
କାଠରେ ଉଇ ବା ପୋକ ଲାଗନ୍ତି ନାହିଁ । ଏଥିରେ ମେଜ ଆଦି ଓ
ସୁନ୍ଦର ଆସବାବ ତିଆରି ହୁଏ; ବୈଦ୍ୟଶାସ୍ତ୍ର ମତରେ ଏହା କଟୁପାକ,
କଷାୟମଧୁରରସଯୁକ୍ତ, ଲଘୁ, ଧାରକ, ଶୀତବୀର୍ଯ୍ୟ ଓ ଶୁକ୍ରବର୍ଦ୍ଧକ;
ଏହା ବ୍ରଣ, କୁଷ୍ଠ ଓ ରକ୍ତପିତ୍ତନାଶକ । ଏହା ମାଲ୍ୟାଚଳର ଗଛ ]
ପ୍ରାଦେ (ସମ୍ବଲପୁର) ତରକାରି—Curry.

**ତୁନି**—ଦେ. ବିଣ (ସଂ. ତୁଷ୍ଣୀଂ)—୧ । ଚୁପଚାପ୍; ନୀରବ; ଚୁପ୍—
Tuni 1. Silent.
चुप ...ହୋଇଲ କାଠି ଦେଇ ରହ ହୋଇ ଚୁପ ।
चुपका ଦୀନକୃଷ୍ଣ ଦାସ ।
୨ । ଲୁକ୍କାୟିତ; ଗୁପ୍ତ—2. Concealed.
୩ । ଶାନ୍ତ—3. Calm and quiet.
ଦେ. ବି—୧ । ନୀରବତା—Silence.
୨ । ଶାନ୍ତଭାବ—2. Quiet.

चुप्पी ୩ । କାନ୍ଦ ବା କଥା ବନ୍ଦ କରିବା—
(ତୁନ୍ନି—ଅନ୍ୟରୂପ) 3. Stopping of talking or crying.
ଦେ. କ୍ରି. ବିଣ—୧ । ନୀରବରେ—1 Silently; quietly.
चुपके से चुपसे ୨ । ଗୁପ୍ତଭାବରେ—2. Stealthily.

**ତୁନି କ କ(ି)ରି**—ଦେ. କ୍ରି. ବିଣ—୧ । ନୀରବରେ—
Tuni ka(ki)ri 1. Silently.
चुपके ୨ । ଗୁପ୍ତଭାବରେ—2. Stealthily.
चुपते

**ତୁନି କରିବା**—ଦେ. କ୍ରି ( ସଂ. ତୁଷ୍ଣୀଂ )—୧ । କଥା କହୁଥିବା ବା
Tuni karibā କାନ୍ଦୁଥିବା ବ୍ୟକ୍ତିକୁ ସାନ୍ତ୍ୱନା ଦେଇ ବା ଡରାଇ
चुप करा ତାହାର କଥା ବା କାନ୍ଦ ବନ୍ଦ କରାଇବା—1. To stop
चुप करना the crying or talking of a person.
୨ । ଅନ୍ୟର ମୁହଁ ବନ୍ଦ କରିବା; ଅନ୍ୟ ବ୍ୟକ୍ତିକୁ କଥା
କହିବାକୁ ନ ଦେବା—2. To stop the mouth of a person; not to let a person speak.
[ତୁନିକରା(ରେ)ଇବା—ଅନ୍ୟରୂପ]

**ତୁନିକା**—ସ୍ତ୍ରୀ. ବିଣ. ଓ କ୍ରି. ବିଣ—ତୁନି ( ଦେଖ )
Tunikā Tuni ( See )
(ତୁନିକାର—ଅନ୍ୟରୂପ) ଦେ. ବିଣ—ଚୁପ୍ ସଇତାନ୍ ( ଦେଖ )
Chūp saitān ( See )

**ତୁନି ତାନ(ନି)**—ଦେ. ବି. ଓ ବିଣ. ଓ କ୍ରି. ବିଣ—ତୁନି ( ଦେଖ )
Tuni tān (ni) Tuni ( See )
चुपचाप ଘର ପଛର କ ସରକ ଥାଇ ସବୁ ସାଇ ତୁନିତାନ୍—
चुपचाप ଫକୀରମୋହନ, ଛମାଣ ଆଠଗୁଣ୍ଠ ।

**ତୁନିତାନି କରିବା**—ଦେ. କ୍ରି—ତୁନି କରିବା ( ଦେଖ )
Tunitāni karibā Tuni karibā (See)

**ତୁନିବା**—ପ୍ରାଦେ (ସମ୍ବଲପୁର) କ୍ରି ( ସଂ. ତୁନ୍ନ=ଚିରା ଲୁଗା )—ଚିରା
Tunibā ଲୁଗା ଆଦିକୁ ସିଲାଇ କରିବା—To sew torn cloth etc.

**ତୁନି ମୁନି**—ଦେ. ବି ଓ ବିଣ. —( ବ୍ୟଙ୍ଗାର୍ଥ )—ଚୁପ୍ ସଇତାନ୍ ଲୋକ;
Tunimuni ଯେଉଁ ବ୍ୟକ୍ତି ବାହାରେ ମୁନି ପରି ଚୁପ୍‌ଚାପ୍ ରହି ସାଧୁ
चुपसयतान् ଓ ବାକ୍ସଂଯମୀ ବୋଲି ଜଣାଯାଏ, କିନ୍ତୁ ଭିତରେ
चुपसयतान ଭାରି ଦୁଷ୍ଟ ବା ଖଳ—(ironical) One who assumes a silent exterior but is inwardly vicious.

**ତୁନି ହେବା**—ଦେ. କ୍ରି—(ସଂ. ତୁଷ୍ଣୀଂଭାବ)—୧ । ଚୁପ୍ ହେବା; ନୀରବ
Tuni hebā ହେବା—1. To be silent; to keep quiet.
चुप हओया ୨ । କାନ୍ଦ ବା କଥା ବନ୍ଦ କରିବା—
चुप होना 2. To stop crying or talking.

**ତୁନ୍ଦ**—ସଂ. ବି (ତୁଦ୍ ଧାତୁ=ପୀଡ଼ା ଦେବା+କର୍ତ୍ତୃ.ଅ; ନ ଆଗମ)—
Tunda ଉଦର; ପେଟ—Belly; abdomen.
तुंद ବୈଦେ. ବିଣ. (ଫା)—ପ୍ରଚଣ୍ଡ; ଉଗ୍ର—Violent.

| ୧ | ୮ | ଷ୍ | ୠ | ଙ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ୍ଞ | ଶ,ଷ | କ୍ଷ | ଐ | ଔ | ଋ |
|---|---|---|---|---|---|---|---|---|---|---|---|---|---|---|
| ୨ | ଢ | ଭ | ରୁ | ଡ଼ | ଟ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଅ | ଯ | ସ | ଙ୍କ | ଏଇ | ଓ | ମ |

ତୁଣ୍ଡି—ସ. ବି (ତୁଦ୍. ଧାତୁ+କର୍ତ୍ତୃ.ଇ; ମ ଆଗମ)—୧। ଉଦର; ପେଟ—
Tundi 1. Belly.
୨। ନାଭି—2. Navel.
୩। ଗନ୍ଧର୍ବବିଶେଷ—3. Name of a Gandharba.

ତୁଣ୍ଡିକ(କୋଳ)—ସ. ବଣ.ପୁଂ (ତୁଣ୍ଡି+ଅସ୍ତି ଅର୍ଥରେ, ଇକ,ଇଭ, ଇଲ)
Tundika(bha ila) ୧—ପେଟା; ସ୍ଥୂଳୋଦର; ଅନୁଲପେଟଥିବା—
(ତୁଣ୍ଡିକା(ଭା ·ଲା)-ସ୍ତ୍ରୀ) Pot-bellied; fat.

ତୁଣ୍ଡୀ—ସ. ବି (ତୁଣ୍ଡି+ସ୍ତ୍ରୀ. ଈ)—ନାଭି—Navel
Tundi

ତୁନ୍ଦୁର—ବୈଦେ (ଅ. ତନ୍ଦୁର୍)—ତନ୍ଦୁର (ଦେଖ)
Tundur Tandur (See)
ପ୍ରାଦେ (ମେଦିନୀପୁର) ବି. ଗର୍ତ୍ତ—Pit; hole.

ତୁନ୍ନ—ସ. ବିଣ (ତୁଦ୍. ଧାତୁ=ପୀଡ଼ା ଦେବା+କର୍ମ.କ୍ତ)—
Tunna ୧। ବ୍ୟଥିତ—1. Tormented.
୨। ଚିରା; ଛିନ୍ନ—2. Torn.
୩। ସ୍ୟୂତ; ସିଲାଇ କରାଯାଇଥିବା—3. Sewn.
ସ. ବି.—୧। ଚିରା ଲୁଗା—1. Torn cloth.
୨। ଛିଣ୍ଡା କନା—2. Rag.
୩। ତୁନ୍ (ଦେଖ)—3. Tun (See).

ତୁନ୍ନ ବାୟ—ସ. ବି (ତୁନ୍ନ=ଛିନ୍ନ ବସ୍ତ୍ର+ବେ ଧାତୁ=ସିଲେଇ
Tunnabāya କରିବା+କର୍ତ୍ତୃ. ଅ)—ଦରଜି—A tailor.

ତୁପିବା—ପ୍ରାଦେ (ସିଂହଭୂମ) କ୍ରି—(ଭୂଳ. ହି. ତୋପ୍‌ନା=ଲୁଚାଇବା)
Tupibā ପୋତିବା—To bury.

ତୁଫଙ୍ଗ—ବୈଦେ. ବି (ଅ; ଭୂଳ. ଅ. ତୁଫାଙ୍ଗ୍=ଝଡ଼, ବାତାସ)—
Tuphang ବାୟୁ ଗୁଳିର ବନ୍ଧୁକ—Air-gun.
तुफङ्ग, तुफङ्ग

ତୁଫାନ ଇତ୍ୟାଦି—ବୈଦେ. ବି.—ତୋଫାନ ଇତ୍ୟାଦି (ଦେଖ)
Tuphāna (etc) Tophāna etc (See)

ତୁବର—ସ. ବି (ତୁ. ଧାତୁ=ପୀଡ଼ା କରିବା+କର୍ତ୍ତୃ. ବର)—
Tubara ୧। କଷାୟ ରସ—1. Astringent taste or flavour;
୨। ହରଡ଼ (ହି. ଶବ୍ଦସାଗର)—2. A kind of pulse; the pigeon-pea.
୩। ନଦୀ ଓ ସମୁଦ୍ର ତଟରେ ଜନ୍ମିବା ଗୁଳ୍ମବିଶେଷ—Name of a plant growing on the bank of rivers or the sea.
[ଦ୍ର—ଏହାର ଫଳ କଇଁଥ (କେନ୍ଦୁଳୀ) ପରି। ଏ ଫଳ ଖାଇଲେ ଗାଈ ଇତ୍ୟାଦି ପଶୁ ବେଶି ଦୁଧ ଦିଅନ୍ତି। ହି. ଶବ୍ଦସାଗର]
ବିଣ.—୧। କଷା—1. Astringent.
୨। (ପୁଂ) ମାଖୁନ୍ଦା; ଯେଉଁ ପୁରୁଷର ଦାଢ଼ି ବା ନିଶ ଉଠେ ନାହିଁ—2. (a person) In whom no beard or mustaches grow.

ତୁବରକ—ସ. ବି (ବୈଦ୍ୟକ)—ଚାଉଳମୁଗୁରା (ଦେଖ) (ଦ୍ରବ୍ୟଗୁଣ
Tubaraka କଳ୍ପଦ୍ରୁମ)—Chāula mugurā (See).
(ଅନ୍ୟନାମ. କୁଷ୍ଠଘ୍ନ)

ତୁବରିକା—ସ. ବି. (ତୁବର+କ+ସ୍ତ୍ରୀ.ଆ)—୧। ଗୋପୀଚନ୍ଦନ
Tubarikā (ଦେଖ) (ହି. ଶବ୍ଦସାଗର)—Gopi-chandana (See).
୨। ହରଡ଼ (ହି.ଶବ୍ଦସାଗର)—2. A kind of pulse: Cajanus Indicus; the pigeon-pea.

ତୁବରୀ—ସ. ବି. (ତୁବର+ସ୍ତ୍ରୀ.ଈ)—୧। ବବୁରି; ତୁଳସୀ (ଦ୍ରବ୍ୟଗୁଣ)
Tubari 1. Ocimum Gratissimum.
୨। ସୌରାଷ୍ଟ୍ରୀ ମୃତ୍ତିକା (ଦ୍ରବ୍ୟଗୁଣ)—2. Coloured earth found in Gujerat.
୩। ରାଇ ସୋରିଷ (ଦ୍ରବ୍ୟଗୁଣ)—3. Rye; mustard.

ତୁବି—ସ. ବି (ତୁ ଧାତୁ=ପୀଡ଼ା ଦେବା+କର୍ତ୍ତୃ ସଂଜ୍ଞାର୍ଥେ ବି)—
Tubi ୧। ତୁମ୍ବା; ପିତା ଲାଉ (ହି. ଶବ୍ଦସାଗର)—1. Bitter gourd.
୨। ତୁମ୍ବା (ଦେଖ)—2. Tumbā (See).

ତୁମ୍‌ତଡ଼ାକ(କା)—ବୈଦେ. ବି: (ପା.) ଧୁମ ଧାମ; ଆଡ଼ମ୍ବର; ଆଡ଼ମ୍ବର
Tum-tardāk(kā) ସହିତ ଗୋଳମାଳ—Pomp and noise;
तुमतड़ाक; تمطراق ado; grand show.

ତୁମ—ଦେ. ସର୍ବନାମ (ଭୂଳ. ସ. ଯୁଷ୍ମଦ୍ ଶବ୍ଦର ୧ମା ୧ ବଚନ ତ୍ୱମ୍ ଓ
Tuma ୬ଷ୍ଠୀ ବିଭକ୍ତି ୧ ବଚନ ତବ;) ଅଳ୍ପ ପରିଚିତ ବ୍ୟକ୍ତି ପ୍ରତି
ପ୍ରଯୁକ୍ତ)—ତୁମ୍ଭର (ଦେଖ)
(ତୁମର-ଅନ୍ୟରୂପ) Tumbhara (See).

ତୁମଡ଼ୀ—ଦେ. ବି. (ସ. ତୁମ୍ବୀ=ଲାଉ; ତୁମ୍ବିକା)—୧। ପିତା ଲାଉର
Tumardi ତୁମ୍ବୀରେ ନିର୍ମିତ ବଂଶୀ ବିଶେଷ; ତିଲୁଆ; ସ୍ୱରସା—
तुबड़ी; तुमड़ी 1. Bagpipe made of narrow-necked
تومڑی and big-billied bitter gourd.
[ ଦ୍ର—ଏହାର ମଝି ଅଂଶ ମୋଟ ଓ ଦୁଇପାଖ ସରୁ। ହିନ୍ଦୁମାନଙ୍କର ପ୍ରାଚୀନ ବ୍ରୀନାଲ ଯନ୍ତ୍ର ଏହାଦ୍ୱାରା ନିର୍ମିତ ହେଉଥିଲା। ସାପୁଆ କେଳାମାନେ ଏହା ବଜାଇ ସାପ ଖେଳାନ୍ତି। ଏହାର ଅଗରେ ସଛିଦ୍ର ଦୁଇଟି ନଳ ଲାଗିଥାଏ, ମଝି ଅଂଶ ଗୋଟିଏ ପିତା ଲାଉର ଖୋଲପା, ଓ ମୂଳଅଂଶ ଗୋଟିଏ ନଳ; ସେଥିରେ ନଳକୁ ଫୁଙ୍କାଯାଏ। କେହି କେହି ଏହାକୁ ନାକରେ ବଜାନ୍ତି। ପୃଥିବୀର ପ୍ରାୟ ସମସ୍ତ ପ୍ରାଚୀନ ଜାତି ଏହିପରି ବଂଶୀ ବ୍ୟବହାର କରୁଥିଲେ। ଭିନ୍ନ ଭିନ୍ନ ଦେଶରେ ଏହାର ନାମ ଭିନ୍ନ ଭିନ୍ନ ଯଥା—ଇଂଲଣ୍ଡରେ ବାଗ୍‌ପାଇପ୍ ( Bagpipe ); ସାଇବେରିଆରେ ତିତ୍ତି ( Titti ), ପାରସ୍ୟରେ ନଅମ୍ବନା, ମିଶରଦେଶରେ ଜୁକ୍କାସ୍, ଇଟାଲୀରେ ଜାମ୍ପୋନା। ବାଇବଲରେ ଏହି ଯନ୍ତ୍ରର ନାମ ସାମ୍ଫୋନିଆ ବୋଲି ଲିଖିତ ହୋଇଅଛି। ]

ସାଧାରଣ ଲୋକେ ଅପର ଦୃଷ୍ଟାନ୍ତରେ ଦିଅନ୍ତି ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷଗ୍ରନ୍ଥରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଉହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଟଙ୍' ନ ମିଳିଲେ 'ଟାଣ' ଖୋଜିବେ, 'କୃଷ' ନ ମିଳିଲେ 'କୃଷ' ଦେଖିବେ; 'ବନ୍ଧ' ନ ପାଇଲେ 'ବନ୍ଧ' ଦେଖିବେ, ଅର୍ଦ୍ଧ ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

୨। ଏକପ୍ରକାର ବିଷାକ୍ତ କୀଟ—
2. A kind of poisonous insect.
୩। ତୁମ୍ବା; ଲାଉ ଖୋଳପାରେ ନିର୍ମିତ ଥାଳ—3. A bowl made of the shell of the gourd.

ତୁମର(ରି)—ଦେ. ସର୍ବନାମ—ତୁମ୍ଭର ( ଦେଖ )
Tumara (ri) Tumbhara ( See )

ତୁମା— ପ୍ରାଦେ (ସମ୍ବଲପୁର) ବି (ସଂ. ତୁମ୍ବୀ)—୧। ଲାଉ—
Tumā Bottle gourd.
୨। ତୁମ୍ବା (ଦେଖ)—2, Tumbā (See)

ତୁମି— ପ୍ରାଦେ. (ସମ୍ବଲପୁର) ବି—ଶଗଡ଼ ଚକର ମଝି ବାଣ୍ଡି, ତୁମ୍ବ—
Tumi The nave of a wheel.

ତୁମୁଡ଼ୀ—ଦେ. ବି—ତୁମଡ଼ୀ ( ଦେଖ )
Tumurdi Tumardi ( See )

ତୁମୁଲ— ସଂ. ବିଣ ଓ ବି (ତୁ ଧାତୁ=ବଧ କରିବା+ଅଧିକରଣ ଓ କର୍ମ.
Tumula ମୁଲ)—ତୁମୂଳ ( ଦେଖ ) Tumūla ( See )

ବନ୍ଧବର୍ଗ ଯୁଦ୍ଧ ତୁମୁଳ କରିବେ ମୃତ୍ୟୁ ସମ୍ମୁଖେ ଅଗ୍ରେ ତୁମୁଳ—
ଉପ. ବୈଦେହୀଶବିଳାସ।

ତୁମୂଳ— ସଂ. ବିଣ (ତୁ ଧାତୁ=ବଧ କରିବା+କର୍ମ. ମୂଳ)—
Tumūla ୧। କୋଳାହଳ ଗୋଳମାଳ ପୂର୍ଣ୍ଣ—1. Tumultuous.
୨। ଅତ୍ୟଧିକ—2. Excessive.
୩। ଭୟଙ୍କର; ଭୟାନକ—3. Dreadful; terrible.
୪। ଉଗ୍ର; ଅତି ପ୍ରବଳ—4. Violent.
୫। ଘୋର—5. Serious; grave.
ବି—(+ଅଧିକରଣ. ମୂଳ)—୧। ମାରପିଟ—1. Brawl; affray
୨। କଳହ—2. Quarrel.
୩। ଗଣ୍ଡଗୋଳ—3. Uproar; tumult.
୪। ଯୁଦ୍ଧ—4. Conflict; fighting.
୫। ଯୁଦ୍ଧରେ ପରସ୍ପରବିରୋଧୀ ବହୁ ସୈନ୍ୟଙ୍କ ଗହଳ ଚହଳ—5. Bustle created by the movement of opposing soldiers in a fight
୬। ବାହାଡ଼ା ଗଛ (ଷ୍ଟ. ଶବ୍ଦସାଗର)—
6. Beleric Myrobalan.

ତୁମେ—ଦେ. ସର୍ବନାମ (ଏକବଚନ ଓ ବହୁବଚନ; ପରଚିତ ବ୍ୟକ୍ତିଙ୍କ ପ୍ରତି
Tume ବ୍ୟବହୃତ; ସଂ. ଯୁଷ୍ମଦ୍ ଶବ୍ଦର ପ୍ରଥମା ବିଭକ୍ତି ୧ ବଚନ
तुमि ତ୍ୱଂ; ପ୍ରା. ତୁମ୍ହେ)—ତୁମ୍ଭେ ( ଦେଖ )
तुम Tumbhe ( See )
[ ଏ ଶବ୍ଦର ଗ୍ରାମ୍ୟ ରୂପ ତମେ, ତୁମେ, ତେମେ ]

ତୁମେ ଗୁଡ଼ାକ—ଦେ.ସର୍ବନାମ (ଅନାଦରାର୍ଥକ ବହୁବଚନ)—ତୁମ୍ଭମାନଙ୍କ
Tume gurdāka ପର ନଗଣ୍ୟ ଲୋକମାନେ, ନଗଣ୍ୟ ତୁମ୍ଭେମାନେ
তুমরাসব, तुमलोगों You fellows.

ତୁମେ ମାନେ—ଦେ. ସର୍ବନାମ (ବହୁବଚନ)—ତୁମ୍ଭେମାନେ—
Tumemāne (ତୁମେ ସବୁ—ଅନ୍ୟରୂପ) (plural) You.

ତୁମ୍ପୁଡ଼ା—ଦେ. ବିଣ (ସଂ. ସଙ୍କୁଚିତ)—୧। ଶୁଷ୍କ—
Tumpurdā 1 Withered.
(ତୁଂପୁଡ଼ା—ଅନ୍ୟରୂପ) ୨। ସଙ୍କୁଚିତ; ସେମେଟା—
2. Contracted; wrinkled; shrunk.

ତୁମ୍ବ୍ (ଧାତୁ)—ସଂ—୧। ବଧ କରିବା—1. To kill.
Tumb (root)
୨। କଷ୍ଟ ଦେବା—2. To distress; to trouble.
୩। ଆଘାତ କରିବା—3. To hurt.

ତୁମ୍ବ—ସଂ. ବି (ତୁମ୍ବ୍ ଧାତୁ+କର୍ମ. ଅ)—୧। ଲାଉ; ଅଲାବୁ—
Tumba 1 White gourd; Lagenarea Vulgaris.
୨। ମିଠା ଲାଉ—2. Bottle gourd.
୩। ବୀଣା—3 Harp.
୪। ସିତାର ଆଦି ଯନ୍ତ୍ରର ଲାଉ—The bulb of a guitar or harp.
୫। କମ୍ବୀ; କଇଁଚ କାକୁଡ଼ି (ଦ୍ରବ୍ୟଗୁଣ)—5. Kaĩnchi kākurdi (See)
ଦେ. ବି—୧। ଧାନ୍ୟାଦି ମାପିବାର ପାତ୍ର—1. A measure for corn.
୨। ବଡ଼ ଗଛର ଗଣ୍ଡିକୁ ଗଡ଼ କରି ସେହି ଗଡ଼ରେ କମ୍ବା ଗୋଟିଏ ବଡ଼ ଘଡ଼ିରେ ଗୋଟିଏ ଗଭୀର ଛିଦ୍ର କରି ସେ ଛିଦ୍ରରେ ବାରୁଦ ଭର୍ତ୍ତି କରି କରାଯିବା ଘଡ଼ିବାଣ—
2. A kind of fire work.
୩। ଶଗଡ଼ ଚକର ବାଣ୍ଡି—
3. The hub of a wheel.

ତୁମ୍ବକ—ସଂ. ବି—ତୁମ୍ବ ( ଦେଖ )
Tumbaka Tumba ( See )

ତୁମ୍ବର—ସଂ. ବି—୧। ତୁମ୍ବୁରୁ ( ଦେଖ )
Tumbara 1. Tumburu ( See )
୨। ବାଦ୍ୟବିଶେଷ—
2. A kind of musical instrument (Apte).

ତୁମ୍ବରୁ—ସଂ. ବି—ତୁମ୍ବୁରୁ ( ଦେଖ )
Tumbaru Tumburu ( See )

ତୁମ୍ବା—ଦେ. ବି. ( ସଂ. ତୁମ୍ବ; ତୁମ୍ବକ )—
Tumbā ୧। ଶୁଖିଲା ଲାଉ ଖୋଳର ପାତ୍ର; ଲାଉ ଥାଳ—
তুবড়ী 1. A bowl made from a gourd; the
तुमड़ी, तुंबा hollow shell of a gourd.
୨। ବୀଣାଦି ଯନ୍ତ୍ରର ବାଣ୍ଡି ବା ପାତ୍ର—2. The gourd or bowl or bulb at the back of a guitar or other stringed instrument.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଈ | ଊ | ଋ,ୠ | ଌ | ଐ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ୬ | ଶ,ଷ | କ୍ଷ | ଇଯ୍ବ | ଡ଼ିଅ | ଯ |
| ୨ | ଇ | ଉ | ରୁ | ଲୁ | ଏ | ଅକାରାନ୍ତ ବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଅ | ଓ | ନ |

୩ । ବାଇଁ; ତୁଗୀ—
3. The left-hand-piece of a double-drum.

୪ । ଯୋଗୀ ଥାଳ—4. Begger's bowl.

୫ । ଲାଉ ତୁମ୍ବିର ମୁହଁରେ ନଳ ଖୁଞ୍ଚା ଯାଇ ତିଆର କରାଯିବା ଫୁଙ୍କା ବାଜା—5. A kind of musical pipe made of bottle gourd; bagpipe.

୬ । ପିତା ଲାଉ ( ହି. ଶବ୍ଦସାଗର )—
6. Bitter gourd.

୭ । ନଦୀ ଓ ଜଳାଶୟ କୂଳରେ ମନକୁ ଉଠିବା ଏକପ୍ରକାର ଧାନ ( ହି. ଶବ୍ଦସାଗର )—7. A kind of paddy growing wild on the banks of tanks and rivers.

ତୁମ୍ବି—ସଂ. ବି—ତୁମ୍ବ ( ଦେଖ )
Tumbi Tumba ( See )

ତୁବଡ଼ୀ ଦେ. ବି—୧ । ଏକପ୍ରକାର ବାଣ; ବଡ଼ ଘଣ୍ଡ ବାଣ—
तुमड़ी 1. A firework having powder pushed inside a ball or hole made in the feled trunk of a big tree.

[ ଦ୍ର—ଛୋଟ ମୁହଁ ଥିବା ମୋଟ ମାଟି ଘଡ଼ି ମଧ୍ୟରେ ବାରୁଦ ଚୂନ ତହିଁ ସଙ୍ଗେ ଲୁହାର ସରୁ ଗୁଣ୍ଡ ଭରତି କରାଯାଇ ଯେଉଁ ବାଣ ତିଆର ହୁଏ ତାକୁ ତମ୍ବା ବା ଘଡ଼ିବାଣ ବା ତୁମ୍ବି ବୋଲି ଯାଏ । ଏ ଘଡ଼ିର ମୁହଁରେ ନିଆଁ ଲଗାଇଲେ ଲୁହା ଚୂନା ଅଗ୍ନି ସଂଯୋଗରେ ଅଗ୍ନିମୟ ଚମ୍ପାଫୁଲ ଆକାରରେ ଫୁଟିଯାଇ ଉପରକୁ ଉଠେ । ଲାଉତୁମ୍ବା ଆକାରର ବଡ଼ ମାଟି ଘଡ଼ିରେ ବାରୁଦ ଓ ଲୁହା ଗୁଣ୍ଡ ଚୂନ ତିଆର କରାଯିବା ବାଣକୁ ତୁମ୍ବି ବୋଲିଯାଏ । ବର, ତିନ୍ତୁଳି ଆଦି ଗଛର ଗଣ୍ଡିକୁ ଗଡ଼ କରି କାଟି ଆଣି ତାକୁ ଭୂମିରେ ପକାଇ ତାହା ମଝିରେ କହାଣକ୍ବାରା ୧ ଫୁଟ ଗଭୀର ଗୋଲ ଗର୍ତ୍ତ କରାଯାଏ । ସେ ଗର୍ତ୍ତରେ ବାରୁଦ ଓ ଲୁହା ଗୁଣ୍ଡ ଖୁବ୍ ଖୁନ୍ଦା ଯାଏ ଓ ଖୁବ୍ ମାଡ଼ ଦେଇ ତା ମୁହଁରେ ଗୋଟିଏ ଛୋଟ କଣା ରଖା ଯାଏ । ସେହି ମେଳ ମୁହଁରେ ଅଗ୍ନି ସଂଯୋଗ କଲେ ସେ ବାରୁଦ ଓ ଲୁହା ଗୁଣ୍ଡର ଅଗ୍ନି ସ୍ଫୁଲିଙ୍ଗ ୩୦।୪୦ ଫୁଟ ଉଚ୍ଚକୁ ଉଠେ ଓ ଖୁବ୍ ଗର୍ଜନ ହୁଏ । ଏହି ବାଣକୁ ତୁମ୍ବ ବୋଲିଯାଏ । ଛୋଟ ତୁମ୍ବକୁ ତୁମ୍ବି ବୋଲିଯାଏ । ]

୨ । ଶସ୍ୟାଦି ମାପିବା ପାତ୍ରବିଶେଷ—
2. A measure for corn.

୩ । ତୁମ୍ବା ( ଦେଖ )—3. Tumbā ( See )
ତୁମ୍ବି ଖାଏ ଲାଜ ଚର୍ମ କାନରେ—ପ୍ରାଚୀ. ପରଚେତୀତ ।

ତୁମ୍ବୀ—ସଂ. ବି. ( ତୁମ୍ବ୍ ଧାତୁ + ସଞ୍ଜ୍ଞାର୍ଥେ. ଇ )—ତୁମ୍ବ ( ଦେଖ )
Tumbī Tumba ( See )
( ତୁମ୍ବିକା—ଅନ୍ୟରୂପ ) ଏତେ କହୁଅଛି ତୁମ୍ବୀ (୧) ଅବଲମ୍ବ ସେ କାଳରେ କରେ କରିବ—ଉପେ. ପ୍ରେମସୁଧାନିଧି ।

ଦେ. ବି—ତୁମ୍ବି ( ଦେଖ )—Tumbi ( See )
କବ କରଇଲ ବଡଲ ହେଲ ତୁମ୍ବୀ ଭୂଇଁଲ
ନ ଚୂନ ଶୀଇଲ ସକଳ ଉପରେ ଯା ଉଡ଼ିଲ—ଉପେ. ଲାବଣ୍ୟବତୀ ।

ତୁମ୍ବଡ଼ୀ—ଦେ. ବି—ଏକପ୍ରକାର ବିଷାକ୍ତ କୀଟ—
Tumbarḍi A kind of poisonous insect.

ତୁମ୍ବୁକ—ସଂ. ବି—ଲାଉ ( ହି. ଶବ୍ଦସାଗର )—
Tumbuka Gourd.

ତୁମ୍ବୁର—ଦେ. ବି—ଅନଦ୍ଧ ବାଦ୍ୟବିଶେଷ; ବଡ଼ଢୋଲ—
Tumbura A bigdrum.

ତୁମ୍ବୁରୁ—ସଂ. ବି. ପୁଂ. ( ତୁମ୍ବ୍ ଧାତୁ + ଉର )—କୁକୁର—
Tumburā ( ତୁମ୍ବୁରୀ—ସ୍ତ୍ରୀ ) Dog.

ତୁମ୍ବୁରୀ - ସଂ. ବି. ସ୍ତ୍ରୀ. ( ତୁମ୍ବୁର + ଈ )—୧ । ଧନିଆ—
Tumburī 1. Coriander.

୨ । କୁକୀ; ମାଈକୁକୁର—2 Bitch

ତୁମ୍ବୁରୁ—ସଂ. ବି. ( ତୁମ୍ବ୍ ଧାତୁ + ଉରୁ )—୧ । ଗନ୍ଧର୍ବବିଶେଷ—
Tumburu 1. Name of a heavenly chorister
ତୁମ୍ବୁରୁ ତାହା ଦେଖି ସହି ନ ପାରିଲେ
ଏକଣ ତାମ୍ରବର୍ଣ୍ଣ ଘୋଡା ଅଣାଇଲେ—କୃଷ୍ଣସିଂହ. ମହାଭାରତ. ସଭା ।

[ ଦ୍ର—ଏ ସଙ୍ଗୀତ ବିଦ୍ୟାରେ ବିଶେଷ ପାରଦର୍ଶୀ ଥିଲେ ଓ ତୁମ୍ବୁରୁ ବାଦ୍ୟ ଆବିଷ୍କାର କରିଥିଲେ । ଏ ଚୈତ୍ର ମାସରେ ସୂର୍ଯ୍ୟଙ୍କ ରଥରେ ଅବସ୍ଥାନ କରନ୍ତି । ଏ କୁବେରଙ୍କର ଜଣେ ପ୍ରିୟ ପାର୍ଶ୍ୱଚର—ହି. ଶବ୍ଦସାଗର । ]

୨ । ବୃକ୍ଷବିଶେଷ—2. Name of a tree.

तेजबल ୩ । ନାରଙ୍ଗାଦି ବର୍ଗର ଛୋଟ କଣ୍ଟକୀ ତରୁବିଶେଷ—
3. Xanthoxylum Alatum.

[ ଦ୍ର—ଏହାର କାଠ ଧଳା । ପତ୍ର ଘନ, ପତ୍ରର ଡେଙ୍ଗରେ ପକ୍ଷ ଅଛି । ଫୁଲ ହଳଦିଆ ଓ ଛୋଟ । ପୁଂ. ଓ ସ୍ତ୍ରୀ. ବୃକ୍ଷ ପୃଥକ୍ । ଫଳ ପାଚିଲେ ଫାଟି ଯାଏ । ମଞ୍ଜି ଉଜ୍ଜ୍ୱଳ କୃଷ୍ଣବର୍ଣ୍ଣ । ଏହା ନେପାଳୀ ଧନିଆଁ ନାମରେ ବଜାରରେ ବିକି ହୁଏ । ଶୂଳଘ୍ନ ବୋଲି ଏହା ଔଷଧରେ ଲାଗେ । ହିମାଳୟ ଓ ଖାସିଆ ପାହାଡ଼ରେ ଏ ଗଛ ଜନ୍ମେ । ଏହାର ଦେଖିବାକୁ ଧନିଆ ମଞ୍ଜି ପରି । ଏହା ଭାରି କଟୁ (ରାଗୁଆ) ଓ ଏହାକୁ ପାଟିରେ ପକାଇଲେ ପାଟି ଝୁଞ୍ଜୁଣୁ ହୁଏ ଓ ପାଟିରୁ ଖୁବ୍ ଲାଳ ବହେ । ଦାନ୍ତ ଦରଜ ହେଲେ ଲୋକେ ଏହାକୁ ପାଟିରେ ଚାକନ୍ତି । ବୈଦ୍ୟଶାସ୍ତ୍ରମତରେ ଏହା ଗରମ, କଡ଼ୁଆ, ଅଗ୍ନିଦୀପକ ଏବଂ କଫ, ବାତ ଓ ଶୂଳ ଦୂର କରେ । ]

୪ । ଋଷି ବିଶେଷ—4. Name of a sage.

୫ । ଧନିଆଁ ( ହି. ଶବ୍ଦସାଗର )—5. Coriander.

ଦେ. ବି—ବଡ଼ଢୋଲ ବାଜା—Big drum.

ତୁମ୍ବ—ଦେ. ବି—୧ । ଶକଟାଦି ଚକ୍ରର ମଧ୍ୟସ୍ଥଳ; ଶଗଡ଼ ଚକର ହାଣ୍ଡି—
Tumbha 1. The centre or nave of a wheel; the hub of a wheel.
ତୁବଡ଼ୀ

ସାଧାରଣ ଲୋକେ ଅପର ପୃଷ୍ଠାରେ ଦେଖାଇଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ, 'ବଧୂ' ନ ପାଇଲେ 'ବଧୁ' ଦେଖିବେ 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ୍ଟ ଦେଖିବେ

**ତୁମଡୀ** ୨ । କାଠର ବଡ଼ ଗଡ଼ ମଧ୍ୟରେ ଗଭୀର ଗର୍ତ୍ତ କରି ତହିଁ (ତୁମ୍ବ—ଅନ୍ୟରୂପ) ମଧ୍ୟରେ ବାରୁଦ ଖୁନ୍ଦି ଭିଆର କରାଯିବା ବାଣ- 2. A firework made by pushing gunpowder into a deep hole dug in a log of wood.

[ ଦ୍ର—ବର କନ୍ୟା ଭେଟୁଳର ଗଡ଼କାଠରେ ୩।୪ ଇଞ୍ଚ ବ୍ୟାସରେ ଗୋଟିଏ ଗୋଲକାର ଗାତ ଖୋଳାଯାଏ; ଆଉ ପାଖ ଯୁଡ଼ିବାକୁ ପ୍ରାୟ ୪ ଅଙ୍ଗୁଳ ବାକି ଥାଏ, ତଳ ପାଖର ବାକି ଅଂଶରେ ଲୁହା ଭର୍ତ୍ତା ଦ୍ୱାରା ଗୁଡ଼ା ଅଙ୍ଗୁଳ ମୋଟରେ ଗୋଟିଏ କଣା କରାଯାଏ । ସେହି କଣାକୁ ଛୁଞ୍ଚା କନା ଦ୍ୱାରା ବା ଛୋଟ ଦଉଡ଼ିର ବତା ଦ୍ୱାରା ବନ୍ଦ କରାଯାଏ । ପରେ ବଡ଼ ଗାତରେ ଅଙ୍ଗୁଳକର ୩ ଭାଗରୁ ଭାଗେ ପରିମାଣରେ ମାଟି ପକାଇ ଗାଞ୍ଜିଦ୍ୱାରା (ଯେଉଁ କାଠ ଖଣ୍ଡର ମାପରେ ଗାତ ଖୋଳା ଯାଇ ଥାଏ ତାହାଦ୍ୱାରା) ଖୁନ୍ଦି ପୁଣି ଭର୍ତ୍ତାର ଦ୍ୱାରା ପୂର୍ବୋକ୍ତ କଣା ସହିତ ସମାନ କରି କଣା କରାଯାଏ । ସେ ଗାତରେ ବାରୁଦ ଭର୍ତ୍ତି ହୋଇ ଖୁନ୍ଦା ଯାଏ । ତା ଉପରେ ଗାତର ମୁହଁର ବ୍ୟାସ ପରିମାଣରେ ମାଟିର ପ୍ରସ୍ଥ ଦିଆଯାଇ ବାଡ଼ିଆ ଯାଏ । ସେ ମାଟିକୁ ମାଟିକଲ ବୋଲାଯାଏ । ସେ ମାଟି-କଲ ଠାଣ ହୋଇ ବାଡ଼ିଆ ହେଲା ପରେ ଗଡ଼କୁ ଲେଉଟାଇ ଛିଦ୍ର ମୁହଁକୁ ବନ୍ଧା କଢ଼ାଯାଏ ଓ ସେ କଣାରେ ସାମାନ୍ୟ ବାରୁଦ ଭର୍ତ୍ତି କରାଯାଇ ଛିଦ୍ର ମୁହଁରେ ନିଆଁ ଲଗାଯାଏ । ]

ତୁମାର ସର୍ବନାମ—ତୁମ୍ଭର ( ଦେଖ )
**तुमारा** Tumbhara See )

**ତୁମ୍ଭ ତହିଁ**—ଦେ. (ପ୍ରାଚୀନ) ସର୍ବନାମ—ତୁମ୍ଭଠାରେ ( ଦେଖ )
Tumbha tahiñ In you ( See )
ତୋମାତେ **तुमसे**

**ତୁମ୍ଭ ତହୁଁ**—ଦେ. (ପ୍ରାଚୀନ) ସର୍ବନାମ—୧ । ତୁମ୍ଭଠାରୁ—
Tumbha tahuñ 1. From you.
(ତୁମ୍ଭଠୁଁ—ଅନ୍ୟରୂପ) ୨ । ତୁମ୍ଭ ଅପେକ୍ଷା—2. Than you.
ତୋମା ଥେକେ **तुमसे**

**ତୁମ୍ଭନ୍ତ**—ଦେ. ( ପ୍ରାଚୀନ ପ୍ରୟୋଗ ) ସର୍ବନାମ. —ତୁମ୍ଭଙ୍କୁ—
Tumbhanta To you.

**ତୁମ୍ଭ ପାତିଆ**—ଦେ. ବି—ଶଗଡ଼ଚକ୍ରର ଗୁଡ଼ି ପାଖେ ଲଗାଯାଇଥିବା
Tumbha pātiā ଲୁହାର ବଳା—Iron ring put round the hub of a wheel.

**ତୁମ୍ଭ ବାଡ଼ିଆ**—ଦେ. ବି—ତୁମ୍ଭରେ ବାରୁଦ ଖୁନ୍ଦା କର୍ମ—
Tumbha bārdiā Pushing or ramming of gunpowder into the hole of a log of wood.

**ତୁମ୍ଭ ବାଡ଼େଇବା**—ଦେ. କ୍ରି—ତୁମ୍ଭରେ ବାରୁଦ ଖୁନ୍ଦିବା—
Tumbha bārdeibā To push or ram gunpowder into a log-hole.

**ତୁମ୍ଭର**—ଦେ. ସର୍ବନାମ ( ତୁମ୍ଭେ ଶବ୍ଦର ୬ଷ୍ଠୀ ବିଭକ୍ତି ଏକ ବଚନ )—
Tumhhara ଆପଣଙ୍କର—Your.
(ତୁମ୍ଭର—ଅନ୍ୟରୂପ) କେ ଅଛି ନିଷ୍ଠାନେ ଧନ ପ୍ରାଣ ମାୟା ତେଜି
ତୋମାର, ତୋମାରି ତୁମ୍ଭଙ୍କୁ ତୁମ୍ଭର ଲାଗି ଭଜିବ ଏ ଭବେ ।
**तुम्हारा** ଜଗନ୍ନାଥ. ମହାଯାତ୍ରା ।

**ତୁମ୍ଭରେ**—ଦେ. (ପ୍ରାଚୀନ ପଦ୍ୟ) ସର୍ବନାମ—୧ । ତୁମ୍ଭଠାରେ—
Tumbhare 1. With you; in you.
ତୋମାତେ ୨ । ତୁମ୍ଭ ନିକଟରେ—2. Near you.
**तुमसे**

**ତୁମ୍ଭେ**—ଦେ. ସର୍ବନାମ ( ସଂ. ଯୁଷ୍ମଦ୍ ଶବ୍ଦ. ୧ମା. ୧ବ. ତ୍ୱଂ. ପ୍ରା. ତୁମ୍ହେ;
Tumbhe ଆଦରାର୍ଥେ ଓ ଅତ୍ୟନ୍ତ ପରିଚିତ ସ୍ଥଳରେ) ୨ୟ
ତୁମି ପୁରୁଷ; ଏକ ବଚନ—You.
**तुम** [ ଦ୍ର—ସଂ. ଯୁଷ୍ମଦ୍, ଓ. ତୁମ୍ଭେ ଶବ୍ଦର ରୂପ :—

| | ଏକ ବଚନ | ବହୁବଚନ |
|---|---|---|
| ୧ମା— | ତୁମ୍ଭେ | ତୁମ୍ଭେମାନେ |
| ୨ୟା— | ତୁମ୍ଭଙ୍କୁ | ତୁମ୍ଭମାନଙ୍କୁ |
| ୩ୟା— | ତୁମ୍ଭ ଦ୍ୱାରା | ତୁମ୍ଭମାନଙ୍କ ଦ୍ୱାରା |
| ୫ମୀ— | ତୁମ୍ଭଠାରୁ | ତୁମ୍ଭମାନଙ୍କଠାରୁ |
| ୬ଷ୍ଠୀ— | ତୁମ୍ଭ, ତୁମ୍ଭର | ତୁମ୍ଭମାନଙ୍କର |
| ୭ମୀ— | ତୁମ୍ଭରେ, ତୁମ୍ଭଠାରେ | ତୁମ୍ଭମାନଙ୍କଠାରେ, |

**ତୁମ୍ହର**—ପ୍ରାଦେ. (ଭଜିଭାଷା) ସର୍ବନାମ—ତୁମ୍ଭର—.
Tumhara Your; yours.

**ତୁମ୍ହି**—ପ୍ରାଦେ. (ଭଜିଭାଷା) ସର୍ବନାମ—ତୁମ୍ଭେ—
Tumhi You.

**ତୁୟ**—ପ୍ରାଦେ. (ଭଜିଭାଷା) ସର୍ବନାମ—ତୁ—
Tuya You.

**ତୁର ତୁର**—ଦେ. ବଣ—ତୁରୁ ତୁରୁ ( ଦେଖ )
Tur tur Turu turu ( See )

**ତୁରତୁରିଆ**—ଦେ. ବଣ—ତୁରୁତୁରିଆ ( ଦେଖ )
Tur-turiā Turuturiā ( See )

**ତୁରପା**—ଦେ. ବି. ( ସଂ. ତଳ+ଉପର )—
Tur-pā ତାଗା ଗଳା ସିଧା ସିଲେଇ—
ତୁରପା Straight single stitching.
**तुरपन** ( ଦ୍ର—ଏହା କଞ୍ଚିଆ ସିଲେଇର ବିପରୀତ । )

**ତୁରପିବା**—ଦେ. କ୍ରି. ( ଯା )—
Tur-pibā ତାଗା ଗଳାଇ ସିଲେଇ କରିବା—
ତୁରପା To make long single stitches.
**तुरपना**

**ତୁର**—ଦେ. କ୍ରି. ବିଣ. ( ସଂ. ତ୍ୱର )—ଶୀଘ୍ର; ଚଞ୍ଚଳ—
Tura Quickly.
ବି. ( ସଂ. ତୂର୍ଯ୍ୟ ) ତୂରୀ; କାହାଳୀ—Trumpet.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଳ | ଙ | ଋ,ଋ | ଁ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇ | ଐ | ଈ |
| ୨ | ଐ | ଊ | ଝ | ଲୃ | ତ୍ର | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟ୍ୟ | ଇଅ | ଓ | ଢ଼ |

ସ. ବ—ବେଗ—Speed; velocity.

ତୁରକ୍—ବୈଦେ. ବ ଓ ବଣ. ( ଫା. ତୁର୍କ୍; ତଲ. ସ. ତୁରୁଷ୍କ; ଇଂ. ଟର୍କ )—ତୁର୍କ ( ଦେଖ )—Turka ( See )
Turak
তুরক ତୁରକମାନେ ହୁଇ ତାହାଙ୍କୁ ସଙ୍କଟ ପକାଇଲେ ।
तुरक ଫକୀରମୋହନ. ଗଳ୍ପସ୍ୱଳ୍ପ ।

ତୁରକ୍ ସବାର୍—ବୈଦେ. ବ. (ଇଂ ଟ୍ରୁପର୍=ଅଶ୍ୱାରୋହୀ ସୈନିକ)—
Turak sabār ୧ । ରାଜାଙ୍କର ଅଶ୍ୱାରୋହୀ ଦେହରକ୍ଷୀ ସୈନିକ—1. A king's body-guard riding on a horse.
তুরক শওয়ার
तुर्कसबार
(ତୁରକ୍ ସୱାର୍—ଅନ୍ୟରୂପ) ୨ । (ଫା. ତୁର୍କ୍=ତୁର୍କଦେଶୀୟ +ଶବାର୍=ଘୋଟକାରୋହୀ )—ତୁର୍କଦେଶୀୟ ମୁସଲମାନ୍ ଅଶ୍ୱାରୋହୀ ପଲ୍ଟଣ—2. A Mahomedan cavalry officer; a Turk trouper or horse-man.

ତୁରକୀ—ଦେ. ବ. ଓ ବଣ—ତୁର୍କୀ (ଦେଖ)
Turaki Turkī (See)

ତୁରଗ—ସଂ ବ. ପୁ. (ତ୍ୱର+ଗମ୍ ଧାତୁ+କର୍ତ୍ତ୍ରି. ଅ; ନିପ.ତନ. )—
Turaga ୧ । ଘୋଟକ; ଅଶ୍ୱ; ଘୋଡ଼ା—1. Horse.
(ତୁରଗୀ—ସ୍ତ୍ରୀ)
୨ । ମନ; ଚିତ୍ତ—2. The mind.
୩ । ସାତ ସଂଖ୍ୟା—3. The number seven.

ତୁରଗ ଦାନବ—ସ. ବ.—ଅଶ୍ୱାକୃତି ରାକ୍ଷସବିଶେଷ—
Turaga dānaba Name of a demon in the shape of a horse.
[ଦ୍ର—କେଶୀନାମକ ଦାନବ କଂସର ଆଦେଶ ଅନୁସାରେ କୃଷ୍ଣଙ୍କୁ ମାରି ପକାଇବାକୁ ଅଶ୍ୱରୂପ ଧାରଣ କରିଥିଲା, କିନ୍ତୁ କୃଷ୍ଣ ତାକୁ ବଧ କଲେ ।]

ତୁରଗବକ୍ତ୍ର—ସ.ବଣ.(ବହୁବ୍ରୀହି; ତୁରଗ+ବକ୍ତ୍ର)—ତୁରଗାନନ(ଦେଖ)
Turaga baktra Turagānana (See)
ସ. ବ.—କିନ୍ନର (ଦେଖ)—Kinnara (See)
(ତୁରଗବଦନ, ତୁରଗାନନ—ଅନ୍ୟରୂପ)

ତୁରଗ ବ୍ରହ୍ମଚର୍ଯ୍ୟ—ସ. ବ. (୬ଷ୍ଠୀ ତତ୍; ତୁରଗ+ବ୍ରହ୍ମଚର୍ଯ୍ୟ)—ସ୍ତ୍ରୀ
Turaga brahmacharjya ଅଭାବରୁ ମନୁଷ୍ୟ ବାଧ୍ୟହୋଇ ଯେଉଁ ବ୍ରହ୍ମଚର୍ଯ୍ୟ ଅବଲମ୍ବନ କରେ (ହି. ଶବ୍ଦସାଗର)—Continence observed by a person for the sole reason that he gets no woman to satisfy his lust.

ତୁରଗ ଶାଳା—ସ. ବ.—ଘୋଡ଼ାଶାଳ; ଅସ୍ତାବଲ୍—
Turaga śālā Stable.

ତୁରଗ ସାଦୀ—ସ. ବ. (ତୁରଗ+ସଦ୍ ଧାତୁ+ଇନ୍; ୧ମା ୧ବ)—
Turaga sādī ଅଶ୍ୱାରୋହୀ ସୈନ୍ୟ—Horse-man; cavalier.

ତୁରଗାନନ—ସ. ବଣ. ( ବହୁବ୍ରୀହି )—ଘୋଟକମୁଖ; ଘୋଡ଼ାମୁହାଁ;
Turagānana ଯାହାର ମୁହଁ ଘୋଡ଼ାପରି—
Having a face like that of a horse.
ସ. ବ.—କିନ୍ନର (ଦେଖ)—Kinnara (See)

ତୁରଗାରି—ସ. ବ. (୬ଷ୍ଠୀ ତତ୍; ତୁରଗ+ଅରି—କଣଅର (ଦେଖ)
Turagāri Kaṇara (See)

ତୁରଗୀ—ସ. ବ. ପୁଂ—(ତୁରଗ+ଇନ୍; ୧ମା; ୧ବ.)—ଘୋଡ଼ସବାର;
Turagī ଅଶ୍ୱାରୋହୀ—A horseman; horse-rider; a cavalier.
ସ୍ତ୍ରୀ—୧ । (ତୁରଗ+ସ୍ତ୍ରୀ. ଈ)—୧ । ଘୋଟକୀ; ଘୋଡ଼ୀ; ମାଈଘୋଡ଼ା—1. A mare.
୨ । ଅଶ୍ୱଗନ୍ଧା (ଦେଖ)—2 Aśwagandhā (See)

ତୁରଙ୍ଗ (ଇତ୍ୟାଦି)—ସ. ବ. ପୁଂ—ତୁରଗ ଇତ୍ୟାଦି (ଦେଖ)
Turaṅga (etc) Turaga etc (See)
ସ. ବଣ.—ଶୀଘ୍ରଗାମୀ—Swift.
ବୈଦେ. ବ.—(ଇଂ ଟ୍ରଙ୍କ୍) ଟିଣର ବା ଲୁହାର ପେଟେରା—
A tin or steel trunk.

ତୁରଙ୍ଗ ପ୍ରିୟ—ସ. ବ. (୬ଷ୍ଠୀ ତତ୍; ତୁରଙ୍ଗ+ପ୍ରିୟ)—ଯବ; ଯଅ ଧାନ
Turaṅga priya (ହି. ଶବ୍ଦସାଗର)—Barley.

ତୁରଙ୍ଗମ(ଇତ୍ୟାଦି)—ସ. ବ. ପୁଂ—ତୁରଗ ଇତ୍ୟାଦି (ଦେଖ)
Turaṅgama (etc) Turaga etc (See)
ବଣ. ପୁଂ—ବେଗଗାମୀ—Swift.

ତୁରଙ୍ଗୀ—ସ. ବ. ସ୍ତ୍ରୀ. ଓ ପୁଂ—ତୁରଗୀ (ଦେଖ)
Turaṅgī Turagī (See)

ତୁରଞ୍ଜ—ବୈଦେ. ବ. (ଫା. ତରଂଜ୍; ଅ. ତୁର୍ଜ୍)—୧ । ଟଭା ଜାତୀୟ
Turañja ଏକପ୍ରକାର ଫଳ—1. Lemon; Citrus;
ସ. ନାମ—ମାତୁଲଙ୍ଗ, Medica, var. Typica; citron;
ବୀଜପୂର Lunonum (Kirtikar).
ତେ. ନିମ୍ମାପାଣ୍ଡୁ, ନାରଦାବା ୨ । କୁର୍ତ୍ତିର ପିଠିପାଖରେ, ଶାଲର
ଗୁ. ନାରଙ୍ଗି ମ ପଣ୍ଡାମ୍; କଣରେ ଆମ୍ବ ବା ପାନପତ୍ର ଆକାରର
ଏଲୁମିଚ ଚମ୍ପାଙ୍ଗାମ୍ ଛିଅର କୁଣ୍ଡକାମ—2. A needle-
ଗୁ, ବଜୋରୁ, ତୁରଙ୍ଗ୍, work resembling a mango or
ମ. ମହାଲିଙ୍ଗ୍ betel leaf worked on the back
টাবানেবু, ছোলঙ্গ of a coat or the corners of a
तुरंज, बिजौरा, नीबु shawl.

ତୁରନ୍ତ—ଦେ. କ୍ରି. ବଣ.—(ସ. ତ୍ୱରିତ; ତରସ୍=ବେଗ)—
Turanta ୧ । ଅତିଶୀଘ୍ର—1. Quickly.
(ତୁରଂତ—ଅନ୍ୟରୂପ) ବୋଲିବେ ଏ କଥ ତୁରନ୍ତ ମନ୍ତ୍ରୀ ରାଘବଙ୍କ ଆଗେ ନାହିଁ ଯିବୁ
তাড়াতাড়ি, তুরন্ত ଜଗନ୍ନାଥ. ନଉରଣା ।
तुरंत, तुरत ୨ । ହଠାତ୍; ତତ୍କ୍ଷଣାତ୍—
2. Immediately; at once.

ସାଧାରଣ ଲେଖେ ଥାଉ ପୃଷ୍ଠାରେ ପ୍ରଥମ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ଶବ୍ଦ ଖୋଜିଲେ ଯେବେ ସେ ସ୍ଥାନରେ ନ ମିଳିବ, ତେବେ ତହିଁ ନିମନ୍ତେ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ ।

**ତୁରପା**—ଦେ. ବି.—ତୁର୍‌ପା (ଦେଖ)
Turapā Tur-pā (See

**ତୁରପିବା**—ଦେ. କ୍ରି.—ତୁର୍‌ପିବା (ଦେଖ)
Turapibā Tur-pibā (See)

**ତୁରଷ୍କ** - ଦେ. ବି. (ନାମ) (ସ. ତୁରୁଷ୍କ)—୧ । ତୁର୍କୀ ଦେଶ; ଇଉରୋପ
Turashka ଅନ୍ତର୍ଗତ ମୁସଲମାନ ରାଜ୍ୟ ବା ରୁମ୍‌—
1. Turkey.
୨ । ଏସିଆଟିକ ତୁରଷ୍କ —
2. Turkey in Asia or Asia minor.
୩ । ତୁର୍କୀସ୍ଥାନ (ଦେଖ)—3. Turkistan (See)
[ ଦ୍ର—ଆଗେ ଇଉରୋପୀୟ ତୁରଷ୍କ ସୁଲତାନଙ୍କ ଦ୍ୱାରା ଶାସିତ ହେଉଥିଲା । ଏହି ସୁଲତାନ୍ ପୃଥିବୀର ସମଗ୍ର ମୁସଲମାନ ସମାଜର ଧର୍ମଗୁରୁ ବା ଖଲିଫା ଥିଲେ । ବିଗତ ଜର୍ମାନ ସମର ପରେ ମୁସଲମାନମାନେ ସୁଲତାନଙ୍କୁ ସିଂହାସନଚ୍ୟୁତ କରି ବର୍ତ୍ତମାନ ଏ ରାଜ୍ୟରେ ସାଧାରଣତନ୍ତ୍ର ଶାସନ ପ୍ରଣାଳୀ ପ୍ରବର୍ତ୍ତାଇଅଛନ୍ତି । ]

**ତୁରାଣି**(ଣୀ)—ସ୍ତ୍ରୀ. ପ୍ରାଦେ. (ମେଦିନୀପୁର) ବି—ତୋରାଣି (ଦେଖ)
Turāṇi(ṇi) Tordāṇi (See)

**ତୁରାନ୍**—ବୈଦେ.ବି.(ଫା) (ନାମ)—ପାରସ୍ୟର ଉତ୍ତରପୂର୍ବ ମଧ୍ୟଏସିଆର
Turān ଦେଶଖଣ୍ଡ—Turkistan; Turan.
[ ଦ୍ର—ଏହା, ତୁର୍କୀ, ତାତାର, ଓ ମୋଗଲଆଦିଙ୍କ ଆଦିମ ବାସସ୍ଥାନ । ଏହାର ପୂର୍ବରେ ଚୀନ, ପଶ୍ଚିମରେ ଅଲଟାଇ ପର୍ବତ, ଦକ୍ଷିଣରେ ହିମାଳୟ ଓ ହିନ୍ଦୁକୁଶ ଓ ଉତ୍ତରରେ ରୁଷିଆ । ଏ ଦେଶବାସୀଙ୍କ ପ୍ରାଚୀନ ସଂସ୍କୃତ ନାମ ଶକ । ପ୍ରାଚୀନ ତୁରାନୀମାନେ ଅଗ୍ନି ଉପାସକ ଥିଲେ ଓ ପଶୁବଳି ଦେଉଥିଲେ । ଏମାନେ ପୂର୍ବେ ସମଗ୍ର ଇଉରୋପ, ଏସିଆ ଓ ଭାରତକୁ ଆକ୍ରମଣ କରୁଥିଲେ । ଚେଙ୍ଗିସ୍ ଖାଁ, ତୈମୁର୍ ଓ ଉସ୍‌ମାନ୍ ପ୍ରଭୃତି ଏହି ଦେଶୀୟ ଥିଲେ (ହି. ଶବ୍ଦସାଗର) । ]

**ତୁରାଣୀ**—ପ୍ରାଦେ. (ସମ୍ବଲପୁର, ମେଦିନୀପୁର) ବି—ତୋରାଣୀ—
Turāṇi Cold rice gruel.
ବୈଦେ. ବିଣ. (ଫା)—ତୁରାନ ଦେଶବାସୀ—
Turanian.

**ତୁରାଷାଟ୍**—ସ. ବି. (ତୁର—ବେଗ+ସହ. ଧାତୁ+କର୍ତ୍ତୃ. କ୍ୱିପ୍)—
Turāsāṭ ଦେବରାଜ ଇନ୍ଦ୍ର—An epithet of Indra.
(ତୁରାଷାଡ୍, ତୁରାଷାଢ଼—ଅନ୍ୟରୂପ)

**ତୁରି**—ସ. ବି. (ତୁର ଧାତୁ+କର୍ତ୍ତୃ. ଇ)—୧ । ତନ୍ତୁବାୟର ମାକୁ ବା
Turi କଣ୍ଡା—1. A shuttle (used in weaving).
୨ । ଚିତ୍ରକରର ତୂଳି—2. Painter's brush.
୩ । ବାଦ୍ୟଯନ୍ତ୍ର ବିଶେଷ—
A kind of musical instrument.
୪ । ଯୁଦ୍ଧାସ୍ତ୍ରବିଶେଷ—
4 A kind of military weapon.

ତୁରି ଦେ. ବି. (ସ. ତୂର୍ଯ୍ୟ; ତୂର)—୧ । ବିଗୁଲ୍; ଉଚ୍ଚଧ୍ୱନିଯୁକ୍ତ
तुरही ଧାତୁ ନିର୍ମିତ ଲମ୍ବା ଶିଙ୍ଗା ବିଶେଷ—
1. A bugle; a clarion; trumpet.
[ ଦ୍ର—ଯେଉଁ ଯେଉଁ ବା ବେଳେ ବେଳେ ଧ୍ୱନିକାରୀ ଶିଙ୍ଗାକୁ ଭେଣ୍ଡା ବା ପେଁଏଁକାଳୀ ବୋଲାଯାଏ । ]
ପ୍ରାଦେ. (ସମ୍ବଲପୁର) ବି—ବାଉଁଶ ପାଛିଆରେ ଚୋକେଇ, ଢୋଗେଇ ଆଦି ବୁଣି ବିକି ଖାଇବା ନିମନ୍ତେ କରିବା ଅନାର୍ଯ୍ୟ ଜାତି ବିଶେଷ—A non-aryan caste living on preparing and selling baskets etc with split bamboo.

**ତୁରିତ**—ଦେ. କ୍ରି. ବିଣ. (ସ. ତ୍ୱରିତ)—୧ । ସତ୍ୱର; ଚଞ୍ଚଳ;
Turita ଅତିଶୀଘ୍ର—1. Hastily; in haste; quickly;
ତୁରିତ speedily.
तुरत ତୁରିତେ ଧର ସେହିମତ, କୃଷ୍ଣଙ୍କୁ ଲଭିଲ ତୁରିତ ।
(ତୁରିତେ—ଅନ୍ୟରୂପ) ତୁଳସୀ. ପ୍ରେମପଞ୍ଚାମୃତ ।
୨ । ତତ୍‌କ୍ଷଣାତ୍; ହଠାତ୍—
2. Suddenly; at once; immediately.
ତୁରିତେ ଉଲ୍ଲଙ୍ଘଣାସରିତ ବଢ଼ିଲ ଦମ୍ଭଦ୍ରୁମ ଗଲ ଖସି ।
କବିସୂର୍ଯ୍ୟ. ସଙ୍ଗୀତ ।

**ତୁରୀ**—ସ୍ତ୍ରୀ. ବି—ତୁରି (ଦେଖ)
Turī Turi (See)
ଦେ. ବି—ତୁରି (ଦେଖ)—Turi (See)

**ତୁରୀୟ**—ସ. ବିଣ. (ଚତୁର୍—ଚତୁରଙ୍ଖ୍ୟା+ପୂରଣାର୍ଥ ଛପ୍ର. ଚପାତନ)—
Turīya ୧ । ଚତୁର୍ଥ—1 Fourth.
୨ । (ତ୍ୱର+ଈୟ) ତ୍ୱରାନ୍ୱିତ; ଶୀଘ୍ରଗାମୀ—2. Swift.
୩ । ପରିତ୍ରାଣକାରୀ (ଶବ୍ଦ କଳ୍ପଦ୍ରୁମ)—3 Redeeming.
ବି—୧ । ସମାଧିର ଅବସ୍ଥା ବିଶେଷ (ଯେତେବେଳେ ସାଧକର ଆତ୍ମା ପରମାତ୍ମା ବା ପରଂବ୍ରହ୍ମରେ ସମ୍ମିଳିତ ହୁଏ)—
1. A stage attained in spiritual meditation when the Infinite is attained i. e. when 'God in Man becomes one with Man in God').
[ ଦ୍ର—ବେଦାନ୍ତରେ ପ୍ରାଣୀର ୪ଟି ଅବସ୍ଥା ବର୍ଣ୍ଣିତ ହୋଇଅଛି ଯଥା—ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ । ତୁରୀୟ ଅବସ୍ଥାରେ ଭେଦଜ୍ଞାନ ଲୁପ୍ତ ହୁଏ ଓ ଆତ୍ମା ବ୍ରହ୍ମଚୈତନ୍ୟରେ ଲୀନ ହୁଏ । ]
୨ । ପରଂବ୍ରହ୍ମ—2. The Supreme Being.
୩ । (ବେଦାନ୍ତ ଦର୍ଶନ)—ମାୟାର ଅତୀତ ୪ର୍ଥ ତତ୍ତ୍ୱ—
3. The 4th Essence beyond the worldly illusion (Hindu Philosophy).
୪ । ବେଦ ଅନୁସାରେ ବାଣୀ ବା ବାକ୍ୟର ଏକଶ୍ରେଣୀ—
4. A class of utterance according to the Bedas.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଢ଼ | ଣ,ନ | ଙ୍ | ଞ୍ | ଛ୍ୟ | ଐ |
| ୨ | ଈ | ଊ | ଋୃ | ଌୢ | ସ୍ୱ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଙ୍ଗ୍ୟ | ଛ୍ଥ | ଝ | ଢ଼ |

[ ଦ୍ର—ବେଦରେ ବାଣୀ ବା ବାକ୍ୟକୁ ୪ ଶ୍ରେଣୀରେ ବିଭକ୍ତ କରାଯାଇଅଛି, ଯଥା—୧ ପରା, ୨ ପଶ୍ୟନ୍ତୀ, ୩ ମଧ୍ୟମା, ୪ବୈଖରୀ ବା ତୁରୀୟ । ଯେଉଁ ନାଦାତ୍ମକ ବର୍ଣ୍ଣ ମୂଳାଧାରରୁ ଉଠିଛି ଓ ଯାହା ନିରୂପିତ ହୋଇ ନ ପାରେ ତାହା ପରା; ଯେଉଁ ନାଦକୁ କେବଳ ଯୋଗସାଧକମାନେ ଜାଣି ପାରନ୍ତି ତାହା ପଶ୍ୟନ୍ତୀ । ଯେତେବେଳେ ବାଣୀ ବୁଦ୍ଧିଗତ ହୋଇ କହିବାର ଇଚ୍ଛା ଉତ୍ପନ୍ନ କରେ ତେତେବେଳେ ତାହାର ନାମ ମଧ୍ୟମା । ଯେତେବେଳେ ବାଣୀ ମୁଖ ପର୍ଯ୍ୟନ୍ତ ଆସି ଉଚ୍ଚାରିତ ହୁଏ ତାହା ବୈଖରୀ ବା ତୁରୀୟ—ହି. ଶବ୍ଦସାଗର । ]

ତୁରୀୟ ଜ୍ଞାନ—ସଂ. ବି. (କର୍ମଧା; ତୁରୀୟ+ଜ୍ଞାନ)—ଯେଉଁ ଜ୍ଞାନର Turiya jñāna ଫଳରେ ମନୁଷ୍ୟ ମୁକ୍ତିଲାଭ କରେ— Knowledge through which a person attains salvation or beattitude.

ତୁରୀୟ ବର୍ଣ୍ଣ—ସଂ. ବି—ହିନ୍ଦୁ ଜାତିର ୪ର୍ଥ ବର୍ଣ୍ଣ; ଶୂଦ୍ର ଜାତି— Turiya barṇṇa The 4th or lowest caste; the Sūdra caste

ତୁରୀୟ ବ୍ରହ୍ମ—ସଂ. ବି—ପରଂବ୍ରହ୍ମ— Turiya brahma The Supreme Soul.

ତୁରୀୟ ଯନ୍ତ୍ର—ସଂ. ବି. ( ଜ୍ୟୋତିଷ )—ସୂର୍ଯ୍ୟଙ୍କ ଗତି ଜାଣିବା ପାଇଁ Turiya jantra ବ୍ୟବହୃତ ଯନ୍ତ୍ରବିଶେଷ—Quadrant; an ( ତୁରୀ ଯନ୍ତ୍ର—ଅନ୍ୟରୂପ ) astronomical instrument.

ତୁରୁକ ( ଇତ୍ୟାଦି )—ବୈଦେ. ବି. ଓ ବିଣ—ତୁର୍କ ଇତ୍ୟାଦି ( ଦେଖ ) Turuk ( etc ) Turk etc ( See )

ତୁରୁକା—ପ୍ରାଦେ. ( ବସ୍ତର ) ବି—ଚିତାବାଘ— Turukā A small tiger; leopard.

ତୁରୁକି—ଦେ. ବି—ତୁରସ୍କଦେଶୀୟ ଟାଙ୍ଗଣ ଘୋଡ଼ା— Turuki Turkish pony.

କେତୁ ତୁରୁକି ପିଠିରେ ବସି ଚାଲ ବରଛି ଧରିଛି କରି
କର୍ଣ୍ଣରେ ନସ ଦେଉଛି ଟୋପି ଲମ୍ବିଛି ତାହିଁ ଯେ—
ବ୍ରଜନାଥ, ସମରତରଙ୍ଗ ।

ଦେ. ବିଣ—ତୁର୍କୀ ( ଦେଖ )—Turki ( See )

ତୁରୁଙ୍ଗ—ଦେ. ବି. ( ତୁଳ. ଇଂ. ଟ୍ରଙ୍କ୍ )—୧ । ଅପରାଧୀ ବ୍ୟକ୍ତିକୁ ଦଣ୍ଡ Turuṅga ଦେବା ନିମନ୍ତେ ତାହାର ଗୋଡ଼ ହାତକୁ କାଷ୍ଠ ମଧ୍ୟରୁ ତୁରୁମ; ତୁଡ଼ୁଙ୍ଗ ଛିଦ୍ରରେ ଠୁକି ବନ୍ଦ କରି ରଖିବାର ଯନ୍ତ୍ରବିଶେଷ; ହଡ଼ି ହରକାଠ—1. A pair of stocks for punishing a man.

୨ । ବେଡ଼ି—2. Shackles.

ତୁରୁଙ୍ଗ ଠୁକିବା—ଦେ. କ୍ରି—ଅପରାଧୀ ବ୍ୟକ୍ତିକୁ ହରକାଠରେ ପକାଇ Turuṅga ṭhukibā କୋଲପ ପକାଇବା—To put a man ( ତୁରୁଙ୍ଗ ଠୁକିବା—ଅନ୍ୟରୂପ ) in the stocks.

ତୁରୁଜା—ପ୍ରାଦେ. ( ଜୟପୁର ) ବି—ଜମାଣି ବା ଜମାଖାଡ଼ ମାଛ— Turujā A kind of fresh-water fish.

ତୁରୁଡ଼ା—ପ୍ରାଦେ (ଗଞ୍ଜାମ) ବି—କଇଷ୍ଟକାକୁଡ଼ି— Turuḍā Cephalandra Indica; wild liquorice.

ତୁରୁତିଅ—ଗ୍ରା. ବିଣ (ସଂ. ତୃତୀୟର ଅଶୁଦ୍ଧ ଉଚ୍ଚାରଣ)—ତୃତୀୟ— Turutia Third.

ତୁରୁତିଆ—ଗ୍ରା. ବି. (ସଂ. ତୃତୀୟାର ଅଶୁଦ୍ଧ ଉଚ୍ଚାରଣ) ତୃତୀୟା ତିଥି— Turutiā The 3rd day of a lunar fortnight.
ତୃତିଆ, तीज

ତୁରୁତୁରିଆ—ଦେ. ବିଣ (ସଂ. ତ୍ୱରାନ୍ୱିତ,—୧ । ଚପଳ ସ୍ୱଭାବ— Turuturiā 1. Hasty.
(ତୁରୁତୁରୁଣୀ—ସ୍ତ୍ରୀ) ୨ । ଅସ୍ଥିର—2. Restless.
ব্যস্ত বাগীশ तुरतुरा ୩ । ଅଧୀର—3. Impatient.

ତୁରୁତୁରୁ—ଦେ. ବିଣ (ସଂ. ତ୍ୱରା)—ତରତରିଆ; ଚପଳ; ଅସ୍ଥିର— Turuturu Restless; hasty.

କ୍ରି. ବିଣ—୧ । ତରତର ହୋଇ—1. Hastily.

୨ । ଅତି ଶୀଘ୍ର—2. Very quickly.

୩ । ଅଧୀର ଭାବରେ—3. Impatiently.

ତୁରୁପ(ଫ୍)—ବୈଦେ. ବି (ଇଂ. ଟ୍ରମ୍ପ; ପର୍ତ୍ତୁଗୀଜ୍, ତୁରୁଫୋ)— Turup(ph) ୧ । ଏକପ୍ରକାର ତାସ ଖେଳ; ରଙ୍ଗଖେଳ—
তুরুপ 1. A kind of card play.
तुरुप [ ଦ୍ର—ଏଥିରେ ଯେଉଁ ରଙ୍ଗରେ ତାସ୍ କଟା ହୋଇଥାଏ ସେହି ରଙ୍ଗର ଅଳ୍ପ ମୂଲ୍ୟର ତାସ ପକାଇ ଅନ୍ୟ ରଙ୍ଗର ଉଚ୍ଚ ମୂଲ୍ୟର ତାସମାନଙ୍କୁ ଜିତି ଏକାଠି ନେବାକୁ ହୁଏ । ଏହି ରଙ୍ଗର ତାସକୁ ତୁରୁପ୍ ବୋଲାଯାଏ । ]

୨ । କଟା ହୋଇଥିବା ରଙ୍ଗର ତାସ—
2. Trump card.

ତୁରୁପ୍ କରିବା—ଦେ. କ୍ରି—କଟା ହୋଇଥିବା ରଙ୍ଗର ତାସ ପକାଇ Turup karibā ବଡରଙ୍ଗର ତାସମାନଙ୍କୁ ଜିତିବା—To ruff in card playing.

ତୁରୁପା—ବୈଦେ. ବି (ଫା)—ତୁରପା ( ଦେଖ ) Turupā Turapā ( See )

ଦେ. ବି—ଗୋରୁଙ୍କର ମୁହିଁ ଫାଟିଯିବା ରୋଗ—Mouth disease in cattle.

[ ଦ୍ର—କୌଣସି କୌଣସି ଅଞ୍ଚଳରେ ଏହି ରୋଗକୁ ଫାଟୁଆ ମଧ୍ୟ କୁହାଯାଏ । ]

ତୁରୁପିବା—ଦେ. କ୍ରି—ତୁରପିବା ( ଦେଖ ) Turupibā Turapibā ( See )

ତୁରୁମ (ଇତ୍ୟାଦି)—ତୁରୁଙ୍ଗ ଇତ୍ୟାଦି ( ଦେଖ ) Turuma (etc) Turuṅga etc ( See )

ତୁରୁଷା—ଗ୍ରା. ବି. (ସଂ. ତୃଷା)—ଶୋଷ— Turushā Thirst.

ତୁରୁଷ୍କ—ସଂ. ବି (ତୁର୍+ଅଧିକରଣ ଉସ୍; କ ଯୋଗ)—୧ । ତୁର୍କୀସ୍ଥାନ Turushka ଦେଶ—1. Turkey.

ସାଧାରଣ ଲୋକେ ଅନେକ ସ୍ଥଳରେ ୧ମ ୧ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍କା' ନ ପାଇଲେ 'ଅଙ୍କା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

[ଦ୍ର—ଭାଗବତ ଓ ବିଷ୍ଣୁପୁରାଣରେ ହିମାଳୟର ଉତ୍ତର ପଶ୍ଚିମ-ବାସୀ ତୁରସ୍କ ଜାତି ବୋଲି ସୂଚିତ । ]

୨ । ଅଗାଢ଼ ହରିତ ମଣିବିଶେଷ—
2. Turquois, torquay (a bluish yellow gem).

୩ । ଲୋବାନ୍ (ଏହା ତୁରସ୍କ ଦେଶରୁ ଆସୁଥିବାରୁ)—
3. Olibanum.

୪ । ତୁର୍କୀ ଜାତି—4. Turk.

ତୁର୍କ୍—ବୈଦେ. ବି ଓ ବିଣ—ତୁର୍କୀ ( ଦେଖ )
Turk   Turki ( See )

ତୁର୍କସବାର୍—ବୈଦେ. ବି (ଫା)—ତୁରକ୍‌ସବାର୍ ( ଦେଖ )
Turk-sabār   Turak-sabār ( See )

ତୁର୍କୀ—ବୈଦେ. ବି (ଫା; ସଂ. ନାମ. ତୁରୁଷ୍କ)—୧ । ତୁରସ୍କଦେଶ—
Turki   1. Turkey.

तुर्क, तुरक   ୨ । ତୁରସ୍କ ଦେଶବାସୀ ବ୍ୟକ୍ତି—2. A Turk.

तुर्क, तुरुक, तुरकी   ୩ । ତୁରସ୍କ ସେନା—3. A Turk soldier.

୪ । ତୁରସ୍କ ଦେଶୀୟ ଘୋଡ଼ା—
4. A Turkish or Arab pony.

୫ । ତୁରସ୍କ ଦେଶୀୟ ଭାଷା—
5. The Turkish language.

[ ଦ୍ର—ଇଉରୋପ ମହାଦେଶରେ ଗୋଟିଏ ଦେଶର ନାମ ତୁରସ୍କ ବା ତୁର୍କୀ । ଏହା ପୂର୍ବେ ସୁଲ୍‌ତାନ୍ ଉପାଧିଧାରୀ ରାଜାଙ୍କ ଶାସନାଧୀନ ଥିଲା । ବର୍ତ୍ତମାନ ଏହା ପ୍ରଜାତନ୍ତ୍ର ହୋଇଅଛି । ଏ ଦେଶକୁ ହିନ୍ଦୀରେ ରୂମ୍ ବୋଲାଯାଏ । ଏସିଆ ମହାଦେଶରେ ଥିବା ତୁରସ୍କ ( ଏସିଆଟିକ ତୁରସ୍କ, Turkey in Asia ) ଆରବର ଉତ୍ତର ଓ ପାରସ୍ୟ ରାଜ୍ୟର ପଶ୍ଚିମ । ଏ ଦୁଇ ତୁରସ୍କ ଦେଶର ମଧ୍ୟରେ ମର୍ମରସାଗର ବ୍ୟବହିତ । ]

ବିଣ—୧ । ତୁରସ୍କ ସମ୍ବନ୍ଧୀୟ—1. Pertaining to Turkey.

୨ । ତୁରସ୍କ ଦେଶ ଜାତ—2. Turkish.

୩ । ତୁରସ୍କ ଦେଶବାସୀ—3. Residing in Turkey.

ତୁର୍କୀସ୍ତାନ୍—ବୈଦେ. ବି. ଫା.(ନାମ)—ଏସିଆ ମହାଦେଶରେ ଥିବା ଦେଶ-
Turkistān   ବିଶେଷ—Turkistan.

(ତୁର୍କୀସ୍ତାନ—ଅନ୍ୟରୂପ)   [ ଦ୍ର—ଏ ଦେଶ ଏସିଆଟିକ ତୁରସ୍କ ଠାରୁ ସ୍ୱତନ୍ତ୍ର; ଏହା ଦୁଇ ଭାଗରେ ବିଭକ୍ତ । ୧ । ରୁଷିଆ ସାମ୍ରାଜ୍ୟର ଅନ୍ତର୍ଗତ ତୁର୍କୀସ୍ତାନ ( ପଶ୍ଚିମାଂଶ ) ଓ ୨ । ଚୀନ ସାମ୍ରାଜ୍ୟର ଅନ୍ତର୍ଗତ ତୁର୍କୀସ୍ତାନ (ପୂର୍ବାଂଶ) । ]

ତୁର୍ତିଆ—ଗ୍ରା. ବିଣ. (ସଂ. ତୃତୀୟର ଅଶୁଦ୍ଧ ଉଚ୍ଚାରଣ)—ତୃତୀୟ (ଦେଖ)
Turtia   Trutiya (See)

ତୁର୍ତିଆ—ଗ୍ରା. ବି ( ସଂ. ତୃତୀୟାର ଅଶୁଦ୍ଧ ଉଚ୍ଚାରଣ )—
Turtiā   ତୃତୀୟା (ଦେଖ)
Trutiyā (See)

ତୁର୍ତୁର(ରୁ)—ଦେ. ବିଣ ଓ କ୍ରି. ବିଣ—ତୁରୁତୁରୁ ( ଦେଖ )
Turtur(ru)   Turuturu (See)

ତୁର୍ତୁରିଆ—ଦେ. ବିଣ—ତୁରୁତୁରିଆ ( ଦେଖ )
Turturiā   Turuturiā ( See)

ତୁର୍ବସୁ—ସଂ. ବି (ନାମ)—ଦେବଯାନୀଙ୍କ ଗର୍ଭଜାତ ଯଯାତିଙ୍କ ପୁତ୍ର—
Turbasu   Name of a son of king Jājāti.

[ ଦ୍ର—ଏ ଆପଣା ପିତା ଯଯାତିଙ୍କ ବାର୍ଦ୍ଧକ୍ୟ ଗ୍ରହଣ କରିବାକୁ ଅସ୍ୱୀକାର କରିବାରୁ ଯଯାତିଙ୍କ ଶାପରେ ବହୁ ଦୁଃଖ ଭୋଗ କରିଥିଲେ । ]

ତୁର୍ଯ୍ୟ—ସଂ. ବିଣ ( ଚତୁର=ଚାରି ସଂଖ୍ୟା+ଯ. ନିପାତନସିଦ୍ଧ )—
Turjya   ତୁରୀୟ; ଚତୁର୍ଥ—Fourth.

ବିଣ—୧ । ତୁରୀୟ ଅବସ୍ଥା—1 The fourth or last stage attained in meditation.

୨ । ଚଉଠ; ଚତୁର୍ଥ ଅଂଶ—
2. A quarter or 4th part.

ତୁର୍ଯ୍ୟା—ସଂ. ବି (ତୁର୍ଯ୍ୟ+ଆ)—ତୁରୀୟ ଜ୍ଞାନ (ଦେଖ)
Turjyā   Turiya Jnyāna (See).

ତୁଲ୍ ( ଧାତୁ )—ସଂ.—୧ । ତୁଳନା କରିବା—
Tul (root)   1. To compare.

୨ । ଓଜନକରିବା—2. To weigh.

୩ । ସଦୃଶ ହେବା—3. To be equal.

ତୁଲ୍‌କଲାମ୍—ବୈଦେ. ବି (ଆ. ତୁଲ୍‌କାଲାମ୍=ଦୀର୍ଘ ବାକ୍ୟବିନ୍ୟାସ)—
Tul-kalām   ତୁମୁଳ ଝଗଡ଼ା; ବିସମ୍ବାଦ—

ତୁଲକଲାନ୍, ତୁଲ୍‌କାଲାନ୍ ତୁଲ୍‌କାଲାମ୍—ଅନ୍ୟରୂପ   Brawl; noisy quarrel.
तुलकालाम   तुलकालाम

ତୁଲ୍ଙ୍ଗି—ପ୍ରାଦେ (ସମ୍ବଲପୁର) ବି—କଚ୍ଛ—
Tul-ṅgi   The end of the loin-cloth which is tucked backwards.

ତୁଲ୍‌ବା—ପ୍ରାଦେ (ସମ୍ବଲପୁର) କ୍ରି—ତୋଳିବା—
Tul-bā   To pluck.

ତୁଳା—ସଂ. ବି (ତୁଲ୍ ଧାତୁ+ଅ)—୧ । ବିଶାକାଠି—
Tula   1. Weighing yard or rod.

୨ । ପରିମାଣଦଣ୍ଡ; ସେର ତରାଜୁ—
2. A pair of scales; weighing instrument.

ଦେ. ବି (ସଂ. ତୁଳନ)—୧ । ଓଜନ—1 Weight.

୨ । ଓଜନ କରିବା—2. Weighment.

୩ । ଭିଡ଼; ତୁଳନା—3. Comparision.

ତୁ ତ ସୁନ୍ଦରେକା ତୁଲ ମୁଁ କେବେ ନ ଚହୁଁ ଥିବି ଅବଶ୍ୟଗାହି ।
କବିସୂର୍ଯ୍ୟ. ସଙ୍ଗୀତ ।

୪ । କନ୍ୟା ମାସର ପରବର୍ତ୍ତୀ ସୌରମାନ ମାସ; ସୌରମାନ କାର୍ତ୍ତିକ ମାସ—4. Solar month of Kartika.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ର,ଋ | ଃ | ୪ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଙ୍କ | ଣ୍ଡ | ତ୍ଥ | ଘ |
| ୨ | ଈ | ଊ | ରୁ | ଲୁ | ସ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଟିଂ୍ୟ | ଚ୍ଛ | ଜ୍ଞ | ନ୍ଦ |

ତୁଲରେ ଖେଳିଲେ ମୂଳରେ ଫଳେ—କୃଷିବଚନ ।

ବଣ—୧ । ଉଚ୍ଚ—1. High.

୨ । ତୁଲ୍ୟ, ସମକକ୍ଷ—2 Equal in comparision.

(ସଗା—କପସ୍ଥିତ) ୩ । କୋଡ଼ି, କାଙ୍କ ବା କୁସୁଡ଼ିର ବେଣ୍ଟ ଗଳିବା କଣାର ଉପରମୁହାଁ ହେବା ଅବସ୍ଥା—

3. (a spade) Of which the eye has been made in such a manner that the handle when thrust into it bulges up.

[ ଦ୍ର—କଣାଟି ଉପରମୁହାଁ ହୋଇ ରହିବାରୁ ବେଣ୍ଟଟି ସିଧା ନ ରହି ଉପରମୁହାଁ ହୁଏ । ତେଣୁ ସେ ଯନ୍ତ୍ରରେ ହାଣିବାକୁ ବଡ଼ ଅସୁବିଧା ହୁଏ । ]

ଦେ.କ୍ରି (ତୁଳିବା କ୍ରିୟାର ଅନୁଜ୍ଞା ରୂପ)—୧ । ତୁଳନା କର—1. (you) Compare.

୨ । ଓଜନ କର—2. (you) Weigh.

[ ଦ୍ର—ଏ ଅଭିଧାନରେ କୌଣସି ଶବ୍ଦ ସଙ୍ଗେ ଅନ୍ୟ ଭାଷାର ଶବ୍ଦାଦି ତୁଳନା କରି ସେ ଦୁହିଙ୍କ ସାଦୃଶ୍ୟ ଲକ୍ଷ କରିବାକୁ ସୂଚନା ଦିଆଯାଇଥିବା ସ୍ଥଳରେ ଏହି 'ତୁଲ' ଶବ୍ଦ ଲେଖା ଯାଇଅଛି । ]

ତୁଲ—ଦେ, ବଣ ( ସଂ. ତୁଲ୍ୟ )—୧ । ସମକକ୍ଷ; ତୁଲ୍ୟ; ସମାନ—
Tula 1. Equal; similar.

ରୂପ ଗୁଣରେ କାହିଁ ତା ତୁଲେ ମଣି—ଗୋପୀନାଥ ମେଘଦୂତ ।

समान ୨ । ସମତଳ—2. Level; of the same level.

ମୃତ୍ତିକା ପକାଇଣ ତୁଲ କଲେ
ବୃକ୍ଷ କଟିବିଲ ସୁଖେ ଚାଲିଲେ—ବିଷ୍ଣୁନାଥ, ଚନ୍ଦ୍ର ସମୁଦ୍ରଣ ।

କ୍ରି. ବିଣ—୧ । ( ସଂ. ତୁଲ୍ୟ ) ତୁଲ୍ୟ; ପରି; ପ୍ରକାରେ—1. Like.

୨ । ସଦୃଶ—2. Similarly.

ବି—୧ । ତୁଳନା—1. Comparision..

୨ । ସମାନତା; ସାମ୍ୟ—
2. Equality; likeness; similarity.

୩ । ଗୃହୋପକରଣ—
3. Fittings; furnitures; utensils.

ତୁଲକ—ଦେ. ଅ—ତୁଲ୍ୟ; ସଦୃଶ—
Tulaka Like.

समान ଯୋଡ଼ି କାଳକ ମୋର ଚଳକ ବଣ ତୁଲକ ନାହିଁ

बराबर ଯେନ ତୁଳକେ ତାପ କାଳକେ ଘଟେ ଅଳକେ ଇତି ।

ଉଦ୍ଧ. ପ୍ରେମସୁଧାନିଧି ।

ତୁଲ କସଟ—ଦେ, ବି—ନିକିତି ଦ୍ୱାରା ଓଜନ—
Tula kasata Weighment by a balance

ରଜା ମସ୍ତକ, ବାହାଦୁରଙ୍କ ସଭା
ତୁଲ କସଟ ପ୍ରାପ୍ତେ ଅଇଲ ଶୋଭା—ବ୍ରଜନାଥ ସମରତରଙ୍ଗ ।

ତୁଲଣ—ଗ୍ରା. ବି—ତୁଳଣା (ଦେଖ)
Tulana Tulanā (See).

ତୁଳଣ ଦେବାକୁ ତୁଲ୍ୟ ଦିଶଇ ନାହିଁ—ପ୍ରାଚୀ ରସବାରିଧି ।

ତୁଳଣା—ଗ୍ରା. ବି ( ସଂ. ତୁଳନା )—
Tulanā ତୁଳନା ( ଦେଖ )
( ତୁଲଣା—ଅନ୍ୟରୂପ ) Tulanā ( Se ).

ଦୁନିଆର ଅଞ୍ଚ ନାହିଁ କହି
ଏଣୁ ତୋ ତୁଳଣା ନ ହୋଇ—ଭୂପତି ପ୍ରେମପଞ୍ଚାମୃତ ।

ତୁଳନ—ସଂ. ବି (ତୁଲ୍ ଧାତୁ+ଭାବ ଅନ)—୧ । ଉପମାନ—
Tulana 1. Act of comparing.

୨ । ପରିମାଣ କରିବା—2 Measurement.

୩ । ସମାନ କରିବା—3. Equalising.

ଦେ. ବି—ଓଜନ କରିବା—Weighment.

ଧର୍ମ ଚରଣରେ ସବୁ ତୁଳନ ହେଉଛି—ପ୍ରାଚୀ ବ୍ରହ୍ମକଳ୍ପଗୀତା ।

ତୁଳନା—ସଂ. ବି ସ୍ତ୍ରୀ ( ତୁଲ୍ ଧାତୁ+ଭାବ ଅନ+ସ୍ତ୍ରୀ. ଆ )—
Tulanā ୧ । ଉପମା—1. Comparision.

୨ । ସାଦୃଶ୍ୟ—2. Equality; similarity.

୩ । ଦୃଷ୍ଟାନ୍ତ—3. Instance; illustration.

୪ । ପରିମାଣ—4. Measure.

ତୁଳନା କରିବା—ଦେ. କ୍ରି—୧ । ଉପମା କରିବା—
Tulanā karibā 1. To compare.

তুলনা করা ୨ । ସମକକ୍ଷ କରିବା—2 To liken.

तुलना करना

ତୁଳ ପାତ୍ର—ଦେ. ବି—ନିକିତି—
Tula pātra Balance; scales.

ବସାଇ କଣ୍ଟେଇ ତୁଳ ପାତ୍ରେ ତୁଳ ଦେଖ ସଖି କା ପ୍ରେମ ଧନରେ ।

ଉକ୍ତ. ବୈଦେହୀଶବିଳାସ ।

ତୁଳରେ—ଦେ. ଅ—ତୁଲେ; ସହିତ—
Tulare With.

সনে ଶର୍ମିକ ବର୍ମିକ ଏ ଦୁହିଙ୍କ ତୁଳରେ, ପ୍ରୀତି କଲେ ଖ୍ରୀମ ବାର କାଉତୁକରେ ।

बराबर (ତୁଲେ, ତୁଲେ·ଅନ୍ୟରୂପ) କୃଷ୍ଣସିଂହ. ମହାଭାରତ. ସଭା.

ତୁଳସା—ଗ୍ରା. ବି. ( ସଂ. ତୁଳସୀ )—ତୁଳସୀ ( ଦେଖ )
Tulasā Tulasi ( See )
(ତୁଳୁସା—ଅନ୍ୟରୂପ) ବୃକ୍ଷ ଅଙ୍ଗ ଧରିଣ ଯେ ଅଛନ୍ତି ତୁଳସା ।

ପ୍ରାଚୀ. ଶ୍ରୀ ଗୁରୁଭକ୍ତି ଗୀତା ।

ତୁଳସା ରାଣୀ—ଗ୍ରା. ବି. ( ସଂ. ତୁଳସୀ ଓ ରାଜ୍ଞୀ)—
Tulasā rāni ତୁଳସୀ ଚଉରାରେ ପ୍ରତିଷ୍ଠିତ ତୁଳସୀ ଗଛ
(ତୁଳୁସା ରାଣୀ—ଅନ୍ୟରୂପ) ରୂପ ଦେବୀ ବା ଠାକୁରାଣୀ—
The holy Basil plant regarded as a Goddess.

ତୁଳୁସା ରାଣୀ ! ଜାଣି ନ ଜାଣି (ମୁଁ) ଦେଉଛି ପାଣି,
( ତୁ ) କରିଥା କ୍ଷମି : ... ... ଇତ୍ୟାଦି ।

ତୁଳସୀ—ସଂ. ବି. ସ୍ତ୍ରୀ. (ତୁଲା=ସାଦୃଶ୍ୟ+ସୋ ଧାତୁ=ନାଶ କରିବା
Tulasi +କର୍ତ୍ତୃ. ଅ+ସ୍ତ୍ରୀ. ଈ; ପୃଥିବୀରେ ଯାହା ନିକଟରେ
ସଂ. ସୁଭଗା, ଗୌରୀ, ପାବନୀ, ସମସ୍ତ ସାଦୃଶ୍ୟ ଲୋପ ପାଇଅଛି,

ସାଧାରଣ ଲୋକେ ଅପର ପୃଷ୍ଠାରେ ଦୃଷ୍ଟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ସ୍ଥଳ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୁଥ' ନ ମିଳିଲେ 'କୁଦ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ବିଷ୍ଣୁବଲ୍ଲଭା, ସୁରେଜ୍ୟା, ସୁରସା, କାୟସ୍ଥା, ସୁରଦୁନ୍ଦୁଭି, ସୁରଭି, ବହୁପତ୍ରୀ, ମଞ୍ଜରୀ, ହରିପ୍ରିୟା, ଅପେତ ରାକ୍ଷସୀ, ଶ୍ୟାମା, ଗୌରୀ, ତ୍ରିଦଶମଞ୍ଜରୀ, ଭୂତଘ୍ନୀ, ଭୂତପତ୍ରୀ, ପର୍ଣ୍ଣାସ, ବୃନ୍ଦା, କଠିଞ୍ଜର, କୁଠେରକ, ବୈଷ୍ଣବୀ, ପୁଣ୍ୟା, ପବିତ୍ରା, ମାଧବୀ, ଅମୃତା, ପତ୍ରପୁଷ୍ପା, ସୁଗନ୍ଧା, ଗନ୍ଧହାରିଣୀ, ସୁରବଲ୍ଲୀ, ପ୍ରେତରାକ୍ଷସୀ, ସୁବହା, ଗ୍ରାମ୍ୟା, ସୁଲଭା, ବହୁମଞ୍ଜରୀ, ଦେବଦୁନ୍ଦୁଭି ।

ଭା. ତଲସୀ

ଙ୍ଗ. କୃଷ୍ଣ, ଗଗେରଚେଟ୍ଟୁ, ଇଯୁଲସି

ମ. ତୁଲସିଚେ ଝାଡ଼

ତୁଳସୀ

ତୁଲସୀ, ବରେଞ୍ଜା

ଅର୍ଥାତ୍ ପୃଥିବୀରେ ଯାହା ସଙ୍ଗେ ଅନ୍ୟ କୌଣସି ବସ୍ତୁ ତୁଳନା କରାଯାଇ ନ ପାରେ )—ପ୍ରସିଦ୍ଧ କ୍ଷୁପ; ତୁଳସୀଗଛ—

The Holy Basil plant; Ocymum Sanctum (Haines).

[ଦ୍ର—ବୈଦ୍ୟଶାସ୍ତ୍ର ମତରେ ତୁଳସୀ ୫ ପ୍ରକାର ଯଥା—୧ । କୃଷ୍ଣତୁଳସୀ =କଳାତୁଳସୀ, ୨ । ଶ୍ୱେତ ତୁଳସୀ= ଧଳାତୁଳସୀ, ୩ । ବର୍ବରୀ ତୁଳସୀ= ଲଣ୍ଡାବସୁଲ, ୪ । ଖଲ୍ ଗନ୍ଧ ବା ବନଗନ୍ଧ ତୁଳସୀ, ବନତୁଳସୀ=ଦୁଲଭି । ୫ । କ୍ଷୁଦ୍ରପତ୍ର ତୁଳସୀ=ଗନ୍ଧତୁଳସୀ, ବଣ ତୁଳସୀ । ତୁଳସୀ ହିନ୍ଦୁ ଗୃହସ୍ଥର ଗୋଟିଏ ଅବଶ୍ୟଣୀୟ କ୍ଷୁପ; ଏହାର ପତ୍ର ଓ ମଞ୍ଜରୀ ଦ୍ୱାରା ବିଷ୍ଣୁ ପୂଜା ହୁଏ । ଆମ ଦେଶରେ ପ୍ରତ୍ୟେକ ହିନ୍ଦୁ ଗୃହସ୍ଥ ଆପଣାର ଖଞ୍ଜାରେ ଗୋଟିଏ ସ୍ତୂପ ବା ଚଉରା ନିର୍ମାଣ କରି ତାହା ଉପରେ ତୁଳସୀ ଗଛ ଗୋଟିଏ ଲଗାଇ ଥାଆନ୍ତି । ଏହି ଗଛର ଗଣ୍ଡିରୁ ହିନ୍ଦୁମାନେ ମାଳ କରନ୍ତି । ଏ ମାଳକୁ ବୈଷ୍ଣବମାନେ ଜପନ୍ତି ଓ କଣ୍ଠରେ ଧାରଣ କରନ୍ତି । ଏହାର ଫୁଲ ଯେନ୍ତା ଯେନ୍ତା ଓ ଜଟାଭଳ ହୁଏ । । ଧଳା ଓ କଳା ପତ୍ର ଭେଦରେ ଗଛ ୨ ପ୍ରକାର । ବଣରେ ମଧ୍ୟ ଅନେକପ୍ରକାର ଏହି ଜାତୀୟ ଗଛ ଅଛି, ଯଥା—ଗନ୍ଧତୁଳସୀ ବଣତୁଳସୀ, ଦୁଲଭି, ଲଣ୍ଡାବସୁଲ, ଇତ୍ୟାଦି । ତୁଳସୀଗଛ ଓ କାଠକୁ ହିନ୍ଦୁମାନେ ଅତି ପବିତ୍ର ଜ୍ଞାନ କରନ୍ତି ଓ ଚନ୍ଦନକାଠ ଅଭାବରେ ଏହି କାଠକୁ ଚିତାନଳରେ ମିଶାଇ ଶବଦାହ କରନ୍ତି । ତୁଳସୀପତ୍ର, ତମ୍ବା ଓ ଶାଳଗ୍ରାମ ଧରି ଲୋକେ ହଲପ କରି ଥାଆନ୍ତି । କନ୍ୟା ପ୍ରଦାନ ପୂର୍ବରୁ କନ୍ୟାକର୍ତ୍ତା ବରକର୍ତ୍ତାଙ୍କ ହାତକୁ ତୁଳସୀମାଳା ଟେକି ଦେଲେ ବିବାହର 'ନିର୍ବନ୍ଧ' ହୁଏ ।

ବିଷ୍ଣୁଙ୍କର ଏ ପତ୍ର ଅତି ପ୍ରିୟ । ବିଷ୍ଣୁ ଓ ଶାଳଗ୍ରାମଙ୍କଠାରେ ଏ ପତ୍ର ଓ ମଞ୍ଜରୀ ଦିଆଯାଏ । ନୈବେଦ୍ୟ ଉପରେ ମଧ୍ୟ ଏ ପତ୍ର ପକାଇ ବିଷ୍ଣୁଙ୍କୁ ଅର୍ପଣ କରାଯାଏ ।

ତୁଳସୀ ହିନ୍ଦୁମାନଙ୍କର ପୂଜ୍ୟା, ତେଣୁ 'ତୁଳସୀ'ର ଲକ୍ଷଣାର୍ଥ ଭଲ ଲୋକ ସୁଶୀଳ ବ୍ୟକ୍ତି । ଏହାର ଗନ୍ଧ ଅତି ମନୋହର, ତେଣୁ ଲୋକେ, ବାଳକ ବାଳିକାମାନଙ୍କୁ 'ତୁଳସୀ ଦୁଇ ପତ୍ରରୁ ବାସେ ଓ ବଢୁଥିବା ଦୁଇ ପତ୍ରରୁ ଚିହ୍ନେଇ ହୁଏ' ବୋଲି ଉପମା ଦିଅନ୍ତି । ଏହାର ତାତ୍ପର୍ଯ୍ୟ ଏହି ଯେ ଯେପରି ତୁଳସୀ ଗଛର ଅଙ୍କୁର ବାହାରିବା ମାତ୍ରକେ ସୁଗନ୍ଧ ଯୁକ୍ତ ହୁଏ ଓ ବଢୁଥିବା ଗଛ ପତ୍ର ଦେହରେ ମାତ୍ରକେ ଦେହରେ ଲାଗିଲେ ଗନ୍ଧ ହୁଏ, ସେହିପରି ବାଲ୍ୟକାଳରୁ ବାଳକ ବାଳିକାମାନଙ୍କର ପ୍ରକୃତି ସେମାନଙ୍କ କାର୍ଯ୍ୟରୁ ଜଣାପଡ଼େ ।

ଏହି ତୁଳସୀ ଗଛ ପ୍ରତି ହିନ୍ଦୁମାନଙ୍କର ଏପରି ଭକ୍ତି ଯେ ତୁଳସୀ ଗଛ 'ମରିଗଲା' ବୋଲି ନ କହି "ନାରାୟଣ ପାଇଲେ" ବୋଲି କହନ୍ତି । ବୈଦ୍ୟଶାସ୍ତ୍ର ମତରେ ଏହା କଫହାରକ ଓ ଏହାର ରସ ଅନ୍ୟାନ୍ୟ ଔଷଧ ସଙ୍ଗେ ଅନୁପାନରୂପେ ବ୍ୟବହୃତ ହୁଏ ।

ତୁଳସୀର ପୌରାଣିକ ଉତ୍ପତ୍ତି ସମ୍ବନ୍ଧେ ପୁରାଣମାନଙ୍କରେ ବିଭିନ୍ନ ମତ ଦେଖାଯାଏ । ବ୍ରହ୍ମପୁରାଣ ଅନୁସାରେ ପ୍ରଥମେ ଏ ରାଧିକାଙ୍କର ସଖୀ ଥିଲେ । ଏହାଙ୍କର ନାମ ବୃନ୍ଦାବତୀ ଥିଲା । ରାଧିକାଙ୍କ ଶାପରେ ଏ ଧର୍ମଧ୍ୱଜ ନାମକ ରାଜାଙ୍କର କନ୍ୟା ହୋଇ ମାଧବୀଙ୍କ ଗର୍ଭରେ ପୁନର୍ଜନ୍ମ ଲାଭ କରି ତୁଳସୀ ନାମରେ ଅଭିହିତା ହେଲେ । ପରେ ଏ ଶଙ୍ଖଚୂଡ଼ ନାମକ ଦୈତ୍ୟର ପତ୍ନୀ ହେଲେ । ଶଙ୍ଖଚୂଡ଼ କୃଷ୍ଣଙ୍କ ଦ୍ୱାରା ହତ ହେବାରୁ ଏ ସ୍ୱାମୀଙ୍କ ସଙ୍ଗେ ସହମୃତା ହେଲେ; ପରେ ଶ୍ରୀକୃଷ୍ଣଙ୍କ ବରରେ ଏହାଙ୍କର କେଶରୁ ତୁଳସୀ ଗଛର ଉତ୍ପତ୍ତି ହେଲା ।

ପଦ୍ମପୁରାଣ ମତରେ—ଜଳନ୍ଧର ନାମକ ଅସୁରର ବୃନ୍ଦା ନାମ୍ନୀ ପତ୍ନୀ ଥିଲେ । ଏ କାଳନେମୀ ଦୈତ୍ୟର କନ୍ୟା । ଜଳନ୍ଧର ଇନ୍ଦ୍ରଙ୍କ ପରାସ୍ତ କରି ସ୍ୱର୍ଗରେ ରାଜା ହେବାରୁ ଇନ୍ଦ୍ର ମହାଦେବଙ୍କ ଶରଣାପନ୍ନ ହେଲେ । ଏ ଦୈତ୍ୟ ପାର୍ବତୀଙ୍କ ପ୍ରତି କାମାସକ୍ତ ହୋଇ ପାର୍ବତୀ ଦେବା ନିମନ୍ତେ ମହାଦେବଙ୍କୁ ଆଦେଶ କରିବାରୁ ମହାଦେବ ଏହା ଉପରେ କ୍ରୁଦ୍ଧ ହୋଇ ଏହା ସଙ୍ଗେ ଯୁଦ୍ଧ କଲେ । କିନ୍ତୁ କେତେ ଯୁଗ ପର୍ଯ୍ୟନ୍ତ ଏହାକୁ ପରାସ୍ତ କରି ପାରିଲେ ନାହିଁ । କାରଣ ଏହାର ପତ୍ନୀ ପତିପରାୟଣା ସତୀ ବୃନ୍ଦା ବିଷ୍ଣୁପୂଜା କରି ପତିର ମଙ୍ଗଳ ପ୍ରାର୍ଥନା କରୁଥାଆନ୍ତି । ବିଷ୍ଣୁ ମାୟାରେ ଜଳନ୍ଧର ରୂପ ଧାରଣ କରି ବୃନ୍ଦା ନିକଟରେ ଉପସ୍ଥିତ ହେବାରୁ ବୃନ୍ଦାର ତପସ୍ୟା ଭଗ୍ନ ହେଲା ଓ ଜଳନ୍ଧର ହତ ହେଲା । ପରେ ବୃନ୍ଦା ବିଷ୍ଣୁଙ୍କର ଏହି କୂଟ ଜାଣି ପାରି ବିଷ୍ଣୁଙ୍କୁ ଅଭିଶାପ ଦେବାକୁ ଉଦ୍ୟତ ହେବାରୁ କ୍ରୋଧାନ୍ୱିତା ସାଧ୍ୱୀଙ୍କୁ ଶାନ୍ତ କରିବା ନିମନ୍ତେ ବିଷ୍ଣୁ ତାଙ୍କୁ କହିଲେ ଯେ, ତୁମ୍ଭେ ସ୍ୱାମୀଙ୍କ ସଙ୍ଗେ ସହମୃତା ହୁଅ ଓ ତୁମ୍ଭ ଚିତାଭସ୍ମରୁ ତୁଳସୀ, ଧାତ୍ରୀ, ପଲାଶ ଓ ଅଶ୍ୱତ୍ଥ ଏହି ୪ଟି ବୃକ୍ଷ ଜନ୍ମି ଯୁଗେ ଯୁଗେ ପୂଜା ପାଇବେ । ]

ଦେ. ବି—୧ । ( ଭାଗବତ ) ତୁଳସୀ ଦେବୀ; ବୃନ୍ଦାବତୀ—

1 Name of a woman who was transformed into the Holy Tu̲lasi plant.

୨ । ତୁଳସୀ ଗଛର ପତ୍ର—

2. The leaf of a Tu̲lasi plant.

୩ । ତୁଳସୀ ନାମ୍ନୀ ସ୍ତ୍ରୀର ଡାକ ନାମ—

3. Name for calling Tu̲lasi.

ତୁଳସୀକଣ୍ଠି—ଦେ. ବି—ତୁଳସୀ ମାଳି ( ଦେଖ )
Tu̲lasi kant̤hi   Tu̲lasi ma̲l̲i ( See )

ତୁଳସୀକ୍ଷେତ୍ର—ଦେ. ବି—କଟକ ଜିଲ୍ଲାର କେନ୍ଦ୍ରାପଡ଼ା—
Tu̲lasi kshetra   A mythological name of Kendra-pard̤a in the district of Cuttack.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଚ | ଡ | ର,ହ | ଷ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍ଗ | ଈଁ | [illegible] | ା |
| ୨ | ଛ | ଢ | ଋ | ଌ | ଐ | ଅନ୍ତ୍ୟହସନ୍ତବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | | କ୍ଷ୍ୟ | ଯ | ସ | [illegible] | ଈଅ | ୱ | ~ |

ପବନ ତୁଳସୀଙ୍କ ବହି ନଦ
ବନ୍ଦନ୍ତି ଯହିଁ ଶ୍ରୀକୃଷ୍ଣ ହଳଧର—ଜଗନ୍ନାଥ. ଦେବେନ୍ଦ୍ର ।

[ ଦ୍ର—କଳିଙ୍ଗଦେଶବାସୀ କାନ୍ଦରାସୁରଙ୍କୁ ସଂହାର କରି ବଳରାମ ତାହାର କନ୍ୟା ତୁଳସୀଙ୍କୁ ବିବାହ କରିଥିବାର ସ୍ଥାନୀୟ କିମ୍ବଦନ୍ତୀ ଅଛି । ଏଣୁ କେନ୍ଦ୍ରାପଡ଼ାର ଅନ୍ୟତମ ନାମ ତୁଳସୀକ୍ଷେତ୍ର । ବଳଦେବ ଜୀଉ କେନ୍ଦ୍ରାପଡ଼ାର ପ୍ରଧାନ ଦେବତା । ]

ତୁଳସୀ ଚଉଁରି—ଦେ. ବି—ତୁଳସୀ ଚଉରା ୧ ( ଦେଖ )
Tulasi chaunri Tualsi chaurā 1 ( See )

ସମ୍ମୁଖରେ ବୃକ୍ଷ କିଛି
ଥାଇଲେ ତୁଳସୀ ଚଉଁରି—ତୁଳସୀ. ପ୍ରେମଧନ୍ୟ ନୂଆ ।

ତୁଳସୀ ଚଉରା—ଦେ. ବି. ( ସଂ. ତୁଳସୀ+ଚତୁଷ୍କ )—୧ । ଯେଉଁ
Tulasi chaurā ଚଉରା ବା ବେଦୀ ଉପରେ ତୁଳସୀ ଗଛ ଲଗା ଯାଇଥାଏ—1. A mound of earth or platform on which the Tulasi plant is planted.

[ ଦ୍ର—ତୁଳସୀ ଗଛ ପ୍ରତ୍ୟେକ ହିନ୍ଦୁ ଗୃହସ୍ଥଙ୍କ ଘରେ ପୂଜା ପାଏ । ଏହାର ଚଉରାର ମୂଳ ଲିପାପୋଛା କରି ସନ୍ଧ୍ୟାବେଳେ ଘିଅଦୀପ ବସାଯାଏ । କାର୍ତ୍ତିକ ମାସରେ ବିଧବାମାନେ ଏହା ମୂଳରେ ପଞ୍ଚବର୍ଣ୍ଣୀ ମୁରୁଜରେ ଚିତ୍ର ଅଙ୍କନ କରି କାର୍ତ୍ତିକପୂଜା ଓ ଦୀପଦାନ ଆଦି କରନ୍ତି । ପଣାସଂକ୍ରାନ୍ତି ଦିନ ଏହା ଉପରେ ଛତ୍ରୀ କରି ବସୁନ୍ଧରା ଘଡ଼ି ଟାଙ୍ଗନ୍ତି; ଏହି ଘଡ଼ିର ତଳେଥିବା ଛିଦ୍ର ବାଟେ ଗଛ ଉପରେ ଜଳଧାରା ପଡ଼ୁଥାଏ । ]

୨ । ପୁରୀଜିଲ୍ଲାର ମାଳତୀପାଟପୁରରେ ଥିବା ପ୍ରସିଦ୍ଧ ତୁଳସୀଗଛର ଚଉରା ଓ ତନ୍ନାମକ ଗ୍ରାମ—
2. Name of a mound cnotaining the Tulasi plant and a village some 4 or 5 miles on the road to Puri.

ଯୁଗ୍ମ ସମ୍ମୁଖ ମଧ୍ୟେ ହସି
ତୁଳସୀ ଚଉରା ପ୍ରବେଶି—ତୁଳସୀ. ପ୍ରେମପଞ୍ଚାମୃତ ।

[ ଦ୍ର—ମାଳତୀପାଟପୁର ଗ୍ରାମଠାରେ ଜଗନ୍ନାଥ ସଡ଼କ ଉପରେ ଗୋଟିଏ ତୁଳସୀ ଚଉରା ଅଛି । ତାହାକୁ ଦର୍ଶନ କରିବା ପାଇଁ ଯାତ୍ରୀମାନେ ଜଗନ୍ନାଥ ଦର୍ଶନ ସାରି ଏଠାକୁ ଆସନ୍ତି । ପୁରୀକୁ ଦର୍ଶନାର୍ଥ ଆସୁଥିବା ଯାତ୍ରୀମାନେ ଏହିଠାରେ ପ୍ରଥମେ ଜଗନ୍ନାଥ ଦେଉଳର ଚୂଡ଼ା ଦର୍ଶନ କରନ୍ତି । ]

ତୁଳସୀ ଚଢ଼ା(ଢ଼େ)ଇବା—ଦେ. କ୍ରି—ମନୋରଥ ସିଦ୍ଧି ନିମିତ୍ତ ବସ୍ତ୍ର,
Tulasi chardhā(rdhe)ibā ପ୍ରତିମା ବା ଶାଳଗ୍ରାମଙ୍କଠାରେ ତୁଳସୀ ଅର୍ପଣ କରିବା—
To put Tulasi leaves on a Deity.

ତୁଳସୀ ଚୂରା—ପ୍ରାଦେ. ( ମେଦିନୀପୁର ) ବି—ତୁଳସୀ ଚଉରା ( ଦେଖ )
Tulasi chūrā Tulasi chaurā ( See )

ତୁଳସୀ ଜଟା—ଦେ. ବି—ତୁଳସୀ ଗଛର ପୁଷ୍ପସମନ୍ୱିତ ଲମ୍ବ ଗୁଚ୍ଛ—
Tulasi jaṭā The flower-bunch of the Holy Basil plant.
( ତୁଳସୀ ଜଟ—ଅନ୍ୟରୂପ )

ତୁଳସୀ ଦାସ—ଦେ. ବି ( ନାମ )—ଉତ୍ତର ପଶ୍ଚିମ ଭାରତବାସୀ ସୁପ୍ରସିଦ୍ଧ
Tulasi dāsa ଭକ୍ତପ୍ରବର ଓ କବି—A name of a Hindi poet and devotee of Rāmachandra.

[ ଦ୍ର—ଏହାଙ୍କର ହିନ୍ଦୀ ପଦ୍ୟରେ ରଚିତ ରାମଚରିତମାନସ ଓ କବିତ୍ୱରାମାୟଣ ଭାରତପ୍ରସିଦ୍ଧ । ଏ ସରଯୁକୂଳବାସୀ ଦୁବେ ବ୍ରାହ୍ମଣ ଥିଲେ । ଏ ଖ୍ରୀଷ୍ଟୀୟ ୧୫୮୩ (ଅନ୍ୟ ମତରେ ୧୫୮୯)ରେ ଜନ୍ମଗ୍ରହଣ କରିଥିଲେ । କେହି କେହି କହନ୍ତି ଯେ ଚିତ୍ରକୂଟ ନିକଟସ୍ଥ ରାଜାପୁର ଏହାଙ୍କ ଜନ୍ମସ୍ଥାନ ଓ ଏଠାରେ ଏହାଙ୍କ ହାତ-ଲେଖା ରାମାୟଣ ଗ୍ରନ୍ଥ ଅଛି । କଥିତ ଅଛି ଯେ, ଏ ଯୁବାକାଳରେ ଆପଣାର ସ୍ତ୍ରୀଙ୍କ ପ୍ରତି ବିଶେଷ ଆସକ୍ତ ଥିଲେ । ଥରେ ସ୍ତ୍ରୀ ବାପଘରେ ଥିବା ସମୟରେ ସ୍ତ୍ରୀଙ୍କ ସଙ୍ଗେ ଦେଖା କରିବାକୁ ଏ ସେଠାକୁ ଗଲେ । ସ୍ତ୍ରୀ ତାଙ୍କୁ ଭର୍ତ୍ସନା କରି କହିଲେ, ତୁମେ ମୋଠାରେ ଯେପରି ଆସକ୍ତି ରଖିଅଛ ଯେବେ ସେପରି ଆସକ୍ତି ରାମଙ୍କଠାରେ ରଖନ୍ତ, ତେବେ ମୁକ୍ତି ପାଇଯାଆନ୍ତ । ଏହା ଶୁଣି ତୁଳସୀ ଦାସ ବିରକ୍ତ ହୋଇ କାଶୀ ଆସିଲେ ଓ ସେଠାରେ ଗୋଟିଏ ବ୍ରହ୍ମରାକ୍ଷସ ସଙ୍ଗେ ଭେଟ ହେବାରୁ ତାଙ୍କ ଅନୁଗ୍ରହରୁ ଏ ସ୍ୱଶରୀରରେ ହନୁମାନ୍ ଓ ରାମ ଲକ୍ଷ୍ମଣଙ୍କର ଦର୍ଶନ ପାଇଲେ ଓ ସେହି ଦିନଠାରୁ ରାମଭକ୍ତ ହେଲେ ଏବଂ ସାଧନାଦ୍ୱାରା କବିତ୍ୱ ଲାଭ କଲେ ।

ଏ ଖ୍ରୀ: ୧୬୨୩ ରେ ଗଙ୍ଗାକୂଳସ୍ଥ କାଶୀରେ ଅସୀଘାଟରେ ଦେହ ତ୍ୟାଗ କଲେ । ଏହାଙ୍କ ରଚିତ ହିନ୍ଦୀ ଗ୍ରନ୍ଥମାନ ଯଥା—ରାମଚରିତମାନସ ବା ରାମାୟଣ, ଦୋହାବଳୀ, ଗୀତାବଳୀ, କବିତ୍ୱରାମାୟଣ, ବିନୟପତ୍ରିକା, ରାମାଜ୍ଞା, ଜାନକୀମଙ୍ଗଳ, ପାର୍ବତୀମଙ୍ଗଳ, ବୈରାଗ୍ୟସନ୍ଦୀପନୀ, କୃଷ୍ଣଗୀତାବଳୀ, ବରବୈ ରାମାୟଣ, ରାମଲଲାନହଛୂ, ହନୁମାନ ବାହୁକ—ହି. ଶବ୍ଦସାଗର । ]

ତୁଳସୀ ଦେବା—ଦେ. କ୍ରି—ତୁଳସୀ ଚଢ଼ାଇବା ( ଦେଖ )
Tulsi debā Tulasi chardhaibā ( See )

ତୁଳସୀ ଦ୍ୱେଷା—ସଂ. ବି—ବନ ତୁଳସୀ; ବବୁରୀ ( ହି. ଶବ୍ଦସାଗର)—
Tulasi dweshā A wild variety of the Holy Basil plant.

ତୁଳସୀ ପତ୍ର ପାତ୍ର କରି ଟେକି ଦେବା—ଦେ କ୍ରି—କନ୍ୟାକୁ ଗୋଟିଏ
Tulasi patra pātra kari ṭeki debā ତୁଳସୀ ପତ୍ର ସହିତ ଜାମାତାଙ୍କ ହସ୍ତରେ ଅର୍ପଣ କରି ଦେବା—
To hand over one's daughter to the bridgegroom elect along with a 'Tulasi' leaf ( in the case of a poor father ).

[ ଦ୍ର—ଯେଉଁ ଗରିବ କନ୍ୟାପିତା ଆପଣାର ଘରକୁ ଜୋଇଁଙ୍କୁ ଆଣି କନ୍ୟାକୁ ଆପଣା ଘରେ ସାଡ଼ମ୍ବର ବିବାହ ଦେଇ ନ ପାରନ୍ତି ସେ ଗୋଟିଏ ତୁଳସୀ ପତ୍ର ସହିତ ଆପଣା କନ୍ୟାକୁ ଜାମାତାଙ୍କ ହସ୍ତରେ ଅର୍ପଣ କରି ଦିଅନ୍ତି । ଜାମାତା ଉକ୍ତ କନ୍ୟାକୁ ଆପଣା ଗୃହକୁ ନେଇ ସେଠାରେ ବିବାହ କର୍ମମାନ ସମ୍ପନ୍ନ କରନ୍ତି । ]

ଏ ଅଭିଧାନ ଲେଖକ ଅପର ବୃତ୍ତାରେ ୧ଅଙ୍କ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ।

ତୁଳସୀପତ୍ରିଆ କବି—ଦେ. ବି. ( ବ୍ୟଙ୍ଗାର୍ଥ )—
Tulasi patria kabi ରାଧାକୃଷ୍ଣ ଅବଙ୍କ ପ୍ରଣୟ ବର୍ଣ୍ଣନା ଛଳରେ ଯେଉଁ କବିମାନେ ଅଦିରସାତ୍ମକ କବିତା ରଚନା କରନ୍ତି—( ironical ) Poets who write on love themes under the guise of describing the love intrigues between Rādhā and Krushṇa.

ତୁଳସୀ ବଣ—ଦେ. ବି. ( ସଂ. ତୁଳସୀ ବନ )—
Tulasi baṇa ତୁଳସୀ ଗଛରେ ପୂର୍ଣ୍ଣ ହୋଇଥିବା ବଗିଚା—
A garden which is full of Holy Basil plants.

ତୁଳସୀ ବଣରେ ବାଘ—ଢଗ।

[ ଦ୍ର—ଏହି ଢଗର ପ୍ରକୃତ ଭାବାର୍ଥ ଏହି ଯେ, ପ୍ରକୃତ ବାଘ ମହାବୃନ୍ଦମାନଙ୍କ ଘୋର ଜଙ୍ଗଲ ମଧ୍ୟରେ ନିଜର ପରାକ୍ରମ ଦେଖାଏ। ତୁଳସୀ ପରି ସାମାନ୍ୟ ଗଛ ଥିବା ସ୍ଥାନରେ ବିଲେଇ ଅପଣାକୁ ବାଘ ବୋଲି ବିସ୍ତୃତ କରି ସ୍ୱଶକ୍ତି ଦେଖାଇବା ଭଳି ଶ୍ରେଷ୍ଠଲୋକ ବା ଅଶିକ୍ଷିତ ଲୋକଙ୍କ ମଧ୍ୟରେ ସାମାନ୍ୟ ଗୁଣ ଥିବା ବ୍ୟକ୍ତି ଅପଣାର ଅଧିକାର ଦେଖାଇ ଥାଏ। ଅଳ୍ପ ପଢ଼ାପଢ଼ି କରିଥିବା ବ୍ୟକ୍ତି ବିଦ୍ୱାନଙ୍କ ସମାଜରେ ଅପଣାର ଗର୍ବ ଦେଖାଇ ପାରେ ନାହିଁ, କିନ୍ତୁ ମୂର୍ଖମାନଙ୍କ ମଧ୍ୟକୁ ଯାଇ ଅପଣାର ବଡ଼ାଇ ଦେଖାଇ ହେବା ସ୍ଥଳରେ ଏ ଢଗ ପ୍ରଯୁଜ୍ୟ ହୁଏ। ଏହାର ସମାନାର୍ଥକ ପ୍ରବଚନ। ଯଥା— କଣ୍ଟା ସାହିରେ କଣ୍ଠାଶ ମହାବଳ। ]

ତୁଳସୀ ବନ—ସଂ. ବି. ( ୬ଷ୍ଠୀ ତତ୍ )—୧। ତୁଳସୀ ବଣ ( ଦେଖ )
Tulasi bana 1. Tulasi baṇa ( See )
୨। ବୃନ୍ଦାବନ ( ହି. ଶବ୍ଦସାଗର ) ( ଦେଖ )
2. Brundābana ( See )

ତୁଳସୀ ବାସ—ଦେ. ବି—ଏକ ପ୍ରକାର ସରୁ ଶାରଦ ଧାନ—
Tulasi bāsa A kind of fine winter paddy.
तुलसी वास

ତୁଳସୀ ବିବାହ—ଦେ. ବି—କାର୍ତ୍ତିକ କୃଷ୍ଣ ଦ୍ୱାଦଶୀ ଦିନ ବିଷ୍ଣୁଙ୍କ ସହିତ
Tulasi bibāha ବୃନ୍ଦାବତୀ ବା ତୁଳସୀ ଚଉରାରେ ଥିବା ତୁଳସୀ ଗଛର ବିବାହ ରୂପକ ଉତ୍ସବ—
The formal ceremony of marriage between Bishṇu and the Holy Basil plant on the 12th day of the dark fortnight of Kārttika.

ତୁଳସୀ ମଞ୍ଜରୀ—ସଂ. ବି. ( ୬ଷ୍ଠୀ ତତ୍ ପୁରୁଷ; ତୁଳସୀ+ମଞ୍ଜରୀ)—
Tulasi mañjari ତୁଳସୀ ଗଛର କୋମଳ ପତ୍ର କଳିକା—
The tender shoots of the Tulasi plant.

ତୁଳସୀ ମାଳି—ଦେ. ବି (ସଂ. ତୁଳସୀ+ମଞ୍ଜରୀ)—ତୁଳସୀ ଗଛର କାଣ୍ଡରୁ
Tulasi māḷi ପ୍ରସ୍ତୁତ ବେକରେ ପିନ୍ଧିବା ଓ ଜପିବା ମାଳା—
[ତୁଳସୀ ମା(ଳ)ଳା—ଅନ୍ୟରୂପ] String of beads made
तुलसी माला from the stem of the Tulasi plant.
तुलसी माला

ତୁଳସୀ ଲାଗି—ଦେ. ବି.—( ବିଷ୍ଣୁବିଗ୍ରହଙ୍କର ) ତୁଳସୀ ପତ୍ର ବା ମାଳ
Tulasi lāgi ଗ୍ରହଣ —The putting of Tulasi leaves on an image of Bishṇu.

ତୁଳା—ସଂ. ବି. ସ୍ତ୍ରୀ. ( ତୁଳ ଧାତୁ=ଓଜନ କରିବା+କରଣ. ଅ+
Tulā ସ୍ତ୍ରୀ. ଆ )—୧। ତୁଳା ଯନ୍ତ୍ର; ତରାଜୁ; ନିକିତି—
1. A pair of scales.
୨। ତୁଳା ଦଣ୍ଡ; ପରିମାଣ ଦଣ୍ଡ ବା ବଶାର କାଠି; ତଉଲିବା କଣ୍ଟା—2 A steel yard or wooden beam used for weighing.
୩। ସୁନା ରୂପାର ଶହେ ପଲ ପରିମାଣ ( ପ୍ରାୟ କଟକୀ ଗୁର ସେର )—3. A standard weight of gold or silver.
୪। ଓଜନ କରିବା—4. Weighing; weighment,
୫। ଜ୍ୟୋତିଷୋକ୍ତ ୭ମ ରାଶି—
5. The sign of Libra in the zodiac.
୬। ଆପଣା ଶରୀରର ଓଜନ ସଙ୍ଗେ ସମାନ ସୁନା ବା ରୂପା ଧାତୁ—6. One's own weight of gold or silver.
୭। (+ଭାବ. ଅ) ସାମ୍ୟ—7. Equality.
୮। ସାଦୃଶ୍ୟ; ତୁଳନା—8. Likeness; similarity.
୯। ( +କର୍ମ. ଅ ) ଗୃହର ଉପରସ୍ଥ ଶ୍ରେଣି; ଶୁଳଘରର ଯେଉଁ ଶ୍ରେଣୀ ସବୁ ଉପରେ ଥାଏ—9. The timber or plate which occupies the highest position in the gabled roof of a thatched house.

ଦେ. ବି. ( ସଂ. ତୂଳ )—୧। କପା ଓ ଶିମିଳି ଆଦିର
तूला, तूलो ଫଳକୋଷରୁ ଉତ୍ପନ୍ନ ତନ୍ତୁମୟ କୋମଳ ବସ୍ତୁ—
तुला, रुइ 1. Picked cotton.
[ ଦ୍ର—କପା ଗଛରୁ କପା ତୁଳା, ଶିମିଳି ଗଛରୁ ଶିମିଳି ତୁଳା ଓ ଅରଖ ଗଛରୁ ଅରଖ ତୂଳା ବାହାରେ। ]
୨। ( ସଂ. ତୁଳ ଧାତୁ ) କଷିବା; ପରୀକ୍ଷା କରିବା—
2 Testing.
୩। ତୁଳନା—3. Comparision.

ଗଢ଼ିକର ତୁଳା ତୋର, ରତି କରକରିବା ଲୁଣା ହେବ।
କବିସୂର୍ଯ୍ୟ, ସଙ୍ଗୀତ।

ବିଣ. ( ସଂ. ତୁଲ୍ୟ ) ୧। ସମାନ—1. Similar; like.

ପୁଷ୍ପବଳ ଉପୁଳ ସେ ଇନ୍ଦୁ ତୁଳା—କବିସୂର୍ଯ୍ୟ. ସଙ୍ଗୀତ।

୨। ତୁଳା ପରି କୋମଳ—
2. As soft as picked cotton.

| ୧ | ର | ଊ | ର୍ଦ୍ଧ | ଛ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ସ | ଜ | ଶ,ଷ | କ୍ଷ | ଲ୍ୟ | ଲ୍ଥ | ଞ |
|---|---|---|---|---|---|---|---|---|---|---|---|---|---|---|
| ୨ | ର | ଊ | ରୁ | ଲୁ | ଦ୍ୱୈ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ସ୍ | ଯ | ସ | ଗ୍ୟ | ଲ୍ୟ | ଡ଼ | ନ୍ |

( ଯଥା—ମାଉଁସ ଦିହି ତୁଲା ହୋଇ ଯାଇଛି । )

ତୁଲ—ପ୍ରାଦେ. ( ସମ୍ବଲପୁର ) ବି ( ଓ ସ୍ଥାନରେ ଉ ଏବଂ ଲ ସ୍ଥାନରେ
Tula ଲ ଉଚ୍ଚାରଣ )—ତୋଲା ( ଦେଖ )—Tola ( See )

ତୁଲଇ—ଦେ. ବି—ତୁଳନା—Comparision.
Tulai ତୁଲଣ ଦେବାକୁ ତୁଲିଏ ତୁଲଇ ଯାହିଁ—ପ୍ରାଚି. ରସବାରିଧି ।
( ତୁଲାଇ—ଅନ୍ୟରୂପ )

ତୁଲା (ଲେ)ଇବା—ଦେ. କି.—( ତୁଲବା କ୍ରିୟାର ଣିଜନ୍ତରୂପ;
Tula(le)iba The causative form of 'Tuliba').
तुलाना ଅନ୍ୟଦ୍ୱାରା ଓଜନ କରାଇବା—
**तुलवाना, तुलाना** To cause to be weighed.

ତୁଲ(ଲେ)ଇବା—ଦେ. କି (ତୁଲ ଧା—ତୁଲେଇ=ଶେଷକରିବା)—
Tula(le)iba ୧ । କୌଣସି କାର୍ଯ୍ୟକୁ ସମାଧାନ କରିବା—
1. To accomplish a work; to bring a thing to its conclusion.
ପଡ଼ଲେ କଷ୍ଟକାର୍ଯ୍ୟ ଦେବ ମୁଁ ତୁଲଇ । କୃଷ୍ଣସିଂହ. ମହାଭାରତ. ବନ ।
୨ । କୌଣସି ଅପଦ ବା ଘଟନାକୁ ସମ୍ଭାଳିବା—
2. To cope with an emergency or difficulty.
୩ । ଦାୟିତ୍ୱ ବା କର୍ତ୍ତବ୍ୟ ନିଷ୍ପନ୍ନ କରିବା; ଚଳାଇ ନେବା—
3. To discharge a duty or onus or responsibility.
ଗାଈ ପାଉଛ ଘରମାନେ ତୁଲନ୍ତି । ଭକ୍ତଚରଣଦାସ. ମଥୁରାମଙ୍ଗଳ ।
୪ । ସମାନ କରିବା—4. To equilise; to smooth.
୫ । ସମତଳବିଶିଷ୍ଟ କରିବା—
5. To level up; to smooth.
୬ । ଏକବସ୍ତୁ ଅନ୍ୟବସ୍ତୁ ସଙ୍ଗେ ସମାନ ହେବା ପରି କରିବା-
6. To cause a thing to tally with another thing.
୭ । ତୁଲ୍ୟ ହେବା—7. To be equal to.
ହେ ଭଲ କହିଲ ବର ଯାହିଁ ଲକ୍ଷ୍ୟ ସୁନ୍ଦରୀଙ୍କ ଅଙ୍ଗ ତୁଲଇ ।
ଉପେ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।
୮ । ତୁଳନା କରିବା—8 To compare.
ହୁଁ ହୁଁ ହୁଁ ହୁଁ ନା ନା ମନ ଦେଖି ଉପମାକୁ କେ ତୁଲଇବ ।
ଉପେ. ପ୍ରେମସୁଧାନିଧି ।

ତୁଲ୍ଏବା—ପ୍ରାଦେ. (ସମ୍ବଲପୁର) କି.—ତୋଳାଇବା—
Tulaeba To cause to pluck.

ତୁଲା କାଠି—ଦେ. ବି.—୧ । ଯେଉଁ କାଠି ଅଗରେ ତୁଳା ଗୁଡ଼ା
Tula kathi ହୋଇ ଥାଏ—A small twig with cotton
(ତୁଲା କାଢ଼ି—ଅନ୍ୟରୂପ) wound at the top.
[ ଦ୍ର—ଏହାଦ୍ୱାରା କାନ ଅବା କୁଣ୍ଡାଇବାକୁ ହୁଏ, ଏ କାଠିକୁ ଅତରରେ ବୁଡ଼ାଇ ହାତରେ ଓ ନାକ ପାଖରେ ଧରୁ ଯାଏ ଓ ଏ କାଠି ଘିଅରେ ବୁଡ଼ାହୋଇ, ତହିଁ ରେ ନିଆଁ ଲଗି ଦେବତାଙ୍କ ଆଗରେ ଆରତି କରାଯାଏ । ]

୨ । ବରାଜକାଠି ବା ଓଜନ କରିବାରେ ବ୍ୟବହୃତ ତରାଜୁ ଦଣ୍ଡ—2 Weighing yard or beam.

ତୁଲା କୋଟି(ଟୀ)—ସଂ. ବି. ସ୍ତ୍ରୀ (ତୁଲା=କଳ୍ପି+କୁଟ ଧାତୁ=ପରିମାଣ
Tula koti(ti) କରିବା+ଇ;+ଈ)—୧ । ନୂପୁର—
1. A twinkling anklet.
କଳା ତୁଲାକୋଟି ଝଙ୍କେ ଲେ ପାଦେ । ଉପେ. ବୈଦେହୀଶବିଳାସ ।
୨ । ତୁଲାଦଣ୍ଡର ଅଗ୍ରଭାଗ ବା ମୁଣ୍ଡ—2. The end of the scale-yard or beam of a balance.
୩ । ପରିମାଣବିଶେଷ—3. A standard weight.
୪ । ଅର୍ବୁଦ ସଂଖ୍ୟା—4 One hundred millions.
ଦେ. ବି.—ଉପମା ସମୂହ—
A number of comparisions.

ତୁଲା ଦଣ୍ଡ—ସଂ. ବି. (ଷଷ୍ଠୀ ତତ୍; ତୁଲ+ଦଣ୍ଡ)—୧ । ଓଜନ କରିବାର
Tula danda କଣ୍ଟା; ଧଡ଼ି; ଦଣ୍ଡୀ—1. The steel yard of a scale; the beam of a balance.
୨ । ବରାଜକାଠି—2 The weighing yard.

ତୁଲା ଦାନ—ସଂ. ବି.—ତୁଲା ପୁରୁଷ (ଦେଖ)—
Tula dana Tula purusha (See)

ତୁଲା ଧଟ—ସଂ. ବି. (ଷଷ୍ଠୀ ତତ୍; ତୁଲା+ଧଟ)—ତୁଲା ଦଣ୍ଡ (ଦେଖ)
Tula dhata Tula danda (See)

ତୁଲାଧର—ସଂ. ବି. (ତୁଲା=ତୁଲାରାଶି+ଧୃ ଧାତୁ+କର୍ତ୍ତୃ. ଅ)—
Tuladhara ସୂର୍ଯ୍ୟ—The sun.

ତୁଲାଧାର—ସଂ. ବିଣ. (ତୁଲା=ନିକିତି+ଧୃ ଧାତୁ+କର୍ତ୍ତୃ ଅ)—
Tuladhara ୧ । ବ୍ୟବସାୟରତ; ବ୍ୟବସାୟକାରୀ—
1. Trading; engaged in trade.
୨ । ଯାହା ତୁଲାଦଣ୍ଡରେ ଝୁଲି ଯାଇ ଥାଏ—2. Held suspended by the weighing beam.
ବି.—୧ । ବଣିକ୍; ବ୍ୟବସାୟୀ—
1. A tradesman; merchant.
୨ । (ତୁଲା+ଆଧାର) ନିକିତିର ପଲ୍ଲା—
2. The scales of a balance.
୩ । ତରାଜୁ ଦଣ୍ଡିରୁ ଓହଳିଥିବା ଡୋରି, ଯହିଁରେ ପଲ୍ଲା ଲାଗି ଥାଏ—(ହ୍ର. ଶବ୍ଦସାଗର)—3. The strings of a balance.
୪ । ଜ୍ୟୋତିଷୋକ୍ତ ତୁଲାରାଶି—
4. The sign of Libra in the zodiac.
୫ । କିରଣ—5. Ray.

ତୁଲା ଧାରୀ—ସଂ. ବି.—(ତୁଲା+ଧୃ ଧାତୁ+କର୍ତ୍ତୃ. ଇନ୍. ୧ମା ୧ବ)—
Tula dhari ଓଜନ କଲାବାଲା—Weigh-man.

ତୁଲା ପରୀକ୍ଷା—ସଂ. ବି. ସ୍ତ୍ରୀ—ନିକିତିଦ୍ୱାରା ଓଜନ କରାଯାଇ ପାପ ବା
Tula pariksha ଅପରାଧ ପରୀକ୍ଷା କରାଯିବାର ବିଧି—An ordeal

ସାଧାରଣ ଲୋକେ ଅପର ସ୍ୱରରେ ତ୍ରିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ

prescribed in the śāstras by which the accused had to be weighed in a balance.

[ଦ୍ର—ପ୍ରାଚୀନ କାଳରେ ଅଗ୍ନିପରୀକ୍ଷା ପରି ଅଭିଯୁକ୍ତ ବ୍ୟକ୍ତିର ଏହା ମଧ୍ୟ ଏକ ପ୍ରକାର ପରୀକ୍ଷା ଥିଲା । ଯଜ୍ଞକାଷ୍ଠରେ ଗୋଟିଏ ତରାଜୁ (ବଡ଼ ତରାଜୁ) ନିର୍ମାଣ କରି ସେଥିରେ ଅଭିଯୁକ୍ତ ବ୍ୟକ୍ତିକୁ ତଉଲା ଯାଉଥିଲା । ପୁଣି କିଛି ସମୟ ପରେ ଅନ୍ତର ଥରେ ତଉଲିଲେ ଯେବେ ତାହାର ଓଜନ ବେଶି ହେବାର ଦେଖା ଯାଉଥିଲା ତେବେ ସେ ଦୋଷୀ ଥିବାର ସାବ୍ୟସ୍ତ ହେଉଥିଲା ।—(ହି. ଶବ୍ଦସାଗର) । ]

ତୁଳା ପାତ୍ର—ଦେ. ବି.—ତରାଜୁ—
Tuḻā pātra A pair of scales; balance.

ବନ୍ଧୁଜନଙ୍କୁ ତୁଳାପାତ୍ର କରି,
ଜନ ଦ୍ରବ୍ୟକୁ ତୁଳିଲେ ସରି । ପ୍ରାଚୀ. ରସବାରିଧି ।

ତୁଳା ପୁରୁଷ—ସଂ. ବି. ପୁଂ—ଆପଣା ଦେହର ସମାନ ଓଜନର ସୁନା ବା
Tuḻā purusha ରୁପା ବ୍ରାହ୍ମଣଙ୍କୁ ଦାନ କରିବା କର୍ମ—A gift
(ତୁଳାପୁରୁଷ ଦାନ—ଅନ୍ୟରୂପ) of gold or silver weighing as much as one's own weight (prescribed in the śāstras).

ତୁଳା ବୀଜ—ସଂ.ବି. (ମ. ପ. ଲୋ; ତୁଳା=ଓଜନ+ବୀଜ; ଯେଉଁ ବୀଜ
Tuḻā bīja ସାହାଯ୍ୟରେ ସୁନା ରୁପା ଆଦି ଓଜନ କରାଯାଏ)-କାଇଞ୍ଚ-
A seed used by goldsmiths for weighing gold or other metals; the seed of Abrus Precatorius.

ତୁଳା ଭିଣା—ଦେ. ବି (ସଂ. ଧୂନନ)—ତୁଳାକୁ ଭଣିବା ଜାତିବିଶେଷ—
Tuḻā bhiṇā A caste which picks cotton into wool.
ଧୁନାରୀ; ଧୁନାରୁ धुनिया, बेहना

ତୁଳା ଭିଣିବା—ଦେ. କ୍ରି. (ତୁଳା+ସଂ. ଧୂ, ଧୂ. ଧାତୁ=କମ୍ପନର
Tuḻā bhiṇibā ଧୂନୋତ୍ଥିତ ଅପଭ୍ରଂଶ ଘଟେ)।—ତୁଳାକୁ
ତୁଳା ଧୁନା ଧନୁ ଆକାର ଯନ୍ତ୍ରର ଗୁଣର ଅଘାତରେ ନରମ
तुला धुनना କରିବା—To card cotton; to pick crude cotton into soft cotton wool.

ତୁଳା ମାନ—ସଂ. ବି—ତୁଳାଦଣ୍ଡଦ୍ୱାରା ଓଜନ ସ୍ଥିର କରିବା—
Tuḻā māna Weighing by the scales

ତୁଳା ମେଘ—ଦେ. ବି—ତୁଳା ପରି ଦିଶୁଥିବା ମେଘ—
Tuḻā megha The cirrus or fleecy cloud.

ତୁଳାମେଘ ପରି ଉଡ଼ଇ ଧୂମ । ସଇକଣ୍ଠ. ଖାରବେଳ ।

ତୁଳା ଯନ୍ତ୍ର—ସଂ. ବି—ତରାଜୁ—
Tuḻā jantra The scales; balance.

ତୁଳା ଯଷ୍ଟି—ସଂ.ବି—ତୁଳା ଦଣ୍ଡ (ଦେଖ)
Tuḻā jashṭi Tuḻā daṇḍa (See)

ତୁଳା ଯି(ହେ)ବା—ଦେ. କ୍ରି. (ତୁଳିବାର କର୍ମବାଚ୍ୟ ରୂପ)—
Tuḻā ji(he)bā ୧ । ତୌଲହେବା; ଓଜନ କରାଯିବା—
तुला जाना 1. To be weighed.

तुलना ୨ । କୌଣସି ବସ୍ତୁ ସଙ୍ଗେ ତୁଳନା କରାଯିବା—
2. To be compared with another thing.

ତୁଳାରାମ୍—ଦେ. ବିଣ—ଭୟରେ ହୃତ୍‌କମ୍ପ ଯୁକ୍ତ—
Tuḻāram Having throbbing or palpitation of the heart due to sudden fear.

ତୁଳାଶ—ଦେ ବି (ସଂ. ତୁଳ+ଆଶା)—ତୁଳନା କରିବାର ଇଚ୍ଛା—
Tuḻāśa A wish to compare.

ବପଳକ ଶିବ ସେବା ତୁଳାଶା । ଭଞ୍ଜ. ବୈଦେହୀଶବିଳାସ ।

ତୁଳି—ଦେ. ବି. (ସଂ. ତୂଳ)—୧ । ତୁଳା—
Tuḻi 1. Cotton.

୨ । ତୁଳାରେ ତିଆରି ଶଯ୍ୟା; ଗେଜ; ତୋଷକ; ଲେପ—
2. A quilt; a cushion stuffed with cotton wool.

ଜାଳ ରତ୍ନଦୀପ, ଟାଣି ଚନ୍ଦ୍ରାତପ, ହଂସତୂଲ ତୁଳିକ ପାରି ।
ପ୍ରାଚୀନ. ସଙ୍ଗୀତ ।

୩ । (ସଂ. ତୁଲ. ଧାତୁ=ଉପରକୁ ଉଠାଇବା)—ଖୁଲଘରର ଶୀର୍ଷ ସ୍ଥାନ—3. The ridge of a triangular thatch or gabled roof.

ସଂ. ବି—୧ । ଚିତ୍ରକରର ବର୍ତ୍ତିକା—3. Painter's brush; painter's hair-pencil.

[ ଦ୍ର—ଖଣ୍ଡେ କାଠିର ଅଗରେ ଗୋଛାଏ ଛୋଟ ବାଳ ବନ୍ଧାଯାଇ ତୁଳି ତିଆରି କରାଯାଏ । ]

୨ । ତନ୍ତୁବାୟର ତୁରି; ମାକୁ—
2. A shuttle used by the weaver.

ଦେ. ବିଣ—ତୁଳା ନିର୍ମିତ—Made of cotton.
(ଯଥା—ତୁଳି ଗୁଆଳ ।)

ତୁଳିଆ—ଦେ. ବିଣ—ଖୁଲଘରର ତୁଳି ବା ସର୍ବୋଚ୍ଚ ଅଂଶ ବା ମଥାନ
Tuḻiā ସମ୍ବନ୍ଧୀୟ—Appertaining to the ridge or highest part of a triangular or gabled roof.

ତୁଳିଆ—ଦେ. ବି—ତୁଳିଆ ଖୁଣ୍ଟ—
Tuliā The higher pillars of a thatched house.

ଉଦେ ଅସ୍ତ ମେରୁ ଉଚ୍ଚ ହୋଇଛି ତୁଳିଆ । ପ୍ରାଚୀ. ବ୍ରହ୍ମନିରୂପଣଗୀତା ।

ପ୍ରାଦେ. (ସମ୍ବଲପୁର) ବି—ଛାତ—Roof.

ତୁଳିଆ ଖୁଣ୍ଟ—ଦେ. ବି. (ସଂ. ତୁଲ ଧାତୁ=ଉପରକୁ ଉଠାଇବା)—
Tuḻiā khunṭa ନାହାଖୁଲିଆ ବା ଚାଳଶେଣିଆ ଘରର
(ତୁଳିଆ ଖମ୍ବ—ଅନ୍ୟରୂପ) ସର୍ବୋଚ୍ଚ ଖୁଣ୍ଟଦ୍ୱୟ (ଯାହା ଉପରେ ତୁଳିଆ
ପାରିଆ ଖୁଣ୍ଟ } ଗ୍ରାମ୍ୟ ଶେଣୀ ରଖାଯାଏ ।)—The higher
ପାଳିଆ ଖୁଣ୍ଟ } pillars of a gabled house; the higher pair of pillars supporting the highest ridge-plate.

ତୁଳିଆ ଶେଣୀ—ଦେ. ବି—ନାହାଖୁଲିଆ ଘରର ଖୁଲର ମଥାନ ବା
Tuḻiā seṇi ସର୍ବୋଚ୍ଚ ଅଂଶ ତଳେ ଯେଉଁ ଶେଣୀ ଦିଆଯାଇ
(ପାରିଆ ଶେଣୀ—ଗ୍ରାମ୍ୟ) ଥାଏ; ତ୍ରିଭୁଜାକାର ଖୁଲର ଶୀର୍ଷ

| ୧ | ଳ | ଡ | ଋ,ଋ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଟ | ଶ,ଷ | କ୍ଷ | ଇଯୁ | ଉଅ | ଉ |
|---|---|---|---|---|---|---|---|---|---|---|---|---|---|---|
| ୨ | ଲ | ଡ଼ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଷଂ | ଯ | ସ | ଙ୍ଘ | ଇଅ | ଓ | ତ୍ନ |

ଶେଣୀ—The central or ridge-plate running under the highest points of a gabled roof; ridge-piece.

ତୁଳକ—ସଂ. ବି. (ତୂଳ+ସ୍ୱାର୍ଥେ. କ)—ଲେଖନୀ; କଲମ—
Tulika Pen.

ତୁଳକା—ସଂ. ବି. (ତୁଲ୍ ଧାତୁ=ପରିମାଣ କରିବା+କରଣ. ଣ+କ+ଅ)—୧। ତୂଳ (ଦେଖ)—1. Tuli
Tulikā
୨। ଖଞ୍ଜନ ତୁଲ୍ୟ କ୍ଷୁଦ୍ର ପକ୍ଷିବିଶେଷ—
2. A kind of small bird.

ତୁଳ କାଠ—ଦେ. ବି. (ସଂ. ତୂଳ)—ତନ୍ତୁମାନଙ୍କ ଲୁଗା ବୁଣିବା କାଠ; ଯହିଁରେ ଲୁଗାର ବୁଣା ଅଂଶ ଗୁଡ଼ାଇ ହୁଏ—
Tuli kātha Weaver's roller; beam or back-beam of a hand-loom.

ତୁଳ କାଠି—ଦେ. ବି—ଚିତ୍ରକରର ବର୍ତ୍ତିକା—
Tuli kāthi Painter's brush.

ତୁଳିତ—ସଂ. ବିଣ. (ତୁଲ ଧାତୁ+କର୍ମ. ତ)—୧। ପରିମିତ—
Tulita 1. Measured.
୨। ଓଜନ କରାଯାଇ ଥିବା—2. Weighed.
୩। ତୁଳନା କରାଯାଇ ଥିବା; ଉପମିତ—
3. Compared.
୪। ଉପରକୁ ଉଠାଯାଇ ଥିବା; ଉତ୍କ୍ଷିପ୍ତ—
4. Lifted; raised.
୫। ଚାଳିତ—5. Moved.

ତୁଳିନୀ—ସଂ. ବି—ଶାଳ୍ମଳୀ ବୃକ୍ଷ ( ହି. ଶବ୍ଦସାଗର )—
Tulini The silk-cotton tree.
( ତୁଳଫଳା—ଅନ୍ୟରୂପ )

ତୁଳିବା—ଦେ. କି. ( ସଂ. ତୁଲ୍ ଧାତୁ )—ଓଜନ କରିବା—
Tulibā 1 To we gh.
ତୁଳା ପୂର୍ବେ ଦେବ ଋଷି ଏକତ୍ର ହୋଇଲେ
ତୁଳନା ତୁଳିବାକୁ ତୁଳାଦଣ୍ଡକୁ ଅର୍ପିଲେ—କୃଷ୍ଣସିଂହ. ମହାଭାରତ, ଅଦି।
୨। ଉପମା କରିବା; ତୁଳନା କରିବା; କଳିବା—
2. To compare.
ତୁଳ କବଳର ତା କେହି ତୁଳକ ତୁଲ ଗୋଲ କେବେ ତୁଳିବାକୁ—
କବିସୂର୍ଯ୍ୟ, ସଙ୍ଗୀତ।
୩। ସମାନ କରିବା—3. To equalise.
୪। କଷିବା—4. To test.
ପ୍ରାଦେ. ( ବାଲେଶ୍ୱର )—ତୋଳିବା—To pick.

ତୁଳ ମାରିବା—ଦେ. କି—ଦେଉଳର ମୁଣ୍ଡି ମାରିବା ପରି ଘରର ମଥାନର ସର୍ବୋଚ୍ଚ ଅଂଶର ଛପରଣି କାର୍ଯ୍ୟ ସମାପନ କରିବା—To complete the thatching of the highest ridge of a gabled house.
Tuli māribā

ତୁଳ ସୁପାତି—ଦେ. ବି—ତୁଳା ଭର୍ତ୍ତି ନରମା ଶେଯ—
Tuli supāti Soft quilt stuffed with cotton wool.

ତୁଳୀ—ସଂ. ବି—ତୁଳ ( ଦେଖ )
Tuli Tuli ( See )
ଦେ. ବି. ଓ ବିଣ—ତୁଳ ( ଦେଖ )—Tuli ( See )

ତୁଳୁବ—ସଂ. ବି (ନାମ)—ସହ୍ୟାଦ୍ରି ଓ ସମୁଦ୍ର ମଧ୍ୟରେ ଥିବା ପ୍ରାଚୀନ ଭାରତର ଏକ ପ୍ରଦେଶ (ଅଧୁନାତନ ଉତ୍ତର କାନାଡ଼ା (ହି. ଶବ୍ଦସାଗର)—The north Karnatac country of ancient India.
Tuluba

ତୁଳସୀ (ଇତ୍ୟାଦି)—ସ୍ତ୍ରୀ ବି (ସଂ. ତୁଳସୀ)—
. ulusi etc) ତୁଳସୀ ଇତ୍ୟାଦି ଦେଖ)—Tulasi etc. (See)

ତୁଲେ—ଦେ. କି. ବିଣ (ସଂ. ତୁଲ୍ୟ)—୧। (ଅନ୍ୟ ବ୍ୟକ୍ତିର) ସହିତରେ-
Tule 1. With.
ସଙ୍ଗେ ସଞ୍ଜବେଳକୁ କିଛୁ ପ୍ରତିବା ଯାଏ।
ସାଥ କୃଷ୍ଣଙ୍କୁ ହେ ତୋ ତୁଲେ ପର ଲାଗେ ଲେ। କବିସୂର୍ଯ୍ୟ. ସଙ୍ଗୀତ।
୨। (ଅନ୍ୟ ବସ୍ତୁର) ସହିତରେ; ସଙ୍ଗେ—
2. With; together with.
ଗୋଷ୍ଠ କଦମ୍ବମୂଳ, ମୋ'ର ଗୋର ଜାଙ୍ଗଳ, କହର ତୁଲେ ତାହା ପିରିଲୁରେ—
କବିସୂର୍ଯ୍ୟ. କଗୋପୀଚନ୍ଦ୍ର ବ. ଗୀତ।
୩। ତୁଲ୍ୟ; ପ୍ରକାରେ; ପରି; ସମାନରେ—
3. Equally with; like.
ସୁକୁମାର ପଣେ ନବମ ତୁଲେ କେ ଅଛ ଅନ—ଗ୍ରନ୍ଥକାର. ରତ୍ନାକର।

ତୁଲେଣ—ଦେ. (ପଦ୍ୟ) ଅ—୧। ସଙ୍ଗେ; ସହିତ—
Tulena 1. With.
୨। ପାଖରେ; ନିକଟରେ—2. At; near.
ପ୍ରଥା ତେଜ ଅନ୍ତରେଣ ତୁଟିବା ଶ୍ରୀକୃଷ୍ଣ ତୁଲେଣ ସମ୍ବାଦ—ପ୍ରାଚୀ. ରାସବାରିଷ।

ତୁଲ୍ୟ—ସଂ. ବିଣ (ତୁଲା=ସାଦୃଶ୍ୟ+ସଦୃଶାର୍ଥେ. ଯ)—୧। ଅନୁରୂପ; ସଦୃଶ—1. Similar; resembling.
Tulya
୨। ସମ; ସମାନ—2. Equal.

ତୁଲ୍ୟକୋଣିକ—ସଂ. ବିଣ (ଜ୍ୟାମିତିର ପାରିଭାଷିକ ଶବ୍ଦ; ତୁଲ୍ୟ+କୋଣ+ଇକ )—ଯାହାର (ଯେଉଁ କ୍ଷେତ୍ରର) ସମସ୍ତ କୋଣ ସମାନ—(geometry) Equiangular.
Tulya konika

ତୁଲ୍ୟତା—ସଂ. ବି (ତୁଲ୍ୟ+ଭାବ. ତା)—ସାଦୃଶ୍ୟ; ସମାନତା—
Tulyatā Similarity; equality; similitude.
(ତୁଲ୍ୟତ୍ୱ—ଅନ୍ୟରୂପ)

ତୁଲ୍ୟ ପାନ—ସଂ. ବି—ସ୍ୱଜାତୀୟ ଲୋକଙ୍କ ସହିତ ଏକସଙ୍ଗେ ବସି ପାନ ଭୋଜନାଦି (ହି. ଶବ୍ଦସାଗର)—Dining in the company of one's castemen.
Tulya pāna

ତୁଲ୍ୟ ପ୍ରଧାନ ବ୍ୟଙ୍ଗ—ସଂ. ବି—କାବ୍ୟାଲଙ୍କାରବିଶେଷ, ଯହିଁରେ ବାଚ୍ୟାର୍ଥ ଓ ବ୍ୟଙ୍ଗାର୍ଥ ଏକ ଥିବାର ଦେଖାଯାଏ (ହି. ଶବ୍ଦସାଗର)—A figure
Tulya pradhāna byanga

ସାଧାରଣ ଲୋକେ ଅନେକ ସ୍ଥଳରେ ସ୍ୱତନ୍ତ୍ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍ଖୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

in rhetoric in which the literary and implied meanings of a sentence are the same.

ତୁଲ୍ୟ ବୟସ୍କ—ସଂ ବିଣ. ପୁଂ (ତୁଲ୍ୟ+ବୟସ୍+କ)—ଏକବୟସୀ; ସମବୟସ୍କ—Of the same age; coeval.
Tulya bayaska
(ତୁଲ୍ୟବୟସ୍କା—ସ୍ତ୍ରୀ)

ତୁଲ୍ୟ ମୂଲ୍ୟ—ସଂ. ବିଣ (ବହୁବ୍ରୀହି; ତୁଲ୍ୟ+ମୂଲ୍ୟ)—୧ । ଏକମୂଲ୍ୟବିଶିଷ୍ଟ; ସମାନ ଦରର—1. Of equal value; of the same price.
Tulya mūlya

୨ । ସଦୃଶ—2. Similar.

୩ । ପ୍ରାୟ ସମାନ; ସମକକ୍ଷ—
3. Almost equal; nearly same.

୪ । ଯୋଗ୍ୟ; ଉପଯୁକ୍ତ—4. Fit.

ତୁଲ୍ୟ ଯୋଗିତା—ସଂ. ବି (ତୁଲ୍ୟଯୋଗିନ+ତା)—୧ । କାବ୍ୟାଲଙ୍କାରବିଶେଷ (ଯେଉଁ ଅଳଙ୍କାରରେ ପ୍ରସ୍ତାବିତ ବା ଅପ୍ରସ୍ତାବିତ ବସ୍ତୁର କୌଣସି ଗୁଣ ବା ଧର୍ମ ସଙ୍ଗେ ଅନ୍ୟ ବସ୍ତୁର ଧର୍ମ ବା ଗୁଣ ତୁଳନା ଦ୍ୱାରା ସମ୍ବନ୍ଧ ହୁଏ)—
Tulya jogitā
1. A figure of rhetoric having reference to similitude of two things; simile.

୨ । ସାମ୍ୟ; ସମଗୁଣବିଶିଷ୍ଟତା—
2. Similitude; similarity.

ତୁଲ୍ୟଯୋଗୀ—ସଂ. ବିଣ (ତୁଲ୍ୟ+ଯୁଜ ଧାତୁ+କର୍ତ୍ତୃ. ଇନ୍; ୧ମା.୧ବ) ଯେ ସମାନ ସମ୍ବନ୍ଧ ରଖେ—Maintaining a similar or equal relationship.
Tulyajogī

ତୁଲ୍ୟ ରୂପ—ସଂ. ବିଣ (ବହୁବ୍ରୀହି; ତୁଲ୍ୟ+ରୂପ)—ସମାନ ରୂପ ବା ଆକାରବିଶିଷ୍ଟ—Similar in shape or form.
Tulya rūpa
(ତୁଲ୍ୟରୂପତା—ବି)

ତୁଲ୍ୟ ଶୋଧନ—ସଂ. ବି (ପାରିଭାଷିକ ଶବ୍ଦ)—(ବୀଜଗଣିତ) ସମୀକରଣର ସରଳତା ସମ୍ପାଦନ—(algebra) Simplification of equation; reduction of an algebrical equation by removing the like magnitudes on both sides.
Tulya śodhana

ତୁଲ୍ୟାକୃତି—ସଂ. ବି (ତୁଲ୍ୟ+ଆକୃତି) (କର୍ମଧା)—ସମାନ ଆକାର—Similar shape.
Tulyākṛuti
ବିଣ (ବହୁବ୍ରୀହି)—ସମାନ ଆକାର ବିଶିଷ୍ଟ—Of similar shape or form; similar in shape.

ତୁଲ୍ୟେ—ଗ୍ରା. କ୍ରି. ବିଣ—(ଅନ୍ୟ ବ୍ୟକ୍ତି) ସହିତରେ; ସଙ୍ଗେ—With.
Tulye

ନଳ ଭାରିଜା ସମ ସତୀ, ତାହାଙ୍କ ତୁଲ୍ୟେ ପ୍ରୀତି କର ।
ଭୂପତି, ପ୍ରେମପଞ୍ଚାମୃତ ।

ତୁଷ୍ (ଧାତୁ)—ସଂ—୧ । ସନ୍ତୁଷ୍ଟ ହେବା—1. To be satisfied.
Tush (root)

୨ । ସନ୍ତୁଷ୍ଟ କରିବା—2 To satisfy (Apte).

ତୁଷ—ସଂ. ବି (ତୁଷ୍ ଧାତୁ+କର୍ତ୍ତୃ. ଅ)—୧ । ତଷୁ; ଚୋକଡ଼; ଧାନ୍ୟାଦି ଶସ୍ୟର ଚୋପା; ଭୂଷି—1. Chaff; husk of grain.
Tusha

୨ । ବିଭୀତକ ବା ବାହାଡ଼ା ଗଛ—
2. The Beleric Myrobalan (tree).

୩ । ଡିମ୍ବର ଖୋଳପା (ହି. ଶବ୍ଦସାଗର)—
3. The shell of an egg.

ତୁଷ ଗ୍ରହ—ସଂ. ବି (ତୁଷ=ତଷୁ+ଗ୍ରହ ଧାତୁ+କର୍ତ୍ତୃ. ଅ)—ଅଗ୍ନି—Fire.
Tusha graha

ତୁଷ ସାର—ସଂ. ବି (ବହୁବ୍ରୀହି; ତୁଷ+ସାର)—ଅଗ୍ନି—The fire.
Tusha sāra

ତୁଷାନଳ—ସଂ. ବି (ମ. ପ. ଲୋ. ତୁଷ ଦ୍ୱାରା ଦୀପ୍ତ ଅନଳ)—୧ । ତଷୁ ନିଆଁ A fire made of chaff.
Tushānaḷa
(ତୁଷାଗ୍ନି—ଅନ୍ୟରୂପ) [ଦ୍ର—ଶୁଖିଲା ଘାସ କୁଟା ଓ ଘଷିର ନିଆଁକୁ ମଧ୍ୟ ତୁଷାନଳ ବୋଲାଯାଏ—ହି. ଶବ୍ଦସାଗର । ]

୨ । ତଷୁ ନିଆଁ ଦ୍ୱାରା ଶରୀରଦାହରୂପ ପ୍ରାୟଶ୍ଚିତ୍ତବିଶେଷ—
2. A kind of expiation for sin by being burnt to death.
[ଦ୍ର—କୁମାରିଲ ଭଟ୍ଟ ତୁଷାନଳ ଦ୍ୱାରା ଦଗ୍ଧ ହୋଇ ମରିଥିଲେ—ହି. ଶବ୍ଦସାଗର । ]

ତୁଷାମ୍ବୁ—ସଂ. ବି (ମ. ପ. ଲୋ. ତୁଷ ମିଶ୍ରିତ ଅମ୍ବୁ)—ତଷୁ ସହିତ ଯବଧାନକୁ କୁଟି ତାହାକୁ ସଢ଼ାଇ ତିଆରି କରିବା ଏକପ୍ରକାର କାଞ୍ଜି—A kind of fermented gruel made with barley grains pounded with chaff and put in water.
Tushāmbu
(ତୁଷୋତ୍ଥ, ତୁଷୋଦକ—ଅନ୍ୟରୂପ)
[ଦ୍ର—ବୈଦ୍ୟଶାସ୍ତ୍ର ଅନୁସାରେ ଏହା ଅଗ୍ନିଦୀପକ, ପାଚକ, ହୃଦୟଗ୍ରାହୀ ଓ ତୀକ୍ଷ୍ଣ—ହି. ଶବ୍ଦସାଗର । ]

ତୁଷାର—ସଂ. ବି (ତୁଷ. ଧାତୁ+କର୍ତ୍ତୃ. ଆର)—୧ । ଜଳକଣା—1. Minute particles of water.
Tushāra

୨ । ନୀହାର; କାକର—2. Hoar-frost; dew.

୩ । ବରଫ—3. Ice; snow.

୪ । ଶୀତ; ହିମ—4. Cold.

୫ । କୁହୁଡ଼ି—5. Mist; fog.

୬ । ଏକପ୍ରକାର କର୍ପୂର; ଚୀନା କର୍ପୂର—
6. A kind of camphor

୭ । ପ୍ରାଚୀନ ଦେଶବିଶେଷ—
7. Name of an ancien t country.

[ଦ୍ର—ଏହା ହିମାଳୟର ଉତ୍ତର । ଏହା ଉତ୍କୃଷ୍ଟ ଘୋଡ଼ା ପାଇଁ ପ୍ରସିଦ୍ଧ ଥିଲା; ଏହି ଦେଶବାସୀ ଶକ ଜାତିର ଶାଖା ଅଟନ୍ତି । ହି. ଶବ୍ଦସାଗର । ]

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଋ | ଙ | ର,ର୍ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଞ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ଧ |
| ୨ | ଋ | ଙ୍ | ରୁ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଞ୍ୟ | ଯ | ସ | ତ୍ୟ | ଇଅ | ଡ଼ | ଢ଼ |

ବଣ—ଅତ୍ୟନ୍ତ ଶୀତଳ—Very cold.

ତୁଷାର ଋତୁ—ଦେ. ବ—ଶୀତଋତୁ—
Tushāra ṛutu The winter season.

ତୁଷାର କଣ(ଣା)—ସ. ବ ( ୬ଷ୍ଠୀ ତତ୍; ତୁଷାର+କଣ, କଣା)—
Tushārakaṇa(ṇā) ୧ । ବରଫର କ୍ଷୁଦ୍ର ଖଣ୍ଡ—
1. Minute flakes of snow.
୨ । କାକରର କ୍ଷୁଦ୍ର କ୍ଷୁଦ୍ର ବିନ୍ଦୁ—
2. Minute drops of dew.

ତୁଷାର ଗିରି—ସ. ବ ( ମ. ପ. ଲୋ. ତୁଷାରପୂର୍ଣ୍ଣ ଗିରି )—
Tushāra giri ହିମାଳୟ ପର୍ବତ—The Himalayan mountain
(ତୁଷାରପର୍ବତ, ତୁଷାରଶିଖରୀ, ତୁଷାରାଦ୍ରି, ତୁଷାରଶୃଙ୍ଗୀ—ଅନ୍ୟରୂପ)

ତୁଷାର ଗୌର—ସ. ବଣ—ବରଫ ପରି ଧଳା—
Tushāra gaura Snow-white.
ସ. ବ—କର୍ପୂର (ହି. ଶବ୍ଦସାଗର)—Camphor.

ତୁଷାର ଧବଳ—ସ. ବଣ-୧ । (ତୁଷାରବତ୍ ଧବଳ; ଲୁପ୍ତ କର୍ମଧା)—
Tushāra dhabaḷa ବରଫ ପରି ଧଳା—
1. White as snow; snow-white.
୨ । (୬ମୀ ତତ୍)—ଉପରେ ବରଫ ପଡ଼ିଥିବାରୁ ଧଳା—
2. Snow-covered and looking white.

ତୁଷାର ପାତ—ସ. ବ (୬ଷ୍ଠୀତତ୍;ତୁଷାର+ପାତ)—୧ । ବରଫ ପଡ଼ିବା—
Tushāra pāta 1. Snow-fall.
୨ । କାକର ପଡ଼ିବା—2. Fall of dew.

ତୁଷାର ମୂର୍ତ୍ତି—ସ. ବ (ବହୁବ୍ରୀହି; ତୁଷାର+ମୂର୍ତ୍ତି; ତୁଷାର ପରି ଶୀତଳ
Tushāra mūrtti ମୂର୍ତ୍ତି ଯାହାର )— ତୁଷାରାଂଶୁ (ଦେଖ)
Tushārāmśu (See).

ତୁଷାର ରେଖା—ଦେ. ବ ( ଭୌଗୋଳିକ ପରିଭାଷା )—ଯେଉଁ କଳ୍ପିତ
Tushāra rekhā ଉଚ୍ଚସୀମା ବା ରେଖା ଉପରେ ପଡ଼ିବା
ବରଫ ବର୍ଷକଯାକ ଅଦୌ ତରଳେ ନାହିଁ—
( geography ) Snow-line.

ତୁଷାର ଶିଖର—ସ. ବ ( ବହୁବ୍ରୀହି; ତୁଷାର+ଶିଖର )—
Tushāra śikhara ତୁଷାର ଗିରି ( ଦେଖ )
(ତୁଷାର ଶୃଙ୍ଗ—ଅନ୍ୟରୂପ) Tushāra giri (See)
ସ. ବଣ—ଯେଉଁ ପର୍ବତର ଶୃଙ୍ଗ ତୁଷାରାବୃତ—
Snow-topped ( mountain).

ତୁଷାର ସାର—ସ. ବ (୬ଷ୍ଠୀ. ତତ୍; ତୁଷାର+ସାର)—ଶୀତଳତା—
Tushāra sāra Coolness

ଚନ୍ଦ୍ରିତଚନ୍ଦନାର ସାର, ଚନ୍ଦ୍ରକାନ୍ତପ୍ର ତୁଷାର ସାର ।
କହସୂର୍ଯ୍ୟ କୋଷୋତଳମ୍ ତ. ଗୀତ ।

ତୁଷାରାଂଶୁ—ସ. ବ ( ବହୁବ୍ରୀହି; ତୁଷାର+ଅଂଶୁ; ତୁଷାର ଅର୍ଥାତ୍
Tushārāmśu ଶୀତଳ ଅଛେ ଅଂଶୁ ଯାହାର )—ହିମାଂଶୁ;
ତୁଷାର କର
ତୁଷାର ରଶ୍ମି }—ଅନ୍ୟରୂପ ଚନ୍ଦ୍ରମା;ଚନ୍ଦ୍ର—The moon.

ତୁଷାରାଚ୍ଛନ୍ନ—ସ. ବଣ ( ୩ୟା ତତ୍; ତୁଷାର+ଅଚ୍ଛନ୍ନ )—ତୁଷାର
Tushārāchhanna (କୁହୁଡ଼ି ବା ବରଫ) ଦ୍ୱାରା ଆଚ୍ଛନ୍ନ)—
(ତୁଷାରାବୃତ-ଅନ୍ୟରୂପ) Covered with snow or fog;
foggy; snow-clad

ତୁଷାରାଦ୍ରି—ସ.ବ (ମ.ପ.ଲୋ; ତୁଷାର+ଅଦ୍ରି)—ତୁଷାର ଗିରି (ଦେଖ)
Tushārādri Tushāra giri (See)

ତୁଷିତ—ସ. ବ. (ତୁଷ୍ ଧାତୁ+ସଜ୍ଞାର୍ଥେ ଇତ)—୧ । ଗଣଦେବତା-
Tushita ବିଶେଷ—1 Name of a class of collective
Dieties.
[ଦ୍ର—ଏ ଗଣଦେବତାମାନେ ସଂଖ୍ୟାରେ ୧୨ ଅଟନ୍ତି ଓ
ମନ୍ୱନ୍ତର ଅନୁସାରେ ଏମାନେ ଆପଣା ଆପଣା ଘରରେ ନାମ ବଦଳା-
ବଦଳି କରନ୍ତି—ହି. ଶବ୍ଦସାଗର ]—
୨ । ବିଷ୍ଣୁ (ହି. ଶବ୍ଦସାଗର)—A name of Bishṇu.
୩ । ବୌଦ୍ଧ ଶାସ୍ତ୍ରୋକ୍ତ ସ୍ୱର୍ଗବିଶେଷ—3 Name of a
heaven of the Buddhists.

ତୁଷ୍ଟ—ସ. ବଣ (ତୁଷ. ଧାତୁ+କର୍ତ୍ତୃ. ତ)—୧ । ଆହ୍ଲାଦିତ;ଆନନ୍ଦିତ—
Tushṭa 1. Gladdened.
(ତୁଷ୍ଟତା, ତୁଷ୍ଟି-ବିଶେଷ୍ୟ) ୨ । ତୃପ୍ତ—2. Gratified; pleased.
୩ । ସନ୍ତୁଷ୍ଟ—3. Satisfied; content.

ତୁଷ୍ଟି—ସ. ବ (ତୁଷ. ଧାତୁ+ଭାବ. ତି)—୧ । ସନ୍ତୋଷ—
Tushṭi 1 Contentment.
୨ । ତୃପ୍ତି—2 Gratification; satisfaction.
[ଦ୍ର—ସାଂଖ୍ୟ ମତରେ ତୁଷ୍ଟିକୁ ଆଧ୍ୟାତ୍ମିକ ୪ ପ୍ରକାର ଓ ବାହ୍ୟିକ
୫ ପ୍ରକାର, ଏପରି ୯ ଶ୍ରେଣୀରେ ବିଭକ୍ତ କରାଯାଇଅଛି, ହି.ଶ.ସା]
୩ । ଆନନ୍ଦ; ହର୍ଷ—3. Pleasure; gladness.
୪ । କଂସର ଆଠ ଭାଇ ମଧ୍ୟରୁ ଏକ (ହି. ଶବ୍ଦସାଗର)—
4. One of the 8 brothers of king Kamsa.
୫ । ତନ୍ତ୍ରୋକ୍ତ ଷୋଡ଼ଶମାତୃକା ମଧ୍ୟରୁ ଏକତମା—
5. The name of one of the 16 mother-
Goddesses of the Tantras.

ତୁଷ୍ଟିଁଭାବ—ଗ୍ରା. ବ. (ସ. ତୁଷ୍ଣୀଂଭାବର ଅଶୁଦ୍ଧ ଉଚ୍ଚାରଣ )—
Tushṭiñ bhāba ତୁଷ୍ଣୀଂ ଭାବ (ଦେଖ)—Tūshṇim-bhāba
(See).

ତୁଷ୍ଟିଁଭୂତ—ଗ୍ରା. ବଣ (ସ. ତୁଷ୍ଣୀଂ ଭୂତର ଅଶୁଦ୍ଧ ଉଚ୍ଚାରଣ)—
Tushṭiñ bhuta ତୁଷ୍ଣୀଂଭୂତ (ଦେଖ) Tūshṇimbhuta (See)

ତୁଷ୍ଟିମାନ୍—ସ. ବଣ (ତୁଷ୍ଟି+ଅସ୍ତ୍ୟର୍ଥେ ମତ୍)—ସନ୍ତୋଷଯୁକ୍ତ—
Tushṭimān Contented.
ବ. (ଭାଗବତ) ଉଗ୍ରସେନର ପୁତ୍ର;କଂସର ଭାଇ (ଅନ୍ୟନାମ ତୁଷ୍ଟି)
A brother of King 'Kamsa'.

ତୁଷ୍ଟୁ—ସ. ବ—(ତୁଷ୍ ଧାତୁ=ସନ୍ତୁଷ୍ଟ କରିବା+କର୍ତ୍ତୃ ତୁ)—
Tushṭu କର୍ଣ୍ଣସ୍ଥ ମଣି—A gem worn in the ear.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦଉଥିବା ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଢ଼' ନ ଦେଖିଲେ 'ଗାଢ' ଖୋଜିବେ; 'କୃଷ' ନ ମିଳିଲେ 'କୃଶ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅଶ୍ୱ' ନ ପାଇଲେ 'ଅଶ୍ବ' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

**ତୁସ୍** (ଧାତୁ)—ସ.—ଶବ୍ଦ କରିବା—To make a sound.
Tus (root)

**ତୁସ**—ସ. ବି—ତୁଷ (ଦେଖ)—Tūsha (See)
Tusa

**ତୁସ୍ତ**—ସ. ବି (ତୁସ୍ ଧାତୁ+ଭାବ. ତ)—୧ । ଧୂଳା; ଧୂଳି— 1. Dust; powder
Tusta
୨ । ସୂକ୍ଷ୍ମ ଅଣୁ—2. Minute particle.
୩ । ପୁଷ୍ପ ରଜଃ—3. The farina or pollen of a flower.
୪ । ସ୍ତ୍ରୀ ରଜଃ—4. The menstrual flux.

**ତୁସ୍ତି**—ଗ୍ରା. ବି. ( ସ. ସ୍ତୁତିର ଅଶୁଦ୍ଧ ଉଚ୍ଚାରଣ )—
Tusti ୧ । ସ୍ତୁତି; ସ୍ତବ—1. Prayer.
(ଜଜା—ଭପସ୍ୱାଳ) ୨ । ପ୍ରଶଂସା—2 Praise.

**ତୁହ୍** (ଧାତୁ)—ସ—ପୀଡ଼ା ଦେବା—
Tuh (root) To give pain; to trouble

**ତୁହା**—ଦେ. ବି—ତୁଅ; ଥର; ବାର—
Tuhā Time; occasion.
वार ଥରକେ ଯେବେ ଦେଖେ, ନୋହିବ ଜାଣେଁକ, କହିବା ଦେଲେ ତୁହା
दफा ତୁହାଇ । ଗୀ । କବିସୂର୍ଯ୍ୟ, ସଙ୍ଗୀତ ।

**ତୁହାଇ**—ଦେ. କ୍ରି. ବିଣ—ବାରମ୍ବାର—
Tuhāi Repeatedly.
बारबार ମାଗିଲ ପଡ ବଧ ସେ ତୁହାଇ ।
बारंबार ବୃନ୍ଦାବନ ହି. ମହାଭାରତ. ଅବ ।

**ତୁହାଇବା**—ଦେ. କ୍ରି. ( ସ. ଦ୍ୱିବାର, ତ୍ରିବାର )—
Tuhāibā ୧ । ବାରମ୍ବାର କହିବା—1. To rapeat saying of thing.
दुहराना
୨ । ଥରକୁଥର କୌଣସି କାର୍ଯ୍ୟ କରିବା; ଲଢାଇବା—
2. To do a thing repeatedly.

**ତୁହାଇ ତୁହାଇ**—ଦେ. କ୍ରି. ବିଣ—ବାରମ୍ବାର; ଥରକୁ ଥର—
Tuhāi tuhāi Repeatedly; over and over.
बारंबार ତୁହାଇ ତୁହାଇ ସ୍ତୁତ ଦେଇ ଥଲେ ତୁହା ନ ହୋଇବ ସ୍ତୁତା—ଗୀତ ।
बारंबार

**ତୁହାକୁ ତୁହା**—ଦେ. କ୍ରି. ବିଣ—ତୁହାଇ ତୁହାଇ ( ଦେଖ )
Tuhāku tuhā Tuhāi tuhāi ( See ).
ତୁହାକୁ ତୁହା ବର୍ଷା ହେଉଛି । ଫକୀରମୋହନ. ଛମାଣ ଆଠଗୁଣ୍ଠ ।
(ତୁହା ତୁହାକୁ—ଅନ୍ୟରୂପ)

**ତୁହି**—ଦେ. ସର୍ବନାମ ( ସ. ତ୍ୱଂ. ପ୍ରା. ତୁହ )—
Tuhi ( ଘୃଣା, ଅତି ପରିଚୟ ଓ ଅନାଦରସୂଚକ ) ତୁଇ—
तुई Thou ( used is contempt, familiarity and disregard ).
तू
ତୁହି ସହି । ପରମାତ ବଡ଼ ତୁହି ଶୋ । କବିସୂର୍ଯ୍ୟ, କଳୋପକଥା. ସ ଗୀତ ।

**ତୁହିନ**—ସ. ବି ( ତୁହ୍ ଧାତୁ=ପୀଡ଼ାଦେବା+କର୍ତ୍ତୃ. ଇନ )—
Tuhina ୧ । ହିମ—1. Cold.
୨ । କୁହୁଡ଼ି—2. Mist; fog.
୩ । କାକର—3. Dew; hoarfrost.
୪ । ଚନ୍ଦ୍ରକିରଣ; ଜ୍ୟୋତ୍ସ୍ନା—4. Moonlight
ବିଣ—୧ । ଶୀତଳ; କାକର; ଥଣ୍ଡା—
1. Cold; cool.
୨ । ହେମ କାକର; ବରଫ ପରି ଥଣ୍ଡା—2. Ice-cold.
ଗ୍ରା ( ପଦ୍ୟ ) ବାକ୍ୟ ( ଓ. ତୁ+ସ. ହୀନ) ତୁ ହୀନ ଅଛୁ—
Thou art mean.
ବଧାତା ତୁହିନ ବୋଲିଛ ଜାଣି
ବଦଗ୍ଧ କରୁ ତ ପଦ୍ମିନୀଶ୍ରେଣୀ—ଉପେନ୍ଦ୍ର, ବୈଦେହୀଶବିଳାସ ।

**ତୁହିନ କର**—ସ. ବି (ବହୁବ୍ରୀହି; ତୁହିନ+କର )—୧ । ଚନ୍ଦ୍ର—
Tuhina kara 1 The moon.
( ତୁହିନପାଥିତ, ତୁହିନାଂଶୁ—ଅନ୍ୟରୂପ ) ୨ । କର୍ପୂର—
2. Camphor.

**ତୁହିନ ଗିରି**—ସ. ବି (ମ.ପ. ଲୋ. ତୁହିନାବୃତ ଗିରି)—ହିମାଳୟପର୍ବତ—
Tuhina giri The Himalayan mountain.
(ତୁହିନଶିଖରୀ, ତୁହିନାଦ୍ରି—ଅନ୍ୟରୂପ)

**ତୂ** (ଧାତୁ)—ସ.—୧ । ହିଂସା କରିବା; ବଧ କରିବା—
Tū root) 1. To envy; to kill.
୨ । ବୃଦ୍ଧିପାଇବା—2. To increase.

**ତୂଣ୍** (ଧାତୁ)—ସଂ—ପୂର୍ଣ୍ଣ ହେବା—
Tūṇ (root) To be filled.

**ତୂଣ**—ସ. ବି (ତୂଣ୍.ଧାତୁ+କର୍ତ୍ତୃବାଚ୍ୟେ. ଅ; ଯାହା ବାଣରେ ପୂର୍ଣ୍ଣ ଥାଏ)-
Tūṇa ୧ । ଶରମୁଣା; ବାଣ ରଖିବାର ଥଳି ବା ଖୋଳ; ଶରଧି—
( ତୂଣୀ—ଅନ୍ୟରୂପ ) 1. A quiver ( for arrows ).
୨ । ତୂଣକ ( ଦେଖ )—Tūṇaka ( See )
ଗ୍ରା. ବି. ( ସ. ତେମନ; ତୃଣାମ୍ଳ )—ବ୍ୟଞ୍ଜନ; ଛଅଣ—Curry.

**ତୂଣକ**—ସ. ବି—ଛନ୍ଦର ଛନ୍ଦୋବିଶେଷ; ଏଥିରେ ୧୫ ଗୋଟି
Tūṇa ka ଅକ୍ଷର ଥାଏ; ଏଥିର ଅଯୁଗ୍ମ ବର୍ଣ୍ଣମାନ ଗୁରୁ ଓ ଯୁଗ୍ମ ବର୍ଣ୍ଣମାନ ଲଘୁ—A measure of verse with 15 letters in which the odd letters are long and even letters short.
( ଯଥା—ରାମ ରାମ ରାମ ରାମ ରାମ ରାମ ରାମ ରାମ ହେ । )

**ତୂଣୀ**—ସ. ବି. (ତୂଣ ଧାତୁ+ସ୍ୱାର୍ଥେ. ଈ)—୧ । ତୂଣ; ଶରମୁଣା—
Tūṇī 1. Quiver for arrows.
୨ । ନୀଳଗଛ—2, Indigo plant.
୩ । ମୂତ୍ରାଶୟରୁ ବ୍ୟଥା ଉଠିବା ବାତରୋଗବିଶେଷ ( ହି. ଶବ୍ଦସାଗର )—3. A kind of disease.
ସ. ବିଣ. ପୁଂ. ( ତୂଣ+ଇନ୍; ୧ମା. ୧ବ. )—ତୂଣଧାରୀ—
Bearing a quiver.

| ୧ | ଇ | ଜ | ଋ,ହ୍ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଘ | ଢ | ଷ,ସ | ଙ୍କ | ଇସ୍ତ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୃ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ୟ | ଇଥ | ଢ଼ | ନ୍ତ |

ତୂଣୀକ—ସଂ. ବ—ତୁନ୍ ଗଛ ( ହି. ଶବ୍ଦସାଗର ) ଦେଖ)
Tūṇika The toon tree; Tun ( See )

ତୂଣୀର—ସଂ. ବ. ( ତୂଣ ଧାତୁ+କର୍ମ ଈର )—ତୂଣ ( ଦେଖ )
Tūṇira Tūṇa ( See )

ତୂତକ—ସଂ. ବ—ତୁତିଆ—
Tūtaka Blue vitriol; copper sulphate.

ତୂଦା—ଦେଶଜ. ବି. ( ଗ୍ରା. )—୧ । ରାଶି; ଗଦା—
Tūdā 1. Heap.
ତୁଦା ୨ । ସୀମାର ଚିହ୍ନ—2. Boundary-mark.
ତୁଦ୍ଦା ୩ । ଶର, ବନ୍ଧୁକ ଅଭ୍ୟାସ ଲକ୍ଷ୍ୟଭେଦ ଶିକ୍ଷା କରିବା ପାଇଁ ପ୍ରସ୍ତୁତ ମାଟି ଗଦା—
3. A mound of earth to which beginners aim arrows and bullets during target-practice.

ତୂବର—ସଂ. ବ. ( ତୁ ଧାତୁ+ବର )—୧ । ଅଜାତଶୃଙ୍ଗ ଗୋରୁ—
Tūbara 1 Cattle which has not yet grown horns.
( ତୂବରକ—ଅନ୍ୟରୂପ )
୨ । ଶୃଙ୍ଗହୀନ ବୃଷ—2. A hornless bull.
୩ । ମାକୁନ୍ଦା ବା ଶ୍ମଶ୍ରୁହୀନ ଲୋକ—
3. A beardless man.
୪ । ନପୁଂସକ—4. An eunoch,
୫ । କଷାୟ ରସ—5. Astringent taste.
ବନଚରମାନଙ୍କରେ ଯାହା ସ୍ୱାଦକ ଦନ୍ତଙ୍କେ ଅଳ ତୂବର—
ଉଦ୍ଧ. ବୈଦେହୀଶବିଳାସ ।
ବିଣ—୧ । କଷା—1. Of astringent taste.
୨ । ନପୁଂସକ—2. Neuter; unmanly.

ତୂବରିକା—ସଂ. ବି. (ତୂବର+ଇକ+ସ୍ତ୍ରୀ. ଆ)—ଫିଟ୍‌କିରି; ଟାଙ୍ଗଣା—
Tūbarikā Borax

ତୂବରୀ—ସଂ. ବି. ( ତୂବର+ସ୍ତ୍ରୀ. ଈ )—ସୌରାଷ୍ଟ୍ର ମୃତ୍ତିକା—
Tūbari Earth or yellow soil of Gujerat.

ତୂର୍ ( ଧାତୁ )—ସଂ । ୧ । ଶୀଘ୍ର ଗମନ କରିବା—
Tūr (root) 1. To move quickly or swiftly.
୨ । ହିଂସା କରିବା—
2. To injure; to kill; to envy.

ତୂର—ସଂ. ବି. ( ତୂର୍ ଧାତୁ=ଶୀଘ୍ର ଗମନ କରିବା+କର୍ତ୍ତୃ ଅ)—
Tūra ୧ । ତୂର୍ଯ୍ୟ; ଭେରୀ—1. A bugle; trumpet.
୨ । କାହାଳୀ; ପେଁକାଳୀ; ପିତ୍ତଳ ନିର୍ମିତ ମହୁରୀ—
2. Clarionet.
ଅଗରେ ବାଜନ୍ତି ଯେ ବାଜିଇ ଘାର ତୂର
ଦୋଷାଧୁ ବୋଲଇ ତୁମ୍ଭେ ଶୁଣ ସଜନର—ବଳରାମ. ଦାଣ୍ଡିରାମାୟଣ ।
୩ । (+ଭାବ. ଅ) ବେଗ—3. Speed ( Apte ).
୪ । (+କର୍ତ୍ତୃ. ଅ) ହରକରା; ଧାବକ—
4. Courier ( Apte ).
୫ । (+ଭାବ. ଅ) ତ୍ୱରାନ୍ୱିତ ହେବା—
5. Hastening ( Apte ).

ତୂରୀ—ସଂ. ବି. ( ତୂର୍ ଧାତୁ+ଈ )—୧ । ତୂର ( ଦେଖ )
Tūri 1. Tūra ( See )
ସଂହାରେ ବଡ ବଜାଇଲେ ଢୋଲ ତୂରୀ
ନୃପଙ୍କ ସନ୍ଦରେ ଯାଇଁ ଜଣାଇଲେ ଦାସ ଯେ—ଉପେ. ଲାବଣ୍ୟବତୀ ।
୨ । ଧାତୁରା—2. Thorn apple (Apte)

ତୂର୍ଣ୍ଣ—ସଂ. ବିଣ. ( ତୂର୍ ଧାତୁ=ଶୀଘ୍ର ଗମନ କରିବା+କର୍ତ୍ତୃ. ତ )—
Tūrṇṇa ତ୍ୱରାନ୍ୱିତ ହେଲା; ଦ୍ରୁତ—
Speedy; hasty; brisk; swift.
ସଂ. କ୍ରି. ବିଣ. ( ସଂ. ତୂର୍ଣ୍ଣଂ; ତୂର୍ ଧାତୁ+ତ )—ଅବିଳମ୍ବେ; ଅତିଶୀଘ୍ର; ସତ୍ୱର; ତ୍ୱରିତ, ତୁରନ୍ତ—
Sharp; speedily; swiftly; hastily.
ପାଉଛି ଯିବ ଉଠି ତ ହାକୁ ତୂର୍ଣ୍ଣରେ—କୃଷ୍ଣସିଂହ. ମହାଭାରତ. ବନ ।

ତୂର୍ଣ୍ଣି—ସଂ. ବି. ( ତୂର୍ ଧାତୁ+ଭାବ ନି )—୧ । ବେଗ—
Tūrṇṇi 1. Speed; force; swiftness.
୨ । (+କର୍ତ୍ତୃ. ନି) ମଳ; ବିଷ୍ଠା—2. Excrement.
୩ । ମନ—3. The mind.
୪ । (+ଭାବ. ନି) ତ୍ୱରା—4. Haste.
୫ । (+କର୍ତ୍ତୃ. ନି) ଶ୍ଳୋକ—5. A stanza.

ତୂର୍ଯ୍ୟ—ସଂ. ବି. ( ତୂର୍ ଧାତୁ+କର୍ମ. ଯ; ବା ଚତୁର+ଯ )—
Tūrjya ୧ । ବାଦ୍ୟଯନ୍ତ୍ରବିଶେଷ—
(ତୂର୍ଯ—ଅନ୍ୟରୂପ) 1. A musical instrument.
୨ । ଏକକ ବାଦିତ ବହୁଧ ବାଦ୍ୟ—
2. Many musical instrments struck simultaneously; a band of musical instruments.
୩ । ( ଚତୁର+ସମ୍ବନ୍ଧାର୍ଥେ. ଯ; ଚତୁର ସ୍ଥାନରେ ତୂର୍ ଆଦେଶ ) ଚତୁର୍ଥାଂଶ—
3. A fourth part; a quarter.
୪ । ଯୋଗର ଚତୁର୍ଥ ଅବସ୍ଥା; ତୁରୀୟ ଅବସ୍ଥା—
4. The fourth step in joga-practice.

ତୂର୍ଯ୍ୟଖଣ୍ଡ—ସଂ. ବି—ଖଞ୍ଜଣୀ—
Tūrjya khaṇḍa Tabor ( Apte; M. W. ).
( ତୂର୍ଯ୍ୟ ଗଣ୍ଡ—ଅନ୍ୟରୂପ )

ତୂର୍ଯ୍ୟାଚାର୍ଯ୍ୟ—ସଂ. ବି. (ଷଷ୍ଠୀ ତତ୍; ତୂର୍ଯ୍ୟ+ଆଚାର୍ଯ୍ୟ )—ବାଦ୍ୟଶିକ୍ଷକ;
Tūrjyāchārjya ଓସ୍ତାଦ୍—Music master; band-master.

ତୂର୍ଯ୍ୟାଜୀବ—ସଂ. ବି. ( ବହୁବ୍ରୀହି; ତୂର୍ଯ୍ୟ=ବାଦ୍ୟ+ଆଜୀବ=ଜୀବିକା ଯାହାର )—ବାଜାବାଲା; ବାଦ୍ୟ ବ୍ୟବସାୟୀ—
Tūrjyājiba A musician by profession.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦିଆଯାଇଥିବା ୧ ଚକ୍ରର ଅକ୍ଷର ଓ ମାତ୍ରା ଏବଂ ୨ ଚକ୍ରର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚକ୍ରର ବିପରୀତ ୨ ବା ୧ ଚକ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଉ' ନ ମିଳିଲେ 'ଗାଉ' ଖୋଜିବେ; 'କୁଠ' ନ ମିଳିଲେ 'କଠ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଗ୍ୟ'ନ ପାଇଲେ 'ଅର୍ଘ୍ୟ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ତୂଲ୍ ( ଧାତୁ )— ସ.—୧ । ଓଜନ କରିବା—
Tūl ( root ) 1. To weigh
୨ । ତଡ଼ି ଦେବା—2. To drive out (Apte).
୩ । ପୂର୍ତ୍ତି କରିବା—3 To fill (Apte).
୪ । ମାପିବା—4. To measure.

ତୂଲ—ସ. ବି. ( ତୂଲ୍ ଧାତୁ=ଓଜନ କରିବା+ଅ )—୧ । ତୂଳା—
Tūla 1. Picked cotton.
୨ । ଶିମିଳି ତୂଳା - 2. Simmul cotton; silk cotton
୩ । ଆକାଶ—3 The sky
୪ । ତେନ୍ତୁଳି ଗଛ—4 Tamarind tree.
୫ । ତୁତ ଗଛ—
5. The mulberry tree.
୬ । ଘାସର ବିଡ଼ା—
6. A tuft of grass ( Apte ).
୭ । ଧାତୁରା—7. Thorn apple (Apte).
୮ । ବାୟୁ ମଣ୍ଡଳ—8. Atmosphere; air (Apte).
୯ । ଫୁଲର କେଣ୍ଡା—
9. A panicle of flowers (Apte).

ତୂଲକ—ସ. ବି. ( ତୂଲ+ସ୍ୱାର୍ଥେ. କ )—କପା—
Tūlaka Picked cotton.

ତୂଲ କାର୍ମ୍ମୁକ—ସ. ବି. ( ତୂଲ+କାର୍ମ୍ମୁକ )—
Tūla kārmmuka ତୂଳା ଘଷିବାର ଧନୁକାକାର ଯନ୍ତ୍ର—
(ତୂଲଚାପ, ତୂଲଧନୁଃ—ଅନ୍ୟରୂପ) The cotton-carding bow.

ତୂଲ ନାଳ(ଳୀ)—ସ. ବି. ( ୬ଷ୍ଠୀ ତତ୍; ତୂଲ+ନାଳ; ନାଳୀ )—
Tūla nāḷi(ḷī) ତୂଳାର ବଉଣା; ତୂଳା ବଳା ହୋଇ କଟା
(ତୂଲ ନାଳିକା—ଅନ୍ୟରୂପ) ଯାଇଥିବା ଲମ୍ବ ପିଣ୍ଡ—
A skein of cotton; twist cotton; a thick roll of cotton drawn out for spinning.

ତୂଲ ବୃକ୍ଷ—ସ. ବି—ଶିମିଳି ଗଛ—
Tūla brūksha The silk-cotton tree.

ତୂଲ ଶର୍କରା—ସ. ବି. ( ତୂଲ=ତୂଳା+ଶର୍କରା=ଗୋଡ଼ି )—
Tūla śarkarā ତୂଳା ମଞ୍ଜି—Cotton seed.

ତୂଲ ସେଚନ—ସ. ବି. ( ୬ଷ୍ଠୀ ତତ୍; ତୂଲ=ତୂଳା+ସିଚ୍ ଧାତୁ= ସେଚନ କରିବା+ଭାବ, ଅନ )—
Tūla sechana
ତୂଳାରୁ ସୂତା କାଟିବା—Act of spinning.

ତୂଲା—ସ. ବି. ( ତୂଲ ଧାତୁ+କର୍ମ ଅ+ଆ )—
Tūlā ୧ । କପା ଗଛ—1 The cotton tree.
୨ । ଦୀପର ବତି; ସଳିତା—
2. The wick of a lamp (Apte).

ତୂଲା କୋଟି—ସ. ବି—ତୁଲା କୋଟି ୧ ( ଦେଖ )
Tūlā koṭi Tulā koṭi 1 ( See )

ତୂଳି—ସ. ବି—ତୁଳି ( ଦେଖ )
Tūḷi Tuḷi ( See )
ଗୁନ୍ଥି ଫୁଲମାଳୀ ମାଳୀ ପ୍ରାପ୍ତେ ପାଟ ତୂଳ ତୂଳି ତୂଳିକେ ଚିତ୍ର ଲେଖିବ ଭଲ ଭଲ ।
ଭଞ୍ଜ ପ୍ରେମସୁଧାନିଧି ।

ତୂଳିକ—ଦେ. ବି—ତୁଳିକ ( ଦେଖ )
Tūḷika Tuḷika ( See )
ଗୁନ୍ଥି ଫୁଲ ମାଳୀ ମାଳୀ ପ୍ରାପ୍ତେ ପାଟ ତୂଳିତୂଳି ତୂଳିକେ ଚିତ୍ର ଲେଖିବ ଭଲ ଭଲ ।
ଭଞ୍ଜ. ପ୍ରେମସୁଧାନିଧି ।

ତୂଳିକା—ସ. ବି (ତୂଳ+କ+ଆ)—୧ । ତୁଳି ( ଦେଖ )
Tūḷikā 1. Tuḷi ( See )
୨ । କାଠକୁ ଭଅଁର କରିବା ଯନ୍ତ୍ର—
2. A boring instrument (Apte).
୩ । ଧାତୁ ତରଳା ହୋଇ ଢଳା ହେବା ଛାଞ୍ଚ—
3. An ingot mould (Apte).
୪ । ଘାଆଦିର ଗଭୀରତା ନିରୂପଣାର୍ଥ ବ୍ୟବହୃତ କାଠି—
4. A probing rod (Apte).

ତୂଳିନୀ—ସ. ବି. ସ୍ତ୍ରୀ. ( ତୂଳ+ଇନ୍+ସ୍ତ୍ରୀ. ଈ )—ଶିମିଳି ଗଛ—
Tūḷinī The silk cotton tree, Bombax
(ତୂଳଫଳା—ଅନ୍ୟରୂପ) Malabarica.

ତୂଳୀ—ସ. ବି. ( ତୂଳ ଧାତୁ+ଈ )—
Tūḷī ୧ । ତୂଳା—1. Cotton.
୨ । ଦୀପର ବତି—
2. The wick of a lamp ( Apte ).
୩ । ତନ୍ତୀର ତାସଣି—3. A weaver's fibrous stick or brush (Apte).
୪ । ଚିତ୍ରକରର ଚିତ୍ର-ଲେଖନୀ—
4. A painter's brush (Apte).
୫ । ନୀଳ ଗୁଳ୍ମ—5 The indigo plant (Apte).

ତୁଷ୍ (ଧାତୁ)—୧ । ତୃପ୍ତ ହେବା—
Tūsh (rot) 1. To be satisfied.
୨ । ତୃପ୍ତ କରିବା—2. To satisfy; to please.

ତୂଷ—ସ. ବି—ତୁଷ ୧ ( ଦେଖ )
Tūsha Tusha 1 ( See )
ଏ ସ୍ୱର୍ଣ୍ଣ ମାଗଇ ଯେମନ୍ତେ
ତୂଷ ମାଗିବା ଧନବନ୍ତେ । ଜଗନ୍ନାଥ. ଭାଗବତ ।

ତୂଷ୍ଣୀ—ଦେ. ଅ. (ସ. ତୂଷ୍ଣୀଂ)—ତୂଷ୍ଣୀଂ (ଦେଖ)
Tūshṇī Tūshṇīm (See)

ତୂଷ୍ଣୀଂ—ସ. ଅ. ( ତୁଷ୍ ଧାତୁ+ନୀଂ )—୧ । ନୀରବରେ; ମୌନ ହୋଇ—
Tūshṇīm 1. Silently.
୨ । ଶୀଘ୍ର; ଝଟପଟ—2. Quickly (Apte).
୩ । ଗୋଳମାଳ ନ କରି—
3 Without noise (Apte).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଣ,ଷ | ଙ୍କ | ଞ୍ଚ | ଡ୍‌ଯ | ଢ |
| ୨ | ଈ | ଊ | ଋୁ | ଌୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ | ଯ | ସ | ଂୟ | ଞ୍ଥ | ଡ଼ | ଢ଼ |

ତୂଷ୍ଣୀଂ ଭାବ—ସଂ. ପୁ—ମୌନାବସ୍ଥା; ନୀରବତା—
Tūshṇīmbhāba Silence; reticence.

ତୂଷ୍ଣୀଭାବ—ଦେ. ବି—ତୂଷ୍ଣୀଂ ଭାବ (ଦେଖ)
Tūshṇī bhāba Tūshṇīm bhāba (See)

ତୂଷ୍ଣୀଭୂତ—ଦେ. ବଣ. (ସଂ. ତୂଷ୍ଣୀମ୍ଭୂତ)—ତୂଷ୍ଣୀମ୍ଭୂତ (ଦେଖ)
Tūshṇībhūta Tūshṇīmbhūta (See)

ତୂଷ୍ଣୀମ୍ଭୂତ—ସଂ. ବଣ. ପୁଂ. (ତୂଷ୍ଣୀଂ+ଭୂତ)—ନୀରବ; ମୌନୀ—
Tūshṇīmbhūta Silent; become silent or grave
(ତୂଷ୍ଣୀଂଭୂତ—ଅନ୍ୟରୂପ) (ତୂଷ୍ଣୀମ୍ଭୂତା—ସ୍ତ୍ରୀ)

ତୂଷ୍ଣୀଂଶୀଳ—ସଂ. ବଣ. ପୁଂ—୧ । ମୌନୀ—
Tūshṇīm śīla 1. Silent; taciturn.
(ତୂଷ୍ଣୀଂ ଶୀଳା—ସ୍ତ୍ରୀ) ୨ । ଗମ୍ଭୀର—2 Grave.

ତୂଷ୍ଣୀକ—ସଂ. ବଣ. ପୁଂ. (ତୂଷ୍ଣୀଂ+ଇକ)—ମୌନୀ; ନୀରବ—
Tūshṇīka Silent; grave; taciturn.
(ତୂଷ୍ଣୀକା—ସ୍ତ୍ରୀ) (ତୂଷ୍ଣୀମ୍ବକ, ତୂଷ୍ଣୀମ୍ଭିକ—ଅନ୍ୟରୂପ)

ତୂସ ଦେଦେ. ବି. (ହିନ୍ଦୁସ୍ଥାନୀ—ତୋସ୍)—୧ । ହିମାଳୟର ଅତି
Tūs ଶୀତଳ ପ୍ରଦେଶରେ ବିଚରଣ କରୁଥିବା ଏକଜାତୀୟ
तूस ଛେଳିର ଖୁବ ପତଳା ଲୋମ; ପଶମ—1. Fine wool
तूस obtained from a kind of goat found in
the coldest regions of the Himalayas and
the Altai mountains.

[ଦ୍ର—ତୂସ୍ ଉତ୍ପାଦନକାରୀ ଛେଳି ହିମାଳୟର ଉଚ୍ଚତମ ଓ ଶୀତଳତମ ପ୍ରଦେଶରେ କାଶ୍ମୀରଠାରୁ ଭାରତର ଉତ୍ତର ପଶ୍ଚିମ ଅଲଟାଇ ପର୍ବତପର୍ଯ୍ୟନ୍ତ ବିଚରଣ କରନ୍ତି । ଏ ଛେଳିର ଚମଡ଼ା ଉପରେ ଖୁବ୍ ଘନ ଲୋମର ସ୍ତର ଥାଏ ଓ ଉକ୍ତ ଲୋମର ମୂଳରେ ଖୁବ୍ ପତଳା ଓ ତୁଳାପରି ଯେଉଁ ନରମ ପଶମ ଥାଏ ତାହାକୁ ତୂସ୍ କୋଲଯାଏ । ଏହି ତୂସ୍ ପଶମର ବର୍ଣ୍ଣ ଫିକାକଳା ବା ସ୍ଲେଟ୍‌ର ରଙ୍ଗପରି । ଏହି ତୂସ୍‌ରେ ବୁଣା ଶାଲ ବହୁ ମୂଲ୍ୟବାନ୍ । ଏହି ଛେଳିର ଚମର ଉପର ପାଖେ ଯେଉଁ ଲୋମ ଥାଏ ତାହା ତୂସ୍ ଅପେକ୍ଷା ଡାଙ୍ଗୁଆ ଓ ମୋଟ ଓ ସେହି ଲୋମରେ ସୂତା କଳାଯାଇ ପଟ୍ଟୁ ନାମକ ବସ୍ତ୍ର ତିଆରି ହୁଏ; ହି. ଶବ୍ଦସାଗର ।]

୨ । ତୂସ୍ ପଶମରେ ତିଆରି କମ୍ବଳ—2. Blanket made from the fine wool of the above goat.

ତୂସୀ—ଦେଦେ. ବଣ.—(ହିନ୍ଦୁସ୍ଥାନୀ. ତୋସୀ)—୧ । ସ୍ଲେଟର ରଙ୍ଗପରି
Tūsī ଫିକା କଳା—1. Slate-coloured.
तूसी ୨ । ତୂସ୍ ଲୋମ ନିର୍ମିତ—
तुसी 2. Made of the Tūs wool.
ଦେଦେ. ବି.—ତୂସ୍ ଲୋମରେ ବୁଣା ଉତ୍କୃଷ୍ଟ ବହୁମୂଲ୍ୟ ଶାଲ—
Shawl made from the fine Tūs wool.

ତୂସ୍ତ—ସଂ. ବି. (ତୁସ୍ ଧାତୁ+ତ)—୧ । ଜଟା—
Tūsta 1. Matted hair (Apte).
୨ । ଧୂଳି—2. Dust (Apte).
୩ । ଅଣୁ; କଣିକା—3. Atom; minute particle.
୪ । ପାପ—4 Sin (Apte)
୫ । ଧନୁ; ଧନୁଃ (ହି. ଶବ୍ଦସାଗର)—5. Bow.

ତୃକ୍ଷ୍ (ଧାତୁ)—ସଂ.—ଗତି କରିବା; ଯିବା—
Truksh (root) To go; to move.

ତୃକ୍ଷ—ସଂ. ବି.—(ତୃକ୍ଷ୍ ଧାତୁ+କର୍ତ୍ତୃ. ଅ)—କଶ୍ୟପ ଋଷି—
Truksha The sage Kasyapa.

ତୃଖ—ସଂ. ପୁ.—ଜାଇଫଳ; ଜାଇଫଳ (ହି. ଶବ୍ଦସାଗର)—
Trukha Nutmeg (Apte).

ତୃଟିକ—ଦେ. ପ.—ଅଳ୍ପକ୍ଷଣ—
Trutika Very short time.
ତୃମ୍ଭକୁ ନ ଦେଖି ଅଛ, ତୃଟିକ ଯୁଗକେ ଅକାର । ପ୍ରାଚୀ. ପୂର୍ଣ୍ଣଚନ୍ଦ୍ରୋଦୟ ।

ତୃଣ୍ (ଧାତୁ)—ସଂ.—୧ । ଭକ୍ଷଣ କରିବା—
Truṇ (root) 1. To eat.
୨ । ଘାସ ଚରିବା—2. To graze (Apt)

ତୃଣ—ସଂ. ବି.—(ତୃଣ୍ ଧାତୁ+କର୍ମ. ଅ; ଯାହାକୁ ଗୋମେଷାଦି ଭକ୍ଷଣ
Truṇa କରନ୍ତି; କମ୍ବା ତୃହ୍ ଧାତୁ=ଆଘାତ କରିବା+ଣ; ଯାହାକୁ ସମସ୍ତେ ଗୋଡ଼ଦ୍ୱାରା ମାଡ଼ି ଆଘାତ କରନ୍ତି; କମ୍ବା ତୃଦ୍ ଧାତୁ =ବୃଦ୍ଧି ପାଇବା+କର୍ତ୍ତୃ. ଣ; ଯାହା ବିନା ଯତ୍ନରେ ବଢ଼େ)
୧ । ଘାସ—1. Grass.

[ଦ୍ର—ତୃଣ କାଣ୍ଡରେ ମଜ୍ଜା ନଥାଏ, ଏହାର କାଣ୍ଡ ବା ଡାଙ୍ଗ ଫମ୍ପା ଏବଂ ଗଣ୍ଠିଥିଏ; ଦୁଇଗଣ୍ଠି ମଧ୍ୟସ୍ଥ ଅଂଶକୁ ପର୍ବ କୋଲଯାଏ, ଧାନ ଗଛ ଓ ବାଉଁଶଗଛ ମଧ୍ୟ ତୃଣ ଶ୍ରେଣୀର ।]

୨ । ନଡ଼ା—2. Straw.
୩ । ଗନ୍ଧତୃଣ—3. Scented grass.
୪ । ବାଉଁଶ—4 Bamboo.
୫ । କାଣ୍ଡଶର, ନଳ. କେଶା, ଭୁଶଅଦି—5. Reeds.
୬ । (ଲକ୍ଷ୍ୟାର୍ଥ) ଘାସପରି ନୀଚ, ନଗଣ୍ୟ ବା ତୁଚ୍ଛ ବ୍ୟକ୍ତି ବା ବସ୍ତୁ—6. A thing or person beneath one's contempt or notice; a thing or person of no worth or substance.
ଗ୍ରା. ବି.—(ସଂ. ତୂଣୀର) କାଣ୍ଡମୁଣା; ତୂଣୀର—A quiver.
ଲକ୍ଷେ ବାଣ ତୃଣ କାଢ଼ି ଗୁଣେ ବସାଇଲେ,
ଚୈତନ୍ୟ ଉପରକୁ କୋପେ ନରାଚ ମାରିଲେ । ଶାରଳା. ବଳକାସମାସୃଣ ।

ତୃଣ କରି ଗଣିବା—ଦେ. କ୍ରି—ତୃଣ ଜ୍ଞାନ କରିବା (ଦେଖ)
Truṇa kari gaṇibā Truṇa jñāna karibā (See)
तृण ज्ञानकरना ଭକ୍ତ ହୋଇ ଏକଠାରେ ରହିେ ମହାବଳୀ,
तुच्छ जानना ମହାବଳ ଅବଳ ତୃଣ କରି ଗଣି । ପଧାନାଥ. ମହାଯାତ୍ରା ।

ତୃଣ କୁଙ୍କୁମ—ସଂ. ବି.—୧ । ରୋହିଷତୃଣ; ସୁଗନ୍ଧ ଘାସ—
Truṇa kuṅkuma (ହି. ଶବ୍ଦସାଗର)—
A kind of scented grass.

ସାଧାରଣ ଲୋକେ ଅପର ଦୃଷ୍ଟାରେ ଦ୍ୱିପଦ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୁଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

[ଦ୍ର—ଏହାର ଅନ୍ୟ ସଂ. ନାମ ତୃଣାସ୍ର, ଗନ୍ଧତୃଣ, ଶୋଣିତ, ତୃଣପୁଷ୍ପ, ଗନ୍ଧାଢ୍ୟକ, ତୃଣୋତ୍ଥ, ତୃଣଗୌର ଓ ଶ୍ଲେଷ୍ମଳ । ବୈଦ୍ୟଶାସ୍ତ୍ର ମତରେ ଏହା କଟୂରସ, ଉଷ୍ଣବୀର୍ଯ୍ୟ, ସ୍ୱରଭେଦ ଏବଂ କଫ, ବାୟୁ, ଶୋଥ, କଣ୍ଡୂ, ପାମା, କୁଷ୍ଠ ଓ ଆମଦୋଷ ନାଶକ—ଦେବେନ୍ଦ୍ର—ଦ୍ରବ୍ୟଗୁଣ ।]

୨ । ସୁଗନ୍ଧବିଶେଷ—

2. A variety of perfume (Apte).

ତୃଣ କୁଟୀର—ସଂ. ବି.—(୬ଷ୍ଠୀ ତତ୍; ତୃଣ+କୁଟୀର)—ତୃଣଘର; Truna kutira ଘାସଛାଉଣି ଘର—A thatched hut; a hut of straw. (ତୃଣକୁଟୀ—ଅନ୍ୟରୂପ)

ତୃଣ କୂଟ—ସଂ. ବି.—ଘାସ ବା କୁଟାର ଗଦା—

Truna kūta A heap of grass or straw. (ତୃଣକାଣ୍ଡ—ଅନ୍ୟରୂପ)

ତୃଣ କେତୁ—ସଂ. ବି.—(ବହୁବ୍ରୀହି; ତୃଣ+କେତୁ)—୧ । ବାଉଁଶ ଗଛ—

Truna ketu 1. The Bamboo tree. (ତୃଣକେତୁକ—ଅନ୍ୟରୂପ) ୨ । ତାଳଗଛ—

2. The palmyra tree.

ତୃଣ ଗ୍ରାହୀ—ସଂ. ବି.—ନୀଳକାନ୍ତ ମଣି; ନୀଳା—

Truna grāhī Sahphire.

ତୃଣଚର—ସଂ. ବିଣ. (ତୃଣ+ଚର ଧାତୁ+କର୍ତ୍ତୃ. ଅ)—ଯେଉଁ ଜୀବ Trunachara ଘାସ ଆଦି ଚରନ୍ତି—(animals) Grazing on grass; graminivorous.

ସଂ. ବି.—ଗୋମେଦ ମଣି (ହି. ଶବ୍ଦସାଗର)—

A kind of gem (Apte); topaz.

ତୃଣ ଜମ୍ଭ—ସଂ. ବିଣ. (ବହୁବ୍ରୀହି, ତୃଣ+ଜମ୍ଭ=ଖାଦ୍ୟ ଯାହାର)—

Truna jambha ୧ । ତୃଣାଦ; ତୃଣଭକ୍ଷକ—Herbivorous.

୨ । ହରିଦ୍‌ବର୍ଣ୍ଣ ଦନ୍ତବିଶିଷ୍ଟ—Having green teeth.

ତୃଣ ଜଳାୟୁକା—ସଂ. ବି. (ତୃଣ+ଜଳ+ଔକସ୍)—୧ । ସମ୍ବାଳୁଆ—

Truna jalāyukā 1. Caterpillar (Apte). (ତୃଣଜଳୁକା, ତୃଣଜଳୌକା—ଅନ୍ୟରୂପ) ୨ । ଏକପ୍ରକାର ଜୋକ (ହି. ଶବ୍ଦସାଗର)—1. A kind of leech.

[ଦ୍ର—ତୃଣଜଳୌକାନ୍ୟାୟ—ଯେଉଁ ପରି ସମ୍ବାଳୁଆ ଗୋଟିଏ ବାଳ ତହିଁରେ ଅବଲମ୍ବ ହୋଇ ନିଜ ଶରୀରକୁ ତ୍ୟାଗ କରି ପ୍ରଜାପତି ରୂପଧାରଣ କରେ, ତମ୍ଭା ଜୋକ ଗୋଟିଏ ତୃଣକୁ ଛାଡ଼ି ଅନ୍ୟ ତୃଣରେ ଯାଇ ଲାଗେ, ସେହିପରି ଆତ୍ମା ଏକ ଶରୀର ତ୍ୟାଗ କରି ଶରୀରାନ୍ତର ଧାରଣ କରିବା ସମ୍ବନ୍ଧରେ ନୈୟାୟିକମାନେ ଏ ନ୍ୟାୟ ପ୍ରୟୋଗ କରନ୍ତି ।]

ତୃଣ ଜୀବୀ—ସଂ. ବିଣ. (ତୃଣ+ଜୀବ୍ ଧାତୁ+ଇନ୍; ୧ମା. ୧ବ.)—

Truna-jibi ଯେ ଘାସ ଖାଇ ବଞ୍ଚେ; ତୃଣାଦ—

Herbivorous; graminivorous; living on grass.

[ଦ୍ର—ଗୋରୁ, ମେଣ୍ଢା, ଘୋଡ଼ା, ଛେଳିଆଦି ତୃଣଖାଇ ବଞ୍ଚନ୍ତି ବୋଲି ଏମାନଙ୍କୁ ତୃଣଜୀବୀ ବୋଲାଯାଏ ।]

ତୃଣ ଜ୍ଞାନ କରିବା—ଦେ. କ୍ରି—ଅବଜ୍ଞା କରିବା; କୌଣସି ବ୍ୟକ୍ତିକୁ Truna jñāna karibā ଘାସପରି ହେୟ ମନେ କରିବା; ତୁଚ୍ଛଜ୍ଞାନକରିବା ଜ୍ଞାନ କରିବା—To disregard; to look down **तुच्छजानना** upon with contempt.

(ଯଥା—ସେ ମୋ କଥାକୁ ତୃଣଜ୍ଞାନ କଲା ।)

ତୃଣ ଜ୍ୟୋତିଃ—ସଂ. ବି—ଜ୍ୟୋତିଷ୍ମତୀ ଗୁଳ୍ମ—

Truna jyotih The Staff tree

ତୃଣ ଜ୍ୟୋତିଷ୍ମତୀ—ଦେ. ବି. (ବୈଦ୍ୟକ)—ଔଷଧ ଗୁଳ୍ମ ବିଶେଷ—

Truna jyotishmatī A kind of medicinal plant.

[ଦ୍ର—ଏହାର ମୂଳ ଦୁଗ୍ଧ ସହିତ ବାଟି ପାନ କଲେ ଏହା ତତ୍‌କ୍ଷଣାତ ରକ୍ତରୂପେ ପରିଣତ ହୁଏ ।]

ତୃଣତା—ସଂ. ବି. (ତୃଣ+ଭାବ. ତା)—୧ । ତୃଣତ୍ୱ (ଦେଖ)

Trunatā 1. Trunatwa (See)

୨ । (ଯାହା ତୃଣପରି ନଇଁଯାଏ) ଧନୁ—2. A bow.

ତୃଣତ୍ୱ—ସଂ. ବି. (ତୃଣ+ଭାବ. ତ୍ୱ)—୧ । ତୃଣର ଅବସ୍ଥା—

Trunatwa 1. The quality of a grass.

୨ । ଲଘୁତା—2. Lightness.

୩ । ହୀନତା; ଦୈନ୍ୟ—3. Humility; lowness.

[ଦ୍ର—ତୋଫାନ ବା ସ୍ରୋତ ବଡ଼ ବଡ଼ ଗଛମାନଙ୍କୁ ଉପାଡ଼ି ପକାଏ, କିନ୍ତୁ ତୃଣ ନଇଁ ପଡ଼ିବାରୁ ତାହାର ତୋଫାନରେ କିଛି ଅନିଷ୍ଟ ହୁଏ ନାହିଁ, ଏହି ଲକ୍ଷଣାରୁ ଦୈନ୍ୟ ଅର୍ଥ ସୂଚିତ ହୋଇଅଛି ।]

ତୃଣ ଦ୍ରୁମ—ସଂ. ବି. (ମ. ପ. ଲୋ)—ତୃଣପରି ଶାଖାହୀନ ଦ୍ରୁମ (ବାଉଁଶ, Truna druma ନଡ଼ିଆ, ତାଳ, ଖଜୁରି, କେତକୀ, ଗୁଆଗଛ (ତୃଣବୃକ୍ଷ—ଅନ୍ୟରୂପ) ଆଦି)—The trees resembling the grass (e. g bamboo, palm, cocoanut, screw pine etc).

ତୃଣ ଧାନ୍ୟ—ସଂ. ବି. (୬ଷ୍ଠୀ ତତ୍; ତୃଣ+ଧାନ୍ୟ)—

Truna dhānya ୧ । ନୀବାର; ବାଲୁଙ୍ଗାଧାନ—

1. Paddy growing wild.

୨ । କୋଦୁଅ, ସୁଆଁ, ଚିନାଆଦି ଅଯତ୍ନ ବର୍ଦ୍ଧିତ ଶସ୍ୟ—

2. Tares; grains growing wild.

୩ । କ୍ଷୁଦ୍ର ଧାନ୍ୟ; କୁଧାନ୍ୟ—

3. Inferior kinds of grains

[ଦ୍ର—ବୈଦ୍ୟକମତରେ ଏହା କଷାୟ ମଧୁର ରସ, କଟୁବିପାକ ଲଘୁ, ଲେଖନ ଗୁଣଯୁକ୍ତ, ରୁକ୍ଷ, କ୍ଳେଦନାଶକ, ବାୟୁବର୍ଦ୍ଧକ, ମଳରୋଧକ ଏବଂ ପିତ୍ତ, ରକ୍ତ ଓ କଫନାଶକ ।]

ତୃଣ ଧ୍ୱଜ—ସଂ. ବି—ତୃଣକେତୁ (ଦେଖ)

Truna dhwaja Truna ketu (See)

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଣ,ଷ | ଙ୍କ | ଚ୍ଛ | ତ୍ଥ | ଘ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଙ୍ଗ୍ୟ | ଛଅ | ଢ଼ | ନ୍ଦ |

ତୃଣନମ୍ବ—ସଂ. ବି—ଚିରାଇତା (ଦେଖ)
Truna nimba Chiraita (See)

ତୃଣପୁଷ୍ପ—ସଂ. ବି—୧ । ତୃଣ କୁଙ୍କୁମ (ଦେଖ)
Truna pushpa 1. Truna kunkuma (See)
୨ । ଗ୍ରନ୍ଥିପର୍ଣ୍ଣୀ (ଶୂ. ଶବ୍ଦସାଗର) (ଦେଖ)
2. Granthi parnni (See)

ତୃଣବତ୍—ସଂ. ଅ. (ତୃଣ+ସଦୃଶାର୍ଥେ ବତ୍)—ଘାସପରି; ତୃଣସଦୃଶ-
Truna bat Like grass.
ବିଣ—୧ । ଅକିଞ୍ଚିତ୍କର; ନଗଣ୍ୟ; ଘାସପରି ହେୟ—
1. Beneath notice (as one looks down upon the grass).
୨ । ତୁଚ୍ଛ—2. Contemptible; worthless.
୩ । (ତୃଣ+ଅସ୍ତି ଅର୍ଥରେ ବତ୍)—ତୃଣପୂର୍ଣ୍ଣ—
3. Grassy; full of grass.

ତୃଣ ବୃତ୍ତି—ସଂ. ବି. (୬ଷ୍ଠୀ ତତ୍; ତୃଣ+ବୃତ୍ତି)—ତୃଣତ୍ୱ (ଦେଖ)
Truna brutti Trunatwa (See)

ତୃଣ ଭୋଜୀ—ସଂ. ବିଣ. (ତୃଣ+ଭୁଜ୍ ଧାତୁ+ଅସ୍ତି ଅର୍ଥରେ ଇନ୍;
Truna bhoji ୧ମା. ୧ବ)—ତୃଣ ଜୀବୀ (ଦେଖ)
Truna jibi (See)

ତୃଣ ମଣି—ସଂ. ବି—ଏକପ୍ରକାର ସବୁଜ ବର୍ଣ୍ଣ ମଣି—
Truna mani A gem; amber.

ତୃଣ ମତ୍କୁଣ—ସଂ. ବି—ପ୍ରତିଭୂ; ଯାମିନ—
Truna matkuna A bail or surety.
[ ଦ୍ର—ସମ୍ଭବତଃ ଏ ଶବ୍ଦ ଋଣମତ୍କୁଣ ଶବ୍ଦର ଭ୍ରାନ୍ତ ପାଠ ବୋଲି ଅଗ୍ରାହ୍ୟ ଆପ୍ତେ କହନ୍ତି । ]

ତୃଣମୟ—ସଂ. ବିଣ. (ତୃଣ+ପ୍ରାଚୁର୍ଯ୍ୟାର୍ଥେ ମୟ)—
Trunamaya ୧ । ତୃଣରଚିତ; ତୃଣଦ୍ୱାରା ନିର୍ମିତ—
1. Made of grass.
୨ । ଘାସପୂର୍ଣ୍ଣ; ତୃଣପୂର୍ଣ୍ଣ—2. Full of grass.
୩ । ତୃଣ ବହୁଳ—3. Overgrown with grass.

ତୃଣରାଜ—ସଂ. ବି.—୧ । ତାଳଗଛ—
Trunaraja 1. The palm tree.
୨ । ନଡ଼ିଆଗଛ—2. Cocoanut tree.
୩ । ତୃଣଦ୍ରୁମ—3. Trees having some qualities of grass (e. g bamboo; palm etc).
୪ । ଆଖୁ—4. Sugarcane (Apte).
୫ । ଖଜୁରୀ (ଶୂ. ଶବ୍ଦସାଗର)—5. Date palm.

ତୃଣ ଶଯ୍ୟା—ସଂ. ବି—୧ । ତୃଣରଚିତ ଆସନ; ଘାସ ବା କୁଟାରେ
Truna sajya ତିଆରି ହେବା ବିଛଣା—1. A bed of grass or straw.
୨ । ଚଟେଇ; ମସିଣା—2. A mat of reeds.

ତୃଣଶୀତ—ସଂ ବି—୧ । ସୁଗନ୍ଧ ତୃଣ—
Trunasita 1. A kind of scented grass.
୨ । ଜଳ ପିପ୍ପଳୀ (ଦେଖ)—2. Jala pippali (See)

ତୃଣ ଶୂନ୍ୟ—ସଂ. ବିଣ—୧ । ଯେଉଁଠାରେ ଘାସ ନାହିଁ—
Truna sunya 1. Grassless.
(ତୃଣ ସ୍ଥାନ—ଅନ୍ୟରୂପ) ୨ । ଟାଙ୍ଗି; ଟାଙ୍ଗି (ସ୍ଥାନ)—
2. Barren; hilly (ground)
ବି—୧ । ମଲ୍ଲୀଫୁଲ—1. The jasmine flower; Jasminum Zambac.
୨ । କେତକୀ ଫୁଲ—2. The screwpine flower; Pandanus Odoratissimus.

ତୃଣ ଷଟ୍ପଦ—ସଂ. ବି—ବିରୁଡ଼ି (ପ୍ରବୃତ୍ତିବାଦ)—
Truna shatpada Wasp,

ତୃଣସ—ସଂ. ବିଣ. (ତୃଣ+ବାହୁଲ୍ୟାର୍ଥେ ସ; ତୁଳ. ଲୋମଶ)—
Trunasa ତୃଣ ମୟ (ଦେଖ)—Trunamaya (See)

ତୃଣସାରା—ସଂ. ବି. ସ୍ତ୍ରୀ. (ତୃଣ+ସାର+ସ୍ତ୍ରୀ ଆ)—କଦଳୀଗଛ—
Trunasara The plantain tree,

ତୃଣା—ସଂ. କି—ତୃଣାବର୍ତ୍ତ (ଦେଖ)
Truna Trunabartta (See)

ତୃଣାଗ୍ନି—ସଂ. ବି. (ମ. ପ. ଲୋ; ତୃଣ+ଅଗ୍ନି)—୧ । ଘାସ କୁଟାଆଦିର
Trunagni ନିଆଁ—1; Fire kindled with grass or straw; hay-fire,
୨ । ଯେଉଁ ନିଆଁ ସହଜରେ ବା ଶୀଘ୍ର ଲିଭିଯାଏ—
2, Quickly extinguished fire.
୩ । ଅପରାଧୀ ବା ଦଣ୍ଡିତ ବ୍ୟକ୍ତିର ଦେହରେ ଘାସ, କୁଟା ଆଦି ଗୁଡ଼ାଇ ତହିଁରେ ନିଆଁ ଲଗାଇ ତାକୁ ପୋଡ଼ି ଦେବା ଦଣ୍ଡ—3. Burning of a criminal by entwining straw round his body and then setting it on fire (Apte).

ତୃଣାଙ୍କୁର—ଦେ. ବି. (୬ଷ୍ଠୀତତ୍; ତୃଣ+ଅଙ୍କୁର)—ବାଳୁଙ୍ଗା ଧାନର
Trunankura ଶୁଙ୍ଗ—The beard of wild paddy.

ବସୁକ ଅଛ ଲୁଗର, ତୃଣାଙ୍କୁରେ ଭେଦ ହୋଇ
ଗଗନର ଦେହ ଯଥା ଏହୁ ସେ । ଉକ୍ତ. ବୈଦେହୀଶବିଳାସ ।

ତୃଣାଞ୍ଜନ—ସଂ. ବି. (ତୃଣ+ଅଞ୍ଜନ)—ଏଣ୍ଡୁଅ—
Trunanjana Chameleon (Apte)

ତୃଣାଟବୀ—ସଂ. ବି.—(ମ. ପ. ଲୋ; ତୃଣ+ଅଟବୀ) ଯେଉଁ ଜଙ୍ଗଲରେ
Trunatabi ଖୁବ୍ ଘାସ ବଢ଼ିଥାଏ—A forest or prairie abounding in grass.

ତୃଣାନ୍ନ—ସଂ. ବି. (ତୃଣ+ଅନ୍ନ)—ବାଳୁଙ୍ଗା ଧାନ—
Trunanna Rice growing wild (Apte).

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ସେ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ତତ୍ସ୍ଥଳରେ ଉପଯୁକ୍ତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଶାଳ' ନ ମିଳିଲେ 'ଶାଳ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍ବଡ଼' ଦେଖିବେ

ତୃଣାବର୍ତ୍ତ—ସଂ. ବି.—(ନାମ)—୧ । କଂସର ଅନୁଚର ଦୈତ୍ୟବିଶେଷ- 
Truṇābartta 1. Name of a demon killed by Krushṇa

[ ଦ୍ର—ଏ କଂସର ଆଦେଶରେ ତୃଣ ଓ ଧୂଳିର ଘୂର୍ଣ୍ଣିବାୟୁର ରୂପ ଧାରଣ କରି କୃଷ୍ଣଙ୍କୁ ଉଡ଼ାଇ ନେଇ ବଧ କରିବାକୁ ଅସିଥିଲା, କିନ୍ତୁ ଶେଷରେ କୃଷ୍ଣଙ୍କଦ୍ୱାରା ନିହତ ହୋଇଥିଲା । ]

ଯୋଽଭୂଦ୍ ଯେ ତୃଣାବର୍ତ୍ତଃ ଯୋଽଭୂ ପୂତନା ବକସ୍ତୁନ ।
ଭୃଷଣ. ପ୍ରେମପଞ୍ଚାମୃତ ।

୨ । ଘୂର୍ଣ୍ଣିବାୟୁ; ଘୂର୍ଣ୍ଣିଅଭୃଡ—
2. A tornado; whirlwind

ତୃଣାବ୍ରତ—ଗ୍ରା. ବି. (ସ. ତୃଣାବର୍ତ୍ତ)—ତୃଣାବର୍ତ୍ତ ୧ (ଦେଖ)
Truṇābrata Truṇā bartta 1 (See)

ତୃଣାମ୍ଳ—ସଂ. ବି. (ତୃଣ+ଅମ୍ଳ)—ଅମ୍ଳଲୋଣୀ; ଅମିଳିଛ ଶାଗ—
Truṇāmla Indian sorrel (pot herb).

ତୃଣାସନ - ସଂ. ବି.—(ମ. ପ. ଲୋ; ତୃଣ+ଆସନ)—୧ । ତୃଣ- 
Truṇāsana ରଚିତ ଆସନ—1 A bed of straw or grass.

୨ । ଚଟେଇ; ସପ ମସିଣା; ମୁନ୍ଦୁସ୍ର; ପଟୁଡ଼ି; ହୋଗଳ—
2 A reed mat.

ତୃଣୀକୃତ—ସଂ. ବିଣ. (ତୃଣ+ଅଭୂତ ତଦ୍ଭାବେ. ଚ୍ୱି+କୃତ)—
Truṇīkruta ୧ । ଯାହାକୁ ତୃଣବତ୍ ହୀନ ଜ୍ଞାନ କରାଯାଇ ଥାଏ—
(ତୃଣୀକରଣ — ବି) 1. Treated with contempt.

୨ । ଯାହାକୁ ଅନ୍ୟ କେହି ଘୋଡ଼ାଇ ପକାଏ—
2. Eclipsed; obscured.

ତୃଣେନ୍ଦ୍ର—ସଂ. ବି. (୬ଷ୍ଠୀ ବା ୭ମୀ ତତ୍; ତୃଣ+ଇନ୍ଦ୍ର)—
Truṇendra ତାଳଗଛ—Palmyra tree.

ତୃଣୋଲ୍କା - ସଂ. ବି.—ତୃଣଜାତ ଉଲ୍କା; ମ. ପ. ଲୋ.)—
Truṇolkā ୧ । ତୃଣାଗ୍ନିରୁ ସଂଭୂତ ଅଗ୍ନିକଣା—
1. Sparks from a hay-fire.

୨ । କୁଟାରେ ତିଆର ହୁଳା; କାଁ ବଡ଼ିଆ; କାଁ ଅଳା—
2. A firebrand or torch made of straw.

ତୃଣୌକଃ—ସଂ. ବି. (ମ. ପ ଲୋ; ତୃଣ=ତୃଣ ନିର୍ମିତ+ଓକସ୍= 
Truṇaukaḥ ଗୃହ) କୁଡ଼ିଘର; ଛପର ଘର—
(ତୃଣହର୍ମ୍ୟ—ଅନ୍ୟରୂପ) A thatched hut; a hut of straw.

ତୃଣ୍ୟା --ସଂ. ବି ସ୍ତ୍ରୀ. (ତୃଣ+ସମୂହାର୍ଥେ ଯ+ସ୍ତ୍ରୀ. ଆ)—ଘାସ ବା କୁଟା 
Truṇyā ଗଦା—A heap of straw or hay; hay-stack

ତୃତିଆ—ଗ୍ରା. ବି. (ତୃତୀୟାର ଅଶୁଦ୍ଧ ଉଚ୍ଚାରଣ ଓ ଲେଖନ)—
Trutiā ତୃତୀୟା (ଦେଖ)—Trutiyā (See)

ତୃତୀୟ—ସଂ. ବିଣ. ପୁଂ. ଓ କ୍ଲୀ (ତ୍ରି+ପୂରଣାର୍ଥେ ତୀୟ)—
Trutiya ୧ । ଦ୍ୱିତୀୟର ପୂର୍ବକ; ଦ୍ୱିତୀୟର ପରବର୍ତ୍ତୀ—1. Third.
(ତୃତୀୟା—ସ୍ତ୍ରୀ) ୨ । ତ୍ରିଗୁଣିତ—3. Thrice the quantity of.

ତୃତୀୟ ତ୍ରସରେଣୁ ଯେହି,
ତାହାକୁ ତ୍ରୁଟି ବୋଲି କହି—ଜଗନ୍ନାଥ ଭାଗବତ ।

ଦେ. ତିଣ (ପଦ୍ୟ) ତିନି—Three.

ତୃତୀୟ ନିମେଷରେ କ୍ଷଣ
ପଞ୍ଚ କ୍ଷଣରେ କାଷ୍ଠା ପୁଣ—ଜଗନ୍ନାଥ ଭାଗବତ ।

ତୃତୀୟକ—ସଂ. ବିଣ. ପୁଂ. ( ତୃତୀୟ+ଭବାର୍ଥେ. କ )—
Trutiyaka ତିନି ଦିନ ଅନ୍ତରରେ ଘଟୁଥିବା—Taking place every third day; tertian.

ବି—ପାଳି ଜ୍ୱର; ତିନି ଦିନରେ ଥରେ ହେଉଥିବା ଜ୍ୱର—
Tertian fever; intermittent fever.

ତୃତୀୟ ପନ୍ଥା—ସଂ. ବି—ଦୁଇ ନିର୍ଦ୍ଦିଷ୍ଟ ପଥରୁ ଭିନ୍ନ ପଥ; ଏକ ସ୍ୱତନ୍ତ୍ର 
Trutiya panthā ବାଟ—A third way; yet another way.

ତୃତୀୟ ପୁରୁଷ—ସଂ. ବି. ( ବ୍ୟାକରଣ )—୧ । ଅସ୍ମେ ଓ ଯୁଷ୍ମେ ଛଡ଼ା 
Trutiya purusha ଅନ୍ୟ ବ୍ୟକ୍ତି ବା ବସ୍ତୁବାଚକ ପଦ (ସେ, ତାହା)—1. Third person in grammar ( e. g. He, she, it ).

୨ । ବାହାରର ଲୋକ; ନିଃସମ୍ପର୍କୀୟ ଲୋକ—
2. An outsider; disinterested person.

ତୃତୀୟ ପ୍ରକୃତି—ସଂ. ବିଣ. ( ବହୁବ୍ରୀହି; ତୃତୀୟା+ପ୍ରକୃତି )—
Trutiya prakruti କ୍ଳୀବ; ନପୁଂସକ—
(ତୃତୀୟ ପ୍ରକୃତିକ—ଅନ୍ୟରୂପ) Neuter; impotent.

ତୃତୀୟ ଯୁଗ—ସଂ. ବି—ଦ୍ୱାପର ଯୁଗ—
Trutiya juga The tertiary age of the world according to the Hindus.

ତୃତୀୟା—ସଂ. ବି. ସ୍ତ୍ରୀ (ତୃତୀୟ+ଆ)—୧ । ପୂର୍ଣ୍ଣିମା ବା ଅମାବାସ୍ୟାର 
Trutiyā ପରବର୍ତ୍ତୀ ତୃତୀୟ ତିଥି; ପକ୍ଷର ତୃତୀୟା ତିଥି—
1. The third day of the lunar fortnight.

[ ଦ୍ର—ମାସ ମଧ୍ୟରେ ଶୁକ୍ଳ ଓ କୃଷ୍ଣ ପକ୍ଷରେ ଦୁଇଟି ତୃତୀୟା ତିଥି ହୁଏ । ]

୨ । ତୃତୀୟା ବିଭକ୍ତି ( ଦେଖ )
2. Trutiyā bibhakti ( See )

୩ । ତୃତୀୟା ବିଭକ୍ତିର ପ୍ରତ୍ୟୟ—3. The termination of the instrumental case.

ତୃତୀୟାଂଶ—ସଂ. ବି. ( କର୍ମଧା; ତୃତୀୟ+ଅଂଶ )—
Trutiyāmsa ଏକ ତୃତୀୟାଂଶ; କୌଣସି ପଦାର୍ଥର ତିନି ଭାଗରୁ ଏକ ଭାଗ—One third of any thing.

ତୃତୀୟା କୃତ—ସଂ. ବି—ତିନି ଓଡ଼ ଚଷା ଯାଇଥିବା ( କ୍ଷେତ୍ର )—
Trutiyākruta Thrice ploughed field (Apte).

ତୃତୀୟା ତତ୍ପୁରୁଷ—ସଂ. ( ବ୍ୟାକରଣ )—ଯେଉଁ ତତ୍ପୁରୁଷ 
Trutiyā tat-purusha ସମାସରେ ୧ମ ଶବ୍ଦର ତୃତୀୟା ବିଭକ୍ତିର ଚିହ୍ନ ଲୋପ ହୋଇଥାଏ—( grammar ) The ins-

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇୟ | ଉଅ | ଘ |
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଓ | ନ |

trumental compound; a compound composed of words, the first component having the 3rd case termination which vanishes from the compound word.

ତୃତୀୟା ପ୍ରକୃତି—ସ. ବିଣ. ( ବହୁବ୍ରୀହି )—କ୍ଲୀବ; ନପୁଂସକ—
Tṛutiyā prakṛuti Neuter; eunoch; genderless; sexless.

ସ. ବି.—୧ । (କର୍ମଧା) କ୍ଲୀବତ୍ୱ—1. Impotence.
୨ । କ୍ଲୀବ ବ୍ୟକ୍ତି—
2. An eunoch; a hermaphrodite.
୩ । ( ବ୍ୟାକରଣ ) କ୍ଲୀବ ଲିଙ୍ଗ—
3. The neuter gender.

ତୃତୀୟା ବିଭକ୍ତି—ସ. ( ବ୍ୟାକରଣ )—ଦ୍ୱାରା, କର୍ତ୍ତୃକ, ରେ ପ୍ରଭୃତି
Tṛutiyā bibhakti ଚିହ୍ନ ଯୁକ୍ତ କରଣକାରକର ବିଭକ୍ତି—
The third case of nouns; the instrumental case in grammar.
[ ଦ୍ର—ସାଧାରଣତଃ କରଣ କାରକରେ ତୃତୀୟା ବିଭକ୍ତି ହୁଏ; ତା ଛଡ଼ା ସଂସ୍କୃତର ଅନ୍ୟ ସ୍ଥାନରେ କେତେକ ଅର୍ଥରେ ମଧ୍ୟ ତୃତୀୟା ବିଭକ୍ତି ଯୁକ୍ତ ହୁଏ । ]

ତୃତୀୟାଶ୍ରମ—ସ. ବି—ବାନପ୍ରସ୍ଥାଶ୍ରମ ( ଦେଖ )
Tṛutiyāśrama Bānaprasthāśrama ( See )

ତୃଦ୍ (ଧାତୁ)—ସ—୧ । ଫଟାଇବା; ଚିରିବା—
Tṛud (root) 1. To cleave; to split.
୨ । ବଧ କରିବା; ବିନାଶ କରିବା—
2. To kill; to destroy.
୩ । ମୁକ୍ତ କରିବା —3. To set free.
୪ । ଆଦର ନ କରିବା—4. To disregard (Apte).

ତୃତୀୟୀ—ସ. ବିଣ. ପୁଂ ( ତୃତୀୟ+ଇନ୍; ୧ମା. ୧ବ )—
Tṛutiyī ୧ । ଏକ ତୃତୀୟାଂଶ ଧନ ପାଇବାର ଅଧିକାରୀ—
1. Entitled to a third portion of a property.
୨ । ତୃତୀୟ ସ୍ଥାନର ଅଧିକାରୀ—
2. Occupying the third rank (Apte.)

ତୃପ୍ (ଧାତୁ)—ସ.—୧ । ସନ୍ତୁଷ୍ଟ ହେବା—
Tṛup (root) 1. To be satisfied.
୨ । ସନ୍ତୁଷ୍ଟ କରିବା—2. To please; to gratify.
୩ । ଜାଳି ଜଳାଇବା —
3. To kindle; to light up (Apte);

ତୃପତ୍—ସ. ବି (ତୃପ୍ ଧାତୁ+କର୍ତ୍ତୃ. ଅତ୍)—୧ । ଚନ୍ଦ୍ର—
Tṛupat 1. The moon.
୨ । ଛତା—2. Umbrella.

ତୃପତ—ଗ୍ରା. (ପଦ୍ୟ) ବିଣ (ସ. ତୃପ୍ତ) —ତୃପ୍ତ ( ଦେଖ )
Tṛupata Tṛupta ( See )

(ତୃପୁତ—ଅନ୍ୟରୂପ) ନିତ ଦେଖୁଥିଲେ ପ୍ରୀତ ବଢ଼ୁଥାଇ ତୃପତ
ତୃପତ ନୁହଇ ଚିତ୍ତ ଗୋ ମିତ—ବନମାଳୀ ସଙ୍ଗୀତ ।
ତୃପିତ ସ. ବି (ତୃପ୍ ଧାତୁ+କର୍ତ୍ତୃ. ଅତ)—ଚନ୍ଦ୍ର—The moon (Apte).

ତୃପତି – ଗ୍ରା (ପଦ୍ୟ) ବି (ସଂ. ତୃପ୍ତି) —ତୃପ୍ତି ( ଦେଖ )
Tṛupati Tṛupti ( See )
ବିଣ (ସ.ତୃପ୍ତ)-ତୃପ୍ତ—Satiated.
(ତୃପୁତି—ଅନ୍ୟରୂପ) ଅଇଲୁ ଅର୍ଗ୍ଘ କି କରିବୁ ତୃପତି—
ତୃପତି କୃଷ୍ଣସିଂହ. ମହାଭାରତ. ସଭା ।
ତୃପତି

ତୃପଲା – ସ. ବି—୧ । ଲତା (ବୃ. ଶବ୍ଦସାଗର)—
Tṛupalā 1. Creeper.
୨ । ତ୍ରିଫଳା (ବୃ. ଶବ୍ଦସାଗର) ( ଦେଖ )—
2. Triphalā ( See )

ତୃପ୍ତ—ସଂ. ବିଣ. ପୁଂ ( ତୃପ୍ ଧାତୁ+କର୍ତ୍ତୃ. ତ )—୧ । ସନ୍ତୁଷ୍ଟ;
Tṛupata ପରିତୁଷ୍ଟ—1. Satisfied; satiated; gratified; contented.
(ତୃପ୍ତା—ସ୍ତ୍ରୀ)
୨ । ପ୍ରସନ୍ନ—2. Pleased; cheerful.

ତୃପ୍ତି—ସଂ. ବି (ତୃପ୍ ଧାତୁ+ଭାବ. ତି)—୧ । ସନ୍ତୋଷ; ପରିତୋଷ;
Tṛupti ଇଚ୍ଛା ପୂର୍ଣ୍ଣ ହେବାରୁ ମନରେ ଜନ୍ମିବା ଆନନ୍ଦ—
1. Satisfaction; gratification; satiety; fulfilment of one's desire; contentment.
୨ । କ୍ଷୁଧାର ନିବୃତ୍ତି—3. Gratification of hunger; satiety.
୩ । ଆହ୍ଲାଦ—3. Gladness.
୪ । ତୃଷ୍ଣା ନିବୃତ୍ତି—4. Satiation of thirst.
୫ । ପ୍ରସନ୍ନତା—5. Pleasure; cheerfulness.

ତୃପ୍ର—ସଂ. ବି (ତୃପ୍ ଧାତୁ+କର୍ତ୍ତୃ. ର)—୧ । ପୁରୋଡାଶ—
Tṛupra 1. A sacrificial cake.
୨ । ଘୃତ; ଘିଅ—2. Ghee; clarified butter.
୩ । ଦୁଃଖ—3. Sorrow; suffering.
(ତୃପ୍ରା—ସ୍ତ୍ରୀ) ସଂ. ବିଣ. ପୁଂ—ତୃପ୍ତ କରିବା ବ୍ୟକ୍ତି—
Gratifying.

ତୃଷ୍ (ଧାତୁ)—ସଂ—୧ । ତୃଷାର୍ତ୍ତ ହେବା—
Tṛush (root) 1. To be thirsty; to thirst.
୨ । ଲାଳାୟିତ ହେବା—
2. To hanker after; to wish eagerly.
୩ । ଇଚ୍ଛା କରିବା—3. To wish.
୪ । ଲୋଭ କରିବା—
4. To covet; to be greedy (Apte).

**ତୃଷା**—ସଂ. ବି ( ତୃଷ୍ ଧାତୁ+ଭାବ. ଅ+ସ୍ତ୍ରୀ. ଆ )—୧ । ପିପାସା; ତୃଷ୍ଣା; ଶୋଷ—1. Thirst.
Tṛushā
୨ । ପ୍ରବଳ ଇଚ୍ଛା; ଅଭିଳାଷ—2. Strong desire.
୩ । ଲୋଭ—3. Avarice; covetuousness.
୪ । ଅଳଙ୍କାର ( ଦ୍ର. ଶବ୍ଦସାଗର )—
4. A kind of bracelet.

**ତୃଷା କରିବା**—ଦେ. କ୍ରି—ଶୋଷ କରିବା; ପିପାସା ହେବା; ଶୋଷେଇବା
Tṛushā karibā The feeling of thirst; being thirsty.
তিষ্ণা পাওয়া প্যাস লগনা

**ତୃଷାତୁର**—ସଂ. ବିଣ. ପୁଂ (୭ମୀ ତତ୍ ବା ୬ଷ୍ଠୀ ତତ୍; ତୃଷା+ଆତୁର)—ତୃଷାହେତୁ ଆତୁର; ତୃଷାର୍ତ୍ତ—Thirsty.
Tṛushātura
(ତୃଷାତୁରା—ସ୍ତ୍ରୀ) (ତୃଷାତୁରତା—ବି)

**ତୃଷା ଦେଖା(ଖେ)ଇବା**—ଦେ. କ୍ରି—ତୃଷା କରିବା (ଦେଖ)
Tṛushā dekhā(khe)ibā Tṛushā karibā (See).

**ତୃଷାନ୍ୱିତ**—ସଂ. ବିଣ. ପୁଂ (ତୃତୀୟା ତତ୍; ତୃଷା ଦ୍ୱାରା ଅନ୍ୱିତ)—
Tṛushānwita ୧ । ତୃଷାର୍ତ୍ତ—1. Thirsty.
( ତୃଷାନ୍ୱିତା—ସ୍ତ୍ରୀ ) ୨ । ଲୁବ୍ଧ—2. Covetuous; greedy of gain.
୩ । ଇଚ୍ଛୁକ; ଲାଳାୟିତ—
3. Desirous; hankering.

**ତୃଷାବାନ୍**—ସଂ. ବିଣ. ପୁଂ (ତୃଷା+ବତ୍; ୧ମା. ୧ବ)—ଯାହାକୁ ଶୋଷ କରୁଥାଏ; ଶୋଷୀ—Thirsty.
Trushābān
(ତୃଷାବତୀ—ସ୍ତ୍ରୀ)

**ତୃଷାଭୂ**—ସଂ. ବି—ପେଟ ମଧ୍ୟରେ ଯେଉଁ ସ୍ଥାନରେ ଜୀବ ପିଇଥିବା ପାଣି
Tṛushābhū ମୂତ୍ରାଶୟକୁ ଯିବା ପୂର୍ବରୁ ଜମା ରହେ—
(ତୃଷା ସ୍ଥାନ—ଅନ୍ୟରୂପ) The bladder; that part of the belly where the water which an animal drinks, accumulates before passing into the kidney.

**ତୃଷାର୍ତ୍ତ**—ସଂ. ବିଣ. ପୁଂ ( ୬ଷ୍ଠୀ ତତ୍; ତୃଷା+ଆର୍ତ୍ତ )—
Tṛushārtta ଶୋଷ ଦ୍ୱାରା ଜର୍ଜରିତ; ପିପାସା ଦ୍ୱାରା କାତର—
( ତୃଷାର୍ତ୍ତା—ସ୍ତ୍ରୀ ) Very thirsty; pained with thirst.

**ତୃଷାର୍ତ୍ତି(ର୍ଥି)**—ଗ୍ରା. ବିଣ (ସଂ ତୃଷାର୍ତ୍ତ)—ତୃଷାର୍ତ୍ତ (ଦେଖ)
Tṛushārtti(rthi) Tṛushārtta (See).

**ତୃଷାଳୁ**—ସଂ. ବିଣ ( ତୃଷା+ଆଳୁ; ଭୂଲ. ତନ୍ଦ୍ରାଳୁ )—
Trushālu ତୃଷିତ; ପିପାସିତ ( ଦ୍ର. ଶବ୍ଦସାଗର )—Thirsty.

**ତୃଷିତ**—ସଂ. ବିଣ. ପୁଂ ( ତୃଷ୍ ଧାତୁ+କର୍ତ୍ତୃ. ତ )—ତୃଷାନ୍ୱିତ (ଦେଖ)
Tṛushita Tṛushānwita (See).
(ତୃଷିତା—ସ୍ତ୍ରୀ)

**ତୃଷ୍ଣା**—ସଂ. ବି. ସ୍ତ୍ରୀ. ( ତୃଷ ଧାତୁ+ଭାବ. ଣ+ସ୍ତ୍ରୀ. ଆ )—
Tṛushṇā ୧ । ଶୋଷ; ତୃଷା; ପିପାସା—1. Thirst.
୨ । କୌଣସି ବସ୍ତୁ ପାଇବା ନିମନ୍ତେ ପ୍ରବଳ ଇଚ୍ଛା; ଲାଳସା—
2. Inordinate desire or longing after a thing.
୩ । ଲୋଭ—3. Covetousness; greed.
[ ଦ୍ର—ଏହା ଅନ୍ୟ କେତେକ ଶବ୍ଦ ପରେ ବ୍ୟବହୃତ ହୁଏ; ଯଥା—ଧନତୃଷ୍ଣା; ବିଷୟତୃଷ୍ଣା; ମୃଗତୃଷ୍ଣା ଇତ୍ୟାଦି । ]

**ତୃଷ୍ଣା କ୍ଷୟ**—ସଂ. ବି. ( ୬ଷ୍ଠୀ ତତ୍; ତୃଷ୍ଣା+କ୍ଷୟ )—
Tṛushṇā kshaya ତୃଷ୍ଣା ନିବୃତ୍ତି ( ଦେଖ )
Tṛushṇā nibṛutti (See)

**ତୃଷ୍ଣା ଦୂର କରିବା**—ଦେ. କ୍ରି—ପିପାସା ବା ତୃଷ୍ଣା ନିବୃତ୍ତି କରିବା—
Tṛushṇā dūra karibā To quench one's thirst.
তৃষ্ণা দূর করা প্যাস দূর করনা

**ତୃଷ୍ଣା ନିବୃତ୍ତି**—ସଂ. ବି. ( ୬ଷ୍ଠୀ ତତ୍; ତୃଷ୍ଣା+ନିବୃତ୍ତି )—
Tṛushṇā nibṛutti ୧ । ପିପାସାର ଉପଶମ ବା ତୃପ୍ତି—
1 Satiety of thirst; quenching of thirst.
୨ । ବାସନା କ୍ଷୟ; ବୈରାଗ୍ୟ; ସାଂସାରିକ ବିଷୟ ପ୍ରତି ଆସକ୍ତିର ଅଭାବ—
3. Renunciation of worldly desires.
୩ । ତୃପ୍ତି—2. Contentment.
୪ । ମନର ଶାନ୍ତି—4. Tranquility of mind.

**ତୃଷ୍ଣାନ୍ୱିତ**—ସଂ. ବିଣ. ପୁଂ. (୩ୟା ତତ୍; ତୃଷ୍ଣା+ଅନ୍ୱିତ )—ତୃଷିତ—Thirsty.
Tṛushṇānwita
( ତୃଷ୍ଣାନ୍ୱିତା—ସ୍ତ୍ରୀ )

**ତୃଷ୍ଣାର୍ତ୍ତ**—ସଂ. ବିଣ. ପୁଂ. (୬ଷ୍ଠୀ ତତ୍; ତୃଷ୍ଣା+ଆର୍ତ୍ତ)—ତୃଷ୍ଣାନ୍ୱିତ (ଦେଖ)
Tṛushṇārtta Tṛushṇānwita (See)
( ତୃଷ୍ଣାର୍ତ୍ତା—ସ୍ତ୍ରୀ )

**ତୃଷ୍ଣାଳୁ**—ସଂ. ବିଣ. ( ତୃଷ୍ଣା+ଯୁକ୍ତାର୍ଥେ ଆଳୁ; ଭୂଲ. ଦୟାଳୁ )—
Tṛushṇālu ପିପାସାର୍ତ୍ତ—Thirsty.

**ତୃଷ୍ୟ**—ସଂ ବିଣ. ( ତୃଷ୍ ଧାତୁ+କର୍ମ. ଯ )—ଲୋଭନୀୟ; ବାଞ୍ଛନୀୟ—
Tṛushya Desirable; sought after.
ବି—( ତୃଷ୍ ଧାତୁ+ଭାବ. ଯ )—୧ । ଲୋଭ—
1. Avarice; greed.
୨ । ଶୋଷ—2. Thirst ( Apte ).

**ତେ**—ପ୍ରାଦେ. ( ପ୍ରତ୍ୟୟ ) ( ବଙ୍ଗଳା ଭାଷାର ବ୍ୟବହାରରୁ ବାଲେଶ୍ୱର
Te ମେଦିନୀପୁର ଆଦି ଅଞ୍ଚଳରେ ବ୍ୟବହୃତ, ଅସମାପିକା କ୍ରିୟା
তে ସଙ୍ଗେ ଲାଗେ )—
नेको ୧ । ନିମିତ୍ତ ବା ହେତୁ ଅର୍ଥକ ବିଭକ୍ତି—
1. An ending attached to the present participle of verbs to denote ( for ).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଣ | ଡ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଅ | ଊ | ଞ |
| ୨ | ଣ | ଡ | ଋ | ଌ | ଏ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ | ଯ | ସ | ଚ୍ୟ | ଇଅ | ଊ | ଙ |

କାନେ ଲାଗଇ ଭଜ ଚଉ
ତାଣେ ଲକ୍ଷ ବହନ୍ତି—ଜଗନ୍ନାଥ, ଭବେଦଭ ।

[ ଦ୍ର—ଏହା ପଞ୍ଚ ବୈଷ୍ଣବ ଯୁଗର କବିତାରେ ଓ ଜଗନ୍ନାଥଙ୍କ ଭାଗବତରେ ଦେଖାଯାଏ । ]

**ତେଇଁ**—ଗ୍ରା. ଅ—ତହିଁ ( ଦେଖ )
Teiñ Tahiñ ( See
( ତେହିଁ—ଅନ୍ୟରୂପ )

**ତେଇଁକି**—ଗ୍ରା. ଅ—ତହିଁକି ( ଦେଖ )
Teiñki Tahiñki ( See )
( ତେହିଁକି—ଅନ୍ୟରୂପ ) ( ଯଥା—ତାଙ୍କୁ ଖୋଜିବାକୁ ମୁଁ ଗ୍ରାମରେ ଯାଇ ପହଞ୍ଚିଲି, ତେଇଁକି ସେ ଗ୍ରାମରେ ନାହାନ୍ତି )

**ତେଇଶ(ଶି)**—ଦେ. ( ସଂଖ୍ୟାବାଚକ ) ( ସଂ. ତ୍ରୟୋବିଂଶ; ପ୍ରା. ତେଵୀସ; ତେଇସ ) ବି—୨୩ ସଂଖ୍ୟା—
Teisa(si) The number 23; twentythree.
तेईश
तेइस
ତେଇଶେ ବିଣ—୧ । ୨୩ ସଂଖ୍ୟକ—1. Numbering twenty three.
तेइसवाँ
୨ । ତ୍ରୟୋବିଂଶ— 2. Twentythird.

**ତେଇଶା ଦୁଇଶ**—ଦେ. ବି ଓ ବିଣ—ଦୁଇଶ ତେଇଶ—
Teisā duisa 223; Two hundred and twenty three.
( ତେଇଶା ଦୁଇଶହ—ଅନ୍ୟରୂପ )

**ତେଇଶା ଶଏ(ହେ)**—ଦେ. ବି ଓ ବିଣ—ଏକଶ ତେଇଶ—
Teisā sae(he) 123; One hundred and twenty three.

**ତେଉଆରି**—ଦେ. ବି. ( ସଂ. ତ୍ରିବେଦୀ )—ପଶ୍ଚିମା ବ୍ରାହ୍ମଣଙ୍କ ଉପାଧି ବିଶେଷ—Tewari; a family title of up-country Brāhmaṇa.
Teuāri
ତେଓ୍ୱାରୀ
तिवारी [ ଦ୍ର—ଏହା ଉତ୍କଳର ତ୍ରିପାଠୀ ବା ତ୍ରିବାଡ଼ୀ ଉପାଧି ପରି ।]

**ତେଉ(ହୁ)ଡ଼ି**—ଦେ. ବି—ତିଉଡ଼ି ( ଦେଖ )
Teu(hu)ṛdi Tiuṛdi ( See )

**ତେଏଷଠି**—ଦେ. ବି ଓ ବିଣ—ତେଷଠି ( ଦେଖ )
Te-eshaṭhi Teshaṭhi ( See )

**ତେଓଡ଼**—ଦେ. ବିଣ. ( ସଂ. ତୃତୀୟକ )—ତେଢ଼ା ( ଦେଖ )
Teorḍa (rḍā) Terḍhā ( See )
तिकार, ताखा ବି—କ୍ଷେତର ତୃତୀୟ ଥର ଚଷ—
Third time of ploughing of a field.

**ତେଁଣ୍ଟୁ**—ପ୍ରାଦେ. ( ଲଉଅ ) ବି—ତଣ୍ଟି; ଗଳା—
Teñṭu Throat.

**ତେଁତର**—ପ୍ରାଦେ. ( ବସ୍ତର )—ବି—ତେନ୍ତୁଳି—
Teñtara Tamarind.

**ତେକଚ୍ଛି** ଦେ. ବି. ( ସଂ. ତ୍ରିକଚ୍ଛ )—ତିକଚ୍ଛ; ଲୁଗାର ତିନିଟି କାନ୍ଥ ଖୋସି ଲୁଗା ପିନ୍ଧିବାର ଢଙ୍ଗ—Wearing of cloth with three of the corners tucked up
Tekachchhi
ତେକୌଁଚା
तिकछी

**ତେକାଣ୍ଟି**—ଦେ.ବ. ( ସଂ. ତ୍ରିକଣ୍ଟକ )—ତିନି ମୁନ ଥିବା ଅସ୍ତ୍ର; ତେଣ୍ଟା; ତ୍ରିଶୂଳ—A three pronged harpoon; trident.
Tekāṇṭi
ତେଫେଡ଼କା

**ତେଘାଟି**—ଦେ. ବି, ( ସଂ. ତ୍ରି ଓ ଘାଟ )—ତିନି ଘାଟ ଯୁକ୍ତ ପର୍ବତ ବା ତ୍ରିସଙ୍କଟ ସ୍ଥାନ—A hill or place having three mountain passes.
Te-ghāṭi
ତେଘାଟା

ଦେଖ ତୁରାଶଳ ତେଘାଟି ଅଟଳେ
ଏଣେ ଭଞ୍ଜଆଏ ଦାଉ ଦାଉ ଜଳେ—ଅଭିମନ୍ୟୁ, ବିଦଗ୍ଧଚିନ୍ତାମଣି ।

ବିଣ— ତିନିଘାଟଥିବା; ତିନି ଘାଟବିଶିଷ୍ଟ ( ଜଳାଶୟ )— ( a tank ) Having three wharves or bathing places.

**ତେଙ୍ଗଡ଼ା**—ଦେ. ବି ( ସଂ. ତ୍ର୍ୟଙ୍ଗଟ=ଶିକା )—
Teṅgarḍā ୧ । ହାଣ୍ଡି ଆଦି ରଖିବା ନିମନ୍ତେ ଦୁଇ କାନ୍ଥର କୋଣରେ ଖଣ୍ଡିଏ କାଠି ମାରି ପ୍ରସ୍ତୁତ କରାଯିବା ତ୍ରିକୋଣାକାର ସ୍ଥାନ—1. A bracket made by driving a stick into the corner of 2 walls to put cooking pots on it.
କୋଲଙ୍ଗା; ତେକାଟା
ताखा
( ତେଙ୍ଗେଡ଼ା—ଅନ୍ୟରୂପ)
୨ । ରନ୍ଧନଶାଳାରେ ହାଣ୍ଡି ବସିବା ନିମନ୍ତେ ଗଳା କରା ଯାଇଥିବା ପିଣ୍ଡି—2. A platform with grooves made on it to put the round bottomed cooking pots on them.
୩ । ଝର ଝମ୍ପା ( ଦେଖ )
3. Jhara jhampā ( See ) ( Haines )

**ତେଙ୍ଗୁଡ଼ିବା**—ଦେ.କ୍ରି. (ସଂ. ତ୍ର୍ୟଙ୍ଗଟ)—ଥରେ ପାକରେ ବ୍ୟବହୃତ ହୋଇ ଥିବା ପାକପାତ୍ରଗୁଡ଼ିକ ଧୁଆଧୋଇ କରି ପୁଣି ପାକ କରିବା ପୂର୍ବରୁ ସେଗୁଡ଼ିକ ହାଣ୍ଡିଶାଳ ଘରର ତେଙ୍ଗଡ଼ାରେ ସଜ୍ଜିତ କରି ରଖିବା—To arrange the empty pots in the niches in order after washing them when they are emptied of their contents.
Teṅgurḍibā
ତେଙ୍ଗଡ଼ିବା
ତେଙ୍ଗଡ଼ା ତେଙ୍ଗୁଡ଼ି କରିବା } ଅନ୍ୟରୂପ
ତେଙ୍ଗେଡ଼ିବା

**ତେଜ୍ ଆମ ଗରମୀ**—ଦେ. ବି—କୋଠା ଗରମ ହେବା; ପେଟ ଭିତରେ ଗରମ ହେବା ରୋଗ ( ଯହିଁ ଯୋଗୁଁ କାଳ-ରକ୍ତ ଝାଡ଼ା ହୁଏ )—Heat in the abdomen resulting in dysentery.
Tej āma garamī

**ତେଜ**—ଦେ. ବି. ( ସଂ. ତେଜସ୍ )—୧ । କାନ୍ତି; ଦୀପ୍ତି; ଆଭା—
Teja 1 Glamour; radiance
ତେଜ ହକାରେ କ ତେଜ ବଶୁରୁ ପଶୁଥିଲା । କୃଷ୍ଣସିଂହ, ମହାଭାରତ, ବନ ।
तेज ୨ । ପରାକ୍ରମ; ପ୍ରତାପ—2. Might; prowess.
୩ । ରାଗ—3. Anger, wrath.

ସାଧାରଣ ଲୋକେ ଅ ।ର ବୃତ୍ତାରେ ଦ୍ୱୀତ । ଶବ୍ଦର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଅକ୍ଷର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ... ଯଥାକ୍ରମେ ... ୨ ବା ୧ ଅକ୍ଷର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଡ଼' ରେ ଦେଖ, 'ଦୁଅ' ନ ମିଳିଲେ 'ଦୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଲଙ୍କାର' ଦେଖିବେ ।

୪ । ଉତ୍ତେଜନ—4. Irritation; excitement.

... ତେଜ ଶବ୍ଦର ...

ଇତ୍ୟାଦି ପ୍ରୟୋଗ ।

୫ । ଶକ୍ତି; ସ୍ଫୂର୍ତ୍ତି; କ୍ରିୟାଶୀଳତା—

5. Energy; spirit; activity.

୬ । ବାଉ; ଜୋର—6. Force; brunt.

୭ । କଥା ଉପରେ ଦଅଯିବା ଜୋର—

7. Stress; emphasis.

ତେଜ, ତେଜୋ — ତୈବେ. ବି. ( ଫା. ତେଜ୍ )—୧ । ତୀକ୍ଷ୍ଣ; ତୀବ୍ରତା— 1. Sharpness; keenness; acuteness.

୨ । ଅସହ୍ୟତା—2. Unbearableness.

୩ । ତେଜୀ ( ଦେଖ )—3. Tejī ( See ).

୪ । ଶୀଘ୍ରଗାମିତା; ବେଗ—

4. Swiftness of motion; velocity.

ତେ. ବିଣ. ( ଫା. ତେଜ୍ )—

୧ । ଦୁର୍ମୂଲ୍ୟ; ମହର୍ଘ; ମହଙ୍ଗା ( ବସ୍ତୁ )—

1. Dear ( in price ; of high price.

( ଯଥା—ଏଥର ବଜାର ଭାଉ ତେଜ ହୋଇଅଛି । )

୨ । ତୀକ୍ଷ୍ଣ; ଧାରୁଆ—2. Sharp-edged.

୩ । ଶୀଘ୍ରଗାମୀ; ବେଗବାନ୍—

3. Fleet of foot; swift.

୪ । କଡ଼ା; କଡ଼ୁଆ; ରାଗ—4. Pungent; acrid.

୫ । ତୀବ୍ର; ପ୍ରଚଣ୍ଡ—5. Acute; violent.

ତେ. ବିଣ—୧ । ବୁଦ୍ଧିମାନ—1. Intelligent; of sharp intellect.

୨ । ଶୀଘ୍ର ଫଳପ୍ରଦ—2. Instantaneous in effect.

୩ । ଚପଳ; ଚଞ୍ଚଳ; ଅସ୍ଥିର—3. Restless; fickle-minded.

୪ । କଡ଼ା ମିଜାଜ—4. Of irritable temper.

ତେଜ ଲୋକର ସେଥ ... ବଡ଼ ଜଗ ନ ... —ତଥ୍ୟ ।

ତେଜଃ—ସଂ. ବି. ( ତେଜସ୍ ଶବ୍ଦ. ତିଜ୍ ଧାତୁ=ତୀକ୍ଷ୍ଣ କରିବା + କର୍ତ୍ତୃ. ଅସ୍ )—୧ । ଉତ୍ତାପ—1. Heat.

Tejah

୨ । ଦୀପ୍ତି; ଜ୍ୟୋତିଃ; ଆଭା; ଚମକ—2. Glamour; lustre; glow; glare; splendour; brilliance.

୩ । ଆଲୋକ—3. Light.

୪ । ଘୋଡ଼ାର ବେଗ—4. Velocity; swiftness; the speed of a horse.

୫ । ବାଉ; ପ୍ରତାପ; ପ୍ରଭାବ—5. Spirit; ardour; energy; vigour.

୬ । ଜୋର; ବଳ; ଶକ୍ତି; ପରାକ୍ରମ

6. Might; force; strength; brunt; power.

୭ । ରେତଃ; ଶୁକ୍ର; ବୀର୍ଯ୍ୟ—

7. Semen; semen seed; semen virile.

୮ । ସତ୍ତ୍ୱ; ପୌରୁଷ; ପୁରୁଷପଣିଆଁ—

8. Virility; vitality.

୯ । ଘୃତ—9. Ghee.

୧୦ । ଦର୍ପ; ଅହଙ୍କାର; ଉଦ୍ଧତ ପଣ—

10. Haughtiness; arrogance.

୧୧ । ପିତ୍ତ—11. Bile.

୧୨ । ସୁବର୍ଣ୍ଣାଦି ଧାତୁ—12. Metal (e.g. gold, silver)

୧୩ । ବ୍ରହ୍ମ—13. Brahma or the prime Essence of the universe.

୧୪ । ମଗଜ; ମଜ୍ଜା—14. Brain; marrow.

୧୫ । କୌଣସି ବସ୍ତୁର ସାର ଭାଗ—15. Essence; pith; quintessence.

୧୬ । ସୁନା ( ଦ୍ର. ଶବ୍ଦସାଗର )—16. Gold.

୧୭ । ମଖନ; ଲହୁଣି; ( ଦ୍ର. ଶବ୍ଦସାଗର )—17. Butter.

୧୮ । ( ଦର୍ଶନ ଶାସ୍ତ୍ର ) ସତ୍ତ୍ୱ ଗୁଣରୁ ଉତ୍ପନ୍ନ ଲିଙ୍ଗଶରୀର —

18. (Hindu philosophy) The material body born of the Satwa element of nature.

୧୯ । ପଞ୍ଚ ମହାଭୂତରୁ ଏକତମ; ଅଗ୍ନି—19. Fire, one of the 5 elements of nature according to the Hindu philosophy.

[ ଦ୍ର—ଏଥିର ଗୁଣ-ଶବ୍ଦ, ସ୍ପର୍ଶ ଓ ରୂପ; ଏଥିରୁ ତାପ ଓ ଆଲୋକ ବାହାରେ । ]

୨୦ । ମନୁଷ୍ୟ ଦେହରେ ପ୍ରକାଶିତ ଉଜ୍ଜ୍ୱଳତା ବା ଆଭା—

23. The bright appearance of the human. body (Apte).

୨୧ । ସାହସ; ସାହସ—21. Courage; valour (Apte).

୨୨ । ସାହସସୂଚକ ପ୍ରଭା—

22. Martial or heroic lustre (Apte).

୨୩ । ସାହସର ପ୍ରଭାବଶିଷ୍ଟ ବ୍ୟକ୍ତି—

23. One possessed of heroic lustre (Apte).

୨୪ । ଚରିତ୍ର ବଳ ( ଯାହା ଅପମାନ ବା ମନ୍ଦ ବ୍ୟବହାର ସହ୍ୟ କରି ପାରେ ନାହିଁ )—24. The strength of character which does not brook insult or ill treatment (Apte).

୨୫ । ଗୌରବ; ମହତ୍ତ୍ୱ—

25. Majesty; dignity (Apte).

୨୬ । ଚକ୍ଷୁର ପ୍ରଭା ବା ନିର୍ମଳତା—

26. Clearness of the eyes (Apte).

| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇ୍ୟ | ଉ୍ୟ | ଢ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚ୍ୟ | ଇଅ | ଢ଼ | ନ୍ତ |

୨୭ । ଉଜ୍ଜ୍ୱଳ ବସ୍ତୁ—
27. A shining or luminous body (Apte).

୨୮ । ପ୍ରଚଣ୍ଡତା; ଉଗ୍ରତା—28. Violence; fierceness; ferocity (Apte).

୨୯ । ଅଧୀରତା—29. Impatience (Apte).

୩୦ । ପ୍ରଚଣ୍ଡତା; ତୀକ୍ଷ୍ଣତା—
30. Smartness; acuteness; keenness.

୩୧ । ସୂର୍ଯ୍ୟ (ଶାଙ୍ଗ୍ଲା)—31 The sun.

**ତେଜ କଲମ**—ଦେ. ବି—ତେଜୀ କଲମ (ଦେଖ)
Teja kalama    Teji kalama (See)

**ତେଜ କାଢ଼ିବା**—ଦେ. କ୍ରି—୧ । ରାଗ ଦେଖାଇବା—
Teja kārdhiba    1. To give vent to one's anger.
তেজ বাহির করা    ୨ । ପ୍ରଭାବ ଦେଖାଇବା—2. To show
तेज निकालना, तमकना    one's mettle or spirit or
(ତେଜଦେଖା(ଖେ ଇବା—ଅନ୍ୟରୂପ)]    energy.

୩ । ଗର୍ବ ଦେଖାଇବା—3. To show haughtiness.

୪ । ବାହାଦୁରି କହିବା—4. To arrogate; to brag.

**ତେଜ ଚକ୍ର**—ଦେ ବି. (ସଂ. ତେଜଃ+ଚକ୍ର)—୧ । ତେଜସମୂହ;
Teja chakra    ତେଜୋରାଶି—1. A mass of lustre.

୨ । ତେଜୋମୟ ଚକ୍ର—2. Luminous wheel.

ଦୋଳେ କେ ଶରୀର ଘଟଇ
ବକ୍ଷେରେ ତେଜଚକ୍ର ସ୍ଥିର । ଉଦ୍ଧ. ବୈଦେହୀଶବିଳାସ ।

**ତେଜଣା**—ଦେ. ବି. (ସଂ. ତେଜନ)—୧ । ତୀକ୍ଷ୍ଣୀକରଣ; ପଜାଇବା—
Tejanā    1. Act of whetting; sharpening.

୨ । ଜଳୁଥିବା ପ୍ରଦୀପର ସଳିତାକୁ ତେଜିବା ନିମନ୍ତେ ବ୍ୟବହୃତ ଶଳାକା ବା କାଠି—2. A pick used to trim or push up the wick of a burning oil lamp; a trimmer.

୩ । ଦୀପକୁ ତେଜିବା—3. The trimming of the wick of a lamp; the act of pushing up the wick of a burning lamp.

**ତେଜନ**—ସଂ. ବି. (ତିଜ୍ ଧାତୁ+ଭାବ. ଅନ)—୧ । ତୀକ୍ଷ୍ଣୀକରଣ—
Tejana    1. Sharpening.

୨ । ଦୀପ୍ତିକରଣ—2. Illuminating.

୩ । (+କର୍ମ ଅନଟ୍)—ବାଉଁଶ—3. Bamboo.

୪ । ମୁଞ୍ଜତୃଣ; ମୁଞ୍ଜଘାସ; କାଣ୍ଡଶର—
4. The Muñja grass.

(ତେଜନକ—ଅନ୍ୟରୂପ)    ୫ । ଶରତୃଣ—5 The sara reed.

**ତେଜସୀ**—ସଂ. ବି—୧ । ତେଜୋବତୀ (ଦେଖ)
Tejani    1. Tejobatī (See)

୨ । ଚବ୍ୟ; ଶୁଣ୍ଠିକାଠ—2. Piper Chaba.

ସଂ. ବିଶ—ମୂର୍ଖ (ହି. ଶବ୍ଦସାଗର)—Illiterate

**ତେଜ ପତ୍ର**—ସଂ. ବି. (ସଂ. ତ୍ୱକ୍‌ପତ୍ର)—ନାତିଦୀର୍ଘ ଚିରଶ୍ୟାମଳ ତରୁ
Teja patra    ବିଶେଷର ସୁବାସିତ ପତ୍ର—
ସଂ. ଭୃଙ୍ଗ, ବରାଙ୍ଗ, ସ୍ୱମେଷ୍ଟ,    The scented leaves of
ବହୁଲ, ତ୍ୱଚ, ଉତ୍କଟ, ଚୋଲ,    cassia cinnamon; Tolia
ସୁରଭିବଲ୍କଲ, ସୁତଣ୍ଡ,    Malabathy; Cinnamonium
ଗନ୍ଧଜାତ, ମୁଖଶୋଧନ,    Obtusifolium (Kirtikar.)
ସିଂହଳ, ସୁରସ, କାମବଲ୍ଲଭ,    [ ଦ୍ର—ଦାରୁଚିନି ବା ଡାଳଚିନି
ବହୁଗନ୍ଧ, ପତ୍ର, ପତ୍ରକ, ଚୋଚ,    ଗଛକୁ ମଧ୍ୟ ସଂସ୍କୃତରେ ତ୍ୱକ୍‌ପତ୍ର ବା
ବନପ୍ରିୟ, ଲଟପର୍ଣ୍ଣୀ, ଗନ୍ଧବଲ୍କଲ,    ତ୍ୱଚ ବୋଲାଯାଏ । ଡାଳଚିନି ଗଛର
ବର, ଚୋଚ, ରାମବଲ୍ଲଭ,    ପତ୍ର ମଧ୍ୟ ବାସନାଯୁକ୍ତ; କିନ୍ତୁ
ତ୍ୱକ୍‌ପତ୍ର, ପାକରଞ୍ଜନ,    ତେଜପତ୍ର ଗଛ ଓ ଡାଳଚିନି ଗଛ
ତମାଳପତ୍ର, ତ୍ୱକ୍    ପୃଥକ୍ । ବୈଦ୍ୟଶାସ୍ତ୍ର ଅନୁସାରେ
তেজপাতা; তেজপাত    ଏହା କାଶ, ଆମ, କଣ୍ଡୁ, ଅରୁଚି
तेजपत्ता, तेजपात    କୃମି, ପୀନସଆଦି ରୋଗ ପକ୍ଷରେ
ମ ଓ ଗୁ. ତମାଲପତ୍ର    ଉପକାରୀ ଓ ଧାତୁବର୍ଦ୍ଧକ ଓ
ତେ. ଆକୁପତ୍ରୀ    ବଳକାରକ । ଏହାର ମଞ୍ଜିରୁ ଗଛ
ଫା. ସାଦଜସ୍    ଉଠାଇ ଗଛ ୫ ବର୍ଷର ହେଲେ
ଅ. ସାଜାଜ୍    ଲୋକେ ନେଇ ବଗିଚାରେ ପୋତନ୍ତି ।
ଏ ଗଛକୁ ଖରାରୁ ବଞ୍ଚାଇବା ପାଇଁ ଉପରେ ଛପ୍ପର କରାଯାଏ ଓ ୬ ବର୍ଷ ପରେ ଏଥିରୁ ପତ୍ର ଓ ସାନ ସାନ ଡାଳ ଛିଣ୍ଡାଇ ଶୁଖାଇ ଦିଆଯାଏ । ପ୍ରତିବର୍ଷ ଆଶ୍ୱିନଠାରୁ ମାର୍ଗଶିର ପର୍ଯ୍ୟନ୍ତ ଏଥିର ପତ୍ର ଛିଣ୍ଡାଯାଏ । ପ୍ରତି ଗଛରୁ ବର୍ଷକେ ୧୦।୧୫ ସେର ପତ୍ର ବାହାରେ । ଏ ଗଛ ପୂର୍ବ ହିମାଳୟ, ଖାସିଆ ପାହାଡ଼, ତ୍ରିପୁରାଆଦି ପୂର୍ବଭାରତୀୟ ଅଞ୍ଚଳର ନାତିଦୀର୍ଘ ଚିରହରିତ ବୃକ୍ଷ ଅଟେ । ଏ ପତ୍ର ଔଷଧରେ ଓ ତରକାରୀରେ ମସଲାରୂପେ ବ୍ୟବହୃତ ହୁଏ । ]

**ତେଜବତୀ**—ଦେ. ବି—ତେଜୋବତୀ (ଦେଖ)
Tejabatī    Tejobatī (See)

**ତେଜବନ୍ତ**—ଦେ. ବିଣ. (ସଂ. ତେଜୋବତ୍)—ତେଜୋବାନ୍ (ଦେଖ)
Tejabanta    Tejobān (See)
तेजवन्त    ସୁନ୍ଦର ସ୍ୱର ତେଜବନ୍ତ
(ତେଜଧାରୀ—ଅନ୍ୟରୂପ)    ସକଳ ସୁବଦ୍ୟା ପଣ୍ଡିତ । ଭୂପତି. ପ୍ରେମପଞ୍ଚାମୃତ ।
[ ଦ୍ର—ସଂ. ବତୁପ୍ ଓ ମତୁପ୍ ପ୍ରତ୍ୟୟ ନିଷ୍ପନ୍ନ ପଦମାନ ଯଥାକ୍ରମେ ଓଡ଼ିଆରେ ପୁଂ. ବନ୍ତ (ପ୍ରାଚୀନ ପଦ୍ୟାଦିରେ ବନ୍ତା) ଓ ସ୍ତ୍ରୀ ବନ୍ତୀ ଏବଂ ପୁଂ. ମନ୍ତ, (ପ୍ରାଚୀନ—ମନ୍ତା) ଓ ସ୍ତ୍ରୀଲିଙ୍ଗରେ ମନ୍ତୀ ହୋଇ ବ୍ୟବହୃତ ହୁଏ ।]

**ତେଜବର**—ପ୍ରାଦେ. (ବାଲେଶ୍ୱର) ବି. (ଭୁଲ. ବି. ଏହି ଅର୍ଥରେ ଏହି
Tejabara    ଶବ୍ଦ)—ଯେ ତୃତୀୟ ଥର ବିବାହ କରିଅଛି—
A person who has married three times in succession.

ଏହି ଅଭିଧାନର ପ୍ରତି ପୃଷ୍ଠାରେ ୨ଟି ଶବ୍ଦ ପ୍ରତି ଅକ୍ଷର ଓ ମାତ୍ରା ଏବଂ ଯୁକ୍ତ ଅକ୍ଷର ଓ ଶାଖା ମଧ୍ୟରେ ପ୍ରଚଳିତ ରଖା ହୋଇଅଛି । ଅତଏବ ୧ ଓ ୨ ଶବ୍ଦର କୌଣସି ବର୍ଣ୍ଣ ବା ମାତ୍ରା
ଯଦି ପାଠକ ଯେବେ ଏ ସ୍ଥାନରେ ନ ମିଳିବ, ତେବେ ଅଗ୍ର ପଶ୍ଚାତ ପୃଷ୍ଠାରେ ଖୋଜିବେ ଓ ସେହି ଶବ୍ଦର ବର୍ଣ୍ଣ ବା ମାତ୍ରାଯୁକ୍ତ ରୂପ ଦେଖିବେ ହେବ । ଯଥା—
ଗାଡ଼' ନ ମିଳିଲେ 'ଗଡ଼' ଖୋଜିବେ; 'ସ୍ତୁତ' ନ ମିଳିଲେ 'ସ୍ତୁତ' ଦେଖିବେ; 'ବନ୍ଦ' ନ ପାଇଲେ 'ବନ୍ଧ' ଦେଖିବେ 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲଙ୍କାର' ନ ପାଇଲେ 'ଅଲଙ୍କୃତ' ଦେଖିବେ

ଝଙ୍କାର ଠିକ ହେଉଁ ହେଉଁ ଦଉର ବସ୍ତ୍ର ହୋଇ ଚଳଣି ପଶିଲେ,
କହ ଅବଧୂ, ସେହି ତୋଳନ ଓ ତେଜର ବସ୍ତ୍ର ହ ଠିଆ ।
ମଦନମୋହନ, ବନ୍ଧୁବନ୍ଧୁ ।

**ତେଜମୟ**—ଦେ. ଦେ ପୁଂ. (ସଂ. ତେଜୋମୟ)—ତେଜୋମୟ (ଦେଖ)
Tejamaya Tejomaya (See)

ବୁଦ୍ଧି ନାସନ୍ତ ତେଜମୟ
ପ୍ରକାଶ ଦର୍ପଣ ଜଳ୍ପି ପ୍ରସ । ଜନ୍ମୋଦ. ଭଗବତ ।

**ତେଜ(ଜା)ରତ**—ବୈଦେ. ବି. (ଅ. ତିଜାରତ୍)—ତିଜାରତ (ଦେଖ)
Teja(jā)rat Tijārata (See)

**ତେଜ(ଜା)ରତି**—ବୈଦେ. ବିଣ. (ଅ. ତିଜାରତୀ)—
Teja(ja)rāti ତିଜାରତି (ଦେଖ)
(ତେଜାରତି—ଅନ୍ୟରୂପ) Tijārati (See)

**ତେଜ(ଜୁ)ରି**—ବୈଦେ. ଗ୍ରା. ବି. (ଇଂ. ଟ୍ରେଜେରୀ)—
Teja juri ଟ୍ରେଜେରି (ଦେଖ)
[ତେରଜ(ଜୁ)ରି—ଅନ୍ୟରୂପ] Trejarī (See)

**ତେଜରର**—ଗ୍ରା. ବୈଦେ. ବି. (ଇଂ. ଟ୍ରେଜରର)—ଟ୍ରେଜରର (ଦେଖ)
Tejarara Trejarara (See)

**ତେଜଳ**—ସଂ. ବି. (ତିଜ୍ ଧାତୁ + ସଜ୍ଞାର୍ଥେ. ଅଲ)—୧ । କପିଞ୍ଜଳ ପକ୍ଷୀ;
Tejala ଗୌରଚଟକ—1. Brown swallow.
୨ । ଚାତକପକ୍ଷୀ—2. Coccyster bird.

**ତେଜସ୍**—ସଂ. ବି.—ତେଜଃ (ଦେଖ)
Tejas Tejaḥ (See)

**ତେଜସ୍କର**—ସଂ. ବିଣ. (ତେଜସ୍ + କୃ. ଧାତୁ + କର୍ତ୍ତୃ. ଅ)—
Tejaskara ୧ । ପ୍ରଭାବଶାଳୀ—1. Glorious.
(ତେଜସ୍କରୀ—ସ୍ତ୍ରୀ) ୨ । ଦୀପ୍ତିଶାଳୀ—2. Glamorous
୩ । ଉଦ୍ଦୀପକ—3. Invigorating; exciting.
୪ । ବଳଦାୟକ—4. Strengthening; strength-giving.
୫ । ଯଦ୍ଦ୍ୱାରା ତେଜୋବୃଦ୍ଧି ହୁଏ—
5. Increasing vigour; energy-giving.

**ତେଜସ୍ୱ**—ସଂ. ବି. (ତେଜସ୍ + ବ)—ମହାଦେବ; ଶିବ (ହ. ଶବ୍ଦସାଗର)
Tejaswa Śiba.

**ତେଜସ୍ୱତୀ**—ସଂ. ବି. ସ୍ତ୍ରୀ (ତେଜସ୍ୱାନ୍ + ସ୍ତ୍ରୀ. ଈ)—ଚଇ; ଗଜ ପିପଳୀ;
Tejaswatī ଗଜପିପଳୀ—A medicinal creeper.
୨. ବିଣ. ସ୍ତ୍ରୀ.—ତେଜସ୍ୱାନ୍‌ର ସ୍ତ୍ରୀଲିଙ୍ଗ—
Feminine of Tejasbān (See)

**ତେଜସ୍ୱାନ୍**—ସଂ. ବିଣ. ପୁଂ (ତେଜସ + ଅସ୍ତ୍ୟର୍ଥେ ବତ୍;)—
Tejaswān ତେଜସ୍ୱତ୍ ଶବ୍ଦ ୧ମା ୧ବ.)—୧ । ଦୀପ୍ତିମାନ୍—
(ତେଜସ୍ୱତୀ—ସ୍ତ୍ରୀ) 1. Shining; brilliant.
୨ । ପ୍ରଭାବଶାଳୀ—2. Powerful.
୩ । ବଳବାନ୍—3. Vigorous.
୪ । ଶକ୍ତିଶାଳୀ—4. Energetic.

**ତେଜସ୍ୱିନୀ**—ସଂ. ବି. ସ୍ତ୍ରୀ—(ତେଜସ୍ୱୀନ୍ + ସ୍ତ୍ରୀ. ଈ)—୧ । ମହାଜ୍ୟୋତି-
Tejaswini ସ୍ମତୀ ଲତା —1. A kind of phosphorescent herb.
୨ । ତେଜୋବିଶିଷ୍ଟା ସ୍ତ୍ରୀ—2. A vigorous woman.
୩ । ତେଜୋବତୀ (ଦେଖ)
3. Tejobatī (See)
୪. ବିଣ ସ୍ତ୍ରୀ—ତେଜସ୍ୱୀର ସ୍ତ୍ରୀଲିଙ୍ଗ—
Feminine of Tejaswī (See).

**ତେଜସ୍ୱୀ**—ସଂ. ବିଣ. ପୁଂ. (ତେଜସ୍ + ଅସ୍ତ୍ୟର୍ଥରେ. ବିନ୍; ତେଜସ୍ୱିନ୍
Tejaswī ୧ମା, ୧ବ.)—୧ । ଦୀପ୍ତିଶାଳୀ; ତେଜୋବିଶିଷ୍ଟ—
(ତେଜସ୍ୱିନୀ—ସ୍ତ୍ରୀ) 1. Lustrous; splendid.
(ତେଜସ୍ୱିତା—ବି) ୨ । ପରାକ୍ରାନ୍ତ—2. Vigorous; splendid.
୩ । ବଳବାନ୍—3. Mighty; powerful; mettled.

**ତେଜା**—ଦେ. ବି. (ସଂ. ତେଜନ)—୧ । ଦୀପ ତେଜିବା—
Tejā 1.Trimming the wick of a lamp.
तेजा ୨ । ଉତ୍ତେଜନ—
उसकाना 2. Incitement.

**ତେଜା(ଜେ)ଇବା**—ଦେ. କ୍ରି.—୧ । ତେଜିବା କ୍ରିୟାର ଣିଜନ୍ତରୂପ—
Tejā(je)ibā 1. The causative form of 'Tejibā'.
तेजाना ୨ । ତ୍ୟାଗ କରାଇବା—
उसकाना To cause to quit.
तेजाना ଜଳସାଇ ଯଥା ଅଳକା ତେଜାଇ ଇଶ୍ୱରଙ୍କୁ ଶମଗାଲେ ।
तेजाना ଭକ୍ତ: ବୈଦେଶିକ କଳାସ ।

**ତେଜାବ୍**—ବୈଦେ. ବି. (ଫା.)—ଏସିଡ୍; ଅମ୍ଳସାର—
Tejāb Acid.
अम्लद्रावक तेजाब

**ତେଜାଲି**—ବୈଦେ ବି.—( ପର୍ତ୍ତୁଗୀଜ୍—ତିଜେଲ୍ଲ—ମାଟିର ଗୋଟି
Tejāla ହାଣ୍ଡି)—ମାଟିର ଉଠା ଚୁଲ୍ଲୀ—A portable earthen oven.
तिजाला
उठल्लू चुल्हा ଦେ. ବିଣ.—ତେଜସ୍ୱୀ—
तेजस्वी Energetic.
तेजी

**ତେଜ (ଧାତୁ)**—ସଂ.—(ତିଜ୍ ଧାତୁ+ଣିଚ୍)—୧ । ତୀକ୍ଷ୍ଣ କରାଇବା—
Teji (root) 1. To sharpen.
୨ । ଉତ୍ତେଜିତ କରିବା—2. To incite.

**ତେଜ ଉଠିବା**—ଦେ. କ୍ରି.—୧ । ଭାରି ରାଗିଯିବା—
Teji uthibā 1. To be very angry.
କହୁଁ କହୁଁ ଏ ବୃଦ୍ଧଙ୍କର କୋପ ତେଜ ଉଠିଲା ।
ମଧୁସୂଦନ. ଉତ୍ତର ରାମଚରିତ ।
୨ । ଅପେକ୍ଷାକୃତ ତେଜସ୍କର ହେବା—
2. To be brighter to some extent

**ତେଜିତ**—ସଂ. ବିଣ.—(ତିଜ୍ ଧାତୁ ଣିଚ୍ = ତେଜ ଧାତୁ + କର୍ମ. କ୍ତ)—
Tejita ୧ । ଶାଣିତ—1. Sharpened.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଉ | ଜ | ଋଋ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଃ | ଢ |
| ୬ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଞ୍ୟ | ଯ | ସ | ଂ | ଇଥ | ୱ | ଢ଼ |

୬ । ମାର୍ଜିତ—2. Purified; trimmed.

୩ । ଉତ୍ତେଜିତ—2. Excited.

**ତେଜିବା**—ଦେ. କ୍ରି. (ସଂ. ତିଜ୍ ଧାତୁ)—୧ । ସୀତର ବଳିତାକୁ
Tejibā ଉସକାଇ ସତେଜ କରିବା; ତେଜିବା—
ଉସକାନ 1 To trim up the wick of an oil lamp; to
**उसकाना** trim up a lamp or candle.

୨ । ଉତ୍ତେଜିତ କରିବା; ଉଦ୍ଦୀପନ କରିବା; ହିଁହାଇବା— 2. To excite.

୩ । ରାଗାଇବା—3 To make angry.

୪ । ଉଚ୍ଚ ଦର ହେବା; ଦୁର୍ମୂଲ୍ୟ ହେବା; ମୂଲ୍ୟ ବୃଦ୍ଧି ହେବା— 4. To rise in price.

(ଯଥା—ଅଜି କାଲି ବଜାରରେ ମସିର ମସଲା ଦର ଭାରି ତେଜିଛି ।)

୫ । ବିଶେଷ ପ୍ରଭାବଶାଳୀ ହେବା; ପ୍ରବଳତର ହେବା— 5. To increase in vigour; to rise up

(ଯଥା—ଅଜି ତାର ଜ୍ୱରଟା ଭାରି ତେଜିଛି ।)

ତେଜା ୬ । (ସଂ. ତ୍ୟଜ୍ ଧାତୁ=ତ୍ୟାଗ କରିବା) ତ୍ୟାଗ କରିବା—
**तजना, तयागना** 6. To abandon; to give up.

ସାର୍ଦ୍ଧ ତପତ ବାସ ବାଳ ତେଜିଲେ ଅହା ମରଇତ କରୁଥିଲେ ।
କବିସୂର୍ଯ୍ୟ- ବଳଦେବରଥ- ଚ, ଶାତ ।

୭ । ମାୟା ନ ରଖିବା; ମମତା ନ ରଖିବା—
7. To have no concern or interest.

ତୁମ୍ଭପାଇଁ କି ମୁଁ ତେଜ ପଦ୍ମନନ୍ଦ,
ଶତ୍ରୁ ଅନୁରୂପେ ଚକ୍ରକୁ ସାଧିବାକୁ । କୃଷ୍ଣସିଂହ- ମହାଭାରତ ଆଦି ।

**ତେଜିଷ୍ଠ**—ସଂ. ବିଣ. ପୁଂ. (ତେଜସ୍+ଅତ୍ୟର୍ଥେ ଇଷ୍ଠ)—ଅତିଶୟ
Tejishṭha ତେଜସ୍ୱୀ—Very luminous; very
(ତେଜିଷ୍ଠା—ସ୍ତ୍ରୀ) powerful.

**ତେଜି**—ଦେ. ବିଣ. (ସ. ତେଜସ୍ୱୀ)—୧ । ତେଜଃଶାଳୀ; ତେଜସ୍ୱୀ—
Tejī 1. Splendid.
ତେଜିଆନ ୬ । ସାପ୍ତିଶାଳୀ—
**तेजी** 2. Shining.

୩ । ପ୍ରଭୁତ୍ୱଶାଳୀ—3. Powerful.

୪ । ତେଜୀୟାନ୍; ତେଜସ୍ୱର—
4. Firm; fiery; spirited.

୫ । ବଳିଷ୍ଠ; ପରାକ୍ରମୀ—5. Mighty.

୬ । ରାଗୀ; କ୍ରୋଧୀ—
6. Of fiery temper; wrathful.

ବିଦେ- ବି. (ଫା.)—୧ । ତେଜୀ; ଦୁର୍ମୂଲ୍ୟ; ଚଢ଼ା ଭାଉ—
1. Dearness in price; rise in price,

୨ । ଧାର, ତୀକ୍ଷ୍ଣତା—2. Sharpness.

୩ । ଶୀଘ୍ରଗାମିତ୍ୱ—3. Fleetness.

୪ । କଟୁଆସ୍ୱାଦ—4. Pungency.

**ତେଜି କଲମ**—ଦେ. ବି.—୧ । ପରାକ୍ରମୀ ଲେଖା—
Tejī kalama 1. Lusty writing; mighty pen; the
ତେଜୀକଲମ power of writing very strongly.
**तेजी कलम** ୨ । ଚଞ୍ଚଳ ଲେଖା—1. A swift running hand; ready writing.

୩ । କଲମ ଯୋର; ଲିପିକୁଶଳତା—3 Penmanship; the quality of being an expert in the act of writing or composition.

**ତେଜୀୟାଂସ**—ଦେ ବି.—(ସଂ. ତେଜୀୟସ୍ ଶବ୍ଦର ୧ମା. ୧ବ. ତେଜୀୟାନ୍)
Tejīyāṃsa ତେଜୀୟାନ (ଦେଖ)—Tejīyāna (See

ତ କର କୁହୁଳ ସେ ଦୋଷ
ତେଜୀ ହେମ ଅଛେ ତେଜୀୟାଂସ । ଗ୍ରାମୀ ପୁର୍ଣ୍ଣଚନ୍ଦ୍ରୋଦୟ ।

**ତେଜୀୟାନ**—ସ. ବିଣ. ପୁଂ. (ତେଜସ୍+ଅତ୍ୟର୍ଥେ; ଇୟସ୍; ୧ମା. ୧ବ.)
Tejiyāna ଅତି ତେଜସ୍ୱୀ—Very powerful; mettled.
(ତେଜୀୟସୀ—ସ୍ତ୍ରୀ)

**ତେଜୋବତୀ**—ସ. ବିଣ. ସ୍ତ୍ରୀ (ତେଜୋବତ୍+ସ୍ତ୍ରୀ. ଈ)—ତେଜୋବାନ୍‌ର
Tejobatī ସ୍ତ୍ରୀ ଲିଙ୍ଗ—The feminine of 'Tejobān'.

ସ. ତେଜବତୀ, ତେଜୋବତୀ, ତେଜସ୍ୱିନୀ, ତେଜନ୍ୟା, ମହୋଜସୀ, ଲଘୁବଲ୍ଲୀ, ପାରିଜାତା, ଶୀତା, ଭିସ୍ତା, ତେଜନୀ, ଅଗ୍ନିତେଜନୀ, ବଜ୍ରାଲଗ୍ନି, ସୁତେଜସୀ
ତେଜବତୀ
**पेजबल**
ମ. ତେଜବଲ
ତେ. ଢଲଧସୀ

ବି—୧ । ହିମାଳୟର ନିକଟବର୍ତ୍ତୀ ହରିଦ୍ୱାର ଆଦି ସ୍ଥାନରେ ଜନ୍ମିବା ବନ୍ୟ କଣ୍ଟକୀ ବୃକ୍ଷବିଶେଷ—
1 A kind of thorny plant growing in Haradwar and other places near the Himalayas; the toothache tree.

[ ଦ୍ର—ଏହାର ଛାଲ ଲଙ୍କାମରିଚ ପରି ରାଗ । ଗାହାଡ଼ିମାନେ ଏହାକୁ ମସଲା ପରି ଡାଲି ଭଅଣରେ ମିଶାନ୍ତି । ଏହାର ଛେଲି ଓ ମୂଳ ଚୋବାଇଲେ ଦାନ୍ତରୋଗ ଭଲ ହୁଏ । ବୈଦ୍ୟଶାସ୍ତ୍ର ଅନୁସାରେ ଏହା ପାଚକ, କଫ, ବାତ, ଶ୍ୱାସନାଶକ ଓ ଅର୍ଶରୋଗରେ ଉପକାରୀ । ]

ସ. ନାମ ମହାଜ୍ୟୋତିଷ୍ମତୀ, ଜ୍ୟୋତ୍ସ୍ନା, ତେଜୋବତୀ, କନକପ୍ରଭା, ତେଜିକା, ସୁବର୍ଣ୍ଣଲତା, ଅଗ୍ନିଫଳା, ମେଧାବତୀ, ପୀତ
**लताफटकी**
**मालकंगनी**

୨ । ମହା ଜ୍ୟୋତିଷ୍ମତୀ ଲତା (ହି. ଶବ୍ଦସାଗର)—
2. Cardiospermum Helicacabum

[ ଦ୍ର—ଏହା ହିମାଳୟର ଝେଲମ ନଦୀଠାରୁ ଆସାମ ପର୍ଯ୍ୟନ୍ତ ଓ ଲଙ୍କା, ବ୍ରହ୍ମଦେଶର ସମୁଦ୍ର ପତନରୁ ୪୦୦୦ ଫୁଟ ଉଚ୍ଚତର ପାହାଡ଼ୀ ଅଞ୍ଚଳରେ ଜନ୍ମେ । ଏହାର ପତ୍ର ଗୋଲ ଓ କୋଣବିଶିଷ୍ଟ । ଏ ଲତା ଗଛ ଉପରେ ମାଡ଼ି ଗଛଯାକ ଆଚ୍ଛାଦନ କରେ । ଚୈତ୍ରମାସରେ ଏ ଲତାର ଦେହଯାକ ହେଣ୍ଟା ହେଣ୍ଟା ଫୁଲ ଧରେ ଓ ଫୁଲ ଝଡ଼ିଗଲେ ନେଳ ଫଳ ଧରେ । ଫଳ

ପାଚିଲେ ହଳଦିଆ ମଟର ପରି ଦେଖାଯାଏ । ଫଳ ଭିତରୁ ନାଲି ଦାନା ବାହାରେ । ଏହି ମଞ୍ଜିରୁ ପେଡ଼ି ତେଲ ବାହାର କରନ୍ତି । ଏ ତେଲର ବର୍ଣ୍ଣ ନାରଙ୍ଗବର୍ଣ୍ଣ ଓ ଦକ୍ଷିଣ ଭାରତରେ ଅଧିକ ହୁଏ । ଏ ତେଲ ଔଷଧରେ ଲାଗେ । ଏ ତେଲର ସ୍ୱାଦ କଟୁଆ । ଏହା ଅଗ୍ନି, ମେଧା ଓ ବୁଦ୍ଧିବର୍ଦ୍ଧକ ଓ ବାତ, କଫ ଓ ଦାହନାଶକ —ହି. ଶବ୍ଦସାଗର । ]

**ତେଜୋବାନ୍**— ସଂ. ବିଣ ପୁଂ ( ତେଜସ୍+ଅସ୍ତ୍ୟର୍ଥରେ ବତ୍ )— Tejobān ୧ । ତେଜଃଶାଳୀ—1. Vigorous; energetic. (ତେଜୋବତୀ—ସ୍ତ୍ରୀ) ୨ । ବୀର୍ଯ୍ୟବାନ୍—2. Valorous. ୩ । ବଳୁଆ; ଶକ୍ତିଶାଳୀ—3. Strong; powerful. ୪ । କାନ୍ତିମାନ୍—4. Lustrous; dazzling

**ତେଜୋମୟ**—ସଂ. ଭିଣ. ପୁଂ (ତେଜସ୍+ବହୁଲାର୍ଥେ. ମୟ)—ତେଜସ୍ୱୀ; Tejomaya ଜ୍ୟୋତିର୍ମୟ—Dazzling; luminous; (ତେଜୋମୟୀ—ସ୍ତ୍ରୀ) glorious; vigorous.

[ ଦ୍ର—ତେଜସ୍ ଶବ୍ଦ ସଙ୍ଗେ ଅନ୍ୟ ଶବ୍ଦ ଯୁକ୍ତ ହୋଇ ନାନା ଶବ୍ଦ ନିଷ୍ପନ୍ନ ହୁଏ । ଯଥା—ତେଜୋମୂର୍ତ୍ତି; ତେଜୋରୂପ; ତେଜଃଶାଳୀ; ତେଜଃପୁଞ୍ଜ; ତେଜଦୃଷ୍ଟି । ]

**ତେଜୋମୟୀ**—ସଂ. ବିଣ— (ସଂ. ତେଜୋମୟ) ତେଜୋମୟ ( ଦେଖ ) Tejomayī Tejomaya ( See )

ରୂପ ଅତ୍ୟନ୍ତ ଶୋଭା ପାଇ,
ସୂର୍ଯ୍ୟଙ୍କ ପ୍ରାୟେ ତେଜୋମୟୀ । ଜଗନ୍ନାଥ, ଭାଗବତ ।

**ତେଜୋମୂର୍ତ୍ତି**—ସଂ. ବିଣ ( ବହୁବ୍ରୀହି; ତେଜଃ+ମୂର୍ତ୍ତି )—ଜ୍ୟୋତିର୍ମୟ Tejomūrtti ରୂପବିଶିଷ୍ଟ—Having a luminous body; (ତେଜୋରୂପ—ଅନ୍ୟରୂପ) with body sorrounded by a halo of light.

ବି—୧ । ଜ୍ୟୋତିର୍ମୟ ରୂପ—1. A shining body. ୨ । ସୂର୍ଯ୍ୟ—2. The sun.

**ତେଜୋହ୍ୱା**—ସଂ. ଡ—୧ । ତେଜୋବତୀ ( ଦେଖ )— Tejohwā 1. Tejobatī ( See ) ୨ । ଚବ୍ୟ—2. Piper chaba.

**ତେଜ୍ୟପୁତ୍ର**—ଦେ. ବି (ସଂ. ତ୍ୟାଜ୍ୟପୁତ୍ର=ଯେଉଁ ପୁତ୍ରକୁ ତ୍ୟାଗ କରିବା Tejyaputra ଉଚିତ; ଯେଉଁ ପୁତ୍ରକୁ ପିତା ତ୍ୟାଗ କରନ୍ତି; ତ୍ୟକ୍ତ ତେଜିପୁତ୍ର ପୁତ୍ର—A son disowned, or forshaken ତ୍ୟକ୍ତପୁତ୍ର by the father.

**ତେଜ୍ୟପୁତ୍ର କରିବା**—ଦେ. କ୍ରି—ଅପେ ବସ୍ତ୍ର ଆଦି ଆଦି ଦଲିଲ Tejyaputra karibā ସମ୍ପାଦନ ବା ପ୍ରଚାର ଦ୍ୱାରା ପୁତ୍ରକୁ ତେଜିପୁତ୍ର କରା ଅପଣାର ସମ୍ପତ୍ତିରୁ ବଞ୍ଚିତ କରିବା— To disinherit one's son.

**ତେଜ୍ୟା**—ଦେ (ସଂ. ତ୍ୟଜ୍ ଧାତୁ ) ତ୍ୟଜନ; ତ୍ୟାଗ— Tejyā Giving up; abandonment.

ଦେଖି ଆରଣ୍ୟ ସ୍ତବକ କାଦମ୍ବିନୀ ବାଣୀକା,
ତେଜିକଲା ସହ ବକଳା କହୁ ଲୋଚକ ତେଜ୍ୟା ।
ଉତ୍ତ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ତେଡ଼ପୁଣି ଗାଈ**—ପ୍ରାଦେ (ଗଡ଼ଜାତ) ବି—ବିଛୁଆତି ଗାଈ ( ଦେଖ ) Terdapuni gāi Bichhuāti gāi ( See )

**ତେଡ଼ା** (ଇତ୍ୟାଦି)—ତେଢ଼ା ଇତ୍ୟାଦି ( ଦେଖ ) Terdā etc Terdhā etc ( See )

**ତେଡ଼ି**(ଢ଼ି)—ଦେ. ବି—ଟେଣ୍ଟ ( ଦେଖ ) Terdi(rdhi) Ṭeri ( See )

**ତେଡ଼ିକି**—ଦେ. ବିଣ (ହି. ଭାବନ୍)—୧ । ସେତିକି ପରିମିତ— Terdiki 1. So much; such. তত; ততবড় ଯେତିକି ବର୍ଷକୁ ତେଡ଼ିକି ପୂଜା, तेतना ବାଲି ଗରଡାକୁ ଗୁହଳଭଜା । ଚଗ ।

୨ । ସେତିକି ଆକାରବିଶିଷ୍ଟ; ତଦାକାର— 2. Of that magnitude.

୩ । ଅତ୍ୟନ୍ତ—3. Excessive; too much.

( ଯଥା—ତା ଘରେ ତେଡ଼ିକି ଅମାଇ ହେବାରୁ ମୁଁ ତା ଘର ଛାଡ଼ି ପଳାଇ ଆସିଲି । )

କ୍ରି. ବିଣ—୧ । ସେତିକି ପରିମାଣରେ—1 So much; such. ୨ । ଅତ୍ୟନ୍ତ; ବିଶେଷ ଭାବରେ—2. Too much.

( ଯଥା—ତା ଶ୍ରେଣ ତେଡ଼ିକି ବଳାଇବାରୁ ତାକୁ ଡାକ୍ତରଖାନାକୁ ନେଇ ଆସିଲୁଁ । )

**ତେଡ଼େ**—ଦେ. ବିଣ—୧ । ତେଡ଼ିକି ( ଦେଖ ) Terde 1. Terdiki ( See )

ବେଦବ୍ୟାସ ଗୋସାଇଁ ଶିଷ୍ୟ ଶୁକ ଯେନ,
ସନ୍ଦେହ ସେ ଯାଗରେ ହେଲେ ତେଡ଼େ ମୂନ ।
କୃଷ୍ଣସିଂହ, ମହାଭାରତ. ଅଦ ।

କ୍ରି. ବିଣ.—ତେଡ଼ିକି (ଦେଖ)—Terdiki (See)

ତୁ ତେଣେ ତେଡ଼େ ବଶ ହୋନ୍ତୁ
ନିଷ୍ଠାମେ ଯେତେ ତୋଷ ହେଉ । ଜଗନ୍ନାଥ, ଭାଗବତ ।

୨ । ସେତେବଡ଼ ଗୁଣ ବା ଗରିମାବିଶିଷ୍ଟ— 2. Possessing so many qualities; so great a; such a great.

**ତେଡ଼େକେ**—ଦେ. କ୍ରି. ବିଣ.—ତେଡ଼ିକରେ— Terdeke In so much.

ଯେତେ ଯେତେ ତେଡ଼େକେ ରଖିଲ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ତେଡ଼େଭଲି**—ଦେ. ଅ.—୧ । ତାଦୃଶ— Terde bhali 1. Such. ততবড় ୨ । ସେତେବଡ଼— तेता बड़ा 2. So great; such a great. (preson).

ମୃଗୟାରେ ସେ ଲୁଲ କହୁଛ ସହିତ,
ତେଡ଼େ ଭଲି ନୃପ ପାଇଲେ ଅତି ଶାନ୍ତ । କୃଷ୍ଣସିଂହ, ମହାଭାରତ. ଅଦ ।

**ତେଢ଼ା**—ଦେ. ବିଣ. (ସଂ. ତାର୍ଯ୍ୟକ; ଭିରଶ୍ଚ)—୧ । ବକ୍ର, ବଙ୍କା କୁଟିଳ— Terdhā 1. Crooked; curved; awry; not straight.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଋ | ଡ଼ | ଯ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଞ | ଯ | ସ | ଙ୍ଗ | ଋ | ଢ଼ | ୟ |

[ ଦ୍ର—ଏହା ବଙ୍କା ଶବ୍ଦ ସଙ୍ଗେ ସହଚର ରୂପେ ବ୍ୟବହୃତ ହୁଏ । ]

ଟେଢ଼ା, ଟେଢ଼ା ୨ । ତେଲେଙ୍ଗ; ସାଧା ଟିଥ (ଗଡ଼ା) ବା ଶୁଅ (ଅଡ଼) ବାଗରେ ନ ଯାଇ ବର୍ଣ୍ଣ ମାର୍ଗରେ ଯାଇଥାଏ—2. Oblique.
ଟେଢ଼ା
 ୩ । ରୁଢ଼; ରୁକ୍ଷ—2. Surly; irritable.
 ( ଯଥା—ଟେଢ଼ା ମିଜାଜ୍ । )
 ୪ । ଟେଁସା; ଅସମ୍ମାନସୂଚକ; ଅବାଧ୍ୟତାପୂର୍ଣ୍ଣ—4. Insubordinate.
 ( ଯଥା—ଟେଢ଼ା କଥା କହିବା ଭୃତ୍ୟକୁ ଦଣ୍ଡେ ଗୃହରେ ରଖିବ ନାହିଁ । )
 ୫ । ଯେଉଁ ଭୃତ୍ୟ ପ୍ରଭୁକୁ ଜବାବ ଦିଏ; ଉତ୍ତରବାଦୀ (ଭୃତ୍ୟ)—5. Recalcitrant; refractory (servant).

ଟେଢ଼ା ଟେଢ଼ି—ଦେ. ବି—ପରସ୍ପରର କଥାକୁ ଅବଜ୍ଞା କରିବା; ଟେଁସା-ଟେଁସି; ଅନ୍ୟୋନ୍ୟ ପ୍ରତି ରୁକ୍ଷ ବାକ୍ୟ ପ୍ରୟୋଗ କରିବା—Mutual disagreement or quarrel.
Terdhā terdhi
ଟେଢ଼ାଟେଢ଼ୀ
टेढ़ाटेढ़ी
 ( ଯଥା—ଯେଉଁ ଘରେ ସାଆନ୍ତ ସାଆନ୍ତାଣୀଙ୍କର ସବୁବେଳେ ଟେଢ଼ା ଟେଢ଼ି ଲାଗେ ସେ ଘରେ ନଉକର ଚାକରଙ୍କ ଦୁର୍ଦ୍ଦଶା କହିଲେ ନ ସରେ । )

ଟେଢ଼ା ମେଢ଼ା—ଦେ. ବିଣ. ( ଜବର୍ଥକ ଦ୍ୱିରୁକ୍ତ ସହଚର ଶବ୍ଦ )—ବଙ୍କାତଙ୍କା; ବହୁବାର ବଙ୍କେଇଥିବା—Crooked at several places.
Terdhā merdhā
ଟେଢ଼ାମେଢ଼ା
टेढ़ामेढ़ा

ଟେଢ଼ି ଦେବା—ଦେ. କ୍ରି—୧ । ଅମାନ୍ୟ କରିବା; ନ ମାନିବା; ଦେଖାଇକି କରିବା—1. To disobey, to disregard.
Terdhi debā
ଠେସେ ଦେଓୟା
टेसना
 ୨ । ଘଉଡ଼ି ଦେବା; ତଡ଼ି ଦେବା—2. To drive away.

ଟେଢ଼ିବା—ଦେ. କ୍ରି. ( ସ. ଭର୍ତ୍ସ୍ୟତ୍ )—
Terdhibā ୧ । (ପ୍ରଭୁ ଓ ଗୁରୁଜନଙ୍କ କଥାକୁ) ଅବଜ୍ଞା କରିବା; ନ ମାନିବା—1. To disobey; to disregard ( a superior's words. )
ଠେଁସା
ठसना
 ୨ । ଜବାବ ଦେବା; ପ୍ରଭୁ ବା ଗୁରୁଜନଙ୍କ କଥାରେ ଅବଜ୍ଞାସୂଚକ ଉତ୍ତର ଦେବା—2. To give insubordinate replies to a superior's command.
 ୩ । ମେଳ ନ ଖାଇବା—3. To disagree; to jar.
 ( ଯଥା—ଏ କବାଟଟା ଚଉକାଠକୁ ଟେଢ଼ୁଛି । )
 ୪ । ଠେଁସିବା—4. To push.

ଟେଢ଼େଇବା—ଦେ. କ୍ରି. ( ସ. ଭରସ୍ )—
Terdheibā ୧ । ବଙ୍କା ହେବା—1. To be curved.
ଟେଢ଼ା ହୋନା
 ୨ । ତେରଛା ହେବା—2. To slant.
टेढ़ा होना

ଟେଣ—ଦେ. ସର୍ବନାମ ( ସ. ତତ୍ସ୍ଥାନ )—
Tena ୧ । ସେହି ଆଡ଼—1. That side
(ଏଣ—ବିପରୀତ) ୨ । ସେହି ଦିଗ—2. That quarter.
সেখানে, ঔদিগ, ওদিগ ୩ । ସେହି ଅଞ୍ଚଳ—3. That place, that part.
उधर
 [ ଯଥା—ଏହି ଶବ୍ଦର ୨ୟା ଟେଣିକି; ଟେଣିକୁ; ୫ମୀ-ଟେଣୁ; ୭ମୀ ବିଭକ୍ତି ଟେଣେ । ]
 ବିଣ—ଟେଣର ( ଦେଖ )—Tenara ( See )

ଟେଣର—ଦେ. ସର୍ବନାମ ( ସ. ୬ଷ୍ଠୀ ବିଭକ୍ତି )—
Tenara ୧ । ସେହି ଆଡ଼ର—1. Of that place or side.
(ଏଣର—ବିପରୀତ)
সেখানকার, ওদিগের ୨ । ତତ୍ ସମ୍ବନ୍ଧୀୟ—2. Pertaining to that.
उधरका
(ଟେଣକା, ଟେଣକାର—ଅନ୍ୟରୂପ)

ଟେଣିକା—ଦେ. ବିଣ—ଟେଣର ( ଦେଖ )
Tenikā Tenara ( See )
(ଟେଣିକାର—ଅନ୍ୟରୂପ)

ଟେଣିକି—ଦେ. ଅ—୧ । ସେହି ଦିଗକୁ—1. To that side.
Teniki ୨ । ସେହି ଆଡ଼କୁ—2. To that quarter.
(ଏଣିକି ବିପରୀତ) ଟେମନ୍ତ ଭଲ ଲଟେବାର ଟେଣିକି ଥାଉ । ଜଗନ୍ନାଥ. ବଟେକା ।
ওদিগে, ঔদিগে ୩ । ସେହି ସ୍ଥାନକୁ—3. To that place.
उधर ଯାହା ଦେଖି ତା ଯାଉ ଟେଣିକି
 ବନ୍ଧ ବାନ୍ଧିଥାଅ ପାଣି ଉଛୁ ଏଣିକି । ଠଗ ।
 ୪ । ତତ୍ପରେ—4. After that

ଟେଣୁ—ଦେ. ଅ—୧ । ସେହିଆଡ଼ୁ; ସେହିଦିଗରୁ—1. From that
Tenu ୨ । ବିପରୀତ ଦିଗରୁ—2. From opposite direction.
(ଟେଣୁଁ—ଅନ୍ୟରୂପ) (ଏଣୁ ପଠଉଣୀ ଟେଣୁ ପଠାଣ—
 କାହ୍ନିକି ବୋଇଲେ ପଡ଼ କୁସୁଣ—କାହ୍ନିଗୀତ)
উদিগথেকে ୩ । ଟେଣୁକରି (ଦେଖ)
उधरसे 3. Tenukari (See)

ଟେଣୁକରି—ଦେ. ଅ—ସେହି ହେତୁରୁ; ସେହି କାରଣରୁ—
Tenukari For that reason; therefore.
(ଏଣୁ କରି—ବିପରୀତ) ବିଷୟ ଅନ୍ତରେ ମନ ନ ଗମିବା ପାଇଁ
তাই, তাইজন্যে; ଟେଣୁକରି ମଧ୍ୟରେ ଅନ୍ତର ରଖି ନାହିଁ ।
उसवास्ते ଶିଶୁଶଙ୍କର ଭାଷା ଅଭିଳାଷ ।

ଟେଣେ—ଦେ. ଅ—୧ । ସେହି ଆଡ଼େ—1 In that side.
Tene ୨ । ସେହି ବିଷୟରେ—2 In that matter.
(ଏଣେ—ବିପରୀତ) ଟେଣେ ସଂଶୟ ନାହିଁ ମୋର
উদিগে उधर ସକଳେ କୃଷ୍ଣ କଥା କର । ଜଗନ୍ନାଥ. ଭାଗବତ ।

ସାଧାରଣ ଲୋକେ ଅପର ସ୍ଥାନରେ ୧ଘର ୧ ଚକ୍ରର ଅକ୍ଷର ଓ ୮ ୯ ଏବ ୬ ଚକ୍ରର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚକ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚକ୍ରର ବଦଳରେ ୨ ବା ୧ ଚକ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ, କୁଷ ନ ମିଳିଲେ 'କୃଷ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; ଅର୍ଦ୍ଧ ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ୍' ଦେଖିବେ ।

୩ । ଅପର ପକ୍ଷରେ—3. On the contrary.

୪ । ସେହିଠାରେ; ସେହି ଅଞ୍ଚଳରେ—
4. In that quarter; there.

୫ । ବିପରୀତ ଦିଗରେ—5 In opposite direction.

ଏଣେ ବଇରଣ ଦେଲେ ତେଣେ
ଆଣ୍ଟି ବେ ଲାଗି ଯୋଡ଼ ଦେଲେ । କବିତ ।

୬ । ପରନ୍ତୁ—6. Moreover; on the other hand.

**ଟେଣ୍ଟଣ**— ଦେ. ବିଣ— କୃପଣ —Miserly
Tentana

**ଟେଣ୍ଟରେଇବା**—ପ୍ରାଦେ ( ଯାଜପୁର ) କ୍ରି—ଟେଣ୍ଟେଇ ହେବା;
Tentareibā କୌଣସି ବିଷୟ ନେଇ ଦିଗଦାର କରିବା—
To bother a person with tenaciousness; to importune.

**ଟେଣ୍ଟା**—ଦେ. ବି (ସ. କଣ୍ଟକ)—୧ । ବଡ଼ ମାଛକୁ ବିଦ୍ଧ କରିବା
Tentā ନିମନ୍ତେ ବ୍ୟବହୃତ ମୁନିଆଁ ଅସ୍ତ୍ର; ମୁନା—
बर्छा 1 A harpoon.
अड़चन ୨ । କଷ୍ଟ, ଦୁଃଖ—2. Trouble.
दांगा ୩ । ଝଞ୍ଜା; ଜଞ୍ଜାଳ; ହେଙ୍ଗାମା; ଅଡୁଆ—
टंटा 3. Confusion; complication
୪ । ଆପଦ୍—4. Crisis; danger.
୫ । ଟେଣ୍ଟା ବାଡ଼ି ( ଦେଖ )—
5. Tentābārdi ( See ).
ଟୌଟ ଦେ. ବିଣ. ପୁଂ ( ସ. ଧୃଷ୍ଟ )—ଚେଣ୍ଟା ( ଦେଖ )
ढीठ Chentā ( See ).

ଅଳପ ଟେଣ୍ଟା ମାରଣ ଟେଣ୍ଟେ ମନୁଷ ବଳର ସର
ଯମ ଘର ଯାଉ ବା ପଳ ହେବ ନତ ମରଣ ଭାଉ—ଭକ୍ତ ।

**ଟେଣ୍ଟାବାଡ଼ି**—ପ୍ରାଦେ ( ଗଡ଼ଜାତ ) ବି—ଦୋବାମାନେ ୬।୭ ଇଞ୍ଚ
Tentābārdi ଲମ୍ବରେ କାଟଥିବା ଚପ୍ପ କନାର ମୋଟ କଳିକା ଯାହା ଅବଦରେ ଟେଣ୍ଟାବାଡ଼ିରିଷ୍ଟି ଯେଉଁ ଲୁହା-ଦଣ୍ଡରେ ଜଳେ—An iron fork over which balls of cloth saturated with oil are put and lighted.

**ଟେଣ୍ଟୁ**—ପ୍ରାଦେ (ଲଇଆ)ବି—ଘଣ୍ଟି; ଗଳା—
Tentu Throat.

**ଟେଣ୍ଟୁଆ**—ଦେ. ବି ( ସ. ଟିଟ୍ଟିଭ )—ଟିଟ୍ଟିଭ (ଦେଖ)
Tentuā Tittibha (See).
ବିଣ. ପୁଂ ( ସ. ଧୃଷ୍ଟ; ଶଠ )—୧ । କଳିହୁଡ଼ା—
1. Quarrelsome.
टैंटा ୨ । ଜଞ୍ଜାଳିଆ—2. Noisy; pertinacious
टंटेबाज ୩ । ଏକଜିଦିଆ—3. Obstinate.
(ଟେଣ୍ଟେ(ଣ୍ଟୋ)ଇ—ସ୍ତ୍ରୀ) ୪ । ଚେଣ୍ଟା ( ଦେଖ )—
4. Chentā (See).

**ଟେଣ୍ଟୁଆ ଛତୁ**—ଦେ. ବି. ( ଗଡ଼ଜାତ ) ବି ( ଭୁଲ. ଇଂ. ଟୋଡ୍ ଷ୍ଟୁଲ୍ )—ଖୁବ୍ ବଡ଼ ଓ ନାଡ଼ଯୁକ୍ତ ଛତୁ—
Tentuā chhatu Big species of mushroom with long stems.

**ଟେଣ୍ଟେଇ ଗୋଡ଼**—ଦେ. ବି—ଟେଣ୍ଟେଇ ଗୋଡ଼ (ଦେଖ)
Tentei gorda Tentei gorda (See)

**ଟେଣ୍ଟେଇ ଗୋଡ଼ୀ**– ଦେ. ବିଣ. ସ୍ତ୍ରୀ—ଟେଣ୍ଟେଇ ଗୋଡ଼ୀ (ଦେଖ)
Tenteigordi Tentei gordi (See)
(ଟେଣ୍ଟେଇ ଗୋଡ଼ିଆ, ଟେଣ୍ଟେଇ ଗୋଡ଼ା—ପୁଂ)

**ଟେଣ୍ଟେଇ**—ଦେ. ବିଣ. ସ୍ତ୍ରୀ—୧ । କଳହୁଡ଼ୀ ସ୍ତ୍ରୀ—
Tentei 1. Vixen; virage.
(ଟେଣ୍ଟୋଇ—ଅନ୍ୟରୂପ) ୨ । ଏକଜିଦିଆ ସ୍ତ୍ରୀ—2. Obstinate
(ଟେଣ୍ଟା, ଟେଣ୍ଟୁଆ—ପୁଂ) ( woman ); pertinacious.
୩ । ଚେଣ୍ଟେଇ; ନିର୍ଲଜ୍ଜା—
3 Indecent; indecorous (woman) immodest.
୪ । ଯେଉଁ ସ୍ତ୍ରୀର ଗୋଡ଼ ନଳ ପରି ସରୁ ଓ ଲମ୍ବା; ନଳ-ଗୋଡ଼ୀ (ସ୍ତ୍ରୀ)—4 A longlegged woman.
୫ । ଜଞ୍ଜାଳୀ ( ସ୍ତ୍ରୀ )—
5, Noisy ( woman ), pugnacious.
୬ । ଧୃଷ୍ଟା—6. Impudent (woman).
୭ । କଳହୁଡ଼ୀ—7. Quareelsome (woman).
ବି—ଟିଟ୍ଟିଭ ( ଦେଖ )—Tittibha (See)

**ଟେଣ୍ଡବା**—ପ୍ରାଦେ. ( ବସ୍ତର ) ବି—ଏଣ୍ଡୁଅ—
Tendabā Chameleon.

**ଟେଣ୍ଡରା**—ପ୍ରାଦେ. ( ଯାଜପୁର ) ବି—ବନିସି ଡୋରରେ ଲାଗିଥିବା ମୟୂର ପକ୍ଷ କାଠ ବା ଶୋଲ; ଫେରେଣ୍ଡା—
Tendarā The float of a fishing line.
[ ଦ୍ର—ଏହା ବୁଡ଼ିଗଲେ ମାଛ ଥୋପ ଧରିଅଛି ବୋଲି ବନିସିଆକୁ ଜଣାଯାଏ । ]

**ଟେଣ୍ଡା**—ଦେ. ବି. ( ସ. ତାର୍ଯ୍ୟକ୍ ଦଣ୍ଡ; ସ. ଟେଙ୍କ—ବଡ଼ିଆ କାଙ୍କ ପକ୍ଷୀ )—ଗଭୀର ଜଳାଶୟ ବା କୂଅରୁ ଉପରକୁ ପାଣି ଉଠାଇବା ନିମନ୍ତେ ବ୍ୟବହୃତ ଢିଙ୍କି ପରି ପଡ଼ିବା ଉଠିବା ଯନ୍ତ୍ରବିଶେଷ—Water-lifting crane; an appliance for raising buckets of water from deep places ( on the lever principle ) for irrigation purposes; ( consisting of an earthen pot or bucket suspended to one end of a long bamboo pole which moves on a fulcrum ).
Tendā
टेंअरा, लाठा हँड़िकल
(बाँस ड़ारे) टेंगा
ढेंकली

ଟେଣ୍ଡା ବାନ୍ଧି ବାନ୍ଧି କେଣ୍ଡ ତଣା ପୁଣ
ଗାଧଲେଲେ ଜଳେ ଝଣ ମୂଷଗଜ—ଚାହାଣୀ ରସିକୁଲ୍ୟା ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଈ | ଋ,ୠ | ଌ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଶ | ଷ | ସ,ଶ | ଙ୍କ | ଞ୍ଚ | ଣ୍ଟ | ଳ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଚ | ସ | ଙ୍ଘ | ଞ୍ଜ | ଡ଼ | ଢ଼ |

[ ଦ୍ର—ଏଥିରେ ଦୁଇଗୋଟି ଖୁଣ୍ଟ ଉପରେ ଖଣ୍ଡିଏ ଅଡ଼ ଧାରଣା ପଡ଼େ ଏବଂ ଅଡ଼ ଧାରଣା ଉପରେ ଗୋଟିଏ ଲମ୍ବ ବାଉଁଶର ମଧ୍ୟ ଭାଗ ଏପରି ଖଞ୍ଜା ହୁଏ ଯେ ଲମ୍ବ ବାଉଁଶର ଗୋଟିଏ ମୁଣ୍ଡ ଉଠିଲେ ଆର ମୁଣ୍ଡଟି ପଡ଼ିଯାଏ । ସେହି ଲମ୍ବ ବାଉଁଶର ଗୋଟିଏ ମୁଣ୍ଡରେ ଗୁଣ୍ଡିଏ ମାଟି ବା ପଥର ଲଦା ହୋଇଥାଏ । ଅପର ମୁଣ୍ଡରେ ଗୋଟିଏ ଲମ୍ବ ଦଉଡ଼ା ବା ଲଟି ବନ୍ଧା ହୋଇଥାଏ । ସେହି ଲଟି ବା ଦଉଡ଼ାରେ ଗୋଟିଏ ହାଣ୍ଡି ଝୁଲୁଥାଏ । ଲଟିକୁ ଧରି ସେହି ହାଣ୍ଡିକୁ ପାଣିରେ ବୁଡ଼ାଇ ଟେକିଲେ ଲମ୍ବ ବାଉଁଶର ଅପର ପାଖରେ ଲଦା ହୋଇଥିବା ପଥର ବା ମାଟି ଭାର ଯୋଗୁଁ ଜଳପୂର୍ଣ୍ଣ ହାଣ୍ଡିକୁ ଟେକିବା ନିମନ୍ତେ ଅଳ୍ପ ଆୟାସ ପ୍ରୟୋଜନ ହୁଏ । ସେ ଜଳପୂର୍ଣ୍ଣ ହାଣ୍ଡିକୁ ଟେକି ତହିଁର ଜଳକୁ ଗୋଟିଏ ନାଳିଆ ବା ଜଳ ଗଛର ଫାଳ ( ଲେଦା ) ରେ ଢାଳି ଦେଲେ ସେହି ଲେଦାବାଟେ ପାଣି କ୍ଷେତକୁ ବୋହିଯାଏ ।

ଟେଣ୍ଡାର ବିଭିନ୍ନ ଅଂଶମାନଙ୍କର ନାମ, ଯଥା—ଟେଣ୍ଡାଖୁଣ୍ଟ, ବାହାଲଖୁଣ୍ଟ, ମାଙ୍କୁଡ଼ୀ, ଅଡ଼ ଧାରଣା ବା ମାଞ୍ଚ, ବାହାଲ ବାଉଁଶ, ହାତ ବାଉଁଶ ବା ଲଟି, ଲେଦା ବା ନୋଳା, ହାଣ୍ଡି, ଭାଞ୍ଜି ବା ମଞ୍ଚା । ]

ଟେଣ୍ଡା(ଣ୍ଡେ)ଇବା—ଦେ. କ୍ରି—୧ । ଟେଣ୍ଡିବା କ୍ରିୟାର ଣିଜନ୍ତରୂପ—
Teṇḍā(ṇḍe)ibā 1. The causative form of Teṇḍibā.
୨ । ଟେଣ୍ଡାଦ୍ୱାରା ପାଣି ଉଠାଇ ଲେଦାରେ ଢାଳିବା; ଟେଣ୍ଡିବା—
2. To pour down water on the receiving channel after lifting it by means of a crane-contrivance.
୩ । ଜଳୀୟ ପଦାର୍ଥ ଅନ୍ୟ ବ୍ୟକ୍ତିର ପାଟିରେ ବେଶି ପରିମାଣରେ ଢାଳିବା—3 To pour down profusely any liquid into the mouth of another person.
( ଯଥା—ଛୁଆ ପିଲାକୁ ମା ଘଣ୍ଟକୁ ଟେଣ୍ଡାଇ ଦେଲେ । )

ଟେଣ୍ଡାଖୁଣ୍ଟା(ଣ୍ଟି)—ଦେ. ବି—ଯେଉଁ ଚାରି ଗୋଟି ଖୁଣ୍ଟ ଉପରେ ବନ୍ଧା
Teṇḍākhuṇṭa(ṇṭi) ହୋଇଥିବା ଭାଞ୍ଜିରେ ମନୁଷ୍ୟ ଠିଆ
(ଟେଣ୍ଡାଖମ୍ବ—ଅନ୍ୟରୂପ) ହୋଇ ଟେଣ୍ଡାକୁ ପରିଚାଳନ କରି ପାଣି ଉଠାଏ—The four pillars on the scaffolding of which stands the man who works the water-lifting crane.

ଟେଣ୍ଡା ମାରିବା—ଦେ. କ୍ରି—ଗଭୀର ଜଳାଶୟରୁ ଉପରକୁ ପାଣି
Teṇḍā māribā ଉଠାଇବା ନିମନ୍ତେ ଟେଣ୍ଡା ଯନ୍ତ୍ରର ଭିନ୍ନ ଭିନ୍ନ ଅଂଶମାନ ବସାଇବା—To set up a crane-contrivance for lifting water from deep places.

ଟେଣ୍ଡାଳ—ଦେ. ବି—ଯେଉଁ ଲୋକ ଟେଣ୍ଡାଦ୍ୱାରା ଜଳାଶୟରୁ ଜଳ
Teṇḍāḷa ଉତ୍ତୋଳନ କରେ—A person who lifts up
(ଟେଣ୍ଡାଳିଆ—ଅନ୍ୟରୂପ) water into a Teṇḍā.
ନଈରୁ ପାଣି ଟେଣ୍ଡଇ ଟେଣ୍ଡାଳ—ହାଡ଼ିବା ଦାସ. ପରଟେଗୀତା ।

ଟେଣ୍ଡାଶାଳ—ଦେ. ବି—ଜଳାଶୟର ଯେଉଁ ସ୍ଥାନରେ ଟେଣ୍ଡା ମଞ୍ଚାଯାଏ—
Teṇḍāśāḷa The place on the bank of a reservoir of water where the Teṇḍā is set up.

ଟେଣ୍ଡିବା—ଦେ. କ୍ରି—୧ । ଟେଣ୍ଡାଦ୍ୱାରା ପାଣି ଉଠାଇ ଢାଳିବା—
Teṇḍibā 1. To irrigate or pour down water by
ସୁଁଟନା means of a lifting crane.
ନଈରୁ ପାଣି ଟେଣ୍ଡଇ ଟେଣ୍ଡାଳ—ହାଡ଼ିବା ଦାସ. ପରଟେଗୀତା ।
୨ । ଜଳୀୟ ପଦାର୍ଥକୁ ବେଶି ପରିମାଣରେ ଢକ୍ ଢକ୍ କରି ପିଇବା—2. To gulp down a big quantity of any liquid.
( ଯଥା—ମୁଁ ଭାତ ଖୋଷେଇ ଥିଲି, କଂସାଏ ତୋରାଣୀ ଟେଣ୍ଡି ଦେଲି । )
୩ । ଜଳୀୟ ପଦାର୍ଥକୁ ନାକବାଟେ ଶୋଷିବା—
3. To suck any liquid through the nostrils

ତେତ୍କେ—ପ୍ରାଦେ. ( ସମ୍ବଲପୁର ) ଅ—ତେତେକେ ( ଦେଖ )
Tetke Teteke ( See )

ତେତ(ତେ)କ—ଦେ. ବି. ଓ ବିଣ ( ସ. ତତ )—ସେତକ; ସେତିକ;
Teta(te)ka ତନ୍ମାତ୍ର—That much; so much.
ତତେକ तेतना, तितना

ତେତମା—ବୈଦେ. ବି. ( ଫା. ତେତାମ୍ମା; ଅ. ତତିମ୍ମା—ଅବଶିଷ୍ଟ
Tetamā ଅଂଶ )—୧ । ଅଡୁଆ; ଗୋଳମାଳ—
ତେତାମ୍ବା 1. Confusion; complication.
तितिंबा ୨ । କଳହ; ବିବାଦ—2. Quarrel; dispute.
( ଯଥା—ମହାଜନ ଖାତକ ସଙ୍ଗେ ତେତମା ଲଗାଇ ସୁଧ ବାବଦରେ ଅନେକ ଟଙ୍କା ନେଇଗଲା । )
୩ । ଅବଶିଷ୍ଟ ରହି ଯାଇଥିବା ଅଂଶ—
3. Remnant; remains.
୪ । ପୁସ୍ତକର ପରିଶିଷ୍ଟ—
4. Appendix to a book; supplement.
ବିଣ—୧ । ଅବଶିଷ୍ଟ; ବଳିଥିବା—1. Remaining.
୨ । ବାଜେ; ମୁତଫର୍କା—2. Miscellaneous.
୩ । ବୃଥା—3. Vain; fruitless; useless.
୪ । ସଂକ୍ଷିପ୍ତ; ଚୁମ୍ବକ—4. Concise.
( ଯଥା—ଜମିଦାର ଅସୁଲଙ୍କାରୁ ତେତମା କାଗଜ ଶୀଘ୍ର ଦାଖଲ ନ କଲେ ତହସିଲଦାରଙ୍କ ଚାକିରି କଟିଯିବ । )

ତେତାଲ—ଦେ. ବି. ( ସ. ଚିତଳ )—ତିତାଲ ( ଦେଖ )
Tetāla Titāla ( See )

ତେତିକି—ଦେ. ଅ. କ୍ରି. ବିଣ. ଓ ସର୍ବନାମ. ( ସ. ତତ୍; ତାବତ୍ )—
Tetiki ୧ । ସେହି ପରିମାଣ; ତନ୍ମାତ୍ର; ସେତିକ—
ତତେକ 1. That much.

ସାଧାରଣ ଲେଖେ ଅପର ପୃଷ୍ଠାରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଠ ସ୍ଥାନରେ ଉକ୍ତ ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଜାଇ' ନ ମିଳିଲେ 'ଯାଇ' ଖୋଜିବେ; 'ଭୂସ' ନ ମିଳିଲେ 'ଦୃଷ' ଦେଖିବେ, 'ବଦ୍ଧ' ନ ପାଇଲେ 'ବନ୍ଧ' ଦେଖିବେ; 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ

**तितनी, तैतिक** ୨ । ସେହି ପରିମିତ; ତେତେ; ସେତେ; ସେହି (ଏଭଳ—ଉପଗ୍ରହ) ପରିମାଣରେ—2. So much.

ଅବକାରେ ପଶୁ ଯେ ଅନ୍ତି ତେତେ
ଅନନ୍ତ ପୁଣ୍ୟ ଲେଖେ ବୃକ୍ଷର ତେତେ । କୃଷ୍ଣ ଦ. ମହାକାବ୍ୟ. ୪ ଦ ।

**ତେତପ**—ଦେ. ବି. ( ସଂ. ତିତିଭ; ତିତିଭ )—ତିତିଭ (ଦେଖ)
Tetipa Titibha ( See )

**ତେତିଶ (ଶି)**—ଦେ. ବି. ( ସଂ. ତ୍ରୟସ୍ତ୍ରିଂଶତ୍; ପ୍ରା. ତେତ୍ତୀସା )—
Tetisa(si) ୩୩ ସଂଖ୍ୟା—The number 33.
ତେତ୍ରିଶ ଦେ. ବିଣ—୧ । ୩୩ ସଂଖ୍ୟକ—1. Numbering 33.
**तैतीस** ୨ । ୩୩ ସଂଖ୍ୟାର ପୂରକ—2. 33rd.
(ତେତ୍ରିଶ, ତେତ୍ରିଶି—ଅନ୍ୟରୂପ)

**ତେତୁଡ଼ି**—ପ୍ରାଦେ. (ଗଞ୍ଜାମ) ବି—ବୃକ୍ଷବିଶେଷ—Name of a tree.
Tetur̤di [ ବି—ଏହି ଗଛର କାଠ ଭାରି ଶକ୍ତ ଓ ଚେମଡ଼ି; ଏଥିରେ ପାଳଅ ଛାଅର ହୁଏ । ]

**ତେତେ**—ଦେ. ସର୍ବନାମ ଓ ବିଣ. କ୍ରି. ବିଣ ( ସଂ. ତତ୍ )—
Teto ସେତେ; ସେହି ପରିମାଣ; ସେହି ପରିମିତ—
(ତେତେକ—ଅନ୍ୟରୂପ) That much.
ତତ କାଳକ୍ରମେ-ନାନାକୁ ସର୍ବ ପାଳନ
**तेता** ନେ.ହୁଳ ନିଶୁଙ୍କ ଅନ୍ତ ତେତେ ପ୍ରଯୋଜନ । ନଳକବଳୀୟ, ଗୀତା ବନବାସ ।

**ତେତେକେ**—ଦେ. अ. ( ସଂ. ତତଃ )—
Teteke ୧ । ସେତେକେ; ସେହି ପରିମିତ ବସ୍ତୁରେ—
ততকে 1. With that quantity or amount.
**तेतामें** ୨ । ତଦନନ୍ତର—2. After that; then.

**ତେତେ ଗୁଡ଼ାଏ**—ଦେ. ସର୍ବନାମ ( ଅନାଦରସୂଚକ )—
Tete gur̤dāe ୧ । ସେହି ପରିମିତ—1. So much.
(ତେତେ ଗୁଡ଼ିଏ—ଅନାଦରସୂଚକ ରୂପ) ୨ । ସେହି ସଂଖ୍ୟକ—
ততগুলা, ততগুলি **तेता** 2. So many.

**ତେତେନା ତେନାତେ**—ଦେ. ( ଧ୍ୱନ୍ୟନୁକରଣ ) अ—
Tetenā tenāte ସ୍ୱରଗୀତର ସ୍ୱରବିଶେଷ—
A refrain in singing.
ଉଲାଳ ଅରେ ଯେଉଁ ଗ୍ରାମରେ
ତେତେନା ତେନାତେ ତାନ ନାଚରେ । ପ୍ରାଚୀ. ରହସ୍ୟମଞ୍ଜରୀ ।

**ତେତେବେଳ**—ଦେ. ସର୍ବନାମ ( ସଂ. ତତ+ବେଳା )—
Tetebel̤a ତେବେ; ସେହି ସମୟ—
তখন **उसवखत** That time; then.

**ତେତେବେଳକୁ**—ଦେ. ବି—୧ । ସେହି ସମୟକୁ—1. Then; upto
Tete bel̤aku that time; by that time.
୨ । ତେତେବେଳ ( ଦେଖ )—2. Tetebel̤a (See)

**ତେତେ ବେଳୁଁ**—ଦେ. अ—ସେହି ସମୟରୁ—
Tete bel̤uñ From that time; thenceforth.
তখন থেকে **तबसे**

**ତେତେବେଳେ**—ଦେ. अ—ସେହି ସମୟରେ—
Tetebel̤e Then; at that time.
তখনি **तब**

**ତେଦ(ର)ସ୍ତା**—ପ୍ରା. अ—ତିଦସ୍ତା ( ଦେଖ )
Teda(ra)stā Tidastā ( See )

**ତେନା ତେନା**—ଦେ. अ—ମର୍ଦ୍ଦଳର ଉକ୍ତିବିଶେଷ—
Tenā tenā A refrain of drum-beating.
ଝୁଡ଼ ମଦଳ ହୋଇଲା ତାରତ
ନାନା ଧ୍ୱନିରେ ତେନା ତେନା ସତ । ଉଷ୍ଣ. ପ୍ରେମସୁଧାନିଧି ।

**ତେନେ**—ପ୍ରାଦେ. (ସମ୍ବଲପୁର) अ—ତେଣେ ( ଦେଖ )
Tene Teṇe ( See )

**ତେନ୍ତ(ନ୍ତେ)ରା**—ଦେ. ବି—୧ । ଅଖ ଉପରେ ଶଗଡ଼ ଦଣ୍ଡା ରଖାଯିବା
Tenta(nte)rā ପାଇଁ ଦଣ୍ଡା ତଳେ ଲଗାଯାଇଥିବା କାଷ୍ଠଖଣ୍ଡ ଦ୍ୱୟ—1. Two pieces of grooved wood
**तेंतरा** set over the axle of a bullock cart to support the shafts or beams
সফেদ শিরীষ ୨ । ( ସଂ ନାମ—ଭଣ୍ଡୀର; କପୀତନ )—
**सफेद सिरिष** ବଡ଼ ଓ ଡେଙ୍ଗା ବନ୍ୟ ବୃକ୍ଷବିଶେଷ—
2. Albizzia Procera (tree) (Haines).
[ ବି—ଏହାର ବକଳ। ଈଷତ୍ ହରିତ୍ ଓ ଧଳା । ସନ୍ତ୍ରସନ୍ତ୍ରଆ ମାଟିରେ ଏ ଗଛ ବଢ଼େ । ଗୋଲେଇ ୭।୮ ଫୁଟ ପର୍ଯ୍ୟନ୍ତ ହୁଏ । ଏହାର କାଠ ସୁନ୍ଦର ଓ ଶକ୍ତ । ଏହା ଶଗଡ଼ରେ ଲାଗେ । ]
ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବିଣ—ତରତରିଆ—
Hasty.

**ତେନ୍ତରା ଖାବଲ**—ଦେ. ବି—ତେନ୍ତରାର ଯେଉଁ ଖାଲ ଶଗଡ଼ର ଅନ୍ୟ
Tentarā khābal̤a ଉପରେ ଚୌରସ ହୋଇ ବସେ—
The groove in a 'Tentarā' which fits in with the beam of a cart.

**ତେନ୍ତରା ମାଧିଆ**—ଦେ. ବିଣ—ତନ୍ତରା ମାଧିଆ ( ଦେଖ )
Tentarā mādhiā Tantarā mādhiā ( See )

**ତେନ୍ତାଳି**—ଦେ. ବି. ସ୍ତ୍ରୀ—ଗ୍ରାମଦେବତା ବା ଯୋଗିନୀବିଶେଷ—
Tentāl̤i Name of a village Goddess.

**ତେନ୍ତୁଳି (ଇତ୍ୟାଦି)**—ଦେ. ବି—ତିନ୍ତୁଳି ଇତ୍ୟାଦି ( ଦେଖ )
Tentul̤i (etc) Tintul̤i etc. ( See )

**ତେନ୍ତେଲ୍**—ପ୍ରାଦେ. (ସମ୍ବଲପୁର) ବି—ତିନ୍ତୁଳି ( ଦେଖ )
Tentel Tintul̤i ( See )
ଦଗଡ଼ ମାଛର ଝୋଲ, ତାର ସଙ୍ଗେ ମିଶିଲେ ଖୋଲ
ଲୁହ ପଡ଼ୁଥାଏସି ମୁକୁଁ ବଲ, ଘଷିଲେ ତେନ୍ତେଲ୍ କୋଲ—ଚଗ ।

**ତେପଟ**—ବିଦେ. ବି ଓ ବିଣ. (अ)—ତିପଟ ( ଦେଖ )
Tepaṭa Tipaṭa ( See )

**ତେପନ**—ଦେ. ବି. ( ସଂ. ତ୍ରିପଞ୍ଚାଶତ୍; ପ୍ରା. ତିପଣ୍ଣା )—
Tepana ୫୩ ସଂଖ୍ୟା; ପଚାଶରୁ ୩ ଅଧିକ ସଂଖ୍ୟକ—
তেপান Number 53.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଡ଼,ଢ଼ | ତ୍ଥ | ଧ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ | ଯ | ସ | ଗ୍ୟ | ଡ,ଢ | ତ୍ତ | ଦ |

तिरपन  ବିଣ—୧ । ୫୩ ସଂଖ୍ୟକ—1. Numbering 53.
୨ । ୫୩ ସଂଖ୍ୟାର ପୂରକ—2. 53rd.

ତେପନାଶଏ(ହେ)—ଦେ. ବି ଓ ବିଣ—୧୫୩—153.
Tepanāsae(he) [ ଦ୍ର—ଏହିପରି ତେପନାଦୁଇଶ=୨୫୩ । ]

ତେପାୟା—ଦେ. ବି. ଓ ବିଣ.— ସ. ତ୍ରିପାୟା)—ତିପାହିଆ (ଦେଖ)
Tepāyā  Tipāhiā (See)
(ତେପାଇଅ; ତେପାହିଆ, ତେପାହ୍ୟା—ଅନ୍ୟରୂପ)

ତେପାନ୍ତର—ଦେ. ବି. (ସ. ତ୍ରିପ୍ରାନ୍ତର)—ଜନଶୂନ୍ୟ ବିସ୍ତୀର୍ଣ୍ଣ ପ୍ରାନ୍ତର—
Tepāntara  Widely extended lonely plain; prairie.
তিপান্তর

ତେବ୍ (ଧାତୁ)—ସ.—କ୍ରୀଡ଼ା କରିବା—
Teb (root)  To play; to disport.

ତେବକା—ଦେ. ବିଣ.—ସେହି କାଳର; ସେହି ସମୟର—
Tebakā  Of that time.
তবেকার  तबका  (ତେବକାର—ଅନ୍ୟରୂପ)

ତେବଠଉଁ—ଦେ. ଅ.—ସେହି ସମୟରୁ—
Tebaṭhaun̐  Since that time; from that time.
(ତେବେଠଉଁ; ତେବଠୁ; ତେଠଉଁ—ଅନ୍ୟରୂପ)
তবেথেকে  तबसे

ତେବନ—ସ. ବି. (ତେବ୍ ଧାତୁ; କ୍ରୀଡ଼ା କରିବା+ଅଧିକରଣ ବାଚ୍ୟରେ
Tebana  ଅନ)—୧ । କ୍ରୀଡ଼ାକାନନ; କ୍ରୀଡ଼ୋଦ୍ୟାନ—
1. Pleasure garden. (M. W.)
୨ । (+ଭାବ. ଅନ) କ୍ରୀଡ଼ା; ବିହାର—
2. Sport. (M. W.)

ତେବାରି—ଦେ. ବି.—ତେଉଆରି (ଦେଖ)
Tebāri  Teuāri (See)

ତେବେ—ଦେ. ଅ. (ସ. ତାବତ୍; ତଦା; ପ୍ରା—ତାବ)—
Tebe  ୧ । ସେହି ସମୟରେ—1 At that time.
তবে  ୨ । ତଥା; ତାହାହେଲେ—
तब्  2. Then; in that case.
ବସୁମାନ ବୋଇଲେ ଶୁଣିବା ଇଚ୍ଛା ଯେବେ,
ନ କହୁଛ ଚର୍ ଦେଖ ମୁଁ ତେଲ ତେବେ । କୃଷ୍ଣସିଂହ. ମହାଭାରତ. ଅଦ ।
୩ । ତା ପରେ—3. After that; thereafter.

ତେବେକେ—ଦେ. ଅ.—ତେବେହେଲେ (ଦେଖ)
Tebeke  Tebehele (See)
ତେବେକେ ସେମାନେ ଲଙ୍କରେ ପଶାଇଲେ ।
କୃଷ୍ଣସିଂହ. ମହାଭାରତ. ଅଦ ।

ତେବେହେଲେ—ଦେ. ଅ. (ସ. ତାବତ୍‌ତୁ)—୧ । ତଥାପି—
Tebehele  1 Then.
(ତେବେଙ୍କ, ତେବେକ, ତେବେଣ୍ଡ, ତେବେୟୁକା, ତେବେହେଁ—ଅନ୍ୟରୂପ)
ଅରଜୁନ ବୋଇବା ବଚନ ସହିଲ, ତେବେହେଲେ ସେ କ୍ଷମିଥି ନ ରହିଲ ।
କୃଷ୍ଣସିଂହ; ମହାଭାରତ. ବନ ।

ତବେଇ  ୨ । ତାହାହେଲେ ମଧ୍ୟ—
तबति  2. Then even; then also.

ତେମତ(ତି)—ଦେ. ଅ. ବି. ବିଣ. ଓ କ୍ରି. ବିଣ.—ତେମନ୍ତ (ଦେଖ)
Temata (ti)  Temanta (See)
(ତେମତକା, ତେମତକଥ, ତେମତେ—ଅନ୍ୟରୂପ)

ତେମଥା—ଦେ. ବି.—(ସ. ତ୍ରିମସ୍ତକ) ସଡ଼କର ଛକ; ତିଛକ—
Temathā  The meeting place of roads.
তেমাথা  तिराहा

ତେମନ—ସ. ବି. (ତିମ୍ ଧାତୁ=ଆର୍ଦ୍ର ହେବା+ଭାବ. ଅନ)—
Temana  ୧ । ଓଦା କରିବା; ଆର୍ଦ୍ରକରଣ—1. Moistening.
୨ । (+କର୍ମ. ଅନ)—ତିଅଣ; ବ୍ୟଞ୍ଜନ—2. Curry.
୩ । ରନ୍ଧା ଯାଇଥିବା ଖାଦ୍ୟ—(ହି. ଶବ୍ଦସାଗର)—
3. Cooked food.

ତେମନ୍ତ—ଦେ. ଅ. ବି. ବିଣ ଓ କ୍ରି. ବିଣ—ସେହିପରି; ସେହିପ୍ରକାରେ—
Temanta  In that manner; such like.
(ତେମନ୍ତ; ତେମନ୍ତେ—ଅନ୍ୟରୂପ) ତେମନ୍ତ ହେଲେ ତାଙ୍କୁ ଦଣ୍ଡ ନ ପାଇଲେ ।
তেমত, তেমতি, তেমন, তেমনি  तैसा  କୃଷ୍ଣସିଂହ, ମହାଭାରତ. ବନ ।

ତେମନ୍ତାଇ—ଦେ. (ପ୍ରାଚୀନ ପ୍ରୟୋଗ) ଅ.—ତେମନ୍ତ ହିଁ—
Temantāi  In that manner too.
ଶୁଣରେ ଭୁଜ ନ ବୁଝିସ ତାହା, ଭାବସ ମୋତେ ଉତ୍ତର ଯେ
ଏକଥା ତେମନ୍ତାଇ । ଭକ୍ତକଥ. ବଡ଼ଚଉତିଶା ।

ତେମୁହାଣୀ—ଦେ. ବି.—ତିମୁହାଣୀ (ଦେଖ)
Temuhāṇi  Timuhāṇi (See)
ତେମୁହାଣୀ ନାମେ ଏହି ସ୍ଥାନ ଏବେ ଜନଲୋକେ । ପଥାକାଥ. ଭକ୍ତ ।

ତେୟାଅଶୀ—ଦେ. ବି. ଓ ବିଣ.—(ସ. ତ୍ର୍ୟଶୀତି; ପ୍ରା.—
Teyāaśi  ତିଆସୀଇ)—୮୩; ଅଶୀରୁ ୩ ଅଧିକ ସଂଖ୍ୟା—
তিরাশি  तिरासी  83; Eighty three.
(ତେୟାଶୀ—ଅନ୍ୟରୂପ)

ତେୟାନଉ(ବେ)—ଦେ.ବି. ଓ ବିଣ—(ସ. ତ୍ରିନବତି; ପ୍ରା.ତିନବଇ)—
Teyānau (be)  ୯୩ ସଂଖ୍ୟା; ନବେ ଅପେକ୍ଷା ୩ ଅଧିକ ସଂଖ୍ୟା—
তিরানবই  Ninety three.
तिरानबे
(ତେୟାନୋଇ, ତେୟାଁନଉ, ତେୟାଁନବେ, ତେୟାଁନ୍ନେଇ—ଅନ୍ୟରୂପ)

ତେୟାଳିଶ(ଶି)—ଦେ. ବି. ଓ ବିଣ (ସ. ତ୍ରିଚତ୍ୱାରିଂଶତ୍; ପ୍ରା—
Teyāḷiśa (śi)  ତିଚତ୍ତାଲିସା)—୪୩ ସଂଖ୍ୟା—Number 43.
তেতাল্লিশ  ୨ । ୪୩ର ପୂରକ—2. 43 rd
तैतालिस  ବିଣ.—୧ । ୪୩ ସଂଖ୍ୟକ—1. Numbering 43.

ତେୟାଳିଶାଶଏ(ହେ)—ଦେ. ବି. (ସ. ତ୍ରିଚତ୍ୱାରିଂଶୋତ୍ତର ଶତ)—
Teyāḷiśāsae (he)  ଏକଶହ ତେୟାଳିଶ ୧୪୩—
143; one hundred and forty three.

ତେରଜ (ଜୁ) ଡ଼ି(ରି)—ଗ୍ରା (ବୈଦେ) ବି. (ଇଂ ଟ୍ରେଜରି)—
Teraja (ju) ṛdi (ri)  ଟ୍ରେଜରି (ଦେଖ)—Ṭrejari (See)

ଯାଆନ୍ତି ସେଠାରେ ଅପର ଦୃଷ୍ଟାନ୍ତରେ ଏହିଠାରେ ୧ ଚିହ୍ନ ଅଛି ଓ ଶେଷ ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ବଦଳରେ ତତ୍ପରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଆଇ' ନ ମିଳିଲେ 'ଆଈ' ଖୋଜିବେ, 'ଦୃଢ଼' ନ ମିଳିଲେ 'ଦୃଢ' ଦେଖିବେ; 'ଦହି' ନ ମିଳିଲେ 'ଦହୀ' ଦେଖିବେ, 'ଅଚିଆ' ନ ପାଇଲେ 'ଅଛିଆ' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍' ଦେଖିବେ

**ତେର** —ଦେ. ବି. (ସଂ. ତ୍ରୟୋଦଶ; ପ୍ରା—ତେରହ; ତେରସ)—
Tera ୧ । ୧୩ ସଂଖ୍ୟା—1. Number 13.
তের ୨ । ତେରବର୍ଷ ବୟସ—
तेरह 2. The age of thirteen years.
(ତେରଏ—ଅନ୍ୟରୂପ) ଏମନ୍ତ ଯାଇ ତେର ବର୍ଷରେ ଶରୀର ନିରନ୍ତ ଭାଙ୍ଗିଲା । ...
୩ । ତେର ସଂଖ୍ୟାଯୁକ୍ତ ସନ ବା ଅଙ୍କ—
3. A year having the figure of 13 in it.
ଭାରତ ଏକ ତେରଙ୍କୁ, ଚଉଦ ତେରେ ଦେଲି ନ ରହିବ ସତ୍ତ ଭଲିବାକୁ ...
ସଂ. ମଧ୍ୟରେ ...
ବିଣ.—୧ । ୧୩ ସଂଖ୍ୟକ—1. Numbering 13.
୨ । ତ୍ରୟୋଦଶ ସ୍ଥାନସ୍ଥ—2. Thirteenth.

**ତେରଅଙ୍କ** —ଦେ. ବି—୧ । ୧୩ ସଂଖ୍ୟା ବା ୧୩ ସଂଖ୍ୟା—
Teraanka 1. The number or figure 13.
୨ । ଉତ୍କଳୀୟ (ବର୍ତ୍ତମାନ ପୁରୀର) ରାଜାଙ୍କ ଶାସନକାଳ ରାଜ୍ୟଗଣନାର ଅଙ୍କ ଗଣନା ଅନୁସାରେ ଯେଉଁ ବର୍ଷ ୧୩ ଗଣାଯାଏ—1. A year of the regime of the kings of ancient Orissa (now of the Raja of Puri) which is computed according to a special calculation as thirteen
୩ । ୧୩ ସଂଖ୍ୟାଯୁକ୍ତ ସନ—3. A year containing the figure 13 in it.
(ଯଥା—ସୁ ୧୨୧୩ ସାଲ, ସନ ୧୯୧୩ ସାଲ ଇତ୍ୟାଦି ।)

**ତେରଛ(ଛା)** —ଦେ. ବିଣ. (ସଂ. ତିରସ୍; ତିରଶ୍ଚୀନ; ପ୍ରା. ତେରଚ୍ଛ)—
Terachha(chhā) ୧ । ଯାହା ପୂର୍ଣ୍ଣ ଠିଆ ବା ସମ୍ପୂର୍ଣ୍ଣ ଅଡ଼ା ନୁହେଁ; ବାଙ୍କ; ବକ୍ର; କୁଟିଳ—
তেরচা, তেড়চা 1. Crooked; awry; sidelong.
टेढ़ा, तिरछा, तिरच्छा ଅଚାଣେ ଚାହିଁଲ ଅତର ତେରଛ । ... ମହାଭାରତ ...
୨ । କର୍ଣ୍ଣମାର୍ଗରେ ଅବସ୍ଥିତ; ଯାହା ଭୂପୃଷ୍ଠ ଉପରେ ଲମ୍ବଭାବରେ ବା ସମାନ୍ତରଭାବରେ ଅବସ୍ଥିତ ନୁହେଁ—
2. Slanting; situated diametrically.
ସ୍ଥାନ. (ଦଣ୍ଡାୟମାନ ଓ ଆସନ) ବସିବାପାଇଁ ବା ଠିଆ ହେବାପାଇଁ ଅସୁବିଧା ସ୍ଥାନ—A place which is inconvenient to stand or sit upon.
[ ଦ୍ର—ନଇ ଅତଡ଼ ଓ ଶିଳ୍ପାଦି ଇତ୍ୟାଦି ]

**ତେରଛ ଚହାଣି** —ଦେ. ବି—ବାଙ୍କ ଚାହାଣି—Sidelong glance; furtive glance.
Terachha chahāṇi
বাঁকাচাহনি ତେଜ ତେଜ ଦୃଷ୍ଟି ଚହାଣି ତେରଛ ବାଣେ ପ୍ରାଣ ହରଇ ।
टेढ़ीचितवन ପ୍ରାଚୀ. ଉପେନ୍ଦ୍ର ।

**ତେରଛା(ଛେ)ଇ** —ଦେ. କ୍ରି. ବିଣ—ବକ୍ରଭାବ; ବକ୍ରଭାବରେ—
Terachhā(chhe)i In a sidelong manner; crookedly
তেরছে ତେରଛାଇ ଚାହିଁବାରୁ ଉଭାଇଲା ତେରଛ ।
तिरछाकर ବ୍ରଜ. ଗୋପୀଭାଷା

**ତେରଛା(ଛେ)ଇବା** —ଦେ. କ୍ରି—୧ । ବଙ୍କା କରିବା—
Terachhā(chhe)ibā 1. To cause to be crooked.
বাঁকান ୨ । ବକ୍ରଗତି କରିବା—2. To move crookedly.
तिरछाना ୩ । ବଙ୍କାହେବା—3. To be crooked.

**ତେରଛି** —ଦେ. କ୍ରି. ବିଣ—ତେରଛାଇ (ଦେଖ)
Terachhi Terachhāi (See)

**ତେରଛିବା** —ଦେ. କ୍ରି—ତେରଛାଇବା (ଦେଖ)
Terachhibā Terachhāibā (See)

**ତେରଜ(ଜି)** —ବୈଦେ. ବି. (ଅ. ତେରିଜ୍=ବାଆଁରୁ ଡାହାଣକୁ ଧାଡ଼ି-
Teraja(ji) ମୂଳଆ ଅଙ୍କମାନଙ୍କର ମିଶାଣ; ଯୋଗ; ଜଡ଼ରଆ)—
তেবিজ ୧ । ଯୋଗ, ମିଶାଣ—1. Addition.
तेरज ୨ । ସଙ୍କଳନ—2. Compilation.
୩ । ବହୁ ସଂଖ୍ୟାର ଯୋଗଫଳ—
3 Sum total of many figures.
୪ । ବିବରଣ ପତ୍ର—4. Statement.
୫ । ଯେଉଁ ମହାଜନ ଓ ଜମିଦାର ବା ଅନ୍ୟାନ୍ୟ ସିରସ୍ତାର ହିସାବ କାଗଜରେ ଜମା ଓ ଖରଚଆଦିର ସଂଖ୍ୟା ବା ପରିମାଣ କ୍ରମିକଭାବରେ ବାଆଁରୁ ଡାହାଣକୁ ଏବଂ ସ୍ତମ୍ଭାକାରରେ ଉପରୁ ତଳକୁ ଲେଖାଯାଇ ସ୍ତମ୍ଭାକାରରେ ଲିଖିତ ସଂଖ୍ୟାମାନଙ୍କର ଓ ରେଖାକାରରେ ଲିଖିତ ସଂଖ୍ୟାମାନଙ୍କର ସମଷ୍ଟି କରାଯାଇ ଥାଏ—
5. A zamindar's or merchant's account book showing the statements and totals of serial items under different heads in columns and lines.
୬ । କ୍ରମାନୁସାରେ ସ୍ତମ୍ଭାକାରରେ ଉପରୁ ତଳକୁ ଓ ରେଖାକାରରେ ବାଆଁରୁ ଡାହାଣକୁ ଲେଖା ହୋଇଥିବା ସଂଖ୍ୟାମାନଙ୍କର ସମଷ୍ଟି କରାଯାଇ ହିସାବ ମିଳାଇବାର ପ୍ରଣାଳୀ—6 The system of double accounting by tolalling up the serial figures vertically and horizontally.
୭ । ଗୋସୁଆର (ଦେଖ)—7. Gosuārā (See)

**ତେରଜ(ଜି) ମିଳା(ଳେ)ଇବା** —ଦେ. କ୍ରି—କୌଣସି ଜମାଖରଚଆଦି
Teraja(ji) miḻā(ḻe)ibā ହିସାବରେ ବାଆଁଆଡ଼ୁ ଡାହାଣକୁ
তেরিজ মেলান ଧାଡ଼ି ମୂଳଆ ହୋଇ ଲେଖାଥିବା
तेरज मिलाना ସଂଖ୍ୟାମାନଙ୍କୁ ଯୋଗ କରି ଉକ୍ତ ଯୋଗଫଳମାନଙ୍କ ସଙ୍ଗେ ଉପରୁ ତଳକୁ ସ୍ତମ୍ଭାକାରରେ ଲେଖା ହୋଇଥିବା ସଂଖ୍ୟାମାନଙ୍କ ଯୋଗଫଳମାନ ମେଳ ଖାଉଛି କି ନାହିଁ ଗଣନାଦ୍ୱାରା ଏହା ସ୍ଥିର କରିବା—To square up a statement by causing the totals of the figures of the different columns and lines tally with each other.

| | | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|---|
| ୧ | ଢ | ଝ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇ୍ୟ | ଉ୍ୟ | ଙ୍କ |
| ୨ | ଢ଼ | ଞ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ସ | ଗ୍ୟ | ଇଅ | ଓ | ଙ୍କୁ |

[ଦ୍ର—ନିମ୍ନଲିଖିତ ଉଦାହରଣରେ ତେଖାକାରରେ ଲିଖିତ ସଂଖ୍ୟାମାନଙ୍କ ସଙ୍ଗେ ସ୍ତମ୍ଭାକାରରେ ଲିଖିତ ସଂଖ୍ୟାମାନଙ୍କର ସମଷ୍ଟି ମେଳ ଖାଉଥିବାର ଦେଖା ଯାଉଅଛି । ଧାଡ଼ିବାଗରେ ଲେଖାଥିବା ସଂଖ୍ୟାମାନଙ୍କ ସମଷ୍ଟି ସଙ୍ଗେ ସ୍ତମ୍ଭାକାରରେ ଲେଖାଥିବା ସମଷ୍ଟି ମେଳ ଖାଉଅଛି । ଏହାକୁ ତେରଜ ମିଳାଇବା ବୋଲଯାଏ । ଯେବେ ଏ ସଂଖ୍ୟା ମଧ୍ୟରୁ କୌଣସିଠାରେ ଗୋଟିଏ ସଂଖ୍ୟା ଭୁଲ ହୋଇ ଲେଖା ହୋଇଥାନ୍ତା ତେବେ ତେରଜ ମିଳନ୍ତା ନାହିଁ । କୌଣସି ହିସାବ ଠିକ ଅଛି କି ନାହିଁ ଏହା ଜାଣିବା ପାଇଁ ତେରଜ ମିଳାଇବା ଦରକାର; ଯେବେ ଦୁଇ ପ୍ରକାରେ କରଯାଇଥିବା ସମଷ୍ଟି ସମାନ ଥିବାର ଦେଖାଯିବ ତେବେ ହିସାବ ଠିକ ଅଛି; ଯେବେ ସମାନ ଥିବାର ଦେଖା ନ ଯିବ ତେବେ ଏ ହିସାବରେ ଭୁଲ ଅଛି ବୋଲି ଜାଣିବାକୁ ହେବ । ଏଠାରେ ଦିଆଯିବା ଷ୍ଟେଟମେଣ୍ଟରେ ରେଖାଗୁଡ଼ିକରେ ଲେଖା ଥିବା ସଂଖ୍ୟାମାନଙ୍କର ସମଷ୍ଟିଗୁଡ଼ିକ ଟୋଟାଲ କଲେ ୬୬ ହୁଅନ୍ତା, କିନ୍ତୁ ସ୍ତମ୍ଭାକାରରେ ସମଷ୍ଟି କରଯାଇଥିବା ସଂଖ୍ୟାମାନଙ୍କ ଯୋଗଫଳ ୬୬ ନ ହୋଇ ଥାଆନ୍ତା ତେବେ ତେରଜ ମିଳି ନ ଥାନ୍ତା]

୧+ ୨+ ୩+ ୪+ ୫=୧୫
୨+ ୩+ ୪+ ୫+ ୬=୨୦
୪+ ୫+ ୬+ ୭+ ୯=୩୧
୭+୧୦+୧୩+୧୬+୨୦ =୬୬

**ତେରଜ ହିସାବ**—ବୈଦେ. ବି (ଅ. ତେରଜ୍ ହେସାବ)—ଧାଡ଼ି ମୁଣ୍ଡିଆ
Teraji hisāba ହୋଇ ଲେଖା ହୋଇଥିବା ଓ ସ୍ତମ୍ଭାକାରରେ
(ତେରେଜ ହିସାବ-ଅନ୍ୟରୂପ) ଲେଖା ହୋଇଥିବା ସଂଖ୍ୟାମାନ ମିଶା-
তেরিজ হেসাব ଯାଇ ତେରଜ ମିଳା ଯାଇଥିବା ହିସାବ—
**तेरज हिसाब** An account which has been squared up by the system of double accounting.

**ତେରଡଙ୍ଗା**—ଗ୍ରା. ବିଣ—ତରଡଙ୍ଗା (ଦେଖ)
Teraḍaṅgā Taraḍaṅgā (See)

**ତେରଣ୍ଟା**—ଦେ. ବି—ଦୁର୍ଭିକ୍ଷକାଳ; କାନ୍ତାର; ମହରଗକାଳ—
Teraṇṭā A time of scarcity and high prices

**ତେରସ୍ତା**—ଦେ. ବି (ସଂ ତ୍ରି+ବର୍ଷ)—ତିଦସ୍ତା; ତରସ୍ତା; ଗତବର୍ଷର
Terastā ପୂର୍ବବର୍ଷ; ଅଛଠାରୁ ଗତ ଦ୍ୱିତୀୟ ବର୍ଷ—Year before
তেসরাবরস **त्योरुस, तेरुस** last.

**ତେରା ମେରା**—ବୈଦେ. ବି (ପା ଓ ଉର୍ଦ୍ଦୁ) ତେରିମେରି (ଦେଖ)
Terāmerā Terimeri (See)
ତେରା ମେରା ଗୁଜ, କସ କରବ କାଗା । ଓଡ଼ିଶାରେ ବ୍ୟବହୃତ ଉର୍ଦ୍ଦୁ ପ୍ରବଚନ ।

**ତେରି(ରେ)ଜ(ଜି)(ଇତ୍ୟାଦି)**—ବୈଦେ.ବି(ଅ)—ତେରଜ ଇତ୍ୟାଦି(ଦେଖ)
Teri(re)ja(ji) (etc) Teraja etc (See)

**ତେରିମେରି**—ବୈଦେ. ବି (ପାର୍ସୀ ଓ ଉର୍ଦ୍ଦୁ; ତେର=ତୋର;
Teri meri ମେର=ମୋର)—୧ । କ୍ରୋଧପରବଶ ହୋଇଥିବା
তেরিমেরী; **तुकार** ବ୍ୟକ୍ତିର ହିନ୍ଦୁସ୍ଥାନୀ ଭାଷା ବ୍ୟବହାର—
1. Use of Hindustanee terms in a fit of anger.

[ଦ୍ର—ସମ୍ଭବତଃ ହିନ୍ଦୁସ୍ଥାନୀ ବା ଉର୍ଦ୍ଦୁ ଭାଷା ଭାରତର ମୁସଲମାନ ଓ ରାଜପୁତ୍‌ମାନଙ୍କ ବ୍ୟବହୃତ ଭାଷା ଥିବାରୁ ଓ ସେମାନେ ଖାର ଜାତି ବୋଲି ଓଡ଼ିଶାରେ ପରିଚିତ ଥିବାରୁ ଓଡ଼ିଆମାନେ କ୍ରୁଦ୍ଧ ହେଲାବେଳେ ତାଙ୍କ ମୁହଁରୁ ହିନ୍ଦୁସ୍ଥାନୀ ଭାଷା ବାହାରି ପଡ଼େ । ବଙ୍ଗ ଦେଶରେ ମଧ୍ୟ ଏହା ଲକ୍ଷିତ ହୁଏ ଓ ବଙ୍ଗଳାରେ ମଧ୍ୟ ତେରିମେରିର ଏହି ଅର୍ଥ ଚଳେ]

୨ । କର୍କଶ ବାକ୍ୟ ପ୍ରୟୋଗ—2. The use of harsh word.

୩ । ତୁ ଘା ରେ ସ୍ତ୍ରୀ ବା ତୁକାର ଭାଷାର ପ୍ରୟୋଗ—
3. Use of uncouth or derogatory language.

୪ । ତୋର ଓ ମୋର—4. Your and mine.

**ତେରିମେରି କରିବା**—ଦେ. କ୍ରି—କୁବାକ୍ୟରେ ଗାଳିଦେବା; ଖୋଲିଟି
Terimeri karibā ଉଡ଼ାଇବା—To abuse in filthy
তেরিমেরিকরা **तुकारना** language; to call names.

**ତେରିମେରି ବତା(ତେ)ଇବା**—ଦେ.କ୍ରି—୧ । କୁବାକ୍ୟରେ ଗାଳିଦେବା-
Terimeri batā(te)ibā 1. To abuse in filthy language.

୨ । ଅବଜ୍ଞାସୂଚକ ଉତ୍ତର ଦେବା—2. To give impertinent reply.

**ତେରୁଆଳି**—ଦେ.ବି(ବଣିଆଶବ୍ଦ)—ଛୋଟ ଛୋଟ ଦାନାଯୁକ୍ତ ଛାଞ୍ଚବିଶେଷ—
Teruāḷi A kind of mould used by goldsmiths.

**ତେରେଣ୍ଡା**—ଦେ. ବି (ସଂ. ତରଣ୍ଡ)—ତରଣ୍ଡା, ତରଣ୍ଡୀ)—ବନସି
Tereṇḍā ଦୁଆରେ ଲାଗିଥିବା ମୟୂର କାଠି ବା ସୋଲ—
ফাতনা, ফতনা A float of a fishing line.
**तिरेन्दा, तरेन्दा**

[ଦ୍ର—ଯେଉଁ ଜଳାଶୟରେ ବନସି ପକାଇବାକୁ ହୁଏ ସେ ଜଳାଶୟର ଗଭୀରତାକୁ ଚାହିଁ ବନସି ଡୋରର ଅଗରୁ କିଛି ଦୂର ଛଡ଼ା କରି ତେରେଣ୍ଡା ବନ୍ଧାଯାଏ, ମାଛ ବନସି ଥୋପ ଗିଳିଲେ ଏହି କାଠି ବୁଡ଼ିଯାଏ । ତେଣୁ ମାଛ ଥୋପ ଧରି ଅଛି ବୋଲି ଜାଣି ଲୋକେ ବନସିକୁ ଉପରକୁ ଟାଣି ଆଣନ୍ତି ।]

**ତେରେନା**—ଦେ. ଅ—ରାଗ ଓ ତାଳମାନ ସହିତ ବୋଲାଯିବା ନିରର୍ଥକ
Terenā ଶବ୍ଦବିଶେଷ—Sounds or catch words
তেলানা, তেরেনা **तानारीरी** uttered before singing to music.

**ତେଲ**—ଦେ. ବି (ସଂ. ତୈଲ; ପ୍ରା. ତେଲ)—୧ । ମାଲପା; ତୈଳ;
Tela ମଥାଦିଅ—1. Oil.

> ସାଧାରଣ ଲୋକେ ଅଥବା ମୁଦ୍ରାକରମାନେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଅଭିଧାନର ଯଥାସ୍ଥାନରେ ନ ମିଳିଲେ, ପାଠକମାନେ ଯଥାକ୍ରମେ ଅନ୍ୟ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଅନୁସନ୍ଧାନ କରିବେ । ଯଥା— 'ନାଇ' ନ ମିଳିଲେ 'ଣାଇ' ଦେଖିବେ, 'କୁଷ' ନ ମିଳିଲେ 'କଷ' ଦେଖିବେ; 'ବସ୍ତୁ' ନ ପାଇଲେ 'ବସ୍ତୁ' ଦେଖିବେ 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

ବାଡ଼ ତେଲ ହୋଇ ଲାଗିଛି, ଦୁଃଖ ଦେବ କ ଛଡ଼ାଇ । ଇତ ।

[ଦ୍ର—ବ୍ୟୁତ୍ପତ୍ତିଗତ ଅର୍ଥ ଅନୁସାରେ ତିଳ ବା ତିଳରୁ ଉତ୍ପନ୍ନ ମଳପା 'ତୈଳ' ଅଟେ । କିନ୍ତୁ ସବୁ ପ୍ରକାରର ମାଲପା ବା ତୈଳବତ୍ ପଦାର୍ଥକୁ ତୈଳ ବା ତେଲ ବୋଲଯାଏ ।]

୨ । ଚର୍ବି—2. Fat

(ଯଥା—ମାଛ ତେଲ)

ତେଲ, तेल ୩ । ତୈଳବତ୍ ପଦାର୍ଥ—3. Oily or fatty substance.

୪ । ଆୟୁର୍ବେଦୀୟ ଉପଦେଶମତେ ପ୍ରସ୍ତୁତ ତୈଳ—4. Medicated oil.

୫ । ମହାନଦୀର ଶାଖା ନଦୀବିଶେଷ, ଏହା ଉପରେ ସୋନପୁର ରାଜଧାନୀ ଅବସ୍ଥିତ—Name of a branch of the Mahānadī river on which stands Sonepur.

[ଦ୍ର—ଓଡ଼ିଶାର ଅନେକ ସ୍ଥାନରେ ଲୋକମାନେ ତେଲ ପରିବର୍ତ୍ତରେ 'ମାଲପା' ଶବ୍ଦ ବ୍ୟବହାର କରନ୍ତି । ଓଡ଼ିଶାରେ ସାଧାରଣ ତୈଳକୁ ତେଲ ଓ ଆୟୁର୍ବେଦ ଶାସ୍ତ୍ର ଅନୁସାରେ ପ୍ରସ୍ତୁତ ତୈଳକୁ 'ତୈଳ' ବୋଲଯାଏ ।

ତେଲ ଲୁଭୁଣୀ—ଦେ. ବି—ତେଲୁଣୀ ( ଦେଖ )
Tela(lu)bhuṇī Teluṇī ( See )

ତେଲକାପଡ଼ା—ଦେ. ବି (ସଂ. ତୈଳ ଓ କର୍ପଟ)—ରାଜା ଅବା ବଡ଼ଲୋକ ଶବକୁ
Telakāpaṛdā ବହୁଦିନ ରଖିବାକୁ ହେଲେ ତାହା ସଢ଼ି
(ତେଲକପଡ଼ା ଅନ୍ୟରୂପ) ନ ଯିବା ବା ଦୁର୍ଗନ୍ଧଯୁକ୍ତ ନ ହେବା
তেলকাপড়া ଉଦ୍ଦେଶ୍ୟରେ ତାକୁ ତେଲରେ ଲୁଗାଦ୍ୱାରା ଗୁଡ଼ାଇବାର
तेलकपड़ा ପ୍ରଥା—The process of preserving the dead body of Rajas and big people by winding pieces of cloth steeped in oil around it.

[ଦ୍ର—ପୂର୍ବର ଉତ୍ତରାଧିକାରୀ ରାଜ୍ୟକୁ ଆସିବାର ବିଳମ୍ବ ଥିଲେ ତାଙ୍କ ଅନୁପସ୍ଥିତିରେ ମୃତ ରାଜାମାନଙ୍କ ଶବକୁ ତେଲ କାପଡ଼ା କରି ବହୁ ସମୟ ରଖାଯିବାର ପ୍ରଥା ଅଛି । ]

ତେଲ କାଠୁଆ—ଦେ. ବି—କାଠର ତିଆରି ଚଉଠଲଗା ତେଲଗିନା—
Tela kaṭhuā A wooden cup for oil.
তেলকাঠুয়া, तेलौंची

ତେଲକାଣ୍ଟି—ଦେ. ବି ( ସଂ. ତୈଳଖଣ୍ଡ )—ତୈଳକୁ ବହୁ ସମୟ ରଖି
Telakāṇṭi ଦେଲେ ତୈଳଭାଣ୍ଡର ତଳ ଭାଗରେ ଯେଉଁ ମଳ
তেলকাইট ବସଯାଏ; ତୈଳମଳ—The sediments of
तेलकीमोल, तलछट oil deposited in a pot.

ତେଲକୋଚଟ—ଦେ. ବି ଓ ବିଣ—ତେଲ ଚକିଟା ( ଦେଖ )
Tela kochaṭa Tela chikiṭā ( See )

ତେଲ କୋ(କୁ)ଡ଼—ଦେ. ବି—ବନ୍ୟବୃକ୍ଷବିଶେଷ—
Tela ko(ku)ṛda Randia Uliginosa (Haines).
पिराओ

ତେଲ କୋରୁହାଁ—ପ୍ରାଦେ ( ଗଡ଼ଜାତ ) ବି—ଏକଜାତୀୟ କାଣ୍ଡଯାର୍ଦ
Tela koruhāṅ ବନ୍ୟବୃକ୍ଷ—The torch tree, Ixora
रञ्जन Parviflora (Haines).
कोटगन्धल् [ ଦ୍ର—ଏଥିର କାଠରେ ମଶାଲ ଓ ଲୁଗୁଡ଼ି
(ତେଲକୁରୁଅ—ଅନ୍ୟରୂପ) ବାବଣୀ ଅଦର ବେଶ୍ ହୁଏ । ଏଥିର
କାଠ ଶାଗୁଆ ଓ ଚିକ୍କଣ; ଏଥିର ଫୁଲ ରକ୍ତବର୍ଣ୍ଣ, ଚଉଦ୍ଦଳ ଓ ଥୋପା ଥୋପା ଓ ଫଳର ଜେଷ୍ଠ ନଳାକାର । ]

ତେଲଗୁ—ଦେ. ବି ସଂ. ତ୍ରୈଲିଙ୍ଗ)—ତେଲଙ୍ଗା ( ଦେଖ )
Telagu Telaṅgā ( See )

ତେଲ ଲୁ ଗୁଣି—ଦେ ବି—ତେଲୁଣୀ ( ଦେଖ )
Tela(lu)guṇi Teluṇī ( See )

ପ୍ରାଦେ (ଗଡ଼ଜାତ) ବି—ବନ୍ୟବୃକ୍ଷବିଶେଷ —Aegiceras Majus.

[ ଦ୍ର—ଏହା ୧୮ ଫୁଟରୁ ୨୦ ଫୁଟ ପର୍ଯ୍ୟନ୍ତ ବଢ଼େ । ]

ତେଲଘଟା—ଦେ. ବି—ତେଲ ବୋଳା ହେବା ଯୋଗୁଁ ମୁଣ୍ଡବାଳ,
Telaghaṭā ଦେହ ଓ ଲୁଗାରେ ଜମିଯିବା ମଇଳା ବା ଅଠା—
তেলচিকটা Gummy grease (on cloth etc) due to
तेलचिकट excessive application of oil.

ତେଲଘଡ଼ି—ଦେ ବି—ତେଲ ରଖିବା ପାଇଁ କ୍ଷୁଦ୍ର ଘଟ—
Telaghṛdi A small earthen pot for oil.
তেলেরকুপ ତେଲଘଡ଼ିର ଗୋଡ, ଗୁଆମୁଣ୍ଡିକୁ ନେଉଳ—ରଗ ।
तेलहँड़ी

ତେଲଘଣା—ଦେ. ବି —ଯେଉଁ ଘଣା ବା ଖାଇରେ ତୈଳବୀଜ ପେଷା
Telaghaṇā ଯାଇ ତହିଁରୁ ତେଲ ବାହାରେ—Oil mill.
তেলঘানী, तेलकीकोल्हु

ତେଲଙ୍ଗା—ଦେ. ବି. ପୁଂ ( ସଂ. ତୈଲଙ୍ଗ; ତ୍ରିକଳିଙ୍ଗ )—
Telaṅgā ୧ । ଦକ୍ଷିଣ ଭାରତର ଦେଶବିଶେଷ; ଆନ୍ଧ୍ର ଦେଶ;
তেলেঙ্গাই | ସ୍ତ୍ରୀ ଉତ୍କଳର ଦକ୍ଷିଣ ଦକ୍ଷିଣରେ ଉପକୂଳସ୍ଥ ଦେଶ—
ତେଲଙ୍ଗିଆଣୀ | 1. The Telgu country; the
তেলগু, তেলঙ্গা Carnatic.
तेलंग, तैलंग, तिलंगा ୨ । ଦକ୍ଷିଣ ଭାରତୀୟ ଜାତିବିଶେଷ—2. The Telgu people.

୩ । ତ୍ରୈଲିଙ୍ଗ ଜାତୀୟ ବ୍ୟକ୍ତି—3 A Telgu

୪ । ତ୍ରୈଲିଙ୍ଗ ଭାଷା—4. The Telgu language.

ବିଣ.—ତୈଲିଙ୍ଗ ଦେଶୀୟ—Pertaining to the Telgu country, language or people

ତେଲଙ୍ଗା ମୁକୁନ୍ଦଦେବ—ଓଡ଼ିଶାର ରାଜାବିଶେଷ—
Telaṅgā mukundadeba Name of a king of Orissa.

[ଦ୍ର—ମୁକୁନ୍ଦଦେବ ତଳେ ନୋଟ ଦେଖ ।]

ତେଲଙ୍ଗୀ—ଦେ. ବିଣ. ( ସଂ. ତୈଲିଙ୍ଗୀୟ )—ତୈଲିଙ୍ଗଦେଶୀୟ;
Telaṅgi ତୈଲଙ୍ଗ ଦେଶରେ ବ୍ୟବହୃତ—Pertaining to the

| | | | | | | | | | | | | |
|---|---|---|---|---|---|---|---|---|---|---|---|---|
| ୧ | ଲ | ଡ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଞ | ଜ୍ଞ | ଷ,ଶ | କ୍ଷ | ଇୟୁ |
| ୨ | ଳ | ଢ | ରୁ | ଲୃ | ଐ | ଅକାରାନ୍ତ ବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁ ଯୁକ୍ତ ବର୍ଣ୍ଣ | ଙ | ଚ | ସ | ଡ଼ | ଇଅ | ଣ |

তেলগু Telgu country; in vogue amongst the Telgus.
तिलङ्गी
(ତେଲଙ୍ଗୀଅ — ଅନ୍ୟରୂପ) ଯଥା—ତେଲଙ୍ଗୀ ଲୁଗା।

**ତେଲଙ୍ଗୀ ବାଜା**—ଦେ. ବି. (ସ. ତୈଲଙ୍ଗ ଦେଶ ବାଦ୍ୟ)—୨ଟ ଢୋଲ, Telangi bājā ୨ଟ ମହୁରୀ ଓ ଦୁଇଟି ଝାଞ୍ଜ ଏପରି ଅନୁଚ୍ଚ ୫ ପ୍ରକାର ଯନ୍ତ୍ର ସହଯୋଗରେ ବାଦ୍ୟ—A concert performed by 5 instruments (viz. 2 drums; 2 trumpets and 1 pair of cymbals) originally introduced in Orissa from the Deccan.
ତେଲଙ୍ଗୀ ବାଜେ, ତେଲଙ୍ଗି ବାଦ୍ୟ } ଅନ୍ୟରୂପ

[illegible]

[ ଦ୍ର—ତେଲଙ୍ଗୀ ବାଦ୍ୟ ତେଲଙ୍ଗ ଦେଶ ବା ଦାକ୍ଷିଣାତ୍ୟରୁ ପ୍ରଥମେ ଓଡ଼ିଶାରେ ଚଳିବାରୁ ଏହି ନାମ; ଏଥିର ୨ଟି ମହୁରୀ ମଧ୍ୟରୁ [illegible] ଅର୍ଥାତ୍ [illegible] କେବଳ ଆସ୍ଥାୟୀ ସ୍ୱର ବଜାଏ। ଦୋଟି ଢୋଲ ମଧ୍ୟରେ ବୋଲ ଗାଉଥିବା ଢୋଲ ଅନ୍ୟ ତୁଳନାରେ [illegible] । ଅନ୍ୟ ଢୋଲଟି ଭାନ୍ଦାଣ ପାଖେ ଛାଇ କ୍ରମେ କାଠି ଶସ୍ତ୍ର କରାଯାଇଥାଏ ଓ ବାଁ ହାତ ଷଣ୍ଡ ପାଖ ଉଲଥା କାଟିବାକୁ ଘଷା ହୋଇ ଭ୍ରମର ପରି ଭର୍ଁ ଭର୍ଁ ଶବ୍ଦ କରୁଥାଏ। ଏକତ୍ରବାଦନ ତେଲଙ୍ଗୀବାଜାର ୫ଟି ଯନ୍ତ୍ର ସୁମଧୁର ଅଟେ। ]

[illegible] ତେଲଙ୍ଗୀ ବାଜା।
ଭକ୍ତ, [illegible]।

**ତେଲଚଟା**—ଦେ. ବି. (ସ. ତୈଲଚୌରିକା)—ଅସରପା ପୋକ—A cockroach.
Telachaṭā
তেলচাটা ঝা॑গুর

**ତେଲଚିକଟା(ଟା)**—ଦେ. ବି—୧। ତୈଳ ଲାଗିବାଯୋଗୁଁ ବସ୍ତ୍ରାଦିର ବର୍ଣ୍ଣର ମଳିନତା—1. Greasiness; discolouring due to a cloth being smeared with oil.
Telachikiṭa(ṭā)
তেলচিকটা
तेलचिकट
(ତେଲଚକଟା—ଅନ୍ୟରୂପ) ୨। ତୈଳଲେପ ଯୋଗୁଁ କୌଣସି ବସ୍ତୁରେ ଉତ୍ପାଦିତ ଚକ୍‌ଚକ୍ତା—2. Oiliness, brightness due to application of oil over a thing; a state of being too much oiled.
ବିଣ—ତୈଳାକ୍ତ ହେବାରୁ ମଳିନତା ପ୍ରାପ୍ତ—Discoloured by the application of too much oil; greasy with oil; soiled with oil.

**ତେଲ ଜରଜର**—ଦେ. ବିଣ. (ସ. ତୈଳ ଜର୍ଜର)—ଦେହରୁ ବୋହି Tela jarajara ପଡ଼ିବା ଭଳି ତେଲ ବୋଳା ହୋଇଥିବା—
তেলকুচকুচে With oil literally oozing from the body.
ତେଲଜୁର(ଡ଼)ବୁଡ଼(ଡ଼) } ଅନ୍ୟରୂପ
ତେଲଘେରେଇ

**ତେଲ ଦେବା**—ଦେ. କ୍ରି—୧। ତେଲ ଲଗାଇବା (ଦେଖ) Tela debā 1. Tela lagāibā (See)
তেলদেওয়া ୨। ଲଣ୍ଠନ ବା ଦୀପରେ ଜଳାଇବା ତେଲ ଦେଇବା—
तेलदेना 2. To put oil into a lamp.

**ତେଲପଥର**—ଦେ. ବି. (ଦେଶିଅ ଶବ୍ଦ)—ସୁନା ଓ ରୂପା କାମର ଶ୍ଳେଟ Telapathara ଶ୍ଳେଟ ବଢ଼ିଅରକୁ ଧାର କରିବା ଲାଗି ବ୍ୟବହୃତ ହେବା ପଥରବିଶେଷ—Oil-stone

**ତେଲ ପିଠା**—ଦେ. ବି (ସ. ତୈଳ ଓ ପିଷ୍ଟକ)—ତେଲରେ ଛଣା Tela piṭhā ହୋଇଥିବା ପିଷ୍ଟକ—Cakes fried in oil.
তেলোপিঠে, तेलकापीठी

**ତେଲପିପା(ଙ୍ଗା)**—ଦେ. ବି (ସ. ତୈଳ + [illegible])— Telapipā(ṅgā) କାଠ ବା ଚମଡ଼ାର ତେଲ ରଖିବା ବଡ଼ ପାତ୍ର—Oil can.
তেলপিপে
तेलपीपा

**ତେଲ ପେଡ଼ିବା**—ଦେ. କ୍ରି—ଘଣା ସାହାଯ୍ୟରେ ତୈଳବୀଜ ଦଳି ତେଲ Tela perdibā ବାହାର କରିବା—To press oil seeds in a mill in order to get oil; to squeeze out oil from oil seeds.
তেলপিষা
तेलपेरना
[ ଦ୍ର—ଏ ଶବ୍ଦ ଭାଷାର ବିଶେଷତ୍ୱ, ତେଲୀ ତୈଳବୀଜ ପେଡ଼ି ତେଲ ବାହାର କରେ, କିନ୍ତୁ ତେଲକୁ ପେଡ଼େ ନାହିଁ ]

**ତେଲବାଲିଆ ମାଟି**—ଦେ. ବି—ବାଲିମିଶା ଉର୍ବରା ମାଟି (ଏହା Tela bāliā māṭi ବୃକ୍ଷଜ)—A kind of fertile soil (sandy land).

**ତେଲ ବାହାର କରାଇବା**—ଦେ କ୍ରି—୧। ତେଲ ବାହାର କରିବା Tela bāhāra karāibā କ୍ରିୟାର ଣିଜନ୍ତ ରୂପ—1. The causative form of 'Tela bāhāra karibā'.
তেল বের করান
तेल निकालाना
୨। (ଲକ୍ଷଣାର୍ଥ) କଠିନ ପରିଶ୍ରମ କରାଇ ଥକାଇ ଦେବା—2. (figurative) To cause a person to be tired by excessive labour.

**ତେଲ ବାହାର କରିବା**—ଦେ. କ୍ରି—୧। ତେଲ ପେଡ଼ିବା (ଦେଖ) Tela bāhāra karibā 1. Tela perdibā (See)
তেল বের করা ୨। କୌଣସି ବ୍ୟକ୍ତିକୁ କଠିନ ପରିଶ୍ରମ କରାଇବା—
तेल निकालना 2. To cause a person to labour very hard.

**ତେଲ ବାହାରି ଯିବା**—ଦେ. କ୍ରି—ଉସ୍ ଛାଡ଼ିଲ ଯିବା; ବିଶେଷରୂପେ Tela bāhāri jibā ଆହତ ହେବା—Being much hurt.
তেল বেরা
तेल निकलना
ତେଲ ହୁର ହୁର ତେଲ ବାହାରି ଯିବ—ଉପଦେଶ, ବଚନ।

ସାଧାରଣ ଲେଖେ ଅ ।ଲ ପୃଷ୍ଠାରେ ପ୍ରଥମ ୧ ଅଙ୍କ ଅକ୍ଷର ଓ ମାତ୍ରା ଏବଂ ୨ ଅଙ୍କ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଅଙ୍କ ଯୋଗିଁ ଶବ୍ଦ ଖୋଜିଲେ ଯେବେ ଏ ପୃଷ୍ଠାରେ ନ ମିଳେ, ତେବେ ଯେଉଁ ଶବ୍ଦ ଥାଏ ଯଥାକ୍ରମେ ଅନ୍ୟ ଅଙ୍କ ୨ ବା ୧ ଅଙ୍କ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଠ' ନ ମିଳିଲେ 'ଗାଠ' ଖୋଜିବେ, 'କୃଷ' ନ ମିଳିଲେ 'କୃଷ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ତେଲ ବୋଳିବା**—ଦେ. କ୍ରି—ତେଲ ଲଗାଇବା ( ଦେଖ )
Tela bolibā Tela lagāibā (See)

**ତେଲ ମର୍ଦ୍ଦନ**—ଦେ. ବି—ତୈଳ ମର୍ଦ୍ଦନ ( ଦେଖ )
Tela marddana Taila marddana (See)
( ତେଲ ମରଦନ—ଅନ୍ୟରୂପ )

**ତେଲ ମାରିବା**—ଦେ. କ୍ରି—୧ । ଶରୀର ଉପରେ ଉପରଠାଉରିଆ
Tela māribā କରି ତେଲ ଲଗାଇବା—
1. To roughly anoint oil on one's body.
୨ । ଶୁଖିଲା ଚର୍ବିଆ, ଗଛ ଆଦିକୁ ସିଝ କରି ତେଲ ବାହାର କରିବା—
2. To prepare oil by boiling oil-producing substances.

**ତେଲ ମାଲିଶ୍**—ଦେ. ବି—ଦେହରେ ତେଲକୁ ବାରମ୍ବାର ଘଷିବା—
Tela māliś Rubbing or massaging the body with
तेल मालिस, तैल मलना oil; shampooing with oil.

**ତେଲ ରାନ୍ଧିବା**—ଦେ.କ୍ରି—ତୈଳସାରବସ୍ତୁ ଜଳରେ ସିଝାଇ ଜଳୀୟାଂଶ
Tela rāndhibā ଶୁଷ୍କ କରି ତେଲ ବାହାର କରିବା—
To prepare oil by boling oily substauces and dehydrating them.

**ତେଲରି**—ଦେ. ବି—ତିନି ସରୁଆ ହାର—
Telari Three stringed necklace.
তেনরি तिलड़ी

**ତେଲ ଲଗା**—ଦେ. ବି—ତୈଳାଭ୍ୟଙ୍ଗ—
Tela lagā Anointing the body with oil.
তেল লাগান तेलवाई

**ତେଲ ଲଗା(ଗେ)ଇବା**—ଦେ. କ୍ରି—ଆପଣାର ବା ଅନ୍ୟର ଦେହରେ
Tela lagā(ge)ibā ତେଲ ବୋଳିବା—To apply or
তেল লাগান, तेल लगाना anoint oil over the body.

ତେଲ ଲଗାଇବ ଅବାଗାବା ଶାଠ ବଟିବ ଆଗ
ଘୋର ପଡ଼ିବ ତବ ହୋଇ ମାତ୍ର ବଞ୍ଚିବ ଜାଗା—
ଉପଦେଶାମୃତ. ପ୍ରବଚନ ।

**ତେଲ ଲୁଣ**—ଦେ. ବି. ( ଦ୍ୱନ୍ଦ୍ୱ ଶବ୍ଦ )—ଚାଉଳ ଡାଲିକୁ ଖାଦ୍ୟ
Tela luṇa ରୂପରେ ପରିଣତ କରିବା କାମରେ ପ୍ରୟୋଜନୀୟ
তেল নুন ଦ୍ରବ୍ୟଗୋଷ୍ଠ ଉପକରଣ—Salt and oil required
तेल नमक to be mixed with raw articles before they are fit for meal.

**ତେଲ ଲୁଣ ଖରଚ**—ଦେ. ବି—ଚାଉଳ, ଡାଲି, ପରିବା ଛଡ଼ା
Tela luṇa kharacha ପ୍ରୟୋଜନୀୟ ଦୈନିକ ଘର ଖରଚ—
Miscellaneous daily expenses for preparing food

**ତେଲ ସରସର**—ଦେ. ବଣ—ତେଲ ଜରଜର ( ଦେଖ )
Tela sarasara Tela jarajara (See)

**ତେଲ ସାଉଁଲା**—ଦେ. ବଣ—ଯେ ତେଲ ଲଗାଇ ମୁହଁକୁ ଓ କେଶକୁ
Tela sāuṅlā ଚିକ୍କଣ କରିଥାଏ—One who smooths his
তেল কুচকুচে, तेलहा ( or her ) hair and face with oil.
( ତେଲ ସାଉଁଲୀ—ସ୍ତ୍ରୀ )

**ତେଲ ହଳଦୀ**—ଦେ. ବି. ( ସଂ. ତୈଳ ଓ ହରିଦ୍ରା )—( ସ୍ତ୍ରୀଲୋକ-
Tela haladī ମାନେ ) ଦେହରେ ଲଗାଇବା ପାଇଁ ବଟା ହଳଦୀ
তেল হলুদ ଓ ସେଥିରେ ମିଶା ଯିବା ତେଲ—Turmeric paste mixed with oil.

**ତେଲ ହଳଦୀ ପଟ୍ଟଣା**—ଦେ. ବି—ରାଣୀ ପ୍ରଭୃତିଙ୍କ ପ୍ରୟୋଜନୀୟ ତେଲ
Tela haladī paṭaṇā ହଳଦୀ ଖରଚ ଚଳିବା ପାଇଁ ତାଙ୍କୁ
ଦିଆ ଯାଇଥିବା ଗ୍ରାମ ବା ଜମି—Grant of land given to a Rāṇī or Lady to meet the expenses of her toilette.

**ତେଲା**—ଦେ. ବଣ—ତେଲିଆ ( ଦେଖ )
Telā Teliā ( See )

**ତେଲାଉଣୀ ( ଇତ୍ୟାଦି )**—ଦେ. ବି—ତେଲୁଣୀ ଇତ୍ୟାଦି ( ଦେଖ )
Telāuṇī ( etc ) Teluṇī etc (See)

ସେମାନଙ୍କ ମାଂସ ଖାନ୍ତି ଯମଗଣ ।
ମଲେ ସିଝ ତେଲାଉଣୀରେ କରି ରଣ—କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ

**ତେଲାଣୀ**—ପ୍ରାଦେ. ( ମେଦନୀପୁର ) ବି—ତେଲୁଣୀ ( ଦେଖ )
Telāṇī Teluṇī (See)

**ତେଲି**—ଦେ. ବି. ପୁଂ. ( ସଂ. ତୈଳିକ, ତୈଳୀ )—
Teli ୧ । ତେଲ ପେଡ଼ିବା ଜାତି; ତୈଳକାର ଜାତି—
তিলী 1. A caste for pressing oil; oilman.
तेली ତେଲ ଘୁଞ୍ଚିଆ—ବାର ମାସରେ ବାର ଘୁଞ୍ଚିଆ—ଅନୁଭବ ବଚନ ।
ତେଲୁଣୀ } ସ୍ତ୍ରୀ ୨ । ତୈଳ ବ୍ୟବସାୟୀ ଜାତି; ତିଲି ( ଦେଖ )
ତେଲିଆଣୀ } 2 A caste dealing in oil.

[ ଦ୍ର—ତେଲିମାନେ ସାଧାରଣତଃ ଖୁବ୍ କୃପଣ ବୋଲି ଆମ ଦେଶରେ କଥିତ ଅଛି । ଏମାନେ ଦୋକାନ ଓ ମହାଜନ କରନ୍ତି । ସବୁବେଳେ କାରବାର କରୁଥିବାରୁ ଏମାନଙ୍କ ଦେହ ଓ ଲୁଗାପଟା ତେଲ ଯୋଗୁଁ ମଇଳା ହୋଇଥାଏ । ପ୍ରବାଦ ଅଛି ଯେ, ସାତ ଜଣ ତେଲି ତେଲ ପେଡ଼ିବା କାମରେ 'ଗବ' ବା କଡ଼ା କଣି ଆଣୁଥିବା ସମୟରେ ଗୋଟିଏ ଗବମଞ୍ଜି ପାଣିରେ ପଡ଼ି ଭାସିଗଲା । ସେହି ଗବଟିକୁ ଧରିବା ପାଇଁ ସାତଟି ଯାକ ତେଲ ଧରାଧରି ହୋଇ ପାଣିରେ ବୁଡ଼ି ମଲେ । ]

ପ୍ରାଦେ. ( ଗଞ୍ଜାମ )—ଗଞ୍ଜାମ ଜିଲ୍ଲାର ଶୂଦ୍ରବିଶେଷ—
A caste of Śūdras in the district of Ganjam.

**ତେଲିଆ**—ଦେ. ବି—ତିଲୁଆ ( ଦେଖ ) Tilua ( See )
Teliā ବଣ—୧ । ତୈଳାକ୍ତ—1. Oily; greasy.
তেলা ୨ । ତୈଳସ୍ୱାଦଯୁକ୍ତ—Having an oily
तेलिया, तेलहा taste.

| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଅ | ଉଅ | ୠ |
|---|---|---|---|---|---|---|---|---|---|---|---|---|---|---|
| ୨ | ଈ | ଊ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଯ୍ୟ | ଯ | ସ | ଙ୍ଖ୍ୟ | ଇଅ | ଓ | ନ୍ |

୩ । ଯେ ଦେହରେ ତେଲ ଲଗାଇ ଥାଏ—
3. Steeped with or annointed with oil.
ତେଲିଆ ମୁଣ୍ଡରେ ତେଲ—ତଗ ।

୪ । ଚିକ୍କଣିଆ—4. Smooth.

୫ । ଯହିଁରେ ତୈଳ ଅଧିକ ପରିମାଣରେ ଅଛି—
5. Abounding in oil.

**ତେଲିଆ କନ୍ଦ**—ଦେ. ବି. ( ସ. ତୈଳକନ୍ଦ )—ଏକପ୍ରକାର ବନ୍ୟ ଲତାର ମୂଳ—A kind of wild root.
Teliā kanda
**तेलिका कन्द** [ ଦ୍ର—ଏ ଲତା ଯେଉଁ ସ୍ଥାନରେ ଉଠେ ସେ ସ୍ଥାନ ଚାରିପାଖ ତେଲିଆ ଦେଖାଯାଏ । ଏହା ବାତ, ଅପସ୍ମାର, ବିଷ, ଦେହ ଫୁଲା ଓ ଚର୍ମରୋଗରେ ଉପକାରୀ ଓ ପାରଦକୁ ଏହା ଗାଢ଼ କରିଦିଏ । ]

**ତେଲିଆ ଖଜା**—ଦେ. ବି—ତିଲୁଆ ( ଦେଖ )
Teliā khajā Tiluā ( See )

**ତେଲିଆ ମାଟି**—ଦେ. ବି. ( ତୈଳାକ୍ତ+ମୃତ୍ତିକା )—ଏକ ପ୍ରକାର ଉର୍ବର ମୃତ୍ତିକା—A kind of fertile soil.
Teliā māṭi
তেলা মাটি
**तेलहा मिट्टी** [ ଦ୍ର—ଏହା ଚିକ୍କଣ ଦେଖାଯାଏ । ]

**ତେଲିଆ ମୁଣ୍ଡ**—ଦେ. ବି. (ଲକ୍ଷଣାର୍ଥ)—ଯେଉଁ ବ୍ୟକ୍ତି ଅଭାବଗ୍ରସ୍ତ ନୁହେଁ—(figurative) A person above wants; a well-to-do person.
Teliā muṇḍa
ତେଲିଆ ମୁଣ୍ଡରେ ତେଲ—ତଗ ।

**ତେଲିଆ ସାରୁ**—ଦେ. ବି—ଏକ ପ୍ରକାର ବେଶି ଲାଳଯୁକ୍ତ ଚିକ୍କଣିଆ ସାରୁ—A kind of taro.
Teliā sāru
[ ଦ୍ର—ଏ ସାରୁ ଖରା ଦିନେ ଓ ବର୍ଷା ଆରମ୍ଭରେ ଖୋଳାଯାଏ । ଏହାର ଗଣ୍ଡର ନାଡ଼ି ଓ ପତ୍ର କଳା ଥିବାରୁ ଏହା ତୈଳାକ୍ତ ଦେଖାଯାଏ । ଧଳା ସାରୁକୁ 'ଧଳକଡ଼ି' ସାରୁ କୋହଯାଏ । ଯେଉଁ ସାରୁ ଶୀତ ଦିନେ ଖୋଳାଯାଏ ତାକୁ ମୁକ୍ତାକେଶୀ ବା ଶାରଦୀୟା ସାରୁ ବୋଲଯାଏ । ଖରା ଓ ବର୍ଷା ଦିନେ ଖୋଳାଯିବା ସାରୁକୁ ଉଅଳିଆ ବା ତେଲିଆ ସାରୁ ବୋଲଯାଏ । ]

**ତେଲି କୋଚଟ**—ଦେ. ଗୁଣ—ତେଲିମାନଙ୍କ ଜାତିର ସ୍ୱଭାବସୁଲଭ ଗୁଣ ( କୃପଣତା ଓ ମଇଳିଆ ପଣିଆ ) ଯୁକ୍ତ—Greasy and close-fisted like the oilman ( of our country ).
Teli kochaṭa
(ତେଲି କୋଚଟିଆ—ଅନ୍ୟରୂପ)
ତେଲି କୋଚଟ ବୋଉର ପାଇଁ ବସାରୁ ଛାଡ଼ି—ତଗ ।

**ତେଲି ଚିକିଟା**—ଦେ. ଗୁଣ—ତେଲି ଜାତିର ସ୍ୱଭାବସୁଲଭ ଗୁଣ ( ମଇଳିଆ ) ଯୁକ୍ତ—Greasy like an oilman.
Teli chikiṭā
(ତେଲି ଚିକିଟା, ତେଲି ଚିକିଟିଆ—ଅନ୍ୟରୂପ)

**ତେଲି ଭାଗବତ**—ଦେ. ବି—ବ୍ରାହ୍ମଣ ଜଗନ୍ନାଥ ଦାସ ବିରଚିତ ଓଡ଼ିଆ ( ପ୍ରାକୃତ ) ଭାଗବତକୁ ବ୍ରାହ୍ମଣମାନେ ( ଏ ସମ୍ପ୍ରଦାୟରେ ରଚିତ ହୋଇ ନ ଥିବାରୁ ) ଘୃଣାରେ ଦେଇ ଥିବା ନାମ—A name given in derision by the contemporary Brahman Pandits of Orissa to the Oria metrical translation of Bhagabata by Jagannath Das
Teli bhāgabata

**ତେଲି ଶାଳ**—ଦେ. ବି. ( ସ. ତୈଳୀ+ଶାଳା )—ଯେଉଁ ସ୍ଥାନରେ ତେଲ ଘଣା ଦ୍ୱାରା ତେଲ ବାହାର କରେ—Oil factory; the place where oil is pressed.
Teli śāla
তিলি শাল
तेलिशाल
ତେଲି ଘାଲେ ତେଲ ଗଲ ତାହିଁ ତାହିଁ ବାଜଇ । ଶିଶୁରଞ୍ଜନ ପଦ ।

**ତେଲି ସାପ**—ପ୍ରାଦେ. ବି—( ସମ୍ବଲପୁର ଓ ସିଂହଭୂମ ) ଦୋମୁଣ୍ଡିଆ ( ଦେଖ )—Domuṇḍiā (See)
Teli sāpa

**ତେଲୁଗୁ**—ଦେ. ବି—ତେଲେଙ୍ଗା ( ଦେଖ )
Telugu Teleṅgā ( See )

**ତେଲୁଣୀ**—ଦେ. ବି. ସ୍ତ୍ରୀ—୧ । ତେଲିର ସ୍ତ୍ରୀ—1. A female of the oilman caste.
Teluṇi
তেলিনী
तेलिन
২ । ପଲମ; ତେଲଭଜଣୀ—2. An earthen lid for covering pots; a frying pan.
তোলানিয়া
खपनी
[ ଦ୍ର—ହାଣ୍ଡି ମୁହଁରେ ଘୋଡ଼ାଯିବା ଶ୍ରେଷ୍ଠ ପାତ୍ରକୁ ସରା, ମଧ୍ୟ ଭଳ ପାତ୍ରକୁ ତେଲୁଣୀ ଓ ବଡ଼ ପାତ୍ରକୁ ପଲମ କୁହାଯାଏ । ]
୨ । ସିଧା ଶିଙ୍ଗାଳିଆ ବୃକ୍ଷ—
2. Aegeceras Mayus ( Haines ).

**ତେଲୁଣୀ ପୋକ**—ଦେ. ବି. ( ସ. ତୈଳକା )—ଏକ ପ୍ରକାର ଶତପଦ ପୋକ—Millipede; galley worm; myrapoda.
Teluṇi poka
(ତେଲୁଗୁଣୀ ପୋକ—ଅନ୍ୟରୂପ)
কাঁদরাই, কেন্নু
तेलिन्
[ ଦ୍ର—ଏମାନଙ୍କର ଦୁଇଟି ଜାତି ଥାଏ । ଏମାନଙ୍କର ଚିକ୍କଣ ମାଉର ଖୋଳପା ପଟି ପଟି ପଟି ହୋଇ ଥାଏ । ଏମାନେ କାଳି, କୋଇଥିଆ ଓ କାଳି ଉପରେ କଳା ଲମ୍ବା ଡୋରିଆ ପଡ଼ିଥିବା ରଙ୍ଗ ଦେଖା ଯାଆନ୍ତି । ଏମାନଙ୍କ ଉପରେ ଆଘାତ ଲାଗିଲେ ଏମାନେ କୁଣ୍ଡଳାକୃତି ହୋଇ ଯାଆନ୍ତି । ଏମାନଙ୍କର ଅରବେ ସହସ୍ର ସହସ୍ର ଗୋଡ଼ ଥାଆନ୍ତି । ଏମାନେ ସାଧାରଣତଃ ହଳଦିଆ କାଠି ପରି ମୋଟ ଓ ସ୍ୱର ଅଙ୍ଗୁଳ ଲମ୍ବ ହୋଇଥାନ୍ତି । କିନ୍ତୁ ପାର୍ବତ୍ୟ ଦେଶରେ ଏମାନେ ଅଧ ଇଞ୍ଚ ବ୍ୟାସବିଶିଷ୍ଟ ଓ ୧୨ ଅଙ୍ଗୁଳ ଲମ୍ବ ପର୍ଯ୍ୟନ୍ତ ବଢ଼ନ୍ତି । ଏମାନଙ୍କ ଦେହରେ ଏକ ପ୍ରକାର ବିଷାକ୍ତ ପଦାର୍ଥ ଅଛି । ପିଲାମାନେ ଭୁଲରେ ଏହି ପୋକକୁ ପାଟିରେ ସୁଆଇ ଦେଲେ ପାଟି କାଳି ହୋଇ ଘା ହୋଇଯାଏ । ଏମାନେ ସାଧାରଣତଃ ୪ ପ୍ରକାର । ୧—ଏକ ଫୁଟ ପର୍ଯ୍ୟନ୍ତ ବଢ଼ନ୍ତି । ବ୍ୟାସ ଅଧ ଇଞ୍ଚ, ବର୍ଣ୍ଣ କଳା ଓ ନାଲିଆ ମିଶା । ୨—ନାଲି । ୩—କଳା । ୪—କଳା ଓ ନାଲି ଡୋରିଆ । ୫—ଯୁବଯୁବିଆ କଳା ଓ ନାଲିର ଦାଗ । ]

ସାଧାରଣ ଲୋକେ ଅନେକ ସ୍ଥଳରେ ୧ମ ଓ ୨ୟ ଧାଡ଼ିର ଅକ୍ଷର ଓ ମାତ୍ରା ଏବଂ ୨ୟ ଧାଡ଼ିର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଧାଡ଼ିର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଅନ୍ୟର ବଦଳରେ ୨ ବା ୧ ଧାଡ଼ିର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଗଡ଼' ନ ମିଳିଲେ 'ଗାଡ଼' ଖୋଜିବେ, କୂଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ'କୁ ପାଇଲେ 'ବଧୂ' ଦେଖିବେ; ଅଁଳା ନ ପାଇଲେ 'ଅଁଳା' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ।

**ତେଲୁଣୀ ବସା**—ଦେ. ବି—ବିବାହର ଏକ ବା ଦୁଇ ଦିନ ପୂର୍ବରୁ
Teluṇi basā ଯେଉଁ ଦିନ ପିଠା ତିଆର ହେବା ପାଇଁ ସର୍ବ ପ୍ରଥମେ ତେଲୁଣୀ ମଙ୍ଗଳା ଘାଇ ଚୁଲିରେ ବସାଯାଏ; ହାଣ୍ଡି ମଙ୍ଗଳା—A ceremony ( generally on the day previous to the marriage ) in which the frying pan is formally set on the oven to fry cakes for the feast.

**ତେଲେଇ**—ପ୍ରାଦେ. (ସିଂହଭୂମ) ବି—ଶର ( ଦେଖ )
Telei Sarā ( See )

**ତେଲେଙ୍ଗା**—ଦେ. ବି ଓ ବିଣ—ତେଲଙ୍ଗା ( ଦେଖ )
Telengā Telangā ( See )
ବି—ଏକ ପ୍ରକାର ଜଳଜାତ ତୃଣ, ହେରୁଦା ଘାସ। ଏହାକୁ ଛାଞ୍ଚ ଏଥିରେ ମେଞ୍ଚ ତିଆର କରାଯାଏ; ସନ୍ତୁର—
A species of aquatic grass used in weaving mat.

**ତେଲେନ୍**—ପ୍ରାଦେ. (ସମ୍ବଲପୁର) ବି—ତେଲୁଣୀ ୨ ( ଦେଖ )
Telen Teluṇi 2 ( See )

**ତେଷଠି**—ଦେ. ବି. ଓ ବିଣ.—(ସଂ. ତ୍ରିଷଷ୍ଟି; ପ୍ରା. ତିସଟ୍ଠି)—
Teshaṭhi ୬୩ ସଂଖ୍ୟା—63
তেষট্টি. तिरसठ ଷାଠିଏ ଅପେକ୍ଷା ୩ ଅଧିକ ସଂଖ୍ୟା—Sixtythree.

**ତେସନ(ନେ)**—ଦେ. କ୍ରି. ବିଣ (ସଂ. ତଦ୍‌ସମ; ତାଦୃଶ; ପ୍ରା. ତାଇସ)
Tesana(ne) ତୁଳ ଏସନ, କେସନ, ଯେସନ)—ସେହିପରି—
তেমন তেমনে, तैसा n that manner.
ବିଣ.—ସେହିପ୍ରକାରର—Of that kind.
(ତେସନେକ—ଅନ୍ୟରୂପ)

**ତେସା**—ଦେଦେ. କ୍ରି. ବିଣ. (ହି. ରୂ ଅନୁରୂପ)—
Tesā ସେହି ପ୍ରକାରେ—In that manner.
तैसा (ଯଥା—ଯେସାକୁ ତେସା।)
ବିଣ.—ସେହି ପ୍ରକାରର—Of that kind.
ତେସା ଲୁଚ ତେସା ଅକ୍ଷର। ଚଗ।
ବି.—ସେହି ପ୍ରକାର—That kind

**ତେସ୍ତରି**—ଦେ. ବି. ଓ ବିଣ. (ସଂ. ତ୍ରିସପ୍ତତି; ପ୍ରା. ତିସତ୍ତରି;
Testari ତିହତ୍ତରି)—ସତୁରି ଅପେକ୍ଷା ତିନି ବେଶୀ—
তিয়াত্তর 73; Seventy three.
तिहत्तर ଧନୁରାଏ ଧରଣ କର୍ଣ୍ଣଙ୍କର ପିଣ୍ଡ, ବାଣମାନ ବଧଲେ ତେସ୍ତରି କାଣ୍ଡ।
କୃଷ୍ଣସିଂ. ମହାଭାରତ: ଦ୍ରୋଣ।

**ତେହ(ହେ)ଲି**—ପ୍ରାଦେ. (ବାଲେଶ୍ୱର) ବିଣ.—ତୃତୀୟ— Third.
Teha(he)li ଏଥର ହେବ ତେହଲି ଦଣ୍ଡ। ଫକୀରମୋହନ, ଗଳ୍ପସ୍ୱଳ୍ପ।

**ତେହାତ**—ଦେ. ବିଣ.—(ସଂ. ତ୍ରିହସ୍ତ)—ତିନିହାତ ପରିମିତ—
Tehāti Three cubits long
ବି.—୧। ତିନିହାତ ପରିମାଣ—
1. Length of three cubits.
୨। ମନୁଷ୍ୟର ତିନିପୁରୁଷ—
2. Three generations of a person.

**ତେହାରା**—ଦେ. ବିଣ.—(ତୁଳ. ଦୋହୋରା) ତିନିଗୁଣ—
Tehārā Thrice; three fold.
তিনগুনা तेहरा

**ତେହିଁ (ଇତ୍ୟାଦି)**—ଗ୍ରା. ଅ.—ତହିଁ ଇତ୍ୟାଦି (ଦେଖ)
Tehiñ (etc) Tahiñ etc (See)

**ତେହିଁରୁ**—ଗ୍ରା. ଅ.—ତହିଁରୁ (ଦେଖ)
Tehiñru Tahiñru (See)

**ତେହିଁରେ**—ଗ୍ରା. ଅ.—ତହିଁରେ (ଦେଖ)
Tehiñre Tahiñre (See)

**ତେହେଁଣ୍ଟା**—ପ୍ରାଦେ. (ସମ୍ବଲପୁର) ବି.—ବଡ଼ ନୌକା—
Teheñṭā A long big boat.

**ତେହ୍ନେ**—ଦେ. (ପଦ୍ୟ) କ୍ରି. ବିଣ. ଓ ଅ.—(ତୁଳ. ଯେହ୍ନେ; କେହ୍ନେ)
Tehne ସେହି ପ୍ରକାରେ—In that manner.
তেমন ମଧୁର ପଦ, ଯେହ୍ନେ କଟୁ ସୁବଚ; ଜାରପୁରୁଷ ଅବୋଧ ବୋଲାଏ ସତୀ,
तैसा ତେହ୍ନେ ତୋ ମତ— ବିଶ୍ୱନାଥ, ବିଚିତ୍ରରାମାୟଣ

**ତୈକ୍ତ**—ସଂ. ବି. (ତିକ୍ତ+ସ୍ୱାର୍ଥେ. ଅ))—୧। ତିକ୍ତତା—
Taikta 1. Bitterness in taste.
୨। ତିକ୍ତସ୍ୱାଦ—2. Bitter taste.

**ତୈକ୍ଷ୍ଣ୍ୟ**—ସଂ. ବି. (ତୀକ୍ଷ୍ଣ + ଭାବ. ଯ)—୧। ତୀକ୍ଷ୍ଣତା—
Taikshṇya 1. Sharpness.
୨। କ୍ଷୁରଧାର—2. Sharp edge of a razor.
୩। ଉଷ୍ଣତା—3. Warmth.

**ତୈଜସ**—ସଂ. ବିଣ. ( ତେଜସ୍+ବିକାରାର୍ଥେ. ଅ )—୧। ତେଜୋ-
Taijasa ବିକାର—1. A resultant of energy or light.
୨। ଧାତୁମୟ; ଧାତୁନିର୍ମିତ—
2. Metallic; made of metal.
୩। ଉଜ୍ଜ୍ୱଳ—3. Radiant; bright.
୪। ରଜୋଗୁଣୋତ୍ପନ୍ନ—4. Produced from the gross attributes of nature.
ବି.—୧। ଧାତୁଦ୍ରବ୍ୟ—1. Metal articles.
୨। ଘୃତ; ଘିଅ—2. Ghee.
୩। ମହାଭାରତୋକ୍ତ ତୀର୍ଥବିଶେଷ (ପ୍ରକୃତିବାଦ)—
3. Name of a sacred place of the Hindus mentioned in the Mahābhārata.
୪। ଧାତୁ, ମଣି ଆଦି ଚକଚକିଆ ବସ୍ତୁ—
4. Anything having a metallic lustre.
୫। ପରାକ୍ରମ—5. Might.
୬। ସୁମତିଙ୍କର ଏକ ପୁତ୍ରର ନାମ—
6. Name of a son of Sumati.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ସ୍ୱରାକ୍ଷର | ଯ | ଜ | ଣ,ଷ | ଙ୍କ | ଚ୍ଛ | ଞ୍ଚ | ଲ |
| ୨ | ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ | ଯ | ନ | ଙ୍ଗ | ଛ | ଞ | ଳ |

୭ । ଖୁବ୍ ଜୋରରେ ଦଉଡ଼ି ପାରୁଥିବା ଘୋଡ଼ା (ହି. ଶବ୍ଦସାଗର)
7. A very swift horse.

୮ । ଭଗବାନ୍ (ହି. ଶବ୍ଦସାଗର)—8. God.

୯ । ଯେଉଁ ଶାରୀରିକ ବଳ ଆହାରକୁ ରସ ଓ ରସକୁ ଧାତୁରେ ପରିଣତ କରେ (ହି. ଶବ୍ଦସାଗର)—9. That energy inside the system which changes the food into a liquid sap before it turns into blood

୧୦ । (ହିନ୍ଦୁଦର୍ଶନ) ରଜୋଗୁଣୋଦ୍ଭୂତ ଅହଙ୍କାର—
10. (Hindu philosophy) Egotism born of gross worldly attributes

ତୈଜସପତ୍ର—ଦେ. ବି.—ତୈଜସ ପାତ୍ର (ଦେଖ)
Taijasapatra Taijasapātra. (See)

ତୈଜସପାତ୍ର—ସଂ. ବି.—ଧାତୁମୟ ପାତ୍ର; ବାସନ ବର୍ତ୍ତନ; ବାସନକୁସନ
Taijasapātra Metal vessels; household utensils.

ତୈଜସାବର୍ତ୍ତିନୀ—ସଂ. ବି. ( ତୈଜସ୍+ଆବର୍ତ୍ତିନୀ )—ଧାତୁ ଆଉଟିବା ହୋଇ—Crucible.
Taijasābarttini

ତୈଜସୀ—ସଂ. ବି.—ଗଜପିପଳୀ (ଦେଖ)
Taijasi Gajapippalī (See)

ତୈତିକ୍ଷ—ସଂ. ବିଣ (ତିତିକ୍ଷା+ଅ)—ତିତିକ୍ଷାଶୀଳ; ସହିଷ୍ଣୁ—
Taitiksha Enduring; forbearing.

ତୈତିର—ସଂ. ବି (ତିତିର+ସ୍ୱାର୍ଥେ. ଅ)—ତିତ୍ତିରି ( ଦେଖ )
Taitira Tittiri ( See )

ତୈତିଳ—ସଂ. ବି (ତିତିଳ+ଅ)—୧ । ଗଣ୍ଡାର; ଗଣ୍ଡାପଶୁ—
Taitila 1. Rhinoceros.

୨ । ଜ୍ୟୋତିଷୋକ୍ତ ବବ, ବାଳବ ପ୍ରଭୃତି କରଣ ମଧ୍ୟରୁ ଚତୁର୍ଥ କରଣ—2. The fourth of astrological combinations called 'Karaṇa'.

୩ । ଦେବତା—3. Deity.

ତୈତ୍ତିର—ସଂ. ବି. (ତିତ୍ତିର+ଅ)—୧ । ତିତ୍ତିର ପକ୍ଷୀ ସମୂହ—
Taittira 1. A flight of partridges.

୨ । ତିତ୍ତିରି (ଦେଖ)—2. Tittiri (See)

୩ । ଗଣ୍ଡାପଶୁ—3. Rhinoceros.

ତୈତ୍ତିରି—ସଂ. ବି—କୃଷ୍ଣ ଯଜୁର୍ବେଦ ପ୍ରବର୍ତ୍ତକ ଋଷି—
Taittiri Name of a sage.

ତୈତ୍ତିରୀୟ—ସଂ. ବିଣ. ପୁଂ. (ତିତ୍ତିରି=ଜଣେ ଋଷି+ଈୟ)—
Taittiriya ୧ । ତିତ୍ତିରି ସମ୍ବନ୍ଧୀୟ—1. Pertaining to
(ତୈତ୍ତିରୀୟା—ସ୍ତ୍ରୀ) the sage 'Tittiri'.

୨ । ତିତ୍ତିରି ମୁନିଙ୍କ ରଚିତ ଯଜୁର୍ବେଦ ଶାଖାଧ୍ୟାୟୀ (ବ୍ରାହ୍ମଣ)—
2. Studying the branch of the Jajurbeda composed by sage Tittiri.

ସଂ ବି—ତିତ୍ତିରି ନାମକ ଋଷିଙ୍କ ପ୍ରବର୍ତ୍ତିତ ଯଜୁର୍ବେଦାନ୍ତର୍ଗତ ଶାଖାବିଶେଷ—1. A section of the Jajurbeda composed by sage Tittiri.

[ ଦ୍ର—ଏହା ଯଜୁର୍ବେଦାନ୍ତର୍ଗତ ୮୬ ଶାଖା ମଧ୍ୟରୁ ଏକତମ । ଏହା ଆତ୍ରେୟ ଅନୁକ୍ରମଣିକା ଓ ପାଣିନିଙ୍କ ଅନୁସାରେ ପ୍ରୋକ୍ତ । ପୁରାଣରେ ଲେଖାଅଛି ଯେ, ଏକଦା ବୈଶମ୍ପାୟନ ବ୍ରହ୍ମହତ୍ୟା କରିଥିଲେ । ଏଥିର ପ୍ରାୟଶ୍ଚିତ୍ତ ପାଇଁ ସେ ଆପଣା ଶିଷ୍ୟମାନଙ୍କୁ ଯଜ୍ଞ କରିବାକୁ ଆଦେଶ ଦେଲେ । ଆଦେଶ ଅନୁସାରେ ସବୁ ଶିଷ୍ୟମାନେ ଯଜ୍ଞ କରିବାକୁ ପ୍ରସ୍ତୁତ ହେଲେ, କିନ୍ତୁ ଯାଜ୍ଞବଲ୍କ୍ୟ ପ୍ରସ୍ତୁତ ହୋଇ ନ ଥିବାର ଦେଖି ବୈଶମ୍ପାୟନ କୁପିତ ହୋଇ କହିଲେ ତୁମେ ଆମର ଶିଷ୍ୟତ୍ୱ ପରିତ୍ୟାଗ କର । ଏଥିରେ ଯାଜ୍ଞବଲ୍କ୍ୟ ଗୁରୁଙ୍କଠାରୁ ଯାହା ଯାହା ଶିକ୍ଷା କରିଥିଲେ ତାହା ସବୁ ବାନ୍ତ କରି ପକାଇଲେ । ଏହା ଦେଖି ତାଙ୍କ ସହପାଠିମାନେ ତିତ୍ତିର ପକ୍ଷୀରୂପ ଧାରଣ କରି ତାହା ଖୁଣ୍ଟି ନେଲେ । ଏହାହିଁ ତୈତ୍ତିରୀୟ ଶାଖା ହେଲା । ଏହି ଶାଖାର ଉପନିଷଦ ୩ ଭାଗରେ ବିଭକ୍ତ । ପ୍ରଥମ ଭାଗର ନାମ ସଂହିତୋପନିଷଦ ବା ଶିକ୍ଷାବଲ୍ଲୀ; ଏଥିରେ ବ୍ୟାକରଣ ଓ ଅଦ୍ୱୈତବାଦର ଚର୍ଚ୍ଚା ହୋଇଅଛି, ୨ୟ ଭାଗ ଆନନ୍ଦବଲ୍ଲୀ ଓ ୩ୟ ଭାଗ ଭୃଗୁବଲ୍ଲୀ; ୨ୟ ଓ ୩ୟ ଭାଗକୁ ସମ୍ମିଳିତଭାବରେ ବାରୁଣୀ ଉପନିଷଦ ବୋଲାଯାଏ । ତୈତ୍ତିରୀୟ ଉପନିଷଦରେ ବ୍ରହ୍ମବିଦ୍ୟା, ଶ୍ରୁତି, ସ୍ମୃତି, ଇତିହାସ ବିଷୟର ଚର୍ଚ୍ଚା ହୋଇଅଛି । ଶଙ୍କରାଚାର୍ଯ୍ୟ ଏହି ଉପନିଷଦର ଗୋଟିଏ ଉତ୍କୃଷ୍ଟ ଭାଷ୍ୟ କରିଅଛନ୍ତି—ହି. ଶବ୍ଦସାଗର । ]

୨ । ଉପରୋକ୍ତ ଶାଖାର ଉପନିଷଦବିଶେଷର ନାମ—
2. A treatise of Upanishada on the above section of the Jajurbeda.

ତୈତ୍ତିରୀୟକ—ସଂ. ବିଣ—ଯଜୁର୍ବେଦାନ୍ତର୍ଗତ ତୈତ୍ତିରୀୟ ଶାଖାଧ୍ୟାୟୀ—
Taittiriyaka Reading the Taittariya chapter of the Jajurbeda.

ତୈତ୍ତିରୀୟାରଣ୍ୟକ—ସଂ. ବି. (ତୈତ୍ତିରୀୟ+ଆରଣ୍ୟକ)—
Taittiriyāranyaka ତୈତ୍ତିରୀୟ ଶାଖାର ଆରଣ୍ୟକ ଅଂଶ (ଏଥିରେ ବାନପ୍ରସ୍ଥ ଅବଲମ୍ବନ ପାଇଁ ଉପଦେଶ ଅଛି)—
Name of a part of the Taittiriya Sakhā.

ତୈନ—ବୈଦେ. ବି ଓ ବିଣ. (ଅ)—ତଇନ୍ (ଦେଖ)
Tain Tain (See)

ତୈନାତ(ତି)—ବୈଦେ. ବି ଓ ବିଣ. (ଅ)—ତଇନାତ (ଦେଖ)
Tainat(ti) Tainata (See)

ତୈୟାର—ବୈଦେ. ବିଣ. (ଅ)—ତିଆର (ଦେଖ)
Taiyāra Tiāra (See)

ତୈୟାରି—ବୈଦେ. ବି (ଅ)—ତିଆରି (ଦେଖ)
Taiyāri Tiāri (See)

ସାଧାରଣ ସ୍ଥେବେ ଅପର ସ୍ତ୍ୱାରେ ସୂଚିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପର ବର୍ଣ୍ଣ ସହିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୃଷ' ନ ମିଳିଲେ 'କୃଷ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; 'ଅର୍ଦ୍ଧ'ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ବିଣ—ତିଅର (ଦେଖ)— Tiāra (See)

ତୈର—ସଂ. ବି—ଗୁଳ୍ମବିଶେଷ—
Taira Name of a bushy plant.
ଅନ୍ୟ ସଂ. ନାମ—ତୈରଣୀ, (ଦ୍ର—ବୈଦ୍ୟକମତରେ ଏହାର ପତ୍ର କୁମାଳୀ, ସ୍ୱଶଳ ଓ ବ୍ରଣନାଶକ—ଦ୍ର. ଶବ୍ଦସାଗର ।)

ତୈର୍ଥ—ସଂ. ବି. (ତୀର୍ଥ+ଭବାର୍ଥେ ଅ)—ତୀର୍ଥଭବଧର୍ମ; ତୀର୍ଥରେ
Tairtha କରଣୀୟ କର୍ମ—The pious acts and rituals enjoined in the Śastras to be performed at particular holy places.

ତୈର୍ଥିକ—ସଂ. ବି. (ତୀର୍ଥ=ଦର୍ଶନ ଶାସ୍ତ୍ର+ଭବାର୍ଥେ ଇକ)—
Tairthika କପିଳ, କଣାଦଆଦି ଦର୍ଶନଶାସ୍ତ୍ରପ୍ରଣେତା—
An author of a treatise on Hindu Philosophy; Philosopher.

ତୈଳ—ସଂ. ବି. (ତିଳ+ବିକାରାର୍ଥେ. ଅ)—୧ । ରାଶିତେଲ—
Taila 1. Sesamum oil.
୨ । ତେଲ, ମାତପା—2. Oil.
୩ । ଚିକ୍କଣ ବା ସ୍ନେହ ଦ୍ରବ ପଦାର୍ଥ—3. Oily liquid.
୪ । ଲୋବାନ୍—4. Benzoin (Apte).
୫ । ଆୟୁର୍ବେଦୋକ୍ତ ପ୍ରକ୍ରିୟାରେ ପ୍ରସ୍ତୁତ ତୈଳ—
5. Medicated oil.

ତୈଳକନ୍ଦ—ସଂ. ବି—ତେଲିଆ କନ୍ଦ (ଦେଖ)
Tailakanda Teliā kanda (See)

ତୈଳକଳ୍କ—ସଂ. ବି. (୬ଷ୍ଠୀ ତତ୍; ତୈଳ+କଳ୍କ)—ପିଡ଼ିଆ—
Tailakalka Oil cake.

ତୈଳକାର—ସଂ ବି. (ତୈଳ+କୃ ଧାତୁ+କର୍ତ୍ତୃ. ଅ)—
Tailakāra ତେଲି—Oilman.
[ଦ୍ର—ବ୍ରହ୍ମବୈବର୍ତ୍ତପୁରାଣ ମତରେ ଏ ଜାତିର ଉତ୍ପତ୍ତି କୋଟକ ଜାତୀୟା ସ୍ତ୍ରୀ କୁମ୍ଭୀରଜାତୀୟ ପୁରୁଷଠାରୁ ଉତ୍ପନ୍ନ—ଦ୍ର. ଶବ୍ଦସାଗର ।]

ତୈଳକିଟ୍ଟ—ସଂ. ବି (୬ଷ୍ଠୀ ତତ୍)—୧ । ତେଲର ଛାଣି—
Tailakitta 1. Sediment of oil deposited at the bottom of a pot.
ପିଡ଼ିଆ—2. Oil cake.

ତୈଳଙ୍ଗ—ସଂ. ବି. ନାମ—୧ । ଦାକ୍ଷିଣାତ୍ୟର ପୂର୍ବ ଉପକୂଳସ୍ଥ ଅଞ୍ଚଳ—
Tailanga 1. The Telangana or Carnatic (Apte).
୨ । ତୈଳଙ୍ଗ ଦେଶବାସୀ ବ୍ୟକ୍ତି—2. An inhabitant of the Telanga country.
[ଦ୍ର—ପ୍ରାଚୀନ ତୈଳଙ୍ଗ ଦେଶ ଶ୍ରୀଶୈଳଠାରୁ ଚୋଳ ଦେଶ ପର୍ଯ୍ୟନ୍ତ ବିସ୍ତୃତ ଥିଲା । କେତେକଙ୍କ ମତରେ ଏ ଦେଶରେ କାଳେଶ୍ୱର, ଶ୍ରୀଶୈଳ ଓ ଭୀମେଶ୍ୱର ନାମକ ତିନି ପାହାଡ଼ରେ ଥିବା ୩ ଗୋଟି ଶିବଲିଙ୍ଗ (ତ୍ରିଲିଙ୍ଗ) ଥିବାରୁ ଏ ନାମ ହୋଇଅଛି । କେହି କେହି କହନ୍ତି ଏହା ତ୍ରିକଳିଙ୍ଗର ଅପଭ୍ରଂଶ । ଓଡ଼ିଶାର ଦକ୍ଷିଣରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ବଙ୍ଗୋପସାଗର ଉପକୂଳବର୍ତ୍ତୀ ଭାରତ ଉପକୂଳ ତୈଳଙ୍ଗ ଦେଶ ଅଟେ । ]

ତୈଲଙ୍ଗୀ—ଦେ. ବିଣ—ତେଲଙ୍ଗୀ (ଦେଖ)
Tailangi Telangi (See).
(ତୈଲଙ୍ଗୀୟ—ଅନ୍ୟରୂପ)

ତୈଳଚୋ(ଚୌ)ରିକା—ସଂ. ବି. ସ୍ତ୍ରୀ—ଅସରପା—
Tailacho(chau)rikā Cockroach.

ତୈଳଦ୍ରୋଣୀ—ସଂ. ବି (ମ' ପ. ଲୋ. ତୈଳପୂର୍ଣ୍ଣ ଦ୍ରୋଣୀ=କାଷ୍ଠପାତ୍ର)—
Tailadroni ୧ । ତେଲପୂର୍ଣ୍ଣ କାଠପିଞ୍ଜା—
1. Oil can; wooden cans full of oil.
୨ । ତୈଳପୂର୍ଣ୍ଣ ବଡ଼ ଲମ୍ବ ପାତ୍ର—
1. A tub filled with oil.
[ଦ୍ର—ଏ ପାତ୍ର ମଧ୍ୟରେ ମନୁଷ୍ୟ ଶୋଇ ପାରିବା ଭଳି ଏହା ଲମ୍ବ ହୋଇ ପ୍ରସ୍ତୁତ ହେଉଥିଲା । ଏଥିରେ ତୈଳ ପୂର୍ଣ୍ଣ ହୋଇ ମୃତଦେହକୁ ରଖା ଯାଉଥିଲା । ଶବକୁ ତୈଳଦ୍ରୋଣୀରେ ରଖିବାରୁ ତାହା ଶୀଘ୍ର ସଢ଼ୁ ନ ଥିଲା । ରାଜା ଦଶରଥଙ୍କ ଶବ ଭରତଙ୍କ ଆଗମନ ଅପେକ୍ଷାରେ ତୈଳଦ୍ରୋଣୀରେ ସଞ୍ଚିତ କରି ଯାଇଥିଲା । ]

ତୈଳପକ—ସଂ. ବି. ପୁଂ (ତୈଳ+ପା ଧାତୁ=ପିଇବା+କର୍ତ୍ତୃ. ଅ+କ)—ତୈଳଚୋରିକା ( ଦେଖ )
Tailapaka Tailachorikā (See)

ତୈଳପକ୍ୱ—ସଂ. ବିଣ ( ତୃତୀୟା ତତ୍; ତୈଳ+ପକ୍ୱ )—ତେଲରେ
Tailapakwa ପାକ କରି ଯାଇଥିବା; ତେଲରେ ଭଜା ଯାଇଥିବା—
Fried in oil.

ତୈଳପର୍ଣ୍ଣିକ—ସଂ. ବି ( ତୈଳପର୍ଣ୍ଣୀ=ଚନ୍ଦନକାଷ୍ଠ+କ )—
Tailaparnnika ହରିଚନ୍ଦନ; ଶ୍ୱେତଚନ୍ଦନ—White sandal wood.
(ତୈଳପର୍ଣ୍ଣୀ—ଅନ୍ୟରୂପ)

ତୈଳପା—ସଂ. ବି. ସ୍ତ୍ରୀ ( ତୈଳ+ପା ଧାତୁ=ପିଇବା+କର୍ତ୍ତୃ. ଅ )—
Tailapā ତୈଳଚୋରିକା (ଦେଖ)—Tailachorikā (See)
(ତୈଳପାୟିକା, ତୈଳପାୟୀ—ଅନ୍ୟରୂପ)

ତୈଳପିଷ୍ଟକ—ସ. ବି—ପିଡ଼ିଆ—
Tailapishtaka Oil cake.

ତୈଳବଲ୍ଲୀ—ସଂ. ବି—ଶତାବରୀ; ଶତମୂଳୀ—
Tailaballi Asparagus.

ତୈଳମର୍ଦ୍ଦନ—ସଂ. ବି (୬ଷ୍ଠୀ ତତ୍; ତୈଳ+ମର୍ଦ୍ଦନ)—
Tailamarddana ୧ । ଦେହରେ ତେଲ ମାଲିସ୍ କରିବା; ତେଲ ମାଖିବା—1. Anointing or rubbing oil on the body.
ଦେ. ବି ( ଲକ୍ଷଣାର୍ଥ ) କୌଣସି ବ୍ୟକ୍ତିକୁ ଖୋସାମତ ବା ସ୍ତୁତି କରିବା—(Figurative) Flattering a person.

| | | | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|---|---|
| ୧ | ଲ | ଉ | ଋ,ୠ | ଌ | ଏ | ମୂର୍ଦ୍ଧନ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଣ,ଷ | କ୍ଷ | ଏ୍ୟ | ରୃଥ | ଓ |
| ୨ | ଲ | ଳ | ଋ | ଲୃ | ଯ୍ୱେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଶ୍ୟ | ରଥ | ଶ | ଦ୍ |

ତୈଳମାଳୀ—ସ. ବ—ତେଲର ବଳତା—
Tailamāli A wick saturated with oil.

ତୈଳଯନ୍ତ୍ର—ସ. ବ (ସ. ପ. ଲୋ. ତୈଳନିଷ୍କାସନ ଯନ୍ତ୍ର )—ଘଣା—
Tailajantra Oil mill.

ତୈଳଶାଳା—ସ. ବ ( ୬ଷ୍ଠୀ ତତ୍; ତୈଳ+ଶାଳା )—ତେଲଶାଳ—
Tailasālā A house where oil mill is worked.
(ତୈଳଶାଳା—ଅନ୍ୟରୂପ)

ତୈଳସାଧନ—ସ. ବ ( ତୈଳ+ସିଧ୍ ଧାତୁ ଣିଚ=ସାଧ୍ ଧାତୁ ନିଷ୍ପନ୍ନ
Tailasādhana କରିବା+କର୍ତ୍ତୃ. ଅନ )—୧ । ଗନ୍ଧଦ୍ରବ୍ୟ-
ବିଶେଷ—1. Perfume for scented oils.
୨ । ଶୀତଳଚିନି; କବାବଚିନି—2. Cubebs.

ତୈଳସେକ—ସ. ବ (୬ଷ୍ଠୀ ତତ୍; ତୈଳ+ସେକ)—ଦେହରେ ଗରମ
Tailaseka ତେଲ ମାଲିସ—Rubbing warm oil over the body.

ତୈଳ ସ୍ଫଟିକ—ସ. ବ—୧ । ଅମ୍ବର ନାମକ ଗନ୍ଧଦ୍ରବ୍ୟ; ଅମ୍ବରୀ—
Taila sphaṭika Amber-gris.
[ ଦ୍ର—ଏହା ଏକପ୍ରକାର ସମୁଦ୍ରଜାତ ସୁଗନ୍ଧ ଦ୍ରବ୍ୟ । ଏହା ତିମି ମାଛର ଅନ୍ତ୍ରରୁ ବାହାରି ସମୁଦ୍ରରେ ଭାସି ଆସେ । ଅନ୍ୟ ଏକ ପ୍ରକାର ଅମ୍ବର ଖଣିରୁ ମିଳେ ଏହାକୁ ଇଂରାଜୀରେ (fossil amber) ବୋଲାଯାଏ; କେହି କେହି କହନ୍ତି ଏହା ସମୁଦ୍ରଜାତ-ଜାତ ଏକପ୍ରକାର ମସୃଣ, କଠିନ ଉଦ୍ଭିଦ ପଦାର୍ଥ । ]

ତୈଲା—ଦେ. ବ ଓ ଗୁଣ—ତଇଲା ( ଦେଖ )
Tailā Tailā ( See )

ତୈଳାକ୍ତ—ଦେ. ଗୁଣ ( ୩ୟା ତତ୍; ତୈଳ+ଅକ୍ତ=ଲିପ୍ତ )—
Tailākta ୧ । ତେଲ ସରସର—1. Besmeared with oil.
୨ । ତେଲିଆ—2. Oily.

ତୈଳାକ୍ଷ୍ୟ—ସ. ବ—ଶିଳାରସ ( ଦେଖ )
Tailākshya Silārasa ( See )

ତୈଳାଟ—ସ. ବ ( ତୈଳ+ଅଟ୍ ଧାତୁ+କର୍ତ୍ତୃ. ଅ )—ଘରୁଡ଼ି
Tailāṭa (ହି ଶବ୍ଦସାଗର)—Wasp.

ତୈଳାଧାର—ସ. ବ (୬ଷ୍ଠୀ ତତ୍; ତୈଳ+ଆଧାର)—ତେଲ ରଖିବା
Tailādhāra ପାତ୍ର—A receptacle for oil.

ତୈଳାଭ୍ୟଙ୍ଗ—ସ. ବ ( ୬ଷ୍ଠୀ ତତ୍; ତୈଳ+ଅଭ୍ୟଙ୍ଗ=ମର୍ଦ୍ଦନ )—
Tailābhyanga ଦେହରେ ତେଲ ମାଲିସ କରିବା—
Anointing the body with oil.

ତୈଳିକ—ଦେ. ବ. ପୁଂ (ତୈଳ+ବ୍ୟବସାୟାର୍ଥେ. ଇକ)—ତେଲି—
Tailika Oil man.
(ତୈଳିକା—ସ୍ତ୍ରୀ) ଗୁଣ (+ସମ୍ବନ୍ଧାର୍ଥେ. ଇକ) ତୈଳ ସମ୍ବନ୍ଧୀୟ—
Relating to oil.

ତୈଳିକ ଯନ୍ତ୍ର—ସ. ବ (କର୍ମଧା; ତୈଳିକ+ଯନ୍ତ୍ର)—ତେଲଘଣା—
Tailika jantra Oil mill.

ତୈଳିନୀ—ସ. ବ—୧ । ତେଲୁଣୀ ପୋକ—
Tailini Galley worm; myrapod.
୨ । ବଳତା—2. Lamp wick.

ତୈଳୀ—ସ. ବ. ପୁଂ ( ତୈଳ+କରିବା ଅର୍ଥରେ. ଇନ )—
Taili ତୈଳିକ ( ଦେଖ )
(ତୈଳିନୀ—ସ୍ତ୍ରୀ) Tailika ( See )

ତୈଷ—ସ. ବ (ତୈଷୀ ଅର୍ଥାତ୍ ପୁଷ୍ୟା ନକ୍ଷତ୍ରଯୁକ୍ତ ପୂର୍ଣ୍ଣିମା+କାଳାର୍ଥେ. ଅ)
Taisha ପୁଷମାସ—The month Pusha

ତୋ—ଦେ ଅ—( ବାକ୍ୟର ପୂରଣାର୍ଥେ, ଦୂରବସ୍ତୁ ପ୍ରଦର୍ଶନାର୍ଥେ
To ବ୍ୟବହୃତ; ସ. ତୁ)—ତ; ତେବେ—Too.
ତୋ ( ଯଥା—ଦେଇ ତୋ ! ବଡ଼ ଦେଉଳର ମାଳଚକ୍ର ବାନା
ता ଦେଖାଗଲାଣି । )
ତୋର ସର୍ବନାମ (ସ. ତେ; ଅନାଦରାର୍ଥକ; ଓ ତୁ ଶବ୍ଦର ୬ଷ୍ଠୀ
तेरा ବିଭକ୍ତି ଏକବଚନ) , ତୋର; ତୁମ୍ଭର—Thine.

ତୋକମାରୀ—ବୈଦେ. ବ (ଫା. ତୁଖମଲଙ୍ଗା)—ଇସବ୍ ଗୋଲ ଲଣ୍ଡାବଗୁଲି
Tokmāri ମଞ୍ଜି ପରି ଏକପ୍ରକାର ମଞ୍ଜି—The seed of tooly
ତୋକମାରୀ hook; Lallemantia Roybana.
तोकमारी [ ଦ୍ର—ଏ ଗୁଳ୍ମ ତୁର୍କସ୍ଥାନବର୍ଗରେ ବନ୍ୟ କ୍ଷୁଦ୍ର କ୍ଷୁପ; ଏଥିର ମଞ୍ଜିକୁ ଗରମ ପାଣିରେ ପକାଇଲେ ଲଣ୍ଡାବଗୁଲି ମଞ୍ଜି ପରି ତାହା ଫୁଲିଉଠେ । ଏହାକୁ ବଥ ଉପରେ ଦେଲେ ଅଳ୍ପ ସମୟ ମଧ୍ୟରେ ବଥ ଫାଟିଯାଏ । ]

ତୋକ—ସ. ବ. ପୁଂ ( ତୁ ଧାତୁ=ବୃଦ୍ଧି ପାଇବା+କ )—୧ । ଶିଶୁ;
Toka ଛୋଟ ପିଲା—1. Child; boy.
(ତୋକା—ସ୍ତ୍ରୀ) ୨ । (ନାମ) ଶ୍ରୀକୃଷ୍ଣଙ୍କର ଜଣେ ସଖା—
2. Name of a companion of Srikrushna.

ତୋକେ—ପ୍ରାଦେ (କଳାହାଣ୍ଡି) ସର୍ବନାମ (ତୁଲ. ବଂ ତୋକେ)—
Toke ତୋତେ—To thee.

ତୋକ୍ମ—ସ. ବ—୧ । ଅଙ୍କୁର; ଗଜା (ହି. ଶବ୍ଦସାଗର)—
Tokma 1. Sprout.
୨ । ଯବଧାନର ନୂଆ ଗଜା—2. Sprout of barley.
୩ । କଞ୍ଚା ଯବଧାନ—3. Unripe barley.
୪ । ହଳଦିଆ ବର୍ଣ୍ଣ—4. Yellow colour.
୫ । ମେଘ (ହି. ଶବ୍ଦସାଗର)—5. Cloud.
୬ । କାନର ମଳ, କାନଗୁହ (ହି. ଶବ୍ଦସାଗର)—
6. Ear wax.

ତୋଖଡ଼ ମୋଖଡ଼—ବୈଦେ. ବ (ଅ) ( ସହଚର ଶବ୍ଦ )—
Tokharda mokharda ଟିଖଡ଼ ( ଦେଖ )
Tikharda (See)

ମୋ ଅନ୍ୟ ମିଳ ନାହିଁ ନଗରରେ କାଲେ ତୋଖମ ନୋଟିସ ଦିଆଯିବ—

ଫକୀରମୋହନ. ଚଲୁମନ୍ତ୍ର ।

**ତୋଖମ୍**—ବିଦେ. ବି (ପା. ତୁର୍କ. ସ. ତୋକ୍ମ=ଗଛ)—
Tokham ଜନ୍ମ; କୁଳ—Birth; lineage.
তোখম ତୋଖମ୍, ଟାଖମ୍ ଖୋଦନ୍ ଅସଲ—ଫାରସି. ଡଗ ।
तोखम

**ତୋଟ୍ରି**—ଦେ. ବି—ଧାନ ଗଛର ରୋଗବିଶେଷ—
Totri A kind of pest attacking paddy plants.
ତୋଟ୍ଟର } ଅନ୍ୟରୂପ
ତୋଟ୍ଟୁର }
[ ଦ୍ର—ଏ ରୋଗରେ ଧାନ କେଣ୍ଡା ବାହାରିବା ପୂର୍ବରୁ ଗଛ ଶୁଖିଯାଏ । ]

**ତୋଟକ**—ଦେ. ବି (ସ. ତ୍ରୋଟକ)—ପ୍ରତ୍ୟେକ ଚରଣରେ ୧୨ ଗୋଟି
Totaka ଲେଖାଏଁ ଅକ୍ଷର ଥିବା ଛନ୍ଦୋବିଶେଷ—The name of a Sanskrit metre of 12 letters.

[ ଦ୍ର—ଏହାର ପ୍ରତ୍ୟେକ ଚରଣର ଅକ୍ଷରକୁ ଚାରି ଅଂଶରେ ବିଭକ୍ତ କଲେ ପ୍ରତି ଅଂଶର ପ୍ରଥମ ଦୁଇ ଅକ୍ଷର ଲଘୁ ଓ ଶେଷ ଅକ୍ଷର ଗୁରୁ ହୁଏ । ଯଥା—

୧ । ଦ୍ୱିଜରାଜମୁଖୀ ମୃଗରାଜକଟୀ
୨ । ଗଜରାଜବିରାଜିତମନ୍ଦଗତିଃ ।
୩ । ଯଦି ସା ରମଣୀ ହୃଦୟେ ରମତେ
୪ । କ୍ୱ ଜପଃ କ୍ୱ ତପଃ କ୍ୱ ସମାଧିବିଧିଃ ।

ଏହି ଛନ୍ଦରେ ଓଡ଼ିଆ ଓ ବଙ୍ଗଳାରେ ମଧ୍ୟ କବିତା ରଚିତ ହୋଇ ଅଛି । ଏ ଶବ୍ଦ ହି. ଶବ୍ଦସାଗରରେ ସଂସ୍କୃତ ଥିବାର ଲେଖାଅଛି ]

**ତୋଟକା (ଇତ୍ୟାଦି)**—ଟୁଟ୍‌କା (ଇତ୍ୟାଦି) (ଦେଖ)
Toṭkā etc Tuṭkā etc. (See)

**ତୋଟା**—ଦେ. ବି ( ସ. ତୁଟ୍ ଧାତୁ=ଛେଦନ କରିବା; ତେ. ତୋଟା);
Toṭā ୧ । ଆରାମ ଉପବନ—1. Pleasure garden.
টোটা, তোটা बाग ୨ । ଆମ୍ବ ବଗିଚା—2. Mango-tope.
୩ । ଫଳବୃକ୍ଷବହୁଳ ଉପବନ; ଫଳ ବଗିଚା; ବଗାଏତ—
3. A plantation of fruit garden; orchard.

ତୋଟାରେ ପଶୁ କେତେବେଳେ ଏବେ ଯୋଗ
ମାଳିକ ତୁ ଯାଇ ଲୋକେ ଡକାଇ । କୃଷ୍ଣସିଂହ. ମହାଭାରତ ଆଦି ।

୪ । (ଲୁପ୍ତ ବ୍ୟବହାର) ଫୁଲ ବଗିଚା—4. A flower garden.

ଏମ କୃଷ୍ଣ ତୁହି ତୋଟାକୁ ଗଲେ ବନ୍ଧ ପକାଇଲେ ମାଳିକ ।
ଭକ୍ତଚରଣ ମଥୁରା. ମଙ୍ଗଳ ।

[ ଦ୍ର—ଫଳ ବା ବଡ଼ ଗଛର ଉଦ୍ୟାନକୁ ତୋଟା ବା ବଗାଏତ ବୋଲାଯାଏ, ଯଥା—ଆମ୍ବ ତୋଟା, ବଉଳ ତୋଟା ଇତ୍ୟାଦି ଓ ଫୁଲ ବା ସାନ ସାନ ଗଛର ଉଦ୍ୟାନକୁ ବଗିଚା ବୋଲାଯାଏ । ଯଥା—ତୁଳସୀ ବଗିଚା, ମଲ୍ଲି ବଗିଚା ଇତ୍ୟାଦି । ତାଳ, ବାଉଁଶ ଆଦି ବୃକ୍ଷ ଓ ବନ୍ୟ ବୃକ୍ଷବହୁଳ ସ୍ଥାନକୁ ବଣ ବୋଲାଯାଏ । ଯଥା—ତାଳ ବଣ, ବାଉଁଶ ବଣ ଇତ୍ୟାଦି ।]

୫ । ଠୋଟା (ଦେଖ) Ṭoṭā (See)

**ତୋଟା ଗୋପୀନାଥ**—ପ୍ରାଦେ (ପୁରୀ) ବି—୧ । ପୁରୀ ନିକଟସ୍ଥ ବଡ଼
Toṭāgopīnātha ଆମ୍ବ ତୋଟାରେ ଥିବା ବିଷ୍ଣୁମୂର୍ତ୍ତି—
1. Name of an image of Bishnu in a mango tope in the suberb of the town of Puri
୨ । ସତ୍ୟବାଦୀ ବଉଳ ତୋଟାରେ ଥିବା ଗୋପାଳଜୀଉ ଠାକୁର—2. A name of the Idol Gopaljiu at Sakhigopal in the District of Puri.

**ତୋଟାଳ**—ଦେ. ବି—ତୋଟା ରଖୁଆଳ; ତୋଟା ଜଗୁଆଳ; ଉପବନ-
Toṭāla ରକ୍ଷକ ମାଳୀ—A person watching a garden; a servant in charge of a garden.

**ତୋଟାଳିଆ**—ଦେ. ବି—ତୋଟାଳ (ଦେଖ)
Toṭāliyā Toṭāla (See)
ଦେ. ବିଣ.—ଯେ ତୋଟାକୁ ଜଗିଥାଏ—Watching an orchard.

ଦ୍ରବ୍ୟ ଥାଇ ଯାର କାର୍ଯ୍ୟକୁ ନ ଆସଇ
ତୋଟାଳିଆ ମାନବ ପରି ଜାଣ ସେହି । କୃଷ୍ଣସିଂହ. ମହାଭାରତ. ବନ

**ତୋଣ୍ଟି**—ଦେ. ବି (ସ. ତ୍ରୋଟି; ତ୍ରୋଟୀ; (ଭୁଲ) ଇଂ ଥ୍ରୋଟ; ତୁଟ୍
Toṇṭi ଧାତୁ=ଛେଦନ କରିବା)—୧ । ଘଣ୍ଟି; ତଣ୍ଟି; ଗଳଦେଶର
টুটি, টুঁটি ସମ୍ମୁଖ ଭାଗ—1. Throat.
टेंटुआ ୨ । ଗଳା; କଣ୍ଠନାଳ—2. Larynx.

ତୋଣ୍ଟକ ଚମ୍ପିଲ ଭୂଷା । କବିସୂର୍ଯ୍ୟ. ବଳୋଗ ରମ୍ଭ, ବ. ଗୀତ ।

୩ । ଗଳାର ସ୍ୱର—3. Voice.
(ଯଥା—ଗୀତ ଗାଇ ଗାଇ ମୋ ତୋଣ୍ଟି ବସିଗଲା)

**ତୋଣ୍ଟିକଟା**—ଦେ. ବିଣ—୧ । ଗଳାକଟା; ତଣ୍ଟିକଟା; ଯେ ତୋଣ୍ଟି
Toṇṭikaṭā କାଟି ଦେଇ ମନୁଷ୍ୟକୁ ମାରେ—1. Cut-throat.
টুঁটিটেপা बटमार ପରଜେ ନ ଯିବୁ ତୋଣ୍ଟିକଟାକୁ । ଡଗ ।
୨ । ନରହନ୍ତା—2. A murderer.
୩ । ବିଶ୍ୱାସଘାତକ—3. A faithless person.
୪ । କୌଣସି ଲୋକର ତୋଣ୍ଟି କାଟି ତାଠାରୁ ଅପହୃତ (ଧନ)
4. Obtained by cutting a man's throat.
ବି.—ତୋଣ୍ଟିକୁ କାଟିବା—Cutting of the man's throat.

**ତୋଣ୍ଟି କାଟିବା**—ଦେ. କ୍ରି—୧ । ମନୁଷ୍ୟର ତଣ୍ଟି କାଟି ମାରିବା;
Toṇṭi kāṭibā 1. To kill a person by cutting his throat.
গলা কাটা गलाकाटना
୨ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ସର୍ବନାଶ କରିବା—
2. (figurative) To ruin a person.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୯ | ଇ | ଉ | ଋ,ଝ | ଡ଼ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଜ୍ଞ | ଋଅ | ଢ |
| ୨ | ଈ | ଊ | ଋ | ଳ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଞ | ନ୍ |

୩ । ବିଶ୍ୱାସଘାତକତା ଆଚରଣ କରିବା—3. To do a faithless act; to act perfideously.

ଅମ୍ଭେ କାହିଁ ତୋଟ, ଏଥା ଚିନ୍ତି ମନେ । ଅନ୍ତର୍ଦ୍ଧାନ ହେଲେ ଭାଇ ।

**ତୋଟିଗଡ(ଲ)ଗଡ(ଲ)ହେବା**—ଦେ. କ୍ରି—ଶୀତ ଓ ଜ୍ୱର ଅବ
Totigata(la)gata(la)hebā ଖାଇବାରୁ ଗଳା ଭିତର ଭୁଣ୍ଡାଇ
ଗଳା ଖସଖସ କରା ହେବା—Aching in the throat.
**ଗଲା ଝୁନଝୁନାନା, ଗଲା କନକନାନା**

**ତୋଟି ଚିପା**—ଦେ. ବି—ନିଶ୍ୱାସ ବନ୍ଦ କରି ପ୍ରାଣନାଶାର୍ଥ କୌଣସି ବ୍ୟକ୍ତିର
Toti chipā ତୋଟିକୁ ଚିପିବା; ଗଣ୍ଡି ଚିପିବା—Strangling
टेंटुआ, ଗଲାଟିପା a person by the throat.
**ଗଲା ଘୋଟା,** ବିଶ—୧ । ଯେ ତୋଟିକୁ ଚିପି ମନୁଷ୍ୟକୁ ମାରେ—
**टेंटुआ दबाना** 1. Strangler.
ଗଲାଟିପା ୨ । ଯେଉଁ ଲୋକ ପରର ତଣ୍ଟି ଚିପି ତାହାର
**ଗଲାଘୋଟା** ମୁହଁ ପାଖରୁ ଖାଦ୍ୟ ଛଡ଼ାଇ ଅଣେ—
2. One who wrests away the food from another's mouth by strangling him.
୩ । ଅନ୍ୟ ବ୍ୟକ୍ତିର ତଣ୍ଟି ଚିପି ଜବରଦସ୍ତି ଅଣା ଯାଇଥିବା (ଧନ)—3. Obtained by strangling.
୪ । (ଲକ୍ଷଣାର୍ଥ) ଯେଉଁ ଧନ ପରକୁ ଉତ୍ପୀଡ଼ିତ କରି ହସ୍ତଗତ ହୋଇ ଥାଏ—4. (figurative) (money) Obtained by oppression or extortion.
(ଯଥା—ପ୍ରଜାଙ୍କ ତୋଟିଚିପା ଧନରେ ସେ ରଜା ବଡ଼ ଲୋକ ହୋଇଅଛି ।)

**ତୋଟି ଚିପିବା**—ଦେ. କ୍ରି—୧ । ତୋଟିକୁ ଅଙ୍ଗୁଠି ଦ୍ୱାରା ବନ୍ଦ କରି
Toti chipibā ନିଶ୍ୱାସ ବନ୍ଦ କରିବା—1. To suffocate or
टेंटुआ, ଗଲାଟିପା strangle a person by holding his
**ଗଲାଟୋପନା** throat tightly; to throattle.
୨ । ନିଶ୍ୱାସ ରୋଧରେ ବା ଗଳା କାଟି ମାରି ପକାଇବା—
2. To strangle a person to death.
୩ । ଅନ୍ୟର ଖାଦ୍ୟଦ୍ରବ୍ୟ ବଳପୂର୍ବକ ଅପହରଣ କରିବା ନିମନ୍ତେ ତାହାର ଗଳାକୁ ଚିପିବା—
3. To suffocate a person with a view to wrest away his food from his mouth.
୪ । (ଲକ୍ଷଣାର୍ଥ) ଧନ ଆଦାୟ କରିବା ପାଇଁ ଜବରଦସ୍ତି ବା ଉତ୍ପୀଡ଼ନ କରିବା—4. (figurative) To oppress or extort money from a person.

**ତୋଟି ଦରଜ**—ଦେ. ବି. (ସ୍ୱ. ତୋଟ+ପା. ଦର୍ଦ)—ଗଳା ବା କଣ୍ଠ-
Toti daraja ନାଳୀ ଭିତରେ ବ୍ୟଥା ଓ ଦରଜର ଅନୁଭୂତି—
ଗଲାରଦର୍ଦ Having pain in the larynx.
**ଗଲାଫଟନା**

୫ । (ଲକ୍ଷଣାର୍ଥ) ଯନ୍ତ୍ରଣା ଦେଇ ମାରି ପକାଇବା—(figurative) To kill a person by inflicting much pain.
୬ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିକୁ ତାହାର ଖାଇବାରୁ ବଞ୍ଚିତ କରିବା—6. (figurative) To deprive a person of his livelihood.
୭ । (ଲକ୍ଷଣାର୍ଥ) କୌଣସି ବ୍ୟକ୍ତିର ସର୍ବନାଶ ଘଟାଇବା—7. (figurative) To bring ruin upon a person.

ଦେଖିଲୁ ପରେ ଅବନୀ ଦେବେ ଘୋଟି
କାଳକୁ ସଙ୍ଗେ ଘେନ ଚିପିବ ତୋଟି —କୃଷ୍ଣସିଂହ. ମହାଭାରତ. ଉଦ୍ୟୋଗ

[ଦ୍ର—ଏ କ୍ରିୟାର ଅସମାପିକାରୂପ ସଙ୍ଗେ ଦେବା, ପକାଇବା କ୍ରିୟାର ସମାପିକା ରୂପ ଯୁକ୍ତ ହୁଏ ।]

**ତୋଟି ଧରିବା**—ଦେ. କ୍ରି—୧ । ଅନ୍ୟ ବ୍ୟକ୍ତିର ତଣ୍ଟିକୁ ଚିପି ତାକୁ
Toti dharibā ଅବଶ ବା ଆକ୍ରାନ୍ତ କରିବା—
टेंटुआ ଧରନା 1. To overcome a person by holding
**ଗଲାପକଡ଼ନା** his throat tightly.
୨ । ନାଛୋଡ଼ବନ୍ଦା ହୋଇ କୌଣସି ବ୍ୟକ୍ତି ସହିତ ଅଳ କରିବା; ବିବ୍ରତ କରିବା; ଅତ୍ୟନ୍ତ ବ୍ୟସ୍ତ କରିବା—
2. To pester a person by importunities; to ply a person with importunity.
ଦେ. ବି—ଗଳାଫୁଲା; କଣ୍ଠନାଳୀ ଓ କଣ୍ଠ ଦେଶର ଫୁଲା ଓ ଦରଜ ହେବା—Swelling and pain in the throat.

**ତୋଟି ପଡ଼ିବା**—ଦେ. ବି—ତୋଟି ବସିବା (ଦେଖ)
Toti pardibā Toti basibā (See)
(ତୋଟି ପଡ଼ିଯିବା—ଅନ୍ୟରୂପ)

**ତୋଟି ବସିବା**—ଦେ. ବି—୧ । ତଣ୍ଟି ବସିବା; ବସ୍ତୁତ ପାଟି କରିବା
Toti basibā ବା ଶରଦ ଆଦ ଯୋଗୁଁ ଗଳାର ସ୍ୱର କମିଯିବା;
ଗଲାବସା କଣ୍ଠସ୍ୱର ମନ୍ଦ ହେବା—1. Hoarseness of
**ଗଲାବୈଠଜାନା** one's voice (due to cold etc).
(ଗଳା ବସିଯିବା—ଅନ୍ୟରୂପ) ୨ । ଶରଦଆଦ ଯୋଗୁଁ ମନୁଷ୍ୟର ସ୍ୱର ଅବୋଧ ଶୁଣା ନ ଯିବା—2. Low or subdued voice due to cold or over straining of the larynx.

**ତୋଟିରେ ଲାଗିବା**—ଦେ. କ୍ରି—କୌଣସି ଖାଦ୍ୟଦ୍ରବ୍ୟ (ଯଥା ଶୁଖିଲା
Totire lāgibā ରୁକ୍ଷ ବସ୍ତୁ, ମାଛକଣ୍ଟା) ତଳକୁ ନ ଖସି ଗଳାରେ
ଗଲାମେ ଲାଗା ଅଟକି ରହିବା—(a food) To stick in
**ଗଲା ପକଡ଼ନା, ଗଲାମେ ବୈଠନା** the throat.
ଦେ. ବି—କଣ୍ଠରେ ଶ୍ଳେଷ୍ମା ବା ଅନ୍ୟ କୌଣସି ବସ୍ତୁ ଅଟକି ଯାଇ କଣ୍ଠ ଅବରୁଦ୍ଧ ହେବା—Sticking of phlegm or any other substance in the throat.
[ଦ୍ର—ସାଧାରଣଙ୍କର ବିଶ୍ୱାସ ଯେ କେହି ଦୂରସ୍ଥ ବନ୍ଧୁ ତୁମ୍ଭକୁ ମନେ କରୁଥିଲେ ତୁମେ ଖାଉଥିବାବେଳେ ବା ପାଣି ପିଉଥିବାବେଳେ ତୁମର ତୋଟିରେ ଲାଗେ ]

ଯାହା ଏ ଗ୍ରନ୍ଥରେ ଅପର ଦ୍ୱାରରେ ନିହିତ ୧ ବର୍ଣ୍ଣ ଅନ୍ତରେ ୧ ମାତ୍ରା ବା ୨ ବର୍ଣ୍ଣ ଅନ୍ତରେ ୧ ମାତ୍ରା ମଧ୍ୟରେ ପ୍ରବେଶ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ବର୍ଣ୍ଣର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ଉକ୍ତ ବ୍ୟବସ୍ଥା ୨ ବା ୧ ବର୍ଣ୍ଣ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଧ' ନ ମିଳିଲେ 'ଗାନ୍ଧ' ଖୋଜିବେ; 'ଭୂଅ' ନ ମିଳିଲେ 'ଭୂଅ' ଦେଖିବେ; 'ବନ୍ଦ' ନ ମିଳିଲେ 'ବନ୍ଦ୍' ଦେଖିବେ; 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଳଙ୍କ' ନ ପାଇଲେ 'ଅଳଙ୍କାର' ଦେଖିବେ।

**ତୋଠ**— ଦେ. ବି. (ସ. ତୁର୍ଥ)—ତୁଠ—(ଦେଖ)
Toṭha — Tuṭha (See)

ତୋଠରେ ଟେକି ଗ୍ରାସ କରି ତୋଳ ହୁଅ । ଗ୍ରନ୍ଥ । ଦୃଷ୍ଟାନ୍ତଚିନ୍ତାମଣି ।

**ତୋଠାଉଁ**—ଦେ. ସର୍ବନାମ (ଅନାଦରାର୍ଥକ)—୧ । ତୋ ଠାରୁ; ତୋ ନିକଟରୁ—1. From thee.
Toṭhaun̄
ତୋଠାଉଁ, ତୋଠୁ }—ଅନ୍ୟରୂପ
ତୋଥେକେ
ତିଜସେ
୨ । ତୋ ଅପେକ୍ଷା—2. Than thee.
୩ । ତୋତେ ବଳି—3. Excelling thee.

**ତୋଠାଇଁ**—ଦେ. ସର୍ବନାମ (ଅନାଦରାର୍ଥକ)—୧ । ତୋଠାରେ—1. In thee.
Toṭhain̄
ତୋଠି, ତୋଠେଇଁ }—ଅନ୍ୟରୂପ
ତୋରଠାଇଁ
୨ । ତୋ ନିକଟରେ—2. Near you or thee.

**ତୋଠାକୁ**—ଦେ. ସର୍ବନାମ (ଅନାଦରାର୍ଥକ)—ତୋ ନିକଟକୁ—To thee.
Toṭhāku
ତୋରକାଛେ
(ତୋଠିକି—ଅନ୍ୟରୂପ)

**ତୋଠେଇଁକି**—ଦେ. ସର୍ବନାମ—୧ । ତୋଠାକୁ—1. To thee.
Toṭheiñki
ତୋଛେ ୨ । ତୋ ଅପେକ୍ଷା—2. Than thee.

**ତୋଡ଼**—ଦେ. ବି (ସ. ତୁଡ଼୍ ଧାତୁ=ଆଘାତ କରିବା; ସଂ. ଉର୍ମ୍ମି=ବେଗ· ଭୁଲ. ସଂ. ତରଙ୍ଗ (ଯୋଗେଶ୍ଚନ୍ଦ୍ର)—
Torḍa
ତୋଡ଼
तोड़
୧ । ଜଳସ୍ରୋତର ବଳପୂର୍ଣ୍ଣ ବେଗ ବା ପ୍ରଚଣ୍ଡତା—1. The violence or force of a stream or current of water.
୨ । ସ୍ରୋତର କ୍ଷିପ୍ରଗତି—2. Swiftness of a current.

ଉପର ପାଣି ତୋଡ଼ ଉତ୍ତାର ସମ୍ଭାବ ହେଉ ନାହିଁ ।
ଫକୀରମୋହନ. ଛମାଣ ଅଠଗୁଣ୍ଠ ।

୩ । ବେଗ—3. Speed; rapidity.
୪ । ଉଗଡ଼; ଜୋର; ବଳ—4. Strength; violence; force.
୫ । ରାଗ; କ୍ରୋଧ—5. Anger; wrath.
୬ । ରାଗର ଝଙ୍କା ବା ଅଞ୍ଚ—6 A fit of anger or temper.
୭ । ଆକ୍ରମଣର ଉଗଡ଼—7. Strain or brunt of some attack.
୮ । ବିବାଦ—8. Dispute.
୯ । କଳହକଜିଆ—9. Wrangling; quarrel.
୧୦ । ପ୍ରଚଣ୍ଡତା—10. Violence; vehemence.

**ତୋଡ଼କା**—ଗ୍ରା. ବି—୧ । କୌଣସି ଖାଦ୍ୟ ବସ୍ତୁ ଚୋରିକରି ଖାଇବା—1. Eating a thing by stealth.
Torḍakā
୨ । ଗୋଗ୍ରାସ; ଢାକୁର; ବେଶି ପରିମାଣରେ ଗଳାଧଃକରଣ କରିବା—2. Gulping; swallowing.

ମାଗି ଅଣିକି ତାଆରି ତୋଡ଼କାଏ—ଉକ୍ତ ।

ଦେ. ବିଶ.ପୁ.—୧ । ଖାଦ୍ୟ ଚୋର; ଯେ ଚୋରି କରି ଖାଏ—(ତୋଡ଼କୀ—ସ୍ତ୍ରୀ) 1. One who eats a thing stealthly.
୨ । ଯେ ବେଶି ପରିମାଣରେ ଢାକୁରି କରି ଖାଏ—2. Habituated to gulping down food.

ହିଙ୍ଗାଣି ନାକା ଦାନ୍ତ ତୋଡ଼କା—ବ୍ୟଙ୍ଗ ବଚନ ।

**ତୋଡ଼କିବା**—ଦେ. କି—ଚୋରିକରି ଖାଇବା—
Torḍakibā — To eat a thing stealthly.

**ତୋଡ଼କୁଣୀ**—ଦେ. ବି. ସ୍ତ୍ରୀ—ତୋଡ଼କୀ; ଖାଇଚୋରଣୀ—
Torḍakuṇi — A woman who eats things stealthly.

**ତୋଡ଼ଙ୍ଗ**—ଗ୍ରା. ବୈଦେ. ବି. (ଇଂ. ଟ୍ରଙ୍କ୍)—ଟ୍ରଙ୍କ୍; ଧାତୁନିର୍ମିତ ଲମ୍ବ ପେଟରା—
Torḍaṅg
(ତୋଡ଼ଂ—ଅନ୍ୟରୂପ) A trunk made of steel or tin-plates.
ତୋଡ଼ଂ
तुड़ंग

**ତୋଡ଼ ଜୋଡ଼**—ଦେ. ବି. (ସ. ତୁଡ଼ ଧାତୁ ଓ ଯୁଜ ଧାତୁ)—
Torḍa jorḍa
ତୋଡ଼ଜୋଡ଼
तोड़जोड़
୧ । କୌଣସ ପଦାର୍ଥକୁ ଭାଙ୍ଗିବା ଓ ଯୋଡ଼ିବା—1. Breaking and repairing a thing.
୨ । କୌଣସି କାର୍ଯ୍ୟ ସମାଧାନ କରିବା ନିମନ୍ତେ ଯେ କୌଣସି ଉପାୟରେ ଉପକରଣ ବା ଧନର ସଂଗ୍ରହ; ବନ୍ଧାଛନ୍ଦା ବା ଭଙ୍ଗାଭଙ୍ଗା ଦ୍ୱାରା ସଫଳ କରିବା—2. Collecting the necessary materials by any means.

(ଯଥା—ମହାଜନ ଦେଣ। ମୁଁ ତୋଡ଼ଜୋଡ଼ କରି ଅଛି ସୁଝି ଦେଲି ।)

୩ । ସାଜସରଞ୍ଜାମ; ଉପକରଣ—3. Materials; fittings; outfit.
୪ । କାର୍ଯ୍ୟ ସାଧନର ଉପାୟ ଓ ଉପକରଣମାନ—4. Means and materials for a work.
୫ । ଚାପ; ଉଗଡ଼—5 Pressure; fit; brunt.

(ଯଥା—ତାଙ୍କ କୋଠା ଭଅରି କାମ ଭାରି ତୋଡ଼ଜୋଡ଼ରେ ଚାଲିଛି ।)

୬ । ଦାଉପେଚ; ନାନା ଉପାୟ—6. Means fair or foul.

**ତୋଡ଼ ତାଡ଼**—ଦେ. ବି—୧ । ବାଦବିବାଦ; ବାଦବିସମ୍ବାଦ—
Torḍa tārḍa — 1. Dispute.
୨ । ବାକ୍ କଳହ—2. Noisy quarrel; wordly quarrel.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଓ | ଋ,ଌ | ଈ | ଏ | ହ୍ରସ୍ୱ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଙ୍କ | ଇସ୍ତ | ଊଅ | ଘ |
| ୨ | ଈ | ଊ | ଋ | ଲୁ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଡ଼ | ଯ | ସ | ଢ଼ | ଇଅ | ଓ | |

**ତୋଡ଼ପ**—ଦେ. ବ—ଭୂମିରେ ବା ଶଗଡ଼ ଚକର ହାବ୍ରିରେ ଲଗାଯିବା
Tordapa ଗୋଲିଆ ବା ବଳୟ—A flat ring put round the nave of a cart-wheel.

**ତୋଡ଼ପା**—ଦେ. ବ—୧ । ଜଳୀୟ ଖାଦ୍ୟକୁ ହାପୁଉବା—
Tordapa 1. Gulping of any liquid food.
୨ । ଥରେ ହାପୁଉବାରେ ଯେଉଁ ପରିମିତ ଦ୍ରବ୍ୟ ପାଟିକୁ ଯାଏ—2. That much of a liquid food which can be taken in at one gulp.
କାଞ୍ଜି କଲ ତୋଡ଼ପାଏ, ମିଁ ନଲେଇ ତୋର କାଉଁରୁ ନେ
ଶୁକ୍ଳବଲ ବାଃ ପ.୯ । କଲାର ଅନୁହା ।
୩ । ଗଉଡୁଣୀମାନେ ହାଣ୍ଡିରୁ ଦହି ବାହାର କରି ବଳି କରିବା ବେଳେ ମାପି ଦେବାର ବ୍ୟବହୃତ ଧାତୁ ବା ସଢ଼େଇ ପାତ୍ର—3. A cup used by cowherd females in measuring out churned curd to purchasers.

**ତୋଡ଼ ମାଡ଼**—ଦେ. ବ—୧ । କୋଡ଼ମାଡ଼; ପ୍ରହାର; କୋରମାଡ଼;
Torda marda ଅତ୍ୟାଚାର; ଯୁଲୁମ—1. Oppression; sound beating.
୨ । ପ୍ରଚଣ୍ଡ ବେଗ—2. Violent force.

**ତୋଡ଼ର**—ଦେ. ବ—ଶୃଙ୍ଖଳବିଶିଷ୍ଟ ପାଦର ଅଳଙ୍କାରବିଶେଷ—
Tordara A kind of anklet consisting of chain.
तोड़ा

**ତୋଡ଼ର ମଲ୍ଲ**—ଦେ. ବ. (ନାମ)—ଟୋଡ଼ର ମଲ୍ଲ ( ଦେଖ )
Tordara malla Tordara malla ( See )

**ତୋଡ଼ା**—ବୈଦେ. ବ. ( ସ. ତୁଣ=ଶର ମୁଣା )—
Torda ୧ । ଥଳି; ଟଙ୍କା ଅଦର ମୁଣା; ଥଳୀ—
1. A purse or bag of money.
ପଲ୍ଲି ତ ରହିଲ ସୁନା ରୁପା ତୋଡ଼ା । ରାଧାନାଥ. ଦରବାର ।
[ ଦ୍ର— ସାଧାରଣତଃ ପାଞ୍ଚ ଶହ, ହଜାରେ, ଦୁଇ ହଜାର ଟଙ୍କା ସମ୍ଭାଳିବା ଭଳି ତୋଡ଼ା ତିଆର ହୁଏ । ]
୨ । ( ଆ. ତୁର୍ରହ=ଫୁଲର ଗେନ୍ଥା )—
তোড়া ଫୁଲର ସଙ୍କଟିତ ଗୁଚ୍ଛ ବା ତେଣ୍ଡା—2. A cluster or
तोड़ा bunch of flowers; nosegay.
୩ । ବନ୍ଧୁକରେ ନିଆଁ ଲଗାଇବା ପାଇଁ ବ୍ୟବହୃତ କନା ବା ଝୋଟ ଅଦର ବଉଡ଼ା ବା ବଳି; ସଳିତା—
3. A match or wick to ignite a matchlock gun.
ଦେ.ବ—୧ । (ସ. ତୁଟ୍ ଧାତୁ) ଭାଙ୍ଗିବା; ଖଣ୍ଡ ଖଣ୍ଡ କରିବା—
1. Breaking to pieces; demolition.
୨ । ଗାଲକୁ ଚିମୁଟିବା; ଗାଲକୁ ତୋଡ଼ିବା—
2. Pinching of the cheek.
୩ । ରୁପା ତାର ଓ ଘୁଙ୍ଗୁରୁରେ ନିର୍ମିତ ଗୋଡ଼ର ଏକ ପ୍ରକାର ଗହଣା—3. A kind of anklet made of silver
तोड़ा wires and fitted with tinkling bells.

**ତୋଡ଼ା ଅଜାଡ଼ିବା**—ଦେ. କ୍ରି.—(ବ୍ୟଙ୍ଗ)—ବହୁ ଧନ ଦେବା—
Torda ajardiba To loosen one's purse strings.
तोड़े उलटना

**ତୋଡ଼ା(ଡ଼େ)ଇବା**—ଦେ. କ୍ରି.—ତୋଡ଼ିବା କ୍ରିୟାର ଣିଜନ୍ତ ରୂପ—
Torda rde)iba The causative form of Tordiba.
তোড়ান ୨ । ଅନ୍ୟଦ୍ୱାରା ତୋଡ଼ିବା କର୍ମ କରାଇବା; ଭଙ୍ଗାଇବା—
तुड़ाना तुड़वाना; तोड़ाना 2. To cause to be broken or demolished.
୨ । ଅନ୍ୟଦ୍ୱାରା ଗାଲ ଚିମୁଟାଇବା—2. To cause one's cheeks to be pinched by another person.

**ତୋଡ଼ାଣି**—ଦେ. ବ. (ସ. ତୋୟ+ଅନ୍ନ; କିମ୍ବା ସ. ତୁଟ୍=ତୁଷା+
Tordani ଜଳାରଣୀ=ତୁଷିବାରଣୀ: ଯାହାଦ୍ୱାରା ତୃଷା ନିବୃତ୍ତ
তোড়ানি, অমানি ହୁଏ )—ତୋରାଣି; ପଖାଳ ଭାତରେ ମିଶିଥିବା
तुर्हि, माँड़ ପାଣି; ପଖାଳରୁ ଭାତ କାଢ଼ି ନେଲେ ଯେଉଁ ଜଳୀୟ ଅଂଶ ରହେ—Cold rice gruel; water left after taking out the rice from pakhala (watered boiled rice.)
[ଦ୍ର—ରନ୍ଧା ଭାତ ଗରମ ଥାଉଁ ଥାଉଁ ଉହିଁରେ ପାଣି ମିଶାଇ ଦେଲେ ଗରମ ପଖାଳ ହୁଏ । ଥଣ୍ଡା ରନ୍ଧା ହୋଇଥିବା ଭାତରେ ପାଣି ମିଶାଇଲେ ତାହା ସଜପଖାଳ ହୁଏ । ସଜପଖାଳ ଦିନକରୁ ବେଶୀ ରହିଲେ ତାହା ବାସିପଖାଳ ହୁଏ । ପଖାଳରୁ ଭାତତକ କାଢ଼ି ନେଲେ ଯେଉଁ ଅବଶିଷ୍ଟ ଜଳୀୟ ଅଂଶ ରହେ ତାକୁ ତୋଡ଼ାଣି କହନ୍ତି । ]

**ତୋଡ଼ାଣିଆ**—ଦେ. ବ.—ଏକପ୍ରକାର ଲତା ଭେଦ—
Tordania A medicinal creeper.
[ଦ୍ର—ଏହାର ମୂଳ ଗୋରୁଙ୍କ ପାଇଁ ଔଷଧରେ ବ୍ୟବହୃତ ହୁଏ ଓ ମନୁଷ୍ୟ ଦେହରେ ବାହାରି ଥିବା ବଥରେ ଏହି ମୂଳକୁ ବାଟି ଲେପ ଦେଲେ ଅଳ୍ପ ସମୟ ମଧ୍ୟରେ ବଥ ଫାଟି ଯାଏ ।]
ବିଣ.—୧ । ତୋଡ଼ାଣି ମାତ୍ର ଖାଇ ଜୀବନ ଧାରଣ କରୁଥିବା; ଅତ୍ୟନ୍ତ ଗରିବ—1. Very poor; subsisting on gruel water only.
୨ । ତୋଡ଼ାଣି ମିଶ୍ରିତ—
2. Mixed with gruel water.
୩ । ପରଘରେ ତୋଡ଼ାଣି ପିଇ ବଞ୍ଚିଥିବା; ପରାନ୍ନଭୋଜୀ—
3. Subsisting on another person's liberality.
ପ୍ରାଦେ. (ସାମ୍ବଲପୁର) ବିଣ.—ତୋଡ଼ାଣିରେ ଖାଇବା ପାଇଁ ଉପଯୁକ୍ତ—Fit for being taken with Tordani.

ସାଧାରଣ ଲୋକେ ଅପର ପୃଷ୍ଠାରେ ପ୍ରଥମ ୧ ଚିହ୍ନିତ ଅକ୍ଷର ଓ ମଧ୍ୟ ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନ କୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଙ୍କୋ' ନ ପାଇଲେ 'ଅଙ୍କ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

(ଯଥା—ଅମ୍ଭକୁ ସି ତୋଡ଼ାଣିଅ ହେଲାଣି ।)

**ତୋଡ଼ାଦାର**—ଦେ. ବି.—ଯେଉଁ ବାରୁଦରେ ନିଆଁ ଧରାଇବା ନିମନ୍ତେ ବତି ବା ପଲିତାର ଦରକାର ହୁଏ—
T‹rdādāra A matchlock gun.
তোড়াদার
तोड़ादार; तोडेदार

**ତୋଡ଼ାବନ୍ଦି**—ବୈଦେ. ବି. (ଅ· ତୁରବନ୍ଦ୍)—ଟଙ୍କାକୁ ତୋଡ଼ାରେ ଭର୍ତ୍ତି କରି ମୁଦିବା—Sealing a bag after filling it with money.
T‹rdābandi
তোড়াবন্দী
तोड़ाबन्द ବି.—ତୋଡ଼ାରେ ବନ୍ଦ କରାଯାଇଥିବା (ମୁଦ୍ରାଦି)—
(ତୋଡ଼ା ବନ୍ଦ—ଅନ୍ୟରୂପ) (money) Sealed in a bag.

**ତୋଡ଼ି**—ଦେ. ବି. (ସଂ. ତୋଟ୍ଟି; ତୋଟ୍ଟୀ; ଅନ୍ୟ ସଂ. ନାମ କଙ୍କ ତ୍ରୋଟି)
Tordi ୧ । ଏକପ୍ରକାର ଅଳ୍ପ କ୍ଷୁଦ୍ର କାଉଁଯୁକ୍ତ ମାଛ—
তোড়া, काङ्कलामाछ 1. A small fresh water fish resembling the garfish; the bill fish.
कौआमछलि
[ଦ୍ର—ଏମାନେ ଲମ୍ବରେ ଏକ ଫୁଟଏ ପର୍ଯ୍ୟନ୍ତ ବଢ଼ନ୍ତି । ଏମାନଙ୍କର ଥଣ୍ଟ ଗୋଲିଆ, ଦେହ ନାଳିଆ । ପଙ୍କରେ ରହନ୍ତି; ଏମାନେ ଶୁଖିଲା ପଙ୍କ ମଧ୍ୟରେ ଅନେକ କାଳ ପର୍ଯ୍ୟନ୍ତ ବଞ୍ଚି ରହିବାର ଦେଖାଯାଏ । ଯେଉଁମାନଙ୍କ ଦେହରେ ଧଳା ଗାର ଥାଏ ସେମାନଙ୍କୁ ଗଣ୍ଡିଆତୋଡ଼ି ବୋଲାଯାଏ ।]

୨ । ରାଗିଣୀବିଶେଷ—2. Name of a musical tune; a metre in Oriya poetry.

**ତୋଡ଼ିପେଟା**—ଦେ. ବିଣ. ପୁଂ—ପୁରୁଷ ଲୋକଙ୍କ ପ୍ରତି ପ୍ରଯୁଜ୍ୟ ଗାଳି—
Tordipeṭā A term of abuse applied to males.

**ତୋଡ଼ିବା**—ଦେ. କ୍ରି. (ସଂ. ତୁଡ୍ ଧାତୁ=ଭାଙ୍ଗିବା; ତୁଡ୍ ଧାତୁ ଭେଦନ)
Tordibā ୧ । ଭାଙ୍ଗିବା—1 To break.
তুড়া ୨ । ଗାଲକୁ ଚିମୁଟିବା; ଗାଲକୁ ଅଙ୍ଗୁଠିରେ ଚିପିବା—
तोड़ना 2. To pinch the cheek with the fingers.
(ତୋଡ଼ଦେବା—ଅନ୍ୟରୂପ)

**ତୋଡ଼ିମୁହାଁ**—ଦେ. ବିଣ. ପୁଂ (ଗାଳିରେ ବ୍ୟବହୃତ)—ଯେଉଁମାନଙ୍କ ମୁହଁ ଗୋଲିଆ; ଗୋଲାମୁହାଁ—(a term of abuse) Having pointed lips.
Tordimuhāṅ
(ତୋଡ଼ିମୁହାଁ—ସ୍ତ୍ରୀ)

**ତୋଡ଼ିଶିମ୍ବ**—ଦେ. ବି.—ତୋଡ଼ିମାଛ ପରି ସରୁ ଓ ଲମ୍ବା ଏକପ୍ରକାର ଶିମ୍ବ—A kind of lean bean.
Tordi śimba

**ତୋଢ଼ର**—ଦେ. ବି.—ଏକ ପ୍ରକାର ପାଦଭୂଷଣ; ତୋଡ଼ର—
Tordhara A kind of anklet.
ସେ ବାମ । ତୋଢ଼ର ନୂପୁର କହି । ଉତ୍ତ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।

**ତୋତଲା(ଲା)**—ଦେ. ବିଣ.—(ବଙ୍ଗଳାରୁ ଅନୁକୃତ; ସଂ. ତୁଟ୍ ଧାତୁ=ଭାଙ୍ଗିଯିବା)—ଖନା; ଯାହାର ପାଟି ଲାଗେ; ଯେ କଥା କହିଲା ବେଳେ ଅକ୍ଷରମାନଙ୍କୁ ଏକାଧିକ ଥର ଉଚ୍ଚାରଣ କରେ—Stammering.
Totalā(lā)
তোতোলা
तोतला

**ତୋତଲା(ଲା)(ଲେ)(ଲେ)ଇବା**—ଦେ. କ୍ରି.—(ସଂ. ତୁଟ୍ ଧାତୁ କିମ୍ବା କଥା କହିଲାବେଳେ ତୋ—ତୋ ହେବା ଧ୍ୱନ୍ୟନୁକରଣ)—ଖନେଇବା; ଅକ୍ଷରମାନ ଏକାଧିକ ଥର ଉଚ୍ଚାରଣ କରି କଥା କହିବା—To stammer
Totalā (lā) (le)(le)ibā
তোতলান
तोतलाना; तुतलाना

**ତୋତା**—ବୈଦେ. ବି. (ଫା)—ଶୁଆ; ଶୁକପକ୍ଷୀ—
Totā Parrot.

**ତୋତାପୁରି**—ଦେ.ବି (ନାମ)—ଶ୍ରୀରାମକୃଷ୍ଣ ପରମହଂସଙ୍କ ସନ୍ନ୍ୟାସୀ ଗୁରୁ—
Totāpuri The ascetic preceptor of Śrī Rāmakṛushṇa Paramahaṁsa.

**ତୋତି**—ବୈଦେ. ବି. (ଫା)—ତୁତି (ଦେଖ)
Totī Tutī (See)

**ତୋତେ**—ଦେ. ସର୍ବନାମ (ଅମାନ୍ୟାର୍ଥକ)—'ତୁ'ର ୨ୟା ବିଭକ୍ତି ଏକବଚନ—To thee.
Tote
তোকে, तोजको ତୋତେ ସେବକେ ସେହି ବର ପଚାରେ—ରାଧାନାଥ. ମେଘଦୂତ ।

**ତୋତ୍ର**—ସଂ. ବି. କ୍ଲୀ. (ତୁଦ୍ ଧାତୁ=ପୀଡ଼ା ଦେବା+କରଣ. ତ୍ର)—
Totra ୧ । ଗୋରୁ ଜଗା ପାଞ୍ଚଣ; ଛାଟେଣି—
(ତୋତ୍ର—ଅନ୍ୟରୂପ) 1. A wand or stick for driving cattle; a cowherd's wand.
୨ । ହାତୀ ଅଙ୍କୁଶା; ଅଙ୍କୁଶ—2. An iron hook for driving elephants; elephant-goad.

**ତୋତ୍ରବେତ୍ର**—ସଂ. ବି. (ବେତ୍ର ପରି ସରୁ ତୋତ୍ର) (ଶ୍ରୀକୃଷ୍ଣଙ୍କ ଧୃତ)—ଗୋରୁ ଜଗା ସରୁ ପାଞ୍ଚଣ—Name of a thin wand used by Śrīkṛushṇa while he was tending kine at Bṛundābana.
Totrabetra

**ତୋଦ**—ସଂ. ବି. (ତୁଦ୍ ଧାତୁ+ଭାବ. ଅ)—୧ । ପୀଡ଼ା—
Toda 1. Pain; pang; anguish.
୨ । ବ୍ୟଥା; ବଥାଇବା—2. Aching.

**ତୋଦନ**—ସଂ. ବି. (ତୁଦ୍ ଧାତୁ+ଭାବ. ଅନ)—୧ । ପୀଡ଼ା ଦେବା—
Todana 1. Giving pain.
୨ । ବେଦନା; ପୀଡ଼ା—
2. Ailing; pain; pang; anguish.
୩ । (+କରଣ. ଅନ)—ଅଙ୍କୁଶ—3. An iron goad or hook for driving an elephant.
୪ । ମୁଖ—4 Face.
୫ । ଦଣ୍ଡ—5. A stick.

**ତୋନାଲ ମୋନାଲ**—ବୈଦେ. ବିଣ. (ଫା)—୧ । ବିଶେଷ ଶୋଭାଯୁକ୍ତ—
Tonāl monāl 1. Refulgent.
୨ । ଝାକ୍‌ଝାକ୍‌ମାନ—2. Shining.
୩ । ଉଜ୍ଜ୍ୱଳବର୍ଣ୍ଣବିଶିଷ୍ଟ—
3. Having bright colour.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଅ | ତ୍ର୍ୟ | ଓ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଔ | ନ୍ତ |

**ତୋନିକ**—ଦେ. ଅ. (ଅନାଦରାର୍ଥକ)—ତୋ ପରି—
Toniki তোরমতন Like thee.
(ତୋପରି—ଅନ୍ୟରୂପ)

**ତୋପ**—ବୈଦେ. ବି. (ତୁର୍କୀ. ତୋପ୍)—୧ । କମାଣ—
Topa 1. Cannon; artillery.
୨ । କମାଣର ଶବ୍ଦ—2 Report of a cannon.

**ତୋପ ଆଆବାଜ୍**—ବୈଦେ. ବି. (ତୁର୍କୀ ତୋପ୍+ଫା. ଅୱାଜ୍)—
Topa a(ā)bāj ତୋପ ଫୁଟିବାର ଶବ୍ଦ; ଗୁଡୁମ୍ ଗୁଡୁମ୍ ଶବ୍ଦ—
তোপের আবাজ The booming of a cannon.
तोपकी अवाज (ତୋପଅଉଆଜ୍, ତୋପଅବାଜ୍, ତୋପଅୱାଜ୍,—ଅନ୍ୟରୂପ)

**ତୋପ ଆବାଜ୍ କରିବା**——ଦେ. କି—ତୋପର କାରୁଦରେ ନିଆଁ-
Topa ābāj karibā ଲଗାଇ ଶବ୍ଦ କରାଇବା—
তোপ আবাজ করা To fire a cannon.
तोपकी आवाज करना (ତୋପ ଦାଗିବା; ତୋପ ଫାଏର କରିବା; ତୋପଫୁଟା(ଟେ)ଇବା—ଅନ୍ୟରୂପ)

**ତୋପଖାନା**—ବୈଦେ.ବି. (ତୁର୍କୀ. ତୋପ୍+ଫା. ଖାନା)—
Topakhānā ଯେଉଁଠାରେ ତୋପ ରଖାଯାଏ—
তোপখানা, तोपखाना A place for cannon; a battery.

**ତୋପଚି**—ବୈଦେ. ବି. (ତୁର୍କୀ ତୋପ୍+ଫା. ଚୀ)—
Topachi ଯେଉଁ ସୈନିକ ତୋପ ଫାଏର କରେ—
তোপচি Artillery man; a gunner.
तोपची

**ତୋପଚିନି**—ବୈଦେ. ବି. (ଫା. ଚୋବ୍‌ଚିନି)—ତୋବ୍ ଚିନି (ଦେଖ)
Topachini Tob chini (See)
তোপচীনী [ଦ୍ର—ଭାଷ ପ୍ରକାଶରେ ଏହା ସମ୍ଭୃତ ଶବ୍ଦରୂପେ
तोपचीनी କଳ୍ପିତ । ଅନ୍ୟ ସଂ. ନାମ ଦ୍ୱୀପାନ୍ତରବଚା । ]

**ତୋପବାଜି**—ବୈଦେ. ବି. (ଫା)—ବୋମା; ତୋପ ପରି ଶବ୍ଦ କରିବା
Topabāji ଏକପ୍ରକାର ବାଣ—A kind of firework;
তোপবাজী bomb.
तोपबाजी [ଦ୍ର—ଏହା ବମ୍ବାଠାରୁ ଅପେକ୍ଷା ଅଧିକତର ଧ୍ୱନି କରେ । ]

**ତୋପିବା**—ପ୍ରାଦେ. (ସମ୍ବଲପୁର) କ୍ରିୟା (ହି. ତୋପ୍‌ନା=ଲୁଚାଇବା)—
Topibā ପୋତିବା—To bury.

**ତୋଫା**—ବୈଦେ.ଉଣ. (ଅ. ତୋହ୍‌ଫା)—୧ । ଅପୂର୍ବ; ଅସାଧାରଣ—
Tophā 1. Extraordinary; uncommon; rare;
তোফা singular.
तोफा ୨ । ଉତ୍କୃଷ୍ଟ—2. Excellent; admirable.
୩ । ଉଜ୍ଜ୍ୱଳ—3. Bright.
୪ । ସୁନ୍ଦର—4. Beautiful; charming.

**ତୋଫାନ**—ବୈଦେ. ବି. (ଅ. ତୁଫାନ୍)—୧ । ଝଞ୍ଜାବାୟୁ; ବାତ୍ୟା;
Tophāna ପ୍ରବଳ ଝଡ଼—1. Tempest; hurricane.
তুফান, तुफान ଉତ୍କଳଭାଷାରେ ଗର୍ଜନ ତୋଫାନେ । ଯଥାଜାଥ. ଉଚ୍ଚାର ।
୨ । ଝଡ଼ ସହିତ ବର୍ଷା—2. Wind and rain.

**ତୋଫାନ ଉଠା(ଠେ)ଇବା**—ଦେ. ବି—ପ୍ରବଳ ଝଡ଼ର ଉଦ୍ୟମ—
Tophāna uthā(the)ibā The coming of tempest;
তুফানউঠা, तुफानउठाना the brewing of tempest.

**ତୋଫାନିଆଁ**—ବୈଦେ. ଉଣ (ଫା. ତୁଫାନୀ)—୧ । ବାଚାଳ—
Tophāniān 1. Talkative
তুভানী ୨ । ବାଗାଡ଼ମ୍ବର ପ୍ରିୟ—
तुफानी 2. Full of bombast; bombastic (person).
(ତୋଫାନୀ—ଅନ୍ୟରୂପ) ୩ । ଜଗିଚ ମିଛୁଆ (ବ୍ୟକ୍ତି)—
তুফানী 3. Lying person.
तुफानी ୪ । ଜଗିଚ ମିଛକଥାରେ ପୂର୍ଣ୍ଣ (ବାକ୍ୟ)—
4. Totally false.
( ଯଥା—ସେ ତୋଫାନିଆ କଥା ଏଡ଼ାଏ କହୁଛି । )
୫ । ଫିସାଦିଆ—5. Artful; roguish.
୬ । ପ୍ରଚଣ୍ଡ—6. Fierce; violent.

**ତୋବ୍‌ଚିନି**—ବୈଦେ. ବି (ଫା. ଚୋବ୍‌ଚିନୀ) ଏକପ୍ରକାର ବିଦେଶୀ ଚେର
Tobchini ବା ଗଣ୍ଠିଆ ମୂଳ—China root; smilax china;
ସଂ. ଦ୍ୱୀପାନ୍ତରବଚ, ଶ୍ୱେତଚିନ, smilax Macrophylla
ଦ୍ୱୀପାନ୍ତବଚା ଓ ତୋପଚିନି, [ ଦ୍ର—ଏହା ଅଗ୍ନିଦୀପକ, ଧାତୁ
ତୋବଚିନ ପୁଷ୍ଟିକର, ରସାପୂନ ଓ ବଳବର୍ଦ୍ଧକ,
তোপচিনি, কালবচ, কুমারিকা ମଳମୂତ୍ରବିଶୋଧକ, ରକ୍ତଦୋଷ
तोपचिनि, चोब्‌चिनि ନାଶକ, ବାତ, ଆମବାତ, ଶୂଳ,
ତେ ଫରଙ୍ଗୀଚେକ୍କା ଅପସ୍ମାର ଓ ଫିରଙ୍ଗ ରୋଗରେ
ମ ଶ୍ୱେତଚିନ ଉପକାରୀ । ଏହା ସେବନ କରିବା
ଗୁ. ଶ୍ୱେତଚିନ ରୋଗୀର ଲବଣ ଖାଇବା ନିଷିଦ୍ଧ ।]
ଫା. ଏବନ୍, ଖସିଲ୍‌ପୁର୍ ଅଖସିନା
ଅ. ଏବନ୍

**ତୋବଡ଼ା**—ବୈଦେ. ବି ( ଅ. ତୋବର୍ )—୧ । ଗୁଡ଼, କୋଲଥ ଆଦି
Tobarda ଦାନାପୂର୍ଣ୍ଣ ଥଳି, ଯାହା ଘୋଡ଼ା ମୁହଁରେ ବାନ୍ଧି ମୁଣ୍ଡରୁ
তোবড়া ଲଟକାଇ ଦିଆଯାଏ—1. A horse mouth-bag;
तोबड़ा nose-bag.
୨ । ଡାକବାଲାର ଥଳି—2. A postman's bag.

**ତୋବା(ବ୍ବା)**—ବୈଦେ. ଅ (ଅ. ତୌବହ୍; ତଓବାହ୍ ମୁସଲମାନୀ ଭାଷା)
Tobā (bbā) (ମୁସଲମାନମାନଙ୍କ ଉଚ୍ଚାରିତ)—ହା ହରେ ! ହାୟ !
তোবা ଛି ଛି ! ରାମ୍ ରାମ୍ !—( an interjection of
तोबा ! regret or repentance ) God forbid !
Alas
[ ଦ୍ର—କୌଣସି ନିଷିଦ୍ଧ କଥା ଶୁଣିଲେ, ଦେଖିଲେ ବା ଛୁଇଁଲେ
ବା ନିଜର କୌଣସି ପାପ ବା ଅନ୍ୟାୟ ସ୍ମରଣ କଲେ ମୁସଲମାନ-

ସାଧାରଣ ଲୋକେ ଅପର ଦୃଷ୍ଟାରେ ୪ଥର ୧ ଚିହ୍ନିତ ଅକ୍ଷର ଓ ମହା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଗ୍ରନ୍ଥ କୋଷରେ ନ ମିଳିବ, ତେବେ ସେହି ଶବ୍ଦ ପରେ ଯଥାକ୍ରମେ ଉକ୍ତ ଚିହ୍ନିତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଖୋଜିବେ; 'କ୍ଷୁଧ' ନ ମିଳିଲେ 'କ୍ଷୁଧ' ଦେଖିବେ; 'ବଦ୍ଧ' ନ ପାଇଲେ 'ବନ୍ଧ' ଦେଖିବେ, 'ଅଙ୍ଗ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ୍' ଦେଖିବେ

ମାନେ ପ୍ରାୟଶ୍ଚିତ୍ତ ବା ଖେଦସୂଚକ ବା ଅନୁତାପସୂଚକ ଏହି ଅବ୍ୟୟ ଉଚ୍ଚାରଣ କରନ୍ତି । ]

**ତୋବା(ବ୍ବା)ତୋବା** (ବ୍ବା)—ବୈଦେ. ଅ (ଅ) (ମୁସଲମାନୀ ଭାଷା)— Tobā(bbā)tobā(bbā); **ତୋବା** (ଦେଖ) Tobā (See)
তোবা তোবা ଅନୁତାପ ପ୍ରକାଶକ ଶବ୍ଦ ବିଶେଷ ''ତୋବା ତୋବା''
तोबा तोबा ବହୁ ଦିନ ଗଁାକୁଥିବାକୁ ସନ୍ଧିଲେ । ପଞ୍ଚରାତ୍ରୋତ୍ସବ ଛନ୍ଦ ପାଠଗ୍ରନ୍ଥ ।

**ତୋବା ତୋବା କରିବା**—ଦେ. କି (ଅ. ତୌବହ୍) (ମୁସଲମାନୀ ଭାଷା) Tobā tobā karibā ଗଭୀର ଅନୁତାପ ବା ଶୋକ ପ୍ରକାଶ
তোবা তোবা করা କରିବା—To give vent to utter
तोबातिल्ला करना grief or repentance.

**ତୋମତି**—ଦେ. ଅ ( ଅନାଦରାର୍ଥକ )—ତୋଭଳି; ତୋପରି— Tomati তোরমতন Like thee.

**ତୋମର**—ସଂ. ବି—(ତୁ=ହିଂସା କରିବା+ମ. ଧାତୁ+କରଣ. ଅ; Tomara ବା; ତମ୍ ଧାତୁ=ଟାଳ କରିବା+ଅର)—
୧ । ହସ୍ତକ୍ଷେପ୍ୟ ଶାଣ୍ଠାଗ୍ର ଲୌହାସ୍ତ୍ରବିଶେଷ; ଚେଣ୍ଡା; ବର୍ଚ୍ଛୀ; ଭଲ୍ଲ— avellin; an iron crow; lance.
ତୁଷ୍ଟେ ଅନେକ ଦୋ ତୋମର ଘା'ଟ
ପଡ଼ିଲେ ଅଗ୍ନିରେ ଦେଖିଲେ ଦୃଶ—କୃଷ୍ଣଦାସ, ମହାଭାରତ. ଦ୍ରୋଣ ।
[ଦ୍ର— ଏହା ଅଗ୍ନି ଦେବଙ୍କ ଅସ୍ତ୍ର । ଏଥିରେ ବେଣ୍ଟ ଲାଗିଥାଏ ।]
୨ । ଖ୍ରୀଷ୍ଟ ୮ମ ଠାରୁ ଦ୍ୱାଦଶ ଶତାବ୍ଦୀ ପର୍ଯ୍ୟନ୍ତ ଦିଲ୍ଲୀରେ ରାଜତ୍ୱ କରୁଥିବା କ୍ଷତ୍ରିୟ ରାଜବଂଶ—2. The name of a royal family of Kshatriyas who reigned over Delhi between the eighth and the twelfth century A. D.

**ତୋମରଧର**—ସଂ ବି (ତୋମର+ଧୃ. ଧାତୁ=ଧାରଣ କରିବା+ Tomaradhara କର୍ତ୍ତୃ. ଅ)—୧ । ଅଗ୍ନି ଦେବତା—1. The God of fire.
୨ । ଅଗ୍ନି—2. Fire.
ସଂ. ବିଣ—ତୋମରଧାରୀ; ଯେ ତୋମର ଅସ୍ତ୍ର ଧାରଣ କରିଥାଏ—Holding a javellin.

**ତୋୟ**—ସଂ. ବି (ତାୟ୍. ଧାତୁ=ପାଳନ କରିବା କର୍ତ୍ତୃ. ଅ; ତୁ. ଧାତୁ= Toya ପୂର୍ଣ୍ଣ କରିବା+କର୍ତ୍ତୃ. ଯ)—୧ । ଜଳ—1. Water.
୨ । ପୂର୍ବାଷାଢ଼ା ନକ୍ଷତ୍ର—2. The 20th asterism in Hindu Astronomy.

**ତୋୟ କର୍ମ**—ସଂ.ବି. (ମ. ପ. ଲୋ; ତୋୟଦ୍ୱାରା କୃତ କର୍ମ) ତର୍ପଣ— Toyakarma Offering of water to the manes.

**ତୋୟକାମ**—ସଂ. ବିଣ (ଉପପଦତତ୍ପୁରୁଷ ସମାସ; ତୋୟ+କାମ)— Toyakāma ୧ । ଜଳାଭିଳାଷୀ—1. Wanting water.
୨ । ପିପାସୁ—2. Thirsty.
ବି—୧ । ଉଦ୍ଭିଦ—Plant.
୨ । ଜଳ ବେତସ; ବାଗର—2. A kind of a aquatic ratan.

**ତୋୟକୃଚ୍ଛ୍ର**—ସଂ. ବି (ମ. ପ. ଲୋ; ତୋୟ=ପାନରୂପ+କୃଚ୍ଛ୍ର= Toyakruchhra ବ୍ରତ)—ଜଳମାତ୍ର ପାନ କରି ଜୀବନଧାରଣ ରୂପ ପ୍ରାୟଶ୍ଚିତ୍ତ ବ୍ରତ—A penance consisting of living on a diet of water only.
[ଦ୍ର—ଏଥିରେ ଏକ ମାସ ପର୍ଯ୍ୟନ୍ତ କେବଳ ଜଳପାନ କରି ରହିବାକୁ ହୁଏ—ହି. ଶବ୍ଦସାଗର]

**ତୋୟଡିମ୍ବ**—ସଂ ବି—କରକା; ଭୁଆପଥର—Hail-stone. Toyaḍimba

**ତୋୟଦ**—ସଂ. ବି—( ତୋୟ+ଦା. ଧାତୁ+କର୍ତ୍ତୃ.ଅ )— Toyada ୧ । ମେଘ; ଜଳଦ—1. Cloud.
୨ । ମୁସ୍ତକ; ମୁଥା—2. Bulbuous root of grass.
୩ । ଘୃତ—3. Ghee.
ବିଣ—ଜଳଦାତା—Giving water.

**ତୋୟଦାଗମ**—ସଂ. ବି (ଷଷ୍ଠୀ ତତ୍; ତୋୟଦ+ଆଗମ)—ଜଳଦାଗମ; Toyadāgama ବର୍ଷାକାଳ—The rainy season.

**ତୋୟଧର**—ସଂ.ବି (ତୋୟ+ଧୃ. ଧାତୁ=ଧାରଣ କରିବା+କର୍ତ୍ତୃ.ଅ)— Toyadhara ୧ । ଜଳଧର; ମେଘ—1. Cloud.
(ତୋୟଧାର-ଅନ୍ୟରୂପ) ୨ । ମୁଥା—2. Bulbuous root of grass.

**ତୋୟଧି**—ସଂ. ବି (ତୋୟ+ଧା. ଧାତୁ+ଅଧିକରଣେ. ଇ)—ଜଳଧି; Toyadhi ସମୁଦ୍ର—The ocean.

**ତୋୟନିଧି**—ସଂ. ବି ( ବହୁବ୍ରୀହି; ତୋୟ+ନିଧି )—ସମୁଦ୍ର— Toyanidhi The ocean.

**ତୋୟନୀବୀ**—ସଂ. ବି (ବହୁବ୍ରୀହି; ତୋୟ+ନୀବୀ; ସାଗର ବା ଜଳ ଯାହାକୁ Toyanībi ନୀବୀ ପରି ଘେରିଛି)—ପୃଥିବୀ—The earth.

**ତୋୟ ପ୍ରସାଦନ**—ସଂ.ବି. (ବହୁବ୍ରୀହି; ତୋୟର ପ୍ରସାଦନ ବା ନିର୍ମଳତା Toya prasādana ହୁଏ ଯାହାଦ୍ୱାରା)—ନିର୍ମଳୀଫଳ— The clearing nut.

**ତୋୟବଲ୍ଲୀ**—ସଂ. ବି (ମ. ପ. ଲୋ; ତୋୟ+ବଲ୍ଲୀ)—କଲରାଲତା— Toyaballī The memordica charantia creeper.
(ତୋୟପର୍ଣ୍ଣୀ, ତୋୟବେଲ୍ଲ)—ଅନ୍ୟ ନାମ

**ତୋୟବିମ୍ବ**—ସଂ. ବି—ଜଳବିମ୍ବ; ଜଳବୁଦ୍‌ବୁଦ୍; ପାଣି ଫୋଟକା— Toyabimba A bubble of water.

**ତୋୟସୂଚକ**—ସଂ· ବି (ଷଷ୍ଠୀ ତତ୍; ତୋୟ=ଜଳ+ସୂଚକ=ଜ୍ଞାପକ; Toyasūchaka ଯାହାର ରବ ଶୁଣିଲେ ଶୀଘ୍ର ବୃଷ୍ଟି ହେବ ବୋଲି ବୋଧ ହୁଏ )—୧ । ଭେକ; ବେଙ୍ଗ—1. Frog.
୨ । ଜ୍ୟୋତିଷରେ ବର୍ଷାକାରକ ଯୋଗବିଶେଷ— 2. Name of an astrological conjunction of stars which foretells a shower.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଅ | ଇ | ଋ,ଋ | ଌ | ଏ | ଦୀର୍ଘ, ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଙ | ଞ | ଣ,ଙ | ନ | ମ୍ଭ | ଓ |
| ୨ | ଆ | ଐ | ଭୂ | ଲୃ | ଔ | ଅକାର ଯୁକ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଙ୍ | ଞ୍ | ଣ୍ | ନ୍ | ମ୍ଭ | ଔ |

ତୋୟାଧାର—ସଂ. ବ (୬ଷ୍ଠୀ ତତ୍; ତୋୟ + ଆଧାର) ଜଳାଶୟ; ପୋଖରୀ—
Toyādhāra — Tank; reservoir of water.

ତୋୟେଶ—ସଂ. ବ. (୬ଷ୍ଠୀ ତତ୍; ତୋୟ + ଈଶ)—ବରୁଣ ଦେବ—
Toyesa — Neputune, the sea Deity.

ତୋର—ଦେ. ସର୍ବନାମ (ସଂ. ଯୁଷ୍ମଦ୍ ଶବ୍ଦର ୧ମା ବିଭକ୍ତି ଏକବଚନ 'ତ୍ୱଂ' ଓ ୬ଷ୍ଠୀ ଏକବଚନ 'ତେ')—୧ (ଅନାଦରାର୍ଥ)
Tora — ତୋ—1. Thine.
তোর
तेरा
ତୋର କଥା ... ... —
... ।
(ତୋ ଅର, ତୋଉର, ତୋହର, ତୋହୋର—ଅନ୍ୟରୂପ

ତୋରଇ—ଦେ. ସର୍ବନାମ—ତୋ ଅରୁ; କେବଳ ତୋର—
Torai — Certainly yours; yours only.
তোরি, तैयाहिँ (ତୋଇ—ଅନ୍ୟରୂପ)

ତୋରଙ୍ଗ—ଗ୍ରା. ଦେଦେ. ବ (ଇଂ. ଟ୍ରଙ୍କ)—ଟିଣ ପେଟରା—
Toranga — Trunk.
তোড়ং, तुरंग

ତୋରଡ଼ା—ଦେ. ବ (ସଂ ତୁଣ୍ଡିକର)—ତରଡ଼ା (ଦେଖ)
Torarda — Tararda (See)
ଗ୍ରାଦେ. (ଗଞ୍ଜାମ) ବ—କୁଆମଣିଡା—A kind of kitchen fruit; Sephalandra Indica. (Kirtikar).

ତୋରଡ଼ିବା—ଦେ. କ୍ରି—୧ । ଶୁଖି ସେମରି ଯିବା—
Torardibā — 1. To wither.
তোবড়ান — ୨ । ତରଡ଼ା ପରି ସଙ୍କୁଚିତ ହୋଇଯିବା—
सिकुड़ना — 2. To shrivel up; to wrinkle.

ତୋରଣ—ସଂ. ବ (ତୁର୍ ଧାତୁ=ବେଗରେ ଗମନ କରିବା + ଅଧିକରଣ ଅନ)—୧ । ବହିର୍ଦ୍ୱାର; ସିଂହଦ୍ୱାର—1 Lion's gate; gate-way.
Torana
୨ । ଖିଲାଣଯୁକ୍ତ ସ୍ତମ୍ଭଦ୍ୱୟ; ଫାଟକ; ଗେଟ୍—2. Gate; an arch supported by two pillars; arched portal.
୩ । ଦୁଆରବନ୍ଧ; ଚଉକାଠ—
3 Portal; door frame.
୪ । ବାରଣ୍ଡା—4 Veranda; portico, porch.
୫ । ଶୃଙ୍ଗାଟ; ମଣ୍ଡପ—5. An open building supported by four pillars and open on all sides.
୬ । ଉତ୍ସବାଦି ଉପଲକ୍ଷରେ ଦୁଇ ସ୍ତମ୍ଭ ବା ଦୁଆରବନ୍ଧ, ଫାଟକ ଓ କନ୍ଥରେ ଟଙ୍ଗା ଯିବା ତୋରଣାକାରମାଳ—
6. Festoon.

ତୋରଣ ଦ୍ୱାର—ଦେ. ବ (ମ. ପ. ଲୋ. ତୋରଣସଜ୍ଜିତ ଦ୍ୱାର)—
Torana dwāra — କାରୁକାର୍ଯ୍ୟଯୁକ୍ତ ବହିର୍ଦ୍ୱାର—An ornamental gate-way; a triumphal arch.

ତୋରଣ ସ୍ଫଟିକା—ସଂ. ବ (ବହୁବ୍ରୀହି; ତୋରଣ + ସ୍ଫଟିକ + ଆ)—
Torana sphatika — ପାଣ୍ଡବମାନଙ୍କ ପାଇଁ ମୟଦାନବଦ୍ୱାରା ନିର୍ମିତ ସଭାମଣ୍ଡପର ଅନୁକରଣରେ ଈର୍ଷ୍ୟାରେ ରଚିତ ଦୁର୍ଯ୍ୟୋଧନଙ୍କ ସଭାମଣ୍ଡପ—The audience hall or royal court which Duriyodhana got built out of envy to rival the artistic pavillion built by Mayadanaba for the Pāndabas.

ତୋରଣ-ହସନ—ଦେ. (ପ୍ରାଚୀନ) ବ—ତାରନିର୍ମିତ ଅଣ୍ଟାସୂତା—
Torana-hasana — A wire-woven waist-chain.
ଦୁଇ ଜଘନେ ... ରଶନ, ତୋରଣ-ହସନ ଜାଣି—ପ୍ରାଚୀ ଭଗବାନ୍ଧ ।

ତୋରଣା—ଦେ. ବ (ସଂ. ତୋରଣ)—୧ । ତୋରଣ (ଦେଖ)
Toranā — 1. Torana (See)
তোরন — ୨ । ତୋଣା; ଦୁଇ ଖମ୍ବ ମଧ୍ୟରେ ଝୁଲୁଥିବା ଫୁଲ ବା
तोरन — ପତ୍ରର ମାଳା—Festoon.
ସରଣୀରେ ଉର୍ଦ୍ଧ୍ୱେ ଲମ୍ବିତ ହୋଇଛି ସପୁଷ୍ପ-ପର୍ଣ୍ଣ-ତୋରଣା—ରାଧାନାଥ, ପାର୍ବତୀ ।

ତୋରା—ଦେ. ବିଣ. (ସଂ. ତ୍ୱରା)—
Torā — ୧ । ତ୍ୱରିତ; ତ୍ୱରାଯୁକ୍ତ; ତ୍ୱରାନ୍ୱିତ; ଚଞ୍ଚଳ—
(ତୋରାଏ—ଅନ୍ୟରୂପ) 1. Swift, in haste
ଘାଲୁ ଦିଶୁଥାଇ ବାଲୁ ... 
ସମର ପୂର ଯାଉ ବସି ତେ ସେ ତୋରା । କୃଷ୍ଣସିଂହ, ମହାଭାରତ, ବନ ।
୨ । ଚୋପା; ଉଜ୍ଜ୍ୱଳ—2. Bright; dazzling; gay.
ସୁବର୍ଣ୍ଣ କେତକୀ ତୋରା, ବଣର ଯେମନ୍ତ ତୋରା,
ସେହି ରୂପେ କରଇ ମନକୁ ଚୋରା । ଗୋପୀକୃଷ୍ଣ, ରସକଲ୍ଲୋଳ ।
୩ । ସୁନ୍ଦର—3. Graceful; fine.
ଯାହାକୁ ... କରୁଛି ତୋରା । କୃଷ୍ଣସିଂହ, ମହାଭାରତ, ଆଦି ।
୪ । ଅସ୍ଥିର; ଉତ୍କଣ୍ଠାଯୁକ୍ତ; ବ୍ୟଗ୍ର—4. Restless; eager.
ସୁବର୍ଣ୍ଣ କେତକୀ ତୋରା, ବଣର ଯେମନ୍ତ ତୋରା
ସେହି ରୂପେ କରଇ ସେ ମନକୁ ତୋରା । ଗୋପୀକୃଷ୍ଣ, ରସକଲ୍ଲୋଳ ।
କ୍ରି. ବିଣ—ଚଞ୍ଚଳ; ଶୀଘ୍ର; ତୁରନ୍ତ—Swiftly; hastily.
ବ—ରାଗ; କ୍ରୋଧ; କ୍ରୋଧର ବହ୍ନି—
A bit of anger; paroxysm of rage.
(ଯଥା—ସେ ମୋ ଉପରେ ତୋରା କାଢ଼ୁଛି ।)
ଗ୍ରାଦେ. (ଗଞ୍ଜାମ)—ଏକ ପ୍ରକାର ଗଛ—Name of a tree.

ତୋରାଣି (ଇତ୍ୟାଦି)—ଗ୍ରା. ବ—ତୋରାଣି ଇତ୍ୟାଦି (ଦେଖ)
Torāni (etc) — Tordāni etc (See)

ତୋରାବର—ଦେ. ବିଣ ଓ କ୍ରି. ବିଣ. (ସଂ. ତ୍ୱରାବାନ୍)—
Torābara — ଶୀଘ୍ର; ତତ୍ପର; ଚଞ୍ଚଳ; ତ୍ୱରାନ୍ୱିତ—
तोरबान — Hasty; hastily; in hot haste
(ତୋରା ବୋରା—ଅନ୍ୟରୂପ)

ତୋରି—ଦେ. ସର୍ବନାମ—ତୋହୋର; ତୋହରହିଁ—
Tori — Thine only.
(ତୋଅରି, ତୋଉରି, ତୋହରି, ତୋହରି—ଅନ୍ୟରୂପ)
তোরই तेराहि

ସାଧାରଣ ଲୋକେ ଅପର ଦୃଷ୍ଟାନ୍ତେ ୨ଲେଇ ୧ ଚନ୍ଦ୍ର ଠ ଅକ୍ଷର ଓ ନ ହ୍ୟା ଏବ ୨ ଚନ୍ଦ୍ର ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । 'ଅତଏବ ୧ ବା ୨ ଚନ୍ଦ୍ରର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଅନ୍ୟର ବଦଳରେ ୨ ବା ୧ ଚନ୍ଦ୍ରର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ' ଦେଖିବେ, ଗ୍ରନ୍ଥ ନ ମିଳିଲେ 'ଗ୍ରନ୍ଥ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; ଅର୍ଘ୍ୟ ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

**ତୋରେ**—ଦେ. (ପ୍ରାଚୀନ ପଦ୍ୟ, ସର୍ବନାମ—୧ । ତୋଠାରେ—
Tore 1. In thee.
তোরে

ମୁଁ ତୋରେ ମିଳିଲି ...
...

୨ । ତୋତେ—2. To thee.

**ତୋରେଇ**—ପ୍ରାଦେ. (ବସ୍ତର) (ତୁଳ. ହି. ଏହି ଅର୍ଥରେ)—ଜହ୍ନି—
Torei Luffa Acutangula.

**ତୋଳ**—ସଂ. ବି. (ତୁଳ ଧାତୁ=ଓଜନ ନିରୂପଣ କରିବା+କରଣେ ଅ;
Tola ଯଦ୍ଵାରା ସୁନା, ରୁପା, ମଣି ଆଦିର ଓଜନ ନିରୂପିତ ହୁଏ)—
ତୋଲା; ଭରି; ୧୦ (ବା ମତାନ୍ତରରେ ୧୨) ମାଷା; ୮୦ ରତି ଓଜନ; ଏକ ଟଙ୍କା ଓଜନ—A unit of weight; a weight of one silver rupee; a tola, 208 grains troy.

**ତୋଳକ**—ସଂ. ବିଣ. ପୁଂ. ( ତୁଳ୍ ଧାତୁ+ଅକ )—
Tolaka ଯେ ଓଜନ କରେ; ପରିମାପକ—
(ତୋଳକା—ସ୍ତ୍ରୀ) Weighing.
ବି—୧ । ତୋଳ ( ଦେଖ )—1. Tola (See)
୨ । ତରାଜୁ; ତରାଜୁ—2. A balance; scale.
୩ । ବଟଖରା—3. Standard weights
୪ । (ପୁଂ) ମାପୁଣି—4 Weighman.

**ତୋଳନ**—ସଂ. ବି ( ତୁଳ୍ ଧାତୁ+ଭାବ. ଅନ )—
Tolana ୧ । ତଉଲିବା —1 Weighment.
୨ । ଉଠାଇବା —2. Lifting.
୩ । ପ୍ରସଙ୍ଗ କରଣ; ଉତ୍ଥାପନ—3. The putting up of a matter for consideration; adducing; the raising of a question

**ତୋଲ ପାର୍ଡ଼**—ଦେ. ବି. ( ସଂ. ତୁଲ୍, ଧାତୁ=ଉଠାଇବା; ପତ୍ ଧାତୁ
Tolapārda ଜାତ ପାଡ଼=ପକାଇବା; ବଙ୍ଗଳାରୁ ଅନୁକୃତ )—
তোলপাড় ୧ । ପକାଧରା; ଲେଉଟପାଲଟ; ଅନ୍ଦୋଳନ;
হাঙাহাঙ্গা ; ବିକ୍ଷୋଭକରା; ଅଲୋଡ଼ନ—1. Violent agitation; topsyturvfication; commotion.
୨ । ତୁମୁଳ ଝଗଡ଼ା; ଝଟାପଟା—2. Violent brawl.
୩ । ଦୌରାତ୍ମ୍ୟ; ଅତ୍ୟାଚାର—3. Oppression; disturbance
ବିଣ.—୧ । ଅଲୋଡ଼ିତ; ଘଣାଘଣା ହୋଇଥିବା—
1. Agitated.
୨ । ଲେଉଟପାଲଟ ହୋଇଥିବା—
2. Stirred up; disturbed.
୩ । ଉପଦ୍ରୁତ—3. Oppressed.

**ତୋଲପାର୍ଡ଼ କରିବା**—ଦେ. କ୍ରି.—୧ । ଭୟାନକ ଆନ୍ଦୋଳନ କରିବା;
Tolapārda karibā ଅଲୋଡ଼ନ କରିବା—
তোলপাড় করা 1. To agitate violently.
হলা ডালা করো ୨ । ଲେଉଟପାଲଟ କରିବା—
2. To stir up briskly.

**ତୋଲା**—ସଂ. ବି. (ତୁଲ୍ ଧାତୁ=ଓଜନ କରିବା+ଭାବ. ଅ)—
Tolā ଓଜନ—Weighing
ଦେ. ବି. (ସଂ. ତୁଲ୍ ଧାତୁ; ତୋଲ; ତୋଳକ)—୧ । ଏକଟଙ୍କା
তোলা ଓଜନ; ଏକ ଭରି; ଦଶମଷା ପରିମାଣ—
तोला 1 A tola; weight of one rupee.
୨ । ଚୟନ; ଗଛରୁ ଫଳ ବା ଫୁଲ ସଂଗ୍ରହ କରିବା; ତୋଳିବା—
2. Plucking (of flowers and fruits.
୩ । ନଡ଼ିଆ ଆମ୍ବ ଆଦି ଗଛରୁ ଫଳ ଆଦି ତୋଳାଯିବାର ଥର—3. One plucking occasion of fruits etc from a tree or trees.
(ଯଥା—ଏ ବର୍ଷ ପୀତାମ୍ବରଙ୍କ ବଗିଚାରେ ନଡ଼ିଆଗଛରୁ ପହିଲି ତୋଳାରେ ଶହେପଣ ଶୁଖା ନଡ଼ିଆ ମିଳିଲା ନାହିଁ ।)
୪ । ଘର ଆଦି ତୋଳିବା ବା ଛାଆଣି କରିବା; ନିର୍ମାଣ—
4. Building; raising of a structure; structures.
(ଯଥା—ଶିବେଇ ସାଆନ୍ତଙ୍କ ଦେଉଳ ତୋଳା ନ୍ୟାୟ ।)
তোলা ୫ । (ତୁଳ. ଇଂ. ଟୋଲ୍)—ହାଟ ତୋଳା; ହାଟରେ ପଣ୍ୟ-
हट्टमहसूल ବିକ୍ରେତାଙ୍କ ଠାରୁ ହାଟର ସ୍ଵାମୀଙ୍କପକ୍ଷରୁ ଆଦାୟ କରାଯିବା ଶୁଳ୍କ—5. A toll in money or kind levied from the stall-keepers and vendors in a market; market toll.
[ ଦ୍ର—ଏହା ପଣ୍ୟଦ୍ରବ୍ୟ ଆକାରରେ କିମ୍ବା ଅର୍ଥାକାରରେ ନିଆଯାଏ । ]
୬ । (ସଂ. ଉତ୍+ତୋଳନ) ଉଠାଇବା; ଉତ୍ତୋଳନ—
6. To lift; raise; take up.
୭ । ଗୋଟାଇ ପକାଇବା—7. Picking up.
ବିଣ.—୧ । ତୋଳକ; ଯେ ଓଜନ କରେ—1. Weighing
୨ । ଉତ୍ତୋଳିତ—2. Raised; lifted.
୩ । ନିର୍ମିତ—3. Constructed.

ଅଶ୍ରମ ତୋଳା ହୋଇଅଛି ସେ ଅନେକ ।
କୃଷ୍ଣସିଂ. ମହାଭାରତ. ବନ ।

ପ୍ରାଦେ. (ଗଡ଼ଜାତ) ବି.—ତୋଳା ଅବାଦ (ଦେଖ)
Tolā ābādi (See)

**ତୋଲ୍**—ପ୍ରାଦେ. ( ସମ୍ବଲପୁର ) ସର୍ବନାମ—(ଅନାଦରାର୍ଥକ) ତୋତେ;
Tolā ତୁମକୁ—To you; to thee.

**ତୋଳା ଅବାଦ**—ପ୍ରାଦେ. (ଗଡ଼ଜାତ) ବି.—ନିର୍ଯ୍ୟାବାଦ; ନୂତନ ଚାଷ
Tolā ābādi କରାଯିବା ପଡ଼ିଆ ଜମି—Newly reclaimed land.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ୮ | ୭ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଳ | ଶ,ଷ | କ୍ଷ | ଇଏ | ଇଅ | ଉ |
| ୨ | ଐ | ଏ | ଋ | ଌ | ଦୈ | ଅକାରାନ୍ତବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ତ୍ୟ | ଇଅ | ଓ | ନ |

**ତୋଲା(ଲେ)ଇବା**—ଦେ. କ୍ରି.—ତୋଳବା କ୍ରିୟାର ଣିଜନ୍ତରୂପ—
Tol̤ā(le)ibā The causative form of Tol̤ibā.
ତୋଲନ ୨। (ଗୃହଆଦି) ଅନ୍ୟଦ୍ୱାରା ନିର୍ମାଣ କରାଇବା—
ଖଡ଼ା କରନା 2. To cause (houses) to be erected.
ତୁଡ଼ବାନା ଘରକୁ ଅନେକସମୟ ଧରି ସେ ଭାଙ୍ଗେ,
ଉଠବାନା ପୁଣି ଭାଳିଲେ ମନେ ତୋଳିଲି ନୃପେ ଘର ଏହି। —ସ୍ୱଭଦ୍ରା ବାଇସମ୍ଭେଦ।
୨। ଅନ୍ୟଦ୍ୱାରା ଗଛରୁ ଫଳ ଫୁଲ ଆଦି ଛିଣ୍ଡାଇବା—
2. To cause to be plucked.
୩। ଭୂମିରେ ଶୁଖୁଥିବା ଲୁଗାଆଦିକୁ ଅନ୍ୟ ଲୋକଦ୍ୱାରା ଗୋଟାଇ ନେବା ବା ଉଠାଇ ନେବା—
3. To cause a cloth (which has been spread on the ground) to be taken up or picked up.
[ଦ୍ର—ଏ କ୍ରିୟାର ଅସମାପିକା ରୂପସଙ୍ଗେ ଆଣିବା, ଦେବା ନେବା, ପକାଇବା କ୍ରିୟାର ସମାପିକା ଯୁକ୍ତ ହୁଏ।]

**ତୋଲା କନ୍ୟା**—ଦେ. ବି. (ସଂ. ତୁଲ୍ ଧାତୁ=ଟେକି ଦେବା+କନ୍ୟା)—
Tol̤ā kanyā ଅଭାବଗ୍ରସ୍ତ ପିତା ବିବାହବ୍ୟୟ ବହନ କରିବାକୁ ଅକ୍ଷମ ହୋଇ ଯେଉଁ କନ୍ୟାକୁ ବିବାହ ପୂର୍ବେ ବର ହସ୍ତରେ ତୁଳସୀପତ୍ର ସହିତ ସମର୍ପଣ କରେ ଏବଂ ବର ନିଜ ଗୃହରେ ଯେଉଁ କନ୍ୟାର ପାଣିଗ୍ରହଣ କରେ—
A maiden who is given away by her poor parents to the bridegroom elect who has the marriage ceremony performed at his house instead of the maiden's father.
[ଦ୍ର—ହିନ୍ଦୁଶାସ୍ତ୍ର ମତରେ କନ୍ୟାପିତା ବରଙ୍କୁ ନିଜ ଗୃହକୁ ନିମନ୍ତ୍ରଣ କରି ଅଳଙ୍କାରଭୂଷିତା କନ୍ୟାକୁ ବେଦୀ ଉପରେ ବରଙ୍କୁ ସମର୍ପଣ କରନ୍ତି ଓ ବିବାହର ସମସ୍ତ ବ୍ୟୟ ନିଜେ ବହନ କରନ୍ତି, କିନ୍ତୁ ଯେଉଁ ଦରିଦ୍ର କନ୍ୟାକର୍ତ୍ତାଙ୍କର ଏ ବ୍ୟୟାଦି ବହନ କରିବାର ଶକ୍ତି ନ ଥାଏ ସେ ଗୋଟିଏ ତୁଳସୀପତ୍ର ସହିତ କନ୍ୟାକୁ ବର ଘରକୁ ନେଇ ସେଠାରେ ବିବାହ କର୍ମ ଓ ବିବାହ ଉତ୍ସବାଦି କରନ୍ତି; ବରଙ୍କ ହସ୍ତକୁ ଏହିରୂପେ ଉତ୍ତୋଳିତା କନ୍ୟାକୁ ତୋଲାକନ୍ୟା ବୋଲାଯାଏ।]

**ତୋଲା କରିବା**—ଦେ. କ୍ରି.—ହାଟତୋଲା କରିବା; ହାଟରେ ପଣ୍ୟ
Tol̤ā karibā ବିକ୍ରେତାମାନଙ୍କଠାରୁ ପଣ୍ୟଦ୍ରବ୍ୟର କିଛିଅଂଶ
ତୋଲାତୋଲା ବା ନଗଦ ଧନ ଶୁଳ୍କରୂପେ ଆଦାୟ କରିବା—
ତୋଲାନେବା } ଅନ୍ୟରୂପ To levy a toll from the
ତୋଲାତୋଳବା } stall keepers and vendors in a market in money or kind.

**ତୋଲି**—ପ୍ରାଦେ. (ଅଙ୍ଗ) ବି—ସରଳି (ଦେଖ)
Tol̤i Sarāl̤i (See)

**ତୋଳିଦେବା**—ଦେ. କ୍ରି—୧। ତୋଳବା (ଦେଖ)
Tol̤idebā 1. Tol̤ibā (See)
ତୁଲେଦେଓୟା ୨। ପ୍ରତିଜ୍ଞା ପୂର୍ବରୁ ଅବଦ୍ଧ ସ୍ୱରୂପ କୌଣସି ପଦାର୍ଥ
ସୌଂପଦେନା ଅନ୍ୟର ହାତକୁ ଟେକି ଦେବା—2. To hand over a thing to another as a promised gift.
ନାହିଁ ତୋଳି ଦେଲେ ଟଙ୍କା ଗଙ୍ଗା ଉଦକ। —ଉଦ୍ଧ. ବୈଦେହୀଶବିଳାସ।

**ତୋଳି ଧରିବା**—ଦେ. କ୍ରି—୧। ଆଦର ଓ ଯତ୍ନ କରିବା—
Tol̤i dharibā 1. To take proper care; to
ତୁଲେଧରା look after.
ସଂଭାଳନା ତୋଳି ଧରିବାକୁ ତାଙ୍କୁ ଅଛିଟି ଯାହାଁ ତାଙ୍କ ତ୍ରିଭୁବନ ଗଣ। —ଜଗନ୍ନାଥ ଉତ୍କଳମାଳୀ।
୨। ତୋଳିନେବା (ଦେଖ)—2. Tol̤inebā (See)
୩। ତଳେପଡ଼ିଥିବା ବସ୍ତୁ ବା ବ୍ୟକ୍ତିକୁ ଟେକି ଧରିବା—
3. To hold up a thing or person fallen on the ground by lifting it or him up.

**ତୋଳିନେବା**—ଦେ. କ୍ରି—ଭୂମିରୁ ଉଠାଇ ନେବା—
Tol̤inebā To pick up,
ତୁଲେନେଓୟା ତୋଳି ନେଇ ଗଛରୁ ଯାଉଥିବା ଫୁଲ ଫୁଲବଣ।
ଉଠାଲେନା —ରାଧାନାଥ ଉଷା।

**ତୋଳିବା**—ଦେ. କ୍ରି. (ସଂ. ତୁଲ୍ ଧାତୁ)—୧। (ଗଛରୁ ପୁଷ୍ପାଦି) ଚୟନ
Tol̤ibā କରିବା—1. To pluck (fruits and flowers).
[ତୋଲା(ଲେ)ଇବା—ଣିଜନ୍ତ] ନାହିଁ ଫଳ ଦେଇ ତୋଳି ଉଠନ୍ତି—
ତୋଳା —କବିସୂର୍ଯ୍ୟ, ସଙ୍ଗୀତ।
ତାଡ଼ନା ୨। ଗୃହ ଆଦି ନିର୍ମାଣ କରିବା—
2. To erect; build (a structure).
ଉଠାନା, ଖଡ଼ା କରନା ବୋଇଲେ ତୋଳି ବସା ଏଠାରେ ମୋ ପାଇଁ—
—କୃଷ୍ଣସିଂହ ମହାଭାରତ, ବନ।
୩। ତଳୁ ଗୋଟାଇବା—
3. To pick up from the ground.
ବଟୋରନା ୪। ସଂଗ୍ରହ କରିବା—4. To gather; to collect.
ଉଠାନା ୫। ଉତ୍ତୋଳନ କରିବା; ଉଠାଇବା, ତଳୁ ଉର୍ଦ୍ଧ୍ୱକୁ ଟେକିବା—5. To raise up; to lift up.
ଉତ୍ସବାବେ ବନମାଳୀ, ପର୍ବତ ବାମ କରେ ତୋଳି—
—ଜଗନ୍ନାଥ. ଭାଗବତ।
(ତୋଲାଯି(ହ)ବା—କର୍ମବାଚ୍ୟରୂପ) ୬। (ସ୍ୱରକୁ) ଉଚ୍ଚତର କରିବା—
6. To raise one's voice; to make one's voice louder.
ସଖୀ ଦେଖେ ମୂର୍ଚ୍ଛି ତୋଳୁଥିଲ ଯେବେ ସ୍ୱରରେ ଗୀତଲହରୀ—
—ରାଧାନାଥ. ପାର୍ବତୀ।
୭। (ଶଯ୍ୟାଦି) ଟେକିବା ବା ଗୋଟାଇବା; ଭୂମିରୁ ଉଠାଇବା—
7. To take up from the ground (e.g. a bed or mat).

୮ । (ମସ୍ତକାଦି) ଉପରକୁ ଟେକ ବା ହାତ ବା ମୁଣ୍ଡକୁ ସିଧା କରି ଉଠାଇବା—8. To raise up one's head or arm.

ଟଳିଣ ନାଁଇ ଭିତେ ଫେରି, ତୋଳିଲଣ ମୁଣ୍ଡ ଅନୁଲୋମଇ—
ଉପେନ୍ଦ୍ର, ଭଞ୍ଜ ।

[ ଦ୍ର—ଏହି କ୍ରିୟାର ଅସମାପିକାରୂପ ସଙ୍ଗେ ଥିବା, ଦେବା, ନେବା, ଧରିବା, ରଖିବା ପକା(ଳେ)ଇବାର ସମାପିକାରୂପ ଯୁକ୍ତ ହୁଏ । ]

**ତୋଲହେବା**—ଦେ. କ୍ରି—୧ । ଧଇଁ ବା ଅଣନିଶ୍ୱାସ ପବନ ଯୋଗେ
Tolihebā — ମନୁଷ୍ୟ ପେଲ ହେବା ବା ଉଠିବା ପଡ଼ିବା—
1. To gasp violently.

୨ । ( ତୋଳିବା କ୍ରିୟାର କର୍ମବାଚ୍ୟରୂପ )—ଉତ୍ତୋଳିତ ହେବା; ଟେକା ହେବା—2. To be raised.

କହୁଣାକୁ ସଙ୍ଗୀତ ତୋ ଅରେ ସେ, ସବେ ତେଳ ହୁଏ ମଧ—
ବଳଦୂରେ, ଅର୍ଜ୍ଜିତ ।

**ତୋଷ**—ସଂ. ବି (ତୁଷ୍. ଧାତୁ=ତୁଷ୍ଟ ହେବା+ଭାବ. ଅ)—
Tosha — ୧ । ସନ୍ତୋଷ; ତୃପ୍ତି—1. Satisfaction; gratification.

୨ । ହର୍ଷ; ଆହ୍ଲାଦ; ଆନନ୍ଦ—2. Pleasure; joy; gladness.

୩ । ସୁଖ—3. Happiness.

୪ । (ତୋଷି ଧାତୁ+ଭାବ. ଅ) ସନ୍ତୁଷ୍ଟ କରାଇବା; ସନ୍ତୋଷ ଉତ୍ପାଦନ; ତୋଷଣ—4. Act of gratifying (any one)

୫ । ଶ୍ରୀକୃଷ୍ଣଙ୍କର ଏକ ସଖାଙ୍କ ନାମ (ହି. ଶବ୍ଦସାଗର)—
5, Name of a campanion of Srikrushna,

ଦେ. ବିଣ—ସନ୍ତୁଷ୍ଟ—Satisfied.

ଏହାଶୁଣି ରଘୁପତି ତୋଷ ହେଲେ । କୃଷ୍ଣସିଂହ ମହାଭାରତ. ବନ ।

**ତୋଷକ**—ସଂ. ବି. ପୁଂ. (ତୁଷ୍. ଧାତୁ ଣିଚ୍; ତୋଷି. ଧାତୁ+ଅକ)—
Toshaka — ସୁଖଦ; ସନ୍ତୋଷପ୍ରଦ—Pleasing; that which
(ତୋଷିକା-ସ୍ତ୍ରୀ) gives pleasure or comfort; gratifying.

ବୈଦେ..ବି (ତୁର୍କୀ-ତୋଷକ୍=ଶଯ୍ୟା) ତୁଳ. ସଂ. ତୋଷକ)—
ତোষক — ୧ । କପାତୁଳା ବା ନଡ଼ିଆକତା ପୁର ଥାଇଥିବା ପତଳା
तोशक — ଶେଯ; ତେଳେଇ—1. Quilt; thin cotton mattress; mattress stuffed with cotton or coir,

୨ । ଗଦି—2, Cushion,

**ତୋଷାଖାନା**—ବୈଦେ. ବି (ଫା. ତୋଶାଖାନା;)—୧ । ଯେଉଁ ଘରେ
Toshākhānā — ରଜା ଆଦିଙ୍କ ପୋଷାକପତ୍ର ଓ ଅଳଙ୍କାରାଦି ରହେ—
তোষাখানা तोषाखाना — 1, Ward-robe of a Raja; a room where a Raja's dress and ornaments are kept,

(ତୋଷାଖାନା—ଅନ୍ୟରୂପ) ୨ । ଧନାଗାର; ଭଣ୍ଡାର—
2, A store room,

[ ଦ୍ର—ପାର୍ଶୀରେ ତୋଷା ଶବ୍ଦର ଅର୍ଥ ବାଟରେ ଖାଇବା ପାଇଁ ଯାତ୍ରୀ ଆପଣା ସାଙ୍ଗରେ ଯେଉଁ ଖାଦ୍ୟ ଦ୍ରବ୍ୟ ( victuals ) ସାଙ୍ଗରେ ନେଇଥାଏ । ]

**ତୋଷଣ**—ସଂ. ବି. ( ତୁଷ୍ ଧାତୁ=ତୁଷ୍ଟ ହେବା+ଭାବ. ଅନ )—
Toshaṇa — ୧ । ସନ୍ତୋଷ; ତୃପ୍ତି—
1, Satisfaction, pleasure.

୨ । ସନ୍ତୋଷ ଉତ୍ପାଦନ—2 Act of satisfying or pleasing.

୩ । ( +କରଣ. ଅନ ) ସନ୍ତୋଷ ସାଧନ ବସ୍ତୁ—Object of pleasure.

ବିଣ—୧ । ( +କର୍ତ୍ତୃ. ଅନ ) —ସନ୍ତୋଷ ଉତ୍ପାଦକ; ଆନନ୍ଦଦାୟକ—2 Pleasing; producing satisfaction.

୨ । ସନ୍ତୋଷଯୁକ୍ତ—2. Contented.

**ତୋଷଦାନ୍**—ବୈଦେ. ବି. ( ଇଂ. କାର୍ଟ୍ରିଜ୍‌ରୁ ଉତ୍ପନ୍ନ ଉର୍ଦ୍ଦୁ କର୍ତ୍ତୂଜ+
Toshadān — ଫା. ପ୍ରତ୍ୟୟ ଦାନ୍=ଉର୍ଦ୍ଦୁ ତୋଷଦାନ; ଯୋଗେଶ୍ବର
তোষদান — ଫା. ତୋଷଦାନ୍—ପ୍ଲାଟେନ୍ସ )—ଗୁଳି ବାରୁଦ ଆଦି
तोषदान — ରଖିବାର ମୁଣି—
A cartridge and powder pouch.

**ତୋଷଦାନି**—ଦେ. ବିଣ—ତୋଷକ ( ଦେଖ )
Toshadāni — Toshaka ( See )

ବଷକଣ୍ଠ ତୋଷଦାନୀ ବେନି ମଧ୍ୟରେ—ଉପେ. ବୈଦେହୀଶବିଳାସ ।

ବୈଦେ. ବି. ( ଫା )—ତୋଷଦାନ୍ ( ଦେଖ )
Toshadān ( See )

**ତୋଷଭର**—ଦେ. ବିଣ—ସନ୍ତୁଷ୍ଟ; ଆନନ୍ଦ—
Toshabhara — Satisfied; pleased.

ଜନ୍ମେଜୟ ରାଜା ଯେ ହୋଇ ତୋଷଭର—କୃଷ୍ଣସିଂହ. ମହାଭାରତ, ଆଦି

**ତୋଷମନ**—ଦେ. ବିଣ. ( ତୋଷ+ମନସ୍; ତୁଷ୍ଟମନାଃ )—ସନ୍ତୁଷ୍ଟ—
Toshamana — Satisfied; pleased.

ତାହା ଜାଣିପାରି ହୋଇଲେ ତୋଷମନ—କୃଷ୍ଣସିଂହ, ମହାଭାରତ, ଆଦି

**ତୋଷଲ**—ଦେ ବି—୧ । ପ୍ରାଚୀନ ଉତ୍କଳର ନଗର ଓ ରାଜ୍ୟବିଶେଷ—
Toshala — 1. Name of a kingdom and town of ancient Orissa

[ ଦ୍ର—ମହାନଦୀର ଉତ୍ତର ତୀରରୁ ବିସ୍ତୃତ ଉତ୍କଳର ସମସ୍ତ ଭୂଭାଗକୁ ଉତ୍ତର ତୋଷଲ ଏବଂ ଦକ୍ଷିଣ ତୀରରୁ ବ୍ରହ୍ମପୁର ପର୍ଯ୍ୟନ୍ତ ଭୂଭାଗକୁ ଦକ୍ଷିଣ ତୋଷଲ ବୋଲି କୁହାଯାଉଥିଲା । ଯାଜପୁର ତୋଷଲର ରାଜଧାନୀ ଥିଲା । ତୋଷଲରେ କର ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଗ୍ରୀକ୍ ଐତିହାସିକ ଟୋଲେମିଙ୍କ ମାନଚିତ୍ରରେ ବୈତରଣୀ କୂଳର ତୋଷଲ ନାମକ ଏକ ସହର ନିର୍ଦ୍ଦେଶିତ ହୋଇଅଛି—ଦୈନିକ ଆଶା. ୨୫।୮।୨୯ ।

ଆଧୁନିକ ଖଲିକୋଟ, ଘୁମୁସର, ବାଣପୁର, ଖୋର୍ଦ୍ଧା, ନୟାଗଡ଼, ରଣପୁର, ପୁରୀ ସବ୍‌ଡିଭିଜନର କେତେକ ଅଂଶ, କଟକ ଜିଲ୍ଲାର

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଙ | ଞ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଏ | ଉଅ | ଃ |
| ୨ | ଧ | ଉ | ରୁ | ଲୁ | ଐ | ଅକାରାନ୍ତବର୍ଣ୍ଣ, ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ଔ | ନ୍ତ |

ବାଙ୍କି ଓ ଓଲନ୍ଦ ପ୍ରଗନା ନେଇ ଏହା ଗଠିତ—ନାସ୍ତିପୂର୍ଣ ବିଧାଠୀଙ୍କ ଉଦ୍ଧୃତ କରବଂଶୀୟ ରାଜାମାନଙ୍କ ତାମ୍ରଶାସନ । ]

୨ । ପ୍ରାଚୀନ ଉତ୍କଳର ଯୋଦ୍ଧୃଜାତିବିଶେଷ—2. Name of a warrior nation of ancient Utkal.

[ ଦ୍ର—ହରିବଂଶ, ଅଥର୍ବବେଦ ଓ ମନୁ ପ୍ରଭୃତିରେ ବରତର ନାମ୍ୟ ଶବ୍ଦରେ ତୋଷଲ ଗୋଷ୍ଠୀ ଯୋଦ୍ଧୃଜାତି ଥିବାର କଥିତ ଅଛି । ସମ୍ଭବତଃ ସେମାନେ ଉତ୍କଳୀୟ ଜାତି ହୋଇଥିବେ—ବୈଦିକଅଗ୍ନି. ୨୫।୮।୨୧ । ]

ସଂ. ବି—୧ । ମୂଷଳ; ଅସ୍ତ୍ରବିଶେଷ (କ୍ଲାନେକ୍ସ. ପ୍ରକୃତିବାଦ)—1. A kind of lethal weapon; mace.

୨ । କଂସର ଏକ ଅସୁର ମଲ୍ଲ ଯାହାକୁ ଧନୁର୍ଯଜ୍ଞରେ ଶ୍ରୀକୃଷ୍ଣ ବଧ କରିଥିଲେ—2. Name of a wrestler-demon retained by Kamsa and killed by Srikrushna.

**ତୋଷାମତ(ଦ)**—ବୈଦେ. ବି. ( ଫା. ଖୁଶ୍ ଆମଦ; ଭୁଲ. ସଂ. ତୋଷ
Toshāmata(da) + ଆମୋଦ )—୧ । ଖୁସାମତ; ତୋଷାମଦ;
তোষামদ ଅନ୍ୟର ମନ ଜଗେଇବା; ମନରଖା; ଚାଟୁକ୍ତି—
खुसामद 1. Flattery.
ତୋଷାମୋଡ } ଅନ୍ୟରୂପ ୨ । ଚାଟୁକ୍ତି; ପରର ମନଲଗା କଥା—
ତୋଷାମୋଦ } 2 Flattering words

**ତୋଷାମତି(ଦି)**—ବୈଦେ. ବି. (ଫା. ଖୁଶ୍ଆମୋଦି )—ଚାଟୁବୃତ୍ତି—
Toshāmati(di) Habitual flattering.
(ତୋଷାମୋଡି, ତୋଷାମୋଦି—ଅନ୍ୟରୂପ )

**ତୋଷାମତି(ଦି)ଆ**—ବୈଦେ. ବିଣ. ( ଫା. ଖୁଶ୍ଆମୋଦୀ)—
Toshāmati(di)ā ୧ । ଚାଟୁକାର—
তোষামুদে खुसामदी
ତୋଷାମୋଡିଆ } ଅନ୍ୟରୂପ 1. Flattering (person ).
ତୋଷାମୋଦିଆ } ୨ । ଚାଟୁପ୍ରିୟ—
2. Fond of being flattered.

୩ । ଚାଟୁପୂର୍ଣ୍ଣ ( ବାକ୍ୟ )—3. Flattering ( words )

ବି—ଚାଟୁକାରୀ ବ୍ୟକ୍ତି—A flatterer.

**ତୋଷାଳ(ଳି)**—ଦେ. ବି. (ନାମ)—ପ୍ରାଚୀନ ଉତ୍କଳର ରାଜଧାନୀବିଶେଷ-
Toshāli(li) Name of the capital of ancient Utkal ( Orissa ) from the 4th B. C. to the 15th century A. D.

[ ଦ୍ର—ଏହା ଖ୍ରୀଷ୍ଟପୂର୍ବ ୪୦୦ରୁ ୧୫୦୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବିଖ୍ୟାତ ଥିଲା । ଏହା ଧଉଳି ପାହାଡ଼ ଓ ଖଣ୍ଡଗିରି ପାହାଡ଼ ଏବଂ ଭୁବନେଶ୍ୱରର ନିକଟବର୍ତ୍ତୀ ଥିଲା । ଏହା ପ୍ରାଚୀନ ଉତ୍କଳର ସମୃଦ୍ଧିଶାଳୀ ରାଜଧାନୀ ଥିଲା । ଅଶୋକ କଳିଙ୍ଗ ଜୟ କରିବା ପରେ ତୋଷାଳିରେ ତାଙ୍କର ଗୋଟିଏ ପୁତ୍ରକୁ ଶାସନକର୍ତ୍ତା ନିଯୁକ୍ତ କରିଥିଲେ—(ପୁରୀ ଡିଷ୍ଟ୍ରିକ୍ଟ ଗେଜେଟିୟର୍ ଓ ହ୍ୱାସିକ୍ସ. ଉତ୍କଳ ଇତିହାସ) । ]

**ତୋଷି** (ନାମ ଧାତୁ)—( ତୁଷ୍ ଧାତୁ ଣିଚ୍ )—
Toshi (root) ସନ୍ତୋଷ ଉତ୍ପାଦନ କରିବା—
To please; to gratify.

**ତୋଷିତ**—ସଂ. ବିଣ. ପୁଂ. (ତୁଷ୍ ଧାତୁ ଣିଚ୍=ତୋଷି ଧାତୁ + କର୍ମ କ୍ତ)-
Toshita ସନ୍ତୋଷିତ; ତର୍ପିତ—Satisfied; pleased; gratified.

**ତୋଷିତା**—ଦେ. ବିଣ. (ପ୍ରାଚୀନ ପଦ୍ୟ)—ତୁଷ୍ଟ—
Toshitā Pleased.

ବହୁରୂପା ଜନକ ତାର ଧାତ୍ରରେ ସୀତା,
କନକଶିତ ଭୂତରେ ସେ ସମସ୍ତ ତୋଷିତା । ଉପେ. ବୈଦେହୀଶବିଳାସ ।

**ତୋଷିବା**—ଦେ. (ପଦ୍ୟ) କ୍ରି.—( ସଂ. ତୋଷି ଧାତୁ )—୧ । ସନ୍ତୁଷ୍ଟ
Toshibā କରିବା— . To gratify to please.
তুষা ତୋ ଶ୍ରବଣ ତୋଷିବ ରମ୍ୟ ଶିକ୍ଷିତ;
तुषना, तोषना ଶାଣୀଙ୍କାରଙ୍କ ମଧୁ ସଙ୍ଗୀତ । ରାଧାନାଥ ମେଘଦୂତ ।

୨ । (ସଂ. ତୁଷ୍ ଧାତୁ)—ତୁଷ୍ଟ ହେବା—
2. To be pleased or gratified.

ଯେ ଯାହା ସୁଖେ ଯାଇ ନେଲେ
ସର୍ବେ ତୋଷିଲେ ମଲ୍ଲସ୍ଥଳେ । ଜଗନ୍ନାଥ, ଭାଗବତ ।

**ତୋଷୀ**—ସଂ. ବିଣ. ପୁଂ ( ତୁଷ୍ ଧାତୁ=ସନ୍ତୁଷ୍ଟ ହେବା+କର୍ତ୍ତୃ. ଇନ୍;
Toshī ୧ମା. ୧ବ )—ତୁଷ୍ଟ; ସନ୍ତୁଷ୍ଟ; ଆନନ୍ଦିତ—
(ତୋଷିଣୀ—ସ୍ତ୍ରୀ) Pleased; delighted

ପୂର୍ବରେ କେହିଁ କଦମ ନେ ହୋଇ ତୋଷି ।
ଏ ମହାଭାରତକୁ କହୁଥିଲେ ବସି । କୃଷ୍ଣସିଂହ, ମହାଭାରତ, ଆଦି ।

୨ । (ତୁଷ୍ ଧାତୁ ଣିଜନ୍ତ ତୋଷି ଧାତୁ + କର୍ତ୍ତୃ.ଇନ୍; ୧ମା. ୧ବ)
ଯେ ଅନ୍ୟକୁ ତୁଷ୍ଟ କରଏ—
2. Satisfying; pleasing (person).

୩ । ସନ୍ତୋଷଜନକ; ସନ୍ତୋଷପ୍ରଦ—
3. Satisfactory ( matter ).

**ତୋହ(ହୋ)**—ଦେ. ସର୍ବନାମ ( ଆଦରାର୍ଥକ )—ତୋ—
Toha(ho) Thine.
তোর ତେହ ଆଗମ କାଳେ ଯାହା ଉପୁଜି
तोहरा, तेरा ତୋତେ ସେବବେ ସେହି ବକପଙ୍କ୍ତି । ରାଧାନାଥ, ମେଘଦୂତ ।

**ତୋହଠଉଁ**—ଦେ. ସର୍ବନାମ—ତୋଠଉଁ ( ଦେଖ )
Tohaṭhauṅ Toṭhauṅ ( See )
(ତୋହଠୁଁ, ତୋହଠଉଁ, ତୋହ ଠାରୁଁ—ଅନ୍ୟରୂପ)

**ତୋହଠିଁ**—ଦେ. ସର୍ବନାମ—ତୋଠାଇଁ ( ଦେଖ )
Tohaṭhiṅ Toṭhāiṅ ( See )
(ତୋହଠେଇଁ—ଅନ୍ୟରୂପ)

**ତୋହମତ୍(ତି)**—ବୈଦେ ବି. ( ଅ. ତୋହମତ୍ )—
Tohamat (ti), ୧ । ମିଥ୍ୟା ଅଭିଯୋଗ—
তোহমত 1. False charge against a person.
तोहमत ୨ । ମିଥ୍ୟା ଅପବାଦ; ମିଥ୍ୟା କଳଙ୍କ—
2. False imputation or scandal.

'ଆପଣ ଯେବେ ଅପର ପୃଷ୍ଠାରେ ଦତ୍ତ ୧ ଚନ୍ଦ୍ରିତ ଅକ୍ଷର ୨ ମନା ଏବ ୨ ଚନ୍ଦ୍ରିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତିନାହିଁ । ଅତଏବ ୧ ବା ୨ ଚନ୍ଦ୍ରିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚନ୍ଦ୍ରର ବଦଳରେ ୨ ବା ୧ ଚନ୍ଦ୍ରିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ; 'କୃଥ' ନ ମିଳିଲେ 'କଥ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ, 'ଅର୍ଚ୍ଚ୍ୟ' ନ ପାଇଲେ 'ଅର୍ଚ୍ଚ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

ବିଣ - ମିଥ୍ୟା ଅପବାଦଯୁକ୍ତ—False and defamatory; scandalous.

କ୍ରି. ବିଣ—୧ । ବୃଥା—1. To no purpose; in vain.

( ଯଥା— ପିଲ୍ଲଟା ପାଠପଢ଼ା ଛାଡ଼ି ଦିନ ରାତି ତୋହମତ୍ ବୁଲୁଛି । )

୨ । ସର୍ବଦା; ଦିବାନିଶି—
2. Day and night; incessantly.

**ତୋହମତିଆ**—ବୈଦେ. ବିଣ—ବୃଥା—
Tohamatiā Vain; fruitless; useless.
(ତୋହମତି— ଅନ୍ୟରୂପ) (ଯଥା—ମୁଁ ତୋହମତିଆ କଥାଗୁଡ଼ାକ ଶୁଣିବାକୁ ଇଚ୍ଛା କରୁ ନାହିଁ । )
ତୋହମତୀ तोहमती

୨ । ମିଥ୍ୟା ଅଭିଯୋଗକାରୀ—
2. Making false charges against a person.

୩ । ମିଥ୍ୟା ଅପବାଦ ପ୍ରଚାରକ (ବ୍ୟକ୍ତି)—
3. Propagating malicious gossip.

୪ । ମିଥ୍ୟା ଅପବାଦଯୁକ୍ତ ( ବିଷୟ, ବାକ୍ୟ )—
4. Scandalous.

**ତୋହର**—ଦେ. ସର୍ବନାମ—ତୋହ ( ଦେଖ )
Tohara Toha ( See )

**ତୋହରେ**—ଦେ. ସର୍ବନାମ—୧ । ତୋ ଦ୍ୱାରା—
Tohare 1. By thee.

୨ । ତୋଠାରେ—2. In thee.

**ତୋହୋ** (ଇତ୍ୟାଦି)—ତୋହ ( ଦେଖ )
Toho (etc) Toha etc. ( See )

**ତୌକ୍ଷିକ**— ସଂ. ବି. (ଜ୍ୟୋତିଷ)—ଧନୁରାଶି (ହି. ଶବ୍ଦସାଗର)—
Taukshika (astronomy) The zodiacal sign of Sagittarius; Sagitta.

**ତୌଜି** (ଇତ୍ୟାଦି)—ତଉଜି ଇତ୍ୟାଦି ( ଦେଖ )
Tauji (etc) Tauji etc. ( See )
[ ଦ୍ର—ମୋଗଲ ଦେଶଜ ଓ ବୈଦେଶିକମାନଙ୍କ ଆଦ୍ୟରେ 'ତୌ' ଅକ୍ଷର ଥିବାରୁ ପାଇଁ ଏ ଭାଷାକୋଷରେ 'ତଉ' ଆଦ୍ୟ ଯୁକ୍ତ ହୋଇଥିବା ଶବ୍ଦମାନ ଦେଖ ତୌର, ତୌଜି । ]

**ତୌତାତିତ**—ସ.ବି—୧ । ଜୈନମାନଙ୍କ ଶ୍ରେଣୀଭେଦ (ହି. ଶବ୍ଦସାଗର)—
Tautātita 1 A sect of the Jainas.

୨ । କୁମାରିଲ ଭଟ୍ଟଙ୍କର ଏକ ନାମ ( ହି. ଶବ୍ଦସାଗର )—
2. A name of the Hindu religious reformer Kumārila Bhaṭṭa.

**ତୌତିକ**—ସ. ବି—୧ । ମୁକ୍ତା—1. Pearl.
Tautika ୨ । ଶୁକ୍ତି; ଶାମୁକା—2. A mussel; cockle; oyster.

୩ । ମୁକ୍ତା ଉତ୍ପାଦକ ଶୁକ୍ତି—3. Pearl-oyster.

**ତୌରେତ୍**—ବୈଦେ. ବି. ( ହେବ୍ରୁ ଭାଷା )—
Tauret ଇହୁଦୀମାନଙ୍କର ପ୍ରଧାନ ଧର୍ମଗ୍ରନ୍ଥ—
तौरेत The scripture of the Jews.
[ ଦ୍ର—ଏହା ମହାତ୍ମା ମୂସା (Moses) ଙ୍କ ପରେ ପ୍ରକଟିତ । ଏଥିରେ ସୃଷ୍ଟି ଓ ଆଦାମଙ୍କ ଉତ୍ପତ୍ତି ବିଷୟ ବର୍ଣ୍ଣିତ ହୋଇଅଛି । ହି. ଶବ୍ଦସାଗର । ]

**ତୌର୍ଯ୍ୟ**—ସଂ. ବି. ( ତୂର୍ଯ୍ୟ + ସମ୍ବନ୍ଧାର୍ଥେ. ଅ )—
Taurjya ୧ । ତାଳ ଅନୁସାରେ ବାଜୁଥିବା ଖଞ୍ଜଣି ବା ମୃଦଙ୍ଗର ସ୍ୱର; ମୃଦଙ୍ଗାଦିର ଧ୍ୱନି—1. The sound of tabor set to measure; harmony.

୨ । ଢୋଲ ଓ ଖଞ୍ଜଣି ଆଦି ଆନଦ୍ଧ ବାଦ୍ୟ—
2. Drums and tabors

**ତୌର୍ଯ୍ୟତ୍ରିକ**— ସଂ. ବି. ( ତୌର୍ଯ୍ୟ + ତ୍ରି + କ )—
Taurjyatrika ୧ । ଗୀତ, ବାଦ୍ୟ ଓ ନୃତ୍ୟ ଏହି ତିନିଙ୍କର ଏକତ୍ର ମିଳନ; ଏକ ସଙ୍ଗେ ନାଚ, ଗାଇଣା ଓ ବାଜଣା—
1. Song, music and dancing; dancing accompanied by vocal and instrumental music; symphonic dance; dance to the accompaniment of music and song.

୨ । ଗାଇଣା ବାଜଣା—
2. Music ( vocal and instrumental ).
[ ଦ୍ରଃ—ମନୁ ଏହାକୁ କାମଜ ବ୍ୟସନରୂପେ ଗଣନା କରି ଅଛନ୍ତି ଓ ଏହା ତ୍ୟାଜ୍ୟ ବୋଲି କହି ଅଛନ୍ତି । ହି. ଶବ୍ଦସାଗର ]

**ତୌଲ**—ସଂ. ବି. ( ତୁଲା + ଅ )—
Taula ୧ । ତରାଜୁ; ନିକିତି ( ହି. ଶବ୍ଦସାଗର )—
1. Weighing instrument; balance.

୨ । (ଜ୍ୟୋତିଷୋକ୍ତ) ତୁଳା ରାଶି ( ହି. ଶବ୍ଦସାଗର )—
2. The Zodiacal sign Libra.

**ତୌଲ** (ଇତ୍ୟାଦି)—ଦେ. ବି. (ସଂ. ତୁଲ୍ ଧାତୁ)—
Taula (etc) ତଉଲ ଇତ୍ୟାଦି (ଦେଖ)
Taula etc (See)

**ତୌଲା** (ଇତ୍ୟାଦି)—ଦେ. ବି ଓ ବିଣ—ତଉଲା ଇତ୍ୟାଦି (ଦେଖ)
Taulā (etc) Taulā etc (See)

**ତୌଲା(ଲେ)ଇବା**—ଦେ. କ୍ରି—ତଉଲାଇବା (ଦେଖ)
Taulā(le)ibā Taulāibā (See)

**ତୌଲିଆ**—ବୈଦେ. ବି. (ଇଂ)—ତଉଲିଆ (ଦେଖ)
Tauliā Tauliā (See)

**ତୌଳିକ**—ସଂ. ବି. (ତୂଳି + ଇକ)—୧ । ଚିତ୍ରକର—
Taulika 1. Painter.

୨ । ପରିମାପକ—2. One who weights; weighman.

| ଂ | ଃ | ଓ | ଋ, ଌ, ଊ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ, ଷ | ଞ | ଇୟ | ଐ | ଖ |
|---|---|---|---|---|---|---|---|---|---|---|---|---|---|
| ଁ | ଅଁ | ଭ | ଉ | ଲୃ | ଐ | ଅକାରଯୁକ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଅ୍ୟ | ଯ | ସ | ଟ୍ୟ | ଇଅ | ଈ | ଣ |

ତୌଲିକିକ—ସଂ. ବି. (ତୂଳିକା+ଇକ)—ତୌଲିକ (ଦେଖ)
Taulikika Taulika (See)

ତୌଲିବା—ଦେ. କ୍ରି.—ତଉଲିବା (ଦେଖ)
Tauliba Tauliba (See)

ତୌଷାର—ସଂ. ବି. (ତୁଷାର+ବିକାର ଅର୍ଥରେ ଅ)—
Taushāra ୧ । କୁହୁଡ଼ି; ନୀହାର—1. Frost.
୨ । ବରଫ—2. Ice; snow.
୩ । କାକର—3 Dew.
୪ । ବରଫ ତରଳିଥିବା ପାଣି (ପ୍ର. ଦେଶୀୟର)—
4 Water collected by the thawing or melting of ice.
ସଂ. ବିଣ—ତୁଷାର ସମ୍ବନ୍ଧୀୟ—
Relating to dew or ice.

ତ୍ୱ—ସଂ. ପ୍ରତ୍ୟୟ—ଭାବାର୍ଥ ଓ ଗୁଣବାଚକ ପ୍ରତ୍ୟୟ—A suffix
Twa denoting the state or quality of something.
(ଯଥା—ନବତ୍ୱ; ଶୁକ୍ଳତ୍ୱ ।)
[ ତ୍ୱ—ଏହା ବିଶେଷ୍ୟ ବା ବିଶେଷଣ ପଦରେ ଯୁକ୍ତ ହେଲେ ଭାବ ବା ଗୁଣବାଚକ ବିଶେଷ୍ୟ ପଦ ନିଷ୍ପନ୍ନ ହୁଏ । ]

ତ୍ୱକ୍—ସଂ ବି. ସ୍ତ୍ରୀ. (ତ୍ୱଚ୍ ଧାତୁ=ଆବରଣ କରିବା+କର୍ତ୍ତୃ. କ୍ୱିପ୍)—
Twak ୧ । ଖୋଲ; ଦେହର ଚର୍ମ—1. Skin; hide.
୨ । ଛେଲି; ଗଛର ବକଳ—2. Bark of a tree.
୩ । ସ୍ପର୍ଶେନ୍ଦ୍ରିୟ—3. The organ of touch.
[ ତ୍ୱ—ଏ ପାଞ୍ଚ ଜ୍ଞାନେନ୍ଦ୍ରିୟ ମଧ୍ୟରୁ ଏକତମ; ଏହା ପ୍ରାଣୀର ଅସ୍ଥିମାଂସାଦି ସମନ୍ୱିତ ଦେହ ଉପରେ ବସ୍ତୁତ; ଏହାଦ୍ୱାରା ତାପ, ଶୈତ୍ୟ, କୋମଳତା, ଦୃଢ଼ତା, ମସୃଣତା, ରୂଢ଼ତା ଅନୁଭୂତ ହୁଏ । ]
୪ । ଫଳର ଚୋପା—4. The rind of a fruit; peel.
୫ । ଡାଳଚିନି—5. Cinnamon.
୬ । ତେଜପତ୍ର—6. The cassia cinnamon; the cassia leaves.
୭ । ଛତାଉଡ଼ି (ହରେକୃଷ୍ଣ ଦ୍ରବ୍ୟଗୁଣ)—
7. Asparagus Racemosus.

ତ୍ୱକ୍କ୍ଷୀରା(ରୀ)—ସଂ. ବି. (ତ୍ୱକ୍+କ୍ଷୀର+ଆ; ଈ)—ବଂଶଲୋଚନା—
Twak-kshirā(rī) The manna of bamboo.

ତ୍ୱକ୍ଛଦ—ସଂ. ବି. (ତ୍ୱକ୍+ଛଦ୍ ଧାତୁ+କର୍ତ୍ତୃ. ଅ)—ଶଶକନ୍ଦ (ଦେଖ)
Twak-chhada Śaśakanda (See)

ତ୍ୱକ୍ଛେଦ—ସଂ. ବି. (୬ଷ୍ଠୀ ତତ୍; ତ୍ୱକ୍+ଛେଦ)—
Twakchheda ଇହୁଦୀ ଓ ମୁସଲମାନମାନଙ୍କ ସୁନ୍ନତ୍—
(ତ୍ୱକ୍ଛେଦନ—ଅନ୍ୟରୂପ) Circumcision amongst the Mahomedans and the Jews.

ତ୍ୱକ୍ପତ୍ର—ସଂ. ବି—୧ । ତେଜପତ୍ର—
Twakpatra 1. The cassia leaves.
୨ । ଡାଳଚିନି—2. Cinnamon.

ତ୍ୱକ୍ପତ୍ରୀ—ସଂ. ବି. ସ୍ତ୍ରୀ. (ତ୍ୱକ୍+ପତ୍ର+ଈ)—
Twakpatrī ୧ । ହିଙ୍ଗୁପତ୍ରୀ, ଏକପ୍ରକାର ଗୁଳ୍ମ—
1. A medicinal plant; Mimosa Octandra.
୨ । କଦଳୀଗଛ—2. Plantain tree.

ତ୍ୱକ୍ପୁଷ୍ପ—ସଂ. ବି—୧ । ରୋମାଞ୍ଚ—1. Horripilation.
Twakpushpa ୨ । ଶୁଖିଲା କୁଣ୍ଡିଆ—2. Dry scabs.
(ତ୍ୱକ୍ପୁଷ୍ପିକା—ଅନ୍ୟରୂପ)

ତ୍ୱକ୍ସାର—ସଂ. ବିଣ. (ବହୁବ୍ରୀହି; ତ୍ୱକ୍+ସାର)—ଫମ୍ପା—
Twaksāra Empty.
ବି—୧ । ବାଉଁଶ ଗଛ—1 Bamboo.
୨ । ଡାଳଚିନି—2. Cinnamon.
୩ । କଇଁଚ ବା ଝୋଟ ଗଛ—3 Jute plant.

ତ୍ୱକ୍ସାରା—ସଂ. ବି. (ତ୍ୱକ୍ସାର+ଆ)—ବଂଶଲୋଚନା; ବାଉଁଶ ମଧ୍ୟରେ
Twaksārā ଥିବା ଶ୍ୱେତବର୍ଣ୍ଣ ଔଷଧଦ୍ରବ୍ୟବିଶେଷ—
Tabashir; a salicious deposit found inside the bamboo; the manna of bamboo.

ତ୍ୱକ୍ଷ୍ (ଧାତୁ)—ସ—କାଠ ଚଞ୍ଛିବା—
Twaksh (root) To pare wood.

ତ୍ୱଗ୍ଦୋଷ—ସଂ. ବି. (୬ଷ୍ଠୀ ତତ୍; ତ୍ୱକ୍+ଦୋଷ)—୧ । ଚର୍ମରୋଗ—
Twagdosha 1. Skin disease.
(ତ୍ୱଗ୍ଦୋଷ—ଅନ୍ୟରୂପ) ୨ । କୁଷ୍ଠରୋଗ—2 Leprosy.

ତ୍ୱଗ୍ଦୋଷୀ—ସଂ. ବିଣ. ପୁଂ. (ତ୍ୱଗ୍ଦୋଷ+ଇନ୍ ୧ମା. ୧ବ)—
Twagdoshī କୁଷ୍ଠରୋଗାକ୍ରାନ୍ତ; କୋଢ଼ିଆ—Leprous.
(ତ୍ୱଗ୍ଦୋଷିଣୀ—ସ୍ତ୍ରୀ) ସଂ. ବି. ପୁଂ—କୁଷ୍ଠରୋଗାକ୍ରାନ୍ତ ବ୍ୟକ୍ତି—
A leper.

ତ୍ୱକ୍ସୁଗନ୍ଧା—ସଂ. ବି. (ବହୁବ୍ରୀହି; ତ୍ୱକ୍+ସୁଗନ୍ଧ+ଆ)—
Twag-sugandhā ୧ । ଏଲବାଲ (ଦେଖ)
1. Elabāla (See)
୨ । ଗୁଜରାତି; ଛୋଟ ଅଳାଇଚ—
2. The small white variety of cardamom.

ତ୍ୱଗଙ୍କୁର—ସଂ. ବି. (୬ଷ୍ଠୀ ତତ୍; ତ୍ୱକ୍+ଅଙ୍କୁର)—ରୋମାଞ୍ଚ—
Twagaṅkura The bristling of the hairs of one's body; horripilation.

ତ୍ୱଗାକ୍ଷୀରୀ—ସଂ. ବି—ବଂଶଲୋଚନା (ପ୍ର. ଶବ୍ଦସାଗର)—
Twagākshīrī The manna of bamboo.

ତ୍ୱଗିନ୍ଦ୍ରିୟ—ସଂ. ବି. (ତ୍ୱକ୍; ତ୍ୱକ୍+ଇନ୍ଦ୍ରିୟ; କର୍ମଧାରୟ)—
Twagindriya ୧ । ସ୍ପର୍ଶେନ୍ଦ୍ରିୟ; ଯେଉଁ ଇନ୍ଦ୍ରିୟଦ୍ୱାରା ପ୍ରାଣୀ ଅନ୍ୟ ବସ୍ତୁର ସ୍ପର୍ଶ ଅନୁଭବ କରେ—
1. The sense of touch.
୨ । ଚର୍ମ; ଚମଡ଼ା—2. Skin.

ସାଧାରଣ ଲୋକେ ଅନେକ ସ୍ଥଳରେ ଦୃଢ଼ତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଢ଼' ନ ମିଳିଲେ 'ଗାଢ଼' ଖୋଜିବେ, 'କୂଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଧୁ'ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗି' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

**ତ୍ୱଗ୍‌ଗନ୍ଧ**—ସଂ. ବି. (ବହୁବ୍ରୀହି; ତ୍ୱକ୍+ଗନ୍ଧ; ଯାହାର ଛାଲ ସୁଗନ୍ଧ)—
Twaggandha ନାରଙ୍ଗ ଗଛ (ଦେଖ)—
Nāranga tree (See)

**ତ୍ୱଚ୍** (ଧାତୁ)—ସଂ.—ଆବରଣ କରିବା—
Twach (root) 1. To cover.

**ତ୍ୱଚ୍**—ସଂ. ବି. ସ୍ତ୍ରୀ—୧ । ତ୍ୱକ୍ (ଦେଖ)
Twach 1. Twak (See)
୨ । ସାପକାତି (ହି. ଶବ୍ଦସାଗର)—
2. The slough of a snake.

**ତ୍ୱଚ**—ଦେ. ବି. (ସଂ. ତ୍ୱଚ୍)—ତ୍ୱକ୍ (ଦେଖ)
Twacha Twak (See)

ଦୃଷ୍ଟିରେ ରୂପକୁ ସହିଲେ,
ତ୍ୱଚକୁ ସ୍ପର୍ଶରେ ସଂହରେ । ଜଗନ୍ନାଥ, ଭାଗବତ ।

**ତ୍ୱଚା**—ସଂ. ବି.—ତ୍ୱକ୍ (ଦେଖ)
Twachā Twak (See)

**ତ୍ୱଚିସାର**—ସଂ. ପୁ. (ଅଲୁକ୍ ସମାସ; ତ୍ୱଚି=ତ୍ୱକ୍‌ରେ+ସାର) ବାଉଁଶ—
Twachi sāra Bamboo.

**ତ୍ୱଚିସୁଗନ୍ଧା**—ସଂ. ବି. (ଅଲୁକ୍ ସମାସ; ତ୍ୱଚି+ସୁଗନ୍ଧା)—କ୍ଷୁଦ୍ରଗୁଜ; ଛୋଟ
Twachi sugandhā ଅଲେଇଚ।—The small variety of cardamon.

**ତ୍ୱତ୍**—ସଂ. ବିଣ. (ଯୁଷ୍ମଦ୍ ଶବ୍ଦ ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ ହୋଇ ସମାସରେ
Twat ଧାରଣ କରିବା ଆକାର)—ତୁମ୍ଭର—Yours; your.
[ଦ୍ର—ଯୁଷ୍ମଦ୍ ସମାସରେ ଏରୂପ ହୁଏ । ଯଥା—ତ୍ୱତ୍ ସମ; ତ୍ୱଦୀୟ; ତ୍ୱଦ୍‌ବିଧ ।]

**ତ୍ୱତ୍ସମ**—ସଂ. ବିଣ.—ତ୍ୱଦ୍‌ବିଧ (ଦେଖ)
Twatsama Twadbidha (See)
(ତ୍ୱତ୍ସମତା—ବି)
(ତ୍ୱତ୍ସଦୃଶ—ଅନ୍ୟରୂପ)

**ତ୍ୱଦୀୟ**—ସଂ. ବିଣ. (ଯୁଷ୍ମଦ୍+ସମ୍ବନ୍ଧାର୍ଥେ. ଈୟ)—ତୁମ୍ଭର; ଭବଦୀୟ—
Twadiya Thine; yours, your.
(ତ୍ୱଦୀୟା—ସ୍ତ୍ରୀ)

**ତ୍ୱଦ୍‌ବିଧ**—ସଂ. ବିଣ. (ତ୍ୱତ୍+ବିଧ=ପ୍ରକାର)—ତୁମ୍ଭ ପରି—
Twadbidha Like you; similar to you.
(ତ୍ୱଦ୍‌ବିଧା—ସ୍ତ୍ରୀ)

**ତ୍ୱର** (ଧାତୁ)—ସଂ.—୧ । ବେଗରେ ଗମନ କରିବା—
Twar (root) 1. To go briskly; to hasten.
୨ । ତ୍ୱରାନ୍ୱିତ ହେବା—
2. To be in haste; to make haste.

**ତ୍ୱରମାଣ**—ସଂ. ବିଣ. (ତ୍ୱର ଧାତୁ+କର୍ତ୍ତୃ. ଅନ)—ସତ୍ୱର; ତ୍ୱରାନ୍ୱିତ
Twaramāṇa Quick; swift; hastening.
(ତ୍ୱରମାଣା—ସ୍ତ୍ରୀ)

**ତ୍ୱରା**—ସଂ. ବି. ସ୍ତ୍ରୀ.—(ତ୍ୱର ଧାତୁ+ଭାବ. ଅ+ସ୍ତ୍ରୀ. ଆ)—୧ । ବେଗ
Twarā 1. Velocity; speed.
୨ । ଦ୍ରୁତତା—2. Swiftness; haste; hurry.
୩ । ଜରୁର—3. Urgency.
୪ । ଶୀଘ୍ରତା—4 Quickness.
ଦେ. (ପଦ୍ୟ) ବିଣ.—(ସଂ. ତ୍ୱରାବାନ୍)—୧ । ତ୍ୱରାନ୍ୱିତ—
1. In haste.

ଦମୟନ୍ତୀ ଶୁଣି ଅତି ତ୍ୱରା ହୋଇ । କୃଷ୍ଣସିଂହ, ମହାଭାରତ ବନ ।

୨ । ଉତ୍କଣ୍ଠିତ—2. Anxious.

ଏହା ମୋର ଅଗେ କହ ତ ଯମ ରାଜ୍ୟେ,
ଶୁଣିବାକୁ ମୋ ମନ ଅତି ତ୍ୱରା ହୁଏ । କୃଷ୍ଣସିଂହ, ମହାଭାରତ ଶାନ୍ତି ।

୩ । ଆଗ୍ରହାନ୍ୱିତ—3. Eager.

କାହାର ସେ ପୁତ୍ର ବୋଲନ୍ତି ଋଷିମଣି,
ଶୁଣିବାକୁ ତୋର ହୁଏ ମୋ କର୍ଣ୍ଣ ବେନି । କୃଷ୍ଣସିଂହ ମହାଭାରତ, ଅନୁଶାସନ ।

**ତ୍ୱରାନ୍ୱିତ**—ସଂ. ବିଣ. (ତୃତୀୟା ତତ୍; ତ୍ୱରା+ଅନ୍ୱିତ)—୧ । ସତ୍ୱର—
Twarānwita 1. Quick; hasty; hurried.
୨ । ଆଗ୍ରହାନ୍ୱିତ—2 Eager.

**ତ୍ୱରିତ**—ସଂ. ବି. (ତ୍ୱରା+ଯୁକ୍ତାର୍ଥେ. ଇତ)—ସତ୍ୱର—
Twarita Swift; quick; hasty.
କ୍ରି. ବିଣ.—ଶୀଘ୍ର; ତ୍ୱରାସହକାରେ—
Swiftly; hastily.

**ତ୍ୱରିତା**—ସଂ. ବି.—ଦେବୀବିଶେଷ—
Twaritā Name of a Goddess.
[ଦ୍ର—ଯୁଦ୍ଧରେ ଜୟଲାଭ କରିବାପାଇଁ ଏ ଦେବୀଙ୍କର ପୂଜା କରିବ । ତନ୍ତ୍ରରେ ଉପଦେଶ ଦିଆଯାଇଅଛି । ହି. ଶବ୍ଦସାଗର ।]

**ତ୍ୱରିତାନନ୍ଦ ମୌଜ**—ଦେ. ବି.—(ବ୍ୟଙ୍ଗ), ତ୍ୱରିତାନନ୍ଦ)—ଗଞ୍ଜେଇ ଖାଇ
Twaritānanda mauja ମୌଜ କରିବା—(ironical)
Smoking ganja in company and making merry

ପୋଖରୀ ଘାଟରେ ବସି ଅଧଘଡି ଯାଏ ତ୍ୱରିତାନନ୍ଦ ମୌଜ କରନ୍ତି ।
ଫକୀରମୋହନ ଗଳ୍ପସ୍ୱଳ୍ପ ।

**ତ୍ୱରିତେ**—ଦେ. କ୍ରି. ବିଣ (ସଂ. ତ୍ୱରିତଂ)—ତୁରନ୍ତ—
Twarite Swiftly; hastily; hurriedly.
तुरन्त, तुरत

**ତ୍ୱଲଗ**—ସଂ. ବି—ପାଣିରେ ରହିବା ସର୍ପବିଶେଷ (ହି. ଶବ୍ଦସାଗର)—
Twalaga The water snake.

**ତ୍ୱଷ୍ଟା**—ସଂ. ବି (ତ୍ୱକ୍ଷ୍ ଧାତୁ+କର୍ତ୍ତୃ. ତୃ=ତ୍ୱଷ୍ଟୃ; ୧ମା. ୧ବ)—
Twashṭā ୧ । ବିଶ୍ୱକର୍ମା—1. The heavenly architect according to the Hindus.
[ଦ୍ର—ବିଷ୍ଣୁପୁରାଣ ମତରେ ସୂର୍ଯ୍ୟଙ୍କର ୭ ଜଣ ସାରଥି ମଧ୍ୟରୁ ଏ ଜଣେ ।]
୨ । ବଢ଼େଇ—2. Carpenter.

| | | | | | | | | |
|---|---|---|---|---|---|---|---|---|
| ୧ ଇ | ଉ | ଋ | ଌ | ଏ | ଚନ୍ଦ୍ରବିନ୍ଦୁ | ଅନୁନାସିକ ସୂଚକ ଚିହ୍ନ | ନ ଣ ଞ | ଲ |
| ୨ ଈ | ଊ | ୠ | ୡ | ଐ | ଅନୁସ୍ୱାର | ଅନୁସ୍ୱାର ବା ଅନୁସ୍ୱାରଯୁକ୍ତ | ଙ୍ଖ | ଢ |

(ତ୍ୱଷ୍ଟ୍ରୀ—ସ୍ତ୍ରୀ) ୩ । ସୂର୍ଯ୍ୟ—3 The Sun God.

୪ । ମହାଦେବ—4. God Siva.

୫ । ବୃତ୍ରାସୁରର ପିତା—5 Father of Brutra.

୬ । ଦ୍ୱାଦଶ ଆଦିତ୍ୟ ମଧ୍ୟରୁ ଏକାଦଶ ( ଏ ଚୈତ୍ର ଅଧିଷ୍ଠାତା ଦେବ)—6. Name of the eleventh solar Deity.

୭ । ଚିତ୍ରା ନକ୍ଷତ୍ରର ଅଧିଷ୍ଠାତା ଦେବ—7. The Deity presiding over the 14th asterism.

୮ । ବୈଦିକ ଦେବତା ବିଶେଷ — 8. Name of a Vedic Deity.

[ ତ୍ୱ—ଏ ପ୍ରାଣୀଙ୍କ ଗର୍ଭସ୍ଥ ରୂପଙ୍କୁ ଗଠନ କରନ୍ତି ବୋଲି ବର୍ଣ୍ଣିତ ହୋଇଥାନ୍ତି । ]

୯ । ବର୍ଣ୍ଣସଙ୍କର ଜାତିବିଶେଷ; ସୂତ୍ରଧାର—

9. Name of a caste of mixed blood; carpenter.

ସ. ବିଣ—ତକ୍ଷଣକର୍ତ୍ତା; କାଠ ଚାଞ୍ଛିବା—Scraping wood.

**ତ୍ୱଷ୍ଟି**—ସ. ବି (ତ୍ୱକ୍ଷ୍ ଧାତୁ+ତି) — ମନୁସଂହିତାରେ କଥିତ ବର୍ଣ୍ଣସଙ୍କର
Twashṭi ଜାତିବିଶେଷ (ମ. ସଂହିତା) Name of a mixed caste according to Manu

**ତ୍ୱଷ୍ଟ୍ରା**—ସ. ବି (ଜ୍ୟୋତିଷ—ଚିତ୍ରା ନକ୍ଷତ୍ର —
Twashṭrā (astrology) The 14th asterism.

**ତ୍ୱାଦୃକ୍**—ସ. ବିଣ (ଯୁଷ୍ମଦ୍=ତ୍ୱଦ୍+ଦୃଶ୍ ଧାତୁ+କର୍ମ. କ୍ୱିପ୍)—ତ୍ୱଦ୍‌ବିଧ;
Twādṛuk ତୁମ୍ଭ ପରି Like you; resembling thee.

**ତ୍ୱାଦୃକ୍ଷ**—ସ. ବିଣ—ତ୍ୱାଦୃକ୍ ( ଦେଖ )
Twādṛuksha Twādṛuk ( See )
(ତ୍ୱାଦୃକ୍ଷୀ—ଅନ୍ୟରୂପ)

**ତ୍ୱାଦୃଶ**—ସ. ବିଣ (ଯୁଷ୍ମଦ୍+ଦୃଶ୍ ଧାତୁ+କର୍ମ. ଅ)—ତ୍ୱାଦୃକ୍ (ଦେଖ)
Twādṛusha Twādṛuk (See)
(ତ୍ୱାଦୃଶୀ—ସ୍ତ୍ରୀ)

**ତ୍ୱାଷ୍ଟ୍ର**—ସ. ବି (ତ୍ୱଷ୍ଟୃ+ଅ)—୧ । (ବିଶ୍ୱକର୍ମାଙ୍କ ନିର୍ମିତ) ବଜ୍ର—
Twāshṭra 1. Thunder bolt.

୨ । ( ଏ ତ୍ୱଷ୍ଟାଙ୍କ ପୁତ୍ର ଥିବାରୁ ) ବୃତ୍ରାସୁରର ଏକ ନାମ — 2. A name of Brutrāsura.

୩ । (ତ୍ୱଷ୍ଟାଙ୍କ ଅଧିଷ୍ଠିତ) ଚିତ୍ରା ନକ୍ଷତ୍ର—The 14th asterism according to the Hindu astrology.

**ତ୍ୱାଷ୍ଟ୍ରୀ**—ସ. ବି ( ତ୍ୱଷ୍ଟୃ+ଅ+ସ୍ତ୍ରୀ ଈ )—୧ । ବିଶ୍ୱକର୍ମାଙ୍କ କନ୍ୟା
Twāshṭri ସୂର୍ଯ୍ୟଙ୍କ ପତ୍ନୀ ଓ ଅଶ୍ୱିନୀକୁମାର ଦ୍ୱୟଙ୍କ ମାତା ସଂଜ୍ଞା ଦେବୀ—1. Name of one of the two wives of the Sun God.

୨ । ଅଶ୍ୱିନୀ ନକ୍ଷତ୍ର—2. The 1st asterism of the Hindu astrology.

**ତ୍ୱିଟ୍**—ସ. ବି. ସ୍ତ୍ରୀ (ତ୍ୱିଷ=ଦୀପ୍ତି ପାଇବା+କର୍ତ୍ତୃ କ୍ୱିପ୍, ୧ମା. ୧ବ)—
Twiṭ ୧ । ଶୋଭା 1 Beauty.

୨ । ଦୀପ୍ତି; ପ୍ରଭା —2 Brilliance.

୩ । ଅଭିଳାଷ— 3. Light.

୪ । ବ୍ୟବସାୟ 4 Trade.

୫ । ବାକ୍ୟ—5 Speech.

**ତ୍ୱିଷ** ଧାତୁ — ସ ଦୀପ୍ତି ପାଇବା
Twish (root) To shine.

**ତ୍ୱିଷ** -ସ. ବି ସ୍ତ୍ରୀ—ତ୍ୱିଟ୍ ( ଦେଖ :
Twish Twiṭ See )

**ତ୍ୱିଷା** · ସ. ବି. ସ୍ତ୍ରୀ (ତ୍ୱିଷ୍ ଧାତୁ+ଭାବ ଅ+ଆ)—୧ । ଦୀପ୍ତି—
Twishā 1. Brilliance; lustre.

୨ । ଶୋଭା —2. Beauty.

**ତ୍ୱିଷାଂପତି**—ସ ବି. (ଷଷ୍ଠୀ ତତ୍ପୁ ଓ ଅଲୁକ୍; ତ୍ୱିଷଂ=ଦୀପ୍ତିସମୂହ+
Twishāmpati ପତି=ସ୍ୱାମୀ)—ସୂର୍ଯ୍ୟ—The sun.
(ତ୍ୱିଷମ୍ପତି, ତ୍ୱିଷାମୀଶ—ଅନ୍ୟରୂପ)

**ତ୍ୱିଷି**—ସ. ବ (ତ୍ୱିଷ ଧାତୁ+କର୍ତ୍ତୃ. ଇ)—କିରଣ; ତେଜଃ—
Twishi Ray; beam of light.

**ତ୍ୟ**—ସ. ବିଶ (ପ୍ରତ୍ୟୟ—ଅବ୍ୟୟରେ ପଦ ବା ଜାତ ଅର୍ଥବୋଧକ
Tya ପ୍ରତ୍ୟୟବିଶେଷ—A suffix denoting situate in.
( ଯଥା—ଅତ୍ରତ୍ୟ; ତତ୍ରତ୍ୟ ; ଦାକ୍ଷିଣାତ୍ୟ । )

**ତ୍ୟକତ**—ଗ୍ରା. (ପଦ୍ୟ) ବିଣ—ତ୍ୟକ୍ତ ( ଦେଖ )
Tyakata Tyakta ( See )

ଜଳକୁ ରସ ଅବା ଅନ୍ତର ହୋଇବେ,
ତେଜ ଅବା ରୂପକୁ ତ୍ୟକତ କରିବେ । କୃଷ୍ଣସିଂହ, ମହାଭାରତ, ଅର ।

**ତ୍ୟକ୍ତ**—ସ. ବିଣ ( ତ୍ୟଜ୍ ଧାତୁ+କର୍ମ. ତ )—୧ । ବର୍ଜିତ; ଯାହାକୁ
Tyakta ପରିତ୍ୟାଗ କରି ଯାଇଅଛନ୍ତି; ବିସୃଷ୍ଟ; ପରିତ୍ୟକ୍ତ—
(ତ୍ୟକ୍ତା—ସ୍ତ୍ରୀ) 1. Left; abandoned; deserted; given
(ତ୍ୟାଗ—ବି) up; forsaken; relinquished.

୨ । ବିଷୟବିରକ୍ତ; ବୈରାଗୀ; ବିଷୟତ୍ୟାଗୀ 2 One who has renounced the world; retired.

୩ । ଦତ୍ତ—3. Given; bestow.

୪ । ଛିନ୍ନ; ଫୋପଡ଼ା ହୋଇଥିବା—
4 Strewn; thrown away.

**ତ୍ୟକ୍ତ ଜୀବିତ**—ସ. ବିଣ. ପୁଂ (ବହୁବ୍ରୀହି; ତ୍ୟକ୍ତ+ଜୀବିତ=ଜୀବନ)—
Tyakta jibita ମଲା; ମୃତ—Dead; deceased.
(ତ୍ୟକ୍ତଜୀବିତା—ସ୍ତ୍ରୀ)

**ତ୍ୟକ୍ତ ବିରକ୍ତ**—ଦେ. ବିଣ ( ସହଚର ଶବ୍ଦ; ସ. ତ୍ୟକ୍ତ+ବିରକ୍ତ )—
Tyakta birakta ଅତ୍ୟନ୍ତ ବିରକ୍ତ ଓ ବ୍ୟସ୍ତ; କିଂକର୍ତ୍ତବ୍ୟବିମୂଢ଼—Perturbed; bewildered; bothered; pestered.

ମାଆରେ ... ଅବର ... ଅକ୍ଷର ଓ ମାତ୍ରା ମଧ୍ୟରେ ସ୍ପଷ୍ଟତେ ରକ୍ଷା କରନ୍ତୁ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ... ଯଥାସ୍ଥାନେ ତନ୍ମଧ୍ୟସ୍ଥ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ... 'ବନ୍ଧୁ' ଦେଖିବେ; 'ଅର୍କ୍ଷ' ନ ପାଇଲେ 'ଅକ୍ଷ' ଦେଖିବେ, 'ଅଲବଢ଼' ନ ପାଇଲେ 'ଅଳବଢ଼' ଦେଖିବେ

**ତ୍ୟକ୍ତବ୍ୟ**—ସଂ. ବିଣ ( ତ୍ୟଜ୍ ଧାତୁ+କର୍ମ ତବ୍ୟ )—ଯାହାକୁ ତ୍ୟାଗ Tyaktabya କରିବା ଉଚିତ—Deserving to be abandoned (ତ୍ୟକ୍ତବ୍ୟା—ସ୍ତ୍ରୀ) or shunned.

**ତ୍ୟକ୍ତଲଜ୍ଜ** ସଂ. ବିଣ ପୁଂ (ବହୁବ୍ରୀହି; ତ୍ୟକ୍ତ+ଲଜ୍ଜା)—ନିର୍ଲଜ୍ଜ— Tyakta lajja Shameless (ତ୍ୟକ୍ତଲଜ୍ଜା—ସ୍ତ୍ରୀ)

**ତ୍ୟକ୍ତା**—ସଂ. ବିଣ. ପୁଂ (ତ୍ୟଜ୍ ଧାତୁ+କର୍ତ୍ତୃ. ତୃ; ୧ମା. ୧ବ)— Tyaktā ତ୍ୟାଗକର୍ତ୍ତା—Abandoning; renouncing. (ତ୍ୟକ୍ତ୍ରୀ ସ୍ତ୍ରୀ; ସଂ ବିଣ. ସ୍ତ୍ରୀ ତ୍ୟକ୍ତୃ+ଈ)—ତ୍ୟକ୍ତୃର ସ୍ତ୍ରୀଲିଙ୍ଗ— Feminine of Tyakta.

**ତ୍ୟଜ୍** (ଧାତୁ) ସଂ—ତ୍ୟାଗ କରିବା; ଛାଡ଼ିବା— Tyaj (root) To give up.

**ତ୍ୟଜନ**—ସଂ. ବି (ତ୍ୟଜ୍ ଧାତୁ+ଭାବ. ଅନ)—୧ । ତ୍ୟାଗ; ବର୍ଜନ— Tyajana 1 Relinquishment; giving up; (ତ୍ୟକ୍ତ; ତ୍ୟଜନୀୟ; ତ୍ୟାଜ୍ୟ—ବିଣ) abandonment.

୨ । ବୈରାଗ୍ୟ—2. Renunciation.

୩ । ଦାନ—3. Gift; act of giving; bestowing

**ତ୍ୟଜନୀୟ**—(ତ୍ୟଜ୍ ଧାତୁ+କର୍ମ. ଅନୀୟ)—ତ୍ୟକ୍ତବ୍ୟ ( ଦେଖ ) Tyajaniya Tyaktabya (See)

**ତ୍ୟଜିବା**—ଦେ. (ପଦ୍ୟ) କ୍ରି—(ବିରଳ ବ୍ୟବହାର) ତ୍ୟାଗ କରିବା(ଦେଖ) Tyajibā Tyāgakaribā (See) ত্যজা, ਤਯਾਗਣਾ

**ତ୍ୟଜ୍ୟପୁତ୍ର**—ଗ୍ରା. ବି (ସଂ. ତ୍ୟାଜ୍ୟପୁତ୍ରର ଅଶୁଦ୍ଧ ବ୍ୟବହାର)— Tyajyaputra ତ୍ୟାଜ୍ୟପୁତ୍ର (ଦେଖ) তেজ্যিপুত্র Tyājyaputra (See)

**ତ୍ୟଜ୍ୟମାନ**—ସଂ. ବିଣ. ପୁଂ ( ତ୍ୟଜ୍ ଧାତୁ+କର୍ମ. ଅନ )—ଯାହାକୁ Tyajyamāna ତ୍ୟାଗ କରାଯାଉଅଛି—Which is being (ତ୍ୟଜ୍ୟମାନା—ସ୍ତ୍ରୀ) forsaken or abandoned.

**ତ୍ୟଜ୍ୟା**—ଗ୍ରା. ବି (ସଂ. ତ୍ୟଜ୍ ଧାତୁ)—ତ୍ୟାଗ ( ଦେଖ ) Tyajyā Tyaga ( See )

**ତ୍ୟାଗ**—ସଂ. ବି. (ତ୍ୟଜ୍ ଧାତୁ+ଭାବ. ଅ)—୧ । ବର୍ଜନ; ପରିତ୍ୟାଗ; Tyāga ବିସର୍ଜନ; କୌଣସି ପଦାର୍ଥକୁ ଅପଣାଠାରୁ ଅଲଗା କରିବା କର୍ମ—1. Abandonment; forsaking.

୨ । ବୈରାଗ୍ୟ; ସଂସାରର ମାୟାମମତା ଭୁଲିବା— 2 Renunciation of worldly ties.

[ ଦ୍ର—ହିନ୍ଦୁଶାସ୍ତ୍ରମାନଙ୍କରେ ତ୍ୟାଗ ବା ବୈରାଗ୍ୟର ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ତ୍ୟାଗୀ ଲୋକ ନିଷ୍କାମ ଓ ପରୋପକାରବ୍ରତ ହୋଇ ବିଷୟବାସନା ଓ ସୁଖଭୋଗ ସଙ୍ଗେ କିଛି ସମ୍ବନ୍ଧ ରଖେ ନାହିଁ । ଏପରି ତ୍ୟାଗୀ ବ୍ୟକ୍ତି ମୁକ୍ତିର ଅଧିକାରୀ ଅଟେ । ଭଗବଦ୍ଗୀତାର ଅଷ୍ଟାଦଶ ଅଧ୍ୟାୟରେ ତ୍ୟାଗକୁ ସାତ୍ତ୍ୱିକ (୯ମ ଶ୍ଳୋକ) ରାଜସିକ (୮ମ ଶ୍ଳୋକ) ଓ ତାମସିକ (୭ମ ଶ୍ଳୋକ) ଏପରି ତିନି ଭାଗରେ ବିଭକ୍ତ କରାଯାଇଅଛି । ତ୍ୟାଗ ସନ୍ନ୍ୟାସର ଏକ ଅବସ୍ଥା; କାମ୍ୟ କର୍ମର ପରିତ୍ୟାଗ ସନ୍ନ୍ୟାସ ଅଟେ ଓ କର୍ମଫଳର ଆଶା ନ କରିବା ତ୍ୟାଗ ଅଟେ । ଗୀତାର ମତରେ ଯଜ୍ଞ, ଦାନ ଓ ତପଃ କର୍ମମାନ ତ୍ୟାଗ କରିବା ଉଚିତ ନୁହେଁ । ମନୁଷ୍ୟ କର୍ମକୁ ତ୍ୟାଗ କରି ପାରିବ ନାହିଁ କିନ୍ତୁ କର୍ମଫଳକୁ ତ୍ୟାଗ କରି ପାରିବ; ମନୁସଂହିତା ମତରେ ସଂସାରରେ ପିତା, ମାତା, ସ୍ତ୍ରୀ ଓ ସନ୍ତାନଙ୍କୁ ଛାଡ଼ି ଅନ୍ୟ ସବୁକୁ ତ୍ୟାଗ କରାଯାଇ ପାରେ— ହି ଶବ୍ଦସାଗର । ]

୩ । ଦାନ—3 Bestowal; gift.

୪ । ବଳିଦାନ—5 Sacrifice.

୫ । ନିକ୍ଷେପ - 5. Throwing away.

୬ । ଛାଡ଼ିବା—6 Giving up.

୭ । ଛାଡ଼ି ଚାଲିଯିବା—7. Desertion; quitting.

୮ । କୌଣସି ବସ୍ତୁରୁ ଆପଣା ସମ୍ପର୍କ କାଟିବା— 8. Cutting off one's connection with any thing.

୯ । କର୍ମଫଳର ତ୍ୟାଗ (ଭଗବଦ୍ଗୀତା)—9. Absence of hankering after the result of one's actions.

[ ଦ୍ର - ତ୍ୟାଗ ଶବ୍ଦ ଭିନ୍ନ ଭିନ୍ନ ଶବ୍ଦମାନଙ୍କ ପରେ ବ୍ୟବହୃତ ହୋଇ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରେ । ଯଥା—ଆତ୍ମତ୍ୟାଗ, ସ୍ୱାର୍ଥତ୍ୟାଗ, ସଂସାରତ୍ୟାଗ, ବିଷୟତ୍ୟାଗ, ସର୍ବସ୍ୱତ୍ୟାଗ, ଦେହତ୍ୟାଗ ଗୃହତ୍ୟାଗ, ସଙ୍ଗତ୍ୟାଗ, କ୍ରୋଧତ୍ୟାଗ, ସ୍ତ୍ରୀତ୍ୟାଗ, ଅଭ୍ୟାସତ୍ୟାଗ, ଅସତ୍ୟତ୍ୟାଗ, ଇତ୍ୟାଦି । ]

ଦେ. ବି - ସ୍ୱାର୍ଥତ୍ୟାଗ—Self-denial; self-sacrifice.

ଦେ. ବିଣ—ତ୍ୟକ୍ତ—Deserted.

ଧର୍ମ କରନ୍ତେ ଏ ଜନ ବର୍ଣ୍ଣ ସେ
ଯେଣୁ ତ୍ୟାଗବନ୍ତି ଧର୍ମମାନ ସେ । ବିଶ୍ୱନାଥ ବିଚିତ୍ରରାମାୟଣ ।

**ତ୍ୟାଗ କରିବା**—ଦେ. କ୍ରି. (ସଂ. ତ୍ୟଜ୍ ଧାତୁ )—ଛାଡ଼ିବା— Tyāga karibā To give up; to leave; to abandon; ত্যাগকরা ਤਯਾਗਣਾ forsake,

**ତ୍ୟାଗପତ୍ର**—ସଂ. ବି (ସଂ. ପତ୍ର, କିନ୍ତୁ ଦେଶଜରୂପେ ବ୍ୟବହୃତ)— Tyāgapatra ୧ । ତଲାକନାମା; ଛାଡ଼ପତ୍ର; ସ୍ୱାମୀ ସ୍ତ୍ରୀକୁ ତ୍ୟାଗ କଲେ ଯେଉଁ ଦଲିଲ ଲେଖି ଦିଏ— 1. Deed of divorce,

୨ । କୌଣସି ବିଷୟରୁ ସ୍ୱତ୍ୱ ପରିତ୍ୟାଗ କରିବା ନିମନ୍ତେ କବୁଲନାମା; ନାଦାବୀ ପତ୍ର—2, Deed of relinquishment.

୩ । ଇସ୍ତଫା—3. Resignation,

**ତ୍ୟାଗଶୀଳ**—ସଂ. ବିଣ ପୁଂ. (ବହୁବ୍ରୀହି; ତ୍ୟାଗ+ଶୀଳ)— Tyāgasila ୧ । ତ୍ୟାଗପ୍ରକୃତିକ; ଦାତା—1. Liberal, (ତ୍ୟାଗଶୀଳା—ସ୍ତ୍ରୀ) ୨ । ସ୍ୱାର୍ଥତ୍ୟାଗୀ—2. Self-denying; (ତ୍ୟାଗଶୀଳତା—ବି) self-sacrificing,

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଚ,ଗ୍ଭ | ଝ | ଏ | ଦନ୍ତ୍ୟ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଛ | ଘ,ଙ୍ଗ | କ୍ଷ | ଲଢ | ତ୍ରଥ | ଢ |
| ୨ | ‸ | ଊ | ଋ | ଳ୍ | ଦେ | ଅକାରାନ୍ତ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଅଁ | ଯ | ଯ | ଂ | ଲଥ | ଲ୍ଲ | ୲ |

ତ୍ୟାଗିଅ,ଯ୍ୟ) — ଦେ. ବଣ. (କ୍ରିୟାବିଶେଷଣ; ସ. ତ୍ୟାଜ୍ୟ
Tyāgia ya ତ୍ୟାଗ କରଯାଇ ଥିବା; ମୃତ ବ୍ୟକ୍ତିଦ୍ୱାରା ତ୍ୟକ୍ତ;
ত্যাগীয় ମୃତବ୍ୟକ୍ତି ଛାଡ଼ି ଯାଇଥିବା—Left; left by the deceased.
(ଯଥା—ମହନ୍ତଙ୍କ ତ୍ୟାଗିଅ ସମ୍ପତ୍ତିରେ ଚେଲା ମଣ୍ଡଳ ହେଲେ ।)

ତ୍ୟାଗିବା — ଦେ. କ୍ରି. (ସଂ. ତ୍ୟଜ୍ ଧାତୁ)—ତ୍ୟଜିବା; ତ୍ୟାଗ କରିବା;
Tyāgibā ଛାଡ଼ିବା; ଦେଇଦେବା—To give up.
ত্যজা ...
ত্যাগনা ...
(ତ୍ୟାଗିଯିବା—ଅନ୍ୟରୂପ)

ତ୍ୟାଗିଲା — ଦେ. ବଣ. — ତ୍ୟକ୍ତ ହୋଇଥିବା; ତ୍ୟାଗ କରାଯାଇ ଥିବା—
Tyāgilā Abandoned.
ତ୍ୟାଗିଲା ଦେଶରେ କେବେ ପୁଣି ନ ଯାଏ । ...

ତ୍ୟାଗୀ — ସ. ବଣ. — (ତ୍ୟାଗ+ଅସ୍ତ୍ୟର୍ଥେ ଇନ୍; ୧ମା. ୧ବ)—
Tyāgi ୧ । ଯେ ତ୍ୟାଗ କରେ—1. Abandoning; for-
(ତ୍ୟାଗିନୀ—ସ୍ତ୍ରୀ) saking; relinquishing; renouncing.
(ଯଥା—ସ୍ୱାର୍ଥତ୍ୟାଗୀ; ଗୃହତ୍ୟାଗୀ; ସଂସାରତ୍ୟାଗୀ ଇତ୍ୟାଦି ।)
୨ । ଦାତା—2 Liberal.
୩ । ସ୍ୱାର୍ଥତ୍ୟାଗୀ—3. Self-sacrificing.
ବି. —ବୈରାଗୀ; ଯୋଗୀ—An ascetic; a recluse.

ତ୍ୟାଜ — ଦେ. (ପ୍ରାଚୀନ ପଦ୍ୟ) ବଣ. — ବହିର୍ଗତ—
Tyāja Coming out.
ବଢ଼ାଇ ଦେଇ ଗୃହ ବୃକ୍ଷ ବସି ସମାନ ବାଳାକର୍ଣ୍ଣିକଣ୍ଡରେ ତ୍ୟାଜ ସେ ।
ଉଷା. ବୈଦେହୀଶବିଳାସ ।

ତ୍ୟାଜ୍ୟ — ସ. ବଣ. ପୁଂ —(ତ୍ୟଜ ଧାତୁ+କର୍ମ. ଯ)— ୧ । ବର୍ଜନୀୟ;
Tyājya ଯାହା ତ୍ୟାଗ କରିବା ଉପଯୁକ୍ତ—1. Fit to be
(ତ୍ୟାଜ୍ୟା—ସ୍ତ୍ରୀ) forsaken or given up.
୨ । ତ୍ୟକ୍ତ—2. Forsaken; given up.
୩ । ପିତୃ ଧନରୁ ବଞ୍ଚିତ ହେବାର ଉପଯୁକ୍ତ (ପୁତ୍ର)—
3. (a son) Deserving to be disinherited.

ତ୍ୟାଜ୍ୟପତ୍ର —— ଦେ. ବି. (ସ. ତ୍ୟାଗପତ୍ର)—(କଚେରୀର ଭାଷା)—
Tyājyapatra ୧ । ଆପଣା ଅନ୍ତେ ଆପଣାର ପୁତ୍ର ତ୍ୟକ୍ତ ସମ୍ପତ୍ତିରେ ଅଧିକାରୀ ହେବ ନାହିଁ ବୋଲି ପିତା ଯେଉଁ ଦଲିଲ ଲେଖି ଦିଏ—1. A deed disinheriting one's son.
୨ । ତ୍ୟାଗପତ୍ର; ଛାଡ଼ପତ୍ର—2. A deed of divorce.

ତ୍ୟାଜ୍ୟପୁତ୍ର — ସ. ବି. (କର୍ମଧା; ତ୍ୟାଜ୍ୟ+ପୁତ୍ର)—ଯେଉଁ ପୁତ୍ରକୁ
Tyājyaputra ପିତା ଆପଣା ସମ୍ପତ୍ତିରୁ ବଞ୍ଚିତ କରନ୍ତି—
A son disowned or disinherited by the father.

ତ୍ୟାଜ୍ୟପୁତ୍ର କରିବା — ଦେ. କ୍ରି. —ବଞ୍ଚି ଥାଇ ଥାଇ ଦୁଷ୍ଟ ପୁତ୍ରକୁ ଅପଣା
Tyājyaputra karibā
ত্যজ্যপুত্র করা ସମ୍ପତ୍ତିରୁ ବଞ୍ଚିତ କରିବା—To disinherit; to cut off (one's son) with a shilling.

ତ୍ର — ସ. (ପ୍ରତ୍ୟୟ)—ସ୍ଥାନ ଅଧିକରଣ ଅର୍ଥରେ ପ୍ରତ୍ୟୟ; ଠାରେ—
Tra A suffix denoting in; at (a place)
(ଯଥା—ଯତ୍ର, ତତ୍ର, ଅତ୍ର ଅନ୍ୟତ୍ର ସର୍ବତ୍ର ।)

ତ୍ରଙ୍ଗ — ସ. ବି. ନାମ) ରାଜା ହରିଶ୍ଚନ୍ଦ୍ରଙ୍କ ରାଜଧାନୀ (ହି. ଶବ୍ଦସାଗର)—
Tranga The name of the capital of Rājā Harischandra.

ତ୍ରପ୍ (ଧାତୁ) — ସ . — ଲଜ୍ଜିତ ହେବା—
Trap (root) To be ashamed.

ତ୍ରପ — ସ. ବି ପୁଂ. — (ତ୍ରପ୍ ଧାତୁ + ଭାବ. ଅ) — ଲଜ୍ଜା —
Trapa Shame.

ତ୍ରପମାଣ — ସ. ବଣ. ପୁଂ. (ତ୍ରପ୍ ଧାତୁ + କର୍ତ୍ତୃ. ଆନ)—ଯେ ଲଜ୍ଜା ପାଉ
Trapa māṇa
(ତ୍ରପମାଣା —ସ୍ତ୍ରୀ) ଅଛୁ—Feeling ashamed; bashful.

ତ୍ରପା — ସ. ବି. ସ୍ତ୍ରୀ.-(ତ୍ରପ୍ ଧାତୁ + ଭାବ. ଅ + ସ୍ତ୍ରୀ ଆ) - ୧ । ଲଜ୍ଜା-
Trapā ଶୀଳତା—1. Embarrassment; shyness; bashfulness; coyness.
୨ । ଲଜ୍ଜା; ଲାଜ—2. Shame.
୩ । ବିନୟ—3. Humility; modesty.
୪ । ଯଶଃ; କୀର୍ତ୍ତି—4. Reputation; fame; renown.
୫ । କୁଳ; ବଂଶ—5. Family; lineage.
୬ । କୁଳଟା—6. Adulteress,
୭ । ବେଶ୍ୟା—7. Prostitute; whore.

ତ୍ରପିତ — ସ. ବଣ. ପୁଂ (ତ୍ରପ୍ ଧାତୁ+କର୍ତ୍ତୃ. ତ)—ଲଜ୍ଜିତ—
Trapita Ashamed; abashed; embarrassed.
(ତ୍ରପିତା ସ୍ତ୍ରୀ)

ତ୍ରପିଷ୍ଠ — ସ. ବଣ. ପୁଂ. ( ତ୍ରପା=ଲଜ୍ଜା + ଅତ୍ୟର୍ଥେ. ଇଷ୍ଠ )—
Trapishṭha ୧ । ଅତ୍ୟନ୍ତ ଲଜ୍ଜାଶୀଳ—1. Very coy. shy; coy; modest.
(ତ୍ରପିଷ୍ଠା—ସ୍ତ୍ରୀ)
୨ । ଲାଜକୁଳା—2. Bashful.

ତ୍ରପୀ — ସ. ବଣ. ପୁଂ. (ତ୍ରପ୍ ଧାତୁ + ଅସ୍ତ୍ୟର୍ଥରେ. ଇନ୍; ୧ମା. ୧ବ)—
Trapi ଲଜ୍ଜାଶୀଳ—Coy; modest.
(ତ୍ରପିଣୀ—ସ୍ତ୍ରୀ)

ତ୍ରପୀୟାନ୍ — ସ. ବି. ପୁଂ. (ତ୍ରପା+ଅସ୍ତ୍ୟର୍ଥରେ ଈୟସୁ; ୧ମା. ୧ବ)—
Trapiyān ଲାଜକୁଳା; ଲଜ୍ଜାଶୀଳ—Shy; coy; modest.
(ତ୍ରପୀୟସୀ — ସ୍ତ୍ରୀ)

ତ୍ରପୁ — ସ. ବି. ( ତ୍ରପ୍ ଧାତୁ + ସଂଜ୍ଞାର୍ଥେ. କର୍ତ୍ତୃ. ଉ )—
Trapu ୧ । ସୀସା ଧାତୁ—1 Lead (metal).
୨ । ଦସ୍ତା—2. Zinc
୩ । ବଙ୍ଗ; ରଙ୍ଗା ବା ଟିନ—3. Tin (metal).

ସାଧାରଣ ଲୋକେ ଅପର ଦୃଷ୍ଟାରେ ୧ ଚିହ୍ନିତ ଅକ୍ଷର ଓ ମାନ ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପାର୍ଥକ୍ୟ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଅକ୍ଷର ସ୍ଥାନରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରା ଦେଇ ଖୋଜିବାକୁ ହେବ । ଯଥା— 'ଗାଇ' ନ ମିଳିଲେ 'ଗାଈ' ଖୋଜିବେ 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଳ' ନ ପାଇଲେ 'ଅଲ' ଦେଖିବେ ।

**ତ୍ରପୁଳ**—ସଂ. ବି. ( ତ୍ରପ୍ ଧାତୁ+ସଂଜ୍ଞାର୍ଥେ. ଉଲ )—ସୀସା; ଟିଣ—
Trapula Tin (metal).

**ତ୍ରପୁଷ**—ସଂ. ବି. ( ତ୍ରପ୍ ଧାତୁ+ସଂଜ୍ଞାର୍ଥେ. ଉଷ )—
Trapusha ୧ । ଟିଣ (ଧାତୁ)—1. Tin (metal).
୨ । କର୍କଟ ଫଳ; କାକୁଡ଼ି—2. Cucumber.
୩ । ଶିମିଳି ବୃକ୍ଷ—3. The silk cotton tree; Bombax; malaborika.

**ତ୍ରପୁଷା**—ସଂ. ବି. ସ୍ତ୍ରୀ. ( ତ୍ରପୁଷ+ସ୍ତ୍ରୀ. ଆ )—କାକୁଡ଼ି ଲଟା—
Trapushā Cucumber creeper.

**ତ୍ରପୁସୀ**—ସଂ. ବି.—୧ । କଣ୍ଟିଆଳି କାକୁଡ଼ି ( ଦେଖ )
Trapusī 1. Kanṭiāḷi kākurḍi ( See )
୨ । ଇନ୍ଦ୍ରଯବ ( ଦେଖ )—2. Indrajaba ( See )

**ତ୍ରପ୍ସା**—ସଂ. ବି. ( ତ୍ରପ୍ ଧାତୁ+ସା )—
Trapsā ଛାତି ବା କଣ୍ଠରେ ହୋଇଥିବା ଶ୍ଳେଷ୍ମା ବା କଫ ( ଶ୍ରୀ. ଶବ୍ଦସାଗର )—Phlegm coagulated in the breast or throat.

**ତ୍ରୟ**—ସଂ. ବି. କ୍ଲୀ ( ତ୍ରି+ସଂଜ୍ଞାର୍ଥେ. ଅୟ )—
Traya ୧ । ତିନି ସଂଖ୍ୟାର ସମାହାର—
(ତ୍ରୟୀ—ସ୍ତ୍ରୀ) 1. Triplate; an aggregate of three.
୨ । ତିନି ଜଣ ବ୍ୟକ୍ତି—2. Three persons; trio.
୩ । ତିନି ସଂଖ୍ୟା—3. Number three.
୪ । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ ଏହି ତିନି ଭୁବନ—
4. The earth, the heaven and the nether world.
୫ । ବ୍ରହ୍ମା, ବିଷ୍ଣୁ, ଶିବ ଏହି ତିନି ମୂର୍ତ୍ତି—
5. The Hindu Trinity; Traid.
୬ । ଋକ୍, ସାମ, ଯଜୁଃ ଏହି ତିନି ବେଦ—
6. The three Vedas.
୭ । ଗୃହିଣୀ—7. House-wife.
୮ । ଦୁର୍ଗା—8 Goddess Durgā.
ବିଣ—୧ । ତ୍ରିଗୁଣଯୁକ୍ତ; ତ୍ରିଗୁଣିତ—1. Triple.
୨ । ତ୍ରିସଂଖ୍ୟକ—2. Numbering three.
୩ । ତୃତୀୟ—3. Third.

**ତ୍ରୟଃ ପଞ୍ଚାଶତ୍**—ସଂ. ବି. ଓ ବିଣ—ପଚାଶରୁ ତିନି ଅଧିକ; ୫୩—
Trayah panchāśat 53; Fifty-three.

**ତ୍ରୟମ୍ବକ**—ଦେ. ବି. ( ସଂ. ତ୍ର୍ୟମ୍ବକ )—ତ୍ର୍ୟମ୍ବକ, ଶିବ; ମହାଦେବ—
Trayambaka God Śiba.

**ତ୍ରୟ ଲୋଚନ**—ଗ୍ରା. ବି. (ସଂ. ତ୍ରିଲୋଚନ—ତ୍ରିଲୋଚନ ( ଦେଖ )
Traya lochana Trilochana ( See )

ଯେଉଁ ପ୍ରାଣ ଦୟିତଲେ ତ୍ରୟଲୋଚନ, ନାସିକ ଅର୍ଦ୍ଧ ଅଙ୍ଗରେ ବସାଇଛନ୍ତି ରଙ୍ଗରେ ପ୍ରୀତ ଯେଉଁ ସଙ୍ଗ ଅଟେ ଉଚିତ୍ତ ଲେଖନ ।
ପ୍ରାଚୀନ ସଙ୍ଗୀତ ।

**ତ୍ରୟସ୍ତ୍ରିଂଶ**—ସଂ. ବିଣ. ( ତ୍ରୟସ୍ତ୍ରିଂଶତ୍+ପୂରଣାର୍ଥେ. ଅ )—
Trayastrimśa ୩୩ ସଂଖ୍ୟାର ପୂରଣ—Thirty-third.

**ତ୍ରୟସ୍ତ୍ରିଂଶତ**—ସଂ. ବି. ଓ ବିଣ ( ତ୍ରୟ+ତ୍ରିଂଶତ )—
Trayastrimśat ତିରିଶି ଅପେକ୍ଷା ତିନି ଅଧିକ ସଂଖ୍ୟା; ତେତିଶି । Thirty-three

**ତ୍ରୟୀତନ(ନୁ)**—ସଂ. ବି.—ସୂର୍ଯ୍ୟ—The Sun.
Trayītana(nu) [ ତ୍ରି ବେଦମାନ ସୂର୍ଯ୍ୟଙ୍କଠାରୁ ପ୍ରସୂତ ହୋଇଥିବାର ଶାସ୍ତ୍ରରେ ପ୍ରସିଦ୍ଧ । ]

**ତ୍ରୟୀ ଧର୍ମ**—ସଂ. ବି.—ଋକ୍, ସାମ; ଯଜୁର୍ବେଦୋକ୍ତ କର୍ମକାଣ୍ଡ—
Trayī dharma The body of rites prescribed in the Vedas

**ତ୍ରୟୀମୟ**—ସଂ. ବି. ( ତ୍ରୟୀ+ମୟ )—
Trayīmaya ୧ । ସୂର୍ଯ୍ୟ—1. The Sun.
୨ । ପରମେଶ୍ୱର—2. God.

**ତ୍ରୟୀମୁଖ**—ସଂ. ବି. ( ବହୁବ୍ରୀହି; ତ୍ରୟୀ+ମୁଖ )—
Trayīmukha ( ୩ ବେଦ ପାଠ କରିଥିବା ) ବ୍ରାହ୍ମଣ—
A Brahmana (versed in the three Vedas)

**ତ୍ରୟୋଦଶ**—ସଂ. ବି. ( ମ. ପ. ଲୋ; କର୍ମଧାରୟ ସମାସ; ତ୍ରି ଅଧିକ ଦଶନ୍ )—୧ । ଦଶ ଅପେକ୍ଷା ତିନି ଅଧିକ ସଂଖ୍ୟା;
Trayodaśa ୧୩ ସଂଖ୍ୟକ—1. Thirteen.
୨ । ତେର ସଂଖ୍ୟକ—1. Numbering thirteen.
ସଂ. ବିଣ—୧୩ ସଂଖ୍ୟାର ପୂରକ; ତେର ସ୍ଥାନୀୟ—
Thirteenth.

**ତ୍ରୟୋଦଶୀ**—ସଂ. ବି. ସ୍ତ୍ରୀ. ( ତ୍ରୟୋଦଶ+ଈ )—
Trayodaśī ଚନ୍ଦ୍ରର ତ୍ରୟୋଦଶ କଳାର ହ୍ରାସ ବା ବୃଦ୍ଧିଜନକ
তিরোদশী ତିଥି; ଚନ୍ଦ୍ରପକ୍ଷର ତ୍ରୟୋଦଶ ଦିବସ—The 13th
तेरस् day of lunar fortnight.
[ ଦ୍ର—ଏକ ମାସ ମଧ୍ୟରେ ଦୁଇ ଗୋଟି ତ୍ରୟୋଦଶୀ ତିଥି ପଡ଼େ ଯଥା—ଶୁକ୍ଳା ତ୍ରୟୋଦଶୀ ଓ କୃଷ୍ଣା ତ୍ରୟୋଦଶୀ । ]

**ତ୍ରୟୋବିଂଶ**—ସଂ. ବିଣ. ( ତ୍ରୟୋବିଂଶତି+ପୂରଣାର୍ଥେ. ଅ )—
Trayobimśa ୨୩ ସଂଖ୍ୟାର ପୂରଣ—Twenty third.

**ତ୍ରୟୋବିଂଶତି**—ସଂ. ବି ଓ ବିଣ. ( ମ. ପ. ଲୋ; କର୍ମଧାରୟ; ତ୍ରି ଅଧିକ ବିଂଶତି )—କୋଡ଼ିଏରୁ ତିନି ଅଧିକ ସଂଖ୍ୟା—
Trayobimśati Twenty three.

**ତ୍ରୟୋବିଂଶତି ତତ୍ତ୍ୱ**—ସଂ.ବି. ( ଦ୍ୱିଗୁ କର୍ମ )—ମହତ୍ ତତ୍ତ୍ୱ, ଅହଙ୍କାର ତତ୍ତ୍ୱ,
Trayobimśati tattwa ପଞ୍ଚ ତନ୍ମାତ୍ର, ପଞ୍ଚ ମହାଭୂତ ଏବଂ ଏକାଦଶ ଇନ୍ଦ୍ରିୟ—The 23 elements of nature according to the Hindu philosophy.

ସେ କାଳ ଶକ୍ତି ରୂପ ଧରି
ତ୍ରୟୋବିଂଶତି ଚିହ୍ନେ ପୂରି । ଜଗନ୍ନାଥ. ଭାଗବତ ।

| ୧ | ଙ | ଞ | ଋ,ଋ୍ | ଡ଼ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଲୃ | ଢ଼ | ଣ |
|---|---|---|---|---|---|---|---|---|---|---|---|---|---|---|
| ୨ | ଙ | ଞ | ଋ | ଲୃ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଯ୍ୟ | ଯ | ସ | ଙ୍ଗ୍ୟ | ଲୃ | ଢ଼ | ନ୍ |

ତ୍ରସ୍ (ଧାତୁ)—୧ । ଗମନ କରିବା—1. To go
Tras (root) ୨ । ଭୀତ ହେବା—2. To be frightened.

ତ୍ରସ—ସଂ. ବିଣ. ( ତ୍ରସ୍ ଧାତୁ + କର୍ତ୍ତୃ. ଅ )—ଗମନଶୀଳ—Moving.
Trasa ବି. ( + ଅଧିକରଣ. ଅ )—ବନ; ଜଙ୍ଗଲ—Forest; woods.

ତ୍ରସନ—ସଂ. ବି. ( ତ୍ରସ୍ ଧାତୁ + ଭାବ. ଅନ )—
Trasana ୧ । ଭୟ; ତ୍ରାସ—1. Fright; fear.
୨ । ଉଦ୍‌ବେଗ—2. Anxiety through fear.
୩ । ଆଶଙ୍କା—3. Apprehension.
ବିଣ—୧ । ତ୍ରାସଯୁକ୍ତ—1. Frightened.
୨ । ଆଶଙ୍କିତ—2. Apprehensive.

ତ୍ରସର—ସଂ. ବି. ( ତ୍ରସ୍ ଧାତୁ + ଅର )—ତନ୍ତୁବାୟର ଭୁଷ୍; କଣ୍ଡା—
Trasara Weaver's shuttle.

ତ୍ରସରେଣୁ—ସଂ. ବି. ( ତ୍ରସ=ଗମନଶୀଳ + ରେଣୁ=କଣା )—
Trasarenu ୧ । ସୂର୍ଯ୍ୟଙ୍କର ଜଣେ ପତ୍ନୀ—
1. A wife of the Sun-god.
୨ । ୩୦ ଗୋଟି ପରମାଣୁର ସମଷ୍ଟି—
2. 30 molecules; a mote.
୩ । ଅତି ସୂକ୍ଷ୍ମ କଣା—3. Very slender particle.
୪ । ଝରକା ଅବର ଛିଦ୍ର ବାଟେ ପଡ଼ୁଥିବା ସୂର୍ଯ୍ୟକିରଣର ରେଖାରେ ଯେଉଁ ଧୂଳି ଉଡ଼ିବାର ଦେଖାଯାଏ—
4. Mote in a sunbeam; minute particles of dust seen floating in a sunbeam passing through a fissure.
[ ଦ୍ର—ମନୁଙ୍କ ମତରେ ୧ ତ୍ରସରେଣୁ=୩ ପରମାଣୁ; ବୈଦ୍ୟକ ମତରେ ୧ ତ୍ରସରେଣୁ=୩୦ ପରମାଣୁ—ଦ୍ର. ଶବ୍ଦସାଗର । ]

ତ୍ରସୁର—ସଂ. ବି. ପୁଂ. ( ତ୍ରସ୍ ଧାତୁ + କର୍ତ୍ତୃ. ଉର )—
Trasura ୧ । ପେଚା; ପେଚକ—1. An owl.
୨ । ବିଲୁଆ; ଶୃଗାଳ—2. Jackal
୩ । ଭାଲୁ; ଭଲ୍ଲୁକ—3. A bear.
(ତ୍ରସୁରା—ସ୍ତ୍ରୀ) ବିଣ. ପୁଂ—ଭୀରୁ; ଭୀରୁଆ—Timid.

ତ୍ରସ୍ତ—ସଂ. ବିଣ. ପୁଂ. ( ତ୍ରସ୍ ଧାତୁ + ଶୀଳାଦ୍ୟର୍ଥେ. କର୍ତ୍ତୃ. ତ )—
Trasta ୧ । ଭୀତ—1. Terrified; afraid; frightened.
(ତ୍ରସ୍ତା—ସ୍ତ୍ରୀ) ୨ । ଶଶବ୍ୟସ୍ତ; ତ୍ରାସଯୁକ୍ତ; ଚକିତ—
2. Affrighted; alarmed.
୩ । ଥରଥର; ଭୟକମ୍ପିତ; ଛନ୍ନଛଡ଼ା—
3. Trembling with fear.
୪ । ପୀଡ଼ିତ ( ଦ୍ର. ଶବ୍ଦସାଗର )—4. Sickened.

ତ୍ରସ୍ତବ୍ୟସ୍ତ—ସଂ. ବିଣ. ( ସହଚର ଶବ୍ଦ; ତ୍ରସ୍ତ + ବ୍ୟସ୍ତ )—
Trasta byasta ବ୍ୟସ୍ତସମସ୍ତ; ଅତ୍ୟନ୍ତ ଭୀତ; ଥରହର; ଛନ୍ନଛଡ଼ା—
Very much afraid; alarmed.

ତ୍ରସ୍ତେ ବ୍ୟସ୍ତେ—ଦେ. କ୍ରି. ବିଣ—ଅତ୍ୟନ୍ତ ଭୀତ ହୋଇ; ଥରହର ହୋଇ—Being very much affrighted.
Traste byaste
ত্রস্তেব্যস্তে
ନଟ୍ରେ ବ୍ୟସ୍ତେ ଦୁଃଯୋଜନ ଅନ୍ୟ ଅସ୍ତ୍ର ମାରେ । ସୁଧାକାର, ବେଣୀସଂହାର ।

ତ୍ରସ୍ନୁ—ସଂ ବିଣ. ( ତ୍ରସ୍ ଧାତୁ + ଅତ୍ୟର୍ଥେ କର୍ତ୍ତୃ. ନୁ )—
Trasnu ୧ । ସ୍ୱଭାବତଃ ଭୟଯୁକ୍ତ; କାପୁରୁଷ—1. Coward.
୨ । ଭୟାଳୁ; ଅତଡ଼ିଆ; କଣ୍ଟକଗ୍ରସ୍ତ—2. Timid.

ତ୍ର୍ୟହସ୍ପର୍ଶ—ଦେ. ବି. ( ସଂ. ତ୍ର୍ୟହସ୍ପର୍ଶ )—ତ୍ର୍ୟହସ୍ପର୍ଶ ( ଦେଖ )
Trahyasparsa Tryahasparsa ( See )
তেরস্পর্শ

ତ୍ରାଟକ—ସଂ. ବି—ଯୋଗର ଏକ କର୍ମ; ଏକ କର୍ମ ବା ସାଧନ—
Trataka The Joga exercise of concentrating the vision on a fixed point.
[ ଦ୍ର—ଏଥିରେ ଅନିମେଷ ନୟନରେ ବହୁକ୍ଷଣ ପର୍ଯ୍ୟନ୍ତ ଗୋଟିଏ ନିର୍ଦ୍ଦିଷ୍ଟ ବିନ୍ଦୁ ଉପରେ ଦୃଷ୍ଟି ରଖିବାକୁ ଅଭ୍ୟାସ କରାଯାଏ । ]

ତ୍ରାଣ—ସଂ. ବି. (ତ୍ରୈ ଧାତୁ + ଭାବ. ଅନ)—୧ । ରକ୍ଷା—
Trana 1. Preservation; protection.
୨ । ମୁକ୍ତି; ମୋକ୍ଷ—2. Salvation; redemption.
୩ । ବିପଦରୁ ଉଦ୍ଧାର—3. Deliverance from danger.
୪ । ତ୍ରାୟମାଣା (ଦେଖ)—Trayamana (See)
ବିଣ.—(+ କର୍ତ୍ତୃ. ଅନ)—୧ । ରକ୍ଷାକର୍ତ୍ତା; ରକ୍ଷକ; ତ୍ରାତା—
1. Rescuing; delivering; saving.
୨ । (+ କର୍ମ. ତ) ରକ୍ଷିତ—
2. Saved; protected; rescued.

ତ୍ରାଣକ—ସଂ. ବି. ପୁଂ. (ତ୍ରୈ ଧାତୁ + କର୍ତ୍ତୃ ଅକ)—ତ୍ରାତା (ଦେଖ)
Tranaka Trata (See)
(ତ୍ରାଣିକା—ସ୍ତ୍ରୀଲିଙ୍ଗ)

ତ୍ରାଣ କର୍ତ୍ତା—ସଂ. ବି. ପୁ—ଉଦ୍ଧାରକର୍ତ୍ତା; ରକ୍ଷକ—
Trana kartta Saviour; deliverour; protector.
(ତ୍ରାଣକର୍ତ୍ତ୍ରୀ—ସ୍ତ୍ରୀ) ସଂ. ବିଣ—ତ୍ରାତା—Redeeming.

ତ୍ରାତ—ସଂ. ବିଣ. (ତ୍ରୈ ଧାତୁ + କର୍ମ ତ)—୧ । ରକ୍ଷିତ—
Trata 1. Preserved; saved.
୨ । ବିପଦରୁ ଉଦ୍ଧାର ହୋଇ ଥିବା—2. Saved; delivered or rescued from danger.

ତ୍ରାଣା—ସଂ. ବି. (ତ୍ରୈ ଧାତୁ + କର୍ତ୍ତୃ. ଅ + ଆ)—ତ୍ରାୟମାଣା (ଦେଖ)
Trana Trayamana (See)

ତ୍ରାତା—ସଂ ବିଣ. ପୁଂ. (ତ୍ରୈ ଧାତୁ + କର୍ତ୍ତୃ. ତୃନ୍; ତ୍ରାତୃ ଶବ୍ଦ ୧ମା. ୧ବ)—୧ । ରକ୍ଷାକର୍ତ୍ତା—1. Saving.
Trata
(ତ୍ରାତ୍ରୀ—ସ୍ତ୍ରୀ) ୨ । ଉଦ୍ଧାରକର୍ତ୍ତା—2. Delivering.
(ତ୍ରାତାର—ଅନ୍ୟରୂପ)

ସାଧାରଣ ଲୋକେ ଅପର ପୃଷ୍ଠାରେ ଦେଖନ୍ତୁ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ। ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ। ଯଥା— 'ଖାଉ' ନ ମିଳିଲେ 'ଖାଉ' ଖୋଜିବେ, କୂଅ ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; ଅଙ୍ଖୋ ନ ପାଇଲେ 'ଅକ୍ଷ' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼', ଦେଖିବେ।

**ତ୍ରାପୁଷ**—ସଂ. ବଣ. (ତ୍ରପୁସ୍ + ବିକାରାର୍ଥେ ଅ)—ଟିଣ ଧାତୁରେ ନିର୍ମିତ—
Trāpusha — Made of tin; tinned.

**ତ୍ରାୟନ୍ତୀ**—ସଂ. ବି. (ବୈଦ୍ୟକ)—ତ୍ରାୟମାଣା (ଦେଖ)
Trāyanti — Trāyamāṇā (See)

**ତ୍ରାୟମାଣ**—ସଂ. ବଣ. ପୁଂ. (ତ୍ରୈ. ଧାତୁ + କର୍ମ. ଅନ)—
Trāyamāṇa (ତ୍ରାୟମାଣା—ସ୍ତ୍ରୀ) ୧। ଯେ ଉଦ୍ଧାର ପାଇଅଛି; ଯାହାକୁ ତ୍ରାଣ କରାଯାଇଅଛି—1. Saved; protected; delivered.
୨। (+କର୍ତ୍ତୃ. ଅନ) ତ୍ରାଣକାରୀ—2. Delivering.
ସଂ. ବି—ତ୍ରାୟମାଣା (ଦେଖ)—Trāyamāṇā (See)

**ତ୍ରାୟମାଣା**—ସଂ. ବି. (ବୈଦ୍ୟକ)—ପାର୍ବତ୍ୟ ଔଷଧ ଲତାବିଶେଷ; ଉଦଭଦଳିଆ ଲତା—A herbarious creeper; Thalictrum Faliolosum.
Trāyamāṇā
ସଂ. ବଳଭଦ୍ରା, ତ୍ରାୟନ୍ତୀ, ତ୍ରାଣ, ତ୍ରାୟମାଣ, ତ୍ରାଣା, ଗିରିଜା, ଗିରିସାନୁଜା, ଭୟନାଶିନୀ, ଅନୁଜା, ଦେବବାଲା, ରକ୍ଷିଣୀ, ବଳଭଦ୍ରା, ଅବନୀ, ପାଳନୀ, ତ୍ରାୟମାଣିକା
[ ଦ୍ର—ଏହା କଷାୟ ତିକ୍ତରସ। ଏହାର ସମୂଳ ପଞ୍ଚର କ୍ୱାଥ ବା ଚୂର୍ଣ୍ଣ କଫ, ପିତ୍ତ, କୃମି, ରକ୍ତଗୁଳ୍ମ, ଜ୍ୱର, ଅର୍ଶଃ, ପ୍ଲୀହା, ହୃଦ୍‌ରୋଗ, କାମଳ, ଶୋଥ, ଭ୍ରମ, ଶୂଳ ଓ ବିଷ ପ୍ରଶମକ।]
বলাডুমুর; বনভাদুলিয়া; ত্রায়মাণা
त्रायमान; त्रायमाणा
ମ. ତ୍ରାୟମାଣ  ଗୁ. ତ୍ରାହମାନ୍
ପା. ଅସ୍ତୁକ୍  ତେ. ତ୍ରାୟମାଣା

**ତ୍ରାସ**—ସଂ. ବି. (ତ୍ରସ୍ ଧାତୁ + ଭାବ. ଅ)—୧। ଭୀତି; ଭୟ; ଶଙ୍କା—
Trāsa — 1. Fear; fright.
(ତ୍ରସ୍ତ—ବଣ) ୨। ଅତ୍ୟନ୍ତ ଭୟ; ଡରରି—
2. Alarm; terror; dread.
୩। ମଣିର କଳଙ୍କ ବା ଦୋଷ—3. Flaw in a gem.
୪। ବିରକ୍ତି—4. Vexation.
ଦେ. ବି—୧। ତାପ; ଅଗ୍ନି ବା ଖରାର ଝାଞ୍ଜି—
তরাস — 1 Heat of fire or sun's rays.
ବୃକ୍ଷୟ ଜଳେ ବଳୁ ବାସ
ଯେସନେ କାଷ୍ଠରେ ଅଗ୍ନି ତ୍ରାସ। ଜଗନ୍ନାଥ. ଭାଗବତ।
୨। ନିକିତି—2. Scales; balance.
୩। (ଖରାର ତ୍ରାସରୁ ରକ୍ଷା କରିବାକୁ) ଅଡ଼ୁଆଣି; ରାଜା ବା ଦେବତାଙ୍କ ପାଖରେ ଧରାଯିବା ଆଡ଼ୁଆଳ—
3. A fan-shaped umbrella for protecting a king or idol, while in procession, from the side-rays of the sun.
ଛତ୍ର ପତାକା ଝିଣ୍ଟକର ତ୍ରାସ। ଉପେନ୍ଦ୍ରନାଥ. ଦରବାର।
୪। ଆଲୁଅର ମଣ୍ଡଳ—4. A halo of light.

କଣ୍ଠେ କୌସ୍ତୁଭ ମଣିତ୍ରାସେ। ବ୍ରହ୍ମାଣ୍ଡ ପ୍ରତିବମ୍ବ କ ସେ।
ଭୂପତି. ପ୍ରେମପଞ୍ଚାମୃତ।

**ତ୍ରାସକ**—ସଂ. ବଣ. ପୁଂ. (ତ୍ରସ୍. ଣିଚ୍ ତ୍ରାସି ଧାତୁ + କର୍ତ୍ତୃ. ଅକ)—
Trāsaka (ତ୍ରାସିକା—ସ୍ତ୍ରୀ) ୧। ଭୀତିକାରକ—1. Frightening.
୨। ନିବାରକ—2. Preventing.

**ତ୍ରାସନ**—ସଂ. ବି. (ତ୍ରାସି ଧାତୁ + ଭାବ ଅନ)—ଡରାଇବା—
Trāsana — Frightening.
ସଂ. ବଣ. (+କର୍ତ୍ତୃ. ଅନ)—ତ୍ରାସକ (ଦେଖ)
Trāsaka (see)

**ତ୍ରାସ ବିକାଶ**—ସଂ. ବି. (୬ଷ୍ଠୀ ତତ୍; ତ୍ରାସ + ବିକାଶ)—
Trāsa bikāśa ମନରେ ଭୟର ଉଦ୍ରେକ ବା ସଞ୍ଚାର—
The feeling or reigning of fear in mind.
ଶୁଣିକାଏ ହେଲେ ସେ ହୃଦୟ ସବେଳେ ନୋହିଲା ତ୍ରାସ ବିକାଶ।
କବିସୂର୍ଯ୍ୟ. ବଣୋଇ ଚମ୍ପୂ, ଟ. ଗୀତ।

**ତ୍ରାସି (ଧାତୁ)**—ସଂ. (ତ୍ରସ୍ ଧାତୁ + ଣିଚ୍)—ଭୀତ କରାଇବା—
Trāsi (root) — To frighten; to terrify.

**ତ୍ରାସିତ**—ସଂ. ବଣ. (ତ୍ରସ୍ ଧାତୁ. ଣିଚ୍. ତ୍ରାସି ଧାତୁ + କର୍ମ. ତ)—
Trāsita ଯାହାକୁ ଭୟ ଦେଖାଯାଇଅଛି; ବିଭୀଷିତ—
Terrified, affrighted; alarmed.

**ତ୍ରାସିବା**—ଦେ. (ପଦ୍ୟ) କ୍ରି—୧। (ସଂ. ତ୍ରସ୍ ଧାତୁ) ଭୟ କରିବା; ଡରିବା—
Trāsibā — 1. To fear.
তরাসা
ତ୍ରାସିଲେ ଦାନବତ୍ରାସ ବାସବ ଆପଣେ। ରାଧାନାଥ, ବେଣୀସଂହାର।
त्रसन
୨। (ସଂ. ତ୍ରାସି ଧାତୁ) ଭୟ ଦେଖାଇବା; ଡରିବା—
2. To threaten.
ଚରଣ ଶରଣ ଲୋକକୁ ତ୍ରାସିବା କଥା ତ ଉଚିତ ନୋହି।
ଭଞ୍ଜ, ପ୍ରେମସୁଧାନିଧି।

**ତ୍ରାହି**—ଦେ. ଅ. (ସଂ. ତ୍ରୈ ଧାତୁ = ରକ୍ଷା କରିବା; ସଂ. ଅନୁଜ୍ଞାରେ ରୂପ; ଏହାର ଅର୍ଥ ଉଦ୍ଧାର କର; ତ୍ରାଣ କର)—ରକ୍ଷା କର—
Trāhi
ত্রাহি त्राहि (interjection) Oh ! save me; deliver me.
ବହୁଙ୍ଗମେ ବହୁସମେ ତ୍ରାହି ସୀତା ମାଗେ। ଭଞ୍ଜ. ବୈଦେହୀଶବିଳାସ।
ଦେ. ବି—ରକ୍ଷଣ; ଉଦ୍ଧାର—Deliverance; protection.

**ତ୍ରାହିକ ଜ୍ୱର**—ଦେ. ବି. (ସଂ. ତ୍ର୍ୟାହିକ ଜ୍ୱର)—ତିନିଦିନ ଅନ୍ତରେ ଥରେ ହେବା ଜର—Tertian fever.
Trahika jwara
ত্রাহিক জ্বর

**ତ୍ରାହି କରିବା**—ଦେ. କ୍ରି.—ଉଦ୍ଧାର କରିବା; ରକ୍ଷା କରିବା—
Trāhi karibā To protect; to save; to deliver.
ত্রাহি করা ଲକ୍ଷଣ ତ୍ରାହିକର ବୋଲିବୁ ଏ ବାଣୀ। କୃଷ୍ଣସିଂହ. ମହାଭାରତ. ବନ।
त्राहि करना

**ତ୍ରାହି ତ୍ରାହି**—ଦେ. ଅ.—ତ୍ରାହି (ଦେଖ)
Trāhi trāhi — Trāhi (See)
ত্রাহি ত্রাহি ତ୍ରାହି ତ୍ରାହି ଡାକେ ସତତ ଭକ୍ତ। ନନ୍ଦକିଶୋର. ନିର୍ଝରିଣୀ।
त्राहि त्राहि

**ତ୍ରାହି ତ୍ରାହି ଡାକ ପାରି(ଡ଼ି)ବା**—ଦେ. କ୍ରି.—ତ୍ରାହି ତ୍ରାହି ଡାକିବା (ଦେଖ)—
Trāhi trāhi ḍāka pāri (ṛdi) bā — Trāhi trāhi ḍākibā (See)

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଈ | ଋ,ୠ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ | ଢ଼ଥ | ଢ |
| ୨ | ଈ | ଊ | ୠ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ · ଯ | ସ | ତ୍ୟ | ଇଥ | ଢ଼ | ଜ |

ତ୍ରାହି ତ୍ରାହି ଡାକ ପଡ଼ଅଛି ଅଙ୍ଗରେ,
କେ କାହିଁ ପଡ଼ିଲେ ଚକ୍ରଚକ୍ର ହୋଇ । ସ୍ୱର୍ଣ୍ଣଲତା, ଚଳକା ।

ତ୍ରାହି ତ୍ରାହି ଡାକ—ଦେ. ବି.—(ସଂ. ତ୍ରୈ ଧାତୁ)—ବିପଦରୁ ଉଦ୍ଧାର
Trāhi trāhi ḍāka ପାଇବା ଉଦ୍ଦେଶ୍ୟରେ ବିପନ୍ନ ବ୍ୟକ୍ତିର ଡାକ
ত্রাহিত্রাহি রাব ବା ଆର୍ତ୍ତନାଦ—Cry for mercy; supplication for deliverance.
ତ୍ରାହିରବ }
ତ୍ରାହି ତ୍ରାହି ରବ } ଅନ୍ୟରୂପ
ତ୍ରାହି ତ୍ରାହି ସ୍ୱର }

ତ୍ରାହି ତ୍ରାହି ଡାକିବା—ଦେ. କ୍ରି.—ମୋତେ ଉଦ୍ଧାର କର ବୋଲି
Trāhi trāhi ḍākibā ଆର୍ତ୍ତସ୍ୱର କରିବା—To supplicate for mercy or deliverance from a danger.
ତ୍ରାହି ତ୍ରାହି କରିବା }
ତ୍ରାହି ତ୍ରାହି ଡକା ଛାଡ଼ିବା } —ଅନ୍ୟରୂପ
ତ୍ରାହି ତ୍ରାହି ଡକା ପକାଇବା }
ত্রাহি ত্রাহি ডাকা त्राहि त्राहि डाकना
ত্রাহি ত্রাহি করা त्राहि त्राहि करना

ତ୍ରି—ସଂ. ବି.—ତିନି ସଂଖ୍ୟା—The number three.
Tri ବିଣ.—ତିନି ସଂଖ୍ୟକ—Numbering three.

[ଦ୍ର—ଏହି ଶବ୍ଦକୁ ସଂସ୍କୃତରେ 'ତ୍ରି', ଇଂରାଜୀରେ ଥ୍ରୀ (three), ଗ୍ରୀକ୍‌ରେ ଟ୍ରେଇସ Treis, ଲାଟିନରେ ଟ୍ରେସ (tres), ଗେଲିକ୍‌ରେ ଟ୍ରି (Tri), ଗଥିକ୍‌ରେ ଥ୍ରାଇସ୍ (Thrais); ହିନ୍ଦି. ପାର୍ସୀ ଓ ବଙ୍ଗଳାରେ ତିନ୍ ଓ ଓଡ଼ିଆ ଭାଷାରେ ତିନି ବୋଲି କୁହାଯାଏ ।

ସଂସ୍କୃତ ଉପପଦରୂପେ ପ୍ରୟୋଗ ହେଉଥିବା 'ତ୍ରି' ହିନ୍ଦୀରେ 'ତି,' ବଙ୍ଗଳାରେ 'ତେ' (ଯଥା—ତେପେଟ), ଓଡ଼ିଆରେ 'ତି' (ଯଥା—ତିପଟ) ଓ ଲାଟିନରେ ଟ୍ରି-Tri ରୂପେ ପ୍ରୟୋଗ ହୁଏ । ଏହି ଶବ୍ଦ ଅନ୍ୟାନ୍ୟ ଶବ୍ଦମାନଙ୍କ ପୂର୍ବେ ଯୋଗ ହୋଇ ଅନେକ ପଦ ଗଠିତ ହୁଏ । ଯଥା—ତ୍ରିଅଗ୍ନି—ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ନାମକ ବୈଦିକ ଅଗ୍ନିତ୍ରୟ । ତ୍ରିଗୁଣ—ସତ୍ତ୍ୱ, ରଜଃ ଓ ତମଃ ଗୁଣତ୍ରୟ । ତ୍ରିଲୋକ—ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଲୋକତ୍ରୟ । ତ୍ରିକାଳ—ଭୂତ, ବର୍ତ୍ତମାନ ଓ ଭବିଷ୍ୟତ୍ । ତ୍ରିସନ୍ଧ୍ୟା—ସକାଳ, ଦ୍ୱିପହର, ଓ ସନ୍ଧ୍ୟା । ତ୍ରିଋଣ—ଦେବଋଣ, ପିତୃଋଣ ଓ ଋଷିଋଣ । ତ୍ରିକର୍ମ—କାୟିକ, ବାଚିକ ଓ ମାନସିକ । ତ୍ରିମଦ—ବିଦ୍ୟାମଦ, ଧନମଦ ଓ ଆଭିଜାତ୍ୟମଦ । ତ୍ରିଧାତୁ—ବାତ, ପିତ୍ତ ଓ କଫ । ତ୍ରିତାପ—ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ । ତ୍ରିବେଦ—ଋକ୍, ସାମ ଓ ଯଜୁଃ । ତ୍ରିବର୍ଗ—ଧର୍ମ, ଅର୍ଥ ଓ କାମ । ତ୍ରିଦେବ—ବ୍ରହ୍ମା, ବିଷ୍ଣୁ ଓ ଶିବ । ତ୍ରିଅବସ୍ଥା—ବାଲ୍ୟ, ଯୌବନ ଓ ଜରା କିମ୍ବା ଜନ୍ମ, ଜୀବନଧାରଣ, ଓ ମୃତ୍ୟୁ, କିମ୍ବା ସୃଷ୍ଟି, ସ୍ଥିତି ଓ ପ୍ରଳୟ । ତ୍ରିଲିଙ୍ଗ—ସ୍ତ୍ରୀ, ପୁଂ ଓ ନପୁଂସକ ।]

ତ୍ରିଅ—ଗ୍ରା. ବି. ଓ ବିଣ (ସ. ତ୍ରି)—ତିନି—Three.
Tria
(ଯଥା—ତ୍ରିଅଲୋଚନ ।)

ତ୍ରିଅମ୍ବକ—ଗ୍ରା. ବି. (ସ. ତ୍ର୍ୟମ୍ବକ; ତ୍ରିଅମ୍ବକ)—ମହାଦେବ—Siba.
Triambaka

[ଦ୍ର—ଲୋକେ ଅନ୍ୟ ବର୍ଣ୍ଣରୁ ପ୍ରତି ବିରକ୍ତ ହୋଇ ଏ ଶବ୍ଦକୁ ବ୍ୟବହାର କରି,ଥାଆନ୍ତି । ଯଥା—ଗେଲବସରିଆ ପୁଅ ଆଜକୁ ୧୦ ବରଷ ହେଲା ପାଠ ପଢ଼ି ପଢ଼ି ତ୍ରିଅମ୍ବକଟା ହେଲାଣି ! ଏହିପରି ମଧ ଲେମ୍ବ, ଲୁଣ, ଲେଫଡ଼ା ଆଦି ଶବ୍ଦର ବ୍ୟବହାର ହୁଏ ।]

ତ୍ରିଓଦଶୀ—ଗ୍ରା. ବି. (ସଂ. ତ୍ରୟୋଦଶୀ)—ତ୍ରୟୋଦଶୀ (ଦେଖ)
Triodaśī Trayodaśī (See)
তিরোদশী तेरस

ତ୍ରିଂ—ଦେ.—(ଧ୍ୱନ୍ୟନୁକରଣ) ଅ—ସୀତାର, ଏକତାରା, ଗୋପୀଯନ୍ତ୍ରର
Trim ତାର ବାଜିବାର ଶବ୍ଦ—(onomatopoic) The twang
(ତ୍ରିଂ ତ୍ରିଂ—ଅନ୍ୟରୂପ) of the wires of the guitar and other stringed instruments.

ତ୍ରିଂଶ—ସଂ. ବିଣ.—(ତ୍ରିଂଶତ୍ + ପୂରଣାର୍ଥେ ଅ)—୧ । ତିରିଶି ସଂଖ୍ୟାର
Trimśa ପୂରକ—1. Thirtieth.
୨ । ତିରିଶ ସଂଖ୍ୟା ସଙ୍ଗେ ଯୁକ୍ତ—
2. Joined with thirty (Apte).
୩ । ତିରିଶ ସଂଖ୍ୟକ—3. Consisting of thirty (Apte).
୪ । (ଜ୍ୟୋତିଷ) ରାଶିର ୧/୩୦ ଅଂଶ—
4. (astronomy) $\frac{1}{30}$ of a sign of the zodiac; a degree (Apte).

ତ୍ରିଂଶତ୍—ସଂ. ବି. ଓ ବିଣ. (ତ୍ରି + ଦଶନ୍)—ଦଶ ସଂଖ୍ୟାର ତିନି ଗୁଣ;
Trimśat ୩୦ ସଂଖ୍ୟା—Thirty.

ତ୍ରିଂଶତ୍କ—ସଂ. ବିଣ.—(ତ୍ରିଂଶତ୍ + କ)—ତ୍ରିଂଶ—
Trimśatka Thirti-eth

ତ୍ରିଂଶତ୍ପତ୍ର—ସଂ. ବି. (ବହୁବ୍ରୀହି; ତ୍ରିଂଶତ୍ + ପତ୍ର)—ଧଳା କଇଁ—
Trimśat-patra White water-lily.

ତ୍ରିଂଶତ୍ତମ—ସଂ. ବିଣ. (ତ୍ରିଂଶତ୍+ତମ)—ତ୍ରିଂଶ—
Trimśattama Thirtieth.

ତ୍ରିଂଶାଂଶ—ସଂ. ବି.—(ଦ୍ୱିଗୁ; ତ୍ରିଂଶ + ଅଂଶ)—୧ । କୌଣସି ପଦାର୍ଥର
Trimśāmśa ତିରିଶି ଭାଗରୁ ଏକ ଭାଗ—1. One thirtieth of any thing.
୨ । (ଜ୍ୟୋତିଷ) ରାଶିର ୩୦ ଭାଗରୁ ଏକ ଭାଗ—
2. One thirtieth of a sign of the zodica

ତ୍ରିକ—ସ. ବି. (ତ୍ରି + କ)—୧ । ମେରୁଦଣ୍ଡର ନିମ୍ନ ପ୍ରଦେଶ—
Trika 1. The base of the spine.
୨ । କଟି—2. The loin.
୩ । ତିନି ସଂଖ୍ୟା—3. The number three.
୪ । ତିନି ପଦାର୍ଥର ସମଷ୍ଟି—
4. An aggregate of three.
୫ । ତିଛକ, ତିମୁହାଣୀ—
5. Meeting place of three roads.

ସାଧାରଣ ଲୋକେ ଅନେକ ସ୍ଥଳରେ ଦ୍ୱିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଈ' ନ ମିଳିଲେ 'ଗାଈ' ଖୋଜିବେ; 'ବୃଥ' ନ ମିଳିଲେ 'ବୃଥ' ଦେଖିବେ; 'ବଧୂ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ'ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୬ । ତ୍ରିଫଳା; ହରଡ଼ା, ବାହାଡ଼ା ଓ ଅଁଳା—
6. The aggregate of the three fruits-Myrablan, Embelic Myrablan and Belleric Myrablan.

୭ । ତ୍ରିକଟୁ; ଶୁଣ୍ଠି, ପିପ୍ପଳ ଓ ମରିଚ—7. The aggregate of the three pungent fruits:—dried ginger, long pepper and black pepper.

୮ । ତ୍ରିମଦ ( ଦେଖ )—8. Trimada ( See )

୯ । ଶତକଡ଼ା ତିନି ଟଙ୍କା ( ସୁଧ, ଲାଭ )—
9. Rate of three per cent.

ତ୍ରିକଚ୍ଛ—ସଂ. ବିଣ—ତିନି କାନି ଖୋସି ଲୁଗା ପିନ୍ଧିଥିବା—Wearing
Trikachchha cloth tucked up at the three corners.
[ ଦ୍ର—ଅମ୍ଭେମାନେ ସାଧାରଣତଃ ତିନି କାନି ଖୋସି ଲୁଗା ପିନ୍ଧୁଁ, ଅର୍ଥାତ୍ ପିନ୍ଧିବା ଲୁଗାର ଦକ୍ଷିଣ ପାଖର ଦୁଇ କାନି ଅଣ୍ଟା ପଛଅଡ଼େ ଖୋସିଥାଉଁ ଓ ବାମ ପାଖର ଉପର କାନି କୁଞ୍ଚ ସଙ୍ଗେ ନାଭି ପାଖରେ ଖୋସୁଁ ଓ ତଳ କାନି ତଳକୁ ଲମ୍ବିଥାଏ । ଲୁଗା ବେଶି ଓସାରିଆ ହେଲେ କୁଞ୍ଚପାଖର ତଳ କାନିକୁ ମଧ୍ୟ ବୋଉଡ଼ା କରି ନାଭି ପାଖରେ ଖୋସୁଁ, ଅର୍ଥାତ୍ ଚାରି କାନି ଖୋସୁଁ । ]

ତ୍ରିକଟୁ—ସଂ. ବି. ( ଦ୍ୱିଗୁ; ତ୍ରି = ତିନି ସଂଖ୍ୟକ; କଟୁ = ରାଗୁଆ ଫଳ )—
Trikaṭu ( ବୈଦ୍ୟକ ) ଶୁଣ୍ଠି, ପିପ୍ପଳ ଓ ଗୋଲମରିଚ ଏହି ତିନି-
( ତ୍ରିକଟୁକ—ଅନ୍ୟରୂପ ) ଗୋଟି ରାଗ ଫଳର ସମାହାର—
The aggregate or mixture of three pungent drugs; e. g. dried ginger, long pepper and black pepper ( used in medical prescriptions).

ତ୍ରିକଣ୍ଟ—ସଂ. ବି. ( ବହୁବ୍ରୀହି; ତ୍ରି = ତିନି ସଂଖ୍ୟକ + କଣ୍ଟ = କଣ୍ଟା
Trikaṇṭa ଯାହାର )—୧ । ଗୋକ୍ଷୁର—
ହି. ଗୋଖୁର 1. A kind of horned berry used as medi-
গোক্ষুরা cine; Tribulus Terrestis.
ହି. ଥୁହର ୨ । ତିନିକଣ୍ଟା ସିଜୁ; କଣ୍ଟା ସିଜୁ—
তেকাঁটাসিজ 2. Euphorbia Tirucalli.
[ ଦ୍ର—ଏହାର ଖଣ୍ଡ ମୂଳରେ ଗଛର ଦେହରେ ଏକସ୍ଥାନରେ ତିନୋଟି ଲେଖାଏଁ କଣ୍ଟା ଉଠିଥାଏ । ]
টেঙ্গরা মাছ ୩ । ଶିଙ୍ଗୀ ବା କଣ୍ଟିଆ ମାଛ—3. Maecronis
টেঙ্গরা মছলী Vittartus; Silurus Aacila ( a small
(ତ୍ରିକଣ୍ଟକ—ଅନ୍ୟରୂପ) fresh water fish having three stinging horns ).
[ ଦ୍ର—ଏମାନଙ୍କର ଗାଲସି ତଳେ ୨ଟି ଓ ବେକ ଉପରେ ଗୋଟିଏ, ଏପରି ୩ଟି କଣ୍ଟା ଥାଏ । ]

୪ । ତ୍ରିଶୂଳ—4. Trident

୫ । ଜବାଗ୍ରା ( ଦେଖ )—5. Jabāgrā ( See )

ତ୍ରିକତ୍ରୟ—ସଂ. ବି. (ବୈଦ୍ୟକ)—ତ୍ରିଫଳା (ହରଡ଼ା, ବାହାଡ଼ା ଓ ଅଁଳା),
Trika traya ତ୍ରିକଟୁ ( ଶୁଣ୍ଠି, ପିପ୍ପଳ ଓ ମରିଚ ) ଓ ତ୍ରିମଦ ( ମୁଥା, ଚିତାମୂଳ ଓ ବାଇବିଡଙ୍ଗ )ର ସମାହାର—
An aggregate of three trios of drugs.

ତ୍ରିକନା—ଦେ. ବି. ( ତ୍ରିକର୍ଣ୍ଣ )—ତିନି ମୁନିଆ ଅସ୍ତ୍ର—
Trikanā A spear with 3 prongs; a three
তেশাখা तिशाखा pronged weapon.
ବିଣ—ତିନିଶାଖାବିଶିଷ୍ଟ—Three pronged.

ତ୍ରିକର୍ମା—ସଂ. ବିଣ—୧ । ଯଜନ, ଅଧ୍ୟୟନ ଓ ଦାନକାରୀ (ବ୍ରାହ୍ମଣ )—
Trikarmā 1. ( a Brahman ) Practising vedic sacrifice, Shedies and gif

୨ । ଯାଜନ, ଅଧ୍ୟାପନ ଓ ପ୍ରତିଗ୍ରହକାରୀ ( ବ୍ରାହ୍ମଣ)—
2 ( a Brāhman ) Practising priest-hood, teaching and accepting gifts.

୩ । ତ୍ରିକର୍ମର ଅନୁଷ୍ଠାନକାରୀ—
3. Performing the threefold duties.
[ ଦ୍ର—ବ୍ରାହ୍ମଣର ଅନୁଷ୍ଠେୟ ଷଟ୍‌କର୍ମ ମଧ୍ୟରୁ ସେ ଜୀବିକାନିର୍ବାହ ପାଇଁ ଯାଜନ, ଅଧ୍ୟାପନ ଓ ପ୍ରତିଗ୍ରହ କରିବେ ଏବଂ ଧର୍ମଲାଭ ଉଦ୍ଦେଶ୍ୟରେ ଯଜନ, ଅଧ୍ୟୟନ ଓ ଦାନ କରିବେ । ]

ତ୍ରି କଳିଙ୍ଗ—ସଂ. ବି—ତିନୋଟି ଅଂଶଯୁକ୍ତ କଳିଙ୍ଗ ରାଜ୍ୟ ( ଯଥା—ଉତ୍ତର
Tri kaḻiṅga କଳିଙ୍ଗ ବା ଉତ୍କଳିଙ୍ଗ; ମଧ୍ୟ କଳିଙ୍ଗ ବା ମୁଦ୍‌ଗକଳିଙ୍ଗ ଓ ଦକ୍ଷିଣ କଳିଙ୍ଗ)—The ancient Kaḻiṅga kingdom consisting of 3 parts (north, middle and south).
[ ଦ୍ର—କଳିଙ୍ଗ ତଳେ ନୋଟ୍ ଦ୍ରଷ୍ଟବ୍ୟ । ଉତ୍କଳ, କୋଙ୍ଗୋଦ ଓ କଳିଙ୍ଗ ଏହି ତିନୋଟି ରାଜ୍ୟ ପୃଥକ ହୋଇଥିଲେ ମଧ୍ୟ ଖ୍ରୀଷ୍ଟଜନ୍ମର ବହୁ ଶତାବ୍ଦୀ ପୂର୍ବରୁ ରାଜନୀତିକ ସୂତ୍ରରେ ଏକତ୍ର ଆବଦ୍ଧ ରହି 'ତ୍ରିକଳିଙ୍ଗ' ନାମରେ ଅଭିହିତ ହେଉଥିଲେ—ବିନାୟକ. ଉତ୍କଳ ସାହିତ୍ୟ ଇତିହାସ । ]

ତ୍ରିକା—ସଂ. ବି. ସ୍ତ୍ରୀ. ( ତ୍ରିକ+ସ୍ତ୍ରୀ. ଆ )—
Trikā ୧ । ତିକାଠିଆ; କାନ୍ଥରେ ମରାଯିବା ତିନିଖଣ୍ଡି କାଠିଯୁକ୍ତ
তেকাঠা ସ୍ଥାନ—1. A triangular bracket consisting of three pegs driven into the wall.

୨ । କୂଅର ମୁହଁ ଉପରେ ପକାଯିବା ତିନିକୋଣିଆ କାଠ; କୂପନେମି—2 A triangular frame of wood put at the mouth of a well.

ତ୍ରିକାଣ୍ଡ—ସଂ. ବି. ( ନାମ )—୧ । ( ଏ ଗ୍ରନ୍ଥରେ ତିନୋଟି କାଣ୍ଡ ଥିବାରୁ )
Tri kāṇḍa ଅମରକୋଷ ଅଭିଧାନ—1. A name of the Sanscrit dictionary named Amarakosha

୨ । ( ତିନି କାଣ୍ଡ ଥିବାରୁ ) ନିରୁକ୍ତ ( ଦେଖ ),
2. Nirukta ( See )

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଉ | ଊ | ଋ,ୠ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଣ,ଞ | ଞ୍ଜ | ଋ | ଊ | ଘ |
| ୧ | ଲ | ଭ | ଲୁ | ଲୂ | ଦ୍ୱୈ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଅଂ | ଯ | ଗ | ଂ | ଋ | ଈ | ଦ୍ଧ |

ତ୍ରିକାଣ୍ଡ କୋଷ—ସଂ. ବି—ଗୋଟିଏ ସଂସ୍କୃତ ଅଭିଧାନର ନାମ—Name
Trikāṇḍa kosha of a Sanscrit Lexicon by Raja
( ତ୍ରିକାଣ୍ଡ ଶେଷ—ଅନ୍ୟରୂପ ) Purushottama Deb.
[ଦ୍ର—ଏହା ଉତ୍କଳର ରାଜା ପୁରୁଷୋତ୍ତମ ଦେବ ଖ୍ରୀ. ୧୬୭୫-୧୪୯୫ ରଚନା କରିଥିଲେ । ଏହ ବର୍ତ୍ତମାନ ସଂସ୍କୃତ ଭାଷାକୋଷ ଗ୍ରନ୍ଥମାନଙ୍କ ମଧ୍ୟରେ ଗୋଟିଏ ପ୍ରମାଣିକ ଗ୍ରନ୍ଥ ରୂପେ ଗଣ୍ୟ । ]

ତ୍ରିକାଳ—ସଂ. ବି (ଦ୍ୱିଗୁ; ତ୍ରି+କାଳ)—୧ । ତିନିକାଳ; ଭୂତ,
Trikāḷa ଭବିଷ୍ୟତ ଓ ବର୍ତ୍ତମାନ; ସମୟର ତିନି ବିଭାଗ—
1. The past, the present and the future.
୨ । (ବ୍ୟାକରଣ) କ୍ରିୟାର ଭୂତ, ଭବିଷ୍ୟତ ଓ ବର୍ତ୍ତମାନ କାଳ—2. (grammar) The three tenses of a verb.
୩ । ଦିନର ତିନି ବେଳ; ପ୍ରାତଃ, ମଧ୍ୟାହ୍ନ ଓ ସାୟାହ୍ନ—
3. Morning, noon and evening of the day.

ତ୍ରିକାଳଜ୍ଞ—ସଂ. ବିଣ. ପୁଂ (ତ୍ରିକାଳ+ଜ୍ଞା ଧାତୁ+କର୍ତ୍ତୃ. ଅ)—
Trikāḷajña ଯେ ତିନିକାଳର ଘଟଣା ଜାଣିପାରେ—One who
(ତ୍ରିକାଳଜ୍ଞା—ସ୍ତ୍ରୀ) knows the events of the past,
(ତ୍ରିକାଳଜ୍ଞତା—ବି) the present and the future; omniscient.
(ତ୍ରିକାଳଜ୍ଞାତା—ଅନ୍ୟରୂପ) ବି—୧ । ବୁଦ୍ଧଦେବ—
1. The Buddha.
୨ । ଶିବ; ମହାଦେବ—2. God Śiba.
୩ । ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ଘଟଣା ଜାଣିବା ବ୍ୟକ୍ତି—
3. A seer; prophet.

ତ୍ରିକାଳଦର୍ଶିତା—ସଂ. ବି—ତ୍ରିକାଳଜ୍ଞତ୍ୱ
Trikāḷa darśitā The state of being a seer.

ତ୍ରିକାଳ ଦର୍ଶୀ—ସଂ. ବି ଓ ବିଣ—ତ୍ରିକାଳଜ୍ଞ ( ଦେଖ )
Trikāḷa darśī Trikāḷajña ( See )
(ତ୍ରିକାଳଦର୍ଶିନୀ—ସ୍ତ୍ରୀ)
(ତ୍ରିକାଳଦର୍ଶନ, ତ୍ରିକାଳଦର୍ଶିତା ବି.)

ତ୍ରିକୁଟ—ଦେ. ବି ( ସଂ. ତ୍ରିକୂଟ )—୧ । ଯୋଗ ବା ତନ୍ତ୍ର ଶାସ୍ତ୍ରୋକ୍ତ
Tri kuṭa ଶରୀର ମଧ୍ୟସ୍ଥ ବ୍ରହ୍ମରନ୍ଧ୍ର; ତ୍ରିମୁନା; ଦୁଇ ଭ୍ରୂ ମଧ୍ୟସ୍ଥ
क्रिकुट ସ୍ଥାନ—1. The imaginary point in the
त्रिकुट human body on which attention is concentrated during the practice of 'Joga'. the point between the two eye-brows.
୨ । ମହା ବିଷମ ସମସ୍ୟା—2. A trilema; insoluble difficulty.

ତ୍ରିକୁଳ—ସଂ. ବି (ଦ୍ୱିଗୁ; ତ୍ରି+କୁଳ)—ତିନି କୁଳ; ମନୁଷ୍ୟର ସମ୍ପର୍କୀୟ
Tri kuḷa ତିନି ବଂଶ; ପିତୃ କୁଳ, ମାତୃ କୁଳ ଓ ଶ୍ୱଶୁର କୁଳ—
The three families with which a person is connected, viz, that of one's father, of one's mother and of one's father-in-law.

ତ୍ରିକୂଟ—ସଂ. ବିଣ (ବହୁବ୍ରୀହି; ତ୍ରି=ତିନି, କୂଟ=ଶୃଙ୍ଗପାହାଡ଼)—
Tri kūṭa ତିନି ଶୃଙ୍ଗବିଶିଷ୍ଟ—Three-horned; three-peaked; having three peaks.
ବି—୧ । ( ପୁରାଣ ମତେ ) ଲବଣ ସମୁଦ୍ର ମଧ୍ୟରେ ଅବସ୍ଥିତ ତିନିଗୋଟି ଶିଖରବିଶିଷ୍ଟ ପର୍ବତ (ଯାହା ଉପରେ ଲଙ୍କା ଅବସ୍ଥିତ)—1. Name of a mythological sea-girt mountain with three peaks on which Ceylon stands (Hindu mythology).
୨ । ( ପୁରାଣ ମତେ ) କ୍ଷୀର ସମୁଦ୍ରସ୍ଥ ପର୍ବତ, ଯହିଁରେ ସୁନା, ରୂପା ଓ ଲୋହର ତିନି ଶୃଙ୍ଗ ଅଛି ଓ ଯହିଁରେ ବୈକୁଣ୍ଠ ଅବସ୍ଥିତ—2. Name of a mythological mountain with three peaks (of gold, silver and iron respectively) in the mythical ocean of milk on which stands Bishnu's abode.
ପର୍ବତ ତ୍ରିକୂଟ ଯେ ନାମ, ସର୍ବ ନକ୍ଷତ୍ର ମୂଳ ଧାମ—ଜଗନ୍ନାଥ. ଭାଗବତ ।
୩ । ସାମୁଦ୍ରିକ ଲବଣ—3. Sea-salt
୪ । ଯୋଗ ଶାସ୍ତ୍ରୋକ୍ତ ଶରୀରାଭ୍ୟନ୍ତରସ୍ଥ ସ୍ଥାନ; ତ୍ରିକୁଟ—
4. Name of an imaginary point inside the body of man on which one has to concentrate his inner sight while practising 'Joga'.
ଅକାର ମକାର ଉକାର ତିନି, ତ୍ରିକୂଟ ତାହାକୁ ବୋଲି ଜାଣୁ ନି—
ପ୍ରାଚୀ. ପଦ୍ମଗୀତା ।
ପ୍ରାଦେ. (ଗଞ୍ଜାମ) ବି—ତିନିଗୋଟି ଗ୍ରାମର କେନ୍ଦ୍ର ସ୍ଥଳ—
The centre of three villages.

ତ୍ରିକୋଣ—ସଂ. ବି ( ତ୍ରି+କୋଣ )—୧ । (ଦ୍ୱିଗୁ) ତିନି କଣ; ତିନି
Tri koṇa କୋଣ—1. Three corners; three angles.
୨ । (ବହୁବ୍ରୀହି) ସ୍ତ୍ରୀଚିହ୍ନ; ଯୋନି—
2. The vulva; vagina.
୩ । (ଫଳିତ ଜ୍ୟୋତିଷ) ଲଗ୍ନର ପଞ୍ଚମ ଓ ନବମ ସ୍ଥାନ—
3. (astrology) The 5th and 9th places or positions counted from the 'lagna' in a person's horoscope.
୪ । (ଗଣିତ) ତ୍ରିଭୁଜ—4. A triangle.
୫ । ତ୍ରିଭୁଜାକୃତି ସ୍ଥାନ ବା ବସ୍ତୁ—
5. A triangular place or thing
୬ । ଆସାମ ଦେଶସ୍ଥ କାମରୂପର ତୀର୍ଥବିଶେଷ—
6. Name of a place of pilgrimage in Kamarupa in Assam.
ବିଣ—ତିନିକଣିଆ; ତ୍ରିକୋଣବିଶିଷ୍ଟ; ତ୍ରିଭୁଜାକୃତି—
Triangular; trigonal.

ସାଧାରଣ ଲୋକେ ଅନେକ ସ୍ଥଳରେ ହ୍ରସ୍ୱ ଇ ଉ ଅଙ୍କିତ ଅକ୍ଷର ଓ ଦୀର୍ଘ ଈ ଊ ଅଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ଇ ବା ଈ ଅନ୍ତର୍ଗତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବିପରୀତ ଈ ବା ଇ ଅଙ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ନୀଡ଼' ନ ମିଳିଲେ 'ନିଡ଼' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଣ୍ଠୁ' ନ ପାଇଲେ 'ଅଣ୍ଠୂ' ଦେଖିବେ, 'ଅଲବଡ଼' ନ ପାଇଲେ 'ଅଲ୍‌ବଡ଼' ଦେଖିବେ ।

ତ୍ରିକୋଣ ଭୂମି—ସଂ. ବି—(ଭୌଗୋଳିକ ପରିଭାଷା)—ନଦୀର ମୁହାଣରେ Trikoṇa bhūmi କାଳକ୍ରମେ ପଙ୍କ ଜମାହୋଇ ସୃଷ୍ଟ ହୋଇଥିବା ବଦ୍ୱୀପ ତ୍ରିକୋଣିଆ ଭୂମି; ଡେଲ୍ଟା—(geography) Delta.
त्रिकोण धरती (ତ୍ରିକୋଣମଣ୍ଡିତ ଭୂମି—ଅନ୍ୟରୂପ)

ତ୍ରିକୋଣମିତି—ସଂ. ବି (ଗଣିତ ପରିଭାଷା)—ରେଖା ଓ କୋଣ ସମ୍ବନ୍ଧୀୟ Trikoṇamiti ଗଣିତ ଶାସ୍ତ୍ରବିଶେଷ—Trigonomety.
[ଦ୍ର—ପୂର୍ବେ ଏଶାସ୍ତ୍ରରେ ତ୍ରିଭୁଜର କୋଣ ମାପିବାର ନିୟମ ଥିଲା । ବର୍ତ୍ତମାନ ଚତୁର୍ଭୁଜ ଓ ବହୁଭୁଜର କୋଣ ମାପିବା ବିଷୟ ମଧ୍ୟ ଏଥିରେ ଭୁକ୍ତ ଅଛି । ]

ତ୍ରିକୋଣାକାର—ସଂ. ବି (କର୍ମଧା; ତ୍ରିକୋଣ+ଆକାର )—Tri koṇākāra ତିନି କୋଣିଆ ଆକୃତି; ତ୍ରିଭୁଜ ପରି ଆକାର—(ତ୍ରିକୋଣାକୃତି—ଅନ୍ୟରୂପ) Triangular shape.
ବିଣ ( ବହୁବ୍ରୀହି )—ତିନିକୋଣିଆ; ତ୍ରିଭୁଜ ପରି ଆକାରଯୁକ୍ତ—Three-cornered; triangular; triangle-shaped.

ତ୍ରି କ୍ଷାର—ସଂ. ବି (ଔଷଧଦ୍ରବ୍ୟ)—ଯବକ୍ଷାର, ସାଚିକ୍ଷାର ଓ ଟାଙ୍କଣା ଏହି Tri kshāra ତିନି କ୍ଷାରର ସମାହାର (ହରେକୃଷ୍ଣ ଦ୍ରବ୍ୟଗୁଣ)—An aggregate of 3 salts used in medicine.

ତ୍ରି କ୍ଷୁର—ସଂ. ବି (ବହୁବ୍ରୀହି; ତ୍ରି+କ୍ଷୁର) କୋଇଲେଖା ( ଦେଖ ) Tri kshura Koilekhā (See).

ତ୍ରିଖ—ସଂ. ବି—୧ । ସୀସା—1. Lead.
Trikha ୨ । କାକୁଡ଼ି—2. Cucumber.
୩ । ଟିଣ (ଧାତୁ)—3. Tin (metal).

ତ୍ରିଗଙ୍ଗ—ସଂ. ବି (ବହୁବ୍ରୀହି; ତ୍ରି+ଗଙ୍ଗା; ୩ ଗୋଟି ଗଙ୍ଗାର ମିଳନ Triganga ସ୍ଥାନ )—୧ । ମହାଭାରତୋକ୍ତ ତୀର୍ଥବିଶେଷ—1. Name of a place of pilgrimage mentioned in the Mahābhārata.
୨ । ୩ ଗୋଟି ନଦୀର ସଙ୍ଗମସ୍ଥଳ—
2 A place where three rivers meet.
୩ । ପ୍ରୟାଗ; ତ୍ରିବେଣୀ ( ଗଙ୍ଗା, ଯମୁନା ଓ ସରସ୍ୱତୀ ନଦୀମାନଙ୍କ ମିଳନ ସ୍ଥାନ )—3. A name of Allahabad.

ତ୍ରିଗଣ—ସଂ. ବି (ସମାହାର ଦ୍ୱିଗୁ; ତ୍ରି+ଗଣ)—ଧର୍ମ, ଅର୍ଥ ଓ କାମ ଏହି Trigaṇa ତ୍ରିବର୍ଗ—The three main worldly pursuits (viz, duty, riches, and love or virtue, wealth and desire ).

ତ୍ରିଗର୍ତ୍ତ—ସଂ. ବି (ତ୍ରି=ତିନି+ଗର୍ତ୍ତ=ନିମ୍ନ ଭୂମି; ଗଙ୍ଗା, ବ୍ରହ୍ମପୁତ୍ର ଓ Tri gartta ସିନ୍ଧୁ, ଏହି ତିନିଗୋଟି ଗର୍ତ୍ତ ଯେଉଁଠାରେ (ତ୍ରିଗର୍ତ୍ତିକ—ଅନ୍ୟରୂପ) ଅଛି)—୧ । ତିବ୍ବତ ଦେଶ—1. Tibet ( country ).
୨ । ପଞ୍ଜାବ ପ୍ରଦେଶଅନ୍ତର୍ଗତ ଜିଲ୍ଲା; ଜଳନ୍ଧର—
2. The Jalandhar district in the Punjab Precidency.
୩ । ଗଣିତଶାସ୍ତ୍ରବିଶେଷ—3. Name of a branch of mathematices.
୪ । ତ୍ରିଗର୍ତ୍ତଦେଶବାସୀ ଲୋକ—4. A resident of the district of Jalandhar.
ଅଟେ ଗଲେ ତ୍ରିଗର୍ତ୍ତ ଦେଶେ ଟ ନବଳକୁ
ସେ ଦେଶର ଲୋକୁ ଯେନ ଅର୍ଘ ଦାନ୍ତୁ—କୃଷ୍ଣସିଂହ. ମହାଭାରତ, ବନ

ତ୍ରିଗର୍ତ୍ତା—ସଂ. ବି. ସ୍ତ୍ରୀ (ତ୍ରିଗର୍ତ୍ତ+ସ୍ତ୍ରୀ. ଆ)—୧ । ଭୋଗାଭିଳାଷିଣୀ ସ୍ତ୍ରୀ; Trigarttā କାମୁକା ସ୍ତ୍ରୀ—1. A lustful woman.
୨ । ଛିନାଳୀ; ପୁଂଶ୍ଚଳୀ—2. Adulteress.
୩ । ଘୁର୍ଘୁରିକା; ନଟୁ—3. A spinning top,
୪ । ଘୁର୍ଘୁରିଆ ପୋକ; ଗୁଣ୍ଡୁର ପୋକ—4. A kind of insect which bores into the dust.

ତ୍ରିଗୁଣ—ସଂ. ବି—୧ । ଗୁଣତ୍ରୟ; ସତ୍ତ୍ୱ, ରଜଃ ଓ ତମ ଏହି ତିନି ଗୁଣ; Triguṇa ସୁଖ, ଦୁଃଖ ଓ ମୋହ—1. The three inherent or fundamental qualities of Nature or the Universe (viz good, medium and bad or heavenly, worldly and hellish).
୨ । ତିନିଗୋଟି ତାର ବା ଖିଅ—2. Three strings or strands.
୩ । ତିନିଗୁଣ; ତିନିଓଡ଼ି; ତିନିଥର; ତିନିଦଫା—
3. Three times.
ବିଣ—୧ । ତିନି ଭାଗଣିଆ—1. Having three strands; trebled.
୨ । ତ୍ରିସୂତ୍ର; ତିନିଖିଅଯୁକ୍ତ—2. Three stringed; consisting of three cords or threads.
୩ । ତିନିଦୋର; ତିନିଗୁଣିଆ—
3. Threefold; folded thrice.
୪ । ଗୁଣତ୍ରୟଯୁକ୍ତ—4. Having the 3 inherent qualities of nature.
୫ । ତିନିଗୁଣା—5. Triple.
୬ । ତିନିଥର—6. Thrice.

ତ୍ରିଗୁଣନେତ୍ର—ସଂ. ବିଣ. ପୁଂ (ବହୁବ୍ରୀହି; ତ୍ରିଗୁଣନେତ୍ର+ସ୍ତ୍ରୀ. ଈ)—Triguṇanetra ଯାହାର ଚକ୍ଷୁରେ ଶୁକ୍ଳ, କୃଷ୍ଣ ଓ ରକ୍ତ ଏହି ୩ ବର୍ଣ୍ଣର ଆଭାସ ଥାଏ—With tricoloured eyes.
(ତ୍ରିଗୁଣନେତ୍ରୀ-ସ୍ତ୍ରୀ)
ତ୍ରିଗୁଣନେତ୍ରୀର ଲେଖ କାମକସ୍ତ ପାପୀ—ବିଶ୍ୱନାଥ, ବିଚିତ୍ର ରାମାୟଣ ।

ତ୍ରିଗୁଣା—ସଂ. ବି. ସ୍ତ୍ରୀ ( ତ୍ରିଗୁଣ+ସ୍ତ୍ରୀ. ଆ )—୧ । ଦୁର୍ଗା— Triguṇā 1. Goddess Durgā.
୨ । ମାୟା—2. Illusion.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଢ | ଡ | ର,ବ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଣ,ଷ | ଙ୍କ | ଇଯ୍ | ଉଅ | ଝ |
| ୨ | ଋ | ଊ | ୠ | ଌ | ପ୍ରେ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟଂ | ଯ | ସ | ଙ୍ଯ | ଇଅ | ଊ | ଦ୍ଦ |

ତ୍ରିଗୁଣାତ୍ମକ—ସଂ. ବିଣ. ପୁଂ. ଓ କ୍ଲୀ. ( ବହୁବ୍ରୀହି; ତ୍ରିଗୁଣ+ଆତ୍ମା+
Trigunātmaka କ )—୧ । ( ସାଂଖ୍ୟମତ ) ତ୍ରିଗୁଣଯୁକ୍ତ;
(ତ୍ରିଗୁଣାତ୍ମିକା—ସ୍ତ୍ରୀ) ତ୍ରିଗୁଣବିଶିଷ୍ଟ; ସତ୍ତ୍ୱ, ରଜଃ ଓ ତମଃ ଏହି ତିନିଗୁଣବିଶିଷ୍ଟ—1. Consisting of or having the three primeval attributes, viz, Satwa, Rajaḥ and Tamaḥ.
୨ । ତିନିଗୁଣ—2 Thrice; triple.
୩ । ତିନି ଭାଙ୍ଗ କରିଥିବା—
3. Three-stringed; three-stranded.
ସଂ. ବି—( ବେଦାନ୍ତ ଦର୍ଶନ ) ଅଜ୍ଞାନ—
( Bedanta philosophy ) Ignorance.

ତ୍ରିଗୁଣିତ—ସଂ. ବିଂ ( ତ୍ରିଗୁଣ+ଯୁକ୍ତାର୍ଥେ. ଇତ )—୧ । ତିନି
Trigunita ଭାଙ୍ଗ କରିଥିବା—1. Three stringed; trebled; folded thrice.
୨ । ତିନି ଦ୍ୱାରା ଗୁଣା ହୋଇଥିବା;—
2. Multiplied by three.
୩ । (ଏକ ରାଶି) ସେହି ରାଶି ସଙ୍ଗେ ଆଉ ଦୁଇଥର ଗୁଣା ଯାଇ ଥିବା—3. (a number) Multiplied twice by itself.
୪ । ତିନିଗୁଣ—4. Threefold.

ତ୍ରିଗୁଣୀ—ସଂ. ବି. (ତ୍ରିଗୁଣ+ଈ)—ବେଲଗଛ (ଏ ଗଛର ପତ୍ର ତିନି
Triguṇi ଶାଖାଯୁକ୍ତ ଥିବାରୁ)—The Bel tree.

ତ୍ରିଗୁଣୀକୃତ—ସଂ. ବିଣ. (ତ୍ରିଗୁଣ+ଅଭୂତ ତଦ୍ଭାବେ ଚ୍ୱି+କୃତ)—
Triguṇikṛuta ୧ । ତିନିଭାଙ୍ଗ କରିଥିବା—1 Trebled.
୨ । ତିନିପରସ୍ତ ଭଙ୍ଗା ଯାଇ ଥିବା—
2. Made into three-folds.

ତ୍ରିଗୂଢ଼—ସଂ. ବି.—ସ୍ତ୍ରୀ ବେଶ ଧାରଣ କରିଥିବା ପୁରୁଷର ନୃତ୍ୟ—
Tri gūrdha Dance by a male attired in female dress.

ତ୍ରିଚକ୍ର—ସଂ. ବି.—( ବହୁବ୍ରୀହି; ତ୍ରି+ଚକ୍ର )—୧ । ତିନିଚକିଆ
Trichakra ଗାଡ଼ି—1. Tricycle.
(ତ୍ରିଚକ୍ରଯାନ—ଅନ୍ୟରୂପ) ୨ । ଅଶ୍ୱିନୀକୁମାରଦ୍ୱୟଙ୍କ ରଥ—
2. The three-wheeled car of the 'Aświnī kumāras.
ସଂ. ବିଣ.—ତିନିଚକିଆ—Three-wheeled.

ତ୍ରିଚକ୍ଷୁଃ—ସଂ. ବିଣ. (ବହୁବ୍ରୀହି; ତ୍ରି+ଚକ୍ଷୁସ୍)—ତିନି ଆଖିଆ—
Tri chakshuḥ Three-eyed.
ବି.—ମହାଦେବ—Śiba (the three-eyed God.)

ତ୍ରିଚତ୍ୱାରିଂଶ—ସଂ. ବିଣ. (ତ୍ରିଚତ୍ୱାରିଂଶତ୍+ପୂରଣାର୍ଥେ. ଅ)—
Tri chatwārimśa ୪୩ ସଂଖ୍ୟାର ପୂରଣ—Forty-third.

ତ୍ରିଚତ୍ୱାରିଂଶତ୍—ସଂ. ବି. ଓ ବିଣ.—(ତ୍ରି ଅଧିକ ଚତ୍ୱାରିଂଶତ୍, ମ. ପ.
Trichatwārimśat ଲୋ. କର୍ମଧା;)—୧ । ତେୟାଳିଶି; ଚାଳିଶିରୁ ତିନି ଅଧିକ ସଂଖ୍ୟା—1 Fortythree; 43.
୨ । ତେୟାଳିଶି ସଂଖ୍ୟକ—2 Numbering 43.

ତ୍ରିଚତ୍ୱାରିଂଶତ୍ତମ—ସଂ. ବିଣ.—ତ୍ରିଚତ୍ୱାରିଂଶ (ଦେଖ)
Tri chatwārimśattama Tri chatwārimśa (See)

ତ୍ରିଚିନାପଲ୍ଲୀ—ଦେ. ବି.—କାବେରୀ ନଦୀ କୂଳରେ ଅବସ୍ଥିତ
Tri chināpallī ଦାକ୍ଷିଣାତ୍ୟର ନଗରବିଶେଷ—Name of a town in the Deccan situated on the bank of the Kaveri river; Trichy.
[ ଦ୍ର—ଇଂରେଜମାନେ ସଂକ୍ଷେପରେ ଏହାକୁ 'ଟ୍ରିଚି' ବୋଲି କହନ୍ତି ଓ ଲେଖନ୍ତି । ଖ୍ରୀ. ୧୮୪୫ ସାଲ ପୂର୍ବରୁ ଏଠାରେ ଗୋଟିଏ ବିଖ୍ୟାତ ପାର୍ବତ୍ୟ ଦୁର୍ଗ ଥିଲା । ପର୍ବତ ଉପରେ ଗଣେଶଙ୍କ ମନ୍ଦିର ଅଛି । ପର୍ବତର କାନ୍ଥରେ ମଥୁରଭୂତେଶ୍ୱରଙ୍କ ମନ୍ଦିର ଅଛି । ଏ ପର୍ବତ ଚାରିପାଖର ନିମ୍ନଭୂମିରୁ ୨୦୦ ଫୁଟ ଉଚ୍ଚ । ଏଠାରୁ ଶ୍ରୀରଙ୍ଗମ୍ ଓ ଶ୍ରୀରଙ୍ଗମ୍‌ର ଗୋପୁରମାନ ଦେଖାଯାଏ ଓ କାବେରୀ ନଦୀର ଦୁଇ ଶାଖା ମଧ୍ୟ ଦିଶେ । ଏହାର ପୂର୍ବ ନାମ ତ୍ରିଶିରାପଲ୍ଲୀ । ଏଠାରେ ରାମଚନ୍ଦ୍ର ତ୍ରିଶିରା ରାକ୍ଷସକୁ ବଧ କରିଥିଲେ । ]

ତ୍ରିଜଗତ୍—ସଂ. ବି. ( ସମାହାର ଦ୍ୱିଗୁ; ତ୍ରି+ଜଗତ୍ )—ସ୍ୱର୍ଗ, ମର୍ତ୍ତ୍ୟ ଓ
Tri jagat ପାତାଳ ଏହି ତିନିଲୋକ; ବିଶ୍ୱବ୍ରହ୍ମାଣ୍ଡ; ତିନିଭୁବନ—The universe; the created world consisting of the heaven, the earth and the nether world according to the Hindus.

ତ୍ରିଜଗତୀ—ସଂ. ବି. ( ସମାହାର ଦ୍ୱିଗୁ; ତ୍ରି+ଜଗତ୍+ଈ)—ତ୍ରିଜଗତ୍
Trijagatī ( ଦେଖ ) Trijagat ( See )

ତ୍ରିଜଟ—ସଂ. ବିଣ. ପୁଂ. (ବହୁବ୍ରୀହି; ତ୍ରି+ଜଟ)—ଯାହାମୁଣ୍ଡରେ ତିନୋଟି
Tri jaṭa ଜଟ ଥାଏ—Having three plaits or braids of hair.
( ତ୍ରିଜଟା—ସ୍ତ୍ରୀ )
( ତ୍ରିଜଟୀ—ଅନ୍ୟରୂପ ) ସଂ. ବି—୧ । ମହାଦେବ—
1. God Śiba.
୨ । ଜଣେ ବ୍ରାହ୍ମଣର ନାମ—2 Name of a Brāhmaṇa.
[ ଦ୍ର—ରାମଚନ୍ଦ୍ର ବନଯାତ୍ରା ସମୟରେ ଏହାକୁ ଅନେକ ଗ୍ରାମ ଦାନ କରିଥିଲେ—ହି. ଶବ୍ଦସାଗର ।

ତ୍ରିଜଟା—ସଂ. ବି. ସ୍ତ୍ରୀ. (ବହୁବ୍ରୀହି; ତ୍ରି+ଜଟା )—୧ । ମହାଦେବ—
Trijaṭā 1 God Śiba.
୨ । (ଏହାର ପତ୍ର ତ୍ରିଶାଖା ଥିବାରୁ) ବେଲଗଛ—
2. The Bel tree.
ସ୍ତ୍ରୀ.—ରାବଣର ଲଙ୍କାର ରାକ୍ଷସୀବିଶେଷ; ବିଭୀଷଣର କନ୍ୟା (ଏ ରାକ୍ଷସୀ ସୀତାଙ୍କର ପକ୍ଷପାତିନୀ ଥିଲା)—Name of a demoness, deputed by Rābaṇa to keep watch over Sītā, but who was always kind to her ward; the daughter of Bibhīshana.
କହନ୍ତି ଭୂପଙ୍କୁ ଭେଟି ତ୍ରିଜଟା ଉଅର ଯେ ।
ଉପ. ବୈଦେହୀଶବିଳାସ ।

ସାଧାରଣ ଲୋକେ ଅପର ବୃତ୍ତାରେ ଦେଇ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳେ, ତେବେ ସେହି ଶବ୍ଦ ପାଠ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଦେଇ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଖାଇ' ନ ମିଳିଲେ 'ଖାଈ' ଖୋଜିବେ; 'କୁଟ' ନ ମିଳିଲେ 'କୂଟ' ଦେଖିବେ; 'ବଧୂ' ନ ମିଳିଲେ 'ବଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ତ୍ରିଜାତକ—ସଂ. ବ.—(ବୈଦ୍ୟକ) ସମାହାର ଦ୍ୱିଗୁ; ତ୍ରି+ଜାତକ—
Trijātaka ଗୁଡ଼ତ୍ୱକ (ମତାନ୍ତରରେ ଜାତିଫଳ), ଅଳେଇଚ ଓ ତେଜ-(ତ୍ରିଗନ୍ଧକ—ଅନ୍ୟନାମ) ପତ୍ରର ସମଷ୍ଟିରେ ପ୍ରସ୍ତୁତ ସୁଗନ୍ଧ ଔଷଧବିଶେଷ—
A mixture of three spices prescribed by the Ayurbeda (viz. cinnamon or mace; cardamom and cassia leaves.)

[ଦ୍ର—ଏଥିରେ ନାଗେଶ୍ୱର ମିଶିଲେ ଚତୁର୍ଜାତକ ହୁଏ । ବୈଦ୍ୟ ଶାସ୍ତ୍ର ମତରେ ତ୍ରିଜାତକ ରେଚକ, ରୁକ୍ଷ, ତୀକ୍ଷ୍ଣ, ଉଷ୍ଣବୀର୍ଯ୍ୟ, ମୁଖର ଦୁର୍ଗନ୍ଧନାଶକ, ପିତ୍ତବର୍ଦ୍ଧକ, ଏ ବାୟୁଦୋଷ ଓ ବିଷନାଶକ ଅଟେ ।]

ତ୍ରିଜୀବୀ—ଦେ. ବିଣ (ସଂ. ଚିରଂଜୀବୀ)—ଚିରଂଜୀବୀ—
Trijibi Long-lived.

ତ୍ରିଜୀବୀ ହେବାକୁ ବର ପାଇଥିଲ, ସୀତା ହରଣ କଷ୍ଟାର କଲ ହେ, ରକ୍ଷକ—
ବଇଦ୍ୟନାଥ. ବଇଦ୍ୟ ରାମାୟଣ ।

ତ୍ରିଣା ରିଣା—ଦେ (ଧ୍ୱନ୍ୟନୁକରଣ) ଅ—ବାଦ୍ୟର ନାଦବିଶେଷ—
Triṇā riṇā A sound of musical instruments.

ତେଣୁଙ୍କ ଝଙ୍କ ଝଙ୍କ ଝଙ୍କାଳି ହେଲେ,
ତ୍ରେଗୁଣା ତ୍ରିଣାରିଣ ଶୁଣି ଗୁଣେ । ତ୍ରିଂ. ଉପେନ୍ଦ୍ରଭଞ୍ଜ ।

ତ୍ରିତୟ—ସଂ. ବ (ତ୍ରି+ପୂରଣାର୍ଥେ ଓ ଅବୟବାର୍ଥେ, ତୟ)—
Tritaya ୧ । ଧର୍ମ, ଅର୍ଥ ଓ କାମ ଏହି ତିନିର ସମାହାର—
ତ୍ରିତୟା, ତ୍ରିତୟୀ { ସ୍ତ୍ରୀ 1. The aggregate of piety, riches and worldly desire.
୨ । ତିନି ସଂଖ୍ୟା—2. Three.
ସଂ. ବିଣ—ତ୍ରିସଂଖ୍ୟାବିଶିଷ୍ଟ—Numbering three

ତ୍ରିତୟା—ଗ୍ରା. ବି (ସଂ. ତ୍ରେତା)—ତ୍ରେତାଯୁଗ—
Tritayā The second age of the world according to the Hindu.

ତ୍ରିତଲ—ସଂ. ବିଣ (ବହୁବ୍ରୀହି; ତ୍ରି+ତଲ)—ତିନି ମହାଲାଯୁକ୍ତ—
Tritaḷa Three-storied.
ବି—ତୃତୀୟ ମହଲା—Second storey.

ତ୍ରିତାପ—ସଂ. ବି (ସମାହାର ଦ୍ୱିଗୁ; ତ୍ରି+ତାପ)— ସଂସାରରେ ମନୁଷ୍ୟ
Tri tāpa ଭୋଗ କରିବା ତ୍ରିବିଧ ଦୁଃଖ; ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ ଦୁଃଖ—The three classes of worldly troubles to which man is liable, viz, spiritual or mental, bodily and those inflicted by Divine a agency.

ତ୍ରିଦଣ୍ଡ—ସଂ. ବି (ସମାହାର ଦ୍ୱିଗୁ; ତ୍ରି+ଦଣ୍ଡ)—୧ । ସନ୍ନ୍ୟାସ ଆଶ୍ରମର
Tri daṇḍa ଚିହ୍ନ; ଏକତ୍ରୀକୃତ ତିନି ଖଣ୍ଡ ଯଷ୍ଟି; ସନ୍ନ୍ୟାସୀମାନେ ହାତରେ ବହନ କରିବା ଖଣ୍ଡିଏ ବଡ଼ ଯଷ୍ଟିର ଅଗ୍ର ଭାଗରେ ଆଉ ଦୁଇ ଖଣ୍ଡ ଛୋଟ କାଠି ବନ୍ଧା ହୋଇଥିବା ଦଣ୍ଡ—1. A staff with a cross attached at the top, carried by a class of ascetics; the sacred triple staff of an ascetic.

୨ । ମନ, ବାକ୍ୟ ଓ କାର୍ଯ୍ୟର ନିଗ୍ରହ; ମନଃସଂଯମ, ବାକ୍ ସଂଯମ ଓ ଦେହସଂଯମ—2 Control over one's thoughts, words and actions; triple self control

୩ । ସନ୍ନ୍ୟାସାଶ୍ରମ—3 The state of a Sannyāsī or ascetic.

୪ । ମନୋଦଣ୍ଡ, ବାଗ୍‌ଦଣ୍ଡ ଓ କାୟଦଣ୍ଡ, ଏହି ତ୍ରିତୟ—
4. Three kinds of punishment viz on the mind, on one's utterances and one's body.

ତ୍ରିଦଣ୍ଡୀ—ସଂ. ବିଣ. (ତ୍ରିଦଣ୍ଡ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)—
Tridaṇḍī ୧ । ତ୍ରିଦଣ୍ଡବିଶିଷ୍ଟ—1. Consisting of three sticks.
୨ । ତ୍ରିଯଷ୍ଟିବାହକ—2. Carrying three sticks.
୩ । ତ୍ରିଦଣ୍ଡଧାରୀ—3. Carrying the triple staff.
ବି—୧ । ଯେଉଁ ବ୍ୟକ୍ତି ଆପଣାର କାୟମନୋବାକ୍ୟ (ମନ ବଚନ ଓ କର୍ମ ଏହି ତିନି) କୁ ସଂଯମ କରିଅଛି—
1. One who has succeeded in controlling his mind, body and action.
୨ । ତ୍ରିଦଣ୍ଡଧାରୀ ପରିବ୍ରାଜକ ସନ୍ନ୍ୟାସୀବିଶେଷ—
2. A class of wandering ascetics carrying the triple staff.
୩ । ଯଜ୍ଞୋପବୀତ (ଏଥିରେ ତିନି ସରରେ ତିନୋଟି ଗେଣ୍ଠି ଥାଏ)—3. The sacred thread worn by the 3 higher castes amongst the Hindus.

ତ୍ରିଦଳ—ସଂ. ବିଣ—୧ । ଯାହାର ତିନୋଟି ପତ୍ର ଥାଏ—
Tridaḷa 1. Having three leaves.
(ତ୍ରିଦଳା—ସ୍ତ୍ରୀ) ୨ । ଯେଉଁ ପତ୍ରର ତିନୋଟି ଶାଖା ଥାଏ—
2. (leaf) Having three branches.
ସଂ. ବି—ବେଲ ଗଛ—The Bel tree.

ତ୍ରିଦଳା—ସଂ. ବି. (ତ୍ରିଦଳ+ଆ)—ଗୋଧାପଦୀ (ଦେଖ)
Tridaḷā Godhāpadī (See)

ତ୍ରିଦଶ—ସଂ. ବି. (ତ୍ରି=ତାପତ୍ରୟ+ଦଶ୍ ଧାତୁ=ନାଶ କରିବା+କର୍ତ୍ତୃ. 
Tridaśa ଅ; ଯେଉଁମାନେ ଜୀବର ଆଧ୍ୟାତ୍ମିକ, ଆଧିଭୌତିକ, ଆଧିଦୈବିକ ତାପମାନ ବିନାଶ କରନ୍ତି)—ଦେବତା; ଅମର—The Gods; the Immortals.
ସଂ. ବିଣ. (ତ୍ରିଅଧିକ ବା ତ୍ରିଗୁଣିତ ଦଶ)—୩୩ ସଂଖ୍ୟା-ବିଶିଷ୍ଟ (ଯଥା—ଆଦିତ୍ୟ ୧୨, ରୁଦ୍ର ୧୧, ବସୁ ୮, ବିଶ୍ୱଦେବ ୨=୩୩ଦେବ)—Numbering 33.
ଦେ. ଓ ବ. ବିଣ. (ସଂ. ତ୍ରୟୋଦଶ)—୧୩ ସଂଖ୍ୟା —
The number thirteen.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | ଙ୍କ | ଇପ୍ସ | ଭୃଥ | ଞ |
| ୨ | ଈ | ଊ | ଋୁ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟ | ଇଅ | ଢ଼ | ନୃ |

ତ୍ରିଦଶ ଅଧ୍ୟକ୍ଷ ସମ୍ପତ୍ତି
ଶ୍ରୀକୃଷ୍ଣ ଗୁଣ କେଣ ଧାନ । ପ୍ରାଚୀ, ଦୁର୍ଲଭମନଚନ୍ଦ୍ରୋଦୟ ।

ତ୍ରିଦଶ ଗୁରୁ—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ଗୁରୁ )—ବୃହସ୍ପତି—
Tridaśa guru The spiritual preceptor of the Gods; Bruhaspati.
(ତ୍ରିଦଶାଚାର୍ଯ୍ୟ—ଅନ୍ୟରୂପ)

ତ୍ରିଦଶ ଗୋପ—ସ. ବ—ସାଧବ ଘର ବୋଦ୍ଧୁ ପୋକ; ଇନ୍ଦ୍ରଗୋପକୀଟ—
Tridaśa gopa The cocculus insect ;cochenial.

ତ୍ରିଦଶ ଦୀର୍ଘିକା—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ଦୀର୍ଘିକା )—
Tridaśa dīrghikā ମନ୍ଦାକିନୀ ବା ସ୍ୱର୍ଗ ଗଙ୍ଗା—
The sacred Ganges said to flow in the Heaven.

ତ୍ରିଦଶ ପତି—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ପତି )—
Tridaśa pati ଦେବରାଜ; ଇନ୍ଦ୍ର—Indra, the king amongst the Gods.
ତ୍ରିଦଶାଧିପତି, ତ୍ରିଦଶାଧିପ, ତ୍ରିଦଶାଧୀଶ } ଅନ୍ୟରୂପ

ତ୍ରିଦଶ ପୁଷ୍ପ—ସ. ବ—ଲବଙ୍ଗ—
Tridaśa pushpa Clove.

ତ୍ରିଦଶ ବଧୂ—ସ. ବ. ସ୍ତ୍ରୀ. ( ୬ଷ୍ଠୀ ତତ୍; ତ୍ରିଦଶ+ବଧୂ )—ଦେବ ସ୍ତ୍ରୀ;
Tridaśa badhū ଅପ୍ସରା—The nymphs of the Gods; the heavenly maidens; the fairies of the Hindus.
(ତ୍ରିଦଶବନିତା—ଅନ୍ୟରୂପ)

ତ୍ରିଦଶ ମଞ୍ଜରୀ—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ମଞ୍ଜରୀ )—
Tridaśa mañjarī ତୁଳସୀ ଗଛ—The sacred Basil plant.

ତ୍ରିଦଶାଙ୍କୁଶ—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ଅଙ୍କୁଶ )—ବଜ୍ର—
Tridaśāṅkuśa Thunder bolt.

ତ୍ରିଦଶାୟନ—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ଅୟନ )—ବିଷ୍ଣୁ—
Tridaśāyana Bishṇu.

ତ୍ରିଦଶାୟୁଧ—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ଆୟୁଧ )—
Tridaśāyudha ୧ । ବଜ୍ର; ଚଡ଼ୁକ—1. Thunderbolt.
୨ । ଇନ୍ଦ୍ରଧନୁ—2 The rainbow.

ତ୍ରିଦଶାରି—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ଅରି )—
Tridaśāri ଅସୁର; ରାକ୍ଷସ; ଦାନବ; ଦୈତ୍ୟ—
A demon; a titan

ତ୍ରିଦଶାଳୟ—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ଆଳୟ )—
Tridaśālaya ୧ । ସ୍ୱର୍ଗ; ଦେବଲୋକ—1. The heaven.
(ତ୍ରିଦଶାବାସ—ଅନ୍ୟରୂପ) ୨ । ସୁମେରୁ ପର୍ବତ—
2. The Sumeru mountain.

ତ୍ରିଦଶାହାର—ସ. ବ. ( ୬ଷ୍ଠୀ ତତ୍; ତ୍ରିଦଶ+ଆହାର )—
Tridaśāhāra ଅମୃତ; ସୁଧା—Nectar; ambrosia

ତ୍ରିଦଶେଶ୍ୱର—ସ. ବ. ପୁଂ. ( ୬ଷ୍ଠୀ ତତ୍; ତ୍ରିଦଶ+ଈଶ୍ୱର )—
Tridaśeśwara ୧ । ଇନ୍ଦ୍ର—1. Indra.
(ତ୍ରିଦଶେଶ୍ୱରୀ—ସ୍ତ୍ରୀ) ୨ । ମହାଦେବ—2. Siba.
୩ । ବିଷ୍ଣୁ—3. Bishṇu.

ତ୍ରିଦଶେଶ୍ୱରୀ—ସ. ବ. ସ୍ତ୍ରୀ—୧ । ଇନ୍ଦ୍ରାଣୀ; ଶଚୀ—
Tridaśeśwarī 1. The wife of Indra.
୨ । ଦୁର୍ଗା; ପାର୍ବତୀ—1. Pārbatī
୩ । ଲକ୍ଷ୍ମୀ—3. Lakshmī

ତ୍ରିଦଶ୍ୟ—ଦେ. ତ. ( ସ. ତ୍ରିଦଶାଳୟ )—ସ୍ୱର୍ଗ—
Tridaśya Heaven.
ଯେ ସବୁ ଭୁବେ ଦୟା ତାହା
ନଷ୍ଟ ନେ ତ୍ରିଦଶ୍ୟ ବସନ୍ତି । ଚନ୍ଦ୍ରୋଥ, ଭାଗବତ ।

ତ୍ରିଦିବ—ସ. ବ. କ୍ଲୀ. ( ତ୍ରି=ବ୍ରହ୍ମା, ବିଷ୍ଣୁ, ଶିବ+ଦିବ୍ ଧାତୁ=କ୍ରୀଡ଼ା
Tridiba କରିବା+ଅଧିକରଣ. ଅ; ଯେଉଁଠାରେ ଦେବତାମାନେ ବିହାର କରନ୍ତି )—୧ । ସ୍ୱର୍ଗ—1. Heaven.
୨ । ଆକାଶ—2. The sky; welkin.
୩ । ସୁଖ—3 Happiness.

ତ୍ରିଦିବା—ସ. ବ. ସ୍ତ୍ରୀ. (ତ୍ରିଦିବ+ସ୍ତ୍ରୀ. ଆ)—ନଦୀବିଶେଷ—
Tridibā Name of a river,

ତ୍ରିଦିବେଶ—ସ. ବ. ପୁଂ. (୬ଷ୍ଠୀ ତତ୍; ତ୍ରିଦିବ+ଈଶ)—ଦେବତା—
Tridibeśa A God; Deity.

ତ୍ରିଦୃକ୍—ସ. ବ. ପୁଂ. (ବହୁବ୍ରୀହି; ତ୍ରି+ଦୃଶ୍=ଚକ୍ଷୁ)—ତ୍ରିଲୋଚନ;
Tridṛuk ଶିବ—The three eyed God, Śiba.

ତ୍ରିଦେବ—ସ. ବ. (ଦ୍ୱିଗୁ; ତ୍ରି+ଦେବ)—ବ୍ରହ୍ମା ବିଷ୍ଣୁ ଓ ଶିବ—
Trideba The Hindu Trinity.

ତ୍ରିଦୋଷ—ସ. ବ. ( ଆୟୁର୍ବେଦ ମତେ ) ବାତ, ପିତ୍ତ ଓ କଫଜନିତ
Tridosha ଶରୀରର ବିକାର ବା ପ୍ରକୋପ; ସନ୍ନ; ସନ୍ନିପାତ ବିକାର—Derangement of the three humours of the body (wind, bile and phlegm) according to Āyurbeda; collapse.

ତ୍ରିଦୋଷଘ୍ନ—ସ. ବଣ. (ତ୍ରିଦୋଷ+ହନ୍ ଧାତୁ=ନାଶ କରିବା+
Tridoshaghna କର୍ତ୍ତୃ. ଅ)—ଯାହା ବାତ, ପିତ୍ତ ଓ କଫର ପ୍ରକୋପକୁ ନାଶ କରେ—(medicine) Which sets the three disordered humours right.

ତ୍ରିଦୋଷଜ—ସ. ବଣ. (ତ୍ରିଦୋଷ+ଜନ୍ ଧାତୁ+କର୍ତ୍ତୃ. ଅ)—
Tridoshaja ବାତ, ପିତ୍ତ ଓ କଫ ଦୋଷରୁ ଉତ୍ପନ୍ନ (ରୋଗାଦି)—
ତ୍ରିଦୋଷଜନିତ, ତ୍ରିଦୋଷଜାତ } ଅନ୍ୟରୂପ Due to the derangement of the three humours of the body.
ସ. ବ—ସନ୍ନିପାତ—Collapse.

ତ୍ରିଧା—ସ. ଅ (ତ୍ରି+ପ୍ରକାରାର୍ଥେ ଧା)—୧ । ତିନି ପ୍ରକାରରେ—
Tridhā 1. In three ways; in three kinds.

ସାଧାରଣ ଲୋକେ ଅପର ପୃଷ୍ଠାରେ ଦର୍ଶିତ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତତ୍ପରବର୍ତ୍ତୀ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗ୍ୟା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୨ । ତିନିଗୁଣ—2. Threefold.

୩ । ତିନିଥର—3. Thrice.

୪ । ତିନି ଖଣ୍ଡରେ—4. In three pieces.

୫ । ତିନିଭାଗରେ—5. In three parts; into three.

୬ । ତିନିଅଡ଼େ—6. In three directions.

ବିଣ—୧ । ତିନି ପ୍ରକାରର—1. Of three kinds.

୨ । ତ୍ରିଗୁଣିତ—2. Threefold; trebled.

**ତ୍ରିଧାତୁ**—ସଂ. ବି. (ତ୍ରି+ଧାତୁ; ସମାହାର)—୧ । ସୁନା, ରୁପା ଓ ତମ୍ବା—
Tridhātu 1. Gold, silver and copper.

୨ । ଶରୀରସ୍ଥ କଫ, ବାତ ଓ ପିତ୍ତ—2. The 3 humours of the body; phlegm, wind and bile.

**ତ୍ରିଧାମା**—ସଂ. ବି. ପୁଂ. (ବହୁବ୍ରୀହି; ତ୍ରି+ଧାମନ୍=ବାସସ୍ଥାନ ଯାହାର; ତ୍ରିଧାମନ୍; ୧ମା ୧ବ)—୧ । ବ୍ରହ୍ମା—
Tridhāmā 1. Brahma.

୨ । ବିଷ୍ଣୁ—2. Bishṇu.

୩ । ଶିବ—3. Śiba.

୪ । ଅଗ୍ନି—4. Fire.

୫ । ମୃତ୍ୟୁ—5. Death.

୬ । ସ୍ୱର୍ଗ—6. Heaven.

ସଂ. ବିଣ—ତ୍ରିସଂଖ୍ୟାନ୍ୱିତ—Numbering three.

**ତ୍ରିଧାର**—ସଂ. ବି. (ସମାହାର ଦ୍ୱିଗୁ; ତ୍ରି+ଧାର)—
Tridhāra ତିନିଗୋଟି ଧାରର ସମାହାର—Three streams flowing or meeting together.

ବିଣ—୧ । ତିନି ଧାରବିଶିଷ୍ଟ—
1. Having three streams.

୨ । ତିନି ଧାରରେ ବୋହି ଯାଉଥିବା—
2. Flowing in three streams.

**ତ୍ରିଧାରା**—ସଂ. ବି. ସ୍ତ୍ରୀ. (ଦ୍ୱିଗୁ ଓ କର୍ମଧା; ତ୍ରି+ଧାରା)—
Tridhārā ୧ । ତିନିଗୋଟି ଧାରା ବା ପାଣି ବହିବା ଧାର—
1. Three streams flowing together.

୨ । (ବହୁବ୍ରୀହି) ତିନି ଧାରରେ ବହିଯାଉଥିବା ନଦୀ, ଗଙ୍ଗା—
2. The Ganges flolwing in three streams.

[ ଦ୍ର—ପୁରାଣମତରେ ଗଙ୍ଗାର ପ୍ରଥମ ଧାରା ମନ୍ଦାକିନୀରୂପେ ସ୍ୱର୍ଗରେ, ଦ୍ୱିତୀୟ ଧାରା ଭାଗୀରଥୀରୂପେ ମର୍ତ୍ତ୍ୟରେ ଓ ତୃତୀୟ ଧାରା ଭୋଗବତୀରୂପେ ପାତାଳରେ ବହୁ ଅଛି । ]

୩ । ତେଲିଆ ସିଜୁ—
3. A kind of cactus.

**ତ୍ରିନବତି**—ସଂ. ବି ଓ ବିଣ. (ମ. ପ. ଲୋ; କର୍ମଧାରୟ ତ୍ରି ଅଧିକ
Trinabati ନବତି)—ତେୟାନବେ; ୯୩—Ninety three.

**ତ୍ରିନୟନ**—ସଂ. ବି. ପୁଂ. (ବହୁବ୍ରୀହି; ତ୍ରି+ନୟନ)—୧ । ମହାଦେବ—
Trinayana 1. The three-eyed God Śiba.
(ତ୍ରିନେତ୍ର, ତ୍ରିଲୋଚନ—ଅନ୍ୟରୂପ) ୨ । (କର୍ମଧାରୟ) ଲୋଚନ-
(ତ୍ରିନୟନା—ସ୍ତ୍ରୀ) ତ୍ରୟ—2. Three eyes.

ବିଣ. ପୁଂ—ତିନି ଚକ୍ଷୁବିଶିଷ୍ଟ; ତିନିଆଖିଆ—
Three-eyed.

**ତ୍ରିନୟନା**—ସଂ. ବି. ସ୍ତ୍ରୀ—କାଳୀ; ଦୁର୍ଗା; ବଗଳାମୁଖୀ—
Trinayanā Goddess Kāḻi.
(ତ୍ରିନେତ୍ରା—ଅନ୍ୟରୂପ) ବିଣ—ଲୋଚନତ୍ରୟଯୁକ୍ତା; ତ୍ରିଚକ୍ଷୁ-
ବିଶିଷ୍ଟା—Three-eyed (female); having three eyes.

**ତ୍ରିନାଥ**—ସଂ. ବି. (ସମାହାର; ତ୍ରି+ନାଥ)—ତ୍ରିଦେବ (ଦେଖ)
Trinātha Trideba (see)

**ତ୍ରିନାଥ ମେଳା**—ଦେ. ବି—ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କ ଉଦ୍ଦେଶ୍ୟରେ
Trinātha meḻā ପୂଜା—A worship, for some time in vogue in Orissa, of the Hindu Trinity.

ତ୍ରିନାଥ ମେଳା, ସତ୍ୟନାରାୟଣ ପୂଜା, ଗ୍ରାମ ଦେବତୀ ମାନସୀ
ବୁଢ଼ିଲୋକମାନେ ଢେର ଢେର ଧର୍ମକାର୍ଯ୍ୟ କଲେ ।

ଫକୀରମୋହନ. ଗଳ୍ପସ୍ୱଳ୍ପ ।

[ ଦ୍ର—ଏହା କୌଣସି ଶାସ୍ତ୍ରାନୁମୋଦିତ ନୁହେ । ଏଥିରେ ପଇସାକର ପାନ, ପଇସାକର ତେଲ ଓ ପଇସାକର ଗଞ୍ଜେଇ ତିନି ଦେବତାଙ୍କ ନାମରେ ଉତ୍ସର୍ଗ କରାଯାଏ ଓ ଗୀତ ବୋଲାଯାଏ । ତେଲ ଦୀପରେ ଜଳେ, ପାନ ଓ ଗଞ୍ଜେଇକୁ ଉପସ୍ଥିତ ଭକ୍ତମାନେ ଖାଆନ୍ତି । ]

**ତ୍ରିପକ୍ଷୀ**—ଦେ. ବି (ସଂ. ତ୍ରିପକ୍ଷୀୟ)—ମୃତ ବ୍ୟକ୍ତିର ମୃତ୍ୟୁ ଦିବସଠାରୁ
Tripakshī ୪୫ ଦିନ ପରେ କରାଯିବା ଶ୍ରାଦ୍ଧ—A Śrāddha performed on the forty-fifth day of one's death.

**ତ୍ରିପଞ୍ଚାଶତ୍**—ସଂ. ବି ଓ ବିଣ ( ତ୍ରି ଅଧିକ ପଞ୍ଚାଶତ୍; ମ. ପ. ଲୋ. )—
Tripañchāśat ତେପନ; ୫୩—Fifty-three.

**ତ୍ରିପଟା**—ଦେ. ବି (ସଂ. ତ୍ରିପୁଟା)—ତିନିତାଳବିଶିଷ୍ଟ ସଙ୍ଗୀତ—
Tripaṭā A song having three stops.

**ତ୍ରିପଣ୍ଡ**—ସଂ. ବିଣ. (ତ୍ରି=ଧର୍ମ, ଅର୍ଥ, କାମ+ପଣ୍ଡ=ବ୍ୟର୍ଥ; ଯେ ଧର୍ମ,
Tripaṇḍa ଅର୍ଥ କାମକୁ ପଣ୍ଡ କରେ)—୧ । ଦୁରାତ୍ମା; ଦୁର୍ବୃତ୍ତ—
1. Wicked.

୨ । ଖଳ; ଶଠ; ପ୍ରତାରକ—
2. Cheating; fraudulent; deceitful.

ଦେ. ବି.—୧ । କଦାକାର—1. Ugly.

ବିଣର ବିଣ.—୧ । ବିକଟରୂପେ; ଭୟାନକରୂପେ—
1. Frightfully.

୨ । ଅତ୍ୟନ୍ତ—2. Very.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଈ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଶ | ଜ | ଷ,ସ | କ୍ଷ | ଇୟ | ଉଅ | ଓ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶ୍ୟ | ଯ | ସ | ଗ୍ୟ | ଇଅ | ଔ | ଣ |

**ତ୍ରିପଣ୍ଡ କଳା**—ଦେ. ବଣ.—ଘୋର କୃଷ୍ଣବର୍ଣ୍ଣ—
Tripanda kala — Very black coloured.
(ତ୍ରିପଣ୍ଡ କାଳିଆ—ଅନ୍ୟରୂପ)
(ତ୍ରିପଣ୍ଡ କାଳୀ—ସ୍ତ୍ରୀ)

ମୁଣ୍ଡଟା ବଡ଼ପଣ୍ଡା ମୁଣ୍ଡପରି ତ୍ରିପଣ୍ଡ କଳା ।
ଫକୀରମୋହନ. ଛମାଣ ଆଠଗୁଣ୍ଠ ।

**ତ୍ରିପତାକ**—ସଂ. ବଣ. (ବହୁବ୍ରୀହି; ତ୍ରି+ପତାକା; ପତାକା ପରି ରେଖାତ୍ରୟବିଶିଷ୍ଟ)—ପତାକାତ୍ରୟବିଶିଷ୍ଟ—Having three flags.
Tripatāka
(ତ୍ରିପତାକା—ଅନ୍ୟରୂପ)

ବି.—୧ । ପତାକାବତ୍ ରେଖାତ୍ରୟ ଅଙ୍କିତ ଲଲାଟ—
1. A brow having three flag-like lines or folds.

୨ । ମଧ୍ୟମା ଓ ଅନାମିକା ଅଙ୍ଗୁଳି ଛଡ଼ା ଅନ୍ୟ ତିନି ଅଙ୍ଗୁଳି ବିଶିଷ୍ଟ ହସ୍ତ—2. A palm of hand having three fingers only (i.e without the middle and the ring fingers).

**ତ୍ରିପତି**—ଦେ. ବି. (ନାମ)—(ସଂ. ତ୍ରି+ପତି)—୧ । ମାନ୍ଦ୍ରାଜ ପ୍ରଦେଶର ଆରକଟ ଜିଲ୍ଲାର ଚନ୍ଦ୍ରଗିରି ତାଲୁକାର ପ୍ରଧାନ ନଗର; ତିରୁପତି—1. Name of a sub-division town and place of pilgrimage in Madras presidency; Tirupati.
Tripati

[ଦ୍ର—ଏହା ଭାରତର ଗୋଟିଏ ସୁପ୍ରସିଦ୍ଧ ତୀର୍ଥ । ଏସ୍ଥାନର ତିରୁମଲ ପର୍ବତ ଉପରେ ଦେବମନ୍ଦିର ପ୍ରତିଷ୍ଠିତ । ଏହି ପର୍ବତ ସପ୍ତଶୃଙ୍ଗବିଶିଷ୍ଟ । ଛଅଗୋଟି ଶୃଙ୍ଗ ଅତିକ୍ରମ କରି ଗଲେ ଶେଷାଚଳ ନାମକ ସପ୍ତମ ଶୃଙ୍ଗରେ ଶ୍ରୀନିବାସ ଦେବଙ୍କର ମନ୍ଦିର ଦୃଷ୍ଟିଗୋଚର ହୁଏ । ଏହାର ଅନ୍ୟ ନାମ ବେଙ୍କଟାଦ୍ରି । ଏ ଦେବବିଗ୍ରହ ଶ୍ରୀନିବାସଦେବ ବାଲାଜି ନାମରେ ବୈଷ୍ଣବମାନଙ୍କଦ୍ୱାରା ଅଭିହିତ ହୁଅନ୍ତି । ବାଲାଜି, ଶ୍ରୀ ଓ ଭୂ ଶକ୍ତିଦ୍ୱୟସମନ୍ୱିତ କୃଷ୍ଣପ୍ରସ୍ତରନିର୍ମିତ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି । ଏଠାରେ ସ୍ୱାମୀ ତୀର୍ଥ, ପାଣ୍ଡବ ତୀର୍ଥ ଓ କପିଳ ତୀର୍ଥମାନ ଅଛି । ଏଠାରେ ରାମାନୁଜ ଜନ୍ମଗ୍ରହଣ କରିଥିଲେ । (ମଦନମୋହନ. ତୀର୍ଥଦର୍ଶନ) । ଏ ମନ୍ଦିରର ଗଚ୍ଛା ବୃତ୍ତିରୁ ବାର୍ଷିକ ୧୬ ଲକ୍ଷ ଟଙ୍କା ଆଦାୟ ହୋଇ ଏହି ଦେବଙ୍କ ସେବାପୂଜାରେ ବ୍ୟୟିତ ହୁଏ ।

୨ । ଭଗବାନ; ବିଷ୍ଣୁ—2. Bishnu.

ତ୍ରିପତି ପାଦେ ମୋ ପ୍ରଣତି
ଯେଣେ ହୋଇବ ମୋର ଗତି । ଜଗନ୍ନାଥ. ଭାଗବତ ।

**ତ୍ରିପତ୍ର**—ସଂ. ବଣ. (ବହୁବ୍ରୀହି; ତ୍ରି+ପତ୍ର)—ତିନି ଗୋଟି ପତ୍ରବିଶିଷ୍ଟ—
Tripatra — Trefoil; having three leaves attached to a stalk.

ବି.—୧ । ବେଲପତ୍ରୀ—1. The Bel leaves (having three leaves together.

୨ । ବେଲଗଛ—2. The Bel tree.

୩ । କୁଶତ୍ରୟରେ ରଚିତ ଦୈବ ଓ ପୈତୃକାର୍ଯ୍ୟରେ ବ୍ୟବହୃତ ମୋଡ଼ା—3. Three blades of kuśa grass coiled together.

**ତ୍ରିପତ୍ରୀ**—ଦେ. ବି. (ସଂ ତ୍ରି+ପତ୍ରୀ)—ତିନିଗୋଟି କାଣ୍ଡ—
Tripatrī — Three arrows.

କସେ ଚେତନା ପାଇଥିଲେ ପତନ ହୋଇ ତ୍ରିପତ୍ରୀ ମନ୍ତ୍ର ପୁନଃ ମାରି ସେ ।
ଭଞ୍ଜ ବୈଦେହୀଶବିଳାସ ।

**ତ୍ରିପଥ**—ସଂ. ବି. (ସମାହାର ଦ୍ୱିଗୁ; ତ୍ରି+ପଥ)—୧ । ତିଛକି; ତିନି ଛକି ବାଟ—1. The meeting of three roads.
Tripatha

୨ । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—2. Heaven, earth and the nether regions.

୩ । ତିନିଗୋଟି ବାଟ—3. Three ways.

୪ । ଧର୍ମ ସାଧନର ତିନି ମାର୍ଗ (କର୍ମ, ଜ୍ଞାନ ଓ ଉପାସନା)—
4. The three ways for worshipping.

**ତ୍ରିପଥଗା**—ସଂ.ବି.ସ୍ତ୍ରୀ—(ତ୍ରିପଥ=ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ+ଗମ୍+କର୍ତ୍ତୃ.ଅ) ଗଙ୍ଗା—The Ganges (flowing in the Heaven, the earth and the nether world).
Tripathagā
(ତ୍ରିପଥଗାମିନୀ—ଅନ୍ୟରୂପ)

ବଣ. ସ୍ତ୍ରୀ.—ତିନି ବାଟରେ ବୋହି ଯାଉଥିବା—
Flowing in three ways.

**ତ୍ରିପଦ**—ସଂ. ବଣ. (ତ୍ରି+ପଦ)—ଯାହାର ତିନୋଟି ଗୋଡ଼ ଥାଏ; ତିନିଗୋଡ଼ିଆ—Three-legged.
Tripada
(ତ୍ରିପଦା—ସ୍ତ୍ରୀ) ସଂ. ବି—୧ । ତେପାଇ; ତିନିଗୋଡ଼ିଆ ଷ୍ଟୁଲ ବା ଟେବଲ—1. Tripod.

୨ । ତ୍ରିଭୁଜ—2. Triangle.

**ତ୍ରିପଦା**—ସଂ. ବି. (ତ୍ରିପଦ+ଆ)—ଗାୟତ୍ରୀ (ଦେଖ)
Tripadā — Gāyatrī (See)

**ତ୍ରିପଦିକା**—ସଂ. ବି. ସ୍ତ୍ରୀ—ତ୍ରିପଦୀ (ଦେଖ)
Tripadikā — Tripadī (See)

**ତ୍ରିପଦୀ**—ସଂ. ବି. ସ୍ତ୍ରୀ. (ତ୍ରି+ପଦ+ସ୍ତ୍ରୀ. ଈ)—
Tripadī — ୧ । ତେପାଇ; ତିନିଗୋଡ଼ିଆ ଟେବଲ—1. Tripod.
(ତ୍ରିପଦିକା—ଅନ୍ୟରୂପ) ୨ । ଛନ୍ଦୋବିଶେଷ—
2. Name of a metre; Trochæ.

[ଦ୍ର—ଏହି ଛନ୍ଦର ପ୍ରଥମାର୍ଦ୍ଧରେ ତିନି ଚରଣ ଥାଏ ଓ ତିନି ସ୍ଥାନରେ ଯତିପାତ ହୁଏ ।]

୩ । ହସ୍ତୀର ପଦବନ୍ଧନ ରଜ୍ଜୁ—3. The chain with which the legs of an elephant are tied.

୪ । ତିନିଗୋଡ଼ିଆ ଶଙ୍ଖାଧାର—
4. A tripod for putting conch on it.

୫ । ଗୋଧାପଦୀ ବା ହଂସପଦୀ ଗୁଳ୍ମ—
5. A kind of plant.

୬ । ତିନିଶ୍ଳୋକବିଶିଷ୍ଟ କବିତା—
6. A poem with tree stanzas.

ସାଧାରଣ ଲୋକେ ଅପର ପୃଷ୍ଠାରେ ୪ଠାରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଶବ୍ଦକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

୭ । ବଣିଆଙ୍କ ତୁପେଇ—7. A three-legged stool used by goldsmiths.

୮ । ଗାୟତ୍ରୀ ( ଦେଖ )—8. Gāyatrī ( See )

**ତ୍ରିପର୍ଣ୍ଣ**—ସଂ. ବି—ପଳାଶବୃକ୍ଷ—A kind of tree; ( Butea Frondosa ).
Triparṇṇa

ବିଣ—ତିନି ପତ୍ରଯୁକ୍ତ—Trifoliate.

**ତ୍ରିପର୍ଣ୍ଣୀ**—ସଂ. ବି. ସ୍ତ୍ରୀ—୧ । ଶାଳପର୍ଣ୍ଣୀ ଶାକ—
Triparṇṇī 1. A medicinal potherb; Gangetic Hedysarum.
( ତ୍ରିପର୍ଣ୍ଣିକା—ଅନ୍ୟରୂପ )

୨ । ପୃଶ୍ନିପର୍ଣ୍ଣୀ ଶାକ—
2. A medicinal potherb.

୩ । ବନକାର୍ପାସ—
3. A wild variety of cotton tree.

୪ । ଶାଳପର୍ଣ୍ଣୀ ( ଦେଖ )—
4. Śālaparṇṇī ( See )

**ତ୍ରିପାଠୀ**—ସଂ. ବିଣ—ଯେ ତିନି ବେଦ ପାଠ କରିଅଛି—
Tripāṭhī Learned in the 3 Bedas.

ବି—ବ୍ରାହ୍ମଣମାନଙ୍କର ଉପାଧିବିଶେଷ; ତିହାଡ଼ୀ; ତେବାରି—
A family-title of certain Brāhmaṇs.

**ତ୍ରିପାଦ**—ସଂ. ବି. ( ବହୁବ୍ରୀହି; ତିନି ଗୋଟି ପାଦ ଯାହାର; ବାମନ
Tripāda ଅବତାରରେ ବିଷ୍ଣୁ ୩ ଗୋଟି ପାଦ ଧାରଣ କରିଥିବାରୁ)—

୧ । ବିଷ୍ଣୁ—1. Bishṇu.

୨ । ଜ୍ୱର—2. Fever.

[ ଦ୍ର—ଜ୍ୱରପୁରୁଷର ତିନି ଗୋଟି ଗୋଡ଼ ଥିବାର ପୁରାଣରେ ଲେଖା ଅଛି । ]

୩ । ତ୍ରେତାଯୁଗର ଧର୍ମସ୍ୱରୂପ ବୃଷ—3. A three-legged bull said to represent the piety observed duing the 2nd mythical age of the Hindus.

ବିଣ—ତିନି ପାଦପରିମିତ—
Measured by three foot-steps.

**ତ୍ରିପିଟକ**—ସଂ. ବି. ( ତ୍ରି+ପିଟକ=ବୌଦ୍ଧଧର୍ମଗ୍ରନ୍ଥ )—ବୌଦ୍ଧଧର୍ମ
Tripiṭaka ଗ୍ରନ୍ଥ—The Buddhist scripture.

[ ଦ୍ର—ବୁଦ୍ଧଙ୍କ ଉପଦେଶମାନ ତାଙ୍କ ମୃତ୍ୟୁ ପରେ ତାଙ୍କ ଭକ୍ତମାନେ ସଂଗ୍ରହ କରି ଏ ଗ୍ରନ୍ଥ ରଚନା କରିଥିଲେ । ଏହା ୩ ଭାଗ ( ପିଟକ )ରେ ବିଭକ୍ତ, ଯଥା—ସୂତ୍ରପିଟକ, ବିନୟପିଟକ ଓ ଅଭିଧର୍ମପିଟକ । ୧. ସୂତ୍ରପିଟକରେ ବୁଦ୍ଧ ଭିନ୍ନ ଭିନ୍ନ ଘଟନାରେ ଦେଇଥିବା ସାନ ବଡ଼ ଉପଦେଶମାନ ଲିଖିତ ହୋଇଅଛି । ୨. ବିନୟପିଟକରେ ବୌଦ୍ଧ, ଭିକ୍ଷୁ ଓ ଶ୍ରାବକମାନଙ୍କ ଆଚାର ବିଷୟକ ନିୟମମାନ ରହିଅଛି । ୩. ଅଭିଧର୍ମପିଟକରେ ତତ୍ତ୍ୱ, ନୈତିକ ଧର୍ମ ଓ ନିର୍ବାଣ ବର୍ଣ୍ଣିତ ହୋଇଅଛି । ଏହି ଅଭିଧର୍ମପିଟକ ବୌଦ୍ଧ ଦର୍ଶନର ମୂଳଭୂଅ । ବୌଦ୍ଧମାନେ ମହା ଯାନ, ମଧ୍ୟମ ଯାନ ଓ ହୀନ ଯାନ ଏହି ପରି ତିନିଗୋଟି ସଂପ୍ରଦାୟରେ ବିଭକ୍ତ । ମହାଯାନ ତ୍ରିପିଟକ ସଂସ୍କୃତ ଭାଷାରେ ଲିଖିତ ଓ ଏହା ନେପାଳ, ତିବ୍ବତ, ଚୀନ, ଆସାମ, ଭୂଟାନ, ରୁଷିଆ ଓ ଜାପାନରେ ଆଦୃତ । ହୀନଯାନ ତ୍ରିପିଟକ ପାଲି ଭାଷାରେ ଲିଖିତ ଓ ଏହା ବ୍ରହ୍ମଦେଶ, ଶ୍ୟାମ ଓ ଲଙ୍କାରେ ଦୃତ । ତ୍ରିପିଟକର ମଧ୍ୟମଯାନ ସଂସ୍କରଣ ବର୍ତ୍ତମାନ ମିଳୁ ନାହିଁ ।

ବୁଦ୍ଧଙ୍କ ନିର୍ବାଣ ପରେ ତାଙ୍କ ଶିଷ୍ୟମାନେ ତ୍ରିପିଟକକୁ ସଂଗ୍ରହ କରି ରାଜଗୃହ ନିକଟସ୍ଥ ଏକ ଗିରିଗୁହାରେ ରଖିଥିଲେ । ପରେ ଅଶୋକ ଗୋଟିଏ ବୌଦ୍ଧଭିକ୍ଷୁ ସମ୍ମିଳନୀ ଆହ୍ୱାନ କରି ତହିଁରେ ଆଲୋଚନା ପରେ ତ୍ରିପିଟକର ଗୋଟିଏ ବିଶୁଦ୍ଧ ସଂସ୍କରଣ ପାଲି ଭାଷାରେ ସମ୍ପାଦନ କଲେ । ଏହାହିଁ ହୀନଯାନମାନଙ୍କ ଗ୍ରନ୍ଥ । ତ୍ରିପିଟକରେ ନାରାୟଣ, ଜନାର୍ଦ୍ଦନ, ଶିବ, ବ୍ରହ୍ମା, ବରୁଣ ଆଦି ଦେବତାମାନଙ୍କର ନାମ ଉଲ୍ଲେଖ ଅଛି—ହି. ଶବ୍ଦସାଗର । ]

**ତ୍ରିପିବ**—ସଂ. ବି. ( ତ୍ରି+ପା ଧାତୁ+ଅ )—ଏକ ପ୍ରକାର ଲମ୍ବ କାନ
Tripiba ଥିବା ଅଣ୍ଡିରା ଛେଳି—
A kind of long-eared he-goat.

[ ଦ୍ର—ଏ ପାଣି ପିଇଲାବେଳେ ଏହାର ଦୁଇ କାନ ପାଣିରେ ଲାଗେ । ମନୁଙ୍କ ମତରେ ଏପରି ଛେଳିର ମାଂସ ପିତୃକର୍ମ ପାଇଁ ବିଶେଷ ଉପଯୁକ୍ତ । ]

**ତ୍ରିପିଷ୍ଟପ**—ସଂ. ବି. ( ତ୍ରି+ପିଷ୍ଟପ+ଭୁବନ )—
Tripishṭapa ୧ । ତୃତୀୟ ଭୁବନ, ସ୍ୱର୍ଗ—1. Heaven.

୨ । ତ୍ରିଲୋକ; ତ୍ରିଭୁବନ—
2. The three worlds ( heaven, earth and nether world ).

୩ । ଆକାଶ—3. The sky.

**ତ୍ରିପୁଟ**—ସଂ. ବି. ( ବହୁବ୍ରୀହି; ତ୍ରି+ପୁଟ=ଆଚ୍ଛାଦନ ଯାହାର )—
Tripuṭa ୧ । ମସୂର; ଖେସାରି—
1. A kind of pulse; Lathyrus Sativus.

୨ । ଶର; ତୀର—2. Arrow.

୩ । ତଟ; ତୀର—3. Shore.

୪ । ତାଲା; କୋଲପ—4. A padlock.

୫ । ଗୋକ୍ଷୁର ( ଦେଖ )—
5. Gokshura ( See ).

୬ । ମଟର ( ହି. ଶବ୍ଦସାଗର )—6. Pea.

ବିଣ—ତ୍ରିଗୁଣିତ—Threefold ( M. W. ).

**ତ୍ରିପୁଟା**—ସଂ. ବି. ସ୍ତ୍ରୀ. ( ତ୍ରିପୁଟ+ସ୍ତ୍ରୀ. ଆ )—୧ । ମଲ୍ଲୀଫୁଲ—
Tripuṭā 1. Jasmine flower; Arabian jasmine(M.W).

୨ । ବଡ଼ ଅଳେଇଚ—2. The large cardamom.

୩ । ସୂକ୍ଷ୍ମ ଏଳା; ଛୋଟ ଅଳେଇଚ—
3. The small cardamom.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ॰ | ଊ | ଋ,ଋ | ଌ | ଏ | ହ୍ରସ୍ୱ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଳ | ଶ,ଷ | କ୍ଷ | ଜ୍ଞ | ଡ଼,ଢ଼ |
| ୨ | ଈ | ଊ | ଋ | ଌ | ଦୀର୍ଘ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଣ | ଯ | ନ | ସଂ | ଡ଼ | ନ୍ |

୪ । ତନ୍ତ୍ର—4. The Tantras.

୫ । ତନ୍ତ୍ରୋକ୍ତ ଅଷ୍ଟଧାତ୍ରୀ ଦେବୀବିଶେଷ— 5. Name of a Goddess.

୬ । ସଙ୍ଗୀତର ମୂର୍ଚ୍ଛନାବିଶେଷ— 6. A name of a mode in music.

ତ୍ରିପୁଟୀ—ସଂ. ବି. ସ୍ତ୍ରୀ ( ତ୍ରିପୁଟ + ସ୍ତ୍ରୀ. ଈ )—୧ । ଏରଣ୍ଡ ଗଛ; ଗବ
Triputi ଗଛ—1. The castor plant.

୨ । ଖେସାରୁ—2. A kind of pulse.

୩ । ତିହୁଡ଼ି ( ଦେଖ )—3. Tihurdi ( See )

ତ୍ରିପୁଣ୍ଡ ( ଇତ୍ୟାଦି )—ଦେ. ବଣର ବଣ—ତ୍ରିପୁଣ୍ଡ୍ର ଇତ୍ୟାଦି ( ଦେଖ )
Tripunda ( etc ) Tripunda etc ( See )

ତ୍ରିପୁଣ୍ଡ୍ର—ସଂ. ବି. ( ସମାହାର ଦ୍ୱିଗୁ; ତ୍ରି + ପୁଣ୍ଡ୍ର —ଅଙ୍କ; ଅଙ୍କ ପର
Tripundra ଲମ୍ବ ୩ ରେଖା )—ଭସ୍ମ ଚନ୍ଦନାଦିଦ୍ୱାରା କପାଳରେ
( ତ୍ରିପୁଣ୍ଡ୍ରକ—ଅନ୍ୟରୂପ ) ବଣାଯିବା ସମାନ୍ତର ୩ଟି ଗାର—
A triple sectarian mark on the forehead with ashes or paste consisting of three parallel horizontal lines or streaks.

[ ଦ୍ର—ଏହି ଚିହ୍ନକୁ ଶୈବମାନେ ତିନିଗୋଟି ଅଡ଼ବାଗିଆ ଗାରରୂପେ କପାଳରେ ଧାରଣ କରନ୍ତି । ]

୨ । ବୈଶ୍ୟମାନେ କପାଳରେ କାଟିବା ଚିତା— 2. The sandal paste mark put on the brow by the Baisyas

(ଏଥିର ଶାସ୍ତ୍ରବଚନ—ଅର୍ଦ୍ଧ ପୁଣ୍ଡ୍ରଂ ବ୍ରାହ୍ମଣସ୍ୟ ଶତ୍ରିୟସ୍ୟ ତ୍ରିପୁଣ୍ଡ୍ରକଂ ତ୍ରିପୁଣ୍ଡ୍ରକଂ ତୁ ବୈଶ୍ୟସ୍ୟ ବର୍ତ୍ତୁଳଂ ଶୂଦ୍ର ଜାତସ୍ତୁ । )

ତ୍ରିପୁତ—ଗ୍ରା. ବି. (ସଂ. ତୃପ୍ତି)—ତୃପ୍ତି; ସନ୍ତୋଷ—
Triputi Satisfaction; contentment; satiety,

ତ୍ରିପ୍ତି ବିଣ.(ସଂ. ତୃପ୍ତ)—ତୃପ୍ତ; ସନ୍ତୁଷ୍ଟ—
ତ୍ରିପିତି Satisfied, contented.

ଶୁଣି କରି ସ୍ନାନ କଲେ ସେ, ଘନ ତ୍ରିପୁତ ହୋଇଲେ ସେ ।

ତ୍ରିପୁର—ସଂ. ବି.—(ଦ୍ୱିଗୁ; ତ୍ରି + ପୁର)—୧ । ମୟଦାନବ ନିର୍ମିତ
Tripura ସୁନା, ରୁପା ଓ ଲୁହାର ତିନିଗୋଟି ନଗର ବା ଦୁର୍ଗ—
1, Three fabulous cities or fortresses constructed by the Titan Mayadānaba,

[ ଦ୍ର—ଏଥିରେ ତାରକାସୁରର ତିନି ପୁଅ ତାରକାକ୍ଷ, କମଳାକ୍ଷ ଓ ବିଦ୍ୟୁନ୍ମାଳୀ ବାସ କରୁଥିଲେ । ସ୍ୱର୍ଣ୍ଣପୁର ସ୍ୱର୍ଗରେ, ରୌପ୍ୟପୁର ଅନ୍ତରୀକ୍ଷରେ ଓ ଲୌହପୁର ମର୍ତ୍ତ୍ୟରେ ଥିଲା । ଶିବ ଗୋଟିଏ ବାଣରେ ଏ ତିନିପୁରକୁ ପୋଡ଼ି ଏ ତିନି ଅସୁରଙ୍କୁ ମାରି ପକାଇଥିଲେ । ]

୨ । ତ୍ରିପୁରାସୁର; ତାରକାସୁରର ତିନି ପୁତ୍ର— 2. Name of three demons; sons of Tārakāsura,

୩ । ବାଣାସୁର (ଦେଖ)—3. Bāṇāsura (See).

୪ । ତାରକାସୁର (ଦେଖ)—4. Tārakāsura (See).

୫ । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—5 The Heaven, the earth and the nether worlds.

ଚନ୍ଦ୍ର, ତେଜ, ତ୍ରିପୁର—ପବିତ୍ର କରୁ ଦେହ ହରି । ରାଧା. ପ୍ରେମଚନ୍ଦ୍ରିକା ।

ତ୍ରିପୁରଘ୍ନ—ସଂ. ବି. ପୁଂ—( ତ୍ରିପୁର + ହନ ଧାତୁ + କର୍ତ୍ତୃ କ୍ୱିପ୍ )—
Tripuraghana ମହାଦେବ—Siba.

(ତ୍ରିପୁରଦହନ, ତ୍ରିପୁର ମର୍ଦ୍ଦନ, ତ୍ରିପୁରାରି, ତ୍ରିପୁରାନ୍ତକ—ଅନ୍ୟରୂପ)

ତ୍ରିପୁର ପର—ସଂ. ବି.—ମହାଦେବ—
Tripura para Siba.

ତ୍ରିପୁରପର ଦମନ କର ନୃପୁର ଘନେ ଉଠ ସଂଗ୍ରାମ ତନେ କେତେ ଜନକ ।
ଭକ୍ତ. ପ୍ରେମସୁଧାନିଧି ।

ତ୍ରିପୁର ଭୈରବୀ—ସଂ. ବି. ସ୍ତ୍ରୀ—କାଳିକା ପୁରାଣୋକ୍ତ ଦେବୀବିଶେଷ—
Tripura bhairabi An incarnation of Durgā mentioned in the Kālikā purāṇa.

ତ୍ରିପୁର ମଲ୍ଲୀ—ସଂ. ବି.—ତିନିଦଳମଲ୍ଲୀ; ମଲ୍ଲୀ ମଲ୍ଲ—
Tripura malli Treble-pettalled jasmine.

(ତ୍ରିପୁର ମଲ୍ଲିକା—ଅନ୍ୟରୂପ)

ତ୍ରିପୁରା—ସଂ. ବି. ସ୍ତ୍ରୀ—୧ । ତନ୍ତ୍ରୋକ୍ତ ଦେବୀବିଶେଷ—
Tripurā 1. Name of a Goddess.

ତିନି ପୁରରେ ଏକ ଦେହ,
ଦେଖ ତ୍ରିପୁରା ନାମ ହୋଇ । ଯଶୋବନ୍ତ. ପ୍ରେମଭକ୍ତି ଗୀତା ।

୨ । ଦୁର୍ଗା—2. Durgā

୩ । ଆସାମର କାମାଖ୍ୟା ଦେବୀଙ୍କର ଏକ ମୂର୍ତ୍ତି— 3. An image of the Goddess Kāmākhyā in Assam.

୪ । ପ୍ରାଚୀନ ଦେଶ ରାଜ୍ୟ; ଆଧୁନିକ ତ୍ରିପୁରା ଦେଶ; ଟିପାରା— 4. Tipperah (state, district and town in Bengal).

ଦେ. ବି—ତିନିପତ୍ରଯୁକ୍ତ ପାଖୁଡ଼ା ଥିବା (କଳା ଓ ଧଳା) ଧୂତୁରା ଫୁଲ—The treble petalled Dhatura flower.

ତ୍ରିପୁରାରି ଦାସ—ଦେ. ବି (ନାମ)—ଅଷ୍ଟାଦଶ ଶତାବ୍ଦୀର ଓଡ଼ିଆ କବି-
Tripurāri dāsa ବିଶେଷ—Name of an Oria poet of the eighteenth century A. D.

[ ଦ୍ର—କେବଳଗୀତା, କଳାପାସା, ସ୍ୱଧାକୃଷ୍ଣ କେଳକଲ୍ଲୋଳ ଓ ରାମକୃଷ୍ଣ କେଳକଲ୍ଲୋଳ ଏହି କବିଙ୍କ ବିରଚିତ ଗ୍ରନ୍ଥ । (ଚାରଣୀ-ଉତ୍କଳ-ସାହିତ୍ୟ, ଇତିହାସ) । ଏ ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗର କବି ଅଟନ୍ତି । (ଜଗବନ୍ଧୁ ପ୍ରାଚୀନ ଉତ୍କଳ) । ]

ତ୍ରିପୁରୀ—ସଂ. ବି. ସ୍ତ୍ରୀ—ଟିପାରା ଜିଲ୍ଲା, ରାଜ୍ୟ ଓ ନଗର—
Tripuri Tipperah district, town and state (in Bengal).

ସାଧାରଣ ଲୋକେ ଅନେକ ସ୍ଥଳରେ ୧ ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୂଅ' ନ ମିଳିଲେ 'କୁଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗା' ଦେଖିବେ, 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ

**ତ୍ରିପୁଷ**—ଦେ. ବି (ନାମ)—ପ୍ରାଚୀନ ଉତ୍କଳର ଜନୈକ ବଣିକ୍— Tripusha Name of a merchant of ancient Utkal

[ ଦ୍ର—ଏ ଭଲ୍ଲିକ ନାମରେ ଅନ୍ୟ ଜଣେ ବଣିକ ସଙ୍ଗରେ ପାଞ୍ଚଶହ ଶକଟରେ ପଣ୍ୟଦ୍ରବ୍ୟ ନେଇ ମଗଧକୁ ଯାଉଥିଲେ । ବାଟରେ ଏ ଦୁହେଁ ବୁଦ୍ଧଦେବଙ୍କୁ ଦେଖିଲେ ଓ ବୁଦ୍ଧ ତପସ୍ୟା ସାଧନ ପରେ କ୍ଷୁଧାର୍ତ୍ତ ଥିବାରୁ ଏମାନେ ତାଙ୍କୁ ମହୁ ଆଦି ଦେଲେ ଓ ଓ ବୁଦ୍ଧଙ୍କ ଦ୍ୱାରା ବୌଦ୍ଧଧର୍ମରେ ଦୀକ୍ଷିତ ହେଲେ । ଚୈତ୍ୟ ନିର୍ମାଣ ପାଇଁ ବୁଦ୍ଧ ଏମାନଙ୍କୁ ନିଜର ନଖ ଓ କେଶ ଦେଇଥିଲେ । ଏ ଦୁହେଁ ଦେଶକୁ ଫେରିଆସି ଗ୍ରିଲ ଗିରି ନାମରେ ଗୋଟିଏ ଚୈତ୍ୟ ତିଆରି କରିଥିଲେ । ବନମାଳୀ ମିଶ୍ର ସଦାଚାର ୧୦।୧୦ । ].

ସଂ. ବି—୧ । କାକୁଡ଼ି—1. Cucumber.

୨ । ଗହମ—2 Wheat.

**ତ୍ରିପୁଷ୍କର**—ସଂ. ବି (ସମାହାର ଦ୍ୱିଗୁ; ତ୍ରି+ପୁଷ୍କର)—୧ । ପୁଷ୍କର ତିଥି, Tripushkara ପୁଷ୍କର ନକ୍ଷତ୍ର ଓ ପୁଷ୍କର ବାରରେ ଘଟିବା ମୃତ୍ୟୁଯୋଗବିଶେଷ—An inauspicious combination of certain days at the time of one's death.

[ ଦ୍ର—ପୁଷ୍କର ତିଥି ଯଥା—୨ୟା, ୭ମୀ ଓ ଦ୍ୱାଦଶୀ । ପୁଷ୍କର ନକ୍ଷତ୍ର ଯଥା—ପୁନର୍ବସୁ, ଉତ୍ତରାଷାଢ଼ା, କୃତ୍ତିକା, ଉତ୍ତରଫାଲ୍‌ଗୁନୀ, ପୂର୍ବାଫାଲ୍‌ଗୁନୀ ଓ ବିଶାଖା । ପୁଷ୍କର ବାର ଯଥା—ରବି, ଶନି ଓ ମଙ୍ଗଳ । ଯାହାର ମୃତ୍ୟୁ ସମୟରେ ଏହି ତିନିଗୋଟି ପୁଷ୍କର ଘଟେ ତାହାର ତ୍ରିପୁଷ୍କର ଦୋଷ ଘଟେ । ଏହି ଦୋଷ ଘଟିଲେ ମୃତବ୍ୟକ୍ତିର ବଂଶ ଓ ବାସ୍ତୁ ବିନଷ୍ଟ ହୁଏ; ଏହି ଯୋଗରେ ଜନ୍ମ ବା ସନ୍ତାନର ତାରକ ଯୋଗ ବୋଲି ଜ୍ୟୋତିଷୀମାନେ କହନ୍ତି । ତ୍ରିପୁଷ୍କରରେ କୌଣସି ହାନି ଘଟିଲେ ସେହିପରି ହାନି ପରେ ଆଉ ଦୁଇ ଥର ଘଟିବ ଓ ଲାଭ ଘଟିଲେ ସେହିପରି ଲାଭ ଆଉ ଦୁଇ ଥର ଘଟିବ ବୋଲି ଜ୍ୟୋତିଷିକମାନେ ବିଶ୍ୱାସ କରନ୍ତି । ]

୨ । ବୃନ୍ଦାବନସ୍ଥ ତୀର୍ଥବିଶେଷ—

2. Name of a place of Hindu pilgrimage.

୩ । ଜ୍ୟେଷ୍ଠା, ମଧ୍ୟମା ଓ କନିଷ୍ଠାକୁ ଟେକିଲେ କରତଳରେ ଯେଉଁ ଅଧାର ରଚିତ ହୁଏ ( ପ୍ରକୃତିବାଦ )—3. The cup-shaped palm formed by erecting the little finger, the middle finger and the thumb.

**ତ୍ରିପୁସ**—ସଂ. ବି—ସୀସା; ଟିଣ ଧାତୁ (ବିବେକସୂତ୍ର ଦ୍ରବ୍ୟଗୁଣ)— Tripusa Tin (metal).

**ତ୍ରିଫଳା**—ସଂ. ବି. ସ୍ତ୍ରୀ ( ତ୍ରି+ଫଳ; ସମାହାର ଦ୍ୱିଗୁ )—ହରିଡ଼ା, Triphalā ବାହାଡ଼ା ଓ ଅଁଳା ଏହି ତିନି ଫଳର ସଂଯୋଗ—( ତ୍ରିଫଳୀ—ଅନ୍ୟରୂପ ) A combination of myrobalan, belleric myrobalan and emblic myrobalan ( prescribed in the Āyurbeda).

[ ଦ୍ର—ବୈଦ୍ୟଶାସ୍ତ୍ର ମତରେ ଏହା ଚକ୍ଷୁର ହିତକର, ଅଗ୍ନିଦୀପକ, ରୁଚିକାରକ ଓ ସାରକ; ଏହା କଫ, ପିତ୍ତ, ମେହ, କୁଷ୍ଠ ଓ ବିଷମ ଜ୍ୱର ବିନାଶକ; ଏଥିର ଚୂର୍ଣ୍ଣ କରିବାକୁ ହେଲେ ୧ ଭାଗ ହରିଡ଼ା, ୨ ଭାଗ ବାହାଡ଼ା ଓ ୩ ଭାଗ ଅଁଳା ମିଶାଇବାକୁ ହୁଏ । ତ୍ରିଫଳାରେ ନାନାପ୍ରକାର କ୍ୱାଥ, ପାଚନ, ଘୃତ ଓ ତୈଳ ପ୍ରସ୍ତୁତ ହୁଏ । ]

**ତ୍ରିବର୍ଗ**—ସଂ. ବି ( ସମାହାର ଦ୍ୱିଗୁ; ତ୍ରି+ବର୍ଗ )—୧ । ସଂସାରୀର Tri barga ତିନିଗୋଟି ଉଦ୍ଦେଶ୍ୟ, ଯଥା—ଧର୍ମ, ଅର୍ଥ ଓ କାମ— 1. The three pursuits or desires of a worldly man, viz. virtue, wealth, and desires.

୨ । ସୃଷ୍ଟି, ସ୍ଥିତି ଓ ଲୟ—

2. Creation, preservation and destruction.

୩ । ସତ୍ତ୍ୱ, ରଜଃ ଓ ତମଃ—3. The three primary qualities of Nature (good, medium and evil ).

୪ । ତ୍ରିଫଳା—4. The three myrobalans.

୫ । ତ୍ରିକଟୁ—5. The three pungent drugs.

୬ । ଆୟ, ସ୍ଥିତି ଓ ବ୍ୟୟ—

6. Income, saving and expenditure.

**ତ୍ରିବର୍ଗ ସାଧନ**—ସଂ. ବି—ସଂସାରୀର ପ୍ରଧାନ ତିନିଗୋଟି ଆକାଙ୍କ୍ଷାର Tribarga sādhana ପୂରଣ—Consummation or fulfilment of the three main aims of a worldly man.

ବିଣ—ଯାହାଦ୍ୱାରା ତ୍ରିବର୍ଗ ସିଦ୍ଧ ହୁଏ—Bringing about the fulfilment of the threefold aim of man.

**ତ୍ରିବର୍ଣ୍ଣ**—ସଂ. ବି—୧ । ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟ— Tribarṇṇa 1. The three higher castes amongst the Hindus.

୨ । ବଣକପା—2 The wild variety of cotton.

ବି—ତିନିରଙ୍ଗଯୁକ୍ତ—Tricoloured.

**ତ୍ରିବର୍ଷିକା**—ସଂ. ବି. ସ୍ତ୍ରୀ ( ତ୍ରି+ବର୍ଷ+କ+ସ୍ତ୍ରୀ. ଆ )—ତିନିବର୍ଷୀୟା Tribarshikā ମାଈ ବାଛୁରୀ ବା ତଡ଼ା—A she-calf or heifer 3 years old.

**ତ୍ରିବଳି**—ସଂ. ବି ( ସମାହାର ଦ୍ୱିଗୁ; ତ୍ରି+ବଳି=ଶ୍ଲଥଚର୍ମ )—ଉଦର, Tribali କପାଳ ଓ କଣ୍ଠଦେଶ ପ୍ରଭୃତି ସ୍ଥାନରେ ମାଂସ ଓ ଚର୍ମର ( ତ୍ରିବଳୀ—ଅନ୍ୟରୂପ) ସଙ୍କୋଚ ଜନିତ ରେଖାତ୍ରୟ—The three folds or wrinkles of skin appearing in the belly, brow or neck of some persons.

**ତ୍ରିବଳୀକ**—ସଂ. ବି—୧ । ପାୟୁ; ମଳଦ୍ୱାର— Tribalīka 1. The anus.

୨ । ବାୟୁ (ହି. ଶବ୍ଦସାଗର)—2. The air.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ' | ଁ | ଔ | ଋ,ଝ | ଚ | ୯ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଟ | ଣ,ଷ | ଜ୍ଞ | ଇଂ | ଋଅ | ଳ |
| ୬ | ଐ | ଊ | ଋ | ଌ | ଙ୍ | ଅକ୍ଷ ଯୁକ୍ତବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଶଂ | ଯ | ଯ | ଙ୍ | ଇଅ | ୱ | ୍ |

ତ୍ରିବାର୍ଷିକ—ସଂ. ବି ( ତ୍ରିବର୍ଷ + ଇକ )—୧ । ତିନିବର୍ଷରେ ଥରେ
Tribārshika ଘଟୁଥିବା—1. Happening once in three years.

୨ । ତିନିବର୍ଷ ସମୟର ସୀମା ପରେ ଘଟୁଥିବା—
2 Happening at the end of three years

ତ୍ରିବିକ୍ରମ—ସଂ. ବି (ତ୍ରି=ପାଦତ୍ରୟ ଦ୍ୱାରା+ବିକ୍ରମ=ଆକ୍ରମ, ଅଧିକାର
Tribikrama ହୋଇଅଛି ଯାହାଙ୍କର, ଅର୍ଥାତ୍ ଯେ ବାମନ ଅବତାରରେ ତ୍ରିପଦଦ୍ୱାରା ତିନିଲୋକକୁ ଆକ୍ରମଣ କରିଥିଲେ; କିମ୍ବା ତ୍ରିଲୋକ ମଧ୍ୟରେ ଯାହାଙ୍କର ବିକ୍ରମ ପ୍ରାପ୍ୟମାନ ଅଛି)—୧ । ବାମନରୂପୀ ବିଷ୍ଣୁ—
1. Bishṇu in the incarnation of Bāmana.

୨ । ତ୍ରିଲୋକ ଆକ୍ରମଣ—
2. An attack on the 3 worlds.

ତ୍ରିବିକ୍ରମ ଭଞ୍ଜ—ଦେ. ବି (ନାମ)—ଜଣେ ଗଡ଼ଜାତର ରାଜା ଓ ଓଡ଼ିଆ
Tribikrama bhañja କବି—Name of an Oriā poet and Rājā of a Hill-state

[ ଦ୍ର— ଏ 'କନକଲତା' ନାମରେ ଗୋଟିଏ କାବ୍ୟ ଲେଖିଥିଲେ (ଭାରତୀ-ଉତ୍କଳ-ସାହିତ୍ୟ ଇତିହାସ । ]

ତ୍ରିବିଂଶ—ଦେ. ବି ଓ ବିଣ (ସଂ. ତ୍ରୟୋବିଂଶ)—ତେଇଶି; ୨୩—
Tribiṁśa 23; twenty-three.

ଚତୁର୍ଥ ସ୍କନ୍ଧେ ଜଗତେ,
ତ୍ରିବିଂଶ ଅଧ୍ୟାୟ ଉଦିତେ । — ଜଗନ୍ନାଥ, ଭାଗବତ ।

ତ୍ରିବିଣୀ (ଇତ୍ୟାଦି)—ଗ୍ରା. ବି—ତ୍ରିବେଣୀ ଇତ୍ୟାଦି (ଦେଖ)
Tribiṇī (etc) Tribeṇī etc (See)

ତ୍ରିବିଦ୍ୟା—ସଂ. ବି (ସମାହାର ଦ୍ୱିଗୁ; ତ୍ରି + ବିଦ୍ୟା)-ତ୍ରିବେଦ ( ଦେଖ )
Tribidyā Tribeda ( See )

ତ୍ରିବିଧ—ସଂ. ବିଣ. ପୁଂ ଓ କ୍ଲୀ ( ତ୍ରି + ବିଧ=ପ୍ରକାର )—ତିନି
Tribidha ପ୍ରକାରର—Of three kinds.
(ତ୍ରିବିଧା—ସ୍ତ୍ରୀ)

ତ୍ରିବିଷ୍ଟପ—ସଂ. ବି.—ତ୍ରିପିଷ୍ଟପ ( ଦେଖ )—Tripishṭapa (See)
Tribishṭapa

ତ୍ରିବୃତ୍—ସଂ. ବି. ସ୍ତ୍ରୀ (ତ୍ରି + ବୃ ଧାତୁ=ବେଷ୍ଟନ କରିବା+କର୍ତ୍ତୃ କ୍ୱିପ୍)
Tribṛut ୧ । ତିହୁଡ଼ି ( ଦେଖ )—
1. Tihuṛḍi ( See )

ତ୍ରିବୃତା
ତ୍ରିବୃତ୍
ତ୍ରିବେଲା
ତ୍ରିଭଣ୍ଡୀ } ଅନ୍ୟରୂପ

୨ । ମସୁର ବା ଖେସାରି—
2. A kind of pulse; Lathyrus Sativus.

ତ୍ରିବୃତ୍ପର୍ଣ୍ଣୀ—ସଂ. ବି. ସ୍ତ୍ରୀ—ହିଙ୍ଗୁପତ୍ରୀ, ଶାଗ; ହିଙ୍ଗୁମୋଚିକା ଶାକ—
Tribṛut-parṇṇī Name of a medicinal potherb; Hingsta Repens.

ତ୍ରିବୃତ—ସଂ. ବିଣ—ବେଦବିହିତ ସଗୁଣ; ତ୍ରିଗୁଣାତ୍ମକ; ତ୍ରିଗୁଣମୟ—
Tribṛuta Consisting of the 3 qualities of Nature.

ତ୍ରିବୃତ ଅଗ୍ନିର ଲକ୍ଷଣ,
ବେଦ ଉକ୍ତ ଅର୍ଥ ମନ । — ଜଗନ୍ନାଥ, ଭାଗବତ ।

ତ୍ରିବୃତ ବ୍ରହ୍ମ—ସଂ. ବି (ତ୍ରିବୃତ୍=ଅ, ଉ ଓ ମ + ବ୍ରହ୍ମ)—ଓଁକାର—
Tribṛuta brahma The mystic syllable 'Om'.

ଅକ୍ଷରେ ବିନ୍ଦୁ ନାଦ ଯେତେ,
ତ୍ରିବୃତ ବ୍ରହ୍ମ ସୃଜିଲେ । — ଜଗନ୍ନାଥ, ଭାଗବତ ।

ତ୍ରିବୃତ୍—ସଂ. ବିଣ. ପୁଂ ଓ କ୍ଲୀ (ତ୍ରି + ବୃତ୍=ଗୁଣିତ)—ତ୍ରିଗୁଣିତ—
Tribṛutta Threefold; multiplied by three.
(ତ୍ରିବୃତ୍ତା—ସ୍ତ୍ରୀ)

ତ୍ରିବୃତ୍ତ ଯମକ—ଦେ. ବି—ଗୀତର ପ୍ରତ୍ୟେକ ପଦରେ ତିନି ସ୍ଥାନରେ
Tribṛutta jamaka ପଡ଼ୁଥିବା ଯମକ— Alliteration at three places in a line in poetic composition.

ଛନ୍ଦ ଛନ୍ଦେ ନେଇ ଲଳିତେ ଯୁବତୀରେ ଭଜି,
ନାରୀ ସେବି ଲୀଳାରେ ନାନା ବ୍ରତ ବିଲି ଖୋଜି ।
— ଉପେନ୍ଦ୍ରଭଞ୍ଜ ।

ତ୍ରିବେଣୀ—ସଂ. ବି. ସ୍ତ୍ରୀ. (ବହୁବ୍ରୀହି; ତ୍ରି + ବେଣୀ=ପ୍ରବାହ ଯାହାର)—
Tribeṇī ୧ । ଗଙ୍ଗା, ଯମୁନା ଓ ସରସ୍ୱତୀର ସଙ୍ଗମ ସ୍ଥଳ; ପ୍ରୟାଗ-
1 Allahabad, the junction of the three streams, the Ganges, the Jamunā and the Saraswatī.

[ ଦ୍ର—ଏହି ତିନି ନଦୀ ପ୍ରଥମେ ପ୍ରୟାଗରେ (ଏଲ୍ଲାହାବାଦରେ) ମିଳିତ ହୋଇ ଅଛନ୍ତି ବୋଲି ଉକ୍ତ ସ୍ଥାନକୁ ଯୁକ୍ତ ବେଣୀ ଓ ବଙ୍ଗଦେଶ ହୁଗୁଳୀ ନିକଟରେ ମୁକ୍ତ ହୋଇ ଅଛନ୍ତି ବୋଲି ଉକ୍ତ ସ୍ଥାନକୁ ମୁକ୍ତବେଣୀ ବୋଲାଯାଏ । ]

୨ । ମୁଣ୍ଡ ବାଳରେ ବିଣାଯାଇଥିବା ତିନି ଗୋଟି ବେଣୀ—
2. The hair of the head plaited into three braids.

୩ । ହଠଯୋଗ ଅନୁସାରେ ଶରୀରାଭ୍ୟନ୍ତରରେ ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀ ତ୍ରୟର ସଙ୍ଗମ ସ୍ଥାନ—
3 The imaginary meeting place of the three principal air—channels inside the body.

ଦେ. ବି—୧ । ପୁରୀ ଜିଲ୍ଲାରେ ପ୍ରାଚୀ ନଦୀର ଗୋଟିଏ ତୀର୍ଥସ୍ନାନ-ଘାଟ—1. Name of a sacred bathing place in the old Prāchī river in the district of Puri.

[ ଦ୍ର—ଏହା ବାଲିପାଟଣା ଥାନା ଅନ୍ତର୍ଗତ ବନମାଳୀପୁର ନିକଟରେ ଅବସ୍ଥିତ । ଏଠାରେ ମାଘ ଅମାବାସ୍ୟା ଦିନ ଭିଡ଼ ପଡ଼େ ଓ ୭ ଦିନ ପର୍ଯ୍ୟନ୍ତ ମେଳା ହୁଏ । ]

୨ । ବଙ୍ଗଦେଶରେ ଗଙ୍ଗା ଓ ଭାଗୀରଥୀଙ୍କ ସଙ୍ଗମସ୍ଥଳ—
ତ୍ରିବେଣୀଘାଟ (ଦେଖ)—Name of a place in the Hooghli district of Bengal where two other rivers meet the Ganges.

[ ଦ୍ର—ଏଠାରେ ମାଘ ଅମାବାସ୍ୟା ଦିନ ସ୍ନାନଯୋଗ ପଡ଼େ । ]

ସାଧାରଣ ପ୍ରେସ ... ବ୍ୟବହାର କରିବାକୁ ହେବ । ଯଥା— 'ଗାଠ' ନ ମିଳିଲେ 'ଗାଠ' ଦେଖିବେ, 'କୃଷ' ନ ମିଳିଲେ 'କୃଷ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅର୍ଦ୍ଧ' ନ ପାଇଲେ 'ଅର୍ଦ୍ଧ' ଦେଖିବେ, 'ଅଲବତ୍' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ତ୍ରିବେଣୀ ଅମାବାସ୍ୟା—ଦେ. ବି.—ମାଘ ଅମାବାସ୍ୟା । ଏ ଦିନ ପ୍ରୟାଗରେ ମକରସ୍ନାନ ଯୋଗ ପଡ଼େ—The new moon day of the month of Māgha.
Tribeṇī amābāsyā

ତ୍ରିବେଣୀ ଘାଟ—ଦେ. ବି.—ଭାଗୀରଥୀ ବା ଗଙ୍ଗା ନଦୀ କୂଳରେ ସ୍ଥାନବିଶେଷ ଘାଟ—Name of a place in the Hooghli district where three rivers meet.
Tribeṇī ghāṭa

[ ଦ୍ର—ଇ. ଅଇ. ଅର୍. ରେଲ୍‌ୱେର ଯେଉଁ ଶାଖା ନବଦ୍ୱୀପକୁ ଯାଇଅଛି ତହିଁ ଉପରେ ହାବଡ଼ାଠାରୁ ୩୦ ମାଇଲ ଦୂରରେ ହୁଗୁଳୀ ଜିଲ୍ଲାରେ ଭାଗୀରଥୀ ସଙ୍ଗେ ଅନ୍ୟ ଦୁଇଟି ନଦୀ ମିଳିତ ହୋଇଅଛି । ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବ ଏହିଠାରେ ଗୋଟିଏ ଘାଟ ନିର୍ମାଣ କରାଇଥିଲେ । ଏହା ଗୋଟିଏ ତୀର୍ଥସ୍ଥାନ; ଯେଉଁମାନେ ଗଙ୍ଗାରେ ଅସ୍ଥି ଦେବାକୁ ଯାଆନ୍ତି ସେମାନେ ଏହିଠାରେ ଶ୍ରାଦ୍ଧାଦି କରି ଅସ୍ଥି ନିକ୍ଷେପ କରନ୍ତି ଓ ଏଠାରେ ତ୍ରିବେଣୀ ଅମାବାସ୍ୟା ଦିନ ଗୋଟିଏ ବଡ଼ ମେଳା ହୁଏ । ]

ତ୍ରିବେଣୀ ସ୍ନାନ—ସ. ବି.—ମାଘ ଅମାବାସ୍ୟାରେ ତ୍ରିବେଣୀରେ (ପ୍ରୟାଗଆଦି ତୀର୍ଥରେ) ହିନ୍ଦୁମାନଙ୍କର ସ୍ନାନ—Bathing in the junction of three rivers in Prayāga ( Allāhābad ) and other holy bathing places on the new moon of Māgha.
Tribeṇī snāna

ତ୍ରିବେଦ—ସ. ବି. (ସମାହାର ଦ୍ୱିଗୁ; ତ୍ରି+ବେଦ)—ତ୍ରୟୀ; ଋକ୍, ସାମ ଓ ଯଜୁଃ ଏହି ତିନି ବେଦ—The three Bedas; Ṛuk, Sāma and Jajur.
Tri beda

[ ଦ୍ର—ଅଥର୍ବବେଦ ପରେ ରଚିତ ହୋଇଥିଲା । ]

ତ୍ରିବେଦୀ—ସ. ବିଣ. (ତ୍ରିବେଦ+ଇନ୍; ୧ମା. ୧ବ)—ତିନି ବେଦରେ ପାରଙ୍ଗମ— Learned in the three Bedas.
Tribedī

ଦେ. ବି—ତିବାଡ଼ୀ; ତେବାରୀ ଉପାଧିଧାରୀ ବ୍ରାହ୍ମଣ—A Brāhmana holding the family-title of Tebāri or Tripāthi.

ତ୍ରିଭଙ୍ଗ—ସ. ବିଣ. (ତ୍ରି+ଭଙ୍ଗ)—ତିନିସ୍ଥାନରେ ବଙ୍କା—Crooked at three places.
Tri bhanga
(ତ୍ରିଭଙ୍ଗୀ—ସ୍ତ୍ରୀ)

ତ୍ରିଭଙ୍ଗି—ଦେ. ବିଣ (ସ. ତ୍ରିଭଙ୍ଗୀ)—ତ୍ରିଭଙ୍ଗିମ (ଦେଖ) Tribhangima (See)
Tribhangi

ପାଦରେ ପାଦ ଚଢ଼ାଇଣ,
ତ୍ରିଭଙ୍ଗ ଭଙ୍ଗେ ଠିଆ ହୋଇ—ଉପେନ୍ଦ୍ର. ପ୍ରେମସୁଧାମୃତ ।

ତ୍ରିଭଙ୍ଗିମ—ଦେ. ବିଣ (ସ. ତ୍ରିଭଙ୍ଗୀ)—ଠିଆହେବାବେଳେ ଶରୀର ତିନି ଯାଗାରେ ବଙ୍କା ହୋଇଥିବା (ଅବସ୍ଥା ବା ଠାଣି) (A pose or posture of standing) Having three bends in the body; bent at three places.
Tribhangima
(ତ୍ରିଭଙ୍ଗିମା—ଅନ୍ୟରୂପ)

[ ଦ୍ର—ଶ୍ରୀକୃଷ୍ଣ ବଂଶୀ ଧରି ପାଦାଗ୍ରରୁ ପାଦର ଅଣ୍ଟ ପର୍ଯ୍ୟନ୍ତ ଏକ ଭଙ୍ଗ, ଅଣ୍ଟରୁ କଟି ପର୍ଯ୍ୟନ୍ତ ଏକ ଭଙ୍ଗ ଓ କଟିର ଉପରକୁ ଏକ ଭଙ୍ଗ, ଏପରି ତିନି ଯାଗାରେ ବଙ୍କ ହୋଇ ଠିଆହେବା ଠାଣୀକୁ ତ୍ରିଭଙ୍ଗିମ ଠାଣୀ ବୋଲାଯାଏ । ଏହି ଠାଣୀରେ ଠିଆ ହୋଇଥିବା ମୁରଲୀଧାରୀ ଶ୍ରୀକୃଷ୍ଣଙ୍କୁ ସାଧକମାନେ ଧ୍ୟାନ କରନ୍ତି ।]

ତ୍ରିଭଙ୍ଗି ଯମକ—ଦେ. ବି—ତ୍ରିବୃତ୍ତ ଯମକ ( ଦେଖ ) Trıbṛutta jamaka ( See )
Tribhangi jamaka

ତ୍ରିଭଙ୍ଗୀ—ସ.ବି. (ସଙ୍ଗୀତ)—୧ । ତାଳର ୬୦ ମୁଖ୍ୟ ଭେଦର ଏକତମ—1. One of the 63 musical modes.
Trıbhangī

[ ଦ୍ର—ଏଥିରେ ଏକ ଗୁରୁ, ଏକ ଲଘୁ ଓ ଏକ ପ୍ଲୁତ ମାତ୍ରା ଥାଏ । ]

୨ । ଶୁଦ୍ଧ ରାଗର ଏକତମ— 2. One of the pure tunes in music.

୩ । ପ୍ରତ୍ୟେକ ଚରଣରେ ୩୨ ମାତ୍ରା ଯୁକ୍ତ ଛନ୍ଦ— 3. Name of a metre of 32 syllables.

ସ. ବିଣ—ତ୍ରିଭଙ୍ଗିମ ( ଦେଖ )— Tribhangima ( See )

ତ୍ରିଭଜ୍ୟା—ସ. (ଜ୍ୟାମିତି)—ବ୍ୟାସାର୍ଦ୍ଧ (ଦ୍ର. ଶବ୍ଦସାଗର)— (geometry) Radius
Tribhajyā
(ତ୍ରିଜ୍ୟା, ତ୍ରିଭଜ୍ୟା—ଅନ୍ୟରୂପ)

ତ୍ରିଭାଗ—ସ. ବି—୧ । ତିନି ଅଂଶ—1. Three parts.
Tribhāga ୨ । ତିନି ଖଣ୍ଡ—2. Three pieces.
୩ । ତୃତୀୟ ଭାଗ—3. The third part.

ତ୍ରିଭାରି—ଦେ. ବି—ରାଜୋପକରଣବିଶେଷ— Royal paraphernalia.
Tribhāri

ତ୍ରିଭୁକ୍ତି—ସ. ବି (ନାମ)—ତ୍ରିହୁତ ( ଦେଖ ) Trihuta ( See )
Tribhukti

ତ୍ରିଭୁଜ—ସ. ବି. ( ବହୁବ୍ରୀହି; ତ୍ରି+ଭୁଜ=ବାହୁ, ଯାହାର )—(ଜ୍ୟାମିତି) ତିନି ଗୋଟି ସରଳ ରେଖା ଦ୍ୱାରା ଆବଦ୍ଧ କ୍ଷେତ୍ର—(geometry) Triangle.
Tribhuja

[ ଦ୍ର—ବାହୁ ଭେଦରେ ତ୍ରିଭୁଜ ୩ ପ୍ରକାର, ଯଥା—ସମବାହୁ, ସମଦ୍ୱିବାହୁ ଓ ବିଷମବାହୁ । କୋଣ ଭେଦରେ ମଧ୍ୟ ତ୍ରିଭୁଜ ୩ ପ୍ରକାର ଯଥା—ସମକୋଣୀ, ସ୍ଥୂଳକୋଣୀ ଓ ସୂକ୍ଷ୍ମକୋଣୀ । ]

ବିଣ—ତିନି ବାହୁବିଶିଷ୍ଟ—Having three arms.

ତ୍ରିଭୁଜାକାର—ସ. ବି. ( କର୍ମଧା; ତ୍ରିଭୁଜ+ଆକାର )—ତ୍ରିଭୁଜର ଗଠନ—Form of a triangle.
Tribhujākāra
(ତ୍ରିଭୁଜାକୃତି—ଅନ୍ୟରୂପ) ବିଣ.—(ବହୁବ୍ରୀହି) ତ୍ରିଭୁଜାକୃତିବିଶିଷ୍ଟ—Triangular in shape.

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ | ଋ | ଌ | ଐ, ଔ | ଃ | : | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଷ, ଶ | କ୍ଷ | ଇପ୍ସ | ଉଷ୍ଣ | ଜ୍ଞ |
| ୨ | ଋ | ଌ | ଋ | ଌ | ତ୍ୱ | ଅଥବା ଚନ୍ଦ୍ରବର୍ଣ୍ଣ ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଖ୍ୟ | ଇଥ | ଔ | ନ |

ତ୍ରିଭୁବନ—ସଂ. ବି. ( ସମାହାର ଦ୍ୱିଗୁ; ତ୍ରି+ଭୁବନ )—
Tribhubana ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ; ତ୍ରିଲୋକ—
The three worlds (heaven, earth and the nether world.

ତ୍ରିଭୁବନ ବିଜୟୀ—ସଂ. ବିଣ— ଯେ ତ୍ରିଭୁବନକୁ ଜୟ କରେ—
Tribhubana bijayi Conquerer of the three worlds.

ତ୍ରିଭୂମ—ସଂ. ବି. ( ତ୍ରି+ଭୂମି )—
Tribhūma ତିନି ମହଲା କୋଠା; ତ୍ରିତଳ ପ୍ରାସାଦ—
A three storied building.

ତ୍ରିମଣ୍ଡୀ—ଦେ ବି—ତ୍ରିମୁଣ୍ଡୀ ( ଦେଖ )
Trimaṇḍi Trimuṇḍi ( See )

ତ୍ରିମଦ—ସଂ. ବି. ( ସମାହାର ଦ୍ୱିଗୁ; ତ୍ରି+ମଦ )—
Trimada ମୁଥା, ଧଳାଚିତା ମୂଳ ଓ ବାଇବିଡ଼ଙ୍ଗ—
The aggregate of three herbs (viz, root of grass, leadwort and a vermicide seed ;.

୨ । ବିଦ୍ୟା ମଦ, ଧନ ମଦ ଓ ଆଭିଜାତ୍ୟ ମଦ ଏହି ତ୍ରିବିଧ ମତ୍ତତା—2. The conciet arising from the possession of worldly prosperity, wealth and high lineage.

ତ୍ରିମଧୁ—ସଂ. ବି. ( ସମାହାର ଦ୍ୱିଗୁ; ତ୍ରି+ମଧୁ )—
Trimadhu ୧ । ମହୁ, ଘିଅ ଓ ଚିନିର ସମାହାର—
1. A mixture of honey, ghee and sugar.
୨ । ଋଗ୍‌ବେଦର ଅଂଶବିଶେଷ—2. Name of a part of the Rugbeda.

ତ୍ରିମାତ୍ର—ସଂ. ବିଣ. ( ତ୍ରି+ମାତ୍ରା )—ତ୍ରିମାତ୍ରିକ ( ଦେଖ )
Trimātra Trimātrika ( See )

ତ୍ରିମାତ୍ର, ତୁରୀୟରେ ବସିଅଛି । ଉତ୍ତ. କୋଷ୍ଟକ୍ଷାସ୍ତବ ।

ତ୍ରିମାତ୍ରିକ—ସଂ. ବିଣ. ( ତ୍ରି+ମାତ୍ରା+ଇକ )—
Trimātrika ୧ । ଯେଉଁ ଛନ୍ଦରେ ତିନି ମାତ୍ରା ଥାଏ—
1. ( metre ) Having three measures or strokes.
୨ । ପ୍ଲୁତ ( ଉଚ୍ଚାରଣ ); ୧, ୨ ଓ ୩ ଗଣିବାକୁ ଯେତେ ସମୟ ଲାଗେ ସେତିକି ସମୟରେ ଉଚ୍ଚାରିତ ସ୍ୱର (ସ୍ୱର)-
2. Extra-long ( sound of a vowel. )

ତ୍ରିମାର୍ଗ—ସଂ. ବି. ( ସମାହାର ଦ୍ୱିଗୁ+ତ୍ରି+ମାର୍ଗ )—
Trimārga ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—Heaven, earth and the nether regions

ତ୍ରିମାର୍ଗୀ—ସଂ. ବି. ( ସମାହାର ଦ୍ୱିଗୁ; ତ୍ରି+ମାର୍ଗ+ଈ )—
Trimārgi ୧ । ତିନି ଛକଥିବା ବାଟ—
1. A meeting place of three roads.
୨ । ତ୍ରିମାର୍ଗଗାମିନୀ; ଗଙ୍ଗା ନଦୀ—
2. The river Ganges.

ତ୍ରିମୁକୁଟ—ସଂ. ବି. ( ତ୍ରି=ତିନି+ମୁକୁଟ=ଶୃଙ୍ଗ )—
Trimukuṭa ତ୍ରିକୂଟ ପର୍ବତ—The mythological Trikūṭa mountain.

ତ୍ରିମୁଖ—ସଂ. ବିଣ (ବହୁବ୍ରୀହି)—ତିନି ଗୋଟି ମୁଖବିଶିଷ୍ଟ—
Trimukha Having three mouths or faces.
ବି—୧ । ଶାକ୍ୟ ମୁନି—1. A name of the Buddha.
୨ । ଗାୟତ୍ରୀ ଜପିବାର ୨୪ ମୁଦ୍ରା ମଧ୍ୟରୁ ଗୋଟିଏ ମୁଦ୍ରା—
2 One of the 24 postures assumed while counting the Gāyatri formula in the rosary.

ତ୍ରିମୁଣ୍ଡ—ସଂ. ବିଣ (ବହୁବ୍ରୀହି)—ତିନି ମୁଣ୍ଡବିଶିଷ୍ଟ—
Trimuṇḍa Three-headed.
ସଂ. ବି—୧ । ତ୍ରିଶିରା ରାକ୍ଷସ—1. Name of a three-headed demon killed by Rāmachandra.
୨ । ଜ୍ୱର ପୁରୁଷ—2. The demon personifying the fever-disease.

ତ୍ରିମୁଣ୍ଡୀ—ଦେ. ବି (ସଂ. ତ୍ରିମୁଣ୍ଡ)—ତିନୋଟି ସ୍ୱତନ୍ତ୍ର ଜଟ ପକାଇ ବାନ୍ଧିବା
Trimuṇḍi କେଶବିନ୍ୟାସ—A chignon made up of three stuffs of hair wound up separately; a three stuffed chignon.

ଶିରେ ତ୍ରିମୁଣ୍ଡୀ ବ ଅବା ମଣି ଯୋଇଛି ଉଜ୍ଜ୍ୱଳ—
ଉପେନ୍ଦ୍ରଭଞ୍ଜ, ମଥୁରାମଙ୍ଗଳ ।

ତ୍ରିମୁଣ୍ଡୀ ଗଭା—ଦେ. ବି—ଏକପ୍ରକାର ତ୍ରିଶାଖାଯୁକ୍ତ ଫୁଲତୋଡ଼ା—
Trimuṇḍi gabhā Three-stuffed nosegay.

ତ୍ରିମୂର୍ତ୍ତି—ସଂ. ବି. (ସମାହାର ଦ୍ୱିଗୁ ; ତ୍ରି+ମୂର୍ତ୍ତି)—୧ । ବ୍ରହ୍ମା, ବିଷ୍ଣୁ ଓ
Trimūrtti ଶିବ, ଏହିପରି ଈଶ୍ୱରଙ୍କର ତ୍ରିରୂପାତ୍ମକ ପ୍ରକାଶ—
The Hindu Trinity or the threefold manifestation of the Hindu God-head (viz. Brahmā the Creator, Bishṇu the Preserver and Śiba the Destroyer); the Hindu Triad.
୨ । ବ୍ରହ୍ମଶକ୍ତିବିଶେଷ—2 Name of a Divine energy of the Brahmā.
ବିଣ—ତିନି ମୂର୍ତ୍ତିବିଶିଷ୍ଟ—Manifest in three forms; having three forms.

ତ୍ରିମେଦ—ସଂ. ବି (ସମାହାରଦ୍ୱିଗୁ; ତ୍ରି+ମେଦ)—ତ୍ରିମଦ (ଦେଖ)
Trimeda Trimada (See)

ତ୍ରିୟ—ଦେ. ବି. (ସଂ. ତ୍ରି)—ତିନି—
Triya Three.

ସେ ତ୍ରିୟ ଜଗତ ବୋଲାଇ । ସଙ୍ଗୋବନ୍ଧ. ପ୍ରେମଭକ୍ତି ଗୀତା ।

ତ୍ରିୟ ତତ୍ତ୍ୱ—ଦେ. ବି. (ସଂ. ତ୍ରିତତ୍ତ୍ୱ)—୧ । (ଓଡ଼ିଶାର ତାନ୍ତ୍ରିକ ବା
Triya tattwa ଶାକ୍ତବିଶେଷ ସାଧକମାନଙ୍କ ସାଧନାର ଅଙ୍ଗ-
ବିଶେଷ)—ଶ୍ରୀଂ, ହ୍ରୀଂ, କ୍ଲୀଂ—1. The three

ସାଧାରଣ ଲୋକେ ଅପର ପୃଷ୍ଠାରେ ଦେଖ ୧ ଚିହ୍ନିତ ଅକ୍ଷର ଓ ମାନ ୧ବ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରଖି ପାରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ଯଥାକ୍ରମେ ଉକ୍ତ ଉପଯୁକ୍ତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ବାଘ' ନ ମିଳିଲେ 'ବାଗ' ଖୋଜିବେ; 'କ୍ଷୁଦ' ନ ମିଳିଲେ 'ଖୁଦ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ; 'ଅଳବତ' ନ ପାଇଲେ 'ଅଲ୍‌ବତ୍ତ' ଦେଖିବେ ।

mystic particles uttered by the mystics of Orissa during their esoteric exercises.

[ ଦ୍ର—ଏମାନ ଯଥାକ୍ରମେ ରମା ବା ଲକ୍ଷ୍ମୀବୀଜ, ପଦ୍ମ ବା ଦୁର୍ଗା (ମତାନ୍ତରରେ ବିଷ୍ଣୁ) ବୀଜ ଓ କାମବୀଜ ଅଟେ । ]

୨ । (ତାନ୍ତ୍ରିକ ସାଧନ) ବ୍ରହ୍ମା, ବିଷ୍ଣୁ ଓ ଶିବ—
2. (Tantric) The mystic reference for the Hindu Trinity.

ହିନ୍ଦୁ ତନ୍ତ୍ରରେ ମନ ଦେଲେ
ତ୍ରିଅରି ଫଳ ଲଭେ ହେଲେ । ପ୍ରାଚୀ. ନିର୍ଗୁଣମାହାତ୍ମ୍ୟ ।

**ତ୍ରିଯମ୍ବକ**—ସଂ ବି. (ବହୁବ୍ରୀହି; ତ୍ରି=ତିନି+ଅମ୍ବକ=ଚକ୍ଷୁ)
Triyambaka ତ୍ର୍ୟମ୍ବକ; ମହାଦେବ; ଶିବ—
The three-eyed God Śiba.

[ ଦ୍ର—ଏହି ଶବ୍ଦ ସାଧାରଣତଃ 'ତ୍ର୍ୟମ୍ବକ' ରୂପେ ବ୍ୟବହୃତ ହୁଏ । କେବଳ ମାତ୍ର କବି କାଳିଦାସ 'ତ୍ରିଯମ୍ବକ' ଶବ୍ଦ ବ୍ୟବହାର କରିଅଛନ୍ତି ।

ଏହି ଶବ୍ଦ ତ୍ରିଅମ୍ବକରୂପେ ଦେଶଜରୂପରେ ବ୍ୟବହୃତ ହୁଏ । ]

**ତ୍ରିୟଲୋଚନ**—ଦେ. ବି. (ସଂ. ତ୍ରିଲୋଚନ)—ତ୍ରିଲୋଚନ (ଦେଖ)
Triyalochana Trilochana (See)

**ତ୍ରିଯାନ**—ସଂ. ବି—ବୌଦ୍ଧଧର୍ମର ୩ ଭେଦ (ମହାଯାନ, ମଧ୍ୟମଯାନ ଓ
Trijana ହୀନଯାନ)—The three branches of the Buddhist faith.

**ତ୍ରିଯାମା**—ସଂ. ବି. ସ୍ତ୍ରୀ. (ବହୁବ୍ରୀହି; ତ୍ରି+ଯାମ=ପ୍ରହର+ସ୍ତ୍ରୀ. ଆ)—
Trijāmā ୧ । ରାତ୍ରି; ରଜନୀ—1 Night.

୨ । ଯମୁନା ନଦୀ—2. The Jamunā river.

୩ । ହରିଦ୍ରା; ହଳଦୀ—3. Turmeric.

[ ଦ୍ର—ରାତ୍ରିର ପ୍ରଥମ ଚାରି ଦଣ୍ଡ ଓ ଶେଷ ଚାରି ଦଣ୍ଡ ଦିବସର ଅନ୍ତର୍ଗତ ବୋଲି ରାତ୍ରିକୁ ତ୍ରିଯାମା ବୋଲାଯାଏ । ]

୪ । କଳା ତିହୁଡ଼ି (ଦେଖ)
4 (the black) Tihurḍi (See)

୫ । ନୀଳ ଗଛ—5. The indigo plant.

**ତ୍ରିଯୁଗ**—ସଂ. ବି. (ସମାହାର ଦ୍ୱିଗୁ; ତ୍ରି+ଯୁଗ)—
Trijuga ୧ । ତିନିଗୋଟି ଯୁଗ; ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗ—
1. The three ages (Satya, Tretā and Dwāpara) of the world according to the Hindus.

୨ । ଋତୁତ୍ରୟ (ବସନ୍ତ, ବର୍ଷା ଓ ଶରତ୍)—
2 The three seasons of the year; (spring, rains and autum)

୩ । ବିଷ୍ଣୁ (ହି. ଶବ୍ଦସାଗର)—3. A name of Bishṇu.

**ତ୍ରିଯୁଗୀ ନାରାୟଣ**—ଦେ. ବି. (ନାମ)—ଉତ୍ତର ଭାରତର ତୀର୍ଥବିଶେଷ—
Trijugi nārāyaṇa Name of a place of pilgrimage in Northern India.

[ ଦ୍ର—ଏହା ରୁଦ୍ରପ୍ରୟାଗଠାରୁ ୩୨ ମାଇଲ ଦୂରରେ ଅବସ୍ଥିତ । ଏଠାରେ ଅଷ୍ଟ ଧାତୁ ନିର୍ମିତ ଚତୁର୍ଭୁଜ ବିଷ୍ଣୁମୂର୍ତ୍ତି ତ୍ରିଯୁଗୀ ନାରାୟଣଙ୍କର ମନ୍ଦିର ଅବସ୍ଥିତ । ଏହି ମନ୍ଦିର ସମ୍ମୁଖରେ ଗୋଟିଏ ଅଗ୍ନିକୁଣ୍ଡ ସର୍ବଦା ପ୍ରଜ୍ୱଳିତ ରହିଅଛି ।

ଶ୍ରୀହରପାର୍ବତୀଙ୍କ ବିବାହ ସମୟରେ ପ୍ରଜ୍ୱଳିତ ହୋମକୁଣ୍ଡର ଅଗ୍ନି ତିନିଯୁଗ ହେଲା ଜାଗ୍ରତ ଅବସ୍ଥାରେ ରଖା ହୋଇଥିବାର ବିଶ୍ୱାସ କାଳକ୍ରମେ ଚଳି ଆସୁଅଛି । ଏଠାର ପଣ୍ଡାମାନେ କୁଣ୍ଡମଧ୍ୟରେ କାଷ୍ଠ ନିକ୍ଷେପ କରି ଅଗ୍ନିକୁ ସର୍ବଦା ପ୍ରଜ୍ୱଳିତ ଅବସ୍ଥାରେ ରଖିଅଛନ୍ତି । ଯାତ୍ରୀମାନଙ୍କର ଏହି ଅଗ୍ନିକୁଣ୍ଡରେ ହୋମ କରିବାର ବିଧାନ ଅଛି (ମଦନମୋହନ ତୀର୍ଥଦର୍ଶନ) । ]

**ତ୍ରିଯୂହ**—ସଂ. ବି—ଧଳା ରଙ୍ଗର ଘୋଡ଼ା (ହି ଶବ୍ଦସାଗର)—
Trijūha A horse of white colour.

**ତ୍ରିରାତ୍ର**—ସଂ. ବି. (ସମାହାର ଦ୍ୱିଗୁ; ତ୍ରି+ରାତ୍ରି)—
Trirātra ୧ । ତିନିରାତ୍ରି ପରିମିତ କାଳ—
(ତ୍ରିରାତ୍ରି—ଅନ୍ୟରୂପ) 1. Time covered by three successive nights (i.e. three successive nights and two days between them).

[ ଦ୍ର—ତୀର୍ଥ ଯାତ୍ରୀଙ୍କର ତୀର୍ଥରେ ତ୍ରିରାତ୍ର ଯାପନ କରିବାର ବିଧି ଅଛି । ]

୨ । ରାତ୍ରି ସହିତ ଦିବସତ୍ରୟ—2. Three days and nights following each other.

୩ । ତିନି ଦିନ ଉପବାସ କରିବା ବ୍ରତବିଶେଷ—
3. A vow consisting of fasting for 3 days consecutively.

୪ । ଗର୍ଗ-ତ୍ରିରାତ୍ର ନାମକ ଯାଗ—
4. Name of a Vedic sacrifice.

**ତ୍ରିରାତ୍ରାଶୌଚ**—ସଂ. ବି—ବ୍ୟକ୍ତିବିଶେଷର ଜନ୍ମ ବା ମୃତ୍ୟୁରେ ଶାସ୍ତ୍ର
Trirātrā śaucha ବିଧାନ ଅନୁସାରେ ମନୁଷ୍ୟର ତିନି ରାତ୍ରି ପର୍ଯ୍ୟନ୍ତ ପାଳିବା ଅଶୌଚ—Impurity extending over three nights observed by a person on the death or brith of specific relations (as enjoined by the Hindu Sāstras).

**ତ୍ରିରେଖ**—ସଂ. ବି. (ସମାହାର ଦ୍ୱିଗୁ; ତ୍ରି+ରେଖା)—୧ । ତିନି
Trirekha ରେଖାର ସମାହାର; ରେଖାତ୍ରୟ——1 An aggregate of three lines.

୨ । (ବହୁବ୍ରୀହି) ଶଙ୍ଖ—2. Conch.

**ତ୍ରିରୋରି**—ଦେ. ବି. (ନାମ)—ଥାନେଶ୍ୱରର ନିକଟବର୍ତ୍ତୀ ସ୍ଥାନବିଶେଷ;
Trirori ତିରୋରୀ—Name of a place near Thāneswar; Tirouri.
(ତିରୋରୀ; ତ୍ରିରୌରୀ—ଅନ୍ୟରୂପ)

[ଦ୍ର—ଏଠାରେ ମହମ୍ମଦ ଘୋରୀ ଓ ପୃଥ୍ୱୀରାଜଙ୍କ ମଧ୍ୟରେ ଘୋର ଯୁଦ୍ଧ ହୋଇଥିଲା । ସେହି ଯୁଦ୍ଧରେ ପୃଥ୍ୱୀରାଜ ପରାସ୍ତ

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଌ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ୍ଞ | ଶ,ଷ | ଙ୍କ | ତ୍ୟ | ତ୍ଥ | ଐ |
| ୧ | ଈ | ଉ | ଋ | ଌ | ଝ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ୍ୟ | ଯ | ଯ | ଙ୍ଗ | ତ୍ଥ | ଔ | ନ୍ତୁ |

ହୋଇ ମୃତ ହେଲେ । ସେହି ଦିନରୁ ଭାରତରୁ ହିନ୍ଦୁ ସ୍ୱାଧୀନତା ଲୋପ ପାଇଲା ।]

ତ୍ରିଲିଙ୍ଗ - ସଂ. ବିଣ.—(ବ୍ୟାକରଣ) ସ୍ତ୍ରୀ. ପୁଂ ଓ ନପୁଂସକ ଲିଙ୍ଗବିଶିଷ୍ଟ
Trilinga (ଶବ୍ଦ.—(grammar) Having three genders.

ବି.—୧ । ସ୍ତ୍ରୀଲିଙ୍ଗ, ପୁଂଲିଙ୍ଗ ଓ ନପୁଂସକ ଲିଙ୍ଗ— 1. The three genders (masculine, feminine and neuter).

୨ । ତୈଲଙ୍ଗ (ଦେଖ) — 2. Tailanga (See)

[ଦ୍ର—ତୈଲିଙ୍ଗ ବା ତେଲଙ୍ଗା ଶବ୍ଦର ଏହି ଶବ୍ଦ ମୂଳସ୍ୱରୂପ ଶବ୍ଦ ଥିବାର କେହି କେହି କହନ୍ତି; କିନ୍ତୁ ଏହା ଠିକ ନ ଥିବାର ଜଣା ଯାଏ ।]

ତ୍ରିଲୋକ—ସଂ. ବି. କ୍ଲୀ (ସମାହାର ଦ୍ୱିଗୁ; ତ୍ରି + ଲୋକ)—ସ୍ୱର୍ଗ, ମର୍ତ୍ତ୍ୟ ଓ
Triloka ପାତାଳ ଏହି ତିନି ଭୁବନ; ତ୍ରିଭୁବନ—The three
(ତ୍ରିଲୋକୀ—ସ୍ତ୍ରୀ) worlds; the heaven, the earth and the nether world.

ତ୍ରିଲୋକନାଥ—ସଂ. ବି. (୬ଷ୍ଠୀ ତତ୍; ତ୍ରିଲୋକ + ନାଥ)—୧ । ବିଷ୍ଣୁ -
Triloka nātha 1. Bishṇu (the Lord of the three
(ତ୍ରିଲୋକପତି—ଅନ୍ୟରୂପ) worlds.)

୨ । ମହାଦେବ; ବିଶ୍ୱେଶ୍ୱର; ବିଶ୍ୱନାଥ—2. Śiba.

୩ । ସୂର୍ଯ୍ୟ—3. The sun.

୪ । ତ୍ରିଲୋକର ଈଶ୍ୱର— 4. The Lord of the three worlds.

ତ୍ରିଲୋକୀ—ସଂ. ବି. ( ସମାହାର ଦ୍ୱିଗୁ; ତ୍ରି + ଲୋକ)—ତ୍ରିଭୁବନ—
Trilokī The three worlds.

ତ୍ରିଲୋକୀ ନାଥ—ସଂ.ବି. ( ୬ଷ୍ଠୀ ତତ୍; ତ୍ରିଲୋକୀ + ନାଥ)—
Trilokī nātha ୧ । ବିଷ୍ଣୁ—1 Bishṇu

୨ । ମହାଦେବ—2. Śiba.

ତ୍ରିଲୋକେଶ —ସଂ. ବି. (୬ଷ୍ଠୀ ତତ୍; ତ୍ରିଲୋକ + ଈଶ) —
Trilokeśa ତ୍ରିଲୋକନାଥ (ଦେଖ)—Trilokanātha (See)

ତ୍ରିଲୋକେଶ୍ୱର—ସଂ ବି. (୬ଷ୍ଠୀ ତତ୍; ତ୍ରିଲୋକ + ଈଶ୍ୱର)—
Trilokeśwara ତ୍ରିଲୋକନାଥ (ଦେଖ)— Trilokanātha (See)

ତ୍ରିଲୋଚନ—ସଂ. ବି. ପୁଂ (ବହୁବ୍ରୀହି; ତ୍ରି + ଲୋଚନ)—
Trilochana ୧ । ମହାଦେବ—1. Śiba (the three-eyed
(ତ୍ରିଲୋଚନା, ତ୍ରିଲୋଚନୀ—ସ୍ତ୍ରୀ) God).

୨ । କାଶୀସ୍ଥ ଶିବଲିଙ୍ଗବିଶେଷ— 2. Name of a Śiba-linga of Benares.

ଦେ. ବି. ପୁଂ—ଲୋକଙ୍କୁ ଦିଆଯିବା ନାମ— A name given to males.

ସଂ. ବିଣ. ପୁଂ.—ଲୋଚନତ୍ରୟଯୁକ୍ତ—Three-eyed.

ତ୍ରିଲୋଚନ ଗୁଣା — ଦେ. ବି.—(ବଣିଆ ଶବ୍ଦ) — ତିନି ଗୋଟି ବେଢ଼ ଥିବା
Trilochana guṇā ସୁନାରେ ତିଆରି ଗୁଣା—A kind of nose-flower made up of 3 circuits or circular strips

ତ୍ରିଲୋଚନ ଦ୍ୱିଜ—ଦେ. ବି. (ନାମ)—ପ୍ରାଚୀନ ଓଡ଼ିଆ କବିବିଶେଷ—
Trilochana dwija Name of an ancient Orissa poet.

[ ଦ୍ର —ଏ ପଦ୍ମପୁରାଣାନ୍ତର୍ଗତ ପ୍ରାଚୀନମାହାତ୍ମ୍ୟର ଉତ୍କଳାନୁବାଦ କରି ଥିଲେ । ଏ ଭକ୍ତ ଜଗନ୍ନାଥ ଦାସଙ୍କ ପରବର୍ତ୍ତୀ ବା ସମସାମୟିକ ଲେଖକ ଅଟନ୍ତି । ଜଗବନ୍ଧୁ ପ୍ରାଚୀନ ଉତ୍କଳ ।]

ତ୍ରିଲୋଚନା—ସଂ. ବି. ସ୍ତ୍ରୀ (ତ୍ରିଲୋଚନ + ସ୍ତ୍ରୀ. ଆ)—ପାର୍ବତୀ; ଦୁର୍ଗା—
Trilochanā Durgā; Pārbatī.
(ତ୍ରିଲୋଚନୀ – ଅନ୍ୟରୂପ) ସଂ. ବିଣ. ସ୍ତ୍ରୀ—ତ୍ରିଲୋଚନର ସ୍ତ୍ରୀଲିଙ୍ଗ— Feminine of Trilochana.

ତ୍ରିଲୋ(ଲୌ)ହ — ସଂ. ବି.—( ସମାହାର ଦ୍ୱିଗୁ; ତ୍ରି + ଲୋହ; ଲୌହ )
Trilo(lau)ha ସୁନା, ରୁପା ଓ ତମ୍ବା—The three metals,
(ତ୍ରିଲୌହକ—ଅନ୍ୟରୂପ ) gold, silver and copper.

ତ୍ରିଶ—ଦେ. ବି. ଓ ବିଣ ( ସଂ. ତ୍ରିଂଶ )—ତିରିଶି; ୩୦—
Triśa 30; Thirty.
त्रिंश तीस

ତ୍ରିଶକଟ ଗୁଣ୍ଡ—ଦେ. ବି.—ଯେଉଁ ଲମ୍ବ ଓ ବଡ଼ ତୋପକୁ ତିନୋଟି
Triśakaṭa guṇḍa ଶଗଡ଼ ଲଗାଇ ବୋହି ନିଅନ୍ତି— A big cannon carried on 3 carts put together.

ତୋପ କମାଣ ତ୍ରିଶକଟ ଗୁଣ୍ଡ, ଜବାଲ ଜମ୍ବୁର ନଳ ପ୍ରଚଣ୍ଡ ।
ବ୍ରଜନାଥ. ସମରତରଙ୍ଗ ।

ତ୍ରିଶକ୍ତି—ସଂ. ବି. ସ୍ତ୍ରୀ—ଦୁର୍ଗାଙ୍କର ତିନି ମୂର୍ତ୍ତି; କାଳୀ, ତାରା ଓ ତ୍ରିପୁରା—
Triśakti The three manifestations of Goddess Durgā ( viz. Kāli, Tārā and Tripurā.

ତ୍ରିଶଙ୍କୁ—ସଂ. ବି. (ନାମ)—୧ । ସୂର୍ଯ୍ୟବଂଶୀୟ ରାଜା ହରିଶ୍ଚନ୍ଦ୍ରଙ୍କ ପିତା
Triśanku ଓ ପୃଥୁରାଜାଙ୍କ ପୁତ୍ର—1. Name of a king of the solar dynasty of ancient India who was stationed in a void space intermediate between the heaven and the earth.

[ଦ୍ର—ଅଯୋଧ୍ୟା ଏହାଙ୍କର ରାଜଧାନୀ ଥିଲା । ଏ ସଶରୀର ସ୍ୱର୍ଗକୁ ଯିବାପାଇଁ ଯଜ୍ଞ କରିବାକୁ ଇଚ୍ଛା କରି ଆପଣାର କୁଳଗୁରୁ ବଶିଷ୍ଠ ଓ ତାଙ୍କର ପୁତ୍ରମାନଙ୍କୁ କହିବାରୁ ସେମାନେ ଅସ୍ୱୀକାର କଲେ । ତତ୍‌ପରେ ଏ ବିଶ୍ୱାମିତ୍ରଙ୍କ ଶରଣାପନ୍ନ ହେବାରୁ ବିଶ୍ୱାମିତ୍ର ସ୍ୱୀୟ ତପଃ ପ୍ରଭାବରେ ଏହାଙ୍କୁ ସଶରୀର ସ୍ୱର୍ଗକୁ ପଠାଇଲେ । ଏ ସ୍ୱର୍ଗକୁ ଯିବାରୁ ଦେବତାମାନେ ଏହାଙ୍କୁ ବାଟ ଛାଡ଼ି ଦେଲେ ନାହିଁ । ଏଥିରେ ବିଶ୍ୱାମିତ୍ର କ୍ରୁଦ୍ଧ ହୋଇ ଏହାଙ୍କ ପାଇଁ ପୁଣି ଗୋଟିଏ ସ୍ୱର୍ଗଲୋକ ସୃଷ୍ଟି କରିବାକୁ ବସିବାରୁ ଦେବତାମାନେ ଅଗତ୍ୟା ଭୀତ ହୋଇ ଏ ଋଷି ପଡ଼ୁଥିବା ଅର୍ଦ୍ଧପଥ ଅନ୍ତରୀକ୍ଷ ପଥରେ

ସାଧାରଣ ଲୋକଙ୍କ ଅପର ଦୃଷ୍ଟିରେ ୧ ଚିହ୍ନିତ ଅକ୍ଷର ଓ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳେ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, କୂଅ ନ ମିଳିଲେ 'କୁଅ' ଦେଖିବେ; 'ବଟ୍ଟି' ନ ପାଇଲେ 'ବଟି' ଦେଖିବେ; ଅଂଶ ନ ପାଇଲେ 'ଅଶ୍ଚ' ଦେଖିବେ; 'ଅଲବଢ଼' ନ ପାଇଲେ 'ଅଲ୍‌ବଢ଼' ଦେଖିବେ ।

ଏହାଙ୍କୁ ରକ୍ଷିବା ପାଇଁ ଅନୁମତି ଦେଲେ । ତଦବଧି ଏ ତିନିଗୋଟି ଉଜ୍ଜ୍ୱଳ ନକ୍ଷତ୍ର ରୂପେ ନକ୍ଷତ୍ରମଣ୍ଡଳର ଦକ୍ଷିଣରେ ଅବସ୍ଥାନ କରୁଅଛନ୍ତି । ]

୨ । ବିରାଡ଼ି—2 A cat.

୩ । ଶଲଭ; ଝିଣ୍ଟିକା—3 A locust.

୪ । ଶୁଭଚଟିପକ୍ଷୀ—4. A kind of swallow.

୫ । ଖଦ୍ୟୋତ—5. A firefly.

୬ । ଦକ୍ଷିଣ ଆକାଶରେ ଧ୍ରୁବ ନକ୍ଷତ୍ରର ଉତ୍ତରରେ ଥିବା କ୍ରସ ପରି ସ୍ଥିତ ନକ୍ଷତ୍ରପୁଞ୍ଜ ମଧ୍ୟରୁ ଉପରର ତିନିଗୋଟି—
6. The three upper stars in the constellation of the Southern cross in the southern sky.

ତ୍ରିଶତ—ସ. ବି. ଓ ବିଣ. ( ମ. ପ. ଲୋ; କର୍ମଧା; ତ୍ରିଗୁଣିତ ଶତ )—
Trisata ତିନିଶହ—Three hundred.

ତ୍ରିଶାଖ —ସ. ବିଣ. କ୍ଲୀ. ( ବହୁବ୍ରୀହି; ତ୍ରି+ଶାଖା )—
Trisākha ୧ । ତିନି ଶାଖା ବା ଡାଳବିଶିଷ୍ଟ—
(ତ୍ରିଶାଖା—ସ୍ତ୍ରୀ) 1. Having three branches.

୨ । ତିନିଚୂନା—2. Three forked; three pronged.

ସ. ବି—ବେଲପତ୍ର—
The leaf of the Bel tree.

ତ୍ରିଶିଖ—ସ. ବି. ( ବହୁବ୍ରୀହି; ତ୍ରି+ଶିଖା )—୧ । ତ୍ରିଶୂଳ—
Trisikha 1. A trident.

୨ । କିରୀଟ—2. A crown.

୩ । ରାବଣର ପୁତ୍ରବିଶେଷ—
3. Name of a son of Rābaṇa.

୪ । ବେଲ ଗଛ—
4. The Bel tree; Aegle Marmelos.

( ତ୍ରିଶିଖା—ସ୍ତ୍ରୀ ) ବିଣ. ପୁଂ. ଓ କ୍ଲୀ—ତିନି ଶାଖାବିଶିଷ୍ଟ—
Three forked.

ତ୍ରିଶିର—ଦେ. ବି. ( ସ. ତ୍ରିଶିରସ୍ )—ତ୍ରିଶିରା ୩ ( ଦେଖ )
Trisira Trisirā 3 ( See )

ବଣଦେବତାଙ୍କର ତ୍ରିଶିର ଜଗନ୍ନାଥ ମନୋହର ଅତି ବାପୁର—
ଭକ୍ତ ବୈଦେହୀଶବିଳାସ ।

ତ୍ରିଶିରା—ସ. ବିଣ. ( ତ୍ରିଶିରସ୍ ଶବ୍ଦ, ବହୁବ୍ରୀହି; ତ୍ରି+ଶିରସ୍, ୧ମା. ୧ବ )—ତିନିମୁଣ୍ଡିଆ—Three-headed.
Trisirā

ବି—୧ । କୁବେର—1. God Kubera.

୨ । ଜ୍ୱର ପୁରୁଷ—2. The demon presiding over fever; fever personified as a Deity.

[ ଦ୍ର—ହରିବଂଶରେ ଲେଖା ଅଛି ଯେ ବାଣାସୁରର ସହାୟତା କରିବା ପାଇଁ ମହାଦେବ ନିଜ ଶରୀରରୁ ଏହାଙ୍କୁ ଉତ୍ପନ୍ନ କରିଥିଲେ । ଏହାଙ୍କର ମୁଣ୍ଡ, ୩ ଗୋଡ଼, ୬ ହାତ ଓ ୯ ଆଖି । ]

୩ । ( ରାମାୟଣୋକ୍ତ ) ଖରର ସେନାପତି; ରାକ୍ଷସବିଶେଷ—
3. Name of a demon; a commander of the demon Khara.

[ ଦ୍ର—ଏ ରାବଣର ଏକ ଭାଇ । ଏ ଖର ଦୂଷଣଙ୍କ ସଙ୍ଗେ ଦଣ୍ଡକାରଣ୍ୟରେ ରହୁଥିଲା । ରାମଚନ୍ଦ୍ର ଏହାକୁ ବଧ କଲେ । ]

୪ । ତ୍ୱଷ୍ଟା ପ୍ରଜାପତିଙ୍କର ଏକ ପୁତ୍ର—
4. Name of a son of Twashṭā.

ତ୍ରିଶିରାପଲ୍ଲୀ—ଦେ. ବି. ( ନାମ )—ତ୍ରିଚିନାପଲ୍ଲୀ ( ଦେଖ )
Trisirāpalli Trichināpalli ( See )

ଯା ଗଲେ ତ୍ରିଶିରାପଲ୍ଲୀ ଅଭିରାମ
ବଧିଲେ ତ୍ରିଶିର ଯେଉଁ ରାମ—ଚନ୍ଦ୍ରାମଣି. ମହୋଦଧି ।

ତ୍ରିଶୀର୍ଷକ—ସ. ବିଣ. ( ବହୁବ୍ରୀହି; ତ୍ରି+ଶୀର୍ଷ+କ )—ତିନିମୁଣ୍ଡିଆ—
Trisirshaka Three-headed.

ବି—ତିନି ଫଳକଯୁକ୍ତ ଅସ୍ତ୍ର; ତ୍ରିଶୂଳ—
Trident; a three-pronged weapon.

ତ୍ରିଶୂଳ —ସ. ବି. ( ବହୁବ୍ରୀହି; ତ୍ରି+ଶୂଳ ଯାହାର )—
Trisūḻa ୧ । ତ୍ରିଫଳକଯୁକ୍ତ ମହାଦେବଙ୍କ ଅସ୍ତ୍ର—
1. The trident; the weapon of Siba.

୨ । ତିନି ଚେଣ୍ଡିଆ ମୂନା ଅସ୍ତ୍ର—
2. A pitchfork.

ତ୍ରିଶୂଳ ଧାରିଣୀ—ସ. ବି. ସ୍ତ୍ରୀ—ଦୁର୍ଗା—
Trisūḻa dhāriṇī Goddess Durgā.
(ତ୍ରିଶୂଳଧାରୀ—ପୁଂ) ବିଣ—ତ୍ରିଶୂଳ ଧରିଥିବା ( ସ୍ତ୍ରୀ )—
( a female ) Holding the trident.

ତ୍ରିଶୂଳଧାରୀ—ସ. ବି. ପୁଂ. ( ତ୍ରିଶୂଳ+ଧୃ ଧାତୁ ଇନ୍; ୧ମା. ୧ବ )—
Trisūḻadhārī ମହାଦେବ—Siba.
( ତ୍ରିଶୂଳଧାରିଣୀ—ସ୍ତ୍ରୀ ) ବିଣ —ତ୍ରିଶୂଳ ଧରିଥିବା ବ୍ୟକ୍ତି—
Holding the trident.

ତ୍ରିଶୂଳିନୀ—ସ. ବି. ଓ ବିଣ. ( ତ୍ରିଶୂଳ+ଅସ୍ତି ଅର୍ଥରେ ଇନ୍+ସ୍ତ୍ରୀ. ଈ )—ତ୍ରିଶୂଳଧାରିଣୀ ( ଦେଖ )
Trisūḻinī Trisūḻadhāriṇī ( See )

ତ୍ରିଶୂଳୀ—ସ. ବି. ଓ ବିଣ. ( ତ୍ରି+ଶୂଳ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ )—ତ୍ରିଶୂଳଧାରୀ ( ଦେଖ )
Trisūḻī Trisūḻadhārī ( See )

ତ୍ରିଶୂଳୀ ବାତ—ଦେ. ବି—ଏକପ୍ରକାର ଭୟଙ୍କର ବାତ ରୋଗ—
Trisūḻī bāta A kind of fatal fit.

ତ୍ରିଶୃଙ୍ଗ—ସ. ବି. ( ବହୁବ୍ରୀହି; ତ୍ରି+ଶୃଙ୍ଗ )—୧ । ତ୍ରିକୂଟ ପର୍ବତ —
Trisṛunga 1. Name of a three headed mountain.

୨ । ତ୍ରିକୋଣ; ତ୍ରିଭୁଜ—2. Triangle.

ସ. ବିଣ—୧ । ତିନୋଟି ଶିଙ୍ଗବିଶିଷ୍ଟ ( ପଶୁ )—
1. Three horned ( animal ).

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ଋ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଯ | କ୍ଷ | ଇୟ | ତ୍ୟ | ଙ୍କ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଷ୍ୟ | ଯ | ସ | ତ୍ୟ | ଇଅ | ଡ଼ | ଁ |

୨ । ତିନୋଟି ଶୃଙ୍ଗବିଶିଷ୍ଟ ( ପର୍ବତ )—
2. ( mountain ) Having three peaks.

ତ୍ରିଶୃଙ୍ଗୀ—ସଂ. ବି. ( ତ୍ରି + ଶୃଙ୍ଗ + ଇନ୍; ୧ମା. ୧ବ )—
Triśṛuṅgi ୧ । ରୋହୀମାଛ—1 Name of a big fresh water fish ( Rohita) Cyprinus Rohita.
୨ । ଶିଙ୍ଗିମାଛ—2. Sacco branchus fossillis.
୩ । ରୁଦ୍ରାନୁଚରବିଶେଷ—
3. Name of an attendant of Śiba.

ତ୍ରିଷଷ୍ଟି—ସଂ. ବି. ଓ ବିଣ. ( ମ. ପ. ଲୋ; କର୍ମଧା; ତ୍ରି + ଷଷ୍ଟି )—
Trishashṭi ଷାଠିଏରୁ ତିନି ଅଧିକ; ତେଷଠି; ୬୩—
63; Sixty three.

ତ୍ରିଷଷ୍ଟ—ସଂ. ବିଣ. ( ତ୍ରିଷଷ୍ଟୀ + ଅ )—ତେଷଠିର ପୂରଣ—
Trishashṭha Sixty three

ତ୍ରିଷ୍ଟ—ସଂ. ବି—ତିନି ଚକିଆ ଗାଡ଼ି—
Trishṭa Tricycle

ତ୍ରିଷ୍ଟୁପ୍—ସଂ. ବି—ପ୍ରତ୍ୟେକ ଚରଣରେ ୧୧ ଅକ୍ଷର ଥିବା ବୈଦିକ
Trishṭup ଛନ୍ଦୋବିଶେଷ—A vedic metre having
(ତ୍ରିଷ୍ଟୁଭ୍—ଅନ୍ୟରୂପ ) eleven syllables in every foot
[ ଦ୍ର—ସୁମୁଖୀ, ଇନ୍ଦ୍ରବଜ୍ରା, ଉପେନ୍ଦ୍ରବଜ୍ରା, କୀର୍ତ୍ତି, ବାରଣୀ, ମାଳା, ଶାଳା, ହଂସୀ, ମାୟା, ଜାୟା, ବାଲା, ଆର୍ଦ୍ରା, ଭଦ୍ରା, ପ୍ରେମା, ରାମା, ରଥୋଦ୍ଧତା, ଦୋଧକ, ବୃଦ୍ଧି, ସିଦ୍ଧି, ବୁଦ୍ଧି ଏ ଛନ୍ଦର ପ୍ରଧାନ ଭେଦ । ]

ତ୍ରିସନ୍ଧି—ସଂ. ବି—ସଦାବିହାରୀ ଫୁଲ—Name of a flower;
Trisandhi Periwinkle.
ଏ ଫୁଲର ଅନ୍ୟ ସଂ. ନାମ—
ସାନ୍ଧ୍ୟକୁସୁମା, ସନ୍ଧିବଲ୍ଲୀ, ସଦାଫଳା,
ତ୍ରିସନ୍ଧ୍ୟକୁସୁମା, କାଣ୍ଡୀ,
ସୁକୁମାର ସନ୍ଧିଜା
( ତ୍ରିସନ୍ଧ୍ୟକୁସୁମ—ଅନ୍ୟରୂପ )
[ ଦ୍ର—ଏହା ଧଳା ଓ ଈଷତ୍ ନାଲି ଉଭୟ ରଙ୍ଗର ଦେଖାଯାଏ । ]
ଦେ. ବି—ବିଷମ ସମସ୍ୟା—
Trelemma; a puzzle

ତ୍ରିସନ୍ଧ୍ୟ—ସଂ. ବି. ( ଦ୍ୱିଗୁ, ତ୍ରି + ସନ୍ଧ୍ୟା )—ସକାଳ, ଦ୍ୱିପହର ଓ
Trisandhya ସନ୍ଧ୍ୟାବେଳ ଦିନର ଏହି ତିନିକାଳ—
Morning, noon and evening.

ତ୍ରିସନ୍ଧ୍ୟା—ସଂ. ବି. ( କର୍ମଧାରୟ; ତ୍ରି + ସନ୍ଧ୍ୟା = ମେଳନକାଳ )—
Trisandhyā ସକାଳ, ଦ୍ୱିପହର ଓ ସନ୍ଧ୍ୟାବେଳ; ଦିବସର ତିନି ବେଳ; ତ୍ରିକାଳ—Dawn, noon and eve; the three diurnal junctions

ତ୍ରିସପ୍ତ—ସଂ. ବି. ଓ ବିଣ. ( ତ୍ରି = ତ୍ରିଗୁଣିତ + ସପ୍ତ )—୨୧ ସଂଖ୍ୟା —
Trisapta Twenty one; 21

ତ୍ରିସପ୍ତତି—ସଂ. ବି. ଓ ବିଣ. ( ତ୍ରି ଅଧିକ + ସପ୍ତତି = ସତୁରି )—
Trisaptati ସତୁରି ଅପେକ୍ଷା ତିନି ଅଧିକ ସଂଖ୍ୟା; ତେସ୍ତରି; ୭୩—
Seventy three; 73.

ତ୍ରିସବନ—ସଂ. ବି ( ତ୍ରି + ସବନ = ସ୍ନାନ )—ଦିନ ମଧ୍ୟରେ ତିନିଥର
Trisabana ସ୍ନାନ; ତ୍ରିସନ୍ଧ୍ୟାରେ ସ୍ନାନ—Bathing thrice during the day (viz in the morning, at noon and in the evening).

ତ୍ରିସମ—ସଂ. ବି ( ଆୟୁର୍ବେଦୋକ୍ତ )—ସମାନଭାବରେ ହରଡ଼ା, ନାଗର
Trisama ମୁଥା ( ମତାନ୍ତରରେ ଶୁଣ୍ଠି ) ଓ ଗୁଡ଼ ମିଶ୍ରିତ ଔଷଧ—
A medicinal preparation consisting of three equal quantities of myrabolan, grass–root and molasses mixed together.

ତ୍ରିସର—ସଂ. ବି—୧ । ଚାଉଳ ଓ ରାଶିରେ ପ୍ରସ୍ତୁତ ଏକପ୍ରକାର ଖେଚୁଡ଼ି—
Trisara 1. A dish composed of rice and sessamum seeds boiled together.
୨ । ଖେସାରି—2. Lathyrus Sativus.

ତ୍ରିସରି ମୁଦି—ଦେ. ବି—ହାତ ଅଙ୍ଗୁଠିରେ ପିନ୍ଧାଯିବା ଏକପ୍ରକାର
Trisari mudi ମୁଦି—(ଗୋଟିଏ ତାରକୁ ତିନିଥର ଘୁରାଇ ଏ ମୁଦି ତିଆରି ହୋଇଥାଏ )—A kind of finger ring for the hands.

ବାମ କରର ଅଙ୍ଗୁଳି,
ତ୍ରିସରି ମୁଦିରେ ଝଳ—ଉତ୍କ. ଲାବଣ୍ୟବତୀ ।

ତ୍ରିସାମା—ସଂ. ବି. ପୁଂ ( ତ୍ରିସାମନ୍ ଶବ୍ଦ ୧ମା. ୧ବ )—( ବିଷ୍ଣୁସହସ୍ର
Trisāmā ନାମୋକ୍ତ ) ବିଷ୍ଣୁଙ୍କ ନାମ—A name of Bishṇu.
ସ୍ତ୍ରୀ—(ଭାଗବତ) ମହେନ୍ଦ୍ର ପର୍ବତରୁ ବାହାରିଥିବା ନଦୀବିଶେଷ—
Name of a river rising from the Mahendra mountain.

ତ୍ରିସାହସ୍ର—ସଂ. ବି ( ତ୍ରି + ସାହସ୍ର )—ତିନିହଜାର ପରିମିତ—
Trisāhasra Numbering three thousand; consisting of three thousand.

ତ୍ରିସିତା—ସଂ. ବି ( ସମାହାର ଦ୍ୱିଗୁ; ତ୍ରି + ସିତା )—(ବୈଦ୍ୟକ) ଗୁଡ଼, ଚିନି ଓ ମିଶ୍ରିର ସମାହାର—(Ayurveda) A mix-
Trisitā ture of three kinds of sugar (i. e. molasses, refined sugar and sugar candy.)

ତ୍ରିସୀତ୍ୟ—ସଂ. ବିଣ ( ତ୍ରି + ସୀତ୍ ଧାତୁ = କୃଷ କରିବା + କର୍ମ. ଯ )—
Trisitya ତିନି ଓଡ଼ା ହଳ ହୋଇଥିବା; ତିନିଥର ଚଷା ଯାଇଥିବା; ତ୍ରିବାର କର୍ଷିତ—Thrice tilled or ploughed; thrice furrowed (land).

ତ୍ରିସୀମା—ଦେ. ବି—ସନ୍ନିଧି; ନିକଟ; ସମୀପ—
Trisimā Proximity; vicinity.
ত্রিসীমা ( ଯଥା—ଯେ ବିଦ୍ୟାଳୟର ତ୍ରିସୀମା ମାଡ଼ି ନାହାନ୍ତି, ସେ
ত্রিসীমা ପଣ୍ଡିତ ବୋଲି ପୂଜା ପାଉଅଛନ୍ତି । )

ପାଠକେ ଯେବେ ଅପର ପୃଷ୍ଠାରେ ଯତର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ପାଠକମାନେ ଯଥାକ୍ରମେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'ବୃଷ' ନ ମିଳିଲେ 'ବଷ' ଦେଖିବେ; 'ବନ୍' ନ ପାଇଲେ 'ବନ୍ଧ' ଦେଖିବେ, 'ଅର୍ଚ୍ଚା' ନ ପାଇଲେ 'ଅର୍ଚ୍ଚା' ଦେଖିବେ; 'ଅଲବର' ନ ପାଇଲେ 'ଅଲ୍‌ବର୍‌' ଦେଖିବେ

**ତ୍ରିସୁଗନ୍ଧ**—ସଂ. ବି (ସମାହାର ଦ୍ୱନ୍ଦ୍ୱ; ତ୍ରି+ସୁଗନ୍ଧ)—(ବୈଦ୍ୟକ)
Trisugandhi ଡାଲଚିନି, ଅଳେଇଚ ଓ ତେଜପତ୍ରର ସମାହାର—(Ayurveda) A mixture of three scented articles (viz. cinnamon, cardamom and Cassia leaves.

**ତ୍ରିସ୍କନ୍ଧ ଜ୍ୟୋତିଷ**—ସଂ. ବି (ଜ୍ୟୋତିଷ)—ତିନିଗୋଟି ଶାଖା (ଗଣିତ, Triskandha jyotisha ସଂହିତା ଓ ହୋରା) ବିଶିଷ୍ଟ ଜ୍ୟୋତିଷ ଗ୍ରନ୍ଥ—Hindu Astronomy consisting of three sections.

**ତ୍ରିସ୍ପୃଶା**—ସଂ. ବି. ସ୍ତ୍ରୀ (ତ୍ରି+ସ୍ପୃଶ୍ ଧାତୁ+କର୍ତ୍ତୃ. ଅ+ସ୍ତ୍ରୀ. ଆ)—
Trisprusā ଯେଉଁ ଏକାଦଶୀରେ ଏକାଦଶୀର ଶେଷ ହୋଇ
(ତ୍ରିସ୍ପର୍ଶା—ଅନ୍ୟରୂପ) ପରେ ଦ୍ୱାଦଶୀ ଓ ରାତ୍ରି ଶେଷରେ ତ୍ରୟୋଦଶୀର ସଂଯୋଗ ହୁଏ—A day on which Ekādasī, Dwādasi and Trayodasi the 3 lunar days fall in the course of one solar day.
[ ଦ୍ର—ଏହା ପୁଣ୍ୟ କାର୍ଯ୍ୟ କରିବା ପାଇଁ ପ୍ରଶସ୍ତ ତିଥି ଅଟେ । ]

**ତ୍ରିସ୍ରୋତାଃ**—ସଂ. ବିଣ. ସ୍ତ୍ରୀ (ବହୁବ୍ରୀହି; ତ୍ରି+ସ୍ରୋତସ୍)—ତିନି
Trisrotāḥ ଧାରରେ ବୋହି ଯାଉଥିବା— Flowing in three currents
ବି—ତ୍ରିପଥଗା; ଗଙ୍ଗାନଦୀ; ଭାଗୀରଥୀ—The river Ganges (said to flow through three worlds).

**ତ୍ରିହଲ୍ୟ**—ସଂ. ବିଣ—ତ୍ରିସୀତ୍ୟ (ଦେଖ)
Trihalya Trisītya (See)

**ତ୍ରିହାୟଣ**—ସଂ. ବିଣ. ପୁଂ (ତ୍ରି+ହାୟନ=ବର୍ଷ, ଯାହାର)—
Trihāyaṇa ୧ । ତିନି ବର୍ଷ ବୟସ୍କ (ବାଛୁରୀ)—1. (a calf)
(ତ୍ରିହାୟଣୀ—ସ୍ତ୍ରୀ) Aged three years.
୨ । ତିନି ବର୍ଷର—Of three years.

**ତ୍ରିହାୟଣୀ**—ସଂ. ବି. ସ୍ତ୍ରୀ (ବହୁବ୍ରୀହି; ତ୍ରି+ହାୟନ+ସ୍ତ୍ରୀ. ଈ)—
Trihāyaṇī ୧ । ତିନି ବର୍ଷୀୟ ଗାଈ; ତଡ଼ି—1. A heifer three years old.
୨ । (ଲୌକିକ ମତରେ ତିନିଯୁଗରେ ଜନ୍ମଗ୍ରହଣ କରିଥିବା ସ୍ତ୍ରୀ) ଦ୍ରୌପଦୀ—2. Draupadi.
[ ଦ୍ର—ଏ ସତ୍ୟ ଯୁଗରେ ବେଦବତୀ, ତ୍ରେତାରେ ଜାନକୀ, ଦ୍ୱାପରରେ ଦ୍ରୌପଦୀ ରୂପେ ଜନ୍ମଗ୍ରହଣ କରିଥିଲେ । ]

**ତ୍ରିହୁତ**—ଦେ. ବି (ନାମ) ସଂ. ତୀରଭୁକ୍ତି)—ତିରହୁତ୍; ମିଥିଲା ଅନ୍ତର୍ଗତ
Trihuta ଦେଶ; ଅଧୁନା ବିହାରର ଦ୍ୱାରଭଙ୍ଗା ଓ ମଜଃଫରପୁର
ତ୍ରିହୁତ ଜିଲ୍ଲା—Tirhoot.
ତିହୁତ [ ଦ୍ର—ଏହାକୁ ଗଙ୍ଗା, ଗଣ୍ଡକୀ ଓ କୌଶିକୀ ଏହି ତିନି ଗୋଟି ନଦୀ ଘେରି ରହିଅଛନ୍ତି । ]

**ତ୍ରୁଟ୍** (ଧାତୁ)—ସଂ—ଛିନ୍ନ ହେବା—
Truṭ (root) 1. To break into pieces.
୨ । କମିବା—2. To diminish; to dwindle.

**ତ୍ରୁଟି**—ସଂ. ବି. ସ୍ତ୍ରୀ (ତ୍ରୁଟ୍ ଧାତୁ+କର୍ମ. ଇ)—୧ । ଅଂଶ; ଖଣ୍ଡ; କ୍ଷୁଦ୍ର
Truṭi ଖଣ୍ଡ—1. A small bit; fragments.
(ତ୍ରୁଟୀ—ଅନ୍ୟରୂପ) ୨ । କାର୍ତ୍ତିକେୟଙ୍କର ଏକମାତୃକା—2. One of the foster mothers of Kārttikeya.
୩ । କମତି; ନ୍ୟୂନତା; ଅଳ୍ପତା—3. Defect; omission; deficit.
୪ । କ୍ଷତି; ଲୋକସାନ—4. Loss.
୫ । ଅଭାବ—5 Want.
୬ । ଅପଚୟ—6. Waste; deterioration.
୭ । ଅନିଷ୍ଟ, ହାନି—7. Loss; injury; mischief.
୮ । ଭୁଲ—8. Mistake.
୯ । ଦୋଷ; ଅପରାଧ—9. Fault; crime; neglect of duty.
୧୦ । ଅଙ୍ଗୀକାର ଭଙ୍ଗ—10. Breach of promise.
୧୧ । ସ୍ଖଳନ—11. Act of slipping away; deviation from the path of rectitude.
୧୨ । କ୍ଷଣକାଳ; ଦୁଇ, (ମତାନ୍ତରରେ) ଚାରି ଓ (ମତାନ୍ତରରେ) ପାଞ୍ଚ କ୍ଷଣ ପରିମିତ କାଳ—12 A short space of time; a moment.
ତ୍ରୁଟି ହେଲେ ବରଷେ, ଏବେ ମୋର କି ଦୋଷେ
କୃଷ୍ଣଲୀଳା ଗୋ ସ୍ନେହ ତ୍ରୁଟିଲେ ରେ । କବିସୂର୍ଯ୍ୟ, ସଙ୍ଗୀତ ।
୧୩ । କ୍ଷୁଦ୍ର ଅଳେଇଚ; ଗୁଜୁରାଟି—13 Small cardamom.
୧୪ । ସଂଶୟ; ସନ୍ଦେହ—14. Doubt.

**ତ୍ରୁଟିତ**—ସଂ. ବିଣ (ତ୍ରୁଟ୍ ଧାତୁ+କର୍ମ. ତ)—୧ । କଟା ଯାଇଥିବା—
Truṭita 1. Cut.
୨ । ଭଗ୍ନ; ଭଙ୍ଗା—2. Broken
୩ । ସ୍ଖଳିତ—3. Deviated.
୪ । ଆଘାତପ୍ରାପ୍ତ; ଆହତ—4. Hurt; injured.

**ତେତୟା**—ଗ୍ରା. ବି—(ସଂ. ତ୍ରେତା)—ତ୍ରେତା ୧ (ଦେଖ)
Tretayā Tretā 1 (See).
ତେତୟା ଯୁଗ ଭୋଗ ଅନ୍ତେ
ଦ୍ୱାପର ଯୁଗ ଉପଗତେ—ଜଗନ୍ନାଥ, ଭାଗବତ ।

**ତ୍ରେତା**—ସଂ. ବି (ତ୍ରୈ. ଧାତୁ=ରକ୍ଷା କରିବା+ଇତ=ପ୍ରାପ୍ତ+ଆ;
Tretā କିମ୍ବା ତ୍ରି+ଇତ+ଆ)—୧ । ସତ୍ୟ, ତ୍ରେତା, ଦ୍ୱାପର ଓ କଳି ଏହି ଚାରି ଯୁଗ ମଧ୍ୟରୁ ଦ୍ୱିତୀୟ ଯୁଗ—1. The age of the world between the Satya and Dwāpara ages according to the Hindus.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | ଜ୍ଞ | ଇଯ୍ | ଉଅ | ଈ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗ୍ୟଁ | ଇଅ | ଊ | ନ୍ |

[ ଦ୍ର—ଏହାର ବର୍ଷ ସଂଖ୍ୟା ୧୨୯୬୦୦୦ ବର୍ଷ । କାର୍ତ୍ତିକ ଶୁକ୍ଳ ନବମୀ ଦିନ ଏ ଯୁଗ ଆରମ୍ଭ ହୋଇଥିଲା । ଏ ଯୁଗରେ ପରଶୁରାମ ଓ ଶ୍ରୀରାମ ଅବତାର ଗ୍ରହଣ କରିଥିଲେ । ]

୨ । ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ନାମକ ଅଗ୍ନିତ୍ରୟ—2. The three sacrificial fires.

୩ । ପଶାଖେଳରେ ତିନିଗୋଟି କାଠିରେ ତିନିଟି ମାତ୍ର ଚିହ୍ନ ଲେଉଟିବା ଅବସ୍ଥା—3. A throw of the dice resulting in three dots turning up

୪ । କଉଡ଼ି ଖେଳରେ ତିନି କଟି କଉଡ଼ି ଚିତ ହୋଇ ପଡ଼ିବା ଦାଉ—4. A throw in a game at cowries in which three cowries fall with their ventral side upwards.

ତ୍ରେତାଗ୍ନି—ସଂ. ବି—ଦକ୍ଷିଣ, ଗାର୍ହପତ୍ୟ ଓ ଆହବନୀୟ ଏହି ତିନି ପ୍ରକାର ଅଗ୍ନି—Three kinds of sacrificial fires.
Tretāgni

ତ୍ରେତାପୁରୀ—ଦେ. ବି ( ନାମ )—ହିମାଳୟର ପାଦଦେଶସ୍ଥ ଛିତର ଗୋଟିଏ ବୌଦ୍ଧତୀର୍ଥ—Name of a Buddhist sacred place at the foot of the Himalayas.
Tretāpurī

ତ୍ରେଧା—ସଂ. ଅ ( ତ୍ରି+ଧା )—ତ୍ରିଧା; ତିନି ଥର; ତିନି ପ୍ରକାରେ; ତିନି ଭାଗରେ—In three; thrice
Tredhā
(ତ୍ରୈଧା, ତ୍ରୈଧ—ଅନ୍ୟରୂପ)

ତ୍ରୈ (ଧାତୁ)—ସଂ.—ରକ୍ଷା କରିବା—To save.
Trai (root)

ତ୍ରୈକାଳିକ—ସଂ. ବିଣ ( ତ୍ରିକାଳ+ସମ୍ବନ୍ଧାର୍ଥେ. ଇକ )—୧ । ତ୍ରିକାଳ ( ଭୂତ, ଭବିଷ୍ୟତ ଓ ବର୍ତ୍ତମାନ ) ସମ୍ବନ୍ଧୀୟ—1. Eternal; appertaining to all the time.
Traikālika

୨ । ସକାଳ, ସନ୍ଧ୍ୟା ଓ ଦ୍ୱିପ୍ରହରସମ୍ବନ୍ଧୀୟ—2. Done during the three periods of the day.

ତ୍ରୈଗୁଣିକ—ସଂ. ବିଣ ( ତ୍ରିଗୁଣ+ଇକ )—୧ । ତିନିଗୁଣା—1. Thrice as much.
Traiguṇika

୨ । ତିନିଗୁଣ ଗ୍ରହଣକାରୀ—2. Taking thrice as much.

୩ । ଯେଉଁ ମହାଜନ ମୂଳଧନର ତିନିଗୁଣ ସୁଧ ନିଏ—3. An exorbitant creditor taking thrice as much of the capital advanced.

ତ୍ରୈଗୁଣ୍ୟ—ସଂ. ବି ( ତ୍ରିଗୁଣ+ସ୍ୱାର୍ଥେ. ଯ )—୧ । ସତ୍ତ୍ୱ, ରଜଃ, ତମଃ ଏହି ତିନି ଗୁଣର ସମଷ୍ଟି—1. The aggregate of the three primordial attributes of nature
Traiguṇya

୨ । ଦଉଡ଼ି ତିନି ସର ଭଙ୍ଗା ହେବା ଅବସ୍ଥା—2. The state of having been twested or wrought with three strings.

୩ । ତିନିଗୁଣର ଭାବ—3, The state of containing the three attributes.

ବିଣ—ତ୍ରିଗୁଣସମ୍ବନ୍ଧୀୟ—Relating to three fundamental attributes of nature.

[ ଦ୍ର—ତ୍ରି ସଂଯୁକ୍ତ ଶବ୍ଦମାନଙ୍କରେ, ସ୍ୱାର୍ଥରେ, ବ୍ୟାପ୍ତ୍ୟର୍ଥେ, ସମ୍ବନ୍ଧାର୍ଥେ, ଦାନାର୍ଥେ, ଅ, ଯ ଆଦି ପ୍ରତ୍ୟୟ ହୋଇ 'ତ୍ରୈ' ଆଦ୍ୟାକ୍ଷର ଶବ୍ଦ ନିଷ୍ପନ୍ନ ହୁଏ, ଯଥା—ତ୍ରୈଧାତୁକ—ତିନିଧାତୁ ମିଶ୍ରିତ । ତ୍ରୈପୁର—ତ୍ରିପୁର ସମ୍ବନ୍ଧୀୟ । ତ୍ରୈପୁରୁଷ—ତ୍ରିପୁରୁଷ ସମ୍ବନ୍ଧୀୟ । ତ୍ରୈବର୍ଗ୍ୟ ଓ ତ୍ରୈବର୍ଗିକ—ତ୍ରିବର୍ଗ ସମ୍ବନ୍ଧୀୟ । ତ୍ରୈବର୍ଣ୍ଣିକ—ତ୍ରିବର୍ଣ୍ଣ ସମ୍ବନ୍ଧୀୟ । ତ୍ରୈବାର୍ଷିକ—ତ୍ରିବର୍ଷ ସମ୍ବନ୍ଧୀୟ । ତ୍ରୈମାସିକ—ତ୍ରିମାସ ସମ୍ବନ୍ଧୀୟ । ତ୍ରୈବିକ୍ରମ—ତ୍ରିବିକ୍ରମ ସମ୍ବନ୍ଧୀୟ । ତ୍ରୈବିଧ—ତ୍ରିବିଧ ଭାବ । ତ୍ରୈଶଙ୍କବ—ତ୍ରିଶଙ୍କୁ ସମ୍ବନ୍ଧୀୟ ଇତ୍ୟାଦି । ]

ତ୍ରୈପୁରୁଷ—ସଂ. ବିଣ. (ତ୍ରିପୁରୁଷ+ସମ୍ବନ୍ଧାର୍ଥେ. ଅ)—ତିନିପୁରୁଷ ବ୍ୟାପୀ—Extending over three generations.
Traipurusha

ତ୍ରୈବାର୍ଷିକ—ଦେ. ବିଣ. (ତ୍ରିବାର୍ଷିକର ଅଶୁଦ୍ଧ ପ୍ରୟୋଗ)—ତ୍ରିବାର୍ଷିକ (ଦେଖ) Tribārshika (See)
Traibārshika

ତ୍ରୈବିଦ୍ୟ—ସଂ. ବିଣ. (ତ୍ରିବିଦ୍ୟା+ଜ୍ଞାନାର୍ଥେ. ଅ)—ତ୍ରିବେଦୀ; ତ୍ରିବେଦାଧ୍ୟାୟୀ—Learned in three Vedas.
Traibidya

ତ୍ରୈବିଧ୍ୟ—ସଂ. ବି. (ତ୍ରିବିଧ+ଭାବ. ଯ)—୧ । ତିନିପ୍ରକାର—1. Three sorts;
Traibidhya

୨ । ତ୍ରିବିଧତ୍ୱ—2. The state of being of three kinds.

ତ୍ରୈମାତୁର—ସଂ. ବି. (ତ୍ରି+ମାତୃ+ଉର)—(କୌଶଲ୍ୟା ଓ କୈକେୟୀଙ୍କ ପ୍ରଦତ୍ତ ଚରୁର ଫଳରେ ସୁମିତ୍ରାଙ୍କ ଗର୍ଭଜାତ ସନ୍ତାନ) ଲକ୍ଷ୍ମଣ—Lakshmaṇa (a brother of Rāma).
Traimātura

ତ୍ରୈମାସିକ—ସଂ. ବିଣ. (ତ୍ରିମାସ+ଇକ)—୧ । ତିନିମାସରେ ଘଟିବା—1. Quarterly.
Traimāsika

୨ । ତିନିମାସ ଅନ୍ତରେ ପ୍ରକାଶିତ—2. Appearing once in three months published quarterly.

ତ୍ରୈରାଶିକ—ସଂ. ବି.—(ତ୍ରିରାଶି+ପରିମାଣାର୍ଥେ. କ)—( ଗଣିତ ) ତିନି ଗୋଟି ରାଶିର ପରସ୍ପର ଘଟିତ ଅଙ୍କପ୍ରଣାଳୀ—(Arithmetic) The rule of three.
Trairāśika

[ ଦ୍ର—ଏହାଦ୍ୱାରା ତିନିଗୋଟି ଦତ୍ତ ରାଶି ସାହାଯ୍ୟରେ ୪ର୍ଥ ଅଜ୍ଞାତ ରାଶି ଜଣା ପଡ଼େ ।

ସାଧାରଣ ଲୋକେ ଅପର ପୃଷ୍ଠାରେ ଦତ୍ତ ୧ ଚିହ୍ନିତ ଅକ୍ଷର ଓ ନାନା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରାଗୁଡ଼ିକରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ ତେବେ ସେହି ଶବ୍ଦ ପରି ଯଥାକ୍ରମେ ତହିଁର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଡ଼' ନ ମିଳିଲେ 'ଗାଢ଼' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବନ୍ଦୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଖି' ନ ପାଇଲେ 'ଅକ୍ଷି' ଦେଖିବେ, 'ଅଲବଡ' ନ ପାଇଲେ 'ଅଲ୍‌ବଡ଼' ଦେଖିବେ

ଯଥା—ଜଣକୁ ଟ ୧୦ ଦିଆଗଲେ ୧୫ ଜଣକୁ କେତେ ଦିଆଯିବ । ଏହାକୁ ତ୍ରୈରାଶିକ ପ୍ରଣାଳୀରେ କଲେ

୧ : ୧୫ : ଟ ୧୦ : ଅଜ୍ଞାତ;

ଏଥିର ସାଧନ; ଅଜ୍ଞାତ $\frac{୧୫ \times ୧୦}{୧} = \frac{୧୫୦}{୧}$ = ଟ ୧୫୦ । ]

ବିଣ.—ଜ୍ୟୋତିଷୋକ୍ତ ତିନିଗୋଟି ରାଶି ସମ୍ବନ୍ଧୀୟ—
Belonging to three signs of zodiac.

ତ୍ରୈଲୋକ୍ୟ—ସଂ. ବି.—(ତ୍ରିଲୋକ+ସ୍ୱାର୍ଥ. ଯ)—ତ୍ରିଲୋକ; ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ—The three worlds together.
Trailokya

ତ୍ରୈଲୋକ୍ୟ ବିଜୟ—ସଂ. ବି.—୧ । ତ୍ରିଲୋକକୁ ଜିଣିବା—
Trailokya bijaya 1. Victory over three worlds.
ବିଣ.—ଯେ ତ୍ରିଲୋକକୁ ଜୟ କରିଅଛି—
Victorious over the three worlds.

ତ୍ରୈଲୋକ୍ୟ ବିଜୟା—ସଂ. ବି. ସ୍ତ୍ରୀ.—ଭାଙ୍ଗ; ସିଦ୍ଧି—A decoction or paste made of the leaves of Canabis Indica, inducing intoxication.
Trailokya bijayā

ତ୍ରୈଲୋକ୍ୟ ମୋହନ—ସଂ. ବିଣ. ପୁଂ—୧ । ତ୍ରିଲୋକର ବଶକାରୀ—
Trailokoya mohana One who enchants the three worlds.
(ତ୍ରୈଲୋକ୍ୟମୋହନା, ତ୍ରୈଲୋକ୍ୟମୋହିନୀ—ସ୍ତ୍ରୀ)
୨ । ଅତ୍ୟନ୍ତ ସୁନ୍ଦର—
2. Very charming; beautiful.

ତ୍ରୈଲୋକ୍ୟମୋହିନୀ—ଦେ. ବି. ସ୍ତ୍ରୀ—(ସଂ. ତ୍ରୈଲୋକ୍ୟମୋହିନୀ)—
Trailokya mhoanī ଅତି ସୁନ୍ଦରୀ—Very beautiful (woman).
ତ୍ରୈଲୋକ୍ୟ ମୋହେନୀ, ତ୍ରୈଲୋକ୍ୟମୋହୋନୀ } ଅନ୍ୟରୂପ

ତ୍ରୋଟକ—ସଂ. ବିଣ.—(ତ୍ରୁଟ୍ ଧାତୁ+କରଣ. ଅକ)—ଛେଦକ—
Trotaka Cutting.
ବି—୧ । ଦୃଶ୍ୟ କାବ୍ୟ ବା ନାଟକବିଶେଷ—
1. A species of drama ( M.W )
[ ଦ୍ର—ଏଥିରେ ୫ ଠାରୁ ୯ ଗୋଟି ଅଙ୍କ ଥାଏ । ସ୍ୱର୍ଗୀୟ ଓ ପାର୍ଥିବ ବିଷୟ ବ୍ୟାପାର ଏହାର ପ୍ରଧାନ ବର୍ଣ୍ଣନୀୟ ବିଷୟ । ଏଥିରେ ଶୃଙ୍ଗାର ପ୍ରଧାନ ରସ । ]
୨ । ବିଷଧର କୀଟବିଶେଷ—2. Name of venomous insect ( M. W. )
୩ । କ୍ରୋଧମୟ ବାକ୍ୟ—3. Angry speech (M.W.)

ତ୍ରୋଟକୀ—ସଂ. ବି. ସ୍ତ୍ରୀ. ( ତ୍ରୁଟ୍ ଧାତୁ+ଅକ+ଈ )—
Trotakī ଛନ୍ଦୋବିଶେଷ—Name of a metre.

ତ୍ରୋଟି—ସଂ ବି. ସ୍ତ୍ରୀ. (ତ୍ରୁଟ୍ ଧାତୁ+ଭର୍ତ୍ତି. ଇ; ତୁଳ. ଇଂ. ଥ୍ରୋଟ୍)—
Troti ୧ । ପକ୍ଷୀର ଥଣ୍ଟ; ଚଞ୍ଚୁ—1. Beak; bill.
ତ୍ରୋଟି ହସ୍ତ ଖାଇ ଶିଖି ଦେହ ବଦାର ମୃଦ ନେତ୍ର ହେରୁ ।
ଉପ. ବୈଦେହୀଶବିଳାସ ।
୨ । ମାଛର ମୁହଁ—2. The mouth of a fish (M.W)
୩ । ଚୋଭ ମାଛ—
3. A kind of fresh water fish.
୪ । କଙ୍କ ପକ୍ଷୀ—4. The Kaṅka bird ( M. W. )
୫ । କାୟଫଳ ବା କଟଫଳ ଗଛ—
5. A medicinal tree ( Myric Nagi )

ତ୍ରୋଟିତ—ସଂ. ବି. ( ତ୍ରୁଟ୍ ଧାତୁ+କର୍ମ. ତ )—
Trotita ଭଗ୍ନ; ଯାହା ତୁଟି ଯାଇଅଛି—Broken (M. W).

ତ୍ରୋଟୀ—ସଂ. ବି. ( ତ୍ରୁଟ୍ ଧାତୁ+ଅ+ଈ )—
Trotī ୧ । ତଣ୍ଟି; ତୋଟି ( ହି. ଶବ୍ଦସାଗର )—1. Throat.
୨ । ଚଞ୍ଚୁ; ଥଣ୍ଟ—2. Beak of a bird.
[ ଦ୍ର—ତ୍ରୋଟୀ ଶବ୍ଦର ତୋଟି ବା ତଣ୍ଟି ଅର୍ଥ ଅପ୍ରେ, ମନିଅର ଉଇଲିଅମ୍‌ସ୍ ଓ ପ୍ରକୃତିବାଦରେ ନାହିଁ; ଜ୍ଞାନେନ୍ଦ୍ରଙ୍କ ବଙ୍ଗଳା ଅଭିଧାନରେ ତ୍ରୋଟ ଓ ତ୍ରୋଟୀ ଶବ୍ଦର ଏକ ଅର୍ଥ ଅଛି, ନରକଣ୍ଠର ଚଞ୍ଚୁବତ୍ ଉନ୍ନତ ଅସ୍ଥି ବୋଲି ଲେଖା ଅଛି । ]

ତ୍ରୋଣ—ଦେ. ବି. ( ସଂ. ତୂଣ )—ଶରତୂଣୀ—
Troṇa A quiver.
तोण
ସ୍ୱର୍ଣ୍ଣ ନିର୍ମିତ ଧନ ତ୍ରୋଣ
ଅଭେଦ କବଚ ଭୂଷଣ—ଜଗନ୍ନାଥ, ଭାଗବତ ।

ତ୍ରୋଣା—ଦେ. ବି. ( ସଂ. ତୋରଣ )—ଦୁଇ ଖୁଣ୍ଟରେ ବନ୍ଧା ହେବା ମାଳା; ତୋରଣ—A garland hung on two posts; festoon.
Troṇā
তোরনা
तोरना
ତ୍ରୋଣା ଲମ୍ବାଇ ଗୃହ ମଣ୍ଡେ
ଚନ୍ଦନ ଛେରା ସକଦାଣ୍ଡେ—ଜଗନ୍ନାଥ, ଭାଗବତ ।

ତ୍ରୋତଳ - ସଂ. ବିଣ—ତୋତଲ ( ଦେଖ )
Trotaḷa Totalā ( See )

ତ୍ରୋତ୍ର - ସଂ. ବି. ( ତ୍ରୈ ଧାତୁ=ରକ୍ଷା କରିବା+ସଂଜ୍ଞାର୍ଥେ ତ୍ର )—
Trotra ୧ । ପାଞ୍ଚଣ—1. A staff; a cowherd's or driver's staff.
୨ । ଚାବୁକ—2. Whip.
୩ । ରୋଗବିଶେଷ—3. A disease.

ତ୍ର୍ୟଂଶ—ସଂ. ବି. ( ତ୍ରି=ତୃତୀୟ+ଅଂଶ )—ତୃତୀୟ ଅଂଶ—
Tryaṁśa One third.

ତ୍ର୍ୟକ୍ଷ - ସଂ. ବି. ପୁଂ. (ବହୁବ୍ରୀହି; ତ୍ରି+ଅକ୍ଷି)—ମହାଦେବ; ତ୍ରିଲୋଚନ—
Tryaksha God Śiba.
( ତ୍ର୍ୟକ୍ଷା —ସ୍ତ୍ରୀ ) ସଂ. ବିଣ. ପୁଂ - ଯାହାର ତିନି ଗୋଟି ଆଖି—
Three-eyed.

ତ୍ର୍ୟକ୍ଷର—ସଂ. ବିଣ. ( ବହୁବ୍ରୀହି; ତ୍ରି+ଅକ୍ଷର )—ତିନି ଅକ୍ଷରଯୁକ୍ତ—
Tryakshara Consisting of three letters.
ବି—୧ । ପ୍ରଣବ; ଓଁକାର (ଏହି ଅ, ଉ. ମ. ଏହି ୩ ଅକ୍ଷରର ସମଷ୍ଟି )—1. The mystic sound 'Om' uttered by the Hindus.

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଇ | ଈ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଗ୍ର,ଶ | ଙ୍କ | ଙ୍ଘ | ଞ୍ଚ | ଡ |
| ୨ | ଈ | ଊ | ଋ | ଌ | ଐ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ୟ | ଯ | ସ | ଙ୍ଗ | ଙ୍ଖ | ଢ | ନୃ |

୨ । ତିନ ଅକ୍ଷରଯୁକ୍ତ ବର୍ଣ୍ଣ—2. A trigraph.
୩ । ବିବାହର ଘଟକ—3. A marriage-broker.

ତ୍ର୍ୟକ୍ଷା—ସ. ଦ. ସ୍ତ୍ରୀ. ( ତ୍ର୍ୟକ୍ଷ+ଆ )—ଦୁର୍ଗା—
Tryakshā Durgā,

ତ୍ର୍ୟଙ୍ଗଟ—ସ. ବି. ( ତ୍ରି+ଅଙ୍ଗ+ଟ )—୧ । ତିନକୋଣିଆ ବା ତିନ
Tryangaṭa ଦଉଡ଼ି ଲଗିଥିବା ଶିକାବିଶେଷ—
1. A hanging shelf.
୨ । ତେଙ୍ଗଡ଼ା—2, A grooved bracket in the corner of a wall for putting unstable pots.
୩ । ଈଶ୍ୱର—3. The supreme Being.
୪ । ଚନ୍ଦ୍ରମା—4. The moon.

ତ୍ର୍ୟମ୍ବକ—ସ. ବି. ପୁଂ. ( ବହୁବ୍ରୀହି; ତ୍ରି+ଅମ୍ବକ=ଚକ୍ଷୁ )—
Tryambaka ତ୍ରିଲୋଚନ; ମହାଦେବ—Siba.

ତ୍ର୍ୟମ୍ବକା—ସ. ବି. ସ୍ତ୍ରୀ. ( ତ୍ର୍ୟମ୍ବକ+ଆ —ଦୁର୍ଗା—
Tryambakā Durgā.

ତ୍ର୍ୟଶୀତି—ସ. ବି ଓ ବିଣ. (ତ୍ରି+ଅଶୀତି)—ଅଶି ଅପେକ୍ଷା ତିନ ଅଧିକ
Tryaśiti ସଂଖ୍ୟା; ତେୟାଅଶି; ୮୩—83; Eighty three.

ତ୍ର୍ୟଶୀତିତମ—ସ. ବିଣ—୮୩ ସଂଖ୍ୟାର ପୂରକ—
Tryaśititama Eighty third,

ତ୍ର୍ୟସ୍ର—ସ. ବି. ( ବହୁବ୍ରୀହି; ତ୍ରି+ଅସ୍ର )—
Tryasra ୧ । ତିନଗୋଟି କୋଣ—1. Three angles.
୨ । ତ୍ରିଭୁଜ—2. Triangle.

ତ୍ର୍ୟହସ୍ପର୍ଶ—ସ. ବି. ( ତ୍ରି+ଅହନ୍+ସ୍ପର୍ଶ )—ଏକ ସୌର ଦିନରେ
Tryahasparśa ତିନ ତିଥିର ଭୋଗ—A day occupied by
(ତ୍ର୍ୟହସ୍ପୃଶ—ଅନ୍ୟରୂପ) parts of three lunar days.

ତ୍ର୍ୟାହିକ—ସ. ବିଣ. ( ତ୍ର୍ୟହନ୍+ଇକ )—ତିନ ଦିନରେ ଘଟିତ—
Tryāhika Tertian; occurring every third day.
तिजारी ବି—ତିନ ଦିନେ ଘଟିବା ଜ୍ୱର—
Remittent fever occuring every third day; tertian fever.

ତ୍ସରୁ—ସ. ବି —୧ । ଖଡ୍ଗର ମୁଠା—1. The handle or hilt of
Tsaru a sword.
୨ । ଖଣ୍ଡାର ଖୋଳ—2. Scabbard.

ତ୍ହ—ଦେ. ବି. ( ଚଟଶାଳୀଆ ଓ କରଣୀ ବ୍ୟବହାର; ସାଙ୍କେତିକ )—
T-ha ତହବିଲ ଓ ତହସିଲର ସାଙ୍କେତିକ ଚିହ୍ନ—
Abbreviation for 'Tahabil' or 'Tahasil'.

ତ୍ହଦାର—ଦେ. ବି. ( ଚଟଶାଳୀଆ ଓ କରଣୀ ବ୍ୟବହାର )—
T-hadāra ତହସିଲଦାର (ଦେଖ )—Tahasildāra ( See )

ତ୍ହବିଲ (ଇତ୍ୟାଦି)—ଦେ. ବି. ( ଚଟଶାଳୀଆ ଓ କରଣୀ ବ୍ୟବହାର )—
T-habil (etc) ତହବିଲ (ଇତ୍ୟାଦି) (ଦେଖ )
Tahabila (etc) ( See )

ତ୍ହସିଲ (ଇତ୍ୟାଦି)—( ଚଟଶାଳୀଆ ଓ କରଣୀ ବ୍ୟବହାର )—
T-ahsil (etc) ତହସିଲ (ଇତ୍ୟାଦି) ( ଦେଖ )
Tahasila (etc) ( See )

# ଥ

ଥ—ସ—ସପ୍ତଦଶ ବ୍ୟଞ୍ଜନ ବର୍ଣ୍ଣ; ତ ବର୍ଗର ଦ୍ୱିତୀୟ ବର୍ଣ୍ଣ । ଏଥିର
Tha ଉଚ୍ଚାରଣ ସ୍ଥାନ ଦନ୍ତ, ତେଣୁ ଏହା 'ଦନ୍ତ୍ୟ' ବର୍ଣ୍ଣ—
The 17th letter of the consonants corresponding to the sound of 'th' in path.
ବି. ( ସ୍ଥା ଧାତୁ=ରହିବା+କର୍ତ୍ତୃ. ଅ )—
୧ । ପର୍ବତ—1. Mountain.
୨ । (+ଘଞ. ଅ) ଭକ୍ଷଣ—2. Eating.
୩ । ଭୟତ୍ରାତା—3. Deliverer from fear.
୪ । ଭୟ ଚିହ୍ନ—4. Sign of fear.
୫ । ରକ୍ଷଣ—5. Protection.
୬ । (+କରଣ. ଅ) ଭୟ—6. Fear; terror.
୭ । ମଙ୍ଗଳ—7. Welfare.
ପ୍ରାଦେ. (ପୁରୀ) କ୍ରି. ( ପୁରୀ ଜିଲ୍ଲା ବ୍ରାହ୍ମଣଙ୍କ ବ୍ୟବହୃତ ମଧ୍ୟମ
(ଥଅ—ଅନ୍ୟରୂପ) ପୁରୁଷ ଅନୁଜ୍ଞା ଏକ )—(ତୁମ୍ଭେ) ଥାଅ—
(you) Do stay,

ଥଇଥାନ—ଦେ. ବିଣ. ( ସ. ସ୍ଥିର )—ଧୀରସ୍ଥିର—
Thaithān Calm and quiet.

ଥଇଲ—ପ୍ରାଦେ. (ସିଂହଭୂମ) ବିଣ. (ସ. ସ୍ଥଳ)—ସମତଳ—
Thaila Levelled up; level.
( ଯଥା—ଅମେ ପାହାଡ଼ ଭାଙ୍ଗି ଥଇଲ କଲୁଁ । )

ଥଉଲ—ଦେ. ବିଣ. ( ସ. ସ୍ଥୂଳ )—ସ୍ଥୂଳ; ମୋଟା—
Thaula Fat; thick.
थूल

ଥଏ—ଗ୍ରା. ବିଣ—ଥୟ ( ଦେଖ )
Thae Thaya ( See )
ପ୍ରଭବସ୍ଥଳୁ କର ଥଏ, କୃପେ ପଦ୍ମଲୁ ସିଦ୍ଧ ପ୍ରାପ୍ୟେ ।
ଭୂପତି. ପ୍ରେମପଞ୍ଚାମୃତ ।
କ୍ରି. ବିଣ— ଥୟ ( ଦେଖ )—Thaya ( See )

ସାଧାରଣ ସ୍ଥଳେ ଅପର ପୃଷ୍ଠାରେ ଦ୍ରଷ୍ଟବ୍ୟ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବିପରୀତ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'କୃଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅର୍ଗ୍ଗା' ନ ପାଇଲେ 'ଅର୍ଗା' ଦେଖିବେ; 'ଅଲବତ' ନ ପାଇଲେ 'ଅଲବତ୍ତ' ଦେଖିବେ

**ଥକ୍**—ଦେ. ବଣ. ( ସଂ. ସ୍ତବ୍ଧ )—ଥକା ( ଦେଖ )
Thak — Thakā ( See )

**ଥକ କରି**—ଦେ. କ୍ରି. ବଣ. ( ସଂ. ସ୍ତମ୍ଭିତ )—
Thak kari — ୧ । ଥକା ମାରିଲା ପରି ହୋଇ—
1. Being dumbfounded.
ଥକ୍‌କିନା(କି), ଥକ୍ କରି, ଥକ୍ ହୋଇ } ଅନ୍ୟରୂପ — ୨ । ହଠାତ୍; ଅକସ୍ମାତ୍ ଭାବରେ—
2. Suddenly; accidentally.
ଥককরে ଥককর

**ଥକ୍ ଖାଇବା**—ଦେ. କ୍ରି. ( ସଂ. ସ୍ତବ୍ଧ ଧାତୁ; ପ୍ରା. ଥକ୍କ ଧାତୁ )—
Thak khāibā — ୧ । ଅବସନ୍ନ ହେବା—1. To be exhausted; to sink down.
थका
ठहरजाना, थकना — ୨ । କଥା କହୁ କହୁ ହଠାତ୍ ଭୁଲି ହେବା—
2. To stop suddenly while speaking.
୩ । ଗତିରହିତ ହେବା—3. To stop.
୪ । ହତବାକ୍ ହେବା; ଅବାକ୍ ହେବା—4. To become dumb through fear or exhaustion.
୫ । ନିବୃତ୍ତ ହେବା—5. To cease from any work.

**ଥକତ୍**—ଦେ. ବଣ. (ସଂ. ସ୍ତମ୍ଭିତ)—୧ । ଅବସନ୍ନ; କ୍ଳାନ୍ତ; ଥକାମରା—
Thakat — 1. Tired; weary.
थकित — (ଯଥା—ତାଙ୍କୁ ଯାବତା କରି କରି ଥକତ୍ ହୋଇ ଗଲିଣି ।)
थकित — ବି.—କ୍ଳାନ୍ତି; ଶ୍ରାନ୍ତି—Weariness.
थका — (ଯଥା—ଚାଲି ଚାଲି ମତେ ଥକତ୍ ଲାଗିଲାଣି ।)
थकावट

**ଥକ(କା) ମକ(କା)**—ଦେ. ବଣ.—୧ । ଅପ୍ରସ୍ତୁତ—
Thaka(kā)maka(kā) — 1. Bewildered; confused.
थकमत — ୨ । ଶ୍ରାନ୍ତ, କ୍ଳାନ୍ତ; ଅବସନ୍ନ—
थकित — 2. Tired.

**ଥକା**—ଦେ. ବଣ.—(ସଂ. ସ୍ତମ୍ଭିତ; ପ୍ରା. ଥକ୍କିତ)—୧ । ସ୍ତମ୍ଭିତ; ଗତିରହିତ—1. Stopped; motionless.
Thakā
(ଥକ୍କା—ଅନ୍ୟରୂପ) — ୨ । ଅବସନ୍ନ; ଶ୍ରାନ୍ତ; କ୍ଳାନ୍ତ—
थकित — 2. Tired; pulled down; fatigued.
थकाहुआ थकामाँदा — ୩ । ହତବାକ୍—3. Speechless; silent.
୪ । କିଂକର୍ତ୍ତବ୍ୟବିମୂଢ଼—
4. Dumbfounded; bewildered.
୫ । ମୁଗ୍ଧ—5. Enchanted.
୬ । ମୂଢ଼; ନିର୍ବୋଧ—6. Foolish.
(ଯଥା—ଥକା ମନ ଚାଲି ଯିବା, ଚକାନୟନ ଦେଖିବା-ଭଜନ ।)
୭ । ଭୀତ; ତ୍ରସ୍ତ—7. Alarmed.
୮ । ବାକିଥିବା; କାଲିଠାରୁ ବାକି ରହିଥିବା (କୌଣସି କାର୍ଯ୍ୟ)—
8. Pending; left unfinished from yesterday.
(ଯଥା—ଆଜି ଯେତେ ସବୁ ଦେଇ ପାରିବେ ସବୁକୁ ଫେଡ଼ି ଅସିବ, କାଲିକି ଥକା ରହିବ ନାହିଁ ।)

ଥକା — ଦେ. ବି.—୧ । ଅବସାଦ—
थकावट — 1. Weariness; exhaustion.
୨ । ଦେଉଳର ଦହିନଉଡ଼ି ଓ ଚକ୍ରର ମଧ୍ୟବର୍ତ୍ତୀ ସ୍ଥାନ—
2. The space or portion of a temple between the dahi-nauti and the discus at the top.

**ଥକା(କେ)ଇ ଥକା(କେ)ଇ**—ଦେ. ଅ.—୧ । ରହି ରହି; ଧୀରେ ଧୀରେ; ଅସ୍ତେ ଅସ୍ତେ—
Thakā(ke)i thakā(ke)i
थेकेथेके — 1. Slowly; by degrees.
रहरहके — ୨ । ମଝିରେ ମଝିରେ ବନ୍ଦ ହୋଇ—
2. At intervals.
(ଯଥା—ଆଜି ଦିନସାରା ଥକେଇ ଥକେଇ ବରଷା ହେଉଛି ।)

**ଥକା(କେ)ଇବା**—ଦେ. କ୍ରି.—(ସଂ. ସ୍ତମ୍ଭିତ; ଥକିବା କ୍ରିୟାର ଣିଜନ୍ତ
Thakā(ke)ibā — ରୂପ)—୧ । ସ୍ତମ୍ଭିତ କରିବା—
थेकान, थाकान — 1. To stop.
थकाना — ଜଳ ନସୃଜେ ଥକାଇ ମାରନ୍ତି । କବିସୂର୍ଯ୍ୟ. ସଙ୍ଗୀତ ।
୨ । ସ୍ତମ୍ଭିତ କରିବା—2. To make dumb.
୩ । ଶ୍ରାନ୍ତ କରାଇବା—3. To tire.
୪ । କଥା କହୁ କହୁ ମଝିରେ ମଝିରେ ଭୁଲି ହୋଇଯିବା—
4. To stop or halt during a talk.

**ଥକାମରା**—ଦେ. ବଣ. (ସଂ. ସ୍ତମ୍ଭିତ; ସ୍ତମ୍ଭିତ)—୧ । ଅବସନ୍ନ—
Thakā marā — 1. Weary.
(ଥକ୍କାମରା—ଅନ୍ୟରୂପ) — ୨ । ଶ୍ରାନ୍ତ—
थकित — 2. Fatigued; pulled down.
थकामाँदा — ୩ । ଅବାକ୍—3. Dumbfoundered; dumbfounded.

**ଥକା ମାରିବା**—ଦେ. କ୍ରି.—ଥକ୍ ଖାଇବା (ଦେଖ)
Thakā māribā — Thak khāibā (See)
(ଥକ୍କା ମାରିବା—ଅନ୍ୟରୂପ)

**ଥକାସି**—ଗ୍ରା. ବଣ.—(ସଂ. ସ୍ତମ୍ଭିତ)—ଶ୍ରାନ୍ତ; କ୍ଳାନ୍ତ—
Thakāsi — Tired; fatigued.
थकित — ସାଥିଗୁ ବଡ ଥକାସି ହୋଇ ଗଲେଣି ।
थाकाहुआ — ଭୃଗୁଲାଲୁମାସ. ନଅଭୂଣୀ ।

**ଥକି(ଗି)ତ**—ଦେ. ବଣ. ( ସଂ. ସ୍ତମ୍ଭିତ; ପ୍ରା. ଥକ୍କିଅ )—୧ । କ୍ଳାନ୍ତ; ଅବସନ୍ନ—1. Tired; fagged; fatigued; worne.
Thaki(gi)ta
(ଥଗିତ—ଅନ୍ୟରୂପ)
थकित — ୨ । ଅବାକ୍; ସ୍ତମ୍ଭିତ; ସ୍ତବ୍ଧ—
थकित, थगित — 2. Dumbfounded; mute.
୩ । ସ୍ଥିର—3. Motionless.
ପବନ ହୋଇଲୁ ଥକିତ, ଅଚଳ ଚଳ ବିପରୀତ ।
ଭୂପତିଃ ପ୍ରେମପଞ୍ଚାମୃତ ।

| ` | ൨ | ଉ | ଋ,ଋ | ଃ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ଷ | କ୍ଷ | ଇଯ୍ | ଉଅ | ଢ |
|---|---|---|---|---|---|---|---|---|---|---|---|---|---|---|
| ⁄ | ଋ | ଉ | ରୁ | ଲୁ | ଙ୍ଗ | ଅକାରାନ୍ତବର୍ଣ୍ଣ | ଅନୁସ୍ବାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଖ୍ୟ | ଇଅ | ୭ | ଢ଼ |

ଥକିବା—ଦେ. କ୍ରି.—( ସ୍ଥଗ୍ ଧାତୁ=ସ୍ଥିର ହେବା; ପ୍ରା. ଥଗ୍ ଧାତୁ;
Thakibā ଥକ୍ ଧାତୁ)—୧ । ଅଶକ୍ତ ହେବା—
(ଥକିବା—ଅନ୍ୟରୂପ) 1. To be unable.
थमका, थका ୨ । ଥକାମନ୍ଦ ହେବା; କ୍ଳାନ୍ତ ହେବା—
थकना तकना 2. To become tired or fatigued.
ଉଠେ ଶରୀର ହେଲ ଦୁର୍ବଳେ ନୁହେଁ ଥକଇଣି ।
ଦଶାଇଥୋଲ୍ଲଭ ଜ୍ଞାନ ଅଠଗ୍ରହ ।
୩ । ସ୍ଥିର ହେବା—3. To become motionless.
୪ । ମାନ୍ଦା ବା ଢିଲା ପଡ଼ିବା—4. To become slack.
୫ । ସ୍ତମ୍ଭିତ ହେବା—5 To be dumbfounded.
ପଡ଼ଇ ସେହିଠାରେ ଚଉଦ୍ରେ ଥକ । ଧ୍ୟାନଯାଅ, ଢଳିବା

ଥଙ୍ଗ ଥଙ୍ଗ—ଦେ. ବଣ.—( ସଂ. ସ୍ତମ୍ଭିତ )—୧ । କୌଣସି କାର୍ଯ୍ୟ
Thaṅga thaṅga କରିବାକୁ ପଶ୍ଚାତ୍ପଦ—1. Hesitating
थङ् थङ्‌ थतमत or scrupling to do a work.
थकामांदा ୨ । କାର୍ଯ୍ୟ କରୁ କରୁ ମଝିରେ ସ୍ଥଗିତ ହେଉଥିବା—
(ଥଙ୍ଗେଇ ଥଙ୍ଗେଇ—ଅନ୍ୟରୂପ) 2. Pausing at intervals; halting (in the course of doing something.)
ନ ଜ୍ଞାନ ପାଉ ହେଲେ ଥଙ୍ଗ ଥଙ୍ଗ । କବିସୂର୍ଯ୍ୟ, ଚନ୍ଦ୍ରକଳା ।
୩ । ସନ୍ଦିଗ୍ଧ—3. Suspicious; doubtful.
୪ । ଅଟକି ଅଟକି କଥା କହୁଥିବା—
4. Speaking with pauses.
ବାଣୀକି ଥଙ୍ଗ ଥଙ୍ଗ କରି ସେ ଯୁବତୀ
ବଲେ ନାନ ମୁଖକୁ ଚାହିଁ ଏ ଯୁବତୀ । କୃଷ୍ଣସିଂହ, ମହାଭାରତ ବନ ।
୫ । ମଝିରେ ଅଟକି ଅଟକି କୁହାଯାଉଥିବା (କଥା)—
5. Spoken at intervals between utterances.

ଥଙ୍ଗଥଙ୍ଗ ହେବା—ଦେ. କ୍ରି—୧ । କୌଣସି କାର୍ଯ୍ୟ କରିବାକୁ ପାଶ୍ଚାତ୍-
Thaṅgathaṅga hebā ପଦ ହେବା—1. To scruple to
थतमत हओया; थता do a work.
ঝিমঝিম করা ୨ । ମଝେ ମଝେ ସ୍ତମ୍ଭିତ ହେବା; ଥକିବା—
ଥଙ୍ଗେଇବା / ଥଙ୍ଗେଇ ଥଙ୍ଗେଇ ହେବା } ଅନ୍ୟରୂପ 2. To pause; to halt during a work or talk.

ଥଟବାଜ୍—ଦେ. ବଣ—ଥଟିଲ (ଦେଖ)
Thaṭabāj Thaṭila (See)

ଥଟଲି—ଦେ. ବଣ—୧ । ଥଟିଲ (ଦେଖ)
Thaṭali 1. Thaṭila (See)
ठाट्‌ठावाज ୨ । ବ୍ୟଙ୍ଗ୍ୟାର୍ଥକ (କଥା)—2 Ironical.
ঠাট্টা

ଥଟା(ଟ୍ଟା)—ଦେ. ବ. (ସଂ. ଠଟ୍ଟା; ତୁଳ. ତା. ଉଟ୍ଟୁ=ଗାଳିଦେବା;
Thaṭā(ṭṭā) ତୁଳ. ସଂ. ଅଟ୍ଟହାସ)—୧ । ଉପହାସ; ବ୍ୟଙ୍ଗ—
ठट्ठा 1. Irony; satire; innuendo; redicule.
ঠাট্টা, ঠাঠা ୨ । ପରିହାସ—2. Joke; jest.
୩ । କୌତୁକ ବାକ୍ୟ—3. Wit and humour; fun.
୪ । ଚାପଲ୍ୟ—4. Practical joke.
ବଣ—ଥଟା ଖେଳିବାର ଉପଯୁକ୍ତ (ବ୍ୟକ୍ତି)—
(a person) Fit to be joked with.

ଥଟା(ଟ୍ଟା) କରିବା—ଦେ. କ୍ରି. (ସଂ. ଠଟ୍ଟା)—୧ । ପରିହାସ କରିବା—
Thaṭā(ṭṭā) karibā 1. To cut jokes; to jest.
ठट्ठाकरा ଛୁଟିବଧି କାଳ କରେ ଯାକୁ ଥଟା । ରାଧାନାଥ, ଚଉରାର ।
ঠাট্টাকরা ୨ । ବ୍ୟଙ୍ଗବିଦ୍ରୁପ କରିବା—2. To satirise.

ଥଟା(ଟ୍ଟା) ଖେଳିବା—ଦେ. କ୍ରି—ଚାପଲ୍ୟ ଖେଳିବା—
Thaṭā(ṭṭā) khelibā To cut practical jokes.
ठट्ठाखेला ঠাট্টাতামাসা
[ଥଟାଲଗା(ଗେ)ଇବା—ଅନ୍ୟରୂପ]

ଥଟା ତ(ତା)ମ(ମା)ସା—ଦେ. ବ. (ସହଚର ଶବ୍ଦ; ସଂ. ଠଟ୍ଟର+ଫା.
Thaṭā ta(tā)ma(mā)sā ତମାସା)—ପରିହାସ; ବ୍ୟଙ୍ଗ ବିଦ୍ରୁପ
ठट्ठातामासा; ठट्ठाबाटि खरा Joking in words and actions;
ঠাট্টাতামাসা satire and practical joke.

ଥଟା ପରିହାସ—ଦେ. ବ. (ସହଚର ଶବ୍ଦ; ସଂ. ଠଟ୍ଟର+ସଂ. ପରିହାସ)--
Thaṭā parihāsa ଥଟା ତାମସା (ଦେଖ)
Thaṭā tāmasā (See)

ଥଟା ମୁସ୍କୁଲି—ଦେ. ବ. (ସହଚର ଶବ୍ଦ)—ଥଟା ତାମସା (ଦେଖ)
Thaṭā muskuli Thaṭā tāmasā (See)
(ଥଟାମୁସୁକୁଲି—ଅନ୍ୟରୂପ)

ଥଟା(ଟ୍ଟା)ରି—ଦେ. ବ. (ସଂ. ସ୍ଥାଲକର; କିମ୍ବା ଧ୍ୱନ୍ୟର୍ଥକ)—
Thaṭā(ṭṭā)ri ୧ । କଂସାରୀ—1. Brazier; brass-
ठठारी founder.
ঠঠেরা ୨ । ଯେଉଁ ବ୍ୟକ୍ତି ପିତଳ ଓ କଂସାର ବାସନ ଓ
(ଥଟାରୁଣୀ—ସ୍ତ୍ରୀ) ଗହଣାଆଦି ତିଆରି କରେ—2. One who manufactures bellmetal articles.
ଥଟାରି ସର ପାଖ, (ଜାତି) କୁଲ ଡମ ଡମ ଡଗ—ଡଗ ।

ଥଟା(ଟ୍ଟା)ବାଜ୍—ଦେ. ବଣ—ଥଟିଲ; ପରିହାସପ୍ରିୟ—
Thaṭā(ṭṭā)bāj Fond of jest.
ठट्ठाबाज ঠট্টাবাজ
(ଠଟ୍ଟାବାଜୀ—ବ)

ଥଟିଲ—ଦେ. ବଣ—୧ । ଥଟ୍ଟାପ୍ରିୟ—1. Witty; given to
Thaṭila jesting; fond of jests; jestive
ठट्ठाबाज ୨ । ବ୍ୟଙ୍ଗପୂର୍ଣ୍ଣ—2. Full of wit or satire.
ঠট্টিল

ଥଣ୍ଟ—ଦେ. ବ. [ସଂ. ତୋଟ୍ଟ, ତୁଣ୍ଡ (Beams)]—ପକ୍ଷୀର ଚଞ୍ଚୁ—
Thaṇṭa Beak of a bird.
ठोंठ ଥଣ୍ଟରେ ଛିଡ଼ ଛିଡ଼ କରିଣ ଖାଇଲେ ।
ঠোঁট, ঠোর କୃଷ୍ଣସିଂହ, ମହାଭାରତ ଅଦି ।

ସାଧାରଣ ଲୋକେ ଅନେକ ସ୍ଥଳରେ ସ୍ୱତନ୍ତ୍ର ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଭାଷାକୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଚିହ୍ନର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଗାଈ' ନ ମିଳିଲେ 'ଗାଇ' ଖୋଜିବେ, 'କୁଅ' ନ ମିଳିଲେ 'କୂଅ' ଦେଖିବେ; 'ବଧୂ' ନ ପାଇଲେ 'ବଧୁ' ଦେଖିବେ; 'ଅଁଖୋ' ନ ପାଇଲେ 'ଅଙ୍ଖ' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ ।

ବିଣ—ଏକାଥରକେ ଥଣ୍ଟଭିତରେ ଯେତେ ପରିମାଣ ପଦାର୍ଥ ସମ୍ଭେଇବ ସେତିକି ପରିମିତ—As much as can be contained within the beak of a bird.

(ଯଥା—ଧାନ ମୁନ୍ଦ୍ରାରୁ ଭୁଆ ଥଣ୍ଟେ ନେଲେ ସରିଯିବ ନାହିଁ ।)

**ଥଣ୍ଟ ବୋହିବା**—ପ୍ରାଦେ. (ଯାଜପୁର) ବି—ଅନ୍ୟଲୋକଠାରୁ ଧନ ପ୍ରଭୃତି ନେବା—Taking of riches from a person.
Thanṭa bohibā

(ଯଥା—ତୁମ୍ଭର ଧନ ଦଉଲତ ଅଧିକରୁ ଅଧିକ ହେଉ, ଆଉ ଆମ ଥଣ୍ଟ ସବୁବେଳେ ବୋହୁଥାଉ ।)

**ଥଣ୍ଟ ମାରିବା**—ଦେ. କ୍ରି—କୌଣସି ଫଳ ଆଦିକୁ ଚଞ୍ଚୁଦ୍ୱାରା ଅଘାତ କରିବା; ଖୁମ୍ପିବା—To peck at a thing with the beak.
Thanṭa māribā
ठोंट्मारा
चोंच मारना

**ଥଣ୍ଟିଆ**—ଦେ. ବିଣ—ବଡ଼ ଥଣ୍ଟବିଶିଷ୍ଟ—Having a large beak.
Thanṭiā
चोँचवाला

**ଥଣ୍ଟିଆ କୁମ୍ଭୀର**—ଦେ. ତ—ଲମ୍ବଥଣ୍ଟବିଶିଷ୍ଟ କୁମ୍ଭୀର—The gavial of the Ganges; (having a long pair of snouts and webfooted); Gavialis Gangeticus.
Thanṭiā kimbhīra
मगर

ନୁଆ ବୋହୂଟି, କଇଁଚ ଚାଖୋଉ ସିନୁ ନାହିଁ ଟି,
ଥଣ୍ଟିଆ କୁମ୍ଭୀର କଟିକେଟିଏ, ହାଡ଼ୁକଳ ପିଠ ଦବଟ । ଶିଶୁଗୀତ ।

[ ଦ୍ର—ଏମାନଙ୍କର ଥଣ୍ଟ ବା ପାଟିର ଦୁଇପାଳି ଅଣ୍ଟାପରି ଦନ୍ତଯୁକ୍ତ ଓ ହାତେ ଦେଢ଼ ହାତ ଲମ୍ବ । ଏମାନେ ସାଧାରଣତଃ ମାଛ ଖାଇ ବଞ୍ଚନ୍ତି ଓ ଲମ୍ବରେ ୧୦।୧୫ ହାତଯାଏ ବଢ଼ନ୍ତି । ଏମାନେ ମନୁଷ୍ୟ ପଶୁଆଦିଙ୍କୁ ଆକ୍ରମଣ କରିବାର ଦେଖା ନାହିଁ ।]

**ଥଣ୍ଡ**—ଦେ. ବିଣ (ସଂ. ସ୍ତବ୍ଧ; ପ୍ରା. ଠଡ୍ଡ)—୧ । ଶୀତଳ; ଥଣ୍ଡା—1. Cold.
Thanḍ
ठाण्डा
ठंड

୨ । ଶୀତଳ କରାଯାଇଥିବା—2. Cooled.

୩ । ଶାନ୍ତ; ଶମିତ—3. Appeased.

ଦେ. ବି—ଶୀତଳତା—Coolness.

**ଥଣ୍ଡା**—ଦେ. ବିଣ (ସଂ. ସ୍ନିଗ୍ଧ କମା ଶାନ୍ତ; ପ୍ରା. ଠଣ୍ଡ—ହି. ଶବ୍ଦସାଗର)—
Thanḍā
(ଗରମ—ବିପରୀତ)
ठाण्डा
ठंड, ठंडक

୧ । ତାତିନଥିବା; ଶୀତଳ—1 Cold; cool.

୨ । ସହ୍ୟ; ଦେହରେ ସହି ହେଲା ଭଳି—2. Agreeable.

୩ । ନିବୃତ୍ତ; ଉପଶାନ୍ତ; ସନ୍ତୋଷିତ—3. Appeased; cooled; assuaged; satisfied.

୪ । ସ୍ଥିର—4. Calm.

୫ । ଶାନ୍ତିପ୍ରଦ; ଯାହା ଥଣ୍ଡା କରେ—5. Cooling; refreshing; soothing.

୬ । ଶାନ୍ତପ୍ରକୃତିକ—6. Meek; mild.

୭ । ଯାହା ଉଗ୍ର ନୁହେଁ—7. Gentle; not ferocious.

୮ । ବିଶ୍ରାମ ଦ୍ୱାରା ଯାହାର କ୍ଳାନ୍ତି ଦୂର ହୋଇଥାଏ—8. Refreshed after rest; soothed.

୯ । ଉଦାସୀନ—9. Indifferent.

୧୦ । ଦମିତ—10. Checked.

୧୧ । ସନ୍ତୁଷ୍ଟ; ତୃପ୍ତ—11. Satisfied.

୧୨ । ସ୍ଥିର; ଶାନ୍ତିମୟ—12. Tranquil; calmed.

୧୩ । ସ୍ତବ୍ଧ; ସ୍ତମ୍ଭିତ—13. Stopped; quiet.

୧୪ । ନିବୃତ୍ତକ୍ରୋଧ; ଯାହାର କ୍ରୋଧ ଉପଶାନ୍ତ ହୋଇଅଛି—14. One whose rage has abated.

୧୫ । ନିଶ୍ଚେଷ୍ଟ; ଜଡ଼—15. Motionless; inert.

୧୬ । (ଯେଉଁ ବଜାର ବା ସମୟରେ) ପଣ୍ୟଦ୍ରବ୍ୟମାନଙ୍କ ମୂଲ୍ୟ ପୂର୍ବାପେକ୍ଷା ସସ୍ତା ହୋଇଥାଏ; ମାନ୍ଦା—16. (a market or time) In which the price of commodities have gone down considerably.

(ଯଥା—ଆଜିକାଲି ଘିଅର ବଜାର ଥଣ୍ଡା ହୋଇଅଛି ।)

ବି—୧ । ହିମ—1. Coolness.

୨ । ଶୈତ୍ୟ—2. Cold.

୩ । ଶୀତ—Feeling of cold.

୪ । ନିବୃତ୍ତି—4. Appeasement; satiety.

୫ । ଧୀରତା—5. Mildness.

୬ । ସରଦି—6. Catching cold.

୭ । ଆରାମ; ଶାନ୍ତି—7. Comfort; refreshment.

୮ । ବିଶ୍ରାମ—8. Rest.

୯ । ବିରାମ—9. Cessation.

୧୦ । ଧୀରତା—10 Slowness.

**ଥଣ୍ଡା ଉପଚାର**—ଦେ. ବି—ଥଣ୍ଡା ଚିକିତ୍ସା ( ଦେଖ )
Thanḍā upachāra — Thanḍā chikitsā ( See )

**ଥଣ୍ଡାଏ ଥଣ୍ଡାଏ ଯିବା**—ଦେ. କ୍ରି—ସକାଳେ ଓ ସନ୍ଧ୍ୟାବେଳେ ବାଟ ଚାଲିବା—To travel during the cool hours of the day (morning, evening, and night).
Thanḍāe thanḍāe jibā
ठाण्डाए ठाण्डाए याओया
ठंडे ठंडे चलेजाना

[ ଦ୍ର—ଏହି ସମୟରେ ସୂର୍ଯ୍ୟ କିରଣର ତାପ ସହିବାକୁ ହୁଏ ନାହିଁ, ଏଥିପାଇଁ ଏ ସମୟକୁ ଶୀତଳ ବା ଥଣ୍ଡା ସମୟ ବୋଲାଯାଏ ।]

**ଥଣ୍ଡା କରିବା**—ଦେ. କ୍ରି—୧ । ଶୀତଳ କରିବା—1. To make cool; to lower the temperature of.
Thanḍā karibā
ठाण्डाकरा
ठंडा करना

୨ । ଉପଶମ କରିବା; ଶାନ୍ତ କରିବା—2. To appease; to satiate.

| ୧ | ନ | ଓ | ର,ଋ | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଯ | ଜ | ଶ,ଷ | କ୍ଷ | ଇଏ | ଉଅ | ଓ |
|---|---|---|---|---|---|---|---|---|---|---|---|---|---|---|
| ୨ | ଣ | ଞ | ରୁ | ଲୁ | ଙ୍ଗ | ଅକାରାନ୍ତ ବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଚଁ | ଇୟ | ଔ | ନ୍ |

୩ । ସାନ୍ତ୍ୱନା ଦେବା—3. To comfort; to soothe.

ଦୁଃଖୀ ... ଥଣ୍ଡା କରି ଦେଲେ—

... ।

୪ । ପ୍ରକୃତିସ୍ଥ କରିବା—

4. To bring one to one's senses.

୫ । ଦମନ କରିବା—5. To check a person; to teach a lesson; to reduce a person to meekness.

... ଥଣ୍ଡା କରି ଦେଲି ।

... ।

୬ । ଶୀତଳ ଉପଚାର ପ୍ରୟୋଗ କରିବା—

6. To apply soothing remedies.

**ଥଣ୍ଡା ଚକିତ୍ସା**—ଦେ. ବି—ଯେଉଁ ଔଷଧାଦି ପ୍ରୟୋଗଦ୍ୱାରା ଶରୀରର
Thaṇḍā chikitsā ଉତ୍ତାପ କମିଯାଏ—Soothing treatment.
(ଥଣ୍ଡା ଚକିତ୍ସା—ଅନ୍ୟରୂପ)
ঠাণ্ডা চিকিচ্ছা **ठंडि चिकित्सा**

**ଥଣ୍ଡା ଥଣ୍ଡା**—ଦେ. ବିଣ—ପ୍ରାତଃକାଳୀନ ବା ସାୟଂକାଳୀନ ଶୀତଳତା—
Thaṇḍā thaṇḍā The cool of the morning or evening.
ঠাণ্ডাঠাণ্ডা **ठंडेठंडे**

**ଥଣ୍ଡା ପ୍ରକୃତି**—ଦେ. ବି—ଶାନ୍ତ ପ୍ରକୃତି—
Thaṇḍā prakruti Meek or gentle nature.
(ଥଣ୍ଡା ମିଜାଜ୍, ଥଣ୍ଡା ମିଜାସ୍—ଅନ୍ୟରୂପ)
ঠাণ্ডা মেজাজ **ठंडमिजाज**

ଥଣ୍ଡା ମିଜାଜୀ } ଅନ୍ୟରୂପ ବିଣ—ଶାନ୍ତପ୍ରକୃତିକ—
ଥଣ୍ଡା ମିଜାଜି } Meek; gentle.
ঠাণ্ডামিজাজী **ठाण्डमिजाजी**

**ଥଣ୍ଡା ବିଜୁଳି**—ଦେ. ବି. ( ଅଧୁନିକ ପ୍ରୟୋଗ )—
Thaṇḍā bijuḷi ବୈଦ୍ୟୁତିକ ବାଟେରି ବା ପ୍ରବାହଯୁକ୍ତ ତାରଦଣ୍ଡର
(ଗରମ ବିଜୁଳି—ବିପରୀତ) ମୁଣ୍ଡରେ ବିଯୁକ୍ତ ପ୍ରାନ୍ତ (negative)
ঠাণ্ডা বিজলী ନାମକ ବିଦ୍ୟମାନ ବୈଦ୍ୟୁତିକ ଶକ୍ତି—
**ठण्डी बिजली** Negative electricity.

**ଥଣ୍ଡା ବେଳ**—ଦେ. ବି—୧ । ଦିବସର ଯେଉଁ ସମୟରେ ସୂର୍ଯ୍ୟକିରଣର
Thaṇḍā beḷa ପ୍ରଖରତା ନ ଥାଏ (ସନ୍ଧ୍ୟା, ସକାଳ ଓ ରାତ୍ରି)—
ঠাংডা বেলা 1. Cool time of the day (viz. morning,
**ठंडा वख्त** evening and night); cool hours of the day.

୨ । ଦିବସର ଯେଉଁ ସମୟରେ ଶୀତ ଅନୁଭୂତ ହୁଏ—

2. Time of the day when it is cold or when one may catch cold.

**ଥଣ୍ଡା ଲାଗିବା**—ଦେ. କ୍ରି—୧ । ଶୀତଳ ବୋଧ ହେବା—
Thaṇḍā lāgibā 1. Feeling of a cool sensation.
ঠাণ্ডা লাগা ୨ । ସର୍ଦ୍ଦି ଧରିବା—2 Catching of cold;
**ठंडा मालुम होना** being effected by chill.

୩ । ଦେହରେ କାକର ବା ଥଣ୍ଡା ପବନ ଲାଗିବା—

3. Being affected by cold air or dew.

କ୍ରି—ହାତକୁ ବା ସ୍ପର୍ଶକୁ ଶୀତଳ ଲାଗିବା—

To appear cold to one's touch.

**ଥଣ୍ଡାଳିଆ**—ଦେ. ବିଣ—ଈଷତ୍ ଥଣ୍ଡା—
Thaṇḍāḷia A bit cool.

**ठंढासा** ଦେ. ବି—ଚିଲିକାରେ ଦେଖାଯିବା ଏକ ପ୍ରକାର ପକ୍ଷୀ—
A species of bird found in the Chilkā lake.

**ଥଣ୍ଡା ହେବା**—ଦେ. କ୍ରି ( ଲକ୍ଷଣାର୍ଥ )—୧ । କୌଣସି ଅସନ୍ତୋଷର
Thaṇḍā hebā କାରଣର ନିବୃତ୍ତି ପରେ ମନରେ ଶାନ୍ତି
ঠাংডা হওয়া ଉପଭୋଗ କରିବା—1. (figurative) To
**ठाण्डा होना** be pacified after one's grievance is remedied.

( ଯଥା—ଦିବାନଙ୍କୁ ପଚାଶ ପଚାଶ ଟଙ୍କା ଜୋରିମାନା କରିବାରୁ ଟ୍ରେଦେଇମାନେ ଥଣ୍ଡା ହୋଇଗଲେ । )

୨ । (ଲକ୍ଷଣାର୍ଥ) କ୍ଷୁଧା ତୃଷ୍ଣାଦିର ନିବୃତ୍ତି ପରେ ଶାନ୍ତ ହେବା—
2 (figurative) To be satiated after satisfaction of hunger, thirst etc.

( ଯଥା—ସନ୍ଧ୍ୟା ବେଳକୁ ଯାଇ ଅନ୍ନ ମୁଠିଏ ପଡ଼ିବାରୁ ପେଟ ଥଣ୍ଡା ହେଲା । )

୩ । ଶୀତଳ ହେବା—3. To become cold.

**ଥଣ୍ଡିଳ**—ଦେ. ବି. ( ସ. ସ୍ଥଣ୍ଡିଳ )—
Thaṇḍiḷa ହୋମ କରିବା ନିମନ୍ତେ ପ୍ରସ୍ତୁତ ବାଲିର ବେଦୀ—
An altar of sand raised for performing 'Homa' thereon.

**ଥଥ୍‌ରା**—ପ୍ରାଦେ. (ସମ୍ବଲପୁର) ବିଣ—ତୋତଲା; ଖନା; ଯାହାର ପାଟି
Thath-rā ଲାଗେ—Stammering.
(ଥଥୋ—ଅନ୍ୟରୂପ)

**ଥନ୍**—ପ୍ରାଦେ. (ସମ୍ବଲପୁର) ବି—ଥନ ( ଦେଖ )
Than Thana ( See )

**ଥନ ଥନ୍**—ପ୍ରାଦେ. (ସମ୍ବଲପୁର) ବିଣ ଓ ବି—ଥନ ଥନ ( ଦେଖ )
Than than Thana thana ( See )

**ଥନ**—ଦେ ବି. ( ସ. ସ୍ତନ; ଭୁଲ. ପ୍ରା. ଥଣ )—
Thana ୧ । ଦୁଧ; ସ୍ତନ—1. The female bosom or breast.
মাই
**थन, स्तन** ୨ । ମାତୃସ୍ତନ—2. A mother's breast; the mamma.

୩ । ସ୍ତନ୍ୟ; ମାତୃ ସ୍ତନରେ ଥିବା ଦୁଧ—

3. Milk from the mother's breast.

ଜନ୍ମ ପୁରନାଥନ ପଖଣ୍ଡିଆ । ପ୍ରାଚୀ ଉତ୍ସବମଣ୍ଡଳ ।

**ଥନ ଖାଇବା**—ଦେ. କ୍ରି—(ଶିଶୁ) ମାତୃ ସ୍ତନ୍ୟ ପାନ କରିବା—
Thana khāibā To suck the mother's breast
মাই খাওয়া **छाति पीना** (said of a child).

ଯାଆନ୍ତି ଲେଖକେ ଅପର ବୃଷ୍ଟାରେ ବର୍ଣ୍ଣିତ ୧ ଚିହ୍ନିତ ଅକ୍ଷର ୮ମା ୧ବ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବ ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ୯ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ସ୍ଥାନରେ ତତ୍ପର ଅପରସ୍ଥ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—
'ଗାଈ' ନ ମିଳିଲେ 'ଗାଇ' ଖୋଜିବେ; 'ଦୂଧ' ନ ମିଳିଲେ 'ଦୁଧ' ଦେଖିବେ; 'ବନ୍ଧୁ' ନ ମିଳିଲେ 'ବନ୍ଧୁ' ଦେଖିବେ; 'ଅର୍ଘ୍ୟ' ନ ପାଇଲେ 'ଅର୍ଘ' ଦେଖିବେ, 'ଅଲବଳ' ନ ପାଇଲେ 'ଅଲ୍‌ବଲ୍' ଦେଖିବେ ।

**ଥନ ଛାଡ଼ିବା**—ଦେ. କ୍ରି—ଶିଶୁ ସ୍ତନ୍ୟପାନ ତ୍ୟାଗ କରିବା—
Thana chhārdibā To cease sucking the breast
माई छाड़ा ( said of a child ); to be weaned.
**दुध छोड़ना**

**ଥନ ଥନ**—ଦେ ବି ( ସଂ. ସ୍ତନ୍ଧ )—୧ । କାନ୍ଦିବାର ଦୃଢ଼ ଅବସ୍ଥା—
Thana thana 1. Readiness to weep.
୨ । ଚକ୍ଷୁର ଲୋତକପୂର୍ଣ୍ଣ ଅବସ୍ଥା—2. The state of the
**डबडबाना** eyes being filled with tears.

ଗୋପନରେ ବଦନ ଲୁଣି ପାଲଟୁନ
କୋଥରେ ନୟନକୁ କରି ଥନ ଥନ । କୃଷ୍ଣସିଂହ- ମହାଭାରତ, ଦ୍ରୋଣ ।

ବିଣ—ଲୋତକପୂର୍ଣ୍ଣ (ଚକ୍ଷୁ)—Tearful; brimming(eyes).

ଗୋପୀ ଲୋଚନ ଥନ ଥନ
ନ ବାନ୍ଧ ବାହିନ୍ଦ କଥାନ । ଭୂପତି- ପ୍ରେମପଞ୍ଚାମୃତ ।

**ଥନ ଦେବା**—ଦେ. କ୍ରି—ଶିଶୁକୁ ଆପଣାର ସ୍ତନ୍ୟପାନ କରାଇବା—
Thana debā To suckle a child at one's breast.
माईदेओआ **छाती पिलाना**

**ଥନ ଧରିବା**—ଦେ. କ୍ରି—ଥନ ଖାଇବା (ଦେଖ)
Thana dharibā Thana khāibā (See)

**ଥନ ଭାଙ୍ଗି କ୍ଷୀରଦେବା**—ଦେ. କ୍ରି—ଆପଣାର ସ୍ତନରୁ ଶିଶୁକୁ ସ୍ତନ୍ୟପାନ
Thana bhāṅgi kshīradebā କରାଇବା—To suckle a
**सातीसोआका दुधपिलाना** child at one's breast.
(ଥନ ଭାଙ୍ଗିବା—ଅନ୍ୟରୂପ) କୋଳରେ ନେଇ ଥନଭାଙ୍ଗି କ୍ଷୀରପାନ ଦେଲା ।
କେଶବ କୋଇଲି ।

**ଥନ ଯଉବନ**—ଦେ. ବି. (ସହରର ଶବ୍ଦ; ସଂ. ସ୍ତନ ଓ ଯୌବନ)—
Thana jaubana ଯୁବତୀର ଉଚ୍ଚ କୁଚର ଶୋଭା—
The beauty of a youthful girl due to having swollen breasts.

ଅବେଳରେ କାଳିଆ ! ନାହିଁ କରୁଥିଲୁ ସଂସାରେ କାହାକୁ ଦେଖି,
ଏବେକରେ କାଳିଆ ! ଝୁରି ମରୁଅଛୁ ଥନ ଯଉବନ ଦେଖି । ଗୀତ ।

**ଥନହର**—ଦେ. ବି. (ସଂ. ସ୍ତନ୍ୟହର)—ସ୍ତନକୁ ଉଲୁଗଳିବା ରୋଗ—
Thanahara An inflammatory affectation of the
**थनैला** breast; a disease of the mammary
ଥନରସ } ଅନ୍ୟରୂପ glands; mammitis; mammary
ଥନକର } abscess

**ଥନ୍ତ(ନ୍ଥ)ର(ଡ଼ା)**—ଦେ. ବିଣ. (ସଂ. ବନ୍ଧୁର)—ମୁନ ବା ଦାଢ଼ ଖରାପ
Thanta(ntha)ra(rdā) ହୋଇ ଯାଇଥିବା (ଅସ୍ତ୍ର); ଦନ୍ତୁର;
भोंथा **थोथरा** ମୁଣ୍ଡା—Blunt; dull-edged.

**ଥନ୍ତର(ରେ)ଇବା**—ଦେ. କ୍ରି—ଅସ୍ତ୍ରାଦିର ଦାଢ଼କୁ ଛେଚଡ଼ା କରିବା—
Thantarā(re)ibā To blunt the edge of a sharp
भेंथना instrument by beating or staving.
**थोथराना**
(ଥନ୍ତଡ଼ାଇବା—ଅନ୍ୟରୂପ)

**ଥନ୍ତ(ନ୍ଥ)ଲ(ଳ)**—ଦେ. ବିଣ. (ସଂ. ଉଦ୍ଧଲ ବା ସ୍ଥୂଳ)—ପୃଥୁଳ; ସ୍ଥୂଳ—
Thanta(ntha la(la) Fat; corpulent.
भुँड़िया [ ଦ୍ର—ଏହା କେବଳ ପେଟର ବିଶେଷଣରୂପେ ବ୍ୟବହୃତ
**थलथल** ହୁଏ । ]

**ଥନ୍ତଲ ପେଟ**—ଦେ. ବି—ସ୍ଥୂଳୋଦର—
Thantala peṭa Pot-belly; corpulence.
भुँड़ी **थलथलपेट**

**ଥନ୍ତଲ ପେଟା**—ଦେ. ବିଣ. ପୁଂ—ଥନ୍ତଲ ପେଟୁଆ (ଦେଖ)
Thantala peṭā Thantala peṭuā (See)
भुँड़े **थलथल पेटवाला** (ଥନ୍ତଲପେଟୀ—ସ୍ତ୍ରୀ)

**ଥନ୍ତଲ ପେଟିଆ**—ଦେ. ବିଣ—ସ୍ଥୂଳୋଦର ବିଶିଷ୍ଟ—
Thantala peṭiā Pot-bellied; corpulent.
(ଥନ୍ତଲ ପେଟେଇ—ସ୍ତ୍ରୀ) ଥନ୍ତଲ ପେଟୁଆ 'ଥ' ଦନ୍ତ ନଥିବା 'ଧ' ।
ଅକ୍ଷର ପରିଚୟ ସମ୍ବନ୍ଧେ- ଶିଶୁଗୀତ ।

**ଥପଡ଼(ଡ଼ା) (ଇତ୍ୟାଦି)**—ଦେ. ବି. (ସଂ. ତପେଟ)—
Thaparda(rdā) (etc) ଥାପଡ଼ ଇତ୍ୟାଦି (ଦେଖ)
(ଥପ୍ପଡ଼—ଅନ୍ୟରୂପ) Thāparda etc (See)

**ଥପଡ଼ା(ଡ଼େ)ଇବା**—ଦେ. କ୍ରି—ଥାପଡ଼ାଇବା (ଦେଖ)
Thapardā(rde)ibā Thāpardāibā (See)

**ଥପ(ଫ) ଥପ(ଫ)**—ଦେ. (ଧ୍ୱନ୍ୟନୁକରଣ) ଅ. (ସଂ. ସ୍ଥା ଧାତୁ ଣିଜନ୍ତ
Thapa(pha) thapa(pha) ସ୍ଥାପି ଧାତୁଜ)—ଟପ ଟପ; ତରଳ
टपटप; टपास टपास ବସ୍ତୁ ଠୋପା ଠୋପା ହୋଇ ପଡ଼ିବାର
**टपटप** ଶବ୍ଦ; ବିନ୍ଦୁ ବିନ୍ଦୁ ହୋଇ ପଡ଼ିବା
(ଥପ—ଅନ୍ୟରୂପ ଶବ୍ଦାନୁକରଣ—Sound of liquids falling in drops.
କ୍ରି. ବିଣ—ଠୋପା ଠୋପା ହୋଇ; ବିନ୍ଦୁ ବିନ୍ଦୁ ହୋଇ—
Drop by drop; in dribles.

ଦ୍ୱିଧା ହୋଇ ମୁଣ୍ଡ, ଭଗ୍ନ ଦଧିଭାଣ୍ଡ ଯଥା
ପଡ଼ିଲା ମସ୍ତିଷ୍କ ତଳେ ଥପ ଥପ ହୋଇ । ରାଧାନାଥ, ମହାଯାତ୍ରା ।

**ଥପା(ପେ)ଇବା**—ଦେ. କ୍ରି (ସଂ. ସ୍ଥାପି ଧାତୁ)—୧ । ଥାପିବା; ସ୍ଥାପନ
Thapā(pe)ibā କରିବା— . To set.
**थपवाना** ୨ । ଲାଖିଲା ପରି କରିବା; ଲଖାଇବା—
2. To cause a thing to stick.

**ଥପା କାଣ୍ଡ**—ପ୍ରାଦେ. (ସମ୍ବଲପୁର) ବି—ଶରବିଶେଷ ( ଏ ଶରର ୩ଗୋଟି
Thapā kānd ଅଙ୍କୁଶା ପରି ମୁନ ଥାଏ)—A kind of
(ଥପା କାଁଡ଼—ଅନ୍ୟରୂପ) arrow with three barbed points.

**ଥପା ଜାଲ**—ପ୍ରାଦେ. (ସମ୍ବଲପୁର) ବି—ଜାଲପୋଡ଼ୁଅ (ଦେଖ)
Thapā jāla Jāla pordhua (See)

**ଥପା ସୁଧ**—ଦେ. ବି—କରଜ ଦିଆଯାଇ ଥିବା ଧାନ ଉପରେ ସାଧାରଣ
Thapā suhda ସୁଧ—Simple interest on paddy lent.

| ୧ | ଇ | ଋ | ଌ,ୠ | ଁ | ଂ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | କ୍ଷ | ଜ | ଶ,ଷ | ଜ୍ଞ | ଇୟ | ଡ଼ଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୧ | ଈ | ଌ | ଋ | ଲୃ | ଂ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଦ୍ୟ | ଇଅ | ଡ଼ | ନ୍ଦ |

ଥବିର—ଦେ. ବିଣ. (ସ. ସ୍ଥବିର)—୧ । ବୃଦ୍ଧ—
Thabira 1. Old; aged.
୨ । ସ୍ଥିର—2. Tranquil.
ଜେଷ୍ଠଠାରୁ ଈଷ ଯେ ଭେଦ ନିହାଳଇ
ସ୍ୱଦେଶେ ଚଳନ୍ତି ଯେ ଥବିର ଅଟଇ । ଜଗନ୍ନାଥ, ମହାଭାରତ ବନ

ଥମ୍ ଖାଇବା—ଦେ. କ୍ରି. (ସଂ. ସ୍ତମ୍ଭ୍ ଧାତୁ)—
Tham khāibā ୧ । ହଠାତ୍ ସ୍ଥିର ହେବା; ହଠାତ୍ ଅଟକିଯିବା—
थमकाना 1. To come to a sudden stand-still; to stop at once.
थमहना
୨ । ବିସ୍ମୟାନ୍ୱିତ ହେବା – 2. To be taken aback.

ଥମକା(କେ)ଇବା—ଦେ. କ୍ରି—୧ । ଥମକିବା କ୍ରିୟାର ଣିଜନ୍ତରୂପ—
Thamakā(ke)ibā 1. The causative form of Thamakibā.
थामान
थम्हाना ୨ । ଥମାଇବା (ଦେଖ)—2. Thamāibā (See)

ଥମକିବା—ଦେ. କ୍ରି—ଥମ୍ ଖାଇବା (ଦେଖ)
Thamakibā Tham khāibā (See)
(ଥମକିଯିବା—ଅନ୍ୟରୂପ)

ଥମ ଥମ—ଦେ. ଅ. (ସଂ. ସ୍ତମ୍ଭିତ)—ମଠ ମଠ; ବିଳମ୍ବିତ—
Thama thama Dilatory; delaying.
थमथम ଯିବାଠାରୁ ଅସିବା ବେଳଯାଏଁ ସେ ଖାଲି ଥମ ଥମ ହେଉଛି ।
थमथमकर ସହକାର ।

ଥମା—ଦେ. ବି. (ସ. ସ୍ତମ୍ଭ)—୧ । ବନ୍ଦହେବା; ଅଟକିବା—
Thamā 1. Stopping; cessation.
थामा ୨ । ଥକିବା—
थम्ब 2. Halting.

ଥମା(ମେ)ଇବା—ଦେ. କ୍ରି.—(ସ. ସ୍ତମ୍ଭ୍ ଧାତୁ; ସ୍ତମ୍ଭନ, ପ୍ରା. ଥଂଭନ)
Thamā(me)ibā ୧ । ଥମିବା କ୍ରିୟାର ଣିଜନ୍ତ ରୂପ—
थामाद 1. The causative form of 'Thamibā'.
थमाना ୨ । ବନ୍ଦ କରିବା—2. To stop; to cause to stop; to bring to a standstill.
୩ । ଶାନ୍ତ କରିବା—3. To appease; to quiet.
୪ । ଥଣ୍ଡା କରିବା 4. To cool down.
୫ । ଅଟକାଇବା—5. To detain; to restrain.

ଥମିବା—ଦେ. କ୍ରି. (ସ. ସ୍ତମ୍ଭ୍ ଧାତୁ ସ. ସ୍ତମ୍ଭନ, ପ୍ରା. ଥଂଭନ)—
Thamibā ୧ । ବନ୍ଦ ହେବା—1. To cease; to stop.
କାହିଁ ଥମି ଗଲ କହେଶ । ମଧୁସୂଦନ, ଉତ୍କଳଗାଥା
थामा ୨ । ଥମ୍ ଖାଇବା—2. To come to a standstill; to be taken aback.
थामना, थमना
୩ । କଥା ବନ୍ଦ କରିବା—3. To cease speaking; to desist from speaking.
୪ । ଗଲ୍ପ କରୁ କରୁ ଅଟକି ଯିବା—
4. To halt; to pause.
୫ । (ମେଘ, ଜୁଆର ଆଦି) କମିବା; ଉପଶାନ୍ତ ହେବା—
5. To slack (as the tide or rain).

ଥମ୍ଭ—ଗ୍ରା. ବି. (ସ. ସ୍ତମ୍ଭ; ପ୍ରା. ଥଂଭ)—ଖମ୍ବ; ଖୁଣ୍ଟ—
Thamba Post; pillar; column.
थाम ବିଣ.—ଅଚଳ—
थम्ह, थाम 2. Motionless.
ଥମ୍ଭ ପ୍ରତିମା ପ୍ରାୟେକ ବେନ ବାମା ନ ପାରନ୍ତି କଥା କହି । ପ୍ରତାପ. ଶଶିସେଣା ।

ଥମ୍ଭନ—ଗ୍ରା. ବି.—ସ୍ତମ୍ଭନ (ଦେଖ)
Thambana Stambhana (See)
थामा ଅଙ୍ଗେ ଥମ୍ଭନ ମୁଁ କଲିଣି ଯହୁଁ,
थम्हना ଜାଣି ଭରତ ପଳାଇଲେ ଡହୁଁ । ପ୍ରତାପ. ଶଶିସେଣା ।

ଥମ୍ଭା—ଦେ. ବି.—ଥମା (ଦେଖ)
Thambā Thamā (See)

ଥମ୍ଭା(ମ୍ଭେ)ଇବା—ଦେ. କ୍ରି.—ଥମାଇବା (ଦେଖ)
Thambā(mbe)ibā Thamāibā ( See )

ଥମ୍ଭିବା—ଦେ. କ୍ରି.—୧ । ମନ୍ତ୍ରାଦିଦ୍ୱାରା ସ୍ତମ୍ଭନ କରିବା—
Thambibā 1. To charm or enchant a person.
थामा ଅଙ୍ଗି ଜାଳନ୍ତେ ଥମ୍ଭିଣ ସହେଳୀ
थामना ଅନେକ କାଳେ ନ ଚାଲଇ ପାଣି । ପ୍ରତାପ. ଶଶିସେଣା ।
୨ । ଥମିବା (ଦେଖ)—2, Thamibā (See)
ଶ୍ରମକ ଭୁଲେ ରଣ ଖୋଳ ଥରନ୍ତିଲେ,
ଉସ୍ ଜାତ ହେଲେ ତା ଦମ୍ଭରେ ଥମ୍ଭିଲେ । କୃଷ୍ଣସିଂହ. ମହାଭାରତ. ସ୍ୱର୍ଗ. ।

ଥୟ—ଦେ. ବିଣ. (ସ. ସ୍ଥେୟ)—୧ । ସ୍ଥିର—
Thaya 1. Quite; still.
थ ୨ । ଚଞ୍ଚଳ—2. Calm; serene.
थाह ୩ । ନିଶ୍ଚିତ—3. Certain: fixed.
୪ । ସ୍ଥିରୀକୃତ—4. Settled; ascertained.
ଜମ୍ବୁ କର ଥୟ କୁଟେ ସିଂହ, ପ୍ରାୟ ବୃଦ୍ଧ ରୁ ମର ନା ।
ଉଦ୍ଧ. ବୈଦେହୀଶବିଳାସ ।
୫ । ନିଶ୍ଚିନ୍ତ—5. Freed from anxiety.
୬ । ଶାନ୍ତ—6. Assuaged.
ଥଇ ବି.—୧ । ସ୍ଥିରତା—1. Certainty; fixity.
ପଥ ହୋଇବ ଦୁଃଖମୟ
ବାଟରେ ନ ମିଳଇ ଥୟ । ଜଗନ୍ନାଥ—ଭାଗବତ ।
୨ । ଠିକଣା—2. Ascertainment; settlement.
ହୃଦୟରେ ଅଛ ମୋ ଉପାୟ ।
ଗଡ଼ୁଥିଲେ ନ ପାଇବ ଥୟ । ଜଗନ୍ନାଥ—ଭାଗବତ ।
୩ । ନିଶ୍ଚଳତା—3. Standstill.
୪ । ଶାନ୍ତି; ନିଶ୍ଚିନ୍ତ ଅବସ୍ଥା—4. Calmness; peace.
୫ । ନିଶ୍ଚିତ ସମ୍ବାଦ—5. Correct information.
ଥବିର ସବେ ମାୟାଗତ ଥୟ ନ ଜାଣେ ବେଦପଥ ।
କମଳଲୋଚନ. ଚଉତିଶା ।

ସାଧାରଣ ଲୋକେ ଅପର ଦୃଷ୍ଟାରେ ୧ ଚିହ୍ନିତ ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରନ୍ତି ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ କୋଷରେ ନ ମିଳିବ, ତେବେ ସେହି ଶବ୍ଦ ପାଠକମାନେ ଉକ୍ତିର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା—'ଗଛ' ନ ମିଳିଲେ 'ଗାଛ' ଖୋଜିବେ, 'କୃଷ' ନ ମିଳିଲେ 'କୃଷ' ଦେଖିବେ; 'ବଧୂ' ନ ପାଇଲେ 'ବଧୂ' ଦେଖିବେ; ଅର୍ଦ୍ଧ ନ ପାଇଲେ 'ଅର୍ଦ୍ଧ' ଦେଖିବେ; 'ଅଲବଟ' ନ ପାଇଲେ 'ଅଲ୍‌ବଟ' ଦେଖିବେ ।

୬ । ହତବୁଦ୍ଧିତା; ହଠାତ୍ରେ ଜଡ଼ବତ୍ ଅବସ୍ଥା—
6. The state of being taken aback.
୭ । ନିର୍ବାକ୍ ଅବସ୍ଥା—7. Silence.

**ଥୟ କରିବା**—ଦେ. କ୍ରି.—୧ । ସ୍ଥିର କରିବା—
Thaya karibā 1. To settle.
थै पाओया थ करा ଯାଇ ସେ ହୃଦାଭେ ଠକ
थाहना ସେ ଥୟ କରିବ ସା ମନ । କୃଷ୍ଣ. ପ୍ରେମପଞ୍ଚାମୃତ ।
୨ । ଠିକଣା କରିବା; କଶ୍ଚିତ ସଂବାଦ ବୁଝିବା—
2. To acertain.
୩ । ସ୍ଥଗିତ କରିବା—3. To fix up.

**ଥୟ ଥାୟ**—ଦେ. ବିଣ.—(ଥୟ ସଙ୍ଗେ ଦ୍ୱିତ୍ୱାନୁକାର ନିରର୍ଥକ ଥାୟ
Thaya thāya ଶବ୍ଦର ଯୋଗ)—ଥୟ (ଦେଖ)
Thaya (See)

**ଥୟ ଧରିବା**—ଦେ. କ୍ରି—୧ । ନିଶ୍ଚିନ୍ତ ହେବା—
Thaya dharibā 1. To be certain
(ଥୟହେବା—ଅନ୍ୟରୂପ) ୨ । ସ୍ଥିର ହୋଇ ରହିବା—
ঠাণ্ডা হওয়া 2. To be settled.
थिर रहना ୩ । ବିଶ୍ରାମ କରିବା—3. To rest; to take rest.

**ଥୟ ପାଇବା**—ଦେ. କ୍ରି—୧ । ଠିକଣା ପାଇବା—
Thaya pāibā 1. To fathom; to ascertain.
(ଥୟ ଲଗାଇବା—ଅନ୍ୟରୂପ) ୨ । ନିଶ୍ଚିତ ସମ୍ବାଦ ପାଇବା—
थई पाओया 2. To get correct news.
थाह पाना

**ଥୟେ**—ଗ୍ରା. ବି ଓ ବିଣ—ଥୟ ( ଦେଖ )
Thaye Thaya ( See )
ଏମନ୍ତ ମୂରତ ଦେଖି କରିବ କେ ଥୟେ । ଗ୍ରାମ୍ୟଗୀତି ଗୀତ ।
କ୍ରି. ବିଣ—୧ । ନିଶ୍ଚୟରେ—1. Certainly.
୨ । ସ୍ଥିରଭାବରେ—2. Calmly.

**ଥର**—ଦେ. ବି. ( ସଂ. ଅସ୍ଥିର )—୧ । କମ୍ପ—
Thara 1. Trembling; shiver; trepidation.
থর ବହିଲ ସେ ଥର ଭୟେ ହୃଦୟ ପଥର ।
थर ଭକ୍ତ, ବୈଦେହୀଶବିଳାସ ।
୨ । (ସଂ. ସ୍ତର) ବାର—2. Times.
ସବେଶ ମୋହନେ ଥର୍ ଏକ ଥରରେ । କବିସୂର୍ଯ୍ୟ. କଣୋଘରଞ୍ଜନ ଗୀତ ।

**ଥର(ରେ)କ**—ଦେ. ଅ—ଏକବାର ମାତ୍ର—
Thara(re)ka Once only.
বারেক एकबार

**ଥରକର**—ଗ୍ରା. ଅ—ଥରେ; ଥରେ—
Tharakara Once upon a time.
বারেক ଦେ. ବିଣ—ଏକବାରର (ଘଟଣା)—
एकबारका Appertaining to a time.

**ଥରକୁଥର**—ଦେ. କ୍ରି. ବିଣ—୧ । ପୁନଃ ପୁନଃ—
Tharaku thara 1. Again and again; from time to time.
বারবার
बारबार ୨ । ବହୁବାର ଉପର୍ଯ୍ୟୁପରି—
2. Several times; repeatedly; times without number.
ଥରକୁଥର ମହାମୋହ ଯାଉଥିଲେ,
ତାହାଙ୍କ ସନ୍ତୋଷ ଏ ବଚନ କହିଲେ ।—କୃଷ୍ଣସିଂହ, ମହାଭାରତ. ଆଦି

**ଥରକେ**—ଦେ. ଅ—୧ । ଏକବାରରେ—1. Once
Tharake ୨ । ପ୍ରତିଥର ବା ବାରରେ—
एकबारमें 2. Each time; every time.

**ଥରଥର**—ଦେ. ବିଣ (ସଂ. ଅସ୍ଥିର କମ୍ପ। ସ୍ଥଳିତ=ବୃକ୍ଷ; ବୃକ୍ଷମାନେ
Tharathara କମ୍ପନ୍ତି ବୋଲି)—୧ । କମ୍ପିତ; କମ୍ପାନ୍ୱିତ—
থরথর 1. Shaking; shivering; trembling.
थरथर; थरथरी ସେ ହୁର ଇନ୍ଦ୍ରଙ୍କ ଅଙ୍କରେ ଲୁଣ୍ଠାପୁର ।
ଦେହରେ ରହି ସ୍ୱେଦ କମ୍ପ ଥରଥର ।
କୃଷ୍ଣସିଂହ, ମହାଭାରତ ଶାନ୍ତି ।
୨ । ଅଥରପା; ଅସ୍ଥିର—2. Tottering.
୩ । ଭୀତଥ; ଭୟରେ ଅଧୀର—
3. Shaking through fear.
୪ । ଶୀତରେ ଥୁରୁ ଥୁରୁ ବା କମ୍ପମାନ—
4. Shivering through cold.
କ୍ରି. ବିଣ—୧ । ବିଶେଷ କମ୍ପର ସହିତ; ଠକ୍ ଠକ୍ ହୋଇ (କମ୍ପିବା)—1. With much trembling.
(ଯଥା—ପିଲାଏ ଅବଧାନଙ୍କୁ ଦେଖି ଥରଥର କମ୍ପୁଛନ୍ତି ।)
[ ଦ୍ର—ଥରଥରଠାରୁ ଲଘୁତର . କମ୍ପକୁ 'ଥୁରୁ ଥୁରୁ' ବୋଲାଯାଏ । ]
বারবার ୨ । ଥରକୁଥର (ଦେଖ)
बारबार 2. Tharakuthara (See)

**ଥରଥର କମ୍ପନ**—ଦେ. ବିଣ—ଉପର୍ଯ୍ୟୁପରି କମ୍ପନ—
Tharathara kampana Shaking; shivering.
থরথরকাঁপা ଶେଷକର ଦରଶନେ ଅଥଥର କମ୍ପନେ ଥଇଲୁ ବେଗେ ଝରଝର ।
थरथराहट ମଧୁସୂଦନ. କାବ୍ୟପ୍ରନ୍ଥ ।

**ଥରଥର କମ୍ପିବା**—ଦେ. କ୍ରି. (ଭୟରେ)—ଠକ୍‌ଠକ୍ ହୋଇ କମ୍ପିବା—
Tharathara kampibā To tremble violently (in fear).
থরথরকরিয়া কাঁপা थरथराना, थरथर करना

**ଥରଥର କରି**—ଦେ. କ୍ରି. ବିଣ—ଥରକୁଥର (ଦେଖ)
Tharathar kari Tharakuthara (See)

**ଥର ଥରକେ**—ଦେ. ଅ—ଥରେ ଥରେ; କୌଣସି କୌଣସି ସମୟରେ—
Thara tharake At times.
বারবার ଥର ଥରକେ ମୋ ଅଙ୍ଗ, ଥରଥର ହୁଏ କାମ ଶର ଘାତେ ।
बारबार : କବିସୂର୍ଯ୍ୟ. ଉଷା ଗୀତ ।

| | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|
| ୧ ଇ | ଉ | ଋ,ୠ | ଌ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ | ଶ,ସ | ଜ୍ଞ | ଇ୍ | ତ୍ଥ | ଓ |
| ୨ ଈ | ଊ | ୠ | ୡ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଗଁ୍ୟ | ଇଥ | ୠ | ଙ୍ |

ଥର ଥର ହେବା—ଦେ. କ୍ରି—ଥର ଥର କମ୍ପିବା ଦେଖ
Thara thara heba Thara thara kampiba (See)

ଥରଥର—ଦେ. ବିଶ. ପୁଂ—ଥରଥରିଆ ( ଦେଖ )
Tharathara Tharatharia ( See )
(ଥରଥରୀ—ସ୍ତ୍ରୀ) ଦେ. ବି—ଥରଥର କମ୍ପନ ( ଦେଖ )
Tharathara kampana ( See )

ଥରଥରଥର—ଦେ. ବିଶ—ସର୍ବାଙ୍ଗବ୍ୟାପୀ କମ୍ପନଯୁକ୍ତ; ଯହିଁରେ
Tharatharāthara ସର୍ବାଙ୍ଗ କମ୍ପିତ ହେଉଥାଏ—
(ଥରଥରଥର—ଅନ୍ୟରୂପ) Shivering throughout the
थरथराथर limbs; trepidating.
थरथराहट

ଥରଥର ବାତ—( ସ. ଅସ୍ଥିରତା+ବାତ )—
Tharathara bata ଏକ ପ୍ରକାର ବାତ ଯାହାର ଆକ୍ରମଣରେ
थरथरानि, थराबात ରୋଗୀ ବାରମ୍ବାର କମ୍ପେ—
थरहरी बाइ A fit accompanied by repeated tremours.

ଥରଥରି(ରୁ)ଆ—ଦେ. ବିଶ. ପୁଂ—୧ । ଯେ ସାମାନ୍ୟ ଭୟର କାରଣ
Tharathariruā ଉପସ୍ଥିତ ହେଲେ ଥରେ; ଥରୁଆ; ଭୀରୁ—
(ଥରଥରେଇ—ସ୍ତ୍ରୀ) 1. Given to trembling at slight
थरथरे causes; timid.
थरथरानेवाला ୨ । ଭୟରେ ଅସ୍ଥିର—2. Shaking through fear; trembling.
୩ । ଥରଥର; ଅସ୍ଥିରତା—3. Tottering.
ବି—କମ୍ପକମ୍ପା; ଏକ ପ୍ରକାର ବୁଢ଼ିଆଣୀ—
A kind of slender and long-legged insect ( which is seen trembling ) Pholcus Phalangioidos.

ଥରହର—ଦେ. ବିଶ. (ଥର ଶବ୍ଦ ସଙ୍ଗେ ଧ୍ୱନ୍ୟନୁକାରୀ ହର ଶବ୍ଦ ଯୋଗ)—
Tharahara ଥରଥର (ଦେଖ)—Tharathara (See)
थरहर ତାହା ଦେଖିଣ ଭୟ ହୋଇ ଥରହର
थरथर ମନେ କଲେ ମୋ ପ୍ରାଣ ନେବ ଏ ଅସୁର । କୃଷ୍ଣସିଂ. ମହାଭାରତ, ଶାନ୍ତି ।
[ ଦ୍ର—ଥରଥର ଓ ଥରହର ଏକାର୍ଥବୋଧକ । ମାତ୍ର ଭୟର ଅତିଶଯ୍ୟ ବୁଝାଇଲେ ଥରହର ଶବ୍ଦର ପ୍ରୟୋଗ କରାଯାଏ । ]

ଥରହର(ରି)କମ୍ପିବା—ଦେ. କ୍ରି—ଥରଥର କମ୍ପିବା ( ଦେଖ )
Tharahara(ri)kampiba Tharathara kampiba(See)
थरहरिकाँपा ବଜ୍ରେ ଯେ କାଳେ କର ଘୋର ଧ୍ୱନ
थरहराना ଥରହର ହୋଇ କମ୍ପିଲ ଅବନୀ । ସ୍ୱଧାନାଥ. ଚିଲିକା ।

ଥରା—ଦେ. ବି—ଥରିବା; କମ୍ପ—
Thara Trembling; trepidation.
थरथरानि ବିଶ. ପୁଂ ଓ ସ୍ତ୍ରୀ—ଥରୁଥିବା—
थरथराहट Trembling; shivering.

ଥରା(ରେ)ଇବା—ଦେ. କ୍ରି—୧ । ଥରିବା କ୍ରିୟାର ଣିଜନ୍ତ ରୂପ—
Thara re)iba 1. The causative form of 'Thariba.'
थरान
थराना, थरकाना, ୨ । କମ୍ପାଇବା; କମ୍ପିତ କରାଇବା—
थरथरादेना 2. To shake; to cause to tremble.
ଘଡାଇଲେ ଭୟେ ଥରାଇ ତାଙ୍କ ଗାତ୍ର । କୃଷ୍ଣସିଂ. ମହାଭାରତ. ବନ ।

ଥରା ବାତ—ଦେ. ବି—୧ । ଏକ ପ୍ରକାର ବାତ ରୋଗ; ଯହିଁରେ ରୋଗୀ
Thara bata ବାରମ୍ବାର କମ୍ପେ—1. A fit of severe
थरबात shivering.
थरथरी बाइ [ ଦ୍ର—ଏହି ବାତ ହେଲେ ରୋଗୀର ଦେହ ସର୍ବଦା କମ୍ପୁଥାଏ । ]
୨ । ଭୟଜନିତ ମୁହୁର୍ମୁହୁଃ କମ୍ପନ—
2. Violent trepidation due to fear.

ଥରିତ—ଦେ. ବିଶ—ମୁହୁର୍ମୁହୁଃ କମ୍ପିତ—
Tharita Trembling; quaking.
थरथर ବାଳକା ପ୍ରାୟେ ଭୟ ଦର୍ଶନେ ଥରିତ ।
थरथर ବୈଦେହୀଶବିଳାସ ।

ଥରିବା—ଦେ. କ୍ରି. ( ସ. ଅସ୍ଥିର; ଋଗ୍ବେଦ ଓ ବାଜସନେୟୀ ସଂହିତାରେ
Thariba ଅଥର୍ଯ୍ୟୁ=କମ୍ପୁଥିବା ଓ ଅଥର୍ଯ୍ୟତି=ଥରୁଛି ଅର୍ଥରେ
(ଥରାଇବା—ଅନ୍ୟରୂପ) ବ୍ୟବହୃତ ହେବା ମନେଥର ଉଇଲ୍‌ସନ୍
थरा ଲେଖି ଅଛନ୍ତି )—୧ । (ଭୟରେ) କମ୍ପିବା—
थराना, थरथराना 1. To shiver; to tremble; to quake with fear.
ଏହା ଜାଣିଣ ଦୁର୍ଯୋଧନାଦି ଭୟରେ
ଅତିଶୟ ଥରି ଥରିଲେ ନରଗୃହେ । କୃଷ୍ଣସିଂ. ମହାଭାରତ. ଆଦି ।
୨ । ଉପର୍ଯ୍ୟୁପରି ହଲିବା—2. To shake repeatedly

ଥରୁଆ—ଦେ. ବି—୧ । ଭୟରେ ଥରିବାର ଅଭ୍ୟାସଯୁକ୍ତ; ଅତ୍ୟନ୍ତ
Tharuā ଭୀରୁ—1. Very timid; tremulous.
थरथरे ୨ । କମ୍ପିତ—2. Trembling.
थरथरा

ଥରେ—ଦେ. କ୍ରି. ବିଣ—୧ । ଏକ ସମୟରେ—
Thare 1. Once upon a time.
एकबार ୨ । ଏକବାର—2. Once.
एकबार କହୁଁ କହୁଁ ଥରେ ପ୍ରାଣ କାଥରେ ମରେ ନବନବାବା । ଗୋଲକ ଚନ୍ଦ୍ରରେଖା ।
୩ । ଏକ ଥର ମାତ୍ର—3 Once only.
ନରରେଖି ଭଳାରୁ ଥରେ ଅହା । କବସୂର୍ଯ୍ୟ. ବଣୋଭଚନ୍ଦ୍ର, ଗୀତ ।
୪ । ଏକ ଥର ସୁଦ୍ଧା—4. Even once.

ଥରେକ(କେ)—ପ୍ରତ୍ୟେକ ବାରରେ—
Thareka(ke) Every time; on each occasion.
फिबार हरदफा

ଥରେ ଥରେ—ଦେ. କ୍ରି. ବିଣ—କେବେ କେବେ; କେତେ କେତେ—
Thare thare 1. Some times; at times.

ପାଠକଗଣ ଲେଖେ ଅପର ପୃଷ୍ଠାରେ ଦେଖନ୍ତୁ — ୧ ଅଙ୍କିତ ଓ ୨ ଅଙ୍କିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇନାହିଁ । ଅତଏବ ୧ କିମ୍ବା ୨ ଅଙ୍କିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ, ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ଅନ୍ୟର ବଦଳରେ ୨ ବା ୧ ଅଙ୍କିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ବାଣ' ନ ମିଳିଲେ 'ବାଣ' ଖୋଜିବେ; 'କୁଂଅ' ନ ମିଳିଲେ 'କଂଅ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ, 'ଅଙ୍କ' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ୍' ଦେଖିବେ

କଥନ କଥନ — ମନରେ ଥରେ ଥରେ ପଡ଼େ ସ୍ଵପନ ଅନେକ ଥରେ ।

କଭି କଭି — ଇତ୍ୟାଦି, ପ୍ରେମପଞ୍ଚାମୃତ ।

୨ । ଥରକୁ ଥର; ବାରଂବାର—2. Time after time; repeatedly.

**ଥର୍ମା(ର୍ମୋ)ମି(ମେ)ଟର**—ବୈଦେ. ବି. (ଇଂ. ଥର୍ମୋମେଟର)—Tharmā(rmo)mi(me)tar, ଥର୍ମାମିଟର — ଉଷ୍ଣତାମାନଯନ୍ତ୍ର ତାପକମ୍ପତ୍ତିସୂଚକ ଯନ୍ତ୍ର; ତାପମାନ ଯନ୍ତ୍ର)—Thermometer.

**ଥର୍ମାମିଟର** [ ଦ୍ର—ଗୋଟିଏ କାଚର ଫମ୍ପା ଗୋଲାକାରମୁଣ୍ଡରେ ଗୋଟିଏ ଲମ୍ବ ନଳ ଲାଗିଥାଏ । ଗୋଲାମଧ୍ୟରେ ପାରଦ ଭର୍ତ୍ତି କରାଯାଏ ଓ ନଳର କେତେକ ଅଂଶ ଖାଲିଥାଏ । ଖାଲିଥିବା ନଳର ଅଂଶକୁ ବାୟୁଶୂନ୍ୟ କରାଯାଏ । ଉକ୍ତ ଯନ୍ତ୍ରକୁ ମନୁଷ୍ୟ ଦେହରେ ବା ପାଣିରେ ବା ଅନ୍ୟବସ୍ତୁରେ ଲଗାଇଲେ ଦେହର ବା ପାଣିଆଦିର ଉଷ୍ଣତା ବା ଶୀତଳତା ଅନୁସାରେ ଗୋଲାମଧ୍ୟରେ ଥିବା ପାରଦର ଆକାର ବଢ଼େ ବା କମିଯାଏ । ବଢ଼ିଗଲେ ପାରଦ ନଳରେ ବହୁ ଉଚ୍ଚତା ପର୍ଯ୍ୟନ୍ତ ଉଠିଆସେ ଓ କମିଗଲେ ପାରଦ ନଳରେ କିଛିଦୂର ତଳକୁ ଖସିଆସେ । ଫୁଟନ୍ତା ପାଣିରେ ଉକ୍ତ ଯନ୍ତ୍ରକୁ ରଖିଲେ ନଳରେ ପାରା ଯେଉଁ ସୀମାପର୍ଯ୍ୟନ୍ତ ଉଠେ ତାହାକୁ ୧୦୦ ଡିଗ୍ରୀ ଧରାଯାଇ କାଚନଳର ସେହି ସୀମାରେ ୧୦୦ ଚିହ୍ନ ଦିଆଯାଏ । ବରଫ ପାଣିରେ ରଖିଲେ ପାରା ଯେଉଁ ସୀମା ପର୍ଯ୍ୟନ୍ତ ଖସେ ତାକୁ ୦ (ଶୂନ) ଡିଗ୍ରୀ ବୋଲି ଚିହ୍ନିତ କରାଯାଏ । ଶୂନ-ଠାରୁ ୧୦୦ ଡିଗ୍ରୀ ପର୍ଯ୍ୟନ୍ତ ସ୍ଥାନକୁ ୧୦୦ ସମାନ ଭାଗରେ ଚିହ୍ନିତ କରାଯାଏ; କୌଣସି ଗରମ କିମ୍ବା ଥଣ୍ଡା ପଦାର୍ଥରେ ଏ ଯନ୍ତ୍ରକୁ ଲଗାଇଲେ ପାରା ଯେଉଁ ରେଖାପର୍ଯ୍ୟନ୍ତ ଉଠିବାର ବା ଖସିବାର ଦେଖାଯାଏ ଉକ୍ତ ବସ୍ତୁର ସେତେ ଡିଗ୍ରୀ ଉତ୍ତାପ ବୋଲି ଧରାଯାଏ । ]

**ଥଳ**—ଦେ. ବି. (ସଂ. ସ୍ଥଳ)—୧ । ନଦୀର ଅଳ୍ପଜଳ ଥିବା ସ୍ଥାନ; Thala, ଥଳ — ନଦୀର ଯେଉଁଠାରେ ଲୋକେ ଚାଲିରେ ପଣି ପାର ହୋଇ ପାରନ୍ତି—1. Ford in a river.

**ଥଳ, ଥାହ** ୨ । ଜଳର ତଳ—2 Ground at the bottom of water.

୩ । ସ୍ଥିତି—3. Position.

୪ । ସ୍ଥଳ; ଭୂଭାଗ; ଜଳଶୂନ୍ୟ ଭୂଭାଗ—4. Land.

ଥଳ ଦେଖି ଜଳ ମଝରେ ଦେଖି ପଡ଼ିଲେ ଜନେ । ପ୍ରତାପ ଗଣିରେଣା ।

୫ । ସ୍ଥାନ; ଜାଗା—5. Place.

୬ । ପାଣି ଭିତରେ ଠିଆ ହେବାର ସ୍ଥାନ—6. A footing found in water.

କେଉଁ ଥିବ ଥଳ, କହୁ ଥିବ ବଳ । ଉଦ ।

୭ । କ୍ଷେତ୍ର; ତୀର୍ଥ—7. Holy place.

ଜଗନ୍ନାଥଙ୍କର ଶ୍ରୀକ୍ଷେତ୍ର ଥଳ, ଜଗତେ ଶୁଣି ତଳାତଳ । ଭୂପତି. ପ୍ରେମପଞ୍ଚାମୃତ ।

**ଥୈ** ବିଣ—ମନୁଷ୍ୟ ପାଣିରେ ପଶି ପାର ହୋଇଯିବା ଯୋଗ୍ୟ **ଥାହର; ଥାହ** (ନଦ୍ୟାଦି) ଅଗଭୀର—Fordable (water); not deep.

କନାଥ ସେତୁ ବାନ୍ଧ ଅଚଳ,
ମୁଁ ପୁଣି ବନ୍ଧ ହୋଇବ ଥଳ,
ପାର ହୋଇବେ ସକଳ ବଳ,
କହାଇ ଭଲ ହେ । ବିଶ୍ୱନାଥ. ବିଚିତ୍ରରାମାୟଣ ।

**ଥଳକମଳ**—ଦେ. ବି—ସ୍ଥଳକମଳ (ଦେଖ) Thaḻakamaḻa Sthaḻakamaḻa (See)

ଥଳପଦ୍ମ **ଥଳକମଳ**

(ଥଳପଦ୍ମ—ଅନ୍ୟରୂପ)

**ଥଳକୂଳ**—ଦେ. ବି. (ସଂ. ସ୍ଥଳ ଓ କୂଳ)—୧ । ଗଭୀରତାର ପରିମାଣ Thaḻakūḻa ଓ ନଦ୍ୟାଦିର ଅପର ପାରର ଉପଲବ୍ଧି—

**ଥଇ, ଥାହ** 1. Ascertainment of the depth and the opposite shore of an expanse of water.

ନ ପାଇ ତାର ଥଳକୂଳ, ଏରୂପେ ସେ କାରୁଣ୍ୟ ଜଳ । ଭୂପତି. ପ୍ରେମପଞ୍ଚାମୃତ ।

୨ । ସ୍ଥିରତା; ନିଶ୍ଚିତତା—2. Certainty.

(ଯଥା—ତା କଥାରେ ମୁଁ କିଛି ଥଳକୂଳ ପାଉନାହିଁ ।)

**ଥଳଚର**—ଦେ. ବି. (ସଂ. ସ୍ଥଳଚର)—ସ୍ଥଳଭାଗରେ ଚଳପ୍ରଚଳ Thaḻachara ହେଉଥିବା; ସ୍ଥଳଚର—Moving on land; **ଥଳଚର** living on dry land.

**ଥଲଥଲ**—ଦେ. ବିଣ. (ସଂ ଶିଥିଳ; ଢିଲେ; କାଦୁଅ; ନରମ ଓ Thalathala ମେଞ୍ଚା ମେଞ୍ଚା; ଦଲଦଲିଆ—1 Flabby; flaccid; soft and loose; soft and fleshy.

ଥଳଥଳ ଥକଥକିଆ ଥଲଥଲେ **ଥଲଥଲ**

ଥଲଥଲ, ଥଲଥଲିଆ, ଥଲଥଲିଆ, ଥଲଥଲିକା, ଥଲଥଲକିଆ — ଅନ୍ୟରୂପ

୨ । ଥାଲୁଲା; ସ୍ଥୂଳକାୟ—2. Fat; corpulent.

୩ । ଉତ୍ତମରୂପେ କାଠୁଆ ହୋଇ ନ ଥିବା; ନରମ ଓ ଘନ—3. coagulated but not hardened; soft and thick; condensed.

**ଥଲଥଲେଇବା**—ଦେ. କି—୧ । ଥଲଥଲ ହେବା; ନରମ ମାଂସ Thalathaleibā ମେଞ୍ଚାପରି ହେବା—1. To be flaccid or flabby.

ଥଳଥଳକରା ଥଲଥଲାନ

**ଥଲଥଲାନା, ଥଲକନା** ୨ । ଥାଲୁଲ ଥାଲୁଲ ହେବା; ଖୁବ ମୋଟ (ଥଲଥଲାଇବା—ଅନ୍ୟରୂପ) ବା ସ୍ଥୂଳ ହେବା—2. To be corpulent.

୩ । ଥୁଣ୍ଡା ଓ ଅନ୍ତଲ ପେଟୁଆ ମନୁଷ୍ୟଙ୍କ ପେଟରୁ ପୃଷ୍ଠ ବା ଅଙ୍ଗରୁ ମାଂସ ଓହଳ ପଡ଼ିବା—3. To dangle loosely or laxly as the flabby folds of flesh of a corpulent man.

ଥଳପଥ—ଦେ. ବ—ସ୍ଥଳପଥ (ଦେଖ)
Thalapatha Sthalapatha (See)
स्थलमार्ग

ଥଳପଦ୍ମ (ଦ୍ମ)—ଦେ. ବ—ସ୍ଥଳକମଳ (ଦେଖ)
Thalapadmañ(dma) Sthalakamala (See)

ଥଳା—ଦେ. ବ. (ସଂ. ସ୍ଥାଲୀ)—୧ । ଥାଳ; ତଳ୍‌ଖ—
Thala 1. A plate; small tray; platter.
थाली ୨ । (ଗୋରୁ) ଗଳକମ୍ବଳ—
लोर 2. Dewlap.
ବେକରେ ଥଳା ଝୁଲୁଥାଏ ...
... ।

ଥଳା(ଲେ)ଇବା—ପ୍ରାଦେ. (ବାଲେଶ୍ୱର) କ୍ରି. (ସଂ. ତଳ)—
Thala(le)iba ସମତଳ କରିବା—To level up.

ଥଳାଥଳି—ଦେ. ବ—ସମତଳ କରିବା—
Thalathali Levelling up.

ଥଳି—ଦେ. ବ. (ସଂ. ସ୍ଥଳୀ)—୧ । ସମତଳ ପଡ଼ିଆ ଭୂମି—
Thali 1. A level field.
समतल ୨ । ସ୍ଥାନ—2. A place.
ସ୍ଥଳୀ ନାମେ ପ୍ରାଚୀରରେ ... —
... ପ୍ରାଚୀନ ... ।
୩ । ଥଳୀ ( ଦେଖ )—3. Thalī ( See )

ଥଳିଆ—ଦେ. ବ—ଥଳୀ ( ଦେଖ )
Thalia Thalī ( See )
ପ୍ରାଦେ (ଯାଜପୁର) ବ—ଗୋରୁଙ୍କ ବେକରେ ଥିବା ଗଳକମ୍ବଳ—
A bull's or cow's dewlap.

ଥଳିଆଟୁ—ପ୍ରାଦେ ( ଗଡ଼ଜାତ ) ବ—କୋଠା ଛାତପର ସମତୁଲ ହୋଇ
Thaliatu ଥିବା ଅଟୁ—Flat earthen roof below a thatch.

ଥଳୀ—ଦେ. ବ ( ସଂ. ସ୍ଥଳୀ; ସଂ. ସ୍ଥଳ=ଚର୍ମ )—୧ । ଟଙ୍କା ଆଦି
Thalī ରଖିବାର ମୁଣି; କଣ୍ଟୁଆ—1. A bag; a pouch.
थली, थलिया ୨ । ଥଳ ( ଦେଖ )
थैला, थैली 2. Thali ( See )

ଥଲେଇ ଦେବା—ପ୍ରାଦେ (ବାଲେଶ୍ୱର) କ୍ରି—ସମତୁଲ କରିବା—
Thalei deba To level the earth.
(ଥଲେଇବା—ଅନ୍ୟରୂପ) (ଯଥା—ଏଠାରେ ମାଟି ଥଲେଇ ଦେ ।)

ଥା—ଦେ. ବ (ସଂ. ସ୍ଥା ଧାତୁ)—୧ । ଠା; ସ୍ଥାନ—
Thā 1. Place.
था ୨ । (କଟେଇଅ ସାଙ୍କେତିକ) ଥାନା ( ଦେଖ )
थल 2. Thānā ( See )
ବିଣ—ସ୍ଥିର; ନିଶ୍ଚିତ—Fixed; certain.
थाँई ଅ—( ଅନାଦରାର୍ଥକ )—୧ । ଏଠାରେ ଅବସ୍ଥାନ କର—
1. (you) Stay.
थाक ୨ । ଅପେକ୍ଷାକର—2. Wait.
୩ । ବନ୍ଦକର—3 Stop
ठहरो କ୍ରି—(ମଧ୍ୟମ ପୁରୁଷ ଅନୁଜ୍ଞା ଅନାଦରାର୍ଥ ଭୂ)—୧ । ସ୍ଥିର ହୁଅ;
ଏଠାରେ ରହ—1. (you) Please stay here.
... ମୁହିଁ ... ମୁଁ, ... ବସି
... ଥା ମୁଁ ଯାଉଛି ... —ଶିଶୁରଞ୍ଜନ. ପଦ ।
୨ । ( ଅନ୍ୟ କ୍ରିୟାର ଅସମାପିକାରୂପ ସଙ୍ଗେ ଯୁକ୍ତ ) ଅମୁକ
କ୍ରିୟା କର—2. (you) Please do (such an act).
(ଥାଅ—ଅନ୍ୟରୂପ) ... ମୋହ ଠାରୁ ... ଗୃହ
(ଥାଅ—ଆଦରାର୍ଥକ ରୂପ) ତୋ ... ଦେବ ... ଜାନୁ ଅଙ୍କ ।
(ଥାଆନ୍ତୁ, ଥାଉନ୍ତୁ—ମାନ୍ୟାର୍ଥକରୂପ) କୃଷ୍ଣସିଂହ. ମହାଭାରତ. ସଭା ।
[ ଦ୍ର—ସଂ. ସ୍ଥା ଧାତୁରୁ ଓଡ଼ିଆ 'ଥା' ରୂପ ହୋଇ ଥିବା, ଥିଲା, ଥାଇ, ଥାଏ, ଥା, ଥାଅ, ଥାଅ, ଥାନ୍ତି, ଥାଆନ୍ତି, ଥିଲେ, ଥାଉ, ଥାନ୍ତୁ, ଥାଆନ୍ତୁ, ଥାଉନ୍ତୁ, ଥାଅନ୍ତେ ଇତ୍ୟାଦି ରୂପ ହୁଏ । ଗଞ୍ଜାମରେ 'ଥାଉଛି' ଶବ୍ଦ 'ଅଛି' ଅର୍ଥରେ ବ୍ୟବହୃତ ହୁଏ । ]

ଥାଅ—ଦେ. କ୍ରି (ଥିବା କ୍ରିୟାର ମଧ୍ୟମ ପୁରୁଷ ଏକବଚନ ଆଦରାର୍ଥକ
Thā-a (ତୁମ୍ଭେ) ଓ ବହୁବଚନ (ତୁମ୍ଭେମାନେ) ସଙ୍ଗେ ବ୍ୟବହୃତ)
ଥା ( ଦେଖ )—Thā ( See )

ଥାଆ—ଦେ. କ୍ରି—ଥା ( ଦେଖ )
Thaā Thā ( See )

ଥାଇ—ଦେ. କ୍ରି ( ଥିବା କ୍ରିୟାର ଅସମାପିକା ରୂପ)—ସ୍ଥିତ ହୋଇ;
Thāi ରହି—Staying
थेके (ଯଥା— ସେଠି ତୁ ଥାଇ କିଛି କରିପାରିବୁ ନାହିଁ ।)
रहके

ଥାଇରି—ଦେ. ବିଣ (ସଂ. ସ୍ଥିର)—ଅବସ୍ଥିତ; ଦୃଢ଼; ନିଶ୍ଚିନ୍ତ; ନିଶ୍ଚଳ—
Thāiri Stayble; certain; quiet; settled; fixed.
स्थिर, थाई

ଥାଈ—ବିଣ (ସଂ. ସ୍ଥାୟୀ)—୧ । ଚିରସ୍ଥାୟୀ—
Thāī 1. Permanent.
(ଥାଇତ୍, ଥାଇତ—ଅନ୍ୟରୂପ) ୨ । ଚିର—2. Lasting.
ठौर ୩ । ଅଚଳ; ସ୍ଥିର; ସୁଦୃଢ଼—
थाई 3. Permanently settled.
୪ । ସଂସାରରେ ସଚ୍ଛଳ ଅବସ୍ଥାରେ ଅବସ୍ଥିତ—
4. Comfortably settled in the world.
୫ । ବିପଦରୁ ରକ୍ଷାପ୍ରାପ୍ତ—5. Saved from danger.
ବି—(ସଂ. ସ୍ଥିରତା)—ସ୍ଥିରତା—Certainty.

ଥାଉ—ଦେ. ଅ—୧ । (କୌଣସି କାର୍ଯ୍ୟ) ଏହିଠାରେ ବନ୍ଦ ହେଉ—
Thāu 1. Let us stop.
थाक ୨ । ବନ୍ଦକର; ସ୍ଥଗିତ କର—2. Stop.
रहनेदो ୩ । ଅପେକ୍ଷା କର—3. Wait.
କ୍ରି. (ଅସମାପିକା)—ଥାଇ (ଦେଖ)—Thāi (See)

| ସାଧାରଣ ଦେଶଜ ଶବ୍ଦ ସୂଚୀରେ ଉଚ୍ଚ ୧ ଚିହ୍ନ ଥିବା ଅକ୍ଷର ଓ ମାତ୍ରା ଏବଂ ୨ ଚିହ୍ନିତ ଅକ୍ଷର ଓ ମାତ୍ରା ମଧ୍ୟରେ ପ୍ରଭେଦ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଚିହ୍ନିତ କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିଲେ ଯେବେ ଏ ଅଭିଧାନରେ ନ ମିଳିବ ତେବେ ସେହି ଶବ୍ଦ ପାଇଁ ଯଥାକ୍ରମେ ତାହାର ବଦଳରେ ୨ ବା ୧ ଚିହ୍ନିତ ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'ଆଉ' ନ ମିଳିଲେ 'ଆଇ' ଦେଖିବେ; 'ଭୂଇଁ' ନ ମିଳିଲେ 'ଭୂଇଁ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧୁ' ଦେଖିବେ; 'ଅଙ୍ଗିଆ' ନ ପାଇଲେ 'ଅଙ୍ଗା' ଦେଖିବେ, 'ଅଲବତ' ନ ପାଇଲେ 'ଅଲ୍ଲବତ୍ର' ଦେଖିବେ |
| --- |

ବଢ଼ ବା ଛୋଟ ...
ମିଳେ ନାହିଁ ... । ଫ.ମୋ. ଜୀବନଚରିତ ।

**ଥାଉଁ (ଉ)ଥାଉଁ (ଉ)**—ଦେ. ଅ—ଥିବାସ୍ଥଳେ; ଥିବାସତ୍ତ୍ୱେ ଥିଲେମଧ୍ୟ—
Thāuñ(u)thāuñ(u). Inspite of; inspite of the presence of.
ଥାକତେ ଥାକତେ
रहते रहते

ମ ରହିଲ ଅଣି ଥାଉଁ ଥାଉଁ ଯେ ... ଏହୁରି, ସର୍ଗ ୨ ।

**ଥାଏ**— ଗ୍ରା. ଭଣ—ଥାଇ ୪ ( ଦେଖ )
Thāe Thāi 4 ( See )

ମୁଁ ଏବା ଲିଏ ନାହିଁ.
ଦେଖନ୍ତି ଥାଉଁ ଥାଏ ଏଥର । ଫକୀରମୋହନ, ଛଲ୍ଲକ୍ଷ୍ମୀ ।

**ଥାଏତ୍**—ଦେ. ବି. (ସ. ସ୍ଥିତି —ସ୍ଥାୟିତ୍ୱ—
Thāet Permanence.
ঠৌর

ଭଣ—ଥାଇ ( ଦେଖ )
থাইত Thāi ( See )

ପ୍ରାଦେ. (ସମ୍ବଲପୁର) କ୍ରି. (ତୁମ୍ଭେ)—ଥାଆନ୍ତ—
(you) Might have stayed; might have.

**ଥାଏତି**—ପ୍ରାଦେ. (ସମ୍ବଲପୁର) କ୍ରି. (ମୁଁ, ସେ, ସେମାନେ)—ଥାଆନ୍ତ—
Thāeti (I, he, they) Might have been.

**ଥାକ**—ଦେ. ବି. ସ. ସ୍ତବକ; ସ୍ତମ୍ଭକ; ଭୁଲ ଇଂ. ଷ୍ଟାକ୍=ଗଦି;
Thāka ଗଦା; ଷ୍ଟକ୍=ଭଣ୍ଡାର)—୧ । ସ୍ତର; ପରସ୍ତ; ସ୍ତର—
থাক 1 Layer; fold; stratum.
थाक

୨ । ଧାରାବାହିକ; ଶ୍ରେଣୀ—2. Series.
୩ । ଧାଡ଼ି; ପଂକ୍ତି; ଶ୍ରେଣୀ—3. Line; row.
୪ । ଛୋଟ ଗଦା —4. Small heap; stack.

ताक ବୈଦେ. ବି. ( ଅ. ତାକ )—
ताक ୧ । କାନ୍ଥକୁଡ଼; କାନ୍ଥ ଦେହରେ ଦ୍ରବ୍ୟାଦି ରଖିବାର ଠଣା—
1. A niche in the wall; a recess in a wall.
୨ । ଅଲମାରିର ଗୋଟିଏ ଖାକ—
2. A shelf of an almirah.

ଭଣ—ଛୋଟ—Small.

**ଥାକ କରିବା**—ଦେ. କ୍ରି—୧ । ସ୍ତରେ ସ୍ତରେ ସଜ୍ଜିତ କରିବା—
Thāka kariba 1. To arrange in layers.
(ଥାକ ମାରିବା—ଅନ୍ୟରୂପ)
থাক করা, থাক দেওয়া
थाक लगाना

୨ । ଛୋଟ ଛୋଟ ଗଦାରେ ସଜ୍ଜିତ କରିବା—2. To arrange in small heaps or stacks.
୩ । ଶ୍ରେଣୀ ବିଭାଗ କରିବା—
3. To sort; to classify.
୪ । ଲୁଗା ଆଦିକୁ ସ୍ତର ସ୍ତର କରି ଭାଙ୍ଗିବା—
4. To fold.

**ଥାକ ଥାକ**—ଦେ. କ୍ରି. ଭଣ—୧ । ସ୍ତରେ ସ୍ତରେ; ସ୍ତର ସ୍ତର କରି—
Thāka thāka 1. In layers; in folds; one over the other.
(ଥାକେ ଥାକେ—ଅନ୍ୟରୂପ)
থাকে থাকে
थाक थाक

୩ । ଛୋଟ ଛୋଟ ଗଦାରେ—
3. In small heaps.

ଛୁରି ଘଲା ମୋତି କରି ଥାକ ଥାକ । ଉପେନ୍ଦ୍ର, ଗୀତଲହରୀ ।

**ଥାକ ବନ୍ଧି**—ଦେ. ବି—ସୁସଜ୍ଜିତ ବା ଶ୍ରେଣୀବଦ୍ଧ କରାଯିବା—
Thāka bandi Classification; arrangement in layers.
थाक बन्दि
थाकबंदी

ସ. ବି—୧ । ଶ୍ରେଣୀବଦ୍ଧ—1. Classified.
୨ । ସୁସଜ୍ଜିତ—2. Well arranged.

**ଥାକବସ୍ତ୍ର ସ୍ତି**—ବୈଦେ.ବି. (ହି.ଥୋକବସ୍ତ; ଥାକ=ଗାଆଁର ସରହଦ)-
Thākabasta(sti) ୧ । ଜମିର ସୀମା ନିର୍ଦ୍ଧାରଣସୂଚକ ମାପ ବା
থাকবস্ত ଜରିପ୍—1. Cadastral survey.
थाकबस्त

୨ । ଭିନ୍ନ ଭିନ୍ନ କ୍ଷେତ୍ରର ସୀମା ନିର୍ଦ୍ଧାରଣ—
2. Ascertainment or filing up of the boundaries of different plots.
୩ । ଭିନ୍ନ ଭିନ୍ନ କ୍ଷେତ୍ରର ଶ୍ରେଣୀ ନିରୂପଣ—
3. Classification of different classes of lands.
୪ । ଜମିର ସୀମା ଆଦି ନିରୂପକ କାଗଜପତ୍ର—
4. Zamindari papers relating to cadastral survey.

**ଥାକିତି ବଳଦ**—ପ୍ରାଦେ. (ଗଞ୍ଜାମ) ବି—ବାଆଁ ପାଖରେ ଯୋଚ୍ଚା ଯିବା
Thākiti balada ବଳଦ—The ox yoked in the left side of the plough.

**ଥାକିବା**—ଦେ. କ୍ରି—୧ । ରହିବା—
Thākiba 1. To stay.
থাকা

୨ । ଥାକ ମାରିବା—2. To arrange in layers.
थकना

୩ । ଏକାବେଳକେ ଥକି ଯିବା—
3. To lose the strength altogether.

**ଥାକୁଲ୍(ଲୁ)ଥାକୁଲ୍(ଲୁ)**—ଦେ. ଭଣ (ସ. ସ୍ଥୂଳ)—୧ । ଥଲ୍‌ଥଲିଆ;
Thākul (lu)thākul(lu) ସ୍ଥୂଳକାୟ ଓ ଦେହରୁ ମାଂସପୁଞ୍ଜ
ଥାକୁଲ ଥୁକୁଲ
ଥାକୁଲୁ ଥାକୁଲୁ } ଅନ୍ୟରୂପ
ଥାକୁଲୁ ଥୁକୁଲୁ
ଓହଳ ପଡ଼ୁଥିବା—1. Corpulent; stout.
থাকুড় থুকুড়
থলথল

ଗଛ ବର୍ଷର ଅଧାଇଲଥ ଥାକୁଲ ଥାକୁଲ—
ଫକୀରମୋହନ, ଭ୍ରମଣ ଆଠଗଡ଼ ।

୨ । ଥଲ ଥଲ; କୋମଳ ଓ ବାକୁଆ—
2. Flabby; soft and thick.
୩ । ଲେସହୁ ପଡ଼ୁଥିବା—3. Soft and waxy.

**ଥାକୁଲା**—ଦେ. ଭଣ. ପୁଂ (ସ. ସ୍ଥୂଳକାୟ)—ସ୍ଥୂଳକାୟ; କୋଧା—
Thākulā Corpulent; fat; very stout.
(ଥାକୁଲୀ—ସ୍ତ୍ରୀ)
ଭୁଡ଼ିୟା, थलथल

ବଡ଼ ହୋଇଥିଲୁ ଥାକୁଲା କାଳୁ ଭୁଞ୍ଜାକୁହ ଖାଇବାକୁ—ତଗ ।

| | | | | | | | | | | | | | | |
|---|---|---|---|---|---|---|---|---|---|---|---|---|---|---|
| ୧ | ଋ | ଷ | ଣୁଷ | ଝ | ଏ | ଡ଼ସନ୍ତ ବର୍ଣ୍ଣ | ଅନୁନାସିକ ସ୍ୱରାକ୍ଷର | ସ | ଚ | ଶ,ଷ | ଜ୍ଞ | ଳ | ଡ଼ | ଘ |
| ୨ | ଋ | ଭ | ଋ | ଲୃ | ଐ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | କ୍ଷ | ଯ | ଷ | ଙ୍ଗ | ଲ୍ଥ | ଞ | ନ୍ |

ଥାଟ—ଦେ. ବି. (ସ. ସ୍ଥିତ; ସ. ସ୍ଥାତୃ; ସ୍ଥାତା=ସ୍ଥି ଛିଶୀଳ; ଦଣ୍ଡାୟ-
Thāṭa ମାନ)—୧ । ସୈନ୍ୟଦଳ—1. Army
ठाट ସା.ଙ୍କ ଲକ୍ଷ୍ମଣ-ଟରେ ପ୍ରବେଶଲେ, ଭଲଲେଙ୍କ ଥାଟ :
ठाट, थाट ପ୍ରବୀଣ.ଠ. ପାଦଶା ।
୨ । ପ୍ରତିମାର ମେଢ଼; ଢାଞ୍ଚା—2. A frame work for an image's frame.
୩ । ଅସ୍ଥି; କଙ୍କାଳ—3 Skeleton.
୪ । ଘରର ବାଉଁଶକାଠିର ଅବରଣ—4 The frame work for a thatched roof.
୫ । ବାହ୍ୟ ଅଡ଼ମ୍ବର; ଢଙ୍ଗ—
5. Out-ward frame; out-ward show.
୭ । ସମୂହ—7. Collection.
ଅଗ୍ରୁ ଧୂମ ଘନ ମଣି ଦେଖା ଥାଟ । କୃଷ୍ଣସିଂହ. ମହାଭାରତ. ବନ ।

ଥାଟପଟାଳି—ଦେ. ବି.—ବହୁ ଲୋକଙ୍କ ମିଳନ—
Thāṭapaṭāli A big crowd; a throng; multitude.
ठठ, ठट्ठ, ठट
(ଥାଟ ପଟୁଆର(ରି)—ଅନ୍ୟରୂପ)
ଥାଟପଟାଳି ଭାଙ୍ଗି ପଡ଼ିବା—ଦେ. କ୍ରି.—(କୌଣସି ଘଟନା ସ୍ଥଳରେ)
Thāṭapaṭāli bhāṅgi paṛibā ଅନେକ ଲୋକ ହଠାତ୍
ठट लगाना ମିଳିତ ହୋଇଯିବା—Many people to crowd at a place.
ଥାଟ ବଜାୟ ରଖିବା—ଦେ. କ୍ରି.—ଭିତରର ସାର ଲୋପ ହେଲେ ମଧ୍ୟ
Thāṭa bajāya rakhibā ବାହାରର ଢଙ୍ଗକୁ ବଜାୟ ରଖିବା—
ठाट बजाय रखा To keep the outward show.
ठट ठटना
ଥାଟର(ରା)ଜା—ଦେ. ବି.—କୌଣସି କୌଣସି ରାଜା ତାଙ୍କର କନିଷ୍ଠ
Thāṭara(rā)jā ଭାଇଙ୍କୁ ଦେବା ଉପାଧି—A title given by some Rajas to their younger brothers.
ଥାଣୁ—ଦେ. ବି. (ସ. ସ୍ଥାଣୁ)—୧ । ମହାଦେବ; ଶିବ—
Thāṇu 1. Siba.
थान ୨ । ଥୁଣ୍ଟା ଗଛ; ଲଣ୍ଡି ଗଛ—
2. A pollard; a stump of a tree
ଥାତି—ଦେ. ବି. (ସ. ସ୍ଥିତି)—୧ । ଜମା; ପୁଞ୍ଜି; ସଞ୍ଚିତ ଧନ; ଗଚ୍ଛିତ
Thāti ଧନ—1. Hoarded wealth.
फूजी थाती ସେ ଭ ବସ୍ତୁର ଥାତି ଭଣ୍ଡାର । ଅଭିମନ୍ୟୁ. ବିଦଗ୍ଧ ଚିନ୍ତାମଣି ।
୨ । ନ୍ୟସ୍ତ ଧନ—2. Deposited wealth; money kept in trust with another.
୩ । ଧନ ସମ୍ପଦ; ବିଭବ—3, Wealth; riches.
ଥାତା(ଥା)ମାମା—ଦେ. ବି:—୧ । କୌଣସି କାର୍ଯ୍ୟ କରିବାକୁ ଇତ-
Thātā(thā)māmā ସ୍ତତଃ ହେବା; କ୍ରିୟା କରିବା—
थतमत, थामता थामता Wavering.

आगापिछा ୨ । କୌଣସି କାର୍ଯ୍ୟ କରିବାକୁ ପଶ୍ଚାତ୍ପଦ ହେବା—
2. Shrinking from doing a work
୩ । କୌଣସି କଥା କହିବାକୁ କୁଣ୍ଠିତ ହେବା—
3. Prevarication.
୪ । ସନ୍ଦିହାନ ହେବା—4. Hesitancy.
୫ । ସନ୍ଦେହ—5. Doubt.
ବି.—୧ । ସନ୍ଦିହାନ—1. Wavering,
୨ । କୁଣ୍ଠିତ—2. Prevaricating.
୩ । କୌଣସି କାର୍ଯ୍ୟ କରିବାକୁ ଇତସ୍ତତଃ କରୁଥିବା—
3. Hesitating,
୪ । ପଶ୍ଚାତ୍ପଦ—4. Shrinking.
ଥାନ୍—ପ୍ରାଦେ. (ସମ୍ବଲପୁର) ବି.—୧ । ସ୍ଥାନ—
Thān 1. Place; space.
୨ । ଆଧାର—2. Receptacle.
ଥାନ—ଦେ. ବି. (ସ. ସ୍ଥାନ; ପ୍ରା. ଥାନ)—୧ । ଜାଗା; ସ୍ଥଳ—
Thāna 1. Place; station.
थान ଥରେ ଥିରମତି, ଥାନ ବାଟ ନ ଲଗେ ତୋ ବୃନ୍ଦାବନ ।
थान, थानक କବିସୂର୍ଯ୍ୟ, କଳାକଲ୍ଲୋଳ ।
୨ । ପାତ୍ର; ଆଧାର—2. Receptacle.
୩ । ରହିବାର ସ୍ଥାନ—3. Room; space; position.
୪ । ଖଣ୍ଡେ ଜମି—4. Plot of land.
୫ । ଲମ୍ବ ଲୁଗା—5. A long piece of cloth.
୬ । ଧଡ଼ି ନ ଥିବା ନିର୍ଦ୍ଦିଷ୍ଟ ଦୈର୍ଘ୍ୟଯୁକ୍ତ ଲମ୍ବ ଲୁଗା—
6. A long piece of cloth without border; a whole length of cloth.
୭ । ଏକ ଖଣ୍ଡ—7. A piece.
(ଯଥା—ଅଲଙ୍କାର ୩ ଥାନ ମଧ୍ୟରେ ନାକରେ ନାକଫୁଲ ।
[ଦ୍ର—ଅଲଙ୍କାର, ବାସନ, ଲୁଗା, ଗହନା ମୋହର ଅବର ଖଣ୍ଡ ନ କହି ଥାନ ବୋଲାଯାଏ ।]
୮ । ଧାତୁର ବଡ଼ ପତର—8. A sheet of metal.
୯ । ଘୋଡ଼ା, ଗାଈ ଆଦି ପଶୁ ବନ୍ଧା ହୋଇ ରହିବା ସ୍ଥାନ—
9. Stall for a horse or cattle.
ଥାନକୁଡ଼ି(ଣି)—ଦେ. ବି. (ସ. ମଣ୍ଡୂକପର୍ଣ୍ଣୀ)—ମଣ୍ଡୂକପର୍ଣ୍ଣୀ (ଦେଖ)
Thānakuṛi(ṇi) Maṇḍūkaparṇṇī (See)
ଥାନଛଡ଼ା—ଦେ. ବି.—ସ୍ଥାନଭ୍ରଷ୍ଟ (ଦେଖ)
Thānachhaṛā Thāna bhrasṭa (See)
ଥାନ(ନା)ପତି—ଦେ. ବି. (ସ. ଥାନପତି)—୧ । ମଠର ଅଧୀନ ଗ୍ରାମର
Thāna(nā)pati ଶାସକ କର୍ମଚାରୀବିଶେଷ—
थानादार 1, A village-official under an endowment.
थानापति, थानैत
୨ । ହାଟୁଆ ସମ୍ପ୍ରଦାୟର ମୁଖିଆ ବ୍ୟକ୍ତି—
2, A headman amongst the 'Hāṭuā' castes.

ଏ ଅଭିଧାନରେ ଶବ୍ଦ ସ୍ଥାନରେ ପ୍ରଥମ ୧ ଅକ୍ଷର ଅଥବା ୧ମ ଓ ୨ୟ ଅକ୍ଷର ଓ ମାତ୍ରା ମଧ୍ୟରେ କ୍ରମ ରକ୍ଷା କରାଯାଇ ନାହିଁ । ଅତଏବ ୧ ବା ୨ ଅକ୍ଷର କୌଣସି ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ସ୍ଥଳେ ନିଜେ ବର୍ଣ୍ଣାନୁକ୍ରମରେ ନ ଦେଖି, ତେବେ ସେହି ଶବ୍ଦ ପାଇଁ ପରବର୍ତ୍ତୀ ଅକ୍ଷର ଦେଖିବା ୨ୟ ବା ୧ମ ଅକ୍ଷର ବର୍ଣ୍ଣ ବା ମାତ୍ରାଯୁକ୍ତ ଶବ୍ଦ ଖୋଜିବାକୁ ହେବ । ଯଥା— 'କାଣ୍ଡ' ନ ମିଳିଲେ 'କଣ୍ଡ' ଖୋଜିବେ; 'କୁଣ୍ଠ' ନ ମିଳିଲେ 'କଣ୍ଠ' ଦେଖିବେ; 'ବନ୍ଧୁ' ନ ପାଇଲେ 'ବନ୍ଧ' ଦେଖିବେ; 'ଅଙ୍କ୍ୟା' ନ ପାଇଲେ 'ଅଙ୍କ' ଦେଖିବେ; 'ଅଲବତ' ନ ପାଇଲେ 'ଅଲ୍‌ବତ' ଦେଖିବେ

୩ । ଗ୍ରାମର ମୁଖିଆ ବ୍ୟକ୍ତି, ସ୍ଥାନାଧ୍ୟକ୍ଷ—
3. Headman of a village.

୪ । ଗ୍ରାମର ଅଧିଷ୍ଠାତ୍ରୀ ଦେବତା; ଗ୍ରାମଦେବତା—
4. Presiding Deity of a village.

**ଥାନଫଡ଼ା**—ଦେ. ବି.—ଥାନରୁ ଫଡ଼ା ହୋଇଥିବା ବସ୍ତ୍ରଖଣ୍ଡ—
Thāna pharḍā A bit of cloth cut from a larger
ଥାନକାଟା piece; a cut length of cloth.
ଟୁକ୍ରା, ଫାଗାଜି

**ଥାନଭ୍ରଷ୍ଟ**—ଦେ. ବିଣ.—(ସଂ. ସ୍ଥାନଭ୍ରଷ୍ଟ)—ସ୍ଥାନଭ୍ରଷ୍ଟ (ଦେଖ)
Thānabhrashṭa Sthānabhrashṭa (See
ଥାନଛାଡ଼ା

**ଥାନ ମୁନ୍ଦୁରା**—ଦେ. ବି. (ସଂ. ସ୍ଥାନ+ମୁଦ୍ରା)—କପାଳର ଦୁଇପାଖ;
Thāna mundurā ଯେଉଁ ସ୍ଥାନ ମୁଣ୍ଡ କଥାଇଲେ ଭଉଁ ବା
କାନମୁଥା ଉଠେ)—The temples of the head.
କୁମ୍‌ପୁଟୀ

କହିଲେ ମୁଣ୍ଡ କଥାଇଲେ ଥାଉ କହିଲେ ଥାନମୁନ୍ଦୁରା ଉଡେ ।
ପଶୁମିତ, ଆ୯—୨ ପୃଷ୍ଠା ।

ଥାନମୁଣ୍ଡା } —ଅନ୍ୟରୂପ
ଥାନମୁନ୍ଦା }

**ଥାନା**—ଦେ. ବି. (ସଂ. ସ୍ଥାନ)—୧ । ପ୍ରହରୀ ବା ଚୌକିଦାରମାନଙ୍କ
Thānā ଅଡ୍ଡା—1. Out post
ଥାନା ୨ । ସୈନ୍ୟମାନଙ୍କର ଛାଉଣୀ—
ଥାନା 2 A military post.

୩ । ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ଶାନ୍ତିରକ୍ଷାର ଭାରପ୍ରାପ୍ତ ପୁଲିସ କର୍ମଚାରୀଙ୍କର ଅଫିସ; ପୁଲିସ୍ ଷ୍ଟେସନ୍—
Police station.

[ ଦ୍ର—ଗୋଟିଏ ଥାନା ଅଧୀନରେ କେତେଗୁଡ଼ିଏ ଫାଣ୍ଡି ଥାଏ । ]

**ଥାନା(ନେ)ଦାର୍**—ଦେ. ବି. ଓ ଥାନା+ଫା. ପ୍ରତ୍ୟୟ ଦାର୍)—ଥାନାର
Thānā(ne)dār ପ୍ରଧାନ କର୍ମଚାରୀ—Station officer;
ଥାନାଦାର officer incharge of a police station
ଥାନାଦାର ଥାନେଦାର

**ଥାନାଦାରି**—ଦେ. ବି.—ଥାନାଦାରର କର୍ମ ବା ପଦ—
Thānadāri The post of a station officer.
ଥାନାଦାରୀ, ଥାନାଦାରୀ

**ଥାନି**—ଦେ. ବିଣ (ସଂ. ସ୍ଥାନୀୟ)—୧ । ସ୍ଥାନୀୟ—
Thāni 1. Local; belonging to the locality
(ପାହି—ବିପରୀତ) ୨ । ଚିରସ୍ଥାୟୀ—2. Permanent.
ଦୌଦକଶା ୩ । ବାସିନ୍ଦା—3. Resident.

ଥାନି ବି—୧ । ଗ୍ରାମବାସୀ ରଇତ—1. A cultivator of a village.

[ ଦ୍ର—ଓଡ଼ିଶାର ଗତ ୧୮୪୨ ସାଲର ବନ୍ଦୋବସ୍ତରେ ପ୍ରଜାମାନଙ୍କୁ ଦୁଇ ଭାଗରେ ବିଭକ୍ତ କରାଯାଇଥିଲା । ପ୍ରଥମ—ଥାନି ଅର୍ଥାତ୍ ଯେଉଁ ପ୍ରଜାମାନେ କୌଣସି ମଉଜାର ବାସିନ୍ଦା ଥାଇ ସେ ଗ୍ରାମର ଜମି ଚାଷ କରନ୍ତି । ଦ୍ୱିତୀୟ—ପାହି ଅର୍ଥାତ୍ ଯେଉଁ ରଇତଙ୍କର କୌଣସି ମଉଜାରେ ଚାଷଜମି ଅଛି କିନ୍ତୁ ଘର ନାହିଁ । ପରବର୍ତ୍ତୀ ବନ୍ଦୋବସ୍ତରେ ଏ ପ୍ରଭେଦ ଉଠି ଯାଇଅଛି । କେବଳ ନାମ ମାତ୍ର ରହିଅଛି । ]

୨ । ବାସିନ୍ଦା ରଇତର ଘରବାଡ଼ିରେ ଜାତ ହେବା ଦଖଲ ସ୍ୱତ୍ୱ—Occupancy right of a resident royat in his homestead holding.

**ଥାନିଜମା**—ଦେ. ବି—ଥାନି ରଇତଙ୍କ ଉପରେ ନିର୍ଦ୍ଧାରିତ କର—
Thānijamā Assessment on resident royats.

**ଥାନି ଜମି**—ଦେ. ବି—ଥାନି ରଇତମାନଙ୍କ ଅଧିକୃତ ଭୂମି—
Thāni jami Land held by resident royats of a village.

**ଥାନିପଟ୍ଟା**—ଦେ. ବି—କାଳପଟ୍ଟା; ଥାନି ରଇତଙ୍କୁ ମିଳିଥିବା ସ୍ଥାୟୀ
Thānipaṭṭā ପଟ୍ଟା—Permanent lease granted to a
(ଥାନିପଟା—ଅନ୍ୟରୂପ) resident royat

**ଥାନିପ୍ରଜା**—ଦେ. ବି— ଗ୍ରାମବାସୀ ପ୍ରଜା ବା ଚାଷୀ—
Thāniprajā A resident cultivator.
(ଥାନି ରଇତ, ଥାନି ରଏତ—ଅନ୍ୟରୂପ)
ଥାନୀ ରୟତ

**ଥାନେ ଥାନେ**—ଦେ. କ୍ରି. ବିଣ—ସ୍ଥାନେ ସ୍ଥାନେ ( ଦେଖ )
Thāne thāne Sthāne sthāne (See
ଜାୟଗାୟ ଜାୟଗାୟ

ଥାନେ ଥାନେ ଭୂମିର ସେ ସ୍ଥିର ଅଂଶମାନ—
ପ୍ରାଚୀ. ଗୁରୁଭକ୍ତିଗୀତା ।

ଜଗହ ଜଗହ

**ଥାନେଶ୍ୱର**—ଦେ. ବି (ନାମ,— ଦିଲ୍ଲୀ ନିକଟସ୍ଥ ପ୍ରଧାନ ଯୁଦ୍ଧ କ୍ଷେତ୍ର—
Thāneśwara Name of a famous battle
ଥାନେଶ୍ୱର field near Delhi.
ଥାନେଶ୍ୱର [ ଦ୍ର—ଏଠାରେ ୧୧୯୧ ରେ ପୃଥ୍ୱୀରାଜ ଭାରତ ଆକ୍ରମଣକାରୀ ମୁସଲମାନ ମହମ୍ମଦ ଘୋରୀଙ୍କୁ ପରାସ୍ତ କରିଥିଲେ । କିନ୍ତୁ ତାର ପର ବର୍ଷ ମହମ୍ମଦ ଘୋରୀ ଏଠାରେ ପୃଥ୍ୱୀରାଜଙ୍କୁ ପରାସ୍ତ ଓ ବନ୍ଦୀ କରି ହତ୍ୟା କଲେ ଓ ଦିଲ୍ଲୀ, କନଉଜ ଓ ବନାରସ ଅଧିକାର କଲେ; ଏ ଯୁଦ୍ଧକ୍ଷେତ୍ରର ଅନ୍ୟ ନାମ ତିରୋରୀ । ]

**ଥାପ୍ରି**—ପ୍ରାଦେ ( ସମ୍ବଲପୁର ) ବି (ତୁଳ. ହି. ଶବ୍ଦସାଗର=ଥପ୍ପଡ଼ା;
Thāpri ଥପଡ଼ୀ=ତାଳି)—୧ । କରତାଳି—1. Clap of the palms.
୨ । ଚାପୁଡ଼ା; ଚପେଟାଘାତ—2. Slap.

**ଥାପ**—ଦେ. ବି (ସଂ. ସ୍ଥାପନ)—ମୃଦଙ୍ଗ ତବଲା ଆଦିରେ ହାତର ପଞ୍ଝାର
Thāpa ପୂର୍ଣ୍ଣ ଆଘାତ—Stroke of the whole palm on
ଥାପଡ଼ ଥାପ drum.

**ଥାପଡ଼(ଡ଼ା)**—ଦେ. ବି (ଧ୍ୱନ୍ୟାନୁକରଣ)—ଚାପୁଡ଼ା; ଚାରୁଡ଼ା—
Thāparḍa(rḍā) A slap; a smack.
(ଥାପଡ଼(ଡ଼ା)—ଅନ୍ୟରୂପ)
ଥାପଡ଼ ଥପଡ଼

| ଽ | ଌ | ଊ | ନ୍ତ୍ରି | ଝ | ଏ | ହସନ୍ତ ବର୍ଣ୍ଣ | ଅନୁନାସିକ ଯୁକ୍ତାକ୍ଷର | ଷ | ଜ୍ଞ | ଶ,ଷ | କ୍ଷ | ଇପ୍ସ | ଢ଼ଅ | ଘ |
|---|---|---|---|---|---|---|---|---|---|---|---|---|---|---|
| ୬ | ଧ | ଉ | ରୁ | ଲୁ | ତ୍ରୈ | ଅକାରାନ୍ତବର୍ଣ୍ଣ | ଅନୁସ୍ୱାର ବା ଚନ୍ଦ୍ରବିନ୍ଦୁଯୁକ୍ତ ବର୍ଣ୍ଣ | ଖ୍ୟ | ଯ | ସ | ଙ୍ଘ୍ୟ | ଇଥ | ଞ | କୃ |

ଥାପଡ଼ା(ଡ଼େ)ଇବା—ଦେ. କ୍ରି—ଥାପୁଡ଼ାଇବା ( ଦେଖ )
Thāpaṛdā ṛde)ibā Thāpuṛdāibā ( See )

ଥାପନ(ନା)—ଦେ. ବି (ସଂ. ସ୍ଥାପନ)—୧ । ପ୍ରତିଷ୍ଠାନ; ସ୍ଥାପନ କରିବା; ବସାଇବା—1. Act of establishing or setting up.
Thāpana nā
थापन
थापन. थपन

ମନ୍ତ୍ର ...

୨ । ରଖିବା—2 Placing; putting.

ବିଣ—୧ । ସ୍ଥାପିତ ହୋଇଥିବା—1. Set up
थपा हुआ ୨ । ପ୍ରତିଷ୍ଠିତ—2 Placed.

ଥାପନା ଲିଙ୍ଗ—ଦେ. ବି—ଯେଉଁ ଶିବଲିଙ୍ଗକୁ କେହି ବ୍ୟକ୍ତି କୌଣସି ସ୍ଥାନରେ ପ୍ରତିଷ୍ଠା କରିଥାଏ—A 'Linga' image of Śiba set up by somebody at a place.
Thāpanā linga
ସ୍ୱୟମ୍ଭୂଲିଙ୍ଗ / ଅନାଦିଲିଙ୍ଗ } ଅନ୍ୟଲିଙ୍ଗ
थापना लिंग

ଥାପର—ପ୍ରାଦେ (ସମ୍ବଲପୁର) ବି—ଥାପଡ଼; ଚାପୁଡ଼ା—A slap
Thāpar

ଥାପା—ଦେ. ବି (ସଂ. ସ୍ଥାପି ଧାତୁ—ବଣିଆଙ୍କର ଯେଉଁ ଛାଞ୍ଚରେ ତରଳ ବସ୍ତୁ ଢଳାଯାଏ—A goldsmith's mould.
Thāpā
थापा

ପ୍ରାଦେ (ସମ୍ବଲପୁର) ବି ( ତୁଳ. ହି. ଝାପ, ଝାପୀ ) ମାଛ ଧରିବା ଯନ୍ତ୍ର; ପୋଲୁହ—A tum cated basket like contrivance for catching fish.

ଥାପି—ଦେ. ବି—୧ । କୁମ୍ଭାରଙ୍କର ପିଟଣା; ଯେଉଁ ପିଟଣାଦ୍ୱାରା କୁମ୍ଭାରମାନେ କଞ୍ଚା ହାଣ୍ଡି ଆଦିକୁ ପିଟନ୍ତି; କୋବା; ପିଟଣା—1. A flat piece of wood used by potters to pat the wet earthen pots
Thāpi
थापी

୨ । ପଥୁରିଆଙ୍କ ବ୍ୟବହୃତ ଛାଣ—
2. A stone mason's chisel.

୩ । ଶାନ୍ତ—3. Calmness; peace.

ବିଣ. (ସଂ. ସ୍ଥା ଧାତୁ ଣିଜନ୍ତ କମ୍ପା ସ୍ଥାପି ଧାତୁ)—୧ । ସ୍ଥିର—1. Fixed.

୨ । ଶାନ୍ତ—2. Appeased; calm.

କ୍ରି. ବିଣ—୧ । ଧୀରେ—1. Quietly; slowly.

୨ । ଶାନ୍ତଭାବରେ—2. Calmly.

୩ । ସ୍ଥିର କରି—3 With certainty.

ଥାପିରେ କହୁ ଉଥାପିରେ ପ୍ରିୟସଖୀ—କବିସୂର୍ଯ୍ୟ. କଳୋଲ୍ଲଗର୍ଭ୍ଭ. ଥ ଗୀତ ।

ଥାପିବା—ଦେ. କ୍ରି (ସ୍ଥା ଧାତୁ ଣିଜନ୍ତ=ସ୍ଥାପି ଧାତୁ)—୧ । ସ୍ଥାପନ କରିବା—1. To place.
Thāpibā
थापना

ଏହା କହୁ ଚରଣ୍ଟି ଥାପି ମାରୀ କାସ
ପାଣ୍ଡୁଙ୍କ ସେଜ ତହୁଁ ପଶି ଗଲେ ମର—କୃଷ୍ଣସିଂହ. ମହାଭାରତ. ଅଦ ।

୨ । ପ୍ରତିଷ୍ଠା କରିବା—2. To set up.

ସ୍ଥାନ ଭୂଅର ଦେବ ଅର୍ଥେ
ଶୁଣ ଭୂ ଥାପିଲେ ଯେମନ୍ତେ—ଜଗନ୍ନାଥ. ଭାଗବତ ।

୩ । ବସାଇବା—3. To establish; to place.

୪ । ସ୍ଥିର କରିବା—4 To settle.

କଳରେ ସ୍ୱର ଥାପି ଗୀତକୁ ଗାଇଲେ—କୃଷ୍ଣସିଂହ. ମହାଭାରତ. ବେ ।

୫ । ସ୍ଥାପିତ କରିବା—5. To plant.

୬ । ଗୋବର, କାଦୁଅ ଆଦିର ଦଣ୍ଡାକୁ ହାତରେ ବା ଗୁଞ୍ଜରେ ଚଟକା କରି କାନ୍ଥରେ ବା ଭୂମିରେ ବସାଇବା—6. To set balls of cowdung or clay on the ground or wall by flattening them with the palm.

ପ୍ରାଦେ ( ସମ୍ବଲପୁର ) କ୍ରି—ଢାପିବା ( ଦେଖ )
Ḍhāpibā ( See ).

ଥାପୁଡ଼ା—ଦେ. ବି—ଥାପଡ଼ ( ଦେଖ )
Thāpuṛdā Thāpaṛdā ( See ).

ଥାପୁଡ଼ା(ଡ଼ୋ)ଇବା—ଦେ. କ୍ରି ( ଧ୍ୱନ୍ୟନୁକରଣ )—୧ । ଧୀରେ ଧୀରେ ଚାପୁଡ଼ା ମାରିବା—1. To slap or pat; to strike with the flat of the hand gently.
Thāpuṛdā(ṛde)ibā
(ଥାପୁଡ଼ାଥାପୁଡ଼ି କରିବା—ଅନ୍ୟରୂପ)
थापड़ाना
थपकाना

୨ । ହାତଦ୍ୱାରା ମାଟି ଆଦି ଲଗାଇବା—2. To stick mud on a wall with the hand.

୩ । ଅସ୍ଥାୟୀଭାବରେ କୌଣସି କାର୍ଯ୍ୟ କରିବା—3. To patch up a thing; to do patch work.

୪ । କୌଣସି କାର୍ଯ୍ୟକୁ କିଛିକାଳ ସକାଶେ ଅଟକାଇ ରଖିବା—4. To keep a matter in obeyance for the time being.

ଥାପୁଡ଼ୁଥୁପୁଡ଼ୁ କରିବା—ପ୍ରାଦେ ( ଯାଜପୁର ) କ୍ରି—କାର୍ଯ୍ୟଟାକୁ ଯେ କୌଣସିପ୍ରକାରେ ସମ୍ଭାଳିବା—To get on with a work any how.
Thāpuṛduthupuṛdu karibā

ଥାବର (ଇତ୍ୟାଦି)—ସ୍ଥାବର ଇତ୍ୟାଦି (ଦେଖ)
Thābara (etc) Sthābara etc (See)

ଥାବର ଜଙ୍ଗମ ତଉଙ୍ଗ,
କାଠ ସ୍ୱରୂପେ ସେତେ ଜାବ—ଯଶୋବନ୍ତ. ପ୍ରେମଭକ୍ତି ଗୀତା ।

ଥାବରୀ—ଦେ. ବି. ସ୍ତ୍ରୀ—ଦେବୀବିଶେଷ—Name of a village Goddess
Thābari

ଥାବା—ପ୍ରାଦେ (ମେଦିନୀପୁର ଓ ବାଲେଶ୍ୱର) ବି ( ତୁଳ. ଏହି ଅର୍ଥରେ ବ. ଏହି ଶବ୍ଦ )—ବାଘ ଭାଲୁ ଆଦି ଜୀବଜନ୍ତୁଙ୍କର କରତଳ—The paw or claws of an animal.
Thābā

ଥାବା ମାରିବା—ପ୍ରାଦେ. କ୍ରି ( ବାଲେଶ୍ୱର ଓ ମେଦିନୀପୁର )—ଜୀବଜନ୍ତୁମାନେ କରତଳ ଦ୍ୱାରା ଆଘାତ କରିବା—To strike with the paw.
Thābā māribā
थाबामारा
पंजा मारना; थाप मारना

ଥାମିବା—ଦେ. କ୍ରି (ସଂ. ସ୍ତମ୍ଭ୍ ଧାତୁ; ସ୍ତମ୍ଭନ)—୧ । ସ୍ତମ୍ଭିତ ହେବା—1. To stop; to halt.
Thāmibā
थामा

